# ସ୍ମୃତି ଓ ଅନୁଭୂତି

(ପରିବର୍ଦ୍ଧିତ ଓ ପରିମାର୍ଜିତ ଦ୍ୱିତୀୟ ସଂସ୍କରଣ)

ନୀଳମଣି ରାଉତରାୟ

ଗ୍ରନ୍ଥମନ୍ଦିର

ବିନୋଦବିହାରୀ, କଟକ-୨

SMRUTI O ANUBHUTI
By Nilamani Routray
Published by Grantha Mandir, Binodbehari, Cuttack-2
on behalf of Nalini Devi Education Trust, Bhubaneswar
Printed at : OPTIMA PRINTS, Sutahat, Cuttack-1
First Edition : October 12, 1986
Revised and Enlarged Second Edition : 15th August, 2001
Price : Rs. 350/-


Regd. No.-7557/1988
Contact Address : N-2/172, IRC Village, Bhubaneswar
Tel. – 0674-555380

ପ୍ରକାଶକ : ଶ୍ରୀ ମନୋଜ କୁମାର ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୭୫୩୦୦୨

ମୁଦ୍ରକ : ଅପ୍‌ଟିମା (ଅପ୍‌ସେଟ୍) ପ୍ରିଣ୍ଟସ୍
ସୂତାହାଟ, କଟକ-୭୫୩୦୦୨
ଫୋନ୍ : (୦୬୭୧)୬୨୫୧୪୮

ପ୍ରଥମ ପ୍ରକାଶ : ଅକ୍ଟୋବର ୧୨, ୧୯୮୬, ବିଜୟାଦଶମୀ
ପରିବର୍ଦ୍ଧିତ ଓ ପରିମାର୍ଜିତ
ଦ୍ୱିତୀୟ ସଂସ୍କରଣ : ଅଗଷ୍ଟ ୧୫, ୨୦୦୧

ମୂଲ୍ୟ : ଟ. ୩୫୦/-
ସାଦାକଭର : ଟ. ୩୨୦/-



"MAN IS A FALLIBLE BEING,
HE CAN NEVER BE SURE OF HIS STEPS."

**MAHATMA GANDHI**

YOUNG INDIA
September 25, 1924



ଲଂଘି ଶତ ଉଠାଣି
ସ୍ରୋତ ମୁଖେ ପୁଣିରେ ଉଜାଣି
ବାହିବାକୁ ହେବ ତୋତେ ତରୀ !

[ ବାବୁଲଙ୍କୁ ତାର ମାମା ହୀରାକୁଦ ବନ୍ଧ ଯୋଜନା ବୁଲାଇ ଦେଖାଉଛନ୍ତି । ]

# ଆଶୀର୍ବାଦ

ଆୟୁଷ୍ମାନ୍ ନୀଳମଣି ରାଉତରାଯ ତାଙ୍କ କର୍ମମୟ ଜୀବନର ସ୍ମୃତି ଓ ଅନୁଭୂତିକୁ ଲିପିବଦ୍ଧ କରି ମୋତେ ତାହାର ମୁଖବନ୍ଧ ଲେଖିବା ପାଇଁ ସଶ୍ରଦ୍ଧ ଅନୁରୋଧ କରିଛନ୍ତି । ନମ୍ରତା ନୀଳମଣିଙ୍କର ଏକ ସହଜାତ ଗୁଣ । ତାଙ୍କର ଏହି ରଚନାର ଆଦ୍ୟରୁ ହିଁ ସେହି ସ୍ୱାଭାବିକ ନମ୍ରତା ପ୍ରତିଫଳିତ ହୋଇଛି । ତାଙ୍କ ପରି ଜଣେ ଅନୁଭବୀ, ପ୍ରବୀଣ ସ୍ୱାଧୀନତା-ସଂଗ୍ରାମୀଙ୍କର ଘଟଣାବହୁଳ ପରିପକ୍ୱ ଜୀବନ-ବୃତ୍ତାନ୍ତକୁ ତାଙ୍କ ଜୀବନର 'ସ୍ମୃତି ଓ ଅନୁଭୂତି'ରୂପେ ସେ ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିଛନ୍ତି ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରୁ ଅବସର ନେବା ପରେ ଶ୍ରୀମାନ୍ ନୀଳମଣି ପ୍ରତ୍ୟକ୍ଷ ରାଜନୀତିରେ ବିଶେଷ ସକ୍ରିୟ ରହିନଥିବାର ଲକ୍ଷ୍ୟ କରିଥିଲି । ମାତ୍ର ରାଜନୈତିକ ଜୀବନରେ ତାଙ୍କର ବିଶେଷ ଅନୁଭୂତିକୁ ଭବିଷ୍ୟତ ବଂଶଧରମାନଙ୍କ ଗୋଚରାର୍ଥେ ଲିପିବଦ୍ଧ କରିଯିବା ତାଙ୍କର କର୍ତ୍ତବ୍ୟ ଜ୍ଞାନକରି ସେ ପବିତ୍ର ସ୍ୱାଧୀନତା ସଂଗ୍ରାମ କାଳ ଓ ତତ୍ପରବର୍ତ୍ତୀ ସମୟର ରାଜନୈତିକ ତଥା ଆନୁଷଙ୍ଗିକ ସାମାଜିକ ଇତିହାସ ସଂକଳନରେ ନିଜର ଏହି ଅବସର ସମୟକୁ ନୀରବରେ ଉପଯୋଗ କରିଛନ୍ତି । ଏହା ଜାଣି ଅତ୍ୟନ୍ତ ପ୍ରୀତ ହେଲି । କାରଣ ଈଶ୍ୱର ସଦୟ ହୋଇ ଯେତେଦିନ ଆମକୁ ସୁସ୍ଥ ଶରୀର ଓ ମସ୍ତିଷ୍କ ପ୍ରଦାନ କରିଛନ୍ତି, ସେତେଦିନ ପର୍ଯ୍ୟନ୍ତ ନିଜ ଜୀବନକୁ ସାଧମତେ ସର୍ବସାଧାରଣଙ୍କ ସ୍ୱାର୍ଥପାଇଁ କର୍ମମୟ ରଖିବା ଆମର ପରମ କର୍ତ୍ତବ୍ୟ । ଏହି ପୁସ୍ତକ ରଚନା ତାଙ୍କର ସେହି କର୍ତ୍ତବ୍ୟ-ବୋଧର ନିଦର୍ଶନ ।

ପ୍ରତ୍ୟକ୍ଷ ରାଜନୈତିକ ଜୀବନ ପ୍ରାୟଶଃ କ୍ଷମତା-ମୋହଗ୍ରସ୍ତ ହୋଇ ତୀବ୍ର ପ୍ରତିଯୋଗିତାମୂଳକ ହୋଇପଡୁଛି । ଅତି ତରୁଣ ବୟସରୁ ଶ୍ରୀମାନ୍ ନୀଳମଣି ସ୍ୱାଧୀନତା ସଂଗ୍ରାମର ସୈନିକ ସାଜିଥିଲେ । ମାତ୍ର ବାର ବର୍ଷ ବୟସରେ ତାଙ୍କୁ କାରାବାସ ଦଣ୍ଡ ଭୋଗ କରିବାକୁ ପଡ଼ିଥିଲା । ତେଣୁ ତାଙ୍କର ଏଯାବତ୍ ଦୀର୍ଘ କାଳ ମଧରେ ନାନା ରାଜନୈତିକ କର୍ମ, ସ୍ମୃତି ଓ ଅନୁଭୂତି ତାଙ୍କ ଜୀବନ ଉପରେ ଯେଉଳି ରେଖାପାତ କରିଛି, ତାହାର ଏକ ବିଶ୍ଳେଷଣାତ୍ମକ ରଚନା ପ୍ରଣୟନ କରିବାଦ୍ୱାରା ଲେଖକ ଆମର ସମସାମୟିକ ସମାଜରେ ତାଙ୍କର ଅନ୍ୟ ଏକ ମୂଲ୍ୟବାନ୍ ରାଜନୈତିକ କର୍ତ୍ତବ୍ୟ ସମ୍ପାଦନ କରିଛନ୍ତି, ଯଦିଓ ପ୍ରତ୍ୟକ୍ଷ ରାଜନୈତିକ କ୍ରିୟାକଳାପଠାରୁ ଏହି ଧରଣର କାର୍ଯ୍ୟ ସଂପୂର୍ଣ୍ଣ ପୃଥକ୍‌ଧର୍ମୀ ।

ପୁସ୍ତକଟି ସ୍ଥୂଳତଃ ଏକ ଆତ୍ମଚରିତ ହେଲେ ମଧ ସୁଖର କଥା ଯେ ଏଥିରେ ପରିବେଷିତ ବିଷୟବସ୍ତୁ କେବଳ ଏକ ବ୍ୟକ୍ତିଗତ ଜୀବନବୃତ୍ତାନ୍ତର ବର୍ଣ୍ଣନାରେ ପର୍ଯ୍ୟବସିତ ହୋଇନାହିଁ । ସ୍ୱାଧୀନତା ପୂର୍ବ ଓ ପରବର୍ତ୍ତୀ ଯୁଗର ପ୍ରାୟ ଦୀର୍ଘ ପଚାଶ ବର୍ଷର ବହୁ ପ୍ରକଟିତ ଓ ପ୍ରଚ୍ଛନ୍ନ ରାଜନୈତିକ ଘଟଣାପ୍ରବାହର ଐତିହାସିକ ତଥା ତାତ୍ତ୍ୱିକ ବିଶ୍ଳେଷଣ ଓ ସମୀକ୍ଷାରେ ଏହା ପରିପୁଷ୍ଟ; ଅଥଚ ଏହି ରଚନା ଐତିହାସିକ ବର୍ଣ୍ଣନାର ଏକ ନୀରସ ବିବରଣୀ ପରି ପାଠକମାନଙ୍କ ପାଇଁ ଅରୁଚିକର ହୋଇ ନାହିଁ – କାହାଣୀ କହିବାଭଳି ସୁଖପାଠ୍ୟ ଶୈଳୀରେ ଲେଖାଯାଇଛି ।

ଲେଖକ ପୁସ୍ତକଟି ପ୍ରଣୟନ କରିବା ପୂର୍ବରୁ ନିଜର ବକ୍ତବ୍ୟ ଓ ମତବ୍ୟ ସଂପର୍କରେ ଯଥେଷ୍ଟ ସତର୍କତା ଅବଲମ୍ୱନ କରିଛନ୍ତି । ଜଣେ ପ୍ରତିଷ୍ଠିତ ଗ୍ରନ୍ଥକାରଙ୍କର ନିମ୍ନୋକ୍ତ ସାବଧାନବାଣୀ ଉଦ୍ଧାର କରି ସେ ତାହାର ପ୍ରମାଣ ଦେଇଛନ୍ତି – ''ଏ କଥା ନିଶ୍ଚିତ ଯେ ତା'ର (ଆତ୍ମଜୀବନୀ ଲେଖକର)

ଜୀବନରେ ସେ ବହୁ ବିଶିଷ୍ଟ ଲୋକଙ୍କର ସଂସ୍ପର୍ଶରେ ଆସିଥିବ । ସେମାନଙ୍କ ବିଷୟରେ କେତେକ ସତ୍ୟ କଥା କହିବାକୁ ପଡ଼ିବ । ସେଭଳି ସତ୍ୟ କହିବା ଦ୍ୱାରା ସେ ସେମାନଙ୍କ ପ୍ରତି କେଉଁ କ୍ଷେତ୍ରରେ ଖୁବ୍ ନ୍ୟାୟ କରିବ ଓ କେଉଁ କ୍ଷେତ୍ରରେ କେତେକ ଅପ୍ରିୟ କଥା କହିବାକୁ ବାଧହେବ । ଜଣେ ଯେତେ ବଡ଼ ହୋଇଥାଉ ପଛକେ ସେ ମନୁଷ୍ୟ-ଜନ୍ମ ନେଇଥିବାରୁ ତା'ର କିଛି ଦୋଷ ଥିବ, କିଛି ଗୁଣ ଥିବ । x x x ସମାଜର ଗୋଟିଏ ସମୟର ଘଟଣାବଳୀ ବର୍ଣ୍ଣନା କରିବାକୁ ଯାଇ ସେ ହୁଏତ ନିଜକୁ ନିମିତ୍ତ କରି ରଖିଥିବ ।'' ପୁନଶ୍ଚ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ମତ ସଂପର୍କରେ ସଚେତନ ରହି ଲେଖକ ଉଲ୍ଲେଖ କରିଛନ୍ତି, – ''ଆତ୍ମଜୀବନୀର ବିଷୟବସ୍ତୁ ସବୁ ଖୁବ୍ ମୂଲ୍ୟବାନ୍ ଓ ମର୍ମସ୍ପର୍ଶୀ ନହେଲେ ତାହା ଅପାଠ୍ୟ ହୋଇପଡ଼େ । ଜଣେ ଲେଖକ ଅନ୍ୟ ଜଣକର ଜୀବନଚରିତ ଲେଖିବାରେ କେତେକ ସୁବିଧା ଅଛି । ଜୀବନଚରିତର ନାୟକଙ୍କର ବିଶେଷ କିଛି ପ୍ରକୃତ ମହତ୍ତ୍ୱ ନଥିଲେ ମଧ ଲେଖକ ତାଙ୍କ ଲେଖାର ଶୈଳୀ ଓ କଳ୍ପନା ଦ୍ୱାରା ସୁନ୍ଦର, ମହତ୍ତ୍ୱପୂର୍ଣ୍ଣ ଓ ଚିତ୍ତାକର୍ଷକ କରିପାରନ୍ତି । x x x ମାତ୍ର ଆତ୍ମଜୀବନୀ ଲେଖକଙ୍କର ସେ ସୁବିଧା ବା ସ୍ୱାଧୀନତା ନଥାଏ । ତେଣୁ ଆତ୍ମଜୀବନୀ ଲେଖକଙ୍କର ପରିସର ସୀମିତ; କିନ୍ତୁ ଦାୟିତ୍ୱ ଅଧିକ ।'' ଏହା ନିରାଟ ସତ୍ୟ ।

ଶ୍ରୀମାନ୍ ନୀଳମଣିଙ୍କୁ ମୁଁ ଅତି ଅନ୍ତରଙ୍ଗ ଭାବରେ ଜାଣିବାର ଅବକାଶ ପାଇଛି । ପୂର୍ବରୁ କହିଛି ଯେ ଅତି ତରୁଣ ବୟସରୁ ସେ ଜଣେ ନିଷ୍ଠାବାନ୍ ଦେଶବ୍ରତୀ ଭାବରେ ଉଦ୍‌ବୁଦ୍ଧ ହୋଇଥିଲେ; ବାରମ୍ବାର କାରାବରଣ କରିଥିଲେ । ସ୍ୱାଧୀନତା ସଂଗ୍ରାମ କାଳରେ ଏବଂ ତତ୍ପରବର୍ତ୍ତୀ ସମୟରେ ସେ ଯେପରି ସାଂଗଠନିକ ଦକ୍ଷତା ଓ ନିଷ୍ଠା ପ୍ରଦର୍ଶନ କରିଥିଲେ, ଆମ ରାଜ୍ୟ ତଥା ରାଷ୍ଟ୍ରର ନାନା ଦୁର୍ବିପାକ ସମୟରେ ସେହିପରି କଠୋର ସେବାପରାୟଣତାର ପରିଚୟ ଦେଇଥିଲେ । ସଂସଦୀୟ ଓ ପ୍ରଶାସନିକ କାର୍ଯ୍ୟରେ ସେ ଉଚ୍ଚକୋଟୀର ପାରଦର୍ଶିତା ପ୍ରଦର୍ଶନ କରିଥିଲେ । ସ୍ୱାଧୀନତା ସଂଗ୍ରାମ; ଛାତ୍ର, ଶ୍ରମିକ ଓ ଦଳୀୟ ସଂଗଠନ; ଦୈବୀଦୁର୍ବିପାକ ଓ ଦୁର୍ଭିକ୍ଷକାଳୀନ ତ୍ରାଣକାର୍ଯ୍ୟ ଓ କଲିକତା ମହାନଗରୀରେ ଭାରତ ବିଭାଜନକାଳୀନ ବୀଭତ୍ସ ସାଂପ୍ରଦାୟିକ ଦଙ୍ଗାଦ୍ୱାରା ଘୋର ପ୍ରପୀଡ଼ିତ ବ୍ୟକ୍ତିମାନଙ୍କର ଉଦ୍ଧାର କାର୍ଯ୍ୟ ଭଳି ବିଭିନ୍ନ କର୍ମକ୍ଷେତ୍ରରେ ସେ ମୋର ଜଣେ କନିଷ୍ଠ ଓ ଘନିଷ୍ଠ ସହକର୍ମୀ ଓ ସହଯୋଗୀରୂପେ ଅତ୍ୟନ୍ତ ଆଦରଣୀୟ ଥିଲେ । କଲିକତାରେ ସାଂପ୍ରଦାୟିକ ଦଙ୍ଗା-ପ୍ରପୀଡ଼ିତମାନଙ୍କ ତ୍ରାଣକାର୍ଯ୍ୟପାଇଁ ସେତେବେଳେ ମୋର ସଭାପତିତ୍ୱରେ ଯେଉଁ ଅନୁଷ୍ଠାନ କାର୍ଯ୍ୟ କରୁଥିଲା, ଶ୍ରୀମାନ୍ ନୀଳମଣିଙ୍କୁ ମୁଁ ତାହାର ସମ୍ପାଦକରୂପେ ନିର୍ବାଚନ କରିଥିଲି ।

ଜୀବନରେ ନିଜ ସାଧନାବଳରେ ସଂଗଠନ ଓ ପ୍ରଶାସନ କ୍ଷେତ୍ରରେ ବିଭିନ୍ନ ସମୟରେ ଉଚ୍ଚ ପଦାଧିକାର ଓ ସମ୍ମାନ ଲାଭକରିଥିଲେ ମଧ ନୀଳମଣିଙ୍କ ବ୍ୟକ୍ତିଗତ ଜୀବନରେ ସର୍ବଦା ନମ୍ରତା, ସମ୍ଭ୍ରମ ତଥା ଦଳମତ-ବିଭେଦକୁ ଅତିକ୍ରାନ୍ତ କରି ଅନ୍ୟମାନଙ୍କ ପ୍ରତି ପ୍ରଗାଢ଼ ସମ୍ମାନ ଓ ସହୃଦୟତା ପ୍ରକାଶ ପାଇଥାଏ । ଏହା ମଧ ତାଙ୍କ ପରିବାରର ସହଜାତ ଗୁଣ ବୋଲି ମୁଁ ଲକ୍ଷ୍ୟ କରିଛି । ଏହିସବୁ ସଦ୍‌ଗୁଣ ହେତୁ ବିଭିନ୍ନ ସମୟରେ ମୋ ସହିତ ତାଙ୍କର ଅଗ୍ରଜ ହରେକୃଷ୍ଣ ରାଉତରାୟ, ପତ୍ନୀ ନଳିନୀ ଓ ଏକମାତ୍ର ସନ୍ତାନ ଆୟୁଷ୍ମାନ୍ ବିଜୟଶ୍ରୀଙ୍କ ସମ୍ପର୍କ ମଧ ବେଶ୍ ଆନ୍ତରିକ ହୋଇଉଠିଥିଲା । ହରେକୃଷ୍ଣ ଓ ନଳିନୀ ନୀଳମଣିଙ୍କର ଏହି ନୂତନ କୃତି 'ସ୍ମୃତି ଓ ଅନୁଭୂତି' ପଢ଼ି ସନ୍ତୋଷ ଲାଭ କରିବାକୁ ଆଜି ଇହଜଗତ୍‌ରେ ନାହାନ୍ତି । ଆଶା କରୁଛି, ସ୍ୱର୍ଗରାଜ୍ୟରେ ସେ ଦୁହିଁଙ୍କର ଆତ୍ମା ନିଶ୍ଚୟ ଅତ୍ୟନ୍ତ ତୃପ୍ତ ହେବ ।

ପୂର୍ବରୁ କହିଛି ଯେ 'ସ୍ମୃତି ଓ ଅନୁଭୂତି' ପୁସ୍ତକଟି ପାଠକମାନଙ୍କ ପାଖରେ ଜଣେ ରାଜନୈତିକ ନେତାଙ୍କର କେବଳ ଜୀବନବୃତ୍ତାନ୍ତରୂପେ ସାମାନ୍ୟ ବୋଲି ବିବେଚିତ ହେବନାହିଁ; ବରଂ ମୋ ବିଚାରରେ ଏହି ପୁସ୍ତକଟିରେ ସନ୍ନିବେଶିତ ଅନେକ ଶିକ୍ଷଣୀୟ ବିଷୟବସ୍ତୁ ଲେଖକଙ୍କ ପାଇଁ ନୂତନ ସ୍ୱୀକୃତି ଅର୍ଜ୍ଜନ କରିବାର ସମ୍ଭାବନା ରହିଛି । କାରଣ ଏଥିରେ ଲିପିବଦ୍ଧ ପ୍ରଧାନ ପ୍ରଧାନ ତଥ୍ୟାବଳୀ

ମଧ୍ୟରୁ ଅଧିକାଂଶ ଏପରି ବିଶ୍ଳେଷଣାତ୍ମକ ଏବଂ ଆତ୍ମସମୀକ୍ଷାମୂଳକ ହୋଇଛି ଯେ ଲେଖକ ଅତୀତ ପ୍ରତି ସିଂହାବଲୋକନ କଲାବେଳେ ଅତୀତରେ ନିଜର ରାଜନୈତିକ ଆଚରଣ ଓ ବିଚାରର ଦୋଷତ୍ରୁଟିକୁ ବର୍ତ୍ତମାନ ଅତି ନିଷପଟ ଭାବରେ ସ୍ୱୀକାର କରିଛନ୍ତି, ସମାଲୋଚନା ମଧ୍ୟ କରିଛନ୍ତି । ତା' ସଙ୍ଗେ ସଙ୍ଗେ ନିଜ ଅଭିଜ୍ଞତା ଓ ଅଧ୍ୟୟନରୁ ସଂସଦୀୟ ଗଣତନ୍ତ୍ର ପାଇଁ ଅନୁକୂଳ ରାଜନୈତିକ ଆଚରଣ ସମ୍ପର୍କରେ ଅନେକ ଦୃଷ୍ଟାନ୍ତ ଓ ପରାମର୍ଶ ଦେଇଛନ୍ତି । ତଦନୁଯାୟୀ କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟର ବିଶ୍ଳେଷଣ କରିଛନ୍ତି ।

ଏହି ପ୍ରସଙ୍ଗରେ ମୋର ମଧ୍ୟ ଉଲ୍ଲେଖ କରିବାର କଥା ଯେ, ସମକାଳୀନ ଇତିହାସସମ୍ବଳିତ ଆତ୍ମଜୀବନୀ ରଚନା କଲେ ସବୁ କଥା ସମସ୍ତଙ୍କୁ ସଂପୂର୍ଣ୍ଣ ପ୍ରୀତିକର ହେବାଭଳି ଉପସ୍ଥାପିତ କରିବା ଏକ ଦୁଃସାଧ୍ୟ ବ୍ୟାପାର; ମାତ୍ର ଲକ୍ଷ୍ୟ କରିବାର କଥା ଯେ ଏହି ପୁସ୍ତକରେ ବିଭିନ୍ନ ତଥ୍ୟ ଉପସ୍ଥାପିତ କରିବା ପ୍ରସଙ୍ଗରେ ପ୍ରବୀଣ, ସମାନସ୍କନ୍ଧ ତଥା କନିଷ୍ଠ, ସମସ୍ତଙ୍କ ପ୍ରତି ଲେଖକଙ୍କର ସମ୍ମାନ ଓ ସମ୍ବେଦନଶୀଳତା ପ୍ରକଟିତ ହୋଇଛି । ଦୃଷ୍ଟାନ୍ତସ୍ୱରୂପ, ଭାରତ ବିଭାଜନ ସଂପର୍କରେ ଆଲୋଚନା ପ୍ରସଙ୍ଗରେ ଲେଖକ ପଣ୍ଡିତ ଜବାହରଲାଲ୍ ନେହେରୁଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସର ଲାହୋର ଅଧିବେଶନରେ ଗୃହୀତ ଅଖଣ୍ଡ ଭାରତ ପ୍ରସ୍ତାବର ପୃଷ୍ଠଭୂମିରେ ସେହି ପଣ୍ଡିତଜୀଙ୍କ ସଭାପତିତ୍ୱରେ ଗୃହୀତ ଭାରତ ବିଭାଜନ ପ୍ରସ୍ତାବର ଇତିହାସକୁ ଆମ 'ଭାଗ୍ୟର ବିଡ଼ମ୍ବନା' ବୋଲି କହି ଗଭୀର କ୍ଷୋଭ ପ୍ରକାଶ କରିଛନ୍ତି ସତ; କିନ୍ତୁ ଭାରତର ସ୍ୱାଧୀନତା ସଂଗ୍ରାମରେ ପଣ୍ଡିତ ଜବାହରଲାଲ୍ ନେହେରୁଙ୍କ ମହାନ୍ ବ୍ୟକ୍ତିତ୍ୱ, ମାହାତ୍ମ୍ୟ ଓ ଅବଦାନ ପାଇଁ ଲେଖକଙ୍କର ଅନାବିଳ ଅନୁରକ୍ତି ଓ ସମ୍ମାନ ନାନାଭାବରେ ପୁସ୍ତକରେ ପରିସ୍ଫୁଟ ହୋଇଛି । ସେହିଭଳି ଅନ୍ୟ ଏକ ଦୃଷ୍ଟାନ୍ତ ହେଉଛି, ଦେଶର ରାଜନୈତିକ ବିବର୍ତ୍ତନ ହେତୁ ଲେଖକ ପରବର୍ତ୍ତୀ କାଳରେ ଅଣକଂଗ୍ରେସ ରାଜନୈତିକ ଭୂମିକାରେ ନେତୃତ୍ୱ ଗ୍ରହଣ କରିଥିଲେ ମଧ୍ୟ ''କଂଗ୍ରେସକୁ ଛାଡ଼ିଲେ ମଧ୍ୟ ଖଦଡ଼କୁ ଛାଡ଼ିହେଉନାହିଁ'' ବୋଲି ନିଜ ମର୍ମର ଏକ ଅନୁଭୂତି ଉଲ୍ଲେଖ କରିଛନ୍ତି । ଏଇ ଧାଡ଼ିକରୁ ଗାନ୍ଧୀ-ଗୋପବନ୍ଧୁ ଯୁଗର ଜଣେ ସ୍ୱାଧୀନତା ସଂଗ୍ରାମୀଙ୍କ ହୃଦୟରେ ଉପସ୍ଥିତ ଅନୁଭୂତିର ଅନେକ ପ୍ରଚ୍ଛନ୍ନ କଥା ସ୍ୱତଃ ପରିସ୍ଫୁଟ ହୁଏ । ଏହିସବୁ ଦୃଷ୍ଟିରୁ ଏ ପୁସ୍ତକର ପାଠକମାନେ ବିଶେଷତଃ ରାଜନୀତିରେ ସଂଶ୍ଳିଷ୍ଟ ବ୍ୟକ୍ତିମାନେ ବ୍ୟକ୍ତିଗତ ଆସକ୍ତି ବା ଅନାସକ୍ତିର ଉର୍ଦ୍ଧ୍ୱରେ ରହି ଉଦାରଚିତ୍ତରେ ଲେଖକଙ୍କର ବକ୍ତବ୍ୟ ବିଚାର କରିବା ସମୀଚୀନ ହେବ । କାରଣ ସବୁ କ୍ଷେତ୍ରରେ ସମସ୍ତେ ଜଣେ ଲେଖକଙ୍କର ମନ୍ତବ୍ୟ ସହିତ ସହମତ ହୋଇନପାରନ୍ତି । ମାତ୍ର ଏହି ପୁସ୍ତକ-ପ୍ରଣେତାଙ୍କ ବକ୍ତବ୍ୟ ଯେ ବହୁ ଐତିହାସିକ ତଥ୍ୟର ମୂଲ୍ୟବାନ୍ ସଂକଳନ ଓ ଉପାଦେୟ ବିଶ୍ଳେଷଣରେ ପରିପୁଷ୍ଟ ହୋଇପାରିଛି ଏହା ସ୍ୱୀକାର୍ଯ୍ୟ ।

ମହାତ୍ମା ଗାନ୍ଧୀଙ୍କର ଏକ ସ୍ମରଣୀୟ ଉକ୍ତିକୁ ଲେଖକ ପୁସ୍ତକର ଆଦ୍ୟ ପୃଷ୍ଠାରେ ଉଦ୍ଧାର କରି ସେଥିପ୍ରତି ସୁଧୀ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି । ଏହା ଯେପରି ଯଥାର୍ଥ, ସେହିପରି ତାତ୍ପର୍ଯ୍ୟପୂର୍ଣ୍ଣ । ମହାତ୍ମାଗାନ୍ଧୀଙ୍କର ଉକ୍ତିଟି ହେଲା, "Man is a fallible being. He can never be sure of his steps." ନିଜର 'ସ୍ମୃତି ଓ ଅନୁଭୂତି'ଗୁଡ଼ିକର ସଂକଳନରେ ଲିପ୍ତ ହେବା ପୂର୍ବରୁ 'ମନୁଷ୍ୟମାତ୍ରେ ଭୁଲ୍ କରିବସିବାର ସମ୍ଭାବନା' ସଂପର୍କରେ ଲେଖକ ଯେ କେତେ ସଚେତନ ରହିଛନ୍ତି ଏଥିରୁ ତାହା ସୁସ୍ପଷ୍ଟ । ଲେଖକଙ୍କର ନିଜସ୍ୱ ବିନୟ ଓ ବିଚାରବତ୍ତାର ମଧ୍ୟ ଏହା ଅନ୍ୟ ଏକ ନିଦର୍ଶନ । ସେହି କାରଣରୁ ପୂର୍ବକାଳରେ ଗ୍ରନ୍ଥପ୍ରଣେତାମାନେ ସେମାନଙ୍କ ରଚନାରେ କିଛି ଅନଭିପ୍ରେତ ଦୋଷତ୍ରୁଟି ଥିଲେ ସୁଧୀଜନମାନେ ମାର୍ଜନା କରିବାପାଇଁ ଗ୍ରନ୍ଥର ଆଦ୍ୟରେ ଅବା ଶେଷ-ଭାଗରେ ନିବେଦନ କରିବାର ପ୍ରଥା ଥିଲା ।

ଅବଶେଷରେ କିଛି ନୀତିକଥା ଉପସ୍ଥାପିତ କରିବା ପ୍ରୟୋଜନ ଅନୁଭବ କରୁଛି । ନୀଳମଣି ଲେଖିଛନ୍ତି ଯେ ବହୁ ବନ୍ଧୁ ତାଙ୍କୁ ଅତୀତର ଘଟଣାପ୍ରବାହ ପ୍ରସଙ୍ଗରେ ବହୁ ପ୍ରଶ୍ନ ପଚାରିଛନ୍ତି । ବନ୍ଧୁ ବନ୍ଧୁଙ୍କର ଏହିଭଳି ବହୁ ପ୍ରଶ୍ନ ଓ ପରାମର୍ଶ ପରେ ଭବିଷ୍ୟଦ୍ ବଂଶଧରମାନଙ୍କ ଗୋଚରାର୍ଥେ ସେ ତାଙ୍କ ଜୀବନର 'ସ୍ମୃତି ଓ ଅନୁଭୂତି' ଲିପିବଦ୍ଧ କରିବାକୁ ମନସ୍ଥ କଲେ । ସମାଜର ସାମଗ୍ରିକ କଲ୍ୟାଣ ଉଦ୍ଦେଶ୍ୟରେ ହିଁ ସମସ୍ତ ରଚନା ଉଦ୍ଦିଷ୍ଟ ହେବା ବାଞ୍ଛନୀୟ । କହିରଖେଁ ଯେ 'ସ୍ମୃତି' ଶବ୍ଦର ଅର୍ଥ କେବଳ ସ୍ମରଣ ନୁହେଁ; ମନ୍ୱାଦି ମୁନିପ୍ରଣୀତ ଧର୍ମଶାସ୍ତ୍ରକୁ ମଧ୍ୟ ସ୍ମୃତି କୁହାଯାଏ । ସେହିଭଳି 'ଅନୁଭୂତି' ଶବ୍ଦର ଅର୍ଥ କେବଳ ଅଙ୍ଗେ ନିଭେଇଥିବା କଥା (experience) ନୁହେଁ; ଏହାର ଅସଲ ଅର୍ଥ ହେଲା ଅନୁଭବରେ ପରୀକ୍ଷାଲବ୍ଧ ଜ୍ଞାନ (realisation) । ତେଣୁ ସମାଜର କେତେକ ହିତାକାଂକ୍ଷୀ ଜିଜ୍ଞାସୁ ବନ୍ଧୁମାନଙ୍କ ପ୍ରଶ୍ନ ଓ ପରାମର୍ଶର ଉତ୍ତର ଛଳରେ ନୀଳମଣିଙ୍କ ସ୍ମୃତି ଓ ଅନୁଭୂତିରୁ ଏହି ପୁସ୍ତକ ଉଦ୍‌ଭବ ହୋଇଛି ବୋଲି ବୁଝିବାକୁ ହେବ । ପୂର୍ବକାଳରେ ସାଧୁଜନ-ମାନଙ୍କର ପ୍ରଶ୍ନୋତ୍ତର ଛଳରେ ହିଁ ଉପାଦେୟ ଗ୍ରନ୍ଥମାନ ରଚିତ ହେଉଥିଲା । ଶ୍ରୀମଦ୍‌ଭଗବଦ୍‌ଗୀତା ଏବଂ ଶ୍ରୀମଦ୍‌ଭାଗବତ ତାହାର ପ୍ରକୃଷ୍ଟ ପ୍ରମାଣ ଅଟନ୍ତି । ତେଣୁ ଏହି ପୁସ୍ତକରେ ବର୍ଣ୍ଣିତ ବିଶ୍ଳେଷଣ ଓ ପରାମର୍ଶମାନ ଭବିଷ୍ୟତ ସମାଜକୁ ମଙ୍ଗଳମୟ କରିବା ଦିଗରେ ସହାୟକ ହେବ ବୋଲି ଆଶା-ରଖି ଲେଖକ ଓ ତାଙ୍କର ଜିଜ୍ଞାସୁ ବନ୍ଧୁମାନଙ୍କର ଏହି ସାଧୁ ଉଦ୍ୟମ ଓ ଉଦ୍ଦେଶ୍ୟ ସଫଳ ହେବାପାଇଁ ମୁଁ ଆଶୀର୍ବାଦ କରୁଛି ।

ଶାସ୍ତ୍ର ସଂସାରୀକୁ କହୁଛନ୍ତି ଯେ, ଜଗଦ୍ ଯେତେ ପାପପଙ୍କିଳ ହେଉ, ଜୀବନର ପଥ ଯେତେ ପିଚ୍ଛିଳ ହେଉ, ରକ୍ତମାଂସର ଶରୀର ଯେତେ ପୂତିଗନ୍ଧମୟ ହୋଇଥାଉ, ସେସବୁ ସତ୍ତ୍ୱେ ତାହାରି ଭିତରେ ହିଁ ସଦ୍‌ଶିକ୍ଷା ଓ ସଦ୍‌ମାର୍ଗଦ୍ୱାରା ଏହି ପୃଥିବୀରେ ସ୍ୱର୍ଗର ସନ୍ଧାନ କରିବା ସଂସାରୀର ଧର୍ମ । ଏଥିପାଇଁ ବଳିଷ୍ଠ ଆଧାର ହେଲା କର୍ତ୍ତବ୍ୟବୋଧ ଓ ଆଶାବାଦ । ନୈରାଶ୍ୟ ସର୍ବଦା ବର୍ଜନୀୟ ।

ଏହି କାରଣରୁ ଶ୍ରୀମଦ୍‌ଭାଗବତ ଯଦିଓ ବୈରାଗ୍ୟ ଓ ମୋକ୍ଷ-ମାର୍ଗ ସଂପର୍କରେ ପରାମର୍ଶ ଦେଉଛନ୍ତି :

''ମର୍ତ୍ତମଣ୍ଡଳେ ଦେହ ବହି । ଦେବତା ହୋଇଲେ ମରଇ ॥
ଯାବତ ଅଛି ମୋହ ପାଶ । ତାବତ କରେ ଜ୍ଞାନ ନାଶ ॥
ଏ ସର୍ବ ମାୟା ନାନା ମତେ । ଆଶ୍ରେ କେ କରେ ତୋଷ ଚିତେ ॥

ଏପରିକି :

ଯେ ତତ୍ତ୍ୱଜ୍ଞାନ ପୁରାତନ । ଜଗତ ଉତ୍ପତ୍ତି କାରଣ ॥
ଜନ୍ମମରଣ ଏ ଜଗତେ । ଦୁଃଖ ସନ୍ତୋଷ ଆଦି ଯେତେ ॥
ଆଦ୍ୟନ୍ତ ମଧ୍ୟ ପରିମାଣ । ଏ ସର୍ବ ମିଥ୍ୟା ବୋଲି ଜାଣ ॥

ଅର୍ଥାତ୍ ଏକମାତ୍ର ବ୍ରହ୍ମ ସତ୍ୟ, ଜଗଦ୍ ମିଥ୍ୟା; ତଥାପି ଅନ୍ୟପକ୍ଷେ ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣଙ୍କ ବାଣୀରେ ସେହି ଶ୍ରୀମଦ୍‌ଭାଗବତ ସଂସାରୀକୁ କର୍ତ୍ତବ୍ୟବୋଧ ଓ ଆଶାବାଦରେ ଉଦ୍‌ବୁଦ୍ଧ କରି ଆହ୍ୱାନ କରୁଛନ୍ତି :

''କର୍ମର ଫଳ ଏ ଜଗତ । କର୍ମ ସରିଲେ ହୁଏ ହତ ॥
ଉଦ୍ଧବ ଉତ୍ତମ ଏ ଘର । ଅଟେ ଅନୁଷ୍ୟ କଳେବର ॥
ଯେ ପ୍ରଶ୍ନ କଲୁ ବୀର ତୁହି । କହିବି ଶୁଣ ମନ ଦେଇ ॥
ଅଧିକ ବିଶେଷ ବର୍ଣ୍ଣନ । ପ୍ରସ୍ତାବେ ନାହିଁ ପ୍ରୟୋଜନ ॥
ସକଳ ଭାବେ ଗୁଣଦୋଷ । ତେଣୁ ଏ ଜଗତ ଅଶେଷ ॥

ଅତଏବ ଏହି 'ଅଶେଷ ସଂସାର'ରେ ଏହି 'ମନୁଷ୍ୟ-କଳେବର'କୁ ଧାରଣ କରି ଜଗତର ମଙ୍ଗଳ ଆଶାରେ ସଂସାରୀ **କର୍ତ୍ତବ୍ୟ-କର୍ମ କରିବାହିଁ ବିଧେୟ ।**

ଉପନିଷଦ୍ ସେହି ବଳିଷ୍ଠ ଆଶାବାଦର ଉଦ୍‌ବୋଧନ କରୁଛନ୍ତି ନିମ୍ନୋକ୍ତ ପ୍ରାର୍ଥନାରେ :

ଅସତୋ ମା ସଦ୍‌ଗମୟ ।
ତମସୋ ମା ଜ୍ୟୋତିର୍ଗମୟ ।
ମୃତ୍ୟୋର୍ମାଽମୃତଂ ଗମୟ ।

ଆଜି ମୋର ମଧ୍ୟ ପ୍ରାର୍ଥନା, ଯେଉଁଠି ଅସତ୍ ଅଛି, ତାହାକୁ ଅତିକ୍ରାନ୍ତ କରି ଆମର ସଦ୍‌ଗତି ହେଉ । ଅନ୍ଧକାର ଭେଦକରି ଆମେ ଆଲୋକରେ ଉଦ୍‌ଭାସିତ ହେଉଁ । ମୃତ୍ୟୁ ବିନାଶ ପାଇ ଅମୃତର ଧାରା ପ୍ରବାହିତ ହେଉ । ସମସ୍ତେ ସ୍ୱସ୍ତି, ଶାନ୍ତି, ପରିପୂର୍ଣ୍ଣତା ଓ ମଙ୍ଗଳ ଲାଭ କରି ସୁଖ ଭୋଗକରନ୍ତୁ । ଉପନିଷଦ୍‌ର ଏହି ସନାତନ ଉଦ୍‌ବୋଧନ ଆମକୁ ଜାଗ୍ରତ କରୁ ।

ନୀଳମଣିଙ୍କ ପ୍ରଣୀତ 'ସ୍ମୃତି ଓ ଅନୁଭୂତି' ଗ୍ରନ୍ଥ ପାଠ କଲା ପରେ ସଂସାରୀ ପାଠକମାନଙ୍କ ମନରେ ଉଲ୍ଲିଖିତ ଶାସ୍ତ୍ରୋକ୍ତ କର୍ତ୍ତବ୍ୟବୋଧ ଓ ଆଶାବାଦ ସଂପର୍କରେ କିଞ୍ଚିତ୍ ଧାରଣା ଓ ପ୍ରେରଣା ଜାତ ହୋଇପାରିଲେ ତାଙ୍କର ଶ୍ରମ ସାର୍ଥକ ହେବ । ଏହାହିଁ ମୁଁ କାମନା କରୁଛି । ଶ୍ରୀ ଶୁଭମସ୍ତୁ ।

ସ୍ୱାଧୀନତା ଦିବସ
କାଜିବଜାର, କଟକ

ଶ୍ରୀ ହରେକୃଷ୍ଣ ମହତାବ
୧୫-୮-୬

# ଦ୍ୱିତୀୟ ସଂସ୍କରଣର ପୃଷ୍ଠଭୂମି

'ସ୍ମୃତି ଓ ଅନୁଭୂତି' ପ୍ରଥମ ସଂସ୍କରଣରେ ୧୯୮୦ ପର୍ଯ୍ୟନ୍ତ ପ୍ରାସଙ୍ଗିକ ବୃତ୍ତାନ୍ତମାନ ଆଲୋଚନା କରାଯାଇଛି । ଲେଖିଲାବେଳକୁ ମୋତେ ଷାଠିଏ ବର୍ଷ । ମୁଁ ଭାବିନେଇଥିଲି ଯେ ଜୀବନର ଅବସର ନେବାର ସମୟ ଆସିଗଲା, ତେଣୁ ସେପର୍ଯ୍ୟନ୍ତ ଯେଉଁ ଘଟଣାବଳୀ ସହିତ ମୁଁ ସଂପୃକ୍ତ ଥିଲି ସେତିକିର 'ସ୍ମୃତି ଓ ଅନୁଭୂତି' ଉଲ୍ଲେଖ କରିଥିଲି । ଆଉକିଛି ଲେଖିବାକୁ ଆବଶ୍ୟକ ପଡ଼ିବ ବୋଲି ଭାବିନଥିଲି । ମୋତେ ସେତେବେଳେ ପ୍ରାସଙ୍ଗିକ ବୋଧହୋଇଥିବା ତଥ୍ୟଗୁଡ଼ିକ ଛଡ଼ା ଅନେକ ବିଜ୍ଞ ବ୍ୟକ୍ତିଙ୍କ ଉକ୍ତି ଏବଂ ବିଭିନ୍ନ ପୁସ୍ତକ, କମିଟି, କମିଶନ୍ ଓ ସମ୍ବାଦପତ୍ର ମତବ୍ୟମାନଙ୍କରୁ ଅନେକ ଉଦ୍ଧୃତି ଓ ଉଦାହରଣ ଦେଇ ସେଥିରେ କିଛି କିଛି ତାତ୍ତ୍ୱିକ ଆଲୋଚନା ମଧ ମୁଁ କରିଥିଲି ।

ଯେଉଁ ବନ୍ଧୁମାନଙ୍କ ପ୍ରୋତ୍ସାହନ ହେତୁ 'ସ୍ମୃତି ଓ ଅନୁଭୂତି' ଲେଖିଥିଲି ସେମାନେ ଓ ମୋର ଆଉ ବହୁ ଶୁଭେଚ୍ଛୁ ଏହା ମଧରେ ମୋର ଯେଉଁ ଅନୁଭୂତି ଅନୁଭୂତ ହୋଇଛି ସେ ସମ୍ବନ୍ଧରେ କିଛି ଲେଖି ପାଠକମାନଙ୍କୁ ପରିବେଷଣ କରିବା ସମୀଚୀନ ହେବ ବୋଲି ଅନୁରୋଧ କରିଛନ୍ତି । ସେମାନଙ୍କ ଅନୁରୋଧ ଏଡ଼ାଇନପାରି ମୁଁ ସେହି ପୁସ୍ତକର ଦ୍ୱିତୀୟ ପରିବର୍ଦ୍ଧିତ ସଂସ୍କରଣ ପାଇଁ (Revised and Enlagrged Second Edition) ମୋର ପରବର୍ତ୍ତୀ କାଳର ଅନୁଭୂତିର ଏକ ଯଥାସମ୍ଭବ ସଂକ୍ଷିପ୍ତ ଉପସ୍ଥାପନା କରି ବହିଟିକୁ ପରିବର୍ଦ୍ଧିତ କରୁଛି ।

ବହିଟିର ପୂର୍ବ ସଂସ୍କରଣ ପ୍ରକାଶ ପାଇବା ଏବଂ ଦ୍ୱିତୀୟ ସଂସ୍କରଣପାଇଁ ଲେଖିବା ଭିତରେ ପ୍ରାୟ ପନ୍ଦର ବର୍ଷ ଅତିବାହିତ ହୋଇଗଲାଣି । ଏବେ ମୁଁ ବୟସ ଭାରାକ୍ରାନ୍ତ । ନିଜର ସାମର୍ଥ୍ୟକୁ ନେଇ ଆମର ଜାତୀୟ, ରାଜନୈତିକ ତଥା ସାମାଜିକ ଚିତ୍ରପଟରେ କ୍ଷିପ୍ର ପ୍ରବହମାନ ଘଟଣାବଳୀକୁ ଯଥେଷ୍ଟ ପର୍ଯ୍ୟାଲୋଚନାପୂର୍ବକ ପୁସ୍ତକଟିର ଏଯାବତ୍ ଏକ ପୂର୍ଣ୍ଣାଙ୍ଗ ନୂତନ ସଂସ୍କରଣ ପ୍ରଣୟନ କରିବା କଷ୍ଟସାଧ ବୋଧହୋଇଛି । ତଥାପି ନିଜ ଅନୁଭୂତିକୁ ଯେତେଦୂର ସମ୍ଭବ ପରିବେଷଣ କରିବା ପାଇଁ ଏହା ମୋର ଏକ ସାମାନ୍ୟ ଉଦ୍ୟମ । କିନ୍ତୁ ସବୁ ବିଶେଷ ପ୍ରାସଙ୍ଗିକ ଘଟଣା ପ୍ରବାହଗୁଡ଼ିକର ବିଶଦ ବିଶ୍ଳେଷଣ ଉପସ୍ଥାପନ କରିବା ମୋ ପକ୍ଷେ ବର୍ତ୍ତମାନ ଦୁର୍ବଳ ସ୍ୱାସ୍ଥ୍ୟ ଓ ସୀମିତ ଶ୍ରମଶକ୍ତି ହେତୁ ସମ୍ଭବ ନୁହେଁ । ବିଶେଷତଃ ନିକଟ ଅତୀତରେ ଭାରତବର୍ଷର ରାଜନୈତିକ ପରିପ୍ରେକ୍ଷୀରେ ବହୁ ବଡ଼ ବଡ଼ ପରିବର୍ତ୍ତନ, ବିବର୍ତ୍ତନ, ଆଲୋଡ଼ନ ଉପନୀତ ହୋଇଛି । ସମଗ୍ର ଭାରତବର୍ଷରେ ସଂଘୀୟ ଶାସନ (Federal System) ବନାମ କେନ୍ଦ୍ରାଶ୍ରୟୀ ଶାସନ (Union of States) ଘେନି ବହୁ ତାତ୍ତ୍ୱିକ ଓ ବାସ୍ତବ ପରିବର୍ତ୍ତନର ପରୀକ୍ଷା ଚାଲିଛି । ଭାରତର ସମ୍ବିଧାନ ସମ୍ପର୍କରେ ଇଂଲଣ୍ଡର ବିଶିଷ୍ଟ ସମ୍ବିଧାନବିତ୍ ସାର୍ ଆଇଭର୍ ଜେନିଙ୍ଗସ୍ (Sir Ivor Jennings) କହିଥିଲେ, "India is a Union of States with a strong centralising tendency." ବହୁକାଳଧରି ଖଣ୍ଡବିଖଣ୍ଡିତ ଥିବା ଭାରତବର୍ଷ ବ୍ରିଟିଶ୍ ଶାସନ ଅମଳରେ ମଧ ମୋଗଲବନ୍ଦୀ ବା ଖାସ୍ ବ୍ରିଟିଶ୍ ଶାସିତ ଅଞ୍ଚଳ, ଗଡ଼ଜାତ ଅଞ୍ଚଳ, ବିଶେଷ ସୁବିଧାଭୋଗୀ ଅଞ୍ଚଳ, ଫ୍ରାନ୍ସ ଓ ପର୍ତ୍ତୁଗାଲ ଭଳି ଅନ୍ୟ ବିଦେଶୀମାନଙ୍କ ଶାସନାଧୀନ ଅଞ୍ଚଳ ଏହିପରି ନାନା ଭାବରେ ବିଭକ୍ତ ଥିଲା । ଦେଶ ଭିତରେ ଏହିଭଳି ନାନାବିଧ ବିଭକ୍ତି ଛଡ଼ା ଧାର୍ମିକ, ଭାଷା ଓ ସଂସ୍କୃତିଗତ ଏବଂ ପାଶ୍ଚାତ୍ୟ ଚାଲିଚଳନ ଧର୍ମ ପରଂପରାରେ ଶିକ୍ଷିତ ଓ ଦୀକ୍ଷିତ ହୋଇ ବ୍ରିଟିଶ୍ ସରକାରଙ୍କଠାରୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ସ୍ୱତନ୍ତ୍ର ପୃଷ୍ଠପୋଷକତା ଭୋଗିଆସୁଥିବା ଅଞ୍ଚଳର ଅଧିବାସୀମାନଙ୍କର ବିଚ୍ଛିନ୍ନତାଭାବ ଭଳି ବହୁ ଗୁରୁତର ସମସ୍ୟାକୁ ବିଚାର କରି ସମ୍ବିଧାନ ପ୍ରଣେତାମାନେ ଭାରତର ଅଖଣ୍ଡତାକୁ ବଜାୟ ରଖିବା ଲକ୍ଷ୍ୟରେ ଏକ କେନ୍ଦ୍ରାଶ୍ରୟୀ ଶାସନପଦ୍ଧତିକୁ ବରଣୀୟ ବୋଲି ବିଚାର କରିଥିଲେ । ତଦନୁଯାୟୀ ଆମର ସମ୍ବିଧାନରେ ଏ ସଂକ୍ରାନ୍ତ ବ୍ୟବସ୍ଥାଗୁଡ଼ିକ ବେଶ୍ କୋହଳ ଥିଲେ ମଧ ଏକ କେନ୍ଦ୍ରାଶ୍ରୟୀ

ଦୃଢ଼ସଂଘ ତିଆରି କରାଯାଇଛି । କିନ୍ତୁ ନିକଟ ଅତୀତରେ ପ୍ରାୟ ତିନି ଦଶନ୍ଧିର ଅଭିଜ୍ଞତାରୁ ବୋଧ ହେଉଛି ଯେ, କ୍ରମେ ଅଧିକ କୋହଳ ସଂଘୀୟ ଶାସନ ଆଡ଼କୁ ଦେଶ ଗତିକରୁଛି । ଏଭଳି କୋହଳ ସଂଘୀୟ ପ୍ରଶାସନ ଭାରତବର୍ଷର ଐକ୍ୟ, ଅଖଣ୍ଡତା ଓ ଆଭ୍ୟନ୍ତରୀଣ ସଦ୍‌ଭାବନାକୁ ଅଧିକ ଦୃଢ଼ କରିବ, ରାଜ୍ୟଗୁଡ଼ିକର ସୁଷମ ଉନ୍ନତିର ପଥ ସୁଗମ ହେବ, ଜାତୀୟ ସଂହତି ବଢ଼ିବ ଏବଂ ଏହି ସୂତ୍ରରେ ଭାରତର ସଂଘୀୟ ସରକାର ମଧ୍ୟ ଅଧିକ ଦୃଢ଼ ଓ ଶକ୍ତିଶାଳୀ ହେବ ବୋଲି ପ୍ରତୀତ ହେଉଛି । ମୋଟାମୋଟି ଏହି କ୍ଷେତ୍ରରେ ଭାରତବର୍ଷ ବର୍ତ୍ତମାନ ଏକ ଗୁରୁତର ବିବର୍ତ୍ତନ ପଥରେ ଗତି କରୁଛି । ରାଜନୈତିକ ଦଳ ଓ ନେତାମାନଙ୍କର ଅଖଣ୍ଡ ସ୍ୱଦେଶ ପ୍ରୀତି, ପାରଙ୍ଗମତା ଏବଂ ଦେଶରୁ ସାମାଜିକ ଓ ଅର୍ଥନୈତିକ ବୈଷମ୍ୟ ଦ୍ରୁତଗତିରେ ଦୂର କରିବା କାର୍ଯ୍ୟରେ ନିଷ୍ଠାପରତା ଉପରେ ଏହି ବିବର୍ତ୍ତନପନ୍ଥୀ ପରୀକ୍ଷାର ସଫଳତା ନିର୍ଭର କରେ । ସାମ୍ପ୍ରତିକ ସମସ୍ୟାବଳୀ ଏବଂ ଆନ୍ତର୍ଜାତିକ ତଥା ଆଭ୍ୟନ୍ତରୀଣ ସମସ୍ୟାଗୁଡ଼ିକ ସମ୍ଭାଳିବାରେ ଶ୍ରୀଯୁକ୍ତ ଅଟଳ ବିହାରୀ ବାଜପେୟୀଙ୍କର ବିଚାରଧାରାରେ ମୁଁ ଯେଉଁ ଉଦାରପନ୍ଥୀ ଅଥଚ ବଚନବଦ୍ଧ, ଦୃଢ଼, ନିର୍ଭୀକ ନେତୃତ୍ୱର ପରିଚୟ ଲକ୍ଷ୍ୟ କରୁଛି, ତଦ୍ୱାରା ଏହି ବିବର୍ତ୍ତନପନ୍ଥୀ କାଳର ଭବିଷ୍ୟତ୍ ଆମ ଦେଶ ପକ୍ଷେ ନିଶ୍ଚୟ ଶୁଭଙ୍କର ହେବ ବୋଲି ମୋର ବିଶ୍ୱାସ ହେଉଛି ।

ଏହି ଐତିହାସିକ ବିବର୍ତ୍ତନ କାଳର ଅନ୍ୟ ଏକ ବହୁଚର୍ଚ୍ଚିତ ବିଷୟବସ୍ତୁ ହେଲା ଅର୍ଥନୈତିକ ଉଦାରୀକରଣ ଓ ଗୋଲକୀକରଣ । ଏଭଳି ଅର୍ଥନୀତି କଂଗ୍ରେସ ପ୍ରଧାନମନ୍ତ୍ରୀ ଶ୍ରୀ ନରସିଂହ ରାଓ ଓ ଅର୍ଥମନ୍ତ୍ରୀ ଶ୍ରୀ ମନମୋହନ ସିଂହଙ୍କ ଚିନ୍ତାପ୍ରସୂତ ଓ ସେହିମାନଙ୍କ ଅମଳରୁ ପ୍ରଚଳିତ ବୋଲି କୁହାଯାଇଥାଏ । କିନ୍ତୁ ପ୍ରକୃତରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଥାଉ ଥାଉ ସଂଜୟ ଗାନ୍ଧୀ ଓ ତତ୍ପରେ ରାଜୀବ ଗାନ୍ଧୀ ଯେଉଁଳି ଅନଧିକାର ପ୍ରଭାବ ବିସ୍ତାର କରୁଥିଲେ ସେହି ସମୟରୁ ପାଶ୍ଚାତ୍ୟ ସଭ୍ୟତା ଓ ବହୁଦେଶୀୟ ବଡ଼ ବଡ଼ ପାଶ୍ଚାତ୍ୟ ବେପାରୀ ପ୍ରତିଷ୍ଠାନମାନଙ୍କ ପାଇଁ ଇନ୍ଦିରା ଗାନ୍ଧୀଙ୍କର ତଥାକଥିତ ସମାଜବାଦୀ ଅର୍ଥନୀତି ମନ୍ଦିର ଭିତରକୁ ଚୋରାକବାଟିମାନ ଫିଟିବା ପରି ଜଣା-ପଡୁଥିଲା । ଜରୁରୀକାଳୀନ ଅବସ୍ଥା ଜାରିଥିବାବେଳେ ଇନ୍ଦିରା ଗାନ୍ଧୀ ଆମ ସମ୍ବିଧାନର ସ୍ୱୟଂ ନେହେରୁଙ୍କ ପ୍ରଣୀତ ମଙ୍ଗଳାଚରଣ (Preamble)କୁ ସଂଶୋଧନ କରି ଶସ୍ତା ବାହାବା ନେବା ଉଦ୍ଦେଶ୍ୟରେ ଭାରତକୁ ଏକ 'ସମାଜବାଦୀ ଜନରାଜ୍ୟ' ବୋଲି ବିଶେଷଣ ଯୋଗ କରିଥିଲେ । ସତେ ଯେପରି ଜବାହାର ଲାଲ ନେହେରୁ ଥିଲେ ଜଣେ ଅଣସାମ୍ୟବାଦୀ କିମ୍ବା ତରକୁଳା ନେତା । ତେଣୁ ସେ ସଂବିଧାନରେ ତାଙ୍କ ନିଜ ଲେଖା ମଙ୍ଗଳାଚରଣରେ ଏହି ଦୁଇପଦ ଅତ୍ୟନ୍ତ ପ୍ରଗତିପନ୍ଥୀ ଶବ୍ଦ ବିଶେଷଣ ଯୋଗ କରିବାକୁ ସାହସ କରିନଥିଲେ । ସେ ଯାହାହେଉ, ସେହି ସମୟରେ ଖୋଲାଯାଇଥିବା ଚୋରାକବାଟି ବାଟେ ଉଦାରୀକରଣ ଏବଂ ଗୋଲକୀକରଣ ଆଳରେ ଏବଂ ପୁଞ୍ଜିବାଦୀ ଉତ୍କୋଚ ଆୟକାରୀ ଆଚରଣରେ କ୍ଷମତାପତିମାନେ ଲିପ୍ତ ହୋଇଗଲେ । ନିର୍ବାଚନ ସମୟରେ ରାଜୀବ ଗାନ୍ଧୀଙ୍କର ନିର୍ମମ ହତ୍ୟା ପରେ ସିନା ନରସିଂହ ରାଓ ପ୍ରଧାନମନ୍ତ୍ରୀ ହେବାର ସୁଯୋଗ ପାଇଲେ, ମାତ୍ର ସେହି ରାଜୀବଙ୍କ ଅମଳରୁ ସୂଚିତ ଆବର୍ତ୍ତମୟ ପାଶ୍ଚାତ୍ୟ ଅଭିମୁଖୀ ଅର୍ଥନୀତିକୁ ଅନୁସରଣ କରିଥିଲେ । କଂଗ୍ରେସ ସଭାପତି ଭାବରେ ସ୍ୱୟଂ ରାଜୀବ ଗାନ୍ଧୀ କଂଗ୍ରେସ ନିର୍ବାଚନ ଇସ୍ତାହାରରେ ଯେଉଁ ଅର୍ଥନୀତିର ଚତୁର ସୂଚନା ଦେଇଥିଲେ ଏବଂ ନିଜେ ଦୂରଦର୍ଶନ ଓ ଆକାଶବାଣୀରୁ କଂଗ୍ରେସର ମୁଖ୍ୟ ପ୍ରବକ୍ତା ଭାବରେ ଉପସ୍ଥାପିତ କରିଥିଲେ ସେଥିରୁ ମୋର ଏହି ଧାରଣାର ପ୍ରମାଣ ମିଳିବ । ଏବେ ବିଡ଼ମ୍ବନାର କଥା ଯେ କଂଗ୍ରେସ ତ ଆଉ ଭୁଲକ୍ରମେ ମଧ୍ୟ ସମାଜବାଦୀ ଅର୍ଥନୀତିର ନାମ ଧରୁନାହାଁନ୍ତି, ଏପରିକି ଆମ ଦେଶର କମ୍ୟୁନିଷ୍ଟ ବନ୍ଧୁମାନେ ମଧ୍ୟ ଭାରତୀୟ ଜନତାପାର୍ଟିକୁ ଭର୍ତ୍ସନା କରିବା ଉଦ୍ଦେଶ୍ୟରେ ଇନ୍ଦିରା ଗାନ୍ଧୀଙ୍କଦ୍ୱାରା ସଂଶୋଧିତ ସେହି ତଥାକଥିତ 'ଧର୍ମନିରପେକ୍ଷତା' ବିଧାନକୁ ପୋଷାଶୁଆପରି ସଦାସର୍ବଦା ଘୋଷୁଛନ୍ତି । ଅଥଚ ସେହି

ସାମ୍ବିଧାନିକ ନିର୍ଦ୍ଦେଶ 'ସମାଜବାଦ' କଥା ତୁଣ୍ଡରେ ଧରୁନାହାଁନ୍ତି । ମଉକା ଉଣ୍ଡି ନିଜର ସ୍ୱାଧୀନ ବିଚାରର ପ୍ରମାଣ ରଖିବାପାଇଁ ଥରେ ଥରେ ବିଦେଶୀ ପୁଞ୍ଜି ନିବେଶ, ଉଦାରୀକରଣ ଓ ଗୋଲକୀକରଣ ବିରୁଦ୍ଧରେ କେତେବେଳେ କେମିତି ପଦେ ଅଧେ କହୁଥିଲେ ମଧ୍ୟ ଜ୍ୟୋତି ବସୁଙ୍କ ଭଳି ତୁଙ୍ଗ କମ୍ୟୁନିଷ୍ଟ ନେତାମାନେ ବିଦେଶୀ ପୁଞ୍ଜି ଓ ବହୁଦେଶୀୟ କମ୍ପାନୀଙ୍କ ଅନ୍ୱେଷଣ ଓ ଅନୁସରଣପାଇଁ ଗରିବ ଟିକସଦାତାଙ୍କ ଖର୍ଚ୍ଚରେ ବର୍ଷକୁ ବର୍ଷ ବାରମ୍ବାର ବିଦେଶ ଭ୍ରମଣ କରୁଛନ୍ତି । ଅର୍ଥନୀତି ଗୋଲକୀକରଣ ଓ ବିଦେଶୀ ପୁଞ୍ଜି ନିମନ୍ତ୍ରଣରେ ଅଗ୍ରଣୀ ଭୂମିକା ନେଇଥିବା ନବ୍ୟ କମ୍ୟୁନିଷ୍ଟବାଦୀ ବୋଲାଉଥିବା ଚୀନ୍ ଦେଶ ନେତୃତ୍ୱର ଚାଟୁ କରିପାରୁଛନ୍ତି । ଆମ ଦେଶରେ ବର୍ତ୍ତମାନ ଏଭଳି ଅର୍ଥନୀତିର ପରିଚାଳନା (management) ସଂପର୍କରେ ଦୂରଦୃଷ୍ଟି-ସମ୍ପନ୍ନ, ପ୍ରାଞ୍ଜଳ, ସ୍ୱଦେଶୀ ଉଦାର ଆଭିମୁଖ୍ୟର ସୂତ୍ରପାତ କରିଛନ୍ତି, ପ୍ରଧାନମନ୍ତ୍ରୀ ଶ୍ରୀ ଅଟଳ ବିହାରୀ ବାଜପେୟୀ । ସେ ଅର୍ଥନୈତିକ ଉଦାରୀକରଣ ଓ ଗୋଲକୀକରଣକୁ ଭାରତର ଆଭ୍ୟନ୍ତରୀଣ ଅର୍ଥନୀତିର ଦୃଢ଼ୀକରଣ ନିମନ୍ତେ ଏକ ସ୍ୱାଭିମାନୀ ରାଷ୍ଟ୍ରରେ ପୂର୍ଣ୍ଣ ମର୍ଯ୍ୟାଦାବନ୍ତ ପଦ୍ଧତିରେ ବିତ୍ତଶାଳୀ ରାଷ୍ଟ୍ରମାନଙ୍କର ରାଜନୈତିକ ସ୍ତରରେ ସମାନସ୍କନ୍ଧ ଭାବରେ ସାବଧାନତା ସହକାରେ ପ୍ରୟୋଗ କରିବାରେ ସଫଳ ହେଉଛନ୍ତି ।

ଏଠାରେ ଉଲ୍ଲେଖ କରିବା ପ୍ରାସଙ୍ଗିକ ହେବ ଯେ, ଏକବିଂଶ ଶତାବ୍ଦୀର ବିଶ୍ୱ ଅର୍ଥନୈତିକ ଭୂମିକାରେ ଅର୍ଥନୀତି ଗୋଲକୀକରଣ ଓ ଉଦାରୀକରଣକୁ କୌଣସି ପ୍ରଗତିଶୀଳ ରାଷ୍ଟ୍ର ଉପେକ୍ଷା କରି ଏକଘରକିଆ ଭାବେ ରହିପାରିବେନାହିଁ । ସଂକଳ୍ପବଦ୍ଧ ଭାବରେ ନିଜ ଦେଶର ସ୍ୱାର୍ଥରକ୍ଷା ଓ ଅଭିବୃଦ୍ଧିପାଇଁ ଆନ୍ତର୍ଜାତିକ ପ୍ରତିଯୋଗିତାର ସମ୍ମୁଖୀନ ହେବାକୁ ପଡ଼ିବହିଁ ପଡ଼ିବ । କିନ୍ତୁ ସବୁପ୍ରକାର କ୍ଷେତ୍ରରେ ପ୍ରତିଯୋଗିତାପାଇଁ ପ୍ରଥମେ ଆବଶ୍ୟକ ଆତ୍ମବିଶ୍ୱାସ, ସ୍ୱାଭିମାନ ଏବଂ ସବୁଠାରୁ ଅଧିକ ଆବଶ୍ୟକ ଏକ ଦୁର୍ନୀତିମୁକ୍ତ ଶାସନ । ସ୍ମରଣ କରିବାର କଥା ଯେ, ଭାରତର ସର୍ବୋଚ୍ଚ ବିଚାରାଳୟ ମଧ୍ୟ ଆମର ରାଜନୈତିକ ବ୍ୟକ୍ତି, ଦଳ ଓ ସରକାରୀକଳକୁ ଦୁର୍ନୀତିମୁକ୍ତ କରିବା ନିମନ୍ତେ ସତର୍କ-ଘଣ୍ଟି ବଜାଇ ସାରିଛନ୍ତି । ଆଶ୍ୱାସନାର କଥା ଯେ ଶ୍ରୀ ଅଟଳ ବିହାରୀ ବାଜପେୟୀ ଦେଶରେ ଦୁର୍ନୀତିମୁକ୍ତ ଶାସନ ପ୍ରତିଷ୍ଠା କରିବାପାଇଁ କଥା ଓ କାର୍ଯ୍ୟରେ ନିଷ୍ଠାପରତାର ପ୍ରମାଣ ଦେଇଛନ୍ତି । ପ୍ରଧାନମନ୍ତ୍ରୀଙ୍କୁ ଲୋକପାଳଙ୍କ ବିଚାର କ୍ଷମତାରେ ଅନ୍ତର୍ଭୁକ୍ତ କରିବାକୁ ସେ ବ୍ୟବସ୍ଥା କରିଛନ୍ତି । ଏହି ପ୍ରସଙ୍ଗରେ ପାଠକମାନେ ଜାଣିବାପାଇଁ ମୁଁ ଶ୍ରୀଯୁକ୍ତ ବାଜପେୟୀଙ୍କର ଖଣ୍ଡିଏ ପୁରୁଣାପତ୍ରର ଫଟୋଚିତ୍ର ଏହି ପାଠର ଶେଷରେ ସଂଯୋଗକରିବା ସମୀଚୀନ ମନେକରୁଛି । ମୋର ଯେଉଁ ଚିଠି କଥା ସେ ଉଲ୍ଲେଖ କରିଛନ୍ତି ତାହାର ମଧ୍ୟ ଫଟୋଚିତ୍ର ଦେଉଛି । ପୂର୍ବାପର ସଙ୍ଗତି ଜାଣିବା ପାଇଁ ତାହା ସହାୟକ ହେବ । ଉଭୟ ଚିଠିର ମର୍ମାନୁବାଦ ମଧ୍ୟ ଏଠାରେ ଦେଉଛି :

**ଅଟଳ ବିହାରୀ ବାଜପେୟୀ,**
ବିରୋଧୀଦଳ ନେତା, ଲୋକସଭା

ପତ୍ର ନଂ. ୧୯(୮୧) ଏଲ୍.ଓ.ପି/୧୯୭ ସେପ୍ଟେମ୍ବର ୧୬,୧୯୯୬

ପ୍ରିୟ ରାଉତରାୟଜୀ,

ଆପଣଙ୍କର ସେପ୍ଟେମ୍ବର ଚାରି ତାରିଖ ଚିଠି ପାଇଛି । ସେଥିରେ ମୋ ସମ୍ପର୍କରେ ଆପଣ ଯେପରି ସହୃଦୟତା ପ୍ରକାଶ କରିଛନ୍ତି ସେଥିପାଇଁ ଧନ୍ୟବାଦ ଜଣାଉଛି ।

ଦୁର୍ନୀତି ଦୂରୀକରଣ କାର୍ଯ୍ୟକୁ ଭାରତୀୟ ଜନତା ପାର୍ଟିର କାର୍ଯ୍ୟସୂଚୀରେ ଅଗ୍ରାଧିକାର ଦିଆଯାଇଛି ଏବଂ ଏହି ଦୁଷ୍କର୍ମକୁ ସମୂଳେ ବିନାଶ କରିବାପାଇଁ ଆମେ ନିଶ୍ଚୟ ସବୁମତେ ଉଦ୍ୟମ କରିବୁ । ଏହି କଷ୍ଟସାଧ୍ୟ କାର୍ଯ୍ୟରେ ସଫଳ ହେବା ଲକ୍ଷ୍ୟରେ, ଯେଉଁମାନେ ଆମ ମାତୃଭୂମିର

ଅଖଣ୍ଡତା ପ୍ରତି ଅନୁରକ୍ତ, ମାତୃଭୂମିର ପ୍ରାଚୀନ ସଂସ୍କୃତିର ଗୌରବରେ ଉଦ୍‌ବୁଦ୍ଧ ଏବଂ ଭାରତକୁ ବିଶ୍ୱରେ ଏକ ମହାନ୍ ଜାତି ରୂପେ ଦେଖିବାକୁ ଉତ୍ସୁକ ସେହିଭଳି ସବୁ ସଜ୍ଜନଙ୍କ ସହଯୋଗ ଆମର କାମ୍ୟ । ଯେ ଯେତେବଡ଼ ଆସନରେ ଥିଲେ କିମ୍ବା ଯେତେ କ୍ଷମତାଶାଳୀ ହୋଇଥିଲେ ମଧ୍ୟ ଏପରି କାର୍ଯ୍ୟାନୁଷ୍ଠାନରୁ ବାଦ ପଡ଼ିବେ ନାହିଁ ।

ରାଜନୀତିରେ ଅପରାଧୀକରଣ ଏବଂ ଅପରାଧୀ ଓ ରାଜନୈତିକ ଦଳମାନଙ୍କ ଭିତରେ ଅସାଧୁ ମେଣ୍ଟ ଆମ ସମାଜକୁ ବିପର୍ଯ୍ୟସ୍ତ କରିବାର ଅନ୍ୟ ଏକ କାରଣ । ଗଣତାନ୍ତ୍ରିକ ଶାସନ ପଦ୍ଧତିରେ ଆମ ଜନସାଧାରଣଙ୍କର ବିଶ୍ୱାସ ଅତୁଟ ରଖିବାକୁ ହେଲେ ଆମକୁ ଓ ଆମ ରାଜନୈତିକ ଜୀବନକୁ ସ୍ୱଚ୍ଛ ଓ ନିର୍ମଳ କରିବା ନିମନ୍ତେ ପ୍ରଗାଢ଼ ଉଦ୍ୟମ କରିବାକୁ ପଡ଼ିବ ।

ମୋର ସମ୍ମାନ ଜାଣିବେ
ଆପଣଙ୍କର ବିଶ୍ୱସ୍ତ
**ଅଟଳ ବିହାରୀ ବାଜପେୟୀ**

ଶ୍ରୀ ନୀଳମଣି ରାଉତରାୟ
ପୂର୍ବତନ ମୁଖ୍ୟମନ୍ତ୍ରୀ, ଓଡ଼ିଶା,
ଏ-୧୧୭, ଖାରବେଳ ନଗର, ଭୁବନେଶ୍ୱର ।

**ନୀଳମଣି ରାଉତରାୟ,**
ପୂର୍ବତନ କେନ୍ଦ୍ରମନ୍ତ୍ରୀ
ଓ ମୁଖ୍ୟମନ୍ତ୍ରୀ, ଓଡ଼ିଶା

ଫୋନ୍ ନମ୍ବର : ୪୧୧୬୩/୪୦୧୩୩୮
ଏ/୧୧୭, ଖାରବେଳ ନଗର,
ୟୁନିଟ୍-୩, ଭୁବନେଶ୍ୱର
ତା ୪ । ୯ । ୧୯୯୭

ଶ୍ରଦ୍ଧେୟ ବାଜପେୟୀଜୀ,

ଶ୍ରୀ ପ୍ରମୋଦ ମହାଜନ ମୋ ଭୁବନେଶ୍ୱରସ୍ଥ ବାସଭବନରେ ଗତ ଅଗଷ୍ଟ ୨୯ ତାରିଖରେ ସାକ୍ଷାତ୍‌କରି ଆପଣଙ୍କର ଶୁଭେଚ୍ଛା ମୋତେ ଜଣାଇଥିଲେ । ଆପଣ ମୋତେ ପୁରାତନ ବନ୍ଧୁ-ହିସାବରେ ମନେପକାଇଥିବାରୁ ମୁଁ କୃତଜ୍ଞ । ଶ୍ରୀ ମହାଜନ ମୋ'ସହିତ କେତେକ ବିଷୟରେ ଆଲୋଚନା କରିଥିଲେ ଏବଂ ମୁଁ ମୋର ମତାମତ ଆପଣଙ୍କୁ ଜଣାଇବାପାଇଁ ତାଙ୍କୁ ଅନୁରୋଧ କରିଥିଲି ।

ଏହି ଅବସରରେ, ମୁଁ ଦେଶ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଉପଲକ୍ଷେ ପାର୍ଲିଆମେଣ୍ଟର ସ୍ୱତନ୍ତ୍ର-ଅଧିବେଶନରେ ଆପଣଙ୍କ ଓଜସ୍ୱିନୀ ଭାଷଣପାଇଁ ଆପଣଙ୍କୁ ଅଭିନନ୍ଦନ ଜଣାଉଅଛି । କିଭଳି ପ୍ରଭାବଶାଳୀ ରାଜନେତାମାନଙ୍କର ସଂପର୍କୀୟମାନେ ହଠାତ୍ ରାତାରାତି ଧନୀ ପାଲଟିଯାଉଛନ୍ତି, ଆପଣ ସେହି ଭାଷଣରେ ତାର ଉଦାହରଣ ଦେଇ ଯାହା ବକ୍ତବ୍ୟ ଦେଇଛନ୍ତି, ତାହା ସାମ୍ବାଦିକ-ମାନଙ୍କଦ୍ୱାରା ବାଜପେୟୀଙ୍କର "ଆପେକ୍ଷିକ ସୂତ୍ର" (Vajpayee theory of Relativity) ଭାବେ ପରିବେଷିତ ହୋଇଛି । ତାହା ଅତ୍ୟନ୍ତ ଯୁକ୍ତିଯୁକ୍ତ ଏବଂ ସମୟୋପଯୋଗୀ । ଆପଣଙ୍କର ଏହି ଭାଷଣ ଲୋକମାନଙ୍କର ଆଶା ସଞ୍ଚାର କରିଛି ଏବଂ ସେମାନେ ଭରସା କରିଛନ୍ତି ଯେ ଆପଣ କ୍ଷମତାକୁ ଆସିଲେ ଏହାର ଯଥୋଚିତ ପ୍ରତିକାର କରିବେ ଏବଂ କେନ୍ଦ୍ର ଓ ରାଜ୍ୟ ସ୍ତରରେ ଯେଉଁସବୁ ରାଜ-ନୈତିକ ନେତା ଉଚ୍ଚ-ପଦପଦବୀରେ ରହି ଆସିଛନ୍ତି ସେମାନେ ଏବଂ ସେମାନଙ୍କର ସଂପର୍କୀୟମାନେ ବିପୁଳ ସମ୍ପତ୍ତି ଠୁଳକରିଛନ୍ତି, ସେମାନଙ୍କର ମୁଖା ଖୋଲିଦେବେ ।

ବର୍ତ୍ତମାନ ପରିସ୍ଥିତିରେ ଯେତେବେଳେ ସାରା ଦେଶ ଦୁର୍ନୀତିଗ୍ରସ୍ତ ଲୋକ ଓ ଅପରାଧୀମାନଙ୍କ-ଦ୍ୱାରା କବଳିତ, ସେତେବେଳେ ଅଗ୍ରାଧିକାର ଭିତ୍ତିରେ ଏହାର ସମାଧାନ ପାଇଁ ଆପଣଙ୍କର ପ୍ରତିଶ୍ରୁତି ଲୋକମାନଙ୍କ ମନରେ ବିଶ୍ୱାସ ଉଜ୍ଜୀବିତ କରିବ ।

ଏହି ପରିପ୍ରେକ୍ଷୀରେ ଶାସ୍ତିମୂଳକ କାର୍ଯ୍ୟାନୁଷ୍ଠାନ ହିଁ ଦୁର୍ନୀତିଗ୍ରସ୍ତ ପ୍ରଶାସକମାନଙ୍କୁ ସୁଧାରି-ପାରିବ ଏବଂ ତାହାହିଁ ଭବିଷ୍ୟତରେ ସେମାନଙ୍କୁ ସତର୍କ ରଖିପାରିବ । ଏହି ଆକାଂକ୍ଷା ଏବଂ ପରାମର୍ଶ ଆପଣ ବିଚାର କରିବେ ବୋଲି ମୋର ଆଶା ଓ ବିଶ୍ୱାସ ।

ମୋର ବର୍ତ୍ତମାନ ଦୃଷ୍ଟିଶକ୍ତି ସମସ୍ୟା ଯୋଗୁଁ ସ୍ୱାସ୍ଥ୍ୟ ଭଲରହୁନାହିଁ । ତେଣୁ ଭବିଷ୍ୟତରେ କେବେ ଦିଲ୍ଲୀଗଲେ ମୁଁ ଆପଣଙ୍କ ସହିତ ସାକ୍ଷାତ୍ କରିବି । ମୋର ସଶ୍ରଦ୍ଧ ସମ୍ମାନ ଜାଣିବେ ।

ଇତି
ଆପଣଙ୍କର ବିଶ୍ୱସ୍ତ
ନୀଳମଣି ରାଉତରାୟ

ଶ୍ରୀ ଅଟଳ ବିହାରୀ ବାଜପେୟୀ
ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ,
ବିରୋଧୀଦଳ ନେତା,
ଲୋକସଭା
୭, ସଫ୍‌ଦର୍ଜଙ୍ଗ୍ ରୋଡ୍, ନୂଆଦିଲ୍ଲୀ ।

ଭାରତବର୍ଷର ଏହି ବିବର୍ତ୍ତନ କାଳରେ ଅନେକ ବନ୍ଧୁ ଓ ଦଳ ହିନ୍ଦୁ ସାଂପ୍ରଦାୟିକତା ଅଭିଯୋଗ କରି ଭାରତୀୟ ଜନତା ପାର୍ଟି ବିରୁଦ୍ଧରେ ବାରଂବାର ସ୍ୱର ଉତ୍ତୋଳନ କରୁଛନ୍ତି । ସାଂପ୍ରଦାୟିକତାକୁ ସବୁ ସମୟରେ, ସବୁ ସ୍ଥାନରେ ଦୃଢ଼ ଭାବରେ ଦମନ କରିବା ଆବଶ୍ୟକ । କୌଣସି ପ୍ରକାର ସାଂପ୍ରଦାୟିକ ବାଛବିଚାର, ଅନ୍ୟ ସଂପ୍ରଦାୟଠାରୁ କୌଣସି ସଂପ୍ରଦାୟ ନିଜକୁ ଉତ୍‌କୃଷ୍ଟ, ମହନୀୟ ଏବଂ ଈଶ୍ୱରଙ୍କର ଏକମାତ୍ର ପ୍ରାପ୍ତ ମାର୍ଗ ବୋଲି ଦାବି କରିବା ଏକ ଜଘନ୍ୟ ମନୋବୃତ୍ତି । ତେଣୁ ଦେଶରେ ସାଂପ୍ରଦାୟିକ ସଦ୍‌ଭାବକୁ ଅକ୍ଷୁଣ୍ଣ ରଖିବାପାଇଁ ଦୋଷଦ୍ରଷ୍ଟା ବିବାଦପନ୍ଥୀ ହେବା ଏକାନ୍ତ ଅବାଞ୍ଛନୀୟ । ପରମ ସହନଶୀଳତା, ପରସ୍ପର ଧର୍ମର ଶ୍ରେଷ୍ଠତାର ସ୍ୱୀକାର ଓ ଆଦର, ଅନ୍ୟ ଧର୍ମକୁ କିମ୍ବା ଧର୍ମାବଲମ୍ବୀକୁ ନିନ୍ଦିତ କରିବା ଅଭିପ୍ରାୟରେ ମିଥ୍ୟାଚାରର ଆଶ୍ରୟ ନନେବା, ସାଂପ୍ରଦାୟିକ ସଂହତି ଓ ଜାତୀୟ ସଂହତିର ସର୍ବସମ୍ମତ ମାର୍ଗ । ତେଣୁ ହିନ୍ଦୁତ୍ୱକୁ ମାନ୍ୟବର ସୁପ୍ରିମ୍‌କୋର୍ଟ ଯେଉଁଳି ଏକ ସାଂସ୍କୃତିକ ମାନବୀୟ ଜୀବନଧାରା ବା ଆଚରଣରୂପେ ବିଶ୍ଳେଷଣ କରିଛନ୍ତି, ଭାରତବର୍ଷରେ ହିନ୍ଦୁ, ମୁସଲମାନ୍, ଖ୍ରୀଷ୍ଟିଆନ୍ ନିର୍ବିଶେଷରେ ସମସ୍ତେ ସେହି ଭାବରେ ଗ୍ରହଣ କରିବା ସମୀଚୀନ । ହିନ୍ଦୁତ୍ୱ କସ୍ମିନ୍‌କାଳେ ସାଂପ୍ରଦାୟିକ ହୋଇନପାରେ । ଯାହା ସାଂପ୍ରଦାୟିକ ଦୋଷଦୁଷ୍ଟ ତାହା କଦାପି ହିନ୍ଦୁତ୍ୱ ପଦବାଚ୍ୟ ହୋଇନପାରେ । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କର ଆହ୍ୱାନ ଏଠାରେ ସତତ ସ୍ମରଣୀୟ –

ନିଜ ସ୍ୱାର୍ଥପାଇଁ ଜାତ ନୁହେଁ ହିନ୍ଦୁ,
ବିଶ୍ୱ ହିତେ ହିନ୍ଦୁ ପ୍ରତି ରକ୍ତ ବିନ୍ଦୁ !

କେବଳ ହିନ୍ଦୁ ଧର୍ମର ପ୍ରତିନିଧିମାନେ ନୁହଁନ୍ତି ପ୍ରତ୍ୟେକ ଧର୍ମର ନେତା, ଧର୍ମଗୁରୁମାନେ ଭାରତ ବର୍ଷରେ ଏହି ବସୁଧୈବ କୁଟୁମ୍ବକମ୍ ଆଦର୍ଶରେ ଦୀକ୍ଷିତ ହେବା ସେମାନଙ୍କର କର୍ତ୍ତବ୍ୟ ।

ମହାତ୍ମା ଗାନ୍ଧୀଙ୍କର ହିନ୍ଦୁଧର୍ମ ସମ୍ପର୍କରେ ମନ୍ତବ୍ୟର କିୟଦଂଶ ଏ ପ୍ରସଙ୍ଗରେ ଏଠାରେ ଉଲ୍ଲେଖ କରିବା ସମୀଚୀନ ହେବ । କାରଣ ଧର୍ମାନ୍ଧତାର ଊର୍ଦ୍ଧ୍ୱରେ ରହି ଧର୍ମପରାୟଣତା, ଧର୍ମନିରପେକ୍ଷିତା ଏବଂ ଧାର୍ମିକ ସାର୍ବଜନୀନତାର ଶ୍ରେଷ୍ଠ ତାତ୍ତ୍ୱିକ ତଥା ପ୍ରୟୋଗାତ୍ମକ ବ୍ୟାଖ୍ୟା ଏଥିରେ ନିହିତ ରହିଛି ।

"Hinduism is not an exclusive (*tending to shut out others*) religion. In it there is room for the worship of all the prophets in the world. It is not a missionary (*agency engaged in spreading a faith*) religion in the ordinary sense of the term. It has no dout absorbed many tribes (*castes, sub-castes, tribes etc.*) in it's fold, but this absorption has been of an evolutionary (*unfolding*), imperceptible (*transcendental*) character. Hinduism tells everyone to worship God, according to his own faith or Dharma and so it lives at peace with all religions."

[Young India – Dt. 6. 10. 1921

X X X X

"Every religion is as precious to me as my own Hinduism. . . . No tought of conversion is permissible to me at all. We must help a Hindu to become a better Hindu, a Mussalman to become a better Mussalman and a Christian to become a better Christian. . . . We must eradicate from our midst the secret pride that our religion is more true and that another's is less so, (*the words 'we' 'our' 'another's' apply to members of all religions. . . .*) Our prayer for others should never be "Oh God, give him the light which Thou hast given me" but "Give him all the light and truth that he needs for the highest attainment". . . . Should some persons think of changing their religious label (*converting them*) I cannot hinder their freedom of action, but I will be sorry to see them act thus."

(From Mahatma's statement made before the Assembly of the Council of the Federation of International Fellowship at Sabarmati, January 1928. The Italics are mine to convey my understanding of the Mahatma's well chosen words and statements.)

ମହାତ୍ମାଗାନ୍ଧୀଙ୍କର ଉଲ୍ଲିଖିତ ମହତ୍‌ବାର୍ତ୍ତାର ସମ୍ପୂର୍ଣ୍ଣ ଓଡ଼ିଆ ତର୍ଜମା କରିବାକୁ ମୁଁ ସାହସ କରୁନାହିଁ, କାରଣ ଧର୍ମର ଚିରନ୍ତନୀ ସତ୍ୟ ବିଶ୍ଳେଷଣ କରି ସ୍ୱୟଂ ଗାନ୍ଧିଜୀ ଯାହା ଲେଖିଛନ୍ତି, ହୁଏତ ମୋର ଅପାରଗତା ହେତୁ ଅନୁବାଦରେ ତାହାର ମୂଲ୍ୟହାନୀ ଘଟିପାରେ କିମ୍ବା ଭୁଲ ଅର୍ଥ ହୋଇପାରେ । ତେଣୁ ପାଠକମାନେ ସେହି ମୂଳ ଲେଖାରୁହିଁ ହିନ୍ଦୁଧର୍ମର ମୂଲ୍ୟାୟନ କରିବା ଉଚିତ । ଆଉ ମଧ, ଆମର ସାମାଜିକ ଶାନ୍ତି ଓ ରାଷ୍ଟ୍ରୀୟ ସଂହତିର ସୁରକ୍ଷାପାଇଁ ପ୍ରତ୍ୟେକ ଭାରତବାସୀଙ୍କର, ବିଶେଷରେ ପ୍ରତ୍ୟେକ ହିନ୍ଦୁଙ୍କର, ଏହି ଧର୍ମଧାରଣାହିଁ ପ୍ରକୃଷ୍ଟମାର୍ଗ ବୋଲି ଆମେ ସମସ୍ତେ ସତର୍କ ଧାନ ଦେବା ଉଚିତ । ତଥାପି ଗାନ୍ଧିଜୀଙ୍କ ବକ୍ତବ୍ୟର ଏକ ସଂକ୍ଷିପ୍ତ ଓଡ଼ିଆ ଭାବାର୍ଥ ନିମ୍ନରେ ଉଲ୍ଲେଖ କରୁଛି । ଇଂରାଜୀ ପଢ଼ିନଥିବା ପାଠକମାନଙ୍କ ପାଇଁ ମୋର ଏହି ଉଦ୍ୟମ :

''ହିନ୍ଦୁତ୍ୱ ଏକ ଖପରାଡ଼ିଆଁ ବା ଗୋଠଛଡ଼ା ଧର୍ମ ନୁହେଁ । ପୃଥିବୀର ପ୍ରତ୍ୟେକ ଦେବଦୂତଙ୍କୁ ଅର୍ଚ୍ଚନା କରିବାର ସୁଯୋଗ ଏହି ଧର୍ମରେ ନିହିତ । ମିସନାରୀ କହିଲେ ସାଧାରଣତଃ ଯାହା ବୁଝାଯାଏ ହିନ୍ଦୁଧର୍ମ ସେଭଳି କୌଣସି ନିର୍ଦ୍ଦିଷ୍ଟ ଧର୍ମବିଶ୍ୱାସର ପ୍ରସାର ପାଇଁ ଉଦ୍ଦିଷ୍ଟ ସଂଗଠନ ନୁହେଁ । ନାନା ଜାତି ଉପଜାତିଙ୍କର ଏହି ଧର୍ମରେ ସମାବେଶ ହୋଇଛି । ଏତାଦୃଶ ସର୍ବଧର୍ମ ସମନ୍ୱୟ ହିନ୍ଦୁଧର୍ମର ସଦା କ୍ରମ-ବିକଶିତ ହେଉଥିବା ଅତି-ମାନସ ଆଧାର ହେତୁ ସମ୍ଭବ ହୋଇଛି । ହିନ୍ଦୁଧର୍ମର ବାର୍ତ୍ତା ହେଲା ପ୍ରତ୍ୟେକ ବ୍ୟକ୍ତି ତାଙ୍କର ଧର୍ମଧାରଣା ଅନୁଯାୟୀ ଈଶ୍ୱରଙ୍କୁ ଆରାଧନା କରନ୍ତୁ । ତେଣୁ ହିନ୍ଦୁଧର୍ମ ଅନ୍ୟ ସବୁ ଧର୍ମ ପ୍ରତି ସଦ୍‌ଭାବନା ବହନକରିଥାଏ ।''

(ୟଙ୍ଗ ଇଣ୍ଡିଆ – ତା ୬ । ୧୦ । ୧୯୨୧)

''ମୋର ନିଜ ହିନ୍ଦୁଧର୍ମ ପରି ଅନ୍ୟ ପ୍ରତ୍ୟେକ ଧର୍ମ ମଧ ମୋ'ପାଖରେ ସମାନଭାବରେ ମୂଲ୍ୟବାନ୍; କିନ୍ତୁ କୌଣସି ପ୍ରକାର ଧର୍ମାନ୍ତରୀକରଣର କଳ୍ପନା ମୋ' ବିଚାରରେ ଆଦୌ ଗ୍ରହଣୀୟ ନୁହେଁ । ଜଣେ ହିନ୍ଦୁ କିପରି ଆହୁରି ଉତ୍ତମ ହିନ୍ଦୁଟିଏ ହେବ, ସେହିପରି ଜଣେ ଖ୍ରୀଷ୍ଟିଆନ୍, ଜଣେ ମୁସଲମାନ୍, କିପରି ଆହୁରି ଉତ୍ତମ ଖ୍ରୀଷ୍ଟିଆନ୍, ଉତ୍ତମ ମୁସଲମାନ୍ ହୋଇପାରିବ ସମସ୍ତେ ସେହି ଦିଗରେ ସାହାଯ୍ୟ ସହଯୋଗ କରିବା ଉଚିତ । କେହି ମନଭିତରେ ଗୋପନ ଅଭିମାନ ରଖିବା ଅନୁଚିତ ଯେ ତାଙ୍କରି ଧର୍ମଟିହିଁ ଅନ୍ୟମାନଙ୍କ ଧର୍ମଠାରୁ ଶ୍ରେଷ୍ଠ । ଧର୍ମ-ନିର୍ବିଶେଷରେ ସମସ୍ତେ ପ୍ରଭୁଙ୍କୁ ପ୍ରାର୍ଥନା କରିବା ଉଚିତ ଯେ ସେ 'ପ୍ରତ୍ୟେକ ବ୍ୟକ୍ତିଙ୍କୁ ଶ୍ରେଷ୍ଠ ଦିବ୍ୟଜୀବନ ଲାଭକରିବା ନିମନ୍ତେ ଆଲୋକ ଓ ସତ୍ୟର ପଥ ଦର୍ଶାନ୍ତୁ ।' . . .କେହି ବ୍ୟକ୍ତି ଯଦି ସ୍ୱଧର୍ମ ଛାଡ଼ି

ପରଧର୍ମ ଗ୍ରହଣକରିବାକୁ ବିଚାରକରେ ମୁଁ ତ ତାହାର ସ୍ୱାଧିକାରରେ ପ୍ରତିବନ୍ଧକ ହୋଇ-ପାରିବିନାହିଁ, କିନ୍ତୁ ତାହାର ଏତାଦୃଶ କାର୍ଯ୍ୟ ଦେଖି ମୁଁ ମର୍ମାହତହେବି ।''

(ଏକ ଆନ୍ତର୍ଜାତିକ ସମାବେଶରେ ଗାନ୍ଧିଜୀଙ୍କ ଭାଷଣରୁ ଗୃହୀତ, ଜାନୁୟାରୀ, ୧୯୨୮)

ଏଠାରେ ମୋର ବ୍ୟକ୍ତିଗତ ଓ ପରିବାରର ଧର୍ମ ଧାରଣା ସଂପର୍କରେ ପଦେ କହିରଖିବା ଠିକ୍ ହେବ । ମୁଁ ଯଦିଓ ନିରବ ଉପାସନାରେ ବିଶ୍ୱାସକରେ, ସ୍ୱତଃପ୍ରବୃତ୍ତ ଭାବରେ ମନ୍ଦିରକୁ ଯାଇ କର୍ମକାଣ୍ଡରେ ଭାଗନେବାକୁ ଅବା ମନ୍ଦିରରେ ବା ଘରେ ମୂର୍ତ୍ତି ଉପାସନା କରିବାକୁ ଆବଶ୍ୟକ ବୋଧକରେନାହିଁ । ସଂପ୍ରଦାୟ ଓ ଜାତି ଭେଦରେ ବିଶ୍ୱାସ କରେନାହିଁ । ମୋ' ଗୃହ କର୍ମଚାରୀମାନଙ୍କ ମଧ୍ୟରେ ମୁସଲମାନ, ହିନ୍ଦୁ ଓ ଖ୍ରୀଷ୍ଟିଆନ୍ ସମସ୍ତେ ସମାନ ଭାବରେ ଚଳନ୍ତି । ପ୍ରାୟ ସବୁବେଳେ ମୁସଲମାନ୍ କର୍ମଚାରୀ ଥାଆନ୍ତି ଓ ନିଜ ଘର ପରି ସ୍ୱଚ୍ଛନ୍ଦରେ ଚଳନ୍ତି । ଏବେ ମୋ ଡ୍ରାଇଭର୍ ସେଖ୍ ଇଦାନ୍ ଆମ ଘରେ ରହିଛନ୍ତି । ଓଡ଼ିଶାର ଜଣେ ମୁସଲମାନ୍ ବ୍ୟକ୍ତି ଦେଶ ବିଭାଗବେଳେ ସ୍ୱେଚ୍ଛାରେ ପାକିସ୍ତାନ୍ ଚାଲିଯାଇ ପାକିସ୍ତାନୀ ନାଗରିକ ହେବାକୁ ବାଧ ହୋଇ-ପଡ଼ିଥିଲେ । ପରେ ତାଙ୍କୁ ଓଡ଼ିଶାରୁ ବହିଷ୍କାର ନକରିବାପାଇଁ ଓ ଭାରତୀୟଭାବେ ସ୍ୱୀକୃତି ଦେବାକୁ ଓଡ଼ିଶାର ସ୍ୱରାଷ୍ଟ୍ର ମନ୍ତ୍ରୀଭାବେ ମୁଁ ଉଦ୍ୟମ ଅବ୍ୟାହତ ରଖିଥିବାରୁ ଖାନ୍ନା କମିଶନ ଆଗରେ ଦେଶଦ୍ରୋହୀ ରୂପେ ଚିତ୍ରିତ ଓ ଅଭିଯୁକ୍ତ ହୋଇଥିଲି । କିନ୍ତୁ ମୋର ଆନ୍ତରିକତା ଓ ନ୍ୟାୟ-ପରାୟଣତାକୁ ନିଜେ ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ଲାଲ୍‌ବାହାଦୂର ଶାସ୍ତ୍ରୀ ସମର୍ଥନ କରି-ଥିଲେ । ଖାନ୍ନା କମିଶନ ମଧ୍ୟ ମୋର ଉଦାରତା ଓ ପ୍ରଶାସନିକ ସ୍ୱଚ୍ଛତାକୁ ଗ୍ରହଣ କରିଥିଲେ । ଗଫୁର ନାମକ ସେହି ବ୍ୟକ୍ତିଙ୍କ ବିଷୟ ପୁସ୍ତକରେ ଅନ୍ୟତ୍ର ବର୍ଣ୍ଣିତ ହୋଇଛି । ଘଟଣାଟି ଯେପରି ନାଟକୀୟ ସେହିପରି ସଂବେଦନଶୀଳ ବୋଲି ପାଠକେ ସେଥିରୁ ଜାଣିପାରିବେ ।

ନିକଟ ଅତୀତରେ ଅନ୍ୟ ଏକ ନିଷ୍ଠୁର ସତ୍ୟ ହେଉଛି ଭାରତର ରାଜନୀତିରେ ଜାତିଆଣଭିତ୍ତିକ ଦଳ ଗଠନ । ଦଳିତ ପିଛିଲାବର୍ଗ ଇତ୍ୟାଦି ନାମରେ ରାଜନୈତିକ ଦଳ ଗଠନଦ୍ୱାରା ଆମର ସାମାଜିକ ସଂହତି ଆକୁମାରି ହିମାଚଳ ଛିନ୍ନଛତ୍ର ହୋଇଯାଇଛି । ସାଂପ୍ରଦାୟିକତାଭିତ୍ତିରେ ଦଳ ଗଠନଠାରୁ ଜାତିଆଣ ରାଜନୀତି ଆହୁରି ବିପଦପୂର୍ଣ୍ଣ ହୋଇ ଦେଖାଦେଇଛି । ଫଳରେ ଜାତିଆଣ ଭେଦଭାବ ରାଜନୈତିକ ପୃଷ୍ଠପୋଷକତା ପାଇବାଦ୍ୱାରା ଗ୍ରାମାଞ୍ଚଳର ଜୀବନ ମଧ୍ୟ ଘୁଣ ଲାଗି-ଗଲାଣି । ମୋ ବିଚାରରେ ଭାରତବର୍ଷରେ ଜାତିଆଣଭିତ୍ତିରେ ଲୋକସଭା ଓ ବିଧାନସଭା ପାଇଁ ଆସନ ସଂରକ୍ଷିତ ରଖିବାର ପ୍ରଥା ଏବଂ ଆର୍ଥିକ ଓ ଚାକିରିବାକିରିରେ ସ୍ୱତନ୍ତ୍ର ସୁବିଧା ପ୍ରଥା ଭଳି ଆଇନ୍‌କୁ ଓ ନିୟମକାନୁନ୍‌କୁ ତୁରନ୍ତ ପରିବର୍ତ୍ତନ କରି ପ୍ରତ୍ୟେକ ପରିବାରର ଅର୍ଥନୈତିକ ମାନ-ଦଣ୍ଡରେ ଆର୍ଥିକ ଓ ନିଯୁକ୍ତି ସହାୟତାର ନୂତନ ପ୍ରଥା ପ୍ରଚଳନ କରାଯିବା ଏକାନ୍ତ ଜରୁରୀ । ଏଥିପାଇଁ ପ୍ରତ୍ୟେକ ପଞ୍ଚାୟତରେ, ପ୍ରତ୍ୟେକ ପରିବାରର ଆର୍ଥିକ ଭିତ୍ତିଭୂମିର ନିର୍ଭରଯୋଗ୍ୟ କମ୍ପ୍ୟୁଟର ରେକର୍ଡ ରଖାଯିବା ଦରକାର ଏବଂ ତଦନୁସାରେ ଦାରିଦ୍ର୍ୟ ଦୂରୀକରଣ ଓ ସରକାରୀ ପୃଷ୍ଠପୋଷକତା ପଞ୍ଚାୟତ ମାଧ୍ୟମରେ ପରାମର୍ଶ ଦିଆଯିବା ଉଚିତ । ଅବଶ୍ୟ ଏଥିପାଇଁ ପଞ୍ଚାୟତ ଶାସନକୁ ସ୍ୱଚ୍ଛ ଓ ଦୁର୍ନୀତିମୁକ୍ତ କରିବାପାଇଁ ପ୍ରଥମେ ଦୃଢ଼ ବ୍ୟବସ୍ଥା କରାଯିବା ଦରକାର । ଦୁର୍ନୀତି ବିରୁଦ୍ଧରେ କଠୋର ତଥା ତୁରନ୍ତ ଦଣ୍ଡବିଧାନ ହେବାର ବ୍ୟବସ୍ଥା ହେବା ଦରକାର ।

ଶ୍ରୀ ରାଜୀବ ଗାନ୍ଧୀ ଭାରତବର୍ଷକୁ ଏକବିଂଶ ଶତାବ୍ଦୀ ଆଡ଼କୁ ଲକ୍ଷ ପ୍ରଦାନ କରିବାପାଇଁ ପ୍ରସ୍ତୁତ କରୁଥିଲେ ବୋଲି ଡିଣ୍ଡିମ ପିଟାଯାଉଥିଲା ସିନା, ମୋ ବିଚାରରେ ବିଂଶଶତାବ୍ଦୀର ଠିକ୍ ଶେଷ-ଭାଗକୁ, ଏକବିଂଶ ଶତାବ୍ଦୀର ପ୍ରାକ୍‌କାଳରେ ପ୍ରକୃତପକ୍ଷେ ଶ୍ରୀ ଅଟଳ ବିହାରୀ ବାଜପେୟୀଙ୍କର ନେତୃତ୍ୱହିଁ ଭାରତ ରାଜନୀତିର ଦିଗ୍‌ବଳୟରେ ନୂତନ ଆତ୍ମବିଶ୍ୱାସ, ଦ୍ରୁତ ପ୍ରଗତି, ଜାତୀୟ ସଂହତି ଓ ଏକ ସର୍ବୋତଭାବେ ଶକ୍ତିଶାଳୀ, ସମୃଦ୍ଧ ଓ ଅଜେୟ ଭାରତବର୍ଷ ନିର୍ମାଣ କରିବାର ସ୍ୱଚ୍ଛ, ଉଦାର,

ଦୃଢ଼, କର୍ତ୍ତବ୍ୟନିଷ୍ଠ ଦିଗ୍‌ଦର୍ଶନ ଦେବାକୁ ସମର୍ଥ ହୋଇଛି । ଜନଗଣଙ୍କ ମନରେ ଭାରତର ଅଜେୟ ଭବିଷ୍ୟତ ସଂପର୍କରେ ନୂତନ ଆଶାବାଦ ସୃଷ୍ଟି ହୋଇଛି । ଏହାକୁ ନଷ୍ଟ କରିବାପାଇଁ ଯେକୌଣସି ଅସୂୟାପ୍ରଣୋଦିତ ଉଦ୍ୟମକୁ ଆଜିର ଦେଶାଭିମାନୀ ଓ ଭବିଷ୍ୟତରେ ଐତିହାସିକମାନେ ନିଶ୍ଚୟ ଅବିବେକି କାର୍ଯ୍ୟ ବୋଲି ଜ୍ଞାନ କରିବେ ।

କେହି ତାଙ୍କର ସଂପୂର୍ଣ୍ଣ ଜୀବନକାଳର ଆତ୍ମଜୀବନୀ ଲେଖିବା ସମ୍ଭବପରନୁହେଁ, କାରଣ ମୃତ୍ୟୁ କାଳ ଅନିଶ୍ଚିତ । ସେହିପରି କେହି ତାଙ୍କର ଆତ୍ମଜୀବନୀର ସମକାଳୀନ ସମସ୍ତ ଘଟଣା ପ୍ରବାହରେ ତାଙ୍କର ସଂପର୍କ ଓ ଅନୁଚିନ୍ତା ଉଲ୍ଲେଖ କରି ପୂର୍ଣ୍ଣାଙ୍ଗଭାବେ ଉପସ୍ଥାପିତ କରିବା ମଧ୍ୟ ସମ୍ଭବନୁହେଁ । ଅନ୍ୟ କେହି ଦକ୍ଷ ବ୍ୟକ୍ତିଙ୍କଦ୍ୱାରା ଜଣଙ୍କର ଜୀବନୀ ଲେଖା ହେଲେ ଏଭଳି ଉଭୟ ଦୃଷ୍ଟିରୁ ତାହା ସଂପୂର୍ଣ୍ଣ ଓ ପୂର୍ଣ୍ଣାଙ୍ଗ ହୋଇପାରିବା ସମ୍ଭବ । ଆଉ ମଧ୍ୟ ଜଣେ ନିଜେ ନିଜ ଜୀବନର କାର୍ଯ୍ୟାବଳୀକୁ ଏବଂ ସମକାଳୀନ ବିଷୟମାନଙ୍କୁ ତଉଲ କରି ଲେଖିଥିଲେ ତାଙ୍କ ନିଜ ବିଚାରରେ ତାହା ଯେତେ ସତ୍ୟ ଓ ତଥ୍ୟଭିତ୍ତିକ ବୋଧ ହେଲେ ମଧ୍ୟ ଅନ୍ୟ ଜଣେ ଦକ୍ଷ ଜୀବନୀ-ଲେଖକ ସେହି ବ୍ୟକ୍ତିଙ୍କୁ ତାଙ୍କଦ୍ୱାରା ପରିବେଷିତ ତଥ୍ୟ, ମତ ଓ ତାତ୍ତ୍ୱିକ ବିଶ୍ଳେଷଣଗୁଡ଼ିକୁ ହୁଏତ ଭିନ୍ନଭାବରେ, ଏପରିକି ନ୍ୟୂନ ଅବା ଶ୍ରେୟଭାବରେ ଉପସ୍ଥାପନ କରିପାରନ୍ତି । ଅତି ବିଶିଷ୍ଟ ବ୍ୟକ୍ତିମାନଙ୍କ ସ୍ୱଲିଖିତ ଆତ୍ମଜୀବନୀ ଓ ଅନ୍ୟ ଧୁରନ୍ଧର ବ୍ୟକ୍ତିଙ୍କଦ୍ୱାରା ତାଙ୍କରି ଜୀବନୀ ପୁସ୍ତକରେ ଏହିଭଳି ଗୁରୁତର ପ୍ରଭେଦ ଓ ବିବାଦର ଯଥେଷ୍ଟ ଉଦାହରଣ ରହିଛି । ଆତ୍ମଜୀବନୀର ପାଠକମାନଙ୍କର ମଧ୍ୟ ଲେଖକଙ୍କ ସହିତ ସେହିପରି ଦ୍ୱି-ମତ ହେବାର ଅବକାଶ ରହିବା ସ୍ୱାଭାବିକ । ତେଣୁ ପୂର୍ବ ସଂସ୍କରଣରେ ମୁଁ ଯାହା କିଛି ତଥ୍ୟଭିତ୍ତିକ ବିଶ୍ଳେଷଣାତ୍ମକ ବା ତାତ୍ତ୍ୱିକ ଉପସ୍ଥାପନା କରିଥିଲି ସେସବୁ ମୋ ଜାଣିବାରେ ବହୁ ଜନାଦୃତ ହୋଇଥିଲେ ମଧ୍ୟ ସେଥିରୁ ଅନେକ ପ୍ରସଙ୍ଗ ବିଶେଷଭାବେ ସମାଲୋଚିତ ହୋଇଛି । ଏଭଳି ପ୍ରଶଂସା ଓ ସମାଲୋଚନା ସଂବାଦପତ୍ରମାନଙ୍କରେ ପୁସ୍ତକ ସମୀକ୍ଷା ସ୍ତମ୍ଭରେ ସୁଦକ୍ଷ ସଂପାଦକମାନଙ୍କଦ୍ୱାରା, ଶ୍ରୀ ଚିତ୍ତରଞ୍ଜନ ଦାସଙ୍କ ଭଳି ବିଶିଷ୍ଟ ସାହିତ୍ୟ-ସମୀକ୍ଷକଙ୍କଦ୍ୱାରା, ଓଡ଼ିଶା ବିଧାନସଭାର ଆଲୋଚନା ମଧ୍ୟରେ ଏବଂ ଲୋକମୁଖରେ ପ୍ରକଟିତ ହୋଇଛି । ପୁସ୍ତକଟି ପାଠକମାନେ ଆଗ୍ରହରେ ଧ୍ୟାନ ଦେଇ ପଢ଼ିଥିଲେ ବୋଲି ମୁଁ ଏହିସବୁ କାରଣରୁ ସନ୍ତୋଷଲାଭକରିଥିଲି । କିନ୍ତୁ ପ୍ରଶଂସାପାଇଁ ଗର୍ବ ଅନୁଭବ କରିନାହିଁ କିମ୍ବା ନିନ୍ଦାପାଇଁ ଅସନ୍ତୁଷ୍ଟ ହୋଇନାହିଁ । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ବାଙ୍କବିହାରୀ ଦାସ ତାଙ୍କ ଆତ୍ମଜୀବନୀରେ ମୋର କେତେକ ତଥ୍ୟ ଓ ମନ୍ତବ୍ୟ ସଂପର୍କରେ ଉଦ୍ଦେଶ୍ୟମୂଳକ ଆକ୍ଷେପମାନ କରିଛନ୍ତି । ଡକ୍ଟର ମନ୍ମଥ ନାଥ ଦାସଙ୍କ ପରି ଜଣେ ବିଶିଷ୍ଟ ଶିକ୍ଷାବିତ୍ ତଥା ଐତିହାସିକ ମୋର 'ସ୍ମୃତି ଓ ଅନୁଭୂତି' ଏକ ମୂଲ୍ୟବାନ୍ ତଥ୍ୟସମ୍ବଳିତ, ବିଶ୍ଳେଷଣାତ୍ମକ ଓ ଐତିହାସିକ ଦସ୍ତାବିଜ୍ ବୋଲି କହି ମୋତେ ତାଙ୍କର ସନ୍ତୋଷ ଜଣାଇଥିଲେ । ପୁସ୍ତକଟି ରିସର୍ଚ୍ଚ-ସ୍କଲାର୍‌ମାନଙ୍କର ସହାୟକ ହେବ, ତେଣୁ ଏହାର ଇଂରାଜୀ ସଂସ୍କରଣ ମଧ୍ୟ ପ୍ରକାଶିତ ହେଉ ବୋଲି ପରାମର୍ଶ ଦେଇଥିଲେ । ମୁଁ ସେ ଦିଗରେ ଉଦ୍ୟମ କରିପାରିନାହିଁ । ତେବେ ସେହି ଉଦ୍ଦେଶ୍ୟରେ ଶ୍ରୀ ସୁଜ୍ଞାନୀ ଚୌଧୁରୀ ଇଚ୍ଛା ପ୍ରକାଶ କରିଥିଲେ ଏବଂ ପୁସ୍ତକଟିରୁ କିୟଦଂଶ ଅନୁବାଦ କରି ନିଜର ଟିପ୍ପଣୀ ସହିତ ସନ୍ ଟାଇମ୍‌ସ ସମ୍ବାଦପତ୍ରରେ (Sun Times) କ୍ରମାନ୍ୱୟରେ ପ୍ରକାଶ କରୁଥିଲେ । ତା'ପରେ ସାମ୍ୟାବିକ ଶ୍ରୀ ଚୌଧୁରୀ ହୁଏତ କୌଣସି ଅସୁବିଧା ହେତୁ ଅଧିକ ଆଗେଇପାରିନଥିଲେ ।

## ମୋର ନିବେଦନ

ସୁଧୀ ପାଠକପାଠିକାମାନଙ୍କୁ ମୋର ନିବେଦନ ଯେ ସେମାନେ ଆମ ଲୋକକଥାର ରାଜହଂସ ପରି ଗୁଣଗ୍ରାହୀ ହୋଇ ମୋର ଲେଖାରୁ କେବଳ କ୍ଷୀର ସେବନକରି ଯଦି କିଛି ଅପମିଶ୍ରିତ ପାଣି ଥାଏ ତାହାକୁ ବର୍ଜନ କରିବେ । ଆଉମଧ୍ୟ, ସେମାନଙ୍କ ପାଖରେ ଏହି ପୁସ୍ତକଟିକୁ

'ସ୍ମୃତି ଓ ଅନୁଭୂତି'ର ଏକ 'ନିଖୁଣ ନୂତନ ସଂସ୍କରଣ' ରୂପେ ମୁଁ ଉପସ୍ଥାପନ କରିପାରୁ ନଥିବାରୁ ଦୁଃଖିତ । କାରଣ ପ୍ରକୃତ ନୂତନ ସଂସ୍କରଣ କରାଗଲେ ଲେଖାର ପ୍ରଥମ ସଂସ୍କରଣ ଲେଖାରେ ଅନେକ ପରିବର୍ତ୍ତନ ଓ ପୁନର୍ଲିଖନ ଆବଶ୍ୟକ ହେବା ସ୍ୱାଭାବିକ । ସେଭଳି ଆୟାସସାଧ କାର୍ଯ୍ୟ କରିବା ମୋ ପକ୍ଷେ ସମ୍ଭବ ହୋଇନାହିଁ । ଅସାମର୍ଥ୍ୟର କାରଣମାନ ଆଗରୁ ଉଲ୍ଲେଖ କରିଛି । ସେହିଭଳି ମଧ୍ୟ ଏହି ପ୍ରକାଶନକୁ କେବଳ ଏକ ପୁନର୍ମୁଦ୍ରଣ ବୋଲି କହିବା ଭୁଲ ହେବ । ବହୁ ନୂତନ ତଥ୍ୟ, ନୂତନ ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ପରିବର୍ତ୍ତନର ପ୍ରବାହ ପ୍ରସଙ୍ଗ ଏବଂ ରାଷ୍ଟ୍ରୀୟ, ସାମାଜିକ ତଥା ବ୍ୟାବହାରିକ କ୍ଷେତ୍ରରେ ଧର୍ମ ଧାରଣା ଓ ଆଚରଣ ସଂପର୍କରେ ଅନେକ ନୂତନ ଇତିବୃତ୍ତ ଏହି ଗ୍ରନ୍ଥରେ ପରିବେଷଣ କରିଛି । ମୋର ବିଚାରକୁ ନିଜେ ସମୀକ୍ଷା କଲାବେଳେ ଯେଉଁ ମହତ୍ ଜନମାନଙ୍କ କଥା ବା ଲେଖା ମନେପଡ଼ିଛି ସେମାନଙ୍କ ମତଗୁଡ଼ିକୁ ଯଥା ସମ୍ଭବ ଉଦ୍ଧାରକରିଛି ପାଠକପାଠିକାମାନଙ୍କ ଅବଗତି ପାଇଁ । ଏହି ଦୃଷ୍ଟିରୁ ମୋର 'ସ୍ମୃତି ଓ ଅନୁଭୂତି'ର ଏହି ପରିବର୍ଦ୍ଧିତ ନୂତନ ଗ୍ରନ୍ଥକୁ କେବଳ 'ନୂତନ ସଂସ୍କରଣ' ବା 'ନୂତନ ମୁଦ୍ରଣ' ନକହି 'ନୂତନ ପରିବେଷଣ' କହିବାହିଁ ଠିକ୍ ହେବ ।

'ସ୍ମୃତି ଓ ଅନୁଭୂତି'ର ଇଂରାଜୀ ସଂସ୍କରଣ ପ୍ରକାଶିତ ହେଲାନାହିଁ ବୋଲି ମୁଁ କେବେ ଅନୁଶୋଚନା କରିନାହିଁ । କିନ୍ତୁ ଅନ୍ତତଃ ଏହାର ଅନେକ ଅଂଶ ଇଂରେଜୀ ଭାଷାରେ ପରିବେଷିତ ହୋଇପାରିଲେ ଅଧିକ ପାଠକ ଓ ଅନୁସନ୍ଧିତ୍ସୁଙ୍କ ଉପକାରରେ ଲାଗିପାରେ ବୋଲି କେତେକ ବିଦଗ୍ଧ ପାଠକବନ୍ଧୁଙ୍କ ପରାମର୍ଶ ସହିତ ମୁଁ ଏକମତ । କେବେ କାହାରିଦ୍ୱାରା ସେହି ଉଦ୍ଦେଶ୍ୟରେ ଇଂରାଜୀ ସଂସ୍କରଣଟିଏ ପ୍ରକାଶିତ ହୋଇ ପାରିଲେ ମୁଁ ନିଶ୍ଚୟ ଖୁସୀ ହେବି । ତେଣୁ ଏଥିପାଇଁ ଏ ବହିର ସତ୍ତ୍ୱାଧିକାରୀ ନଳିନୀ ଦେବୀ ଏଡୁକେଶନ୍ ଟ୍ରଷ୍ଟଠାରୁ (ରେଜିଷ୍ଟ୍ରେସନ୍ ନମ୍ବର ୭୫୫୭/ ୧୯୮୬) ସ୍ୱତନ୍ତ୍ର ଅନୁମତି ନେବାର ଆବଶ୍ୟକତା ନାହିଁ ବୋଲି ମୁଁ ଏଠାରେ ଲିପିବଦ୍ଧ କରୁଛି ଏବଂ ଓଡ଼ିଆ ମୂଳ ଲେଖାର ପ୍ରକାଶକ ମଧ୍ୟ ଅନୁରୂପ ସହମତି ପ୍ରକାଶ କରିବେ ବୋଲି ମୋର ଇଚ୍ଛା ତାଙ୍କୁ ଜଣାଇ ରଖୁଛି । କାରଣ ଏଭଳି ଅନୁମତି ଓ ରୟାଲ୍‌ଟି ବାବଦ ଦେୟ ଆଦି କେତେକ ପ୍ରାସଙ୍ଗିକ ଅସୁବିଧା କଥା ଆଶଙ୍କାରେ କେହି କେହି ଆଗ୍ରହୀ ବନ୍ଧୁ ଏଭଳି ଉଦ୍ୟମରୁ କ୍ଷାନ୍ତ ହୋଇଯାଇଥିବାର ଖବର ଇତିମଧ୍ୟରେ ମୁଁ ଶୁଣିଛି ।

ବେଶି ବାସିଫୁଲ ଓ କିଛି ନୂଆଫୁଲକୁ ଯେତେ ଯତ୍ନରେ ବି ଏକାଠି ଗୁନ୍ଥିଲେ ସୁନ୍ଦର ମାଳଟିଏ ସଜାଡ଼ିବା ଯେପରି ଅସମ୍ଭବ, ଏହି ପୁସ୍ତକଟିର ହୁଏତ ସେହି ଦଶା ହୋଇଛି । ଏଥିପାଇଁ ପ୍ରକାଶକଙ୍କର ତ୍ରୁଟି ନାହିଁ । ଯେଉଁ କ୍ରମରେ ମୋର ନୂତନ ଓ ପୁରାତନ ବକ୍ତବ୍ୟକୁ ସେ ସଜାଇଛନ୍ତି ତା'ଛଡ଼ା ଅନ୍ୟ ଉପାୟ ନଥିଲା । ମୋର ନୂତନ ଲେଖାର ପୃଷ୍ଠଭୂମି ରୂପେ ପରିବେଷିତ ଅଧ୍ୟାୟକୁ ସେ ଯଥାର୍ଥରେ ପୁସ୍ତକର ଆଦ୍ୟଭାଗରେ ସଂଯୋଗ କରିଛନ୍ତି ଏବଂ ଅବଶିଷ୍ଟ ନୂତନ ବକ୍ତବ୍ୟକୁ ପୁରାତନ ପୁସ୍ତକର ପରିବର୍ତ୍ତୀ ଅଧ୍ୟାୟ ଭାବେ ସ୍ଥାନ ଦେଇଛନ୍ତି ।

ମୋର ପରମ ସ୍ନେହଭାଜନ ଅବସରପ୍ରାପ୍ତ ଅଧ୍ୟାପକ ଶ୍ରୀମାନ୍ ବ୍ରଜ କିଶୋର ପଟ୍ଟନାୟକଙ୍କ କର୍ତ୍ତବ୍ୟନିଷ୍ଠା ଓ ଅକ୍ଳାନ୍ତ ପରିଶ୍ରମ ବିନା ଅଗଷ୍ଟ ପନ୍ଦରର ପବିତ୍ର ସ୍ୱାଧୀନତା ଦିବସରେ ଏହି ଗ୍ରନ୍ଥଟି ପୁନର୍ଜନ୍ମ ଲାଭକରିବା ସମ୍ଭବହୋଇନଥାନ୍ତା । ସେପରି ଶ୍ରୀମାନ୍ ଯୋଗେନ୍ଦ୍ରପ୍ରସାଦ ସାହୁ ଓ ଶ୍ରୀମାନ୍ ଜଳେନ୍ଦ୍ର ପ୍ରସାଦ ରାୟ ମୋ'ଠାରୁ ଶ୍ରୁତଲିଖନ ନେବା, ପ୍ରକାଶକ ଓ ଅନ୍ୟାନ୍ୟ ବ୍ୟକ୍ତି ଓ ପୁସ୍ତକାଗାର ସହିତ ଯୋଗାଯୋଗ କରିବାଭଳି ଶ୍ରମ ସ୍ୱୀକାର କରିଛନ୍ତି । ସେମାନଙ୍କୁ ଆଶୀର୍ବାଦ ଜଣାଉଛି ।
ଏହି ପ୍ରକାଶନଟି ପାଇଁ ଆଗ୍ରହ ପ୍ରକାଶକରିଥିବାରୁ ମୁଁ 'ଗ୍ରନ୍ଥମନ୍ଦିର'ର ପ୍ରତିଷ୍ଠାତା ତଥା ସ୍ୱତ୍ତ୍ୱାଧିକାରୀଙ୍କୁ ଆଶୀର୍ବାଦ କରୁଛି । ତାଙ୍କର ଉଦ୍ୟମଦ୍ୱାରା ଈଶ୍ୱରଙ୍କ ଇଚ୍ଛା ପୂର୍ଣ୍ଣହେଉ ।

ନୀଳମଣି ରାଉତରାୟ



*A. B. Vajpayee*
LEADER OF OPPOSITION
LOK SABHA

No.19(31)/LOP/97 September 16, 1997

Dear Routrayji,

Thank you for your letter of 4th September, 1997 and the kind words you have written ~~express~~ about me.

Eradication of corruption is high on the agenda of BJP and we shall make all efforts to remove this evil. In this stupendous work we solicit the cooperation of all persons who have love for the integrity of the country, take pride of its ancient culture and would like to see it as a great nation in this world. In this cleansing process, no person, how high and powerful he may be, shall be spared.

Another malady that is afflicting the society is criminilisation of politics - nexus between the criminals and political parties. If we have to keep the faith of the people in democracy, we shall have to make earnest efforts to make our political system transparent and clean.

With regards,

Yours sincerely,

A.B. Vajpayee

(A.B. VAJPAYEE)

Shri Nilamani Routray,
Former Chief Minister of Orissa,
A/117 Kharavela Nagar,
Unit-3, BHUBANESWAR.

44, PARLIAMENT HOUSE NEW DELHI - 110 001 TEL 301 7470, 303 4285 (OFF.)
7, SAFDARJUNG ROAD, NEW DELHI - 110 011 TEL. 379 4155, 301 3800 (RES.)
FAX 301 6611

**NILAMANI ROUTRAY**
Former Union Minister and
Ex-Chief Minister of Orissa,

PHONE : 411163,40133
A/117, KHARAVELA NAGA
UNIT- 3, BHUBANESWA

Dt.04.09.1997

Dear Vajpayeeji,

Sri Pramod Mahajan had met me on 29th August last at my Bhubaneswar residence and he was good enough to convey your good wishes to me. I am grateful to you for remembering an old friend. Sri Mahajan discussed certain matters with me and I told him my views and requested him to convey the same to you.

Incidentally, I take this opportunity to congratulate you for your magnificient speech in the special session of the Parliament commemorating the golden jubilee of the Nation's Independence. In that speech the most appropriate and timely reference to the depressing situation in our country was how relatives of powerful politicians suddenly became rich almost overnight and the press has described as the " Vajpayee Theory of relativity". Your this utterance has caught the imaginations of the people and they expect that when you come to power, you will pursue the matter to its logical conclusion, so as to unearth the hidden wealth and properties both real and benami of all the politicians alongwith their relatives who held high offices as Ministers in the Centre or in the States during all these years since Independence. In

......2/p

the present situation when the country is within the grips of corrupt people and criminals, your assurance to deal with this problem on priority basis will certainly inspire confidence in the mind's of our people.

In the present context, positive actions in this regard will serve as correctives for corrupt administrators and also serve as warning for the future. I hope and believe my expectation and suggestions will receive your consideration. Because of my eye problem at present I am not keeping well and when I go to Delhi, I shall meet you.

With kind regards;

Yours sincerely,

N. Routray

(Nilamani Routray)

Shri Atla Bihari Vajpayee,
Former Prime Minister, India,
Leader of the Opposition,
Lok Sabha,
7, Safdarjung Road, New Delhi.

# ଆଦ୍ୟ ଅନୁଶୋଚନା

ମୋର ସ୍ମୃତି ଓ ଅନୁଭୂତିର ଏହି ବହି ଖଣ୍ଡିକ ୧୯୮୪ ମସିହାରେ ପ୍ରକାଶ ପାଇବାର କଥା ଥିଲା । ୧୯୮୦ ମସିହା ପର୍ଯ୍ୟନ୍ତ ମୋର ରାଜନୈତିକ ଜୀବନର ସ୍ମୃତିଚାରଣ କରିବା ପରେ ମୋ ମନର ଏକ ବିରାଟ ଅନୁଶୋଚନା ପ୍ରସଙ୍ଗ ଉଲ୍ଲେଖକରି ୧୯୮୨ ମସିହାରେ ବହି ଲେଖା ଶେଷ କରିଥିଲି । ସେଥିରେ ୧୯୮୦ ମସିହା ପରବର୍ତ୍ତୀ ସମୟର କେତେକ ଘଟଣା ଠାଏ ଠାଏ କେବଳ ପ୍ରସଙ୍ଗକ୍ରମେ ଆଲୋଚନା କରାଯାଇଥିଲା । ପ୍ରାୟ ଚାରିବର୍ଷ ବିଳମ୍ବରେ ଏବେ ସେହି ବହିଟି ପ୍ରକାଶ ପାଇବା ବେଳକୁ ମୋ ହୃଦୟକୁ ଅନ୍ୟ ଏକ ଅନୁଶୋଚନା ସ୍ୱତଃ ଆଚ୍ଛାଦିତ କରୁଛି । ସେହି କଥା ଆଦ୍ୟରୁ ଉଲ୍ଲେଖ କରୁଛି । ସ୍ୱର୍ଗୀୟ ସମ୍ମାନାସ୍ପଦ ଶ୍ରୀ ବିଶ୍ୱନାଥ ଦାସ ଏହି ବହିଟିର ମୁଖବନ୍ଧ ଲେଖି ମୋ ପ୍ରତି ଅପାର ସ୍ନେହ, ଶ୍ରଦ୍ଧା ଓ ଅନୁଗ୍ରହ ଦେଖାଇଥିଲେ । ମାତ୍ର ଅତ୍ୟନ୍ତ ପରିତାପର ବିଷୟ ଯେ, ତାଙ୍କର ତିରୋଧାନ ପୂର୍ବରୁ ମୁଁ ଏ ବହିଟି ପ୍ରକାଶକରି ତାଙ୍କ ହାତରେ ସମର୍ପଣ କରିବାର ସୁଯୋଗ ନେଇପାରିଲିନାହିଁ । ସେଥିପାଇଁ ମୁଁ ସେହି ମହାନ୍ ଆତ୍ମା ନିକଟରେ କ୍ଷମା ଭିକ୍ଷା କରୁଛି ।

ବିଳମ୍ବର କାରଣ ଅନେକ । ଛାପିବାପାଇଁ ସ୍ପଷ୍ଟ ଅକ୍ଷରରେ ପାଣ୍ଡୁଲିପି ପ୍ରସ୍ତୁତ କରିବାକୁ କିଛିକାଳ ଲାଗିଗଲା । ଛାପା ଆରମ୍ଭ କରିବାପାଇଁ ପ୍ରକାଶକଙ୍କୁ ୧୯୮୩ରେ ପାଣ୍ଡୁଲିପି ଦେଇଥିଲି । ଆଶାକରାଯାଉଥିଲା ଯେ ୧୯୮୪ ମସିହାରେ ବହିଟି ପ୍ରକାଶ ପାଇବ । କିନ୍ତୁ ତାହା ସମ୍ଭବ ହୋଇପାରିଲାନାହିଁ ।

୧୯୮୪-୮୫ ଦୁଇବର୍ଷଯାକ ଘଟଣାବହୁଳ ଥିଲା । ଏହି ବହିରେ ବର୍ଣ୍ଣିତ ବହୁ ବିଶିଷ୍ଟ ବ୍ୟକ୍ତିଙ୍କର ମଧ୍ୟ ଏହି ସମୟରେ ଦେହାନ୍ତ ହୋଇଗଲା । ଏହି ପରିପ୍ରେକ୍ଷୀରେ ବହିଟିରେ ବର୍ଣ୍ଣିତ ନାନା କଥାବସ୍ତୁକୁ ସାଂପ୍ରତିକ ଘଟଣାପ୍ରବାହ ସହ ଉପସ୍ଥାପିତ କରିବାର ଆବଶ୍ୟକତା ମନରେ ଉଠିଲା । କିନ୍ତୁ ଅଧା ଛାପା ହୋଇଥିବା ବହିରେ ଆମୂଳଚୂଳ ସେପରି ପରିବର୍ତ୍ତନ କରିବା ତ ସମ୍ଭବ ନୁହେଁ । ଏହିପରି ସନ୍ଦିଗ୍ଧ ମନରେ କିଛିଦିନ ବିତିଗଲା । ୧୯୮୦ ମସିହା ପର୍ଯ୍ୟନ୍ତ ଘଟଣାପ୍ରବାହକୁ ନେଇ ୧୯୮୨ ମସିହାରେ ଲେଖା ସରିଥିବା ବହିଟିର କଥାବସ୍ତୁ ଓ ଆଲୋଚନାକୁ ସେହିପରି ଭାବରେ ସୁଧୀ ପାଠକମାନଙ୍କ ଆଗରେ ଉପସ୍ଥାପିତ କରିବାପାଇଁ ଶେଷରେ ସିଦ୍ଧାନ୍ତ କଲି । ଏହାଛଡ଼ା ନୂତନ ରାଜନୈତିକ ପରିସ୍ଥିତି ସହିତ ନିଜେ ସଂଶ୍ଳିଷ୍ଟ ହୋଇପଡ଼ିଥିବାରୁ ଅବଶିଷ୍ଟ ପାଣ୍ଡୁଲିପି ପ୍ରସ୍ତୁତି, ଛାପାସରୁଥିବା ପୃଷ୍ଠାଗୁଡ଼ିକର ସଂଶୋଧନ ଓ ମୁଦ୍ରଣ ସଂପର୍କରେ ଅନ୍ୟାନ୍ୟ ଆନୁଷଙ୍ଗିକ କାର୍ଯ୍ୟ ପ୍ରତି ଯଥାସମୟରେ ଧ୍ୟାନ ଦେବା ମୋ ପକ୍ଷରେ ସମ୍ଭବ ହେଲାନାହିଁ । ଛାପାଖାନାରେ ବାରମ୍ବାର ଧର୍ମଘଟ ଓ ଅନ୍ୟାନ୍ୟ ଅସୁବିଧା ହେତୁ ମଧ୍ୟ ଛାପାକାର୍ଯ୍ୟରେ ବ୍ୟାଘାତ ଘଟୁଥିବା କଥା ପ୍ରକାଶକଙ୍କଠାରୁ ଜାଣିଲି । ଏଭଳି ନାନା କାରଣରୁ ବହିଟି ପ୍ରକାଶ ପାଇବାରେ ଅକ୍ଷମଣୀୟ ବିଳମ୍ବ ଘଟିଛି । ମୋର ଆଶା ଓ ବିଶ୍ୱାସ, ସହୃଦୟ ପାଠକ ପାଠିକାମାନେ ଏଭଳି ଅନିଚ୍ଛାକୃତ ତ୍ରୁଟିକୁ ମାର୍ଜନା କରିବେ ।

ଅଗଷ୍ଟ ୧୫, ୧୯୮୬ — ନୀଳମଣି ରାଉତରାୟ

# ବିଷୟ ସୂଚୀ

ସ୍ୱାଭାବିକ ଓ ଅସ୍ୱାଭାବିକ ଆଚରଣ (୬୨୦), ବିଧାନସଭାରେ ନୂଆ ଅନୁଭୂତି (୬୨୫), ଜଗନ୍ନାଥଙ୍କ ନୀତି ବିଭ୍ରାଟ ଓ ରଥଟଣା ଦୁର୍ଘଟଣା (୬୨୭), ଶ୍ରୀମନ୍ଦିର ସଂସ୍କାର କମିଟି ନିଯୁକ୍ତି (୬୨୮), ସଚେତକ ପରିବର୍ତ୍ତନ (୬୨୯), ହରିଜନଙ୍କ ସୁରକ୍ଷାପାଇଁ ଓଡ଼ିଶାରେ ଶ୍ରେଷ୍ଠ ବ୍ୟବସ୍ଥା (୬୩୦), ଆକସ୍ମିକ ଦୁଃଖ (୬୩୨), ରାଜ୍ୟପାଳ ନିଯୁକ୍ତି ପ୍ରସଙ୍ଗ (୬୩୨), ନନ୍ଦିନୀଙ୍କ ଅଭିଯୋଗ ଓ ମୋରାରଜୀଙ୍କ ରୋଷ (୬୩୩), କଂଗ୍ରେସ ମାମଲାପାଇଁ 'ଜନତା'ର ଅବଦାନ (୬୩୮), ନନ୍ଦିନୀଙ୍କ ଘରତୋଳା ରହସ୍ୟ (୬୪୦), କଂଗ୍ରେସ ସରକାର ଦ୍ୱାରା ମକଦ୍ଦମା ପ୍ରତ୍ୟାହାର (୬୪୩), ବିଜୁ ଇନ୍ଦିରା ଗାନ୍ଧୀଙ୍କୁ ବଳିପଡ଼ିଲେ (୬୪୫), ଜୟପ୍ରକାଶଜୀଙ୍କ ଅବଦାନ ଓ ଅବସାନ (୬୪୫), ଓଡ଼ିଶାରେ ଆମର ଅତିଥି ଶ୍ରୀମତୀ ଗାନ୍ଧୀ (୬୪୭), ଇନ୍ଦିରାଙ୍କ ଉପରେ ଆକ୍ରମଣ (୬୪୭), ବିଭିନ୍ନ ମହଲରେ ପ୍ରତିକ୍ରିୟା : ମୋର ଇସ୍ତଫା ଦାବି (୬୪୮), ସଂପାଦକ ଦେଶମୁଖଙ୍କ ତଦାରଖ (୬୫୦), ''ବୁଝିବାକୁ ଖୁମ୍ବଆଳୁ'' (୬୫୧), ମୋରାରଜୀଙ୍କ ରୋକ୍-ଠୋକ୍ କଥା (୬୫୨), ହିତେ ବିପରୀତ (୬୫୩), ଅସନ୍ତୁଷ୍ଟଙ୍କ ଅଭିଯାନ (୬୫୪), ଦୁଇ ବାଚସ୍ପତିଙ୍କ କଥା (୬୫୭), ନେତୃତ୍ୱ ପରିବର୍ତ୍ତନ ପାଇଁ ଉଦ୍ୟମ (୬୫୯), ଚନ୍ଦ୍ରଶେଖରଙ୍କ ଚକ୍ରାନ୍ତ (୬୬୦), ଆସ୍ଥାଭୋଟରେ ବିଜୟ (୬୬୩), ଓଡ଼ିଶାର ଶିଳ୍ପବିସ୍ତାର ଯୁଗର ଭିତ୍ତିଭୂମିରେ ସତ୍ୟର ସ୍ୱାକ୍ଷର (୬୬୪), ଟେଲିଫୋନ୍ କାରଖାନା ଚାଲିଗଲା (୬୬୬), ଦ୍ୱିତୀୟ ଇସ୍ପାତ୍‌କାରଖାନା କାହାର ଉପହାର ? (୬୬୬), ଉପହାରରୁ ଉପହାସ (୬୭୦), ଆଲୁମିନିୟମ୍ ପ୍ରକଳ୍ପ ମଧ୍ୟ 'ଜନତା'ର ଅବଦାନ (୬୭୧), ସ୍ପଞ୍ଜ୍ ଆଇରନ୍ ଓ ଫେରୋକ୍ରୋମ୍ କାରଖାନା (୬୭୩), ରେଙ୍ଗାଲୀ ବନ୍ଧ ଯୋଜନା (୬୭୪), ବିକଳ୍ପ ଦଳର ଅଭ୍ୟୁଦୟ ଓ ଅବକ୍ଷୟ (୬୭୬), ନିରାଶ ଜୟପ୍ରକାଶ (୬୮୦), ମୋରାରଜୀ-ଚରଣ ସିଂହ ଲଢ଼େଇ (୬୮୧), ସୋସାଲିଷ୍ଟଙ୍କ ଫାନ୍ଦରେ ବିଜୁବାବୁ (୬୮୨), ବିଜୁଙ୍କ ଦୁର୍ନାମ : ''ମୂଳୁ ମାଇଲେ ଯିବ ସରି...'' (୬୮୩), ଜନତା ସରକାରର ପତନ (୬୮୪), କେନ୍ଦ୍ରରେ ଅନ୍ତର୍ଦ୍ୱନ୍ଦ୍ୱ : ଓଡ଼ିଶାରେ ପ୍ରତିକ୍ରିୟା (୬୮୬), ରାଜ୍ୟ ଜନତାଦଳ ବିଭାଜନ (୬୯୦), ମନ୍ତ୍ରିମଣ୍ଡଳର ସଂପ୍ରସାରଣ (୬୯୧), ଲୋକସଭା ନିର୍ବାଚନ (୬୯୨), ଶ୍ରୀମତୀ ଗାନ୍ଧୀଙ୍କ ବିପୁଳ ବିଜୟ ଓ ବିଜୁବାବୁଙ୍କ ବିପରୀତ ବିଚାର (୬୯୩), ରାଜ୍ୟ-ବିଜୟ ଅଭିଯାନ (୬୯୫), ଓଡ଼ିଶାରେ ଇନ୍ଦିରା-ଦୂତ (୬୯୭), ଓଡ଼ିଶା ଉପରେ ଚଡ଼କ (୭୦୧), ପ୍ରାର୍ଥୀ ହେଲିନାହିଁ କାହିଁକି ? (୭୦୨), ଏକ ଅନୁ-ଶୋଚନା (୭୦୪), ୧୯୮୦ ନିର୍ବାଚନ ଓ ଜାନକୀବଲ୍ଲଭ ପଟ୍ଟନାୟକଙ୍କର ଓଡ଼ିଶା ରାଜନୀତିକୁ ଆଗମନ (୭୧୦), ବନ୍ଧୁବିୟୋଗ (୭୧୧), ଇନ୍ଦିରା ଗାନ୍ଧୀଙ୍କ ମୃତ୍ୟୁ (୭୧୫), ଅନୁକମ୍ପା ରାଜନୀତି (୭୧୫), ରାଜୀବ ଗାଦିନସୀନ ଓ ଶିଖ-ସଂହାର (୭୧୬), ରଙ୍ଗନାଥ ମିଶ୍ର କମିଶନ ନିଯୁକ୍ତି (୭୧୬), ନୂଆ କମିଶନ ନିଯୁକ୍ତି ଓ ନ୍ୟାୟମୂର୍ତ୍ତିଙ୍କ ଦୁର୍ବୋଧ ଆଚରଣ (୭୧୭), ଓଡ଼ିଶାରେ ଅନୁକମ୍ପା ରାଜନୀତିର ପ୍ରଭାବ (୭୧୭), ବସନ୍ତ ବଳିପଡ଼ିଲେ (୭୨୦), ବାଲିଆପାଳରେ ମାରାତ୍ମକ କ୍ଷେପଣାସ୍ତ୍ର ଘାଟି (୭୨୨), ଅଭୂତପୂର୍ବ ଜନଜାଗରଣ (୭୨୪), କର୍ଣ୍ଣାଟକରୁ ଓଡ଼ିଶା : ବାନ୍ଦୁରରୁ ବାଲିଆପାଳ (୭୨୬), ପ୍ରଧାନମନ୍ତ୍ରୀଙ୍କୁ ଚିଠି (୭୨୭), ରାଜୀବ ଗାନ୍ଧୀ ଓ ବୋଫର୍ସ ଦୁର୍ନୀତି କାହାଣୀ (୭୩୩), ଜାନକୀ ପଟ୍ଟନାୟକଙ୍କ ମାନହାନି ମୋକଦ୍ଦମା ଓ ଆଚରଣ (୭୩୬), ଜାନକୀବାବୁଙ୍କ ପ୍ରଶାସନିକ ଆଚରଣ ଓ ତାଙ୍କ ବେନାମୀ କାରବାର (୭୪୬), ଅସାଧୁ ତେଲ

□□□

# ଆହ୍ୱାନ ଓ ଅଙ୍ଗୀକାର

ଆତ୍ମଜୀବନୀ ମୋତେ ଲେଖିବାକୁ ହେବ ଏକଥା ମୁଁ କେବେ କଳ୍ପନା କରିନଥିଲି । ମୋର ଅନେକ ବନ୍ଧୁ ଓ ଶୁଭାକାଂକ୍ଷୀ ମୋତେ ଅନୁରୋଧ କରିଛନ୍ତି ଆତ୍ମଜୀବନୀ ଓ ଅନୁଭୂତି ଲେଖିବାପାଇଁ । ସ୍ୱାଧୀନତା ସଂଗ୍ରାମ ବିଷୟରେ ଏବଂ ପ୍ରଶାସନିକ ବ୍ୟାପାର ସଂପର୍କରେ, ବନ୍ଧୁମାନେ ବିଭିନ୍ନ ସମୟରେ ଅନେକ କଥା ଜାଣିବାପାଇଁ ମୋତେ ନାନା ପ୍ରକାର ପ୍ରଶ୍ନ ପଚାରନ୍ତି । ଅନେକ ଘଟଣା ଶୁଣିବା ପରେ ସେମାନେ ଅଧିକ କୌତୂହଳୀ ହୋଇଉଠିବାର ମୁଁ ଲକ୍ଷ୍ୟ କରିଛି । ସେମାନଙ୍କର ଅନୁରୋଧକୁ ମୁଁ ବହୁକାଳପର୍ଯ୍ୟନ୍ତ ଖିଆଲରେ ଉଡ଼ାଇ ଦେଇ ଆସିଥିଲି । ମାତ୍ର ପରିବର୍ତ୍ତିତ ପରିସ୍ଥିତିରେ ଯେତେବେଳେ ଟିକିଏ ଅବସର ମିଳିଲା, ସମୟ ଅତିବାହିତ କରିବାପାଇଁ ତଥା ନିଜର ସୀମିତ ଜ୍ଞାନ ବୃଦ୍ଧି କରିବା ଉଦ୍ଦେଶ୍ୟରେ ମୁଁ ନାନା ପ୍ରକାର ବହି ପଢ଼ିବାରେ ଲାଗିଲି । ସେହି ଅବସରରେ ଅନୁସନ୍ଧିତ୍ସୁ ବନ୍ଧୁମାନେ ପୂର୍ବପରି ଅଧିକ ପ୍ରଶ୍ନ କଲେ ଏବଂ ସେମାନଙ୍କର ପୂର୍ବ ଅନୁରୋଧକୁ ଥରକୁ ଥର ସ୍ମରଣ କରାଇବାରେ ଲାଗିଲେ । ପରିଶେଷରେ ମୁଁ ମୋର ଆତ୍ମଜୀବନୀ ଲେଖିବାକୁ ମନସ୍ଥ କଲି । ମାତ୍ର କ'ଣ ଲେଖିବି ଓ କି ପ୍ରଣାଳୀରେ ଲେଖିବି ମୋତେ ଜଣାନଥିଲା । ନିଜ ହାତରେ ଲେଖିବାର ଅଭ୍ୟାସ ମଧ ହରାଇ ବସିଥିଲି; କାରଣ ମୋର କର୍ମମୟ ଜୀବନର ପ୍ରାୟ ପଚିଶ ବର୍ଷ କାଳ ଷ୍ଟେନୋ ଓ ଟାଇପିଷ୍ଟମାନଙ୍କ ସହାୟତା ଉପରେ ମୁଁ ଅତ୍ୟନ୍ତ ନିର୍ଭରଶୀଳ ହୋଇପଡ଼ିଥିଲି ।

ନିଜେ ନିଜର ଜୀବନୀ ଲେଖିବା ଏବଂ ଅନ୍ୟ ଜଣେ ତାହା ଲେଖିବା ଭିତରେ ଯେଉଁ ପାର୍ଥକ୍ୟ ରହିଛି, ସେ ସମ୍ବନ୍ଧରେ ତଥା ଲେଖାର ପରିପାଟି ବା ପ୍ରଣାଳୀ ବିଷୟରେ ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କ ଆତ୍ମଜୀବନୀରେ ଯାହା ଲେଖିଛନ୍ତି ତାହା ପଢ଼ିବା ପରେ ନିଜ ଜୀବନୀ ଲେଖିବାକୁ ଉତ୍ସାହିତ ହେବା ପରିବର୍ତ୍ତେ ମୁଁ ବରଂ ନିଜକୁ ଅଧିକ ଅସହାୟ ମନେକଲି । ତାଙ୍କ ମତରେ, ଆତ୍ମଜୀବନୀର ବିଷୟବସ୍ତୁ ସବୁ ଖୁବ୍ ମୂଲ୍ୟବାନ୍ ଓ ମର୍ମସ୍ପର୍ଶୀ ନହେଲେ ତାହା ଅପାଠ୍ୟ ହୋଇପଡ଼େ । ଜଣେ ଲେଖକ ଅନ୍ୟ ଜଣକର ଜୀବନଚରିତ ଲେଖିବାରେ କେତେକ ସୁବିଧା ଅଛି । ଜୀବନଚରିତରେ ନାୟକର ବିଶେଷ କିଛି ପ୍ରକୃତ ମହତ୍ତ୍ୱ ନଥିଲେ ମଧ ଲେଖକ ତାଙ୍କ ଲେଖାର ଶୈଳୀ ଓ କଳ୍ପନାଦ୍ୱାରା ତାକୁ ସୁନ୍ଦର, ମହତ୍ତ୍ୱପୂର୍ଣ୍ଣ ଓ ଚିତ୍ତାକର୍ଷକ କରିପାରନ୍ତି । ଅପର ବ୍ୟକ୍ତିଙ୍କର ଜୀବନୀ - ଲେଖକ ନିଜର ଓ ପାଠକଙ୍କର ରୁଚି ଅନୁସାରେ ସେହି ବ୍ୟକ୍ତିଙ୍କ ଜୀବନର ବହୁ ଘଟଣା ବାଦ୍ ଦେଇପାରନ୍ତି । ମାତ୍ର ଆତ୍ମଜୀବନୀ ଲେଖକଙ୍କର ସେ ସୁବିଧା ବା ସ୍ୱାଧୀନତା ନଥାଏ । ତେଣୁ ଆତ୍ମଜୀବନୀ ଲେଖକର ପରିସର ସୀମିତ, କିନ୍ତୁ ଦାୟିତ୍ୱ ଅଧିକ ।

ମୋତେ ମୋର ଆତ୍ମଜୀବନୀ ଲେଖିବାକୁ ଅନୁରୋଧ କରୁଥିବା ଉତ୍ସାହୀ ବନ୍ଧୁମାନଙ୍କର ବୋଧହୁଏ ଧାରଣା ଯେ ମୋର ବିଗତ ଜୀବନକାଳ ନିଶ୍ଚିତ ଭାବରେ ଘଟଣାବହୁଳ ଓ ଅନୁଭୂତିପୂର୍ଣ୍ଣ । ଯୁକ୍ତିଛଳରେ ସେମାନେ କହନ୍ତି, ରାଜନୈତିକ କ୍ଷେତ୍ର ଏବଂ ସଂସଦୀୟ ଗଣତନ୍ତ୍ର ପରିସର ମଧରେ ମୁଁ ଯେପରି ଅବିଚ୍ଛିନ୍ନ ଭାବରେ ଆମ ରାଜ୍ୟରେ ଅତି ତଳସ୍ତରରୁ ଆରମ୍ଭ କରି ପାହାଚ ପରେ ପାହାଚ ଅତିକ୍ରମ କରି ସରକାର ତଥା ଦଳର ସର୍ବୋଚ୍ଚ ସ୍ଥାନକୁ ଉଠିପାରିଛି ଏବଂ ସୁଦୀର୍ଘକାଳ ଯେପରି କ୍ଷମତାରେ ରହିପାରିଛି, ସେହି ଗତିପଥ ନିଶ୍ଚୟ ଘଟଣାବହୁଳ ହୋଇଥିବ, ସେଥିରେ କିଛି ବିଶେଷତ୍ୱ ଥିବ, ସେଥିରୁ ଅନ୍ୟମାନଙ୍କର ଶିଖିବାର ବିଷୟ ମଧ ଅନେକ ଥିବ । ଆଉ କେତେକ ବୟୋଜ୍ୟେଷ୍ଠ ଅଭିଜ୍ଞ ବ୍ୟକ୍ତି ପରାମର୍ଶ ଛଳରେ ଦର୍ଶାଇଥିଲେ ଯେ ସ୍ୱାଧୀନତା ପରେ ରାଜ୍ୟସ୍ତରରେ, ରାଜନୈତିକ ତଥା ପ୍ରଶାସନିକ କ୍ଷେତ୍ରରେ ଯେଉଁ କେତେଜଣ ଦାୟିତ୍ୱ ସଂପାଦନ ସହିତ ଘନିଷ୍ଠ ଭାବରେ ଜଡ଼ିତଥିଲେ,

ସେମାନଙ୍କ ମଧ୍ୟରୁ ମୁଁ ଜଣେ । ତେଣୁ ସେ ସମ୍ବନ୍ଧରେ ମୋର ସାଧାରଣ ଅନୁଭୂତି ଭବିଷ୍ୟତ ବଂଶଧରଙ୍କ ଗୋଚରାର୍ଥେ ଲିପିବଦ୍ଧ କରିବା ମୋର କର୍ତ୍ତବ୍ୟ । ଏହିସବୁ ବାସ୍ତବ ଚିନ୍ତା ଓ ଅବାସ୍ତବ ଆଶା ମଧ୍ୟରେ ଲେଖିବାପାଇଁ କଲମ ଧରିଲାବେଳକୁ ମୋ ମନରେ ବିଷାଦ ଆସିଯାଉଥିଲା । କାରଣ ବନ୍ଧୁମାନଙ୍କର ଏତେ ବଡ଼ ଆଶାଭାଜନ ହୋଇପାରିବି ବୋଲି ମୋର ଆତ୍ମବିଶ୍ୱାସ ସେତେ ଦୃଢ଼ ହେଉନଥିଲା । ସେଥିପାଇଁ ଆତ୍ମଜୀବନୀ ଲେଖିବାପାଇଁ ମୋର ଉତ୍ସାହ ଆହୁରି ଶିଥିଳ ହୋଇଗଲା । ମୁଁ ଜଣେ ସାଧାରଣ ଲୋକ ଏବଂ ଅତି ସାଧାରଣ ତଥା ସ୍ୱାଭାବିକ ପରିବେଷ୍ଟନୀ ମଧ୍ୟରୁ ଆସିଛି । ଛାତ୍ରଜୀବନରେ ମୁଁ ସେପରି ମେଧାବୀ ନଥିଲି କିମ୍ବା ମୋର ରାଜନୈତିକ ଜୀବନକାଳ ମଧ୍ୟରେ ସେପରି କିଛି ଅସାଧାରଣ ବା ରୋମାଞ୍ଚକର ଘଟଣା ଘଟିନାହିଁ; ଯାହା ପାଠକ ମନକୁ ଆକୃଷ୍ଟ ବା ଉଦ୍‌ବୁଦ୍ଧ କରିବ । ତେଣୁ ଏ ପ୍ରକାର ଗୋଟିଏ ସାଧାରଣ ମାମୁଲି ଜୀବନର କାହାଣୀ ପଢ଼ିବାପାଇଁ କିଏ କାହିଁକି ଆଗ୍ରହ ପ୍ରକାଶ କରିବ ଏବଂ ପଢ଼ିଲେ ମଧ୍ୟ ପାଠକଙ୍କୁ ସେଥିରୁ ଶିଖିବାକୁ କ'ଣ ବା ମିଳିବ ? ଆତ୍ମଜୀବନୀ ଲେଖିବାକୁ ମନସ୍ଥ କଲାକ୍ଷଣି ଏହିଭଳି ଅନେକ ଭାବନା ଲେଖିବାର ଉତ୍ସାହକୁ ବାରମ୍ବାର ଶିଥିଳ କରିଦେଉଥାଏ । ମୋର ରାଜନୈତିକ ଜୀବନ ଓଡ଼ିଶାର ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱ କାଳ ରାଜନୈତିକ ସ୍ରୋତ ସହିତ ଓତପ୍ରୋତ ଭାବରେ ଜଡ଼ିତ ଥିବାରୁ ଦଳୀୟ ସଂକଟ, ରାଜନୈତିକ ଉତ୍‌ଥାନ ପତନ, ସାମାଜିକ, ସାଂସ୍କୃତିକ ତଥା ଅର୍ଥନୈତିକ ବିକାଶ ବା ବିପର୍ଯ୍ୟୟର ବିବରଣୀ ସଂପର୍କରେ ଏବଂ ଏଭଳି ଘଟଣାବଳୀର ଜଣେ ଅଙ୍ଗେ ନିଭାଇଥିବା ବ୍ୟକ୍ତି ବା ଦ୍ରଷ୍ଟା ହିସାବରେ ଯେ ମୁଁ ବହୁ ଅଲିଖିତ ଇତିହାସ ପୃଷ୍ଠା ଉନ୍ମୋଚନ କରିପାରିବି, ତାହା ମୋର ବନ୍ଧୁ ଓ ଶୁଭେଚ୍ଛୁମାନଙ୍କର ମଧ୍ୟ ଦୃଢ଼ ଧାରଣା ଥିଲା । ତେଣୁ ବନ୍ଧୁମାନଙ୍କର ଅନୁରୋଧ ରକ୍ଷାକରି ମୋତେ ଲେଖିବାକୁ ହେଲା । ସେ ଲେଖା ପାଠକମାନଙ୍କଦ୍ୱାରା କିପରି ଭାବରେ ଗୃହୀତ ହେବ, ସେକଥା ମୋତେ ଲେଖିବାପାଇଁ ପ୍ରେରଣା ଦେଇଥିବା ଏବଂ ଅଙ୍ଗୀକାରବଦ୍ଧ କରାଇଥିବା ବନ୍ଧୁମାନେ ହିଁ ବିଚାରକରିବେ ବୋଲି ନିଜ ମନକୁ ବୁଝାଇ ଲେଖା ଆରମ୍ଭ କରିଥିଲି ।

ମନୁଷ୍ୟ ଏକ ସାମାଜିକ ପ୍ରାଣୀ । ସାମାଜିକ ପରିବେଶ ତଥା ସାଂସାରିକ କର୍ମକ୍ଷେତ୍ରରୁ ବିଚ୍ଛିନ୍ନ ରହି ଏକାକୀ ଜୀବନଯାତ୍ରା କରିବା ତା' ପକ୍ଷେ ଅସମ୍ଭବ । ମନୁଷ୍ୟ ତା'ର କର୍ମପଥରେ ବହୁ ଲୋକଙ୍କର ସଂସ୍ପର୍ଶରେ ଆସିଥାଏ । ତେଣୁ ମଣିଷର କାର୍ଯ୍ୟକଳାପ ଶୂନ୍ୟତାରୁ ସୃଷ୍ଟ ନୁହେଁ । ତା'ର ଜୀବନଚରିତ ସମସାମୟିକ ବହୁ ଲୋକଙ୍କ ଜୀବନବୃତ୍ତାନ୍ତ ତଥା ଘଟଣାବଳୀ ସହିତ ଊଣା-ଅଧିକେ ଜଡ଼ିତ । ରାଜନୈତିକ ବ୍ୟକ୍ତିମାନଙ୍କର ଜୀବନୀ ଏକ ସହଯୋଗୀ ବା ସଂଘୀୟ ଜୀବନ ଅଟେ । ଊଣାଅଧିକେ ମୁଁ ଜଣେ ରାଜନୈତିକ ବ୍ୟକ୍ତି ହୋଇଥିବାରୁ ମୋର ରାଜନୈତିକ ଜୀବନ ସହିତ ବହୁ ରାଜନୈତିକ ସହଯୋଗୀଙ୍କ ଜୀବନ ସଂଶ୍ଳିଷ୍ଟ ଏବଂ ସମସାମୟିକ ଘଟଣାବଳୀଦ୍ୱାରା ମୋ ଜୀବନ ପ୍ରସାରିତ ତଥା ପ୍ରଭାବିତ । ତେଣୁ ଆତ୍ମଜୀବନୀ ଲେଖିବା ସମୟରେ ସେ ସବୁ ସହଯୋଗୀମାନଙ୍କର କଥା ବାଦ୍‌ଦେଇପାରିନାହିଁ । ତା' କରିଥିଲେ ଆତ୍ମଜୀବନୀ ଲେଖିବାର ମୋ ପକ୍ଷରେ ସମ୍ଭବ ହୋଇପାରିନଥାନ୍ତା । ମାତ୍ର ସେମାନଙ୍କ ବିଷୟରେ କିଛି ଲେଖିବା ସମୟରେ ଅତ୍ୟନ୍ତ ସାବଧାନତା ଅବଲମ୍ବନ କରିଛି । ଯାହାସବୁ ମୁଁ ଅଙ୍ଗେ ନିଭେଇଛି ଏବଂ ଯାହା ସାଧାରଣ ସ୍ୱାର୍ଥଦୃଷ୍ଟିରୁ ଆଲୋଚ୍ୟ ବୋଲି ଅନୁଭବ କରିଛି, ତାହାହିଁ କେବଳ ଉଲ୍ଲେଖ କରିଛି । ଆମ ରାଜ୍ୟରେ କେତେକ ବିଶିଷ୍ଟ ବ୍ୟକ୍ତି ଅଛନ୍ତି ଯେଉଁମାନଙ୍କୁ ବାଦ୍‌ଦେଇ ଓଡ଼ିଶାର ସମସାମୟିକ ଇତିହାସ ଲେଖିହେବ ନାହିଁ । ସେହି ବିଶିଷ୍ଟ ବ୍ୟକ୍ତିମାନେ ଓଡ଼ିଶାର ରାଜନୈତିକ ତଥା ସାମାଜିକ ଜୀବନ ସହିତ ଓତପ୍ରୋତଭାବେ ଜଡ଼ିତ । ସେମାନଙ୍କ ମଧ୍ୟରୁ କେତେକ ସ୍ୱର୍ଗତ ଓ ଆଉ କେତେକ ଜୀବିତ ଅଛନ୍ତି । ସେମାନଙ୍କ ସଂପର୍କୀୟ ଘଟଣାବଳୀ ଉଲ୍ଲେଖ କରିବାଦ୍ୱାରା କାହା ମନରେ ଯଦି କିଛି ଆଘାତ ଆସେ ତା'ହେଲେ ସେମାନେ ସହୃଦୟତାର ସହିତ କ୍ଷମାଦେବେ; ଯେହେତୁ ତାହା କସ୍ମିନ୍‌କାଳେ କୌଣସି ଉଦ୍ଦେଶ୍ୟପ୍ରଣୋଦିତ ଅଥବା ଅଭିସନ୍ଧିମୂଳକ ନୁହେଁ । ରାଜନୈତିକ ତଥ୍ୟ ପ୍ରକାଶନରେ କାହାରିକୁ ଆକ୍ଷେପ କରିବା ମୋର ଚିନ୍ତା ଓ ରୁଚିର ବହିର୍ଭୂତ ।

ଓଡ଼ିଆ 'ଜ୍ଞାନମଣ୍ଡଳ'ରେ ଆତ୍ମଜୀବନୀର ବ୍ୟାଖ୍ୟା ଯେଉଁଭଳି ଭାବରେ କରାଯାଇଛି, ତାହାକୁ ବିଚାରକଲେ ମୋର ଜୀବନବୃତ୍ତାନ୍ତରେ ଲିପିବଦ୍ଧ ବିଷୟବସ୍ତୁ ଅସମୀଚୀନ କିମ୍ବା ଦୋଷାବହ ବିବେଚିତ ହେବନାହିଁ। ଆତ୍ମଜୀବନୀରଚୟିତାଙ୍କ ରଚନା ସଂପର୍କରେ 'ଜ୍ଞାନମଣ୍ଡଳ'ରେ ଉଲ୍ଲେଖ ଅଛି, ''ଏ କଥା ନିଶ୍ଚୟ ଠିକ୍, ରଚନାକାରୀ ତା'ର ଜୀବନକାଳ ମଧ୍ୟରେ ବହୁ ବିଶିଷ୍ଟ ଲୋକଙ୍କ ସଂସ୍ପର୍ଶରେ ଆସିଥିବ। ସେମାନଙ୍କ ବିଷୟରେ କେତେକ ସତ କଥା କହିବାକୁ ପଡ଼ିବ। ସେଭଳି ସତ କଥା କହିବାଦ୍ୱାରା ସେ ସେମାନଙ୍କ ପ୍ରତି କେତେକ କ୍ଷେତ୍ରରେ ଖୁବ୍ ନ୍ୟାୟ କରିବ ଓ ଆଉ କେତେକ କ୍ଷେତ୍ରରେ ଖୁବ୍ ଅପ୍ରିୟ କଥା କହିବାକୁ ବାଧ୍ୟହେବ। ଜଣେ ଯେତେ ବଡ଼ ହୋଇଥାଉ ପଛେ ସେ ମନୁଷ୍ୟରୂପେ ଜନ୍ମଗ୍ରହଣ କରିଥିବାରୁ ତା'ର କିଛିଟା ଦୋଷତ୍ରୁଟି ଏବଂ କିଛି ଭଲ ଗୁଣ ନିଶ୍ଚୟ ଥିବ। ତା' ସଂପର୍କରେ ଯିଏ ଆସିବ ସେ ଯେ କେବଳ ତା'ର ଗୁଣତକ ଦେଖିବ, ଦୋଷତ୍ରୁଟି ଦେଖିବନାହିଁ, ଏପରି ନୁହେଁ। ଆତ୍ମଜୀବନୀ ଲେଖକ ଯେଉଁ କାଳରେ ଜୀବିତ ଅଛି ସେହି ସମୟର ସାମାଜିକ ଚିତ୍ର ସେ ଦେବାକୁ ବାଧ୍ୟ। ଆଜି ସେ ଯାହା ଲେଖିଯାଉଛି କାଲି ତାହାକୁ ଲୋକେ ଇତିହାସ ବୋଲି ବିଚାରିବେ। ସମାଜର ଗୋଟିଏ ସମୟର ଘଟଣାବଳୀ ବର୍ଣ୍ଣନା କରିବାକୁ ଯାଇ ସେ ହୁଏତ ନିଜକୁ ନିମିତ୍ତ କରି ରଖିଥିବ।'' ମୋର ଆତ୍ମଜୀବନୀରେ ମୁଁ ସେହିସବୁ ଘଟଣାବଳୀ ବିଶେଷ ଭାବରେ ଉଲ୍ଲେଖ କରିଛି, ଯେଉଁଥିରେ ଅନ୍ୟମାନଙ୍କର କିଛି ନା କିଛି ସଂପର୍କ ରହିଛି। ନିତାନ୍ତ ବ୍ୟକ୍ତିଗତ କିମ୍ବା ଯେଉଁସବୁ ବିଷୟ ସହିତ ସାଧାରଣ ସ୍ୱାର୍ଥର କିଛି ସଂପର୍କନାହିଁ ସେସବୁ ବିଷୟ ଯେତେଟା ବାଦ୍‌ଦିଆଯାଇପାରେ ସେଥିପ୍ରତି ଦୃଷ୍ଟିଦେଇଛି।

ଏହି ପରିପ୍ରେକ୍ଷୀରେ ଅତୀତର ବହୁ ଘଟଣାବଳୀକୁ ସାଧାରଣ ଜୀବନର ନ୍ୟାୟଅନ୍ୟାୟର ନିକିତିରେ ବର୍ତ୍ତମାନ ତଉଲିବାକୁ ପଡୁଛି। ଅନେକ କ୍ଷେତ୍ରରେ ତା'ର ଇଙ୍ଗିତ ନଦେଲେ ଜଣେ ରାଜନୈତିକ ବ୍ୟକ୍ତିର ଆତ୍ମଜୀବନୀ ସାଧାରଣ ସ୍ୱାର୍ଥପାଇଁ ପ୍ରୟୋଜନରେ ଲାଗିବ ବା କାହିଁକି ? ଅବଶ୍ୟ ମୁଁ ଯେତେବେଳେ ଯେଉଁ କାର୍ଯ୍ୟ ବା ଘଟଣାକୁ ଯେଭଳି ଭାବରେ ବିବେଚନା କରିଛି ବା କରୁଛି, ସମସ୍ତେ ସେଥିରେ ମୋ ସହିତ ଏକମତ ହୋଇନପାରନ୍ତି। ସେଥିପାଇଁ ବିଜ୍ଞ ବ୍ୟକ୍ତିମାନେ କହିବାର ଶୁଣିଛି, 'ଭିନ୍ନରୁଚିର୍ହିଲୋକାଃ'। ସାଧାରଣ ଜୀବନରେ ବ୍ୟକ୍ତିଗତ ଓ ଗୋଷ୍ଠୀଗତ ଭାବରେ ବହୁ ଭଲକାମ କରିବାର ସୁଯୋଗ ମିଳିଛି ଓ କରାଯାଇଛି; ଅଥଚ ଅତୀତରେ କୌଣସି ନା କୌଣସି କାରଣରୁ ଏପରି ଅନେକ କାର୍ଯ୍ୟକୁ ବାଞ୍ଛନୀୟ ତଥା କରଣୀୟ ବିବେଚନା କରିଥିଲି, ଯାହାକୁ କି ପରବର୍ତ୍ତୀ କାଳରେ ମୋ ନିଜ କ୍ଷୁଦ୍ର ବିଚାରବୁଦ୍ଧିରେ ମଧ୍ୟ ନିଚ୍ଛକ ନୈତିକତାର କଷଟିରେ ଅବାଞ୍ଛନୀୟ ଅଥବା ବିଚାରପ୍ରମାଦ ବୋଲି ମୁଁ ଜ୍ଞାନକରିଛି। ମୋର ଲେଖାରୁ ସେସବୁର ସୂଚନା ଅଳ୍ପ ବହୁତ ନିଶ୍ଚୟ ମିଳିବ। ବ୍ୟକ୍ତିଗତ ତଥା ସାଧାରଣ ଜୀବନ କ୍ଷେତ୍ରରେ ଆଦର୍ଶ ମନୀଷୀମାନେ ମଧ୍ୟ ଅନେକ ସମୟରେ ଅବସ୍ଥାର ଦାସ ହେବାକୁ ବାଧ୍ୟହୋଇଛନ୍ତି। 'ନିୟତି'କୁ ନିଜ ଇଚ୍ଛାମତେ ଟାଣିନେବାର ଶକ୍ତି କାହାରି ନାହିଁ; ପରନ୍ତୁ 'ଦୈବଦଉଡ଼ି' ମଣିଷକୁ ଯୁଆଡ଼କୁ ଇଚ୍ଛା ସେଆଡ଼କୁ ଟାଣିନିଏ ବୋଲି ବଡ଼ପୁରୁଷମାନେ କହିଛନ୍ତି। ଏହିଭଳି ଭାବରେ ପରିସ୍ଥିତିର ତାଡ଼ନାରେ ହେଉ କିମ୍ବା ସେତେବେଳକାର ବିଚାରବୁଦ୍ଧିରେ ଉଚିତ ଜ୍ଞାନକରି ଅନେକ କାର୍ଯ୍ୟ କରାଯାଇଛି, ଯାହା ଆଜି ହୁଏତ ମୋତେ ବିବେକବିରୁଦ୍ଧ ବୋଧହେଉଛି। ଏପରି ଅନୁଭୂତି ମୋ ଜୀବନରେ ଯେପରି ସତ୍ୟ ଅନ୍ୟମାନଙ୍କ ଜୀବନ ଓ କର୍ମପରିସର ମଧ୍ୟରେ ସେହିପରି ଅପରିହାର୍ଯ୍ୟ ହୋଇପଡ଼ିଥିବା ଅସମ୍ଭବ ନୁହେଁ। ଏଥିପାଇଁ ନିଜକୁ ସମାଲୋଚନା କରିବାର ଅଧିକାର ମୋର ଅଛି; ମାତ୍ର ଅନ୍ୟ କାହାରି ପ୍ରତି ଆକ୍ଷେପ କରିବାର ଅଭିପ୍ରାୟ ନାହିଁ। ବୃହତ୍ତର ସାଧାରଣ ସ୍ୱାର୍ଥ ଦୃଷ୍ଟିରୁ ସମକାଳୀନ ରାଜନୈତିକ ଓ ପ୍ରଶାସନିକ ଘଟଣାପ୍ରବାହର ପର୍ଯ୍ୟାଲୋଚନା କଲାବେଳେ ଅନ୍ୟ କାହାରି ଦୃଷ୍ଟିରେ କିଛି ଦୋଷାବହ, ଅସଙ୍ଗତ ବା ଅପ୍ରିୟ ବିବେଚିତ ହେଲେ ତାହା ମୋର ସମ୍ପୂର୍ଣ୍ଣ ଅନଭିପ୍ରେତ ବୋଲି ନିବେଦନ କରୁଛି।

ମୁଁ କୃତବିଦ୍ୟ ଛାତ୍ର ନଥିଲି କିମ୍ବା ରାଜନୈତିକ ପରିବେଶ ମଧ୍ୟରେ ଜନ୍ମଗ୍ରହଣ କରି ବଢ଼ିନଥିଲି । ସହଜାତ ପ୍ରବୃତ୍ତିରୁ ଓ ବଳିଷ୍ଠ ଦେଶପ୍ରେମୀଙ୍କ ସଂସ୍ପର୍ଶରେ ଆସି ଜଣେ ଦେଶହିତୈଷୀ ଓ ସମାଜସେବୀ ଭାବରେ ନିଜର ଜୀବନକୁ ଗଢ଼ିତୋଳିବା ପାଇଁ ମୁଁ ଶୈଶବାବସ୍ଥାରୁ ଉଦ୍ୟମ କରିଆସିଛି । ବାଲ୍ୟକାଳରୁ ତଥା ଛାତ୍ରାବସ୍ଥାରୁ ଅଭିଳାଷ ପୋଷଣ କରିଆସିଥିଲି – ଦେଶ, ଜାତି ତଥା ଜନତାଜନାର୍ଦ୍ଦନଙ୍କର ସେବାକରି ଆତ୍ମସନ୍ତୋଷ ଓ ଖ୍ୟାତି ଅର୍ଜନ କରିବାପାଇଁ । ମୋର ସୌଭାଗ୍ୟ ଯେ ମୋର ଅଭିଭାବକମାନେ ମୋତେ ସେ ଦିଗରେ ଉତ୍ସାହିତ କରିଥିଲେ । ଆତ୍ମଜୀବନୀ କିପରି ଲେଖିବି ଏବଂ ସେ ଲେଖା କି ପ୍ରକାରେ ଆରମ୍ଭ କରିବି, ସେଇ କଥା ଚିନ୍ତା କଲାବେଳେ ମୋ ଦୃଷ୍ଟିକୁ ଆସିଥିଲା ମୋର ଜଣେ ଶିକ୍ଷକଙ୍କର ମୋ ସମ୍ବନ୍ଧରେ ଗୋଟିଏ ମନ୍ତବ୍ୟ, ଯାହାକି ସ୍ୱତଃ ମୋର ସ୍ମୃତିପଟକୁ ଟାଣିଆଣିଥିଲା ଦେଶ ଓ ମାନବଜାତିର ସେବା ଉଦ୍ଦେଶ୍ୟରେ ମୋର ସାମାନ୍ୟ ଅନାବିଳ ଅଧ୍ୟବସାୟ । ମୋର ସେହି ସମ୍ମାନନୀୟ ପୂଜ୍ୟ ଶିକ୍ଷକ ଶ୍ରୀ ରବୀନ୍ଦ୍ର କୁମାର ଦାସ କିଛିଦିନପାଇଁ ଭଦ୍ରକ ହାଇସ୍କୁଲ୍‌ରେ ଶିକ୍ଷକତା କରିଥିଲେ । ପରବର୍ତ୍ତୀ କାଳରେ ସେ ତାଙ୍କଦ୍ୱାରା ଇଂରାଜୀରେ ଲିଖିତ ଜଗନ୍ନାଥଙ୍କର ପୁରାଣ କଥା ପୁସ୍ତକଟି ମୋ ନାମରେ ଉତ୍ସର୍ଗ କରି ମୋତେ ବିଭୁ ତଥା ଗୁରୁ ଆଶୀର୍ବାଦରେ ଗରୀୟାନ୍ କରିଛନ୍ତି । ସେଥିରେ ସେ ମୋ ବିଷୟରେ ଉଲ୍ଲେଖ କରିଥିବା ଉକ୍ତିଟି ହେଲା, ''ବିହାର ଭୂମିକମ୍ପ-ପ୍ରପୀଡ଼ିତ ଅସହାୟ ଲୋକମାନଙ୍କର ସାହାଯ୍ୟାର୍ଥେ ପାଣ୍ଠିସଂଗ୍ରହ କରିବା ଉଦ୍ଦେଶ୍ୟରେ ସ୍କୁଲରେ ଯେଉଁ ସଭାଟିଏ ଅନୁଷ୍ଠିତ ହୋଇଥିଲା, ସେଥିରେ ଛାତ୍ର ଶ୍ରୀ ନୀଳମଣି ରାଉତରାୟଙ୍କ ଚକ୍ଷୁରେ ସ୍ୱାଧୀନତାର ଅଗ୍ନିଶିଖା ଓ ସ୍ୱଦେଶାନୁରାଗପୂର୍ଣ୍ଣ ଉଦ୍‌ବୋଧନ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ମୁଁ ଆମର ତତ୍‌କାଳୀନ ହେଡ୍‌ପଣ୍ଡିତ ପୁରୀନିବାସୀ ସ୍ୱର୍ଗୀୟ ନୀଳକଣ୍ଠ ମିଶ୍ରଙ୍କ ପାଖରେ ମୋର ମତ ବ୍ୟକ୍ତ କରି କହିଥିଲି ଯେ ଏହି ପିଲାଟିଠାରେ ଆଲୋକର ସନ୍ଧାନ ମିଳୁଛି ଏବଂ ତାକୁ ଯଥାଯଥ ଭାବରେ ପରିପୋଷଣ କରିପାରିଲେ ତାହା ଦେଶରେ ପ୍ରଭୂତ ଉଜ୍ଜ୍ୱଳ ପ୍ରଭାର ଜୁଆର ଖେଳାଇଦେବ । କାଳକ୍ରମେ ହେଡ୍‌ପଣ୍ଡିତ ମହାଶୟ ସ୍ୱର୍ଗାରୋହଣ କରିଛନ୍ତି । ମାତ୍ର ବୟାଳିଶ ବର୍ଷ ପୂର୍ବେ ଯେଉଁ ଆଗତ କଥାର ଆଭାସ ମିଳିଥିଲା ତା'ର ସତ୍ୟତା ବିଷୟରେ ସାକ୍ଷ୍ୟ ଦେବାପାଇଁ କେବଳ ମୁଁ ବର୍ତ୍ତମାନ ମର୍ତ୍ତ୍ୟରେ ରହିଛି ।'' ମୁଁ ସବିନୟ କୃତଜ୍ଞତାସହ କହୁଛି ଯେ ମୋ ବିଷୟରେ ଶ୍ରୀ ଦାସ ମହାଶୟଙ୍କର ଏତାଦୃଶ ମନ୍ତବ୍ୟ ଓ ଭବିଷ୍ୟତବାଣୀ କେତେଦୂର ପରିପୂର୍ଣ୍ଣ ହୋଇଛି ତାହା ଈଶ୍ୱରହିଁ ଜାଣନ୍ତି । ତାଙ୍କ ଆଶାନୁରୂପ ମଣିଷଟିଏ ମୁଁ ହୋଇଛି କି ନା ସେ ବିଷୟରେ ମୁଁ ସନ୍ଦିହାନ; କିନ୍ତୁ ଗୋଟିଏ କଥା ନିଶ୍ଚିତ ଯେ ଉଲ୍ଲିଖିତ ପୁସ୍ତକରେ ତାଙ୍କର ଉପରୋକ୍ତ ମନ୍ତବ୍ୟର ପୁନରୁକ୍ତି ମୋତେ ପିଲାଦିନର ଭୁଲିହୋଇଯାଇଥିବା ଅନେକ ଘଟଣା ସ୍ମରଣ କରାଇଦେଇଛି ।

ଆତ୍ମଚରିତ ଲେଖିବାରେ ଆଉ ଗୋଟିଏ ଅସୁବିଧା ମୁଁ ଅନୁଭବ କରିଛି । ସେଇଟି ହେଉଛି ଡାଏରିରେ ଦୈନନ୍ଦିନ ଘଟଣା ଟିପିରଖିବାର ଅଭ୍ୟାସ ମୋର ଆଦୌ ନଥିଲା । ମନ୍ତ୍ରୀ ଥିଲାବେଳେ ଅନେକ ବିଷୟ ସରକାରୀ ଡାଏରିରେ ଲେଖା ହୋଇ ରହୁଥିଲା; ମାତ୍ର ସେଗୁଡ଼ିକ ଅଫିସ୍ ଦାୟିତ୍ୱ ଛାଡ଼ିବା ସଙ୍ଗେ ସଙ୍ଗେ ମୋ ପାଖରୁ ହଜିଯାଇଛି । ତେଣୁ ଅନେକ କଥା ମନେପକାଇ ଲେଖିବାକୁ ହେବ । ବହୁତଗୁଡ଼ିଏ କଥା ମନେପଡୁଛି; ମାତ୍ର ସେଗୁଡ଼ିକୁ କ୍ରମାଗତ ଓ ଶୃଙ୍ଖଳିତ ଭାବରେ ଲେଖିବା ସହଜ ମନେହେଉନାହିଁ । ତଥାପି ଯେପରି ଭାବରେ ମୋ ଜୀବନର ଘଟଣାବଳୀ ମନେପଡ଼ିଛି, ସେଗୁଡ଼ିକୁ ପାଠକମାନଙ୍କ ଆଗରେ ଯଥାଯଥ ଭାବରେ ଉପସ୍ଥାପିତ କରିବାପାଇଁ ମୁଁ ଚେଷ୍ଟା କରିଛି । ଏହା ମୋର ଜୀବନବୃତ୍ତାନ୍ତ ନୁହେଁ, ଐତିହାସିକ ପ୍ରବାହର ଏକ କ୍ରମିକ ବିବରଣୀ ମଧ୍ୟ ନୁହେଁ — ଏହା କେବଳ ମୋର ସ୍ମୃତି ଓ ଅନୁଭୂତିର ବୃତ୍ତାନ୍ତ ।

ଆତ୍ମଜୀବନୀ ଲେଖିବା ଦିଗରେ ମୋତେ ଯେଉଁମାନେ ପରାମର୍ଶ ଦେଇ ଉତ୍ସାହିତ କରିଛନ୍ତି, ସେମାନଙ୍କ ନିକଟରେ ମୁଁ କୃତଜ୍ଞ ! ମୋର ନାତୁଣୀ ଆୟୁଷ୍ମତୀ ଜୟଶ୍ରୀ ଓ ଶ୍ରୀମତୀ ଶାନ୍ତି ଦାସଙ୍କର ଅକୁଣ୍ଠ ପରିଶ୍ରମ ଓ ସାହାଯ୍ୟ ମୋତେ ଆତ୍ମଜୀବନୀ ଲେଖିବା ଦିଗରେ ଯଥେଷ୍ଟ ମନୋବଳ

ଯୋଗାଇଛି । ନିଜ ହାତରେ ଯୋଜନାବଦ୍ଧ ଭାବରେ ସବୁ କଥା ଲେଖିବାପାଇଁ ମୋର କାତରତା ଲକ୍ଷ୍ୟ କରି ସେମାନେ ପ୍ରସ୍ତାବ ଦେଇଥିଲେ ଯେ ମୁଁ ମୋର ଜୀବନର ମୁଖ୍ୟ ଘଟଣାବଳୀଗୁଡ଼ିକର ଶ୍ରୁତଲିଖନ ଦେବା ପରେ ସେମାନେ ତାହାକୁ ବିସ୍ତୃତ ତଥା ଯଥାର୍ଥଭାବେ ସମ୍ପାଦନ କରିଥା'ନ୍ତେ । ମୋ ଜୀବନର ଘଟଣାବଳୀ ଉଦ୍ଧୃତ କରି ତା'ର ସବିସ୍ତାରରେ ସେମାନଙ୍କ କଳ୍ପନାର ସଂଯୋଗ ଯେ ଜୀବନୀକୁ ସୁଖପାଠ୍ୟ ତଥା ସରସ ସୁନ୍ଦର କରିପାରିଥାଆନ୍ତା ତାହା ନିଃସନ୍ଦେହ; ମାତ୍ର ମୋର ସାଧାରଣ ଜୀବନର ସ୍ମୃତି ସହିତ ଯେଉଁ ଅନୁଭୂତି ଜଡ଼ିତ ତାହାର ଭାବାବେଗ ସେହି ରଚନାରେ ନିଶ୍ଚିତ ଭାବରେ ଉହ୍ୟ ରହିଯାଇଥାଆନ୍ତା । ତେଣୁ ମୋ ଜୀବନୀ ନିଜ ହାତରେ ଲେଖିବାପାଇଁ ସ୍ଥିର କଲି । ରାଜ୍ୟସରକାରଙ୍କର ଅଭିଲେଖାଗାରକୁ ମୁଁ ଅନେକ ଥର ଯାଇଥିଲି । ସେ ସଂସ୍ଥାର ଅଧୀକ୍ଷକ ଶ୍ରୀ ମହେଶ ପ୍ରସାଦ ଦାସ ଆଗ୍ରହର ସହିତ ପୁରାତନ କାଗଜପତ୍ର ପଢ଼ିବାର ସୁଯୋଗ ଦେଇଛନ୍ତି ଏବଂ ଅନ୍ୟତମ କର୍ମଚାରୀ ଶ୍ରୀ ବଂଶୀଧର ଭୋଇ ଆବଶ୍ୟକୀୟ ତଥ୍ୟ ଓ ବିବରଣଗୁଡ଼ିକ ଉତାରି ଦେଇ ସାହାଯ୍ୟ କରିଛନ୍ତି । ଏହା ବ୍ୟତୀତ ମୋର ନାତି ଶ୍ରୀମାନ୍ ସଂଜୀବ କୁମାର ସାମଲ ଓ ଆଉ ଜଣେ ଆତ୍ମୀୟ ଶ୍ରୀମାନ୍ ବୀରେନ୍ଦ୍ର କୁମାର ମହାପାତ୍ର ପାଣ୍ଡୁଲିପିଗୁଡ଼ିକର ପ୍ରତିଲିପି ପ୍ରସ୍ତୁତ କରିବାରେ ଯେପରି ଉତ୍ସାହ ପ୍ରଦର୍ଶନ କରିଥିଲେ ତାହା ଅତ୍ୟନ୍ତ ପ୍ରଶଂସନୀୟ । ସମସ୍ତଙ୍କ ପ୍ରତି ମୁଁ ମୋର ଆନ୍ତରିକ ସ୍ନେହ ଶ୍ରଦ୍ଧା ଜଣାଉଛି । ମୋତେ ସବୁଠାରୁ ବେଶୀ ଋଣୀ କରିଛନ୍ତି ଆମ ସମସ୍ତଙ୍କଠାରୁ ବର୍ଷୀୟାନ୍, ବରେଣ୍ୟ ସ୍ୱାଧୀନତା-ସଂଗ୍ରାମୀ, ପ୍ରବୀଣ ପାର୍ଲିଆମେଣ୍ଟାରୀଆନ୍, ଓଡ଼ିଶାର ପ୍ରଥମ କଂଗ୍ରେସ୍ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ବିଶ୍ୱନାଥ ଦାସ ତାଙ୍କର ଅକୁଣ୍ଠ ସ୍ନେହ ଓ ଆଶୀର୍ବାଦ ଦେଇ । ବ୍ରିଟିଶ୍ ଶାସିତ ପରାଧୀନ ଭାରତରେ ଆମ ପ୍ରଦେଶର ପ୍ରଧାନମନ୍ତ୍ରୀ ଭାବରେ ରେଭେନ୍ସା କଲେଜ ହଲ୍‌ରେ ଅନୁଷ୍ଠିତ ତତ୍‌କାଳୀନ ବିଧାନସଭାରେ ତାଙ୍କର 'ବିଦ୍ରୋହୀ'ର ଭୂମିକା ଏବଂ 'ଓଜସ୍ୱିତା' ମୋର କଲେଜ ଛାତ୍ରଜୀବନକୁ ଉଦ୍‌ବୁଦ୍ଧ କରିଥିଲା । ଏ ପୁସ୍ତକର ଭୂମିକାରେ ତାଙ୍କର ଆଶୀର୍ବାଣୀ ମୋତେ ତତୋଽଧିକ ଅଭିଭୂତ କରିଛି । ମୁଁ ତାଙ୍କୁ ମୋର ହୃଦୟର କୃତଜ୍ଞତା ଜଣାଉଛି ।

## ଆଦ୍ୟ କଥା

ବାଲେଶ୍ୱର ଜିଲ୍ଲାର ତିର୍ତ୍ତିଡ଼ି ଥାନା ଅନ୍ତର୍ଗତ ମୁକୁନ୍ଦପୁର ଗ୍ରାମରେ ୧୯୨୦ ମସିହା ମଇ ମାସ ଚବିଶ ତାରିଖରେ ମୋର ଜନ୍ମ । ପିତାଙ୍କର ନାମ ଶ୍ରୀ ଚନ୍ଦ୍ରଶେଖର ରାଉତରାୟ ଓ ମାତାଙ୍କର ନାମ ଶ୍ରୀମତୀ କୋଇଲି ଦେବୀ । ମୋ ମା'ଙ୍କର ଅଷ୍ଟମ ଗର୍ଭରୁ ମୁଁ ଜାତହୋଇଥିଲି । ମୋର ହେତୁ ହେବା ପୂର୍ବରୁ ମୋତେ ଇହଧାମରେ ଛାଡ଼ି ମା' ଆରପୁରକୁ ଚାଲିଯାଇଥିଲେ । ମାତୃସ୍ନେହ କ'ଣ ମୁଁ ଜାଣେନାହିଁ । ମୋ ମା'ଙ୍କର ସ୍ୱରୂପ ସମ୍ବନ୍ଧରେ ମଧ୍ୟ ମୋର କୌଣସି କଥା ମନେନାହିଁ । ବାଲ୍ୟାବସ୍ଥାରେ ମୋର ଭଉଣୀମାନେ ମୋତେ ମାତୃବତ୍ ଲାଳନପାଳନ କରିଥିଲେ । ମୋର ପିତା ଦ୍ୱିତୀୟଥରପାଇଁ ବିବାହ କରିଥିଲେ । ମୋ ସାବତମା'ଙ୍କର ନାମ ଶ୍ରୀମତୀ ରାଣୀ ଦେବୀ । ସେ ମୋତେ ଖୁବ୍ ଭଲପାଉଥିଲେ । ତାଙ୍କ ଗର୍ଭରୁ ଦୁଇଟି ସନ୍ତାନ, ଗୋଟିଏ ପୁଅ ଓ ଅନ୍ୟଟି ଝିଅ ଜାତହୋଇଥିଲେ । ବିବାହର ଦଶନ୍ଧି ନପୂରୁଣୁ ମୋ ସାବତମା'ଙ୍କର ଅକାଳ ମୃତ୍ୟୁ ହୋଇଥିଲା ।

ମୋର ପିତା ଜଣେ ଚାଷୀ ତଥା ଛୋଟ ଜମିଦାର ଥିଲେ । ତାଙ୍କ ଜମିଦାରୀର ସଦର ଜମା ପ୍ରାୟ ପାଞ୍ଚଶହ ଟଙ୍କା ଭିତରେ ଥିଲା । ଚାଷଜମି କିଛି କମ୍ ନଥିଲା । ଘରେ ଦୁଇଟି ଅମାରରେ ଧାନ ରହୁଥିଲା । ବାଗବଗିଚା ମଧ୍ୟ ବେଶ୍ ଥିଲା । କଲିକତାରେ ଆମର ବ୍ୟବସାୟ ମଧ୍ୟ ଥିଲା । ମୋ ପିତାମହଙ୍କ ସମୟରୁ ପୁରୁଷାନୁକ୍ରମେ ଆମ ବଂଶର ଲୋକେ କଲିକତାରେ ଜାହାଜ କମ୍ପାନୀଗୁଡ଼ିକରେ ଜାହାଜ ମରାମତି ଓ ଜାହାଜରେ ରଙ୍ଗଦେବା ପ୍ରଭୃତି ଠିକାଦାରୀ କାମ କରିଆସୁଥିଲେ । ସେତେବେଳେ ଉଡ଼ାଜାହାଜ ନଥିଲା, ତେଣୁ ବାଷ୍ପୀୟ ଜାହାଜଦ୍ୱାରା ସମୁଦ୍ର ପଥରେ ଦେଶବିଦେଶକୁ ଯାତ୍ରୀ ତଥା

ମାଲପତ୍ର ପରିବହନ କାର୍ଯ୍ୟ ସଂପାଦିତ ହେଉଥିଲା । ଏଭଳି ବହୁ ଜାହାଜ ବିଦେଶରୁ କଲିକତାର ବନ୍ଦରଗୁଡ଼ିକୁ ଯାତ୍ରୀ ଓ ମାଲପତ୍ର ବହନ କରି ଯା'ଆସ କରୁଥିଲା । କଲିକତାର ଖିଦିରପୁର, ମାଟିଆବ୍ରୁଜ୍, ସାଲ୍‌କିଆ ଓ କାଶୀପୁର ପ୍ରଭୃତି ଡକ୍‌ରେ ଜାହାଜଗୁଡ଼ିକର ଆବଶ୍ୟକୀୟ ମରାମତି କାର୍ଯ୍ୟ କରାଯାଉଥିଲା । ଏସବୁ କାର୍ଯ୍ୟରେ ଦକ୍ଷତା ଓ ନିଷ୍ଠା ସମ୍ପର୍କରେ ଆମ ବଂଶର କୁଆଡ଼େ ଜାହାଜ କମ୍ପାନୀଗୁଡ଼ିକରେ ଖୁବ୍ ଖ୍ୟାତି ଥିଲା । ମୋ ବଡ଼ଭାଇ ଶ୍ରୀ ହରେକୃଷ୍ଣ ରାଉତରାୟ ଜଣେ ସିପିଙ୍ଗ୍ କଣ୍ଟ୍ରାକ୍ଟର ହିସାବରେ ବେଶ୍ ସୁନାମ ଅର୍ଜନ କରିଥିଲେ । ସେ ନିଜ ହାତରେ ଜାହାଜର ଅନେକ କାର୍ଯ୍ୟ କରିପାରୁଥିଲେ । ସେଥିପାଇଁ ଜାହାଜ କମ୍ପାନୀଗୁଡ଼ିକର ମାଲିକ ତଥା କର୍ମଚାରୀ ଇଂରେଜ ସାହେବମାନେ ତାଙ୍କୁ ଅଧିକ ପସନ୍ଦ କରୁଥିଲେ ବୋଲି ମୁଁ ଅନେକଙ୍କ ମୁଖରୁ ଶୁଣିଛି । ସେ ଭଲଭାବରେ ଇଂରାଜୀ ବୁଝିପାରୁଥିଲେ; ତେଣୁ ସାହେବମାନଙ୍କର କଥା ବୁଝି ଠିକ୍ ଭାବରେ କାମ କରିପାରୁଥିଲେ । ଜାହାଜରେ ଏକପ୍ରକାର କାର୍ଯ୍ୟ ହୁଏ ଯାହାକୁ କି କଳାପାତି କାମ ବୋଲି କୁହାଯାଉଥିଲା । ଜାହାଜର ତଳଭାଗରେ ଡେକ୍ ଥାଏ । ତାହା କାଠପଟାଦ୍ୱାରା ଯୋଡ଼ାଯାଇ ଚଟାଣପରି ହୋଇଥାଏ । ଦୁଇଟି ପଟା ଯୋଡ଼ାଯିବାବେଳେ ଯୋଡ଼େଇ ମଧରେ ଯେଉଁ ସାମାନ୍ୟ ଫାଙ୍କ ରହିଯାଏ ତାହା ସେତେବେଳେ ବୋବାଇ ଘାସ, ତୁଳା ଓ ପିଚୁ ଦେଇ ବନ୍ଦକରାଯାଉଥିଲା । ସେହି ରନ୍ଧ୍ରଗୁଡ଼ିକୁ ବନ୍ଦ କରିବାପାଇଁ ପ୍ରଥମେ ସେହି ସ୍ଥାନରେ ବୋବାଇ ଘାସ ଓ ତୁଳା ଦିଆଯାଇ, ସେହି ବୋବାଇ ଘାସ ଉପରେ ମୋଟା ବଟାଳି ରଖି ଗୋଟିଏ କାଠ ମୁଗୁରଦ୍ୱାରା ପିଟିଲେ କ୍ରମେ ଫାଙ୍କଗୁଡ଼ିକ ବନ୍ଦ ହୋଇଯାଏ । ତା' ଉପରେ ପିଚୁ ଦିଆଯାଉଥିଲା । ଉପରୋକ୍ତ ବଟାଳି ଓ ମୁଗୁର ବଢ଼େଇର ବଟାଳି ଓ ହାତୁଡ଼ିଠାରୁ ଢେର୍ ବଡ଼ ଏବଂ ଏଗୁଡ଼ିକ ସ୍ୱତନ୍ତ୍ରଭାବେ ଏହି କଳାପାତି କାମପାଇଁ ତିଆରି ହୋଇଥାଏ । ସମସ୍ତେ ସହଜରେ ଏ କାର୍ଯ୍ୟ କରିପାରନ୍ତିନାହିଁ । କେବଳ କେତେକ ଓଡ଼ିଆ ମିସ୍ତ୍ରି ଏ ପ୍ରକାର କାର୍ଯ୍ୟ କରିବାରେ ବିଶେଷ ଦକ୍ଷତା ହାସଲ କରିଥିଲେ । କଣ୍ଟ୍ରାକ୍ଟର ହିସାବରେ ତଦାରଖ କରିବା ସଙ୍ଗେ ସଙ୍ଗେ ମୋ ଭାଇ ଭଲଭାବରେ ଉକ୍ତ କାର୍ଯ୍ୟଟିକୁ ଶିଖିଯାଇଥିଲେ । ମୁଁ ନିଜେ କେତେଥର ଏ ପ୍ରକାର କାର୍ଯ୍ୟ ହେଉଥିବାର ଦେଖିଥିଲି । ବର୍ତ୍ତମାନ ଆଉ ଏ ପ୍ରକାର କାର୍ଯ୍ୟ ବିଶେଷଭାବରେ ପରିଲକ୍ଷିତ ହେଉନାହିଁ, କାରଣ ବର୍ତ୍ତମାନ ଇସ୍ପାତର ଯୁଗ । କାଠର ସ୍ଥାନକୁ ଅନେକ ଜାଗାରେ ଲୁହା ଦଖଲ କରିନେଲାଣି । ସେତେବେଳକାର ବଡ଼ ବଡ଼ ଜାହାଜଗୁଡ଼ିକ ଗୋଟିଏ ଗୋଟିଏ ବସ୍ତି ଭଳି ଦେଖାଯାଉଥିଲା । ସେଗୁଡ଼ିକର ଦୈର୍ଘ୍ୟ ଓ ପ୍ରସ୍ଥକୁ ଆମ ଭୁବନେଶ୍ୱରର ସଚିବାଳୟ ସହିତ ତୁଳନା କରାଯାଇପାରେ । ସ୍କୁଲରେ ପଢ଼ିଲାବେଳେ ପ୍ରାୟ ସବୁ ଛୁଟିରେ ମୁଁ କଲିକତା ଯାଉଥିଲି । ସେତେବେଳେ ଏହିସବୁ ଜାହାଜ ଭିତରେ ବୁଲି ଦେଖିବାକୁ ମୋତେ ଖୁବ୍ ଭଲ ଲାଗୁଥିଲା । ବାଲେଶ୍ୱର ଜିଲ୍ଲା ଲୋକମାନଙ୍କର ଓଡ଼ିଶାର କଟକ ସହର ସହିତ ଯେତିକି ସମ୍ପର୍କ ଥିଲା ତାହାଠାରୁ ଅଧିକ ସମ୍ପର୍କ ଥିଲା କଲିକତା ସହର ସହିତ । ମୁଁ ମାଟ୍ରିକ୍ୟୁଲେସନ୍ ପାସ୍ କରିବା ପରେ କଟକ ସହର ଦେଖିଲି; କିନ୍ତୁ ତା ପୂର୍ବରୁ ବହୁବାର କଲିକତା ଦେଖିଥିଲି । ବାଲେଶ୍ୱର ଜିଲ୍ଲାର ପ୍ରାୟ ପ୍ରତ୍ୟେକ ଗ୍ରାମର ଲୋକ କଲିକତାରେ ଅଛନ୍ତି । ବିବାହ, ବ୍ରତ, ଯାନିଯାତ୍ରା, ପର୍ବପର୍ବାଣି ଓ ଅନ୍ୟାନ୍ୟ ଉତ୍ସବଗୁଡ଼ିକରେ ଲୁଗାପଟା, ଜିନିଷପତ୍ର ଦରକାର ହେଲେ ସେତେବେଳେ ତାହା କଟକରୁ କିଣାନଯାଇ କଲିକତା ବଜାରରୁ କିଣାଯାଉଥିଲା । ସେତେବେଳର ବାଲେଶ୍ୱର ଜିଲ୍ଲା ଏବେ ବାଲେଶ୍ୱର ଓ ଭଦ୍ରକ ଦୁଇଟି ଜିଲ୍ଲାରେ ପରିଣତ ହୋଇଛି ।

କଲିକତାରେ ଆମ ବ୍ୟବସାୟ ବୁଝିବାର ସମସ୍ତ ଦାୟିତ୍ୱ ମୋର ପିତା ବଡ଼ଭାଇଙ୍କ ହାତରେ ଛାଡ଼ିଦେଇଥିଲେ । ସେ ସମସ୍ତ କାର୍ଯ୍ୟ ବଡ଼ଭାଇ ଭଲଭାବରେ ଚଳାଉଥିଲେ; କିନ୍ତୁ ପ୍ରଥମାବସ୍ଥାରେ କଲିକତାର କେତେକ ଇଂରେଜ ଓ ବଙ୍ଗାଳୀ ଭଦ୍ରଲୋକଙ୍କ ଚକ୍ରାନ୍ତରେ ପଡ଼ି ସର୍ବସ୍ୱାନ୍ତ ହୋଇ ଥରେ ସେ ଏକାନ୍ତ ମନସ୍ତାପରେ ଘର ଛାଡ଼ି କିଛିଦିନପାଇଁ ଆତ୍ମଗୋପନ କରିଥିଲେ ବୋଲି ମୁଁ ପରିବାରର ଅନ୍ୟମାନଙ୍କଠାରୁ ଶୁଣିଥିଲି । ଏହି ଠକଦଳ ଭଦ୍ରଲୋକ ସାଜି କଲିକତାରେ କିଛି ବ୍ୟବସାୟ

କାରବାରରେ ସଂପୃକ୍ତ ଥିଲେ । ଭାଇଙ୍କ ସହିତ କିଛିଦିନ କାରବାର କଲା ପରେ ସେମାନଙ୍କ ସହିତ ଭାଇଙ୍କର ଘନିଷ୍ଠତା ବେଶ୍ ଜମିଯାଇଥିଲା । କଲିକତାରେ କୁଆଡ଼େ ସେତେବେଳେ ଏ ପ୍ରକାର ଠକପ୍ରକୃତିର ଲୋକ ବହୁତ ଥିଲେ । କଲିକତା ସମ୍ବନ୍ଧରେ ବିଶେଷ ଅଭିଜ୍ଞତା ନଥିବା ଲୋକେ ସହଜରେ ଏମାନଙ୍କ ପାଲରେ ପଡ଼ି କ୍ଷତିଗ୍ରସ୍ତ ହେଉଥିଲେ । ସେମାନେ ପ୍ରଥମେ ଗୋଟିଏ ଲୋଭନୀୟ ଲାଭଜନକ ବ୍ୟବସାୟର ପରିକଳ୍ପନା କରି ଯୋଜନା ଆରମ୍ଭ କରିଥିଲେ ଏବଂ ଭାଇଙ୍କୁ ସେଥିରେ ଅଂଶୀଦାରରୂପେ ଗ୍ରହଣ କରିଥିଲେ । ଭାଇ ସେଥିରେ ପ୍ରାୟ ଚାଳିଶ ହଜାର ଟଙ୍କା ମୂଳଧନସ୍ୱରୂପ ଖଟାଇଥିଲେ । ମାତ୍ର ଏହା ଥିଲା ଏକ ପ୍ରବଞ୍ଚନାପୂର୍ଣ୍ଣ ଫିସାଦି ବ୍ୟବସାୟ । କିଛିଦିନ ପରେ କ୍ଷତି ହେଲା ବୋଲି ଦର୍ଶାଇ ଉଦ୍ୟୋକ୍ତାମାନେ ସମସ୍ତ ଟଙ୍କା ପଇସା ଆତ୍ମସାତ୍ କରି କୁଆଡ଼େ ପଳାଇ ଯାଇଥିଲେ । ଭାଇ ଆମର ମୁଣ୍ଡରେ ହାତ ଦେଇ ବସିରହିଲେ । ସେତେବେଳେ, ପ୍ରାୟ ଷାଠିଏ ବର୍ଷ ତଳେ, ଚାଳିଶ ହଜାର ଟଙ୍କାର ମୂଲ୍ୟ କେତେ ଥିଲା ତାହା ଅନୁମାନ କରାଯାଇପାରେ । ସେ ଏକପ୍ରକାର ପାଗଳ ହୋଇ ଘର ଛାଡ଼ି ପଳାଇଯାଇ ମେଦିନାପୁର ଜିଲ୍ଲାର ଜଣେ ଭଦ୍ରଲୋକଙ୍କ ପିଲାଙ୍କୁ ଟିଉସନ୍ କରି ତାଙ୍କ ଘରେ ରହିଥିଲେ । ଭାଇଙ୍କର ନିରୁଦ୍ଦିଷ୍ଟ ହେବା ଖବର ପାଇ ବାପା ସଙ୍ଗେ ସଙ୍ଗେ କଲିକତା ଯାଇଥିଲେ । ମାତ୍ର ସେଠାରୁ ସେ ଭାଇଙ୍କର କୌଣସି ସନ୍ଧାନ ପାଇପାରିଲେ ନାହିଁ । ମେଦିନୀପୁରରେ ଯେଉଁ ଭଦ୍ରଲୋକ ତାଙ୍କୁ ଆଶ୍ରୟ ଦେଇଥିଲେ, ସେ ଭାଇଙ୍କର ମାନସିକ ଅବସ୍ଥା ଜାଣିପାରି ତାଙ୍କ ପ୍ରତି ଅତ୍ୟନ୍ତ ସହାନୁଭୂତିଶୀଳ ହୋଇଥିଲେ ଏବଂ କୌଶଳକ୍ରମେ ବାପାଙ୍କର ଠିକଣା ହାସଲ କରି ବାପାଙ୍କ ନିକଟକୁ ଖଣ୍ଡିଏ ପତ୍ର ଲେଖିଥିଲେ । ପତ୍ର ପାଇବାକ୍ଷଣି ବାପା ସେଠାକୁ ଯାଇ ଭାଇଙ୍କୁ ଆଣି କଲିକତାରେ ପହଞ୍ଚାଇଥିଲେ । ଅକ୍ଲାନ୍ତ ପରିଶ୍ରମ ଓ ଅସହ୍ୟ କଷ୍ଟ ସ୍ୱୀକାର କରି ବାପା ଓ ଭାଇ ବିଗତ କ୍ଷତିକୁ ଭରଣା କରିପାରିଥିଲେ । ବ୍ୟବସାୟ ଆରମ୍ଭର ପ୍ରଥମାବସ୍ଥାରେ ଉପରୋକ୍ତ ଧକ୍କା ଫଳରେ ବଡ଼ଭାଇଙ୍କର ଅଣ୍ଟା ଭାଙ୍ଗିପଡ଼ିଥିଲା ବୋଲି ଲୋକଙ୍କ ମୁଖରୁ ମୁଁ ଶୁଣିଥିଲି ।

## ଅନୁଭୂତିର ପ୍ରଥମ ପ୍ରୟୋଗ ଓ ପରୀକ୍ଷା

ପରିବାର ମଧ୍ୟରେ ଘଟିଯାଇଥିବା ଉପରୋକ୍ତ ଘଟଣାଟି ଶୁଣିଲା ପରେ ମୋର ସେ ସଂପର୍କରେ ଯେଉଁ ଅନୁଭୂତି ହୋଇଥିଲା, ତାହା ପରବର୍ତ୍ତୀ ସମୟରେ ପ୍ରଶାସନିକ ନିଷ୍ପତ୍ତି ନେବାରେ ମୋର ଯଥେଷ୍ଟ ସହାୟକ ହୋଇଥିଲା । ୧୯୫୩ ମସିହାରେ ଅବସରପ୍ରାପ୍ତ ବିଚାରପତି ମାନ୍ୟବର ଫଜଲ ଅଲ୍ଲୀ ଥାଆନ୍ତି ଆମ ରାଜ୍ୟର ରାଜ୍ୟପାଳ ଏବଂ ମୁଁ ସ୍ୱରାଷ୍ଟ୍ର ବିଭାଗର ଉପମନ୍ତ୍ରୀ ଥିଲି । ସେତେବେଳେ ଡବ୍ଲ୍ୟୁ. ବେନ୍‌ସନ୍ (W. Benson) ନାମକ ଜଣେ ଆଙ୍ଗ୍ଲୋଇଣ୍ଡିଆନ୍ ପୁଲିସ୍ ବିଭାଗରେ ଡେପୁଟି ସୁପରିଣ୍ଟେଣ୍ଡେଣ୍ଟ ରୂପେ କାର୍ଯ୍ୟ କରୁଥିଲେ । ପୁଲିସ୍ ବିଭାଗର କାର୍ଯ୍ୟନିର୍ବାହ ନିମନ୍ତେ ସେତେବେଳେ କେତେକ ଜିପ୍ କିଣିବା ଆବଶ୍ୟକ ପଡ଼ିଲା । ସେ ସମୟରେ ଭାରତବର୍ଷରେ ଜିପ୍ ତିଆରି କାରଖାନା ନଥିଲା କିମ୍ବା ନୂଆ ଜିପ୍ ବଜାରରେ କିଣିବାକୁ ମିଳୁନଥିଲା । ଦ୍ୱିତୀୟ ମହାସମରରେ ବ୍ୟବହୃତ ହୋଇଥିବା ଜିପ୍‌ସବୁକୁ ସେକେଣ୍ଡହ୍ୟାଣ୍ଡ ଗାଡ଼ି ରୂପେ କିଣିବାପାଇଁ ପୂର୍ବଭାରତରେ କଲିକତାହିଁ ପ୍ରକୃଷ୍ଟ କ୍ଷେତ୍ର ଥିଲା । କଲିକତା ସହରରୁ ପୁରୁଣା (ସେକେଣ୍ଡହ୍ୟାଣ୍ଡ) ଜିପ୍ କିଣିବାପାଇଁ ମିଷ୍ଟର ବେନ୍‌ସନ୍‌ଙ୍କୁ ଦାୟିତ୍ୱ ଦିଆଯାଇଥିଲା । ଯେତୋଟି ଜିପ୍ କିଣିବାର ଆଦେଶ ଥିଲା ତା' କିଣିସାରି ମିଷ୍ଟର ବେନ୍‌ସନ୍ ସେଗୁଡ଼ିକୁ ସଡ଼କ ପଥରେ କଟକ ଅଣାଇଥିଲେ । ବାଟରେ କେତେ ଖଣ୍ଡ ଜିପ୍ ଖରାପ ହୋଇ ପଡ଼ିରହିଥିଲା ; ପରେ ସେଗୁଡ଼ିକ ସଜଡ଼ା ହୋଇ କଟକ ଅଣାଯାଇଥିଲା । ଏ ଘଟଣା ଘଟିବା ପରେ କୌଣସି ମାଧ୍ୟମରେ ପ୍ରଚାର ହୋଇଯାଇଥିଲା ଯେ ବେନ୍‌ସନ୍ ସାହେବ ଅଳ୍ପ ଦାମ୍ ଦେଇ ଖରାପ ଜିପ୍‌ସବୁ କିଣି ସରକାରଙ୍କୁ ଠକାଇ ପ୍ରକୃତ କିଣାଦାମ୍‌ଠାରୁ ଅଧିକ ଟଙ୍କା ମାରି ନେଇଛନ୍ତି । ସେତେବେଳର ଦୁର୍ନୀତି ନିବାରଣ ବିଭାଗ ଉପରୋକ୍ତ ଘଟଣାର ଅନୁସନ୍ଧାନ କରି ପ୍ରତିକୂଳ ରିପୋର୍ଟ ଦେଇଥିଲେ । ବିଭାଗୀୟ କାର୍ଯ୍ୟାନୁଷ୍ଠାନ ପର୍ଯ୍ୟାୟକ୍ରମେ ଆରମ୍ଭ ହୋଇ ବେନ୍‌ସନ୍‌ଙ୍କୁ

ଚାକିରିରୁ ଅନ୍ତର କରିବାର ସୁପାରିଶ ମୋ ପାଖକୁ ଆସିଲା । ମିଷ୍ଟର ବେନ୍‌ସନ୍‌ଙ୍କ କୈଫିୟତ୍‌ରୁ ଉପଲବ୍ଧି କରିପାରିଥିଲି ଯେ ଦଲାଲ୍‌ମାନଙ୍କ ହାବୁଡ଼ରେ ପଡ଼ି ସେ ନିଜେ ଜିପ୍ କିଣା କାରବାରରେ କିଛିମାତ୍ରାରେ ଠକିଯାଇଛନ୍ତି, ସେଇଥିପାଇଁ କେତେକ ଗାଡ଼ି ଖରାପ ପଡ଼ିଥିଲା ଏବଂ ସେଥିରେ ଅଧିକ କିଛି ଖର୍ଚ୍ଚ କରିବା ଦରକାର ପଡ଼ିଥିଲା । ମୋର ବଡ଼ଭାଇ କଲିକତାରେ କିପରି ଠକମାନଙ୍କ ହାବୁଡ଼ରେ ପଡ଼ି ସର୍ବସ୍ୱାନ୍ତ ହୋଇଥିଲେ ଏବଂ ସେହି ଘଟଣାରୁ ମୁଁ ଯେଉଁ ଅନୁଭୂତି ଲାଭ କରିଥିଲି, ଉକ୍ତ ଘଟଣାଟିର ତଥ୍ୟାବଳୀକୁ ତଉଲି ସେହି ଦୃଷ୍ଟିକୋଣରୁ ମୁଁ ଏ ବିଷୟଟିକୁ ବିଚାରକୁ ନେଇଥିଲି । ସେ ଦୃଷ୍ଟାନ୍ତଟିକୁ ଉଦାହରଣସ୍ୱରୂପ ଫାଇଲ୍‌ରେ ଉଲ୍ଲେଖ କରିଥିଲି । ସଂପୃକ୍ତ ଅଫିସରଙ୍କୁ ଚାକିରିରୁ ଅନ୍ତର କରିବା ପ୍ରସ୍ତାବରେ ମୁଁ ଏକମତ ହୋଇନଥିଲି । କିଛିଦିନ ପର୍ଯ୍ୟନ୍ତ ତାଙ୍କର ଦରମାବୃଦ୍ଧି ବନ୍ଦ କରି ରଖିବାକୁ ଆଦେଶ ଦେଇଥିଲି । ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ସେଥିରେ ନିଜର ସମ୍ମତି ପ୍ରଦାନ କରିଥିଲେ । ତା'ପରେ ରାଜ୍ୟପାଳ ଶ୍ରୀ ଫଜଲ ଅଲ୍ଲୀଙ୍କ ପାଖକୁ ସେ ଫାଇଲ୍ ଯାଇଥିଲା । ସେ ମଧ୍ୟ ସେଥିରେ ନିଜର ସମ୍ମତି ଦେଇଥିଲେ । ସେ ଥିଲେ ଜଣେ ଅବସରପ୍ରାପ୍ତ ଅଭିଜ୍ଞ ବିଚାରପତି । ତାଙ୍କ ସହିତ ତା'ପରେ ମୋର ଯେତେବେଳେ ଦେଖାହେଲା ସେତେବେଳେ ସେ ଉକ୍ତ ବିଷୟଟି ମନେପକାଇ ମୋର ଏ ଘଟଣା ସଂପର୍କୀୟ ନୋଟ୍ ତଥା ନିଷ୍ପତ୍ତି ବିବେକାନୁମୋଦିତ ଓ ନ୍ୟାୟସଙ୍ଗତ ହୋଇଥିଲା ବୋଲି କହି ପ୍ରଶଂସା କରିଥିଲେ ।

## ଆଦ୍ୟ କଥାର ଖିଅ

କଲିକତାରେ ମୋର ଭାଇ ୧୨୮ ନମ୍ବର ହାଓଡ଼ା ରୋଡ୍, ସାଲ୍‌କିଆରେ ଗୋଟିଏ ଦୋତାଲା ଘରେ ରହୁଥିଲେ । ଓଡ଼ିଶାର ବହୁ ବିଶିଷ୍ଟ ବ୍ୟକ୍ତି, ରାଜନୈତିକ ନେତା, ସମାଜସେବୀ, ଶିକ୍ଷାବିତ୍ ତଥା ବିପ୍ଲବୀ ସେଠାକୁ ଆସୁଥିଲେ । ସେଭଳି ଅତିଥିମାନଙ୍କର ଚର୍ଚ୍ଚା କରିବାକୁ ମୋର ଭାଇ ବିଶେଷ ଆଗ୍ରହ ପ୍ରକାଶ କରୁଥିଲେ । ସେମାନଙ୍କର ଆଗମନ ତଥା ଉପସ୍ଥିତିରେ ସେ ଖୁବ୍ ଆନନ୍ଦିତ ହେଉଥିଲେ ଏବଂ ନିଜକୁ ଗୌରବାନ୍ୱିତ ମନେକରୁଥିଲେ । ସେତେବେଳେ କଲିକତାରେ ଆହୁରି ଅନେକ ଓଡ଼ିଆ ବ୍ୟବସାୟୀ ଓ ବଡ଼ ବଡ଼ କଣ୍ଟ୍ରାକ୍ଟର ରହୁଥିଲେ । ମାତ୍ର ରାଜନୈତିକ ନେତା ଓ ବିପ୍ଲବୀମାନଙ୍କୁ ଅତିଥିଭାବରେ ଗ୍ରହଣ କରି ରହିବାକୁ ସ୍ଥାନ ଦେବା ନିମନ୍ତେ କେହି ବିଶେଷ ଆଗ୍ରହୀ ହେଉନଥିଲେ । ତା' ବ୍ୟତୀତ ଆମ ରହିବା ସ୍ଥାନଟି ହାଓଡ଼ା ଷ୍ଟେସନ୍‌ଠାରୁ ଅଳ୍ପ ଦୂରରେ ଅବସ୍ଥିତ ଥିବାରୁ ସେଠାକୁ ଯା'ଆସ କରିବା ସହଜ ହେଉଥିଲା । ସେତେବେଳେ ବିହାର ଓ ଓଡ଼ିଶା ମିଶି ଗୋଟିଏ ପ୍ରଦେଶ ରୂପେ ପରିଗଣିତ ହେଉଥିଲା; ପାଟଣା ଥିଲା ତା'ର ରାଜଧାନୀ । ପ୍ରଦେଶର ସଚିବାଳୟ ସମେତ ଶିକ୍ଷା, ସ୍ୱାସ୍ଥ୍ୟ ଓ ବିଚାର ବିଭାଗ ପ୍ରଭୃତିର ସମସ୍ତ ମୁଖ୍ୟ ଅଫିସ୍ ପାଟଣାଠାରେ ଅବସ୍ଥିତ ଥିଲା । ଓଡ଼ିଶାରୁ ପାଟଣା ଯିବାକୁ ହେଲେ ହାଓଡ଼ା ଷ୍ଟେସନ ବାଟ ଦେଇ ଯିବାକୁ ପଡୁଥିଲା । ମୋ ଭାଇଙ୍କର ରହିବାସ୍ଥଳୀ ହାଓଡ଼ା ଷ୍ଟେସନର ସନ୍ନିକଟ ହୋଇଥିବାରୁ ଅନେକ ସମୟରେ ପାଟଣା ଯାଉଥିବା କେତେକ ବିଶିଷ୍ଟ ବ୍ୟକ୍ତି, ସରକାରୀ କର୍ମଚାରୀ, ଆଇନ-ବ୍ୟବସାୟୀ ତଥା ଛାତ୍ର ଆମ ବସାକୁ ଆସି ସେଠାରେ ଦିନେ ଓଳିଏ ରହି, କଲିକତାରେ ଥିବା କାମ ସାରି ପାଟଣା ଯାଉଥିଲେ । ଶ୍ରୀ ବିଶ୍ୱନାଥ ଦାସ, ଶ୍ରୀ ହରେକୃଷ୍ଣ ମହତାବଙ୍କ ଭଳି ରାଜନୈତିକ ନେତା, ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ପରି ସମାଜସେବୀ, ଶ୍ରୀ ରାଜକିଶୋର ଦାସଙ୍କ ଭଳି ଆଇନଜ୍ଞ ଓ ଶ୍ରୀ ବୈଷ୍ଣବ ଚରଣ ପଟ୍ଟନାୟକଙ୍କ ପରି ବିପ୍ଲବୀନେତା ସମୟ ସମୟରେ ସେଠାରେ ରହୁଥିଲେ । ଶ୍ରୀ ପବିତ୍ରମୋହନ ପ୍ରଧାନ ମଧ୍ୟ ସେଠାକୁ ଆସୁଥିଲେ । ୧୯୪୫ ମସିହାରେ ପବିତ୍ରବାବୁଙ୍କ ବିରୁଦ୍ଧରେ ତାଳଚେର ଦ[illegible]ରରୁ ଓ ବୈଷ୍ଣବ ବାବୁଙ୍କ ନାମରେ ଢେଙ୍କାନାଳ ଦରବାରରୁ ଅପରାଧୀ ସମର୍ପଣ ପରଓ୍ୱାନା ଓ [illegible]ରି ୱାରେଣ୍ଟ ଅନ୍ୟାନ୍ୟ ସରକାରଙ୍କ ପାଖକୁ ପଠାଯାଇଥିଲା । ସେଥିରେ ଆଦେଶ ଥିଲା ଯେ [illegible]ଙ୍କୁ ଦେଖିଲାକ୍ଷଣି ସଂପୃକ୍ତ ସରକାର ଗିରଫ କରି ଆଦେଶ ଜାରି କରିଥିବା ସରକାରଙ୍କ

ପାଖରେ ଆସାମୀକୁ ଅର୍ପଣ କରିବେ । ମୁଁ ସେତେବେଳେ କଲିକତାରେ ଭାଇଙ୍କ ପାଖରେ ରହି ଆଇନ କଲେଜରେ ପଢୁଥାଏ । ଉପରୋକ୍ତ ବିପ୍ଳବୀ ଦୁଇଜଣ କଲିକତା ସହରରେ ଆତ୍ମଗୋପନ କରିଥିଲେ ଏବଂ ବେଳେ ବେଳେ ମୋ ପାଖକୁ ଆସୁଥିଲେ ।

ଏମାନଙ୍କ ସମ୍ବନ୍ଧରେ ଗୋଟିଏ କୌତୂହଳପୂର୍ଣ୍ଣ ଘଟଣା ମୋର ମନେପଡ଼େ । ଏକଦା ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଆମ ବସାରେ ରହୁଥାଆନ୍ତି । ଏହି ସମୟରେ ଢେଙ୍କାନାଳର ବିପ୍ଳବୀ ନେତା ଶ୍ରୀ ବୈଷ୍ଣବ ପଟ୍ଟନାୟକ ମୋ ପାଖକୁ ଆସି ଆମ ବସାରେ ରହିଲେ । ସନ୍ଧ୍ୟା ସମୟରେ ଲକ୍ଷ୍ମୀନାରାୟଣ ବାବୁ ମୋ ରହିବା କୋଠରି ଆଡ଼କୁ ଆସି ବୈଷ୍ଣବବାବୁଙ୍କୁ ଦେଖିପକାଇ ଅତିଶୟ ବିସ୍ମିତ ହୋଇ ପଡ଼ିଥିଲେ । ସଙ୍ଗେ ସଙ୍ଗେ ମୋତେ ଡାକି ଯାହାଙ୍କ ନାମରେ ଗିରଫଦାରି ହୁଲିଆ ଜାରି ହୋଇଛି ସେଭଳି ଜଣେ ଆତ୍ମଗୋପନକାରୀ ବିଦ୍ରୋହୀ କିପରି ଆମ ଘରେ ଅଛନ୍ତି ବୋଲି ପ୍ରଶ୍ନ କରିଥିଲେ । ବୈଷ୍ଣବବାବୁ ଅତି ଅସହାୟ ଅବସ୍ଥାରେ କଲିକତାରେ ଅଛନ୍ତି ଏବଂ ସମୟ ଅସମୟରେ ସେ ମୋ ପାଖକୁ ଆସନ୍ତି ବୋଲି ମୁଁ ତାଙ୍କୁ ବୁଝାଇ କହିଥିଲି । ମାତ୍ର କୌଣସିମତେ ସେ ମୋ କଥା ବୁଝିବା ଅବସ୍ଥାରେ ନଥିଲେ । ମୋତେ ଓଲଟି କହିଲେ, ଯଦି ବୈଷ୍ଣବବାବୁ ତତ୍‌କ୍ଷଣାତ୍ ସେ ସ୍ଥାନ ପରିତ୍ୟାଗ ନ କରନ୍ତି ତେବେ ସେ ନିଜେ ସେଠାରୁ ଚାଲିଯିବେ । ମୁଁ ତାଙ୍କୁ ବିନୟ ସହକାରେ କହିଲି, ''ଜଣେ ବିପ୍ଳବୀ ଦେଶସେବକ ଯିଏ କି ଅତି ଦୁସ୍ଥ ତଥା ଅସହାୟ ଅବସ୍ଥାରେ ପଡ଼ିଛନ୍ତି, ତାଙ୍କୁ ହଠାତ୍ ରାତିରେ ଏ ସ୍ଥାନ ଛାଡ଼ି ଚାଲିଯିବାପାଇଁ କହିବା ନିହାତି ଅଶୋଭନୀୟ କଥା ହେବ ।'' ମାତ୍ର ଲକ୍ଷ୍ମୀନାରାୟଣବାବୁ ଆଦୌ ବୁଝିଲେନାହିଁ । ସେ ନିଜେ ତତ୍‌କ୍ଷଣାତ୍ ତାଙ୍କ ବିଛଣାପତ୍ର ଓ ସୁଟ୍‌କେଶ୍ ଇତ୍ୟାଦି ନିଜ ହାତରେ ଧରି ସେଇ ରାତିରେ ହାଓଡ଼ା ଷ୍ଟେସନ ଅଭିମୁଖେ ବାହାରି ଚାଲିଗଲେ । ତାଙ୍କର ଭୟ ହେଲା ଯେ କାଳେ ବୈଷ୍ଣବବାବୁ ସେଠାରେ ରହୁଥିବା କଥା ସନ୍ଧାନ ପାଇଗଲେ ତାଙ୍କ ସମେତ ସେ ଘରେ ରହୁଥିବା ସମସ୍ତ ବ୍ୟକ୍ତିଙ୍କୁ ପୁଲିସ୍ ଗିରଫ କରିନେବ । ସେତେବେଳେ ଭାଇ ଘରେ ନଥିଲେ । ଲକ୍ଷ୍ମୀନାରାୟଣବାବୁଙ୍କର ଏତାଦୃଶ ଆଚରଣରେ ଆମେ ସମସ୍ତେ ବିସ୍ମିତ ତଥା ଦୁଃଖିତ ହୋଇଥିଲୁ । କିନ୍ତୁ ଏ ପ୍ରକାର ପରିସ୍ଥିତିରେ କାହାର କିଛି କରିବାର ନଥିଲା । ଓଡ଼ିଶା ବିଧାନସଭାରେ ୧୯୫୦ ମସିହା ବଜେଟ୍ ଅଧିବେଶନ ସମୟରେ ଓଡ଼ିଶା ସାଧାରଣ-ଶୃଙ୍ଖଳା-ରକ୍ଷା ବିଲ୍ (The Orissa Maintenance of Public Order Bill, 1950) ଆଗତ କରାଯାଇଥାଏ । ରାଜ୍ୟରେ ଆଭ୍ୟନ୍ତରୀଣ ନିରାପତ୍ତା, ଶାନ୍ତି ଓ ଶୃଙ୍ଖଳା ରକ୍ଷା କରିବା ଉଦ୍ଦେଶ୍ୟରେ ଏହି ବିଲ୍ ଅଣାଯାଇଥାଏ । ପ୍ରସ୍ତାବିତ ଆଇନରେ ସମାଜବିରୋଧୀ ଲୋକଙ୍କର କାର୍ଯ୍ୟକୁ ଆୟତ୍ତ କରିବା ଉଦ୍ଦେଶ୍ୟରେ ସଭାସମିତି, ଶୋଭାଯାତ୍ରା ଓ ସର୍ବସାଧାରଣଙ୍କ ମଧ୍ୟରେ ବିଶୃଙ୍ଖଳ ଆଚରଣ ସମ୍ବନ୍ଧରେ କେତେକ କଟକଣାର ବ୍ୟବସ୍ଥା ଥିଲା । ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଏସବୁ ବ୍ୟବସ୍ଥାର କଟୁ ସମାଲୋଚନା କରି ସରକାରଙ୍କୁ ଭୀରୁ ଓ କାପୁରୁଷ ଆଖ୍ୟା ଦେଇ ତିରସ୍କାର କରିଥିଲେ । ସେ ପ୍ରଶ୍ନ ଉଠାଇଥିଲେ ଯେ ସରକାର 'ଲୋକପ୍ରିୟ' ବୋଲି ଡିଣ୍ଡିମ ପିଟୁଥିବାବେଳେ ଏତେ ଭୟାଳୁ ହୋଇ ଲୋକଙ୍କର ସ୍ୱାଧୀନତା ଉପରେ ଆଞ୍ଚ ଆସିବାଭଳି ଅବାଞ୍ଛନୀୟ ହସ୍ତକ୍ଷେପ କାହିଁକି କରୁଛନ୍ତି ? ମୁଁ ସେତେବେଳକୁ ବ୍ୟବସ୍ଥା ସଭାର ପ୍ରଥମଥର ସଭ୍ୟ ହୋଇଥାଏ । ଶ୍ରୀ ସାହୁଙ୍କର ଏତାଦୃଶ ଆକ୍ଷେପକୁ ଖଣ୍ଡନ କରି କଲିକତାରେ ଆମ ଘରେ ବିପ୍ଳବୀ ବୈଷ୍ଣବବାବୁଙ୍କୁ ଦେଖି ଶ୍ରୀ ସାହୁ କିପରି ବିଛଣାପତ୍ର ଧରି ସେଠାରୁ ପଳାୟନ କରିଥିଲେ ସେହି ବୀରତ୍ୱ କାହାଣୀଟିକୁ ମୁଁ ସ୍ମରଣ କରାଇ ଦେଇଥିଲି । (ଓଡ଼ିଶା ବିଧାନସଭା ବିବରଣୀ, ତା.୨୭.୩.୧୯୫୦) । ବିତର୍କ ପ୍ରସଙ୍ଗରେ ଏହା ବେଶ୍ କୌତୂହଳ ସୃଷ୍ଟି କରିଥିଲା ।

କଲିକତାରେ ମିଶିବାର ବହୁପୂର୍ବରୁ ପ୍ରତିଷ୍ଠିତ ସମାଜସେବୀ, ସଂଗଠକ ଲକ୍ଷ୍ମୀନାରାୟଣବାବୁଙ୍କୁ ମୁଁ ଖୁବ୍ ସମ୍ମାନ କରୁଥିଲି । ସେ ଭାରତ ସେବକ ସମିତି (ବର୍ତ୍ତମାନର ପରିବର୍ତ୍ତିତ ନାମ ହିନ୍ଦ୍ ସେବକ ସମାଜ)ର ଜଣେ ଆଜୀବନ ସଭ୍ୟ ଥିଲେ । ସମାଜସେବାରେ ସେ ବେଶ୍ ସୁଖ୍ୟାତି ଅର୍ଜନ କରିଥିଲେ । ଯେଉଁଠି ଯେତେବେଳେ ଧୋଇ, ମରୁଡ଼ି, ଦୁର୍ଭିକ୍ଷ ପ୍ରଭୃତି ଦୈବୀ ଦୁର୍ବିପାକ ଘଟେ, ସେଠାରେ

ଲୋକମାନଙ୍କୁ ସାହାଯ୍ୟ ଦେବା କାର୍ଯ୍ୟରେ ସେ ନିଜକୁ ଉତ୍ସର୍ଗ କରୁଥିଲେ । ସମାଜ ସେବାରେ ତାଙ୍କର ତ୍ୟାଗ ଅସୀମ, ଯେଉଁଥିପାଇଁ ସେ ଖୁବ୍ ଜନପ୍ରିୟ ଥିଲେ । କିନ୍ତୁ ମୁଁ ଲକ୍ଷ୍ୟ କରିଥିଲି ଯେ ପରାଧୀନ ଭାରତରେ ମଧ ରାଜଦ୍ରୋହ ବା ଅନ୍ୟ କୌଣସି ବିପ୍ଲବାତ୍ମକ କାର୍ଯ୍ୟରେ ତାଙ୍କର ବିଶ୍ୱାସ ନ ଥିଲା, ବରଂ ଥିଲା ବିତୃଷ୍ଣା ।

ସଂଗଠନ ଓ ସାଂଗଠନିକ କାର୍ଯ୍ୟ କ'ଣ ସେ ବିଷୟରେ ମୁଁ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କଠାରୁ ଶିକ୍ଷା ଅର୍ଜନ କରିଥିଲି । ସାଂସ୍କୃତିକ ଅନୁଷ୍ଠାନ, ସଂଘ, ସମିତି ଓ ପାଠାଗାର ପ୍ରଭୃତି ସଂସ୍ଥା ଗଢ଼ିବାପାଇଁ ସେ ଯୁବକମାନଙ୍କୁ ବିଶେଷ ଭାବରେ ଉତ୍ସାହିତ କରୁଥିଲେ । ସାଂସ୍କୃତିକ ଓ ସାମାଜିକ ଅନୁଷ୍ଠାନଦ୍ୱାରା କିପରି ଜାତୀୟ ଜୀବନ ଗଢ଼ାଯାଇପାରିବ ସେ ବିଷୟରେ ସେ ଆମ୍ଭମାନଙ୍କୁ ଅନେକବାର ଉଦ୍‌ବୋଧନ ମାଧ୍ୟମରେ ବୁଝାଇଥିଲେ । ରେଭେନ୍‌ସା କଲେଜରେ ନାମ ଲେଖାଇବାର କିଛିଦିନ ପରେ ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାନ୍ତି ନାମକ ଆଉ ଜଣେ ଛାତ୍ରଙ୍କ ଘରେ ତାଙ୍କ ସହ ଦେଖାହୋଇଥିଲା । ଆହୁରି ଅନେକ ପିଲା ମଧ ସେଠାରେ ଉପସ୍ଥିତ ଥିଲେ । ଲକ୍ଷ୍ମୀନାରାୟଣବାବୁ ଖୁବ୍ ଖାଇବା ପ୍ରିୟ ଥିଲେ । ସଙ୍ଗେ ସଙ୍ଗେ ପୂର୍ଣ୍ଣବାବୁଙ୍କୁ ବରାଦ ଦିଆଗଲା ରସଗୋଲା ଆଣିବା ପାଇଁ ଏବଂ ହାଣ୍ଡିଏ ରସଗୋଲା ଅଣାଯାଇଥିଲା । ସମସ୍ତେ ମିଶି ଖାଇଲୁ । ଲକ୍ଷ୍ମୀନାରାୟଣବାବୁ ଯେପରି ଖାଆନ୍ତି ସେହିପରି ଖୁଆନ୍ତି ମଧ । ଗୋଟିଏ ସୋସାଇଟି ଗଠନ କରି ସେଠାରେ ମଝିରେ ମଝିରେ ଏକତ୍ରିତ ହୋଇ ମଉଜମଜଲିସ୍ ତଥା ଚା' ଜଳଖିଆ ଖାଇବା ସହିତ ନାନା ବିଷୟ ଆଲୋଚନା କରିବାପାଇଁ ସେ ଆମ୍ଭମାନଙ୍କୁ ପରାମର୍ଶ ଦେଇଥିଲେ । ସୋସାଇଟିର ନାମକରଣ ବିଷୟରେ ଆମେ କେତକ ସୂଚନା ଦେଇଥିଲୁ; କିନ୍ତୁ ସେଗୁଡ଼ିକ ତାଙ୍କ ମନକୁ ପାଇଲାନାହିଁ । ସେ କହିଥିଲେ ଯେ ସୋସାଇଟିର ନାମକରଣ ଏପରି ହେବା ଉଚିତ ଯାହା ଶୁଣିଲାକ୍ଷଣି ଯୁବକମାନେ ସେଥିପ୍ରତି ଆକୃଷ୍ଟ ହେବେ । ଶେଷରେ ତାଙ୍କରି ପରାମର୍ଶ ଅନୁସାରେ ସୋସାଇଟିର ନାମ ' VAGABOND' ରଖାଯାଇଥିଲା । ଚୌଧୁରୀବଜାର କଟକ ମ୍ୟୁନିସିପାଲିଟି ହତା ଗେଟ୍ ସାମ୍ନାରେ ଗୋଟିଏ ଘର ଭଡ଼ା ନିଆଯାଇଥିଲା ଏବଂ ସେଇଠାରେ 'ଭାଗାବଣ୍ଡ' ସୋସାଇଟିର ନାମଫଳକଟି ମାରିଦିଆଯାଇଥିଲା । ସମୟସମୟରେ ଆମେମାନେ ସେଠାରେ ଏକତ୍ରିତ ହେଉଥିଲୁ । ଲକ୍ଷ୍ମୀନାରାୟଣବାବୁ ମଧ ତାଙ୍କର ଅବସର ସମୟରେ ସେଠାକୁ ଆସୁଥିଲେ । ଚା' ଜଳଖିଆ ମଉଜମଜଲିସ୍ ଚାଲେ । ତା' ଭିତରେ ଅନେକ କଥା ଆଲୋଚନା ହେଉଥିଲା । ପୂର୍ଣ୍ଣବାବୁ ଜଣେ ଉତ୍ସାହୀ ଯୁବକ ଥିଲେ ଏବଂ ସାଧାରଣ କାର୍ଯ୍ୟରେ ତାଙ୍କର ଖୁବ୍ ଆଗ୍ରହ ତଥା ଉତ୍ସାହ ବିଶେଷ ଭାବରେ ପରିଲକ୍ଷିତ ହେଉଥିଲା । ସେ ସ୍ୱର୍ଗତ କର୍ଣ୍ଣେଲ୍ ସଂଗ୍ରାମ କେଶରୀ ରାୟଙ୍କ ଭଉଣୀଙ୍କୁ ବିବାହ କରିଥିଲେ । ସେ କଟକରୁ କଲିକତା ଚାଲିଗଲା ପରେ 'ଭାଗାବଣ୍ଡ' ସୋସାଇଟିର କାର୍ଯ୍ୟ ଏକପ୍ରକାର ବନ୍ଦହୋଇଯାଇଥିଲା । କଲିକତାରେ ତାଙ୍କ ରହଣିକାଳ ମଧରେ ଏପରି ଏକ ମଜା କଥା ଅଛି ଯାହାକୁ କି ଏଠାରେ ମୁଁ ଉଲ୍ଲେଖ ନକରି ରହିପାରୁନାହିଁ । କଲିକତାରେ ବ୍ୟବସାୟ କରିବା ଉଦ୍ଦେଶ୍ୟରେ ଗଣେଶଚନ୍ଦ୍ର ଆଭେନିଉରେ ଜଣେ ମାରୱାଡ଼ି ଭଦ୍ରଲୋକଙ୍କ ଘର ସେ ଭଡ଼ାରେ ନେଇଥିଲେ । ମୁଁ କଲିକତାରେ ଥିବା ସମୟରେ ଦିନେ ସେ ମୋତେ ଓ ଆଉ କେତେକ ଓଡ଼ିଆ ପିଲାଙ୍କୁ ତାଙ୍କ ବସାକୁ ଖାଇବାକୁ ଡାକିଥିଲେ । ଖାଇଲା ସମୟରେ ତାଙ୍କୁ ଗୋଟିଏ ବିଷୟରେ ସାହାଯ୍ୟ କରିବାପାଇଁ ଆମ୍ଭମାନଙ୍କୁ ଅନୁରୋଧ କରିଥିଲେ । ବଡ଼ ଉତ୍କଣ୍ଠିତ ହୋଇ ତାଙ୍କର କି ପ୍ରକାର ସାହାଯ୍ୟ ଆବଶ୍ୟକ ଆମେମାନେ ଜାଣିବାକୁ ଚାହିଁଥିଲୁ । ସେ ଏକ ନାଟକୀୟ ଭଙ୍ଗୀରେ କହିଥିଲେ, 'ଠେଙ୍ଗା ବାଡ଼ିର ସାହାଯ୍ୟ' । ଘରେ ସାଇତି ରଖିଥିବା କେତେକ ଠେଙ୍ଗାବାଡ଼ି ମଧ ସେ ଆମମାନଙ୍କୁ ଦେଖାଇଥିଲେ । ମାରୱାଡ଼ି ଘରବାଲା ସହିତ ତାଙ୍କର ଲଢ଼େଇ ହେବ, ସେଥିରେ ଆମମାନଙ୍କର ସାହାଯ୍ୟ ଦରକାର । କଥାଟି ହେଲା, ମାରୱାଡ଼ି ଭଦ୍ରଲୋକଜଣକ ତାଙ୍କୁ ଘର ଭଡ଼ା ଦେଲାବେଳେ ଏକ ସର୍ତ୍ତ ରଖିଥିଲେ ଯେ ସେ ଘରେ ମାଛ ମାଂସ ଇତ୍ୟାଦି ଆମିଷ ଖାଦ୍ୟ ରନ୍ଧାହେବନାହିଁ । କଲିକତାରେ ଘର ମିଳିବା ତ ମୁସ୍କିଲ୍ ବ୍ୟାପାର, ତେଣୁ ସେ ପରିସ୍ଥିତିରେ ପୂର୍ଣ୍ଣବାବୁ ନିଜକୁ ଜଣେ

ନିରାମିଷାଶୀ ନୈଷ୍ଠିକ କରଣବୈଷ୍ଣବ ବୋଲି ଅଭିନୟ ଆରମ୍ଭ କରିଦେଇଥିଲେ । ଏପରିକି ମାରୱାଡ଼ି ଭଦ୍ରଲୋକ ଯେତେବେଳେ ମାଛ ମାଂସ କଥା କହୁଥିଲେ ସେତେବେଳେ ପୂର୍ଣ୍ଣବାବୁ କାନରେ ହାତ ଦେଇ 'ରାମ ରାମ', 'କୃଷ୍ଣ କୃଷ୍ଣ' ନାମ ଉଚ୍ଚାରଣ କରୁଥିଲେ । ସେଥିରେ ମାରୱାଡ଼ି ଭଦ୍ରଲୋକଜଣକ ବିଶେଷ ଭାବରେ ସନ୍ତୁଷ୍ଟ ହୋଇ ଘରଟିକୁ ତାଙ୍କୁ ଭଡ଼ାରେ ଦେଇଥିଲେ । ଘରେ ରହିଗଲା ପରେ ପୂର୍ଣ୍ଣବାବୁଙ୍କର ପ୍ରତିଦିନ ଚାଲିଲା କୁକୁଡ଼ା କଟା ତଥା ମାଛମାଂସର ଲୀଳାଖେଳା । କୌଣସି ପ୍ରକାରେ ଘରବାଲା ଏ ଖବର ପାଇଗଲେ । ଫଳରେ ଘରବାଲା କେତେଥର ପୂର୍ଣ୍ଣବାବୁଙ୍କୁ ଘର ଛାଡ଼ି ଚାଲିଯିବାକୁ କହିବାପାଇଁ ଆସି କୁକୁଡ଼ା ତରକାରି ରନ୍ଧା ଗନ୍ଧରେ ବିଚାରା ଘର ଭିତରକୁ ପଶିନପାରି ଫେରି ଯାଉଥିଲେ । ଶେଷରେ ଘର ଛାଡ଼ି ଚାଲିଯିବାପାଇଁ ସେ ଓକିଲ ନୋଟିସ୍ ଜାରି କରାଇଥିଲେ । ମାତ୍ର ପୂର୍ଣ୍ଣବାବୁଙ୍କର ସେଥିପ୍ରତି ଖାତିର ନଥିଲା । ଦରକାର ପଡ଼ିଲେ ସେ ଲଢ଼େଇ କରିବାକୁ ପ୍ରସ୍ତୁତ ବୋଲି ଆମମାନଙ୍କୁ କହିଥିଲେ । ଏ ପ୍ରକାର କାମ ନକରିବାପାଇଁ ଆମେମାନେ ତାଙ୍କୁ ପରାମର୍ଶ ଦେଇଥିଲୁ । ସେ ଅବଶ୍ୟ ଆମମାନଙ୍କ ପରାମର୍ଶ ଗ୍ରହଣକରିଥିଲେ; ମାତ୍ର ଘରବାଲା ମକଦ୍ଦମା କରି ତାଙ୍କୁ ସେ ଘରୁ ବାହାରକରିଦେଇଥିଲେ । ବିଧିର ବିଧାନ ବଡ଼ ବିଚିତ୍ର ! ସେହି ପୂର୍ଣ୍ଣବାବୁ ବର୍ତ୍ତମାନ ଆଉ ନାହାନ୍ତି । ଇହଧାମରେ ନାହାନ୍ତି ବୋଲି କହିବା ଠିକ୍ ହେବନାହିଁ – ମାତ୍ର ସେ ଅନ୍ତର୍ଦ୍ଧାନ । ବେଳେ ବେଳେ ଖବର ମିଳେ ଯେ ସେ ଭାରତବର୍ଷର କୌଣସି ନା କୌଣସି ତୀର୍ଥକ୍ଷେତ୍ରରେ ସନ୍ନ୍ୟାସୀ ବେଶରେ ବୁଲୁଛନ୍ତି । ମାତ୍ର ଆଜିପର୍ଯ୍ୟନ୍ତ ତାଙ୍କର ପରିବାରବର୍ଗ ତାଙ୍କ ସମ୍ବନ୍ଧରେ କୌଣସି ନିର୍ଦ୍ଦିଷ୍ଟ ଖବର ପାଇପାରିନାହାନ୍ତି ।

ମୋର ବଂଶବୃତ୍ତି ତଥା ପୂର୍ବାଭାସ ପ୍ରସଙ୍ଗରେ ସ୍ମୃତିର କେତେକ ଖିଅଧରି ମନରେ ରେଖାପାତ କରିଥିବା କେତେକ ବ୍ୟକ୍ତି ଓ ଘଟଣା ସମ୍ପର୍କରେ ଆଲୋଚନା କରିଗଲିଣି । ଏବେ ପୁନଶ୍ଚ ପିଲାଦିନର ଗ୍ରାମ୍ୟଜୀବନକୁ ଫେରି ସେଠାରୁ ପୁଣି ବାହାରିବାକୁ ହେବ । ମୋର ଜନ୍ମସ୍ଥାନ ମୁକୁନ୍ଦପୁର ଗ୍ରାମରେ କୌଣସି ବିଦ୍ୟାଳୟ ନଥିଲା । ପଡ଼ୋଶୀ ଗ୍ରାମ ଝିଙ୍କିରିଆରେ ଗୋଟିଏ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଥିଲା । ସେଇଠାରେହିଁ ମୋର ବାଲ୍ୟଶିକ୍ଷା ଆରମ୍ଭ ହୋଇଥିଲା । ଉକ୍ତ ବିଦ୍ୟାଳୟଟିରେ ସେତେବେଳେ ଚାରିଜଣ ଶିକ୍ଷକ ଥିଲେ । ସେମାନଙ୍କ ମଧ୍ୟରୁ ଦୁଇଜଣଙ୍କର ନାମ ଏବେ ସୁଦ୍ଧା ମୋର ମନେଅଛି । ସେମାନେ ହେଲେ ଶ୍ରୀ ପ୍ରହ୍ଲାଦ ପତି ଓ ଶ୍ରୀ ଦୀନବନ୍ଧୁ ସେନାପତି । ନଟବରବାବୁ ନାମକ ଆଉ ଜଣେ ଶିକ୍ଷକ ଆମ ଘରେ ରହି ମୋତେ ପଢ଼ାଉଥିଲେ । ଗାଆଁ ପାଖ ସ୍କୁଲ୍‌ରେ ମୁଁ ବେଶି ଦିନ ପଢ଼ିନଥିଲି । ମୋ ବଡ଼ଭାଇ ମୋତେ କଲିକତା ନେଇଯାଇ ତାଙ୍କ ପାଖରେ ରଖି ମୋର ପଢ଼ାପଢ଼ିର ବ୍ୟବସ୍ଥା କରିଥିଲେ । ସେ ନିଜେ ମଧ୍ୟ ମୋତେ ଅନେକ ସମୟରେ ପଢ଼ାଉଥିଲେ । ପାଠ ନ ଆସିଲେ ମାଡ଼ ଖାଉଥିଲି । ଇଂରାଜୀ ବର୍ଣ୍ଣମାଳା ମୁଁ ସେଇଠାରେ ଆରମ୍ଭ କରିଥିଲି । ମୋର ବାଲ୍ୟଶିକ୍ଷା କାଳରେ ଅଭିଭାବକମାନଙ୍କର ଉଦ୍ଦେଶ୍ୟ ଥିଲା ଯେ ଘରେ ମୋର ବାଲ୍ୟଶିକ୍ଷା ସମାପ୍ତ କରିଦେଇ ମୋତେ ଏକାବେଳେକେ ମଧ୍ୟ ଇଂରାଜୀ ସ୍କୁଲ୍‌ରେ ଭର୍ତ୍ତିକରିଦେବେ । ମୋର ମଝିଆଁଭାଇ ଶ୍ରୀ ଆନନ୍ଦ ପ୍ରସାଦ ରାଉରାୟ ସେତେବେଳେ ବାଲେଶ୍ୱର ଜିଲ୍ଲା ହାଇସ୍କୁଲ୍‌ରେ ଅଧ୍ୟୟନ କରୁଥିଲେ । ମୋର ଭିଣୋଇ ଶ୍ରୀ କ୍ଷେତ୍ରବାସୀ ଖୁଣ୍ଟିଆ କଲେକ୍ଟେରିଏଟ୍‌ରେ ଜଣେ କିରାଣି ଥିଲେ । ବାଲେଶ୍ୱର ସହର ମଧ୍ୟରେ ଥିବା ମାଣିଖମ୍ବ ସାହିରେ ତାଙ୍କର ବସା ଥିଲା । ତାଙ୍କରି ପାଖରେ ରହି ମୋ ମଝିଆଁଭାଇ ପଢୁଥିଲେ । ଭାଇ ମୋତେ ସେଠାକୁ ନେଇଯାଇ ବାଲେଶ୍ୱର ଜୁବୁଲି ମଧ୍ୟ ଇଂରାଜୀ ସ୍କୁଲ୍‌ରେ ମୋର ନାମ ଲେଖାଇଥିଲେ । ମାତ୍ର ମୁଁ ସେଠାରେ ଖୁବ୍ ଅଳ୍ପଦିନ ପଢ଼ିଥିଲି । ଇତିମଧ୍ୟରେ ଭଦ୍ରକ ପୁରୁଣାବଜାରସ୍ଥିତ ନାରାୟଣ ଚନ୍ଦ୍ର ମଧ୍ୟ ଇଂରାଜୀ ବିଦ୍ୟାଳୟର ପ୍ରଧାନଶିକ୍ଷକ ଶ୍ରୀ ଉଦୟନାରାୟଣ ମହାନ୍ତିଙ୍କ ସହିତ ମୋର ବଡ଼ଭାଇ ଶ୍ରୀ ହରେକୃଷ୍ଣ ରାଉତରାୟଙ୍କର ପରିଚୟ ହୋଇଯାଇଥାଏ । ସେ କଲିକତା ଯାଇ ଭାଇଙ୍କ ପାଖରେ ରହିଥିଲେ । ସେହିଠାରେ ଉଭୟଙ୍କ ମଧ୍ୟରେ ଆତ୍ମୀୟତା ହୋଇଥିଲା । ତାଙ୍କର କଲିକତା ଯିବାର ଉଦ୍ଦେଶ୍ୟ ଥିଲା ନାରାୟଣ ଚନ୍ଦ୍ର ସ୍କୁଲ୍‌ର ପ୍ରସ୍ତାବିତ ପକ୍କାଘରପାଇଁ କିଛି ଅର୍ଥ ସଂଗ୍ରହ କରିବା । ସ୍କୁଲ୍

ଗୃହ ପାଇଁ ଯେତେ ଲୁହା କଡ଼ି, ବରଗା ଓ ଅନ୍ୟାନ୍ୟ ଲୁହା ଜିନିଷ ଦରକାର ହେବ ତା'ର ସମସ୍ତ ମୂଲ୍ୟ ବହନ କରିବାପାଇଁ ମୋର ଭାଇ ପ୍ରତିଶ୍ରୁତି ଦେଇଥିଲେ ଏବଂ ପରେ ତାହା ପୂରଣ କରିଥିଲେ । ସେଥିପାଇଁ ସ୍କୁଲ୍ ହଲ୍‌ରେ ଥିବା ମାର୍ବଲ ଫଳକରେ ତାଙ୍କର ବଦାନ୍ୟତା କଥା ଉଲ୍ଲେଖ ଅଛି । ଏହି ସୁଯୋଗରେ ନାରାୟଣ ଚନ୍ଦ୍ର ମଧ ଇଂରାଜୀ ବିଦ୍ୟାଳୟର ପ୍ରଧାନଶିକ୍ଷକ ଉଦୟବାବୁଙ୍କ ତତ୍ତ୍ୱାବଧାନରେ ମୋର ପଢ଼ାପଢ଼ି ଭାର ନ୍ୟସ୍ତ କରି ବଡ଼ଭାଇ ମୋତେ ଆଣି ୧୯୩୦ ମସିହାରେ ଉକ୍ତ ବିଦ୍ୟାଳୟରେ ମୋ ନାମ ଲେଖାଇଦେଲେ । ସ୍କୁଲ୍ ଛାତ୍ରାବାସରେ ମୋତେ ରହିବାକୁ ପଡ଼ିଲା । ମୋର ଅଭିଭାବକ ତଥା ପ୍ରଧାନଶିକ୍ଷକ ଉଦୟବାବୁ ସେହି ଛାତ୍ରାବାସର ଗୋଟିଏ ବଖରାରେ ରହୁଥିଲେ । ସେ ନିଜେ ମୋତେ ଇଂରାଜୀ ପଢ଼ାଉଥିଲେ ଏବଂ ହେଡ୍‌ପଣ୍ଡିତ ଶ୍ରୀ ଯଦୁମଣି ମହାପାତ୍ର ଅନ୍ୟାନ୍ୟ ବିଷୟ ପଢ଼ାଇବାପାଇଁ ମୋର ଘରୋଇ ଶିକ୍ଷକ ଥିଲେ । ଆଉ ଦୁଇଜଣ ଶିକ୍ଷକ ମଧ ସେ ସ୍କୁଲ୍‌ରେ ଥିଲେ । ସେମାନଙ୍କ ପାଖରେ ମୁଁ କିଛିଦିନ ପଢ଼ିଥିଲି । ସେମାନେ ହେଲେ ଶ୍ରୀ ରାଧାକୃଷ୍ଣ ପଣ୍ଡା ଓ ଶ୍ରୀ ଭଗବାନ ତ୍ରିପାଠୀ । ସ୍କୁଲ୍‌ରେ ବଢ଼େଇ କାମ ଶିଖାଯାଉଥିଲା । ଏ ବିଷୟରେ ଶିକ୍ଷକ ଥିଲେ ଶ୍ରୀ ଗଙ୍ଗାଧର ମହାରଣା ।

ନାରାୟଣ ଚନ୍ଦ୍ର ମଧ ଇଂରାଜୀ ବିଦ୍ୟାଳୟଟି ସେତେବେଳେ ବଡ଼ ଅବହେଳିତ ଅବସ୍ଥାରେ ଥିଲା । କେତେ ବଖରା ଚାଳଘର ମାତ୍ର । ସେହି ଘରେ ସ୍କୁଲ୍‌ର କ୍ଲାସ୍‌ଗୁଡ଼ିକ ଚାଲୁଥିଲା ଏବଂ ସେହି ଘର ମଧ ଛାତ୍ରାବାସ ରୂପେ ବ୍ୟବହୃତ ହେଉଥିଲା । କ୍ଲାସ୍ ଆରମ୍ଭ ହେବା ପୂର୍ବରୁ ଛାତ୍ରାବାସରେ ରହୁଥିବା ପିଲାମାନେ ତାଙ୍କର ବିଛଣାପତ୍ର ଉଠାଇ ନେଇ ରୋଷେଇ ଘର ପାଖ ଚାଳିଆରେ ରଖିଦେଇ ଆସନ୍ତି ଏବଂ ତତ୍‌ପରେ ଟେବୁଲ୍, ଚେୟାର, ବେଞ୍ଚ୍ ଇତ୍ୟାଦିକୁ ଗୋଟିଏ ପାଖକୁ ଉଠାଇ ରଖି ଦିଅନ୍ତି ଏବଂ ଅବଶିଷ୍ଟାଂଶରେ ନିଜନିଜର ପାଠ ପଢ଼ାପଢ଼ି, ବସାଉଠା କରନ୍ତି ଓ ରାତିରେ ବିଛଣା ପାରି ସେଠାରେ ଶୁଅନ୍ତି । ରବିବାର ତଥା ଅନ୍ୟାନ୍ୟ ଛୁଟିଦିନମାନଙ୍କ ବ୍ୟତୀତ ଅନ୍ୟ ଦିନମାନଙ୍କରେ ଏହିଭଳି ଟେବୁଲ୍, ଚେୟାର୍, ବେଞ୍ଚ୍ ଇତ୍ୟାଦି ଉଠାଉଠିହୁଏ ଏବଂ ପୁଣି ସଜାସଜି ଚାଲେ । ଏହି ଛାତ୍ରାବାସରେ ମୁଁ ସାତବର୍ଷ ରହିଥିଲି । ଯେତେବେଳେ ନାରାୟଣ ଚନ୍ଦ୍ର ମାଇନର ସ୍କୁଲ୍‌ରୁ ଉତ୍ତୀର୍ଣ୍ଣ ହୋଇ ଭଦ୍ରକ ହାଇସ୍କୁଲ୍‌ରେ ପଢ଼ିଲି, ସେତେବେଳେ ମଧ ଏହି ଛାତ୍ରାବାସରେ ରହୁଥିଲି । ପ୍ରତିଦିନ ସକାଳଓଳି ଖାଇସାରି ସାଇକେଲ୍‌ରେ ହାଇସ୍କୁଲ୍‌କୁ ପଢ଼ିବାପାଇଁ ବାହାରି ଯାଉଥିଲି ।

ମୁଁ ଯେତେବେଳେ ସ୍କୁଲ୍ ଛାତ୍ରାବାସକୁ ଆସେ ସେତେବେଳେ ଥିଲା ଅତି ଶସ୍ତାଯୁଗ । ଜିନିଷପତ୍ରସବୁ ଶସ୍ତାରେ ମିଳୁଥିଲା । ଛାତ୍ରାବାସରେ ରହିବା ଓ ଖାଇବାପାଇଁ ସେତେବେଳେ ପ୍ରତ୍ୟେକ ପିଲାକୁ ମାସକୁ ବାଲେଶ୍ୱରୀ ବାଇଶି ସେର ଚାଉଳ ଓ ଦୁଇଟି ଟଙ୍କା ଖର୍ଚ୍ଚପାଇଁ ଦେବାକୁ ପଡୁଥିଲା । ସେତେବେଳେ ଥିଲା ଟଙ୍କାକ ଷୋଳଅଣା, ଚଉଷଠି ପଇସାର ଯୁଗ । ପ୍ରତିଦିନ ସନ୍ଧ୍ୟାବେଳେ ଉପରୋକ୍ତ ଦୁଇଟଙ୍କାରୁ ପ୍ରତ୍ୟେକ ପିଲାଙ୍କୁ ଜଳଖିଆ ଖାଇବାପାଇଁ ଦେଢ଼ ପଇସା କରି ଦିଆଯାଉଥିଲା । ଛାତ୍ରାବାସ ଖର୍ଚ୍ଚ ଏବଂ ତା ସହିତ ଘରୋଇ ଭାବରେ ମୋତେ ଯେଉଁ ଶିକ୍ଷକମାନେ ପଢ଼ାଉଥିଲେ ସେମାନଙ୍କର ଟିଉସନ୍ ଫି ଓ ମୋର ହାତଖର୍ଚ୍ଚ ପ୍ରଭୃତି ବାବଦରେ ଯାହା ଦରକାର ହୁଏ ସେ ଟଙ୍କା ମୋର ବଡ଼ଭାଇ ଉଦୟବାବୁଙ୍କ ପାଖକୁ ପଠାନ୍ତି ଏବଂ ସେ ସମସ୍ତ କଥା ବୁଝନ୍ତି । ମେସ୍‌ରୁ ଜଳଖିଆ ଖାଇବା ବାବଦରେ ଯେଉଁ ଦେଢ଼ପଇସା ମିଳୁଥିଲା ତା' ବାଦ୍ ପ୍ରତିଦିନ ଜଳଖିଆ ଖାଇବା ପାଇଁ ମୋତେ ଆଉ ଚାରିପଇସା ଉଦୟବାବୁ ଦେଉଥିଲେ ଏବଂ ମୁଁ ଯେତେବେଳେ ହାଇସ୍କୁଲ୍‌କୁ ଗଲି ସେତେବେଳେ ଜଳଖିଆ ବାବଦରେ ଚାରିପଇସା ବୃଦ୍ଧି ପାଇ ଦୁଇଅଣା ବା ଆଠ ପଇସା ହୋଇଥିଲା । ମୋର ମନେଅଛି, ଚାରି ପଇସାରେ ସେତେବେଳେ ଯଥେଷ୍ଟ ଜଳଖିଆ ମିଳୁଥିଲା । ପୁରି, ତରକାରି ଓ ରସଗୋଲା ଖାଇ ଆହୁରି ପଇସା ବଳିପଡୁଥିଲା । ହାଇସ୍କୁଲ୍‌ରେ ପଢ଼ିଲାବେଳେ ପ୍ରତିଦିନ ଖେଳଛୁଟିରେ ମୁଁ ପ୍ରାୟ ଚାରି ପଇସାର ଜଳଖିଆ ଖାଇଦିଏ । ମାଇନର ସ୍କୁଲ୍ ଛାତ୍ରାବାସରେ ଶ୍ୟାମ

ବାରିକ ଥିଲା ମେସ୍‌ର ଚାକର । ମୋର ପ୍ରତିଦିନ ଜଳଖିଆ ବାବଦକୁ ଛାତ୍ରାବାସ ମେସ୍‌ରୁ ଯେଉଁ ଦେଢ଼ ପଇସା ମିଳେ ତାକୁ ମୋ କଥାନୁସାରେ ଶ୍ୟାମ ବାରିକ ନେଇଯାଏ । ସେତକ ପାଇ ସେ ବହୁତ ଖୁସିହେଉଥିଲା । ତା' ବଦଳରେ ସେ ମୋର ଗାଧୁଆ, ଲୁଗାସଫା ଓ ବିଛଣା ସଜାଇବା ଇତ୍ୟାଦି କାମରେ ବେଶ୍ ସାହାଯ୍ୟ କରୁଥିଲା । ତା' ଘର ସ୍କୁଲ୍‌ଠାରୁ ଅଳ୍ପ ଦୂରରେ ଥାଏ । ମୁଁ ବେଳେ ବେଳେ ତା' ଘରକୁ ଯାଉଥିଲି । ତା'ର ମୃତ୍ୟୁ ହେବା ପର୍ଯ୍ୟନ୍ତ ମଧ୍ୟ ସେ ମୋ ସହିତ ସଂପର୍କ ରଖିଥିଲା । ମୁଁ ନାରାୟଣଚନ୍ଦ୍ର ମାଇନର ସ୍କୁଲ୍‌ରୁ ପଢ଼ା ସାରି ଭଦ୍ରକ ହାଇସ୍କୁଲ୍‌ରେ ପଢ଼ିଲାବେଳେ ମୋର ଭଣଜା ଶ୍ରୀ ସୁରେନ୍ଦ୍ର ନାଥ ଖୁଣ୍ଟିଆ ସେହି ମାଇନର ସ୍କୁଲ୍‌ରେ ନାମ ଲେଖାଇ ପଢ଼ା ଆରମ୍ଭ କରିଥିଲା ଏବଂ ସ୍କୁଲ୍ ଛାତ୍ରାବାସରେ ମଧ୍ୟ ରହୁଥିଲା । ସୁରେନ୍ଦ୍ର ଜଣେ ମେଧାବୀ ଛାତ୍ର ଥିଲା । କୃତିତ୍ୱର ସହିତ ଏମ୍.ଏ. ପାସ୍ କରି ଓଡ଼ିଶା ପ୍ରଶାସନିକ ସର୍ଭିସ୍‌ରେ ପ୍ରବେଶ କରିଥିଲା ଏବଂ ପରେ ଭାରତୀୟ ପ୍ରଶାସନିକ ସର୍ଭିସ୍‌କୁ ଉନ୍ନୀତ ହୋଇଥିଲା । ସେ ପରେ ଏଲ୍.ଏଲ୍.ଏମ୍. ମଧ୍ୟ ପାସ୍ କରିଥିଲା ।

## ପାଠଶାଠ କଥା

ଛାତ୍ର ଜୀବନରେ ମୁଁ ଖୁବ୍ କୃତବିଦ୍ୟ ନଥିଲି – ମଧ୍ୟମ ଧରଣର ଛାତ୍ର ଥିଲି ବୋଲି କହିଲେ ଚଳେ । ପୁସ୍ତକଲବ୍ଧ ପାଠ ଓ ପରିବେଷ୍ଟନୀରୁ ଆହରଣ କରୁଥିବା ଶାଠ (ସାଧାରଣ ଜ୍ଞାନ) ଭିତରେ ଏକରକମ ଭାରସାମ୍ୟ ରଖି ଅଗ୍ରସର ହେବା ମୋର ଛାତ୍ର ଜୀବନରେ ସ୍ୱାଭାବିକ ଭାବରେ ଅଭ୍ୟାସଗତ ହୋଇଯାଇଥିଲା । ଗଣିତରେ ମୁଁ ବଡ଼ ଦୁର୍ବଳ ଥିଲି । ମୋର ମନେଅଛି, ଆମ ଗାଆଁରେ ଯେତେବେଳେ ନଟବର ମାଷ୍ଟ୍ରଙ୍କ ପାଖରେ ପଣକିଆ, ମିଶାଣ, ଗୁଣନ ଓ ଫେଡ଼ାଣ ପଢୁଥିଲି, ମୁଁ ସେଥିରେ ବହୁତ ଭୁଲ୍‌ଭାଲ୍ କରୁଥିଲି । ସେଥିପାଇଁ ଥରେ ନଟବରମାଷ୍ଟ୍ରେ ଖଣ୍ଡିଏ କାଗଜରେ ପଣକିଆ ଲେଖି ଓ ଅଙ୍କ କଷି ସେଇ ଖଣ୍ଡିକୁ ମୋତେ ଦେଇ କହିଲେ, ''ନେ ତୋ' ମା'କୁ ଦେବୁ, ସେ ଏଗୁଡ଼ିକ ଶିଳରେ ବାଟି ତୋତେ ପିଆଇଦେବ ।'' ତାଙ୍କର ସେହି ବିଦ୍ରୂପ ମୋର ଆଜିପର୍ଯ୍ୟନ୍ତ ମନେଅଛି । ମାତ୍ର ତଳ ଶ୍ରେଣୀରେ ପଢ଼ିଲାବେଳେ ମଧ୍ୟ ସମସାମୟିକ ଘଟଣାରେ ମୁଁ ବେଶ୍ ପ୍ରଭାବିତ ହେଉଥିଲି । ସେତେବେଳେ ଆମର ପରାଧୀନ ଦେଶକୁ ସ୍ୱାଧୀନ କରିବାପାଇଁ ମହାତ୍ମାଗାନ୍ଧୀ ସାରା ଦେଶରେ ଆନ୍ଦୋଳନର ଡାକରା ଦେଇଥିଲେ । ଏହାକୁ ସେତେବେଳେ ଗାନ୍ଧୀ ଆନ୍ଦୋଳନ ବୋଲି ଲୋକେ କହୁଥିଲେ । ଏହି ଆନ୍ଦୋଳନ ହେତୁ ଅନେକ ସମୟରେ ଗାନ୍ଧିଜୀଙ୍କ ଜୟଧ୍ୱନି ସହିତ ସଭାସମିତି ପଟୁଆରର ଆୟୋଜନ ହେଉଥିଲା । ସେସବୁ ଦେଖିବାପାଇଁ ମୋର ବିଶେଷ ଉତ୍ସାହ ହେଉଥିଲା । ସ୍ୱତଃସ୍ଫୂର୍ତ୍ତ ଭାବରେ ଛୋଟବେଳୁ ମୁଁ ସେଆଡ଼କୁ ଟାଣିହୋଇଯାଉଥିଲି । ଭଦ୍ରକର ପୁରୁଣାବଜାର ଛକ ଗୋଟିଏ ଲୋକଗହଳି ଅଞ୍ଚଳ । ସବୁ ସମୟରେ ସେଠାରେ ପ୍ରାୟ ଲୋକଗହଳି ଲାଗିରହିଥାଏ । ବେଳେ ବେଳେ କଂଗ୍ରେସ କର୍ମୀମାନେ ଏହିଠାରେ ଛିଡ଼ାହୋଇ ଗାନ୍ଧିଜୀଙ୍କ ଆନ୍ଦୋଳନ ବିଷୟରେ କିଛି କିଛି କହୁଥିଲେ ଓ ପ୍ରଚାରପତ୍ରମାନ ବାଣ୍ଟୁଥିଲେ । ମୁଁ ସମୟସମୟରେ ସେଠାରେ ଛିଡ଼ାହୋଇ ସେମାନଙ୍କର ଭାଷଣ ଶୁଣୁଥିଲି ଓ ତଦ୍ୱାରା ପ୍ରଭାବିତ ମଧ୍ୟ ହେଉଥିଲି । ଏହି ପୁରୁଣାବଜାର ଛକରେ ବେଳେ ବେଳେ ଜଣେ ଖ୍ରୀଷ୍ଟିଆନ ଧର୍ମଯାଜକ (ପାଦ୍ରୀ) ଖ୍ରୀଷ୍ଟଧର୍ମ ଓ ଯୀଶୁଖ୍ରୀଷ୍ଟଙ୍କ ସମ୍ବନ୍ଧରେ ବକ୍ତୃତା ଦେଇ ଲୋକଙ୍କୁ ବୁଝାଇବାର ମୁଁ ଶୁଣିଛି । ସେ ପାଦ୍ରୀ ଜଣକ ଭଦ୍ରକ ହାଇସ୍କୁଲ୍ ପାଖେ ଗୋଟିଏ ବଙ୍ଗଳାରେ ରହୁଥିଲେ । ଧର୍ମପ୍ରଚାର କରିବା ସଙ୍ଗେ ସଙ୍ଗେ ପିଲାମାନଙ୍କ ସହିତ ସେ ଭଲ ବ୍ୟବହାର କରୁଥିଲେ ଓ ସେମାନଙ୍କୁ ଖୁବ୍ ସୁଖପାଉଥିଲେ । ସେ ଖୁବ୍ ଧୀରେ ବଙ୍କେଇ ବଙ୍କେଇ ଖଣ୍ଡିଓଡ଼ିଆ କହୁଥିଲେ । ତେଣୁ ସେଗୁଡ଼ିକୁ ଶୁଣିବାକୁ ଆମମାନଙ୍କୁ ମଜାଲାଗୁଥିଲା । ମଝିରେ ମଝିରେ ଅନ୍ୟ ପିଲାମାନଙ୍କ ସହିତ ମୁଁ ତାଙ୍କ ବଙ୍ଗଳାକୁ ଯାଉଥିଲି । ସେ ଆମମାନଙ୍କୁ ନାନାପ୍ରକାର ଫଳ ଓ ମିଠେଇ ଖାଇବାକୁ ଦେଉଥିଲେ ଏବଂ ଓଡ଼ିଆ ଭାଷାରେ ଲିଖିତ ଖ୍ରୀଷ୍ଟଧର୍ମ ସମ୍ବନ୍ଧୀୟ କେତେକ ବହି ପଢ଼ିବାକୁ ଦେଉଥିଲେ । କେତେକ ଲୋକ ଆମକୁ ଭୟଦେଖାଇ କହୁଥା'ନ୍ତି ଯେ ପାଦ୍ରୀ ସାହେବ

ଆମକୁ ଭଲ ଖାଇବାକୁ ଦେଇ ପଟାପଟି କରି ତାଙ୍କ ଧର୍ମରେ ଦୀକ୍ଷିତ କରାଇନେବେ । ମାତ୍ର ସେ ପ୍ରକାର ଆଚରଣ ତାଙ୍କଠାରେ ଆମେ କେବେ ଦେଖିବାକୁ ପାଇନଥିଲୁ ।

ମୁଁ ଏହି ନାରାୟଣ ଚନ୍ଦ୍ର ସ୍କୁଲ୍‌ରେ ପଢୁଥିବାବେଳର ଆଉ ଏକ ଘଟଣା ମୋର ମନେପଡ଼େ । ଆମ ଦେଶର ସମୁଦ୍ରରୁ ଲୁଣମାରି ଆଇନ ଅମାନ୍ୟ ଆନ୍ଦୋଳନ କରିବାପାଇଁ ମହାତ୍ମାଗାନ୍ଧୀ ଦେଶବାସୀଙ୍କୁ ଡାକରା ଦେଇଥିଲେ । ଏହାକୁ ସେତେବେଳକାର ଲୋକେ 'ଲବଣ ସତ୍ୟାଗ୍ରହ' ବା 'ଦରିଆ ଦଖଲ' ଆନ୍ଦୋଳନ ବୋଲି କହୁଥିଲେ । ଲୋକମାନଙ୍କ ଭିତରେ ଜାଗରଣ ସୃଷ୍ଟି କରିବାପାଇଁ ଜାତୀୟକବି ବୀରକିଶୋର ଦାସଙ୍କର ତତ୍‌କାଳୀନ ରଚିତ ଗୀତ 'ଆସରେ ଆଜି ଆସ, ଆଜି ଆସ, ଦରିଆ ଦଖଲ କରିଯିବ କିଏ ଆସ' ଏବଂ କବି ବାଞ୍ଛାନିଧି ମହାନ୍ତିଙ୍କ 'କହ କହ କେଉଁ ଜାତି ପାଇଛି ମୁକତି କରି ହୁରି ହାରି ଗୁହାରି' ପ୍ରଭୃତି ଜାତୀୟସଙ୍ଗୀତମାନ ସ୍ଥାନେ ସ୍ଥାନେ ସ୍ୱେଚ୍ଛାସେବକମାନଙ୍କଦ୍ୱାରା ବୋଲାଯାଇ ଦେଶବାସୀଙ୍କୁ ଜାଗ୍ରତ କରାଯାଉଥିଲା ଏବଂ ପ୍ରଚାରପତ୍ରମାନ ବଣ୍ଟନ କରାଯାଉଥିଲା । ଆମ ପିଲାମାନଙ୍କ ମେଳରେ ଏହି ଲୁଣମରା ବିଷୟରେ ଅନେକ କଥା ଆଲୋଚନା ହେଉଥିଲା । ଏ ସମ୍ବନ୍ଧରେ ମୋର ଗୋଟିଏ କଥା ଏବେ ସୁଦ୍ଧା ସ୍ପଷ୍ଟଭାବେ ମନେଅଛି । ମୋର ପଡ଼ୋଶୀ ଗ୍ରାମ ଝିଙ୍କିରିଆରେ ଶ୍ରୀ ଭାଗବତ ସାହୁଙ୍କର ଘର । ତାଙ୍କର ପିତା ଜଣେ ଅତି ଗରିବ ବ୍ରାହ୍ମଣ ଥିଲେ । ଭାଗବତ ସାହୁଙ୍କ ପିତା ବହୁତ କଷ୍ଟରେ ଏକପ୍ରକାର ମାଗିଯାଚି ତାଙ୍କୁ ବି.ଏ. ପର୍ଯ୍ୟନ୍ତ ପଢ଼ାଇଥିଲେ । ପାଟନା ବିଶ୍ୱବିଦ୍ୟାଳୟରୁ ଭାଗବତବାବୁ କୃତିତ୍ୱର ସହ ବି.ଏ. ପାସ୍ କରିଥିଲେ । ବର୍ତ୍ତମାନ ଚାକିରି ପଛରେ ବି.ଏ., ଏମ୍.ଏ. ପାସ୍ କଲା ପିଲାମାନେ ଦୌଡ଼ି ଦୌଡ଼ି ଥକୁଛନ୍ତି – ମାତ୍ର ଚାକିରି ନାହିଁ । କିନ୍ତୁ ଆମେ ଶୁଣିଛୁ ଯେ ସେତେବେଳେ ଭାଗବତବାବୁଙ୍କ ପଛରେ ସରକାରୀ ଚାକିରି ଏକପ୍ରକାର ଗୋଡ଼ାଉଥାଏ । ମାତ୍ର ସେ ତାକୁ ତୁଚ୍ଛ ମନେକରି କଂଗ୍ରେସର ଲୁଣମରା ଆନ୍ଦୋଳନରେ ଯୋଗଦେଇ ଜେଲ୍ ଭୋଗିଥିଲେ । ପିଲାଦିନର ମନେପଡୁଥିବା ଘଟଣାଟି ହେଉଛି – ଦିନେ ମୁଁ ଆମ ସ୍କୁଲ୍ ପାଖ ରାସ୍ତାରେ ବୁଲୁଥାଏ, ହଠାତ୍ ଦେଖିଲି ଭାଗବତବାବୁ ଗୋଟିଏ ବଳଦଗାଡ଼ିରେ ବସିଛନ୍ତି ଏବଂ ତାଙ୍କ ପାଖେ ପାଖେ କେତେଜଣ ଲାଠି ଓ ବନ୍ଧୁକଧାରୀ ପୁଲିସ୍ ଚାଲିଛନ୍ତି । ତାଙ୍କୁ ସେ ଅବସ୍ଥାରେ ଦେଖି ମୁଁ ଅତ୍ୟନ୍ତ ଉତ୍ତେଜିତ ହୋଇପଡ଼ିଥିଲି । ସେ ମୋତେ ଦେଖି ଟିକେ ହସିଦେଲେ । ପରେ ଜାଣିବାକୁ ପାଇଲି ଯେ ସେ ବାସୁଦେବପୁରର ସମୁଦ୍ରକୂଳିଆ ଗ୍ରାମ ବିଦେଇପୁରଠାରେ ଲବଣ ଆଇନ ଅମାନ୍ୟ କରି ଲୁଣ ମାରିବାରୁ ପୁଲିସ୍‌ଦ୍ୱାରା ତାଙ୍କୁ ଗିରଫ କରାଯାଇଛି । ମୁଁ ମନର ଆବେଗରେ ସେ ବସିଥିବା ବଳଦଗାଡ଼ି ପଛେ ପଛେ କିଛିଦୂର ଯାଇଥିଲି ଏବଂ ପୁଲିସ୍‌ମାନଙ୍କ ତାଡ଼ନାରେ ବାଟରୁ ଫେରି ଆସିଥିଲି । ଏହି ଘଟଣା ପରେ ମୋ ଭିତରେ ଅନ୍ୟାୟ ବିରୁଦ୍ଧରେ ଏକ ବିଦ୍ରୋହୀର ମନୋଭାବ ତେଜିଉଠିଥିଲା । ଖୁବ୍ ଉତ୍ତେଜିତ ହୋଇ ମୁଁ ସାଥୀପିଲାମାନଙ୍କ ଆଗରେ ପୁଲିସ୍ କିପରି ଭାଗବତବାବୁଙ୍କୁ ବଳଦଗାଡ଼ିରେ ବସାଇ ନେଇଯାଉଥିଲେ ସେ କଥାସବୁ କହିଥିଲି, ଯଦିଓ ସେ ବୟସରେ ଲବଣ ଆଇନ କ'ଣ ଏବଂ ଲୁଣ ମାରିବା ବିରୁଦ୍ଧରେ ଇଂରେଜ ସରକାରଙ୍କର କି କଟକଣା ଥିଲା ସେ କଥା ମୋତେ ଜଣାନଥିଲା । ଲୁଣ କିପରି ମରାଯାଏ ଓ କେଉଁଠି ମରାଯାଏ ସେ ବିଷୟରେ ମଧ୍ୟ ମୋର କୌଣସି ଧାରଣା ନଥିଲା । କିନ୍ତୁ ଲୁଣମାରିବାପାଇଁ ମୋ ମନରେ ଭାରି ଆବେଗ ଜନ୍ମିଲା । ପିଲାମାନଙ୍କ ଆଗରେ ମୁଁ ମୋର ମନର ଆବେଗ କଥା କହିବାକୁ ଯାଇ ଆମ ଗାଁକୁ ଯାଇ ଲୁଣ ମାରିବି ବୋଲି କହିଥିଲି ।

ଆମ ଗାଆଁ ପାଖ ଏକ ପଡ଼ିଆରେ କେତେକ ସ୍ଥାନରେ ମାଟି ଦେହରେ ଲୁଣି ଅଂଶ ଥିବାର ମୁଁ ଦେଖିଥିଲି । ସେଠାରେ ମାଟି ଉପରେ ଲୁଣ ଭଳି ଧଳା ଧଳା କ'ଣ ସବୁ ଦେଖାଯାଉଥିଲା । ମୁଁ ମନେ ମନେ ସ୍ଥିର କରିଥିଲି ଯେ ଗାଆଁକୁ ଯାଇ ସେଠାରେ ଲୁଣ ମାରିବି । ଦିନେ ରବିବାରିଆ ଛୁଟିରେ ଗାଆଁକୁ ଗଲି ଏବଂ ସେଠାରେ ଅନ୍ୟ ପିଲାମାନଙ୍କୁ ଲୁଣ ମାରିବାପାଇଁ ମତେଇ ଗୋଟିଏ ମାଟି ହାଣ୍ଡି, ବୋଝେ ଖଣ୍ଡେ କାଠ ଡାଳ ଓ ମେଞ୍ଚାଏ କୁଟା ସାଙ୍ଗରେ ନେଇ ଲୁଣାପଦାକୁ ଗଲୁ । ସେଠାରେ

ଗୋଟିଏ ଚୁଲି ତିଆରିକରି ହାଣ୍ଡିଟି ତା' ଉପରେ ବସାଇଦେଲୁ । ଧଳା ଅଂଶ ଥିବା ମାଟିକୁ ଆଣି ପାଣିରେ ମିଶାଇ ହାଣ୍ଡିରେ ଭର୍ତ୍ତିକଲୁ । ତା'ପରେ ଚୁଲିରେ ନିଆଁ ଲଗାଇ ଖୁବ୍ ଜାଳିଲୁ । ସେଥିରେ ଥିବା ପାଣିତକ ମାରିବାପାଇଁ ବହୁତ ସମୟ ଲାଗିଲା । ଶେଷରେ ଦେଖିଲୁ ଯେ ହାଣ୍ଡିର ତଳଭାଗରେ କେବଳ କେତେକ କାଦୁଆମାଟି ଜମିରହିଛି । ପୂର୍ବରୁ ଧଳା ଧଳା ଦେଖାଯାଉଥିବା ମାଟି ଧଳା ପରିବର୍ତ୍ତେ ମାଟିଆ ଦେଖାଯାଉଥିଲା । ଯାହାହେଉ, ହାଣ୍ଡିରୁ ବାହାର କରି ସେଇ ମାଟିକୁ ଖରାରେ ଶୁଖାଇଲୁ । ଶୁଖିଗଲା ପରେ ତାକୁ ଧୂଳି କରି କାଗଜରେ ରଖି କେତେକ ପୁଡ଼ିଆ ବାନ୍ଧିଲୁ । ସେହି ପୁଡ଼ିଆଗୁଡ଼ିକ ହାତରେ ଧରି ଉତ୍ସାହର ସହିତ ମହାତ୍ମାଗାନ୍ଧୀଙ୍କର ଜୟଧ୍ୱନି କରି ଗାଆଁରେ ବୁଲି କିପରି ଲୁଣ ମାରିଛୁ ତାହା ଦେଖାଇଲୁ । ଯିଏ ଦେଖୁଥାଆନ୍ତି ସେଥିରୁ ଟିକେ ଟିକେ ନେଇ ମୁଣ୍ଡରେ ମାରୁଥାଆନ୍ତି । ସ୍କୁଲ୍‌କୁ ଫେରିଆସିଲା ବେଳକୁ ସାଙ୍ଗରେ ସେଥିରୁ କେତୋଟି ଲୁଣମାଟି ପୁଡ଼ିଆ ଧରି ଆସିଥିଲି, ମୋର ସହପାଠୀମାନଙ୍କୁ ତାହା ଦେଖାଇଥିଲି ଓ ସେମାନେ ଅତି ଆଗ୍ରହ ସହକାରେ ସେଇ ମାଟିକୁ ନେଇ ମୁଣ୍ଡରେ ଲଗାଇଥିଲେ । ଏ କଥା ଆମର ଶିକ୍ଷକମାନେ ଜାଣିପାରି ସେହିଦିନଠାରୁ ମୋ ଉପରେ କଡ଼ା ନଜର ରଖିବାକୁ ଲାଗିଲେ ।

## ଦରିଆ ଦଖଲ

ଲବଣ ଆଇନ ଅମାନ୍ୟ, ଲବଣ ସତ୍ୟାଗ୍ରହ ଓ ଦରିଆ ଦଖଲ ପ୍ରଭୃତି ପ୍ରସଙ୍ଗରେ ପ୍ରଥମେ ମୋର ସ୍ପଷ୍ଟ ଧାରଣା ନଥିଲା ସତ; ମାତ୍ର ସେଗୁଡ଼ିକ କଂଗ୍ରେସର ରଣଧ୍ୱନି ଭଳି ମୋର ମନକୁ ଖୁବ୍ ଆକୃଷ୍ଟ କରୁଥାଏ । କ୍ରମେ ଯେତେବେଳେ ଏହି ଆନ୍ଦୋଳନର ଐତିହାସିକ ତାତ୍ପର୍ଯ୍ୟ ଓ ମାହାତ୍ମ୍ୟ ଭଲଭାବରେ ହୃଦୟଙ୍ଗମ କଲି ସେତେବେଳେ ଏହି ଭାରତବର୍ଷର ନିରନ୍ନ, ନିରକ୍ଷର, ନିରସ୍ତ୍ର 'ଜନଗଣମନ'ର ଅଧିନାୟକତ୍ୱ କରିବାପାଇଁ ମହାତ୍ମାଗାନ୍ଧୀଙ୍କର ଅସାଧାରଣ ବିଚାରବୁଦ୍ଧି ଓ ଅହିଂସ ରଣକୌଶଳ ସମ୍ପର୍କରେ ମଧ ମୋର ଧାରଣା ସ୍ପଷ୍ଟ ହେଲା । ୧୯୨୯ ମସିହା ଡିସେମ୍ବର ମାସରେ କଂଗ୍ରେସର ଐତିହାସିକ ଲାହୋର ଅଧିବେଶନ ମଣ୍ଡପରୁ ବ୍ରିଟିଶ୍ ଶାସନ କବଳରୁ ଭାରତବର୍ଷର ପୂର୍ଣ୍ଣ ସ୍ୱାଧୀନତା ହାସଲ ଦାବି ସର୍ବପ୍ରଥମେ ଘୋଷଣା କରାଗଲା । ଏହି ଅଧିବେଶନରେ ସଭାପତିତ୍ୱ କରିଥିଲେ ସେତେବେଳର କଂଗ୍ରେସ ଯୁବଶକ୍ତିର ପ୍ରତୀକ ଜବାହରଲାଲ ନେହେରୁ । ସ୍ୱାଧୀନ ଭାରତରେ ଭବିଷ୍ୟତ ଅର୍ଥନୈତିକ ସ୍ୱରୂପର ସଙ୍କେତ ଦେଇ ନେହେରୁ ଘୋଷଣା କରିଥିଲେ, "I must plainly confess, I am a Socialist and Republican", (ମୁଁ ସ୍ପଷ୍ଟଭାବେ ଘୋଷଣା କରୁଛି ଯେ ମୁଁ ଜଣେ ସମାଜବାଦୀ ଓ ସାଧାରଣତନ୍ତ୍ରବାଦୀ) । କିନ୍ତୁ ଏହିସବୁ ଈପ୍‌ସିତ ଲକ୍ଷ୍ୟ ହାସଲ କରିବାର ଦାୟିତ୍ୱ ସମର୍ପଣ କରାଯାଇଥିଲା ଗାନ୍ଧିଜୀଙ୍କ ଉପରେ । ତତ୍‌ପରବର୍ତ୍ତୀ ୧୯୩୦-୩୧ ଓ ୧୯୩୧-୩୨ ଦୁଇ ବର୍ଷ ମଧରେ ସାରା ଭାରତବର୍ଷରେ ବିପୁଳ ଜନଜାଗରଣ ସୃଷ୍ଟି ହୋଇ ତୁହାକୁତୁହା ଅହିଂସ ଅସହଯୋଗ ଆନ୍ଦୋଳନର ଧକ୍‌କାରେ ବ୍ରିଟିଶ୍ ଶାସନର ଚେର ପ୍ରଥମ ଥରପାଇଁ ପୂରାପୂରି ଦୋହଲିଯାଇଥିଲା । ଆମପାଇଁ ଗୌରବର କଥା ଏହି ଯେ, ଓଡ଼ିଶାର ଲବଣ ସତ୍ୟାଗ୍ରହ ଏପରି ଏକ ଗଣସଂଗ୍ରାମରେ ପରିଣତ ହୋଇପାରିଥିଲା ଯେ ସମଗ୍ର ଭାରତବର୍ଷରେ ଓଡ଼ିଶାର ସ୍ଥାନ ଥିଲା ଦ୍ୱିତୀୟ, ଓଡ଼ିଶା ମଧରେ ବାଲେଶ୍ୱର ଜିଲ୍ଲାର ଇଂଚୁଡ଼ିର ସ୍ଥାନ ଥିଲା ସର୍ବପ୍ରଥମ । ସମଗ୍ର ଭାରତବର୍ଷ ମଧରେ ସବୁଠାରୁ ପ୍ରବଳତମ ଆନ୍ଦୋଳନ ହୋଇଥିଲା ଗୁଜୁରାଟରେ । ସ୍ୱୟଂ ଗାନ୍ଧିଜୀ ୧୯୩୦ ମାର୍ଚ୍ଚ ମାସ ୧୨ ତାରିଖ ଦିନ ସାବରମତୀ ଆଶ୍ରମରୁ ୭୮ ଜଣ ସତ୍ୟାଗ୍ରହୀଙ୍କୁ ସାଥୀରେ ନେଇ ଗୁଜୁରାଟର ସମୁଦ୍ର ଉପକୂଳସ୍ଥ 'ଦାଣ୍ଡୀ' ନାମକ ସ୍ଥାନକୁ ଯାଇ ଆଇନ ଅମାନ୍ୟ କରି ଲୁଣ ମାରିଥିଲେ । ମହାତ୍ମାଗାନ୍ଧୀଙ୍କ ନିର୍ଦ୍ଦେଶରେ ସାରା ଦେଶରେ ସେହିଦିନଠାରୁ ଲବଣ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଦାଣ୍ଡୀ ସତ୍ୟାଗ୍ରହୀମାନଙ୍କ ସହିତ ବାଲେଶ୍ୱରରୁ ମଧ ଜଣେ ସତ୍ୟାଗ୍ରହୀ ଯୋଗଦାନ କରିଥିଲେ ।

ଏହି ଐତିହାସିକ ଦାଣ୍ଡୀ ଅଭିଯାନକୁ ଆମର ଜାତୀୟକବି ବୀରକିଶୋର ଦାସ 'ଦରିଆ ଦଖଲ' ଆଖ୍ୟା ଦେଇ ତାଙ୍କର ଏକ ପ୍ରାଣସ୍ପର୍ଶୀ ସଂଗୀତ ରଚନା କରିଥିଲେ । ପୂର୍ଣ୍ଣ ସ୍ୱାଧୀନତା ହାସଲ କରିବା ଲକ୍ଷ୍ୟରେ ଆଇନ ଅମାନ୍ୟ ଆନ୍ଦୋଳନ କରିବା ପାଇଁ ୧୯୨୯ ଲାହୋର କଂଗ୍ରେସ ଅଧିବେଶନରେ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା । ଦେଶରେ ସେତେବେଳେ ଆହୁରି ଅନେକ କଠୋର, ପୀଡ଼ାଦାୟକ, ଦୁଃସହ ଆଇନ ଓ ଟିକସ ଲାଗୁକରାଯାଇଥିଲା; ମାତ୍ର ଗାନ୍ଧିଜୀ ସେସବୁ ବାଦ୍‌ଦେଇ ପ୍ରଥମେ କାହିଁକି ଏଇ ଲୁଣ ଉପରେ ଜାରିକରାଯାଇଥିବା ଟିକସ ପ୍ରତି ଦୃଷ୍ଟି ପକାଇଥିଲେ ତାହା ତାତ୍ପର୍ଯ୍ୟପୂର୍ଣ୍ଣ । ଘୋର ଅଶିକ୍ଷା ଓ ଅବସାଦଗ୍ରସ୍ତ ଗରିବ ଭାରତବାସୀଙ୍କ ହୃଦୟ ସ୍ପର୍ଶ କରିବାପାଇଁ ଗାନ୍ଧିଜୀଙ୍କଠାରେ ଅଭୂତପୂର୍ବ ଶକ୍ତି ନିହିତ ଥିଲା । ଭାତମୁଠାକ ସାଙ୍ଗକୁ ଲୁଣ ଟିକିଏ ଗରିବ କୁଡ଼ିଆରେ ଦୈନନ୍ଦିନ ଆହାର୍ଯ୍ୟ ସାମଗ୍ରୀ । ବଡ଼ଲୋକଙ୍କ ମଣୋହିରେ ପାଞ୍ଚଠାଆ ତିଅଣ, କିନ୍ତୁ ଗରିବ ଭାଗ୍ୟରେ ଖାଲି ମୁଠାଏ ଲୁଣ । ତା' ଉପରେ ପୁଣି ଟିକସ ! ଆମ ଦେଶର ତିନି ପାଖରେ ହଜାର ହଜାର ମାଇଲ ବ୍ୟାପୀ ସମୁଦ୍ର ଘେରି ରହିଛି । ମାତ୍ର ଆମ ଦେଶର ଲୋକେ ପୂର୍ବପରି ସମୁଦ୍ର ଉପକୂଳରେ ଲୁଣମାରିବା ମନାହୋଇଯାଇଥିଲା । ଏପରି ଏକ ଅନ୍ୟାୟ କଟକଣାଟା କେତେ ବଡ଼ ଅତ୍ୟାଚାର ସେକଥା ସାଧାରଣ ଲୋକଙ୍କ ପକ୍ଷରେ ବୁଝିବା ଅଧିକ ସହଜ ଥିଲା । ତେଣୁ ଗାନ୍ଧିଜୀ ଅସହଯୋଗ ଆନ୍ଦୋଳନ ପୂର୍ବରୁ ତତ୍କାଳୀନ ବଡ଼ଲାଟ୍ ଲର୍ଡ ଇରଉଇନ୍‌ଙ୍କୁ ଯେଉଁ ଚିଠି ଲେଖିଥିଲେ ସେଥିରେ ଅନ୍ୟାୟ ବିଷୟ ସହିତ ଗରିବ ରୟତର ଉତ୍ପୀଡ଼ନର ପ୍ରତିକାର ସମ୍ପର୍କରେ ଲେଖିଥିଲେ, ''ଯେଉଁ ଲୁଣ ଟିକକ ସେ ନିଶ୍ଚୟ ବ୍ୟବହାର କରିବ ତା' ଉପରେ ଏପରି ଟିକସ ବସାଇଦିଆଯାଉଛି ଯେ ବୋଝଟା ଯାଇ ତା'ରି ମୁଣ୍ଡରେ ପଡୁଛି ଓ ତାକୁ ଭାରାକ୍ରାନ୍ତ କରୁଛି । ଧନୀଲୋକ ଯେତିକି ଲୁଣ ଖାଏ ତା'ଠାରୁ ଅଧିକ ପରିମାଣରେ ଲୋଡ଼େ ଗରିବ ଲୋକ; ତା' ମଧ ତା'ର ନିଶ୍ଚୟ ଆବଶ୍ୟକ । ତେଣୁ ତାହାରି ଉପରେ ଟିକସ ଭାର ଅଧିକ ପଡୁଛି । X X X ଯଦି ଆପଣ ଏ ପ୍ରକାର ଅନ୍ୟାୟକୁ ଦୂର କରିବାର ଉପାୟ ନ କରନ୍ତି ଏବଂ ମୋର ଚିଠିଟି ଆପଣଙ୍କ ହୃଦୟକୁ ସ୍ପର୍ଶ କରିବାରେ ଯଦି ଅକୃତକାର୍ଯ୍ୟ ହୁଏ, ତେବେ ଚଳିତ ମାସ ଏଗାର ତାରିଖରେ ଆଶ୍ରମ ସହକର୍ମୀମାନଙ୍କୁ ନେଇ ଆଇନ ଅମାନ୍ୟ କରିବାକୁ ଆଗେଇ ବାହାରିପଡ଼ିବି । ଦରିଦ୍ର ଲୋକଙ୍କପାଇଁ ଏହି ଲୁଣ ଟିକସ ଅତ୍ୟନ୍ତ ଅନ୍ୟାୟ ବୋଲି ମୁଁ ବିଚାରୁଛି । ସ୍ୱାଧୀନତା ଆନ୍ଦୋଳନ ଏ ଦେଶର ଦରିଦ୍ରତମ ଲୋକଙ୍କର ମଙ୍ଗଳପାଇଁ ଉଦ୍ଦିଷ୍ଟ । ଅତଏବ ଏହି ଅନ୍ୟାୟ ଲବଣଟିକସରୁହିଁ ଏହାର ଶୁଭାରମ୍ଭ ହେବ ।'' ଉପରୋକ୍ତ କଥାଟି ବୁଦ୍ଧିଜୀବୀ ଦେଶପ୍ରେମୀମାନଙ୍କଠାରୁ ଆରମ୍ଭ କରି ଦରିଦ୍ର ଜନସାଧାରଣଙ୍କ ମନକୁ ଖୁବ୍ ଆକୃଷ୍ଟ କରିଥିଲା । ଅନ୍ୟପକ୍ଷରେ ବିଲାତିସରକାର ତାଙ୍କ ଶାସକସୁଲଭ ଅହଂକାର ତଥା ଅର୍ଥନୈତିକ ସ୍ୱାର୍ଥପ୍ରତି ଏହାକୁ ଏକ ବିରାଟ ଆହ୍ୱାନ ବା ମୁକାବିଲାରୂପେ ବିଚାର କରିଥିଲେ । କାରଣ ସେତେବେଳକୁ ଆମର ଲୁଣମରା ବାଣିଜ୍ୟକୁ କରଗତ କରି ବିଲାତ ସରକାର ଓଲଟି ଲିଭରପୁଲ୍‌ରୁ ଭାରତବର୍ଷକୁ ଲୁଣ ପଠାଇ ସେ ଦେଶର ଆୟ ବଢ଼ାଇବାରେ ଲାଗିଥା'ନ୍ତି ।

ଗାନ୍ଧିଜୀ ଲବଣ ସତ୍ୟାଗ୍ରହକୁ ଗଣସଂଗ୍ରାମର ପ୍ରଥମ ଅସ୍ତ୍ରରୂପେ ବାଛିବାର ଯେପରି ଏକ ବିଶେଷ ତାତ୍ପର୍ଯ୍ୟ ରହିଛି, ଓଡ଼ିଶାର ବାଲେଶ୍ୱର ଜିଲ୍ଲାସ୍ଥିତ ଇଂଚୁଡ଼ିକୁ ଲବଣ ସତ୍ୟାଗ୍ରହର ପ୍ରଧାନ କ୍ଷେତ୍ରରୂପେ ବଛାଯିବା ପଛରେ ମଧ ସେହିପରି ଐତିହାସିକ ତାତ୍ପର୍ଯ୍ୟ ରହିଛି । ଓଡ଼ିଶାରେ ଲବଣ ସତ୍ୟାଗ୍ରହ ପରିଚାଳନା କରିବାର ସମସ୍ତ କ୍ଷମତା ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ପକ୍ଷରୁ ଗାନ୍ଧିବାଦୀ ନେତା ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ସେତେବେଳର ପ୍ରଦେଶ କଂଗ୍ରେସ ସଭାପତି ଥିଲେ ଶ୍ରୀ ହରେକୃଷ୍ଣ ମହତାବ । ପ୍ରଦେଶ କଂଗ୍ରେସ ସଭାପତି ଓ ଅନ୍ୟମାନଙ୍କ ସହିତ ପରାମର୍ଶ ପରେ ଶ୍ରୀଯୁକ୍ତ ଚୌଧୁରୀ ଘୋଷଣା କରିଥିଲେ ଯେ ବାଲେଶ୍ୱର ସହରଠାରୁ ବାର ମାଇଲ ଦୂର ସମୁଦ୍ର ଉପକୂଳବର୍ତ୍ତୀ ଇଂଚୁଡ଼ି ଗ୍ରାମରେ ଲବଣ ସତ୍ୟାଗ୍ରହର ଶୁଭାରମ୍ଭ ହେବ । କାରଣ ଲୁଣ ଟିକସ ଓ ଲୁଣ ମାରିବା ଉପରେ ସେ କାଳର ସରକାରୀ କଟକଣା ଲୋକଙ୍କୁ କିପରି ବାଧୁଥିଲା

ସେଥିରେ ବାଲେଶ୍ବର ଜିଲ୍ଲାର ଲୋକେ ଅନେକାଂଶରେ ଭୁକ୍ତଭୋଗୀ ଥିଲେ । ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ପଙ୍ଗାଲୁଣ ଉତ୍ପାଦନ ଓ ରପ୍ତାନୀ କ୍ଷେତ୍ରରେ ବାଲେଶ୍ବର ପ୍ରସିଦ୍ଧି ଲାଭ କରିଥିଲା । ବର୍ଷକୁ ପ୍ରାୟ ନଅ ଲକ୍ଷ ମହଣ ଲୁଣ ଉତ୍ପାଦିତ ହେଉଥିଲା । ଏଥିରୁ ଆଖପାଖ ଅଞ୍ଚଳର ଚାହିଦା ମେଣ୍ଟାଇବାପାଇଁ ପ୍ରାୟ ଦେଢ଼ ଲକ୍ଷ ମହଣ ଲୁଣ ସ୍ଥାନୀୟ ଅଞ୍ଚଳମାନଙ୍କୁ ଚାଲାଣ ହେଉଥିଲା ଏବଂ ଅବଶିଷ୍ଟାଂଶ ବଙ୍ଗଳାକୁ ରପ୍ତାନୀ କରାଯାଉଥିଲା । ଉକ୍ତ କାର୍ଯ୍ୟରେ ପ୍ରାୟ ତିନି ଶହ ବାଲେଶ୍ବରୀ ଜାହାଜ ସମୁଦ୍ର ପଥରେ ଚଳାଚଳ ହେଉଥିଲା । ଇଷ୍ଟ-ଇଣ୍ଡିଆ କମ୍ପାନୀ ଅମଳରୁ ସ୍ଥାନୀୟ ଲୋକଙ୍କ ପ୍ରତି ଲୁଣମରା ଉପରେ କଟକଣା ଜାରିହୋଇ କାଳକ୍ରମେ ଲୁଣ ଉତ୍ପାଦନ ଓ ରପ୍ତାନୀ କାରବାର ସଂପୂର୍ଣ୍ଣରୂପେ ଧ୍ୱଂସପ୍ରାପ୍ତ ହୋଇଯାଇଥିଲା । ସମୁଦ୍ରଗାମୀ ଜାହାଜ ନିର୍ମାଣ, ମରାମତି ଓ ପରିବହନ ଆଦି ଧନ୍ଦା ବୁଡ଼ିଗଲା । ଫଳରେ ଜିଲ୍ଲାର ପ୍ରାୟ ଏକ-ତୃତୀୟାଂଶ ଲୋକ ଜୀବିକା ହରାଇଥିବାର କରୁଣ ଅନୁଭୂତି ଲୋକସ୍ମୃତିରୁ ପାସୋର ଯାଇନଥିଲା । ଏହି ପରିପ୍ରେକ୍ଷୀରେ ଲବଣ ସତ୍ୟାଗ୍ରହର ଶୁଭାରମ୍ଭ ନିମନ୍ତେ ଇଂଚୁଡ଼ି ଥିଲା ଏକ ପ୍ରକୃଷ୍ଟ କ୍ଷେତ୍ର । ବ୍ୟାସକବି ଫକୀରମୋହନ ସେନାପତିଙ୍କର 'ବାଲେଶ୍ବରୀ ପଙ୍ଗାଲୁଣ' ଉପାଖ୍ୟାନରେ ଏ ସଂପର୍କରେ ବହୁ ପ୍ରାସଙ୍ଗିକ ଐତିହାସିକ ତଥ୍ୟ ରହିଛି । ଜ୍ଞାନମଣ୍ଡଳର ପ୍ରଣେତା ମଧ୍ୟ ଓଡ଼ିଶାରେ ଲବଣ ସତ୍ୟାଗ୍ରହ ସଂପର୍କରେ ଅନେକ ଉପାଦେୟ ତଥ୍ୟ ପରିବେଷଣ କରିଛନ୍ତି । ମୋ ଲେଖା ମାଧ୍ୟମରେ ଓଡ଼ିଶାରେ ସତ୍ୟାଗ୍ରହର ଏକ ସବିଶେଷ ବର୍ଣ୍ଣନା ଦେବା ନିଷ୍ପ୍ରୟୋଜନ କାରଣ ମୋ ଲେଖାଟି ବିଶେଷ ଭାବରେ ମୋର ସ୍ମୃତି ତଥା ଅନୁଭୂତି ଉପରେ ଆଧାରିତ ତଥା ସୀମିତ ।

ଏହିଠାରେ ଆମ ବଂଶର ପୂର୍ବ ବୃତ୍ତାନ୍ତ ଓ ବୃତ୍ତି ସମ୍ବନ୍ଧରେ କିଛି ଆଭାସ ମିଳେ । କଲିକତାରେ ଜାହାଜ ମରାମତି ସମ୍ବନ୍ଧୀୟ 'କଳାପାତି' କାର୍ଯ୍ୟରେ ଆମ ବଂଶର କି ପ୍ରକାର ସମ୍ପର୍କ ଓ ଦକ୍ଷତା ଥିଲା ସେ କଥା ମୁଁ ପୂର୍ବରୁ କହିଛି । ମୋର ମନେହୁଏ ଆମ ବଂଶର ଲୋକେ ପ୍ରଥମେ ଜାହାଜ ମରାମତି କାର୍ଯ୍ୟ କରିବାରେ ଅଭିଜ୍ଞତା ଲୁଣପରିବହନକାରୀ ବାଲେଶ୍ବରୀ ଜାହାଜରୁ ଅର୍ଜନ କରିଥିଲେ । ବାଲେଶ୍ବରରୁ ବଙ୍ଗଳାକୁ ଯେଉଁ ଲୁଣ ରପ୍ତାନୀ ହେଉଥିଲା ତାହା ଗଙ୍ଗାନଦୀ କୂଳରେ ଥିବା 'ସାଲିକା' ଲୁଣଗୋଲାକୁ ଚାଲାଣ ହେଉଥିଲା ବୋଲି ବ୍ୟାସକବି ଫକୀରମୋହନ ତାଙ୍କର ପଙ୍ଗାଲୁଣ ସମ୍ବନ୍ଧୀୟ ଉପାଖ୍ୟାନରେ ଉଲ୍ଲେଖ କରିଛନ୍ତି । ବ୍ୟାସକବି ଯେଉଁ ସ୍ଥାନକୁ ସାଲିକା ବୋଲି ଚିହ୍ନିତ କରିଛନ୍ତି ତାହା ବର୍ତ୍ତମାନ ସାଲକିଆ ନାମରେ ପରିଚିତ । ଲୁଣଗୋଲାର ଭଗ୍ନାବଶେଷ ବର୍ତ୍ତମାନ ସୁଦ୍ଧା ସେଠାରେ ଦେଖିବାକୁ ମିଳେ । ସେହି ସ୍ଥାନଟିକୁ ଏବେ ଗୋଲାବାଡ଼ି ଅଞ୍ଚଳ ବୋଲି କୁହାଯାଉଛି । ଊନବିଂଶ ଶତାବ୍ଦୀର ଶେଷଭାଗରେ ଆମର ପୂର୍ବପୁରୁଷମାନେ ମୋର ପିତାମହଙ୍କ ଅମଳରୁ ସେହି ଲୁଣଗୋଲା ସାମ୍ନାରେ ଥିବା ଏକ 'ଖପରଲି' ଘରେ ରହୁଥିଲେ । ମୋର ବଡ଼ଭାଇ ଆମର ଏହି ପୈତୃକ ବ୍ୟବସାୟର ଦାୟିତ୍ୱ ନେବା ପରେ ସେ ଘରଟି ଛାଡ଼ି ଅନତିଦୂରରେ ଥିବା ଗୋଟିଏ କୋଠାଘରେ ରହିଲେ । କିନ୍ତୁ ତାଙ୍କ ପାଖରେ କାମ କରୁଥିବା କଳାପାତି କାରିଗରମାନେ ସେହି ପୁରୁଣା ଘରେ ବହୁଦିନ ପର୍ଯ୍ୟନ୍ତ ରହୁଥିବାର ମୁଁ ଜାଣିଥିଲି । ବୋଧହୁଏ ଏହି ବଂଶାନୁଚରିତଦ୍ୱାରା ଅଲକ୍ଷିତରେ ପରିଚାଳିତ ହୋଇ ମୁଁ ପିଲାଦିନେ ଆମ ଗାଆଁ ପିଲାଙ୍କୁ ମେଳି କରି ଚୁଲି ଜାଳି ହାଣ୍ଡିରେ ଗୋଳିଆ ମାଟିପାଣି ମିଶାଇ ଲୁଣ ମାରିବାର ଏ ଉଦ୍ଭଟ କଳ୍ପନା କରିଥିଲି । ମୁଁ କାହିଁକି ଲୁଣ ମାରିବାପାଇଁ ସେ ପ୍ରକାର ଉଦ୍ୟମ କରିଥିଲି ସେ ସଂପର୍କରେ ଅନେକଙ୍କର ବିସ୍ମୟ ଜାତ ହୋଇପାରେ । କାରଣ ପୁରୀ, ଗଞ୍ଜାମ ଆଦି ଜିଲ୍ଲାର ଉପକୂଳ ଅଞ୍ଚଳରେ ଜମିରେ ପଟାଳି କରି ସମୁଦ୍ର ଜଳରୁ ଲୁଣ ଉତ୍ପାଦନ କରାଯାଏ । ବାଲେଶ୍ବର ଜିଲ୍ଲାରେ ପଙ୍ଗାଲୁଣ ଉତ୍ପାଦନ ପ୍ରଣାଳୀ ଥିଲା ସଂପୂର୍ଣ୍ଣ ପୃଥକ୍ । ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ରୋଷ ଚୁଲି ଭଳି ବଡ଼ ବଡ଼ ବହୁ ମୁହଁଥିବା ଚୁଲି ଉପରେ ଏକାଠି ମହାପ୍ରସାଦ ହାଣ୍ଡି କୁଡ଼ୁଆ ସମାନ ହାଣ୍ଡିମାନ ବସାଇ, ସମୁଦ୍ର ଉପକୂଳ ଅଞ୍ଚଳରେ ଅଜସ୍ର ପରିମାଣରେ ଜନ୍ମୁଥିବା ଏକରକମ ଘାସ ଜାଳି ପଙ୍ଗାଲୁଣ ରନ୍ଧାଯାଉଥିଲା । ବାଲେଶ୍ବର ଉପକୂଳରେ ଏବେ ମଧ୍ୟ ନିମିକି

ସଡ଼କ ରହିଛି । ଏଠାରେ ମନର ଉଲ୍ଲାସରେ ଉଲ୍ଲେଖ କରିବାକୁ ଲୋଭ ହେଉଛି ଯେ ଗାନ୍ଧିଜୀଙ୍କର ଦାଣ୍ଡୀ ଯାତ୍ରା ଐତିହାସିକ ସ୍ଥାନର ନାମ ବହନ କରି ବାଲେଶ୍ୱରରେ ତହିଁ ପୂର୍ବରୁ ଲୁଣାଦାଣ୍ଡୀ ନାମକ ସ୍ଥାନ ରହିଛି । ବାଲେଶ୍ୱର ଜିଲ୍ଲାର ପୂର୍ବାଞ୍ଚଳ ଉତ୍ତର ସୁବର୍ଣ୍ଣରେଖା କୂଳଠାରୁ ଦକ୍ଷିଣର ଧାମରା ନଦୀକୂଳ ପର୍ଯ୍ୟନ୍ତ ଉପକୂଳବର୍ତ୍ତୀ ସ୍ଥାନର ନାମ ଥିଲା ଲୁଣାଦାଣ୍ଡୀ । ଯଦିଓ ଲବଣ ସତ୍ୟାଗ୍ରହ ନେଇ ଭାରତବର୍ଷର ସୁଦୂର ପଶ୍ଚିମ ଓ ପୂର୍ବ ଉପକୂଳବର୍ତ୍ତୀ ଏହି ଦୁଇ ସ୍ଥାନର ନାମକରଣରେ ପ୍ରାସଙ୍ଗିକତା ନାହିଁ ।

ଓଡ଼ିଶାରେ ପ୍ରଥମ ଲବଣ ସତ୍ୟାଗ୍ରହୀଦଳ ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ୧୯୩୦ ଏପ୍ରିଲ୍ ଛଅ ତାରିଖ ଦିନ କଟକରୁ ଇଂଚୁଡ଼ି ଅଭିମୁଖେ ଯାତ୍ରା ଆରମ୍ଭ କରିଥିଲେ । ଶ୍ରୀଯୁକ୍ତ ଚୌଧୁରୀଙ୍କ ଗହଣରେ ଥିଲେ ଆଚାର୍ଯ୍ୟ ହରିହର ଦାସ । ପୂର୍ବରୁ ଅନ୍ୟ ଗୋଟିଏ ସରକାରୀ ନିଷେଧାଜ୍ଞା ଭଙ୍ଗ କରିଥିବା ଅଭିଯୋଗରେ ବାଟରେ ଗୋପବନ୍ଧୁ ଚୌଧୁରୀଙ୍କୁ ଗିରଫ କରି ନିଆଗଲା । ତା'ପରେ ଇଂଚୁଡ଼ିରେ ଲବଣ ସତ୍ୟାଗ୍ରହ କରିବାର ଦାୟିତ୍ୱ ନେଲେ ଆଚାର୍ଯ୍ୟ ହରିହର । ବିପୁଳ ଜନସମାଗମ, ଉତ୍ସାହ, ଉଦ୍ଦୀପନା ଭିତରେ ଲବଣ ଆଇନ ଭଙ୍ଗ କରିବାରୁ ଇଂଚୁଡ଼ିଠାରେ ବହୁ ସତ୍ୟାଗ୍ରହୀଙ୍କ ସହିତ ଆଚାର୍ଯ୍ୟ ମହାଶୟଙ୍କୁ ଗିରଫ କରିନିଆଗଲା । ମୋ ଜାଣିବାରେ ବାଲେଶ୍ୱର ଗ୍ରାମାଞ୍ଚଳରେ ଯେଉଁମାନଙ୍କ ନେତୃତ୍ୱ ହେତୁ ଅଭୂତପୂର୍ବ ଜନଜାଗରଣ ସୃଷ୍ଟିହୋଇଥିଲା ସେମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ ସର୍ଦ୍ଦାର ସୁରେନ୍ଦ୍ର ନାଥ ଦାସ, ସର୍ବଶ୍ରୀ ମଥୁରା ମୋହନ ବେହେରା, ନୀଳାମ୍ବର ଦାସ, କରୁଣାକର ପାଣିଗ୍ରାହୀ, ବାଞ୍ଛାନିଧି ମହାନ୍ତି, ଭାଗବତ ସାହୁ, ଗୌରାଙ୍ଗ ଚରଣ ମହାନ୍ତି ଓ ଗୋକୁଳାନନ୍ଦ ମହାନ୍ତି । ଇଂଚୁଡ଼ି ସନ୍ନିକଟ ରସାଳପୁର ଥିଲା ସର୍ଦ୍ଦାର ସୁରେନ୍ଦ୍ରନାଥ ଦାସଙ୍କ ଗ୍ରାମ । ଲବଣ ସତ୍ୟାଗ୍ରହ ସମୟରେ ତାଙ୍କର ତ୍ୟାଗ, ଅକ୍ଳାନ୍ତ ପରିଶ୍ରମ ଓ ନିର୍ଭୀକତା ତାଙ୍କୁ ଜନସାଧାରଣଙ୍କ ମଧ୍ୟରେ ବିଶେଷ ଶ୍ରଦ୍ଧାଭାଜନ କରିଥିଲା । ତେଣିକି ଲୋକେ ତାଙ୍କୁ ସ୍ୱତଃ ସମ୍ମାନ ଦେଇ ସର୍ଦ୍ଦାର ବୋଲି ଡାକିଲେ । କାଳକ୍ରମେ ସେ ସମଗ୍ର ଓଡ଼ିଶାରେ 'ସର୍ଦ୍ଦାର ସୁରେନ୍ଦ୍ର' ବୋଲି ପରିଚିତ ହୋଇଥିଲେ । ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ଓ ଶ୍ରୀ ରବୀନ୍ଦ୍ର ମୋହନ ଦାସ ଏହି ସମୟରେ ପାଠପଢ଼ା ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇଥିଲେ ବୋଲି ମୁଁ ଶୁଣିଛି ।

ଲବଣ ସତ୍ୟାଗ୍ରହ ପରେ ବ୍ରିଟିଶ୍ ସରକାର ଗାନ୍ଧିଜୀଙ୍କୁ ଲଣ୍ଡନଠାରେ ଅନୁଷ୍ଠିତ ଗୋଲ୍‌ଟେବୁଲ୍ ବୈଠକକୁ ନିମନ୍ତ୍ରଣ କରିଥିଲେ । ସେଠାରେ ୧୯୩୧ର ଦ୍ୱିତୀୟ ଗୋଲ୍‌ଟେବୁଲ୍ ବୈଠକରେ ଅହିଂସାର ପୂଜାରୀ ଗାନ୍ଧିଜୀ ଭାରତୀୟ ଜନସଂଗ୍ରାମ ସଂପର୍କରେ ତାଙ୍କର ନିର୍ଦ୍ଧାରିତ ନୀତି ଘୋଷଣା କରି ସାମ୍ରାଜ୍ୟବାଦୀ ଓ ପୁଞ୍ଜିବାଦୀମାନଙ୍କୁ ଚକିତ କରିଦେଇଥିଲେ । ସେ କହିଥିଲେ –

"Above all, the Congress represents, in its essence, the teeming semi-starving millions scattered over the length and breadth of the land...Every interest which, in the opinion of the Congress, is worthy of protection, has to subserve the interests of this teeming millions, and so you find now and again apparently a clash between several interests, and if there is a real clash, I have no hesitation in saying on behalf of the Congress, that the Congress will sacrifice every interest for the sake of the interest of the teeming millions."

୧୯୨୯ ଲାହୋର କଂଗ୍ରେସ ଅଧିବେଶନଠାରୁ ପ୍ରଦତ୍ତ ଆନ୍ଦୋଳନାତ୍ମକ ଭୂମିକା ପରିପ୍ରେକ୍ଷୀରେ ଗାନ୍ଧିଜୀଙ୍କ ଏହି 'ନୀତିବାଦ' ଘୋଷଣା ଅତ୍ୟନ୍ତ ପ୍ରାସଙ୍ଗିକ ଓ ତାତ୍ପର୍ଯ୍ୟପୂର୍ଣ୍ଣ । ଗାନ୍ଧିଜୀ ରାଜନୈତିକ ବା ଅର୍ଥନୈତିକ ଦର୍ଶନ ନେଇ କୌଣସି ଅନ୍ଧବାଦୀ ଭୂମିକା (dogmatism)ର ପୂଜାରୀ ନଥିଲେ । ପୃଥିବୀ ଇତିହାସରେ ସେ ସର୍ବତୋଭାବେ ଏକ ଅଭିନବ ସମାଜବାଦୀ ମତବାଦର ଭୂମିକା ସୃଷ୍ଟି

କରିଥିଲେ ମଧ୍ୟ ତାହା ସାଧାରଣ ଭାବେ ବୁଝାଯାଉଥିବା "scientific socialism' ବା ମାର୍କସିଷ୍ଟ ସମାଜବାଦର କଳ୍ପନାଠାରୁ ଉତ୍କୃଷ୍ଟ ବିଚାର ଥିଲା । 'ସୋସାଲିଷ୍ଟ' ଓ 'ରିପବ୍ଲିକାନ୍' ପଣ୍ଡିତଜୀ ଲାହୋର କଂଗ୍ରେସରେ ଯେଉଁ ଆଦର୍ଶର ନେତୃତ୍ୱ ଦେଲେ, ଆମ ସମ୍ବିଧାନରେ ତାଙ୍କରିଦ୍ୱାରା ପ୍ରସ୍ତୁତ ଚିଠାର ଆଦ୍ୟ କଥନୀ (preamble)ରେ ସ୍ୱାଧୀନ ଭାରତ ସେହିପରି ଏକ ସାଧାରଣତନ୍ତ୍ର ରାଷ୍ଟ୍ର ହେବ ବୋଲି ଘୋଷଣା କରାଗଲା । ପୁନଶ୍ଚ ଗରିବ ଜନସାଧାରଣଙ୍କର ମଙ୍ଗଳ କରିବା ବାହାନାରେ ଆଭାଡ଼ି ଓ ଭୁବନେଶ୍ୱର କଂଗ୍ରେସ ଅଧିବେଶନରେ ଗୃହୀତ 'ସମାଜବାଦୀ' ନେତୃତ୍ୱ ପଥରୁ ତଥାକଥିତ ପ୍ରତିବନ୍ଧକ ଦୂର କରିବା ଉଦ୍ଦେଶ୍ୟ ରଖି ତାଙ୍କର କନ୍ୟା ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଦେଶରେ ଜରୁରୀକାଳୀନ ଆଇନ ଘୋଷଣା କରିଥିବା ସମୟରେ ତାଙ୍କ ପିତାଙ୍କ ସ୍ୱହସ୍ତରେ ପ୍ରଣୀତ ଆମ ସମ୍ବିଧାନ ଗ୍ରନ୍ଥର 'ମଙ୍ଗଳାଚରଣ' (preamble) ସଂଶୋଧନ କରି ସେଥିରେ ଭାରତବର୍ଷକୁ 'ସୋସାଲିଷ୍ଟ' ଓ 'ସିକ୍ୟୁଲାର' ଦେଶ ବୋଲି ପୁନର୍ବାର ଘୋଷଣା କରିଥିଲେ ।

କଥାରେ ଅଛି 'ଡିଙ୍କିଶାଳରୁ ଢେଙ୍କାନାଳ' । ସେହିପରି ଲବଣ ସତ୍ୟାଗ୍ରହରୁ ସଂବିଧାନର ତତ୍ତ୍ୱ ବଖାଣିବା ପ୍ରାସଙ୍ଗିକ ବୋଧ ହୋଇନପାରେ । କିନ୍ତୁ ଏଠାରେ ଏହି ପ୍ରସଙ୍ଗର ଏକ ଗୁରୁତ୍ୱପୂର୍ଣ୍ଣ ତାତ୍ପର୍ଯ୍ୟ ଅଛି, ଅର୍ଥାତ୍ ଭାରତ ସ୍ୱାଧୀନତା ସଂଗ୍ରାମ କାଳରୁ ଭବିଷ୍ୟତ ଭାରତବର୍ଷର ଯେଉଁ ଅର୍ଥନୈତିକ ଓ ସାମାଜିକ ଆଦର୍ଶର ଭିତ୍ତିଭୂମି କ୍ରମଶଃ ଗଢ଼ିଉଠିଥିଲା ତାହା ଏକାଧିକ ମହାନ୍ ନେତାମାନଙ୍କ ଆଦର୍ଶ ନୀତି ତଥା ନିଷ୍ଠା ଯୋଗୁଁ ସମ୍ଭବ ହୋଇଥିଲା । ସେମାନଙ୍କ ଘୋଷିତ ନୀତି ଓ କାର୍ଯ୍ୟରେ ପ୍ରବଞ୍ଚନା ନଥିଲା, ତାହା ଥିଲା ଏକାନ୍ତ ନୀତିନିଷ୍ଠ ଅଥଚ ବାସ୍ତବବାଦିତା । ସେଥିରୁ ଘୋଷିତ ହୋଇଥିଲା ଭାରତୀୟ ଜାତୀୟ କଂଗ୍ରେସର ଆଭାଡ଼ି ଓ ଭୁବନେଶ୍ୱରର କଂଗ୍ରେସ ପ୍ରସ୍ତାବ ଉପରେ ଆଧାରିତ ବାସ୍ତବବାଦୀ ପନ୍ଥା ସମାଜବାଦୀ ଢାଞ୍ଚାର ସମାଜ (socialistic pattern of society) । ଏହା ଗାନ୍ଧୀ, ନେହେରୁ, ସୁଭାଷ, ଶାସ୍ତ୍ରୀ ଯୁଗର ଅକପଟ ନୀତିନିଷ୍ଠ ଓ ବାସ୍ତବବାଦୀ ଆଭିମୁଖ୍ୟର ପ୍ରମାଣ ଏବଂ ଭାରତୀୟ ଆବହାଉଆରେ ସମାଜବାଦର ଅଭିବୃଦ୍ଧି ଓ ପ୍ରତିଷ୍ଠାପାଇଁ ଅନୁକୂଳ ମାର୍ଗ; କିନ୍ତୁ ୧୯୭୬ ମସିହାରେ ସଂବିଧାନର 'ମଙ୍ଗଳାଚରଣ'କୁ ସଂଶୋଧନ କରି 'ସମାଜବାଦୀ' ଓ 'ସିକ୍ୟୁଲାର' ଶବ୍ଦ ଖଞ୍ଜିବା ପଛରେ ଏହି କର୍ତ୍ତବ୍ୟନିଷ୍ଠା ନଥିଲା । ବରଂ ଦେଶରେ ବିଜ୍ଞାନସମ୍ମତ ସମାଜବାଦକୁ ଅତି କ୍ଷିପ୍ରଗତିରେ ପ୍ରଚଳନ କରିବାପାଇଁ ତତ୍କାଳୀନ ନେତୃତ୍ୱ ଅତ୍ୟନ୍ତ ବ୍ୟଗ୍ର ବୋଲି ଜରୁରୀକାଳୀନ ପରିସ୍ଥିତି ଭିତରେ ଜନମତକୁ ବିଭ୍ରାନ୍ତ କରିବାହିଁ ଥିଲା ଏହି ଅବାଞ୍ଛିତ ସଂଶୋଧନର ଏକମାତ୍ର ଲକ୍ଷ୍ୟ । ତାତ୍କାଳିକ ନ୍ୟାୟରେ ସଂବିଧାନ ପରି ଏକ ପବିତ୍ର ଗ୍ରନ୍ଥର ଏହା ଗ୍ରନ୍ଥୀ-ବିଦାରଣ ମାତ୍ର ।

ଏହି କଥାଟି ଅତି ଅଳ୍ପକାଳ ମଧ୍ୟରେ ନିଖିଳ ଭାରତ କଂଗ୍ରେସ କମିଟିର ଦିଲ୍ଲୀ ଅଧିବେଶନରେ କଂଗ୍ରେସ ନେତୃବର୍ଗଙ୍କର ଭାଷଣରୁହିଁ ସ୍ପଷ୍ଟ ହୋଇଯାଇଥିଲା । ବିଜ୍ଞାନସମ୍ମତ ସମାଜବାଦର ପଥ ସୁଗମ କରିବା ଉଦ୍ଦେଶ୍ୟରେ ସଂବିଧାନ ସଂଶୋଧନ କରାଯିବା ସତ୍ତ୍ୱେ ସରକାରୀ କାର୍ଯ୍ୟକଳାପ ତା'ର ଅନୁକୂଳ ପନ୍ଥା ନଧରି ବରଂ ପ୍ରତିକୂଳ ହେଉଛି ବୋଲି ତତ୍କାଳୀନ ଇନ୍ଦିରା କଂଗ୍ରେସର ଯୁବନେତା ଶ୍ରୀ ପ୍ରିୟରଞ୍ଜନ ଦାସମୁନ୍ସି ସେଠାରେ ଦୃଢ଼ ମନ୍ତବ୍ୟ ପ୍ରକାଶ କରିଥିଲେ । ଜରୁରୀକାଳୀନ ପରିସ୍ଥିତିରେ ଏଭଳି ସ୍ୱାଧୀନ ମତ ପ୍ରକାଶ କରିବା ଅବଶ୍ୟ ସବୁ କଂଗ୍ରେସ ନେତାମାନଙ୍କ ପକ୍ଷେ ସହଜ ବ୍ୟାପାର ନଥିଲା । ନିଜେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଏହାର ଜବାବ ଦେବାକୁ ଯାଇ ଯାହା ବୁଝାଇଥିଲେ ତାହାର ମର୍ମ ଏଇ — କଂଗ୍ରେସ ଦଳ ବା କଂଗ୍ରେସ ସରକାରଙ୍କର ସମାଜବାଦୀ ଆଭିମୁଖ୍ୟ ସାଇଣ୍ଟିଫିକ୍ ସୋସିଆଲିଜିମ୍ ନୁହେଁ, ସର୍ବୋଦୟ ଆଦର୍ଶରେହିଁ ଏହି ଲକ୍ଷ୍ୟ ବିଶେଷ ପରିସ୍ଫୁଟ । କିନ୍ତୁ ଇଂରାଜୀରେ ଏହି ଅର୍ଥବ୍ୟଞ୍ଜକ କୌଣସି ନିର୍ଦ୍ଦିଷ୍ଟ ଶବ୍ଦ ନାହିଁ । ସୋସିଆଲିଷ୍ଟ ଶବ୍ଦ ଏହି ଆଦର୍ଶର ନିକଟତମ ଭାବାର୍ଥ ପ୍ରକାଶ କରେ । ତେଣୁ ସେହି ଶବ୍ଦଟି ବ୍ୟବହାର କରିବା ସୁବିଧାଜନକ ହେଲା । ଏହା ଥିଲା ତାଙ୍କର ଯୁକ୍ତି । ୧୯୭୬ର ୪୨ ତମ ସମ୍ବିଧାନ ସଂଶୋଧନ ଉଦ୍ଦେଶ୍ୟରେ ଗଠିତ

ସ୍ୱତନ୍ତ୍ର କମିଟିରେ ସଭାପତି ଥିଲେ ସର୍ଦ୍ଦାର ସ୍ୱରଣ ସିଂହ । କଂଗ୍ରେସ ସଭାପତି ଥିଲେ ଶ୍ରୀ ଦେବକାନ୍ତ ବଡୁଆ । ସେ ଦୁହେଁ ମଧ୍ୟ କହିଥିଲେ ଯେ ଏହି 'ସୋସିଆଲିଜିମ୍' ଶବ୍ଦ ସଂଯୋଗ କରିବାଦ୍ୱାରା ପୂର୍ବରୁ ଆଭାଡ଼ି ଓ ଭୁବନେଶ୍ୱର କଂଗ୍ରେସ ଅଧିବେଶନରେ ଗୃହୀତ 'ମିଶ୍ରିତ ଅର୍ଥନୀତି' (mixed economy) ଓ ସମାଜବାଦୀ ଢାଞ୍ଚାରେ ସମାଜ ଗଠନ (socialistic pattern of society) ଆଦର୍ଶର ତିଳେମାତ୍ର ବ୍ୟତିକ୍ରମ କରିବା ଉଦ୍ଦେଶ୍ୟ ନ ଥିଲା । ତା'ହେଲେ ସମ୍ବିଧାନର ମଙ୍ଗଳାଚରଣରେ ସ୍ୱର୍ଗୀୟ ନେହେରୁଙ୍କ ସ୍ୱକୀୟ ଭାଷା (jusitce – social, economic and political equality of status and opportunity) ରେ ଖିଲାପ ଥିଲା କେଉଁଠି ? ଏକ ସ୍ୱତନ୍ତ୍ର ପ୍ରତିକୂଳ ପରିସ୍ଥିତିରେ ଜନମତକୁ ବିଭ୍ରାନ୍ତ କରିବା ପାଇଁ ୧୯୭୬ ମସିହାରେ ଉଲ୍ଲିଖିତମତେ ସମ୍ବିଧାନ ସଂଶୋଧନ କରିବା ଯେ ଏକ ବିରାଟ ପ୍ରତାରଣା ସ୍ୱରୂପ ଥିଲା, ଏଥିରୁ ତାହା ପ୍ରମାଣିତ ହୋଇଗଲା । ସମାଜବାଦୀ ଲକ୍ଷ୍ୟପଥରେ ସମ୍ବିଧାନସମ୍ମତ ପନ୍ଥାରେ ଦୃଢ଼ ପଦକ୍ଷେପ ନେବାର ଅବହେଳା କରି କେବଳ ପ୍ରତାରଣା ଓ ଛଳନା କରିବା ହେତୁହିଁ ଭାରତବର୍ଷର ସମାଜବାଦୀ ଆଭିମୁଖ୍ୟ ପ୍ରତିହତ ହେଉଛି– ସମ୍ବିଧାନର ଦୋଷ ହେତୁ ନୁହେଁ । ଏକଥା ସ୍ମରଣ ରଖିବାପାଇଁ 'ଡିଙ୍କିଶାଳରୁ ଢେଙ୍କାନାଳ' ପ୍ରସଙ୍ଗ ଉଠିଲା ।

ଦିନେ ଆମେମାନେ ଶ୍ରେଣୀରେ ବସି ପାଠ ପଢୁଥିଲୁ । ପଢ଼ାଉଥିଲେ ସ୍କୁଲ୍‌ର ହେଡ୍‌ପଣ୍ଡିତ ଶ୍ରୀ ଯଦୁମଣି ମହାପାତ୍ର । ମୁଁ ମଧ୍ୟ କ୍ଲାସ୍‌ରେ ବସି ପାଠ ଶୁଣୁଥାଏ । ଏହି ସମୟରେ କେତେଜଣ କଂଗ୍ରେସ ସତ୍ୟାଗ୍ରହୀ ମହାତ୍ମାଗାନ୍ଧୀଙ୍କର ଜୟଧ୍ୱନି କରି ଜାତୀୟ ସଙ୍ଗୀତ ଗାଇ ଗାଇ ରାସ୍ତାରେ ଯାଉଥାଆନ୍ତି । ଏସବୁ ଧ୍ୱନି ଶୁଣିଲାକ୍ଷଣି ମୋର ଲୋମମୂଳ ଟାଙ୍କୁରି ଉଠିଲା । ଖୁବ୍ ଉଦ୍‌ବେଳିତ ହୋଇପଡ଼ି ବାହାରକୁ ଯାଇ ଦେଖିବାପାଇଁ ଉଦ୍ୟମ କଲି । ମୁଁ ଛିଡ଼ାହେଲାକ୍ଷଣି ହେଡ୍‌ପଣ୍ଡିତଙ୍କ ଦୃଷ୍ଟି ମୋ ଉପରେ ପଡ଼ିଗଲା । ସେ ମୋ ହାବଭାବରୁ ବୁଝିପାରିଥିଲେ ଯେ ମୁଁ ବାହାରକୁ ଯିବାପାଇଁ ଉଦ୍ୟମ କରୁଛି । ମୋ ଦୁଇପାଖରେ ବସିଥିବା ଅନ୍ୟ ଦୁଇଜଣ ପିଲାଙ୍କୁ ମୋର ଦୁଇ କାନକୁ ଧରି ମୋତେ ବସାଇଦେବାପାଇଁ ସେ ତତ୍‌କ୍ଷଣାତ୍ ନିର୍ଦ୍ଦେଶ ଦେଇଥିଲେ । ତାଙ୍କର ହୁକୁମ ସାଙ୍ଗପିଲା ଦୁଇଜଣ ଅତି ନିଷ୍ଠାର ସହିତ ପାଳନ କରିଥିଲେ । ମୋର ବାହାରକୁ ଯିବା ହେଲାନାହିଁ । କାନ ଆଉଁସି ହୋଇ ରହିଲି ।

ବାଲ୍ୟଜୀବନର ଆଉ ଗୋଟିଏ ସ୍ମରଣୀୟ ଘଟଣା ମୋର ମନେପଡ଼େ । ୧୯୩୨ ମସିହାରେ ନିଶାନିବାରଣପାଇଁ ମହାତ୍ମାଗାନ୍ଧୀ ଡାକରା ଦେଇଥିଲେ । ସେଥିପାଇଁ ମଦ ଦୋକାନ, ଅଫିମ, ଗଞ୍ଜେଇ ଓ ତାଡ଼ି ଦୋକାନମାନଙ୍କ ଆଗରେ କଂଗ୍ରେସ ଲୋକେ ପିକେଟିଂ କରୁଥିଲେ । ଆମ ସ୍କୁଲର ଖରାଛୁଟି ହୋଇଥାଏ । ମୁଁ ଆମ ଗାଁରେ ଥାଏ । ଆମ ଗାଆଁ ଓ ଆଖପାଖ ଗାଆଁର ଖଜୁରୀ ଗଛମାନଙ୍କରେ ଚମାରମାନେ ତାଡ଼ି ଠେକି ବସାଉଥାଆନ୍ତି । ଗାଆଁ ଲୋକମାନଙ୍କୁ ମତାଇଲି ଯେ ଗାନ୍ଧିଜୀଙ୍କ କହିବାନୁସାରେ ତାଡ଼ି ଖାଇବାଟା ସ୍ୱାସ୍ଥ୍ୟପକ୍ଷେ କ୍ଷତିକାରକ, ତେଣୁ ଚାଲ ଆମେ ସମସ୍ତେ ମିଶି ଯେତେ ସବୁ ତାଡ଼ିଠେକି ବସିଛି ତାକୁ ଭାଙ୍ଗିଦେବା । ଚାରିଆଡ଼େ ବୁଲି ଲୁଚି ଲୁଚି ଟେକାମାରି ତାଡ଼ିଠେକି ଭାଙ୍ଗିବା କାର୍ଯ୍ୟରେ ଲାଗିଲୁ । ଏଣେ ଭୟ ଥାଏ ଯେ ଚମାର ହାବୁଡ଼ରେ ପଡ଼ିଗଲେ ସେ ତା'ର ଧାରୁଆ କଟୁରିରେ ଆମକୁ ହାଣିଦେବ । ସେହି ପ୍ରକାର ଆଦେଶ ସରକାର ତାଙ୍କୁ ଦେଇଛନ୍ତି ବୋଲି ଚମାରମାନେ କହିବୁଲୁଥିଲେ । ତେଣୁ ଚମାରକୁ ଉଣ୍ଡିବାପାଇଁ ଦୂରରେ କେତେକ ପିଲାଙ୍କୁ ଜଗାଇଦେଇ ଆମେ ଠେକିଭଙ୍ଗା କାର୍ଯ୍ୟରେ ଲାଗୁଥିଲୁ ।

## ବାଳକବନ୍ଦୀ

ଆମ ଅଞ୍ଚଳରେ ଖାଁକି ହାଟ ଗୋଟିଏ ପ୍ରଧାନ ସ୍ଥାନ । ସେଠାରେ ଅଫିମ, ଗଞ୍ଜେଇ ଓ ତାଡ଼ି ଦୋକାନ ଥାଏ । କଂଗ୍ରେସ ଓ ଗାନ୍ଧିଜୀଙ୍କର ନିଶା ନିବାରଣ କାର୍ଯ୍ୟକ୍ରମ ଅନୁସାରେ ଅଫିମ, ଗଞ୍ଜେଇ

ଦୋକାନମାନ ଆଗରେ ପିକେଟିଂ ହେଉଥାଏ । ମୁଁ ଦିନେ ଖାଁକି ହାଟକୁ ଯାଉଥିଲି । ଯିବା ବାଟରେ ଜଣେ ଅତି ବୁଢ଼ାଲୋକ ଦୌଡ଼ି ଦୌଡ଼ି ଆସୁଥିବାର ମୁଁ ଦେଖିଲି । ସେ ଖୁବ୍ ରାଗିକରି ବେଶ୍ ବିଚଳିତ ଥିବାର ମନେହେଲା । ମୁଁ ତାଙ୍କୁ ପଚାରିଲି, ଘଟଣା କ'ଣ ? ସେ ଅଫିମ ଦୋକାନ ଆଗରେ ପିକେଟିଂ ହେଉଥିବା କଥା କହି ମୋତେ ପଚାରିଲେ, 'ଗାନ୍ଧୀ କେଉଁଠାରେ ଅଛି ?' ଗାନ୍ଧୀଙ୍କୁ କାହିଁକି ଖୋଜୁଛ ବୋଲି ପଚାରିବାରୁ ସେ କହିଲେ, ''ମୁଁ ତାକୁ ହାଣିବି; ସେଇ କାଳେ ଅଫିମ ଦୋକାନ ସବୁ ବନ୍ଦ କରିବାକୁ ହୁକୁମ ଦେଇଛି । ମୁଁ ଅଫିମ ଆଣି ପାରିଲି ନାହିଁ । ମୋତେ ସନ୍ନିପାତ ଧରି ମୋ ନାକରୁ ପାଣିବୋହିଲାଣି ।'' ସେ ବୁଢ଼ା କଥା ଶୁଣି ଖାଁକି ହାଟର ଅଫିମ ଦୋକାନ ଆଗରେ କ'ଣ ହେଉଛି ଦେଖିବାପାଇଁ ମୋ ମନରେ ଖୁବ୍ ଆଗ୍ରହ ହୋଇଥିଲା । ହାଟରେ ପହଞ୍ଚି ଦେଖିଲି ଯେ ଅଫିମ ଦୋକାନ ଆଗରେ ବହୁତ ଲୋକ ରୁଣ୍ଡହୋଇଛନ୍ତି । ଆହୁରି ପାଖକୁ ଯାଇ ଦେଖିଲି କେତେକ ସତ୍ୟାଗ୍ରହୀ କଂଗ୍ରେସର ତ୍ରିରଙ୍ଗୀ ପତାକା ଧରି ମହାତ୍ମାଗାନ୍ଧୀଙ୍କର ଜୟଧ୍ୱନି କରୁଛନ୍ତି ଏବଂ ଆଉ କେତେକ ସତ୍ୟାଗ୍ରହୀ ଦୋକାନ ସାମ୍ନାରେ ତଳେ ଶୋଇଛନ୍ତି । କେତେକ ପୁଲିସ୍ କନେଷ୍ଟବଳ ଓ ଚୌକିଦାର ସେମାନଙ୍କୁ ଟଣାଓଟରା କରିବାରେ ଲାଗିଛନ୍ତି । ଏସବୁ ଦେଖି ମୋର ରକ୍ତ ଗରମ ହୋଇଯାଇଥିଲା । ମୁଁ ଯାଇ ସତ୍ୟାଗ୍ରହୀମାନଙ୍କ ଭିତରେ ପଶି ଖୁବ୍ ଉତ୍ତେଜିତ ହୋଇ ଜୟଧ୍ୱନି ଦେବାରେ ଲାଗିଲି । ତଳେ ଶୋଇଥିବା ଦଶ ବାର ଜଣ ସ୍ୱେଚ୍ଛାସେବକଙ୍କୁ ପୁଲିସ୍ ଗିରଫ କଲେ । ସେମାନଙ୍କୁ ସେଠାରୁ ଚଲେଇ ଚଲେଇ ଭଦ୍ରକ ପର୍ଯ୍ୟନ୍ତ ନେଇଥିଲେ । ସେ ସ୍ଥାନରୁ ଭଦ୍ରକ ପ୍ରାୟ ନଅ ମାଇଲ ବାଟ । ପୁଲିସ୍ ଓ ଚୌକିଆଙ୍କ ଘେର ମଧ୍ୟରେ ସତ୍ୟାଗ୍ରହୀମାନେ ଧ୍ୱନି ଦେଇ ଦେଇ ଚାଲିଥାଆନ୍ତି । ମୁଁ ସେମାନଙ୍କ ପାଖେ ପାଖେ ଚାଲି ଧ୍ୱନି ଦେବାରେ ଲାଗିଲି । ପୁଲିସ୍ ଯେତେ ବାରଣ କଲେ ମଧ୍ୟ ମୁଁ ସେକଥା କାନକୁ ନେଲିନାହିଁ । ଶେଷରେ ସେମାନେ ବିରକ୍ତ ହୋଇ ମୋତେ ଧରି ସତ୍ୟାଗ୍ରହୀମାନଙ୍କ ସହିତ ଭଦ୍ରକ ଥାନାକୁ ନେଇଗଲେ । ମୁଁ ଅତି ପିଲା ଥିଲି ବୋଲି ପ୍ରଥମେ ସେମାନେ ମୋତେ ଗିରଫ କରୁନଥିଲେ । ମାତ୍ର ମୁଁ ଯେତେବେଳେ ଜିଦ୍ ଧରି ସେମାନଙ୍କ ପଛରେ ଦୌଡ଼ି ଦୌଡ଼ି ଜୟଧ୍ୱନି ଦେଲି, ସେମାନେ ବାଧ୍ୟହୋଇ ମୋତେ ଗିରଫ ହୋଇଥିବା ସତ୍ୟାଗ୍ରହୀଙ୍କ ମଧ୍ୟରେ ନେଇଯାଇଥିଲେ । ଆମକୁ ଯେତେବେଳେ ଚଲେଇ ଚଲେଇ ପୁଲିସ୍‌ବାଲାମାନେ ଭଦ୍ରକ ଆଡ଼କୁ ନେଉଥାଆନ୍ତି, ସେଇ ରାସ୍ତାରେ ଭଦ୍ରକଆଡୁ ମୋର ବାପା ଆସୁଥିବାର ଆମେ ଦେଖିଲୁ । ମୋ ସହିତ ବୋଧହୁଏ ସେତେବେଳେ ଆମ ସେଠାକାର କଂଗ୍ରେସ କର୍ମୀ ଶ୍ରୀ ପ୍ରହ୍ଲାଦ ମହାପାତ୍ର ଗିରଫ ହୋଇ ଚାଲିଥିଲେ । ପୁଲିସ୍ ଓ ଚୌକିଆଙ୍କ ଗହଣରେ ମୋତେ ଦେଖି ବାପା ବଡ଼ ବ୍ୟସ୍ତ ହୋଇପଡ଼ିଥିଲେ । ମୋତେ ଛାଡ଼ିଦେବାପାଇଁ ବାପା ପୁଲିସ୍‌ଙ୍କୁ ଅନୁରୋଧକଲେ; ମାତ୍ର ଗିରଫ ହୋଇଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ମୁଁ ସେତେବେଳେ ସୁମାରି ହୋଇସାରିଥିଲି । ତେଣୁ ସେମାନେ ବାପାଙ୍କ ଅନୁରୋଧ ରକ୍ଷା କରିପାରିଲେ ନାହିଁ ।

ପୁଲିସ୍ ଆମମାନଙ୍କୁ ନେଇ ଭଦ୍ରକ କଚେରି ହତାରେ ପ୍ରଥମେ ପହଞ୍ଚାଇଥିଲେ ଏବଂ କିଛି ସମୟ ପରେ ରାତିରେ ନେଇ ଜେଲ୍‌ଖାନାରେ ଭର୍ତ୍ତିକଲେ । ଏହା ପରେ ମୁଁ କିପରି ଖଲାସ ହେବି ସେ କାର୍ଯ୍ୟରେ ମୋର ବାପା ଓ ବଡ଼ଭାଇ ଭଦ୍ରକ ଆସି ଲାଗିପଡ଼ିଲେ । ପ୍ରାୟ ଆଠ ଦଶ ଦିନ ମୋତେ ଜେଲ୍‌ରେ ରହିବାକୁ ପଡ଼ିଥିଲା । ମୁଁ ଅତି ପିଲା ଥିବାରୁ ଜେଲ୍‌ଖାନାର ଅନ୍ୟ ବନ୍ଦୀମାନେ ମୋତେ ଆଦର କରୁଥିଲେ । ଜେଲ୍‌ଖାନାରେ ପ୍ରତିଦିନ ସନ୍ଧ୍ୟାବେଳେ ରାଜନୈତିକ ବନ୍ଦୀମାନେ ସମୂହ ପ୍ରାର୍ଥନା କରନ୍ତି । ମୁଁ ସେ ପ୍ରାର୍ଥନାରେ ଯୋଗଦେଉଥିଲି । ଦିନେ ପ୍ରାର୍ଥନାରେ ବସି ଭକ୍ତକବିଙ୍କର 'ଅଖିଳବ୍ରହ୍ମାଣ୍ଡପତି ମୋ ଜୀବନସ୍ୱାମୀ' ପ୍ରାର୍ଥନାଟି ଖୁବ୍ ବଡ଼ପାଟିରେ ଗାଉଥିଲି । ଭଦ୍ରକ ଜେଲ୍‌ରେ ସେତେବେଳେ ଜଣେ କଡ଼ାପ୍ରକୃତିର ହାବିଲ୍‌ଦାର୍ ଥିଲେ । ତାଙ୍କର ଖୁବ୍ ଲମ୍ବା ଦାଢ଼ି ଥିଲା ଓ ଚେହେରା ମଧ୍ୟ ଖୁବ୍ ଭୟଙ୍କର ଥିଲା । ସେ ହଠାତ୍ ଆମେ ରହୁଥିବା ଘର ଦୁଆର ପାଖରେ ପହଞ୍ଚି ଯାଇ ବୁଟ୍ ଜୋତାକୁ ତଳେ ବାଡ଼େଇ ଖୁବ୍ ଜୋର୍‌ରେ ଗର୍ଜନ କରି ପାଟି ବନ୍ଦ କରିବାକୁ ହୁକୁମ୍

ଦେଲେ । ସମସ୍ତେ ସ୍ତବ୍ଧ ହୋଇଗଲେ । ସେ ପାଟିକରି କହିଲେ, ''ସେ ଶଳା ବଚକାନିଟା ପାଟିକରି ଗୀତଗାଉଛି – ତା' ଗୀତ ବନ୍ଦ କର । ଶଳା ଏଡ଼େ ବଙ୍କଟେ ପିଲା, ଗୋଟେ ଏଡ଼େ ପାଟିକରି ଗୀତ ଗାଉଛି ଯେ ତା' ପାଟି ଯାଇ ହାକିମ ଘରେ ଶୁଭୁଛି । ସେ କ'ଣ ମୋର ଚାକିରି ନବ ?'' ହାବିଲଦାରର ରଡ଼ି ଶୁଣି ଆମର ପ୍ରାର୍ଥନା ବନ୍ଦହୋଇଗଲା ସତ; କିନ୍ତୁ ପରଦିନ ସକାଳେ ଡାକ୍ତରଙ୍କ ପାଖରେ ଆମ ପ୍ରାର୍ଥନାରେ ହସ୍ତକ୍ଷେପ କରାଯାଉଛି ବୋଲି ହାବିଲ୍‌ଦାରଙ୍କ ବିରୁଦ୍ଧରେ ଅଭିଯୋଗ କରାଗଲା । ମାତ୍ର ସେ କିଛି ଶୁଣିଲେ ନାହିଁ । ଆମମାନଙ୍କୁ ଦିନେ ନେଇ ଭଦ୍ରକ କୋର୍ଟରେ ହାଜର କରାଗଲା । ସେତେବେଳେ ଭଦ୍ରକର ଏସ୍.ଡ଼ି.ଓ. ଥିଲେ ଶ୍ରୀ କାର୍ତ୍ତିକଚନ୍ଦ୍ର ଚନ୍ଦ୍ର । ହାକିମ ମୋ ବିଷୟରେ ପୁଲିସ୍‌କୁ ଅନେକ କଥା ପଚରାପଚରି କଲେ । କେଉଁ ଅବସ୍ଥାରେ ପୁଲିସ୍ ମୋତେ ଗିରଫ କରିଥିଲେ ସେମାନେ ହାକିମଙ୍କୁ କହିଲେ । ମୁଁ ଅଳ୍ପ ବୟସର ପିଲା ଥିଲି ବୋଲି ମୋତେ ଛାଡ଼ି ଦିଆଯାଇଥିଲା ଏବଂ ଅନ୍ୟମାନଙ୍କୁ ଜେଲଦଣ୍ଡ ହୋଇଥିଲା । ସେତେବେଳକୁ କିନ୍ତୁ ମୋର ପ୍ରଥମ କାରାବାସ ଆଠ ଦଶଦିନପାଇଁ ଭୋଗହୋଇଯାଇଥିଲା ।

## ଗାନ୍ଧୀଜୀଙ୍କ ଆକଟ ଓ ଆଶୀର୍ବାଦ

ସାମୟିକ ଭାବରେ ଆନ୍ଦୋଳନାତ୍ମକ କାର୍ଯ୍ୟରେ ବ୍ୟାପୃତ ହେଉଥିଲେ ମଧ୍ୟ ମୋର ପଢ଼ାପଢ଼ିରେ ବିଶେଷ ବ୍ୟାଘାତ ହେଉନଥିଲା । ମୁଁ ସ୍କୁଲରେ ପଢ଼ିଲାବେଳେ ବୋଧହୁଏ ୧୯୩୪ ମସିହାରେ ଦିନେ ମହାତ୍ମାଗାନ୍ଧୀ ରେଳଗାଡ଼ିରେ ଭଦ୍ରକ ଷ୍ଟେସନ ଦେଇ କଟକଆଡ଼େ ଯାଉଥିଲେ । ଗାନ୍ଧିଜୀ ସଦାସର୍ବଦା ତୃତୀୟ ଶ୍ରେଣୀ ଡବାରେ ଯାତ୍ରା କରୁଥିଲେ । ତାଙ୍କୁ ଦର୍ଶନ କରିବାପାଇଁ ସେଦିନ ଭଦ୍ରକ ଷ୍ଟେସନ ଲୋକାରଣ୍ୟ ହୋଇଥିଲା । ମୁଁ ମଧ୍ୟ ଭଦ୍ରକ ଷ୍ଟେସନକୁ ଯାଇଥିଲି । ମହାତ୍ମାଗାନ୍ଧୀଙ୍କର ଜୟଧ୍ୱନିରେ ଗଗନପବନ କମ୍ପୁଥାଏ । ମୁଁ ମନେ ମନେ ଭାବୁଥାଏ ଏତେ ଭିଡ଼ ମଧ୍ୟରେ ମୁଁ ଗାନ୍ଧୀଜୀଙ୍କୁ କିପରି ଦର୍ଶନ କରିବି ? ସମସ୍ତେ ରେଳ ଲାଇନ୍ ପାଖକୁ ଲାଗି ପ୍ଲାଟଫର୍ମ ଉପରେ ଛିଡ଼ାହୋଇଥାଆନ୍ତି । ସ୍ୱେଚ୍ଛାସେବକମାନଙ୍କଦ୍ୱାରା ସାବଧାନ କରାଇ ଦିଆଯାଇଥାଏ ଯେ ଗାଡ଼ି ଆସି ଷ୍ଟେସନରେ ରହିଲେ କେହି ଯେପରି ଜୋର୍‌କରି ଗାନ୍ଧିଜୀ ବସିଥିବା ଡବା ଭିତରକୁ ପଶିନଯାଆନ୍ତି; ଗାଡ଼ି ଠିଆହେଲା ପରେ ଗାନ୍ଧିଜୀ ଦୁଆର ପାଖକୁ ଆସି ସମସ୍ତଙ୍କୁ ଦର୍ଶନ ଦେବେ । ମୋ ଭାଗ୍ୟକୁ ଗାନ୍ଧିଜୀ ଯେଉଁ ତୃତୀୟ ଶ୍ରେଣୀ ଡବାରେ ଥିଲେ ସେଇଟି ଆସି ମୋରି ସାମ୍ନାରେ ରହିଲା । ମୋ ମନ ଆଉ ମୋ ଆୟତ୍ତରେ ରହିଲାନାହିଁ । ସେ ଡବାର ଝରକା ପାଖରେ ଯେଉଁଠାରେ ଗାନ୍ଧୀ ବସିଥିଲେ ମୁଁ ଡିଆଁମାରି ପଶିଗଲି । ଗାନ୍ଧିଜୀ ହଠାତ୍ ମୋତେ ଧରିପକାଇ ସସ୍ନେହ ଆକଟକରି ମୋ ମୁଣ୍ଡରେ ଗୋଟିଏ ଥାପୁଡ଼ା ମାରିଥିଲେ ଏବଂ ତଳକୁ ଓହ୍ଲାଇ ଦେଇଥିଲେ । ସେଦିନ ଗାନ୍ଧିଜୀଙ୍କଠାରୁ ମାଡ଼ ଖାଇ ମୁଁ ନିଜକୁ ଖୁବ୍ ଭାଗ୍ୟବାନ୍ ମନେକଲି । ସେଇ ଚାପୁଡ଼ାଟି ଗାନ୍ଧିଜୀଙ୍କର ମୋ ପ୍ରତି ଆଶୀର୍ବାଦ ବୋଲି ଲୋକେ କହିଥିଲେ । ଗାନ୍ଧିଜୀଙ୍କ ଦର୍ଶନ ସଙ୍ଗେ ସଙ୍ଗେ ତାଙ୍କର ସ୍ପର୍ଶ ମୋ ମନ ଓ ଶରୀରରେ ଜାଗରଣ ଖେଳାଇ ଦେଇଥିଲା । ତା'ପରେ ଗାନ୍ଧିଜୀ ରେଳଡବାର ଦୁଆର ପାଖକୁ ଆସି ଯୋଡ଼ହସ୍ତରେ ସମସ୍ତଙ୍କୁ ଦର୍ଶନ ଦେଇଥିଲେ ।

ତା'ର କିଛିଦିନ ପରେ ମହାତ୍ମାଗାନ୍ଧୀ ପଦଯାତ୍ରା କରି ପୁରୀରୁ ଭଦ୍ରକ ପର୍ଯ୍ୟନ୍ତ ଆସିଥିଲେ । ଏହା ଥିଲା ଗାନ୍ଧିଜୀଙ୍କର ଅସ୍ପୃଶ୍ୟତା ନିବାରଣ ତଥା ହରିଜନମାନଙ୍କୁ ଅବାଧରେ ମନ୍ଦିର ପ୍ରବେଶ ସମ୍ବନ୍ଧୀୟ ଐତିହାସିକ ପଦଯାତ୍ରା । ଗାନ୍ଧିଜୀ ପାଦରେ ଚାଲି ଚାଲି ଯାଉଥାଆନ୍ତି । ତାଙ୍କ ସାଙ୍ଗରେ ଭାରତବର୍ଷର ବିଭିନ୍ନ ସ୍ଥାନରୁ ଓ ବିଦେଶରୁ ଅନେକ ବିଶିଷ୍ଟ ବ୍ୟକ୍ତି ସେଇ ପଦଯାତ୍ରାରେ ଯୋଗ ଦେଇଥାଆନ୍ତି । ଭଦ୍ରକ ପୁରୁଣା ବଜାର ସନ୍ନିକଟ ସାଳନ୍ଦୀ ନଦୀ କୂଳରେ ଶ୍ରୀ ଜୀବରାମଜୀ କଲ୍ୟାଣଜୀଙ୍କଦ୍ୱାରା ସ୍ଥାପିତ ଆଶ୍ରମରେ ଆସି ଗାନ୍ଧୀ ଦିନକପାଇଁ ରହିଥିଲେ । ମୋର ପରମ ସୌଭାଗ୍ୟକୁ ଗାନ୍ଧିଜୀଙ୍କ ପାଖରେ ବସି ତାଙ୍କୁ ଗୋଟିଏ ତାଳପତ୍ର ବିଞ୍ଚଣାରେ ବିଞ୍ଚିବାର ସେବାକାର୍ଯ୍ୟ

ମୋତେ ମିଳିଥିଲା । ନିଜ କାର୍ଯ୍ୟଟିକୁ ମୋ ଜୀବନରେ ଗୋଟିଏ ଅତି ପବିତ୍ର, ଗୌରବମୟ ଓ ଉତ୍କୃଷ୍ଟ ଦାୟିତ୍ୱ ଜ୍ଞାନ କରି ଅତି ଉତ୍ସାହର ସହିତ ଗାନ୍ଧିଜୀଙ୍କୁ ବିଞ୍ଚିବାରେ ଲାଗିଥିଲି । ଭଦ୍ରକର ଜଣେ ବିଶିଷ୍ଟ କଂଗ୍ରେସ ନେତା ମୌଲବୀ ମହମ୍ମଦ ହନିଫ୍ ଗାନ୍ଧିଜୀଙ୍କ ଅଭ୍ୟର୍ଥନା ସମିତିର ସଭାପତି ଥିଲେ । ସେ ମୋତେ ବାଛିଥିଲେ ଗାନ୍ଧିଜୀଙ୍କୁ ବିଞ୍ଚିବାପାଇଁ । ମୋର ମନେପଡୁଛି, ସେତେବେଳକାର ବ୍ରିଟିଶ୍ ଶାସନର ହାକିମ ଭଦ୍ରକ ଏସ୍.ଡି.ଓ.ଙ୍କର ଉଦ୍ଧତ ବ୍ୟବହାର କଥା । ଏସ୍.ଡି.ଓ. ଥିଲେ ଦୁର୍ଗାଚରଣ ଦାସ । ଗାନ୍ଧିଜୀ ଯେତେବେଳେ ଚାଲି ଚାଲି ଆସୁଥାଆନ୍ତି ସେତେବେଳେ ସେ ତାଙ୍କ ଆଗରେ ଧୂଳି ଉଡ଼ାଇ ଯେପରି ଭାବରେ ଗାଡ଼ି ଚଳାଇ ଚାଲିଥାଆନ୍ତି ତାହା ସମସ୍ତଙ୍କ ମନରେ ଦୁଃଖ ଏବଂ କ୍ରୋଧ ଜାତକରାଇଥିଲା । ଭାରତବର୍ଷର କୌଣସିଠାରେ ହୁଏତ ଗାନ୍ଧିଜୀ ସରକାରୀ କର୍ମଚାରୀଙ୍କଠାରୁ ଏପ୍ରକାର ସୌଜନ୍ୟହୀନ ବ୍ୟବହାର ପାଇନଥିଲେ ବୋଲି ଲୋକେ କୁହାକୁହି ହେବାର ମୁଁ ଶୁଣିଛି । ଭଦ୍ରକରେ ଗାନ୍ଧିଜୀଙ୍କ ପ୍ରତି ନଜରବନ୍ଦୀ ଉଦ୍ଦେଶ୍ୟରେ ଏସ୍.ଡି.ଓ. ୧୪୪ ଧାରା ଜାରିକରିଥିଲେ । ଗାନ୍ଧିଜୀଙ୍କ ସାଙ୍ଗରେ ବୁଚୋ ନାମକ ଜଣେ ସାହେବ ପଦଯାତ୍ରା କରି ଆସିଥିଲେ । ସେ ନିଜେ ନାଜୀବାଦୀ ତଥା ହିଟଲରଙ୍କ ନେତୃତ୍ୱର ସମର୍ଥକ ଥିଲେ ମଧ୍ୟ ଅହିଂସା ସଂଗ୍ରାମ ପଛର ଅନୁଧ୍ୟାନପାଇଁ ଗାନ୍ଧିଜୀଙ୍କ ଗହଣରେ ଥିଲେ । ଏସ୍.ଡି.ଓ.ଙ୍କର ଏ ପ୍ରକାର କଦର୍ଯ୍ୟ ବ୍ୟବହାର ଦେଖି ସେ ବଡ଼ ଉତ୍ୟକ୍ତ ହୋଇଥିଲେ । ଏସ୍.ଡି.ଓ.ଙ୍କୁ ମୁହାମୁହିଁ ଦେଖିଲେ ତାଙ୍କୁ ଗୁଳି କରି ମାରିଦେବେ ବୋଲି ସେ କହୁଥିବାର ମୁଁ ଲୋକମୁଖରୁ ଶୁଣିଥିଲି ।

ଲୋକେ କୁହନ୍ତି, କଥାରେ ଅଛି 'ଭାଗ୍ୟରେ ଥିଲେ ଭଦ୍ରକ'; କିନ୍ତୁ ଏଠାରେ ଭଦ୍ରକର ଭାଗ୍ୟ କି ଅଫିସରଙ୍କର ଭାଗ୍ୟ ସେକଥା ପାଠକେ ବିଚାର କରିବେ । ଉପର ଘଟଣାକୁ ଲକ୍ଷ୍ୟ କରି ଲୋକଙ୍କ ମୁହଁରୁ ମୁଁ ଶୁଣିଛି ଯେ ଭଦ୍ରକ ଭାଗ୍ୟରେ ଏହି ପ୍ରକାର ହାକିମ (ଏସ୍.ଡି.ଓ.) ମିଳନ୍ତି । ଭଦ୍ରକ ଗୋଟିଏ ବଡ଼ ସବ୍‌ଡ଼ିଭିଜନ ଓ ସେତେବେଳେ କଂଗ୍ରେସର ଜଣେ ବିଶିଷ୍ଟ ନେତା ଶ୍ରୀ ହରେକୃଷ୍ଣ ମହତାବଙ୍କର ଘର ମଧ୍ୟ ତାହାରି ଭିତରେ । ଭଦ୍ରକ ସହରଟି ଥିଲା ଗୋଟିଏ ମୁସଲମାନବହୁଳ ଅଞ୍ଚଳ । ମୁସଲମାନମାନଙ୍କ ଉପରେ ମହମ୍ମଦ ହନିଫ୍‌ଙ୍କର ଗଭୀର ପ୍ରଭାବ ଥିଲା । ତେଣୁ ନାନା କାରଣରୁ ଇଂରେଜ ସରକାର ବଛା ବଛା ଜବରଦସ୍ତ ହାକିମଙ୍କୁ ସେଠାକୁ ପଠାନ୍ତି । ଲୋକେ କହନ୍ତି ଯେ, ଦିଲାଭର ଅଲି ନାମକ ଜଣେ ଏସ୍.ଡି.ଓ. ଅନେକ ଦିନ ଭଦ୍ରକ ସବ୍‌ଡିଭିଜନ୍ ଦାୟିତ୍ୱରେ ଥିଲେ । ସେ ଜଣେ ଅତି ଦୁର୍ଦ୍ଧାନ୍ତ ହାକିମ ବୋଲି ତାଙ୍କର ନାଆଁ ଥିଲା । ତାଙ୍କ ନାଆଁ ଶୁଣିଲାକ୍ଷଣି ଲୋକେ ଛାନିଆ ହୋଇଯାଉଥିଲେ । କେବଳ ତୋଷାମଦକାରୀଙ୍କ ବ୍ୟତୀତ ତାଙ୍କ ପାଖକୁ ଆଉ କେହି ଯାଉନଥିଲେ । ଲୋକେ ତାଙ୍କୁ ଦୁଲ୍ ଦୁଲ୍ ମିଆଁ ବୋଲି କହୁଥିଲେ । ଏହି ପ୍ରକାର ଗୋଟିଏ ନକଲି ଛଦ୍ମ ନାମରେ ତାଙ୍କୁ ଅଳଙ୍କୃତ କରି ଭଦ୍ରକର ସ୍ୱନାମଧନ୍ୟ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ନାଟକୀୟ ଭାଷାରେ 'ଦୁଲ୍ ଦୁଲ୍ ମିଆଁଙ୍କର ବହୁ ଅତ୍ୟାଚାର ଓ କୁକର୍ମର କାହାଣୀ' ବାଲେଶ୍ୱରରୁ ପ୍ରକାଶ ପାଉଥିବା ସାପ୍ତାହିକ ପ୍ରଜାତନ୍ତ୍ରରେ 'ପଞ୍ଚାମୃତ ନାଟକ' ଶିରୋନାମାରେ ପ୍ରକାଶ କରୁଥିଲେ । ଲୋକେ ଖୁବ୍ ଆଦରରେ ଏହି ଲେଖାକୁ ପଢ଼ି ମଉଜ କରୁଥିଲେ । ମୋର ଅଭିଭାବକ ଉଦୟବାବୁ ଏହିସବୁ ପୁରୁଣା ପଞ୍ଚାମୃତ ନାଟକ ଲେଖାରୁ କେତେକାଂଶ ପଢ଼ି ଆମକୁ ଶୁଣାଇବାର ମୋର ମନେଅଛି । ପଞ୍ଚାମୃତ ନାଟକରେ ଦୁଲ୍ ଦୁଲ୍ ମିଆଁଙ୍କର ସଙ୍ଗୀ, ସହଯୋଗୀ ଓ ସମର୍ଥକମାନଙ୍କୁ ମଧ୍ୟ ଗୋଟିଏ ଗୋଟିଏ ନକଲି ନାଆଁରେ ଅଳଙ୍କୃତ କରି ସେମାନଙ୍କର ଚକ୍ରାନ୍ତ ଓ କୁକର୍ମର କାହାଣୀ ପ୍ରକାଶ ପାଉଥିଲା । କନିକାର ତତ୍କାଳୀନ ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ସେତେବେଳେ ବାଲେଶ୍ୱର ଜିଲ୍ଲାରେ ଇଂରେଜ ସରକାରଙ୍କର ଜଣେ ବଡ଼ ଦାମ୍ଭିକ ସମର୍ଥକ ଥିଲେ ଏବଂ ସେଠାକାର ରାଜନୀତିକୁ ମଧ୍ୟ ବିଶେଷ ଭାବରେ ପ୍ରଭାବିତ କରୁଥିଲେ । ସେ କିପରି କନିକାର ପ୍ରଜା ଆନ୍ଦୋଳନକୁ ଦବାଇବାପାଇଁ ଏସ୍.ଡି.ଓ. ଦୁଲ୍ ଦୁଲ୍ ମିଆଁଙ୍କୁ ବ୍ୟବହାର କରୁଥିଲେ ସେ ବିଷୟ ପଞ୍ଚାମୃତ ନାଟକରେ ପ୍ରକାଶ ପାଉଥିଲା । ପଞ୍ଚାମୃତ ନାଟକରେ କନିକା ରାଜାଙ୍କୁ 'କନକପୁରର ରାଜା' ବୋଲି

ଲେଖାଯାଉଥିଲା । ସେହିଭଳି ବାଲେଶ୍ୱର ଜିଲ୍ଲାର ସରକାରୀ ଓକିଲ ସ୍ୱର୍ଗତ ନରେନ୍ ସରକାର କନିକା ରାଜାଙ୍କର ଜଣେ ବଡ଼ ସମର୍ଥକ ଥିଲେ । ତାଙ୍କର ଗୋଟିଏ ଦାନ୍ତରେ ସୁନା ମରାଯାଇଥିଲା ବୋଲି ତାଙ୍କୁ 'ସ୍ୱର୍ଣ୍ଣଦନ୍ତ' ଆଖ୍ୟା ଦିଆଯାଇଥିଲା । ବାସୁଦେବପୁର ଇରମର ଜମିଦାର ଦୁଇଭାଇ ସ୍ୱର୍ଗତ ମୁକ୍ତିକାନ୍ତ ପାଢ଼ୀ ଓ ରାଧାକାନ୍ତ ପାଢ଼ୀଙ୍କ ମଧ୍ୟରୁ ଜଣେ ଖୁବ୍ ଡେଙ୍ଗା ଓ ଅନ୍ୟ ଜଣକ ଟିକିଏ ସ୍ଥୂଳକାୟ । ସେମାନଙ୍କୁ ଯଥାକ୍ରମେ 'ଲମ୍ବରାଜ' ଓ 'ଖମ୍ବରାଜ' ଆଖ୍ୟାରେ ଅଳଙ୍କୃତ କରାଯାଇଥିଲା । ଧାମନଗର କଣ୍ଡାପାରିର ଜମିଦାର ଜଗନ୍ନାଥ ଦାସଙ୍କୁ 'କଣ୍ଡକେଶ୍ୱର' ବୋଲି ଲେଖାଯାଉଥିଲା । ଭଦ୍ରକ ହାଇସ୍କୁଲର ପ୍ରଧାନ ଶିକ୍ଷକ ସ୍ୱର୍ଗତ ଗୋକୁଳାନନ୍ଦ ନାୟକ କନିକା ଗୋଷ୍ଠୀର ଅନ୍ଦରମହଲ ଲୋକ ଥାଇ ଏସ୍.ଡି.ଓ.ଙ୍କର ପ୍ରିୟପାତ୍ର ଥିବାରୁ ଏବଂ କଥା କହିଲାବେଳେ ସେ ଅନେକ ସମୟରେ ହୁଙ୍କାର ମାରୁଥିବାରୁ ତାଙ୍କୁ ଉକ୍ତ ପଞ୍ଚାମୃତ ନାଟକରେ 'ଷଣ୍ଢେଶ୍ୱର' ଆଖ୍ୟା ଦିଆଯାଇଥିଲା । ସେହିପରି ଭଦ୍ରକ ହାଇସ୍କୁଲ ପାଖ ବଙ୍କ ସାହିର ସ୍ୱର୍ଗତ ଗୋପାଳ ଚରଣ ଦାସ ଯେ କି ଅନେକ ଦିନ କନିକା ରାଜାଙ୍କର ମ୍ୟାନେଜର ଥିଲେ ତାଙ୍କର ନକଲି ନାମ ରଖାଯାଇଥିଲା 'ବଙ୍କେଶ୍ୱର' । ବାଲେଶ୍ୱର ଜିଲ୍ଲାରେ ସେତେବେଳେ କନିକା ରାଜାଙ୍କର ନେତୃତ୍ୱରେ ଗୋଟିଏ ରାଜନୈତିକ ଦଳ ଥିଲା ଏବଂ ସେହି ଦଳର ପୃଷ୍ଠପୋଷକତା କରୁଥିଲେ ଉପରୋକ୍ତ ବ୍ୟକ୍ତିମାନେ । ଜିଲ୍ଲାରେ କଂଗ୍ରେସର ପ୍ରଭାବକୁ କ୍ଷୁଣ୍ଣ କରିବା ଥିଲା ଏମାନଙ୍କର ଏକମାତ୍ର ଉଦ୍ଦେଶ୍ୟ । ସେଥିପାଇଁ 'ଦୁଲ୍ ଦୁଲ୍ ମିଆଁ'ଙ୍କ ସହଯୋଗ ସେମାନେ ସବୁବେଳେ ପାଉଥିଲେ । ଜିଲ୍ଲାବୋର୍ଡ଼ ଓ କାଉନ୍‌ସିଲ୍ ନିର୍ବାଚନରେ ଏମାନେ ସମସ୍ତ ଶକ୍ତି ଖଟାଇ କଂଗ୍ରେସକୁ ବିରୋଧ କରୁଥିଲେ । ସେତେବେଳେ କେବଳ ଧନୀଲୋକ, ଆୟ ଟିକସଦାତା, ଚୌକିଦାରି ଟିକସଦାତା ଓ ଉଚ୍ଚଶିକ୍ଷିତ ବ୍ୟକ୍ତିମାନେ ଭୋଟ ଦେଉଥିଲେ । ତେଣୁ ନିର୍ବାଚନ ଯୁଦ୍ଧରେ କଂଗ୍ରେସକୁ ବାଲେଶ୍ୱର ଜିଲ୍ଲାରେ ଏହି ଗୋଷ୍ଠୀ ଅନେକ ସମୟରେ ହରାଇ ଦେଉଥିଲେ । ମୁଁ ଶୁଣିଛି, ଏହି 'ପଞ୍ଚାମୃତ' ଲେଖା ବାଲେଶ୍ୱର ଜିଲ୍ଲାର ଲୋକଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇଥିଲା ଏବଂ ଲୋକଚକ୍ଷୁରେ ଏହି ଗୋଷ୍ଠୀର ଲୋକଙ୍କ ପ୍ରତି ବଡ଼ ତାଚ୍ଛଲ୍ୟ ଭାବ ପ୍ରକାଶ ପାଇଥିଲା । ଏସବୁ ଶୁଣିଲା ପରେ ମୋ ମନରେ ମଧ୍ୟ ସେ ଗୋଷ୍ଠୀର ଲୋକଙ୍କ ପ୍ରତି ରାଜନୈତିକ ବୈରଭାବ ଜାଗରିତ ହୋଇଥିଲା ।

## ତ୍ୟାଗ, ରାଗ, ବିଭାଗର ଆଦ୍ୟ ଅନୁଭୂତି

ମୌଲବୀ ମହମ୍ମଦ ହନିଫ ଥିଲେ ଜଣେ ବିଶିଷ୍ଟ ଜନପ୍ରିୟ ବ୍ୟକ୍ତି । ନାରାୟଣ ଚନ୍ଦ୍ର ସ୍କୁଲ ନିକଟରେ ତାଙ୍କର ଘର । କେହି କେହି ତାଙ୍କୁ ଡାକନ୍ତି ହନିଫ୍‌ବାବୁ, ଅନ୍ୟ କେହି କେହି ମାଷ୍ଟରଜୀ । ଅବକାରୀ ବିଭାଗର ଇନ୍‌ସ୍ପେକ୍ଟର ଭାବରେ ସେ ସରକାରୀ ଚାକିରି କରୁଥିଲେ । ସେତେବେଳେ ସେହିଭଳି ଚାକିରିରେ ବେଶ୍ ଦି' ପଇସା ରୋଜଗାର ଓ ସମ୍ମାନ ମଧ୍ୟ ଥିଲା । ମାତ୍ର ହନିଫ୍‌ବାବୁ ୧୯୨୧ ମସିହାରେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବା ଉଦ୍ଦେଶ୍ୟରେ ମହାତ୍ମାଗାନ୍ଧୀଙ୍କର ଆହ୍ୱାନରେ ଉଦ୍‌ବୁଦ୍ଧ ହୋଇ ଚାକିରି ଛାଡ଼ିଦେଇଥିଲେ । ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ କାରାବରଣ କରିଥିଲେ । ମୁଁ ସ୍କୁଲରେ ପଢ଼ିଲାବେଳେ ତାଙ୍କ ତ୍ୟାଗ ଓ କାର୍ଯ୍ୟରେ ପ୍ରଭାବିତ ହୋଇଥିଲି । ପୁରୁଣା ବଜାରର ରାସ୍ତାପାଖରେ ହନିଫ୍‌ବାବୁଙ୍କର ଗୋଟିଏ ଦୋକାନ ଥିଲା । ସେଇଟା ହେଉଛି ସାଇକେଲ୍ ଓ ଘଡ଼ି ମରାମତି ଦୋକାନ । ହନିଫ୍‌ବାବୁ ନିଜେ ସାଇକେଲ୍ ଓ ଘଡ଼ି ମରାମତି କାର୍ଯ୍ୟ କରୁଥିଲେ । ଅଧିକାଂଶ ସମୟରେ ଆଖିରେ ମାଗ୍‌ନିଫାଇଙ୍ଗ ଗ୍ଲାସ୍ ଲଗାଇ ଗୋଟିଏ କାଛକୁ ଆଉଜି ବସି ସେ ଘଡ଼ି ମରାମତି କାର୍ଯ୍ୟ କରୁଥିବାର ଦେଖାଯାଏ । ସେଇ ମ୍ୟାଗ୍‌ନିଫାଇଙ୍ଗ୍ ଗ୍ଲାସ୍ ସାହାଯ୍ୟରେ ସେ ଘଡ଼ିର ସୂକ୍ଷ୍ମ ଅଂଶଗୁଡ଼ିକୁ ଦେଖିପାରୁଥିଲେ । ଚାକିରି ଛାଡ଼ିଲା ପରେ ତାଙ୍କର ଆର୍ଥିକ ଅବସ୍ଥା ବଡ଼ ଶୋଚନୀୟ ହୋଇପଡ଼ିଥିଲା । ତେଣୁ ଏହିପରି ନିଜର ଶାରୀରିକ ଶ୍ରମଦ୍ୱାରା ସେ ତାଙ୍କ ପରିବାରର ଭରଣପୋଷଣ କରୁଥିଲେ । ଦେଶମାତୃକାପାଇଁ ଦୁଃଖବରଣ ଓ ତ୍ୟାଗର ମୂକତ ନିଦର୍ଶନ ମୁଁ ମୋନ

ଛାତ୍ରାବସ୍ଥାରୁ ମହମ୍ମଦ ହନିଫ୍‌ଙ୍କ ଜୀବନରେ ଲକ୍ଷ୍ୟ କରିଥିଲି । ତାଙ୍କର ଘରଡିହ ଖଣ୍ଡିକ ବ୍ୟତୀତ ଆଉ ଗୁଣ୍ଠେ ହେଲେ ବି ଜମି ନଥିଲା । ଗାଡ଼ିଟିଏ ଥିଲା ତାଙ୍କର ସର୍ବସ୍ୱ । ଗାନ୍ଧିଜୀଙ୍କ ଡାକରାରେ ତାକୁ ବି ଛାଡ଼ିଲେ । ଦୋକାନଟିର ଆୟ ଉପରେ ସେ ସଂପୂର୍ଣ୍ଣଭାବେ ନିର୍ଭର କରୁଥିଲେ । ଅନେକ ସମୟରେ ସେ ଭୋକିଲା ରହୁଥିଲେ ଏବଂ ଚା' ଖାଇ ଖାଇ ଭୋକ ମାରୁଥିଲେ । ବିନା ତରକାରିରେ ସେ ଭାତ ବା ରୁଟି ଖାଇବାର ମୁଁ ଦେଖିଛି । ଅଣ୍ଡା ବା ପିଆଜ ଟିକିଏ ଲଗାଇ ସେ ଭାତ ବା ରୁଟି ଖାଇବା ଚଳାଇ ଦିଅନ୍ତି । ତାଙ୍କ ଘରେ ଏହି ପ୍ରକାର ଖାଦ୍ୟ ମୁଁ ମଧ ଖାଇଛି । ଓଡ଼ିଶାରେ ସେତେବେଳେ ଯେଉଁ ଦୁଇ ତିନିଜଣ ଜାତୀୟବାଦୀ ମୁସଲମାନ ନେତା ଥିଲେ ହନିଫ୍‌ବାବୁ ଥିଲେ ସେମାନଙ୍କ ଭିତରୁ ଅନ୍ୟତମ । କିନ୍ତୁ ପରବର୍ତ୍ତୀ କାଳରେ ତାଙ୍କ ତ୍ୟାଗର ପ୍ରଭାବ ମୁସଲମାନ ଭାଇମାନଙ୍କ ମଧରେ ଥିବା ଧର୍ମାନ୍ଧଗୋଷ୍ଠୀର ଲୋକଙ୍କ ଉପରେ ପଡ଼ିଲାନାହିଁ । ସେ କାଳରେ ମୁସଲିମ୍ ଲିଗ୍‌ର ସାଂପ୍ରଦାୟିକ ପ୍ରଚାର ଏପରି ନଗ୍ନରୂପ ଧରିଲା ଯେ ଭଦ୍ରକର ମୁସଲମାନ ସଂପ୍ରଦାୟ ହନିଫ୍‌ବାବୁଙ୍କୁ ଏକପ୍ରକାର ଏକଘରିଆ କରି ରଖିଥିଲେ । ତାଙ୍କଠାରୁ ପ୍ରାୟ ଦୂରେଇ ରହୁଥିଲେ, କିନ୍ତୁ ତାଙ୍କୁ କେହି କେବେ ଅସମ୍ମାନ କରୁନଥିଲେ । ଭଦ୍ରକ ପୁରୁଣା ବଜାରରେ ସେ ତାଙ୍କର ଦୋକାନଘର ଛଡ଼ା ଆଉ କେଉଁଠାକୁ ଯାଉନଥିଲେ । ଆଉ ଜଣେ ଜାତୀୟବାଦୀ ମୁସଲମାନ ସୟେଦ୍ ଇଉସୁଫ୍ ଅଲ୍ଲୀଙ୍କର ସେହି ବଜାରରେ ଗୋଟିଏ ବିଡ଼ି ଦୋକାନ ଥିଲା । ସମୟସମୟରେ ହନିଫ୍‌ବାବୁ ସେଠାରେ ଲୋକଗହଳି ଭିତରେ ବସିବାର ଦେଖାଯାଉଥିଲା । ମୁସଲିମ୍ ଲିଗ୍‌ର ପ୍ରଚାର ହନିଫ୍‌ବାବୁଙ୍କ ବିରୁଦ୍ଧରେ ଏପରି ଉତ୍କଟ ହେଲା ଯେ ବାଲେଶ୍ୱର ଜିଲ୍ଲାର ମୁସଲମାନ ସଂପ୍ରଦାୟର ବିଶିଷ୍ଟ ମୁସଲମାନମାନେ ତାଙ୍କ ସହିତ ସଂପର୍କ ରଖିବାକୁ କୁଣ୍ଠିତ ହେଉଥିଲେ । ସେ ଜିଲ୍ଲା ବୋର୍ଡ଼ର ଚେୟାରମ୍ୟାନ୍ ଥିଲାବେଳେ ଅନେକ ସମୟରେ ବାଲେଶ୍ୱରରେ ରହୁଥିଲେ । ସେଠାରେ ମୁସଲମାନ ବନ୍ଧୁମାନଙ୍କ ମଧରୁ କେବଳ ଜାତୀୟବାଦୀ ବିଶିଷ୍ଟ ମୁକ୍ତିୟାର ସୟେଦ୍ ଅବଦୁଲ୍ ଜବ୍‌ବର ତାଙ୍କର ବନ୍ଧୁ ହୋଇ ରହିଥିଲେ । ହନିଫ୍‌ବାବୁଙ୍କ ଘରେ ମୋର ଜବ୍‌ବରବାବୁଙ୍କ ସହ ପରିଚୟ ହୋଇଥିଲା ଏବଂ ସେ ମୋର ଜଣେ ବନ୍ଧୁ ଥିଲେ । ସେ ଇହଧାମରେ ନାହାନ୍ତି । ଭଦ୍ରକର ଗୁଳିଦରଡ଼ାର ଡାକ୍ତର ଲତିଫ୍ ଓ ଡାକ୍ତର ମୌଲାବକ୍‌ସ ପ୍ରଥମେ ହନିଫ୍‌ବାବୁଙ୍କର ବଡ଼ ସମର୍ଥକ ଥିଲେ । ମାତ୍ର ପରେ ସେମାନେ ମଧ ମୁସଲିମ୍ ଲିଗ୍ ପ୍ରଚାରରେ ପ୍ରଭାବିତ ହୋଇ ତାଙ୍କୁ ଛାଡ଼ି ଚାଲିଯାଇଥିଲେ; କିନ୍ତୁ ହିନ୍ଦୁ ସଂପ୍ରଦାୟର ଲୋକେ ତାଙ୍କୁ ଅତିଶୟ ସମ୍ମାନ ଦେଉଥିଲେ । ଭଦ୍ରକର ପ୍ରତ୍ୟେକ ସାଧାରଣ କାର୍ଯ୍ୟରେ ସ୍ୱର୍ଗୀୟ ନରେନ୍ଦ୍ର ପ୍ରସାଦ ପଟ୍ଟନାୟକ, ରାଧାକାନ୍ତ ମିଶ୍ର, କୈଳାସ ସାହୁ, ଘନଶ୍ୟାମ ସାହୁ ଓ କୈଳାସ ଚନ୍ଦ୍ର ମହାନ୍ତି ତାଙ୍କୁ ସାହାଯ୍ୟ କରୁଥିଲେ । ମୁଁ ସ୍କୁଲରେ ପଢ଼ିଲାବେଳେ ତାଙ୍କ କାର୍ଯ୍ୟକଳାପ ଅତି ଆଗ୍ରହର ସହିତ ଲକ୍ଷ୍ୟ କରୁଥିଲି ।

ମୁସଲିମ୍ ଲିଗ୍‌ର ଦୂଷିତ ସାଂପ୍ରଦାୟିକ ପ୍ରଚାର ପୂର୍ବରୁ ମହମ୍ମଦ ହନିଫ୍‌ଙ୍କର ଲୋକଙ୍କ ଉପରେ ବିଶେଷ କରି ମୁସଲମାନ ସଂପ୍ରଦାୟ ଉପରେ କି ପ୍ରକାର ଅଖଣ୍ଡ ପ୍ରଭାବ ଓ ପ୍ରତିପତ୍ତି ଥିଲା ତାହା ଗୋଟିଏ ଘଟଣାରୁ ବୁଝାପଡ଼ିବ । ସେତେବେଳେ ଭଦ୍ରକ ସହରର ଆୟତନ ଓ ଲୋକସଂଖ୍ୟା ଯାହା ଥିଲା ସେଥିରେ ଶହେକେ ପ୍ରାୟ ଷାଠିଏ ଜଣ ଥିଲେ ମୁସଲମାନ ଧର୍ମାବଲମ୍ବୀ ଲୋକ । ଘଟଣାଟି ଘଟିଥିଲା ଭଦ୍ରକର ଗୋଟିଏ ଦିନର ତାଜିଆ ଉତ୍ସବକୁ ନେଇ । ସେଦିନ ପୁରୁଣା ବଜାର ଦେଇ ସବୁ ମହଲାର ତାଜିଆ ଶୋଭାଯାତ୍ରା କରି ଯିବା କଥା । ସେଥିପାଇଁ ଭଦ୍ରକ ଏସ୍.ଡି.ଓ. ଶୃଙ୍ଖଳା ରକ୍ଷା କରିବା ଉଦ୍ଦେଶ୍ୟରେ କେତେକ କଟକଣା ଜାରି କରିଥାଆନ୍ତି । ଗୋଟିଏ ନିର୍ଦ୍ଦିଷ୍ଟ ସମୟ ମଧରେ ପୁରୁଣା ବଜାର ଭିତର ଦେଇ ତାଜିଆଗୁଡ଼ିକ ଯିବା କଥା ସରକାରୀ ଆଦେଶରେ ଜଣାଇ ଦିଆଯାଇଥିଲା । ମାତ୍ର ସାଧାରଣତଃ ଯାହା ଘଟିଥାଏ, ମହଲାମାନଙ୍କରୁ ତାଜିଆସବୁ ବାହାରିବାରେ ବିଳମ୍ବ ହେଲା ଏବଂ ବହୁ ବିଳମ୍ବରେ ତାଜିଆଗୁଡ଼ିକ ଆସି ପୁରୁଣା ବଜାର ଛକରେ ପହଞ୍ଚିଲା । ସେଠାରେ ସବ୍‌ଡିଭିଜନାଲ୍ ଅଫିସର ନିଜେ ଉପସ୍ଥିତ ଥିଲେ । ଏପରି ବିଳମ୍ବ ହେତୁ ଏସ୍.ଡି.ଓ. ମହାଶୟ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇଉଠିଥିଲେ ଏବଂ ଅତି ଶୋଚନୀୟ ଭାଷାରେ ସମସ୍ତଙ୍କୁ ଗାଳି

ଦେବାରେ ଲାଗିଲେ । ଏସ୍.ଡି.ଓ.ଙ୍କର ଭାଷା ଓ ବ୍ୟବହାର ଲୋକଙ୍କପ୍ରତି ଅତି ଅସହ୍ୟ ହୋଇଥିଲା । ଆମେ ସ୍କୁଲପିଲାମାନେ ତାଜିଆ ଦେଖିବାପାଇଁ ସେଠା ରାସ୍ତା ପାଖରେ ଛିଡ଼ାହୋଇଥାଉଁ । ହନିଫ୍‌ବାବୁ ସେଠାରେ ଉପସ୍ଥିତ ରହି ଶୃଙ୍ଖଳାର ସହିତ ତାଜିଆଗୁଡ଼ିକ ଯଥାଶୀଘ୍ର ଚାଲିଯିବାର ବ୍ୟବସ୍ଥା କରୁଥା'ନ୍ତି । ଏସ୍.ଡ଼ି.ଓ.ଙ୍କ ବ୍ୟବହାରରେ ସମସ୍ତେ ମର୍ମାହତ ହୋଇଥିଲେ । ହନିଫ୍‌ବାବୁ ମଧ ଖୁବ୍ କ୍ଷୁବ୍‌ଧ ହେବାର ଦେଖାଗଲା । ଏସ୍.ଡ଼ି.ଓ. ଓ ତାଙ୍କ ଭିତରେ ସେଥିପାଇଁ କିଛିଟା ବଚସା ହୋଇଥିଲା । ହାକିମଙ୍କ ଔଦ୍ଧତ୍ୟର ସୀମା ଟପିଯିବାରୁ ହନିଫ୍‌ବାବୁ ସେ ସ୍ଥାନ ଛାଡ଼ି ଘରକୁ ଚାଲିଯାଇଥିଲେ ଏବଂ ଗଲାବେଳେ ତାଜିଆଗୁଡ଼ିକ ଯେଉଁ ଯେଉଁ ସ୍ଥାନରେ ରାସ୍ତା ଉପରେ ଥିଲା ସେହି ସ୍ଥାନମାନଙ୍କରେ ସେଗୁଡ଼ିକ ଥୋଇଦେଇ ଶାନ୍ତି ଶୃଙ୍ଖଳାର ସହିତ ଘରକୁ ଫେରିଯିବାପାଇଁ ସମସ୍ତଙ୍କୁ ପରାମର୍ଶ ଦେଇଥିଲେ । କାର୍ଯ୍ୟତଃ ତାହାହିଁ ହୋଇଥିଲା । ପୁରୁଣା ବଜାର ରାସ୍ତାଟି ବଡ଼ ସଂକୀର୍ଣ୍ଣ ଏବଂ ସେଥି ମଧ୍ୟରେ ପନ୍ଦର କୋଡ଼ିଏଟି ତାଜିଆ ଧାଡ଼ିହୋଇ ରହିବା ଫଳରେ ରାସ୍ତାଟି ସମ୍ପୂର୍ଣ୍ଣ ବନ୍ଦ ହୋଇଯାଇଥିଲା । ରାସ୍ତା ଉପରେ କେବଳ ତାଜିଆଗୁଡ଼ିକ ଥୁଆ ହୋଇଥାଏ, ମାତ୍ର ଜଣେ ହେଲେ ଲୋକ ତା' ପାଖରେ ନ ଥା'ନ୍ତି । ଏସ୍.ଡି.ଓ.ଙ୍କର ଅକଲଗୁଡ଼ୁମ୍ । ଯେତେ ହୁଙ୍କାର ଦେଲେ ମଧ ତାଜିଆଗୁଡ଼ିକୁ ରାସ୍ତା ଉପରୁ କୌଣସି ଏକ ଖୋଲା ଜାଗାକୁ ନେବାପାଇଁ କେହି ଆସିଲେ ନାହିଁ । ସାକୁଲାସାକୁଲି କଲେ ମଧ କେହି ଶୁଣିଲେନାହିଁ । ପୁଲିସ୍‌ଦ୍ୱାରା ତାଜିଆ ସବୁକୁ ଉଠାଇବାକୁ ହାକିମ ଭୟ କଲେ; କାରଣ ସେଥିରୁ ପୁଣି ସରକାର ତାଜିଆର ପବିତ୍ରତା କ୍ଷୁଣ୍ଣ କଲାଭଳି ନାନାକଥା ଉଠିବ । ଏସ୍.ଡି.ଓ.ଙ୍କର ବୁଦ୍ଧି ହଜିଗଲା । କୌଣସି ଉପାୟ ସ୍ଥିର କରିନପାରି ଖାଲି ରାମ୍ପୁଡ଼ି କାମୁଡ଼ି ହେଉଥାଆନ୍ତି । ଏପ୍ରକାର ମାନସିକ ଅବସ୍ଥାକୁ ଆମର ସେଠାରେ କୁହନ୍ତି, 'ବୁଦ୍ଧି ଭଦ୍ରକରେ ଛାଡ଼ି ଆସିଛି' ବୋଲି । ଶେଷରେ ହାକିମ ମହାଶୟ ହନିଫ୍‌ବାବୁଙ୍କ ଘରକୁ ଗଲେ ଏବଂ ତାଙ୍କ କାନ୍ଧରେ ହାତ ପକାଇ ସଙ୍ଗରେ ନେଇ ପୁରୁଣା ବଜାରକୁ ଆସିଲେ । ନିଜର ଉଦ୍ଧତ ବ୍ୟବହାରପାଇଁ ସେ ଦୁଃଖ ପ୍ରକାଶ କରିବା ପରେ ତାଜିଆଗୁଡ଼ିକ ସେଠାରୁ ଉଠାଇ ଶୋଭାଯାତ୍ରାରେ ନିଆଯାଇଥିଲା ।

ଏକ ସମୟରେ ଆମର ସ୍ୱାଧୀନତାପ୍ରାପ୍ତିର ଅବ୍ୟବହିତ ପୂର୍ବରୁ ଭଦ୍ରକରେ ମୁସଲିମ୍ ଲିଗ୍‌ର ଦୌରାତ୍ମ୍ୟ କଥା ମୋର ମନେପଡ଼େ । ଅର୍ଦ୍ଧଚନ୍ଦ୍ରାଙ୍କିତ ନୀଳବର୍ଣ୍ଣର ଅପର୍ଯ୍ୟାପ୍ତ ପତାକାରେ ଶୋଭିତ ବଡ଼ ବଡ଼ ଶୋଭାଯାତ୍ରାମାନ 'ନେହିଁ ମାନ୍‌ତେ ହିନ୍ଦୁସ୍ଥାନ, ଲଡ଼କେ ଲେଙ୍ଗେ ପାକିସ୍ତାନ' ପ୍ରଭୃତି ଉତ୍ତେଜନାପୂର୍ଣ୍ଣ ଧ୍ୱନି ସହ ପ୍ରାୟ ପ୍ରତି ସପ୍ତାହରେ ସହରର ପ୍ରଧାନ ରାସ୍ତାମାନଙ୍କରେ ପରିକ୍ରମା କରୁଥାଏ । ସେମାନଙ୍କର ଶୋଭାଯାତ୍ରା ଓ ଧ୍ୱନିମାନ କ୍ରମେ ମୁସଲମାନ ସଂପ୍ରଦାୟର ଲୋକମାନଙ୍କ ଭିତରେ ଭିନ୍ନଧରଣର ଉନ୍ମାଦ ଉତ୍ତେଜନା ସୃଷ୍ଟି କରୁଥାଏ । କଂଗ୍ରେସକୁ ତଥା ମହମ୍ମଦ ହନିଫ୍‌ଙ୍କୁ ସମର୍ଥନ କରୁଥିବା ଜାତୀୟବାଦୀ ମୁସଲମାନମାନେ ରାସ୍ତାରେ ଏଭଳି ଶୋଭାଯାତ୍ରା ଗଲାବେଳେ ମନସ୍ତାପରେ ଘରେ କବାଟକିଳି ରହୁଥିଲେ । ଲିଗ୍ ସମର୍ଥକମାନଙ୍କ ଦୌରାତ୍ମ୍ୟ ଦେଖି ଅନ୍ୟ ସଂପ୍ରଦାୟର ଲୋକମାନେ ପ୍ରମାଦ ଗଣୁଥିଲେ । ଭଦ୍ରକର ଜଣେ ମୁସଲମାନ ଓକିଲ ଅବଦୁସ୍ ଶୋଭାନ୍ ଖାଁ ବିଶ୍ୱଯୁଦ୍ଧ ସମୟରେ ପାରଳାଖେମୁଣ୍ଡି ମହାରାଜାଙ୍କର ମିଳିତ ମନ୍ତ୍ରିମଣ୍ଡଳରେ ସଭ୍ୟ ଥିଲେ । ଶ୍ରୀ ଶୋଭାନ୍ ଖାଁ ୧୯୩୭ରେ ଓଡ଼ିଶାରୁ ମୁସଲମାନଙ୍କପାଇଁ ସଂରକ୍ଷିତ ଗୋଟିଏ ଆସନରୁ ସାଂପ୍ରଦାୟିକ ଭିତ୍ତିରେ ଭୋଟ ନିଆଯାଉଥିବା ନିର୍ବାଚନରେ, ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇ ଆସିଥିଲେ । ପାରଳାଖେମୁଣ୍ଡି ମନ୍ତ୍ରିମଣ୍ଡଳରେ ଶ୍ରୀ ଶୋଭାନ୍ ଖାଁଙ୍କୁ ମନ୍ତ୍ରୀ କରାଗଲା ଏବଂ ପରେ ସେ ମୁସଲିମ୍ ଲିଗ୍‌ରେ ଯୋଗ ଦେଇଥିଲେ । ଏହାଦ୍ୱାରା ଭଦ୍ରକରେ ମୁସଲିମ୍ ଲିଗ୍‌ର ପ୍ରଭାବ ବୃଦ୍ଧି ପାଇଥିଲା ।

ମୁସଲମାନ ସଂପ୍ରଦାୟ ଦୃଷ୍ଟିରୁ ସେତେବେଳେ ଭଦ୍ରକ ସହରର ଆକାର ଯାହା ଥିଲା ସେଥିରେ ଓଡ଼ିଶାରେ ଭଦ୍ରକ ଗୋଟିଏ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥିଲା । ଯେହେତୁ ଭଦ୍ରକରେ ମୁସଲମାନ ଥିଲେ ସଂଖ୍ୟାଗରିଷ୍ଠ, ସେହି ହେତୁ ସ୍ୱତନ୍ତ୍ର ପାକିସ୍ତାନ ଗଠିତ ହେଲେ ଭଦ୍ରକ ସହରଟି ନିଶ୍ଚୟ ପାକିସ୍ତାନର ଅନ୍ତର୍ଭୁକ୍ତ ହେବ ବୋଲି ସେତେବେଳେ କୁହାଯାଉଥିଲା । ପାକିସ୍ତାନ କଳ୍ପନାର ଅର୍ଥ ମଧ

ତାହାହିଁ ବୋଲି ଲୋକେ ସେତେବେଳେ ସାଧାରଣ ଭାବରେ ବୁଝିଥିଲେ । ପାକିସ୍ତାନ ସମ୍ବନ୍ଧରେ ସେତେବେଳେ ମୋ ମନରେ ମଧ୍ୟ ସେହିପ୍ରକାର ଧାରଣା ଜନ୍ମିଥିଲା । ଓଡ଼ିଶାରେ ଭଦ୍ରକ ଭଳି ଏପ୍ରକାର ପରିସ୍ଥିତି ଆଉ କେଉଁଠି ନଥିଲା । ଭଦ୍ରକରେ ମୁସଲିମ୍ ଲିଗ୍‌ଦ୍ୱାରା ଆୟୋଜିତ ସଭା ଓ ଶୋଭାଯାତ୍ରାମାନ ମୁଁ ନିଜେ କେତେଥର ଦେଖିବାର ସୁଯୋଗ ପାଇଥିଲି । ତା' ଦେଖି ମୋ ମନରେ ଭୟ ସଂଚାରିତ ହୋଇଥିଲା । ଭଦ୍ରକର ଭବିଷ୍ୟତ ନେଇ ଅନ୍ୟମାନଙ୍କ ସହିତ ମୁଁ ମଧ୍ୟ ଆତଙ୍କିତ ହୋଇଥିଲି । ଭଦ୍ରକରେ ମୁସଲମାନ ସଂପ୍ରଦାୟ ଲୋକ ସଂଖ୍ୟାଗରିଷ୍ଠ ଥିବା ଦୃଷ୍ଟେ ଏହି ସ୍ଥାନଟି ପାକିସ୍ତାନ ଅଧୀନରେ ରହିବ ବୋଲି ଧାରଣା କରି ମୁସଲମାନମାନେ ଆହ୍ଲାଦିତ ହେଲାବେଳେ ସେଠାରେ ବାସ କରୁଥିବା ସଂଖ୍ୟାନ୍ୟୁନ ହିନ୍ଦୁଲୋକମାନେ ବିଷଣ୍ଣ ରହୁଥିଲେ । ସେତେବେଳେ ପାକିସ୍ତାନ ସମ୍ବନ୍ଧରେ ସାଧାରଣରେ ଯେଉଁ କିମ୍ଭୂତକିମାକାର ଧାରଣା ଥିଲା, ତାହା ବିଶିଷ୍ଟ ଜାତୀୟବାଦୀ ମୁସଲମାନ ନେତା ଓ ତତ୍କାଳୀନ କଂଗ୍ରେସ ସଭାପତି ମୌଲାନା ଆବୁଲ୍ କାଲାମ୍ ଆଜାଦ୍‌ଙ୍କ ଆତ୍ମଜୀବନୀ 'ଭାରତର ସ୍ୱାଧୀନତା ବିଜୟ' (India Wins Freedom) ପୁସ୍ତକରୁ ମଧ୍ୟ ପ୍ରତିପାଦିତ ହେଉଛି । ସେହି ପୁସ୍ତକରେ ମୌଲାନା ଆଜାଦ୍ ଲେଖିଛନ୍ତି – "It is strange but the fact is that once Pakistan was formed, Muslims whether they came from a majority or a minority Province would be regarded as a separate Nation and would enjoy the right of determining their own future. Now when the Muslim majority provinces went out of India and even Bengal and the Punjab were divided and Mr. Jinnah left for Karachi, they at last realised that they had gained nothing but in fact lost everything by the partition of India. Jinnah's parting message came as the last straw on the camel's back. After partition the most ridiculous position was that of the Muslim League leaders who remained in India. Many of these leaders came to see me after 14th August. Their plight was pathetic. Every one of them said with deep regret and anger that Jinnah had deceived them and left them in the lurch."

ହିନ୍ଦୁସ୍ଥାନରେ ରହିଯାଇଥିବା ମୁସଲମାନବହୁଳ ଅଞ୍ଚଳ ଓ ଅଗଣିତ ମୁସଲମାନମାନଙ୍କର ଭବିଷ୍ୟତ ସମ୍ବନ୍ଧରେ ଯେତେବେଳେ ଶ୍ରୀ ଜିନ୍ନାଙ୍କୁ ପଚରାଯାଏ, ସେତେବେଳେ ସେ କୁଆଡ଼େ କହିଥିଲେ, ''ସେମାନେ ସେମାନଙ୍କ କଥା ବୁଝିବେ । ମୁଁ ସେମାନଙ୍କ ଭାଗ୍ୟପାଇଁ ବ୍ୟସ୍ତ ନୁହେଁ । (They will look after themselves. I am not interested in their fate.) ଧର୍ମଦ୍ରୋହି ହୋଇ ଜିନ୍ନା ନିଜପାଇଁ ଖଣ୍ଡେ ରାଜ୍ୟ ଅର୍ଜିଲେ । ସେ ହେଲେ କ୍ୱାଦ୍-ଇ-ଆଜାମ୍ । ପାକିସ୍ତାନର ପ୍ରଥମ ବଡ଼ଲାଟ ପଦର ଭାଗ୍ୟ ଭୋଗକଲେ । ସାଙ୍ଗେ ସାଙ୍ଗେ ସେ କିପରି ବହୁ ବୁଦ୍ଧିଜୀବୀ ମୁସଲମାନ ବନ୍ଧୁ ଓ ଧର୍ମାନ୍ଧ ସାଧାରଣ ଲୋକଙ୍କୁ ଅତି ନିଷ୍ଠୁର ଭାବେ ପ୍ରତାରିତ କରିଥିଲେ ସେ ପ୍ରସଙ୍ଗରେ କେତେକ ବିଶିଷ୍ଟ ସହଯାତ୍ରୀଙ୍କର କରୁଣ ତଥା ପ୍ରତ୍ୟକ୍ଷ ମର୍ମାନୁଭୂତି କଥା ମୁଁ ପରେ ବର୍ଣ୍ଣନା କରିବି । କାରଣ ମହାନଗରୀ କଲିକତାରେ ସାଂପ୍ରଦାୟିକ ଦଙ୍ଗା କାଳରେ ତ୍ରାଣକାର୍ଯ୍ୟ ସହିତ ମୁଁ ପ୍ରତ୍ୟକ୍ଷଭାବେ ଜଡ଼ିତ ଥିଲି ଏବଂ ତତ୍କାଳୀନ ଅବିଭକ୍ତ ବଙ୍ଗଳା ପ୍ରଦେଶର ପ୍ରଧାନମନ୍ତ୍ରୀ ସୟେଦ୍ ସୁରାୱାର୍ଦ୍ଦି ହେଉଛନ୍ତି ଦେଶପ୍ରତି ଜିନ୍ନାଙ୍କର ଦାରୁଣ ଶଠତାର ଜଣେ ଦୟନୀୟ ଶିକାର ଓ ସାକ୍ଷୀ ।

ସ୍ୱାଧୀନତା ସଂଗ୍ରାମର ଐତିହାସିକ କାର୍ଯ୍ୟକ୍ରମ ଅସହଯୋଗ ଆନ୍ଦୋଳନ ସମଗ୍ର ଦେଶରେ ଅଭୂତପୂର୍ବ ଭାବରେ ଚାଲିଥାଏ । ସେ ସଂପର୍କରେ ଯେଉଁସବୁ ସଭା ଓ ଶୋଭାଯାତ୍ରାମାନ ହେଉଥାଏ, ଆମେମାନେ ଛାତ୍ର ଥିଲେ ମଧ୍ୟ ସେଥିରେ ଯୋଗଦେଇ ନିଜକୁ ଗୌରବାନ୍ୱିତ ମନେକରୁଥିଲୁ ।

ଶୋଭାଯାତ୍ରାରେ ଜାତୀୟ ସ୍ତରର ନେତାମାନଙ୍କର ନାମ ଧରି ଯେଉଁସବୁ ଜୟଧ୍ୱନି କରାଯାଉଥିଲା ସେଥିରେ ମହାତ୍ମାଗାନ୍ଧୀ, ପଣ୍ଡିତ ନେହେରୁ, ମୌଲାନା ଆଜାଦ୍ ଓ ସର୍ଦ୍ଦାର ପଟେଲ୍ ପ୍ରଭୃତିଙ୍କର ନାମ ବିଶେଷଭାବରେ କୁହାଯାଉଥିଲା । ଭଦ୍ରକରେ ସେସବୁ ଶୋଭାଯାତ୍ରାରେ ଧ୍ୱନି ଦେଲାବେଳେ ମୋର ମନେଅଛି ମୌଲାନା ଆଜାଦ୍‌ଙ୍କ ନାମରେ ଜୟଧ୍ୱନି କରିବାକୁ ହନିଫ୍‌ବାବୁ ଆମକୁ ବାରମ୍ବାର ସ୍ମରଣ କରାଇଦେଉଥିଲେ । ମୁସଲମାନ ସଂପ୍ରଦାୟର ଲୋକଙ୍କୁ ଆକୃଷ୍ଟ କରିବା ଥିଲା ସେଥିର ମହତ୍ ଉଦ୍ଦେଶ୍ୟ । ତାହାଛଡ଼ା ହନିଫ୍‌ବାବୁ ମୌଲାନା ଆଜାଦ୍‌ଙ୍କର ଜଣେ ଗୁଣଗ୍ରାହୀ ଥିଲେ । ମୌଲାନା ଆଜାଦ୍‌ଙ୍କର ପାଣ୍ଡିତ୍ୟ ଓ ଦେଶପ୍ରେମ ବିଷୟରେ ହନିଫ୍‌ବାବୁ ବହୁ କାହାଣୀ ଆମମାନଙ୍କୁ କହିବାର ମୋର ମନେଅଛି । ଆଜାଦ୍‌ଙ୍କ ଭଳି ନିର୍ଭୀକ ଦେଶପ୍ରେମୀ ହେବାପାଇଁ ସେ ଆମମାନଙ୍କୁ ପରାମର୍ଶ ଦେଉଥିଲେ ଓ ଉତ୍ସାହିତ ମଧ୍ୟ କରୁଥିଲେ । ମୌଲାନା ସାହେବଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ହନିଫ୍‌ବାବୁ ତାଙ୍କର ପୁଅର ନାମ ସହିତ 'ଆଜାଦ୍' ସଂଜ୍ଞା ସଂଯୋଗ କରିଥିଲେ ବୋଲି ଆମେମାନେ ଜାଣିବାକୁ ପାଇଥିଲୁ । ୧୯୪୨ ମସିହା ଅଗଷ୍ଟ ବିପ୍ଳବ ସମୟରେ ହନିଫ୍‌ବାବୁଙ୍କ ସହିତ ବାଲେଶ୍ୱର ଜେଲ୍‌ରେ ଆମେମାନେ ବନ୍ଦୀ ହୋଇ ରହିଥିବା ବେଳେ ମୌଲାନା ଆଜାଦ୍‌ଙ୍କଦ୍ୱାରା ଲିଖିତ କେତେକ ଉର୍ଦ୍ଦୁ ପୁସ୍ତକରୁ ଧର୍ମ ତଥା ରାଜନୀତି ସମ୍ବନ୍ଧରେ ବହୁ ଉପାଦେୟ କଥା ହନିଫ୍‌ବାବୁ ପଢ଼ି ଆମମାନଙ୍କୁ ବୁଝାଉବାର ମୋର ମନେଅଛି । ମୁସଲମାନ ସଂପ୍ରଦାୟର ଜାତୀୟ ନେତାମାନଙ୍କ ମଧ୍ୟରୁ ଯଦି କେହି ମୁସଲିମ୍ ଲିଗ୍‌ର ନେତା ମହମ୍ମଦ ଅଲ୍ଲୀ ଜିନ୍ନାଙ୍କୁ ମୁକାବିଲା କରିପାରୁଥିଲେ ସେ ଥିଲେ ମୌଲାନା ଆଜାଦ୍ ଏବଂ ତାହା ସଙ୍ଗେ ସଙ୍ଗେ ସେ ଥିଲେ ଅଖଣ୍ଡ ଭାରତର ଜଣେ ଆଜୀବନ ଉପାସକ ତଥା ଦେଶ ବିଭାଜନର ଦୃଢ଼ ବିରୋଧୀ । ଆଜାଦ୍‌ଙ୍କର ଜାତୀୟତା, ନିର୍ଭୀକତା ଓ ଦେଶପ୍ରେମ ବିଷୟରେ ଯାହାସବୁ ଆମେମାନେ ଶୁଣିଥିଲୁ, ତାହା ତାଙ୍କ ଆତ୍ମଜୀବନୀରେ ବିଶେଷଭାବରେ ପ୍ରତିପାଦିତ ହୋଇଅଛି । ପଣ୍ଡିତ ନେହେରୁ ଜୀବିତ ଥିଲାବେଳେ ମୌଲାନା ସାହେବ ଦେଶ ବିଭାଜନପାଇଁ ନେହେରୁଙ୍କ ଉପରେ ଯେପରି ଦୋଷାରୋପ କରିଥିଲେ ସେଥିପାଇଁ ଇତିହାସ ନିଶ୍ଚୟ ତାଙ୍କର ଅତୁଳନୀୟ ଜାତୀୟତାବୋଧ ଓ ନିର୍ଭୀକତାକୁ ସ୍ୱୀକାର କରିବ । ଏସବୁ ସମ୍ବନ୍ଧରେ ଏଠାରେ କିଛି କହିବାକୁ ମୁଁ ଇଚ୍ଛା ପ୍ରକାଶ କରୁଛି ।

## ଭାଗ୍ୟର ବିଡ଼ମ୍ବନା ଓ ଅନୁଶୋଚନା

ମୌଲାନା ଆଜାଦ୍‌ଙ୍କର ଆତ୍ମଜୀବନୀ ପୁସ୍ତକରୁ ଗୋଟିଏ ଐତିହାସିକ ଓ ଯୁଗପ୍ରବର୍ତ୍ତନ କାଳ ଓ ଘଟଣାଚକ୍ରର ସନ୍ଧାନ ମିଳେ । ଇତିହାସର ଗତିକୁ ସେହି ଦୁର୍ଭାଗ୍ୟଜନକ ଘଟଣାଚକ୍ର ପଥଭ୍ରଷ୍ଟ କରିପାରିନଥିଲେ ହୁଏତ ପାକିସ୍ତାନ ଓ ବଙ୍ଗଳା ଦେଶର ଅଧିବାସୀମାନେ ଆଜି ଯେପରି ଭାବରେ ବାରମ୍ବାର ଏକଛତ୍ର, ନିରଙ୍କୁଶ, ବର୍ବରୋଚିତ, ସ୍ୱେଚ୍ଛାଚାରୀ ଶାସନର ନିଷ୍ଠୁର ଉତ୍ପୀଡ଼ନରେ ନିଷ୍ପେଷିତ ଓ ନିର୍ଯାତିତ ହେଉଛନ୍ତି ସେଥିରୁ ସେମାନେ ନିଶ୍ଚିତ ଭାବରେ ରକ୍ଷାପାଇପାରିଥାନ୍ତେ । ଅଧିକ ସଂଗ୍ରାମମୟ ଜୀବନ ପ୍ରତି ବାର୍ଦ୍ଧକ୍ୟକାଳୀନ ଉଦାସୀନତା ହେତୁ ଆମର କେତେକ ତୁଙ୍ଗ ନେତାମାନଙ୍କର ଯଥାଶୀଘ୍ର କ୍ଷମତାଲାଭ ଓ କ୍ଷମତା ଭୋଗ କରିବାର ବ୍ୟାକୁଳତା ଆମ ଦେଶ ବିଭାଜନରେ ଗୋଟିଏ ପ୍ରଧାନ କାରଣ ବୋଲି ଇତିହାସ ନିଶ୍ଚୟ ସ୍ୱୀକାର କରିବ । ଆମ ଜାତୀୟ ଆନ୍ଦୋଳନର ଅଧିକାଂଶ ତୁଙ୍ଗ ନେତାମାନଙ୍କର ବୟସ ସେତେବେଳକୁ ଷାଠିଏ ବର୍ଷକୁ ଅତିକ୍ରମ କରିଯାଇଥିଲା । ସେମାନଙ୍କ ଜୀବଦ୍ଦଶା ମଧ୍ୟରେ କାଳେ ଇଂରେଜ ସରକାର ଭାରତୀୟମାନଙ୍କ ହାତକୁ କ୍ଷମତା ହସ୍ତାନ୍ତର କରିନପାରନ୍ତି, ଏହା ଥିଲା ସେମାନଙ୍କର ଆଶଙ୍କା ଓ ଉଦ୍‌ବେଗର କାରଣ । ତେଣୁ କ୍ଷମତା ହାତକୁ ନେବାକୁ ସେମାନେ ଏକାବେଳକେ ଏତେ ଅଧୈର୍ଯ୍ୟ ହୋଇପଡ଼ିଥିଲେ ଯେ ସମଗ୍ର ଦେଶର ଓ ଦେଶବାସୀମାନଙ୍କର ଭବିଷ୍ୟତ ବିଷୟରେ ଅନ୍ଧ, ଅଜ୍ଞାନ ଓ ଉଦାସୀନ ହୋଇଯାଇଥିଲେ । କୌଣସି ମତେ ଆଉ ଅଧିକ ଛଅ ମାସ କି ବର୍ଷେ ପର୍ଯ୍ୟନ୍ତ ଧୈର୍ଯ୍ୟ ଧରି ଆମର ଜାତୀୟ ନେତାମାନେ ବ୍ରିଟିଶ

ସରକାର ସହିତ ସମାଧାନ ପାଇଁ ଯଦି ସତର୍କ ଭାବରେ ଗୋଟି ଚଳାଇପାରିଥାଆନ୍ତେ, ତା'ହେଲେ ଭାରତ ଅବିଭକ୍ତ ହୋଇ ରହିଥାଆନ୍ତା ଓ ଇତିହାସର ମୋଡ଼ ବଦଳିଯାଇଥା'ନ୍ତା । ଏ ସମ୍ଭାବନା ସମ୍ପର୍କରେ ବଳିଷ୍ଠ ତଥ୍ୟମୂଳକ ଯୁକ୍ତି ରହିଛି ।

ସ୍ୱାଧୀନତାର ପ୍ରାକ୍‌କାଳରେ ଏପ୍ରକାର ଏକ ଐତିହାସିକ ଘଟଣାଚକ୍ରର ବିଶ୍ଳେଷଣ କରି ଆମ ଦେଶର ତୁଙ୍ଗ ଜାତୀୟ ନେତାମାନଙ୍କର ଆଚରଣ ସମ୍ପର୍କରେ ମୌଲାନା ଆଜାଦ୍ ତାଙ୍କ ଆତ୍ମଜୀବନୀରେ ଅନେକ ଅପ୍ରକାଶିତ କଥା ଉଲ୍ଲେଖ କରିଛନ୍ତି । ତାହା ଏଠାରେ ସଂକ୍ଷେପରେ ଉଲ୍ଲେଖ କରିବା ପ୍ରାସଙ୍ଗିକ ହେବ । ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବସାନ ପରେ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଆଟ୍‌ଲୀ ସାହେବ ୧୯୪୬ ମସିହା ଫେବୃୟାରୀ ମାସରେ ଭାରତବାସୀଙ୍କୁ ସ୍ୱାଧୀନତା ଦେବା ଉଦ୍ଦେଶ୍ୟରେ ଗୋଟିଏ ଘୋଷଣା ପ୍ରକାଶ କରିଥିଲେ । କଂଗ୍ରେସ ଓ ମୁସଲିମ୍ ଲିଗ୍ ସହିତ ଆଲୋଚନା କରି ସେମାନଙ୍କ ମଧ୍ୟରେ ଉପୁଜିଥିବା ସାମ୍ବିଧାନିକ ଓ ରାଜନୈତିକ ସଂକଟର ସମାଧାନ କରିବାକୁ ବ୍ରିଟିଶ୍ ସରକାର ସାର୍ ଷ୍ଟାଫୋର୍ଡ଼ କ୍ରିପ୍‌ସଙ୍କ ନେତୃତ୍ୱରେ ଏକ କ୍ୟାବିନେଟ୍ ମିଶନ୍ ଭାରତକୁ ପଠାଇଥିଲେ । କ୍ୟାବିନେଟ୍ ମିଶନ ଭାରତର ଭବିଷ୍ୟତ ଶାସନଖସଡ଼ା ସମ୍ବନ୍ଧରେ କଂଗ୍ରେସ ଓ ମୁସଲିମ୍ ଲିଗ୍ ସହିତ ଦୀର୍ଘ ଆଲୋଚନା କରିଥିଲେ । ମାତ୍ର ସେମାନେ କୌଣସି ପ୍ରସ୍ତାବରେ ଏକମତ ହୋଇନପାରିବାରୁ କ୍ୟାବିନେଟ୍ ମିଶନ୍ ଇଂରେଜ ସରକାରଙ୍କର ଅନୁମୋଦନକ୍ରମେ ତାଙ୍କର ନିଜ ପ୍ରସ୍ତାବ ନିମ୍ନ ମର୍ମରେ ଘୋଷଣା କରିଥିଲେ ।

"A plan for confederation consisting of three regional groupings of autonomous provinces, two Muslim regions in West and East India, a predominantly Hindu region between them, each with its own Constitution with common Defence, Foreign Affairs and Communications and Economic Plans under a Central Government." ଅର୍ଥାତ୍ କ୍ୟାବିନେଟ୍ ମିଶନ୍ ସମଗ୍ର ଭାରତପାଇଁ ଗୋଟିଏ ଏକୀଭୂତ ରାଷ୍ଟ୍ରସଂଘର ପ୍ରସ୍ତାବ ଦେଇଥିଲେ । ସେହି ପ୍ରସ୍ତାବରେ କୁହାଯାଇଥିଲା ଯେ, ଗୋଟିଏ କେନ୍ଦ୍ର ସରକାର ଅଧୀନରେ ସମଗ୍ର ଭାରତବର୍ଷର ଦେଶରକ୍ଷା, ବୈଦେଶିକ ବ୍ୟାପାର, ଯୋଗାଯୋଗ ଏବଂ ଅର୍ଥନୈତିକ ଯୋଜନାର ଦାୟିତ୍ୱ ରହିଥା'ନ୍ତା । ଅନ୍ୟାନ୍ୟ ବ୍ୟବସ୍ଥାପାଇଁ ସମଗ୍ର ଦେଶକୁ ପଶ୍ଚିମ ଓ ପୂର୍ବରେ ଦୁଇଟି ମୁସଲମାନ ଅଧିବାସୀବହୁଳ ଓ ଗୋଟିଏ ବୃହତ୍ ହିନ୍ଦୁ ଅଧିବାସୀବହୁଳ, ଏପରି ମୋଟ ତିନିଗୋଟି ସ୍ୱୟଂଶାସିତ ପ୍ରାଦେଶିକ ସରକାରରେ ପରିଣତ କରିବାର କ୍ୟାବିନେଟ୍ ମିଶନ୍ ପ୍ରସ୍ତାବରେ ଥିଲା । ଏହିସବୁ ପ୍ରସ୍ତାବକୁ ଭିତ୍ତିକରି ସମ୍ବିଧାନ ପ୍ରଣୟନ କରିବା ଉଦ୍ଦେଶ୍ୟରେ ଗୋଟିଏ ଶାସନ ବିଧାୟକ ସଭା ଗଠନର ପ୍ରସ୍ତାବ କରାଯାଇଥିଲା । ଏଭଳି ପ୍ରସ୍ତାବଦ୍ୱାରା ମୁସଲିମ୍ ଲିଗ୍‌ର ସ୍ୱତନ୍ତ୍ର ରାଷ୍ଟ୍ର ଗଠନ ଦାବିକୁ କ୍ୟାବିନେଟ୍ ମିଶନ୍ ମୋଟାମୋଟି ଅଗ୍ରାହ୍ୟ କରିଦେଇଥିଲା । ଏହି ପ୍ରସ୍ତାବିତ ଯୋଜନାକୁ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ଭାରତୀୟ ନେତାମାନଙ୍କୁ ନେଇ ଭାଇସ୍‌ରାୟଙ୍କର ଏକ୍‌ଜିକ୍ୟୁଟିଭ କାଉନ୍‌ସିଲ୍ ସଙ୍ଗେ ସଙ୍ଗେ ଗଠନ କରିବାର ପ୍ରସ୍ତାବ ମଧ୍ୟ ରହିଥିଲା । କ୍ୟାବିନେଟ୍ ମିଶନ୍‌ର ଏହିସବୁ ପ୍ରସ୍ତାବକୁ ଅଖିଳ ଭାରତୀୟ କଂଗ୍ରେସ କମିଟି ୧୯୪୬ ମସିହା ଜୁଲାଇ ମାସ ସାତ ତାରିଖରେ ବମ୍ବେଠାରେ ଅନୁଷ୍ଠିତ ବୈଠକରେ ଗ୍ରହଣ କରିଥିଲେ । କଂଗ୍ରେସ ଅଧିବେଶନରେ ଏ ପ୍ରସ୍ତାବ ଆଗତ କରିଥିଲେ ବିଦାୟୀ ସଭାପତି ମୌଲାନା ଆଜାଦ୍ । ଏ ଅବସ୍ଥାରେ ଅନ୍ୟ କୌଣସି ଉପାୟ ନ ଦେଖି ମୁସଲିମ୍ ଲିଗ୍ ମଧ୍ୟ ବାଧ୍ୟହୋଇ କ୍ୟାବିନେଟ୍ ମିଶନ୍ ପ୍ରସ୍ତାବକୁ ଗ୍ରହଣ କରିଥିଲେ । ବମ୍ବେ ଅଖିଳ ଭାରତ କଂଗ୍ରେସର ସେହି ଅଧିବେଶନରେ ପଣ୍ଡିତ ଜବାହରଲାଲ ନେହେରୁ କଂଗ୍ରେସ ସଭାପତିରୂପେ ନିର୍ବାଚିତ ହୋଇଥିଲେ । କଂଗ୍ରେସ ସଭାପତି ହେବାର ମାତ୍ର ଚାରିଦିନ ପରେ ଜୁଲାଇ ଦଶ ତାରିଖରେ ବମ୍ବେଠାରେ ଶ୍ରୀ ନେହେରୁ ଗୋଟିଏ ସାମ୍ବାଦିକ ସମ୍ମିଳନୀ କରିଥିଲେ ଏବଂ ଏହି ସମ୍ମିଳନୀ ଭାରତବର୍ଷର ଇତିହାସର

ଗତିକୁ ବଦଳାଇ ଦେଇ ଦେଶ ବିଭାଜନକୁ ତ୍ୱରାନ୍ୱିତ କରିଦେଇଥିଲା । ଏ ସମ୍ବନ୍ଧରେ ମୌଲାନା ଆଜାଦ୍ ତାଙ୍କ ଆତ୍ମଜୀବନୀର ୧୫୫ ପୃଷ୍ଠାରେ ଲେଖିଛନ୍ତି –

"Now happened one of those unfortunate events which changed the course of history. On 10th July, Jawaharlal held a Press Conference in Bombay in which he made a statement which in normal circumstances might have passed almost unnoticed, but in the existing atmosphere of suspicion and hatred, set in trend a most unfortunate series of consequences. Some Press representatives asked him whether with the passing of the Resolution by A.I.C.C., the Congress had accepted the plan in toto, including the composition of the Interim Government. Jawaharlal stated in reply that Congress would enter the Constituent Assembly completely unfettered by agreements and free to meet all situations as they arise. Press representatives further asked if this meant that the Cabinet Mission Plan could be modified, Jawaharlal replied emphatically that the Congress had agreed only to participate in the Constituent Assembly and regarded itself free to change or modify the Cabinet Mission Plan as it thought best.

"I must place on record that Jawaharlal's statement was wrong. It was not correct to say that Congress was free to modify the plan as it pleased. We had in fact agreed that the Central Government would be federal. There would be the compulsory list of three Central subjects while all other subjects remained in the provincial sphere. We had further agreed that there would be three sections, viz., A, B and C in which the provinces would be grouped. These matters could not be changed unilaterally by Congress without the consent of other parties to the agreement.

"The Muslim League had accepted the Cabinet Mission Plan, as this represented the utmost limit to which the British Government would go. In his speech to the League Council, Mr. Jinnah had clearly stated that he recommended acceptance only because nothing better could be obtained. Mr. Jinnah was thus not very happy about the outcome of the negotiations, but he had reconciled himself as there was no alternative. Jawaharlal's statement came to him as a bombshell. He immediately issued a statement that this declaration by the Congress President demanded a review of the whole situation."

କଥାରେ ଅଛି, 'ମଲୁ ଖୋଜୁଥିଲା ଯାହା, ବଇଦ ବତାଇଲା ତାହା ।' ଜିନ୍ନା କ୍ୟାବିନେଟ୍ ମିଶନ୍ ଯୋଜନାକୁ ବାଧ୍ୟହୋଇ ଗ୍ରହଣ କରିଥିଲେ ଏବଂ ସେଥିରେ ସେ ସନ୍ତୁଷ୍ଟ ନଥିଲେ । ସେଥିରୁ କିପରି ଅପସରିଯିବେ ତା'ର ବାଟ ସେ ଖୋଜୁଥିଲେ । ସାମ୍ବାଦିକ ସମ୍ମିଳନୀରେ ପଣ୍ଡିତ ନେହେରୁଙ୍କର ଉକ୍ତି ସ୍ୱତନ୍ତ୍ର ପାକିସ୍ତାନ ରାଷ୍ଟ୍ର ଗଠନ କରିବାକୁ ଜିନ୍ନାଙ୍କୁ ପୁଣି ଗୋଟିଏ ସୁଯୋଗ ଦେଇଥିଲା । ମୁସଲିମ୍ ଲିଗ୍ କାଉନ୍‌ସିଲ୍‌ର ଗୋଟିଏ ଅଧିବେଶନ ସେହି ଜୁଲାଇ ମାସ ୨୭ ତାରିଖରେ ଡକାଯାଇ କ୍ୟାବିନେଟ୍ ମିଶନ ଯୋଜନାକୁ ପ୍ରତ୍ୟାଖ୍ୟାନ କରି ସ୍ୱତନ୍ତ୍ର ପାକିସ୍ତାନ ରାଷ୍ଟ୍ର ଗଠନର ଦାବିର ପୁନରାବୃତ୍ତି କରାଗଲା । ସାମ୍ବାଦିକ ସମ୍ମିଳନୀରେ କଂଗ୍ରେସ ସଭାପତି ପଣ୍ଡିତ ନେହେରୁଙ୍କର ଅବିବେକୀ ଉକ୍ତି ଭାରତର ଅଖଣ୍ଡତା ରକ୍ଷାକରିବାର ସମସ୍ତ ଉଦ୍ୟମ, ଆଶା ଓ ଭରସାକୁ ଏକାବେଳକେ ବ୍ୟର୍ଥ

କରିଦେଇଥିଲା । ଏହିସବୁ ଆଶଙ୍କା କରି ବୋଧହୁଏ ବଙ୍ଗଳାର କଂଗ୍ରେସ ନେତା ଶ୍ରୀ ଶରତ ଚନ୍ଦ୍ର ବୋଷ ଓ ଶ୍ରୀ କିରଣ ଶଙ୍କର ରାୟ ପ୍ରଭୃତି ମୌଲାନା ଆଜାଦ୍ କଂଗ୍ରେସ ସଭାପତି ହୋଇ ରହିବାପାଇଁ ଚାହୁଁଥିଲେ । ମୌଲାନା ଆଜାଦ୍ ଯଦି ଆଉ ଗୋଟିଏ ବର୍ଷ କଂଗ୍ରେସ ସଭାପତି ହୋଇ ରହିଥାଆନ୍ତେ ତା'ହେଲେ ଭାରତର ଇତିହାସ ବୋଧହୁଏ ଭିନ୍ନରୂପ ନେଇଥାଆନ୍ତା । ପାକିସ୍ତାନ ଗଠନ ଓ ଆମ ଦେଶର ନେତାମାନଙ୍କର ଆଚରଣ ସମ୍ବନ୍ଧରେ ମନ୍ତବ୍ୟ ଦେବାକୁ ଯାଇ ସୁବିଖ୍ୟାତ ଲେଖକ ଓ ଭାରତର ଜଣେ ବନ୍ଧୁ ଲୁଇ ଫିସର୍ (Louis Fischer) ତାଙ୍କର 'ଅତିମାନବ ଓ ମାନବ' (Giants and Men) ଶୀର୍ଷକ ପ୍ରବନ୍ଧରେ ଲେଖିଥିଲେ – "Nehru, according to Azad, sank the plan in an historic Press Conference. The Cabinet Mission had considered the advisability of partition and rejected it. The creation of Pakistan would require the splitting of two giant Provinces, the Panjab and Bengal, "Contrary to the wishes of a very large percentage of the inhabitants... Finally, there is the geographical fact that the two halves of the proposed Pakistan State are separated by some 700 miles" of Indian territory. We are therefore unable to advise the British Government" the Mission announced, "that the power which at present resides in British hands should be handed over to two entirely separate sovereign States." Lord Wavell, the British Viceroy, took the same position." (India Wins Freedom Page-249)

ପଣ୍ଡିତ ନେହେରୁଙ୍କର କ୍ଷମତାବହିର୍ଭୂତ ଏହି ଅନିଷ୍ଟକର ଉକ୍ତି ଉପରେ ମନ୍ତବ୍ୟ ଦେଇ ଲୁଇ ଫିସର ସେହି ପ୍ରବନ୍ଧରେ ଆହୁରି କହିଛନ୍ତି, "Nehru had told the assembled journalists that the Congress Party, of which he, Gandhi, Azad and Patel were the leaders, would not be bound by the Cabinet Mission's Confederation Plan. Actually the All-India Congress Committee had met in the same city of Bombay only two days earlier under Nehru's Chairmanship and in Gandhi's presence and voted for the plan. This is fully documented in the minutes. Azad, who participated in the discussions, bears witness to it. Jinnah read Nehru's Press Conference statement as the Congress Party's withdrawal from the Cabinet Mission's scheme. He accordingly withdrew his approval too. There followed most cruel, widespread violence, Muslim League intransigence, Congress party despair, and finally, the British Labour Government decision to partition India while unshackling her."

ଏହି ପରିପ୍ରେକ୍ଷୀରେ ଭାରତ ବିଭାଜନ ଅନିବାର୍ଯ୍ୟ ହୋଇପଡ଼ିଥିଲା । ଏହା ପୂର୍ବରୁ ୧୯୪୬ ମସିହା ସେପ୍‌ଟେମ୍ବର ମାସ ଦୁଇ ତାରିଖରେ ପଣ୍ଡିତ ନେହେରୁଙ୍କ ନେତୃତ୍ୱରେ କ୍ଷମତା ହସ୍ତାନ୍ତର ତଥା ସମ୍ବିଧାନ ପ୍ରଣୟନ କାର୍ଯ୍ୟ ସୁଗମ କରିବାପାଇଁ ଯେଉଁ ଅସ୍ଥାୟୀ ଜାତୀୟ ସରକାର ଗଠିତ ହୋଇଥିଲା, ସେଥିରେ ନାନା ବାଦାନୁବାଦ ଓ ପ୍ରବର୍ତ୍ତନା ପରେ ସେହି ବର୍ଷ ଅକ୍ଟୋବର ଛବିଶ ତାରିଖରେ ମୁସଲିମ୍ ଲିଗ୍ ଯୋଗଦେଇଥାଏ । ଏହା ସତ୍ତ୍ୱେ ପାକିସ୍ତାନ ରାଷ୍ଟ୍ର ଗଠନ ଦାବି ଉପରେ ମୁସଲିମ୍ ଲିଗ୍ ପୁନର୍ବାର ଦୃଢ଼ରହିଲା । ମୁସଲିମ୍ ଲିଗ୍‌ର ସଭ୍ୟମାନେ ଶାସନ ବିଧାୟକ ସଭାରେ ଯୋଗ ନ ଦେବା କଥା ଘୋଷଣା କରି ସମାଧାନ କ୍ଷେତ୍ରରେ ଜିନ୍ନା ଏକପ୍ରକାର ଅଚଳ ଅବସ୍ଥା ସୃଷ୍ଟିକରିଥିଲେ । କୌଣସି ଗୋଟିଏ ସମାଧାନରେ ପହଞ୍ଚିବାପାଇଁ ଲଣ୍ଡନଠାରେ ଏକ ସମ୍ମିଳନୀର ଆୟୋଜନ କରାଯାଇଥିଲା ।

ଏଥିରେ ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ଶ୍ରୀ ଅଟ୍‌ଲି, ଭାଇସରାୟ ଲର୍ଡ଼ ୱାଭେଲ, ପଣ୍ଡିତ ନେହେରୁ, ଶ୍ରୀ ଜିନ୍ନା ଓ ସର୍ଦ୍ଦାର ବଲ୍‌ଦେବ ସିଂ ଯୋଗଦେଇଥିଲେ । ସେଠାରେ ଆଲୋଚନାର କୌଣସି ଫଳ ହୋଇନଥିଲା । ଏହି ସମ୍ମିଳନୀ ପରେ ବ୍ରିଟିଶ୍ ସରକାରଙ୍କ ପକ୍ଷରୁ ଯେଉଁ ବିବୃତି ପ୍ରକାଶ ପାଇଥିଲା ସେଥିରୁ ଭାରତ ବିଭାଜନ ବିଷୟ ଇଂରେଜ ସରକାର ଚିନ୍ତାକରୁଥିବାର ସ୍ପଷ୍ଟ ସୂଚନା ମିଳିଥିଲା । ମୁସଲିମ୍ ଲିଗ୍‌ର ପ୍ରତିନିଧିମାନଙ୍କ ବର୍ଜନ ସତ୍ତ୍ୱେ ଶାସନ ବିଧାୟକ ସଭା ସମ୍ବିଧାନ ପ୍ରଣୟନ କଲେ ତାହା ସମସ୍ତଙ୍କ ଉପରେ ଲଦି ଦିଆଯିବ ନାହିଁ ବୋଲି ବ୍ରିଟିଶ୍ ସରକାରଙ୍କ ପ୍ରଚାରିତ ବିବୃତିରେ କୁହାଯାଇଥିଲା । ଶାସନ ବିଧାୟକ ସଭାକୁ ମୁସଲିମ୍ ଲିଗ୍ ବର୍ଜନ କରିଥିଲେ । କଂଗ୍ରେସ ପକ୍ଷରୁ ଦାବି କରାଯାଇଥିଲା ଯେ ମୁସଲିମ୍ ଲିଗ୍ ଶାସନ ବିଧାୟକ ସଭାରେ ଯୋଗଦେଉ, ନଚେତ୍ ମଧ୍ୟବର୍ତ୍ତୀକାଳୀନ ସରକାରରୁ ଅପସରି ଯିବାକୁ ବ୍ରିଟିଶ୍ ସରକାର ଲିଗ୍‌କୁ ବାଧ୍ୟକରନ୍ତୁ । ତା' ନ ହେଲେ କଂଗ୍ରେସ ମଧ୍ୟବର୍ତ୍ତୀକାଳୀନ ସରକାରରୁ ଓହରିଯିବ ବୋଲି ଧମକ ଦେଇଥିଲା । ବ୍ରିଟିଶ୍ ସରକାର ୧୯୪୮ ମସିହା ଜୁନ୍ ମାସସୁଦ୍ଧା ଭାରତ ଛାଡ଼ି ଯିବାପାଇଁ ତାଙ୍କ ସଙ୍କଳ୍ପ ଘୋଷଣା କରିଥିଲେ ଏବଂ ସେହି ସମୟ ଭିତରେ କ୍ଷମତା ହସ୍ତାନ୍ତର ବିଷୟରେ କଥାବାର୍ତ୍ତା ଚଳାଇବାକୁ ଭାଇସ୍‌ରାୟ ଭାବରେ ଲର୍ଡ଼ ମାଉଣ୍ଟବ୍ୟାଟେନ୍‌ଙ୍କୁ ପଠାଇଥିଲେ । ଲର୍ଡ଼ ୱାଭେଲ୍ ଭାରତ ବିଭାଜନ ସପକ୍ଷରେ ନଥିଲେ । ବ୍ରିଟିଶ୍ ସରକାର ତଥା ଅଟ୍‌ଲିଙ୍କ ପରିବର୍ତ୍ତିତ ଚିନ୍ତାଧାରା ସହିତ ଲର୍ଡ଼ ୱାଭେଲ୍ ଏକମତ ନହୋଇ ନିଜେ ଭାଇସ୍‌ରାୟ ପଦବୀରୁ ଇସ୍ତଫା ଦେଇସାରିଥିଲେ । ତେଣୁ ତାଙ୍କ ସ୍ଥାନରେ ଲଣ୍ଡନର ପୂର୍ବତନ ପ୍ରଧାନମନ୍ତ୍ରୀ ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍‌ଙ୍କର ଅତି ବିଶ୍ୱସ୍ତ ଲର୍ଡ଼ ମାଉଣ୍ଟବ୍ୟାଟେନ୍ ଭାରତକୁ ଭାଇସ୍‌ରାୟରୂପେ ଆସିଥିଲେ । ଏକୀଭୂତ ଭାରତ ରାଷ୍ଟ୍ରସଂଘ (Confederation) ଯୋଜନାକୁ ବ୍ୟର୍ଥ କରିଦେବା ପରେ ଦେଶ ବିଭାଜନକୁ ଏଡ଼ାଇ ଦେବା କଂଗ୍ରେସ ପକ୍ଷରେ କଷ୍ଟକର ହୋଇପଡ଼ିଥିଲା; ମାତ୍ର ଅସମ୍ଭବ ନଥିଲା । ଶାସନ ବିଧାୟକ ସଭାରେ ମୁସଲିମ୍ ଲିଗ୍ ସଭ୍ୟମାନେ ଯୋଗଦେଇନଥିବାରୁ ତାଙ୍କୁ ବ୍ରିଟିଶ୍ ସରକାର ମଧ୍ୟବର୍ତ୍ତୀକାଳୀନ ସରକାରରୁ ଅନ୍ତର ନକଲେ କଂଗ୍ରେସ ଉକ୍ତ ସରକାରରୁ ଓହରି ଯିବ ବୋଲି ଯେଉଁ ଧମକ ଦେଇଥିଲା ତାହା କେବଳ ଧମକରେ ରହିଗଲା । ସେ ଧମକ କାର୍ଯ୍ୟକାରୀ ହୋଇଥିଲେ ହୁଏତ ଇତିହାସର ମୋଡ଼ ବଦଳିଯାଇଥାଆନ୍ତା । କାନାଡ଼ାର ଗୋଟିଏ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ମାଇକେଲ୍ ବ୍ରେସର (Michael Brecher) ନେହେରୁଙ୍କର ଜୀବନୀ ଲେଖି ସେଥିରେ ଏ ସମ୍ବନ୍ଧରେ ମନ୍ତବ୍ୟ ଦେଇଛନ୍ତି, "Nehru is a giant both as a man and satesman. For those who have been in opposition most of their political lives, the prize of power is tempting. The Congress leaders had already tasted its fruits (in the Interim Government) and were naturally reluctant to part with it at the moment of triumph and this applies to Nehru as well." (India Wins Freedom, page 251)

ସାଂପ୍ରଦାୟିକ ଭିତ୍ତିରେ ଦେଶ ବିଭାଜନ କରିବା ପ୍ରସ୍ତାବକୁ ମାନିନେବାକୁ ଲର୍ଡ଼ ମାଉଣ୍ଟବ୍ୟାଟେନ୍ କଂଗ୍ରେସ ନେତାଙ୍କୁ ପ୍ରବର୍ତ୍ତାଇଥିଲେ । କିନ୍ତୁ ତାଙ୍କୁ ଦୃଢ଼ତାର ସହିତ ପ୍ରତିରୋଧ କରିବାର ମନୋବୃତ୍ତି ଆଉ କଂଗ୍ରେସ ତୁଙ୍ଗ ନେତାମାନଙ୍କ ମଧ୍ୟରେ ନ ଥିଲା । ଗାନ୍ଧିଜୀ ପ୍ରଥମେ କହିଥିଲେ, "If Congress wishes to accept partition, it will be over my dead body. So long as I am alive I will never agree to the partition of India. Nor will I, if I can help it, allow Congress to accept it." ଶେଷରେ ଦେଶ ବିଭାଜନକୁ ଏଡ଼ାଇଦେବା ଲକ୍ଷ୍ୟରେ ଜିନ୍ନାଙ୍କୁ ସରକାର ଗଠନ କରିବାର ସୁବିଧା ଦେବାପାଇଁ ଗାନ୍ଧିଜୀ ମାଉଣ୍ଟବ୍ୟାଟେନ୍‌ଙ୍କୁ ପ୍ରସ୍ତାବ ଦେଇଥିଲେ ଏବଂ ତଦ୍ୱାରା ଦେଶ ବିଭାଜନକୁ ଏଡାଇ ଦିଆଯାଇ ପାରିବ ବୋଲି ଲର୍ଡ଼ ମ୍ୟାଉଣ୍ଟବ୍ୟାଟେନ୍

ବିଶ୍ୱାସ କରିଥିଲେ । ମାତ୍ର ପଣ୍ଡିତ ନେହେରୁ, ସର୍ଦ୍ଦାର ପଟେଲ୍ ପ୍ରଭୃତି ଏ ପ୍ରସ୍ତାବର ଘୋର ବିରୋଧ କରିଥିଲେ, ତେଣୁ ତାହା କାର୍ଯ୍ୟକାରୀ ହେବା ସମ୍ଭବ ହୋଇନଥିଲା । ଲର୍ଡ଼ ମାଉଣ୍ଟବ୍ୟାଟେନ୍ ତାଙ୍କର ଭାରତ ବିଭାଜନ ପ୍ରସ୍ତାବ ଗ୍ରହଣ କରାଇବା ଦିଗରେ ପଣ୍ଡିତ ନେହେରୁ, ସର୍ଦ୍ଦାର ପଟେଲ, ରାଜଗୋପାଳାଚାରୀ ପ୍ରମୁଖ କଂଗ୍ରେସ ନେତାମାନଙ୍କୁ ପ୍ରବର୍ତ୍ତାଇ ପାରିଥିଲେ । ଦେଶ ବିଭାଜନ ପ୍ରସ୍ତାବ ଯେତେବେଳେ କଂଗ୍ରେସ କାର୍ଯ୍ୟକାରୀ କମିଟିରେ ଆଲୋଚିତ ହୋଇ ସଭ୍ୟମାନଙ୍କର ମତ ନିଆଯାଇଥିଲା, ପ୍ରସ୍ତାବ ସପକ୍ଷରେ ୨୯ ଜଣ ଓ ବିପକ୍ଷରେ ୧୫ ଜଣ ମତ ବ୍ୟକ୍ତ କରିଥିଲେ । ସେହି କଂଗ୍ରେସ କାର୍ଯ୍ୟକାରୀ କମିଟିରେ ସୀମାନ୍ତ ଗାନ୍ଧୀ ଖାଁ ଅବଦୁଲ୍ ଗଫୁର ଖାଁ ଯାହା କହିଥିଲେ ସେ କଥା ତାଙ୍କ ଆତ୍ମଜୀବନୀ ''ମୋ ଜୀବନ ଓ ସଂଗ୍ରାମ'' (My Life and Struggle) ପୁସ୍ତକର ୨୦୪ ପୃଷ୍ଠାରେ ଲେଖିଛନ୍ତି, "On this occasion I told the Working Committee and Gandhiji that we Pathans were standing side by side with them in the struggle for freedom of India and that we had made great sacrifices for the cause. But you are deserting us now and throwing us to the wolves."

ଭବିଷ୍ୟତ ପ୍ରତି ବିଚାରବନ୍ତ ଦୃଷ୍ଟି ନରଖି କ୍ଷମତା ହସ୍ତାନ୍ତର ବିଷୟରେ ଅପେକ୍ଷା କରିବା ଦିଗରେ ପଣ୍ଡିତ ନେହେରୁଙ୍କର ଧୈର୍ଯ୍ୟଚ୍ୟୁତିକୁ ଲକ୍ଷ୍ୟକରି ଓ ଲର୍ଡ଼ ମାଉଣ୍ଟବ୍ୟାଟେନ୍‌ଙ୍କ ବ୍ୟଗ୍ରତାକୁ ନାପସନ୍ଦ କରି ଆଜାଦ୍ ତାଙ୍କ ଆତ୍ମଜୀବନୀର ୧୭୮ ଓ ୨୨୬ ପୃଷ୍ଠାରେ ଲେଖିଛନ୍ତି, "It is difficult to say which of the alternatives – the one actually adopted by Mr. Attlee or the one suggested by Lord Wavell would have been better for India. If Lord Wavell's advice had been followed and the solution of the Indian problem deferred for a year or two, it is possible that the Muslim League would have got tired of its opposition. Even if the League had not taken a more positive attitude, the Muslim masses of India would probably have repudiated the negative attitude of the Muslim League. It was even possible that the tragedy of Indian partition might have been avoided. One cannot say for certain, but a year or two is nothing in the history of a nation. Perhaps history will decide that the wiser policy would have been to follow Lord Wavell's advice." X X X "If we had remained steadfast and refused to accept partition, I am confident that a safer and most glorious future would have awaited us. X X X History alone will decide whether we have acted wisely and correctly in accepting partition."

ଶ୍ରୀ ଏମ୍. ସି. ଚଗଲା ତାଙ୍କର ପ୍ରଥମ ରାଜନୈତିକ ଜୀବନରେ ଜିନ୍ନାଙ୍କର ଜଣେ ସମର୍ଥକ ଥିଲେ । ସେ ମଧ୍ୟ ମୌଲାନା ଆଜାଦ୍‌ଙ୍କର ଉକ୍ତିକୁ ଅନୁମୋଦନ କଲାଭଳି ନିଜର ଆତ୍ମଜୀବନୀର ୮୧ ପୃଷ୍ଠାରେ ପାକିସ୍ତାନ ସୃଷ୍ଟି ହେବା ସମ୍ବନ୍ଧରେ ପଣ୍ଡିତ ନେହେରୁଙ୍କୁ ଦୋଷାରୋପ କରି ଲେଖିଛନ୍ତି: "There was also the Press interview that Jawaharlal Nehru gave after Jinnah had practically agreed to the proposals of Parliamentary Delegation. In the interview Jawaharlal suggested that the proposals were not binding and conclusive. After that interview Jinnah backed out of his agreement, and we missed the last chance of settlement."

ପଣ୍ଡିତ ନେହେରୁ ତାଙ୍କର ଆଚରଣ ଓ ଧୈର୍ଯ୍ୟଚ୍ୟୁତିପାଇଁ ପରେ ଅନୁତାପ କରିଥିବାର ସୂଚନା ମିଳେ । ଲୁଇ ଫିସର୍ ତାଙ୍କର ସେହି 'ଅତିମାନବ ଓ ମାନବ' ପ୍ରବନ୍ଧରେ ନେହେରୁଙ୍କ ମନସ୍ତାପ ବିଷୟ ଉଲ୍ଲେଖ କରି କହିଛନ୍ତି : "In New York on October 16th, 1949, Prime Minister Nehru declared that he would have fought to the end against the establishment of Pakistan had he foreseen the dire consequences that followed from it. Azad foresaw and warned and yet remained by Nehru's side, a trusted friend during the troubled years between independence – plus-partition and his death on February 22, 1958."

ଆଜି ଯଦି ପଣ୍ଡିତ ନେହେରୁ ବଞ୍ଚିଥାଆନ୍ତେ, ତା'ହେଲେ ପାକିସ୍ତାନ ଓ ବଙ୍ଗଳା ଦେଶରେ ଲୋକମାନଙ୍କର ଶୋଚନୀୟ ଦୈନ୍ୟ ଓ ଅସହାୟ ଅବସ୍ଥା ଦେଖି ସେ ନିଶ୍ଚୟ ଅତ୍ୟନ୍ତ ଅନୁତପ୍ତ ଓ ମର୍ମାହତ ହୋଇଥାଆନ୍ତେ । ହୁଏତ କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ଆତ୍ମଗ୍ଳାନିରେ ଦିନ କଟାଉଥାଆନ୍ତେ । ଲୋକଶାସନ ପରିବର୍ତ୍ତେ କ୍ଷମତା ଓ ରକ୍ତପିପାସୁ ସେନାଧକ୍ଷମାନଙ୍କଦ୍ୱାରା ସାମରିକ ଶାସନର ବନ୍ଧୁକ ମୁନରେ କ୍ଷମତା ଅପହରଣର ବାରମ୍ବାର ଯେଉଁ ସଂଘର୍ଷ ଲୀଳା ଲାଗିରହିଛି, ଅବିଚାରିତ ହତ୍ୟା ଓ ଦମନଲୀଳା ଚାଲିଛି, ସେଥିରେ ସେହି ଦୁଇଟି ଦେଶର ଲୋକେ ଦଳିତଲାନ୍ତ ଓ ଧ୍ୱସ୍ତବିଧ୍ୱସ୍ତ ହୋଇଗଲେଣି । ଆଉ ମଧ ପାକିସ୍ତାନର ଶାସକମାନେ ଭାରତପ୍ରତି ସଦା ବୈରଭାବ ପୋଷଣ କରି ବାରମ୍ବାର ଯୁଦ୍ଧ, ଜଘନ୍ୟ ସଂନ୍ତ୍ରାସବାଦୀ କାର୍ଯ୍ୟକଳାପ, ପୂର୍ବଭଳି ସାମ୍ପ୍ରଦାୟିକ ଆଚରଣ ଓ ଜେହାଦ ଧମକ ଅବ୍ୟାହତ ରଖି ଚାଲିଛନ୍ତି । ଭାରତବର୍ଷର ପ୍ରଗତିକୁ ବ୍ୟାହତ କରିବା ଏବଂ ଅଖଣ୍ଡତାକୁ ବିପନ୍ନ ତଥା ପୁନର୍ବିଭାଜିତ କରିବା ଭଳି ପ୍ରତ୍ୟକ୍ଷ ଓ ପରୋକ୍ଷ କାର୍ଯ୍ୟକଳାପ ଅବ୍ୟାହତ ରହିଛି । ବାସ୍ତବିକ ଅଖଣ୍ଡ ଭାରତ ବିଭାଜନର ସଙ୍କଟରୁ ଖଣ୍ଡିତ ଭାରତବାସୀ ଏବେ ମଧ ମୁକ୍ତ ନୁହନ୍ତି । ଆମ ସ୍ୱାଧୀନତା ସଂଗ୍ରାମର ଶେଷ ପରିଣତି ଯେ ଏ ପ୍ରକାର ବିଷମ ହେବ ତାହା ୧୯୨୯ ମସିହା ଡିସେମ୍ବର ମାସରେ ଅନୁଷ୍ଠିତ ଲାହୋର ଅଧିବେଶନରେ କଂଗ୍ରେସ ସମଗ୍ର ଭାରତବର୍ଷର ପୂର୍ଣ୍ଣ ସ୍ୱାଧୀନତାପାଇଁ ସଂକଳ୍ପ ନେଲାବେଳେ କାହାରି କଳ୍ପନାରେ ମଧ ନଥିଲା । ଭାଗ୍ୟର କି ବିଡ଼ମ୍ବନା ! ଲାହୋର ବର୍ତ୍ତମାନ ପାକିସ୍ତାନର ଗୋଟିଏ ପ୍ରଧାନ ସହର । ଲାହୋର କଂଗ୍ରେସ ସାଧାରଣ ଅଧିବେଶନରେ ଯୋଗଦେଇଥିବା ଜନତା ମଧରୁ ଅଧିକାଂଶ ଥିଲେ ମୁସଲମାନ ସଂପ୍ରଦାୟର ଲୋକ । ସୀମାନ୍ତଗାନ୍ଧୀ ଖାଁ ଅବଦୁଲ୍ ଗଫୁର ଖାଁ ତାଙ୍କର 'ଖୋଦା-ଇ-ଖିଦ୍‌ମତ୍‌ଗାର'ର ଅଗଣିତ ସ୍ୱେଚ୍ଛାସେବକଙ୍କୁ ନେଇ ସେହି ଅଧିବେଶନରେ ଉପସ୍ଥିତ ଥିଲେ । ବିପୁଳ ଉତ୍ସାହ ଓ ଗାମ୍ଭୀର୍ଯ୍ୟପୂର୍ଣ୍ଣ ବାତାବରଣ ଭିତରେ ତତ୍କାଳୀନ ଭାରତ ରାଜନୈତିକ ମଞ୍ଚର ଦୀପ୍ତିମାନ୍ ନେତା ପଣ୍ଡିତ ନେହେରୁଙ୍କର ସଭାପତିତ୍ୱରେ ସେହି ଅଧିବେଶନରେ ଶପଥ ଘୋଷଣା କରାଯାଇଥିଲା ଯେ ଅହିଂସଭାବରେ ସଂଗ୍ରାମ କରି ବ୍ରିଟିଶ୍ ସାମ୍ରାଜ୍ୟବାଦ ତଥା ବ୍ରିଟିଶ୍ ଆଧିପତ୍ୟରୁ ସଂପୂର୍ଣ୍ଣ ଭାବରେ ଭାରତକୁ ମୁକ୍ତ କରାଯିବ । ଏହି ଲାହୋର କଂଗ୍ରେସ ଘୋଷଣାକୁ କାର୍ଯ୍ୟକାରୀ କରିବାପାଇଁ ପ୍ରତିବର୍ଷ ଜାନୁୟାରୀ ମାସ ୨୬ ତାରିଖକୁ ସ୍ୱାଧୀନତା ଦିବସରୂପେ ସାରା ଦେଶରେ ପାଳନ କରାଯିବ ବୋଲି କଂଗ୍ରେସ ନିଷ୍ପତ୍ତି ନେଇଥିଲା ଏବଂ ଉକ୍ତ ଦିନରେ ଯେଉଁ ସଂକଳ୍ପ ନେବାକୁ ନିର୍ଦ୍ଦେଶ ଥିଲା ସେଥିରେ ଅନ୍ୟାନ୍ୟ ବିଷୟ ମଧରେ ଉଲ୍ଲେଖ ଥିଲା, ''ଆମ୍ଭେମାନେ ବିଶ୍ୱାସ କରୁ ଯେ ସ୍ୱାଧୀନତା ହାସଲ ଓ ବିକାଶର ପୂର୍ଣ୍ଣ ସୁଯୋଗ ଲାଭ କରିବା ପୃଥିବୀର ଅନ୍ୟ ଦେଶର ଅଧିବାସୀଙ୍କ ଭଳି ଭାରତୀୟଙ୍କ ଜୀବନର ଅବିଚ୍ଛେଦ୍ୟ ଅଧିକାର ଅଟେ । ଆମ୍ଭେମାନେ ଆହୁରି ବିଶ୍ୱାସ କରୁ ଯେ, ଯଦି କୌଣସି ସରକାର ଏସବୁ ଅଧିକାରରୁ ଲୋକଙ୍କୁ ବଞ୍ଚିତକରେ ଏବଂ ସେମାନଙ୍କ ଉପରେ ଅତ୍ୟାଚାର ଚଳାଏ, ତେବେ ସେ ସରକାରକୁ ବଦଳାଇ ଦେବା ବା ଲୋପ କରିବାର ଅଧିକାର ମଧ ଜନସାଧାରଣଙ୍କର ଅଛି । X X X ଆମ ବିଚାରରେ

ଆମ ଦେଶରେ ସର୍ବନାଶ ଘଟାଇଥିବା ଶାସନକୁ ଆଉ ଅଧିକକାଳ ମାନିନେବା ଆମ ପକ୍ଷରେ ହେବ ଭଗବାନ୍ ଓ ମଣିଷ ସମାଜ ବିରୁଦ୍ଧରେ ଏକ ଅପରାଧ ।''

ଭାଗ୍ୟର ଆଉ ଏକ ବିଡ଼ମ୍ବନା । ଭାଗ ଭାଗ ହୋଇ ଭାରତ ସ୍ୱାଧୀନତା ପାଇଲା । ବ୍ରିଟିଶ୍ ପାର୍ଲିଆମେଣ୍ଟରେ ଗୃହୀତ ଭାରତୀୟ ସ୍ୱାଧୀନତା ଆଇନ ବଳରେ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖଠାରୁ ଭାରତ ଓ ପାକିସ୍ତାନ ନାମରେ ଦୁଇଟି ସ୍ୱାଧୀନ ରାଷ୍ଟ୍ର ସୃଷ୍ଟିକରାଗଲା । ଅଗଷ୍ଟ ମାସ ୧୪ ତାରିଖ ମଧ୍ୟରାତ୍ରରେ ଆମର ଶାସନବିଧାୟକ ସଭାରେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଏକ ସ୍ମରଣୀୟ ଭାଷଣରେ ଘଟଣାର ଐତିହାସିକ ଗୁରୁତ୍ୱ ମନେରଖିବାକୁ ଓ ଭାରତର ସେବାରେ ନିଜକୁ ନିୟୋଜିତ କରିବାକୁ ଦେଶବାସୀଙ୍କୁ ଆହ୍ୱାନ ଦେଇ କହିଥିଲେ, ''ବହୁବର୍ଷ ପୂର୍ବେ ଆମେ ଆମର ଭାଗ୍ୟ ନିଷ୍ପତ୍ତି କରିବାର ଶପଥ ନେଇଥିଲୁ; (we made a tryst with destiny) । ବର୍ତ୍ତମାନ ସମୟ ଆସିଛି ଆମେ ଆମର ପ୍ରତିଶ୍ରୁତି ପାଳନ କରିବୁ, ଅବଶ୍ୟ ପୂରାପୂରି ଭାବରେ ନୁହେଁ କିମ୍ବା ପୂର୍ଣ୍ଣମାତ୍ରାରେ ନୁହେଁ; କିନ୍ତୁ ମୁଖ୍ୟ ଅଂଶରେ । ଏହି ଠିକ୍ ମଧ୍ୟରାତ୍ରିରେ ଯେତେବେଳେ ସାରା ପୃଥିବୀ ସୁପ୍ତ, ଭାରତ ନବଜୀବନ ଓ ସ୍ୱାଧୀନତା ଲାଭକରି ଜାଗିଉଠିବ । କ୍ୱଚିତ୍ ହେଲେ ବି ବେଳେ ବେଳେ ଇତିହାସରେ ଏଭଳି ମୁହୂର୍ତ୍ତ ଆସେ ଯେତେବେଳେ ଆମେ ପୁରାତନକୁ ଛାଡ଼ି ନୂତନକୁ ପାଦ ବଢ଼ାଉ, ଯେତେବେଳେ ଗୋଟିଏ ଯୁଗର ଅବସାନ ଘଟେ ଓ ଯେତେବେଳେ ଗୋଟିଏ ଜାତିର ଦୀର୍ଘକାଳ ନିଗୃହୀତ ଆତ୍ମା ନିଜକୁ ବ୍ୟକ୍ତ କରିଉଠେ । ଏହି ପବିତ୍ର ମୁହୂର୍ତ୍ତରେ ଭାରତ ତଥା ତା'ର ଜନସାଧାରଣଙ୍କର ସେବାରେ ଓ ମାନବଜାତିର ବୃହତ୍ତର କଲ୍ୟାଣକଳ୍ପେ ନିଜକୁ ଉତ୍ସର୍ଗ କରିବାପାଇଁ ଶପଥ ନେବା ଆମ ପକ୍ଷରେ ଉଚିତ ହେବ ।'' ବହୁ ବର୍ଷ ପୂର୍ବେ ଆମେ ଆମର ଭାଗ୍ୟ ଯେଉଁଭଳି ଭାବରେ ନିଷ୍ପତ୍ତି କରିବାପାଇଁ ଲାହୋର କଂଗ୍ରେସରେ ପଣ୍ଡିତ ନେହେରୁ ଆମକୁ ଶପଥ କରାଇଥିଲେ ତା' ସଂପୂର୍ଣ୍ଣ ଭାବରେ ପାଳନ କରାଯାଇ ପାରିଲା ନାହିଁ । ସେ ଶପଥ ଓ ବର୍ତ୍ତମାନର ଶପଥ ଭିତରେ ପାର୍ଥକ୍ୟ ବୁଝିବା କିଛି କଷ୍ଟକର ନୁହେଁ । ପ୍ରଚ୍ଛନ୍ନ ବିଷାଦ, ଈପ୍‌ସିତ ଉତ୍ସାହ ଓ ଭାବଗମ୍ଭୀର ବାତାବରଣ ଭିତରେ ଆମେମାନେ ପୁରାତନ ଅଖଣ୍ଡ ଭାରତ ଛାଡ଼ି ନୂତନ ବିଚ୍ଛିନ୍ନ ଭାରତରେ ପାଦ ପକାଇଲୁ । ଗାନ୍ଧିଜୀ ସେଦିନ ସମଗ୍ର ଉତ୍ସବରୁ ଦୂରରେ ରହି ନିଜ ଅନ୍ତରର ବେଦନା ଭିତରେ ନିଜକୁ ହଜାଇଦେଇଥିଲେ । ସେହି ଐତିହାସିକ ଶପଥପୀଠ ଲାହୋର ରହିଲା ପାକିସ୍ତାନରେ । ଏଇଠି ହୋଇଛି ଆମ ଈପ୍‌ସିତ ସ୍ୱାଧୀନତା ସଂଗ୍ରାମର ସମାପ୍ତି ।

ଭାରତର ସ୍ୱାଧୀନତା ସଂଗ୍ରାମ ତଥା ଦେଶ ଗଠନ କାର୍ଯ୍ୟରେ ପଣ୍ଡିତ ନେହେରୁଙ୍କର ତ୍ୟାଗ ଓ ଅବଦାନ ଅତୁଳନୀୟ । ଆନ୍ତର୍ଜାତିକ ଶାନ୍ତି, ସମାଜବାଦୀ ଆଭିମୁଖ୍ୟ ଓ ଭାରତର ଜାତୀୟ ମର୍ଯ୍ୟାଦାର ପ୍ରତିଷ୍ଠାପାଇଁ ତାଙ୍କ ଅବଦାନ ଓ ଆଦର୍ଶ ଅନୁକରଣୀୟ । ତାଙ୍କର ଅଗାଧ ପାଣ୍ଡିତ୍ୟ ଓ ଭାରତ ତଥା ସମଗ୍ର ବିଶ୍ୱର ଜ୍ଞାନଭଣ୍ଡାରକୁ ତାଙ୍କର ଅବଦାନପାଇଁ ସେ ପରମ ବନ୍ଦନୀୟ । ମାତ୍ର ବ୍ରିଟିଶ୍ କ୍ୟାବିନେଟ୍ ମିଶନର ପ୍ରସ୍ତାବ ପ୍ରତ୍ୟାଖ୍ୟାତ ହେବା, ଲର୍ଡ଼ ମାଉଣ୍ଟବ୍ୟାଟେନ୍ ଫର୍ମୁଲାରେ ଦେଶ ବିଭାଜନ ଘଟିବା, 'ବନ୍ଧୁ ରାଷ୍ଟ୍ର' ଚୀନ୍ ଦ୍ୱାରା ଭାରତ ଆକ୍ରମଣ ସଂକ୍ରାନ୍ତ ଅସତର୍କତା ଭଳି ଅନେକ ଅତର୍କିତ ପଦକ୍ଷେପ ତାଙ୍କର ତୁଙ୍ଗ ବ୍ୟକ୍ତିତ୍ୱକୁ ଯେପରି ଆହତ କରିଥିଲା, ପ୍ରାଣକୁ ମଧ୍ୟ ସେହିପରି ସନ୍ତାପିତ କରିଥିଲା । ଆମେ ସମସ୍ତେ ତାଙ୍କ ସହିତ ସମଦୁଃଖୀ ।

## ଚଟେଇ ବନାମ୍ ଚେୟାର୍

ମୋର ଛାତ୍ରଜୀବନରେ ଭଦ୍ରକରେ ମୋ ଉପରେ ରାଜନୀତିର ପ୍ରଭାବ ତଥା ସେଠାରେ ମୁସଲିମ୍ ଲିଗ୍‌ର ଦୌରାତ୍ମ୍ୟ କଥା କହୁ କହୁ ଦେଶ ବିଭାଜନ ବିଷୟରେ କେତେକ ଐତିହାସିକ ଘଟଣା କଥା କହିପକାଇଲି । ବର୍ତ୍ତମାନ ପୁଣି ଭଦ୍ରକର ସେଇ କ୍ଷୁଦ୍ର ରାଜନୈତିକ ପରିବେଷ୍ଟନୀ

ଭିତରକୁ ଫେରିଆସୁଛି । ମୁସଲିମ୍ ଲିଗ୍‌ର ଦୌରାତ୍ମ୍ୟ ହେତୁ ମହମ୍ମଦ ହନିଫ୍ କିପରି ତାଙ୍କର ଜୀବନ ଯାପନ କରୁଥିଲେ ସେ କଥା ପୂର୍ବରୁ କହିଛି । ପୁରୁଣା ବଜାରସ୍ଥ ହନିଫ୍‌ବାବୁଙ୍କର ସେଇ ସାଇକେଲ୍ ଓ ଘଡ଼ି ମରାମତି ଦୋକାନରେ ସେ ଅଧିକାଂଶ ସମୟରେ ବସୁଥିଲେ । ସେଇଠାରେ ତାଙ୍କର ରାଜନୀତି ଚର୍ଚ୍ଚା ଓ ଆଲୋଚନା ଚାଲେ । ଦୋକାନ କାଛକୁ ଆଉଜି ସେ ବସନ୍ତି । ତାଙ୍କ ସାମ୍ନାରେ ଦୁଇ ତିନୋଟି ଲମ୍ବା ଚଟେଇ ପଡ଼ିଥାଏ । ସବୁବେଳେ ଦଶ ବାର ଜଣ ଲୋକ ସେଠାରେ ନିଶ୍ଚୟ ବସିଥିବେ । ସେ ଘଡ଼ି ବା ସାଇକେଲ ମରାମତି କରିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କ ସହିତ କଥାବାର୍ତ୍ତା କରୁଥାଆନ୍ତି । ମୁଁ ଅନେକ ସମୟରେ ଯାଇ ସେଇ ଚଟେଇ ଉପରେ ବସେ । ତାଙ୍କଠାରୁ ଦେଶବିଦେଶ, କଂଗ୍ରେସ ଆନ୍ଦୋଳନ ଓ ସ୍ୱାଧୀନତା ସଂଗ୍ରାମ କଥା ଶୁଣେ । ଚଟେଇଗୁଡ଼ିକ ବ୍ୟତୀତ ସେଠାରେ ଟେବୁଲ ଚେୟାର କିଛି ନଥାଏ । ରାଜନୈତିକ ବୈଠକ ଓ ଜନସାଧାରଣଙ୍କ ସେବା ଓ ସଂଗଠନ କାର୍ଯ୍ୟର ଆଲୋଚନା ଚାଲିଥାଏ ସେଇ ଚଟେଇ ଉପରେ ବସି । ସେଇଥିପାଇଁ ଭଦ୍ରକରେ ହନିଫ୍‌ବାବୁଙ୍କ ରାଜନୀତିକୁ 'ଚଟେଇ ରାଜନୀତି' ବୋଲି ଲୋକେ କହୁଥାଆନ୍ତି । ଭଦ୍ରକ ସ୍ଥାନୀୟ ରାଜନୀତିରେ ହନିଫ୍‌ବାବୁଙ୍କର ବିରୁଦ୍ଧାଚରଣ କରୁଥିଲେ ଆଉ ଜଣେ ବିଶିଷ୍ଟ ବ୍ୟକ୍ତି ଶ୍ରୀ ସୀତାକାନ୍ତ ମହାପାତ୍ର । ସେ ଜମିଦାର ବଂଶର ଲୋକ ଥିଲେ ଏବଂ କିଛି ସମୟପାଇଁ କେନ୍ଦ୍ରୀୟ ବ୍ୟବସ୍ଥା ପରିଷଦର ସଭ୍ୟ ଥିଲେ । ସ୍ଥାନୀୟ ସ୍ୱାୟତ୍ତଶାସନ ସଂସ୍ଥାଗୁଡ଼ିକର ନିର୍ବାଚନରେ ସୀତାକାନ୍ତ ବାବୁଙ୍କ ଦଳ ହନିଫ୍‌ବାବୁଙ୍କ ଦଳକୁ ବିରୋଧ କରୁଥିଲେ । ସୀତାକାନ୍ତବାବୁଙ୍କର ରାଜନୀତିକୁ arm-chair-politics ବା 'ସୌଖିନିଆ ରାଜନୀତି' ବୋଲି ଲୋକେ କହୁଥିଲେ । କାରଣ ଶ୍ରୀ ମହାପାତ୍ର ଚେୟାର ଟେବୁଲରେ ସୁସଜ୍ଜିତ ତାଙ୍କର ବୈଠକଖାନାରେ ବସି ସ୍ଥାନୀୟ ରାଜନୀତି ଆଲୋଚନା କରନ୍ତି । ଏହି ଦୁଇ ବ୍ୟକ୍ତିଙ୍କର ରାଜନୀତି ଏବଂ ସେଥିରୁ ଉଦ୍ଭବ ହେଉଥିବା ରାଜନୈତିକ ସଂଘର୍ଷ ଅନେକ ସମୟରେ ଭଦ୍ରକବାସୀଙ୍କ ମଧ୍ୟରେ ଉତ୍ତେଜନା ସୃଷ୍ଟିକରିଥାଏ । ସରକାରୀ ସମର୍ଥନ ହାସଲ କରିବାରେ ଶ୍ରୀ ମହାପାତ୍ର ଖୁବ୍ ଧୁରନ୍ଧର ଥିଲେ, ମାତ୍ର ଲୋକସମର୍ଥନ ଥିଲା ହନିଫ୍‌ବାବୁଙ୍କ ପକ୍ଷରେ । ଅସହ୍ୟ ଅସ୍ୱଚ୍ଛଳତା, ଧର୍ମାନ୍ଧଙ୍କ ନିର୍ଯାତନା ଓ ରାଜନୈତିକ ଘାତପ୍ରତିଘାତ ଭିତରେ ନିଜ କର୍ମପଥରେ ଅଟଳରହି ମହମ୍ମଦ ହନିଫ୍ ଓଡ଼ିଶା ବିଧାନସଭାର ଉପବାଚସ୍ପତି ଓ ପାର୍ଲିଆମେଣ୍ଟ ସଦସ୍ୟ ହୋଇପାରିଥିଲେ ।

ସ୍କୁଲରେ ପଢ଼ିଲାବେଳେ ଆଉ ଜଣେ ବ୍ୟକ୍ତିଙ୍କଦ୍ୱାରା ମଧ୍ୟ ମୁଁ ପ୍ରଭାବିତ ହୋଇଥିଲି । ସେ ହେଉଛନ୍ତି ସ୍ୱର୍ଗତ ଗୋକୁଳାନନ୍ଦ ମହାନ୍ତି । ସେ ୧୯୨୧ ମସିହା ସ୍ୱାଧୀନତା ସଂଗ୍ରାମ କାଳରେ ଜଣେ ନେତୃସ୍ଥାନୀୟ ବ୍ୟକ୍ତି ଥିଲେ । ଭଦ୍ରକ ସହର ମଧ୍ୟରେ ଥିବା କୁଆଁସ ଗ୍ରାମରେ ଥିଲା ତାଙ୍କ ଘର । ଭଦ୍ରକବାସୀ ତାଙ୍କ ବଂଶ ପ୍ରତି ସମ୍ମାନ ପ୍ରଦର୍ଶନ କରୁଥିଲେ । ଗୋକୁଳିବାବୁ ମଝିରେ ମଝିରେ ପୁରୁଣା ବଜାର ଆସନ୍ତି ଓ ତତ୍କାଳୀନ ଡାକ୍ତର ସ୍ୱର୍ଗତ ବୈକୁଣ୍ଠନାଥ ବାନାର୍ଜୀଙ୍କ ଖଟ ଉପରେ ବସି କଂଗ୍ରେସ ସଭା କରନ୍ତି । ମୁଁ ହଷ୍ଟେଲରେ ରହୁଥାଏ । ସେ ମୋତେ ଖବର ଦିଅନ୍ତି । ମୁଁ ତାଙ୍କ ବୈଠକରେ ଯୋଗଦିଏ । ବୈଠକରେ ଆଠ ଦଶଜଣ ଲୋକରୁ ଅଧିକ ପ୍ରାୟ ନଥା'ନ୍ତି । କେତେଗୁଡ଼ିଏ ପ୍ରସ୍ତାବ ବୈଠକରେ ଗୃହୀତ ହୁଏ । ଗୋକୁଳିବାବୁ ସେଗୁଡ଼ିକୁ ସମାଜ ଖବରକାଗଜରେ ପ୍ରକାଶପାଇଁ ପଠାଇ ଦିଅନ୍ତି । ସେଗୁଡ଼ିକ ସମାଜ କାଗଜରେ ଖୁବ୍ ଭଲଭାବରେ ପ୍ରକାଶ ପାଉଥାଏ । ଜଣେ ଗାନ୍ଧିବାଦୀ ଓ ଗଠନମୂଳକ କର୍ମୀ ହିସାବରେ ଗୋକୁଳିବାବୁ ଓଡ଼ିଶାରେ ଖୁବ୍ ଖ୍ୟାତି ଅର୍ଜନ କରିଥିଲେ ଏବଂ ପରେ ସେ ମଧ୍ୟ ବିଧାନସଭା ଓ ଲୋକସଭାକୁ ସଦସ୍ୟ ଭାବରେ ନିର୍ବାଚିତ ହୋଇପାରିଥିଲେ । ସେତେବେଳେ ଅସହଯୋଗ ଆନ୍ଦୋଳନ ସମୟରେ ଆଇନ ଅମାନ୍ୟ, ଗଠନମୂଳକ ଓ ସେବାକାର୍ଯ୍ୟ କରି ଆମମାନଙ୍କ ମନରେ ପ୍ରଭାବ ପକାଇଥିବା ଅନ୍ୟ ଜଣେ ବ୍ୟକ୍ତି ହେଲେ ପୁରୁଣାବଜାରର ସ୍ୱର୍ଗତ ଘନଶ୍ୟାମ ସାହୁ । ସେ ଜଣେ ଖୁବ୍ ଗୁଣୁଆ କର୍ମୀ ହିସାବରେ ଖ୍ୟାତି ଅର୍ଜନ କରିଥିଲେ; କିନ୍ତୁ ଅକାଳରେ ତାଙ୍କର ମୃତ୍ୟୁ ହୋଇଥିଲା ।

ଏହିଠାରେ ଡାକ୍ତର ବୈକୁଣ୍ଠନାଥ ବାନାର୍ଜୀଙ୍କ ବିଷୟରେ ଦୁଇପଦ କହିବାକୁ ମୋର ଆଗ୍ରହ ହେଉଛି । ସେ ଥିଲେ ଜଣେ ଅବସରପ୍ରାପ୍ତ ଏଲ୍.ଏମ୍.ପି. ଡାକ୍ତର । ତାଙ୍କର ବାରଣ୍ଡା ଉପରେ ଗୋକୁଳିବାବୁଙ୍କର ସଭା ବସୁଥିବା କଥା ମୁଁ ଆଗରୁ କହିଛି । ବୈକୁଣ୍ଠବାବୁ ସବୁବେଳେ ଖଦଡ଼ ପିନ୍ଧୁଥିଲେ ଏବଂ କଂଗ୍ରେସର ଜଣେ ବଡ଼ ପୃଷ୍ଠପୋଷକ ଥିଲେ । ତାଙ୍କର ଦୟାର୍ଦ୍ର ବ୍ୟବହାର ଓ ସ୍ୱଦେଶାନୁରାଗ ମୋତେ ଗଭୀରଭାବେ ସ୍ପର୍ଶ କରିଥିଲା । ଗୋଟିଏ ସାଇକେଲ୍‌କୁ କିଛି ବାଟ ପେଲି ପେଲି ଗଡ଼ାଇ ତା' ଉପରେ ଚଢ଼ିଯାଇ ସେ ବାହାରିଯାଆନ୍ତି ରୋଗୀ ଦେଖିବାକୁ । ବ୍ୟବସାୟରେ ସେ ପଇସା ଲୋଭୀ ନଥିଲେ । ଯେ ଯାହା ଦେଉଥିଲା ସେଇଥିରେ ତାଙ୍କର ସନ୍ତୋଷ । ନାରାୟଣ ଚନ୍ଦ୍ର ସ୍କୁଲ ସହିତ ତାଙ୍କର ଗଭୀର ସଂପର୍କ ଥିଲା ଏବଂ ସେ ସ୍କୁଲ ପରିଚାଳନା କମିଟିର ଜଣେ ସଭ୍ୟ ଥିଲେ । ଡାକ୍ତର ହିସାବରେ ଛାତ୍ରାବାସର ପିଲାମାନଙ୍କୁ ସେ ମାଗଣାରେ ଚିକିତ୍ସା କରୁଥିଲେ । ସ୍ୱାସ୍ଥ୍ୟ ବିଷୟରେ ସେ ଗୋଟିଏ ପରାମର୍ଶ ଦେଇଥିଲେ ଯେଉଁଟିକୁ ପାଳନ କରି ମୁଁ ସବୁବେଳେ ଉପକୃତ ହୋଇଛି । ତାଙ୍କ ମତରେ ଅତିରିକ୍ତ ଭୋଜନ ବହୁରୋଗର କାରଣ, ତେଣୁ ପେଟପୂରା ନଖାଇ ଟିକିଏ ଭୋକ ଥିବା ଅବସ୍ଥାରେ ଖାଇବା ଶେଷକଲେ ସ୍ୱାସ୍ଥ୍ୟ ନିଶ୍ଚୟ ଭଲରହିବ । ତାଙ୍କର ପରାମର୍ଶ ସବୁବେଳେ ମୁଁ ମନେରଖିଛି ଏବଂ ଭୋଜନ ମଧ୍ୟ ସେଇ ଅନୁସାରେ କରେ । ବୈକୁଣ୍ଠବାବୁ ଜଣେ ଅତି ସମ୍ମାନିତ ବ୍ୟକ୍ତି ଥିଲେ । ଡାକ୍ତର ହିସାବରେ ତାଙ୍କର ସହାନୁଭୂତିଶୀଳ ବ୍ୟବହାର ରୋଗୀଙ୍କୁ ଆରୋଗ୍ୟ କରିବାରେ ବିଶେଷ ସହାୟକ ହେଉଥିଲା । ଆମର ସମସାମୟିକ ସମାଜରେ ସମ୍ମାନିତ ଡାକ୍ତରୀ ବୃତ୍ତିର ମର୍ଯ୍ୟାଦା ପ୍ରତିଷ୍ଠା ଉଦ୍ଦେଶ୍ୟରେ ମଧ୍ୟ ମୁଁ ତାଙ୍କ କଥା ଉଲ୍ଲେଖ କରିବା ପ୍ରୟୋଜନ ବୋଧକଲି । ତାଙ୍କର ପୁତ୍ର ଶ୍ରୀ ଯତୀନ୍ଦ୍ର ନାଥ ବାନାର୍ଜୀ ବର୍ତ୍ତମାନ କିଛି ପରିମାଣରେ ତାଙ୍କର ଡାକ୍ତରୀ ବ୍ୟବସାୟ ଚଳାଉଛନ୍ତି । ତାଙ୍କ ଘର ସହିତ ମୋର ଘନିଷ୍ଠ ସଂପର୍କ ଥିଲା ।

ଭଦ୍ରକ ହାଇସ୍କୁଲରେ ପଢ଼ିଲାବେଳେ ଦେଶର ରାଜନୈତିକ ସମସ୍ୟା ପ୍ରତି ମୁଁ ବିଶେଷ ଆକୃଷ୍ଟ ହେଉଥିଲି । କଂଗ୍ରେସ ଦେଶର ସ୍ୱାଧୀନତା ହାସଲ କରିବାପାଇଁ ଗାନ୍ଧିଜୀଙ୍କ ନେତୃତ୍ୱରେ ଯେଉଁସବୁ ଯୋଜନା କାର୍ଯ୍ୟକାରୀ କରୁଥାଏ ତାହାଦ୍ୱାରା ମୁଁ ମଧ୍ୟ ପ୍ରଭାବିତ ହେଉଥିଲି । ସେସବୁ ବିଷୟରେ ସମ୍ବାଦପତ୍ରରେ ଯାହା ପ୍ରକାଶ ପାଉଥାଏ ତାହା ଜାଣିବା ପାଇଁ ବିଶେଷ ଆଗ୍ରହ ପ୍ରକାଶ କରୁଥିଲି । କଂଗ୍ରେସ ଲୋକଙ୍କଦ୍ୱାରା ଆହୂତ ସଭାସମିତିରେ ଯୋଗ ଦେବାପାଇଁ ଉଦ୍ୟମ କରୁଥିଲି । ଦିନେ ଭଦ୍ରକ ସହର ମଧ୍ୟରେ ଅବସ୍ଥିତ କୁଆଁସ ପଡ଼ିଆରେ ଗୋଟିଏ ସଭା ହେବାପାଇଁ କଂଗ୍ରେସ ପକ୍ଷରୁ ଘୋଷଣା କରାଯାଇଥିଲା । କିନ୍ତୁ ସରକାର ଭଦ୍ରକ ସହରରେ ଫୌଜଦାରୀ ବିଧାନର ୧୪୪ ଧାରା ଜାରିକରି ସଭାସମିତି ନିଷିଦ୍ଧ କରିଦେଇଥିଲା ଏବଂ ନାଗରା ବଜାଇ ସରକାରଙ୍କ ପକ୍ଷରୁ ସେହି ନିଷେଧାଜ୍ଞା ପ୍ରଚାର କରିଦିଆଯାଇଥିଲା । ନିଷେଧାଜ୍ଞା ଘୋଷଣା ସ୍କୁଲ ପିଲାମାନଙ୍କ ମଧ୍ୟରେ ଗୋଟାଏ ଆଲୋଡ଼ନ ସୃଷ୍ଟିକରିଥିଲା । ଏହାର ସୁଯୋଗ ମୁଁ ନେଇଥିଲି । ଦଳେ ପିଲାଙ୍କୁ ଉତ୍ତେଜିତ କରି ମୁଁ ସେମାନଙ୍କୁ ମତାଇଲି ନିଷେଧାଜ୍ଞା ଅମାନ୍ୟ କରିବାପାଇଁ । ସ୍କୁଲ ଛୁଟି ପରେ ଆମେ ଦଳେ ପିଲା ଚାଲିଲୁ କୁଆଁସ ପଡ଼ିଆ ଆଡ଼େ । ଭଦ୍ରକର ତତ୍କାଳୀନ ସବ୍‌ଡିଭିଜନାଲ୍ ଅଫିସରଙ୍କ ପୁଅ ମଧ୍ୟ ଆମ ସାଙ୍ଗରେ ଥିଲେ । ଯେଉଁମାନଙ୍କର ସଭା କରିବାର ଥିଲା ସେମାନେ ସଭାସ୍ଥଳକୁ ଆସିଲେ ନାହିଁ । ପୂର୍ବରୁ ଘୋଷିତ ହୋଇଥିବା ସଭାସ୍ଥଳ ପଡ଼ିଆ ଚାରିପାଖରେ ବହୁଲୋକ ବଡ଼ ଉତ୍କଣ୍ଠିତ ଭାବରେ ଅପେକ୍ଷା କରି ରହିଥାଆନ୍ତି । ପୁଲିସ୍ ଅଫିସର୍ ଓ କନେଷ୍ଟବଳମାନେ ସେଠାରେ ଉପସ୍ଥିତ ଥାଆନ୍ତି । ସମୟ ପ୍ରାୟ ଅପରାହ୍ନ ପାଞ୍ଚଟା ହେବ । ମୁଁ ମୋର ସଙ୍ଗୀ ଛାତ୍ରମାନଙ୍କୁ ନେଇ ସଭାସ୍ଥଳରେ ପହଞ୍ଚିଗଲି । ସଙ୍ଗେ ସଙ୍ଗେ ମୁଁ ସଭାପତି ହେବି ବୋଲି ଜଣେ ପିଲା ପ୍ରସ୍ତାବ କରିଦେଲା । ମୁଁ ଭାଷଣରେ କହିଥିଲି ଯେ ସଭାସମିତି କରି ସ୍ୱାଧୀନ ମତ ବ୍ୟକ୍ତ କରିବାର ଅଧିକାର ଆମମାନଙ୍କର ଅଛି । ସଭା କରିବାକୁ ନିଷେଧ କରି ଲୋକଙ୍କୁ ସେ ଅଧିକାରରୁ ବଞ୍ଚିତ କରିବା ସରକାର ପକ୍ଷରେ

ଘୋର ଅନ୍ୟାୟ । ସେ ପ୍ରକାର ଆଦେଶକୁ ଭଙ୍ଗ କରିବା ଆମର ଧର୍ମ । ଏଭଳି କେତେକ ବିଷୟ ସେଠାରେ ବୁଝାଇଥିଲି । ପୁଲିସ୍ ଆମ ସମସ୍ତଙ୍କୁ ଥାନାକୁ ଧରିନେଇଯାଇଥିଲେ । ଆମ ସାଙ୍ଗରେ ତାଙ୍କ ପୁଅ ଥିବା କଥା ଜାଣି ଏସ୍.ଡି.ଓ. ମହାଶୟ ବଡ଼ ବିବ୍ରତ ହୋଇଥିଲେ । ସେ ଗୋଟାଏ ବୁଦ୍ଧିପାଞ୍ଚ୍ ତାହା ପ୍ରୟୋଗ କରିଥିଲେ ଯାହାଦ୍ୱାରା କି ମୋତେ କେବଳ ଥାନାରେ ଅଟକାଇ ଜେଲ୍‌କୁ ପଠାଗଲା ଏବଂ ଅନ୍ୟମାନଙ୍କୁ ଛାଡ଼ିଦିଆଗଲା । କୌଶଳଟି ହେଲା, ଯେଉଁ ପିଲା ସଭାରେ ନେତା ହୋଇ ସଭାପତି ହୋଇଥିଲା ତାକୁ ଅଟକାଇ ଅନ୍ୟମାନଙ୍କୁ ଛାଡ଼ିଦିଆଯାଉ । ସେଥିରେ ମୁଁ କେବଳ ପଡ଼ିଗଲି । ଦୁଇ ତିନିଦିନ ଜେଲ୍‌ରେ ରଖିଲା ପରେ ମୋତେ ଏସ୍.ଡି.ଓ.ଙ୍କ କୋର୍ଟରେ ହାଜର କରାଗଲା । ମିଶଲ ଉପରେ ବସି ଏସ୍.ଡି.ଓ. ମହାଶୟ କ୍ରୋଧରେ କମ୍ପମାନ ହେଉଥାଆନ୍ତି । ସଙ୍ଗେ ସଙ୍ଗେ ଆଦେଶ ହେଲା ସ୍କୁଲର ହେଡ଼ମାଷ୍ଟ୍ରଙ୍କୁ ଡାକିଆଣ । ଭଦ୍ରକ ହାଇସ୍କୁଲର ହେଡ଼ମାଷ୍ଟର ଥିଲେ ସ୍ୱର୍ଗତ ଗୋକୁଳାନନ୍ଦ ନାୟକ । ସେ ଥିଲେ ଜଣେ ଅତି ସମ୍ମାନନୀୟ ବ୍ୟକ୍ତି । ଗୋକୁଳାନନ୍ଦବାବୁ କୋର୍ଟକୁ ଆସିଲେ । ଏସ୍.ଡି.ଓ. ମହାଶୟ କ୍ରୋଧାନ୍ୱିତ ହୋଇ ତାଙ୍କୁ କହିଥିଲେ ଯେ ହେଡ଼ମାଷ୍ଟର ହେବାପାଇଁ ଗୋକୁଳାନନ୍ଦବାବୁ ବଡ଼ ଅଯୋଗ୍ୟ, କାରଣ ପିଲାମାନଙ୍କୁ ସେ ଅକ୍ତିଆର କରି ରଖିପାରୁନାହାନ୍ତି । ଆହୁରି ଅନେକ ଅଶ୍ରାବ୍ୟ କଥା କହିଥିଲେ, ଯାହାକୁ କି ଏଠାରେ ଉଲ୍ଲେଖ କରିହେବନାହିଁ । କୋର୍ଟରେ ଏସ୍.ଡି.ଓ. ମହାଶୟ ଆମ ଘର ଓ ବାପାଙ୍କ ନାମ ଠିକଣା ଆଦି ପଚାରିଥିଲେ । ମୁଁ ତହିଁର ଉତ୍ତରଦେବା ପରେ ସେ ପୁଣି ପଚାରିଲେ, ମୁଁ କାହିଁକି ଗାଆଁରୁ ଆସି ଭଦ୍ରକରେ ଅଛି । ମୁଁ କହିଲି, ପାଠ ପଢ଼ିବାପାଇଁ ଆସିଛି ଏବଂ ଏଠାରେ ହାଇସ୍କୁଲରେ ପଢୁଛି । ସେ ପୁଣି ପଚାରିଲେ, କୁଆଁସ ପଡ଼ିଆରେ ସଭାକରି ୧୪୪ ଧାରା ନିଷେଧାଜ୍ଞା ଭାଙ୍ଗିବା କ'ଣ ପାଠପଢ଼ା ? ମୁଁ କହିଲି, କାହିଁ ସେଠାରେ ତ ସେ ପ୍ରକାର କୌଣସି ନିଷେଧାଜ୍ଞା ଲେଖାହୋଇନଥିଲା । ଯେପରି କୌଣସି କୌଣସି ସ୍ଥାନରେ ସର୍ବସାଧାରଣ ପ୍ରବେଶ ନିଷେଧ ବୋଲି ଲେଖାହୋଇଥାଏ, ସେହିପରି କୌଣସି ଲେଖା କୁଆଁସ ପଡ଼ିଆରେ ନଥିଲା ବୋଲି ମୁଁ ଜବାବ ଦେଇଥିଲି । ସେ କହିଲେ ଯେ ଏ ନିଷେଧାଜ୍ଞା ନାଗରା ବଜାଇ ଘୋଷଣା କରାଯାଇଥିଲା । ମୁଁ କହିଲି, କାହିଁ ସେଠାରେ ତ କୌଣସି ନାଗରା ବାଜୁନଥିଲା ! ଏ ପ୍ରକାର ଉତ୍ତର ଶୁଣି ସେ ନିଆଁବାଣ ହୋଇଯାଇଥିଲେ । ଏସ୍.ଡି.ଓ. ମହାଶୟ ମୋତେ ଲକ୍ଷ୍ୟକରି ଭବିଷ୍ୟତରେ ଏ ପ୍ରକାର ବିଶୃଙ୍ଖଳ ଆଚରଣ ନ ଦେଖାଇବାକୁ ତାଗିଦ୍ କରିବା ସଙ୍ଗେ ସଙ୍ଗେ ସେହିପରି ଏକ ପ୍ରମାଣପତ୍ର ଲେଖିଦେଲେ ସେ ମୋତେ ଖଲାସ କରିଦେବେ ବୋଲି କହିଲେ । ମୁଁ ସେ ପ୍ରକାର ଲେଖିଦେବି ନାହିଁ ବୋଲି ମନାକରିଦେଇଥିଲି । ଏତିକିବେଳକୁ ମୋର ବଡ଼ଭାଇ କୋର୍ଟର ଦୁଆର ପାଖରେ କାନ୍ଦ କାନ୍ଦ ହୋଇ ଛିଡ଼ାହୋଇଥିବାର ଦେଖିଲି । ମୋର ଭିଣୋଇ କ୍ଷେତ୍ରବାସୀ ଖୁଣ୍ଟିଆ ଥାଆନ୍ତି ଏସ୍.ଡି.ଓ. ଙ୍କ ପେଶ୍‌କାର । ସେ ଏସ୍.ଡି.ଓ.ଙ୍କ ସହିତ କ'ଣ ଫୁସ୍‌ଫାସ୍ କଥାବାର୍ତ୍ତା ହେଲେ । ଏସ୍.ଡି.ଓ. ମହାଶୟ ତା'ପରେ ତାଙ୍କ ଅଫିସ୍‌ର ପଛ କାମରାକୁ ଚାଲିଗଲେ । ସେଠାରୁ ପୁଣି ଫେରିଆସି ମୋତେ ତାଗିଦ୍ କରି କହିଲେ ଯେ ମୁଁ ଆଉଥରେ ଯଦି ଏ ପ୍ରକାର ଆଇନ ବିରୁଦ୍ଧ କାର୍ଯ୍ୟରେ ଲିପ୍ତରହେ ତା'ହେଲେ ମୋତେ କଠିନ ଦଣ୍ଡ ଦିଆଯିବ । ତା'ପରେ ମୋତେ ଛାଡ଼ିଦେଲେ । ପରେ ଶୁଣିବାକୁ ପାଇଲି ଯେ ମୋତେ ଆୟତ୍ତରେ ରଖିବେ ବୋଲି ମୋର ଭାଇ ଏସ୍.ଡି.ଓ.ଙ୍କୁ ମୋ ଅଜାଣତରେ ମୁଚଲିକାପତ୍ର ଲେଖିଦେଇଥିଲେ ।

ମୁଁ ଗିରଫ ହେଲେ ମୋର ବଡ଼ଭାଇ ବ୍ୟସ୍ତ ହୁଅନ୍ତି । ସେ ଆଖିରୁ ଲୁହ ବୁହାଇଦିଅନ୍ତି । ଭୟରେ ଯେ ସେ ଏଭଳି ହୁଅନ୍ତି ତା' ଆଦୌ ନୁହେଁ । ମୋର ପାଠପଢ଼ା କିପରି ନଷ୍ଟ ନହେବ ତାହାହିଁ ଥିଲା ତାଙ୍କର ସବୁଠାରୁ ବଡ଼ ଚିନ୍ତା । ବେଶି ପାଠପଢ଼ି ରାଜନୀତିରେ ଯୋଗଦେଲେ ତାଙ୍କର କୌଣସି ଆପତ୍ତି ନାହିଁ ବୋଲି ସେ ସବୁବେଳେ ବୁଝାନ୍ତି । ତାଙ୍କର ଆଶା ଥିଲା ବି.ଏ. ପାସ୍ କଲା ପରେ ବାରିଷ୍ଟରି ପଢ଼ିବାପାଇଁ ମୋତେ ବିଲାତ ପଠାଇବେ । ସେ ବିଶ୍ୱାସ କରୁଥିଲେ ଯେ ବାରିଷ୍ଟରି ପାସ୍

କରି ରାଜନୀତି କଲେ ବିଶେଷ ପ୍ରତିଷ୍ଠାଲାଭ କରିହେବ, କାରଣ ବାରିଷ୍ଟରି ପାସ୍‌କରା ବହୁ ବଡ଼ ବଡ଼ ନେତା ସେତେବେଳେ କଂଗ୍ରେସରେ ଥିଲେ । ମାଟ୍ରିକ୍ ପାଶ୍‌କଲା ପରେ ଆଉ ନପଢ଼ି କଂଗ୍ରେସ ଆନ୍ଦୋଳନରେ ପୂରାପୂରି ଯୋଗଦେବାପାଇଁ କେତେକ ନେତୃସ୍ଥାନୀୟ ବ୍ୟକ୍ତି ମୋତେ ପରାମର୍ଶ ଦେଉଥିଲେ । କିନ୍ତୁ ମୋର ବଡ଼ଭାଇ ଏ ପ୍ରକାର ମତକୁ ଆଦୌ ପସନ୍ଦ କରୁନଥିଲେ । ସେ ଚାହୁଁଥିଲେ ଯେ ମୁଁ ଉଚ୍ଚଶିକ୍ଷା ଲାଭକରି ରାଜନୀତି କରେ । ତେଣୁ ଯଦି ନିହାତି ଆବଶ୍ୟକ ପଡ଼େ ପାଠପଢ଼ା ଓ ରାଜନୀତି ସମତାଳରେ ଚାଲିଲେ ତାଙ୍କର କିଛି ଆପତ୍ତି ରହିବ ନାହିଁ ବୋଲି ସେ କହୁଥାଆନ୍ତି ।

ଭଦ୍ରକ ହାଇସ୍କୁଲରେ ପଢ଼ିଲାବେଳେ ମୁଁ ଶ୍ରୀ ହରେକୃଷ୍ଣ ମହତାବଙ୍କୁ ଜାଣିଲି । ସେଠାରେ ସେ ଆଗରପଡ଼ାର ରଜା ବୋଲି ଲୋକମୁଖରେ ପରିଚିତ ଥା'ନ୍ତି । ମୋର ଅଭିଭାବକ ନାରାୟଣଚନ୍ଦ୍ର ସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀ ଉଦୟ ନାରାୟଣ ମହାନ୍ତିଙ୍କ ଘର ଥିଲା ସେଇ ଆଗରପଡ଼ାଆଡ଼େ । ସେ ମହତାବବାବୁଙ୍କ ସହପାଠୀ ଥିଲେ । ସେ ସମୟରେ ମହତାବବାବୁ ତାଙ୍କୁ ଭେଟିବାକୁ ସ୍କୁଲ ଛାତ୍ରାବାସକୁ ଆସନ୍ତି । ସେଇଠାରେ ମୁଁ ତାଙ୍କୁ ଦେଖିବାକୁ ପାଏ । ସମୟ ସମୟରେ ମହତାବବାବୁ ଯେତେବେଳେ ତାଙ୍କ ଭଦ୍ରକ ଘରେ ରହନ୍ତି ଆମେମାନେ ଯାଇ ତାଙ୍କୁ ଦେଖାକରୁ । କଂଗ୍ରେସର ଆଦର୍ଶ ଓ ସ୍ୱାଧୀନତା ସଂଗ୍ରାମ ବିଷୟରେ ସେ ଆମମାନଙ୍କୁ ବହୁତ କଥା କହନ୍ତି । କଂଗ୍ରେସ କାର୍ଯ୍ୟ ଓ ରାଜନୀତିରେ ମୋର ଉତ୍ସାହ ଜାଣି ସେ ଭାରି ଖୁସି ହୋଇଥିଲେ । ଛାତ୍ର ଥାଇ ମଧ୍ୟ ମଝିରେ ମଝିରେ ମୁଁ ଯେଉଁ ରାଜନୈତିକ କାର୍ଯ୍ୟ ଟିକେ ଟିକେ କରୁଥିଲି ଏବଂ ତଦ୍ୱାରା ପୁଲିସ ମୋତେ ଗିରଫ କରୁଥିଲେ ସେଥିରେ ସେ ଖୁବ୍ ସନ୍ତୋଷ ପ୍ରକାଶ କରିଥିଲେ । କାଳକ୍ରମେ ମୋ ବଡ଼ଭାଇଙ୍କ ସହିତ ମହତାବ ବାବୁଙ୍କର ଘନିଷ୍ଠତା ହୋଇଥିଲା ।

## ବିହାର ଭୂମିକମ୍ପରୁ ସ୍ୱାଧୀନତାର ସ୍ପନ୍ଦନ

୧୯୩୪ ମସିହାରେ ବିହାରରେ ପ୍ରଳୟଙ୍କରୀ ତଥା ଭୟାବହ ଭୂମିକମ୍ପ ହୋଇଥିଲା । ହଜାର ହଜାର ସଂଖ୍ୟାରେ ଲୋକ ମରିଥିଲେ । ଗୃହପାଳିତ ପଶୁ ଯେ କେତେ ନଷ୍ଟ ହୋଇଥିଲେ ତା'ର କଳନା ନାହିଁ । କେଜାଣି କେତେ ଘରବାଡ଼ି ଭାଙ୍ଗି ଧୂଳିସାତ୍ ହୋଇଯାଇଥିଲା ତା'ର ମଧ୍ୟ କଳନା ନଥିଲା । ଭୂମିକମ୍ପର କରୁଣ କାହାଣୀ ଖବରକାଗଜମାନଙ୍କରେ ପ୍ରକାଶ ପାଉଥାଏ । ଲୋକଙ୍କୁ ସାହାଯ୍ୟ ଓ ଥଇଥାନ କରିବାକୁ ପ୍ରାୟ ଦୁଇ ତିନିବର୍ଷ ଲାଗିଥିଲା । ସେତେବେଳେ ବିହାରର ଅଦ୍ୱିତୀୟ ନେତା ଡକ୍ଟର ରାଜେନ୍ଦ୍ରପ୍ରସାଦ ଜେଲ୍‌ରେ ଥିଲେ । ଭୂମିକମ୍ପରେ ପ୍ରପୀଡ଼ିତ ଲୋକମାନଙ୍କର ସେବା କାର୍ଯ୍ୟରେ ଲାଗିବାପାଇଁ ରାଜେନ୍ଦ୍ରପ୍ରସାଦ ଇଚ୍ଛା ପ୍ରକାଶ କରିବାରୁ ସରକାର ତାଙ୍କୁ ଖଲାସ କରି ଦେଇଥିଲେ । ରାଜେନ୍ଦ୍ରବାବୁଙ୍କ ନେତୃତ୍ୱରେ ଗୋଟିଏ ରିଲିଫ୍ କମିଟି ଗଠିତ ହୋଇଥାଏ । ସେହି ରିଲିଫ୍ କମିଟିକୁ ମୁକ୍ତହସ୍ତରେ ସାହାଯ୍ୟ କରିବାକୁ ରାଜେନ୍ଦ୍ରବାବୁ ନିବେଦନ କରିଥିଲେ । କାନ୍ଧରେ ଗୋଟିଏ କୋଦାଳ ପକାଇ ରାଜେନ୍ଦ୍ରବାବୁ ନିଜେ କିପରି ସଫେଇ ଓ ସାହାଯ୍ୟ କାର୍ଯ୍ୟ କରୁଥିଲେ ତାହା ଖବରକାଗଜରେ ବାହାରୁଥିଲା । ଲୋକଙ୍କର ଘୋର ଦୁର୍ଦ୍ଦଶା ବେଳେ ସରକାର ଯେପରି ଅବା କୁଆଡ଼େ ହଜିଗଲେ ! କଂଗ୍ରେସନେତା ରାଜେନ୍ଦ୍ରବାବୁଙ୍କ ନେତୃତ୍ୱରେ ଏଇ ଅସାଧ ତ୍ରାଣ କାର୍ଯ୍ୟ ମୋଭଳି ଅସଂଖ୍ୟ ଲୋକଙ୍କ ମନକୁ କେବଳ ସେବାକାର୍ଯ୍ୟପାଇଁ ଆକୃଷ୍ଟ କରିନଥିଲା, ଆମ ଦେଶବାସୀଙ୍କ ସ୍ୱାର୍ଥପାଇଁ ଆମର ଏକ ସ୍ୱାଧୀନ ସରକାରର ଅପରିହାର୍ଯ୍ୟତା ସଂପର୍କରେ ଏହା ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ହୋଇଉଠିଲା । ସ୍ୱାଧୀନତା ସଂଗ୍ରାମର ସ୍ପନ୍ଦନ ମୋ ମନକୁ ଏଥିପାଇଁ ଅଧିକ ଆନ୍ଦୋଳିତ କଲା । ଭୂମିକମ୍ପର କରୁଣ କାହାଣୀ ଛାତ୍ରମାନଙ୍କର ହୃଦୟକୁ ସ୍ପର୍ଶ କରିଥିଲା । ଦୁର୍ଦ୍ଦଶାଗ୍ରସ୍ତ ଲୋକମାନଙ୍କପାଇଁ ସାହାଯ୍ୟ ସଂଗ୍ରହ କରିବା ଉଦ୍ଦେଶ୍ୟରେ ଆମ ସ୍କୁଲରେ ପିଲାମାନଙ୍କର ଗୋଟିଏ ସଭା ହୋଇଥିଲା । ଶିକ୍ଷକମାନେ ଭୂମିକମ୍ପରେ ଆକ୍ରାନ୍ତ ଦୁଃଖୀ ଲୋକମାନଙ୍କୁ ସାହାଯ୍ୟ କରିବାପାଇଁ

ନିବେଦନ କରିଥିଲେ । ପିଲାମାନଙ୍କ ପକ୍ଷରୁ ଉକ୍ତ ସଭାରେ ମୁଁ କିଛି କହିଥିଲି । ଭୂମିକମ୍ପରେ ପ୍ରପୀଡ଼ିତ ଲୋକମାନଙ୍କ ପ୍ରତି ସରକାର ଉଦାସୀନ ବୋଲି ଖବରକାଗଜରେ ପ୍ରକାଶ ପାଉଥାଏ । ମୁଁ ସେଥିପାଇଁ ସଭାରେ ଖୁବ୍ ଉତ୍ତେଜିତ ହୋଇ କ୍ଷୋଭ ପ୍ରକାଶ କରିଥିଲି । ଆମ ଦେଶ ପରାଧୀନ ହୋଇଥିବାରୁ ଏହା ସମ୍ଭବ ହେଉଛି ବୋଲି ମୁଁ କହିଥିଲି । ସ୍ୱାଧୀନ ଦେଶରେ ଦୈବୀ ଦୁର୍ଘଟଣା ଘଟିଲେ ଲୋକପ୍ରିୟ ସରକାର ଲୋକଙ୍କ ଦୁଃଖ ବୁଝନ୍ତି । ଆମ ଦେଶ ସ୍ୱାଧୀନ ନୁହେଁ କି ଏଠାରେ ଲୋକପ୍ରିୟ ଶାସନ ନଥିବାରୁ ଲୋକେ ଭୂମିକମ୍ପ ପରେ ମଧ୍ୟ ପୋକମାଛି ଭଳି ମରୁଛନ୍ତି ବୋଲି ମୁଁ ଦର୍ଶାଇଥିଲି । ଏ ଅବସ୍ଥାରେ ଆମ ସମସ୍ତଙ୍କର କିଛି କର୍ତ୍ତବ୍ୟ ଅଛି । ଗୁଣ୍ଡୁଚିମୂଷା ଯେପରି ରାମଚନ୍ଦ୍ରଙ୍କର ସେତୁବନ୍ଧରେ ମାଟି ପକାଇଥିଲା ସେହିଭଳି ଛାତ୍ରମାନେ ଯେତେ ଛୋଟ ହେଲେ ମଧ୍ୟ ସାହାଯ୍ୟ କାର୍ଯ୍ୟରେ ଲାଗିଯିବା ଉଚିତ । ଓଳିଏ ଓଳିଏ ଉପାସ ରହି ଓ ଅନ୍ୟାନ୍ୟ ଖର୍ଚ୍ଚ କମାଇ ଦୁଃଖୀ ତଥା ଭୂମିକମ୍ପପ୍ରପୀଡ଼ିତ ଲୋକଙ୍କୁ ସାହାଯ୍ୟ କରିବାକୁ ମୁଁ ନିବେଦନ କରିଥିଲି । ମୋ କଥାକୁ ସମସ୍ତେ ପସନ୍ଦ କଲାଭଳି ଜଣାଗଲା ଏବଂ ସଭାରେ ଖୁବ୍ କରତାଳି ପଡ଼ିଥିଲା । ସଂଗୃହୀତ ଅର୍ଥକୁ ରାଜେନ୍ଦ୍ର ପ୍ରସାଦଙ୍କ କମିଟିକୁ ପଠାଇବାପାଇଁ ସଭାରେ ସ୍ଥିରହୋଇଥିଲା । ସାହାଯ୍ୟଭିକ୍ଷା କରିବାପାଇଁ ଦଳେ ପିଲାଙ୍କୁ ନେଇ ମୁଁ ବାହାରିଲି । ଶିକ୍ଷକ ଓ ପିଲାମାନଙ୍କଠାରୁ ଚାନ୍ଦା ଆଦାୟ କରିବା ସଙ୍ଗେ ସଙ୍ଗେ କଚେରିଠାରେ ମଧ୍ୟ ଆମେମାନେ ସାହାଯ୍ୟ ଭିକ୍ଷା କରିଥିଲୁ । ଯେତେ ସାହାଯ୍ୟ ସଂଗୃହୀତ ହେଲା ତା' ଆମେମାନେ ସ୍କୁଲର ପ୍ରଧାନ ଶିକ୍ଷକଙ୍କ ଜରିଆରେ ରାଜେନ୍ଦ୍ରବାବୁଙ୍କ ରିଲିଫ୍ ଫଣ୍ଡକୁ ପଠାଇଲୁ । ମୋର ସହପାଠୀବୃନ୍ଦ ଶ୍ରୀ ଯଦୁନାଥ ଦାସ, ଶ୍ରୀ ମନୀନ୍ଦ୍ର ନାଥ ମହାନ୍ତି ଓ ଶ୍ରୀ ଗୋବିନ୍ଦ ସାହୁ ପ୍ରଭୃତି ଅତି ଉତ୍ସାହର ସହିତ ମୋ ସାଙ୍ଗରେ ଏହି ସାହାଯ୍ୟ ଭିକ୍ଷା କାର୍ଯ୍ୟରେ ଯୋଗଦେଇଥିଲେ । ବାଲେଶ୍ୱରର ପ୍ରତିଷ୍ଠିତ ଓକିଲ ଶ୍ରୀ କରୁଣାକର ଦାସ ମଧ୍ୟ ମୋର ସହପାଠୀ ଥିଲେ । ଛାତ୍ରାବସ୍ଥାରେ ତାଙ୍କର ମଧ୍ୟ ମୋଭଳି ରାଜନୀତି ପ୍ରତି ଆଗ୍ରହ ଥିଲା । ସେ ଗୋଟିଏ ଅବସ୍ଥାପନ୍ନ ପରିବାରରୁ ଆସିଥିଲେ । ସ୍କୁଲପାଠ ସମାପ୍ତ ହେବା ପରେ ସୁବିଧା ଦୃଷ୍ଟିରୁ ସେ ଉଚ୍ଚଶିକ୍ଷା ନିମନ୍ତେ କଲିକତା ଗଲେ । ଓଡ଼ିଶାରେ ପଢ଼ିଥିଲେ ତାଙ୍କର ରାଜନୈତିକ ଜୀବନରେ ତାହା ଯେପରି ସହାୟକ ହୋଇଥା'ନ୍ତା, କଲିକତାରେ ତାଙ୍କର ଉଚ୍ଚଶିକ୍ଷା ନିମନ୍ତେ ଅଧ୍ୟୟନ ସେଥିପାଇଁ ସେତେ ସହାୟକ ହୋଇପାରିଲା ନାହିଁ ବୋଲି ମୋର ମନେହୁଏ । ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ସେ କେତେଥର କାରାବରଣ କରିଥିଲେ ।

## ପଦବୀ, ପଦକ, ପୁରସ୍କାର ଓ ପ୍ରଶଂସାର ପ୍ରସଙ୍ଗ

ମୁଁ ଭଦ୍ରକ ହାଇସ୍କୁଲରେ ପଢ଼ିଲାବେଳେ ଭଦ୍ରକକୁ ଥରେ ଡିଭିଜନାଲ୍ କମିଶନର୍ ଆସିଥିଲେ । ସେତେବେଳେ ଆମର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ହୋଇନଥିଲା । ଓଡ଼ିଶା କହିଲେ ଯାହା ଆମେ ସେତେବେଳେ ବୁଝୁଥିଲୁ ତା' ଭିତରେ ଡିଭିଜନାଲ୍ କମିଶନର୍ ଥିଲେ ସବୁଠାରୁ ବଡ଼ ଅଫିସର୍ । କୌଣସି ସ୍ଥାନକୁ ତାଙ୍କର ଆଗମନ ସେ ସ୍ଥାନର ସବୁଠାରୁ ବିଶିଷ୍ଟ ଘଟଣା ବୋଲି ବିଚାର କରାଯାଉଥିଲା । କମିଶନର୍ ଜଣେ ଇଂରେଜ ସାହେବ ଥିଲେ । ଖୁବ୍ ଜାକଜମକରେ କମିଶନରଙ୍କୁ ଅଭ୍ୟର୍ଥନା ଜଣାଇ ଗୋଟିଏ ଉଦ୍ୟାନ ଭୋଜିରେ (Garden party) ତାଙ୍କୁ ଆପ୍ୟାୟିତ କରିବାପାଇଁ ସ୍ଥିର କରାହେଲା । ଭୂୟାଁ ଭାସ୍କର ଚନ୍ଦ୍ର ମହାପାତ୍ର ଥିଲେ ବାସୁଦେବପୁର ଏଡ଼ତାଳର ଜମିଦାର ଏବଂ କଲିକତାର ଜାହାଜ ଚଳାଚଳ କମ୍ପାନୀମାନଙ୍କରେ ମାଲ ଖଲାସ ଓ ବୋଝେଇ କରିବାର ଜଣେ ବଡ଼ କଣ୍ଟ୍ରାକ୍ଟର । ତାଙ୍କ ଜୀବନରେ ବଡ଼ ଅଭିଳାଷ ଥିଲା ରାୟବାହାଦୁର ପଦବୀରେ ଭୂଷିତ ହେବାପାଇଁ । ସେତେବେଳେ କମିଶନରଙ୍କର ସୁପାରିଶ ଉପରେ ଏ ପ୍ରକାର ଉପାଧି ମିଳୁଥିଲା । କମିଶନରଙ୍କୁ ସନ୍ତୁଷ୍ଟ କଲେ ଏ ଉପାଧି ପାଇବା ସହଜ ହେବ ବୋଲି ଏସ୍.ଡି.ଓ. ମହାଶୟ ଭାସ୍କରବାବୁଙ୍କୁ

ବୁଝାଇଦେଇଥିଲେ । ଏଣିକି ଖର୍ଚ୍ଚପାଇଁ ଆଉ କୌଣସି ପରବାୟ ରହିଲା ନାହିଁ । ଗାର୍ଡ଼ନ ପାର୍ଟି ଓ ଡିନରପାଇଁ ଖାଦ୍ୟସାମଗ୍ରୀ, ରାନ୍ଧିବାପାଇଁ ଖାନ୍‌ସମା ଓ ସାଜସଜ୍ଜାପାଇଁ ଫୁଲ ଓ ଅନ୍ୟାନ୍ୟ ପଦାର୍ଥସବୁ କଲିକତାରୁ ଅଣାଯାଇଥିଲା । ଏହି ଉପାୟରେ କମିଶନର୍‌ଙ୍କୁ ସନ୍ତୁଷ୍ଟ କରିବାପାଇଁ ଏସ୍.ଡ଼ି.ଓ.ଙ୍କୁ ମଧ୍ୟ ସୁବିଧା ମିଳିଗଲା ।

କମିଶନର୍‌ଙ୍କର ଆଗମନ ଉପଲକ୍ଷ୍ୟେ ଗୋଟିଏ ପ୍ରବନ୍ଧ ପ୍ରତିଯୋଗିତା ହେବ ବୋଲି ଆମ ସ୍କୁଲରେ ଘୋଷଣା କରାଯାଇଥିଲା । ଯେଉଁ ଛାତ୍ରଙ୍କର ପ୍ରବନ୍ଧ ଉତ୍କୃଷ୍ଟ ବିବେଚିତ ହେବ ସେ ଖୋଦ୍ କମିଶନର୍‌ଙ୍କ ହାତରୁ ଗୋଟିଏ ସ୍ୱର୍ଣ୍ଣପଦକ ପାଇବ ବୋଲି ଘୋଷଣା କରାଯାଇଥିଲା । ପ୍ରବନ୍ଧର ବିଷୟବସ୍ତୁ ଥିଲା 'Life of the late Rai Bahadur Narayan Chandra Nayak'– ସ୍ୱର୍ଗତ ରାୟବାହାଦୁର ନାରାୟଣ ଚନ୍ଦ୍ର ନାୟକଙ୍କର ଜୀବନୀ ସମ୍ବନ୍ଧରେ । ପ୍ରତିଯୋଗିତାରେ ଅନେକ ପିଲା ଭାଗ ନେଇଥିଲେ । ପ୍ରବନ୍ଧଟି ଲେଖିବାପାଇଁ କିଛିଦିନ ସମୟ ଦିଆଯାଇଥିଲା ଏବଂ ତାହା ଘରୁ ଲେଖିଆଣି ଦାଖଲ କରିବାକୁ କୁହାଯାଇଥିଲା । ବହୁ ଛାତ୍ର ପ୍ରତିଯୋଗିତାରେ ଯୋଗଦେଲେ ମଧ୍ୟ ପ୍ରକୃତ ପ୍ରତିଯୋଗିତା ହେଉଥିଲା ଦୁଇଜଣ ଛାତ୍ରଙ୍କ ମଧ୍ୟରେ । ଜଣେ ଥିଲି ମୁଁ ଓ ଅନ୍ୟଜଣକ ହେଲେ ଏସ୍.ଡି.ଓ.ଙ୍କ ପୁଅ ତଥା ମୋର ପଢ଼ାସାଥୀ । ପ୍ରବନ୍ଧ ଲେଖାରେ ତାଙ୍କୁ ସାହାଯ୍ୟ କରୁଥିଲେ ହାଇସ୍କୁଲର ତତ୍କାଳୀନ ସହକାରୀ ପ୍ରଧାନ ଶିକ୍ଷକ ଉପେନ୍ଦ୍ରବାବୁ ଏବଂ ମୋତେ ସାହାଯ୍ୟ କରୁଥିଲେ ନାରାୟଣ ଚନ୍ଦ୍ର ମାଇନର ସ୍କୁଲର ହେଡ୍‌ମାଷ୍ଟର ଉଦୟବାବୁ । ଉଭୟେ ଉପେନ୍ଦ୍ରବାବୁ ଓ ଉଦୟବାବୁ ଅନ୍ତରଙ୍ଗ ବନ୍ଧୁ ଥିଲେ ଓ ସେମାନେ ସୁଲେଖକ ମଧ୍ୟ ଥିଲେ । ରାୟବାହାଦୁର ନାରାୟଣ ଚନ୍ଦ୍ର ନାୟକ ନାରାୟଣ ଚନ୍ଦ୍ର ମାଇନର ସ୍କୁଲର ପ୍ରତିଷ୍ଠାତା ଥିଲେ । ତାଙ୍କ ଘର ଥିଲା ପୁରୁଣାବଜାର ସନ୍ନିକଟ ବାବୁସାଇରେ । ମୁଁ ସେଇ ନାରାୟଣ ଚନ୍ଦ୍ର ସ୍କୁଲର ଛାତ୍ର ଥିଲି । ମଝିରେ ମଝିରେ ମୁଁ ତାଙ୍କର ସେଇ ବାବୁସାଇ ଘରକୁ ଯାଉଥିଲି । ତାଙ୍କ ବଂଶର ଏକମାତ୍ର ଜୀବିତା ଉତ୍ତରାଧିକାରିଣୀ ଶ୍ରୀମତୀ ନିଶାମଣି ଦେଈଙ୍କୁ ଦେଖାକରି ସେହି ବଂଶର ପୁରୁଣା ଐତିହ୍ୟ ମୁଁ ତାଙ୍କଠାରୁ ଶୁଣିଥିଲି । ତେଣୁ ନାରାୟଣ ଚନ୍ଦ୍ରଙ୍କର ଜୀବନୀ ସମ୍ପର୍କରେ ତଥ୍ୟ ସଂଗ୍ରହ କରିବା ମୋ ପକ୍ଷରେ ସୁବିଧାଜନକ ହୋଇଥିଲା । ନିର୍ଦ୍ଦିଷ୍ଟ ଦିନରେ ପ୍ରବନ୍ଧଗୁଡ଼ିକ ଦାଖଲ ହୋଇଥିଲା । ମୁଁ ଶୁଣିବାକୁ ପାଇଲି ଯେ ପରୀକ୍ଷକମାନଙ୍କ ଦ୍ୱାରା ମୋ ପ୍ରବନ୍ଧଟି ଉତ୍କୃଷ୍ଟ ବିବେଚିତ ହୋଇଥିଲା । ପରୀକ୍ଷକମାନେ ମଧ୍ୟ ଏକଥା କୁହାକୁହି ହେଲେ । ଫଳରେ ଏସ୍.ଡି.ଓ. ମହାଶୟ ଏ ଖବର ପାଇ ବଡ଼ ଅସହିଷ୍ଣୁ ହୋଇପଡ଼ିଥିଲେ । ତାଙ୍କର ଇଚ୍ଛା ଥିଲା ଯେ ତାଙ୍କ ପୁଅ କମିଶନର୍‌ଙ୍କ ହାତରୁ ସ୍ୱର୍ଣ୍ଣପଦକ ପାଇଲେ ତା'ର ଭବିଷ୍ୟତ ଜୀବନର ପଥ ଉଜ୍ଜ୍ୱଳତର ହେବ । ତେଣୁ ପ୍ରବନ୍ଧଗୁଡ଼ିକର ମୂଲ୍ୟାୟନରେ ପକ୍ଷପାତିତା ହୋଇଛି ବୋଲି ସେ କହିବାକୁ ଲାଗିଲେ । ସେଗୁଡ଼ିକ ଭଲଭାବରେ ଦେଖିବାପାଇଁ ପ୍ରଧାନ ଶିକ୍ଷକଙ୍କୁ କୁହାଗଲା । ଏକଥା ଶୁଣି ପ୍ରଧାନ ଶିକ୍ଷକ ଛାନିଆ ହୋଇଗଲେ । ଆଉ ଥରେ ପରୀକ୍ଷା କରିବାପାଇଁ କାହିଁକି କୁହାଯାଇଛି ତା'ର ପ୍ରକୃତ ଉଦ୍ଦେଶ୍ୟ ବୁଝିବାରେ ପ୍ରଧାନ ଶିକ୍ଷକଙ୍କୁ କୌଣସି ଅସୁବିଧା ହୋଇନଥିଲା । ସେଥିପାଇଁ ହୁଏତ ପ୍ରବନ୍ଧ ପ୍ରତିଯୋଗିତା ଫଳରେ ସବୁ ଓଲଟପାଲଟ ହୋଇଗଲା । ନଚେତ୍ ମୋର ପ୍ରବନ୍ଧ ଶ୍ରେଷ୍ଠତମ ବିବେଚିତ ହୋଇଥିଲା ବୋଲି ପ୍ରଥମେ ଯେଉଁ ମତ ପ୍ରକାଶ ପାଇଥିଲା ତାହା ଭୁଲହୋଇଥାଇପାରେ । ସେ ଯାହାହେଉ, ମୋର ସହପାଠୀ ଯେ ଜଣେ ପ୍ରତିଭାବାନ୍ ଛାତ୍ର ଥିଲେ ତାହା ନିଃସନ୍ଦେହ । ଗାର୍ଡ଼ନ୍ ପାର୍ଟି ଓ ଭୋଜି ଉତ୍ସବରେ ମୋର ସହପାଠୀ କମିଶନର୍‌ଙ୍କ ହାତରୁ ସ୍ୱର୍ଣ୍ଣପଦକ ଲାଭକଲେ । ଉକ୍ତ ଉତ୍ସବର ପ୍ରାୟ ଦୁଇ ତିନି ମାସ ପରେ ଭୂୟାଁ ଭାସ୍କର ଚନ୍ଦ୍ର ମହାପାତ୍ର ଭୂଷିତ ହେଲେ ରାୟବାହାଦୁର ଉପାଧିରେ ଏବଂ ଏସ୍.ଡି.ଓ. ମହୋଦୟ ମଧ୍ୟ ରାୟସାହେବ ଉପାଧି ପାଇଗଲେ ।

କାଳକ୍ରମେ ମୋର ସେଇ ସହାଧ୍ୟାୟୀ ରାଜ୍ୟ ଶିକ୍ଷାବିଭାଗର ଉଚ୍ଚତର ପଦବୀପାଇ ନିର୍ଦ୍ଦେଶକ(ଡି.ପି.ଆଇ.) ହୋଇଥିଲେ । ସ୍କୁଲରେ ପଢୁଥିଲା ସମୟରେ ଆମେ କେବେ କେବେ

ଝଗଡ଼ା ଲାଗୁଥିଲୁ ଓ ପୁଣି ସାଙ୍ଗ ହୋଇଯାଉଥିଲୁ । ତେଣୁ ଉଭୟଙ୍କ ଭିତରେ ହାର୍ଦ୍ଦିକତା ପ୍ରତିଷ୍ଠିତ ହୋଇଥିଲା । ମେଧାବୀ ଛାତ୍ର ଓ ପରେ ଆଦର୍ଶ ଶିକ୍ଷକରୂପେ ତାଙ୍କର ଖ୍ୟାତି ଥିଲା । ୧୯୭୪-୭୫ ମସିହାରେ ସେ ରାଜ୍ୟ ଶିକ୍ଷା ବିଭାଗର ନିର୍ଦ୍ଦେଶକ ଥିଲେ । ତତ୍‌କାଳୀନ ସରକାର କାହିଁକି କେଜାଣି ତାଙ୍କ ଉପରେ ଅସନ୍ତୁଷ୍ଟ ହୋଇ ଡି.ପି.ଆଇ. ଆସନରୁ ଅନ୍ତର କରି ତାଙ୍କୁ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଏଡୁକେଶନ୍‌ର ଡାଇରେକ୍ଟର ଭଳି ଏକ ମାମୁଲି ପଦବୀରେ ନିଯୁକ୍ତ କରିଥିଲେ । ତାଙ୍କର ଶିକ୍ଷା, ଅଧ୍ୟାପନା, ଅଭିଜ୍ଞତା ଓ ପରିଚାଳନା ବିଷୟ ବିଚାରକଲେ ଏହି ନୂତନ ପଦରେ ତାଙ୍କ ଗୁଣର ଏକପ୍ରକାର ଅପଚୟ ହୋଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ୧୯୭୭ରେ ମୁଁ ରାଜ୍ୟର ମୁଖ୍ୟମନ୍ତ୍ରୀ ହେବା ପରେ ଏସବୁ କଥା ବିଚାର କରି ଡି.ପି.ଆଇ. ରୂପେ ତାଙ୍କର ପୁନଃନିଯୁକ୍ତି ଆଦେଶ ଦେଇଥିଲି । ଅବସର ନେବା ପର୍ଯ୍ୟନ୍ତ ସେ ଉକ୍ତ ପଦବୀରେ ରହିଥିଲେ । ଉପରୋକ୍ତ ନିଷ୍ପତ୍ତି ନେଲାବେଳେ ମୋର ବିଚାର ଠିକ୍‌ହେଉନାହିଁ ବୋଲି ମୋ ଆଗରେ ଅନେକେ ଦୃଢ଼ ମତ ପ୍ରକାଶ କରିଥିଲେ । ଏହି ମତବାଦୀମାନେ ଆଲୋଚନା ପ୍ରସଙ୍ଗରେ ପୂର୍ବବର୍ତ୍ତୀ ସରକାର ଅମଳରେ ମୋ ପ୍ରତି ତାଙ୍କ ଅବିଚାରର ଦୃଷ୍ଟାନ୍ତ ମୋତେ ସ୍ମରଣ କରାଇଦେଇଥିଲେ । ଘଟଣାଟି ସାମାନ୍ୟ ହେଲେ ମଧ୍ୟ ମୋ ସ୍ମୃତି ଓ ଅନୁଭୂତିର ଏକ ଦରଦଭରା କଥା । କଥାଟି ହେଲା ଡି.ପି.ଆଇ. ଥିଲାବେଳେ ମୋ ପରି ଜଣେ ପୁରୁଣା ବନ୍ଧୁର ଗୋଟିଏ ଛୋଟିଆ ବ୍ୟକ୍ତିଗତ ଅନୁରୋଧରେ ସେ କିପରି ବଡ଼ ଅସୁବିଧା ଅନୁଭବ କରିଥିଲେ ତାହାରି ସ୍ମୃତି । ୧୯୭୪ ମସିହାରେ ମୋ ପୁଅ ଶ୍ରୀମାନ୍ ବିଜୟଶ୍ରୀ, ଶ୍ରଦ୍ଧାନାମ ବାବୁଲ୍, ଭୂଗୋଳ ଶାସ୍ତ୍ରରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ପାଇ ଏମ୍.ଏ. ପାସ୍ କରିଥିଲା । ଅଧ୍ୟାପକ ରୂପେ ଅସ୍ଥାୟୀ (adhoc) ନିଯୁକ୍ତି ପାଇବାପାଇଁ ସେ ମନୋନିତ ହୋଇଥିଲା । ଏହାର ମାତ୍ର ବର୍ଷକ ଆଗରୁ ବିଜୟଶ୍ରୀ ମା'ଛେଉଣ୍ଡ ହୋଇଥିବାରୁ ମୋତେ ଛାଡ଼ି ଏକୁଟିଆ ଦୂରକୁ ଯିବାକୁ ସେ ଆଦୌ ଚାହୁଁନଥିଲା । ଏଭଳି ପରିସ୍ଥିତିରେ କଟକ କିମ୍ବା ଭୁବନେଶ୍ୱରରେ ତା'ର ପ୍ରଥମ ନିଯୁକ୍ତିପାଇଁ ମୁଁ ମୋର ବନ୍ଧୁ ଡି.ପି. ଆଇ.ଙ୍କୁ ଆଗତୁରା କହିଥିଲି । ସେ ମଧ୍ୟ ତାହା କରିବେ ବୋଲି ମୋତେ କହିଥିଲେ । କିଛିଦିନ ପରେ ବିଜୟଶ୍ରୀ ପାଖକୁ ଆଦେଶ ଆସିଲା ଯେ ତାକୁ କଳାହାଣ୍ଡି ଜିଲ୍ଲା ଭବାନୀପାଟଣା କଲେଜରେ ଯୋଗଦେବାକୁ ହେବ । ତାହା କିପରି ଘଟିଲା ବୋଲି ମୁଁ ପଚାରିବାରୁ ସେ ମୋତେ ଧାରଣା ଦେଇଥିଲେ ଯେ ରେଭେନ୍‌ସା କଲେଜରେ ବିଜୟଶ୍ରୀକୁ ରଖିବାପାଇଁ ପ୍ରସ୍ତାବ ଦେବାକୁ ତାଙ୍କର ଇଚ୍ଛା ଥିଲା; ଉପର ସ୍ତରରେ ଭୀଷଣ ଅସନ୍ତୋଷ ପ୍ରକାଶ ପାଉଥିଲା । ମୁଁ ତାଙ୍କୁ ବୁଝାଇଥିଲି ଯେ ସେ ଆଗେ ପ୍ରସ୍ତାବ ଦିଅନ୍ତୁ ତା'ପରେ ଦେଖିବା ଉପର ସ୍ତରରେ କ'ଣ ହେଉଛି । ସେପ୍ରକାର ପ୍ରସ୍ତାବ ଦେଲେ ତାଙ୍କର ଚାକିରି ରହିନପାରେ ବୋଲି ସେ ମୋ ଆଗରେ ଆଶଙ୍କା ପ୍ରକାଶ କରିଥିଲେ । ପ୍ରସଙ୍ଗକ୍ରମେ ପୁଲିସ୍ ଡି.ଆଇ.ଜି. ଶ୍ରୀ ଦାମୋଦର ଛୋଟରାୟଙ୍କୁ କିପରି ହଇରାଣ କରାଯାଇଥିଲା ସେକଥା ସେ ଦର୍ଶାଇଥିଲେ । ମୋତେ ସେସବୁ କଥା ବୁଝାଇ ଧାରଣା ଦେଲେ ଯେ ତାଙ୍କର ବହୁତ ଇଚ୍ଛା ବିଜୟଶ୍ରୀକୁ କଟକରେ ରଖିବାପାଇଁ; ମାତ୍ର ସେ ନାଚାର । ଏ ଅବସ୍ଥାରେ କ'ଣ କରାଯିବ, ମୋ ପକ୍ଷରେ ଏକ ଚିନ୍ତାର ବିଷୟ ହେଲା । ବିଜୟଶ୍ରୀର ମା' ଅତ୍ୟଧିକ ଇଚ୍ଛା ପ୍ରକାଶ କରିଥିଲା ଯେ ତା'ର ପୁଅ ଜଣେ ଅଧ୍ୟାପକ ହେବ । ରାଜନୀତି ପ୍ରତି ତା' ମାଆର ଥିଲା ଅତିଶୟ ବିତୃଷ୍ଣା । ବିଜୟଶ୍ରୀ ମଧ୍ୟ ବାରିଷ୍ଟରି ପଢ଼ି ଓକିଲାତି କରିବାକୁ ପସନ୍ଦ କରୁନଥିଲା । ବର୍ତ୍ତମାନର ପ୍ରଶ୍ନ ହେଲା, ସେ ଯଦି ଶିକ୍ଷାବିଭାଗରେ ଅଧ୍ୟାପକ ଚାକିରିରେ ଯୋଗଦିଏ ତା'ହେଲେ ତାକୁ ଭବାନୀପାଟଣା ଯିବାକୁ ହେବ – ତା' ନହେଲେ ସେ ଘରେ ବସିବ । ତା' ମାଆର ଅନ୍ତିମ ଇଚ୍ଛା ପୂରଣ କରିବାପାଇଁ ଭବାନୀପାଟଣା କଲେଜରେ ସେ ଯୋଗଦେଉ ବୋଲି ମୁଁ ଭାବୁଥାଏ । କିନ୍ତୁ ମୋତେ ଛାଡ଼ି ଭବାନୀପାଟଣା ଯିବାକୁ ବିଜୟଶ୍ରୀର ଇଚ୍ଛା ନଥାଏ । କ'ଣ କରିବ ସେ କିଛି ସ୍ଥିରକରିପାରୁନଥାଏ । ତେଣେ ଚାକିରିରେ ଯୋଗଦେବା ଉଦ୍ଦେଶ୍ୟ ରଖି ସେ ସମୟ

ମାଗୁଥାଏ । ସମୟ ମିଳିଲା; ମାତ୍ର ସମୟ ଆହୁରି ବଢ଼ାଇବାକୁ ସେ ଆବେଦନ କରିବାରୁ ଡି.ପି.ଆଇ. ତା'ର ନିଯୁକ୍ତି ରଦ୍ଦକରିଦେଇଥିଲେ । ଘଟଣାଟି ସେତେବେଳର ଶିକ୍ଷାମନ୍ତ୍ରୀ ଶ୍ରୀ ଯଦୁନାଥ ଦାସ ମହାପାତ୍ରଙ୍କ କାନରେ ପଡ଼ିଲା । ସେ ଏକଥା ଶୁଣି ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ଦୁଃଖିତ ହୋଇଥିଲେ ବୋଲି ମୋତେ ଖବର ମିଳିଥିଲା । ମୁଁ କେବେ ତାଙ୍କୁ ଏ ବିଷୟରେ କିଛି କହିନଥିଲେ ମଧ୍ୟ ବିଜୟଶ୍ରୀକୁ ରେଭେନ୍‌ସା କଲେଜରେ ନିଯୁକ୍ତି ଦେବାପାଇଁ ଶିକ୍ଷାମନ୍ତ୍ରୀ ନିର୍ଦ୍ଦେଶକଙ୍କୁ ଆଦେଶ ଦେଇଥିଲେ । ବିଜୟଶ୍ରୀ ତା'ପରେ ରେଭେନ୍‌ସା କଲେଜରେ ଯୋଗଦେଇଥିଲା । ଡି.ପି.ଆଇ.ଙ୍କ ସହିତ ଏହା ପରେ ଯେତେବେଳେ ଦେଖାହୁଏ ସେ ନିଜକୁ ବେଶ୍ ଅପ୍ରତିଭ ଅନୁଭବ କଲାଭଳିଆ ଜଣାପଡୁଥିଲା ।

ମାତ୍ର ତାଙ୍କ ପ୍ରତି କରାଯାଇଥିବା ଅନ୍ୟାୟ ଆଦେଶର ପରିବର୍ତ୍ତନ କରି ମୁଁ ତାଙ୍କୁ ପୁନର୍ବାର ଡି.ପି.ଆଇ. ରୂପେ ନିଯୁକ୍ତି ଆଦେଶ ଦେବାରେ ଦୃଢ଼ରହି ମୋର ବନ୍ଧୁମାନଙ୍କୁ କହିଥିଲି ଯେ ସେଭଳି ବ୍ୟକ୍ତିଗତ ଘଟଣା ଆମର ନିଷ୍ପତ୍ତିକୁ ପ୍ରଭାବିତ କରିବା ସମୀଚୀନ ହେବନାହିଁ । ଡି.ପି.ଆଇ.ଙ୍କୁ ମୋର ପୂର୍ବୋକ୍ତ ବ୍ୟକ୍ତିଗତ ଅନୁରୋଧ ପଛରେ ମାନବିକ ହୃଦୟବତ୍ତା ଓ ପ୍ରଶାସନିକ ବିଚାରବତ୍ତା ଦୃଷ୍ଟିରୁ ଯେତେ ଦୃଢ଼ ଯୁକ୍ତି ଥିଲେ ମଧ୍ୟ ତାହା ଥିଲା ଉଭୟଙ୍କର ଏକାନ୍ତ ବ୍ୟକ୍ତିଗତ ସମସ୍ୟା । ଏପରି ଅବସ୍ଥାରେ କେବଳ ସବୁ ପ୍ରାସଙ୍ଗିକ ବ୍ୟାପାର ବିଚାର କରି ନିଷ୍ପତ୍ତି ନିଆଯାଇଛି ବୋଲି ମୁଁ ସହକର୍ମୀମାନଙ୍କୁ ବୁଝାଇଦେଇଥିଲି । ଗଣତାନ୍ତ୍ରିକ ବ୍ୟବସ୍ଥା ମଧ୍ୟରେ ପ୍ରଶାସନିକ କ୍ଷେତ୍ରରେ ସର୍ବୋଚ୍ଚ କ୍ଷମତା ଯାହାଠାରେ ନ୍ୟସ୍ତ ତାହାର ନିଷ୍ପତ୍ତି ବ୍ୟକ୍ତିଗତ ସ୍ୱାର୍ଥ ବା ଅହଙ୍କାରରେ ପ୍ରଭାବିତ ହେବା ସର୍ବଦା ଅନୁଚିତ । ସେଠାରେ ଆକ୍ରୋଶ ପରିବର୍ତ୍ତେ ଥିବ ଉଦାରତା, ସଂକୀର୍ଣ୍ଣତା ପରିବର୍ତ୍ତେ ଥିବ ମହାନୁଭବତା ଏବଂ ସେଇଟାହିଁ ହେବ ସଂସଦଯୋଗ୍ୟ ଆଚରଣ । ତାହା ନହେଲେ ଗଣତନ୍ତ୍ର ଓ ରାଜତନ୍ତ୍ର ମଧ୍ୟରେ କୌଣସି ପାର୍ଥକ୍ୟ ରହିବ ନାହିଁ ଏବଂ ସଂସଦୀୟ ବ୍ୟବସ୍ଥା ଅକାମୀ ହୋଇଯିବ ।

ମୋର ଭଦ୍ରକ ହାଇସ୍କୁଲ ଜୀବନର ଆଉ ଗୋଟିଏ ଘଟଣା ମନେଅଛି । ପିଲାମାନଙ୍କ ଭିତରେ ଯେ ପରୋପକାରୀ ଓ ଭଲ ସମାଜସେବୀ ବୋଲି ବିବେଚିତ ହେବ ତାକୁ ଗୋଟିଏ ପୁରସ୍କାର ଦିଆଯିବ ବୋଲି ହେଡ୍‌ମାଷ୍ଟ୍ରଙ୍କ ଜରିଆରେ ହରେକୃଷ୍ଣ ମହତାବ ଘୋଷଣା କରିଥିଲେ । ମୁଁ ସେତେବେଳେ ସବୁପ୍ରକାର ଲୋକହିତକର ଓ ସମାଜସେବା କାର୍ଯ୍ୟରେ ବିଶେଷ ଆଗ୍ରହ ପ୍ରକାଶ କରୁଥିଲି ଏବଂ ବିଭିନ୍ନ ଉତ୍ସବରେ ସ୍ୱେଚ୍ଛାସେବକ ଭାବରେ ମଧ୍ୟ କାର୍ଯ୍ୟ କରୁଥିଲି । ମୋର ମନେଅଛି, ଜନସେବା କାର୍ଯ୍ୟରେ ମୁଁ ଯେତେବେଳେ ସାଳନ୍ଦୀ ନଦୀ ସଛିଆଘାଟ ପାଖରେ ନିଜକୁ ଅଭ୍ୟସ୍ତ କରୁଥିଲି । ସେଠାରେ ଡଙ୍ଗାରେ ନଦୀ ପାର ହେଲାବେଳେ ଅସମର୍ଥ ବୁଢ଼ାବୁଢ଼ୀମାନଙ୍କୁ ଡଙ୍ଗାରୁ ହାତଧରି ଉପରକୁ ଉଠିବାରେ ସାହାଯ୍ୟ କରିବା ଓ ସେମାନଙ୍କର ଜିନିଷପତ୍ର ବୁହାବୁହି କାମରେ ମୁଁ ବେଳେବେଳେ ସାହାଯ୍ୟ କରୁଥାଏ । ତା' ବ୍ୟତୀତ ବିହାର ଭୂମିକମ୍ପରେ ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କପାଇଁ ବୁଲି ବୁଲି ସାହାଯ୍ୟ ସଂଗ୍ରହ କରିବା କାର୍ଯ୍ୟ କରିଥିଲି । ତାହା ଖୁବ୍ ପ୍ରଶଂସିତ ହୋଇଥିଲା । ବୋଧହୁଏ ଏହିସବୁ କଥା ବିଚାରକରି ବିଚାରପତିମାନେ ମୋତେ ଉକ୍ତ ପୁରସ୍କାରପାଇଁ ଯୋଗ୍ୟ ବିବେଚିତ କରିଥିଲେ । ଏଥିପାଇଁ ମୋତେ କାହାରି ଈର୍ଷାଭାଜନ ହେବାକୁ ପଡ଼ିନଥିଲା । ସ୍କୁଲର ପୁରସ୍କାର ବିତରଣୀ ଉତ୍ସବ ଦିନ ଉପରୋକ୍ତ ପୁରସ୍କାରଟି ମୋତେ ମିଳିଥିଲା ।

ଜଣେ ସ୍କୁଲ ଛାତ୍ର ଥାଇ ମଧ୍ୟ ମୁଁ ଯେପରି ଭାବରେ କଂଗ୍ରେସ ଲୋକଙ୍କ ସହ ସମ୍ପର୍କ ରଖୁଥିଲି ଓ କଂଗ୍ରେସ କାର୍ଯ୍ୟରେ ଉତ୍ସାହ ପ୍ରଦର୍ଶନ କରୁଥିଲି ସେଇଥି ସକାଶେ ସେତେବେଳେ ଭଦ୍ରକର ଅନେକ ଲୋକଙ୍କର ଦୃଷ୍ଟି ମୋ ଉପରେ ପଡୁଥିଲା । ଶିକ୍ଷିତ ମହଲରେ କେତେକ ମୋତେ ଚାହୁଁଲି କରି ଜଣେ 'ଟିକି ବିପ୍ଳବୀ' (Little revolutionary) ବୋଲି କହୁଥିଲେ । କଂଗ୍ରେସର ଗୁପ୍ତ ପ୍ରଚାରପତ୍ର ବଣ୍ଟନ ଅଥବା କେଉଁଠି କିଛି ଗୁପ୍ତରେ ଆଇନ ବିରୋଧୀ କାର୍ଯ୍ୟ ହେଲେ ତାହାକୁ ମୁଁ

କରିଥାଇପାରେ ବୋଲି ଅନେକଙ୍କର ସନ୍ଦେହ ହେଉଥିଲା । ଏପରିକି ସେଭଳି କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟ ସହିତ ମୋର ସଂପର୍କ ନଥିଲେ ମଧ୍ୟ ସେମାନେ ମୋତେ ଦୋଷ ଦେଉଥିଲେ । ପରୋକ୍ଷରେ ଅନ୍ୟମାନଙ୍କଠାରୁ ମୁଁ ସହଜରେ 'ସାବାସ୍' ପାଇବାକୁ ହକ୍‌ଦାର ହୋଇଯାଉଥିଲି । ଭଦ୍ରକ ହାଇସ୍କୁଲ ହତାକୁ ଲାଗି ଦେବାନୀ ଅଦାଲତ (ମୁନ୍‌ସଫ କୋର୍ଟ) ଥାଏ । ଭଦ୍ରକରେ ସେତେବେଳେ ଯେତେ ସରକାରୀ ଅଫିସ ଘର ଥିଲା, ତା' ଭିତରେ ସବୁଠାରୁ ବଡ଼ ଓ ସୁନ୍ଦର ଥିଲା ନାଲି ରଙ୍ଗର ଏହି ଦେବାନୀ ଅଦାଲତ କୋଠାଟି । ଘରର ଛାତ ଉପରେ ଇଉନିୟନ୍ ଜ୍ୟାକ୍ (ବ୍ରିଟିଶ୍ ସରକାରଙ୍କ ପତାକା) ଉଡ଼ିବାପାଇଁ ଥିଲା ଗୋଟିଏ ପତାକାସ୍ତମ୍ଭ । ଏଇଠି ବ୍ରିଟିଶ୍ ପତାକା ଉଡ଼ିବାର ଦେଖିଲେ ମୋର ମନଭିତରେ ବିଦ୍ରୋହର ନିଆଁ ଜେଳିଉଠେ । ଏକଦା ଜାନୁୟାରୀ ଛବିଶ ତାରିଖ ଦିନ ଘରେ ଘରେ ତ୍ରିରଙ୍ଗ ପତାକା ଉଡ଼ାଇ ସ୍ୱାଧୀନତା ଦିବସ ପାଳନ କରିବାପାଇଁ କଂଗ୍ରେସ ପକ୍ଷରୁ ଆହ୍ୱାନ ଦିଆଯାଇଥିଲା । ପୂର୍ବରାତି ଅର୍ଥାତ୍ ପଚିଶି ତାରିଖ ଦିନ ରାତି ପାହାନ୍ତିଆରେ କେହି ଜଣେ ଅତି ଗୋପନୀୟ ଭାବରେ ସେ ଘର ଉପରକୁ ଉଠି ପତାକାସ୍ତମ୍ଭରେ କଂଗ୍ରେସର ତ୍ରିରଙ୍ଗ ପତାକା ଉଡ଼ାଇଦେଇପାରିଥିଲା । ଛବିଶ ତାରିଖ ପ୍ରତ୍ୟୁଷରୁ ଦେଖାଗଲା, ଦେଓ୍ୱାନୀ ଅଦାଲତ ଉପରେ ଅରୁଣ କିରଣରେ ଫର ଫର ହୋଇ ଉଡ଼ି ଶୋଭାପାଉଛି ତ୍ରିରଙ୍ଗ ପତାକା । ଏହା ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ଏ ପ୍ରକାର ଦୁଃସାହସିକ କାର୍ଯ୍ୟ କିଏ କଲା ? ସରକାରୀ ମହଲରେ ଚହଳ ପଡ଼ିଗଲା । କିଏ ଏଡ଼େବଡ଼ ବେଆଇନ୍ କାର୍ଯ୍ୟ କଲା, ତାହା ବାହାର କରିବାପାଇଁ ଅନୁସନ୍ଧାନ ଚାଲିଲା । ମାତ୍ର କିଛି ସନ୍ଧାନ ମିଳିଲାନାହିଁ । ଅଯଥା ମୋତେ ସନ୍ଦେହ କରାଗଲା, କିନ୍ତୁ କୌଣସି ଯୁକ୍ତିଯୁକ୍ତ ପ୍ରମାଣ ମିଳିଲା ନାହିଁ । ମୁଁ ରହୁଥାଏ ପୁରୁଣାବଜାରସ୍ଥିତ ନାରାୟଣ ଚନ୍ଦ୍ର ସ୍କୁଲ ଛାତ୍ରାବାସରେ, ଦେଓ୍ୱାନୀ ଅଦାଲତଠାରୁ ଦୁଇ ମାଇଲ ଦୂରରେ । ପୁଲିସ୍ ଯାଇ ସେଠାରେ ମୋତେ ପଚରାଉଚରା କଲେ; ମାତ୍ର କୌଣସି ବିଶ୍ୱାସଯୋଗ୍ୟ ପ୍ରମାଣ ପାଇଲେ ନାହିଁ ।

ସେ ସମୟରେ ଉପରୋକ୍ତ କାର୍ଯ୍ୟଟି ଯେ ନିଶ୍ଚିତଭାବେ ଏକ ଅତି ଦୁଃସାହସିକ କାର୍ଯ୍ୟ ଥିଲା ଏଥିରେ ସନ୍ଦେହ ନାହିଁ । ମାତ୍ର ମୁଁ ଏହା କରିନଥିଲି । କିନ୍ତୁ ପ୍ରଚାର ଖୁବ୍ ଜୋର୍‌ରେ ଚାଲିଲା ଯେ ଦେଓ୍ୱାନୀ ଅଦାଲତ ଉପରେ ମୁଁ ସେ ତ୍ରିରଙ୍ଗ ପତାକା ଉଡାଇଛି । ମୁଁ ଯେତେ ମନାକଲେ ମଧ୍ୟ ମୋ କଥାକୁ କେହି ବିଶ୍ୱାସ କଲେନାହିଁ । ଏଥିନିମନ୍ତେ ମୋ ନାମରେ ଯେଉଁ ପ୍ରଶଂସା ଚାଲିଲା ତାହା ମୋର ପ୍ରାପ୍ୟ ନୁହେଁ । ବର୍ତ୍ତମାନ ସୁଦ୍ଧା ନିର୍ଦ୍ଦିଷ୍ଟଭାବରେ କହିହେବନାହିଁ ସେ ପ୍ରକାର ଦୁଃସାହସିକ ଦେଶପ୍ରେମର ଦୃଷ୍ଟାନ୍ତ କିଏ ଦେଇଥିଲା । ପ୍ରକୃତରେ ଯେ ଏ କାର୍ଯ୍ୟଟି କରିଥିଲା ସେ ଆମ ସବୁରି କୃତଜ୍ଞତାଭାଜନ । କଥା ଓ କାର୍ଯ୍ୟ କିପରି ଗୋପନ ରଖାଯାଇପାରେ, ସେହି ସ୍ୱଦେଶାଭିମାନୀ ବ୍ୟକ୍ତିଟି ତାହା ଠିକ୍ ଭାବରେ ପାଳନ କରିଥିଲା । ଏ ଘଟଣାର ଅନେକ ବର୍ଷ ପରେ ମୁଁ ସନ୍ଧାନ ପାଇଥିଲି ଯେ ସେତେବେଳର ମୋର ଜଣେ ସହପାଠୀ ଶ୍ରୀ ସୁଧାକର ମିଶ୍ର ଦେଓ୍ୱାନୀ ଅଦାଲତ ଉପରେ ତ୍ରିରଙ୍ଗ ପତାକା ଉଡ଼ାଇଥିଲେ ବୋଲି; ମାତ୍ର ସେ ନିଜେ ଆଜିପର୍ଯ୍ୟନ୍ତ ମୋତେ କିଛି କହିନାହାନ୍ତି । ପାଠପଢ଼ା ସାରି ସେ ରେଳୱେରେ ଚାକିରି କରୁଥିଲେ । ଅଳ୍ପଦିନ ହେଲା ଅବସର ନେଇଛନ୍ତି । ଲୋକଲୋଚନର ଅଲକ୍ଷ୍ୟରେ କୌଣସି ସ୍ୱାର୍ଥ ପ୍ରତ୍ୟାଶା ନରଖି ବହୁ ଦେଶପ୍ରେମୀ ନାନାଭାବରେ ମାତୃଭୂମିପାଇଁ ମର୍ମସ୍ପର୍ଶୀ ଅବଦାନ ରଖିଯାଇଛନ୍ତି ।

ଏହି ଅବସରରେ ସ୍ୱାଧୀନତା ପରବର୍ତ୍ତୀ ସମୟରେ ଜାନୁୟାରୀ ଛବିଶ ଦିନ ଜାତୀୟ ଉତ୍ସବ ପାଳନ କରିବା କଥା ଟିକିଏ ଉଲ୍ଲେଖ କରିବାକୁ ପ୍ରାସଙ୍ଗିକ ବୋଧକରୁଛି । କାରଣ ଆଜିର ତରୁଣ ସମାଜ ସ୍ୱାଧୀନ ଭାରତର ସମ୍ବିଧାନ ପ୍ରଣୟନ ପରେ ଜାନୁୟାରୀ ଛବିଶ ତାରିଖରେ ସାଧାରଣତନ୍ତ୍ର ଉତ୍ସବ ପାଳନ ସହିତ ବିଶେଷ ଭାବରେ ପରିଚିତ । ୧୯୨୯ ମସିହା ଡିସେମ୍ବର ଏକତ୍ରିଶ ତାରିଖ ଦିନ ଭାରତୀୟ ଜାତୀୟ କଂଗ୍ରେସ ପଣ୍ଡିତ ଜବାହରଲାଲ ନେହେରୁଙ୍କର ସଭାପତିତ୍ୱରେ ଅନୁଷ୍ଠିତ

ଲାହୋର ଅଧିବେଶନରେ ଭାରତର ପୂର୍ଣ୍ଣସ୍ୱରାଜ ପ୍ରସ୍ତାବ ଗ୍ରହଣ କଲା ଏବଂ ପୂର୍ଣ୍ଣସ୍ୱାଧୀନତା ପ୍ରାପ୍ତି ଲାଗି ଗଣଆନ୍ଦୋଳନ ପନ୍ଥାର ନିର୍ଦ୍ଦେଶ ଦେଇଥିଲା । ୧୯୩୦ ମସିହା ଜାନୁଆରୀ ଛବିଶ ତାରିଖରେ ନାନା ଉତ୍ସବ ତଥା ବିପୁଳ ଉତ୍ସାହ ସହକାରେ କଂଗ୍ରେସ ପକ୍ଷରୁ ଦେଶସାରା 'ସ୍ୱାଧୀନତା ସଂକଳ୍ପ' ଗ୍ରହଣ କରାଯାଇଥିଲା । ସେଇ ବର୍ଷଠାରୁ ସ୍ୱାଧୀନତା ପରବର୍ତ୍ତୀ କାଳରେ ମଧ୍ୟ ପ୍ରତିବର୍ଷ ଜାନୁୟାରୀ ଛବିଶ ତାରିଖଟି ଅତୀତ ଓ ବର୍ତ୍ତମାନ ସ୍ମୃତିର ସେତୁଭଳି ଜାତୀୟ ଦିବସରୂପେ ପାଳିତ ହୋଇ ଆସୁଅଛି । ତେଣୁ ସ୍ୱାଧୀନ ଭାରତର ପ୍ରଥମ ସାଧାରଣତନ୍ତ୍ର ଦିବସରେ ଜବାହରଲାଲ ନେହେରୁ କହିଥିଲେ :

"There is a peculiar appropriateness about this January 26th: for this day LINKS UP THE PAST WITH THE PRESENT. Twenty years ago we took the first pledge of Independence. During these twenty years we have known struggle and conflicts and failures and achievements. The mass who led us from apparent failure to achievement is no more with us, but THE FRUIT OF ITS LABOUR IS OURS. What we do with this fruit depends upon many factors, the basic factors being those on which Gandhiji laid stress throughout his career - HIGH CHARACTER, INTEGRITY OF MIND AND PURPOSE, A SPIRIT OF TOLERANCE AND CO-OPERATION AND HAND WORK. I can only suggest to our people that we should FOUND OUR REPUBLICAN FREEDOM ON THESE BASIC CHARACTERISTICS and shed fear and hatred from our minds and think always of the BETTERMENT OF THE MILLIONS OF OUR PEOPLE."

## ଅଭିଜ୍ଞତା, ଅଭ୍ୟାସ ଓ ସ୍ୱଭାବ

ହାଇସ୍କୁଲରେ ଅଧ୍ୟୟନ କଲାବେଳେ ମୁଁ ରାଜନୈତିକ ଓ ସାମାଜିକ କାର୍ଯ୍ୟ ସହିତ ସାମୟିକ ସଂପର୍କ ରଖୁଥିଲି । ସଭାସମିତି ଓ ଅନ୍ୟାନ୍ୟ ଉତ୍ସବ ପ୍ରଭୃତିରେ ସ୍ୱେଚ୍ଛାସେବକ ଆବଶ୍ୟକବେଳେ ମୁଁ ସେ କାର୍ଯ୍ୟରେ ଯୋଗଦେଉଥିଲି । ସେତେବେଳେ ଜିଲ୍ଲାବୋର୍ଡ଼ ପ୍ରଭୃତି ସ୍ୱୟଂଶାସିତ ଅନୁଷ୍ଠାନମାନଙ୍କରେ ବେଳେବେଳେ ନିର୍ବାଚନ ହେଉଥିଲା । ସେଥିରେ କଂଗ୍ରେସ ପକ୍ଷରୁ ସ୍ୱେଚ୍ଛାସେବକ ଦରକାର ହେଲେ ମୁଁ ଯୋଗଦେଉଥିଲି । ଥରେ ଜିଲ୍ଲାବୋର୍ଡ଼ପାଇଁ ଭଦ୍ରକରେ ନିର୍ବାଚନ ହେଉଥାଏ । କଂଗ୍ରେସ ପକ୍ଷରୁ ପ୍ରାର୍ଥୀ ଥିଲେ ମହମ୍ମଦ ହନିଫ୍ । କନିକା ଦଳ ପକ୍ଷରୁ ଛିଡ଼ାହୋଇଥିଲେ ଶ୍ରୀ ଗୋପାଳ ଦାସ । ମୁଁ ଓ ଆଉ କେତେକ କଂଗ୍ରେସକର୍ମୀ ଭୋଟ କେନ୍ଦ୍ରରେ ସ୍ୱେଚ୍ଛାସେବକ କାର୍ଯ୍ୟ କରୁଥିଲୁ । ମୋର ମନେଅଛି, ଭୋଟ କେନ୍ଦ୍ରରେ ଆମେ ଗୋଟିଏ କୌତୂହଳପୂର୍ଣ୍ଣ ପରିସ୍ଥିତିର ସମ୍ମୁଖୀନ ହୋଇଥିଲୁ । ସେତେବେଳେ ପ୍ରାର୍ଥୀମାନଙ୍କପାଇଁ ବିଭିନ୍ନ ରଙ୍ଗର ଭୋଟ ବାକ୍ସ ବସୁଥିଲା । ହନିଫ୍‌ବାବୁଙ୍କର ଥିଲା ହଳଦିଆ ରଙ୍ଗର ବାକ୍ସ । ବାକ୍ସଗୁଡ଼ିକ ଗୋଟିଏ ଘରେ ପରଦା ଉହାଡ଼ରେ ରଖାଯାଇଥାଏ । କେବଳ ଯେଉଁମାନେ ଭୋଟ ଦେବେ ସେମାନେ ସେ ଘରକୁ ଯିବାର କଥା, ଅନ୍ୟ କେହି ଭିତରକୁ ଯିବା ନିଷିଦ୍ଧ ଥିଲା । ମାତ୍ର ଏସ୍.ଡି.ଓ. ମହାଶୟ ମଝିରେ ମଝିରେ ତଦାରଖ କରିବାପାଇଁ ଭିତରକୁ ଯାଉଥାଆନ୍ତି । ସେତେବେଳେ ଭଦ୍ରକରେ ଥିବା ସ୍ୱନାମଧନ୍ୟ ଏସ୍.ଡି.ଓ. ମହାଶୟଙ୍କ ନାମ ଏଥିପୂର୍ବରୁ ଉଲ୍ଲେଖ କରିଛି । ଜିଲ୍ଲାବୋର୍ଡ଼ ନିର୍ବାଚନରେ ହନିଫ୍‌ବାବୁଙ୍କୁ ପରାସ୍ତ କରାଇବା ଥିଲା ସରକାରଙ୍କର ଇଚ୍ଛା ।

ସରକାରଙ୍କ ଇଚ୍ଛାକୁ ଅତି ନିଷ୍ଠାର ସହିତ କାର୍ଯ୍ୟକାରୀ କରିବାରେ ଏସ୍.ଡି.ଓ. ମହାଶୟ ଥିଲେ ଅତି ଧୂରନ୍ଧର । ଶୁଣାଗଲା ଯେ ଉପରୋକ୍ତ ଉଦ୍ଦେଶ୍ୟ ସାଧନ କରିବାପାଇଁ ସେ ପୂର୍ବରୁ ଯୋଜନା କରିଥିଲେ । ବାକ୍ସରେ ଭୋଟ ଗଳାଇବା ବାଟଟିକୁ ସେ ଅପେକ୍ଷାକୃତ ବଡ଼ ରଖିଥିଲେ । ଭୋଟ ଦେବାପାଇଁ ଭୋଟ କେନ୍ଦ୍ରକୁ ଲୋକଙ୍କର ଧାଡ଼ି ଛୁଟିଲା । ଆମେ କଂଗ୍ରେସ ସ୍ୱେଚ୍ଛାସେବକମାନେ ଭୋଟରମାନଙ୍କ ସାଙ୍ଗେ ସାଙ୍ଗେ ଆସି ସେମାନଙ୍କୁ ଭୋଟ କେନ୍ଦ୍ରରେ ଛାଡ଼ିଦେଉଥାଉ । ଭୋଟଦାତାଙ୍କର ଉତ୍ସାହ ଦେଖି ହନିଫ୍‌ବାବୁଙ୍କର ବିପୁଳ ବିଜୟ ହେବା ସୁନିଶ୍ଚିତ ବୋଲି ଆମେ ସମସ୍ତେ ଆଶା କରିଥିଲୁ । ଲୋକଙ୍କର ଉତ୍ସାହ ତଥା ମତିଗତି ଦେଖି ଏସ୍.ଡି.ଓ. ମହାଶୟ ବିବ୍ରତ ହେଉଥିବା ଭଳି ଜଣାପଡୁଥା'ନ୍ତି । ସେ ଇଆଡ଼େ ସିଆଡ଼େ ବୁଲି ଆସି ବାରମ୍ବାର ଭୋଟକେନ୍ଦ୍ର ଭିତରକୁ ପଶୁଥାଆନ୍ତି ଓ ପୁଣି ବାହାରିଆସୁଥାଆନ୍ତି । ସେ ତ ସ୍ୱୟଂ ଏସ୍.ଡି.ଓ., ତାଙ୍କର ଯିବାର ଅଧିକାର, କିଏ ବା ତାଙ୍କୁ ସେଥିରେ ବାଧା ଦେବ ! ଭୋଟ ଗଣତି ହେଲା । ଘୋଷଣା ହେଲା, ହନିଫ୍‌ବାବୁଙ୍କର ପରାଜୟ । ଫଳରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଥିଲେ । ପରେ ଶୁଣାଗଲା ଯେ ଭୋଟକେନ୍ଦ୍ର ଭିତରକୁ ଏସ୍.ଡି.ଓ. ମହାଶୟଙ୍କର ପୁନଃ ପୁନଃ ପ୍ରବେଶ ଥିଲା ହନିଫ୍‌ବାବୁଙ୍କର ପରାଜୟର କାରଣ । ଶୁଣିବାକୁ ମିଳିଲା ଯେ, ଏସ୍.ଡି.ଓ.ଙ୍କ ପକେଟ୍‌ରେ ଗୋଟିଏ ବଡ଼ ଚିମୁଟା ଥିଲା । ସେ ଯେତେବେଳେ ଭୋଟ କେନ୍ଦ୍ର ଭିତରକୁ ଯାଉଥିଲେ ସେହି ଚିମୁଟା ସାହାଯ୍ୟରେ ହନିଫ୍ ବାବୁଙ୍କ ବାକ୍ସରୁ ଭୋଟ କାଗଜ କାଢ଼ିନେଇ ତାଙ୍କ ବିରୁଦ୍ଧରେ ଛିଡ଼ାହୋଇଥିବା ପ୍ରାର୍ଥୀ ଗୋପାଳବାବୁଙ୍କ ବାକ୍ସରେ ଗଳାଇଦେଉଥିଲେ । ଏଭଳି ଅଭିଯୋଗର ସତ୍ୟତା ସଂପର୍କରେ ମୋର ଯେଉଁ ସନ୍ଦେହ ଥିଲା ତାହା ସ୍ୱାଧୀନତାପ୍ରାପ୍ତି ପରେ ୧୯୪୮ ମସିହାରେ ଦୂରୀଭୂତ ହୋଇଥିଲା । ଏହି ସମୟରେ ସମ୍ବଲପୁରରେ ଗୋଟିଏ ଉପନିର୍ବାଚନ ହେଉଥାଏ ରାଜ୍ୟ ବିଧାନସଭାପାଇଁ । ସେଥିରେ କଂଗ୍ରେସ ପ୍ରାର୍ଥୀ ଥିଲେ ଶ୍ରୀ ଶିବମଙ୍ଗଳ ଅଗସ୍ତି ଓ କଂଗ୍ରେସ ପ୍ରାର୍ଥୀଙ୍କ ବିରୁଦ୍ଧରେ ଲଢୁଥିଲେ ହୀରାକୁଦ ବନ୍ଧ ବିରୋଧୀ ଆନ୍ଦୋଳନର ନେତା ତଥା ଗଣତନ୍ତ୍ର ପରିଷଦର ପ୍ରାର୍ଥୀ ଶ୍ରୀ ଶ୍ରଦ୍ଧାକର ସୂପକାର । କୌତୂହଳର ବିଷୟ ଏହି ଯେ ସେତେବେଳେ ସମ୍ବଲପୁରରେ ଜିଲ୍ଲାପାଳ ଥିଲେ ସେଇ ରାୟସାହେବ ଦୁର୍ଗାଚରଣ ଦାସ ଏବଂ ଶ୍ରୀ ହରେକୃଷ୍ଣ ମହତାବ ଥିଲେ ରାଜ୍ୟର ମୁଖ୍ୟମନ୍ତ୍ରୀ । ମୁଁ ଥିଲି ବିଧାନସଭାର ଜଣେ ସଦସ୍ୟ । ମୁଁ, ବିଧାନସଭାର ଆଉ ଜଣେ ସଦସ୍ୟ ଶ୍ରୀ ଦ୍ୱାରକାନାଥ ଦାସ ଓ ଆହୁରି କେତେକ ବନ୍ଧୁ ଯାଇଥାଉଁ ସେଠାରେ କଂଗ୍ରେସ ପକ୍ଷରୁ ନିର୍ବାଚନ କାର୍ଯ୍ୟ ଚଳାଇବାପାଇଁ । ଆମେ ଦିନେ ଜିଲ୍ଲାପାଳଙ୍କୁ ଦେଖାକରିବାକୁ ଗଲୁ । ଆମର ବ୍ୟସ୍ତତା ଦେଖି ସେ ପଚାରିଲେ, ''କାହିଁକି ଏପରି ଦୌଡ଼ାଦୌଡ଼ି କରୁଛନ୍ତି ? ଯଦି ନିର୍ବାଚନରେ ଜିତିବାକୁ ଚାହାନ୍ତି ତେବେ ମୋତେ ମୁଖ୍ୟମନ୍ତ୍ରୀ କୁହନ୍ତୁ, ମୁଁ ଦେଖିବି କିପରି ଶ୍ରଦ୍ଧାକରବାବୁ ଜିତିଯିବେ ?''ତାଙ୍କଦ୍ୱାରା ଏହା କିପରି ସମ୍ଭବ ହେବ ବୋଲି ପଚାରିବାରୁ ସେ ହସି ହସି କହିଲେ, ''ତୁମେ ପରା ଭଦ୍ରକରୁ ଆସିଛ । ମୁଁ ଭଦ୍ରକରେ ଏସ୍.ଡି.ଓ. ଥିଲାବେଳେ ଜିଲ୍ଲାବୋର୍ଡ଼ ନିର୍ବାଚନରେ ହନିଫ୍ କିପରି ହାରିଥିଲେ !'' ମୁଁ କହିଥିଲି, ''ତା'ହେଲେ ଆମେ ଯେଉଁ ଚିମୁଟା କଥା ଶୁଣିଥିଲୁ ସେଟା କ'ଣ ସତ୍ୟ ?'' ସେ ଖୁବ୍ ହସିଥିଲେ, ଏତିକିରେ ସେ କଥା ବନ୍ଦହୋଇଥିଲା ।

ସ୍କୁଲରେ ଅଧ୍ୟୟନ କରୁଥିବା ସମୟରୁ ମୁଁ ଖଦଡ଼ଲୁଗା ପିନ୍ଧିବା ଅଭ୍ୟାସ ଆରମ୍ଭ କରିଦେଇଥିଲି । ପାଖରେ ତୁଳା ଓ ସୂତାକଟା ତକଲି ରଖିଥାଏ ସେବାବ୍ରତୀ ଜୀବନ ଗଢ଼ିବାପାଇଁ । ଭଲ ବକ୍ତୃତା କିପରି ଦିଆଯାଏ ତାହା ଶିକ୍ଷା କରିବାପାଇଁ ମୋର ବିଶେଷ ଆଗ୍ରହ ଥିଲା । କାରଣ ମୁଁ ବୁଝିଥିଲି ସମାଜସେବା ତଥା ରାଜନୈତିକ କାର୍ଯ୍ୟ କରିବାକୁ ହେଲେ କହିବୋଲିପାରିବାର ଶକ୍ତି ଆବଶ୍ୟକ । ପାଞ୍ଚଜଣଙ୍କ ଆଗରେ ମୁହଁ ଖୋଲି କହିବାକୁ ମୁଁ ପ୍ରଥମେ ସାହସ କରୁନଥିଲି । ଭାଷଣ ଦେବାକୁ ଭୟ ମଧ୍ୟ କରୁଥିଲି । ସ୍କୁଲରେ ଅନୁଷ୍ଠିତ ହେଉଥିବା ଆଲୋଚନା ସଭାରେ ଭାଗନେବାପାଇଁ ମୋର ଅଭିଭାବକ ମୋତେ ଉତ୍ସାହିତ କରିଥିଲେ । ସେ କହୁଥିଲେ ବକ୍ତୃତା ଦେବାଟା କାହାର ଜନ୍ମଗତ ସ୍ୱଭାବ ନୁହେଁ ।

ବକ୍ତୃତା ଓ ବିତର୍କର ଶକ୍ତି ଅଭ୍ୟାସଦ୍ୱାରା ହାସଲ କରାଯାଇଥାଏ । ଇଂଲଣ୍ଡର ଏଡ୍‌ମଣ୍ଡ ବାର୍କ କେବଳ ଅଭ୍ୟାସଦ୍ୱାରାହିଁ ଖୁବ୍ ସୁନ୍ଦର ଓ ଉତ୍ତେଜନାପୂର୍ଣ୍ଣ ବକ୍ତୃତା ଦେଇପାରୁଥିଲେ ଏବଂ ସେଥିରେ ସେ ଖୁବ୍ ଖ୍ୟାତି ଅର୍ଜନ କରିଥିଲେ । ପରେ ମଧ ଜଣାଗଲା, ଗ୍ରେଟ୍ ବ୍ରିଟେନ୍‌ର ସୁବିଖ୍ୟାତ ପ୍ରଧାନମନ୍ତ୍ରୀ ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍ ବ୍ରିଟିଶ୍ ପାର୍ଲିଆମେଣ୍ଟରେ କୌଣସି ଗୁରୁତ୍ୱପୂର୍ଣ୍ଣ ଭାଷଣ ଦେବା ପୂର୍ବରୁ ଭାଷଣଟିକୁ ଆଗରୁ ଲେଖିପକାଇ ସେଇଟିକୁ କିପରି ଭାବରେ କହିବେ ତାହା ଘଣ୍ଟା ଘଣ୍ଟା ଧରି ଅଭ୍ୟାସ କରୁଥିଲେ । ଏପରିକି ପ୍ରାୟ ଅଢ଼େଇହଜାର ବର୍ଷ ପୂର୍ବେ ଡେମୋଷ୍ଥିନ୍‌ସ ନାମକ ଜଣେ ବ୍ୟକ୍ତି ଏହିପରି ସାଧନାଦ୍ୱାରା ଗ୍ରୀସ୍ ଦେଶର ଜଣେ ସୁବକ୍ତାରୂପେ ସୁନାମ ଅର୍ଜନ କରିଥିଲେ । ପ୍ରଥମେ ତାଙ୍କର ବକ୍ତୃତା ଦେବାର ଶକ୍ତି ନଥିଲା । କହିଲାବେଳକୁ ତାଙ୍କର ଜିଭ ଲାଗୁଥିଲା । ଏସବୁ ଅସୁବିଧାକୁ ଅତିକ୍ରମ କରି କେଉଁପରି ଭାବରେ ସେ ଜଣେ ସୁବକ୍ତା ହେବେ ସେଥିପାଇଁ ଗଭୀର ଚିନ୍ତା ଓ ଉଦ୍ୟମ କଲେ । ଏକୁଟିଆ ସମୁଦ୍ର କୂଳକୁ ଯାଇ ଜିଭ ତଳେ ବାଲିଗରଡ଼ା ରଖି ପାଟିକରି କହିବାର ଅଭ୍ୟାସ ଆରମ୍ଭ କରିଥିଲେ । ସେତେବେଳେ ସେଇ ଅବସ୍ଥାରେ ତାଙ୍କୁ ଯେଉଁମାନେ ଦେଖୁଥିଲେ, ସେମାନେ ତାଙ୍କୁ ପାଗଳ ବୋଲି କହୁଥିଲେ । ଏହି ପ୍ରକାର ଅଭ୍ୟାସ କରି ସେ ଜଣେ ପ୍ରସିଦ୍ଧ ବକ୍ତା ହୋଇପାରିଥିଲେ । ମେ ଅଭିଭାବକଙ୍କ ପ୍ରେରଣା ପାଇବା ପରେ ନିଜ ଅଭ୍ୟାସ ବଳରେ ଲାଜକୁଳା ପ୍ରକୃତି ପରିହାର ନିମନ୍ତେ ମୁଁ ଉଦ୍ୟମ କରିଥିଲି । ତେଣୁ ସ୍କୁଲରେ ଯେଉଁ ଆଲୋଚନାସଭା ହେଉଥିଲା ସେଥିରେ ମୁଁ ସବୁବେଳେ ଭାଗନେଉଥିଲି । ପ୍ରଥମାବସ୍ଥାରେ ଆଲୋଚନାର ବିଷୟବସ୍ତୁକୁ ମୁଁ ଲେଖିପକାଇ ତାକୁ ବାରମ୍ବାର ପଢ଼ି ଏକପ୍ରକାର କଣ୍ଠସ୍ଥ କରିପକାଉଥିଲି । ଅଭ୍ୟାସ କରିବା ଉଦ୍ଦେଶ୍ୟରେ ମୁଁ ଏକୁଟିଆ ବିଲଆଡ଼େ ଥିବା ନିର୍ଜନ ସ୍ଥାନକୁ ବୁଲିବାକୁ ଚାଲିଯାଉଥିଲି । ସେଠାରେ ପାଟିକରି ଭାଷଣ ଦେଇ ବାରମ୍ବାର ସେଇଟିକୁ ପୁନରାବୃତ୍ତି କରି ସୁବକ୍ତା ହେବାପାଇଁ ଅଭ୍ୟାସ ଆରମ୍ଭ କରିଥିଲି । ଏହିଭଳି ଅଭ୍ୟାସଦ୍ୱାରା ବକ୍ତୃତା ଦେବାପାଇଁ ମୋର ସାହସ ତଥା ଉତ୍ସାହ ବଢ଼ିଥିଲା ।

ଭଦ୍ରକ ସହରର ବା ଦେଶର କୌଣସି ବିଶିଷ୍ଟ ବ୍ୟକ୍ତିଙ୍କର ତିରୋଧାନ ଉପଲକ୍ଷ୍ୟେ ଶୋକସଭା ଅଥବା ଶ୍ରାଦ୍ଧସଭା, ଅଫିସର୍‌ମାନଙ୍କର ଆଗମନ କିମ୍ବା ବିଦାୟକାଳୀନ ସମ୍ବର୍ଦ୍ଧନା ସଭା ପ୍ରଭୃତି ସାଧାରଣ ଅନୁଷ୍ଠାନମାନ ଯେଉଁଠାରେ ଅନୁଷ୍ଠିତ ହୁଏ, ମୁଁ ସେଠାରେ ଉପସ୍ଥିତ ଥାଇ ଆଲୋଚନାରେ ଅଂଶ ଗ୍ରହଣ କରିଥାଏ । ଭଦ୍ରକରେ ସାଧାରଣସଭା ତଥା ଅଧିବେଶନ କରିବାପାଇଁ ଭଦ୍ରକ ହାଇସ୍କୁଲ ହଲ୍‌ଟି ଥିଲା ଏକମାତ୍ର ସ୍ଥାନ । ସେହିଠାରେ ପ୍ରାୟ ସଭାସମିତି ଅନୁଷ୍ଠିତ ହୋଇଥାଏ, ତେଣୁ ମୋତେ ସୁବିଧା ମିଳୁଥିଲା । ମୋର ମନେପଡ଼େ, ଥରେ ଆମ ସ୍କୁଲ ହଲ୍‌ରେ ଗୋଟିଏ ବିଦାୟ ସମ୍ବର୍ଦ୍ଧନା ସଭାରେ ଶ୍ରୀ ହରେକୃଷ୍ଣ ମହତାବ ଯୋଗଦେଇଥିଲେ । ମିଷ୍ଟର୍ ଆଜଫର୍ ନାମକ ଜଣେ ଆଇ.ସି.ଏସ୍. ଅଫିସର୍ ଭଦ୍ରକ ଏସ୍.ଡି.ଓ. ହୋଇ ଆସିଥିଲେ । ତାଙ୍କ ବଦଳି ଆଦେଶ ପରେ ଜନସାଧାରଣଙ୍କ ପକ୍ଷରୁ ଏକ ବିଦାୟକାଳୀନ ସଭାର ଆୟୋଜନ ସ୍କୁଲ ହଲ୍‌ରେ ଅନୁଷ୍ଠିତ ହେଉଥିଲା । ମହତାବବାବୁ ସେଠାରେ ଇଂରେଜୀରେ ଭାଷଣ ଦେଇଥିଲେ । ମୁଁ କିନ୍ତୁ ବିଦେଶୀ ସରକାରଙ୍କର କର୍ମଚାରୀଙ୍କପାଇଁ ଉଦ୍ଦିଷ୍ଟ ସମ୍ବର୍ଦ୍ଧନାସଭାକୁ ପସନ୍ଦ କରୁନଥିଲି । ସମ୍ବର୍ଦ୍ଧନାକୁ ନାପସନ୍ଦ କରି କିଛି କହିବାପାଇଁ ମୁଁ ପ୍ରସ୍ତୁତ ହେଉଥିଲି । ଆମ ପ୍ରଧାନଶିକ୍ଷକ ଏ କଥା ଜାଣିପାରି ମୋତେ ବାହାରକୁ ଡାକିନେଇ ସେଭଳି କାର୍ଯ୍ୟ ଅସୌଜନ୍ୟ ହେବ ବୋଲି ବୁଝାଇଥିଲେ, ତେଣୁ ଉକ୍ତ ସଭାରେ ଆଉ ନରହି ମୁଁ ଚାଲିଯାଇଥିଲି । କାରଣ ସହନଶୀଳ ହେବାପାଇଁ ଶିକ୍ଷା ପାଇଥିଲେ ମଧ ଶତ୍ରୁପକ୍ଷ ସହିତ ସାଲିସ୍ କରିବାଟା ଥିଲା ପୂରାପୂରି ଭାବରେ ମୋ ସ୍ୱଭାବବିରୁଦ୍ଧ । ମୁଁ ସବୁ ସଭାରେ ଯାଇ କିଛି କହିବା ଓ ସବୁ ଅନୁଷ୍ଠାନରେ ଯୋଗ ଦେବାର ଲକ୍ଷ୍ୟକରି ମୋର ଏ ପ୍ରକାର ଆଚରଣ କେତେକଙ୍କର ଚକ୍ଷୁଶୂଳ ମଧ ହୋଇଥିଲା । ମୋର ସ୍ପଷ୍ଟ ମନେଅଛି, ଭଦ୍ରକର ଜଣେ ସରକାରୀ ଡାକ୍ତର ଏସବୁ ସଭାସମିତି ଓ ଅନୁଷ୍ଠାନମାନଙ୍କରେ ମୋତେ ଦେଖିଲାକ୍ଷଣି କିଭଳି ପରିହାସ କରୁଥିଲେ । ମୋତେ ଲକ୍ଷ୍ୟକରି ସେ କହନ୍ତି, ''ଜଗଲାର୍

(ଯାଦୁକର) ଆସିଗଲେ ।'' ଏ ପ୍ରକାର ମନ୍ତବ୍ୟ ଶୁଣିଲାକ୍ଷଣି ମୋତେ ଭାରି ଖରାପଲାଗେ; ମାତ୍ର ସେଥିପ୍ରତି ଭ୍ରୂକ୍ଷେପ ନକରି ମୋର ଯେତିକି ଏବଂ ଯାହା କହିବାର ଇଚ୍ଛା ଥାଏ ସେତକ କହିଥାଏ । ମୋତେ ଶୁଣେଇ ଶୁଣେଇ ବାରମ୍ବାର ସେ ଏହି ପ୍ରକାର ପରିହାସ କରିବାର ମୁଁ ଜାଣିଛି । ମୋର ସେହି ବୟସ୍କ ବନ୍ଧୁଜଣକ ହେଲେ ଡାକ୍ତର ଦୟାନିଧି ମିଶ୍ର । ମୁଁ ରାଜ୍ୟ ମନ୍ତ୍ରିମଣ୍ଡଳରେ ଜଣେ ସଭ୍ୟ ଥିଲାବେଳେ ସେ ସ୍ୱାସ୍ଥ୍ୟବିଭାଗର ନିର୍ଦ୍ଦେଶକ ପାହ୍ୟାକୁ ଆସିଯାଇଥିଲେ । ମୋତେ ସେତେବେଳେ ଦେଖିଲାକ୍ଷଣି ବୋଧହୁଏ ତାଙ୍କର ମନେପଡ଼ିଯାଉଥିଲା ଭଦ୍ରକରେ ମୋ ବିଷୟରେ ତାଙ୍କର ଅନୁଭୂତି । ତେଣୁ ସେ ବଡ଼ ଅସ୍ଥିର ତଥା ଅସ୍ୱସ୍ତିକର ପରିସ୍ଥିତିର ସମ୍ମୁଖୀନ ହେଲାଭଳି ମନେହେଉଥିଲା । ମୋର ଗତକଥାସବୁ ମନେପଡୁଥାଏ ତାଙ୍କୁ ଦେଖିଲାକ୍ଷଣି । ମାତ୍ର ସେସବୁ କଥା ମୋର ମନେଅଛି ବୋଲି ମୁଁ ତାଙ୍କୁ ଜାଣିବାକୁ ଦେଉନଥାଏ । ସଂସଦୀୟ ଗଣତନ୍ତ୍ର ପଦ୍ଧତିରେ ଜଣେ ଅତି ସାଧାରଣ ବ୍ୟକ୍ତି ମଧ୍ୟ ନାନାପ୍ରକାର ପ୍ରତିକୂଳ ଓ ଅପ୍ରୀତିକର ପରିସ୍ଥିତି ମଧ୍ୟରେ ଗତିକରି ଉଚ୍ଚସ୍ଥାନ ଅଧିକାର କରିପାରେ । ଏପରିସ୍ଥଳେ ଅତୀତର ତିକ୍ତ ଅନୁଭୂତିଦ୍ୱାରା ପ୍ରଭାବିତ ହେଲେ ତାହା ଗଣତାନ୍ତ୍ରିକ ଚିନ୍ତାଧାରାର ପରିପୂରକ ହେବନାହିଁ, ଏହାହିଁ ସ୍ମରଣ କରି ମୁଁ ତାଙ୍କ ପ୍ରତି ସ୍ୱାଭାବିକ ବ୍ୟବହାର କରୁଥିଲି ।

## ଅଦୃଶ୍ୟ ସାମ୍ବାଦିକ

ସ୍କୁଲରେ ପଢ଼ିଲାବେଳେ ମୁଁ ଭଦ୍ରକରୁ ଖବରକାଗଜମାନଙ୍କୁ ସମ୍ବାଦ ପଠାଉଥିଲି । କଲିକତାରୁ ପ୍ରକାଶିତ ଇଂରେଜୀ ସମ୍ବାଦପତ୍ର ଅମୃତବଜାର ପତ୍ରିକାକୁ ମଧ୍ୟ ସମ୍ବାଦ ପଠାଉଥିଲି । ମୋର ଅଭିଭାବକ ଉଦୟବାବୁ ମୋତେ ଇଂରାଜୀ ସମ୍ବାଦମାନ ଲେଖିବାରେ ସାହାଯ୍ୟ କରୁଥିଲେ । ଥରେ ଅମୃତବଜାର ପତ୍ରିକାରେ ପ୍ରକାଶିତ ଗୋଟିଏ ସମ୍ବାଦ ଭଦ୍ରକରେ ଚାଞ୍ଚଲ୍ୟ ସୃଷ୍ଟିକରିଥିଲା । ଭଦ୍ରକର ତଦାନୀନ୍ତନ ଏସ୍.ଡି.ଓ.ଙ୍କର ବଦଳି ଆଦେଶ ହୋଇଥିଲା । ତାଙ୍କର ବିଦାୟକାଳୀନ ସମ୍ବର୍ଦ୍ଧନା ବହୁ ଅର୍ଥବ୍ୟୟରେ ଖୁବ୍ ଆଡ଼ମ୍ବର ସହକାରେ କରାଯାଇଥିଲା । ଏହାପରେ ଅମୃତବଜାର ପତ୍ରିକାରେ ଭଦ୍ରକ ସମ୍ବାଦ ଶିରୋନାମାରେ ବାହାରିଲା, "Officers come and officers go, but the reasons for such lavish entertainment are unknown to the ordinary folk." କର୍ମଚାରୀମାନେ ଆସନ୍ତି ଏବଂ ଯାଆନ୍ତି; କିନ୍ତୁ ଏପରି ଆଡ଼ମ୍ବରପୂର୍ଣ୍ଣ ପରିଚର୍ଯ୍ୟାର କାରଣ ସାଧାରଣ ଲୋକଙ୍କୁ ଅଗୋଚର । ସମ୍ବାଦଟି ପ୍ରକାଶ ପାଇଲା ବେଳକୁ ଏସ୍.ଡି.ଓ. ମହାଶୟ ଭଦ୍ରକରେ ଥିଲେ । ସମ୍ବାଦଟି ପଢ଼ି ସେ କମ୍ପମାନହେଲେ । ଭଦ୍ରକର ସମ୍ବାଦ ପ୍ରେରକଙ୍କୁ ତଲବ କରାଗଲା । ସେ ଶପଥ କରି କହିଥିଲେ ଯେ ସେ ସେହି ସମ୍ବାଦଟି ପଠାଇନାହାନ୍ତି । ହାକିମ ବିଚରା ବହୁତ ଖୋଜାଖୋଜି କରି କୌଣସି ସନ୍ଧାନ ନପାଇ ଶେଷରେ କେତେକ ଲୋକଙ୍କୁ ସନ୍ଦେହକରି ଚୁପ୍ ହୋଇ ରହିଲେ । ସମ୍ବାଦଟିର ପ୍ରକୃତ ପରିବେଷକ ହାକିମଙ୍କ ପାଖେ ଅଦୃଶ୍ୟ ରହିଗଲେ ।

ଭଦ୍ରକରେ ମୋର ଛାତ୍ରଜୀବନରେ ଯେଉଁ ଦୁଇଟି ସ୍ଥାନ ମୋତେ ଆକୃଷ୍ଟ କରିଥିଲା ସେଥିରୁ ଗୋଟିଏ ସଦାବର୍ତ୍ତ ମଠ ଓ ଅନ୍ୟଟି ହେଲା ସଛିଆ ଘାଟ । ସଦାବର୍ତ୍ତ ମଠଟି ଅତି ପୁରାତନ ମଠ ଏବଂ ଏହା ଅତିଥି ଅଭ୍ୟାଗତଙ୍କର ବିଶେଷ ଚର୍ଚ୍ଚାପାଇଁ ପ୍ରସିଦ୍ଧ । ନାରାୟଣ ଚନ୍ଦ୍ର ମାଇନର ସ୍କୁଲରେ ପଢ଼ିଲାବେଳେ ସ୍କୁଲ ପରିଚାଳନା କମିଟିର ସଭାପତି ଥିଲେ ସଦାବର୍ତ୍ତ ମଠର ମହନ୍ତ ଶ୍ରୀ ଶ୍ରୀ ରାମାନୁଜ ଦାସ । ସଦାବର୍ତ୍ତ ମଠର ଗୋପାଳଜୀଉ ଠାକୁରଙ୍କୁ ଦର୍ଶନ କରିବାକୁ ଅଧିକାଂଶ ସମୟରେ ଆମେ ଯାଉ ଏବଂ ଯେତେ ପର୍ବପର୍ବାଣି ହୁଏ ସବୁଥିରେ ଛାତ୍ରାବାସର ଛାତ୍ରମାନଙ୍କୁ ଡକାଯାଇ ପ୍ରସାଦ ସେବନ କରିବାକୁ ଦିଆଯାଏ । ସଦାବର୍ତ୍ତ ମଠରେ ତିଆରି ମାଲପୁଆ ପ୍ରତି ଥାଏ ଆମମାନଙ୍କର ବିଶେଷ ଆଗ୍ରହ । ସେହି ମାଲପୁଆର ସୁଆଦ କଥା ଏବେପର୍ଯ୍ୟନ୍ତ ମୋର ମନେଅଛି । ପ୍ରତିଦିନ ସ୍କୁଲକୁ ଗଲାବେଳେ ଏବଂ ଆସିଲାବେଳେ ବର୍ଷାଦିନେ ଆମମାନଙ୍କୁ ସଛିଆ ଘାଟରେ ନଦୀ ପାରିହେବାକୁ

ପଢୁଥାଏ । ସଛିଆ ଗ୍ରାମ ଏକ ଇତିହାସପ୍ରସିଦ୍ଧ ପ୍ରାଚୀନ ଧର୍ମସ୍ଥାନ । ୧୫୧୪ ଖ୍ରୀଷ୍ଟାବ୍ଦରେ ଚୈତନ୍ୟ ମହାପ୍ରଭୁ ଯେତେବେଳେ ଶ୍ରୀକ୍ଷେତ୍ର ପୁରୀଧାମରେ ରଥଯାତ୍ରା ଦର୍ଶନ କରି ଫେରୁଥିଲେ ସେତେବେଳେ ଏହି ଗ୍ରାମର ଶ୍ରୀ ଶ୍ରୀ ରାଧାମୋହନଜୀଉ ମନ୍ଦିରର ମଠାଧୀଶ ଶ୍ରୀ ଯଶୋଦାନନ୍ଦନ ତର୍କାଳଙ୍କାର ବିଦ୍ୟା ବାଚସ୍ପତିଙ୍କ ଘରେ ପାଞ୍ଚ ଦିନ ଅବସ୍ଥାନ କରିଥିଲେ । ସେହିଠାରେ ସେ ତାଙ୍କର ପରିଧେୟ ବସ୍ତ୍ର (କନ୍ଥା) ଛାଡ଼ିଯାଇଛନ୍ତି, ଯାହା ଆଜିପର୍ଯ୍ୟନ୍ତ ପୂଜାପାଉଛି ଏବଂ ପ୍ରତିବର୍ଷ ହେରାପଞ୍ଚମୀ ଦିନ ସର୍ବସାଧାରଣଙ୍କର ଦର୍ଶନ ନିମନ୍ତେ ପ୍ରଦର୍ଶନ କରାଯାଉଛି । ସାଳନ୍ଦୀ ନଦୀର ଏହି ସଛିଆ ଘାଟ ମୋ ପକ୍ଷରେ ଏକ ସ୍ମରଣୀୟ ସ୍ଥାନ । ଏଠାରେ ମୋ ଜୀବନରେ ବାସ୍ତବ ଜନସେବାର ମୂଳଦୁଆ ପଡ଼ିଥିଲା । ଆଗରୁ ଉଲ୍ଲେଖ କରିଛି, ଅସମର୍ଥ ବୁଢ଼ାବୁଢ଼ୀମାନେ ଘାଟ ପାରିହେଲାବେଳେ ସେମାନଙ୍କୁ ସାହାଯ୍ୟ କରିବାଟା ହେଲା ମୋର ଜନସେବା କରିବାର ପ୍ରଥମ ଶିକ୍ଷା । ସେତେବେଳେ ମନେ ମନେ ଭାବୁଥାଏ, ନଦୀ ଉପରେ ପୋଲଟିଏ ହେଲେ ଲୋକମାନଙ୍କର କେତେ ଉପକାର ହୁଅନ୍ତା ! ଦୈବଯୋଗକୁ ସଛିଆ ଘାଟରେ ପୋଲ ନିର୍ମାଣ କରାଇବାର ଦାୟିତ୍ୱ ମୋ ଉପରେ ଆସି ପଡ଼ିଥିଲା । ୧୯୭୧ ମସିହାରେ ଭଦ୍ରକର ବିଧାନସଭା ସଦସ୍ୟ ଶ୍ରୀ ବଳରାମ ସାହୁଙ୍କର ଅନୁରୋଧକ୍ରମେ ସେଠାରେ ପୋଲ ନିର୍ମାଣର ଶିଳାନ୍ୟାସ ମୁଁ କରିଥିଲି । ସେତେବେଳେ ଯେଉଁ କାର୍ଯ୍ୟ ଆରମ୍ଭ କରାଯାଇଥିଲା, ତତ୍‌ପରେ ଅସମ୍ପୂର୍ଣ୍ଣଭାବରେ କିଛିଦିନ ପଡ଼ିରହିଲା । ଶେଷରେ ମୋର ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଭଦ୍ରକ ବିଜ୍ଞାପିତ ଅଞ୍ଚଳ ପରିଷଦର ଚେୟାରମ୍ୟାନ୍ ଶ୍ରୀ ପ୍ରାଣକୃଷ୍ଣ ବିଶ୍ୱାଳ ଲାଗିପଡ଼ି ସେଇ କାର୍ଯ୍ୟଟିକୁ ସଂପୂର୍ଣ୍ଣ କରାଇଥିଲେ ।

## ଗୁରୁସ୍ମୃତି

ମୋର ସ୍କୁଲ ଜୀବନରେ ପ୍ରକୃତ ପଥପ୍ରଦର୍ଶକ ମୋର ଗୁରୁ ତଥା ଅଭିଭାବକ ଶ୍ରୀ ଉଦୟ ନାରାୟଣ ମହାନ୍ତି ସମାଜସେବା ଓ ନିର୍ଭୀକ ରାଜନୀତି କରିବାପାଇଁ ମୋତେ ସର୍ବଦା ଉତ୍ସାହିତ କରୁଥିଲେ । ସେ ଭଲ ଭଲ ପୁସ୍ତକ ପଢ଼ିବାକୁ କହିବା ସଙ୍ଗେ ସଙ୍ଗେ କେତେକ ମୂଲ୍ୟବାନ୍ ପୁସ୍ତକ ମୋତେ ଦେଇଥିଲେ । ପତ୍ରପତ୍ରିକାରେ ଲେଖାଲେଖି କରିବାରେ ତାଙ୍କର ସାହାଯ୍ୟ ମଧ୍ୟ ବହୁତ ଥିଲା । ଜଣେ ରାଜନୈତିକ ବ୍ୟକ୍ତି ଓ ସମାଜସେବୀ ତା'ର ଆଚରଣରେ କି ପ୍ରକାରର ବିନୀତ ଓ ନମ୍ର ହେବା ଆବଶ୍ୟକ, ସେ ବିଷୟରେ ସେ ମୋତେ ସର୍ବଦା ପରାମର୍ଶ ଦେଉଥିଲେ । ମୋର ଜଣେ ସହପାଠୀ ବଡ଼ ହାକିମଙ୍କର ପୁଅ ହେଇଥିବାରୁ ସ୍କୁଲର ସବୁ କ୍ଷେତ୍ରରେ ତାଙ୍କର ପ୍ରଭାବ କାମ କରୁଥିଲା । ଶିକ୍ଷକମାନେ ସବୁ କଥା ଅନୁଭବ କରୁଥିଲେହେଁ କେହି କିଛି କହୁନଥିଲେ । ସେ ଭୁଲ କଲେ ମଧ୍ୟ ଶିକ୍ଷକମାନେ ତା'ର ଦୋଷ ଧରନ୍ତିନାହିଁ । ବେଳେବେଳେ ଆମ ଭିତରେ ଦୁଇ ଦଳ ହୋଇ ଝଗଡ଼ାଲାଗୁ । ନିଷ୍ପତ୍ତିବେଳେ ଶିକ୍ଷକମାନେ ମୋର ସହପାଠୀ ଜଣକୁ ସୁହାଇଲା ଭଳିଆ ସିଦ୍ଧାନ୍ତ ଦେଉଥିଲେ । ଏକଦା ମୁଁ ତା'ଦ୍ୱାରା ବିଶେଷଭାବରେ ଅପଦସ୍ଥ ହେବା ପରେ ବସାରେ ମନଖରାପ କରି ବସିଥାଏ । ମୋର ମନ ଖରାପର କାରଣ ସାଙ୍ଗ ପିଲାମାନେ ଉଦୟବାବୁଙ୍କୁ କହିଦେଇଥିଲେ । ସେ ମୋତେ ଡାକି ମୃଦୁ ଭର୍ତ୍ସନା କରି କହିଲେ — ଯଦି ଏଥିପାଇଁ ମନସ୍ତାପ କରିବାର ଯଥାର୍ଥ କାରଣ ଅଛି, ତେବେ ଅପଦସ୍ଥ ହେବା ପରେ ମୁଁ କାହିଁକି ଭୀରୁ ଭଳି ଘରକୁ ଫେରିଆସିଲି ? ସେ କହିଲେ, 'ତମେ ଚାକିରି କରିନାହଁ ଯେ କାହାକୁ ଡରିବ । ସିଏ ତୁମକୁ ଅପଦସ୍ଥ କଲା ତାକୁ ନିର୍ଭୀକଭାବରେ ଜବାବ ଦେଇ ଅପଦସ୍ଥ ନ କଲ କାହିଁକି ?' ମୋର ଭୀରୁତାରେ ସେ ଦୁଃଖିତ ହୋଇଥିଲେ । ଏହାପରେ ଆଉ ଆଗ କଥା ଚଳିଲା ନାହିଁ । ମୁଁ 'ଯେସାକୁ ତେସା' ନୀତି ଧରିଲି । ମୋର ରାଜନୈତିକ ଓ ସାମାଜିକ ଜୀବନର ମୂଳଦୁଆ ପ୍ରକୃତରେ ଉଦୟବାବୁ ଦେଇଥିଲେ । ମୋର ପରବର୍ତ୍ତୀ ଜୀବନରେ ରାଜନୀତି କ୍ଷେତ୍ରରେ ମୋର ଅଗ୍ରଗତିରେ ସେ ସନ୍ତୋଷ ପ୍ରକାଶ କରିଥିଲେ ।

ସେ ଆଉ ଇହଧାମରେ ନାହାନ୍ତି; କିନ୍ତୁ ମୋ ଜୀବନରେ ତାଙ୍କଠାରୁ ଲାଭକରିଥିବା ସେଇ ଶିକ୍ଷାଦୀକ୍ଷାର ପ୍ରଦୀପ ପ୍ରଜ୍ୱଳିତ ରହିଛି ।

## ସ୍ୱରାଜ ଆସିଲେ ପୁଲିସ୍ ରହିବେ ନାହିଁ

ଏହିଠାରେ ଆଉ ଗୋଟିଏ କୌତୂହଳପୂର୍ଣ୍ଣ କଥା ମୋର ମନେପଡ଼େ – ମାତ୍ର ଶୁଣିଲାକ୍ଷଣି କେହି କେହି ନିଶ୍ଚୟ କହିବେ ଯେ ତାହା ଗୋଟିଏ ନିର୍ବୋଧ ଚିନ୍ତା । ବିଚାରାଧୀନ ବନ୍ଦୀ ହିସାବରେ ଆମେ ଦଶବାର ଜଣ ଯେଉଁ କେତେଦିନ ଭଦ୍ରକ ଜେଲ୍‌ରେ ଏକାସାଙ୍ଗରେ ରହିଥିଲୁ, ଆମମାନଙ୍କ ଭିତରେ ସମୟ କାଟିବାପାଇଁ ନାନା ବିଷୟ ଆଲୋଚିତ ହେଉଥିଲା । ମୁଁ ଥିଲି ସବୁଠାରୁ ଛୋଟ ପିଲା । କଥା ଶୁଣିବାକୁ ସେତେବେଳେ ମୋର ଖୁବ୍ ଆଗ୍ରହ ଥାଏ । ଟୁଆଁଟୁଇଁ ଗପଠାରୁ ଆରମ୍ଭକରି ସ୍ୱରାଜ ମିଳିଲେ ଦେଶରେ କଅଣ ହେବ ସେସବୁ କଥା ଆମମାନଙ୍କ ଭିତରେ ପଡ଼େ । ବ୍ରିଟିଶ୍‌ରାଜର ପ୍ରତୀକ ଓ ପୋଷାକଧାରୀ ପୁଲିସ୍, ଦଫାଦାର ଓ ଚୌକିଦାରଙ୍କ ସ୍ୱରୂପ ଆମ ଆଖି ଆଗରେ ସବୁବେଳେ ନାଚୁଥାଏ । ସେମାନଙ୍କ ମାଡ଼ ଗାଳି ଓ ଅତ୍ୟାଚାରର କାହାଣୀମାନ ଆମମାନଙ୍କ ଭିତରେ ପଡୁଥାଏ । ଜେଲ୍‌ର ଜଗୁଆଳିମାନେ ମଧ୍ୟ ପିନ୍ଧିଥା'ନ୍ତି ପୁଲିସ୍ ପୋଷାକ, ତେଣୁ ପୁଲିସ୍‌କୁ ଭୁଲି ହୁଏନାହିଁ । ଆମ ସମସ୍ତଙ୍କର ଇଚ୍ଛା ଥାଏ ପୁଲିସ୍ ଦେଶରେ ନ ଥା'ନ୍ତେ କି ! ଆମ ଭିତରେ ଆଲୋଚନା ହେଉଥାଏ – ସ୍ୱରାଜ ହେଲେ ପୁଲିସ୍‌ର ଆଉ ଆବଶ୍ୟକତା ପଡ଼ିବନାହିଁ, ତେଣୁ ପୁଲିସ୍ ରହିବା ଦରକାର ପଡ଼ିବନାହିଁ । ଏ କଥାଟା ମୋ ମୁଣ୍ଡରେ ଖୁବ୍ ଭଲଭାବରେ ପଶିଯାଇଥାଏ । କେବଳ ଜେଲ୍ ଭିତର ଆଲୋଚନାରେ କଥାଟା ସରିଯାଇନଥିଲା, ଜେଲ୍‌ରୁ ବାହାରକୁ ଆସିଲା ପରେ ମଧ୍ୟ ଅନେକ ଦିନ ପର୍ଯ୍ୟନ୍ତ ଏହି କଥାଟା ମୋ ମନ ମଧ୍ୟରେ ଖେଳୁଥାଏ । ମୋର ସହପାଠୀ ପିଲାମାନଙ୍କ ସହିତ କଥାବାର୍ତ୍ତା ହେଲାବେଳେ ମୁଁ କହୁଥିଲି ସ୍ୱରାଜ ହେଲେ ଦେଶରୁ ପୁଲିସ୍ ଉଠିଯିବ । ଗାଉଁଲି ଲୋକମାନେ ମଧ୍ୟ ସେ ସମୟରେ ସେଇ ପ୍ରକାର ଭାବୁଥିବାର ମୋର ମନେହେଉଛି । ଅଜ୍ଞାନତାବଶତଃ ଏ ପ୍ରକାର କଳ୍ପନା ମୋ ମନକୁ ଘେରିରହିଥାଏ । ପୁଲିସ୍ ଅତ୍ୟାଚାରର ଅକଥନୀୟ କାହାଣୀ ଶୁଣି ଶୁଣି ବୋଧହୁଏ ଏ ପ୍ରକାର ଚିନ୍ତାର ଉଦ୍‌ଭବ ହୋଇଥିଲା । ମୁଁ ଭାବୁଥିଲି, ଇଂରେଜ ସରକାର ଏକ ବିଦେଶୀ ସରକାର । ଏଠାରେ ତାଙ୍କର କାର୍ଯ୍ୟ କରିବାକୁ କେହି ନାହାନ୍ତି, ତେଣୁ ସେ ପୁଲିସ୍ ରଖିଛନ୍ତି । ସ୍ୱରାଜ ହେଲେ ସବୁ ଲୋକ ତ ଆମର ହେବେ, ତେଣୁ ପୁଲିସ୍‌ର ଆବଶ୍ୟକତା ରହିବନାହିଁ । କଥାଟା ବଡ଼ ଯୁକ୍ତିଯୁକ୍ତ ଭଳି ଜଣାଯାଉଥିଲା, ତେଣୁ ମୋ ମନକୁ ବେଶ୍ ପାଇଥାଏ । ମାତ୍ର ଏହା ଏକ ଉଦ୍‌ଭଟ ଚିନ୍ତା ଏବଂ ସେତେବେଳେ ମୁଁ ଏ ପ୍ରକାର ଭାବୁଥିଲି ବୋଲି ମନେପଡ଼ିଗଲେ ବର୍ତ୍ତମାନ ମନେ ମନେ ହସେ ।

## କିନ୍ତୁ ପୁଲିସ୍ ଭାର ମୋରି ମୁଣ୍ଡରେ ରହିଲା

ଭାଗ୍ୟର କି ବିଡ଼ମ୍ବନା ! ପୁଲିସ୍ ସମ୍ବନ୍ଧରେ ଯାହାର ଏ ପ୍ରକାର ଧାରଣା ଥିଲା, ପରବର୍ତ୍ତୀ କାଳରେ ତା'ରି ମୁଣ୍ଡରେ ଆସି ପଡ଼ିଲା ରାଜ୍ୟ ପୁଲିସ୍ ବିଭାଗର ଦାୟିତ୍ୱ ପନ୍ଦର ବର୍ଷ କାଳ ପାଇଁ । ରାଜ୍ୟର ପୁଲିସ୍ ବିଭାଗର ଅଭିବୃଦ୍ଧି ଓ ବିକାଶ ମୁଖ୍ୟତଃ ମତେହିଁ କରିବାକୁ ପଡ଼ିଥିଲା । ୧୯୫୨ ମସିହାରେ ମୁଁ ପ୍ରଥମେ ସ୍ୱରାଷ୍ଟ୍ର ବିଭାଗର ଉପମନ୍ତ୍ରୀରୂପେ ଦାୟିତ୍ୱ ନିଏ । ସେତେବେଳେ ପୁଲିସ୍‌ବାହିନୀର ଶକ୍ତି ଯାହା ଥିଲା ୧୯୭୭ ମସିହାରେ ମୁଁ ରାଜ୍ୟର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବାବେଳକୁ ତାହା ବହୁ ଗୁଣରେ ବଢ଼ିଯାଇଥିଲା । ପୁଲିସ୍ ସଂସ୍ଥାର ଅଭିବୃଦ୍ଧି ବିଶେଷତଃ ମୋଦ୍ୱାରାହିଁ ହୋଇଛି, ମୁଁ ଏହା ସ୍ୱୀକାର କରିବାକୁ ଆଦୌ କୁଣ୍ଠିତ ନୁହେଁ; କାରଣ ଜନସ୍ୱାର୍ଥ ଦୃଷ୍ଟିରୁ ଏହାର ଯୁକ୍ତିଯୁକ୍ତ ଆବଶ୍ୟକତା ଥିଲା । ମାନବ ସମାଜ ସୃଷ୍ଟି ହେଲା ଦିନରୁ ଓ ମନୁଷ୍ୟ ଜାତି ଗୋଷ୍ଠୀବାଦୀ ରହି

ଶିଖିଲାବେଳୁ ପୁଲିସ୍ ସଂସ୍ଥାର ଉତ୍ପତ୍ତି ହୋଇଛି ଏବଂ ପୁଲିସ୍ କର୍ମଚାରୀଙ୍କର ଆବଶ୍ୟକତା ଅନୁଭୂତ ହୋଇଆସିଛି । ସମାଜରେ ଯେତେ ମନ୍ଦ ପ୍ରକୃତିର ଲୋକ ଅଛନ୍ତି ସେମାନଙ୍କର ନିୟନ୍ତ୍ରଣପାଇଁ, ଆଇନ ଶୃଙ୍ଖଳାକୁ ପସନ୍ଦକରୁଥିବା ଜନସାଧାରଣଙ୍କର ଆଶ୍ୱସ୍ତିପାଇଁ ପୁଲିସ୍‌ର ଆବଶ୍ୟକତା ରହିଛି ଏବଂ ରହିଥିବ । ସ୍ୱାଧୀନ ଦେଶ ଅଥବା ପରାଧୀନ ଦେଶ, ରାଜତନ୍ତ୍ର ଅଥବା ଗଣତନ୍ତ୍ର ଶାସନ ପଦ୍ଧତି ନିର୍ବିଶେଷରେ ଏହା ସତ୍ୟ । ପ୍ରଥମେ ଯେଉଁ ଉଦ୍‌ଭଟ ଚିନ୍ତାଧାରା କଥା ମୁଁ କହିଥିଲି, ପୁଲିସ୍ ସମ୍ପର୍କରେ ସେ ପ୍ରକାର ଧାରଣା ବର୍ତ୍ତମାନ ସୁଦ୍ଧା କେତେକଙ୍କର ନଥିବ ବୋଲି ଠିକ୍‌ଭାବେ କହିହେବନାହିଁ । ଏଥିପାଇଁ ପୁଲିସ୍‌ର ଆଚରଣ ବିଶେଷ ପରିମାଣରେ ଦାୟୀ । ଶାନ୍ତି ଶୃଙ୍ଖଳା ରକ୍ଷାକରିବା ଛଡ଼ା ପୁଲିସ୍‌କୁ ଅନ୍ୟଗୁଡ଼ିଏ କାର୍ଯ୍ୟ କରିବାକୁ ପଡ଼ିଥାଏ । ସରକାରଙ୍କର ଯେତେ ପ୍ରକାର କର୍ମଚାରୀ ଅଛନ୍ତି, ସେମାନଙ୍କ ଭିତରେ ପୁଲିସ୍ ତା'ର ପୋଷାକ ହେତୁ ସରକାରଙ୍କର ପ୍ରତ୍ୟକ୍ଷ ଏଜେଣ୍ଟରୂପେ ସହଜରେ ଚିହ୍ନିତ ହୋଇଥାଏ । ଲୋକଙ୍କ ଭିତରେ ସରକାରୀ ଲୋକ ବୋଲି ଅନ୍ୟ ସରକାରୀ କର୍ମଚାରୀମାନେ କୌଣସି ସ୍ୱତନ୍ତ୍ର ସରକାରୀ ପୋଷାକ ପିନ୍ଧୁ ନଥିବାରୁ ଜଣାପଡ଼ନ୍ତିନାହିଁ । ତେଣୁ ଲୋକଙ୍କର କ୍ରୋଧ ତଥା ଅସନ୍ତୋଷ କୌଣସି କାରଣରୁ ହେଉ କିମ୍ବା ସରକାରଙ୍କର ଯେକୌଣସି କାର୍ଯ୍ୟରୁ ଉଦ୍ଭବ ହୋଇଥିଲେ ମଧ୍ୟ ତାହାର ପ୍ରତ୍ୟକ୍ଷ ପ୍ରତିକ୍ରିୟା ପଡ଼ିଥାଏ ପୁଲିସ୍ ଉପରେ । ପୁଲିସ୍ ପକ୍ଷରେ ଏହା ଗୋଟିଏ ବଡ଼ ଅସୁବିଧା । ପୁଲିସ୍ କେବଳ ତାହାର ଆଚରଣ ଦ୍ୱାରା ଏ ପ୍ରକାର କ୍ରୋଧ ଅଥବା ଅସନ୍ତୋଷକୁ ଦୂରକରିପାରିବ । ପୁଲିସ୍ କାର୍ଯ୍ୟ ଯେତେ ଅପ୍ରୀତିକର ହେଲେ ମଧ୍ୟ ତା'ର ଆଚରଣରେ ଶିଷ୍ଟାଚାର ପରିସ୍ଫୁଟ ହେବା ଆବଶ୍ୟକ ଏବଂ କାର୍ଯ୍ୟ କରିବାର ଶୈଳୀ ଓ ପ୍ରଣାଳୀ ଲୋକଚକ୍ଷୁରେ ଆଇନ୍‌ସମ୍ମତ ତଥା ନିରପେକ୍ଷ ପ୍ରତିପାଦିତ ହେବା ଆବଶ୍ୟକ । ଶିଷ୍ଟାଚାରର ସୀମା ଭିତରେ ରହି ଦୃଢ଼ତାର ସହ ଆଇନ ଓ ଶୃଙ୍ଖଳାର ଯଥାଯଥ ପ୍ରବର୍ତ୍ତନ କଲେ ପୁଲିସ୍‌ର ଅପ୍ରିୟତା ସମ୍ଭାବନା କମିଯିବ ଏବଂ ପୁଲିସ୍‌ର ଅପରିହାର୍ଯ୍ୟ ଆବଶ୍ୟକତା ଅନୁଭୂତ ହେବ । ଗଣତାନ୍ତ୍ରିକ ଦେଶରେ ସଂସଦୀୟ ରାଜନୀତିରେ ବିଭିନ୍ନ ରାଜନୈତିକଦଳ ଓ ବ୍ୟକ୍ତିବିଶେଷ ଶାସନ କ୍ଷମତାକୁ ଆସିବେ ଓ ଯିବେ । ତେଣୁ ପୁଲିସ୍ ସଂପର୍କରେ ଆମପରି ରାଜନୈତିକ ଓ ପ୍ରଶାସନିକ ବ୍ୟକ୍ତିମାନେ ନିଜର ନିରପେକ୍ଷ ଓ ଶୁଦ୍ଧ ପ୍ରଶାସନିକ ଆଚରଣଦ୍ୱାରା ସୁସ୍ଥ ପରମ୍ପରା ସୃଷ୍ଟିକରି ପୁଲିସ୍‌କୁ କାର୍ଯ୍ୟଦକ୍ଷ ତଥା ନିରପେକ୍ଷ ହେବାରେ ସାହାଯ୍ୟ କରିବା ବିଧେୟ । ମୁଁ ମୋ ନିଜ ଅଭିଜ୍ଞତାରୁ ଯାହା ଜାଣିଛି, ଦଳୀୟ ଶାସନରେ ଦଳପାଇଁ ବା ଦଳର ଲୋକଙ୍କପାଇଁ ସାମୟିକ ସୁବିଧା ହାସଲ କରିବା ଉଦ୍ଦେଶ୍ୟରେ ପୁଲିସ୍‌କୁ ବ୍ୟବହାର କରିବାର ପ୍ରଲୋଭନ ଯଥେଷ୍ଟ ଅଛି । ଅତୀତରେ ଏ ପ୍ରକାର ଅସଙ୍ଗତ ପ୍ରଲୋଭନର ଶିକାର ଆମେ ହୋଇଛୁ, ଏଥିରେ ସନ୍ଦେହ ନାହିଁ । ନିର୍ବାଚନ ସମୟରେ ବେଳେବେଳେ ଏ ପ୍ରଲୋଭନ ସୀମା ଟପିଯାଇଥାଏ ।

## ଗଣତାନ୍ତ୍ରିକ ବା ସାମ୍ୟବାଦୀ ଶାସନରେ ପୁଲିସ୍
## 'ବିନା ମେଘେ ସୃଜି ପାରଇ କୁଳୀଶ'

ଉଭୟ ସଂସଦୀୟ ଗଣତନ୍ତ୍ର ଓ ସମାଜବାଦୀ ଶାସନରେ ପୁଲିସ୍ ସଂଗଠନକୁ ଜନସାଧାରଣଙ୍କର ଏକ ଶ୍ରେଷ୍ଠ ସେବାକାରୀ ଓ ପ୍ରହରୀ ସଂଗଠନ ରୂପେ ଗଢ଼ାଯାଇପାରେ, ଅତ୍ୟାଚାରର ପ୍ରତୀକରୂପେ ନୁହେଁ । ଆମର ଅତୀତର ବିଫଳତା ଆମକୁ ଏ ଲକ୍ଷ୍ୟରୁ ବିଚ୍ୟୁତ କରିବା ଅନୁଚିତ । ରାଜନୈତିକ ନେତୃତ୍ୱର ନିଷ୍ଠାଦ୍ୱାରା ଏହା ସମ୍ଭବ ହୋଇପାରେ । କବିବରଙ୍କ ଭାଷାରେ କେହି କେହି ପୁଲିସ୍ କର୍ମଚାରୀଙ୍କ ପକ୍ଷରେ 'ବିନା ମେଘେ ସୃଜି ପାରଇ କୁଳୀଶ' ଉକ୍ତିଟି ପ୍ରଯୁଜ୍ୟ । ମାତ୍ର ସେମାନଙ୍କର ପ୍ରବୃତ୍ତି ଉଚ୍ଚତମ ପ୍ରଶାସକଙ୍କ ଆୟତ୍ତର ବାହାରେ ନୁହେଁ । ବ୍ୟକ୍ତିଗତ କିମ୍ବା ଦଳୀୟ ରାଜନୈତିକ ସ୍ୱାର୍ଥ

ହାସଲ ଉଦ୍ଦେଶ୍ୟରେ ପୁଲିସ୍‌କୁ ପ୍ରୟୋଗ କଲେ ବିରାଡ଼ିକୁ ହାତକାମୁଡ଼ା ଶିଖାଇବାର ପରିଣତି ଭୋଗିବା ନିଶ୍ଚିତ । ଏହି ଅବସରରେ କେତେକ ଘଟଣାର ବିଶ୍ଳେଷଣ ଶିକ୍ଷାପ୍ରଦ ହେବ ବୋଲି ମନେକରୁଛି ।

୧୯୪୮ ମସିହାରେ କଟକ ଜିଲ୍ଲାର ତିର୍ତ୍ତୋଲ ନିର୍ବାଚନମଣ୍ଡଳୀର ଉପନିର୍ବାଚନ ହେଉଥାଏ । କଂଗ୍ରେସ ପକ୍ଷରୁ ପ୍ରାର୍ଥୀ ଥାଆନ୍ତି ସ୍ୱର୍ଗତ ନାରାୟଣ ବୀରବର ସାମନ୍ତ ଓ ସମାଜବାଦୀଦଳ ପକ୍ଷରୁ ତାଙ୍କୁ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ ସ୍ୱର୍ଗତ ନିଶାମଣି ଖୁଣ୍ଟିଆ । ଶ୍ରୀ ହରେକୃଷ୍ଣ ମହତାବ ରାଜ୍ୟର ମୁଖ୍ୟମନ୍ତ୍ରୀ ଥାଆନ୍ତି । ମୁଁ ବ୍ୟବସ୍ଥାପଭାର ସଭ୍ୟ ଥାଏ । ସେତେବେଳେ ସମଗ୍ର ନିର୍ବାଚନମଣ୍ଡଳୀର ଭୋଟ ଗ୍ରହଣ ଗୋଟିଏ କେନ୍ଦ୍ରରେ ହେଉଥିଲା ଏବଂ ପ୍ରତ୍ୟେକ ପ୍ରାର୍ଥୀଙ୍କପାଇଁ ଭିନ୍ନ ରଙ୍ଗର ଅଲଗା ଅଲଗା ବାକ୍‌ସମାନ ବସୁଥିଲା । କଂଗ୍ରେସ ବାକ୍‌ସର ରଙ୍ଗ ଥିଲା ହଳଦିଆ ଏବଂ ସମାଜବାଦୀଦଳ ବାକ୍‌ସର ରଙ୍ଗ ଥିଲା ଲାଲ । ଉକ୍ତ ନିର୍ବାଚନମଣ୍ଡଳୀଟି ସମାଜବାଦୀଦଳର ଦୁର୍ଗଭଳି ଥିଲା ଓ ନିଶାମଣିବାବୁ ସେଠାକାର ଜଣେ ପ୍ରତିଷ୍ଠିତ ନେତା ଥିଲେ । ଜିତିବାର ସମ୍ଭାବନା ତାଙ୍କର ଅଧିକ ଥିବାର ଶୁଣାଯାଉଥାଏ । କଂଗ୍ରେସ ପକ୍ଷରୁ ନିର୍ବାଚନ ପରିଚାଳନା ଓ ପ୍ରଚାର ଦାୟିତ୍ୱ ଥିଲା ମଦନ ମୋହନ ପଟ୍ଟନାୟକ, ନୀଳମଣି ପ୍ରଧାନ, ସୁରେନ୍ଦ୍ର ନାଥ ପଟ୍ଟନାୟକ, ମାଗୁଣୀ ଚରଣ କାନୁନ୍‌ଗୋ ଓ ମୁରଲୀଧର କାନୁନ୍‌ଗୋ ପ୍ରମୁଖଙ୍କ ଉପରେ ସମସ୍ତେ ସ୍ୱର୍ଗବାସୀ । ମୁଁ, ବୀରେନ୍‌ବାବୁ ଓ ଭୈରବବାବୁ ପ୍ରମୁଖ ମଧ୍ୟ କଂଗ୍ରେସ ପକ୍ଷରୁ ସେଠାରେ କାର୍ଯ୍ୟ କରୁଥିଲୁ । ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ଓ ଶ୍ରୀ ବିଶ୍ୱନାଥ ପଣ୍ଡିତଙ୍କ ନେତୃତ୍ୱରେ ସମାଜବାଦୀ କର୍ମୀମାନେ କାର୍ଯ୍ୟ କରୁଥିଲେ । ରାଜ୍ୟର ବିଭିନ୍ନ ସ୍ଥାନରୁ ସମାଜବାଦୀ କର୍ମୀମାନେ ପ୍ରଚାର କାର୍ଯ୍ୟ ନିମନ୍ତେ ଏକତ୍ରିତ ହୋଇଥିଲେ । ନିର୍ବାଚନ ପ୍ରଚାରରେ ଉଭୟ ପକ୍ଷରୁ ପ୍ରବଳ ଉତ୍ତେଜନା ସୃଷ୍ଟିହେଉଥାଏ । କଂଗ୍ରେସ ନିର୍ବାଚନ ପରିଚାଳନାର ଟିକିନିଖି ଖବର ମହତାବବାବୁ ରଖୁଥିଲେ । ଜଣାଯାଉଥାଏ ଯେପରି ହାରଜିତ୍ ଉଣେଇଶ ବିଶ୍‌ରେ ଥାଏ ।

ସମାଜବାଦୀ କର୍ମୀମାନେ ପ୍ରଚାରରେ ଟିକିଏ ଔଦ୍ଧତ୍ୟ ପ୍ରକାଶ କରୁଥାଆନ୍ତି । କଂଗ୍ରେସ ସେମାନଙ୍କର ସେହି ଅପ୍ରିୟ ଆଚରଣର ସୁବିଧା ନେବାପାଇଁ ଗୋଟିଏ ଯୋଜନା କରିଥିଲା । ସେ କାଳରେ ସମାଜବାଦୀ କର୍ମୀମାନେ ଲାଲ୍‌ଟୋପି ପିନ୍ଧୁଥାଆନ୍ତି । ପ୍ରାୟ ଶହେଖଣ୍ଡେ ସାଧା ପୋଷାକପିନ୍ଧା ପୁଲିସ୍ କନେଷ୍ଟବଳଙ୍କୁ ମୁଣ୍ଡରେ ନାଲିଟୋପି ପିନ୍ଧାଇଦେଇ ଛଦ୍ମବେଶରେ ନିର୍ବାଚନମଣ୍ଡଳୀରେ ଛାଡ଼ି ଦିଆଯାଇଥିଲା । ସେମାନେ ଗାଁକୁ ଗାଁ ବୁଲି ସମାଜବାଦୀ କର୍ମୀ ବୋଲି ପରିଚୟ ଦେଇ ଅତି ବୀଭତ୍ସଭାବରେ ପ୍ରଚାରକାର୍ଯ୍ୟ କରିଥିଲେ । ମଝିରେ ମଝିରେ ଲୋକମାନଙ୍କୁ ଧମକ ମଧ୍ୟ ଦେଉଥାଆନ୍ତି । ନାନାପ୍ରକାର ଭୟ ଦେଖାଇ କହୁଥାଆନ୍ତି, ନିଶାମଣି ବାବୁଙ୍କୁ ଭୋଟ ନଦେଲେ ତା'ର ପ୍ରତିଶୋଧ ନିଆଯିବ । ଲୋକେ ଭାବିବାକୁ ଲାଗିଲେ ଯେ ଭୋଟ ନ ପାଉଣୁ ତ ଏ ପ୍ରକାର ଧମକ, ଭୋଟ ପାଇଗଲା ପରେ ଆହୁରି କ'ଣ ନହେବ ? ଫଳରେ ଉକ୍ତ ନିର୍ବାଚନରେ ନିଶାମଣିବାବୁ ହାରିଯାଇଥିଲେ; କିନ୍ତୁ ନିର୍ବାଚନରେ ବିଜୟ ଜଣେ ପ୍ରତିଜ୍ଞାବଦ୍ଧ କର୍ମୀ ବା ନେତାଙ୍କ ପକ୍ଷେ ଯେତେ ଜରୁରୀ ହେଲେ ମଧ୍ୟ ଆମର ଏହି ପନ୍ଥା ପୁଲିସ୍ ସଂଗଠନ ତଥା ଦଳୀୟ ନୈତିକତାର ନିଶ୍ଚୟ ପରିପନ୍ଥୀ ଥିଲା ବୋଲି ଅନେକ ସମୟରେ ମୋର ବିବେକକୁ ଦଂଶନ କରିଥାଏ ।

## ପୁଲିସ୍‌ର ହାତକଡ଼ି ଓ ନବବାବୁ

ଓଡ଼ିଶାର ରାଜନୀତିରେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କର ଗଣତାନ୍ତ୍ରିକ ତଥା ସମାଜବାଦୀ ମୂଲ୍ୟବୋଧ ଓ ଭୂମିକା ଅଦ୍ୱିତୀୟ । ଏ ସଂକ୍ରାନ୍ତରେ ଗୋଟିଏ ଉଲ୍ଲେଖନୀୟ ଘଟଣା ମୋର ମନେପଡୁଛି । ଘଟଣାଟି ଉପୁଜିଥିଲା ଉଲ୍ଲିଖିତ ରାଜନୈତିକ ନେତା ନିଶାମଣିବାବୁଙ୍କୁ ଗିରଫ୍‌କରି ପୁଲିସ୍ ହାତ୍‌କଡ଼ି ପକାଇବା ପ୍ରସଙ୍ଗରୁ । ହାତକଡ଼ି ପିନ୍ଧିବା କିଛି ନୂଆ କଥା ନୁହେଁ । ଆମ ଦେଶ

ଯେତେବେଳେ ପରାଧୀନ ଥିଲା, ହାତକଡ଼ି ପିନ୍ଧିବା ବହୁତ ଲୋକଙ୍କ କପାଳରେ ଜୁଟିଥିଲା । ୧୯୪୦ ମସିହାରେ ଛାତ୍ର ଆନ୍ଦୋଳନରେ ଛାତ୍ରନେତା ହିସାବରେ ଗିରଫ ହୋଇ ଗୋଟିଏ ରାତି ମୋତେ କଟକ ସହରର ଲାଲବାଗ ଥାନା ହାଜତରେ ରହିବାକୁ ପଡ଼ିଥିଲା । ରାତିରେ ଭାରି ଜୋର୍‌ରେ ପରିସ୍ରା ଲାଗିଲା । ରାତି ଡିଉଟିରେ ଥିଲେ ସାମୁଏଲ୍‌ବାବୁ ନାମକ ଜଣେ ପୁଲିସ୍ ଅଫିସର, ଆଉ କେତେଜଣ କନେଷ୍ଟବଳ ମଧ୍ୟ ଥିଲେ । ମୁଁ ପରିସ୍ରା କରିଯିବାକୁ ଚାହିଁବାରୁ ପୁଲିସ୍ ଅଫିସର୍ ଜଣକ କହିଲେ ଯେ ଗୋଡ଼କଡ଼ି ଦିଆନଯାଇ ବାହାରକୁ ଅଣାଯିବନାହିଁ । ମୁଁ ତାହାର ପ୍ରତିବାଦ କରିଥିଲି । ମୋ ପ୍ରତିବାଦରେ ସେ ଆହୁରି ବିରକ୍ତ ହୋଇ କହିଲେ ଘରେ ପରିସ୍ରା କର । ମାତ୍ର ମୁଁ ଘରଭିତରେ ପରିସ୍ରା କରିବାକୁ ମନାକଲି । ପରିଶେଷରେ ମୋ ଗୋଡ଼ରେ କଡ଼ି ପଡ଼ିଲା ଏବଂ ମୁଁ ସେଇ ଗୋଡ଼ କଡ଼ିକୁ ଘୋଷାରି ଘୋଷାରି ବାହାରକୁ ପରିସ୍ରା କରିବାକୁ ଯାଇଥିଲି । ୧୯୪୨ ଅଗଷ୍ଟ ଆନ୍ଦୋଳନରେ ଗିରଫ ହୋଇ ମୁଁ ଯେତେବେଳେ ଭଦ୍ରକ ଜେଲ୍‌ରୁ ବାଲେଶ୍ୱର ଜେଲ୍‌କୁ ସ୍ଥାନାନ୍ତରିତ ହୋଇଥିଲି, ସେତେବେଳେ ମୋତେ ହାତକଡ଼ି ପକାଇ ନିଆଯାଇଥିଲା ।

ଏଠାରେ ମୁଁ ଯେଉଁ ଘଟଣା ସମ୍ବନ୍ଧରେ କହିବାକୁ ଯାଉଛି ତାହା ଘଟିଥିଲା ୧୯୫୫ ମସିହାରେ, ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରିମଣ୍ଡଳ ସମୟରେ । ମୁଁ ସେହି ସମୟରେ ଥାଏ ସ୍ୱରାଷ୍ଟ୍ର ବିଭାଗର ଉପମନ୍ତ୍ରୀ । କଟକ ଜିଲ୍ଲାର ତିର୍ତ୍ତୋଲ ଥାନାରେ ସମାଜବାଦୀ ନେତା ତତ୍‌କାଳୀନ ବିଧାନସଭା ସଦସ୍ୟ ସ୍ୱର୍ଗତ ନିଶାମଣି ଖୁଣ୍ଟିଆ ଗିରଫ ହୋଇଥିଲେ । ସମାଜବାଦୀଦଳର କର୍ମୀମାନେ ଥାନା ଅଫିସର୍‌ଙ୍କ ନାମରେ ନାନା ଅଭିଯୋଗ ଆଣି ତାଙ୍କର କୁତ୍ସାରଟନା କରୁଥିଲେ ବୋଲି ସେ ଅଫିସର୍‌ଙ୍କର ସେମାନଙ୍କ ଉପରେ ରାଗଥିବା କଥା ପରେ ଜଣାପଡ଼ିଥିଲା । ଅଫିସର୍ ଜଣକ ସମାଜବାଦୀ କର୍ମୀମାନଙ୍କ ବିରୁଦ୍ଧରେ ଥିବାରୁ କଂଗ୍ରେସ ମହଲରେ ତାଙ୍କର ଆଦର ଥିଲା । ନିଶାମଣିବାବୁଙ୍କୁ ଗିରଫ କରାଗଲା ପରେ ତାଙ୍କୁ ଥାନା ହାଜତରେ ରଖାଯାଇଥିଲା । କଟକ କୋର୍ଟରେ ହାଜର କରିବାପାଇଁ ପଠାଇବା ବେଳକୁ ତାଙ୍କୁ ହାତକଡ଼ି ଦେଇ ପଠାଯାଇଥିଲା । ହାତକଡ଼ି ଦିଆଯାଇଥିବା କଥାଟି ସମ୍ବାଦପତ୍ରରେ ପ୍ରକାଶପାଇଥିଲା । ସେ ସମ୍ବାଦ ପଢ଼ିଲା ପରେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଚୌଧୁରୀ ଭୀଷଣ ବିରକ୍ତି ପ୍ରକାଶ କରିଥିଲେ । ନିଶାମଣିବାବୁଙ୍କୁ ହାତକଡ଼ି ଦିଆଯାଇଥିବା ଘଟଣା ଉପରେ ୧୯୫୫ ମସିହା ଫେବୃୟାରୀ ମାସ ଉଣେଇଶ ତାରିଖରେ ବିଧାନସଭାରେ ମୁଲତବି ପ୍ରସ୍ତାବ ଆସିଥିଲା । ବିଧାନସଭାରେ ଜବାବ ଦେବାକୁ ହେବ । ଆମ କଂଗ୍ରେସଦଳ ଲୋକେ ଥାନା ଅଫିସର୍‌ଙ୍କର ହାତକଡ଼ି ଦେବା କାର୍ଯ୍ୟଟିକୁ ସମର୍ଥନ କରୁଥାଆନ୍ତି, ସେମାନେ ବରଂ ମୁଖ୍ୟମନ୍ତ୍ରୀ ବିରକ୍ତ ହେବା କଥାଟାକୁ ପସନ୍ଦ କରୁନଥିଲେ । ବିଧାନସଭାରେ ସରକାରଙ୍କ ପକ୍ଷରୁ ବିବୃତି ଦେବାପାଇଁ ମୁଁ ପ୍ରସ୍ତୁତ ହେଉଥାଏ, ମୁଖ୍ୟମନ୍ତ୍ରୀ ମୋତେ ଡକାଇପଠାଇଲେ । ଯେତେବେଳେ ମୁଖ୍ୟମନ୍ତ୍ରୀ ଭୁବନେଶ୍ୱରର ଏକ ନମ୍ବର ଇଉନିଟ୍‌ରେ ଗୋଟିଏ ଛୋଟିଆ ଘରେ ରହୁଥାଆନ୍ତି । ସେଇ ଘର ଆଗରେ ଥିବା ଏକ ଛୋଟିଆ ଦୁଇବଖୁରିଆ କ୍ୱାର୍ଟରକୁ ତାଙ୍କ ଅଫିସ ଗୃହରୂପେ ବ୍ୟବହାର କରୁଥାଆନ୍ତି । ନିଶାମଣିବାବୁଙ୍କ ଗିରଫଦାରୀ ସଂକ୍ରାନ୍ତୀୟ ସମସ୍ତ କାଗଜପତ୍ର ଧରି ମୁଁ ତାଙ୍କ ସେହି ଅଫିସ୍‌ରେ ଦେଖାକରି ଯେତେବେଳେ ଫାଇଲ୍‌ଟିକୁ ଦେଲି ସେ କାଗଜପତ୍ର ନଦେଖି ମୋତେ କହିଲେ– ନିଶାମଣିବାବୁଙ୍କ ପରି ଜଣେ ପ୍ରତିଷ୍ଠିତ ସମାଜବାଦୀ ନେତାଙ୍କୁ ହାତକଡ଼ି ଦେଇ କଟକ ଆଣିବାଟା ଅତ୍ୟନ୍ତ ଅନ୍ୟାୟ ହୋଇଛି, ତେଣୁ ସେ ମୁଖ୍ୟମନ୍ତ୍ରୀ ହିସାବରେ ସେହି ଅନ୍ୟାୟପାଇଁ ଦାୟୀ ବୋଲି ସ୍ୱୀକାର କରି ବିଧାନସଭାରେ ଦୁଃଖପ୍ରକାଶ କରିବେ । ତାଙ୍କର ସେ ପ୍ରକାର କଥାରେ ମୁଁ ତୀବ୍ର ପ୍ରତିବାଦ କରି କହିଥିଲି ଯେ ମୁଖ୍ୟମନ୍ତ୍ରୀ ଏ ବିଷୟରେ ଦୁଃଖ ପ୍ରକାଶ କରିବା ଏକ ଅନୁଚିତ କାର୍ଯ୍ୟ ହେବ । କାରଣ ସରକାରୀ ସୂତ୍ରରୁ ମୋତେ ଯେଉଁ ତଥ୍ୟ ଯୋଗାଇ ଦିଆଯାଇଥିଲା, ସେଥିରୁ ଜଣାପଡୁଥିଲା ଯେ ନିଶାମଣିବାବୁ ଗିରଫ ହୋଇ ଥାନାରେ ଥିଲାବେଳେ ସମାଜବାଦୀ କର୍ମୀମାନେ ଥାନା ଘେରାଉକରି ଟେକା ପଥର

ପିନ୍ଧିଥିଲେ । କଟକ ନେବା ବାଟରେ ତାଙ୍କୁ ପୁଲିସ୍ ହାତରୁ ଛଡ଼ାଇନିଆଯିବାର ଯୁକ୍ତିଯୁକ୍ତ ଆଶଙ୍କା ଥିଲା ବୋଲି ରିପୋର୍ଟରେ ଯେଉଁ କଥା ଲେଖାଥିଲା ମୁଁ ତାହା ମୁଖ୍ୟମନ୍ତ୍ରୀଙ୍କୁ କହିଥିଲି । ପୁଲିସ୍ ମ୍ୟାନୁଏଲ୍ ପ୍ରତି ମୁଖ୍ୟମନ୍ତ୍ରୀଙ୍କର ଦୃଷ୍ଟି ଆକର୍ଷଣ କରି କହିଥିଲି ଯେ ବନ୍ଦୀକୁ 'ଏସ୍‌କର୍ଟ' କରି ନେଉଥିବା ପୁଲିସ୍‌ଙ୍କର ଯଦି ବନ୍ଦୀ ଖସିପଳାଇବାର ଆଶଙ୍କା ହୁଏ ତା'ହେଲେ ବନ୍ଦୀକୁ ହାତକଡ଼ି ଦିଆଯାଇପାରିବ । ପୁଲିସ୍ ହାତରୁ ବନ୍ଦୀ ଖସିଗଲେ ସେଥିପାଇଁ ପୁଲିସ୍ ଦାୟୀ । ଘରୋଇ ବିଭାଗର ସମସ୍ତ ବିଷୟରେ ବ୍ୟବସ୍ଥାସଭାରେ ମୁଁ ଉତ୍ତର ଦେଉଥାଏ, ତେଣୁ ଏ ବିଷୟରେ ଯାହା କୁହାଯିବା କଥା ତାହା ମୁଁ କହିବା ଉଚିତ ବୋଲି ମତ ବ୍ୟକ୍ତ କରିଥିଲି । ମୁଖ୍ୟମନ୍ତ୍ରୀ ହିସାବରେ ସମସ୍ତ ଦାୟିତ୍ୱ ତାଙ୍କର ଏବଂ ବ୍ୟବସ୍ଥାସଭାରେ ତାଙ୍କ ସରକାରର ଯେକୌଣସି ବିଷୟରେ ଶେଷକଥା କେବଳ ସେ ଯେ କହିପାରିବେ ଏଥିରେ ମୋର କୌଣସି ସନ୍ଦେହ ନ ଥିଲା । ତଥାପି ତାଙ୍କ ଓ ମୋ ଭିତରେ ଏ ସମ୍ବନ୍ଧରେ ଦୁଇଚାରିପଦ ଟାଣ ଟାଣ କଥା ବିନିମୟ ହୋଇଥିଲା । ତା'ପରେ ସ୍ଥିର ହେଲା ଯେ ମୁଖ୍ୟମନ୍ତ୍ରୀ ବିଧାନସଭାରେ ମୁଲତବୀ ପ୍ରସ୍ତାବ ଉପରେ ଜବାବ ଦେବାବେଳେ ସମସ୍ତ ବିଷୟଟିକୁ ବୁଝାଇ କହିବେ । ମୁଖ୍ୟମନ୍ତ୍ରୀ ୧୯୫୫ ମସିହା ଫେବୃୟାରୀ ବାଇଶ ତାରିଖରେ ବିଧାନସଭାରେ ନିଶାମଣିବାବୁଙ୍କୁ ପୁଲିସ୍ ଗିରଫ କରିବା କାର୍ଯ୍ୟଟି ଏକାବେଳକେ ଆଇନସମ୍ମତ ବୋଲି କହିଥିଲେ ଏବଂ ଗିରଫଦାରୀରେ ବିଳମ୍ବ ହେତୁ ପୁଲିସ୍ ଉପରେ ମାଜିଷ୍ଟ୍ରେଟ୍ କିପରି ଦୋଷାରୋପ କରିଥିଲେ ସେ କଥା ମଧ୍ୟ କହିଥିଲେ । ତା'ପରେ ନବବାବୁ ଅତି ଭାବପ୍ରବଣତାର ବଶବର୍ତ୍ତୀ ହୋଇ କହିଥିଲେ, ''ଆଉ ଗୋଟିଏ ପ୍ରଶ୍ନ ହେଉଛି ତାଙ୍କୁ hand-cuff (ହାତକଡ଼ି) ଦିଆଯାଇଥିଲା । ସେ ବିଷୟରେ ଆମମାନଙ୍କର ଯାହା ନିୟମ ଅଛି ଏବଂ ପୁଲିସ୍ କୋର୍ଡ଼ରେ ଯେଉଁ ନିୟମ ଅଛି ମୁଁ ତାହା ଦେଖିଛି । ସେଥିରେ ଉଲ୍ଲେଖ ଅଛି, accused (ଆସାମୀ)କୁ arrest (ଗିରଫ) କଲା ପରେ ତାଙ୍କୁ ଆଣିବାପାଇଁ ପୁଲିସ୍‌କୁ କ୍ଷମତା ଦିଆଯାଇଛି । ବିଶେଷ ଅବସ୍ଥାରେ hand-cuff (ହାତକଡ଼ି) ଦେବାପାଇଁ ନିର୍ଦ୍ଦେଶ ରହିଛି; କିନ୍ତୁ ଏ case (ଘଟଣା)ରେ ଆମେମାନେ ଯାହା ଦେଖୁଛୁ hand-cuff (ହାତକଡ଼ି) ଦେବାପାଇଁ ପୁଲିସ୍ କର୍ମଚାରୀଙ୍କର ବିଶେଷ justification (ଯୁକ୍ତିଯୁକ୍ତ କାରଣ) ନ ଥିଲା । ଜଣେ କର୍ମଚାରୀ ଯେତେବେଳେ ଏ କାର୍ଯ୍ୟ କରିଛନ୍ତି, ସରକାର ହିସାବରେ ମୁଁ ତା'ର ପୂରା ଦାୟିତ୍ୱ ନେଉଛି ଏବଂ ସେଥିପାଇଁ ଦୁଃଖିତ ଯେ ପୁଲିସ୍ ଏପରି ଗୋଟିଏ ଘଟଣାରେ ତାଙ୍କର ଯେଉଁ କ୍ଷମତା ଥିଲା ତା'ର ସେ ଅପବ୍ୟବହାର କରିଛନ୍ତି । ଯେଉଁ ଅବସ୍ଥାରେ ହାତକଡ଼ି ଦିଆଗଲା ମୋର ବିଶ୍ୱାସ ସେପରି ଅବସ୍ଥା ଉପୁଜିନଥିଲା ।'' ତାଙ୍କର ଏ ପ୍ରକାର କଥା ଶୁଣି କଂଗ୍ରେସ ଦଳର ସଭ୍ୟମାନଙ୍କ ମନରେ ଘୋର ଅସନ୍ତୋଷ ଦେଖାଯାଇଥିଲା । ଅନ୍ୟ ପକ୍ଷରେ ସମାଜବାଦୀଦଳର ସଭ୍ୟମାନେ ମୁଖ୍ୟମନ୍ତ୍ରୀଙ୍କ କଥାରେ ମଧ୍ୟ ସନ୍ତୁଷ୍ଟ ହୋଇନଥିଲେ । ଏହାର ଅଳ୍ପଦିନ ପରେ ଯେତେବେଳେ ବିଧାନସଭାରେ ପୁଲିସ୍ ବଜେଟ୍ ଆଲୋଚନା କରାଯାଏ, ସେତେବେଳେ ସମାଜବାଦୀଦଳର ସଭ୍ୟମାନେ ପୁଣି ସେହି ଗିରଫଦାରୀ ଓ ହାତକଡ଼ି କଥା ଉଠାଇ ସଂପୃକ୍ତ ପୁଲିସ୍ ଅଫିସରଙ୍କ ବିରୁଦ୍ଧରେ ତୁରନ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ଦାବିକରିଥିଲେ । କଥାରେ ଅଛି 'ଅତି ଲେମ୍ବୁ ଚିପୁଡ଼ିଲେ ପିତା' । ଏହିଠାରେ ମୋତେ ଗୋଟିଏ ସୁଯୋଗ ମିଳିଥିଲା ଠିକଣା ଜବାବ ଦେବାପାଇଁ । ମୁଖ୍ୟମନ୍ତ୍ରୀଙ୍କର ପୂର୍ବ ଉକ୍ତି ହେତୁ ଯେଉଁ ପ୍ରତିକ୍ରିୟା ସୃଷ୍ଟିହୋଇଥିଲା ତାକୁ ଯେପରି ଖଣ୍ଡନ କରାଯିବ, ସେହିପରି ଭାବରେ ମୁଁ ବିଧାନସଭାରେ ଏହି ଆଲୋଚନାର ଉତ୍ତର ଦେବାପାଇଁ ଆମ ଦଳର ଅନେକ ସଭ୍ୟ ଆସି ମୋତେ ପରାମର୍ଶ ଦେଇଥିଲେ । ଗିରଫଦାରୀଟି ନ୍ୟାୟସଙ୍ଗତ ବୋଲି କହିବା ସଙ୍ଗେ ସଙ୍ଗେ କେଉଁ ଅବସ୍ଥାରେ ହାତକଡ଼ି ଦିଆଯାଇଥିଲା ତାହା ମୁଁ ବୁଝାଇଥିଲି । ସମାଜବାଦୀଦଳର କର୍ମୀମାନେ ଯେଉଁ ଅନ୍ୟାୟ ଆଚରଣ ଦେଖାଇ ନିଶାମଣିବାବୁଙ୍କୁ ପୁଲିସ୍ ହାତରୁ ଛଡ଼ାଇନେବାର ଆଶଙ୍କା ତଥା ପରିସ୍ଥିତି ସୃଷ୍ଟିକରିଥିଲେ ସେ କଥା ମୁଁ ବର୍ଣ୍ଣନା କରିଥିଲି । ମୁଖ୍ୟମନ୍ତ୍ରୀ ବିଧାନସଭାରେ

ରାଜନୈତିକ ସୌଜନ୍ୟ ପ୍ରକାଶ କଲା ପରେ ତାଙ୍କ ନାମ ବ୍ୟବହାର କରି ସାମ୍ୟବାଦୀମାନେ କିପରି ଅଫିସରମାନଙ୍କୁ ଧମକାଇ କାର୍ଯ୍ୟ ହାସଲ କରୁଥିଲେ ସେ କଥା ମଧ କହିଥିଲି । ଉକ୍ତ ଘଟଣାରେ ମୁଖ୍ୟମନ୍ତ୍ରୀ ଦୁଃଖିତ ବୋଲି କେତେକ ସଂବାଦପତ୍ରରେ ପ୍ରକାଶ ପାଇସାରିଥିଲା । ବିଧାନସଭାରେ ଉତ୍ତର ପ୍ରସଙ୍ଗରେ ଜଣେ ସଭ୍ୟ ସେଇ ସମ୍ବାଦଟି ପ୍ରତି ମୋର ଦୃଷ୍ଟି ଆକର୍ଷଣ କରିଥିଲେ । ତାହା ମୁଖ୍ୟମନ୍ତ୍ରୀଙ୍କର ମହାନୁଭବତା; ମାତ୍ର ଏ କ୍ଷେତ୍ରରେ ସେଇଟି misplaced magnanimity (ଅପାତ୍ରରେ ଦାନ) ବୋଲି ମୁଁ ଉତ୍ତର ଦେଇଥିଲି । କଂଗ୍ରେସ ସଭ୍ୟମାନେ ମୋ କଥାଟାକୁ ବେଶ୍ ସମର୍ଥନ କରିଥିଲେ । ଏହାପରେ ସମାଜବାଦୀଦଳର କର୍ମୀମାନେ ଯେଉଁସବୁ ଅଞ୍ଚଳରେ ଅଶାନ୍ତି ସୃଷ୍ଟିକରୁଥିଲେ, ସେଠାକୁ ତିର୍ତ୍ତୋଲ ଥାନାର ସେହି ଅଫିସରଙ୍କୁ ପଠାଇବାକୁ ଆମ ଦଳରେ ଦାବି ହେଉଥିଲା । ମୁଁ ସେତେବେଳେ ଥିଲି ଯୁବକ ଏବଂ ଦଳୀୟ ସ୍ୱାର୍ଥରେ ପରିଚାଳିତ ହୋଇ ବୁଝିପାରିନଥିଲି ଆଦର୍ଶ ସଂସଦୀୟ ପ୍ରଶାସନ କ୍ଷେତ୍ରରେ ନୀତି ଅନୀତି, ନ୍ୟାୟ ଅନ୍ୟାୟର ସୂକ୍ଷ୍ମ ପାର୍ଥକ୍ୟ । ନିଶାମଣିବାବୁ ଅନ୍ୟ ଦଳର ବ୍ୟକ୍ତି ହୋଇଥିବାରୁ ତାଙ୍କ ପ୍ରତି ପୁଲିସ୍ ଯେପରି ବ୍ୟବହାର କଲା ସେଇଟି ଆମମାନଙ୍କୁ ସୁହାଇଥିଲା । ପୁଲିସ୍‌ବାଲାଙ୍କର ମଧ ଧାରଣା ଥିଲା ଯେ ବିରୁଦ୍ଧ ଦଳର ଲୋକଙ୍କ ପ୍ରତି ପୁଲିସ୍ କେଉଁଠି କିଛି ଅନ୍ୟାୟ ଆଚରଣ ଦେଖାଇଲେ କଂଗ୍ରେସ ସରକାର ସେଥିପ୍ରତି ଆଖି ବୁଜିଦେବେ ।

ମୁଁ ଆଜି ହୃଦୟଙ୍ଗମ କରୁଛି, କେଡ଼େ ମହାନ୍, ଉଦାର ତଥା ଗଣତନ୍ତ୍ରବାଦୀ ଥିଲେ ସେ ସମୟର ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ । ଗଣତନ୍ତ୍ର ଓ ସଂସଦୀୟ ରାଜନୀତିରେ ସରକାରର ସ୍ୱାର୍ଥ ଓ ଦଳୀୟ ସ୍ୱାର୍ଥ ଭିତରେ ପାର୍ଥକ୍ୟ କ'ଣ ସେ କଥା ଶ୍ରୀ ଚୌଧୁରୀ ଯେପରି ଭାବରେ ବୁଝିଥିଲେ ଏବଂ ନିଜ ଦଳ ଭିତରେ ଅପ୍ରିୟ ହେଲେ ମଧ ଶାସନକୁ ଦୁର୍ନୀତିମୁକ୍ତ କରି ସମାଜବାଦୀ ଗଣତାନ୍ତ୍ରିକ ନୀତି ଓ ଆଦର୍ଶରେ ପରିଚାଳିତ କରିବାପାଇଁ ତାଙ୍କର ଯେଉଁ ପ୍ରକାର ଆଗ୍ରହ ଥିଲା, ଅନ୍ୟ କୌଣସି ମୁଖ୍ୟମନ୍ତ୍ରୀଙ୍କ ପାଖରେ ମୁଁ ତାହା ଲକ୍ଷ୍ୟ କରିପାରିନାହିଁ । ଏଭଳି ହୃଦୟବାନ୍ ମହାନ୍ ବ୍ୟକ୍ତି ଯଦି ଅଧିକ ଦିନ ଓଡ଼ିଶାର ଶାସନ ସହିତ ଜଡ଼ିତ ଥାଆନ୍ତେ, ତା'ହେଲେ ହୁଏତ କେତେକ ଉଚ୍ଚ ମାନର ସୁସ୍ଥ ଗଣତାନ୍ତ୍ରିକ ପରମ୍ପରା ସୃଷ୍ଟି ହୋଇପାରିଥାଆନ୍ତା; ମାତ୍ର ଆମେମାନେ ତାହା ସମ୍ଭବ କରାଇ ଦେଲୁନାହିଁ । ମୁଁ ଥିଲି ତାଙ୍କ ମନ୍ତ୍ରିମଣ୍ଡଳରେ ଏକମାତ୍ର ସଭ୍ୟ, ଯିଏ କି ପ୍ରକାଶ୍ୟରେ ଚାହୁଁଥିଲା ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କୁ ବିଦାକରାଯାଉ ଏବଂ ବମ୍ବେର ରାଜ୍ୟପାଳ ଶ୍ରୀ ହରେକୃଷ୍ଣ ମହତାବ ଆସି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୁଅନ୍ତୁ । ପରିଶେଷରେ ଶ୍ରୀ ଚୌଧୁରୀ ଇସ୍ତଫା ଦେଇ ଗଲେ ଏବଂ ଶ୍ରୀ ମହତାବ ଆସିଲେ; କିନ୍ତୁ କଂଗ୍ରେସର କିଛି ଲାଭ ହେଲାନାହିଁ । ବରଂ ସମାଜବାଦୀ ଗଣତାନ୍ତ୍ରିକ ମୋଡ଼ ଉପରେ ଆଗେଇ ଯାଉଥିବା ଏକ ଶାସକଦଳ ପୁନର୍ବାର ଫେରିଆସିଥିଲା ରକ୍ଷଣଶୀଳ ତଥା ଦଳୀୟ ସ୍ୱାର୍ଥ ଜଡ଼ିତ ଆଉ ଏକ ପଙ୍କିଳ ରାଜନୈତିକ ପରିବେଶକୁ ।

## ପ୍ରସଙ୍ଗକ୍ରମେ ମୋର ଲୁହ ଏବଂ ମୋର ଏକ ସ୍ମୃତି

ଶ୍ରୀ ଚୌଧୁରୀ ଯିବା ପରେ ଶ୍ରୀ ମହତାବଙ୍କ ନେତୃତ୍ୱରେ ୧୯୫୭ ମସିହାରେ ଯେଉଁ ନିର୍ବାଚନ ହେଲା ସେଥିରେ ବିଧାନସଭାର ମୋଟ ୧୪୦ଟି ସ୍ଥାନରୁ କଂଗ୍ରେସ ମାତ୍ର ୫୬ଟି ସ୍ଥାନ ଅଧିକାର କରିଥିଲା । ତଥାପି ମନ୍ତ୍ରିମଣ୍ଡଳ ଗଠନ କରିଥିଲେ ଶ୍ରୀ ମହତାବ । ମୁଁ ଉକ୍ତ ମନ୍ତ୍ରିମଣ୍ଡଳରେ ଜଣେ ସଭ୍ୟ ଥିଲି । ଏକ ସଂଖ୍ୟାଲଘୁ ସରକାରକୁ ରକ୍ଷାକରିବାପାଇଁ ସୁସ୍ଥ ଗଣତାନ୍ତ୍ରିକ ପଦ୍ଧତିର ଅପମୃତ୍ୟୁ ସକାଶେ ସବୁ ପ୍ରକାରର ଆବଶ୍ୟକୀୟ ପନ୍ଥା ଆରମ୍ଭ ହୋଇଯାଇଥିଲା । ମନେଅଛି, ଏଥିପୂର୍ବରୁ ଗୋଟିଏ ଉପନିର୍ବାଚନ କଥା । ସେଥିପାଇଁ ବହୁତ ଖର୍ଚ୍ଚ ଦରକାର ପଡ଼ିଥିଲା । କେନ୍ଦୁଝରର ଜଣେ ଖଣିମାଲିକ ମହମ୍ମଦ ସିରାଜୁଦ୍ଦିନଙ୍କର ଖଣିପଟା ସଂକ୍ରାନ୍ତୀୟ ଏକ ଫାଇଲ ସରକାରଙ୍କ ପାଖରେ ବିଚାରାଧୀନ ଅବସ୍ଥାରେ ରହିଥାଏ । ମୁଖ୍ୟମନ୍ତ୍ରୀ ଶ୍ରୀ ଚୌଧୁରୀଙ୍କୁ ମୁଁ ସେତେବେଳେ କହିଥିଲି ଯେ

ସେହି ଫାଇଲ୍‌ଟିରେ ଅନୁକୂଳ ଆଦେଶ ଦେଲେ କିଛି ଟଙ୍କା ମିଳିଯିବ ଏବଂ ଉକ୍ତ ଟଙ୍କା ନିର୍ବାଚନ ଖର୍ଚ୍ଚରେ ଲାଗିବ । ସେ ମୋତେ ସଫା କହିଦେଇଥିଲେ ଯେ ସେତେବେଳେ ସେ ଉକ୍ତ ଫାଇଲ୍‌ଟିରେ କୌଣସି ଆଦେଶ ଦେବେନାହିଁ । ଶେଷରେ ତାଙ୍କରି କଥା ରହିଥିଲା । ମହତ୍ ଉଦ୍ଦେଶ୍ୟ ତଥା ମହତ୍ ଲକ୍ଷ୍ୟର ପଥ ଅସାଧୁ କିମ୍ବା ସ୍ୱାର୍ଥଜଡ଼ିତ ହୋଇନପାରେ, ତାହାହିଁ ଥିଲା ତାଙ୍କର ମତ ।

ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କୁ ଅପସାରଣ କରି ତାଙ୍କ ସ୍ଥାନରେ ଶ୍ରୀ ହରେକୃଷ୍ଣ ମହତାବଙ୍କୁ ବସାଇବା ପାଇଁ ମୁଁ, ବିଜୁପଟ୍ଟନାୟକ, ବୀରେନ୍ ମିତ୍ର, ଦୀନବନ୍ଧୁ ସାହୁ ପ୍ରମୁଖ ଯେପରି ଭାବରେ ଲାଗିଥିଲୁ ସେହିପରି ଭାବରେ ନବବାବୁ ମୁଖ୍ୟମନ୍ତ୍ରୀ ହୋଇ ରହିବା ସପକ୍ଷରେ ଭୈରବଚନ୍ଦ୍ର ମହାନ୍ତି, ସୁରେନ୍ଦ୍ର ପଟ୍ଟନାୟକ, ନୀଳାମ୍ବର ଦାସ ପ୍ରମୁଖ ଉଦ୍ୟମ ଅବ୍ୟାହତ ରଖିଥାଆନ୍ତି । ଇସ୍ତଫା ଦେଇ ଯିବା ପୂର୍ବରୁ ନବବାବୁ କହିଥିଲେ, ନିଜ ନିଜ ଗୋଷ୍ଠୀର ସ୍ୱାର୍ଥପାଇଁ ଦଳେ ତାଙ୍କୁ ତଡ଼ିବାପାଇଁ ଚାହୁଁଛନ୍ତି ଏବଂ ଆଉ ଦଳେ ମୁଖ୍ୟମନ୍ତ୍ରୀ ଭାବରେ ତାଙ୍କୁ ରହିବାକୁ ଚାହୁଁଛନ୍ତି, ଅତଏବ କାହାରି ସ୍ୱାର୍ଥ ସାଧନରେ ସେ ସହାୟକ ହୋଇପାରିବେ ନାହିଁ ବୋଲି ଚିନ୍ତାକରି ଇସ୍ତଫା ଦେବାକୁ ଦୃଢ଼ସଂକଳ୍ପ କରିଛନ୍ତି । ଇସ୍ତଫା ଦେଇ ସେ ଚାଲିଗଲେ ଭୁବନେଶ୍ୱରରୁ କଟକ ଏବଂ ତା'ପରେ ଅନୁଗୁଳ । ଯିବାବେଳେ ସେ ମୋ ପ୍ରତି ଓ ମୋର ପିଲାମାନଙ୍କ ପ୍ରତି ଯେଉଁ ପ୍ରକାର ସ୍ନେହ ଓ ଉଦାରତା ଦେଖାଇଥିଲେ ତାହା ମୁଁ ଜୀବନରେ କେବେହେଲେ ଭୁଲିପାରିବିନାହିଁ । ତାଙ୍କ ମନ୍ତ୍ରିମଣ୍ଡଳରେ ସଭ୍ୟ ଥାଇ ମୁଁ ପ୍ରକାଶ୍ୟ ଭାବରେ ଉଦ୍ୟମ କରିଥିଲି ତାଙ୍କର ବିଦାୟ ଏବଂ ଶ୍ରୀ ମହତାବଙ୍କର ଆଗମନପାଇଁ । ମୁଁ ସେତେବେଳେ କଟକର କ୍ୟାଣ୍ଟନ୍‌ମେଣ୍ଟ ରୋଡ୍‌ସ୍ଥିତ ଷୋହଳ ନମ୍ବର କୋଠୀରେ ରହୁଥିଲି । ଯେଉଁ ଦିନ ସେ ଇସ୍ତଫା ଦେଇକରି ଗଲେ ଠିକ୍ ତା'ପରେ ଖଣ୍ଡିଏ ସାଇକେଲ୍‌ରେ ଯାଇ ମୋ ବାସଭବନରେ ପହଞ୍ଚିଲେ । ମୁଁ ସେତେବେଳେ ଭୁବନେଶ୍ୱର ଆସିଥାଏ । ସେ ମୋର ସ୍ତ୍ରୀ ନଳିନୀ ସହିତ କଥାବାର୍ତ୍ତା ହୋଇଥିଲେ । ମୋ ଦେହପା' କଥା ପଚାରିଥିଲେ । ମୋ' ପୁଅ ବାବୁଲକୁ କାଖରେ ଧରିଥିଲେ । କିଛି ସମୟ ସେମାନଙ୍କ ସହିତ କଟାଇ ଚାଲିଯାଇଥିଲେ । ମୁଁ ଫେରି ଶୁଣିଥିଲି ସବୁ କଥା । ମୋ ଆଖିରେ ଲୁହ ଆସିଯାଇଥିଲା । ମୁଁ କିଛି ସମୟ ନୀରବରେ ବସିଯାଇଥିଲି । ନବବାବୁଙ୍କର ଉଦାରତା ତଥା ମହାନୁଭବତାରେ ଆମେ ସମସ୍ତେ ସ୍ତମ୍ଭୀଭୂତ ହୋଇଯାଇଥିଲୁ । ସତେ ଯେପରି ମହାନ୍ ଭାରତୀୟ ସଂସ୍କୃତି ତଥା କଂଗ୍ରେସର ଉଜ୍ଜ୍ୱଳ ଆଦର୍ଶ ତଥା ପରମ୍ପରାକୁ ନିଜ ଆଚରଣରେ ସେ ପ୍ରୟୋଗ କରୁଥିଲେ !

ଶ୍ରୀ ଚୌଧୁରୀଙ୍କର ଇସ୍ତଫା ପରେ ୧୯୫୬ ମସିହା ଅକ୍ଟୋବର ମାସରେ ଶ୍ରୀ ମହତାବଙ୍କ ନେତୃତ୍ୱରେ ଏକ ମନ୍ତ୍ରିମଣ୍ଡଳ ଶପଥ ନେଲେ । ପରେ ମୋର ପଦୋନ୍ନତି ହେଲା । ଉପମନ୍ତ୍ରୀ ଥିଲି, ୧୯୫୭ ମସିହାରେ ହୋଇଥିଲି କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀ । ନବବାବୁଙ୍କ ମନ୍ତ୍ରିପରିଷଦରେ ଯେଉଁମାନେ ଥିଲେ ମହତାବଙ୍କ ନେତୃତ୍ୱରେ ୧୯୫୬ ମନ୍ତ୍ରିପରିଷଦରୁ ସେମାନଙ୍କ ମଧ୍ୟରୁ ଭୈରବଚନ୍ଦ୍ର ମହାନ୍ତି, କୃପାସିନ୍ଧୁ ନାୟକ, ତୀର୍ଥବାସୀ ପ୍ରଧାନ ଓ ସୋନାରାମ ସୋରେନ୍ ବହିଷ୍କୃତ ହୋଇଥିଲେ । ନିର୍ବାଚନ ଆଉ ମାତ୍ର ଚାରିମାସ ପରେ ହେବାର ଥାଏ । କାହାରିକୁ ବାଦ୍ ନ ଦେଇ ନବବାବୁଙ୍କ ମନ୍ତ୍ରିପରିଷଦରେ ଥିବା ସମସ୍ତ ସଭ୍ୟଙ୍କୁ ଉକ୍ତ ମନ୍ତ୍ରିମଣ୍ଡଳରେ ନେବାପାଇଁ ମୁଁ ମହତାବ ବାବୁଙ୍କୁ ଅନୁରୋଧ କରିଥିଲି, ମାତ୍ର ମୋ କଥାରେ ସେ ଏକମତ ହୋଇନଥିଲେ । ତା'ପରେ ନିର୍ବାଚନରେ ଲଢ଼ିବାପାଇଁ ସେମାନଙ୍କ ମଧ୍ୟରୁ କେହି କଂଗ୍ରେସ ଟିକେଟ୍ ମଧ୍ୟ ପାଇନଥିଲେ ।

## ବିଚାରପତିଙ୍କ ହାତରେ ପୁଲିସ୍ ଠେଙ୍ଗା

୧୯୫୭ ମସିହାର ଦ୍ୱିତୀୟ ସାଧାରଣ ନିର୍ବାଚନ ଶୋଚନୀୟ ଭାବରେ କଂଗ୍ରେସ ମାତ୍ର ଛପନଟି ସ୍ଥାନ ପାଇ ସଂଖ୍ୟାନ୍ୟୂନ ହୋଇଥିଲେ ମଧ୍ୟ ଶ୍ରୀ ମହତାବଙ୍କ ନେତୃତ୍ୱରେ ସରକାର ଗଢ଼ାଗଲା ଏବଂ

ଉକ୍ତ ସଂଖ୍ୟାଲଘୁ କଂଗ୍ରେସ ଦଳଦ୍ୱାରା ଓଣାଓଟରା ହୋଇ ସରକାର ଚାଲିଲା ୧୯୫୯ ମସିହା ମେ ମାସ ପର୍ଯ୍ୟନ୍ତ । ବିଧାନସଭା ସଦସ୍ୟମାନଙ୍କୁ ଏପଟ ସେପଟ କରିବାପାଇଁ ସେତେବେଳେ ଯେଉଁ ଘୋଡ଼ାବେପାର ଚାଲିଥିଲା ସେଥିରେ ପୁଲିସ୍‌ର ସାହାଯ୍ୟ ନିଆଯାଇ ରାଜନୈତିକ କାର୍ଯ୍ୟକଳାପକୁ ନିୟନ୍ତ୍ରଣ କରାଯାଉଥିଲା । ଫଳରେ କଂଗ୍ରେସଦଳଭୁକ୍ତ ଜଣେ ଉପମନ୍ତ୍ରୀ ଓ ବିରୋଧୀ ଦଳର ଜଣେ ଲୋକସଭା ସଦସ୍ୟ ତଥା ପୂର୍ବତନ ମହାରାଜାଙ୍କ ବିରୁଦ୍ଧରେ ପୁଲିସ୍ କେସ୍ ହୋଇଥିଲା ଏବଂ ସେମାନଙ୍କୁ ଅଚାନକ ଗିରଫ କରି ଭୁବନେଶ୍ୱରରୁ ଖୋର୍ଦ୍ଧା ଜେଲ୍‌କୁ ପଠାଯାଇଥିଲା । ବ୍ୟବସ୍ଥାସଭାରେ ଯେତେବେଳେ ସରକାରୀ ଦଳ ଓ ବିରୋଧୀ ଦଳ ମଧ୍ୟରେ ବଳ କଷାକଷି କରିବାର ଦିନ ଆସେ, ତା' ପୂର୍ବରୁ କେତେକ ସଭ୍ୟଙ୍କୁ ହରଣଚାଳ ମଧ୍ୟ କରାଯାଉଥିଲା । ବିରୋଧୀ ଦଳ ପକ୍ଷରୁ ସେ ବିଷୟରେ ଅଭିଯୋଗ ଅଣାଗଲେ ସେଥିପ୍ରତି କର୍ଣ୍ଣପାତ କରାଯାଉନଥିଲା । ଓଡ଼ିଶା ହାଇକୋର୍ଟର ପୂର୍ବତନ ପ୍ରଧାନ ବିଚାରପତି ସ୍ୱର୍ଗତ ଲିଙ୍ଗରାଜ ପାଣିଗ୍ରାହୀ ୧୯୫୭ ମସିହାରେ କଂଗ୍ରେସ ଦଳରେ ଯୋଗଦେଇ ବ୍ୟବସ୍ଥାସଭାକୁ ନିର୍ବାଚିତ ହୋଇ ଆସିଥିଲେ । ଶ୍ରୀ ମହତାବଙ୍କ ମନ୍ତ୍ରିମଣ୍ଡଳରେ ସେ ସ୍ୱରାଷ୍ଟ୍ରମନ୍ତ୍ରୀ ହୋଇଥିଲେ । ଆଗରୁ ସ୍ୱରାଷ୍ଟ୍ର ବିଭାବ ସମ୍ବନ୍ଧରେ ମୋର କିଛିଟା ଅଭିଜ୍ଞତା ଥିବାରୁ ସେ ବିଭାଗର ମନ୍ତ୍ରୀ ହେବାପାଇଁ ମୋ ନାମ ଉଠିଥିଲା । ମାତ୍ର ପାଣିଗ୍ରାହୀ ମହାଶୟ ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ ହେବାପାଇଁ ପ୍ରବଳ ଇଚ୍ଛା ପ୍ରକାଶ କରିବାରୁ ମୁଁ ଶ୍ରମ ଓ ଯୋଗାଣ ବିଭାଗର ମନ୍ତ୍ରୀ ହୋଇଥିଲି । ଦୀର୍ଘଦିନ ଧରି ବିଚାରପତି ହିସାବରେ ନ୍ୟାୟାଧୀଶର ଶକ୍ତି ପ୍ରୟୋଗ କରିବାର ଅଭ୍ୟାସ ପରେ ପ୍ରଶାସନିକ କ୍ଷେତ୍ରରେ ଶାସନକ୍ଷମତା ପ୍ରୟୋଗର ଲାଳସା ତାଙ୍କର ପ୍ରବଳ ହୋଇଉଠିଥିଲା ଏବଂ ସେ କ୍ଷମତା କିପରି ପ୍ରୟୋଗ କରାଯାଇପାରେ ତାହା ସେ କାର୍ଯ୍ୟରେ ଦେଖାଇଦେଇଥିଲେ । ଜଣେ ଉପମନ୍ତ୍ରୀ, ଜଣେ ପାର୍ଲିଆମେଣ୍ଟ ସଦସ୍ୟ ଥିବା ମହାରାଜା ଓ ବ୍ୟବସ୍ଥାସଭାର ଆଉ କେତେକ ସଦସ୍ୟଙ୍କୁ କିପରି ଗିରଫ କରାଯାଇପାରିବ ତା'ର ଆଇନଗତ ପରାମର୍ଶ ମଧ୍ୟ ଶ୍ରୀ ପାଣିଗ୍ରାହୀ ନିଜେ ପୁଲିସ୍‌କୁ ଦେଇଥିଲେ । ଜଣେ ପୂର୍ବତନ ବିଚାରପତି ହୋଇଥା'ନ୍ତି ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ, ତେଣୁ ପୁଲିସ୍ ଅଫିସର୍‌ମାନେ ତାଙ୍କୁ ଭୟକରୁଥାଆନ୍ତି । ଏହିପରି ଅତି ନଗ୍ନ ଉପାୟରେ ବିରୋଧୀଦଳର ଲୋକଙ୍କ ବିରୁଦ୍ଧରେ ପୁଲିସ୍‌କୁ ବ୍ୟବହାର କରାଯାଉଥିଲା । ଏହି ସମୟରେ ସତ୍ୟସମ୍ବାଦ ପରିବେଷଣ କରୁଥିବାରୁ ପ୍ରବୀଣ ସାମ୍ବାଦିକ ଏନ୍. ଆର୍. ସ୍ୱାମୀଙ୍କ ବିରୁଦ୍ଧରେ ମଧ୍ୟ ତାଙ୍କ ନିଯୁକ୍ତିକାରୀ ଷ୍ଟେଟ୍‌ସମ୍ୟାନ୍ ସମ୍ବାଦପତ୍ର ଓ ପ୍ରେସ୍ ଟ୍ରଷ୍ଟ ଅଫ୍ ଇଣ୍ଡିଆକୁ ସ୍ୱରାଷ୍ଟ୍ର ବିଭାଗର ସ୍ପେସିଆଲ୍ ସେକ୍‌ସନ୍‌ରୁ ଗୋପନ ଅଭିଯୋଗପତ୍ରମାନ ପଠାଯାଇଥିଲା । ପରେ ଅଭିଯୋଗଗୁଡ଼ିକ ମିଥ୍ୟା ପ୍ରମାଣିତ ହେଲା ।

## କଂଗ୍ରେସ ଟଙ୍କା ପୁଲିସ୍ ବାଣ୍ଟିଲେ ?

ଆଉ ଗୋଟିଏ ଘଟଣା । ୧୯୭୨ ମସିହା ନଭେମ୍ବର ମାସରେ ଓଡ଼ିଶାର ତତ୍କାଳୀନ କଂଗ୍ରେସ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ କଟକ ସଦର ନିର୍ବାଚନ ମଣ୍ଡଳୀରୁ ଉପନିର୍ବାଚନରେ ଲଢୁଥା'ନ୍ତି । ତାଙ୍କ ବିରୁଦ୍ଧରେ ପ୍ରାର୍ଥୀ ଥିଲେ ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ବୀରେନ୍ ମିତ୍ର । କଟକ ସହରରେ ବୀରେନ୍‌ବାବୁ ଯେ ଜଣେ ଅତି ଚାଣୁଆ ପ୍ରାର୍ଥୀ ଥିଲେ ଏଥିରେ କୌଣସି ସନ୍ଦେହ ନଥିଲା । ପ୍ରଥମରୁ ମନେହେଉଥିଲା ଯେପରି ବୀରେନ୍‌ବାବୁଙ୍କ ପକ୍ଷରେ ଥିଲା ଜନସମର୍ଥନ ଏବଂ ନନ୍ଦିନୀ ଦେବୀଙ୍କ ପକ୍ଷରେ ଥିଲା ଧନବଳ । କଂଗ୍ରେସ ପ୍ରାର୍ଥୀଙ୍କ ସପକ୍ଷରେ ଅଜସ୍ର ଅର୍ଥ ଖର୍ଚ୍ଚ କରାଯାଉଥାଏ । ତାଙ୍କୁ ଜିଣାଇବାପାଇଁ ଏହି ଉପନିର୍ବାଚନରେ ତିରିଶ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଥିବାର ଅଭିଯୋଗ କଥା ଲୋକନାୟକ ଜୟପ୍ରକାଶ ନାରାୟଣ ଓଡ଼ିଶାରେ ଏକ ସାଧାରଣସଭାରେ ଉଲ୍ଲେଖ କରିଥିଲେ । କଂଗ୍ରେସ ପକ୍ଷରୁ ଟଙ୍କାଦେଇ ଭୋଟ କିଣିନେବା କଥା ଯୋଜନା ହୋଇଥିଲା । ଭୋଟ ଗ୍ରହଣ ତାରିଖର ଦୁଇଦିନ ପୂର୍ବରୁ ଟଙ୍କା ବଣ୍ଟା ଆରମ୍ଭ ହୋଇଯାଇଥିଲା । ଏତେ ପରିମାଣରେ ଟଙ୍କା ବାଣ୍ଟିବା

ମଧ ଏକ ଜଟିଳ ସମସ୍ୟା ହୋଇଥିଲା । ଏଭଳି ଟଙ୍କା ବଣ୍ଟା କାରବାର ବେଳେ କେତେକ ସ୍ଥାନରେ ବୀରେନ୍‌ବାବୁଙ୍କ ସମର୍ଥକମାନେ ଟଙ୍କା ଛଡ଼ାଇନେଇଥିଲେ । ତେଣୁ ଟଙ୍କା ବାଣ୍ଟିବା ସମୟରେ ନିରାପତ୍ତାପାଇଁ ପୁଲିସ୍ ସାହାଯ୍ୟ ଦରକାର ପଡ଼ିବାର ଶୁଣାଯାଇଥିଲା । ଟଙ୍କା ଦେଇ ଭୋଟ କିଣିବାଟା ତ ସହଜେ ଆଇନବିରୁଦ୍ଧ ଓ ଦଣ୍ଡନୀୟ କାର୍ଯ୍ୟ ଏବଂ ସେଭଳି କାର୍ଯ୍ୟରେ କୌଣସିମତେ ଜଡ଼ିତ ହେବାକୁ ପୁଲିସ୍ ଅମଙ୍ଗ ହେବା ସ୍ୱାଭାବିକ । ଜିଲ୍ଲାର ଜଣେ ଉଚ୍ଚପଦସ୍ଥ ପୁଲିସ୍ ଅଫିସର୍ ଏଥିପାଇଁ ସଶସ୍ତ୍ର ପୁଲିସ୍ ବନ୍ଦୋବସ୍ତ କରିବାକୁ ଅନିଚ୍ଛା ପ୍ରକାଶ କରିଥିଲେ । ସଶସ୍ତ୍ର ପୁଲିସ୍‌ଙ୍କ ଆଗରେ ଟଙ୍କା ବଣ୍ଟା ହେବାର ଫଟୋଚିତ୍ର ନେଇ ବିରୋଧୀପକ୍ଷ ଲୋକେ କିମ୍ବା ସମ୍ବାଦପତ୍ରମାନେ ବ୍ୟବହାର କରିପାରନ୍ତି ଏବଂ ପୁଲିସ୍ ତଥା ସରକାରଙ୍କୁ ଅପଦସ୍ଥ କରିପାରନ୍ତି ବୋଲି ସେ ଯୁକ୍ତି ଦର୍ଶାଇଥିଲେ । ରାଜ୍ୟ ପୁଲିସ୍‌ର ତତ୍କାଳୀନ ସର୍ବୋଚ୍ଚ କର୍ତ୍ତୃପକ୍ଷ ମଧ ଏହି ପରାମର୍ଶକୁ ସମର୍ଥନ କରି ସରକାରଙ୍କୁ ଅସନ୍ତୁଷ୍ଟ କରିଥିବାର ସୂଚନା ମିଳିଥିଲା । ଶେଷରେ ମୁଖ୍ୟମନ୍ତ୍ରୀ ଏସବୁ କଥା ଜାଣି ନିଜେ ହସ୍ତକ୍ଷେପ କରିବାରୁ ଉପସ୍ଥିତ ସମସ୍ୟାର ସମାଧାନ ହୋଇଯାଇଥିଲା । କଂଗ୍ରେସ ପକ୍ଷରୁ ସଂପୂର୍ଣ୍ଣ ନିରାପଦ ଭାବରେ ସୁପରିକଳ୍ପିତ ଭୋଟ ସଂଗ୍ରହ କାର୍ଯ୍ୟ ସମାହିତ ହୋଇଥିଲା । ଶ୍ରୀମତୀ ନନ୍ଦିନୀ ଶତପଥୀ ବହୁ ସଂଖ୍ୟାଧିକ ଭୋଟ ପାଇ ଜୟଯୁକ୍ତ ହୋଇଥିଲେ । ପରେ ପରେ କଟକର ଜଣେ ପଦସ୍ଥ ପୁଲିସ୍ ଅଫିସରଙ୍କୁ ଅନ୍ୟତ୍ର ବଦଳି କରାଯାଇନଥିଲେ, ତାଙ୍କ ପ୍ରତି ଉଲ୍ଲିଖିତ କାରଣରୁ ସରକାରୀ ମହଲରେ କ୍ରୋଧ ଜାତ ହୋଇଥିଲା ବୋଲି ଯେଉଁ ଅଭିଯୋଗ ଶୁଣାଯାଇଥିଲା ତାହାର ଅବକାଶ ଘଟିନଥାନ୍ତା ।

## TISSA – ବେସରକାରୀ ଗୁଇନ୍ଦା ସଂସ୍ଥା

ସଂସଦୀୟ ଗଣତନ୍ତ୍ର ଶାସନରେ ରାଜନୈତିକ ନେତୃତ୍ୱର ଆସନ ସବୁଠାରୁ ଊର୍ଦ୍ଧ୍ୱରେ । କିନ୍ତୁ ସ୍ୱାଧୀନ ଭାରତରେ ଏ ଯାବତ୍ ପ୍ରଶାସନିକ ଇତିହାସରୁ ଆମେ ଶିଖିସାରିଲୁଣି ଯେ ପ୍ରଶାସନିକ କ୍ଷେତ୍ରରେ ଅଧିଷ୍ଠିତ ରାଜନୈତିକ ନେତୃତ୍ୱଠାରୁ ପ୍ରଶ୍ରୟ ଅବା ପ୍ରରୋଚନା ପାଇଲେ ଯେତେ ଉଚ୍ଚ ଆସନ ଓ ମର୍ଯ୍ୟାଦା ପାଇଥିଲେ ମଧ ନିଜର ଅଭିଳାଷ ସିଦ୍ଧିପାଇଁ ସରକାରୀ କର୍ମଚାରୀମାନେ ବେଳେବେଳେ ନୀତିଭ୍ରଷ୍ଟ ଓ ପକ୍ଷଭୁକ୍ତ ହୋଇପଡ଼ନ୍ତି । ବ୍ୟକ୍ତିଗତ କାମନା ଚରିତାର୍ଥ କରିବା ଲୋଭରେ ଅନେକ କ୍ଷେତ୍ରରେ ସର୍ବୋଚ୍ଚ ରାଜନୈତିକ ନେତୃତ୍ୱ ମଧ ବେଳେବେଳେ କର୍ମଚାରୀଙ୍କ ପକ୍ଷରୁ ନାନା ପ୍ରଲୋଭନର ବଶବର୍ତ୍ତୀ ହୋଇପଡ଼ନ୍ତି । ଫଳରେ ପ୍ରଶାସନିକ କଳର ନାନା ସ୍ଥାନରେ କଳଙ୍କ ଲାଗିଯାଏ । ଭାରତ ବାହାରେ ମଧ ଏହିଭଳି ଦୃଷ୍ଟାନ୍ତ ରହିଛି । ବିଶେଷତଃ ସରକାରୀ ପୁଲିସ୍ ବା ଗୋଏନ୍ଦା ସଂସ୍ଥାକୁ ଦଳୀୟ ବା ବ୍ୟକ୍ତିଗତ ସ୍ୱାର୍ଥ ଉଦ୍ଦେଶ୍ୟରେ କିମ୍ବା କୌଣସି ବେସରକାରୀ ଗୋଏନ୍ଦା ସଂସ୍ଥାକୁ ସରକାରୀ କଳ ଓ ରାଜନୈତିକ ଦଳକୁ ପ୍ରଭାବିତ କରିବା ଉଦ୍ଦେଶ୍ୟରେ ଯଦି ବ୍ୟବହାର କରାଯାଏ ତେବେ ଗଣତନ୍ତ୍ରର କଣ୍ଠରୋଧ ହୁଏ । ରାଷ୍ଟ୍ରପତି ନିକସନ୍‌ଙ୍କୁ ଜଡ଼ିତ କରି ଆମେରିକା ଯୁକ୍ତରାଷ୍ଟ୍ରରେ ଏହିଭଳି ଆଚରଣକୁ ଗଣତନ୍ତ୍ର ପ୍ରଶାସନରେ ଘୃଣ୍ୟ 'ସ୍କାଣ୍ଡାଲ୍' ରୂପେ ସାରା ଦୁନିଆ ଆଗରେ ଉପସ୍ଥାପିତ କରାଯାଇଥିଲା । ଶେଷରେ ତାଙ୍କୁ ହୀନମାନ ହୋଇ ଗାଦି ଛାଡ଼ିବାକୁ ହୋଇଥିଲା ।

ଶ୍ରୀମତୀ ନନ୍ଦିନୀ ଶତପଥୀ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଆଶୀର୍ବାଦ ଘେନି ଓଡ଼ିଶାର ମୁଖ୍ୟମନ୍ତ୍ରୀ ରୂପେ ଅବସ୍ଥାପିତ ହୋଇଥିଲେ । କିନ୍ତୁ ୧୯୭୬ ମସିହାରେ ଶ୍ରୀମତୀ ଶତପଥୀଙ୍କୁ ବାଧ୍ୟକରି ଗାଦିରୁ ହଟାଇଦିଆଯିବାଟା ସେତେବେଳେ ଅନେକ ଚିନ୍ତାଶୀଳ ବ୍ୟକ୍ତିଙ୍କ ମନରେ ନାନା ପ୍ରଶ୍ନ ଉଠାଇଥିଲା । ଶ୍ରୀମତୀ ଶତପଥୀଙ୍କ ପରେ ଶ୍ରୀ ବିନାୟକ ଆଚାର୍ଯ୍ୟ ମୁଖ୍ୟମନ୍ତ୍ରୀରୂପେ ଅବସ୍ଥାପିତ ହେଲେ । ସେତିକିବେଳେ କେନ୍ଦ୍ର ସ୍ୱରାଷ୍ଟ୍ର ବିଭାଗର ଅଶେଷ ପ୍ରଭାବଶାଳୀ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଓଁ ମେହେଟ୍ଟା ଓଡ଼ିଶା ଗସ୍ତରେ ଆସିଲେ । ଓଁ ମେହେଟ୍ଟା ଥିଲେ

ପ୍ରବଳପରାକ୍ରମୀ ସଂଜୟ ଗାନ୍ଧୀଙ୍କର ବଡ଼ ବନ୍ଧୁ । ସ୍ୱୟଂ ସଂଜୟ ଗାନ୍ଧୀ ମଧ ସେତିକିବେଳେ ଓଡ଼ିଶା ଗସ୍ତରେ ଆସିଥିଲେ । ବିନାୟକବାବୁ ଅଳ୍ପଦିନ ମାତ୍ର ମୁଖ୍ୟମନ୍ତ୍ରୀ ରହିଲେ ସତ, କିନ୍ତୁ କେଜାଣି କାହିଁକି ସେହି ସ୍ୱଳ୍ପକାଳର କର୍ମବ୍ୟସ୍ତତା ଭିତରେ ସେ ତାଙ୍କରି କଂଗ୍ରେସ ଦଳର ଜଣେ ପ୍ରବୀଣା ପ୍ରଶାସିକା ବୋଲି ଖ୍ୟାତି ଅର୍ଜିଥିବା ଶ୍ରୀମତୀ ଶତପଥୀଙ୍କ ବିରୁଦ୍ଧରେ ଅନେକ ଦୁର୍ନୀତି ଅଭିଯୋଗର ଅନୁସନ୍ଧାନ ଓ ବିହିତ କାର୍ଯ୍ୟାନୁଷ୍ଠାନ ଆରମ୍ଭ କରିଦେଲେ । କେନ୍ଦ୍ର ସରକାରଙ୍କ ସ୍ୱରାଷ୍ଟ୍ର ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଓଁ ମେହେଟ୍ଟା କିମ୍ୱା ଶ୍ରୀ ସଞ୍ଜୟ ଗାନ୍ଧୀଙ୍କର ଏ ସମ୍ପର୍କରେ କିଛି ନିର୍ଦ୍ଦେଶ ଥିଲା କି ନାହିଁ ଠିକ୍ ଜଣାନାହିଁ । ସେହି ତଦନ୍ତର ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନ ବେଳେ ନାନା ବିଭ୍ରାଟ ଘଟଣା ପ୍ରକାଶ ପାଇଥିଲା । ସେଥିରୁ ଅଧିକାଂଶ ପରେ ବିଧାନସଭା ବିବରଣୀ, ଆଇନ ଅଦାଲତ ବା ସମ୍ୱାଦପତ୍ରରେ ପ୍ରକାଶିତ ହୋଇସାରିଛି । ବ୍ୟକ୍ତିଗତ କୀର୍ତ୍ତି, ଅପକୀର୍ତ୍ତି, ଅଭିଯୋଗକୁ ବାଦ୍‌ଦେଇ ଅତି ନିର୍ଲିପ୍ତ ଭାବରେ ଦେଖିଲେ ମଧ ସଂସଦୀୟ ଶାସନରେ ରାଜନୈତିକ ଉଦ୍ଦେଶ୍ୟ ସାଧନପାଇଁ ପୁଲିସ୍‌କୁ ଦଳୀୟ ରାଜନୀତି ଭିତରକୁ ଟାଣିଆଣିଲେ, ପକ୍ଷଭୁକ୍ତ କରାଇଲେ, ପ୍ରଶାସନରେ କିପରି ଭ୍ରଷ୍ଟାଚାରର ସୂତ୍ରପାତ ହୋଇପାରେ, ତାହାର ବହୁ ସୂଚନା ଉଲ୍ଲିଖିତ ବହୁ ବିବରଣୀରୁ ମିଳେ ।

ସେତେବେଳେ ଅନ୍ୟକୁ ଭୟଭୀତ କରାଇ, ବଳପ୍ରୟୋଗକରି, ଅନଧିକାର ପ୍ରଭାବ ପ୍ରୟୋଗ କରି ନିଜର ଉଦ୍ଦେଶ୍ୟ ସାଧନ କରିବା ଉଦ୍ଦେଶ୍ୟରେ ଗୋଟିଏ ଯୁବଗୋଷ୍ଠୀ ପୁଲିସ୍ କାଇଦା କୌଶଳ ଓ ଅସ୍ତ୍ରଶସ୍ତ୍ର ଚାଳନା ଶିଖୁଥିଲେ । ରାଜ୍ୟ ପୁଲିସ୍ ଗୋଏନ୍ଦା ସଂସ୍ଥାର ସମାନ୍ତରାଳ ସଂଗଠନ ଭଳି ଏମାନେ ଗୋଏନ୍ଦା କାମ ବି ଚଳାଇଥିଲେ । ବୋଧହୁଏ ଜରୁରୀକାଳୀନ ପରିସ୍ଥିତିର କଟକଣା ଯୋଗୁଁ କେହି ଏହାର ପ୍ରତିରୋଧ କରିବାକୁ ସାହସ କରୁନଥିଲେ ଯଦିଓ ଏଭଳି ଏକ ବେଆଇନ୍ ସନ୍ତ୍ରାସବାଦ ଅଭିମୁଖୀ ସଂଗଠନ ପଛରେ କେନ୍ଦ୍ର ସରକାର ବା ଉଚ୍ଚ କଂଗ୍ରେସ ମହଲର ସମର୍ଥନ ଥିବାର କିଛି ସୂଚନା ନଥିଲା । ଅନୁସନ୍ଧାନ ବେଳେ ଜବତ୍ ହୋଇଥିବା କାଗଜପତ୍ରରୁ ଜଣାପଡ଼ିଲା ଯେ ଏହି ଯୁବଗୋଷ୍ଠୀର ନାମ ଥିଲା TISSA (ଟିସା) । ଏହା ପାଞ୍ଚଗୋଟି ଇଂରାଜୀ ଅକ୍ଷର କେଉଁ କେଉଁ ଶବ୍ଦର ଆଦ୍ୟ ଅକ୍ଷର ଏବଂ ଏହାର ପୂର୍ଣ୍ଣ ନାମ କ'ଣ ହୋଇଥାଇପାରେ, ସେ ସଂପର୍କରେ ମଧ ବ୍ୟାଖ୍ୟା କରାଯାଇଥିଲା । ପୁଲିସ୍ ବିଭାଗର ଜଣେ ଇନ୍‌ସପେକ୍ଟର ଜେନେରାଲ ସେହି ଯୁବସଂଗଠନ ସହିତ ପରାମର୍ଶଦାତାରୂପେ ଜଡ଼ିତ ହୋଇପଡ଼ିଥିବା ସମ୍ପର୍କରେ ନାନା ସୂଚନା ମିଳିଥିଲା । ଗୁପ୍ତଖବର ସଂଗ୍ରହ କରିବାର କୌଶଳ ସମ୍ପର୍କରେ ସେ ପରାମର୍ଶ ଦେଉଥିଲେ । ପୁଲିସ୍ ଗୋଏନ୍ଦା ବିଭାଗ ମାର୍ଫତରେ ସରକାରଙ୍କର ଯେଉଁ ଅଡ଼ିଟ୍ ବହିର୍ଭୂତ ଗୋପନ ପାଣ୍ଠି ଥାଏ, ସେହି ପାଣ୍ଠିରୁ ମଧ ଉକ୍ତ ଯୁବ ସଂସ୍ଥା ଟିସାକୁ ସାହାଯ୍ୟ ଦିଆଯିବାର ସୂଚନା ପୁଲିସ୍ ଅନୁସନ୍ଧାନରୁ ମିଳିଥିଲା । ପୁଲିସ୍ ମାଲଖାନାରୁ ମଧ ସେମାନେ ପୁଲିସ୍ ଫୋର୍ସଙ୍କପାଇଁ ଗଚ୍ଛିତ ରିଭଲଭର୍ ଓ ଗୁଳି ପ୍ରଭୃତି ଅସ୍ତ୍ରଶସ୍ତ୍ର ନେଇ ବ୍ୟବହାର କରୁଥିଲେ । ପୁଲିସ୍‌ମାନେ ଲକ୍ଷ୍ୟଭେଦ ଅଭ୍ୟାସ କରିବାପାଇଁ କଟକ ଜିଲ୍ଲା ବଇରୀଠାରେ ରକ୍ଷିତଥିବା ସ୍ୱତନ୍ତ୍ର ପଡ଼ିଆରେ ସେହି ଯୁବକମାନେ ରିଭଲଭର୍ ଚାଳନା ଅଭ୍ୟାସ କରୁଥିଲେ । ବିରୋଧୀ ରାଜନୈତିକ ଦଳମାନଙ୍କ ସମ୍ପର୍କରେ ଏବଂ କଂଗ୍ରେସ ଦଳ ଭିତରେ ନନ୍ଦିନୀ ଶତପଥୀଙ୍କୁ ସମର୍ଥନ କରୁନଥିବା ନେତାମାନଙ୍କ ସମ୍ୱନ୍ଧରେ ଏହି ଟିସା ସଂସ୍ଥା ପକ୍ଷରୁ ଗୋଏନ୍ଦା କାର୍ଯ୍ୟ କରାଯାଉଥିଲା ଏବଂ କେତେକ କ୍ଷେତ୍ରରେ ପୁଲିସ୍ ଉଚ୍ଚକର୍ତ୍ତୃପକ୍ଷ ଏହି କାର୍ଯ୍ୟରେ ଲିପ୍ତ ହୋଇପଡ଼ିଥିଲେ । ତଦନ୍ତ ବେଳେ ଶ୍ରୀମତୀ ଶତପଥୀଙ୍କର ଭୁବନେଶ୍ୱର ନିଜ ବାସଭବନରୁ ଟିସା ସଂସ୍ଥା ସଂପର୍କରେ ବହୁ ତଥ୍ୟ ସମ୍ୱଳିତ କାଗଜପତ୍ର ଜବତ ହୋଇଥିଲା, ଏପରିକି ସରକାରୀ ଅଫିସର୍ ଦସ୍ତଖତ ଥିବା ସରକାରୀ ଗୋଏନ୍ଦା ବିଭାଗର କେତେକ ଅତି ଗୋପନୀୟ କାଗଜପତ୍ର ମଧ ମିଳିଥିଲା ।

## କେନ୍ଦ୍ର ସରକାରଙ୍କ ବିରୁଦ୍ଧରେ ଲଢ଼େଇର ମସୁଧା ?

କେବଳ ସେତିକି ନୁହେଁ, ଉପରୋକ୍ତ ଯୁବସଂସ୍ଥାର କାର୍ଯ୍ୟଦ୍ୱାରା ଭୁବନେଶ୍ୱର, କଟକ ଓ ଢେଙ୍କାନାଳ ସମେତ ଓଡ଼ିଶାର ଅନେକ ସ୍ଥାନରେ ଆତଙ୍କ ସୃଷ୍ଟି ହୋଇଥିବା ଏବଂ ଭୁବନେଶ୍ୱରରେ କେତେକ ନେତାଙ୍କ ଉପରେ ଆକ୍ରମଣ ଷଡ଼ଯନ୍ତ୍ରର ଅଭିଯୋଗ ମଧ୍ୟ ହୋଇଥିଲା । କେତେକ ସ୍ଥାନରେ ବୋମା ବିସ୍ଫୋରଣ ଘଟାଯାଇଥିଲା । କଲିକତାର କେତେକ ସମାଜବିରୋଧୀ ଲୋକଙ୍କ ସହିତ ଏମାନଙ୍କର ସମ୍ପର୍କ ଥିଲା ଏବଂ ସେମାନଙ୍କ ସାହାଯ୍ୟରେ ପାଇପ୍‌ଗନ୍, ଷ୍ଟେନ୍‌ଗନ୍, ରିଭଲଭର୍ ଓ ହାତବୋମା ପ୍ରଭୃତି କିଣାଯାଉଥିବା ଏବଂ କେତେକ ବିରୋଧୀ ଲୋକଙ୍କୁ ଜୀବନରୁ ଖତମ୍ କରିଦେବା ଯୋଜନା ଥିବାର ଅଭିଯୋଗ ହୋଇଥିଲା । ଜବତ୍ ହୋଇଥିବା କାଗଜପତ୍ରରୁ ଏ ସବୁର ସନ୍ଧାନ ମିଳିଥିଲା । ଏମାନଙ୍କ ବିରୁଦ୍ଧରେ ଅଭିଯୋଗ ହେଲେ ପୁଲିସ୍ ଆଇ.ଜି.ଙ୍କଠାରୁ ତଳିଆ ଅଫିସର୍ ପର୍ଯ୍ୟନ୍ତ ସମସ୍ତେ ନିଷ୍କ୍ରିୟ ରହୁଥିଲେ । ପରବର୍ତ୍ତୀ କାଳରେ ମୁଖ୍ୟମନ୍ତ୍ରୀ ଗାଦିରୁ ଶ୍ରୀମତୀ ଶତପଥୀଙ୍କୁ ବହିଷ୍କାର କରିବା କଥା ଉଠିଲାବେଳେ ଏହି ଯୁବକମାନେ ହତାଶ ହୋଇ ଭୟଙ୍କର ଉତ୍ପାତ କରିଥିଲେ । ଶ୍ରୀ ବିନାୟକ ଆଚାର୍ଯ୍ୟଙ୍କ ଗୋଷ୍ଠୀର ଲୋକଙ୍କ ଉପରେ ଏମାନେ ଆକ୍ରମଣ ଆରମ୍ଭ କରିଦେଇଥିଲେ । ସେତେବେଳର ଅନ୍ୟତମ ଭିନ୍ନଗୋଷ୍ଠୀର କଂଗ୍ରେସ ନେତା ଶ୍ରୀ ବାଙ୍କବିହାରୀ ଦାସଙ୍କ ଜୀବନ ଉପରେ ଏହିମାନଙ୍କ ପକ୍ଷରୁ ଆକ୍ରମଣର ଆଶଙ୍କା ମଧ୍ୟ କରାଯାଇଥିଲା । ଏହି ପ୍ରସଙ୍ଗରେ ନିଜର ନିଃସହାୟତା ଓ ପୁଲିସ୍‌ର ନିଷ୍କ୍ରିୟତା କଥା ବାଙ୍କବାବୁ କେନ୍ଦ୍ର ସ୍ୱରାଷ୍ଟ୍ର ବିଭାଗ ରାଷ୍ଟ୍ରମନ୍ତ୍ରୀ ଓଁ ମେହେଟାଙ୍କ ଦୃଷ୍ଟିକୁ ଆଣିଥିଲେ ବୋଲି ସେତେବେଳେ ଶୁଣାଯାଇଥିଲା । ବିପଦ ଆଶଙ୍କା କରି ସେତେବେଳେ ସେ କୁଆଡ଼େ ତାଙ୍କର ସକାଳ ବୁଲିବା ଅଭ୍ୟାସ ଛାଡ଼ିଦେଇଥିଲେ ।

ଇସ୍ତଫା ଦେବାପାଇଁ ଶ୍ରୀମତୀ ଶତପଥୀଙ୍କୁ ଯେତେବେଳେ କେନ୍ଦ୍ରରୁ ନିର୍ଦ୍ଦେଶ ଆସିଥିଲା, ସେତେବେଳେ ଇସ୍ତଫା ଦେବାରେ ସେ ଟାଳଟୁଳ କରିଥିଲେ ଏବଂ ଅନ୍ୟ ପକ୍ଷରେ କେନ୍ଦ୍ର ନେତୃତ୍ୱ ବିରୋଧରେ ଏକପ୍ରକାର ବିଦ୍ରୋହ ଘୋଷଣା କରିବାଭଳି କାର୍ଯ୍ୟର ସୂଚନାମାନ ଜଣାପଡ଼ିଥିଲା । ହୁଏତ କେନ୍ଦ୍ର ନେତୃତ୍ୱର ନିର୍ଦ୍ଦେଶକୁ କାର୍ଯ୍ୟକାରୀ କରାଇ ନ ଦେବାପାଇଁ ତାଙ୍କର ସେହି ଯୁବଗୋଷ୍ଠୀ ଆତଙ୍କରାଜ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଅବାଞ୍ଛନୀୟ ପରିସ୍ଥିତି ଉପୁଜାଇବେ ଏବଂ ଓଡ଼ିଶା ପୁଲିସ୍ ନିଷ୍କ୍ରିୟ ହୋଇ ରହିବାର ସନ୍ଦେହ ମଧ୍ୟ କରାଯାଇଥିଲା । ଏ ସଂକ୍ରାନ୍ତରେ କେନ୍ଦ୍ର ସରକାର ତାଙ୍କ ଗୋଏନ୍ଦା ବିଭାଗରୁ ବୋଧହୁଏ କିଛିଟା ସୂଚନା ପାଇଥିଲେ । ତା' ନ ହେଲେ ଓଡ଼ିଶା ରାଜ୍ୟ ସରକାରଙ୍କର ସେତେବେଳେ ଅନ୍ୟାନ୍ୟ ପୁଲିସ୍‌ବାହିନୀ ଛଡ଼ା ଛ' ହଜାର ସଶସ୍ତ୍ର ପୁଲିସ୍ (ଓଡ଼ିଶା ମିଲିଟାରୀ ପୁଲିସ୍) ମହଜୁଦ୍ ଥିବାସତ୍ତ୍ୱେ ଯେଉଁଦିନ ନନ୍ଦିନୀ ଶତପଥୀ ଇସ୍ତଫା ଦେବାର କଥା ସେଇଦିନ କାହିଁକି ବହୁସଂଖ୍ୟକ କେନ୍ଦ୍ରୀୟ ସଶସ୍ତ୍ର ପୁଲିସ୍ ଓ ସୀମାନ୍ତରକ୍ଷୀ ବାହିନୀ ରେଳ ତଥା ଉଡ଼ାଜାହାଜ ଯୋଗେ ଆସି ଭୁବନେଶ୍ୱରରେ ଓହ୍ଲାଇଥିଲେ ? ହୁଏତ କେନ୍ଦ୍ର ସରକାରଙ୍କର ଆଶଙ୍କା ଥିଲା ଯେ ନନ୍ଦିନୀ ଦେବୀ ଇସ୍ତଫା ନଦେଇ ବିଦ୍ରୋହାତ୍ମକ କାର୍ଯ୍ୟ ପ୍ରଦର୍ଶନ କରିପାରନ୍ତି ଏବଂ ଓଡ଼ିଶା ପୁଲିସ୍ ସେଥିର ନୀରବଦ୍ରଷ୍ଟା ହୋଇ ରହିପାରନ୍ତି । ସେଇଥିପାଇଁହିଁ ସେଦିନ କେନ୍ଦ୍ରୀୟ ସଶସ୍ତ୍ର ପୁଲିସ୍ ଭୁବନେଶ୍ୱର ଆସିଥିଲେ; ନଚେତ୍ କୌଣସି ରାଜ୍ୟର ଜଣେ ମୁଖ୍ୟମନ୍ତ୍ରୀ ଇସ୍ତଫା ଦେବା ସମୟରେ କେନ୍ଦ୍ରସରକାର ଏଭଳି ଅସ୍ୱାଭାବିକ ଭାବେ ଫଉଜ ପଠାଇବାର କୌଣସି ଯୁକ୍ତିଯୁକ୍ତ କାରଣ ବା ଦୃଷ୍ଟାନ୍ତ ନାହିଁ । ସେତେବେଳେ ଉପରୋକ୍ତ ଘଟଣା ଲୋକଙ୍କ ଭିତରେ ବେଶ୍ ଆଲୋଡ଼ନ ସୃଷ୍ଟିକରିଥିଲା ।

## ପୁଲିସ୍ ସଂଗଠନରେ ଆତ୍ମଘାତୀ ନୀତି

ମୁଖ୍ୟମନ୍ତ୍ରୀ ହେଉଛନ୍ତି ରାଜ୍ୟ ଶାସନରେ ସର୍ବୋଚ୍ଚ କର୍ତ୍ତା । ଜଣେ ମୁଖ୍ୟମନ୍ତ୍ରୀ ଯଦି ଅଭିସନ୍ଧିସମ୍ପନ୍ନ ଅଫିସରଙ୍କ ଉଦ୍ଦେଶ୍ୟ ବୁଝିନପାରନ୍ତି ବା ନିଜର ଅଭିସନ୍ଧି ପୂରଣ ପାଇଁ ଅଫିସର୍ ନିଯୁକ୍ତି କରନ୍ତି

ସାମଲବାବୁଙ୍କ ଉପରେ । ଯତୀନ୍ଦ୍ରବାବୁ ୧୯୭୭ ଜୁନ୍ ମାସରେ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀଙ୍କୁ ଲିଖିତ ନିବେଦନ କରି ଜଣାଇଥିଲେ ଯେ, "To unearth the alleged corruption against such high officials of a State Government and to recommend criminal action against most of them on the basis of unrebuttable evidence of the enquiries by a Superintendent of Police in due discharge of his official duties as a public servant, and that too, without fear and favour, but in greater interest of the nation, involved great risk to the service career of that dutiful public servant, which I was. And, verily, such a risk befell me when due and appropriate follow-up actions as recommended on the basis of evidence of these vigilance enquiries were not taken against those high officials who joined hands, particularly X X X X under the patronage of a vindictive Chief Minister to victimise me, the latter named officials entered, thereupon, in a criminal conspiracy to remove me from the Indian Police Service in order to keep their proven crimes and corruptions suppressed. All these submissions are matter of record, which I can prove and establish in any forum."

ଶ୍ରୀ ସାମଲ ପୁଲିସ୍ ବାହିନୀରେ ଅସନ୍ତୋଷ ସୃଷ୍ଟି କରୁଛନ୍ତି ଏବଂ ପୁଲିସ୍ ବିଭାଗରେ ଅଶାନ୍ତି ତଥା ବିଶୃଙ୍ଖଳା ସୃଷ୍ଟି କରିବା ପାଇଁ ଶ୍ରୀ ହରେକୃଷ୍ଣ ମହତାବ ଓ ଶ୍ରୀ ନୀଳମଣି ରାଉତରାୟଙ୍କ ସହିତ ପରାମର୍ଶ କରୁଛନ୍ତି ବୋଲି ତାଙ୍କ ବିରୁଦ୍ଧରେ କେନ୍ଦ୍ର ସରକାରଙ୍କୁ ରିପୋର୍ଟ ଦିଆଯାଇଥିଲା । ମୁଁ ମୁଖ୍ୟମନ୍ତ୍ରୀ ଥିବାବେଳେ ସେଇ ରିପୋର୍ଟଟି ଦେଖିବାର ସୁଯୋଗ ପାଇଥିଲି । ଯତୀନ୍ଦ୍ର ଏକ ଗରିବ ପରିବାରରେ ଜନ୍ମହୋଇଥିଲେ । ତାଙ୍କ ପିତା ସ୍ୱର୍ଗତ ଗୟାଧର ସାମଲ କନିକା ରାଜାଙ୍କ ବିରୁଦ୍ଧରେ ପ୍ରଜା ଆନ୍ଦୋଳନରେ ଭାଗନେଇ ସର୍ବସ୍ୱାନ୍ତ ହୋଇ ପଳାଇଆସି ଭଦ୍ରକରେ ଖଣ୍ଡିଏ ଘର କରି ରହିଥିଲେ । ବହୁ କଷ୍ଟରେ ତାଙ୍କ ପିତା ଯତୀନ୍ଦ୍ରଙ୍କୁ ଉଚ୍ଚଶିକ୍ଷିତ କରିପାରିଥିଲେ । ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀ ସେକ୍ରେଟେରୀଏଟ୍ ସମ୍ପୃକ୍ତ ବିଭାଗକୁ ବାଦ୍ ଦେଇ, ପୁଲିସ୍ ରିପୋର୍ଟକୁ ଭିତ୍ତି କରି, ସମ୍ବିଧାନର ୩୧୧ ଦଫା ଅନୁସାରେ ଯତୀନ୍ଦ୍ର ମୋହନ ସାମଲଙ୍କୁ କାର୍ଯ୍ୟରୁ ବରଖାସ୍ତ କରିବାପାଇଁ ସୁପାରିଶ କରି ସ୍ୱତନ୍ତ୍ରଭାବେ କେନ୍ଦ୍ର ସରକାରଙ୍କୁ ଲେଖିଥିଲେ । ଅତି ନିର୍ଦ୍ଦୟ ଭାବରେ ଯତୀନ୍ଦ୍ରଙ୍କୁ ଚାକିରିରୁ ଅନ୍ତର କରାଯାଇଥିଲା । ଚାକିରି ହରାଇଲା ପରେ ଯତୀନ୍ଦ୍ର କିଛି ବ୍ୟବସାୟ କରିବାପାଇଁ ଉଦ୍ୟମ କରୁଥିଲେ, ତାହା ମଧ କେତେକ ସହ୍ୟ ପରିପାରିଲେ ନାହିଁ । ଜରୁରୀକାଳୀନ ପରିସ୍ଥିତିର ସୁଯୋଗ ନେଇ ତାଙ୍କ ବିରୁଦ୍ଧରେ ରିପୋର୍ଟ ତିଆରିକରାଗଲା । ସେ ପୁଲିସ୍ ବାହିନୀରେ ବିଦ୍ରୋହ କରିବାର ସମ୍ଭାବନା ଦର୍ଶାଯାଇ ତାଙ୍କୁ ଅଟକବନ୍ଦୀ କରାଗଲା । ସେତିକିରେ କଥା ସରିଲା ନାହିଁ; ଜେଲ୍‌ରେ ସେ କିପରି ନିର୍ଯାତିତ ହେବେ ସେଥିର ମଧ ବ୍ୟବସ୍ଥା କରାଗଲା । ପ୍ରଥମେ ତାଙ୍କୁ ଢେଙ୍କାନାଳ ଜେଲ୍‌ରେ ରଖାଯାଇଥିଲା ଏବଂ ପରେ ବାରିପଦା ଜେଲ୍‌କୁ ସ୍ଥାନାନ୍ତରିତ କରାଯାଇଥିଲା । ଢେଙ୍କାନାଳ ନିକଟବର୍ତ୍ତୀ ସ୍ଥାନ ହୋଇଥିବାରୁ ଭୁବନେଶ୍ୱରରେ ଥିବା ତାଙ୍କର ପରିବାରବର୍ଗ ତଥା ଶୁଭାକାଂକ୍ଷୀମାନେ ସହଜ ଓ ସୁବିଧାରେ ତାଙ୍କୁ ଦେଖା କରିପାରିବା ସଙ୍ଗେ ସଙ୍ଗେ ତାଙ୍କର ଚିକିତ୍ସାର ବ୍ୟବସ୍ଥା କେତେକାଂଶରେ କରିପାରୁଥିଲେ । ସତେ ଅବା ସେତିକି ମଧ କର୍ତ୍ତୃପକ୍ଷଙ୍କ ପକ୍ଷରେ ଅସହ୍ୟ ହୋଇଥିଲା, ତେଣୁ ତାଙ୍କୁ ଢେଙ୍କାନାଳ ଜେଲ୍‌ରୁ ସ୍ଥାନାନ୍ତରିତ କରିବା ଦରକାର ପଡ଼ିଥିଲା । ଯତୀନ୍ଦ୍ରବାବୁ ଦିନେ ଉଚ୍ଚ ପୁଲିସ୍ ଅଫିସର୍ ଥିଲେ । ଅଥଚ ଢେଙ୍କାନାଳ ଜେଲ୍‌ରୁ ବାରିପଦା ଜେଲ୍‌କୁ ତାଙ୍କୁ ପୁଲିସ୍

ବୋଲି ଧାରଣା ଜନ୍ମିଯାଏ, ତେବେ ଅନ୍ୟ କର୍ମଚାରୀ ଓ ଲୋକେ ନିଜକୁ ନିଃସହାୟ ବୋଧକରନ୍ତି । ପ୍ରଶାସନିକ କ୍ଷେତ୍ରରେ ବିଭ୍ରାଟ ଓ ବିଶୃଙ୍ଖଳା ପ୍ରସାରିତ ହୁଏ । ସେହିଭଳି ଏକ ପଥଭ୍ରଷ୍ଟ ପ୍ରଶାସନିକ ପରିସ୍ଥିତି ସେତେବେଳେ ଅନୁଭୂତ ହେଉଥିଲା । କେନ୍ଦ୍ର କର୍ତ୍ତୃପକ୍ଷ ଏକ ଅଭୂତପୂର୍ବ ବାତାବରଣ ଭିତରେ ଶ୍ରୀମତୀ ଶତପଥୀଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ହଟାଇଦେବାଦ୍ୱାରା ସେହି ଧାରଣା ଦୃଢ଼ୀଭୂତ ହେଲା । ଶ୍ରୀମତୀ ଶତପଥୀ ତାଙ୍କ ଅମଳରେ ପୁଲିସ୍ ବିଭାଗର ସାତଜଣ ଉଚ୍ଚ ଅଫିସରଙ୍କ ସିନିୟରିଟିକୁ ଅତିକ୍ରମ କରାଇ ଜଣେ ଅପେକ୍ଷାକୃତ ଜୁନିୟର୍ ଡି.ଆଇ.ଜି.ଙ୍କୁ ଜଣେ ଆଇ.ଜି. ପଦରେ ଅବସ୍ଥାପିତ କରିଥିବାରୁ ପୁଲିସ୍ ବିଭାଗର ପ୍ରଶାସନିକ ମହଲରେ ସ୍ୱତଃ ଘୋର ଅନ୍ତର୍ଦାହ ସୃଷ୍ଟିହୋଇଥିଲା । ସେତେବେଳକୁ ସଂପୃକ୍ତ ଡି.ଆଇ.ଜି. ସେହି ପାହ୍ୟାରେ ମଧ୍ୟ ସ୍ଥାୟୀହୋଇନଥା'ନ୍ତି । ତାଙ୍କୁ ଅନ୍ୟାୟ ପଦୋନ୍ନତି ଦିଆଯାଇଛି ବୋଲି ଉଚ୍ଚ ପୁଲିସ୍ କର୍ମକର୍ତ୍ତାମାନେ ମାଲିମକଦ୍ଦମାରେ ଜଡ଼ିତ ହେବାକୁ ବାଧହୋଇଥିଲେ । ଏ ପ୍ରକାର ପଦୋନ୍ନତି ଓଡ଼ିଶା ଇତିହାସରେ କେବେ ଘଟିନଥିଲା । ତେଣୁ ପୁଲିସ୍‌କୁ ଜଡ଼ିତ କରି ଯେଉଁସବୁ ଅବାଞ୍ଛନୀୟ ଓ ବେଆଇନ କାର୍ଯ୍ୟକଳାପର ଅଭିଯୋଗ କଥା ଉପରେ ଉଲ୍ଲେଖ କରାଯାଇଛି, ଉଲ୍ଲିଖିତ ପରିସ୍ଥିତିରେ ପୁଲିସ୍‌ର ନୈତିକ ବଳ ଭାଙ୍ଗିଦିଆଯାଇଥିବାରୁ ତାହା ସମ୍ଭବ ହୋଇଥିଲା ବୋଲି ଧାରଣା ହେବା ସ୍ୱାଭାବିକ ।

ଜଘନ୍ୟ ନରହତ୍ୟା, ଅମାନୁଷିକ ବ୍ୟଭିଚାର ଭଳି ପାପ କାର୍ଯ୍ୟକୁ ଜୀବିକା କରିଥିବା ଘୃଣ୍ୟ ଡକାୟତମାନଙ୍କୁ ଧରିଲେ ସେମାନଙ୍କ ପ୍ରତି ମଧ୍ୟ ଆଇନାନୁମୋଦିତ ସମୀଚୀନ ବ୍ୟବହାର ପ୍ରଦର୍ଶନ କରାଯାଉଛି । ଅତି ନାରକୀୟ ଅପରାଧରେ ଅଭିଯୁକ୍ତ ଆସାମୀମାନଙ୍କଠାରୁ ମଧ୍ୟ କଥା ଆଦାୟ କଲାବେଳେ ପୁଲିସ୍ କୌଣସି ରକମ ନିର୍ମମ ବ୍ୟବହାର କରିବାଟା ସଂପୃକ୍ତ ଅଫିସରଙ୍କ ପକ୍ଷେ ଅନିୟମ, ଅକର୍ତ୍ତବ୍ୟ, ଏପରିକି ଅପରାଧ ବୋଲି ନିନ୍ଦାକରାଯାଉଛି । କିନ୍ତୁ ଜରୁରୀକାଳୀନ ପରିସ୍ଥିତିର ସୁଯୋଗ ନେଇ ଓଡ଼ିଶାରେ କେତେକ ଉଚ୍ଚପଦସ୍ଥ ପୁଲିସ୍ କର୍ମଚାରୀ ମଧ୍ୟ ଉପରିସ୍ଥ ହାକିମମାନଙ୍କଦ୍ୱାରା ଘୋର ଲାଞ୍ଛିତ ଏବଂ ନିର୍ମମ ଭାବେ ନିର୍ଯାତିତ ଓ ଅପମାନିତ ହେବାର ହୃଦୟବିଦାରକ ଦୃଷ୍ଟାନ୍ତ ପରବର୍ତ୍ତୀ କାଳରେ ଅନେକ ରେକର୍ଡ଼ପତ୍ରରୁ ମୋ ଦୃଷ୍ଟିକୁ ଆସିଛି । ସେସବୁ ପୁଲିସ୍ ପ୍ରଶାସନର ଅମର୍ଯ୍ୟାଦା ଘଟାଇଛି । ଇତିହାସ କହୁଛି ବିଜେତା ଗ୍ରୀକ୍‌ବୀର ଆଲେକ୍‌ଜାଣ୍ଡାରଙ୍କଠାରୁ ମଧ୍ୟ ପରାଜିତ ପୁରୁରାଜା ମର୍ଯ୍ୟାଦାସମ୍ପନ୍ନ ରାଜୋଚିତ ବ୍ୟବହାର ଦାବି କରିଥିଲେ । ଓଡ଼ିଶାର ଜଣେ ତରୁଣ ଆଇ.ପି.ଏସ୍. ଅଫିସରଙ୍କ ଦାରୁଣ ନିର୍ଯାତନା ଭୋଗ, ସେହିପରି ଅନ୍ୟ କେତେକ ଉଚ୍ଚ ଅଫିସରଙ୍କ ଅମର୍ଯ୍ୟାଦା ଓ ହଟହଟାର ବିବରଣୀ ଜାଣିଲେ ମନେହୁଏ ସତେ ଅବା ସେତେବେଳେ ପୁଲିସ ପ୍ରଶାସନରେ ଏକ ଅନ୍ଧାରି ଶାସନ ଚାଲିଥିଲା । ଏଭଳି କେତେକ ସୂଚନା ମଧ୍ୟ ମିଳେ ଯେ ଉଚ୍ଚ ପୁଲିସ୍ ଅଫିସରମାନଙ୍କ ଭିତରେ ବିଭେଦ ସୃଷ୍ଟି କରାଯିବା, ସେହି କାରଣରୁ ସରକାରଙ୍କ ବିଚାରରେ କେତେକ ଅବିଶ୍ୱସ୍ତ ଚିତ୍ରିତ ହେବା, କେତେକ ଉଚ୍ଚସ୍ଥାନୀୟ ପୁଲିସ୍ ଓ ପ୍ରଶାସନିକ ଅଫିସରଙ୍କ ଘର ପାଖରେ ଗୋଏନ୍ଦା ମୁତୟନ ରହିବା ଭଳି ନାନା ଅସଙ୍ଗତ ଆଚରଣ କରାଯାଉଥିଲା । ଏହିଭଳି ହେରଫେର ଓ ଚୁଗୁଲିର ଶିକାର ହୋଇ ଜଣେ ଉଚ୍ଚତର ପାହ୍ୟାର ଆଇ.ଜି.ଙ୍କୁ ପୁଲିସ୍ ବିଭାଗରୁ ଅନ୍ୟତ୍ର ବଦଳିହେବାକୁ ପଡ଼ିଥିବାର ଜଣାଯାଏ ।

ପ୍ରଶାସନିକ କ୍ଷେତ୍ରରେ ଆକ୍ରୋଶମୂଳକ ଚକ୍ରାନ୍ତର ଶିକାର ହୋଇଥିଲେ ବୋଲି ଗୁରୁତର ଅଭିଯୋଗ କରିଥିଲେ ସ୍ୱର୍ଗତ ଯତୀନ୍ଦ୍ର ମୋହନ ସାମଲ । ପୂର୍ବରୁ ସେ ଯେତେବେଳେ ଦୁର୍ନୀତି ନିବାରଣ ବିଭାଗର ଏସ୍.ପି. ଥିଲେ ସେତେବେଳେ ତାଙ୍କଠାରୁ ଉଚ୍ଚପଦସ୍ଥ ପୁଲିସ୍ ଅଫିସରଙ୍କ ବିରୁଦ୍ଧରେ ହୋଇଥିବା କେତେକ ଦୁର୍ନୀତିମୂଳକ ଅଭିଯୋଗ ତଦନ୍ତର ଭାର ସାମଲବାବୁଙ୍କ ଉପରେ ନ୍ୟସ୍ତ ଥିଲା । ଦୁର୍ନୀତି ଅଭିଯୋଗ ସମ୍ବନ୍ଧରେ ହୃଦ୍‌ବୋଧ ହେବା ଭଳି କେତେକ ତଥ୍ୟ ଉପରୋକ୍ତ ଅନୁସନ୍ଧାନଦ୍ୱାରା ବାହାରିଥିଲା । ସେଥି ସକାଶେ କୁଆଡ଼େ ଉପର ହାକିମଙ୍କର ଆକ୍ରୋଶ ଥିଲା

ମାର୍ଫତରେ ସ୍ଥାନାନ୍ତର କରାଗଲାବେଳେ ଜଣେ ଅପରାଧୀ ପରି ଜିପ୍‌ର ପଛଆଡ଼େ ବସାଇ ନିଆଯାଇଥିଲା । ଯିବା ବାଟରେ ଢେଙ୍କାନାଳଠାରେ ତାଙ୍କୁ ଏସ୍.ପି.ଙ୍କ ସରକାରୀ ଅଫିସ୍ ଦେଇ ନିଆଯାଇଥିଲା । ଏସ୍.ପି. ଯତୀନ୍ଦ୍ରବାବୁଙ୍କୁ କପେ ଚା ଖାଇବାକୁ ଦେଇଥିଲେ । ଆହୁରି କେତେକ ପୁଲିସ୍ ଅଫିସର୍ ମଧ୍ୟ ସେଠାରେ ଆସି ପହଞ୍ଚିଥିଲେ । ଯେହେତୁ ମାତ୍ର ଅଳ୍ପଦିନ ପୂର୍ବେ ଯତୀନ୍ଦ୍ର ଜଣେ ଉଚ୍ଚପଦସ୍ଥ ପୁଲିସ୍ ଅଫିସର୍ ଥିଲେ, ସେ ଅଟକବନ୍ଦୀ ଥିଲେ ମଧ୍ୟ ଅନ୍ୟ ଅଫିସର୍‌ମାନେ ତାଙ୍କୁ ସ୍ୱତଃ ସୌଜନ୍ୟ ଦେଖାଇଥିଲେ । ଜିପ୍‌ର ପଛଆଡ଼େ ତାଙ୍କୁ ବସାନଯାଇ ସୌଜନ୍ୟ ଓ ଆରାମ ଦୃଷ୍ଟିରୁ ତାଙ୍କୁ ଆଗ ସିଟ୍‌ରେ ବସାଇଥିଲେ । ତାଙ୍କ ପ୍ରତି ସହାନୁଭୂତିରେ ସେଠାରେ ଉପସ୍ଥିତ ଥିବା କେତେକ ପୁଲିସ୍ କର୍ମଚାରୀଙ୍କ ଆଖି ଲୁହରେ ଛଳଛଳ ହୋଇଯାଇଥିଲା ଏବଂ ସେମାନଙ୍କ ମଧ୍ୟରୁ କେହି ଜଣେ କହିପକାଇଥିଲେ ଯେ — 'ଯିଏ ଆପଣଙ୍କୁ ଏପରି ଦଣ୍ଡ ଦେଇଛନ୍ତି ଭଗବାନ୍ ତାଙ୍କୁ ସେହିପରି ଦଣ୍ଡ ଦେବେ ।' ଏ ଘଟଣାଗୁଡ଼ିକ କୌଣସି ସୂତ୍ରରୁ ଜଣେ ତୁଙ୍ଗ ପୁଲିସ୍ କର୍ତ୍ତାଙ୍କ କାନରେ ପଡ଼ିଥିଲା । ତାହାପରେ ଅଭିଯାନ ଚାଲିଲା ସେଇ ଅଫିସର୍‌ମାନଙ୍କ ବିରୁଦ୍ଧରେ ଯେଉଁମାନେ ଯତୀନ୍ଦ୍ରବାବୁଙ୍କୁ ଦେଖାକରି ଭଦ୍ରମନୁଷ୍ୟ ସୁଲଭ ସୌଜନ୍ୟ ଓ ସମ୍ମାନ ଜଣାଇଥିଲେ । ସବୁଠାରୁ ବେଶି କଡ଼ା ନଜର ପଡ଼ିଥିଲା ଚାହା ଯାଚିଥିବା ଅଫିସର୍‌ଙ୍କ ଉପରେ । ତାଙ୍କୁ ଜଣେ ତୁଙ୍ଗ ପୁଲିସ୍ ଅଫିସରଙ୍କ ଅଫିସ୍‌କୁ ଡକାଇଆଣି ଦୀର୍ଘକାଳ ଜେରା କରାଯାଇ ତାଙ୍କ ସହିତ ଯେଉଁସବୁ କଥାବାର୍ତ୍ତା ହେଲା ତାହାକୁ ଟେପରେକର୍ଡ଼ିଙ୍ଗ କରାଇ ନିଆଯାଇଥିଲା । ମୁଁ ମୁଖ୍ୟମନ୍ତ୍ରୀ ଥିଲାବେଳେ ସେ ଟେପରେକର୍ଡ଼ିଙ୍ଗ ଶୁଣିବାର ସୁଯୋଗ ଅବା ଦୁର୍ଯୋଗ ଘଟିଥିଲା । ଏଭଳି କାର୍ଯ୍ୟ ପୁଲିସ୍ ପ୍ରଶାସନରେ ଅତି ମାରାତ୍ମକ ଓ ଚକ୍ରାନ୍ତମୂଳକ ଘଟଣା । ପୁଲିସ୍ ବିଭାଗର ଜଣେ ତୁଙ୍ଗକର୍ତ୍ତା ତାଙ୍କର ଜଣେ ଅଧସ୍ତନ ଅଫିସର୍‌ଙ୍କୁ ଫନ୍ଦିରେ ପକାଇ ତାଙ୍କ ଅଜଣାରେ ତାଙ୍କର ବକ୍ତବ୍ୟକୁ ଟେପ୍‌ରେକର୍ଡ଼ିଙ୍ଗ କରାଇବା ଏକ ଗର୍ହିତ ବ୍ୟାପାର । ଅଧସ୍ତନ ଅଫିସରଙ୍କୁ ଏକୁଟିଆ ଭୟଭୀତ କରାଇ ତାଙ୍କୁ କନ୍ଦାଇ ପକାଇବାର ଏହା ଏକ ମର୍ମନ୍ତୁଦ ଦୃଷ୍ଟାନ୍ତ ।

ପୁଲିସ୍ ସଂଗଠନର ମୂଳଭିତ୍ତି ହେଲା ଶୃଙ୍ଖଳା ଓ ଐକ୍ୟ । ଉଚ୍ଚ ପୁଲିସ୍ କର୍ମଚାରୀମାନଙ୍କ ମଧ୍ୟରେ ଯଦି ଥରେ ପରସ୍ପର ଶତ୍ରୁତାଚରଣ ବା ପ୍ରତିହିଂସାର ବାତାବରଣ ସୃଷ୍ଟି କରାଯାଏ, ତେବେ ତାହା ଭୟଙ୍କର ସୁଦୂରପ୍ରସାରୀ ପରିଣତି ଘଟାଇପାରେ । ଜରୁରୀକାଳୀନ ପରିସ୍ଥିତି ଭିତରେ ଢେଙ୍କାନାଳର ଯେଉଁ ଉଚ୍ଚ ପୁଲିସ୍ ଅଫିସର ଅଟକବନ୍ଦୀ ହୋଇଥିବା ପୂର୍ବତନ ପୁଲିସ୍ ଅଫିସର୍ ସାମଲଙ୍କ ପ୍ରତି ଭଦ୍ରୋଚିତ ବ୍ୟବହାର କରିଥିଲେ, ତାହାର ଅନେକ ବର୍ଷ ପରେ ମଧ୍ୟ ସେ ଜଣେ ତୁଙ୍ଗ ପୁଲିସ୍ ଅଫିସର୍‌ଙ୍କ ପ୍ରତିହିଂସାପରାୟଣତା ହେତୁ ଏକ ଘୋର ବିପଜ୍ଜନକ ଷଡ଼ଯନ୍ତ୍ରର ଶିକାର ହୋଇପାରନ୍ତି ବୋଲି ଆଶଙ୍କା ପ୍ରକାଶ କରିଥିଲେ । ଆଶଙ୍କାର କାରଣ ହେଲା ଯେ, ୧୯୭୯ ମସିହାରେ ଜନତା ସରକାର ଅମଳରେ ସମ୍ବଲପୁର ଜିଲ୍ଲା ଦେଓଗଡ଼ ଥାନାରେ ଜଣେ ଅପରାଧୀଠାରୁ ବଳପ୍ରୟୋଗ କରି ତଥ୍ୟ ବାହାର କରିବା ଅବସ୍ଥାରେ ତା'ର ମୃତ୍ୟୁ ଘଟିଥିଲା । କ୍ରାଇମବ୍ରାଞ୍ଚ ଅନୁସନ୍ଧାନ ପରେ ଥାନା ଅଫିସର୍‌ମାନେ ସଂପୃକ୍ତ ବୋଲି ସାବ୍ୟସ୍ତ ହେବାରୁ ସେମାନଙ୍କ ବିରୁଦ୍ଧରେ ହତ୍ୟା ଅଭିଯୋଗରେ ଫୌଜଦାରୀ ମାମଲା ରୁଜୁ ହୋଇଥିଲା । ଯେହେତୁ ଘଟଣା ଘଟିବା ଦିନ ଏସ୍.ପି. ଦେଓଗଡ଼ ଗସ୍ତରେ ଥିଲେ, ସେ ଉକ୍ତ ହତ୍ୟା ଘଟଣାରେ ସଂପୃକ୍ତ ଥାଇପାରନ୍ତି ବୋଲି ଦୃଷ୍ଟି ଦେବାକୁ କଂଗ୍ରେସ ଶାସନ ସମୟରେ ପୁଲିସ୍ ଉଚ୍ଚ ମହଲରୁ ସୂଚନା ଦିଆଗଲା । ଆତଙ୍କିତ ହୋଇ, ତାଙ୍କୁ ଏ ପ୍ରକାର ଷଡ଼ଯନ୍ତ୍ରରୁ ରକ୍ଷା କରିବା ଦିଗରେ ବିହିତ ବ୍ୟବସ୍ଥା ଆଶାକରି, ସେ ତାଙ୍କର ତଥ୍ୟ ସମ୍ବଳିତ ବକ୍ତବ୍ୟ ଲିପିବଦ୍ଧ କରି ୧୯୮୦ ମସିହା ଅଗଷ୍ଟ ମାସରେ ସ୍ୱରାଷ୍ଟ୍ର ବିଭାଗ ଜରିଆରେ ସରକାରଙ୍କ ପାଖରେ କାତର ନିବେଦନ କରିଥିଲେ । ତାଙ୍କୁ ସେହି ଘଟଣା ସହିତ ଜଡ଼ିତ କରିବାର ଦୁରଭିସନ୍ଧିମୂଳକ କାମ ଚାଲିଥିବାର ଆପତ୍ତି ଜଣାଇ ସେ ପ୍ରାର୍ଥନା କରିଥିଲେ, "...in the first instance that due protection of the Government may kindly be accorded

against the vicious, vexatious and motivated inquiries and reports emanating from....."

"Secondly, further investigation, if any .... may please be entrusted to C.B.I. as that alone would guarantee protection to an innocent officer like myself. With a view to pleasing...., I am afraid, the officers of the Crime Branch would create false evidence against myself." ସରକାର ନିଶ୍ଚୟ ସି.ବି.ଆଇ. ଦ୍ଵାରା ନିରପେକ୍ଷ ତଦନ୍ତ ଦାବିରୁ ଉକ୍ତ ଅଫିସରଙ୍କ ପ୍ରାର୍ଥନାର ସାରବତ୍ତା ଉପଲବ୍ଧି କରିଛନ୍ତି, କାରଣ ସେ ସେହି କାରଣରୁ ଆଉ ବିପଦରେ ପଡ଼ିନାହାନ୍ତି ।

ଯତୀନ୍ଦ୍ରର ଦୁଃଖ ଓ ତାଙ୍କ ପରିବାରବର୍ଗଙ୍କର ଅତି ଶୋଚନୀୟ ଅବସ୍ଥା ଦେଖି ମୁଁ ଅଭିଭୂତ ହୋଇଥିଲି । ଅଧିକନ୍ତୁ ଜଣେ ପ୍ରପୀଡ଼ିତ ସ୍ୱାଧୀନତା ସଂଗ୍ରାମୀଙ୍କର ଏମାନେ ବଂଶଧର । ୧୯୭୭ରେ ମୁଁ ମୁଖ୍ୟମନ୍ତ୍ରୀ ହେବା ପରେ ଯତୀନ୍ଦ୍ରକୁ ଓଡ଼ିଶା ରାଜ୍ୟ ସଡ଼କ ପରିବହନ ସଂସ୍ଥାର ଜେନେରାଲ ମେନେଜର ରୂପେ ନିଯୁକ୍ତି ଦେଇ ଟିକିଏ ଆଶ୍ୱସ୍ତି ଅନୁଭବ କରିଥିଲି । ତାଙ୍କୁ ଚାକିରିରୁ ଯେପରି ଭାବରେ ବରଖାସ୍ତ କରାଯାଇଥିଲା ସେ ପ୍ରକାର ଆକ୍ରୋଶମୂଳକ ଆଦେଶକୁ ରଦ୍ଦ କରିବାପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ କେନ୍ଦ୍ର ସରକାରଙ୍କୁ ସୁପାରିଶ କରାଯାଇଥିଲା । କେନ୍ଦ୍ର ସରକାରଙ୍କର ସ୍ୱରାଷ୍ଟ୍ର ବିଭାଗ ମନ୍ତ୍ରୀ ଚୌଧୁରୀ ଚରଣ ସିଂଙ୍କ ସହିତ ଏ ବିଷୟରେ ମୁଁ ଆଲୋଚନା କରିଥିଲି । ରାଷ୍ଟ୍ରପତି ଶ୍ରୀ ନୀଲମ୍ ସଞ୍ଜିବ ରେଡ଼ିଙ୍କ ଦୃଷ୍ଟିକୁ ମୁଁ ଏ ଘଟଣାଟି ଆଣିଥିଲି । ମୋ କଥା ଶୁଣି ରାଷ୍ଟ୍ରପତି ଅତି ଦୟାର୍ଦ୍ର ଚିତ୍ତରେ ବିଷୟଟିର ପୁନର୍ବିଚାର କରିବାକୁ ସମ୍ମତି ଜଣାଇଥିଲେ । କିନ୍ତୁ ଭାଗ୍ୟର ବିପର୍ଯ୍ୟୟ ଏହି ଯେ ଯତୀନ୍ଦ୍ର ପରିବହନ ସଂସ୍ଥାର କାର୍ଯ୍ୟରେ ଆନ୍ଧ୍ର ରାଜ୍ୟର ରାଜଧାନୀ ହାଇଦ୍ରାବାଦକୁ ଯାଉଥିଲାବେଳେ ଗୁଣ୍ଟୁରଠାରେ ଏକ ମଟର ଦୁର୍ଘଟଣାରେ ପ୍ରାଣହରାଇଥିଲେ । ଏହାପରେ ଯତୀନ୍ଦ୍ରର ବିଧବା ପତ୍ନୀ ତଥା ପିଲାପିଲି କିପରି ସାହାଯ୍ୟ ପାଇପାରିବେ ସେକଥା ବୁଝି କାର୍ଯ୍ୟଟିକୁ ତ୍ୱରାନ୍ୱିତ କରାଇବା ସକାଶେ ଘରୋଇ ବିଭାଗର ତତ୍କାଳୀନ ସଚିବଙ୍କୁ ମୁଁ କେତେଥର ଦିଲ୍ଲୀସ୍ଥିତ କେନ୍ଦ୍ର ସଚିବାଳୟକୁ ପଠାଇଥିଲି ।

ଯେଉଁ ଆଦେଶ ବଳରେ ଶ୍ରୀ ସାମଲଙ୍କୁ ଚାକିରିରୁ ବରଖାସ୍ତ କରାଯାଇଥିଲା ସେ ପ୍ରକାର ଆଦେଶ ଅବୈଧ ଓ ଅନ୍ୟାୟ ବୋଲି କଟକର ଅତିରିକ୍ତ ସବ୍‌ଜଜ୍‌ଙ୍କ ଅଦାଲତରେ ତାଙ୍କ ପକ୍ଷରୁ ଗୋଟିଏ ଦେଓ୍ୱାନୀ ମକଦ୍ଦମା ଦାଏର ହୋଇଥିଲା । ଜଣେ ଅଭାବଗ୍ରସ୍ତ ବିପନ୍ନ ବନ୍ଧୁ ଓ ତା'ର ପିଲାପିଲିଙ୍କ ଦୁଃଖ ଦୁର୍ଦ୍ଦଶାରେ ଅଭିଭୂତ ହୋଇ କଟକର ଏଡ଼ଭୋକେଟ୍ ଶ୍ରୀ ଗୋକୁଳ ବିହାରୀ ମହାନ୍ତି ମକଦ୍ଦମା ଚଳାଇବାର ଦାୟିତ୍ୱ ନେଇଥିଲେ । ଏହି ମକଦ୍ଦମାରେ ଜଜ୍ ଶ୍ରୀ ପ୍ରେମାନନ୍ଦ ପଟ୍ଟନାୟକଙ୍କ କୋର୍ଟରେ ମୋତେ ସାକ୍ଷ୍ୟ ଦେବାକୁ ପଡ଼ିଥିଲା । ଶ୍ରୀ ସାମଲଙ୍କୁ ଚାକିରିରୁ ଅନ୍ତର କରିବା ଦିଗରେ ଯେଉଁ ଅସାଧାରଣ ଓ ଅସ୍ୱାସ୍ଥ୍ୟକର କାର୍ଯ୍ୟପ୍ରଣାଳୀ ଶାସନକ୍ଷେତ୍ରରେ ନିଆଯାଇଥିଲା, ସେ ସମ୍ବନ୍ଧରେ ମୋତେ ଜେରାକରାଯାଇଥିଲା । ଅଦାଲତର ନିଷ୍ପତ୍ତି ସ୍ୱର୍ଗତ ସାମଲଙ୍କ ସପକ୍ଷରେ ଯାଇଥିଲା ଏବଂ ଚାକିରିରୁ ତାଙ୍କର ପଦଚ୍ୟୁତି ଅନ୍ୟାୟ ଓ ବିଧିବିରୁଦ୍ଧ ବୋଲି ରାୟରେ କୁହାଯାଇଥିଲା ।

## ବାଗପତ୍ ଏବଂ ବିରିଡ଼ି

ଦଳୀୟ ଦୃଷ୍ଟିକୋଣରୁ ପୁଲିସ୍‌କୁ କିପରି ବ୍ୟବହାର କରାଯାଇଥାଏ ତା'ର ଅତି ନଗ୍ନ ଉଦାହରଣ ୧୯୮୦ ମସିହାରେ ଘଟିଥିବା ଦୁଇଟି ବୀଭତ୍ସ ଘଟଣାରୁ ମିଳେ । ଗୋଟିଏ ଘଟଣା ଘଟିଥିଲା ଉତ୍ତର ପ୍ରଦେଶର ବାଗପତ୍‌ଠାରେ, ଯେଉଁଠାରେ କି ଖୋଦ୍ ପ୍ରଧାନମନ୍ତ୍ରୀଙ୍କ ପୁଅଙ୍କର ଅନୁରାଗଭାଜନ ବୋଲି ଖ୍ୟାତିଥିବା ପୁଲିସ୍ ଲୋକଙ୍କର ଶ୍ରୀମତୀ ମାୟା ତ୍ୟାଗୀଙ୍କୁ ଉଲଗ୍ନ କରି ତାଙ୍କ ପ୍ରତି ପୈଶାଚିକ

ଅତ୍ୟାଚାର ଓ ତାଙ୍କ ସ୍ୱାମୀଙ୍କ ସହ ଅନ୍ୟମାନଙ୍କର ନିର୍ମମ ହତ୍ୟାକାଣ୍ଡ ଘଟିଥିଲା । ଅନ୍ୟଟି ହେଉଛି, ଅବିଭକ୍ତ କଟକ ଜିଲ୍ଲା ବିରିଡ଼ିଠାରେ କ୍ଷମତାସୀନ ଦଳର ତୁଙ୍ଗ ବ୍ୟକ୍ତିମାନଙ୍କର ସହାନୁଭୂତି ପାଉଥିବାର ଖ୍ୟାତି ଥିବା କେତେକ ବ୍ୟକ୍ତିଙ୍କଦ୍ୱାରା ଛବିରାଣୀଙ୍କର ଧର୍ଷଣ ଓ ହତ୍ୟାକାଣ୍ଡ ଏବଂ ରାଜନୈତିକ ଚାପରେ ପୁଲିସ୍ କର୍ମଚାରୀମାନଙ୍କର ନିଷ୍କ୍ରିୟତା ଅଭିଯୋଗ । ଏ ପ୍ରକାର ଜଘନ୍ୟକାଣ୍ଡ କୌଣସିଠାରେ ଯେ ନ ଘଟିବ ତାହା କୁହାଯାଇ ନପାରେ । ମାତ୍ର ଘଟିଲା ପରେ ପୁଲିସ୍‌ର କାର୍ଯ୍ୟାନୁଷ୍ଠାନ ଓ ଆଚରଣ ସମସ୍ତଙ୍କର ଅନୁଧେୟ । ମନୁଷ୍ୟର ଚରିତ୍ର ଓ ସ୍ୱଭାବ ଯାହା ସେଥିରେ କୌଣସି ଏକ କ୍ଷମତାସୀନ ରାଜନୈତିକ ଦଳରେ ଥିବା କୌଣସି ବ୍ୟକ୍ତି ଏ ପ୍ରକାର ଜଘନ୍ୟ ଓ ପୈଶାଚିକ କାର୍ଯ୍ୟରେ ସଂପୃକ୍ତ ହେବାଟା ଯେ ଅସମ୍ଭବ କଥା ତାହା ମଧ କହିହେବନାହିଁ । ମାତ୍ର ବିଚାର୍ଯ୍ୟ ବିଷୟ ହେଉଛି, ଘଟଣା ଘଟିଯିବା ପରେ କ୍ଷମତାସୀନ ଶାସକଗୋଷ୍ଠୀ ବା ବ୍ୟକ୍ତିମାନଙ୍କର ତତ୍‌ସମ୍ବନ୍ଧୀୟ ଆଚରଣ । ବିରିଡ଼ି ଛବିରାଣୀ ହତ୍ୟାକାଣ୍ଡ ଘଟଣାରେ ପୁଲିସ୍‌ର ଏତାଲା ନେବାଠାରୁ ଅବହେଳାର ଅଭିଯୋଗ, ଅପରାଧୀମାନେ ଗିରଫଦାରୀ ଏଡ଼ାଇବାପାଇଁ ମନ୍ତ୍ରୀ ତଥା ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ଘରେ ଆଶ୍ରୟ ନେବାର ଅପବାଦ ଏବଂ ସର୍ବୋପରି ଛବିରାଣୀଙ୍କ ସ୍ୱାମୀଙ୍କୁ କେନ୍ଦ୍ରକରି ମିଥ୍ୟା ଉପରେ ପ୍ରତିଷ୍ଠିତ ଗୋଟିଏ ନିନ୍ଦନୀୟ ଷଡ଼ଯନ୍ତ୍ର ସହିତ ଶାସନ, ସରକାର ତଥା ସରକାରର ମୁଖ୍ୟ ସଂଶ୍ଳିଷ୍ଟ ହେବାର ଅଭିଯୋଗ ପର୍ଯ୍ୟନ୍ତ ନାନା ଆକ୍ଷେପ ସମ୍ବାଦପତ୍ରମାନଙ୍କରେ ସମସ୍ତଙ୍କର ଦୃଷ୍ଟିକୁ ଅଣାଯାଇଥିଲା ।

## ଛବିରାଣୀ ଉପାଖ୍ୟାନ

ଛବିରାଣୀଙ୍କର ହତ୍ୟା ପରେ ସାକ୍ଷ୍ୟ ପ୍ରମାଣରେ ବିଭ୍ରାଟ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଛବିରାଣୀଙ୍କ ସ୍ୱାମୀ ଶ୍ରୀ ନବକିଶୋର ମହାପାତ୍ରଙ୍କୁ ୧୯୮୦ ମସିହା ଅକ୍ଟୋବର ଅଣତିରିଶ ତାରିଖରେ ତାଙ୍କ ଆଖିରେ ଅନ୍ଧପୁଟୁଳି ବାନ୍ଧି କେତେକ ଲୋକ ହରଣଚାଳ କରିନେଇଥିବାର ଅଭିଯୋଗ ଶ୍ରୀ ମହାପାତ୍ର କରିଥିଲେ । ସେଥିରେ ଶାସକଦଳର କେତେକ ପ୍ରଭାବଶାଳୀ ବ୍ୟକ୍ତି ସଂପୃକ୍ତଥିବାରୁ ପୁଲିସ୍ ଅନୁସନ୍ଧାନକାର୍ଯ୍ୟରେ ଅବହେଳା କରୁଥିବା ଅଭିଯୋଗ ପ୍ରକାଶ ପାଇବା ପରେ ସରକାର ବିଶେଷ ଅସୁବିଧାଜନକ ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ । ସମ୍ବାଦପତ୍ରମାନଙ୍କରେ ଏହି ଘଟଣାକୁ ନେଇ ଚହଳପଡ଼ିଯାଇଥିଲା । ନିଜେ ମୁଖ୍ୟମନ୍ତ୍ରୀ ଲଢୁଥିବା ଆଠଗଡ଼ ଉପନିର୍ବାଚନ ଆଉ ମାତ୍ର ଦୁଇସପ୍ତାହ ପରେ ହେବାକୁ ଥାଏ । ସେଥିପାଇଁ ତାଙ୍କୁ ବଡ଼ ଅପ୍ରୀତିକର ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଓଡ଼ିଶା ତଥା ସର୍ବଭାରତୀୟ ସମ୍ବାଦପତ୍ରମାନଙ୍କରେ ନାନାପ୍ରକାର ଚାଞ୍ଚଲ୍ୟକର ଖବର ଦୀର୍ଘକାଳ ଧରି ପ୍ରକାଶପାଇଥିଲା । ଖବର ପ୍ରକାଶ ପାଇଥିଲା ଯେ କିପରି ମହାପାତ୍ରଙ୍କ ହରଣଚାଳ ଅଭିଯୋଗ ମିଥ୍ୟାବୋଲି ଲୋକଙ୍କ ମନରେ ଧାରଣା ଦିଆଯିବ ସେ ବିଷୟରେ ଏକ ଚକ୍ରାନ୍ତ ଚାଲିଥିଲା । ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କୁ ସନ୍ତୁଷ୍ଟ କରିବାପାଇଁ ପୁଲିସ୍ ଆଇ.ଜି., ଡି.ଆଇ.ଜି. ଓ ଏସ୍.ପି. ପାହ୍ୟାର ବଡ଼ ବଡ଼ ଅଫିସରମାନେ ମଧ କଥାଟା ମିଛ ବୋଲି ପ୍ରମାଣ କରିବା ଉଦ୍ୟମରେ ଜଡ଼ିତ ହୋଇପଡ଼ିଥିବା, ତିନିଚାରିଦିନକାଳ ଛବିରାଣୀଙ୍କ ସ୍ୱାମୀଙ୍କୁ କଟକ ମଧୁପାଟଣା ଥାନାରେ ଅଟକାଇ ରଖିବା ପରେ ବିଭିନ୍ନ ପ୍ରଭାବ ଫଳରେ ବିରୁଦ୍ଧଦଳର ନେତାମାନଙ୍କୁ ସଂପୃକ୍ତକରାଇ ଫୌଜଦାରୀ ଆଇନର ୧୬୪ ଧାରାମତେ ମାଜିଷ୍ଟ୍ରେଟଙ୍କ ଆଗରେ ତାଙ୍କଠାରୁ ଏକ ବିବରଣୀ ପାଠ କରାଇ ନିଆଯିବା ଏବଂ ସର୍ବୋପରି ଉକ୍ତ ବିବରଣୀକୁ ଅଭିଯୋଗକାରୀ ସ୍ୱୟଂ ମହାପାତ୍ରଙ୍କ ମୁହଁରୁ ପ୍ରଚାର କରିବାପାଇଁ ସରକାରଙ୍କ ଅତିଥିଭବନରେ ସରକାରଙ୍କ ପକ୍ଷରୁ ଲୋକସମ୍ପର୍କ ବିଭାଗଦ୍ୱାରା ରାଜକୀୟ ସାମ୍ବାଦିକ ସମ୍ମିଳନୀର ଆୟୋଜନ କରାଯିବାଭଳି ସମ୍ବାଦ ଓଡ଼ିଶା ଶାସନ ଇତିହାସରେ ଏକ ଅଭିନବ ଅଧାୟର ଧାରଣା ଜନ୍ମାଇଥିଲା । ଏ ଘଟଣାର ପଟାନ୍ତର ଅନ୍ୟ କୌଣସି ରାଜ୍ୟରେ ଥିଲାଭଳି ମୋର ମନେହେଉନାହିଁ । ଏ ସାମ୍ବାଦିକ ସମ୍ମିଳନୀ ଯେପରି ନାଟକୀୟ ଆକାର ଧାରଣକରିଥିଲା ତାହା

ଲୋକଚକ୍ଷୁରେ ପୁଲିସ୍ ସଂସ୍ଥା ତଥା ଶାସନକୁ କଳଙ୍କିତ କରିଦେଇଥିଲା । ପୂର୍ବପରିକଳ୍ପିତ ଯୋଜନା ମୁତାବକ ସାମ୍ବାଦିକମାନଙ୍କ ଆଗରେ ଛବିରାଣୀଙ୍କ ସ୍ୱାମୀ ଶ୍ରୀ ମହାପାତ୍ର ତାଙ୍କର ହରଣଚାଳ ସଂକ୍ରାନ୍ତୀୟ ଅଭିଯୋଗ ସତ୍ୟନୁହେଁ ଏବଂ ଲୋକଦଳର ନେତା ସର୍ବଶ୍ରୀ ବିଜୁ ପଟ୍ଟନାୟକ (ପୂର୍ବତନ ମୁଖ୍ୟମନ୍ତ୍ରୀ), ପ୍ରତାପଚନ୍ଦ୍ର ମହାନ୍ତି (ପୂର୍ବତନ ରାଜସ୍ୱମନ୍ତ୍ରୀ) ଓ ଶରତ କୁମାର କର (ପୂର୍ବତନ ଶିକ୍ଷାମନ୍ତ୍ରୀ) ପ୍ରମୁଖଙ୍କ ପ୍ରରୋଚନାରେ ସେ ଏ ପ୍ରକାର ମିଥ୍ୟା ଅଭିଯୋଗ କରିଥିଲେ ବୋଲି ସରକାରୀ କର୍ତ୍ତୃପକ୍ଷମାନେ ଟାକି ବସିଥିଲେ । ତେଣୁ ଟେପ୍ ରେକର୍ଡିଙ୍ଗ ଓ ଫଟୋ ନେବାର ବ୍ୟାପକ ବ୍ୟବସ୍ଥା ହୋଇଥିଲା । ବଡ଼ ବଡ଼ ପୁଲିସ୍ ଓ ପ୍ରଶାସନିକ ଅଫିସର୍‌ମାନେ ମଧ୍ୟ ସେହି କକ୍ଷ ଏବଂ ଆଖପାଖରେ ଉପସ୍ଥିତ ଥିଲେ । ଜଣେ ଅତି ଉତ୍କଣ୍ଠାରେ ତଳ ମହଲାରେ ଅପେକ୍ଷା କରିଥିଲେ । କିନ୍ତୁ ଘଟଣା ଯାହା ଘଟିଲା ତାହା ଯେପରି ନାଟକୀୟ ସେହିପରି ବିସ୍ମୟକର । ଏ ଖବର ପାଇବା ସଙ୍ଗେ ସଙ୍ଗେ ସେ ହଡ଼ବଡ଼ହୋଇ ସେଠାରୁ ପଳାଇଯାଇଥିଲେ । ପ୍ରଲୋଭନ ଦେଖାଇ, ଜବରଦସ୍ତ ଟଙ୍କା ଯାଚି ଏବଂ ଭୟଭୀତ କରାଇ କିପରି ମାଜିଷ୍ଟ୍ରେଟଙ୍କ ଆଗରେ ତାଙ୍କଠାରୁ ବିବରଣୀ କରାଇ ନିଆଯାଇଥିଲା ସେ କଥା ସାମ୍ବାଦିକମାନଙ୍କ ଆଗରେ ବ୍ୟକ୍ତକରି ଶ୍ରୀ ମହାପାତ୍ର ସେଠାରେ ଏକ ଅପ୍ରତ୍ୟାଶିତ ବିସ୍ଫୋରଣ ଘଟାଇଥିଲେ । ରାଜ୍ୟର ତିନିଜଣ ଅତି ସମ୍ମାନାସ୍ପଦ ବ୍ୟକ୍ତିଙ୍କ ବିରୁଦ୍ଧରେ ପୁଲିସ୍ କର୍ତ୍ତୃପକ୍ଷଙ୍କର ଏଭଳି ହୀନଚକ୍ରାନ୍ତ ଓ ମିଥ୍ୟା ଅଭିଯୋଗର ଆୟୋଜନ ଯଦି ସତ୍ୟ ହୋଇଥାଏ ତାହାକୁ ସାମାନ୍ୟ ବୋଲି ବିବେଚନା କରିବା ଠିକ୍ ହେବନାହିଁ । ସେମାନଙ୍କର ଏତାଦୃଶ କାର୍ଯ୍ୟର ପ୍ରକାଶ୍ୟ ବିବରଣୀ ପୁଲିସ୍ ସଂସ୍ଥାକୁ ଦଳୀୟ ରାଜନୀତିର ଖେଳନା ଭଳି ପ୍ରତିପାଦିତ କରିଛି । ଏଥିରେ ଉପରେ ପଡ଼ି ଅବାଂଛିତ କାର୍ଯ୍ୟ କରିବାର ଯଥେଷ୍ଟ ସୂଚନା ମିଳିଛି । ଛବିରାଣୀର ହତ୍ୟାକାଣ୍ଡ ଓ ତାଙ୍କ ସ୍ୱାମୀଙ୍କର ହରଣଚାଳ ସଂପର୍କୀୟ ସମସ୍ତ ଘଟଣା ୧୯୮୦ ମସିହା ଅକ୍ଟୋବର ଏବଂ ନଭେମ୍ବର ମାସରେ ସମସ୍ତ ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା । କଲିକତାର ଆନନ୍ଦବଜାର ପ୍ରକାଶନୀ ଆନୁକୂଲ୍ୟରେ ପ୍ରକାଶ ପାଉଥିବା 'ସନ୍‌ଡ଼େ' ପତ୍ରିକାରେ ୧୯୮୦ ମସିହା ନଭେମ୍ବର ନଅ ତାରିଖ ସଂସ୍କରଣରେ ଘଟଣାର ଏକ ବିସ୍ତୃତ ବିବରଣୀ ପ୍ରକାଶ ପାଇଥିଲା ।

ଛବିରାଣୀ ହତ୍ୟା ଓ ତାଙ୍କ ସ୍ୱାମୀଙ୍କର ହରଣଚାଳ ସମ୍ବନ୍ଧୀୟ ସରକାରଙ୍କଦ୍ୱାରା ଆହୃତ ଉପରୋକ୍ତ ସାମ୍ବାଦିକ ସମ୍ମିଳନୀରେ ଘଟିଥିବା ବିଷୟସବୁ ସମ୍ବାଦପତ୍ରମାନଙ୍କରୁ ପଢ଼ି ମୁଁ ସ୍ତବ୍ଧପ୍ରାୟ ହୋଇଥିଲି । ଏ ପ୍ରକାର ଅଭିନବ ସାମ୍ବାଦିକ ସମ୍ମିଳନୀ ଓ ତା'ର ନାଟକୀୟ ପରିଣତି ସମ୍ବନ୍ଧରେ ପ୍ରକୃତ ବିବରଣୀ ଜାଣିବାପାଇଁ ମୁଁ ସ୍ୱରାଷ୍ଟ୍ର ବିଭାଗର ସେକ୍ରେଟାରୀ ଶ୍ରୀ ସୀତାକାନ୍ତ ମହାପାତ୍ରଙ୍କୁ ଫୋନ୍‌ରେ ଖୋଜିଥିଲି । ତାଙ୍କ ଅଫିସରୁ ଜାଣିଲି ଯେ ଉକ୍ତ ଘଟଣା ଘଟିବାବେଳେ ସେ ରାଜଧାନୀରେ ଅନୁପସ୍ଥିତ ଥିଲେ ଏବଂ ରାଜ୍ୟବାହାରକୁ ଯାଇଥିଲେ । ଶ୍ରୀ ମହାପାତ୍ରଙ୍କ ସହିତ କାର୍ଯ୍ୟ କରିବାରେ ମୋର ଯେଉଁ ଅନୁଭୂତି ସେଥିରୁ ମୋର ବିଶ୍ୱାସ ଥିଲା ଯେ ସେ ଜାଣିଥିଲେ ଏ ପ୍ରକାର ହାସ୍ୟାସ୍ପଦ ପରିସ୍ଥିତି ଉପୁଜି ନଥା'ନ୍ତା । ଏହି ସାମ୍ବାଦିକ ସମ୍ମିଳନୀର ଆୟୋଜନ ସମ୍ପର୍କରେ ଜାଣିବାର ସମ୍ଭାବନା ଥିବା ଆଉ ଜଣେ ସେକ୍ରେଟାରୀଙ୍କୁ ମୁଁ ଏ ବିଷୟରେ ପଚାରିଥିଲି । ସେ ଏ ସମସ୍ତ ଘଟଣାପାଇଁ ଦୁଃଖିତ ହେବା ସଙ୍ଗେ ସଙ୍ଗେ କହିଥିଲେ, "ସାର୍, ପୁଲିସ୍‌ବାଲା ଆମକୁ ଓ ମୁଖ୍ୟମନ୍ତ୍ରୀଙ୍କୁ ବୁଡ଼ାଇଦେଲେ ।" ସାମ୍ବାଦିକ ସମ୍ମିଳନୀର ଏହି ନାଟକୀୟ ପରିଣତି ପରେ ମୁଖ୍ୟମନ୍ତ୍ରୀ କୁଆଡ଼େ ସେତେବେଳେ ଗେଷ୍ଟହାଉସ୍ ତଳ ମହଲାରେ ବସିଥିବା ପୁଲିସ୍ ହାକିମଙ୍କୁ ଖୋଜିଥିଲେ । କିନ୍ତୁ ସେହି ବ୍ୟକ୍ତି ଛାନିଆରେ ଗସ୍ତରେ ଚାଲିଯାଇଥିବା ଉତ୍ତର ପାଇ ମୁଖ୍ୟମନ୍ତ୍ରୀ ବିରକ୍ତି ପ୍ରକାଶ କରିବାର ଶୁଣାଯାଇଥିଲା । ଏଭଳି ପରିସ୍ଥିତିରେ ଜଣେ ମୁଖ୍ୟମନ୍ତ୍ରୀ ଦାୟିତ୍ୱସମ୍ପନ୍ନ ପଦବୀପାଇଁ ନିଜେ ନିର୍ବାଚନ କରିଥିବା ଅଫିସରମାନଙ୍କ ଅହେତୁକ କାର୍ଯ୍ୟ ସମୀକ୍ଷା କରିବାଠାରୁ କର୍ମଚାରୀ ନିର୍ବାଚନ ସଂପର୍କରେ ନିଜର ବିଚାରବୁଦ୍ଧିକୁ ହିଁ ସମୀକ୍ଷା କରିବା ଅଧିକ ଜରୁରୀ ।

୧୯୭୫ ମସିହା ଅକ୍ଟୋବର ମାସରେ ବାଲେଶ୍ୱର ଟାଉନ୍ ପୁଲିସ୍ ଷ୍ଟେସନରେ ଯେଉଁ ତିନିଜଣ ନିରୀହ ବାଳିକାଙ୍କୁ ଦିନରାତି ଛତିଶ ଘଣ୍ଟା ଥାନା ଅଫିସରଙ୍କ ଅନିଚ୍ଛାସତ୍ତ୍ୱେ ଅଟକାଯାଇ ବାଲେଶ୍ୱର ଜିଲ୍ଲାର ଏସ୍.ପି. ଓ ସହକାରୀ ଏସ୍.ପି.ଙ୍କ ଦ୍ୱାରା ଓ ସେମାନଙ୍କର ନିର୍ଦ୍ଦେଶରେ ସେମାନଙ୍କ ଉପରେ ଓ ସେମାନଙ୍କ ସଂପର୍କୀୟଙ୍କ ଉପରେ ଯେଉଁସବୁ ଅକଥନୀୟ ଉତ୍ପୀଡ଼ନ କରାଯାଇଥିଲା ସେ ସବୁ ବିଷୟ ଅନୁଧ୍ୟାନ କରି ପଣ୍ଡା କମିଶନ୍ ତତ୍କାଳୀନ ସର୍ବୋଚ୍ଚ ପୁଲିସ୍ କର୍ତ୍ତାଙ୍କ ଆଚରଣ ଓ କାର୍ଯ୍ୟକୁ ଯେପରି ଭାବରେ ନାପସନ୍ଦ ଓ ନିନ୍ଦା କରିଛନ୍ତି ସେଥିରେ ତାଙ୍କ ଉପରେ ପୁଲିସ୍ ବିଭାଗର ଦାୟିତ୍ୱ ନ୍ୟସ୍ତ କରିବା ଏକ ଅବାଞ୍ଛନୀୟ କାର୍ଯ୍ୟ ବୋଲି କୁହାଯାଇପାରେ । ଉକ୍ତ ଘଟଣାର ପୁଲିସ୍ ଅନୁସନ୍ଧାନ ସମୟରେ ଆଇ.ଜି. ଦୁର୍ନୀତି, ବ୍ୟଭିଚାର, ଜାଲ୍ ଜୁଆଚୋରୀ, ଷ୍ଟେସନ ଡାଏରି ବଦଳାବଦଳି କରିବା ଓ ସତ୍ୟକୁ ଚପାଇ ଦେବା ପ୍ରଭୃତି ନାନାପ୍ରକାର କୁତ୍ସିତ କାର୍ଯ୍ୟ କରି ରାଜ୍ୟସରକାର ତଥା କେନ୍ଦ୍ର ସରକାରଙ୍କୁ ମିଥ୍ୟା ତଥ୍ୟ ପରିବେଷଣ କରି ଭୂତାଇଛନ୍ତି ବୋଲି କମିଶନ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । ବାଲେଶ୍ୱର ଟାଉନ ଥାନାର ଥାନା ଅଫିସର ଶ୍ରୀ ଦୋଳଗୋବିନ୍ଦ ପ୍ରଧାନଙ୍କର ଆପତ୍ତି ସତ୍ତ୍ୱେ ଏସ୍.ପି. ଓ ସହକାରୀ ଏସ୍.ପି. ଯେଉଁ ଆଚରଣ ଦେଖାଇଥିଲେ ସେକଥା ଶ୍ରୀ ପ୍ରଧାନ ଓ ଥାନାର ଅନ୍ୟାନ୍ୟ ତଳିଆ ଅଫିସରମାନେ ଅତି ସାହସର ସହିତ ସତ୍ୟପାଠ ସହ କମିଶନଙ୍କ ଆଗରେ ବର୍ଣ୍ଣନା କରିଥିଲେ । ଥାନା ଅଫିସର୍ ଶ୍ରୀ ପ୍ରଧାନ ଆଇ.ଜି.ଙ୍କ ପାଖରେ ଥାନାରେ ଘଟିଥିବା ସବୁ କଥା କହିଥିଲେ । ଆଇ.ଜି. ତାଙ୍କ ଅନୁସନ୍ଧାନ ରିପୋର୍ଟରେ ସେସବୁ କଥା ଉଲ୍ଲେଖ କରିନଥିଲେ । କ୍ରାଇମ୍ ବ୍ରାଞ୍ଚର ଡି.ଆଇ.ଜି ଶ୍ରୀ ଦୁର୍ଗାମାଧବ ମିଶ୍ରଙ୍କର ତଦନ୍ତ ରିପୋର୍ଟକୁ ଚାପିଦେଇ ସେ କିପରି ସଚିବାଳୟରେ ଅନାହୂତ ଭାବରେ ଅନଧିକାର କାର୍ଯ୍ୟକରି କେନ୍ଦ୍ର ସରକାରଙ୍କୁ ପ୍ରତାରିତ କରିଥିଲେ ତାହା କମିଶନ ତାଙ୍କ ରିପୋର୍ଟରେ ବର୍ଣ୍ଣନା କରିଛନ୍ତି । ପଣ୍ଡା କମିଶନଙ୍କ ରିପୋର୍ଟର କେତେକ ଅଂଶ ଉଦ୍ଧାର କଲେ ତାହା ଜଣେ ଆଇ.ଜି. ପାହିଆ ଅଫିସରଙ୍କଠାରୁ ଆଶାକରାଯାଉଥିବା ଆଚରଣଗତ ମାନଦଣ୍ଡ ଏବଂ ଜଣେ ମୁଖ୍ୟମନ୍ତ୍ରୀଙ୍କଠାରୁ ଆଶାକରାଯାଉଥିବା ପ୍ରଶାସନିକ ବିଚାରବତ୍ତାର ମାନଦଣ୍ଡ ସମ୍ପର୍କରେ କିଛି ବୌଦ୍ଧିକ ବିଚାରର ସୂଚନା ଦେବ ।

"In the entirety of circumstances, I hold that I.G. Sri Swain was told by C.W. 34 Sri Dologovinda Pradhan, Officer-in-Charge of Balasore Town Police Station of all that happened at the Balasore Town Police Station on 16-10-1975 and 17-10-1975, including 36 hours detention of the three girls, under orders of the S.P., assault on Tapan by S.P. and A.S.P.; and assault on Anjali by Tapan and Mahamaya Kar who were threatened and coerced by the S.P. to assault Anjali. Thus by 7-12-1975, the date of report of the I.G. of Police to the State Government, Ext.44, Sri N. Swain, the I.G. of Police was aware of all that has been stated in the previous paragraph. Between 22-11-1975 and 4-12-1975, the I.G. had made no enquiries and had got no enquiry made to disbelieve all that C.W. 34 Sri Dologovinda Pradhan, Officer-in-Charge, Balasore Town Police Station told him on 17-11-1975. On the analysis of evidence given above, the entire report of the I.G. of Police to the State Government dated 7-12-1975 Ext. 44, exonerating the S.P. of all allegations is a deliberately false report."

"Thus Sri Swain, the then I.G. of Police not only gave deliberately false reports Ext.39, dated 5-11-1975 and Ext.44, dated 7-12-1975 to the

State Government suppressing facts which constitute criminal offence punishable under the Indian Penal Code and suppressing grave acts of misconduct and gross abuse of power by the Superintendent of Police, Balasore and thereby misleading the State Government, but also he went considerably out of his way in correcting Ext. 45, the draft letter of the State Government to the Central Government. Evidently in good faith the then Home Secretary took his assistance in drafting the letter Ext. 45, to the Central Government. I hold that Sri N.Swain, the then I.G. of Police, committed grave misconduct. The conduct of Sri N. Swain, then I.G. of Police, constitutes gross betrayal of the trust imposed upon him by the State Government as the head of the Police Administration. I do not find words strong enough to condemn the conduct of Sri N. Swain, the then Inspector-General of Police, Orissa." (Pages 133 and 136)

ତରୁଣ ବୟସର ଝିଅ ପୁଅଙ୍କ ଉପରେ ହୋଇଥିବା ନିନ୍ଦନୀୟ ଆଚରଣକୁ ଆଇ.ଜି. ଯେପରି ସମର୍ଥନ କରିଥିଲେ ସେଥିରେ ବିସ୍ମିତ ଓ ବ୍ୟଥିତ ହୋଇ କମିଶନ ଆହୁରି କହିଛନ୍ତି –

"I am constrained to observe that with such officers at the head of the Police Administration of a State, the liberty of citizens and even of young adolescent children is not safe."

ବିଚାରପତି ପଣ୍ଡା କମିଶନ୍‌ଙ୍କ ଆଗରେ ଉପସ୍ଥାପିତ ଅଭିଯୋଗ ସହିତ ରାଜନୀତିର କୌଣସି ସଂପର୍କ ନଥିଲା । ଶାସକ କଂଗ୍ରେସର ଜଣେ ଲୋକସଭା ସଦସ୍ୟ ଓ ତାଙ୍କର ପତ୍ନୀ ଜରୁରୀକାଳୀନ ଅବସ୍ଥା ସମୟରେ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ଶ୍ରୀ ବ୍ରହ୍ମାନନ୍ଦ ରେଡ଼ିଙ୍କ ଦୃଷ୍ଟିକୁ ଉପରୋକ୍ତ ପୈଶାଚିକ ଘଟଣାଟିକୁ ଆଣିଥିଲେ ଏବଂ ଶ୍ରୀ ରେଡ଼ି ଚାହିଁଥିଲେ ଉକ୍ତ ଘଟଣାର ଅନୁସନ୍ଧାନ । ସେତେବେଳେ ଓଡ଼ିଶା ସରକାରଙ୍କ ପକ୍ଷରୁ ଯେଉଁ ରିପୋର୍ଟ କେନ୍ଦ୍ର ସରକାରଙ୍କୁ ପଠାଯାଇଥିଲା ସେଥିରେ ସନ୍ତୁଷ୍ଟ ନହୋଇ ଏବଂ ତା'ର ସତ୍ୟାସତ୍ୟ ସମ୍ବନ୍ଧରେ ସନ୍ଦେହକରି ଆଉଥରେ ଭଲଭାବରେ ଅନୁସନ୍ଧାନ କରିବାପାଇଁ ରାଜ୍ୟ ସରକାରଙ୍କୁ କେନ୍ଦ୍ର ସରକାର ଲେଖିଥିଲେ । ଉକ୍ତ ଚିଠିଟି ସଚିବାଳୟରେ ପଡ଼ିରହିଥିଲା ଓ ତା'ଉପରେ କୌଣସି କାର୍ଯ୍ୟାନୁଷ୍ଠାନ ହୋଇନଥିଲା । ମୁଁ ୧୯୭୭ ମସିହାରେ ମୁଖ୍ୟମନ୍ତ୍ରୀ ଥିବାବେଳେ କେନ୍ଦ୍ର ସରକାରଙ୍କର ଉପରୋକ୍ତ ଚିଠିଟି ମୋ ପାଖରେ ଉପସ୍ଥାପିତ କରାଯାଇଥିଲା । ତା' ଛଡ଼ା ବାଲେଶ୍ୱର ମହିଳା ପରିଷଦ (Women's Council)ର ସଭ୍ୟାମାନେ ମୋତେ ଦେଖାକରି ଘଟଣା ସମ୍ବନ୍ଧରେ ଘୋର ଅସନ୍ତୋଷ ପ୍ରକାଶକରି ଏହାର ଏକ ନିରପେକ୍ଷ ତଦନ୍ତ ଦାବି କରିଥିଲେ । ଏହି ବୀଭତ୍ସ ତଥା ଲୋମହର୍ଷଣକାରୀ ଘଟଣା ସଂପର୍କୀୟ ସମସ୍ତ କାଗଜପତ୍ର ମୁଁ ଅଧ୍ୟୟନ କରି ରାଜ୍ୟରେ ପୁଲିସ୍ ପ୍ରଶାସନର ସ୍ୱାର୍ଥ ଦୃଷ୍ଟିରୁ ଜଣେ ହାଇକୋର୍ଟ ଜଜ୍‌ଙ୍କଦ୍ୱାରା ବିଚାର ବିଭାଗୀୟ ତଦନ୍ତର ଆବଶ୍ୟକତା ଅନୁଭବ କରିଥିଲି ।

ତଦନୁସାରେ ପଣ୍ଡା କମିଶନ୍ ନିଯୁକ୍ତ କରାଯାଇଥିଲା । ୧୯୭୯ ମସିହା ଡିସେମ୍ବର ଏକତିରିଶ ତାରିଖରେ ସରକାର କମିଶନ୍‌ଙ୍କ ରିପୋର୍ଟ ପାଇଲେ । ଏହାର ମାତ୍ର ଦେଢ଼ମାସ ପରେ ଜନତା ସରକାର ଅପସାରିତ ହେଲା ଏବଂ ତତ୍ପରେ କଂଗ୍ରେସ (ଇ) ସରକାର ଆସିଲା । ୧୯୮୦ ମସିହା ଆରମ୍ଭରେ ପଣ୍ଡା କମିଶନ୍‌ଙ୍କଦ୍ୱାରା ଭର୍ତ୍ସିତ ଉକ୍ତ ଆଇ.ଜି. କମିଶନ୍‌ଙ୍କ ନିଷ୍ପତ୍ତି ବିରୁଦ୍ଧରେ ଓଡ଼ିଶା ହାଇକୋର୍ଟରେ ଏକ ରିଟ୍ ଆବେଦନ କଲେ । ମାତ୍ର ୧୯୮୩ ମସିହାରେ ସେ କାର୍ଯ୍ୟରୁ ଅବସର ନେବା ପର୍ଯ୍ୟନ୍ତ ଉକ୍ତ ଆବେଦନଟି ହାଇକୋର୍ଟରେ ମାମଲା ତାଲିକାରେ ଶୁଣାଣିପାଇଁ ଉଠିପାରିନଥିଲା । ଏହାଦ୍ୱାରା କମିଶନ୍‌ଙ୍କ ସିଦ୍ଧାନ୍ତ ଓ ମନ୍ତବ୍ୟ, ଅଦାଲତର ନିଷ୍ପତ୍ତି ଓ ତଦନୁରୂପ ପ୍ରତିକାର ଛାଏଁ ଅକାମୀ

ହୋଇଗଲା । ଏହି ଦୀର୍ଘ ତିନିବର୍ଷ ମଧ୍ୟରେ ସରକାର ବା ଆଡ୍‌ଭୋକେଟ୍ ଜେନେରାଲ୍‌ଙ୍କ ପକ୍ଷରୁ ସରକାରୀ ପ୍ରଶାସନର ଆଚରଣଗତ ଏଭଳି ଏକ ଗୁରୁତର ବ୍ୟାପାର ସଂପର୍କରେ ଶୀଘ୍ର ଶୁଣାଣି ଓ ନିଷ୍ପତ୍ତିପାଇଁ ମାନ୍ୟବର ହାଇକୋର୍ଟଙ୍କ ପାଖରେ ଜଣାଇବାର ତତ୍ପରତା ଦେଖାଗଲାନାହିଁ ।

ଜନସାଧାରଣଙ୍କ ବୃହତ୍ତର ସ୍ୱାର୍ଥଜଡ଼ିତ ପ୍ରଶାସନିକ ବ୍ୟାପାରରେ ସୁପ୍ରିମକୋର୍ଟ ଓ ହାଇକୋର୍ଟରେ ବିଚାରାଧୀନ ମକଦ୍ଦମାକୁ ତ୍ୱରାନ୍ୱିତ କରାଇବାର ଦୃଷ୍ଟାନ୍ତ ବିରଳ ନୁହେଁ । କାରଣ ଏପରି କରାନଗଲେ କେବଳ ବିଳମ୍ବିତ ବିଚାରଜନିତ ଅବିଚାରହିଁ ପ୍ରଶ୍ରୟ ପାଏ (Justice delayed is justice denied); ନାଗରିକମାନଙ୍କ ମନରେ ଗଣତାନ୍ତ୍ରିକ ପ୍ରଶାସନର ବିଭିନ୍ନ ସାମ୍ବିଧାନିକ ପ୍ରତିଷ୍ଠାନ, ସରକାର ତଥା ନ୍ୟାୟାଳୟ ସମ୍ପର୍କରେ ନୈରାଶ୍ୟ ଭାବ ଜାତହୁଏ । ପ୍ରଶାସନର ସର୍ବୋଚ୍ଚ କର୍ତ୍ତା ମୁଖ୍ୟମନ୍ତ୍ରୀ ଏସବୁ ଦିଗକୁ ଦୃଷ୍ଟି ନଦେବାଦ୍ୱାରା ଏକ ଅବାଞ୍ଛିତ ବାତାବରଣ ଓ ପ୍ରଶାସନିକ ଅସଙ୍ଗତି ସୃଷ୍ଟିହେଲା । ଏହି ମାମଲାର ଶୀଘ୍ର ନିଷ୍ପତ୍ତି ପାଇଁ ସରକାର ତଥା ଆବେଦନକାରୀ କାହାରି ପକ୍ଷରୁ ବିଶେଷ ତତ୍ପରତା ପ୍ରକାଶ ନପାଇବା ବିସ୍ମୟକର ।

## ଜଣେ ସ୍ୱରାଷ୍ଟ୍ରମନ୍ତ୍ରୀଙ୍କର ଉଦ୍ଭଟ ଚିନ୍ତା

ପୁଲିସ୍‌କୁ ଦଳୀୟ ରାଜନୀତିରେ ବ୍ୟବହାର କରିବାର ମନୋବୃତ୍ତି ଆସି କେଉଁ ସ୍ତରରେ ପହଞ୍ଚିଲାଣି ତାହା ୧୯୮୧ ମସିହା ଜାନୁୟାରୀ ଏଗାର ତାରିଖରେ ପ୍ରକାଶିତ ଷ୍ଟେଟ୍‌ସ୍‌ମ୍ୟାନ୍ କାଗଜରେ ଆମ ଦେଶର ତତ୍କାଳୀନ ସ୍ୱରାଷ୍ଟ୍ରମନ୍ତ୍ରୀ ଜ୍ଞାନୀ ଜୈଲ ସିଂଙ୍କ ବିବୃତିରୁ ବେଶ୍ ବୁଝାପଡ଼େ । ପୁଲିସ୍ ଉପରେ ରାଜନୈତିକ ନିୟନ୍ତ୍ରଣ ବିଷୟରେ ବୁଝାଇ ସ୍ୱରାଷ୍ଟ୍ରମନ୍ତ୍ରୀ ଯାହା କହିଛନ୍ତି ତାହା ନିମ୍ନମତେ ପ୍ରକାଶ ପାଇଛି ।

"He told a Press Conference that after a party was voted to power, it had to provide efficient administration and maintain law and order to fulfill its promises made during the elections. The police force was an instrument in the whole process. As such, it was but natural that the police must remain under the control of the party in power."

ଜ୍ଞାନୀ ଜୈଲ ସିଂ ଯାହା କହିଛନ୍ତି ତା'ର ମର୍ମ ହେଉଛି – ଗୋଟିଏ ରାଜନୈତିକ ଦଳ ତା'ର ନିର୍ବାଚନ ସମୟରେ ନାନାପ୍ରକାର ପ୍ରତିଶ୍ରୁତି ଲୋକଙ୍କୁ ଦେଇଥାଏ । ଲୋକେ ଯଦି ସେହି ଦଳକୁ ଭୋଟଦେଇ ତା'ଠାରେ ଶାସନ କ୍ଷମତା ନ୍ୟସ୍ତ କରନ୍ତି, ତା'ହେଲେ ଲୋକଙ୍କୁ ଦେଇଥିବା ପ୍ରତିଶ୍ରୁତିଗୁଡ଼ିକୁ ପୂରଣ କରିବା ସେଇ ଦଳର ଦାୟିତ୍ୱ । ଏହି ପ୍ରତିଶ୍ରୁତି ପାଳନ କରିବା ଦିଗରେ ପୁଲିସ୍‌ବାହିନୀ ଏକ ମାଧ୍ୟମ । ତେଣୁ ଯେଉଁ ଦଳ କ୍ଷମତାକୁ ଆସିବ ସେଇ ଦଳ କର୍ତ୍ତୃତ୍ୱରେ ପୁଲିସ୍ ରହିବା ଉଚିତ । ଏହାର ଅର୍ଥ ହେଲା ଦଳ ନିୟନ୍ତ୍ରଣ କରିବ ପୁଲିସ୍‌ର କାର୍ଯ୍ୟକୁ ।

## ଜ୍ଞାନୀଜୀଙ୍କ ଅଜ୍ଞାନୀ କାର୍ଯ୍ୟ

ଯାହା ବେଳେବେଳେ ଅତି ଗୋପନୀୟ ଭାବରେ ତଥା ସଙ୍କୋଚରେ କରାଯାଉଥିଲା, ତାହାକୁ ସ୍ୱରାଷ୍ଟ୍ରମନ୍ତ୍ରୀ ଭାବେ ଜ୍ଞାନୀଜୀ ଖୋଲାଖୋଲି ଏକ ଗୃହୀତ ନୀତିରୂପେ ବୟାନ କରିପକାଇଲେ । ନିରଙ୍କୁଶ କ୍ଷମତା ନିଶାରେ ଯେଉଁମାନେ ଦିନ ଯାପନ କରନ୍ତି ସେମାନେ ଏ ପ୍ରକାର ମତ ବ୍ୟକ୍ତ କରିବାରେ କିଛି ଅସୁବିଧା ନାହିଁ । ମାତ୍ର ଜ୍ଞାନୀଜୀ ନିଜ ମୁଖରେ ଏ ପ୍ରକାର ଅଜ୍ଞାନ, ଗଣତନ୍ତ୍ରଦ୍ରୋହୀ, ଭ୍ରଷ୍ଟାଚାରୀ ନୀତିର ବୟାନ କରିବାଦ୍ୱାରା ଆମ ଦେଶକୁ କେଉଁ ଆଡ଼କୁ ଆଗେଇ ନେଇଛନ୍ତି ତାହା ଗଭୀରଭାବରେ ଚିନ୍ତା କରିବାର କଥା । ସେ ହିଁ ପରବର୍ତ୍ତୀକାଳରେ ଭାରତବର୍ଷର ସମ୍ମାନିତ ରାଷ୍ଟ୍ରପତି

ଆସନରେ ଥିଲେ । ଏହି ଆଦର୍ଶପାଇଁ କ'ଣ ଆମ ଦେଶରେ ଲୋକେ ଜାତି, ଧର୍ମ, ବର୍ଣ୍ଣ, ଦଳ ଓ ମତ ନିର୍ବିଶେଷରେ ମହାତ୍ମାଜୀଙ୍କ ନେତୃତ୍ୱରେ ସ୍ୱାଧୀନତା ହାସଲ ଓ ଗଣତନ୍ତ୍ର ଶାସନପାଇଁ ଲଢୁଥିଲେ ? ତା'ହେଲେ କ'ଣ ବାଗପତ ଓ ଛବିରାଣୀ ଘଟଣାଠାରୁ ଆରମ୍ଭକରି ସଞ୍ଜୟ ଗାନ୍ଧୀଙ୍କ ମାରୁତି କମ୍ପାନୀ ଓ ଇନ୍ଦିରା ଗାନ୍ଧୀଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗର ଅନୁସନ୍ଧାନକାରୀ ଗୁଇନ୍ଦା ପୁଲିସ୍ ଅଫିସରମାନଙ୍କର ଗିରଫଦାରୀ ପର୍ଯ୍ୟନ୍ତ ସମସ୍ତ ଘଟଣା ଦଳ, ନୀତି ଓ ଶାସନସମ୍ମତ ? ଯୁକ୍ତରାଷ୍ଟ୍ର ଆମେରିକାର ରାଷ୍ଟ୍ରପତି ରିଚାର୍ଡ଼ ନିକ୍ସନ୍ ଓ୍ୱାଟରଗେଟ୍‌ଠାରେ ଅନୁଷ୍ଠିତ ତାଙ୍କ ବିରୋଧୀଦଳ ଡିମୋକ୍ରାଟିକ୍ ପାର୍ଟିର ଗୋଟିଏ ବୈଠକରୁ ଗୁପ୍ତଚର ଜରିଆରେ ସେମାନଙ୍କର ଗୋପନୀୟ କଥାବାର୍ତ୍ତା ସଂଗ୍ରହ କରିଥିବାରୁ ଏବଂ ସେ ସଂପର୍କରେ ଗିରଫ ହୋଇଥିବା ବ୍ୟକ୍ତିମାନଙ୍କର ଓ ସେହି ଘଟଣା ସମ୍ବନ୍ଧୀୟ ଅନୁସନ୍ଧାନରେ ପରୋକ୍ଷ ହସ୍ତକ୍ଷେପ କରିବାରୁ ତାଙ୍କୁ ରାଷ୍ଟ୍ରପତି ପଦରୁ ବିଦାୟ ନେବାକୁ ପଡ଼ିଥିଲା । ଆମେରିକାର ଫେଡେରାଲ୍ ବ୍ୟୁରୋ ପୁଲିସ୍ ଅନୁସନ୍ଧାନ ସଂସ୍ଥା ଉପରୋକ୍ତ ଘଟଣାର ତଦନ୍ତ ଦାୟିତ୍ୱରେ ଥିଲେ ଏବଂ ଉକ୍ତ ଅନୁସନ୍ଧାନ କାର୍ଯ୍ୟକୁ ରାଷ୍ଟ୍ରପତି ନିକ୍ସନ୍ ପ୍ରଭାବିତ କରିବାକୁ ଉଦ୍ୟମ କରୁଥିଲେ ବୋଲି ଅଭିଯୋଗ ହୋଇଥିଲା । ଏହି ଘଟଣା ସମଗ୍ର ଆମେରିକାର ଜନମତରେ ଏପରି ପ୍ରବଳ ଉତ୍ତେଜନା ସୃଷ୍ଟିକଲା ଯେ ସେଥିରେ ସରକାର ଦୋହଲି ଯାଇଥିଲା । କି ଗଣତନ୍ତ୍ର ପ୍ରୀତି ସେମାନଙ୍କର ! ୧୯୭୩-୭୪ ମସିହାର ଏ ଘଟଣା । ଆମେ ଯେତେବେଳେ ସ୍ୱାଧୀନତା ସଂଗ୍ରାମରେ ରତ ଥିଲୁ, ଯୁକ୍ତରାଷ୍ଟ୍ର ଆମେରିକାର ମୁକ୍ତି ସଂଗ୍ରାମର ଇତିହାସ (American War of Independence) ଆମ୍ଭମାନଙ୍କୁ ଉତ୍ସାହ ଦେଉଥିଲା । ସେ ତ ଅନେକ ଦିନ ତଳର କଥା । ରାଜନୀତିରେ ଗଣତାନ୍ତ୍ରିକ ମୂଲ୍ୟବୋଧ ଓ ପ୍ରଶାସନିକ ନିରପେକ୍ଷତାକୁ ଜାହିର କରିବା ଉଦ୍ଦେଶ୍ୟରେ ରାଷ୍ଟ୍ରପତି ନିକ୍ସନ୍‌ଙ୍କୁ ବିଦାୟ ଦେଇ ଯେଉଁ ମହତ୍ତ୍ୱପୂର୍ଣ୍ଣ ଦାମ୍ଭିକ ଆଦର୍ଶ ଆମେରିକାର ଲୋକମାନେ ରଖିଲେ ତାହା ଯଦି ଆମକୁ ଓ ଆମର ଶାସକବର୍ଗଙ୍କୁ ପ୍ରଭାବିତ ଓ ଅନୁପ୍ରାଣିତ କରନ୍ତା ତା'ହେଲେ ଦେଶର ଗଣତନ୍ତ୍ର ନିଶ୍ଚିତ ଭାବରେ ବଳିଷ୍ଠ ହୁଅନ୍ତା । ନିରଙ୍କୁଶ କ୍ଷମତାର ପିପାସା, ପ୍ରଚ୍ଛନ୍ନ ଅଭିପ୍ରାୟ ଓ ଅସ୍ୱାଭାବିକ ଅଭିଳାଷ ଆମର ଶାସକବର୍ଗଙ୍କୁ ଏପରି ବିଚାରଶକ୍ତିହୀନ କରିପକାଉଛି ଯେ ସେମାନେ ସୁସ୍ଥ ପରମ୍ପରାରୁ କିଛି ଶିକ୍ଷା ଅର୍ଜନ କରିବାକୁ ପସନ୍ଦ କରୁନାହାନ୍ତି । ବରଂ ସେମାନେ ଅବାଞ୍ଛିତ ପରମ୍ପରା ସୃଷ୍ଟି କରିବାକୁ ସଂକୋଚ ଅନୁଭବ କରୁନାହାନ୍ତି । ରାଷ୍ଟ୍ରପତି ପଦରୁ ରିଚାର୍ଡ଼ ନିକ୍ସନ୍‌ଙ୍କର ଅପସାରଣ ଗଣତାନ୍ତ୍ରିକ ରାଜନୀତିବିଜ୍ଞାନ ଇତିହାସରେ ଏକ ଉତ୍କୃଷ୍ଟ ଦୃଷ୍ଟାନ୍ତ । ମାତ୍ର ଗୋଟିଏ କୌତୂହଳ ଓ ଆଶ୍ଚର୍ଯ୍ୟଜନକ କଥା ହେଲା ଯେ, ଆମ ଦେଶର ସ୍ୱରାଷ୍ଟ୍ରମନ୍ତ୍ରୀ ଭାବେ ଜ୍ଞାନୀ ଜୈଲ ସିଂ ଶାସକଦଳ ଓ ଦଳୀୟ କାର୍ଯ୍ୟରେ ପୁଲିସ୍‌ର ଭୂମିକା ସମ୍ବନ୍ଧରେ ଉପରୋକ୍ତ ଭାବରେ ବୟାନକରି ପାର୍ଲିଆମେଣ୍ଟରେ ହିଟ୍‌ଲରଙ୍କ ସ୍ୱେଚ୍ଛାଚାରୀ ଓ ନିରଙ୍କୁଶ ଶାସନ ସଂକ୍ରାନ୍ତୀୟ ନୀତି, ଆଦର୍ଶ ଓ ପନ୍ଥାକୁ ଖୋଦ୍ ଭୂରିଭୂରି ପ୍ରଶଂସା କରି ତାହାର ଯଥାର୍ଥତାକୁ ସମର୍ଥନ କଲା ପରେ ମଧ୍ୟ ଭାରତବର୍ଷଭଳି ଏକ ଧର୍ମନିରପେକ୍ଷ, ସମାଜବାଦୀ, ଗଣତନ୍ତ୍ର ରାଷ୍ଟ୍ରରେ ତାଙ୍କର ପଦୋନ୍ନତି ଘଟାଯାଇ ସମ୍ବିଧାନର ସର୍ବୋଚ୍ଚ ମର୍ଯ୍ୟାଦାବନ୍ତ ସ୍ଥାନ ରାଷ୍ଟ୍ରପତି ପଦରେ ତାଙ୍କୁ ଅଭିଷିକ୍ତ କରାଗଲା । ଅବଶ୍ୟ ହିଟ୍‌ଲରଙ୍କ ସମ୍ବନ୍ଧରେ ତାଙ୍କର ଉକ୍ତିଟି ଅନଭିପ୍ରେତ ଥିଲା ବୋଲି କହି ଜିହ୍ୱାସ୍ଖଳନର ହାସ୍ୟାସ୍ପଦ ବାହାନା ଦେଇ ଦୁଃଖ ପ୍ରକାଶ କରିବାକୁ ଜ୍ଞାନୀଜୀ ବାଧ୍ୟହୋଇଥିଲେ; ମାତ୍ର ତାହା ସନ୍ତୋଷଜନକ ହୋଇନଥିଲା । କହିଲା ବେଳେ କୌଣସି ଶବ୍ଦ ଅନଭିପ୍ରେତ ଭାବରେ ଜିହ୍ୱାରୁ ସ୍ଖଳିତ ହୋଇପାରେ, ମାତ୍ର ଏକ ମନ୍ତବ୍ୟର ବୟାନ ଜାଣିଶୁଣି କରାଯାଇଥାଏ ଏବଂ ତାହା ଇଚ୍ଛାକୃତ ବୋଲି ନିଃସନ୍ଦେହରେ କୁହାଯାଇପାରେ । ଜ୍ଞାନୀଜୀଙ୍କର ଉପରୋକ୍ତ ଉକ୍ତିଟି କୁଆଡ଼େ ଏପରି ନଗ୍ନ, ବିପଜ୍ଜନକ, ଗଣତନ୍ତ୍ରଦ୍ରୋହୀ ଓ ସଭ୍ୟତାବିରୋଧୀ ଥିଲା ଯେ ତାହା ଲୋକସଭା ବିବରଣୀରେ ସ୍ଥାନ ପାଇବନାହିଁ ବୋଲି ୧୯୮୨ ମସିହା ମାର୍ଚ୍ଚ ମାସ ଛବିଶ ତାରିଖରେ ବାଚସ୍ପତି ନିଷ୍ପତ୍ତି ଦେଇଥିଲେ । ସେ

ଯାହାହେଉ, ଯେକୌଣସି ପୃଷ୍ଠଭୂମିରେ ତାଙ୍କର ପଦୋନ୍ନତି ହୋଇଥିଲେ ମଧ୍ୟ ସେ ଆମ ଦେଶର ସମ୍ମାନିତ ରାଷ୍ଟ୍ରପତି ହେବା ଏବଂ ତାଙ୍କରି ଉପରେ ଆମ ସମ୍ବିଧାନର ସମ୍ମାନ ରକ୍ଷା କରିବାର ଦାୟିତ୍ୱ ନ୍ୟସ୍ତ ହେବା ଏକ ନିନ୍ଦନୀୟ ନଜୀର ସୃଷ୍ଟିକଲା ।

## ପୁଲିସ୍ କମିଶନ୍‌ଙ୍କ ସତର୍କବାଣୀ

ଉପରୋକ୍ତ ଦୃଷ୍ଟାନ୍ତଭଳି ବିଚାରପ୍ରମାଦ ପ୍ରତି ଦୃଷ୍ଟି ରଖି ୧୯୭୯ ମସିହାରେ ଜାତୀୟ ପୁଲିସ କମିଶନ୍ ପୁଲିସ କାର୍ଯ୍ୟରେ ରାଜନୈତିକ ହସ୍ତକ୍ଷେପର ଯେଉଁ ବିପଦ ଅଛି ସେ ବିଷୟରେ ଆମ୍ଭମାନଙ୍କୁ ସତର୍କ କରାଇଦେବା ସଙ୍ଗେ ସଙ୍ଗେ ସରକାରଙ୍କୁ କେତେକ ଉପାଦେୟ ପରାମର୍ଶ ଦେଇଛନ୍ତି । କମିଶନ୍ ତାଙ୍କ ରିପୋର୍ଟର ପ୍ରଥମ ପରିଚ୍ଛେଦରେ କହିଛନ୍ତି –

"In public estimate the police appears as an agency more to implement and enforce the objectives of the Government in power as distinct from enforcing law as such as an independent and impartial agency. The dividing line between the objectives of Government as such on one side and the interests and expectations of the ruling political party as such on the other side gets blurred in actual practice, and the image of police as an impartial law enforcement agency suffers in consequence. In this situation, police find it difficult to play their lawful role and make their performance acceptable to the people at large. In the perception of the people, the egregious features of police are – politically oriented partisan performace of duties, brutality, corruption and inefficiency, degrees of which vary from place to place and person to person. The basic and fundamental problem regarding the police to-day is how to make them function as an efficient and impartial law enforcement agency fully motivated and guided by the objectives of service to the public at large, upholding the Constitutional Rights and Liberty of the people".

## ମୃତ୍ୟୁଘଣ୍ଟି : ଔଦ୍ଧତ୍ୟର ଅଙ୍କୁଶ

ସରକାରଙ୍କର ଆଦେଶ ତଥା, ଅଭିପ୍ରାୟ ଓ କ୍ଷମତାସୀନ ରାଜନୈତିକ ଦଳର ଆଶା ଓ ଅଭିପ୍ରାୟ ସମ୍ବନ୍ଧୀୟ ପାର୍ଥକ୍ୟ ଦର୍ଶାଇ ଏବଂ ରାଜନୈତିକ ଦଳୀୟ ଅଭିପ୍ରାୟ ପୂରଣ କରି ପୁଲିସ୍ କିପରି କଳଙ୍କିତ ହୋଇଛି ଏବଂ ପୁଲିସ୍‌କୁ ସ୍ୱାଧୀନ ତଥା ନିରପେକ୍ଷ ଭାବରେ ସମ୍ବିଧାନ ଓ ଆଇନସମ୍ମତ କାର୍ଯ୍ୟ କରିବାକୁ ହେଲେ ଶାସନ ଓ ସମାଜର କି ମଙ୍ଗଳ ହେବ, ଏହି ପ୍ରସଙ୍ଗରେ ପୁଲିସ୍ କମିଶନ୍‌ଙ୍କ ଉଲ୍ଲିଖିତ ମତ ପ୍ରତି ଯେତେବେଳେ ତତ୍କାଳୀନ ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀ ଜୈଲ ସିଂହଙ୍କର ଦୃଷ୍ଟି ଆକର୍ଷଣ କରାଗଲା, ଔଦ୍ଧତ୍ୟ ପ୍ରକାଶ କରି ସେ କହିଥିଲେ, ''କମିଶନ୍ କ'ଣ ସରକାରଙ୍କ ଉପରେ ?'' ଔଦ୍ଧତ୍ୟ ଓ ନିରଙ୍କୁଶ କ୍ଷମତାର ପିପାସା ଲୋକକୁ ପିଶାଚ ପାଲଟାଇ ଦେଇଥାଏ । କ୍ଷମତାସୀନ, ବିଶେଷତଃ ନିରଙ୍କୁଶ କ୍ଷମତା ଅଧିକାରୀମାନଙ୍କୁ ଭ୍ରଷ୍ଟାଚାରୀ ଓ ଅତ୍ୟାଚାରୀ ହେବାକୁ ନ ଦେବାର ଗୋଟିଏ ଉପାୟ ହେଉଛି, ସେମାନଙ୍କୁ ସଦାବେଳେ ମନେପକାଇ ଦେବାର କଥା ଯେ ସେମାନେ ଦିନେ ମରିବେ ଏବଂ ସେମାନଙ୍କର କ୍ଷମତା ମଧ୍ୟ ଚିରସ୍ଥାୟୀ ନୁହେଁ । ପ୍ରାଚୀନ ରୋମୀୟ ସମ୍ରାଟମାନଙ୍କୁ ଅତ୍ୟାଚାରୀ କରାଇ ନ ଦେବାପାଇଁ ରୋମାନ୍ କ୍ୟାଥଲିକ୍ ଧର୍ମଗୁରୁ କୁଆଡ଼େ ଏ

ପ୍ରକାର ଏକ ଉପାୟ ଉଦ୍‌ଭାବନ କରିଥିଲେ । ରୋମୀୟ ସମ୍ରାଟମାନେ ଯେତେବେଳେ ସଦର୍ପରେ ରାଜକୀୟ ଶୋଭାଯାତ୍ରାରେ ଯାଉଥିଲେ ସେମାନଙ୍କ ଆଗରେ କୁଆଡ଼େ ଜଣେ ଚିତ୍କାର କରି କରି ଯାଉଥିଲା, "Momento Mari" – ''ଭୁଲ ନାହିଁ, ତୁମେ ଦିନେ ମରିବ ।'' ଶାସନ ତଥା ଆଇନ ସହିତ ସଂପୃକ୍ତ ଥିବା କ୍ଷମତାପନ୍ନ ବ୍ୟକ୍ତିମାନଙ୍କର ଆଚରଣ ସମ୍ବନ୍ଧରେ ସୁବିଖ୍ୟାତ ଆଇନଜ୍ଞ, ରାଜନୀତିଜ୍ଞ ତଥା ବିଚାରପତି ଏମ୍.ସି. ଚଗଲା ତାଙ୍କ ଆତ୍ମଜୀବନୀର ୨୮୭ ପୃଷ୍ଠାରେ ଯାହା କହିଛନ୍ତି ତାହା ଏଠାରେ ଉଦ୍ଧାର କରିବା ବିଶେଷ ପ୍ରାସଙ୍ଗିକ ହେବ ବୋଲି ମୁଁ ମନେକରୁଛି ।

"The Roman Emperors, when they went in procession, used to have a person walking in front, shouting 'Momento Mari' – remember you will die. I wish we could follow their example. When judges go to court the chowkidars in front of them could shout, 'Remember, one day you will have to retire' and the ministers and high public officers should equally be reminded that one day even their power might come to an end."

ପୁଲିସ୍ ସମ୍ବନ୍ଧରେ ଜ୍ଞାନୀ ଜୈଲ ସିଂହଙ୍କର ଉଦ୍ଭଟ ଚିନ୍ତାଧାରା ଭଳି ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କର ମଧ୍ୟ ଦିନେ ଅଦ୍ଭୁତ ଧାରଣା ଥିଲା । ୧୯୬୩ ମସିହାରେ ବିଜୁବାବୁ ଥାଆନ୍ତି ମୁଖ୍ୟମନ୍ତ୍ରୀ, ମୁଁ ଥାଏ ସ୍ୱରାଷ୍ଟ୍ରବିଭାଗର ମନ୍ତ୍ରୀ । ବିଧାନସଭା କଂଗ୍ରେସ ଦଳର ଗୋଟିଏ ବୈଠକରେ କେତେକ ସଭ୍ୟ ପୁଲିସ୍‌ର କାର୍ଯ୍ୟ ଓ ବ୍ୟବହାରରେ ଘୋର ଅସନ୍ତୋଷ ପ୍ରକାଶ କରିଥିଲେ ଏବଂ ବିଧାନସଭାର କଂଗ୍ରେସ ସଭ୍ୟମାନେ ଯେପରି ତାଙ୍କ ନିଜ ନିଜ ଅଞ୍ଚଳରେ ଅପ୍ରିୟ ହେବେ ସ୍ଥାନୀୟ ପୁଲିସ୍ ସେମାନଙ୍କର ନିର୍ବାଚନ ମଣ୍ଡଳୀରେ କେତେକ କ୍ଷେତ୍ରରେ ସେହି ପ୍ରକାର କାର୍ଯ୍ୟ କରିଥିବାର ଅଭିଯୋଗ କରିଥିଲେ । ସେମାନେ ଆହୁରି ମଧ୍ୟ କହିଥିଲେ ଯେ ସେ ପ୍ରକାରର କେତେକ ଘଟଣା ବିଭାଗୀୟ ମନ୍ତ୍ରୀ ହିସାବରେ ମୋ ଦୃଷ୍ଟିକୁ ଆଣିଥିଲେ ଏବଂ ମୁଁ ଏସ୍.ପି.ମାନଙ୍କୁ ସେ ବିଷୟରେ କହି ମଧ୍ୟ କିଛି ଫଳ ହୋଇନଥିଲା । ମୁଖ୍ୟମନ୍ତ୍ରୀ ବିଜୁବାବୁ ବଡ଼ ଉତ୍ତ୍ୟକ୍ତ ହୋଇ କହିଲେ ଯେ ନିର୍ବାଚନମଣ୍ଡଳୀମାନଙ୍କରେ ଦଳର ସଭ୍ୟମାନଙ୍କର ପରାମର୍ଶ ଅନୁସାରେ ପୁଲିସ୍‌ମାନେ କାର୍ଯ୍ୟ କରିବାକୁ ଲିଖିତ ଭାବେ ପୁଲିସ୍ ଆଇ.ଜି.ଙ୍କୁ ନିର୍ଦ୍ଦେଶ ଦିଆଯାଉ । ବିଜୁବାବୁଙ୍କ କଥା ଶୁଣି ସଭ୍ୟମାନେ ଖୁବ୍ ଖୁସି ହୋଇଥିଲେ । ଏ ପ୍ରକାର ଲିଖିତ ନିର୍ଦ୍ଦେଶରେ କି ଅସୁବିଧା ତଥା ବିପଦର ସମ୍ଭାବନା ଅଛି ତାହା ମୁଁ ଦର୍ଶାଇଥିଲି ଏବଂ ପରେ ମୁଖ୍ୟମନ୍ତ୍ରୀଙ୍କ ସହିତ ବିଶଦ ଭାବରେ ଆଲୋଚନା କରି କାର୍ଯ୍ୟାନୁଷ୍ଠାନ କରିବି ବୋଲି ଉକ୍ତ ବୈଠକରେ କହିଥିଲି । ଅଫିସ୍‌ରେ ମୁଖ୍ୟମନ୍ତ୍ରୀଙ୍କ ସହିତ ଉକ୍ତ ବିଷୟ ଆଲୋଚନା କରି କହିଥିଲି ଯେ ଏ ପ୍ରକାର ଲିଖିତ ଆଦେଶ ଦେବା ଆଦୌ ଉଚିତ ହେବନାହିଁ । ପୁଲିସ୍ ମ୍ୟାନୁଏଲ୍‌ରେ ପୁଲିସ୍ କାର୍ଯ୍ୟ ନିମନ୍ତେ ଯେଉଁସବୁ ନିର୍ଦ୍ଦେଶ ଲେଖାଅଛି ତାହା ପ୍ରତି ତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲି । ମାତ୍ର ସେ କହିଲେ, ମ୍ୟାନୁଏଲ୍‌ରେ ଲିପିବଦ୍ଧ ନିୟମକୁ ପରିବର୍ତ୍ତନ କରାଯାଉ । ମୁଁ କହିଥିଲି, ସେ କଥା କରାଯାଇପାରେ; ମାତ୍ର ଏ ବିଷୟରେ କେନ୍ଦ୍ର ସ୍ୱରାଷ୍ଟ୍ର ବିଭାଗ ସହିତ ମୁଖ୍ୟମନ୍ତ୍ରୀ ହିସାବରେ ସେ ପରାମର୍ଶ କଲେ ଭଲହେବ । ବିଜୁବାବୁ ଏ ସଂକ୍ରାନ୍ତରେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ସ୍ୱର୍ଗତ ଜବାହରଲାଲ ନେହେରୁଙ୍କ ସହ ପରାମର୍ଶ କରିଥିଲେ । ମାତ୍ର ବିଜୁବାବୁଙ୍କର କଥାକୁ ପ୍ରଧାନମନ୍ତ୍ରୀ ନାପସନ୍ଦ କରିଥିଲେ । ପଣ୍ଡିତ ନେହେରୁ ବିଜୁବାବୁଙ୍କୁ କହିଥିଲେ ଯେ ଗୋଟିଏ ରାଜନୈତିକ ଦଳ ସଂଖ୍ୟାଗରିଷ୍ଠ ହୋଇ ସରକାର ଗଠନ କରିପାରେ, ମାତ୍ର ସରକାର ଗଠନ ପରେ ସେ ସରକାର କୌଣସି ପକ୍ଷଭୁକ୍ତ ନହୋଇ ନିରପେକ୍ଷ ଭାବରେ କାର୍ଯ୍ୟ କରିବା ବିଧେୟ । ପୁଲିସ୍ ଦଳୀୟ ଲୋକଙ୍କ ପରାମର୍ଶରେ କାର୍ଯ୍ୟ କରିବା କଥାଟାକୁ ପଣ୍ଡିତ ନେହେରୁ ଅସଙ୍ଗତ ବୋଲି କହିଥିଲେ । ବିଜୁବାବୁଙ୍କର ଏ ପ୍ରକାର ମନୋବୃତ୍ତି ଶୁଣି ପଣ୍ଡିତ ନେହେରୁ ତାଙ୍କୁ

ଭର୍ତ୍ସନା କରିଥିଲେ ବୋଲି ପରେ ବିଜୁବାବୁ ସ୍ୱୀକାର କରିଥିଲେ । ଏକଥା ୧୯୮୧ ମସିହା ଜାନୁଆରୀ ପନ୍ଦର ତାରିଖର ଅମୃତବଜାର ପତ୍ରିକାରେ ପ୍ରକାଶିତ ତାଙ୍କ ବିବୃତିରୁ ଜଣାଯାଏ ।

## କର୍ତ୍ତବ୍ୟ ଅକର୍ତ୍ତବ୍ୟ ବିବେଚନା

କ୍ଷମତାରେ ଥିବା ରାଜନୈତିକ ଦଳ କିପରି ପୁଲିସ୍ କାର୍ଯ୍ୟରେ ହସ୍ତକ୍ଷେପ କରନ୍ତି, ଦଳୀୟ ଦୃଷ୍ଟିକୋଣରୁ ସେମାନଙ୍କୁ କିପରି ନିୟନ୍ତ୍ରିତ କରାଯାଏ ଓ ଅବାଞ୍ଛନୀୟ ପ୍ରଭାବ ପକାଇ ପୁଲିସ୍‌କୁ ନିରପେକ୍ଷଭାବରେ କାର୍ଯ୍ୟ କରିବାକୁ ଦିଆଯାଏନାହିଁ, ସେ ସବୁ ବିଷୟରେ କେତେକ କଥା ପୂର୍ବରୁ ଆଲୋଚନା କରାଯାଇଛି । ରାଜନୈତିକ ନେତାମାନେ ପୁଲିସ୍‌କୁ କିପରି ପକ୍ଷଭୁକ୍ତଭାବରେ କାର୍ଯ୍ୟ କରିବାକୁ ଉତ୍ସାହିତ କରନ୍ତି ତା'ର କେତେକ ଦୃଷ୍ଟାନ୍ତ ଦିଆଯାଇଅଛି । ପୁଲିସ୍‌କୁ ଦଳଭୁକ୍ତ ନକରି, ଦଳୀୟ ସ୍ୱାର୍ଥ ସହିତ ସେମାନଙ୍କୁ ଜଡ଼ିତ ନକରି, ସ୍ୱାଧୀନ ଓ ନିର୍ଭୀକ ଭାବରେ ଆଇନ ଓ ସମ୍ବିଧାନସମ୍ମତ କାର୍ଯ୍ୟ କରିବାକୁ ସୁଯୋଗ ଦେବା ପାଇଁ କେତେକ ନେତୃସ୍ଥାନୀୟ ବ୍ୟକ୍ତିଙ୍କର ପରାମର୍ଶ ଓ ଆଚରଣ ଦୃଷ୍ଟାନ୍ତସ୍ୱରୂପ ଆଲୋଚନା କରାଯାଇଛି । ପୁଲିସ୍ କମିଶନ୍‌ର ପରାମର୍ଶ ମଧ୍ୟ ଆମ ଆଗରେ ରହିଛି । ଆମେ ରାଜନୈତିକ ବ୍ୟକ୍ତିମାନେ ସମସ୍ୟାର ଗୁରୁତ୍ୱ ଉପଲବ୍ଧି କରି ପୁଲିସ୍ କର୍ମଚାରୀମାନଙ୍କୁ ଦଳୀୟ ସ୍ୱାର୍ଥ ଓ ଅବାଞ୍ଛିତ ରାଜନୈତିକ ପ୍ରଭାବଠାରୁ ଯଦି ଦୂରରେ ନରଖୁ, ତାହେଲେ ଫଳାଫଳ ବିଷମୟ ହେବ ଏବଂ ଦିନେ ନା ଦିନେ ଆମେ ଚରମ ବିଶୃଙ୍ଖଳା ତଥା ଅରାଜକତାର ସମ୍ମୁଖୀନ ହେବା । ଅବସ୍ଥାକୁ ସୁଧାରିଦେଇପାରିବା ଯଦି ଆମେ ସେହିପରି ଭାବରେ ଆମର ଦୃଷ୍ଟିଭଙ୍ଗୀ ଓ ମନୋବୃତ୍ତିକୁ ମାର୍ଜିତ କରୁ । କ୍ଷମତାସୀନ ଦଳର ବ୍ୟକ୍ତି ଉପଲବ୍ଧି କରିବା ବିଧେୟ ଯେ କ୍ଷମତା ଚିରସ୍ଥାୟୀ ନୁହେଁ । ଆଜି ଯେଉଁ ପୁଲିସ୍‌କୁ ଆମେ ବ୍ୟବହାର କରିବାକୁ ଚାହିଁବା ଦଳୀୟ ସ୍ୱାର୍ଥପାଇଁ, କାଲି ସେମାନେ ସେହି ଉଦ୍ଦେଶ୍ୟରେ ଆମ ବିରୁଦ୍ଧରେ ବ୍ୟବହୃତ ହୋଇପାରନ୍ତି । ନିର୍ବାଚନରେ ଜୟଯୁକ୍ତ ହୋଇ ଯଦି କୌଣସି ରାଜନୈତିକ ଦଳ ସରକାର ଗଠନ କରେ, ତା'ପରେ ସେହି ସରକାର ନିଜକୁ ଦେଶ ବା ରାଜ୍ୟର ସମସ୍ତଙ୍କର ପ୍ରତିନିଧି ବୋଲି ଭାବିବା ଉଚିତ । ସରକାରଙ୍କ କାର୍ଯ୍ୟରେ ମଧ୍ୟ ସେହି ଭାବନା ପ୍ରତିଫଳିତ ହେବା ଆବଶ୍ୟକ । ମୁଁ ମୁଖ୍ୟମନ୍ତ୍ରୀ ଥିଲାବେଳେ ସେଇ ଭାବରେ ଅନୁପ୍ରାଣିତ ହୋଇଥିଲି । ସରକାର ସମସ୍ତଙ୍କପାଇଁ ବୋଲି ମୁଁ ଭାବୁଥିଲି ଏବଂ ସେହି ଦୃଷ୍ଟିଭଙ୍ଗୀରେ ମଧ୍ୟ କାର୍ଯ୍ୟ ନିର୍ବାହ କରିବାକୁ ଚେଷ୍ଟାକରୁଥିଲି । ତେଣୁ ଆମ ଦଳ ଭିତରେ ଅଭିଯୋଗ ହେଉଥିଲା ଯେ ମୁଁ ବିରୋଧୀଦଳ ଲୋକଙ୍କ କଥା ବେଶି ଶୁଣୁଥିଲି ଓ ସେମାନଙ୍କ କାର୍ଯ୍ୟ ମଧ୍ୟ କରିଦେଉଥିଲି । ବେଶି, କମ୍ କଥା ଏଠାରେ ପଡ଼ିନାହିଁ – ସେମାନଙ୍କ କଥା ଶୁଣୁଥିଲି ଏବଂ ଯେଉଁଟା ଉଚିତ କଥା ସେଥିରେ ମୁଁ ସହାୟତା କରୁଥିଲି । କଥାକଥାକେ ପୁଲିସ୍ ଅଫିସରମାନଙ୍କୁ ବଦଳି କରିବାପାଇଁ ଅନେକ ସମୟରେ ମୋ ଉପରେ ଚାପ ପଡ଼ୁଥିଲା । ମୁଁ ସବୁକଥା ଶୁଣୁଥିଲି ମାତ୍ର ହଠାତ୍ କୌଣସି କାର୍ଯ୍ୟାନୁଷ୍ଠାନ କରୁନଥିଲି । ଲୋକପ୍ରତିନିଧିମାନେ ସେମାନଙ୍କ ନିର୍ବାଚନମଣ୍ଡଳୀଗୁଡ଼ିକରେ କାର୍ଯ୍ୟ କଲାବେଳେ କେତେକ ପରିସ୍ଥିତିରେ ପୁଲିସ୍‌ର ସାହାଯ୍ୟ ଦରକାର ପଡ଼ିପାରେ, ଏଥିରେ ସନ୍ଦେହ ନାହିଁ । ମାତ୍ର ସମୟସମୟରେ କେତେକ ବିଧାୟକ, ବିଶେଷକରି ଶାସକ ଦଳର ବିଧାୟକମାନେ, ପୁଲିସ୍ କାର୍ଯ୍ୟରେ ଅଯଥା ହସ୍ତକ୍ଷେପ କରି ନିଜର ମନମୁତାବକ କାର୍ଯ୍ୟ ହାସଲ କରିନିଅନ୍ତି । ଯେଉଁ ଅଫିସରମାନେ ପ୍ରଭାବିତ ହେବାକୁ ଅସମ୍ମତ ହୁଅନ୍ତି, ସେମାନଙ୍କୁ ବଦଳିର ଧମକ ସହ ଆହୁରି ଅନେକ ଅସୁବିଧାରେ ପକାଇବାର ସୂଚନା ଦେଇଥା'ନ୍ତି । ମୁଁ ଶାସନ ଦାୟିତ୍ୱରେ ଥିଲାବେଳେ ମୋତେ ଏ ପ୍ରକାର ଅନେକ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡୁଥିଲା ଏବଂ ଆମର ପ୍ରତିନିଧିମାନଙ୍କୁ ସେ ପ୍ରକାର କାର୍ଯ୍ୟରୁ ନିବୃତ୍ତ ରହିବାପାଇଁ ମୁଁ ପରାମର୍ଶ ଦେଉଥିଲି । ମୁଁ ମୁଖ୍ୟମନ୍ତ୍ରୀ ଥିଲାବେଳେ କ୍ଷମତାସୀନ ଦଳର ଜଣେ ବିଧାୟକ ଏବଂ କେନ୍ଦ୍ରର ଜଣେ ରାଷ୍ଟ୍ରମନ୍ତ୍ରୀ ଥାନା ଅଫିସରମାନଙ୍କୁ ଧମକାଇ ଅସଙ୍ଗତ କାର୍ଯ୍ୟ କରିବାକୁ ନିର୍ଦ୍ଦେଶ

ଦେବା କଥା ମୋ ଦୃଷ୍ଟିକୁ ଅଣାଯାଇଥିଲା । ଏ ପ୍ରକାର ଆଚରଣକୁ ମୁଁ ନାପସନ୍ଦ କରିବା ସଙ୍ଗେ ସଙ୍ଗେ ତାହାର ସମୀଚୀନତା ସମ୍ବନ୍ଧରେ ପ୍ରଧାନମନ୍ତ୍ରୀ ଶ୍ରୀ ମୋରାର୍ଜୀ ଦେଶାଇଙ୍କର ପରାମର୍ଶ ଲୋଡ଼ିଥିଲି । ଏଥିସକାଶେ କେତେକ ବନ୍ଧୁ ମୋ ଉପରେ ଅସନ୍ତୁଷ୍ଟ ହୋଇଥିଲେ । ମୋ ନିର୍ବାଚନମଣ୍ଡଳୀରେ ଅଭିଯୋଗ ହୋଇଥାଏ ଯେ ଯେଉଁମାନେ ନିର୍ବାଚନ ସମୟରେ ମୋତେ ବିରୋଧ କରୁଥିଲେ ସେମାନେ ପରେ ଆସି ମୋ ପାଖରୁ କାର୍ଯ୍ୟ ହାସଲ କରିନିଅନ୍ତି । ମୁଁ ମୋର ସହକର୍ମୀମାନଙ୍କୁ ବୁଝାଇଥାଏ ଯେ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କଲାବେଳେ ମୁଁ ଗୋଟିଏ ଦଳର ପ୍ରାର୍ଥୀ; ମାତ୍ର ନିର୍ବାଚିତ ହୋଇସାରିଲା ପରେ ମୁଁ ଉକ୍ତ ନିର୍ବାଚନମଣ୍ଡଳୀର ସମସ୍ତଙ୍କର ପ୍ରତିନିଧି । ଏହି ପ୍ରକାର ଦୃଷ୍ଟିଭଙ୍ଗୀ ନେଇ ମୁଁ ମୋ ନିର୍ବାଚନମଣ୍ଡଳୀର ଲୋକଙ୍କ ସହିତ ବ୍ୟବହାର କରିଥାଏ ।

## ଚାକିରି କରିବ ପୁଲିସ୍

ପ୍ରସଙ୍ଗକ୍ରମେ ନିଜ ତଥା ଅନ୍ୟମାନଙ୍କ ବିଷୟରେ ବହୁତ କଥା କୁହାଗଲାଣି । ଏଠାରେ ପୁଲିସ୍‌ର କର୍ତ୍ତବ୍ୟ ତଥା ଦାୟିତ୍ୱ କ'ଣ ତାହା ମଧ୍ୟ ବିଚାର କରିବାର କଥା । ପୁଲିସ୍ ତାହାର ଆଚରଣ ଶୁଦ୍ଧକରି, ଜନସାଧାରଣଙ୍କର ସେବକ ଓ ବନ୍ଧୁ ବୋଲି ଭାବି, ନିରପେକ୍ଷ ଭାବରେ ତଥା ଆଇନସମ୍ମତ ପ୍ରଣାଳୀରେ କାର୍ଯ୍ୟକରି, ସମାଜରେ ଶାନ୍ତିଶୃଙ୍ଖଳା ରକ୍ଷାକରି, ସମାଜ ଓ ଶାସନ କ୍ଷେତ୍ରରେ ପୁଲିସ୍ ସଂଗଠନର ମର୍ଯ୍ୟାଦାପୂର୍ଣ୍ଣ ଆବଶ୍ୟକତା ଥିବାର ଧାରଣା ସମସ୍ତଙ୍କ ମନରେ ସୃଷ୍ଟି କରିବା ସର୍ବାଦୌ କର୍ତ୍ତବ୍ୟ । ପୁଲିସ୍ ଲୋକଙ୍କପାଇଁ ଅଛି, କୌଣସି ରାଜନୈତିକ ଦଳପାଇଁ ନୁହେଁ । ପୁଲିସ୍ ଜନସାଧାରଣ ଓ ଶାସନର ସେବକ, କୌଣସି ରାଜନୈତିକ ଦଳପାଇଁ ନୁହେଁ କିମ୍ବା କୌଣସି ଦଳ ବା ବ୍ୟକ୍ତିବିଶେଷଙ୍କର ନୌକର ନୁହେଁ । ଏଇ ଆତ୍ମମର୍ଯ୍ୟାଦା ଜ୍ଞାନରେ ସେମାନେ ପରିଚାଳିତ ହେବା ଆବଶ୍ୟକ । ବେଆଇନ୍ କାର୍ଯ୍ୟ କରିବାକୁ ପୁଲିସ୍‌କୁ କୌଣସି ଉଚ୍ଚ କର୍ତ୍ତୃପକ୍ଷ କହିଲେ ସେ ତାହା କରିବାକୁ ବାଧ୍ୟ ନୁହେଁ । ସେ କ୍ଷେତ୍ରରେ ପୁଲିସ୍ ଲିଖିତ ଆଦେଶ ଦାବି କରିବା ବିଧେୟ । ଥାନାରେ ଏତଲା ଦେବାଠାରୁ ଅଭିଯୋଗର ଅନୁସନ୍ଧାନ ପର୍ଯ୍ୟନ୍ତ କୌଣସି କାର୍ଯ୍ୟରେ ପୁଲିସ୍ ନିଜକୁ କୌଣସି ଦଳ ବା ବ୍ୟକ୍ତିବିଶେଷଙ୍କ ହାତବାରିସି ପରି ହୀନମଣ୍ୟ ଜ୍ଞାନ କରିବା ଉଚିତ ନୁହେଁ । ରାଜନୈତିକ ବ୍ୟକ୍ତି ବା ଦଳ ଆସିବେ ଓ ଯିବେ; ମାତ୍ର ଜଣେ ପୁଲିସ୍ ଅଫିସର ନିୟମ ଅନୁସାରେ କାର୍ଯ୍ୟ କଲେ ନିଶ୍ଚିନ୍ତଭାବରେ ତିରିଶ ବର୍ଷ ସ୍ଥାୟୀ ଭାବରେ ଚାକିରିରେ ରହିପାରିବେ । ପୁଲିସ୍ କାହାରି ଚାପରେ ପଡ଼ି ବେଆଇନ୍ ଓ ଅବାଞ୍ଛନୀୟ କାର୍ଯ୍ୟ ନ କଲେ ଲୋକଙ୍କ ଆଗରେ ତା'ର ସମ୍ମାନ ନିଶ୍ଚିତ ଭାବରେ ବୃଦ୍ଧି ପାଇବ । ମୁହଁରେ ବା ଟେଲିଫୋନ୍‌ରେ ଅବାଞ୍ଛିତ କାର୍ଯ୍ୟ କରିବାକୁ ଉଚ୍ଚସ୍ତରରେ ଯେଉଁ ବ୍ୟକ୍ତିମାନେ ଆଦେଶ ଦିଅନ୍ତି ସେମାନେ ଅତିଶୟ ଭୀରୁ । ଅସୁବିଧା ପଡ଼ିଲେ ସେମାନେ କେବେ ସେଥିପାଇଁ ନିଜ ମୁଣ୍ଡକୁ ଦାୟିତ୍ୱ ନେବେନାହିଁ । ଆମେରିକାର ପୁଲିସ୍ ୱାଟରଗେଟ୍ ବ୍ୟାପାରରେ ରାଷ୍ଟ୍ରପତି ନିକ୍‌ସନ୍‌ଙ୍କଦ୍ୱାରା ପ୍ରଭାବିତ ନହୋଇ ନିଜ ଐତିହ୍ୟର ମର୍ଯ୍ୟାଦା ଜାହିର ରଖିଥିଲେ । ସେଥିରୁ ଅନେକ ଉପାଦେୟ କଥା ଆମ ଦେଶ ପୁଲିସ୍‌ଙ୍କର ଶିଖିବାର ଅଛି । କିନ୍ତୁ ଆମ ଦେଶର ଜନସାଧାରଣଙ୍କ ମଧ୍ୟରେ ବ୍ରିଟିଶ୍ ଅମଳରୁ ପୁଲିସ୍‌ମାନଙ୍କ ପ୍ରତି ଏକ ପ୍ରତିକୂଳ ମନୋଭାବ ଗଢ଼ିଆସୁଛି । ଆଗେ ପ୍ରବାଦ ଥିଲା — ମାଛ ଖାଇବ ଇଲିସି, ଚାକିରି କରିବ ପୁଲିସି । ଇଲିସି ମାଛରେ କଣ୍ଟା ବହୁତ ହେଲେ ବି ଖାଇବାକୁ ଖୁବ୍ ସୁଆଦ; ସେମିତି ପୁଲିସ୍ ଚାକିରିଟା କଷ୍ଟସାଧ୍ୟ ହେଲେ ବି ଉପୁରିଟା ଭଲ ମିଳେ ବୋଲି ଭାବାର୍ଥ କରାଯାଏ । ସ୍ୱାଧୀନ ଭାରତରେ ଦୁଃଖର ସହିତ ଲକ୍ଷ୍ୟ କରାଯାଉଛି ଯେ ପୁଲିସ ପ୍ରତି କ୍ରମେ ଲୋକଙ୍କ ମଧ୍ୟରେ ଅବିଶ୍ୱାସ, ବିତୃଷ୍ଣା ଓ ଅବଜ୍ଞାଭାବ ବଢ଼ୁଛି । ସେଥିପାଇଁ କେବଳ ପୁଲିସ୍‌କୁ ଦାୟୀ କଲେ ଆମେ ନିଜକୁ ପ୍ରତାରିତ କରିବା ସାର ହେବ । ତେଣୁ ରାଜନୈତିକ ନେତୃତ୍ୱର କର୍ତ୍ତବ୍ୟ ପ୍ରସଙ୍ଗରେ 'ବିନା ମେଘେ ସୃଜି ପାରଇ କୁଳୀଶ' ଶିରୋନାମାରେ ମୋତ

ମନ୍ତବ୍ୟ ପ୍ରତି ମୁଁ ପୁନର୍ବାର ପାଠକଙ୍କ ଦୃଷ୍ଟି ଆକର୍ଷଣ କରୁଛି । ମୋ ବିଚାରରେ ଉଲ୍ଲିଖିତ ପ୍ରବାଦର ପ୍ରକୃତ ଅର୍ଥ ପୁଲିସ୍ ପ୍ରତି ଅପବାଦବ୍ୟଞ୍ଜକ ନୁହେଁ, ବରଂ ସମ୍ମାନଜନକ; ଅର୍ଥାତ୍ ନିଷ୍ଠାପର ଭାବେ ବହୁ କଷ୍ଟସାଧ କର୍ତ୍ତବ୍ୟ ସମ୍ପାଦନ କରି, ଦରକାର ପଡ଼ିଲେ ନିଜ ଜୀବନକୁ ବିପନ୍ନ କରି, ସମାଜର କଲ୍ୟାଣପାଇଁ ସତତ ଜାଗ୍ରତ ପ୍ରହରୀ ପୁଲିସ୍ ତା'ର ଅନ୍ତରରେ ଯେଉଁ ସନ୍ତୋଷର ସ୍ୱାଦ ଅନୁଭବ କରେ ସେଭଳି କର୍ତ୍ତବ୍ୟ ତୃପ୍ତି (job satisfaction) ଅନ୍ୟ ସରକାରି ଚାକିରିରେ ସମ୍ଭବ ନୁହେଁ । ମୋର ଆଶା ଓ ବିଶ୍ୱାସ, ଆମ ପୁଲିସ୍ ଦିନେ ନା ଦିନେ ସମାଜରେ ଏକ ମର୍ଯ୍ୟାଦାବନ୍ତ ସ୍ଥାନର ଅଧିକାରୀ ହେବାକୁ ସମର୍ଥ ହେବେ ।

## ଆରୋହଣ ପଥରେ ବିସ୍ତାରିତ ଦିଗନ୍ତ

ମୋର ବଡ଼ଭାଇ ମୋର ଭବିଷ୍ୟତ ସମ୍ପର୍କରେ ଉଚ୍ଚ ଆଶା ପୋଷଣ କରୁଥିଲେ । ସେଥିରେ ତାଙ୍କର ଲେଶମାତ୍ର ବ୍ୟକ୍ତିଗତ ସ୍ୱାର୍ଥ ଚିନ୍ତା ନଥିଲା । ମୁଁ ଜୀବନରେ ଉଚ୍ଚ ପ୍ରତିଷ୍ଠା ଲାଭ କରିବା ଆଶାରେ ସେ ମୋପାଇଁ ବହୁତ ଆଗତ ଚିନ୍ତା କରୁଥିଲେ ଏବଂ ଆରୋହଣର ପଥ ଦର୍ଶାଉଥିଲେ । ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ମୁଁ ଭଲ ଫଳ ଦେଖାଇ ପାରିନଥିଲେ ମଧ ଭବିଷ୍ୟତରେ ଜଣେ ଭଲ ମଣିଷ ହେବି ବୋଲି ଦୃଢ଼ ଧାରଣା ପୋଷଣ କରି ସେ ନାନା କଳ୍ପନା ଜଳ୍ପନା କରୁଥିଲେ ।

ମୁଁ ୧୯୩୬ ମସିହାରେ ପାଟନା ବିଶ୍ୱବିଦ୍ୟାଳୟରୁ ସାଧାରଣ ଭାବରେ ତୃତୀୟ ଶ୍ରେଣୀରେ ମାଟ୍ରିକ୍ୟୁଲେସନ୍ ପାସ୍ କଲି । ତା'ପରେ ବଡ଼ଭାଇଙ୍କୁ ଦେଖାକରିବାପାଇଁ କଲିକତା ଗଲି । ମୋର ପାସ୍ କରିବା ଖବରଟା ସେ ଆଗରୁ ଜାଣିଥିଲେ ଏବଂ ମୋତେ ଦେଖି ଭାରି ଖୁସିହେଲେ । ମୋର ଉଚ୍ଚ ଶିକ୍ଷା କିପରି ଭଲଭାବରେ ହେବ ସେ ବିଷୟରେ ସେ ମନେ ମନେ ସବୁ ସ୍ଥିରକରିସାରିଥିଲେ । ପଢ଼ାପଢ଼ି ଖର୍ଚ୍ଚ ବିଷୟରେ ମୋତେ କିଛି ଚିନ୍ତା କରିବାକୁ ପଡ଼ିନଥିଲା । କଟକ ରେଭେନ୍ସା କଲେଜରେ ପଢ଼ିବାପାଇଁ ସେ ମୋତେ କହିଲେ । ଭଲଭାବରେ ପଢ଼ାପଢ଼ି କରିବାପାଇଁ ସେ ବହୁତ ଉପଦେଶ ଦେଲେ ଏବଂ ବି.ଏ. ପାସ୍ କଲା ପରେ ମୁଁ ଯେପରି ବାରିଷ୍ଟରୀ ପଢ଼ିବାପାଇଁ ବିଲାତ ଯାଏ ସେ କଥା ମନରେ ରଖି ମନ ଦେଇ ପଢ଼ିବାପାଇଁ ସଦୁପଦେଶ ଦେଲେ । ମୁଁ ରାଜନୀତି କରିବା ସମ୍ପର୍କରେ ତାଙ୍କର ବିଶେଷ କିଛି ଆପତ୍ତି ନ ଥିଲା; ମାତ୍ର ଉଚ୍ଚଶିକ୍ଷାଲାଭକରି ରାଜନୀତି କଲେ ଭଲ ହେବ ବୋଲି ସେ ମତ ଦେଇଥିଲେ । ସେତେବେଳେ ଦେଶରେ ଯେଉଁ କେତେକ ନେତୃସ୍ଥାନୀୟ ବ୍ୟକ୍ତି ଥିଲେ ସେମାନଙ୍କ ଭିତରୁ ଅନେକ ଥିଲେ ବାରିଷ୍ଟର, ବଡ଼ ଓକିଲ ଅଥବା ଉଚ୍ଚଶିକ୍ଷାସଂପନ୍ନ ବ୍ୟକ୍ତି । ବୋଧହୁଏ ରାଜନୀତିରେ ସେମାନଙ୍କ ଜୀବନର ସାଫଲ୍ୟ ଲକ୍ଷ୍ୟ କରି ମୋ ବଡ଼ଭାଇ ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ ।

କଲିକତାରୁ ଭଦ୍ରକ ଫେରିଲି ଏବଂ ମୋର ଅଭିଭାବକ ଶ୍ରୀ ଉଦୟ ନାରାୟଣ ମହାନ୍ତିଙ୍କ ସହ କଟକ ଆସିଲି ରେଭେନ୍ସା କଲେଜରେ ନାମ ଲେଖାଇବା ପାଇଁ । ରେଭେନ୍ସା କଲେଜରେ ସେତେବେଳେ ଅଧକ୍ଷ ଥିଲେ ଡକ୍ଟର ପ୍ରାଣକୃଷ୍ଣ ପରିଜା । କଲେଜରେ ନାମ ଲେଖା ହେଲା ଏବଂ 'ପୂର୍ବ ଛାତ୍ରାବାସ'ରେ ରହିବା କଥା ସ୍ଥିର ହେଲା । ପୂର୍ବ ଛାତ୍ରାବାସର ସେତେବେଳେ ତତ୍ତ୍ୱାବଧାରକ ଥିଲେ ଅଧ୍ୟାପକ ବାମାଚରଣ ଦାସ ଓ ସହକାରୀ ତତ୍ତ୍ୱାବଧାରକ ଥିଲେ ଅଧ୍ୟାପକ ରମାନାଥ ମହାନ୍ତି । ଆଦିବାସୀ ନେତା ଶ୍ରୀ ସୋନାରାମ୍ ସୋରେନ୍ ମୋର ସହପାଠୀ ଥିଲେ । ସେ ସେଇ ହଷ୍ଟେଲରେ ଥିଲେ । ଆମର ଏହି ବନ୍ଧୁତ୍ୱ ପରବର୍ତ୍ତୀ କାଳରେ ରାଜ୍ୟର ହିତପାଇଁ ବ୍ୟବହୃତ ହୋଇଥିଲା । ଶ୍ରୀ ସୋରେନ୍ ପରେ ଆମ ରାଜ୍ୟର ଶ୍ରମ ଓ ଗ୍ରାମମଙ୍ଗଳ ବିଭାଗର ମନ୍ତ୍ରୀ ମଧ ହୋଇଥିଲେ ।

# ବନ୍ଧୁ ଓ ବିଦ୍ରୋହୀ ସୋନାରାମ୍‌ଙ୍କ ସହ ମୋର ଗୋପନ ମନ୍ତ୍ରଣା

ସ୍ୱାଧୀନ ଭାରତରେ ଓଡ଼ିଶା ସହିତ ମୟୂରଭଞ୍ଜ ମିଶିଯିବା ପରେ ସେଠାରେ ଯେଉଁ ଆଦିବାସୀ ବିଦ୍ରୋହର ସୂତ୍ରପାତ ହୋଇଥିଲା, ତା'ର ନେତୃତ୍ୱ ସୋନାରାମ୍ ବାବୁ ନେଇଥିଲେ । ମୟୂରଭଞ୍ଜ ରାଜ୍ୟ ୧୯୪୯ ମସିହା ଜାନୁଆରୀ ପହିଲାରେ ଓଡ଼ିଶା ପ୍ରଦେଶ ସହିତ ମିଶିଥିଲା, ଅନ୍ୟ ଗଡ଼ଜାତ ମିଶ୍ରଣର ବର୍ଷକ ପରେ । ଶ୍ରୀ ସୋନାରାମ୍ ସୋରେନ୍ ମୟୂରଭଞ୍ଜ ଓଡ଼ିଶା ସହିତ ମିଶିବାକୁ ଚାହୁଁନଥିଲେ । ସେ ଚାହୁଁଥିଲେ ରାଜା ରହନ୍ତୁ, ନହେଲେ ଆଦିବାସୀମାନଙ୍କୁ ରାଜ୍ୟ ଦିଅନ୍ତୁ । ଏକଥା ନ ହେଲେ ବରଂ ବିହାର ସହିତ ମୟୂରଭଞ୍ଜ ମିଶିବ; କିନ୍ତୁ ଓଡ଼ିଶା ସହିତ ନୁହେଁ । ଶେଷରେ ଯେତେବେଳେ ଓଡ଼ିଶା ସହିତ ମୟୂରଭଞ୍ଜ ମିଶିଗଲା, ସେହି ମିଶ୍ରଣକୁ ଅନ୍ୟଥା କରିବାପାଇଁ ସେ ଆରମ୍ଭ କଲେ ଆଦିବାସୀ ଆନ୍ଦୋଳନ । ୧୯୪୯ ମସିହା ଜାନୁୟାରୀ ମାସରେ ମୟୂରଭଞ୍ଜର ଚାରିଆଡ଼େ ମିଶ୍ରଣ ବିରୁଦ୍ଧରେ ଉତ୍ତେଜନା ସୃଷ୍ଟି କରାଯାଇଥିଲା । ବାରିପଦାରେ ଆଦିବାସୀ ସ୍ତ୍ରୀ ପୁରୁଷମାନଙ୍କର ବିରାଟ ଶୋଭାଯାତ୍ରା ଓ ସଭା ପ୍ରାୟ ଅଧିକାଂଶ ସମୟରେ ଅନୁଷ୍ଠିତ ହେଉଥାଏ । ମୁଁ ନିଜେ ଏପ୍ରକାର ସଭା ଶୋଭାଯାତ୍ରା ଦେଖିଛି । ଶ୍ରୀ ସୋରେନ୍ ବାଇଗଣ, ଜହ୍ନି, କୁନ୍ଦୁରି, ମୂଳା, କନ୍ଦମୂଳ ଏବଂ ଅନ୍ୟାନ୍ୟ ପନିପରିବା ଓ ଫଳରେ ଗୁନ୍ଥା ହାର ବେକରେ ପକାଇ ଏବଂ କୃଷ୍ଣ ଅବତାର ପରି ସାଜିହୋଇ, ହାତରେ ବଂଶୀ ଧରି ସ୍ତ୍ରୀଲୋକମାନଙ୍କ ଗହଣରେ ଶୋଭାଯାତ୍ରାର ନେତୃତ୍ୱ ନେଉଥିବାର ମୁଁ ଦେଖିଛି । ସେମାନଙ୍କର ଧ୍ୱନି ଥିଲା ଓଡ଼ିଶା ବିରୁଦ୍ଧରେ । ଏସବୁ ଦେଖି ମୋର ସେତେବେଳେ ଧାରଣା ହୋଇଥିଲା ଯେ କୌଣସି ବାହ୍ୟ ଶକ୍ତିଦ୍ୱାରା ଉତ୍ସାହିତ ହୋଇ ସେମାନେ ଏ ପ୍ରକାର ଆନ୍ଦୋଳନ କରୁଥିଲେ । ବାରିପଦାରେ ସେ ସମୟରେ ତାଙ୍କୁ ଦେଖାକରି ଆନ୍ଦୋଳନରୁ ନିବୃତ୍ତ ରହିବାପାଇଁ ବୁଝାଇବାକୁ ଇଚ୍ଛା ପ୍ରକାଶ କରିଥିଲି । ମାତ୍ର ସେତେବେଳେ ଅଣଆଦିବାସୀମାନଙ୍କୁ 'ଦିକୁ' ବୋଲି କହି ସେମାନେ ଘୃଣା କରୁଥିଲେ । ତେଣୁ ସେତେବେଳେ ସେ ପ୍ରକାର ଉଦ୍ୟମରୁ ମୁଁ କ୍ଷାନ୍ତ ହୋଇଥିଲି । ମୟୂରଭଞ୍ଜ ମିଶ୍ରଣ ପରେ ମାର୍ଚ୍ଚ ମାସ ପ୍ରଥମ ସପ୍ତାହରେ ବିଧାନସଭା ଅଧିବେଶନ ବସିଥିଲା । ବିଧାସନଭାରେ ସଭ୍ୟ ହିସାବରେ ମୁଁ ମୋର ଉପରୋକ୍ତ ଅଭିଜ୍ଞତା ଉତ୍‌ଥାପନ କରିଥିଲି । ଆଦିବାସୀ ଆନ୍ଦେଳାନ ଓ ତତ୍‌ସମ୍ପର୍କୀୟ ସବୁ ଘଟଣାର ଗୋଟିଏ ବିବରଣୀ ଇସ୍ତାହାର ରୂପେ ବ୍ୟବସ୍ଥାସଭାରେ ଉତ୍‌ଥାପନ କରାଯାଇଥିଲା । ଶ୍ରୀ ସୋରେନ୍‌ଙ୍କ ନେତୃତ୍ୱରେ ପରିଚାଳିତ ଆନ୍ଦୋଳନ ହେତୁ ମୟୂରଭଞ୍ଜରେ ଖୁବ୍ ଉତ୍ତେଜନାମୂଳକ ପରିସ୍ଥିତି ସୃଷ୍ଟି ହୋଇଥିଲା । ଅବସ୍ଥା ସମ୍ଭାଳିବାପାଇଁ ଫେବୃୟାରୀ ମାସ ପାଞ୍ଚ ତାରିଖରେ ଶ୍ରୀ ସୋନାରାମ ସୋରେନ୍‌ଙ୍କ ସହିତ କୋଡ଼ିଏ ଜଣ ନେତୃସ୍ଥାନୀୟ ଆଦିବାସୀଙ୍କୁ ଗିରଫ କରାଯାଇ ଜେଲ୍‌ରେ ଅଟକ ରଖାଯାଇଥିଲା । ଏ ସମ୍ବାଦ ଆଦିବାସୀମାନଙ୍କ ଭିତରେ ବନାଗ୍ନି ସଦୃଶ ପ୍ରଚାରିତ ହୋଇଥିଲା । ଫଳରେ ଆଦିବାସୀମାନେ ବିହାର ରାଜ୍ୟ ସୀମାରେ ଥିବା ମୟୂରଭଞ୍ଜର ବାମନଘାଟୀ ସବ୍‌ଡିଭିଜନ୍‌ର ନାନା ସ୍ଥାନରେ ହିଂସାକାଣ୍ଡ ଆରମ୍ଭ କରିଦେଇଥିଲେ । ପରିସ୍ଥିତି ଏକ ଆଦିବାସୀ ବିଦ୍ରୋହ ଭଳି ଜଣାପଡ଼ିଥିଲା । ରାଇରଙ୍ଗପୁର, ତିରିଙ୍ଗୀ, ବିଶୋଇ ପ୍ରଭୃତି ସ୍ଥାନମାନଙ୍କରେ ଏହି ବିଦ୍ରୋହକୁ ଦମନ କରବା ନିମନ୍ତେ ପୁଲିସକୁ ଗୁଳି ଚଳେଇବାକୁ ପଡ଼ିଥିଲା । ଏଥିରେ ଚଉଦଜଣ ଆଦିବାସୀ ମରିଥିଲେ ଓ ଅନ୍ୟ କେତେକ କ୍ଷତବିକ୍ଷତ ହୋଇଥିଲେ । ଆଦିବାସୀମାନେ ଧନୁଶର ଓ ଦେଶୀ ବନ୍ଧୁକ ବ୍ୟବହାର କରୁଥିଲେ । ସେମାନଙ୍କ ପ୍ରତିଆକ୍ରମଣରେ କେତେକ ସିପାହି ମଧ କ୍ଷତବିକ୍ଷତ ହୋଇଥିଲେ । ଦୃଢ଼ ପୁଲିସ୍ କାର୍ଯ୍ୟାନୁଷ୍ଠାନ ଫଳରେ ଅବସ୍ଥା ଆୟତ୍ତାଧୀନ ହୋଇଥିଲା ।

କିଛି ଦିନ ପରେ ମୁଁ ମୋର ପୂର୍ବସାଥୀ ଶ୍ରୀ ସୋନାରାମ୍ ସୋରେନ୍‌ଙ୍କୁ ବାରିପଦା ଜେଲ୍‌ରେ ଦେଖାକରିଥିଲି । ସେତେବେଳେ ସେ ବଡ଼ ଉତ୍ତେଜିତ ଅବସ୍ଥାରେ ଥିଲେ । ତାଙ୍କୁ ଗିରଫ କଲା ପରେ ତାଙ୍କ ଅନୁପସ୍ଥିତିରେ ଯେଉଁସବୁ ଘଟଣା ଘଟିଲା ସେଥିପାଇଁ ସେ ଦାୟୀ ନୁହଁନ୍ତି, ଓଡ଼ିଶା ସରକାର

ଦାୟୀ ବୋଲି ସେ କହିଥିଲେ । ମୋର ଧାରଣା ହେଲା ଗିରଫ ହୋଇଥିବା ଏହି ନେତାମାନଙ୍କୁ ବେଶିଦିନ ଜେଲ୍‌ରେ ନରଖି ଛାଡ଼ିଦେଲେ ହୁଏତ ସେମାନେ ପ୍ରକୃତିସ୍ଥ ହେବେ । ମୁଁ ମୁଖ୍ୟମନ୍ତ୍ରୀ ଶ୍ରୀ ମ୍‌ହତାବଙ୍କୁ ସେଇ ପ୍ରକାର ପରାମର୍ଶ ଦେଇଥିଲି । ହଠାତ୍ ସେମାନଙ୍କୁ ଖଲାସ ନକରି କିଛିଦିନ ପରେ ସେ କଥା ବିଚାର କରିବେ ବୋଲି ମୁଖ୍ୟମନ୍ତ୍ରୀ ମୋତେ କହିଥିଲେ । ସ୍ୱାଭାବିକ ଅବସ୍ଥା ଫେରାଇ ଆଣିବାପାଇଁ ବେଶିଦିନ ସେମାନଙ୍କୁ ଜେଲ୍‌ରେ ନରଖି ଖଲାସ୍ କରିଦିଆଯାଇଥିଲା । ଖଲାସ୍ ହେବାର କିଛି ଦିନ ପରେ ଶ୍ରୀ ସୋରେନ୍ ବିହାର ପ୍ରଦେଶକୁ ଚାଲିଯାଇ ରାଞ୍ଚିରେ ରହିଥିଲେ ଏବଂ ସେଠାରୁ ସେ ଉଦ୍ୟମ କରୁଥାଆନ୍ତି ପୁଣି ଆନ୍ଦୋଳନ ଚଳାଇବାପାଇଁ । ମହତବାବୁ ଜାଣିଲେ ଯେ ରେଭେନ୍‌ସା କଲେଜରେ ପଢ଼ିଲାବେଳେ ଶ୍ରୀ ସୋରେନ୍‌ଙ୍କ ସହ ମୋର ଘନିଷ୍ଠତା ଥିଲା । ରାଞ୍ଚି ଯାଇ ସରକାରଙ୍କ ସହିତ ସହଯୋଗ କରିବାକୁ ସୋନାରାମ୍ ବାବୁଙ୍କୁ ବୁଝାଇବାପାଇଁ ସେ ମୋତେ କହିଥିଲେ ।

ରାଞ୍ଚି ଯିବା ରାସ୍ତାରେ ଡ୍ରାଇଭରର ଅଭିଜ୍ଞତା ଓ ପ୍ରତ୍ୟୁତ୍ପନ୍ନମତିତା ହେତୁ ଏକ ଆସନ୍ନ ବିପତ୍ତିରୁ ରକ୍ଷାପାଇଥିଲି । କଟକରୁ ରାଞ୍ଚି ଗଲି ଗୋଟିଏ ମଟର କାର୍‌ରେ । କାର୍‌ଟି ଥିଲା ମହମ୍ମଦ ସିରାଜ୍‌ଉଦ୍ଦିନଙ୍କର । ଡ୍ରାଇଭରଟି ଖୁବ୍ ଧୁରନ୍ଧର । ଘର ଚାଇଁବସା । ଚାଇଁବସା ଦେଇ ଆମେ ରାଞ୍ଚି ଯାଇଥିଲୁ । ବାଟରେ ଅନେକ ପାହାଡ଼ିଆ ଘାଟୀ । ଘାଟୀ ପାରିହେଲାବେଳକୁ ବହୁତ ରାତି ହୋଇଯାଇଥାଏ । ଗୋଟିଏ ଜାଗାରେ ଦୂରରୁ ଦେଖିଲୁ ସୁନ୍ଦରୀ ସ୍ତ୍ରୀଲୋକଟିଏ ରାସ୍ତା ମଝିରେ ଛିଡ଼ା ହୋଇ ଗାଡ଼ିଟିକୁ ଅଟକାଇବା ଉଦ୍ଦେଶ୍ୟରେ ହାତ ଟେକୁଛି । ମଟରଗାଡ଼ିର ଆଲୁଅ ସିଧାସଳଖ ସ୍ତ୍ରୀଲୋକଟି ଉପରେ ପଡ଼ିଲା । ତାକୁ ଦେଖି ମୁଁ ଭାବିଲି ବୋଧହୁଏ କେହି ଅସହାୟା ସାହାଯ୍ୟ ଆଶାରେ ସେଠାରେ ଛିଡ଼ାହୋଇଛି । ଡ୍ରାଇଭର୍ କିନ୍ତୁ ଆଶଙ୍କା କଲା କିଛି ବିପଦ । ତେଣୁ ଆହୁରି ଜୋର୍‌ରେ ଗାଡ଼ି ଚଳାଇଲା । ସ୍ତ୍ରୀଲୋକଟି ଯେତେବେଳେ ଦେଖିଲା ଯେ ଗାଡ଼ିର ଗତି ଧିମେଇବା ପରିବର୍ତ୍ତେ ଆହୁରି କ୍ଷିପ୍ରତର ହେଉଛି ସେ ରାସ୍ତା କଡ଼କୁ ଡିଆଁ ମାରି ଚାଲିଗଲା । ଖଣ୍ଡେ ଦୂର ଚାଲିଗଲା ପରେ ଡ୍ରାଇଭର କହିଥିଲା ଯେ ଡକାୟତମାନେ ନିଶ୍ଚୟ ସେ ସ୍ତ୍ରୀଲୋକଟିକୁ ସେଠାରେ ଛିଡ଼ାକରାଇ ବଣ ଭିତରେ ଲୁଚି ରହିଥିଲେ । ସରଳବିଶ୍ୱାସରେ ଆମେ ତା'ର ସହାୟତା କରିବାପାଇଁ ଗାଡ଼ି ଅଟକାଇଥିଲେ, ସେମାନେ ଆମକୁ ଖତମ୍ କରିଦେଇଥାଆନ୍ତେ । ଏହି ପ୍ରକାର ଘଟଣା ପୂର୍ବେ କେତେଥର ସେ ରାସ୍ତାରେ ଘଟିଥିବାର ଡ୍ରାଇଭର ଶୁଣିଥିଲା ।

ମୁଁ ରାଞ୍ଚିରେ ପହଞ୍ଚିଲି; କିନ୍ତୁ ସୋନାରାମ୍‌ବାବୁଙ୍କ ସହ ଦେଖାହେବା ବଡ଼ ଦୁରୂହ ବ୍ୟାପାର ହୋଇଥିଲା । ସେ ଗୋଟିଏ ଆଦିବାସୀ ଗାଁ ଭିତରେ ଅତି ଗୋପନୀୟ ସ୍ଥାନରେ ରହୁଥିଲେ । ମୋ ପହଞ୍ଚିବା କଥା ଯେତେବେଳେ ଶୁଣିଲେ, ରାଜି ହେଲେ ଦେଖାଦେବାକୁ । ଆମେ ଓଡ଼ିଶା ତଥା ମୟୂରଭଞ୍ଜର ସ୍ୱାର୍ଥ ବିଷୟ ସବୁ ଦିଗରୁ ବହୁ ସମୟ ଆଲୋଚନା କରିଥିଲୁ । ନିର୍ବାଚନରାଜନୀତିରେ ପ୍ରବେଶ କରିବାପାଇଁ ମୁଁ ତାଙ୍କୁ ପ୍ରବର୍ତ୍ତାଇଥିଲି । ସେ ବିଧାନସଭାକୁ ନିର୍ବାଚିତ ହୋଇ ଆସି ସରକାରଙ୍କ ସହିତ ସହଯୋଗ କରି ଜଣେ ମନ୍ତ୍ରୀ ହୋଇପାରିଲେ ଭଲଭାବରେ ଆଦିବାସୀମାନଙ୍କର ସେବା କରିପାରିବେ ବୋଲି ମୁଁ ତାଙ୍କ ମନରେ ବିଶ୍ୱାସ ଜନ୍ମାଇପାରିଥିଲି । ପରବର୍ତ୍ତୀ ଘଟଣାରୁ ଜଣାପଡ଼ିଥିଲା ଯେ ମୋର ରାଞ୍ଚି ଯିବାଟା ସାର୍ଥକ ହୋଇଥିଲା । ମୋର ଦୌତ୍ୟ ଓ ଗୋପନ ମନ୍ତ୍ରଣା ମୟୂରଭଞ୍ଜ ଆଦିବାସୀ ବିଦ୍ରୋହକୁ ପ୍ରଶମିତ କରି ଓଡ଼ିଶାର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ସ୍ଥାୟୀ ଶାନ୍ତି ପ୍ରତିଷ୍ଠା ଦିଗରେ ବିଶେଷ ସହାୟକ ହୋଇଥିଲା । ସୋନାରାମ୍‌ବାବୁ ୧୯୫୨ ନିର୍ବାଚନରେ ଓଡ଼ିଶାର ବିଧାନସଭାକୁ ନିର୍ବାଚିତ ହୋଇ ଆସି ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରିମଣ୍ଡଳରେ ମନ୍ତ୍ରୀ ହେଲେ; କିନ୍ତୁ ମୁଁ ମନ୍ତ୍ରିମଣ୍ଡଳରେ ଉପମନ୍ତ୍ରୀ ରହିଲି । ସେ ମୋର ସହପାଠୀ ଥିଲେ ଏବଂ ସେତେବେଳେ ସ୍ୱାଧୀନତା ସଂଗ୍ରାମର ପାଖ ମାଡ଼ିନଥିଲେ । ତେଣୁ ମୋତେ ଟିକିଏ ଅଡୁଆ ଲାଗିଲା । ମୋର ମନକଥା ଆମର ନେତା ନବବାବୁଙ୍କ ଆଗରେ ମଧ ପ୍ରକାଶ କରିଥିଲି । ନବବାବୁ ମୋତେ ବୁଝାଇଥିଲେ ଯେ ସୋନାରାମ୍‌ବାବୁ ଅନୁନ୍ନତ

ଆଦିବାସୀଙ୍କ ପ୍ରତିନିଧି । ସ୍ୱାଧୀନତା ସଂଗ୍ରାମୀମାନଙ୍କ ଉଦ୍ଦେଶ୍ୟ ହେଉଛି ସେମାନଙ୍କୁ ସାଙ୍ଗରେ ଧରି ଆଗେଇନେବା । ସେ କ୍ଷେତ୍ରରେ ଗଣତନ୍ତ୍ର ଶାସନର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ଏଭଳି ପରିସ୍ଥିତିକୁ ମଧ୍ୟ ସହ୍ୟ କରିବାକୁ ହୋଇଥାଏ । ସେତେବେଳେ ମୁଁ ଶ୍ରମିକ ଆନ୍ଦୋଳନର ନେତୃତ୍ୱ ନେଉଥିଲି । ତେଣୁ ଆଶାକରାଯାଉଥିଲା ଶ୍ରମ ବିଭାଗର ଦାୟିତ୍ୱରେ ମୁଁ ରହିବି । ମାତ୍ର ସୋନାରାମ୍‌ବାବୁ ଶ୍ରମବିଭାଗ ନେବାରୁ ମୁଁ ଆଉ ସେ ବିଭାଗର ଉପମନ୍ତ୍ରୀ ହେବାକୁ ମନ ବଳାଇଲିନାହିଁ । ୧୯୫୬ ମସିହାରେ ମହତାବବାବୁ ମନ୍ତ୍ରିମଣ୍ଡଳ ଗଠନ କଲାବେଳେ ସୋନାରାମବାବୁଙ୍କୁ ତାଙ୍କ ମନ୍ତ୍ରିମଣ୍ଡଳରୁ ବାଦ୍ ଦେଇଥିଲେ । ପରେ ମଧ୍ୟ ସୋନାରାମବାବୁ ବ୍ୟବସ୍ଥାସଭାର ସଦସ୍ୟ ରୂପେ ବହୁବାର ନିର୍ବାଚିତ ହୋଇ ଆସିଛନ୍ତି । ସୋନାରାମବାବୁଙ୍କ ପାଖରେ ଆଦିବାସୀ ଜୀବନର ସ୍ୱାଭାବିକ ସ୍ପଷ୍ଟବାଦିତା ଓ ଆମୋଦପ୍ରିୟତା ଲକ୍ଷ୍ୟ କରାଯାଏ । ଉଦାହରଣସ୍ୱରୂପ, ବାରମ୍ବାର ବିଧାନସଭାରେ ଦଳ ପରିବର୍ତ୍ତନ କରିବାକୁ ସେ ଆଦୌ କୁଣ୍ଠିତ ହେଉନଥିଲେ । ଏପରିକି ଗୋଟିଏ ସପ୍ତାହରେ ଦୁଇ ତିନି ଥର ଦଳ ପରିବର୍ତ୍ତନ କରିବାରେ ତାଙ୍କର କୌଣସି ଆପତ୍ତି ନଥାଏ । ଜେହି ତାଙ୍କୁ ସେ ବିଷୟରେ ଆକ୍ଷେପ କଲେ ସେ ରହସ୍ୟ କରି କହନ୍ତି, ''ଆୟାରାମ୍ ଗୟାରାମ୍, ମେରା ନାମ ସୋନାରାମ୍ ।'' ସେ ମନ୍ତ୍ରୀ ଥିଲାବେଳେ ବାଘଛାଲରେ ତିଆରି ପୋଷାକ ବ୍ୟବହାର କରୁଥିଲେ ଏବଂ ତାକୁ ପିନ୍ଧି ଅନେକ ସମୟରେ ବ୍ୟବସ୍ଥାସଭାକୁ ଆସି କୌତୂହଳ ସୃଷ୍ଟି କରୁଥିଲେ ।

ଶିକ୍ଷାର ଆରୋହଣ ପଥରେ ଭଦ୍ରକରୁ ରେଭେନ୍‌ସା କଲେଜକୁ ଆସିବା ପରେ ମୋର ଦୃଷ୍ଟି ଓ ଅନୁଭୂତିର ଦିଗ୍‌ବଳୟ ଅଧିକ ବିସ୍ତାରିତ ହୋଇଯାଇଥିଲା । ରେଭେନ୍‌ସା କଲେଜ ସେତେବେଳେ ଥିଲା ଓଡ଼ିଶାର ସର୍ବବିଖ୍ୟାତ ତଥା ବିଶିଷ୍ଟ ଶିକ୍ଷାନୁଷ୍ଠାନ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପୂର୍ବରୁ ଏହା ଥିଲା ଆମର ଏକମାତ୍ର ମହାବିଦ୍ୟାଳୟ । ସ୍ୱତନ୍ତ୍ର ପ୍ରଦେଶ ହେବା ପରେ ଆଉ ଗୋଟିଏ ବିଶିଷ୍ଟ ଅନୁଷ୍ଠାନ ଖଲ୍ଲିକୋଟ କଲେଜ ଓଡ଼ିଶାରେ ହେଲା । ସେତେବେଳେ ରେଭେନ୍‌ସା କଲେଜର ଛାତ୍ରସଂଖ୍ୟା ପ୍ରାୟ ଏକହଜାର ଭଳି ଥିଲା । ପୂର୍ବ ଓ ପଶ୍ଚିମ ଛାତ୍ରାବାସ ନାମରେ ଦୁଇଟି ଛାତ୍ରାବାସ ଥିଲା । ଉପରୋକ୍ତ ଦୁଇଟି ଛାତ୍ରାବାସରେ ପ୍ରାୟ ପାଞ୍ଚଶହ ଛାତ୍ର ରହୁଥିଲେ । ଓଡ଼ିଶାର ବହୁ ଅଞ୍ଚଳର ଛାତ୍ରମାନେ ଏଠାରେ ଏକତ୍ର ରହୁଥିଲେ । ଓଡ଼ିଶାର ଦେଶୀୟ ରାଜ୍ୟଗୁଡ଼ିକ ଛଡ଼ା ସିଂହଭୂମି, ଷଡ଼େଇକଳା, ଖରସୁଆଁ ପ୍ରଭୃତି ସ୍ଥାନମାନଙ୍କରୁ ଛାତ୍ରମାନେ ଆସି ରେଭେନ୍‌ସା କଲେଜରେ ପଢୁଥିଲେ ଏବଂ ଛାତ୍ରାବାସରେ ରହୁଥିଲେ । କଲେଜରେ ପଢ଼ିବା, ହଷ୍ଟେଲରେ ରହିବା ଓ ଖାଇବା ପ୍ରଭୃତି ଖର୍ଚ୍ଚ ମାସକୁ ପଚିଶ ଟଙ୍କା ଭିତରେ ଚଳିଯାଉଥିଲା । ମୋର ମନେଅଛି, ହଷ୍ଟେଲର ଖର୍ଚ୍ଚ ଥିଲା ତେରଟଙ୍କା ଆଠଅଣା । ସେତିକିରେ ଚଳିଯାଉଥିଲା ଦୁଇଓଳି ଖିଆ ଓ ଜଳଖିଆ, ବିଜୁଳି ଆଲୁଅ ଖର୍ଚ୍ଚ ଇତ୍ୟାଦି । କଲେଜର ଦରମା ମାସକୁ ପ୍ରାୟ ତିନିଟଙ୍କା ଥିଲା । ତାହା ଛଡ଼ା ଅନ୍ୟାନ୍ୟ ଫିସ୍ ମାସକୁ ପ୍ରାୟ ଦୁଇ ଟଙ୍କାରୁ ଅଧିକ ନଥିଲା । ମୋତେ ଉଚ୍ଚ ଶିକ୍ଷା ଦେବାପାଇଁ ମୋ ବଡ଼ଭାଇଙ୍କର ଯେଉଁ ପ୍ରବଳ ଆଗ୍ରହ ଥିଲା, ମୋର ରାଜନୀତି ବ୍ୟାପାର ଖର୍ଚ୍ଚ ପତ୍ର ଯୋଗାଡ଼ କରିବା ଦିଗରେ ମୁଁ ପୂର୍ଣ୍ଣମାତ୍ରାରେ ତା'ର ସୁଯୋଗ ନେଇଥିଲି । ଜଳଖିଆ ଖର୍ଚ୍ଚଟା ଯେ ସେଇ ତେରଟଙ୍କା ଆଠଅଣା ଦେୟ ଭିତରେ ଅନ୍ତର୍ଭୁକ୍ତ ମୁଁ ସେକଥା ତାଙ୍କ ପାଖରେ ଲୁଚାଇଥିଲି । ତା'ଛଡ଼ା କେତେକ କାଳ୍ପନିକ ଫିସ୍‌ର ନାମ ଉଦ୍ଭାବନ କରି ପ୍ରତିମାସରେ ସେ ବାବଦରେ କିଛି ଟଙ୍କା ଆଣୁଥିଲି । ଏସବୁ ଧରେ ପୁଣି ମୁଁ ପକେଟ୍ ଖର୍ଚ୍ଚ ଦାବିକରୁଥିଲି । ସେ ଜାଣିଶୁଣି ଏତେ କଥାରେ ମୁଣ୍ଡ ନଖେଳାଇ ମାସକୁ ପଚାଶ ଟଙ୍କା ଲେଖାଏଁ ପଠାଉଥିଲେ । ସେତେବେଳକା ସମୟରେ ଆବଶ୍ୟକତା ତୁଳନାରେ ପଚାଶ ଟଙ୍କା ଯେ କେତେ ବେଶି ଥିଲା କହିବା ବାହୁଲ୍ୟ । ଏହି ଟଙ୍କା ମୋର ରାଜନୈତିକ କାର୍ଯ୍ୟକଳାପରେ ବିଶେଷ ସାହାଯ୍ୟ କରୁଥିଲା । କଲେଜ ଅଧ୍ୟୟନ ସମୟରେ ମାସକୁ ମାସ ଯେଉଁ ଟଙ୍କା ଆସେ ସେଥିରେ ମୋର ବହିପତ୍ର ଓ ଲୁଗାପଟା କିଣିବା ଖର୍ଚ୍ଚ ଅନ୍ତର୍ଭୁକ୍ତ ନଥିଲା । ମୁଁ କଲିକତା ଗଲେ ସେସବୁ ସେଠାରେ କିଣାଯାଏ ।

# ମୋର ଖଦୀପ୍ରୀତି

ମୁଁ ଖଦଡ଼ ପିନ୍ଧୁଥିଲି । ସେତେବେଳେ ଖଦଡ଼ ଥିଲା କଂଗ୍ରେସ କର୍ମୀଙ୍କ ଆଦର୍ଶ ଓ ବ୍ରତର ପ୍ରତୀକ । କଲିକତା କଲେଜଷ୍ଟ୍ରିଟ୍ ପାଖରେ ଗାନ୍ଧିବାଦୀ ନେତା ସ୍ୱର୍ଗୀୟ ସତୀଶ କୁମାର ଦାସଗୁପ୍ତଙ୍କଦ୍ୱାରା ପ୍ରତିଷ୍ଠିତ ଖଦୀ ପ୍ରତିଷ୍ଠାନରୁ ମୁଁ ସବୁବେଳେ ଖଦଡ଼ ଲୁଗାପଟା କିଣୁଥିଲି । ସେତେବେଳେ ଖୁବ୍ କମ୍ ଲୋକ ଖଦଡ଼ ପିନ୍ଧୁଥିଲେ । ଅନେକ ଥର ମୁଁ ଖଦଡ଼ କିଣିଲା ପରେ ବିକ୍ରି କରୁଥିବା ଲୋକଙ୍କ ସହିତ ମୋର ପରିଚୟ ହୋଇଯାଇଥିଲା । ଜଣେ ଓଡ଼ିଆ ପିଲାର ଖଦଡ଼ ପ୍ରତି ଆଗ୍ରହ ଦେଖି ସେମାନେ ଖୁବ୍ ସନ୍ତୋଷ ପ୍ରକାଶ କରୁଥିଲେ । ଅଭୟାଶ୍ରମ ନାମରେ ଆଉ ଗୋଟିଏ ଖଦଡ଼ ଦୋକାନ କଲେଜଷ୍ଟ୍ରିଟ୍‌ରେ ଥିଲା । ସେଠାରୁ ମଧ୍ୟ ମଝିରେ ମଝିରେ ମୁଁ ଖଦଡ଼ ଲୁଗା କିଣୁଥିଲି । କଂଗ୍ରେସର ସକ୍ରିୟ ସଦସ୍ୟ ହେବାକୁ ହେଲେ ସେତେବେଳେ ଖଦଡ଼ ପିନ୍ଧିବାକୁ ବାଧ୍ୟ । କଂଗ୍ରେସ ପ୍ରତିଜ୍ଞାପତ୍ରରେ ମଧ୍ୟ ସେ ପ୍ରକାର ସର୍ତ୍ତ ଥିଲା । ତେଣୁ ଖଦଡ଼ ପିନ୍ଧା ଅନେକଙ୍କର ଅଭ୍ୟାସରେ ପରିଣତ ହୋଇଯାଇଛି; କଂଗ୍ରେସକୁ ଛାଡ଼ିଲେ ମଧ୍ୟ ଖଦଡ଼କୁ ଛାଡ଼ିହେଉନାହିଁ । ସେତେବେଳେ ନିୟମ ଥିଲା କୌଣସି ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ହେବାକୁ ଚାହୁଁଥିବା ବ୍ୟକ୍ତି ନିୟମିତ ଖଦଡ଼ ପିନ୍ଧୁଥିବାର ପ୍ରମାଣ ଥିବ, ନଚେତ୍ ସେ ପ୍ରାର୍ଥୀ ହୋଇପାରିବେ ନାହିଁ । ଏ ସମ୍ପର୍କରେ ଗୋଟିଏ କୌତୂହଳପୂର୍ଣ୍ଣ କଥା ମୋର ମନେପଡୁଛି । ପ୍ରାୟ ଚାଳିଶ ବର୍ଷ ତଳେ ସ୍ୱର୍ଗୀୟ ସୁରେନ୍ଦ୍ର ମୋହନ ଘୋଷ ବଙ୍ଗଳା ପ୍ରଦେଶ କଂଗ୍ରେସ କମିଟିର ସଭାପତି ଥିବାବେଳେ ମୁଁ ଥରେ ତାଙ୍କୁ ଦେଖାକରିବାକୁ ଯାଇଥିଲି । ମୋ ସହିତ ଥିଲେ ଶ୍ରୀ ରାମକୃଷ୍ଣ ପତି । ଦେଖିଲୁ, ଜଣେ ଭଦ୍ରବ୍ୟକ୍ତି ଧୋବଫରଫର୍ ମିଲ୍ ଧୋତି ଓ ଗଞ୍ଜି ପିନ୍ଧି ସେଠାର ମୁଖ୍ୟ ସ୍ଥାନରେ ବସିଛନ୍ତି । ଆମେ ଭାବିଥିଲୁ ଶ୍ରୀ ସୁରେନ୍ଦ୍ର ମୋହନ ଘୋଷ ନିଶ୍ଚୟ ଖଦଡ଼ ପିନ୍ଧୁଥିବେ । ପ୍ରଥମେ ସେହି ବ୍ୟକ୍ତିଙ୍କୁ ଦେଖି ଆମର ସନ୍ଦେହ ହେଲା ଯେ ବୋଧହୁଏ ସେ ସୁରେନ୍ଦ୍ର ମୋହନ ଘୋଷ ନୁହନ୍ତି । ମାତ୍ର ତା'ପରେ ଜାଣିଲୁ ସେଇ ନିଜେ ଶ୍ରୀ ସୁରେନ୍ଦ୍ର ମୋହନ ଘୋଷ, ବଙ୍ଗଳା ପ୍ରଦେଶ କଂଗ୍ରେସ କମିଟିର ସଭାପତି । ତାଙ୍କର ସେଦିନ ମଧ୍ୟ ଗୋଟିଏ ସଭାକୁ ଯିବାର ଥିଲା । ଆମ ସହିତ କଥାବାର୍ତ୍ତା ସାରି ସେ ଉକ୍ତ ସଭାକୁ ଯିବାପାଇଁ ବାହାରି ଚାକରକୁ ଡାକି କହିଲେ ତାଙ୍କର ମିଟିଂକୁ ଯିବା ପୋଷାକ ଆଣି ଦେବାପାଇଁ । ଆମେ ସେକଥା ଶୁଣି ହସିଥିଲୁ ଓ ଆଶ୍ଚର୍ଯ୍ୟ ହୋଇଥିଲୁ । କଲିକତାର ଅନେକ କଂଗ୍ରେସ ଲୋକ ଘରେ ମିଲ୍ ଲୁଗା ପିନ୍ଧନ୍ତି ଏବଂ ସଭାକୁ ବାହାରିଲାବେଳେ ମିଟିଂ ପୋଷାକ ଖଦଡ଼ ପିନ୍ଧି ବାହାରନ୍ତି । ୧୯୭୦ ମସିହାରେ କଂଗ୍ରେସ ବିଭାଜନ ହେବା ପରେ ଅଭୟାଶ୍ରମରେ ଥରେ ମୁଁ ଖଦଡ଼ କିଣୁଥାଏ । ଏହି ସମୟରେ ଜଣେ ଭଦ୍ରବ୍ୟକ୍ତି ଖୁବ୍ ଅସ୍ତବ୍ୟସ୍ତ ହୋଇ ସେ ଦୋକାନ ଭିତରକୁ ପଶିଆସି ଖୁବ୍ ଖୁସିରେ କହିଲେ ଯେ ୱାର୍ଡ଼ କଂଗ୍ରେସ କମିଟିର ତାଙ୍କୁ ସଭାପତି କରାଯାଇଛି, ତେଣୁ ତାଙ୍କୁ ଖଦଡ଼ ପିନ୍ଧିବାକୁ ହେବ । ଦୋକାନୀ ତାଙ୍କୁ ଖୁବ୍ ପତଳା ଖଦଡ଼ ଲୁଗା ଦେଖାଇଲେ । କିନ୍ତୁ ସେ କହିଲେ, ''ନା, ମୋଟାବାଲା ଦିଅ ।'' ସରୁ ଖଦଡ଼ ପିନ୍ଧିଲେ ଉପସ୍ଥିତ କର୍ତ୍ତାମାନେ ଯଦି ତାହାକୁ ଖଦଡ଼ ବୋଲି ବିଶ୍ୱାସ ନକରନ୍ତି ତା'ହେଲେ ତାଙ୍କର ଅସୁବିଧା ହେବ ବୋଲି ସେ ଆଶଙ୍କା ପ୍ରକାଶ କରିଥିଲେ ।

କଲେଜରେ ମୋର ଛାତ୍ରଜୀବନ କର୍ମମୟ ଓ ଘଟଣାବହୁଳ ଥିଲା । ସାଧାରଣତଃ ଯେଉଁମାନେ ଘରୁ ଅଧିକ ଟଙ୍କା ଆଣୁଥିଲେ ସେମାନେ ସିନେମା ଯିବାଠାରୁ ଆରମ୍ଭକରି ଅନ୍ୟାନ୍ୟ ବହୁ ପ୍ରକାର ବାଜେ ଖର୍ଚ୍ଚରେ ତାହା ଉଡ଼ାଇଦେଉଥିଲେ । ମୁଁ ସେପରି କରୁନଥିଲି । ମୋର ସମୁଦାୟ ଛାତ୍ରାବସ୍ଥାରେ ଦୁଇ ତିନିଥର ମାତ୍ର ସିନେମା ଦେଖିବାକୁ ଯାଇଥିଲି । ବି.ଏ. କ୍ଲାସ୍‌କୁ ଉତ୍ତୀର୍ଣ୍ଣ ହେବା ପରେ ମୁଁ ସିଗାରେଟ୍ ଖାଇ ଶିଖିଥିଲି । ଛାତ୍ରଧର୍ମଘଟ ଓ ଅନ୍ୟାନ୍ୟ ଆନ୍ଦୋଳନ ନିମନ୍ତେ ଅନେକ ସମୟରେ ରାତିରେ ଅନିଦ୍ରା ରହିବାକୁ ପଡ଼େ । ତେଣୁ ମଝିରେ ମଝିରେ ସିଗାରେଟ୍ ଓ ଚା' ଖାଇବା ଆବଶ୍ୟକ

ପଢ଼ିଥିଲା । ବଦ୍‌ଖର୍ଚ୍ଚ ନକରି ମୁଁ ଯେପରି ଭାବରେ ପଇସା ଖର୍ଚ୍ଚ କରୁଥିଲି ତାହା କଲେଜ ଜୀବନରେ ମୋ ରାଜନୈତିକ କାର୍ଯ୍ୟପାଇଁ ଆବଶ୍ୟକ ପଡୁଥିଲା । କଲେଜ ଜୀବନ ଆରମ୍ଭରେ ମୋର ଖଦଡ଼ ଧୋତି, ପଞ୍ଜାବୀ ଓ ଚଦର ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ଉତ୍କଳ ପ୍ରଦେଶ କଂଗ୍ରେସ ଅଫିସ ସହିତ ମୁଁ ସମ୍ପର୍କ ରଖୁଥିଲି । କଂଗ୍ରେସର ଚାରିଅଣିଆ ସଭ୍ୟସଂଗ୍ରହ ଖାତା ନେଇ କଲେଜ ପିଲାଙ୍କୁ କଂଗ୍ରେସ ସଭ୍ୟ କରାଉଥିଲି । ପରବର୍ତ୍ତୀ କାଳର ସମାଜବାଦୀ ନେତା ଶ୍ରୀ ବିଶ୍ୱନାଥ ପଣ୍ଡିତ ସେ ସମୟରେ କଲେଜରେ ମୋର ସହପାଠୀ ଥିଲେ । ତାଙ୍କୁ ମୁଁ କଲେଜରେ କଂଗ୍ରେସ ସଭ୍ୟ କରାଇଥିଲି ।

## ଓଡ଼ିଶାରେ ସର୍ବପ୍ରଥମ ବିଧାନସଭା ନିର୍ବାଚନ
## ପଣ୍ଡିତ ନେହେରୁଙ୍କ ଓଡ଼ିଶା ଆଗମନ

୧୯୩୭ ମସିହାରେ ଓଡ଼ିଶାରେ ତଥା ସମଗ୍ର ଭାରତବର୍ଷର ଅନ୍ୟାନ୍ୟ ପ୍ରଦେଶରେ ୧୯୩୫ ମସିହା ଭାରତ ଶାସନବିଧାନ ଆଇନ ଅନୁସାରେ ପ୍ରଦେଶ ବ୍ୟବସ୍ଥାସଭାଗୁଡ଼ିକର ପ୍ରଥମ ନିର୍ବାଚନ ହେବା କଥା ଭାରତ ସରକାର ଘୋଷଣା କରିଥା'ନ୍ତି । ଅଖିଳ ଭାରତ କଂଗ୍ରେସ କମିଟି ଏହି ନିର୍ବାଚନରେ କଂଗ୍ରେସ ଅଂଶ ଗ୍ରହଣ କରିବା କଥା ସ୍ଥିରକରିଥାଆନ୍ତି । ଉକ୍ତ ବିଧାନ ଅନୁସାରେ ଓଡ଼ିଶା ବ୍ୟବସ୍ଥାସଭାର ସଭ୍ୟ ସଂଖ୍ୟା ଷାଠିଏ ହେବ ବୋଲି ନିର୍ଦ୍ଧାରିତ ହୋଇଥାଏ । ସେ ସମୟରେ ମୁଁ କଲେଜରେ ପଢ଼ା ଆରମ୍ଭ କରିଥିଲି ମାତ୍ର । ତଥାପି କଂଗ୍ରେସ ନିର୍ବାଚନ କାର୍ଯ୍ୟର ଜଣେ ସ୍ୱେଚ୍ଛାସେବକ ଭାବରେ ଉତ୍ସାହର ସହ ସଂପୃକ୍ତ ରହି କାର୍ଯ୍ୟ କରୁଥାଏ । ଆମ ପ୍ରଦେଶରେ କଂଗ୍ରେସ ପକ୍ଷରୁ ନିର୍ବାଚନ କାର୍ଯ୍ୟ ଚଳାଇବାର ଦାୟିତ୍ୱ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଉପରେ ନ୍ୟସ୍ତ ଥାଏ । ସେତେବେଳେ ପଣ୍ଡିତ ନୀଳକଣ୍ଠ ଦାସଙ୍କର ଖୁବ୍ ସୁନାମ ଥିଲା । ସାରା ପ୍ରଦେଶରେ ତାଙ୍କର ପ୍ରଭାବ ମଧ୍ୟ ଥିଲା । ଆମ ବାଲେଶ୍ୱର ଜିଲ୍ଲାରେ କଂଗ୍ରେସ ପ୍ରାର୍ଥୀ ବାଛିବାରେ ଦ୍ୱନ୍ଦ୍ୱ ଉପୁଜିଥିଲା, ବିଶେଷକରି ଭଦ୍ରକ ସବ୍‌ଡିଭିଜନ୍‌ରେ । ଶ୍ରୀ ଭାଗବତ ସାହୁ ଭଦ୍ରକ ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ହେବାପାଇଁ ଆବେଦନ କରିଥାଆନ୍ତି । ସେ ଉଚ୍ଚଶିକ୍ଷିତ ଥିଲେ ଏବଂ ତାଙ୍କର ବହୁତ ତ୍ୟାଗ ମଧ୍ୟ ଥିଲା । ଭଦ୍ରକର କଂଗ୍ରେସ କର୍ମୀମାନଙ୍କର ଇଚ୍ଛା ଥାଏ ଭାଗବତବାବୁଙ୍କୁ କଂଗ୍ରେସ ପ୍ରାର୍ଥୀ କରିବାପାଇଁ । ମୁଁ ମଧ୍ୟ ସେଠାକାର କଂଗ୍ରେସ କର୍ମୀମାନଙ୍କର କଥାଟାକୁ ପସନ୍ଦ କରୁଥାଏ । ପ୍ରାଦେଶିକ ସ୍ତରରେ ମଧ୍ୟ ତାଙ୍କ ପ୍ରତି ସମର୍ଥନ ଥାଏ । ମାତ୍ର ଆମମାନଙ୍କର ନେତା ଶ୍ରୀ ହରେକୃଷ୍ଣ ମହତାବ ଚାହିଁଥିଲେ ଯେ ଧାମନଗର ଥାନା କଣ୍ଡାପାରିର ଜମିଦାର ଜଗନ୍ନାଥ ଦାସ କଂଗ୍ରେସ ପ୍ରାର୍ଥୀ ହୁଅନ୍ତୁ । ମହତାବବାବୁଙ୍କର ପୂର୍ଣ୍ଣ ସମର୍ଥନ ପାଇ ଶ୍ରୀ ଜଗନ୍ନାଥ ଦାସ ଉକ୍ତ ନିର୍ବାଚନରେ ପ୍ରାର୍ଥୀ ହୋଇଥିଲେ । ଜଗନ୍ନାଥବାବୁ ପ୍ରଥମେ କଂଗ୍ରେସ ବିରୋଧୀ ଜମିଦାର ଦଳର ଲୋକ ଥିଲେ । ସେ କନିକାରାଜାଙ୍କ ଦଳର ସମ୍ପାଦକ ଥିଲେ ଏବଂ କନିକା ଦଳର ସହାୟତାରେ ସେ ବିହାର-ଓଡ଼ିଶା ବ୍ୟବସ୍ଥାସଭାର ସଭ୍ୟ ହୋଇଥିଲେ । ତେଣୁ ତାଙ୍କର ପ୍ରାର୍ଥୀତ୍ୱ କଂଗ୍ରେସ କର୍ମୀମାନଙ୍କର ମନକୁ ପାଉନଥାଏ । ମହତାବବାବୁଙ୍କର ରାଜା, ଜମିଦାର, ମକଦ୍ଦମମାନଙ୍କ ପ୍ରତିପତ୍ତି ଉପରେ ଖୁବ୍ ଭରସା ଥିବା କଥା ବହୁ ନିର୍ବାଚନ ରାଜନୀତିରେ ଲକ୍ଷ୍ୟ କରାଯାଇଛି । ନିର୍ବାଚନରେ କଂଗ୍ରେସର ବିଜୟ ସହଜସାଧ୍ୟ କରିବା ଉଦ୍ଦେଶ୍ୟରେ ସେ ଏଭଳି ନିଷ୍ପତ୍ତି ନେବାର ଏକ ଯୁକ୍ତି ଥିଲେ ମଧ୍ୟ କଂଗ୍ରେସର ଆଦର୍ଶ ଓ ଭବିଷ୍ୟତ ଆଭିମୁଖ୍ୟ ପ୍ରତି ଏହା ଅନୁକୂଳ ନୁହେଁ ବୋଲି ଅନେକ ଅନୁଭବ କରୁଥିଲେ । ତଥାପି ସ୍ୱାଧୀନତାପ୍ରାପ୍ତି ସଙ୍ଗେ ସଙ୍ଗେ, ଏପରିକି ସ୍ୱାଧୀନତା ସଂଗ୍ରାମ, କଂଗ୍ରେସ ଓ ଗାନ୍ଧିଜୀଙ୍କୁ ବିରୋଧ କରୁଥିବା କିମ୍ବା ବ୍ରିଟିଶ୍ ସରକାରଙ୍କ ଭୟରେ ଗାନ୍ଧିଜୀଙ୍କୁ ଦର୍ଶନ କରିବାପାଇଁ ମଧ୍ୟ ସାହସ କରିନଥିବା ଅନେକ ବ୍ୟକ୍ତି ମହତାବଙ୍କ ସମର୍ଥନ ହେତୁ କଂଗ୍ରେସ ସଂଗଠନ ଓ ସରକାରରେ ଉଚ୍ଚପଦପଦବୀ ଉପଭୋଗ କରିପାରିଥିଲେ । କଂଗ୍ରେସ

ଜଗନ୍ନାଥ ଦାସଙ୍କୁ ପ୍ରାର୍ଥୀରୂପେ ମନୋନୀତ କରିସାରିବା ପରେ ମଧ ଅନେକ କଂଗ୍ରେସକର୍ମୀ କଂଗ୍ରେସ ସିଦ୍ଧାନ୍ତକୁ ବିରୋଧ କରିଥିଲେ । ଦଳର ଶୃଙ୍ଖଳା ଦୃଷ୍ଟିରୁ ଓ କଂଗ୍ରେସର ବିଜୟପାଇଁ ବ୍ୟାକୁଳତା ହେତୁ ମୁଁ କିନ୍ତୁ ଏ ପ୍ରକାର ବିରୋଧକୁ ସମର୍ଥନ କରିପାରିନଥିଲି । ଛାତ୍ର ଥାଇ ମଧ ଜଣେ ସ୍ୱେଚ୍ଛାସେବକ ହିସାବରେ ଜଗନ୍ନାଥବାବୁ ଓ ଅନ୍ୟମାନଙ୍କ ସାଙ୍ଗରେ ବୁଲି ପ୍ରଚାର କାର୍ଯ୍ୟରେ ଅଂଶଗ୍ରହଣ କରିଥିଲି । ଏହି ସମୟରେ ଜାତୀୟକବି ବାଞ୍ଛାନିଧି ମହାନ୍ତିକ ସମ୍ପର୍କରେ ଆସିଥିଲି । ସେ ନିଜେ ଗୋଟିଏ ହାରମୋନିୟମ୍ କାନ୍ଧରେ ପକାଇ ଜାତୀୟସଙ୍ଗୀତମାନ ଗାଇ ସଭାସମିତିମାନଙ୍କରେ କଂଗ୍ରେସକୁ ସମର୍ଥନ କରିବାପାଇଁ ପ୍ରଚାର କରୁଥିବାର ମୁଁ ଦେଖିଛି । ସଭାରେ ନେତୃସ୍ଥାନୀୟ ବ୍ୟକ୍ତିମାନେ ଭାଷଣ ଦିଅନ୍ତି; ମୁଁ ମଧ କଂଗ୍ରେସକୁ ସମର୍ଥନ କରିବା ପାଇଁ ସଭାରେ କୁହେ । କିନ୍ତୁ ଏସବୁ ଭାଷଣଦ୍ୱାରା ଯାହା ନହୁଏ ତା'ଠାରୁ ଅଧିକ ଉତ୍ସାହ ସୃଷ୍ଟି କରୁଥିଲା ସ୍ୱର୍ଗୀୟ ବାଞ୍ଛାନିଧି ମହାନ୍ତିଙ୍କର ଗାଆଣ ଓ ବକ୍ତାଣର ଉଦ୍‌ବୋଧନ ।

## 'ହେଇ, ଜବାହରଲାଲ୍ ନେହେରୁ !'

୧୯୩୭ ମସିହାର ନିର୍ବାଚନ ସମୟରେ ମୁଁ ପ୍ରଥମ ଥର ପାଇଁ ପଣ୍ଡିତ ଜବାହରଲାଲ ନେହେରୁଙ୍କର ଦର୍ଶନ ଲାଭ କରିଥିଲି । ଜାତୀୟ କଂଗ୍ରେସର ସଭାପତି ହିସାବରେ କଂଗ୍ରେସ ସପକ୍ଷରେ ଜନମତ ସୃଷ୍ଟି କରିବାପାଇଁ ସେ ଓଡ଼ିଶା ଗସ୍ତରେ ଆସୁଥିଲେ । କଲିକତାରୁ ମାଡ୍ରାସ୍ ମେଲ୍‌ରେ ଆସି କେନ୍ଦ୍ରାପଡ଼ା ରୋଡ୍ (ଜଗତ୍‌ପୁର) ଷ୍ଟେସନ୍‌ରେ ଓହ୍ଲାଇ ତାଙ୍କର କେନ୍ଦ୍ରାପଡ଼ା ଯିବାର ଥାଏ । ଷ୍ଟେସନ୍‌ରେ ପଣ୍ଡିତ ନୀଳକଣ୍ଠ ଦାସ, ହରେକୃଷ୍ଣ ମହତାବ, ରାଜକୃଷ୍ଣ ବୋଷ, ଯଦୁମଣି ମଙ୍ଗରାଜ, ପ୍ରାଣକୃଷ୍ଣ ପଡ଼ିଆରୀ ଓ ଭାଗୀରଥି ମହାପାତ୍ର ପ୍ରମୁଖ ବଡ଼ ବଡ଼ କଂଗ୍ରେସ ନେତାମାନେ ଠୁଳ ହୋଇଥାଆନ୍ତି । ମଧରାତ୍ରିରେ ଗାଡ଼ି ଆସି ଷ୍ଟେସନରେ ପହଞ୍ଚିଲା । ସମସ୍ତେ ଇତସ୍ତତଃ ଦୌଡ଼ାଦୌଡ଼ି କଲେ । ନେହେରୁଙ୍କୁ ହଠାତ୍ ଦେଖିବାକୁ ନପାଇ କିଏ କହିଲା ସେ ଆସିନାହାନ୍ତି, ଆଉ କେହି କେହି କହିଲେ ବୋଧହୁଏ ପଣ୍ଡିତଜୀ କଟକରେ ଓହ୍ଲାଇବେ । କେତେକ ନେତୃସ୍ଥାନୀୟ ବ୍ୟକ୍ତି ବ୍ୟସ୍ତ ହୋଇ ତରବରରେ ଉକ୍ତ ଗାଡ଼ିରେ କଟକ ଯିବାପାଇଁ ଏପରି ଡିଆଁମାରିଲେ ଯେ ସେଥିରୁ କେତେଜଣ ଖସିପଡ଼ିବା ଅବସ୍ଥାରେ ଥିଲେ, ଅନ୍ୟମାନେ ତାଙ୍କୁ ଧରିପକାଇଥିଲେ । କିନ୍ତୁ ପଣ୍ଡିତ ନେହେରୁ ଥିଲେ ଗାଡ଼ିର ଶେଷ ଡବାରେ । ସେଥିରୁ ଓହ୍ଲାଇ ଷ୍ଟେସନ୍‌ର ଶେଷଭାଗରେ ମିଞ୍ଜି ମିଞ୍ଜି ହୋଇ ଜଳୁଥିବା ଗୋଟିଏ ବତିଖୁଣ୍ଟ ପାଖରେ ନିଜର ଜିନିଷ ଓହ୍ଲାଇ ଛିଡ଼ାହୋଇଥାଆନ୍ତି । ମୁଁ ପଛଆଡ଼କୁ ଦୌଡୁଥିଲି ଗାଡ଼ିର କୌଣସି ପଛଡ଼ବାରେ ଚଢ଼ିଯାଇ କଟକ ଯିବାପାଇଁ । ବତିଖୁଣ୍ଟ ପାଖରେ ଗାନ୍ଧିଟୋପି ପିନ୍ଧି ଛିଡ଼ାହୋଇଥିବା ନେହେରୁଙ୍କ ଉପରେ ହଠାତ୍ ମୋର୍ ଦୃଷ୍ଟି ପଡ଼ିଗଲା । ମୁଁ ପ୍ରବଳ ଉତ୍ତେଜନାରେ ଚିତ୍କାର କରିଉଠିଲି, ''ହେଇ, ଜବାହରଲାଲ୍ ନେହେରୁ !' ତା'ପରେ ସମସ୍ତେ ସେ ଆଡ଼କୁ ଧାଇଁଆସି ତାଙ୍କୁ ସ୍ୱାଗତ ଜଣାଇଥିଲେ । ସେଇଟା କୁଆଡ଼େ ଥିଲା ତାଙ୍କର ପ୍ରଥମ ଓଡ଼ିଶାଗସ୍ତ ଏବଂ ଓଡ଼ିଶା ମାଟିରେ ସର୍ବପ୍ରଥମେ ମୁଁ ତାଙ୍କୁ ଦେଖିଥିବାରୁ ଭାରି ଖୁସିହୋଇଥିଲି । ଷ୍ଟେସନ୍‌ରୁ ପଣ୍ଡିତ ନେହେରୁଙ୍କୁ ପାଛୋଟିନେଇ ଜଗତ୍‌ପୁରଠାରେ ଥିବା କଟକ ଜିଲ୍ଲାବୋର୍ଡ଼ର ଏକ ଛୋଟିଆ ଡାକବଙ୍ଗଳାରେ ରହିବା ବ୍ୟବସ୍ଥା କରାଗଲା । ପରଦିନ ସକାଳେ ସେ ସେଠାରୁ କେନ୍ଦ୍ରାପଡ଼ା ଅଭିମୁଖେ ଯାତ୍ରାକରିଥିଲେ ।

## ଜାତୀୟବାଦୀ ଛାତ୍ର ଆନ୍ଦୋଳନରେ ମୋର ଭୂମିକା

କଲେଜରେ ମୋ ଛାତ୍ର ଜୀବନର ପ୍ରାରମ୍ଭରୁ ପ୍ରଦେଶର ଛାତ୍ର ସଂଗଠନ ଓ ଛାତ୍ର ଆନ୍ଦୋଳନ ସହିତ ମୁଁ ସମ୍ପର୍କ ରଖିଥିଲି । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାପୂର୍ବରୁ ଆମ ପ୍ରଦେଶରେ ଛାତ୍ରମାନଙ୍କର

କୌଣସି ଗୋଟିଏ ହେଲେ ସଂଗଠନ ଧାରାବାହିକ ଭାବରେ କାର୍ଯ୍ୟ କରୁନଥିଲା । ସମୟ ସମୟରେ କେଉଁଠି କେମିତି ଛାତ୍ର ସମ୍ମିଳନୀଟିଏ ହେଉଥାଏ; ମାତ୍ର ତାହା ଥିଲା ସାମୟିକ ବ୍ୟାପାର । ସେତେବେଳେ ଏହିସବୁ ଛାତ୍ର ସମ୍ମିଳନୀ ଉଦାରପନ୍ଥୀମାନଙ୍କ ସାହାଯ୍ୟରେ ଅନୁଷ୍ଠିତ ହେଉଥିଲା । ତେଣୁ ଉଗ୍ର ଲଢୁଆ ଜାତୀୟଭାବ ଦ୍ୱାରା ସେସବୁ ସମ୍ମିଳନୀ ବିଶେଷଭାବରେ ପ୍ରଭାବିତ ହେଉନଥିଲା । ୧୯୩୬ ମସିହାରେ ଆମର ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେବା ପରେ କଟକର ଜଣେ ଛାତ୍ରନେତା ଶ୍ରୀ ନବକିଶୋର ଦାସ (ଆଡ଼ଭୋକେଟ୍ ନବକିଶୋର ଦାସ) ଏକ ସଂଗଠିତ ଛାତ୍ର ଅନୁଷ୍ଠାନ ଗଢ଼ିବାପାଇଁ ଉଦ୍ୟମ କରିଥିଲେ । ଏ ସଂକ୍ରାନ୍ତରେ ନବକିଶୋରବାବୁଙ୍କର ଭଦ୍ରକରେ ଆମ ସ୍କୁଲ ଛାତ୍ରମାନଙ୍କୁ ଉଦ୍‌ବୋଧନ ମୁଁ ଶୁଣିଛି । ଓଡ଼ିଶାର କଳା ଓ ସଂସ୍କୃତି ଉପରେ ଭିତ୍ତିକରି ସେ ଓଡ଼ିଶାରେ ସୀମାବଦ୍ଧ ଛାତ୍ର ଅନୁଷ୍ଠାନଟିଏ ଗଢ଼ିବାକୁ ଉଦ୍ୟମ କରିଥିଲେ । ମାତ୍ର ସେତେବେଳକୁ ଯୁଗ ବଦଳିଗଲାଣି ଏବଂ କଂଗ୍ରେସ ନେତୃତ୍ୱରେ ସାରା ଦେଶରେ ଦେଖାଗଲାଣି ଜାତୀୟ ଜାଗରଣର ପ୍ରବଳ ପ୍ରବାହ । ନିର୍ବାଚନରେ ଜୟଯୁକ୍ତ ହୋଇ କଂଗ୍ରେସ ବହୁ ପ୍ରଦେଶରେ ମନ୍ତ୍ରିମଣ୍ଡଳ ଗଠନ କରି ଶାସନ ଦାୟିତ୍ୱ ନେଇଥାଏ । ଓଡ଼ିଶାରେ ମଧ କଂଗ୍ରେସ-ମନ୍ତ୍ରିମଣ୍ଡଳ ଗଠିତ ହୋଇଥାଏ । ପରିବର୍ତ୍ତିତ ଅବସ୍ଥାରେ ଛାତ୍ର ଅନୁଷ୍ଠାନକୁ ଆଉ ପୁରୁଣା ପରିସୀମା ଭିତରେ ଆବଦ୍ଧକରି ରଖିବା ସମ୍ଭବ ହେଲାନାହିଁ । ତେଣୁ ଶ୍ରୀ ନବକିଶୋର ଦାସଙ୍କ ନେତୃତ୍ୱରେ ଛାତ୍ର ଅନୁଷ୍ଠାନ ଗଢ଼ିବାପାଇଁ ଯେଉଁ ଉଦ୍ୟମ ଚାଲିଥିଲା ସେଥିପ୍ରତି ଛାତ୍ରମାନେ ଆକୃଷ୍ଟ ହେଲେନାହିଁ । ଛାତ୍ରମାନଙ୍କର ମନୋଭାବ ସେତେବେଳକୁ ସଂଗ୍ରାମଶୀଳ ଜଣାପଡୁଥାଏ । ମୋର ମଧ ମନ ହେଉଥାଏ ସଂଗ୍ରାମାଭିମୁଖୀ ଛାତ୍ର ଅନୁଷ୍ଠାନ ଗଢ଼ିବାକୁ ।

୧୯୩୭ ମସିହାରେ ସମଗ୍ର ଭାରତବର୍ଷରେ ପ୍ରଥମ ଥର ପାଇଁ ଗୋଟିଏ ସମ୍ମିଳିତ ଛାତ୍ର ଅନୁଷ୍ଠାନ ଗଠନପାଇଁ ଉଦ୍ୟମ ହୋଇଥିଲା । ଅଖିଳ ଭାରତୀୟ ଛାତ୍ରସଂଘ (All India Students' Federation) ନାମରେ ଗୋଟିଏ ସର୍ବଭାରତୀୟ ଛାତ୍ର ଅନୁଷ୍ଠାନ ଗଠିତ ହେବାକଥା ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଥିଲା । ଏ ସମ୍ବାଦରେ ଉତ୍ସାହିତ ହୋଇ, ସଂଘବଦ୍ଧ ଭାବରେ କାର୍ଯ୍ୟ କରିବା ପାଇଁ ଗୋଟିଏ ଛାତ୍ର ଅନୁଷ୍ଠାନ ଗଠନ କରିବାକୁ ଓଡ଼ିଶା ଛାତ୍ରମାନଙ୍କ ଭିତରେ ଅନୁକୂଳ ମନୋଭାବ ପ୍ରକାଶ ପାଇଥିଲା । ଦଳମତ ନିର୍ବିଶେଷରେ ଭାରତର ସ୍ୱାଧୀନତା ଓ ଭାରତବର୍ଷରେ ଗଣତନ୍ତ୍ର ପ୍ରତିଷ୍ଠାରେ ବିଶ୍ୱାସୀ ସମସ୍ତ ଛାତ୍ରଶକ୍ତିର ମିଳିତ ତୀର୍ଥ ହୋଇଥିଲା ଏହି ନବଗଠିତ ଭାରତୀୟ ଛାତ୍ରସଂଘ । ମୁକ୍ତି, ଶାନ୍ତି ଓ ପ୍ରଗତି ଥିଲା ଛାତ୍ର ଅନୁଷ୍ଠାନ ତଥା ଛାତ୍ର ଆନ୍ଦୋଳନର ଲକ୍ଷ୍ୟ । ଓଡ଼ିଶାରେ ଏକପ୍ରକାର ସର୍ବଭାରତୀୟ ଛାତ୍ର ଅନୁଷ୍ଠାନର ଏକ ଶାଖା ଗଠନ କରିବାପାଇଁ ଆମ ଛାତ୍ରମାନଙ୍କ ଭିତରେ ଉଦ୍ୟମ ଆରମ୍ଭହେଲା । ଉଦ୍ୟୋକ୍ତା ଥିଲେ ଅନନ୍ତ ପଟ୍ଟନାୟକ, ବିଶ୍ୱନାଥ ପଣ୍ଡାୟତ, ବୈଦ୍ୟନାଥ ରଥ ପ୍ରଭୃତି ଛାତ୍ରନେତାମାନେ । ରେଭେନ୍‌ସା କଲେଜରେ ମୋର ରାଜନୈତିକ କାର୍ଯ୍ୟକଳାପରେ ଆକୃଷ୍ଟ ହୋଇ ଅନନ୍ତ ପଟ୍ଟନାୟକ ମୋ ସହିତ ସଂପର୍କ ସ୍ଥାପନ କରିଥିଲେ । ଛାତ୍ରସଂଘପାଇଁ କାର୍ଯ୍ୟ କରିବା ଲାଗି ସେ ମୋତେ ଉତ୍ସାହିତ କରିଥିଲେ । ମୁଁ ତାଙ୍କ କଥାରେ ବେଶ୍ ପ୍ରଭାବିତ ହୋଇଥିଲି । ନିଖିଳ ଉତ୍କଳ ଛାତ୍ରସଂଘ ଓଡ଼ିଶାରେ ଗଠିତ ହେଲା ଏବଂ କଟକଠାରେ ଗୋଟିଏ ଛାତ୍ର ସମ୍ମିଳନୀ କରିବାପାଇଁ ମସୁଧା ହେଲା । ଛାତ୍ର ସମ୍ମିଳନୀ ପୂର୍ବପରି କେବଳ ଏକ ବାର୍ଷିକ ମେଳା ଉତ୍ସବ ନ ହୋଇ କିପରି ଏକ ସଂଗ୍ରାମଶୀଳ ସ୍ଥାୟୀ ଅନୁଷ୍ଠାନରେ ପରିଣତ ହେବ ସେ ବିଷୟରେ ଆଲୋଚନା କରାଯାଇ ଯୋଜନା ପ୍ରସ୍ତୁତ କରାଯାଇଥିଲା । ଛାତ୍ରସଂଘର ଏହି ପ୍ରଥମ ସମ୍ମିଳନୀରେ ସଭାପତିତ୍ୱ କରିଥିଲେ ସେତେବେଳକାର ଜଣେ ଅତି ପ୍ରଭାବଶାଳୀ ଆଡ଼ଭୋକେଟ୍ ଏବଂ ପରେ ପାଟନା ହାଇକୋର୍ଟରେ ବିଚାରପତି ଆସନ ଅଳଙ୍କୃତ କରିଥିବା ସ୍ୱର୍ଗତ ହରିହର ମହାପାତ୍ର । କଟକ ଟ୍ରେନିଂ କଲେଜର ଅଧକ୍ଷ ଶ୍ରୀ ଭବନାଥ ମୁଖାର୍ଜୀ ମୁଖ୍ୟ ଅତିଥିରୂପେ ଉକ୍ତ ସମ୍ମିଳନୀରେ ଭାଷଣ ଦେଇଥିଲେ । ରେଭେନ୍‌ସା କଲେଜରୁ ବହୁ ଛାତ୍ର ପ୍ରତିନିଧି ଭାବରେ ଏହି

ସମ୍ମିଳନୀରେ ଯୋଗ ଦେଇଥିଲେ । ବ୍ରହ୍ମପୁର ଖଲିକୋଟ କଲେଜରୁ ଏବଂ ଓଡ଼ିଶାର ବିଭିନ୍ନ ହାଇସ୍କୁଲମାନଙ୍କରୁ ପ୍ରତିନିଧିମାନେ ଆସି ଉପରୋକ୍ତ ସମ୍ମିଳନୀରେ ଯୋଗଦେଇଥିଲେ । ସମ୍ମିଳନୀର କାର୍ଯ୍ୟକ୍ରମ ଶେଷବେଳକୁ ଛାତ୍ରସଂଘର କର୍ମକର୍ତ୍ତା ନିର୍ବାଚନ ହୋଇଥିଲା । ମୁଁ ଛାତ୍ରସଂଘର ଜଣେ ସହକାରୀ ସମ୍ପାଦକରୂପେ ନିର୍ବାଚିତ ହୋଇଥିଲି ଏବଂ ତା'ର କେତେ ମାସ ପରେ ସଂପାଦକ ହୋଇଥିଲି ।

କର୍ମତତ୍ପରତା ଫଳରେ ନିଖିଳଉତ୍କଳ ଛାତ୍ରସଂଘ, ଅଖିଳଭାରତ ଛାତ୍ରସଂଘର ଶାଖାରୂପେ ଖୁବ୍ କମ୍ ସମୟ ଭିତରେ ଓଡ଼ିଶାର ଛାତ୍ରମାନଙ୍କୁ ପ୍ରଭାବିତ ତଥା ସଂଗଠିତ କରିପାରିଥିଲା । ମୁଁ ଯେଉଁ ପ୍ରକାର ଜୀବନର ମାର୍ଗ ଆଶାକରୁଥିଲି ତାହା ମୋତେ ମିଳିଯାଇଥିଲା । ଛାତ୍ରସଂଘର ଜଣେ ସକ୍ରିୟ କର୍ମକର୍ତ୍ତା ହିସାବରେ ରେଭେନ୍ସା କଲେଜରେ ଏବଂ ଓଡ଼ିଶାର ବିଭିନ୍ନ ସ୍କୁଲମାନଙ୍କରେ ମୁଁ ଛାତ୍ର ସଂଗଠନ କାର୍ଯ୍ୟ ଆରମ୍ଭ କରିଥିଲି । ପ୍ରଦେଶର ବିଭିନ୍ନ ଜିଲାମାନଙ୍କୁ ଯାଇ ହାଇସ୍କୁଲମାନଙ୍କରେ ଛାତ୍ରସଂଗଠନ କରୁଥିଲି ଓ ସଂଘପାଇଁ ଚାନ୍ଦା ମଧ୍ୟ ଆଦାୟ କରୁଥିଲି । ବ୍ରିଟିଶ୍ ଅମଳରେ ବି କେତେକ ଜାଗାରେ ସ୍କୁଲର ହେଡ୍‌ମାଷ୍ଟରମାନେ ସାହାଯ୍ୟ କରୁଥିଲେ, ଆଉ କେତେକ ଜାଗାରେ ବିରୋଧ ମଧ୍ୟ କରୁଥିଲେ । ମୋର ମନେଅଛି, ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେବାପାଇଁ ମୁଁ ଅନୁଗୁଳ ହାଇସ୍କୁଲକୁ ଯାଇଥିଲି । ସେଠାକାର ହେଡ୍‌ମାଷ୍ଟର ଥିଲେ ସ୍ୱର୍ଗୀୟ ସୁକାନ୍ତ ରାଓ । ସେ ଆମ ସଂଗଠନ ସଂପର୍କରେ ଖୁବ୍ ଉତ୍ସାହ ତଥା ଆଗ୍ରହ ପ୍ରକାଶ କରିଥିଲେ ଏବଂ ସ୍କୁଲର ପିଲାମାନଙ୍କଦ୍ୱାରା ଅଠରଟଙ୍କା ଚାନ୍ଦା ସଂଗ୍ରହ କରାଇ ମୋ ହାତରେ ଦେଇଥିଲେ । ସେତେବେଳ ସମୟର ଅଠରଟଙ୍କା କିଛି କମ୍ ନ ଥିଲା । କଟକ ଛାତ୍ରସଂଘ ଅଫିସ୍‌ରେ ମୋ ଠାରୁ ସେ କଥା ଶୁଣି ସମସ୍ତେ ଖୁବ୍ ଉତ୍ସାହିତ ହୋଇଥିଲେ । କଟକରେ ଏପରି କୌଣସି ଛାତ୍ରାବାସ ନଥିଲା ଯେଉଁଠାକୁ ଛାତ୍ରସଂଘ ସଂଗଠନ କାର୍ଯ୍ୟରେ ମୁଁ ସେତେବେଳେ ଯାଇନଥିଲି । ରେଭେନ୍ସା ଛାତ୍ର ସମସ୍ୟା ନେଇ ଛାତ୍ର, ଶିକ୍ଷକ ବା କର୍ତ୍ତୃପକ୍ଷଙ୍କ ସହିତ କୌଣସି ବିବାଦ ଉପୁଜିଲେ ମୁଁ ସେସବୁ ସ୍ଥାନରେ ପହଞ୍ଚୁଥିଲି ଏବଂ ଛାତ୍ରମାନଙ୍କୁ ସାହାଯ୍ୟ କରୁଥିଲି । ଶିକ୍ଷାନୁଷ୍ଠାନ ତଥା ଛାତ୍ରାବାସ କର୍ତ୍ତୃପକ୍ଷଙ୍କ ହାକିମି ମିଜାଜ ଅନେକ ସମୟରେ ସଂଘର୍ଷର କାରଣ ହୋଇ ଛାତ୍ରମାନଙ୍କ ମଧ୍ୟରେ ଅସନ୍ତୋଷ ତଥା ନାନା ସମସ୍ୟା ସୃଷ୍ଟିକରୁଥିଲା । ରେଭେନ୍ସା କଲେଜର ଦୁଇ ଛାତ୍ରାବାସ କର୍ତ୍ତୃପକ୍ଷଙ୍କର ହାକିମି ମିଜାଜ୍ ହେତୁ ବହୁ ଅପ୍ରୀତିକର ଘଟଣା ଘଟିଥିଲା । ଇଷ୍ଟ ହଷ୍ଟେଲ୍‌ର କର୍ତ୍ତୃପକ୍ଷମାନେ ପୁଲିସ୍ ଦୃଷ୍ଟିଭଙ୍ଗୀ ନେଇ ଛାତ୍ରମାନଙ୍କ ପ୍ରତି କଦର୍ଯ୍ୟ ବ୍ୟବହାର କରୁଥିଲେ । କଥାକଥାକେ ପିଲାମାନଙ୍କଠାରୁ କୈଫିୟତ ମାଗିବା ଗୋଟିଏ ଦୈନନ୍ଦିନ ଘଟଣା ହୋଇଥିଲା । ପିଲାମାନଙ୍କ ମଧ୍ୟରେ କିଏ କେଉଁଠାରେ କଅଣ କରୁଛନ୍ତି ସେଥିପାଇଁ ନିଜର ବିଶ୍ୱସ୍ତ ପିଲାଙ୍କୁ ଗୁଇନ୍ଦାରୂପେ କାର୍ଯ୍ୟରେ ଲଗାଯାଉଥିଲା । ହଷ୍ଟେଲ୍‌ର କୌଣସି ଉତ୍ସବରେ କିଛି କହିବାକୁ ହେଲେ ତତ୍ତ୍ୱାବଧାରକଙ୍କର ଅନୁମତି ନେବାକୁ ପଡୁଥିଲା । କଥାକଥିତ ତ୍ରୁଟିପାଇଁ ଜୋରିମାନା ମଧ୍ୟ କରାଯାଉଥିଲା । ଖଣ୍ଡିଏ କଂଗ୍ରେସ ପ୍ରଚାରପତ୍ର ଦେଖିଲେ ବହୁ ପିଲାଙ୍କର କୋଠରି ଖାନତଲାସ ହେଉଥିଲା । ଇଷ୍ଟ ହଷ୍ଟେଲ୍‌ରେ ଏ ପ୍ରକାର ଦମନମୂଳକ କାର୍ଯ୍ୟ ବିଷୟରେ ଅମୃତବଜାର ପତ୍ରିକା ପ୍ରଭୃତି ଖବରକାଗଜରେ ସମ୍ବାଦ ମଧ୍ୟ ପ୍ରକାଶ ପାଇଥିଲା । ତତ୍‌କାଳୀନ ଓଡ଼ିଶା ବ୍ୟବସ୍ଥାସଭାର ସଭ୍ୟ ପ୍ରାଣନାଥ ପଟ୍ଟନାୟକ, ମୋହନ ଦାସ, ଲୋକନାଥ ମିଶ୍ର ପ୍ରମୁଖଙ୍କ ସହିତ ମୁଁ ସଂପର୍କ ରଖିଥିଲି । ସେମାନଙ୍କ ସାହାଯ୍ୟରେ ୧୯୩୮ ମସିହା ବଜେଟ୍ ଅଧିବେଶନରେ ଏ ବିଷୟରେ ବିଧାନସଭାରେ ବହୁ ପ୍ରଶ୍ନ ଉଠିଥିଲା । ସରକାରଙ୍କ ପକ୍ଷରୁ ଶିକ୍ଷାମନ୍ତ୍ରୀ ବୋଧରାମ ଦୁବେ ସନ୍ତୋଷଜନକ ଉତ୍ତର ଦେବା ସମ୍ଭବ ହେଉ ନ ଥିଲା ।

ହଷ୍ଟେଲ୍‌ମାନଙ୍କରେ ସେତେବେଳେ ପ୍ରତିଦିନ ସମୂହ ପ୍ରାର୍ଥନା ସଭା ହେଉଥିଲା । ସେଥିରେ ଉପସ୍ଥିତ ହେବାପାଇଁ ପିଲାମାନଙ୍କୁ ବାଧ୍ୟ କରାଯାଉଥିଲା । ରେଭେନ୍ସା କଲେଜରେ ଖେଳ ମଧ୍ୟ ଥିଲା

ବାଧ୍ୟତାମୂଳକ । ବାଧ୍ୟତାମୂଳକ ଖେଳ ସମ୍ପର୍କରେ ଗୋଟିଏ କଥା ମନେପଡୁଛି । ବାଧ୍ୟତାମୂଳକ ଖେଳ ସନ୍ଧ୍ୟା ପୂର୍ବରୁ ଉପରଓଳି ହୋଇଥାଏ । ଏହା ମୋତେ ବଡ଼ ଅସୁବିଧାରେ ପକାଉଥିଲା, କାରଣ ଏହି ସମୟରେ ସହରରେ ଆମର ସଭାସମିତି, ବୈଠକ ଇତ୍ୟାଦି ହୁଏ । ଏପଟେ ଖେଳ କ୍ଲାସ୍‌ରେ ଯୋଗ ନ ଦେଲେ ଉପସ୍ଥାନ କମିଯାଏ, ସେପଟେ ଏହି ଉପସ୍ଥାନ ହିସାବକୁ ନେଇ ପରୀକ୍ଷା ଦେବାପାଇଁ ଯୋଗ୍ୟତା ହିସାବ କଲାବେଳକୁ ଏବଂ କଲେଜରୁ ଚରିତ୍ରଗତ ସାର୍ଟିଫିକେଟ୍ ନେଲାବେଳକୁ ଅସୁବିଧା ସୃଷ୍ଟି ହୁଏ । ଅନ୍ୟ ବହୁତ ପିଲାଙ୍କର ଏଇଟା ମଧ୍ୟ ସିନେମା ଯିବା ଓ ବୁଲାବୁଲି କରିବା ସମୟ । ଏହାର ସୁଯୋଗ ନେଇ ମୁଁ ଆନ୍ଦୋଳନ ଆରମ୍ଭ କଲି ବାଧ୍ୟତାମୂଳକ ଖେଳ ନିୟମର ଅନାବଶ୍ୟକତା ଉପରେ । ପିଲାମାନଙ୍କଠାରୁ ସମର୍ଥନ ମିଳିଲା । କେତେଥର ଖେଳ କ୍ଲାସ୍ ବର୍ଜନ ମଧ୍ୟ କରିଥିଲୁ । ଖେଳ ଶିକ୍ଷକ ଥିଲେ ସ୍ୱର୍ଗୀୟ ସୀତାକାନ୍ତ ଚୌଧୁରୀ । ଖେଳ ବନ୍ଦ ହୋଇଗଲେ କାଳେ ତାଙ୍କର ଚାକିରି ଚାଲିଯିବ ସେଥିପାଇଁ ଆମ ଖେଳ ଶିକ୍ଷକ ଆତଙ୍କିତ ହୋଇଥିଲେ । ଥରେ ମୋତେ ସେ ତାଙ୍କ ଘରକୁ ଡକାଇ ଆନ୍ଦୋଳନ ନକରିବାକୁ ବୁଝାଇଥିଲେ । ମୋତେ ଖେଳ କ୍ଲାସ୍‌ରେ ଯୋଗ ଦେବାପାଇଁ ସେ ବାଧ୍ୟ କରିବେନାହିଁ ବୋଲି କହି ମୋର ଅନୁପସ୍ଥିତିରେ ଉପସ୍ଥାନ ପକାଇଦେବେ ବୋଲି ଆଶ୍ୱାସନା ଦେଇଥିଲେ । ତା'ପରେ ମୁଁ ଏ ବିଷୟରେ ଚୁପ୍ ହୋଇ ରହିଥିଲି, କାରଣ ସାଙ୍ଗଠନିକ କାର୍ଯ୍ୟ ଓ ସଭାସମିତିପାଇଁ ମଉକା ପାଇବାଟାହିଁ ମୋର ଅସଲ ଉଦ୍ଦେଶ୍ୟ ଥିଲା । ମୋର ନାନାପ୍ରକାର ଆନ୍ଦୋଳନାତ୍ମକ କାର୍ଯ୍ୟ ହେତୁ ଆମ ହେଷ୍ଟେଲର ତତ୍ତ୍ୱାବଧାରକ ବାମାଚରଣ ଦାସ ଖୁବ୍ ଅସନ୍ତୁଷ୍ଟ ହୋଇଥିଲେ । କୁଆଡ଼େ କିଛି କଲେ ବା କେତେବେଳେ ପଢ଼ା ସମୟରେ ହଷ୍ଟେଲ୍‌ରେ ଅନୁପସ୍ଥିତ ଥିଲେ ସଙ୍ଗେ ସଙ୍ଗେ କୈଫିୟତ୍ ଉପରେ କୈଫିୟତ୍ ତଲବ କରି ସେ ମୋତେ ଅସ୍ତବ୍ୟସ୍ତ କରିପକାଉଥିଲେ । ମୋ ବିରୁଦ୍ଧରେ କଲେଜର ଅଧ୍ୟକ୍ଷ ଡକ୍ଟର ପରିଜାଙ୍କୁ ରିପୋର୍ଟ କରୁଥିଲେ । ଅନେକଥର ପରିଜା ସାହେବ ମୋତେ ଡକାଇ ଚେତାବନୀ ଦେଉଥିଲେ । କଂଗ୍ରେସ ନେତା ଶ୍ରୀ ହରେକୃଷ୍ଣ ମହତାବଙ୍କ ସହିତ ମୋର ଅଭିଭାବକ ଉଦୟବାବୁ ଓ ଭାଇଙ୍କର ସମ୍ପର୍କ ଥିବାରୁ କଟକରେ ମହତାବବାବୁ ମୋର ସ୍ଥାନୀୟ ଅଭିଭାବକ ହିସାବରେ ଅନେକ ସମୟରେ ପରାମର୍ଶ ଦେଉଥିଲେ । ଏ କଥା ପରିଜା ସାହେବଙ୍କୁ ଜଣାଥିଲା । ତେଣୁ ପରିଜାସାହେବ କେତେଥର ମହତାବବାବୁଙ୍କୁ କଲେଜକୁ ଡକାଇ ମୋ ବିଷୟରେ ସତର୍କ କରାଇଦେଇଥିଲେ ।

ପୂର୍ବ ଛାତ୍ରାବାସ ପରିଚାଳନା କମିଟିର ଗୋଟିଏ ବୈଠକରେ ଥରେ ଛାତ୍ରାବାସ ପରିଚାଳନା ଓ ଛାତ୍ରମାନଙ୍କ ପ୍ରତି ଛାତ୍ରାବାସ କର୍ତ୍ତୃପକ୍ଷଙ୍କର ଦୁର୍ବ୍ୟବହାର ସମ୍ବନ୍ଧରେ ଛାତ୍ର ପ୍ରତିନିଧି ହିସାବରେ ମୁଁ ଅସନ୍ତୋଷ ପ୍ରକାଶ କରି ସମାଲୋଚନା କରିଥିଲି । ଛାତ୍ରମାନଙ୍କଠାରୁ ଛୋଟିଆ ଛୋଟିଆ କଥାରେ କିପରି କୈଫିୟତ୍ ତଲବ କରାଯାଉଛି ଏବଂ ଉକ୍ତ କୈଫିୟତ୍ ତଲବ ଚିଠି ଯେଉଁ ଭାଷା ଓ ପ୍ରଣାଳୀରେ ଲେଖାଯାଉଛି ତା'ର ମଧ୍ୟ ସମାଲୋଚନା କରିଥିଲି । କଚେରିରେ ହାକିମମାନେ ମକଦ୍ଦମା ତାରିଖରେ ହାଜର ହେବା ସକାଶେ ଆସାମୀମାନଙ୍କୁ ଯେପରି ଭାବରେ ସମ୍ବୋଧନ କରି ନୋଟିସ୍ ପଠାନ୍ତି ସେହିପରି ଭାବରେ ହଷ୍ଟେଲ୍ କର୍ତ୍ତୃପକ୍ଷ ପିଲାମାନଙ୍କୁ କୈଫିୟତ୍ ତଲବ ନୋଟିସ୍ ଦେଉଛନ୍ତି ବୋଲି ମୁଁ ଅଭିଯୋଗ କରିଥିଲି । ପରିଚାଳନା କମିଟିର ସଭାପତି ଥିଲେ ଛାତ୍ରାବାସର ମୁଖ୍ୟ ତତ୍ତ୍ୱାବଧାରକ । ସେ ମୋର କହିବା ଭଙ୍ଗୀ ଓ ଭାଷାକୁ ଆପତ୍ତିଜନକ ବୋଲି ଦର୍ଶାଇ ମୋତେ ସେଥିପାଇଁ ସେହିଠାରେ କ୍ଷମା ମାଗିବାକୁ ଆଦେଶଦେଲେ । ମୁଁ ସେ କଥା କଲିନାହିଁ । ସେ ଘଟଣାଟି ସେ କଲେଜ ଅଧ୍ୟକ୍ଷଙ୍କୁ ରିପୋର୍ଟ କଲେ । ମୋର ତଥାକଥିତ ରୁକ୍ଷ ଆଚରଣ ଏବଂ ତତ୍ତ୍ୱାବଧାରକଙ୍କ ଆଦେଶକୁ ଅବଜ୍ଞା ଅଭିଯୋଗରେ କଲେଜ ଅଧ୍ୟକ୍ଷ ମୋତେ ପାଞ୍ଚ ଟଙ୍କା ଜୋରିମାନା କରିଥିଲେ । ଫଳରେ ଛାତ୍ରମାନଙ୍କ ଭିତରେ ପ୍ରବଳ ଉତ୍ତେଜନା ସୃଷ୍ଟିହୋଇଥିଲା । ସେ ସମୟରେ ଅମୃତବଜାର ପତ୍ରିକା କଟକର ପ୍ରତିନିଧି ଥିଲେ ମୋହିତ କୁମାର ମୈତ୍ର । ସେ ଆମ୍ଭମାନଙ୍କ ପାଖରୁ ତଥ୍ୟ ସଂଗ୍ରହ

କରି ତାଙ୍କ କାଗଜରେ ଏ ସଂକ୍ରାନ୍ତୀୟ ଏକ ସମ୍ବାଦ ପ୍ରକାଶ କରିଥିଲେ । ସମ୍ବାଦଟି ଖୁବ୍ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ବିଧାସନସଭା ସଦସ୍ୟ ମୋହନ ଦାସ ବିଧାନସଭାର ୧୯୩୯ ମସିହା ସେପ୍‌ଟେମ୍ବର ମାସ ଅଧିବେଶନରେ ଉପରୋକ୍ତ ଘଟଣା ସମ୍ପର୍କରେ ଗୁଡ଼େଇତୁଡ଼େଇ ପ୍ରଶ୍ନ କରିଥିଲେ । ଶିକ୍ଷାମନ୍ତ୍ରୀ ବୋଧରାମ ଦୁବେ ଘଟଣାଟି ସ୍ୱୀକାର କରିଥିଲେ ଏବଂ ସେ ବିଷୟରେ କେତେକ ତଥ୍ୟ ସଂଗ୍ରହ କରାଯାଉଛି ବୋଲି ଉତ୍ତର ଦେଇଥିଲେ । ମୁଁ ପ୍ରିନ୍‌ସପାଲ୍‌ଙ୍କର ଜୋରିମାନା ଆଦେଶ ବିରୁଦ୍ଧରେ ଶିକ୍ଷାବିଭାଗର ନିର୍ଦ୍ଦେଶକଙ୍କଠାରେ ଆବେଦନ କରିଥିଲି । ତାହା ଅମୀମାଂସିତ ଅବସ୍ଥାରେ ରହିଗଲା । ମୋଠାରୁ ଜୋରିମାନା ଆଦାୟ ହୋଇନଥିଲା । ମାତ୍ର ଏସବୁର ଶେଷ ପରିଣତି ହେଲା, ଛଅ ମାସ ପରେ କଲେଜରୁ ମୋର ବିତାଡ଼ନ । ଏହା ବ୍ୟତୀତ ପୂର୍ବ ବର୍ଷ ରାଜନୈତିକ କାର୍ଯ୍ୟ ସହିତ ସମ୍ପର୍କ ରଖିଥିବାରୁ ଛାତ୍ରନେତା ସଚି ରାଉତରାୟଙ୍କୁ ରେଭେନ୍‌ସା କଲେଜର ଅଧକ୍ଷ ପାଞ୍ଚଟଙ୍କା ଜୋରିମାନା କରିଥିବା କଥା ମଧ ବିଧାୟକ ମୋହନ ଦାସ ସେହି ବିଧାନସଭା ଆଲୋଚନାରେ ଉତ୍‌ଥାପନ କରିଥିଲେ ।

ପଶ୍ଚିମ ଛାତ୍ରାବାସର ଦୁଇ ଗୋଷ୍ଠୀ ଛାତ୍ରଙ୍କ ମଧରେ କୌଣସି ଏକ ଝଗଡ଼ାର ସୁବିଧା ନେଇ କଲେଜ ଅଧକ୍ଷ ଅନୁଗୁଳ ଅଞ୍ଚଳର ଚତୁର୍ଥ ବାର୍ଷିକ କଳାଛାତ୍ର ପ୍ରଫୁଲ୍ଲ କୁମାର ପଟ୍ଟନାୟକଙ୍କୁ ବର୍ଷକପାଇଁ କଲେଜରୁ ବହିଷ୍କାର କରିଥିଲେ । ମୁଁ ଏହା ବିରୁଦ୍ଧରେ ପ୍ରତିବାଦ କରିଥିଲି ଏବଂ ପ୍ରଫୁଲ୍ଲବାବୁଙ୍କୁ ସାଙ୍ଗରେ ନେଇ ହରେକୃଷ୍ଣ ମହତାବଙ୍କ ପାଖକୁ ଯାଇଥିଲି । ଉକ୍ତ ଆଦେଶ ବିରୁଦ୍ଧରେ ସରକାରଙ୍କୁ କିପରି ଆବେଦନ କରାଯିବ ତାହା ମହତାବବାବୁ ଆମକୁ ବତାଇଦେଇଥିଲେ । ଆବେଦନ କରାଯିବା ସଙ୍ଗେ ସଙ୍ଗେ ଛାତ୍ରାବାସରେ ଅଶାନ୍ତି ତଥା କଲେଜ ବର୍ଜନ ଇତ୍ୟାଦି ମଧ ଚାଲିଲା । ପରିଶେଷରେ ବହିଷ୍କାର ଆଦେଶ ପ୍ରତ୍ୟାହୃତ ହୋଇଥଲା । ଉପରୋକ୍ତ ବିଷୟଟି ମଧ ବିଧାନସଭାରେ ଆଲୋଚିତ ହୋଇଥିଲା । ଏ ଘଟଣା ପରେ ପ୍ରଫୁଲ୍ଲବାବୁଙ୍କ ସହିତ ମୋର ଖୁବ୍ ଘନିଷ୍ଠତା ହୋଇଥିଲା । ପ୍ରଫୁଲ୍ଲବାବୁ ଆଇନ ପାଠ ପଢ଼ିସାରି କଟକରେ ଓକିଲାତି କଲେ; ମାତ୍ର ଓକିଲାତି ବେଉସା ତାଙ୍କୁ ପୋଷାଉନଥିଲା । ଏହି ସମୟରେ କଟକରୁ 'ପ୍ରଜାତନ୍ତ୍ର' ପ୍ରଥମ କରି ପ୍ରକାଶ ପାଉଥାଏ ଏବଂ ମୁଁ କଲିକତାରୁ ଆଇନ ପାସ୍ କରି ଆସି ବିଧାନସଭାର ସଦସ୍ୟ ଥାଇ ମଧ ପ୍ରଜାତନ୍ତ୍ର ପରିଚାଳନା ଦାୟିତ୍ୱରେ ଥାଏ । ମୁଁ ପ୍ରଜାତନ୍ତ୍ର ଅଫିସ୍‌ରେ କାର୍ଯ୍ୟ କଲାବେଳେ ପ୍ରଫୁଲ୍ଲବାବୁ ପ୍ରାୟ ସବୁଦିନ ସନ୍ଧ୍ୟାରେ ଆସି ମୋ ପାଖରେ ବସି ନାନା ଗପସପ ଜମାନ୍ତି । ମୋ କାର୍ଯ୍ୟରେ ବ୍ୟାଘାତ ଘଟୁଥାଏ । ମହତାବବାବୁ ଏସବୁ ଦେଖି ବିବ୍ରତ ଓ ବିରକ୍ତ ହେଉଥାଆନ୍ତି । ଶେଷରେ ଦିନେ ପ୍ରଫୁଲ୍ଲବାବୁ ରହସ୍ୟ କରି କହିଲେ ଯେ ଓକିଲାତି ବ୍ୟବସାୟ ତାଙ୍କୁ ପୋଷାଉନାହିଁ, ତେଣୁ ସେ ଆଉ କିପରି ସମୟ କଟାଇବେ ? ମହତାବବାବୁଙ୍କୁ ମୁଁ ଏ କଥା କହିଲି । ବିଧାନସଭାର ବାଚସ୍ପତି ଥାଆନ୍ତି ଲାଲମୋହନ ପଟ୍ଟନାୟକ । ତାଙ୍କୁ ପ୍ରଫୁଲ୍ଲବାବୁଙ୍କ ବିଷୟ କୁହାଗଲା । ବିଧାନସଭାର ସେକ୍ରେଟେରୀ ଥାଆନ୍ତି ଶ୍ରୀ ଗିରିଧାରୀ ଧଳ । ଗୋଟିଏ ଆସିଷ୍ଟାଣ୍ଟ ସେକ୍ରେଟେରୀ ପଦ ସୃଷ୍ଟି କରାଗଲା ଏବଂ ସେଥିରେ ପ୍ରଫୁଲ୍ଲବାବୁ ନିଯୁକ୍ତି ପାଇଲେ । ତାଙ୍କୁ ସେ କାମ୍ ବେଶ୍ ପୋଷାଇଲା । ପରେ ପଦୋନ୍ନତି ପାଇ ସେ ଓଡ଼ିଶା ବିଧାନସଭାର ସେକ୍ରେଟେରୀ ହୋଇଥିଲେ । ସେଠାରୁ କେନ୍ଦ୍ରମନ୍ତ୍ରୀ ମହତାବବାବୁଙ୍କ ପ୍ରାଇଭେଟ୍ ସେକ୍ରେଟେରୀ ଓ ପାର୍ଲିଆମେଣ୍ଟ ସେକ୍ରେଟେରୀଏଟ୍‌କୁ ଡେପୁଟେସନ୍‌ରେ ଗଲେ । ସେଠାରେ ସେ ଆଡ଼ିସନାଲ୍ ସେକ୍ରେଟେରୀ ପଦବୀ ପର୍ଯ୍ୟନ୍ତ ପଦୋନ୍ନତି ପାଇଥିଲେ । ତା'ପରେ ତାଙ୍କୁ ଅତିକ୍ରମ କରାଇ ଆଉ ଜଣେ ଅଫିସରଙ୍କୁ ସେକ୍ରେଟେରୀ କରାଯିବାରୁ ସେ ଛୁଟିରେ ରହିଥିଲେ । ମୁଁ ୧୯୬୭ରେ ମୁଖ୍ୟମନ୍ତ୍ରୀ ଥିବାବେଳେ ତତ୍‌କାଳୀନ ରେଲୱେ ମନ୍ତ୍ରୀ ମଧୁ ଦଣ୍ଡବତେଙ୍କୁ ମୋର ପୂର୍ବତନ ଛାତ୍ରବନ୍ଧୁ ପ୍ରଫୁଲ୍ଲବାବୁଙ୍କ ସମସ୍ୟା କହିବା ଓ ଲେଖାଲେଖି କରିବା ପରେ ସେ ତାଙ୍କୁ ଦକ୍ଷିଣ-ପୂର୍ବ ରେଲୱେ ସର୍ଭିସ୍ କମିଶନ୍‌ର ଚେୟାରମ୍ୟାନ୍ ରୂପେ ନିଯୁକ୍ତି ଦେଇଥିଲେ ।

ରେଭେନ୍‌ସା କଲେଜରେ ଛାତ୍ର ଥିବାଯାଏଁ କଲେଜ ଓ ହଷ୍ଟେଲ୍ କର୍ତ୍ତୃପକ୍ଷଙ୍କର ତୀକ୍ଷଣ ଦୃଷ୍ଟି ସବୁବେଳେ ମୋ ଉପରେ ଥିଲା । ହଷ୍ଟେଲ୍‌ରୁ ବାହାରି ସହରକୁ ଗଲେ ଆଗୁଆ ଅନୁମତି ନେଇ ଯିବାକୁ ହେବ ବୋଲି ମୋ ଉପରେ ଆଦେଶ ଜାରିହେଲା । ରାତିରେ ବିନା ଅନୁମତିରେ ବାହାରକୁ ଗଲେ ସଙ୍ଗେ ସଙ୍ଗେ କର୍ତ୍ତୃପକ୍ଷଙ୍କୁ ରିପୋର୍ଟ କରିବାପାଇଁ ହଷ୍ଟେଲ୍ ଜମାଦାର ପଞ୍ଚାନନଙ୍କୁ ଆଦେଶ ଥିଲା । ପଞ୍ଚାନନଙ୍କୁ ଅଧିକ ବକ୍‌ସିସ୍ ଦେଇ ମୁଁ ହାତକରିନେଇଥାଏ । ତା'ଛଡ଼ା ହଷ୍ଟେଲ୍ ପାଇଖାନା ପାଖ ବଡ଼ ବଡ଼ ଲୁହା ରେଲିଂ ପାଖରେ ଗୋଟିଏ ମୋଟା ଲୁହା ପାଇପ୍ ଥିଲା । ତାକୁ ଧରି ଆଉ ଜଣକ ସାହାଯ୍ୟରେ ବାହାରକୁ ଯା'ଆସ କରିହେଉଥିଲା । ବେଳେ ବେଳେ ରାତିରେ ବାହାରକୁ ଯିବା ଓ ବାହାରୁ ଆସିବାପାଇଁ ସେଇଟି ମୋର ଗନ୍ତବ୍ୟ ପଥ ଥିଲା । ଛାତ୍ରସଂଘ ଅଫିସ୍ ଥିଲା ଗୌରୀଶଙ୍କର ପାର୍କ ପାଖରେ । ସେଠାକୁ ଅନେକ ସମୟରେ ଯିବାକୁ ପଡ଼େ । ଛାତ୍ରସଂଘ କାର୍ଯ୍ୟକାରୀ କମିଟିର ବୈଠକ ମଧ ଘନ ଘନ ବସେ । ଏସବୁ କାର୍ଯ୍ୟରେ ଯୋଗଦେବା ନିମନ୍ତେ ମୁଁ ଅନେକ ସମୟରେ ବାହାରକୁ ଯାଉଥିଲି । ହଷ୍ଟେଲ୍‌କୁ ଫେରିବାକୁ ବହୁତ ବିଳମ୍ବ ହୁଏ । ଦିନେ ବହୁତ ରାତିରେ ଫେରୁ ଫେରୁ ମୁଁ ଓ ସଚ୍ଚି ରାଉତରାୟ ମାତାଲ୍‌ମାନଙ୍କ ହାବୁଡ଼ରେ ପଡ଼ି ବଡ଼ ହଇରାଣ ହୋଇଥିଲୁ । ଗୋଟିଏ ହାତଟଣା ରିକ୍‌ସାରେ ଦୁଇଜଣ ବସି ବକ୍ସିବଜାର ରାସ୍ତା ଦେଇ ବେଶି ରାତିରେ ହଷ୍ଟେଲ୍‌କୁ ଫେରୁଥାଉ । ରାସ୍ତା ଖୁବ୍ ନିଛାଟିଆ ଥାଏ । ବକ୍ସିବଜାର ନାଳ ପାଖରେ ଥିବା ଗୋଟିଏ ମଦଦୋକାନରୁ ଦୁଇ ଜଣ ମାତାଲ ବାହାରି ଆସି ରିକ୍‌ସାକୁ ଧରି ପଛକୁ ଟାଣିଲେ । ଜଣେ ରିକ୍‌ସାଟିକୁ ଧରି ଟାଣୁଥାଏ, ଆଉ ଜଣେ ତାକୁ ଧରି ଟାଣୁଥାଏ । ଦୁହେଁ ଗର୍ଜନ ବି ଛାଡୁଥାଆନ୍ତି । ଆମ ରକ୍ତ ସେତେବେଳେ ଶୁଖିଯିବା ଉପରେ । ତା'ଭିତରୁ ଜଣେ ତଳେ ପଡ଼ିଗଲା, ତଥାପି ଆର ଜଣକ ରିକ୍‌ସାକୁ ଟାଣୁଥାଏ । ରିକ୍‌ସାବାଲାଟି ଅତି ସତର୍କତାର ସହିତ ରିକ୍‌ସାଟିକୁ ଆସ୍ତେ ଆସ୍ତେ ନେଇ ଯେତେବେଳେ ରାଣୀହାଟ ପାଖରେ ପହଞ୍ଚିଲା ସେତେବେଳେ ଯାଇ ଆମର ଟିକିଏ ସାହସ ହେଲା । ତା'ପରେ ଆମେ ସେଇ ମାତାଲ୍ ଉପରେ ପାଟି କରି କାହିଁକି ଏପରି ମାତଲାମି କରୁଛୁ ବୋଲି କହିଲୁ । ସେ ଗର୍ଜନ କରି ପଚାରିଲା, "ତମେ କିଏ ?" ଆମେ କହିଲୁ, "ଆମେ କଲେଜ ପିଲା" । ସେଇଠୁ ସେ ଖୁସି ହୋଇ କହିଲା, "କଲେଜ ପିଲା ମୋର ଦୋସ୍ତ, କାହିଁକି ନା ସେମାନେ ପୁଲିସ୍ ବିରୁଦ୍ଧରେ ଲଢୁଛନ୍ତି । ପୁଲିସ୍‌ବାଲାଗୁଡ଼ାକ ଆମକୁ ହରକତ କରୁଛନ୍ତି" । ସେ କଥା ଶୁଣି ଆମେ ଥଟ୍ଟାରେ କହିଲୁ, "ଦୋସ୍ତ ଆମକୁ ଖାଇବାକୁ ଦିଅ" । ଠିକ୍ ରାଣୀହାଟ ଛକ ପାଖରେ ଆଇଡ଼ିଆଲ୍ ହୋଟେଲ୍ ଥାଏ । ମାତାଲଟି ଆମକୁ ସେଠାକୁ ଟାଣିଲା । ଜାଗାଟା ରାଣୀହାଟ ଛକ ହୋଇଥିବାରୁ ଆମର ଆଉ ସେତେ ଭୟ ନ ଥିଲା । ତା' ସାଙ୍ଗରେ ଗଲୁ । ରୁଟି, ମାଂସ, ଅଣ୍ଡା ପ୍ରଭୃତି ଆମକୁ ସେ ପେଟ ଭର୍ତ୍ତି ଖୁଆଇଲା । ସମସ୍ତ ପଇସା ସେ ଦେଲା । ସେ ରହିଲା ଏବଂ ଆମେ ସେଠାରୁ ଚାଲିଗଲୁ । ଅନେକ ସମୟରେ ବିଳମ୍ବରେ ହଷ୍ଟେଲ୍‌କୁ ଫେରୁଥିବାରୁ ହଷ୍ଟେଲ୍‌ର ପୂଜାରୀ ମୋର ଖାଇବା ଆଣି ରୁମ୍‌ରେ ରଖିଦେଇଯାଉଥାଏ । ମୁଁ ଡେରିରେ ଫେରି ତାକୁ ଖାଏ ।

## ଯା'ର ଅଛି ଆଖୁଚାଷ, ତା'ର ନାହିଁ ବନ୍ଧୁବାସ

କଲେଜରେ କେତେଜଣ ମେଧାବୀ ଛାତ୍ର ମୋର ସହପାଠୀ ଥିଲେ । ସେମାନେ ହେଲେ ବ୍ରଜବନ୍ଧୁ ମିଶ୍ର, ବିଦ୍ୟାଧର ମିଶ୍ର ଓ ରାମଚନ୍ଦ୍ର ଦାଶ । ବ୍ରଜବନ୍ଧୁ ହଷ୍ଟେଲ୍‌ରେ ମୋ ପାଖ ରୁମ୍‌ରେ ରହୁଥାଏ । ସବୁବେଳେ ସେ ଏପରି ପଢ଼ାପଢ଼ିରେ ଲାଗିଥାଏ ଯେ ତାକୁ ଦିନରାତି ଅଣ୍ଟେ ନାହିଁ । ଆଖୁଚାଷୀ ଯେପରି ସବୁବେଳେ ତା' ଆଖୁ କିଆରିରେ ଲାଗିଥାଏ, ସେହିପରି ସେ ନିଜକୁ ଆଖୁଚାଷୀ ଆଖ୍ୟା ଦେଇ କାଗଜ କଲମ ଓ ବହିଧରି ପଢ଼ାପଢ଼ିରେ ଲାଗିପଡ଼ିଥାଏ । ସେ କହେ, "ଯା'ର ଅଛି ଆଖୁ ଚାଷ, ତା'ର ନାହିଁ ବନ୍ଧୁବାସ" । ତେଣୁ ବ୍ରଜବନ୍ଧୁ କୌଣସି ବନ୍ଧୁ ସହିତ

କଥାବାର୍ତ୍ତା କରିବାକୁ ଚାହେଁ ନାହିଁ । ମୁଁ ହଷ୍ଟେଲ୍‌ରେ ଥିଲାବେଳେ ତା'ର ପଢ଼ାରେ ବ୍ୟାଘାତ ଘଟେ, କାରଣ ମୁଁ ନାନା ବିଷୟରେ ଆଲୋଚନା ଆରମ୍ଭ କରିଦିଏ । ମୁଁ ବେଶି ସମୟ ଯୁକ୍ତିତର୍କ ଓ କଥାଭାଷା କଲେ ତା'ର ଯେତେବେଳେ ପଢ଼ାରେ ବ୍ୟାଘାତ ଘଟେ ସେ ବଡ଼ ବ୍ୟତିବ୍ୟସ୍ତ ହୋଇ ମୋ ଗୋଡ଼ତଳେ ପଡ଼ିଯାଏ । ମୁଁ ବାଧହୋଇ ଆଲୋଚନା ବନ୍ଦକରିଦିଏ । ମୁଁ ହଷ୍ଟେଲ୍‌ରେ ଅନୁପସ୍ଥିତ ରହିଲେ ସେ ଭାରି ଖୁସି ହୁଏ । ତେଣୁ ତା' ସହିତ ମୋର ଗୋଟିଏ ପରସ୍ପର ସାହାଯ୍ୟ ଚୁକ୍ତି ହେଲା ଯେ ସେ ଭଲ ଭାବରେ ପଢ଼ାପଢ଼ି କରି ନୋଟ୍ ତିଆରି କରିବ । ଯେହେତୁ ମୁଁ ବେଶି ପଢ଼ାପଢ଼ି କରିପାରେନାହିଁ, ସେ ତା'ର ନୋଟ୍ ସବୁ ମୋତେ ଦେବ ଓ ମୁଁ ସେ ନୋଟ୍‌କୁ ପଢ଼ାପଢ଼ି କରି ପରୀକ୍ଷାପାଇଁ ସହଜରେ ପ୍ରସ୍ତୁତ ହୋଇପାରିବି । ସେ ତା'ର ସର୍ତ୍ତ ରକ୍ଷା କଲା, ମୁଁ ଆଉ ତା'ର ପଢ଼ାରେ କୌଣସି ବ୍ୟାଘାତ ଘଟାଇଲିନାହିଁ । ପାଟନା ବିଶ୍ୱବିଦ୍ୟାଳୟରେ ସବୁ ପରୀକ୍ଷାରେ ସେ ଖୁବ୍ ଉଚ୍ଚ ସ୍ଥାନ ରଖି ପାସ୍ କରିଥିଲା ଏବଂ ତା'ରି ନୋଟ୍ ପଢ଼ି ମୁଁ ଉଦ୍ଧାର ପାଇଯାଇଥିଲି । ବ୍ରଜବନ୍ଧୁ ଆଇ.ଏସ୍‌ସି. ପରୀକ୍ଷାରେ ପାଟନା ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରିଥିଲା । ସେଥିପାଇଁ ସେ ସରକାରଙ୍କଠାରୁ ମାସକୁ କୋଡ଼ିଏ ଟଙ୍କା ବୃତ୍ତି ପାଇବା କଥା । ମାତ୍ର ବ୍ରଜବନ୍ଧୁ ଥିଲା ତାଳଚେର ଗଡ଼ଜାତ ରାଜ୍ୟର ଛାତ୍ର । ତେଣୁ ଓଡ଼ିଶା ସରକାର ତାହା ବହନ କରିବାର କଥା ନୁହେଁ । ସେତେବେଳକାର ନିୟମ ତାହାହିଁ ଥିଲା । କଂଗ୍ରେସ ସରକାର ତଥା କଂଗ୍ରେସ ନେତାମାନଙ୍କ ସହିତ ମୋର ଭଲ ସଂପର୍କ ଥିଲା ବୋଲି ବ୍ରଜବନ୍ଧୁ ମୋତେ ଅନୁରୋଧ କଲା ତାକୁ ଏ ବିଷୟରେ ସାହାଯ୍ୟ କରିବାପାଇଁ । ସେତେବେଳେ ଓଡ଼ିଶା ପ୍ରଦେଶ ସହିତ ଗଡ଼ଜାତଗୁଡ଼ିକର ମିଶ୍ରଣପାଇଁ ଆନ୍ଦୋଳନ ହେଉଥାଏ । ଏହି ପରିପ୍ରେକ୍ଷୀରେ ଗଡ଼ଜାତ ଛାତ୍ର, ମୋଗଲବନ୍ଦୀ ଛାତ୍ର ଏ ପ୍ରକାର ପ୍ରଭେଦ ରହିବା କଥା ନୁହେଁ ବୋଲି ମୁଁ ଅନୁଭବ କରିଥିଲି । ଦୁଇଟିଯାକ ଅଞ୍ଚଳର ଛାତ୍ରଙ୍କ ମଧ୍ୟରେ ଏଭଳି ବିଦ୍ୱେଷଜନକ ପ୍ରଭେଦକୁ ଉଠାଇଦେଲେ ତାହା ଭବିଷ୍ୟତରେ ମିଶ୍ରଣକୁ ନିଶ୍ଚୟ ସାହାଯ୍ୟ କରିବ ବିଚାରି ସେ ଘଟଣାଟି ପ୍ରତି ହରେକୃଷ୍ଣ ମହତାବଙ୍କର ଦୃଷ୍ଟି ଆକର୍ଷଣ କରିଥିଲି । ମୋ ଯୁକ୍ତିଟା ତାଙ୍କ ମନକୁ ପାଇଲା । ସେ ତତ୍‌କାଳୀନ ଶିକ୍ଷାମନ୍ତ୍ରୀ ବୋଧରାମ ଦୁବେଙ୍କ ସହ ଆଲୋଚନା କଲେ, ନିୟମ ପରିବର୍ତ୍ତିତ ହେଲା ଓ ବ୍ରଜବନ୍ଧୁ ବୃତ୍ତି ପାଇଲା ।

## ସିଗାରେଟ୍, ଚୁରୁଟ୍‌ଟଣା ବ୍ୟାଧି ଓ ତହିଁରୁ ମୋର ମୁକ୍ତି

କିଛିଦିନ ପରେ ଗଞ୍ଜାମ ଜିଲ୍ଲା ବ୍ରହ୍ମପୁରର ବିଜୟ ଚନ୍ଦ୍ର ଦାସ ଆସି ଆମର ପୂର୍ବ ଛାତ୍ରାବାସରେ ରହିଲେ । ସେ ଆନ୍ଧ୍ର ବିଶ୍ୱବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ଏମ୍.ଏ. ପାସ୍ କରି ରେଭେନ୍‌ସା ଆଇନ କଲେଜରେ ନାମ ଲେଖାଇଥିଲେ । ସେ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ ହୋଇଉଠିଲେ । ରାଜନୀତି ଓ ଦେଶସେବା ତାଙ୍କର ଧ୍ୟେୟ ଥିଲା । ତେଣୁ ଆମର ମନ ମିଳିବାରେ କୌଣସି ଅସୁବିଧା ନଥିଲା । ସଭାସମିତି ଓ ଛାତ୍ରସଂଘ ବୈଠକ ପ୍ରଭୃତିରେ ଯୋଗ ଦେବାପାଇଁ ସହରକୁ ବାରମ୍ବାର ଦୌଡ଼ାଦୌଡ଼ି କରିବାପାଇଁ ତାଙ୍କର ଅର୍ଥାଭାବ ପଡ଼େ । ଆମେ ଦୁହେଁ ଏକାଠି ରିକ୍‌ସା କିମ୍ବା ଘୋଡ଼ାଗାଡ଼ିରେ ଯା'ଆସ କରୁ । ଚା ସିଗାରେଟ୍ ଥିଲା ବିଜୟବାବୁଙ୍କର ଚିରନ୍ତନ ସହଚର । ତେଣୁ ତାଙ୍କ ସମ୍ପର୍କରେ ଆସି ମୁଁ ତାଙ୍କର ଦେଶପ୍ରାଣତା ସହିତ ଏହିସବୁ ବଦଭ୍ୟାସର ବିଶ୍ୱସ୍ତ ସାଥୀ ହୋଇପଡ଼ିଲି । ସିଗାରେଟ୍ ଓ ତା'ପରେ ଚୁରୁଟ୍‌ଟଣା ବ୍ୟାଧି ମୋତେ ପ୍ରାୟ ଚଉତ୍ରିଶ ବର୍ଷ ଯାଏ ଗ୍ରାସ କରି ରଖିଥିଲା । ୧୯୭୪ରେ ମୁଁ ସେହି ବ୍ୟାଧିରୁ ତ୍ରାହିପାଇଲି । ସିଗାରେଟ୍ ଛାଡ଼ି ଚୁରୁଟ୍ ଧରିବା ବ୍ୟାପାରରେ ଗୋଟିଏ ଆନୁଷଙ୍ଗିକ ଘଟଣା ଜଡ଼ିତ । ୧୯୬୫ ମସିହାରେ ମୁଁ ଥିଲି ଆମ ରାଜ୍ୟର ଉପମୁଖ୍ୟମନ୍ତ୍ରୀ । ମୋ ବେକ ପାଖରେ ଗୋଟିଏ ବଡ଼ କଳାଯାଇ ମନ୍ଦା ଥିଲା । ତାହା ପାଚିଯାଇଥିଲା । ଫଳରେ ଅସ୍ତ୍ରୋପଚାର ଦରକାର ପଡ଼ିଲା । କଟକ ମେଡ଼ିକାଲ୍ କଲେଜ ହାସ୍‌ପାତାଳର ଡାକ୍ତର ଗିରିଜାଶଙ୍କର ଦାସମହାପାତ୍ର ଅପରେସନ୍ କରିଥିଲେ । କଟା ଅଂଶକୁ ପରୀକ୍ଷା କରି ଡାକ୍ତର ତାହା

କ୍ୟାନ୍‌ସର୍ ଅନୁରୂପ ସନ୍ଦେହ କରୁଛନ୍ତି ବୋଲି କଥାଟା କୌଣସି ପ୍ରକାରେ ପ୍ରଚାରିତ ହୋଇଗଲା । ବହୁ ଶୁଭାକାଂକ୍ଷୀ ଓ ଡାକ୍ତର ମୋତେ ଦେଖିବାକୁ ଆସିଲେ । ଘରେ ସ୍ତ୍ରୀ, ପିଲାଛୁଆ ତଥା ମୋର ବନ୍ଧୁ ପରିବାରବର୍ଗ ମନଦୁଃଖ କରି ବସିଲେ । ସେତେବେଳେ ସ୍ୱାସ୍ଥ୍ୟ ବିଭାଗର ନିର୍ଦ୍ଦେଶକ ଥିଲେ ଡକ୍‌ଟର ଘନଶ୍ୟାମ ମହାପାତ୍ର । ଯେଉଁ ଡାକ୍ତରମାନେ ପରୀକ୍ଷା କରି କଥାଟାକୁ ପ୍ରଘଟ କରିଥିଲେ ତାଙ୍କ ଉପରେ ସେ ଭୀଷଣ ବିରକ୍ତ ହୋଇଥିଲେ । ଉପରୋକ୍ତ କଟାଅଂଶରୁ କିଛି ସେ କଲିକତା, ଦିଲ୍ଲୀ ଓ ବମ୍ବେ ପଠାଇଲେ । କଲିକତା ମେଡ଼ିକାଲ୍ କଲେଜ ହସ୍‌ପିଟାଲ୍ ଓ ଦିଲ୍ଲୀର ଅଲ୍ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ ସାଇନ୍‌ସର ବିଶେଷଜ୍ଞମାନେ ପରୀକ୍ଷା କରି ରିପୋର୍ଟ ଦେଲେ ଯେ ଏଥିରେ କ୍ୟାନ୍‌ସର ସନ୍ଦେହ କରିବାର କୌଣସି କାରଣ ନାହିଁ । କିନ୍ତୁ ବମ୍ବେସ୍ଥିତ ଟାଟା ମେମୋରିଆଲ୍ ହସ୍‌ପିଟାଲର କ୍ୟାନ୍‌ସର ବିଶେଷଜ୍ଞ ଡକ୍ଟର ପେ'ମାଷ୍ଟର (Paymaster) ରୋଗୀକୁ ଦେଖିବାକୁ ଚାହିଁଲେ । ସେ କହିଥିଲେ, ରୋଗୀ ଜଣେ ବିଶିଷ୍ଟ ବ୍ୟକ୍ତି ହୋଇଥିବାରୁ ସେ ରୋଗୀକୁ ପରୀକ୍ଷା ନକରି କୌଣସି ମନ୍ତବ୍ୟ ଦେବେନାହିଁ । ଯେଉଁ ଡାକ୍ତର ଅପରେସନ୍ କରିଥିଲେ ତାଙ୍କ ସହିତ ମଧ ସେ ପରାମର୍ଶ କରିବାକୁ ଚାହିଁଲେ । ସେଥିପାଇଁ ମୋତେ ବମ୍ବେ ଯିବାକୁ ପଡ଼ିଲା । ମୋ ସହିତ ଯାଇଥିଲେ ଡାକ୍ତର ଗିରିଜା ଶଙ୍କର ଦାସମହାପାତ୍ର, ପୂର୍ବତନ ମୁଖ୍ୟମନ୍ତ୍ରୀ ବିରେନ୍ ମିତ୍ର, ଭବାନୀଚରଣ ପଟ୍ଟନାୟକ ଏବଂ ମୋର ପ୍ରାଇଭେଟ୍ ସେକ୍ରେଟେରୀ ଆକୁଳାନନ୍ଦ ଦେହୁରୀ । ଟାଟା ମେମୋରିଆଲ୍ ହସ୍‌ପିଟାଲ୍‌ରେ ଡକ୍ଟର ପେ'ମାଷ୍ଟର ମୋତେ ପରୀକ୍ଷା କଲେ । ଡକ୍ଟର ଦାସମହାପାତ୍ରଙ୍କୁ ମଧ କେତେକ କଥା ପଚାରିଲେ । ପରିଶେଷରେ ସେ ଘୋଷଣା କଲେ ଯେ ରୋଗ କ୍ୟାନ୍‌ସର୍ ନୁହେଁ । ତାଙ୍କ ପାଖରେ ବସିଥିବାବେଳେ ମୁଁ ସିଗାରେଟ୍ ଟାଣୁଥାଏ । ସିଗାରେଟ୍ ନଖାଇବାପାଇଁ ସେ ମୋତେ ପରାମର୍ଶ ଦେଇଥିଲେ । ତାଙ୍କର ନିର୍ଦ୍ଦିଷ୍ଟ ମତ ଥିଲା ଯେ, ଯେତେ କ୍ୟାନସର ରୋଗ ହେଉଛି ସେଥିରୁ ଅନ୍ତତଃ ଶହେରୁ ଦଶଭାଗ ସିଗାରେଟ୍ ଖାଇବା ଯୋଗୁହିଁ ହେଉଛି । ତାଙ୍କ ମତରେ, ସିଗାରେଟ୍‌ର କାଗଜ ଅଂଶ ବଡ଼ କ୍ଷତିକାରକ । ଅତଏବ ସିଗାରେଟ୍ ପରିବର୍ତ୍ତେ ବିଡ଼ି କିମ୍ବା ଚୁରୁଟ୍ ଖାଇବା ସ୍ୱାସ୍ଥ୍ୟପକ୍ଷେ କିଛି ଅଂଶରେ କମ୍ କ୍ଷତିକାରକ । ସେହି ମୁହୂର୍ତ୍ତରୁ ସିଗାରେଟ୍ ଛାଡ଼ିଲି ସତ କିନ୍ତୁ ଚୁରୁଟ୍ ଧରିଲି । ସେଇଦିନ ବମ୍ବେରୁ ଚୁରୁଟ୍ କିଣାହେଲା । ଚୁରୁଟ୍ ଟାଣିବା ଅଭ୍ୟାସ ସେଇଦିନଠାରୁ ଚାଲିଲା ପ୍ରାୟ ଦଶ ବର୍ଷ ପର୍ଯ୍ୟନ୍ତ । ବିଭିନ୍ନ କିସମର ଚୁରୁଟ୍ ଟାଣିବାରେ ଲାଗିଲି । ଲମ୍ବା, ଛୋଟ, ମୋଟ, ସରୁଆ ପ୍ରଭୃତି ବିଭିନ୍ନ ଆକାରର ଓ ବିଭିନ୍ନ ସ୍ୱାଦର ଚୁରୁଟ୍ ମିଳୁଥିଲା । ଚୁରୁଟ୍‌ଠାରୁ ଚୁରୁଟ୍‌ବାକ୍‌ସ ବଡ଼ ଆକର୍ଷଣୀୟ ହୋଇଥାଏ । ବେଶି ଚୁରୁଟ୍ କିଣା ହେବାରୁ ବହୁତ ବାକ୍‌ସ ମଧ ମୋ ପାଖରେ ଜମାହୋଇଥାଏ । ବନ୍ଧୁବାନ୍ଧବ, ଚିହ୍ନାପରିଚିତମାନେ ବାକ୍‌ସ ନେବାପାଇଁ ଟଣାଟଣି ହେଲେ । ଏବେ ମଧ ଅନେକଙ୍କ ଘରେ ମୁଁ ସେ ବାକ୍‌ସ ଦେଖିବାକୁ ପାଉଛି ।

## ଚର୍ଚ୍ଚିଲ ଓ ଚୁରୁଟ୍

ଚର୍ଚ୍ଚିଲ୍ ବ୍ରାଣ୍ଡ ଚୁରୁଟ୍‌ର ସେତେବେଳେ ବଜାରରେ ଖୁବ୍ କାଟ୍‌ତି ଥିଲା । ତାହା ମଧ ଟାଣୁଥିଲି । ଚର୍ଚ୍ଚିଲ ଓ ଚୁରୁଟ୍ ସଂପର୍କରେ ଗୋଟିଏ ଉପଭୋଗ୍ୟ ଗଳ୍ପ ମୁଁ ବହିରେ ପଢ଼ିଥିଲି । ସେ ହେଉଛନ୍ତି ସେହି ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍ ଯିଏ ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ଭାବରେ ଅପୂର୍ବ ଖ୍ୟାତି ଅର୍ଜନ କରିଥିଲେ । ସେ ବହୁତ ଚୁରୁଟ୍ ଟାଣୁଥିଲେ । ଜଣେ ସାଧାରଣ ପାର୍ଲିଆମେଣ୍ଟ ସଦସ୍ୟ ଥିଲାବେଳେ ଚର୍ଚ୍ଚିଲ୍ ଥରେ ରେଳଗାଡ଼ିରେ ଯାଉଥାଆନ୍ତି । ସେଇ ଡବାରେ ସେ ଏକୁଟିଆ ଥାଆନ୍ତି । ଉକ୍ତ ଡବାରେ ସ୍ତ୍ରୀଲୋକଟିଏ ହଠାତ୍ ଉଠିପଡ଼ିଲା । ଚର୍ଚ୍ଚିଲ୍ ସେତେବେଳେ ଚୁରୁଟ୍‌ଟିଏ ଟାଣୁଥାଆନ୍ତି । ସ୍ତ୍ରୀଲୋକଟି ବ୍ଲାକ୍‌ମେଲିଙ୍ଗ୍ (Blackmailing) କରି ତାଙ୍କ ପାଖରୁ କିଛି ଟଙ୍କା ଆଦାୟ କରିବାର ଉଦ୍ୟମ କରିଥିଲା । କମ୍ପାର୍ଟମେଣ୍ଟରେ ଚର୍ଚ୍ଚିଲ୍‌ଙ୍କୁ ସେ ଏଣୁତେଣୁ ବାର କଥା ପଚାରୁଥାଏ । କିନ୍ତୁ ଚର୍ଚ୍ଚିଲ୍ ଚୁରୁଟ୍ ଟାଣିବାରେ

ଲାଗିଥାଆନ୍ତି । ପରବର୍ତ୍ତୀ ଷ୍ଟେସନ୍‌ରେ ସେଇ ସ୍ତ୍ରୀଲୋକଟି ଓହ୍ଲାଇ ପୁଲିସ୍‌ରେ ରିପୋର୍ଟ ଦେଲା ଯେ ଚର୍ଚ୍ଚିଲ୍ ଗାଡ଼ି ଭିତରେ ତା' ପ୍ରତି ଅସଦ୍‌ବ୍ୟବହାର କରିଛନ୍ତି । ତା'ର ଧାରଣା ଥିଲା, ଏ ପ୍ରକାର ଅପବାଦରୁ ତ୍ରାହି ପାଇବାପାଇଁ ଚର୍ଚ୍ଚିଲ୍ ତାକୁ କିଛି ଟଙ୍କା ଦେଇପକାଇବେ । କିନ୍ତୁ ଚର୍ଚ୍ଚିଲ୍ ପୁଲିସ୍‌କୁ କହିଲେ ନୋଟ୍ କରିବାପାଇଁ ଯେ ସେ ଟାଣୁଥିବା ଚୁରୁଟ୍‌ରେ ଲମ୍ବା ପାଉଁଶ ଅଶଂଟି ନଭାଙ୍ଗି କିପରି ଅକ୍ଷତ ରହିଛି । ଚୁରୁଟ୍‌ଟି ଦେଢ଼ ଇଞ୍ଚ ଖଣ୍ଡେ ପୋଡ଼ିଯାଇଥାଏ । ମାତ୍ର ପାଉଁଶତକ ସେମିତି ଲାଗିଥାଏ । ଚର୍ଚ୍ଚିଲ୍ ପୁଲିସ୍‌କୁ ପଚାରିଲେ ଯେ ଦେଢ଼ଇଞ୍ଚ ଚୁରୁଟ୍ ପୋଡ଼ିବାକୁ କେତେ ମିନିଟ୍ ଲାଗିବ ? ପୁଲିସ୍ ହିସାବ କରି କହିଲା ଦଶ ମିନିଟ୍‌ରୁ କମ୍ ନୁହେଁ । ଯେଉଁ ଷ୍ଟେସନ୍‌ରୁ ସ୍ତ୍ରୀଲୋକଟି ଗାଡ଼ିରେ ଚଢ଼ିଥିଲା ଏବଂ ଯେଉଁଠାରେ ପହଞ୍ଚି ଅଭିଯୋଗ କଲା ତା'ର ମଧ୍ୟବର୍ତ୍ତୀ ପଥ ଅତିକ୍ରମ କରିବାପାଇଁ ଗାଡ଼ିକୁ ଦଶ ମିନିଟ୍‌ରୁ କମ୍ ସମୟ ଲାଗିଥିଲା । ତେଣୁ ପୁଲିସ୍ ଅଫିସରମାନେ କଥାଟାକୁ ଠିକ୍ ଭାବରେ ବୁଝିପାରି ଉକ୍ତ ସ୍ତ୍ରୀଲୋକଟିର ଅଭିଯୋଗ ମିଥ୍ୟା ଜାଣି ତାକୁ ଅଟକାଇଥିଲେ ।

ଏହି ପ୍ରସଙ୍ଗରେ ମୋର ସିଗାରେଟ୍ ଟଣା ସଂପର୍କୀୟ ଆଉ ଗୋଟିଏ କଥା ମନେପଡୁଛି । ମୁଁ ବେଶି ସିଗାରେଟ୍ ଟାଣୁଥିବାରୁ ମୋର କେତେକ ହିତାକାଂକ୍ଷୀ ଚିନ୍ତିତ ହୋଇଥିଲେ ଓ ମୋର ବଡ଼ଭାଇଙ୍କ କାନକୁ ସେ କଥା ଆଣିଥିଲେ । ସେମାନଙ୍କର ଉଦ୍ଦେଶ୍ୟ ଥିଲା ଯେ ମୋର ଭାଇ କହିଲେ ହୁଏତ ମୁଁ ସିଗାରେଟ୍ ଛାଡ଼ିଦେବି । ମୁଁ ଅତ୍ୟଧିକ ସିଗାରେଟ୍ ଟାଣୁଥିଲେ ମଧ୍ୟ ଭାଇଙ୍କ ଆଗରେ ଟାଣେନାହିଁ । ତାଙ୍କୁ ଦେଖିଲାକ୍ଷଣି ମୁଁ ସିଗାରେଟ୍ ଲୁଚାଇଦିଏ କିମ୍ବା ଫିଙ୍ଗିଦିଏ । ମୋର ଶୁଭେଚ୍ଛୁମାନେ ଯାଇ ଭାଇଙ୍କୁ ବୁଝାଇଥିଲେ ମୋର ସିଗାରେଟ୍‌ଟଣା ଯେକୌଣସି ପ୍ରକାରେ ହେଉ ବନ୍ଦ କରିବାକୁ । ଭାଇ ସେମାନଙ୍କୁ କହିଥିଲେ, ''ମୁଁ ଜାଣେ ସେ ସିଗାରେଟ୍ ଟାଣୁଛି, ସେଥିପାଇଁ ମୁଁ ବଡ଼ ଦୁଃଖିତ । ଆଜିକାଲିକାର ପିଲାଙ୍କ ଆଚରଣ ତ ତୁମେ ଦେଖୁଛ । ମାତ୍ର ସେ ସିଗାରେଟ୍ ଟାଣିଲା ସମୟରେ ମୁଁ ଯଦି ସେଇବାଟେ ଚାଲିଯାଏ ତା'ହେଲେ ସେ ସିଗାରେଟ୍ ଲୁଚାଇଦିଏ ଅଥବା ଫିଙ୍ଗିଦିଏ । ସେଇଟା ମୋ ପ୍ରତି ତା'ର ଯଥେଷ୍ଟ ସମ୍ମାନ ବୋଲି ମୁଁ ମନେକରୁଛି । ସେ ମନେକରୁଛି ଯେ ବୋଧହୁଏ ମୁଁ ତା'ର ସିଗାରେଟ୍ ଟାଣିବା କଥାଟା ଜାଣେନାହିଁ । ମାତ୍ର ମୁଁ ତାକୁ ବାରଣକଲା ପରେ ସେ ସିଗାରେଟ୍ ଖାଉଥିବା କଥା ମୁଁ ଜାଣିଛି ବୋଲି ସେ ଜାଣିଯିବ ଏବଂ ତା'ପରେ ହୁଏତ ମୋ ଆଗରେ ଟାଣିବାକୁ ଆଉ ସଙ୍କୋଚ କରିବ ନାହିଁ ।'' କଥାଟି ଶୁଣି ମୋର ଶୁଭେଚ୍ଛୁମାନେ ଚୁପ୍ ରହିଥିଲେ । ମୁଁ ଏକଥା ବହୁତ ପରେ ଜାଣିବାକୁ ପାଇଥିଲି ।

ମୋର ଚୁରୁଟ୍‌ଟଣାଟି ଗୋଟିଏ ବିଷୟରେ ମୋତେ ସାହାଯ୍ୟ କରେ ବୋଲି ଆମ ଏଠାକାର ସାମ୍ବାଦିକମାନେ ମୋତେ ପରିହାସ କରୁଥିଲେ । ସାମ୍ବାଦିକମାନଙ୍କ ମତ ଏହି ଯେ ସେମାନେ ମୋ ପାଖରୁ କୌଣସି ସମ୍ବାଦ ପାଇପାରନ୍ତିନାହିଁ । ସେମାନଙ୍କର ଅଭିଯୋଗ, ମୁଁ ସେମାନଙ୍କ ପ୍ରଶ୍ନର ଉତ୍ତର ଦେଲାବେଳେ ଖୁବ୍ ସତର୍କତାର ସହିତ ଅଳ୍ପ କଥା କହେ ଏବଂ ଯେତେବେଳେ ସେମାନଙ୍କର କୌଣସି କଥା ବା ପ୍ରଶ୍ନକୁ ଏଡ଼ାଇଦେବାକୁ ଚାହେଁ ସେତେବେଳେ ପାଟିରେ ଚୁରୁଟ୍ ଧରି ଟାଣିବାକୁ ଆରମ୍ଭ କରିଦିଏ । ଆମର ଏଠାକାର ବୟୋଜ୍ୟେଷ୍ଠ ସାମ୍ବାଦିକ ସ୍ୱର୍ଗତ ଏନ୍.ଆର୍. ସ୍ୱାମୀଙ୍କର ଏଇଟା ମୋ ବିରୁଦ୍ଧରେ ବଡ଼ ଅଭିଯୋଗ ଥିଲା । ୧୯୭୪ ମସିହାରେ ଭୁବନେଶ୍ୱର କଳାମଣ୍ଡପଠାରେ ଅନୁଷ୍ଠିତ ଏକ ରାଜନୈତିକ ସମ୍ମିଳନୀରେ ଅନେକ ବନ୍ଧୁ ମୋତେ ଚୁରୁଟ୍‌ଟଣା ଛାଡ଼ିଦେବାକୁ ଜିଗର କରିଥିଲେ । ସେଇଦିନଠାରୁ ମୁଁ ଚୁରୁଟ୍ ମଧ୍ୟ ଛାଡ଼ିଦେଲି ।

## ରେଭେନ୍‌ସା କଲେଜରେ ଛାତ୍ରମାନଙ୍କର ଗଣତାନ୍ତ୍ରିକ ଅଧିକାର ଜାହିର

କଲେଜ ନିର୍ବାଚନରେ ଗଣତାନ୍ତ୍ରିକ ଅଧିକାରପାଇଁ ଆନ୍ଦୋଳନ ଏକ ସାମାନ୍ୟ ଘଟଣା ହେଲେ ମଧ୍ୟ ଖୁବ୍ ସରଗରମ୍ ହୋଇଉଠିଥିଲା । ପୂର୍ବରୁ କଲେଜରେ ଛାତ୍ର ଇଉନିୟନ୍ ପିଲାମାନଙ୍କର

ମତଦ୍ୱାରା ଗଠିତ ହେବାର ସୁବିଧା ସୁଯୋଗ ଦିଆଯାଉନଥିଲା । ରେଭେନ୍‌ସା କଲେଜ ଛାତ୍ର ଇଉନିୟନ୍‌ର ସଭାପତି ହେଉଥିଲେ କଲେଜର ଅଧକ୍ଷ । ଛାତ୍ରମାନେ କଲେଜ ଇଉନିୟନ୍ କାର୍ଯ୍ୟ ତୁଲାଇପାରିବେନାହିଁ ବୋଲି ଅଧକ୍ଷ ପରିଜା ସାହେବଙ୍କର ଦୃଢ଼ ଧାରଣା ଥିଲା । ତେଣୁ ଛାତ୍ର ଇଉନିୟନ୍‌ପାଇଁ ଜଣେ ଛାତ୍ରଙ୍କୁ ସଭାପତି ନିର୍ବାଚିତ କରିବାକୁ ଯେତେବେଳେ ଛାତ୍ରମାନେ ଦାବି କଲେ, ଅଧକ୍ଷ ପରିଜା ସାହେବ ତାହା ଅଗ୍ରାହ୍ୟ କରିଦେଇଥିଲେ । ଓଡ଼ିଶାରେ ଛାତ୍ର ଅଶାନ୍ତି ଏବଂ ବିଶେଷ କରି ରେଭେନ୍‌ସା କଲେଜରେ ଛାତ୍ର, ଅଧକ୍ଷ ତଥା ଅଧାପକଙ୍କ ସଂପର୍କ ବିଷୟରେ ଓଡ଼ିଶା ବ୍ୟବସ୍ଥାସଭାରେ ୧୯୩୮ ଓ ୧୯୩୯ ମସିହା ବଜେଟ୍ ଅଧିବେଶନମାନଙ୍କରେ ବହୁତ ଆଲୋଚନା ଓ ଆଲୋଡ଼ନ ସୃଷ୍ଟି ହୋଇଥିଲା । ବିଧାୟକ ପ୍ୟାରିଶଙ୍କର ରାୟ, ପ୍ରାଣନାଥ ପଟ୍ଟନାୟକ, ମୋହନ ଦାସ, ଲୋକନାଥ ମିଶ୍ର ପ୍ରମୁଖ ରେଭେନ୍‌ସା କଲେଜର ଅଧକ୍ଷ ଓ କେତେକ ଅଧାପକଙ୍କ ରକ୍ଷଣଶୀଳ ତଥା ହାକିମି ମିଜାଜ୍‌ର କଠୋର ସମାଲୋଚନା କରିଥିଲେ । ଛାତ୍ରମାନଙ୍କର ବ୍ୟକ୍ତିଗତ ସ୍ୱାଧୀନତାରେ ହସ୍ତକ୍ଷେପ କରି ସେମାନଙ୍କୁ ନାନାପ୍ରକାର ଅସୁବିଧାରେ ପକାଯାଉଛି ବୋଲି ଅଭିଯୋଗ କରିଥିଲେ । ଛାତ୍ରମାନଙ୍କ ଧର୍ମଘଟ ଓ ଅନଶନ ଧର୍ମଘଟ ବିଷୟ ମଧ ବ୍ୟବସ୍ଥାସଭାରେ ଆଲୋଚିତ ହୋଇଥିଲା । ଏଡୁକେଶନ୍ କୋଡ୍‌ର ପରିବର୍ତ୍ତନପାଇଁ ଦାବି କରାଯାଇଥିଲା । ଛାତ୍ରମାନଙ୍କୁ ତାଙ୍କ ନିଜ ଅନୁଷ୍ଠାନ ଗଢ଼ିବା ଅଧିକାରରୁ ବଞ୍ଚିତ କରାଯାଇଥିବାରୁ ସେମାନେ ତା'ର କଠୋର ସମାଲୋଚନା କରିଥିଲେ । ବ୍ୟବସ୍ଥାସଭାର ଏହି ସଦସ୍ୟମାନଙ୍କ ସହିତ ମୋର ପରିଚୟ ଥିଲା । ଛାତ୍ର ଅଶାନ୍ତି ଓ ରେଭେନ୍‌ସା କଲେଜ ପରିସ୍ଥିତି ସମ୍ପର୍କୀୟ ସମସ୍ତ ସମ୍ବାଦ ମୁଁ ସେମାନଙ୍କୁ ଯୋଗାଇ ଦେଉଥିଲି ।

୧୯୩୮ ମସିହାର କଥା । ଆମ ଓଡ଼ିଶା ପ୍ରଦେଶରେ ଶିକ୍ଷାନୁଷ୍ଠାନମାନଙ୍କରେ ଅନ୍ଧାରୁଆ ଶାସନ ଓ ମେରୀରାୟ ନୀତି ପ୍ରଚଳିତ ଥିଲା । ଛାତ୍ର ସମସ୍ୟା ପ୍ରତି ରେଭେନ୍‌ସା କଲେଜର ଅଧକ୍ଷ ଓ ଅଧାପକମାନଙ୍କର କୌଣସି ସହାନୁଭୂତି ନଥିଲା ଭଳି ଜଣାପଡୁଥାଏ । କୌଣସି ବିଷୟରେ ଛାତ୍ରମାନଙ୍କର କିଛି ସ୍ୱାଧୀନତା ନଥିଲା । ଛାତ୍ରମାନେ ଅଧାପକମାନଙ୍କୁ ଭୟକରୁଥିଲେ, କାରଣ ଅଧକ୍ଷ ତଥା ଅଧାପକମାନଙ୍କୁ ଅସନ୍ତୁଷ୍ଟ କଲେ ସରକାରୀ ଚାକିରି ପାଇବାରେ ନିଶ୍ଚୟ ଅସୁବିଧା ଉପୁଜିବ ବୋଲି ସେମାନଙ୍କର ଧାରଣା ଥିଲା । ତେଣୁ ଅନେକ ସମୟରେ ସରକାରୀ-ଚାକିରି-ପ୍ରୟାସୀ ଛାତ୍ରମାନେ ଅଧକ୍ଷ ଓ ଅଧାପକମାନଙ୍କୁ ଅହେତୁକ ଆନୁଗତ୍ୟ ପ୍ରଦର୍ଶନ କରିଥାଆନ୍ତି । ସଂଗଠିତ ଛାତ୍ର ଆନ୍ଦୋଳନଦ୍ୱାରା ଛାତ୍ରମାନଙ୍କର ଏତାଦୃଶ ଭୂତଭୟର ହୀନମନ୍ୟତା ଦୂରହୋଇଥିଲା ଏବଂ ଅଧାପକମାନଙ୍କର ଦୃଷ୍ଟିକୋଣ ମଧ ବଦଳିଥିଲା । ବହୁ ଆନ୍ଦୋଳନ ଓ ସଂଘର୍ଷ ପରେ ରେଭେନ୍‌ସା କଲେଜ ଛାତ୍ର ଇଉନିୟନ୍ ଏକ ଗଣତାନ୍ତ୍ରିକ ଅନୁଷ୍ଠାନରୂପେ ସ୍ୱୀକୃତି ହାସଲ କରିଥିଲା । କିନ୍ତୁ ଏଥିପାଇଁ ସଂଗ୍ରାମ ଅତି ସହଜସାଧ ହୋଇନଥିଲା । ବହୁ ଛାତ୍ରଙ୍କୁ ଅନେକ ଅସୁବିଧା ଭୋଗ କରିବାକୁ ପଡ଼ିଥିଲା । ଛାତ୍ର ଧର୍ମଘଟ ମଧ ହୋଇଥିଲା । ସେତେବେଳର ଛାତ୍ର ଆନ୍ଦୋଳନର ଲକ୍ଷ୍ୟ ସଂପର୍କରେ ଏଠାରେ ଦୁଇପଦ କହିରଖେ । ଏକ ବିଶାଳକାୟ ଛାୟାପ୍ରଦ ବଟବୃକ୍ଷର ସାମାନ୍ୟ ଚେର ତଥା ଓହଳ ଯେଉଁ କ୍ଷୁଦ୍ର ହେଲେ ମଧ ବୃକ୍ଷକାୟାକୁ ସମ୍ପ୍ରସାରିତ ଓ ଦୃଢ଼ୀଭୂତ କରିବାପାଇଁ ସେଗୁଡ଼ିକହିଁ ଭୂମିରୁ ଶକ୍ତି ସଂଗ୍ରହ କରି ବୃକ୍ଷକୁ ଯୋଗାନ୍ତି ଏବଂ ଭୂମି ଉପରେ ଦୃଢ଼ ସ୍ତମ୍ଭସଦୃଶ ତାହାକୁ ଧରିରଖନ୍ତି । ସେହିପରି ବିରାଟ ଜାତୀୟ ସଂଗ୍ରାମରେ ଛାତ୍ର ଆନ୍ଦୋଳନର ଭୂମିକା । ଛାତ୍ର, ଶ୍ରମିକ ଓ କୃଷକମାନଙ୍କର ଛୋଟ ଛୋଟ ଗଣତାନ୍ତ୍ରିକ ଅଧିକାରକୁ ସାବ୍ୟସ୍ତ କରିବାପାଇଁ ଦେଶରେ ସ୍ଥାନେ ସ୍ଥାନେ ଯେଉଁ ଆନ୍ଦୋଳନ ହେଉଥାଏ ତାହା ସଂକୁଚିତ ଦୃଷ୍ଟିକୋଣରୁ ଯେତେ ସାମାନ୍ୟ ବୋଧହେଲେ ମଧ ଏକ ବିଶାଳ ତଥା ଜାତୀୟ ଆନ୍ଦୋଳନ ଗଢ଼ିତୋଳିବାପାଇଁ ଏସବୁ ଥିଲା ବଳିଷ୍ଠ ପରିପୂରକ ଓ ପରିପୋଷକ । ତେଣୁ ବାହାରକୁ ଯାହା ଛାତ୍ର ଓ ଅଧକ୍ଷ, ଶ୍ରମିକ ଓ ମାଲିକ, କୃଷକ ଓ ଜମିଦାରଙ୍କ ମଧରେ ସଂଘର୍ଷ ଭଳି ଜଣାପଡ଼େ ତାହା ଏକ ଅବାସ୍ତବ ସଂକୀର୍ଣ୍ଣ ବିଚାର । ବହୁକାଳର ନିଃସହାୟତା

ଓ ଅବସାଦକୁ ଅତିକ୍ରାନ୍ତ କରି ଆମ ସ୍ୱପ୍ନର ଭାରତ ଓ ଭବିଷ୍ୟତ ଗଢ଼ିତୋଳିବା ନିମନ୍ତେ ଏସବୁ ଆନ୍ଦୋଳନାତ୍ମକ କାର୍ଯ୍ୟ ଥିଲା ଜାଗରଣ ଓ ଶକ୍ତି ସଂଚୟର ପ୍ରକୃଷ୍ଟ ମାର୍ଗ । ମୁଁ ଏହି ଦୃଷ୍ଟିଭଙ୍ଗୀ ନେଇ ଅଗ୍ରସର ହେଉଥିଲି । ଅଧ୍ୟକ୍ଷ ପରିଜା ସାହେବଙ୍କର ଏକ ଭ୍ରାନ୍ତ ଧାରଣା ଥିଲା । ସେ ବୁଝିଥିଲେ ଯେ ସେ ନିଜେ ଅଧ୍ୟକ୍ଷ ଭାବରେ ସଭାପତି ରହି କଲେଜ ଛାତ୍ର ଇଉନିୟନ୍ ସମସ୍ତ ଦାୟିତ୍ୱ ତୁଲାଇବା ଅଧିକାଂଶ ଛାତ୍ରଙ୍କର ଇଚ୍ଛା; ମାତ୍ର ମୁଷ୍ଟିମେୟ ଛାତ୍ର ନିର୍ବାଚନ ପଦ୍ଧତିରେ ଜଣେ ଛାତ୍ରକୁ ସଭାପତି ଭାବରେ ବାଛିବାପାଇଁ ଆନ୍ଦୋଳନ କରୁଛନ୍ତି । ସାମାନ୍ୟ କେତେଜଣ ଛାତ୍ର ପାଟିତୁଣ୍ଡ କରି ଜୋର୍‌ଜବରଦସ୍ତ ଭାବରେ ଅନ୍ୟମାନଙ୍କ ଉପରେ ସେମାନଙ୍କର ମତକୁ ଲଦିଦେବାକୁ ଚାହୁଁଛନ୍ତି ବୋଲି ସେ ବିଚାରିଲେ । ତେଣୁ ଗଣତାନ୍ତ୍ରିକ ରୀତିରେ ଛାତ୍ର ଇଉନିୟନ୍ ଗଠନର ପ୍ରସ୍ତାବକୁ ସେ ପ୍ରତ୍ୟାଖ୍ୟାନ କରିଦେଇଥିଲେ । ଫଳରେ କଲେଜରେ ଛାତ୍ର ଧର୍ମଘଟ ଆରମ୍ଭ ହୋଇଗଲା । ଛାତ୍ରମାନେ ବାରମ୍ବାର ଦାବୀ କରିଥିଲେ ଯେ ଗଣତାନ୍ତ୍ରିକ ଭିତ୍ତିରେ ଛାତ୍ର ଇଉନିୟନ୍ ସଭାପତି ଓ ଅନ୍ୟାନ୍ୟ କର୍ମକର୍ତ୍ତା ନିର୍ବାଚିତ ହୁଅନ୍ତୁ । ସେ କଥା ହୋଇପାରିବନାହିଁ ବୋଲି ଜିଦ୍ ଧରି ବସିଲେ ପରିଜାସାହେବ । କଲେଜ ଅଚଳ ହୋଇଗଲା । ସାମାନ୍ୟ କେତେ ଜଣ ଛାତ୍ରଛାତ୍ରୀ ଶ୍ରେଣୀ ଦୁଆରେ ପିକେଟିଂ କରୁଥିବା ଛାତ୍ରମାନଙ୍କୁ ଡେଇଁଯାଇ ଶ୍ରେଣୀରେ ଯୋଗ ଦେଇଥିଲେ । ମୁଁ ପିକେଟିଂ କରୁଥାଏ । ମୋତେ ଦୁଇଜଣ ଛାତ୍ରୀ ଡେଇଁଯାଇ କ୍ଲାସ୍‌ରେ ଯୋଗଦେଲେ । ସେଇ ଦୁଇଜଣ ଛାତ୍ରୀ ଥିଲେ ଦୁଇ ଅଧ୍ୟାପକଙ୍କ ସହଧର୍ମିଣୀ । ଯେଉଁ ଦୁଇ ତିନି ଜଣ ଛାତ୍ର ଡେଇଁଯାଇ କ୍ଲାସ୍‌ରେ ଯୋଗ ଦେଇଥିଲେ ସେମାନଙ୍କ ମଧ୍ୟରେ ଥିଲେ ଜଣେ କୃତବିଦ୍ୟ ଛାତ୍ର ସ୍ୱର୍ଗୀୟ ରାମକୃଷ୍ଣ ପାଢ଼ୀ । ପରେ ସେ ଆଇ.ପି.ଏସ୍. ପାହ୍ୟାରେ ଆମ ରାଜ୍ୟର ପୁଲିସ୍ ଆଇ.ଜି. ପର୍ଯ୍ୟନ୍ତ ଉଠିଥିଲେ । ତାଙ୍କର ଅକାଳ ମୃତ୍ୟୁରେ ମୁଁ ଦୁଃଖିତ ହୋଇପଡ଼ିଥିଲି । ଆମ ରାଜ୍ୟ ବାହାର କ୍ୟାଡ଼ର୍‌ରେ ତାଙ୍କ ପୁଅ ଆଇ.ଏ.ଏସ୍. ଚାକିରି କରୁଥିଲେ । ପରିବାରର ସୁବିଧାପାଇଁ ତାଙ୍କୁ ଓଡ଼ିଶା କ୍ୟାଡ଼ର୍‌କୁ ବଦଳି କରି ଆଣିବାକୁ ମୁଁ ଉଦ୍ୟମ କରିଥିଲି ।

କିଛିଦିନ ଧର୍ମଘଟ ଚାଲିଲା ପରେ ସମାଧାନର ଗୋଟିଏ ମଧ୍ୟମ ପନ୍ଥା ବାହାର କରାଯାଇଥିଲା । ଛାତ୍ରମାନେ ପ୍ରକୃତରେ କଲେଜ ଇଉନିୟନ୍‌ର ସଭାପତିରୂପେ ଅଧ୍ୟକ୍ଷଙ୍କୁ ଚାହାନ୍ତି ନା ଜଣେ ଛାତ୍ରକୁ ନିର୍ବାଚିତ କରିବାକୁ ଚାହାନ୍ତି, ତାହା ଭୋଟଦ୍ୱାରା ସାବ୍ୟସ୍ତ କରିବାକୁ ସ୍ଥିରହେଲା । ପରିଜା ସାହେବଙ୍କର ବଦ୍ଧମୂଳ ଧାରଣା ଥିଲା ଯେ ପିଲାମାନେ ତାଙ୍କ ସପକ୍ଷରେହିଁ ମତ ଦେବେ । ସମାଧାନପାଇଁ ମୁଁ, ମୋର ସାଥୀ ମନମୋହନ ମିଶ୍ର, ବିଜୟ ଦାସ ଓ ସଚ୍ଚି ରାଉତରାୟ ପ୍ରଭୃତି ପରିଜା ସାହେବଙ୍କ ସହ ଆଲୋଚନା କରୁଥିବା ବେଳେ ସେହି ଧାରଣା ହେତୁ ସେ ଦୃଢ଼ତାର ସହିତ କହିଥିଲେ ଯେ ସାଧାରଣ ଭାବରେ ଛାତ୍ରମାନଙ୍କର ସମର୍ଥନ ଧର୍ମଘଟକାରୀ ଛାତ୍ରମାନଙ୍କର ସପକ୍ଷରେ ନାହିଁ; ମାତ୍ର ମୁଷ୍ଟିମେୟ ଛାତ୍ର ବିଭ୍ରାନ୍ତିକର ପରସ୍ଥିତି ସୃଷ୍ଟିକରୁଛନ୍ତି । ସେ ଆହୁରି କହିଥିଲେ ଯେ ବହୁ ଛାତ୍ର ତାଙ୍କୁ ଦେଖାକରି ସେମାନଙ୍କର ଏ ପ୍ରକାର ମତାମତ ତାଙ୍କୁ ଜଣାଇଦେଇଛନ୍ତି । ସେ ଆମକୁ ଆହ୍ୱାନ ଦେଲାଭଳି ଏ କଥାଟା କହିଥିଲେ । ମୁଁ ହଠାତ୍ ତାଙ୍କ ଆହ୍ୱାନକୁ ଗ୍ରହଣ କରିନେଇ କହିଥିଲି ଯେ ତାହା ଯଦି ପ୍ରକୃତ ଅବସ୍ଥା ଏବଂ ଅଧିକାଂଶ ଛାତ୍ର ଯଦି ଅଧ୍ୟକ୍ଷଙ୍କ କଥା ଗ୍ରହଣ କରୁଛନ୍ତି ତା'ହେଲେ ଆମେ ଆମର ଦାବି ପ୍ରତ୍ୟାହାର କରିନେବୁ । ପ୍ରଶ୍ନ ଉଠିଲା, ଛାତ୍ରମାନଙ୍କର ଏ ପ୍ରକାର ମତ ଜାଣିବାର ଉପାୟ କ'ଣ ? ତେଣୁ ମଧ୍ୟମ ପନ୍ଥାର ସୂଚନା ଦିଆଯାଇଥିଲା – କେବଳ ମତ ଜାଣିବାପାଇଁ ଭୋଟ ନିଆଯାଉ, ସଭାପତି ନିର୍ବାଚନ ପାଇଁ ନୁହେଁ ।

## ଡକ୍‌ଟର ପରିଜାଙ୍କ ପରୀକ୍ଷା

ବର୍ତ୍ତମାନ କି ନିକଟଭବିଷ୍ୟତରେ, କେବେ ଓ କେଉଁ ଉପାୟରେ ଭୋଟ ନିଆଯିବ ସେକଥା ଆଲୋଚନା କରାଯାଇଥିଲା । ଚବିଶ ଘଣ୍ଟା ମଧ୍ୟରେ ଛାତ୍ରମାନଙ୍କର ମତ ଜାଣିବାପାଇଁ ଭୋଟ

ନିଆଯାଉ ବୋଲି ଆମ ପକ୍ଷରୁ ପ୍ରସ୍ତାବ ଦିଆଯାଇଥିଲା । ମାତ୍ର ପରିଜାସାହେବ ସେଥିରେ ରାଜି ହୋଇନଥିଲେ । ସେ କହିଥିଲେ ଯେ ଧର୍ମଘଟ ହେତୁ ଭୟଭୀତ ହୋଇ ବହୁ ଛାତ୍ର ହଷ୍ଟେଲରେ ନରହି ତାଙ୍କ କହି ଘରକୁ ଚାଲିଯାଇଛନ୍ତି, ତେଣୁ ମତ ଦେବାପାଇଁ ସେମାନେ ଘରୁ ଫେରିଆସିବା ଆବଶ୍ୟକ । ସାତ ଦିନ ବ୍ୟବଧାନରେ ଗୋଟିଏ ଦିନ ସ୍ଥିର ହେଲା । ଛାତ୍ରମାନଙ୍କ ମଧ୍ୟରେ ଖୁବ୍ ଜୋର୍‌ସୋର୍‌ରେ ପ୍ରଚାର ଆରମ୍ଭ ହୋଇଯାଇଥିଲା । ହଷ୍ଟେଲ୍ ତଥା କଲେଜ ବାହାରେ ରହୁଥିବା ଛାତ୍ରମାନଙ୍କୁ କିପରି ଭାବରେ ସଂଗଠିତ କରାଯିବ ତା'ର ଦାୟିତ୍ୱ ବିଭିନ୍ନ ଛାତ୍ରନେତାମାନଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ରେଭେନ୍‌ସା କଲେଜର ଦିବାଧାୟୀ ଆସୋସିଏସନ୍‌ର ସେତେବେଳେ ସଭାପତି ଥିଲେ ମୋର ସହପାଠୀ ବୀରେନ୍ଦ୍ର ମୋହନ ପଟ୍ଟନାୟକ । ହଷ୍ଟେଲ୍ ବାହାରେ ରହୁଥିବା ଛାତ୍ରମାନଙ୍କୁ ଆମ ମତ ପ୍ରତି ଆକୃଷ୍ଟ କରିବାରେ ସେ ସାହାଯ୍ୟ କରିଥିଲେ । ପୂର୍ବ ଛାତ୍ରାବାସରେ ରହୁଥିବା ପିଲାମାନଙ୍କୁ ଆମ ମତଦ୍ୱାରା ପ୍ରଭାବିତ କରି ସଂଗଠିତ କରିବାର ଦାୟିତ୍ୱ ମୁଁ ନେଇଥିଲି । ଛାତ୍ରସଂଘର ସବୁ ବନ୍ଧୁମାନେ ପିଲାମାନଙ୍କୁ ବୁଝାଇ ଭୋଟପାଇଁ ପ୍ରସ୍ତୁତ କରାଇଥିଲେ । ଗଣତନ୍ତ୍ର ଓ ନାଗରିକ ସ୍ୱାଧୀନତା ତଥା ଛାତ୍ରଙ୍କର ଅଧିକାର ଓ ଦାବି ସମ୍ବନ୍ଧରେ ନାନାପ୍ରକାର ଧ୍ୱନିରେ କଲେଜର ବାୟୁମଣ୍ଡଳ ସରଗରମ୍ ହୋଇଉଠିଥିଲା । ଦିନେ ଦୁଇଦିନ ପ୍ରଚାର ଚାଲିବା ପରେ ଦେଖାଗଲା ଯେ ପ୍ରସ୍ତାବ ସପକ୍ଷରେ ଓ ବିପକ୍ଷରେ ଦୁଇଟି ନିର୍ଦ୍ଦିଷ୍ଟ ଗୋଷ୍ଠୀ ଅଣ୍ଡାଭିଡ଼ି ବାହାରିପଡ଼ିଥିଲେ । ଅଧ୍ୟକ୍ଷଙ୍କ ମତକୁ ଖୋଲାଖୋଲିଭାବେ ସମର୍ଥନ କରିବା ପାଇଁ ଯେଉଁ ଛାତ୍ରଦଳଟି ବାହାରିପଡ଼ିଲେ ସେମାନଙ୍କର ନେତୃତ୍ୱ ନେଇଥିଲେ ବୀରେନ୍ ମିତ୍ର । ବୀରେନ୍‌ବାବୁଙ୍କ ସହିତ ପରେ ମୋର ବିଶେଷ ଘନିଷ୍ଠତା ହୋଇଥିଲା । ସେ ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇଥିଲେ । ବୀରେନ୍‌ବାବୁ ଆଉ ନାହାନ୍ତି । କିନ୍ତୁ ତାଙ୍କ କାର୍ଯ୍ୟକଳାପର ନାନା ଘଟଣା ଏବଂ ତାଙ୍କ ମୋ ମଧ୍ୟରେ ଘନିଷ୍ଠବନ୍ଧୁତ୍ୱର ସ୍ୱାଭାବିକ ସ୍ନେହସୌହାର୍ଦ୍ଦ୍ୟ, ରାଗରୋଷ, ତିକ୍ତମଧୁର ଓ କରୁଣ ଅନୁଭୂତିର ବହୁ ସ୍ମୃତି ମୋ ହୃଦୟରେ ଗଭୀର ରେଖାପାତ କରିଛି । ବୀରେନ୍‌ବାବୁଙ୍କର ଭୂମିକାରେ ପ୍ରଥମ ଅବସ୍ଥାରେ ବିଶେଷ ଗଣତନ୍ତ୍ରପ୍ରେମ ବା ସ୍ୱଦେଶାନୁରାଗ ଲକ୍ଷ୍ୟ କରାଯାଇନଥିଲା । ସେ ଅଧ୍ୟକ୍ଷ ପରିଜାସାହେବଙ୍କର ଖୁବ୍ ବିଶ୍ୱସ୍ତ ଥିଲେ । ବୀରେନ୍‌ବାବୁଙ୍କ ସହିତ ମୋର ସେତେବେଳେ ବିଶେଷ ଆତ୍ମୀୟତା ନଥିଲା । ଅସ୍ୱାଭାବିକ ଓ ଅତର୍କିତ ଅବସ୍ଥାରେ ମୋର ତାଙ୍କ ସହିତ ପ୍ରଥମ ପରିଚୟ ହେଲା । ଓଡ଼ିଶା ବିଧାନସଭାର କୌଣସି ସ୍ୱତନ୍ତ୍ର ସଭାଗୃହ ନଥିବାରୁ ସେତେବେଳେ ବିଧାନସଭା ଅଧିବେଶନ ରେଭେନ୍‌ସା କଲେଜ ହଲ୍‌ରେ ହେଉଥାଏ । ଦିନେ ମଧ୍ୟାହ୍ନଭୋଜନପାଇଁ ଅଧିବେଶନ ମୁଲତବୀ ରହିଥାଏ । ମୁଁ ଦର୍ଶକ ଗ୍ୟାଲେରୀରେ ଛିଡ଼ାହୋଇ ଜଣେ ବନ୍ଧୁଙ୍କ ସହିତ କଥାବାର୍ତ୍ତା କରୁଛି, ଏହି ସମୟରେ କେହି ଜଣେ ମୋ ପଛଆଡୁ ଆସି ମୋ ଗର୍ଦ୍ଦନୀ ଉପରେ ଗୋଟିଏ ପ୍ରଚଣ୍ଡ ମୁଷ୍ଟି ପ୍ରହାର କରିଥିଲେ । ମୋତେ ଭୀଷଣ କଷ୍ଟ ହେଲା ଏବଂ ସେ ଯୁବକ ଉପରେ ମୁଁ ଭୟଙ୍କର ବିରକ୍ତ ହୋଇଥିଲି । କିନ୍ତୁ ସେ ଖୁବ୍ ହସି ହସି ଜୋର୍‌ରେ ପାଟିକରି କହିଲେ, "ମୁଁ ତୋତେ ଜାଣେ, ଅନନ୍ତ ପଟ୍ଟନାୟକ ତୋ ବିଷୟରେ ବହୁତ ଭଲ କଥା ମୋତେ କହିଛି ।" ଅନନ୍ତବାବୁ ଥିଲେ ଆମର ଛାତ୍ରନେତା, ତେଣୁ ସେତିକିରେ ମୋର ବିରକ୍ତି ସରିଗଲା । ତା'ପରେ କିଛି ସମୟ ବୀରେନ୍‌ବାବୁଙ୍କ ସହ କଥାବାର୍ତ୍ତା ହୋଇ ବିଦାୟନେଲି । ଏହା ପରେ ମଧ୍ୟ ମୋର ତାଙ୍କ ସହିତ ସମ୍ପର୍କଟା ବିଶେଷ ଭାବରେ ଗଢ଼ିଉଠିପାରିନଥିଲା ।

ଅଧ୍ୟକ୍ଷ ପରିଜାସାହେବଙ୍କ ସହିତ ବୀରେନ୍‌ବାବୁ ଭଲ ସମ୍ପର୍କ ରଖୁଥିଲେ । ଅନେକ ସମୟରେ ସେ ପରିଜାସାହେବଙ୍କ ଘରକୁ ଯାଉଥିବାର ପିଲାମାନେ ଦେଖୁଥିଲେ । ବର୍ତ୍ତମାନ ପୂରାଦମ୍‌ରେ ଅଧ୍ୟକ୍ଷ ବୀରେନ୍‌ବାବୁଙ୍କୁ ଆମ ବିରୁଦ୍ଧରେ ଲଗାଇ ଦେଇଥିଲେ । ବୀରେନ୍‌ବାବୁଙ୍କର ଗୋଟିଏ ଭଲ ଗୁଣ ଥିଲା, ସେ ଥିଲେ ମେଳାପୀ ଓ ସଙ୍ଗପ୍ରିୟ । ତାଙ୍କର ଏତାଦୃଶ ଗୁଣ ହୋଇଥିଲା ଆମର କାଳ । ସେ ସଦାବେଳେ ଦଳେ ଛାତ୍ରଙ୍କୁ ଧରି ବୁଲୁଥାଆନ୍ତି । କଲେଜ ଛକରେ ଥିବା ମଦନା ମିଠେଇ

ଦୋକାନ ଓ କୁଞ୍ଜିଆ ପାନ ଦୋକାନ ଥିଲା ବୀରେନ୍‌ବାବୁଙ୍କ ଆଡ୍‌ଡ଼ାସ୍ଥଳୀ । ତାଙ୍କ ସାଙ୍ଗକୁ ଜୁଟିଥାଆନ୍ତି ପରିଜାସାହେବଙ୍କର ଆଉ ଜଣେ ଅଣଛାତ୍ର ସ୍ତାବକ ସ୍ୱର୍ଗୀୟ ରଘୁ ରାଉତ । କଥାକଥାକେ ସେ ହାତ ଉଠାଉଥିଲେ; ତେଣୁ ତାଙ୍କୁ ଅନେକ ଭୟକରନ୍ତି । ଅନେକ ତାଙ୍କ ଆଚରଣକୁ ଅଶିଷ୍ଟ ମନେକରୁଥିଲେ । ତା'ଛଡ଼ା ତାଙ୍କର 'ସତକଥା' ନାମରେ ଗୋଟିଏ ଛୋଟ ପାକ୍ଷିକ ପତ୍ରିକା ଥାଏ । ଏହା ନିୟମିତ ଭାବରେ ପ୍ରକାଶ ପାଏନାହିଁ; ମାତ୍ର କୌଣସି ସ୍ୱତନ୍ତ୍ର ଅବସ୍ଥା ଉପୁଜିଲେ ଖଣ୍ଡିଏ କାଗଜ ବାହାରିପଡ଼େ । ପରିଜାସାହେବଙ୍କର ସୁନାମ ଓ ଆମ୍ଭମାନଙ୍କର ଦୁର୍ନାମ ଏହି ପତ୍ରିକାରେ ପ୍ରକାଶପାଉଥିଲା । ବୀରେନ୍‌ବାବୁ ଓ ରଘୁ ରାଉତ ଉଭୟ କଲେଜ ହଷ୍ଟେଲ ଭିତରେ ବୁଲି ଛାତ୍ରମାନଙ୍କୁ ଆମ ବିରୁଦ୍ଧରେ ମତାଇବାରେ ଲାଗିଯାଇଥିଲେ । କଲେଜଛାତ୍ରମାନଙ୍କ ବ୍ୟାପାରରେ କଲେଜ ପରିସର ଭିତରେ ବାହାରର ଲୋକେ କାହିଁକି ହସ୍ତକ୍ଷେପ କରୁଛନ୍ତିବୋଲି ଆମେମାନେ ଅଭିଯୋଗ କରି ଅଧକ୍ଷଙ୍କ ଦୃଷ୍ଟି ଆକର୍ଷଣ କଲୁ । କିନ୍ତୁ ସେପ୍ରକାର କାର୍ଯ୍ୟ ଅଧକ୍ଷଙ୍କ ଇଙ୍ଗିତରେ ହେଉଥିବାରୁ ସେ ଆମ କଥାକୁ କର୍ଣ୍ଣପାତ କଲେନାହିଁ । କଲେଜ ହତା ଭିତରେ ଅଧକ୍ଷ ପରିଜାସାହେବଙ୍କ କ୍ୱାର୍ଟର ଥିଲା ଛତ୍ରବଙ୍ଗାର ପୋଲ ପାଖରେ । କିଏ ସବୁ ପରିଜାସାହେବଙ୍କ ଘରକୁ ଯାଉଥିଲେ ତା'ର ରିପୋର୍ଟ ସଂଗ୍ରହ କରିବା ଉଦ୍ଦେଶ୍ୟରେ ଆମେ ଜଣେ ଛାତ୍ରକୁ ସେହି ପୋଲ ପାଖରେ ବସାଇଥାଉଁ । ପ୍ରତିଦିନ ରାତିରେ ବୀରେନ୍‌ବାବୁ ଓ ରଘୁ ରାଉତ ପରିଜାସାହେବଙ୍କ ଘରକୁ ଯିବାର ଖବର ଆମକୁ ମିଳୁଥାଏ । ଅଧକ୍ଷଙ୍କର ସେମାନଙ୍କ ସହିତ ସମ୍ପର୍କ ଓ ଚକ୍ରାନ୍ତକୁ ଛାତ୍ରମାନେ ବରଦାସ୍ତ କରିପାରିନଥିଲେ । ସେଥିପାଇଁ ଦିନେ ଅଧକ୍ଷଙ୍କ ଘର ଘେରାଉ ହୋଇଥିଲା । ବିପକ୍ଷ ଗୋଷ୍ଠୀର ଏପ୍ରକାର ପ୍ରସ୍ତୁତି ଦେଖି ଆମେମାନେ ଉପସ୍ଥିତ ସମସ୍ୟାର ଭବିଷ୍ୟତ ଫଳାଫଳ ବିଷୟରେ ସନ୍ଦିହାନ ହୋଇପଡ଼ିଥିଲୁ । ମନେହେଉଥାଏ, ବଳ କଷାକଷିରେ ଛାତ୍ରମାନେ ହୁଏତ ପ୍ରାୟ ସମାନ ସମାନଭାବରେ ବିଭକ୍ତ ହେବେ ।

ବଳ କଷାକଷିର ନିର୍ଦ୍ଦିଷ୍ଟ ଦିନ ଆସିଗଲା । କଲେଜର ଫିଜିକ୍‌ସ ଲେକ୍‌ଚର୍ ଥିଏଟର୍‌ରେ ପିଲାମାନେ ଏକତ୍ର ହେବେ, ସପକ୍ଷ ବା ବିପକ୍ଷରେ ହାତ ଉଠାଇ ସେମାନଙ୍କର ମତ ଦେବେ । ଅଧକ୍ଷ ପରିଜାସାହେବ ନିଜେ ଏହି ମତ ସଂଗ୍ରହ କାର୍ଯ୍ୟ ପରିଚାଳନା କରିବେ ବୋଲି ଜଣାପଡ଼ିଲା । ଏକଥା ଶୁଣିଲା କ୍ଷଣି ଆମମାନଙ୍କ ମୁଣ୍ଡରେ ବଜ୍ରପାତ ହୋଇଥିଲା । ଆମେ ଭାବିଲୁ ସବୁ କଥା ସରିଗଲା, ଭୟରେ ଛାତ୍ରମାନେ କଦାପି ଅଧକ୍ଷଙ୍କ ଆଗରେ ତାଙ୍କ ମତ ବିରୁଦ୍ଧରେ ହାତ ଉଠାଇବେନାହିଁ । ସଙ୍ଗେ ସଙ୍ଗେ ଛାତ୍ରମାନଙ୍କର ଗୋଟିଏ ଜରୁରୀ ସଭା ଆହୂତ ହେଲା । ଛାତ୍ରମାନଙ୍କର ମତ ଗ୍ରହଣ କାର୍ଯ୍ୟରେ ନିରପେକ୍ଷତା ଅବଲମ୍ବନ କରିବାପାଇଁ ପ୍ରସ୍ତାବ କରାଯାଇଥିଲା । ପରିଜାସାହେବ ମତସଂଗ୍ରହକାର୍ଯ୍ୟ ପରିଚାଳନା କଲେ ନିରପେକ୍ଷତା ଅସମ୍ଭବ ବୋଲି ପ୍ରସ୍ତାବରେ କୁହାଯାଇଥିଲା । ଏଥିରେ ପରିଜାସାହେବ ବଡ଼ ଅସୁବିଧାରେ ପଡ଼ିଗଲେ । ଶେଷରେ ସ୍ଥିରହେଲା ଯେ ଇଂରାଜୀ ଅଧାପକ ନିରଞ୍ଜନ ନିୟୋଗୀ ହେବେ ପରିଚାଳକ । ସେ ଜଣେ ସମ୍ମାନାସ୍ପଦ ଅଧାପକ ଥିଲେ । ତାଙ୍କର ନିରପେକ୍ଷତା ବିଷୟରେ କାହାରି କିଛି କହିବାର ନଥିଲା । ବିପୁଳ ଉତ୍ତେଜନା ଭିତରେ ଛାତ୍ରମାନେ ଏକତ୍ରିତ ହେଲେ ଫିଜିକ୍‌ସ୍ ଲେକ୍‌ଚର୍ ଥିଏଟର୍‌ରେ । ଅଧାପକ ନିୟୋଗୀ ମହାଶୟ ଆସନରେ ଉପବିଷ୍ଟ । ତାଙ୍କ ସମ୍ମୁଖରେ ବହୁସଂଖ୍ୟକ ଛାତ୍ରଙ୍କର ସମାବେଶ । ପ୍ରଶ୍ନ ଥିଲା, କଲେଜ ଇଉନିୟନ୍‌ର ସଭାପତି ପୂର୍ବପରି ଅଧକ୍ଷ ନହୋଇ ଜଣେ ନିର୍ବାଚିତ ଛାତ୍ର ହୁଅନ୍ତୁ । ପ୍ରଥମେ ପ୍ରସ୍ତାବ ସପକ୍ଷରେ ଥିବା ଛାତ୍ରମାନେ ହାତ ଉଠାଇବାପାଇଁ ନିର୍ଦ୍ଦେଶ ଦିଆଗଲା । ହାତ ଉଠିଲା ଏବଂ ତାହା ଗଣାଗଲା । ତା'ପରେ ପ୍ରସ୍ତାବ ବିପକ୍ଷବାଦୀମାନେ ହାତ ଉଠାଇଲେ । ତାହା ମଧ ଗଣାଗଲା । ମାତ୍ର ଚାରୋଟି ଅଧିକା ଭୋଟ୍‌ରେ ଆମେମାନେ ଜୟଲାଭକଲୁ । ଛାତ୍ର ଇଉନିୟନ୍ ଛାତ୍ରମତଦ୍ୱାରା ପରିଚାଳିତ ହେବାର ସ୍ୱାଧୀନତା ପାଇଲା । ଏଣିକି ରେଭେନ୍‌ସା କଲେଜ ଇଉନିୟନ୍ ସଭାପତି କଲେଜର ଅଧକ୍ଷ ନହୋଇ ଜଣେ ଛାତ୍ର

ନିର୍ବାଚିତ ହେବା କଥା ଚୂଡ଼ାନ୍ତ ନିଷ୍ପତ୍ତି ହୋଇଗଲା । ଆଜିକାଲି ବିଶ୍ୱବିଦ୍ୟାଳୟ ସିନେଟ୍‌କୁ ଛାତ୍ର ପ୍ରତିନିଧି ମନୋନୀତ ହେଉଛନ୍ତି । ସିନେଟ୍‌ରେ ନିର୍ବାଚିତ ଛାତ୍ର ପ୍ରତିନିଧି ରହିବାପାଇଁ ଦୃଢ଼ ଦାବି ହେଲାଣି । ଦିନେ ଆମକୁ ଛାତ୍ରମାନଙ୍କର ସମ୍ପୂର୍ଣ୍ଣ ନିଜସ୍ୱ କଲେଜ ଇଉନିୟନ୍‌ର ସଭାପତି ନିର୍ବାଚନ କରିବାର ଗଣତାନ୍ତ୍ରିକ ଅଧିକାର ସାବ୍ୟସ୍ତ କରିବାକୁ ଏପରି ଲଢ଼େଇ କରିବାକୁ ପଡ଼ିଥିଲା ବୋଲି ଆଜି ହୁଏତ ବିଶ୍ୱାସ କରିହେବନି । ଏହି ଲଢ଼େଇରେ ଆମକୁ ସଂଗଠନଶକ୍ତିର କଠୋର ପରୀକ୍ଷା ଦେବାକୁ ପଡ଼ିଥିଲା । ଅଧକ୍ଷ ଡକ୍ଟର ପରିଜା ମଧ ନିଜର ଅବାଧ ରକ୍ଷଣଶୀଳ ନୀତିର ପରିଣତି ପରୀକ୍ଷା କରିବାର ସୁଯୋଗ ପାଇଥିଲେ । ଏହା ପରେ ପ୍ରଥମ ଥରପାଇଁ ଛାତ୍ରନେତା ଶ୍ରୀ ମନମୋହନ ମିଶ୍ର ରେଭେନ୍‌ସା କଲେଜ ଇଉନିୟନ୍‌ର ସଭାପତିରୂପେ ଛାତ୍ରମାନଙ୍କଦ୍ୱାରା ନିର୍ବାଚିତ ହୋଇଥିଲେ ।

## ଆମର ପ୍ରଥମ ବିଧାନସଭାର ଶୋଭା ଓ ପ୍ରତିଭା

ପୂର୍ବରୁ କହିଛି ଯେ ଓଡ଼ିଶା ବିଧାନସଭାପାଇଁ କୌଣସି ସ୍ୱତନ୍ତ୍ର ହଲ୍‌ଟିଏ ନଥିଲା । ଅସ୍ଥାୟୀ ଭାବରେ ବିଧାନସଭାର ବୈଠକ ବସୁଥିଲା ରେଭେନ୍‌ସା କଲେଜ ହଲ୍‌ରେ । ଏହି ହଲ୍‌ରେ ପୂର୍ବରୁ କଲେଜର ନାନା ସାଂସ୍କୃତିକ ଅନୁଷ୍ଠାନ ଓ ପିଲାମାନଙ୍କର ଆଲୋଚନା ସଭା ଅନୁଷ୍ଠିତ ହେଉଥିଲା । ପିଲାମାନେ ସେହିସବୁ ସୁବିଧାରୁ ସାମୟିକଭାବେ କିଛି ବର୍ଷ ପାଇଁ ବଞ୍ଚିତ ହୋଇଥିଲେ । କିନ୍ତୁ ଗୋଟିଏ ବଡ଼ କଥା ହେଲା, କଲେଜ ହଲ୍‌ଟି ବିଧାନସଭା ହଲ୍‌ରେ ପରିଣତ ହୋଇଥିବାରୁ ତାହା ଛାତ୍ରମାନଙ୍କର ରାଜନୈତିକ ଚେତନା ବୃଦ୍ଧି କରିବାରେ ବିଶେଷ ସହାୟକ ହୋଇଥିଲା । ଯେତେବେଳେ ବିଧାନସଭା ଅଧିବେଶନ ବସେ ସେତେବେଳେ ଦର୍ଶକ ଗ୍ୟାଲେରୀ ଛାତ୍ରମାନଙ୍କଦ୍ୱାରା ଭରପୂର ହୋଇଯାଏ । ହଲ୍ ବାହାରେ ମଧ ପ୍ରଧାନମନ୍ତ୍ରୀ, ମନ୍ତ୍ରୀ ଓ ସଭ୍ୟମାନଙ୍କୁ ଦେଖିବା ପାଇଁ ବହୁ ଛାତ୍ର ରୁଣ୍ଡ ହୁଅନ୍ତି । ସେତେବେଳେ ରାଜ୍ୟ ମନ୍ତ୍ରିପରିଷଦର ମୁଖ୍ୟଙ୍କୁ ମୁଖ୍ୟମନ୍ତ୍ରୀ ପରିବର୍ତ୍ତେ ପ୍ରଧାନମନ୍ତ୍ରୀ କୁହାଯାଉଥିଲା । ଓଡ଼ିଶା ବିଧାନସଭାର ପ୍ରଥମ ବୈଠକ ୧୯୩୭ ମସିହା ଜୁଲାଇ ଅଠେଇଶ ତାରିଖରେ ରେଭେନ୍‌ସା କଲେଜ ହଲ୍‌ଠାରେ ବସିଥିଲା । ତା' ପୂର୍ବରୁ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହୋଇଯାଇଥିଲା । ତାଙ୍କ ବ୍ୟତୀତ ସେହି ମନ୍ତ୍ରିମଣ୍ଡଳରେ ନିତ୍ୟାନନ୍ଦ କାନୁନ୍‌ଗୋ ଓ ବୋଧରାମ ଦୁବେ ମନ୍ତ୍ରୀ ଥିଲେ । ରାଜକୃଷ୍ଣ ବୋଷ, ଜଗନ୍ନାଥ ମିଶ୍ର ଓ ଯଦୁମଣି ମଙ୍ଗରାଜ ପାର୍ଲିଆମେଣ୍ଟାରୀ ସେକ୍ରେଟେରୀ ନିଯୁକ୍ତ ହୋଇଥାଆନ୍ତି । ଓଡ଼ିଶା ରାଜନୈତିକ ଇତିହାସରେ ପ୍ରଥମ ନିର୍ବାଚିତ ବିଧାନସଭାର ପ୍ରଥମ ବୈଠକ – ଏବେ ମଧ ସେହି ବୈଠକର ସମସ୍ତ ଦୃଶ୍ୟ ମୋର ସ୍ପଷ୍ଟ ମନେଅଛି । କଲେଜ ହଲ୍ ପାଖ ଲୋକାରଣ୍ୟ । କଲେଜ ପାଖ ପଡ଼ିଆରେ ବହୁ ଛାତ୍ର ଉପସ୍ଥିତ ହୋଇ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସଙ୍କୁ ଓ ଅନ୍ୟାନ୍ୟ ମନ୍ତ୍ରୀଙ୍କ ସମେତ ବ୍ୟବସ୍ଥାସଭାର ସଭ୍ୟମାନଙ୍କୁ ଆଗ୍ରହରେ ଦେଖୁଥାଆନ୍ତି । ମନ୍ତ୍ରୀମାନେ ମଟରଗାଡ଼ିରେ ଆସିଲେ । ରାଜକୃଷ୍ଣ ବୋଷ ଆସିଲେ ଘୋଡ଼ା ଉପରେ ଚଢ଼ି । ଘୋଡା ଟାପୁର ଟପର୍ ଟପର୍ ଶବ୍ଦ, ତା'ଉପରେ ସବାର ରାଜକୃଷ୍ଣ ବୋଷଙ୍କର ଚୋଗା-ଚୌକନ୍ ପୋଷାକ । ସମସ୍ତେ ଆଗ୍ରହରେ ଦେଖୁଥାଆନ୍ତି । ରାଜକୃଷ୍ଣବାବୁ ପ୍ରତିଦିନ ଘୋଡ଼ାରେ ବସି ବ୍ୟବସ୍ଥାସଭାକୁ ଆସୁଥିଲେ । ସେ ଥିଲେ ଜଣେ ଟାଣୁଆ ସ୍ୱାଧୀନତା ସଂଗ୍ରାମୀ ଏବଂ ଓଜସ୍ୱିନୀ ବକ୍ତା । ବିରୋଧୀଦଳ ସଭ୍ୟ ମାନଧାତା ଗୋରାଚାନ୍ଦ ପଟ୍ଟନାୟକଙ୍କର ପଗଡ଼ି ମଧ ସମସ୍ତଙ୍କୁ ଆକୃଷ୍ଟ କରୁଥିଲା ।

ବୈଠକ ଆରମ୍ଭ ହେଲା ସକାଳ ଠିକ୍ ଏଗାରଟା ବେଳେ । ମୁଁ ସେଦିନ ଅତିଶୟ ଆଗ୍ରହରେ ଦର୍ଶକ ଗ୍ୟାଲେରୀରେ ପ୍ରଥମ ଧାଡ଼ିରେ ବସିଥାଏ । ବହୁ ଛାତ୍ର ଦର୍ଶକ ଗ୍ୟାଲେରୀରେ ଉପସ୍ଥିତ ଥାଆନ୍ତି । ବହୁ ବିଶିଷ୍ଟ ଭଦ୍ରଲୋକ ମଧ ଉପସ୍ଥିତ ଥିଲେ । ଅଫିସର୍ ଗ୍ୟାଲେରୀରେ ଚିଫ୍ ସେକ୍ରେଟେରୀ ମିଷ୍ଟର ପି.ଟି. ମାନ୍‌ସ୍‌ଫିଲ୍‌ଡ୍ ଓ ତାଙ୍କ ପାଖରେ ଆଉ ଜଣେ ଇଂରେଜ ଅଫିସର୍ ବସିଥାଆନ୍ତି ।

ସେଦିନ ସ୍ୱାମୀ ବିଚିତ୍ରାନନ୍ଦ ଦାସ କାମଚଳା ବାଚସ୍ପତି ଭାବରେ ବାଚସ୍ପତି ଆସନ ଅଳଂକୃତ କରିଥିଲେ । ମୁକୁନ୍ଦ ପ୍ରସାଦ ଦାସ ବାଚସ୍ପତି ଭାବରେ ବିଧିବଦ୍ଧ ନିର୍ବାଚିତ ହେଲେ ବୋଲି ସେ ଘୋଷଣା କରିଥିଲେ । ଏହା ପରେ ବାଚସ୍ପତି ଭାବରେ ମୁକୁନ୍ଦ ପ୍ରସାଦ ଦାସ ବ୍ୟବସ୍ଥାସଭାର କାର୍ଯ୍ୟ ଚଳାଇଥିଲେ । ସଭ୍ୟମାନେ ତାଙ୍କୁ ବାଚସ୍ପତି ନିର୍ବାଚିତ କରିଥିବାରୁ ସେ ସେମାନଙ୍କୁ ଧନ୍ୟବାଦ ଦେଇ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପରେ ଆଗରୁ ଯେଉଁ ସବୁ ଅଞ୍ଚଳ ଓଡ଼ିଶା ବାହାରେ ଥିଲା ସେ ଅଞ୍ଚଳଗୁଡ଼ିକ ଓଡ଼ିଶା ସହିତ ଏକତ୍ରିତ ହୋଇ ତା'ର ପ୍ରତିନିଧିମାନେ ବିଧାନସଭାରେ ଉପସ୍ଥିତ ଥିବାରୁ ବିଶେଷ ସନ୍ତୋଷ ପ୍ରକାଶ କରିଥିଲେ । ଏହାଦ୍ୱାରା ତାଙ୍କ ଜୀବନର ଏକ ବଡ଼ ଆଶା ପୂର୍ଣ୍ଣ ହେଲା ବୋଲି ସେ ପ୍ରକାଶ କରିଥିଲେ । ତଥାପି ଆହୁରି ଅନେକ ଅଞ୍ଚଳ ବିଚ୍ଛିନ୍ନ ହୋଇ ବାହାରେ ରହିଯାଇଥିବାରୁ ସେ ଦୁଃଖ ପ୍ରକାଶ କରିଥିଲେ । ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ଓ ବିରୋଧୀଦଳର ସଭ୍ୟ ମାନଧାତା ଗୋରାଚାନ୍ଦ ପଟ୍ଟନାୟକ ପ୍ରଭୃତି ନିର୍ବାଚିତ ବାଚସ୍ପତିଙ୍କୁ ସ୍ୱାଗତ ଜଣାଇଥିଲେ ।

ସେହି ପ୍ରଥମ ଦିନର ଆଉ ଗୋଟିଏ ଘଟଣା ମୋର ମନକୁ ଘୋର ଉଦ୍‌ବେଳିତ କରିଥିଲା । ମୁକୁନ୍ଦ ପ୍ରସାଦ ଦାସ ବାଚସ୍ପତି ନିର୍ବାଚିତ ହୋଇ ସେହି ସମ୍ମାନିତ ଆସନ ଅଳଂକୃତ କରିବା ପରେ ପରେ ଆମର ସେତେବେଳର ଜନପ୍ରିୟ ଜାତୀୟ ସଙ୍ଗୀତ 'ବନ୍ଦେ ମାତରମ୍' ଗାନକରାଯାଇଥିଲା । ସାଙ୍ଗେ ସାଙ୍ଗେ ସଭାଗୃହରେ ଯେତେ ସଭ୍ୟ ଓ ଦର୍ଶକ ପ୍ରଭୃତି ଥିଲେ ସମସ୍ତେ ଦଣ୍ଡାୟମାନ ହୋଇଥିଲେ । ମାତ୍ର ମାନ୍‌ସଫିଲ୍‌ଡ୍ ସାହେବ ଓ ତାଙ୍କ ପାଖରେ ବସିଥିବା ଅନ୍ୟ ଇଂରେଜ ଅଫିସର୍ ଜଣକ ଛିଡ଼ାହେଲେନାହିଁ । ଏହାପରେ ଯେତେବେଳେ ସଭ୍ୟ ପଣ୍ଡିତ ଗୋଦାବରୀଶ ମିଶ୍ର କାହିଁକି ସେମାନେ ଛିଡ଼ାହେଲେନାହିଁ ବୋଲି ଗୋଟିଏ ବୈଧାନିକ ପ୍ରଶ୍ନ ଉଠାଇଲେ, ତାହା ଦର୍ଶକ ଗ୍ୟାଲେରୀର ଛାତ୍ରମାନଙ୍କୁ ହଠାତ୍ ଏତେ ପ୍ରଭାବିତ କରିଥିଲା ଯେ ସେମାନେ 'ଲଜ୍ଜା ଲଜ୍ଜା' କହି ପାଟିକରିଥିଲେ । କିନ୍ତୁ ବାଚସ୍ପତି ବାରଣ କରିଥିଲେ । ସେହି ବୈଧାନିକ ପ୍ରଶ୍ନର ନିଷ୍ପତ୍ତିକୁ ବାଚସ୍ପତି ଆଉ ଗୋଟିଏ ଦିନକୁ ସ୍ଥଗିତ ରଖିଥିଲେ । ପରେ ଶୁଣିଥିଲି ବାଚସ୍ପତି ନିଷ୍ପତ୍ତି ଦେଇଥିଲେ ଯେ ଅଫିସର୍ ଗ୍ୟାଲେରୀକୁ ସଭାଗୃହର ଗୋଟିଏ ଅଂଶ ନୁହେଁ ବୋଲି ଧରାଯିବ । ତେଣୁ ସେଠାରେ ବସିଥିବା ବ୍ୟକ୍ତିମାନେ ପ୍ରଚ୍ଛନ୍ନ 'technically invisible' ବୋଲି ସେ କହିଥିଲେ । ପରବର୍ତ୍ତୀ କାଳରେ ସଂସଦୀୟ ପରମ୍ପରା ଓ ନିୟମାବଳୀ ପ୍ରସଙ୍ଗରେ ମୋର ଧାରଣା ସ୍ପଷ୍ଟତର ହୋଇ ଉକ୍ତ ବିଲାତି ହାକିମମାନଙ୍କ ବିରୁଦ୍ଧରେ ଉପୁଜିଥିବା ଭାବପ୍ରବଣ କ୍ରୋଧ ମନରୁ ଦୂରହୋଇଥିଲା । ପ୍ରଥମ ଦିନର ବୈଠକରେ ଶ୍ରୀ ନନ୍ଦକିଶୋର ଦାସ ଉପବାଚସ୍ପତି ରୂପେ ନିର୍ବାଚିତ ହେଲେ ବୋଲି ବାଚସ୍ପତି ଘୋଷଣାକଲେ ।

୧୯୩୫ ମସିହା ଭାରତ ଶାସନ ଆଇନରେ ରାଜ୍ୟପାଳଙ୍କୁ ଅତିରିକ୍ତ କ୍ଷମତା ଦିଆଯାଇଥିଲା । ସେଥିପାଇଁ ପ୍ରଥମେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ରାଜିହୋଇନଥିଲା । ଓଡ଼ିଶା ବିଧାନସଭାର ମୋଟ ଷାଠିଏଟି ଆସନରୁ କଂଗ୍ରେସ ଛତ୍ରିଶଟି ଆସନ ହାସଲ କରି ସଂଖ୍ୟାଗରିଷ୍ଠ ହୋଇଥିଲେ ମଧ୍ୟ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହୋଇନଥିଲା । ତେଣୁ ତତ୍କାଳୀନ ରାଜ୍ୟପାଳ ସାର୍ ଜନ୍ ହାବାକ୍ ବିଧାନସଭା ସଦସ୍ୟ ପାରଳାଖେମୁଣ୍ଡିର ମହାରାଜା ଗଜପତି କୃଷ୍ଣଚନ୍ଦ୍ର ଦେବଙ୍କୁ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ଆହ୍ୱାନ କରିଥିଲେ । କିଛିଦିନପାଇଁ ତାଙ୍କ ନେତୃତ୍ୱରେ ମନ୍ତ୍ରିମଣ୍ଡଳ ଚାଲିଲା । ସେ ଥିଲେ ପ୍ରଧାନମନ୍ତ୍ରୀ; ମାନଧାତା ଗୋରାଚାନ୍ଦ ପଟ୍ଟନାୟକ ଓ ମୌଲବୀ ଲତିଫୁର୍ ରହମନ୍ ମନ୍ତ୍ରି ଥିଲେ । ବ୍ୟବସ୍ଥା ସଭାରେ ସଂଖ୍ୟାଗରିଷ୍ଠ ସମର୍ଥନ ନଥିବାରୁ ବ୍ୟବସ୍ଥାସଭା ବୈଠକ ଡାକି ତାହାର ସମ୍ମୁଖୀନ ହେବାପାଇଁ ସେମାନଙ୍କର ସାହସ ନଥିଲା । ଇତିମଧ୍ୟରେ କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷଙ୍କ ସହିତ ବଡଲାଟଙ୍କ ପକ୍ଷରୁ ଏ ସମ୍ପର୍କରେ ଆଲୋଚନା ଚାଲିଥିଲା । ରାଜ୍ୟପାଳମାନେ ସେମାନଙ୍କ ସ୍ୱତନ୍ତ୍ର କ୍ଷମତାର ଅପବ୍ୟବହାର କରିବେନାହିଁ ଏବଂ ମନ୍ତ୍ରିମଣ୍ଡଳର ପରାମର୍ଶ ଅନୁସାରେ କାର୍ଯ୍ୟ କରିବେ ବୋଲି ପ୍ରତିଶ୍ରୁତି ମିଳିବାରୁ ରାଜ୍ୟମାନଙ୍କରେ ମନ୍ତ୍ରିମଣ୍ଡଳ ଗଠନ କରିବାପାଇ କଂଗ୍ରେସ ରାଜିହୋଇଥିଲା ।

ତଦନୁସାରେ ବିଶ୍ୱନାଥ ଦାସ ଓଡ଼ିଶାରେ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । କିନ୍ତୁ କ୍ଷମତାର ଲୋଭ ଛାଡ଼େ କିଏ ? ଓଡ଼ିଶାରେ ରାଜ୍ୟପାଳଙ୍କର ଅତିରିକ୍ତ କ୍ଷମତା ପ୍ରୟୋଗ ସମ୍ପର୍କରେ କେତେକ ସମସ୍ୟା ଉପୁଜିଥିଲା ଏବଂ କେତେକ କଥାରେ ସଙ୍କଟ ମଧ୍ୟ ସୃଷ୍ଟିହୋଇଥିଲା । ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ଏହାର ଦୃଢ଼ ପ୍ରତିବାଦ କରି କେତେ ଥର ଇସ୍ତଫା ଦେବାପାଇଁ ମଧ୍ୟ ଧମକ ଦେଇଥିଲେ । ପ୍ରଥମ ସଙ୍କଟ ଦେଖାଗଲା ଜଣେ ଅସ୍ଥାୟୀ ରାଜ୍ୟପାଳ ନିଯୁକ୍ତି ସଂପର୍କରେ । ସ୍ଥାୟୀ ରାଜ୍ୟପାଳ ସାର୍ ଜନ୍ ହାବାକ୍ କିଛି ଦିନ ଛୁଟି ନେଇ ଯିବାପାଇଁ ଚାହିଁଥିଲେ । କେନ୍ଦ୍ର ସରକାର ଛୁଟି ନେବାପାଇଁ ତାଙ୍କୁ ଅନୁମତି ଦେଇଥିଲେ ଏବଂ ତାଙ୍କ ସ୍ଥାନରେ ରେଭେନ୍ୟୁ କମିଶନର୍ ପଦବୀରେ କାର୍ଯ୍ୟ କରୁଥିବା ଡେନ୍ ସାହେବଙ୍କୁ ଅସ୍ଥାୟୀ ରାଜ୍ୟପାଳ ରୂପେ ନିଯୁକ୍ତି ଦେବାପାଇଁ ନିଷ୍ପତ୍ତି କରିଥିଲେ । ମାତ୍ର ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ବ୍ୟକ୍ତିଗତ ଭାବରେ ଏ ନିଯୁକ୍ତିର ଘୋର ବିରୋଧ କରିଥିଲେ । ତାଙ୍କର ଯୁକ୍ତି ଥିଲା, ଯେହେତୁ ମିଷ୍ଟର ଡେନ୍ ତାଙ୍କ ଅଧୀନରେ କମିଶନର୍ ଭାବରେ କାର୍ଯ୍ୟ କରୁଛନ୍ତି, ସେ ଓଡ଼ିଶାର ରାଜ୍ୟପାଳ ନିଯୁକ୍ତ ହେଲେ ଶାସନ ଖସଡ଼ା ଅନୁସାରେ ନିଜେ ପ୍ରଧାନମନ୍ତ୍ରୀ ତାଙ୍କର ଅଧସ୍ତନ ହେବେ । ତାଙ୍କ ମତରେ, ଏହା ଥିଲା ଅତି ଅସଙ୍ଗତ ଆଦେଶ । ତେଣୁ ତାହା ବରଦାସ୍ତ କରାଯାଇପାରିବନାହିଁ ବୋଲି ତାଙ୍କ ମନ୍ତ୍ରିମଣ୍ଡଳ ଘୋଷଣା କରିଥିଲେ । ଶ୍ରୀ ବିଶ୍ୱନାଥ ଦାସ ତାଙ୍କ ମନ୍ତ୍ରିମଣ୍ଡଳର ଏହି ମତ ରାଜ୍ୟପାଳଙ୍କୁ ଜଣାଇଦେଇଥିଲେ । ରାଜ୍ୟପାଳ ମନ୍ତ୍ରିମଣ୍ଡଳର ପରାମର୍ଶ ଅନୁସାରେ କାର୍ଯ୍ୟ କରି ଅସ୍ଥାୟୀ ରାଜ୍ୟପାଳ ନିଯୁକ୍ତିର ନିଷ୍ପତ୍ତିକୁ ପରିବର୍ତ୍ତନ କରିବାପାଇଁ ବଡ଼ଲାଟଙ୍କୁ ପରାମର୍ଶ ଦେବାପାଇଁ ପ୍ରଥମେ ମନାକରିଦେଲେ । ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ଓ ରାଜ୍ୟପାଳ ସାର୍ ଜନ୍ ହାବାକ୍‌ଙ୍କ ମଧ୍ୟରେ ବହୁ ଯୁକ୍ତିତର୍କ ହୋଇଥିଲା । ବିଶ୍ୱନାଥବାବୁ ଦୃଢ଼ ମତ ଦେଉଥାଆନ୍ତି ଯେ ତାଙ୍କ ମନ୍ତ୍ରିମଣ୍ଡଳର ପରାମର୍ଶ ଅନୁସାରେ ରାଜ୍ୟପାଳ କାର୍ଯ୍ୟ କରନ୍ତୁ । କିନ୍ତୁ ସାର୍ ଜନ୍ ହାବାକ୍ ସେଥିରେ ଅନିଚ୍ଛା ପ୍ରକାଶ କରିଥିଲେ । ଅବଶେଷରେ ବିଶ୍ୱନାଥବାବୁଙ୍କର ମନ୍ତ୍ରିମଣ୍ଡଳର ଦୃଢ଼ତା ପାଖରେ ସାର୍ ଜନ୍ ହାବାକ୍ ଓ କେନ୍ଦ୍ର ସରକାରଙ୍କୁ ମୁଣ୍ଡ ନୁଆଇଁବାକୁ ପଡ଼ିଥିଲା । ନିଷ୍ପତ୍ତି ପରିବର୍ତ୍ତନ କରାଗଲା ଏବଂ ଡେନ୍ ସାହେବ ଆଉ ରାଜ୍ୟପାଳ ହୋଇପାରିଲେନାହିଁ । ତା'ପରେ ସେ ଓଡ଼ିଶାରୁ ଅନ୍ୟତ୍ର ଚାଲିଯାଇଥିଲେ । ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ପ୍ରଥମରୁ ଏହି ପ୍ରକାର କେତେକ ଦାମ୍ଭିକ କାର୍ଯ୍ୟ ହେତୁ ସାରା ଭାରତରେ ତାଙ୍କ ସପକ୍ଷରେ ବଡ଼ ଅନୁକୂଳ ବାତାବରଣ ସୃଷ୍ଟି କରିପାରିଥିଲେ । କଟକରେ ଲୋକମୁଖରେ କଥା ଅଛି ଯେ, ବିଶ୍ୱନାଥବାବୁ କୌଣସି ଭୋଜିକୁ ପ୍ରଧାନ ସଚିବ ମି. ମାନ୍‌ସ୍‌ଫିଲ୍ଡ୍ ଓ ଅନ୍ୟ ଇଂରେଜ ଅଫିସର୍‌ମାନଙ୍କୁ ନିମନ୍ତ୍ରଣ କଲେ ସେମାନଙ୍କୁ ଓଡ଼ିଶାରେ ପ୍ରଚଳିତ ଢଙ୍ଗରେ ତଳେ ଆସନରେ ବସାଇ କଦଳୀପତ୍ରରେ ଖାଇବାକୁ ଦେଉଥିଲେ । କଥାଟା ସେତେବେଳେ କଟକରେ ଖୁବ୍ ଜୋର୍‌ରେ ପ୍ରଚାରିତ ହୋଇଯାଇଥିଲା । ନିଜର ଏତାଦୃଶ ସ୍ୱାଭିମାନ ଲାଗି ବିଶ୍ୱନାଥବାବୁଙ୍କୁ ସମସ୍ତେ ପ୍ରଶଂସା କରୁଥିଲେ ।

ବିଧାନସଭାର ସମସ୍ତ କାର୍ଯ୍ୟ ସୁଚାରୁରୂପେ ସମ୍ପାଦନ କରିବାରେ ବିଶ୍ୱନାଥ ଦାସ ବିଶେଷ ପାରଙ୍ଗମ ବୋଲି ସବୁ ମହଲରେ ବିଶ୍ୱାସ ଜନ୍ମିଥିଲା । ଇଂରାଜୀରେ ସେ ଜଣେ ଚାଣ୍ଠୁଆ ବକ୍ତା ଥିଲେ । ତାଙ୍କର ବକ୍ତୃତା ଅନ୍ୟମାନଙ୍କ ଉପରେ ଗଭୀର ପ୍ରଭାବ ପକାଉଥିଲା । ତାଙ୍କର ଯେଉଁ ଦିନ ବିଧାନସଭାରେ କୌଣସି ଗୁରୁତ୍ୱପୂର୍ଣ୍ଣ ବିଷୟ ଉପରେ କହିବାର ଥାଏ, ଆମେ ବହୁ ଛାତ୍ର ଯାଇ ବିଧାନସଭା ଗ୍ୟାଲେରୀରେ ବସିରହୁ ଶୁଣିବାପାଇଁ । ବିଗତ ସରକାରଙ୍କ ପ୍ରଣୀତ ଯେଉଁ ୧୯୩୫ ମସିହା ଶାସନ ବିଧାନ ଅନୁସାରେ ସେ ପ୍ରଧାନମନ୍ତ୍ରୀ ହୋଇ ସରକାର ଗଠନ କରିଥିଲେ, ସେହି ଶାସନ ବିଧାନକୁ ରଦ୍ଦ କରି ଭାରତର ନିର୍ବାଚିତ ଲୋକପ୍ରତିନିଧିମାନଙ୍କଦ୍ୱାରା ଗଠିତ ଏକ ଶାସନ ବିଧାୟକ ସଭାଦ୍ୱାରା ଭାରତୀୟମାନଙ୍କପାଇଁ ସମ୍ବିଧାନ ପ୍ରଣୟନ କରିବା ଆବଶ୍ୟକ ବୋଲି ବିଧାନସଭାର ପ୍ରଥମ ଅଧିବେଶନରେହିଁ ସେ ଗୋଟିଏ ପ୍ରସ୍ତାବ ଆଣିଥିଲେ । ଏହି ପ୍ରସ୍ତାବ ଆଗତ

କରି ସେ ଯେଉଁ ଭାଷଣ ଦେଇଥିଲେ ତାହା ଆଜିପର୍ଯ୍ୟନ୍ତ ମୋର ମନେଅଛି । ପ୍ରଧାନମନ୍ତ୍ରୀ ଥାଇ ଏବଂ ଶାସନର ଦାୟିତ୍ୱ ବହନ କରି ମଧ୍ୟ ସେ ଜଣେ ଲଢୁଆ ସ୍ୱାଧୀନତା ସଂଗ୍ରାମୀ ଭଳି ଭାଷଣ ଦେଉଥିଲେ । ଆୟାର୍ଲାଣ୍ଡ, ଇଜିପଟ ପ୍ରଭୃତି ଦେଶମାନଙ୍କ ଉପରେ ବିଦେଶୀ ସରକାର ଯେତେବେଳେ ସେମାନଙ୍କର ଶାସନ ଖସଡ଼ା ଲଦିଦେଉଥିଲେ ସେ ଦେଶର ଲୋକେ କିପରି ବିଦ୍ରୋହ କରୁଥିଲେ ଏବଂ ସେ ଦେଶର ବିଧାନସଭା କିପରି ତାକୁ ରଦ୍ଦ କରୁଥିଲେ ସେସବୁ କଥା ସେ ବଡ଼ ଓଜସ୍ୱିନୀ ଭାଷାରେ ଇଂରାଜୀରେ କହିଥିଲେ । ତାଙ୍କର ଭାଷଣ ଆମମାନଙ୍କ ମଧ୍ୟରେ ଖୁବ୍ ଉଦ୍ଦୀପନା ସୃଷ୍ଟି କରିଥିଲା । ଏହି ପ୍ରସ୍ତାବ ଉପରେ ସେଦିନ ନବକୃଷ୍ଣ ଚୌଧୁରୀଙ୍କର ଭାଷଣ ମଧ୍ୟ ସମସ୍ତଙ୍କ ମଧ୍ୟରେ ଖୁବ୍ ଉତ୍ତେଜନା ଓ ଉତ୍ସାହ ସୃଷ୍ଟିକରିଥିଲା । ନବବାବୁ ସେତେବେଳେ ପରିଚିତ ଥିଲେ ଜଣେ ଗଣୁଆ ପ୍ରଗତିବାଦୀ ଯୁବନେତା ହିସାବରେ । ତେଣୁ ତାଙ୍କ କଥା ଶୁଣିବାପାଇଁ ଆମ୍ଭମାନଙ୍କ ମହଲରେ ଖୁବ୍ ଆଗ୍ରହ ଥାଏ ।

ଓଡ଼ିଶା ବିଧାନସଭାର ବିବରଣୀ ପ୍ରତିଧ୍ୱନିତ ହୋଇଥିଲା ଓଡ଼ିଶାର ଗଡ଼ଜାତ ରାଜ୍ୟମାନଙ୍କରେ । ଓଡ଼ିଶାରେ କଂଗ୍ରେସଦ୍ୱାରା ଲୋକପ୍ରତିନିଧିମୂଳକ ଶାସନ ପ୍ରତିଷ୍ଠିତ ହେବା ପରେ ଗଡ଼ଜାତର ପ୍ରଜାମାନେ ରାଜାମାନଙ୍କର ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସଂଘବଦ୍ଧ ଭାବରେ ଆନ୍ଦୋଳନ କରିବାପାଇଁ ଉତ୍ସାହିତ ହୋଇଥିଲେ । ଢେଙ୍କାନାଳ, ତାଳଚେର, ରଣପୁର ଓ ନୀଳଗିରି ପ୍ରଭୃତି ତତ୍କାଳୀନ ଗଡ଼ଜାତ ରାଜ୍ୟମାନଙ୍କରେ ବ୍ୟାପକ ପ୍ରଜାଆନ୍ଦୋଳନ ହୋଇଥିଲା । ଢେଙ୍କାନାଳ, ତାଳଚେର ପ୍ରଭୃତି ରାଜ୍ୟମାନଙ୍କରେ ରାଜାମାନଙ୍କର ଅତ୍ୟାଚାର ଚରମ ସୀମାକୁ ଯାଇଥିଲା । ମୋର ମନେଅଛି, ନବକୃଷ୍ଣ ଚୌଧୁରୀ ସେତେବେଳେ ଓଡ଼ିଶାବାସୀଙ୍କୁ ଆହ୍ୱାନ କରିଥିଲେ ଢେଙ୍କାନାଳ, ତାଳଚେର ପ୍ରଭୃତି ରାଜ୍ୟମାନଙ୍କୁ ଯାଇ ସେଠାରେ ପ୍ରଜା ଆନ୍ଦୋଳନକୁ ସାହାଯ୍ୟ ସହଯୋଗ କରିବାପାଇଁ । ସେ ନିଜେ ଦଳେ ସ୍ୱେଚ୍ଛାସେବକଙ୍କୁ ସାଙ୍ଗରେ ଧରି ଗଡ଼ଜାତ ପ୍ରଜା ଆନ୍ଦୋଳନକୁ ସାହାଯ୍ୟ କରିବାପାଇଁ ଢେଙ୍କାନାଳ ଯାଇଥିଲେ । ମେରାମୁଣ୍ଡଳି ରେଳ ଷ୍ଟେସନ୍‌ଠାରେ ପହଞ୍ଚି ଢେଙ୍କାନାଳକୁ ଗଲାବେଳେ ତାଙ୍କୁ ଗିରଫ କରାଯାଇଥିଲା । ଏହାର ପ୍ରଭାବ ଗଡ଼ଜାତର ପ୍ରଜା ଆନ୍ଦୋଳନକୁ ଆହୁରି ଉତ୍ସାହ ଦେଇଥିଲା । ମୋଗଲବନ୍ଦିରୁ ଲୋକ ଆସି ସେମାନଙ୍କର ପ୍ରଜାମାନଙ୍କୁ ମତେଇ ଅରାଜକତା ସୃଷ୍ଟି କରୁଛନ୍ତି ବୋଲି ଭାଇସ୍‌ରାୟଙ୍କଠାରେ ଗଡ଼ଜାତର ରାଜାମାନେ ଗୁହାରି କରିଥିଲେ । ବାହାର ଲୋକଙ୍କ ହସ୍ତକ୍ଷେପ ବନ୍ଦ କରିବାପାଇଁ ସେମାନେ ପ୍ରିନ୍‌ସେସ୍ ପ୍ରୋଟେକ୍‌ସନ୍ ଆକ୍ଟର ଆଶ୍ରୟ ନେବାକୁ ଚାହିଁଥିଲେ । ମାତ୍ର ୧୯୩୫ ମସିହା ଭାରତ ଆଇନ ଅନୁସାରେ ଏହି ପ୍ରିନ୍‌ସେସ୍ ପ୍ରୋଟେକ୍‌ସନ୍ ଆକ୍ଟକୁ କାର୍ଯ୍ୟକାରୀ କରିବାର ଦାୟିତ୍ୱ ପ୍ରାଦେଶିକ ସରକାରଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ଅଗତ୍ୟା ଗଡ଼ଜାତ ଶାସକମାନେ ଓଡ଼ିଶା ସରକାରଙ୍କୁ ଅନୁରୋଧ କରିଥିଲେ ସେହି ଆଇନ୍‌କୁ କାର୍ଯ୍ୟକାରୀ କରିବାପାଇଁ । ରାଜ୍ୟପାଳ ସାର୍ ଜନ୍ ହବାକ୍ ତୁରନ୍ତ ଏ ଦିଗରେ କାର୍ଯ୍ୟାନୁଷ୍ଠାନ କରିବାକୁ ଚାହିଁଥିଲେ; ମାତ୍ର ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ସମ୍ମତ ହେଲେନାହିଁ । କଥାଟି ତାଙ୍କ ମନ୍ତ୍ରିମଣ୍ଡଳରେ ପକାଇଥିଲେ । ମନ୍ତ୍ରିମଣ୍ଡଳ ତାଙ୍କ ସହିତ ପୂରାପୂରି ଏକମତ ହେଲେ ଏବଂ ସେହି ନିଷ୍ପତ୍ତି ବିଶ୍ୱନାଥବାବୁ ରାଜ୍ୟପାଳଙ୍କୁ ଜଣାଇଦେଇଥିଲେ । ପ୍ରଜାପୀଡ଼କ ଗଡ଼ଜାତ ରାଜାମାନଙ୍କୁ ଘଣ୍ଟ ଘୋଡ଼ାଇ ରଖିବାକୁ ତ ବ୍ରିଟିଶ୍ ସରକାର କୁଣ୍ଠାବୋଧ କରୁନଥିଲେ; ବରଂ ଖୋଦ୍ ବିଲାତି ଲାଟ୍‌ସାହେବଙ୍କ ପକ୍ଷରୁ ଉପସ୍ଥିତ ପରିସ୍ଥିତିରେ ଏ ଦିଗରେ ଅଧିକ ତତ୍ପରତା ଲକ୍ଷ୍ୟ କରାଗଲା । ଏ ବିଷୟ ନେଇ ପ୍ରଧାନମନ୍ତ୍ରୀ ଓ ରାଜ୍ୟପାଳଙ୍କ ଭିତରେ ଖୁବ୍ ଟଣାଟଣି ଲାଗିଥିଲା । ମନ୍ତ୍ରିମଣ୍ଡଳ ଇସ୍ତଫା ଦେବାର ଧମକ ମଧ୍ୟ ସେତେବେଳେ ଉଠିଥିଲା । ସେତିକିବେଳେ ପ୍ରଶ୍ନ ଉଠିଥିଲା— ସରକାର କହିଲେ କାହାକୁ ବୁଝାଏ ? ଶାସନର ଦାୟିତ୍ୱ ତାଙ୍କ ଉପରେ ବୋଲି କହି ରାଜ୍ୟପାଳ ଗଡ଼ଜାତ ରାଜାମାନଙ୍କ ପକ୍ଷରୁ ଆସିଥିବା ଅନୁରୋଧକୁ କାର୍ଯ୍ୟକାରୀ କରିବାକୁ ଚାହିଁଥିଲେ । ରାଜ୍ୟପାଳ କୁଆଡ଼େ କହିଥିଲେ ଯେ

ସେ ହେଉଛନ୍ତି ଗଭର୍ଣ୍ଣର; ତେଣୁ ତାଙ୍କର ନିଷ୍ପତ୍ତି ସରକାରଙ୍କର ନିଷ୍ପତ୍ତି ବୋଲି ଧରିନେବା ଉଚିତ । ମାତ୍ର ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ କହିଲେ, "Your Excellency might be the Governor, but I am the Government." ଅର୍ଥାତ୍ ଆପଣ ଗଭର୍ଣ୍ଣର ହୋଇପାରନ୍ତି; ମାତ୍ର ଗଭର୍ଣ୍ଣମେଣ୍ଟ (ସରକାର) ମୋଠାରେ ନ୍ୟସ୍ତ । ମନ୍ତ୍ରିମଣ୍ଡଳ ଦୃଢ଼ ହୋଇ ରହିବାରୁ ଏ ଆଇନଟି କାର୍ଯ୍ୟକାରୀ ହୋଇପାରିଲାନାହିଁ । ଏହି କଥାଟି ସେତେବେଳେ ଦେଶର ସବୁ ଖବରକାଗଜମାନଙ୍କରେ ବଡ଼ ବଡ଼ ଅକ୍ଷରରେ ବାହାରିଥିଲା । ଆମ ଛାତ୍ର ମହଲରେ ବିଶ୍ୱନାଥବାବୁଙ୍କର ଅପୂର୍ବ ସାହସ ଓ ପ୍ରଶାସନିକ ବିଚକ୍ଷଣତା ଖୁବ୍ ପ୍ରଶଂସିତ ହୋଇଥିଲା । ସାରା ଭାରତବର୍ଷରେ ବିଶ୍ୱନାଥ ଦାସଙ୍କର ସମ୍ମାନ ମଧ ବୃଦ୍ଧି ପାଇଥିଲା ଏବଂ ସେ ଜଣେ ଅଭିଜ୍ଞ ଓ ଗଣୁଆ ପ୍ରଧାନମନ୍ତ୍ରୀ ବୋଲି ପ୍ରସିଦ୍ଧି ଲାଭ କରିଥିଲେ । ଭେଙ୍କଟଗିରି ବରାହଗିରି ରାଷ୍ଟ୍ରପତି ଥିବାବେଳେ ଥରେ ତାଙ୍କର ଓଡ଼ିଶା ଗସ୍ତ ସମୟରେ ରାଜଭବନ ଟୀ'ଭୋଜିରେ ବିଶିଷ୍ଟ ଅତିଥିମାନଙ୍କ ସହିତ ବାକ୍ୟାଳାପ କରୁଥିଲେ । ସେହି ଅବସରରେ ରାଷ୍ଟ୍ରପତି ଗିରି ବିଶ୍ୱନାଥ ଦାସ ପ୍ରଧାନମନ୍ତ୍ରୀ ଥିଲାବେଳେ ରାଜ୍ୟପାଳଙ୍କୁ ତାଙ୍କର ଉଲ୍ଲିଖିତ ଉତ୍ତରର ଦୃଷ୍ଟାନ୍ତ ଦେଇ ବିଶ୍ୱନାଥ ଦାସଙ୍କର ବିଚକ୍ଷଣ ସାମ୍ବିଧାନିକ କୌଶଳ ଓ ପ୍ରଶାସନିକ ଦୃଢ଼ତା ପ୍ରତି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ସେ ନିଜେ କିପରି ତଦ୍ୱାରା ଅନୁପ୍ରାଣିତ ହୋଇଥିଲେ ସେକଥା ମଧ ଉଲ୍ଲେଖ କରିଥିଲେ । ବିଶ୍ୱନାଥବାବୁଙ୍କର ଖ୍ୟାତି ସେତେବେଳେ 'ଆକାଶସ୍ପର୍ଶୀ' (Sky high) ଥିଲା ବୋଲି ସେ ମତ ଦେଇଥିଲେ ।

ପ୍ରଶାସନିକ ମୁଖ୍ୟ ଥାଇ ମଧ ବିଶ୍ୱନାଥ ଦାସ ସେହି ସରକାରୀ ଭୂମିକାରେ ବ୍ରିଟିଶ୍ ସରକାର ବିରୁଦ୍ଧରେ ବିଦ୍ରୋହୀ ପଦକ୍ଷେପ ନେବାର ଅନ୍ୟ ଖବରମାନ ବି ଆମେ ଶୁଣୁଥାଉ । ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ ଆମ ଦେଶର ସ୍ୱାଧୀନତା ସଂଗ୍ରାମରେ ଅରଟ ଓ ଖଦୀ କାର୍ଯ୍ୟକ୍ରମ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଉଥାଏ । ଗାନ୍ଧିଜୀଙ୍କ ଭାଷାରେ, ଅରଟ ଥିଲା ସ୍ୱାଧୀନତାର ନିଶାଣ, ଖଦୀ ଥିଲା ମୁକ୍ତିର ପୋଷାକ । ସେ ଅମଳରେ ଚରଖା ଓ ଖଦୀ କାର୍ଯ୍ୟକ୍ରମ ଗାଁଗହଳରେ ଗାନ୍ଧିଜୀଙ୍କର ବିପ୍ଳବବାଣୀର ବାର୍ତ୍ତାବହରୂପେ ସମ୍ମାନିତ ହେଉଥିଲା । ତେଣୁ ବ୍ରିଟିଶ୍ ସରକାରଙ୍କର ଏଥିପ୍ରତି ସ୍ୱାଭାବିକ ବୈରାଗ୍ୟ ଥାଏ । ଖଦୀ କାର୍ଯ୍ୟକ୍ରମର ପ୍ରସାର ପଛରେ ଅନ୍ୟ ଏକ ତାତ୍ତ୍ୱିକ ମାହାତ୍ମ୍ୟ ଥାଏ । ବିଲାତି ଜିନିଷ ବର୍ଜନ ଓ ସ୍ୱଦେଶୀ ବ୍ୟବହାରଦ୍ୱାରା ଖୋଦ୍ ବିଲାତର ଅର୍ଥନୀତିକୁ ଦୋହଲାଇ ଦେବାର ସନ୍ଦେଶ ମଧ ବହନକରୁଥାଏ ଖଦୀ ଓ ଗ୍ରାମୋଦ୍ୟୋଗ କାର୍ଯ୍ୟକ୍ରମ । ମୋଟଉପରେ ବିଲାତି ଶାସକଙ୍କ ଆଖିରେ ଏଇଟି ଥିଲା ଅତ୍ୟନ୍ତ ରାଜଦ୍ରୋହୀ କାର୍ଯ୍ୟ । ଏତିକିବେଳେ ପ୍ରଧାନମନ୍ତ୍ରୀ ବିଶ୍ୱନାଥବାବୁ ଓଡ଼ିଶା ସରକାରଙ୍କର ବଜେଟ୍ ଅଟକଳ ପ୍ରସ୍ତାବରେ ଖଦୀ ଓ ଚରଖା ପ୍ରସାର କାର୍ଯ୍ୟକ୍ରମପାଇଁ କିଛି ଅର୍ଥ ବ୍ୟବସ୍ଥା ଖଞ୍ଜିଦେଲେ । ଲାଲ୍‌କନା ଦେଖିଲେ ମାରଣା ଷଣ୍ଢ ହୁରୁଡ଼ିଲା ଭଳି ଲାଟ୍‌ସାହେବ ଏକବାରେ ହୁରୁଡ଼ିଗଲେ । ବଜେଟ୍ ଅଟକଳର ବିବରଣୀ (memorandum) ପ୍ରସ୍ତୁତ ହୋଇ ମନ୍ତ୍ରିମଣ୍ଡଳ ସଦସ୍ୟ ଓ ଲାଟ୍‌ଙ୍କୁ ବଣ୍ଟା ସରିଥାଏ । ସେତେବେଳେ ଲାଟ୍‌ସାହେବ ନିଜେ ମନ୍ତ୍ରିମଣ୍ଡଳ ବୈଠକରେ ସଭାପତିତ୍ୱ କରିବାର ପ୍ରଥା ଥିଲା । ବଜେଟ୍‌ର ରୂପରେଖ ସ୍ଥିରକରିବାର ଦାୟିତ୍ୱ ସରକାରଙ୍କର ହେଲେ ବି ଶେଷ ନିଷ୍ପତ୍ତି ରାଜ୍ୟପାଳଙ୍କର ବୋଲି ଲାଟ୍ ସାର୍ ଜନ୍ ହାବାକ୍ ଦାବି କରୁଥିଲେ । ମାତ୍ର ପ୍ରଧାନମନ୍ତ୍ରୀ ତାଙ୍କ ସହିତ ଏକମତ ହେଉନଥା'ନ୍ତି । ମନ୍ତ୍ରିମଣ୍ଡଳ ବୈଠକ ବସି ବଜେଟ୍ ଆଲୋଚନା ବେଳେ ଖଦୀ କାର୍ଯ୍ୟକ୍ରମପାଇଁ ବ୍ୟୟ ବରାଦ ଉପରେ ଖୁବ୍ ଯୁକ୍ତିତର୍କ ହେଲା । ଲାଟ୍‌ସାହେବ ତ ଏ ପ୍ରସ୍ତାବକୁ ଆଦୌ ପସନ୍ଦ କରୁନଥିଲେ; ତେଣୁ ଏ ସଂକ୍ରାନ୍ତ ନିଷ୍ପତ୍ତିକୁ ଏଡ଼ାଇଦେବା ଉଦ୍ଦେଶ୍ୟରେ ଏହି ବିଷୟଟି ଫଏସଲା ହେବା ପୂର୍ବରୁ "The meeting is over" ବୈଠକ ଶେଷ ହେଲା ବୋଲି କହିଦେଇ ଆସନରୁ ଉଠିପଡ଼ିଲେ । ଏଥିରେ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ଅତ୍ୟନ୍ତ କ୍ଷୁବ୍‌ଧ ହୋଇ ସଙ୍ଗେ ସଙ୍ଗେ ଘୋଷଣା କଲେ, "The meeting is postponed to meet at

my office." ଏହା ପରେ ପ୍ରଧାନମନ୍ତ୍ରୀଙ୍କର ଅଫିସ୍‌ରେ ପୁଣି ମନ୍ତ୍ରିମଣ୍ଡଳ ବୈଠକ ବସିଲା । ଖଦୀ କାର୍ଯ୍ୟକ୍ରମପାଇଁ ବ୍ୟୟ ବରାଦ ସହ ବଜେଟ୍ ଅଟକଳ ପାସ୍ କରି ପ୍ରଧାନମନ୍ତ୍ରୀ ବିଶ୍ୱନାଥବାବୁ ଲାଟ୍‌ଙ୍କ ପାଖକୁ ଫାଇଲ୍ ପଠାଇଦେଲେ । ପୁଣି ଗୋଟାଏ ସଙ୍କଟର ଆଶଙ୍କା କରି ଲାଟ୍ ହବାକ୍ ସାହେବ ବାଧହୋଇ ସେଥିରେ ସମ୍ମତି ଦେଲେ । ତା'ପରେ ଅବଶ୍ୟ ଲାଟ୍‌ସାହେବ କୁଆଡ଼େ ବଜେଟ୍ ପ୍ରସ୍ତୁତ କରିବାର ଦାୟିତ୍ୱ ସଂପର୍କରେ ତତ୍କାଳୀନ କେନ୍ଦ୍ର ସରକାରଙ୍କଠାରୁ ସ୍ପଷ୍ଟୀକରଣ ଚାହିଁଥିଲେ । ଉପର ମହଲରେ ବହୁ ବିଚାର ଆଲୋଚନା ପରେ ବଜେଟ୍ ରୂପରେଖ ସ୍ଥିର କରିବାର ଦାୟିତ୍ୱ ମନ୍ତ୍ରିମଣ୍ଡଳର ବୋଲି ଶ୍ରୀ ବିଶ୍ୱନାଥ ଦାସଙ୍କର ମତ ଜାହିର ରହିଲା । ଏ ସଂପର୍କରେ କେତେକ କଥା ମୁଁ ବିଶ୍ୱନାଥବାବୁଙ୍କଠାରୁ ମଧ୍ୟ ଶୁଣିଥିଲି ।

ବିଧାନସଭା ବୈଠକ ବସିଥିଲାବେଳେ ବହୁ ଛାତ୍ର ଦର୍ଶକ ଗ୍ୟାଲେରିରେ ଉପସ୍ଥିତ ରହି ବିଧାନସଭାର ଦୈନନ୍ଦିନ କାର୍ଯ୍ୟାବଳୀ ଲକ୍ଷ୍ୟ କରନ୍ତି । ଆଲୋଚନାକୁ ଅତି ଉତ୍ସାହରେ ମନୋଯୋଗ ଦେଇ ଶୁଣନ୍ତି । ଫଳରେ ଛାତ୍ରମାନେ ରାଜନୀତି ତଥା ସଂସଦୀୟ ଗଣତନ୍ତ୍ର ସମ୍ବନ୍ଧରେ ବ୍ୟାବହାରିକ ଶିକ୍ଷା ଅର୍ଜନ କରିବାର ସୁଯୋଗ ପାଉଥିଲେ— ଏ କଥାର ସୂଚନା ଆଗରୁ ଦେଇଛି । ବିଧାନସଭାର ବହୁ କଂଗ୍ରେସ ସଦସ୍ୟଙ୍କ ସହିତ ମୋର ସମ୍ପର୍କ ଥାଏ । ସମୟସମୟରେ କେତେକ ସଦସ୍ୟ ମୋର ଅତିଥି ହୋଇ ହଷ୍ଟେଲ୍‌ରେ ରହନ୍ତି । ବିଧାନସଭାର କାର୍ଯ୍ୟାବଳୀଦ୍ୱାରା ପ୍ରଭାବିତ ହୋଇ କଲେଜରେ ମଝିରେ ମଝିରେ ଛାତ୍ରମାନଙ୍କଦ୍ୱାରା ବିଧାନସଭା ବୈଠକର ନକଲ ବୈଠକ (Mock Assembly) ଅନୁଷ୍ଠିତ ହେଲା । ବୈଠକରେ ଛାତ୍ରମାନେ ଆଲୋଚନା କଲାବେଳେ ମନ୍ତ୍ରୀ ଓ ସଦସ୍ୟମାନଙ୍କୁ ଅନୁକରଣ କରନ୍ତି । ଦିନେ ଏଭଳି ଗୋଟିଏ ନକଲସଂସଦର ବୈଠକରେ ଟ୍ରେଜେରୀ ବେଞ୍ଚରେ ପ୍ରଧାନମନ୍ତ୍ରୀ ତଥା ଦଳପତି ଆସନରେ ମୁଁ ବସିଥାଏ । ବିଧାନସଭାରେ ଆଲୋଚନା ଓ ବକ୍ତୃତା କଲାବେଳେ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ କେତେକ ଶବ୍ଦର ଅନୁନାସିକ ଉଚ୍ଚାରଣ କରିବାର ମୁଁ ଲକ୍ଷ୍ୟ କରିଥାଏ । ତାଙ୍କୁ ନକଲ କରି ମୁଁ ସେହିପରି ଅନୁନାସିକ ଉଚ୍ଚାରଣ କରି ବକ୍ତୃତାଦେଇ ସମସ୍ତଙ୍କର ଚିତ୍ତବିନୋଦନ କରିଥିଲି । ଆଇନ କ୍ଲାସ୍‌ର 'ମୁଟ୍‌କୋର୍ଟ' ଭଳି ଆମ କଲେଜରେ 'ମକ୍ ଆସେମ୍ବ୍ଲି' ପିଲାମାନଙ୍କୁ ବାସ୍ତବ ଶିକ୍ଷା ଦେବାରେ ସହାୟକ ହେଉଥିଲା ।

## ଆଇନ୍ କଲେଜ ଧର୍ମଘଟ

ଛାତ୍ରସଂଘ ଆନୁକୂଲ୍ୟରେ ଛାତ୍ରମାନେ ସଙ୍ଗଠିତ ହେବାରେ ଲାଗିଲେ । ଛାତ୍ରସଂଘର ସଭ୍ୟ ଓ ସମର୍ଥକଙ୍କ ସଂଖ୍ୟା ବିଶେଷଭାବରେ ବୃଦ୍ଧି ପାଇବାକୁ ଲାଗିଲା । ଅନୁଷ୍ଠାନର ଅଗ୍ରଗତି ଆମ୍ଭମାନଙ୍କ ମନରେ ବିପୁଳ ଉତ୍ସାହ ସୃଷ୍ଟିକରିଥିଲା । ଛାତ୍ରମାନଙ୍କୁ ନେତୃତ୍ୱ ଦେବା ପାଇଁ ବହୁ ଛାତ୍ରନେତା ବାହାରିଥିଲେ । ସେମାନଙ୍କ ମଧ୍ୟରୁ ଯେଉଁମାନଙ୍କ ସହିତ ମୁଁ କାର୍ଯ୍ୟ କରିବାର ସୁଯୋଗ ପାଇଥିଲି ଏବଂ ସେମାନଙ୍କ ମଧ୍ୟରୁ ଯେଉଁମାନେ ସକ୍ରିୟ ଭାବରେ ଛାତ୍ର ଆନ୍ଦୋଳନ କାର୍ଯ୍ୟ କରୁଥିବା ମୋର ମନେପଡୁଛି, ସେମାନେ ହେଲେ ଅନନ୍ତ ପଟ୍ଟନାୟକ, ବିଶ୍ୱନାଥ ପଣ୍ଡାୟତ, ବୈଦ୍ୟନାଥ ରଥ, ବିଜୟଚନ୍ଦ୍ର ଦାସ, ମନମୋହନ ମିଶ୍ର, ଅଶୋକ ଦାସ, ଗଙ୍ଗାଧର ମହାପାତ୍ର, ସଚ୍ଚିଦାନନ୍ଦ ରାଉତରାୟ, ବିବୁଧେନ୍ଦ୍ର ମିଶ୍ର, ରାମକୃଷ୍ଣ ପତି, ସୂରଯମଲ ଶାହା, ଦୁର୍ଗାଚରଣ ମହାନ୍ତି, ଗୋବିନ୍ଦଚନ୍ଦ୍ର ମହାନ୍ତି, ରାମଚନ୍ଦ୍ର ମିଶ୍ର, ରବି ଘୋଷ, ନୃସିଂହ ଚରଣ ସାମନ୍ତସିଂହାର ଓ ମୋତିଲାଲ ତ୍ରିପାଠୀ । ଛାତ୍ରସଂଘର ଶକ୍ତି ଯେତେ ବୃଦ୍ଧିପାଉଥାଏ କର୍ତ୍ତୃପକ୍ଷଙ୍କ ବିରୋଧ ସେତେ ଅଧିକ ତୀବ୍ର ହେଉଥାଏ । ରେଭେନ୍‌ସା କଲେଜରେ କୌଣସି ସମସ୍ୟାପାଇଁ ଛାତ୍ର ଅଶାନ୍ତି ସୃଷ୍ଟିହେଲେ ସେଥିରେ ଆଇନ୍ କ୍ଲାସ୍‌ରେ ଅଧ୍ୟୟନ କରୁଥିବା ଛାତ୍ରମାନେ ବିଶେଷଭାବରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ । ଏହା କଲେଜ ଅଧ୍ୟକ୍ଷ ପରିଜାସାହେବଙ୍କ ଚକ୍ଷୁରେ ବଡ଼ ଅସହ୍ୟ ହୋଇଥିଲା । ତେଣୁ ଶୃଙ୍ଖଳା ନାମରେ ସେ ଆଇନ ଛାତ୍ରଙ୍କ

ଉପରେ ଅଧିକ କର୍ତ୍ତୃତ୍ୱ ବିସ୍ତାର କରିବାକୁ ଆରମ୍ଭକଲେ । ସେହିହେତୁ ଆଇନ କଲେଜରେ କେତେକ ସମସ୍ୟା ସୃଷ୍ଟି ହୋଇଥିଲା । ସେତେବେଳେ ଆଇନ କଲେଜ ବୋଲି ସ୍ୱତନ୍ତ୍ର କଲେଜ ନଥିଲା, ରେଭେନ୍ସା କଲେଜରେହିଁ ଆଇନ ପଢ଼ାଯାଉଥିଲା । ଯେଉଁ ଅଧ୍ୟାପକ ଆଇନ କ୍ଲାସ୍‌ଗୁଡ଼ିକର ଦାୟିତ୍ୱରେ ରହୁଥିଲେ ତାଙ୍କୁ ନାମକୁମାତ୍ର ଶିକ୍ଷାଗାରପାଇଁ ପ୍ରିନ୍ସପାଲ୍ କୁହାଯାଉଥିଲା । ସେତେବେଳେ ଏହିଭଳି ପ୍ରିନ୍ସପାଲ୍ ଥିଲେ ବାରିଷ୍ଟର ଜେ. ଏନ୍. ବାନାର୍ଜୀ । ସେ ଥିଲେ ଖୁବ୍ ଜ୍ଞାନୀ ଓ ବାଗ୍ମୀ । ବିଶେଷ ଦକ୍ଷତାର ସହିତ ସେ ପିଲାମାନଙ୍କୁ ଆଇନ ପଢ଼ାଉଥିଲେ । ଛାତ୍ରମାନେ ତାଙ୍କୁ ଭକ୍ତିକରୁଥିଲେ; କିନ୍ତୁ ତାଙ୍କ ପଦରେ କୌଣସି ସ୍ୱତନ୍ତ୍ର ସମ୍ମାନ କିମ୍ୱା ସ୍ୱୀକୃତି ନଥିଲା । ସେଥିପାଇଁ ତାଙ୍କ ମନରେ ଖୁବ୍ ଅସନ୍ତୋଷ ଥିଲା । ତା' ବ୍ୟତୀତ ଛାତ୍ର ବିଶୃଙ୍ଖଳା ବାହାନାରେ ରେଭେନ୍ସା କଲେଜ ଅଧ୍ୟକ୍ଷଙ୍କର ଅଯଥା ହସ୍ତକ୍ଷେପ ବାରିଷ୍ଟର ବାନାର୍ଜୀଙ୍କ ପକ୍ଷରେ ଅସହ୍ୟ ହୋଇପଡ଼ିଥିଲା । ତେଣୁ ଗୋଟିଏ ଅନୁଷ୍ଠାନ ହିସାବରେ ଆଇନ କଲେଜର ସ୍ୱତନ୍ତ୍ର ସ୍ଥିତି ଓ ଅଧ୍ୟକ୍ଷ ହିସାବରେ ତାଙ୍କର ମର୍ଯ୍ୟାଦା ସମ୍ବନ୍ଧରେ କର୍ତ୍ତୃପକ୍ଷଙ୍କୁ ଲେଖାଲେଖି କଲେ । ନିଜଠାରେ ସଂସ୍ଥାପିତ ଓ କେନ୍ଦ୍ରୀଭୂତ ଅଧିକାରରେ ଆଉ ଜଣକୁ ଅଂଶୀଦାର କରିବାକୁ ସହଜରେ କେହି ଚାହେଁନାହିଁ । ସୁତରାଂ ରେଭେନ୍ସା କଲେଜ ଭଳି ଗୋଟିଏ ବହୁଦିନର ପ୍ରତିଷ୍ଠିତ ସଂସ୍ଥାରେ ଆଉ ଜଣକୁ ଭାଗିଦାର କରିବା କଥାଟାକୁ ପରିଜାସାହେବ ଆଦୌ ପସନ୍ଦ କରିନଥିଲେ । ତେଣୁ ବାନାର୍ଜୀଙ୍କର ପ୍ରସ୍ତାବକୁ ସେ ସରକାରଙ୍କୁ ସୁପାରିଶ କରିନଥିଲେ । ସରକାର ମଧ୍ୟ ବାନାର୍ଜୀଙ୍କର ପ୍ରସ୍ତାବକୁ ପସନ୍ଦ କରିନଥିଲେ । ଛାତ୍ରମାନେ କିନ୍ତୁ ପ୍ରସ୍ତାବ ସପକ୍ଷରେ ମତ ପ୍ରକାଶ କରିଥିଲେ । ଏ ପ୍ରକାର ଅସୁନ୍ଦର ଓ ଅସ୍ୱସ୍ତିକର ପରିସ୍ଥିତି ହେତୁ ବାନାର୍ଜୀ ଆଇନ କଲେଜରେ ନାମକୁମାତ୍ର ଅଧ୍ୟକ୍ଷ ହୋଇ ରହିବାକୁ ଚାହିଁନଥିଲେ । ସେହି ମର୍ମରେ ସେ ସରକାରଙ୍କୁ ଗୋଟିଏ ଚିଠି ଲେଖିଥିଲେ । ତାଙ୍କ ଚିଠିର କେତେକ ଶବ୍ଦ, ଶୈଳୀ ଓ ଭାବଧାରା ସରକାରଙ୍କ ମତରେ ଆପତ୍ତିଜନକ ଥିଲା । ସରକାର ତାଙ୍କର ଚିଠିଟିକୁ ତାଙ୍କର ଇସ୍ତଫାପତ୍ର ବୋଲି ଗ୍ରହଣକରି ତାଙ୍କୁ ଅବ୍ୟାହତି ଦେବାକୁ ପ୍ରସ୍ତୁତ ବୋଲି ଜଣାଇଦେଇଥିଲେ । ଏ ଅବସ୍ଥାରେ ସେ ଆଉ ରହନ୍ତେ ବା କିପରି ? ତେଣୁ ସେ କଟକ ଛାଡ଼ି ଯିବାପାଇଁ ପ୍ରସ୍ତୁତ ହେଲେ । ଏ ସମ୍ବାଦ ପାଇଲାମାତ୍ରେ ଆଇନ ଛାତ୍ରମାନେ ଉତ୍ତେଜିତ ହୋଇଉଠିଥିଲେ । ବାରିଷ୍ଟର ବାନାର୍ଜୀ ଜଣେ ଜ୍ଞାନୀ ଓ ଛାତ୍ରବତ୍ସଳ ଅଧ୍ୟାପକ ଥିବାରୁ ତାଙ୍କୁ ଛାଡ଼ିବାକୁ ପିଲାମାନେ ନାରାଜ । ଏହା ହେଉଛି ୧୯୩୮ ମସିହାର ଘଟଣା । ସେତେବେଳେ ଶାସନର ମୁଖ୍ୟ ଥିଲେ କଂଗ୍ରେସନେତା ବିଶ୍ୱନାଥ ଦାସ । ଆଇନ ପଢୁଥିବା ଛାତ୍ରମାନଙ୍କର ଦାବି ହେଲା ଆଇନ କଲେଜକୁ ଗୋଟିଏ ସ୍ୱତନ୍ତ୍ର ଅନୁଷ୍ଠାନ ଭାବରେ ଗ୍ରହଣ କରାଯାଉ ଏବଂ ବାନାର୍ଜୀ ସାହେବ ସ୍ୱାଧୀନ ଭାବରେ ଅଧ୍ୟକ୍ଷ କାର୍ଯ୍ୟ କରିବାର ସୁଯୋଗ ପାଆନ୍ତୁ । ଏ ପ୍ରକାର ଦାବିଗୁଡ଼ିକୁ ସରକାର ନାପସନ୍ଦ କଲେ । ଆଇନଛାତ୍ରମାନେ ସଂଗଠିତଭାବରେ ଶ୍ରେଣୀ ବର୍ଜନ କଲେ । କିଛିଦିନ ଶ୍ରେଣୀ ବର୍ଜନ ଚାଲୁରହିଲା, ମାତ୍ର ସରକାର କିଛି ଶୁଣିଲେନାହିଁ । ବାନାର୍ଜୀ ସାହେବଙ୍କୁ କେନ୍ଦ୍ରକରି ଯେଉଁ ଧର୍ମଘଟ ହୋଇଥିଲା ସେଥିରୁ ଅପ୍ରତ୍ୟାଶିତ ଭାବରେ ଆମ୍ଭମାନଙ୍କର ଗୋଟିଏ ଲାଭ ହୋଇଥିଲା । ଏପର୍ଯ୍ୟନ୍ତ ରେଭେନ୍ସା କଲେଜରେ ସବୁ କଥାରେ ବୀରେନ୍ ମିତ୍ର ପରିଜାସାହେବଙ୍କ କଥାରେ ପରିଚାଳିତ ହେଉଥିଲେ । ଏହିଠାରେ ସେଥିରେ ବ୍ୟତିକ୍ରମ ଘଟିଲା । ଏଥିପାଇଁ ମୁଁ ଓ ବିଜୟଚନ୍ଦ୍ର ଦାସ ବିଶେଷ ଉଦ୍ୟମ କରିଥିଲୁ । ଦିନେ ପୂର୍ବ ଛାତ୍ରାବାସରେ ବିଜୟବାବୁଙ୍କ ରୁମ୍‌ରେ ଆମେ ଦୁହେଁ ବୀରେନ୍‌ବାବୁଙ୍କ ସହ କବାଟକିଳା ଆଲୋଚନା ଚଳାଇଲୁ । ଛାତ୍ରସଂଘର କାର୍ଯ୍ୟ, ଓଡ଼ିଶାର ରାଜନୀତି ଓ କଂଗ୍ରେସ ଭିତରେ ଗୋଷ୍ଠୀ ବିବାଦ ପ୍ରଭୃତି ବହୁତ କଥା ଆଲୋଚନା କଲୁ । ଆଇନ କଲେଜରେ ବୀରେନ୍‌ବାବୁଙ୍କ ବଡ଼ଭାଇ ମନି ମିତ୍ର ଅଧ୍ୟକ୍ଷ ବାନାର୍ଜୀଙ୍କର ଜଣେ ପ୍ରିୟ ଛାତ୍ର ଥିଲେ । ବାନାର୍ଜୀ ସାହେବଙ୍କ ସଂପର୍କରେ ବୀରେନ୍‌ବାବୁଙ୍କର ମଧ୍ୟ ଖୁବ୍ ଉଚ୍ଚ ଧାରଣା ଥାଏ । ତାଙ୍କର ହୃଦ୍‌ବୋଧ ହେଲା ଯେ ବାନାର୍ଜୀଙ୍କ ପ୍ରତି ସରକାର ତଥା ପରିଜାସାହେବ ସଂକୀର୍ଣ୍ଣ

ପ୍ରାଦେଶିକତାଦ୍ୱାରା ପ୍ରଭାବିତ ହୋଇ ଅନ୍ୟାୟ ଆଚରଣ କରୁଛନ୍ତି । ବୀରେନ୍‌ବାବୁ ଏଣିକି ଆମ ସହିତ ମିଶିଗଲେ ଏବଂ ତା'ପରେ ସେ ହେଲେ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ । ଏ ମିଳନରେ ଛାତ୍ରମାନଙ୍କ ମଧ୍ୟରେ ନୂତନ ଉତ୍ସାହ ସୃଷ୍ଟି ହୋଇଥିଲା ।

ଏହାପରେ ଆଇନ ଛାତ୍ରମାନେ ଛାତ୍ରସଂଘର ସାହାଯ୍ୟ ଚାହିଁଲେ । ଛାତ୍ରସଂଘର ନେତାମାନେ ପୂର୍ବ ଛାତ୍ରାବାସରେ ମୋ ରୁମ୍‌ରେ ଏକତ୍ରିତ ହେଲେ । ସେହିଠାରେ ଆଇନ ଛାତ୍ରମାନଙ୍କର ଅନୁରୋଧ ବିଚାର କରାଯାଇ ସ୍ଥିରହେଲା ଯେ ରେଭେନ୍‌ସା କଲେଜର ସମସ୍ତ ଛାତ୍ର ଆଇନ ଛାତ୍ରମାନଙ୍କର ଦାବିକୁ ସମର୍ଥନ ଜଣାଇ ଧର୍ମଘଟ କରିବେ । କଲେଜରେ ଧର୍ମଘଟ ଆରମ୍ଭ ହୋଇଗଲା ଏବଂ କଟକର ବିଭିନ୍ନ ସ୍କୁଲକୁ ବ୍ୟାପିଲା । ଦଳ ଦଳ ହୋଇ ଛାତ୍ରମାନେ ସରକାର ବିରୋଧୀ ଧ୍ୱନିମାନ ଦେଇ ଆଇନ କଲେଜ ଛାତ୍ରମାନଙ୍କର ଦାବିକୁ ସମର୍ଥନ ଜଣାଇଲେ, ଶୋଭାଯାତ୍ରାରେ ସହର ପରିକ୍ରମା କରିବାରେ ଲାଗିଲେ । ବେଳେବେଳେ ଆଇନ ଶୃଙ୍ଖଳା ଭଙ୍ଗହେଉଥାଏ ଏବଂ ପୁଲିସ୍ ସହିତ ସଂଘର୍ଷ ମଧ୍ୟ ହେଉଥାଏ । ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସଙ୍କର ସରକାରୀ ବାସଭବନ ଥିଲା ନିମିଚୌଡ଼ି ଛକ ପାଖରେ, ଗୋଟିଏ ଦୋତାଲା ପକ୍‌କା ଘରେ । ଦିନେ ମୋ ନେତୃତ୍ୱରେ ଗୋଟିଏ ବଡ଼ଧରଣର ଛାତ୍ର ଶୋଭାଯାତ୍ରା ତାଙ୍କ ବାସଭବନ ପାଖକୁ ଗଲା । ସେଠାରେ ତାଙ୍କୁ ଏକ ସ୍ମାରକପତ୍ର ଦେବା ସ୍ଥିରହୋଇଥିଲା । ସେତେବେଳେ ସେ ଘରେ ଥିଲେ; ମାତ୍ର ଛାତ୍ର ଶୋଭାଯାତ୍ରା ପାଖକୁ ଆସି ସ୍ମାରକପତ୍ରଟି ନେବାପାଇଁ ମନାକରିଦେଲେ । ଏଥିରେ ଛାତ୍ରମାନଙ୍କ ମଧ୍ୟରେ ଉତ୍ତେଜନା ପ୍ରକାଶ ପାଇଥିଲା । ତାଙ୍କ ଘର ହତାର ଗୋଟିଏ ପ୍ରାଚୀର ଉପରକୁ ମୁଁ ଚଢ଼ିଯାଇ ସେଠାରୁ ଭାଷଣ ଦେବାକୁ ଆରମ୍ଭ କରିଥିଲି । ଆମ କଥା ନବୁଝିବା ପର୍ଯ୍ୟନ୍ତ ତାଙ୍କ ବାସଭବନକୁ ଘେରିରହିବାପାଇଁ ମୁଁ ଛାତ୍ରମାନଙ୍କୁ ଅନୁରୋଧ କରିଥିଲି । ଖୁବ୍ ପାଟିଗୋଳ ହେଉଥାଏ । ବିଶ୍ୱନାଥବାବୁ ଗୋଟିଏ ଝରକା ଉହାଡ଼ରେ ଛିଡ଼ାହୋଇ ଆମ କଥା ଶୁଣୁଥିବାର ମୁଁ ଦେଖିପାରିଥିଲି ଏବଂ ଝରକା ଆଡ଼କୁ ମୁଁ ହାତ ଦେଖାଇ ସେହିଠାରେ ବିଶ୍ୱନାଥବାବୁ ଛିଡ଼ାହୋଇଛନ୍ତି ବୋଲି ଜଣାଇଦେଲି । କଥାଟା ବଡ଼ କୌତୂହଳ ସୃଷ୍ଟି କରିଥିଲା । ପିଲାମାନେ ଖୁବ୍ ଚିତ୍କାର କରିବାକୁ ଲାଗିଲେ । ବହୁ ଲାଠିଧାରୀ ପୁଲିସ୍ ଆସି ତାଙ୍କ ଘର ପାଖରେ ପହଞ୍ଚିଗଲେ । ଆମେମାନେ ସେଠାରେ ବହୁତ ସମୟ ଛିଡ଼ାହୋଇ ଥକିଯାଇଥିଲୁ । ଶେଷରେ ବାହାରୁ କେତେକ ଭଦ୍ରବ୍ୟକ୍ତି ଆସି ଆମମାନଙ୍କୁ ବୁଝାଇ ସୁଝାଇ ସେଠାରୁ ବିଦାକରିଥିଲେ । ସେମାନେ ଆମଠାରୁ ସ୍ମାରକପତ୍ରଟି ନେଇ ପ୍ରଧାନମନ୍ତ୍ରୀଙ୍କୁ ଦେଇଥିଲେ ।

ଧର୍ମଘଟ ଚାଲୁରହିଲା । ଅଶାନ୍ତି ବୃଦ୍ଧି ପାଇଲା । ପ୍ରଦେଶ କଂଗ୍ରେସରେ ସେତେବେଳେ ଗୋଷ୍ଠୀ ବିବାଦ ଥାଏ । ଗୋଟିଏ ଗୋଷ୍ଠୀର ନେତୃତ୍ୱ କରୁଥିଲେ ଶ୍ରୀ ହରେକୃଷ୍ଣ ମହତାବ; ଅନ୍ୟ ଗୋଷ୍ଠୀଟିର ନେତା ଥିଲେ ପଣ୍ଡିତ ନୀଳକଣ୍ଠ ଦାସ । ଓଡ଼ିଶା କଂଗ୍ରେସରେ ପ୍ରଧାନମନ୍ତ୍ରୀ ପଦପାଇଁ ନେତା ନିର୍ବାଚନକୁ କେନ୍ଦ୍ରକରି ଆଗରୁ ଯେଉଁ ଛକାପଞ୍ଝାର ସୂତ୍ରପାତ ହୋଇଥିଲା, ଏହି ଗୋଷ୍ଠୀବିବାଦ ତାହାରି ପରିଣତି ବୋଲି ଏଠାରେ ସୂଚନା ମାତ୍ର ଦେଉଛି, ପରେ ସେ ପ୍ରସଙ୍ଗ ଆସିବ । ଏହି ବିବାଦର ପ୍ରଭାବ ଛାତ୍ରମାନଙ୍କ ଉପରେ ମଧ୍ୟ ପଡୁଥାଏ । ମୁଁ ଓ ମୋ ସହିତ ଅଧିକାଂଶ ଛାତ୍ରନେତା ମହତାବଙ୍କ ନେତୃତ୍ୱ ପ୍ରତି ଆକୃଷ୍ଟ ଥିଲୁ । ପଣ୍ଡିତ ନୀଳକଣ୍ଠ ଦାସଙ୍କର ପୁତ୍ର ଅଶୋକ ଦାସ ଥିଲେ ଜଣେ ଆଇନଛାତ୍ର ଓ ଛାତ୍ରନେତା । ତାଙ୍କ ସହିତ ସୁରଜମଲ ଶାହା ଓ ବିବୁଧେନ୍ଦ୍ର ମିଶ୍ର ପ୍ରଭୃତି ଥିଲେ ପଣ୍ଡିତ ନୀଳକଣ୍ଠଙ୍କର ଖୁବ୍ ବିଶ୍ୱସ୍ତ । ମହତାବବାବୁ ପୂର୍ଣ୍ଣମାତ୍ରାରେ ବିଶ୍ୱନାଥ ଦାସଙ୍କର ମନ୍ତ୍ରିମଣ୍ଡଳକୁ ସାହାଯ୍ୟ ଓ ସମର୍ଥନ କରୁଥିଲେ । ମାତ୍ର ପଣ୍ଡିତ ନୀଳକଣ୍ଠ ଦାସ ବିଶ୍ୱନାଥ ଦାସଙ୍କର ମନ୍ତ୍ରିମଣ୍ଡଳକୁ ପସନ୍ଦ କରୁନଥିଲେ; ତେଣୁ ପରୋକ୍ଷରେ ବିରୋଧ କରୁଥିଲେ । ଧର୍ମଘଟର ଅବସାନପାଇଁ କେତେକ ବିଶିଷ୍ଟ ବ୍ୟକ୍ତି ମଧ୍ୟସ୍ଥତା କରିଥିଲେ । ସମାଧାନର ବାଟ ବାହାରକରିବାପାଇଁ ଛାତ୍ରମାନଙ୍କର ଗୋଟିଏ ପ୍ରତିନିଧିଦଳ ପ୍ରଧାନମନ୍ତ୍ରୀଙ୍କୁ ଦେଖାକରିବା କଥା ସ୍ଥିରହେଲା । ପ୍ରଧାନମନ୍ତ୍ରୀ ସମ୍ମତି ଦେଇଥିଲେ ।

ଛାତ୍ରସଂଘ ମଧ୍ୟରେ ଅଶୋକ ଦାସଙ୍କ ଗୋଷ୍ଠୀର ନେତାମାନେ ଆଶୁ ସମାଧାନ ସପକ୍ଷରେ ନ ଥିଲେ । ସେମାନେ ଭିତରେ ଭିତରେ ଚାହୁଁଥିଲେ ଅଶାନ୍ତି ଲାଗିରହୁ, ମନ୍ତ୍ରିମଣ୍ଡଳ ଦୁର୍ବଳ ହେଉ, ତା' ହେଲେ ନେତୃତ୍ୱ ପରିବର୍ତ୍ତନ ପ୍ରଶ୍ନ ଉଠିପାରେ । ବାସ୍ତବ କ୍ଷେତ୍ରରେ ମୋର ଏକ ସନ୍ଦିଗ୍ଧ ଅବସ୍ଥା । ଏକପକ୍ଷେ ଆମ ଲୋକପ୍ରତିନିଧି କଂଗ୍ରେସ ସରକାରର ନେତୃତ୍ୱର ସମ୍ମାନ, ଅନ୍ୟ ପକ୍ଷରେ ଆମ ଦାବି ଓ ସଙ୍ଗଠନର ମର୍ଯ୍ୟାଦା । ମହତାବବାବୁଙ୍କର ପ୍ରଭାବ ମଧ୍ୟ ମୋ ଉପରେ ଥାଏ । ତେଣୁ ଆଶୁ ସମାଧାନର ଉପାୟ ବାହାରକରିବାପାଇଁ ମୁଁ ଅନ୍ୟମାନଙ୍କୁ ପ୍ରବର୍ତ୍ତାଉଥାଏ ।

ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସଙ୍କୁ ଦେଖାକରିବା ଦିନ ସ୍ଥିରହେଲା । ପ୍ରତିନିଧିଦଳରେ କେଉଁମାନେ ରହିବେ ସେ କଥା ମଧ୍ୟ ଆଲୋଚିତ ହୋଇ ଠିକ୍ ହେଲା । ସେହି ପ୍ରତିନିଧିଦଳରେ ମୁଁ, ବିଜୟଚନ୍ଦ୍ର ଦାସ, ବିଶ୍ୱନାଥ ପଣାୟତ, ଅନନ୍ତ ପଟ୍ଟନାୟକ, ବୈଦ୍ୟନାଥ ରଥ, ମନମୋହନ ମିଶ୍ର ଓ ମନୀ ମିତ୍ର ପ୍ରଭୃତି ଥିଲୁ । ପ୍ରତିନିଧିଦଳରେ ଅଶୋକ ଦାସ ସଭ୍ୟ ନ ଥିବାରୁ କେତେକ ଅସନ୍ତୋଷ ପ୍ରକାଶ କରିଥିଲେ । ମାତ୍ର ଜାଣିଶୁଣି ଆମେ ଅଶୋକବାବୁଙ୍କର ନାମ ପ୍ରତିନିଧିଦଳରୁ ବାଦ୍ ଦେଇଥିଲୁ; କାରଣ ବ୍ୟକ୍ତିଗତଭାବରେ ସେ ବିଶ୍ୱନାଥ ଦାସଙ୍କର ଘୋର ବିରୋଧୀ ଓ କଟୁ ସମାଲୋଚକ ଥିଲେ । ତେଣୁ ବିଶ୍ୱନାଥବାବୁଙ୍କ ସହ ଆଲୋଚନାବେଳେ ତାଙ୍କର ଉପସ୍ଥିତି ସମସ୍ୟାକୁ ସମାଧାନ କରିବା ପରିବର୍ତ୍ତେ ଅଧିକ ଜଟିଳ କରିପାରେ ବୋଲି ଆମ୍ଭେମାନେ ଆଶଙ୍କା କରିଥିଲୁ । ନିର୍ଦ୍ଦିଷ୍ଟ ଦିନ ପ୍ରତିନିଧିଦଳ ବିଶ୍ୱନାଥବାବୁଙ୍କୁ ତାଙ୍କ ଅଫିସ୍‌ରେ ସାକ୍ଷାତ୍ କରିଥିଲେ । ଆଲୋଚନା କ'ଣ ହେଉଛି ଜାଣିବାପାଇଁ ବହୁ ଛାତ୍ର ଅଫିସ୍ ପାଖରେ ଉପସ୍ଥିତ ଥିଲେ । ଘର ଭିତରେ ପ୍ରଧାନମନ୍ତ୍ରୀଙ୍କ ସହ ଆଲୋଚନା ଆରମ୍ଭ ହେଲା । ଅଫିସ୍ ଟେବୁଲ୍‌ର ଗୋଟିଏ ପାଖରେ ସେ ବସିଥାଆନ୍ତି । ଟେବୁଲ୍‌ର ଅନ୍ୟପଟେ ପ୍ରଧାନମନ୍ତ୍ରୀଙ୍କ ଆଡ଼କୁ ମୁହଁକରି ଆମେ ବସିଥାଉଁ । ପ୍ରଧାନମନ୍ତ୍ରୀ ଖୁବ୍ ଧୈର୍ଯ୍ୟର ସହ ଆମର କଥା ଶୁଣୁଥାଆନ୍ତି । ଆଇନ କଲେଜର ସ୍ୱତନ୍ତ୍ର ସ୍ଥିତି ବିଚାର୍ଯ୍ୟ ବୋଲି ସେ କହିଥିଲେ । ମାତ୍ର ଅଧ୍ୟକ୍ଷ ବାନାର୍ଜୀଙ୍କ ସମ୍ପର୍କରେ ସେ ଗଭୀର ଅସନ୍ତୋଷ ପ୍ରକାଶ କରିଥିଲେ । ବାନାର୍ଜୀ ସାହେବ ସରକାରଙ୍କୁ ଲେଖିଥିବା ଚିଠିଟି ତାଙ୍କ ମତରେ ବଡ଼ ଆପତ୍ତିଜନକ ଥିଲା, ତେଣୁ ବାନାର୍ଜୀ ସାହେବ ଉକ୍ତ ଚିଠିଟି ପ୍ରତ୍ୟାହାର ନ କଲା ପର୍ଯ୍ୟନ୍ତ ତାଙ୍କ ବିଷୟ କିଛି ଆଲୋଚନା ନକରିବାକୁ ସେ ପରାମର୍ଶ ଦେଇଥିଲେ । ଏହି ସମୟରେ ଗୃହ ଭିତରକୁ ହଠାତ୍ ପ୍ରବେଶକରି ଏକ ଝଞ୍ଜା ସୃଷ୍ଟି କରିଦେଲେ ବନ୍ଧୁ ଅଶୋକ ଦାସ । ସମସ୍ତଙ୍କୁ ପଛକୁ ଠେଲିଦେଇ ସେ ଆସି ଉପସ୍ଥିତ ହେଲେ ଟେବୁଲ୍ ପାଖରେ । ଆପେ ଆପେ ଗୁଡ଼ିଏ ଅବାନ୍ତର ଯୁକ୍ତି ଆରମ୍ଭକରି ଟେବୁଲ ବାଡ଼େଇ, ହାତ ହଲେଇ, ଚିତ୍କାର କରି କହିଥିଲେ ଯେ ଅଧ୍ୟକ୍ଷ ବାନାର୍ଜୀ କଦାପି ନିଜର ଚିଠି ପ୍ରତ୍ୟାହାର କରିବେ ନାହିଁ ଏବଂ ଏ ପ୍ରକାର କଥା କହିବା ଅର୍ଥ ଛାତ୍ରମାନଙ୍କୁ ଅପମାନିତ କରିବା । ତାଙ୍କର ଉପସ୍ଥିତି ଆମ ସମସ୍ତଙ୍କୁ ବିସ୍ମିତ କରିଥିଲା । ତାଙ୍କ କଥା ଶୁଣି ବିଶ୍ୱନାଥବାବୁ ଭୟଙ୍କର ବିରକ୍ତ ହୋଇଥିଲେ । ସେ ଯେତେ ବିରକ୍ତିଭାବ ପ୍ରକାଶ କରୁଥାଆନ୍ତି ଅଶୋକବାବୁ ତାଙ୍କୁ ଆହୁରି ବେଶି ଚିଡ଼େଇବାକୁ ଉଦ୍ୟମ କରୁଥାଆନ୍ତି । ଆମର ଆଶଙ୍କାଟା ସତ୍ୟରେ ପରିଣତ ହେଲା । ବିଶ୍ୱନାଥବାବୁ ଅତି ବିରକ୍ତ ଓ ଉତ୍ତେଜିତ ହୋଇ କହିଲେ ଯେ ଧର୍ମଘଟର ଅବସାନ ନହେଲେ ଆଇନ କଲେଜକୁ ଉଠାଇଦେବାକୁ ସେ କୁଣ୍ଠିତ ହେବେ ନାହିଁ; "I can afford to abolish the college" ବୋଲି ସେ କହିଥିଲେ । ଏହା ଶୁଣି ଅଶୋକବାବୁ ଅତି କଟୁ ଭାଷାରେ ତାଙ୍କୁ ତିରସ୍କାର କରିବାକୁ ଲାଗିଲେ । ଆମେ ଯେତେ ବାରଣ କଲେ ମଧ୍ୟ ସେ ଆଦୌ ଭ୍ରୂକ୍ଷେପ ନକରି ତାଙ୍କର ଭିତିରି ଉଦ୍ଦେଶ୍ୟ ସାଧନ କରିବାରେ ଲାଗିପଡ଼ିଥାଆନ୍ତି । ଆମକୁ ଲକ୍ଷ୍ୟ କରି ଅଶୋକବାବୁ କହିଲେ, ଖୋସାମତଦ୍ୱାରା କାର୍ଯ୍ୟ ହାସଲ ହୁଏନାହିଁ, ଶକ୍ତି ଦେଖାଇ କାର୍ଯ୍ୟ ହାସଲ କରିବାକୁ ପଡ଼ିବ । ଏହି ଗଣ୍ଡଗୋଳସତ୍ତ୍ୱେ ବିଶ୍ୱନାଥବାବୁ ଉଠିଯିବାବେଳେ ସେ ଆଗରୁ ଯାହା କଥା ଦେଇଥିଲେ ତଦନୁସାରେ କାର୍ଯ୍ୟ ହେଲେ ଅନ୍ୟ କଥାଗୁଡ଼ିକ ବୁଝିବେ ବୋଲି କହି

ଗଲିଗଲେ । ଆମେ କ'ଣ କରିବୁ ଓ କାହାକୁ ଦୋଷଦେବୁ ବୁଝିପାରିଲୁନାହିଁ । ସମସ୍ୟାଟି ଏକ ସମ୍ମାନଜନକ ସମାଧାନ ଆଡ଼କୁ ଗତିକରୁଥିଲା; ମାତ୍ର ଅଶୋକବାବୁ ଜାଣିଶୁଣି ଦିଅଁ ଗଢୁ ଗଢୁ ବାନର ଗଢ଼ିବା ଭଳି କାମଟିଏ କଲେ ।

## ଛାତ୍ରବତ୍ସଳ ବାନାର୍ଜୀଙ୍କ ବିଦାୟ

ଅଶୋକବାବୁଙ୍କ ଚକ୍ରାନ୍ତ ବୁଝିବାରେ ଆମର କିଛି ଅସୁବିଧା ହେଲାନାହିଁ । ତେବେ ବର୍ତ୍ତମାନ ପରିସ୍ଥିତିରେ ଆମର କର୍ତ୍ତବ୍ୟ କ'ଣ ସେ ବିଷୟରେ ଆଲୋଚନା କଲୁ । ସ୍ଥିର ହେଲା ଯେ ବାନାର୍ଜୀ ସାହେବଙ୍କୁ ଅନୁରୋଧ କରିବୁ ଆଉ ଥରେ ସେ ସମସ୍ତ କଥା ବୁଝାଇ ଗୋଟିଏ ଚିଠି ଲେଖିବାକୁ; ଯାହାଦ୍ୱାରା ସରକାର ସହିତ ଘଟିଥିବା ଭୁଲ୍ ବୁଝାମଣାଟା ଦୂରୀଭୂତ ହୋଇପାରିବ । ବାନାର୍ଜୀ ସାହେବଙ୍କ ପାଖକୁ ଆମେମାନେ ଗଲୁ । ସେ ଆମମାନଙ୍କ ସହିତ ଅତି ସୁନ୍ଦର ବ୍ୟବହାର କଲେ । ତାଙ୍କୁ କେନ୍ଦ୍ରକରି ଯେଉଁସବୁ ଅଶାନ୍ତି ସୃଷ୍ଟି ହୋଇଥିଲା ସେଥିପାଇଁ ସେ ଦୁଃଖ ପ୍ରକାଶ କରିଥିଲେ । କିନ୍ତୁ ସରକାରଙ୍କୁ ଆଉ ଚିଠି ଲେଖିବାକୁ ଆଦୌ ରାଜି ହୋଇନଥିଲେ । କଟକ ଛାଡ଼ି କଲିକତା ଯିବାପାଇଁ ସେ ପ୍ରସ୍ତୁତ ହେଉଥିବାର ଆମ୍ଭେମାନେ ଲକ୍ଷ୍ୟକଲୁ । ତାଙ୍କର ସିଦ୍ଧାନ୍ତ ସେ ଆଉ ପରିବର୍ତ୍ତନ କରିପାରିବେ ନାହିଁ ତେଣୁ ସେ ବିଷୟରେ ତାଙ୍କୁ ଆଉ କିଛି ନକହିବାକୁ ସେ ଅନୁରୋଧ କରିଥିଲେ । ଆମମାନଙ୍କ ଆଖିରେ ଲୁହ ଆସିଗଲା । ତାଙ୍କ ସମ୍ମାନ ଉପରେ ବଡ଼ ଆଘାତ ଲାଗିଥିଲା ପରି ଆମେମାନେ ଅନୁଭବ କଲୁ । ଯେଉଁଦିନ ସେ ପୁରୀ ଏକ୍ସପ୍ରେସ୍ ଯୋଗେ କଟକରୁ କଲିକତା ଗଲେ ସେଦିନ କଟକ ଷ୍ଟେସନ୍‌ର ଦୃଶ୍ୟ ଅତି ମର୍ମସ୍ପର୍ଶୀ । ଛାତ୍ରମାନଙ୍କଦ୍ୱାରା କଟକ ଷ୍ଟେସନ୍ ଭରପୂର । ସେମାନଙ୍କ ମନରେ ଅକଥନୀୟ ଦୁଃଖ । ଟ୍ରେନ୍ ଛାଡ଼ିଲା । ବାନାର୍ଜୀ ସାହେବ ଲୁହ ଛଳଛଳ ଆଖିରେ ଆମମାନଙ୍କୁ ଆଶୀର୍ବାଦ କରି ବିଦାୟ ନେଲେ । ପ୍ରାୟ ଦୁଇ ବର୍ଷ ପରେ ରେଭେନ୍‌ସା କଲେଜରୁ ବହିଷ୍କୃତ ହୋଇ ମୁଁ ତାଙ୍କ ସହିତ କଲିକତାରେ ସାକ୍ଷାତ୍ କରିଥିଲି । ସେତେବେଳେ ସେ ମୋତେ ସାହାଯ୍ୟ କରିନଥିଲେ ମୋର ପାଠପଢ଼ା ବୋଧହୁଏ ଇତି ହୋଇଯାଇଥାଆନ୍ତା । ବୁଦ୍ଧିମାନ୍ ବନ୍ଧୁ ଅଶୋକବାବୁ ଏକା ଟେକାକେ ଦୁଇଟି ଶିକାର କଲେ; ଛାତ୍ରବତ୍ସଳ ବାନାର୍ଜୀ ତ ବିଦାୟନେଲେ, ପୁଣି ତା' ସହିତ ଛାତ୍ରମହଲରେ ବିଶ୍ୱନାଥ ଦାସଙ୍କ ମନ୍ତ୍ରୀମଣ୍ଡଳ ବିରୁଦ୍ଧରେ ଅସନ୍ତୋଷ ବଢ଼ିଲା ।

ଏଭଳି ପ୍ରତିକୂଳ ପରିସ୍ଥିତି ପରେ କ'ଣ କର୍ତ୍ତବ୍ୟ ? ସମସ୍ତଙ୍କ ମନରେ ସେହି ପ୍ରଶ୍ନ । ଧର୍ମଘଟ ସମୟରେ ବହୁ ଛାତ୍ରଙ୍କ ଉପରେ ଶୃଙ୍ଖଳାଗତ ଶାସ୍ତି ବିଧାନ କରାଯାଇଥିଲା । ବହୁ ପିଲାଙ୍କ ନାମ ସ୍କୁଲ କଲେଜରୁ କାଟିଦିଆଯାଇଥିଲା, ଆଉ କେତେକଙ୍କ ନାମରେ ସତ୍ୟାଗ୍ରହ ପ୍ରଭୃତି ନାନା ଅଭିଯୋଗରେ ପୁଲିସ କେସ୍ ମଧ୍ୟ ହୋଇଥିଲା । ଛାତ୍ରସଂଘ କାର୍ଯ୍ୟକାରୀ କମିଟି ଓ ଛାତ୍ର କ୍ରିୟାନୁଷ୍ଠାନ କମିଟିର ମିଳିତ ବୈଠକ ଓ ବହୁ ଆଲୋଚନା ପରେ ନିଷ୍ପତ୍ତି ନିଆଗଲା ଯେ ଆଇନ କଲେଜର ସ୍ୱତନ୍ତ୍ର ସ୍ଥାନ ବିଷୟରେ ବିଚାର କରିବାପାଇଁ ସରକାରଙ୍କୁ ସମୟ ଦିଆଯାଇପାରେ, ମାତ୍ର ଛାତ୍ରମାନଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ ଶାସ୍ତିବିଧାନ ଓ ମକଦ୍ଦମା ପ୍ରତ୍ୟାହୃତ ନହେଲେ ଧର୍ମଘଟ ଚାଲୁରହିବ । ସରକାର ଏହି ଦାବି ଗ୍ରହଣ କରିବା ନିଷ୍ପତ୍ତି ଘୋଷଣା କରିଦେବା ପରେ ଛାତ୍ର ଧର୍ମଘଟ ପ୍ରତ୍ୟାହୃତ ହୋଇଥିଲା । ଅବଶ୍ୟ ଛାତ୍ରମାନଙ୍କ ମନରେ ଟିକିଏ ନୈତିକ ଅବସାଦ ଆସିଥିଲା । ଆମେମାନେ ଛାତ୍ରମାନଙ୍କ ପ୍ରତି ବିଶ୍ୱାସଘାତକତା କଲୁ ବୋଲି ଅଶୋକବାବୁ ଓ ତାଙ୍କ ଗୋଷ୍ଠୀ ପକ୍ଷରୁ ପ୍ରଚାର କରାଗଲା ।

ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସଙ୍କ ସହିତ ଆଇନ କଲେଜ ଓ ଛାତ୍ର ଧର୍ମଘଟ ବିଷୟରେ ପ୍ରତିନିଧିମାନଙ୍କ ଆଲୋଚନାବେଳେ ଅଶୋକ ଦାସ ଯେଉଁ ପରିସ୍ଥିତି ସୃଷ୍ଟି କରିଥିଲେ ସେହିଭଳି ଆଉ ଗୋଟିଏ ଘଟଣା ମୋର ମନେପଡ଼େ । ଛାତ୍ର ଆନ୍ଦୋଳନ, ଛାତ୍ର ଧର୍ମଘଟ, ଛାତ୍ର ସତ୍ୟାଗ୍ରହ ସମ୍ପର୍କରେ ୧୯୩୮, ୧୯୩୯ ଓ ୧୯୪୦ ମସିହାରେ ବହୁ ଛାତ୍ରଙ୍କୁ ପ୍ରାୟ ଦୁଇ ତିନି ଥର

କାରାବରଣ କରିବାକୁ ପଡ଼ିଥିଲା । ଥରେ ଆମେ ସମସ୍ତେ ଗିରଫ ହୋଇ କଟକ ଜେଲ୍‌ରେ ଥାଉ । ଆମ ସାଙ୍ଗରେ ଅଶୋକ ବାବୁ ମଧ୍ୟ ଗିରଫ ହୋଇ ଜେଲ୍‌ରେ ଥାଆନ୍ତି । ଜେଲ୍‌କୁ ଗଲା ପରେ ଆମେ କେତେକ ଛାତ୍ର ଚାହିଁଲୁ ଯେ ଅନ୍ତତଃ ଜେଲ୍ ଭିତରେ ଜେଲ୍‌ର ନିୟମ ମାନି ଟିକେ ଶାନ୍ତିରେ ଦିନ କାଟିବୁ । କିନ୍ତୁ ଅଶୋକବାବୁଙ୍କର ମସୁଧା ଅନ୍ୟ ପ୍ରକାର ଥିଲା ବୋଲି ଜଣାଗଲା । ସେ କହିଥିଲେ, ଛାତ୍ରମାନେ ରାଜନୈତିକ ବନ୍ଦୀ, ତେଣୁ ରାତିରେ କାହିଁକି ସେମାନଙ୍କୁ ଦ୍ୱାର ବନ୍ଦକରି ରଖାଯିବ ? ସରକାରଙ୍କର ଏ କାର୍ଯ୍ୟକୁ ନିନ୍ଦା କରି ଏହା ଗୋଟିଏ ପ୍ରତିକ୍ରିୟାଶୀଳ ସରକାରର କାର୍ଯ୍ୟ ବୋଲି ଆଖ୍ୟା ଦେଇ ତା ବିରୁଦ୍ଧରେ ପ୍ରଗତିଶୀଳ ଛାତ୍ରସମାଜ ସ୍ୱର ଉତ୍ତୋଳନ କରିବା ଉଚିତ ବୋଲି ସେ କହିଥିଲେ । ତେଣୁ ଜେଲ୍‌ରେ ଥିବା ସମସ୍ତ ଛାତ୍ରଙ୍କୁ ସେ ମତେଇବାରେ ଲାଗିଲେ । ଜେଲ୍ କର୍ତ୍ତୃପକ୍ଷଙ୍କ ସହିତ ଅଶୋକବାବୁ କଥାବାର୍ତ୍ତା କରିବା ପରେ ଜଣେଇଦେଲେ ଯେ ଛାତ୍ରମାନେ ରାତ୍ରିରେ ପ୍ରକୋଷ୍ଠ ଭିତରକୁ ପଶିବେ ନାହିଁ । ଜେଲ୍ ଭିତରେ ଏକପ୍ରକାର ସଂଘର୍ଷ ଆରମ୍ଭ ହୋଇଗଲା । ଆମେ ଯେଉଁମାନେ ପ୍ରଥମରୁ ଭିନ୍ନମତ ପୋଷଣ କରୁଥିଲୁ, ସେମାନଙ୍କ ସହିତ ସହଯୋଗ କରିବାକୁ ବାଧହେଲୁ । କ୍ଷେତ୍ରବାସୀ ହୋତା ସେତେବେଳେ ଜେଲର୍ ଥିଲେ । ଜେଲ୍ କର୍ତ୍ତୃପକ୍ଷ ବହୁତ ବୁଝାଇଲେ ଜେଲ୍ କୋଠରି ଭିତରକୁ ଚାଲିଯିବାପାଇଁ, କିଛି ଫଳ ହେଲାନାହିଁ । ବେଶି ରାତି ହୋଇଯାଇଥିଲା । ତା'ପରେ ବାଜିଲା ପାଗଳା ଘଣ୍ଟା । ବନ୍ଧୁକ ଓ ଲାଠିଧାରୀ ବହୁ ଜେଲ୍ ୱାଡ଼ର ଭୁସ୍‌ଭାସ୍ ଆସି ପହଞ୍ଚିଗଲେ ଏବଂ ଶୀଘ୍ର ପ୍ରକୋଷ୍ଠ ଭିତରକୁ ନପଶିଲେ ବଳ ପ୍ରୟୋଗ କରାଯିବ ବୋଲି ଘୋଷଣା କରିଦିଆଗଲା । ଆମ ଭିତରେ ଆଗରୁ ସ୍ଥିରହୋଇଥିଲା ଯେ ବଳ ପ୍ରୟୋଗ କରିବାର ସମୟ ଆସିଲେ ଆମେ ସମସ୍ତେ ଲମ୍ବା ହୋଇ ଶୋଇଯିବୁ । ଶେଷଥରପାଇଁ ପୁଣି ସତର୍କ କରିଦିଆଗଲା । ଏହାପରେ ଆରମ୍ଭ ହୋଇଗଲା ଜବରଦସ୍ତ କାମ । ଆମ ଗୋଡ଼ହାତକୁ ୱାଡ଼ରମାନେ ବସ୍ତାର ଦୁଇପଟକୁ ଧରିଲାପରି ଧରି ଗୋଟାଏ ଉପରେ ଗୋଟାଏ କରି ଆମକୁ ସେ ଘର ଭିତରକୁ ଏପରି ଭାବରେ ପକାଉଥାଆନ୍ତି ଯେ ଆମ ଭିତରୁ କେତେକ କଚଡ଼ା ଖାଇ ବେହୋସ୍ ହୋଇଗଲେ । ତାହାପରେ କବାଟ ବନ୍ଦକରି କର୍ତ୍ତାମାନେ ଚାଲିଗଲେ । ଆମେ ଆଉଁସାଆଉଁସି ହୋଇ ପାଣି ପିଆପିଇ କରି ଶୋଇଲୁ । ଅଶୋକବାବୁ ତା'ପରେ 'ପ୍ରତିକ୍ରିୟାଶୀଳ' ସରକାରର ଏତାଦୃଶ କାର୍ଯ୍ୟ ପ୍ରତି ଆମମାନଙ୍କର 'ତୀବ୍ର' ଦୃଷ୍ଟି ଆକର୍ଷଣ କରିଥିଲେ । ସେ ମନେ ମନେ ଖୁସି ହେଉଥା'ନ୍ତି ଛାତ୍ରମାନଙ୍କର ବିଶ୍ୱନାଥ ଦାସ ସରକାର ପ୍ରତି ବିରୋଧ ମନୋଭାବ ଦେଖି ।

## ନୀଳକଣ୍ଠ ଦାସ ଠକିଗଲେ

ଅଶୋକ ଦାସ ଏପରି ତୀବ୍ର ମନୋଭାବ ପୋଷଣ କରିବାର କେତେକ ନିର୍ଦ୍ଦିଷ୍ଟ କାରଣ ଥିଲା । ୧୯୩୭ ମସିହା ପ୍ରଦେଶ ବ୍ୟବସ୍ଥାସଭା ନିର୍ବାଚନପାଇଁ କଂଗ୍ରେସ ପକ୍ଷରୁ ସମସ୍ତ କାର୍ଯ୍ୟର ଦାୟିତ୍ୱ ପଣ୍ଡିତ ନୀଳକଣ୍ଠ ଦାସ ନେଇଥିଲେ ଏବଂ ସେଥିରେ ସେ ବିପୁଳ ସଫଳତା ହାସଲ କରିପାରିଥିଲେ । ସେତେବେଳେ ଓଡ଼ିଶାର ଲୋକେ ମୋଟାମୋଟି ପଣ୍ଡିତ ନୀଳକଣ୍ଠ ଦାସଙ୍କର ନେତୃତ୍ୱକୁ ଗ୍ରହଣ କରି ନେଇଥିଲେ । ସେହି ନିର୍ବାଚନରେ ସେ ନିଜେ କଂଗ୍ରେସ ପ୍ରାର୍ଥୀ ହେବାର ଥିଲା । ପ୍ରଥମରୁ ସେ ଯଦି ପ୍ରାର୍ଥୀ ହୋଇଥାଆନ୍ତେ ନିଜେ ତ ନିଶ୍ଚୟ ନିର୍ବାଚିତ ହୋଇଥାଆନ୍ତେ, କଂଗ୍ରେସ ବ୍ୟବସ୍ଥାପକ ଦଳର ନେତା ନିର୍ବାଚିତ ହୋଇ ଓଡ଼ିଶାର ପ୍ରଥମ ନିର୍ବାଚନ ପ୍ରଧାନମନ୍ତ୍ରୀ ହେବା କ୍ଷେତ୍ରରେ ତାଙ୍କପାଇଁ ଯେଉଁଛି ଅସୁବିଧା ସୃଷ୍ଟି ହେଲା ତା' ହୋଇପାରିନଥାଆନ୍ତା । ନିଜେ ପ୍ରଥମରୁ ଠିଆହେଲେ ନିର୍ବାଚନ ପ୍ରଚାର କରି ଅନ୍ୟମାନଙ୍କୁ ସାହାଯ୍ୟ କରିବାରେ ଅସୁବିଧା ହେବ ବୋଲି ସେ ସେଥିରୁ ନିବୃତ୍ତ ହୋଇଥିଲେ । ସେତେବେଳେ ପଣ୍ଡିତ ନୀଳକଣ୍ଠ ଦାସ କେନ୍ଦ୍ରୀୟ ବିଧାନ ପରିଷଦର ସଭ୍ୟ ଥିଲେ । ଉଦ୍ଦେଶ୍ୟ ଥିଲା ଯେ ପ୍ରଦେଶରେ କଂଗ୍ରେସ ସଂଖ୍ୟାଗରିଷ୍ଠତା ହାସଲକଲେ ସେ ନେତାରୂପେ

ନିର୍ବାଚିତ ହୋଇ ସରକାର ଗଠନ କରିବେ ଏବଂ ପରେ ବିଧାନସଭାକୁ ନିର୍ବାଚିତ ହୋଇ ଆସିବେ । ପଣ୍ଡିତ ନୀଳକଣ୍ଠଙ୍କ ସପକ୍ଷରେ ମୋହନ ଦାସ ବ୍ୟବସ୍ଥାସଭାରୁ ଇସ୍ତଫା ଦେବା କଥା ଥିଲା ବୋଲି ଶୁଣାଯାଇଥିଲା । କିନ୍ତୁ ଏହିଠାରେ ସେ ରାଜନୈତିକ ଚାଲବାଜିରେ ହାରିଯାଇଥିଲେ । ନିର୍ବାଚନ ଫଳ ଘୋଷଣା ହେବା ପରେ ଓଡ଼ିଶା କଂଗ୍ରେସ ରାଜନୀତିରେ କୌଶଳକ୍ରମେ କଂଗ୍ରେସ ବ୍ୟବସ୍ଥାପକ ଦଳର ପରିଚାଳନାପାଇଁ ଯେଉଁ ନିୟମ ପ୍ରଣୟନ କରାଗଲା ସେଥିରେ ସର୍ତ୍ତ ଖଞ୍ଜି ଦିଆଗଲା ଯେ କେବଳ ନିର୍ବାଚିତ ପ୍ରତିନିଧିଙ୍କୁ ନେଇ ବ୍ୟବସ୍ଥାପକ ଦଳ ଗଠିତ ହେବ ଏବଂ ନିର୍ବାଚିତ ସଭ୍ୟଙ୍କ ଛଡ଼ା ଅନ୍ୟ କୌଣସି କଂଗ୍ରେସ ଲୋକ ସେହି ଦଳର କର୍ମକର୍ତ୍ତା ହୋଇପାରିବେ ନାହିଁ । ନୀଳକଣ୍ଠବାବୁଙ୍କୁ ଦଳପତି କରିବାପାଇଁ ସଂଖ୍ୟାଧିକ ସଭ୍ୟଙ୍କର ଇଚ୍ଛା ଥିଲା, ମାତ୍ର ଏହି ନୂତନ ନିୟମଟି ଖଞ୍ଜିଦେବାଦ୍ୱାରା ସେଥିରେ ବାଧା ସୃଷ୍ଟି ହେଲା । ଏହା ଯେ ଚକ୍ରାନ୍ତ କରି କରାଯାଇଥିଲା ଏଥିରେ ସନ୍ଦେହନାହିଁ । କିନ୍ତୁ ଏ କୂଟନୀତି ସମ୍ପର୍କରେ ନୀଳକଣ୍ଠବାବୁଙ୍କ ଭଳି ସରଳବିଶ୍ୱାସୀ ଲୋକ ପୂର୍ବରୁ ସତର୍କ ରହିପାରିନଥିଲେ । ତା' ଛଡ଼ା ନିର୍ବାଚିତ ହୋଇ ଆସିଥିବା ଅନ୍ୟ କେତେକ ନେତୃସ୍ଥାନୀୟ ବ୍ୟକ୍ତିଙ୍କର ମଧ୍ୟ ପ୍ରଧାନମନ୍ତ୍ରୀ ହେବାପାଇଁ ଲାଳସା ଜାଗ୍ରତ ହୋଇଥିଲା । ନେତା ନିର୍ବାଚନ ପ୍ରତିଦ୍ୱନ୍ଦ୍ୱିତାରେ ବିଶ୍ୱନାଥ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ନିତ୍ୟାନନ୍ଦ କାନୁନ୍‌ଗୋ ଓ ସ୍ୱାମୀ ବିଚିତ୍ରାନନ୍ଦ ଦାସ ପ୍ରାର୍ଥୀ ହୋଇଥିଲେ । ନୀଳକଣ୍ଠବାବୁ ଯେତେବେଳେ ନେତା ନିର୍ବାଚନରେ ଭାଗ ନେଇପାରିଲେନାହିଁ ସେତେବେଳେ ତାଙ୍କୁ ସମର୍ଥନ କରୁଥିବା ସଭ୍ୟମାନେ ବିଶ୍ୱନାଥ ଦାସଙ୍କ ସହିତ କଥାବାର୍ତ୍ତା କରି ତାଙ୍କୁ ନିର୍ବାଚନରେ ସାହାଯ୍ୟ କଲେ । ତେଣୁ ସମସ୍ତଙ୍କୁ ପରାସ୍ତ କରି ବିଶ୍ୱନାଥ ଦାସ କଂଗ୍ରେସ ଦଳର ଦଳପତିରୂପେ ନିର୍ବାଚିତ ହୋଇଥିଲେ । ଆଶାକରାଯାଇଥିଲା ଯେ ଏହା ଗୋଟିଏ ଅସ୍ଥାୟୀ ବ୍ୟବସ୍ଥା ହେବ, ପରବର୍ତ୍ତୀ କାଳରେ ବିଶ୍ୱନାଥବାବୁ ନୀଳକଣ୍ଠବାବୁଙ୍କୁ ପ୍ରଧାନମନ୍ତ୍ରୀ ପଦ ଛାଡ଼ିଦେଇ ଜଣେ ମନ୍ତ୍ରୀ ରହିବେ । ଥରେ ମନ୍ତ୍ରିମଣ୍ଡଳ ଗଢ଼ାହୋଇଯିବା ପରେ ବିଶ୍ୱନାଥ ଦାସଙ୍କର ଆସ୍ଥାନ ଦୃଢ଼ ହେଲା । ମୋହନ ଦାସ ବ୍ୟବସ୍ଥାସଭା ସଭ୍ୟପଦରୁ ଇସ୍ତଫା ଦେବା କିମ୍ବା ବିଶ୍ୱନାଥ ଦାସ ବ୍ୟବସ୍ଥାପକ ଦଳପତି ପଦରୁ ଅପସରିଯିବାର ଅବକାଶ ଦେଖାଗଲାନାହିଁ । ବିଶ୍ୱନାଥ ଦାସଙ୍କ ମନ୍ତ୍ରିମଣ୍ଡଳ ପ୍ରତି ଅଶୋକ ଦାସଙ୍କର ଆକ୍ରୋଶର କାରଣ ଏଇଥିରୁହିଁ ଅନୁମାନ କରାଯାଇପାରେ । ଅଶୋକବାବୁ ଜଣେ ବୁଦ୍ଧିଆ ଓ କୌଶଳୀ ଛାତ୍ରନେତା ଥିଲେ । ପରବର୍ତ୍ତୀ କାଳରେ ସକ୍ରିୟ ରାଜନୀତିରେ ଯୋଗ ନଦେଇ ସେ ଆଇନ ବ୍ୟବସାୟ ପ୍ରତି ବିଶେଷ ଧ୍ୟାନ ଦେଇଥିଲେ ଏବଂ ସେଥିରେ ଖ୍ୟାତି ଅର୍ଜନ କରି ରାଜ୍ୟର ଆଡ଼ଭୋକେଟ୍ ଜେନେରାଲ୍ ହୋଇପାରିଥିଲେ ।

ଏହିଠାରେ ମୋ ନିଜ ସମ୍ପର୍କରେ ଗୋଟିଏ ପ୍ରାସଙ୍ଗିକ କଥା ମନେପଡୁଛି । ୧୯୭୭ ମସିହାରେ ମୁଁ ଥିଲି ପାର୍ଲିଆମେଣ୍ଟରେ ରାଜ୍ୟସଭା ସଭ୍ୟ । ସେତିକିବେଳେ ଆମ ରାଜ୍ୟ ବ୍ୟବସ୍ଥାସଭାକୁ ଯେଉଁ ନିର୍ବାଚନ ହେଲା ସେଥିରେ ନିର୍ବାଚନ ପରେ ଜନତାଦଳ ସଂଖ୍ୟାଗରିଷ୍ଠ ହେଲେ କିଏ ଦଳର ନେତୃତ୍ୱ ନେବ ସେ ବିଷୟରେ ପୂର୍ବରୁ କଳ୍ପନାଜଳ୍ପନା ଚାଲିଥାଏ । ବିଜୁପଟ୍ଟନାୟକ ସେତେବେଳକୁ ଲୋକସଭାକୁ ନିର୍ବାଚିତ ହୋଇସାରିଲେଣି । ନେତା ହେବାର ସମ୍ଭାବନା ବିଷୟରେ ମୋ ନାମ ଯେତେବେଳେ ଉଠେ ସେତେବେଳେ କେତେକଙ୍କର ମତ ଥିଲା ଯେ ପ୍ରଥମେ ଦଳ ସଂଖ୍ୟାଗରିଷ୍ଠ ହେଉ, ତା'ପରେ ମୋର ନେତୃତ୍ୱ ନେବା କଥା ଉଠିବ । ତା'ହେଲେ ମୁଁ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବା ପରେ ମଧ୍ୟ ରାଜ୍ୟସଭାରୁ ଇସ୍ତଫା ଦେଇ ଛଅମାସ ଭିତରେ ବିଧାନସଭାକୁ ନିର୍ବାଚିତ ହୋଇ ଆସିପାରିବି । ମୋର ସେତେବେଳେ ପଣ୍ଡିତ ଦାସଙ୍କର ଉଲ୍ଲିଖିତ ଅନୁଭବ କଥା ମନେପଡ଼ିଥିଲା । ତେଣୁ ବ୍ୟବସ୍ଥାସଭା ନିର୍ବାଚନରେ ପ୍ରଥମରୁ ଜନତା ଦଳର ପ୍ରାର୍ଥୀ ହେବାପାଇଁ ମୁଁ ସ୍ଥିରକରିଥିଲି । ମୋର କୌଣସି ସହକର୍ମୀଙ୍କର ଅସହଯୋଗ ସମ୍ପର୍କରେ ଆଶଙ୍କା ନଥିଲେ ମଧ୍ୟ ଅନାଗତବିଧାତା ପରି ଆଚରଣ କରିବାକୁ ମୁଁ ଶ୍ରେୟ ମନେକରିଥିଲି । ଏହା ମଧ୍ୟ ମୋଟାମୋଟି ଭାବରେ ମୋର ସ୍ୱାଭାବିକ ଆଚରଣ । ଯେହେତୁ

ରାଜ୍ୟସଭା ସଦସ୍ୟରୂପେ ମୋର କାର୍ଯ୍ୟକାଳର ଆହୁରି ଅନେକ ସମୟ ବାକୀ ଥିଲା, ଜନତାଦଳର ପାର୍ଲିଆମେଣ୍ଟାରୀ ବୋର୍ଡ଼ ମୋତେ ବ୍ୟବସ୍ଥାସଭାକୁ ପ୍ରାର୍ଥୀ ହେବାକୁ ଅନୁମତି ନଦେବାର ସମ୍ଭାବନା ମଧ୍ୟ ଥିଲା । ଉପର ସ୍ତରରେ ମୋତେ କିପରି ଅନୁମତି ନମିଳିବ ସେଥିପାଇଁ କେହି କେହି ଉଦ୍ୟମ ମଧ୍ୟ କରିଥିଲେ । କିନ୍ତୁ ବିଜୁ ପଟ୍ଟନାୟକଙ୍କ ଉଦ୍ୟମରେ ମୋତେ ଅନୁମତି ମିଳିଥିଲା । ନିର୍ବାଚନରେ ଜନତା ଦଳ ବିପୁଳ ସଂଖ୍ୟାଗରିଷ୍ଠତା ହାସଲ କଲା ଏବଂ ତା'ପରେ ଯେଉଁ ପରିସ୍ଥିତି ହେଲା ସେଥିରୁ ସୂଚନା ମିଳିଥିଲା ଯେ ମୁଁ ନୀଳକଣ୍ଠ ଦାସଙ୍କର ଦଶା ଭୋଗିବାର ଆଶଙ୍କା ମଧ୍ୟ ଥିଲା ।

## ଆଶ୍ୱସ୍ତିର ନିଃଶ୍ୱାସ

୧୯୩୬-୩୭ ମସିହାରେ କଂଗ୍ରେସ ରାଜନୀତିରେ ପଣ୍ଡିତ ନୀଳକଣ୍ଠ ଦାସଙ୍କର ଯେଉଁ ପ୍ରଭାବ ଓ ପ୍ରତିଷ୍ଠା ଥିଲା ସେ ଯଦି ୧୯୩୭ ମସିହା ବ୍ୟବସ୍ଥାସଭାକୁ ଆସିବାକୁ ଚାହିଥାଆନ୍ତେ ତାଙ୍କୁ କେହି ଅଟକାଇ ପାରିନଥା'ନ୍ତେ । ସେ ବ୍ୟବସ୍ଥାସଭାକୁ ଆସିଥିଲେ ନିଶ୍ଚିତ ଭାବରେ ଦଳପତି ହୋଇ ପ୍ରଧାନମନ୍ତ୍ରୀ ହୋଇଥାଆନ୍ତେ । ଅଧିକ ସମୟ ଦେଇ କଂଗ୍ରେସକୁ ଜୟଯୁକ୍ତ କରିବାପାଇଁ ସେ ନିର୍ବାଚନରେ ଛିଡ଼ା ନହୋଇ ଅନ୍ୟମାନଙ୍କୁ ଜିତେଇବାରେ ସାହାଯ୍ୟ କରିଥିଲେ । କିନ୍ତୁ ଓଡ଼ିଶାର ନିର୍ବାଚନରେ କଂଗ୍ରେସ ଖୁବ୍ ଅଧିକ ସଂଖ୍ୟାରେ ବ୍ୟବସ୍ଥାସଭାର ଆସନ ଦଖଲ କରିବା ଦେଖି ପଣ୍ଡିତ ଦାସଙ୍କ ବିରୁଦ୍ଧରେ ଏକ ରାଜନୈତିକ ଷଡ଼ଯନ୍ତ୍ରର ସୂତ୍ରପାତ ହେଲା । ସେ ଚକ୍ରାନ୍ତ ଏପରି ଅବସ୍ଥା ସୃଷ୍ଟି କରିଥିଲା ଯେ ସେ ଆମ ପ୍ରଦେଶରେ ପ୍ରଧାନମନ୍ତ୍ରୀ ତ ହୋଇପାରିଲେ ନାହିଁ, ଆହୁରି କେତେକ ପଦବୀରୁ ମଧ୍ୟ ତାଙ୍କୁ ବଞ୍ଚିତ ହେବାକୁ ପଡ଼ିଥିଲା । ସେଥିପାଇଁ ତାଙ୍କ ମନରେ ସ୍ୱାଭାବିକ ଅବଶୋଷ ରହିଯାଇଥିଲା । ଦିନେ ସେ ତାଙ୍କ ମନକଥା ଯେପରି ଭାବରେ ମୋ ଆଗରେ ପ୍ରକାଶ କରିଥିଲେ ଏଠାରେ ତାହା ଉଲ୍ଲେଖ ନ କରି ରହିପାରୁନାହିଁ । ୧୯୬୦ ମସିହାରେ ସେ ଥିଲେ ଓଡ଼ିଶା ବିଧାନସଭାର ବାଚସ୍ପତି, ଡକ୍ଟର ହରେକୃଷ୍ଣ ମହତାବ ଥିଲେ କଂଗ୍ରେସ-ଗଣତନ୍ତ୍ର ପରିଷଦର ମିଳିତ ମନ୍ତ୍ରିମଣ୍ଡଳରେ ମୁଖ୍ୟମନ୍ତ୍ରୀ । କଂଗ୍ରେସ ଭିତରେ ମହତାବବାବୁ ଓ ବିଜୁ ପଟ୍ଟନାୟକଙ୍କ ମଧ୍ୟରେ ମତାନ୍ତର ଘଟିବାରୁ ମହତାବବାବୁ ଇସ୍ତଫା ଦେଇଥିଲେ ଏବଂ ସେତିକିବେଳେ ରାଜ୍ୟ କଂଗ୍ରେସର ନେତୃତ୍ୱ ବିଜୁ ପଟ୍ଟନାୟକଙ୍କ ହାତକୁ ଗଲା । ମନ୍ତ୍ରିମଣ୍ଡଳ ଭାଙ୍ଗିବା ଦିନ ବିଧାନସଭା ଗୃହରେ ବାଚସ୍ପତି ପଣ୍ଡିତ ନୀଳକଣ୍ଠ ଦାସଙ୍କ ସହିତ ମୋର ଦେଖାହେଲା । ସେ ମୋତେ ପାଖକୁ ଡାକି କହିଲେ, "ନୀଳମଣି ! ଗୋଟିଏ କଥା କହୁଛି ଶୁଣ । ମୁଁ ଆଜି ତୃପ୍ତି ଲାଭ କରିଛି । ତୁମେ ହୁଏତ ସବୁ କଥା ଜାଣିନଥିବ, କହୁଛି ଶୁଣ । ଆମ୍ଭମାନଙ୍କର ରାଜନୈତିକ ହତ୍ୟା ଏହି ମହତାବ କରିଛି — ମୋର ଏବଂ ଗୋଦାବରୀଶ ମିଶ୍ରର । ଆମେସବୁ ଥିଲୁ ଭଦ୍ରଲୋକ, ତେଣୁ ମାନେ ମାନେ ରହିଗଲୁ । ଆଜି ମୁଁ ଖୁସି ଯେ ମହତାବ ଏବେ ଗୋଟିଏ ଜବରଦସ୍ତ ଲୋକ ହାବୁଡ଼ରେ ପଡ଼ିଛି । ସେ ବିଜୁ ପଟ୍ଟନାୟକ ତା' ବେକକୁ ମୋଡ଼ି ଧରିଛି । ସେଥିରୁ ଆଉ ଉଦ୍ଧାର ପାଇବାର ଶକ୍ତି ତା'ର ନାହିଁ ।" ସରଳବିଶ୍ୱାସୀ ପଣ୍ଡିତଜୀଙ୍କର କୋମଳ ହୃଦୟରୁ ପୂର୍ବର ଦାରୁଣ ଆଘାତର ଦାଗ ନିଭିନଥିଲା । ସେ ହୁଏତ ଧର୍ମ ଅଛି ବୋଲି ମନେ ମନେ କହି ଆଶ୍ୱସ୍ତିର ନିଃଶ୍ୱାସ ମାରିଥିଲେ ।

## ଗଡ଼ଜାତ ଆନ୍ଦୋଳନ ଓ ବାଳକ ବାଜିରାଉତର ଜୀବନ ବାଜି

୧୯୩୮-୩୯ ମସିହାରେ ଢେଙ୍କାନାଳ, ତାଳଚେର, ରଣପୁର ଓ ନୀଳଗିରି ପ୍ରଭୃତି ଗଡ଼ଜାତମାନଙ୍କରେ ପ୍ରଜାମଣ୍ଡଳ ଆନ୍ଦୋଳନ ଖୁବ୍ ଜୋରସୋରରେ ମୁଣ୍ଡ ଟେକିଥିଲା । ଏହି ଆନ୍ଦୋଳନକୁ ଦମନ କରିବାପାଇଁ ଗଡ଼ଜାତର ରାଜାମାନେ ଭୀଷଣ ଅତ୍ୟାଚାର ଆରମ୍ଭ କରିଦେଇଥିଲେ । ସେ ସମୟରେ ଢେଙ୍କାନାଳ ରାଜଦରବାରର ଅତ୍ୟାଚାର ସବୁରି ସୀମା

ଚପିଯାଇଥିଲା । ଢେଙ୍କାନାଳ, ତାଳଚେର, ରଣପୁର ପ୍ରଭୃତି ଗଡ଼ଜାତମାନଙ୍କରୁ ଆସି ବହୁତ ଛାତ୍ର ରେଭେନ୍ସା କଲେଜରେ ପଢୁଥିଲେ । ନିଜ ରାଜ୍ୟର ଅତ୍ୟାଚାରର କରୁଣ କାହାଣୀ ସେମାନଙ୍କୁ ଗଭୀର ଭାବରେ ବିଷଣ୍ଣ କରିଦେଉଥିଲା । ଢେଙ୍କାନାଳର ବାଙ୍କନିଧି ଭୂତିଆ ପୂର୍ବଛାତ୍ରାବାସରେ ମୋ ସାଙ୍ଗରେ ରହୁଥିଲେ । ଓଡ଼ିଶା ହାଇକୋର୍ଟର ପୂର୍ବତନ ବିଚାରପତି ଢେଙ୍କାନାଳର କୁଞ୍ଜବିହାରୀ ପଣ୍ଡା ମଧ୍ୟ ମୋର ସହପାଠୀ ଥିଲେ । ଢେଙ୍କାନାଳର ମାଧବଚନ୍ଦ୍ର ଧଳ, ରାଜକିଶୋର ମିଶ୍ର ଓ ହରମୋହନ ପଟ୍ଟନାୟକ ପ୍ରଭୃତି ସେତେବେଳେ ରେଭେନ୍ସା କଲେଜରେ ଅଧ୍ୟୟନ କରୁଥିଲେ । ଏ ସମସ୍ତଙ୍କଠାରୁ ଢେଙ୍କାନାଳର ଅତ୍ୟାଚାର ସମ୍ବନ୍ଧରେ ବହୁ ଘଟଣା ମୁଁ ଜାଣିବାକୁ ପାଇଥିଲି । ବାଜିରାଉତ ଭଳି ଗୋଟିଏ ବାରବର୍ଷର ବାଳକକୁ ନିଷ୍ଠୁର ଭାବରେ ଗୁଳିକରି ମାରିଦିଆଯାଇଥିଲା । ତା' ସହିତ ଆହୁରି ଆଠଜଣଙ୍କୁ ମଧ୍ୟ ସେହିଦିନ ମାରିଦିଆଯାଇଥିଲା । ସେମାନଙ୍କର ଶବଗୁଡ଼ିକୁ କଟକ ଅଣାଯାଇ ଶୋକାକୁଳ ଜନତାର ପଟୁଆର ବାହାରିଥିଲା । ତାହା ଦେଖି ଛାତ୍ରମାନଙ୍କ ମଧ୍ୟରେ ତୀବ୍ର ବିଦ୍ରୋହ ଭାବ ସୃଷ୍ଟି ହୋଇଥିଲା । ବାଜିରାଉତ ହତ୍ୟାର କାହାଣୀ ଗଡ଼ଜାତବାସୀଙ୍କ ଭିତରେ ଅପୂର୍ବ ଉତ୍ତେଜନା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଗଡ଼ଜାତ ମୁକ୍ତି ଆନ୍ଦୋଳନରେ ଝାସ ଦେବାପାଇଁ ସମସ୍ତଙ୍କୁ ଉତ୍ସାହିତ କରିଥିଲା । ଏହି ଘଟଣାଟି ଘଟିଥିଲା ୧୯୩୮ ମସିହା ଅକ୍ଟୋବର ମାସ ଦଶ ତାରିଖ ଦିନ । ସେଦିନ ଢେଙ୍କାନାଳ ରାଜାଙ୍କର ପ୍ରାୟ କୋଡ଼ିଏ ଜଣ ସଶସ୍ତ୍ର ପୁଲିସ କାମାକ୍ଷାନଗର ସବ୍‌ଡିଭିଜନ୍‌ର ଭୁବନ ଅଞ୍ଚଳରେ ରାଜଦରବାର ବିରୁଦ୍ଧରେ ଆନ୍ଦୋଳନକାରୀଙ୍କ ଉପରେ ନିର୍ମମ ଅତ୍ୟାଚାର କରି ଫେରୁଥିଲେ ବାଜିରାଉତର ଗାଆଁ ନୀଳକଣ୍ଠପୁର ଦେଇ । ନୀଳକଣ୍ଠପୁରଠାରେ ବ୍ରାହ୍ମଣୀ ନଈକୁ ଡଙ୍ଗାଦ୍ୱାରା ସେମାନେ ପାରିହେବା କଥା । ସେତେବେଳକୁ ସେ ସବୁ ଅଞ୍ଚଳର ଲୋକେ ପ୍ରଜାମଣ୍ଡଳ ଆନ୍ଦୋଳନଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇସାରିଥିଲେ । ପ୍ରଜାମଣ୍ଡଳର ନିର୍ଦ୍ଦେଶ ଥିଲା ଅତ୍ୟାଚାରୀମାନଙ୍କୁ ସାହାଯ୍ୟ ନକରିବାପାଇଁ । ରକ୍ତମୁଖା ପୁଲିସ ଫଉଜ ଲୋକମାନଙ୍କୁ ହୁକୁମ ଦେଲେ ସେମାନଙ୍କୁ ଡଙ୍ଗାରେ ପାରିକରିଦେବାପାଇଁ । ଜଣାଯାଏ, ଲୋକମାନେ ଜବାବ ଦେଲେ 'ପ୍ରଜାମଣ୍ଡଳର ହୁକୁମ ନାହିଁ ସେମାନଙ୍କୁ ପାରି କରିଦେବାପାଇଁ । ପୁଲିସଲୋକ ଡଙ୍ଗାବାଲାଙ୍କୁ ଧମକ ଦେଲେ ତାଙ୍କୁ ପାର୍ କରିଦେବାକୁ । ସେ ଡଙ୍ଗାବାଲାଟି ଥିଲା ବାଳକ ବାଜିରାଉତ । ସେ ପାରିକରିଦେବାକୁ ସଫା ମନାକରିଦେଲା । ଜବରଦସ୍ତି ଡଙ୍ଗାକୁ ଟାଣିନେବାପାଇଁ ପୁଲିସବାଲା ଉଦ୍ୟମ କଲେ । ସେତେବେଳକୁ ସେଠାରେ ବହୁ ଲୋକ ଜମିଗଲେଣି । ପୁଲିସବାଲାମାନେ ନିଜେ କାତ ମାରି ନଦୀ ପାର ହେବାକୁ ବାହାରିବାରୁ ଲୋକେ ଡଙ୍ଗାକୁ ଟାଣିଧରି ବାଧାଦେଲେ । ଡଙ୍ଗା ପଛକୁ ଟାଣୁଥିବା ଲୋକମାନଙ୍କ ମଧ୍ୟରେ ବାଜିରାଉତ ଥିଲା ସମ୍ମୁଖରେ । ପୁଲିସ ଫୌଜ ଅତି କ୍ରୁଦ୍ଧ ହୋଇପଡି ଚଳାଇଦେଲେ ତା' ଉପରକୁ ଗୁଳି । ବାଳକ ବାଜିରାଉତ ସମେତ ନୀଳକଣ୍ଠପୁର ଗ୍ରାମର ଆହୁରି ଆଠଜଣ ପ୍ରଜା ପୁଲିସ ଗୁଳିରେ ସବୁଦିନପାଇଁ ଟଳିପଡ଼ିଲେ । ପ୍ରଜାମଣ୍ଡଳର କର୍ମୀମାନେ କୌଣସିମତେ ଏ ସହିଦମାନଙ୍କର ଶବଗୁଡ଼ିକୁ କଟକ ଜିଲ୍ଲାର ସୀମା ଭିତରକୁ ନେଇଆସିଥିଲେ । ସେଠାରୁ କଟକ ଅଣାଗଲା । କଟକରେ ସେମାନଙ୍କୁ ବଡ଼ଡାକ୍ତରଖାନା ହତାକୁ ନିଆଯାଇଥିଲା । ସେଠାରୁ ସହିଦଙ୍କର ଶବ ବହନ କରି ନେଇ ସହରର ରାଜଦଣ୍ଡରେ ପରିକ୍ରମା କରିଥିଲା ଏକ ବିରାଟ ଜନପଟୁଆର । ହଜାର ହଜାର ଲୋକ, ବିଶେଷକରି ହଜାର ହଜାର ଛାତ୍ର, ଏହି ପଟୁଆରରେ ବାହାରିଥିଲେ । ଏହି କରୁଣ କାହାଣୀ ଏବଂ ସହିଦମାନଙ୍କ ସହିତ ବାଳକ ବାଜି ରାଉତର ଦୁର୍ଦ୍ଦମ ଦେଶପ୍ରେମର ନିଦର୍ଶନ ସମସ୍ତଙ୍କ ହୃଦୟକୁ ସ୍ପର୍ଶ କରିଥିଲା । ମୁଁ ଏହି ଶୋଭାଯାତ୍ରାରେ ଅନ୍ୟମାନଙ୍କ ସହ ମୁଖ୍ୟ ଅଂଶ ଗ୍ରହଣ କରିଥିଲି । ସେସବୁ ଚିତ୍ରର ସ୍ମୃତି ଏବେ ମଧ୍ୟ ମୋ ପ୍ରାଣକୁ ବେଳେବେଳେ ଖୁବ୍ ଆନ୍ଦୋଳିତ କରେ । କେଉଁ ପଲ୍ଲୀ ଗାଆଁର ବାଳକ ବାଜିରାଉତ, ପ୍ରଜାମଣ୍ଡଳର ଡାକରାରେ ମୁକ୍ତିପାଇଁ ନିଜ ଜୀବନକୁ 'ବାଜି' ରଖିଦେଲା । କବି ସଚି ରାଉତରାୟଙ୍କ ଭାଷାରେ, ''ଏ ଦେଶ ତିମିର ତଳେ'' ଏକ ''ଅଲିଭା ମୁକତି ସଳିତା''

ଜାଳିଦେଲା ଆହୁରି କେତେ ପ୍ରାଣକୁ ପ୍ରଜ୍ୱଳିତ କରିବାପାଇଁ । ଏହି ସମୟରେ ନବକୃଷ୍ଣ ଚୌଧୁରୀ ଗଡ଼ଜାତ ପ୍ରଜା ଆନ୍ଦୋଳନକୁ ସାହାଯ୍ୟ କରିବାପାଇଁ ସମସ୍ତଙ୍କୁ ଡାକରା ଦେଇଥାଆନ୍ତି । ଛାତ୍ରମାନଙ୍କ ଭିତରୁ ଅନେକ ବାହାରିଲେ । ପ୍ରଥମେ ବାହାରିଲେ କଟକ ମେଡ଼ିକାଲ୍ ସ୍କୁଲର ଛାତ୍ରନେତା ରବି ଘୋଷ । ସେଇ ଉଦ୍ଦେଶ୍ୟରେ ସେ ଅନୁଗୁଳ ଯାଇଥିଲେ । ମେରାମଣ୍ଡଳି ରେଲୱେ ଷ୍ଟେସନ୍‌ରେ ଗାଡ଼ିରୁ ଓହ୍ଲାଇ ଷ୍ଟେସନ୍ ବାହାରେ ବସ୍‌ରେ ଚଢ଼ି ଅନୁଗୁଳ ଯିବାବେଳେ ତାଙ୍କୁ ଢେଙ୍କାନାଳ ପୁଲିସ ଗିରଫକଲେ । ସେ କୌଶଳ କରି କୌଣସିମତେ ପୁଲିସଙ୍କ କବଳରୁ ପଳାଇଆସି ରେଳବାଇ ଇଲାକା ଭିତରକୁ ପୁଣି ପଶିଯାଇଥିଲେ। ସେଠୁ ମଧ ତାଙ୍କୁ ଜବରଦସ୍ତ ଧରିଆଣି ଗିରଫ କରାଯାଇଥିଲା । ରେଳବାଇ ଇଲାକା ଭିତରୁ ଗଡ଼ଜାତ ପୁଲିସ ସେଭଳି ଗିରଫ କରିବା ଆଇନ୍ ବିରୁଦ୍ଧ ହେଲେ ବି ଢେଙ୍କାନାଳ ଦରବାର ସେ ଆଇନ୍ ମାନିନଥିଲେ । ସେତେବେଳେ ଓଡ଼ିଶା ବିଧାନସଭାରେ ଏ ପ୍ରସଙ୍ଗରେ ବହୁତ ଆଲୋଚନା ମଧ ହୋଇଥିଲା ।

ଢେଙ୍କାନାଳ ଭିତରେ କ'ଣ ଘଟୁଛି ସେ ସମ୍ବାଦ ପାଇବା ମଧ ସେତେବେଳେ ବଡ଼ ଦୁରୂହ ବ୍ୟାପାର ଥିଲା । ଛାତ୍ରନେତା ବୈଦ୍ୟନାଥ ରଥ ଓ ଅନନ୍ତ ପଟ୍ଟନାୟକ ଦିନେ କଟକ ଜିଲ୍ଲାର ଜେନାପୁରରେ ଢେଙ୍କାନାଳ ସୀମା ପାଖରେ ରହି ସମ୍ବାଦ ସଂଗ୍ରହ କରୁଥିଲେ । ସିଧା ବାଟରେ ଯିବା ଆସିବା କଲେ ବାଟରେ ଢେଙ୍କାନାଳର କବାଟବନ୍ଧ ବୋଲି ଗାଁଟିଏ ପଡ଼େ । ଚଞ୍ଚଳ ଫେରିବା ପାଇଁ ସେମାନେ ସିଧାବାଟରେ ସାଇକେଲ୍ ଛୁଟାଇଲେ । ବୈଦ୍ୟନାଥବାବୁ କୌଣସିମତେ ଢେଙ୍କାନାଳ ଇଲାକା ପାରହୋଇଗଲେ, କିନ୍ତୁ ଅନନ୍ତ ପଟ୍ଟନାୟକଙ୍କୁ କବାଟବନ୍ଧରୁ ଢେଙ୍କାନାଳ ରାଜାର ଗୁଣ୍ଡାମାନେ ଟେକି ନେଇ ଯାଇଥିଲେ । ସେଠାରୁ ତାଙ୍କୁ ଢେଙ୍କାନାଳ ଗଡ଼କୁ ନେଇଯାଇଥିଲେ । ଢେଙ୍କାନାଳ ଅତ୍ୟାଚାରର ସମ୍ବାଦ ସଂଗ୍ରହ କରିବା ଦାୟିତ୍ୱ ମୋତେ ମଧ ଦିଆଯାଇଥିଲା । ସେଇଥିପାଇଁ ମୁଁ କେତେଥର ଢେଙ୍କାନାଳ ରେଲୱେ ଷ୍ଟେସନ୍‌କୁ ଯାଇ ସମ୍ବାଦ ସଂଗ୍ରହ କରୁଥିଲି । ଢେଙ୍କାନାଳ ପ୍ରଜାମଣ୍ଡଳର ନେତା ବୈଷ୍ଣବ ପଟ୍ଟନାୟକଙ୍କର ଭାଇଙ୍କ ବସା ଢେଙ୍କାନାଳ ଷ୍ଟେସନ୍‌କୁ ଲାଗିକରି ଥିଲା । ମୁଁ ଗୋପନରେ ସେଠାକୁ ଯାଇ ଖା'ପିଆ କରୁଥିଲି । କୌଣସି ସୂତ୍ରରୁ ଏ ସମ୍ବାଦ ପାଇ ସେହିଠାରୁ ମୋତେ ଧରିନେବାକୁ ଢେଙ୍କାନାଳ ପୁଲିସ ଉଦ୍ୟମ କଲେ । ଜଣେ ବଙ୍ଗାଳୀ ଭଦ୍ରଲୋକ ଷ୍ଟେସନ୍ ମାଷ୍ଟର୍ ଥିଲେ । ସେ ଏ କଥା ଜାଣିପାରି ମୋତେ ସତର୍କ କରାଇଦେଇ ସେହି ରେଳବାଇ କ୍ୟାବିନ୍‌ରେ ବସି ଖାଇବାପାଇଁ ପରାମର୍ଶ ଦେଇଥିଲେ ।

ଛାତ୍ରନେତା ହରମୋହନ ପଟ୍ଟନାୟକ ଢେଙ୍କାନାଳର ଲୋକ । ରାଜ-ଅତ୍ୟାଚାରର କାହାଣୀ ଶୁଣି ଶୁଣି ସେ ଆଉ ଧୈର୍ଯ୍ୟ ଧରି ରହିପାରିଲେନାହିଁ । ସେ ବାହାରିଲେ ଢେଙ୍କାନାଳ ଭିତରକୁ ଯାଇ ପ୍ରଜାମଣ୍ଡଳର କର୍ମୀମାନଙ୍କ ସହିତ ମିଶି ପ୍ରଜାଆନ୍ଦୋଳନକୁ ତ୍ୱରାନ୍ୱିତ କରିବାପାଇଁ । ମୋର ଏବେ ମଧ ମନେଅଛି ସେ ଯେପରି ଉଦ୍‌ବେଗ ଓ ଆବେଗରେ କଟକ ଷ୍ଟେସନ୍‌ରୁ ଢେଙ୍କାନାଳ ଅଭିମୁଖେ ଯାତ୍ରା କରିଥିଲେ । ଗୋଟିଏ ମାଲଗାଡ଼ି ତାଳଚେର ଯାଉଥିଲା । ସେଥିରେ ଥିବା ଗାର୍ଡ଼ଙ୍କୁ ଅନୁରୋଧ କରାଗଲା ହରମୋହନ୍‌ଙ୍କୁ ସେଇ ଗାଡ଼ିରେ ନେଇ ଢେଙ୍କାନାଳରେ ଛାଡ଼ିଦେବାପାଇଁ । ଗାର୍ଡ଼ ଜଣକ ବେଶ୍ ଭଦ୍ରଲୋକ । ଗାର୍ଡ଼ ମାଲଗାଡ଼ି ପଛଡ଼ବାରେ ନିଜ ବସିବା ଜାଗା ଛାଡ଼ିଥିଲେ । ହରମୋହନବାବୁ ତାଙ୍କର ବିଛଣାପତ୍ର ଧରି ଗାଡ଼ିରେ ଚଢ଼ିଲେ । ତାଙ୍କୁ ବିଦାୟ ଦେବାପାଇଁ ଆମେ ବହୁ ଛାତ୍ର ଓ କଂଗ୍ରେସକର୍ମୀ କଟକ ଷ୍ଟେସନ୍‌ରେ ରୁଣ୍ଡହୋଇଥିଲୁ । ମନେହେଉଥାଏ ସତେ ଯେପରି ହରମୋହନବାବୁଙ୍କୁ ଆମେ ବାଘ ମୁହଁକୁ ଠେଲିଦେଉଛୁ ।

ଢେଙ୍କାନାଳରେ ବୈଷ୍ଣବ ପଟ୍ଟନାୟକ, ବ୍ରଜକିଶୋର ଧଳ, ମହେଶଚନ୍ଦ୍ର ସୁବାହୁସିଂହ, ମୃଷା ମଲିକ ଓ କୃତ୍ତିବାସ ପ୍ରଧାନ ପ୍ରଭୃତିଙ୍କ ନେତୃତ୍ୱରେ ସେଠାକାର ପ୍ରଜାମଣ୍ଡଳ ରାଜଶାସନ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ । ରାଜଦରବାରକୁ ଭୟତ୍ରସ୍ତ କରିବାପାଇଁ କେତେକ ଜାଗାରେ ପ୍ରଜାମଣ୍ଡଳ

ପକ୍ଷରୁ ଯାତହତିଆର ବ୍ୟବହାର କରି ହିଂସାକାଣ୍ଡ ମଧ୍ୟ ଘଟିଥିଲା । ବୈଷ୍ଣବବାବୁଙ୍କୁ ସେତେବେଳେ 'ବୀର ବୈଷ୍ଣବ' ବୋଲି କୁହାଯାଉଥିଲା । ସେ ଆମମାନଙ୍କ ସହିତ ଓ ଆମ ଛାତ୍ର ଅନୁଷ୍ଠାନ ସହିତ ଘନିଷ୍ଠ ସମ୍ପର୍କ ରଖୁଥିଲେ । ତାଳଚେରରେ ପବିତ୍ରମୋହନ ପ୍ରଧାନଙ୍କ ନେତୃତ୍ୱରେ ପ୍ରଜାମଣ୍ଡଳ ଆନ୍ଦୋଳନ ଚାଲିଥାଏ । ଆମେ ଛାତ୍ରସଂଘ ପକ୍ଷରୁ ଜଣେ ଛାତ୍ରଙ୍କୁ ରେଳ ଷ୍ଟେସନ୍‌କୁ ପଠାଇ ସେଠାରୁ ତାଳଚେରରେ ଚାଲିଥିବା ପ୍ରଜା ଆନ୍ଦୋଳନ ଓ ରାଜଦରବାରଙ୍କ ଦମନ ବିଷୟରେ ସମ୍ବାଦ ସଂଗ୍ରହ କରୁଥାଉ । ରାଜଦରବାରର ଅତ୍ୟାଚାରରେ ଉତ୍ପୀଡ଼ିତ ହୋଇ ହଜାର ହଜାର ସଂଖ୍ୟାରେ ଲୋକ ତାଳଚେର ଓ ଢେଙ୍କାନାଳରୁ ଯାଇ ଅନୁଗୁଳରେ ଆଶ୍ରୟ ନେଇଥିଲେ । ତାଳଚେରରେ ମଦନମୋହନ ପ୍ରଧାନ, ମାଗୁଣି ଚରଣ ପ୍ରଧାନ, ଦାଶରଥି ପାଣି ଓ କୃତ୍ତିବାସ ରଥ ପ୍ରଭୃତି ଦଳେ ଉତ୍ସର୍ଗୀକୃତ ଓ ନିର୍ଭୀକ କର୍ମୀଙ୍କୁ ପବିତ୍ରମୋହନ ପ୍ରଧାନ ତାଙ୍କ ସାଙ୍ଗରେ ପାଇ ସେଠାରେ ପ୍ରଜାମଣ୍ଡଳ ଆନ୍ଦୋଳନକୁ ବିଶେଷ ସକ୍ରିୟ କରି ଚଳାଇପାରୁଥିଲେ ବୋଲି ସେତେବେଳେ ଖବର ମିଳୁଥାଏ ।

## ଗଡ଼ଜାତ ଆନ୍ଦୋଳନରେ ମହତାବ ଓ ଚୌଧୁରୀ

ଗଡ଼ଜାତମାନଙ୍କରେ ପ୍ରଜାମଣ୍ଡଳ ଆନ୍ଦୋଳନ ଓ ରାଜଦରବାରମାନଙ୍କ ଅକଥନୀୟ ଅତ୍ୟାଚାର ସମ୍ବନ୍ଧୀୟ ଘଟଣାର ଖବରଅତର ରଖିବା ଓ ପ୍ରଜାମଣ୍ଡଳକୁ ସାହାଯ୍ୟ କରିବା ଦିଗରେ କଟକରେ ହରେକୃଷ୍ଣ ମହତାବ ଓ ନବକୃଷ୍ଣ ଚୌଧୁରୀ ବିଶେଷ ତତ୍ପର ଥିଲେ । ଢେଙ୍କାନାଳ ଓ ତାଳଚେର ପ୍ରଭୃତି ଗଡ଼ଜାତ ରାଜ୍ୟମାନଙ୍କରେ ଯେପରି ଭାବରେ ଦମନଲୀଳା ଚାଲିଥାଏ ଏବଂ ପୁଲିସ ଗୁଳିରେ ଲୋକଙ୍କୁ ହତ୍ୟାକରାଯାଉଥାଏ ସେଥିରେ ନବକୃଷ୍ଣ ଚୌଧୁରୀ ବିଶେଷଭାବରେ ବିବ୍ରତ ଓ ଉତ୍ୟକ୍ତ ହୋଇଥିଲେ । ଏ ଅବସ୍ଥାରେ ଲୋକେ ଯେତେବେଳେ ଗୁଳି ଆଗରେ ଛାତି ପତାଇ ରାଜୁଡ଼ା ଅତ୍ୟାଚାରରୁ ମୁକ୍ତ ହେବାପାଇଁ ତିଆରହୋଇଯାଉଛନ୍ତି, ସେତେବେଳେ ବିଧାନସଭା ରାଜନୀତିରେ ଲିପ୍ତ ରହି ସମ୍ମୁଖ ସମର ଭୂମିକାରୁ ଦୂରରେ ରହିବାକୁ ନବବାବୁଙ୍କ ବିପ୍ଳବୀ ମନ ବରଦାସ୍ତ କରିପାରିଲାନାହିଁ । ସେ ବିଧାନସଭାର ସଭ୍ୟ ପଦରୁ ଇସ୍ତଫା ଦେଇ ବାହାରିଲେ ପ୍ରଜାମଣ୍ଡଳର ଆନ୍ଦୋଳନକୁ ପ୍ରତ୍ୟକ୍ଷ ସାହାଯ୍ୟ କରି ତ୍ୱରାନ୍ୱିତ କରିବାପାଇଁ । ତାଙ୍କର ଏହି ସିଦ୍ଧାନ୍ତ କଟକର ଜନସାଧାରଣଙ୍କ ମଧ୍ୟରେ ଏବଂ ବିଶେଷକରି ଛାତ୍ରମାନଙ୍କ ମହଲରେ ଉଦ୍ଦୀପନା ସୃଷ୍ଟିକରିଥିଲା । ସେ ଯେଉଁଦିନ ଦଳେ ସ୍ୱେଚ୍ଛାସେବୀଙ୍କୁ ଧରି କଟକରୁ ଢେଙ୍କାନାଳ ଯାତ୍ରାକରିଥିଲେ ସେ ଦିନ ତାଙ୍କୁ ଅଭିନନ୍ଦନ ଜଣାଇବାପାଇଁ କଟକ ଷ୍ଟେସନ୍ ଲୋକାରଣ୍ୟ ହୋଇଥାଏ । ମୁଁ ମଧ୍ୟ ଉପସ୍ଥିତ ଥିଲି । ନବକୃଷ୍ଣ ଚୌଧୁରୀ ତାଙ୍କର ସ୍ୱାଭାବିକ ଭାବପ୍ରବଣତା ସହିତ ଗଡ଼ଜାତ ପ୍ରଜାମାନଙ୍କୁ ସେମାନଙ୍କ ମୁକ୍ତି ଆନ୍ଦୋଳନରେ ସାହାଯ୍ୟ କରିବାପାଇଁ ସମସ୍ତଙ୍କୁ ନିବେଦନ କରିଥିଲେ । ମେରାମୁଣ୍ଡଳି ଷ୍ଟେସନ୍‌ଠାରେ ଗାଡ଼ିରୁ ଓହ୍ଲାଇ ସେମାନେ ଢେଙ୍କାନାଳ ରାଜ୍ୟ ଭିତରକୁ ଯାଉଥିବାବେଳେ ସେମାନଙ୍କୁ ଗିରଫ କରାଯାଇଥିଲା । ନବବାବୁଙ୍କର ଗିରଫଦାରି କଟକରେ ଖୁବ୍ ଉତ୍ତେଜନା ସୃଷ୍ଟି କରିଥିଲା । ଗଡ଼ଜାତମାନଙ୍କରେ ଘଟୁଥିବା ଅମାନୁଷିକ ଅତ୍ୟାଚାରର କାହାଣୀ ଓଡ଼ିଶା ବାହାରେ ଲୋକଚକ୍ଷୁକୁ ଆଣି ଦେଶରେ ରାଜାମାନଙ୍କ ବିରୁଦ୍ଧରେ କିପରି ଜନମତ ସୃଷ୍ଟି କରାଯିବ ସେ ଦିଗରେ ମହତାବବାବୁ କାର୍ଯ୍ୟ ଆରମ୍ଭ କରିଦେଇଥିଲେ । ପ୍ରଜାମଣ୍ଡଳ ଆନ୍ଦୋଳନ ଓ ରାଜାମାନଙ୍କର ଦମନଲୀଳାର ସମସ୍ତ ଘଟଣା ସେତେବେଳେ ମହତାବବାବୁ ମହାତ୍ମାଗାନ୍ଧୀଙ୍କ ଦୃଷ୍ଟିକୁ ଆଣି ତାଙ୍କ ପରାମର୍ଶ ଅନୁସାରେ କାର୍ଯ୍ୟ କରୁଥିଲେ । ଓଡ଼ିଶାର ଗଡ଼ଜାତମାନଙ୍କରେ ଯେଉଁ ଅନ୍ଧାରି ଶାସନ, ଜୁଲମ ଓ ଅତ୍ୟାଚାର ଚାଲିଥିଲା ତା'ର ତଦନ୍ତ କରି ସେଥିପ୍ରତି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିବାପାଇଁ ଗୋଟିଏ ଗଡ଼ଜାତ ତଦନ୍ତ କମିଟି ମହତାବବାବୁଙ୍କ ନେତୃତ୍ୱରେ ଗଢ଼ାହୋଇଥିଲା । ଗୁଜୁରାଟ ପ୍ରଦେଶର ସ୍ୱାଧୀନତା ସଂଗ୍ରାମୀ ନେତା ବଳବନ୍ତ ରାୟ ମେହେଟା ସେତେବେଳେ ଦେଶୀୟ ରାଜ୍ୟମାନଙ୍କରେ ଚାଲିଥିବା

ଦମନ ଓ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମୀ ଭୂମିକା ଗ୍ରହଣ କରିଥାଆନ୍ତି । ବଳବନ୍ତ ରାୟ ମେହେଟ୍ଟା ଓ ଲାଲମୋହନ ପଟ୍ଟନାୟକ ଏହି ତଦନ୍ତ କମିଟିର ସଭ୍ୟ ଥିଲେ । ଗଡ଼ଜାତ ଆନ୍ଦୋଳନର ଅନ୍ୟତମ ନେତା ଢେଙ୍କାନାଳର ସାରଙ୍ଗଧର ଦାସ ସେହି କମିଟିର ସଂପାଦକକାର୍ଯ୍ୟ ନିର୍ବାହ କରୁଥିଲେ । ରାଜାମାନଙ୍କର ଅନ୍ୟାୟ, ଅତ୍ୟାଚାର, ନାରୀଧର୍ଷଣ, ବେଠିବେଗାରି ଓ ଅନ୍ୟାନ୍ୟ ଅକଥନୀୟ ଅତ୍ୟାଚାର ସମ୍ବନ୍ଧରେ ଗଡ଼ଜାତର ବହୁ ଲୋକ ଆସି କମିଟି ଆଗରେ ସାକ୍ଷ୍ୟ ଦେଇଥିଲେ । ମୁଁ ସେତେବେଳେ ପୂର୍ବ ଛାତ୍ରାବାସରେ ଥାଏ । ସାକ୍ଷ୍ୟ ଦେବାକୁ ଆସୁଥିବା ଗଡ଼ଜାତ ଅଞ୍ଚଳର ବହୁ ପ୍ରଜାମଣ୍ଡଳ କର୍ମୀ ଆମ ପାଖରେ ହଷ୍ଟେଲ୍‌ରେ ରହୁଥିଲେ । ଆମ କଲେଜରେ ପଢୁଥିବା କେତେ ଛାତ୍ରଙ୍କୁ ମଧ କମିଟି ଆଗରେ ସାକ୍ଷ୍ୟ ଦେବାପାଇଁ ଆମେ ପଠାଇଥିଲୁ, ସେମାନେ ସାକ୍ଷ୍ୟ ଦେଇଥିଲେ । ସେତେବେଳେ ଗୋଟିଏ ଅତି କୌତୂହଳପ୍ରଦ କଥା ମୁଁ ଶୁଣିଥିଲି । ମହତାବ ତଦନ୍ତ କମିଟିକୁ ସାହାଯ୍ୟ କରିବା ପାଇଁ ଗଡ଼ଜାତ ଅଞ୍ଚଳର ଜଣେ ଭଦ୍ରଲୋକ ଆସି କମିଟି ଅଫିସରେ ଜୁଟିଥିଲେ । ସେ ଖୁବ୍ ଉତ୍ସାହର ସହ କାର୍ଯ୍ୟ କଲେ । କମିଟି ସଭ୍ୟମାନଙ୍କର ଖୁବ୍ ବିଶ୍ୱାସଭାଜନ ହୋଇଗଲେ । ଦିନେ ତଦନ୍ତ ସମ୍ବନ୍ଧୀୟ ଅନେକ ଗୁରୁତ୍ୱପୂର୍ଣ୍ଣ କାଗଜପତ୍ର ଧରି ସେ କୁଆଡ଼େ ଚମ୍ପଟ୍ ମାରି ଚାଲିଗଲେ । କମିଟିର ସଭ୍ୟମାନେ ବଡ଼ ଅସୁବିଧାରେ ପଡ଼ିଲେ । ଜଣାପଡ଼ିଲା, ଉକ୍ତ ଲୋକ ଜଣକ କୁଆଡ଼େ ଢେଙ୍କାନାଳ ରାଜାଙ୍କର ଗୁପ୍ତଚର ଥିଲା ଏବଂ ସବୁ କାଗଜପତ୍ର ନେଇ ରାଜାଙ୍କୁ ଦେଇଦେଲା । ଏ କଥା ଶୁଣି ଢେଙ୍କାନାଳର ଯେଉଁ ପ୍ରଜାମାନେ ସାକ୍ଷ୍ୟ ଦେଇଥିଲେ ସେମାନେ ବଡ଼ ଭୟଭୀତ ହୋଇପଡ଼ିଲେ, କାରଣ ଘୋର ପ୍ରତିଶୋଧପରାୟଣ ରାଜଦରବାର ପକ୍ଷରୁ ସେମାନେ କଠୋର ଅତ୍ୟାଚାର ଆଶଙ୍କା କଲେ । ଘଟଣାଟି ଯେପରି ଚାଞ୍ଚଲ୍ୟକର ସେପରି ରହସ୍ୟମୟ ବୋଧହୋଇଥିଲା । ଏହାପରେ କମିଟିକୁ ଦୋହରା ପରିଶ୍ରମ କରିବାକୁ ପଡ଼ିଲା । କୌଣସି ପ୍ରକାରେ ରିପୋର୍ଟ ପ୍ରସ୍ତୁତ କରାଯାଇ ଛପାଯାଇଥିଲା । ଏହି ରିପୋର୍ଟରେ ରାଜାମାନଙ୍କର ସବୁପ୍ରକାର ଅତ୍ୟାଚାରର କାହାଣୀ ନାନା ଦୃଷ୍ଟାନ୍ତସହ ବର୍ଣ୍ଣନା କରାଯାଇଥିଲା । ରିପୋର୍ଟଟି ପ୍ରକାଶ ପାଇବା ପରେ ବିଭିନ୍ନ ଗଡ଼ଜାତ ରାଜ୍ୟମାନଙ୍କରେ ଉତ୍ପୀଡ଼ନ, ଅନ୍ୟାୟ, ଅତ୍ୟାଚାର ଓ ଜୁଲମର କାହାଣୀ ଓଡ଼ିଶା ତଥା ଭାରତବର୍ଷର ଲୋକେ ଜାଣିବାକୁ ପାଇଲେ । ଗଡ଼ଜାତ ରାଜାମାନଙ୍କର ସନନ୍ଦ ରଦ୍ଦ କରି ସେହି ରାଜ୍ୟଗୁଡ଼ିକୁ ଓଡ଼ିଶା ପ୍ରଦେଶ ସହିତ ମିଶାଇ ଦେବାପାଇଁ କମିଟି ସୁପାରିଶ୍ କରିଥିଲେ । ବ୍ରିଟିଶ୍ ସରକାରଙ୍କ ପ୍ରତିନିଧିରୂପେ ଭାଇସ୍‌ରାୟଙ୍କୁ ଏହି ଦାବିସମ୍ବଳିତ ରିପୋର୍ଟଟି ଦିଆଯାଇଥିଲା ।

## ରଣପୁର ପ୍ରଜାମେଳି ଓ ବେଜେଲଗେଟ୍ ହତ୍ୟାକାଣ୍ଡ

ପୂର୍ବତନ ଗଡ଼ଜାତ ଅଞ୍ଚଳରେ ଯେଉଁ ପ୍ରଜା ଆନ୍ଦୋଳନ ଗଢ଼ିଉଠିଥିଲା, ତହିଁରୁ ରଣପୁରରେ ଉତ୍ପୀଡ଼ିତ ଜନତାର ପ୍ରଚଣ୍ଡ ପ୍ରତିକ୍ରିୟା ସୃଷ୍ଟିକରିଥିଲା ଏକ ରୋମହର୍ଷଣକାରୀ ଘଟଣା । ୧୯୩୯ ମସିହା ଜାନୁୟାରୀ ପାଞ୍ଚ ତାରିଖ ଦିନ ରଣପୁରର ଉତ୍ପୀଡ଼ିତ ପ୍ରଜାମାନଙ୍କଦ୍ୱାରା ସାରା ପୂର୍ବାଞ୍ଚଳ ଦେଶୀୟ ରାଜ୍ୟମାନଙ୍କର ପଲିଟିକାଲ୍ ଏଜେଣ୍ଟ ଗୋରା ସାହେବ ମେଜର୍ ବେଜେଲଗେଟ୍‌ଙ୍କ ହତ୍ୟା ଖବର ଚାରିଆଡ଼େ ଏକାଧାରାରେ ଘୋର ଚାଞ୍ଚଲ୍ୟ ଏବଂ ଏକ ନୂତନ ଧରଣର ଗଣଉନ୍ମାଦନା ସୃଷ୍ଟି କରିଥିଲା । ଘଟଣାଟି ହେଲା, ରଣପୁର ଦରବାରର ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ପ୍ରଜାମାନେ ପ୍ରଜାମଣ୍ଡଳ ନେତୃତ୍ୱରେ ମେଳିକରି ଆନ୍ଦୋଳନ କରିବାପାଇଁ ବାହାରିପଡ଼ିଥିଲେ । ରାଜ୍ୟସରକାର ପକ୍ଷରୁ ରଣପୁର ପ୍ରଜାମଣ୍ଡଳକୁ ବେଆଇନ୍ ଘୋଷଣା କରାଯାଇଥିଲା । ବହୁସଂଖ୍ୟକ କର୍ମୀଙ୍କୁ ଗିରଫ କରାଯାଇ ଜେଲ୍‌ରେ ବନ୍ଦୀକରାଯାଇଥିଲା । ଫଳରେ ଆନ୍ଦୋଳନ ଆହୁରି ବ୍ୟାପକ ହେଲା । ଜାନୁୟାରୀ ପାଞ୍ଚ ତାରିଖ ଦିନ ବନ୍ଦୀମାନଙ୍କର ମୁକ୍ତି ଦାବି କରିବା ଉଦ୍ଦେଶ୍ୟରେ ରଣପୁର ରାଜନଅର ପାଖରେ ଗୋଟିଏ ବିରାଟ ଜନସମାବେଶ ହେବ ବୋଲି ପ୍ରଜାମଣ୍ଡଳ ପକ୍ଷରୁ ଘୋଷଣା କରାଗଲା । ଦରବାର

ସେହିଦିନ ବନ୍ଦୀମାନଙ୍କୁ ମୁକ୍ତ କରିନଦେଲେ ଲୋକମାନେ ଜେଲଖାନା ଭାଙ୍ଗି ବନ୍ଦୀମାନଙ୍କୁ ନେଇଯିବେ ବୋଲି ରାଜଦରବାର ପକ୍ଷରୁ ଆଶଙ୍କା କରାଯାଇଥିଲା । ରାଜା ଆତଙ୍କିତ ହୋଇପଡ଼ିଲେ । ତାଙ୍କୁ ତୁରନ୍ତ ସାହାଯ୍ୟ କରିବାପାଇଁ ପଲିଟିକାଲ୍ ଏଜେଣ୍ଟ ମେଜର୍ ବେଜେଲ୍‌ଗେଟ୍‌ଙ୍କ ଶରଣାପନ୍ନ ହେଲେ । ତାଙ୍କ ପାଖକୁ ଜରୁରୀ ଖବର ପଠାଇଲେ । ରଣପୁରରୁ ଲାଗିଥିବା ନୟାଗଡ଼ ରାଜ୍ୟରେ ସେଦିନ ପଲିଟିକାଲ୍ ଏଜେଣ୍ଟ ଗସ୍ତରେ ଥା'ନ୍ତି । ଖବର ପାଇ ସେ ତୁରନ୍ତ ରଣପୁର ବାହାରିଲେ; କିନ୍ତୁ ରଣପୁରରେ ପହଞ୍ଚିବା ତାଙ୍କ ପକ୍ଷରେ ସହଜ ହୋଇନଥିଲା । ପ୍ରଜାମାନେ ରାସ୍ତା ପାଖରେ ଥିବା ବହୁତ ବଡ଼ ବଡ଼ ଗଛ କାଟି ରାସ୍ତା ଉପରେ ଶୁଆଇଦେଇ ରାସ୍ତା ଅବରୋଧ କରିଥାଆନ୍ତି । ରାସ୍ତା ପରିଷ୍କାର କରି କରି ବେଜେଲ୍‌ଗେଟ୍ ଆସି ରଣପୁର ଗଡ଼ରେ ପହଞ୍ଚିଥିଲେ । ସେତେବେଳେ ରଣପୁର ଗଡ଼ରେ ହଜାର ହଜାର ପ୍ରଜା ରୁଣ୍ଡ ହୋଇଥାଆନ୍ତି । ରାସ୍ତା ପରିଷ୍କାର କଲାବେଳେ ଲୋକଙ୍କ ସଙ୍ଗରେ ବେଜେଲ୍‌ଗେଟ୍ ସାହେବଙ୍କର ସାମାନ୍ୟ ସଂଘର୍ଷ ହୋଇଥିଲା । ସାହେବ ଆସି ରାଜନଅର ପାଖରେ ପହଞ୍ଚିଲାବେଳକୁ ଗୋଟିଏ ଗୁଜବ ପ୍ରଚାର ହୋଇଯାଇଥିଲା ଯେ ବାଟରେ ସେ ଦୁଇଜଣ ପ୍ରଜାଙ୍କୁ ରିଭଲଭର୍‌ରେ ଗୁଳି କରି ମାରିଦେଇଛନ୍ତି । ଏହା ଶୁଣି ପ୍ରଜାମାନଙ୍କ ଭିତରେ ପ୍ରବଳ ଉତ୍ତେଜନା ପ୍ରକାଶପାଇଥାଏ । ଏହା ଗୋଟିଏ ମିଥ୍ୟା ଗୁଜବ ବୋଲି ଲୋକଙ୍କୁ ବୁଝାଇବାକୁ ନିଜେ ବେଜେଲ୍‌ଗେଟ୍ ସାହେବ ଉଦ୍ୟମ କଲାବେଳେ ଉତ୍ତ୍ୟକ୍ତ ଜନତା ତାଙ୍କୁ ଘେରିଯାଇଥିଲେ । ଠେଲାପେଲା ଭିତରେ ସାହେବ ଅତ୍ୟନ୍ତ ଉତ୍ତେଜିତ ଓ ଭୟଭୀତ ହୋଇପଡ଼ି ନିଜ ରିଭଲଭର୍‌ରୁ ଗୁଳି ଚଳାଇବାରୁ ଘଟଣା ସ୍ଥଳରେ ଜଣେ ପ୍ରଜାର ମୃତ୍ୟୁ ଘଟିଲା । ଏହା ପରେ ଉତ୍ତ୍ୟକ୍ତ ଜନତା ବେଜେଲ୍‌ଗେଟ୍ ସାହେବଙ୍କୁ ପିଟିପିଟି ମାରିଦେଇଥିଲେ । ଗୋରା ସାହେବ ବେଜେଲ୍‌ଗେଟ୍‌ଙ୍କ ମୃତ୍ୟୁ ଘଟଣା ନିର୍ମମ ହେଲେ ମଧ ତାଙ୍କ ନିଜର ଅବିବେକିତା ଓ ଦୁଃସାହସିକତା ହେତୁ ହିଁ ଏକ ଉତ୍ତ୍ୟକ୍ତ ପରିସ୍ଥିତିରୁ ଏହି ପରିଣତି ଉପୁଜିଥିଲା ।

ରଣପୁର ପ୍ରଜାମଣ୍ଡଳର ଲୋକମାନେ କାଳେ ସେମାନଙ୍କର ପ୍ରସ୍ତାବିତ ଜନସମାବେଶରେ ହିଂସାତ୍ମକ କାର୍ଯ୍ୟ କରିପକାଇବେ ବୋଲି ରଣପୁର ପ୍ରଜାମଣ୍ଡଳର କର୍ମୀ ବନମାଳୀ ରାମ ଆଶଙ୍କା କରିଥିଲେ । ତେଣୁ ଉତ୍‌କ୍ଷିପ୍ତ ପ୍ରଜାମାନଙ୍କୁ ଅହିଂସ ପଥରେ ଆୟତ୍ତ କରି ରଖିବା ଉଦ୍ଦେଶ୍ୟରେ ସେ ପୂର୍ବରୁ ହରେକୃଷ୍ଣ ମହତାବଙ୍କ ସାହାଯ୍ୟ ଓ ଉପସ୍ଥିତି ଲୋଡ଼ିଥିଲେ । ସେହି ଜାନୁୟାରୀ ପାଞ୍ଚ ତାରିଖ ଦିନ ମହତାବ ବନମାଳୀ ରାମଙ୍କ ସହିତ ରଣପୁର ଯାଇଥିଲେ । ଗଡ଼ରେ ପହଞ୍ଚିବା ପୂର୍ବରୁ ବାଟରେ ଶୁଣିବାକୁ ପାଇଲେ ରଣପୁରରେ ବେଜେଲ୍‌ଗେଟ୍‌ଙ୍କ ହତ୍ୟାକାଣ୍ଡ ବିଷୟ । ମହତାବବାବୁ ରଣପୁରରେ ପହଞ୍ଚିବା ବେଳକୁ ରାତି ପ୍ରାୟ ନଅଟା ହୋଇଯାଇଥାଏ । ଘଟଣାଟି ଘଟିଯାଇଥାଏ ବହୁ ସମୟ ଆଗରୁ । ସେଠାରେ ସେ ବିଶଦ ବିବରଣୀ ଜାଣିବାକୁ ପାଇଥିଲେ । ବେଜେଲ୍‌ଗେଟ୍‌ଙ୍କ ଶବକୁ କେତେକ ପୁଲିସ ଜଗିରହିଥା'ନ୍ତି । ପୁଲିସମାନେ ମହତାବବାବୁଙ୍କୁ ନେଇ ମରି ପଡ଼ିଥିବା ବେଜେଲ୍‌ଗେଟ୍ ସାହେବଙ୍କ ଶବ ଦେଖାଇଥିଲେ । ସେହିଦିନ ରାତିରେ ସେଠାରେ ମହତାବବାବୁଙ୍କ ଉପସ୍ଥିତି ଅବସ୍ଥା ସମ୍ଭାଳିବାରେ ବିଶେଷ ସହାୟକ ହୋଇଥିଲା । ଲୋକମାନେ କିପରି ପରବର୍ତ୍ତୀ ପୁଲିସ ଅତ୍ୟାଚାରରୁ ରକ୍ଷାପାଇପାରିବେ ସେ ସମ୍ବନ୍ଧରେ ମହତାବବାବୁ ପ୍ରଜାମଣ୍ଡଳକୁ କେତେକ ପରାମର୍ଶ ଦେଇଥିଲେ । ନିଜ ଜୀବନକୁ ବିପନ୍ନକରି ସେଦିନ ସେ ସାହସର ସହିତ ଅବସ୍ଥାର ସମ୍ମୁଖୀନ ହୋଇଥିଲେ । ସେହି ରାତିରେ ସେ କଟକ ଫେରିଆସି ପରଦିନ ସକାଳେ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ଓ ଅନ୍ୟାନ୍ୟମାନଙ୍କୁ ସମସ୍ତ ଘଟଣା ଜଣାଇଥିଲେ । ଏହି ଘଟଣାଚକ୍ରରେ ମହତାବବାବୁଙ୍କୁ ତାଙ୍କ ଜୀବନରେ ଗୋଟିଏ ବଡ଼ ବିପଦର ସମ୍ମୁଖୀନ ହେବାକୁ ପଡ଼ିଥିଲା । ବେଜେଲ୍‌ଗେଟ୍‌ଙ୍କ ହତ୍ୟା ଘଟଣା ସହିତ ମହତାବଙ୍କୁ ଜଡ଼ିତ କରିବାପାଇଁ ଉଦ୍ୟମ ହୋଇଥିଲା । ଓଡ଼ିଶାର ତତ୍‌କାଳୀନ ଲାଟ୍ ସାର୍ ଜନ୍ ହବାର୍ଡ଼ଙ୍କ ମତରେ ମହତାବବାବୁ ଷଡଯନ୍ତ୍ର କରି ବେଜେଲ୍‌ଗେଟ୍‌ଙ୍କୁ ମରାଇଦେଇଥିଲେ । ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସଙ୍କ

ଆଗରେ ଲାଟ୍ ଏହି ଅଭିଯୋଗ କରିଥିଲେ ବୋଲି ମୁଁ ବିଶ୍ୱନାଥବାବୁଙ୍କଠାରୁ ଶୁଣିଥିଲି । କିନ୍ତୁ ବିଶ୍ୱନାଥବାବୁ ଲାଟ୍‌ଙ୍କର ଏହି ମନୋଭାବର ଘୋର ପ୍ରତିବାଦ କରିଥିଲେ । ଏଥିରେ ଦୁଇଜଣଙ୍କ ମଧ୍ୟରେ କୁଆଡ଼େ ତୀବ୍ର ବାକ୍ୟ ବିନିମୟ ହୋଇଥିଲା ଏବଂ ଲାଟ୍ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସଙ୍କ ସହିତ ଆଠ ଦଶ ଦିନ କଥାବାର୍ତ୍ତା ବନ୍ଦକରିଦେଇଥିଲେ । ଦେଶୀୟ ରାଜ୍ୟର ସାଧାରଣ ପୁଲିସ ସଂସ୍ଥାର ତଦନ୍ତ ଛଡ଼ା ଭାରତ ସରକାରଙ୍କ ଗୋଇନ୍ଦା ବିଭାଗ ମଧ୍ୟ ତଦନ୍ତ ଆରମ୍ଭ କରିଦେଇଥିଲେ । ଲାଟ୍‌ଙ୍କ ପ୍ରତ୍ୟକ୍ଷ ନିର୍ଦ୍ଦେଶମତେ ଓଡ଼ିଶା ସରକାରଙ୍କ ଗୋଇନ୍ଦା ବିଭାଗ ମଧ୍ୟ ତଦନ୍ତ ଆରମ୍ଭ କରିଦେଇଥିଲେ । ଓଡ଼ିଶା ସରକାରଙ୍କ ଗୋଇନ୍ଦା ବିଭାଗ ଲାଟ୍‌ଙ୍କ ମତାମତଦ୍ୱାରା ପ୍ରଭାବିତ ହେବାକୁ ଲାଗିଲା ଏବଂ ଘଟଣା ସହିତ ମହତାବବାବୁଙ୍କୁ ଜଡ଼ିତ କରିବା ଉଦ୍ଦେଶ୍ୟରେ ରିପୋର୍ଟ ପ୍ରସ୍ତୁତ କରିବାରେ ଲାଗିପଡ଼ିଥିଲା । ବିଶ୍ୱନାଥ ଦାସ ଏଥିରେ କ୍ଷୋଭ ପ୍ରକାଶକରି ତାହା ଆଦୌ ବିଶ୍ୱାସଯୋଗ୍ୟ ନୁହେଁ ବୋଲି ସବୁବେଳେ ଦୃଢ ମତ ବ୍ୟକ୍ତ କରିଥିଲେ । ଏ ସମସ୍ତ ଘଟଣା ଗାନ୍ଧୀଜୀଙ୍କ ଦୃଷ୍ଟିକୁ ଅଣାଯିବାରୁ ସେ ବିଖ୍ୟାତ ଇଂରେଜ ଭଦ୍ରମହିଳା ଆଗାଥା ହାରିସନ୍‌ଙ୍କ ଜରିଆରେ ତତ୍କାଳୀନ ବଡ଼ଲାଟ୍‌ଙ୍କୁ ପ୍ରକୃତ ଘଟଣା କ'ଣ ବୁଝାଇଦେଇଥିଲେ । ତେଣୁ କେନ୍ଦ୍ର ସରକାରଙ୍କ ଗୋଇନ୍ଦା ବିଭାଗର ତଦନ୍ତ ନିରପେକ୍ଷ ହୋଇଥିଲା ଏବଂ ରଣପୁରରେ ଏକାଦିନକେ ମହତାବବାବୁଙ୍କ ଉପସ୍ଥିତି ଓ ବେଜେଲ୍‌ଗେଟ୍‌ଙ୍କ ହତ୍ୟାକାଣ୍ଡ କାକତାଳିକ ନ୍ୟାୟ ଭଳି ଘଟିଥିଲା ବୋଲି ସାବ୍ୟସ୍ତ ହେଲା । ହତ୍ୟା ସହିତ ତାଙ୍କର ପ୍ରକୃତରେ କୌଣସି ସମ୍ପର୍କ ନଥିଲା ବୋଲି ସେମାନେ ରିପୋର୍ଟ ଦେଇଥିଲେ । ମହତାବବାବୁ, ରଘୁ ଦିବାକରଙ୍କ ଦଶା ଭୋଗିବାରୁ ଉଦ୍ଧାରପାଇଥିଲେ ।

## ରଘୁ ଦିବାକରଙ୍କ ସମ୍ପର୍କରେ ମୋର ସ୍ମୃତି

ମେଜର୍ ବେଜେଲ୍‌ଗେଟ୍‌ଙ୍କ ହତ୍ୟା ଅଭିଯୋଗ ମକଦ୍ଦମାରେ ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ାଙ୍କୁ ଫାଶୀ ଦିଆଯାଇଥିଲା । ଏହି ସହିଦ୍‌ମାନଙ୍କୁ ସ୍ମରଣ କରି 'ରଘୁ ଦିବାକର' ସହିଦ୍ ଦିବସ ପାଳିତ ହେଉଛି । ସେମାନଙ୍କ ସହିତ ମୋର କିଛିଟା ଆଳାପ ଥିଲା । ସେମାନେ ରେଭେନ୍‌ସା କଲେଜର ପୂର୍ବଛାତ୍ରାବାସରେ ମୋତେ ଦେଖାକରିଥିବାର କେତେକ ଘଟଣା ମୋର ମନେଅଛି । ପରବର୍ତ୍ତୀକାଳରେ ମଧ୍ୟ ସେମାନଙ୍କ ଫାଶୀର ମର୍ମନ୍ତୁଦ ସ୍ମୃତି ମୋର ଜଣେ ବିଶିଷ୍ଟ ସହକର୍ମୀଙ୍କୁ ଦୀର୍ଘ ଦିନ ପାଇଁ ଅତ୍ୟନ୍ତ ମାନସିକ ଭାରାକ୍ରାନ୍ତ କରିପକାଇଥିଲା । ସେଥିପାଇଁ ତାଙ୍କର ଦରଦୀ ତଥା ଦୁର୍ବଳ ମନ ଏକାନ୍ତ ଅବସାଦଗ୍ରସ୍ତ ହୋଇପଡ଼ିବାରୁ ଆମ୍ଭେମାନେ ବିବ୍ରତ ହୋଇଥିଲୁ । ବେଜେଲ୍‌ଗେଟ୍ ହତ୍ୟା ପରେ ରଘୁ ଓ ଦିବାକର ଦୁଇ ସଂଗ୍ରାମୀ ଗିରଫଦାରିକୁ ଏଡ଼େଇଦେବା ପାଇଁ କିଛିଦିନ କଟକରେ ଲୁଚି ରହିଥିଲେ । ସେମାନେ କଟକରେ ଲୁଚିରହିଥିବାର ସମ୍ବାଦ ଗୋଇନ୍ଦା ବିଭାଗ ଅଫିସରମାନେ କୁଆଡ଼େ ତତ୍କାଳୀନ କୌଣସି କଲେଜ ଛାତ୍ରଙ୍କ ସୂତ୍ରରୁ କଥା ପ୍ରସଙ୍ଗରେ ଜାଣିପାରିଥିଲେ । ସେତେବେଳେ ପ୍ରଦେଶ ଗୋଇନ୍ଦା ବିଭାଗରେ କାମକରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ଅଧିକାଂଶ ଓଡ଼ିଶାର ସ୍ଥାୟୀ ବାସିନ୍ଦା ବଙ୍ଗାଳି ଥିଲେ । ତେଣୁ ସେମାନଙ୍କ ସହିତ ବୀରେନ୍‌ବାବୁଙ୍କର ସ୍ୱାଭାବିକ ସମ୍ପର୍କ ରହିବା କଥା । ମୁଁ ପୂର୍ବରୁ କହିଛି ଯେ, 'ବୀରେନ୍‌ବାବୁ ତାଙ୍କର ଛାତ୍ରାବସ୍ଥାର ପ୍ରଥମ ଭାଗରେ ସ୍ୱାଧୀନତା ସଂଗ୍ରାମୀ ନଥିଲେ । ତାଙ୍କ ଛାତ୍ରଜୀବନର ଶେଷଭାଗକୁ ସେ ଆମ୍ଭମାନଙ୍କ ସମ୍ପର୍କରେ ଆସିଥିଲେ ଓ ସ୍ୱାଧୀନତା ସଂଗ୍ରାମପ୍ରତି ଆକୃଷ୍ଟ ହୋଇଥିଲେ । ୧୯୪୨ ମସିହା ଅଗଷ୍ଟ ବିପ୍ଳବ ସମୟରେ ସେ ବହୁତ ଦିନ ଅଟକବନ୍ଦୀ ହୋଇ ଜେଲ୍‌ଜୀବନ ଯାପନ କରିଥିଲେ । ୧୯୫୭ ମସିହାରେ ବୀରେନ୍‌ବାବୁ ରାଜ୍ୟ ବିଧାନସଭା ସଭ୍ୟ ଥାଆନ୍ତି । ସେତେବେଳକୁ ସହିଦ ରଘୁ ଓ ଦିବାକର ଫାଶୀ ପାଇବା ପରେ ସତର ବର୍ଷ ବିତିଯାଇଥାଏ । ଅଥଚ ଦିନେ ଅକସ୍ମାତ୍ ବୀରେନ୍‌ବାବୁଙ୍କ ମୁଣ୍ଡରେ ଗୋଟିଏ କାଳ୍ପନିକ ଚିନ୍ତା ପ୍ରବେଶ କରିଥିଲା । ସେ ଭାବିଲେ, ହୁଏତ ଛାତ୍ରଜୀବନରେ କଥାବାର୍ତ୍ତାରେ ତାଙ୍କର ଅତର୍କିତ

ଆଚରଣ ଯୋଗୁଁ ଗୋଇନ୍ଦା ପୁଲିସମାନେ ଆତ୍ମଗୋପନକାରୀ ରଘୁ ଓ ଦିବାକରଙ୍କ ସନ୍ଧାନ ପାଇଥିବେ । ଏହି ଭାବନା ସର୍ବଦା ମୁଣ୍ଡରେ ଭୂତ ପଶିବାଭଳି ତାଙ୍କୁ ଚିନ୍ତିତ କରିପକାଇଲା । ରାତିରେ ସେ ଆଦୌ ଶୋଇପାରନ୍ତିନାହିଁ । ଆସ୍ତେ ଆସ୍ତେ ସେ ଅତି ଦୁର୍ବଳ ହୋଇପଡ଼ିଲେ । ବୀରେନ୍‌ବାବୁ ଅନେକ ସମୟରେ ବାହ୍ୟ ଆଚରଣରେ ଯେପରି କର୍କଶ ଓ କଠୋର ଜଣାପଡ଼ନ୍ତି, ଅନ୍ତରରେ ସେପରି ନଥିଲେ । ତାଙ୍କର ମନ ଥିଲା କୋମଳ ଓ ଦୁର୍ବଳ । ତାଙ୍କର ଏହି ଆକସ୍ମିକ ମାନସିକ ଅବସାଦ କଥା କେତେଜଣ ଘନିଷ୍ଠ ବନ୍ଧୁଙ୍କ ବ୍ୟତୀତ ଅନ୍ୟ କାହାରିକୁ କୁହାଯାଇନଥିଲା । ବହୁତ ସାଧୁ ସନ୍ଥ ଓ ଦେବଦେବୀଙ୍କ ଆରାଧନା କରାଯାଇଥିଲା । ମାନସିକ ଚିକିତ୍ସାରେ ବିଶେଷଜ୍ଞ ଓ ଅନ୍ୟାନ୍ୟ ଡାକ୍ତର ମଧ୍ୟ ତାଙ୍କୁ ଦେଖିଲେ । କଲିକତାରେ ପଶ୍ଚିମ ବଙ୍ଗଳାର ମୁଖ୍ୟମନ୍ତ୍ରୀ ସ୍ୱନାମଧନ୍ୟ ଡାକ୍ତର ବିଧାନଚନ୍ଦ୍ର ରାୟ ମଧ୍ୟ ସେତେବେଳେ ତାଙ୍କୁ ଦେଖିଥିଲେ । କୌଣସିମତେ ସେ ଚିନ୍ତା ତାଙ୍କ ମନରୁ ଉଭେଇଲା ନାହିଁ । ତାଙ୍କୁ ଆଦୌ ନିଦ ହେଉନଥାଏ । ଏଭଳି ଆଶଙ୍କା କରି ଚିନ୍ତିତ ହେବା ସମ୍ପୂର୍ଣ୍ଣ ଅବାନ୍ତର ବୋଲି ଆମ୍ଭେମାନେ ତାଙ୍କୁ ବୁଝାଉଥାଉ; କିନ୍ତୁ ସେଥିରେ କିଛି ଫଳ ହେଲାନାହିଁ । ଶେଷରେ ଯେଉଁ ସେସନ୍‌ସଜଜ୍ କୋର୍ଟରେ ରଘୁ ଦିବାକର ପ୍ରଭୃତିଙ୍କ ବିଚାର ହେଉଥିଲା ସେ କୋର୍ଟର ସମସ୍ତ ପୁରୁଣା କାଗଜ ଗୁପ୍ତରେ ଟିକିନିଖି ଦେଖିବାପାଇଁ ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କ ପରସ୍‌ନାଲ୍ ଆସିଷ୍ଟାଣ୍ଟ କୈଳାସ ଚନ୍ଦ୍ର ବୋଷଙ୍କୁ ରଣପୁରକୁ ପଠାଯାଇଥିଲା । କଥାପ୍ରସଙ୍ଗରେ ଅକପଟ ଭାବରେ ବୀରେନ୍‌ବାବୁ ଗୋଇନ୍ଦା ଅଫିସରଙ୍କ ଆଗରେ ରଘୁ-ଦିବାକରଙ୍କ ବିଷୟରେ କାଳେ କ'ଣ କହିପକାଇଥିବେ ଏବଂ ତାହା ସେମାନେ ବିଚାର ସମୟରେ କୋର୍ଟରେ ଏହି ବୀର ସ୍ୱାଧୀନତା ସଂଗ୍ରାମୀମାନଙ୍କ ବିରୁଦ୍ଧରେ ବ୍ୟବହାର କରିଥିବେ ବୋଲି ବୀରେନ୍‌ବାବୁ ଧରିନେଇଥିଲେ । ବୀରେନ୍‌ବାବୁ ଜଣେ ନିଷ୍କପଟ ଲୋକ ଥିଲେ । ତେଣୁ ନିଜ ଛାତ୍ରଜୀବନରେ କୌଣସି ଅତର୍କିତ ପ୍ରଗଲ୍‌ଭତାଜନିତ ଏକ ଅବାଞ୍ଛିତ ଆଶଙ୍କା ମଧ୍ୟ ତାଙ୍କ ମନରେ ପାଗଳାମି ସୃଷ୍ଟି କରିଥିଲା । ରଣପୁର ରେକର୍ଡ଼ ରୁମ୍‌ରୁ କୈଳାସବାବୁ ସବୁ କାଗଜପତ୍ର ଯାଞ୍ଚ କରି ଓ କେତେକ ପ୍ରାସଙ୍ଗିକ କାଗଜପତ୍ର ଘେନିଆସି ବୀରେନ୍‌ବାବୁଙ୍କୁ ଦେଖାଇବାରୁ ପରେ ତାଙ୍କ ମନରେ ଶାନ୍ତି ଆସିଥିଲା ଏବଂ ସେ ବୁଝିବାକୁ ଆରମ୍ଭ କରିଥିଲେ ଯେ ରଘୁ-ଦିବାକରଙ୍କ ଫାଶୀପାଇଁ ସେ ଦାୟୀ ନୁହନ୍ତି । ତାହାଛଡ଼ା ରଣପୁର ପ୍ରଜା ଆନ୍ଦୋଳନର ଜଣେ ମୁଖ୍ୟ କର୍ମୀ ବନମାଳୀ ରାମଙ୍କ ପୁତ୍ର କଟକର ଆଡ୍‌ଭୋକେଟ୍ ରାମଚନ୍ଦ୍ର ରାମଙ୍କୁ ମଧ୍ୟ ବୀରେନ୍‌ବାବୁ ବହୁବାର ଡକାଇ ଘଣ୍ଟା ଘଣ୍ଟା ଆଲୋଚନା କରି ସବୁ ଘଟଣା ବୁଝି ନିଜ ସନ୍ଦେହ ଦୂର କରିବାକୁ ଉଦ୍ୟମ କରିଥିଲେ । ବୀରେନ୍‌ବାବୁଙ୍କ ଘରେ ରଘୁ-ଦିବାକରଙ୍କ ବିଚାରର କୋର୍ଟରେକର୍ଡ଼ ରାମଚନ୍ଦ୍ର ରାମ ସେତେବେଳେ ଦେଖିଥିଲେ ବୋଲି ତାଙ୍କ 'ସଂଗ୍ରାମୀ' ପୁସ୍ତକରେ ଉଲ୍ଲେଖ କରିଛନ୍ତି ।

## ମେଡ଼ିକାଲ ସ୍କୁଲ ଛାତ୍ରଧର୍ମଘଟ

୧୯୩୯ ମସିହାରେ କଟକ ମେଡ଼ିକାଲ ସ୍କୁଲରେ ଧର୍ମଘଟ ଓ ସେହି ଧର୍ମଘଟ ସଂକ୍ରାନ୍ତରେ ଛାତ୍ର ସତ୍ୟାଗ୍ରହ ଭାରତୀୟ ଛାତ୍ର ଆନ୍ଦୋଳନରେ ଓଡ଼ିଶାର ଛାତ୍ରଙ୍କୁ ଏବଂ ସେମାନଙ୍କର ସଙ୍ଗଠନ ଉତ୍କଳ ଛାତ୍ରସଂଘକୁ ଖୁବ୍ ଉଚ୍ଚ ସ୍ଥାନ ଦେଇଥିଲା । ଶହ ଶହ ସଂଖ୍ୟାରେ ଛାତ୍ର ଜେଲ୍ ବରଣ କରିଥିଲେ । ପ୍ରଦେଶସାରା ଛାତ୍ର ଧର୍ମଘଟ ଓ ପ୍ରତିବାଦ ସଭାମାନ ହୋଇଥିଲା । ପ୍ରଥମେ ଏହି ଧର୍ମଘଟ ମେଡ଼ିକାଲ ସ୍କୁଲରୁ ଆରମ୍ଭ ହୋଇଥିଲା । ତା' ପରେ ଉତ୍କଳ ଛାତ୍ରସଂଘ ଆନୁକୂଲ୍ୟରେ ଏହା ପ୍ରଦେଶର ସବୁ ସ୍କୁଲ ଓ କଲେଜମାନଙ୍କୁ ବ୍ୟାପିଥିଲା । ଛାତ୍ର ଦାବି ହାସଲ ହେବା ପର୍ଯ୍ୟନ୍ତ ଛାତ୍ର ଧର୍ମଘଟ ଚଳାଇବାପାଇଁ ଛାତ୍ରମାନେ ଶହ ଶହ ସଂଖ୍ୟାରେ ସ୍ୱେଚ୍ଛାସେବକ ଶ୍ରେଣୀଭୁକ୍ତ ହୋଇଥିଲେ । ମୁଁ ସେତେବେଳେ ଛାତ୍ର ସଂଘର ସାଧାରଣ ସଂପାଦକ ଥାଏ । ତେଣୁ ମେଡ଼ିକାଲ ସ୍କୁଲ ସଂପର୍କୀୟ ଛାତ୍ର ଆନ୍ଦୋଳନ ସହିତ ଘନିଷ୍ଠ ଭାବରେ ଜଡ଼ିତ ହୋଇଯାଇଥିଲି । ସେତେବେଳେ ଓଡ଼ିଶାର

ସମ୍ବାଦପତ୍ର ଛାତ୍ର ଆନ୍ଦୋଳନ ସଂପର୍କୀୟ ସମ୍ବାଦଗୁଡ଼ିକୁ ଆଶାନୁରୂପ ସ୍ଥାନ ଦେଉନଥିଲେ । ତେଣୁ ଛାତ୍ର ଆନ୍ଦୋଳନ ସଂକ୍ରାନ୍ତ ଖବର ଭଲଭାବରେ ପ୍ରକାଶ କରି ପ୍ରଚାର କରିବାପାଇଁ ଛାତ୍ରମାନଙ୍କ ପକ୍ଷରୁ 'ଛାତ୍ର' ନାମକ ଗୋଟିଏ ଦୈନିକ ପ୍ରଚାରପତ୍ର ପ୍ରକାଶ କରାଯାଉଥିଲା । ତରୁଣକବି ଛାତ୍ରନେତା ସଚ୍ଚି ରାଉତରାୟ ଏହାର ସମ୍ପାଦକ ହୋଇଥିଲେ ।

ଘଟଣାଟି ଉତ୍ପନ୍ନ ହେଲା କଟକ ମେଡ଼ିକାଲ ସ୍କୁଲରୁ । ସ୍କୁଲର ପ୍ରିନ୍‌ସିପାଲ୍ ଥିଲେ ମେଜର୍ ଓ'ନେଲ ସାହେବ । କଟକର ବଡ଼ ଡାକ୍ତରଖାନା ଏହି ସ୍କୁଲ ସହିତ ସଂଲଗ୍ନ ଥାଏ । ସେଠାରେ ଜଣେ ଆଂଗ୍ଲୋଇଣ୍ଡିଆନ୍ ସେବିକା ଥିଲେ । ସେ ଭଦ୍ରମହିଳା ଓଡ଼ିଆମାନଙ୍କ ପ୍ରତି ବଡ଼ ତାଚ୍ଛଲ୍ୟ ବ୍ୟବହାର କରୁଥିଲେ ବୋଲି ଅଭିଯୋଗ ହୋଇଥିଲା । ମାତ୍ର ସେ ଅଭିଯୋଗ ପ୍ରତି କେହି କିଛି କର୍ଣ୍ଣପାତ ନକରିବାରୁ କେତେକ ଡାକ୍ତରୀ ଛାତ୍ର ଉକ୍ତ ସେବିକାଙ୍କୁ ମାଡ଼ଦେଇ ତଳେ ପକାଇଦେଇଥିବାର ଅଭିଯୋଗ ହେଲା । ସ୍କୁଲ ଓ ବଡ଼ଡାକ୍ତରଖାନାର କର୍ତ୍ତୃପକ୍ଷମାନେ ପୁଲିସକୁ ଖବର ଦେବା ସଙ୍ଗେ ସଙ୍ଗେ ଚାରିଜଣ ଛାତ୍ରଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଆରମ୍ଭ କରିଥିଲେ । ଅଭିଯୁକ୍ତ ଛାତ୍ରମାନଙ୍କୁ ଗିରଫ କରିବାପାଇଁ ପୁଲିସ ଆସିବାବେଳେ ଛାତ୍ରମାନେ ସେମାନଙ୍କୁ ବାଧାଦେଇଥିଲେ । ସଂପୃକ୍ତ ଚାରିଜଣ ଛାତ୍ରଙ୍କୁ ମେଡ଼ିକାଲ ସ୍କୁଲ ଛାତ୍ରାବାସ ଭିତରେ ଛାତ୍ରମାନେ ଜଗି ରଖିଥିଲେ, ପୁଲିସକୁ ସେଠାକୁ ଛାଡ଼ିଲେ ନାହିଁ । ପ୍ରିନ୍‌ସିପାଲ୍ ହସ୍ତକ୍ଷେପ କଲେ ମଧ୍ୟ ଛାତ୍ରମାନେ କୌଣସି କଥା ଶୁଣିଲେନାହିଁ । ଏଥିରୁ କର୍ତ୍ତୃପକ୍ଷ ଓ ଛାତ୍ରଙ୍କ ଭିତରେ ସଂଘର୍ଷ ଆରମ୍ଭ ହୋଇ ଆହୁରି କେତେକ ସମସ୍ୟା ଉପୁଜିଲା । ମେଡ଼ିକାଲ ଛାତ୍ରମାନେ ଧର୍ମଘଟ କରି ଶ୍ରେଣୀ ବର୍ଜନ କରିବା ସଙ୍ଗେ ସଙ୍ଗେ ଡାକ୍ତରଖାନାରେ ରୋଗୀ ଦେଖିବା ମଧ୍ୟ ବନ୍ଦକରିଦେଇଥିଲେ । ମେଡ଼ିକାଲ ଛାତ୍ର ନୃସିଂହ ଚରଣ ସାମନ୍ତସିଂହାର, ମୋତିଲାଲ ତ୍ରିପାଠୀ, ରବି ଘୋଷ, ବୀରେନ୍ଦ୍ର ପଟ୍ଟନାୟକ, ମହମ୍ମଦ ସମସୁଲ ହୋଦା ଓ ବୀର ମହାନ୍ତି ପ୍ରଭୃତି ଏହି ଧର୍ମଘଟର ନେତୃତ୍ୱ ନେଇଥିଲେ । ମେଡ଼ିକାଲ ସ୍କୁଲ ଓ ଡାକ୍ତରଖାନାରେ ଏକପ୍ରକାର ଅଚଳ ଅବସ୍ଥା ସୃଷ୍ଟିହୋଇଥିଲା । ତଥାପି କର୍ତ୍ତୃପକ୍ଷ ସମାଧାନପାଇଁ ଆଗ୍ରହୀ ହୋଇନଥିଲେ । ଶେଷରେ ଛାତ୍ରସଂଘ ସମସ୍ୟାଟିକୁ ହାତକୁ ନେଇଥିଲା ଏବଂ ପ୍ରଦେଶବ୍ୟାପୀ ଧର୍ମଘଟପାଇଁ ଆହ୍ୱାନ ଦେଇଥିଲା । ରେଭେନ୍‌ସା କଲେଜଠାରୁ ଆରମ୍ଭକରି ସାରା ପ୍ରଦେଶରେ ଯେତେ ଶିକ୍ଷାନୁଷ୍ଠାନ ଥିଲା ସବୁଆଡ଼େ ଧର୍ମଘଟ ବ୍ୟାପିଥିଲା । ମନ୍ତ୍ରୀମାନଙ୍କ ଅଫିସଠାରୁ ଆରମ୍ଭକରି ସଚିବାଳୟ ପ୍ରଭୃତି ସରକାରୀ ଅଫିସ ଆଗରେ ଛାତ୍ରମାନେ ସତ୍ୟାଗ୍ରହ କରିଥିଲେ । କଟକର ସ୍କୁଲ ଛାତ୍ରମାନଙ୍କ ଭିତରୁ ଯେଉଁ କେତେକ ଛାତ୍ର ଏହି ଆନ୍ଦୋଳନରେ ନେତୃତ୍ୱ ନେଇଥିଲେ, ସେମାନଙ୍କ ମଧ୍ୟରୁ ତତ୍‌କାଳୀନ ବାଚସ୍ପତି ମୁକୁନ୍ଦ ପ୍ରସାଦ ଦାସଙ୍କର ପୁତ୍ର ନଟଗୋପାଳ ଦାସ, ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ ଯଦୁମଣି ମଙ୍ଗରାଜଙ୍କ ପୁତ୍ର ବିଜୟକେତନ ମଙ୍ଗରାଜ, ବର୍ତ୍ତମାନର କମ୍ୟୁନିଷ୍ଟ ନେତା ଲୋକନାଥ ଚୌଧୁରୀ ଓ ପୁରୀର ଜଗବନ୍ଧୁ ଦାସଙ୍କ ନାମ ମୋର ମନେପଡୁଛି । 'ଛାତ୍ର' ପତ୍ରିକାଟି ସେତେବେଳେ ଛାତ୍ର ତଥା ଜନସାଧାରଣଙ୍କ ଭିତରେ ଛାତ୍ର ସମସ୍ୟା ନେଇ ଖୁବ୍ ଆଗ୍ରହ ସୃଷ୍ଟି କରିଥିଲା । ତା'ର ଭାଷା ଓ ଲେଖାର ଶୈଳୀ ଓଡ଼ିଶାରେ ନୂଆ ସଂଗ୍ରାମୀ ସାହିତ୍ୟ ସୃଷ୍ଟି କରିଥିଲା । ପତ୍ରିକାର ସଂପାଦକ ସଚ୍ଚି ରାଉତରାୟଙ୍କ ନାମରେ ପୁଲିସ ପ୍ରେସ୍ ଆଇନ ଅନୁସାରେ ମକଦ୍ଦମା କରି ତାଙ୍କୁ ଗିରଫ କରିବାକୁ ଖୋଜୁଥିଲେ । ତାଙ୍କୁ ଆମେ ଗୋଟିଏ ଗୋପନ ସ୍ଥାନରେ ରଖିଥିଲୁ । ସେହିଠାରୁ ସେ ପତ୍ରିକା ପ୍ରକାଶ କରୁଥା'ନ୍ତି । ପ୍ରତିଦିନ ସନ୍ଧ୍ୟାବେଳେ ଏହି ପତ୍ରିକା ପ୍ରକାଶପାଉଥାଏ ଏବଂ ପରଦିନ କିଏ ଡିକ୍‌ଟେଟର୍ ହୋଇ ସତ୍ୟାଗ୍ରହ ପରିଚାଳନା କରିବ ତାହା ପ୍ରକାଶ ପାଉଥାଏ । ଏହି ଡିକ୍‌ଟେଟର୍‌ଙ୍କ ନେତୃତ୍ୱରେ ବହୁ ଛାତ୍ର ଯାଇ ବିଭିନ୍ନ ଅଫିସ ଆଗରେ ସତ୍ୟାଗ୍ରହ କରୁଥିଲେ । 'ଛାତ୍ର' ପତ୍ରିକାରେ ସଚ୍ଚି ରାଉତରାୟଙ୍କ ଲିଖିତ 'ଶୃଙ୍ଖଳା-ନିୟନ୍ତ୍ରଣ' ଶୀର୍ଷକ ସଂପାଦକୀୟ ଛାତ୍ରମାନଙ୍କ ମଧ୍ୟରେ ଉତ୍ତେଜନା ସୃଷ୍ଟି କରି ସେମାନଙ୍କ ଭିତରେ ଅଦ୍ଭୁତ ଉଦ୍ଦୀପନା ଜାଗ୍ରତ କରୁଥାଏ ।

# ଓଡ଼ିଶାରେ ବିଶ୍ୱକବି ରବୀନ୍ଦ୍ରନାଥ

ସରକାରଙ୍କ ପକ୍ଷରୁ ଯେତେ ଉଦ୍ୟମ ହେଲେ ମଧ୍ୟ ଅଶାନ୍ତି କମିଲାନାହିଁ; ବରଂ ବୃଦ୍ଧିପାଇଲା । ପ୍ରଦେଶ କଂଗ୍ରେସ ଭିତରେ ଥିବା ଦଳାଦଳି ମଧ୍ୟ ଆସି ଛାତ୍ର ଆନ୍ଦୋଳନରେ ପ୍ରବେଶ କରିଥିଲା । ତତ୍‌କାଳୀନ ପ୍ରଦେଶ କଂଗ୍ରେସ ସଭାପତି ପଣ୍ଡିତ ନୀଳକଣ୍ଠ ଦାସଙ୍କ ପୁଅ ଛାତ୍ରନେତା ଅଶୋକ ଦାସଙ୍କ ଗୋଷ୍ଠୀର ଛାତ୍ରମାନେ ଏହାର ସୁଯୋଗ ନେଇ ଛାତ୍ର ଅଶାନ୍ତି ବଢ଼ାଇବାରେ ଲାଗିଥିଲେ । ମୁଁ ଏକଥା ଭଲଭାବରେ ବୁଝିପାରୁଥାଏ; ମାତ୍ର ଛାତ୍ର ଆନ୍ଦୋଳନର ସ୍ୱାର୍ଥ ଦୃଷ୍ଟିରୁ ଅନେକ କଥା ସହ୍ୟ କରିବାକୁ ପଡୁଥାଏ । ହରେକୃଷ୍ଣ ମହତାବ ଏହି ଛାତ୍ର ଆନ୍ଦୋଳନକୁ ଭାଙ୍ଗିଦେବାପାଇଁ ସ୍କୁଲ ଓ କଲେଜମାନଙ୍କୁ ଯାଇ ବହୁତ ଉଦ୍ୟମ କରିଥିଲେ, ମାତ୍ର ସେଥିରେ ସେ କୃତକାର୍ଯ୍ୟ ହୋଇନଥିଲେ । ମହତାବବାବୁ ଛାତ୍ର ଆନ୍ଦୋଳନ ବିରୁଦ୍ଧରେ ଖବରକାଗଜରେ ଲେଖୁଥିଲେ । 'ସମାଜ' ଖବରକାଗଜ ଛାତ୍ର ଆନ୍ଦୋଳନକୁ ବିରୋଧ କରୁଥିବାରୁ 'ଛାତ୍ର' ପତ୍ରିକାରେ 'ସମାଜର ନମାଜ' ଶୀର୍ଷକ ଲେଖା ପ୍ରକାଶକରି ସମାଜ ସଂପାଦକଙ୍କର ସମାଲୋଚନା କରାଯାଇଥିଲା । ଏହିଠାରେ ଉଲ୍ଲେଖ କରିବା କଥା ଯେ, 'ସମାଜ' ଥାଏ ଓଡ଼ିଶାରେ କଂଗ୍ରେସ ପରିଚାଳିତ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତାବହ । ଉତ୍କଳମଣି ଗୋପବନ୍ଧୁ ଦାସଙ୍କଦ୍ୱାରା ପ୍ରତିଷ୍ଠିତ ଏହି ଅନୁଷ୍ଠାନକୁ ଉତ୍କଳମଣି ଲାଲା ଲଜପତରାୟଙ୍କ ପ୍ରତିଷ୍ଠିତ ଲୋକସେବକ ମଣ୍ଡଳକୁ ଦାନ କରିଥିଲେ । ମୃତ୍ୟୁ ପୂର୍ବରୁ ନିଜେ ଉତ୍କଳମଣି ମଧ୍ୟ ଏଇ ମହାନ୍ ସର୍ବଭାରତୀୟ ଅନୁଷ୍ଠାନର ଉପସଭାପତି ଥିଲେ । ଏକଦା ଲୋକସେବକ ମଣ୍ଡଳର ସଦସ୍ୟ ହେବାକୁ ହେଲେ ଜଣେ ପ୍ରଥମେ ଭାରତୀୟ ଜାତୀୟ କଂଗ୍ରେସର ସଭ୍ୟ ହେବ ବୋଲି ସର୍ତ୍ତ ଥିଲା । ତେଣୁ ବ୍ରିଟିଶ୍ ଶାସନ ଅମଳରେ ଓଡ଼ିଶାରେ କଂଗ୍ରେସ ସରକାର ଓ ଜନସାଧାରଣଙ୍କ ମଧ୍ୟରେ ସଂଘର୍ଷଜନିତ ପରିସ୍ଥିତିକୁ ଉତ୍ସାହିତ ନକରିବା ଥିଲା ଅନେକ ନେତୃସ୍ଥାନୀୟ ବ୍ୟକ୍ତିଙ୍କର ଉଦ୍ଦେଶ୍ୟ । ସେହି ଚିନ୍ତା ଜଣେ ଦାୟିତ୍ୱସଂପନ୍ନ ଛାତ୍ରନେତା ହିସାବରେ ମଧ୍ୟ ମୋ ହୃଦୟକୁ ପ୍ରଚ୍ଛନ୍ନଭାବରେ ଆନ୍ଦୋଳିତ କରିଥିଲା ।

ଧର୍ମଘଟ ଚାଲିଥିବା ସମୟରେ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ଓଡ଼ିଶା ଆସି ପୁରୀରେ ଓଡ଼ିଶା ସରକାରଙ୍କ ଅତିଥିରୂପେ ରହିଥିଲେ । ଧର୍ମଘଟକାରୀ ଛାତ୍ରଙ୍କ ମନକୁ ଭୁଲାଇ ଅନ୍ୟଆଡ଼େ ଟାଣିନେବାପାଇଁ କେତେକ ନେତାଙ୍କ ପକ୍ଷରୁ ଗୋଟିଏ ଉପାୟ ବାହାର କରାଯାଇଥିଲା । ଆଗ୍ରହୀ ଯୁବକମାନେ ପୁରୀ ଯାଇ ବିଶ୍ୱକବିଙ୍କ ସହିତ ସାକ୍ଷାତ୍ କରିବାପାଇଁ ସରକାରଙ୍କ ତରଫରୁ ଏକ ସ୍ୱତନ୍ତ୍ର ଟ୍ରେନ୍‌ର ବ୍ୟବସ୍ଥା କରାଗଲା । ଆମ୍ଭେମାନେ ଏହି ଆୟୋଜନର ଅଭିପ୍ରାୟ ବୁଝିପାରିଥିଲୁ । ଉକ୍ତ ଆୟୋଜନକୁ ବର୍ଜନ କରିବାପାଇଁ ଛାତ୍ରସଂଘ ଛାତ୍ରମାନଙ୍କୁ ଆହ୍ୱାନ ଦେଲା । ତେଣୁ କୌଣସି ଛାତ୍ର ବିଶ୍ୱକବିଙ୍କୁ ଦର୍ଶନ କରିବାପାଇଁ ସେଥିରେ ପୁରୀ ଗଲେନାହିଁ । ବିନା ଖର୍ଚ୍ଚରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ପରି ଜଣେ ବିଖ୍ୟାତ ବ୍ୟକ୍ତିଙ୍କର ଦର୍ଶନ ସୁଯୋଗ ନଛାଡ଼ିବାପାଇଁ ପିଲାମାନଙ୍କୁ ବୁଝାଇବାକୁ ମହତାବ ମୋତେ ପରାମର୍ଶ ଦେଇଥିଲେ । ଏଣେ ଛାତ୍ରସଂଘ ପକ୍ଷରୁ ମୋତେ ଦାୟିତ୍ୱ ଦିଆଯାଇଥାଏ ଯେ କଟକ ଷ୍ଟେସନ୍ ସନ୍ନିକଟ ଆମ୍ଭର ପୂର୍ବଛାତ୍ରାବାସରୁ ଦଳେ ଛାତ୍ର ନେଇ ମୁଁ ନିଜେ ସ୍ୱତନ୍ତ୍ର ଟ୍ରେନ୍ ପାଖରେ ଉପସ୍ଥିତ ରହିବି ଏବଂ ଟ୍ରେନ୍‌ରେ ନଯିବାପାଇଁ ଛାତ୍ରମାନଙ୍କୁ ଆହ୍ୱାନ ଦେବି । ଆମର ଆହ୍ୱାନ ହିଁ ଫଳବତୀ ହେଲା । କୌଣସି ଛାତ୍ର ଏହି ସ୍ୱତନ୍ତ୍ର ଟ୍ରେନ୍‌ରେ ପୁରୀ ଯାଇନଥିଲେ ।

ଏହାପରେ ଛାତ୍ରମାନଙ୍କ ଉପରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଓ ପୁଲିସ କେସ୍ ପ୍ରଭୃତି ନାନା ଦମନମୂଳକ କାର୍ଯ୍ୟ ପ୍ରବଳ ଭାବରେ ଆରମ୍ଭ ହୋଇଥିଲା । ବହୁ ଛାତ୍ରଙ୍କ ନାମ ସ୍କୁଲ କଲେଜରୁ କାଟିଦିଆଯାଇଥିଲା । ବୃତ୍ତି ପାଉଥିବା ଛାତ୍ରମାନଙ୍କର ବୃତ୍ତି ବନ୍ଦପାଇଁ ଆଦେଶ ଦିଆଯାଇଥିଲା, ବହୁ ଛାତ୍ରଙ୍କୁ ଗିରଫକରି ଜେଲ୍‌କୁ ପଠାଯାଇଥିଲା ।

ମେଡ଼ିକାଲ୍ ସ୍କୁଲ୍ ଛାତ୍ରାବାସ ସବୁପ୍ରକାର ଆଇନ ଅମାନ୍ୟ ଆନ୍ଦୋଳନର କେନ୍ଦ୍ର ହୋଇଥିଲା । ନେତୃସ୍ଥାନୀୟ ଛାତ୍ରମାନେ ସମସ୍ତେ ପ୍ରାୟ ସେହି ମେଡ଼ିକାଲ ଛାତ୍ରାବାସରେ ରହୁଥିଲେ । ଦିନେ ସମ୍ବାଦ ଆସି ପହଞ୍ଚିଲା, ବହୁ ସଶସ୍ତ୍ର ପୁଲିସ ଆସି ମଙ୍ଗଳାବାଗ ଥାନା ପାଖରେ ଜମାହୋଇ ଗଲେଣି; ବେଶି ରାତି ହେଲେ ସେମାନେ ମେଡ଼ିକାଲ୍ ଛାତ୍ରାବାସ ଘେରାଉକରି ଖାନ୍‌ତଲାସ୍ କରିବେ ଓ ଛାତ୍ରନେତାମାନଙ୍କୁ ଗିରଫ କରିନେବେ । ଅନ୍ୟ ଆଡୁ ସନ୍ଧାନ ନିଆଯାଇ ବୁଝାଗଲା ଯେ କଥାଟା ସତ । ତେଣୁ ସ୍ଥିର କରାଗଲା ପୁଲିସ ଆସିବା ଆଗରୁ ଛାତ୍ରାବାସର ସବୁ ରୁମ୍‌ରେ ତାଲାପକାଇଦେଇ ଆମେ ସମସ୍ତେ ସହରକୁ ଚାଲିଯିବୁ । ଛାତ୍ରାବାସରୁ ବାହାରିଯାଇ ଶୋଭାଯାତ୍ରା କରି ଆମେ ସମସ୍ତେ ସହରଆଡ଼େ ଚାଲିଲୁ । ବାଟରେ ପୁଲିସ ଶୋଭାଯାତ୍ରାକୁ ଅଟକାଇ ମୋ ସହିତ ଆହୁରି ଅନେକ ଛାତ୍ରନେତାଙ୍କୁ ଗିରଫ କରିନେଇଥିଲେ ।

ଶେଷରେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ପଣ୍ଡିତ ନୀଳକଣ୍ଠ ଦାସ ଓ ସାଧାରଣ ସମ୍ପାଦକ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ମଧ୍ୟସ୍ଥତାରେ କଥାବାର୍ତ୍ତା କରି ଛାତ୍ର ସମସ୍ୟାର ସମାଧାନ କରିବାପାଇଁ ସରକାର ରାଜିହୋଇଥିଲେ । ଛାତ୍ରମାନଙ୍କ ସର୍ତ୍ତରେ ରାଜିହେବାରୁ ଏବଂ ସେମାନଙ୍କର ଅଧିକାଂଶ ଦାବି ସରକାର ଓ ମେଡ଼ିକାଲ ସ୍କୁଲ କର୍ତ୍ତୃପକ୍ଷ ମାନିନେବାରୁ ସତ୍ୟାଗ୍ରହ ସଂଗ୍ରାମ ପ୍ରତ୍ୟାହୃତ ହୋଇଥିଲା । ଛାତ୍ରମାନଙ୍କର ସର୍ତ୍ତ ଥିଲା ଯେ ମେଡ଼ିକାଲ୍ ଛାତ୍ରମାନଙ୍କ ଉପରେ ହୋଇଥିବା ଶୃଙ୍ଖଳାଗତ ଶାସ୍ତିବିଧାନ ପ୍ରତ୍ୟାହୃତ ହେବ, ଛାତ୍ରଆନ୍ଦୋଳନ ହେତୁ ଅନ୍ୟାନ୍ୟ ଛାତ୍ରମାନଙ୍କ ଉପରେ ହୋଇଥିବା ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ରଦ୍ଦ ହେବ, ଜେଲ୍‌ରେ ଥିବା ଛାତ୍ରମାନେ ତୁରନ୍ତ ଖଲାସହେବେ ଏବଂ ସେମାନଙ୍କ ଉପରେ ଥିବା ପୁଲିସ କେସ୍ ଉଠାଇନିଆଯିବ । ସରକାର ରାଜିହୋଇ ସେଇ ଅନୁସାରେ କାର୍ଯ୍ୟ ଆରମ୍ଭ କରିଥିଲେ । ସବୁ ଛାତ୍ରବନ୍ଦୀମାନେ ଖଲାସ ହୋଇଥିଲେ ଏବଂ ଛାତ୍ରମାନଙ୍କ ବିରୁଦ୍ଧରେ ଅନୁଷ୍ଠିତ ହୋଇଥିବା ମକଦ୍ଦମାଗୁଡ଼ିକ ଉଠାଇନେବାପାଇଁ ସରକାର ଆଦେଶ ଦେଇଥିଲେ । ପରେ ଦେଖାଗଲା ଯେ ସବୁ ମକଦ୍ଦମା ଉଠାଇଦିଆଯାଇଥିଲା; ମାତ୍ର ପ୍ରେସ୍ ଆଇନ୍ ଭଙ୍ଗକରି 'ଛାତ୍ର' ପତ୍ରିକା ପ୍ରକାଶ କରୁଥିବା ଅଭିଯୋଗରେ ସଚ୍ଚି ରାଉତରାୟଙ୍କ ନାମରେ କରାଯାଇଥିବା ମକଦ୍ଦମାଟି ସରକାର ପ୍ରତ୍ୟାହାର କରିନଥିଲେ । ସେହି ମକଦ୍ଦମା ବିଚାର ହୋଇ ସଚ୍ଚି ରାଉତରାୟଙ୍କୁ ୨୫୦ ଟଙ୍କା ଜୋରିମାନା ହୁକୁମ୍ ହୋଇଥିଲା; ଜୋରିମାନା ଅନାଦାୟେ ଏକମାସ ସଶ୍ରମ କାରାଦଣ୍ଡ ଆଦେଶ ହୋଇଥିଲା । ସେତେବେଳକୁ ସଚ୍ଚିବାବୁଙ୍କର ବି.ଏ. ପରୀକ୍ଷା ଖୁବ୍ ଅଳ୍ପଦିନ ଥାଏ । ମୋର ମନେଅଛି, ଆଡ୍‌ଭୋକେଟ୍ ମଧୁ ମହାନ୍ତି ସେତେବେଳେ ଛାତ୍ର ଆନ୍ଦୋଳନରେ ଛାତ୍ରମାନଙ୍କୁ ସାହାଯ୍ୟ କରୁଥିଲେ । ସେ ସଚ୍ଚି ରାଉତରାୟଙ୍କପାଇଁ ଜୋରିମାନା ଟଙ୍କାତକ ଦାଖଲ କରିଦେବାରୁ ସଚ୍ଚିବାବୁ ଜେଲ୍ ନ ଯାଇ ପରୀକ୍ଷା ଦେଇପାରିଥିଲେ ।

## ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରତିକ୍ରିୟା

୧୯୩୯ ମସିହା ସେପ୍‌ଟେମ୍ବର ମାସରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଘଟିଲା । ହିଟ୍‌ଲରଙ୍କ ଜର୍ମାନୀ ସେପ୍‌ଟେମ୍ବର ମାସ ପହିଲାଦିନ ପୋଲାଣ୍ଡ ଆକ୍ରମଣ କଲା । ସେପ୍‌ଟେମ୍ବର ତିନି ତାରିଖ ଦିନ ବ୍ରିଟେନ୍‌ର ପ୍ରଧାନମନ୍ତ୍ରୀ ମିଷ୍ଟର ଚେମ୍ବରଲେନ୍ ବିଲାତ ପକ୍ଷରୁ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ଭାରତବର୍ଷ ସମେତ ଇଂଲଣ୍ଡର ଉପନିବେଶମାନେ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧରେ ଯୋଗଦେଲେ ବୋଲି ମଧ୍ୟ ସେହିଦିନ ଘୋଷଣା କରାଗଲା । ଭାରତର ବିଭିନ୍ନ ପ୍ରଦେଶମାନଙ୍କରେ ଲୋକପ୍ରତିନିଧିମାନଙ୍କ ହାତରେ ଶାସନ ଦାୟିତ୍ୱ ଥିଲେ ମଧ୍ୟ ସେମାନଙ୍କ ସହିତ କୌଣସି ପ୍ରକାର ପରାମର୍ଶ ନକରି ଭାରତର ବଡ଼ଲାଟ୍ ଆମ ଦେଶକୁ ଏହି ଦ୍ୱିତୀୟ ମହାଯୁଦ୍ଧରେ ସାମିଲ କରାଇଦେଇଥିଲେ । ବଙ୍ଗଳାକୁ ଛାଡ଼ିଦେଲେ ପ୍ରାୟ ସବୁ ପ୍ରଦେଶରେ ସେତେବେଳେ ଥିଲା କଂଗ୍ରେସ

ମନ୍ତ୍ରିମଣ୍ଡଳ । ଏହି ପରିସ୍ଥିତିରେ ଭାରତକୁ ସାମିଲ୍ କରି ଏ ପ୍ରକାର ଯୁଦ୍ଧ ଘୋଷଣାର ତୀବ୍ର ପ୍ରତିବାଦ କରିଥିଲା କଂଗ୍ରେସ । କଂଗ୍ରେସ ହିଟଲର୍ କିମ୍ବା ନାଜୀ ଜର୍ମାନୀର ସମର୍ଥକ ନଥିଲା । ବରଂ ଜର୍ମାନୀର ପୋଲାଣ୍ଡ ଆକ୍ରମଣକୁ ଏବଂ ନାଜୀ ଜର୍ମାନୀର ଯୁଦ୍ଧ ଘୋଷଣାକୁ ନିନ୍ଦାକରି କଂଗ୍ରେସ ପ୍ରସ୍ତାବ ଗ୍ରହଣ କରିଥିଲା । ମାତ୍ର ଲୋକ୍ ପ୍ରତିନିଧି ଓ ପ୍ରାଦେଶିକ ସରକାରମାନଙ୍କର ମତ ନନେଇ ଭାରତକୁ ଯୁଦ୍ଧରେ ସାମିଲ୍ କରାଯିବାର ତୀବ୍ର ପ୍ରତିବାଦ କଂଗ୍ରେସ ପକ୍ଷରୁ ବ୍ରିଟିଶ୍ ସରକାରଙ୍କୁ ବଡ଼ଲାଟ୍‌ଙ୍କ ଜରିଆରେ ଜଣାଇଦିଆଯାଇଥିଲା । ଏହା ପରେ ଆମ ଦେଶରେ ଚାରିଆଡ଼େ ଉତ୍ତେଜନା ଓ ଅସ୍ଥିରତା ଦେଖାଦେଇଥିଲା ।

## କଂଗ୍ରେସ ମନ୍ତ୍ରିମଣ୍ଡଳ ଫଳରେ ପ୍ରଦେଶରେ ଜନଜାଗରଣ

ଆମ ପ୍ରଦେଶରେ ବିଶ୍ୱନାଥ ଦାସଙ୍କର ମନ୍ତ୍ରିମଣ୍ଡଳ ଶାସନ ଦାୟିତ୍ୱରେ ଥାଏ । ସୀମିତ ସମୟ ହେତୁ ଅଳ୍ପ ଉନ୍ନୟନ କାର୍ଯ୍ୟ ସତ୍ତ୍ୱେ ଏହି ମନ୍ତ୍ରିମଣ୍ଡଳ ତା'ର ଆଚରଣ ଓ ପ୍ରଗତିଶୀଳ ପଦକ୍ଷେପ ଫଳରେ ପ୍ରଦେଶ ମଧ୍ୟରେ ତଥା ପଡ଼ୋଶୀ ରାଜ୍ୟମାନଙ୍କରେ ଏକ ନୂତନ ଜନଜାଗରଣ ସୃଷ୍ଟି କରିପାରିଥିଲା । ୧୯୩୫ ମସିହା ଭାରତ ଶାସନ ଆଇନ ଅନୁସାରେ ସୀମିତ କ୍ଷମତାର ଦାୟିତ୍ୱ ନେଇଥିଲେ ମଧ୍ୟ ବିଧାନସଭା ଭିତରେ ଓ ବାହାରେ ପ୍ରତ୍ୟେକ କାର୍ଯ୍ୟରେ ବିଶ୍ୱନାଥ ଦାସ ଓ ତାଙ୍କର ମନ୍ତ୍ରିମଣ୍ଡଳ ଯେପରି ସଂଗ୍ରାମୀ ମନୋଭାବ ପ୍ରଦର୍ଶନ କରିଥିଲେ ତାହା ସ୍ୱାଧୀନତା ହାସଲ କରିବାପାଇଁ ଇଂରେଜ ଶାସନ ବିରୁଦ୍ଧରେ ଲଢ଼େଇ କରିବା ଉଦ୍ଦେଶ୍ୟରେ ଲୋକଙ୍କର ନୈତିକ ବଳକୁ ଦୃଢ଼ କରିବାରେ ବିଶେଷ ସହାୟକ ହୋଇଥିଲା । ୧୯୩୫ ମସିହା ଭାରତ ଶାସନ ସମ୍ବିଧାନ ମାଧ୍ୟମରେ ସେ ମନ୍ତ୍ରିମଣ୍ଡଳ ଗଠନକରି ପ୍ରଧାନମନ୍ତ୍ରୀ ହୋଇଥିଲେ, ମାତ୍ର ପ୍ରଧାନମନ୍ତ୍ରୀ ପଦର ମୋହ ତାଙ୍କୁ ଉକ୍ତ ସମ୍ବିଧାନକୁ ରଦ୍ଦ କରିବାପାଇଁ ବିଧାନସଭାରେ ପ୍ରସ୍ତାବ ଆଗତ କରିବାରୁ ନିବୃତ୍ତ କରିପାରିନଥିଲା । ସେହିପରି ୧୯୩୫ ଭାରତ ଶାସନ ସମ୍ବିଧାନର ଦେଶୀୟ ରାଜ୍ୟ ରାଜାମାନଙ୍କର ପ୍ରତିନିଧିଙ୍କୁ ମିଶାଇ ଗୋଟିଏ ଫେଡେରେସନ୍ ବା ସଂଘୀୟ ସଂସ୍ଥାର ଯେଉଁ ପରିକଳ୍ପନା ଥିଲା, ତାକୁ ତୁରନ୍ତ ପ୍ରତ୍ୟାହାର କରିନେବାପାଇଁ ଦାବିକରି ଓଡ଼ିଶା ବିଧାନସଭାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଯେଉଁ ପ୍ରସ୍ତାବ ଆଣିଥିଲେ ତାହା ଅନ୍ୟତମ ବିଶେଷ ଉଲ୍ଲେଖଯୋଗ୍ୟ ପଦକ୍ଷେପ । ଏହି ପ୍ରସ୍ତାବଟି ସେଦିନ ବିଧାନସଭାରେ ମନ୍ତ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଆଗତ କରିଥିଲେ । ମୁଁ ସେଦିନ ଦର୍ଶକ ଗ୍ୟାଲେରୀରେ ଉପସ୍ଥିତ ଥିଲି । ବିଶ୍ୱନାଥ ଦାସ ଏହା ଉପରେ ଗୋଟିଏ ଓଜସ୍ୱିନୀ ଭାଷଣ ଦେଇଥିଲେ । ସେହିଦିନ ପାରଳାଖେମୁଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବଙ୍କୁ ମୁଁ ପ୍ରଥମେ ବିଧାନସଭାରେ କହିବାର ଶୁଣିଥିଲି । ସେ ବିଧାନସଭାକୁ ପ୍ରାୟ ଆସନ୍ତିନାହିଁ; ମାତ୍ର ସେଦିନ କଂଗ୍ରେସ ମନ୍ତ୍ରିମଣ୍ଡଳର ଏହି ପ୍ରସ୍ତାବକୁ ବିରୋଧ କରିବାପାଇଁ ସେ ବିଧାନସଭାରେ ଉପସ୍ଥିତ ଥିଲେ । ଯେଉଁ ସଂଘୀୟ ପରିକଳ୍ପନାକୁ କଂଗ୍ରେସ ବିରୋଧ କରୁଥିଲା, ସେଥିରେ ପ୍ରସ୍ତାବ ଥିଲା ଯେ ପ୍ରଦେଶମାନଙ୍କରେ ଯେପରି ବିଧାନସଭା ଅଛି ସେହିପରି କେନ୍ଦ୍ରରେ ଗୋଟିଏ ଫେଡେରାଲ ଆସେଂବ୍ଲି ରହିବ । ତା'ର ସଭ୍ୟସଂଖ୍ୟା ହେବ ୩୭୫ । ତାହା ମଧ୍ୟରୁ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ, ଆଙ୍ଗ୍ଲୋଇଣ୍ଡିଆନ୍ ପ୍ରଭୃତି ସଂପ୍ରଦାୟମାନଙ୍କର ସଂଖ୍ୟା ଅନୁପାତରେ ୨୫୦ ଜଣ ପ୍ରତିନିଧି ପ୍ରାଦେଶିକ ବିଧାନସଭାମାନଙ୍କରୁ ନିର୍ବାଚିତ ହୋଇ ଆସିବେ ଏବଂ ଦେଶୀୟ ରାଜ୍ୟମାନଙ୍କରୁ ରାଜାମାନଙ୍କଦ୍ୱାରା ମନୋନୀତ ହୋଇ ୧୨୫ ଜଣ ପ୍ରତିନିଧି ଆସିବେ । ଏହି ଫେଡେରାଲ ଆସେଂବ୍ଲିକୁ ଏପରି ଭାବରେ ଗଠନ କରିବା ପ୍ରସ୍ତାବର ଉଦ୍ଦେଶ୍ୟ ଥିଲା ଉକ୍ତ ଅନୁଷ୍ଠାନରେ ବ୍ରିଟିଶ୍ ସରକାରଙ୍କର ପ୍ରଭାବ ଅକ୍ଷୁଣ୍ଣ ରଖିବା । ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ଦୃଢ଼ତାର ସହିତ କହିଥିଲେ ଯେ ତାଙ୍କ ସରକାର ଓ ତାଙ୍କ ପ୍ରଦେଶର ଲୋକେ କେବେହେଲେ ଏ ପ୍ରକାର ପ୍ରଗତିବିରୋଧୀ ପ୍ରତିକ୍ରିୟାଶୀଳ ଅନୁଷ୍ଠାନକୁ ଗ୍ରହଣ କରିପାରିବେନାହିଁ । କିନ୍ତୁ ତା'ର ଉତ୍ତର

ଦେଇ ପାରଳାଖେମୁଣ୍ଡି ମହାରାଜା କହିଥିଲେ ଯେ ରାଜା ମହାରାଜାମାନଙ୍କର ଯଥେଷ୍ଟ କର୍ତ୍ତବ୍ୟ ଅଛି । ତେଣୁ ଶାସନ ଖସଡ଼ାରେ ପ୍ରସ୍ତାବିତ ଫେଡେରାଲ୍ ଆସେଂବ୍ଲି ଅନୁଷ୍ଠାନଟି ଗୋଟିଏ ପ୍ରଗତିଶୀଳ ବ୍ୟବସ୍ଥା, ଅତଏବ ଏକାନ୍ତ ଅପରିହାର୍ଯ୍ୟ ।

## କଂଗ୍ରେସ ମନ୍ତ୍ରିମଣ୍ଡଳର ଇସ୍ତଫା

ପ୍ରାୟ ଅଢ଼େଇବର୍ଷ ପ୍ରଦେଶମାନଙ୍କରେ କଂଗ୍ରେସ ଶାସନ ଚଳିବା ପରେ ତା'ର ଶେଷ ଅଧ୍ୟାୟ ଆସି ପହଞ୍ଚିଲା । ବ୍ରିଟିଶ୍ ସରକାର ବିନାସର୍ତ୍ତରେ ଭାରତବର୍ଷକୁ ବିଶ୍ୱଯୁଦ୍ଧରେ ଜଡ଼ିତ କରିଦେବା ପରେ କଂଗ୍ରେସ ନିଷ୍ପତ୍ତି ନେଇଥିଲା ଯେ ପ୍ରଦେଶମାନଙ୍କରେ କଂଗ୍ରେସ ଆଉ ଶାସନ ଦାୟିତ୍ୱ ଧରି ରହିବା ସମ୍ଭବ ହେବନାହିଁ । ତେଣୁ ଇସ୍ତଫା ଦେଇ ଶାସନ ଦାୟିତ୍ୱରୁ ଓହରିଯିବାପାଇଁ କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷଙ୍କଠାରୁ ନିର୍ଦ୍ଦେଶ ଆସିଥିଲା । ସେହି ଅନୁସାରେ ଓଡ଼ିଶା କଂଗ୍ରେସ ମନ୍ତ୍ରିମଣ୍ଡଳ ୧୯୩୯ ମସିହା ନଭେମ୍ବର ଚାରି ତାରିଖରେ ଇସ୍ତଫା ଦେଇଥିଲେ । ସେ ସମୟରେ ବିଧାନସଭା ଅଧିବେଶନ ଚାଲିଥାଏ । ଯେଉଁଦିନ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଲେ ସେଦିନର ବିଧାନସଭାର ଅନୁଭୂତି ଓ ମନୋଭାବ ଲକ୍ଷ୍ୟ କରିବାର ସୁଯୋଗ ମୁଁ ପାଇଥିଲି । ଅତି ଗାମ୍ଭୀର୍ଯ୍ୟପୂର୍ଣ୍ଣ ବାତାବରଣ । ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ବିଧାନସଭା ଗୃହରେ ଠିଆହୋଇ ଦୃପ୍ତ ପ୍ରଶାନ୍ତ କଣ୍ଠରେ ତାଙ୍କ ସରକାରଙ୍କ ପକ୍ଷରୁ ଯୁଦ୍ଧକୁ ବିରୋଧକରି ଓ ଦେଶର ପୂର୍ଣ୍ଣ ସ୍ୱାଧୀନତା ଦାବିକରି ପ୍ରସ୍ତାବ ଆଗତକଲେ । ତାଙ୍କର ସେଦିନର ଭାଷଣ କେବଳ ଓଜସ୍ୱିନୀ ନ ଥିଲା, ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇଥିଲା । ଗଣତନ୍ତ୍ରର ସୁରକ୍ଷାପାଇଁ ଯୁଦ୍ଧ କରୁଛନ୍ତି ବୋଲି ଯେତେବେଳେ ବ୍ରିଟିଶ୍ ସରକାର ଘୋଷଣା କରୁଛନ୍ତି, ସେତେବେଳେ ଭାରତୀୟମାନଙ୍କୁ ତାଙ୍କର ସ୍ୱାଧୀନତା ପ୍ରାପ୍ତି ସମ୍ବନ୍ଧରେ କୌଣସି ଭରସା ନଦେଇ, ଦେଶର ଲୋକମତକୁ ପଦାଘାତକରି, ଭାରତବର୍ଷକୁ ବିଶ୍ୱଯୁଦ୍ଧ ଭିତରକୁ ଟାଣିଦେବା କେଡ଼େ ଅନ୍ୟାୟ ଓ ଅସଙ୍ଗତ ସେ କଥା ଶ୍ରୀ ଦାସ ତାଙ୍କ ଭାଷଣରେ ପ୍ରତିପାଦିତ କରିଥିଲେ । ତେଣୁ ଆତ୍ମମର୍ଯ୍ୟାଦାସମ୍ପନ୍ନ କୌଣସି ଭାରତୀୟ ଏ ପ୍ରକାର ଅନ୍ୟାୟ, ଅସଙ୍ଗତ କାର୍ଯ୍ୟରେ ଭାଗୀ ହୋଇପାରିବନାହିଁ ବୋଲି କହି ସଭାଗୃହରେ ବିପୁଳ ଉତ୍ତେଜନା ଭିତରେ ତାଙ୍କ ସରକାରଙ୍କର ଇସ୍ତଫା ସେ ଘୋଷଣା କରିଥିଲେ ।

ଏହି ଅଢ଼େଇବର୍ଷ କାଳ ବିଧାନସଭା ଅଧିବେଶନମାନଙ୍କରେ ଅନେକ ସମୟରେ ଆମ୍ଭମାନଙ୍କର ବିସ୍ମୟକର ଅନୁଭୂତି ହେଉଥାଏ । ସଭାଗୃହରେ କେଉଁଟା ସରକାରୀ ଦଳ ଓ କେଉଁଟା ବିରୋଧୀଦଳ ତାହା ଅନେକ ସମୟରେ ସାଧାରଣଙ୍କ ପକ୍ଷରେ ଜାଣିବା ସହଜନଥିଲା । ଯଦିଓ କଂଗ୍ରେସ ଦଳ ଥିଲା ସରକାରୀ ଦଳ (Treasury Bench), ବ୍ରିଟିଶ୍ ବିରୋଧୀ ଭୂମିକାରେ ମନେହେଉଥିଲା ସେଇଟି ହିଁ ଯେପରି ବିରୋଧୀ ଦଳ । ସେତେବେଳେକାର ଯେଉଁଟି ଥିଲା ବିଧାନସଭାର ପ୍ରକୃତ ବିରୋଧୀ ଦଳ (Opposition) ସେଥିରେ ବହୁ ପ୍ରତିକ୍ରିୟାଶୀଳ ସାମନ୍ତବାଦୀ ସଭ୍ୟ ଥିବାରୁ ସେମାନଙ୍କର ପ୍ରଗତିବିରୋଧୀ ରକ୍ଷଣଶୀଳ ମନୋଭାବ ବିଧାନସଭା ଆଲୋଚନାରେ ପ୍ରତିବିମ୍ବିତ ହୋଇ ସେମାନଙ୍କର ଦଳକୁ ବ୍ରିଟିଶ୍ ଶାସନର ପ୍ରତୀକ ସରକାରୀ ଦଳ ଭଳି ରୂପରେଖ ଦେଉଥିଲା । ସେମାନଙ୍କର ଆଚରଣ ଓ ଆଲୋଚନାର ଭାବଭଙ୍ଗୀରୁ ଜଣାପଡୁଥିଲା ଯେପରିକି ବ୍ରିଟିଶ୍ ସରକାରଙ୍କର ସ୍ୱାର୍ଥ ରକ୍ଷାକରିବା ଉଦ୍ଦେଶ୍ୟରେ ସେମାନେ ବିଧାନସଭାରେ ଅଛନ୍ତି । ସେତେବେଳର ବିଧାନସଭାର ପ୍ରଧାନ ଆକର୍ଷଣ ଥିଲା ଭାଷଣପଟୁତା ଏବଂ ସେଥିରେ କଂଗ୍ରେସଲୋକେ ବେଶ୍ ପାରଦର୍ଶିତା ହାସଲ କରିପାରିଥିଲେ । ବିଶ୍ୱନାଥ ଦାସଙ୍କ ମନ୍ତ୍ରିମଣ୍ଡଳ ସମୟରେ ୧୯୩୮-୧୯୩୯ ମସିହା ବଜେଟ୍ ଅଟକଳରେ ସମୁଦାୟ ମାତ୍ର ଏକ କୋଟି ଷାଠିଏ ଲକ୍ଷ ଟଙ୍କାର ଖର୍ଚ୍ଚ ବ୍ୟବସ୍ଥା କରିବା ସମ୍ଭବ ହୋଇଥିଲା । ଏତିକି ସମ୍ବଳରେ କେତେ ଉନ୍ନତିମୂଳକ କାର୍ଯ୍ୟର ବ୍ୟବସ୍ଥା ହୋଇପାରନ୍ତା ତାହା ସହଜରେ ଅନୁମାନ କରାଯାଇପାରେ । କେବଳ ବ୍ରିଟିଶ୍ ସାମ୍ରାଜ୍ୟବାଦର ବିରୋଧୀ ଯୁକ୍ତି ସମ୍ବଳିତ

ଓଜସ୍ୱିନୀ ଭାଷଣ ଓ ଦୃଢ଼ ଆଚରଣଦ୍ୱାରା ସରକାରୀ ଦଳରେ ଥାଇ ମଧ କଂଗ୍ରେସ ଲୋକମାନେ ନିଜ ଦଳକୁ ଗୋଟିଏ ପ୍ରଗତିବାଦୀ, କାର୍ଯ୍ୟଦକ୍ଷ ଶକ୍ତି ଭାବରେ ପରିଚିତ କରାଇପାରିଥିଲେ । ସରକାରରୁ ସେମାନେ ଚାଲିଗଲେ; ମାତ୍ର ଲୋକଙ୍କ ଭିତରେ ପ୍ରଭାବ ରଖିଯାଇଥିଲେ । ଛାତ୍ର ଆନ୍ଦୋଳନ ସମୟରେ କଂଗ୍ରେସ ସରକାରଙ୍କ ବିରୁଦ୍ଧରେ ଆମର ଯେଉଁ ବିରୋଧ ମନୋଭାବ ଜନ୍ମିଥିଲା ତାହା ଆଉ ମୁହୂର୍ତ୍ତେ ମାତ୍ର ରହିଲାନାହିଁ ।

ବର୍ତ୍ତମାନ ପୁନର୍ବାର ସ୍ୱାଧୀନତା ସଂଗ୍ରାମପାଇଁ ଆହ୍ୱାନର ବେଳ ଆସିଯାଇଥିଲା । ପରିବର୍ତ୍ତିତ ଅବସ୍ଥାରେ କର୍ତ୍ତବ୍ୟ ସ୍ଥିରକରିବା ଛାତ୍ରସଙ୍ଘ ପକ୍ଷରେ ଗୋଟିଏ ଚିନ୍ତାର ବିଷୟ ହୋଇଥିଲା । ମୁଁ ବଡ଼ ଅସ୍ଥିରତା ଅନୁଭବ କରିବାକୁ ଲାଗିଲି । ଆଗରୁ ଭାବିଥିଲି, ସ୍ୱାଧୀନତାପାଇଁ ଅସଲ ସଂଗ୍ରାମ ଆରମ୍ଭ ହେଲାବେଳକୁ ମୋର ପାଠପଢ଼ା ଶେଷହୋଇଯାଇଥିବ; କିନ୍ତୁ ତାହା ହେଲାନାହିଁ । ମାନସିକ ଦ୍ୱନ୍ଦ୍ୱ ଭିତରେ ସ୍ଥିରକରୁଥାଏ ଯେ ପୂର୍ବପରି ଉଭୟ କାର୍ଯ୍ୟ ଚାଲୁରଖିବି । ପଢ଼ାପଢ଼ି ସହିତ କଂଗ୍ରେସର ସାମ୍ରାଜ୍ୟବାଦ ବିରୋଧୀ ଲଢ଼େଇରେ ସାହାଯ୍ୟ କରିବାକୁ ହେବ । ସେ କାର୍ଯ୍ୟ କରୁ କରୁ ଯଦି ପାଠପଢ଼ା ବନ୍ଦ ହେବା ପ୍ରୟୋଜନ ହୁଏ ତା'ହେଲେ ସାମୟିକଭାବରେ ସେଥିପାଇଁ ମଧ ପ୍ରସ୍ତୁତ ହୋଇଗଲି । ପଢ଼ାପଢ଼ି ଏକାବେଳେକେ ଛାଡ଼ିଦେବାପାଇଁ କେତେକ ନେତୃସ୍ଥାନୀୟ ବ୍ୟକ୍ତି ମୋତେ ପରାମର୍ଶ ଦେଇଥିଲେ; ମାତ୍ର ମୁଁ ସେଥିରେ ରାଜିନହୋଇ ଉଭୟ କାର୍ଯ୍ୟ ଏକ ସଙ୍ଗରେ କରିବାପାଇଁ ମନଭିତରେ ସ୍ଥିରକରିନେଲି ।

## କଂଗ୍ରେସର ଦ୍ୱିଧା

କଂଗ୍ରେସ ଗୋଟିଏ ନଯଯୌ ନତସ୍ଥୌ ଅବସ୍ଥାର ସମ୍ମୁଖୀନ ହୋଇଥିଲା । ନାଜୀ ଜର୍ମାନୀର ହିଟଲ୍‌ରଙ୍କ ପୈଶାଚିକ ସାମ୍ରାଜ୍ୟବାଦ ଓ ତା'ର ସର୍ବଗ୍ରାସୀ ଧ୍ୱଂସମୂଳକ ନୀତିକୁ କଂଗ୍ରେସ ପକ୍ଷରେ ଗ୍ରହଣ କରିବା ଅସମ୍ଭବ ହେଲେ ମଧ ବ୍ରିଟିଶ୍ ସରକାରଙ୍କର ଗଣତନ୍ତ୍ରବିରୋଧୀ କାର୍ଯ୍ୟକୁ କଂଗ୍ରେସ ପସନ୍ଦ କରିପାରୁନଥାଏ । ଭାରତବର୍ଷରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଚାଲିଥିବା ସ୍ୱାଧୀନତା ସଂଗ୍ରାମ ପ୍ରତି ହିଟ୍‌ଲରଙ୍କର ବଡ଼ ତାସଲ୍ୟ ଭାବ ଥିଲା । ଭାରତ ଇଂରେଜମାନଙ୍କ କବଳରୁ ଯାଇ ଗୋଟିଏ ସ୍ୱାଧୀନ ଦେଶ ହେବାଟାକୁ ହିଟ୍‌ଲର ପସନ୍ଦ କରୁନଥିଲେ । ଗାନ୍ଧୀ ପ୍ରଭୃତି କଂଗ୍ରେସ ନେତାମାନଙ୍କୁ ଗୁଳି କରି ମାରିଦେଇ ଭାରତର ସ୍ୱାଧୀନତା ସଂଗ୍ରାମକୁ ଧ୍ୱଂସକରିଦେବାପାଇଁ ହିଟ୍‌ଲର ଇଂରେଜମାନଙ୍କୁ ଥରେ ପରାମର୍ଶ ଦେଇଥିବାର ଜଣାଯାଏ । ବ୍ରିଟେନ୍‌ର ଜଣେ ପୂର୍ବତନ ପ୍ରଧାନମନ୍ତ୍ରୀ ମିଷ୍ଟର ଇଡେନ୍ ତାଙ୍କର ଆତ୍ମଜୀବନୀରେ ଲେଖିଛନ୍ତି —

"Lord Halifax told me that at luncheon Hitler had said he was unable to understand why we put up with unrest in India. All you have to do, he remarked briskly, 'is to shoot Gandhi. If necessary shoot more leaders of Congress. You will be surprised how quickly the trouble will die down." ଏହି 'ଉପଦେଶ'ଟି ହିଟ୍‌ଲର ୧୯୩୭ ମସିହାରେ ଦେଇଥିଲେ । ଯେଉଁ ଲର୍ଡ଼ ହାଲିଫାକ୍‌ସଙ୍କ କଥା ଏଠାରେ କୁହାଯାଇଛି ସେ ଥିଲେ ଲର୍ଡ଼ ଇରଉଇନ୍ (Lord Irwin), ପରବର୍ତ୍ତୀକାଳରେ ସେ ଲର୍ଡ଼ ହାଲିଫାକ୍‌ସ ନାମରେ ପରିଚିତ ହୋଇଥିଲେ । ମହାତ୍ମାଗାନ୍ଧୀ ଭାରତର ସ୍ୱାଧୀନତା ସଂଗ୍ରାମକୁ ନେତୃତ୍ୱ ଦେଉଥିବା ସମୟରେ ୧୯୩୦-୩୨ ମସିହାରେ ଭାରତର ବଡ଼ଲାଟ ଥିଲେ ଲର୍ଡ଼ ଇରଉଇନ୍ । ଗାନ୍ଧିଜୀ ତାଙ୍କ ସହିତ ବହୁବାର ସ୍ୱାଧୀନତା ସଂଗ୍ରାମ ବିଷୟରେ ଆଲୋଚନା କରିଥିଲେ ଏବଂ ସେମାନଙ୍କ ମଧରେ କେତେକ ଚୁକ୍ତି ମଧ ସ୍ୱାକ୍ଷରିତ ହୋଇଥିଲା । ଯେଉଁ ହିଟ୍‌ଲରଙ୍କର ଆମ ଦେଶର ନେତା ଓ ଆମ ସ୍ୱାଧୀନତା ସଂଗ୍ରାମ ସମ୍ବନ୍ଧରେ ଏ ପ୍ରକାର ଘୃଣ୍ୟ ଧାରଣା, ସେ ପ୍ରକାର ଜଣେ ସାମ୍ରାଜ୍ୟବାଦୀ ବ୍ୟକ୍ତିକୁ ସାହାଯ୍ୟ

କରିବା କଂଗ୍ରେସର ସମ୍ପୂର୍ଣ୍ଣ କଳ୍ପନାତୀତ ଥିଲା । ଏଣେ ଇଂରେଜ ସରକାରଙ୍କର ଯୁଦ୍ଧ ଉଦ୍ୟମକୁ ବାଧାଦେବାଟା ମଧ୍ୟ ପରୋକ୍ଷରେ ନାଜୀ ଜର୍ମାନୀକୁ ସାହାଯ୍ୟ କଲାଭଳି ଜଣାଯାଉଥାଏ । ତେଣୁ ବିଷୟଟି କଂଗ୍ରେସ କାର୍ଯ୍ୟକାରୀ କମିଟିରେ ବାରମ୍ବାର ଆଲୋଚିତ ହେଉଥାଏ ।

ଏହି ସମୟରେ ମୌଲାନା ଆବୁଲ୍ କାଲାମ୍ ଆଜାଦ୍‌ଙ୍କ ସଭାପତିତ୍ୱରେ କଂଗ୍ରେସର ବାର୍ଷିକ ଅଧିବେଶନ ବିହାର ପ୍ରଦେଶସ୍ଥ ରାମଗଡ଼ଠାରେ ଅନୁଷ୍ଠିତ ହୋଇଥିଲା । ଛାତ୍ରମାନଙ୍କ ଭିତରେ ମୁଁ ଓ ବୈଦ୍ୟନାଥ ରଥ ଏହି ଅଧିବେଶନରେ ଯୋଗଦେଇଥିଲୁ । ବିଶ୍ୱନାଥ ଦାସ, ହରେକୃଷ୍ଣ ମହତାବ ଓ ନବକୃଷ୍ଣ ଚୌଧୁରୀ ପ୍ରଭୃତି ଓଡ଼ିଶାରୁ ବହୁ କଂଗ୍ରେସ ନେତା ଏହି ଅଧିବେଶନରେ ଯୋଗଦେବାପାଇଁ ରାମଗଡ଼ ଯାଇଥିଲେ । କଂଗ୍ରେସ ଅଧିବେଶନ ସମୟରେ ଭୟଙ୍କର ଝଡ଼ବର୍ଷା ହୋଇଥିଲା । ପ୍ରତିନିଧିମାନଙ୍କର ରହିବାପାଇଁ ତିଆରି ହୋଇଥିବା ଅସ୍ଥାୟୀ ଘରଗୁଡ଼ିକ ନଷ୍ଟହୋଇଯାଇଥିଲା । ଝଡ଼ବର୍ଷା ସତ୍ତ୍ୱେ ଓଦାରେ ଜୁଡୁବୁଡୁ ହୋଇ ମଧ୍ୟ ଠିକ୍ ନିର୍ଦ୍ଧାରିତ ସମୟରେ ଆସି କଂଗ୍ରେସ ସଭାପତି ତାଙ୍କର ଭାଷଣ ଦେଇଥିଲେ । ବିଶ୍ୱଯୁଦ୍ଧରେ ସର୍ତ୍ତମୂଳକ ସାହାଯ୍ୟ କରାଯାଇପାରେ ବୋଲି ଗୋଟିଏ ମତ କଂଗ୍ରେସରେ ପ୍ରକାଶ ପାଉଥାଏ । ମାତ୍ର ସୁଭାଷଚନ୍ଦ୍ର ବୋଷ ଏହି ମତର ଘୋର ବିରୋଧୀ ଥିଲେ । କଂଗ୍ରେସର ଏହି ଅଧିବେଶନ ସମୟରେ ରାମଗଡ଼ଠାରେ ଫରୱାର୍ଡ଼ ବ୍ଲକ୍‌ର ଗୋଟିଏ ବିରାଟ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ବଙ୍ଗଳାରୁ ବହୁସଂଖ୍ୟକ ପ୍ରତିନିଧି ଅନେକ ସ୍ୱତନ୍ତ୍ର ଟ୍ରେନ୍ ଯୋଗେ ଆସି ଏହି ସମ୍ମିଳନୀରେ ଯୋଗଦେଇଥିଲେ । କେତେକ ସ୍ଥାନରେ ଫରୱାର୍ଡ଼ ବ୍ଲକ୍ ଓ କଂଗ୍ରେସ କର୍ମୀଙ୍କ ମଧ୍ୟରେ ସଂଘର୍ଷ ହୋଇଥିଲା । ସୁଭାଷଚନ୍ଦ୍ର ବୋଷ ଯୁଦ୍ଧରେ ଇଂରେଜ ସରକାରଙ୍କୁ ସାହାଯ୍ୟ ନକରିବାପାଇଁ ସେହି ସମ୍ମିଳନୀ ମଣ୍ଡପରୁ ଦେଶବାସୀଙ୍କୁ ଆହ୍ୱାନ ଦେଇଥିଲେ । ଫରୱାର୍ଡ଼ ବ୍ଲକ୍‌ର ପ୍ରତିନିଧି ନହେଲେ ମଧ୍ୟ ମୁଁ ଏହି ସମ୍ମିଳନୀରେ ଯୋଗଦେଇ ସୁଭାଷଚନ୍ଦ୍ର ବୋଷଙ୍କ ଭାଷଣ ଶୁଣିଥିଲି ।

ରାମଗଡ଼ କଂଗ୍ରେସ ଅଧିବେଶନ ପରେ କଂଗ୍ରେସ କାର୍ଯ୍ୟକାରୀ କମିଟିରେ ଯୁଦ୍ଧ ସମ୍ପର୍କରେ କଂଗ୍ରେସର ଆଭିମୁଖ୍ୟ କ'ଣ ହେବ ସେ ବିଷୟରେ ଆଲୋଚନା ହୋଇଥିଲା । ଭାରତବାସୀଙ୍କ ସ୍ୱାର୍ଥ ଓ ସ୍ୱାଧୀନତା ଲାଭ ସମ୍ପର୍କୀୟ କେତେକ ସର୍ତ୍ତରେ ଯୁଦ୍ଧରେ ସହଯୋଗ କରିବାପାଇଁ କାର୍ଯ୍ୟକାରୀ କମିଟି ବଡ଼ଲାଟ୍‌ଙ୍କୁ ଜଣାଇଥିଲା । ସେ ବିଷୟରେ ନିର୍ଦ୍ଦିଷ୍ଟ ପ୍ରସ୍ତାବ ମଧ୍ୟ ଦେଇଥିଲା । କିନ୍ତୁ ଇଂରେଜ ସରକାର କଂଗ୍ରେସର କୌଣସି ପ୍ରସ୍ତାବକୁ ଗ୍ରହଣ କରିନଥିଲେ କି କୌଣସି ସର୍ତ୍ତରେ ମଧ୍ୟ ରାଜି ହୋଇ ନ ଥିଲେ । ତେଣୁ କଂଗ୍ରେସକୁ ବାଧହୋଇ ସହଯୋଗର ବାଟ ଛାଡ଼ି ସଂଗ୍ରାମର ବାଟ ଧରିବାକୁ ପଡ଼ିଥିଲା । ଯୁଦ୍ଧରେ ଇଂରେଜ ସରକାରଙ୍କୁ କୌଣସି ପ୍ରକାର ସାହାଯ୍ୟ ନକରିବାପାଇଁ କଂଗ୍ରେସ ସ୍ଥିର କରିଥିଲା । ଯୁଦ୍ଧବିରୋଧୀ ଆନ୍ଦୋଳନ ଆରମ୍ଭ କରିବା ପାଇଁ ନିଷ୍ପତ୍ତି ମଧ୍ୟ ନେଇଥିଲା । ମାତ୍ର ଆନ୍ଦୋଳନର ଆକାର ପ୍ରକାର କ'ଣ ହେବ ତାହା ସ୍ଥିର କରିବା ଓ ପରିଚାଳନା କରିବାର ଭାର ଗାନ୍ଧିଜୀଙ୍କ ଉପରେ ନ୍ୟସ୍ତ ରହିଥିଲା । ଯୁଦ୍ଧ ଉଦ୍ୟମ ବିରୁଦ୍ଧରେ ବ୍ୟକ୍ତିଗତ ସତ୍ୟାଗ୍ରହ କରିବାପାଇଁ ମହାତ୍ମାଗାନ୍ଧୀ ପରିକଳ୍ପନା କରିଥିଲେ ଏବଂ ସେହି ଅନୁସାରେ ବ୍ୟକ୍ତିଗତଭାବରେ ଆଇନ୍ ଅମାନ୍ୟ କରି ଯୁଦ୍ଧ ବିରୁଦ୍ଧରେ ଧ୍ୱନିଦେଇ ଜେଲ୍ ବରଣ କରିବା ନିମନ୍ତେ ଦେଶସାରା ସତ୍ୟାଗ୍ରହୀମାନଙ୍କୁ ତାଲିମ୍ ଦିଆଯାଇଥିଲା । ପ୍ରଥମ ପର୍ଯ୍ୟାୟରେ ବ୍ୟକ୍ତିଗତ ସତ୍ୟାଗ୍ରହ ପରିଚାଳନା ନିମନ୍ତେ ଗାନ୍ଧିଜୀ ନିଜେ ଜେଲ୍ ବରଣ ନକରି ବ୍ୟକ୍ତିଗତ ସତ୍ୟାଗ୍ରହ ଓ ଆଇନ୍ ଅମାନ୍ୟ କରିବାପାଇଁ ସାରା ଦେଶରୁ ଯୋଗ୍ୟ ବିବେଚିତ ବଛା ବଛା କର୍ମୀମାନଙ୍କର ତାଲିକା ପ୍ରସ୍ତୁତ କରିଥିଲେ । ସେ ଆଚାର୍ଯ୍ୟ ବିନୋବାଙ୍କୁ ବାଛିଥିଲେ ପ୍ରଥମ ସତ୍ୟାଗ୍ରହୀ ରୂପେ । ଆମ ଓଡ଼ିଶାରେ ମଧ୍ୟ ବ୍ୟକ୍ତିଗତ ସତ୍ୟାଗ୍ରହ ଓ ଆଇନ୍ ଅମାନ୍ୟପାଇଁ ପ୍ରସ୍ତୁତି ଚାଲିଥିଲା ଏବଂ ବଛା ବଛା ଲୋକଙ୍କର ତାଲିକା ପ୍ରସ୍ତୁତ ହୋଇଥିଲା । ଏ ଅବସ୍ଥାରେ ଛାତ୍ରମାନଙ୍କ କର୍ତ୍ତବ୍ୟ ସ୍ଥିର କରିବା ଉଦ୍ଦେଶ୍ୟରେ ଛାତ୍ରସଂଘ କର୍ମୀମାନଙ୍କ ମଧ୍ୟରେ ନାନା ଆଲୋଚନା ଚାଲିଥିଲା ।

# ସ୍ୱାଧୀନତା ଦିବସ ପାଳନ ଓ କଲେଜରୁ ବିତାଡ଼ନ

ଇତିମଧ୍ୟରେ ଆସିଗଲା ୧୯୪୦ ମସିହା ଜାନୁୟାରୀ ଛବିଶ ତାରିଖ, କଂଗ୍ରେସ ଘୋଷିତ ସ୍ୱାଧୀନତା ଦିବସ । ବିଶ୍ୱଯୁଦ୍ଧ ଆରମ୍ଭ ଓ କଂଗ୍ରେସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେବା ପରେ ଏହା ହେଉଛି ପ୍ରଥମ ସ୍ୱାଧୀନତା ଦିବସ ପାଳନ ଉତ୍ସବ । ଛାତ୍ରମାନଙ୍କ ପକ୍ଷରେ [illegible] ଉଦ୍‌ଘୋଷଣା ନିର୍ଦ୍ଦେଶକୁ କାର୍ଯ୍ୟକାରୀ କରିବାରେ ଏହା ଥିଲା ପ୍ରଥମ ସୁଯୋଗ । ଏ ବିଷୟରେ ଛାତ୍ରସଂଘର ଅନ୍ୟାନ୍ୟ ନେତାମାନଙ୍କ ସହିତ ମୁଁ ପରାମର୍ଶ କରି ସ୍ଥିରକରିଥିଲି ଯେ ଜାନୁୟାରୀ ଛବିଶ ତାରିଖ ଦିନ ରେଭେନ୍‌ସା କଲେଜ ଟେନିସ୍ ପଡ଼ିଆରେ ଖୁବ୍ ଭଲଭାବରେ ସ୍ୱାଧୀନତା ଦିବସ ପାଳନ କରାଯିବ । କଲେଜ ହତା ମଧ୍ୟରେ ସଭା ହେବାର କଥା ଥିବାରୁ ପ୍ରିନ୍‌ସିପାଲ୍‌ଙ୍କର ଅନୁମତି ଆଣିବାପାଇଁ ଖଣ୍ଡିଏ ଦରଖାସ୍ତ ନେଇ ପରିଜାସାହେବଙ୍କୁ ତାଙ୍କ ଅଫିସ୍‌ରେ ଦେଲି । ସନ୍ଧ୍ୟାବେଳେ ଅଫିସ୍ ରୁମ୍‌ରେ ସେ ଥାଆନ୍ତି । କିଛି ଦୂରରେ କଲେଜର ହେଡ୍ କ୍ଲର୍କ ଶ୍ରୀ ଜଗନ୍ନାଥ ମିଶ୍ର ବସି କାର୍ଯ୍ୟ କରୁଥାଆନ୍ତି । ଦରଖାସ୍ତ ପଢ଼ି ପରିଜାସାହେବ କହିଲେ, ''ଦରଖାସ୍ତ ଆଉ କ'ଣ ? ସଭା ଯଦି କରିବାର କଥା କରିଯିବ ।'' ସେ ଯାହା କହିଲେ, ସେ କଥା ଆସି ମୁଁ ସମସ୍ତଙ୍କୁ କହିଲି ।

ସ୍ୱାଧୀନତା ଦିବସ ଦିନ ଆଠଟା ସମୟରେ କଲେଜ ସମ୍ମୁଖରେ ଥିବା ଟେନିସ୍ ପଡ଼ିଆରେ ଉତ୍ସବ ଉପଲକ୍ଷେ ସଭାକାର୍ଯ୍ୟ ଆରମ୍ଭ ହେଲା ମୋ ସଭାପତିତ୍ୱରେ । ବହୁ ଛାତ୍ରଙ୍କ ବ୍ୟତୀତ ବାହାରର ଲୋକ ମଧ୍ୟ ସେଦିନ ସ୍ୱାଧୀନତା ଉତ୍ସବ ସଭାରେ ଯୋଗଦେଇଥିଲେ । ସଭାପତି ହିସାବରେ ମୁଁ ସେଠାରେ କଂଗ୍ରେସର ତ୍ରିରଙ୍ଗ ପତାକା ଉତ୍ତୋଳନ କରିଥିଲି ଏବଂ ଭାରତବର୍ଷର ସ୍ୱାଧୀନତାପାଇଁ ଜନତାର ଦାବିକୁ ସମର୍ଥନ କରି ସାମ୍ରାଜ୍ୟବାଦୀଙ୍କ ଯୁଦ୍ଧ ସହିତ ସାମିଲ୍ ହେବା ବିରୁଦ୍ଧରେ ଭାଷଣ ଦେଇଥିଲି । ସଭାରେ ବିପୁଳ ଉତ୍ସାହ ଓ ଉଦ୍ଦୀପନା ଦେଖାଦେଇଥିଲା । ମୋ ପରେ ଛାତ୍ରନେତା ବିବୁଧେନ୍ଦ୍ର ମିଶ୍ର ମଧ୍ୟ ଓଜସ୍ୱିନୀ ଭାଷଣ ଦେଇଥିଲେ । ଏହା ପରେ ସଭାକାର୍ଯ୍ୟ ସମାପ୍ତ ହୋଇଥିଲା ଏବଂ ସନ୍ଧ୍ୟାପର୍ଯ୍ୟନ୍ତ ଟେନିସ୍ ପଡ଼ିଆରେ ତ୍ରିରଙ୍ଗ ପତାକା ଉଡ଼ିଥିଲା ।

ସ୍ୱାଧୀନତା ଦିବସଟି ଅତି ଉତ୍ସାହର ସହିତ ସୁରୁଖୁରୁରେ କଟିଗଲା । କିନ୍ତୁ ଦିନେ ଦୁଇଦିନ ପରେ ଜଣାଗଲା ଯେ ଅବସ୍ଥା ଜଟିଳ ଆକାର ଧାରଣ କରିବାକୁ ଯାଉଛି । କଲେଜ ଅଫିସ୍‌କୁ ପୁଲିସ୍ ଅଫିସର୍‌ମାନେ ଦୌଡ଼ାଦୌଡ଼ି କରିବାକୁ ଲାଗିଲେ । ପ୍ରିନ୍‌ସିପାଲ୍‌ଙ୍କ ସହିତ ସେମାନେ ଗୋପନରେ ପରାମର୍ଶ କରିବାର ଦେଖାଗଲା । ଅଧ୍ୟକ୍ଷ ପରିଜାସାହେବ ଏକାବେଳକେ ଭିନ୍ନ ରୂପ ଧାରଣ କରିବାର ଜଣାଗଲା । ତାଙ୍କ ବିନାନୁମତିରେ କଲେଜ ଟେନିସ୍ ପଡ଼ିଆରେ ମୁଁ ସ୍ୱାଧୀନତା ଦିବସ ଉପଲକ୍ଷେ ସଭା କରିଥିଲି ବୋଲି ସେ ପୁଲିସ ପାଖରେ ଏତଲା ଦେଇଥିଲେ । ତାଙ୍କର ସେ ଉକ୍ତିକୁ ଆହୁରି ଦୃଢ଼ୀଭୂତ କରିବା ଉଦ୍ଦେଶ୍ୟରେ ସେ ମୋ ଉପରେ ଓ ବିବୁଧେନ୍ଦ୍ର ମିଶ୍ରଙ୍କ ଉପରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଆରମ୍ଭ କରିଦେଇଥିଲେ । ଅଧ୍ୟକ୍ଷଙ୍କଠାରୁ ମୋ ପାଖକୁ ପରୱାନା ଆସିଗଲା ଯେ ତାଙ୍କର ବିନାନୁମତିରେ କଲେଜ ଟେନିସ୍ ପଡ଼ିଆରେ ମୁଁ ସ୍ୱାଧୀନତା ଦିବସ ଉପଲକ୍ଷେ ସଭା କରି ସେଠାରେ ପତାକା ଉତ୍ତୋଳନ କରି ଭାଷଣ ଦେଇଛି, ତେଣୁ ସେଥିପାଇଁ ମୋତେ ଅଧ୍ୟକ୍ଷଙ୍କ ପାଖରେ କ୍ଷମାପ୍ରାର୍ଥନା କରିବାକୁ ହେବ ଏବଂ ପଚିଶ ଟଙ୍କା ଜୋରିମାନା ଦେବାକୁ ହେବ । ମୋର ବନ୍ଧୁ ବିବୁଧେନ୍ଦ୍ର ମିଶ୍ରଙ୍କୁ ମଧ୍ୟ ଏହିଭଳି ଆଦେଶ ଦିଆଯାଇଥିଲା ।

ସ୍ଥିର ହେଲା ଯେ ଜୋରିମାନା ଦେବୁନାହିଁ କି କ୍ଷମାପ୍ରାର୍ଥନା କରିବୁ ନାହିଁ । ଆମ୍ଭମାନଙ୍କର ପାଟନା ବିଶ୍ୱବିଦ୍ୟାଳୟର ବି.ଏ. ପରୀକ୍ଷା ଦେବାର କଥା । ସେଥିପାଇଁ ଆଉ ଅଳ୍ପ ଦିନ ଥାଏ । ଅଧ୍ୟକ୍ଷଙ୍କଠାରୁ ପୁଣି ଆଦେଶ ଆସିଲା ଯେ, କ୍ଷମାପ୍ରାର୍ଥନା କରି ଜୋରିମାନା ନଦେଲେ ବି.ଏ. ପରୀକ୍ଷା ଦେବାରୁ ଆମକୁ ବଞ୍ଚିତ କରାଯିବ । ସେ ଆଦେଶକୁ ମଧ୍ୟ ଆମେ ଅଗ୍ରାହ୍ୟ କରିଥିଲୁ ।

ଛାତ୍ରସଂଘ କାର୍ଯ୍ୟକାରୀ କମିଟିରେ ଏ ବିଷୟରେ ବହୁତ ଆଲୋଚନା ହେଲା । ସ୍ଥିରହେଲା ଯେ ଏ ବିଷୟରେ ଦୃଢ଼ ପ୍ରତିବାଦ ଓ ଆନ୍ଦୋଳନ କରାଯିବ । ଅଧକ୍ଷଙ୍କ ଆଦେଶର ପ୍ରତିବାଦ କରି ରେଭେନ୍‌ସା କଲେଜରେ ଧର୍ମଘଟ ଓ ପରୀକ୍ଷା ବର୍ଜନ ଆନ୍ଦୋଳନ ପ୍ରବଳ ହୋଇଥିଲା । ପରୀକ୍ଷା ବର୍ଜନ ଆନ୍ଦୋଳନରେ ମୋର ସହପାଠୀ ରଘୁନାଥ ଦାସ ବିଶେଷ ଭାବରେ ନେତୃତ୍ୱ ନେଇଥିବା କଥା ମୋର ମନେପଡ଼େ । ଆନ୍ଦୋଳନ ଦମନ କରିବାପାଇଁ ସରକାର ଦୃଢ଼ ପଦକ୍ଷେପ ନେଇଥିଲେ । ସବୁଆଡୁ ସଶସ୍ତ୍ର ପୁଲିସ ଆଣି ରେଭେନ୍‌ସା କଲେଜକୁ ଏକପ୍ରକାର ସୈନ୍ୟଛାଉଣୀରେ ପରିଣତ କରିଦେଇଥିଲେ । କଟକ ସହରର ସବୁ ଶିକ୍ଷାନୁଷ୍ଠାନକୁ ଧର୍ମଘଟ ବ୍ୟାପିଥିଲା । ରେଭେନ୍‌ସା କଲେଜରେ ଥିଲା ପରୀକ୍ଷାକେନ୍ଦ୍ର । ସେଠାରେ ଧର୍ମଘଟ ଓ ପରୀକ୍ଷା ବର୍ଜନପାଇଁ ଯେତେବେଳେ ପିଲାମାନଙ୍କ ପକ୍ଷରୁ ସତ୍ୟାଗ୍ରହ ହୁଏ ସେତେବେଳେ ଅତି ନିର୍ମମ ଭାବରେ ସେମାନଙ୍କ ଉପରେ ଲାଠିଚାଳନା କରାଯାଇଥିଲା । ମନମୋହନ ମିଶ୍ରଙ୍କ ସମେତ ଅନେକ ଛାତ୍ରଙ୍କୁ ରକ୍ତାକ୍ତ ଅବସ୍ଥାରେ ଡାକ୍ତରଖାନାକୁ ନିଆଯାଇଥିଲା । ବହୁ ଛାତ୍ର ଗିରଫ ହୋଇଥିଲେ । ବହୁ ପରୀକ୍ଷାର୍ଥୀଙ୍କର ଅଭିଭାବକମାନେ ପରୀକ୍ଷାକେନ୍ଦ୍ର ପାଖରେ ଉପସ୍ଥିତ ହୋଇ ପୁଲିସ ସାହାଯ୍ୟରେ ତାଙ୍କ ପିଲାମାନଙ୍କୁ ନେଇ ପରୀକ୍ଷା ହଲ୍‌ରେ ବସାଇଲେ । ରେଭେନ୍‌ସା କଲେଜର ଦୁଇଟି ଛାତ୍ରବାସକୁ ଆମେ ଛାତ୍ର ଆନ୍ଦୋଳନର ଛାଉଣୀରୂପେ ବ୍ୟବହାର କରୁଥିଲୁ । ତେଣୁ ପୁଲିସ ଛାତ୍ରାବାସ ଭିତରେ ପ୍ରବେଶକରି ଛାତ୍ରମାନଙ୍କୁ ମାଡ଼ ଦେଇଥିଲା । ଛାତ୍ରାବାସ ଖାଲିକରି ଚାଲିଯିବାପାଇଁ ଅଧକ୍ଷ ଆଦେଶ ଦେଇଥିଲେ । ଆଦେଶ ନମାନିଲେ ପୁଲିସଦ୍ୱାରା ଛାତ୍ରାବାସରୁ ବାହାର କରିଦିଆଯିବାର ଧମକ ମଧ ଦିଆଯାଇଥିଲା । ତେଣୁ ଦିନେ ରାତିରେ ଆମେ ବିଛଣାପତ୍ର ଧରି ସହର ଭିତରେ ଜାନକୀନାଥ ସ୍ୱରାଜ ଭବନ, ବାଙ୍କାବଜାର ଧର୍ମଶାଳା ପ୍ରଭୃତି କେତେକ ସ୍ଥାନରେ ରହିବାପାଇଁ ଶୋଭାଯାତ୍ରା କରି ବାହାରିଗଲୁ । ଆମ ଶୋଭାଯାତ୍ରା ପ୍ରାୟ ରାତି ପାହାନ୍ତାରେ କଟକ ଜେଲ୍‌ଖାନା ଆଗରେ ପହଞ୍ଚିଲାବେଳକୁ ପୁଲିସ ସେଠାରେ ଜମାହୋଇଥିଲେ । ଶୋଭାଯାତ୍ରାକୁ ସେଠାରେ ଅଟକାଇ ସେଥିରୁ ଛାତ୍ରନେତାମାନଙ୍କୁ ଗିରଫ କରିବାକୁ ଲାଗିଲେ । ମୋ ପାଖରେ ଗୋଟିଏ ଚଉଡ଼ା ଧଡ଼ିର ଚାଦର ଥିଲା । ମୁଁ ତାକୁ ମୁଣ୍ଡରେ ଓଢ଼ଣା ଭଳି ପକାଇଦେଇ ପୁଲିସ ହାବୁଡ଼ରୁ ଖସି ପଳାଇଲି । ସେଠାରୁ ଯାଇ ଗଙ୍ଗାମନ୍ଦିରରେ ଥିବା ଅମୃତବଜାର ପତ୍ରିକା ଅଫିସରେ ସାମ୍ବାଦିକ ମୋହିତ କୁମାର ମୈତ୍ରଙ୍କ ପାଖରେ ଲୁଚି ଆଶ୍ରୟ ନେଇଥିଲି । ବହୁ ଛାତ୍ରଙ୍କୁ ସେଦିନ ରାତିରେ ଗିରଫ କରାଯାଇଥିଲା । ଗିରଫ ପରୱାନା ମୋ ବିରୁଦ୍ଧରେ ଥିଲା । କିଛିଦିନ ଲୁଚିରହି ମୁଁ ଆନ୍ଦୋଳନ ଚଳାଇବାରେ ସାହାଯ୍ୟ କରିଥିଲି । ଦିନେ ରାତିରେ ମୁଁ ଓ ଗଙ୍ଗାଧର ମହାପାତ୍ର ଓଡ଼ିଆବଜାରସ୍ଥ ଜଣେ ମୁସଲମାନ ଭଦ୍ରଲୋକଙ୍କ ଘରେ ଗୁପ୍ତରେ ଆଶ୍ରୟ ନେଇଥିଲୁ । ସେହିଦିନ ରାତିରେ ହରେକୃଷ୍ଣ ମହତାବ ଗୁପ୍ତରେ ଆମ୍ଭମାନଙ୍କ ପାଖକୁ ଆସି ଆନ୍ଦୋଳନ ବିଷୟରେ କେତେକ ପରାମର୍ଶ ଦେଇଥିଲେ । ଏହିପରିଭାବରେ ଆଠଦଶଦିନ ମୁଁ ଲୁଚିରହିଥିଲି । ଦିନେ ରାତି ପାହାନ୍ତାରେ ଆନ୍ଦୋଳନ ସମ୍ପର୍କରେ କେତେକ ପରାମର୍ଶ କରିବା ପାଇଁ କାଠଯୋଡ଼ି କୂଳରେ ଅବସ୍ଥିତ ନବକୃଷ୍ଣ ଚୌଧୁରୀଙ୍କର ଘରକୁ ଯାଇଥିଲି । ତାଙ୍କ ସହିତ କଥାବାର୍ତ୍ତା ସାରି ଖୁବ୍ ଭୋରରୁ ଭଗବତୀ ଚରଣ ପାଣିଗ୍ରାହୀଙ୍କ ଘର ଆଡ଼କୁ ଯିବାବେଳେ ଗୁଇନ୍ଦା ପୁଲିସ ବୁଦ୍ଧଦେବ ବାନାର୍ଜୀଙ୍କ ହାବୁଡ଼ରେ ପଡ଼ିଗଲି । ସେ ମୋତେ ଦେଖିବାକ୍ଷଣି ସାଇକେଲ ଛୁଟାଇବାକୁ ଆରମ୍ଭକରିଦେଲେ ପୁଲିସକୁ ଖବର ଦେଇ ଗିରଫ କରିବାପାଇଁ । ମୁଁ ତାଙ୍କୁ ଖୁବ୍ ବଡ଼ପାଟିରେ ଡାକି ଅଟକାଇଲି । ତାଙ୍କ ସହିତ ମୋର ଆଗରୁ ପରିଚୟ ଥାଏ । ତାଙ୍କୁ କହିଥିଲି ଯେ ଯଦି ମୁଁ ବର୍ତ୍ତମାନ ଗିରଫ ହୁଏ ତା' ହେଲେ କେବଳ ତାଙ୍କରି ଯୋଗୁହିଁ ଗିରଫ ହେଲି ବୋଲି ବୁଝିବି । ତେଣୁ ସେ ପୁଲିସ ଅଫିସର୍ ଆଉ କିଛି ନ କହି ତାଙ୍କ ଘରକୁ ଚାଲିଯାଇଥିଲେ । ପରଦିନ ବିଜୟ ଚନ୍ଦ୍ର ଦାସଙ୍କ ସହିତ ମୋର ଭେଟ ହେଲା । ତାଙ୍କୁ ମଧ ପୁଲିସ ଖୋଜୁଥାନ୍ତି । ଦୁଇଜଣ ବସି ସ୍ଥିର କଲୁ ଯେ ଆଉ ବେଶି ଦିନ ଲୁଚିନରହି ଗିରଫ ହୋଇଯିବା

ଉଚିତ । ଦୁଇଜଣଯାକ ଯାଇ ଗୌରୀଶଙ୍କର ପାର୍କ ନିକଟରେ ଥିବା ରଜନୀବାବୁଙ୍କର ଡାକ୍ତରଖାନାରେ ଆଶ୍ରୟ ନେଲୁ । ସନ୍ଧ୍ୟାବେଳେ ପାର୍କ ହୋଟେଲ୍‌କୁ ଚା' ଖାଇବାକୁ ଗଲୁ ଏବଂ ଆମେ ପାର୍କ ହୋଟେଲ୍‌ରେ ଅଛୁ ବୋଲି ସେଠାରୁ ଲାଲବାଗ ଥାନାକୁ ଖବର ଦେଇଥିଲୁ । ତା'ପରେ ପୁଲିସ ଆସି ଆମ୍ଭମାନଙ୍କୁ ଗିରଫ କରିନେଲେ । ସେଦିନ ରାତିରେ ଆମକୁ ଲାଲବାଗ ଥାନା ହାଜତରେ ରଖାଯାଇଥିଲା । ପରଦିନ କଟକ ଜେଲ୍‌କୁ ନିଆଯାଇଥିଲା । କଟକ ଜେଲ୍‌ରେ ଆମେ ପହଞ୍ଚିଲାବେଳକୁ ବହୁଛାତ୍ର ସେଠାରେ ବନ୍ଦୀ ହୋଇ ଥାଆନ୍ତି । କଟକ ଜେଲ୍‌ରେ ଆମେ ଆଠଦଶଦିନ ରହିଲା ପରେ କଟକର କେତେକ ବିଶିଷ୍ଟ ବ୍ୟକ୍ତି ଆମମାନଙ୍କୁ ଜାମିନ୍‌ରେ ଖଲାସ କରିନେଇଥିଲେ ।

## ବିଚାରରେ ଅବିଚାର ଓ ବ୍ୟଭିଚାରର ବୃତ୍ତାନ୍ତ

ଭାରତୀୟ ପିଙ୍ଗଳ କୋର୍ଡ଼ ଦଣ୍ଡବିଧି ଆଇନର କେଉଁ କେଉଁ ଦଫାରେ ଆମ୍ଭମାନଙ୍କ ନାମରେ ପୁଲିସ କେସ୍ ହେବ ସେ ବିଷୟ ରେଭେନ୍‌ସା କଲେଜ ଅଧକ୍ଷ ଓ ପୁଲିସଙ୍କ ମଧ୍ୟରେ ଚକ୍ରାନ୍ତ ହୋଇ ସ୍ଥିର ହୋଇଥାଏ । ସରକାରୀ ଜାଗାରେ ଅନଧିକାର ପ୍ରବେଶ କରିବା, ପୁଲିସ୍ ଆଇନ ଭଙ୍ଗକରି ଅଧକ୍ଷଙ୍କ ବିନାନୁମତିରେ କଲେଜ ହତା ଭିତରେ ସଭା କରିବା, ସରକାରଙ୍କ ବିରୁଦ୍ଧରେ ଷଡଯନ୍ତ୍ର କରିବା, ସରକାରୀ କାର୍ଯ୍ୟରେ ବାଧାଦେବା ଓ ଯୁଦ୍ଧ ଉଦ୍ୟମରେ ବାଧାସୃଷ୍ଟି କରିବା ପ୍ରଭୃତି ନାନା ଅଭିଯୋଗ କରାଯାଇ ମୋ ସହିତ ଆଉ ଏକୋଇଶ ଜଣ ଛାତ୍ରଙ୍କ ବିରୁଦ୍ଧରେ ପୁଲିସ ଚାର୍ଜସିଟ୍ ଦାଖଲ କରିଥିଲେ । ମକଦ୍ଦମାଟି କଟକ ସଦର ଏସ୍.ଡି.ଓ. ଜଗଦ୍‌ବନ୍ଧୁ ମହାପାତ୍ରଙ୍କ କୋର୍ଟରେ ବିଚାର ହୋଇଥିଲା । ମକଦ୍ଦମାରେ ମୁଁ ଥିଲି ମୁଖ୍ୟ ଆସାମୀ । ମୋ ବ୍ୟତୀତ ମନମୋହନ ମିଶ୍ର, ବିବୁଧେନ୍ଦ୍ର ମିଶ୍ର, ଦୁର୍ଗାଚରଣ ମହାନ୍ତି, ରାମଚନ୍ଦ୍ର ମିଶ୍ର, ଗୋବିନ୍ଦଚନ୍ଦ୍ର ମହାନ୍ତି, ବୀରେନ୍ ମିତ୍ର, ସଚି ରାଉତରାୟ ଓ ସୁରଜମଲ୍ଲ ଶାହା ପ୍ରମୁଖ ଆସାମୀ ଥିଲେ । ମକଦ୍ଦମାର ବିଚାର ଅନେକଦିନ ଚାଲିଲା । ଆମ ଛାତ୍ରମାନଙ୍କ ପକ୍ଷରୁ ମକଦ୍ଦମା ଲଢୁଥିଲେ ଦୀନବନ୍ଧୁ ସାହୁ ଓ ରାଜକିଶୋର ଦାସ ଆଡ୍‌ଭୋକେଟ୍‌ମାନେ । ଦୀନବନ୍ଧୁ ସାହୁ ବିଶିଷ୍ଟ ସମାଜସେବୀ, ଆଡ୍‌ଭୋକେଟ୍ ଜେନେରାଲ୍ ଓ ମନ୍ତ୍ରୀରୂପେ ଏବଂ ରାଜକିଶୋର ଦାସ ଓଡ଼ିଶା ହାଇକୋର୍ଟର ବିଚାରପତିରୂପେ ସୁଖ୍ୟାତ । ସରକାରଙ୍କ ପକ୍ଷରୁ ମୁଖ୍ୟ ସାକ୍ଷୀ ଥିଲେ ରେଭେନ୍‌ସା କଲେଜର ଅଧକ୍ଷ ଡକ୍ଟର ପ୍ରାଣକୃଷ୍ଣ ପରିଜା । ମକଦ୍ଦମା ବିଚାର ବେଳେ କଚେରିରେ ବହୁତ ଲୋକ ରୁଣ୍ଡହୋଇଥାଆନ୍ତି । କୋର୍ଟ ରୁମ୍‌ଟି ଛାତ୍ର ଓ ଜନସାଧାରଣଙ୍କଦ୍ୱାରା ଭରପୂର ହୋଇ ରହୁଥାଏ । ବିଚାର ସମୟରେ ଅନେକ କୌତୂହଳପୂର୍ଣ୍ଣ ଘଟଣା ଘଟିଥିଲା । ବାଇଶ ଜଣ ଆସାମୀଙ୍କୁ କାଠଗଡ଼ାରେ ଜାଗା ଅଣ୍ଟେ ନାହିଁ । ଆମେ ସବୁ ଆସାମୀ ଖୁନ୍ଦାଖୁନ୍ଦି ହୋଇ କାଠଗଡ଼ା ଭିତରେ ଛିଡ଼ାହୋଇଥାଉ । ସେହି ସମୟରେ ପରିଜାସାହେବ ସାକ୍ଷ୍ୟ ଦେବାପାଇଁ ଆସି ସାକ୍ଷୀମାନଙ୍କପାଇଁ ଉଦ୍ଦିଷ୍ଟ କାଠଗଡ଼ା ପାଖରେ ପହଞ୍ଚିଥିଲେ । ତାଙ୍କୁ ଦେଖିଲାକ୍ଷଣି ହାକିମ ଜଗଦ୍‌ବନ୍ଧୁବାବୁ ବିଚାରପତି ଚୌକିରେ ଥୟ ହୋଇ ରହିପାରିନଥିଲେ – ଅତର୍କିତ ଭାବରେ ଟିକିଏ ଉଠ ବସ ହୋଇଗଲେ । ତା'ପରେ ସାକ୍ଷୀଙ୍କ କାଠଗଡ଼ାରେ ପରିଜାସାହେବଙ୍କୁ ଗୋଟିଏ ଚୌକି ଦେବାପାଇଁ ହାକିମଙ୍କ ହୁକୁମ ହେଲା । ପରିଜାସାହେବ ଯେତେବେଳେ ଚୌକିରେ ବସିଗଲେ ଆମ୍ଭମାନଙ୍କ ପକ୍ଷରୁ ଆପତ୍ତି ହେଲା ଯେ ଆଇନ ଆଗରେ ସମସ୍ତେ ସମାନ, ତେଣୁ ସାକ୍ଷ୍ୟ ଦେବାକୁ ଆସିଥିବା ଜଣେ ବ୍ୟକ୍ତିଙ୍କ ପ୍ରତି ଏ ପ୍ରକାର ପକ୍ଷପାତ ବ୍ୟବହାର ଦେଖାଇବା ଆଇନ ଅଦାଲତରେ ଅନ୍ୟାୟ ବୋଲି ଆମେ ଦାବି କରିଥିଲୁ । ଏ ପ୍ରକାର ପକ୍ଷପାତ ବ୍ୟବହାର ବିଚାରକୁ ପ୍ରଭାବିତ କରିବାର ଆଶଙ୍କା ଅଛି ବୋଲି ଆମ୍ଭେମାନେ ଦର୍ଶାଇଥିଲୁ । ଏ କଥା ଶୁଣି ପରିଜାସାହେବ ଚୌକି ଛାଡ଼ି ଛିଡ଼ାହୋଇପଡ଼ିଲେ । ହାକିମ ବଡ଼ ଅପ୍ରତିଭ ଅବସ୍ଥାରେ ପଡ଼ିଥିଲେ । ନିଜର ଓ ପରିଜାସାହେବଙ୍କର ଏଭଳି ଇତସ୍ତତଃ ଅବସ୍ଥା ମଧ୍ୟରେ ସେ ଗୋଟିଏ ପ୍ରକାର ସମାଧାନ

ବାହାରକରିଥିଲେ । ଆମ୍ଭମାନଙ୍କ ପାଇଁ ଚେୟାର ବେଞ୍ଚର ବ୍ୟବସ୍ଥା କରାଯାଇଥିଲା ଏବଂ ତା'ପରେ ପରିଜାସାହେବ କାଠଗଡ଼ା ଭିତରେ ଚୌକିରେ ବସିଲେ ।

ଅଧକ୍ଷ ପରିଜାସାହେବଙ୍କୁ ଦୁଇଦିନକାଳ ଜେରା କରାଯାଇଥିଲା । କଲେଜ ପଡ଼ିଆରେ ଅନଧିକାର ପ୍ରବେଶ ଓ ଅଧକ୍ଷଙ୍କ ବିନାନୁମତିରେ ଟେନିସ୍ ପଡ଼ିଆରେ ସଭା କରିବା ଅଭିଯୋଗକୁ ମୁଁ ଅସ୍ୱୀକାର କରିଥିଲି । ମୁଁ କହିଥିଲି ଯେ ଟେନିସ୍ ପଡ଼ିଆରେ ସ୍ୱାଧୀନତା ଦିବସ ଉତ୍ସବ ପାଳନ କରିବା ଉଦ୍ଦେଶ୍ୟରେ ସଭା କରିବାକୁ ଅନୁମତି ପାଇବାପାଇଁ ମୁଁ ଗୋଟିଏ ଦରଖାସ୍ତ ଅଧକ୍ଷଙ୍କୁ ଦେଇଥିଲି । ସେ ଉକ୍ତ ଦରଖାସ୍ତ ପଢ଼ି ତାକୁ ମୋ ହାତକୁ ବଢ଼ାଇଦେଇ କହିଥିଲେ, ''ଦରଖାସ୍ତ ଆଉ ଗୋଟେ କ'ଣ ? ସଭା ଯଦି କରିବାର କଥା କରିଯିବ ।'' ମୁଁ କହିଥିଲି ଯେ, ଦରଖାସ୍ତଟି ନେଇ ମୁଁ ଏକୁଟିଆ ଯାଇଥିଲି । କଲେଜ ଅଫିସ୍‌ରେ ଅଧକ୍ଷ ଓ ତାଙ୍କ ହେଡ୍‌କ୍ଲର୍କ ଜଗନ୍ନାଥ ମିଶ୍ର ଥିଲେ । ଜଗନ୍ନାଥ ବାବୁ ସବୁ କଥା ଜାଣନ୍ତି । ମାତ୍ର ଯେହେତୁ ସେ ପରିଜାସାହେବଙ୍କ ଅଧୀନରେ କାର୍ଯ୍ୟ କରୁଛନ୍ତି ସେ କେବେ ସାହସ କରି ସତ କଥା କହିବେନାହିଁ । ତେଣୁ ଏ ଅବସ୍ଥାରେ କୋର୍ଟକୁ ଗୋଟିଏ ଷଣ୍ଢ ଅଣାଯାଉ ଓ ସେହି ଷଣ୍ଢ ଲାଙ୍ଗୁଡ଼ ଧରି ପରିଜାସାହେବଙ୍କର ଯାହା କହିବାର କଥା ସେ କୁହନ୍ତୁ । କୋର୍ଟରେ ଖୁବ୍ ହାସ୍ୟରୋଳ ହୋଇଥିଲା । ହାକିମ ମୋ କଥାକୁ ଅଗ୍ରାହ୍ୟ କରିଥିଲେ । ତା'ପରେ ପରିଜା ସାହେବଙ୍କୁ ଦୀନବନ୍ଧୁବାବୁ ଜେରାକରିଥିଲେ । ସେ ଗୁଡ଼େଇଦେଇ ବହୁତ କଥା ପଚାରିଥିଲେ । ଜେରାରେ ପରିଜାସାହେବ ଟିକିଏ ଅପ୍ରତିଭ ହୋଇପଡ଼ିଥିଲେ । ଦୀନବନ୍ଧୁବାବୁଙ୍କର କ୍ରମାଗତ ଜେରାରେ ପରିଜାସାହେବ ଏକପ୍ରକାର ଭାଙ୍ଗିପଡ଼ିଥିଲେ ଏବଂ ଧୈର୍ଯ୍ୟହୀନ ଭାବରେ କହିପକାଇଲେ ଯେ ଗୋଟିଏ ଅଣଆଡ଼ିଆ ଜାଗାରେ (Out of the way place) ସଭା କରିବାକୁ ସେ କହିଥିଲେ, ମାତ୍ର ଟେନିସ୍ ପଡ଼ିଆ କଥା ସେ କହି ନ ଥିଲେ । ପରିଜାସାହେବଙ୍କର ଏତକ କଥାରୁ ନାନାପ୍ରକାର ଜେରା କରି ଦୀନବନ୍ଧୁବାବୁ ଓ ରାଜକିଶୋରବାବୁ ତାଙ୍କଠାରୁ ବହୁତ କଥା ଆଦାୟ କରିଥିଲେ । ଯାହାହେଉ, ଶେଷରେ ହାକିମ ଆମ ବାଇଶଜଣ ଆସାମୀଙ୍କୁ ଦୋଷୀ ସାବ୍ୟସ୍ତ କରି ପ୍ରତ୍ୟେକଙ୍କୁ ପଚାଶ ଟଙ୍କା ଜୋରିମାନା କିମ୍ବା ଅନାଦେୟ ଏକ ମାସ ସଶ୍ରମ କାରାଦଣ୍ଡ ଭୋଗିବାକୁ ସଜା ହୁକୁମ ଦେଇଥିଲେ । ଏହି ରାୟ ବିରୁଦ୍ଧରେ ସେତେବେଳକାର କଟକ ଜିଲ୍ଲା ଜଜ୍ ମାହେର୍ ସାହେବଙ୍କ କୋର୍ଟରେ ଅପିଲ୍ ହୋଇଥିଲା । ମାହେର୍ ସାହେବ ଜଣେ ଇଂରେଜ ଜଜ୍ ଥିଲେ ବି ଅପିଲ ଶୁଣି ସୁବିଚାର କରି ତଳ କୋର୍ଟର ରାୟକୁ ନାକଚ କରିଦେଇଥିଲେ । ଆମେମାନେ ବିଶ୍ୱବିଦ୍ୟାଳୟ ପରୀକ୍ଷାର ପ୍ରାକ୍‌କାଳରେ ଏକ ଅବିଚାରରୁ ନିର୍ଦ୍ଦୋଷରେ ଖଲାସ ହୋଇଥିଲୁ ।

ଏସ୍.ଡି.ଓ. ସାହେବ ତାଙ୍କ କୋର୍ଟରେ ଅଧକ୍ଷ ପରିଜାସାହେବଙ୍କ ଉପସ୍ଥିତିରେ ଯେପରି ଅସ୍ତବ୍ୟସ୍ତ ହୋଇପଡ଼ିଥିଲେ ଓ କାକୁତି ମିନତି କରିଥିଲେ ସେଥିରୁ ସେ ପରିଜା ସାହେବଙ୍କଦ୍ୱାରା ପ୍ରଭାବିତ ନହୋଇ ଆମକୁ ଯେ ନ୍ୟାୟ ଦେବେ ଏକଥା ଆଶା କରିବା ଅବାସ୍ତବ ବୋଲି ଆମ୍ଭେମାନେ ବିଚାର କରିଥିଲୁ । ତେଣୁ ମକଦ୍ଦମାଟି ତାଙ୍କ କୋର୍ଟରୁ ସ୍ଥାନାନ୍ତର କରିବାପାଇଁ ଆମେ ସେଠାରେ ଚୁପ୍ କରି ଆମ ଓକିଲ ଦୀନବନ୍ଧୁବାବୁଙ୍କୁ ସୂଚନା ଦେଇଥିଲୁ । ଦୀନବନ୍ଧୁବାବୁ ଆମ କଥାରେ ରାଜି ହୋଇ ନ ଥିଲେ । ପରେ ମକଦ୍ଦମା ହସ୍ତାନ୍ତର ବିଷୟରେ ଗୋଟିଏ ମଜା ଗଳ୍ପ ସେ ଆମମାନଙ୍କୁ କହିଥିଲେ । ଗଡ଼ଜାତ ରାଜ୍ୟ ତାଳଚେରରେ ପ୍ରଜାମଣ୍ଡଳ ଆନ୍ଦୋଳନ ସମ୍ପର୍କରେ ପବିତ୍ର ମୋହନ ପ୍ରଧାନଙ୍କ ନେତୃତ୍ୱରେ କାର୍ଯ୍ୟ କରୁଥିବା କେତେକ କର୍ମୀ ଗିରଫ ହୋଇଥିଲେ । ସେମାନଙ୍କ ମକଦ୍ଦମା ଯେଉଁ ହାକିମଙ୍କ ପାଖରେ ବିଚାରାଧୀନ ଥିଲା ତାଙ୍କଠାରୁ ନ୍ୟାୟ ପାଇବା ଏକାବେଳକେ ଅସମ୍ଭବ ବୋଲି ଜଣାଗଲା । ତା'ଛଡ଼ା କୋର୍ଟରେ ଅନବରତ ସିଗାରେଟ୍ ଖାଇବାଠାରୁ ଆରମ୍ଭ କରି ନାନା ଆଚରଣନିଷିଦ୍ଧ କାର୍ଯ୍ୟ ସେ ହାକିମ କରୁଥିଲେ । ତାଙ୍କର ଆଚରଣ ହେତୁ କୋର୍ଟରେ ମର୍ଯ୍ୟାଦା ବୋଲି କିଛି ନଥିଲା । ଦୀନବନ୍ଧୁବାବୁ ଉକ୍ତ ମକଦ୍ଦମାରେ ପ୍ରଜାମଣ୍ଡଳ ପକ୍ଷରୁ ଓକିଲ ଥିଲେ । ବିଚାରପତିଙ୍କଦ୍ୱାରା ଧର୍ମ

ଅଦାଲତ ମର୍ଯ୍ୟାଦାର ଏ ପ୍ରକାର ବ୍ୟଭିଚାର କାରଣ ଦର୍ଶାଇ ମକଦ୍ଦମାଟି ସେଠାରୁ ସ୍ଥାନାନ୍ତରିତ କରିବା ପାଇଁ ଆସାମୀମାନଙ୍କ ପକ୍ଷରୁ ରାଜାଙ୍କ ପାଖରେ ସେ ଆବେଦନ କରିଥିଲେ । ରାଜା ଥିଲେ ରାଜ୍ୟର ସର୍ବୋଚ୍ଚ ନ୍ୟାୟାଧୀଶ । ଆବେଦନ ଶୁଣିବାପାଇଁ ରାଜା ତାରିଖ ଧାର୍ଯ୍ୟ କରିଥିଲେ । ମିସଲ୍ ଉପରେ ଅନବରତ ସିଗାରେଟ୍ ପିଇବାଦ୍ୱାରା ବିଚାରାଳୟର ମର୍ଯ୍ୟାଦା ଉପରେ କିପରି ବ୍ୟଭିଚାର କରାଯାଉଛି ସେ କଥା ଗୋଟିଏ ପ୍ରଧାନ କାରଣ ସ୍ୱରୂପ ସେହି ଆବେଦନପତ୍ରରେ ବର୍ଣ୍ଣନା କରାଯାଇଥିଲା । ନିର୍ଦ୍ଦିଷ୍ଟ ତାରିଖରେ ଆଡ଼ଭୋକେଟ୍ ଦୀନବନ୍ଧୁ ସାହୁ ମହାମାନ୍ୟ ସର୍ବୋଚ୍ଚ ନ୍ୟାୟାଧୀଶ ରାଜାସାହେବଙ୍କ ନ୍ୟାୟାଳୟରେ ଉପସ୍ଥିତ ହେଲେ । ସ୍ୱୟଂ ରାଜାସାହେବଙ୍କ ଆବିର୍ଭାବ ପୂର୍ବରୁ ଜଣେ ଲୋକ ଆସି ପାରମ୍ପରିକ ରୀତିରେ ତାଙ୍କର ଆଗମନବାଣୀ ଘୋଷଣା କରିଗଲେ । ତା'ପରେ ରାଜାସାହେବ କାଖରେ ଏକ କୌତୁକିଆ କୁକୁର ଜାକି ଓ ମୁହଁରେ ସିଗାରେଟ୍ ଫୁଙ୍କି ଫୁଙ୍କି ଆସି ମିସଲ୍ ଉପରେ ବିଜେହେଲାକ୍ଷଣି ପୋଷା କୁକୁରଟିକୁ ଖୋଦ୍ ଆଡ଼ଭୋକେଟ୍‌ଙ୍କ ଆଗରେ ଟେବୁଲ୍ ଉପରେ ବସାଇଦେଲେ । ମିସଲ୍ ଉପରେ ବସି ରାଜାସାହେବ କିଛି ସମୟ ଚିଠିପତ୍ର ପଢ଼ାପଢ଼ି କରୁଥାଆନ୍ତି । ଇତିମଧ୍ୟରେ ପାଟିରେ ଥିବା ସିଗାରେଟ୍‌ଟି ସରିଆସିଲା । ପାଖଲୋକ ସେଇଟିକୁ କାଢ଼ି ନେଇ ନୂଆ ସିଗାରେଟ୍‌ଟିଏ ରାଜାଙ୍କ ମୁହଁରେ ଧରାଇଦେଲା । ନ୍ୟାୟାଳୟର ମର୍ଯ୍ୟାଦା ଉପରେ ସର୍ବୋଚ୍ଚ ନ୍ୟାୟାଧୀଶଙ୍କ ରାଜ-ଅହଙ୍କାରର ଏଭଳି ବ୍ୟଭିଚାର ଦେଖି ଆମ ଦେଶାଭିମାନୀ ଆଡ଼ଭୋକେଟ୍‌ଙ୍କର ଅକଲ୍ ଗୁଡୁମ୍ ହୋଇଯାଇଥିଲା । କିନ୍ତୁ ନିଜ ମହକିଲମାନଙ୍କ ମକଦ୍ଦମା ତ ଜିଣିବାକୁ ହେବ, ରାଗ ଅଭିମାନର ସ୍ଥାନ ନାହିଁ । ହାକିମଙ୍କର ବଦ୍‌ଗୁଣ ଓ ମିସଲ ଉପରେ ଧୂମପାନ ଯୋଗୁଁ ବିଚାରାଳୟର ମର୍ଯ୍ୟାଦା ନଷ୍ଟ ହେଉଛି ବୋଲି ସେ ଯେଉଁ ଅଭିଯୋଗ କରିଥିଲେ ଏବଂ ସେଥିପାଇଁ ସେ ମକଦ୍ଦମାକୁ ସ୍ଥାନାନ୍ତର କରିବାକୁ ଚାହୁଁଥିଲେ, ନ୍ୟାୟାଧୀଶ ରାଜାସାହେବ ଯେ ସେହି ଗୁଣରେ ତତୋଧିକ ନିପୁଣ, ସେକଥା ବୁଝିବାପାଇଁ ଆଡ଼ଭୋକେଟ୍‌ଙ୍କର ଆଉ କିଛି ବାକି ରହିଲାନାହିଁ । କିନ୍ତୁ ଆଡ଼ଭୋକେଟ୍ ଦୀନବନ୍ଧୁ ବାବୁଙ୍କର ଉପସ୍ଥିତବୁଦ୍ଧି ଖୁବ୍ ପ୍ରଖର ଥିଲା । ସେ ବୁଝିପାରିଥିଲେ, ରାଜା ତ ନିଜେ ଏପରି ଭାବରେ ସିଗାରେଟ୍ ଟାଣୁଛନ୍ତି ସୁତରାଂ ଧୂମପାନଦ୍ୱାରା କୋର୍ଟର ମର୍ଯ୍ୟାଦା କିପରି ନଷ୍ଟ ହେଉଛି ବୋଲି ରାଜା ନିଶ୍ଚୟ ବିସ୍ମିତ ହେଉଥିବେ । କିନ୍ତୁ ଉପସ୍ଥିତବୁଦ୍ଧିରେ ସେ ସେହି ରାଜୁଡ଼ା ଅଭିମାନର ସଂପୂର୍ଣ୍ଣ ସୁଯୋଗ ନେଲେ । ବିଚାରପତି ଆସନରେ ଆସୀନ ରାଜାଙ୍କୁ ସମ୍ବୋଧନ କରି କହିଲେ, "Your Highness is the fountain of justice. You can smoke, that is alright– କିନ୍ତୁ ଆପଣଙ୍କର ଅଧୀନସ୍ଥ କର୍ମଚାରୀ ପ୍ରଜାମାନଙ୍କୁ ନ୍ୟାୟ ଦେବାପାଇଁ କେବଳ ବିଚାର କରିବାର କ୍ଷମତା ଆପଣଙ୍କଠାରୁହିଁ ପାଇଛନ୍ତି । କିନ୍ତୁ ବିଚାରାଳୟରେ ଆପଣଙ୍କ ପରି ଧୂମପାନ କରିବାର କ୍ଷମତା ସେ ଆପଣଙ୍କଠାରୁ ପାଇନାହାନ୍ତି । ଆପଣ ରାଜାରୂପେ ସମସ୍ତ କ୍ଷମତାର ଉତ୍ସ । ତେଣୁ ବିଚାରାଳୟରେ ଧୂମପାନ କରିବା ଆପଣଙ୍କ ଇଚ୍ଛାଧୀନ । ମାତ୍ର ଆପଣଙ୍କର ଜଣେ ଅଧସ୍ତନ ବ୍ୟକ୍ତିଙ୍କୁ ଆପଣ ସେ ଅଧିକାର ଅର୍ପଣ କରିନାହାନ୍ତି । ତେଣୁ ସେ ହାକିମ ଅନଧିକାର ଧୂମପାନଦ୍ୱାରା କୋର୍ଟର ମର୍ଯ୍ୟାଦା ନଷ୍ଟ କରିଛନ୍ତି ।'' ଏ ପ୍ରକାର ଯୁକ୍ତି ରାଜାଙ୍କ ମନକୁ ଖୁବ୍ ପାଇଥିଲା । ତେଣୁ ମକଦ୍ଦମାଟି ଅନ୍ୟ କୋର୍ଟକୁ ସ୍ଥାନାନ୍ତରିତ ହେବାପାଇଁ ରାଜା ଆଦେଶ ଦେଇଥିଲେ ।

ଏହି ଗଳ୍ପଟି କହିବା ପରେ ଦୀନବନ୍ଧୁବାବୁ ଆମମାନଙ୍କୁ କହିଥିଲେ ଯେ ଆମମାନଙ୍କ କଥା ଅନୁସାରେ ଏସ୍.ଡ଼ି.ଓ. ଜଗବନ୍ଧୁବାବୁଙ୍କ କୋର୍ଟରୁ ମକଦ୍ଦମାଟି ସ୍ଥାନାନ୍ତରିତ କରିବାପାଇଁ ସେ ଯଦି ଆବେଦନ କରିଥାଆନ୍ତେ, ତା'ହେଲେ କଥାଟା ମହରଗରୁ ଯାଇ କାନ୍ତାରରେ ପଡ଼ିଲା ଭଳି ହୋଇଥାଆନ୍ତା । ପରିଜାସାହେବ କୋର୍ଟକୁ ସାକ୍ଷୀ ଦେବାପାଇଁ ଆସିଲାକ୍ଷଣି ଜଗବନ୍ଧୁବାବୁ ଟିକିଏ ସିନା ଉଠିପଡ଼ିଥିଲେ, କିନ୍ତୁ ଅନ୍ୟ କୋର୍ଟରେ ଯେଉଁ ହାକିମମାନେ ଅଛନ୍ତି ସେ ପୂରା ସିଧା ଛିଡ଼ାହୋଇ

ପଢ଼ିଥାଆନ୍ତେ । ସେତେବେଳେ ରେଭେନ୍‌ସା କଲେଜର ଅଧକ୍ଷ, ବିଶେଷକରି ଡକ୍ଟର ପରିଜାଙ୍କର, ପ୍ରଶାସନିକ କ୍ଷେତ୍ରରେ ସେହି ପ୍ରକାର ସ୍ଥିତି ଓ ପ୍ରଭାବ ଥିଲା ।

ଜଣେ ପ୍ରବୀଣ ଓକିଲ ହିସାବରେ ଦୀନବନ୍ଧୁ ସାହୁଙ୍କର ପ୍ରତିଭା ଓ ଉପସ୍ଥିତବୁଦ୍ଧି ସମ୍ବନ୍ଧରେ ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଡକ୍ଟର ସଦାଶିବ ମିଶ୍ର ଗୋଟିଏ ମଜ୍ଜା କଥା କହିବାର ମୁଁ ଶୁଣିଛି । ଥରେ କୁଆଡ଼େ ଗୋଟିଏ ଅଦାଲତରେ କୌଣସି ମକଦ୍ଦମାରେ ଗୋଟିଏ ପକ୍ଷର ଓକିଲ ଥିଲେ ବିଶାଳକାୟ ପ୍ରଖ୍ୟାତ ଆଡ୍‌ଭୋକେଟ୍ ଚିନ୍ତାମଣି ଆଚାର୍ଯ୍ୟ ଓ ଅନ୍ୟ ପକ୍ଷରେ ଥିଲେ କ୍ଷୁଦ୍ରକାୟ ଆଡ୍‌ଭୋକେଟ୍ ଦୀନବନ୍ଧୁ ସାହୁ । ଜବାବ୍‌ସୁଆଲ୍ କଲାବେଳେ ଦୀନବନ୍ଧୁବାବୁ କୁଆଡ଼େ ଚିନ୍ତାମଣିବାବୁଙ୍କୁ ଲକ୍ଷ୍ୟ କରି କହିଥିଲେ ଯେ ତାଙ୍କର ଯୁକ୍ତିକୁ ଚିନ୍ତାମଣିବାବୁ ଠିକ୍ ଭାବରେ ବୁଝିପାରୁନାହାନ୍ତି । ସେଥିରେ ଚିନ୍ତାମଣିବାବୁ ଉତ୍ତେଜିତ ହୋଇ ପରିହାସରେ କୁଆଡ଼େ କହିଥିଲେ, "My learned friend Mr. Sahu need not pose to be a very intelligent man. I can put him in my pocket along with his intelligence." ଦୀନବନ୍ଧୁବାବୁ ସଙ୍ଗେ ସଙ୍ଗେ ପରିହାସ କରି କୁଆଡେ କହିଥିଲେ, "In that case my learned friend Mr. Acharya will carry better brain in his pocket than in his head.'.

## ବିଶ୍ୱବିଦ୍ୟାଳୟରୁ ବହିଷ୍କାର

ପୂର୍ବରୁ କହିଛି କିପରି ଆମମାନଙ୍କ ଉପରେ ହୋଇଥିବା ଶାସ୍ତିବିଧାନର ପ୍ରତିବାଦ କରି ଛାତ୍ର ଧର୍ମଘଟ ଓ ପରୀକ୍ଷା ବର୍ଜନ କରାଯାଇଥିଲା । କିନ୍ତୁ ମୁଁ ପରୀକ୍ଷା ଦେବାକୁ ଆଗ୍ରହ ପ୍ରକାଶ କରିଥିଲେ ମଧ ମୋତେ ପରୀକ୍ଷା ହଲ୍‌ରେ ବସିବାକୁ ଅନୁମତି ମିଳିନଥା'ନ୍ତା, କାରଣ ଅଧକ୍ଷଙ୍କ ଆଦେଶ ଅନୁସାରେ ମୁଁ ପଚିଶ ଟଙ୍କା ଜୋରିମାନା ଦେଇ ତାଙ୍କ ପାଖରେ କ୍ଷମାପ୍ରାର୍ଥନା କଲିନାହିଁ । ସେହିହେତୁ ମୋତେ ବି.ଏ. ପରୀକ୍ଷା ଦେବା ସୁଯୋଗରୁ ବଞ୍ଚିତ କରାଗଲା ଏବଂ ପରୀକ୍ଷା କେନ୍ଦ୍ରକୁ ମୋର ପ୍ରବେଶ ନିଷେଧ ବୋଲି ନୋଟିସ୍ ଦିଆଯାଇଥିଲା । ଅଧକ୍ଷଙ୍କ ଆଦେଶକୁ ଅବଜ୍ଞା କରିଥିଲି ବୋଲି ପାଟନା ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷଙ୍କୁ ରେଭେନ୍‌ସା କଲେଜ ଅଧକ୍ଷ ରିପୋର୍ଟ କରିଥିଲେ । ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ମୋତେ ପାଟନା ବିଶ୍ୱବିଦ୍ୟାଳୟରୁ ବହିଷ୍କାର କରିଦେଲେ । ଏହି ନିଷ୍ପତ୍ତି ମୋତେ ଜଣାଇଦିଆଗଲା । ବିଶ୍ୱବିଦ୍ୟାଳୟରୁ ବହିଷ୍କାର ଆଦେଶର ଅର୍ଥ ହେଲା ଯେ ପାଟନା ବିଶ୍ୱବିଦ୍ୟାଳୟର ଅଧୀନରେ ଥିବା କୌଣସି କଲେଜରେ ମୁଁ ଆଉ ଅଧ୍ୟୟନ କରିପାରିବିନାହିଁ । ଏଥର ତ ବି.ଏ. ପରୀକ୍ଷା ଦେବାରୁ ବଞ୍ଚିତ ହେଲି, ଭବିଷ୍ୟତରେ ମଧ ଆଉ ସେ ପରୀକ୍ଷା ଦେବା ଦୂରେଥାଉ କୌଣସି କଲେଜରେ ମଧ ପଢ଼ିପାରିବିନାହିଁ । ରେଭେନ୍‌ସା କଲେଜର କୌଣସି ଛାତ୍ର ପାଟନା ବିଶ୍ୱବିଦ୍ୟାଳୟରୁ ବହିଷ୍କୃତ ହେବା ଏହାହିଁ ପ୍ରଥମ ଘଟଣା ।

## ଶ୍ୟାମାପ୍ରସାଦଙ୍କ ଅନୁଗ୍ରହ

ଉଚ୍ଚଶିକ୍ଷା ଲାଭ କରିବାର ମୋର ସମସ୍ତ ଆଶା ଚୂରମାର୍ ହୋଇଯାଇଥିଲା । ପଢ଼ାପଢ଼ି ପ୍ରଭୃତି ଛାଡ଼ିଦେଇ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବାକୁ ମୁଁ କୁଣ୍ଠିତ ଥିଲି; ମାତ୍ର ବର୍ତ୍ତମାନ ବାଧ ହୋଇ ପଢ଼ା ଛାଡ଼ିବାର ଅବସ୍ଥା ସୃଷ୍ଟିହୋଇଗଲା । ପୂର୍ବ-ଛାତ୍ରାବାସରେ ମଧ ମୋତେ ରହିବାକୁ ଦିଆଗଲାନାହିଁ । ଆହୁରି ଅନେକ ପିଲାଙ୍କୁ ଛାତ୍ରାବାସରୁ ଓ କଲେଜରୁ ବର୍ଷକପାଇଁ ବହିଷ୍କାର କରାଯାଇଥିଲା । ଜୋବ୍ରା ପାଖରେ ତାଳଦଣ୍ଡା କେନାଲ କୂଳରେ ଗୋଟିଏ ପରିତ୍ୟକ୍ତ ଘରେ ବସାବାନ୍ଧି ଆମେ ବହୁତ ଛାତ୍ର ଭାତ ଡାଲମା ଖାଇ ରହିଥିଲୁ । ଏହି ସମୟରେ କଲିକତାରେ କୌଣସି କଲେଜରେ ପଢ଼ିବାପାଇଁ ମୋ ଭାଇ ମୋ ପାଖକୁ ଖବର ପଠାଇଥିଲେ । ଗୋଟିଏ ବିଶ୍ୱବିଦ୍ୟାଳୟ

ଜଣେ ଛାତ୍ରକୁ ବହିଷ୍କାର କଲେ ଅନ୍ୟ ବିଶ୍ୱବିଦ୍ୟାଳୟ ସେ ଛାତ୍ରକୁ ଗ୍ରହଣ କରିବ ନାହିଁ ଏ କଥା ମୋ ଭାଇଙ୍କୁ ଜଣାନଥିଲା । ମୁଁ କଲିକତା ଯାଇଥିଲି ଏବଂ କିପରି ଏ ଅସୁବିଧା ଅତିକ୍ରମ କରିବି ସେ ବିଷୟରେ ବହୁ ଲୋକଙ୍କ ସହ ପରାମର୍ଶ କରିଥିଲି । ରେଭେନ୍‌ସା ଆଇନ୍ କଲେଜ୍‌ର ପୂର୍ବତନ ଅଧ୍ୟକ୍ଷ ଜେ.ଏନ୍. ବାନାର୍ଜୀ କଲିକତା ହାଇକୋର୍ଟରେ ସେତେବେଳେ ଆଇନ ବ୍ୟବସାୟ କରୁଥିଲେ । ତାଙ୍କ ସହିତ ମୋର ସଦ୍‌ଭାବ କଥା ଆଗରୁ କହିଛି । ମୁଁ ତାଙ୍କ ପାଖକୁ ଯାଇଥିଲି । ମୋତେ ଦେଖି ସେ ଖୁବ୍ ଖୁସିହୋଇଥିଲେ । ପାଟନା ବିଶ୍ୱବିଦ୍ୟାଳୟରୁ ମୁଁ ବହିଷ୍କୃତ ହେବାର ସମସ୍ତ ଘଟଣା ତାଙ୍କୁ କହିଥିଲି । ମୋତେ ସାହାଯ୍ୟ କରିବାପାଇଁ ସେ ବାହାରି ପଡ଼ିଥିଲେ । ମୋତେ ସାଙ୍ଗରେ ନେଇ ସେ ଗଲେ ଡକ୍ଟର ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କ ପାଖକୁ । ଶ୍ୟାମାପ୍ରସାଦବାବୁ ଥିଲେ କଲିକତା ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା ସାର୍ ଆଶୁତୋଷ ମୁଖାର୍ଜୀଙ୍କ ପୁତ୍ର । କଲିକତା ବିଶ୍ୱବିଦ୍ୟାଳୟ ଉପରେ ତାଙ୍କର ଯଥେଷ୍ଟ ପ୍ରଭାବ ଥିଲା । ବାନାର୍ଜୀ ମହାଶୟ ମୋର ସମସ୍ତ ବୃତ୍ତାନ୍ତ ଶ୍ୟାମାପ୍ରସାଦବାବୁଙ୍କୁ କହିଥିଲେ । ମୋ ଦୁଃଖ ଶୁଣି ଶ୍ୟାମାପ୍ରସାଦବାବୁ ସହାନୁଭୂତି ଦେଖାଇଥିଲେ । ବିଦ୍ୟାସାଗର କଲେଜର ଅଧ୍ୟକ୍ଷଙ୍କୁ ଫୋନ୍ କରି ମୋତେ ତାଙ୍କ କଲେଜରେ ବି.ଏ. ଶ୍ରେଣୀରେ ଗ୍ରହଣ କରିବାକୁ କହିଥିଲେ । ମାତ୍ର ଏଥିପାଇଁ ପାଟନା ବିଶ୍ୱବିଦ୍ୟାଳୟର ଆପତ୍ତି ନଥିବା ପ୍ରମାଣପତ୍ରଟି (No objection Certificate) କୌଣସିମତେ ଆଣିବାକୁ ପରାମର୍ଶ ଦେଇଥିଲେ । କଲିକତା ବିଦ୍ୟାସାଗର କଲେଜରେ ନାମ ଲେଖାଇବାକୁ ଗଲି; ମାତ୍ର ସେଠାରେ ମଧ ଦୁଇଟି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ପ୍ରଥମ ଅସୁବିଧାଟି ହେଲା ରେଭେନ୍‌ସା କଲେଜ ଅଧ୍ୟକ୍ଷଙ୍କଠାରୁ କଲେଜଛାଡ଼ ପତ୍ର (College Leaving Certificate) ନେଇ । ଦ୍ୱିତୀୟରେ, ରେଭେନ୍‌ସା କଲେଜରେ ବି.ଏ. ଶ୍ରେଣୀରେ ମୋର ଅର୍ଥଶାସ୍ତ୍ର ସହିତ ଓଡ଼ିଆ ଥିଲା ପାଠ୍ୟ ବିଷୟ । କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ କୌଣସି ପାଠ୍ୟବିଷୟ ବା ଗ୍ରୁପ୍‌ରେ ନଥିଲା, କେବଳ ମାତୃଭାଷା ବିଷୟରୂପେ ଥିଲା । ତେଣୁ ସେ ସ୍ଥାନରେ ମୋତେ ଇତିହାସ ନେବାକୁ ପଡ଼ିଥିଲା । ତା'ଛଡ଼ା ଗୋଟିଏ ବିଷୟକୁ ଦୁଇବର୍ଷ ପଢ଼ିବା କଥା । କିନ୍ତୁ ଏଠାରେ ମୋତେ କେବଳ ଚତୁର୍ଥ ବର୍ଷଟି ପଢ଼ି ବି.ଏ. ପରୀକ୍ଷା ଦେବାକୁ ହେବ ।

ରେଭେନ୍‌ସା କଲେଜରୁ ବିଦାୟ ନେଲାବେଳେ ଅଧ୍ୟକ୍ଷ ପରିଜାସାହେବ ଯେଉଁ ସାର୍ଟିଫିକେଟ୍ ଦେଇଥିଲେ ତାକୁ ବିଦ୍ୟାସାଗର କଲେଜ ଅଧ୍ୟକ୍ଷ ଦେଖିଲାକ୍ଷଣି ଚମକିପଡ଼ିଥିଲେ । ଏ ପ୍ରକାର ସାର୍ଟିଫିକେଟ୍ ଦେଖିଲା ପରେ ତାଙ୍କ କଲେଜରେ ମୋତେ ଗ୍ରହଣ କରିବା ସମ୍ଭବ ନୁହେଁ ବୋଲି ସେ ମୋତେ କହିଦେଲେ । ରେଭେନ୍‌ସା କଲେଜରେ ମୋର ଚାରିବର୍ଷର ଛାତ୍ରଜୀବନର କାର୍ଯ୍ୟାବଳୀ ବର୍ଣ୍ଣନା କରି ଅଧ୍ୟକ୍ଷ ଡକ୍ଟର ପରିଜା ଲେଖିଥିଲେ ଯେ ମୋର ଧ୍ୱଂସମୂଳକ କାର୍ଯ୍ୟଦ୍ୱାରା ମୁଁ କଲେଜକୁ ଗୋଟିଏ ମରୁଭୂମିରେ ପରିଣତ କରିପାରିଥିଲି ଏବଂ ଏ ପ୍ରକାର ଛାତ୍ରକୁ ନେଇ ପୃଥିବୀରେ କୌଣସି ଶିକ୍ଷାନୁଷ୍ଠାନ ଚଳିପାରିବନାହିଁ । ପୁଣି ଦୌଡ଼ିଲି ଡକ୍ଟର ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କ ପାଖକୁ । ସାର୍ଟିଫିକେଟ୍ ପଢ଼ି ସେ ଆଶ୍ଚର୍ଯ୍ୟ ହୋଇଥିଲେ । ଏ ପ୍ରକାର ଉଦ୍ଦେଶ୍ୟମୂଳକ ସାର୍ଟିଫିକେଟ୍‌କୁ ଉପେକ୍ଷା କରିବା ପାଇଁ ଫୋନ୍‌ଦ୍ୱାରା ବିଦ୍ୟାସାଗର କଲେଜ ଅଧ୍ୟକ୍ଷଙ୍କୁ ପରାମର୍ଶ ଦେଇଥିଲେ । ତାହାହିଁ ହେଲା । ବିଦ୍ୟାସାଗର କଲେଜରେ ମୋର ନାମ ଲେଖାହୋଇଗଲା । ଦ୍ୱିତୀୟ ଅସୁବିଧା ହେଲା, ଇତିହାସ ଦୁଇବର୍ଷ ନପଢ଼ି କେବଳ ଗୋଟିଏ ବର୍ଷ ପଢ଼ି ନିୟମ ଅନୁସାରେ କଲିକତା ବିଶ୍ୱବିଦ୍ୟାଳୟରେ ବି.ଏ. ପରୀକ୍ଷା ଦେବାକୁ ଯୋଗ୍ୟ ବିବେଚିତ ହେବି କିପରି ? ପୁଣି ଥରେ ବାନାର୍ଜୀ ସାହେବଙ୍କ ସାଙ୍ଗରେ ଶ୍ୟାମାପ୍ରସାଦବାବୁଙ୍କ ପାଖକୁ ଗଲି । ଏଇଟା ଗୋଟିଏ ଯୁକ୍ତିଯୁକ୍ତ ଅସୁବିଧା ବୋଲି ଶ୍ୟାମାପ୍ରସାଦବାବୁ ଅନୁଭବ କରିଥିଲେ । ତା'ଛଡ଼ା ଦୁଇ ବର୍ଷର ପାଠ ଗୋଟିଏ ବର୍ଷ ମଧ୍ୟରେ ମୁଁ କିପରି ପଢ଼ିପାରିବି ସେ ବିଷୟରେ ସେ ସନ୍ଦେହ ପ୍ରକାଶ କରିଥିଲେ । ଏହିଠାରେ ଗୋଟିଏ କୌତୂହଳପୂର୍ଣ୍ଣ କଥା ମନେପଡୁଛି । ରେଭେନ୍‌ସା କଲେଜର ଯେଉଁ ସବୁ ଘଟଣାପାଇଁ ମୁଁ ପାଟନା ବିଶ୍ୱବିଦ୍ୟାଳୟରୁ ବହିଷ୍କୃତ ହୋଇଥିଲି,

ସେସବୁର ଗୋଟିଏ ପୂର୍ଣ୍ଣାଙ୍ଗ ବିବରଣୀ ମୁଁ ଲେଖିକରି ମୋ ପାଖରେ ରଖିଥାଏ । ସେହି ଲେଖାଟି ଶ୍ୟାମାପ୍ରସାଦବାବୁଙ୍କୁ ଦେଖାଇ ବାନାର୍ଜୀ ସାହେବ ବୁଝାଇ ଦେଇଥିଲେ ଯେ ଘଟଣାଗୁଡ଼ିକର ଇତିହାସ ମୁଁ ଯେପରି ଭାବରେ ଲେଖି ଉପସ୍ଥାପିତ କରିପାରିଛି ସେଥିରୁ ଜଣାପଡୁଛି ଯେ ମୁଁ ଜଣେ ଭଲ ଇତିହାସ ଛାତ୍ର । ଶ୍ୟାମାପ୍ରସାଦବାବୁ ସେଥିରେ ସନ୍ତୁଷ୍ଟ ହୋଇ ବିଶ୍ୱବିଦ୍ୟାଳୟ ସ୍ତରରେ ସେ ଅସୁବିଧାଟିକୁ ଦୂରକରିଦେଇଥିଲେ । ଏକଥା ନିଶ୍ଚିତ ଯେ, ଜେ. ଏନ୍. ବାନାର୍ଜୀଙ୍କ ସାହାଯ୍ୟରେ ଡକ୍ଟର ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କର ସହାନୁଭୂତି ଲାଭକରିପାରିଥିବାରୁ ମୁଁ କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ବି.ଏ. ପରୀକ୍ଷା ଦେଇ ଡିଗ୍ରୀ ଲାଭ କରିପାରିଥିଲି । ସେ ଉଭୟ ମହାନୁଭବ ବ୍ୟକ୍ତି ମୋର ଚିରନମସ୍ୟ, ସଂକୀର୍ଣ୍ଣତାର ବହୁ ଉର୍ଦ୍ଧ୍ୱରେ ଜାତୀୟତାର ମହାନ୍ ପୁରୋହିତ ରୂପେ ।

ଏହା ପରେ ପାଟନା ଗଲି ବିଶ୍ୱବିଦ୍ୟାଳୟ ପରିବର୍ତ୍ତନ ଅନୁମତି ପତ୍ର (Migration Certificate) ଆଣିବାପାଇଁ । ବିହାର ପ୍ରଦେଶ ମୁଙ୍ଗେର ଜିଲ୍ଲାରେ କନିକା ରାଜାଙ୍କର ରହିମପୁର ଇଷ୍ଟେଟ୍ ନାମକ ଗୋଟିଏ ଜମିଦାରୀ ଥିଲା । ନାରାୟଣ ଚନ୍ଦ୍ର ମାହାଳିକ ସେଠି ଥିଲେ ମ୍ୟାନେଜର୍ । ସେ ଥିଲେ ମୋର ସଂପର୍କୀୟ ବ୍ୟକ୍ତି । ତାଙ୍କ ପାଖରେ ପହଞ୍ଚିଲି । ତାଙ୍କୁ ସାଙ୍ଗରେ ନେଇ ପାଟନା ଗଲି । ଓଡ଼ିଶା ହାଇକୋର୍ଟରେ ପରେ ବିଚାରପତି ହୋଇଥିବା ସ୍ୱର୍ଗତ ଗୋପାଳଚନ୍ଦ୍ର ଦାସ ସେତେବେଳେ ପାଟନା ହାଇକୋର୍ଟରେ ଆଇନ ବ୍ୟବସାୟ କରୁଥିଲେ । ତାଙ୍କୁ ସାଙ୍ଗରେ ନେଇ ବିଶ୍ୱବିଦ୍ୟାଳୟ ଅଫିସ୍‌କୁ ଗଲୁ । ସେତେବେଳେ ପାଟନା ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାର ଥିଲେ ଯମୁନା ପ୍ରସାଦ । ତାଙ୍କୁ ଦେଖା କରିବାରେ ବିଶ୍ୱବିଦ୍ୟାଳୟ ପରିବର୍ତ୍ତନ ସାର୍ଟିଫିକେଟ୍ ପାଇବା ସେତେ ସହଜ ହେବନାହିଁ ବୋଲି ଜଣାଗଲା । ରେଭେନ୍‌ସା କଲେଜ ଅଧ୍ୟକ୍ଷ ଡକ୍ଟର ପରିଜାଙ୍କର ବିଶ୍ୱବିଦ୍ୟାଳୟରେ ଖ୍ୟାତି ଥିଲା । ସେ ସିଣ୍ଡିକେଟ୍‌ର ଜଣେ ପ୍ରଭାବଶାଳୀ ସଭ୍ୟ ଥିଲେ । ତାଙ୍କ ଇଙ୍ଗିତରେ ଯେତେବେଳେ ମୋ ପ୍ରତି ବହିଷ୍କାର ଆଦେଶ ହୋଇଛି ଏବଂ ସେହି ଦଣ୍ଡାଦେଶକୁ ଏଡ଼ାଇଦେବାପାଇଁ ବିଶ୍ୱବିଦ୍ୟାଳୟ ପରିବର୍ତ୍ତନ ଉଦ୍ଦେଶ୍ୟରେ ସାର୍ଟିଫିକେଟ୍ ମଗାଯାଉଛି, ସେତେବେଳେ ସେ ସଂକ୍ରାନ୍ତରେ କାର୍ଯ୍ୟାନୁଷ୍ଠାନ କରିବାକୁ ହେଲେ ବହୁତ କଥା ବିଚାରକୁ ନେବାକୁ ହେବ ବୋଲି ରେଜିଷ୍ଟ୍ରାର ମହାଶୟ ଆମ୍ଭମାନଙ୍କୁ କହିଥିଲେ । ଏହାପରେ ଗୋପାଳବାବୁ ମୋ କଥା ବିଶ୍ୱବିଦ୍ୟାଳୟ କୁଳପତି ଡକ୍ଟର ସଚ୍ଚିଦାନନ୍ଦ ସିହ୍ନାଙ୍କ ଦୃଷ୍ଟିକୁ ଆଣିଥିଲେ । ଡକ୍ଟର ସିହ୍ନାଙ୍କୁ ଦେଖାକରି ମୁଁ ମୋର ସମସ୍ତ କାହାଣୀ କହିଥିଲି । ସେ ହସ୍ତକ୍ଷେପ କରିବାରୁ ମୋତେ ମୋର ବିଶ୍ୱବିଦ୍ୟାଳୟ ପରିବର୍ତ୍ତନ ସାର୍ଟିଫିକେଟ୍ ମିଳିଲା ।

## ସୁଭାଷ ବୋଷଙ୍କ ସହ ସାକ୍ଷାତ୍

କଟକରୁ ବିତାଡ଼ିତ ହୋଇ କଲିକତାରେ ମୁଁ ବି.ଏ. ପଢୁଥିଲାବେଳେ ସୁଭାଷ ଚନ୍ଦ୍ର ବୋଷଙ୍କୁ ତାଙ୍କ ଏଲ୍‌ଗିନ୍ ରୋଡ୍ ବାସଭବନରେ ଦେଖାକରିଥିଲି । ମୁଁ କଟକର ଛାତ୍ର ବୋଲି ଜାଣିବାକ୍ଷଣି ସେ ସାଙ୍ଗେ ସାଙ୍ଗେ ଦେଖା କରିବାକୁ ଡାକିଥିଲେ । ରାଜନୀତିରେ ମୋର ଆଗ୍ରହ କଥା ଜାଣି ଖୁସି ହୋଇଥିଲେ । କଟକର ରାସ୍ତାଘାଟ, ଗଳିକନ୍ଦି, କଲିଜିଏଟ୍ ସ୍କୁଲ୍ ଓ ଅନ୍ୟାନ୍ୟ ଶିକ୍ଷାନୁଷ୍ଠାନ ବିଷୟରେ ମୋତେ ଅନେକ କଥା ପଚାରିଥିଲେ । ଓଡ଼ିଶାରେ କଂଗ୍ରେସ୍ ନେତାମାନଙ୍କ ବିଷୟରେ ମୋ'ଠାରୁ କେତେକ କଥା ପଚାରି ବୁଝିଥିଲେ । ସେ ମୋ ସହିତ ଓଡ଼ିଆରେ କଥାବାର୍ତ୍ତା କରିଥିଲେ । ସୁଭାଷବାବୁ ସେତେବେଳେ ଫରୱାର୍ଡ଼ ବ୍ଲକ୍ ଦଳ ଗଠନ କରିଥାଆନ୍ତି । ଓଡ଼ିଶାରେ ତାଙ୍କ ଫରୱାର୍ଡ଼ ବ୍ଲକ୍ ଦଳର ଦାୟିତ୍ୱ କାହା ଉପରେ ଦେଲେ ଭଲ ହେବ ବୋଲି ମୋତେ ସେ ପଚାରିଥିଲେ । ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ଉପରେ ସେ ଦାୟିତ୍ୱ ଦେଲେ ଭଲହେବ ବୋଲି ମୁଁ କହିଥିଲି ।

ସୁଭାଷ ବୋଷଙ୍କ ସହିତ ଓଡ଼ିଆରେ କଥାବାର୍ତ୍ତା ହେଲା ବେଳେ ମୋ ମନରେ ଏକରକମ ଶିହରଣ ସୃଷ୍ଟି ହୋଇଥିଲା । ସେତେବେଳକୁ ସୁଭାଷବାବୁ ଜାତୀୟ ଆନ୍ଦୋଳନ କ୍ଷେତ୍ରରେ ଯୁବଶକ୍ତିର

ଜଣେ ଦୃପ୍ତ ପ୍ରତୀକରୂପେ ଗରିଆଡ଼େ ଚହଳ ସୃଷ୍ଟି କରିପାରିଥିଲେ । ୧୯୩୮ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର ହରିପୁରା କଂଗ୍ରେସ ଅଧିବେଶନରେ ସଭାପତିତ୍ୱ କରିସାରିଥିଲେ । ଭବିଷ୍ୟତରେ ଭାରତର ଅର୍ଥନୈତିକ ବିକାଶର ଦୂରଦୃଷ୍ଟି ଦେଖାଇ ସଂଗ୍ରାମୀ ଯୁବଶକ୍ତିର ଅନ୍ୟତମ ଚିନ୍ତାନାୟକ ଜବାହରଲାଲ ନେହେରୁଙ୍କ ସଭାପତିତ୍ୱରେ କଂଗ୍ରେସ ପକ୍ଷରୁ ପରାଧୀନ ଭାରତରେ ମଧ୍ୟ ଜାତୀୟ ଯୋଜନା କମିଟି (National Planning Committee) ବସାଇଥିଲେ । ତାଙ୍କରିପାଇଁ ଭାରତୀୟ ଜାତୀୟ କଂଗ୍ରେସ କାର୍ଯ୍ୟକାରୀ କମିଟିରେ ଓଡ଼ିଶା ପ୍ରଥମେ ପ୍ରତିନିଧିତ୍ୱ ପାଇଲା ଏବଂ ମହତାବବାବୁ ସଭ୍ୟ ହେଲେ ବୋଲି ମୁଁ ଜାଣିବାକୁ ପାଇଥିଲି । ସେତେବେଳେ ମହାତ୍ମାଗାନ୍ଧୀ ଓ କଂଗ୍ରେସର ଅନ୍ୟ ତୁଙ୍ଗ ନେତାମାନଙ୍କ ସହିତ ସୁଭାଷ ବୋଷଙ୍କର ଘୋର ମତଭେଦ ହୋଇଯାଇଥାଏ । ସ୍ୱାଧୀନତା ସଂଗ୍ରାମର ମାର୍ଗ ନିର୍ଣ୍ଣୟ ଓ ପରିଚାଳନା ସମ୍ପର୍କରେ ସୁଭାଷବାବୁ ନିଜର ସ୍ୱତନ୍ତ୍ର ବିଚାରଧାରା ଓ କଠୋର କର୍ମପଥରେ ଶପଥବଦ୍ଧ ଥିଲେ । ତେଣୁ ଭାରତର ଶିକ୍ଷିତ ଯୁବଶକ୍ତି ଆଗରେ ସେ ଜବାହରଲାଲଙ୍କ ସମକକ୍ଷ ଅନ୍ୟତମ ସାହସୀ ସେନାପତିରୂପେ ଉଭା ହୋଇଥିଲେ । କଟକର ଓଡ଼ିଆ ବଜାରରେ ଜନ୍ମି ସାରା ଭାରତରେ ଏଭଳି ଚହଳ ପକେଇ ଦେଇଥିବା ଜଣେ ଯୁବ ସେନାପତିଙ୍କୁ ଏତେ ନିକଟରେ ଏଡ଼େ ଆପଣାର ଭାବରେ ଦେଖିଲେ ଦେହ ସ୍ୱତଃ ଶିହରି ଉଠିବାହିଁ ସ୍ୱାଭାବିକ । ଏହି ଏଲଗିନ୍ ରୋଡ୍ ବାସଗୃହରୁ ୧୯୪୧ ମସିହା ଜାନୁଆରୀ ୧୬ ତାରିଖ ରାତିରେ ସୁଭାଷ ବୋଷ ବ୍ରିଟିଶ୍ ସରକାରଙ୍କୁ ଭୁଆଁ ବୁଲାଇ ଦେଇ ମୌଲବୀ ବେଶରେ ଖସି ପଳାଇଥିଲେ । ବିଦେଶରେ ଆଜାଦ୍ ହିନ୍ଦ୍ ଫୌଜ ଗଢ଼ି ସଶସ୍ତ୍ର ସ୍ୱାଧୀନତା ସଂଗ୍ରାମ ପରିଚାଳନା କଲେ । ଭାରତବର୍ଷର ସ୍ୱାଧୀନତା ଦାବି ସମ୍ପର୍କରେ ସୁଭାଷ ବୋଷ ଜର୍ମାନୀ ଓ ଇଟାଲୀର ଡିକ୍ଟେଟର୍ ହିଟଲର୍ ଓ ମୁସୋଲିନିଙ୍କର ଏବଂ ଜାପାନ ସରକାରଙ୍କର ମତିଗତିକୁ ସଂପୂର୍ଣ୍ଣ ପ୍ରଭାବିତ କରିପାରିଥିଲେ । ଜର୍ମାନୀରେ ତାଙ୍କ ନେତୃତ୍ୱରେ ଗଢ଼ା ହୋଇଥିଲା 'ଭାରତ ମୁକ୍ତି କେନ୍ଦ୍ର' । ସେହିଠାରେ ପ୍ରଥମେ 'ଜନ ଗଣ ମନ' ଭାରତର ଜାତୀୟ ସଙ୍ଗୀତ ବୋଲି ଘୋଷଣା କରାଯାଇଥିଲା । 'ଜୟ ହିନ୍ଦ୍' ହେଲା ଭାରତୀୟଙ୍କର ପରସ୍ପର ସମ୍ଭାଷଣର ବାଣୀ । ଅବଶେଷରେ ସେ ହେଲେ ଆମର ସମ୍ମାନିତ ସେନାପତି ନେତାଜୀ ସୁଭାଷ ବୋଷ । ନେତାଜୀଙ୍କର ଜନ୍ମ ସ୍ମୃତିର ପ୍ରଦୀପ ଏବେ ମଧ୍ୟ ଜଳୁଛି ଓଡ଼ିଆ ବଜାର ଘରେ ଏକ ଦାତବ୍ୟ ଚିକିତ୍ସାଳୟରୂପେ । କିନ୍ତୁ ସଂଗ୍ରାମ ଇତିହାସର ପୃଷ୍ଠାରେ ତାଙ୍କର ସ୍ୱାକ୍ଷର ଯେଡ଼େ ଜ୍ୱାଳାମୟୀ ରହିଥିଲେ ବି ତାଙ୍କର ଶେଷ ଜୀବନର ବୃତ୍ତାନ୍ତ ଭାରତୀୟମାନଙ୍କର ଆଗୋଚରରେ ରହିଗଲା ।

କଲିକତାରେ ବିଦ୍ୟାସାଗର କଲେଜରେ ମୁଁ ପଢ଼ିଲାବେଳେ ଆଉ ଜଣେ ଛାତ୍ର କଟକରେ ପରୀକ୍ଷା ବର୍ଜନ କରି ସେଠାରେ ମୋ ସହିତ ପଢୁଥିଲେ, ସେ ହେଉଛନ୍ତି ସ୍ୱର୍ଗତ ବସନ୍ତ କୁମାର ମହାନ୍ତି, ଯେ ପରେ ଓଡ଼ିଶା ସରକାରଙ୍କର ଜଣେ ଡେପୁଟି ସେକ୍ରେଟେରୀ ପାହ୍ୟାକୁ ଯାଇ ଅବସର ନେଇଥିଲେ । ବିଦ୍ୟାସାଗର କଲେଜରେ ୧୯୪୦ ମସିହାରେ ଛାତ୍ରସଂଖ୍ୟା ଥିଲା ସାତ ହଜାରରୁ ଉର୍ଦ୍ଧ୍ୱ । ବଙ୍ଗଳାର ଛାତ୍ରସଂଘ ସହିତ ସମ୍ପର୍କ ସ୍ଥାପନ କରି ଅଳ୍ପ ସମୟ ମଧ୍ୟରେ ମୁଁ ସେଠାକାର ଛାତ୍ରନେତାମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲି । ବଙ୍ଗଳା ଛାତ୍ରସଂଘର ସେତେବେଳକାର ଛାତ୍ରନେତା ଅଧୀର ଚକ୍ରବର୍ତ୍ତୀ ମୋର ଜଣେ ଘନିଷ୍ଠ ବନ୍ଧୁ ହୋଇଥିଲେ । ଅଧୀରବାବୁ କମ୍ୟୁନିଷ୍ଟ ପାର୍ଟିର ଜଣେ ପ୍ରଭାବଶାଳୀ ସଭ୍ୟ ହୋଇଥିଲେ ଏବଂ ପରେ ପଶ୍ଚିମବଙ୍ଗଳାରେ ଜ୍ୟୋତି ବସୁଙ୍କ ସରକାରର ପ୍ରଧାନ ସମ୍ବାଦ ସରବରାହ ଓ ଲୋକସମ୍ପର୍କ ଅଫିସର ଭାବରେ ନିଯୁକ୍ତ ହୋଇଥିଲେ । ମୁଁ ପଢ଼ିବା ସମୟରେ ବିଦ୍ୟାସାଗର କଲେଜରେ ଗୋଟିଏ ଧର୍ମଘଟ ହୋଇଥିଲା । ମୁଁ ସେଥିରେ ନେତୃତ୍ୱ ନେଇଥିଲି । କଲିକତା ଧର୍ମତାଲା ଷ୍ଟ୍ରୀଟ୍‌ରେ ଛାତ୍ର ଶୋଭାଯାତ୍ରା ଉପରେ ପୁଲିସ ଯେଉଁଦିନ ଗୁଳି ଚଳାଇଥିଲା ମୁଁ ସେତେବେଳେ ସେହି ଶୋଭାଯାତ୍ରାରେ ଥିଲି । ଏହି ଗୁଳିଚାଳନାରେ ଛାତ୍ରନେତା ରାମେଶ୍ୱର

ବାନାର୍ଜୀଙ୍କର ମୃତ୍ୟୁ ହୋଇଥିଲା । ମୃତ ରାମେଶ୍ୱରଙ୍କର ଶବ ରାସ୍ତା ଉପରେ ପଡ଼ିଥାଏ । ହଜାର ହଜାର ସଂଖ୍ୟାରେ ଛାତ୍ର ରାସ୍ତା ଉପରେ ବସିରହିଥାଆନ୍ତି । ପୁଲିସ ପକ୍ଷରୁ ଯେତେ ଉଦ୍ୟମ ହେଲେ ମଧ ଛାତ୍ରମାନେ ସେ ସ୍ଥାନରୁ ଉଠିଲେନାହିଁ । ସେତେବେଳେ ବଙ୍ଗଳାର ଲାଟ୍ ଥିଲେ ଜଣେ ଅଷ୍ଟ୍ରେଲିଆନ୍ ସାହେବ ମିଷ୍ଟର କେଶୀ (Mr. Casey) । ଲାଟ୍ ନିଜେ ଘଟଣାସ୍ଥଳକୁ ଆସି ଛାତ୍ରମାନଙ୍କୁ ବୁଝାଇବାରୁ ଛାତ୍ରମାନେ ରାସ୍ତା ଉପରୁ ଉଠିଯାଇଥିଲେ ।

## କେତୋଟି ମଜା କଥା

ମୁଁ ଓ ମୋର ବନ୍ଧୁ ବସନ୍ତ ମହାନ୍ତି ଏକାସାଙ୍ଗରେ ବି.ଏ. ପରୀକ୍ଷା ଦେଇଥିଲୁ । ଆମର ସିଟ୍ ପଡ଼ିଥାଏ ବିଶ୍ୱବିଦ୍ୟାଳୟର ଆଶୁତୋଷ ବିଲ୍ଡିଂର ଉପର ତାଲାରେ । ବିଦ୍ୟାସାଗର କଲେଜର ବହୁ ପରୀକ୍ଷାର୍ଥୀଙ୍କର ସିଟ୍ ମଧ ସେଠାରେ ପଡ଼ିଥାଏ । ସେଠାରେ ଗୋଟିଏ ମଜା କଥା ଘଟିଲା ଯାହା କହିବାକୁ ଇଚ୍ଛା ହେଉଛି । ଦିନେ ଇତିହାସ ପରୀକ୍ଷା ଚାଲିଥାଏ । ବସନ୍ତ କପି କରୁ କରୁ ନିରୀକ୍ଷକ ତାକୁ ଧରିଲେ । ତା' ପାଖରୁ ବହିର କେତୋଟି ଚିରା ପୃଷ୍ଠା ବାହାରିଲା । ସେଠାରେ ବସିଥିବା ପରୀକ୍ଷାର୍ଥୀମାନେ ସମୂହଭାବରେ ଅନୁରୋଧ କରିବାରୁ ବସନ୍ତ ଛାଡ଼ପାଇଲା । ନିରୀକ୍ଷକ ତା'ପରେ ଆଉ ଜଣେ ପରୀକ୍ଷାର୍ଥୀଙ୍କୁ କପି କରୁଥିବାର ଧରିଲେ । ସେ ପରୀକ୍ଷାର୍ଥୀଟି ଗୋଟିଏ ସୁଟ୍‌କେଶ୍‌ରେ ବହୁତ ବହି ପୂରାଇ ପାଖରେ ରଖିଥିଲା । ବସନ୍ତକୁ ନିରୀକ୍ଷକ ଯେପରି ଦୟା ଦେଖାଇ ଛାଡ଼ିଦେଇଥିଲେ, ତା' ପ୍ରତି ସେହିପରି ଭାବରେ ଦୟା ଦେଖାଇବାପାଇଁ ସେ ଅନୁରୋଧ କରିଥିଲା । ନିରୀକ୍ଷକ କହିଥିଲେ ଯେ ଜଣେ ବହିରୁ କେତୋଟି ମାତ୍ର ପୃଷ୍ଠା ଚିରିଆଣିଛି ଏବଂ ଆଉ ଜଣେ ଗୋଟିଏ ସୁଟ୍‌କେଶ୍‌ଭରା ବହି ଆଣିଛି -- ଏ ଦୁଇଟି ଦୋଷ କିପରି ସମାନ ହେବ ? ପରୀକ୍ଷାର୍ଥୀଟି ବଡ଼ ବିକଳ ହୋଇ କହିଥିଲା, ''ସାର୍, ସେ ପଢ଼ିଛି, ତେଣୁ କେଉଁଟା ଦରକାରୀ ସେ ପୃଷ୍ଠାକୁ ଚିହ୍ନଟ କରି ଚିରି ଆଣିପାରିଛି । ମାତ୍ର ମୁଁ ତ କିଛି ପଢ଼ିନାହିଁ, କିପରି ଜାଣିବି କେଉଁଟା ଦରକାରୀ ଓ କେଉଁଟା ଅଦରକାରୀ ? ତେଣୁ ଯେତେ ଇତିହାସ ବହି ଥିଲା ସୁଟ୍‌କେଶ୍‌ରେ ନେଇ ଆସିଛି ।'' ସେଠାରେ ଖୁବ୍ ହାସ୍ୟରୋଳ ହୋଇଥିଲା । ନିରୀକ୍ଷକ ବିଚରା କ'ଣ କରିବେ ! ତାଙ୍କର ବି ବିଦ୍ୟାସାଗର କଲେଜର ପିଲାଙ୍କ ପ୍ରତି ଭୟ ଥାଏ । ସେ କିଛି ନ କରି ପରୀକ୍ଷାର୍ଥୀକୁ ଛାଡ଼ିଦେଲେ ; ମାତ୍ର ସୁଟ୍‌କେଶ୍‌ଟି ଉଠାଇ ନେଇ ବାହାରେ ରଖିଦେଲେ ।

ସେହି ବି.ଏ. ପରୀକ୍ଷା ସମ୍ବନ୍ଧରେ ଆଉ ଗୋଟିଏ ମଜା କଥା । ବସନ୍ତ ଓ ମୁଁ ଦୁଇଜଣ ଓଡ଼ିଆ ଛାତ୍ର ବି.ଏ. ପରୀକ୍ଷା ଦେଇଥାଉଁ । ଆମର ଓଡ଼ିଆ ଖାତା କାହା ପାଖରେ ପଡ଼ିଛି ସେ ବିଷୟରେ ସନ୍ଧାନ ନେଲୁ । ଜାଣିଲୁ ଯେ ଅଧାପକ ମହେଶ୍ୱର ଦାସ ଥିଲେ ଓଡ଼ିଆ ଖାତାର ପରୀକ୍ଷକ । ମହେଶ୍ୱରବାବୁ ମିଦିନାପୁରର ଜଣେ ଓଡ଼ିଆ ଅଧିବାସୀ ଏବଂ କଲିକତା ବିଶ୍ୱବିଦ୍ୟାଳୟର ଅଧାପକ ଥିଲେ । କଲିକତା ବିଶ୍ୱବିଦ୍ୟାଳୟ ପାଖରେ ଥିବା ପଞ୍ଚାନନ ଘୋଷ ଲେନ୍‌ରେ ସେ ରହୁଥିଲେ । ଆମେ ଦୁଇଜଣ ଦିନେ ତାଙ୍କ ଘରକୁ ଗଲୁ । ଆମର ପରିଚୟ ପାଇବା ପରେ ସେ ଆମକୁ ଚା' ଖାଇବାକୁ ଦେଲେ । ଓଡ଼ିଶାର ମନ୍ଦିରମାନଙ୍କରେ ଥିବା ଅଶ୍ଳୀଳ ଛବି ବିଷୟରେ ପ୍ରାୟ ଦୁଇ ଘଣ୍ଟା କାଳ ବହୁତ ଚର୍ଚ୍ଚା କଲେ । ଆମେ ମନଧ୍ୟାନ ଦେଇ ତାଙ୍କ କଥା ଶୁଣିବାରୁ ସେ ବହୁତ ଖୁସି ହୋଇଥିଲେ । ସେତେବେଳକୁ ଆମର ଉଦ୍ଦେଶ୍ୟ ବିଷୟରେ ତାଙ୍କୁ କିଛି କହିନଥାଉ । ଆମ୍ଭମାନଙ୍କର ବିଦାୟ ନେଇ ଆସିବା ସମୟ ହେଲା । ଟିକେ ଛିଡ଼ାହୋଇ ଆମେ ଦୁଇଜଣ ମୁହଁ ଚୁହାଁଚୁହିଁ ହେଲୁ । କଥାଟା କ'ଣ ବୋଲି ମହେଶ୍ୱରବାବୁ ପଚାରିବାରୁ ଆମେ ଓଡ଼ିଆ ଖାତା କଥା ତାଙ୍କୁ କହିଲୁ । ସେ ଆମ ଦୁଇଜଣଙ୍କର ନାଁ ଓ ରୋଲ୍ ନମ୍ବର ଟିପିନେଲେ । ଆମ ହସ୍ତାକ୍ଷର କିପରି ବୋଲି ସେ ପଚାରିଥିଲେ । ବସନ୍ତର ଓଡ଼ିଆ ଅକ୍ଷର ଭଲ ବୋଲି ମୁଁ କହିଥିଲି । ତା'ପରେ ସେ କହିଲେ ଯେ ଆମେ ଦୁହେଁ ଷାଠିଏ ନମ୍ବର

କରି ପାଇବୁ ଏବଂ ଭଲ ହସ୍ତାକ୍ଷର ପାଇଁ ବସନ୍ତ ପାଞ୍ଚ ନମ୍ବର ଅଧିକା ପାଇବ । ପରୀକ୍ଷାରେ ଆମେ ଦୁଇଜଣ ଡିଷ୍ଟିଂସନ୍ ସହ ପାସ୍ କଲୁ ।

ରାଜନୈତିକ କର୍ମୀ ହୋଇଥିଲେ କଲିକତା ବିଶ୍ୱବିଦ୍ୟାଳୟ ପରୀକ୍ଷାରେ କୃତକାର୍ଯ୍ୟ ହେବାର ଗୋଟିଏ ନୂଆ ଅଭିଜ୍ଞତା ମୋର ହୋଇଥିଲା । ବି.ଏ. ପରୀକ୍ଷା ଦେଇ ମୁଁ ଓଡ଼ିଶା ଚାଲିଆସିଥିଲି । କଲିକତା ବିଶ୍ୱବିଦ୍ୟାଳୟର ପରୀକ୍ଷାଫଳ ବାହାରିବାର ପ୍ରାୟ ପନ୍ଦରଦିନ ପୂର୍ବରୁ କଲିକତାକୁ ଫେରିଥିଲି । ନିଖିଳ ବଙ୍ଗ ଛାତ୍ରସଂଘ ଅଫିସ୍ ସେତେବେଳେ କଲେଜ ଷ୍ଟ୍ରିଟ୍ ପାଖରେ ଭବାନୀ ଦତ୍ତ ଲେନ୍‌ରେ ଥିଲା । ମୁଁ ଯେତେବେଳେ ସେଠାରେ ଯାଇ ପହଞ୍ଚିଲି, ମୋର ବନ୍ଧୁ ଛାତ୍ରସଂଘର ଜଣେ ତୁଙ୍ଗ ନେତା ଅଧୀର ଚକ୍ରବର୍ତ୍ତୀ ମୋ ଉପରେ ଭୀଷଣ ବିରକ୍ତି ପ୍ରକାଶ କରିଥିଲେ । ବିରକ୍ତିର କାରଣ ଥିଲା ଯେ ପରୀକ୍ଷା ଦେଇ କଲିକତା ଛାଡ଼ି ଅନ୍ୟତ୍ର ଯିବା ପୂର୍ବରୁ ମୁଁ କାହିଁକି ଛାତ୍ରସଂଘ ଅଫିସ୍‌ରେ ମୋର ରୋଲ୍ ନମ୍ବର ଦେଇନଗଲି । ଛାତ୍ରସଂଘର ଯେଉଁ ବହୁ ସକ୍ରିୟ କର୍ମୀ ବିଶ୍ୱବିଦ୍ୟାଳୟରେ ପରୀକ୍ଷା ଦେଇଥିଲେ ସେମାନଙ୍କର ତାଲିକା ସେଠାରେ ଦେଖିବାକୁ ପାଇଲି । ସେତେବେଳେ ସେଠାରେ ଗୋଟିଏ ପ୍ରଥା ପ୍ରଚଳିତ ଥିଲା । ଯେହେତୁ ଛାତ୍ରସଂଘର ସକ୍ରିୟ ସଭ୍ୟମାନେ ଧର୍ମଘଟ ଓ ଅନ୍ୟାନ୍ୟ ରାଜନୈତିକ କାର୍ଯ୍ୟରେ ବ୍ୟାପୃତ ରହନ୍ତି ଏବଂ ପଢ଼ାରେ ବେଶି ସମୟ ଦେଇପାରନ୍ତିନାହିଁ, ସେମାନଙ୍କ ଖାତା ଯେଉଁ ପରୀକ୍ଷକମାନଙ୍କ ପାଖରେ ପଡ଼ିଥାଏ ସେମାନଙ୍କର ସନ୍ଧାନ ନିଆଯାଇ କୁହାବୋଲା କରି ସେମାନଙ୍କୁ ପାସ୍ କରାଇ ଦିଆଯାଏ । ପରୀକ୍ଷାଫଳ ସେତେବେଳେ ଘୋଷିତ ହୋଇନଥାଏ । ଛାତ୍ରସଂଘ ଅଫିସ୍‌ରେ ଥିବା ତାଲିକାରୁ ଜାଣିବାକୁ ପାଇଲି ଯେ ଛାତ୍ରସଂଘର ପ୍ରାୟ ସବୁ ସକ୍ରିୟ କର୍ମୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଯାଇଛନ୍ତି । ଏ କଥା ଦେଖି ମୋ ମନ ବଡ଼ ଖରାପ ହେଲା । ଅଧୀରବାବୁଙ୍କର ବିରକ୍ତିରେ ଯଥାର୍ଥତା ଥିଲା ବୋଲି ମୁଁ ଅନୁଭବ କଲି । କିନ୍ତୁ ସେତେବେଳକୁ ପରୀକ୍ଷା ଖାତାଗୁଡ଼ିକ ଟାବୁଲେସନ୍‌ପାଇଁ ବିଶ୍ୱବିଦ୍ୟାଳୟ ଅଫିସ୍‌କୁ ଚାଲିଯାଇଥାଏ । ଛାତ୍ରସଂଘ ସାହାଯ୍ୟରୁ ବଞ୍ଚିତ ହେଲେ ମଧ ପରୀକ୍ଷାରେ ମୁଁ ଉତ୍ତୀର୍ଣ୍ଣ ହେଲି ।

ଏହାପରେ କ'ଣ କରିବି ବୋଲି ନାନାପ୍ରକାର କଳ୍ପନାଜଳ୍ପନା କରିବାରେ ଲାଗିଲି । ମନରେ ଦ୍ୱିଧାଭାବ ଜାଗରିତ ହେଲା । ବି.ଏ. ତ ପାସ୍ କଲି, ଏହା ପରେ ଆଉ ନପଢ଼ିଲେ ଚଳିବ ବୋଲି ଭାବୁଥାଏ; ମାତ୍ର ବାରିଷ୍ଟରୀ ପଢ଼ିବାର ଆଶା ପୁଣି ମନରେ ଉଙ୍କିମାରୁଥାଏ । ବିଶ୍ୱଯୁଦ୍ଧ ସମୟରେ ଏବଂ ଦେଶର ରାଜନୈତିକ ପରିବର୍ତ୍ତିତ ଅବସ୍ଥାରେ ବାରିଷ୍ଟରୀ ପଢ଼ିବା ସମ୍ଭବ ହେବ କି ନାହିଁ ତା ମଧ ଗୋଟିଏ ଚିନ୍ତାର ବିଷୟ ହୋଇଥାଏ । ଏପରିସ୍ଥଳେ ଅନ୍ତତଃପକ୍ଷେ ଯଦି ଓକିଲାତି ପଢ଼ି ପାସ୍ କରିପାରନ୍ତି ତା'ହେଲେ ସବୁ ଆଡ଼କୁ ପାଆନ୍ତା ବୋଲି ଭାବୁଥାଏ । ଦେଶରେ ସେତେବେଳେ କଂଗ୍ରେସ ପକ୍ଷରୁ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ ହୋଇଯାଇଥାଏ । କଲିକତାରେ କଂଗ୍ରେସର ନେତୃସ୍ଥାନୀୟ ବ୍ୟକ୍ତିମାନେ ଯୁଦ୍ଧ ବିରୁଦ୍ଧରେ ଭାଷଣ ଓ ଧ୍ୱନି ଦେବାର ମଧ ମୁଁ ଦେଖୁଥାଏ । ଦିନେ ଦେଖିଲି କଂଗ୍ରେସ ଓ ଶ୍ରମିକ ନେତା ଡକ୍ଟର ସୁରେଶ ବାନାର୍ଜୀ ବଡ଼ବଜାର ଅଞ୍ଚଳରେ ବୁଲି ଯୁଦ୍ଧବିରୋଧୀ ଭାଷଣ ଓ ଧ୍ୱନି ଦେଉଥାଆନ୍ତି, ମାତ୍ର ପୁଲିସ ତାଙ୍କୁ ଗିରଫ କରୁନଥାନ୍ତି । ଆମ ଓଡ଼ିଶାରେ ବିଶ୍ୱନାଥ ଦାସ, ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ ଓ ବୋଧରାମ ଦୁବେ ପ୍ରଭୃତି ନେତୃସ୍ଥାନୀୟ ବ୍ୟକ୍ତିମାନେ ବ୍ୟକ୍ତିଗତ ସତ୍ୟାଗ୍ରହରେ ଯୋଗଦେଇ କାରାବରଣ କରିଥିଲେ । ଏମାନେ ସବୁ ବ୍ରହ୍ମପୁର ଜେଲ୍‌ରେ ଥିଲେ । ସେତିକିବେଳେ ମୁଁ ବ୍ରହ୍ମପୁର ଯାଇ ବ୍ରହ୍ମପୁର ଜେଲ୍‌ରେ ହରେକୃଷ୍ଣ ମହତାବଙ୍କୁ ସାକ୍ଷାତ୍ କଲି । ଆନ୍ଦୋଳନକୁ ଏହିପରି ଭାବରେ ସୀମିତ ରଖି ମହାତ୍ମା ଗାନ୍ଧୀ ଧୀରେ ଧୀରେ ଦେଶର ଲୋକଙ୍କୁ ଭାରତର ଶେଷ ସ୍ୱାଧୀନତା ସଂଗ୍ରାମପାଇଁ ପ୍ରସ୍ତୁତ କରାଉଥା'ନ୍ତି ।

# ବନାରସରୁ କାରାବାସ : ଅଗଷ୍ଟ ବିପ୍ଳବ

ନାନାପ୍ରକାର ମାନସିକ ଦ୍ୱିଧା ଭିତରେ ଥାଇ ମୁଁ ଶେଷରେ ସ୍ଥିରକଲି ଯେ ଶୀଘ୍ର କୌଣସି ଗୋଟିଏ ଆଇନ୍ କଲେଜ୍‌ରେ ନାମ ଲେଖାଇ ଓକିଲାତିଟି ପାସ୍ କରିନେବି । କଲିକତାରେ ବି.ଏଲ୍. ଡିଗ୍ରୀ ହାସଲ କରିବାକୁ ହେଲେ ତିନିବର୍ଷ ପଢ଼ିବାକୁ ହେବ । କଟକ କଲେଜ ତ ମୋତେ ମନା । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଦୁଇବର୍ଷରେ ଏଲ୍.ଏଲ୍.ବି. ଡିଗ୍ରୀ ମିଳିବାର ସୁବିଧା ଥିଲା । ତା' ଛଡ଼ା ସେତେବେଳେ ରାଜନୀତି ବିଜ୍ଞାନରେ ଏମ୍.ଏ. ପଢ଼ିବାର ବ୍ୟବସ୍ଥା କେବଳ ମାତ୍ର ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଥାଏ । ରାଜନୀତି ବିଜ୍ଞାନରେ ଏମ୍.ଏ. ପଢ଼ିବାକୁ ମୋର ବିଶେଷ ଆଗ୍ରହ ବଢ଼ିଥିଲା । ତେଣୁ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ରାଜନୀତିରେ ଏମ୍.ଏ. ଓ ଓକିଲାତି ଏକ ସାଙ୍ଗରେ ଅଧ୍ୟୟନ କରିବି ବୋଲି ଭାବିଲି । ସେଠାରେ ଏ ପ୍ରକାର ସୁବିଧା ମଧ୍ୟ ଥିଲା । ମୋର ନିଷ୍ପତ୍ତିରେ ମୋର ବଡ଼ଭାଇ ବିଶେଷ ଖୁସି ହୋଇଥିଲେ । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ପଣ୍ଡିତ ମଦନମୋହନ ମାଲବ୍ୟଙ୍କଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ଏହା ଆମ ଦେଶର ଗୋଟିଏ ବଡ଼ ଜାତୀୟବାଦୀ ଶିକ୍ଷାନୁଷ୍ଠାନ ଥିଲା ଏବଂ ସେଥିପାଇଁ ଏ ଅନୁଷ୍ଠାନର ଖୁବ୍ ସୁଖ୍ୟାତି ମଧ୍ୟ ଥିଲା । ଭାରତର ସବୁ ପ୍ରାନ୍ତରୁ ଛାତ୍ର ଆସି ନାନା ବିଷୟରେ ଏହି ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିଲେ । ବହୁ ରାଜନୈତିକ ନେତାମାନଙ୍କର ପୁଅଝିଅମାନେ ଆସି ଏହି ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିଲେ । ମୁଁ ବନାରସ ଯାଇ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଆଇନ କଲେଜ ଓ ରାଜନୀତି ବିଜ୍ଞାନରେ ଏମ୍.ଏ. କ୍ଲାସ୍‌ରେ ନାମ ଲେଖାଇଲି । ବିରଳା ହଷ୍ଟେଲ୍‌ରେ ରହିଲି । ରାଜା ମହାରାଜା ଓ ବଡ଼ ବଡ଼ ବ୍ୟବସାୟୀଙ୍କ ନାମରେ ବିଶ୍ୱବିଦ୍ୟାଳୟରେ ବହୁ ଅନୁଷ୍ଠାନ ନାମିତ ହେବାର ଦେଖିଲି । ମାଲବ୍ୟଜୀ ବିଶ୍ୱବିଦ୍ୟାଳୟର ଅଭିବୃଦ୍ଧିପାଇଁ ସେମାନଙ୍କଠାରୁ ଦାନ ଆକାରରେ ବହୁ ଅର୍ଥ ସଂଗ୍ରହ କରି ଏହିପରି ଭାବରେ ନାମକରଣ କରୁଥିବା ଜାଣିବାକୁ ପାଇଲି । ମୁଁ ସେଠାରେ ଅଧ୍ୟୟନ କରିବା ସମୟରେ ବିଶ୍ୱବିଦ୍ୟାଳୟର ପ୍ରୋଚାନ୍‌ସେଲ୍‌ର ଥିଲେ ଆମର ପୂର୍ବତନ ରାଷ୍ଟ୍ରପତି ସ୍ୱର୍ଗୀୟ ଡକ୍‌ଟର ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ । ବିଶ୍ୱବିଦ୍ୟାଳୟର ପ୍ରଶାସନିକ କାର୍ଯ୍ୟ ଛଡ଼ା ସେ ପ୍ରତି ଶନିବାରଦିନ ଗୀତା କ୍ଲାସ୍ କରୁଥିଲେ । ଭଗବତ୍ ଗୀତାକୁ ଡକ୍‌ଟର ରାଧାକ୍ରିଷ୍ଣନ୍ ଯେପରି ବ୍ୟାଖ୍ୟା କରି ବୁଝାନ୍ତି, ତାହା ଶୁଣିବା ଓ ଜାଣିବାର କଥା । ମୁଁ ପ୍ରତି ଶନିବାରଦିନ ତାଙ୍କର ଏହି ଗୀତା କ୍ଲାସ୍‌ରେ ଯୋଗଦେଉଥିଲି । ଛାତ୍ରଙ୍କ ବ୍ୟତୀତ ଭାରତର ବହୁ ଅଞ୍ଚଳରୁ ବହୁ ବିଶିଷ୍ଟ ବ୍ୟକ୍ତି ଆସି ଏହି ଗୀତା କ୍ଲାସ୍‌ରେ ଯୋଗଦେଉଥିଲେ । ବିଶ୍ୱବିଦ୍ୟାଳୟ ପରିସରରେ ଗୋଟିଏ ବିରାଟ ହଲ୍‌ରେ ଗୀତା କ୍ଲାସ୍ ହେଉଥିଲା । ଆଇନ କଲେଜ ସକାଳେ ହେଉଥିଲା । ତେଣୁ ଛାତ୍ରମାନଙ୍କୁ ଆଇନ ପଢ଼ା ସାଙ୍ଗରେ ଅନ୍ୟ ବିଷୟ ପଢ଼ିବାକୁ ସୁବିଧା ହେଉଥାଏ । ଆଇନ କଲେଜର ଅଧ୍ୟକ୍ଷ ଥାଆନ୍ତି ସୁବ୍ରମଣ୍ୟମ୍ । ସେ ମାଦ୍ରାଜରୁ ଆସିଥିଲେ । ଖୁବ୍ ଜ୍ଞାନୀ ବ୍ୟକ୍ତି ଥିଲେ । ରାଜନୀତି ବିଜ୍ଞାନ ବିଭାଗର ବିଭାଗୀୟ ମୁଖ୍ୟ ଥିଲେ ଅଧ୍ୟାପକ ମୁକୁନ୍ଦ ବିହାରୀ ଲାଲ୍ । ସେ ଜଣେ ପ୍ରଖ୍ୟାତ ରାଜନୈତିକ ନେତା ଥିଲେ ଏବଂ ସମାଜବାଦୀ ଦଳର ଜଣେ ବିଶିଷ୍ଟ ବ୍ୟକ୍ତି ଥିଲେ । ପରେ ସେ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ପାଠଠାରୁ ଶାଠ ତାଙ୍କର ବେଶି ଥିଲା । ଡକ୍ଟର ବୁଲଚାନ୍ଦ୍ ବୋଲି ଆଉ ଜଣେ ଖୁବ୍ ଜ୍ଞାନୀ ଅଧ୍ୟାପକ ଆମର ସେହି ରାଜନୀତି ବିଜ୍ଞାନ ବିଭାଗରେ ଥିଲେ । ସେ ଖୁବ୍ ପ୍ରାଞ୍ଜଳ ଭାବରେ ଆମକୁ ରାଜନୀତି ବିଜ୍ଞାନ ବୁଝାଉଥିଲେ । ରାଜନାରାୟଣ ଓ କେଦାର ପାଣ୍ଡେ ସେହି ସମୟରେ ସେଠାରେ ଅଧ୍ୟୟନ କରୁଥିବାର ମୋର ମନେଅଛି । ସେମାନେ ପରେ କେନ୍ଦ୍ର ସରକାରରେ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀ ହୋଇଥିଲେ ।

ହିନ୍ଦୁ ବିଶ୍ୱବିଦ୍ୟାଳୟର ଆୟତନ ବା କ୍ଷେତ୍ରଫଳ ସେତେବେଳେ ପ୍ରାୟ ସାତ ବର୍ଗ ମାଇଲ୍ ଥିଲା । ବର୍ତ୍ତମାନ ତାହା ଆହୁରି ବଢ଼ିଯାଇଛି । ସବୁ ପ୍ରକାର ଶିକ୍ଷାନୁଷ୍ଠାନ ତା'ରି ଭିତରେ ଥିଲା । ବିଭିନ୍ନ

ଛାତ୍ରାବାସରେ ପ୍ରାୟ ଦଶ ହଜାରରରୁ ଉର୍ଦ୍ଧ୍ୱ ଛାତ୍ର ରହୁଥିଲେ । ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରେ ଆମିଷ ଭୋଜନ ନିଷେଧ ଥିଲା । ହଷ୍ଟେଲ୍ ଛାତ୍ର ସମସ୍ତେ ନିରାମିଷାଶୀ ହେବାକୁ ବାଧ; କାରଣ ମାଛମାଂସ ସେଠାକୁ ଆସେନାହିଁ । ସବୁଦିନେ ମାଛ କିମ୍ବା ମାଂସ ଖାଇବା ଅଭ୍ୟାସ ମୋର ଥିଲା । ତେଣୁ ବଡ଼ ଅସୁବିଧାରେ ପଡୁଥିଲି । ଅନେକ ସମୟରେ ବାହାରକୁ ଯାଇ ହୋଟେଲ୍‌ରୁ ମାଛ ମାଂସ ଖାଇ ଆସେ । କିଛିଦିନ ପରେ ମୋର ଏ ଅସୁବିଧା ଦୂର ହେଲା । ଆମ ହଷ୍ଟେଲ୍‌ରେ ଯେଉଁ ରୋଷେଇଆମାନେ ଥିଲେ ସେମାନଙ୍କ ଭିତରୁ ଜଣେ ଦୈବାତ୍ ମୋ ସାଙ୍ଗରେ କଥା ହେଉ ହେଉ ଜାଣିଲା ଯେ ମୁଁ ଓଡ଼ିଆ । ସେ ନିଜେ ଓଡ଼ିଆ ବୋଲି ମୋତେ ପରିଚୟ ଦେଇଥିଲା । ତା'ପରେ ଜଣାଗଲା ଯେ ଓଡ଼ିଶାରେ ତା'ର ଘର, ଆମ ଗାଆଁଠାରୁ ମାତ୍ର ଦୁଇ ମାଇଲ୍ ଦୂରରେ । ସେ ବି ଆମ ଘର ଲୋକଙ୍କୁ ଜାଣିଥିଲା । ସେତେବେଳକୁ ପ୍ରାୟ ପନ୍ଦର ବର୍ଷ ହେବ ସେ ନିଜ ଗ୍ରାମରୁ ଚାଲିଯାଇ ବନାରସରେ ରହୁଥିଲା । ତା'ପରେ ମୋତେ ମାଛମାଂସ ଖୁଆଇବାର ଦାୟିତ୍ୱ ସେ ନେଇଥିଲା । ମୋତେ ଆଉ ସେଥିପାଇଁ କୌଣସି ଅସୁବିଧା ହୋଇନଥିଲା । ଗୋଟିଏ ଶିକ୍ଷାବର୍ଷ ସରିଲାବେଳକୁ ମୁଁ ଆଇନ ପାଠର ପ୍ରଥମ ଭାଗ ପରୀକ୍ଷା ଦେଇ ପାସ୍ କରିଗଲି ଏବଂ ଦ୍ୱିତୀୟ ଭାଗର ପାଠ ଆରମ୍ଭ କରିଦେଇଥିଲି । ଏମ୍.ଏ. କ୍ଲାସ୍‌ର ଦ୍ୱିତୀୟ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେଲି, ମାତ୍ର ପ୍ରଥମ ଭାଗ ପରୀକ୍ଷା ଦେଇନଥାଏ । ପରବର୍ତ୍ତୀ ଶିକ୍ଷାବର୍ଷ ଶେଷବେଳକୁ ଆଇନ ପାଠର ଦ୍ୱିତୀୟ ଭାଗ ଓ ଏମ୍.ଏ.ର ପ୍ରଥମ ଭାଗ ପରୀକ୍ଷା ଦେବି ବୋଲି ସ୍ଥିରକରିଥାଏ । ଶୀଘ୍ର ପାଠପଢ଼ା ଶେଷ କରିବା ଥାଏ ମୋର ଉଦ୍ଦେଶ୍ୟ, ତେଣୁ ପାଠପଢ଼ାରେ ହେଳା କରୁନଥାଏ ।

ଭାରତୀୟ ଛାତ୍ରସଂଘ ସହିତ ମୋର ଘନିଷ୍ଠ ସମ୍ପର୍କ ଥାଏ । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଛାତ୍ର ଅନୁଷ୍ଠାନମାନଙ୍କରେ ମୁଁ ସକ୍ରିୟ ଭାଗ ଗ୍ରହଣ କରୁଥାଏ । ଆମ ଛାତ୍ର ଅନୁଷ୍ଠାନମାନଙ୍କରେ ବିଭିନ୍ନ ମତବାଦୀ ଛାତ୍ର ଥାଆନ୍ତି । ମାତ୍ର ସେତେବେଳେ ସଂଗ୍ରାମର ଏକମାତ୍ର ଓ ପ୍ରଥମ ଲକ୍ଷ୍ୟ ଥାଏ ଦେଶର ସ୍ୱାଧୀନତା ହାସଲ କରିବା । ତେଣୁ ସମସ୍ତେ ମିଳିମିଶି କାମ କରିବାରେ କୌଣସି ଅସୁବିଧା ହୋଇନଥିଲା । ଆମ ଜାତୀୟ ଆନ୍ଦୋଳନର ଏକ ସଂଗଠିତ ଅଙ୍ଗବିଶେଷରୂପେ ଛାତ୍ର ଆନ୍ଦୋଳନ, ଆତ୍ମବିକାଶ ଓ ବିସ୍ତାର ଲାଭ କରିଥିଲା । ଆରମ୍ଭରୁ ଓଡ଼ିଶାରେ ଛାତ୍ରସଂଘ ସମସ୍ତ ଛାତ୍ର ସମାଜର ଗଣତାନ୍ତ୍ରିକ ମିଳନପୀଠର ଭୂମିକା ନେଇ କାର୍ଯ୍ୟ କରୁଥିଲା । ତଥାପି କେତେକ ଚାହୁଁଥିଲେ ଛାତ୍ର ସମାଜର ଗୋଟିଏ ସ୍ୱାଧୀନ ଭୂମିକା । ଜାତୀୟ ଆନ୍ଦୋଳନର ଗୋଟିଏ ଅଙ୍ଗଭଳି ଛାତ୍ରସଂଘ କାର୍ଯ୍ୟ କରିବାକୁ ସେମାନେ ପସନ୍ଦ କରୁନଥିଲେ । କିନ୍ତୁ ମୁଁ ଚାହୁଁଥିଲି ଛାତ୍ର ଆନ୍ଦୋଳନ ଜାତୀୟ ଆନ୍ଦୋଳନର ସହଯୋଗୀ ପରିପୂରକ ଭୂମିକାରେ ରହିବ । ଜାତୀୟ ଆନ୍ଦୋଳନପାଇଁ ନୂତନ ନେତୃତ୍ୱ ସୃଷ୍ଟି କରିବା ଥିଲା ଆମ ଛାତ୍ରସଂଗଠନର ଉଦ୍ଦେଶ୍ୟ । ସେଥିରେ ଦଳମତ ନିର୍ବିଶେଷରେ ସବୁ ଛାତ୍ର ସହଯୋଗ କରିଥିଲେ । ଯୁଦ୍ଧ ଆରମ୍ଭର ପ୍ରଥମ ବର୍ଷରେ ଛାତ୍ର ସମାଜ ଓ ଛାତ୍ରସଂଘକୁ ପ୍ରବଳ ଦମନର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଛାତ୍ରସଂଘର ବହୁ ନେତା ଓ କର୍ମୀ ସରକାରଙ୍କଦ୍ୱାରା ଅତ୍ୟାଚାରିତ ହୋଇଥିଲେ । ବହୁ ଛାତ୍ରନେତାଙ୍କୁ ବିନା ବିଚାରରେ ଜେଲ୍‌ରେ ଅଟକ ରଖାଯାଇଥିଲା । ତେଣୁ ପ୍ରଥମରୁ ଜାତୀୟ ଆନ୍ଦୋଳନ ସହ ସହଯୋଗ କରି ସାମ୍ରାଜ୍ୟବାଦୀ ଯୁଦ୍ଧରେ ବ୍ରିଟିଶ୍ ସରକାରଙ୍କୁ ସାହାଯ୍ୟ ନକରିବାପାଇଁ ଜନମତ ସୃଷ୍ଟି କରିବା ଦିଗରେ ଛାତ୍ରସଂଘ ଆଗେଇ ଆସିଥିଲା । ଛାତ୍ରମାନଙ୍କ ଭିତରେ କୌଣସି ପ୍ରକାର ବିଭେଦ ସେତେବେଳେ ଦେଖାଦେଇନଥିଲା ।

## ଛାତ୍ରସଂଘରେ ବିଭେଦ ଓ ବନ୍ଧୁବିଚ୍ଛେଦ

୧୯୪୧ ମସିହା ଜୁନ୍ ମାସ ବାଇଶ ତାରିଖରେ ହିଟ୍‌ଲରଙ୍କର ନାଜୀ ଜର୍ମାନୀ ରୁଷ ଦେଶ ଉପରେ ଆକ୍ରମଣ ଆରମ୍ଭ କରିଦେଲା । ସେପର୍ଯ୍ୟନ୍ତ ଦଳମତ ନିର୍ବିଶେଷରେ ଆମ ଦେଶର ଲୋକେ

ଏହି ବିଶ୍ୱଯୁଦ୍ଧକୁ ସାମ୍ରାଜ୍ୟବାଦୀ ଯୁଦ୍ଧ ବୋଲି ଘୋଷଣା କରିଥିଲେ । ମାତ୍ର ରୁଷ ଦେଶ ବିଲାତ, ଆମେରିକା, ଫ୍ରାନ୍ସ ପ୍ରଭୃତିଙ୍କ ସହିତ ମିଶି 'ମିତ୍ରପକ୍ଷ' ଭାବେ ଏ ଯୁଦ୍ଧରେ ପ୍ରବେଶକଲା ପରେ ଆମ ଭିତରେ ଗୋଟିଏ ଭିନ୍ନ ମତ ପ୍ରକାଶ ପାଇଲା । ସେହି ସମୟରେ ଭାରତୀୟ କମ୍ୟୁନିଷ୍ଟ୍ ପାର୍ଟି ଏହି ଯୁଦ୍ଧ 'ଜନଯୁଦ୍ଧ' ବୋଲି ଘୋଷଣାକଲେ । ଏହାର ପ୍ରଭାବ ପଡ଼ିଲା ଛାତ୍ରସଂଘ ଉପରେ, ବିଶେଷକରି କମ୍ୟୁନିଷ୍ଟ ପାର୍ଟିଦ୍ୱାରା ପ୍ରଭାବିତ ଛାତ୍ରଙ୍କ ଉପରେ । ମୁଁ ସେତେବେଳେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଥାଏ । ୧୯୪୨ ମସିହା ଜାନୁୟାରୀ ମାସରେ ପାଟନାଠାରେ ନିଖିଳ ଭାରତ ଛାତ୍ରସଂଘର ଗୋଟିଏ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଛାତ୍ରମାନଙ୍କର ଜଣେ ପ୍ରତିନିଧି ହିସାବରେ ମୁଁ ଛାତ୍ରସଂଘର ଏହି ପାଟନା ଅଧିବେଶନରେ ଯୋଗଦେଲି । ସେହି ଛାତ୍ର ସମ୍ମିଳନୀରେ ଜନଯୁଦ୍ଧ ପ୍ରସ୍ତାବ ଆଗତ କରାଯିବ ବୋଲି ଶୁଣିବାକୁ ପାଇଲି । ପ୍ରସ୍ତାବର ଗୋଟିଏ ଚିଠା ମଧ୍ୟ ମୋର ହସ୍ତଗତ ହୋଇଥିଲା । ଆମ ଓଡ଼ିଶାରୁ ବିଜୟ ଚନ୍ଦ୍ର ଦାସ, ଅନନ୍ତ ପଟ୍ଟନାୟକ, ବିଶ୍ୱନାଥ ପଣ୍ଡାୟତ, ଦୁର୍ଗାଚରଣ ମହାନ୍ତି, ଗଙ୍ଗାଧର ରଥ, ରାମଚନ୍ଦ୍ର ମିଶ୍ର ଓ ଗୋବିନ୍ଦ ଚନ୍ଦ୍ର ମହାନ୍ତି ପ୍ରଭୃତି ଛାତ୍ରନେତାମାନେ ପାଟନା ଯାଇଥା'ନ୍ତି ଛାତ୍ର ସମାଜର ପ୍ରତିନିଧି ହୋଇ । ଏମାନେ ସମସ୍ତେ ଥିଲେ ମୋର ଅନ୍ତରଙ୍ଗ ବନ୍ଧୁ । ଏକା ସାଙ୍ଗରେ ମିଶି ଇଂରେଜ ସରକାରଙ୍କର ସାମ୍ରାଜ୍ୟବାଦୀ ନୀତି ବିରୁଦ୍ଧରେ କେତେ ସଂଗ୍ରାମ କରିଥିଲୁ । ମୋର ଧାରଣା ଥିଲା ସେମାନେ କଦାପି ଏ ପ୍ରକାର ପ୍ରସ୍ତାବକୁ ସମର୍ଥନ କରିବେନାହିଁ । ମାତ୍ର ସେମାନଙ୍କ ସହିତ କଥାବାର୍ତ୍ତା କରି ମୁଁ ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ମର୍ମାହତ ହୋଇଥିଲି । ଏଭଳି ପ୍ରସ୍ତାବ ଆସିବା ବାଞ୍ଛନୀୟ ବୋଲି ସେମାନେ ମତ ଦେଇଥିଲେ । ସେମାନଙ୍କ ସହିତ ମୁଁ ଏକମତ ହୋଇପାରିଲିନାହିଁ ବୋଲି ଅତି ଦୁଃଖର ସହିତ ଜଣାଇଦେଇଥିଲି । ସେମାନେ ବହୁତ ଉଦ୍ୟମ କଲେ ମୋତେ ତାଙ୍କ ସହିତ ଏକମତ କରାଇବାପାଇଁ, ମାତ୍ର ସଫଳ ହୋଇନଥିଲେ । ବନ୍ଧୁମାନେ ବର୍ତ୍ତମାନ ପରସ୍ପର ବିରୋଧୀ ଭୂମିକାରେ ଅବତୀର୍ଣ୍ଣ ହେଲୁ । ସମ୍ମିଳନୀରେ ଯେତେବେଳେ 'ଜନଯୁଦ୍ଧ' ପ୍ରସ୍ତାବ ଆଗତ ହୋଇଥିଲା ମୁଁ ତା'ର ଘୋର ବିରୋଧ କରିଥିଲି । ଗୋଟିଏ ଚକ୍ରାନ୍ତ କରି ଏ ପ୍ରକାର ପ୍ରସ୍ତାବ ଆଗତ କରାଯାଇଛି ବୋଲି ମୁଁ ଅଭିଯୋଗ କରିଥିଲି । ଏ ପ୍ରକାର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ନୀତିଗତ ପ୍ରସ୍ତାବ ଆଗତ ହେବା କଥା ଆଗରୁ ସବୁ ପ୍ରାଦେଶିକ ଅନୁଷ୍ଠାନକୁ ଜଣାଇଦେବାର ଆବଶ୍ୟକତା ଥିଲା ବୋଲି ମୁଁ ସେଠାରେ ଯୁକ୍ତି କରିଥିଲି । ତେଣୁ ସେହି ସମ୍ମିଳନୀରେ ପ୍ରସ୍ତାବଟି ଉପରେ ଶେଷ ନିଷ୍ପତ୍ତି ନନେଇ ପ୍ରଥମେ ପ୍ରସ୍ତାବର ଚିଠା ମତ ସଂଗ୍ରହପାଇଁ ପ୍ରଦେଶମାନଙ୍କୁ ପଠାଯାଇ ପରେ ଗୋଟିଏ ସ୍ୱତନ୍ତ୍ର ଅଧିବେଶନରେ ତାହାର ବିଚାର କରି ଶେଷନିଷ୍ପତ୍ତି ନେଲେ ଭଲ ହେବ ବୋଲି ମୁଁ ମତବ୍ୟକ୍ତ କରିଥିଲି । ଗୋଟିଏ ପୂର୍ବ ପରିକଳ୍ପିତ ଚକ୍ରାନ୍ତ ଅନୁସାରେ କମ୍ୟୁନିଷ୍ଟ ଭାବାପନ୍ନ ଛାତ୍ରମାନଙ୍କୁ ଏହି ସମ୍ମିଳନୀକୁ ଅଣାଯାଇଥିଲା । ତେଣୁ ବିଳମ୍ବ ନକରି ପ୍ରସ୍ତାବଟି ଗୃହୀତ କରାଇନେବାପାଇଁ ଉଦ୍ୟମ ହେଲା ଏବଂ ତାହା ଗୃହୀତ ମଧ୍ୟ ହୋଇଯାଇଥିଲା । କେବଳ ଏହି ସମ୍ମିଳନୀରେ ଉପସ୍ଥିତ ହୋଇଥିବା ଛାତ୍ରଙ୍କର ସଂଖ୍ୟାଗରିଷ୍ଠ ମତକୁ ସମଗ୍ର ଛାତ୍ରସଂଘ ଉପରେ ଲଦିନଦେଇ ଏଠାକାର ସିଦ୍ଧାନ୍ତ ବିଷୟରେ ମତ ସଂଗ୍ରହ ପାଇଁ ଛାତ୍ରସଂଘର ବିଭିନ୍ନ ଶାଖାମାନଙ୍କୁ ପ୍ରସ୍ତାବଟି ପଠାଇଲେ ତାହା ସମୀଚୀନ ହେବ ବୋଲି ମୁଁ ପୁଣି ଦର୍ଶାଇଥିଲି । ଶେଷରେ ତାହାହିଁ ହୋଇଥିଲା । ମୁଁ ଏହା ପରେ ଅତି ଦୁଃଖର ସହିତ ବନାରସ ଫେରିଥିଲି । କାରଣ ଓଡ଼ିଶାର ଯେଉଁ ଛାତ୍ରନେତାମାନଙ୍କ ସହିତ ମିଶି ଆଜିପର୍ଯ୍ୟନ୍ତ କାର୍ଯ୍ୟ କରିଆସିଥିଲି ମୋତେ ସେମାନଙ୍କଠାରୁ ଦୂରେଇ ଯିବାକୁ ପଡ଼ିଥିଲା । ମୁଁ ଅନୁପ୍ରାଣିତ ହେଉଥିଲି ଜାତୀୟ କଂଗ୍ରେସର ନୀତି ଓ ଆଦର୍ଶଦ୍ୱାରା, ତେଣୁ ସେମାନଙ୍କ ସହିତ ପାଦ ମିଳାଇ ଚାଲିବା ମୋ ପକ୍ଷରେ ଆଉ ସମ୍ଭବ ହେଲାନାହିଁ । ବନାରସ ଫେରି ପନ୍ଦର ଦିନ ଭିତରେ ଆମେମାନେ ହିନ୍ଦୁ ବିଶ୍ୱବିଦ୍ୟାଳୟର ଛାତ୍ରମାନଙ୍କର ଗୋଟିଏ ସ୍ୱତନ୍ତ୍ର ସମ୍ମିଳନୀ ଆହ୍ୱାନ କରିଥିଲୁ । ଜନଯୁଦ୍ଧ ନୁହେଁ, ଏହା ଗୋଟିଏ 'ସାମ୍ରାଜ୍ୟବାଦୀ ଯୁଦ୍ଧ' ବୋଲି ମୁଁ ଦୃଢ଼ ମତ

ବ୍ୟକ୍ତ କରୁଥାଏ । ବନାରସ ବିଶ୍ୱବିଦ୍ୟାଳୟର ଛାତ୍ର ସମ୍ମିଳନୀରେ ମୁଁ ଏହି ମତ ପ୍ରସ୍ତାବ ଆକାରରେ ଆଗତ କଲି । ପ୍ରସ୍ତାବଟି ସର୍ବସମ୍ମତିକ୍ରମେ ଗୃହୀତ ହେଲା ପରେ ପାଟନାଠାରେ ଆହତ ମୋର ମନ ଟିକିଏ ଶାନ୍ତ ହୋଇଥିଲା ।

## 'ଭାରତ ଛାଡ଼' ପ୍ରସ୍ତାବ : ଅଗଷ୍ଟ ବିପ୍ଳବ

୧୯୪୨ ମସିହା ଅଗଷ୍ଟ ମାସ ସାତ ତାରିଖରେ ସମଗ୍ର ଦେଶବାସୀଙ୍କ ମନରେ ପ୍ରବଳ ଉତ୍କଣ୍ଠା ଜାଗ୍ରତ କରି ନିଖିଳ ଭାରତ କଂଗ୍ରେସ କମିଟିର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବୈଠକ ବମ୍ବେଠାରେ ଅନୁଷ୍ଠିତ ହେଲା । ସବୁରି ମନରେ ପ୍ରଶ୍ନ – ବିପ୍ଳବର ମାର୍ଗ କ'ଣ ? ମହାମାନବ ମହାତ୍ମାଗାନ୍ଧୀଙ୍କର ପରାମର୍ଶକ୍ରମେ କଂଗ୍ରେସର ଏହି ଅଧିବେଶନରେ ଇତିହାସପ୍ରସିଦ୍ଧ 'ଭାରତ ଛାଡ଼' (Quit India) ପ୍ରସ୍ତାବ ଆଗତ କଲେ ଯୁଗଜ୍ୟୋତି ପଣ୍ଡିତ ଜବାହରଲାଲ୍ ନେହେରୁ । ଅନୁମୋଦନ କରିଥିଲେ ଲୌହମାନବ ସର୍ଦ୍ଦାର ବଲ୍ଲଭଭାଇ ପଟେଲ । 'ଭାରତ ଛାଡ଼' ପ୍ରସ୍ତାବଟିରୁ ୧୯୪୨ ମସିହାର ଐତିହାସିକ ଅଗଷ୍ଟ ବିପ୍ଳବର ମାର୍ଗ ଛାଏଁ ଛାଏଁ ଫିଟିଗଲା । ବିପ୍ଳବ ବିସ୍ତାରିତ ହୋଇଯାଇଥିଲା ଏକ ପ୍ରବଳ ଉଚ୍ଛଳ ବନ୍ୟାର ପ୍ରବାହ ପରି ସାରା ଦେଶର ଅନ୍ଦିକନ୍ଦିକୁ ଉଦ୍‌ବେଳିତ କରି । ପ୍ରସ୍ତାବଟି ନିଖିଳ ଭାରତ କଂଗ୍ରେସ କମିଟିରେ ଅଗଷ୍ଟ ମାସ ଆଠ ତାରିଖରେ ଗୃହୀତ ହୋଇଥିଲା । ସଂଗ୍ରାମର ସଂପୂର୍ଣ୍ଣ ଦାୟିତ୍ୱ ସ୍ୱତଃ ନ୍ୟସ୍ତ କରାଯାଇଥିଲା ଭାରତ ଜନଗଣମନର ଅଧିନାୟକ ମହାତ୍ମାଗାନ୍ଧୀଙ୍କ ଉପରେ । ପ୍ରସ୍ତାବଟି ଗୃହୀତ ହେବା ପରେ ଗାନ୍ଧିଜୀ ପ୍ରସ୍ତାବର ମର୍ମ ଓ ଭବିଷ୍ୟତ ରୂପରେଖ ସମ୍ବନ୍ଧରେ ନିଖିଳ ଭାରତ କଂଗ୍ରେସ କମିଟି ସଭ୍ୟମାନଙ୍କୁ ବୁଝାଇଥିଲେ । 'ଭାରତ ଛାଡ଼' ପ୍ରସ୍ତାବକୁ କାର୍ଯ୍ୟକାରୀ କରିବାପାଇଁ ଗାନ୍ଧିଜୀ ଦେଶବାସୀଙ୍କୁ ବିପ୍ଳବର ଆହ୍ୱାନ ଦେଇଥିଲେ । ନିଖିଳ ଭାରତ କଂଗ୍ରେସ କମିଟିରେ ଉଦ୍‌ବୋଧନ ଦେଇ ଗାନ୍ଧିଜୀ କହିଥିଲେ, ଏହାହିଁ ଭାରତବର୍ଷର ଶେଷ ସ୍ୱାଧୀନତା ସଂଗ୍ରାମ । ତେଣୁ ସଭ୍ୟମାନେ ନିଜ ନିଜ ଅଞ୍ଚଳକୁ ଫେରିଯାଇ ଦେଶବାସୀଙ୍କ ସହିତ ମୁକ୍ତିସଂଗ୍ରାମରେ ଝାସ ଦେବାପାଇଁ ଥିଲା ତାଙ୍କର ପରାମର୍ଶ । ଗାନ୍ଧିଜୀଙ୍କ ନିର୍ଦ୍ଦେଶ ଥିଲା ଯେ ଏହି ସଂଗ୍ରାମରେ ଦେଶବାସୀ ନିଜକୁ ସ୍ୱାଧୀନ ଭାରତର ଲୋକ ବୋଲି ମନେକରି ଇଂରେଜ ସରକାରଙ୍କଠାରୁ ସମସ୍ତ ସମ୍ପର୍କ ତୁଟାଇଦେବେ । ନିଖିଳ ଭାରତ କଂଗ୍ରେସ କମିଟିର ଏହି ଐତିହାସିକ ପ୍ରସ୍ତାବଟିକୁ ବଡ଼ଲାଟ୍‌ଙ୍କ ଜରିଆରେ ଇଂରେଜ ସରକାରଙ୍କୁ ଜଣାଇ ଦିଆଗଲା । କିନ୍ତୁ ଇଂରେଜ ସରକାରଙ୍କର କୌଣସି ବିଚାର ଆଲୋଚନାପାଇଁ ଧୈର୍ଯ୍ୟ ନ ଥିଲା । ସରକାର ସେହି ଅଗଷ୍ଟ ଆଠ ତାରିଖ ରାତି ଅନ୍ଧାରରେ କଂଗ୍ରେସ ଉପରେ ପ୍ରଚଣ୍ଡ ଆକ୍ରମଣ ଆରମ୍ଭ କରିଦେଇଥିଲେ । କିନ୍ତୁ ମହାତ୍ମାଙ୍କର ସେହି ଭବିଷ୍ୟତ ବାଣୀହିଁ ଅବଶେଷରେ ସତ୍ୟ ପ୍ରମାଣିତ ହେଲା । ୧୯୪୨ ମସିହାର ଅଗଷ୍ଟ ବିପ୍ଳବହିଁ ହେଲା ଭାରତର ଶେଷ ସ୍ୱାଧୀନତା ସଂଗ୍ରାମ । ଅଗଷ୍ଟ ଆଠ ତାରିଖର ସେହି ରାତିରେ ମହାତ୍ମାଗାନ୍ଧୀଙ୍କୁ ଗିରଫ କରାଯାଇଥିଲା ଏବଂ ସେହି ରାତି ରାତି ତାଙ୍କୁ ନେଇ ବମ୍ବେର ଆଗାଖାଁ ପ୍ରାସାଦରେ ବନ୍ଦୀକରି ରଖାଯାଇଥିଲା । ପଣ୍ଡିତ ଜବାହରଲାଲ୍ ନେହେରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍, ମୌଲାନା ଆବୁଲ୍ କାଲାମ୍ ଆଜାଦ୍, ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଆଚାର୍ଯ୍ୟ ଜେ. ବି. କୃପାଳିନୀ, ଖାଁ ଅବଦୁଲ୍ ଗଫୁର ଖାଁ ଓ ଶ୍ରୀ ହରେକୃଷ୍ଣ ମହତାବ ପ୍ରଭୃତି କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟମାନଙ୍କୁ ସେହିଦିନ ଗିରଫ କରି ଅହମ୍ମଦନଗର ଦୁର୍ଗରେ ଅଟକ କରି ରଖାଗଲା । ଏହି ସମ୍ବାଦ ପରଦିନ ସକାଳେ ଜଣାପଡ଼ିବାମାତ୍ରେ ସମଗ୍ର ଭାରତବର୍ଷରେ ଉତ୍ତେଜନାର ଅଗ୍ନି ଜଳିଉଠିଲା । ଗାନ୍ଧିଜୀଙ୍କ ନିର୍ଦ୍ଦେଶ ଥିଲା 'କର ବା ମର' (Do or die) ପଣ ନେଇ ସ୍ୱାଧୀନତା ସଂଗ୍ରାମରେ ଝାସଦେବାକୁ । ଗାନ୍ଧିଜୀ ଓ ଅନ୍ୟାନ୍ୟ ନେତାମାନଙ୍କର ଅଚାନକ ଗିରଫଦାରୀ କଥା ସଙ୍ଗେ ସଙ୍ଗେ ବମ୍ବେ ସହରରେ ବିଜୁଳି ଭଳି ଖେଳିଯାଇଥିଲା । ଜନସାଧାରଣ ଉନ୍ମତ୍ତ ହୋଇଉଠିଥିଲେ । ସେହିଦିନ ବମ୍ବେ ସହରରେ ଲୋକମାନଙ୍କ ଉପରେ ଆଖିବୁଜା

ଲାଠି, ଗୁଳି ଓ ଲୁହବୁହା ଗ୍ୟାସ୍ ପ୍ରୟୋଗ କରାଯାଇଥିଲା । ଯେଉଁ ନେତୃସ୍ଥାନୀୟ ବ୍ୟକ୍ତିମାନେ ବିପ୍ଳବର ବାର୍ତ୍ତା ବହନ କରି ନିଜ ନିଜ ଅଞ୍ଚଳକୁ ଫେରିଯାଉଥିଲେ ସେମାନଙ୍କୁ ବାଟରେ ବିଭିନ୍ନ ରେଳଷ୍ଟେସନ୍‌ରେ ଗିରଫ କରାଯାଇଥିଲା । ସମଗ୍ର ଭାରତବର୍ଷରେ କଂଗ୍ରେସ ଲୋକଙ୍କ ଉପରେ ଏବଂ ତା' ସହିତ ସଂଗ୍ରାମୀ ଛାତ୍ର ଓ ଜନସାଧାରଣଙ୍କ ଉପରେ ସରକାରଙ୍କର ପ୍ରଚଣ୍ଡ ଆକ୍ରମଣ ଆରମ୍ଭ ହୋଇଯାଇଥିଲା ।

## ବନାରସରୁ ମଧ ବହିଷ୍କାର ଆଦେଶ

ମୁଁ ସେତେବେଳେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଛାତ୍ର । ବମ୍ବେରେ ଗାନ୍ଧିଜୀ ଓ କଂଗ୍ରେସ ନେତାମାନଙ୍କ ଉପରେ ସରକାରଙ୍କର ଆକ୍ରମଣ ସମ୍ବାଦ ପାଇବା ମାତ୍ରେ ବିଶ୍ୱବିଦ୍ୟାଳୟ ତଥା ବନାରସ ସହରରେ ଭୀଷଣ ଉତ୍ତେଜନା ପ୍ରକାଶ ପାଇଥିଲା । ବିଶ୍ୱବିଦ୍ୟାଳୟର ଛାତ୍ରମାନେ ଅତ୍ୟନ୍ତ ଉତ୍ତ୍ୟକ୍ତ ହୋଇ କେତେକ ସ୍ଥାନରେ ପୋଡ଼ାଜଳା କାର୍ଯ୍ୟ ଆରମ୍ଭ କରିଦେଇଥିଲେ । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଛାତ୍ରସଂଘର ଗୋଟିଏ ଜରୁରୀ ବୈଠକ ବସିଲା । ଦେଶର ପରିସ୍ଥିତି ବିଷୟରେ ଆଲୋଚନା କରି ଛାତ୍ରମାନଙ୍କ କର୍ତ୍ତବ୍ୟ କ'ଣ ତାହା ନିର୍ଦ୍ଧାରଣ କରାଗଲା । ଶୃଙ୍ଖଳିତ ଭାବରେ କିପରି ଗଣବିଦ୍ରୋହ ସୃଷ୍ଟି କରି ବିଦେଶୀ ଶାସନକୁ ବିପର୍ଯ୍ୟସ୍ତ ଓ ଅଚଳ କରିଦିଆଯିବ ସେ ବିଷୟରେ କେତେକ ପନ୍ଥା ସ୍ଥିର କରାଯାଇଥିଲା । କୋଡ଼ିଏ ଜଣ ଲେଖାଏଁ ଛାତ୍ରଙ୍କୁ ନେଇ କେତେଗୁଡ଼ିଏ ଦଳ ପ୍ରସ୍ତୁତ କରାଯାଇଥିଲା । ଜଣେ ଜଣେ ସ୍ଥାନୀୟ ଛାତ୍ରନେତାଙ୍କ ନେତୃତ୍ୱରେ ସେମାନେ ଅଜଣା ସ୍ଥାନକୁ ଯାଇ ସରକାରୀ ଅନୁଷ୍ଠାନ ଉପରେ ଅତର୍କିତ ଆକ୍ରମଣ କରୁଥିଲେ । କେଉଁ ଦଳ କେଉଁଠାକୁ ଯିବ ସେ କଥା କେବଳ ଦଳର ନେତା ଜାଣୁଥିଲେ– ପୂର୍ବରୁ ଅନ୍ୟମାନଙ୍କୁ ସେ କଥା କୁହାଯାଉନଥିଲା । ଆଖପାଖର ବହୁତ ଡାକଘର ଓ ରେଳ ଷ୍ଟେସନ୍‌ମାନଙ୍କ ଉପରେ ଆକ୍ରମଣ କରି ସରକାରୀ ରେକର୍ଡ଼ପତ୍ର ନଷ୍ଟକରିବା ସଙ୍ଗେ ସଙ୍ଗେ ନିଆଁ ମଧ ଲଗାଇ ଦିଆଯାଉଥିଲା । ଏହାପରେ ଆରମ୍ଭ ହେଲା ବିଶ୍ୱବିଦ୍ୟାଳୟ ଉପରେ ସରକାରଙ୍କ ପକ୍ଷରୁ ଆକ୍ରମଣ । ବିଶ୍ୱବିଦ୍ୟାଳୟକୁ ସରକାରଙ୍କ ଆଦେଶ ବଳରେ ବନ୍ଦକରିଦିଆଗଲା । ବିଶ୍ୱବିଦ୍ୟାଳୟ ହତା ଭିତରକୁ ସଶସ୍ତ୍ର ପୁଲିସ ପ୍ରବେଶ କଲେ । କେତେକ ଛାତ୍ରନେତାଙ୍କୁ ପୁଲିସ ଗିରଫ କରିନେଲେ । ମୋ ନାଆଁରେ ଗିରଫ ପରୱାନା ଧରି ପୁଲିସ ମତେ ଖୋଜୁଥାନ୍ତି, କିନ୍ତୁ ମୋତେ ପାଇଲେନାହିଁ । ତା'ପରେ ବନାରସ ଡିଭିଜନାଲ୍ କମିଶନର୍‌ଙ୍କ ସ୍ୱାକ୍ଷରରେ ମୋ ବିରୁଦ୍ଧରେ ବନାରସରୁ ବହିଷ୍କାର ଆଦେଶ ପ୍ରକାଶ କରାଯାଇଥିଲା । କିନ୍ତୁ ତାହା ମଧ ସେଠାରେ ମୋ ଉପରେ ଜାରି କରାଯାଇପାରିନଥିଲା । ପରେ ଯେତବେଳେ ମୁଁ ବାଲେଶ୍ୱର ଜେଲ୍‌ରେ ବନ୍ଦୀ ହେଲି ସେତେବେଳେ ସେହି ବହିଷ୍କାର ଆଦେଶ ମୋ ଉପରେ ଜାରି କରାଯାଇଥିଲା ।

## ଭଦ୍ରକରେ ମୋ ବିପ୍ଳବାତ୍ମକ କାର୍ଯ୍ୟ ଓ ଗିରଫଦାରୀ

ମୁଁ ବନାରସରୁ ଚାଲିଆସି ନିଜ ପ୍ରଦେଶ ଓଡ଼ିଶାରେ ବିପ୍ଳବାତ୍ମକ କାର୍ଯ୍ୟ କରିବାପାଇଁ ସ୍ଥିର କଲି । ଅଗଷ୍ଟ ମାସର ତୃତୀୟ ସପ୍ତାହରେ ଭଦ୍ରକରେ ଆସି ପହଞ୍ଚିଲି । ବାଲେଶ୍ୱର ଜିଲ୍ଲା କଂଗ୍ରେସ କମିଟିରେ ସଭାପତି ତଥା ଜିଲ୍ଲାବୋର୍ଡ଼ ଚେୟାରମ୍ୟାନ୍ ମହମ୍ମଦ ହନିଫ୍‌ଙ୍କ ସହିତ ଦେଖାକଲି । ତାଙ୍କ ସହିତ ଆଲୋଚନା ପରେ ସ୍ଥିର ହେଲା ଯେ ପୂର୍ବ ଭଦ୍ରକ ଅଞ୍ଚଳରେ କଂଗ୍ରେସର 'ଭାରତ ଛାଡ଼' ପ୍ରସ୍ତାବ ଅନୁସାରେ ଜନଜାଗରଣ ଓ ସଂଗଠନ ଦାୟିତ୍ୱ ମୋତେ ନେବାକୁ ପଡ଼ିବ । ମୋର ଘର ଏହି ପୂର୍ବ ଭଦ୍ରକ ଅଞ୍ଚଳରେ । ତେଣୁ ସେଠାରେ ସେ ଦାୟିତ୍ୱ ମୁଁ ଭଲଭାବରେ ତୁଲାଇ ପାରିବି ବୋଲି ବନ୍ଧୁମାନଙ୍କର ହୃଦ୍‌ବୋଧ ହୋଇଥିଲା । ମୁଁ ଆମ ଗାଆଁକୁ ଗଲି । ଘରେ ଗୋଟିଏ ଦିନ ରହି ବିଭିନ୍ନ

ଅଞ୍ଚଳକୁ ଯାଇ କଂଗ୍ରେସ କର୍ମୀ ଓ ସମର୍ଥକମାନଙ୍କ ସହିତ ସମ୍ପର୍କ ସ୍ଥାପନ କଲି । ପୂର୍ବ ଭଦ୍ରକ ଅଞ୍ଚଳରେ କଂଗ୍ରେସ କର୍ମୀ ପ୍ରହ୍ଲାଦ ମହାପାତ୍ର, କୃପାସିନ୍ଧୁ ଦାସ, ନରସିଂହ ନାୟକ, ଦୁର୍ଗାଚରଣ ନାୟକ, ମାଧବାନନ୍ଦ ନାୟକ, ଅପର୍ତ୍ତିଚରଣ ନାୟକ ଓ ନୀଳମଣି ଦାସ ପ୍ରମୁଖଙ୍କ ସହିତ ସାକ୍ଷାତ୍ ହେଲା । ସେମାନେ ମଧ୍ୟ ଗାନ୍ଧିଜୀଙ୍କର ବିପ୍ଳବାତ୍ମକ କାର୍ଯ୍ୟରେ ଲାଗିଥା'ନ୍ତି । ପୀରହାଟ ବଜାର ଭଦ୍ରକ ଓ ଚାନ୍ଦବାଲି ମଧ୍ୟରେ ଗୋଟିଏ କେନ୍ଦ୍ରସ୍ଥଳ । ମୁଁ ସେଠାକୁ ଯାଇ ଦୁଇ ଚାରିଦିନ ରହିଥିଲି । ସଚ୍ଚିଦାନନ୍ଦ ମିଶ୍ର, ଲକ୍ଷ୍ମୀଧର ପାଢ଼ୀ, କାଳିନ୍ଦୀଚରଣ ସାହୁ, ଅଭିରାମ ସାହୁ ଓ କାଳିମେଘାର କୃଷ୍ଣଚନ୍ଦ୍ର ସାହୁ ପ୍ରଭୃତି ବହୁତ ଯୁବକ ବିପ୍ଳବାତ୍ମକ କାର୍ଯ୍ୟରେ ମୋତେ ସାହାଯ୍ୟ କରିବାପାଇଁ ବାହାରିପଡ଼ିଲେ । ଗୋଟିଏ ଗୁପ୍ତ ବୈଠକରେ ଆମେମାନେ ସ୍ଥିରକରିଥିଲୁ ଯେ ଭଦ୍ରକରୁ ଚାନ୍ଦବାଲି ପର୍ଯ୍ୟନ୍ତ ଯାଇଥିବା ଟେଲିଗ୍ରାଫ୍ ଲାଇନ୍‌କୁ ଅକାମି କରିଦେବୁ ଏବଂ ଭଦ୍ରକ-ଚାନ୍ଦବାଲି ଭିତରେ ଯେଉଁ ଡାକ ଚଳାଚଳ ବ୍ୟବସ୍ଥା ଥିଲା ତାକୁ ମଧ୍ୟ ଅଚଳ କରିଦେବୁ । ଏହି କାର୍ଯ୍ୟଗୁଡ଼ିକ ସଫଳତାର ସହିତ ଆରମ୍ଭ ହୋଇଯାଇଥିଲା । ଏହାପରେ ପୁଲିସର ନଜର ଆମ ଉପରେ ପଡ଼ିଥିଲା । ସେତେବେଳେ ତିହିଡ଼ିରେ ଥାନା ହୋଇନଥାଏ । ଏସବୁ ଅଞ୍ଚଳ ଭଦ୍ରକ ଥାନା ଅଧୀନରେ ଥିଲା । ଭଦ୍ରକ ପୁଲିସ ସେ ଅଞ୍ଚଳକୁ ଯାଇ ମୋତେ ଖୋଜାଖୋଜି କଲେ । ଆମ ଭିତରେ ସ୍ଥିରହୋଇଥିଲା ଯେ ମୁଁ ଗୋଟିଏ ଗୁପ୍ତ ସ୍ଥାନରେ ରହିବି । ଚଉଁରୀ ବୋଲି ଆମର ସେଠାକାର ଗୋଟିଏ ଗାଆଁ । ଏଇ ଗାଆଁଟି ବାଉଁଶ ବଣ ଘେର ଭିତରେ ଲୁଚିରହିଲାପରି ଥାଏ । ସେହି ଗାଆଁର ଦୀନବନ୍ଧୁ ଦାସଙ୍କ ଘରେ ମୁଁ ଲୁଚିଥାଏ । ରାତିରେ ସେଠାରୁ ତିହିଡ଼ି, ଗୁଆମାଳ, ଦୋଳସାହି, କୁବେରା, ଗୋଡ଼ପାଳ, ଡାଙ୍ଗମାଳ, ମହରମପୁର ଓ ପାଳିଆ ପ୍ରଭୃତି ଗ୍ରାମକୁ ଯାଇ ଜନସାଧାରଣଙ୍କ ପକ୍ଷରୁ ସଂଗଠିତ ଭାବରେ କିପରି ସରକାରଙ୍କୁ ବିରୋଧ କରାଯିବ ସେ ଦିଗରେ ପନ୍ଥା ସ୍ଥିରକରୁଥିଲି । ଖଜଣା, ଟିକସ ପ୍ରଭୃତି ସରକାରଙ୍କୁ ନଦେବାପାଇଁ ଲୋକଙ୍କୁ ମତାଇବାର ପ୍ରଚାର ବ୍ୟବସ୍ଥା କରାଯାଇଥିଲା । ସମୟଟା ଥାଏ ବର୍ଷାଦିନ । ରାତିରେ ପଙ୍କ କାଦୁଅ ପାଣି ଭିତରେ ଯିବାଆସିବା କରିବା ଫଳରେ ମୋ ଗୋଡ଼କୁ ଗେଣ୍ଡା କାଟିଲା । ଛୋଟେଇ ଛୋଟେଇ ଚାଲିବାରୁ ଗୋଟିଏ ବାଗିପଡ଼ିଗଲା । ତାହା ପ୍ରକୋପରେ ଜ୍ୱର ହେଲା । ଏହି ଖବର ପାଇ ମୋର ମଝିଆଁଭାଇ ଆନନ୍ଦପ୍ରସାଦ ରାଉତରାୟ ରାତିରେ ଯାଇ ମୋ ପାଖରେ ପହଞ୍ଚିଲେ । ମୁଁ କାଳେ ବେଶି ଅସୁସ୍ଥ ହୋଇପଡ଼ିବି ବୋଲି ଆଶଙ୍କା କରି ଘରକୁ ଫେରାଇନେବାପାଇଁ ଜିଦ୍‌ଧରିଲେ । ବାଧହୋଇ ଘରକୁ ଆସିଲି । ଘରେ ଆସି ଗୋପନରେ ରହିଲି । ଆମ ଗାଆଁ ଚୌକିଦାର ଚେମେଇ ମାହାଳିକ ଆମର ଖୁବ୍ ବିଶ୍ୱାସୀ ଥିଲା; ତେଣୁ ମୋ ବିଷୟରେ ସେ କିଛି ଜାଣେନାହିଁ ବୋଲି ପୁଲିସକୁ କହେ । ଯେତେ ସାମାନ୍ୟ ଜ୍ଞାନ କରାଗଲେ ମଧ୍ୟ ସେତେବେଳର ପରିସ୍ଥିତିରେ ଏହିଭଳି ଲୋକଙ୍କର କିଞ୍ଚିତ୍ ସାହାଯ୍ୟକୁ ମଧ୍ୟ ମୁଁ ଅସାମାନ୍ୟ ସାହାଯ୍ୟ ବୋଲି କୃତଜ୍ଞତା ପ୍ରକାଶକରେ । ଘରକୁ ଫେରିବା ପୂର୍ବରୁ ଡାଙ୍ଗମାଳ ଗ୍ରାମରେ ଦିନେ ଗୋଟିଏ ସଭା କରିଥିଲି । ସେହି ସଭାର ବିବରଣୀ ସେ ଗ୍ରାମର ଭୁବନା ଚଉକିଆଠାରୁ ପୁଲିସ ସଂଗ୍ରହ କରିଥିଲା । ମୁଁ ଘରେ ରହୁଥିବା ସମୟରେ ଆମେ ତିହିଡ଼ିଠାରେ ଗୋଟିଏ ଲୋକ ଜଗାଇରଖିଥାଉ ସେଠାକୁ ପୁଲିସ ଆସିବାର ଦେଖିଲେ ଆଗରୁ ଆମକୁ ଖବର ଦେଇଦେବାପାଇଁ । ସେପ୍‌ଟେମ୍ବର ମାସ ଦଶ ତାରିଖ ଦିନ ମୁଁ ଆମ ବାଡ଼ି ପୋଖରୀରେ ଗାଧୋଉଛି, ହଠାତ୍ ବହୁ ସଶସ୍ତ୍ର ପୁଲିସ ଆସି ଆମ ଘରବାଡ଼ି ଚାରିପାଖେ ଘେରି ଛିଡ଼ାହୋଇଗଲେ । ସେତେବେଳେ ଚାନ୍ଦବାଲି ରାସ୍ତା ପକ୍କା ହୋଇନଥାଏ । ପୁଲିସ ଦଳ ତିହିଡ଼ିଆଡ଼େ ନଯାଇ ଦୋଳସାହି ପାଖେ ଗାଡ଼ିରଖି ଚାଲି ଚାଲି ଯାଇ ଆମ ଗାଆଁରେ ପହଞ୍ଚିଥିଲେ । ତେଣୁ ତିହିଡ଼ିଠାରେ ନିଯୁକ୍ତ ଥିବା ଆମର ଚର କୌଣସି ଟେର୍ ପାଇନଥିଲା । ମୋର ପଳାଇଯିବାର ଅନ୍ୟ କୌଣସି ଉପାୟ ନଥିଲା, ତେଣୁ ପୁଲିସ ଦଳଙ୍କୁ ଖବର ଦିଆଗଲା ଯେ ମୁଁ ଖାଇସାରି ଗିରଫ ହୋଇଯିବାପାଇଁ ପ୍ରସ୍ତୁତ ହେଉଛି । ପୁଲିସଦଳ ଅଖିଆ ଥିଲେ । ଆମଘରେ ସେମାନଙ୍କୁ ମଧ୍ୟ

ଖାଇବାକୁ ଦିଆଗଲା । ସେମାନେ ପହଞ୍ଚିବାର ତିନିଘଣ୍ଟା ପରେ ମୁଁ ପ୍ରସ୍ତୁତ ହୋଇ ବାହାରକୁ ଆସିଲି । ଗିରଫ ପରଓ୍ୱାନା ମୋ ଉପରେ ଜାରିହୋଇଥିଲା । ମୁଁ ତାଙ୍କ ସହ ଚାଲି ଚାଲି ଦୋଲସାହି ପର୍ଯ୍ୟନ୍ତ ଆସିଲି । ଜଣେ ଲୋକ ମୋର ଜିନିଷପତ୍ର ଧରି ସାଙ୍ଗରେ ଆସୁଥାଏ । ଦୋଲସାହିଠାରୁ ଗୋଟିଏ ବସ୍‌ରେ ବସି ଭଦ୍ରକ ଆସିଲୁ । ଭଦ୍ରକ ଥାନାକୁ ଜଣେ ହାକିମ ଆସିଲେ । ତାଙ୍କ ଆଗରେ ମୋତେ ହାଜର କରାଗଲା, ତା'ପରେ ଭଦ୍ରକ ଜେଲ୍‌କୁ ନିଆଗଲା । ଭଦ୍ରକ ଜେଲ୍ ସେତେବେଳେ ଖୁନ୍ଦାଖୁନ୍ଦି । ଅଗଷ୍ଟ ବିପ୍ଳବର ଆଦର୍ଶରେ ଅନୁପ୍ରାଣିତ ହୋଇ ଭଣ୍ଡାରିପୋଖରୀ ଥାନାର ଲୋକେ ଥାନା ପୋଡ଼ିଦେଇଥିଲେ । ସେ ସଂକ୍ରାନ୍ତରେ ବୈଷ୍ଣବ ଚରଣ ନାୟକ, ଘନଶ୍ୟାମ ସାହୁ ଓ ଭୋବନି ସାହୁ ପ୍ରଭୃତି ବହୁ କର୍ମୀ ଗିରଫ ହୋଇ ଭଦ୍ରକ ଜେଲ୍‌ରେ ଥା'ନ୍ତି । ସେମାନଙ୍କ ସାଙ୍ଗରେ ମୁଁ ଜେଲ୍‌ରେ ରହିଲି ।

## ବିଚାର ଓ ଜେଲଦଣ୍ଡ

ମୋର ବିଚାର ହେଲା ୧୯୪୨ ମସିହା ସେପ୍‌ଟେମ୍ବର ୧୨ ତାରିଖରେ । ଭଦ୍ରକ କୋର୍ଟରେ ମୋର ବିଚାରକରାଗଲେ ବହୁଲୋକ ରୁଣ୍ଡ ହେବାର ଆଶଙ୍କାକରି ବିଚାର ହେଲା ଭଦ୍ରକ ଥାନାରେ । ଭଦ୍ରକରେ ସେତେବେଳେ ଏସ୍.ଡି.ଓ. ଥିଲେ ପୂର୍ଣ୍ଣଚନ୍ଦ୍ର ମହାନ୍ତି । ସେ ଥାନାକୁ ଯାଇ ମୋର ବିଚାର କରିଥିଲେ । ଯୁଦ୍ଧ କାର୍ଯ୍ୟରେ ଇଂରେଜ ସରକାରଙ୍କୁ ସାହାଯ୍ୟ ନକରିବା ପାଇଁ ମୁଁ ଲୋକଙ୍କୁ ସଭାକରି ମତାଉଥିଲି ବୋଲି ମୋ ବିରୁଦ୍ଧରେ ଥିଲା ଅଭିଯୋଗ । ମୋର ଭିଣୋଇ କ୍ଷେତ୍ରବାସୀ ଖୁଣ୍ଟିଆ ଥିଲେ ଏସ୍.ଡି.ଓ.ଙ୍କର ପେସ୍କାର । ମୋର ବିଚାରବେଳେ ତାଙ୍କ ଉପସ୍ଥିତିଟା ତାଙ୍କୁ ଅଡୁଆ ଲାଗିବ ବୋଲି ସେଦିନ ହାକିମଙ୍କୁ କହି ସେ ଛୁଟିରେ ରହିଥିଲେ । ମୋ ବିରୁଦ୍ଧରେ ହୋଇଥିବା ଅଭିଯୋଗ ବିଷୟରେ ମୋତେ ଯେତେବେଳେ ହାକିମ ପଚାରିଲେ ସେତେବେଳେ ମୁଁ କାହିଁକି ବିଚାରରେ ଭାଗ ନେବିନାହିଁ ସେ ବିଷୟରେ ଗୋଟିଏ ବିବୃତି ଦେଇଥିଲି । ମୋ ବିରୁଦ୍ଧରେ ଏକମାତ୍ର ସାକ୍ଷୀ ଥିଲା ଡାଙ୍ଗମାଳର ଭୁବନା ଚଉକିଦାର । ତାକୁ ହାକିମ ଯେତେବେଳେ ପଚାରିଲେ ସେ କ'ଣ ଜାଣିଛି କହିବାପାଇଁ, ସେ କହିଲା ଡାଙ୍ଗମାଳାରେ ସନ୍ଧ୍ୟାବେଳେ ଗୋଟିଏ ସଭା ହୋଇଥିଲା । ସେ ସଭାରେ 'ଆନନ୍ଦବାବୁ' ସରକାରଙ୍କୁ ଗାଳିଦେଲେ, ଯୁଦ୍ଧ ବିରୁଦ୍ଧରେ କହିଲେ ଓ ଆହୁରି ବହୁତ କଥା କହି ସରକାରଙ୍କ ବିରୁଦ୍ଧରେ ଲୋକଙ୍କୁ ମତାଇଦେଲେ । ତା' କଥା ଶୁଣି ହାକିମ ଓ ପୁଲିସ ଅଫିସରମାନେ ଅପ୍ରତିଭ ହୋଇଗଲେ । ସେ ମୋ ନାମ ନକହି ମୋ ମଝିଆଁ ଭାଇଙ୍କ ନାମ କହିଲା । କଥାଟି ହେଉଛି ସେ ମୋତେ ଆଗରୁ ଚିହ୍ନିନଥିଲା । ମୋ ଭାଇ ଆନନ୍ଦବାବୁଙ୍କୁ ସେ ଭଲଭାବରେ ଜାଣିଥିଲା । ତେଣୁ ସାକ୍ଷୀ ଦେଲାବେଳେ ମୋ ନାମ ତା ପାଟିରେ ପଶିଲାନାହିଁ, ପଶିଲା ଆନନ୍ଦବାବୁଙ୍କ ନାମ । ପୁଲିସବାଲା ଫୁସ୍‌ଫାସ୍ କରି ତାକୁ ମୋ ନାମ ବତାଇଦେଲେ । ସେଠୁ ସେ କହିଲା– ଆନନ୍ଦବାବୁ ନୁହଁନ୍ତି, ଏହି ବାବୁ, ନୀଳମଣିବାବୁ । ଏକଥା ଶୁଣି ସମସ୍ତେ ମୁରୁକି ମୁରୁକି ହସୁଥା'ନ୍ତି । ଏହାପରେ ହାକିମ ତାଙ୍କର ରାୟ ଦେଇଥିଲେ । ଏକ ବର୍ଷ ଅଶ୍ରମ କାରାଦଣ୍ଡ ଦେଇ ମୋତେ 'ବି' ଶ୍ରେଣୀଭୁକ୍ତ କରିବାପାଇଁ ସେ ଆଦେଶ ଦେଇଥିଲେ । ପରଦିନ ମୋତେ ଓ ମୋ ସହିତ ଆଉ ଦଶବାରଜଣ ବନ୍ଦୀଙ୍କୁ ଭଦ୍ରକ ଜେଲ୍‌ରୁ ବାଲେଶ୍ୱର ଜେଲ୍‌କୁ ସ୍ଥାନାନ୍ତରିତ କରାଯାଇଥିଲା । ଆମ ସମସ୍ତଙ୍କୁ ହାତକଡ଼ି ଦେଇ, ଦଉଡ଼ିରେ ବାନ୍ଧି ଚଲେଇ ଚଲେଇ ଭଦ୍ରକ ରେଲଷ୍ଟେସନ୍‌କୁ ନିଆଯାଇ ସେଠାରୁ ଟ୍ରେନ୍‌ଯୋଗେ ବାଲେଶ୍ୱର ନିଆଯାଇଥିଲା । ଗଲାବେଳେ ବାଟରେ ଆମେମାନେ ନାନାପ୍ରକାର ବିପ୍ଳବାତ୍ମକ ଧ୍ୱନି ଦେଇଦେଇ ଯାଉଥିଲୁ । ପ୍ରତ୍ୟେକ ଷ୍ଟେସନ୍‌ରେ ଗାଡ଼ି ରହିବାକ୍ଷଣି ଆମକୁ ଦେଖିବାପାଇଁ ଲୋକମାନେ ଜମାହୋଇଯାଉଥିଲେ । ଆମେ ସନ୍ଧ୍ୟାବେଳେ ବାଲେଶ୍ୱର ଜେଲ୍‌ରେ ପହଞ୍ଚିଲୁ । ଜେଲ୍ ଅଫିସ୍‌ରେ ଆମ ଜିନିଷପତ୍ର ଓ କାଗଜପତ୍ର ଯାଞ୍ଚ କରିବାରେ କିଛି ସମୟ ଗଡ଼ିଗଲା । ତା'ପରେ ଆମମାନଙ୍କୁ

ଜେଲ୍‌ରେ ରନ୍ଧାହୋଇଥିବା ଖାଦ୍ୟ ଖାଇବାକୁ ଦେଇ ରାତିରେ ବିଭିନ୍ନ ୱାର୍ଡ଼ରେ ଭର୍ତ୍ତିକରି ରଖାଗଲା । ବାଲେଶ୍ୱର ଜେଲ୍‌ରେ ସେତେବେଳେ ଜେଲର୍ ଥା'ନ୍ତି କୃପାସିନ୍ଧୁ ପଣ୍ଡା ଓ ସୁପରିଟେଣ୍ଡେଣ୍ଟ ଥା'ନ୍ତି ଡାକ୍ତର ସୁରେନ୍ଦ୍ରନାଥ ଆଚାର୍ଯ୍ୟ ।

## ବାଲେଶ୍ୱର ଜେଲ୍ ଜୀବନର ସ୍ମୃତି

ମୁଁ ବାଲେଶ୍ୱର ଜେଲ୍‌ରେ ପହଞ୍ଚିଲାବେଳକୁ ଜେଲ୍‌ଟି ପ୍ରାୟ ଭରପୂର୍ ହୋଇଥାଏ ରାଜନୈତିକ ବନ୍ଦୀମାନଙ୍କଦ୍ୱାରା । ବାଲେଶ୍ୱର ଜିଲ୍ଲାର ବହୁ ବିଶିଷ୍ଟ କଂଗ୍ରେସ ନେତା ଓ କର୍ମୀ ଗିରଫ ହୋଇ ସେହି ଜେଲ୍‌ରେ ଥାଆନ୍ତି । ସେମାନଙ୍କ ଭିତରୁ କେତେକ ଅଟକବନ୍ଦୀ ଥିଲେ । ନନ୍ଦକିଶୋର ଦାସ, ଜଗନ୍ନାଥ ଦାସ, ଦ୍ୱାରକାନାଥ ଦାସ, ସର୍ଦ୍ଦାର ସୁରେନ୍ଦ୍ରନାଥ ଦାସ, କରୁଣାକର ପାଣିଗ୍ରାହୀ, ନୀଳାମ୍ବର ଦାସ, ରବୀନ୍ଦ୍ର ମୋହନ ଦାସ, ଜ୍ୱାଳାପ୍ରସାଦ ସରୋଗୀ, ଭୈରବଚରଣ ମହାପାତ୍ର ଓ ଗୌରମୋହନ ଦାସ ପ୍ରଭୃତି ବିଶିଷ୍ଟ ବ୍ୟକ୍ତିମାନେ ରାଜନୈତିକ ଅଟକବନ୍ଦୀ ହିସାବରେ ଉଚ୍ଚଶ୍ରେଣୀଭୁକ୍ତ ହୋଇ ଗୋଟିଏ ୱାର୍ଡ଼ରେ ରହୁଥିଲେ । ଏକୁଟିଆ ମୁଁ ଏକବର୍ଷ ଜେଲ୍‌ଦଣ୍ଡ ସଜା ପାଇଥାଏ । କିନ୍ତୁ ରାୟରେ ମୋତେ ଉଚ୍ଚଶ୍ରେଣୀଭୁକ୍ତ କରାହୋଇଥିବାରୁ ସେମାନେ ରହୁଥିବା ୱାର୍ଡ଼ରେ ମୁଁ ରହୁଥାଏ ।

ଦୀର୍ଘକାଳ ଜେଲ୍ ଜୀବନ ଯାପନ କରିବାର ଏ ହେଲା ମୋର ପ୍ରଥମ ଅଭିଜ୍ଞତା । ଏହା ପୂର୍ବରୁ ଭଦ୍ରକ ଓ କଟକରେ ଚାରି ପାଞ୍ଚଥର ବନ୍ଦୀ ହୋଇ ଜେଲ୍ ଯାଇଥିଲି । ମାତ୍ର ସବୁଥର ଖୁବ୍ ଅଳ୍ପ ସମୟ ଜେଲ୍‌ରେ ରହିବାକୁ ପଡ଼ିଥାଏ । ପ୍ରକୃତରେ ଜେଲ ଜୀବନ କ'ଣ ତାହା ବାଲେଶ୍ୱର ଜେଲ୍‌ରେ ଅଙ୍ଗେ ନିଭେଇଲି । ବର୍ଷେ କାଳ, ଗୋଟିଏ ସ୍ଥାନରେ, ଚତୁର୍ଦ୍ଦିଗରେ ଉଚ୍ଚ ପାଚେରିଘେରା ଆବଦ୍ଧ ପରିବେଶ ଭିତରେ କିପରି ଦିନ କାଟିବି ତାହା ଭାବିଲାକ୍ଷଣି ଦୀର୍ଘନିଶ୍ୱାସ ଓ ହତାଶଭାବ ଆସିଥାଏ । ଜେଲ୍ ଜୀବନ ଗୋଟିଏ ପ୍ରକାର ବିଚିତ୍ର ଜୀବନ । ବାହାର ଦୁନିଆରୁ ବିଚ୍ଛିନ୍ନହୋଇ ଗୋଟିଏ ସଂକୀର୍ଣ୍ଣ ସ୍ଥାନରେ ଆବଦ୍ଧ ହୋଇ ରହିଲେ ପରିବେଶର ପ୍ରଭାବରେ ଅନେକ ସମୟରେ ଛୋଟ ଛୋଟ ସଂକୀର୍ଣ୍ଣ କଥା ଓ ଚିନ୍ତାଦ୍ୱାରା ଉଦାର ମନ ମଧ ଭାରାକ୍ରାନ୍ତ ହୋଇପଡ଼େ । ବହୁ ଲୋକଙ୍କ ସାଙ୍ଗରେ ସ୍ନେହ ଶ୍ରଦ୍ଧାରେ ଚଳିବାକୁ ହେଲେ ସେଥିପାଇଁ କେତେ ପ୍ରକାର ସାଧନା ଓ ସଂଯମ ଆବଶ୍ୟକ । ସେ ପ୍ରକାର ଆଚରଣ ଅଭାବରୁ ଅନେକ ସମୟରେ ମନୋମାଳିନ୍ୟ ଓ ଅଶାନ୍ତି ମଧ ଘଟେ । ସେଥିପାଇଁ ଜେଲ୍‌ଖାନାକୁ ଭୂତଖାନା ମଧ କହନ୍ତି । କ୍ରମେ ମୋର ଅନୁଭୂତି ହେଲା ସତେ ଅବା ଜେଲ୍‌ଖାନାଟା ମୋଟାମୋଟି ସଇତାନ୍, ପୈଶାଚିକ, ଦୁର୍ଦ୍ଧାନ୍ତ, ହିଂସ୍ର ବ୍ୟକ୍ତିମାନଙ୍କର ବସାଘର ! ରାଜନୈତିକ ବନ୍ଦୀ ସେଠାରେ ରହିଲେ ମଧ ସେମାନେ ପ୍ରାୟ ଏହି ପ୍ରବୃତ୍ତିର ଲୋକଙ୍କ ସହ ମିଶି ରହନ୍ତି । ଏହି ସଇତାନ ମନୋବୃତ୍ତିର ନିରାକରଣପାଇଁ ଜେଲ୍‌ଖାନାରେ ଧର୍ମ ଶିକ୍ଷା ଦେବାର ବ୍ୟବସ୍ଥା ଥାଏ । ଧର୍ମଜ୍ଞାନସମ୍ପନ୍ନ ପଣ୍ଡିତମାନଙ୍କୁ ସପ୍ତାହର ଗୋଟିଏ ନିର୍ଦ୍ଦିଷ୍ଟ ଦିନରେ ଅଣାଯାଇ ଧର୍ମ ଓ ଶୁଦ୍ଧ ଆଚରଣ ବିଷୟରେ କଏଦୀମାନଙ୍କୁ ଶିକ୍ଷାଦେବାର ବ୍ୟବସ୍ଥା କରାଯାଇଥାଏ । ମୁଁ ବାଲେଶ୍ୱର ଜେଲ୍‌ରେ ଥିଲାବେଳେ ବାଲେଶ୍ୱରର ପ୍ରସିଦ୍ଧ ଗଙ୍ଗାଧର ପଣ୍ଡିତ ଜେଲ୍‌କୁ ଆସି କଏଦୀମାନଙ୍କୁ ଧର୍ମ ଶିକ୍ଷା ଦେଇଥିଲେ । ଜେଲ୍‌ଖାନା ଭିତରେ ସଂକୀର୍ଣ୍ଣତା ମନକୁ ଏପରି ଘାରେ ଯେ ସାମାନ୍ୟ ଟିକିଏ କ୍ଷୀର, ଚିନି, ଚା, ଲୁଗାଧୁଆ ସାବୁନ୍ ବା ତେଲପାଇଁ ସମୟେ ସମୟେ ନିଜ ନିଜ ଭିତରେ କନ୍ଦଳ ସୃଷ୍ଟି ହେବାର ଦେଖାଯାଏ ।'

ଆମେ ଉଚ୍ଚଶ୍ରେଣୀର ବନ୍ଦୀମାନେ ଗୋଟିଏ ୱାର୍ଡ଼ରେ ରହୁଥାଉ । ଖାଇବା ଓ ବାହାରକୁ ଚିଠି ଲେଖା ପ୍ରଭୃତିରେ ଆମ୍ଭମାନଙ୍କର କେତେକ ସୁବିଧା ଥାଏ । ଶୋଇବାପାଇଁ ସେଭଳି ସ୍ୱତନ୍ତ୍ର ବ୍ୟବସ୍ଥା କିଛି ନଥାଏ । ସେହି ସାଧାରଣ କଏଦୀଙ୍କପାଇଁ ଇଟା ସିମେଣ୍ଟରେ ବନ୍ଧାହୋଇଥିବା ବେଞ୍ଚ ଉପରେ ଆମକୁ ଶୋଇବାକୁପଡ଼େ । ଘରୁ ବିଛଣା ନେଇ ବ୍ୟବହାର କରିବାର ସୁବିଧା ଦିଆହୋଇଥାଏ ।

କେତେଖଣ୍ଡ ଅଧିକା କମ୍ବଳ ଅବଶ୍ୟ ଜେଲ୍‌ରୁ ମିଳେ । ସରୁ ଚାଉଳ, ହରଡ଼ଡାଲି, ସପ୍ତାହରେ ଦୁଇ ତିନିଥର ମାଛମାଂସ ଖାଇବାକୁ ଦିଆଯାଏ । ପାଞ୍ଚ ଛଅ ଜଣ ପିଲା ବାଲେଶ୍ୱର ସହରରେ ଆଇନ ଅମାନ୍ୟ କରିବା ପରେ ସେହି ଜେଲରେ ବନ୍ଦୀ ଥାଆନ୍ତି । ସେମାନଙ୍କ ଆଗରେ ଏକୁଟିଆ ଭଲ ଖାଦ୍ୟ ଖାଇବାକୁ ମୋତେ ଆଦୌ ଭଲଲାଗେନାହିଁ । ତେଣୁ ତାଙ୍କ ଖାଦ୍ୟ ଏବଂ ମୋ ଖାଦ୍ୟ ମିଶାମିଶି କରି ଆମେ ଖାଇବାର ବ୍ୟବସ୍ଥା କରୁଁ । ସେହିଭଳି ଚା, ଜଳଖିଆ, କ୍ଷୀର ମଧ ସେମାନେ ମୋ ସହିତ ବସି ଖାଆନ୍ତି । ଜେଲ୍‌ରେ କୃପାସିନ୍ଧୁ ପଣ୍ଡାଙ୍କ ପୁଅ ବିଶ୍ୱନାଥ ରେଭେନ୍‌ସା କଲେଜରେ ମୋର ଜଣେ ଘନିଷ୍ଠ ବନ୍ଧୁ ଥିଲେ । ସେ ସେହି ବର୍ଷ ବି.ଏ. ପରୀକ୍ଷା ଦେଇଥାଆନ୍ତି । ତାଙ୍କର ଗଣିତ ଖାତା ମୋର ଜଣେ ଘନିଷ୍ଠ ଅଧ୍ୟାପକ ବନ୍ଧୁଙ୍କ ପାଖରେ ପଡ଼ିଥାଏ । ବିଶ୍ୱନାଥ ଗଣିତ ପରୀକ୍ଷାରେ ଭଲ କରି ନଥାଏ । ତେଣୁ ଜେଲ୍‌ରବାବୁ ପରୀକ୍ଷକଙ୍କ ସନ୍ଧାନ ଜାଣିବା ପରେ ତାଙ୍କ ପାଖକୁ ଚିଠି ଦେଇ ତାଙ୍କ ପୁଅକୁ ଗଣିତରେ ପାସ୍ କରିବାରେ ସାହାଯ୍ୟ କରିବାପାଇଁ ମୋତେ ଅନୁରୋଧ କରିଥିଲେ । ପରୀକ୍ଷକ ଥିଲେ ଉଦାର ଚରିତ୍ରର । ବିଶ୍ୱନାଥ ମୋଠାରୁ ଚିଠିଟିଏ ନେଇ ମୋର ସେ ଅଧ୍ୟାପକ ବନ୍ଧୁଙ୍କୁ ଦେଖାକରିଥିଲା । ଅଙ୍କରେ ସେ ପାସ୍ କରିଥିବାର ଜାଣିଲା । ଏଥିପାଇଁ ଜେଲରବାବୁଙ୍କର ମୋ ଉପରେ ଭଲ ଧାରଣା ଥାଏ । ପିଲା ବନ୍ଦୀମାନଙ୍କୁ ମୋ ଖାଦ୍ୟରୁ ମୁଁ କିଛି କିଛି ଖୁଆଉଛି ବୋଲି ସେ ଜାଣିଥିଲେ । ତାଙ୍କୁ ମୁଁ ଏ କଥା କହିବାରୁ ସେ ମୋତେ ଟିକିଏ ଅଧିକା କ୍ଷୀର ଓ ଚିନି ପ୍ରଭୃତି ଦେବାପାଇଁ ଜେଲ୍ ଡାକ୍ତରଙ୍କୁ କହିଥିଲେ । ଏହି ସାମାନ୍ୟ କଥାଟା କେତେକଙ୍କ ଆଖିରେ ଗଲାନାହିଁ । ସବୁଠାରେ ଉଚ୍ଚ ନୀଚ ଭେଦଜ୍ଞାନ ଦେଖି ମୁଁ ବ୍ୟଥିତ ହେଉଥାଏ । ଏଭଳି ସାମାନ୍ୟ କଥା ମଧ ପରସ୍ପର ମଧ୍ୟରେ ମନୋମାଳିନ୍ୟର କାରଣ ହୋଇଯାଇଥାଏ ।

## ଫାଶୀଖୁଣ୍ଟ ପାଖରେ ପ୍ରଣାମ

ଆଉ ଗୋଟିଏ ହୃଦୟସ୍ପର୍ଶୀ ଘଟଣାର ସ୍ମୃତି ସମ୍ବନ୍ଧରେ କହିବାକୁ ଇଚ୍ଛା ହେଉଛି । ବାଲେଶ୍ୱର ଜେଲ୍‌ଖାନାରେ ପହଞ୍ଚି ମୁଁ ଦେଖିବାକୁ ଗଲି ଫାଶୀଦେବା ସ୍ଥାନ । ଜେଲ୍‌ଖାନାର ଗୋଟିଏ କୋଣରେ ପାଚେରି ପାଖରେ ଫାଶୀଖୁଣ୍ଟ । ତଳେ କାଠପଟା । ଉପରେ ଯେଉଁଠାରେ ଫାଶୀ ଦଉଡ଼ି ଝୁଲାଯାଏ ତାହା ଗୋଟିଏ ଗୋଲାକାର ଶଗଡ଼ି । କାଠଫ୍ରେମ୍ ଭିତରେ ସେଇଟା ଖଞ୍ଜାହୋଇଥିବାର ଦେଖିଲି । ସେହିଠାରେ ୧୯୧୫ ମସିହାରେ ବିପ୍ଳବୀ ଯତୀନ୍ଦ୍ରନାଥ ମୁଖାର୍ଜୀ (ବାଘା ଯତୀନ୍)ଙ୍କ ସହକର୍ମୀ ନରେନ୍ଦ୍ର ଚନ୍ଦ୍ର ଦାସଗୁପ୍ତ ଓ ମନୋରଞ୍ଜନ ସେନଗୁପ୍ତଙ୍କୁ ଫାଶୀ ଦିଆହୋଇଥିଲା । ଦେଶମାତୃକାପାଇଁ ସେମାନଙ୍କର ସେହି ଆତ୍ମବଳିର ରୋମାଞ୍ଚକର କାହାଣୀ ମୋ ମନକୁ ବିଶେଷଭାବରେ ଆଲୋଡ଼ିତ କରିଥିଲା । ମନେପଡ଼ିଲା ମୟୂରଭଞ୍ଜ ରାଜ୍ୟର କାପ୍ତିପଦାର ମନୀନ୍ଦ୍ର ଚକ୍ରବର୍ତ୍ତୀଙ୍କର ଗୃହରେ ବାଘା ଯତୀନ୍ ଓ ତାଙ୍କର ଏହି ବନ୍ଧୁମାନଙ୍କର ରହଣି ଏବଂ ବାଲେଶ୍ୱରଠାରୁ ଅଳ୍ପ ଦୂରରେ ଚଷାଖଣ୍ଡ ଗ୍ରାମ ପୋଖରୀ କୂଳରେ କଲେକ୍ଟର, ଏସ୍.ପି. ଓ ପୁଲିସ ଫୌଜ ସାଙ୍ଗରେ ସେମାନଙ୍କର ଲଢ଼େଇ । ଚଷାଖଣ୍ଡ ଲଢ଼େଇରେ ଚିତ୍ତପ୍ରିୟ ଗୁଳିରେ ଆହତ ହୋଇ ସେହି ସ୍ଥାନରେ ପ୍ରାଣ ହରାଇଥିଲେ । ବାଘା ଯତୀନ୍ ଗୁଳିରେ ଆହତ ହୋଇ ତାହା ପରଦିନ ସେପ୍‌ଟେମ୍ବର ଦଶ ତାରିଖରେ ବାଲେଶ୍ୱର ବାରବାଟୀ ଡ଼ାକ୍ତରଖାନାରେ ପ୍ରାଣ ହରାଇଥିଲେ । ବାଲେଶ୍ୱର ଜେଲ୍‌ରେ ସେହି ଫାଶୀଦିଆ ସ୍ଥାନକୁ ମୁଁ ମୋର ପବିତ୍ର ସ୍ଥାନ ବୋଲି ମନେକରୁଥିଲି । ମୋର ଜେଲ୍ ରହଣି ସମୟରେ ବହୁବାର ଯାଇ ସେହି ସ୍ଥାନରେ ନୀରବରେ ଛିଡ଼ାହୋଇ ପ୍ରଣାମକରେ । ଅତୀତର ଏହି ହୃଦୟସ୍ପର୍ଶୀ ସ୍ମୃତିକୁ ମୋ ମନରେ ପୁନରାବୃତ୍ତି କରୁଥାଏ, ଆଉ ମଧ ପୁନରାବୃତ୍ତି କରୁଥାଏ ଉତ୍କଳରେ କଂଗ୍ରେସର ପ୍ରାଣପ୍ରତିଷ୍ଠାତା ଉତ୍କଳମଣିଙ୍କର ସେହି ଅମର ଉଦ୍‌ବୋଧନୀ ଗାନ : ''ପୁଣ୍ୟ ଜନ୍ମଭୂମି ପୁଣ୍ୟ ଦେବାଳୟ / ଉଦ୍ଧରିବା ଲାଗି କଲେ ତନୁ କ୍ଷୟ / ମାନବ ଜୀବନ ହୁଅଇ ସଫଳ / ଏ ମହା ଦୀକ୍ଷା କି ବୁଝିବ ଉତ୍କଳ ?''

ମନୀନ୍ଦ୍ର ଚକ୍ରବର୍ତ୍ତୀ ମଧ୍ୟ ସ୍ୱାଧୀନତା ସଂଗ୍ରାମବେଳେ ୧୯୧୫ ମସିହାରେ ଏମାନଙ୍କୁ ଘରେ ଆଶ୍ରୟ ଦେଇ ବହୁତ କ୍ଷତିଗ୍ରସ୍ତ ହୋଇଥିଲେ । ମୁଁ ମନ୍ତ୍ରୀ ଥିଲାବେଳେ ସେ ତାଙ୍କ କାପ୍ତିପଦା ବସାଘରେ ଭୀଷଣ ରୋଗାକ୍ରାନ୍ତ ଥିବାର ଖବର ପାଇଥିଲି । କାପ୍ତିପଦାରୁ ତାଙ୍କୁ ଅଣାଇ କଟକ ବଡ଼ଡାକ୍ତରଖାନା ନର୍ସିଂହୋମ୍‌ରେ ରଖି ସରକାରୀ ଖର୍ଚ୍ଚରେ ତାଙ୍କର ଚିକିତ୍ସା ଓ ଶୁଶ୍ରୂଷାର ବ୍ୟବସ୍ଥା କରାଇ କିଞ୍ଚିତ୍ ମାନସିକ ଶାନ୍ତି ଲାଭ କରିଥିଲି ।

## ବାଲେଶ୍ୱରର ବୀରଭୂଇଁ : ଇରମ୍, ଲୁଣିଆ, ତୁଡ଼ିଗଡ଼ିଆ

ବାଲେଶ୍ୱର ଜେଲ୍‌ରେ ଆମ ବନ୍ଦୀ ଜୀବନର ପ୍ରଥମ ଦୁଇ ମାସ ଭିତରେ ଆମ୍ଭେମାନେ ବଡ଼ ଉଦ୍‌ବେଗରେ ଦିନ ଯାପନ କରିଥିଲୁ । ବିଭିନ୍ନ ସୂତ୍ରରୁ ଖବର ଆସି ପହଞ୍ଚେ କେଉଁଠାରେ ଲୋକଙ୍କ ଉପରେ ଲାଠି ପାହାର ହୋଇଛି ତ କେଉଁଠାରେ ଗୁଳିମାଡ଼ ହୋଇଛି । ତା'ଛଡ଼ା ନାନାପ୍ରକାର ଅତ୍ୟାଚାରର କାହାଣୀ ମଧ୍ୟ ଆମେ ଜେଲ୍‌ରେ ଶୁଣୁ । ବାଲେଶ୍ୱର ସହରର ଛାତ୍ରମାନେ ଦଳଦଳ ହୋଇ ବୁଲି ବିଭିନ୍ନ ସ୍ଥାନରେ ସରକାରୀ କାର୍ଯ୍ୟରେ ବାଧା ଦେଉଥିବାର ଖବର ମଧ୍ୟ ଆସି ପହଞ୍ଚେ । ପିଲାମାନେ ପୋଷ୍ଟଅଫିସ୍ ଓ କଚେରୀରେ ପଶି ସରକାରୀ କାଗଜପତ୍ର ଚିରାଚିରି କରି ଗଣ-ଉତ୍ତେଜନା ସୃଷ୍ଟି କରୁଥିବାର ଖବର ମଧ୍ୟ ଆସି ପହଞ୍ଚେ । ଏ ପ୍ରକାର କାର୍ଯ୍ୟରେ ପିଲାମାନଙ୍କ ମଧ୍ୟରୁ ପୀତାମ୍ବର ପାଣି, ତ୍ରିଲୋଚନ ସେନାପତି, ବଂଶୀଧର ଜେନା, ନିରଞ୍ଜନ ଜେନା ଓ ନୀଳକଣ୍ଠ ଦାସ ପ୍ରଭୃତି ପିଲାମାନେ ଗିରଫ ହୋଇ ବାଲେଶ୍ୱର ଜେଲ୍‌କୁ ଅଣାହୋଇଥିଲେ । ଛାତ୍ରମାନେ ଅନ୍ୟାନ୍ୟ ପିଲାଙ୍କୁ ସାଙ୍ଗରେ ଧରି ବିଭିନ୍ନ ସ୍ଥାନରେ ବୁଲି କିପରି ଅଗଷ୍ଟ ବିପ୍ଳବ ସମ୍ବନ୍ଧରେ ପ୍ରଚାର କାର୍ଯ୍ୟ କରୁଥିଲେ ତାହା ଆମେ ସେମାନଙ୍କଠାରୁ ଶୁଣିବାକୁ ପାଇଲୁ । ବାସୁଦେବପୁର ଥାନାର ଇରମ୍, ଧାମନଗର ଥାନାର ଲୁଣିଆ ଓ ଖଇରା ଥାନାର ତୁଡ଼ିଗଡ଼ିଆ ପ୍ରଭୃତି ସ୍ଥାନରେ ନିର୍ମମ ଗୁଳିକାଣ୍ଡର କାହାଣୀ ମଧ୍ୟ ଆସି ଜେଲ୍ ଭିତରେ ଆମ୍ଭମାନଙ୍କ ପାଖରେ ପହଞ୍ଚିଲା ।

ଜେଲ୍‌ଖାନାରେ ନିର୍ମମ ବେତ୍ରାଘାତ ସମ୍ବନ୍ଧରେ ମୋର ଗୋଟିଏ କଥା ଏଠାରେ ମନେପଡ଼େ । ପୀତାମ୍ବର ପାଣିଙ୍କ ସହିତ ଗୋଲକ ଓ ମାଗୁଣି ନାମକ ଆଉ ଦୁଇଜଣ ପିଲା ବାଲେଶ୍ୱର ସଦର ମହକୁମା ଏସ୍.ଡି.ଓ. ନଟବର ସାହୁଙ୍କ କୋର୍ଟରେ ପ୍ରବେଶ କରି ସରକାରୀ କାଗଜପତ୍ର ପୋଡ଼ି ଦେଇଥିଲେ । ତେଣୁ ସେମାନଙ୍କୁ ଜେଲ୍‌ଦଣ୍ଡ ହୋଇଥାଏ ଏବଂ ତା' ଛଡ଼ା ପ୍ରତ୍ୟେକଙ୍କୁ ପନ୍ଦର ବେତ କରି ମାଡ଼ ଦେବାକୁ ଆଦେଶ ହୋଇଥାଏ । ଜେଲ୍‌ଖାନାରେ ଏହି ବେତମାଡ଼ ଦଣ୍ଡ କାର୍ଯ୍ୟକାରୀ ହୁଏ । ବେତମାଡ଼ ଦେବାପାଇଁ ଦାମ ଲେଙ୍କା ନାମକ ଜଣେ କଏଦୀଙ୍କୁ ତାଲିମ୍ ଦିଆଯାଇଥିଲା । ସେଥିପାଇଁ ଜେଲ୍‌ରେ ପଟାହୋଇ ସ୍ୱତନ୍ତ୍ର ବେତ ଥାଏ ଏବଂ ପିଚା ଦେଖାଇ ଛିଡ଼ାହେବାପାଇଁ ସ୍ୱତନ୍ତ୍ର କାଠଗଡ଼ା ଥାଏ । ବେତମାଡ଼ ଖଲେ ସେ ବାବଦକୁ କଏଦୀ ତା'ର ଜେଲ୍ ଦଣ୍ଡରୁ କିଛି ଛାଡ଼ପାଏ ।

ଯେଉଁ ଦିନ ବେତମାଡ଼ ଆଦେଶ କାର୍ଯ୍ୟକାରୀ ହେବା କଥା ସେଦିନ ପ୍ରଥମେ ଗୋଲକ ଉପରେ ପ୍ରହାର ହେଲା । ପ୍ରଥମ ପାହାରକରେହିଁ ତା'ର ପିଚା ଫାଟି ରକ୍ତ ବୋହିଗଲା । ସେ ବେହୋସ୍ ହୋଇପଡ଼ିବାରୁ ତାକୁ ଜେଲ୍ ଡାକ୍ତରଖାନାକୁ ବୋହିନିଆଯାଇଥିଲା । ତା'ପରେ ଆମେ ସମସ୍ତେ ଏଭଳି ବେତମାଡ଼ର ଦାରୁଣ ଯନ୍ତ୍ରଣା କଥା ଜାଣିଲୁ । ସାଙ୍ଗେ ସାଙ୍ଗେ ମୁଁ ଯାଇ ଜେଲ୍‌ଦାରୋଗାଙ୍କ ପାଖରେ ପହଞ୍ଚି ଏ ପ୍ରକାର ନୃଶଂସ ଦଣ୍ଡ କିପରି କାର୍ଯ୍ୟକାରୀ ନହେବ ତାଙ୍କ ସହିତ ସେ ବିଷୟରେ ପରାମର୍ଶ କରିଥିଲି । ବେତମାଡ଼ କରିବାପାଇଁ ନିଯୁକ୍ତ କଏଦୀକୁ ହାତକରିନେଲେ ଆମର ଉଦ୍ଦେଶ୍ୟ ସାଧିତ ହେବ ବୋଲି ଜେଲ୍‌ର ବାବୁ ମୋତେ ଇସାରା ଦେଇଥିଲେ । ମୁଁ କଏଦୀ ଦାମ ଲେଙ୍କା ସହିତ କଥାବାର୍ତ୍ତା କରି ତାକୁ ବୁଝାଇଦେଇଥିଲି ଯେ ବେତମାଡ ସେ ଜୋର୍‌ରେ କଲେ ଅବା ଆସ୍ତେ କଲେ କ'ଣ ଯାଏ ଆସେ, ତା'ର ମିଆଦରୁ ଯାହା ଛାଡ଼ ପାଇବା କଥା ସେ ନିଶ୍ଚୟ ପାଇବ । ତେଣୁ ଆସ୍ତେ

ମାରିବାପାଇଁ ତାକୁ ବୁଝାଇଲି । ତା'ପରେ ବେତମାଡ଼ କଲାବେଳେ ସେ ଉପରଠାଉରିଆ ଭାବରେ ମାରିଥିଲା ଏବଂ ଅନ୍ୟ ପିଲାମାନେ ବେତମାଡ଼ର ଉଗ୍ର ଯନ୍ତ୍ରଣାରୁ ରକ୍ଷାପାଇଥିଲେ । ଏଥିପାଇଁ ମୋର ସ୍ମୃତିପଟରେ ସ୍ୱାଧୀନତା ସଂଗ୍ରାମୀମାନଙ୍କ ପ୍ରତି କଏଦୀ ଦାମ ଲେଙ୍କାଙ୍କ ଭଳି ବ୍ୟକ୍ତିଙ୍କ ସହାନୁଭୂତି ମଧ୍ୟ ଅଲିଭା ରହିଯାଇଛି ।

ଇରମ୍ ଗୁଳିକାଣ୍ଡ ହୋଇଥିଲା ୧୯୪୨ ମସିହା ସେପ୍ଟେମ୍ବର ଅଣତିରିଶ ତାରିଖରେ । ଏ ଗୁଳିକାଣ୍ଡ ଅତ୍ୟନ୍ତ ଭୟାବହ ଓ ନିର୍ମମ । କେବଳ ଗୁଳିହୋଇଥିବା ସ୍ଥାନରେ ଅଣତିରିଶ ଜଣ ଲୋକ ମରି ଟଳିପଡ଼ିଥିଲେ । ପ୍ରାୟ ଦେଢ଼ଶହ ଲୋକ କ୍ଷତବିକ୍ଷତ ହୋଇଥିଲେ । ଏହି ଗୁଳିକାଣ୍ଡ ସମ୍ବନ୍ଧରେ ବିଶଦ ବିବରଣୀ ବାସୁଦେବପୁର ଅଞ୍ଚଳରୁ ଗିରଫ ହୋଇ ବାଲେଶ୍ୱର ଜେଲ୍‌ରେ ପହଞ୍ଚିଥିବା ନିଶାକର ଦଳେଇ, ଭାସ୍କର ପରିଡ଼ା ଓ ବାଞ୍ଛାନିଧି ଅଗସ୍ତି ପ୍ରଭୃତି କଂଗ୍ରେସ କର୍ମୀଙ୍କଠାରୁ ଆମେ ଜାଣିବାକୁ ପାଇଥିଲୁ । ବାଲେଶ୍ୱର ଜିଲ୍ଲାର ବିଭିନ୍ନ ସ୍ଥାନରେ, ବିଶେଷକରି ଏଇ ବାସୁଦେବପୁର ଅଞ୍ଚଳରେ ଗାନ୍ଧିଜୀଙ୍କର ଅଗଷ୍ଟ ଆଠ ତାରିଖ ଦିନର 'କର ଅବା ମର' ଆହ୍ୱାନ ଅତି ପ୍ରତ୍ୟକ୍ଷ ଭାବରେ ପ୍ରତିଧ୍ୱନିତ ହୋଇଥିଲା । ସେଠାକାର ଲୋକେ କଂଗ୍ରେସ କର୍ମୀ କମଳା ପ୍ରସାଦ କର, ଗୌରାଙ୍ଗ ଚନ୍ଦ୍ର ମହାନ୍ତି ଓ ଅନିରୁଦ୍ଧ ମହାନ୍ତିଙ୍କ ନେତୃତ୍ୱରେ ପରିଚାଳିତ ହୋଇ ସରକାରଙ୍କ ସହିତ ସବୁମତେ ଅସହଯୋଗ ଆରମ୍ଭ କରିଦେଇଥିଲେ । ସ୍ଥାନେ ସ୍ଥାନେ ସଭାସମିତି କରି ସରକାରଙ୍କୁ କର ଓ ଟିକସ ନଦେବାପାଇଁ ଏବଂ ଯୁଦ୍ଧସମ୍ବନ୍ଧୀୟ ସବୁ କାର୍ଯ୍ୟକୁ ପୂରାପୂରି ବିରୋଧ କରିବାପାଇଁ ଲୋକଙ୍କୁ ପ୍ରବର୍ତ୍ତାଉଥିଲେ । ସେତେବେଳେ ଧାନ ଚାଉଳ ଖୁବ୍ ଅଭାବ ପଡ଼ିଥାଏ ଏବଂ ଦର ମଧ୍ୟ ବଢ଼ିଥାଏ । ସୈନ୍ୟଙ୍କ ଖୋରାକପାଇଁ ଧାନଚାଉଳ ସରକାରଙ୍କୁ ନଦେଇ ସେହି ଅଞ୍ଚଳରେ ମହଜୁଦ୍ କରି ରଖି ସାଧାରଣ ଲୋକଙ୍କୁ ବିକିବାପାଇଁ ବଡ଼ ବଡ଼ ଚାଷୀ ଓ ମହାଜନମାନଙ୍କୁ ସେମାନେ ପ୍ରବର୍ତ୍ତାଉଥିଲେ । ଏଣେ ସରକାରଙ୍କ ପୃଷ୍ଠପୋଷକତାରେ ନ୍ୟାସନାଲ୍ ୱାର୍ ଫ୍ରଣ୍ଟ (National War Front) ଗଢ଼ାଯାଇ ରାଜ୍ୟର କେତେକ ପ୍ରଭାବଶାଳୀ ଲୋକଙ୍କୁ ଯୁଦ୍ଧ ଉଦ୍ୟମ ସପକ୍ଷରେ ଲଗାଯାଇଥାଏ । ବିଭିନ୍ନ ଅଞ୍ଚଳରେ ବିଶେଷତଃ ରାଜା, ଜମିଦାର, ମକଦ୍ଦମ ଶ୍ରେଣୀର ଲୋକେ ନିଜର ସ୍ୱାର୍ଥ ରକ୍ଷାପାଇଁ ଏହି ସଙ୍ଗଠନ ଜରିଆରେ ସରକାରଙ୍କୁ ସୁହାଇବାପାଇଁ କାମ କରୁଥାଆନ୍ତି । ଏହି ଫ୍ରଣ୍ଟ ପକ୍ଷରୁ କେତେକ ଲୋକଙ୍କୁ ନିଯୁକ୍ତ କରାଯାଇଥାଏ । ଗ୍ରାମାଞ୍ଚଳରୁ ଗଚ୍ଛିତ ଧାନଚାଉଳ ବାହାରକୁ ଚାଲାଣ କରିବା ବିରୁଦ୍ଧରେ ସ୍ୱାଧୀନତା ସଂଗ୍ରାମୀମାନଙ୍କ କାର୍ଯ୍ୟକଳାପ ସମ୍ପର୍କରେ ସେମାନେ ଓର ଉଣ୍ଡି ଖବର ଅନ୍ତର ଯୋଗାଇ ପୁଲିସ ଓ ସରକାରୀ ପକ୍ଷକୁ ସାହାଯ୍ୟ କରୁଥା'ନ୍ତି । ଇରମ୍‌ର ମୁକ୍ତିକାନ୍ତ ପାଢ଼ୀ ଓ ରାଧାକାନ୍ତ ପାଢ଼ୀ ବଡ଼ ଜମିଦାର । ତାଙ୍କର ମଧ୍ୟ ବହୁତ ଧାନ ଥିଲା । ଜମିଦାର ଆଶଙ୍କା କରିଥିଲେ ଯେ ଏହି କଂଗ୍ରେସ କର୍ମୀଙ୍କ ପ୍ରଚାରରେ ପ୍ରଭାବିତ ହୋଇ ବୋଧହୁଏ ତାଙ୍କ ଧାନ ଉପରେ ଲୋକଙ୍କର ଆଖି ପଡ଼ିବ । ତେଣୁ ପୁଲିସ ସାହାଯ୍ୟ ପାଇଁ ସେମାନେ ସରକାରୀ କର୍ତ୍ତୃପକ୍ଷଙ୍କୁ ପ୍ରଭାବିତ କରୁଥିଲେ । ଏହି ସମୟରେ ବାସୁଦେବପୁରରେ ଗୋଟିଏ ସମାନ୍ତରାଳ ସରକାର ଗଢ଼ିବାର ଉଦ୍ୟମ ଚାଲିଛି ବୋଲି ସ୍ଥାନୀୟ ପୁଲିସ ଉପରସ୍ତରକୁ ଖବର ଦେଇଥା'ନ୍ତି । ବିଭିନ୍ନ ସ୍ଥାନରେ ସଭାସମିତି ହେଉଥାଏ । ସରକାରଙ୍କ ବିରୁଦ୍ଧରେ ଅସହଯୋଗ କାର୍ଯ୍ୟକୁ ଆଗେଇନେବାପାଇଁ ଖୁବ୍ ଭଲ ଜନସହଯୋଗ ମିଳୁଥାଏ । ସେଠାକାର ବାୟୁମଣ୍ଡଳ ଏପରି ସରଗରମ ହୋଇ ରହୁଥାଏ ଯେ ସଭା ହେବ ବୋଲି କହିବାକ୍ଷଣି ଲୋକମାନେ ଆସି ବହୁସଂଖ୍ୟାରେ ରୁଣ୍ଡ ହୋଇଯାଉଥା'ନ୍ତି । ସେପ୍ଟେମ୍ବର ଅଠେଇଶି ତାରିଖ ଦିନ ପୁଲିସ ଡେପୁଟି ସୁପରିନ୍‌ଟେଣ୍ଡେଣ୍ଟ କେତେକ ସଶସ୍ତ୍ର ପୁଲିସଙ୍କ ସହ ଯାଇ ଇରମ୍ ପାଢ଼ୀଙ୍କର ଉଆସରେ ପହଞ୍ଚିଲେ । ମତଲବ ଥିଲା ସେଠାରେ ରହି ଆନ୍ଦୋଳନକୁ ନେତୃତ୍ୱ ଦେଉଥିବା ବ୍ୟକ୍ତିମାନଙ୍କୁ ଗିରଫ କରିବେ । ଏ ସମ୍ବାଦ ଲୋକମାନଙ୍କ ଭିତରେ ଯେତେବେଳେ ପ୍ରଚାରିତ ହୋଇଗଲା, ଏହାର ପ୍ରତିବାଦ ଓ ପ୍ରତିରୋଧ କରିବାପାଇଁ ପ୍ରାୟ ପାଞ୍ଚ ହଜାରଯାଏଁ ଲୋକ

ସନ୍ଧ୍ୟାବେଳେ ଇରମ୍ ମେଳଣ ପଡ଼ିଆରେ ଜମାହୋଇଗଲେ । ସେହି ସମୟରେ ସେଇ ବାଟଦେଇ କେତେଜଣ ଚଉକିଆ ପୁଲିସମାନଙ୍କର ବିଛଣାପତ୍ର ଧରି ଜମିଦାର ପାଢ଼ୀଙ୍କ ଉଆସ ଆଡ଼କୁ ଗାଲିଥା'ନ୍ତି । ଲୋକମାନେ ଜିନିଷପତ୍ର ନେଇ ଯାଉଥିବା ଚଉକିଆମାନଙ୍କୁ ସେହି ସଭା ପାଖରେ ଅଟକାଇଲେ । ପୁଲିସ ବିଛଣା ବୋଲି କେତେକ ଲୋକ ଟଣାଓଟରା କରି ତାକୁ ଚିରାଚିରି ମଧ କଲେ । ବିଛଣାପତ୍ର ଭିତରେ ଡେପୁଟି ସୁପରିନ୍‌ଟେଣ୍ଡେଣ୍ଟଙ୍କ ବିଛଣା ମଧ ଥିଲା । ଏ ସମ୍ବାଦ ଯେତେବେଳେ ଯାଇ ପାଢ଼ୀଘର ଉଆସରେ ପହଞ୍ଚିଲା, ସେମାନେ ଅତି ଉତ୍ତ୍ୟକ୍ତ ହୋଇଯାଇଥିଲେ । ସେହି ଡେପୁଟି ସୁପରିନ୍‌ଟେଣ୍ଡେଣ୍ଟ ଥିଲେ କୁଞ୍ଜବିହାରୀ ମହାନ୍ତି, ସେ ସଶସ୍ତ୍ର ପୁଲିସ ଦଳ ସହିତ ଆସି ସଭାସ୍ଥଳରେ ପହଞ୍ଚିଥିଲେ; ଉତ୍ତେଜିତ ହୋଇ ଲୋକମାନଙ୍କ ସହିତ କଥାବାର୍ତ୍ତା କରିଥିଲେ ଓ ତୁରନ୍ତ ସଭା ଭାଙ୍ଗି ଚାଲିଯିବାପାଇଁ କଡ଼ା ହୁକୁମ୍ ଦେଇଥିଲେ । ଲୋକମାନେ ଏ ପ୍ରକାର ଆଦେଶର ପ୍ରତିବାଦ କରିବାରୁ ଗୁଳି ଚଳାଇବାପାଇଁ ସେ ଆଦେଶ ଦେଇଥିଲେ । ଏ ବିଷୟରେ ବିଶଦ ବିବରଣୀ ତ ଖବରକାଗଜରେ ବାହାରିନଥିଲା; କିନ୍ତୁ ଜନମୁଖରେ ଯେତିକି ପ୍ରଚାରିତ ହୋଇଥିଲା ସେଥିରେ ଚାରିଆଡ଼େ ଚହଳ ପଡ଼ିଯାଇଥିଲା । ସରକାର ରେଭିନ୍ୟୁ ଡିଭିଜନାଲ୍ କମିଶନର୍ ଇ.ସି.ଆନସୋର୍ଜ (E.C.Ansorge) ଓ ପୁଲିସ ଇନ୍‌ସ୍ପେକ୍ଟର ଜେନେରାଲ୍ ବି.ଏ.ଓ. ପର୍କିନ (B.A.O. Perkin)ଙ୍କୁ ତଦନ୍ତ କରି ରିପୋର୍ଟ ଦେବାପାଇଁ ଦାୟିତ୍ୱ ଦେଇଥିଲେ । ସେମାନେ ଆସିଲେ ଘଟଣାସ୍ଥଳକୁ ଯାଇ ସବୁ କଥା ତଦନ୍ତ କରିବାପାଇଁ । କିନ୍ତୁ ଅତି ଆଶ୍ଚର୍ଯ୍ୟର କଥା ଯେ କାଦୁଅ ରାସ୍ତା ହୋଇଥିବାରୁ ସେମାନେ ବାସୁଦେବପୁର ଓ ଇରମ୍ ନ ଯାଇ ଭଦ୍ରକଠାରେ ବସି କାଗଜପତ୍ର ଦେଖି ରିପୋର୍ଟ ଦେଇଥିଲେ ଯେ ଗୁଳି କରିବା ସମୀଚୀନ ହୋଇଛି । ଏହି ଗୁଳିକାଣ୍ଡ ପରେ ମଧ ଅନେକ ଦିନ ପର୍ଯ୍ୟନ୍ତ ସେ ଅଞ୍ଚଳରେ ପୁଲିସର ଅତ୍ୟାଚାର ଓ ଆତଙ୍କରାଜ ଚାଲୁରହିଥିଲା । ଉପରେ ଉଲ୍ଲେଖ କରାଯାଇଥିବା ବ୍ୟକ୍ତିମାନଙ୍କ ଛଡ଼ା ଆହୁରି ବହୁତ ଲୋକଙ୍କୁ କାରାବରଣ କରିବାକୁ ପଡ଼ିଥିଲା । ସେମାନଙ୍କ ମଧରୁ ଗଣେଶ ତ୍ରିପାଠୀ, ମଣିଭଦ୍ର ବିଶ୍ୱାଳ, କୃଶ ତରେଇ, ଅର୍ଜୁନ ବିଶ୍ୱାଳ, ଭାସ୍କର ପଲେଇ, ତ୍ରିଲୋଚନ ତ୍ରିପାଠୀ, ମଧୁସୂଦନ ପଣ୍ଡା, ଭାସ୍କର ତ୍ରିପାଠୀ ଓ ଭାସ୍କର ଚନ୍ଦ୍ର କର ପ୍ରଭୃତିଙ୍କୁ ମୋ ଜାଣିବାରେ କାରାବରଣ କରିବାକୁ ପଡ଼ିଥିଲା ।

ସେହିପରି ଧାମନଗର ଥାନାରେ ମୁରଲୀଧର ପଣ୍ଡାଙ୍କ ନେତୃତ୍ୱରେ ବିପ୍ଳବାତ୍ମକ କାର୍ଯ୍ୟ ଖୁବ୍ ଜୋର୍‌ସୋର୍‌ରେ ଚାଲିଥିଲା । ସରକାରଙ୍କ ସହିତ ସେଠାକାର ଲୋକେ ସବୁପ୍ରକାର ଅସହଯୋଗ କାର୍ଯ୍ୟ ଆରମ୍ଭ କରିଦେଇଥିଲେ । ଲୁଣିଆ ଓ କଟସାହି ଗ୍ରାମମାନଙ୍କରେ ଖୁବ୍ ସଭାସମିତି ହେଉଥାଏ । ପୁଲିସ ସନ୍ଧାନ ପାଇ ସେଠାକୁ ଯାଇଥିଲେ । ଲୋକମାନେ ପୁଲିସ ଆସିବାର ପ୍ରତିବାଦ କରିବାରୁ ସେଠାରେ ଅତି ନିର୍ମମ ଭାବରେ ଗୁଳି ଚଳାଗଲା । ଆଠ ଜଣ ଲୋକ ଗୁଳିଚୋଟରେ ପ୍ରାଣ ହରାଇଥିଲେ । ଏହାପରେ ଧାମନଗର ଥାନା ଅଞ୍ଚଳରୁ ବହୁତ କଂଗ୍ରେସ କର୍ମୀଙ୍କୁ ଗିରଫ କରାଯାଇଥିଲା । ସେମାନଙ୍କ ମଧରୁ ନବକିଶୋର ନାୟକ, ଗଣନାଥ ପାଢ଼ୀ, କାମଦେବ ନାୟକ ଓ ଧରଣୀଧର ଜେନା ପ୍ରଭୃତିଙ୍କ ନାମ ମୋର ମନେପଡୁଛି ।

ଖଇରା ଥାନାର ତୁଡ଼ିଗଡ଼ିଆଠାରେ ବୈଦ୍ୟନାଥ ରାଉତଙ୍କ ନେତୃତ୍ୱରେ ଆଇନ ଅମାନ୍ୟ କାର୍ଯ୍ୟ ପରିଚାଳିତ ହେଉଥାଏ । ସଭାସମିତି କରି ସରକାରଙ୍କ ସହିତ ଅସହଯୋଗ କରିବାପାଇଁ କଂଗ୍ରେସ କର୍ମୀମାନେ ଲୋକମାନଙ୍କୁ ମତାଉଥିଲେ । ଦିନେ ତୁଡ଼ିଗଡ଼ିଆଠାରେ ସଭା ଚାଲିଥିବା ସମୟରେ ପୁଲିସ ଯାଇ ଗୁଳି ଚଳାଇଥିଲେ । ଗୁଳିଚୋଟରେ ଦୁଇଜଣ ପ୍ରାଣ ହରାଇଥିଲେ । ବୈଦ୍ୟନାଥ ରାଉତଙ୍କୁ ଗିରଫ କରାଯାଇଥିଲା ଏବଂ ତାଙ୍କ ସହିତ ଆଉ କେତେକ ଅତି ନିରୀହ ଗାଉଁଲି ଲୋକଙ୍କୁ ମଧ ଗିରଫ କରି ବାଲେଶ୍ୱର ଜେଲ୍‌କୁ ଅଣାଯାଇଥିଲା । ଏହି ନିରୀହ ଲୋକଙ୍କ ଭିତରେ ଜଣେ ଅତି ବୃଦ୍ଧ ଲୋକ ମଧ ଥିଲେ ।

# ମଧୁ, ତିକ୍ତ, କଷାୟ କଥା

ପୂର୍ବରୁ କହିଛି, ଜେଲ୍‌ଖାନା ଗୋଟାଏ ଭୂତଖାନା । ସେଠି ନାନା କିସମର ଲୋକ ଥାଆନ୍ତି । ବାହାର ଦୁନିଆର ବଡ଼ ବଡ଼ କଥାରେ ମନୋନିବେଶ କରିବାର ସୁବିଧା ନଥାଏ ବୋଲି ଅନେକେ ଜେଲ୍‌ଖାନାର ଛୋଟ ଛୋଟ କଥା ମନକୁ ନେବାଦ୍ୱାରା ନାନାପ୍ରକାର ଅଶାନ୍ତି ସୃଷ୍ଟିକରିଥା'ନ୍ତି । ପରସ୍ପରର ବ୍ୟବହାରକୁ ଅତି ତୀକ୍ଷ୍ଣ ଦୃଷ୍ଟିରେ ଲକ୍ଷ୍ୟ କରିବା ସଙ୍ଗେ ସଙ୍ଗେ ସମାଲୋଚନା ମଧ୍ୟ ଆରମ୍ଭ କରିଦେଇଥା'ନ୍ତି । ସମୟେ ସମୟେ ବ୍ୟକ୍ତିବିଶେଷଙ୍କର ଆଚରଣ ମଧ୍ୟ ଅଶାନ୍ତି, ଅପ୍ରୀତିକର ପରିଣତି ଓ ସଂଘର୍ଷର କାରଣ ହୋଇପଡ଼େ । ଆଗରୁ କହିଛି ଯେ ମୁଁ ବାଲେଶ୍ୱର ଜେଲ୍‌ରେ ପହଞ୍ଚିଲାବେଳକୁ ସେଠାରେ ଜଗନ୍ନାଥ ଦାସ ଅଟକବନ୍ଦୀ ରୂପେ ଥିଲେ । ଜଗନ୍ନାଥବାବୁ ଜଣେ ସମ୍ଭ୍ରାନ୍ତ ବଂଶୀୟ ଜମିଦାର ଥିଲେ । ସେତେବେଳେ ସେ ବିହାର-ଓଡ଼ିଶା ବ୍ୟବସ୍ଥାସଭାର ସଭ୍ୟ ହୋଇସାରିଥିଲେ, ପରେ ମଧ୍ୟ ସେ ଓଡ଼ିଶା ବ୍ୟବସ୍ଥାସଭାର ସଭ୍ୟ ଥିଲେ । ଅତି ନିଷ୍ଠାର ସହିତ ସେ ଧର୍ମଚର୍ଚ୍ଚା କରୁଥିଲେ । କିନ୍ତୁ କାହିଁକି କେଜାଣି ଜେଲ୍‌ଖାନାରେ ତାଙ୍କର ଧର୍ମ ଓ ତତ୍ତ୍ୱଚର୍ଚ୍ଚା ସହିତ ତାଙ୍କର ଆଚରଣ ଖାପ୍ ଖାଉ ନଥିଲା । ତାଙ୍କର ଟିକିଏ ଆତ୍ମାଭିମାନ ଥିଲାଭଳି ମୋର ମନେହେଉଥିଲା । ସବୁ କଥାରେ ଅନ୍ୟମାନଙ୍କଠାରୁ ତାଙ୍କର କିଛି ତାରତମ୍ୟ ରହିବାକୁ ସେ ପସନ୍ଦ କରୁଥିଲେ । ସବୁଠାରେ ତାଙ୍କର କିଛି ବିଶେଷତ୍ୱ ରହିବ ବୋଲି ସେ ମନେକରୁଥିଲେ । ସମୂହ ପ୍ରାର୍ଥନାବେଳେ ସମସ୍ତଙ୍କଠାରୁ ତାଙ୍କର ଆସନ ହେବ ଅଧିକ ଉଚ୍ଚ । ସେ ଦୁଇ ତିନୋଟି କମ୍ବଳ ଚଉତି କରି ତା' ଉପରେ ବସୁଥିଲେ । କିନ୍ତୁ ଅନ୍ୟ କାହାର ସେଭଳି ଉଚ୍ଚ ଆସନ ହେଉଥିଲେ ସେଇଟା ତାଙ୍କ ପସନ୍ଦକୁ ଆସୁନଥିଲା । ଭୋଜନ ସମୟରେ ଅନ୍ୟମାନେ ଖଲିପତ୍ରରେ ଖାଇଲେ, ସେ ଖାଇବେ କଦଳୀପତ୍ରରେ । ଗାଧୋଇଲାବେଳେ ଅନ୍ୟମାନଙ୍କର ଦୁଇ-ଚାରି ବାଲ୍‌ଟିରେ କାମ ଚଳୁଥିବାବେଳେ ସେ ଦରକାର କରୁଥିଲେ ଚାଳିଶ ପଚାଶ ବାଲ୍‌ଟି ପାଣି । ତାଙ୍କପାଇଁ ଜେଲର୍‌ବାବୁ ପ୍ରତିଦିନ ଜେଲ୍‌ଖାନା ବଗିଚାରୁ କଦଳୀପତ୍ର ଆସିବାର ବ୍ୟବସ୍ଥା କରିଥା'ନ୍ତି । ଆଉ ଜଣେ ବୟସ୍କ ଲୋକ ହରିପ୍ରବାବୁ ଜେଲ୍‌କୁ ଆସିବାରୁ ଜେଲର୍‌ବାବୁଙ୍କୁ କହି ତାଙ୍କପାଇଁ କଦଳୀପତ୍ରର ବ୍ୟବସ୍ଥା ମଧ୍ୟ ହୋଇଥିଲା । କିନ୍ତୁ ଜଗନ୍ନାଥବାବୁ ଏ ବ୍ୟବସ୍ଥାଟିକୁ ପସନ୍ଦ କରିପାରିନଥିଲେ । ଭଣ୍ଡାରିପୋଖରୀ ଥାନା ପୋଡ଼ି ମକଦ୍ଦମାରେ କେତେକଜଣ ଲୋକ ଗିରଫ ହୋଇ ଆସି ବାଲେଶ୍ୱର ଜେଲ୍‌ରେ ଥା'ନ୍ତି । ସେମାନେ କୁଆଡ଼େ ଜଗନ୍ନାଥବାବୁଙ୍କ ପ୍ରଜା ବୋଲି ଜଗନ୍ନାଥବାବୁ କହୁଥିଲେ । ତେଣୁ ତାଙ୍କର ଖାଇବାପତ୍ର ଉଠାଇବାରେ କୌଣସି ଅସୁବିଧା ହୁଏ ନାହିଁ । ସେମାନେ ତାଙ୍କର ପତ୍ର ଉଠାଇନେବା ସାଙ୍ଗେ ସାଙ୍ଗେ ବାସନ ମଧ୍ୟ ସଫା କରନ୍ତି । କେତେକ ଯୁବକ ବନ୍ଦୀ ଜଗନ୍ନାଥବାବୁଙ୍କୁ ଚିଡ଼େଇବାପାଇଁ ହରିପ୍ରବାବୁଙ୍କ ପତ୍ର ଉଠାଇନିଅନ୍ତି ଓ ତାଙ୍କ ବାସନ ମଧ୍ୟ ସଫାକରିଦିଅନ୍ତି । ସେହି ପିଲାମାନଙ୍କର ଏଭଳି କାର୍ଯ୍ୟକୁ ସେ ସମାଲୋଚନା କରନ୍ତି ।

ତାଙ୍କର ସାମନ୍ତବାଦୀ ଆଚରଣ ମଧ୍ୟ ଜେଲ୍‌ଖାନାରେ ସମାଲୋଚନାର ଗୋଟିଏ ବିଷୟ ହୋଇଥାଏ । ତୈଳମର୍ଦ୍ଦନ ହେବା ଏବଂ ଘଷାମୋଡ଼ା ଖାଇବା ତାଙ୍କର ଗୋଟିଏ ଅଭ୍ୟାସ ଥିଲା । ମୁଁ ଜେଲ୍‌ରେ ପହଞ୍ଚି ପ୍ରଥମେ ଦେଖି ଆଶ୍ଚର୍ଯ୍ୟ ହେଲି ଯେ ସେଠାରେ ବନ୍ଦୀ ଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ଅଧିକାଂଶ ଜଗନ୍ନାଥବାବୁଙ୍କ ଅଙ୍ଗରେ ଘଣ୍ଟା ଘଣ୍ଟା ତୈଳମର୍ଦ୍ଦନ କରୁଥିଲେ । ମୁଁ ଜଣେ ଯୁବକ ଯେତେବେଳେ ଜେଲ୍‌ରେ ପହଞ୍ଚିଲି, ସେ ଆଶା କରିଥିଲେ ଯେ ମୁଁ ମଧ୍ୟ ଅନ୍ୟମାନଙ୍କ ସହିତ ତାଙ୍କର ଅଙ୍ଗ ମର୍ଦ୍ଦନ କରିବି । ସେଥିରେ ସେ ହତାଶ ହୋଇଥିଲେ । ତାଙ୍କର ସାମନ୍ତବାଦୀ ଆଚରଣ ଓ ଅହଙ୍କାର ଆଉ ଗୋଟିଏ ଉଦାହରଣ ମୁଁ ଏଠାରେ ଦେଉଛି । କାମଦେବ ନାୟକ ନାମକ ଜଣେ ଚାଷୀ ଯୁଦ୍ଧ ବିରୁଦ୍ଧରେ ପ୍ରଚାର କରିବା ଅଭିଯୋଗରେ ଗିରଫ ହୋଇ ଜେଲ୍‌ଦଣ୍ଡ ପାଇ ବାଲେଶ୍ୱର ଜେଲ୍‌ରେ ଆସି ପହଞ୍ଚିଲେ । କାମଦେବବାବୁଙ୍କ ଘର ଥିଲା ଧାମନଗର ଥାନାରେ, ଜଗନ୍ନାଥବାବୁଙ୍କ

ଜମିଦାରୀ ଭିତରେ । କାମଦେବଙ୍କୁ ଦେଖି ଜଗନ୍ନାଥବାବୁ କହିଲେ, "କିହୋ କାମଦେବ ! କୁଆଡ଼େ ଆସିଗଲ ?" କାମଦେବ କହିଲେ, "ଆପଣଙ୍କ ଭଳି ମହତ୍ ଲୋକ ଯେଉଁ ରାସ୍ତାରେ ଆସିଛନ୍ତି, ତାକୁହିଁ ଅନୁସରଣ କରି ଆସିଲି ।" ସେତେବେଳେ ଅଗଷ୍ଟ ଆନ୍ଦୋଳନ ସମ୍ପର୍କରେ ଭାରତ ସରକାରଙ୍କର ସ୍ୱରାଷ୍ଟ୍ର ବିଭାଗ ସଚିବ ଟୋଟେନ୍‌ହାମ୍ ଗୋଟିଏ ରିପୋର୍ଟ ପ୍ରକାଶ କରିଥିଲେ । ଉକ୍ତ ରିପୋର୍ଟରେ ଓଡ଼ିଶାରୁ ଅନ୍ୟ କାହାର ନାମ ନଥିଲାବେଳେ ଜଗନ୍ନାଥବାବୁଙ୍କର ନାମ ଥିଲା ବୋଲି ସେତେବେଳକୁ ସେ ଅନେକଥର ଜେଲ୍‌ରେ ଆମମାନଙ୍କ ଦୃଷ୍ଟି ଆକର୍ଷଣ କରିସାରିଥା'ନ୍ତି । ସେହି ରିପୋର୍ଟଟି ଆଣି ସେ କାମଦେବବାବୁଙ୍କୁ ଦେଖାଇଥିଲେ ଏବଂ କ'ଣ ଲେଖାହୋଇଛି ପଢ଼ିସାରି କହିଲେ, "ବୁଝିଲ କାମଦେବ, କଥାଟା କ'ଣ ? ମୁଁ ଜେଲ୍ ଆସିଲି ବୋଲି ଦିଲ୍ଲୀରେ ହୁଲ୍‌ସ୍ଥୁଲ୍ ପଡ଼ିଲା । ଆଉ ତୁମେ ଜେଲ୍‌କୁ ଆସିଲ, କାହାର କ'ଣ ହେଲା ? କେବଳ କୋଡ଼ି ଓ ଲଙ୍ଗଳ କିଛି ଦିନ ବିଶ୍ରାମ ପାଇଲେ ।" କେଡ଼େବଡ଼ ଆଦର୍ଶରେ ଅନୁପ୍ରାଣିତ ହୋଇ ଅତି ଉତ୍ସାହରେ ସ୍ୱଇଚ୍ଛାରେ ଚାଷୀ କାମଦେବବାବୁ ଜେଲ୍‌ଦଣ୍ଡ ବରଣ କରିଥିଲେ । ଜଗନ୍ନାଥବାବୁଙ୍କର ଆତ୍ମବଡ଼ିମା ଶୁଣି ଏବଂ ତାଙ୍କ ପ୍ରତି ଏପରି ତାଚ୍ଛଲ୍ୟଭାବ ଜାଣି ମନ ତାଙ୍କର କ'ଣ ହୋଇଥିବ ଏ କଥା ଅନୁମାନ କରାଯାଇପାରେ ।

କୃଷକ କାମଦେବଙ୍କ ପରି ବାଳକ ନୀଳକଣ୍ଠଙ୍କ ଦେଶପ୍ରୀତି ମୋର ଜେଲ୍ ଜୀବନର ଅନ୍ୟ ଏକ ଅଭୁଲା ସ୍ମୃତି । 'ଧର୍ମପଦରେ ଉତ୍କଳମଣିଙ୍କ ଭାଷାରେ ତା' ମାଆର ମାତ୍ର ଷୋଳ ବରଷର ବାଳୁତ ପୁଅ ସେ ନୀଳକଣ୍ଠ । "ବାରଣ' ବଢ଼େଇରେ ଦାୟ"ର ଆଦର୍ଶ ତା'ମନକୁ ଉଦ୍‌ବେଳିତ କରିଥିଲା । ବାଲେଶ୍ୱର ବଜାରରେ ରିକ୍‌ସା ଟାଣି ସେ ତା' ମାଆକୁ ପୋଷୁଥିଲା; କିନ୍ତୁ ଅଗଷ୍ଟ-ବିପ୍ଲବର ଉତ୍ତାଳ ତରଙ୍ଗରେ ଲମ୍ଫଦେଲା । ରାସ୍ତା କଡ଼ରେ ରିକ୍‌ସାକୁ ଫିଙ୍ଗିଦେଇ କଂଗ୍ରେସବାନା ଧରିଲା । କଂଗ୍ରେସ ସ୍ୱେଚ୍ଛାସେବକମାନଙ୍କ ପଚ୍ଛଆରରେ ଯାଇ ସରକାରୀ ଅଫିସ୍ ଦଖଲକଲା । ବିଦେଶୀ ଶାସନର ପ୍ରତୀକ ନଥିପତ୍ରର ଗଣ୍ଡିଳି ପୋଡ଼ିଲା । ମାଆଠାରୁ ମାତୃଭୂମିର ଡାକରାଯାଏଁ ସବୁରି ଡାକରାରେ ହାଜର ହେବାପାଇଁ ସେ ଜାଗତିଆର । ବନ୍ଦିନୀ ମାତୃଭୂମି ଗୋଡ଼ର ବେଡ଼ି ଛିଣ୍ଡାଇବାପାଇଁ ସେ ଯେପରି ଅବା ତା'ର ଅନାହାରକ୍ଲିଷ୍ଟ ମାଆଠାରୁ ମେଲାଣି ନେଇ ଆସିଥିଲା ! ପୁଲିସ ତାକୁ ବାନ୍ଧି ଆଣିଲା । ଜେଲ୍‌ଦଣ୍ଡ ହେଲା । କିନ୍ତୁ ନୀଳକଣ୍ଠର ମନରେ ଅପୂର୍ବ ଉଲ୍ଲାସ । ସେ ନୀଳକଣ୍ଠ ଆଉ ନାହିଁ – ତା'ର ଅକାଳ ବିୟୋଗ ହୋଇଯାଇଛି ।

ଜେଲ୍‌ଖାନାରେ ବାଳକ ନୀଳକଣ୍ଠର ଆନନ୍ଦ ଉଲ୍ଲାସ ଦେଖି ଆମେମାନେ ଅବାକ୍ ହୋଇଯାଇଥିଲୁ । ତା'ର ଅକପଟ ସ୍ୱଦେଶପ୍ରୀତି ଆମ ସମସ୍ତଙ୍କୁ ବିସ୍ମିତ କରିଥିଲା । ତା'ର ପୂରା ନାମଟି ନୀଳକଣ୍ଠ ଦାସ । ସେତେବେଳେ କଂଗ୍ରେସ ନେତା ଭାବରେ ପଣ୍ଡିତ ନୀଳକଣ୍ଠ ଦାସଙ୍କର ସୁଖ୍ୟାତି ଚାରିଆଡ଼େ ବ୍ୟାପିଥାଏ । ତେଣୁ ଜଣେ ଏଡ଼େ ବଡ଼ ଲୋକ ତା'ର ନାମଧେୟ ବ୍ୟକ୍ତି ହୋଇଥିବାରୁ ସେ ଖୁବ୍ ଗୌରବ ଅନୁଭବ କରୁଥିଲା । କିନ୍ତୁ ପଣ୍ଡିତ ନୀଳକଣ୍ଠ ଦାସଙ୍କ ପାଣ୍ଡିତ୍ୟ ଓ ନିଜର ନିରକ୍ଷରତା ମଧରେ ଯେଉଁ ପାର୍ଥକ୍ୟ, ସେ ସମ୍ପର୍କରେ ନୀଳକଣ୍ଠ ସଚେତନ ଥାଏ । ଆମମାନଙ୍କ ମନରେ ଆନନ୍ଦ ଉପୁଜାଇ ନିଜେ ଉପଭୋଗ କରିବାପାଇଁ ଜେଲ୍‌ଖାନା ଭିତରେ ସେ ନିଜକୁ ବାରମ୍ବାର 'ମୂର୍ଖ-ପଣ୍ଡିତ ନୀଳକଣ୍ଠ ଦାସ' ବୋଲି ଘୋଷଣା କରୁଥିଲା । ନୀଳକଣ୍ଠର ଅକାଳମୃତ୍ୟୁ ମୋତେ ଘୋର ଦୁଃଖ ଦେଇଛି । କାମଦେବଙ୍କ 'କୋଡ଼ିକାଙ୍କ' କିମ୍ୱା ନୀଳକଣ୍ଠର 'ରିକ୍‌ସା' ବିଶ୍ରାମ ପାଇନଥିଲେ । ସେମାନେ ବନ୍ଦୀ ହେବା ପରେ ସେହି କୋଡ଼ିକାଙ୍କ ଓ ରିକ୍‌ସା ଅନ୍ୟ ମେହେନତି ଶ୍ରମିକଙ୍କ ଆୟୁଧ ହୋଇ ନିଶ୍ଚିହ୍ନ ହୋଇଥିବେ । ନୀଳକଣ୍ଠ ବି ସ୍ୱାଧୀନତା ସଂଗ୍ରାମର ଆୟୁଧ ହୋଇ ଆଜି ହଜିଯାଇଛି ।

ଆଉ ଗୋଟିଏ ଘଟଣା ହେଲା, ଜଗନ୍ନାଥବାବୁ ଜେଲ୍‌ରେ ପ୍ରତିଦିନ ଅନେକ ସମୟ ଗୀତା, ଭାଗବତ ପ୍ରଭୃତି ଧର୍ମଶାସ୍ତ୍ର ପାଟିକରି ପଢ଼ନ୍ତି ଓ ଅନ୍ୟମାନେ ତାହା ଶୁଣନ୍ତି । ଯେଉଁମାନେ ତାହା

ଶୁଣିବାକୁ ସେଠାକୁ ନ ଯା'ନ୍ତି ସେମାନଙ୍କ ସମ୍ପର୍କରେ ସେ ଭଲ ଧାରଣା ପୋଷଣ କରନ୍ତିନାହିଁ । ମୁଁ ସେ ଧର୍ମଚର୍ଚ୍ଚା ଆଲୋଚନାରେ ଯୋଗନଦେଇ ଯୁବକମାନଙ୍କୁ ପ୍ରତିଦିନ ଅନ୍ୟତ୍ର ଏକତ୍ରିତ କରି ରାଜନୀତି ବିଜ୍ଞାନ ସମ୍ବନ୍ଧରେ କ୍ଲାସ୍ କରେ । ବନାରସ୍ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ମୁଁ ଥିଲି ରାଜନୀତି ବିଜ୍ଞାନର ଛାତ୍ର । ସଦ୍ୟ ସେଠାରୁ ଆସିଛି । ରାଜନୀତିବିଜ୍ଞାନର ମୋର ସମସ୍ତ ପଢ଼ାବହି ଓ ତା' ଛଡ଼ା ଅନେକ ନାମଜାଦା ଲେଖକଙ୍କର ବହି ମୁଁ ମୋ ସାଙ୍ଗରେ ଜେଲ୍‌କୁ ଆଣିଥାଏ । ତେଣୁ ମୁଁ ନିଜେ ପଢ଼ିବା ସାଙ୍ଗେ ସାଙ୍ଗେ ଅନ୍ୟମାନଙ୍କୁ ରାଜନୀତି ବିଜ୍ଞାନ ସମ୍ବନ୍ଧରେ କିଛି କିଛି ବୁଝାଏ । ଏଥିପ୍ରତି ସେମାନେ ବେଶ୍ ଆକୃଷ୍ଟ ହୋଇଥିଲେ । କିନ୍ତୁ ଏ କଥାଟାକୁ ଜଗନ୍ନାଥବାବୁ ଆଦୌ ପ୍ରସନ୍ନ କରୁ ନ ଥିଲେ । ତାଙ୍କର ଧର୍ମଚର୍ଚ୍ଚାରେ ବାଧାଦେବାପାଇଁ ମୁଁ ରାଜନୀତି ବିଜ୍ଞାନ କ୍ଲାସ୍ ଆରମ୍ଭ କରିଛି ବୋଲି ଧାରଣା କରି ସେ ଅସନ୍ତୁଷ୍ଟ ହୋଇଥିଲେ । ଦିନେ ବାଲେଶ୍ୱର ଜିଲ୍ଲାବୋର୍ଡ଼ ଚେୟାରମ୍ୟାନ୍ କଂଗ୍ରେସ ନେତା ମହମ୍ମଦ ହନିଫ ଗିରଫ ହୋଇ ଆସି ଜେଲ୍ ଫାଟକ ଅଫିସ୍‌ରେ ପହଞ୍ଚିଲେ । ଏ ସମ୍ବାଦ ପାଇବାମାତ୍ରେ ଜେଲ୍‌ରେ ବିପୁଳ ଉତ୍ସାହ ଖେଳିଯାଇଥିଲା ଓ ଆମେ ସମସ୍ତେ ଜୟଧ୍ୱନି ଦେଇ ଫାଟକ ପାଖକୁ ଦୌଡ଼ିଯାଇଥିଲୁ । ଜଗନ୍ନାଥବାବୁଙ୍କ ପାଖରେ ଭାଗବତ ଶୁଣୁଥିବା କେତେକ ବ୍ୟକ୍ତି ମଧ୍ୟ ଆମ ସାଙ୍ଗରେ ଫାଟକ ପାଖକୁ ଦୌଡ଼ିଥିଲେ । କଥାଟା ତାଙ୍କ ପକ୍ଷରେ ବଡ଼ ଅସହ୍ୟ ହେଲା । ଭାଗବତ ଶୁଣୁ ଶୁଣୁ ଜଣେ ଅନ୍ୟ ଧର୍ମର ଲୋକକୁ ପାଛୋଟି ଆଣିବାପାଇଁ ଦୌଡ଼ିଯିବାଦ୍ୱାରା ସ୍ୱଧର୍ମ ପ୍ରତି ଅସମ୍ମାନ କରାଗଲା ବୋଲି କହି ସେ ବିରକ୍ତି ପ୍ରକାଶ କରିଥିଲେ ।

ଆଗରୁ କହିଛି ଯେ ତୃତୀୟ ଶ୍ରେଣୀ ବନ୍ଦୀ ହିସାବରେ ଥିବା କେତେକ ପିଲା ଆସି ମୋ ପାଖରେ ଓ ହନିଫ୍‌ବାବୁଙ୍କ ପାଖରେ ବସି ଚା' ଜଳଖିଆ ପ୍ରଭୃତି ଖାଆନ୍ତି । ସେଥିପାଇଁ ଅଧିକା ଚିନି, ଦୁଧ ଓ ସୁଜି ଦରକାର ହୁଏ । ତାହା ଜେଲର୍‌ଙ୍କୁ କହି ଆମ୍ଭେମାନେ ବନ୍ଦୋବସ୍ତ କରିନେଉ । ଜଗନ୍ନାଥବାବୁ ଜେଲ୍‌ଖାନାରେ ବହୁତ ଦୁଧ ଖାଉଥିଲେ । ଇଆଡ଼େ ଆମମାନଙ୍କୁ ଟିକେ ବେଶି ଦୁଧ ଦେବାରୁ ତାଙ୍କର ଅଭାବ ପଡ଼ିଲା ବୋଲି ସେ ମନେକଲେ । ସେ ଜେଲର୍‌ଙ୍କୁ କହିଲେ ଯେ ଯେଉଁମାନଙ୍କର ଦୁଧ ଖାଇବାର ଅଭ୍ୟାସ, ପ୍ରଥମେ ତାଙ୍କ ଚାହିଦା ମେଣ୍ଟାଇ ତା'ପରେ ଆଉ ଯାହା କରିବାର କଥା ସେ କରନ୍ତୁ । ସେ କହିଲେ ଯେ ସେ ଦୁଧ ଖାଇବାକୁ ପାଉନାହାନ୍ତି, ଅଥଚ ଯେଉଁମାନେ କେବେ ଦୁଧ ଖାଉନଥିଲେ ସେ ପ୍ରକାର ଲୋକଙ୍କୁ ଦୁଧ ଯୋଗାଇ ଦିଆଯାଉଛି । ଫଳରେ ସେମାନେ ଦୁଧ ହଜମ କରିପାରୁନାହାନ୍ତି ଓ ପାଇଖାନା ଅପରିଷ୍କାର କରୁଛନ୍ତି । ଏ ପ୍ରକାର କଥା ଶୁଣି ଜେଲର୍ ମହାଶୟ ବଡ଼ ଆଶ୍ଚର୍ଯ୍ୟ ହୋଇଥିଲେ ଓ ଏ କଥା ଆମମାନଙ୍କୁ ଆସି କହିଥିଲେ । ଜେଲ୍‌ରେ ସାଧାରଣ ବନ୍ଦୀମାନଙ୍କର ଖାଇବା ପିଇବା ନେଇ ଅନେକ ସମୟରେ ଅଶାନ୍ତି ସୃଷ୍ଟି ହୁଏ । କୌଣସି ପ୍ରକାରେ ବୁଝାଶୁଝା କରି ସେମାନଙ୍କୁ ଆମେ ଶାନ୍ତ କରୁ । କିନ୍ତୁ ଜଗନ୍ନାଥବାବୁ କର୍ତ୍ତୃପକ୍ଷଙ୍କ ସାମନାରେ କହନ୍ତି ଯେ ସାକୁଲାସାକୁଲି କରି ଶାସନ କେବେ ଚଳେ ନାହିଁ; ମୂର୍ଖଙ୍କୁ ଦରକାର ଠେଙ୍ଗା । ଦୈବାତ୍ ଦିନେ ଆମେ ଉଚ୍ଚଶ୍ରେଣୀର ବନ୍ଦୀମାନେ ଯେଉଁ ୱାର୍ଡ଼ ଭିତରେ ଥିଲୁ ସେ ୱାର୍ଡ଼ରେ ଚାବି ପକାଇଦେଇ ପାଗଳାଘଣ୍ଟା ବଜାଇ ଅନ୍ୟମାନଙ୍କ ଉପରେ ଲାଠିଚାଳନା କରାହୋଇଥିଲା । ସେ ଲାଠିଚାଳନା ଦେଖି କନିକା ଆନ୍ଦୋଳନର ଜଣେ ନେତା ଇନ୍ଦ୍ରମଣି ଦାସ ଆମ ସହିତ ନିରାପଦରେ ଥିଲେ ମଧ୍ୟ ଭୟରେ ଅଚେତ ହୋଇପଡ଼ିଥିଲେ । ବହୁ କଷ୍ଟରେ ସେ ତାଙ୍କର ସଂଜ୍ଞା ଫେରିପାଇଥିଲେ । କାହିଁକି ଏପରି ଲାଠିଚାଳନା ହେଲା ତାହା ନିର୍ଦ୍ଦିଷ୍ଟ ଭାବେ ମୁଁ କହିପାରିବିନାହିଁ, କିନ୍ତୁ ସେତେବେଳେ ପ୍ରଚାର ହୋଇଥିଲା ସେ ଜଗନ୍ନାଥବାବୁଙ୍କ ନିର୍ଦ୍ଦେଶରେ ଏପରି ଲାଠିଚାଳନା ହୋଇଥିଲା । ଆମ ରାଜନୈତିକ ବନ୍ଦୀଙ୍କ ଭିତରେ ସାଗର ଭୂୟାଁ ନାମକ ଜଣେ ଟାଣୁଆ ଓ ନିର୍ଭୀକ ବୃଦ୍ଧ କର୍ମୀ ଥିଲେ । ସେ ଅନେକ ସମୟରେ ଜେଲ୍‌ରେ ଅଶାନ୍ତି ସୃଷ୍ଟିକରନ୍ତି । ତା'ର କାରଣ ମୁଁ ପରେ ବୁଝିଲି । ସେ ଅଫିମ ଖାଉଥିଲେ । ଚୋରାରେ ଜେଲ୍‌ଖାନାକୁ ସେ ଅଫିମ ଅଣାଇ ଖାଆନ୍ତି । ସେଥିରେ ଟିକେ

ଅସୁବିଧା ହେଲେ ସେ ଜେଲ୍‌ଖାନାରେ ଅଶାନ୍ତି ସୃଷ୍ଟି କରନ୍ତି । ଏ କଥାଟି ଜେଲର୍‌ବାବୁଙ୍କୁ ମୁଁ କହିଦେଲି । ସାଗର ଭୂୟାଁ କିପରି ଅଫିମ ପାଇବେ ତା'ର ବ୍ୟବସ୍ଥା ଜେଲର୍‌ବାବୁ କରିଦେଲେ । ତା'ପରେ ସେ ଆଉ କେବେ ଅଶାନ୍ତି ସୃଷ୍ଟିକରିନଥିଲେ ।

ଜେଲ୍‌ଖାନାରେ ବିଡ଼ି ଥାଏ ଚଳନ୍ତି ନୋଟ୍ (Currency note), ସବୁଠାରୁ ଦାମିକା ପଦାର୍ଥ । ତା' ବିନିମୟରେ ଜେଲ୍‌ଖାନାରେ ସବୁ କାର୍ଯ୍ୟ ହାସଲ କରାଯାଇପାରିବ । ତୁମେ ପାଇଖାନାକୁ ଗଲେ ପାଇଖାନା ସୁନ୍ଦରଭାବେ ପରିଷ୍କାର ହୋଇଯିବ, ଗାଧୋଇବାକୁ ଗଲେ ପାଣିର ଲେଶ ମାତ୍ର ଅଭାବ ରହିବନାହିଁ । ଅଙ୍ଗମର୍ଦ୍ଦନ ଆବଶ୍ୟକ ହେଲେ ସେବକ ଜୁଟିଯିବେ ଓ ଲୁଗାପଟା ସବୁବେଳେ ସଫାସୁତୁରା ରଖିପାରିବ । ଖଣ୍ଡେଅଧେ ବିଡ଼ିପାଇଁ ସମୟ ସମୟରେ ସଂଘର୍ଷ ମଧ୍ୟ ହୋଇଯାଏ । ଦୋକ୍ତା ମଧ ଜେଲ୍‌ଖାନାରେ ଗୋଟିଏ ଅତି ଦାମିକା ଜିନଷ ।

ଜେଲ୍‌ଖାନାରେ ଜଗନ୍ନାଥବାବୁଙ୍କ ଭାଇ ଦ୍ୱାରକାନାଥ ଦାସ ଆମ ସାଙ୍ଗରେ ଥିଲେ । ସେ ମଧ ପରେ ବ୍ୟବସ୍ଥାସଭାର ସଭ୍ୟ ହୋଇଥିଲେ । କିନ୍ତୁ ତାଙ୍କର ଆଚରଣ ଥିଲା ଠିକ୍ ତାଙ୍କ ଭାଇଙ୍କ ଆଚରଣର ବିପରୀତ । ସେ ସମସ୍ତଙ୍କ ସହିତ ଭଲ ମିଳାମିଶା କରୁଥିଲେ । ସମସ୍ତଙ୍କଠାରୁ ସମ୍ମାନିତ ବ୍ୟକ୍ତି ଥିଲେ ନନ୍ଦକିଶୋର ଦାସ । ସେ ବ୍ୟବସ୍ଥାସଭାର ସଭ୍ୟ ଓ ଉପବାଚସ୍ପତି ହୋଇଥିଲେ । ଜେଲ୍‌ଖାନାକୁ ତାଙ୍କର ସ୍ତ୍ରୀ ଓ ପିଲାମାନେ ଅନେକ ସମୟରେ ଆସନ୍ତି । ସେମାନଙ୍କ ସହିତ ଦେଖାସାକ୍ଷାତ୍‌ରେ କୌଣସି ବାଧା ନଥାଏ । ଥରେ ଥରେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ମଧ ସେମାନେ ଜେଲ୍‌ଖାନା ଅଫିସ୍‌ରେ ରହନ୍ତି । ଜେଲର୍‌ବାବୁଙ୍କ ଘରେ ନନ୍ଦବାବୁଙ୍କ ପିଲାଛୁଆ ସମୟସମୟରେ ରହନ୍ତି । ନନ୍ଦବାବୁ ମୋତେ ଖୁବ୍ ଆଦର କରୁଥିଲେ । ଯେ ବିଡ଼ି ଖାଏ ନନ୍ଦବାବୁ ତା' ଉପରେ ବିରକ୍ତ ହୁଅନ୍ତି, କାରଣ ବିଡ଼ିଗନ୍ଧ ସେ ସହ୍ୟ କରିପାରନ୍ତିନାହିଁ । ମୁଁ ସିଗାରେଟ୍ ଖାଉଥାଏ । ନନ୍ଦବାବୁ ଆସି ପାଖରେ ବସି ତା'ର ବାସ୍ନାକୁ ପସନ୍ଦ କରନ୍ତି । ନନ୍ଦବାବୁ ଅତ୍ୟଧିକ ସ୍ନେହୀ ଥିଲେ । ତାଙ୍କର ପ୍ରଥମ ସ୍ତ୍ରୀ ମରିଯିବା ପରେ ସେ ସବୁବେଳେ ତାଙ୍କ କଥା ଭାବୁଥିଲେ । ସେତେବେଳକୁ ଦ୍ୱିତୀୟ ଥର ବିବାହ କରିଥିଲେ । ମୁଁ ଜେଲ୍‌ଖାନାରେ ଗୋଟିଏ ରଙ୍ଗିନ୍ ଲୁଙ୍ଗି ବ୍ୟବହାର କରୁଥିଲି । ସେ ଲୁଙ୍ଗିଟି ନପିନ୍ଧିବାପାଇଁ ସେ ମୋତେ ଦିନେ ଆସି କହିଲେ, ''ନୀଳମଣି ! ତୁମେ ସେ ଲୁଙ୍ଗି ପିନ୍ଧିବନାହିଁ । ମୋର ପ୍ରଥମ ସ୍ତ୍ରୀ ଏହିଭଳି ଗୋଟିଏ ଶାଢ଼ି ପିନ୍ଧୁଥିଲା । ତୁମର ଏହି ଲୁଙ୍ଗି ଦେଖିଲାକ୍ଷଣି ମୋର ସେ କଥା ମନେପଡ଼ିଯାଉଛି ।'' ତା'ପରେ ସେ ଲୁଙ୍ଗି ମୁଁ ଆଉ ପିନ୍ଧିଲିନାହିଁ ।

ବାଲେଶ୍ୱର ଜେଲ୍‌ରେ ମୋର ଉପସ୍ଥିତି ନାନା କାରଣରୁ ଜଗନ୍ନାଥ ଦାସ ସହ୍ୟ କରିପାରୁ ନଥିଲେ । ଦିନେ ଜେଲ୍‌ଖାନାର ଜେଲର୍ ଓ ସୁପରିନ୍‌ଟେଣ୍ଡେଣ୍ଟ୍ ବସି ଜେଲ୍‌ର ଶାସନ ଓ ଶାନ୍ତିଶୃଙ୍ଖଳା ରକ୍ଷାକରିବା ବିଷୟରେ ଆଲୋଚନା କରୁଥିଲେ । ଜଗନ୍ନାଥ ବାବୁ ଆଲୋଚନା ସମୟରେ ସେଠାରେ ଉପସ୍ଥିତ ଥିଲେ । ଜେଲ୍‌ରେ ବିଶୃଙ୍ଖଳା କାହିଁକି ଘଟୁଛି ତାହା ମଧ ସେଠାରେ ଆଲୋଚିତ ହେଉଥାଏ । ଜଗନ୍ନାଥବାବୁ ଜେଲର୍‌ଙ୍କୁ କହିଥିଲେ ଯେ ଜେଲ୍ ସମ୍ବନ୍ଧରେ ସଠିକ୍ ଖବର ସୁପରିନ୍‌ଟେଣ୍ଡେଣ୍ଟ୍ ନ ରଖୁଥିବା ଯୋଗୁଁ ବିଶୃଙ୍ଖଳା ବଢ଼ିଚାଲିଛି । କଥାବାର୍ତ୍ତାରେ ସେ ଧାରଣା ଦେଇଥିଲେ ଯେ ନୀଳମଣି ରାଉତରାୟର ହାତ ଏସବୁ ବିଶୃଙ୍ଖଳା ଓ ଅଶାନ୍ତି ମୂଳରେ ଅଛି । ତାଙ୍କର ହୃଦ୍‌ବୋଧହେବାପାଇଁ ସେ କୁଆଡ଼େ କହିଥିଲେ, ରେଭେନ୍‌ସା କଲେଜରେ ଚାରିବର୍ଷ କାଳ କିଏ ନିଆଁ ଜାଳିଥିଲା ସେ କଥା ଚିନ୍ତାକର । ଏ ନଜିରଟି ସୁପରିନ୍‌ଟେଣ୍ଡେଣ୍ଟଙ୍କ ମନକୁ ପାଇଗଲା । ତେଣୁ ସୁପରିନ୍‌ଟେଣ୍ଡେଣ୍ଟ୍ ସ୍ଥିର କରିଥିଲେ ଜେଲ୍ ବିଭାଗର ଇନିସ୍‌ପେକ୍‌ଟର ଜେନେରାଲ୍‌ଙ୍କୁ ଲେଖି ମୋତେ କଟକ ଜେଲ୍‌କୁ ସ୍ଥାନାନ୍ତରିତ କରିବାକୁ । ସେ ପ୍ରସ୍ତାବ ଉପରକୁ ଲେଖାଗଲା । ଏ କଥା ଯେତେବେଳେ ଆମର ସହବନ୍ଦୀମାନେ ଜାଣିଲେ, ଖୁବ୍ ମନ ଖରାପ କଲେ । ଯେଉଁ ପିଲାବନ୍ଦୀମାନେ ଥିଲେ, କନ୍ଦାକଟା ଆରମ୍ଭ କରିଦେଇଥିଲେ । ତେବେ ଉପାୟ କ'ଣ ? ସମସ୍ତେ ଯାଇ ନନ୍ଦବାବୁଙ୍କୁ ଧରିଲେ କିପରି ଏ

ସ୍ଥାନାନ୍ତର ପ୍ରସ୍ତାବଟା ବନ୍ଦହେବ । ନନ୍ଦବାବୁ ଯାଇ ଜେଲରଙ୍କ ସହିତ କଥାବାର୍ତ୍ତା କଲେ । ଜଗନ୍ନାଥବାବୁ ଯାହା କହିଥିଲେ ଜେଲର୍ ସେ କଥାଟା କହିଦେଲେ । ସେ କହିଥିଲେ ଯେ ଯେହେତୁ ସୁପରିନ୍‌ଟେଣ୍ଡେଣ୍ଟ ଏ ଆଦେଶ ଦେଇଛନ୍ତି ସେଥିରେ ତାଙ୍କର ଆଉ କିଛି କରିବାରନାହିଁ । ସୁପରିନ୍‌ଟେଣ୍ଡେଣ୍ଟ ଡାକ୍ତର ସୁରେନ୍ଦ୍ରନାଥ ଆଚାର୍ଯ୍ୟ ଯେତେବେଳେ ଜେଲ୍‌କୁ ଆସିଲେ ନନ୍ଦବାବୁ ତାଙ୍କୁ ସାକ୍ଷାତ୍ କରି ଏ ପ୍ରକାର ଗୋଟିଏ ଅନ୍ୟାୟ ଆଦେଶ କାହିଁକି ସେ ଦେଇଛନ୍ତି ବୋଲି ଜାଣିବାକୁ ଚାହିଁଥିଲେ । ସୁପରିନ୍‌ଟେଣ୍ଡେଣ୍ଟ କହିଲେ, ଆପଣଙ୍କ ପରି ନେତୃସ୍ଥାନୀୟ ବ୍ୟକ୍ତି ଅନୁଭବ କରୁଛନ୍ତି ଯେ ରାଉତରାୟ ପରି ଯୁବକ ଥିବାରୁ ସବୁ ପ୍ରକାର ବିଶୃଙ୍ଖଳା ଏଠାରେ ଦେଖାଦେଉଚି । ଏ କଥା କହି ସେ ଜଗନ୍ନାଥବାବୁ କହିଥିବା କଥା ମଧ ଜଣାଇଥିଲେ । ଜଗନ୍ନାଥବାବୁଙ୍କର ମୋ ପ୍ରତି ଯେଉଁ ବ୍ୟବହାର ସେ ବିଷୟରେ ସୁପରିନ୍‌ଟେଣ୍ଡେଣ୍ଟଙ୍କୁ କିଛି ସୂଚନା ଦେଇ ନନ୍ଦବାବୁ ଜୋର୍‌କରି କହିଥିଲେ ଯେ ତାଙ୍କ ଆଦେଶଟି ଅତି ଅନ୍ୟାୟ ଆଦେଶ । ତା'ପରେ ଜେଲରଙ୍କୁ ଡକାଗଲା । ଜେଲର୍ ମଧ ନନ୍ଦବାବୁଙ୍କ କଥାର ଯଥାର୍ଥତା ଅଛି ବୋଲି କହିଲେ । ତେଣୁ ସ୍ଥିର ହେଲା ମୋର କଟକ ଜେଲ୍‌କୁ ଯିବା ହେବ ନାହିଁ ଏବଂ ସେହିଦିନଠାରୁ ଜେଲ୍‌ଖାନା ରୋଗୀ ତାଲିକାରେ ମୁଁ ଅସୁସ୍ଥ ବୋଲି ହାଜିରାପଡ଼ିବ । ତା'ହେଲେ ସେଠାରୁ ମୋତେ ଅନ୍ୟତ୍ର ନେଇଯିବାପାଇଁ ଯେଉଁଦିନ ପହରାଦାର (escort) ଆସିବେ, ବନ୍ଦୀ ଅସୁସ୍ଥ ଅଛନ୍ତି ବୋଲି ରିପୋର୍ଟ କରି ସେମାନଙ୍କୁ ଫେରାଇଦିଆଯିବ । ଏହିପରି କେତେଥର କରି ମୋର ସ୍ଥାନାନ୍ତର ହେବାର ଆଦେଶକୁ ରଦ୍ଦକରାଯାଇଥିଲା । ଏହାପରେ ଘଟଣା ଏପରିଭାବରେ ଘଟିଲା ଯେ ଉଚ୍ଚଶ୍ରେଣୀ ବନ୍ଦୀମାନଙ୍କ ଭିତରୁ କେବଳ ମୁଁ ଓ ନନ୍ଦବାବୁ ବାଲେଶ୍ୱର ଜେଲ୍‌ରେ ରହିଲୁ । ଜଗନ୍ନାଥବାବୁ ଓ ହନିଫ୍‌ବାବୁ ପ୍ରଭୃତି ସ୍ଥାନାନ୍ତରିତ ହୋଇ ବ୍ରହ୍ମପୁର ଜେଲ୍‌କୁ ଯାଇଥିଲେ । ବାଲେଶ୍ୱର ଜେଲ୍‌ଖାନାରେ ଗୋଟିଏ ଦୋତାଲା ଘର ଥିଲା । ସେହିଠାରେ ଆମ ଦୁହିଁଙ୍କୁ ରଖାଗଲା । ସେମାନେ ଅନ୍ୟ ଜେଲ୍‌କୁ ବଦଳି ହୋଇ ଗଲାବେଳେ ଆମ୍ଭେମାନେ ଖୁବ୍ ଦୁଃଖ ଅନୁଭବ କରିଥିଲୁ । କାରଣ ଏକାସାଙ୍ଗରେ ମାନଅଭିମାନ ଭିତରେ ଆଠମାସକାଳ ବସାବାନ୍ଧି ରହିଥିଲୁ । ସାଙ୍ଗମେଳ ଭାଙ୍ଗିଗଲେ ଦୁଃଖ ହେବାର ହିଁ କଥା ।

ମୋ ଜେଲ୍-ଜୀବନର ଆଉ ଗୋଟିଏ କଥା ମୋର ସବୁବେଳେ ମନେରହିଛି । ଜେଲ୍‌ରେ ବିଷ୍ଣୁ ବୋଲି ଜଣେ କଏଦୀ ଥିଲା । ଯୁଦ୍ଧ ସମୟରେ ଆଲୁଅ ଜାଳିବା ଉପରେ ଯେଉଁ କଟକଣା (Black-out) ଥିଲା ତା'ର ସୁବିଧା ନେଇ ସେ କେତେକ ଅପରାଧ କରିଥିବା ଅଭିଯୋଗରେ ସଜା ପାଇ ଜେଲ୍‌କୁ ଆସିଥିଲା । ଖାକି ରଙ୍ଗର କେତେଗୁଡ଼ିଏ ପୁଲିସ ପୋଷାକ କରିପକାଇ ସେ ନିଜେ ସେହି ପୋଷାକ ପିନ୍ଧେ ଓ ଆଉ ଦୁଇ ତିନି ଜଣଙ୍କୁ ସେହିଭଳି ପୋଷାକ ପିନ୍ଧାଇ ସାଙ୍ଗରେ ନିଏ । ଗୋଟିଏ ନକଲି ପିସ୍ତଲ ଅଣ୍ଟାରେ ଝୁଲାଇଥାଏ ଏବଂ ଅନ୍ୟମାନଙ୍କ ହାତରେ ଥାଏ ଠେଙ୍ଗା । ସେ ଗାଆଁ ଗାଆଁ ବୁଲି ଯେଉଁଠାରେ ଧନୀ ବା ଭଲ ଚଳିଲାବାଲା ଘର ଦେଖେ, ସେମାନଙ୍କ ଘରେ ଆଲୁଅ ଜଳୁଥିବାରୁ ସେମାନଙ୍କୁ ଧମକାଇ ଥାନାକୁ ଯିବାକୁ ଡାକେ । ଯୁଦ୍ଧବେଳର କୋକୁଆଭୟ ତ ଥାଏ — ଲୋକେ ଭୟଭୀତ ହୋଇ କିଛି ପଇସା ଦେଇ ତା' ଦଳଠାରୁ ଖଲାସ ହୁଅନ୍ତି । ବିଷ୍ଣୁ ମୋତେ କହୁଥିଲା ଯେ ଥରେ ଗୋଟିଏ ଜାଗାରେ ଗୋଟିଏ ଧନୀଘରର ବାହାରେ ଧାନ ଉସେଇଁବା ପାଇଁ ଚୁଲି ଜଳୁଥାଏ । ବିଷ୍ଣୁ ଓ ତା' ଦଳ ସେଠାରେ ଯାଇ ପହଞ୍ଚିଗଲେ । ସାଙ୍ଗେ ସାଙ୍ଗେ ହାଣ୍ଡିକୁ ପିଟି ଭାଙ୍ଗିପକାଇଲେ ଓ ଘରମାଲିକଙ୍କୁ ବାନ୍ଧିପକାଇ ଥାନାକୁ ନେବାକୁ ବାହାରିଲେ । ସେ ଗୋଡ଼ହାତ ଧରି ପାଞ୍ଚଶହ ଟଙ୍କା ଦେଇ ସେଥିରୁ ଉଦ୍ଧାରପାଇଲେ । ବିଷ୍ଣୁ ଜେଲ୍‌ଖାନାରେ ମଧ ଏଭଳି କର୍ତ୍ତୃତ୍ୱ ବିସ୍ତାର କରିଥାଏ ଯେ ଜେଲରଙ୍କ ତଳକୁ ସତେ ଯେପରି ସେ ଥିଲା ଜଣେ ହାକିମ । ଜେଲର୍ ମଧ ତାକୁ ଭଲପାଉଥିଲେ । ଅଫିସ୍ କାର୍ଯ୍ୟଠାରୁ ଆରମ୍ଭକରି ଜେଲ୍‌ର ସମସ୍ତ ହାନିଲାଭ ସେ ବୁଝୁଥିଲା । ଶ୍ରୀ ଆଶୁତୋଷ ରାୟ ଆମ୍ଭମାନଙ୍କ ଭିତରେ ଜଣେ ରାଜବନ୍ଦୀ ଥିଲେ । ସେ ଥିଲେ ସୋର କେଦାରପୁର ଗାଆଁର କବିବର

ରାଧାନାଥ ରାୟଙ୍କ ବଂଶଧର । ସେ ସବୁବେଳେ ହାତଘଣ୍ଟା ବାନ୍ଧି ବୁଲନ୍ତି ଓ ଠିକ୍ ଦିନ ବାରଟା ବାଜିଲେ ତାଙ୍କୁ ଯଦି ଖାଇବାକୁ ଦିଆନଯାଏ ତେବେ ରାଗି କମ୍ପମାନ ହୁଅନ୍ତି । ଦିନେ ତାଙ୍କ ଘଣ୍ଟା ହଠାତ୍ ଚୋରିଗଲା । ସେ ଯେତେ ଖୋଜିଲେ ପାଇଲେନାହିଁ । ଏହିପରି ଦୁଇ ଚାରି ଦିନ ଖୋଜାଚାଲିଲା । ଶେଷରେ ଆଶୁବାବୁ ବିଷ୍ଣୁର ସାହାଯ୍ୟ ଚାହିଁଲେ । ବିଷ୍ଣୁ ତାଙ୍କ ଘଣ୍ଟା କଥା ବୁଝିବାର ଦାୟିତ୍ୱ ନେଲା ଏବଂ ତା'ପରେ ତାଙ୍କ ଘଣ୍ଟା ତାଙ୍କୁ ମିଳିଗଲା ।

## ଚିତାକାଟି ଚମ୍ପଟ୍

ଚାହୁଁ ଚାହୁଁ ବର୍ଷେ ପୂରିବାକୁ ବସିଲା ଓ ମୋର ଖଲାସ ହେବା ସମୟ ନିକଟ ହୋଇ ଆସିଥିଲା । ଜେଲରବାବୁ ସନ୍ଧାନ ପାଇଲେ ଯେ ମୁଁ ଖଲାସ୍ ହେବାମାତ୍ରେ ସରକାର ମୋତେ ଅଟକବନ୍ଦୀ କରିନେବା ପାଇଁ ଚିନ୍ତାକରୁଛନ୍ତି । ସେତେବେଳେ ଅନେକ ଜାଗାରେ ରାଜନୈତିକ ବନ୍ଦୀମାନେ ଖଲାସ ହେବା ପରେ ସେମାନଙ୍କୁ ଅଟକ ଆଇନ ବଳରେ ଗିରଫକରି ଜେଲ୍‌ରେ ରଖାଯାଉଥିଲା । ସରକାରୀ କର୍ତ୍ତୃପକ୍ଷ ବିଚାରିଥିଲେ ଯେ ଯେଉଁଦିନ ମୁଁ ଜେଲ୍‌ରୁ ଖଲାସ ହେବାର କଥା ମୋତେ ସେଦିନ କୌଣସି ବାହାନାରେ ଜେଲ୍ ଗେଟ୍‌ରୁହିଁ ଥାନାକୁ ନେଇଯିବେ ଓ ତା'ପରେ ଅଟକବନ୍ଦୀ କରିବାର ବ୍ୟବସ୍ଥା କରିବେ । ଏ ବିଷୟଟି ଅତି ଗୋପନରେ ଜେଲରବାବୁ ମୋତେ କହିଥିଲେ । ମୋ ସାଙ୍ଗରେ ଅନ୍ତରାଳରେ କଥାବାର୍ତ୍ତା କରି କହିଲେ ଯେ ସେ ପୁଲିସବାଲାଙ୍କୁ ଗୋଟିଏ ଶିକ୍ଷା ଦେବେ । ୧୯୪୩ ଅଗଷ୍ଟ ମାସ ସତର ତାରିଖରେ ମୋର ଖଲାସ ହେବା କଥା । ସେ କଥା ପୁଲିସବାଲା ଆଗରୁ ଜେଲ୍‌ରୁ ନୋଟ୍‌କରି ନେଇଯାଇଥିଲେ । ସାଧାରଣତଃ କଏଦୀମାନେ ଯେଉଁ ଦିନ ଖଲାସ ହୁଅନ୍ତି ସେମାନଙ୍କୁ ସକାଳେ ଆଠଟା ପରେ ଛଡ଼ାଯାଏ । ତେଣୁ ପୁଲିସବାଲାମାନେ ପ୍ରତିଦିନ ସକାଳ ଆଠଟା ସମୟରେ ଜେଲ୍ ଗେଟ୍‌କୁ ଆସନ୍ତି । ଅଗଷ୍ଟ ସତର ତାରିଖ ଦିନ ଭୋର୍ ଛଅଘଣ୍ଟା ସମୟରେ ଜେଲରବାବୁ ମୋତେ ଖଲାସ କରିଦେଇ ଗେଟ୍ ପାରକରିଦେଲେ । ମୁଁ ସେଠାରୁ ପଳାଇଯାଇ ବାଲେଶ୍ୱର ଟାଉନ୍‌ହଲ୍ ପାଖରେ ମୋର ଜଣେ ପରିଚିତ ଲୋକଙ୍କ ଘରେ ଦିନସାରା ଲୁଚିରହିଲି । ସେଦିନ ପୁଲିସବାଲା ବିଶେଷକରି ଗୋଇନ୍ଦା ପୁଲିସ ମୋତେ ବହୁତ ଖୋଜାଖୋଜି କରିଥିଲେ ବୋଲି ମୁଁ ପରେ ଶୁଣିଲି । ସେମାନେ ଜେଲରଙ୍କୁ ଯାଇ ମୋ ବିଷୟ ପଚାରିଥିଲେ । ସତର ତାରିଖ ଦିନ ମୋର ଖଲାସ ହେବାର କଥା, ତେଣୁ ମୋତେ ସେହିଦିନ ସକାଳ ଛଅଟାବେଳୁ ଖଲାସ କରିଦେବାଟା କିଛି ଆଇନବିରୋଧୀ କଥା ନ ଥିଲା । ଏହି ସୂତ୍ରରେ ଜେଲରବାବୁ ଚାଲାକି କରି ସେମାନଙ୍କୁ ଭୁଲେଇଦେଇଥିଲେ । ସେ ସେମାନଙ୍କୁ କହିଲେ, ଏଇମାତ୍ର ପାଞ୍ଚମିନିଟ୍ ହେଲା ସେ ଏଠାରୁ ଗଲେ । ତାଙ୍କ କଥା ଶୁଣି ବିଭିନ୍ନ ଦିଗରେ ସେମାନେ ଦୌଡ଼ାଦୌଡ଼ି କରିଥିଲେ; କିନ୍ତୁ ମୋତେ ପାଇନଥିଲେ । ରାତି ହେଲାରୁ ମୁଁ ମୋର ବିଛଣାପତ୍ର କାନ୍ଧରେ ଧରି ଲୁଚିବା ସ୍ଥାନରୁ ବାହାରି ବାଲେଶ୍ୱରଠାରୁ ଆଠ ମାଇଲ ଦୂରରେ ଥିବା ହଳଦିପଦା ଷ୍ଟେସନ୍‌କୁ ଚାଲି ଚାଲି ଗଲି । ସେଠାରୁ କଲିକତା ଅଭିମୁଖେ ଯାଉଥିବା ପାସେଞ୍ଜର ଗାଡ଼ିରେ କଲିକତା ଚାଲିଗଲି ।

କଲିକତାରେ ଭାଇଙ୍କ ଘରେ କିଛିଦିନ ରହିଲି । ଆଉ କେଉଁ ଆଡ଼କୁ ନଯାଇ ତାଙ୍କ ପାଖରେ ରହିବାପାଇଁ ସେ ମୋତେ ପରାମର୍ଶ ଦେଲେ । ଦେଶର ଯେତେ ରାଜନୈତିକ ନେତା ଓ କର୍ମୀ ପ୍ରାୟ ସମସ୍ତେ ଜେଲ୍‌ରେ ଅଟକ ହୋଇଥାଆନ୍ତି । ଅଗଷ୍ଟ-ବିପ୍ଳବ ଓ ସ୍ୱାଧୀନତା ସଂଗ୍ରାମ ଏକପ୍ରକାର ଧିମେଇଯାଇଥାଏ । କିଛିଦିନ କଲିକତାରେ ରହିବା ପରେ ମୋ ମନ ବଡ଼ ଅସ୍ଥିରହେଲା ଓଡ଼ିଶା ଆସିବାକୁ । ବନାରସ ଯାଇ ସେଠାରେ ପୁଣି ପଢ଼ା ଆରମ୍ଭ କରିବା କଥା ମଧ ଉଠିଲା । କିନ୍ତୁ ସେଠାକୁ ଯିବାର ଆଉ କୌଣସି ଉପାୟ ନଥିଲା, କାରଣ ବନାରସ ଡିଭିଜନରୁ ମୋ ପ୍ରତି ବହିଷ୍କାର

ଆଦେଶ ସେତେବେଳେ ମଧ୍ୟ ଜାଏମ୍ ଥାଏ । ଏତିକିବେଳେ ଉତ୍ତର ବାଲେଶ୍ୱର ଅଞ୍ଚଳରେ ଦୁର୍ଭିକ୍ଷ ପଡ଼ିଥାଏ । ତା' ପୂର୍ବବର୍ଷ ଝଡ଼, ବର୍ଷା ଓ ବାତ୍ୟାରେ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳରେ ଫସଲ ନଷ୍ଟ ହୋଇଯାଇଥିଲା । ତାହାରି ପ୍ରତିକ୍ରିୟା ବର୍ତ୍ତମାନ ଅତି ଉତ୍କଟ ଭାବରେ ଦେଖାଯାଇଥିଲା । ଧାନଚାଉଳ ମିଳୁନଥିଲା । ଧାନଚାଉଳ ଅଭାବର ଅନ୍ୟ ଏକ ମୁଖ୍ୟ କାରଣ ସେତେବେଳେ ଖବରକାଗଜରେ ପଢ଼ିବାକୁ ମିଳୁଥାଏ ଯେ ଓଡ଼ିଶାରେ ପାରଳାଖେମୁଣ୍ଡି ମହାରାଜାଙ୍କର ତତ୍କାଳୀନ ମନ୍ତ୍ରିମଣ୍ଡଳ ବଙ୍ଗଳାର ଇସ୍ପାହାନୀ କମ୍ପାନୀ ନାମକ ଗୋଟିଏ ବ୍ୟବସାୟୀ ସଂସ୍ଥା ସହିତ କିଛି ଭିତିରି କାରବାର କରି ଓଡ଼ିଶାରୁ ବଙ୍ଗଳାକୁ ଧାନଚାଉଳ ବୋହିନେବାର ସୁବିଧା ଦେଇଥିଲେ । କାର୍ଯ୍ୟତଃ ଯୁଦ୍ଧକାଳରେ ବ୍ରିଟିଶ୍ ସୈନ୍ୟ ଓ କଲିକତା ମହାନଗରୀ ଲୋକଙ୍କ ସ୍ୱାର୍ଥପାଇଁ ଆମ ଲୋକଙ୍କୁ ଅତି ନିଷ୍ଠୁର ଭାବରେ ମୃତ୍ୟୁମୁଖକୁ ଠେଲିଦେଇଥିଲେ । ଯୁଦ୍ଧରେ ରେଙ୍ଗୁନ ସହର ଜାପାନୀମାନଙ୍କ ହାତରେ ପଡ଼ିଯିବା ପରେ ବର୍ମାରୁ ଧାନଚାଉଳ ଆମଦାନୀ ସମ୍ପୂର୍ଣ୍ଣ ବନ୍ଦହୋଇଗଲା । କଲିକତା ହୋଇଥାଏ ପୂର୍ବାଞ୍ଚଳରେ ମିତ୍ରପକ୍ଷର ସେନାଛାଉଣୀ । ନିଷ୍ପତ୍ତି କରାଗଲା ବ୍ରିଟିଶ୍ ସୈନ୍ୟମାନଙ୍କୁ ଭଲରେ ଖୁଆଇପିଆଇ ହେପାଜତରେ ରଖିବାକୁ ହେବ । ଆଉ ମଧ୍ୟ ଉତ୍କଟ ଖାଦ୍ୟାଭାବ କାରଣରୁ କଲିକତା ମହାନଗରୀରେ ଗଣବିଦ୍ରୋହ ହେବାର ଭୟକରାଗଲା । ସରକାର ଯୁଦ୍ଧବେଳେ କୌଣସିମତେ ସେଠାରେ ଗଣବିଦ୍ରୋହ ବା ଜନଅସନ୍ତୋଷ ନ କରାଇବାକୁ ନିଷ୍ପତ୍ତି କଲେ । ତେଣୁ ଅନ୍ୟ ଅଞ୍ଚଳରେ ଲୋକେ ପଛେ ପୋକମାଛି ପରି ମରନ୍ତୁ, ଯୁଦ୍ଧ ଉଦ୍ୟମର ଅଙ୍ଗାଙ୍ଗୀ କାର୍ଯ୍ୟକ୍ରମରୂପେ ଚାରିଆଡ଼ୁ କଲିକତାକୁ ଧାନଚାଉଳ ବୁହାଚାଲିଲା । ଏହି ନିଷ୍ଠୁର ସତ୍ୟ ୧୯୪୩ ପରେ ନିଯୁକ୍ତ ବେଙ୍ଗଲ ଦୁର୍ଭିକ୍ଷ କମିଶନଙ୍କ ରିପୋର୍ଟରେ ପ୍ରତିଫଳିତ ହୋଇଛି । ତା'ଛଡ଼ା ଧାନଚାଉଳ କିଣି ଖାଇବାପାଇଁ ଓଡ଼ିଶାର ଗରିବଲୋକ ଓ ଦିନମଜୁରିଆମାନଙ୍କର ଅଣ୍ଟାରେ ପଇସା ମଧ୍ୟ ନଥାଏ । ଏହି ଦୁର୍ଭିକ୍ଷରେ ବଙ୍ଗଳା ଏବଂ ଓଡ଼ିଶାରେ ଅନ୍ୟୁନ ପଚାଶ ଲକ୍ଷ ଲୋକ ପ୍ରାଣହରାଇଥିଲେ । ବାଲେଶ୍ୱର, ଜଳେଶ୍ୱର, ବସ୍ତା ଓ ରାଇବଣିଆ ପ୍ରଭୃତି ଅଞ୍ଚଳରେ ଲୋକେ ଖାଇବାକୁ ନପାଇ ରାସ୍ତାକଡ଼ରେ ପଡ଼ି ମରୁଥା'ନ୍ତି । ଓଡ଼ିଶା ଆସିବାପାଇଁ ମୁଁ ବାହାରିଲି; କିନ୍ତୁ ଭୟ ଥାଏ ଯେ ଅଟକ ଆଇନ ବଳରେ ପୁଣି ଗିରଫ ହୋଇଯାଇପାରେ ।

## ଦୁର୍ଭିକ୍ଷରେ ସେବାକାର୍ଯ୍ୟ

ହିନ୍ଦ୍ ସେବକ ସଂଘର ବିଶିଷ୍ଟ ସଭ୍ୟ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଜଳେଶ୍ୱର ଅଞ୍ଚଳରେ ରହି ରିଲିଫ୍ କାର୍ଯ୍ୟ କରୁଥା'ନ୍ତି । କେତେକ ବେସରକାରୀ ସଂସ୍ଥା ମଧ୍ୟ ସେଠାରେ ଅନ୍ନଛତ୍ର ଖୋଲିଥାଆନ୍ତି । କଲିକତାରେ ମୁଁ ଓଡ଼ିଶା ମର୍ଚ୍ଚାଣ୍ଟ ରିଲିଫ୍ ସୋସାଇଟିର କର୍ମକର୍ତ୍ତାଙ୍କ ସହିତ କଥାବାର୍ତ୍ତାହେଲି । ସେମାନେ ମଧ୍ୟ ଜଳେଶ୍ୱରରେ ରିଲିଫ୍ କାର୍ଯ୍ୟ ଆରମ୍ଭ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ମୁଁ କଲିକତାରୁ ସିଧା ଆସି ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ରିଲିଫ୍ କେନ୍ଦ୍ରରେ ପହଞ୍ଚିଲି । ଲକ୍ଷ୍ମୀନାରାୟଣବାବୁ ମୋତେ ଦେଖି ଭାରି ଖୁସିହେଲେ । ତାଙ୍କ ସାଙ୍ଗରେ ରହି ରିଲିଫ୍ କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରିବାକୁ ମୋତେ କହିଲେ । ମୁଁ ଅତି ଆଗ୍ରହରେ ସେହି କାର୍ଯ୍ୟରେ ଲାଗିପଡ଼ିଲି । ସେଠି ଦିନେ ଦୁଇ ଦିନ ରହିବା ପରେ ଗୋଇନ୍ଦା ପୁଲିସ ବିଭାଗର ଇନ୍ସ୍‌ପେକ୍ଟର ଶ୍ରୀ ନଗେନ୍ ରାୟ ସେଠାରେ ଯାଇ ପହଞ୍ଚିଲେ । ମୋର କାର୍ଯ୍ୟକଳାପ ବିଷୟରେ ସେ ତଥ୍ୟ ସଂଗ୍ରହ କରିବାରେ ଲାଗିଲେ । ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ତାଙ୍କୁ ଦେଖିଲାକ୍ଷଣି କହିଲେ, ''ନଗେନ୍ ! ତୁମେ କୁଆଡ଼େ ଆସିଛ ? ଭଲହେଲା ତୁମେ ଆସିଛ । କିନ୍ତୁ ଆମକୁ ତୁମେ କିଛି ଖୁଆଅ । ଜଳେଶ୍ୱର ବଜାରରେ ଭଲ ରସଗୋଲା ମିଳେ — ତୁମେ ଯାଅ ହାଣ୍ଡିଏ ରସଗୋଲା ଆଣ ।'' ନଗେନ୍‌ବାବୁ ମୋ ବିଷୟରେ ଆଉ ଖବର କ'ଣ ସଂଗ୍ରହ କରିବେ, ସାଇକେଲ୍ ମାରି ଦୌଡ଼ିଲେ ଜଳେଶ୍ୱର ବଜାରକୁ, ଆମକୁ ରସଗୋଲା ଆଣି ଦେଲେ । ସେଦିନ ନଗେନ୍‌ବାବୁ ସେଠାରୁ ଚାଲିଗଲେ । ତା'ର ଦୁଇ ଦିନ ପରେ ସେ ପୁଣି ଆସି ଆମ ରିଲିଫ୍

ସେଣ୍ଟର୍ ପାଖରେ ପହଞ୍ଚିଲେ । ତାଙ୍କୁ ଦେଖି ଲକ୍ଷ୍ମୀନାରାୟଣବାବୁ କହିଲେ, ''ନଗେନ୍ ! ସେଦିନ ରସଗୋଲା ଭାରି ଭଲଲାଗିଲା; କିନ୍ତୁ ଆଜି ଆଉ କିଛି ଖୁଆଅ । ଜଳେଶ୍ୱର ବଜାରରେ ମାଂସଚପ୍ ପ୍ରଭୃତି ଖୁବ୍ ଭଲହେଉଛି ବୋଲି ମୁଁ ଶୁଣିଛି, ତୁମେ ଯାଇ ମାଂସଚପ୍ ଓ କଟ୍‌ଲେଟ୍ ପ୍ରଭୃତି କିଛି ଆଣ ।'' ନଗେନ୍‌ବାବୁ ବଜାରକୁ ଯାଇ ଚପ୍ ଓ କଟ୍‌ଲେଟ୍ ଆଣିଦେଲେ । ସେହିଦିନଠାରୁ ଆଉ ଜଳେଶ୍ୱରରେ ନଗେନ୍‌ବାବୁଙ୍କ ଦେଖା ମିଳିଲାନାହିଁ; ଆଉ ପୁଲିସ ପକ୍ଷରୁ କୌଣସି ଭୟର କାରଣ ରହିଲାନାହିଁ ।

ଯେଉଁ ସବୁ ବେସରକାରୀ ସେବାସଂସ୍ଥାଦ୍ୱାରା ରିଲିଫ୍ ଓ ଅନ୍ନଛତ୍ର ଦିଆଯାଉଥାଏ, ତାହା କିପରି ଶୃଙ୍ଖଳିତ ଭାବରେ ଲୋକଙ୍କ ସହଯୋଗରେ ଚଳିବ ସେ ଦିଗରେ ବ୍ୟବସ୍ଥା କରିବାପାଇଁ ଲକ୍ଷ୍ମୀନାରାୟଣବାବୁ ଓ ମୁଁ ସେତେବେଳେ ଉତ୍ତର ବାଲେଶ୍ୱରର ବହୁତ ଅଞ୍ଚଳକୁ ଯାଇଥିଲୁ । ରାଇବଣିଆ ଓ ଓଲମରା ପ୍ରଭୃତି ଅଞ୍ଚଳରେ ସେତେବେଳେ ଭୀଷଣ ଦୁର୍ଭିକ୍ଷ ପଡ଼ିଥାଏ । ମାତ୍ର ପନ୍ଦର ଦିନ ଭିତରେ କେବଳ ରାଇବଣିଆ ଅଞ୍ଚଳରେ ଖାଇବାକୁ ନପାଇ ତିନି ଶହ ଲୋକ ମରିବାର ଖବର ସଂଗ୍ରହ କଲୁ । ସରକାରଙ୍କ ପକ୍ଷରୁ କେଉଁଠି କେମିତି ଜାଁ-ଭାଁ ସାହାଯ୍ୟ ବଣ୍ଟନ କରାଯାଉଥିଲା । ତାହା ଥିଲା ସମୁଦ୍ରକୁ ଶଙ୍ଖେ ପଣାଭଳି । ଏତେ ଲୋକ ମରିବାର ସମ୍ବାଦ ମୁଁ ଓ ଲକ୍ଷ୍ମୀନାରାୟଣବାବୁ ଖବରକାଗଜକୁ ଦେଇଥିଲୁ, ତାହା ପ୍ରକାଶପାଇଥିଲା ।

ଏହି ସମୟର ଗୋଟିଏ କୌତୂହଳପୂର୍ଣ୍ଣ ଘଟଣା ମନେପଡ଼ୁଛି । ଆମ ଓଡ଼ିଶାରେ ଶ୍ରୀ ଈଶ୍ୱରଲାଲ ବ୍ୟାସ ଜଣେ ଜଣାଶୁଣା ସମାଜସେବୀ ଥିଲେ । ଦୁସ୍ଥ ଲୋକମାନଙ୍କୁ ସାହାଯ୍ୟ କରିବାରେ ତାଙ୍କର ଖୁବ୍ ଖ୍ୟାତି ଥିଲା । ସରକାରଙ୍କ ପକ୍ଷରୁ ଯେଉଁ ସାହାଯ୍ୟ ବଣ୍ଟନ ହେଉଥିଲା ତାହା ଦେଖାଚାହାଁ କରିବାପାଇଁ ତତ୍କାଳୀନ ଓଡ଼ିଶାର ଲାଟ୍ ସାର୍ ଜନ୍ ହବାକ୍ ବ୍ୟାସଜୀଙ୍କୁ ଦାୟିତ୍ୱ ଦେଇଥିଲେ । ଗୋଟିଏ ଅଞ୍ଚଳରେ ପନ୍ଦର ଦିନ ଭିତରେ ତିନିଶହ ଲୋକ ମରିବା କଥା ଯେତେବେଳେ ଖବରକାଗଜରେ ବାହାରିଗଲା ଓ ମୁଁ ସେ ସମ୍ବାଦ ଦେଇଛି ବୋଲି ବ୍ୟାସଜୀ ଜାଣିଲେ, ସେ ମୋ ଉପରେ ଭୀଷଣ ବିରକ୍ତି ପ୍ରକାଶ କଲେ । ତାଙ୍କର ଅଦ୍ଭୁତ ଯୁକ୍ତି ହେଲା ଯେ ଲାଟ୍‌ସାହେବ ତାଙ୍କୁ ଦାୟିତ୍ୱ ଦେଇଥିଲେ ସରକାରୀ ରିଲିଫ୍ ବଣ୍ଟନକାର୍ଯ୍ୟ ଦେଖିବାପାଇଁ । ଯେତେବେଳେ ଖବରକାଗଜରୁ ଲାଟ୍‌ସାହେବ ଜାଣିବେ ଯେ ବ୍ୟାସଜୀ ଏଠାରେ ଥାଉ ଥାଉ ତିନିଶହ ଲୋକ ମରିଯାଇଛନ୍ତି, ସେତେବେଳେ ସାହେବଙ୍କର ବ୍ୟାସଜୀଙ୍କ ଉପରେ କି ଧାରଣା ହେବ ! ତାଙ୍କର ଏତାଦୃଶ ଯୁକ୍ତି ଶୁଣି ଲକ୍ଷ୍ମୀନାରାୟଣବାବୁ ଓ ମୁଁ ବ୍ୟାସଜୀଙ୍କର କଟୁ ସମାଲୋଚନା କରିଥିଲୁ । ସେ କ'ଣ ମୋ ଉପରେ ବିରକ୍ତ ହେବେ, ମୁଁ ତାଙ୍କ ବିରୁଦ୍ଧରେ ଭୀଷଣ ଅସନ୍ତୋଷ ଓ ବିରକ୍ତି ପ୍ରକାଶ କରିଥିଲି । ଏହାପରେ ବ୍ୟାସଜୀ ସେ ସ୍ଥାନ ଛାଡ଼ି ଚାଲିଯାଇଥିଲେ ।

ଦୁର୍ଭିକ୍ଷ ସମୟର ଆଉ ଗୋଟିଏ କୌତୂହଳପୂର୍ଣ୍ଣ ଘଟଣା ବର୍ଣ୍ଣନା କରିବାକୁ ଇଚ୍ଛା ହେଉଛି । ସେତେବେଳେ ଆମ ରାଜ୍ୟର ପ୍ରଧାନମନ୍ତ୍ରୀ ଥା'ନ୍ତି ପାରଳାଖେମୁଣ୍ଡିର ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ଦେବ । ଉତ୍ତର ବାଲେଶ୍ୱର ଏବଂ ବିଶେଷକରି ରାଇବଣିଆ ଅଞ୍ଚଳରେ ଦୁର୍ଭିକ୍ଷର ଭୟାବହ ପରିସ୍ଥିତି ଓ ଅନାହାର ମୃତ୍ୟୁ ସମ୍ବନ୍ଧରେ ବର୍ଣ୍ଣନା କରି ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଏବଂ ମୁଁ ତାଙ୍କ ପାଖକୁ ଗୋଟିଏ ତାରବାର୍ତ୍ତା ପଠାଇଥିଲୁ ଏବଂ ସେ ତୁରନ୍ତ ଜଳେଶ୍ୱର ଅଞ୍ଚଳକୁ ଆସି ସ୍ୱଚକ୍ଷୁରେ ଲୋକଙ୍କ ଦୁର୍ଦ୍ଦଶା ଦେଖି ପ୍ରତିକାର କରିବାପାଇଁ ସେଥିରେ ଅନୁରୋଧ କରିଥିଲୁ । ପ୍ରଧାନମନ୍ତ୍ରୀ ଆମ୍ଭମାନଙ୍କର ତାରବାର୍ତ୍ତା ପାଇ ତୁରନ୍ତ ଉତ୍ତର ଦେଇଥିଲେ ସତ; କିନ୍ତୁ ସେ ଉତ୍ତର ପାଇ ଆମ୍ଭେମାନେ ସ୍ତମ୍ଭୀଭୂତ ହୋଇଯାଇଥିଲୁ । ସେ ତାରବାର୍ତ୍ତାରେ ଜଣାଇଥିଲେ ଯେ ମାଡ୍ରାଜ ପ୍ରଦେଶର ଉଦ୍‌କାମଣ୍ଡଠାରେ ଘୋଡ଼ାଦୌଡ଼ ପ୍ରତିଯୋଗିତା ହେଉଛି । ସେ ଉକ୍ତ ପ୍ରତିଯୋଗିତାରେ ଗୋଟିଏ ଘୋଡ଼ା ବାଜିଲଗାଇଛନ୍ତି, ତାକୁ ଦେଖିବାପାଇଁ ସେ ଯାଉଛନ୍ତି । ସେଠାରୁ ଫେରିଲେ ସେ ଉତ୍ତର ବାଲେଶ୍ୱରଆଡ଼େ ଆସିବେ ଓ

ସେଠା କଥା ବୁଝିବେ । ତାଙ୍କ ଉତ୍ତର ପାଇ ଲକ୍ଷ୍ମୀନାରାୟଣବାବୁ ମନ୍ତବ୍ୟ କରିଥିଲେ ଯେ ରୋମ୍ ସହର ଜଳିଯିବାବେଳେ ସେଠାକାର ରାଜା ବେହେଲା ବଜାଇ ନାଚୁଥିବା କଥା ସେ ଉପନ୍ୟାସରୁ ପଢ଼ିଥିଲେ; କିନ୍ତୁ ଆଜି ପାରଳାଖେମୁଣ୍ଡି ମହାରାଜା ତାହା କାର୍ଯ୍ୟରେ ଦେଖାଇଦେଲେ । ଆମେ ଏହି ମର୍ମରେ ଖବରକାଗଜରେ ସେତେବେଳେ ବିବୃତି ମଧ୍ୟ ଦେଇଥିଲୁ । ଆଜିକାଲି ଜଣେ ମୁଖ୍ୟମନ୍ତ୍ରୀଙ୍କଠାରୁ ଏ ପ୍ରକାର ଉତ୍ତର ଆଶା କରାଯାଇନପାରେ । ପାରଳାଖେମୁଣ୍ଡିର ମହାରାଜା ଥିଲେ ଜଣେ ଅତି ସରଳ ଲୋକ, ତେଣୁ କୌଣସି କୂଟକପଟ ନରଖି ସତକଥାଟାକୁ ପରିଷ୍କାର ଭାବରେ ଜଣାଇଦେଇଥିଲେ । କିନ୍ତୁ ଆଜିକାଲି କାଳର ଜଣେ ମୁଖ୍ୟମନ୍ତ୍ରୀ ହୋଇଥିଲେ ସେ ହୁଏତ କହିଥାନ୍ତେ – ରାଜ୍ୟ ସ୍ୱାର୍ଥ ସମ୍ପର୍କରେ କୌଣସି ଗୋଟିଏ ଅଧିକ ଗୁରୁତର ଆଲୋଚନା ମାନ୍ଦ୍ରାଜରେ କରିବାର ଅଛି, ସେଥିରେ ବିଳମ୍ବ କରି ହେବ ନାହିଁ, ତେଣୁ ସେ କାର୍ଯ୍ୟଟି ସରିଯିବା ପରେ ଦୁର୍ଭିକ୍ଷରେ ଅନାହାର ମୃତ୍ୟୁ କଥା ବୁଝିବି ।

ମୁଁ ସେତେବେଳେ ରାଇବଣିଆ ଅଞ୍ଚଳରେ ପ୍ରାୟ ଦୁଇ ମାସରୁ ଊର୍ଦ୍ଧ୍ୱ ସମୟ ରହି ରିଲିଫ୍ କାର୍ଯ୍ୟରେ ଲାଗିଥିଲି । ସେତେବେଳେ ସେସବୁ ଅଞ୍ଚଳରେ ବହୁଲୋକଙ୍କ ସହିତ ମୋର ସମ୍ପର୍କ ସ୍ଥାପିତ ହୋଇଥିଲା । ବର୍ତ୍ତମାନ ରାଇବଣିଆ ଗଲେ ସେଠାକାର ବୟସ୍କ ଲୋକମାନେ ମୋର ସେ ସମୟର କାର୍ଯ୍ୟ କଥା ମନେପକାନ୍ତି । ରାଇବଣିଆ ଦୁର୍ଗ ଆମ ଓଡ଼ିଶାର ଗୋଟିଏ ପ୍ରଧାନ ଐତିହାସିକ ଗୌରବ । ମୋଗଲ- ମରହଟ୍ଟା ଲଢ଼େଇର ଅନେକ ପୁରାତନ ସ୍ମୃତି ଏହି ଦୁର୍ଗ ସହିତ ଜଡ଼ିତ । ଦୁର୍ଗର ଭଗ୍ନାବଶେଷ ଓ ବିରାଟ ପ୍ରାଚୀର ବର୍ତ୍ତମାନ ସୁଦ୍ଧା ବିଦ୍ୟମାନ । ଏ ଦୁର୍ଗର ଆୟତନ ଏତେ ବଡ଼ ଯେ ତାହାରି ଭିତରେ ଅନେକଗୁଡ଼ିଏ ଗାଆଁ ଅବସ୍ଥିତ । ଏହି ଗାଆଁମାନଙ୍କରୁ ସେତେବେଳେ ଦୁର୍ଭିକ୍ଷରେ ବହୁଲୋକ ପ୍ରାଣ ହରାଇଥିଲେ ।

ଜଳେଶ୍ୱର ଅଞ୍ଚଳରେ ରିଲିଫ୍ କାମ କଲାବେଳେ ସେ ଅଞ୍ଚଳର ବହୁ ସ୍ଥାନ ସହିତ ସମ୍ପର୍କ ରଖିବା ସଙ୍ଗେ ସଙ୍ଗେ ବହୁ ବିଶିଷ୍ଟ ସମାଜସେବୀଙ୍କ ସାଙ୍ଗେ ମୋର ପରିଚୟ ହୋଇଥିଲା । ସେମାନଙ୍କ ଭିତରୁ ଡାକ୍ତର ନରେନ୍ଦ୍ର ଘୋଷ, ସର୍ବଶ୍ରୀ ହରେନ୍ଦ୍ର ନାଥ ଘୋଷ, ସତ୍ୟେନ୍ଦ୍ରନାଥ ଡଗର, ପଦ୍ମଲାଭ କାନ୍ତ, ଅଟଳବିହାରୀ ମହାନ୍ତି, ପୂର୍ଣ୍ଣଚନ୍ଦ୍ର ମହାନ୍ତି, ଶ୍ୟାମଧନ ଦେ, ଶ୍ରୀନାଥ କର, ରାମକୃଷ୍ଣ ଦାସମହାପାତ୍ର, ସୁଧାଂଶୁଶେଖର ପଟ୍ଟନାୟକ, ରଜନୀ ଗୋସ୍ୱାମୀ ଓ ପୂର୍ଣ୍ଣ ସେନାପତି ପ୍ରଭୃତିଙ୍କର ନାମ ମୋର ମନେଅଛି । ବିଭିନ୍ନ ଅଞ୍ଚଳ ଦେଖିବା ଭିତରେ ହାତୀବାଡ଼ି ଗ୍ରାମଟିକୁ ଦେଖି ମୁଁ ଖୁବ୍ ସନ୍ତୁଷ୍ଟ ହୋଇଥିଲି । ସେଠିକାର ଲୋକେ ଖ୍ରୀଷ୍ଟିଆନ୍ ମିଶନ ସାହାଯ୍ୟରେ ଦୁସ୍ଥ ଲୋକମାନଙ୍କୁ ସାହାଯ୍ୟ ଦେବା କାର୍ଯ୍ୟ ସୁଚାରୁରୂପେ କରୁଥିଲେ । ରାଇବଣିଆରୁ ଜଳେଶ୍ୱର ଯିବା ଆସିବା ବାଟରେ ପ୍ରାୟ ମଧ୍ୟସ୍ଥଳରେ ଏହି ଗାଆଁଟି ପଡ଼େ । ସମସ୍ତେ ଖ୍ରୀଷ୍ଟଧର୍ମାବଲମ୍ବୀ । ଏକ ସୁପରିକଳ୍ପିତ ଯୋଜନା ଅନୁଯାୟୀ ଗାଆଁଟି ଗଢ଼ି ଉଠିଥିଲା । ରାସ୍ତାଗୁଡ଼ିକ ସିଧା ଓ ସୁନ୍ଦର । ଘରଗୁଡ଼ିକ ସବୁ ପ୍ରାୟ ଏକପ୍ରକାରର । ଗ୍ରାମର ମଧ୍ୟସ୍ଥଳୀରେ ଖ୍ରୀଷ୍ଟିୟାନ ମିଶନର ଗୀର୍ଜା । ସେଠି ଜଣେ ପାଦ୍ରୀ ସାହେବ ବରାବର ଥାଆନ୍ତି । ସେ ସମସ୍ତଙ୍କର ଦୁଃଖସୁଖ ବୁଝନ୍ତି । ମୋର ମଧ୍ୟ ତାଙ୍କ ସହିତ ଆଳାପ ହୋଇଥିଲା । ପରବର୍ତ୍ତୀ କାଳରେ ମଧ୍ୟ ଥରେ ଦୁଇଥର ମୁଁ ସେ ଗାଆଁକୁ ଯାଇଛି ।

ବାଲେଶ୍ୱର ସହରରେ ସେତେବେଳେ ଦୁର୍ଭିକ୍ଷର ଆତଙ୍କ ପଡ଼ିଥିଲା । ଖାଇବାକୁ ନପାଇ ମଫସଲରୁ ଅନେକ ଲୋକ ଏହି ସହରକୁ ପଳାଇ ଆସିଥା'ନ୍ତି । ଲୋକମାନେ ମାଗିଯାଚି କା-ଭାଁ ମୁଠେ ଖାଉଥା'ନ୍ତି । ଅନେକ ମଧ୍ୟ ରାସ୍ତାକଡ଼ରେ ପଡ଼ି ମରୁଥା'ନ୍ତି । ଏ ଦୃଶ୍ୟ ମୁଁ ନିଜେ ଦେଖିଛି । ଓଡ଼ିଶା ମର୍ଚ୍ଚାଣ୍ଟସ୍ ରିଲିଫ୍ ସୋସାଇଟି ସାହାଯ୍ୟରେ ବାଲେଶ୍ୱର ସହରରେ କେତେକ ଅନ୍ନଛତ୍ର ଖୋଲାଯାଇଥିଲା, ସେ କାର୍ଯ୍ୟ ମୁଁ ତଦାରଖ କରୁଥିଲି । କେତେକ ଯୁବକଙ୍କୁ ଏକତ୍ରିତ କରି ରିଲିଫ୍ କେନ୍ଦ୍ର ପରିଚାଳନାରେ ସାହାଯ୍ୟ କରୁଥିଲି । ସୋସାଇଟିର କର୍ମକର୍ତ୍ତାମାନେ ମୋ କାର୍ଯ୍ୟକୁ ଖୁବ୍

ପସନ୍ଦ କରୁଥିଲେ । ସେତେବେଳେ କଟକ ସହର ଚାଉଳିଆଗଞ୍ଜର ଶ୍ରୀ ସୁନ୍ଦରଦାସ ଖଟୋଉ ଏହି ସୋସାଇଟିର ସଭାପତି ଥିଲେ । ମୋ କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ମାସିକ ଶହେଟଙ୍କା ବେତନରେ ତାଙ୍କ ସୋସାଇଟିର କାର୍ଯ୍ୟ କରିବାପାଇଁ ସେ ମୋତେ ଅନୁରୋଧ କରିଥିଲେ ଓ ସେହି ମର୍ମରେ ମୋତେ ଚିଠି ମଧ୍ୟ ଲେଖିଥିଲେ । ମୁଁ ସେଥିପାଇଁ ତାଙ୍କୁ ଧନ୍ୟବାଦ ଦେଇଥିଲି; କିନ୍ତୁ ପାରିଶ୍ରମିକ ନନେଇ ତାଙ୍କୁ ସାହାଯ୍ୟ କରିବି ବୋଲି ଜଣାଇଥିଲି ।

## ପଣ୍ଡିତଜନଙ୍କ ବିପରୀତ ରୀତି

କଥାରେ ଅଛି, ''ଏ ବଡ଼ ଲୋକଙ୍କର ମତ, ଅଳପ ଜନେ ବିପରୀତ'' । ୧୯୪୩-୪୪ ମସିହାରେ ଓଡ଼ିଶାରେ ଉକଟ ଖାଦ୍ୟାଭାବ ଦେଖାଦେଇଥାଏ । ତତ୍କାଳୀନ ସରକାର ଉଦାସୀନ ହେଲେ ମଧ୍ୟ ବହୁ ବେସରକାରୀ ସେବାସଂସ୍ଥା ଓଡ଼ିଶାର ବିଭିନ୍ନ ସ୍ଥାନରେ ସାହାଯ୍ୟ କରିବାପାଇଁ ଅନ୍ନଛତ୍ର ଖୋଲିଥା'ନ୍ତି; ଅନ୍ୟାନ୍ୟ ରିଲିଫ୍ ବ୍ୟବସ୍ଥା କରୁଥା'ନ୍ତି । ଏଭଳି ରିଲିଫ୍ କାର୍ଯ୍ୟ ସହିତ ମୁଁ ଘନିଷ୍ଠ ସମ୍ପର୍କ ରଖୁଥିବାରୁ ମୋ ଉପରେ ପୁଲିସର ଆଉ ସେତେ କଡ଼ା ନଜର ନଥିଲା । ୧୯୪୪ ମସିହା ଜାନୁୟାରୀ ମାସରେ ମୁଁ କଟକ ଆସି କିଛିଦିନ ରହିଲି । ସବୁ କଂଗ୍ରେସ ନେତା ସେତେବେଳେ ଜେଲ୍‌ରେ । ବାୟୁମଣ୍ଡଳ ସେତେବେଳେ ବଡ଼ ନୈରାଶ୍ୟଜନକ ଥାଏ । ଇଂରେଜ ସରକାରଙ୍କ ସହ ସଂଘର୍ଷ ହେତୁ ସ୍ୱାଧୀନତା ସଂଗ୍ରାମ ଏବଂ ଗଣତନ୍ତ୍ରର ଆଦର୍ଶରେ ଅନୁପ୍ରାଣିତ ହୋଇ ଓଡ଼ିଶାରେ ପ୍ରତିଷ୍ଠିତ କଂଗ୍ରେସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଇ ଯେତେବେଳେ ତ୍ୟାଗ ଓ ସଂଗ୍ରାମର ପଥକୁ ବରଣ କରିନେଇଥିଲେ, ସେତେବେଳେ ଆଶା କରାଯାଉଥିଲା ଯେ ଦେଶ ଓ ଜାତିର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ଓଡ଼ିଶା କଂଗ୍ରେସରେ ଦଳାଦଳି ଓ ସଂକୀର୍ଣ୍ଣ ସ୍ୱାର୍ଥପରତାର ଅବସାନ ଘଟିବ — କିନ୍ତୁ ତା' ହେଲାନାହିଁ । ଶ୍ରୀ ବିଶ୍ୱନାଥ ଦାସଙ୍କର ମନ୍ତ୍ରିମଣ୍ଡଳ ଇସ୍ତଫା ଦେଲାବେଳେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଥିଲେ ପଣ୍ଡିତ ନୀଳକଣ୍ଠ ଦାସ ଏବଂ ସମ୍ପାଦକ ଥିଲେ ପଣ୍ଡିତ ଗୋଦାବରୀଶ ମିଶ୍ର । କଂଗ୍ରେସ ଦଳାଦଳି ସହିତ ଯଦି ଆମ ବିଚାରଧାରାକୁ ଜଡ଼ିତ ନକରାଯାଏ ତେବେ ସମସ୍ତେ ଏକଥା ନିଶ୍ଚୟ ସ୍ୱୀକାର କରିବାକୁ ହେବ ଯେ ପଣ୍ଡିତ ନୀଳକଣ୍ଠ ଦାସ ଓ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ପାଣ୍ଡିତ୍ୟ, ଦେଶପ୍ରାଣତା ଓ କାର୍ଯ୍ୟଦକ୍ଷତା ସମ୍ବନ୍ଧରେ ତତ୍କାଳୀନ ଜନସାଧାରଣଙ୍କର ଖୁବ୍ ଉଚ୍ଚ ଧାରଣା ଥିଲା । କଂଗ୍ରେସ ଆନ୍ଦୋଳନର ପ୍ରଥମ ଅବସ୍ଥାରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ସାଂଗଠନିକ କାର୍ଯ୍ୟ ଓ ସୁଖ୍ୟାତି ଓଡ଼ିଶାରେ କଂଗ୍ରେସର ଆସନ ଓ ପ୍ରଭାବକୁ ସୁଦୃଢ଼ କରିଥିଲା, ଏକଥା ଅସ୍ୱୀକାର କରିହେବନାହିଁ । ଆମ ଛାତ୍ରମାନଙ୍କ ଭିତରେ ଏ ବିଷୟରେ ଅନେକ ସମୟରେ ଆଲୋଚନା ହୁଏ । ଏହି ପଣ୍ଡିତ ଦୁଇଜଣଙ୍କର ବିଦ୍ୟାବୁଦ୍ଧି ଓ ପାଣ୍ଡିତ୍ୟ ଅନ୍ୟ କେତେକ ନେତୃବର୍ଗଙ୍କର ଈର୍ଷାର କାରଣ ବୋଲି ଗୋଟିଏ ମତ ପ୍ରକାଶ ପାଉଥାଏ । ୧୯୪୦ରେ ମଧ୍ୟ ଯଦି ପଣ୍ଡିତ ନୀଳକଣ୍ଠ ଦାସଙ୍କୁ ପ୍ରଦେଶ କଂଗ୍ରେସ କମିଟିର ସଭାପତି କରାଯାଇଥା'ନ୍ତା ତା'ହେଲେ ହୁଏତ କଂଗ୍ରେସର ଦଳାଦଳିକୁ ଏଡ଼ାଇ ଦିଆଯାଇପାରିଥା'ନ୍ତା । ମୋ ବିଚାରରେ, ଏପରିକି ଓଡ଼ିଶାରେ କଂଗ୍ରେସର ଏକ ବିକଳ୍ପ ଏବଂ ସାମ୍ରାଜ୍ୟବାଦୀ ଯୁଦ୍ଧ ଉଦ୍ୟମର ସହାୟକ ସରକାର ପ୍ରତିଷ୍ଠା ମଧ୍ୟ ସମ୍ଭବ ହୋଇଥାଆନ୍ତା । ଏହିଠାରେ ବାସ୍ତବବାଦୀ ଦୂରଦୃଷ୍ଟି ଅଭାବ ଦେଖାଗଲା; ଗୋଷ୍ଠୀବିବାଦ ହେତୁ ତାହା କରାଇ ଦିଆଗଲାନାହିଁ । ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ ପ୍ରଦେଶ କଂଗ୍ରେସ କମିଟିର ସଭାପତି ବଛାଗଲେ । ଏଥର ମଧ୍ୟ ଏ ପରିସ୍ଥିତିକୁ ସହ୍ୟ କରି ନୀଳକଣ୍ଠବାବୁ ଓ ଗୋଦାବରୀଶବାବୁ ଯଦି ଆନ୍ଦୋଳନରେ ଝାସଦେଇଥାଆନ୍ତେ ତା'ହେଲେ କଂଗ୍ରେସରେ ଓ ଜନତାଙ୍କ ମଧ୍ୟରେ ସେମାନଙ୍କ ନେତୃତ୍ୱ ସାବ୍ୟସ୍ତ ରହିଥାଆନ୍ତା । କିନ୍ତୁ ପଣ୍ଡିତ ହେଲେ ମଧ୍ୟ ଏହିଠାରେ ସେମାନଙ୍କର ବିପରୀତ ବୁଦ୍ଧି ପରିଲକ୍ଷିତ ହେଲା । ଯୁଦ୍ଧ ବିରୁଦ୍ଧରେ ବ୍ୟକ୍ତିଗତ ସତ୍ୟାଗ୍ରହ ଓ ଆଇନବିରୋଧୀ କାର୍ଯ୍ୟ କରି ଯେତେବେଳେ ବହୁ କଂଗ୍ରେସ ନେତା ଓ

ବ୍ୟବସ୍ଥାସଭାର କଂଗ୍ରେସ ସଭ୍ୟ ଜେଲ୍ ଭିତରେ ଅଟକ ହୋଇ ରହିଲେ, ସେହି ପରିସ୍ଥିତିର ସୁବିଧା ନେଇ ଯଦୁମଣି ମଙ୍ଗରାଜ ଓ ପ୍ୟାରିଶଙ୍କର ରାୟଙ୍କ ସମେତ ଅନ୍ୟ କେତେଜଣ କଂଗ୍ରେସ ସଦସ୍ୟଙ୍କୁ ଦଳତ୍ୟାଗ କରାଇ ଏହି ଦୁଇଜଣ ନେତାଙ୍କ ସହାୟତାରେ ୧୯୪୨ ମସିହା ପ୍ରାରମ୍ଭରେ ପାରଳାଖେମୁଣ୍ଡି ମହାରାଜାଙ୍କ ନେତୃତ୍ୱରେ ଓଡ଼ିଶାରେ ଗୋଟିଏ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରାଯାଇଥିଲା । ଏ ମନ୍ତ୍ରିମଣ୍ଡଳର ବ୍ୟବସ୍ଥାସଭାରେ ସଂଖ୍ୟାଗରିଷ୍ଠତା ନଥିଲା । ବହୁ ସଭ୍ୟ ଜେଲ୍‌ରେ ବନ୍ଦି ହୋଇ ରହିଥିବାରୁ ବ୍ୟବସ୍ଥାସଭାରେ କାର୍ଯ୍ୟ ଚୁଲାଇବା ପାଇଁ ମନ୍ତ୍ରିମଣ୍ଡଳର ବିଶେଷ କିଛି ଅସୁବିଧା ହୋଇନଥିଲା । ପ୍ରଧାନମନ୍ତ୍ରୀ ପାରଳାଖେମୁଣ୍ଡି ମହାରାଜାଙ୍କ ବ୍ୟତୀତ ପଣ୍ଡିତ ଗୋଦାବରୀଶ ମିଶ୍ର ଓ ଅବ୍‌ଦୁସ୍ ଶୋଭାନ୍ ଖାଁ ସେହି ମନ୍ତ୍ରିମଣ୍ଡଳରେ ସଭ୍ୟ ଥିଲେ । ଅବ୍‌ଦୁସ୍ ଶୋଭାନ୍ ଖାଁ ସେତେବେଳେ ମୁସଲିମ୍ ଲିଗ୍ ଓଡ଼ିଶା ଶାଖାର ସଭାପତି ଥିଲେ ।

ଓଡ଼ିଶା ବ୍ୟବସ୍ଥାସଭାରେ କଂଗ୍ରେସ ଦଳର ସେତେବେଳେ ନେତା ଥିଲେ ଶ୍ରୀ ବିଶ୍ୱନାଥ ଦାସ ଏବଂ ଉପନେତା ଥିଲେ ସ୍ୱାମୀ ବିଚିତ୍ରାନନ୍ଦ ଦାସ । ବିଶ୍ୱନାଥବାବୁ ଜେଲ୍‌ରେ ଥିବାରୁ ସ୍ୱାମୀ ବିଚିତ୍ରାନନ୍ଦ ଦାସ ବ୍ୟବସ୍ଥାସଭାରେ କଂଗ୍ରେସ ଦଳପତିରୂପେ କାର୍ଯ୍ୟ କରୁଥିଲେ । ସ୍ୱାମୀ ବିଚିତ୍ରାନନ୍ଦ ଦାସ ଓ ଶ୍ରୀମତୀ ସରଳା ଦେବୀ ପ୍ରଭୃତି ସେତେବେଳେ ପ୍ରଦେଶରେ ଘଟୁଥିବା ଅନ୍ୟାୟ, ଅତ୍ୟାଚାର ଓ ଜୁଲମ ପ୍ରଭୃତି ସମସ୍ୟାଗୁଡ଼ିକୁ ବହୁ ଦକ୍ଷତାର ସହିତ ବିଧାନସଭାରେ ଉପସ୍ଥାପିତ କରି ମନ୍ତ୍ରିମଣ୍ଡଳର ସମ୍ମୁଖୀନ ହେଉଥିଲେ । ଆଉ ଯେଉଁ କେତେଜଣ କଂଗ୍ରେସ ସଭ୍ୟ ଜେଲ୍ ବାହାରେ ଥିଲେ ସେମାନଙ୍କୁ ଦଳତ୍ୟାଗ କରାଇ ମନ୍ତ୍ରିମଣ୍ଡଳ-ସମର୍ଥକ ଗୋଷ୍ଠୀର ସଂଖ୍ୟାବୃଦ୍ଧି କରିବାକୁ ପଣ୍ଡିତ ଗୋଦାବରୀଶ ମିଶ୍ର ପ୍ରଭୃତି ସବୁବେଳେ ଉଦ୍ୟମ କରାଉଥା'ନ୍ତି । ମୋର ମନେଅଛି, ଏହିସବୁ ସମସ୍ୟା ଆଲୋଚନା କରିବାପାଇଁ କଂଗ୍ରେସ ଦଳପତି ହିସାବରେ ସ୍ୱାମୀ ବିଚିତ୍ରାନନ୍ଦ ଦାସ ତାଙ୍କ ଘରେ ଦଳର ଗୋଟିଏ ବୈଠକ ଡାକିଥିଲେ ଏବଂ ଜେଲ୍ ବାହାରେ ଯେଉଁ ବିଶିଷ୍ଟ କଂଗ୍ରେସ ଲୋକମାନେ ଥିଲେ ସେମାନଙ୍କୁ ମଧ୍ୟ ଉକ୍ତ ବୈଠକରେ ଯୋଗଦେବାପାଇଁ ଡକାଯାଇଥିଲା । ମୁଁ ସେତେବେଳେ ଜେଲ୍‌ରୁ ଖଲାସ ହୋଇ ବାହରେ ଥିବାରୁ ଉକ୍ତ ବୈଠକରେ ଯୋଗଦେବାର ସୁଯୋଗ ପାଇଥିଲି । ଉକ୍ତ ବୈଠକରେ ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ଭାଇ ଓ ସେ ସମୟର କେନ୍ଦ୍ର ବ୍ୟବସ୍ଥାପକ ସଭାର ସଭ୍ୟ ଶ୍ରୀ ଭୁବନାନନ୍ଦ ଦାସ ମଧ୍ୟ ଉପସ୍ଥିତ ଥିଲେ । ଚାନ୍ଦବାଲି-ବାସୁଦେବପୁର ନିର୍ବାଚନମଣ୍ଡଳୀରୁ କଂଗ୍ରେସ ସଭ୍ୟ ହିସାବରେ ବିଧାନସଭାରେ ଥା'ନ୍ତି ଶ୍ରୀ ଚକ୍ରଧର ବେହେରା । ସେ ବୈଠକରେ ଉପସ୍ଥିତ ନଥିଲେ । ସେତେବେଳେ ସେ ଦୋଦୁଲ୍ୟମାନ ଅବସ୍ଥାରେ ଥାଆନ୍ତି । ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ପ୍ରଭାବ ତାଙ୍କ ଉପରେ ଥିଲା । ଶୁଣାଯାଉଥାଏ ଯେ ଶ୍ରୀ ବେହେରା କଂଗ୍ରେସ ଦଳ ଛାଡ଼ି ମନ୍ତ୍ରିମଣ୍ଡଳଗୋଷ୍ଠୀରେ ଯୋଗଦେବେ । ମୋ ଘର ସେହି ନିର୍ବାଚନମଣ୍ଡଳୀରେ ବୋଲି ଜାଣି ସ୍ୱାମୀ ବିଚିତ୍ରାନନ୍ଦ ଦାସ ମୋତେ ଶ୍ରୀ ବେହେରାଙ୍କ ପାଖକୁ ଯିବା ପାଇଁ କହିଥିଲେ । ମୁଁ ସେଦିନ ରାତିରେ ବିଚିତ୍ରାନନ୍ଦବାବୁଙ୍କ ଘରେ ରହିଲି ଏବଂ ତା'ପରଦିନ ଭଦ୍ରକ ଗଲି । ସ୍ୱାମୀ ବିଚିତ୍ରାନନ୍ଦ ଦାସ ଥିଲେ ଅତି ଅମାୟିକ ଓ ସ୍ନେହୀ ବ୍ୟକ୍ତି । ତାଙ୍କ ଘରେ ଯେ ଅତିଥି ରହେ ତାକୁ ସକାଳେ ଜଳଖିଆ ଦେଲାବେଳେ ଯେଉଁ ସନ୍ତୁଳାଟିକକ ପରଷି ଦିଅନ୍ତି ତାହା ଭୁଲିହେବନାହିଁ । ମୁଁ ତ ସେଦିନ ଏଇଆ ଅନୁଭବ କଲି — ଅନେକ ଲୋକଙ୍କ ମୁହଁରୁ ମୁଁ ଏଭଳି ପ୍ରଶଂସା ଶୁଣିଛି ।

ଶ୍ରୀ ଚକ୍ରଧର ବେହେରାଙ୍କ ଘର ହେଉଛି ଘଣ୍ଟେଶ୍ୱର ସନ୍ନିକଟ ହଳଦିଆ ଗ୍ରାମରେ । ଭଦ୍ରକରୁ ମୁଁ ଆମ ଗାଆଁକୁ ଗଲି । ଘଣ୍ଟେଶ୍ୱର ହାଟକୁ ଆମ ଗାଆଁରୁ ଯେଉଁ କେତେକ ବ୍ୟବସାୟୀ ଯିବାଆସିବା କରନ୍ତି ସେମାନଙ୍କଠାରୁ ଚକ୍ରଧରବାବୁଙ୍କ ଘରର ଅବସ୍ଥିତି ଓ ସେଠାକୁ ଯିବା ରାସ୍ତାର ଖବର ନେଲି । ଘଣ୍ଟେଶ୍ୱର ଆମ ଘରଠାରୁ ପ୍ରାୟ ଆଠ ମାଇଲ । ସାଇକେଲ୍ ଖଣ୍ଡେ ଧରି ଯାଇ ଚକ୍ରଧରବାବୁଙ୍କ ଘରେ ପହଞ୍ଚିଲି । ମୋତେ ଦେଖି ସେ ଭଲ ଆତିଥ୍ୟ ଓ ଅଭ୍ୟର୍ଥନା ଜଣାଇଲେ । ଗୋଟିଏ ରାତି ତାଙ୍କ

ଘରେ ରହିଲି । ସ୍ୱାମୀଜୀଙ୍କ ଚିଠି ତାଙ୍କୁ ଦେଇଥିଲି । ସକାଳେ ମୋ ସହିତ ଆସିବାପାଇଁ ତାଙ୍କୁ ଅନୁରୋଧ କଲି । ସେ ତାଙ୍କର ସ୍ଥାନୀୟ ରଜା-ପ୍ରଜା ଝଗଡ଼ା ବିଷୟ ବହୁତ ବୁଝାଇ କହିଲେ । ପରେ ନିଜେ କଟକ ଯାଇ ସ୍ୱାମୀଜୀଙ୍କୁ ଦେଖାକରିବାପାଇଁ ମୋତେ ପ୍ରତିଶ୍ରୁତି ଦେଲେ । ମୁଁ ତାଙ୍କ କଥାରେ ସନ୍ତୁଷ୍ଟ ହୋଇପାରିଲିନାହିଁ । ଘରକୁ ଆସି ଚକ୍ରଧରବାବୁଙ୍କ ସହିତ ଯେଉଁ କଥାବାର୍ତ୍ତା ହୋଇଥିଲା ସେ ବିଷୟରେ ସ୍ୱାମୀଜୀଙ୍କ ପାଖକୁ ଚିଠିଟିଏ ଲେଖି ପଠାଇଲି ।

ଏହିଠାରେ ଗ୍ରାମ୍ୟଚତୁରତାଜନିତ ମୋର ଗୋଟିଏ ତିକ୍ତ ଅନୁଭୂତି ପ୍ରସଙ୍ଗ ପାଠକମାନଙ୍କ ପକ୍ଷେ ବୋଧହୁଏ ଉପଭୋଗ୍ୟ ହେବ । ଆମ ଅଞ୍ଚଳର ଜଣେ ଧନୀ ଲୋକଙ୍କ ପୁଅପାଇଁ ଘଣ୍ଟେଶ୍ୱର ଅଞ୍ଚଳରେ ସେଠାକାର ଜଣେ ମାତବର ବ୍ୟକ୍ତିଙ୍କ ମଧ୍ୟସ୍ଥତାରେ ଗୋଟିଏ ସ୍ୱଚ୍ଛଳ ପରିବାରରୁ ପାତ୍ରୀ ଯୋଗାଡ଼ ହୋଇଥାଏ । ପୁଅର ବାପାଙ୍କ ସହିତ ମୋର ଖୁବ୍ ଭଲ ସମ୍ପର୍କ ଥାଏ; କିନ୍ତୁ ଘଣ୍ଟେଶ୍ୱରରେ ତାଙ୍କ ପୁଅଙ୍କର ବିବାହ ପ୍ରସ୍ତାବ ଚାଲିଥିବା ବିଷୟରେ ମୁଁ ଆଦୌ କିଛି ଜାଣିନଥିଲି । ମୁଁ ପ୍ରାୟ ସଦାବେଳେ ବାହାରେ ରହେ । ରାଜନୈତିକ କାର୍ଯ୍ୟ ଉପଲକ୍ଷେ କେବଳ ଘଣ୍ଟେଶ୍ୱର ଯିବାପାଇଁ ମୁଁ ଘରକୁ ଯାଇଥିଲି । ମୁଁ ଘଣ୍ଟେଶ୍ୱରରୁ ଫେରିଆସିବା ପରେ ଜରୁରୀ ବାର୍ତ୍ତା ପଠାଇ ପୁଅର ବାପାଙ୍କୁ ସେଠାକୁ ଡକାଯାଇଥିଲା ଏବଂ ପ୍ରସ୍ତାବିତ ବିଭାଘର ଆଉ ହୋଇପାରିବନାହିଁ ବୋଲି ତାଙ୍କୁ କୁହାଯାଇଥିଲା । ପୁଅର ବାପା ସେତେବେଳକୁ ବହୁତ କିଛି ଅର୍ଥ ବ୍ୟୟ କରିସାରିଥା'ନ୍ତି; ତେଣୁ ସେ ମୁଣ୍ଡରେ ହାତଦେଇ ବସିଥିଲେ । କାରଣ କ'ଣ ସେକଥା ପଚାରିବାରୁ କୁଆଡ଼େ ସେଇ ବିଭାଘର ପ୍ରସ୍ତାବ ଭାଙ୍ଗିବା ଉଦ୍ଦେଶ୍ୟରେ ମୁଁ ଘଣ୍ଟେଶ୍ୱର ଯାଇଥିଲି ବୋଲି ତାଙ୍କୁ କୁହାଯାଇଥିଲା । ପରେ ଖବର ପାଇଲି ଯେ ମୋର ଘଣ୍ଟେଶ୍ୱର ଯିବାଟା 'କୁଆ ବସିପଡ଼ିବା ବେଳକୁ ତାଳ ପଡ଼ିଯିବା' ଭଳି ହୋଇଥିଲା ଏବଂ ସେ ଘଟଣାକୁ ଏପରି ଧୂର୍ତ୍ତତା ସହ ବ୍ୟବହାର କରାଯାଇଥିଲା ଯେ ଅଯଥାରେ ବର-ପିତାଙ୍କୁ ବହୁତ ଦଣ୍ଡ ଓ ସଲାମି ଦେବାକୁ ପଡ଼ିଥିଲା । କିନ୍ତୁ ମୋର ଘଣ୍ଟେଶ୍ୱର ଯିବାର ପ୍ରକୃତ ଉଦ୍ଦେଶ୍ୟ ସାଧିତ ହେଲାନାହିଁ । ଶ୍ରୀ ଚକ୍ରଧର ବେହେରାଙ୍କର ସେତେବେଳେ କାର୍ଯ୍ୟ କରିବାର ଢଙ୍ଗ ଥିଲା ସରକାରୀ କ୍ଷମତା ଯା' ହାତରେ ଥିବ କୌଣସି ମତେ ତାକୁ ହାତକରି ଚାଲିବା । କାରଣ ସେ ସବୁବେଳେ କହୁଥିଲେ ଯେ ତାହା ନକଲେ କନିକା ରାଜାଙ୍କ ପକ୍ଷ ତାଙ୍କ 'ଦେଶପକ୍ଷ'କୁ ଗ୍ରାସ କରିଯିବ । ସେଥିପାଇଁ ବ୍ୟବସ୍ଥାସଭା ଅଧିବେଶନରେ ଯୋଗ ନଦେଇ ସେ ପରୋକ୍ଷରେ ପାରଳା ମହାରାଜାଙ୍କ ମନ୍ତ୍ରିମଣ୍ଡଳକୁ ସରକାରରେ ତିଷ୍ଠି ରହିବାରେ ସାହାଯ୍ୟ କରୁଥିଲେ । ସେତେବେଳେ ଆସେମ୍ବ୍ଲି ଅଧିବେଶନରେ ମୋଟ ଷାଠିଏ ଜଣ ସଭ୍ୟଙ୍କ ମଧ୍ୟରୁ ଉପସ୍ଥିତି ସଂଖ୍ୟା ପନ୍ଦର-ଷୋହଳରୁ ବେଶି ହୁଏନାହିଁ । ତେଣୁ ଅନାସ୍ଥା ପ୍ରସ୍ତାବ ଆଣି କିମ୍ବା କୌଣସି ବୈଧାନିକ ପନ୍ଥାରେ ସରକାରଙ୍କୁ ପରାସ୍ତ କରିଦେବାର ସମ୍ଭାବନା ସଭ୍ୟମାନଙ୍କ ସାମର୍ଥ୍ୟର ବହିର୍ଭୂତ ଥାଏ, କାରଣ ଅଧିକାଂଶ ସଭ୍ୟ ସେତେବେଳେ ଜେଲ୍‌ରେ ଆବଦ୍ଧ ଥାଆନ୍ତି ।

କନିକା ରାଜାଙ୍କ ବିରୁଦ୍ଧରେ ପ୍ରଜା ଉତ୍ପୀଡ଼ନର ପ୍ରତିବାଦ କରି ଯେଉଁ ଆନ୍ଦୋଳନ ଚାଲିଥିଲା, ଏକସମୟରେ ଶ୍ରୀ ଚକ୍ରଧର ବେହେରା ତା'ର ନେତୃତ୍ୱ ନେଇଥିଲେ । ସେଥିପାଇଁ ତାଙ୍କର ଖୁବ୍ ଖ୍ୟାତି ମଧ୍ୟ ଥିଲା । କନିକା ଜମିଦାରୀ ମଧ୍ୟରେ କି ପ୍ରକାର ଅତ୍ୟାଚାର ହେଉଥିଲା ତାହା ଜାତୀୟକବି ସ୍ୱର୍ଗତ ବାଞ୍ଛାନିଧି ମହାନ୍ତିଙ୍କର ନିମ୍ନୋକ୍ତ କବିତା ପଦକରୁ ଜଣାପଡ଼େ; ''କେତେଦିନ ଆଉ ଦୁଃଖିନୀ କନିକା ଅନୀତି ଯାତନା ସହିବ / ଦୁଃଖ ସହିବାକୁ ଦୁଃଖିନୀ ଲଲାଟେ ଲିହିଥିଲା କିବା ଦଇବ / କର ଦେଇ ଦେଇ ସାରିଛି ସମ୍ବଳ / ମାଡ଼ ଖାଇ ଖାଇ ହରାଇଛି ବଳ / ଆହା ବୋଲିବାକୁ ସାହା କେହି ନାହିଁ କାହା ଆଗେ ଦୁଃଖ କହିବ ?'' ଏହି ପଦକ ଗୀତରୁ ସଂକ୍ଷେପରେ ଅନୁମାନ କରାଯାଇପାରେ ଉତ୍ପୀଡ଼ନ କେଡ଼େ ଦାରୁଣ ଥିଲା । ଯେତେଦୂର ମନେପଡ଼େ, ଏ ଅତ୍ୟାଚାର ବିରୁଦ୍ଧରେ ଶ୍ରୀ ବେହେରା ସ୍ୱର ଉତ୍ତୋଳନ କଲାବେଳେ ଅନ୍ୟମାନଙ୍କ ମଧ୍ୟରେ ତାଙ୍କର ସହକର୍ମୀ ଥିଲେ ସର୍ବଶ୍ରୀ ସନ୍ତଚରଣ

ବେହେରା, ଫକୀରଚରଣ ଦାସ, ଭଗବାନ ଦୀକ୍ଷିତ, ବନମାଳୀ ନାୟକ, କୈଳାସ ଚନ୍ଦ୍ର ସାମଲ, ଗୟାଧର ସାମଲ, କରୁଣାସିନ୍ଧୁ କର, ବାସୁଦେବ ତରାଇ, ଶ୍ରୀଧର ମଲ୍ଲିକ, କାହ୍ନୁଚରଣ ବିଶ୍ୱାଳ, କାହ୍ନୁଚରଣ ଧଳ, ଦିବାକର ଘଡ଼େଇ, ଗୋବିନ୍ଦ ପାତ୍ର, ଅନ୍ତର୍ଯ୍ୟାମୀ ବେହେରା, ଆଦିକନ୍ଦ ଦାସ, ଲକ୍ଷ୍ମୀଧର ସାହୁ, ବିଦ୍ୟାଧର ପଟ୍ଟନାୟକ, କାହ୍ନୁଚରଣ କର ଓ ଇନ୍ଦ୍ରମଣି ଦାସ ପ୍ରମୁଖ ବ୍ୟକ୍ତିମାନେ । ବ୍ୟକ୍ତିଗତ ଭାବରେ ଶ୍ରୀ ବେହେରା ଓ ତାଙ୍କର ପ୍ରଜା-ଆନ୍ଦୋଳନ ପ୍ରତି ମୋର ପୂର୍ଣ୍ଣ ସମର୍ଥନ ଥିଲା । ଏହି ସମୟରେ ଧାମନଗରର ଜଣେ ଉଦୀୟମାନ ଯୁବନେତା ଶ୍ରୀ ମୁରଲୀଧର ଜେନା କିଛିଦିନ କନିକା ଅଞ୍ଚଳରେ ରହି କଂଗ୍ରେସ ସଂଗଠନ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ କନିକା ପ୍ରଜା-ଆନ୍ଦୋଳନର ନେତୃସ୍ଥାନୀୟ ବ୍ୟକ୍ତିଙ୍କ ସହିତ ଘନିଷ୍ଠ ସମ୍ପର୍କ ସ୍ଥାପନକରି ଲୋକମାନଙ୍କର ଅବସ୍ଥା ବୁଝିଥିଲେ । ସେ ସମ୍ପର୍କରେ ସେ କେତେଥର ମୋ ପାଖକୁ ଆସି ଆଲୋଚନା କରୁଥିଲେ । ପରବର୍ତ୍ତୀ କାଳରେ ମୁରଲୀବାବୁ ବିଧାନସଭାର ସଦସ୍ୟ ହୋଇଥିଲେ । ନାନା ଆନ୍ଦୋଳନ ଓ ସରକାରୀ ହସ୍ତକ୍ଷେପ ଫଳରେ କନିକା ଜମିଦାରୀରେ ରାଜାଙ୍କ ଅତ୍ୟାଚାରର ଅବସାନ ହେଲା । ତାହାର ପରବର୍ତ୍ତୀ କାଳରେ ଶ୍ରୀ ଚକ୍ରଧର ବେହେରା ତାଙ୍କର ନେତୃତ୍ୱର ଅପବ୍ୟବହାର କରୁଥିଲେ ବୋଲି ଶ୍ରୀ ଜେନା ଅଭିଯୋଗ କରିଥିଲେ । ଶ୍ରୀ କରୁଣାସିନ୍ଧୁ କର ପ୍ରଭୃତି କେତେକ ସହକର୍ମୀଙ୍କ ଉପରେ ଶ୍ରୀ ବେହେରାଙ୍କ ଦଳର ଅତ୍ୟାଚାର କଥା ମୁରଲୀବାବୁ ସମସ୍ତଙ୍କ ଦୃଷ୍ଟିକୁ ଆଣିଥିଲେ । ମୁରଲୀବାବୁଙ୍କ ମତ ଥିଲା ଯେ ପୂର୍ବରୁ କନିକା ରାଜା ଯେଉଁସବୁ ପ୍ରକାରର ଅତ୍ୟାଚାର କରୁଥିଲେ, ପରବର୍ତ୍ତୀ କାଳରେ ଶ୍ରୀ ବେହେରାଙ୍କ ସଂଗଠନ ଠିକ୍ ସେହିପ୍ରକାର ଆଚରଣ ଆରମ୍ଭ କରି ଲୋକଙ୍କୁ ଭୟଭୀତ କରି ପଇସାପତ୍ର ଆଦାୟ କରୁଥିଲେ । ଗାଈ, ଗୋରୁ, ମଇଁଷି, ମଛଦିଆ, ଜୋର, ବନି ଜଙ୍ଗଲ ଓ ପାହି ଜମି ସମ୍ବନ୍ଧରେ ଲୋକଙ୍କ ଭିତରେ ସଂଘର୍ଷ ଲଗାଇଦେଇ ସମାଧାନ ଆଳରେ ଅର୍ଥ ଉପାର୍ଜନ ଶ୍ରୀ ବେହେରାଙ୍କ ଦଳର ଗୋଟିଏ ଦୈନନ୍ଦିନ କାର୍ଯ୍ୟ ବୋଲି ଶ୍ରୀ ମୁରଲୀଧର ଜେନା କେତେକ ଦୃଷ୍ଟାନ୍ତ ସହ ଗୋଟିଏ ରିପୋର୍ଟ ଆମକୁ ଦେଇଥିଲେ । ଶ୍ରୀ ଜେନାଙ୍କ ଅନୁସନ୍ଧାନ ଓ ତାଙ୍କ ରିପୋର୍ଟ କଥା ଜାଣି ଶ୍ରୀ ବେହେରା କ୍ରୋଧାନ୍ୱିତ ହୋଇ ମୁରଲୀବାବୁଙ୍କ ବିରୁଦ୍ଧରେ ଓଲଟା ଅଭିଯୋଗ କରିଥିଲେ ଯେ ସେ ଉକ୍ତ ଅଞ୍ଚଳରେ ଗୋଟିଏ ସ୍ଥାନରେ ବିବାହ କରିବା ଲୋଭରେ ରାଜପକ୍ଷ ଲୋକଙ୍କଦ୍ୱାରା ପ୍ରଭାବିତ ହୋଇ ତାଙ୍କର ଦୁର୍ନାମ କରୁଛନ୍ତି । ଏ ପ୍ରକାର ଆକ୍ଷେପର ସତ୍ୟତା ସମ୍ବନ୍ଧରେ ଅନୁସନ୍ଧାନ କରିବା ଉଦ୍ଦେଶ୍ୟରେ ବାଲେଶ୍ୱରର ତତ୍କାଳୀନ କଂଗ୍ରେସ ନେତା ଶ୍ରୀ ରବୀନ୍ଦ୍ର ମୋହନ ଦାସ କନିକା ଅଞ୍ଚଳକୁ ଯାଇଥିଲେ । ଅଭିଯୋଗ ଭିତ୍ତିହୀନ ବୋଲି ଦର୍ଶାଇ ଶ୍ରୀ ଦାସ ଶ୍ରୀ ବେହେରାଙ୍କ ଦଳର ଜନସ୍ୱାର୍ଥବିରୋଧୀ କାର୍ଯ୍ୟକଳାପ ସମ୍ବନ୍ଧରେ ଏକ ରିପୋର୍ଟ କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷଙ୍କୁ ଦେଇଥିଲେ । ୧୯୪୬ ରେ ବ୍ୟବସ୍ଥାସଭା ନିର୍ବାଚନରେ ଚାନ୍ଦବାଲି ନିର୍ବାଚନମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ହେବା ପାଇଁ ଯେତେବେଳେ ଶ୍ରୀ ବେହେରାଙ୍କ ନାମ ପ୍ରସ୍ତାବ କରାଯାଏ, ସେତେବେଳେ କଂଗ୍ରେସ କର୍ମୀମାନଙ୍କ ପକ୍ଷରୁ ତା'ର ଘୋର ବିରୋଧ କରାଯାଇ ସେହି ନିର୍ବାଚନମଣ୍ଡଳୀରୁ କଂଗ୍ରେସ ନେତା ଶ୍ରୀ ଭାଗବତ ସାହୁଙ୍କୁ ପ୍ରାର୍ଥୀ କରିବାପାଇଁ ଦାବି ହୋଇଥିଲା । ମହତାବବାବୁଙ୍କର ଇଚ୍ଛା ଥିଲା ଚକ୍ରଧରବାବୁଙ୍କୁ ପ୍ରାର୍ଥୀ କରିବାପାଇଁ । ଶେଷରେ ଅବସ୍ଥାର ସମାଧାନପାଇଁ ଶ୍ରୀ ହରେକୃଷ୍ଣ ମହତାବ ନିଜେ ସେହି ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହୋଇ ନିର୍ବାଚିତ ହୋଇଥିଲେ । ଶ୍ରୀ ଭାଗବତ ସାହୁଙ୍କୁ ଭଦ୍ରକରୁ ପ୍ରାର୍ଥୀ କରାଯାଇଥିଲା ।

୧୯୪୪ ମସିହା ସେପ୍ଟେମ୍ବର ମାସ – ବିଶ୍ୱଯୁଦ୍ଧରେ 'ମିତ୍ରପକ୍ଷ' ଜୟଲାଭ କରିବାରୁ ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବସାନ ହୋଇଥିଲା । ଭାରତବର୍ଷରେ ଇଂରେଜ ସରକାର ରାଜବନ୍ଦୀମାନଙ୍କୁ କ୍ରମେ କ୍ରମେ ଖଲାସକଲେ । ଦେଶର ତୁଙ୍ଗ କଂଗ୍ରେସ ନେତାମାନେ ଖଲାସ ହେବା ସଙ୍ଗେ ସଙ୍ଗେ ଆମ ଓଡ଼ିଶାରେ ମଧ୍ୟ ଯେଉଁ କଂଗ୍ରେସ ନେତା ଓ କର୍ମୀମାନେ ବନ୍ଦୀହୋଇଥିଲେ ସେମାନଙ୍କୁ

ଛାଡ଼ିଦିଆଯାଇଥିଲା । ସମସ୍ତେ ଛାଡ଼ପାଇ ଆସିଗଲେ ସିନା, ପରବର୍ତ୍ତୀ କାର୍ଯ୍ୟପନ୍ଥା କ'ଣ ହେବ ସେ ବିଷୟରେ କିଛି ପରିକଳ୍ପନା ବା ସୂଚନା ନଥିଲା । ଏହି ସମୟରେ ବ୍ରିଟେନ୍‌ର ସାଧାରଣ ନିର୍ବାଚନରେ ଶ୍ରମିକଦଳ ସଂଖ୍ୟାଗରିଷ୍ଠ ହୋଇ ମିଷ୍ଟର ଆଟ୍‌ଲୀଙ୍କ ନେତୃତ୍ୱରେ ସରକାର ଗଠନ କଲେ । ଦ୍ୱିତୀୟ ମହାଯୁଦ୍ଧରେ ବ୍ରିଟିଶ୍‌ଜାତିକୁ ପ୍ରଧାନମନ୍ତ୍ରୀ ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍ ଯେଉଁଭଳି ଅଭୂତପୂର୍ବ ନେତୃତ୍ୱ ଦେଇ 'ମିତ୍ରପକ୍ଷ'କୁ ଜୟଯୁକ୍ତ କରାଇଥିଲେ, ତାହା ବିଶ୍ୱ ଇତିହାସରେ ଅବିସ୍ମରଣୀୟ ହୋଇ ରହିବ । ତାହା ସତ୍ତ୍ୱେ ବ୍ରିଟିଶ୍ ଜାତି ଚାହିଁଲା ଗୋଟିଏ ପ୍ରଗତିଶୀଳ ପରିବର୍ତ୍ତନ । ତେଣୁ ସଙ୍କଟ ସମୟରେ ଚର୍ଚ୍ଚିଲ ବିଚକ୍ଷଣ ବୁଦ୍ଧି ଓ ସାହସ ପ୍ରଦର୍ଶନ କରି ଜାତିର ସମ୍ମାନ ବୃଦ୍ଧି କରିଥିଲେ ମଧ୍ୟ ସେହି ଜାତି ଯୁଦ୍ଧ ପରେ ତାଙ୍କର ରକ୍ଷଣଶୀଳ ନୀତିକୁ ବରଦାସ୍ତ କରିନଥିଲା । ତେଣୁ ବିଶ୍ୱଯୁଦ୍ଧରେ ବିଜୟୀ ଚର୍ଚ୍ଚିଲଙ୍କୁ ସ୍ୱଦେଶରେ ନିର୍ବାଚନରେ ପରାଜୟ ଭୋଗ କରିବାକୁ ପଡ଼ିଥିଲା । ଏହା ପରେ ପରେ ଭାରତବର୍ଷରେ ପ୍ରଶାସନିକ କ୍ଷେତ୍ରରେ ବିରାଟ ପରିବର୍ତ୍ତନର ଆଶା ଓ ସୂଚନା ମିଳିଥିଲା । ସେହି ପ୍ରଶାସନିକ ପରିବର୍ତ୍ତନକୁ ସୁଗମ କରିବା ପାଇଁ ୧୯୩୫ ମସିହା ଭାରତ ସମ୍ବିଧାନ ଆଇନ ଅନୁସାରେ ପ୍ରାଦେଶିକ ବ୍ୟବସ୍ଥାସଭାମାନଙ୍କୁ ନିର୍ବାଚନ ହେବ ବୋଲି ଘୋଷଣା କରାଯାଇଥିଲା । ଏହି ଘୋଷଣାର କିଛି ମାସ ପୂର୍ବରୁ କଂଗ୍ରେସ ସଂଗଠନଗୁଡ଼ିକ ବିପର୍ଯ୍ୟସ୍ତ ଅବସ୍ଥାରେ ଥାଏ । ପ୍ରଦେଶ କଂଗ୍ରେସ ଅଫିସପାଇଁ ମଧ୍ୟ ଘର ନଥାଏ । ଅଫିସ୍ ଚଳାଇବା ପାଇଁ ପଇସା ବି ନଥାଏ । ଏହି ସମୟରେ ଦିନେ କଲିକତାରେ ଶିଳ୍ପପତି ବିରଳାଙ୍କ ଘରେ ଶ୍ରୀ ହରେକୃଷ୍ଣ ମହତାବଙ୍କ ସହ ମୋର ଦେଖାହେଲା । ଓଡ଼ିଶାରେ କଂଗ୍ରେସ କାର୍ଯ୍ୟର ପରିଚାଳନା ସମ୍ବନ୍ଧରେ ସେ ଅତି ଅନ୍ଧକାରମୟ ଓ ନିରୁତ୍ସାହଜନକ ଚିତ୍ର ବର୍ଣ୍ଣନା କରିଥିଲେ । ସେ କହିଥିଲେ ଯେ ଖଣ୍ଡେ ଚିଠି ପଠାଇବାପାଇଁ ଡାକଟିକେଟ୍ କିଣିବାଭଳି ପଇସା ମଧ୍ୟ ନାହିଁ । କଟକ ସହରରୁ କାହାର ସାହାଯ୍ୟ ନେଲେ କିଛି ଚାନ୍ଦା ଆଦାୟ ହୋଇପାରିବ ବୋଲି ସେ ମୋତେ ପଚାରିଥିଲେ । ମୁଁ ମୋର ବନ୍ଧୁ ଶ୍ରୀ ବୀରେନ୍ ମିତ୍ରଙ୍କ ନାମ ତାଙ୍କୁ କହିଥିଲି । ସେତେବେଳେ ବୀରେନ୍‌ବାବୁଙ୍କ ସହିତ ତାଙ୍କର ଭଲ ଚିହ୍ନା-ପରିଚୟ ନଥିଲା । ତାଙ୍କର କହିବା ଅନୁସାରେ ମୁଁ ବୀରେନ୍‌ବାବୁଙ୍କୁ ଚିଠି ଲେଖିଲି । ବୀରେନ୍‌ବାବୁ କଟକରେ ତାଙ୍କୁ ଦେଖାକଲେ । ତା'ପରେ ତାଙ୍କ ପକ୍ଷରୁ କଟକ ସହରରେ କିଛି କିଛି କଂଗ୍ରେସ କାର୍ଯ୍ୟ ଆରମ୍ଭ ହୋଇଥିଲା । ଏଇଟା ହେଉଛି ମହତାବବାବୁ ଜେଲ୍‌ରୁ ଖଲାସ ହେବାର ମାସେ ଦୁଇ ମାସ ଭିତରର କଥା । ଶ୍ରୀ ଜି.ଡ଼ି. ବିରଳାଙ୍କ ସହିତ ଓଡ଼ିଶା କଂଗ୍ରେସର ଦୁରବସ୍ଥା ବିଷୟରେ ଶ୍ରୀ ମହତାବ ଆଲୋଚନା କରିଥିଲେ । ମହତାବବାବୁ ତାଙ୍କର ଅତିଥି ହୋଇ ବିରଳା ଭବନରେ ରହିଥିଲେ । ଅତିଥିଭବନ ଛାଡ଼ି ସେ ଓଡ଼ିଶାକୁ ଆସିବା ପୂର୍ବରୁ ମୁଁ ଦେଖିଲି ଯେ ବିରଳାଙ୍କର ଜଣେ ଚପରାସୀ ଗୋଟିଏ ଥଳିରେ କଂଗ୍ରେସ କାର୍ଯ୍ୟପାଇଁ ଦଶହଜାର ଟଙ୍କାର ଗୋଟିଏ ନୋଟ୍ ତାଡ଼ା ଆଣି ମହତାବବାବୁଙ୍କ ଆଗରେ ସତ୍‌କାର୍ଯ୍ୟରେ ସମର୍ପଣ କଲାଭଳି ରୀତିରେ ରଖିଗଲେ । ବାଲେଶ୍ୱର ଜିଲ୍ଲାର ଲୋକ ହିସାବରେ ସେତେବେଳେ ଚାହୁଁଥାଉ ଯେ ଆସନ୍ନ ନିର୍ବାଚନରେ ମହତାବବାବୁ ମୁଖ୍ୟମନ୍ତ୍ରୀ ହେଲେ ଭଲହେବ । ସେ ବିଷୟ ମୁଁ ତାଙ୍କୁ କହିଥିଲି । କିନ୍ତୁ ବିଶ୍ୱନାଥବାବୁଙ୍କ କାର୍ଯ୍ୟଦକ୍ଷତା ବିଷୟ ବର୍ଣ୍ଣନା କରି ମହତାବବାବୁ କହିଥିଲେ ଯେ ବିଶ୍ୱନାଥ ଦାସ ଥିବା ପର୍ଯ୍ୟନ୍ତ ଆଉ କେହି ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ହୋଇପାରିବେନାହିଁ । ଏକଥା ମୋର ସ୍ପଷ୍ଟ ମନେଅଛି । ପ୍ରକୃତରେ ସେତେବେଳେ ବିଶ୍ୱନାଥ ଦାସଙ୍କର ସେହିଭଳି ସୁଖ୍ୟାତି ଥିଲା । ଏ ସମ୍ବନ୍ଧରେ ମୋର ଗୋଟିଏ ଛୋଟ କଥା ମନେପଡ଼େ । ମୁଁ ଥରେ ଓଡ଼ିଶାରୁ ରେଳରେ ଯାଇ ହାଓଡ଼ା ଷ୍ଟେସନ୍‌ରେ ଓହ୍ଲାଇଥିଲି । କାଳିବାବୁ ବୋଲି ଜଣେ ସିନିୟର ଟିକେଟ୍ କଲେକ୍ଟରଙ୍କ ସହିତ ହାଓଡ଼ା ଷ୍ଟେସନ୍‌ରେ ମୋର ଦେଖାହେଲା । ଦେଶର ରାଜନୈତିକ ଅବସ୍ଥା କଥା କହୁ କହୁ ସେ ମୋତେ କହିଲେ, ''ମଶାୟ ! ଆମି ଭାରତବର୍ଷେ ଦୁଟି ନେତା ଦେଖେଛି ଯାକେ ପ୍ରକୃତପକ୍ଷେ ନେତା ବଲାଯେତେପାରେ । ଏକଟି ହଚ୍ଛେନ୍ ସୁଭାଷ ଚନ୍ଦ୍ର ବୋଷ ଆର୍ ଏକଟି ହଚ୍ଛେନ୍ ଆପ୍‌ନାର୍

ଓ ଇ ବିଶ୍ୱନାଥ ଦାସ ।'' ଆନନ୍ଦରେ ମୋ ମନଟା ସତେଅବା ପୂରିଉଠିଲା; କାରଣ ଉଭୟ ଥିଲେ ଓଡ଼ିଶା ମାଟିର ସନ୍ତାନ ।

ବର୍ତ୍ତମାନ ଏକପ୍ରକାର ସନ୍ଧିକାଳ ଓ ପରିବର୍ତ୍ତିତ ପରିସ୍ଥିତିରେ ମୁଁ ନିଜେ କ'ଣ କରିବି ବୋଲି ପୁଣି ଚିନ୍ତା କରିବାକୁ ପଡ଼ିଥିଲା । ଓକିଲ ତ ହୋଇପାରିଲିନାହିଁ, ଓକିଲାତିରୁ ଫାଳେ ପାସ୍‌କରି ଏଣେ ସ୍ୱାଧୀନତା ସଂଗ୍ରାମରେ ଜେଲ୍ ଗଲି । ଅନ୍ୟ ଫାଳକ ପାସ୍ କରିବାକୁ ବନାରସକୁ ଯିବାପାଇଁ ମୋର ଆଉ ଇଚ୍ଛା ହେଉନଥିଲା । ସେଠାରେ ବି ମୋ ବିରୁଦ୍ଧରେ ବହିଷ୍କାର ଆଦେଶ ଥାଏ । ଏହିଠାରେ 'ଫାଳିକିଆ ଓକିଲ' କଥା କୁହେଁ । ସେ ବିଷୟରେ ଗୋଟିଏ ମଜା କଥା ଅଛି । ଶ୍ରୀ ରାମକୃଷ୍ଣ ପତି ଥିଲେ ଛାତ୍ରନେତା, କଟକରେ ମୋର ଛାତ୍ର-ସାଥୀ । ପରେ ସେ ବିଶିଷ୍ଟ କମ୍ୟୁନିଷ୍ଟ ନେତାରୂପେ ଓ ବିଧାନସଭା ସଦସ୍ୟରୂପେ ନିର୍ବାଚିତ ହୋଇ ଖ୍ୟାତି ଅର୍ଜିଛନ୍ତି । ତାଙ୍କ ବାପା ରାୟସାହେବ ଆନନ୍ଦଚନ୍ଦ୍ର ପତିଙ୍କର ଖୁବ୍ ଇଚ୍ଛା ଥିଲା ଯେ ତାଙ୍କର ଏକମାତ୍ର ପୁଅ ରାମକୃଷ୍ଣ ଜଣେ ଓକିଲ ହେବ । ରାମବାବୁ ବହୁ ଉଦ୍ୟମରେ ପରୀକ୍ଷା ଦେଇ ଦୁଇବର୍ଷିଆ ବି.ଏଲ୍.ର ଗୋଟିଏ ପାର୍ଟ (part) ବା ଫାଳେ ପାସ୍ କରିଥିଲେ; ଆଉ ଫାଳକପାଇଁ ଉଦ୍ୟମ କରି ପାସ୍ କରିବା, ଏପରିକି ପରୀକ୍ଷାରେ ବସିବା ମଧ୍ୟ ହେଉ ନଥାଏ । ସମୟସମୟରେ ମୁଁ ରାମବାବୁଙ୍କ ଘରକୁ ଯାଇ ତାଙ୍କୁ ଖୋଜେ । ରାମବାବୁଙ୍କ ବାପା ତାଙ୍କ ଚାକରକୁ ଡାକି କହନ୍ତି, ''ଆରେ ! ଆମ ଫାଳିକିଆ ଓକିଲକୁ ଡାକ ।'' ସେ ମୋତେ ଦେଖିଲାକ୍ଷଣି କହନ୍ତି, ''ଫାଳିକିଆ ଓକିଲକୁ ଖୋଜୁଛ କି ? ହଉ ରୁହ, ମୁଁ ତାକୁ ଡକାଇପଠାଉଛି ।'' ମୋର ଇଚ୍ଛାହେଲା ଓକିଲାତି ପଢ଼ା ଓ ପାସ୍‌ଟା ସମ୍ପୂର୍ଣ୍ଣ କରିବି । କଲିକତା ବିଶ୍ୱବିଦ୍ୟାଳୟରେ ପଢ଼ିଲେ ମୋର ସୁବିଧା ହେବ ବୋଲି ଭାବି ସେଠାରେ ପଢ଼ିବାପାଇଁ ଉଦ୍ୟମ କଲି । ଆଗରୁ କହିଛି କଲିକତା ବିଶ୍ୱବିଦ୍ୟାଳୟରେ ବି.ଏଲ୍. କୋର୍ସ ହେଉଛି ତିନି ବର୍ଷର ପାଠ । ମୁଁ ବନାରସରେ ଗୋଟିଏ ବର୍ଷ ପଢ଼ି ଗୋଟିଏ ପାର୍ଟ ପାସ୍ କରିଛି, ଆଉ ଗୋଟିଏ ବର୍ଷ ପଢ଼ିଲେ ପୂରା ଏଲ୍.ଏଲ୍.ବି. ଡିଗ୍ରୀ ପାଇଥା'ନ୍ତି । ଅନ୍ତତଃ ଆଉ ଦୁଇବର୍ଷରେ କିପରି ବି. ଏଲ୍. ଡିଗ୍ରୀ କଲିକତା ବିଶ୍ୱବିଦ୍ୟାଳୟରୁ ହାସଲ କରିବି ସେ ଦିଗରେ ଲାଗିପଡ଼ିଲି । ପୁଣି ସେହି ଜେ.ଏନ୍. ବାନାର୍ଜୀଙ୍କୁ ନେଇ ଡକ୍ଟର ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କ ପାଖକୁ ଗଲି । ଏଥର ଶ୍ରୀ ହରେକୃଷ୍ଣ ମହତାବଙ୍କ ପାଖରୁ ଡକ୍ଟର ମୁଖାର୍ଜୀଙ୍କ ପାଖକୁ ଖଣ୍ଡେ ଚିଠି ମଧ୍ୟ ନେଇଥାଏ । ଡକ୍ଟର ମୁଖାର୍ଜୀଙ୍କର ଭିଣୋଇ ଶ୍ରୀ ପି.ଏନ୍. ବାନାର୍ଜୀ ଥାଆନ୍ତି ବିଶ୍ୱବିଦ୍ୟାଳୟ ଆଇନ କଲେଜର ଅଧ୍ୟକ୍ଷ ଓ ସିଣ୍ଡିକେଟ୍‌ର ଜଣେ ଅତି ପ୍ରତିଭାଶାଳୀ ସଭ୍ୟ । ଶ୍ୟାମାପ୍ରସାଦବାବୁ ତାଙ୍କ ସହିତ କଥାବାର୍ତ୍ତା କରି ମୋତେ ତାଙ୍କ ପାଖକୁ ପଠାଇଲେ । ସେ ମୋର ସବୁ କଥା ଶୁଣିଲେ, ତିନି ବର୍ଷରୁ ଗୋଟିଏ ବର୍ଷ ମୋତେ ଗ୍ରାହି ଦେବାପାଇଁ ପ୍ରତିଶ୍ରୁତି ଦେଲେ । ବନାରସ ବିଶ୍ୱବିଦ୍ୟାଳୟ ଆଇନ୍ କଲେଜରେ ଯେଉଁ ବିଷୟଗୁଡ଼ିକ ପରୀକ୍ଷା ଦେଇ ମୁଁ ପାସ୍ କରିସାରିଥିଲି, ସେ ବିଷୟଗୁଡ଼ିକରେ ମୋତେ ଯେପରି ଆଉ ପରୀକ୍ଷା ଦେବାକୁ ନପଡ଼ିବ ତା'ର ବ୍ୟବସ୍ଥା ସେ କରିବେ ବୋଲି କହିଥିଲେ । ତାହାହିଁ ହେଲା । ବିଶ୍ୱବିଦ୍ୟାଳୟ ଆଇନ କଲେଜରେ ଦ୍ୱିତୀୟ ବର୍ଷରେ ମୋର ନାମ ଲେଖାଗଲା । ଏଥର କୌଣସି ହଷ୍ଟେଲ୍‌ରେ ନରହି ହାଓଡ଼ା ରୋଡ୍‌ରେ ମୋ ଭାଇଙ୍କ ବସାରେ ରହି ଯିବାଆସିବା କରି ପଢ଼ିଲି । ଅନ୍ୟ କେତେକ ଓଡ଼ିଆ ଛାତ୍ର ସେଠା ଆଇନ କଲେଜରେ ପଢ଼ୁଥିଲେ । ସେମାନେ ହେଲେ କଲିକତା ଫାଲ୍‌ଗୁନ ଦାସ ଲେନ୍‌ର ବିଶିଷ୍ଟ ଓଡ଼ିଆ ବ୍ୟବସାୟୀ ଶ୍ରୀ ପ୍ରହ୍ଲାଦଚନ୍ଦ୍ର ଦାସଙ୍କ ପୁଅ ଶ୍ରୀ ମଧୁସୂଦନ ଦାସ, ଶ୍ରୀ ହୃଷୀକେଶ ରାୟ, ଶ୍ରୀ ଶ୍ରୀନିବାସ ବାରିକ ପ୍ରଭୃତି । ପରବର୍ତ୍ତୀକାଳରେ ପଶ୍ଚିମ ବଙ୍ଗଳାର ମନ୍ତ୍ରୀ, ନିଖିଳ ଭାରତ କଂଗ୍ରେସ କମିଟିର ସମ୍ପାଦକ ଓ କେନ୍ଦ୍ର ସରକାରଙ୍କର ମନ୍ତ୍ରୀ ହୋଇଥିବା କୁମାରୀ ଆଭା ମାଇତି ସେତେବେଳେ ମୋ ସାଙ୍ଗରେ ଆଇନ ଅଧ୍ୟୟନ କରୁଥିଲେ । ଗୋଟିଏ ଆକସ୍ମିକ ଅସ୍ୱାଭାବିକ ଅବସ୍ଥାରେ ତାଙ୍କ ସହିତ ମୋର ସାକ୍ଷାତ୍ ହୋଇଥିଲା । ଘଟଣାଟି ହେଲା, ଦିନେ ଛାତ୍ରୀ କୁମାରୀ ମାଇତି ଲ' କଲେଜ ଲିଫ୍‌ଟ୍‌ରେ ଆସିବା ସମୟରେ ଲିଫ୍‌ଟଟି ବାଟରେ

ଖରାପ ହୋଇଗଲା । ତାକୁ ସଜାଡ଼ିବା ପାଇଁ ପ୍ରାୟ ଦୁଇଘଣ୍ଟା ଲାଗିଗଲା । କୁମାରୀ ମାଇତି ଏକୁଟିଆ ଲିଫ୍‌ଟ ଭିତରେ ଛିଡ଼ାହୋଇଥା'ନ୍ତି । ଲିଫ୍‌ଟର ଜାଲି ଦୁଆର ଭିତରେ ତାଙ୍କର ମୁହଁଟି ଦେଖାଯାଉଥାଏ । ଅନେକ ପିଲା ସେଠାରେ ଏକତ୍ରିତ ହୋଇ ତାଙ୍କୁ ଥଟ୍ଟା ପରିହାସ କରିବାରେ ଲାଗିଲେ । ମୁଁ ଦେଖିଲି ଝିଅଟି ଖଦଡ଼ ପିନ୍ଧିଛି, ନିଶ୍ଚୟ କଂଗ୍ରେସ ସଙ୍ଗେ ସମ୍ପର୍କ ଥିବା ଘରର ଝିଅ । ତେଣୁ ଲିଫ୍‌ଟ ପାଖରେ ଠିଆହୋଇ କଥାବାର୍ତ୍ତା କଲି । ଅନ୍ୟ ଛାତ୍ରମାନେ କ୍ରମେ ଥଣ୍ଡାପଡ଼ିଗଲେ । ଲିଫ୍‌ଟ ସଜଡ଼ାହୋଇଗଲା । ସେ ବାହାରକୁ ଆସି ମୋ ସଙ୍ଗରେ କଥାବାର୍ତ୍ତା କରି ଧନ୍ୟବାଦ ଦେଇଥିଲେ । ସେଥିରୁ ଜାଣିଲି ଯେ ବଙ୍ଗଳାର ସୁପରିଚିତ କଂଗ୍ରେସନେତା ମେଦିନିପୁରର ଅଧିବାସୀ ଶ୍ରୀ ନିକୁଞ୍ଜବିହାରୀ ମାଇତିଙ୍କର ସେ କନ୍ୟା । ନିକୁଞ୍ଜବାବୁ ପଶ୍ଚିମ ବଙ୍ଗଳାର ମନ୍ତ୍ରୀ ହୋଇଥିଲେ । ଆଭା ମାଇତି ଦିନେ ମୋତେ ତାଙ୍କ ଘରକୁ ଡକାଇ ତାଙ୍କ ବାପାଙ୍କ ସହ ପରିଚୟ କରାଇଦେଇଥିଲେ । ଅଖିଳ ଭାରତ କଂଗ୍ରେସ କମିଟିର ସମ୍ପାଦିକା ହିସାବରେ କୁମାରୀ ମାଇତି ଅନେକ ସମୟରେ ଆମକୁ ବହୁତ ସାହାଯ୍ୟ କରିଥିଲେ ।

## ବିଚକ୍ଷଣ ବିଧାନ ରାୟ

ଆଭା ମାଇତି ପଶ୍ଚିମ ବଙ୍ଗଳାରେ ଡକ୍ଟର ବିଧାନଚନ୍ଦ୍ର ରାୟଙ୍କ ମନ୍ତ୍ରିମଣ୍ଡଳରେ ଜଣେ ସଦସ୍ୟା ଥାଆନ୍ତି । ମୁଁ ସେତେବେଳେ ଥାଏ ଓଡ଼ିଶାରେ ଯୋଗାଣ ବିଭାଗ ମନ୍ତ୍ରୀ । ଓଡ଼ିଶା ସହିତ ଧାନଚାଉଳ କ୍ରୟବିକ୍ରୟ ସମ୍ପର୍କରେ ପଶ୍ଚିମ ବଙ୍ଗଳା ସରକାରଙ୍କ ସହିତ ବହୁତ ଆଲୋଚନା ଚାଲିଥାଏ; କାରଣ କଲିକତା ପ୍ରଭୃତି ନିଅଣ୍ଟିଆ ଅଞ୍ଚଳର ଅଧିବାସୀ ଧାନଚାଉଳପାଇଁ ଓଡ଼ିଶା ଉପରେ ନିର୍ଭର କରୁଥିଲେ । ପଶ୍ଚିମ ବଙ୍ଗଳାର ସଚିବାଳୟ ରାଇଟର୍ସ ବିଲ୍‌ଡିଙ୍ଗ୍‌ରେ ମୁଖ୍ୟମନ୍ତ୍ରୀ ଡକ୍ଟର ରାୟଙ୍କ ଅଫିସରେ ଓଡ଼ିଶାରୁ ବଙ୍ଗଳାକୁ ଚାଉଳ ଯୋଗାଣ ସମ୍ପର୍କରେ ଆମର କଥାବାର୍ତ୍ତା ପଡ଼ିଥାଏ । ବଙ୍ଗଳାର ଖାଦ୍ୟମନ୍ତ୍ରୀ ଥିଲେ ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ସେନ, ସେ ଉପସ୍ଥିତ ଥା'ନ୍ତି । ଅନ୍ୟାନ୍ୟ ମନ୍ତ୍ରୀଙ୍କ ମଧ୍ୟରେ ଆଭା ମାଇତି ମଧ୍ୟ ସେଠାରେ ଥିଲେ । ପ୍ରଫୁଲ୍ଲବାବୁ କଥାପ୍ରସଙ୍ଗରେ ବିଧାନବାବୁଙ୍କୁ ଆଭା ମାଇତିଙ୍କର ମୁଁ ଲ' କଲେଜରେ ସହପାଠୀ ଥିଲି ବୋଲି ପରିଚୟ କରାଇଥିଲେ । ହଠାତ୍ ବିଧାନବାବୁ ମନ୍ତବ୍ୟ କରିଥିଲେ ଯେ ସେକଥା ସେ ଜାଣନ୍ତି ଏବଂ କେବଳ ସେତିକି ନୁହେଁ, ସେଥିପାଇଁ ଆଭାଙ୍କୁ ସତର୍କ କରିଦେଇଛନ୍ତି ଯେ ମୁଁ ଓଡ଼ିଶାରେ ଯୋଗାଣମନ୍ତ୍ରୀ ଥାଉ ଥାଉ ଯଦି ମୋ ପାଖରୁ ଅଧିକା ଚାଉଳ ସେ କଲିକତାକୁ ନନେଇପାରିବେ ତା' ହେଲେ ମନ୍ତ୍ରିମଣ୍ଡଳରୁ ବହିଷ୍କୃତ ହେବେ । ଏକଥା ଶୁଣି ସେଠାରେ ଖୁବ୍ ହାସ୍ୟରୋଳ ସୃଷ୍ଟିହୋଇଥିଲା । ଏହି ପ୍ରସଙ୍ଗରେ ବିଭିନ୍ନ ସମସ୍ୟା ସମାଧାନ କରିବାରେ ବିଧାନବାବୁଙ୍କ ପ୍ରଶାସନିକ କୌଶଳ ବିଷୟରେ ଗୋଟିଏ କଥା ମୋର ମନେପଡ଼େ । ସେ ମୋତେ ଜଣାଇଦେଇଥିଲେ ଯେ ଓଡ଼ିଶାରୁ ଯେତିକି ଚାଉଳ ଆମେ ଦେବାକୁ ସକ୍ଷମ ସେତିକି ପଛେ ଦେବୁ, ମାତ୍ର ସାମ୍ବାଦିକମାନେ ତାଙ୍କୁ ପଚାରିଲେ ସେ କହିବେ ଯେ ଓଡ଼ିଶାରୁ ପ୍ରତିଦିନ ୧୦ଟି ସ୍ୱତନ୍ତ୍ର ଟ୍ରେନ୍‌ରେ ଚାଉଳ ଆସି କଲିକତାରେ ପହଞ୍ଚିବ । କିଛିଦିନ ପର୍ଯ୍ୟନ୍ତ ତା'ର ପ୍ରତିବାଦ କରିବାକୁ ସେ ମୋତେ ମନାକରିଥିଲେ । ତାଙ୍କ କଥା ସେ ଖବରକାଗଜକୁ କହିଲେ ଏବଂ ତା'ପରଦିନ କଲିକତାରେ ଚାଉଳ ଦର କମିବା ସଙ୍ଗେ ସଙ୍ଗେ ବଜାରରେ ଚାଉଳ ମଧ୍ୟ ମିଳିଥିଲା ।

ଆଭା ମାଇତି ଅଖିଳ ଭାରତ କଂଗ୍ରେସ କମିଟିର ସାଧାରଣ ସମ୍ପାଦିକା ଥିଲାବେଳେ ଜବାହରଲାଲ ଥାଆନ୍ତି ପ୍ରଧାନମନ୍ତ୍ରୀ । କଂଗ୍ରେସ ସଭାପତି ଥା'ନ୍ତି ତାଙ୍କ କନ୍ୟା ଶ୍ରୀମତୀ ଇନ୍ଦିରା ଗାନ୍ଧୀ । ଶ୍ରୀମତୀ ଗାନ୍ଧୀ ଚାହୁଁଥାନ୍ତି ଯେ ଓଡ଼ିଶାରେ ବିଜୁ ପଟ୍ଟନାୟକ ପ୍ରଦେଶ କଂଗ୍ରେସର ସଭାପତି ହେଲେ କଂଗ୍ରେସର ସାଙ୍ଗଠନିକ କାର୍ଯ୍ୟ ଭଲ ହେବ । ସେଇ ଅନୁସାରେ ଆମର ଏଠି ଉଦ୍ୟମ ଚାଲିଲା । ପ୍ରଦେଶରେ କଂଗ୍ରେସ ଅନୁଷ୍ଠାନମାନଙ୍କୁ ସକ୍ରିୟ କରିବାପାଇଁ ବିଜୁ ପଟ୍ଟନାୟକ ପ୍ରାୟ ଦୁଇ ଲକ୍ଷ ଟଙ୍କାର ଗୋଟିଏ ଯୋଜନା ପ୍ରସ୍ତୁତ କରିଥିଲେ । ପ୍ରଦେଶ କଂଗ୍ରେସ କମିଟିର ସଭାପତି ପଦପାଇଁ ବିଜୁ ପଟ୍ଟନାୟକଙ୍କର

ପ୍ରତିଦ୍ୱନ୍ଦ୍ୱିତା ହୋଇଥିଲା ବନମାଳୀ ପଟ୍ଟନାୟକଙ୍କ ସହିତ । ମାତ୍ର ତିନୋଟି ଭୋଟ୍‌ରେ ବିଜୁ ପଟ୍ଟନାୟକ ହାରିଯାଇଥିଲେ । ଟେଲିଫୋନ୍‌ରେ ଇନ୍ଦିରା ଗାନ୍ଧୀଙ୍କ ସହିତ କ'ଣ କଥାବାର୍ତ୍ତା ହେଲେ ମୁଁ ଜାଣି ନ ଥିଲି, ସେ ପରଦିନ ଗୋଟିଏ ଚିଠି ଲେଖି ଲକ୍ଷେ ଟଙ୍କାର ଗୋଟିଏ ଚେକ୍ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ପାଖକୁ ରେଜିଷ୍ଟାର୍ଡ଼ ପୋଷ୍ଟରେ ପଠାଇଦେଇଥିଲେ । ସେହି କଥା କେତେକ ବନ୍ଧୁଙ୍କ ପାଖରେ ସେ ବୋଧେ କହିଥିଲେ । ଖବରଟି ସାରା କଟକ-ଭୁବନେଶ୍ୱରରେ ନାନା ମହଲରେ ପ୍ରଚାରିତ ହୋଇଗଲା । ମହତାବବାବୁ ଏକଥା ଶୁଣି ଏହା ସମ୍ପୂର୍ଣ୍ଣ ମିଥ୍ୟା ପ୍ରଚାର ବୋଲି ଉଡ଼ାଇଦେଇଥିଲେ । ମୁଁ ଯେତେବେଳେ ଦିନେ ତାଙ୍କୁ କହିଲି ଯେ ବିଜୁବାବୁ ଚିଠି ଲେଖି ଠିକ୍ ଏହି କଥା ସେଥିରେ ଉଲ୍ଲେଖ କରିଥିଲେ ବୋଲି ମୁଁ ଜାଣେ, ମହତାବବାବୁ କହିଥିଲେ ଯେ ବିଜୟର ସେହିଭଳି ଅଭ୍ୟାସ । ସମସ୍ତଙ୍କ ସାମ୍ନାରେ ସେ ଚିଠି ଲେଖିଥିବ, କିନ୍ତୁ ପରେ ତାକୁ ନପଠାଇ ଚିରିଦେଇଥିବ । ଘଟଣାର ସତ୍ୟାସତ୍ୟର ପ୍ରମାଣ ଏ.ଆଇ.ସି.ସି. ଅଫିସ୍‌ରୁ ମୁଁ ଜାଣିପାରିବି ବୋଲି ମହତାବବାବୁଙ୍କୁ କହିଥିଲି । ସେହିଦିନ ଦିଲ୍ଲୀ ଏ.ଆଇ.ସି.ସି. ଅଫିସ୍‌ରେ ସାଧାରଣ ସଂପାଦକ ଆଭା ମାଇତିଙ୍କୁ ଫୋନ୍ ଲଗାଇ ସବୁକଥା ପଚାରିଲି । ସଭାପତି ଶ୍ରୀମତୀ ଇନ୍ଦିରା ଗାନ୍ଧୀ ବିଜୁ ପଟ୍ଟନାୟକଙ୍କଠାରୁ ଏକ ଲକ୍ଷ ଟଙ୍କାର ଚେକ୍ ପାଇ କଂଗ୍ରେସ ଆକାଉଣ୍ଟରେ ଡିପୋଜିଟ୍ କରିଛନ୍ତି ବୋଲି ସେ ମୋତେ ଖବର ଦେଇଥିଲେ । ଏହି ପ୍ରମାଣ ମୁଁ ମହତାବ ବାବୁଙ୍କୁ ମଧ୍ୟ ଜଣାଇଦେଇଥିଲି ।

## ସ୍ୱାଧୀନତାର ସନ୍ଧିକାଳରେ ମୋର ଅଭିଜ୍ଞତା

ଆମ ଦେଶ ସ୍ୱାଧୀନ ହେବାର ଠିକ୍ ପୂର୍ବବର୍ତ୍ତୀକାଳର ସ୍ମୃତି ମୋ ପକ୍ଷେ ଯେତିକି ଉଲ୍ଲାସପ୍ରଦ ସେହିଭଳି ବିଷାଦମୟ । ଏହି ସମୟଟି ମୁଁ ବିତାଇଥିଲି କଲିକତା ମହାନଗରୀରେ । ଦେଶପ୍ରାଣତାର ମହାନତା ସହିତ ବଡ଼ ସାନ ନିର୍ବିଶେଷରେ ମଣିଷ ମନର ଭୟଙ୍କର ନିଷ୍ଠୁରତା, ପୁଣି ମହନୀୟ ସଂପ୍ରୀତିର ବହୁ ଦାରୁଣ ଓ କରୁଣ ଦୃଶ୍ୟ ମୁଁ ସେଠାରେ ଦେଖିଛି । ଲହୁ ଓ ଲୁହର ସ୍ରୋତ ଭିତରେ ବହୁଥର ବିଚଳିତ ଅନୁଭବ କରିଛି । ସାମାଜିକ ଜୀବନରେ ସବୁ କ୍ଷୁଦ୍ରତାକୁ ଅତିକ୍ରମ କରି ମଣିଷ ମଣିଷକୁ ଭଲପାଇବା ଯେ ଏକାନ୍ତ ଆବଶ୍ୟକ, ସେହିଠାରେହିଁ ମୋ ଜୀବନରେ ଏହି ଅଲିଭା ଅନୁଭୂତି ହୋଇଥିଲା । ତେଣୁ ସ୍ୱାଧୀନତାର ସନ୍ଧିକାଳରେ କଲିକତାରେ ରହିବାଟା ହୁଏତ ମୋ ପକ୍ଷେ ଥିଲା ଏକରକମ ବିଧିନିର୍ଦ୍ଦେଶ ।

ଆଇନ ଅଧ୍ୟୟନ କରିବାପାଇଁ ଯେଉଁ ଅଢ଼େଇବର୍ଷ ମୁଁ କଲିକତାରେ ରହିଲି, ତାହା ମୋ ଜୀବନରେ ଗୋଟିଏ ସାମାଜିକ ଓ ରାଜନୈତିକ ଘଟଣାବହୁଳ ଅଧ୍ୟାୟ । କଲିକତା ଭାରତବର୍ଷ ତଥା ବିଶ୍ୱରେ ଏକ ବୃହତ୍ ଜନବହୁଳ ନଗରୀ ଏବଂ ଓଡ଼ିଶା ହେଲା ତା'ର ଅତି ନିକଟତମ ପଡ଼ୋଶୀ । ଓଡ଼ିଶାର ସବୁଠାରୁ ବଡ଼ ସହର କଟକର ସେତେବେଳେ ଲୋକସଂଖ୍ୟା ଯାହା ଥିଲା ତାହାର ପ୍ରିୟ ଚାରିଗୁଣ ଓଡ଼ିଆ ବାସକରୁଥିଲେ କଲିକତାରେ । ସେତେବେଳକାର କଲିକତାରେ କେବଳ ଓଡ଼ିଆ ଲୋକସଂଖ୍ୟା ଥିଲା ପ୍ରାୟ ଚାରିଲକ୍ଷ । ଓଡ଼ିଶାର ଅନ୍ୟାନ୍ୟ ଜିଲ୍ଲା ଅପେକ୍ଷା ବାଲେଶ୍ୱର ଓ ଗଞ୍ଜାମ ଜିଲ୍ଲାରୁ ଅଧିକ ଲୋକ ଥିଲେ କଲିକତାରେ । ବାଲେଶ୍ୱର ଜିଲ୍ଲା ଓ କଟକ ଜିଲ୍ଲା କେନ୍ଦ୍ରାପଡ଼ା ସବ୍‌ଡିଭିଜନ୍‌ର ପ୍ରାୟ ପ୍ରତ୍ୟେକ ଗ୍ରାମରୁ ଲୋକ ସେଠାରେ ରହୁଥିଲେ । କଲିକତା ସହରର ପାଣି ଯୋଗାଣ ସଂସ୍ଥାର କାର୍ଯ୍ୟ ଓଡ଼ିଆ ମିସ୍ତ୍ରୀ ଓ ଶ୍ରମିକଙ୍କର ମୋଟାମୋଟି ଏକଚାଟିଆ ଆୟତ୍ତରେ ଥିଲା । ଜାହାଜ ମରାମତି ଓ ଜାହାଜରେ ମାଲ ବୋଝେଇ ଓ ଖଲାସ କରିବା କାର୍ଯ୍ୟ ବହୁ ଓଡ଼ିଆ କରୁଥିଲେ । କଲିକତା କର୍ପୋରେସନ୍ କାର୍ଯ୍ୟରେ ସେହିଭଳି ସବୁ କ୍ଷେତ୍ରରେ ଓଡ଼ିଆ କର୍ମଚାରୀ ଓ ଶ୍ରମିକ ଥିଲେ । ଝୋଟକଳ ଓ ସୂତାକଳ ସବୁ ଭରପୂର ଥିଲା ଓଡ଼ିଆ ଶ୍ରମିକଙ୍କଦ୍ୱାରା । ବଡ଼ବଜାରରେ ଠେଲାଗାଡ଼ିରେ ଜିନିଷ ବୁହାବୁହି କାର୍ଯ୍ୟରେ ବହୁସଂଖ୍ୟକ ଓଡ଼ିଆ ଶ୍ରମିକ ନିଯୁକ୍ତ ଥିଲେ । ଛତାତିଆରି କାର୍ଯ୍ୟରେ

ଓଡ଼ିଆମାନେ ଧୁରନ୍ଧର ଥିଲେ । ଠାକୁରବାଡ଼ି ଓ ଗଙ୍ଗାକୂଳ ଘାଟମାନଙ୍କରେ ଠାକୁର ପୂଜାଠାରୁ ଆରମ୍ଭକରି ତିଳତର୍ପଣ ପର୍ଯ୍ୟନ୍ତ ସବୁ କାର୍ଯ୍ୟ ଓଡ଼ିଆ ବ୍ରାହ୍ମଣଙ୍କଦ୍ୱାରା ହିଁ ସମ୍ପାଦିତ ହେଉଥିଲା । ଭୋଗ ତିଆରି କାର୍ଯ୍ୟରେ ମଧ୍ୟ ଓଡ଼ିଆମାନଙ୍କର ଥିଲା ସମ୍ପୂର୍ଣ୍ଣ ଏକଚାଟିଆ ଅଧିକାର । ତା'ଛଡ଼ା ରୋଷେଇ ଓ ଗୃହ କାର୍ଯ୍ୟରେ ମଧ୍ୟ କଲିକତାରେ ବହୁ ଲୋକଙ୍କ ଘରେ ଓଡ଼ିଆ ଲୋକ ନିଯୁକ୍ତ ଥିଲେ । ବିଭିନ୍ନ ସ୍ୱାଧୀନ ଧନ୍ଦା ଚାକିରିବାକିରିରେ ମଧ୍ୟ ଓଡ଼ିଶାର କିଛି ଲୋକ ଥିଲେ । ମୋଟ ଉପରେ କଲିକତାର ଜନଜୀବନ ସହିତ ଓଡ଼ିଆମାନେ ଓତପ୍ରୋତଭାବରେ ଜଡ଼ିତ ଥିଲେ ।

## ବୃହତ୍ତର କଲିକତା ଓଡ଼ିଆ ସଂଗଠନ

ମୋର କଲିକତାରେ ଏହି ରହଣି ସମୟରେ ଓଡ଼ିଆମାନେ ରହୁଥିବା ଅଞ୍ଚଳରେ ବୁଲି ମୁଁ ସେମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିଥିଲି । ବୃହତ୍ତର କଲିକତା ଗୋଟିଏ ବିସ୍ତୃତ ଓ ବିକ୍ଷିପ୍ତ ଅଞ୍ଚଳ । ସବୁ ଅଞ୍ଚଳକୁ ଯାଇ ସମ୍ପର୍କ ସ୍ଥାପନ କରିବା ମଧ୍ୟ କଷ୍ଟକର । ଓଡ଼ିଆମାନେ ଯେଉଁଠାରେ ରହୁଥିଲେ ସେମାନଙ୍କର ନିଜ ଉଦ୍ୟମରେ ବହୁ ସାଂସ୍କୃତିକ ଅନୁଷ୍ଠାନ ମଧ୍ୟ ଗଢ଼ିଥିଲେ; କିନ୍ତୁ ସେମାନଙ୍କର କୌଣସି କେନ୍ଦ୍ରୀୟ ଅନୁଷ୍ଠାନ ନଥିଲା । ତେଣୁ ପୂରା ସମୟ ଦେଇ କେହି ସେମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିବାର ସୁଯୋଗ ନଥିବାରୁ ସେମାନଙ୍କର ଉଦ୍ୟୋଗ ପରସ୍ପର ମଧ୍ୟରେ ଏବଂ ବାହାରେ ପ୍ରାୟ ଅଜଣା ରହୁଥାଏ । କଲିକତା ଓଡ଼ିଆ ସମାଜ ବୋଲି ଗୋଟିଏ ସଂସ୍ଥା ବହୁବଜାର ଅଞ୍ଚଳରେ ଥାଏ । ମୋର ମନେପଡୁଛି, ତା'ର ପୃଷ୍ଠପୋଷକମାନଙ୍କ ଭିତରେ ଥିଲେ ସର୍ବଶ୍ରୀ ଆକୁଳି ମିଶ୍ର, ଅଭୟ ଚରଣ ନାୟକ, ରାମଚନ୍ଦ୍ର ପଟ୍ଟନାୟକ, ହରେକୃଷ୍ଣ ରାଉତରାୟ (ମୋର ଭାଇ), ରାମଚନ୍ଦ୍ର ବେହେରା, ଦୟାନିଧି ଆରଣ ଓ ଲିଙ୍ଗରାଜ ପାଇକରାୟ ପ୍ରମୁଖ । ମୋର କଲିକତା ରହଣି ବିଷୟ ଯେତେବେଳେ ସବୁଆଡ଼େ ଜଣାପଡ଼ିଗଲା, ସବୁ ଅଞ୍ଚଳକୁ ଯାଇ ଓଡ଼ିଆମାନଙ୍କର ସାଂସ୍କୃତିକ ଅନୁଷ୍ଠାନମାନଙ୍କରେ ଯୋଗଦେବାପାଇଁ ବହୁତ ଚାପ ପଡ଼ିଲା । ଆଇନ କଲେଜର ଛାତ୍ର ଥାଇ ପଢ଼ାପଢ଼ି ସହିତ ଏସବୁ କାର୍ଯ୍ୟ କରିବାରେ ବିଶେଷ କିଛି ଅସୁବିଧା ହେବନାହିଁ ବୋଲି ମୁଁ ଅନୁଭବ କଲି । ସେ ସମୟରେ କଲିକତାରେ ମୋ ପାଖରେ ଯାଇ ଜୁଟିଲେ ଶ୍ରୀ ହୃଦାନନ୍ଦ ମଲ୍ଲିକ । ସେ ପରେ ଓଡ଼ିଶା ବ୍ୟବସ୍ଥାସଭାର ସଭ୍ୟ ହୋଇଥିଲେ । ସେ ପୂରା ସମୟ ଦେଇ ଓଡ଼ିଆ ଅନୁଷ୍ଠାନ ଗଢ଼ିବାରେ ଲାଗିପଡ଼ିଥିଲେ । ମୋ ଭାଇଙ୍କର ଦୁଇଖଣ୍ଡ ମଟରଗାଡ଼ି ଥିଲା । ବଡ଼ ଗାଡ଼ିଟି ଭାଇ ବ୍ୟବହାର କରୁଥିଲେ ଓ ଗୋଟିଏ ଛୋଟ ବେବି ଫୋର୍ଡ଼ ଗାଡ଼ି ମୋ ପାଖରେ ଥାଏ ଆଇନ କଲେଜକୁ ଯିବାଆସିବା ଓ ଅନ୍ୟାନ୍ୟ କାମଦାମ ପାଇଁ । ଛୋଟିଆ ଗାଡ଼ିଟିରେ ତିନିଜଣ ଲୋକ ବସିବା ସମ୍ଭବ ହୁଏ । ଗୋଟିଏ ଗ୍ୟାଲେନ୍ ପେଟ୍ରୋଲ୍ ପକାଇଦେଲେ ସମଗ୍ର ବୃହତ୍ତର କଲିକତା ବୁଲିଆସିଲେ ମଧ୍ୟ ପେଟ୍ରୋଲ ସରେନାହିଁ । କେନ୍ଦ୍ର କଲିକତା ଛଡ଼ା ମାଟିଆବୁରୁଜ, ଖିଦିରିପୁର, ଶିବପୁର, ହାଓଡ଼ା, ଲିଲୁଆ, ସାନ୍ତରାଗାଛି, ବେଲୁର, ଉତ୍ତରପଡ଼ା, କମାରହାଟି, ଟିଟାଗଡ଼, ନାରିକେଲଡଙ୍ଗା, ବନ୍ଧାଘାଟ, ରିସିଡ଼ା, ଧୂସୁରୀ, କାଶୀପୁର ପ୍ରଭୃତି ବହୁ ଓଡ଼ିଆ ବହୁଳ ଅଞ୍ଚଳକୁ ମୁଁ ବାରମ୍ବାର ଯାଉଥିଲି ଓ ସଭାସମିତି କରି ଓଡ଼ିଆମାନଙ୍କ ଭିତରେ ଜାଗରଣ ଆଣିବାର ସୁଯୋଗ ପାଇଥିଲି । ମୋ ସହିତ ଅଧିକାଂଶ ସମୟରେ ଶ୍ରୀ ଅଭୟଚରଣ ନାୟକ ଓ ଶ୍ରୀ ହୃଦାନନ୍ଦ ମଲ୍ଲିକ ଯାଉଥିଲେ । ସର୍ବଶ୍ରୀ ଚିନ୍ତାମଣି ପାଣିଗ୍ରାହୀ, ବାଉଧର ରାଉତରାୟ, ସଚ୍ଚି ରାଉତରାୟ, ଚିତ୍ତ ନାୟକ, ସୋମନାଥ ବେହେରା, ରତ୍ନାକର ମହାନ୍ତି, ମୁକୁନ୍ଦ ନାୟକ ମଧ୍ୟ ସମୟସମୟରେ ଆମର ସଂଗଠନ କାର୍ଯ୍ୟରେ ସହାୟକ ହେଉଥିଲେ ।

ଓଡ଼ିଶାରୁ ଯାଇ କଲିକତାରେ ପଢୁଥିବା ବହୁ ଛାତ୍ରଙ୍କ ସହିତ ମୋର ସମ୍ପର୍କ ଗଢ଼ିଉଠିଥିଲା । ଅହମ୍ମଦନଗର ଜେଲରୁ ମୁକ୍ତ ହୋଇ ଫେରିବା ପରେ ଶ୍ରୀ ହରେକୃଷ୍ଣ ମହତାବଙ୍କର ଖ୍ୟାତି ବେଶ୍ ବୃଦ୍ଧି

ପାଇଥାଏ । କଲିକତାରେ ଥିବା ଛାତ୍ର ଓ ଅନ୍ୟାନ୍ୟ ଶିକ୍ଷିତ ବ୍ୟକ୍ତିମାନେ ଥରେ କଲିକତା ଓଡ଼ିଆ ସମାଜ ଆନୁକୂଲ୍ୟରେ ଗୋଟିଏ ସମ୍ବର୍ଦ୍ଧନା ସଭାର ଆୟୋଜନ କରିଥିଲେ । ଏହି ସଭାଟି ଅନୁଷ୍ଠିତ ହୋଇଥିଲା ଚିତ୍ତରଞ୍ଜନ ଆଭେନ୍ୟୁ ଓ ହ୍ୟାରିସନ୍ ରୋଡ଼ (ବର୍ତ୍ତମାନ ମହାତ୍ମାଗାନ୍ଧୀ ରୋଡ଼) ଛକରେ ଅବସ୍ଥିତ ମାରୱାଡ଼ି ଛାତ୍ରନିବାସ ହଲ୍‌ରେ । ମୋ ସହିତ ସର୍ବଶ୍ରୀ ଚିନ୍ତାମଣି ପାଣିଗ୍ରାହୀ, ହୃଦାନନ୍ଦ ମଲ୍ଲିକ ଏହି ଅଭ୍ୟର୍ଥନାରେ ମୁଖ୍ୟ ଭାଗ ନେଇଥିଲେ । ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ କୌଣସି ନା କୌଣସି ଗୋଟିଏ ଉପାଧିରେ ଭୂଷିତ କରିବା ଥିଲା ସେତେବେଳକାର ଲୋକାଚାର । ତେଣୁ ଶ୍ରୀ ହରେକୃଷ୍ଣ ମହତାବଙ୍କୁ 'ଉତ୍କଳକେଶରୀ' ଆଖ୍ୟାରେ ଭୂଷିତ କରିବାପାଇଁ ଆମ୍ଭେମାନେ ସ୍ଥିରକରି ସେହି ସମ୍ବର୍ଦ୍ଧନା ସଭାରେ ଘୋଷଣା କରିଥିଲୁ । ପରେ ଏହି ଘୋଷଣା ବହୁ ପତ୍ରପତ୍ରିକାରେ ପ୍ରକାଶପାଇଥିଲା ଓ ଆଜିପର୍ଯ୍ୟନ୍ତ ମଧ୍ୟ ଏହି ଉପାଧି ଚଳିଆସୁଅଛି । ସେତେବେଳେ କଲିକତାରେ ଓଡ଼ିଆମାନଙ୍କର ବହୁ ବଡ଼ ବଡ଼ ସଭା ହେଉଥିଲା । ମୋର ମନେଅଛି, କମାରହାଟିଠାରେ ଅନୁଷ୍ଠିତ ହୋଇଥିବା ଓଡ଼ିଆ ସମାଜ ସମ୍ମିଳନୀ କଥା । ଏହି ସମ୍ମିଳନୀରେ ସଭାପତି ହୋଇଥିଲେ ଶ୍ରୀ ବିଶ୍ୱନାଥ ଦାସ । ତାଙ୍କ ବ୍ୟତୀତ ବହୁ ନେତୃସ୍ଥାନୀୟ ବ୍ୟକ୍ତି ଓଡ଼ିଶାରୁ ଯାଇ ସେଥିରେ ଯୋଗଦେଇଥିଲେ । ପ୍ରାୟ ପଚାଶ ହଜାର ପର୍ଯ୍ୟନ୍ତ ଓଡ଼ିଆ ବିଭିନ୍ନ ସ୍ଥାନରୁ ଆସି ସମ୍ମିଳନୀରେ ଯୋଗଦେଇଥିଲେ । ଦଶହଜାର ପ୍ରତିନିଧି ରହିବା ପାଇଁ ଅସ୍ଥାୟୀ ଘର ତିଆରି ହୋଇଥିଲା ଏବଂ ଖାଇବା ପିଇବାର ବ୍ୟବସ୍ଥା ମଧ୍ୟ କରାଯାଇଥିଲା । ଶ୍ରୀ ରାମଚନ୍ଦ୍ର ବେହେରା ନାମକ ଝୋଟକଳର ଜଣେ ଶ୍ରମିକ ସର୍ଦ୍ଦାର ଏହି ସମ୍ମିଳନୀର ଆୟୋଜନରେ ମୁଖ୍ୟ ଅଂଶ ନେଇଥିଲେ । ସେହିଭଳି ମାଟିଆବୁରୁଜ, ଖିଦିରିପୁର, ଟିଟାଗଡ଼, ହାଓଡ଼ା ପ୍ରଭୃତି ଅଞ୍ଚଳରେ ଓଡ଼ିଆମାନଙ୍କର ବହୁ ବଡ଼ ବଡ଼ ସଭା ଅନୁଷ୍ଠିତ ହୋଇଥିଲା ।

ଏଠାରେ ଉଲ୍ଲେଖ କରିବାର କଥା ଯେ, ବୃହତ୍ତର କଲିକତାରେ ଓଡ଼ିଆ ସଂଗଠନ କଲାବେଳେ ମୁଁ କିମ୍ବା ମୋର ସହକର୍ମୀମାନେ କେବେ ଆମକୁ ପ୍ରବାସୀ ବୋଲି ମନେକରୁନଥିଲୁ । ଭାରତବର୍ଷରେ ଗୋଟିଏ ପ୍ରଦେଶର ଅଧିବାସୀ ବା କୌଣସି ଗୋଟିଏ ଭାଷାଭାଷୀ ଲୋକେ ଅନ୍ୟ ଗୋଟିଏ ପ୍ରଦେଶରେ ବାସକଲେ ଅନେକ କ୍ଷେତ୍ରରେ ସେମାନଙ୍କ ସଂଗଠନର ବିଶେଷଣରୂପେ 'ପ୍ରବାସୀ' ଶବ୍ଦ ବ୍ୟବହାର କରିଥା'ନ୍ତି । ମୋ ମତରେ ଏହା ଭାରତୀୟ ଜାତୀୟତାବୋଧର ବିରୁଦ୍ଧାତ୍ମକ କଥା । ଭାରତବର୍ଷ ଭିତରେ କୌଣସି ଭାରତବାସୀ ନିଜକୁ କେଉଁଠାରେ ପ୍ରବାସୀ ଜ୍ଞାନ କରିବା ଅସମୀଚୀନ । ସେମାନଙ୍କ ପ୍ରତି ମଧ୍ୟ ସ୍ଥାନୀୟ ଭାଷାଭାଷୀ ଲୋକମାନଙ୍କର ଅନୁରୂପ ଆନ୍ତରିକତା ରହିବା ଏକାନ୍ତ ଆବଶ୍ୟକ । କଲିକତାରେ ରହୁଥିବା ଓଡ଼ିଆମାନେ ମଧ୍ୟ ସ୍ଥାନୀୟ ଜନଜୀବନ ସହିତ ଅତି ସ୍ୱାଭାବିକ ଭାବରେ ମିଳିମିଶି ଚଳିପାରୁଥିଲେ ।

ବଡ଼ବଜାର ଅଞ୍ଚଳରେ ଓଡ଼ିଆ ସଂଗଠନ କାର୍ଯ୍ୟ କରିବାପାଇଁ ଆମ୍ଭେମାନେ ଶ୍ରୀ ବାଇଧର ରାଉତରାୟଙ୍କ ଉପରେ ଦାୟିତ୍ୱ ଦେଇଥିଲୁ । ସେ ଖୁବ୍ ଦକ୍ଷ ଭାବରେ ସେହି ଦାୟିତ୍ୱ ତୁଲାଇ ଶ୍ରମିକମାନଙ୍କୁ ଭଲଭାବରେ ସଂଗଠିତ କରିଥିଲେ । ସେ ନିଜେ ଥିଲେ ଗୋଟିଏ ଛତା କାରଖାନାରେ ହେଡ୍ ମିସ୍ତ୍ରୀ । ମୁଁ ଅନେକ ସମୟରେ ତାଙ୍କ ପାଖକୁ ଯାଏ । ମୁଁ ଲକ୍ଷ୍ୟ କରେ ସେ ମୋ ସହିତ କଥାବାର୍ତ୍ତା କରୁଥିବେ ଓ ତା' ସହିତ ଛତା ମଧ୍ୟ ତିଆରି କରିପକାଉଥିବେ । ସେହିଠାରେ ସେ ମୋତେ କହିଥିଲେ ଯେ ଓଡ଼ିଶାକୁ ଛତାକନା କୋଟା ଯାହା ମିଳିବାର କଥା ତା'କୁ କଲିକତାର ବ୍ୟବସାୟୀମାନେ ମାରିଆଣୁଛନ୍ତି । ତେଣୁ ଓଡ଼ିଶାରେ ଛତା ତିଆରି ନହୋଇ କଲିକତାରୁ ତିଆରି ହୋଇ ଯାଇ ଓଡ଼ିଶାରେ ବିକ୍ରି କରାଯାଉଛି । ଏଭଳି ଅନେକ କଥା ହେଉ ହେଉ କଟକରେ ଛତା ତିଆରି କାରଖାନା ବସାଇବାର ଝୁଙ୍କ ଆମ ମୁଣ୍ଡରେ ପଶିଥିଲା । କଲିକତାରୁ ପଢ଼ାସାରି ମୁଁ ଯେତେବେଳେ କଟକ ଆସିଲି, ଶ୍ରୀ ବାଇଧର ରାଉତରାୟ କଟକ ଆସିଲେ । ଆମେ କେତେଜଣ ବସି ସ୍ଥିରକଲୁ ଯେ

ଗୋଟିଏ କମ୍ପାନୀ ଗଢ଼ି ସେହି କମ୍ପାନୀ ନାଆଁରେ ଛତାକନା କୋଟପାଇଁ ଦରଖାସ୍ତ କରିବୁ । ତେଣୁ 'ଜାତୀୟ ଛତାକମ୍ପାନୀ' ନାମରେ ଗୋଟିଏ କମ୍ପାନୀ ଗଢ଼ିଲୁ । ସେଥିରେ ମୁଁ, ସର୍ବଶ୍ରୀ ପ୍ରଫୁଲ୍ଲ ପଟ୍ଟନାୟକ (ପରେ ଯେ ଆସେମ୍ବ୍ଲି ସେକ୍ରେଟାରୀ ହେଲେ), ମାୟାଧର ମହାନ୍ତି, ଶ୍ରୀନିବାସ ବାରିକ, ହୃଷୀକେଶ ରାୟ, ବାଇଧର ରାଉତରାୟ ଓ ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କର ପର୍ସନାଲ୍ ଆସିଷ୍ଟେଣ୍ଟ କୈଳାସ ଘୋଷ ପ୍ରଭୃତି ଅଂଶୀଦାର ରହିଲେ । ଏହି କମ୍ପାନୀର ମୂଳଧନ ଯୋଗାଣକାରୀ ଅଂଶୀଦାର କଲିକତାର ଜଣେ ବ୍ୟବସାୟୀ ଶ୍ରୀ ରତନଲାଲ ଲୋନିଆ ହୋଇଥିଲେ । କନା କୋଟପାଇଁ ଦରଖାସ୍ତ କରାହେଲା । ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ସେତେବେଳେ ଥିଲେ ଆମ ପ୍ରଦେଶର ବାଣିଜ୍ୟ-ମନ୍ତ୍ରୀ । କନା କୋଟ ମିଳିଗଲା । କୋଟ ମିଳୁ ମିଳୁ ବମ୍ବେରୁ ଜଣେ ବ୍ୟବସାୟୀ ଆସି ଆମକୁ ଧରାଧରି କଲେ ଲାଇସେନ୍‌ସଟି ତାଙ୍କୁ ବିକି ଦେଲେ ସେ ଆମକୁ ପଚାଶ ହଜାର ଟଙ୍କା ଦେବେ ବୋଲି । ଆମ୍ଭେମାନେ ଭାବିଲୁ ଯେ କୋଟପାଇଁ ଅନୁମତି ମିଳୁ ମିଳୁ ଜଣେ ଲୋକ ପଚାଶ ହଜାର ଟଙ୍କା ଦେଇ ତାକୁ କିଣିନେବାକୁ ଇଚ୍ଛା କଲାଣି — ତା' ହେଲେ ଏ ବ୍ୟବସାୟ କେଡ଼େ ଲାଭପ୍ରଦ ନହେବ ? ଯୁଦ୍ଧ ପରେ ବଜାରରେ ଛତାକନା ଓ ଛତା କାରବାରରେ ଏଭଳି ଅବସ୍ଥା ଉପୁଜିଥାଏ ଯେ କନା କୋଟ ବିକା କଳାବଜାର ସଙ୍ଗେ ସମାନ । ଆମେ ସେହି ବମ୍ବେ ବ୍ୟବସାୟୀଙ୍କୁ ଘଉଡ଼େଇଦେଲୁ । ଏଣେ ବହୁତ ଲାଭ ହେବ ବୋଲି ତ ଅଂଶୀଦାରମାନଙ୍କ ବିଶ୍ୱାସ ଜନ୍ମିଯାଇଥାଏ । ଆମେ ସ୍ଥିରକଲୁ ଯେ ବ୍ୟବସାୟଟି ଆମେ ନିଜେ ଚଳାଇବୁ ।

କଟକ ନୂଆବଜାରରେ ଛତା କାରଖାନା ଆରମ୍ଭ ହେଲା । ବୁଝାବୁଝି କଲେ ଶ୍ରୀ ବାଇଧର ରାଉତରାୟ ଓ ଶ୍ରୀ ରତନ୍‌ଲାଲ ଲୋନିଆ । ସମସ୍ତ ଅର୍ଥ ଲୋନିଆ ବିନିଯୋଗ କରିଥିବାରୁ ତାଙ୍କର ପରିଚାଳନା କରିବାରେ ପ୍ରାଧାନ୍ୟ ମଧ୍ୟ ରହିଲା । ଆମ୍ଭେମାନେ ମଝିରେ ମଝିରେ ଯାଇ ବୁଝାବୁଝି କରୁ । ଶ୍ରୀ ପ୍ରଫୁଲ୍ଲ ପଟ୍ଟନାୟକ ଆମ୍ଭମାନଙ୍କୁ ପ୍ରବର୍ତ୍ତାଇଲେ ସହର ଭିତରେ ଏତେଦୂର ଯିବା ଆସିବା କରିବାପାଇଁ ମଟରଗାଡ଼ିଟିଏ ଏକାନ୍ତ ପ୍ରୟୋଜନ । ଗୋଟିଏ ପୁରୁଣା ବେବି ଅଷ୍ଟିନ୍ କିଣାଗଲା, ତାକୁ ଚଳାଉଥିଲେ ଶ୍ରୀ ପ୍ରଫୁଲ୍ଲ ପଟ୍ଟନାୟକ । ସେ କେବଳ ଆଗୁଆ ନେଇପାରନ୍ତି — କିନ୍ତୁ ପଛକୁ ଫେରାଇ ପାରନ୍ତିନାହିଁ । ଅଧିକାଂଶ ସମୟରେ ଗାଡ଼ିକୁ ଠେଲିବାକୁ ପଡ଼େ । କିଛିଦିନ ବ୍ୟବସାୟ ଚାଲିଲା । ବହୁ ଛତା ମଧ୍ୟ ତିଆରି ହେଉଥାଏ । କଟକ ବଜାରରେ ବିକ୍ରି ହେବା ବ୍ୟତୀତ କଲିକତା ବଜାରକୁ ମଧ୍ୟ ପଠାହେଉଥାଏ । ତା ସଙ୍ଗେ ସଙ୍ଗେ ଶ୍ରୀ ଲୋନିଆ ପ୍ରଚାର କରିବାକୁ ଲାଗିଲେ ଯେ ଅନ୍ୟ ଅଂଶୀଦାରମାନେ କିଛି ବୁଝାବୁଝି କରୁନାହାନ୍ତି — କେବଳ ଗାଡ଼ି ଚଢ଼ି ବୁଲି ଫୁର୍ତ୍ତିରେ ଖର୍ଚ୍ଚ କରିବାରେ ଲାଗିଛନ୍ତି — ତେଣୁ କାରଖାନା କ୍ଷତିରେ ଚାଲିଛି । ପ୍ରଜାତନ୍ତ୍ରର ଅଂଶୀଦାର ହେବାପାଇଁ ବୀରେନ୍‌ବାବୁ ତାଙ୍କ ପାଖରୁ ଦଶ ହଜାର ଟଙ୍କା ଆଦାୟ କରି ପ୍ରଜାତନ୍ତ୍ରକୁ ଦେଲେ । ଆମ୍ଭେମାନେ ଅଧିକାଂଶ ସମୟରେ ପ୍ରଜାତନ୍ତ୍ରରେ ବସାଉଠାକରୁ । ଲୋନିଆ ମହାଶୟ ସେଠାକୁ ଯାଇ ଆମ୍ଭେମାନେ କିଛି ବୁଝୁନୁ, ତେଣୁ କାରଖାନା କ୍ଷତିରେ ଚାଲିଛି ବୋଲି ପ୍ରଚାର କରିବାକୁ ଲାଗିଲେ । ମନ୍ତ୍ରୀଙ୍କଠାରୁ ଆରମ୍ଭ କରି ବହୁ ବିଶିଷ୍ଟ ଲୋକଙ୍କ ପାଖରେ ସେ ଏହି କଥା କହିବାକୁ ଲାଗିଲେ । ଅନେକ ମଧ୍ୟ ତାଙ୍କର ଏ କଥାରେ ବିଶ୍ୱାସକଲେ । ଶେଷରେ ବୀରେନ୍‌ବାବୁ ଆମେ ସବୁ ଦାୟିତ୍ୱହୀନ ଲୋକ ବୋଲି କହି ବକିବାକୁ ଲାଗିଲେ । ପରିସ୍ଥିତି ଏପରି ହେଲା ଯେ ରତନଲାଲ ଲୋନିଆଙ୍କୁ ଦେଖିଲାକ୍ଷଣି ଆମେ ଲୁଚିବାକୁ ଲାଗିଲୁ । ଫଳରେ କଲିକତାକୁ ସେ ଛତାତକ ଚୋରା ଚାଲାଣ କରି ଲାଭତକ ପକେଟସ୍ଥ କଲେ । ଆମେ ଯେତେ ଅଂଶୀଦାର ଥିଲୁ, ସମସ୍ତଙ୍କ ଘରେ ଖଣ୍ଡେ ଖଣ୍ଡେ ଲେଡ଼ିଜ୍ ଛତା ଲୋନିଆ ମହାଶୟ ଧରାଇଦେଲେ; କିନ୍ତୁ ବାଇଧର ରାଉତରାୟ ଛତାମିସ୍ତ୍ରୀ ଥିବାରୁ ଲୋନିଆଙ୍କୁ ଭୟଭୀତ କରି ତାଙ୍କ ନିଜପାଇଁ କିଛି ଆଦାୟ କରିଥିଲେ । ଏହିଥିରୁ ଆମର ଛତା ବ୍ୟବସାୟ ଇତି ହେଲା ।

# ୧୯୪୬ ନିର୍ବାଚନ : ମହତାବ ମୁଖ୍ୟମନ୍ତ୍ରୀ

୧୯୪୬ ମସିହା ପ୍ରଥମ ଭାଗରେ ଓଡ଼ିଶା ପ୍ରଦେଶରେ ଶ୍ରୀ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ କଂଗ୍ରେସ ନିର୍ବାଚନ ଲଢ଼ିଲା । ନିର୍ବାଚନ ପୂର୍ବରୁ ପ୍ରଦେଶ କଂଗ୍ରେସ କମିଟି ପକ୍ଷରୁ ବିଧାନସଭାପାଇଁ କଂଗ୍ରେସ ପ୍ରାର୍ଥୀ ବାଛିବା କାର୍ଯ୍ୟ କଟକ ସ୍ୱରାଜ ଆଶ୍ରମରେ ଆରମ୍ଭ ହୋଇଥିଲା । ଆଇନଗତ ଅସୁବିଧା ଯୋଗୁ ଶ୍ରୀ ବିଶ୍ୱନାଥ ଦାସ ଓଡ଼ିଶା ବିଧାନସଭାକୁ ପ୍ରାର୍ଥୀ ହୋଇପାରିଲେନାହିଁ । ପ୍ରାର୍ଥୀ ବଛାରେ କିଛିଦିନ ଖୁବ୍ ଟଣାଟଣି ଚାଲିଲା । ସେହି ନିର୍ବାଚନରେ ପ୍ରାର୍ଥୀ ହେବାପାଇଁ ମୋତେ ମଧ କେତେକ ଉତ୍ସାହିତ କରିଥିଲେ । ବିଧାନସଭାକୁ ପ୍ରାର୍ଥୀ ହେବାପାଇଁ ଅନ୍ୟୂନ ଯେତିକି ବୟସ ହୋଇଥିବା ଦରକାର, ମୋର ସେଥିରୁ ତିନିମାସ କମ୍ ଥାଏ । କେତେକ ମୋତେ ପରାମର୍ଶ ଦେଇଥିଲେ ଛଅ ମାସରୁ କମ୍ ଥିଲେ ସେଟା ଧର୍ତ୍ତବ୍ୟ ହେବନାହିଁ; କିନ୍ତୁ ଆଉ କେତେକଙ୍କର ମତ ଥିଲା ଅନ୍ୟପ୍ରକାର । ମୋର ପଢ଼ା ଶେଷ ହୋଇନଥିବାରୁ ମୁଁ ମଧ ସେଥିପ୍ରତି ବିଶେଷ ଆଗ୍ରହୀ ନଥିଲି । ତଥାପି ଶ୍ରୀ ଭାଗବତ ସାହୁ ଓ ମହମ୍ମଦ ହନିଫ୍ ପ୍ରଭୃତି କେତେକଙ୍କ ପ୍ରାର୍ଥୀତ୍ୱ ସମ୍ବନ୍ଧରେ ମୁଁ ଆଗ୍ରହୀ ଥିବାରୁ କଲିକତାରୁ କଟକ ସ୍ୱରାଜ ଆଶ୍ରମକୁ ଆସିଥିଲି । ପ୍ରାର୍ଥୀ ବଛା ସମୟରେ ସ୍ୱରାଜ ଆଶ୍ରମ ଲୋକାରଣ୍ୟ । ମୁଁ ମଧ ସେଠାରେ ଆସି ବସିଥାଏ । ଘର ଭିତରେ କବାଟ ବନ୍ଦକରି ପ୍ରାର୍ଥୀ ବଛା କାର୍ଯ୍ୟ ଚାଲିଥାଏ । ସ୍ୱରାଜ ଆଶ୍ରମ ପ୍ରାଙ୍ଗଣ ଭିତରେ ମୁଁ ଦେଖିବାକୁ ପାଇଲି ଜଣେ ଅତି ଦୀର୍ଘକାୟ ବ୍ୟକ୍ତି ଅତି ପତଳା ଫିନ୍ ଫିନ୍ ବିଲାତି ସୁଟ୍ ଓ ଟାଇ ପିନ୍ଧି ଏପଟ ସେପଟ ବୁଲୁଛନ୍ତି ଏବଂ ଗେଡ଼ା ଗେଡ଼ା ଦୁଇ ଚାରି ଜଣ ଲୋକ ତାଙ୍କ ସାଙ୍ଗେ ସାଙ୍ଗେ ଏକରକମ ଦୌଡ଼ାଦୌଡ଼ି କରୁଛନ୍ତି । ଡେଙ୍ଗା ଲୋକଟିର ମୁହଁକୁ ଚାହିଁବାପାଇଁ ସେମାନଙ୍କୁ ପ୍ରାୟ ସବୁବେଳେ ଉର୍ଦ୍ଧ୍ୱମୁଖ ହୋଇ ସାଧନା କରିବାକୁ ପଡୁଥାଏ । ମୁଁ ଏ ଦୃଶ୍ୟ କିଛି ସମୟ ଉପଭୋଗ କରିବା ପରେ ପଚାରି ବୁଝିଲି ଯେ ସେ ଥିଲେ ବିଜୁ ପଟ୍ଟନାୟକ । ସେତେବେଳେ ସେ ବିଜୟାନନ୍ଦ ପଟ୍ଟନାୟକ ରୂପେ ପରିଚିତ ଥିଲେ । କଟକ ସହରପାଇଁ କଂଗ୍ରେସର ସେ ଥିଲେ ଜଣେ ପ୍ରାର୍ଥୀ । ସେହିଠାରେ ଶୁଣିବାକୁ ପାଇଲି ତାଙ୍କର ପ୍ରାର୍ଥୀତ୍ୱ ସମ୍ବନ୍ଧରେ ଉପରମହଲରୁ ଅନୁକୂଳ ନିର୍ଦ୍ଦେଶ ଆସିଥିଲା । ତେଣୁ ପ୍ରାଦେଶିକ ନେତୃମଣ୍ଡଳୀ କିଛି କରିବାର ନଥିଲା କି କଂଗ୍ରେସ ଅନୁମୋଦନପାଇଁ ଅପେକ୍ଷା କରିବାର ଆବଶ୍ୟକତା ନଥିଲା । କଟକ ସହରପାଇଁ ସେ ପ୍ରାର୍ଥୀ ହେଲେ ବୋଲି ସେହିଠାରେ ଘୋଷଣା ହୋଇଗଲା । ସେଦିନ ସିନା ତାଙ୍କୁ ଦୂରରୁ ଚିହ୍ନିଲି; କିନ୍ତୁ ବିଜୁବାବୁଙ୍କ ସହିତ ମୋର ଚିହ୍ନା ପରିଚୟ ହେଲା ଅନେକ ଦିନ ପରେ । ଶ୍ରୀ ବିଜୁ ପଟ୍ଟନାୟକ ପ୍ରତିରକ୍ଷା ବିଭାଗର ଜଣେ ବିମାନ ଚାଳକ ହୋଇ ଅଗଷ୍ଟ ବିପ୍ଳବ ସମୟରେ ଜୟପ୍ରକାଶ ନାରାୟଣ, ଅରୁଣା ଆସ୍‌ଫ ଅଲ୍ଲୀ, ଅଚ୍ୟୁତ ପଟ୍ଟବର୍ଦ୍ଧନ ପ୍ରଭୃତି ନେତାମାନଙ୍କ ସହିତ ଗୁପ୍ତ ସମ୍ପର୍କ ରଖି ସେମାନଙ୍କୁ ସାହାଯ୍ୟ କରୁଥିବା ଅଭିଯୋଗରେ ଗିରଫ ହୋଇ ଲାହୋର ଦୁର୍ଗରେ ଅଟକବନ୍ଦୀ ହୋଇଥିଲେ ବୋଲି ସେତେବେଳେ ଖୁବ୍ ଖ୍ୟାତି ଅର୍ଜନ କରିଥିଲେ । ତେଣୁ ନିର୍ବାଚନରେ ସେଭଳି ବ୍ୟକ୍ତିଙ୍କୁ ଅତି ଆଦରର ସହିତ ସ୍ୱାଗତ କରି ପ୍ରାର୍ଥୀ କରାଯାଉଥିଲା । ସେ ଜଣେ ସାହସୀ, ଉତ୍ସାହୀ ଯୁବକ ଥିଲେ ଏବଂ ଇଂରାଜୀ ଭାଷାରେ ଅନର୍ଗଳ କହିପାରୁଥିଲେ । ଶ୍ରୀ ମହତାବ ସେଥିପାଇଁ ତାଙ୍କ ରାଜନୈତିକ ପ୍ରାଇଭେଟ୍ ସେକ୍ରେଟେରୀ ରୂପେ ଶ୍ରୀ ବିଜୁ ପଟ୍ଟନାୟକଙ୍କ ସାହାଯ୍ୟ ନେଉଥିଲେ । ଭାରତକୁ କ୍ୟାବିନେଟ୍ ମିଶନ୍ ଆସିଥିଲା ବେଳେ ସାର୍ ଷ୍ଟାଫର୍ଡ କ୍ରିପ୍‌ସ ଓ ଅନ୍ୟ ସଭ୍ୟମାନଙ୍କ ସହିତ ଭଲ ଯୋଗସୂତ୍ର ରଖିପାରିଥିଲେ । ବିଜୁବାବୁଙ୍କର ଏ ବ୍ୟକ୍ତିଗତ ସମ୍ପର୍କ ଶ୍ରୀ ମହତାବଙ୍କୁ ଭବିଷ୍ୟତରେ ସହାୟକ ହୋଇଥିଲା । ଶ୍ରୀ ବିଜୁ ପଟ୍ଟନାୟକଙ୍କର ସାହସ ଓ ଆଗକୁ ମାଡ଼ିଯିବାର ପ୍ରବୃତ୍ତି ସାର୍ ଷ୍ଟାଫର୍ଡ଼ କ୍ରିପ୍‌ସଙ୍କୁ ଆକୃଷ୍ଟ କରିପାରିଥିଲା । ସାର୍ ଷ୍ଟାଫର୍ଡ଼ କୁଆଡ଼େ ଶ୍ରୀ ବିଜୁ ପଟ୍ଟନାୟକଙ୍କ ସହିତ ଦକ୍ଷିଣ ଆମେରିକା ଓ ଦକ୍ଷିଣ-ପୂର୍ବ ଏସିଆରେ ଥିବା ଦେଶମାନଙ୍କ ବିଷୟରେ ଆଲୋଚନା କରିଥିଲେ ।

ଏସବୁ ଦେଶମାନଙ୍କର ସ୍ଥିତି ଓ ବୈଦେଶିକ ନୀତି ସମ୍ବନ୍ଧରେ ଶ୍ରୀ ପଟ୍ଟନାୟକ ଯେଭଳି ବିଶ୍ଳେଷଣ କରିଥିଲେ, ସେଥିରେ କୁଆଡ଼େ ସାର୍ ଷ୍ଟାଫର୍ଡ୍ ଖୁବ୍ ସନ୍ତୁଷ୍ଟ ହୋଇଥିଲେ ଏବଂ ଜଣେ ଯୁବକର ଏଭଳି ବିଶ୍ଳେଷଣରେ ଅବାକ୍ ହୋଇଥିଲେ । ବିଜୁ ପଟ୍ଟନାୟକଙ୍କ ସହ ଆଲୋଚନା କରି ସାର୍ ଷ୍ଟାଫର୍ଡ୍ ଶ୍ରୀ ମହତାବଙ୍କ ସମ୍ବନ୍ଧରେ ଉଚ୍ଚ ଧାରଣା ପୋଷଣ କରିଥିଲେ । ଯାହାଙ୍କର ପ୍ରାଇଭେଟ୍ ସେକ୍ରେଟେରୀ ରାଜନୈତିକ ଜ୍ଞାନରେ ଏପରି ପ୍ରବୀଣ, ସେ କର୍ତ୍ତା ନିଜେ କେଡ଼େ ଧୁରନ୍ଧର ଓ ପ୍ରବୀଣ ହୋଇନଥିବେ ବୋଲି ସାର୍ ଷ୍ଟାଫର୍ଡ୍ଙ୍କର କୁଆଡ଼େ ଧାରଣା ହୋଇଥିଲା । ଏ ସମ୍ପର୍କରେ ବିଜୁ ପଟ୍ଟନାୟକ ୧୯୬୮ ମସିହା ଜାନୁଆରୀ ପହିଲାରେ ଓଡ଼ିଶା ହାଇକୋର୍ଟରେ ସତ୍ୟପାଠ କରି ଯାହା ଉଲ୍ଲେଖ କରିଥିଲେ ତାହା ଜାଣିବାର ବିଷୟ । ସେଥିରେ ଶ୍ରୀ ପଟ୍ଟନାୟକ କହିଥିଲେ :

"When the British Cabinet Mission headed by Sir Pethic Lawrence came to India in 1946, the petitioner (Biju Pattnaik) took Sri Mahatab in a plane, piloted by himself, to Delhi and Sri Mahatab stayed in his house. He introduced Mahatab to Sir Stafford Cripps on person to person basis at a luncheon which he gave to Sir Stafford in his club in Delhi, namely the Roshanare Club. After several private meetings which Sri Mahatab and the petitioner had with Sir Stafford and his Secretaries, Sir Stafford, at the end of the Mission, recommended to Lord Wavell that Sri Mahatab may be included in the new Indian Government headed by Pandit Jawaharlal Nehru. In fact, Sri Mahatab's name was announced in the Radio but Pandit Nehru strongly resented his inclusion in the first Indian Cabinet and his name was dropped, and the petitioner (Biju Pattnaik) was also taken to task by Pandit Nehru for projecting Sri Mahatab's name".

ଅବଶ୍ୟ ଏବେ ଶ୍ରୀ ମହତାବ ବିଜୁ ପଟ୍ଟନାୟକଙ୍କର ଅତୀତର ଏ ପ୍ରକାର ସାହାଯ୍ୟକୁ ସ୍ୱୀକାର କରନ୍ତିନାହିଁ; ତେଣୁ ତାଙ୍କର ଉପରୋକ୍ତ ଉକ୍ତିକୁ ଶ୍ରୀ ମହତାବ କେବେ ଗ୍ରହଣ କରିବେନାହିଁ । ମାତ୍ର ଶ୍ରୀ ମହତାବଙ୍କର କେତେକ କାର୍ଯ୍ୟରୁ ବିଜୁପଟ୍ଟନାୟକଙ୍କ କଥାରେ କିଛି ସତ୍ୟତା ଥିବାର ପ୍ରମାଣ ମିଳେ । ୧୯୪୬ ମସିହା ପ୍ରଥମ ଭାଗରେ ଯେତେବେଳେ କ୍ୟାବିନେଟ୍ ମିଶନ୍ ଓ ଷ୍ଟାଫର୍ଡ୍ କ୍ରିପ୍ସ ଭାରତ ଆସନ୍ତି ସେତେବେଳେ ଶ୍ରୀ ମହତାବ ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇନଥାନ୍ତି । ସେତେବେଳେ ଦିଲ୍ଲୀ ପ୍ରଭୃତି ଉଚ୍ଚ ମହଲ ସହିତ ସମ୍ପର୍କ ସ୍ଥାପନ ଓ କାର୍ଯ୍ୟ ହାସଲପାଇଁ ସହାୟକ ହେବା ଉଦ୍ଦେଶ୍ୟରେ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ଶ୍ରୀ ମହତାବ ତାଙ୍କର ରାଜନୈତିକ ପ୍ରାଇଭେଟ୍ ସେକ୍ରେଟେରୀ ରୂପେ ସାଙ୍ଗରେ ନେଉଥିଲେ । ୧୯୪୬ ମସିହା ଏପ୍ରିଲ୍ ମାସ ପ୍ରଥମ ସପ୍ତାହରେ କ୍ୟାବିନେଟ୍ ମିଶନ୍ ଓ ସାର୍ ଷ୍ଟାଫର୍ଡ୍ କ୍ରିପ୍ସଙ୍କ ଓଡ଼ିଶା ଗଡ଼ଜାତ ଓ ଅନ୍ୟାନ୍ୟ ରାଜନୈତିକ ସମସ୍ୟା ସମ୍ପର୍କରେ ଶ୍ରୀ ମହତାବ ଯେତେବେଳେ ଆଲୋଚନା କରନ୍ତି ସେତେବେଳେ ଶ୍ରୀ ବିଜୁ ପଟ୍ଟନାୟକ ତାଙ୍କର ପ୍ରାଇଭେଟ୍ ସେକ୍ରେଟେରୀ ହିସାବରେ ସାଙ୍ଗରେ ରହି ଯେଉଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଉଥିଲେ ସେ ବିଷୟ ଶ୍ରୀ ମହତାବ ତାଙ୍କ ସ୍ୱଚରିତ ପୁସ୍ତକ "Beginning of the End' (ପ୍ରଥମ ସଂସ୍କରଣ, ୧୯୪୯ ମସିହା) ଚଉଦ ଓ ପନ୍ଦର ପୃଷ୍ଠାରେ ଉଲ୍ଲେଖ କରିଥିଲେ । ମାତ୍ର ୧୯୭୨ ମସିହାରେ ପ୍ରକାଶିତ ସେହି ପୁସ୍ତକର ଦ୍ୱିତୀୟ ସଂସ୍କରଣରେ ଏହାକୁ ସେ ବାଦ୍ ଦେଇଛନ୍ତି । ଶ୍ରୀ ବିଜୁ ପଟ୍ଟନାୟକଙ୍କର ଉପରୋକ୍ତ ଉକ୍ତି ସମ୍ପର୍କରେ ପ୍ରତ୍ୟୟ ଦେଲାଭଳି ସେ ପୁସ୍ତକରେ ଆଉ କୌଣସି ନିଦର୍ଶନ ବା ଉପାଦାନ ନରଖିବା ଉଦ୍ଦେଶ୍ୟ ଶ୍ରୀ ମହତାବଙ୍କର ଥିଲା ଭଳି ମନେହୁଏ ।

୧୯୪୬ ନିର୍ବାଚନରେ ଓଡ଼ିଶା ବିଧାନସଭାର ଷାଠିଏଟି ସ୍ଥାନରୁ କଂଗ୍ରେସ ଚାଳିଶଟି ସ୍ଥାନ ଅଧିକାର କରିଥିଲା । ଶ୍ରୀ ହରେକୃଷ୍ଣ ମହତାବ ଦଳପତି ରୂପେ ନିର୍ବାଚିତ ହୋଇ ପ୍ରଧାନମନ୍ତ୍ରୀ

ହୋଇଥିଲେ । ଶ୍ରୀ ମହତାବଙ୍କ ମନ୍ତ୍ରିମଣ୍ଡଳରେ ସର୍ବଶ୍ରୀ ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ପଣ୍ଡିତ ଲିଙ୍ଗରାଜ ମିଶ୍ର ଓ ରାଧାକୃଷ୍ଣ ବିଶ୍ୱାସରାୟ ସହଯୋଗୀ ମନ୍ତ୍ରୀରୂପେ ଯୋଗଦେଇଥିଲେ । କିଛିଦିନ ପରେ ଦେଖାଗଲା ଯେ, ପ୍ରଧାନମନ୍ତ୍ରୀ ଶ୍ରୀ ମହତାବଙ୍କ ସହିତ ଶ୍ରୀ ବିଶ୍ୱାସରାୟଙ୍କ ମନୋମାଳିନ୍ୟ ଘଟିଥିଲା, ତେଣୁ ସେ ମନ୍ତ୍ରିପଦରୁ ଇସ୍ତଫା ଦେଇଥିଲେ । ତା'ପରେ ଶ୍ରୀ ସଦାଶିବ ତ୍ରିପାଠୀ, ଶ୍ରୀ ରାଜକୃଷ୍ଣ ବୋଷ ଓ ଶ୍ରୀ ରଣଜିତ୍ ସିଂହ ବରିହା ମହତାବଙ୍କ ମନ୍ତ୍ରିମଣ୍ଡଳରେ ଯୋଗଦେଇଥିଲେ । ଶ୍ରୀ ଲାଲ୍‌ମୋହନ ପଟ୍ଟନାୟକ ଓଡ଼ିଶା ବିଧାନସଭାର ବାଚସ୍ପତିରୂପେ ନିର୍ବାଚିତ ହୋଇଥିଲେ । ପୂର୍ବତନ ରାଷ୍ଟ୍ରପତି ଭି.ଭି. ଗିରିଙ୍କ ଭଉଣୀ ଶ୍ରୀମତୀ ଲକ୍ଷ୍ମୀବାଈ ଏହି ବିଧାନସଭାର ଉପବାଚସ୍ପତି ରୂପେ ନିର୍ବାଚିତ ହୋଇଥିଲେ ।

ନିର୍ବାଚନ ପରେ କଲିକତା ଫେରିଲି । ନିର୍ବାଚନପାଇଁ ମୁଁ ଯେତେଦିନ ଅନୁପସ୍ଥିତ ଥିଲି ସେତେବେଳେ ଆଇନ୍ କଲେଜରେ ଉପସ୍ଥାନ ପଡ଼ିବାରେ ଯେପରି କିଛି ଅସୁବିଧା ନହେବ ସାଙ୍ଗସାଥିମାନଙ୍କଦ୍ୱାରା ତା'ର ବ୍ୟବସ୍ଥା କରାଯାଇଥିଲା । ଓଡ଼ିଶାରେ କଂଗ୍ରେସର ନିର୍ବାଚନ ବିଜୟର ଉଲ୍ଲାସ ଅବିଳମ୍ବେ ମୋ ସ୍ମୃତିରୁ ଲିଭିଗଲା । କାରଣ ୧୯୪୬ ଅଗଷ୍ଟ ମାସ ୧୬ ତାରିଖରେ କଲିକତା ମହାନଗରୀକୁ ଗ୍ରାସକଲା ଗୋଟିଏ ଭୟାବହ ଘଟଣା । ଅଗଷ୍ଟ ୧୬ ତାରିଖକୁ 'କଳା ଦିବସ' ରୂପେ ପାଳନ କରିବାପାଇଁ ମହମ୍ମଦ ଅଲ୍ଲୀ ଜିନ୍ନାଙ୍କ ନିର୍ଦ୍ଦେଶରେ ମୁସ୍‌ଲିମ୍ ଲିଗ୍ ସ୍ଥିର କରିଥିଲା । ବଙ୍ଗଳାରେ ସେତେବେଳେ ଥାଏ ମୁସ୍‌ଲିମ୍ ଲିଗ୍‌ର ମନ୍ତ୍ରିମଣ୍ଡଳ ଏବଂ ସୟିଦ୍ ସୁରାଓର୍ଦ୍ଦୀ ଥାଆନ୍ତି ବଙ୍ଗଳାର ପ୍ରଧାନମନ୍ତ୍ରୀ । ତାଙ୍କ ଇଙ୍ଗିତରେ ସେଦିନ ପାଳିତ ହେଲା କଳା ଦିବସ । ଏହି କଳା ଦିବସକୁ ନିଖିଳ ଭାରତ ମୁସ୍‌ଲିମ୍ ଲିଗ୍ 'ଡାଇରେକ୍ଟ ଆକ୍‌ସନ୍' (Direct Action) ଦିନ ବୋଲି ଘୋଷଣା କରିଥିଲା, ପରେ ଏହାକୁ କଲିକତାରେ ସାଂପ୍ରଦାୟିକ ଦଙ୍ଗା ବୋଲି କୁହାଯାଇଥିଲା । ପାକିସ୍ତାନ ଗଠନପାଇଁ ଦାବି କରି ମୁସ୍‌ଲିମ୍ ଲିଗ୍ ପକ୍ଷରୁ କଲିକତାରେ ଏହି ଦଙ୍ଗା ପ୍ରଥମେ ଆରମ୍ଭ କରାଯାଇଥିଲା । ଅବିଚାରିତ ନରହତ୍ୟାଦ୍ୱାରା କଲିକତାକୁ ମୁସଲମାନ୍ ସଂଖ୍ୟାଧିକ ସହରରେ ପରିଣତ କରିବା ଦୁର୍ବୁଦ୍ଧି ସୁରାଓର୍ଦ୍ଦୀଙ୍କର ଜନ୍ମିଥାଏ । ତେଣୁ ପ୍ରଥମ ଅବସ୍ଥାରେ ମୁସଲମାନମାନଙ୍କର ଅତର୍କିତ ଆକ୍ରମଣରେ ହିନ୍ଦୁମାନେ ଭୟଙ୍କର ଭାବରେ କ୍ଷତିଗ୍ରସ୍ତ ହୋଇଥିଲେ ଓ ହାଣଖାଇଥିଲେ; ମାତ୍ର ଦୁଇ ତିନି ଦିନ ପରେ ହିନ୍ଦୁମାନେ ସଂଗଠିତ ହୋଇ ଅବସ୍ଥା ବଦଳାଇଦେଇଥିଲେ ଓ ଭୟଙ୍କର ଭାବରେ ପ୍ରତିଶୋଧ ନେଇଥିଲେ । ଏ ସମ୍ବନ୍ଧରେ ଶ୍ରୀ ଜେ. ସେନଗୁପ୍ତ ତାଙ୍କର "Eclipse of East Pakistan' (ପୂର୍ବ ପାକିସ୍ତାନର ବିଲୟ) ପୁସ୍ତକରେ ଯାହା ଲେଖିଛନ୍ତି ତାହା ଏଠାରେ ଉଦ୍ଧାର କରିବା ପ୍ରାସଙ୍ଗିକ ହେବ । ସେ ଲେଖିଛନ୍ତି :

"The Muslims of Bengal, before the partition of India, fought for Pakistan with the added advantage of having a Ministry then headed by the Muslim League leader Mr. Husyen Shaheed Suhrawardy. Mr. Suhrawardy used the governmental machinery for implementing the directive of the All-India Muslim League to operate 'Direct Action' launched on 16 August 1946. The 'Direct Action' was communal war of massacre of innocent people. This massacre is glorified by Pakistani politicians in different terms like Independence Struggle, and Pakistan Battle. In directing Direct Action, Mr. Suhrawardy turned Calcutta into a dead city. Thousands of innocent and unwary citizens were attacked and brutally killed by the Muslim League volunteers moving all over the city in government trucks. They had plenty of petrol which they poured at the doors of Hindu homes and set them on fire. Mr. Suhrawardy's plans were to turn Calcutta into a Muslim majority city through a massacre of Hindus.

It was a mad venture and the tide naturally turned within about 48 hours against the authors of the carnage. Hindus organized themselves quickly and retaliated ferociously. The retaliation, if allowed unhampered, would have wiped off the entire Muslim population of the city."

ଏହି ହାଣକାଟରେ ଏତେକାଳ ଭାଇ ଭାଇ ଭଳି ଚଳିଆସୁଥିବା କେତେ ହଜାର ହିନ୍ଦୁ-ମୁସଲମାନ ଯେ ପ୍ରାଣ ହରାଇଲେ ତାହାର ସଂଖ୍ୟା ନିରୂପଣ କରାଯାଇପାରିନଥିଲା । ସାଂପ୍ରଦାୟିକ ଗଣ୍ଡଗୋଳର ଅଗ୍ନି ସମଗ୍ର କଲିକତା ଓ ତା'ର ଆଖପାଖ ଅଞ୍ଚଳରେ ଜଳିଉଠିଥାଏ । ମଣିଷ ମଣିଷକୁ ଅତି ନିର୍ମମ ଭାବରେ ହାଣିବାର ମୁଁ ସ୍ୱଚକ୍ଷୁରେ ଦେଖିଛି । ଅତି ଦାରୁଣ, ଅତି କରୁଣ ସେ ଦୃଶ୍ୟ । ଏଥିରେ ଚିହ୍ନା ପରିଚୟ, ଜଣାଅଜଣାର କୌଣସି ବିଚାର ନଥିଲା । ସବୁଠାରୁ ବିଶେଷ ଭାବରେ କ୍ଷତିଗ୍ରସ୍ତ ହୋଇଥିଲେ ନିରୀହ ଓଡ଼ିଆ । ଖୁବ୍ କମ୍‌ରେ ହଜାରେରୁ ଅଧିକ ଓଡ଼ିଆ ଏହି ହିନ୍ଦୁ-ମୁସଲମାନ୍ ଦଙ୍ଗାରେ କଲିକତାରେ ହାଣଖାଇଛନ୍ତି । ପୁଲିସ ସେତେବେଳେ ବେଶୀ ସମର୍ଥନ କରୁଥିଲେ ଲିଗ୍ ସମର୍ଥକ ମୁସଲମାନଙ୍କୁ, ଯେହେତୁ ସରକାର ଥିଲା ଲିଗ୍ ସରକାର । କେବଳ ମାଟିଆବୁରୁଜ ଅଞ୍ଚଳରେ ତିନି ଶହରୁ ଅଧିକ ଓଡ଼ିଆ ଘର ଭିତରେ ଛେଳି ମେଣ୍ଢା ଭଳି ହଣା ହୋଇ ମରିଥା'ନ୍ତି ଓ ଘରର ସମସ୍ତ କାନ୍ଥ ରକ୍ତରେ ଲାଲ୍ ହୋଇଯାଇଥିବା କଥା ମୁଁ ବନ୍ଧୁ ଶ୍ରୀ ହୃଦାନନ୍ଦ ମଲ୍ଲିକ ଓ ଶ୍ରୀ ଅଭୟ ଚରଣ ନାୟକଙ୍କ ସହ ବୁଲି ସ୍ୱଚକ୍ଷୁରେ ଦେଖିଛି । ସେହିଭଳି ଅବସ୍ଥା ହୋଇଥିଲା ଖିଦିରିପୁର, ହାଓଡ଼ା, ଶିବପୁର, ଲିଲୁଆ, ଜାକରିଆ ଷ୍ଟ୍ରିଟ୍, ପାର୍କ ଷ୍ଟ୍ରିଟ୍, ଚେଙ୍ଗାଲି ଓ ଉଲବାରିଆ ପ୍ରଭୃତି ସ୍ଥାନମାନଙ୍କରେ । ବହୁ ଓଡ଼ିଆ କଲିକତା ଛାଡ଼ି ଚାଲିଆସିଥିଲେ । ମୃତ ଓ ଆହତର ସବିଶେଷ ସମ୍ବାଦ ପାଇବା ଅତି ଦୁରୂହ ବ୍ୟାପାର ହୋଇପଡ଼ିଥିଲା ।

## ଲଡ଼୍‌କେ ଲେଙ୍ଗେ ପାକିସ୍ତାନ

'ଲଡ଼୍‌କେ ଲେଙ୍ଗେ ପାକିସ୍ତାନ', ଲଢ଼ିକରି ପାକିସ୍ତାନ ଆଦାୟ କରିବାପାଇଁ ବଙ୍ଗଳାର ତତ୍କାଳୀନ ପ୍ରଧାନମନ୍ତ୍ରୀ ଶହୀଦ୍ ସୁରାଓର୍ଦ୍ଦୀଙ୍କ ପ୍ରରୋଚନାରେ କଲିକତାରେ ପ୍ରଥମେ ମୁସଲମାନ ଭାଇମାନେ ୧୯୪୬ ମସିହା ଅଗଷ୍ଟ ୧୬ ତାରିଖରେ ସଂଘର୍ଷ ଓ ହାଣକାଟ ଆରମ୍ଭ କରିଦେଇଥିଲେ । କଲିକତାର ମୁସଲମାନମାନେ ସ୍ୱପ୍ନରେ ସୁଦ୍ଧା କେବେ ଭାବିନଥିଲେ ଯେ କଲିକତା ପାକିସ୍ତାନର ଅନ୍ତର୍ଭୁକ୍ତ ହୋଇପାରିବନାହିଁ । ସେହି ନାରକୀୟ ହାଣକାଟ ସମୟରେ ମୁଁ କଲିକତାରେ ଥାଇ ବିଶ୍ୱବିଦ୍ୟାଳୟ ଆଇନ କଲେଜରେ ପଢୁଥାଏ । ଏହା ପୂର୍ବରୁ ଭଦ୍ରକରେ ମୁସଲିମ୍ ଲିଗ୍‌ର ଦୌରାତ୍ମ୍ୟ ଦେଖି ଭଦ୍ରକର ଭବିଷ୍ୟତ ସମ୍ବନ୍ଧରେ ମୋର ଯେପରି ଧାରଣା ଓ ଆଶଙ୍କା ଥିଲା, କଲିକତା ସମ୍ବନ୍ଧରେ ମଧ ମୋର ଠିକ୍ ସେହିପ୍ରକାର ଆଶଙ୍କା ହୋଇଥିଲା । ଏହି ସମୟରେ କଲିକତାରେ ହିନ୍ଦୁ ସଂପ୍ରଦାୟର ଲୋକମାନେ ବିମର୍ଷ ଥିଲାବେଳେ ମୁସଲମାନ ସଂପ୍ରଦାୟର ଲୋକେ ଉତ୍‌ଫୁଲ୍ଲ ଥିଲେ । ମାତ୍ର କଲିକତା ମୁସଲମାନମାନଙ୍କର ସେ ଆନନ୍ଦ ଆଉ ବେଶି ଦିନ ରହିନଥିଲା । ଯେତେବେଳେ ନିର୍ଦ୍ଦିଷ୍ଟ ଭାବରେ ଜଣାଗଲା ଯେ ଭାରତ ବିଭାଜନ ସହିତ ବଙ୍ଗଳା ମଧ ବିଭାଜିତ ହେବ ସେତେବେଳେ ସୁରାଓର୍ଦ୍ଦୀଙ୍କ ସମେତ କଲିକତାର ମୁସଲମାନ ସଂପ୍ରଦାୟର ଲୋକମାନେ ଗଭୀର ଭାବରେ ଅନୁତପ୍ତ ଓ ଦୁଃଖିତ ହୋଇଥିଲେ । ଏତେ ବିଳମ୍ବରେ ସେମାନେ ଭଲଭାବରେ ବୁଝିପାରିଥିଲେ ଯେ ବଙ୍ଗଳା ବିଭକ୍ତ ହେଲେ କଲିକତା କୌଣସିମତେ ପୂର୍ବପାକିସ୍ତାନ ହାତରେ ପଡ଼ିବନାହିଁ । ଏ ଅବସ୍ଥାରେ ବିଷଣ୍ଣ ଓ ହତୋତ୍ସାହ ସୁରାଓର୍ଦ୍ଦୀ ଆଉ ଗୋଟିଏ ଷଡ଼ଯନ୍ତ୍ରମୂଳକ ପନ୍ଥା ବାହାରକରିଥିଲେ । ବଙ୍ଗଳାକୁ ବିଭାଜିତ ନକରି ଗୋଟିଏ ସ୍ୱାଧୀନ ଓ ସାର୍ବଭୌମ ବଙ୍ଗଳାଦେଶରେ ପରିଣତ କରିବାପାଇଁ ସେ ପ୍ରସ୍ତାବ ଦେଇଥିଲେ । ତାଙ୍କର ଏହି ପ୍ରସ୍ତାବର ଆଢୁଆଳରେ ଭାଇସ୍‌ରାୟ ଲର୍ଡ଼ ମାଉଣ୍ଟବେଟେନ୍‌ଙ୍କର ପ୍ରେରଣା ଓ ସମର୍ଥନ ରହିଥିଲା । ଏ ସମ୍ବନ୍ଧରେ ବହୁତ କଥା ଅନେକ କାଳ ପର୍ଯ୍ୟନ୍ତ ଅଜଣା ରହିଯାଇଥିଲା ।

ମାତ୍ର ଏବେ ଅଧ୍ୟାପକ ଶ୍ରୀ ମନ୍ମଥନାଥ ଦାସଙ୍କ 'Inside Story of the Mountbatten Days' ମାଉଣ୍ଟବେଟେନ୍‌ଙ୍କ ସମୟର ବହୁ ଆଭ୍ୟନ୍ତରୀଣ ଘଟଣା ସମ୍ବନ୍ଧୀୟ 'Partition and Independence of India' ପୁସ୍ତକ ପ୍ରକାଶ ପାଇବା ପରେ ବହୁ ଷଡ଼ଯନ୍ତ୍ରମୂଳକ ଗୁପ୍ତ ରହସ୍ୟ ଜାଣିବାକୁ ମିଳୁଛି । ଅଧ୍ୟାପକ ଦାସ ଲଣ୍ଡନରେ ଲର୍ଡ଼ ମାଉଣ୍ଟବେଟେନ୍‌ଙ୍କ ବାସଗୃହକୁ ଯାଇ ତାଙ୍କ ବ୍ୟକ୍ତିଗତ ଫାଇଲପତ୍ର ଅଧ୍ୟୟନ କରି ଏସବୁ ତଥ୍ୟ ପ୍ରକାଶ କରିବାରେ ସମର୍ଥ ହୋଇଛନ୍ତି, ତେଣୁ ସେଗୁଡ଼ିକ ବିଶ୍ୱାସଯୋଗ୍ୟ । ଲର୍ଡ଼ ମାଉଣ୍ଟବେଟେନ୍ ବ୍ରିଟିଶ୍ ସାମ୍ରାଜ୍ୟର ସ୍ୱାର୍ଥ ଦୃଷ୍ଟିରୁ ସ୍ୱତନ୍ତ୍ର ଓ ସାର୍ବଭୌମ ବଙ୍ଗଳା ରାଷ୍ଟ୍ର ସୃଷ୍ଟି କରିବାକୁ ଚାହୁଁଥିଲେ । ତେଣୁ ସେ ସୁରାଓର୍ଦ୍ଦୀଙ୍କୁ ଉସ୍‌କାଇବା ସଙ୍ଗେ ସଙ୍ଗେ ବଙ୍ଗଳାର କଂଗ୍ରେସ ନେତାମାନଙ୍କୁ ପ୍ରଭାବିତ କରିବାକୁ ଉଦ୍ୟମ କରିଥିଲେ । ବଙ୍ଗଳାର ତତ୍କାଳୀନ ଗଭର୍ଣ୍ଣର ସାର୍ ଫ୍ରେଡ଼ରିକ୍ ବାରୋଜଙ୍କୁ (Sir Frederick Burrows) ଗୁପ୍ତ ପରାମର୍ଶ ଦେଇ ଲର୍ଡ଼ ମାଉଣ୍ଟବେଟେନ୍ ଏହି କାର୍ଯ୍ୟରେ ଲଗାଇଥିଲେ । ବଙ୍ଗଳାର ଲାଟ୍ ସାର୍ ବାରୋଜ କଲିକତା ପାଇଁ ବିଶେଷ ଚିନ୍ତିତ ଥିଲେ । ସେ ଚାହୁଁଥିଲେ ଯେ ବଙ୍ଗଳା ବିଭକ୍ତ ହେଲେ କଲିକତା ସହର ଉଭୟ ପାକିସ୍ତାନ ଓ ଭାରତପାଇଁ ଗୋଟିଏ ମୁକ୍ତାଞ୍ଚଳ (Free City) ହୋଇ ଉଭୟଙ୍କ କର୍ତ୍ତୃତ୍ୱରେ ରହୁ । ମାତ୍ର ତାହା ସମ୍ଭବ ହେବନାହିଁ ବୋଲି ଲର୍ଡ଼ ମାଉଣ୍ଟ୍‌ବେଟେନ୍ ତାଙ୍କୁ କହିଦେଇଥିଲେ । ତେଣୁ ସ୍ୱାଧୀନ ଓ ସାର୍ବଭୌମ ବଙ୍ଗଳା ଗଠନ ସେମାନଙ୍କପାଇଁ ଏକମାତ୍ର ପନ୍ଥା ବୋଲି ଲର୍ଡ଼ ମାଉଣ୍ଟ୍‌ବେଟେନ୍ ବଙ୍ଗଳାର ଲାଟ୍‌ଙ୍କୁ କହିଥିଲେ । ସ୍ୱତନ୍ତ୍ର ବଙ୍ଗଳା ରାଷ୍ଟ୍ର ଗଠନପାଇଁ ଲର୍ଡ଼ ମାଉଣ୍ଟ୍‌ବେଟେନ୍ ଏପରି ଆଗ୍ରହୀ ଥିଲେ ଯେ ସେ ନିଜେ ସ୍ୱତନ୍ତ୍ର ବଙ୍ଗଳା ସମ୍ବନ୍ଧରେ ମହମ୍ମଦ ଅଲ୍ଲୀ ଜିନ୍ନାଙ୍କୁ ରାଜି କରାଇନେଇଥିଲେ । ଜିନ୍ନା ଚାହୁଁଥିଲେ ଯେ ଯାହାହେଉ ପଛକେ କଲିକତା ଯେପରି ଭାରତ ହାତରେ ନପଡୁ । ତେଣୁ ସୁରାଓର୍ଦ୍ଦୀଙ୍କ ପ୍ରସ୍ତାବରେ ସେ ଏକମତ ହୋଇଥିଲେ । ଅଧ୍ୟାପକ ମନ୍ମଥନାଥ ଦାସଙ୍କ ପ୍ରକାଶିତ ତଥ୍ୟରୁ ଜଣାପଡ଼େ ଯେ ଶ୍ରୀ ଶରତ୍ ଚନ୍ଦ୍ର ବୋଷ ଓ ଶ୍ରୀ କିରଣ ଶଙ୍କର ରାୟ ପ୍ରଭୃତି ବଙ୍ଗଳାର କଂଗ୍ରେସ ନେତାମାନେ ମଧ୍ୟ ଲର୍ଡ଼ ମାଉଣ୍ଟବେଟେନ୍ ଓ ସୁରାଓର୍ଦ୍ଦୀଙ୍କ ଚକ୍ରାନ୍ତରେ ପଡ଼ିଯାଇଥିଲେ । ମାତ୍ର ହିନ୍ଦୁ ମହାସଭାର ତତ୍କାଳୀନ ନେତା ଡକ୍ଟର ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କର ବଙ୍ଗଳା ବିଭାଜନପାଇଁ ଦୃଢ଼ ଦାବି ସେହି ଚକ୍ରାନ୍ତକୁ ପଣ୍ଡକରିଦେଇଥିଲା । ଭାରତ ବିଭାଜିତ ହୋଇ ପାକିସ୍ତାନ ହେଉ ବା ନହେଉ ବଙ୍ଗଳାର ସଂଖ୍ୟାଧିକ ମୁସଲମାନ ସଂପ୍ରଦାୟର ଦୌରାତ୍ମ୍ୟରୁ ହିନ୍ଦୁମାନଙ୍କୁ ଉଦ୍ଧାର କରିବା ଉଦ୍ଦେଶ୍ୟରେ ଡକ୍ଟର ମୁଖାର୍ଜୀ ବଙ୍ଗଳା ବିଭାଜନ ଦାବିକରିଥିଲେ । ତେଣୁ ତାଙ୍କର ମତ ବଙ୍ଗଳାର ହିନ୍ଦୁମାନଙ୍କୁ ବିଶେଷ ଭାବେ ଆକୃଷ୍ଟ କରିଥିଲା ।

ହିନ୍ଦୁ ମହାସଭା ପ୍ରଚାରରେ ବଙ୍ଗଳାର କଂଗ୍ରେସ ନେତାମାନେ ଡରିଯାଇଥିଲେ । ସ୍ୱାଧୀନ ବଙ୍ଗଳା ରାଜ୍ୟ ଗଢ଼ାହେଲେ ମୁସଲମାନ ସଂଖ୍ୟାଗରିଷ୍ଠତା ହେତୁ ହିନ୍ଦୁମାନଙ୍କ ମନରେ ଯେଉଁ ଭୟ ଜାତହୋଇଥିଲା ତାହାକୁ ଦୂର କରିବା ଉଦ୍ଦେଶ୍ୟରେ ସ୍ୱାଧୀନ ବଙ୍ଗଳାରେ ସାଂପ୍ରଦାୟିକ ଭିତ୍ତିରେ ପୃଥକ ନିର୍ବାଚନମଣ୍ଡଳୀ ରହିବନାହିଁ ବୋଲି କହି ଲର୍ଡ଼ ମାଉଣ୍ଟ୍‌ବେଟେନ୍ ବଙ୍ଗଳାର କଂଗ୍ରେସ ନେତାମାନଙ୍କୁ ପ୍ରତିଶ୍ରୁତି ଦେଇ ତାଙ୍କ ପ୍ରସ୍ତାବ ସପକ୍ଷରେ ଉତ୍ସାହିତ କରିଥିଲେ ଏବଂ ସେଥିରେ ଶହିଦ ସୁରାଓର୍ଦ୍ଦୀଙ୍କୁ ମଧ୍ୟ ରାଜିକରାଇନେଇଥିଲେ । ପ୍ରସ୍ତାବଟି ବଙ୍ଗଳାର କଂଗ୍ରେସ ନେତାମାନଙ୍କ ମନକୁ ପାଇଥିଲା । ଏ ପ୍ରକାର ପ୍ରତିଶ୍ରୁତି ପାଇବା ପରେ ବଙ୍ଗଳାର କଂଗ୍ରେସ ନେତାମାନେ ଆହୁରି ପାଦେ ଆଗେଇଯିବାକୁ ଇଚ୍ଛାକରିଥିଲେ । ମାଉଣ୍ଟବେଟେନ୍‌ଙ୍କର ଅସଲ ଉଦ୍ଦେଶ୍ୟ ଥିଲା ବଙ୍ଗଳାର ହିନ୍ଦୁମାନଙ୍କ ମତକୁ ପ୍ରଭାବିତ କରି କୌଣସିମତେ ଶ୍ୟାମାପ୍ରସାଦଙ୍କ ବିରୋଧକୁ ଭଣ୍ଡୁରକରିବା; କିନ୍ତୁ ବଙ୍ଗାଳୀମାନେ ସାଧାରଣତଃ ପ୍ରଗତିଶୀଳ ଚିନ୍ତାଧାରାରେ ଅନୁପ୍ରାଣିତ ହୋଇଥାଆନ୍ତି । ଭବିଷ୍ୟତରେ ଧର୍ମସମ୍ବନ୍ଧୀୟ ବ୍ୟାପାରରେ ଧର୍ମାନ୍ଧତା ଯେପରି କୌଣସି ସମସ୍ୟା ସୃଷ୍ଟି ନକରିପାରେ ସେଥିପାଇଁ ଦେଶକୁ ସମ୍ପୂର୍ଣ୍ଣ ଭାବରେ ଧର୍ମନିରପେକ୍ଷ କରିବା ଉଦ୍ଦେଶ୍ୟରେ ସ୍ୱାଧୀନ ବଙ୍ଗଳାକୁ ଗୋଟିଏ ସମାଜବାଦୀ ସାଧାରଣତନ୍ତ୍ର

(Socialist Republic) ବୋଲି ଘୋଷଣା କରିବାକୁ ବଙ୍ଗଳାର କଂଗ୍ରେସ ନେତାମାନେ ସୁରାଓର୍ଦ୍ଦୀଙ୍କ ପାଖରେ ପ୍ରସ୍ତାବ ଦେଇଥିଲେ ଏବଂ ସେ ପ୍ରସ୍ତାବରେ ସୁରାଓର୍ଦ୍ଦୀ ଏକପ୍ରକାର ସମ୍ମତି ଦେଇଥିଲେ । ଅଧ୍ୟାପକ ମନ୍ମଥନାଥ ଦାସ ଲେଖିଛନ୍ତି ଯେ ଏହାଦ୍ୱାରା ମାଉଣ୍ଟବେଟେନ୍‌ଙ୍କ ପକ୍ଷେ ଏକ ବଜ୍ରାଘାତ ଘଟିଲାପରି ହେଲା । କାରଣ ତାଙ୍କର ଅସଲ ଅଭିସନ୍ଧି ଥିଲା ତାଙ୍କ ପରିକଳ୍ପିତ ସ୍ୱାଧୀନ ବଙ୍ଗଳାଦେଶକୁ କୌଣସିମତେ ବ୍ରିଟିଶ୍ କମନ୍‌ୱେଲ୍‌ଥ ଭିତରେ ରଖିବା । କିନ୍ତୁ 'ସମାଜବାଦୀ' ଶବ୍ଦ ଶୁଣି ସେ ଚମକି ପଡ଼ିଥିଲେ ।

ଏହି ପରିପ୍ରେକ୍ଷୀରେ ଲର୍ଡ଼ ମାଉଣ୍ଟବେଟେନ୍ ବଙ୍ଗଳାର ଲାଟ୍ ସାର୍ ବାରୋଜଙ୍କୁ ଲେଖିଥିଲେ, ''ସମାଜବାଦୀ ସାଧାରଣତନ୍ତ୍ର କିମ୍ବା ସେହିଭଳି କୌଣସି ଶବ୍ଦ ବ୍ୟବହାର ନକରିବାପାଇଁ ସୁରଓର୍ଦ୍ଦୀ, ବୋଷ ଓ ରାୟଙ୍କୁ ରାଜିକରାଇବାକୁ ତୁମର ସମସ୍ତ ପ୍ରଭାବ ପ୍ରୟୋଗ କରିବା ସକାଶେ ମୁଁ ତୁମକୁ ଏକାନ୍ତ ଅନୁରୋଧ କରୁଛି ।'' କିନ୍ତୁ ଗଭର୍ଣ୍ଣର୍ ସାର୍ ବାରୋଜ ସେମାନଙ୍କୁ ପ୍ରଭାବିତ କରିବାରେ ବିଫଳ ହୋଇଥିଲେ । ଏହାପରେ ଲର୍ଡ଼ ମାଉଣ୍ଟବେଟେନ୍‌ଙ୍କର ଆଉ ସ୍ୱାଧୀନ ବଙ୍ଗଳା ବିଷୟରେ ସ୍ପୃହା ରହିଲା ନାହିଁ, ଦେଶ ବିଭାଜନ କଥା ଘୋଷଣା କରାଯାଇଥିଲା । ବଙ୍ଗଳା ବିଭାଜନ ବିଷୟରେ ପଦକ୍ଷେପ ନେବାର ଆବଶ୍ୟକତା ପଡ଼ିଥିଲା । କିନ୍ତୁ ବିଚରା ସୁରାଓର୍ଦ୍ଦୀଙ୍କୁ ଅବଶେଷରେ ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ ଦଶା ଭୋଗିବାକୁ ପଡ଼ିଥିଲା । ଅଧ୍ୟାପକ ମନ୍ମଥ ନାଥ ଦାସ ଲେଖିଛନ୍ତି :

"The plan thus buried the ideas of an independent Bengal. The hope for a united Bengal was all along more shadow than substance XX The fate of Suhrawardy thereafter appeared sealed. XX The most amazing spectacle in Bengal after the announcement of partition was the abrupt change in the League's mood. The reality of partition so dampened the spirit of the militant advocates of Pakistan that their aggressive attitude of the recent past almost completely disappeared. Sensing also the loss of Calcutta, they became depressed. XX The most nervous man in Calcutta in this altered situation was Shaheed Suhrawardy, the man who had ruled the City using his official power together with a private army of ruthless hooligans recruited from his own community. He knew Calcutta well, and feared the fate of his co-religionists without his political and personal power. Suhrawardy himself had just fallen from the high position he held. The Muslim League Parlimentary Party of East Bengal had selected his erstwhile rival Khwaja Nazimuddin as Chief Minister- Designate of East Pakistan."

ପାକିସ୍ଥାନ ଦାବିର ଶେଷ ପରିଣତି ଏହି ପ୍ରକାର ଆକାର ଧାରଣ କରିବ ବୋଲି ଯଦି ସୁରାଓର୍ଦ୍ଦୀ ଓ କଲିକତାର ତାଙ୍କ ସଂପ୍ରଦାୟର ଲୋକ ଜାଣିଥା'ନ୍ତେ ତା'ହେଲେ କଲିକତାର ରାସ୍ତା ଉପରେ ଲଢ଼େଇ ଆରମ୍ଭକରି ପାକିସ୍ତାନ ଆଦାୟ କରିବାକୁ ସେମାନେ କେବେ ପ୍ରୟାସୀ ହୋଇନଥା'ନ୍ତେ । ୧୯୪୭ ଅଗଷ୍ଟ ମାସ ଚଉଦ ତାରିଖ ରାତିରେ ନବଜାତ ପାକିସ୍ତାନର ଜନ୍ମ ଉତ୍ସବ ଯେତେବେଳେ କରାଚୀ ଓ ଢାକାରେ ପାଳିତ ହେଉଥାଏ ସେତେବେଳେ ସହିଦ୍ ସୁରାଓର୍ଦ୍ଦୀ କୌଣସି ଉତ୍ସବରେ ଉପସ୍ଥିତ ନ ଥିଲେ । ସେତେବେଳେ ପ୍ରତିହିଂସାପ୍ରୟାସୀ ହିନ୍ଦୁ ଯୁବକମାନଙ୍କ ଘେର ମଧ୍ୟରେ ସୁରାଓର୍ଦ୍ଦୀ ଗୋଟିଏ ଅତି ଭୟାବହ ଅବସ୍ଥାରେ କଲିକତାର ବେଲିଆଘାଟା ହାଇଦରୀ ପ୍ରାସାଦରେ ଆଶ୍ରୟ ନେଇଥିଲେ । ସେଠାରେ ଆବିର୍ଭୂତ ହେଲେ ମହାତ୍ମାଗାନ୍ଧୀ । ଉତ୍ୟକ୍ତ ଯୁବକମାନଙ୍କୁ ଭର୍ତ୍ସନା କରି

ମାତ୍ର ଏବେ ଅଧ୍ୟାପକ ଶ୍ରୀ ମନ୍ମଥନାଥ ଦାସଙ୍କ 'Inside Story of the Mountbatten Days' ମାଉଣ୍ଟବେଟେନ୍‌ଙ୍କ ସମୟର ବହୁ ଆଭ୍ୟନ୍ତରୀଣ ଘଟଣା ସମ୍ବନ୍ଧୀୟ 'Partition and Independence of India' ପୁସ୍ତକ ପ୍ରକାଶ ପାଇବା ପରେ ବହୁ ଷଡ଼ଯନ୍ତ୍ରମୂଳକ ଗୁପ୍ତ ରହସ୍ୟ ଜାଣିବାକୁ ମିଳୁଛି । ଅଧ୍ୟାପକ ଦାସ ଲଣ୍ଡନରେ ଲର୍ଡ଼ ମାଉଣ୍ଟବେଟେନ୍‌ଙ୍କ ବାସଗୃହକୁ ଯାଇ ତାଙ୍କ ବ୍ୟକ୍ତିଗତ ଫାଇଲପତ୍ର ଅଧ୍ୟୟନ କରି ଏସବୁ ତଥ୍ୟ ପ୍ରକାଶ କରିବାରେ ସମର୍ଥ ହୋଇଛନ୍ତି, ତେଣୁ ସେଗୁଡ଼ିକ ବିଶ୍ୱାସଯୋଗ୍ୟ । ଲର୍ଡ଼ ମାଉଣ୍ଟବେଟେନ୍ ବ୍ରିଟିଶ୍ ସାମ୍ରାଜ୍ୟର ସ୍ୱାର୍ଥ ଦୃଷ୍ଟିରୁ ସ୍ୱତନ୍ତ୍ର ଓ ସାର୍ବଭୌମ ବଙ୍ଗଳା ରାଷ୍ଟ୍ର ସୃଷ୍ଟି କରିବାକୁ ଚାହୁଁଥିଲେ । ତେଣୁ ସେ ସୁରାଓର୍ଦ୍ଦୀଙ୍କୁ ଉସ୍‌କାଇବା ସଙ୍ଗେ ସଙ୍ଗେ ବଙ୍ଗଳାର କଂଗ୍ରେସ ନେତାମାନଙ୍କୁ ପ୍ରଭାବିତ କରିବାକୁ ଉଦ୍ୟମ କରିଥିଲେ । ବଙ୍ଗଳାର ତତ୍କାଳୀନ ଗଭର୍ଣ୍ଣର ସାର୍ ଫ୍ରେଡ଼ରିକ୍ ବାରୋଜଙ୍କୁ (Sir Frederick Burrows) ଗୁପ୍ତ ପରାମର୍ଶ ଦେଇ ଲର୍ଡ଼ ମାଉଣ୍ଟବେଟେନ୍ ଏହି କାର୍ଯ୍ୟରେ ଲଗାଇଥିଲେ । ବଙ୍ଗଳାର ଲାଟ୍ ସାର୍ ବାରୋଜ କଲିକତା ପାଇଁ ବିଶେଷ ଚିନ୍ତିତ ଥିଲେ । ସେ ଚାହୁଁଥିଲେ ଯେ ବଙ୍ଗଳା ବିଭକ୍ତ ହେଲେ କଲିକତା ସହର ଉଭୟ ପାକିସ୍ତାନ ଓ ଭାରତପାଇଁ ଗୋଟିଏ ମୁକ୍ତାଞ୍ଚଳ (Free City) ହୋଇ ଉଭୟଙ୍କ କର୍ତ୍ତୃତ୍ୱରେ ରହୁ । ମାତ୍ର ତାହା ସମ୍ଭବ ହେବନାହିଁ ବୋଲି ଲର୍ଡ଼ ମାଉଣ୍ଟବେଟେନ୍ ତାଙ୍କୁ କହିଦେଇଥିଲେ । ତେଣୁ ସ୍ୱାଧୀନ ଓ ସାର୍ବଭୌମ ବଙ୍ଗଳା ଗଠନ ସେମାନଙ୍କପାଇଁ ଏକମାତ୍ର ପନ୍ଥା ବୋଲି ଲର୍ଡ଼ ମାଉଣ୍ଟବେଟେନ୍ ବଙ୍ଗଳାର ଲାଟ୍‌ଙ୍କୁ କହିଥିଲେ । ସ୍ୱତନ୍ତ୍ର ବଙ୍ଗଳା ରାଷ୍ଟ୍ର ଗଠନପାଇଁ ଲର୍ଡ଼ ମାଉଣ୍ଟବେଟେନ୍ ଏପରି ଆଗ୍ରହୀ ଥିଲେ ଯେ ସେ ନିଜେ ସ୍ୱତନ୍ତ୍ର ବଙ୍ଗଳା ସମ୍ବନ୍ଧରେ ମହମ୍ମଦ ଅଲ୍ଲୀ ଜିନ୍ନାଙ୍କୁ ରାଜି କରାଇନେଇଥିଲେ । ଜିନ୍ନା ଚାହୁଁଥିଲେ ଯେ ଯାହାହେଉ ପଛକେ କଲିକତା ଯେପରି ଭାରତ ହାତରେ ନପଡୁ । ତେଣୁ ସୁରାଓର୍ଦ୍ଦୀଙ୍କ ପ୍ରସ୍ତାବରେ ସେ ଏକମତ ହୋଇଥିଲେ । ଅଧ୍ୟାପକ ମନ୍ମଥନାଥ ଦାସଙ୍କ ପ୍ରକାଶିତ ତଥ୍ୟରୁ ଜଣାପଡ଼େ ଯେ ଶ୍ରୀ ଶରତ୍ ଚନ୍ଦ୍ର ବୋଷ ଓ ଶ୍ରୀ କିରଣ ଶଙ୍କର ରାୟ ପ୍ରଭୃତି ବଙ୍ଗଳାର କଂଗ୍ରେସ ନେତାମାନେ ମଧ୍ୟ ଲର୍ଡ଼ ମାଉଣ୍ଟବେଟେନ୍ ଓ ସୁରାଓର୍ଦ୍ଦୀଙ୍କ ଚକ୍ରାନ୍ତରେ ପଡ଼ିଯାଇଥିଲେ । ମାତ୍ର ହିନ୍ଦୁ ମହାସଭାର ତତ୍କାଳୀନ ନେତା ଡକ୍ଟର ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କର ବଙ୍ଗଳା ବିଭାଜନପାଇଁ ଦୃଢ଼ ଦାବି ସେହି ଚକ୍ରାନ୍ତକୁ ପଣ୍ଡକରିଦେଇଥିଲା । ଭାରତ ବିଭାଜିତ ହୋଇ ପାକିସ୍ତାନ ହେଉ ବା ନହେଉ ବଙ୍ଗଳାର ସଂଖ୍ୟାଧିକ ମୁସଲମାନ ସଂପ୍ରଦାୟର ଦୌରାତ୍ମ୍ୟରୁ ହିନ୍ଦୁମାନଙ୍କୁ ଉଦ୍ଧାର କରିବା ଉଦ୍ଦେଶ୍ୟରେ ଡକ୍ଟର ମୁଖାର୍ଜୀ ବଙ୍ଗଳା ବିଭାଜନ ଦାବିକରିଥିଲେ । ତେଣୁ ତାଙ୍କର ମତ ବଙ୍ଗଳାର ହିନ୍ଦୁମାନଙ୍କୁ ବିଶେଷ ଭାବେ ଆକୃଷ୍ଟ କରିଥିଲା ।

ହିନ୍ଦୁ ମହାସଭା ପ୍ରଚାରରେ ବଙ୍ଗଳାର କଂଗ୍ରେସ ନେତାମାନେ ଡରିଯାଇଥିଲେ । ସ୍ୱାଧୀନ ବଙ୍ଗଳା ରାଜ୍ୟ ଗଢ଼ାହେଲେ ମୁସଲମାନ ସଂଖ୍ୟାଗରିଷ୍ଠତା ହେତୁ ହିନ୍ଦୁମାନଙ୍କ ମନରେ ଯେଉଁ ଭୟ ଜାତହୋଇଥିଲା ତାହାକୁ ଦୂର କରିବା ଉଦ୍ଦେଶ୍ୟରେ ସ୍ୱାଧୀନ ବଙ୍ଗଳାରେ ସାଂପ୍ରଦାୟିକ ଭିତ୍ତିରେ ପୃଥକ ନିର୍ବାଚନମଣ୍ଡଳୀ ରହିବନାହିଁ ବୋଲି କହି ଲର୍ଡ଼ ମାଉଣ୍ଟବେଟେନ୍ ବଙ୍ଗଳାର କଂଗ୍ରେସ ନେତାମାନଙ୍କୁ ପ୍ରତିଶ୍ରୁତି ଦେଇ ତାଙ୍କ ପ୍ରସ୍ତାବ ସପକ୍ଷରେ ଉତ୍ସାହିତ କରିଥିଲେ ଏବଂ ସେଥିରେ ଶହିଦ ସୁରାଓର୍ଦ୍ଦୀଙ୍କୁ ମଧ୍ୟ ରାଜିକରାଇନେଇଥିଲେ । ପ୍ରସ୍ତାବଟି ବଙ୍ଗଳାର କଂଗ୍ରେସ ନେତାମାନଙ୍କ ମନକୁ ପାଇଥିଲା । ଏ ପ୍ରକାର ପ୍ରତିଶ୍ରୁତି ପାଇବା ପରେ ବଙ୍ଗଳାର କଂଗ୍ରେସ ନେତାମାନେ ଆହୁରି ପାଦେ ଆଗେଇଯିବାକୁ ଇଚ୍ଛାକରିଥିଲେ । ମାଉଣ୍ଟବେଟେନ୍‌ଙ୍କର ଅସଲ ଉଦ୍ଦେଶ୍ୟ ଥିଲା ବଙ୍ଗଳାର ହିନ୍ଦୁମାନଙ୍କ ମତକୁ ପ୍ରଭାବିତ କରି କୌଣସିମତେ ଶ୍ୟାମାପ୍ରସାଦଙ୍କ ବିରୋଧକୁ ଭଣ୍ଡୁରକରିବା; କିନ୍ତୁ ବଙ୍ଗାଳୀମାନେ ସାଧାରଣତଃ ପ୍ରଗତିଶୀଳ ଚିନ୍ତାଧାରାରେ ଅନୁପ୍ରାଣିତ ହୋଇଥାଆନ୍ତି । ଭବିଷ୍ୟତରେ ଧର୍ମସମ୍ବନ୍ଧୀୟ ବ୍ୟାପାରରେ ଧର୍ମାନ୍ଧତା ଯେପରି କୌଣସି ସମସ୍ୟା ସୃଷ୍ଟି ନକରିପାରେ ସେଥିପାଇଁ ଦେଶକୁ ସମ୍ପୂର୍ଣ୍ଣ ଭାବରେ ଧର୍ମନିରପେକ୍ଷ କରିବା ଉଦ୍ଦେଶ୍ୟରେ ସ୍ୱାଧୀନ ବଙ୍ଗଳାକୁ ଗୋଟିଏ ସମାଜବାଦୀ ସାଧାରଣତନ୍ତ୍ର

(Socialist Republic) ବୋଲି ଘୋଷଣା କରିବାକୁ ବଙ୍ଗଳାର କଂଗ୍ରେସ ନେତାମାନେ ସୁରାଓର୍ଦ୍ଦୀଙ୍କ ପାଖରେ ପ୍ରସ୍ତାବ ଦେଇଥିଲେ ଏବଂ ସେ ପ୍ରସ୍ତାବରେ ସୁରାଓର୍ଦ୍ଦୀ ଏକପ୍ରକାର ସମ୍ମତି ଦେଇଥିଲେ । ଅଧ୍ୟାପକ ମନ୍ମଥନାଥ ଦାସ ଲେଖିଛନ୍ତି ଯେ ଏହାଦ୍ୱାରା ମାଉଣ୍ଟବେଟେନ୍‌ଙ୍କ ପକ୍ଷେ ଏକ ବଜ୍ରାଘାତ ଘଟିଲାପରି ହେଲା । କାରଣ ତାଙ୍କର ଅସଲ ଅଭିସନ୍ଧି ଥିଲା ତାଙ୍କ ପରିକଳ୍ପିତ ସ୍ୱାଧୀନ ବଙ୍ଗଳାଦେଶକୁ କୌଣସିମତେ ବ୍ରିଟିଶ୍ କମନ୍‌ୱେଲ୍‌ଥ ଭିତରେ ରଖିବା । କିନ୍ତୁ 'ସମାଜବାଦୀ' ଶବ୍ଦ ଶୁଣି ସେ ଚମକି ପଡ଼ିଥିଲେ ।

ଏହି ପରିପ୍ରେକ୍ଷୀରେ ଲର୍ଡ଼ ମାଉଣ୍ଟବେଟେନ୍ ବଙ୍ଗଳାର ଲାଟ୍ ସାର୍ ବାରୋଜଙ୍କୁ ଲେଖିଥିଲେ, ''ସମାଜବାଦୀ ସାଧାରଣତନ୍ତ୍ର କିମ୍ବା ସେହିଭଳି କୌଣସି ଶବ୍ଦ ବ୍ୟବହାର ନକରିବାପାଇଁ ସୁରଓର୍ଦ୍ଦୀ, ବୋଷ ଓ ରାୟଙ୍କୁ ରାଜିକରାଇବାକୁ ତୁମର ସମସ୍ତ ପ୍ରଭାବ ପ୍ରୟୋଗ କରିବା ସକାଶେ ମୁଁ ତୁମକୁ ଏକାନ୍ତ ଅନୁରୋଧ କରୁଛି ।'' କିନ୍ତୁ ଗଭର୍ଣ୍ଣର୍ ସାର୍ ବାରୋଜ ସେମାନଙ୍କୁ ପ୍ରଭାବିତ କରିବାରେ ବିଫଳ ହୋଇଥିଲେ । ଏହାପରେ ଲର୍ଡ଼ ମାଉଣ୍ଟବେଟେନ୍‌ଙ୍କର ଆଉ ସ୍ୱାଧୀନ ବଙ୍ଗଳା ବିଷୟରେ ସ୍ପୃହା ରହିଲା ନାହିଁ, ଦେଶ ବିଭାଜନ କଥା ଘୋଷଣା କରାଯାଇଥିଲା । ବଙ୍ଗଳା ବିଭାଜନ ବିଷୟରେ ପଦକ୍ଷେପ ନେବାର ଆବଶ୍ୟକତା ପଡ଼ିଥିଲା । କିନ୍ତୁ ବିଚରା ସୁରାଓର୍ଦ୍ଦୀଙ୍କୁ ଅବଶେଷରେ ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ ଦଶା ଭୋଗିବାକୁ ପଡ଼ିଥିଲା । ଅଧ୍ୟାପକ ମନ୍ମଥ ନାଥ ଦାସ ଲେଖିଛନ୍ତି :

"The plan thus buried the ideas of an independent Bengal. The hope for a united Bengal was all along more shadow than substance XX The fate of Suhrawardy thereafter appeared sealed. XX The most amazing spectacle in Bengal after the announcement of partition was the abrupt change in the League's mood. The reality of partition so dampened the spirit of the militant advocates of Pakistan that their aggressive attitude of the recent past almost completely disappeared. Sensing also the loss of Calcutta, they became depressed. XX The most nervous man in Calcutta in this altered situation was Shaheed Suhrawardy, the man who had ruled the City using his official power together with a private army of ruthless hooligans recruited from his own community. He knew Calcutta well, and feared the fate of his co-religionists without his political and personal power. Suhrawardy himself had just fallen from the high position he held. The Muslim League Parlimentary Party of East Bengal had selected his erstwhile rival Khwaja Nazimuddin as Chief Minister- Designate of East Pakistan."

ପାକିସ୍ଥାନ ଦାବିର ଶେଷ ପରିଣତି ଏହି ପ୍ରକାର ଆକାର ଧାରଣ କରିବ ବୋଲି ଯଦି ସୁରାଓର୍ଦ୍ଦୀ ଓ କଲିକତାର ତାଙ୍କ ସଂପ୍ରଦାୟର ଲୋକ ଜାଣିଥା'ନ୍ତେ ତା'ହେଲେ କଲିକତାର ରାସ୍ତା ଉପରେ ଲଢ଼େଇ ଆରମ୍ଭକରି ପାକିସ୍ତାନ ଆଦାୟ କରିବାକୁ ସେମାନେ କେବେ ପ୍ରୟାସୀ ହୋଇନଥା'ନ୍ତେ । ୧୯୪୭ ଅଗଷ୍ଟ ମାସ ଚଉଦ ତାରିଖ ରାତିରେ ନବଜାତ ପାକିସ୍ତାନର ଜନ୍ମ ଉତ୍ସବ ଯେତେବେଳେ କରାଚୀ ଓ ଢାକାରେ ପାଳିତ ହେଉଥାଏ ସେତେବେଳେ ସହିଦ୍ ସୁରାଓର୍ଦ୍ଦୀ କୌଣସି ଉତ୍ସବରେ ଉପସ୍ଥିତ ନ ଥିଲେ । ସେତେବେଳେ ପ୍ରତିହିଂସାପ୍ରୟାସୀ ହିନ୍ଦୁ ଯୁବକମାନଙ୍କ ଘେର ମଧ୍ୟରେ ସୁରାଓର୍ଦ୍ଦୀ ଗୋଟିଏ ଅତି ଭୟାବହ ଅବସ୍ଥାରେ କଲିକତାର ବେଲିଆଘାଟା ହାଇଦରୀ ପ୍ରାସାଦରେ ଆଶ୍ରୟ ନେଇଥିଲେ । ସେଠାରେ ଆବିର୍ଭୂତ ହେଲେ ମହାତ୍ମାଗାନ୍ଧୀ । ଉତ୍ୟକ୍ତ ଯୁବକମାନଙ୍କୁ ଭର୍ତ୍ସନା କରି

ଗାନ୍ଧିଜୀ ସୁରାଓର୍ଦ୍ଦୀଙ୍କୁ ସେ ଅବସ୍ଥାରୁ ଉଦ୍ଧାରକରିଥିଲେ । ମହାତ୍ମାଜୀ ସୁରାଓର୍ଦ୍ଦୀଙ୍କ କାନ୍ଧରେ ହାତ ପକାଇ ତାଙ୍କୁ ଜନତା ସମ୍ମୁଖକୁ ଆଣିଥିଲେ । ଜନତାକୁ ସମ୍ବୋଧନ କରି ସୁରାଓର୍ଦ୍ଦୀ କହିଥିଲେ, "It is Bengal's good luck that Mahatmaji is in our midst at this hour. Will Bengal realise its high privilege and stop the fratricide ?" ଏହା ଶୁଣି ଜନତା ପକ୍ଷରୁ ପ୍ରଶ୍ନ ହୋଇଥିଲା, "Are you not responsible for the great Calcutta killing ?" "Yes, we all are". ସୁରାଓର୍ଦ୍ଦୀ ଉତ୍ତର ଦେଇଥିଲେ । କିନ୍ତୁ ଜନତା ଯେତେବେଳେ ତାଙ୍କଠାରୁ ଏକ ନିର୍ଦ୍ଦିଷ୍ଟ ଉତ୍ତର ଦାବିକରିଥିଲେ, ସେ ହଠାତ୍ କହିଥିଲେ, "Yes, it was my responsibility." ସୁରାଓର୍ଦ୍ଦୀ ଅନୁତପ୍ତ; ମାତ୍ର ପ୍ରାୟଶ୍ଚିତ୍ତ କରିବା ଆଉ ତାଙ୍କ ଆକ୍ତିଆରରେ ନଥିଲା । ଅନୁତାପ କରିବାପାଇଁ ସଦ୍‌ଗୁଣ ଲୋଡ଼ା; କିନ୍ତୁ ପ୍ରାୟଶ୍ଚିତ୍ତ କରିବାପାଇଁ ଶକ୍ତି ଲୋଡ଼ା । କିନ୍ତୁ ସେ ଶକ୍ତି ଆଉ ସହିଦ ସୁରାଓର୍ଦ୍ଦୀଙ୍କର ନଥିଲା । ଭଗ୍ନହୃଦୟରେ କାନ୍ଦି କାନ୍ଦି ସେ କଲିକତାରୁ ବିଦାୟନେଇଥିଲେ । ମୁଁ ଜାଣେ ମୁସଲମାନ ସଂପ୍ରଦାୟର ଆଉ ଜଣେ ବିଶିଷ୍ଟ ନେତା ମଧ୍ୟ କହିଁକହିଁ ହୋଇ କାନ୍ଦି କାନ୍ଦି କଲିକତାରୁ ବିଦାୟନେଇଥିଲେ । ସେ ଥିଲେ ଅବିଭକ୍ତ ବଙ୍ଗଳାର ପୂର୍ବତନ ପ୍ରଧାନମନ୍ତ୍ରୀ ଜନାବ୍ ଫଜ୍‌ଲୁଲ୍ ହକ୍ । ସେ ମୁସ୍‌ଲିମ୍ ଲିଗ୍‌ର ନେତା ନଥିଲେ । କୃଷକ ପ୍ରଜା ପାର୍ଟିର ସେ ଥିଲେ ନେତା ଓ ୧୯୩୭ ମସିହାରେ ସେ ବଙ୍ଗଳାରେ ପ୍ରଧାନମନ୍ତ୍ରୀ ହୋଇଥିଲେ । ତା'ପରେ ବହୁଦିନ ସେ କଲିକତା ହାଇକୋର୍ଟରେ ଆଇନ ବ୍ୟବସାୟ ମଧ୍ୟ କରୁଥିଲେ । କଲିକତା ଛାଡ଼ି ଯିବା ତାଙ୍କ ପକ୍ଷରେ ଅତ୍ୟନ୍ତ ଦୁଃଖଦାୟକ ହୋଇଥିଲା ।

ସ୍ୱାଧୀନତାର ସନ୍ଧିକାଳରେ କଲିକତାରେ ଥାଇ ମୁଁ ଯାହା ସବୁ ଅଙ୍ଗେ ନିଭାଇଥିଲି ଓ ଅନୁଧ୍ୟାନ କରିଥିଲି, ଅଧ୍ୟାପକ ଦାସଙ୍କ ଗବେଷଣାମୂଳକ ପୁସ୍ତକ ସେ ସମ୍ପର୍କରେ ନାନା ଅକାଟ୍ୟ ଓ ପ୍ରାମାଣିକ ତଥ୍ୟରେ ପରିପୁଷ୍ଟ । ତେଣୁ ଆଗ୍ରହୀ ପାଠକମାନଙ୍କ ତୃପ୍ତିପାଇଁ ମୁଁ ତାଙ୍କର ବର୍ଣ୍ଣନାକୁ ଉଦ୍ଧାର କରିଛି ।

## ଦଙ୍ଗାଗ୍ରସ୍ତଙ୍କୁ ସାହାଯ୍ୟ

କଲିକତା ସହରରେ ଥାଆନ୍ତି ସବୁ ପ୍ରଦେଶର ଲୋକ । ଆସାମୀ, ବିହାରୀ, ତେଲୁଗୁ ଓ ମଧ୍ୟପ୍ରଦେଶର ବହୁ ଲୋକ ମଧ୍ୟ କଲିକତା ଦଙ୍ଗାରେ ପ୍ରାଣହରାଇଥିଲେ । ଦଙ୍ଗା ପରେ ସେସବୁ ପ୍ରଦେଶର ସରକାରମାନେ ଉଚ୍ଚପଦସ୍ଥ ଅଫିସରମାନଙ୍କୁ ପ୍ରତିନିଧି ଭାବରେ ପଠାଇଥିଲେ ନିଜ ନିଜ ପ୍ରଦେଶର ଲୋକଙ୍କ ମୃତ୍ୟୁ ଓ କ୍ଷୟକ୍ଷତି ସମ୍ବନ୍ଧରେ ସମ୍ବାଦ ସଂଗ୍ରହ କରି ବଙ୍ଗଳା ପ୍ରଦେଶର ସରକାର ତଥା କେନ୍ଦ୍ର ସରକାରଠାରେ ଉପସ୍ଥାପନ କରିବାପାଇଁ; କିନ୍ତୁ ଆମ ପ୍ରଦେଶରୁ ଆମ ସରକାର ସେଭଳି କୌଣସି ପ୍ରତିନିଧିଙ୍କୁ ନିଯୁକ୍ତ କରିନଥିଲେ । ମୁଁ, ହୃଦାନନ୍ଦ ମଲ୍ଲିକ, ଅଭୟ ଚରଣ ନାୟକ, ଆକୁଳି ମିଶ୍ର, ରାମଚନ୍ଦ୍ର ପଟ୍ଟନାୟକ ପ୍ରଭୃତି ଏକତ୍ରିତ ହେଲୁ ଏହି ଦଙ୍ଗାରେ ମୃତାହତ ଓ କ୍ଷତିଗ୍ରସ୍ତ ଓଡ଼ିଆ ଲୋକଙ୍କ ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରିବାପାଇଁ । Riot Distressed Oriya Enquiry Committee ନାମରେ ଗୋଟିଏ ବେସରକାରୀ ସଂସ୍ଥା ସ୍ଥାପନ କରିଥିଲୁ । ବହୁବଜାର ଷ୍ଟ୍ରିଟ୍‌ରେ ତା'ର ଅଫିସ୍ ଖୋଲିଲୁ । ସୌଭାଗ୍ୟର କଥା, ଶ୍ରୀ ବିଶ୍ୱନାଥ ଦାସ ଯାଇ କଲିକତାରେ ପହଞ୍ଚି ଆମ୍ଭମାନଙ୍କୁ ଏହି କାମରେ ସାହାଯ୍ୟ କରିଥିଲେ । ଉକ୍ତ ସଂସ୍ଥାର ସେ ହୋଇଥିଲେ ସଭାପତି, ମୁଁ ହୋଇଥିଲି ସଂପାଦକ, ହୃଦାନନ୍ଦ ମଲ୍ଲିକ ଅଫିସ୍ ସଂପାଦକ ହୋଇଥିଲେ ।

କଲିକତାର ଏହି ଭୟାବହ ସାଂପ୍ରଦାୟିକ ଦଙ୍ଗା ଓ ହଜାର ହଜାର ଲୋକଙ୍କ ପ୍ରାଣହାନୀ ସମ୍ବାଦ ସେତେବେଳେ ସମଗ୍ର ଭାରତରେ ଆଲୋଡ଼ନ ସୃଷ୍ଟିକରିଥିଲା । ଦଙ୍ଗା ହେବାର କାରଣ, କ୍ଷୟକ୍ଷତିର ପରିମାଣ, ମୃତ ଓ ଆହତ ଲୋକଙ୍କ ସଂଖ୍ୟା ନିର୍ଣ୍ଣୟ ସଂପର୍କରେ ଅନୁସନ୍ଧାନ କରିବାପାଇଁ କେନ୍ଦ୍ର ସରକାର ତତ୍କାଳୀନ ସର୍ବୋଚ୍ଚ ବିଚାରାଳୟ 'Federal Court of India' ର ପ୍ରଧାନ ବିଚାରପତି

ଲର୍ଡ଼ ସେନ୍ସ (Lord Spens)ଙ୍କ ନେତୃତ୍ୱରେ ଗୋଟିଏ ତଦନ୍ତ କମିଶନ ବସାଇଥିଲେ । ଉକ୍ତ କମିଶନରେ ପାଟନା ହାଇକୋର୍ଟର ତତ୍କାଳୀନ ପ୍ରଧାନ ବିଚାରପତି ଶ୍ରୀ ଫଜଲ୍ ଅଲ୍ଲୀ ଜଣେ ସଭ୍ୟ ଥିଲେ, ସେ ପରେ ଓଡ଼ିଶାର ରାଜ୍ୟପାଳ ହୋଇଥିଲେ । ସେନ୍ସ ଇନ୍‌କ୍ୱାରୀ କମିଶନ ଆଗରେ ଅନ୍ୟାନ୍ୟ ରାଜ୍ୟର ଲୋକଙ୍କ କ୍ଷୟକ୍ଷତି ସମ୍ବନ୍ଧରେ ତଥ୍ୟ ଉପସ୍ଥାପନ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ବିଭିନ୍ନ ରାଜ୍ୟ ସରକାରମାନେ ସେମାନଙ୍କର ଉଚ୍ଚ ପୁଲିସ ଅଫିସର ଏବଂ ଆଇନ ପରାମର୍ଶଦାତା ପ୍ରଭୃତି ପ୍ରତିନିଧିମାନଙ୍କୁ ପଠାଇଥିଲେ । ଅନ୍ୟାନ୍ୟ ପ୍ରଦେଶ ଲୋକଙ୍କ ତୁଳନାରେ ଓଡ଼ିଆମାନଙ୍କର ଅଧିକ କ୍ଷୟକ୍ଷତି ହୋଇଥିଲେ ମଧ ଓଡ଼ିଶା ସରକାର ସେ ପ୍ରକାର ବ୍ୟବସ୍ଥା କରିନଥିଲେ । କେବଳ ଆଗରୁ ଗଢ଼ାଯାଇଥିବା ଉଲ୍ଲିଖିତ ଓଡ଼ିଆ ତଦନ୍ତ କମିଟି ଅଫିସ୍ ପରିଚାଳନା କରି ସେନ୍ସ ଇନ୍‌କ୍ୱାରୀ କମିଶନ କାର୍ଯ୍ୟରେ ସହାୟତା କରିବାପାଇଁ ଓଡ଼ିଶା ସରକାରଙ୍କ ପକ୍ଷରୁ ମାସକୁ ପାଞ୍ଚ ଶହ ମାତ୍ର ଟଙ୍କା ସାହାଯ୍ୟ ମିଳିବାର ବ୍ୟବସ୍ଥା କରାଯାଇଥିଲା । ଶ୍ରୀ ବିଶ୍ୱନାଥ ଦାସ ଆମ ବେସରକାରୀ କମିଟିର ସଭାପତିରୂପେ ବିଭିନ୍ନ ଅଞ୍ଚଳରେ ଗସ୍ତ କରୁଥିବାରୁ ତାଙ୍କ ନିରାପତ୍ତାପାଇଁ ଦୃଷ୍ଟିଦେବା ଉଦ୍ଦେଶ୍ୟରେ ଶ୍ରୀ ବସନ୍ତ ମିଶ୍ର ନାମକ ଜଣେ ମାତ୍ର ପୁଲିସ ସବ୍‌ଇନ୍‌ସ୍ପେକ୍ଟରଙ୍କୁ ଓଡ଼ିଶା ସରକାର କଲିକତାରେ ନିଯୁକ୍ତ କରିଥିଲେ । ବିଶ୍ୱନାଥବାବୁ ସବୁ ସମୟରେ କଲିକତାରେ ରହୁନଥିବାରୁ ଏହି ପୁଲିସ ଅଫିସରଜଣକ ଆମ୍ଭମାନଙ୍କ ସାଙ୍ଗରେହିଁ ସବୁବେଳେ ବୁଲାବୁଲି କରୁଥିଲେ । କମିଟିର ସଂପାଦକ ହିସାବରେ ମୋତେ ସବୁ କାର୍ଯ୍ୟ ତୁଲାଇବାକୁ ପଡୁଥାଏ; କିନ୍ତୁ ଶ୍ରୀ ହୃଦାନନ୍ଦ ମଲ୍ଲିକ ବହୁ କଷ୍ଟ ସ୍ୱୀକାରକରି କ୍ଷୟକ୍ଷତି ହୋଇଥିବା ଓଡ଼ିଆମାନଙ୍କଠାରୁ ବିସ୍ତୃତ ବିବରଣୀ ସଂଗ୍ରହ କରି ମୋତେ ସାହାଯ୍ୟ କରିଥିଲେ । ଏସବୁ ତଥ୍ୟ ସେନ୍ସ ଇନ୍‌କ୍ୱାରୀ କମିଶନ ଆଗରେ ଆମ୍ଭମାନଙ୍କ ପକ୍ଷରୁ ଉପସ୍ଥାପିତ କରାଯାଇଥିଲା । ସେନ୍ସ ଇନ୍‌କ୍ୱାରୀ କମିଶନ ଆଗରେ ଅନ୍ୟାନ୍ୟ ପ୍ରଦେଶ ସରକାରଙ୍କର ପ୍ରତିନିଧି ହିସାବରେ ବଡ଼ ବଡ଼ ଓକିଲ ଓ ପୁଲିସ ଅଫିସରଙ୍କୁ ଦେଖିଲାକ୍ଷଣି ଆମେ ନିଜ ମନ ଭିତରେ ଟିକିଏ ସଂକୋଚ ଅନୁଭବ କରୁଥିଲୁ । ମୋର ମନେଅଛି, ଥରେ ସେନ୍ସ ଇନ୍‌କ୍ୱାରୀ କମିଶନ ସାଙ୍ଗରେ ଆମେ ମାଟିଆବୁରୁଜରେ ଉପସ୍ଥିତ ଥିଲୁ । ସେଠାରେ ଓଡ଼ିଆମାନଙ୍କୁ ଯେଭଳି ଭାବରେ ହତ୍ୟା କରାଯାଇଥିଲା ଏବଂ ସେମାନଙ୍କର ଯେଉଁସବୁ କ୍ଷୟକ୍ଷତି ହୋଇଥିଲା ସରଜମିନ୍ ତଦନ୍ତରେ ସେ ବିଷୟରେ ସେମାନଙ୍କୁ ପ୍ରତ୍ୟକ୍ଷ ଧାରଣା ଦେବାପାଇଁ ଆମେ ଯାଇଥିଲୁ । ଘରଭିତରେ ଲାଗିଥିବା ରକ୍ତଦାଗଗୁଡ଼ିକ ପ୍ରତି ଗୋଟିଏ ବାଡ଼ି ସାହାଯ୍ୟରେ କମିଶନ ସଭ୍ୟମାନଙ୍କ ଦୃଷ୍ଟି ଆକର୍ଷଣ କରି ମୁଁ ବୁଝାଉଥିଲି । କମିଶନର ସଭ୍ୟ ଜଷ୍ଟିସ୍ ଫଜଲ ଅଲ୍ଲୀ ମୋତେ ଲକ୍ଷ୍ୟକରି କହିଲେ, "So, Mr. Routray, you are practising at Cuttack." ଏହା ସଂପୂର୍ଣ୍ଣ ପ୍ରଶ୍ନବାଚକ ନଥିଲା, ତାଙ୍କର ସେଠାରେ ଯାହା ଧାରଣା ହେଲା ସେ ସଂପର୍କରେ ସେ ଏତିକି କହିଥିଲେ, ହୁଏତ ସେ ବିଷୟରେ ନିଶ୍ଚିତ ହେବାକୁ ଚାହିଁଥିଲେ । ଆଗରୁ ତ କହିଛି ଯେ ଅନ୍ୟ ପ୍ରଦେଶ ସରକାରମାନଙ୍କ ତରଫରୁ ବଡ଼ ବଡ଼ ଆଇନଜ୍ଞ ଆସିଥିବାର ଦେଖି ଆମେ ସଂକୋଚ ଅନୁଭବ କରୁଥିଲୁ । ମୁଁ କିଛି ନକହି କେବଳ ହସିଦେଇ ମୁଣ୍ଡ ହଲାଇଥିଲି । କାରଣ ମୁଁ ଯଦି ସେଇଠିକାର ଆଇନ କଲେଜର ଜଣେ ଛାତ୍ର ବୋଲି ନିଜର ପରିଚୟ ଦେଇଥାଆନ୍ତି, ତା'ହେଲେ ନିଶ୍ଚିତ ଭାବରେ ମୋ କଥାର ଗୁରୁତ୍ୱ କମିଯାଇଥାଆନ୍ତା । ଏହି କଥାଟି ଖୁବ୍ ଭଲଭାବରେ ମୋର ମନେଥାଏ । ଯେତେବେଳେ ଜଷ୍ଟିସ୍ ଫଜଲ୍ ଅଲ୍ଲୀ ଆମ ରାଜ୍ୟର ରାଜ୍ୟପାଳ ହୋଇ ଆସିଲେ, ସେତେବେଳେ କଥାପ୍ରସଙ୍ଗରେ ଏହି କଥାଟି ମୁଁ ତାଙ୍କୁ ସ୍ମରଣ କରାଇଦେଇଥିଲି । ସେତେବେଳକୁ ମୁଁ ଜଣେ ଉପମନ୍ତ୍ରୀ ଥାଏ । ଥରେ ମିଛ ଅଭିନୟ କରି ତାଙ୍କୁ ଠକାଇଦେଇଥିଲି ବୋଲି ମୁଁ କହିବାରୁ କଥାଟି ଜାଣିବାପାଇଁ ସେ ବଡ଼ କୌତୂହଳ ଦେଖାଇଲେ । ମୁଁ ତାଙ୍କ ତଦନ୍ତ କମିଶନ ସାମନାରେ କରିଥିବା ଅଭିନୟ ଘଟଣାଟି କହିବାରେ ବେଶ୍ ହାସ୍ୟରୋଳ ସୃଷ୍ଟିହୋଇଥିଲା ।

ଆମ କାର୍ଯ୍ୟରେ ସାହାଯ୍ୟ କରିବାପାଇଁ ଜଣେ ପୁଲିସ ଅଫିସରଙ୍କୁ ଆମ ଓଡ଼ିଆ ତଦନ୍ତ ଅଫିସ୍‌ରେ ମୁତୟନ କରାଯାଇଥିବା କଥା ମୁଁ ଆଗରୁ କହିଛି । ଏ ଅଫିସରଙ୍କ ଘର ହେଉଛି ଅନୁଗୁଳରେ । ଚେହେରା ଦେଖିବାକୁ ଖୁବ୍ ଲମ୍ବକାୟ; ଗୌରବର୍ଣ୍ଣ । ସେ ଖୁବ୍ ଦାମିକା ଓ ଉଚ୍ଚ ପଦମର୍ଯ୍ୟାଦାବ୍ୟଞ୍ଜକ ପୋଷାକ ପିନ୍ଧି ଆତଯାତ କରୁଥିଲେ । ତେଣୁ ତାଙ୍କୁ ଯେଉଁମାନେ ଦେଖୁଥା'ନ୍ତି ସେମାନଙ୍କର ଧାରଣା ହେଉଥାଏ ଯେ ସେ ଜଣେ ପୁଲିସ ସୁପରିନ୍‌ଟେଣ୍ଡେଣ୍ଟ୍ ବା ତା'ଠାରୁ ଉଚ୍ଚ ପାହ୍ୟାର ଅଫିସର । ଫଳରେ ସେ ଯେଉଁଠାରେ ପହଞ୍ଚୁଥା'ନ୍ତି ବଙ୍ଗଳା ସରକାରଙ୍କ ତଳିଆ ପୁଲିସ ଅଫିସରମାନେ ତାଙ୍କୁ ପୁଲିସ କାଇଦାରେ ପ୍ରଭୃତ ସମ୍ମାନ ଜଣାନ୍ତି । ତାଙ୍କର ଏହି ମର୍ଯ୍ୟାଦାବନ୍ତ ଚେହେରା, ପରିଧାନ ଓ ଆଚରଣ ନାନା ପ୍ରତିକୂଳ ପରିସ୍ଥିତିରେ ଆମ କାର୍ଯ୍ୟରେ ବେଶ୍ ସହାୟକ ହୋଇଥିଲା । ବଙ୍ଗଳାରେ ଲିଗ୍ ସରକାର ଓ ସୁରାଓର୍ଦ୍ଦୀ ପ୍ରଧାନମନ୍ତ୍ରୀ ଥିବାରୁ ହିନ୍ଦୁ ବ୍ୟବସାୟ ସଂସ୍ଥା ଓ ବିଶିଷ୍ଟ ବ୍ୟକ୍ତିମାନେ ମଧ୍ୟ ସହଜରେ ପୁଲିସ ସାହାଯ୍ୟ ପାଉନଥିଲେ, ସେଥିପାଇଁ ସେମାନେ ବଡ଼ ଅସହାୟ ଅନୁଭବ କରୁଥିଲେ । ବସନ୍ତବାବୁଙ୍କ ସହିତ ଆମ୍ଭେମାନେ ସେମାନଙ୍କ ସହିତ ଦେଖାସାକ୍ଷାତ କଲେ ସେମାନେ ବଡ଼ ଆଶ୍ୱସ୍ତ ଅନୁଭବ କରୁଥିଲେ ଏବଂ ଆମ୍ଭେମାନେ ବାରମ୍ବାର ସେମାନଙ୍କ ପାଖକୁ ଯିବାପାଇଁ ଇଚ୍ଛା ପ୍ରକାଶ କରୁଥିଲେ । ପାର୍କଷ୍ଟ୍ରିଟ୍‌ରେ ଆଲେନ୍‌ବରୀ କମ୍ପାନୀଙ୍କର କାରଖାନା ଥାଏ । ସେ ଅଞ୍ଚଳଟି ମୁସଲମାନବହୁଳ ଅଞ୍ଚଳ । ଦିନେ ଯେତେବେଳେ ଆମେ ସେଠାକୁ ଗଲୁ, ଆମକୁ ତଥା ଆମ୍ଭମାନଙ୍କ ସହିତ ପୁଲିସ ଅଫିସରଙ୍କୁ ଦେଖି ଉକ୍ତ କମ୍ପାନୀର ଲୋକମାନେ ବଡ଼ ଆଶ୍ୱସ୍ତ ଅନୁଭବ କରିଥିଲେ । ପ୍ରତିଦିନ ସନ୍ଧ୍ୟାବେଳେ ତାଙ୍କ ସଂସ୍ଥା ଆଡ଼େ ବୁଲିଆସିବାପାଇଁ ସେମାନେ ଆମକୁ ଅନୁରୋଧ କରିଥିଲେ । କଲିକତାରେ ଆମର ଏଭଳି କାର୍ଯ୍ୟରେ ସହାୟତା କରି ଗୋଟିଏ ସୁନ୍ଦର ଜିପ୍ ଓ ପ୍ରତିଦିନ ଯେତେ ପେଟ୍ରୋଲ ଦରକାର ତାହା ସେମାନେ ଆମକୁ ଯୋଗାଇଦେଲେ । ରାତିରେ କଲିକତାରେ ସେତେବେଳେ ସାନ୍ଧ୍ୟ ଆଇନ ଲାଗୁହେଉଥାଏ । ରାସ୍ତାଗୁଡ଼ିକ ଶୂନ୍‌ଶାନ୍ ହୋଇଯାଏ । ରାସ୍ତାକୁ କୌଣସି ଗାଡ଼ି ବାହାରି ପାରେ ନାହିଁ । କେବଳ ପୁଲିସ ଗାଡ଼ି ବାହାରକୁ ବାହାରୁଥାଏ । ଆମ ଜିପ୍‌ରେ ପୁଲିସ ଥିବାରୁ ରାସ୍ତାରେ ବୁଲିବାରେ କୌଣସି ଅସୁବିଧା ହେଉନଥାଏ । ସେହିଠାରେ ମୁଁ ମଟରଗାଡ଼ି ଚଳାଇବା ଶିଖିଲି ।

ଆମ୍ଭମାନଙ୍କର ଏହି ଦଙ୍ଗାବିପନ୍ନ ତଦନ୍ତ କମିଟିର ଅଫିସ୍ କିଛିଦିନପାଇଁ ବହୁବଜାର ଷ୍ଟ୍ରିଟ୍‌ରେ ରହିଲା । ସମୟସମୟରେ ଏହିଠାରେ ଆମର ବୈଠକ ବସେ । ବିଶ୍ୱନାଥବାବୁ ଯୋଗଦିଅନ୍ତି । ଥରେ ବଙ୍ଗଳା ସରକାରଙ୍କ ସ୍ୱରାଷ୍ଟ୍ର ବିଭାଗର ଶାସନସଚିବ ଶ୍ରୀ ରଣଜିତ୍ ଗୁପ୍ତ ଓ ପୁନର୍ବସତି ବିଭାଗର ଶାସନସଚିବ ମିଷ୍ଟର ହିଣ୍ଡଲେ ଆସି ଆମ ଅଫିସ୍‌ରେ କିଛି ସମୟ ଆମ୍ଭମାନଙ୍କ ସହିତ କଥାବାର୍ତ୍ତା କରିଥିଲେ । ଅଫିସ୍‌ଟି ଗୋଟିଏ ଛୋଟିଆ ସ୍ଥାନରେ ହେଉଥାଏ । ସେଥିପାଇଁ ଯେଉଁ ଅସୁବିଧା ହେଉଥାଏ ସେକଥା ସେମାନେ ଉପଲବ୍ଧି କରିଥିଲେ । ଅନ୍ୟ କୌଣସି ଜାଗାରେ ଗୋଟିଏ ଭଲ ଘର ଯୋଗାଡ଼ କରିବାପାଇଁ ଶ୍ରୀ ବିଶ୍ୱନାଥ ଦାସ ସେମାନଙ୍କୁ ଅନୁରୋଧ କରିଥିଲେ । ଶ୍ୟାମବଜାର ମୋହନଲାଲ ଷ୍ଟ୍ରିଟ୍‌ରେ ଦେଶ ବିଭାଜନ ପରେ ପଳାଇଥିବା ଜଣେ ଭଦ୍ରବ୍ୟକ୍ତିଙ୍କ ଘର ଖାଲିପଡ଼ିଥାଏ । ସେହି ଘରଟିରେ ସାମାନ୍ୟ ଭଡ଼ାସୂତ୍ରରେ ଆମର ଅଫିସ୍ କରିବାପାଇଁ ଏବଂ ନିରାଶ୍ରୟ ଓଡ଼ିଆ ଛାତ୍ରମାନଙ୍କୁ ଥଇଥାନ କରିବା ପାଇଁ ବଙ୍ଗଳା ସରକାର ଆମ୍ଭମାନଙ୍କୁ ଅନୁମତି ଦେଇଥିଲେ । ତା'ପରେ ସେହିଠାରେ ଆମ୍ଭମାନଙ୍କ ଅଫିସ୍ କାର୍ଯ୍ୟ ପରିଚାଳିତ ହେଲା । ଅଫିସ୍ କାର୍ଯ୍ୟ ସରିବା ପରେ ମଧ୍ୟ ନାନା ବାଦ-ବିସମ୍ବାଦ ଭିତରେ ଗତିକରି ସେହି ଘରଟି କଲିକତାରେ ଓଡ଼ିଆ ପିଲାଙ୍କ ହାତରେ ୧୯୮୧ ପର୍ଯ୍ୟନ୍ତ ଥିଲା । କଲିକତାରେ ଦଙ୍ଗାଦ୍ୱାରା ଓଡ଼ିଆମାନଙ୍କର ଯେଉଁଭଳି ଭାବରେ କ୍ଷତି ହୋଇଥିଲା, ସେମାନଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ଆମେ ଯେଉଁ ସବୁ କାର୍ଯ୍ୟ କରୁଥିଲୁ ଏବଂ ସେଥିରେ ଯେଉଁ ଅସୁବିଧାର ସମ୍ମୁଖୀନ ହେଉଥିଲୁ, ଏସବୁ ବିଷୟରେ ବିଶ୍ୱନାଥବାବୁଙ୍କ ସହ ଯାଇ

ଆମ୍ଭେମାନେ ତତ୍କାଳୀନ ବଙ୍ଗଳାର ପ୍ରଧାନମନ୍ତ୍ରୀ ସହିଦ୍ ସୁରାଓର୍ଦ୍ଦୀଙ୍କ ସାକ୍ଷାତ୍ କରିଥିଲୁ । ବିଶ୍ୱନାଥବାବୁଙ୍କୁ ଦେଖିବାମାତ୍ରେ ସୁରାଓର୍ଦ୍ଦୀ ଅତ୍ୟଧିକ ସମ୍ମାନ ପ୍ରଦର୍ଶନ କରିଥିଲେ ଏବଂ ଅତି ସହାନୁଭୂତିର ସହିତ ଆମ କଥାସବୁ ଶୁଣିଥିଲେ । ମୋର ମନେହେଉଛି ତାଙ୍କରି ନିର୍ଦ୍ଦେଶମତେ ଉଲ୍ଲିଖିତ ଅଫିସର୍ ଦୁଇଜଣ ଆମ ଅଫିସକୁ ଆସି ଆମ୍ଭମାନଙ୍କୁ ସାହାଯ୍ୟ କରିବାପାଇଁ ଆଗ୍ରହ ପ୍ରକାଶ କରିଥିଲେ । ଆମ୍ଭେମାନେ ଏହିସବୁ କାର୍ଯ୍ୟ କରୁଥିବା ସମୟରେ ଓଡ଼ିଶା ସରକାରଙ୍କର ସ୍ୱରାଷ୍ଟ୍ର ବିଭାଗର ଆସିଷ୍ଟାଣ୍ଟ ସେକ୍ରେଟେରୀ ଶ୍ରୀ ଇ.ବି.ସାମୁଏଲ୍ ବହୁବାର କଲିକତା ଯାଇ ଆମ୍ଭମାନଙ୍କ କାର୍ଯ୍ୟ ନିରୀକ୍ଷଣ କରି ଓଡ଼ିଶା ସରକାରଙ୍କୁ ରିପୋର୍ଟ ଦେଇଥିଲେ । ଅଫିସ୍ ପରିଚାଳନାପାଇଁ ସରକାରଙ୍କ ପକ୍ଷରୁ ଯେଉଁ ପାଞ୍ଚ ଶହ ଟଙ୍କା ଦିଆଯାଉଥିଲା, ତା' ଯଥେଷ୍ଟ ନୁହେଁ ଏବଂ ତାହା ତୁଳନାରେ ବହୁତ ବେଶି କାର୍ଯ୍ୟ ହେଉଥିଲା ବୋଲି ସେ ସରକାରଙ୍କୁ ଜଣାଇଥିଲେ ।

## ଦୁଷ୍ଟଜନଙ୍କ ଦୁର୍ବୁଦ୍ଧି

କଲିକତାରେ ଏହି ସାଂପ୍ରଦାୟିକ ଦଙ୍ଗା ପ୍ରଥମ ଅବସ୍ଥାରେ ଯେଭଳି ଭୀଷଣ ଆକାର ଧାରଣ କରିଥିଲା ତାହା ଆୟତ୍ତାଧୀନ ହୋଇଥିଲେ ମଧ୍ୟ ଅନେକକାଳ ପର୍ଯ୍ୟନ୍ତ ମଝିରେ ମଝିରେ କେଉଁଠି କେମିତି ଗଣ୍ଡଗୋଳ ଲାଗିରହିଥିଲା । ରାତିରେ ଗୋପନରେ ଛୁରା ମରାମରି ହୋଇ ଲୋକ ମରିବାର ମଧ୍ୟ ଦେଖାଯାଉଥିଲା । ଉଭୟ ସଂପ୍ରଦାୟର ଗୁଣ୍ଡା ଶ୍ରେଣୀର ଲୋକ ସେମାନଙ୍କର ସ୍ୱାର୍ଥସାଧନପାଇଁ କୌଣସି କାରଣ ନଥାଇ ମଧ୍ୟ ଅଯଥା ବେଳେବେଳେ ଗଣ୍ଡଗୋଳ ଭିଆଉଥିଲେ । ବିଭିନ୍ନ ପଡ଼ାମାନଙ୍କରେ ସାଂପ୍ରଦାୟିକ ଗଣ୍ଡଗୋଳ ଆଶଙ୍କା ଜାଗ୍ରତ କରାଇ ସେ ପଡ଼ାମାନଙ୍କରେ ନିରାପତ୍ତା ରକ୍ଷା ଉଦ୍ଦେଶ୍ୟରେ ଆପେ ଆପେ ନିଜକୁ ନିଯୁକ୍ତ କରି ଲୋକଙ୍କଠାରୁ ଚାନ୍ଦା ସଂଗ୍ରହ କରିବା କାର୍ଯ୍ୟ କେତେକଙ୍କର ସେତେବେଳକାର ଧନ୍ଦା ମଧ୍ୟ ହୋଇଥିଲା । ଯେଉଁ ଧନୀ, ପ୍ରଭାବଶାଳୀ ବ୍ୟକ୍ତିମାନେ ସେଥିରେ ସହାୟକ ହେଉନଥିଲେ ସେମାନଙ୍କୁ ନାନା ଉପାୟରେ ହଇରାଣ ଓ ଭୟଭୀତ କରାଯାଉଥିଲା । ଏ ସଂକ୍ରାନ୍ତରେ ମୋର ଗୋଟିଏ ଘଟଣାର ଅନୁଭୂତି ମନେଅଛି । କଲିକତାରେ ଓଡ଼ିଆମାନଙ୍କ ଭିତରେ ଆମ୍ଭେମାନେ ଯେତେବେଳେ ସାହାଯ୍ୟ କାର୍ଯ୍ୟ କରୁଥିଲୁ, ସମୟସମୟରେ ଆସି ଚିତ୍ତରଞ୍ଜନ ଆଭିନ୍ୟୁ ଓ ବିବେକାନନ୍ଦ ରୋଡ଼ ଛକ ପାଖରେ ଶ୍ରୀ ମଦନଲାଲ ଯାଜୋଡ଼ିଆଙ୍କ ଘରେ ରହିଯାଉଥିଲୁ । ଦିନେ ହଠାତ୍ ଦେଖାଗଲା ଯେ ଛୁରାଦ୍ୱାରା ନିହତ ଜଣେ ମୁସଲମାନର ଶବକୁ ଗୋଟିଏ ବସ୍ତା ଭିତରେ ଭର୍ତ୍ତିକରି ରାତିରେ ଯାଯୋଡ଼ିଆଙ୍କ ଦୁଆରମୁହଁରେ କେହି ପକାଇ ଦେଇ ଯାଇଛି । ପୁଲିସ ଆସି ଘରର ଲୋକମାନଙ୍କୁ ଉଠାଇ ନାନା ବିଷୟରେ ପଚରାପଚରି କଲେ ଏବଂ ସେହିମାନେ ଲୋକଟିକୁ ମାରିଛନ୍ତି ବୋଲି ମଧ୍ୟ ସନ୍ଦେହ ପ୍ରକାଶ କରିଥିଲେ । ଯାଜୋଡ଼ିଆ ପରିବାରର ଲୋକମାନେ ବଡ଼ ବ୍ୟସ୍ତହୋଇ ଆମକୁ ସେକଥା କହିଲେ । ଆମ ସାଙ୍ଗରେ ଯେଉଁ ପୁଲିସ ଅଫିସର୍ ଥାଆନ୍ତି ସେ ପୁଲିସ ହେଡ୍‌କ୍ୱାର୍ଟର ଲାଲ୍‌ବଜାରକୁ ଏ ସମ୍ବନ୍ଧରେ ଖବର ଦେଲେ । ସେମାନେ ଆସି ଜାଣିପାରିଲେ ଯେ ଏ କାର୍ଯ୍ୟ ଖଳବୁଦ୍ଧିରେ କୌଣସି ଦୁଷ୍ଟଲୋକ କରିଛନ୍ତି, ତେଣୁ ଘରବାଲା ନିର୍ଭୟ ହୋଇଥିଲେ । ଦିନେ ସନ୍ଧ୍ୟାବେଳେ ଆମେ ବିବେକାନନ୍ଦ ରୋଡ଼ ଦେଇ ଚାଲି ଚାଲି ଯାଜୋଡ଼ିଆଙ୍କ ଘରକୁ ଆସୁଛୁ ବାଟରେ ସାତ ଆଠ ଜଣ ଲୋକ ଆମକୁ ଅଟକାଇଲେ କିଛି ଆପତ୍ତି ଜଣାଇବାପାଇଁ । ସେମାନେ କହିଥିଲେ ଯେ ସେମାନଙ୍କର ଦାନାରେ ଆମ୍ଭେମାନେ ଧୂଳି ଦେଉଛୁ । ତାଙ୍କର କହିବାର କଥା ହେଲା, ପଡ଼ାମାନଙ୍କରେ ବାବୁମାନେ ନିଶ୍ଚିନ୍ତରେ ଶୋଉଛନ୍ତି । ସେମାନେ ରାତିସାରା ଉଜାଗର ରହି ମୁସଲମାନ ଆକ୍ରମଣରୁ ବାବୁମାନଙ୍କୁ ରକ୍ଷାକରୁଛନ୍ତି । ସେଥିପାଇଁ ପଡ଼ାର ଲୋକମାନେ ସେମାନଙ୍କୁ କିଛି କିଛି ଚାନ୍ଦା ଦେଉଛନ୍ତି । ଯେହେତୁ ବ୍ୟବସାୟୀ ଯାଜୋଡ଼ିଆ ତାଙ୍କୁ ଏ ସମ୍ବନ୍ଧରେ କିଛି ସାହାଯ୍ୟ କରୁନାହାନ୍ତି, ତାଙ୍କୁ ହଇରାଣ କରିବାପାଇଁ ସେମାନେ ଅନ୍ୟଆଡୁ ଶବ ଆଣି ତାଙ୍କ ଦୁଆରମୁହଁରେ ପକାଇଦେଉଛନ୍ତି,

ମାତ୍ର ଯାଜୋଡ଼ିଆ ଆମ୍ଭମାନଙ୍କ ସାହାଯ୍ୟରେ ଉଦ୍ଧାରପାଇଯାଉଛନ୍ତି । ତେଣୁ ଆଉ ତାଙ୍କୁ ସାହାଯ୍ୟ ନକରିବାପାଇଁ ସେମାନେ ଆମକୁ ଅନୁରୋଧ କରିଥିଲେ । ଶ୍ରୀ ଯାଜୋଡ଼ିଆଙ୍କୁ ଆମେ ଯାଇ ସେଇ କଥା କହିଥିଲୁ । ପରେ ସେ ତାଙ୍କ ବିରୁଦ୍ଧରେ ଅଭିଯୋଗ କରିଥିବା ପଡ଼ାଲୋକଙ୍କୁ ଡକାଇ ଭଲଭାବରେ ସାହାଯ୍ୟ କରିଥିଲେ ଓ ଶାନ୍ତିରେ ନିଃଶ୍ୱାସ ମାରିଥିଲେ ।

ସବୁ ସମୟରେ ଜନଆନ୍ଦୋଳନ ହିଂସାକାଣ୍ଡର ରୂପ ନିଏ ଦୁର୍ଜନଙ୍କ ଖଳବୁଦ୍ଧି ଓ ଖଳ ଆଚରଣ ହେତୁ । ଖଳ ପ୍ରକୃତିର ଲୋକ ପରିସ୍ଥିତିରୁ ପୂର୍ଣ୍ଣ ଫାଇଦା ଉଠାନ୍ତି । ତେଣୁ ଅହିଂସ ଆନ୍ଦୋଳନ, ଏପରିକି ସତ୍ୟାଗ୍ରହର ଆହ୍ୱାନ ମଧ୍ୟ ଅନେକ ସମୟରେ ତୀବ୍ର ହିଂସାକାଣ୍ଡରେ ପର୍ଯ୍ୟବସିତ ହୁଏ, ନିରୀହ ଲୋକେ ପ୍ରପୀଡ଼ିତ ହୁଅନ୍ତି । ସେତେବେଳେ କଲିକତାରେ ଯାହା ଦେଖିଥିଲି, ପରବର୍ତ୍ତୀ କାଳରେ ରାଜନୀତି ଓ ପ୍ରଶାସନ କ୍ଷେତ୍ରର ଅଭିଜ୍ଞତାରୁ ମୋର ସେହି ଧାରଣା ଦୃଢ଼ହୋଇଛି । ଏହି କ୍ଷେତ୍ରରେ ରାଜନୀତିଜ୍ଞ ଓ ପ୍ରଶାସନିକ କର୍ତ୍ତାମାନଙ୍କର ଅନାସକ୍ତ କର୍ତ୍ତବ୍ୟଜ୍ଞାନର ଆବଶ୍ୟକତା ରହିଛି ।

## କଲିକତାରେ ଉତ୍କଳ-ଭବନ କଳ୍ପନା

ଆମ୍ଭମାନଙ୍କର ଏହି ଓଡ଼ିଆ ଅନୁସନ୍ଧାନ ଅଫିସ୍ ମାଧ୍ୟମରେ ମୃତ ଓ କ୍ଷତିଗ୍ରସ୍ତ ହୋଇଥିବା ଓଡ଼ିଆମାନଙ୍କୁ କିପରି କ୍ଷତିପୂରଣ ଆକାରରେ ସରକାରୀ ସାହାଯ୍ୟ ମିଳିବ ସେଥିପାଇଁ ଆମ୍ଭେମାନେ ବ୍ୟାପକ ଉଦ୍ୟମ କରିଥିଲୁ । ମୃତ ଓ ଆହତ ବ୍ୟକ୍ତିମାନଙ୍କର ତାଲିକା ସରକାରଙ୍କୁ ଦେବା ସଙ୍ଗେ ସଙ୍ଗେ ଗଣ୍ଡଗୋଳ ଯୋଗୁଁ ସେମାନଙ୍କର ଓ ଅନ୍ୟ ଓଡ଼ିଆମାନଙ୍କର ଯେଉଁସବୁ କ୍ଷୟକ୍ଷତି ହୋଇଥିଲା, ସେ ସମ୍ବନ୍ଧରେ ପ୍ରତ୍ୟେକଙ୍କର ଆନୁମାନିକ କ୍ଷତି ଏବଂ କିଏ କେତେ ପରିମାଣରେ କ୍ଷତିପୂରଣ ପାଇବାପାଇଁ ହକ୍‌ଦାର ସେ ବିଷୟରେ ସୁପାରିଶ କରି ଆମ୍ଭେମାନେ ବଙ୍ଗଳା ସରକାରଙ୍କୁ ଦାବିପତ୍ର ଦେଇଥିଲୁ । କ୍ଷତିପୂରଣ ଓ ଥଇଥାନପାଇଁ ଯେତେବେଳେ ସରକାରଙ୍କ ପକ୍ଷରୁ ସାହାଯ୍ୟ ମିଳିଲା, ଆମ୍ଭେମାନେ ସୁପାରିଶ୍ କରିଥିବା ବହୁ ଓଡ଼ିଆ କ୍ଷତିପୂରଣ ଓ ସାହାଯ୍ୟ ପାଇଥିଲେ । ଆମ୍ଭମାନଙ୍କର ଏଭଳି ସାହାଯ୍ୟ ହେତୁ ସେମାନେ ଖୁବ୍ ଖୁସିହୋଇଥିଲେ; ତେଣୁ କଲିକତାରେ ଓଡ଼ିଆମାନଙ୍କ ଭିତରେ ସାଂଗଠନିକ କାର୍ଯ୍ୟର ପ୍ରସାରପାଇଁ ଚାନ୍ଦା ଆକାରରେ ସେମାନଙ୍କଠାରୁ କିଛି ସାହାଯ୍ୟ ଆଦାୟ କରିବାପାଇଁ ଉଦ୍ୟମ କରାଯାଇଥିଲା । କିନ୍ତୁ ନାନା ଅସୁବିଧାରୁ ଆମ୍ଭମାନଙ୍କର ଏ ପ୍ରକାର ଉଦ୍ୟମ ବିଶେଷ ଫଳପ୍ରଦ ହୋଇପାରିନଥିଲା । ଆମ୍ଭମାନଙ୍କର ଆଶା ଓ ଆକାଂକ୍ଷା ଥିଲା ଯେ ଓଡ଼ିଆମାନଙ୍କଠାରୁ ଅର୍ଥ ସଂଗ୍ରହ କରି କଲିକତାରେ ଓଡ଼ିଆମାନଙ୍କର ସାମାଜିକ ଓ ସାଂସ୍କୃତିକ କାର୍ଯ୍ୟପାଇଁ ସେହି ମହାନଗରୀରେ ଗୋଟିଏ 'ଉତ୍କଳ ଭବନ' ନିର୍ମାଣ କରିବୁ । ମାତ୍ର ଆଶାନୁରୂପକ ଅର୍ଥ ସଂଗୃହୀତ ନହେବାରୁ ଆମ୍ଭେମାନେ ନିରାଶ ହୋଇଥିଲୁ । ଯେଉଁ ସାମାନ୍ୟ କିଛି ଅର୍ଥ ସଂଗୃହୀତ ହୋଇଥିଲା ତାହା ଓଡ଼ିଆମାନଙ୍କ ଭିତରେ ସାମାଜିକ ଓ ସାଂସ୍କୃତିକ କାର୍ଯ୍ୟରେ ବ୍ୟୟହୋଇଥିଲା ବୋଲି ପରେ ମୁଁ ଜାଣିବାକୁ ପାଇଥିଲି । ମୋ ନିଜ ମନରେ ଗୋଟିଏ ବଡ଼ ଆକାଂକ୍ଷା ଥିଲା — କଲିକତାରେ ଓଡ଼ିଆମାନଙ୍କର ସାମାଜିକ ଓ ସାଂସ୍କୃତିକ କାର୍ଯ୍ୟକୁ କେନ୍ଦ୍ରୀଭୂତ କରିବା ଉଦ୍ଦେଶ୍ୟରେ ଉତ୍କଳ ଭବନ ତିଆରି କରିବାପାଇଁ । ସେତେବେଳେ ଅନେକ ସଭାରେ ମୁଁ କହୁଥିଲି ଯେ କଲିକତାରେ ଚାରି ଲକ୍ଷ ଓଡ଼ିଆ ଅଛନ୍ତି । ପ୍ରତ୍ୟେକ ଟଙ୍କାଏ ଲେଖାଏଁ ଦେଲେ ଚାରି ଲକ୍ଷ ଟଙ୍କା ହୋଇଯିବ ଏବଂ ସେଥିରେ ସେ ସମୟର ଟଙ୍କାର ମୂଲ୍ୟ ଅନୁସାରେ ଗୋଟିଏ ବିରାଟ ଭବନ ନିର୍ମାଣ କରାଯାଇପାରିବ; କିନ୍ତୁ ଏହି ପ୍ରକାର ଅଙ୍କ ଗଣନାରେ କାର୍ଯ୍ୟ ସାଧିତ ହୁଏ ନାହିଁ ବୋଲି ପରେ ମୁଁ ଅନୁଭବ କରିପାରିଥିଲି । ତେଣୁ ଓଡ଼ିଶା ସରକାରଙ୍କ ସାହାଯ୍ୟରେ କଲିକତାରେ କିପରି ଗୋଟିଏ ଉତ୍କଳ ଭବନ ତିଆରି ହେବ ସେଥିପାଇଁ ମୁଁ ଯେତେବେଳେ ମନ୍ତ୍ରୀ ହେଲି ଉଦ୍ୟମ ଆରମ୍ଭ କରିଥିଲି । ଆମର ମନ୍ତ୍ରିମଣ୍ଡଳରେ ଗୋଟିଏ ମତ ପ୍ରକାଶ ପାଇଥିଲା ଯେ କଲିକତାରେ ସରକାରଙ୍କ ପକ୍ଷରୁ ଉତ୍କଳ ଭବନ

ତିଆରି କରିବାର ଆବଶ୍ୟକତା ନାହିଁ; କିନ୍ତୁ ମୁଁ କଲିକତାରେ ଉତ୍କଳ ଭବନ ନିର୍ମାଣପାଇଁ ଅତ୍ୟଧିକ ଆଗ୍ରହ ପ୍ରକାଶ କରି ଜିଦ୍ ଧରିଥିଲି । ସେତେବେଳେ ଶ୍ରୀ ରାଧାନାଥ ରଥ ଥିଲେ ଆମର ଅର୍ଥମନ୍ତ୍ରୀ । ସରକାରୀ ତହବିଲ୍‌ରୁ ବ୍ୟୟବ୍ୟାପାରରେ ସେ ବଡ଼ କଡ଼ା ନଜର ଦିଅନ୍ତି । ଏଥିପାଇଁ ନିଜେ ମୁଖ୍ୟମନ୍ତ୍ରୀ ନବବାବୁ ମଧ ବେଳେବେଳେ ବିରକ୍ତହୋଇପଡୁଥିଲେ । କଲିକତାରେ ପ୍ରଶସ୍ତ ଜାଗା କିଣି ନୂଆ ଘର ତୋଳିବାର ବିଚାର ଥାଏ । ଭଲ ସ୍ଥାନରେ ଘର ମିଳିଲେ କିଣିବା କଥା ବି ବିଚାର କରାଯାଉଥାଏ । ଶଶି (ଶ୍ରୀ ଶଶିଭୂଷଣ ମିଶ୍ର) ଭାରତ ସରକାରଙ୍କ ଚାକିରିରେ କଲିକତାରେ ଅବସ୍ଥାପିତ ହେଲା ପରେ ଏସ୍‌ପ୍ଲାନେଡ୍ ନିକଟ ଡେକର୍‌ସ ଲେନ୍‌ରେ ରହୁଥାଏ । ବେଳେବେଳେ ମୁଁ ସେହିଠାରେ ରହି ଆଗ୍ରହୀ ବନ୍ଧୁମାନଙ୍କୁ ସାଙ୍ଗରେ ଧରି କେନ୍ଦ୍ର କଲିକତା ଅଞ୍ଚଳରେ ଘର ଓ ଜମିର ସନ୍ଧାନ ନେଉଥିଲି । ଏସ୍‌ପ୍ଲାନେଡ୍ ଉପରେ ଭଲ ଘର ଏବଂ ଗଣେଶଚନ୍ଦ୍ର ଆଭେନ୍ୟୁ ଓ ମିଶନ୍ ରୋ' ରେ ପ୍ରଶସ୍ତ ଜାଗାର ସନ୍ଧାନ ମିଳିଥିଲା, କିନ୍ତୁ ବ୍ୟୟସାପେକ୍ଷ ପ୍ରସ୍ତାବରେ ରାଧାନାଥବାବୁଙ୍କୁ ମଙ୍ଗାଇବା ସହଜ ବ୍ୟାପାର ନଥିଲା । ସେହି ସମୟରେ ଧର୍ମତାଲା ଷ୍ଟ୍ରିଟ୍ ଉପରେ ସୁବୋଧ ମଲ୍ଲିକ ପାର୍କକୁ ମୁହଁକରି ଡକ୍ଟର ବିଧାନଚନ୍ଦ୍ର ରାୟଙ୍କ ବାସଗୃହ ସନ୍ନିକଟରେ ବର୍ତ୍ତମାନ ଯେଉଁ ବହୁମହଲାବିଶିଷ୍ଟ ଉତ୍କଳ ଭବନ ଛିଡ଼ାହୋଇଛି, ଗୋଟିଏ ପୁରୁଣା ଦୋତାଲା ଘର ସହିତ ସେହି ସ୍ଥାନଟି ଏକ ଲକ୍ଷ ପଞ୍ଚତିରିଶ ହଜାର ଟଙ୍କାରେ ବଙ୍ଗଳାର ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ସେନ୍‌ଙ୍କ ସାହାଯ୍ୟରେ କିଣିବାର ବ୍ୟବସ୍ଥା ମୁଁ କରିଥିଲି । ପ୍ରଥମେ ସେହି ଘରେ ହେଲା ଉତ୍କଳ ଭବନ । ପରେ ତାକୁ ଭାଙ୍ଗି ବହୁମହଲାବିଶିଷ୍ଟ ଉତ୍କଳ ଭବନ ନିର୍ମାଣ କରାଯାଇଛି । ତାହା ମଧ ମୋ'ରି ଉଦ୍ୟମଯୋଗୁ ସମ୍ଭବ ହୋଇଥିଲା । ଯେକୌଣସି ଉପାୟ ବା ମାଧମରେ ହେଉ କଲିକତାର କେନ୍ଦ୍ରସ୍ଥଳରେ ଉତ୍କଳ ଭବନଟି ହୋଇପାରିଲା ବୋଲି ମନେ ମନେ ଖୁବ୍ ସନ୍ତୋଷ ଲାଭ କରିଥିଲି । ଅତି ଆନନ୍ଦର କଥା, ଏହି ଉତ୍କଳ ଭବନ ସମ୍ମୁଖରେ ପଶ୍ଚିମବଙ୍ଗ ସରକାର ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କର ବ୍ରୋଞ୍ଜନିର୍ମିତ ପ୍ରତିମୂର୍ତ୍ତି ସ୍ଥାପନ କରିଛନ୍ତି ।

ପୂର୍ବରୁ କଲିକତା କର୍ପୋରେସନ୍‌ରେ ଓଡ଼ିଆମାନଙ୍କ କାର୍ଯ୍ୟ ସମ୍ବନ୍ଧରେ ମୁଁ ସମ୍ୟକ୍ ରେଖାପାତ କରିଛି । ସେଠି କାମ କରୁଥିବା ଲୋକଙ୍କ ସହ ସମ୍ପର୍କ ରଖି ମୁଁ ଜାଣିବାକୁ ପାଇଥିଲି ଯେ ଓଡ଼ିଶାର ଆଳି ଥାନା ଅନ୍ତର୍ଗତ ଓଲାଭର ଅଞ୍ଚଳର ଲୋକେ କର୍ପୋରେସନ୍ ଅଫିସର ବହୁ କାର୍ଯ୍ୟ ଏକପ୍ରକାର ଏକଚାଟିଆ ଅକ୍ତିଆରରେ ରଖିଥା'ନ୍ତି । ସେ ଲୋକଙ୍କ ଭିତରେ ସଂହତି, ସ୍ନେହ, ଶ୍ରଦ୍ଧା ଦେଖି ମୁଁ ବିଶେଷ ଖୁସି ହୋଇଥିଲି । ସେଠାରେ ସେମାନେ ସମୂହଭାବରେ ଚିନ୍ତାକରନ୍ତି ତାଙ୍କ ଗ୍ରାମ କିପରି ଉନ୍ନତ ହେବ । ଓଲାଭର ଅଞ୍ଚଳର ଲୋକେ ବର୍ତ୍ତମାନ ସୁଦ୍ଧା ରାଉରକେଲା ପ୍ରଭୃତି ଯେଉଁ ଅଞ୍ଚଳରେ କାମ କରୁଛନ୍ତି, ସେଠାରେ ଏହି ପ୍ରକାର ଚିନ୍ତାଦ୍ୱାରା ଅନୁପ୍ରାଣିତ ହୋଇଥାଆନ୍ତି । ୧୯୫୩-୫୪ରେ ଯେତେବେଳେ ଶ୍ରୀ ନବକୃଷ୍ଣ ଚୌଧୁରୀ ରାଜ୍ୟର ମୁଖ୍ୟମନ୍ତ୍ରୀ ଥିଲେ, ଓଲାଭର ଅଞ୍ଚଳର ଲୋକେ ଓଲାଭରଠାରେ ଗୋଟିଏ ଡାକ୍ତରଖାନା ପ୍ରତିଷ୍ଠା କରି ଏବଂ ସେଥିପାଇଁ ଘର ନିର୍ମାଣ କରି ଓ ଔଷଧ ସବୁ ବ୍ୟବସ୍ଥା କରି ତାହା ଉଦ୍‌ଘାଟନ କରିବାପାଇଁ ମୁଖ୍ୟମନ୍ତ୍ରୀଙ୍କୁ ଓ ମୋତେ ଡାକିନେଇଥିଲେ । ଡାକ୍ତରଖାନାପାଇଁ ତିଆରି ହୋଇଥିବା ଘର, ଡାକ୍ତର ଓ କମ୍ପାଉଣ୍ଡର ନିଯୁକ୍ତିଠାରୁ ଆରମ୍ଭକରି ସବୁ ପ୍ରକାର ଔଷଧର ବ୍ୟବସ୍ଥା ବିନା ସରକାରୀ ସାହାଯ୍ୟରେ ସେମାନେ ଯେପରି ଭାବରେ କରିଥିଲେ, ତାହା ଦେଖି ଆମ୍ଭେମାନେ ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ଉତ୍ସାହିତ ହୋଇଥିଲୁ । ସେହିପରି ବେସରକାରୀ ଉଦ୍ୟମରେ ଓଲାଭରଠାରେ ମହାବିଦ୍ୟାଳୟ ସ୍ଥାପନ କରିବା ଉଲ୍ଲେଖଯୋଗ୍ୟ । ଘରଠାରୁ ଦୂରଦୂରାନ୍ତରେ ଏକତ୍ର ରହି ସମୂହଭାବରେ କାର୍ଯ୍ୟ କରିବାର ସେମାନଙ୍କର ଏତାଦୃଶ ପ୍ରେରଣା ବାସ୍ତବିକ ଅନୁକରଣୀୟ ।

କଲିକତାରେ ଆଇନ ଅଧୟନ ଓ ଓଡ଼ିଆମାନଙ୍କ ଭିତରେ ସାଂସ୍କୃତିକ, ସାମାଜିକ ଓ ସାଙ୍ଗଠନିକ କାର୍ଯ୍ୟ କଲାବେଳେ ଯେଉଁ କେତେଜଣ ବିଶିଷ୍ଟ ଓଡ଼ିଆଙ୍କ ସହିତ ମୁଁ ସମ୍ପର୍କରେ ଆସିଥିଲି, ସେମାନଙ୍କ

ଭିତରୁ ସର୍ବଶ୍ରୀ ଲାଲା ନଗେନ୍ଦ୍ରନାଥ ରାୟ, ସଚ୍ଚି ରାଉତରାୟ, ରାମଚନ୍ଦ୍ର ପଟ୍ଟନାୟକ, ହୃଦାନନ୍ଦ ନାୟକ, ଆକୁଳି ମିଶ୍ର, ଅପର୍ତ୍ତି ଚରଣ ମଲ୍ଲିକ, ଜଗଦୀଶ ପାଣୀ, ଉମେଶଚନ୍ଦ୍ର ନାୟକ, ପୂର୍ଣ୍ଣଚନ୍ଦ୍ର ଲେଙ୍କା, ଶରତ୍ ପଟ୍ଟନାୟକ, କାଶୀନାଥ ନାୟକ, ଗଙ୍ଗାଧର ବିଶ୍ୱାଳ, ଅଧ୍ୟାପକ ବିନାୟକ ମିଶ୍ର ଓ ଅଧ୍ୟାପକ କାଶୀନାଥ ମିଶ୍ରଙ୍କର ନାମ ମୋର ମନେପଡୁଛି । ଲାଲା ନଗେନ୍ଦ୍ରନାଥ ରାୟ ଓଡ଼ିଶା ସରକାରଙ୍କ ଯୋଗସୂତ୍ର ଅଫିସରରୂପେ ନିଯୁକ୍ତ ହୋଇ ବହୁବଜାର ଷ୍ଟ୍ରିଟ୍ ପାଖରେ ତାଙ୍କ ଅଫିସ୍ ଖୋଲି କାର୍ଯ୍ୟ କରୁଥିଲେ ଏବଂ ସେହିଠାରେ ରହୁଥିଲେ । ମୁଁ ଅନେକ ସମୟରେ ଯାଇ କଲିକତାରେ ଓଡ଼ିଆମାନଙ୍କ ସମସ୍ୟା ସଂପର୍କରେ ତାଙ୍କ ସହିତ ଆଲୋଚନା କରୁଥିଲି । କଲିକତାରେ ତାଙ୍କର ପୂର୍ବ ଅନୁଭୂତି ଓ ଅଭିଜ୍ଞତା ବିଷୟ କହି ଓଡ଼ିଆମାନଙ୍କର ସମସ୍ୟାଗୁଡ଼ିକର ଦୂରୀକରଣ ନିମନ୍ତେ କି ପ୍ରକାର ପଦକ୍ଷେପ ନିଆଯାଇପାରିବ ସେ ବିଷୟରେ ସେ ମୋତେ ବହୁ ଉପାଦେୟ ପରାମର୍ଶ ଦେଉଥିଲେ ଏବଂ କାର୍ଯ୍ୟ କରିବାପାଇଁ ଖୁବ୍ ଉତ୍ସାହିତ କରୁଥିଲେ ।

ଏସବୁ କାର୍ଯ୍ୟ ସହିତ ଆଇନ କଲେଜରେ ମୋର ପାଠପଢ଼ା ଏକ ସ୍ରୋତରେ ଚାଲିଥାଏ । ବହିପତ୍ର କିଣି ପଢ଼ାପଢ଼ି ଠିକ୍ ଭାବରେ କରୁଥାଏ । କଲିକତା ଆଇନ କଲେଜ ପାଠ୍ୟକ୍ରମ ଅନୁସାରେ ପ୍ରତି ସାତ ଦିନରେ ଥରେ ଲ' କ୍ଲାସ୍‌ର ପିଲାମାନଙ୍କୁ ନେଇ ଅଧ୍ୟାପକମାନେ 'ମୁଟ୍ କୋର୍ଟ' (Moot Court) କରନ୍ତି । କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ନିଷ୍ପତ୍ତି ହୋଇଥିବା ମକଦ୍ଦମାକୁ ଅଧ୍ୟୟନ କରି ସେ ବିଷୟରେ ମୁଟ୍ କୋର୍ଟରେ ଜବାବ ସୁଆଲ କରିବାପାଇଁ ଛାତ୍ରମାନଙ୍କୁ କୁହାଯାଇଥାଏ । ଜଣେ ଅଧ୍ୟାପକ ବିଚାରପତି ହୋଇ ବସନ୍ତି ଏବଂ ବାଦୀ ଓ ପ୍ରତିବାଦୀଙ୍କ ପକ୍ଷରୁ ତାଙ୍କ ସାମ୍ନାରେ ମକଦ୍ଦମା ଲଢ଼ିବା ପାଇଁ ଛାତ୍ରମାନଙ୍କୁ କୁହାଯାଏ । ମୁଁ ଏଥିରେ ଭାଗନେବାପାଇଁ ଖୁବ୍ ଆଗ୍ରହୀ ହେଉଥିଲି । ପିଲାମାନଙ୍କର ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନର ସୁବିଧା ଏହାଦ୍ୱାରା ହୋଇଥାଏ । ଦୁଇବର୍ଷ ଅଧ୍ୟୟନ କରି ଯେତୋଟି ବିଷୟରେ ପରୀକ୍ଷା ଦେବା କଥା ଦେଇ, ୧୯୪୭ ମସିହା ପ୍ରଥମ ଭାଗରେ କଲିକତା ବିଶ୍ୱବିଦ୍ୟାଳୟରୁ ବି.ଏଲ୍. ଉପାଧି ଲାଭକରିଥିଲି ।

କଲିକତାରୁ ଓଡ଼ିଶାକୁ ଫେରିଆସି ବିଭିନ୍ନ ରାଜନୈତିକ କାର୍ଯ୍ୟରେ ମନ ବିନିଯୋଗ କରିବାରେ ଲାଗିଲି । ଏହି ସମୟରେ 'ପ୍ରଜାତନ୍ତ୍ର' ଦୈନିକ ଖବରକାଗଜ ରୂପେ କଟକ ବିନୋଦବିହାରୀ ସନ୍ନିକଟ ଦାଶରଥି ପ୍ରେସ୍‌ରୁ ପ୍ରକାଶପାଉଥାଏ । ଶ୍ରୀ ମୋତିଲାଲ ପଣ୍ଡିତଙ୍କର ବିହାରୀବାଗ ବଗିଚାରେ ତାଙ୍କର ଗୋଟିଏ ଘରେ ପ୍ରଜାତନ୍ତ୍ର ଅଫିସ ଆରମ୍ଭହେଲା । ୧୯୪୭ ମସିହା ଅଗଷ୍ଟମାସ ପନ୍ଦର ତାରିଖ ସ୍ୱାଧୀନତା ଦିବସ ଦିନ ପ୍ରଜାତନ୍ତ୍ରର ନିଜସ୍ୱ ପ୍ରେସ୍‌ର ଓ କାର୍ଯ୍ୟାଳୟ ଗୃହର ଶୁଭ ଦିଆଗଲା ଭାରତୀୟ ଜାତୀୟ କଂଗ୍ରେସର ତତ୍କାଳୀନ ସାଧାରଣ ସମ୍ପାଦକ ଶ୍ରୀ ଶଙ୍କରରାଓ ଦେଓଙ୍କଦ୍ୱାରା । ଶ୍ରୀ ଭୈରବ ଚନ୍ଦ୍ର ମହାନ୍ତି ହୋଇଥିଲେ କାଗଜର ସମ୍ପାଦକ ଓ ମୁଁ ହୋଇଥିଲି ମୁଖ୍ୟ ପରିଚାଳକ । ଶ୍ରୀ ହରେକୃଷ୍ଣ ମହତାବ ଏଥିପାଇଁ ବହୁ ସମୟ ଦେଉଥିଲେ । ଲେଖାଲେଖିଠାରୁ ଆରମ୍ଭକରି ପରିଚାଳନାର ଟିକିନିଖି କଥା ସେ ବୁଝୁଥିଲେ । କଂଗ୍ରେସର କାଗଜ ବୋଲି ଉଦ୍‌ବୁଦ୍ଧ ହୋଇ ମୁଁ, ବୀରେନ୍‌ବାବୁ ପ୍ରଭୃତି ବଜାରରେ ହକର୍ ହିସାବରେ ମଧ କାଗଜ ବିକ୍ରିକରୁଥିଲୁ । ପରିଚାଳନା ସମ୍ପର୍କରେ ମୋର କୌଣସି ପୂର୍ବ ଅଭିଜ୍ଞତା ନ ଥିଲା; ତଥାପି ଦିନରାତି ସେହି କାର୍ଯ୍ୟରେ ଲାଗିଥାଏ । ଆକାଉଣ୍ଟ୍ କିପରି ଲେଖାଯାଏ ତାହା ମଧ ଜଣାନଥାଏ । ସବୁ କାମ ଭିତରେ ଗୋଟିଏ ବଡ଼ ଖାତାରେ ଯାହା କିଛି ପଇସାକଉଡ଼ି ଆସେ ତା' ବାମପାଖରେ ଲେଖିପକାଏ ଓ ଖର୍ଚ୍ଚ ଡାହାଣ ପାଖରେ ଲେଖିରଖେ । ଶ୍ରୀ ଗଦାଧର ନାୟକ ବୋଲି କଟକ ଜିଲ୍ଲା ବୋର୍ଡ଼ର ଜଣେ ଆକାଉଣ୍ଟାଣ୍ଟ୍ ଥିଲେ । ସେ ସନ୍ଧ୍ୟାରେ ଆସି ଅନ୍ୟ ଏକ ଖାତାରେ ଠିକ୍ ଭାବରେ ସଜାଡ଼ି ଲେଖନ୍ତି । ସବୁଦିନ ବହୁରାତିଯାଏ ସେଠାରେ ପ୍ରଜାତନ୍ତ୍ର କାଗଜ ଓ ପରିଚାଳନା ସମ୍ବନ୍ଧରେ ଆଲୋଚନା ହୁଏ । ଆଉ କେତେ ଯେ କ'ଣ କରାଯାଇଛି ତାହା ବର୍ତ୍ତମାନ ଏଠାରେ ବର୍ଣ୍ଣନା କରିବା ନିଷ୍ପ୍ରୟୋଜନ ।

ପ୍ରଜାତନ୍ତ୍ର ଖବରକାଗଜର ବିକ୍ରି ବଢ଼ାଇବା (push sale) ସମ୍ବନ୍ଧରେ ଗୋଟିଏ ମଜା ଘଟଣା ମୋର ମନେପଡୁଛି । କଲିକତାରେ ଯେଉଁ ଓଡ଼ିଆ ଅଫିସ୍ ସହ ମୋର ସମ୍ପର୍କ ଥିଲା, ତାହା ଶ୍ରୀ ହୃଦାନନ୍ଦ ମଲ୍ଲିକ ଓ ଶ୍ରୀ ବସନ୍ତ ମିଶ୍ରଙ୍କ ତତ୍ତ୍ୱାବଧାନରେ ଚାଲିଥାଏ । କଲିକତାରେ ପ୍ରଜାତନ୍ତ୍ରର ପ୍ରସାରପାଇଁ ଆମେ ପ୍ରଥମେ ସେହି ଅଫିସ୍ ମାଧମରେ ବିକ୍ରିପାଇଁ କାଗଜ ପାର୍ଶଲ ପଠାଉଥିଲୁ । ସେମାନେ କେତେବେଳେ ତାହା ବିକ୍ରି କରନ୍ତି ତ କେତେବେଳେ କାଗଜ ପଡ଼ିରହେ । ଦିନେ ମୁଁ କଲିକତା ଯାଇ ଦେଖିଲି, ମୋହନଲାଲ୍ ଷ୍ଟ୍ରିଟ୍‌ର ସେହି ଅଫିସ୍‌ରେ ବହୁ ପୁରୁଣା 'ପ୍ରଜାତନ୍ତ୍ର' ପଡ଼ିରହିଛି । ଏହା ଦେଖି ମୁଁ ଟିକିଏ ବିରକ୍ତି ପ୍ରକାଶ କଲି । ତାହାପରେ ବସନ୍ତବାବୁ ଜିପ୍‌ରେ ସବୁ କାଗଜ ଲଦିଦେଇ ଆମକୁ ସାଙ୍ଗରେ ଧରି ଓଡ଼ିଆବହୁଳ ଅଞ୍ଚଳଗୁଡ଼ିକୁ ଗଲେ ସେଗୁଡ଼ିକୁ ବିକ୍ରିକରିବାପାଇଁ । ମୁଁ ସେହି ଗାଡ଼ିରେ ଥାଏ । କାଗଜ କେତେଖଣ୍ଡ ବିକ୍ରିହୋଇଗଲା । ମାତ୍ର ଗୋଟିଏ ଜାଗାରେ ଜଣେ ଓଡ଼ିଆ ଗ୍ରାହକ କାଗଜଟି କିଣିନେଲା ପରେ ଫେରିଆସି ବସନ୍ତବାବୁଙ୍କୁ କହିଲା ଯେ ତାଙ୍କୁ ଦିଆଯାଇଥିବା କାଗଜଟି ସେହି ଦିନର ନୁହେଁ । ବସନ୍ତବାବୁ ତାଙ୍କୁ ପଚାରିଲେ, ସେ ଗତକାଲିର କାଗଜ ପଢ଼ିଛନ୍ତି କି ? ସେ ଉତ୍ତର ଦେଲେ 'ନା' । ତା'ପରେ ପୁଣି ପଚାରିଲେ ସେ ସବୁଦିନ ଖବରକାଗଜ ପଢ଼ନ୍ତି କି ? ଉତ୍ତରରେ ସେ 'ନା' କହିଲେ । ସେଠୁ ବସନ୍ତବାବୁ କହିଲେ, ''ଯେହେତୁ ତୁମେ ସବୁଦିନେ କାଗଜ ପଢ଼ୁନାହିଁ, ତାରିଖରୁ କ'ଣ ପାଇବ ? କାଗଜ ନେଇଚ, ପଢ଼ ।'' ତାଙ୍କ ପାଖରେ ଅନ୍ୟ ଜଣେ ଓଡ଼ିଆ ଥିଲେ । ସେ କହିଲେ, ''ବାବୁ ଯାହା କହୁଛନ୍ତି ଠିକ୍ କହୁଛନ୍ତି । ଆମେ ତ ସବୁଦିନେ କାଗଜ ପଢ଼ୁନା; ତେଣୁ ଆମକୁ ତାରିଖରୁ କ'ଣ ମିଳିବ ? ଖବରକାଗଜ ପଢ଼ିଲେ ଆମର କାମ ଚଳିବ ।''

ଏହିଠାରେ ପ୍ରଜାତନ୍ତ୍ର ଓ ତା'ର ସ୍ୱତ୍ୱାଧିକାରୀ ପରିଚାଳନା ସଂସ୍ଥା (ପ୍ରଜାତନ୍ତ୍ର ପ୍ରଚାର ସମିତି) ଯେଉଁ ଉଦ୍ଦେଶ୍ୟ ଓ ଆଦର୍ଶରେ ଗଠିତ ହୋଇଥିଲା ସେ ସମ୍ବନ୍ଧରେ ଦୁଇପଦ କହୁଛି । ପ୍ରଜାତନ୍ତ୍ର ପ୍ରଚାର ସମିତି ମାଲିକାନାରେ ପରିଚାଳିତ ପ୍ରଜାତନ୍ତ୍ର ସେ ସମୟର ବହୁ ଆଦର୍ଶବାଦୀ, ଶିକ୍ଷିତ ଯୁବକଙ୍କର ଆଶା ଭରସା ଓ ଆକାଙ୍କ୍ଷାର ପୀଠସ୍ଥଳୀ ହୋଇଥିଲା । ଏହି ସଂସ୍ଥାଟି ଗୋଟିଏ ସାଧାରଣ ଅନୁଷ୍ଠାନ ହିସାବରେ ସ୍ଥାପନ କରାଯାଇଥିଲା ଏବଂ ପ୍ରଜାତନ୍ତ୍ର ପ୍ରଚାର ସମିତି ବହୁ ଲୋକଙ୍କର ଆଶା ଓ ବିଶ୍ୱାସର ଆଧାର ବା ଟ୍ରଷ୍ଟି ହିସାବରେ କାର୍ଯ୍ୟ କରିବ ବୋଲି ମନେକରାଯାଇଥିଲା । ତା'ଛଡ଼ା ଶ୍ରୀ ମହତାବ ଯେତେବେଳେ ଏହି ସମିତିର ଚେୟାରମ୍ୟାନ୍ ଥିଲେ, ସେତେବେଳେ ସମସ୍ତେ ତାଙ୍କ କଥାରେ ବିଶ୍ୱାସ କରିଥିଲେ ଯେ ସଂସ୍ଥାଟି ସର୍ବସାଧାରଣ ହିତ ନିମନ୍ତେ ପରିଚାଳିତ ହେବ ଏବଂ ଗାନ୍ଧିଜୀଙ୍କ ନ୍ୟାସ ବା ଟ୍ରଷ୍ଟ ଢାଞ୍ଚାରେ ଚଳିବ । କଥାକଥାକେ ଶ୍ରୀ ମହତାବ ଯେପରି ଗାନ୍ଧିଜୀଙ୍କ ଉକ୍ତିକୁ ଉଦ୍ଧାର କରୁଥିଲେ ସେହି ଅନୁସାରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଟ୍ରଷ୍ଟ କ୍ରମେ ବ୍ୟକ୍ତିବିଶେଷଙ୍କ ସମ୍ପତ୍ତି ଭଳି ବ୍ୟବହୃତ ନ ହୋଇ ନିଶ୍ଚୟ ସାଧାରଣ ସମ୍ପତ୍ତି ହୋଇ ରହିବ ବୋଲି ଧାରଣା ଥିଲା । ପ୍ରଥମ ଅବସ୍ଥାରେ ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରଭୃତିଙ୍କର ଏହି ଅନୁଷ୍ଠାନ ସହିତ ସଂପର୍କ ଓ ସହଯୋଗ ଏ ପ୍ରକାର ଧାରଣାକୁ ଦୃଢ଼ୀଭୂତ କରିଥିଲା । ପ୍ରଜାତନ୍ତ୍ର ପ୍ରଚାର ସମିତିର ଆଦର୍ଶରେ ବିଶ୍ୱାସ କରି ଓ ଉଦ୍‌ବୁଦ୍ଧ ହୋଇ ସ୍ୱର୍ଗୀୟ ଶ୍ରୀ ବୀରେନ୍ ମିତ୍ର କଟକ ସହରର ବହୁ ବ୍ୟବସାୟୀଙ୍କଠାରୁ ଚାନ୍ଦା ଓ ଅଂଶୀଦାର ସୂତ୍ରରେ ବହୁ ଅର୍ଥ ଆଦାୟ କରିଥିଲେ । ମୁଁ ପୂର୍ବରୁ କହିଛି ବୀରେନ୍‌ବାବୁ କଟକ ନୂଆବଜାରରେ ଥିବା ଆମ୍ଭମାନଙ୍କର ଜାତୀୟ ଛତା କାରଖାନା ପରିଚାଳକଙ୍କଠାରୁ କିପରି ଜୋର୍‌କରି ପ୍ରଜାତନ୍ତ୍ରପାଇଁ ଦଶହଜାର ଟଙ୍କା ଆଣି ତାଙ୍କୁ ପ୍ରଜାତନ୍ତ୍ରର ଅଂଶୀଦାର କରିଥିଲେ । ମହତାବବାବୁ ତାଙ୍କ ଆତ୍ମଜୀବନୀରେ ପ୍ରଜାତନ୍ତ୍ରପାଇଁ କେବଳ ତାଙ୍କର ଜମିଦାର ବନ୍ଧୁମାନଙ୍କର ସାହାଯ୍ୟ କଥା ଉଲ୍ଲେଖ କରିଛନ୍ତି । ମାତ୍ର ମୁଖ୍ୟତଃ ଯେଉଁ ଖଣିମାଲିକ ଓ ବ୍ୟବସାୟୀମାନଙ୍କର ଟଙ୍କା ସେଠାରେ ଠୁଳକରାଯାଇଥିଲା ସେ ବିଷୟରେ ଏକାବେଳକେ ନୀରବ ରହି ସେମାନଙ୍କୁ ନ୍ୟାଯ୍ୟ ସ୍ୱୀକୃତିରୁ ବଞ୍ଚିତ କରିଛନ୍ତି । ପ୍ରଥମ ଅବସ୍ଥାରେ ପ୍ରଜାତନ୍ତ୍ର ପ୍ରଚାର ସମିତିର ମୁଁ ମ୍ୟାନେଜିଂ ଡାଇରେକ୍ଟର ଥିଲି । ସ୍ୱର୍ଗୀୟ ମୋତିଲାଲ ପଣ୍ଡିତଙ୍କ ଛଡ଼ା ଆଉ କୌଣସି ଜମିଦାର ସାହାଯ୍ୟ

କରିବା କଥା ମୋତେ ଜଣାନଥିଲା । ପ୍ରଥମେ ପ୍ରଜାତନ୍ତ୍ର ପ୍ରଚାର ସମିତି ଟ୍ରଷ୍ଟର ଚେୟାରମ୍ୟାନ୍ ଥିଲେ ଶ୍ରୀ ହରେକୃଷ୍ଣ ମହତାବ ଏବଂ ମୋ ସହିତ ବୀରେନ୍ ମିତ୍ର, ମୋତିଲାଲ ପଣ୍ଡିତ ପ୍ରଭୃତି ଡାଇରେକ୍ଟର ବୋର୍ଡ଼ର ସଭ୍ୟ ଥିଲେ । ଯେଉଁ ବ୍ୟବସାୟୀମାନେ ଟଙ୍କା ଦେଇଥିଲେ, ମାତ୍ର ପ୍ରଜାତନ୍ତ୍ରରେ ଅଂଶୀଦାର ହୋଇ ରହିବାକୁ ଚାହୁଁନଥିଲେ, ସେଥିରୁ କେତେକ ଟଙ୍କା ଆମ୍ଭମାନଙ୍କ ନାମରେ ଅଂଶୀଦାର ହିସାବରେ ଜମାଦିଆଯାଇଥିଲା । ଏହିପରିଭାବରେ ମୁଁ ଓ ବୀରେନ୍‌ବାବୁ ପ୍ରତ୍ୟେକ ପଚାଶ ହଜାର ଟଙ୍କା ହିସାବରେ ଅଂଶୀଦାର ଥିଲୁ । ପ୍ରଜାତନ୍ତ୍ର ପ୍ରଚାର ସମିତି ଟ୍ରଷ୍ଟବୋର୍ଡ଼ର ନିଯୁକ୍ତି ଓ ପଦଚ୍ୟୁତି ଶ୍ରୀ ମହତାବଙ୍କର ଗୋଟିଏ ହାସ୍ୟାସ୍ପଦ ଓ ଘରୋଇ ବ୍ୟାପାର ଥିଲା । ସେ କେତେବେଳେ ଟ୍ରଷ୍ଟବୋର୍ଡ଼ରେ କାହାକୁ ରଖନ୍ତି ଓ କାହାକୁ ବାହାରକରନ୍ତି, ସେ କଥା ତାଙ୍କ ଇଚ୍ଛା ଉପରେ ନିର୍ଭର କରୁଥିଲା । ମୁଁ, ବୀରେନ୍ ମିତ୍ର ଓ ବିଜୁ ପଟ୍ଟନାୟକ ଦୁଇ-ତିନି ଥର ନିଯୁକ୍ତି ପାଇ ପୁଣି ପ୍ରଚ୍ଛନ୍ନ ଭାବରେ ଅପସାରିତ ହୋଇଥିଲୁ । ଶେଷରେ ୧୯୭୩ ମସିହାରେ ମୋତେ ଓ ବିଜୁ ପଟ୍ଟନାୟକଙ୍କୁ ଟ୍ରଷ୍ଟବୋର୍ଡ଼ରେ ରଖାଯାଇଥିଲା । ବିଜୁବାବୁଙ୍କୁ ମ୍ୟାନେଜିଂ ଟ୍ରଷ୍ଟି କରାଯାଇଥିଲା । ମାତ୍ର ବର୍ତ୍ତମାନ ସେଥିରେ ଆମ୍ଭେମାନେ ଅଛୁ କି ବାଦ୍ ଗଲୁଣି ସେ କଥା ଜଣାନାହିଁ । ଟ୍ରଷ୍ଟବୋର୍ଡ଼ର ବିଧିବଦ୍ଧ ବୈଠକ କେବେ ବସିବାର ମୁଁ ଜାଣିନଥିଲି । ବର୍ତ୍ତମାନ ପ୍ରଜାତନ୍ତ୍ର ପ୍ରଚାର ସମିତି ଏକପ୍ରକାର ଗୋଟିଏ ପାରିବାରିକ ସଂସ୍ଥାରେ ପରିଣତହୋଇଛି । ପ୍ରଜାତନ୍ତ୍ରର ନୂତନଗୃହର ଭିତ୍ତିସ୍ଥାପନ ଓ ପ୍ରଜାତନ୍ତ୍ର ପ୍ରଚାର ସମିତି ଗଠନର ପ୍ରାରମ୍ଭରେ ଯେଉଁସବୁ ଅକୁଣ୍ଠିତ ସାହାଯ୍ୟ ମିଳିଥିଲା, ଶ୍ରୀ ମହତାବ ତାଙ୍କ ଆତ୍ମଜୀବନୀର ୩୦୧ ପୃଷ୍ଠାରେ ସମସ୍ତଙ୍କର ସେ ପ୍ରକାର ସାହାଯ୍ୟ ସହଯୋଗକୁ ସ୍ୱୀକାର କଲାବେଳେ କହିଛନ୍ତି, ''ସେଥିରେ ବାସ୍ତବିକ ମୋର ମୁଣ୍ଡ ନଇଁଯାଉଥାଏ । ଏସବୁର ମୁଁ ଯୋଗ୍ୟ କି ? ଯଦି ହୋଇଥାଏ, ସେହିପରି ଯୋଗ୍ୟ ରହିବି କି ? ଏ ପ୍ରଶ୍ନ ବାରମ୍ବାର ମନରେ ଉଠୁଥାଏ ।'' ଆଜି ମନେହୁଏ, ତାଙ୍କର ଆଶଙ୍କା ଯେପରି ସତ୍ୟରେ ପରିଣତ ହୋଇଛି । ତାଙ୍କର ଆଚରଣର ଅନୁସନ୍ଧାନରେ ସେ ସନ୍ଦେହ ସୃଷ୍ଟିକରିଦେଇଛନ୍ତି ଯେ ଟ୍ରଷ୍ଟ ସମ୍ପତ୍ତିର ତତ୍ତ୍ୱାବଧାରକ ହେବାପାଇଁ ସେ ବିଶ୍ୱାସଭାଜନ କାର୍ଯ୍ୟ କରିନାହାନ୍ତି ।

## ଆସଫ ଅଲ୍ଲୀଙ୍କ ଭର୍ତ୍ସନା

ପୂର୍ବରୁ କହିଛି ପ୍ରଜାତନ୍ତ୍ର ପ୍ରଚାର ସମିତି ବହୁ ଉଦୀୟମାନ ଉଚ୍ଚାଭିଳାଷୀ ଯୁବକମାନଙ୍କର ସାଂସ୍କୃତିକ ଓ ରାଜନୈତିକ କାର୍ଯ୍ୟକ୍ରମର ମିଳନସ୍ଥାନ ହୋଇଥିଲା । ତାହାଛଡ଼ା ଏଥିରେ କଟକ ସହରର ବହୁ ପ୍ରଭାବଶାଳୀ ଯୁବକ ମଧ୍ୟ ଥିଲେ । ଏହି ଯୁବକମାନେ ଶ୍ରୀ ମହତାବଙ୍କର ବିଶେଷ ସକ୍ରିୟ ଓ ନିଷ୍ଠାପର ଅନୁଗାମୀ ଥିଲେ । ଶ୍ରୀ ମହତାବ ଏମାନଙ୍କୁ କୌଣସି ଦାୟିତ୍ୱ ଦେଲେ ଏମାନେ ତାହା କୌଣସିମତେ ତୁଲାଇଦେଉଥିଲେ । ମହତାବ-ବିରୋଧୀ ସଭାସମିତି ନକରାଇଦେବାକୁ ଇଙ୍ଗିତ ପାଇଲେ ଏମାନେ ବିନାଦ୍ୱିଧାରେ ତାହା କାର୍ଯ୍ୟକାରୀ କରୁଥିଲେ । ମୋର ମନେଅଛି, ଥରେ କଟକ ଗୌରୀଶଙ୍କର ପାର୍କରେ ଧାନଚାଉଳ ଦରବୃଦ୍ଧି ବିରୁଦ୍ଧରେ ଗୋଟିଏ ସଭାରେ ସ୍ୱର୍ଗୀୟ ଶ୍ରୀ ଯଦୁମଣି ମଙ୍ଗରାଜ ଗୋଟିଏ ଟେବୁଲ ଉପରେ ଠିଆହୋଇ ଓଜସ୍ୱିନୀ ଭାଷାରେ ଭାଷଣ ଦେଉଥିଲାବେଳେ ତାଙ୍କୁ ଟେବୁଲ୍‌ସହ ତଳକୁ ଗଡ଼ାଇଦିଆଯାଇଥିଲା । ଏଥିପାଇଁ ଏ ଯୁବକମାନଙ୍କ ମୁଣ୍ଡରେ ଦୋଷ ଦିଆଯାଇଥିଲା । ଶ୍ରୀ ମହତାବ ଓ ପ୍ରଜାତନ୍ତ୍ର ସହିତ ଏମାନଙ୍କ ସମ୍ପର୍କ ଥିବାରୁ ଚାନ୍ଦା ସଂଗ୍ରହ କାର୍ଯ୍ୟରେ ଏମାନେ ନିଯୁକ୍ତ ହେବାରେ ମଧ୍ୟ କିଛି ଅସୁବିଧା ନଥିଲା । ଶ୍ରୀ ମହତାବଙ୍କର କେତେକ ସହଯୋଗୀ ମନ୍ତ୍ରୀ ଏଭଳି ଆଚରଣ ସଂପର୍କରେ ମନେ ମନେ ଅତ୍ୟନ୍ତ ଅସନ୍ତୁଷ୍ଟ ଥିଲେ । କେତେକ ମନ୍ତ୍ରୀଙ୍କ ବିରୁଦ୍ଧରେ ମଧ୍ୟ ଏହି ଯୁବକମାନଙ୍କୁ ବ୍ୟବହାର କରାଯାଇଥିବା; ବ୍ୟବସାୟୀ, ସରକାରୀ କର୍ମଚାରୀ ଓ ଅନ୍ୟାନ୍ୟମାନଙ୍କୁ ଧମକ ଦେଇ ଓ ଭୟଭୀତ କରାଇ କାର୍ଯ୍ୟ ହାସଲ କରାଯାଉଥିବାଭଳି କେତେକ ଅଭିଯୋଗ ତତ୍କାଳୀନ ରାଜ୍ୟପାଳ ଶ୍ରୀ ଆସଫ୍ ଅଲ୍ଲୀଙ୍କ କାନରେ କେହି ପକାଇଦେଇଥିଲେ ।

ରାଜ୍ୟପାଳ ନିଜେ ମୁଖ୍ୟମନ୍ତ୍ରୀ ଶ୍ରୀ ମହତାବଙ୍କ ପାଖରେ ଅସନ୍ତୋଷ ପ୍ରକାଶକରି ପ୍ରଜାତନ୍ତ୍ରକୁ କେନ୍ଦ୍ରକରି କେତେକ ଅବାଞ୍ଛିତ ଯୁବକ ବିଭିନ୍ନ କ୍ଷେତ୍ରରେ ଅଶାନ୍ତି ସୃଷ୍ଟିକରୁଥିବା କଥା କହିଥିଲେ । ରାଜ୍ୟପାଳଙ୍କ ଧାରଣା ଠିକ୍ ନୁହେଁ ବୋଲି ମହତାବବାବୁ ବୁଝାଇବାକୁ ଚେଷ୍ଟା କରିଥିଲେ । ପ୍ରଜାତନ୍ତ୍ରରେ ଯେଉଁ ଶିକ୍ଷିତ ଦେଶପ୍ରେମୀ ଯୁବକମାନେ ଏକତ୍ରିତ ହୋଇ କାର୍ଯ୍ୟ କରୁଥା'ନ୍ତି, ସେମାନଙ୍କୁ ଦେଖିଲେ ଓ ସେମାନଙ୍କ ସହିତ କଥାବାର୍ତ୍ତା କଲେ ରାଜ୍ୟପାଳଙ୍କ ଧାରଣା ବଦଳିଯିବ ବୋଲି ତାଙ୍କୁ କହିଥିଲେ । ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ଶ୍ରୀ ଆସଫ୍ ଅଲ୍ଲୀ ଆଗରୁ ଜାଣିଥିଲେ । ତେଣୁ ଶ୍ରୀ ମହତାବ ବିଜୁବାବୁଙ୍କ ସହିତ ମୋତେ, ବୀରେନ୍‌ବାବୁ, ଶଶିଭୂଷଣ ମିଶ୍ର, ଚିନ୍ତାମଣି ପାଣିଗ୍ରାହୀ, କ୍ଷେତ୍ରମୋହନ ମଙ୍ଗରାଜ, ଚକ୍ରଧର ସାମଲ, କେଶବ ସାମଲ, ରାମପ୍ରସାଦ ମହାନ୍ତି, ଦେବେନ୍ଦ୍ର ମହାନ୍ତି ଓ ନରେନ୍ଦ୍ର ପ୍ରଧାନ ପ୍ରଭୃତିଙ୍କୁ ରାଜ୍ୟପାଳଙ୍କ ସହିତ ଚା'ଖାଇବାପାଇଁ ଲାଲବାଗ୍ ରାଜଭବନକୁ ପଠାଇଥିଲେ । ଅବଶ୍ୟ ରାଜ୍ୟପାଳ ସେଥିପାଇଁ ଆମକୁ ନିମନ୍ତ୍ରଣ କରିବାର ଉଦାରତା ପ୍ରକାଶକରିଥିଲେ । ଚା' ଖାଇବା ସମୟରେ ଶ୍ରୀ ଆସଫ୍ ଅଲ୍ଲୀ ଆମ୍ଭମାନଙ୍କ ସହିତ କଥାବାର୍ତ୍ତା କରିଥିଲେ । ପ୍ରଜାତନ୍ତ୍ର ସଂପର୍କରେ ଓ ସାଧାରଣ କ୍ଷେତ୍ରରେ ଆମ୍ଭମାନଙ୍କ କାର୍ଯ୍ୟର ପଦ୍ଧତି ଓ ଆଚରଣରେ ରାଜ୍ୟପାଳ ଅସନ୍ତୁଷ୍ଟ ଥିଲାଭଳି ଜଣାପଡ଼ିଥିଲା । ସମସ୍ତଙ୍କୁ ସେ ଗୋଟିଏ ଭାଡ଼ିର ପାରା ବୋଲି ଧରିନେଇଥିଲେ । ପ୍ରଜାତନ୍ତ୍ର ସହିତ ସଂପୃକ୍ତ ଲୋକଭାବରେ ଆମ୍ଭେମାନେ କିପରି ବ୍ଲାକ୍‌ମେଲିଂ (Blackmailing) ପାଇଁ ଦାୟୀ, ତାହା ସେ କହିଥିଲେ ଏବଂ ଆମେ ଅଯଥାରେ ବିଭିନ୍ନ କାର୍ଯ୍ୟରେ ହସ୍ତକ୍ଷେପ କରୁଥିଲୁ ବୋଲି ଅଭିଯୋଗ କରିଥିଲେ । ବୀରେନ୍‌ବାବୁ ସାଧାରଣତଃ ଟିକେ ବଡ଼ ପାଟିକରି କଥାବାର୍ତ୍ତା କରନ୍ତି । ଅଭିଯୋଗଗୁଡ଼ିକ ଅସତ୍ୟ ବୋଲି କହିଲାବେଳେ "Your Excellency is misled and prejudiced against us." ବୋଲି କହିପକାଇଲେ । ଏତିକିରେ ଶ୍ରୀ ଆସଫ୍ ଅଲ୍ଲୀ ହଠାତ୍ ରାଗରେ ଜଳିଉଠିଲେ ଏବଂ କହିଥିଲେ, "Do you know with whom you are talking ? Mind that you are talking to the Governor. You have the audacity to say that the Governor has been misled. That shows the type of gang to which you all belong." ରାଜ୍ୟପାଳ ଏ କଥା କହିଲାବେଳେ ରାଗି ଲାଲହୋଇଯାଇଥିଲେ । ଏହା ଦେଖି ଆମ୍ଭେମାନେ କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ପଡ଼ିଯାଇଥିଲୁ । ସମସ୍ତେ ନିସ୍ତବ୍ଧ । ବିଜୁବାବୁ ଅବସ୍ଥାଟିକୁ ଟିକେ ହାଲୁକା କରିଦେବାକୁ ଉଦ୍ୟମକଲେ; ମାତ୍ର ତାହା ଫଳପ୍ରଦ ହୋଇନଥିଲା । ରାଜ୍ୟପାଳଙ୍କର ଯେଉଁ ଧାରଣା ଆମ ଉପରେ ଥିଲା, ତାହା ସେହିପରି ରହିଲା । ଆମ୍ଭେମାନେ ବିଦାୟ ନେଇ ଆସିଥିଲୁ । ସବୁ କଥା ମହତାବବାବୁ ଶୁଣି କହିଲେ, ''ଔଷଧରାଗରେ ତାଟିଆ କାମୁଡ଼ାଯାଉଛି; କ୍ରୋଧଟା ମୋ ଉପରେ ।''

ପ୍ରଜାତନ୍ତ୍ର ପ୍ରଚାର ସମିତି ଶ୍ରୀ ମହତାବଙ୍କର କିପରି ବ୍ୟକ୍ତିଗତ ସଂପତ୍ତିରେ ପରିଣତ ହୋଇଛି ଏବଂ ତାହା ଗୋଟିଏ 'ଚୋରର ବସାଘର' (Thief's Nest) ବୋଲି ୧୯୬୭ ମସିହା ଜୁନ୍ ମାସ ଛବିଶ ତାରିଖରେ ସର୍ବଶ୍ରୀ ସଦାଶିବ ତ୍ରିପାଠୀ, ବିନାୟକ ଆଚାର୍ଯ୍ୟ, ଗଙ୍ଗାଧର ମହାପାତ୍ର, ବ୍ରଜମୋହନ ମହାନ୍ତି, ଚିନ୍ତାମଣି ପାଣିଗ୍ରାହୀ, ସନ୍ତୋଷ କୁମାର ସାହୁ, ଚିନ୍ତାମଣି ଜେନା ଓ ରାମଚନ୍ଦ୍ର ଉଲ୍‌କା ପ୍ରଭୃତି ବିଶିଷ୍ଟ କଂଗ୍ରେସ ବିଧାୟକମାନେ ରାଷ୍ଟ୍ରପତିଙ୍କ ପାଖରେ ଯେଉଁ ଅଭିଯୋଗ କରିଥିଲେ, ତାହାର ଯଥାର୍ଥତା ବହୁ ଘଟଣାରେ ପ୍ରକଟିତ ହୋଇଯାଇଛି । ରାଷ୍ଟ୍ରପତିଙ୍କଠାରେ ଅଭିଯୋଗ କରାଯାଇଥିଲା ଯେ ଶ୍ରୀ ମହତାବ ମୁଖ୍ୟମନ୍ତ୍ରୀ ହିସାବରେ ତାଙ୍କର କ୍ଷମତାର ଅପବ୍ୟବହାର କରି ପ୍ରାୟ ତିରିଶ ଲକ୍ଷ ଟଙ୍କା ମୂଲ୍ୟର ସ୍ଥାବର ଓ ଅସ୍ଥାବର ସଂପତ୍ତି ପ୍ରଜାତନ୍ତ୍ର ପ୍ରଚାର ସମିତି ନାମରେ ଠୁଳକରିପାରିଥିଲେ । ଏହା ପୂର୍ବରୁ ଥରେ ରାଷ୍ଟ୍ରପତି ଶାସନ ଅମଳରେ ୧୯୬୦-୬୧ ମସିହା ଓଡ଼ିଶା ଅତିରିକ୍ତ ବଜେଟ୍ ଆଲୋଚନା ପ୍ରସଙ୍ଗରେ ଲୋକସଭାରେ ଓଡ଼ିଶାର ଜଣେ ଅଣକଂଗ୍ରେସ

ସଦସ୍ୟ ପ୍ରଜାତନ୍ତ୍ର ପ୍ରଚାର ସମିତିକୁ 'ଚୋରର ବସାଘର' ବୋଲି ଚିତ୍ରଣ କରିଥିଲେ । ସେତେବେଳେ କଂଗ୍ରେସ ଲୋକ ହିସାବରେ ଆମେ ଲଜ୍ଜିତ ହୋଇଥିଲୁ । ସେହି ସଭ୍ୟ ବର୍ତ୍ତମାନ କଂଗ୍ରେସ (ଆଇ) ଦଳରେ ଜଣେ ସମ୍ମାନାସ୍ପଦ ସଦସ୍ୟରୂପେ ପ୍ରତିଷ୍ଠିତ । ଉଲ୍ଲିଖିତ ଅଭିଯୋଗପତ୍ରରେ ଲେଖାଥିଲା :

"All these wealth have been acquired by Dr.Mahtab by misusing his power as Chief Minister of the State. By the use of his official position he had collected about Rs. 30 lakhs from businessmen, traders, mine-owners and contractors and thus had enabled the Samiti in acquiring these vast properties, both movable and immovable, inspite of the fact that the newspapers owned by the Samiti are running at a loss. It is commonly said that the corner stone of corruption, favouritism and nepotism in Orissa is Dr. Mahtab and his Prajatantra Prachar Samiti. A thorough probe into the affairs and accounts of this Samiti will unearth many interesting and intriguing collections of funds from unexplained sources and will expose the acts of corruption, improprieties and misuse of official influence committed by Dr. H.K Mahtab for personal gains and for his own political ends." (Sarjoo Prasad Commission Report. Page 109)

ମାନ୍ୟବର ସରଯୁପ୍ରସାଦ କମିଶନ ତାଙ୍କ ରାୟରେ କେତେକ ପ୍ରସଙ୍ଗରେ ଲେଖିଛନ୍ତି :

"All the above acquisitions of wealth and assets during such a short period, while Shri Mahtab held office of Chief Minister, could not be attributed to his known sources of income, but must have been derived through clandestine or unlawful sources."

ତା'ପରେ ମହତାବଙ୍କ ପକ୍ଷରୁ ଓକିଲଙ୍କ ବକ୍ତବ୍ୟ ଓ ପ୍ରଦତ୍ତ ନଥିପତ୍ର ପରୀକ୍ଷା କରି ସେ ଲେଖିଛନ୍ତି: "My finding is that the acquisition of wealth by Shri Mahtab was much beyond his ostensible sources of income, and must have been derived through unauthorised and illegal sources for which he has completely failed to account."

ଏହା ପରେ ଭାରତ ସରକାରଙ୍କ ପକ୍ଷରୁ ଦୁର୍ନୀତି ପ୍ରତିଷେଧକ ଆଇନରେ (Prevention of Corruption Act) ଶ୍ରୀ ମହତାବଙ୍କ ବିରୁଦ୍ଧରେ ଫୌଜଦାରୀ ଅଭିଯୋଗ ଦାଖଲ କରାଯାଇଥିଲା । ଭୁବନେଶ୍ୱର ସେସାଲ ଜଜ୍‌ଙ୍କ କୋର୍ଟରେ ଅଭିଯୁକ୍ତ ଆସାମୀଙ୍କ ଉପରେ ଚାର୍ଜସିଟ୍ ଜାରିହୋଇ ବିଚାର ଚାଲିଥିବା ଅବସ୍ଥାରେ ମହତାବବାବୁଙ୍କ ପକ୍ଷରୁ ମାନ୍ୟବର ଓଡ଼ିଶା ହାଇକୋର୍ଟଙ୍କ ପାଖରେ ଅପିଲ୍ କରାଗଲା । ବହୁ ପୁରୁଣା ଦିନର ଘଟଣା ପ୍ରସଙ୍ଗରେ ବହୁ ବିଳମ୍ବରେ ମକଦ୍ଦମାର କାର୍ଯ୍ୟାନୁଷ୍ଠାନ ଆରମ୍ଭ କରାଯାଇଥିବା ହେତୁ ଅଭିଯୁକ୍ତ ପକ୍ଷଙ୍କୁ ହଇରାଣ ହରକତରୁ ତ୍ରାହିଦେବାପାଇଁ, ମୁଖ୍ୟ ସାକ୍ଷୀମାନଙ୍କ ମୃତ୍ୟୁ ଘଟିଥିବାରୁ କେତେକ ଅଭିଯୋଗ ସାବ୍ୟସ୍ତ ହେବାର ସମ୍ଭାବନା କ୍ଷୀଣ ବୋଲି ଦରଖାସ୍ତକାରୀଙ୍କ ନିବେଦନ ଯୁକ୍ତିସଙ୍ଗତ ମନେକରାଯିବାରୁ, ଶ୍ରୀ ହରେକୃଷ୍ଣ ମହତାବଙ୍କ ବୟସ ଅଶୀ ବର୍ଷରୁ ଅଧିକ ହୋଇଯାଇଥିବାରୁ ଏବଂ ସେ ଆଉ ସକ୍ରିୟ ରାଜନୀତିରେ ନଥିବାରୁ ମାନ୍ୟବର ହାଇକୋର୍ଟ ନିଜର ସ୍ୱକୀୟ କ୍ଷମତାଦ୍ୱାରା ହାଇକୋର୍ଟର ବିଚାରାଧୀନ ଥିବା ମକଦ୍ଦମାକୁ ଓ ତତ୍‌ସଂକ୍ରାନ୍ତ ଅଭିଯୋଗଗୁଡ଼ିକୁ ବାତିଲ୍ କରିଦେବା ସମୀଚୀନ ଓ ପ୍ରାସଙ୍ଗିକ ବୋଲି ରାୟ ଦେଇଥିଲେ । ମାନ୍ୟବର ହାଇକୋର୍ଟ ଲେଖିଥିଲେ :

"In the premises indicated, we are inclined to take the view that continuing the prosecution in these cases against the petitioners would

indeed be a harassment and it is meet and proper that in exercise of our inherent powers we quash the charges and the proceedings to relieve them therefrom." (Cuttack Law Times, Vol. 52 of 1981)

ପ୍ରଜାତନ୍ତ୍ର ପ୍ରଚାର ସମିତି ଓ କଂଗ୍ରେସ ଅନୁଷ୍ଠାନର ଅର୍ଥର ଅବିଚାରିତ କାରବାର ସମ୍ପର୍କରେ ବିଚାରପତି ସରଯୂ ପ୍ରସାଦଙ୍କର ଏକ ସ୍ପଷ୍ଟ ରାୟ ଏଠାରେ ଉଲ୍ଲେଖଯୋଗ୍ୟ । ପ୍ରଜାତନ୍ତ୍ର ପ୍ରଚାର ସମିତି ବିଚାରପତି ସରଯୂ ପ୍ରସାଦଙ୍କର ଏକ ସ୍ପଷ୍ଟ ରାୟ ଏଠାରେ ଉଲ୍ଲେଖଯୋଗ୍ୟ । ପ୍ରଜାତନ୍ତ୍ର ପ୍ରଚାର ସମିତି ଓ କଂଗ୍ରେସର ତହବିଲକୁ ମହତାବବାବୁ ନିଜ ତହବିଲରେ ଜମାଦେବା ସମ୍ପର୍କରେ ସରଯୂ ପ୍ରସାଦ ମନ୍ତବ୍ୟ ଦେଇଥିଲେ,

"Before I deal with the evidence regarding "Ekamra Nivas", I should, in fairness, refer to the point in Shri Mahtab's statement to the effect that out of the deposits in the bank account, Rs. 28,578.31 belonged to the Congress and the Prajatantra Prachar Samiti and the rest of the amount belonged to himself. The amount so deposited was admittedly in the shape of cheques. I fail to see why separate accounts should not have been opened for the funds of the two organisations; the Congress and the Prajatantra Prachar Samiti. This blending of funds is in itself quite unjustifiable and is the harbinger of misuse and manipulation of accounts. Accounts in the names of the two organisations could have been easily opened and the cheques deposited in their respective accounts. There is, of course, no material before me on which I could verify the above statement of Shri Mahtab. His explanation is that when he took charge as Chief Minister in the third week of October, 1956, he was immediately thereafter engaged in the work of the General Elections, which took place in February, 1957. The Congress Organisation was then not existing as it had been superceded and therefore the contributions to the Congress were deposited in his account. I have my doubts on the point but since Shri Mahtab happened to be the prime mover of the Congress Party in the political arena at the time. I am prepared to concede to him the benefit of the above statement and hold that out of the funds deposited in his accounts, Rs. 28,578,31P., in fact, belonged to the Congress and the Prajatantra Prachar Samiti as claimed by him."

ଏଥିରୁ ଦୁଇଟି କଥା ମହତାବବାବୁଙ୍କର ନିଜ ସ୍ୱୀକାରୋକ୍ତିରୁ ପ୍ରମାଣିତ ହୋଇଯାଉଛି । ଗୋଟିଏ କଥା ହେଲା ନିଜ ତହବିଲରେ ସାଧାରଣ ଅନୁଷ୍ଠାନମାନଙ୍କର ଅର୍ଥକୁ ଜମା କରି ରଖିବାଦ୍ୱାରା ସାଧାରଣ ଅର୍ଥ ଅପବ୍ୟବହାର ଓ ସନ୍ଦେହଜନକ ହିସାବପତ୍ର ଦାଖଲ କରିବାକୁ ପ୍ରଶ୍ରୟ ଦେବା । ଅନ୍ୟଟି ହେଲା ମହତାବବାବୁ କ୍ଷମତାରେ ଥିବାବେଳେ ଓଡ଼ିଶାରେ ବିଧିବଦ୍ଧ କଂଗ୍ରେସ ଅନୁଷ୍ଠାନ ନଥିବାର ଯୁକ୍ତି ଦର୍ଶାଇ କଂଗ୍ରେସ ସମ୍ପତ୍ତିକୁ ନିଜସ୍ୱ ସମ୍ପତ୍ତି ସହିତ ସାମିଲକରି କାରବାର କରିବା । ଏହା ନିଶ୍ଚୟ ଯେକୌଣସି ଗାନ୍ଧୀ ବିଚାରଧାରାର ପ୍ରବର୍ତ୍ତକଙ୍କ ପକ୍ଷରେ ଅସଦାଚରଣ ବିବେଚିତ ହେବ । ବିଚାରପତି ସରଯୂ ପ୍ରସାଦଙ୍କର ଉଲ୍ଲିଖିତ ମନ୍ତବ୍ୟରୁ ପ୍ରଜାତନ୍ତ୍ର ପ୍ରଚାର ସମିତିକୁ ଅତୀତରେ ଯେଉଁମାନେ 'ଚୋରର ବସାଘର' କହିଥିଲେ କିମ୍ବା ଯେଉଁମାନେ ଏହି ସାଧାରଣ ଟ୍ରଷ୍ଟ ସମ୍ପତ୍ତି ବ୍ୟକ୍ତିଗତ ସମ୍ପତ୍ତିରେ ପରିଣତ ହୋଇଯିବାର ଆଶଙ୍କା ପ୍ରକାଶ କରୁଛନ୍ତି, ତାହାର କିଛି ଯଥାର୍ଥତା ଥିବାର ଜଣାପଡୁଛି ।

ଏହା ଥିଲା ପ୍ରାୟ ପନ୍ଦରବର୍ଷ ତଳର ନାନା ଅଭିଯୋଗ ଉପରେ ବିଚାରପତି ସରଯୂ ପ୍ରସାଦଙ୍କର ରାୟ । ମାତ୍ର ଏବେ ଶ୍ରୀ ମହତାବ ଅଶୀତି ବର୍ଷ ବୟସ ଅତିକ୍ରମ କରିସାରିଥିଲେ ମଧ୍ୟ ରାଜଧାନୀ ଭୁବନେଶ୍ୱରର ବୁକୁ ଉପରେ କଂଗ୍ରେସ ତଥା ଗାନ୍ଧୀ ଆଦର୍ଶର ପ୍ରଚାର ଓ ପ୍ରତିଷ୍ଠାନପାଇଁ ଉଦ୍ଦିଷ୍ଟ ଭୂସମ୍ପତ୍ତିର ଅପବ୍ୟବହାର କରି ଏକକୋଟି ଟଙ୍କାରୁ ଊର୍ଦ୍ଧ୍ୱ ବ୍ୟୟରେ ସୁରମ୍ୟ, ମଦ୍ୟଶାଳାଯୁକ୍ତ, ସୌଖୀନ ପଞ୍ଚତାରକା ହୋଟେଲ ନିର୍ମାଣ ସମ୍ପର୍କରେ କୋର୍ଟ କଚେରିଠାରୁ ସ୍ୱୟଂ ପ୍ରଧାନମନ୍ତ୍ରୀଙ୍କ ପାଖରେ ତାଙ୍କ ବିରୁଦ୍ଧରେ ପ୍ରତିଷ୍ଠିତ ବ୍ୟକ୍ତିମାନେ ସାମାଜିକ ପ୍ରତିଷ୍ଠାର ଅପବ୍ୟବହାର, ଶଠତା, ପ୍ରବଞ୍ଚନା, ଭ୍ରଷ୍ଟାଚାର ଭଳି ଯେଉଁସବୁ ଗୁରୁତର ଅଭିଯୋଗ କରିଛନ୍ତି, ତାହା ଲକ୍ଷ୍ୟକଲେ ବିସ୍ମୟାଭିଭୂତ ହେବାକୁ ପଡୁଛି । ଏହି ଅଭିଯୋଗମାନଙ୍କରେ ମଧ୍ୟ ମହତାବବାବୁ ସ୍ୱରାଜଆଶ୍ରମ ପରିଚାଳନା ସମିତିର କଂଗ୍ରେସ ଭବନ ନିର୍ମାଣ ଓ ଗାନ୍ଧିବାଦୀ କାର୍ଯ୍ୟକ୍ରମ ପ୍ରବର୍ତ୍ତନପାଇଁ ଭୁବନେଶ୍ୱର ଗୌତମନଗରରେ ତାଙ୍କ ମାର୍ଫତରେ ଥିବା ମୂଲ୍ୟବାନ୍ ଭୂମମ୍ପତ୍ତି ଏବଂ ମଝିରେ ତାଙ୍କରି ସଭାପତିତ୍ୱରେ ପରିଚାଳିତ ପ୍ରଜାତନ୍ତ୍ର ପ୍ରଚାର ସମିତି ଟ୍ରଷ୍ଟ ସମ୍ପତ୍ତି ରୂପେ ରେକର୍ଡ଼ଭୁକ୍ତ ହୋଇଥିବା ଏହି ସମ୍ପତ୍ତିକୁ ବ୍ୟକ୍ତିଗତ ସମ୍ପତ୍ତି ଅଭିବୃଦ୍ଧି ଲାଳସା ବଶବର୍ତ୍ତୀ ହୋଇ ଚଞ୍ଚକତାକ୍ରମେ ଅସତ୍ ଉପାୟରେ ପଞ୍ଚତାରକା କୋଣାର୍କ ହୋଟେଲ ନିର୍ମାଣରେ ବିନିଯୋଗ କରିଛନ୍ତି ବୋଲି ଅତି ସ୍ପଷ୍ଟ ଭାବରେ ଉଲ୍ଲେଖ କରାଯାଇଛି । ଅଦାଲତରେ ବିଚାରାଧୀନ ଅଭିଯୋଗରେ କୁହାଯାଇଛି :

"That Defendant No. 2's (Shri H.K.Mahtab) rapid acquisition of vast wealth/properties through scandalous dealings has been a matter of public enquiry time and again. Defendant No.2, who wielded powers and influence over Orissa administration, inproperly used the State machinery in working out his clever scheme to convert the suit land to his personal pecuniary advantage. X X X That with the help of his relations and / or henchmen, their wives/relations, the Defendant No. 2 contrived incorporation of fraudulent Private Limited Company in the name and style M/s Ashoka Industries (P) Ltd, Defendant No. 1 hereto. His (Shri Mahtab's) nephew and some other share-holders of the Defendant No. 1 company are mere name lenders and it is Defendant No. 2, (Shri Mahtab) who held all those shares through his benamdars."

ଏହି ମକଦ୍ଦମାରେ ମୋତେ ଓ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ମଧ୍ୟ ପକ୍ଷଭୁକ୍ତ କରାଯାଇଛି । ମୁଁ ସ୍ୱରାଜ ଆଶ୍ରମ ପରିଚାଳନା ସମିତିର ଜଣେ ସଭ୍ୟ ହିସାବରେ ଶ୍ରୀ ମହତାବ ଉକ୍ତ ସମିତିର ସଭାପତି ଥାଇ କିପରି ତାଙ୍କର ଚଞ୍ଚକତାମୂଳକ ଆଚରଣଦ୍ୱାରା କଂଗ୍ରେସଭଳି ଗୋଟିଏ ସାଧାରଣ ଅନୁଷ୍ଠାନର ସମ୍ପତ୍ତିକୁ ଅନ୍ୟାୟ ଭାବରେ ହସ୍ତାନ୍ତର କରିଛନ୍ତି ସେ ବିଷୟରେ ଲିଖିତ ଜବାବ ଅଦାଲତରେ ଦାଖଲ କରିଛି । କଟକ ସ୍ୱରାଜ ଆଶ୍ରମର ଏକ ସଂପ୍ରସାରିତ ଅଂଶ ଭଳି ଭୁବନେଶ୍ୱରଠାରେ ଜମି କିଣି କଂଗ୍ରେସ ଭବନ ନିର୍ମାଣ କରିବା ଉଦ୍ଦେଶ୍ୟରେ ପ୍ରଦେଶ କଂଗ୍ରେସଦ୍ୱାରା ଶ୍ରୀ ମହତାବଙ୍କ ଅଧକ୍ଷତାରେ ଯେଉଁ କମିଟି ଗଠିତ ହୋଇଥିଲା, ସେଥିରେ ମୋ ସହିତ ସ୍ୱର୍ଗୀୟ ବନମାଳୀ ପଟ୍ଟନାୟକ, ବୀରେନ୍ ମିତ୍ର ଓ ଶ୍ରୀ ବିଜୁ ପଟ୍ଟନାୟକ ସଭ୍ୟ ଥିବା କଥା ମୋ ଜବାବରେ କୁହାଯାଇଛି । ସ୍ୱାଧୀନତା ସଂଗ୍ରାମ କାଳର କଟକ ସ୍ୱରାଜ ଆଶ୍ରମ ସହିତ ଜଡ଼ିତଥିବା ସ୍ମୃତିକୁ ବଜାୟ ରଖିବା ଉଦ୍ଦେଶ୍ୟରେ କମିଟିର ନାମ ସ୍ୱରାଜ ଆଶ୍ରମ ପରିଚାଳନା ସମିତି ବୋଲି ରଖାଯାଇଥିଲା ଏବଂ ସେହି ସମିତି ନାମରେ ଏହି ଜମିଖଣ୍ଡିକ ସରକାରଙ୍କଠାରୁ କିଣାଯାଇଥିଲା । ଏହା ପରେ ସମିତିଠାରୁ ସବୁ କଥା ଲୁଚାଇରଖି

ଚକ୍ରାନ୍ତକ୍ରମେ ଶ୍ରୀ ମହତାବ ସମ୍ପତ୍ତିଟି ହସ୍ତାନ୍ତର କରିଛନ୍ତି ବୋଲି ମୁଁ ସେଥିରେ କହିଛି । ଶ୍ରୀ ବିଜୁ ପଟ୍ଟନାୟକ ମଧ୍ୟ ତାଙ୍କର ଲିଖିତ ଜବାବ ଅଦାଲତରେ ଦାଖଲ କରିଛନ୍ତି । ଶ୍ରୀ ମହତାବ ବ୍ୟକ୍ତିଗତ ସ୍ୱାର୍ଥସାଧନପାଇଁ ନିଭୃତରେ କପଟାଚରଣ କରି ଅନ୍ୟାୟ ଓ ଅସାଧୁ ଉପାୟରେ, କଂଗ୍ରେସ ଆଦର୍ଶ ଓ ରଚନାତ୍ମକ କାର୍ଯ୍ୟର ପ୍ରଚାର ଓ ପ୍ରସାରପାଇଁ ଯେଉଁ ଭୂମିଖଣ୍ଡକ ଉପରେ ଭାରତ ଜାତୀୟ କଂଗ୍ରେସର ତତ୍କାଳୀନ ସଭାପତି ଏବଂ ଏକଦା ଭାରତର ସମ୍ମାନିତ ରାଷ୍ଟ୍ରପତି ଆସନ ଅଳଙ୍କୃତ କରିଥିବା ଶ୍ରୀଯୁକ୍ତ ସଞ୍ଜିବ ରେଡ଼ି ଏକ ପବିତ୍ର ଉତ୍ସବରେ ୧୯୬୦ ମସିହା ମଇ ମାସ ଷୋହଳ ତାରିଖରେ ଶିଳାନ୍ୟାସ କରିଥିଲେ ଏବଂ ଯେଉଁ ସ୍ମୃତିଉଦ୍ରେକକାରୀ ମାର୍ବଲ ପଥର ଖଣ୍ଡିକ ଦୀର୍ଘ କୋଡ଼ିଏ ବର୍ଷରୁ ଉର୍ଦ୍ଧ୍ୱ ସେଠାରେ ଦଣ୍ଡାୟମାନ ଥିଲା ସେହି ସମ୍ପତ୍ତିକୁ କଂଗ୍ରେସକୁ କିପରି ଦଗାବାଜି କରି ବଞ୍ଚିତକରାଯାଇଛି, ସେ ସବୁ ବିଷୟ ବିଜୁ ପଟ୍ଟନାୟକ ତାଙ୍କ ଜବାବରେ ବର୍ଣ୍ଣନା କରିଛନ୍ତି । ଉକ୍ତ ଜବାବରେ ସେ କହିଛନ୍ତି :

"The memorable imposing marble stone with all the venerable inscriptions on it including the name of the most Hon'ble Shri N. Sanjib Reddy that was visible from the Rajpath, stood there till the year 1981 and thereafter it disappeared." ଶ୍ରୀ ପଟ୍ଟନାୟକ ତାଙ୍କ ଜବାବରେ ଆହୁରି ମଧ୍ୟ କହିଛନ୍ତି, "This defendant feels that at this stage some fraudulent steps were taken by the Defendant No. 2 (Dr. Mahtab) to deprive the Congress of this property and to grab the same for some ultimate personal gain. The Defendant No. 2 at this relevant time was not in the Congress and was then a member of the Jana Congress, a separate political party that was formed by the said Defendant No.2 to oppose the Congress and as such he had no sanction or authority to deal with the property that belonged to the Utkal Pradesh Congress. That at this relevant period this defendant was in the Congress and the Defendant No, 12 (Nilamoni Routray) was the President of the Utkal Pradesh. Congress Committee."

ଶ୍ରୀ ହରେକୃଷ୍ଣ ମହତାବ ଏହି ମକଦ୍ଦମାରେ ପ୍ରତିବାଦୀଭାବେ ଅଦାଲତରେ ଅଭିଯୋଗ ସମ୍ପର୍କରେ କିଛି ନକହି ନୀରବ ରହିବାକୁ ଶ୍ରେୟ ମନେକରିଛନ୍ତି । ଅଶୋକା ଇଣ୍ଡଷ୍ଟ୍ରିଜ୍ ଅଭିଯୋଗଗୁଡ଼ିକୁ ଅସ୍ୱୀକାର କରି ଅଦାଲତରେ ଲିଖିତ ଜବାବ ଦେଇଛନ୍ତି । ଅନ୍ୟ କେତେକ ପ୍ରତିବାଦୀ ମଧ୍ୟ ସେମାନଙ୍କର ଲିଖିତ ଜବାବ ଦାଖଲ କରିଛନ୍ତି । ମକଦ୍ଦମାଟି ବର୍ତ୍ତମାନ ବିଚାରାଧୀନ ଅଛି; ସୁତରାଂ ସେ ସମ୍ପର୍କରେ କୌଣସି ମତାମତ ଦେବା ସମୀଚୀନ ହେବନାହିଁ ବୋଲି ମନେକରି ସେଥିରୁ କ୍ଷାନ୍ତ ହେଉଛି ।

## ଗଡ଼ଜାତ ମିଶ୍ରଣ ଓ ମୋର ବ୍ୟବସ୍ଥାପକ ଜୀବନ

ବିଧି-ନିର୍ଦ୍ଦେଶରେ ମୋ ଜୀବନର କେତୋଟି ବିଶେଷ ସ୍ମୃତି ଆମ ରାଜ୍ୟ ଏବଂ ଦେଶର ସମୂହସ୍ୱାର୍ଥ ସଙ୍ଗେ ଜଡ଼ିତ ହୋଇଛି । ଏଭଳି ଯୋଗାଯୋଗ ହୁଏତ କେବଳ ଆକସ୍ମିକ ଘଟଣା; ବିଧିର ନିର୍ଦ୍ଦେଶ ନୁହେଁ, ତଥାପି ଆଜି ମୁଁ ସେହିପରି ଭାବରେ ଅନୁଭବ କରୁଛି ।

ଆଜିର ଓଡ଼ିଶା ଭୂଖଣ୍ଡର ପ୍ରାୟ ଏକ ଲକ୍ଷ ଛପନ ହଜାର ବର୍ଗ କିଲୋମିଟର ଆୟତନରୁ ପ୍ରାୟ ଅଧେ ଥିଲା ପୂର୍ବତନ ଗଡ଼ଜାତ ରାଜ୍ୟ । ଓଡ଼ିଶାର ପ୍ରତି ପାଞ୍ଚ ଜଣରୁ ଦୁଇ ଜଣ ପୂର୍ବତନ ଗଡ଼ଜାତ ଅଧିବାସୀ । ଓଡ଼ିଶାର ୧୪୭ ଜଣ ବିଧାନସଭା ସଦସ୍ୟଙ୍କ ମଧ୍ୟରୁ ପ୍ରାୟ ଷାଠିଏ ଜଣ ପୂର୍ବତନ

ଗଡ଼ଜାତ ଅଞ୍ଚଳରୁ ନିର୍ବାଚିତ ହୋଇଛନ୍ତି । ଖଣି, ଜଙ୍ଗଲ ଓ ଜଳସମ୍ପଦର ଗଚ୍ଛିତଘରରୂପେ ଆଜି ଓଡ଼ିଶା ପରିଚିତ ହୋଇଛି ଗଡ଼ଜାତ ମିଶ୍ରଣ ପରେ । ତାହା ପରେ ଆମ ପ୍ରଦେଶରେ ଶିଳ୍ପ ବିସ୍ତାର ଓ ଶ୍ରମିକ କଲ୍ୟାଣର ମୂଳଦୁଆ ପଡ଼ିଛି । ଘଟଣାଚକ୍ରରେ ଗଡ଼ଜାତ ମିଶ୍ରଣକୁ ପୂର୍ଣ୍ଣାଙ୍ଗ କରିବା କାର୍ଯ୍ୟ ସହିତ ମୋତେ ନାନାଭାବରେ ଯତ୍‌ସାମାନ୍ୟ ସାମିଲ୍ ହେବାର ସୁଯୋଗ ମିଳିଛି । ପୁଣି ମୋତେ ଯୁବକ ବୟସରେ ବିଧାନସଭାରେ ପ୍ରବେଶ କରିବାର ସୁଯୋଗ ଦେଇଥିଲା ମଧ୍ୟ ଏହି ଐତିହାସିକ ଘଟଣା । ତା' ସାଙ୍ଗେ ସାଙ୍ଗେ ମୋତେ ସୁଯୋଗ ମିଳିଥିଲା ଓଡ଼ିଶାରେ ଜାତୀୟ ଟ୍ରେଡ୍ ୟୁନିୟନ କଂଗ୍ରେସର ଭିତ୍ତିଭୂମି ପ୍ରତିଷ୍ଠା କରି ଶ୍ରମିକକଲ୍ୟାଣ କାର୍ଯ୍ୟ କରିବାପାଇଁ ।

ଅବିସ୍ମରଣୀୟ ସ୍ୱର୍ଗତ ଗୋପାଳକୃଷ୍ଣ ଗୋଖଲେ କହିଥିଲେ, "ବଙ୍ଗବାସୀ ଯାହା ଆଜି ଚିନ୍ତା କରନ୍ତି, ଭାରତବର୍ଷ ତାହା କାଲି ଭାବେ" (What Bengal thinks today, India thinks tomorrow) । ଗୋଖଲେଙ୍କ ବଙ୍ଗଳାର ଭାଇଭଉଣୀମାନଙ୍କୁ ଯେଉଁ ଦୂରଦୃଷ୍ଟି ପାଇଁ ପ୍ରଶଂସା କରିଛନ୍ତି, ଓଡ଼ିଶାରେ ମଧ୍ୟ ସେଭଳି ଦୃଷ୍ଟାନ୍ତର ଅଭାବନାହିଁ, ବହୁକାଳବ୍ୟାପୀ ବିଚ୍ଛିନ୍ନ ଓଡ଼ିଶା ଏବଂ ଓଡ଼ିଶାବାସୀଙ୍କ ଅଶିକ୍ଷା ଅନ୍ଧକାର ସତ୍ତ୍ୱେ । ବିନୀତଭାବରେ ଏତକ ଉପସ୍ଥାପିତ କରୁଛି । ଉଦାହରଣସ୍ୱରୂପ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଯେ ସ୍ୱାଧୀନତା ପରବର୍ତ୍ତୀ କାଳରେ ଭାରତବର୍ଷର ଭୌଗୋଳିକ ଏକୀକରଣ ଓ ସଂହତିର ବିଭାଣି, ଏହା ସ୍ୱୀକାର୍ଯ୍ୟ; ମାତ୍ର ସେହି ଐତିହାସିକ ସଂହତି ପ୍ରତିଷ୍ଠାର ସୂତ୍ରପାତ ହୋଇଥିଲା ଏଇ ଓଡ଼ିଶାରେ । ଅନ୍ୟ ଏକ ଦୃଷ୍ଟାନ୍ତ ହେଉଛି, ଆମ ସମ୍ବିଧାନ ସଂଶୋଧନ କରି ମୁଖବନ୍ଧରେ 'ସମାଜବାଦୀ' ବିଶେଷଣ ଯୋଗ କରିବା । ୧୯୪୮ ମସିହା ଜୁଲାଇ ଅଧିବେଶନରେ ଓଡ଼ିଶା ବିଧାନସଭାରୁହିଁ ପ୍ରଥମେ ଏହି ସୁପାରିସ କରାଯାଇଥିଲା । ୧୯୭୬ ମସିହାରେ ବୟାଳିଶତମ ସାମ୍ବିଧାନିକ ସଂଶୋଧନଦ୍ୱାରା ପାର୍ଲିଆମେଣ୍ଟରେ ପ୍ରସ୍ତାବଟି ଗୃହୀତ ହୋଇ ୧୯୭୭ ମସିହା ଜାନୁୟାରୀ ତିନି ତାରିଖଠାରୁ ତାହା କାର୍ଯ୍ୟକାରୀ ହୋଇଥିଲା । ଭାରତୀୟ ଜାତୀୟ କଂଗ୍ରେସର ଆଦର୍ଶ ଓ ଯୋଜନାକୁ ସମାଜବାଦୀ ମୋଡ଼ ଦେବାରେ ଭୁବନେଶ୍ୱର କଂଗ୍ରେସ ଅଧିବେଶନ ଓ ତତ୍କାଳୀନ ଓଡ଼ିଶା କଂଗ୍ରେସ ନେତୃତ୍ୱର ପ୍ରଭାବ ମଧ୍ୟ କମ୍ ନୁହେଁ । ଭାରତୀୟ ଜାତୀୟ ପତାକାରେ ଚକ୍ର-ଚିହ୍ନ ଏବଂ ଜାତୀୟ ସରକାରୀ ମୋହର ଅଶୋକ ସ୍ତମ୍ଭର ସିଂହମୂର୍ତ୍ତି ଏଇ ଦୁଇ ପ୍ରତୀକ ଯେଉଁ ଜାତୀୟ ଭାବନାର ବାର୍ତ୍ତା ବହନ କରୁଛନ୍ତି, ତାହାର ଜନ୍ମଭୂମି ଏଇ ପ୍ରାଚୀନ ଓଡ଼ିଶା । ଚିନ୍ତାରାଜ୍ୟରେ ଅତୀତର ଏହି ଉତ୍କର୍ଷ ହେତୁ ଉତ୍କଳ ତା'ର ନିକଟ ଅତୀତର ଅଶିକ୍ଷା ଓ ଦାରିଦ୍ର୍ୟ ସତ୍ତ୍ୱେ ଅନେକ କ୍ଷେତ୍ରରେ ଚିନ୍ତା ଓ କାର୍ଯ୍ୟ କ୍ଷେତ୍ରରେ ଅଗ୍ରଣୀ ଭୂମିକା ଗ୍ରହଣ କରିଆସିଛି ।

ମହାମନୀଷୀ ଗୋଖଲେ ଭାରତବର୍ଷରେ ବଙ୍ଗବାସୀମାନଙ୍କ ଅସାଧାରଣ ଦୂରଦୃଷ୍ଟିପାଇଁ ସେମାନଙ୍କୁ ଯେପରି ପ୍ରଶଂସା କରିଥିଲେ, ଲୌହମାନବ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ପ୍ରାଚୀନ ତଥା ଆଧୁନିକ ଭାରତବର୍ଷକୁ ଓଡ଼ିଶାବାସୀଙ୍କ ମହାନ୍ ଅବଦାନପାଇଁ ସେହିପରି ସମ୍ମାନ ଦେଇ ଲେଖିଛନ୍ତି :

"Centuries ago it has been the proud privilege of Kalinga to arouse awakening in a great monarch who became in course of time not only a great and wise sovereign and suzerain, but also a great guide, friend and philosopher of his people. Few had dreamt and none had imagined that it would be from the same land that will start a revolutionary change which would achieve for India the same measure of unity and strength and security which India had obtained under the distinguished ruler. Asoka."

ସ୍ୱାଧୀନ ଭାରତର ଏକୀକରଣ ପୃଷ୍ଠଭୂମିରେ ଏହି ପ୍ରସଙ୍ଗର ଆଲୋଚନା କରୁଛି । ୧୯୪୭ ଅଗଷ୍ଟ ପନ୍ଦର ତାରିଖରେ ଭାରତ ସ୍ୱାଧୀନ ହେବା ସଙ୍ଗେ ସଙ୍ଗେ ଆମ ଦେଶ ଆଗରେ ଯେଉଁ ଉଦ୍‌ବେଗଜନକ ଅବସ୍ଥା ସବୁ ସୃଷ୍ଟିହୋଇଥିଲା, ପୂର୍ବତନ ଦେଶୀୟ ରାଜ୍ୟ ଶାସକଗୋଷ୍ଠୀର ଚକ୍ରାନ୍ତ

ତନ୍ମଧ୍ୟରୁ ଅନ୍ୟତମ । ଭାରତ ଭୂଖଣ୍ଡରୁ ବ୍ରିଟିଶ୍ ଶାସନ ଲୋପହେବାକ୍ଷଣି ଦେଶୀୟ ରାଜ୍ୟଗୁଡ଼ିକର ଶାସକମାନେ ଆପାତତଃ ନିଜନିଜକୁ ସ୍ୱାଧୀନ ଓ ସାର୍ବଭୌମ ମନେକଲେ । ଦେଶୀୟ ରାଜ୍ୟଗୁଡ଼ିକର ଭାଗ୍ୟ ନିୟନ୍ତ୍ରଣ କରିବାପାଇଁ ଭାରତର ଉପପ୍ରଧାନମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କର କଟକ ଆଗମନ ବାର୍ତ୍ତା ବିଶେଷ ଭାବରେ ପ୍ରଚାରିତ ହୋଇଥାଏ । ରାଜାମାନଙ୍କର ମାନମର୍ଯ୍ୟାଦା ଏବଂ ଆଧିପତ୍ୟକୁ ରାଜନୈତିକ ଦୃଷ୍ଟିକୋଣରୁ ପର୍ଯ୍ୟାୟକ୍ରମେ ବିଲୋପ କରିବାର ଉଦ୍ଦେଶ୍ୟ ଥିଲା ଓଡ଼ିଶା ପ୍ରଧାନମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବଙ୍କର । କିନ୍ତୁ ତାଙ୍କ କାର୍ଯ୍ୟପଦ୍ଧତିରେ, ଯଥାର୍ଥ ହେଉ ବା ଅଯଥା ହେଉ, ଗଡ଼ଜାତ ପ୍ରଜା ଆନ୍ଦୋଳନର ନେତାମାନଙ୍କ ମନରେ ସନ୍ଦେହ ଉପୁଜିଥିଲା । ଓଡ଼ିଶା ଗଡ଼ଜାତ ରାଜ୍ୟଗୁଡ଼ିକର ନେତା ଶ୍ରୀ ପବିତ୍ରମୋହନ ପ୍ରଧାନ ଚାହୁଁଥିଲେ ରାଜାମାନଙ୍କର ସମ୍ମାନ ପ୍ରତି ଭ୍ରୂକ୍ଷେପ ନକରି ପ୍ରଜାମଣ୍ଡଳର ନେତୃବର୍ଗଙ୍କ ସହିତ ପରାମର୍ଶ କରି ଓଡ଼ିଶାର ଗଡ଼ଜାତ ରାଜ୍ୟମାନଙ୍କୁ ଓଡ଼ିଶା ସହିତ ସଂପୂର୍ଣ୍ଣ ସାମିଲ କରିଦେବାପାଇଁ । ସଂପୂର୍ଣ୍ଣ ଭାବରେ ସାମିଲ କରିଦେବାର ଉଦ୍ଦେଶ୍ୟ ମଧ୍ୟ ଶ୍ରୀ ମହତାବଙ୍କର ଥିଲା; କିନ୍ତୁ କ୍ରମେ କ୍ରମେ ସେହି ଲକ୍ଷ୍ୟ ହାସଲ କରିବା ଥିଲା ତାଙ୍କର ଇଚ୍ଛା । ସେତେବେଳେ ଏଭଳି ଏକ ପ୍ରସ୍ତାବ ଉଠୁଥିଲା ଯେ ରାଜାମାନଙ୍କର ରାଜ୍ୟଗୁଡ଼ିକୁ ନେଇନେଲେ ମଧ୍ୟ ମୋଗଲବନ୍ଦୀରେ ଜମିଦାରମାନଙ୍କର ଯେପରି ଅଧିକାର ଓ ଆଧିପତ୍ୟ ଥିଲା, ସେହିଭଳି କିଛି ବ୍ୟବସ୍ଥା କରାଗଲେ ରାଜ୍ୟ ହରାଉଥିବା ରାଜାମାନଙ୍କର ତିକ୍ତତା ବହୁ ପରିମାଣରେ ଉପଶମ ହୋଇପାରନ୍ତା । କିନ୍ତୁ ଏ କଥାଟିକୁ ଶ୍ରୀ ପବିତ୍ରମୋହନ ପ୍ରଧାନ ପ୍ରମୁଖ ପ୍ରଜାମଣ୍ଡଳର ନେତାମାନେ ଆଦୌ ପସନ୍ଦ କରୁ ନ ଥିଲେ । ସେତେବେଳେ ଏହି ସମ୍ବନ୍ଧରେ ମହତାବବାବୁ ପବିତ୍ରବାବୁଙ୍କୁ ଡକାଇ ଦୁର୍ବ୍ୟବହାର କରିଥିଲେ ବୋଲି ମଧ୍ୟ ଖୁବ୍ ପ୍ରଚାର ହୋଇଥିଲା । ତେଣୁ ଯେତେବେଳେ ୧୯୪୭ ମସିହା ଡିସେମ୍ବର ମାସରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ମିଶ୍ରଣ ସଂକ୍ରାନ୍ତରେ ସିଦ୍ଧାନ୍ତ ନେବାପାଇଁ କଟକ ଆସିଲେ, ସେତେବେଳେ ଶ୍ରୀ ପବିତ୍ରମୋହନ ପ୍ରଧାନଙ୍କ ନେତୃତ୍ୱରେ ଗଡ଼ଜାତ ନେତାମାନେ ସର୍ଦ୍ଦାର ବଲ୍ଲଭଭାଇଙ୍କୁ ଦେଖାକରି ଏ ସମସ୍ତ ବିଷୟ ତାଙ୍କ ଆଗରେ ଉପସ୍ଥାପିତ କରିବାପାଇଁ ଚାହିଁଥିଲେ । ମାତ୍ର ଶ୍ରୀ ହରେକୃଷ୍ଣ ମହତାବ ଏହି ନେତାମାନଙ୍କ ବିଷୟରେ ସର୍ଦ୍ଦାର ପଟେଲଙ୍କ ଆଗରେ ନାନାପ୍ରକାର ପ୍ରତିକୂଳ ମତ ଦେଇଥା'ନ୍ତି ଏବଂ ତାଙ୍କ ମନରେ ଧାରଣା ଦେଇଥା'ନ୍ତି ଯେ ଗଡ଼ଜାତରେ ରାଜାମାନଙ୍କୁ ତଡ଼ି ପ୍ରତ୍ୟେକ ଗଡ଼ଜାତ ରାଜ୍ୟର କ୍ଷମତା ସେଠାକାର ପ୍ରଜାମଣ୍ଡଳଙ୍କ ହାତରେ ଅର୍ପଣ କରାଯାଉ ବୋଲି କୁଆଡ଼େ ଗଡ଼ଜାତ ନେତାମାନେ ଚାହୁଁଥିଲେ । କେତେକ ରାଜ୍ୟରେ ମଧ୍ୟ ତରବରିଆ ଭାବରେ ନିଜର ପ୍ରଜାମାନଙ୍କ ମଧ୍ୟରୁ ଜଣଜଣଙ୍କୁ ପ୍ରଧାନମନ୍ତ୍ରୀ କଲେ ବୋଲି କେତେକ ରାଜା ଘୋଷଣା କରିପକାଇଥିଲେ । ଏହିଭଳି ପରିସ୍ଥିତିରେ ପ୍ରଜାମଣ୍ଡଳର ନେତାମାନଙ୍କର ମନ୍ଦ ମତଲବ ଥିଲା ବୋଲି ସର୍ଦ୍ଦାର ପଟେଲଙ୍କ ମନରେ କେତେକ ଧାରଣା ଜନ୍ମାଇଦିଆଯିବାରୁ ସେ ଚୋରଙ୍କ ହାତରୁ କ୍ଷମତା କାଢ଼ିନେଇ ଡାକୁଙ୍କ ହାତରେ ଦେଇପାରିବେନାହିଁ ବୋଲି କହିଥିଲେ । ମୋର ମନେହୁଏ, ତାଙ୍କ ଆଗରେ ପ୍ରକୃତ କଥାଟା କୁହାଯାଇନଥିଲା । ମୁଁ ଏ କଥା ଅନୁମାନ କରିବାର କିଛି କାରଣ ଅଛି । ଯେଉଁ ଦିନ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଓଡ଼ିଶାର ରାଜା ମହାରାଜାମାନଙ୍କର ଭାଗ୍ୟ ନିଷ୍ପତ୍ତି ସମ୍ବନ୍ଧରେ ଓଡ଼ିଶାକୁ ଆସନ୍ତି, ସେଦିନ ତାଙ୍କୁ ସ୍ୱାଗତ କରିବାପାଇଁ ବିରାଟ ଆୟୋଜନ କରାଯାଇଥିଲା । ମୋର ନିର୍ଦ୍ଦିଷ୍ଟ ଭାବରେ ମନେଅଛି, ସେ ଆୟୋଜନରେ ଗଡ଼ଜାତର ପ୍ରଜାମାନେ କୌଣସି କାହିଁକି ସହଯୋଗ କରିନଥିଲେ । ସର୍ଦ୍ଦାର ପଟେଲଙ୍କୁ କଟକ ସହର ରାସ୍ତାରେ ଅଭ୍ୟର୍ଥନା କରିବା ପାଇଁ ଯେଉଁ ଆୟୋଜନ କରାହୋଇଥିଲା, ତାହାର ପ୍ରସ୍ତୁତି ବିହାରୀବାଗ ପ୍ରଜାତନ୍ତ୍ର ଅଫିସ୍ ପ୍ରାଙ୍ଗଣରେ ହୋଇଥିଲା । ଆମେ ସମସ୍ତେ ପଟେଲ ଆସିବା ପୂର୍ବଦିନ ରାତି ଅନିଦ୍ରାହୋଇ ସବୁ ଗଡ଼ଜାତ ପ୍ରଜାମାନଙ୍କ ତରଫରୁ ଶହ ଶହ ସଂଖ୍ୟାରେ ପ୍ରଜ୍ଞାପନ ପତ୍ର ପ୍ରସ୍ତୁତ କରିଥିଲୁ । ସେତେବେଳେ କଟକ ସହରରେ ସବୁ ଗଡ଼ଜାତର ଲୋକ ଆସି ଏକତ୍ରିତ ହୋଇଥିଲେ ମଧ୍ୟ ସେମାନଙ୍କର ଉପସ୍ଥିତି ପ୍ରଜାତନ୍ତ୍ର ପ୍ରାଙ୍ଗଣରେ ଅନୁଭୂତ

ହୋଇନଥିଲା । ପରଦିନ ଶୋଭାଯାତ୍ରାରେ ସେହି ଶହ ଶହ ପ୍ଲାକାର୍ଡ ଧରି ଚାଲିବାପାଇଁ ମାଲଗୋଦାମରୁ ବହୁତ ଶ୍ରମିକ, ରେଭେନ୍‌ସା କଲେଜରୁ ବହୁତ ଛାତ୍ର ଏବଂ ଚୌଧୁରୀବଜାର ପ୍ରଭୃତି ସ୍ଥାନମାନଙ୍କରୁ ବହୁତ ଯୁବକଙ୍କୁ ଏକତ୍ରିତ କରି ଦାୟିତ୍ୱ ଦିଆଯାଇଥିଲା । ଗଡ଼ଜାତ ପ୍ରଜା ବୋଲି ପ୍ରକୃତରେ ସେଠାରେ ବିଶେଷ କେହି ନଥିଲେ । କେବଳ ବାଲେଶ୍ୱର ନୀଳଗିରି ପ୍ରଜାମଣ୍ଡଳରୁ ଆସିଥିବା କେତେକ ଲୋକ ଉକ୍ତ ଶୋଭାଯାତ୍ରାରେ ଆମ ସହିତ ଥିଲେ । ସେ କଥା ଯାହାହେଉ, ଶେଷରେ ଗଡ଼ଜାତ ମିଶ୍ରଣ ବିଷୟରେ ଆମ୍ଭମାନଙ୍କର ମୂଳ ଉଦ୍ଦେଶ୍ୟ ସାଧିତ ହୋଇଥିଲା, କେବଳ ଆମ୍ଭମାନଙ୍କର ବ୍ୟବହାର ହେତୁ ପରିସ୍ଥିତିରେ ଯାହା ସାମାନ୍ୟ ବିଭ୍ରାଟ ସୃଷ୍ଟିହୋଇଥିଲା ।

ଏହି ସଂକ୍ରାନ୍ତରେ ଆଉ ଗୋଟିଏ କଥା ମୋର ମନେପଡ଼େ । ୧୯୪୮ ମସିହା ଜାନୁୟାରୀ ପହିଲା ତାରିଖରେ ଖାସ୍ ଓଡ଼ିଶା ସହିତ ଗଡ଼ଜାତ ରାଜ୍ୟଗୁଡ଼ିକର ମିଶ୍ରଣ ହୋଇଯାଇଥିଲେ ମଧ ମୟୂରଭଞ୍ଜ ଅଲଗା ହୋଇ ରହିଗଲା । ସେହି ସମୟରେ ଓଡ଼ିଶା ସରକାରଙ୍କ ପ୍ରଚାର ବିଭାଗର ମୁଖ୍ୟ ଶ୍ରୀ ସୁଧୀର ଘୋଷଙ୍କ ସହିତ ମୟୂରଭଞ୍ଜ ରାଜଧାନୀ ବାରିପଦାକୁ ମୁଁ ଯାଇଥାଏ । ସେଠାରେ ସେତେବେଳକୁ ଦାୟିତ୍ୱମୂଳକ ଲୋକପ୍ରତିନିଧି ଶାସନ ପ୍ରଚଳିତ ଥାଏ । ଶ୍ରୀ ଶରତ୍ ଚନ୍ଦ୍ର ଦାସ ଥା'ନ୍ତି ସେଠାକାର ପ୍ରଧାନମନ୍ତ୍ରୀ । ତାଙ୍କ ସହିତ ମୁଁ ଦେଖାକରିଥିଲି । ଓଡ଼ିଶାର ସବୁ ଗଡ଼ଜାତ ଯେତେବେଳେ ଓଡ଼ିଶା ସହିତ ମିଶିଗଲେଣି, ମୟୂରଭଞ୍ଜ କାହିଁକି ବିଳମ୍ୱ କରୁଛି ବୋଲି ପଚାରିବାରୁ ସେ ମୋତେ ବିଳମ୍ୱର କାରଣ ସମ୍ବନ୍ଧରେ କେତେକ କଥା କହିଥିଲେ । ସେ କହିଥିଲେ ଯେ, ଶ୍ରୀ ହରେକୃଷ୍ଣ ମହତାବଙ୍କର ଉଦ୍ଧତ ଆଚରଣ ଓଡ଼ିଶା ସହିତ ମୟୂରଭଞ୍ଜ ମିଶିବାର ପ୍ରତିବନ୍ଧକ ହୋଇଛି । କେତେକ ବିଷୟରେ ପ୍ରଧାନମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବଙ୍କ ସହିତ କଥାବାର୍ତ୍ତା କଲାବେଳେ ଶ୍ରୀ ମହତାବଙ୍କର ବ୍ୟବହାରରେ ସେ ବଡ଼ କ୍ଷୁଣ୍ଣ ହୋଇଥିଲେ ବୋଲି ମତେ କହିଥିଲେ । ମୁଁ ସେତେବେଳେ ତାଙ୍କୁ ନିବେଦନ କରିଥିଲି ଯେ ଜଣେ ବ୍ୟକ୍ତିବିଶେଷଙ୍କ ବ୍ୟବହାର ହେତୁ ରାଜ୍ୟର ଭବିଷ୍ୟତ ସମ୍ବନ୍ଧରେ ଆମ୍ଭମାନଙ୍କର ବିଚାରଧାରା ସଂକୀର୍ଣ୍ଣ ହେବା ଉଚିତନୁହେଁ । ସେ ମୋର ଏହି ଯୁକ୍ତି ଅତି ମନୋଯୋଗ ସହକାରେ ଶୁଣିଥିଲେ । ସେ ଯାହାହେଉ, ଶେଷରେ ୧୯୪୯ ମସିହା ଜାନୁୟାରୀ ପହିଲା ତାରିଖରେ ଓଡ଼ିଶା ସହିତ ମୟୂରଭଞ୍ଜର ମିଶ୍ରଣ ହୋଇଥିଲା ।

ମୟୂରଭଞ୍ଜର ଶ୍ରୀ ଶରତଚନ୍ଦ୍ର ଦାସ ଜଣେ ସ୍ୱାଧୀନତାସଂଗ୍ରାମୀ ଥିଲେ । ଦେଶୀୟ ରାଜ୍ୟମାନଙ୍କରେ ଆନ୍ଦୋଳନ ଆରମ୍ଭ ହେବା ପୂର୍ବରୁ ବାଲେଶ୍ୱର ଜିଲ୍ଲାକୁ ଆସି ସେ ନାନାପ୍ରକାର କଂଗ୍ରେସ କାର୍ଯ୍ୟରେ ସହଯୋଗ କରୁଥିଲେ । ବାରିପଦାରେ ତାଙ୍କ ସରକାରୀ ବାସଭବନରେ ତାଙ୍କ ସହିତ କଥାବାର୍ତ୍ତା କରିବା ପରେ ମୋର ଧାରଣା ହୋଇଥିଲା ଯେ ସେ ଜଣେ ଅତ୍ୟନ୍ତ ଗଣତନ୍ତ୍ରପନ୍ଥୀ ସମାଜସେବୀ ବ୍ୟକ୍ତି । ଜଣେ ଗାନ୍ଧୀବାଦୀ ନେତା ଯେପରି ଭାବରେ ପରିଧାନ ବ୍ୟବହାର କରନ୍ତି, ତାଙ୍କ ପରିଧାନ ଠିକ୍ ସେହିପରି ଥିଲା । ପ୍ରଜାମାନଙ୍କ ଭିତରେ ସେ ଏଡ଼େ ଲୋକପ୍ରିୟ ଥିଲେ ଯେ ଅନେକେ ତାଙ୍କୁ ଶ୍ରଦ୍ଧାରେ 'ମୟୂରଭଞ୍ଜର ଗାନ୍ଧୀ' ବୋଲି କହୁଥିଲେ । ମୋର ଧାରଣା ହେଲା ଯେ ତାଙ୍କ ସହିତ ଭଲ ବ୍ୟବହାର କରିଥିଲେ ହୁଏତ ୧୯୪୮ ମସିହା ଜାନୁୟାରୀ ପହିଲା ତାରିଖରେହିଁ ଓଡ଼ିଶା ସହିତ ମୟୂରଭଞ୍ଜର ମିଶ୍ରଣ ହୋଇଯାଇଥା'ନ୍ତା ଏବଂ ତଦ୍ୱାରା ଓଡ଼ିଶା ସହିତ ଷଢ଼େଇକଳା ଓ ଖରସୂଆଁ ମିଶ୍ରଣ ପଥରେ ଯେଉଁ ପ୍ରତିବନ୍ଧକ ସୃଷ୍ଟିହେଲା, ତାକୁ ଆମେ ଏଡ଼ାଇଦେଇ ପାରିଥା'ନ୍ତେ । ଶ୍ରୀ ଶରତ୍‌ଚନ୍ଦ୍ର ଦାସ ଏ କଥା ଉପଲବ୍ଧି କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ନେତୃବର୍ଗଙ୍କୁ ଦୋଷାରୋପ କରିଥିଲେ । ଏଠାରେ ସ୍ମରଣ କରାଇଦେବାର କଥା ଯେ ମୟୂରଭଞ୍ଜ ଠିକ୍ ସମୟରେ ମିଶିନଥିବାରୁ ଷଢ଼େଇକଳା ଓ ଖରସୁଆଁ ଓଡ଼ିଶା ପ୍ରଦେଶର ଭୌଗୋଳିକ ସୀମା ବାହାରେ ଏକ ଗାପ୍ ପରି ରହିଗଲା ଏବଂ ଆମର ବିରୋଧୀ ପକ୍ଷମାନେ ଏହି ପରିସ୍ଥିତିର ପୂରା ସୁବିଧା ନେଇଥିଲେ ।

ମୟୂରଭଞ୍ଜର ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ଶରତଚନ୍ଦ୍ର ଦାସ ଆଉ ଇହଧାମରେ ନାହାନ୍ତି । ତାଙ୍କ ପରିବାର ସମ୍ବନ୍ଧରେ ମୋର ଗୋଟିଏ କଥା ମନେପଡୁଛି । ଶ୍ରୀ ଦାସଙ୍କର ଏକମାତ୍ର ପୁତ୍ର ଥିଲେ ଶ୍ରୀ ଉମେଶ ଚନ୍ଦ୍ର ଦାସ । ମୁଁ ଯେତେବେଳେ ରାଜ୍ୟର ମନ୍ତ୍ରିମଣ୍ଡଳରେ ଯୋଗଦେଲି ମୋର ମୟୂରଭଞ୍ଜରେ ରହଣି ସମୟରେ ସ୍ୱର୍ଗତ ଶରତ ଦାସଙ୍କ ସହଧର୍ମିଣୀ ଇଚ୍ଛାପ୍ରକାଶ କରିଥିଲେ ମୋତେ ସାର୍କିଟ୍ ହାଉସ୍‌ରେ ଦେଖାକରିବାପାଇଁ । ମୁଁ ତାଙ୍କୁ ସାର୍କିଟ ହାଉସ୍‌କୁ ଆସିବାକୁ ମନାକଲି ଓ ତାଙ୍କ ଘରକୁ ଯାଇ ସାକ୍ଷାତ୍ କରିଥିଲି । ଏହି ସମ୍ମାନ ଓ ମର୍ଯ୍ୟାଦା ତାଙ୍କର ପ୍ରାପ୍ୟ ବୋଲି ମୋର ହୃଦ୍‌ବୋଧ ହୋଇଥିଲା । ମୟୂରଭଞ୍ଜ ଭିତରେ ତାଙ୍କ ପୁଅର ଚାକିରି ବନ୍ଦୋବସ୍ତ କରିଦେବାପାଇଁ ସେ ଏକ ସାମାନ୍ୟ ଅନୁରୋଧ କରିଥିଲେ । ମୁଁ ତାହା ମୋର ଏକ କର୍ତ୍ତବ୍ୟରୂପେ ପାଳନ କରିଥିଲି । ପୁଅ ମୟୂରଭଞ୍ଜ ବାହାରେ ଚାକିରି କଲେ ସେ ଚଳିପାରିବେନାହିଁ ବୋଲି ଶ୍ରୀମତୀ ଦାସ ମୋତେ କହିଥିଲେ । ମୁଁ ତାଙ୍କର ପୁଅକୁ ଯୋଗାଣ ବିଭାଗର ଇନ୍‌ସ୍‌ପେକ୍ଟର ଭାବରେ ନିଯୁକ୍ତି ଦେଇଥିଲି ଏବଂ ସେହିଠାରେ ସେ ସବୁଦିନେ ରହିବାପାଇଁ ନିର୍ଦ୍ଦେଶ ମଧ ଦେଇଥିଲି । ସେ ବର୍ତ୍ତମାନ ଯୋଗାଣ ବିଭାଗରେ ସିଭିଲ୍ ସପ୍ଲାଇ ଅଫିସରରୂପେ ମୟୂରଭଞ୍ଜରେ ଅଛନ୍ତି ।

## ନୀଳଗିରି ଦଖଲ

ମୁଁ ଏହିଠାରେ କହିରଖିବାକୁ ଚାହେଁ ଯେ ୧୯୪୬ ମସିହା ନିର୍ବାଚନ ପରେ ଶ୍ରୀ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଗଢ଼ାଯାଇଥିବା ମନ୍ତ୍ରିମଣ୍ଡଳରେ ସର୍ବଶ୍ରୀ ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ପଣ୍ଡିତ ଲିଙ୍ଗରାଜ ମିଶ୍ର ଓ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ଭଳି ଅଭିଜ୍ଞ ଓ ଦକ୍ଷ ବ୍ୟକ୍ତିମାନେ ଯୋଗଦେଇଥିଲେ । କୃଷି ଓ ଶିଳ୍ପ ବିକାଶଦ୍ୱାରା ଆମ ପ୍ରଦେଶର ଅଭ୍ୟୁଦୟପାଇଁ ହୀରାକୁଦ ନଦୀବନ୍ଧ ଯୋଜନାଭଳି ଅନେକ ପରିକଳ୍ପନା ଏହି ମନ୍ତ୍ରିମଣ୍ଡଳ ସମୟରେ ଆରମ୍ଭ ହୋଇଥିଲା । ଗଡ଼ଜାତରେ ପ୍ରଜାମଣ୍ଡଳ ଆନ୍ଦୋଳନ ଏବଂ ଖାସ୍ ଓଡ଼ିଶା ସଙ୍ଗେ ଗଡ଼ଜାତଗୁଡ଼ିକର ମିଶ୍ରଣ ସମ୍ପର୍କୀୟ ସମସ୍ୟା ସହିତ ଶ୍ରୀ ହରେକୃଷ୍ଣ ମହତାବ ଓ ଶ୍ରୀ ନବକୃଷ୍ଣ ଚୌଧୁରୀ ବିଶେଷ ଜଡ଼ିତ ଥିବାରୁ ପ୍ରଦେଶର ଅନ୍ୟାନ୍ୟ କାର୍ଯ୍ୟ ଛଡ଼ା ଗଡ଼ଜାତ ସମସ୍ୟାରେ ଏହି ଦୁଇ ନେତା ବିଶେଷ ଭାବରେ ମନୋନିବେଶ କରିଥିଲେ । କହିବା ବାହୁଲ୍ୟ ଯେ ଶ୍ରୀ ନବକୃଷ୍ଣ ଚୌଧୁରୀ ଗଡ଼ଜାତ ପ୍ରଜାଆନ୍ଦୋଳନରେ ପ୍ରତ୍ୟକ୍ଷଭାବରେ ଯୋଗଦେଇଥିଲେ ଏବଂ ସେଥିପାଇଁ ଏହା ପୂର୍ବରୁ ଥରେ ବ୍ୟବସ୍ଥାସଭାର ସଭ୍ୟ ପଦରୁ ଇସ୍ତଫା ଦେବାକୁ ସେ ପଶ୍ଚାତ୍‌ପଦ ହୋଇନଥିଲେ । ଶ୍ରୀ ହରେକୃଷ୍ଣ ମହତାବଙ୍କର ଗଡ଼ଜାତ ରାଜାମାନଙ୍କର ସ୍ଥିତି, ଉତ୍ପତ୍ତି, ସନନ୍ଦ, ଚୁକ୍ତି ସମ୍ବନ୍ଧରେ ବିଶେଷ ଜ୍ଞାନ ଥିଲା । ଏହି ଦୁଇ ନେତାଙ୍କର ମିଳିତ ଉଦ୍ୟମ ଏବଂ ଉତ୍ସାହରେ ଓଡ଼ିଶା ସହିତ ଗଡ଼ଜାତ ରାଜ୍ୟଗୁଡ଼ିକର ମିଶ୍ରଣ ସମ୍ଭବ ହୋଇଥିଲା । ଅନ୍ୟାନ୍ୟ କାର୍ଯ୍ୟ ଅପେକ୍ଷା ଏହି କାର୍ଯ୍ୟଟି ଉପରେ ସେତେବେଳେ ଆମ ପ୍ରଦେଶର ମନ୍ତ୍ରିମଣ୍ଡଳ ଅଧିକ ଗୁରୁତ୍ୱ ଆରୋପ କରୁଥାଆନ୍ତି ଏବଂ ସେ ବିଷୟରେ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କର ଚିନ୍ତାଧାରା ଓ ଉତ୍ସାହ ଶ୍ରୀ ମହତାବଙ୍କ କର୍ମଦକ୍ଷତାକୁ ଆହୁରି ପ୍ରଖର କରିଥିଲା । ଏହି ପରିପ୍ରେକ୍ଷୀରେ ନିଶ୍ଚୟ ସ୍ୱୀକାର କରିବାକୁ ହେବ ଯେ ସମଗ୍ର ଭାରତବର୍ଷରେ ରାଜୁଡ଼ା ଶାସନର ବିଲୟ ଓ ପ୍ରଦେଶମାନଙ୍କ ସହିତ ଦେଶୀୟ ରାଜ୍ୟ ମିଶ୍ରଣର ସୂତ୍ରପାତ ଓଡ଼ିଶାରୁହିଁ ହୋଇଥିଲା । ନୀଳଗିରି ରାଜ୍ୟରେ ଆଭ୍ୟନ୍ତରୀଣ ଏକ ଗଣ୍ଡଗୋଳ ଖବରର ସୁବିଧା ନେଇ ଓଡ଼ିଶା ପୁଲିସ ଫୌଜ ଯେଉଁଦିନ କଟକରୁ ବାଲେଶ୍ୱର ଯାଇ ସେହି ରାଜ୍ୟ ଭିତରେ ପ୍ରବେଶକଲେ, ସେ ଦିନର ଘଟଣା ମୋର ମନେଅଛି । ସେଦିନ ୧୯୪୭ ନଭେମ୍ବର ମାସ ଚଉଦ ତାରିଖ । ମହତାବବାବୁ ଦିଲ୍ଲୀରେ ଥାଆନ୍ତି; କିନ୍ତୁ ନବବାବୁଙ୍କ ସହିତ ଟେଲିଫୋନ୍‌ରେ ଘନ ଘନ ପରାମର୍ଶ କରୁଥାଆନ୍ତି । ଏହିସବୁ ଆଲୋଚନା ପ୍ରାୟ ପ୍ରଜାତନ୍ତ୍ର ଅଫିସ୍‌ରେ ହେଉଥାଏ । ମୁଁ ମଧ ସେସବୁ ଆଲୋଚନାରେ ଯୋଗଦେଉଥାଏ । ଶ୍ରୀ ଚିନ୍ତାମଣି ମିଶ୍ର ସେତେବେଳେ

ଥାଆନ୍ତି ରାଜ୍ୟର ପ୍ରଚାର ଓ ଗ୍ରାମମଙ୍ଗଳ ବିଭାଗର ସେକ୍ରେଟାରୀ । ଓଡ଼ିଶା ପୁଲିସ ବାଲେଶ୍ୱର ଜିଲ୍ଲା କଲେକ୍ଟରଙ୍କ ସହିତ ନୀଳଗିରି ରାଜ୍ୟ ଭିତରକୁ ଯାଇ ସବୁ କଥା ଆୟତ୍ତ କରିନେଇ ସାରିବା ପରେ ନୀଳଗିରି ରାଜା କି ବିବୃତି ଦେବେ ତାହା ନବକୃଷ୍ଣ ଚୌଧୁରୀଙ୍କ ନିର୍ଦ୍ଦେଶରେ ଚିନ୍ତାମଣି ମିଶ୍ର ଚିଠା କରିଥିଲେ । ସ୍ୱଇଚ୍ଛାରେ ତାଙ୍କ ରାଜ୍ୟର ହିତପାଇଁ ରାଜା ଓଡ଼ିଶା ସରକାରଙ୍କ ହାତରେ ସର୍ବତୋଭାବେ ନୀଳଗିରି ରାଜ୍ୟର ଶାସନ ଦାୟିତ୍ୱ ଅର୍ପଣ କରୁଛନ୍ତି ବୋଲି ସେହି ଘୋଷଣାରେ ଲେଖାହୋଇଥିଲା । ଚିଠା ଘୋଷଣାଟି ଛପାହୋଇଗଲା । ନୀଳଗିରି ରାଜା କିନ୍ତୁ ସହଜରେ ସେଥିରେ ସ୍ୱାକ୍ଷର କରୁନଥିଲେ । ରାଜ୍ୟ ମଧ୍ୟରେ ରାଜାଙ୍କ ପାଖରେ ଥିବା ପୂର୍ବଗଡ଼ଜାତ ୟୁନିୟନ ପୁଲିସ୍ ଏବଂ ଓଡ଼ିଶା ମିଲଟାରୀ ପୁଲିସ୍‌ଙ୍କ ମଧ୍ୟରେ ସଂଘର୍ଷ ହେବାର ଆଶଙ୍କା ଥାଏ । ଓଡ଼ିଶା ସରକାରଙ୍କ ପକ୍ଷରୁ କମିଶନର ଶ୍ରୀ ନୀଳମଣି ସେନାପତି ନୀଳଗିରି ରାଜ୍ୟ ଦଖଲ କରାଯିବା ପାଇଁ କ୍ରିୟାନୁଷ୍ଠାନ ଦାୟିତ୍ୱରେ ଥିଲେ । ଓଡ଼ିଶାର ପୁଲିସ୍ ଇନିସ୍‌ପେକ୍ଟର ଜେନେରାଲ୍ ଥାଆନ୍ତି ମିଷ୍ଟର ପିୟାରମେନ୍ ସାହେବ । ସେ ମଧ୍ୟ ବାଲେଶ୍ୱରରେ ଶ୍ରୀ ସେନାପତିଙ୍କ ସହିତ ଉପସ୍ଥିତ ଥିଲେ । ପରିସ୍ଥିତି ଅତି ଉତ୍ତେଜନାପୂର୍ଣ୍ଣ ଥାଏ । ମୋ ଜାଣିବାରେ ବାଲେଶ୍ୱରର ଜଣେ ବିଶିଷ୍ଟ ସାମ୍ବାଦିକ ଶ୍ରୀ ଜୟନ୍ତ ଘୋଷ ଏହି ସ୍ମରଣୀୟ ଘଟଣାରେ ଉଲ୍ଲେଖଯୋଗ୍ୟ ଓ ପ୍ରଶଂସନୀୟ ଭୂମିକା ଗ୍ରହଣ କରିଥିଲେ । ତାଙ୍କର ନୀଳଗିରି ରାଜାଙ୍କ ସହିତ ବନ୍ଧୁତା ଥିଲା । ରାଜା ଏବଂ ଓଡ଼ିଶା ସରକାରଙ୍କ ପ୍ରତିନିଧିଙ୍କ ଭିତରେ ମଧ୍ୟସ୍ଥତା କରି ପରସ୍ପର ବୁଝାମଣା ସୃଷ୍ଟିକରିବାରେ ଶ୍ରୀ ଘୋଷ ବହୁତ ସାହାଯ୍ୟ କରିଥିଲେ । ରାଜା କୁଆଡ଼େ ଲଢ଼େଇ କରିବାପାଇଁ ବିଚାରୁଥିଲେ । ମାତ୍ର ତାହା କେଡ଼େ ନିର୍ବୋଧତା ହେବ, ସେ କଥା ବନ୍ଧୁଭାବରେ ଶ୍ରୀ ଜୟନ୍ତ ଘୋଷ ରାଜାଙ୍କୁ ବୁଝାଇଦେଇପାରିଥିଲେ । ଶେଷରେ ବିନା ବାଧାରେ ଓଡ଼ିଶାପୁଲିସ୍ ନୀଳଗିରି ରାଜ୍ୟ ଭିତରକୁ ପ୍ରବେଶ କରିଥିଲେ ଏବଂ ରାଜା ଶାସନ ଦାୟିତ୍ୱ ଓଡ଼ିଶା ସରକାରଙ୍କ ହାତରେ ୧୯୪୭ ମସିହା ନଭେମ୍ବର ଚଉଦ ତାରିଖରେ ଅର୍ପଣ କରିବାର ଘୋଷଣାପତ୍ରରେ ସ୍ୱାକ୍ଷର କରିଥିଲେ । ଶ୍ରୀ ଜୟନ୍ତ ଘୋଷଙ୍କ କାର୍ଯ୍ୟକୁ ରାଜ୍ୟ ସରକାର ସ୍ୱୀକାର କରି ତାଙ୍କୁ ପ୍ରଶଂସାପତ୍ର ଦେଇଥିଲେ ।

## ମହତାବଙ୍କ ଦୃଢ଼ ଭୂମିକା

ଏହାପରେ ଓଡ଼ିଶାର ସମଗ୍ର ଦେଶୀୟ ରାଜ୍ୟ ଅଞ୍ଚଳକୁ ଓଡ଼ିଶା ପ୍ରଦେଶ ସହିତ ମିଶାଇବା ଦିଗରେ ଉଦ୍ୟମ ଚାଲିଲା । ୧୯୪୭ ମସିହା ଡିସେମ୍ବର ତେର ତାରିଖ ଦିନ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଆସି କଟକରେ ପହଞ୍ଚିଲେ । ତାଙ୍କୁ କିପରି ଭାବରେ ସମ୍ବର୍ଦ୍ଧନା ଦିଆଯାଇଥିଲା, ସେ କଥା ପୂର୍ବରୁ କୁହାଯାଇଛି । ସର୍ଦ୍ଦାରଙ୍କ ସହିତ ଆସିଥିଲେ ତାଙ୍କ ସେକ୍ରେଟେରୀ ଶ୍ରୀ ଭି.ପି.ମେନନ୍ । ଦୁହେଁଯାକ ମିଶ୍ରଣ ସମ୍ପର୍କରେ ରାଜା-ମହାରାଜାଙ୍କ ସହିତ କଥାବାର୍ତ୍ତା ଚଳାଇଥିଲେ । ପ୍ରଥମରୁ ରାଜା-ମହାରାଜାମାନେ ସେମାନଙ୍କର କ୍ଷମତା ସମର୍ପଣ କରିଦେଇ ପ୍ରଦେଶ ସହିତ ମିଶିବାପାଇଁ ଚୁକ୍ତି ସ୍ୱାକ୍ଷର କରିବା ନିମନ୍ତେ ଅତ୍ୟଧିକ କୁଣ୍ଠିତ ଥିଲେ । ଶ୍ରୀ ପବିତ୍ରମୋହନ ପ୍ରଧାନ ପ୍ରଭୃତି ପ୍ରଜାମଣ୍ଡଳ ନେତାମାନଙ୍କର ରାଜା-ମହାରାଜାମାନଙ୍କ ବିରୁଦ୍ଧରେ ଯେଉଁ ତୀବ୍ର ମନୋଭାବ ଜଣାଥାଏ, ତାହା ମଧ୍ୟ ଏହି ସମୟରେ ସମସ୍ୟାର ସମାଧାନ ପାଇଁ ସହାୟକ ହୋଇଥିଲା । ସର୍ଦ୍ଦାର ପଟେଲ ପରିଷ୍କାରଭାବରେ ରାଜାମାନଙ୍କୁ କହିଦେଇଥିଲେ ଯେ କେନ୍ଦ୍ର ସରକାରଙ୍କ ପରାମର୍ଶ ଅନୁସାରେ ସେମାନେ ଯଦି ବର୍ତ୍ତମାନ କାର୍ଯ୍ୟ ନକରନ୍ତି ଏବଂ ତା'ପରେ ପ୍ରଜାମଣ୍ଡଳ ଯଦି ଗୁରୁତର ଅଶାନ୍ତି ସୃଷ୍ଟି କରନ୍ତି, ସେ ଅବସ୍ଥା ଆୟତ୍ତ କରିବାପାଇଁ କେନ୍ଦ୍ର ସରକାରଙ୍କଠାରୁ କୌଣସି ସାହାଯ୍ୟ ଆଶା କରିବା ରାଜାମାନଙ୍କ ପକ୍ଷେ ଉଚିତ ହେବନାହିଁ । ଶେଷରେ କେବଳ ମୟୂରଭଞ୍ଜ ରାଜ୍ୟକୁ ଛାଡ଼ିଦେଇ ପଚିଶଟି ପୂର୍ବତନ ଗଡ଼ଜାତ ରାଜ୍ୟ ୧୯୪୮ ମସିହା ଜାନୁଆରୀ ମାସ ପହିଲା ତାରିଖଠାରୁ ଓଡ଼ିଶା ସହିତ ମିଶ୍ରଣ ଚୁକ୍ତିପତ୍ରରେ ସ୍ୱାକ୍ଷର କରିଥିଲେ । ଐତିହାସିକ ବାରବାଟୀ କିଲ୍ଲା ପଡ଼ିଆରେ ଏହି

ଐତିହାସିକ କାର୍ଯ୍ୟ ସମ୍ପାଦନ କରିବାପାଇଁ ଗୋଟିଏ ସ୍ୱତନ୍ତ୍ର ମଣ୍ଡପ ତିଆରିହୋଇଥିଲା । ଅନ୍ୟମାନଙ୍କ ଭିତରେ ମୁଁ ସେଠାରେ ଉପସ୍ଥିତ ଥିଲି । ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଦେଶର ପରିସ୍ଥିତି ଓ ଗଡ଼ଜାତ ରାଜ୍ୟମାନଙ୍କର ଭବିଷ୍ୟତ ବିଷୟରେ ଭାଷଣ ଦେଇଥିଲେ । ସ୍ୱାଧୀନ ଭାରତରେ ରାଜନୈତିକ ଐକ୍ୟ ପ୍ରତିଷ୍ଠାପାଇଁ ଏଭଳି ଐତିହାସିକ ମିଶ୍ରଣ ଓଡ଼ିଶା ରାଜ୍ୟରୁ ଆରମ୍ଭ ହୋଇପାରିଥିବାରୁ ଓଡ଼ିଶାବାସୀଙ୍କୁ ସେ ଅଭିନନ୍ଦନ ଜଣାଇଥିଲେ । ଯେତେ ଭାଷଣ ଶୁଣିଲେ ମଧ କେତେଜଣ ରାଜା ରାଜ୍ୟ ହରାଇ ଅତ୍ୟନ୍ତ ବିଚଳିତ ହୋଇପଡ଼ିଥିଲେ । ନୂଆ ଅବସ୍ଥା ସହିତ ଖାପଖୁଆଇ ଚଳିବା ସେମାନଙ୍କ ପକ୍ଷେ ଅସମ୍ଭବ ହୋଇପଡ଼ିଥିଲା । ଶୁଣାଯାଇଥିଲା ଯେ ଜଣେ ମହାରାଜା କ୍ଷମତା ହସ୍ତାନ୍ତର ଚୁକ୍ତିରେ ସ୍ୱାକ୍ଷର କରିଦେଇ ଟ୍ରେନ୍‌ରେ ଗଲାବେଳେ ଗାଡ଼ିରୁ ଡିଆଁମାରି ଆତ୍ମହତ୍ୟା ଉଦ୍ୟମ କରିବା ସମୟରେ ଅନ୍ୟମାନେ ତାଙ୍କୁ ସେଥିରୁ ନିବର୍ତ୍ତାଇଥିଲେ ।

ପ୍ରକୃତରେ ଭାରତବର୍ଷରେ ପ୍ରଦେଶମାନଙ୍କ ସହିତ ଦେଶୀୟ ରାଜ୍ୟମାନଙ୍କର ମିଶ୍ରଣ ସମ୍ବନ୍ଧରେ ଆଗରୁ କିଛି ବିଧିବଦ୍ଧ ଯୋଜନା ନଥିଲା । ଓଡ଼ିଶାରୁହିଁ ତାହାର ସୂତ୍ରପାତ ହୋଇଥିଲା ଏବଂ ସେ ଦିଗରେ ଶ୍ରୀ ମହତାବଙ୍କର କାର୍ଯ୍ୟ ଓଡ଼ିଶା ଇତିହାସରେ ଅତ୍ୟନ୍ତ ପ୍ରଶଂସନୀୟ । ଯେଉଁ ଉପାୟରେ ଓଡ଼ିଶାର ଗୋଟିଏ ଛୋଟିଆ ଗଡ଼ଜାତ ନୀଳଗିରିରୁ ଏହି ମିଶ୍ରଣର ଶୁଭାରମ୍ଭ ହୋଇଥିଲା, ଶେଷରେ ସେହି ଉପାୟରେହିଁ ବିଶାଳ ହାଇଦ୍ରାବାଦ ରାଜ୍ୟ ଦଖଲ ପରେ ଭାରତରେ ଦେଶୀୟ ରାଜ୍ୟ ମିଶ୍ରଣ ପରିପୂର୍ଣ୍ଣ ହେଲା । ଏହି ମିଶ୍ରଣ ସଂକ୍ରାନ୍ତରେ ବିଖ୍ୟାତ ସାମ୍ବାଦିକ ଶ୍ରୀ ଦୁର୍ଗା ଦାସ ତାଙ୍କର 'କର୍ଜନଙ୍କଠାରୁ ନେହେରୁ ଓ ତତ୍ପରବର୍ତ୍ତୀ ଭାରତବର୍ଷ' (India from Curzon to Nehru and After) ବହିରେ ଯାହା ଲେଖିଛନ୍ତି ତାହା ଜାଣିବାର କଥା । ଦୁର୍ଗା ଦାସ ଲେଖିଛନ୍ତି :

"The integration of the Princely States with the rest of India was not planned in advance. Patel told me it was the result of fortuitous circumstances which were helped by the wave of nationalism in which the Princes were caught up. To this, however, may be added the prestige and authority of Patel himself. The merger of the smaller States began in Orissa by accident and the process spread from there to other areas. Narrating the story of the first merger, Patel told me that the idea had originated with Harekrishna Mahtab who formed in 1938 the State Praja Mandal, an organisation of the people living in the States of Orissa. When India became independent, the British departed leaving the States as they were. Mahtab convinced Gandhi and Patel of the soundness of his scheme, and he suggested to Patel in November 1947 that he should set the process in motion in Orissa."

## ଷଢ଼େଇକଳା ଓ ଖରସୁଆଁ କଥା

ରାଜା-ମହାରାଜାମାନଙ୍କ ସହିତ ଚୁକ୍ତି ଅନୁସାରେ ୧୯୪୮ ଜାନୁୟାରୀ ପହିଲାଠାରୁ ଯେଉଁ ପଚିଶଟି ଗଡ଼ଜାତ ରାଜ୍ୟର ଶାସନଭାର ବିଧିବଦ୍ଧ ଭାବରେ ଓଡ଼ିଶା ସରକାର ଗ୍ରହଣକଲେ, ସେଥିମଧ୍ୟରେ ଅନ୍ତର୍ଭୁକ୍ତ ଥିଲା ଷଢ଼େଇକଳା ଓ ଖରସୁଆଁ । ଷଢ଼େଇକଳା ଓ ଖରସୁଆଁର ମିଶ୍ରଣପାଇଁ ଓଡ଼ିଶାବାସୀଙ୍କର ବହୁଦିନର ଆଶା ଏହା ଫଳରେ ପୂରଣ ହୋଇଥିବାରୁ ଲୋକଙ୍କ ଭିତରେ ବିଶେଷ ଆନନ୍ଦ ପ୍ରକାଶ ପାଇଥିଲା । କିନ୍ତୁ ଷଢ଼େଇକଳା ଓ ଖରସୁଆଁରେ ଆଦିବାସୀମାନଙ୍କ ମଧ୍ୟରେ ଘୋର ଉତ୍ତେଜନା ପ୍ରକାଶ ପାଇଥିଲା । ତତ୍କାଳୀନ ବିହାର ସରକାରଙ୍କ ସହାୟତାରେ ଏହି ଦୁଇ ରାଜ୍ୟର ମିଶ୍ରଣକୁ ବରଦାସ୍ତ ନକରି ଅନ୍ୟଥା କରିବା ପାଇଁ ଚକ୍ରାନ୍ତ ଚାଲିଥିଲା । ଅତି ଦୁର୍ଭାଗ୍ୟର କଥା ଥିଲା

ଯେ ଷଢ଼େଇକଳା ରାଜା ମଧ୍ୟ ପ୍ରଥମେ ଓଡ଼ିଶା ସହିତ ଷଢ଼େଇକଳା ମିଶ୍ରଣର ବିରୋଧ କରିଥିଲେ । ଏହି ଦୁଇଟି ରାଜ୍ୟର ଅଧିକାଂଶ ଅଧିବାସୀ 'ହୋ' ଜାତୀୟ ଆଦିବାସୀ; ଯେଉଁମାନଙ୍କର କି ଓଡ଼ିଶାର 'ହୋ'ମାନଙ୍କ ସହିତ ଘନିଷ୍ଠ ସାମାଜିକ ଓ ସାଂସ୍କୃତିକ ସଂପର୍କ ରହିଆସିଛି । ସେମାନଙ୍କୁ ବାଦ୍ ଦେଲେ ଓଡ଼ିଆଭାଷୀ ସଂଖ୍ୟାଧିକ । ସେମାନଙ୍କୁ ସାଙ୍ଗରେ ନେଇପାରିଲେ ସଂଖ୍ୟାଧିକ ମତ 'ଅଣ-ଓଡ଼ିଆ' ବୋଲି ଜଣାଯିବ, ଏହି ଫିକର କରି 'ହୋ'ମାନଙ୍କୁ ଏହି ମିଶ୍ରଣ ବିରୁଦ୍ଧରେ ଆନ୍ଦୋଳନ କରିବାପାଇଁ ଉତ୍ତ୍ୟକ୍ତ କରାଗଲା । ବିହାର ସରକାରଙ୍କ ସହାୟତାରେ ଷଢ଼େଇକଳା ରାଜାଙ୍କ ସମେତ ଗୋଟିଏ ନ୍ୟସ୍ତ-ସ୍ୱାର୍ଥଗୋଷ୍ଠୀ କେନ୍ଦ୍ର ସରକାରଙ୍କୁ ବାରମ୍ବାର ଆବେଦନ କରି ଜଣାଇଲେ ଯେ ଓଡ଼ିଶା ସହିତ ଏହି ଦୁଇଟି ରାଜ୍ୟର ମିଶ୍ରଣକୁ ଲୋକେ ପସନ୍ଦ କରୁନାହାନ୍ତି ଓ ଲୋକଙ୍କ ଭିତରେ ପ୍ରତିକ୍ରିୟା ଭୀଷଣ ଆକାର ଧାରଣ କରିପାରେ । ଅନ୍ୟ ପକ୍ଷରେ ଓଡ଼ିଶା ସରକାର ଭାରତ ସରକାରଙ୍କୁ ଜଣାଇଦେଲେ ଯେ ଗଡ଼ଜାତ ରାଜ୍ୟ ଦୁଇଟିରେ ଅବସ୍ଥା ଶାନ୍ତିପୂର୍ଣ୍ଣ ଅଛି; ମାତ୍ର ନ୍ୟସ୍ତସ୍ୱାର୍ଥଗୋଷ୍ଠୀ ଗଣ୍ଡଗୋଳ ଭିଆଇବାପାଇଁ ଉଦ୍ୟମ କରୁଛନ୍ତି । ବାହାରର ଲୋକେ ଏହି ଦୁଇଟି ରାଜ୍ୟର ଲୋକଙ୍କ ଭିତରେ ପ୍ରବେଶ କରି ନାନା ଅଶାନ୍ତି ସୃଷ୍ଟି କରିବାରେ ଲାଗିଛନ୍ତି । ଓଡ଼ିଶା ସରକାରଙ୍କୁ ଦୁଇଟି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା ଏବଂ ସେହି ଦୁଇଟିଯାକ ଘଟଣା ବିହାର ସରକାରଙ୍କ ସପକ୍ଷରେ ଯାଉଥିଲା । ପ୍ରଥମଟି ହେଉଛି, ଷଢ଼େଇକଳା ରାଜା ବିହାରରେ ରହିବା ସପକ୍ଷରେ ମତ ପ୍ରକାଶ କରିଥିଲେ ଏବଂ ଦ୍ୱିତୀୟଟି ହେଉଛି, ସେ ସମୟରେ ମୟୂରଭଞ୍ଜ ଓଡ଼ିଶା ସହିତ ମିଶିନଥିବାରୁ ଷଢ଼େଇକଳା ଓ ଖରସୁଆଁ ରାଜ୍ୟକୁ ଯିବାକୁ ହେଲେ ବିହାର କିମ୍ବା ମୟୂରଭଞ୍ଜ ଛଡ଼ା ଅନ୍ୟ ବାଟରେ ଯିବା ସମ୍ଭବ ନଥିଲା । ସେ ଯାହାହେଉ, ଅବସ୍ଥା ଟିକିଏ ଜଟିଳ ହେବାକୁ ଯାଉଥିବା ସମ୍ବାଦ ପାଇ କେନ୍ଦ୍ର ସରକାର ସେ ଅଞ୍ଚଳକୁ ତୁରନ୍ତ ପୁଲିସ୍ ଫୌଜ ପଠାଇବାପାଇଁ ପ୍ରଥମେ ଓଡ଼ିଶା ସରକାରଙ୍କୁ ନିର୍ଦ୍ଦେଶ ଦେଇଥିଲେ । ତଦନୁସାରେ ଓଡ଼ିଶା ସରକାର ବାଲେଶ୍ୱର ଜିଲ୍ଲା ମାଜିଷ୍ଟ୍ରେଟ୍ ଶ୍ରୀ ଦୁର୍ଗା ଦାସଙ୍କୁ ପୁଲିସ୍ ଫୌଜ ଦେଇ ଅବସ୍ଥା ସମ୍ଭାଳିବା ପାଇଁ ଷଢ଼େଇକଳା ଓ ଖରସୁଆଁକୁ ପଠାଇଥିଲେ । ତା' ବ୍ୟତୀତ କେନ୍ଦ୍ରସରକାର ଗୋଟିଏ ତାରବାର୍ତ୍ତା ପଠାଇ ଓଡ଼ିଶା ସରକାର ଓ ବିହାର ସରକାରଙ୍କୁ ଜଣାଇଦେଇଥିଲେ ଯେ ଏହି ଦୁଇଟି ରାଜ୍ୟର ଶାସନଭାର ବର୍ତ୍ତମାନପାଇଁ ଓଡ଼ିଶା ସରକାରଙ୍କ ହାତରେ ରହିବ ଏବଂ ପରେ ସବୁ କଥା ବିଚାର କରି ଶେଷ ନିଷ୍ପତ୍ତି ନିଆଯିବ । କିନ୍ତୁ ଦେଖାଗଲା ଯେ ଏହି ଦୁଇଟି ରାଜ୍ୟ ଭିତରେ ଅଶାନ୍ତି ସୃଷ୍ଟି କରିବା ପାଇଁ ଚାରିଆଡ଼େ ଉଦ୍ୟମ ଆରମ୍ଭ ହୋଇଯାଇଥିଲା । ଷଢ଼େଇକଳା ରାଜାଙ୍କର ମତିଗତି ସେତେବେଳକୁ ଓଡ଼ିଶାବିରୋଧୀ ବୋଲି ସ୍ପଷ୍ଟରୂପେ ଜଣାଯାଇଥିଲା । ଓଡ଼ିଶା ସରକାରଙ୍କୁ ସାହାଯ୍ୟ କରିବା ପରିବର୍ତ୍ତେ ମିଶ୍ରଣବିରୋଧୀ ଆନ୍ଦୋଳନ ପ୍ରତି ତାଙ୍କର ଯେଉଁ ପୂର୍ଣ୍ଣ ସମର୍ଥନ ଥିଲା, ସେ କଥା ଆଉ ଅଛପା ରହିଲାନାହିଁ । ୧୯୪୮ ଜାନୁୟାରୀ ପହିଲା ଦିନ ଧନୁତୀର ଧରି ହଜାର ହଜାର ଆଦିବାସୀ ବାହାରିପଡ଼ିଲେ । ଦୁଇଟି ରାଜ୍ୟର ରାଜାମାନଙ୍କ ଇଙ୍ଗିତରେ ଚାରିଆଡ଼େ ଉତ୍ତେଜନା ସୃଷ୍ଟି କରାଯାଇ ପୋଡ଼ାଜଳା, ଭଙ୍ଗାରୁଜା କାର୍ଯ୍ୟ ଆରମ୍ଭ ହୋଇଯାଇଥିଲା । ଜାମସେଦପୁର ଅଞ୍ଚଳରୁ ଆଦିବାସୀମାନେ ଆସି ସ୍ଥାନୀୟ ଆଦିବାସୀଙ୍କୁ ମତାଇଲେ ଏବଂ ରାଜ-ଖରସୁଆଁରେ ପୁଲିସ୍ ଫୌଜ ଉପରେ ଆକ୍ରମଣ କରିବାକୁ ଲାଗିଲେ । ସବୁଠାରୁ ଆଶ୍ଚର୍ଯ୍ୟର କଥା ହୋଇଥିଲା ସେଠାରେ ବାସକରୁଥିବା ଅଧିକାଂଶ ଓଡ଼ିଆ ଆଦିବାସୀମାନଙ୍କ ସହିତ ମିଶି ମିଶ୍ରଣ ବିରୁଦ୍ଧରେ କାର୍ଯ୍ୟ କରିବାକୁ ଲାଗିଲେ । କେବଳ ଯେଉଁ କେତୋଟି ଜଣାଶୁଣା ଓଡ଼ିଆ ପରିବାର ପୂର୍ବରୁ ଓଡ଼ିଶା ସହିତ ମିଶିବାପାଇଁ କାର୍ଯ୍ୟ କରୁଥିଲେ, ସେଇମାନେ ଚାହୁଁଥିଲେ ଓଡ଼ିଶା ସହିତ ଚୂଡ଼ାନ୍ତ ମିଶ୍ରଣ । କିନ୍ତୁ ଉପସ୍ଥିତ ପରିସ୍ଥିତିରେ ସେଥିପାଇଁ ଲୋକମତ ସୃଷ୍ଟି କରିବାର ସାହସ ସେମାନଙ୍କର ନଥିଲା । ଓଡ଼ିଶାରୁ ଯାଇ ଯେଉଁ କର୍ମଚାରୀ ସେଠାରେ କାର୍ଯ୍ୟ କରୁଥିଲେ, ରାଜାଙ୍କ ଇଙ୍ଗିତରେ ବିଦ୍ରୋହୀମାନେ ସେମାନଙ୍କ ଉପରେ ଅତ୍ୟାଚାର କଲେ । ପୁଲିସ୍‌ମାନଙ୍କ ଉପରେ

ସେମାନେ ଯେତେବେଳେ ଆକ୍ରମଣ କଲେ, ପୁଲିସ୍ ପକ୍ଷରୁ ଗୁଳିଚାଳନା କରାଯାଇଥିଲା । ଫଳରେ ଅନେକ ଆଦିବାସୀ ସେଠାରେ ପ୍ରାଣହରାଇଥିଲେ । ଗୁଳିକାଣ୍ଡ ବିଷୟରେ ତଦନ୍ତ କରାଯିବାପାଇଁ ଷଢ଼େଇକଳା ରାଜାଙ୍କ ଦଳ ପକ୍ଷରୁ ଶ୍ରୀ ଜୟପାଳ ସିଂ ଦାବିକରିଥିଲେ । ଶ୍ରୀ ଜୟପାଳ ସିଂ ଷଢ଼େଇକଳା ଓ ଖରସୁଆଁର ଏହି ଗଣ୍ଡଗୋଳ ଓ ଗୁଳିଚାଳନା ସଂପର୍କରେ ଶାସନ ବିଧାୟକ ସଭାରେ ପ୍ରଶ୍ନ ଉଠାଇଥିଲେ । ସ୍ୱର୍ଗୀୟ ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍ ତାହାର କଡ଼ା ଜବାବ ଦେଇ ଷଢ଼େଇକଳା ଓ ଖରସୁଆଁରେ ଓଡ଼ିଶା ସରକାରଙ୍କର କାର୍ଯ୍ୟକୁ ପୂର୍ଣ୍ଣ ସମର୍ଥନ ଜଣାଇଥିଲେ ।

କିନ୍ତୁ ଏହା ଭିତରେ କ'ଣ ହେଲା କେଜାଣି ୧୯୪୮ ଫେବୃୟାରୀ ମାସରେ ଷଢ଼େଇକଳା ଓ ଖରସୁଆଁର ଭବିଷ୍ୟଦ୍ ନିର୍ଣ୍ଣୟ କରିବାପାଇଁ ଭାରତ ସରକାର ତତ୍କାଳୀନ ବମ୍ବେ ହାଇକୋର୍ଟର ବିଚାରପତି ଶ୍ରୀ ବାଉଦେକରଙ୍କୁ ନିଯୁକ୍ତ କଲେ । ଏହି ଘୋଷଣା ପ୍ରକାଶ ପାଇବା ପରେ ପରେ ଷଢ଼େଇକଳାର ପଟ୍ଟାୟତ ନିଜର ଅନୁଚରବର୍ଗଙ୍କ ସହିତ ଓଡ଼ିଶା ସରକାରଙ୍କ ବିରୁଦ୍ଧରେ ଅଭିଯାନ ଆରମ୍ଭ କରିଦେଇଥିଲେ । ସେଠାରେ ପୂର୍ବରୁ ରାଜାମାନଙ୍କଦ୍ୱାରା ଗଠିତ ଯେଉଁ 'ପ୍ରଜାସମିତି'କୁ ପ୍ରଜାମଣ୍ଡଳ ବିରୁଦ୍ଧରେ ଛିଡ଼ାକରାଯାଉଥିଲା, ବର୍ତ୍ତମାନ ସେହି ପ୍ରଜାସମିତିକୁ ମତାଇଦିଆଗଲା ଯେ ତାଙ୍କ ରାଜ୍ୟରେ ତାଙ୍କର ଆଇନସଭା ରହିବ, ଲୋକମାନେ ତାଙ୍କର ଆଇନ ପ୍ରଣୟନ କରିପାରିବେ, ଓଡ଼ିଶା ସଙ୍ଗେ ଜୋରଜବରଦସ୍ତି ମିଶାଇ ଦିଆଗଲା ବୋଲି ଷଢ଼େଇକଳାର ସ୍ୱାତନ୍ତ୍ର୍ୟ ଲୋପ ପାଇଗଲା ଏବଂ ନିଜ ରାଜ୍ୟରେ ସେମାନଙ୍କର ସ୍ୱତନ୍ତ୍ର ଶାସନ ରହିବନାହିଁ; ତେଣୁ ଏହା କେବେ ବରଦାସ୍ତ କରାଯାଇ ନ ପାରେ । ଶ୍ରୀ ବାଉଦେକର ତଥ୍ୟ ସଂଗ୍ରହ କରି ବିଚାର କରିବା ପାଇଁ ସେଠାକୁ ଆସିବା ବେଳକୁ ସ୍ଥାନୀୟ ଜନମତ ଓଡ଼ିଶା ସହିତ ଷଢ଼େଇକଳା ଓ ଖରସୁଆଁର ମିଶ୍ରଣ ବିରୁଦ୍ଧରେ ବୋଲି ସେ ଯେଭଳି ହୃଦୟଙ୍ଗମ କରିବେ ସେଥିପାଇଁ ରାଜା ଏବଂ ରାଜବଂଶର ଆନୁକୂଲ୍ୟରେ ସବୁପ୍ରକାର ଉଦ୍ୟମ ଚାଲିଲା । ଆଦିବାସୀ ଝାଡ଼ଖଣ୍ଡ ନେତା ଶ୍ରୀ ଜୟପାଳ ସିଂଙ୍କର ପୂରାପୂରି ସାହାଯ୍ୟ ନିଆଯାଇଥିଲା ଏବଂ ଓଡ଼ିଶାର ଜନମତକୁ ମଧ୍ୟ ବିଭ୍ରାନ୍ତ କରିବାପାଇଁ କେତେକ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ଦାୟିତ୍ୱ ଦିଆଯାଇଥିଲା । ଆହୁରି ଆଶ୍ଚର୍ଯ୍ୟର କଥା ଯେ, ବମ୍ବେ ହାଇକୋର୍ଟର ବିଚାରପତି ବାଉଦେକରଙ୍କର ଆସିବା କଥା ଘୋଷଣା ହେବା ପରେ ମଧ୍ୟ ତାଙ୍କ ଆସିବାରେ ବିଳମ୍ବ ଘଟିଲା ବୋଲି ଯୁକ୍ତି ଦର୍ଶାଇ ଭାରତ ସରକାର ନିଜେ ଉଭୟ ରାଜ୍ୟର ମତାମତ ଶୁଣି ନିଷ୍ପତ୍ତି ଦେଇଦେଲେ । ଶେଷରେ ଭାରତ ସରକାରଙ୍କର ନିଷ୍ପତ୍ତି ହେଲା ଯେ ଷଢ଼େଇକଳା ଓ ଖରସୁଆଁ ସିଂହଭୂମି ଜିଲ୍ଲାରେ ଏକ ଦ୍ୱୀପଭଳି ଅବସ୍ଥିତ ହୋଇଥିବାରୁ ସିଂହଭୂମି ଜିଲ୍ଲା ଯେଉଁ ରାଜ୍ୟ ସହିତ ରହିଛି ସେହି ରାଜ୍ୟ ବ୍ୟତୀତ ଅନ୍ୟ କୌଣସି ରାଜ୍ୟ ପକ୍ଷରେ ଷଢ଼େଇକଳା ଓ ଖରସୁଆଁକୁ ଶାସନ କରିବା ସହଜ ଓ ସମ୍ଭବନୁହେଁ । ତେଣୁ ଏହି ଦୁଇଟି ରାଜ୍ୟ ବିହାର ରାଜ୍ୟ ସହିତ ମିଶିବ ବୋଲି କେନ୍ଦ୍ର ସରକାର ସିଦ୍ଧାନ୍ତ ନେଲେ । ଆଗରୁ କହିଛି ଯେ ସେତେବେଳକୁ ମୟୂରଭଞ୍ଜ ଓଡ଼ିଶାରେ ମିଶିନଥିବାରୁ ଷଢ଼େଇକଳା ଓ ଖରସୁଆଁ ଓଡ଼ିଶାର ଭୌଗୋଳିକ ସୀମା ସହିତ ସଂଲଗ୍ନ ହୋଇପାରିନଥିଲା । ଏହା ଆମର ଏକ ବଡ଼ ଦୁର୍ଭାଗ୍ୟ । କେନ୍ଦ୍ର ସରକାରଙ୍କ ପରିବର୍ତ୍ତିତ ନିଷ୍ପତ୍ତି ବିରୁଦ୍ଧରେ ଓଡ଼ିଶାରେ ପ୍ରବଳ ପ୍ରତିବାଦ ହୋଇଥିଲା । ତା' ସତ୍ତ୍ୱେ ୧୯୪୮ ମେ' ମାସରେ ଏହି ଦୁଇଟି ରାଜ୍ୟ ବିହାର ସହିତ ମିଶିଯିବାର ଘୋଷଣା ପ୍ରକାଶପାଇଲା । କଟକରେ ସେତେବେଳେ ଏହା ବିରୁଦ୍ଧରେ ଖୁବ୍ ପ୍ରତିକ୍ରିୟା ପ୍ରକାଶପାଇଥିଲା । ଆମ୍ଭେମାନେ ଏ ପ୍ରକାର ପ୍ରତିବାଦର ଅଗ୍ରଣୀ ମଧ୍ୟ ହୋଇଥିଲୁ । କିନ୍ତୁ ଅତି ଆଶ୍ଚର୍ଯ୍ୟର କଥା, ଷଢ଼େଇକଳା ଓ ଖରସୁଆଁରେ ଓଡ଼ିଆମାନେ ଏସବୁ କଥାର କେବଳ ନୀରବଦ୍ରଷ୍ଟା ହୋଇ ରହିଥିଲେ, ବରଂ ମିଶ୍ରଣ ବିରୋଧୀ ଆନ୍ଦୋଳନକୁ କେତେକ ଉତ୍ସାହିତ କରୁଥିଲେ ରାଜବଂଶର ନେତୃତ୍ୱରେ । ମୋର ଏଠି ଏସବୁ କଥା ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଉଛି, ସେତେବେଳେ ଓଡ଼ିଶା ସହିତ ଷଢ଼େଇକଳା ଓ ଖରସୁଆଁ ମିଶିବା ଦାବି ଆନ୍ଦୋଳନକୁ ଆମେ କି ଦୃଷ୍ଟିରେ ଦେଖିଥିଲୁ ଏବଂ ସେ

ବିଷୟରେ ଆମର କି ଅନୁଭୂତି ତାହା ସ୍ପଷ୍ଟ କରିଦେବା । ଏହି ବିଷୟଟିକୁ କେନ୍ଦ୍ର କରି ଓଡ଼ିଶାରେ ନାନାପ୍ରକାର ପରିସ୍ଥିତି ସୃଷ୍ଟିକରାଯାଇଥିଲା ଏବଂ ରାଜନୈତିକ ନେତୃବର୍ଗ ନିଜନିଜର ଦୃଷ୍ଟିକୋଣରୁ ବିଷୟଟିର ଆଲୋଚନା ଓ ସମାଲୋଚନା କରି ପରସ୍ପରକୁ ଦୋଷାରୋପ କରିବାକୁ ପଶ୍ଚାତ୍‌ପଦ ହେଉନଥିଲେ । ସେହି ସମସ୍ୟା ବିଷୟରେ ମୋର ପରବର୍ତ୍ତୀ ଆଲୋଚନା ପ୍ରସଙ୍ଗରେ କେତେକ ବିଶ୍ୱାସଯୋଗ୍ୟ ତଥ୍ୟ ଉପସ୍ଥାପିତ କରିବି – ବର୍ତ୍ତମାନ ପଦେ ଦୁଇପଦ କଥା କହିଲେ ଯଥେଷ୍ଟ ହେବ । ଷଢ଼େଇକଳା ଓ ଖରସୁଆଁ ଓଡ଼ିଆମାନଙ୍କର ଏବଂ ତାହା ଓଡ଼ିଶାରୁ ଚାଲିଗଲା ବୋଲି ଯେଉଁମାନେ ସେତେବେଳେ କୁମ୍ଭୀରକାନ୍ଦଣା କାନ୍ଦୁଥିଲେ, ସେମାନଙ୍କ ପ୍ରକୃତ ଦରଦ ଆମେ ଗୋଟିଏ ଯୋଡ଼ିଏ ଦୃଷ୍ଟାନ୍ତରୁ ଜାଣିପାରିବା । ଭାରତ ସରକାରଙ୍କର ଏତାଦୃଶ ନିଷ୍ପତ୍ତି ପୂର୍ବରୁ ଗୋଟିଏ କମିଶନ ଆସି ଷଢ଼େଇକଳା ଓ ଖରସୁଆଁରେ ସରଜମିନ୍ ତଦନ୍ତ କରିବା ପ୍ରସ୍ତାବ ଜଣାଯାଇଥିଲା । ଆଶ୍ଚର୍ଯ୍ୟର କଥା ଯେ ସେତେବେଳେ ରାଜପକ୍ଷର ଲୋକଙ୍କ ଆଡ଼ୁ ଦାବି କରାଯାଇଥିଲା ଯେ ତଦନ୍ତ ସମୟରେ ଓଡ଼ିଶା ସରକାରଙ୍କ ପ୍ରତିନିଧି ଉପସ୍ଥିତ ରହିଲେ ଲୋକମାନେ ନିର୍ଭୟରେ ମତ ଦେଇପାରିବେ ନାହିଁ – ତେଣୁ ସେହି ସମୟରେ ଗୋଟିଏ ନିରପେକ୍ଷ ସରକାର ଦାୟିତ୍ୱରେ ଏହି ଦୁଇଟି ରାଜ୍ୟର ଶାସନଭାର ରହୁ । ଏହି ଦାବି ପଛରେ ରାଜାମାନଙ୍କର ଷଡ଼ଯନ୍ତ୍ରହିଁ ଥିଲା । ଦୁଇ ରାଜଦରବାରର ଅସଲ ଉଦ୍ଦେଶ୍ୟ ଥିଲା ଯେ ଓଡ଼ିଶା ସରକାର କବଳରୁ ଥରେ ରକ୍ଷାପାଇଲେ ତେଣିକି ସେମାନେ ନିର୍ବିଘ୍ନରେ ଇଚ୍ଛାମୁତାବକ କାର୍ଯ୍ୟ କରିପାରିବେ, ସବୁ ପୂର୍ବତନ ଗଡ଼ଜାତ ରାଜ୍ୟକୁ ୟୁନିୟନ ମୁଭ୍‌ମେଣ୍ଟ (Union Movement) ନାମରେ ଏକତ୍ରିତ କରି ଏକ ସ୍ୱତନ୍ତ୍ର ରାଜ୍ୟ ଗଠନ କରିବେ । ୧୯୪୮ ମସିହା ଏପ୍ରିଲ୍ ୨୯ ତାରିଖରେ ଷଢ଼େଇକଳା ପଟ୍ଟାୟତ ସାହେବ ବାମଣ୍ଡା ରାଜ୍ୟର ଦେୱାନ୍ ଶ୍ରୀ ଜୟଦେବ ଠାକୁରଙ୍କ ନିକଟକୁ ଲେଖିଥିଲେ, "Our preference is for Bihar so that we can lead the other States, if we are out of the clutches of Orissa." ଅର୍ଥାତ୍ ''ଆମେ ଚାହୁଁ ବିହାରକୁ ଯିବାକୁ । ଥରେ ଓଡ଼ିଶା କବଳରୁ ମୁକ୍ତ ହେଲେ ଆମେ ଓଡ଼ିଶା ଗଡ଼ଜାତ ରାଜ୍ୟମାନଙ୍କୁ ନେତୃତ୍ୱ ଦେଇପାରିବା ।'' ସେହି ଚିଠିରେ ସେ ଆହୁରି ଲେଖିଥିଲେ, ''ଦିଲ୍ଲୀ ଆମ ନିବେଦନରେ ଟିକେ ତରଳିବା ପରି ଦିଶୁଛି । ଆମେ ଯେଉଁ ଧରଣର ପ୍ରଜାରାଜ କଳ୍ପନା କରୁଛୁ, ପରିଶେଷରେ ତାହା ମିଳିବ ବୋଲି ଦୃଢ଼ ଆଶା ରହିଛି । ଓଡ଼ିଶାରାଜ ଅଧୀନରେ କଟକ ସହରର ଜଗନ୍ନାଥ ମହାପ୍ରଭୁଙ୍କର ବାହୁଛାୟା ତଳେ ଦୂଷିତ ପ୍ରଜାରାଜ୍ୟରେ ଆମେ ରହିବୁନାହିଁ ।''

ଓଡ଼ିଶା ସହିତ ଷଢ଼େଇକଳା ଓ ଖରସୁଆଁର ମିଶ୍ରଣ ସପକ୍ଷରେ ମତ ବ୍ୟକ୍ତ କରିବା ବା ଆନ୍ଦୋଳନ କରିବା ଦୂରେ ଥାଉ, ଏପରିକି ମିଶ୍ରଣ ଯେତେବେଳେ ନହେଲା ସେଥିସକାଶେ ଦୁଃଖ କରିବା ଦୂରେ ଥାଉ, ଅତି ପରିତାପର ବିଷୟ ଯେ, ରାଜବଂଶର ଲୋକମାନେ ସେତେବେଳେ ସେ ଦୁଇ ରାଜ୍ୟର ଲୋକମାନେ ଓଡ଼ିଆ ବୋଲି ପରିଚୟ ଦେବାକୁ ମଧ କୁଣ୍ଠାବୋଧକରୁଥିଲେ । ତା'ର ଗୋଟିଏ ନିର୍ଲଜ୍ଜ ଦୃଷ୍ଟାନ୍ତ ନିମ୍ନରେ ଦେଲି ।

ବାମଣ୍ଡା ଦରବାରରୁ ଷଢ଼େଇକଳାର ରାଜାସାହେବଙ୍କ ନିକଟକୁ ଚିଠି-

ପୋ : ଦେଓଗଡ଼, ବାମଣ୍ଡା (ବି.ଏନ୍.ଆର), ୧୪-୩-୪୮

ପ୍ରିୟ ରାଜାସାହେବ;

ପରେ ଭାବି ମୁଁ ଦେଖୁଛି ଯେଉଁ ନିବେଦନପତ୍ରଗୁଡ଼ିକ ଇଂରାଜୀରେ ଛାପାହୋଇଛି ସେଗୁଡ଼ିକୁ ଆପଣଙ୍କର ମୋ ପାଖକୁ ପଠାଇଦେବା ଦରକାର । ଆମେ ଓଡ଼ିଆରେ ଛାପାହୋଇଥିବା ନିବେଦନ ପତ୍ର ପଠାଇବାକୁ ଚାହୁଁନା, କାରଣ ମୋର ଆଶଙ୍କା ହେଉଛି ଏପରି କୌଣସି ଦୁର୍ଯୋଗ ଘଟିପାରେ ଯାହା ଫଳରେ ଆମର ବିହାର ସହିତ ମିଶିବା ସମ୍ଭବ ହୋଇନପାରେ । କେନ୍ଦ୍ର ସରକାରଙ୍କ ନିକଟକୁ ଆମର ଓଡ଼ିଆ ନିବେଦନପତ୍ର ପଠାଗଲେ ସେମାନେ ଭାବିନେବେ ଯେ ଏ ଲୋକଗୁଡ଼ିକ ଓଡ଼ିଆ

ଏବଂ ତାଦ୍ୱାରା ଆମର ଉଦ୍ଦେଶ୍ୟ ସାଧନରେ ବାଧା ଘଟିବ । ତେଣୁ ଆପଣ ମୋ ପାଖକୁ ପଚିଶ ଖଣ୍ଡ ଇଂରାଜୀ ଓ ପଚିଶ ଖଣ୍ଡ ଓଡ଼ିଆ ନିବେଦନପତ୍ର ପଠାନ୍ତୁ ।

ଆପଣଙ୍କର
ପି.କି. ଦେଓ

ସବୁଠାରୁ ବେଶି ପରିତାପର ବିଷୟ ଯେ ଓଡ଼ିଶାର କେତେକ ବିଶିଷ୍ଟ ରାଜନୈତିକ ବ୍ୟକ୍ତି ମିଶ୍ରଣ ସପକ୍ଷରେ ଏବଂ ବିପକ୍ଷରେ ଓଡ଼ିଶାରେ ସେତେବେଳେ ଯେଉଁ ଅଭିନୟ ଆରମ୍ଭ କରିଥିଲେ, ତାହା ଓଡ଼ିଶାବାସୀଙ୍କ ମନରେ ଅତି ବିଭ୍ରାନ୍ତି ସୃଷ୍ଟିକରିଥିଲା । କଟକ ସହରରେ ସେତେବେଳେ ଅନେକ ସଭାସମିତି କରି ଆମ୍ଭେମାନେ ପ୍ରକୃତ କଥା ଲୋକଙ୍କୁ ବୁଝାଇ ବିରୁଦ୍ଧ ପ୍ରଚାରକୁ ଖଣ୍ଡନ କରୁଥିଲୁ । ଆମ ବିରୁଦ୍ଧରେ ଅଭିଯୋଗ ଥାଏ ଯେ ଷଡ଼େଇକଳା ଓ ଖରସୁଆଁ ମିଶ୍ରଣ ସମ୍ପର୍କରେ ଆମେ ବଡ଼ ଉଦାସୀନ ଏବଂ ଯେଉଁ ପ୍ରକାର ଆନ୍ଦୋଳନ କରିବା କଥା ଆମ୍ଭେମାନେ ବିହାର ସରକାରଙ୍କୁ ଭୟକରି ତାହା କରୁନାହୁଁ । ଆହୁରି ମଧ୍ୟ ଅଭିଯୋଗ ହେଉଥାଏ ଯେ ବିହାରର ବଡ଼ ବଡ଼ ନେତା, ବିଶେଷକରି ଡକ୍ଟର ରାଜେନ୍ଦ୍ର ପ୍ରସାଦ, ଭାରତ ରାଜନୀତି କ୍ଷେତ୍ରରେ ବଳିଷ୍ଠ ବ୍ୟକ୍ତି ହୋଇଥିବାରୁ ଉଚ୍ଚ ପଦପାଇଁ ଲାଳାୟିତ ଶ୍ରୀ ହରେକୃଷ୍ଣ ମହତାବ ପ୍ରଭୃତି ନେତାମାନେ ରାଜେନ୍ଦ୍ରବାବୁଙ୍କୁ ଅସନ୍ତୁଷ୍ଟ କରିବାପାଇଁ ପଶ୍ଚାତ୍‌ପଦ ହେଉଥିଲେ । ଏହା ଯେ କେତେଦୂର ଅବାସ୍ତବ ଆମ୍ଭେମାନେ ଜନସଭାରେ ବୁଝାଉଥାଉଁ । ଅପରପକ୍ଷରେ ସର୍ବଶ୍ରୀ ଯଦୁମଣି ମଙ୍ଗରାଜ, ରାଜବଲ୍ଲଭ ମିଶ୍ର, ସୁନ୍ଦରମଣି ପଟେଲ, ମଧୁସୂଦନ ମହାନ୍ତି ଓ ସୁରେନ୍ଦ୍ର ମହାନ୍ତି ପ୍ରଭୃତି ରାଜାମାନଙ୍କ ସହ ସମ୍ପର୍କଥିବା ବିଶିଷ୍ଟ ବ୍ୟକ୍ତିମାନେ କଟକରେ ଆମ୍ଭମାନଙ୍କ ବିରୁଦ୍ଧରେ ସଭାସମିତିରେ ବିଷୋଦ୍‌ଗାର କରୁଥା'ନ୍ତି । ମୋର ନିର୍ଦ୍ଦିଷ୍ଟ ମତ ଯେ ଓଡ଼ିଶାରେ ଯେଉଁମାନେ ସେତେବେଳେ ଶାସନ ଦାୟିତ୍ୱରେ ଥିଲେ, ସେମାନେ କିମ୍ବା ଓଡ଼ିଶାର ଅନ୍ୟାନ୍ୟ କଂଗ୍ରେସ ନେତୃବର୍ଗ ଷଡ଼େଇକଳା ଓ ଖରସୁଆଁର ମିଶ୍ରଣ ବିରୁଦ୍ଧରେ ଆଦୌ ନଥିଲେ । ସମସ୍ତଙ୍କର ଏକାନ୍ତ ଚିନ୍ତା ଥିଲା ଏହି ଦୁଇଟି ରାଜ୍ୟକୁ କୌଣସିମତେ ଓଡ଼ିଶା ସହ ସାମିଲ କରିବା; କିନ୍ତୁ ରାଜା ମହାରାଜାମାନଙ୍କର ପ୍ରତିକ୍ରିୟାଶୀଳ କାର୍ଯ୍ୟକଳାପ, ଯେକୌଣସି ଉପାୟରେ ନିଜର ପୂର୍ବ ରାଜୁତି ଫେରିପାଇବାର ଲାଳସା ଏବଂ ସର୍ବୋପରି ଦେଶକୁ ଖଣ୍ଡବିଖଣ୍ଡ କରି ସେମାନଙ୍କର ଆଧିପତ୍ୟ ବଜାୟରଖିବାଭଳି ସହଜ ପଥ ସୃଷ୍ଟିକରିବାର ଉଦ୍ୟମ ଯୋଗୁଁହିଁ ଆମେ ଷଡ଼େଇକଳା ଓ ଖରସୁଆଁକୁ ହରାଇଲୁ ।

## ଓଡ଼ିଶାକୁ ଦୁଇଭାଗ କରିବାପାଇଁ ରାଜୁଡ଼ା ଚକ୍ରାନ୍ତ

ଓଡ଼ିଶାରେ ଏହି ସମୟରେ ଆଉ ଗୋଟିଏ ମାରାତ୍ମକ ଆନ୍ଦୋଳନ ମୁଣ୍ଡ ଟେକିଥିଲା — ତାହା ହେଉଛି ରାଜାମହାରାଜାଙ୍କଦ୍ୱାରା ସଂଗଠିତ ୟୁନିୟନ ଆନ୍ଦୋଳନ । ଭାରତ ସ୍ୱାଧୀନ ହେବା ପରେ ଦେଶୀୟ ରାଜ୍ୟଗୁଡ଼ିକ ଯେତେବେଳେ ଭାରତ ସହିତ ମିଶିଗଲା ସେତେବେଳେ ଯେଉଁଠାରେ ବଡ଼ ବଡ଼ କେତୋଟି ଦେଶୀୟ ରାଜ୍ୟ ଥିଲା; ଯଥା — ମହୀଶୂର, କାଶ୍ମୀର, ଗୁଜରାଟ, ସୌରାଷ୍ଟ୍ର, ରାଜସ୍ଥାନ, ତ୍ରାଭାଙ୍କୋଡ଼ ଓ କୋଚିନ ଏବଂ ହାଇଦ୍ରାବାଦ ପ୍ରଭୃତି ସେଠାରେ ଗୋଟିଏ ଗୋଟିଏ ବୃହତ୍ ରାଜ୍ୟକୁ ନେଇ କିମ୍ବା କେତେଗୁଡ଼ିଏ ରାଜ୍ୟକୁ ମିଶାଇ ଗୋଟିଏ ଗୋଟିଏ ପ୍ରଦେଶ ବା ପ୍ରଶାସନିକ ୟୁନିୟନ ଗଠନକରାଯାଇଥିଲା ଏବଂ ସେସବୁ ରାଜ୍ୟରେ ଏହି ରାଜା-ମହାରାଜାଙ୍କ ମଧ୍ୟରୁ କାହାକୁ ରାଜ୍ୟପାଳ ବା ରାଜପ୍ରମୁଖରୂପେ ନିଯୁକ୍ତ କରାଯାଇଥିଲା । ଓଡ଼ିଶାର ଗଡ଼ଜାତଗୁଡ଼ିକ ଛୋଟ ଛୋଟ ରାଜ୍ୟ ଥିଲା । ଏହି ପ୍ରଦେଶର ନେତୃବର୍ଗ ରାଜ୍ୟ ଭିତରେ ଥିବା ପ୍ରଜାମଣ୍ଡଳଗୁଡ଼ିକୁ ଉତ୍ସାହିତ କରି ରାଜ୍ୟସରକାରମାନଙ୍କ ବିରୁଦ୍ଧରେ ଆନ୍ଦୋଳନ କରିଥିବାରୁ ପରିଶେଷରେ ସମଗ୍ର ଭାରତରେ ତଥା ଓଡ଼ିଶାରେ ଦେଶୀୟ ରାଜ୍ୟଗୁଡ଼ିକର ଅସ୍ତିତ୍ୱ ଲୋପହୋଇଥାଏ । ତେଣୁ ସେହି ରାଜା-

ମହାରାଜାମାନଙ୍କର କଂଗ୍ରେସ ତଥା ପ୍ରଜାମଣ୍ଡଳ ନେତୃବର୍ଗଙ୍କ ବିରୁଦ୍ଧରେ ତିକ୍ତ ମନୋଭାବ ରହିଥାଏ । ସେମାନେ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କର ପ୍ରାଧାନ୍ୟ ଥିବା ରାଜ୍ୟରେ ନରହି ସବୁ ପୂର୍ବତନ ଓଡ଼ିଆ ଗଡ଼ଜାତ ରାଜ୍ୟକୁ ନେଇ ଗୋଟିଏ ୟୁନିୟନ ଗଠନର ମସୁଧା କରିବାରେ ଲାଗିଲେ । ଉପକୂଳ ଅଞ୍ଚଳ ଏବଂ ପୂର୍ବତନ ଗଡ଼ଜାତ ଅଞ୍ଚଳ ଭିତରେ ନାନାପ୍ରକାର ଭେଦଭାବ ସୃଷ୍ଟିକରି ଆନ୍ଦୋଳନ ଆରମ୍ଭ କରିଦେଲେ । ସେମାନେ ପ୍ରଚାର କରୁଥିଲେ ଯେ କଟକ ଓ ଉପକୂଳ ଅଞ୍ଚଳର ଲୋକମାନେ ଗଡ଼ଜାତ ଲୋକଙ୍କୁ ଶୋଷଣ କରି ଶାସନ କରିବାକୁ ଚାହାନ୍ତି । ଏଥିରେ ଅଗ୍ରଣୀ ହୋଇଥିଲେ ବଲାଙ୍ଗୀର ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ, କଳାହାଣ୍ଡି ମହାରାଜା ଶ୍ରୀ ପ୍ରତାପ କେଶରୀ ଦେଓ ଏବଂ ବାମଣ୍ଡା, ସୁନ୍ଦରଗଡ଼ ଓ ଢେଙ୍କାନାଳ ପ୍ରଭୃତି ରାଜାମାନେ । କେତେକ ଜାଗାରେ ଏହି ଆନ୍ଦୋଳନ ଅତି ଭୀଷଣ ଆକାର ଧାରଣ କରିଥିଲା ଏବଂ ତାହାକୁ ଦମନ କରିବାପାଇଁ କେତେକ ସ୍ଥାନରେ ଗୁଳିଚାଳନା ମଧ୍ୟ ହୋଇଥିଲା । ଓଡ଼ିଶାରେ ରାଜ୍ୟ ସରକାର ଯେତେବେଳେ ସେମାନଙ୍କ କାର୍ଯ୍ୟକଳାପ ଉପରେ ଦୃଷ୍ଟି ଦେଲେ ସେତେବେଳେ ଏହି 'ୟୁନିୟନ ଆନ୍ଦୋଳନ'ର କେନ୍ଦ୍ର ଅଫିସ୍ ଓଡ଼ିଶାରୁ କଲିକତାକୁ ଉଠାଇନିଆଗଲା । କଟକର ବହୁ ବିଶିଷ୍ଟ ଲୋକ ସେହି ରାଜୁଡ଼ା ଚକ୍ରାନ୍ତରେ ଯୋଗଦେଇଥିଲେ । ରାଜାମାନଙ୍କର କଲିକତାରେ ଥିବା ୟୁନିୟନ ଅଫିସ୍ ଓ ଆଉ କେତେକ ସ୍ଥାନକୁ ଓଡ଼ିଶା ସରକାରଙ୍କ ପକ୍ଷରୁ ଖାନତଲାସ୍ କରାଯାଇଥିଲା ଏବଂ ସେଠାରୁ ବହୁ ଗୁପ୍ତ ଷଡ଼ଯନ୍ତ୍ରମୂଳକ କାଗଜପତ୍ର ଜବତ କରାଯାଇଥିଲା । ସେଥିରେ ସଂଶ୍ଳିଷ୍ଟଥିବା ବହୁ ବିଶିଷ୍ଟ ବ୍ୟକ୍ତିଙ୍କର ନାମ ମଧ୍ୟ ଜଣାପଡ଼ିଥିଲା । ୟୁନିୟନ ଆନ୍ଦୋଳନ ଯେତେବେଳେ ଓଡ଼ିଶାରେ ତିଷ୍ଠି ନପାରିଲା, ସେତେବେଳେ ଓଡ଼ିଶାରେ ଗଣତନ୍ତ୍ର ପରିଷଦ ନାମରେ ଗୋଟିଏ ରାଜନୈତିକ ଦଳ ଏହି ରାଜା-ମହାରାଜାଙ୍କ ନେତୃତ୍ୱରେ ଗଠିତ ହୋଇଥିଲା । ହୀରାକୁଦ-ବନ୍ଧଯୋଜନା-ବିରୋଧୀ ଆନ୍ଦୋଳନକୁ ଏହି ଗଣତନ୍ତ୍ର ପରିଷଦ ଦଳ ମାଧ୍ୟମରେ ଉତ୍ସାହିତ କରି ସମ୍ବଲପୁର ଅଞ୍ଚଳରେ କିଛିଦିନପାଇଁ ନାନା ଅଶାନ୍ତି ସୃଷ୍ଟି କରାଯାଇଥିଲା । ଜଙ୍ଗଲ ସମ୍ପଦର ସୁରକ୍ଷାପାଇଁ ଯେଉଁସବୁ ଆଇନ ପ୍ରଣୟନ କରି ସେଠାରେ କାର୍ଯ୍ୟକାରୀ କରାଗଲା ତାହାର କଦର୍ଥ କରି ଲୋକଙ୍କୁ ଉତ୍ତେଜିତ କରାଗଲା । ଏହିଭଳି କେତେକ ଲୋକ ନାନାପ୍ରକାର ବୈଷମ୍ୟଭାବ ପ୍ରଚାରକରି କିଛିଦିନପାଇଁ ଲୋକମାନଙ୍କୁ ବିଭ୍ରାନ୍ତ କରିପାରିଥିଲେ ଏବଂ ଓଡ଼ିଶା ରାଜନୀତିରେ ବହୁ ହଟଚମଟ କରିବାର ସୁଯୋଗ ପାଇଥିଲେ ।

କଟକ ସହର ଓ ଉପକୂଳ ଅଞ୍ଚଳରେ ୟୁନିୟନ ଆନ୍ଦୋଳନର ସଙ୍ଗଠନ ଏବଂ ତା'ର ସଫଳତା ବିଷୟ ଉଲ୍ଲେଖ କରି ରାଜା-ମହାରାଜାମାନଙ୍କୁ କିପରି ଭ୍ରାନ୍ତ ଧାରଣା ଦିଆଯାଉଥିଲା ଏବଂ ତା ସଙ୍ଗେ ସଙ୍ଗେ କିପରି ଅର୍ଥ ଉପାର୍ଜନ କରାହେଉଥିଲା ତାହା ନିମ୍ନରେ ଉଦ୍ଧୃତ ଘଟଣାରୁ ସ୍ପଷ୍ଟ ବୁଝିହେବ । ରାଜା-ମହାରାଜାମାନଙ୍କୁ ଧାରଣା ଦିଆହେଉଥିଲା ଯେ କଟକର ଲୋକମାନଙ୍କୁ ମଧ୍ୟ ଓଡ଼ିଶା ବିଭାଜିତ ହୋଇ ଦୁଇଟା ପ୍ରଦେଶ ହେବା ସପକ୍ଷରେ ପ୍ରବର୍ତ୍ତାଯାଇପାରିଛି । ୧୯୪୮ ମସିହା ମେ ମାସ ପନ୍ଦର ତାରିଖରେ ଷଡ଼େଇକଳାର କୁମାରସାହେବଙ୍କୁ ଶ୍ରୀ ସୁରେନ୍ଦ୍ର ମହାନ୍ତି ଲେଖିଥିଲେ, ''ଗତକାଲି ଟାଉନ୍ ହଲ୍‌ରେ ଗୋଟିଏ ବିରାଟ ସଭା ହୋଇଥିଲା । ଏହି ସଭାରେ ଶାସନବିଧାୟକ ସଭାର ସଭ୍ୟ ପଣ୍ଡିତ ଲକ୍ଷ୍ମୀନାରାୟଣ ସାହୁ ସଭାପତିତ୍ୱ କରି ଗଡ଼ଜାତ ୟୁନିୟନ ସପକ୍ଷରେ ମତ ପ୍ରକାଶ କରିଥିଲେ । ରାଜଧାନୀ କଟକ ସହରରେ ମଧ୍ୟ ବହୁସଂଖ୍ୟକ ଲୋକ ୟୁନିୟନ ପ୍ରସ୍ତାବକୁ ସମର୍ଥନ କରୁଛନ୍ତି । ସଭାସମିତି କରିବା ଓ ଲୋକ ପଠାପଠି କରିବାପାଇଁ ଟଙ୍କା ଅଭାବରୁ ଆମେ ବଡ଼ ଅସୁବିଧାରେ ପଡ଼ିଛୁ ।'' ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଓଡ଼ିଶାର ଜଣେ ପ୍ରତିଷ୍ଠିତ ସମାଜସେବୀ ନେତା ଥିଲେ । ଶାସନବିଧାୟକ ସଭାର ସଭ୍ୟ ଥାଇ ଦିଲ୍ଲୀରେ ନେତୃବର୍ଗଙ୍କ ମଧ୍ୟରେ ସେ ଜଣେ ଜଣାଶୁଣା ସମ୍ମାନିତ ବ୍ୟକ୍ତି ଥାଆନ୍ତି । ତାଙ୍କୁ ବିଭ୍ରାନ୍ତ କରି ରାଜା-ମହାରାଜାମାନେ ଦିଲ୍ଲୀରେ ଓଡ଼ିଶାର ସ୍ୱାର୍ଥବିରୋଧୀ କାର୍ଯ୍ୟରେ ବ୍ୟବହାର କରିବା କଥା ସେତେବେଳେ ଶୁଣାଯାଉଥାଏ ।

ଉପରୋକ୍ତ କଟକ ସଭାରେ ଅଧ୍ୟକ୍ଷତା କରି ଏ ପ୍ରକାର ଧାରଣାକୁ ସେ ଦୃଢ଼ୀଭୂତ କରିଥିଲେ । ସେହି ମାସ ୧୯ ତାରିଖରେ ଶ୍ରୀ ମଧୁ ମହାନ୍ତି ଷଢ଼େଇକଳାର କୁମାରସାହେବଙ୍କୁ ଲେଖିଥିଲେ, ''ଆମ ବିଜୟ ଯେତିକି ସ୍ପଷ୍ଟ ହେଉଛି ବିରୋଧୀମାନେ ସେତିକି ଜୋର୍‌ରେ ଲାଗିପଡ଼ୁଛନ୍ତି, ତେଣୁ ମୁଁ ଅସୁବିଧାରେ ପଡ଼ିଯାଉଛି । ଏ ମାସ ଶେଷପର୍ଯ୍ୟନ୍ତ କାମ ଚଳାଇବାପାଇଁ ଦୁଇ ହଜାର ଟଙ୍କା ନିତାନ୍ତ ଦରକାର ।''

୧୯୪୮ ମସିହା ଜାନୁୟାରୀ ଅଠେଇଶ ତାରିଖରେ ଗଡ଼ଜାତ ମିଶ୍ରଣ ପରେ ଓଡ଼ିଶାର ପ୍ରାଦେଶିକ ଶାସନ ସହିତ ଗଡ଼ଜାତ ରାଜ୍ୟର ପ୍ରତିନିଧିମାନଙ୍କୁ ସଂପୃକ୍ତ କରିବାପାଇଁ ପ୍ରଦେଶର ପ୍ରଧାନମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଗୋଟିଏ ଏକ୍‌ଜିକ୍ୟୁଟିଭ କାଉନ୍‌ସିଲ୍ (Executive Council) ଗଠିତ ହୋଇଥିଲା । ତାଳଚେରର ପ୍ରଜାମଣ୍ଡଳ ନେତା ଶ୍ରୀ ପବିତ୍ରମୋହନ ପ୍ରଧାନ, ବଲାଙ୍ଗୀର କୃଷକଦଳ ନେତା ଶ୍ରୀ କପିଳ ପ୍ରସାଦ ନନ୍ଦ ଓ ନୀଳଗିରି ପ୍ରଜାମଣ୍ଡଳ ନେତା ଶ୍ରୀ କୈଳାସଚନ୍ଦ୍ର ମହାନ୍ତିଙ୍କୁ ଓଡ଼ିଶାର ଲାଟ୍ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲର ରୂପେ ନିଯୁକ୍ତ କଲେ । ଏଥିପୂର୍ବରୁ ଶ୍ରୀ କୈଳାସଚନ୍ଦ୍ର ମହାନ୍ତି ୧୯୪୬ ମସିହା ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀରୂପେ ବାଲେଶ୍ୱର ଜିଲ୍ଲା ସୋର ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇ ଆସିଥା'ନ୍ତି । ସରକାରଙ୍କର ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲରରୂପେ ମନୋନୀତ ହେବା ପରେ ଆଇନ ଅନୁସାରେ ସେ ଆଉ ବିଧାନସଭାର ସଭ୍ୟ ହୋଇ ରହିପାରି ନଥାନ୍ତେ । ତେଣୁ ବାଲେଶ୍ୱର ଜିଲ୍ଲାର ସେହି ସ୍ଥାନଟି ବିଧାନସଭାରେ ଖାଲିପଡ଼ିଥିଲା । ପରେ ଏହି ନିର୍ବାଚନମଣ୍ଡଳୀରୁ ମୁଁ ନିର୍ଦ୍ୱନ୍ଦରେ ବିଧାନସଭାକୁ ନିର୍ବାଚିତ ହୋଇ ଆସିଥିଲି । ଏହି ଉପନିର୍ବାଚନ ସଂକ୍ରାନ୍ତରେ ୧୯୪୮ ମସିହା ମେ' ମାସ ନଅ ତାରିଖରେ ଶ୍ରୀ ମଧୁସୂଦନ ମହାନ୍ତି ଷଢ଼େଇକଳାର କୁମାର ବିଜୟପ୍ରତାପ ସିଂହଙ୍କୁ ଲେଖିଥିଲେ, ''ଗାଙ୍ଗପୁର ଲୋକମାନଙ୍କୁ ମତାଇବା ନିମନ୍ତେ ନଟବରଙ୍କ ନିକଟକୁ ରାଜବଲ୍ଲଭ ମିଶ୍ରଙ୍କୁ ତୁରନ୍ତ ପଠାଇବା ଉଚିତ । ଏଠାରେ ପରିସ୍ଥିତିକୁ ଆୟତ୍ତାଧୀନ କରିସାରିବା ସଙ୍ଗେ ସଙ୍ଗେ ମୁଁ ଚାଲିଯିବି ଏବଂ ପଟ୍ଟାୟତ ପ୍ରଭୃତିଙ୍କ ସଙ୍ଗେ ସାକ୍ଷାତ୍ କରିବି । ପୁରୀ, ଗଞ୍ଜାମ ଓ କୋରାପୁଟ ଲୋକଙ୍କୁ ମତାଇଦେଇଛି । ମିଶ୍ରଣ ସମସ୍ୟା ଉପରେ ବାଲେଶ୍ୱରରେ ଉପନିର୍ବାଚନ ହେବ । ସୁର ହାତରେ ଯେକୌଣସିମତେ ହଜାରେ ଟଙ୍କା ପଠାଇବେ । ମୋ ପାଖରୁ ସବୁ ଟଙ୍କା ଶେଷହୋଇଗଲାଣି ।'' ରାଜା-ମହାରାଜାମାନଙ୍କୁ ଭୁଆଇ କିପରି ଟଙ୍କା ଆଦାୟ କରାଯାଉଥିଲା ସେ ବିଷୟରେ ଉଲ୍ଲିଖିତ କେତେକ ଦୃଷ୍ଟାନ୍ତରୁ ସ୍ପଷ୍ଟ ଧାରଣା ମିଳେ ।

## ମୋର ବ୍ୟବସ୍ଥାପକ ଜୀବନ ଆରମ୍ଭ

ଉପରେ ଉଦ୍ଧୃତ ଚିଠିରେ ବାଲେଶ୍ୱର ଜିଲ୍ଲାରେ ଯେଉଁ ଉପନିର୍ବାଚନ କଥା ଉଲ୍ଲେଖ କରାଯାଇଛି, ତାହା ହେଉଛି ସୋର ନିର୍ବାଚନମଣ୍ଡଳୀରେ ଖାଲିପଡ଼ିଥିବା ସ୍ଥାନଟିକୁ ପୂରଣ କରିବାପାଇଁ ହେବାକୁ ଯାଉଥିବା ଉପନିର୍ବାଚନ । ନୀଳଗିରିର ପ୍ରଜାମଣ୍ଡଳ ନେତା ଶ୍ରୀ କୈଳାସ ଚନ୍ଦ୍ର ମହାନ୍ତି ବାଲେଶ୍ୱର ଜିଲ୍ଲାରେ ମଧ୍ୟ ଜଣେ ସୁପରିଚିତ କଂଗ୍ରେସ ନେତା ଥିଲେ । କୈଳାସବାବୁ ଜଣେ ଗଡ଼ଜାତବାସୀ ହେଲେ ମଧ୍ୟ ୧୯୪୬ ମସିହାରେ ପ୍ରଦେଶ ବିଧାନସଭାପାଇଁ ଯେଉଁ ନିର୍ବାଚନ ହୋଇଥିଲା, ସେଥିରେ ତାଙ୍କୁ ବାଲେଶ୍ୱର ଜିଲ୍ଲାର ଭୋଟର ତାଲିକାଭୁକ୍ତ କରି ସୋର ନିର୍ବାଚନମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀରୂପେ ବିଧାନସଭାକୁ ନିର୍ବାଚିତ କରାଯାଇଥିଲା । ୧୯୪୮ ମସିହା ଜାନୁୟାରୀ ମାସରେ ଓଡ଼ିଶା ସହିତ ଗଡ଼ଜାତ ରାଜ୍ୟଗୁଡ଼ିକର ମିଶ୍ରଣ ହୋଇଗଲା ପରେ ପୂର୍ବତନ ଗଡ଼ଜାତମାନଙ୍କରୁ ଏକତ୍ରିଶ ଜଣ ମନୋନିତ ସଭ୍ୟଙ୍କୁ ନେଇ ପୂର୍ବତନ ଗଡ଼ଜାତ ଅଞ୍ଚଳ ଶାସନପାଇଁ ଏକ ଅସ୍ଥାୟୀ ସ୍ୱତନ୍ତ୍ର ବିଧାନସଭା ଗଠନ କରାଯାଇଥିଲା । ୧୯୪୮ ମସିହା ଜାନୁୟାରୀ ଅଠେଇଶ ତାରିଖରେ ଏକ୍‌ଜିକ୍ୟୁଟିଭ କାଉନ୍‌ସିଲର୍‌ରୂପେ ନିଯୁକ୍ତି ଗ୍ରହଣ କରିବା ପରେ କୈଳାସବାବୁ ବ୍ୟବସ୍ଥାସଭାର ସଭ୍ୟପଦରୁ

ଇସ୍ତଫା ଦେବାରୁ ତାଙ୍କ ସ୍ଥାନଟି ଖାଲିପଡ଼ିଲା । ଗଭୀର ଦୁଃଖର କଥା ଯେ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲର ପଦ ଗ୍ରହଣ କରିବାର ମାତ୍ର ଦୁଇ ମାସ ମଧ୍ୟରେ ଏକ ଆକସ୍ମିକ ମଟର ଦୁର୍ଘଟଣାରେ କୈଳାସବାବୁ ପ୍ରାଣହରାଇଥିଲେ । ତେଣୁ ଅନେକଙ୍କ ମନରେ ଧାରଣା ହୋଇଥିଲା ଯେ କୈଳାସବାବୁଙ୍କ ମୃତ୍ୟୁ ଯୋଗୁଁ ବିଧାନସଭାରେ ସୋର ଆସନଟି ଖାଲିପଡ଼ିଥିଲା । କିନ୍ତୁ ତାହା ଠିକ୍ ନୁହେଁ । ଯେଉଁ ଏକତ୍ରିଶ ଜଣ ମନୋନୀତ ସଭ୍ୟଙ୍କ କଥା ମୁଁ ପୂର୍ବରୁ କହିଛି, ସେମାନେ ପରେ ବିଧିବଦ୍ଧଭାବରେ ବଡ଼ଲାଟ୍‌ଙ୍କଦ୍ୱାରା ମନୋନୀତ ହୋଇ ବିଧାନସଭାର ଆଇନାନୁମୋଦିତ ସଭ୍ୟ ରୂପେ ଗଣ୍ୟ ହୋଇଥିଲେ । ବିଧାନସଭାର ସଭ୍ୟସଂଖ୍ୟା ଏକାନବେକୁ ବୃଦ୍ଧିପାଇଥିଲା ।

ଓଡ଼ିଶା ବିଧାନସଭାକୁ ସୋର ନିର୍ବାଚନମଣ୍ଡଳୀରୁ ଉପନିର୍ବାଚନ ସମ୍ବନ୍ଧରେ ସରକାରୀ ଘୋଷଣା ପ୍ରକାଶପାଇଥିଲା । ରାଜା-ମହାରାଜାଙ୍କର 'ୟୁନିୟନ ଆନ୍ଦୋଳନ' ପକ୍ଷରୁ ଏଠାରେ ପ୍ରାର୍ଥୀ ଠିଆ କରିବାର ଉଦ୍ଭଟ ମସୁଧା ବିଷୟ ଆଗରୁ କୁହାଯାଇଛି । ୟୁନିୟନ୍ ଆନ୍ଦୋଳନର ଉଦ୍ଦେଶ୍ୟ ଥିଲା ଓଡ଼ିଶାକୁ ଦୁଇଭାଗ କରିବା । ଏ କଥା ସୋର ନିର୍ବାଚନମଣ୍ଡଳୀର ଲୋକେ ଯେ ପସନ୍ଦ କରିବେ ଏହା ସେତେବେଳେ ଥିଲା ଚିନ୍ତାର ବହିର୍ଭୂତ କଥା । ତଥାପି ସେଇ ଆଳରେ ରାଜା-ମହାରାଜାଙ୍କଠାରୁ ଟଙ୍କା ସଂଗ୍ରହ କରିବାପାଇଁ ଯେଉଁ ଉଦ୍ୟମ ହେଉଥିଲା, ତାହାର ନିଦର୍ଶନ ପୂର୍ବରୁ ଦିଆଯାଇଛି । ସୋର ନିର୍ବାଚନମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ କିଏ ହେବ ବୋଲି କଂଗ୍ରେସଦଳ ଭିତରେ କଳ୍ପନାଜଳ୍ପନା ଚାଲିଲା । କଟକରୁ ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ ପ୍ରଭୃତି କେତେକ ବିଶିଷ୍ଟ ନେତାଙ୍କ ନାମ ଶୁଣାଯାଉଥିଲା । ବାଲେଶ୍ୱର ଜିଲ୍ଲାରୁ ଶ୍ରୀ ଗୋକୁଳାନନ୍ଦ ମହାନ୍ତିଙ୍କ ନାମ ମଧ୍ୟ ଶୁଣାଯାଉଥିଲା । ମୁଁ ସେତେବେଳେ ପ୍ରଜାତନ୍ତ୍ର ଅଫିସ୍‌ର ପରିଚାଳନା ଦାୟିତ୍ୱରେ ଥାଏ । ତା ସଙ୍ଗେ ସଙ୍ଗେ କଟକରେ ଆଇନ ବ୍ୟବସାୟ କରିବି ବୋଲି ଆଡ଼ଭୋକେଟ୍ ଶ୍ରୀ ରାଜକିଶୋର ଦାସଙ୍କର ଅଫିସ୍‌କୁ ମଧ୍ୟ ଯିବା ଆସିବା କରୁଥାଏ । ମୁଁ ଆଇନ ବ୍ୟବସାୟରେ ଭଲକରିପାରିବି ବୋଲି ରାଜୁବାବୁ ମୋତେ ଉତ୍ସାହିତ କରିଥାଆନ୍ତି । କଂଗ୍ରେସପ୍ରାର୍ଥୀ ବାଛିବା ଉଦ୍ଦେଶ୍ୟରେ କାର୍ଯ୍ୟ ଆରମ୍ଭ ହୋଇଯାଇଥାଏ । ସେତେବେଳେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଥାଆନ୍ତି ଶ୍ରୀ ନନ୍ଦକିଶୋର ଦାସ । ଦିନେ ପ୍ରଜାତନ୍ତ୍ର ପ୍ରାଙ୍ଗଣରେ ମହତାବବାବୁ ଓ ନନ୍ଦବାବୁ ଦୁଇଜଣ ବସି କଥାବାର୍ତ୍ତା ହେଉଥାଆନ୍ତି । କୌଣସି କାର୍ଯ୍ୟ ଉପଲକ୍ଷ୍ୟେ ହଠାତ୍ ମୁଁ ସେଇ ବାଟେ ଚାଲିଗଲି । ମୋତେ ଦେଖି ସେମାନେ ମୋ ବିଷୟରେ ଆଲୋଚନା କରିବାକୁ ଲାଗିଲେ । ଅଗଷ୍ଟ ବିପ୍ଳବରେ ଜେଲ୍‌ଦଣ୍ଡକୁ ସେତେବେଳେ କଂଗ୍ରେସପ୍ରାର୍ଥୀ ନିର୍ବାଚନରେ ଗୋଟିଏ ବଡ଼ ମାପକାଠିରୂପେ ଧରାଯାଉଥିଲା । ସେ ଯୋଗ୍ୟତା ମୋର ଥାଏ । ତା ବ୍ୟତୀତ ଛାତ୍ର ଆନ୍ଦୋଳନରେ ମୋର ଭୂମିକା ସେମାନଙ୍କୁ ଜଣାଥିଲା । ସର୍ବୋପରି ମୁଁ ମଧ୍ୟ ବାଲେଶ୍ୱର ଜିଲ୍ଲାର ଜଣେ ସକ୍ରିୟ ଉତ୍ସାହୀ ଯୁବକ । ତେଣୁ ମୁଁ ସୋର ନିର୍ବାଚନମଣ୍ଡଳୀରୁ ଉପନିର୍ବାଚନରେ ପ୍ରାର୍ଥୀ ହେଲେ ଠିକ୍ ହେବ ବୋଲି ସେ ଦୁଇଜଣ ସେହିଠାରେ ନିଷ୍ପତ୍ତି କରିଦେଇଥିଲେ । କଂଗ୍ରେସ କମିଟିରେ ବିଧିବଦ୍ଧ ଆଲୋଚନା ହେବା ପରେ ଉପନିର୍ବାଚନରେ କଂଗ୍ରେସ ପ୍ରାର୍ଥୀରୂପେ ମନୋନୀତ ହେଲି ବୋଲି ପ୍ରଦେଶ କଂଗ୍ରେସ କାର୍ଯ୍ୟାଳୟରୁ ମୋ ପାଖକୁ ଚିଠି ଆସିଲା ।

ନିର୍ବାଚନ ଅଫିସରଙ୍କ ପାଖରେ ପ୍ରାର୍ଥୀପତ୍ର ଦାଖଲ କରିବାପାଇଁ ଯେଉଁ ଦିନ ଧାର୍ଯ୍ୟ ହୋଇଥିଲା ତା'ର ଦୁଇ ଦିନ ପୂର୍ବରୁ ଶ୍ରୀ ବୀରେନ୍ ମିତ୍ରଙ୍କୁ ସାଙ୍ଗରେ ନେଇ ମୁଁ ବାଲେଶ୍ୱର ଗଲି । କଂଗ୍ରେସ ପକ୍ଷରୁ ମୁଁ ପ୍ରାର୍ଥୀ ହେବା କଥା ଜାଣିବା ପରେ ସେଠା ସରକାରୀ କର୍ମଚାରୀ ମହଲରେ ମଧ୍ୟ ଉତ୍ସାହ ଲକ୍ଷ୍ୟକରିଥିଲି, ଏପରିକି ନିଜେ କଲେକ୍ଟର ଖୁବ୍ ଖୁସିହୋଇଥିଲେ ଏବଂ ମୋପରି ଜଣେ ଯୁବକକୁ ସବୁ ପ୍ରକାର ସାହାଯ୍ୟ କରିବାପାଇଁ ଆଗ୍ରହ ପ୍ରକାଶ କରିଥିବାର ଲକ୍ଷ୍ୟକରିଥିଲି । ବାଲେଶ୍ୱରରେ ଆମ ରହଣି ସମୟରେ ଶୁଣିଲୁ ଯେ ଆହୁରି କେତେକ ଲୋକ ଇଚ୍ଛା କରୁଛନ୍ତି ପ୍ରାର୍ଥୀ ହେବାପାଇଁ । ଜଣେ ଦୁଇ ଜଣ ଓକିଲ ପ୍ରାର୍ଥୀପାଇଁ ଉଦ୍ଦିଷ୍ଟ ଦରଖାସ୍ତ ଫର୍ମ ଅଫିସରୁ ନେବାର ଶୁଣିଲୁ । ଶ୍ରୀ

କିଶୋରୀ ମୋହନ ଦାସ ବୋଲି ସେଠା ପୁଲିସ୍ ଅଫିସରେ ଜଣେ ଅମଲା ଥିଲେ ମୋର ଭିଣୋଇଙ୍କର ବ୍ୟକ୍ତିଗତ ବନ୍ଧୁ । ସେ ପ୍ରାର୍ଥୀପତ୍ରରେ ଯେପରି ପ୍ରସ୍ତାବକ ଓ ସମର୍ଥକ ରହିବାର କଥା ସେହିପରି ଲେଖାଇନେଇଥିଲେ । ନିର୍ବାଚନ ସମ୍ବନ୍ଧରେ ଆଲୋଚନା କରିବାପାଇଁ କଲେକ୍ଟର ଶ୍ରୀ ସତୀଶଚନ୍ଦ୍ର ମିତ୍ର ତାଙ୍କ ଅଫିସ୍‌ରେ ଏକ ବୈଠକ ଡାକିଥିଲେ । ପ୍ରାର୍ଥୀପତ୍ର ଦାଖଲ କରିଥିବା ଓ ସେଥିପାଇଁ ଇଚ୍ଛୁକ ଥିବା ବ୍ୟକ୍ତିମାନେ ସେହି ବୈଠକରେ ଯୋଗଦେଇଥିଲେ । କଥାପ୍ରସଙ୍ଗରେ ସେ ଏ ପ୍ରକାର ଭାବଭଙ୍ଗୀ ଦେଖାଇଲେ ଯେ ପ୍ରାର୍ଥୀ ହେବାପାଇଁ ଅନେକଙ୍କର ଉତ୍ସାହ ଭାଙ୍ଗିପଡ଼ିଥିଲା । ସେ କହିଥିଲେ, ସେତେବେଳକାର ବାୟୁମଣ୍ଡଳ ଯାହା ସେଥିରେ ଭୋଟ ଫଳାଫଳ ଯାହା ହେବ ତାହା ନିଶ୍ଚୟ ସମସ୍ତେ ଅନୁମାନ କରିପାରୁଥିବେ, ତଥାପି ଯଦି ଖାଲି ଆମ ଅଫିସରମାନଙ୍କୁ ହଇରାଣ ହରକତ କରିବାପାଇଁ କେହି ପ୍ରତିଦ୍ୱନ୍ଦ୍ୱିତା କରିବାକୁ ଚାହୁଁଥା'ନ୍ତି ତା' ହେଲେ ସେମାନେ କରନ୍ତୁ । ସେଦିନ ପ୍ରାର୍ଥୀପତ୍ର ଦାଖଲ କରିବାର ଶେଷ ଦିନ ଥାଏ । ଆମ ଦଳର ଶ୍ରୀ ଗୋକୁଳାନନ୍ଦ ମହାନ୍ତି ପ୍ରାର୍ଥୀପତ୍ର ଦାଖଲ କରିନଥିଲେ ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ଗୋକୁଳିବାବୁଙ୍କର ଉଦ୍ଦେଶ୍ୟ ଥିଲା ଯେ ଆମ ଦୁଇ ଜଣଙ୍କ ଭିତରେ ବୁଝାମଣା ହୋଇ ଯାହା କିଛି ହେବ । କଲେକ୍ଟର ଶ୍ରୀ ମିତ୍ର ଗୋକୁଳିବାବୁଙ୍କର ଗଠନମୂଳକ ଓ ରଚନାତ୍ମକ କାର୍ଯ୍ୟର ବହୁ ପ୍ରଶଂସା କରିବାକୁ ଲାଗିଲେ । ପରୋକ୍ଷରେ ତାଙ୍କୁ ଧାରଣା ଦେଲେ ଯେ ଏଭଳି ମହତକାର୍ଯ୍ୟ ଛାଡ଼ି ସେ ଏପ୍ରକାର ନିର୍ବାଚନ ଲଢ଼େଇ କାର୍ଯ୍ୟରେ କାହିଁକି ଅବା ମନ ବଳାଇବେ ? ଏ କଥା ଶୁଣି ସେ ଆଉ ପ୍ରାର୍ଥୀ ହେବାପାଇଁ ମନ ବଳାଇଲେ ନାହିଁ । ପ୍ରାର୍ଥୀପତ୍ର ଦାଖଲର ଶେଷ ଦିନ ସୋର ଉପନିର୍ବାଚନରୁ ମୁଁ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହେଲି ବୋଲି ଘୋଷଣା କରାଯାଇଥିଲା । ତା'ପରେ ପ୍ରମାଣପତ୍ର (Certificate of election) ଧରି ଆମ୍ଭେମାନେ କଟକ ଫେରିଲୁ । ଅନେକଆଡୁ ଅଭିନନ୍ଦନ ଜଣାଇ ତାରବାର୍ତ୍ତା ଓ ଚିଠି ଆସିଥିଲା । ମୋର ବହୁ ବନ୍ଧୁ ଓ ଶୁଭେଚ୍ଛୁ ମୋ ପାଖକୁ ଆସି ଅଭିନନ୍ଦନ ଜଣାଇଥିଲେ । ମୋ ବିଧାୟକ ଜୀବନର ଏହି ଅନୁକୂଳ ସମୟରେ ସମସ୍ତଙ୍କର ସାହାଯ୍ୟ ସହାନୁଭୂତି ଓ ଶ୍ରଦ୍ଧାପାଇଁ ମୁଁ ସବୁବେଳେ ନିଜକୁ ଅନୁଗୃହୀତ ମନେକରିଆସିଛି ।

୧୯୪୮ ମସିହା ଜୁଲାଇ ବାରତାରିଖ ସକାଳ ଏଗାରଟା ସମୟରେ ରେଭେନ୍‌ସା କଲେଜ ହଲ୍‌ରେ ଓଡ଼ିଶା ବ୍ୟବସ୍ଥାସଭାର ଅଧିବେଶନ ଆରମ୍ଭହେଲା । ଏହି ଦିନଟି ମୋ ଜୀବନରେ ବହୁ ପ୍ରତ୍ୟାଶିତ ସ୍ମରଣୀୟ ଦିବସ ହୋଇ ରହିବ । ବାଚସ୍ପତି ମାନ୍ୟବର ଲାଲମୋହନ ପଟ୍ଟନାୟକ ନୂତନ ସଭ୍ୟ ହିସାବରେ ମୋତେ ଶପଥ ପାଠ କରାଇଥିଲେ । ଶପଥ ଗ୍ରହଣ ପରେ ଭଗବାନ୍‌ଙ୍କୁ ସ୍ମରଣ କରି ମୁଁ ନିଜ ସ୍ଥାନରେ ଆସି ବସିଲି । ଯେଉଁ ନୂତନ ଜୀବନ ଆରମ୍ଭକଲି, ସେଥିରେ ସଫଳତା ହାସଲ କରିବାପାଇଁ ଭଗବାନ୍‌ଙ୍କଠାରେ ପ୍ରାର୍ଥନା କରିଥିଲି । ମୁଁ ସେଦିନ ଶପଥ ନେବି ବୋଲି ମୋର ସାଙ୍ଗସାଥୀ, ବନ୍ଧୁବର୍ଗ ବିଧାନସଭା ଦର୍ଶକ ଗ୍ୟାଲେରୀରେ ଉପସ୍ଥିତ ଥାଆନ୍ତି । ଦର୍ଶକ ଗ୍ୟାଲେରୀ ଆଡ଼କୁ ଅନାଇ ସମସ୍ତଙ୍କୁ ନମସ୍କାରକଲି । ମୋ ସ୍ଥାନରେ ଆସନ ଗ୍ରହଣ କରିବାମାତ୍ରେ ସର୍ବପ୍ରଥମେ ସେଦିନ ବାଚସ୍ପତି ମୋ ନାମ ଡାକିଲେ । ସେଦିନ ସଭାର କାର୍ଯ୍ୟାବଳୀରେ ପ୍ରଶ୍ନୋତ୍ତର କାର୍ଯ୍ୟନିର୍ଘଣ୍ଟରେ ପ୍ରଥମ ତିନିଗୋଟି ପ୍ରଶ୍ନ ଥିଲା ମୋର । ଗୃହରେ ପ୍ରବେଶ କଲାମାତ୍ରେ ମୋର ପ୍ରଶ୍ନଗୁଡ଼ିକ କିପରି ଆସିଗଲା ବୋଲି ଅନେକେ ବିସ୍ମିତ ହୋଇଥିଲେ । ଭାରତରେ ଆଉ ଚାରୋଟି ନୂତନ ପ୍ରଦେଶ ଗଠନ କରିବା ବିଷୟ ବିଚାର କରିବାପାଇଁ ବହୁ ପ୍ରଦେଶରୁ ସଭ୍ୟ ନେଇ ଶାସନ ବିଧାୟକସଭାର ସଭାପତି ଗୋଟିଏ କମିଶନ ନିଯୁକ୍ତ କରିଥା'ନ୍ତି । ସେହି କମିଶନରେ ଓଡ଼ିଶାରୁ କାହିଁକି କୌଣସି ଜଣେହେଲେ ବ୍ୟକ୍ତିଙ୍କୁ ସଭ୍ୟ କରାଯାଇନାହିଁ ବୋଲି ମୁଁ ପ୍ରଶ୍ନ କରିଥିଲି । କେନ୍ଦ୍ର ସରକାର ଭାରତବର୍ଷରେ କେଉଁଠିସବୁ ନୂତନ ପୋତାଶ୍ରୟ ହୋଇପାରିବ ସେ ବିଷୟରେ ଅନୁସନ୍ଧାନ କରିବାପାଇଁ ଯେଉଁ କମିଟି ଗଠନ କରିଥିଲେ ସେହି କମିଟି ଓଡ଼ିଶାକୁ ଆସି ଆମ ସମୁଦ୍ର ଉପକୂଳରେ ଥିବା ଧାମରା, ଗୋପାଳପୁର ଓ ବାଲେଶ୍ୱର ପ୍ରଭୃତି ସ୍ଥାନଗୁଡ଼ିକ କାହିଁକି ଅନୁସନ୍ଧାନ କରିନାହାନ୍ତି ସେ ବିଷୟରେ

ପ୍ରଶ୍ନ କରିଥିଲି । ଭାରତ ସରକାରଙ୍କଦ୍ୱାରା ନିଯୁକ୍ତ କମିଟି ଯେପରି ଓଡ଼ିଶାକୁ ଆସିବେ ସେ ବିଷୟରେ ଓଡ଼ିଶା ସରକାର କେନ୍ଦ୍ର ସରକାରଙ୍କୁ ଲେଖି ବ୍ୟବସ୍ଥା କରିବେ ବୋଲି ସରକାର ଜଣାଇଥିଲେ । ଧାମରା ବନ୍ଦର କଥା କେନ୍ଦ୍ର ସରକାରଙ୍କ ଦୃଷ୍ଟିକୁ ଅଣାଯାଇଛି ବୋଲି ସରକାର କହିଥିଲେ । ସେହି ଦିନର ବ୍ୟବସ୍ଥାସଭାର ଅଧିବେଶନ ବଡ଼ ଗୁରୁତ୍ୱପୂର୍ଣ୍ଣ ଓ ଉତ୍ତେଜନାମୟ ଥିଲା । ପ୍ରଶ୍ନୋତ୍ତର ପରେ ବାଚସ୍ପତି ଘୋଷଣା କରିଥିଲେ ଯେ ରାଜ୍ୟପାଳ ମହାମାନ୍ୟ ଶ୍ରୀ ଆସଫ୍ ଅଲ୍ଲୀ ବ୍ୟବସ୍ଥାସଭାକୁ ସେହିକ୍ଷଣି ଉଦ୍‌ବୋଧନ ଦେବେ । ଏହା ଗୋଟିଏ ନୂଆ କଥା । ରାଜ୍ୟପାଳ ଯେଉଁଦିନ ଆସେମ୍ବ୍ଲିକୁ ଆସି ଉଦ୍‌ବୋଧନ ଦିଅନ୍ତି, ସେ କଥା କାର୍ଯ୍ୟ-ନିର୍ଘଣ୍ଟରେ ଲିପିବଦ୍ଧ ହୋଇଥାଏ ଏବଂ ବ୍ୟବସ୍ଥାସଭାରେ କୌଣସି କାର୍ଯ୍ୟ ଆରମ୍ଭ ହେବା ପୂର୍ବରୁ ହିଁ ରାଜ୍ୟପାଳ ଭାଷଣ ଦିଅନ୍ତି । କିନ୍ତୁ ସେଦିନ ପ୍ରଶ୍ନୋତ୍ତର ପରେ ବିଧାନସଭାରେ ଆବିର୍ଭୂତ ହେଲେ ରାଜ୍ୟପାଳ । ରାଜ୍ୟପାଳଙ୍କର ସେ ଦିନର ଭାଷଣ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଥିଲା । ଗଡ଼ଜାତଗୁଡ଼ିକ ଓଡ଼ିଶା ପ୍ରଦେଶ ସହ ମିଶିବା ପରେ କେତେକ ରାଜା ଯେପରି ବିଶୃଙ୍ଖଳ ଆଚରଣ ପ୍ରଦର୍ଶନକରି ଶାନ୍ତିଭଙ୍ଗ କରୁଥିଲେ, ସେ କଥା ଉଲ୍ଲେଖ କରି ସେଥିରୁ ନିବୃତ୍ତ ହେବାପାଇଁ ସେ ସେମାନଙ୍କୁ ପରାମର୍ଶ ଦେଇଥିଲେ । ଷଢ଼େଇକଳା ଓ ଖରସୁଆଁ ଓଡ଼ିଶାରୁ ଚାଲିଯାଇଥିବାରୁ ଲୋକଙ୍କ ମନରେ ଯେଉଁ ଦୁଃଖ ଏବଂ ନୈରାଶ୍ୟ ଦେଖାଦେଇଥିଲା, ସେ ବିଷୟରେ ସାନ୍ତ୍ୱନା ଦେଇ ସେ କହିଥିଲେ, ଏହା ସାମୟିକ ବ୍ୟାପାର ଏବଂ ପ୍ରକୃତ ନ୍ୟାୟ ପାଇବାପାଇଁ ତାଙ୍କ ସରକାର ଉଦ୍ୟମ କରିବ ।

ପ୍ରଧାନମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବ ସେହିଦିନ ଠିକ୍ ରାଜ୍ୟପାଳଙ୍କ ଭାଷଣ ପରେ ଷଢ଼େଇକଳା ଓ ଖରସୁଆଁ ଓଡ଼ିଶାରୁ ବିଚ୍ଛିନ୍ନ ହୋଇଯାଇଥିବା ଫଳରେ ଯେଉଁ ପରିସ୍ଥିତି ସୃଷ୍ଟି ହୋଇଥିଲା, ଷଢ଼େଇକଳାର ରାଜା, ରାଜପରିବାର ବିହାରରେ ମିଶିବାପାଇଁ ଯେଉଁସବୁ ଚକ୍ରାନ୍ତ କରୁଥିଲେ, ରାଜା-ମହାରାଜାମାନଙ୍କ ନେତୃତ୍ୱରେ ୟୁନିୟନ ଆନ୍ଦୋଳନ ଯେପରି ଭାବରେ କାର୍ଯ୍ୟ କରୁଥିଲା, ସେ ସମସ୍ତ ବିଷୟରେ ଗୋଟିଏ ବିଶଦ ବିବରଣୀ ବ୍ୟବସ୍ଥାସଭାରେ ଉପସ୍ଥାପିତ କରିଥିଲେ । ଓଡ଼ିଶାର ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ରାଜା-ମହାରାଜାମାନଙ୍କଠାରୁ ଟଙ୍କା ନେଇ ୟୁନିୟନ ଆନ୍ଦୋଳନ କରୁଥିଲେ, ସେମାନଙ୍କର ନାମ ଶ୍ରୀ ମହତାବ ତାଙ୍କ ବିବୃତିରେ ବ୍ୟବସ୍ଥାସଭାରେ ପ୍ରକାଶକରିଥିଲେ । ପ୍ରଧାନମନ୍ତ୍ରୀଙ୍କ ବିବୃତି ଉପରେ ଆଲୋଚନା କରିବାପାଇଁ ସେଦିନ ବ୍ୟବସ୍ଥାସଭାରେ ବହୁ ସଭ୍ୟ ଆଗ୍ରହ ପ୍ରକାଶ କରୁଥାଆନ୍ତି । ସର୍ବଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ସାରଙ୍ଗଧର ଦାସ, ଦୀନବନ୍ଧୁ ସାହୁ, ବିରୋଧୀଦଳର ଉପନେତା ରାୟବାହାଦୁର ଲୋକନାଥ ମିଶ୍ର ପ୍ରଭୃତି କେତେଜଣ କହିବା ପରେ ମୁଁ ଉଠିଥିଲି କହିବାପାଇଁ । ମୋ ସାଙ୍ଗରେ ଆହୁରି ଚାରି-ପାଞ୍ଚ ଜଣ ମଧ୍ୟ କହିବାପାଇଁ ଠିଆହୋଇପଡ଼ିଥିଲେ । କିନ୍ତୁ ମୋ ପକ୍ଷେ ବିଧାନସଭାରେ ପ୍ରଥମ ଅଭିଭାଷଣ (maiden speech) ଦେବାର ସୁଯୋଗ ହୋଇଥିବାରୁ ବାଚସ୍ପତି ସେଦିନ ମୋତେ ଡାକିଲେ କହିବାପାଇଁ । ସଂସଦୀୟ ଗଣତନ୍ତ୍ର ବ୍ୟବସ୍ଥାରେ ଜଣେ ନବନିର୍ବାଚିତ ସଭ୍ୟ ପ୍ରଥମଥରପାଇଁ ସଂସଦରେ କହିବା ପାଇଁ ଠିଆହେଲେ । ଅନ୍ୟ ଯେତେ ସଭ୍ୟ ଠିଆହୋଇଥିଲେ ମଧ୍ୟ ପ୍ରଚଳିତ ପରମ୍ପରା ଅନୁସାରେ ତାଙ୍କୁ ହିଁ ପ୍ରଥମେ କହିବାକୁ ସୁଯୋଗ ଦିଆଯାଏ ଏବଂ ତାଙ୍କ ପରେ ଯେଉଁ ସଭ୍ୟ ଭାଷଣ ଦିଅନ୍ତି, ସେ ପାରମ୍ପରିକ ରୀତି ଅନୁସାରେ ଉକ୍ତ ସଭ୍ୟଙ୍କର ପ୍ରଥମ ଅଭିଭାଷଣ ପାଇଁ ତାଙ୍କୁ ଅଭିନନ୍ଦନ ଜଣାନ୍ତି । ରାଜାମାନଙ୍କର ଗଣତନ୍ତ୍ର ବିରୋଧୀ ଚକ୍ରାନ୍ତ, ଗଡ଼ଜାତ ମିଶ୍ରଣକୁ ଭଣ୍ଡୁର କରି ପ୍ରଦେଶ ଭିତରେ ଆଉ ଗୋଟିଏ ସ୍ୱତନ୍ତ୍ର ୟୁନିୟନ ଗଠନର ଉଦ୍ୟମ ତଥା ବିହାର ସହିତ ଷଡ଼ଯନ୍ତ୍ର କରି ଷଢ଼େଇକଳା ଓ ଖରସୁଆଁକୁ ଓଡ଼ିଶାରୁ ଅଲଗା କରିବା ବିଷୟରେ ମୁଁ ସେଦିନ ମୋ ଭାଷଣରେ କେତେକ ତଥ୍ୟ ଉପସ୍ଥାପିତ କରିଥିଲି ।

ଗୋଟିଏ ଗଣତାନ୍ତ୍ରିକ ଦେଶରେ ଗଣତନ୍ତ୍ର ଓ ସଂସଦୀୟ ରାଜନୀତିରେ ରାଜନୈତିକ ଦଳମାନଙ୍କର ପ୍ରଧାନ ଉଦ୍ଦେଶ୍ୟ ଥାଏ ସଂସଦ ମାଧ୍ୟମରେ ଦେଶର ପ୍ରଶାସନିକ କାର୍ଯ୍ୟ ନିର୍ବାହ କରିବା ଏବଂ

ଜନସେବାମୂଳକ କାର୍ଯ୍ୟ କରିବା । ସଂସଦରେ ସଂଖ୍ୟାଗରିଷ୍ଠତା ହାସଲ କରିବା ଥାଏ ପ୍ରତ୍ୟେକ ଦଳର ଉଦ୍ଦେଶ୍ୟ । ସେ ଉଦ୍ଦେଶ୍ୟ ପୂର୍ଣ୍ଣମାତ୍ରାରେ ସାଧିତ ନହେଲେ ମଧ ଅଳ୍ପସଂଖ୍ୟକ ସଭ୍ୟଙ୍କ ମାଧ୍ୟମରେ ସଂସଦ ମଧ୍ୟରେ ନିଜ ଦଳର ଆଦର୍ଶ ଓ ଶାସନ ସଂକ୍ରାନ୍ତୀୟ ବିଚାରଧାରା ନେଇ ଦଳଭୁକ୍ତ ସଦସ୍ୟମାନେ ମତ ବ୍ୟକ୍ତ କରୁଥିଲେ । କୌଣସି ଦଳଭୁକ୍ତ ନଥାଇ ଜଣେ ସ୍ୱାଧୀନ ସଭ୍ୟ ମଧ ମତ ବ୍ୟକ୍ତ କରିବାର ସ୍ୱାଧୀନତା ରହିଛି । ଛାତ୍ର ଜୀବନରୁ ମୁଁ ସଂସଦୀୟ ରାଜନୀତି ପ୍ରତି ବିଶେଷ ଆକୃଷ୍ଟ ହୋଇଥିଲି । ମୋର ଭାଇ ଏବଂ ଅଭିଭାବକମାନଙ୍କର ମଧ ତାହାହିଁ ଥିଲା ଉଦ୍ଦେଶ୍ୟ । ମୋତେ ଉଚ୍ଚଶିକ୍ଷା ଦେବାପାଇଁ ସେମାନଙ୍କର ଆଗ୍ରହ ପଛରେ ବୋଧେ ଏହା ଥିଲା ସେମାନଙ୍କର ପ୍ରଚ୍ଛନ୍ନ ଆକାଙ୍‌କ୍ଷା । ମୋର ସୀମିତ ଜ୍ଞାନ ମଧ୍ୟରେ ନାନା କଥା ଶିକ୍ଷାକରି ବ୍ୟବସ୍ଥାସଭାରେ କିପରି ପାଞ୍ଚଜଣଙ୍କ ଭିତରେ ଜଣେ ବୋଲି ଗଣାହେବି, ସେଥିପାଇଁ ମୁଁ ଉଦ୍ୟମ କରିବାରେ ଲାଗିଲି । ମୋର ଜଣେ ବୟୋଜ୍ୟେଷ୍ଠ ହିତାକାଙ୍‌କ୍ଷୀ ପରେ ମୋତେ ପରାମର୍ଶ ଦେଇଥିଲେ ଯେ କୌଣସି ଆଲୋଚନା ପ୍ରସଙ୍ଗରେ ଯେଉଁଟାକୁ ସମୀଚୀନ ମନେକରିବ ତାକୁ ପ୍ରକାଶ କରିବାକୁ ଭୟକରିବନାହିଁ । ସେ କହିଥିଲେ, ଥରେ ଡ଼ରିବ ତ ସବୁବେଳେ ଡରୁଥିବ । ତାଙ୍କର ପରାମର୍ଶ ମନେରଖି ମୁଁ ବ୍ୟବସ୍ଥାସଭାରେ ଜଣେ କର୍ମତତ୍ପର ସଦସ୍ୟ ହେବାର ଅଭିଳାଷ ଘେନି ଅଗ୍ରସର ହୋଇଥିଲି । ଆଲୋଚ୍ୟ ବିଷୟ ସମ୍ପର୍କରେ ମୁଁ ନାନା ବହିପତ୍ର ଯୋଗାଡ଼ କରି ପଢୁଥିଲି । ରେଭେନ୍‌ସା କଲେଜ ଲାଇବ୍ରେରୀରୁ ମଧ ଏଥିପାଇଁ ବହୁତ ସାହାଯ୍ୟ ପାଉଥିଲି ।

## ସମ୍ବିଧାନ ପ୍ରଣୟନ : ମୋର ପରାମର୍ଶ

ମୋର ସୌଭାଗ୍ୟକୁ ଏହାପରେ ମୋର ମନଲାଖି ଗୋଟିଏ ବିଷୟ ଆଲୋଚିତ ହେବାପାଇଁ ବିଧାନସଭାରେ ନୋଟିସ ଆସିଥିଲା : "Notice to consider the Draft Constitution of India prepared by the Drafting Committee appointed by the resolution of the Constituent Assembly on 29th August, 1947." ଅର୍ଥାତ୍ ଭାରତ ସମ୍ବିଧାନ ପ୍ରଣୟନ ସଭାଦ୍ୱାରା ନିଯୁକ୍ତ ଚିଠା କମିଟିଦ୍ୱାରା ପ୍ରଣୀତ ଚିଠା ସମ୍ବିଧାନର ଆଲୋଚନାପାଇଁ ନୋଟିସ୍ । ମନେପଡ଼େ ଯେତେବେଳେ ଆମେ ପରାଧୀନ ଥିଲୁ, ସ୍ୱାଧୀନତା ସଂଗ୍ରାମରେ ଆମ୍ଭମାନଙ୍କର ଏକମାତ୍ର ଧ୍ୟେୟ ଥିଲା ଯେ କୌଣସି ବାହ୍ୟ ଶକ୍ତିଦ୍ୱାରା ପ୍ରଣୀତ ଶାସନ ବିଧାନଦ୍ୱାରା ଆମ ଦେଶ ପରିଚାଳିତ ନ ହୋଇ ଆମରି ପ୍ରତିନିଧିଙ୍କଦ୍ୱାରା ପ୍ରଣୀତ ସମ୍ବିଧାନଦ୍ୱାରା ଦେଶର ଶାସନ ପରିଚାଳିତ ହେବ । ସେଇଥିପାଇଁ ଆମ୍ଭେମାନେ ଦାବିକରିଆସିଥିଲୁ ଆମରି ଲୋକଙ୍କଦ୍ୱାରା ନିର୍ବାଚିତ ଗୋଟିଏ ଶାସନ ବିଧାୟକ ସଂସଦ । ସେହି ଶାସନ ବିଧାୟକ ସଂସଦ ସମ୍ବିଧାନର ଚିଠା ରାଜ୍ୟ ବିଧାନସଭାମାନଙ୍କୁ ପଠାଇଥିଲେ ତାହାକୁ ଆଲୋଚନାକରି ପ୍ରତିନିଧିମୂଳକ ଲୋକମତ ଜାଣିବାପାଇଁ । ବାସ୍ତବିକ ବିଧାୟକମାନଙ୍କ ପକ୍ଷରେ ଏହା ଗୋଟିଏ ଉତ୍କୃଷ୍ଟ ସୁଯୋଗ । ମୁଁ ସମ୍ବିଧାନର ଚିଠାଟିକୁ ଆମୂଳଚୂଳ ପଢ଼ି ସବୁଦିନ ଆଲୋଚନାରେ ଅଂଶ ଗ୍ରହଣକଲି । ରାଜନୀତି ବିଜ୍ଞାନରେ ବହୁତ ପ୍ରସିଦ୍ଧ ଲେଖକଙ୍କ ପୁସ୍ତକ ତଥା ପୃଥିବୀର ବିଭିନ୍ନ ଗଣତାନ୍ତ୍ରିକ ଦେଶର ସମ୍ବିଧାନ ଅଧ୍ୟୟନ କରି ସେଥିରେ ଯେଉଁ ବିଷୟଟିକୁ ମୁଁ ମୂଲ୍ୟବାନ୍ ମନେକରୁଥାଏ, ତାକୁ ଭିତ୍ତିକରି ଚିଠା ସମ୍ବିଧାନ ଉପରେ ବହୁ ସଂଶୋଧନ ପ୍ରସ୍ତାବ ଦେଇଥିଲି । ସେଥିରୁ ଗୋଟିଏ ସଂଶୋଧନ ପ୍ରସ୍ତାବ କଥା ମନେପଡୁଛି । ସେତେବେଳେ ଆମ ସମ୍ବିଧାନର ମୁଖବନ୍ଧରେ (Preamble) 'ସମାଜବାଦୀ' (Socialist) ଶବ୍ଦଟି ନଥିଲା । ଲେଖାଥିଲା 'ସାର୍ବଭୌମ ଗଣତାନ୍ତ୍ରିକ ପ୍ରଜାତନ୍ତ୍ର' (Sovereign, Democratic Republic) । ଏବେ ୧୯୭୬ ମସିହାରେ ସମ୍ବିଧାନ ସଂଶୋଧନ କଲାବେଳେ ତାହା ପରିବର୍ତ୍ତିତ ହୋଇ ମୁଖବନ୍ଧରେ 'ସମାଜବାଦୀ' ଶବ୍ଦଟି ଯୋଗକରାଯାଇଛି । ମୋର ମନେଅଛି, ଚିଠା ସମ୍ବିଧାନଟି ଆମ ବିଧାନସଭାରେ

ଆଲୋଚିତ ହେବାବେଳେ ଶାସନଖସଡ଼ା ମୁଖବନ୍ଧରେ Sovereign, Democratic, Socialist Republic ରଖିବାପାଇଁ ମୁଁ ଗୋଟିଏ ସଂଶୋଧନ ପ୍ରସ୍ତାବ ଦେଇଥିଲି । ମୋର ସେହି ପ୍ରସ୍ତାବ ଆଲୋଚିତ ହେବା ପରେ ଶାସନ ବିଧାୟକ ସଭାକୁ ସୁପାରିସ୍ କରି ପଠାଇଦିଆଯାଇଥିଲା । ସେତେବେଳେ ସେଠାରେ ତାହା ଗୃହୀତ ହୋଇନଥିଲା । କିନ୍ତୁ ସେ ପ୍ରସ୍ତାବରେ ଯଥାର୍ଥତା ଥିବାରୁ ଆଜି ସମ୍ବିଧାନ ସଂଶୋଧିତ ହୋଇ ସୋସାଲିଷ୍ଟ ଶବ୍ଦଟି ସମ୍ବିଧାନର ମୁଖବନ୍ଧରେ ଯୋଗକରାଯାଇଛି । ସମ୍ବିଧାନ ଚିଠା ସଂକ୍ରାନ୍ତୀୟ ଦୀର୍ଘ ଆଲୋଚନାରୁ ମୁଁ ବିଶେଷ ଜ୍ଞାନ ଓ ଅଭିଜ୍ଞତା ଅର୍ଜନ କରିବାର ସୁଯୋଗ ପାଇଥିଲି ।

ମୋର ସୋର ନିର୍ବାଚନମଣ୍ଡଳୀଟି ଥିଲା ଅତି ବିସ୍ତୃତ । ବାଲେଶ୍ୱର ଜିଲ୍ଲାର ଦୁଇଟି ସବ୍‌ଡ଼ିଭିଜନ୍‌ରେ ଥିବା ସୋର, ଖଇରା, ଶିମୁଳିଆ ଓ ବଅନ୍ତ ପ୍ରଭୃତି ଚାରିଗୋଟି ଥାନାକୁ ନେଇ ଏ ନିର୍ବାଚନମଣ୍ଡଳୀଟି ଗଠିତ ହୋଇଥିଲା । ତେଣୁ ଜଣେ ନିର୍ବାଚିତ ପ୍ରତିନିଧି ପକ୍ଷରେ ସବୁ ଅଞ୍ଚଳ ସହିତ ଓ ସବୁ ଲୋକଙ୍କ ସହ ସମ୍ପର୍କ ରଖିବା ସହଜ ନଥିଲା । ଏସବୁ କଥା କରିବା ମଧ୍ୟ ସମୟସାପେକ୍ଷ । ତା'ଛଡ଼ା ମୁଁ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥିଲି । ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହେବାରେ ସୁବିଧା ଯେତିକି ଅସୁବିଧା ବି ସେତିକି । ୧୯୪୬ ମସିହାରେ ସୋର ନିର୍ବାଚନମଣ୍ଡଳୀରୁ ଶ୍ରୀ କୈଳାସ ମହାନ୍ତି ମଧ୍ୟ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥିଲେ । ମୁଁ ପୁଣି ସେଇପ୍ରକାର ନିର୍ବାଚିତ ହେଲି ୧୯୪୮ମସିହାରେ । ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା ହୋଇଥିଲେ ସବୁ ଗାଆଁକୁ ଯିବାକୁ ପଡ଼ିଥାଆନ୍ତା ଓ ଲୋକସଂପର୍କରେ ଆସିଥାଆନ୍ତି ଏବଂ ଲୋକଙ୍କ ସାଙ୍ଗରେ ମୋର ଚିହ୍ନା ପରିଚୟ ମଧ୍ୟ ହୋଇଥାଆନ୍ତା । ତଥାପି ମୁଁ ଏ ନିର୍ବାଚନମଣ୍ଡଳୀର ପ୍ରତିନିଧି ହେବା ପରେ ବିଭିନ୍ନ ସ୍ଥାନକୁ ଦୌଡ଼ାଦୌଡ଼ି କରି ଲୋକସଂପର୍କ ରଖି ଲୋକଙ୍କର ସେବା କରିବାପାଇଁ ଉଦ୍ୟମ ଆରମ୍ଭକରିଥିଲି । ଥରେ ଏହି ନିର୍ବାଚନମଣ୍ଡଳୀର ଖଇରା ଅଞ୍ଚଳରେ ହାତୀମାନେ ଖୁବ୍ ଉପଦ୍ରବ କରିଥିଲେ । ମୋ ପାଖରେ ଖବର ଆସି ପହଞ୍ଚିବାରୁ ମୁଁ ସେଠାକୁ ଯାଇଥିଲି । ରାତିରେ ଗୋଟିଏ ଗାଆଁରେ ଅଛୁ, ସେ ଗାଁରେ ହାତୀ ଆକ୍ରମଣ ହେଲା । ସାଙ୍ଗେସାଙ୍ଗେ ଶଙ୍ଖ, ଘଣ୍ଟା, ଢୋଲ ପ୍ରଭୃତି ବାଜିଲା । ଘର କବାଟ କିଳି ସମସ୍ତେ ଘରେ ପଶିରହିଲେ । ଠାଏ ଠାଏ ଖୁବ୍ ଜୋର୍‌ରେ ନିଆଁ ଜଳାହେଲା ହାତୀକୁ ଘଉଡ଼ାଇଦେବାପାଇଁ । କୌଣସିମତେ ସେଦିନ ସେ ବିପଦରୁ ରକ୍ଷାପାଇଗଲୁ । ଏଭଳି ହାତୀ ଉପଦ୍ରବର ପ୍ରତିକାର କରିବାପାଇଁ ମୁଁ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କୁ ଲେଖିଲି । ତାହା ସମ୍ବାଦପତ୍ରରେ ପ୍ରକାଶପାଇଥିଲା । ଜିଲ୍ଲା ମାଜିଷ୍ଟ୍ରେଟ୍ ସେତେବେଳେ ଥିଲେ ଶ୍ରୀ ପ୍ରାଣନାଥ ମହାନ୍ତି । ମୋର ତାଙ୍କୁ ଏ ପ୍ରକାର ପରାମର୍ଶ ଦେବାଟାକୁ ବୋଧହୁଏ ସେ ଭଲଭାବରେ ଗ୍ରହଣ କରିପାରିନଥିଲେ — ପରବର୍ତ୍ତୀ କାର୍ଯ୍ୟରୁ ସେ ସୂଚନା ମିଳିଥିଲା ।

କିଛିଦିନ ପରେ ଜିଲ୍ଲା ମାଜିଷ୍ଟ୍ରେଟ୍ ଶ୍ରୀ ପ୍ରାଣନାଥ ମହାନ୍ତି ମୋ ନିର୍ବାଚନମଣ୍ଡଳୀର କେତେକ ସ୍ଥାନକୁ ଯାଇ ମୁଁ ପ୍ରତିନିଧି ହିସାବରେ ସେସବୁ ସ୍ଥାନକୁ ଯାଇଛି କି ନା ତାହା ପଚାରି ବୁଝିଥିଲେ । ସେଠାରେ କୁଆଡ଼େ ନିର୍ବାଚିତ ପ୍ରତିନିଧିଙ୍କର କର୍ତ୍ତବ୍ୟ ବିଷୟରେ ଲୋକଙ୍କୁ ବୁଝାଇଥିବାର ମୁଁ ଶୁଣିବାକୁ ପାଇଲି । ପରେ ସେ ସରକାରଙ୍କୁ ମଧ୍ୟ ନିର୍ବାଚିତ ପ୍ରତିନିଧି କିପରି କାର୍ଯ୍ୟରେ ଅବହେଳା କରୁଛନ୍ତି ସେ ବିଷୟରେ ଗୋଟିଏ ଟିପ୍‌ପଣୀ ଦେଇ ଲେଖିଥିଲେ । ସେ ପ୍ରକୃତରେ ଜ୍ଞାନୀ; କିନ୍ତୁ ଥିଲେ ବଡ଼ ଅଧିକାରପ୍ରମତ୍ତ । ତାଙ୍କର ଏ ପ୍ରକାର ଟିପ୍‌ପଣୀକୁ ସରକାର ପସନ୍ଦକରିନଥିଲେ । ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟିକୁ ଏ ବିଷୟଟି ଆସିବାରୁ ମୁଖ୍ୟମନ୍ତ୍ରୀ ଚିଫ୍ ସେକ୍ରେଟାରୀଙ୍କୁ କହିଥିଲେ ଶ୍ରୀ ମହାନ୍ତିଙ୍କୁ କହିବା ପାଇଁ ଯେ "He should mind his own business and should not poke his nose into other affairs". ଶ୍ରୀ ମହାନ୍ତି ଟିକେ ଅହଙ୍କାରୀ ଥିଲେ । ରାଜନୈତିକ ଲୋକମାନଙ୍କ ପ୍ରତି ତାଙ୍କର ତାଚ୍ଛଲ୍ୟଭାବ ଥିବାର ଖବର ମଧ୍ୟ ଆମ୍ଭେମାନେ ପାଉଥିଲୁ । ଆମ ଭଳିଆ ଲୋକଙ୍କୁ ଲୋକେ କିପରି ପ୍ରତିନିଧିରୂପେ ବାଛୁଛନ୍ତି ସେଥିରେ ବହୁଲୋକଙ୍କ ଆଗରେ ସେ ବିସ୍ମୟ

ପ୍ରକାଶ କରିବାର ଖବର ମଧ ଆମେ ପାଉଥାଉ । ପରିବର୍ତ୍ତିତ ପରିସ୍ଥିତିରେ ସେ ନିଜକୁ ଖାପ ନଖୁଆଇ ପ୍ରଶାସନିକ କ୍ଷେତ୍ରରେ ସମୟସମୟରେ ଅସନ୍ତୋଷ ମଧ ପ୍ରକାଶ କରୁଥିଲେ । ଚାକିରିରୁ ଅବସର ନେବା ପରେ ନିର୍ବାଚନରେ ଲଢ଼ି ପ୍ରକୃତ ପ୍ରତିନିଧି କିପରି ହୁଅନ୍ତି ସେ କଥା ଲୋକଙ୍କୁ ଦେଖାଇ ରାଜନୈତିକ ନେତାମାନଙ୍କୁ ଶିକ୍ଷା ଦେବା ବିଷୟରେ ତାଙ୍କର ଅଭିଳାଷଥିବା କଥା କେତେକଙ୍କ ଆଗରେ ସେ ମଧ ପ୍ରକାଶ କରିଥିଲେ । ୧୯୭୧ ମସିହାରେ ଗୋଟିଏ ସାଧାରଣ ନିର୍ବାଚନ ଆସିଗଲା । ପୁରୀ ଜିଲ୍ଲାର ଭୁବନେଶ୍ୱର ନିର୍ବାଚନମଣ୍ଡଳୀରେ ସେ ସ୍ୱତନ୍ତ୍ର ଦଳ ପ୍ରାର୍ଥୀ ହୋଇ ବହୁ ହଟଚମଟ କଲେ । ତା'ପରେ ଦେଖାଗଲା ମାତ୍ର ତେରଶହ ପଚାଶ ଖଣ୍ଡ ଭୋଟ ପାଇ ଶୋଚନୀୟ ଭାବରେ ସେ ପରାଜିତ ହୋଇଥିଲେ । ରାଜନୀତିରେ କଥା କହିବା ଓ କାର୍ଯ୍ୟନିର୍ବାହ କରିବା ଭିତରେ କେତେ ପାର୍ଥକ୍ୟ ସେ କଥା ନିଶ୍ଚୟ ଶ୍ରୀ ମହାନ୍ତି ପରେ ବୁଝିପାରିଥିବେ । ଏହି ପ୍ରକାର ବ୍ୟବହାର ଆଉ କେତେକ ବ୍ୟକ୍ତି ମଧ କରିଛନ୍ତି ଓ ତଦନୁରୂପ ଫଳ ମଧ ପାଇଛନ୍ତି ।

## ଶ୍ରମିକ ସଂଗଠନରେ ମୋର ଭୂମିକା

ପ୍ରଦେଶ କଂଗ୍ରେସ କମିଟିର ଗୋଟିଏ ବୈଠକରେ ଓଡ଼ିଶାର ଶ୍ରମିକମାନଙ୍କୁ କିପରି ସଂଗଠିତ କରାଯିବ ସେ ବିଷୟରେ ଆଲୋଚନା ହେଉଥିଲା । ଶ୍ରମିକ ସଂଗଠନ ବୋଲି ସେଭଳି କୌଣସି ଅନୁଷ୍ଠାନ ଓଡ଼ିଶାରେ ନଥିଲା । ଯେଉଁଠାରେ ବା ଥିଲା ତାହା କେବଳ ନାମକୁମାତ୍ର କାଗଜ କଲମରେ ଥିଲା । ୧୯୩୫ ମସିହା ଭାରତ ଶାସନ ଆଇନ ଅନୁସାରେ ଆମ ପ୍ରଦେଶ ବିଧାନସଭାରେ ଯେଉଁ ଷାଠିଏଟି ସ୍ଥାନ ଥିଲା, ସେଥିରୁ ଗୋଟିଏ ସ୍ଥାନ ଶ୍ରମିକମାନଙ୍କ ପ୍ରତିନିଧିତ୍ୱପାଇଁ ସଂରକ୍ଷିତ ଥାଏ । ଜଣେ ସଭ୍ୟ ଶ୍ରମିକମାନଙ୍କଦ୍ୱାରା ନିର୍ବାଚିତ ହେବାର ବ୍ୟବସ୍ଥା ଥିଲା । କେବଳ ସେହି ନିର୍ବାଚନପାଇଁ ରାଜନୈତିକ ଦଳମାନେ ଶ୍ରମିକମାନଙ୍କ ସହିତ ସଂପର୍କ ସ୍ଥାପନ କରୁଥିଲେ । ଶ୍ରମିକ ଅନୁଷ୍ଠାନ ନଗଢ଼ିଲେ ମଧ ଶିଳ୍ପାନୁଷ୍ଠାନମାନଙ୍କରେ କାର୍ଯ୍ୟ କରୁଥିବା ଶ୍ରମିକମାନେ କିପରି ଭୋଟର ତାଲିକାଭୁକ୍ତ ହେବେ ସେଥିପ୍ରତି ନିର୍ବାଚନ ପୂର୍ବରୁ ଧ୍ୟାନ ଦେଉଥିଲେ । ୧୯୪୬ ମସିହା ନିର୍ବାଚନ ପୂର୍ବରୁ ଶ୍ରମିକ ନିର୍ବାଚନମଣ୍ଡଳୀରୁ କଂଗ୍ରେସ ପକ୍ଷରୁ ମହମ୍ମଦ ହନିଫ୍‌ଙ୍କୁ ଠିଆକରିବାପାଇଁ କଂଗ୍ରେସ ସ୍ଥିର କରିଥିଲା । ଭାରତୀୟ କମ୍ୟୁନିଷ୍ଟ ପାର୍ଟି ପକ୍ଷରୁ ଶ୍ରୀ ବୈଦ୍ୟନାଥ ରଥ ଏହି ଶ୍ରମିକ ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହୋଇଥିଲେ । ଓଡ଼ିଶାସାରା ଯେତେ ଶ୍ରମିକ ଭୋଟର ତାଲିକାଭୁକ୍ତ ହୋଇଥିବେ ସେହିମାନେ ଭୋଟ ଦେଇପାରିବାର ବ୍ୟବସ୍ଥା ଥିଲା । ହନିଫ୍‌ବାବୁ ଶ୍ରମିକ ନିର୍ବାଚନମଣ୍ଡଳୀରୁ ଠିଆହେବାପାଇଁ ସ୍ଥିର ହେଲା । କିନ୍ତୁ ସେଥିରେ ସାହାଯ୍ୟ କରିବାପାଇଁ ଆମ୍ଭମାନଙ୍କର ସେଭଳି କୌଣସି ସୁସଙ୍ଗଠିତ ଶ୍ରମିକ ଅନୁଷ୍ଠାନ ନଥିଲା । ମୋର ମନେଅଛି, ଥରେ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଶ୍ରମିକମାନଙ୍କୁ କିପରି ଭୋଟର ତାଲିକାଭୁକ୍ତ କରାଯିବ ସେ ସମ୍ବନ୍ଧରେ କାଗଜପତ୍ର ଧରି ବାଲେଶ୍ୱରର ସିମୁଳିଆରେ ଶ୍ରୀଧର ପାଣିଗ୍ରାହୀଙ୍କର ଚାଉଳକଳରେ ପହଞ୍ଚିଲେ । ମୁଁ ଓ ହନିଫ୍‌ବାବୁ ସେଠାରେ ଯାଇ ପହଞ୍ଚିଲୁ । ଚାଉଳକଳମାନଙ୍କରେ ଯେଉଁସବୁ ଶ୍ରମିକ କାମ କରୁଥିଲେ ସେମାନଙ୍କୁ ଭୋଟର ତାଲିକାଭୁକ୍ତ କରାଯାଇଥିଲା । ପ୍ରକୃତରେ ସେହି ଶ୍ରମିକମାନେ ଚାଉଳକଳରେ କାମ କରୁଛନ୍ତି କି ନାଁ ତାହା ତଦାରଖ କରିବାପାଇଁ ସରକାରୀ ଅଫିସର ମଧ ଥିଲେ । ନିୟମ ଥିଲା ଯେ କେବଳ ସ୍ୱୀକୃତିପ୍ରାପ୍ତ ଶିଳ୍ପାନୁଷ୍ଠାନରେ କାର୍ଯ୍ୟ କରୁଥିବା ଶ୍ରମିକମାନେ ଶ୍ରମିକ ନିର୍ବାଚନମଣ୍ଡଳୀର ଭୋଟର ତାଲିକାଭୁକ୍ତ ହୋଇପାରିବେ । ଭଦ୍ରକରେ ବିଡ଼ି କାରଖାନା ପ୍ରଭୃତି କେତେକ ସ୍ଥାନରେ ଆମେ ଶ୍ରମିକମାନଙ୍କୁ ଭୋଟର ତାଲିକାଭୁକ୍ତ କରିଥିଲୁ । ଏହି କାର୍ଯ୍ୟ କରିବାପାଇଁ ପ୍ରଦେଶ କଂଗ୍ରେସ କମିଟି ପକ୍ଷରୁ ସବୁ ଜିଲ୍ଲା କଂଗ୍ରେସ କମିଟିକୁ ନିର୍ଦ୍ଦେଶ ଯାଇଥିଲା । ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀଙ୍କର ପରାଜୟ ହେଲା ଓ ଶ୍ରୀ ବୈଦ୍ୟନାଥ ରଥ ଶ୍ରମିକ ନିର୍ବାଚନମଣ୍ଡଳୀରୁ ଜୟଯୁକ୍ତ ହେଲେ । ଏହାର କାରଣ ଅନୁସନ୍ଧାନ

କରି ଜଣାଗଲା ଯେ ଅଲ୍ ଇଣ୍ଡିଆ ଟ୍ରେଡ୍ ୟୁନିୟନ୍ କଂଗ୍ରେସ ଥିଲା ଓଡ଼ିଶାରେ କମ୍ୟୁନିଷ୍ଟମାନଙ୍କଦ୍ୱାରା ପରିଚାଳିତ ଗୋଟିଏ ଶ୍ରମିକ ସଂଗଠନ । ମାତ୍ର ସେଭଳି କୌଣସି ସଂଗଠନ କଂଗ୍ରେସ ତରଫରୁ କରାଯାଇନଥିଲା । ଏହି ସମୟରେ ବଙ୍ଗଳା ଶ୍ରମିକ ନେତା ଶ୍ରୀ ଦେବେନ୍ ସେନ୍ ଭାରତୀୟ ଜାତୀୟ ଟ୍ରେଡ୍ ୟୁନିୟନ୍ କଂଗ୍ରେସ (Indian National Trade Union Congress) ର ଗୋଟିଏ ଶାଖା ଓଡ଼ିଶାରେ ଗଢ଼ିବାପାଇଁ ଆସି ଶ୍ରୀ ବିଶ୍ୱନାଥ ଦାସ ଓ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରଭୃତିଙ୍କ ସହିତ ଆଲୋଚନା କରିଥିଲେ । ଓଡ଼ିଶାରେ ଆଇ.ଏନ୍.ଟି.ୟୁ.ସି. (I.N.T.U.C.) ର ଶ୍ରମିକ ସଂଗଠନ କାର୍ଯ୍ୟ କରିବାର ଦାୟିତ୍ୱ ଶ୍ରୀ ପବିତ୍ର ମୋହନ ପ୍ରଧାନ ଏବଂ ମୋ ଉପରେ ଦିଆଯାଇଥିଲା ।

ସେତେବେଳେ ଓଡ଼ିଶାରେ ବିଶେଷ କିଛି ଶିଳ୍ପାନୁଷ୍ଠାନ ନଥିଲା । ଶ୍ରମିକ ସଂଖ୍ୟା ମଧ୍ୟ ଖୁବ୍ କମ୍ ଥାଏ । ଶିଳ୍ପ ଶ୍ରମିକମାନେ ରହୁଥିବା ସ୍ଥାନଗୁଡ଼ିକ ଏପରି ବିକ୍ଷିପ୍ତ ଥାଏ ଯେ ସେଗୁଡ଼ିକ ସହିତ ଯୋଗସୂତ୍ର ସ୍ଥାପନ କରିବା ଶ୍ରମିକ ସଂଗଠନର କର୍ମୀମାନଙ୍କ ପକ୍ଷରେ ମଧ୍ୟ ସହଜ ନଥିଲା । କଟକର ଶିଳ୍ପ ବା ବାଣିଜ୍ୟକେନ୍ଦ୍ର କହିଲେ ବୁଝାଉଥିଲା କଟକ ମାଲଗୋଦାମ, ଯୋବ୍ରାର ଗୋଟିଏ ଛୋଟ ଇଞ୍ଜିନିୟିରିଂ (କାରିଗରି) କାରଖାନା ଆଉ କେତୋଟି ବିଡ଼ି କାରଖାନା, ଆକ୍‌ବର ଖାଁ ଗୁଡ଼ାଖୁ କାରଖାନା ଓ ଦୁଇ ତିନୋଟି ଚାଉଳକଳ । ବାଲେଶ୍ୱର ଜିଲ୍ଲାରେ ସେହିଭଳି ଚାରି ପାଞ୍ଚଟି ଚାଉଳକଳ ଓ ଭଦ୍ରକରେ କେତୋଟି ବିଡ଼ି କାରଖାନା ଥାଏ । ମୟୂରଭଞ୍ଜରେ ଗୋରୁମହିଷାଣି, ସୁଲେଇପାଟ ଓ ବାଦାମପାହାଡ଼ ଅଞ୍ଚଳରେ ପ୍ରକୃତରେ ବେଶି ସଂଖ୍ୟାରେ ଶ୍ରମିକ କାମକରୁଥିଲେ, କାରଣ ସେ ସ୍ଥାନମାନଙ୍କରେ ଖଣିରୁ ଲୁହାପଥର ଖୋଳାଯାଇ ଟାଟାନଗରକୁ ପଠାଯାଉଥିଲା । କେଉଁଝର ଜିଲ୍ଲାରେ ବଡ଼ବିଲ ପାଖରେ କେତେକ ଲୁହା, ମାଙ୍ଗାନିଜ ପ୍ରଭୃତି ଖଣି କାର୍ଯ୍ୟ ହେଉଥିବାରୁ ତାହା ଏକ ଶ୍ରମିକବହୁଳ ଅଞ୍ଚଳ ପରି ଜଣାଯାଉଥାଏ । ସୁନ୍ଦରଗଡ଼ ଜିଲ୍ଲାର ବୀରମିତ୍ରପୁରରେ ବିସ୍ରା ଷ୍ଟୋନ୍ ଲାଇମ୍ କମ୍ପାନୀଦ୍ୱାରା ଚୂନପଥର ଖଣିକାର୍ଯ୍ୟ ହେଉଥିଲା । ସେଠି ଅନେକ ଶ୍ରମିକ କାମ କରୁଥିଲେ । ସେତେବେଳେ ଓଡ଼ିଶାରେ ସବୁଠାରୁ ଶ୍ରମିକ ବହୁଳ ଅଞ୍ଚଳ ଥିଲା ବୀରମିତ୍ରପୁର । ସେଠି ସ୍ୱାଧୀନଭାବରେ ଗାଙ୍ଗପୁର ଲେବର୍ ୟୁନିୟନ୍ ନାମରେ ଗୋଟିଏ ଶ୍ରମିକ ଅନୁଷ୍ଠାନ ଥିଲା । ଅବଦୁସ୍ ସମଦ ଥିଲେ ତା'ର ସଭାପତି । ଏହି ଗାଙ୍ଗପୁର ଲେବର ୟୁନିୟନ୍‌ର ସଭ୍ୟ ସଂଖ୍ୟା ଥିଲା ପ୍ରାୟ ଚାରିହଜାର । ଏହା ଥିଲା ଓଡ଼ିଶାର ବୃହତ୍ତମ ଶ୍ରମିକ ଅନୁଷ୍ଠାନ । ଆଜି ଆମେ ଯାହାକୁ ରାଉଲକେଲା କହୁଛୁ ସେଠି ସେତେବେଳେ କିଛି ନଥିଲା । ରାଉରକେଲା ରେଳ ଷ୍ଟେସନ ପାଖରେ ଦୁଇ ତିନି ହଜାର ଲୋକଙ୍କର ଛୋଟ ବସତି ଥିଲା । ରାଉରକେଲାଠାରୁ କିଛି ଦୂରରେ ପାନପୋଷ । ସେଠାରେ ଚୂନପଥର ଖୋଳା କାର୍ଯ୍ୟରେ କିଛି ଶ୍ରମିକ ନିଯୁକ୍ତ ଥିଲେ । ସମ୍ବଲପୁର ଜିଲ୍ଲାରେ ମାତ୍ର ଗୋଟିଏ ବଡ଼ କାରଖାନା ଥିଲା, ଓରିୟେଣ୍ଟ ପେପର୍ ମିଲ୍ । ବିରଳା କମ୍ପାନୀ ଏହାର ପ୍ରତିଷ୍ଠାତା ଓ ମାଲିକ । ଏଠାରେ ବହୁତ ଶ୍ରମିକ କାମ କରୁଥିଲେ । ତା'ଛଡ଼ା ସମ୍ବଲପୁର, ଝାରସୁଗୁଡ଼ା ଓ ବରଗଡ଼ ଇତ୍ୟାଦିରେ ବିଡ଼ି କାରଖାନା ଓ ରାମପୁର କୋଇଲା ଖଣି ଛଡ଼ା ଆଉ କିଛି ନଥିଲା । କଳାହାଣ୍ଡି ଜିଲ୍ଲାରେ ଖଡ଼ିଆଳ ରେଳ ଷ୍ଟେସନ୍ ପାଖରେ ଦୁଇ ତିନୋଟି ଚାଉଳକଳ ଥିଲା ଓ କେତେଗୁଡ଼ିଏ ବିଡ଼ି କାରଖାନା ମଧ୍ୟ ସେଠାରେ ଥିଲା । କେସିଙ୍ଗା ରେଳ ଷ୍ଟେସନ ପାଖରେ ଗୋଟିଏ ଚାଉଳକଳ ଥିଲା । କେତେକ ଶ୍ରମିକ ସେଠାକାର ବିଡ଼ି କାରଖାନାରେ କାମ କରୁଥିଲେ । କୋରାପୁଟ ଜିଲ୍ଲାରେ କେବଳ ରାୟଗଡ଼ାଠାରେ ଗୋଟିଏ ଚିନିକଳ ଥିଲା । ଗଞ୍ଜାମ ଜିଲ୍ଲାରେ ଆସ୍କାଠାରେ ଗୋଟିଏ ଚିନି କାରଖାନା ଥିଲା । ପୁରୀ ଜିଲ୍ଲାର ଜଟଣୀଠାରେ ଗୋଟିଏ ଛୋଟ ତେଲକଳ ଓ ଗୋଟିଏ ଦୁଇଟି ଚାଉଳକଳ ଛଡ଼ା ଆଉ କିଛି ନଥିଲା । ଢେଙ୍କାନାଳ ଜିଲ୍ଲା ତାଳଚେରଠାରେ କେତୋଟି କୋଇଲା ଖଣି କାର୍ଯ୍ୟ ଚାଲିଥିବାରୁ ସେଠାରେ କେତେକ ଶ୍ରମିକ କାର୍ଯ୍ୟ କରୁଥିଲେ । ସେତେବେଳକାର ଓଡ଼ିଶାରେ ଏହାହିଁ ଥିଲା ଶିଳ୍ପ ବାଣିଜ୍ୟ ଅନୁଷ୍ଠାନ ସହିତ ସଂପୃକ୍ତ ଶ୍ରମିକ ଶ୍ରେଣୀର ମାନଚିତ୍ର । ଏହାଛଡ଼ା ଚୌଦ୍ୱାରରେ ଗୋଟିଏ ଲୁଗାକଳ ନୂଆକରି ହୋଇଥାଏ ।

ଏହି ପରିସ୍ଥିତିରେ ଆମ୍ଭମାନଙ୍କୁ କାର୍ଯ୍ୟ କରିବାକୁ ପଡ଼ିଥିଲା । ପବିତ୍ରବାବୁ ହୋଇଥିଲେ ଓଡ଼ିଶା ଶାଖା ଭାରତୀୟ ଜାତୀୟ ଟ୍ରେଡ୍ ୟୁନିୟନ୍ କଂଗ୍ରେସର ସଭାପତି, ମୁଁ ଥିଲି ସଂପାଦକ ଓ ଶ୍ରୀ ବିମ୍ବାଧର ମହାନ୍ତି ନାମକ ଜଣେ ଯୁବକ ଥିଲେ ଅଫିସ୍ ସଂପାଦକ । ପରବର୍ତ୍ତୀ କାଳରେ ପବିତ୍ରବାବୁ ମନ୍ତ୍ରିତ୍ୱ ଗ୍ରହଣ କରିବା ପରେ ମୁଁ ସଭାପତି ହୋଇଥିଲି । ସଂପାଦକ ଦାୟିତ୍ୱରେ ଶ୍ରୀ ବିମ୍ବାଧର ମହାନ୍ତି ରହିଥିଲେ । ଯେଉଁ ସଂସ୍ଥାଗୁଡ଼ିକର ନାମ ଉପରେ ଉଲ୍ଲେଖ କରିଛି ପ୍ରାୟ ସେ ସବୁ ସ୍ଥାନକୁ ମୁଁ ଯାଇଛି । ସଂଗଠନ କରିବା ସେତେବେଳେ ବଡ଼ ଦୁରୂହ ବ୍ୟାପାର ଥିଲା । ସଂଗଠନପାଇଁ କିଛି ଚାନ୍ଦା ସଂଗ୍ରହ କରିପାରିଲେ କାର୍ଯ୍ୟ ସୁଗମ ହେବ ବୋଲି ଆମେ ସ୍ଥିରକରିଥିଲୁ । ଶ୍ରୀ ବିଶ୍ୱନାଥ ଦାସଙ୍କୁ ସାଙ୍ଗରେ ଧରି ଆମ୍ଭେମାନେ ଚାନ୍ଦା ସଂଗ୍ରହ କାର୍ଯ୍ୟ ଆରମ୍ଭ କରିଥିଲୁ । ବିଶ୍ୱନାଥବାବୁ, ପବିତ୍ରବାବୁ, ମୁଁ ଓ ବିମ୍ବାଧର ମହାନ୍ତି ପ୍ରଭୃତି ସାଂଗଠନିକ କାର୍ଯ୍ୟରେ କେନ୍ଦୁଝରରେ ପହଞ୍ଚି ଚାନ୍ଦା ସଂଗ୍ରହପାଇଁ ମଧ ଚେଷ୍ଟା କରିଥିଲୁ । କେନ୍ଦୁଝରର ମହମ୍ମଦ ସିରାଜଉଦ୍ଦୀନ୍ ବୋଲି ଜଣେ ଖଣିମାଲିକ ପାଖକୁ ଆମେ ସମସ୍ତେ ଗଲୁ ଚାନ୍ଦାମାଗିବାପାଇଁ । ଆମେ ବଡ଼ ଆଶାକରିଥିଲୁ ଯେ ସେ ପାଞ୍ଚ ଶହ ଟଙ୍କା ପର୍ଯ୍ୟନ୍ତ ଦେବେ । ଆମର କାର୍ଯ୍ୟ କରିବାର ଅସୁବିଧା କଥା କହି ସଂଗଠନ କାର୍ଯ୍ୟପାଇଁ ଆମେ ଚାନ୍ଦା ସଂଗ୍ରହ କରୁଛୁ ବୋଲି ଯେତେବେଳେ କହିଲୁ ସେ ଦଶ ହଜାର ଟଙ୍କାର ଗୋଟିଏ ଚେକ୍ ଆମକୁ ଦେଇଦେଲେ । ଏହା ଦେଖି ଆମେ ସ୍ତମ୍ଭୀଭୂତ ହୋଇଥିଲୁ । କଟକରେ ଆସି ନିତ୍ୟାନନ୍ଦବାବୁ ପ୍ରମୁଖ କେତେକ ବ୍ୟକ୍ତିଙ୍କ ପାଖରେ ଏ କଥା ଯେତେବେଳେ କହିଲୁ, ତା' ଭିତରୁ ଅନେକେ ଆମକୁ ସାବଧାନ କରାଇଦେଲେ ଯେ ବ୍ୟାଙ୍କରେ ଟଙ୍କା ନଥାଇ ଅନେକେ ଏହିଭଳି ଚେକ୍ କାଟିଦିଅନ୍ତି । କିନ୍ତୁ ଏ କ୍ଷେତ୍ରରେ ସେଭଳି ଚଞ୍ଚକତା ନ ଥିଲା । ଦଶ ହଜାର ଟଙ୍କା ଆମେ ବ୍ୟାଙ୍କରୁ ଠିକ୍ ସମୟରେ ପାଇଥିଲୁ । ଏହାପରେ ଆମକୁ ଆଉ କୌଣସି ବ୍ୟବସାୟୀ ବା ଖଣିମାଲିକଙ୍କ ପାଖକୁ ଚାନ୍ଦା ଆଦାୟ କରିବାକୁ ଯିବାକୁ ପଡ଼ିନଥିଲା । ବିଭିନ୍ନ ସ୍ଥାନରେ ଆଇ.ଏନ୍.ଟି.ୟୁ.ସି. ତରଫରୁ ସଂସ୍ଥାମାନ ଗଢ଼ାଯାଇ ଅଫିସ୍ ଖୋଲାଗଲା । ଅଫିସ୍ ତତ୍ତ୍ୱାବଧାନ କରିବାପାଇଁ କର୍ମୀ ମଧ ନିଯୁକ୍ତ ହେଲେ । ବିକ୍ଷିପ୍ତ ଅଞ୍ଚଳଗୁଡ଼ିକ ସହିତ ଯୋଗସୂତ୍ର ସ୍ଥାପନ କରିବାପାଇଁ ଗୋଟିଏ ପୁରୁଣା ଜିପ୍‌ଗାଡ଼ି ମଧ କିଣାଯାଇଥିଲା । ସେତେବେଳେ କୌଣସି ରାସ୍ତା ପିଚୁ ହୋଇନଥିଲା । କଟକରୁ ବଡ଼ବିଲ ଜିପ୍‌ରେ ଯାଇ ପହଞ୍ଚିଲାବେଳକୁ ଆମେ ଗୋଟିପଣେ ନାଲିହୋଇଯାଉ ।

ଆଜିକାଲି ଶ୍ରମିକମାନଙ୍କର ମଙ୍ଗଳପାଇଁ ଏବଂ ସେମାନଙ୍କର ସ୍ୱାର୍ଥ ରକ୍ଷା କରିବାପାଇଁ ଯେତେସବୁ ଆଇନ ପ୍ରଣୟନ ହୋଇଗଲାଣି ସେତେବେଳେ ସେତେ ଆଇନକାନୁନ୍ ନଥିଲା । ଯେତିକି ବା ଆଇନକାନୁନ୍ ଶ୍ରମିକମାନଙ୍କ ମଙ୍ଗଳ ଉଦ୍ଦେଶ୍ୟରେ ହୋଇଥିଲା, ସେଗୁଡ଼ିକ ମଧ କାର୍ଯ୍ୟକାରୀ ହେଉନଥିଲା । ସେଗୁଡ଼ିକ କାର୍ଯ୍ୟକାରୀ ହେଉଛି କି ନା ଦେଖିବାପାଇଁ ସରକାରଙ୍କ ପକ୍ଷରୁ କୌଣସି ସୁବ୍ୟବସ୍ଥା ନଥିଲା । ସମଗ୍ର ପ୍ରଦେଶପାଇଁ ଯେ ଥିଲେ ଶିଳ୍ପ ନିର୍ଦ୍ଦେଶକ ସେ ହିଁ ଥିଲେ ଚିଫ୍ ଇନ୍‌ସ୍‌ପେକ୍ଟର ଅଫ୍ ଫାକ୍‌ଟ୍ରିଜ୍ । ତେଣୁ ଶ୍ରମିକ ସ୍ୱାର୍ଥ ଅପେକ୍ଷା ଶିଳ୍ପାନୁଷ୍ଠାନଗୁଡ଼ିକର ସ୍ୱାର୍ଥ ପ୍ରତି ତାଙ୍କର ଥିଲା ବିଶେଷ ଦୃଷ୍ଟି । ମୁଁ ବ୍ୟବସ୍ଥାସଭାରେ ଏହାର ଘୋର ବିରୋଧ କରିଥିଲି ଏବଂ ଶେଷରେ ଏହି ଦୁଇଟି ସଂସ୍ଥାକୁ ପୃଥକ୍ କରି ଶ୍ରମିକ ସ୍ୱାର୍ଥ ରକ୍ଷାପାଇଁ ଗୋଟିଏ ସ୍ୱତନ୍ତ୍ର ସଂସ୍ଥା ସୃଷ୍ଟି କରାଇ ସ୍ୱତନ୍ତ୍ର ଭାବରେ ଜଣେ ଚିଫ୍ ଇନ୍‌ସ୍‌ପେକ୍ଟର ଅଫ୍ ଫାକ୍‌ଟ୍ରିଜ୍ ନିଯୁକ୍ତ କରାଇଥିଲି । ସେହିପରି ଶ୍ରମିକ ଓ ମାଲିକଙ୍କ ଭିତରେ ସେମାନଙ୍କର ଚାକିରି ସର୍ତ୍ତ ଓ ଶ୍ରମିକମାନଙ୍କ ଉପରେ କୌଣସି ପ୍ରକାର କାର୍ଯ୍ୟାନୁଷ୍ଠାନ ସମ୍ବନ୍ଧୀୟ ବିଷୟଗୁଡ଼ିକର ବିଚାର ଓ ନିଷ୍ପତ୍ତିପାଇଁ ଶ୍ରମ ଆଇନରେ ସ୍ୱତନ୍ତ୍ର ଟ୍ରିବ୍ୟୁନାଲ୍ ନିଯୁକ୍ତିପାଇଁ ବ୍ୟବସ୍ଥା ଥିଲେ ମଧ ସେ ବ୍ୟବସ୍ଥା ଓଡ଼ିଶାରେ କାର୍ଯ୍ୟକାରୀ ହୋଇନଥିଲା । ତାହା ଫଳରେ ଶ୍ରମିକମାନେ ବିଶେଷଭାବରେ ନିର୍ଯାତିତ ହେଉଥିଲେ । ଓଡ଼ିଶାରେ ବ୍ରଜରାଜନଗର ଓରିଏଣ୍ଟ କାଗଜକଳ ଥିଲା ଗୋଟିଏ ବଡ଼ ଶିଳ୍ପାନୁଷ୍ଠାନ । ସେଠି ମାଲିକ ଏବଂ ଶ୍ରମିକଙ୍କ ଭିତରେ ଏହି ପ୍ରକାର

ଅନେକ ବିବାଦର ବିଚାର ଓ ନିଷ୍ପତ୍ତିପାଇଁ ମାଲିକ ସାଧାରଣ ଅଦାଲତର ଆଶ୍ରୟ ନେଉଥିଲେ । ମାଲିକଙ୍କର ପଇସାର ଅଭାବ ନଥିଲା । ଗରିବ ଶ୍ରମିକଙ୍କ ପକ୍ଷରେ ଖର୍ଚ୍ଚାନ୍ତ ହୋଇ ଏ ଅଦାଲତରେ ନିଜର ସ୍ୱାର୍ଥ ରକ୍ଷା କରିବା ଥିଲା ଦୁଃସାଧ । ସେଠି ଶ୍ରମିକମାନଙ୍କର ଅବସ୍ଥା ବଡ଼ ଶୋଚନୀୟ ଥିଲା । ନିଜର ହାରିଗୁହାରି ସାହସ କରି କହିବା ସମ୍ଭବପର ହେଉନଥିଲା । ଆମ୍ଭେମାନେ ସେଠାକୁ ଯିବା ପୂର୍ବରୁ କମ୍ୟୁନିଷ୍ଟମାନେ ସେଠାରେ ଗୋଟିଏ ଶ୍ରମିକ ସଂସ୍ଥା ଗଢ଼ିଥିଲେ ଏବଂ ୧୯୪୬ ମସିହାର ନିର୍ବାଚନରେ ଶ୍ରମିକ ପ୍ରାର୍ଥୀ ଶ୍ରୀ ବୈଦ୍ୟନାଥ ରଥ ସେଠାରୁ ଅଧିକ ଭୋଟ ପାଇଥିଲେ । ମାଲିକଠାରୁ ଶ୍ରମିକମାନଙ୍କର ନ୍ୟାଯ୍ୟ ଦାବି ହାସଲ କରିବାର ଶକ୍ତି ସେ ୟୁନିୟନ୍‌ର ନଥିଲା । ପବିତ୍ରବାବୁ ଓ ମୁଁ ଦିନେ ବ୍ରଜରାଜନଗର ଯାଇଥିଲୁ । ସେଠାକାର ସ୍ଥାନୀୟ ଶ୍ରମିକ ନେତା ଶ୍ରୀ ଉପେନ୍ଦ୍ର ଦୀକ୍ଷିତ୍ ମଧ୍ୟ ଆମ ସଙ୍ଗରେ ଥିଲେ । ଆଇ.ଏନ୍.ଟି.ୟୁ.ସି. ପକ୍ଷରୁ ପ୍ରଥମକରି ସେଠାରେ ଗୋଟିଏ ଶାଖା ଗଢ଼ାଯାଇଥିଲା ଏବଂ ତା'ର ନାମ 'ଓରିଏଣ୍ଟ୍ କାଗଜକଳ ଶ୍ରମିକ କଂଗ୍ରେସ' ବୋଲି ରଖାଯାଇଥିଲା ।

ଲୁହା, ମାଙ୍ଗାନିଜ, କୋଇଲା, ଚୂନପଥର, କ୍ରୋମାଇଟ୍ ପ୍ରଭୃତି ବହୁ ପ୍ରାକୃତିକ ଖଣିଜ ସମ୍ପଦରେ ଓଡ଼ିଶା ଭରପୂର । ଏହି ସବୁ ଧାତୁର ଖଣିକାର୍ଯ୍ୟ ବିଭିନ୍ନ ସ୍ଥାନରେ ସୀମିତ ଆକାରରେ ହେଉଥାଏ । କିନ୍ତୁ ଏସବୁ ଶିଳ୍ପ ବାଣିଜ୍ୟ ଓ ଶ୍ରମସଂସ୍ଥା କେନ୍ଦ୍ର ସରକାରଙ୍କ ଖଣି ଓ ଶ୍ରମ ଆଇନର ପରିସରଭୁକ୍ତ ଥିଲା । ତେଣୁ ରାଜ୍ୟ ସରକାରଙ୍କର ଏସବୁ ବିଷୟରେ କର୍ତ୍ତୃତ୍ୱ ପ୍ରାୟ ନଥିଲା କହିଲେ ଚଳେ । ସୁନ୍ଦରଗଡ଼ ଜିଲ୍ଲାର ବୀରମିତ୍ରପୁରଠାରେ ବିସ୍ରା ଷ୍ଟୋନ୍‌ଲାଇମ୍ କମ୍ପାନୀ ଯେଉଁ ଚୂନପଥର ଖଣିକାର୍ଯ୍ୟ କରୁଥିଲେ ସେଠିକାର ଶ୍ରମିକମାନଙ୍କ ଦୁରବସ୍ଥା କହିଲେ ନ ସରେ । ଏହି କମ୍ପାନୀଟିର ମାଲିକ ଥିଲେ ଇଉରୋପିଆନ୍ ସାହେବମାନେ । ହଜାର ହଜାର ଶ୍ରମିକ ସେଠି କାମକରୁଥିଲେ ମଧ୍ୟ ସେମାନଙ୍କର ରହିବାପାଇଁ ଘର ନଥିଲା, ପିଇବାପାଇଁ ପାଣି ନଥିଲା ଓ ରାତିରେ ସେମାନେ ଯେଉଁଠାରେ ରହୁଥିଲେ ସେଠାରେ ଆଲୁଅର ବନ୍ଦୋବସ୍ତ ମଧ୍ୟ ନଥିଲା । କିନ୍ତୁ ଯେଉଁଠାରେ ଇଉରୋପିଆନ୍ କର୍ମଚାରୀମାନେ ରହୁଥିଲେ, ସେଠାରେ ବିଜୁଳି ଆଲୁଅ, କଳ ପାଣିର ସୁବନ୍ଦୋବସ୍ତ କରାଯାଇଥିଲା । ଏ ବିଷୟରେ ମୁଁ ବ୍ୟବସ୍ଥାସଭାରେ ତୀବ୍ର ସମାଲୋଚନା କରିଥିଲି ଏବଂ ଏ ପ୍ରକାର ତାରତମ୍ୟ ତୁରନ୍ତ ଦୂର କରିବା ପାଇଁ ଦାବି କରିଥିଲି । ସରକାର ମୋ କଥାର ଉତ୍ତର ଦେଲାବେଳେ କହିଥିଲେ ଯେ ଯେହେତୁ ଏ ବିଷୟଟି ମୁଖ୍ୟତଃ କେନ୍ଦ୍ର ସରକାରଙ୍କ ପରିସରରେ ଆସୁଛି ରାଜ୍ୟ ସରକାରଙ୍କର ସେଥିରେ ବିଶେଷ କିଛି କହିବାରନାହିଁ । ମୁଁ ତା'ର ଜବାବରେ କହିଥିଲି, ଆଇନ ଶୃଙ୍ଖଳା ରକ୍ଷା କରିବାର ଦାୟିତ୍ୱ ରାଜ୍ୟ ସରକାରଙ୍କର । ତେଣୁ ଏ ପ୍ରକାର ଶ୍ରମିକମାରଣ କାର୍ଯ୍ୟଦ୍ୱାରା ଯଦି ଅଶାନ୍ତି ସୃଷ୍ଟି ହୁଏ, ତା'ହେଲେ ରାଜ୍ୟ ସରକାରଙ୍କ ପକ୍ଷରେ ତାକୁ ଆୟତ୍ତ କରିବା କଷ୍ଟକର ହେବ । ରାଜ୍ୟ ସରକାରଙ୍କର ପରାମର୍ଶ ଅନୁସାରେ ଯଦି କମ୍ପାନୀ କାର୍ଯ୍ୟ ନକରନ୍ତି, ତା'ହେଲେ ଗଣ୍ଡଗୋଳ ହେଲେ ତାକୁ ଆୟତ୍ତ କରିବା ପାଇଁ ସରକାରଙ୍କର ସାହାଯ୍ୟ ଚାହିଁବା ତାଙ୍କର କ'ଣ ଉଚିତ ହେବ କି ? ଶ୍ରୀ ବିଦ୍ୟାଧର ମହାନ୍ତିଙ୍କୁ ସାଙ୍ଗରେ ଧରି ମୁଁ ଯାଇଥିଲି ବୀରମିତ୍ରପୁର । ପୂର୍ବରୁ କହିଛି ଯେ ଗାଙ୍ଗପୁର ଲେବର ୟୁନିୟନ୍ ଗୋଟିଏ ସ୍ୱତନ୍ତ୍ର ୟୁନିୟନ୍ ଭାବରେ କାର୍ଯ୍ୟ କରୁଥିଲା ଓ ତା'ର ସଭ୍ୟ ସଂଖ୍ୟା ଚାରି ହଜାରରୁ ଅଧିକ ଥିଲା । ଆମର ଯିବାର ଉଦ୍ଦେଶ୍ୟ ଥିଲା ଆଇ.ଏନ୍.ଟି.ୟୁ.ସି. ପକ୍ଷରୁ ସେଠାରେ ଗୋଟିଏ ଶ୍ରମିକ ୟୁନିୟନ୍ ଗଠନ କରିବା । ଦୁଇ ଦିନ ସେଠାରେ ରହିଲୁ । ଗାଙ୍ଗପୁର ଲେବର ୟୁନିୟନ୍‌ର ସଭାପତି ଅବଦୁସ୍ ସମଦଙ୍କ ସହିତ ଆମର ବହୁତ ଆଲୋଚନା ହେଲା । ବ୍ୟବସ୍ଥାସଭାରେ ବୀରମିତ୍ରପୁର କଥା ମୁଁ ଯେପରି ଭାବରେ ଆଲୋଚନା କରୁଥିଲି, ତା'ର ଖବର ଶ୍ରୀ ସମଦ ମଧ୍ୟ ରଖୁଥିଲେ । ବହୁ ଆଲୋଚନା ପରେ ସ୍ଥିର ହେଲା ଯେ ଆଇ.ଏନ୍.ଟି ୟୁ.ସି. ପକ୍ଷରୁ ଆମକୁ ଆଉ ସ୍ୱତନ୍ତ୍ର ସଂସ୍ଥା ଗଢ଼ିବାକୁ ପଡ଼ିବନାହିଁ, ଗାଙ୍ଗପୁର ଲେବର ୟୁନିୟନ ଆମ ସଂଗଠନର ଅନ୍ତର୍ଭୁକ୍ତ ହୋଇଯିବ । ଗାଙ୍ଗପୁର ଲେବର ୟୁନିୟନ୍‌ର ଗୋଟିଏ ସାଧାରଣ ସଭା ଆହୂତ ହୋଇଥିଲା । ସେଠାରେ ପ୍ରାୟ ତିନି

ଚାରି ହଜାର ଶ୍ରମିକ ଯୋଗଦେଇଥିଲେ । ଗାଙ୍ଗପୁର ଲେବର ୟୁନିୟନ୍ ଆମ ସଂଗଠନର ଅନ୍ତର୍ଭୁକ୍ତ ହେଲା ବୋଲି ସେହିଠାରେ ପ୍ରସ୍ତାବ ଗୃହୀତ ହୋଇଥିଲା । ଏହାପରେ ମୁଁ ଅନେକ ଥର ବୀରମିତ୍ରପୁର ଯାଇଛି । ଏ ଶ୍ରମିକ ସଂସ୍ଥାଟି ଗୋଟିଏ ସୁସଂଗଠିତ ଶ୍ରମିକ ସଂସ୍ଥା ରୂପେ ଆଜିପର୍ଯ୍ୟନ୍ତ କାର୍ଯ୍ୟ କରିଆସୁଛି । ପୂର୍ବତନ ପାର୍ଲିଆମେଣ୍ଟ ସଦସ୍ୟ ଶ୍ରୀ ବିନୟ କୁମାର ମହାନ୍ତିଙ୍କ ନେତୃତ୍ୱରେ ଏ ୟୁନିୟନ୍ ବର୍ତ୍ତମାନ ପରିଚାଳିତ ହେଉଛି ।

ଆମ୍ଭମାନଙ୍କ ଉଦ୍ୟମରେ ଶ୍ରମିକମାନଙ୍କ ସ୍ୱାର୍ଥରକ୍ଷାପାଇଁ ପ୍ରଶାସନିକ ସ୍ତରରେ କେତେକ ନୂତନ ବ୍ୟବସ୍ଥା କରାଯାଇଥିବା କଥା ପୂର୍ବରୁ ଉଲ୍ଲେଖ କରିଛି । ଏଭଳି କେତେକ ନିର୍ଦ୍ଦିଷ୍ଟ ସାଫଲ୍ୟ ଏବଂ ଶ୍ରମିକମାନଙ୍କ ସହିତ ଆମର ଆନ୍ତରିକ ସଂପର୍କ ପ୍ରତିଷ୍ଠା ଫଳରେ ଦେଖାଗଲା ଯେ କ୍ରମେ ଓଡ଼ିଶାରେ ଭାରତ ଜାତୀୟ ଟ୍ରେଡ୍ ୟୁନିୟନ୍ କଂଗ୍ରେସର ପ୍ରଭାବ ଓ ଖ୍ୟାତି ବୃଦ୍ଧିପାଉଛି । କଟକ, ଭଦ୍ରକ, ସମ୍ବଲପୁର, ଝାରସୁଗୁଡ଼ା ଓ ବ୍ରହ୍ମପୁର ପ୍ରଭୃତି ଅଞ୍ଚଳରୁ ବିଡ଼ି ତିଆରି କରୁଥିବା ଶ୍ରମିକମାନେ ବିଡ଼ି ଶ୍ରମିକ ସଂଘ ଗଢ଼ିବାପାଇଁ ବ୍ୟାକୁଳତା ପ୍ରକାଶକରିଥିଲେ । ସେ କାର୍ଯ୍ୟରେ ସେମାନଙ୍କୁ ସାହାଯ୍ୟ କରାଯାଇଥିଲା । କଟକରେ ସାହେବ ବିଡ଼ି କାରଖାନା ଓ ଭଦ୍ରକରେ ହାଡ଼ି ବିଡ଼ି କାରଖାନାର ଶ୍ରମିକମାନେ ଶ୍ରମିକମାନଙ୍କୁ ସଂଗଠିତ କରିବାରେ ଅଗ୍ରଣୀ ହୋଇଥିଲେ । ମୋର ମନେଅଛି, କଟକରେ ସାହେବ ବିଡ଼ି କାରଖାନାର ମାଲିକ ଶ୍ରମିକ ୟୁନିୟନ୍ ନକରେଇଦେବାପାଇଁ ବହୁ ଉଦ୍ୟମ କରିଥିଲେ । ଏହାର ପ୍ରତିବାଦ କରି କଟକରେ ବିଡ଼ି ତିଆରି କରୁଥିବା ଶ୍ରମିକମାନେ ଏକତ୍ରିତ ହୋଇ ଶୋଭାଯାତ୍ରା କରି ଧର୍ମଘଟ କରିଥିଲେ । ମୋର ମଧ୍ୟସ୍ଥତାରେ ସେମାନଙ୍କର କେତେକ ସମସ୍ୟାର ସମାଧାନ ହୋଇଥିଲା ଏବଂ ସେମାନେ ଶ୍ରମିକ ୟୁନିୟନ୍ ଗଠନ କରିପାରିଥିଲେ । ମୟୂରଭଞ୍ଜରେ ରାଜାଙ୍କ ସମୟରୁ କୋଲଡିହାଠାରେ ଗୋଟିଏ ଛୋଟିଆ ସୂତାକଳ ଥିଲା । ସେଠି ପ୍ରାୟ ଦୁଇ ଶହ ପର୍ଯ୍ୟନ୍ତ ଶ୍ରମିକ କାମକରୁଥିଲେ । ଆଦିବାସୀ ଶ୍ରମିକମାନଙ୍କୁ ଶୋଷଣ କରିବାରେ କଳମାଲିକ ଚରମସୀମାରେ ପହଞ୍ଚିଥିଲେ । ଶ୍ରମିକମାନଙ୍କୁ ଠିକ୍ ଭାବରେ ମଜୁରୀ ଦେଉନଥିଲେ । ଅଧିକ ସମୟ ଖଟାଇଲେ ମଧ୍ୟ ସେଥିପାଇଁ ଅତିରିକ୍ତ ମଜୁରୀ ଦେଉନଥିଲେ । ଶ୍ରମିକମାନଙ୍କର ରହିବାପାଇଁ ଖଣ୍ଡେହେଲେ ବି ଘର ନଥାଏ, ପିଇବା ପାଣିର ବ୍ୟବସ୍ଥା କରାଯାଇନଥାଏ । ମୁଁ, ବିମ୍ବାଧର, ମୟୂରଭଞ୍ଜର ଶ୍ରୀ ହରୀଶ ଦାସ ଓ ଶ୍ରୀ ଚନ୍ଦ୍ରମୋହନ ସିଂହ ପ୍ରଭୃତି ଯେତେବେଳେ ଆଇ.ଏନ୍.ଟି.ୟୁ.ସି. ପକ୍ଷରୁ ଶ୍ରମିକ ୟୁନିୟନ୍ କରିବାପାଇଁ ଉଦ୍ୟମ କଲୁ, ମାଲିକ ସେଥିରେ ବାଧା ଦେବାକୁ ଉଦ୍ୟମ କରିଥିଲେ । ଶ୍ରମିକମାନଙ୍କର ଦୁରବସ୍ଥା କଥା ତାଙ୍କସହ ଆଲୋଚନା କରି ତା'ର ସମାଧାନ କରିବାପାଇଁ ତାଙ୍କ ଉପରେ ଆମେ ପ୍ରଭାବ ପକାଇଥିଲୁ । ଅନେକ ସ୍ତ୍ରୀଲୋକ ମଧ୍ୟ ଶ୍ରମିକ ଭାବରେ କାମ କରୁଥା'ନ୍ତି । କାରଖାନା ପାଖରେ ଶ୍ରମିକମାନଙ୍କର ରହିବାପାଇଁ ଘରର ବ୍ୟବସ୍ଥା କରିବାପାଇଁ ଆମେ ଯେତେବେଳେ ଦାବିକଲୁ, ମାଲିକ ଗୋଟିଏ ଅଦ୍ଭୁତ ଯୁକ୍ତି ଆମ ଆଗରେ ବାଢ଼ିଥିଲେ । ସେ କହିଥିଲେ, ''ଦେଖନ୍ତୁ, ମୁଁ ଜାଣିଶୁଣି ଭଲଭାବରେ ବିଚାରକରିଛି ଯେ କାରଖାନା ପାଖରେ ଶ୍ରମିକମାନଙ୍କ ରହିବାପାଇଁ ଘର କରିବା ଆଦୌ ଠିକ୍ ହେବନାହିଁ । କାରଣ ଏହା କରିବାଦ୍ୱାରା ଶ୍ରମିକମାନଙ୍କର ପାରିବାରିକ ଜୀବନରେ ମୋତେ ହସ୍ତକ୍ଷେପ କରିବାକୁ ପଡ଼ିବ । ସେଥିପାଇଁ ସରକାର ଶ୍ରମିକମାନଙ୍କପାଇଁ କ୍ୱାର୍ଟର ତିଆରି କରିବାପାଇଁ ଯେ ଜୋର୍ ଦେଉଛନ୍ତି ତାକୁ ମୁଁ ପସନ୍ଦ କରୁନାହିଁ ।'' "I do not want to distrub the family life of the labourers". ତାଙ୍କର ଏ ପ୍ରକାର 'ମହାନୁଭବତା'କୁ ବୁଝିବାରେ ଆମର କିଛି ଅସୁବିଧା ହେଲାନାହିଁ । ଶ୍ରମିକମାନଙ୍କ ରହିବାପାଇଁ ଘର ତିଆରିକଲେ ବହୁତ ଟଙ୍କା ଖର୍ଚ୍ଚ ହେବ । ସେଭଳି ଖର୍ଚ୍ଚ କରିବାକୁ ସେ ଚାହୁଁ ନ ଥିଲେ, ତେଣୁ ଗୃହସ୍ଥ ଜୀବନ ବିଷୟରେ ଆମକୁ ନୀତିବାକ୍ୟ ଶୁଣାଇବାରେ ଲାଗିଲେ । ମୟୂରଭଞ୍ଜ ଜିଲ୍ଲାର ଗୋରୁମହିଷାଣୀ, ସୁଲେଇପାଟ ଓ ବାଦାମପାହାଡ଼ରେ ଆମ୍ଭମାନଙ୍କର ଜାତୀୟ ଟ୍ରେଡ୍ ୟୁନିୟନ୍ କଂଗ୍ରେସର ସଂସ୍ଥା ଖୁବ୍

ସୁଦୃଢ଼ ଥିଲା । ବହୁ ଶ୍ରମିକ ଆମ ୟୁନିୟନ୍‌ର ସଭ୍ୟ ହୋଇଥିଲେ । ଶ୍ରୀ ଚନ୍ଦ୍ରମୋହନ ସିଂହ ଏଠାକାର ୟୁନିୟନ୍‌ର ଦାୟିତ୍ୱ ନେଇଥିଲେ । ପରେ ଚନ୍ଦ୍ରମୋହନବାବୁ ଓଡ଼ିଶାରେ ମନ୍ତ୍ରୀ ଓ ପାର୍ଲିଆମେଣ୍ଟ ସଦସ୍ୟ ହୋଇଥିଲେ ।

ଓଡ଼ିଶା ଟେକ୍ସଟାଇଲ୍ ମିଲ୍ ସ୍ଥାପିତ ହେବା ପରେ ଚୌଦ୍ୱାର ଗୋଟିଏ ପ୍ରଧାନ ଶିଳ୍ପ ଓ ଶ୍ରମିକ କେନ୍ଦ୍ରରେ ପରିଣତ ହୋଇଥିଲା । କଲିକତାରେ ମୁଁ ଯେତେବେଳେ ଓଡ଼ିଆମାନଙ୍କ ଭିତରେ ସାଙ୍ଗଠନିକ କାର୍ଯ୍ୟ କରୁଥିଲି, ବହୁ ସୂତାକଳର ଶ୍ରମିକଙ୍କ ସମ୍ପର୍କରେ ଆସିଥିଲି । ତେଣୁ ଓଡ଼ିଶା ଟେକ୍ସଟାଇଲ୍ ମିଲ୍ ଆରମ୍ଭ ହେଲାବେଳେ ସୂତାକଳ କାମ ଜାଣିଥିବା ଅନେକ ଶ୍ରମିକ ଚୌଦ୍ୱାର କଳରେ ନିଯୁକ୍ତି ପାଇବାପାଇଁ ମୋ ପାଖରେ ଆସି ପହଞ୍ଚିଥିଲେ । ମୋର ମନେପଡ଼େ ଖୁବ୍ କମ୍‌ରେ ପାଞ୍ଚଶହରୁ ଊର୍ଦ୍ଧ୍ୱ ଶ୍ରମିକ ମୋ ସୁପାରିସ୍‌ରେ ଓଡ଼ିଶା ଟେକ୍ସଟାଇଲ୍ ମିଲ୍‌ରେ ନିଯୁକ୍ତି ପାଇଥିଲେ । କାରଖାନା ଚାଲୁହେଲା ପରେ ବିଭିନ୍ନ ରାଜନୈତିକ ଦଳର ଲୋକେ ଉଦ୍ୟମ କଲେ ସେଠାରେ ଶ୍ରମିକ ସଂସ୍ଥା ଗଢ଼ିବାପାଇଁ । ଆଇ.ଏନ୍.ଟି.ୟୁ.ସି. ତରଫରୁ ସଂସ୍ଥା ଗଢ଼ିବାର ଦାୟିତ୍ୱ ମୋତେ ଓ ଶ୍ରୀ ଫକୀର ଶତପଥୀଙ୍କୁ ନେବାକୁ ପଡ଼ିଥିଲା । କଲିକତାରୁ ଆସିଥିବା ଶ୍ରମିକମାନେ ମୋ ପ୍ରତି ଅନୁରକ୍ତ ଥିଲେ ଏବଂ ମୁଁ ବ୍ୟବସ୍ଥାସଭାରେ ଶ୍ରମିକ ସମସ୍ୟା ଉତ୍ଥାପନ କରୁଥିଲି । ତେଣୁ ଆମଦ୍ୱାରା ପରିଚାଳିତ ଶ୍ରମିକ ସଂସ୍ଥା ପ୍ରତି ବହୁତ ଶ୍ରମିକ ଆକୃଷ୍ଟ ହୋଇଥିଲେ । ପ୍ରଥମ ଅବସ୍ଥାରେ ଆମକୁ ଏହି ସଂଗଠନପାଇଁ ବହୁ ପରିଶ୍ରମ କରିବାକୁ ପଡ଼ିଥିଲା । ସେତେବେଳେ କଟକରୁ ଚୌଦ୍ୱାରକୁ ସବୁଦିନିଆ ରାସ୍ତା ନଥିଲା । ଖରାଦିନେ ଖରାଦିନିଆ ରାସ୍ତା ହୁଏ । ବର୍ଷାଦିନରେ ସାଙ୍ଗଠନିକ କାର୍ଯ୍ୟ ସାରି ଫେରୁ ଫେରୁ ବିଳମ୍ବ ହୋଇଯାଏ । ତେଣୁ ଆମେ ଟ୍ରେନ୍ ଫେଲ୍ ହୋଇଯାଉ । ଟର୍ଚ୍ଚ ଧରି ମୁଁ ମହାନଦୀ ଓ ବିରୂପା ରେଳପୋଲ ଉପରେ ଅନେକ ଥର ଚାଲି ଚାଲି ଆସିଛି । କେତେଥର ବିରୋଧୀ ରାଜନୈତିକ ଦଳର ଲୋକେ ଗୁଣ୍ଡା ଲଗାଇ ମୋତେ ମାଡ଼ଦେବାପାଇଁ ଉଦ୍ୟମ କରିଥିଲେ । ସେ ସଂକ୍ରାନ୍ତରେ ଗୋଟିଏ ଫୌଜଦାରୀ ମକଦ୍ଦମା କଟକ କୋର୍ଟରେ ମଧ ହୋଇଥିଲା । ମୋର ମନେଅଛି, ଆଡ଼ଭୋକେଟ ଶ୍ରୀ ଶ୍ରୀନିବାସ ମିଶ୍ର, ଯେ ପରେ ସମାଜବାଦୀ ଦଳ ପକ୍ଷରୁ ପାର୍ଲିଆମେଣ୍ଟ ସଦସ୍ୟ ହୋଇଥିଲେ, ମୋତେ କୋର୍ଟରେ ଗୋଟିଏ ମକଦ୍ଦମାରେ ଜେରାକରିଥିଲେ । ନଗେନ୍ ମିତ୍ର ବୋଲି ଜଣେ ମାଜିଷ୍ଟ୍ରେଟ୍‌ଙ୍କ କୋର୍ଟରେ ବିଚାରଚାଲିଥାଏ । ଶ୍ରୀନିବାସବାବୁ କେତେକ ଅବାନ୍ତର କଥା ମୋତେ ପଚାରିବାରୁ ମାଜିଷ୍ଟ୍ରେଟ୍ ଅତି ରୂକ୍ଷ ଭାବରେ ତାଙ୍କର ଅବାନ୍ତର ଜେରା ବନ୍ଦକରିଦେଇଥିଲେ । ମାଜିଷ୍ଟ୍ରେଟ୍‌ଙ୍କର ଏ ପ୍ରକାର ହସ୍ତକ୍ଷେପ ଦେଖି ଶ୍ରୀନିବାସବାବୁ ଟିକେ ଅପ୍ରସ୍ତୁତ ହୋଇଥିଲେ ।

## ପ୍ରତାରଣା ଓ ପ୍ରାୟଶ୍ଚିତ୍ତ

ଶ୍ରୀ ପ୍ରତାପ ସିଂହ ଥିଲେ ଓଡ଼ିଶା ଟେକ୍ସଟାଇଲ୍ ମିଲ୍‌ର ପରିଚାଳକ । ଶ୍ରୀ ବିଜୁ ପଟ୍ଟନାୟକ କାରଖାନାର ପ୍ରତିଷ୍ଠାତା ହେଲେ ମଧ ପରିଚାଳନାର ସମସ୍ତ ଦାୟିତ୍ୱ ଥାଏ ପ୍ରତାପ ସିଂହଙ୍କ ହାତରେ; କିନ୍ତୁ ବିଜୁବାବୁ ସାମୟିକ ଭାବରେ ବୁଝାଶୁଝା କରୁଥିଲେ । ପ୍ରତାପ ସିଂ ଓଡ଼ିଶା ଟେକ୍ସଟାଇଲ୍ ମିଲ୍‌କୁ ଗଢ଼ିତୋଳିବାରେ ବହୁ ପରିଶ୍ରମ କରିଥିଲେ । ପରିଚାଳକ ହିସାବରେ ସେ ଥିଲେ ଅତି ଚାଣୁଆ, ମାତ୍ର ଶ୍ରମିକମାନଙ୍କର ସମସ୍ୟା ପ୍ରତି ସେ ବହୁତ ଉଦାସୀନ ଥିଲେ । ତାଙ୍କଠାରୁ ଶ୍ରମିକମାନଙ୍କପାଇଁ କିଛି ସୁବିଧା ହାସଲ କରିବା କାଠିକରପାଠ ଥିଲା । ଓଡ଼ିଶା ସରକାରଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଥିବାରୁ ସରକାରଙ୍କ ଆଡ଼ୁ କୌଣସି ଅସୁବିଧା ସୃଷ୍ଟି ହେବାର ଭୟ ତାଙ୍କର ବିଶେଷ ନଥାଏ । କିନ୍ତୁ ମୁଁ ଆଇ.ଏନ୍.ଟି.ୟୁ.ସି. ସଭାପତି ଥିବା ସହିତ ବ୍ୟବସ୍ଥାସଭାର ସଭ୍ୟ ଥିବାରୁ କେବଳ ମୋ କଥାକୁ ସେ ଟିକେ ଟିକେ ଶୁଣୁଥିଲେ । ସେଥିପାଇଁ ସେତେବେଳେ ଆମ ସଙ୍ଗଠନ ଶ୍ରମିକମାନଙ୍କପାଇଁ କେତେକ ସୁବିଧା ହାସଲ କରିପାରୁଥିଲା । ଶ୍ରମିକମାନଙ୍କର ସୁଖଦୁଃଖ ନାନା

ସମସ୍ୟା ବୁଝିବାପାଇଁ ଶ୍ରୀ ଫକିରମୋହନ ଶତପଥୀ ସେଠାରେ ସବୁବେଳେ ରହୁଥିଲେ । ଥରେ ଶ୍ରମିକମାନଙ୍କର ଓଭରଟାଇମ୍ (Overtime) ପ୍ରଭୃତି କେତେକ ସମସ୍ୟା ନେଇ କର୍ତ୍ତୃପକ୍ଷଙ୍କ ସହ ବିବାଦ ଉପୁଜିଥିଲା । ଗୋଟିଏ ଦିନ ଧର୍ମଘଟ ହୋଇଥିଲା ଓ ତାହାପରେ ପ୍ରତାପ ସିଂହ ମୋ ସହିତ ଆଲୋଚନାକଲେ । ଶ୍ରମିକମାନଙ୍କର କେତେକ ଦାବି ସେ ଗ୍ରହଣ କରିବେ ବୋଲି ମୋତେ କହିଥିଲେ । ମୁଁ ତାଙ୍କ କଥାରେ ବିଶ୍ୱାସକରି ଧର୍ମଘଟ ଆଉ ନକରିବାପାଇଁ ଶ୍ରମିକମାନଙ୍କୁ ପରାମର୍ଶ ଦେଇଥିଲି । ପରଦିନ ସକାଳେ ମିଲ୍‌ରେ କାର୍ଯ୍ୟ ଆରମ୍ଭ ହୋଇଗଲା । ତା'ପରେ ମୁଁ ପ୍ରତାପ ସିଂହଙ୍କର ଅଫିସକୁ ଯାଇ ପୂର୍ବଦିନ ଆଲୋଚିତ ହୋଇଥିବା ବିଷୟରେ କଥାବାର୍ତ୍ତା କଲି । ସେ ପୂର୍ବଦିନ ମୋତେ କହିଥିବା କେତେକ କଥା ମାନିନଥିଲେ । ତାଙ୍କ କଥା ଶୁଣି ମୋ ମୁଣ୍ଡରେ ଚଡ଼କ ପଡ଼ିଲାଭଳି ମୋତେ ଲାଗିଲା । ଏଣେ କାରଖାନାରେ କାର୍ଯ୍ୟ ଆରମ୍ଭ ହୋଇଯାଇଛି । ମୁଁ ଭାବିଲି ଯେ ଶ୍ରମିକମାନଙ୍କ ଆଗରେ ମୋ ଇଜ୍ଜତ ଦି'କଡ଼ା ହୋଇଗଲା । ପ୍ରତାପ ସିଂହଙ୍କର ଅଫିସ୍ ଦୁଆର ଆଗରେ ଗୋଟିଏ କାଠ ପେଟି ପଡ଼ିଥିଲା । ଅତି ଦୁଃଖରେ ଆସି ମୁଁ ତା'ରି ଉପରେ ବସିଗଲି । କଥାଟା ସାଙ୍ଗେ ସାଙ୍ଗେ ପ୍ରଘଟ ହୋଇଗଲା । ଶ୍ରମିକମାନେ ଦୌଡ଼ାଦୌଡ଼ିକଲେ, କାର୍ଯ୍ୟ ବନ୍ଦକରିଦେବାପାଇଁ ବାହାରିଲେ । ମୁଁ କିନ୍ତୁ ସେଥିରେ ଏକମତ ହେଲି ନାହିଁ । ମୋର ନିଜର ଭୁଲ ଓ ଅସାବଧାନତାପାଇଁ ମୋତେ ପ୍ରାୟଶ୍ଚିତ୍ତ କରିବାପାଇଁ ପଡ଼ିବ ବୋଲି ମୁଁ ସ୍ଥିରକରିନେଲି । କିଛି ଖାଇଲିନାହିଁ, ସେହି ସ୍ଥାନରେ ବସିରହିଲି । ଶ୍ରୀ ପ୍ରତାପ ସିଂହ ଆସି ମୋତେ ବୁଝାଇବାକୁ ଉଦ୍ୟମ କଲେ । ପ୍ରତିବାଦରେ ମୁଁ ତାଙ୍କ ସହିତ କଥାବାର୍ତ୍ତା ବନ୍ଦକରିଦେଲି । କାରଖାନାରେ କାମ ଚାଲିଥାଏ; କିନ୍ତୁ ସବୁଆଡ଼େ ଅସ୍ଥିରତା । କାମ ସେଇଭଳି ଅଧାପନ୍ତରିଆ ଭାବରେ ହେଉଥାଏ । ଏ ସମ୍ବାଦ କଟକରେ ଯାଇ ପହଞ୍ଚିଗଲା । ବିଜୁବାବୁ ଓ ବୀରେନ୍‌ବାବୁଙ୍କ କାନରେ ପଡ଼ିଲା । ସେତେବେଳେ କଟକରୁ ଚୌଦ୍ୱାରକୁ ଖରାଦିନିଆ ରାସ୍ତା ଥାଏ । ପ୍ରାୟ ପାଞ୍ଚଟା ସମୟ ହେବ, ଗୋଟିଏ ମଟରଗାଡ଼ିରେ ବିଜୁବାବୁ ଓ ବୀରେନ୍‌ବାବୁ ଆସି ମିଲ୍ ଭିତରେ ପ୍ରବେଶକଲେ । ମୋ ସାଙ୍ଗରେ ଦୁଇପଦ କଥାବାର୍ତ୍ତା କଲେ । ତା'ପରେ ସବୁ କଥା ଜାଣିବାପାଇଁ ଗାଡ଼ିରେ ବସି କଥାବାର୍ତ୍ତା ହେବାକୁ ଗାଡ଼ି ଭିତରକୁ ଡାକିନେଲେ । ବିଜୁବାବୁ ଡ୍ରାଇଭର୍ ସିଟ୍‌ରେ ବସିଥାଆନ୍ତି । ପଛ ସିଟ୍‌ରେ ମୁଁ ଓ ବୀରେନ୍ ବାବୁ ବସିଲୁ । କିଛି ସମୟ ଟିକିଏ କଥାବାର୍ତ୍ତା ହେଲୁ । ତା'ପରେ ବିଜୁବାବୁ ବୀରେନ୍ ବାବୁଙ୍କୁ ଇସାରା ଦେବାରୁ ସେ ମୋତେ ଜବରଦସ୍ତ କୁଣ୍ଢେଇଧରିଲେ ଓ ବିଜୁବାବୁ ଖୁବ୍ ବେଗରେ ଗାଡ଼ି ଛୁଟାଇ ପ୍ରାୟ ଦଶ ପନ୍ଦର ମିନିଟ୍‌ରେ କଟକରେ ଆସି ପହଞ୍ଚିଲେ । ମୁଁ ଯେତେ ପାଟିକରୁଥାଏ, ମୋ ମୁହଁକୁ ବୀରେନ୍‌ବାବୁ ମାଡ଼ିଧରୁଥାଆନ୍ତି । ମତେ କଟକ ଆଣି ବିଜୁବାବୁ ତାଙ୍କ ଆନନ୍ଦଭବନ ଘରେ ପହଞ୍ଚାଇଲେ । ଆମ ଭିତରେ ବଚସାହେଲା । ମୁଁ ଖୁବ୍ ବିରକ୍ତହେଲି । ମୋତେ ଶ୍ରମିକମାନଙ୍କ ପାଖରେ ଅପଦସ୍ଥ କରାଗଲା ବୋଲି ଅଭିଯୋଗ କଲି । ସେ ରାତିଟି ଏହିପରି ଭାବରେ ଗଲା । ମନେ ମନେ ମୁଁ ବଡ଼ ଚିନ୍ତିତ ଥିଲି । ପରଦିନ ସକାଳେ ମିଲ୍ ଖୋଲିଲାବେଳକୁ ଶ୍ରମିକମାନଙ୍କର ଯେଉଁ ଦାବି ଥିଲା, ତାହା ପୂରଣ ହୋଇଯାଇଛି ବୋଲି ଘୋଷଣାକରାଗଲା । ଏହିପରି ତିକ୍ତ ମଧୁର ଘଟଣା ଭିତରେ ସମସ୍ୟାଟିର ସୁନ୍ଦର ସମାଧାନ ହୋଇଯାଇଥିଲା ।

## ଜ୍ୟୋତିଷୀ ପରାମର୍ଶ ଓ ମହତାବ

ଯେତେବେଳେ ମୁଁ ଏବଂ ମୋର ବନ୍ଧୁମାନେ ଉତ୍ସାହର ସହିତ ଶାସନ ସଂକ୍ରାନ୍ତୀୟ ତଥା କଂଗ୍ରେସର ସାଂଗଠନିକ କାର୍ଯ୍ୟରେ ଲାଗିଥିଲୁ ସେତିକିବେଳେ ଓଡ଼ିଶା ଶାସନ କ୍ଷେତ୍ରରେ ଗୋଟିଏ ସ୍ମରଣୀୟ ପରିବର୍ତ୍ତନ ଘଟିଥିଲା । ପ୍ରଧାନମନ୍ତ୍ରୀ ଜବାହରଲାଲ୍ ନେହେରୁଙ୍କ ନିଷ୍ପତ୍ତି କ୍ରମେ ଶ୍ରୀ ହରେକୃଷ୍ଣ ମହତାବ ଓଡ଼ିଶାର ମୁଖ୍ୟ ଦାୟିତ୍ୱ ଛାଡ଼ି କେନ୍ଦ୍ରରେ ଶିଳ୍ପ ଓ ବାଣିଜ୍ୟ ବିଭାଗର ମନ୍ତ୍ରିତ୍ୱ

ଗ୍ରହଣ କରିବାପାଇଁ କଥା ହେଲା । ଏହି ପରିବର୍ତ୍ତନ ଘଟିଥିଲା ୧୯୫୦ ମସିହା ମେ ମାସରେ । ମହତାବବାବୁଙ୍କର ଓଡ଼ିଶା ଛାଡ଼ି ଦିଲ୍ଲୀ ଯିବା ପ୍ରସ୍ତାବକୁ ଅନ୍ୟମାନେ ସ୍ୱାଗତ କରିଥିଲେ ମଧ୍ୟ ମୋତେ କାହିଁକି ସେ କଥାଟା ଭଲଲାଗୁନଥାଏ । ତାଙ୍କ ନେତୃତ୍ୱରେ ଗୋଟିଏ ପ୍ରକାର କାର୍ଯ୍ୟ ଚାଲିଥିଲା, ପୁଣି ପରିବର୍ତ୍ତନ ହେଲେ କ'ଣ ହେବ ସବୁ ଅନିଶ୍ଚିତ ଜଣାପଡ଼ିଲା । ଅନ୍ୟମାନେ ଉଚ୍ଚସ୍ୱରରେ ପ୍ରଶଂସା କରି କହୁଥିଲାବେଳେ ମୁଁ ସମସ୍ତଙ୍କ ଆଗରେ ତା'ର ବିରୁଦ୍ଧମତ ପ୍ରକାଶ କରିଥିଲି । ମହତାବବାବୁ କିନ୍ତୁ ଖୁବ୍ ଉତ୍ସାହିତ ହୋଇଥିଲେ ଯିବାପାଇଁ । ମୁଁ ଶୁଣିବାକୁ ପାଇଲି ଯେ ସେ କୌଣସି ଜଣେ ଜ୍ୟୋତିଷୀ ଏବଂ ହସ୍ତରେଖାବିତ୍ ସହ ପରାମର୍ଶ କରି ସନ୍ତୁଷ୍ଟ ହୋଇଥିଲେ ଯେ ଦିଲ୍ଲୀରେ କେନ୍ଦ୍ର ଶାସନକୁ ଗଲେ ତାଙ୍କର ଉତ୍ତରୋତ୍ତର ଉନ୍ନତି ହେବ, ତେଣୁ ସେ ଯିବାପାଇଁ ସ୍ଥିରକରିଥିଲେ । ତାଙ୍କ ସ୍ଥାନରେ କିଏ ମୁଖ୍ୟମନ୍ତ୍ରୀ ହେବେ ସେ ବିଷୟରେ ବହୁତ ଆଲୋଚନା କରାଯାଇଥିଲା । ଶ୍ରୀ ବିଶ୍ୱନାଥ ଦାସଙ୍କ କଥା ଉଠିଥିଲା । କିନ୍ତୁ ମହତାବବାବୁ ସେ କଥାକୁ ଆଦୌ ପସନ୍ଦ କରୁନଥିଲେ । ମୁଁ ଚାହୁଁଥିଲି ବିଶ୍ୱନାଥବାବୁ ଆସିଲେ ଭଲ ହେବ ବୋଲି; କିନ୍ତୁ ମହତାବଙ୍କର ଏ ପ୍ରକାର ମନୋଭାବ ଜାଣି ମୁଁ ଆଉ ସେ ଦିଗରେ ଅଗ୍ରସର ହୋଇନଥିଲି । ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଓ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ କଥା ପଡ଼ିଲା । ଶେଷରେ ଶ୍ରୀ ନବକୃଷ୍ଣ ଚୌଧୁରୀ ମହତାବଙ୍କ ସ୍ଥାନରେ ଦଳପତି ନିର୍ବାଚିତ ହେଲେ । ଅସୁବିଧା ହେଲା ଯେ ସେ ୧୯୪୮ ମସିହା ଏପ୍ରିଲ୍ ମାସରେ ବ୍ୟକ୍ତିଗତ କାରଣ ଦର୍ଶାଇ ମହତାବଙ୍କ ମନ୍ତ୍ରିମଣ୍ଡଳରୁ ଓ ପରେ ବ୍ୟବସ୍ଥା ସଭାର ସଭ୍ୟ ପଦରୁ ଇସ୍ତଫା ଦେଇଥିଲେ । ମହତାବବାବୁ ମୁଖ୍ୟମନ୍ତ୍ରୀ ଥିଲାବେଳେ ନାନା କାରଣରୁ ନବବାବୁଙ୍କର ସଙ୍ଗୀ ଓ ସହକର୍ମୀମାନେ ମହତାବଙ୍କର କାର୍ଯ୍ୟକୁ ପସନ୍ଦକରୁନଥିଲେ ; ସେଥିପାଇଁ ନବବାବୁ ମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ ବୋଲି ମଧ୍ୟ ଶୁଣାଯାଇଥିଲା । ମୋର ମଧ୍ୟ ସେହି ପ୍ରକାର ଧାରଣା ଜନ୍ମିଥିଲା । ମହତାବବାବୁ ସେତେବେଳେ ଦିଲ୍ଲୀ ନଯାଇ ଓଡ଼ିଶାରେ ରହିଥିଲେ ଭଲହୋଇଥାଆନ୍ତା ବୋଲି ମୋର ଧାରଣା ଥିଲା; କିନ୍ତୁ ଜ୍ୟୋତିଷୀ ପରାମର୍ଶ ତାଙ୍କୁ ଉତ୍ସାହିତ କରିଥିଲା ଯିବାପାଇଁ ।

ଏ ସଂପର୍କରେ ତାଙ୍କର ଏଇଭଳି ଜ୍ୟୋତିଷୀ ପରାମର୍ଶ ସମ୍ବନ୍ଧୀୟ ଆଉ ଗୋଟିଏ ଘଟଣା ମୋର ମନେପଡ଼େ । ୧୯୫୮ ମସିହାରେ ସେ ଥାଆନ୍ତି ମୁଖ୍ୟମନ୍ତ୍ରୀ ଏବଂ ମୁଁ ଥାଏ ଯୋଗାଣ, ବାଣିଜ୍ୟ ଓ ପରିବହନ ବିଭାଗର ମନ୍ତ୍ରୀ । କୌଣସି ସରକାରୀ କାର୍ଯ୍ୟରେ ଆମେ ଦୁଇଜଣ ଦିଲ୍ଲୀ ଯାଇ ଓଡ଼ିଶା ଭବନରେ ରହିଥିଲୁ । ଏହି ସମୟରେ ଦିଲ୍ଲୀର ପ୍ରତିରକ୍ଷା କଲୋନୀରେ ରହୁଥିବା ଜଣେ ହସ୍ତରେଖାବିତ୍ ଓ ଜ୍ୟୋତିଷୀଙ୍କ ସାଙ୍ଗରେ ତାଙ୍କର ସାକ୍ଷାତ୍ ହୋଇଥିଲା ଓଡ଼ିଶା ଭବନରେ । ମହତାବବାବୁଙ୍କର ହାତ ଦେଖି ଓ ଅନ୍ୟାନ୍ୟ ଗଣନା କରି ଜ୍ୟୋତିଷୀ କହିଥିଲେ ଯେ ଗୋଟିଏ ସପ୍ତାହ ମଧ୍ୟରେ ସେ କେନ୍ଦ୍ର ମନ୍ତ୍ରୀମଣ୍ଡଳକୁ ଆସୁଛନ୍ତି ଓ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ କରାଯିବ । ସେତେବେଳେ କମାଣ୍ଡର-ଇନ୍-ଚିଫ୍ ଥିଲେ ଜେନେରାଲ୍ ଥିମାୟା ଏବଂ ପ୍ରତିରକ୍ଷା ମନ୍ତ୍ରୀ ଥିଲେ ଶ୍ରୀ କୃଷ୍ଣ ମେନନ୍ । କୌଣସି କାରଣରୁ ଏ ଦୁଇଜଣଙ୍କ ଭିତରେ ମନୋମାଳିନ୍ୟ ଥିଲା ଏବଂ ସେ କଥା ଖବରକାଗଜରେ ମଧ୍ୟ ପ୍ରକାଶପାଉଥାଏ । ଜ୍ୟୋତିଷୀଙ୍କ କଥା ଶୁଣି ମହତାବବାବୁ ଧରିନେଲେ ଯେ ସେ ନିଶ୍ଚୟ ପ୍ରତିରକ୍ଷାମନ୍ତ୍ରୀ ହୋଇ କେନ୍ଦ୍ରକୁ ଆସୁଛନ୍ତି । ଏହାପରେ ମୋ ହାତ ଦେଖିବାପାଇଁ ମଧ୍ୟ ଜ୍ୟୋତିଷୀଙ୍କୁ ମହତାବବାବୁ କହିଥିଲେ । ଜ୍ୟୋତିଷୀ ମୋ ହାତ ଦେଖି କହିଥିଲେ ଇଏ ଜଣେ ଦକ୍ଷ ପ୍ରଶାସକ ହେବେ । ମହତାବବାବୁ ଜ୍ୟୋତିଷୀ କଥାରେ ଏଭଳି ପ୍ରଲୋଭିତ ହୋଇଥିଲେ ଯେ ସେ ତାହା ପରେ ପରେ ଥିମାୟାଙ୍କ ସହ ଫୋନ୍‌ରେ କଥାବାର୍ତ୍ତା ହୋଇଥିଲେ ଏବଂ ଏ ସଂକ୍ରାନ୍ତରେ ଚିଠିପତ୍ର କାଳେ ଓଡ଼ିଶା ଭବନକୁ ଆସିବ, ସେଥିପ୍ରତି ସତର୍କ ଦୃଷ୍ଟି ରଖିବାପାଇଁ ମୋତେ କହିଥିଲେ । ପରଦିନ ସକାଳେ ଦିଲ୍ଲୀରେ ଭୀଷଣ ବର୍ଷା ହେଉଥାଏ, ଓଡ଼ିଶା ଭବନ ଆଗରେ ଆଣ୍ଠୁଏ ପାଣି ଠିଆହୋଇଥାଏ । ବିରାଟ ଗର୍ଜନ କରି ଗୋଟିଏ ବଡ଼ ଗାଡ଼ି ପାଣି ଭିତର ଦେଇ ଆସି

ଓଡ଼ିଶା ଭବନ ଦୁଆରରେ ଠିଆହେଲା । ସେଥିରୁ ଓହ୍ଲାଇଲେ ଜେନେରାଲ୍ ଥିମାୟା । ମହନ୍ତାବବାବୁ ଆସି ତାଙ୍କୁ ପାଛୋଟି ନେଇଗଲେ । ଘଣ୍ଟାଏରୁ ଊର୍ଦ୍ଧ୍ୱକାଳ ପରାମର୍ଶ ଚାଲିଥିଲା ।

ଯେତେବେଳେ ପବିତ୍ରବାବୁ ଓ ମୁଁ ଶ୍ରମିକ ସଙ୍ଗଠନ କାର୍ଯ୍ୟ କରୁଥିଲୁ ବହୁ ସଭାସମିତିରେ ତାଙ୍କର ଭାଷଣ ଶୁଣିବାର ମୁଁ ସୁଯୋଗ ପାଇଛି । ତାଙ୍କ ସହିତ ପରିଶ୍ରମ କରିବା ଯେପରି କଷ୍ଟସାଧ ତାଙ୍କର ସାନ୍ନିଧ ସେହିପରି ଉପଭୋଗ୍ୟ । ସେ ଜଣେ ଅତି ଟାଣୁଆ ନେନ୍ଥାନୀୟ ବ୍ୟକ୍ତି ଏବଂ ନିଜେ ଯାହା ବୁଝିଥିବେ ସେ କଥା ଅନ୍ୟମାନଙ୍କୁ ନବୁଝାଇବା ପର୍ଯ୍ୟନ୍ତ ଛାଡ଼ିବେନାହିଁ । କ୍ଷୁଦ୍ର ଭାଷଣ ଦେଲେ ସେ ପ୍ରାୟ ଦେଢ଼ ଘଣ୍ଟା ସମୟ ନିଅନ୍ତି; କିନ୍ତୁ ବିସ୍ତୃତ ହେଲେ ତିନି ଘଣ୍ଟାରୁ ବେଶି । ଶ୍ରମିକମାନଙ୍କ ସଭାରେ ସେ ସେହିଭଳି ଦୀର୍ଘ ଭାଷଣ ଦିଅନ୍ତି । ଗୋଟିଏ ଦିନରେ ବହୁ ସଭାକରି ଯେତେ ଭାଷଣ ଦେଲେ ମଧ ସେ କ୍ଲାନ୍ତ ହୁଅନ୍ତିନାହିଁ । ତାଙ୍କ ଦୀର୍ଘ ଭାଷଣର ଫଳ ମଧ ଅନେକ ସମୟରେ ଭଲ ହୋଇଥାଏ । ଆଉ ବେଳେବେଳେ ତାଙ୍କ ଭାଷଣ ନସରୁଣୁ ଅଧିକାଂଶ ଶ୍ରୋତା ବିଦାୟ ନେଇ ଚାଲିଯାଇଥା'ନ୍ତି । ମନ୍ତ୍ରୀ ଥିଲାବେଳେ ସରକାରଙ୍କର ପ୍ରଚାର ବିଭାଗକୁ ପବିତ୍ରବାବୁ ଯେପରି ବ୍ୟବହାର କରନ୍ତି, ସେପରି ଆଉ କେହି କରିପାରନ୍ତିନି । ଏହି ସମ୍ବନ୍ଧରେ ଗୋଟିଏ ମଜା ଘଟଣା ମୋର ମନେଅଛି । ଦିନେ ତାଳଚେରରେ ଗୋଟିଏ ବିରାଟ ଶ୍ରମିକ ସଭାର ଆୟୋଜନ ହୋଇଥାଏ । ମୁଁ, ପବିତ୍ରବାବୁ ଓ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ସେଠାକୁ ଯାଇଥିଲୁ । ସଭାରେ ସଭାପତି ହୋଇଥିଲେ ଶ୍ରୀ ନବକୃଷ୍ଣ ଚୌଧୁରୀ । ଆଇ.ଏନ୍.ଟି.ୟୁ.ସି.ର ସଭାପତି ହିସାବରେ ମୁଁ ପନ୍ଦର ମିନିଟ୍‌ଖଣ୍ଡେ ଭାଷଣ ଦେଲା ପରେ ପବିତ୍ରବାବୁ ଉଠିଲେ ଭାଷଣ ଦେବାପାଇଁ । ବହୁତ ଶ୍ରୋତା, ସେଥିପାଇଁ ବକ୍ତା ନିଶ୍ଚିତ ଉତ୍ସାହିତ ହେବେ ଭାଷଣ ଦେବାପାଇଁ । ପବିତ୍ରବାବୁ ଅତି ଉତ୍ସାହର ସହିତ ଭାଷଣ ଆରମ୍ଭ କଲେ । ଘଣ୍ଟାଏ ଗଲା, ସେତେବେଳକୁ ନବବାବୁ ବ୍ୟସ୍ତହେଲେଣି । ଦେଢ଼ ଘଣ୍ଟା ଗଲା, ତଥାପି ଭାଷଣ ସରୁନାହିଁ । ତା'ପରେ ନବବାବୁ ମୋତେ ଡାକିଲେ ଟିକେ ସଭାପତି ସ୍ଥାନରେ ବସିବାପାଇଁ । ମୁଁ ମନେକଲି ବୋଧହୁଏ ସେ ପରିସ୍ରା କରିବା ପାଇଁ ଯାଉଛନ୍ତି, ତା'ପରେ ଆସିବେ । ଅପେକ୍ଷା କରି କରି ଯେତେବେଳେ ସେ ନଆସିଲେ, ସେତେବେଳେ ଯାଇ ବୁଝିଲି ନବବାବୁ ଆଉ ଆଖ ପାଖରେ ନାହାନ୍ତି । ପ୍ରଚାର ବିଭାଗର ଜଣେ ଅଫିସର ଆସି ମୋତେ କହିଲେ ଯେ ନବବାବୁ ଅନୁଗୁଳ ଚାଲିଗଲେଣି । ତଥାପି ପବିତ୍ରବାବୁଙ୍କର ଭାଷଣ ସରୁନାହିଁ । ଲୋକେ ଆସ୍ତେ ଆସ୍ତେ ଚାଲିଯିବାକୁ ବସିଲେ । ସଭାସ୍ଥଳ ପ୍ରାୟ ଶୂନ୍ୟ ହେଲା ଭଳି ଜଣାପଡ଼ିଲା । ଦୂରରେ କେତେକ ଲୋକ ଠିଆହୋଇଥା'ନ୍ତି । ଚାରି-ପାଞ୍ଚ ଜଣ ଲୋକ ସଭା ସ୍ଥଳରେ ବସିଥା'ନ୍ତି । ପବିତ୍ରବାବୁ ଏକଥା ଲକ୍ଷ୍ୟକରି ଭାଷଣରେ କହିଲେ, ''ଦୁଇ ଚାରିଜଣ ଲୋକ ଥିବା ପର୍ଯ୍ୟନ୍ତ ମୁଁ ବୁଝାଉଥିବି । ଯେତିକି ଲୋକଙ୍କର ଆଗ୍ରହ ଅଛି ସେମାନଙ୍କୁ ମୋ କଥା ବୁଝିବାକୁ ହେବ ।'' ଏହା ଶୁଣି ତାଙ୍କ ଭିତରୁ ଜଣେ କହିଲା, ''ଆଜ୍ଞା, ଆମେ ସତରଞ୍ଜି ଉଠାଇ ନେବାପାଇଁ ଏଠାରେ ଅପେକ୍ଷା କରିଛୁ ।'' ଏହିପରିଭାବରେ ସଭା ମଉଳିଲା । ସଭାପତି ତ ଅନୁଗୁଳ ଚାଲିଯାଇଥା'ନ୍ତି, ସଭାପତିଙ୍କ ଭାଷଣ ଆଉ ହେଲାନାହିଁ । ସଭା ଭଙ୍ଗ ହେଲା ବୋଲି ମୁଁ ଘୋଷଣା କରିଥଲି । ପବିତ୍ରବାବୁଙ୍କ ସରଳ ଆଚରଣ ଓ ପରିଶ୍ରମ ଶ୍ରମିକ ସଂଗଠନ କାର୍ଯ୍ୟରେ ବେଶ୍ ସହାୟକ ହେଉଥିଲା ।

ଏହିପରି ନାନା ସଂଘର୍ଷ, ସହଯୋଗ ଓ ଅନୁଭୂତିର ଉପଭୋଗ ମଧରେ ଆମ୍ଭେମାନେ ଓଡ଼ିଶାରେ ଭାରତ ଜାତୀୟ ଟ୍ରେଡ୍ ୟୁନିୟନ୍ କଂଗ୍ରେସକୁ ସଂପ୍ରସାରିତ ଓ ଦୃଢ଼ୀଭୂତ କରିଥିଲୁ । ଅନେକ ଥର ଏହି ଭାରତ ଜାତୀୟ ଟ୍ରେଡ୍ ୟୁନିୟନ୍ କଂଗ୍ରେସର ବାର୍ଷିକ ଅଧିବେଶନରେ ଯୋଗଦେବାପାଇଁ ଆମେ ଭାରତବର୍ଷର ବିଭିନ୍ନ ସ୍ଥାନକୁ ଯାଇଥିଲୁ । ଶ୍ରମିକମାନଙ୍କ ଭିତରେ କାର୍ଯ୍ୟ କରିବାର ଏହି ଯେଉଁ ଅଭିଜ୍ଞତା ମୁଁ ଅର୍ଜନ କରିଥିଲି, ଶ୍ରମିମନ୍ତ୍ରୀ ଥିଲାବେଳେ ତାହା ମୋତେ ବିଶେଷ ସାହାଯ୍ୟ କରିଥିଲା । ଜେନେଭାଠାରେ ଅନୁଷ୍ଠିତ ହୋଇଥିବା ଆନ୍ତର୍ଜାତିକ ଶ୍ରମିକ ସଂସ୍ଥାର (I.L.O.) ଭାରତୀୟ ପ୍ରତିନିଧି

ଦଳର ନେତା ହିସାବରେ ମୁଁ ଯୋଗଦେବାର ସୁଯୋଗ ପାଇଥିଲି । ଶ୍ରୀ ବିଦ୍ୟାଧର ମହାନ୍ତି ଓଡ଼ିଶା ଶାଖା ଜାତୀୟ ଟ୍ରେଡ୍ ୟୁନିୟନ୍ କଂଗ୍ରେସର ସଂପାଦକ ଥାଇ ଶ୍ରମିକ ସଂଗଠନରେ ଯେଉଁ ଅଭିଜ୍ଞତା ଅର୍ଜନ କରିଥିଲେ, ସେଥିପାଇଁ ସେ ସରକାରଙ୍କର ଶ୍ରମ ବିଭାଗରେ କାର୍ଯ୍ୟକରି ଆସିଷ୍ଟାଣ୍ଟ ଲେବର୍ କମିଶନ୍‌ର ହୋଇପାରିଥିଲେ । ବାଲେଶ୍ୱରର ଶ୍ରୀ ମୂଷା ଖାଁ ପୂର୍ବେ କଲିକତାରେ ଶ୍ରୀ ଦେବେନ୍ ସେନ୍‌ଙ୍କ ନେତୃତ୍ୱରେ ଶ୍ରମିକ ସଂଗଠନ କାର୍ଯ୍ୟ କରୁଥିଲେ । ସେ ମଧ୍ୟ ଓଡ଼ିଶା ଆସି ଆମ୍ଭମାନଙ୍କ ସହିତ ଶ୍ରମିକ ସଂଗଠନ କାର୍ଯ୍ୟ କରିବାରେ ଅଂଶ ଗ୍ରହଣ କରିଥିଲେ । ବିଦ୍ୟାଧର ଓ ମୂଷା ଖାଁଙ୍କର ଭବିଷ୍ୟତ ଜୀବନରେ ସହାୟକ ହେବା ଉଦ୍ଦେଶ୍ୟରେ ଶ୍ରମମଙ୍ଗଳ କାର୍ଯ୍ୟରେ ସ୍ୱତନ୍ତ୍ର ଶିକ୍ଷା ଅର୍ଜନ କରିବାକୁ ସେମାନଙ୍କୁ ବମ୍ବେରେ ସରକାରୀ ଆନୁକୂଲ୍ୟରେ ଖୋଲାଯାଇଥିବା ତାଲିମ୍ ସଂସ୍ଥାକୁ ପଠାଯାଇଥିଲା । ସେମାନେ ରାଜ୍ୟ ସରକାରଙ୍କ ମନୋନୀତ ପ୍ରାର୍ଥୀରୂପେ ଯାଇଥିଲେ । ସେହି ସଂସ୍ଥାର ପାଠ୍ୟକ୍ରମ ଟିକିଏ କଠିନ ଥିଲା । ବିଦ୍ୟାଧର ପଢ଼ାପଢ଼ି କରି ସବୁ ପରୀକ୍ଷା ଦେଇ କୃତିତ୍ୱ ସହକାରେ ଉତ୍ତୀର୍ଣ୍ଣ ହୋଇଥିଲେ । ସରକାରୀ ଚାକିରିରେ ପଦୋନ୍ନତିପାଇଁ ତାହା ଭବିଷ୍ୟତ୍‌ରେ ତାଙ୍କୁ ବିଶେଷ ସାହାଯ୍ୟ କରିଥିଲା । ଶ୍ରୀ ମୂଷା ଖାଁ ଦଶ ମାସ ସେଠାରେ ରହିଲେ ମଧ୍ୟ ସେଠାରେ ହେଉଥିବା ସବୁ ପରୀକ୍ଷାକୁ ବର୍ଜନ କରିଥିଲେ । ସେ ଅଭିମାନ କରି ତାଙ୍କ ଯୁକ୍ତିରେ ଦର୍ଶାଇଥିଲେ, ''ମୁଁ ଦେବେନ୍ ସେନ୍‌ଙ୍କ ଭଳି ବିଶିଷ୍ଟ ଶ୍ରମିକ ନେତାଙ୍କ ସାଙ୍ଗରେ ଏକାଠି କାମ କରିଛି । ମୁଁ ପରୀକ୍ଷା ଦେବି ଆଉ ମୋ ପରୀକ୍ଷା ଖାତା ପୁଣି ଅନ୍ୟମାନେ ଦେଖିବେ, ତାହା ଅତି ଅପମାନଜନକ କଥା ।'' ଶେଷରେ ପରୀକ୍ଷା ନଦେଇ ମୂଷା ଖାଁ ଓଡ଼ିଶା ଚାଲିଆସିଥିଲେ । ଏଥିପାଇଁ ସରକାରୀ ଶ୍ରମ ବିଭାଗ ଚାକିରିରେ ପଦୋନ୍ନତି ପ୍ରଭୃତି କେତେକ ବିଷୟରେ ଶ୍ରୀ ମୂଷା ଖାଁ ପରେ ଅସୁବିଧାର ସମ୍ମୁଖୀନ ହୋଇଥିଲେ ।

## ମୋର ମରୁତୀର୍ଥ

ବିବାହ ମନୁଷ୍ୟ ଜୀବନର ଗୋଟିଏ ପବିତ୍ର ଓ ସୌଭାଗ୍ୟମୟ ଘଟଣା ଓ ସ୍ମୃତି । ମୋ ବିବାହ ଜାକଜମକରେ ହୋଇନଥିଲେ ମଧ୍ୟ ସୌଭାଗ୍ୟପୂର୍ଣ୍ଣ ଥିଲା । ସାଧାରଣତଃ ଆମ୍ଭମାନଙ୍କ ସମାଜରେ ବିବାହ ସମୟ ଆସିଲେ ଅଭିଭାବକମାନେ ପାତ୍ର-ପାତ୍ରୀ ଅନ୍ୱେଷଣରେ ଲାଗିପଡ଼ନ୍ତି । ମୁଁ କିଛିଟା ସେହି ପ୍ରକାର ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ ମଧ୍ୟ ତଦ୍ୱାରା ପ୍ରଭାବିତ ହୋଇନଥିଲି । ଭଦ୍ରକ ପୁରୁଣା ବଜାରସ୍ଥିତ ପ୍ରେଜର୍ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ଶିକ୍ଷୟିତ୍ରୀ, ସ୍ୱର୍ଗୀୟ ପୁରୁଷୋତ୍ତମ ନାୟକଙ୍କ ପତ୍ନୀ ଶ୍ରୀମତୀ ସୁମତୀ ଦେବୀଙ୍କର କନ୍ୟା ନଳିନୀ ରେଭେନ୍‌ସା ଗାର୍ଲସ୍ ହାଇସ୍କୁଲରେ ପଢୁଥିଲେ । ଆଇନ ଅଧ୍ୟୟନ କରୁଥିବା ଜଣେ ଛାତ୍ରବନ୍ଧୁ ଶ୍ରୀ ଗିରିଜାଶଙ୍କର ବହିଦାର ତାଙ୍କ ସ୍ତ୍ରୀଙ୍କଠାରୁ ନଳିନୀ ସେଠାରେ ପଢୁଥିବାର ଜାଣିଥିଲେ ଏବଂ ତାକୁ ମଧ୍ୟ ଦେଖିଥିଲେ । କଥାପ୍ରସଙ୍ଗରେ ଗିରିଜାବାବୁ ମୋତେ କହିଥିଲେ, ''ତୁମେ ଜାଣ, ତୁମ ଭଦ୍ରକରୁ ଗୋଟିଏ ଝିଅ ଆସି ରେଭେନ୍‌ସା ଗାର୍ଲସ୍ ସ୍କୁଲରେ ପଢୁଛି ? ମୁଁ ସେଇ ଝିଅଟିକୁ ଦେଖିଛି ଓ ତା' ବିଷୟରେ ଅନେକ ଭଲ କଥା ଶୁଣିଛି । ତୁମ ସାଙ୍ଗରେ ତା'ର ବିଭାଘର ହେଲେ ରାଜଯୋଟକ ହେଲାଭଳି ହେବ ।'' ସେତେବେଳେ ଓଡ଼ିଶାରେ ଗାର୍ଲସ୍ ହାଇସ୍କୁଲ ବୋଲି ଏକମାତ୍ର ଥିଲା କଟକର ରେଭେନ୍‌ସା ଗାର୍ଲସ୍ ହାଇସ୍କୁଲ । ସେଠି ପୁଣି ଭଦ୍ରକରୁ ଜଣେ ଝିଅ ଆସି ପଢୁଛି । ମୁଁ ଏକଥା ଶୁଣି ଆଶ୍ଚର୍ଯ୍ୟ ହୋଇଥିଲି । କାରଣ ସେତେବେଳେ ଝିଅମାନଙ୍କୁ ଉଚ୍ଚ ଶିକ୍ଷା ଦେବାପାଇଁ ଦୂରକୁ ଛାଡ଼ିବା ସମାଜରେ ପ୍ରାୟ ଚଳୁନଥିଲା । ଖବରଟି ପାଇ ନଳିନୀକୁ ଦେଖିବା ପାଇଁ ଓ ତା' ବିଷୟରେ ଜାଣିବାପାଇଁ ମୋର ବିଶେଷ ଆଗ୍ରହ ହୋଇଥିଲା । କିପରି ଦେଖାହେବ ସେ ବିଷୟ ଚିନ୍ତା କରିବାକୁ ଲାଗିଲି । ଭଦ୍ରକ ଯାଇ ତାଙ୍କ ଘର କେଉଁଠି ସନ୍ଧାନନେଲି । ଭାବୁଥାଏ ଯିବାପାଇଁ, ଏଣେ ମନରେ ପ୍ରଶ୍ନ ଉଠୁଥାଏ, ଗଲାକ୍ଷଣି ତାଙ୍କ

ଘରର ଲୋକ କ'ଣ କହିବେ ? ତା' ଛଡ଼ା ପୁରୁଣା ବଜାରରେ ମୁଁ ଅପରିଚିତ ନଥିଲି । ମୁଁ ଗଲାକ୍ଷଣି ଅନ୍ୟମାନଙ୍କ ଦୃଷ୍ଟିରେ ମଧ ପଡ଼ିବି । ଏହିଭଳି ଚିନ୍ତା କରି କରି ଶେଷରେ ଦିନେ ପୁରୁଣାବଜାର ପାଖରେ ଥିବା ତାଙ୍କ ଘରକୁ ଗଲି । ହଠାତ୍ ଯାଇ ଦେଖିଲି ଝିଅଟିଏ ହଳଦୀ ବାଟୁଛି । ସେ ମୋତେ ଦେଖି ଘର ଭିତରକୁ ପଶିଗଲା । ତା'ପରେ ମା'ଙ୍କ ସହିତ ମୁଁ କଥାବାର୍ତ୍ତା କଲି । ଆମର ଏଠୁ ଗୋଟିଏ ଝିଅ ରେଭେନ୍‌ସା ଗାର୍ଲସ୍ ସ୍କୁଲରେ ପଢୁଛି ଶୁଣି ମୁଁ ଖୁସି ହୋଇ ଦେଖିବାକୁ ଏଠାରେ ଆସି ପହଞ୍ଚିଛି ବୋଲି କହିଲି । ମା' ତାଙ୍କ ବଂଶର ଇତିବୃତ୍ତ ମୋତେ କହିଥିଲେ ଓ କିପରି ଝଡ଼ଝଞ୍ଜା ମଧରେ ସେ ତାଙ୍କର ଝିଅକୁ ପଢ଼ାଉଛନ୍ତି ସେକଥା ମଧ ମୋତେ କହିଥିଲେ । ତାଙ୍କ କଥାରୁ ଜଣାଗଲା ଯେ ସେ ମୋତେ ପୂର୍ବରୁ ଜାଣନ୍ତି । ନଳିନୀର ପଢ଼ାରେ ସାହାଯ୍ୟ କରିବାର ଇଚ୍ଛା ହେଉଥିଲେହେଁ କାଳେ ଏଭଳି ସହାନୁଭୂତି ପ୍ରକାଶ କରିବାଦ୍ୱାରା ପରିବାର ପ୍ରତି ଅବମାନନା ହେବ ସେଥିପାଇଁ ମୁଁ ମନର କଥା କହିନଥିଲି । ତା'ପରେ ନଳିନୀ ଆସି ମୋତେ ଦେଖାକଲା । ତାକୁ ପାଠ ବିଷୟରେ ପଚାରିଲା । କିନ୍ତୁ ତା'ର ଆଖି ଛଳଛଳ ହେଉଥିବାର ମୁଁ ଲକ୍ଷ୍ୟକରିଥିଲି । ଛୁଟି ପରେ ସ୍କୁଲରେ ଯୋଗଦେବାପାଇଁ ସେ କେଉଁ ଦିନ କଟକ ଯିବ ସେହି କଥାବାର୍ତ୍ତାକୁ ଜାଣିପାରିଥିଲି । ସେଇ ନିର୍ଦ୍ଦିଷ୍ଟ ଦିନ ହାଓଡ଼ା-ପୁରୀ ପାସେଞ୍ଜର ଟ୍ରେନ୍ ଯିବା ସମୟରେ ମୁଁ ଭଦ୍ରକ ଷ୍ଟେସନ୍‌ରେ ଯାଇ ପହଞ୍ଚିଥାଏ । ମୁଁ ପହଞ୍ଚି ଦେଖିଲି, ନଳିନୀ ଓଏଟିଂ ରୁମ୍‌ରେ ବସିଛି । ଟ୍ରେନ୍ ଆସି ନ ଥାଏ । ମୋତେ ଦେଖି ସେ ଛିଡ଼ାହୋଇ ନମସ୍କାରକଲା । ସେତେବେଳକୁ ଟିକେଟ୍ କଟା ହୋଇ ନ ଥାଏ । ଟିକେଟ୍ କଟା କାଉଣ୍ଟର୍ ପାଖକୁ ଯାଇ ମୁଁ ତା'ପାଇଁ ଟିକେଟ୍ କାଟି ଆଣିଦେଲି । ମୁଁ କାହିଁକି ଟିକେଟ୍ କାଟିଲି ବୋଲି ସେ ବ୍ୟସ୍ତ ହେଲା । ସେତେବେଳେ ଭଦ୍ରକରୁ କଟକ ଗାଡ଼ିଭଡ଼ା ଥାଏ ଟଙ୍କାକରୁ କମ୍ । ପାଞ୍ଚଟଙ୍କିଆ ନୋଟ୍‌ଟିଏ ଭଙ୍ଗାଇ ଟିକେଟ୍ କାଟିଥିଲି । ସେହି ପାଞ୍ଚ ଟଙ୍କାରୁ ବଳକା ପଇସା ଓ ଟିକେଟ୍ ନଳିନୀ ହାତରେ ଦେଇଥିଲି । ସେ ନେବାକୁ କୁଣ୍ଠା ପ୍ରକାଶ କରିବାରୁ ମୁଁ ତାକୁ ଜଣେ ଅଭିଭାବକଭଳି ବାଧ କରିଥିଲି । ଟ୍ରେନ୍ ଆସିଲା । ନଳିନୀ ଯାଇ ଗୋଟିଏ ଲେଡିଜ୍ କମ୍ପାର୍ଟମେଣ୍ଟରେ ବସିଲା । ଆଉ କିଛି ଅସୁବିଧା ହେଲେ ମୋତେ ଜଣାଇବାପାଇଁ ମୁଁ ତାକୁ ଅନୁରୋଧ କରିଥିଲି ।

କିଛିଦିନ ପରେ କଟକରେ ତା'ର ସୁବିଧାଅସୁବିଧା ଜାଣିବାପାଇଁ ଦିନେ ଖବର ପଠାଇଲି । ଟଙ୍କା କଉଡ଼ି ଦରକାର ହେଲେ ଜାଣିବାପାଇଁ ମଧ ଇଚ୍ଛା କରିଥିଲି । ସ୍କୁଲ ଗେଟ୍‌କୁ ଯାଇ ଖବର ଦେଲି । ନଳିନୀ ଗେଟ୍‌କୁ ଆସିଲା । ମା' ଘରର ଅସୁବିଧା ବିଷୟ ମୋତେ ଯାହା କହିଥିଲେ ମୁଁ ସେ କଥା କହିଲି ଏବଂ ପଢ଼ା ଖର୍ଚ୍ଚପାଇଁ ସାମାନ୍ୟ ଟଙ୍କା ଯାଚିଲି । ସେଥର ମଧ ସେ ନେବାକୁ କୁଣ୍ଠା ପ୍ରକାଶକଲା । ହେଲେ ମୁଁ ନିଜର ଅଭିଭାବକତ୍ୱ ଜାହିର୍‌କରି ନେବାକୁ ବାଧକରିଥିଲି ଓ ଆଉ ସବୁ ସୁବିଧା- ଅସୁବିଧା ଜଣାଇବାକୁ ମଧ କହିଥିଲି । ତା'ପରେ ମୋର ଏହି ଅଯାଚିତ ସାହାଯ୍ୟ ସକାଶେ ଧନ୍ୟବାଦ ଜଣାଇ ମୋତେ ନଳିନୀ ଖଣ୍ଡେ ଚିଠି ଦେଇଥିଲା । କେମିତି ଦୁଃଖକଷ୍ଟକୁ ଭ୍ରୂକ୍ଷେପ ନ କରି ସେ ପଢୁଛି ଏବଂ ଚଳୁଛି ସେ ବିଷୟ ଉଲ୍ଲେଖ କରି ଲେଖିଥିଲା, ''ଦୁଃଖେ ଯାଦେର ଜୀବନଗଢ଼ା ତାଦେର ଆବାର ଦୁଃଖ କିରେ !'' ସେ କହୁଥିଲା, ଅତି ପିଲାବେଳୁ ସେମାନେ ପିତୃଛେଉଣ୍ଡ ହୋଇଛନ୍ତି । ମା' ତାଙ୍କର ସାମାନ୍ୟ ଶିକ୍ଷୟିତ୍ରୀ କାର୍ଯ୍ୟ କରି ତାକୁ ଏବଂ ସରୋଜିନୀକୁ ପଢ଼ାଉଛନ୍ତି । ତେଣୁ ଦୁଃଖ ତା'ର ଦେହସୁହା । ମୁଁ ଏ ଚିଠିଟି ପଢ଼ି କାନ୍ଦିପକାଇଥିଲି । ନଳିନୀ ସହିତ ଯେତେବେଳେ ଦେଖାହୁଏ ସେ ଏହି ଗୀତଟି ଆବୃତ୍ତି କରେ ।

କ୍ରମେ କ୍ରମେ ନଳିନୀ ସହିତ ମୋର ଘନିଷ୍ଠତା ବୃଦ୍ଧିପାଇଲା । ମାଟ୍ରିକ୍ୟୁଲେସନ୍ ପରୀକ୍ଷା ଦେଲା ବେଳେ ସେ କିଛିଦିନ ପ୍ୟାରୀଶଙ୍କର ରାୟଙ୍କ ଭଉଣୀ ତା'ର ସହପାଠିନୀ ଶ୍ରୀମତୀ ଅଂଶୁମାଳୀ ରାୟଙ୍କ ଘରେ ରହୁଥିଲା । ଶ୍ରୀମତୀ ରାଜରାଣୀ ରାୟ ଓ ଶ୍ରୀ ମହିମାଶଙ୍କର ରାୟଙ୍କର ଘର ମଧ ସେହିଠାରେ । ସେମାନେ ନଳିନୀକୁ ଖୁବ୍ ଆଦରକରୁଥିଲେ । ମୁଁ ସେଠାକୁ ବେଳେବେଳେ ଯାଏ ।

ତା'ର ଅଭାବ ଅସୁବିଧା କଥା ବା କ'ଣ ଦରକାର ପଚାରିଲେ ସେ କିଛି କହେନାହିଁ । ମୋର ଯେତେଦୂର ମନେପଡୁଛି ୧୯୩୯ ମସିହା ଶେଷାର୍ଦ୍ଧରେ ମୋର ନଳିନୀ ସହିତ ପରିଚୟ ହୋଇଥିଲା । ସେତେବେଳେ ବାଲେଶ୍ୱର ଜିଲ୍ଲାରୁ ସେ ଏକମାତ୍ର ଝିଅ ରେଭେନ୍‌ସା ଗାର୍ଲସ୍ ସ୍କୁଲରେ ମାଟ୍ରିକ୍ୟୁଲେସନ୍ ପଢୁଥାଏ । ମୁଁ ସେଇଥିପାଇଁ ସମୟସମୟରେ ତାକୁ କୁହେ ଯେ ବିବାହପାଇଁ ତା'ର କିଛି ଅସୁବିଧା ହେବନାହିଁ, କାରଣ ସେ ଉଚ୍ଚଶିକ୍ଷିତା । ରାଜନୈତିକ ଜୀବନରେ ସବୁ ଅନିଶ୍ଚିତତା ବିଷୟରେ ମୁଁ ନଳିନୀକୁ ଧାରଣା ଦେଉଥାଏ । ମୋର ରାଜନୈତିକ କାର୍ଯ୍ୟ ଯୋଗୁଁ କର୍ତ୍ତୃପକ୍ଷଙ୍କ ସହ ସଂଘର୍ଷ ଏବଂ ସେଥିପାଇଁ ସମୟସମୟରେ ମୋତେ ଯେପରି ଜେଲ୍‌ଖାନା ଯିବାକୁ ପଡୁଥାଏ ସେ ବିଷୟରେ ନଳିନୀର ଧାରଣା କ'ଣ ମୁଁ ଜାଣିବାକୁ ଚେଷ୍ଟାକରେ । ମୋ ଆଗରେ ସେ ଅବଶ୍ୟ ପ୍ରଶଂସା ବ୍ୟତୀତ ନିନ୍ଦା କରେନାହିଁ । କିନ୍ତୁ ମୁଁ ପାଠପଢ଼ାଟାକୁ ନଛାଡ଼ିବା ପାଇଁ ସେ ତା'ର ମନର ଇଚ୍ଛାଟାକୁ ବାରମ୍ବାର ପ୍ରକାଶକରେ । ମୋର କାର୍ଯ୍ୟକଳାପ ଓ ଆଚରଣ ସମ୍ବନ୍ଧରେ ତା'ର ପ୍ରକୃତରେ କି ଧାରଣା, ସେ କଥା ତା'ର କେତେକ ବନ୍ଧୁଙ୍କଠାରୁ ମୁଁ ଜାଣିବାକୁ ପାଏ । ଶ୍ରୀମତୀ କମଳ କୁମାରୀ ଖାଡ଼ଙ୍ଗା ରେଭେନ୍‌ସା ଗାର୍ଲସ୍‌ସ୍କୁଲ ହଷ୍ଟେଲ୍‌ରେ ରହି ପ୍ରତିଦିନ ରେଭେନ୍‌ସା କଲେଜକୁ ପଢ଼ିବାପାଇଁ ଆସୁଥିଲେ । ସେ ନଳିନୀର ବନ୍ଧୁ ଥିଲେ । ତାଙ୍କଠାରୁ ମଧ୍ୟ ମୁଁ ସବୁ ଖବର ସଂଗ୍ରହ କରୁଥିଲି । ନଳିନୀ ଭଲ ପଢୁଥିଲା ବୋଲି ଏବଂ ତା'ର ଭଲ ଆଚରଣ ଯୋଗୁଁ ତା'ର ଶିକ୍ଷୟିତ୍ରୀମାନେ ତାକୁ ଖୁବ୍ ଭଲ ପାଉଥିଲେ । ସେତେବେଳେ ତା' ସ୍କୁଲରେ ପ୍ରିନ୍‌ସପାଲ୍ ଥିଲେ ମିସେସ୍ ସିହ୍ନା । ସେ ମଧ୍ୟ ନଳିନୀକୁ ଖୁବ୍ ଭଲପାଉଥିଲେ । ନଳିନୀ ମୋ ପାଖରୁ କେତେଖଣ୍ଡ ଇତିହାସ ବହି ନେଇଥିଲା । ତା' ଭିତରୁ କେତେଖଣ୍ଡ ଯଦୁନାଥ ସରକାର ପ୍ରଭୃତି ବିଖ୍ୟାତ ଐତିହାସିକଙ୍କର ଲେଖା । ସେଥିରେ ମୋ ନାଁ ଲେଖାଥିଲା । ତାହା ଦେଖି ସେ ପଚାରିଲେ— ଏ ପିଲାଟି କିଏ ? ନଳିନୀ ତାଙ୍କୁ ମୋର ପରିଚୟ ଦେଇଥିଲା । କୌଣସି ସୂତ୍ରରୁ ମିସେସ୍ ସିହ୍ନା ମୋ ସମ୍ବନ୍ଧରେ କେତେକ ଭଲକଥା ଜାଣିବାକୁ ପାଇଥିଲେ ଓ ମୋ ସଂପର୍କରେ ତାଙ୍କର ଅନୁକୂଳ ମତ ଦେଇଥିଲେ । ମୁଁ ଜଣେ ଛାତ୍ରନେତା ସେକଥା ମଧ୍ୟ ସେ ଜାଣିଥିଲେ । ମୁଁ ଯେଉଁବର୍ଷ ପାଟନା ବିଶ୍ୱବିଦ୍ୟାଳୟରୁ ବହିଷ୍କୃତ ହେଲି, ସେହି ବର୍ଷ ନଳିନୀ ମାଟ୍ରିକ୍ୟୁଲେସନ୍ ପାସ୍ କରି ଆଇ.ଏ.ପଢ଼ିଲା । ମୋତେ କଟକରୁ ବିଦାୟ ନେବାକୁ ପଡ଼ିଥିଲା । ସେ ଭାରୀ ଦୁଃଖ କରିଥିଲା । କିନ୍ତୁ ଯେତେବେଳେ ମୁଁ କଲିକତାରେ ପଢ଼ା ଆରମ୍ଭକଲି ସେ ଖୁସି ହୋଇଥିଲା । ମୁଁ ମଝିରେ ମଝିରେ କଟକ ଓ ଭଦ୍ରକ ଆସୁଥାଏ । ସେତେବେଳେ ମୋର ନଳିନୀ ସହ ଦେଖାହୁଏ । କଲିକତାରୁ ମୋତେ ପୁଣି ବନାରସ୍ ଯିବାକୁ ପଡ଼ିଲା । ତାପରେ ଆସିଗଲା ଅଗଷ୍ଟ ବିପ୍ଳବ ଓ ଜେଲ୍‌ବରଣ । ଏସବୁ ଘଟଣା ଭିତରେ ବିବାହପାଇଁ ଇଚ୍ଛା ଥିଲେ ମଧ୍ୟ ତା କେବେ ଘଟିବ କିଛି ସ୍ଥିର କରାଯାଇ ପାରୁନଥିଲା । କିନ୍ତୁ ନଳିନୀ ନିଶ୍ଚିତ ଭାବରେ ଜାଣିଥିଲା ଯେ ମୁଁ ରାଜନୈତିକ ଜୀବନ ଯାପନ କରିବି ଓ ସେଥିପାଇଁ ଅନେକ କଷ୍ଟ ଓ ତ୍ୟାଗ ମୋତେ ସହ୍ୟ କରିବାକୁ ପଡ଼ିବ । ସେଥିପାଇଁ ସେ ନିଜକୁ ପ୍ରସ୍ତୁତ କରିବାକୁ ଉଦ୍ୟମ କରିଥିଲା । ବମ୍ବେରେ ସେତେବେଳେ କସ୍ତୁରବା ଟ୍ରେନିଂ କେନ୍ଦ୍ର ନାମରେ ଗୋଟିଏ ଅନୁଷ୍ଠାନ ପୂର୍ବତନ ବମ୍ବେ ପ୍ରଦେଶର ପ୍ରଧାନମନ୍ତ୍ରୀ ବି.ଜି. ଖେରଙ୍କର ତତ୍ତ୍ୱାବଧାନରେ ଖୋଲାଯାଇଥିଲା । ବହୁ କଂଗ୍ରେସ କର୍ମୀ ଓ ନେତାମାନଙ୍କର ଝିଅମାନେ ସେଠି ତାଲିମ୍ ପାଇବାକୁ ଯାଇଥିଲେ । ଆମ ଓଡ଼ିଶାର ସର୍ବୋଦୟ ନାରୀନେତ୍ରୀ ଶ୍ରୀମତୀ ରମା ଦେବୀଙ୍କ ସାହାଯ୍ୟରେ ନଳିନୀ ବମ୍ବେ ଯାଇ ଦଶ ମାସ ରହି ସେହି ଟ୍ରେନିଂ ନେଇଥିଲା । ସେଠାରେ ବହୁ ନେତୃସ୍ଥାନୀୟ ବ୍ୟକ୍ତିଙ୍କର ସଂପର୍କରେ ସେ ଆସିଥିଲା । ସେହିପରି ଉତ୍ତର ପ୍ରଦେଶ ଫୈଜାବାଦ ଜିଲ୍ଲାର ରେଣୁଆଠାରେ ଶ୍ରୀମତୀ ସୁଚେତା କୃପାଲାନୀଙ୍କ ଭାଇ ବିଖ୍ୟାତ ସର୍ବୋଦୟନେତା ଶ୍ରୀ ଧୀରେନ୍ ମଜୁମଦାରଙ୍କ ତତ୍ତ୍ୱାବଧାନରେ ପରିଚାଳିତ ମହିଳା ତାଲିମ୍ କେନ୍ଦ୍ରରେ ମଧ୍ୟ ଛ' ମାସରୁ ଊର୍ଦ୍ଧ୍ୱ ସମୟ ରହି ନଳିନୀ ତାଲିମ୍ ନେଇଥିଲା । ସେ ରେଣୁଆରେ ଥିଲା ବେଳେ ମୁଁ ସେଠାକୁ ଯାଇଥିଲି ।

ନଳିନୀର ସହପାଠିନୀମାନେ ଖୁବ୍ ଆଦର ଯତ୍ନ କରି ମୋର ଆତିଥ୍ୟ ସତ୍କାର କରିଥିଲେ । ଏସବୁ ଶିକ୍ଷା ଓ ତାଲିମ୍ ପାଇବାରେ ତା'ର ଅନ୍ତର୍ନିହିତ ଉଦ୍ଦେଶ୍ୟ ଥିଲା ମୋତେ ଜଣାଇଦେବାପାଇଁ ଯେ ସେ ମଧ୍ୟ ତ୍ୟାଗର ଜୀବନପାଇଁ ପ୍ରସ୍ତୁତ ହୋଇଯାଉଛି ।

ସାହିତ୍ୟ ପ୍ରତି ନଳିନୀର ଆଗ୍ରହ ତା'ର ପଢ଼ାଦିନରୁ ଜଣାପଡ଼ିଥିଲା । ସେତେବେଳେ ଜଣେ ସ୍କୁଲଛାତ୍ରୀ ହିସାବରେ ମଧ୍ୟ ବିଭିନ୍ନ ପତ୍ର-ପତ୍ରିକାରେ ତା'ର ଲେଖା ପ୍ରକାଶିତ ହେଉଥିଲା । ତା'ର ଅକ୍ଷରଗୁଡ଼ିକ ମଧ୍ୟ ଖୁବ୍ ସୁନ୍ଦର । ବଙ୍ଗଳା ଭାଷାରେ ତା'ର ଖୁବ୍ ଭଲ ଜ୍ଞାନ ଥିଲା । ଆଇ.ଏ. ପରୀକ୍ଷା ପୂର୍ବ ଛୁଟି ସମୟରେ ନଳିନୀ କିଛିଦିନ ଶ୍ରୀ ସଚ୍ଚି ରାଉତରାୟଙ୍କ ଭଉଣୀଘର ଡାକ୍ତର ଶ୍ରୀ ଜଗନ୍ନାଥ ଦାସଙ୍କ ତେଲେଙ୍ଗା ବଜାର ଘରେ ରହୁଥିଲା । ସେ ସମୟରେ ଜଗନ୍ନାଥବାବୁଙ୍କର କନ୍ୟା ସରୋଜିନୀ ଓ ଶର୍ମିଷ୍ଠା ସହ ତା'ର ପରିଚୟ ହୋଇଥିଲା । ନଳିନୀର ଏ ପ୍ରକାର ପ୍ରତିଭା ଅଛି ବୋଲି ଜାଣି ଶ୍ରୀ ସଚ୍ଚି ରାଉତରାୟ ତା'ର ଏ ପ୍ରତିଭାର ବିକାଶରେ ସାହାଯ୍ୟ କରିଥିଲେ । ସେତିକିବେଳେ ଶ୍ରୀ ସଚ୍ଚି ରାଉତରାୟଙ୍କର ସୁବିଖ୍ୟାତ ବାଜିରାଉତ ବହିଟିକୁ ନଳିନୀ ବଙ୍ଗଳା ଭାଷାରେ ଅନୁବାଦ କରିଥିଲା । ସେ ଅନୁବାଦକୁ ଶ୍ରୀ ହରେନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ ଖୁବ୍ ପସନ୍ଦ କରିଥିଲେ । ଅଗଷ୍ଟ ବିପ୍ଳବରେ ଜେଲ୍ ଯାଇ ସେଥିରୁ ଖଲାସ୍ ହୋଇ କଲିକତାରେ ଆଇନ୍ ପଢ଼ିବା ସମୟରେ ମୋର ବିଭାଘର ପ୍ରସ୍ତାବ ବିଶେଷ ଭାବରେ ଉଠିଥିଲା । ସେତେବେଳକୁ ନଳିନୀ ବାଳିକାମାନଙ୍କପାଇଁ ଭଦ୍ରକରେ ସ୍ଥାପିତ ହୋଇଥିବା ନୂତନ ମଧ୍ୟଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷୟିତ୍ରୀରୂପେ କାର୍ଯ୍ୟ କରୁଥାଏ । ସେତିକିବେଳେ ମୋର ଭାଣିଜୀ ଆଶା ଓ ଝିଆରୀ ବିମଳା (ପରେ କଲ୍ୟାଣୀ) ଗାଆଁରୁ ଆସି ମହାସାଇ କୋଠୀରେ ମୋ ଭିଣୋଇ ଶ୍ରୀ କ୍ଷେତ୍ରବାସୀ ଖୁଣ୍ଟିଆଙ୍କ ପାଖରେ ରହି ସେହି ସ୍କୁଲରେ ପଢୁଥିଲେ । ନଳିନୀର ବ୍ୟବହାର ସେମାନଙ୍କୁ ଖୁବ୍ ଭଲଲାଗିଥିଲା ଓ ସେମାନେ ଯାଇ ଆମ ଘରେ ନଳିନୀ ବିଷୟ କହିଥିଲେ । ନଳିନୀ ସହିତ ମୋ ବିଭାଘର ପ୍ରସ୍ତାବକୁ ମୋର ଭାଇମାନେ ଯେ ପସନ୍ଦ କରୁନାହାନ୍ତି, ସେ କଥା ନଳିନୀ ସେତେବେଳକୁ ଜାଣିପାରିଲାଣି । ଦିନେ ଏହି କଥା ପଡୁ ପଡୁ ସେ କାନ୍ଦିପକାଇଲା ଏବଂ ମୁଁ ମଧ୍ୟ କାନ୍ଦିଥିଲି । ମୋର କାନ୍ଦ ଦେଖି ସେ ମୋ ପ୍ରତି ଆହୁରି ବେଶି ଆକୃଷ୍ଟ ହୋଇଥିଲା ଏବଂ ଦିନେ ସେ ପରିହାସଛଳରେ ମୋତେ ପଚାରିଥିଲା, ''ତୁମେ ଏହିପରି କାନ୍ଦିକରି ଭାରତବର୍ଷ ଜୟକରିବ ?'' ଭାଇମାନଙ୍କ କଥାରେ କାଳେ ମୁଁ ପ୍ରଭାବିତ ହୋଇଯିବି ସେଥିପାଇଁ ତା'ର ପ୍ରତିଷେଧକ ସ୍ୱରୂପ ନଳିନୀ ମୋର ଘନିଷ୍ଠ ପରିଚୟ ଥିବା ନେତୃସ୍ଥାନୀୟ ବ୍ୟକ୍ତିଙ୍କ ସହ ଓ ମୋର ଅନ୍ୟାନ୍ୟ ବନ୍ଧୁମାନଙ୍କ ସହ ଯୋଗାଯୋଗ ରଖିବାରେ ଲାଗିପଡ଼ିଲା । କଥାଟା ଆସ୍ତେ ଆସ୍ତେ ଖୁବ୍ ପ୍ରଘଟ ହେଲା । ଦିନେ ଗୌରୀଶଙ୍କର ପାର୍କଠାରେ ସନ୍ଧ୍ୟାବେଳେ ମୁଁ ବୁଲୁଥାଏ, ସେହି ବାଟେ ଶ୍ରୀ ନବକୃଷ୍ଣ ଚୌଧୁରୀ ସାଇକେଲ୍‌ରେ ଯାଉଥାଆନ୍ତି । ମୋତେ ଦେଖି ସେ ସାଇକେଲ୍‌ରୁ ଓହ୍ଲାଇପଡ଼ି ମୁଁ ସେଠାରେ କାହିଁକି ଛିଡ଼ାହୋଇଛି ବୋଲି ପଚାରିଲେ । ମୁଁ କୌଣସି କାମରେ ଆସିଛି ବୋଲି କହିବାରୁ ସେ ଥଟ୍ଟାକରି କହିଲେ, ''କ'ଣ ନଳିନୀର ହାଓ୍ୱା ଲାଗିବ ବୋଲି ଏଠି ଛିଡ଼ାହୋଇଛ ?'' ନଳିନୀ ସହିତ ମୋର ବିବାହ ପ୍ରସଙ୍ଗରେ ଗୋଟିଏ ମଜା କଥା ମୋର ମନେପଡ଼େ । ନଳିନୀ ଯେତେବେଳେ ଜାଣିଲା ଯେ ଅନ୍ୟ ଗୋଟିଏ ଦୁଇଟି ଜାଗାରେ ମୋର ଭାଇମାନେ ମୋ ବିବାହ ପ୍ରସ୍ତାବ ପକାଇଛନ୍ତି ଏବଂ ମୁଁ କାଳେ ସେମାନଙ୍କ କଥାକୁ ଏଡ଼ାଇ ନ ପାରି ପ୍ରଭାବିତ ହୋଇ ଅନ୍ୟ ଆଡ଼େ ବିବାହ କରିପକାଇବି ବୋଲି ଆଶଙ୍କାକଲା, ସେ ମୋତେ ଏକପ୍ରକାର ଗୋଟିଏ ଧମକ ଦେଇଥିଲା ଯେ, ''ଆମ ହୃଦୟର ଏତେ ଘନିଷ୍ଠତା ପରେ ତୁମେ ଯଦି ଭାଇମାନଙ୍କ କଥାରେ ପଡ଼ି ଅନ୍ୟତ୍ର ବିବାହ ଠିକ୍‌କର, ମୁଁ ଦେଖିବି ତୁମେ କେମିତି ବିଭାହେବ ? ତୁମେ ରାଜନୈତିକ ନେତା ବୋଲାଉଛ । ବଡ଼ ବଡ଼ କଥା କହି ସତ୍ୟ, ନ୍ୟାୟ ଓ ଅହିଂସା ବିଷୟରେ ଭାଷଣ ଦେଉଛ । ତା ସତ୍ତ୍ୱେ ତୁମେ ଯଦି ମୋତେ ପ୍ରତାରିତକର, ତେବେ ତୁମେ ଯେଉଁ ସଭାରେ ଭାଷଣ ଦେଉଥିବ, ମୁଁ

ସେଠାରେ ପହଞ୍ଚିବି ଏବଂ କହିବି— ଚିହ୍ନି ରଖ ଯାଙ୍କୁ, ଇଏ ଏକ ପ୍ରକାର ପ୍ରତାରକ । ଯାହାର କଥାରେ ଠିକ୍ ନାହିଁ ସେ ପୁଣି ନେତା ହେବେ !'' ମୁଁ ଏ କଥା ଶୁଣି ତାକୁ ପଚାରିଥିଲି, ''ସତରେ କ'ଣ ତୁ ଏଇଯା କରିବୁ ?'' ସେ ଉତ୍ତର ଦେଲା, ''ମୁଁ ନିଶ୍ଚୟ ସେଇଆ କରିବି । ଗୋଟିଏ ସଭାରେ ନୁହେଁ, ଯେଉଁଠି ସଭା କରିବ ସେଠି ଯାଇ କହିବି ।'' ଏ କଥା ଭିତରେ ମୋ ପ୍ରତି ତା'ର ଆନ୍ତରିକତା ମଧ୍ୟ ମୋ ମନକୁ ସ୍ପର୍ଶ କରିଥିଲା ।

ମୁଁ ବିଧାନସଭାରେ ସଭ୍ୟ ହୋଇଯିବା ପରେ ମୋର ବିଭାଘର କାର୍ଯ୍ୟ ସମ୍ପନ୍ନ କରିବାପାଇଁ ବନ୍ଧୁମାନେ ମୋତେ ପ୍ରବର୍ତ୍ତାଇଥିଲେ । ୧୯୪୯ ମସିହାର କଥା । ମୁଁ ସେତେବେଳେ ବିହାରୀବାଗ ପ୍ରଜାତନ୍ତ୍ର ଅଫିସ୍‌ର ଦୋତାଲା ଘରେ ରହୁଥିଲି । ଉପର ତାଲାରେ ବୀରେନ୍‌ବାବୁ ସସ୍ତ୍ରୀକ ବାସ କରୁଥିଲେ । ଭଦ୍ରକ ଆସି ପୁରୁଣାବଜାରରେ ନଳିନୀଘରେ ଦିନେ ରହିଲି । ନଳିନୀର ଝିଆରୀ ମଞ୍ଜୁ ପିଲାଟିଏ ହୋଇଥାଏ । ନଳିନୀ ଓ ମୁଁ ଯେତେବେଳେ କଥାବାର୍ତ୍ତା ହେଉ ସେ ଆସି ସବୁବେଳେ ସେଠି ବସେ । ବିଭାଘର କେମିତି ହେବ ସେ ବିଷୟରେ କଥାବାର୍ତ୍ତା ହେଲୁ । କାର୍ଯ୍ୟଟି କିପରି ସଂପନ୍ନ ହେବ, ତାହା ଏକ ମସ୍ତବଡ଼ ବୋଝ ଭଳି ଜଣାପଡୁଥାଏ । ଏଣେ ଭୟ ଥାଏ ଭାଇମାନଙ୍କୁ । ତେଣୁ ସ୍ଥିର ହେଲା ଯେ ଗୋଟିଏ ଦିନ ମୁଁ ଅନ୍ୟ କାମ ବାହାନାରେ ଭଦ୍ରକରେ ଆସି ପହଞ୍ଚିବି ଏବଂ ସେହି ଦିନ ବିବାହ କାର୍ଯ୍ୟ ସଂପନ୍ନ ହେବ । ସେହି ପ୍ରକାର ବ୍ୟବସ୍ଥା କରାଗଲା । ସେତେବେଳେ ଯାଇ ନଳିନୀର ବିଶ୍ୱାସ ହେଲା ଯେ ଶୀଘ୍ର ବିଭାଘର ହେବାକୁ ଯାଉଛି । ନିର୍ଦ୍ଦିଷ୍ଟ ଦିନରେ ମୁଁ ଆସି ଭଦ୍ରକରେ ପହଞ୍ଚିଲି । ବୈଦିକ ମତରେ ବିଭାଘର ହେଲା । ସାଙ୍ଗେ ସାଙ୍ଗେ ହୁଏତ ଲୋକ ଜାଣିଗଲେ । ତା'ପରେ ଏତେ ଲୋକ ସେଠାକୁ ଯିବା ଆସିବା ଆରମ୍ଭ କଲେ ଯେ ସେଠି ରହିବା ଅସମ୍ଭବ ହୋଇଗଲା । ତା' ପରଦିନ ଆମେ ଚାନ୍ଦିପୁର ଯାଇଥିଲୁ । ଚାନ୍ଦିପୁରରେ କିଛିଦିନ ରହି କଟକ ଆସି ବିହାରିବାଗରେ ମୁଁ ପୂର୍ବରୁ ରହୁଥିବା ଘରେ ରହିଲୁ । କଟକରେ ମହତାବବାବୁ ଓ ବୀରେନ୍‌ବାବୁ ବହୁ ଲୋକଙ୍କୁ ଡାକି ଗୋଟିଏ ଭୋଜିର ବ୍ୟବସ୍ଥା କରିଥିଲେ । ନଳିନୀ ଆସି ପ୍ରଜାତନ୍ତ୍ର କମ୍ପାଉଣ୍ଡରେ ରହିବାର ଦୁଇ ଚାରି ଦିନ ଭିତରେ ପ୍ରଜାତନ୍ତ୍ରରେ କାର୍ଯ୍ୟ କରୁଥିବା ପ୍ରାୟ ସମସ୍ତଙ୍କ ସହିତ ମୋ ସଂପର୍କ ସ୍ଥାପନ କରିପାରିଥିଲା । ଲେଖାଲେଖିରେ ତ ତା'ର ଥିଲା ଅଦମ୍ୟ ଆଗ୍ରହ, ତେଣୁ ତାକୁ ସେଠାକାର ସାହିତ୍ୟ ତଥା ବୌଦ୍ଧିକ ପରିବେଶ ଖୁବ୍ ଭଲଲାଗିଥିଲା । ସର୍ବଶ୍ରୀ କ୍ଷେତ୍ରମୋହନ ମଙ୍ଗରାଜ, କେଶବଚନ୍ଦ୍ର ସାମଲ, ଚକ୍ରଧର ସାମଲ, ରାମପ୍ରସାଦ ମହାନ୍ତି, ଅକ୍ଷୟ ଦାସ, ବିଶ୍ୱମ୍ଭର ପରିଡ଼ା, ଚନ୍ଦ୍ରଶେଖର ମହାପାତ୍ର, ସାଗର ମହାପାତ୍ର ପ୍ରଭୃତି ପ୍ରଜାତନ୍ତ୍ରରେ କାର୍ଯ୍ୟ କରୁଥିବା ବ୍ୟକ୍ତିମାନେ ନଳିନୀର ବଡ଼ ଆତ୍ମୀୟ ହୋଇଯାଇଥିଲେ । ତା ବ୍ୟତୀତ ଅନ୍ୟମାନେ ମଧ୍ୟ ନଳିନୀ ପାଖକୁ ଆସି ଲେଖାଲେଖି ବିଷୟରେ ଆଲୋଚନା କରୁଥିଲେ । ତା'ର ବ୍ୟବହାରଦ୍ୱାରା ପ୍ରଜାତନ୍ତ୍ରର ସମସ୍ତଙ୍କୁ ସେ ପରିବାରର ଲୋକପରି ନିଜର କରିପାରିଥିଲା । ଭାରତ ଜାତୀୟ ଟ୍ରେଡ୍ ୟୁନିୟନ୍ କଂଗ୍ରେସର ଓଡ଼ିଶା ଶାଖାର ସଭାପତି ହିସାବରେ ମୋତେ ସେତେବେଳେ ଓଡ଼ିଶାର ଅନେକ ସ୍ଥାନକୁ ଯିବାକୁ ପଡୁଥିଲା, ସେ ସେତେବେଳେ ମୋ ସହିତ ସେସବୁ ସ୍ଥାନକୁ ଯାଉଥିଲା ଓ ଲେଖାଲେଖି କାର୍ଯ୍ୟରେ ମୋତେ ସାହାଯ୍ୟ କରୁଥିଲା । ବିଭାଘର ପରେ ଘର ଚଳାଇବା ସମସ୍ତ ଦାୟିତ୍ୱ ସେ ନେଇଥିଲା । ମୋତେ ଆଉ ଘରକଥା କିଛି ବୁଝିବାକୁ ପଡୁନଥିଲା । ପ୍ରଥମ ଅବସ୍ଥାରେ ଭାଇମାନେ କିଛିଦିନ ଏକପ୍ରକାର ନୀରବ ହୋଇ ରହିଲେ । ତା'ପରେ ଆସ୍ତେ ଆସ୍ତେ ଆମର ସ୍ୱାଭାବିକ ସଂପର୍କ ଫେରିଆସିଥିଲା । ନଳିନୀ ଆମ ଗାଆଁକୁ ଗଲା ଓ ମୋ ମାମୁଁ ଘରକୁ ମଧ୍ୟ ଯାଇଥିଲା । କଲିକତାକୁ ଯିବାପାଇଁ ମଧ୍ୟ ଭାଇଙ୍କଠାରୁ ଖବର ଆସିଲା । ଆମେ ଭାଇଙ୍କ ପାଖକୁ ଗଲୁ । ସେଠାରେ ରହିବା ଓ ବୁଲାବୁଲି କରିବାର ସମସ୍ତ ସୁବିଧା ସେ କରାଇଦେଇଥିଲେ । ଜାତିଗୋତ୍ର ସମ୍ପର୍କରେ ମୋ ବଡ଼ଭାଇ ଟିକିଏ

ବେଶି ସଚେତନ ଥିଲେ । ମୋ ବିବାହରେ ତାଙ୍କର ସମ୍ମତି ନଥିଲେ ମଧ ନଳିନୀ ସ୍ୱଜାତି ଖଣ୍ଡାୟତ ସଂପ୍ରଦାୟର ଝିଅ ହୋଇଥିବାରୁ ସେ ଟିକିଏ ଆଶ୍ୱସ୍ତ ହୋଇଥିଲେ ।

୧୯୫୦ ଜୁଲାଇ ୨୮ ତାରିଖରେ ଏହି ବିହାରୀବାଗ ପ୍ରଜାତନ୍ତ୍ର ପରିସର ଭିତରେ ଆମମାନଙ୍କର ରହଣି ସମୟରେ ଆମର ଏକମାତ୍ର ସନ୍ତାନ ବାବୁଲ୍‌ର ଜନ୍ମ । କଟକ ମେଡ଼ିକାଲ୍ କଲେଜ ପୁରୁଣା ପ୍ରସୂତି ଭବନରେ ସେ ଜନ୍ମହୋଇଥିଲା । ଡାକ୍ତର ଶ୍ରୀମତୀ କମଳ କୁମାରୀ ଖାଡ଼ଙ୍ଗା ପ୍ରସୂତି ପ୍ରକୋଷ୍ଠରେ ରହି ସବୁ ଦାୟିତ୍ୱ ତୁଲାଇଥିଲେ ଓ ସେଠୁ ଦୌଡ଼ିଆସି ମୋତେ ପୁଅ ହେଲା ବୋଲି ପ୍ରଥମେ ସମ୍ବାଦ ଦେଇଥିଲେ । ପୁଅର ନାମ କ'ଣ ହେବ ସେ ବିଷୟରେ ନଳିନୀ ଓ ମୋ ଭିତରେ ଲାଗିଥିଲା ଦ୍ୱନ୍ଦ୍ୱ । ତା'ର ଡାକ ନାମ ବାବୁଲ୍ ସେ କାହିଁକି ଦେଇଥିଲା ତା' ମଧ ମୋର ମନେଅଛି । 'କିସ୍‌ମତ୍' ଚଳଚ୍ଚିତ୍ରରେ ଗୋଟିଏ ଛୋଟ ଡଉଲ୍‌ଡାଉଲ୍ ପିଲାର ନାମ ଥିଲା 'ବାବୁଲ୍' । ତାକୁ ଦେଖି ସେ ପୁଅର ନାମ ବାବୁଲ୍ ରଖିଥିଲା । ମୁଁ ତା'ର ନାମ ରଖିଥିଲି ସଂଜୀବ । ଏବେ ରାଷ୍ଟ୍ରପତି ପଦରୁ ବିଦାୟ ନେଇଥିବା ଶ୍ରୀ ସଞ୍ଜୀବ ରେଡ୍ଡୀ ସେତେବେଳେ ଆନ୍ଧ୍ର ପ୍ରଦେଶର ନେତା ଥା'ନ୍ତି ଏବଂ ଭାରତବର୍ଷର ରାଜନୀତିରେ ତାଙ୍କ ନାମ ଖୁବ୍ ଉଚ୍ଚରେ ଥିଲା । ମୁଁ ବାବୁଲ୍‌ର ନାମ ସଂଜୀବ ରଖିବାକୁ ଆଗ୍ରହ ପ୍ରକାଶ କରିଥିଲି । କିନ୍ତୁ ନଳିନୀ ତା'ର ଜାତକ ଅନୁସାରେ ଯେଉଁ ନା ଉଠିଥିଲା, ତଦନୁସାରେ 'ବିଜୟଶ୍ରୀ' ରଖିଥିଲା । ମୁଁ ସେଥିରେ ସମ୍ମତ ହୋଇଥିଲି । ମୋର ମନେଅଛି ୧୯୫୧ ଡିସେମ୍ବର ବେଳକୁ ଯେଉଁ ସାଧାରଣ ନିର୍ବାଚନ ହୋଇଥିଲା, ସେଥିରେ କାର୍ଯ୍ୟ କରିବା ପାଇଁ ନଳିନୀ ବାବୁଲ୍‌କୁ କାଖରେ ଧରି ଯାଇଥିଲା । ନିର୍ବାଚନ ପରେ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କର ମନ୍ତ୍ରିମଣ୍ଡଳରେ ମୁଁ ଜଣେ ଉପମନ୍ତ୍ରୀ ଭାବରେ ଯୋଗଦେବାରୁ ମୋର ସରକାରୀ ବାସଭବନ ରୂପେ ୧୬ ନମ୍ବର କ୍ୟାଣ୍ଟନ୍‌ମେଣ୍ଟ ରୋଡ୍ ଘର ମୋତେ ମିଳିଥିଲା । ବିହାରୀବାଗର ସଂକୀର୍ଣ୍ଣ ସ୍ଥାନ ହେତୁ ଚଳିବାରେ ସାମାନ୍ୟ ଅସୁବିଧା ହେଉଥିଲା । ତେଣୁ ୧୬ ନମ୍ବର କ୍ୟାଣ୍ଟନ୍‌ମେଣ୍ଟକୁ ନଳିନୀ ନିଜେ ଯାଇ ସବୁ କଥା ବ୍ୟବସ୍ଥା କରି ସେଠାକୁ ଜିନିଷପତ୍ର ନେଇଯାଇଥିଲା ଓ ଆମେ ଯାଇ ସେଠାରେ ରହିଲୁ । ମୋର ପୁତୁରା ମୁକ୍ତିକାନ୍ତ (ବାବାଜୀ) ସେଠାରେ ଆମ ପାଖରେ ରହି ପଢୁଥିଲା । ଘରଟି ଖୁବ୍ ବଡ଼ ଏବଂ ବଗିଚା କରିବାପାଇଁ ଥିଲା ବିସ୍ତୃତ ସ୍ଥାନ । ସେ ଘରଗୁଡ଼ିକ ଅନେକ ଦିନର ପୁରୁଣା ଘର ଓ ତିଆରି ହୋଇଥିଲା ସାହେବମାନଙ୍କର ରହିବାପାଇଁ । ସେଥିପାଇଁ କୌଣସି ଝରକାରେ ଲୁହାଛଡ଼ ବା ଗ୍ରୀଲ୍ ଲାଗିନଥିଲା । ନଳିନୀ ସଂପୃକ୍ତ ଅଫିସରମାନଙ୍କୁ ଅନୁରୋଧ କରିଥିଲା ତୁରନ୍ତ ଝରକା ଇତ୍ୟାଦିରେ ଗ୍ରୀଲ୍ ଲଗାଇବାପାଇଁ । ପୂର୍ବରୁ ସାହେବୀ ଚଳଣି ହେତୁ ପାଇଖାନାପାଇଁ ସେତେବେଳେ କମୋଡ୍ ବ୍ୟବହାର କରାଯାଉଥିଲା । ତାକୁ ପରିବର୍ତ୍ତନ କରି ସେପ୍‌ଟିକ୍ ପାଇଖାନାର ବ୍ୟବସ୍ଥା କରାଗଲା । ବଗିଚାରେ କଦଳୀ, ବାଇଗଣ ଓ ଅନ୍ୟାନ୍ୟ ପନିପରିବା କିପରି ଉତ୍ପନ୍ନ ହେବ ସେଥିପ୍ରତି ସର୍ବପ୍ରଥମେ ସେ ଧ୍ୟାନ ଦେଇଥିଲା । ନାନାପ୍ରକାର ଫୁଲଗଛ ଆଣି ଲଗାଇଥିଲା । ସେ ନିଜେ ବାଡ଼ି ବଗିଚା କାମ କରେ । କିଛିଦିନ ଭିତରେ ସେ ଏପରି ବ୍ୟବସ୍ଥା କରିଦେଲା ଯେ ଆମକୁ ଆଉ ଘରଖର୍ଚ୍ଚପାଇଁ ବାହାରୁ ବିଶେଷ କିଛି ପନିପରିବା କିଣିବାକୁ ପଡୁନଥିଲା । ପଶୁପକ୍ଷୀ ପାଳିବାରେ ତା'ର ଖୁବ୍ ଆଗ୍ରହ ଥିଲା । କଟକଚଣ୍ଡୀ ପାଖ ୨୬ ନମ୍ବର କ୍ୟାଣ୍ଟନ୍‌ମେଣ୍ଟର ଆମ ନିଜ ଘରକୁ ଆମେ ଯେତେବେଳେ ଆସିଲୁ ସେ ତିନି ଚାରୋଟି ଗାଇ ପାଳିଥିଲା । ସେମାନଙ୍କ ଯତ୍ନନେବାରେ ସେ ସବୁବେଳେ ଲାଗିଥାଏ । ଗାଈଗୁଡ଼ିକର ନାମ ଦେଇଥିଲା ସାବିତ୍ରୀ, ଉମା ଇତ୍ୟାଦି । ସେ ଗାଈମାନେ ବି ତାକୁ ଖୁବ୍ ଭଲପାଉଥିଲେ । ତାକୁ ଏପରିଭାବରେ ଭଲପାଉଥିଲେ ଯେ ଡାକିଦେଲାକ୍ଷଣି ଦୋତାଲା ଉପରକୁ ଗାଈମାନେ ଚଢ଼ିଯାଉଥିଲେ । ସେମାନେ ଯେତେବେଳେ ସିଡ଼ିଦେଇ ଉପରକୁ ଉଠନ୍ତି ତାହା ଦେଖିବାର କଥା । ଗାଈ ଦୋତାଲା ଉପରକୁ ଚଢ଼ିବାର ଆଜିପର୍ଯ୍ୟନ୍ତ ମୁଁ ଦେଖିନାହିଁ, କେବଳ ନଳିନୀର ଗାଈ ବ୍ୟତୀତ । ବିଲେଇ ତା'ର ସବୁଠାରୁ ବେଶି ଆଦରର ପଶୁ । ସାଧାରଣତଃ ଆମ ସମାଜରେ କେଉଁଠାକୁ ଗଲାବେଳେ ବିଲେଇ

ମୁହଁ ଦେଖିବାକୁ ଅଶୁଭ ବୋଲି ଭାବନ୍ତି, କିନ୍ତୁ ତା'ର ବିଚାରଥିଲା ବିପରୀତ । ସେ କେଉଁଠିକି ଗଲାବେଳେ ବିଲେଇକୁ ଆଗ ଧରି କାଖେଇ ଗେଲ କରିସାରି ତା'ପରେ ଯିବ । ବିଲେଇ ତା' ପାଖରେ ବସିବ, ତା' ପାଖରେ ଶୋଇବ । ମୁଁ ବେଳେ ବେଳେ ସେଥିପାଇଁ ବିରକ୍ତହୁଏ; କିନ୍ତୁ ସେଥିପ୍ରତି ସେ ଆଦୌ ଭ୍ରୁକ୍ଷେପ କରେନାହିଁ । କେତେ ବିଲେଇ ଯେ ସେ ପୋଷିଛି ଓ ସେମାନଙ୍କର କେତେ ଯେ ନାମ ଦେଇଛି ସେ କଥା କହିହେବ ନାହିଁ । ଶେଷରେ ସେ ଯେଉଁ ବିଲେଇଟି ପୋଷିଥିଲା ତା' ନାମ ଦେଇଥିଲା 'ସିନି' । ନଳିନୀର ମୃତ୍ୟୁ ସମୟରେ ତା'ର ବିକଳ କଥା ମୋର ମନେପଡ଼ିଲେ ମୋ ଆଖିରେ ଲୁହ ଆସିଯାଏ । ନଳିନୀର ମୃତ୍ୟୁ ପରେ ମୁଁ ଖାଇବସିଲାବେଳେ ତାକୁ ଖାଇବାକୁ ନଦେଲେ ସେ ମୋତେ ଟଣାଟଣି କରି ଖୁଆଇଦେବନାହିଁ । ଟେବୁଲ ଉପରେ ନଳିନୀର ଫଟୋ ଯେଉଁଠି ଅଛି ସେଠି ଯାଇ ଅନେକ ସମୟରେ ଫଟୋ ପାଖରେ ସେ ଘଷିହୋଇ ଶୋଇବାର ମୁଁ ଦେଖିଛି । କୁକୁର ପାଳିବା ମଧ୍ୟ ନଳିନୀର ସଉକ୍ ଥିଲା । ବାହାରକୁ କେଉଁଠାକୁ ଗଲେ ଭଲ କୁକୁର ଦେଖିଲେ ତାକୁ ଆଣି ପାଳିବା ତା'ର ସଉକ୍ । ପ୍ରତି ବର୍ଷ ଦୁର୍ଗାପୂଜା ଉତ୍ସବ ସମୟରେ ମୁଁ କଟକରେ ରହେ । ୧୯୮୧ ମସିହାର ଦୁର୍ଗାପୂଜାବେଳେ ଅକ୍ଟୋବର ସାତ ତାରିଖ ଦିନ ମୁଁ ଭୁବନେଶ୍ୱରରୁ ଯାଇ ଏହି ସମୟରେ ମୋର କଟକ ଘରେ ରହିଥିଲି । ଦି'ପହରେ ଖାଇଲାବେଳେ ଖାଇବା ଟେବୁଲ୍ ପାଖରେ ମୋତେ କେହି ଟଣାଟଣି ନକରିବାରୁ ମୁଁ 'ସିନି'କୁ ଖୋଜିଥିଲି । ଜାଣିବାକୁ ପାଇଲି ଯେ 'ସିନି' ବେମାର । ସିନିକୁ ମୋ ଟେବୁଲ୍ ପାଖକୁ ଅଣାଗଲା । ମୁଁ ତାକୁ ମାଛ ଖାଇବାକୁ ଦେଲି, ମାତ୍ର ସେ କିଛି ଖାଇଲାନାହିଁ । ଦୁଇ ଦିନ ପରେ ଦଶହରା ଦିନ 'ସିନି' ମରିଗଲା । ସେଦିନ ଆମ ସମସ୍ତଙ୍କ ଆଖିରୁ ଲୁହବୋହିଥିଲା । ଆମ ବାଡ଼ି ଭିତରେ ନଳିନୀ ତା'ର କୁକୁରମାନେ ମଲାପରେ ଯେଉଁଠାରେ ସମାଧି ଦେଇଥିଲା, 'ସିନି' ବିଲେଇକୁ ସେହିଠାରେ ସମାଧି ଦିଆଗଲା । 'ସିନି' ଚଉଦ ବର୍ଷ ବଞ୍ଚିଥିଲା ।

ନଳିନୀ ଗାର୍ହସ୍ଥ୍ୟ ଜୀବନରେ ଏକ ଧୁରନ୍ଧର ଗୃହିଣୀ ଥିଲା । ମୋର ମନେଅଛି, ସେ ମରିବା ପର୍ଯ୍ୟନ୍ତ ଘରଖର୍ଚ୍ଚପାଇଁ ମାସକୁ ଚାରି ଶହ ଟଙ୍କା ମୁଁ ଦେଉଥିଲି । ତା' ବ୍ୟତୀତ ସମୟସମୟରେ ଆଉ କିଛି ଟଙ୍କା ପଇସା ସେ ମୋ ପାଖରୁ ନେଉଥିଲା । ମୋର ରାଜନୀତିରେ ପଇସା ଖର୍ଚ୍ଚ ହେଉଥିବାରୁ ମୁଁ ସବୁ ପଇସା ତାକୁ ଦିଏନାହିଁ; କାରଣ ତାକୁ ଦେଲେ ତା' ପାଖରୁ ପଇସା ପାଇବା କଷ୍ଟକର । ଆଜି ଯଦି ତାକୁ କିଛି ପଇସା ଦେଇ କାଲି ମାଗିବି ତେବେ ଉତ୍ତର ଆସିବ— ସବୁ ଖର୍ଚ୍ଚ ହୋଇଗଲାଣି, କିଛି ନାହିଁ । ମୁଁ ଯେତେବେଳେ ଭୁବନେଶ୍ୱରରେ ରହିଲି ସେ ସେତେବେଳେ ଅଧିକାଂଶ ସମୟରେ କଟକରେ ରହୁଥାଏ ଏବଂ ଭୁବନେଶ୍ୱରରେ କିପରି କ'ଣ ଖର୍ଚ୍ଚ ହେବ ସେ କଥା ମଧ୍ୟ ବୁଝୁଥାଏ । ଫୁଲ ଫଳ ଗଛକୁ ସେ ଅତି ଆଦର କରୁଥିଲା । ପନିପରିବା ଗଛ ଛଡ଼ା ତା' ବଗିଚାରେ ଥିଲା ବିଭିନ୍ନ ପ୍ରକାର କ୍ୟାକ୍‌ଟସ୍, ଅର୍କିଡ୍, ପାନ, ଗୁଆ, ନଡ଼ିଆ, ଲବଙ୍ଗ, ଅଳେଇଚ ଓ ତେଜପତ୍ର ଗଛ । ତା' ବ୍ୟତୀତ କେତେ ପ୍ରକାର ଗୋଲାପ ଯେ ରଖିଥିଲା ମୁଁ ତାହା କହିପାରିବିନାହିଁ । ତା' ବଗିଚାରେ ଏକ ପ୍ରକାର କ୍ୟାକ୍‌ଟସ ଗଛ ଥିଲା ଯହିଁରେ ନିଶାର୍ଦ୍ଧରେ ଫୁଲ ଫୁଟିବାର ଲକ୍ଷ୍ୟ କଲା ପରେ ତା'ର ନାମ 'ନିଶିପଦ୍ମ' ରଖିଥିଲା । ସେହି ନିଶିପଦ୍ମ ବୃକ୍ଷଟିର କ୍ରମବୃଦ୍ଧି ପ୍ରତି ସେ ଏପରି ଲକ୍ଷ୍ୟ ରଖୁଥିଲା ଯେ ଦିନେ ନିଶାର୍ଦ୍ଧରେ ସେ ଗଛଟିର କଢ଼ଟି ଫୁଟିବାକୁ ଯେଉଁ ଦୁଇ ଘଣ୍ଟା ନେଇଥିଲା ତାକୁ ସେ ଦେଖିବାପାଇଁ ରାତି ଅନିଦ୍ରା ହୋଇ ଜଗିକରି ରହିଥିଲା । ତା' ପରଦିନ ସେ କଥା ମୋତେ ଏବଂ ଅନ୍ୟମାନଙ୍କୁ କହି ଏପରି ଭାବରେ ଖୁସିହେଉଥାଏ ଯେ ତା' ଦେଖି ମୁଁ ତାକୁ କହିଲି, ''କ'ଣ ଗୋଟେ ବଡ଼ କଥା ହୋଇଗଲା ? ଯେଉଁ ଫୁଲ ଯେତେବେଳେ ଫୁଟିବା କଥା ଫୁଟିବ— ତାକୁ ପୁଣି ରାତି ଅନିଦ୍ରା ହୋଇ ଦେଖିବା କ'ଣ ଦରକାର ?'' ଚମ୍ପା ଗଛଟିଏ ବଗିଚାରେ ଲଗାଇବାପାଇଁ ତା'ର ଭାରି ଇଚ୍ଛା ଥିଲା । ମୁଁ ଯେତେବେଳେ ଆନ୍ଧ୍ର ରାଜ୍ୟର ସୀମାଞ୍ଚଳମ୍ ଯାଇଥିଲି, ସେଠୁ ଚମ୍ପାଗଛ

ଆଣିବାପାଇଁ ସେ ମୋତେ କହିଥିଲା; କାରଣ ସୀମାଞ୍ଚଳମ୍‌ରେ ଖୁବ୍ ଭଲ ଚମ୍ପାଗଛ ମିଳେ । ବହୁ ଯତ୍ନରେ ଦୁଇଟି ଚମ୍ପାଗଛ ଆଣିଥିଲି । ସେ ତାକୁ ଆମ ବଗିଚାରେ ଲଗାଇଥିଲା । ଗୋଟିଏ ମରିଗଲା, ଅନ୍ୟଟିରେ ଏପର୍ଯ୍ୟନ୍ତ ବେଶ୍ ସୁନ୍ଦର ଫୁଲ ଫୁଟୁଛି ଏବଂ କଟକଚଣ୍ଡୀଙ୍କ ପୂଜାରୀମାନେ ତାକୁ ନେଇ ଠାକୁରାଣୀଙ୍କୁ ଦେଉଛନ୍ତି । ତା' ହାତଲଗା ପାନଗଛ ବର୍ତ୍ତମାନ ମଧ୍ୟ ଅଛି, ନଡ଼ିଆଗଛରେ ଲଟି ଭଳି ଗୁଡ଼େଇ ହୋଇ ରହିଛି । ଆମ ଘରେ ପାନପତ୍ର କିଣାଯାଏନାହିଁ ।

ବାବୁଲ୍‌କୁ ସେ ପ୍ରାଣରୁ ବଳି ଭଲପାଉଥିଲା । ବାବୁଲ୍ ଉତ୍କଳ ବିଶ୍ୱବିଦ୍ୟାଳୟରେ ବି.ଏ.ରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରିଥିଲା । ସେ ଏମ୍.ଏ. ରେ ମଧ୍ୟ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇଥିଲା । ଏହା କେବଳ ସମ୍ଭବ ହୋଇଥିଲା ନଳିନୀର ବ୍ୟକ୍ତିଗତ ପ୍ରଚେଷ୍ଟା ଫଳରେ । ବାବୁଲ୍ କାହା ସାଙ୍ଗରେ ମିଶିବ, କାହା ସହିତ କଥା ହେବ, ତା'ର ଚାଲିଚଳଣ ଓ ଆଚରଣ କିପରି ହେବ, ପ୍ରତ୍ୟେକଟି କଥା ପ୍ରତି ସେ ଧ୍ୟାନ ଦେଉଥିଲା । ଯେଉଁ ଶିକ୍ଷକମାନେ ତାକୁ ପଢ଼ାଉଥିଲେ, ସେମାନଙ୍କୁ ନଳିନୀ ଅତ୍ୟନ୍ତ ସମ୍ମାନ ଦେଉଥିଲା ଏବଂ ମଝିରେ ମଝିରେ ସେମାନଙ୍କ ଘରକୁ ଯାଇ ବାବୁଲ୍‌ର ପଢ଼ାପଢ଼ି ବିଷୟରେ ମଧ୍ୟ ଟିକିନିଖି ବୁଝୁଥିଲା । ତାଦ୍ୱାରା ଶିକ୍ଷକମାନେ ବାବୁଲ୍‌ର ଶିକ୍ଷା ପ୍ରତି ସ୍ୱତନ୍ତ୍ର ଧ୍ୟାନ ଦେବାକୁ ଆଗ୍ରହୀ ହେଉଥିଲେ । ବାବୁଲ୍‌ର ବାଲ୍ୟଶିକ୍ଷକ ଦୁଇଜଣଙ୍କୁ ସେ ବିଶେଷ ଆଦର କରୁଥିବାର ମୁଁ ଲକ୍ଷ୍ୟ କରିଛି । ଜଣେ ହେଉଛନ୍ତି ଶ୍ରୀ ବ୍ରଜକିଶୋର ପଟ୍ଟନାୟକ ଓ ଅନ୍ୟ ଜଣକ ହେଉଛନ୍ତି ଶ୍ରୀ ଅଭୟ ଚରଣ ସାମନ୍ତରାୟ । ଅଭୟ ପିଲାଦିନେ ବାବୁଲ୍‌କୁ ପଢ଼ାଉଥିଲା । ସେହି ସମୟରୁ ସେ ଆମ ପରିବାର ସହିତ ସସ୍ନେହ ସମ୍ପର୍କ ରଖିଆସିଛି । ବ୍ରଜ କେମ୍ବ୍ରିଜ୍ ସ୍କୁଲ୍‌ରେ ଶିକ୍ଷକ ଥାଏ ଓ ଆମ ଘରେ ରହି ବାବୁଲ୍‌ର ପଢ଼ା ଦାୟିତ୍ୱ ନେଇଥାଏ । ସେ ଆମ ଘର ସହିତ ଏତେ ଘନିଷ୍ଠ ହୋଇଯାଇଥିଲା ଯେ ତାକୁ ଆମେ ଆମ ପରିବାରର ଜଣେ ସଦସ୍ୟ ବୋଲି ଭାବୁ । ନୟାଗଡ଼ରେ ବ୍ରଜର ଗାଆଁକୁ ନଳିନୀ ଅନେକଥର ଯାଇଛି । ବାବୁଲ୍‌କୁ ମଣିଷ କରି ଗଢ଼ି ତୋଳିବାରେ ବ୍ରଜର ଦାନ ଅନେକ । ଏହି ପ୍ରସଙ୍ଗରେ ଶ୍ରୀ ଶଶିଭୂଷଣ ମିଶ୍ରଙ୍କ କଥା ମନକୁ ଆସେ; ଯିଏକି ଆମ ପରିବାରର ଜଣେ ଘନିଷ୍ଠ ଶୁଭାକାଂକ୍ଷୀ । ଆମ ପରିବାରର ବହୁ ସୁଖଦୁଃଖ ସହିତ ସେ ଜଡ଼ିତ । ନଳିନୀ ତାକୁ ଭାଇ ଭଳି ଦେଖୁଥିଲା ଓ ସେଥିପାଇଁ ସେ ବାବୁଲ୍‌ର ଶଶିମାମୁ । ସେ ନଳିନୀର ଲେଖାଲେଖିରେ ତାକୁ ବିଶେଷ ସାହାଯ୍ୟ କରୁଥିଲା । ନଳିନୀ ଥିଲା ପ୍ରତିଭାର ପୂଜାରିଣୀ । ଗୁଣୀ ଓ ପ୍ରତିଭାବାନ୍ ବ୍ୟକ୍ତିଙ୍କୁ ସେ ତା'ର ଅନ୍ତରର ସ୍ନେହ ଶ୍ରଦ୍ଧା ଦେଇ ଭଲପାଉଥିଲା । ତା'ର ଏହି ଅକପଟ ଆନ୍ତରିକତା ବୋଧହୁଏ ଅନେକ ଗୁଣବାନ୍ ବ୍ୟକ୍ତିଙ୍କୁ ତା'ର ଘନିଷ୍ଠ କରାଇଥିଲା । ଯାଜପୁରର ସଂଭ୍ରାନ୍ତ ପାଇକରାୟବଂଶର ଶ୍ରୀ ମାଧବାନନ୍ଦ ରାୟ ନାମକ ଜଣେ ଛାତ୍ରଙ୍କୁ ସେ ଅତି ସ୍ନେହ କରୁଥିଲା । ସେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଇତିହାସରେ ପ୍ରଥମ ସ୍ଥାନ ଅଧିକାର କରିଥିବାରୁ ନଳିନୀ ତାକୁ ଭାରି ଆଦରକରି ପୁଅଭଳି ଦେଖୁଥିଲା ଓ ନଳିନୀ ତା'ର ଆଦରର 'ମାମା' ସ୍ଥାନ ଅଧିକାର କରିଥିଲା । ପିଲାଦିନୁ ବାବୁଲ୍ ତା' ମା'କୁ 'ମାମା' ବୋଲି ଡାକେ । ତେଣୁ ନଳିନୀ ତା'ର ସ୍ୱଗୁଣରେ ବହୁ ଲୋକଙ୍କର 'ମାମା' ହୋଇପାରିଛି ଏବଂ ଅନ୍ୟ ବହୁ ଲୋକଙ୍କଠାରୁ ଅପା, ମାଉସୀ, ପିଉସୀ, ଭଉଣୀର ସ୍ନେହ ଓ ସମ୍ମାନ ପାଇଛି । ବାବୁଲ୍ ପାଠ ପଢ଼ି ଅଧ୍ୟାପକ ହୋଇ ଶିକ୍ଷାୟତନର ପରିବେଶ ମଧ୍ୟରେ ନିଜକୁ ପ୍ରଖ୍ୟାତ କରି ଗଢ଼ିତୋଳିବ, ଏହା ଥିଲା ତା'ର ମା'ର ଅଭିଳାଷ । ରାଜନୈତିକ ଜୀବନରେ ଯେଉଁ ଝଡ଼ଝଞ୍ଜା, ସେ ବିଷୟରେ ତା'ର ଅନୁଭୂତି ଥିବାରୁ ବାବୁଲ୍ ରାଜନୀତିରେ ପ୍ରବେଶ କରିବା ତା'ର ଚିନ୍ତାର ବହିର୍ଭୂତ ଥିଲା । ଏବେ ବାବୁଲ୍ ଯେତେବେଳେ ରାଜନୀତିରେ ପ୍ରବେଶ କରିବାକୁ ଇଚ୍ଛା ପ୍ରକାଶ କଲା, ମୁଁ ତାକୁ ବାରମ୍ବାର ତା' ମାଆର କଥା ସ୍ମରଣ କରାଇଦେଇଥିଲି । କିନ୍ତୁ ସେ ମୋତେ କହିଥିଲା ଯେ ସେ ପାଞ୍ଚ ବର୍ଷ ଶିକ୍ଷାବିଭାଗରେ ଅଧ୍ୟାପକ ହିସାବରେ କାର୍ଯ୍ୟ କରି ତା' ମାଆର ଇଚ୍ଛା ଆଂଶିକଭାବେ ପୂରଣ କରିଛି । ତେଣୁ ମୁଁ ଆଉ ସେଥିରେ ପ୍ରତିବନ୍ଧକ ହୋଇନଥିଲି ।

ନଳିନୀର ସାହିତ୍ୟ ପ୍ରତି ଯେଉଁ ପ୍ରକାର ଏକାନ୍ତ ଅନୁରାଗ ମୋ ଭଳି ଜଣେ ଶୁଷ୍କ ରାଜନୈତିକ ବ୍ୟକ୍ତି ତାହା ଉପସ୍ଥାପିତ କରିପାରିବା ସହଜ ନୁହେଁ । କାରଣ ତା'ର ପ୍ରାଣ ଥିଲା ପ୍ରକୃତରେ ଅତି ଦରଦୀ ଓ କବିର ପ୍ରାଣ । ସବୁ ପ୍ରାଣୀଙ୍କ ପ୍ରତି ତା'ର କରୁଣା । ସବୁବେଳେ ପ୍ରାକୃତିକ ପରିବେଶ, ଗଛଲତା ଭିତରେ ହଜି ରହିବାକୁ ସେ ଭଲପାଏ । ଅନ୍ୟ ପଟେ ମୋର କର୍ମମୁଖର ଜୀବନ ନାନା ରାଜନୈତିକ ଝଞ୍ଜାଳରେ ଓତପ୍ରୋତ ଭାବରେ ଜଡ଼ିରହୁଥିଲା । ତେଣୁ ଆମର ଦୁଇଟି ବିପରୀତ ଆବହାଉଆର କର୍ମଜୀବନ ପରସ୍ପର ପ୍ରତି ସମୟସମୟରେ ଅବୋଧ ରହିଯାଉଥିଲା । ସେଥିପାଇଁ ଅନେକ ସମୟରେ ମୁଁ ମୋର ବନ୍ଧୁମାନଙ୍କର ସମାଲୋଚନା ଓ ବାକ୍ୟବାଣର ଶରବ୍ୟହେଉଥିଲି । ସାହିତ୍ୟ ପ୍ରତି ଧ୍ୟାନ ଦେବାକୁ ମୋର ଫୁରସତ୍ ବା ପ୍ରବୃତ୍ତି ନଥିଲା । ଯେତେବେଳେ ମୁଁ ତାକୁ ଦେଖେ, ଦେଖେ ସେ କିଛି ପଢୁଛି, ଲେଖୁଛି ବା ଗୁଣୁଗୁଣୁ ହୋଇ କିଛି ଗୋଟେ ଗାଉଛି । ବହି କିଣିବା ତା'ର ଥିଲା ଗୋଟିଏ ବଡ଼ ସଉକ୍ ଏବଂ ସେଥିପାଇଁ ଝଗଡ଼ା କରି ମୋ ପାଖରୁ ସେ ବହି ଆଦାୟ କରେ । ଖୁବ୍ କମ୍‌ରେ ପାଞ୍ଚ ସାତ ହଜାର ବହି ସେ ସଂଗ୍ରହ କରିଥିଲା । ଇଂରେଜୀ, ବଙ୍ଗଳା, ହିନ୍ଦୀ ଓ ଓଡ଼ିଆ ଏଭଳିକି କେତେକ ଉର୍ଦ୍ଦୁ ବହି ମଧ୍ୟ ତା'ର ଲାଇବ୍ରେରୀରେ ଅଛି । ଏତେ ବହି ତା'ର ବର୍ତ୍ତମାନ ସୁଦ୍ଧା ଲାଇବ୍ରେରୀରେ ପଡ଼ିଛି ଯେ ତା'ର ଯତ୍ନ ନେବା ଆମ ପକ୍ଷରେ କଷ୍ଟକର ହେଉଛି । ବଙ୍ଗଳା ଭାଷାରେ ତା'ର ଦକ୍ଷତା ଥିଲା । ମୋ ଅଜାଣତରେ ସେ 'ବସୁମତୀ' କାଗଜର କଟକ ପ୍ରତିନିଧି ହୋଇ ସମ୍ବାଦ ପଠାଉଥିଲା । ମୁଁ ଏକଥା ଜାଣିଲି କଲିକତାରେ 'ବସୁମତୀ' କାଗଜରେ କାର୍ଯ୍ୟ କରୁଥିବା ମୋର କେତେକ ବଙ୍ଗୀୟ ବନ୍ଧୁଙ୍କଠାରୁ । ନଳିନୀ ଥିଲା କାଜି ନଜରୁଲ୍ ଇସଲାମ୍‌ଙ୍କର ଥିଲା ଜଣେ ଏକାନ୍ତ ଭକ୍ତ । ନଜରୁଲ୍ କବିତାର ବିପ୍ଳବୀ ସ୍ୱର ତା ପ୍ରାଣକୁ ସ୍ପର୍ଶ କରିଥିଲା । ସବୁବେଳେ ନଜରୁଲ୍ କବିତାରୁ କିଛି ନା କିଛି ସେ ଗୁଣୁଗୁଣୁ ହୋଇ ଆବୃତ୍ତି କରେ । ତା' ଭିତରୁ ଗୋଟିଏ ପଦ ମନେପଡୁଛି – ''ମହା ବିଦ୍ରୋହୀ ରଣକ୍ଳାନ୍ତ / ଆମି ସେଇଦିନ ହବ ଶାନ୍ତ / ଯବେ ଉତ୍ପୀଡ଼ିତେର କ୍ରନ୍ଦନ ରୋଲ ଆକାଶେ ବତାସେ ଧ୍ୱନିବେନା/ ଅତ୍ୟାଚାରୀର ଖଡ୍‌ଗ କ୍ରିପାଣ ଭୀମ ରଣଭୂମେ ରଣ୍‌ବେନା / ଆମି ସେଇଦିନ ହବ ଶାନ୍ତ/ ମହା ବିଦ୍ରୋହୀ ରଣକ୍ଳାନ୍ତ ।''

ନଜରୁଲ୍‌ଙ୍କର ଅନେକ କବିତାର ଓଡ଼ିଆ ଅନୁବାଦ କରି ସେ 'ନଜରୁଲ୍ ସଞ୍ଚୟନ' ବହି ପ୍ରକାଶ କରିଥିଲା । ଚୀନ-ଭାରତ ଯୁଦ୍ଧ ସମୟରେ ସେ ଶ୍ରୀ ରମେଶ ଧଳ ଓ ଶ୍ରୀ ଗଜେନ୍ଦ୍ର ନାୟକଙ୍କ ସହ ମିଶି ଅନେକ ସମର କବିତା ସଙ୍କଳନ କରି ପୁସ୍ତକ ଆକାରରେ ପ୍ରକାଶ କରିଥିଲା; ଓଡ଼ିଶା ସାହିତ୍ୟ ଏକାଡ଼େମୀ ପକ୍ଷରୁ ତାହା ପ୍ରକାଶ ପାଇଛି । ଓଡ଼ିଆରେ ନିଜର କୌଣସି ପୁସ୍ତକ ପ୍ରକାଶ କରିବା ପୂର୍ବରୁ ଏବଂ ପତ୍ରପତ୍ରିକା ସମ୍ପାଦନା କାର୍ଯ୍ୟରେ ନିଜ ମନରେ କିଛି ସନ୍ଦେହ ଉପୁଜିଲେ ନଳିନୀ ପ୍ରତିଷ୍ଠିତ ସାହିତ୍ୟିକ ଶ୍ରୀ କୃଷ୍ଣଚନ୍ଦ୍ର କରଙ୍କର ସାହାଯ୍ୟ ନେଉଥିଲା । ଆମ ଘରେ ତାଙ୍କ ପାଖରେ ଜଣେ ଛାତ୍ରୀ ପରି ଘଣ୍ଟା ଘଣ୍ଟା ବସି ନାନା ଆଲୋଚନା କରୁଥିଲା । ଶ୍ରୀଯୁକ୍ତ କର ତାକୁ ଅକୁଣ୍ଠ ସାହାଯ୍ୟ କରୁଥିଲେ ।

## ନଳିନୀର 'ମରୁତୀର୍ଥ'

ଗୋଟିଏ ମାସିକ ପତ୍ରିକା ପ୍ରକାଶ କରିବା ଥିଲା ନଳିନୀର ବହୁ ଦିନର ଅଭିଳାଷ । ବୋଧହୁଏ ସେଇଥିପାଇଁ ଅନେକ ଦିନ ଆଗରୁ ସେ ଗୋଟିଏ ଟ୍ରେଡ଼ଲ ମେସିନ୍ କିଣି ଘର ପାଖରେ ଗୋଟିଏ ଛୋଟ ପ୍ରେସ୍‌ରେ ନିଜ ଲେଖା ଛପାଇବା ଆରମ୍ଭ କରିଦେଇଥିଲା । ସେଥିପାଇଁ ତା' ସହିତ ମୋର ସାମାନ୍ୟ ମନୋମାଳିନ୍ୟ ହୋଇଥିଲା । ଜଣେ ମନ୍ତ୍ରୀଙ୍କ ଘର ହତାରେ ଗୋଟିଏ ଛାପାଖାନା ଚାଲିବା ଓ ସେଠି ଲୋକଙ୍କର ସମାବେଶ ହେବାଟାକୁ ମୁଁ ଆଦୌ ପସନ୍ଦକରୁନଥିଲି । ଶେଷରେ ତା' କଥା ରହିଲା । ବହୁ ଲେଖକ, କବି ଓ ସାହିତ୍ୟିକଙ୍କ ସହିତ ତା'ର ସମ୍ପର୍କ । କବିଚନ୍ଦ୍ର କାଳୀଚରଣ

ପଟ୍ଟନାୟକଙ୍କୁ 'ବାପା' ବୋଲି ସମ୍ବୋଧନ କରୁଥିଲା ଓ ସେ ନଳିନୀକୁ ଲେଖାଲେଖିରେ ବହୁତ ଉତ୍ସାହିତ କରୁଥିଲେ । ସେହିଭଳି କବି ଶ୍ରୀ ରବି ସିଂଙ୍କ ବିପ୍ଳବାତ୍ମକ ଲେଖା ସବୁ ନଳିନୀକୁ ପ୍ରଭାବିତ କରିଥିଲା । ଶ୍ରୀ ରବି ସିଂଙ୍କ ସହ ସାହିତ୍ୟ ସମ୍ବନ୍ଧରେ ଚର୍ଚ୍ଚା କରି ସେ ପ୍ରେରଣା ପାଉଥିଲା । ସାହିତ୍ୟ ସେବାରେ ରାଜନୈତିକ ବିଦ୍ୱେଷକୁ ସେ ସ୍ଥାନ ଦେଉ ନଥିଲା । ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ସେତେବେଳେ ରାଜନୀତିରେ ମୋର ବିରୋଧୀ ଓ କଟୁ ସମାଲୋଚକ ଥିଲେ ମଧ୍ୟ ନଳିନୀ ତାଙ୍କର ଗୁଣଗ୍ରାହିଣୀ ଥିଲା । ସେ ତାଙ୍କୁ 'ନିତୁଭାଇ' ବୋଲି ସମ୍ବୋଧନ କରୁଥିଲା ଏବଂ ଲେଖାଲେଖିରେ ତାଙ୍କର ପରାମର୍ଶ ନେଉଥିଲା । ମୋର ୨୬ ନମ୍ବର କ୍ୟାଣ୍ଟନ୍‌ମେଣ୍ଟ ରୋଡ୍ ଘରେ ଅଧିକାଂଶ ସମୟରେ ସାହିତ୍ୟିକମାନଙ୍କର ଗହଳ ହୁଏ । ପ୍ରଥମ ଅବସ୍ଥାରେ ମୁଁ ଏ ଗହଳକୁ ପସନ୍ଦ କରୁନଥିଲି; କିନ୍ତୁ କ୍ରମେ ସେହି ପରିବେଶରେ ଅଭ୍ୟସ୍ତ ହୋଇଯାଇଥିଲି । 'ମରୁତୀର୍ଥ' ନାମକ ମାସିକ ପତ୍ରିକା ପ୍ରକାଶ କରିବାପାଇଁ ତା'ର ଥିଲା ଅଦମ୍ୟ ଉତ୍ସାହ । ଅନେକ ଶୁଣିଲେ ଆଶ୍ଚର୍ଯ୍ୟ ହେବେ ଯେ 'ମରୁତୀର୍ଥ' ୨୬ ନମ୍ବର କ୍ୟାଣ୍ଟନ୍‌ମେଣ୍ଟ ରୋଡ୍ ଘରୁ ନଳିନୀର ସଂପାଦନାରେ ପ୍ରକାଶ ପାଇବା କଥା ମୁଁ ପ୍ରଥମେ ଖବରକାଗଜରୁ ଜାଣିଲି । ସେତେବେଳେ ମୁଁ ତାକୁ କହିଲି, ''ତୁମେ ଏତେଦୂର ଆଗେଇଲଣି, ମୁଁ ତ କାହିଁ କିଛି ଜାଣିନାହିଁ ? ମୋ ଘରୁ ପତ୍ରିକା ବାହାରିବ, ଅଥଚ ମୁଁ ଖବରକାଗଜରୁ ଜାଣିବି !'' ଏକଥା ଯେଉଁମାନଙ୍କ ପାଖରେ କହିଲି ସେମାନେ ତାଜୁବ୍ ହେଲେ ଓ ମୋତେ ହସରେ ଉଡ଼େଇଦେଲେ । ନଳିନୀ ମୋତେ ଉତ୍ତର ଦେଇଥିଲା ''ତୁମକୁ ପତ୍ରିକା ବାହାରିବା କଥା ଆଗରୁ କହିଥିଲେ ସାହାଯ୍ୟ ତ କରିନଥାନ୍ତ ବରଂ ବାଧା ସୃଷ୍ଟିକରିଥାନ୍ତ ।'' ମରୁତୀର୍ଥ ପ୍ରକାଶ ପାଇବା ପରେ ତାକୁ ନିୟମିତ ପ୍ରତି ମାସରେ ପ୍ରକାଶ କରିବା ପାଇଁ ତା'ର ଯେଉଁ ଅକ୍ଳାନ୍ତ ଉଦ୍ୟମ ଓ ଲହୁ ଲୁହର କଷ୍ଟ ମୁଁ ସେ କଥା ଭୁଲିପାରିବିନାହିଁ । ଲେଖାପାଇଁ କେତେ ଲୋକଙ୍କୁ ଯେ ସେ ଅନୁରୋଧ କରୁଥାଏ ଏବଂ କେତେ ଲୋକଙ୍କର ଯେ ଦ୍ୱାରସ୍ଥ ହେଉଥାଏ, ତାହା ସବୁ ଚିନ୍ତାର ବହିର୍ଭୂତ । କିନ୍ତୁ ତା'ର ଗୋଟିଏ ଗୁଣ ଥିଲା ଯେ, ସେ ଜଣେ ଲେଖିକା ହିସାବରେ ସାହିତ୍ୟିକମାନଙ୍କ ସାଙ୍ଗରେ ସଂପର୍କ ରଖୁଥିଲା । କେବେହେଲେ ସେ ଜଣେ ପ୍ରଭାବଶାଳୀ ମନ୍ତ୍ରୀର ସ୍ତ୍ରୀ ଏ ପ୍ରକାର ଧାରଣା କାହାରି ମନରେ ଦେଉନଥିଲା । ଲୋକେ ସାହିତ୍ୟ ସେବାପାଇଁ ତା'ର ଉଦ୍ୟମକୁ କେତେ ପ୍ରଶଂସା କରୁଥିଲେ, ତା'ର ବିନୀତ ଚାଲିଚଳଣ, ଆଚାର ବ୍ୟବହାରକୁ କିପରି ପସନ୍ଦକରୁଥିଲେ ତାହା ତା'ର ମୃତ୍ୟୁ ପରେ ଯେଉଁ ସ୍ମରଣିକା ପ୍ରକାଶ ପାଇଛି ସେଇଥିରୁ ସହଜରେ ଅନୁମାନ କରାଯିବ । ସେ ସ୍ମରଣିକା ଖଣ୍ଡିକ ମଧ୍ୟ ପ୍ରକାଶ ପାଇନଥାନ୍ତା । ଆମ ପରିବାରର ଜଣେ ଘନିଷ୍ଠ ବନ୍ଧୁ ଶ୍ରୀ ଗିରିଜାଭୂଷଣ ପଟ୍ଟନାୟକ ମୋତେ ଏକପ୍ରକାର ବାଧ୍ୟ କରିଥିଲେ ତାହା ପ୍ରକାଶ କରିବାପାଇଁ । ଗିରିଜାବାବୁ ଓ ତାଙ୍କ ସ୍ତ୍ରୀ କମଳ ନଳିନୀର ଗୁଣଗ୍ରାହୀ ଥିଲେ । ନଳିନୀର ମୃତ୍ୟୁ ପରେ 'ମରୁତୀର୍ଥ' ପ୍ରକାଶନ ମଧ୍ୟ ବନ୍ଦହୋଇଯାଇଥିଲା । ନଳିନୀକୁ ମା' ଭଳି ଭକ୍ତି କରୁଥିବା ଓ ତା'ଠାରୁ ପୁତ୍ରବତ୍ ସ୍ନେହ ଓ ଆଶୀର୍ବାଦ ପାଇଥିବା ଶ୍ରୀ ବ୍ରଜ କିଶୋର ପଟ୍ଟନାୟକ ନଳିନୀର ସ୍ମୃତିକୁ ଚିରନ୍ତନ କରିବା ଉଦ୍ଦେଶ୍ୟରେ ଓଡ଼ିଶାରେ ପ୍ରଥମ ଓ ଏକମାତ୍ର ମହିଳା ପ୍ରଶିକ୍ଷଣ ମହାବିଦ୍ୟାଳୟକୁ କେତେକ ବନ୍ଧୁ ଓ ଶୁଭେଚ୍ଛୁମାନଙ୍କ ସହଯୋଗରେ ୧୯୮୦ ମସିହାରେ 'ନଳିନୀ ଦେବୀ ମହିଳା ପ୍ରଶିକ୍ଷଣ ମହାବିଦ୍ୟାଳୟ' ନାମରେ ପ୍ରତିଷ୍ଠା କରିଥିଲେ । ବର୍ତ୍ତମାନ ସେ କଲେଜଟି 'ନଳିନୀ ଦେବୀ ମହିଳା ଶିକ୍ଷକ ଶିକ୍ଷା ପ୍ରଶିକ୍ଷଣ ମହାବିଦ୍ୟାଳୟ' ନାମରେ ସରକାରୀ ପରିଚାଳନାଧୀନରେ ଚାଲିଛି । ଏହି କଲେଜର ମୁଖପତ୍ର ଭାବରେ 'ମରୁତୀର୍ଥ' କଲେଜର ପ୍ରତିଷ୍ଠା ଦିନରୁ ପୁନର୍ଜନ୍ମ ନେଇଛି ।

ସମାଜସେବା କାର୍ଯ୍ୟରେ ନଳିନୀର ଅତ୍ୟନ୍ତ ଆଗ୍ରହ ଥିଲା । ରାଜ୍ୟ ସମାଜ ମଙ୍ଗଳ ବୋର୍ଡ଼ର ଉପସଭାପତି ହିସାବରେ ସେ ଓଡ଼ିଶାର ବିଭିନ୍ନ ସ୍ଥାନରେ ବୁଲି ନାରୀମଙ୍ଗଳ, ଶିଶୁକଲ୍ୟାଣ ଓ ଅସହାୟ ବ୍ୟକ୍ତିଙ୍କର ସାହାଯ୍ୟପାଇଁ ନାନା ଅନୁଷ୍ଠାନ ସହିତ ସଂପର୍କ ରଖି କାର୍ଯ୍ୟ କରୁଥିଲା । ରାଜ୍ୟ

ସମାଜ ମଙ୍ଗଳ ଉପଦେଷ୍ଟା ବୋର୍ଡ଼ରେ ତାକୁ ସଭାପତି କରିବାପାଇଁ ଥରେ କଥା ଉଠିଥିଲା, କିନ୍ତୁ ମୁଁ ତାହା ପସନ୍ଦ କରିନଥିଲି; ସେ କେବଳ ଜଣେ ସଭ୍ୟ ହୋଇ ରହିବାକୁ ମୁଁ ଆପତ୍ତି କରିନଥିଲି । ପରେ ସେ ଯେତେବେଳେ ବୋର୍ଡ଼ର ମେମ୍ବର ହେଲା, ବୋର୍ଡ଼ର ସଭ୍ୟମାନେ ତାକୁ ଉପସଭାପତି କରିଥିଲେ । 'ସମାଜ କଲ୍ୟାଣ' ନାମରେ ଗୋଟିଏ ପତ୍ରିକା ତା' ଉଦ୍ୟମରେ ସମାଜ ମଙ୍ଗଳ ବୋର୍ଡ଼ ତରଫରୁ ପ୍ରକାଶପାଉଥିଲା । ସମାଜ ମଙ୍ଗଳ ସଂସ୍ଥାର କାର୍ଯ୍ୟକ୍ରମକୁ ଗ୍ରାମାଞ୍ଚଳରେ କାର୍ଯ୍ୟକାରୀ କରିବା ଦିଗରେ ନଳିନୀର ବିଶେଷ ଆଗ୍ରହ ଥିଲା । ଏ ପ୍ରକାର କାର୍ଯ୍ୟରେ ସରକାରୀ ଅଫିସରଙ୍କ ସାହାଯ୍ୟ ଓ ସହଯୋଗ ସେ ପାଇପାରୁଥିଲା । ମୋ ଜାଣିବାରେ ସମାଜ ମଙ୍ଗଳ ବୋର୍ଡ଼ର ଶ୍ରୀ କୁଳମଣି ପରିଡ଼ାଙ୍କର ସାହାଯ୍ୟ ତାକୁ ଅନାୟାସରେ ମିଳୁଥିଲା । ନଳିନୀ କୁଳମଣିଙ୍କୁ ଶ୍ରଦ୍ଧା ଓ ବିଶ୍ୱାସ କରୁଥିଲା । କଟକରେ କଳାବିକାଶ କେନ୍ଦ୍ରର ସେ ଜଣେ ଅତି ସକ୍ରିୟ ସଭ୍ୟା ଥିଲା । ଓଡ଼ିଶା ଛଡ଼ା ଭାରତର ବହୁ ସ୍ଥାନରେ ଭ୍ରମଣ କରିବାର ସୁଯୋଗ ସେ ପାଇଥିଲା । ଭାରତର ବହୁ ପ୍ରତିଷ୍ଠିତ ବ୍ୟକ୍ତି — ଡକ୍ଟର ଗୋପାଳ ରେଡ୍ଡୀ, ଶ୍ରୀ ଏସ୍.କେ.ଦେ, ଶ୍ରୀମତୀ ସୁଚେତା କୃପାଳିନୀ, ଡକ୍ଟର ବି.ଭି. କେଶକାର ପ୍ରଭୃତି ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ତା'ର ପରିଚୟ ଥିଲା । ସେ ଭାରତର ଫିଲ୍ମ ସେନ୍‌ସର୍ ବୋର୍ଡ଼ର ସଭ୍ୟରୂପେ ଅନେକ ଦିନ କାର୍ଯ୍ୟ କରିଥିଲା । ଓଡ଼ିଶାର ବହୁ ମହିଳା ସମାଜସେବୀଙ୍କ ସହିତ ତା'ର ସମ୍ପର୍କ ଥିଲା । ସେମାନଙ୍କ ସହଯୋଗରେ ସେ ସମାଜ ମଙ୍ଗଳ କାର୍ଯ୍ୟ କରୁଥିଲା । ଯେଉଁମାନେ ବହୁ ସମୟରେ ତା ପାଖକୁ ଆସି ତା ସହିତ ସହଯୋଗ କରୁଥିଲେ ସେମାନଙ୍କ ଭିତରେ ଥିଲେ ଶ୍ରୀମତୀ ବିନୋଦିନୀ ଷଡ଼ଙ୍ଗୀ, ଶ୍ରୀମତୀ ସୁଧାଂଶୁମାଳୀ ରାୟ, ଶ୍ରୀମତୀ ସବିତା ସାମନ୍ତରାୟ, ଶ୍ରୀମତୀ ବିଦ୍ୟୁତ୍‌ପ୍ରଭା ସାଆନ୍ତରା, ଶ୍ରୀମତୀ ପ୍ରଭାମୟୀ ଦେବୀ, ଶ୍ରୀମତୀ କୁନ୍ତଳା କୁମାରୀ ଆଚାର୍ଯ୍ୟ, ଶ୍ରୀମତୀ ବିଦ୍ୟୁତ୍‌ଲତା ଦାସ, ଶ୍ରୀମତୀ ବେଲାରାଣୀ ଦତ୍ତ, ଶ୍ରୀମତୀ ଦେବବାଳା ରାୟ, ଶ୍ରୀମତୀ ଇନ୍ଦୁମତୀ ମହାପାତ୍ର, ଶ୍ରୀମତୀ ବୈଦେହୀ ପଣ୍ଡା, ଶ୍ରୀମତୀ ତୁଳସୀ ଦାସ, ଶ୍ରୀମତୀ କମଳ ପଟ୍ଟନାୟକ, ଶ୍ରୀମତୀ ପଦ୍ମାଳୟା ଦାସ, ଶ୍ରୀମତୀ ବସନ୍ତ କୁମାରୀ ଦେବୀ, ଶୀମତୀ ରମାମଣି ନାୟକ ପ୍ରମୁଖ । କେନ୍ଦ୍ର ସରକାରର ତତ୍କାଳୀନ ଉପମନ୍ତ୍ରୀ ଶ୍ରୀମତୀ ଫୁଲରାଣୀ ଗୁହଙ୍କ ସହିତ ତା'ର ଘନିଷ୍ଠ ସମ୍ପର୍କ ଥିଲା । ଶ୍ରୀମତୀ ଗୁହ ବେଳେ ବେଳେ ଆମ ଘରକୁ ଆସୁଥିଲେ ।

ନଳିନୀର ଜୀବନ ଥିଲା କର୍ମମୟ । କିନ୍ତୁ ତା'ର ମୃତ୍ୟୁ ହେଲା ଅକାଳରେ । ସେ ଦୁଃସାଧ କର୍କଟ ରୋଗରେ ଆକ୍ରାନ୍ତ ହୋଇଥିଲା । ତାକୁ ଭଲକରିବାପାଇଁ ବହୁ ଉଦ୍ୟମ ହେଲା । ବଡ଼ ବଡ଼ ନାମକରା ଚିକିତ୍ସକଙ୍କଠାରୁ ଦିଅଁ ଦେବତା, ସାଧୁସନ୍ଥ ସମସ୍ତଙ୍କର ଆମେ ଶରଣାପନ୍ନ ହୋଇଛୁ । କେହି ତାକୁ ବଞ୍ଚାଇପାରିଲେନାହିଁ । ସାଇବାବାଙ୍କ ଆଶୀର୍ବାଦ ପାଇଁ ତାକୁ ସାଙ୍ଗରେ ନେଇ ଯାଇଥିଲି ପୁଟପର୍ତ୍ତୀର ପ୍ରଶାନ୍ତି ନିଳୟମ୍‌କୁ । ସତ୍ୟସାଇବାବାଙ୍କର ଦର୍ଶନ ଓ ଆଶୀର୍ବାଦ ଆମେ ପାଇପାରିଥିଲୁ । ସାଇବାବାଙ୍କୁ ଦେଖିଲାକ୍ଷଣି ମନରେ ସ୍ୱତଃ ଭକ୍ତି ଜାଗ୍ରତ ହୁଏ । ତାଙ୍କର ଶାନ୍ତ, ତେଜୋଦୀପ୍ତ ମୁଖମଣ୍ଡଳକୁ ଦେଖି ମନରେ ଏକ ପବିତ୍ରଭାବର ଉଦ୍ରେକ ହୋଇଥିଲା । ସେହିଠାରେ ଗୋଟିଏ କଥା ମୋ ମନକୁ ଆସିଥିଲା — ସେ କଥା ମୁଁ କହିବାକୁ ଚାହୁଁଛି । ମୁଁ ଅନ୍ତରରେ ଜଣେ ଈଶ୍ୱରବିଶ୍ୱାସୀ ବ୍ୟକ୍ତି । ଦେବଦେବୀଙ୍କୁ ପୂଜାକରେ ଓ ସାଧୁସନ୍ଥଙ୍କୁ ଭକ୍ତି କରେ । 'ବାବା'ଙ୍କର ଗୋଟିଏ କାର୍ଯ୍ୟ ମୋ ମନକୁ ପାଇଲାନାହିଁ — ତାହା ହେଉଛି ତାଙ୍କର ହାତ ହଲାଇ ଶୂନ୍ୟରୁ ମୋହର ଆଣିବା କଥା । ମୁଁ ଭାବିଲି, କାହିଁକି ସେ ଏପରି କରୁଛନ୍ତି ? ଯେଉଁଠି ସ୍ୱତଃ ଏତେ ଭକ୍ତି; ଯାହା ପାଖରୁ ଆଶୀର୍ବାଦ ପାଇବାପାଇଁ ଏତେ ବ୍ୟାକୁଳତା, ସେଠି ଏମିତି ଗୋଟିଏ ଶସ୍ତା ଅଲୌକିକତା ପ୍ରଦର୍ଶନ କରି କ'ଣ ଲୋକଙ୍କୁ ଆହୁରି ପ୍ରଭାବିତ କରିହେବ ? ସେମାନଙ୍କ ହୃଦୟର ନିବିଡ଼ ଭକ୍ତିକୁ ଦ୍ୱିଗୁଣିତ କରିହେବ ? ଏମିତି ଗୋଟିଏ ଶାନ୍ତ ପବିତ୍ର ତଥା ଭକ୍ତିଭାବମୟ ବାତାବରଣରେ ଏହି ଯାଦୁବିଦ୍ୟା କାହିଁକି କେଜାଣି ମୋତେ ମୋଟେ ସୁନ୍ଦର ଲାଗି ନ ଥିଲା । ଯାହାହେଉ, ବାବାଙ୍କର ଆଶୀର୍ବାଦ ନେଇ ଫେରିଲୁ । କିନ୍ତୁ

ବିଧିର ବିଧାନ ଅନ୍ୟଥା କରିହୁଏନାହିଁ । ସବୁପ୍ରକାର ଚିକିତ୍ସାର ବ୍ୟବସ୍ଥା କରାଯାଇଥିଲା । ଭାରତରେ କର୍କଟ ରୋଗର ସବୁଠାରୁ ବଡ଼ ଓ ବିଖ୍ୟାତ ଅନୁଷ୍ଠାନ ଟାଟା ମେମୋରିଆଲ୍ ହସ୍‌ପିଟାଲ୍‌ର ବିଶେଷଜ୍ଞ ଡାକ୍ତର ପେ'ମାଷ୍ଟର (Dr. Paymaster) କଟକ ଆସି ଦୁଇ ଦିନ ରହି ତାକୁ ପରୀକ୍ଷା କରି ଚିକିତ୍ସାର ବ୍ୟବସ୍ଥା କରିଥିଲେ । କଟକ ଡାକ୍ତରଖାନାରେ ନଳିନୀ ଯେତେବେଳେ ଥାଏ ସମାଜର ସବୁ ସ୍ତରର ସ୍ନେହଶୀଳ ଲୋକ ଶହ ଶହ ସଂଖ୍ୟାରେ ତାକୁ ଦେଖିବାକୁ ଯାଉଥିଲେ । ଡାକ୍ତର ପେ'ମାଷ୍ଟର ଆସିବା ଦିନ ତା'ର ଚିକିତ୍ସା ବ୍ୟବସ୍ଥା ସମ୍ପର୍କରେ ନିଷ୍ପତ୍ତି ନେବାପାଇଁ କଟକର ସବୁ ବଡ଼ ବଡ଼ ଡାକ୍ତରଙ୍କର ଗୋଟିଏ ବୈଠକ ବସିଥିଲା । ସେଠାରେ ଡାକ୍ତର ପେ'ମାଷ୍ଟର ଉପସ୍ଥିତ ରହି ପରାମର୍ଶ ଦେଇଥିଲେ । ଡାକ୍ତରମାନଙ୍କ ମଧ୍ୟରେ ମୁଁ ସେତେବେଳେ ତା' ପ୍ରତି ଯେଉଁଭଳି ମମତା ଓ ଆନ୍ତରିକତା ଲକ୍ଷ୍ୟ କରିଛି, ସେଥିପାଇଁ ସବୁବେଳେ କୃତଜ୍ଞ ରହିବି । ପେ'ମାଷ୍ଟରଙ୍କ କଟକ ଆସିବା କଥା କହୁଛି । ସେତେବେଳେ କୁହାକୁହି ହେବାର ଶୁଣିବାକୁ ପାଇଲି ଯେ ଏତେ ବଡ଼ ଡାକ୍ତର ପେ'ମାଷ୍ଟର ବମ୍ବେରୁ ଆସି ଦୁଇ ଦିନ କଟକରେ ରହିଲେ, ଖୁବ୍ କମ୍‌ରେ କୋଡ଼ିଏ ହଜାର ଟଙ୍କା ଫିସ୍ ନେଇଥିବେ । ମୁଁ ଆଗରୁ କହିଛି ଯେ, ପେ'ମାଷ୍ଟରଙ୍କ ସହିତ ମୋର ପୂର୍ବରୁ ଚିହ୍ନାପରିଚୟ ହୋଇଥିଲା । ପ୍ରକୃତ କଥା ହେଉଛି ତାଙ୍କୁ ମୁଁ ଟେଲିଫୋନ୍ କରି ଅନୁରୋଧ କରିବାରୁ ସେ ଉଡ଼ାଜାହାଜ ଯୋଗେ ଆସି ପହଞ୍ଚିଥିଲେ । ଚିକିତ୍ସାକ୍ଷେତ୍ରରେ ତାଙ୍କର ପଦମର୍ଯ୍ୟାଦାକୁ ସମ୍ମାନ କରି ମୁଁ ତାଙ୍କୁ କେବଳ ସରକାରୀ ଅତିଥିରୂପେ ରାଜଭବନରେ ରଖାଇଥିଲି । ବମ୍ବେରୁ ଏଠାକୁ ଆସିବା ଓ ଫେରିବା ଉଡ଼ାଜାହାଜ ଭଡ଼ା ମଧ୍ୟ ନେବାକୁ ସେ ମନାକରିଦେଇଥିଲେ । ଶେଷକୁ ଆମ ପରିବାର ପକ୍ଷରୁ ଓଡ଼ିଶା ତାରକସୀ କାମର ଗୋଟିଏ ଉପହାର ମାତ୍ର ତାଙ୍କୁ ଦିଆଯାଇଥିଲା । ପାର୍ସୀମାନଙ୍କ ଘରେ ବ୍ୟବହାର କରାଯାଇପାରିବା ଭଳି ତାରକସୀ କାମର ଗୋଟିଏ ଜିନିଷ ଶ୍ରୀ ଏ.ଏଲ୍. ନାୟାରଙ୍କ ପତ୍ନୀ ଆମପାଇଁ ପସନ୍ଦ କରିଦେଇଥିଲେ । ଯେତେବେଳେ ରୋଗ ବଢ଼ିଲା ନଳିନୀକୁ ବମ୍ବେର ଟାଟା ମେମୋରିଆଲ୍ ହସ୍‌ପିଟାଲ୍‌କୁ ନେବାପାଇଁ ପେ'ମାଷ୍ଟରଙ୍କଠାରୁ ପରାମର୍ଶ ଆସିଥିଲା । ସେଠାରେ ନଳିନୀକୁ ପ୍ରାୟ ଦୁଇମାସ ରହିବାକୁ ପଡ଼ିଥିଲା । ମୁଁ ନିଜେ ଅଧିକାଂଶ ସମୟରେ ସେଠାରେ ରହୁଥିଲି । ବାବୁଲ୍ ଓ ମୋ ପୁତୁରାମାନଙ୍କ ମଧ୍ୟରୁ ସଚ୍ଚି, ନିର୍ମଳ, ପ୍ରତାପ ଓ ବିଷ୍ଣୁମୋହନ ପ୍ରଭୃତି ମଧ୍ୟ ସେଠାରେ ରହୁଥିଲେ । ମୋ ଅଫିସ୍‌ର ଗିରୀଶ, ବିଜୟ ମଧ୍ୟ ଅନେକ ଦିନ ସେଠାରେ ସେହି ସମୟରେ ଥିଲେ । ଜେ.କେ. କମ୍ପାନୀ ବମ୍ବେରେ ଥିବା ତାଙ୍କର ଗେଷ୍ଟ ହାଉସ୍‌ଟିକୁ ଆମକୁ ଅନେକ ଦିନ ପର୍ଯ୍ୟନ୍ତ ଛାଡ଼ିଦେଇଥିଲେ – ଆମେ ସେଠାରେ ରହୁଥିଲୁ । ରୋଗଶଯ୍ୟାରେ ଥିବାବେଳେ ମଧ୍ୟ ନଳିନୀକୁ ବେଳେ ବେଳେ ଆମେ ବମ୍ବେ ବଜାରକୁ ସାଙ୍ଗରେ ବୁଲାଇନେଇଯାଉ ତା'ର ମନ ପରିବର୍ତ୍ତନ ପାଇଁ । ସେଠାରେ ମଧ୍ୟ ସେ ପରଦା କନା ଭଳି ବହୁ ଭଲ ଭଲ ଘରକରଣା ଜିନିଷ କିଣେ । ବମ୍ବେରେ ମଧ୍ୟ ତା'ର ଅନେକ ବନ୍ଧୁ ଆସି ତାକୁ ଦେଖାକରିଥିଲେ । ଏହି ସମୟରେ ଲୋକନାୟକ ଜୟପ୍ରକାଶ ନାରାୟଣଙ୍କ ସ୍ତ୍ରୀ ଶ୍ରୀମତୀ ପ୍ରଭାବତୀ ଦେବୀ ଏହି ଦୁଃସାଧ୍ୟ କର୍କଟ ରୋଗରେ ଆକ୍ରାନ୍ତ ହୋଇ ସେହି ଟାଟା ମେମୋରିଆଲ୍ ହସ୍‌ପିଟାଲ୍‌ରେ ଥାଆନ୍ତି । ଜୟପ୍ରକାଶଜୀ ଅନେକ ସମୟରେ ସେଠାକୁ ଯାଉଥା'ନ୍ତି । ନଳିନୀର ଅବସ୍ଥାରେ ସାମାନ୍ୟ ଉନ୍ନତି ହେବା ପରେ ଡକ୍ଟର ପେ'ମାଷ୍ଟର ତାକୁ କଟକ ନେଇ ଆସିବା ପାଇଁ ପରାମର୍ଶ ଦେଇଥିଲେ । ବମ୍ବେରୁ କଲିକତା ପ୍ଲେନ୍‌ରେ ଆସିଲାବେଳେ ପୁଣି ଟିକେ ଅସୁସ୍ଥତା ବଢ଼ିଯାଇଥିଲା । ଦମ୍‌ଦମ୍‌ରେ ପ୍ଲେନ୍‌ରୁ ଓହ୍ଲାଇବାକ୍ଷଣି ଶ୍ରୀମତୀ ଆଭା ମାଇତି ଓ ଶ୍ରୀ ଏସ୍.ଏନ୍ ଦାସମହାପାତ୍ର ଗୋଟିଏ ବଡ଼ ମଟରଗାଡ଼ିରେ ତାକୁ ପ୍ଲେନ୍ ପାଖରୁ ଆଣିବା ପାଇଁ ଅପେକ୍ଷା କରି ରହିଥିଲେ । ଆଭାକୁ ଦେଖି ନଳିନୀ ଖୁବ୍ କାନ୍ଦିଥିଲା । ଆଭା ତାକୁ ଧରି ଧରି ଆଣି ଗାଡ଼ିରେ ବସାଇ ଉତ୍କଳ ଭବନକୁ ଆଣିଥିଲା । କଲିକତାରେ ଦିନେ ରହି ପରଦିନ ପୁରୀ ଏକ୍ସପ୍ରେସ୍‌ରେ କଟକରେ ପହଞ୍ଚିଲୁ । ଘରେ କିଛି ଦିନ ରହିବା ପରେ ପୁଣି ତା'ର ସ୍ୱାସ୍ଥ୍ୟର ଅବନତି ଘଟିଲା । ତେଣୁ ନର୍ସିଂହୋମ୍‌କୁ ଯିବାକୁ ପଡ଼ିଥିଲା । କିଛିଦିନ ସେଠି ଚିକିତ୍ସା

ଚାଲିଲା । ସବୁଠାରୁ ଆଶ୍ଚର୍ଯ୍ୟର କଥା, ସେ ଏଡ଼େ ଦୁଃସାଧ ରୋଗରେ ରୋଗଶଯ୍ୟାରେ ପଡ଼ିଥିଲା ବେଳେ ମଧ୍ୟ କବି ଓ ଲେଖକମାନଙ୍କ ସହିତ ସାହିତ୍ୟ ଆଲୋଚନା କରୁଥିଲା । ସେହି ରୋଗଶଯ୍ୟାରେ ପଡ଼ି ମରୁତୀର୍ଥର ସଂପାଦକୀୟ ସେ ଲେଖୁଥିଲା । ନର୍ସିଂହୋମ୍ ପାଖରେ ସବୁବେଳେ ତା' ପାଇଁ ଆମର ଗୋଟିଏ ଗାଡ଼ି ରହିଥାଏ ଏବଂ ସେଠାରେ ମୋର ଡ୍ରାଇଭର୍ ଶ୍ରୀ ଅରକ୍ଷିତ ସାହୁ ସବୁବେଳେ ଉପସ୍ଥିତ ଥାଏ । ଦିନେ ଶୁଣିଲି, ସେ ରୋଗଶଯ୍ୟାରୁ ସିନେମା ଦେଖିବାକୁ ଯାଇଥିଲା । ଅନେକ ଲୋକ ଏ କଥା ଶୁଣି ଆଶ୍ଚର୍ଯ୍ୟ ହୋଇଥିଲେ । ତା'ପରେ ସନ୍ଧାନ ନେଇ ବୁଝିଲି, କେବଳ ସେଇ ଥରକ ନୁହେଁ, ଅନେକ ଥର ସେ ଏଇମିତି ହସ୍‌ପିଟାଲ୍‌ରୁ ସିନେମା ଦେଖିବାକୁ ଯାଉଥିଲା । ମୁଁ ଅନେକ ସମୟରେ କଟକ ହସ୍‌ପିଟାଲ୍‌ର ନର୍ସିଂହୋମ୍‌ରେ ତା'ର ସାତ ନମ୍ବର ରୁମ୍‌ରେ ରହୁଥିଲି ଏବଂ ରାତିରେ ସେଇଠି ଶୋଉଥିଲି । ଅନେକ ରାଜନୈତିକ ନେତା ଓ ମନ୍ତ୍ରୀ ସେଠାରେ ଯାଇ ମୋତେ ଦେଖାକରୁଥିଲେ । ବାବୁଲ୍‌କୁ ବାହାକରାଇ ବୋହୂଟିଏ ଘରକୁ ଆଣିବାପାଇଁ ତା'ର ଥିଲା କେତେ ବଡ଼ ଆଶା ! ରୋଗରେ ପଡ଼ିଥିଲା ବେଳେ ବି ତା' ମନଲାଖି ଝିଅ ଖୋଜିବାରେ ମଧ୍ୟ ସେ ମନ ଦେଇଥିଲା । ତା' ଜୀବନର ଶେଷ ସମୟ ନିକଟ ହୋଇଆସୁଥିବାର ଆଶଙ୍କା କରାଯିବାରୁ କେତେକ ଲୋକ ପରାମର୍ଶ ଦେଇଥିଲେ ବାବୁଲ୍‌ର ବିଭାଘର କରାଇଦେବାପାଇଁ – ଉଦ୍ଦେଶ୍ୟ ନଳିନୀ ସଂସାରରୁ ଯିବା ପୂର୍ବରୁ ବୋହୂର ମୁହଁ ଦେଖିବ । କିନ୍ତୁ ଯାହା ନହେବାର କଥା ତା ବା କେମିତି ହୋଇଥା'ନ୍ତା ? ମୁଁ ଏବେ ବେଳେ ବେଳେ ଭାବେ ସେ ଯେବେ ଆଜି ବଞ୍ଚିଥା'ନ୍ତା, ବାବୁଲ୍‌ର ବିଭାଘର ଦେଖିଥାଆନ୍ତା, ମୋର ବୋହୂ 'ମିନି'କୁ ଦେଖିଥାଆନ୍ତା, ତା'ହେଲେ ସେ କେଡ଼େ ଖୁସି ହୋଇନଥାନ୍ତା ? ମନର ସେ ଭାବନା ଭାବନାରେ ହିଁ ରହିଯାଏ । ବଞ୍ଚିଥିଲେ ସେ ନିଶ୍ଚୟ କହିଥାଆନ୍ତା ଯେ ମୁଁ ତା'ର ମନଲାଖି ବୋହୂ ବାଛି ଆଣିଛି । ୧୯୭୩ ଫେବୃୟାରୀ ୨୬ ତାରିଖ ଥିଲା ବଡ଼ ଦାରୁଣ । ସଂସାରରେ ସେଇଟି ତା'ର ଶେଷଦିନ ବୋଲି ଆମକୁ ଜଣାନଥିଲା । ମୁଁ ସେତେବେଳେ ଥିଲି ରାଜ୍ୟର ଉପମୁଖ୍ୟମନ୍ତ୍ରୀ । ତା'ର ଅସୁସ୍ଥତାର ଶେଷ ଦୁଇ ତିନି ମାସ ମୁଁ ପ୍ରାୟ ଅଫିସ୍ କାମ ଛାଡ଼ିଦେଇଥିଲି । ଏହି ୨୬ ତାରିଖ ଦିନ ନଳିନୀର ସ୍ୱାସ୍ଥ୍ୟ ପୂର୍ବାପେକ୍ଷା ଟିକେ ଭଲ ଜଣାଯାଉଥିଲା । ବୋଧହୁଏ ଦୀପ ଲିଭିବା ଆଗରୁ ଜୋର୍‌ରେ ଜଳିଉଠେ, ଏହାହିଁ ଥିଲା ତା'ର ପୂର୍ବସୂଚନା । ମୁଁ ଯଦି ଜାଣିଥାଆନ୍ତି ଯେ ସେହି ଦିନ ସେ ଆମ୍ଭମାନଙ୍କଠାରୁ ବିଦାୟ ନେଇଯିବ ତେବେ ହୁଏତ ମୁଁ ଭୁବନେଶ୍ୱର ଆସିନଥାନ୍ତି । ମୁଁ ଭୁବନେଶ୍ୱର ଆସି ସେଦିନ ସକାଳଓଳି ମୋର ସରକାରୀ ବାସଭବନରେ ବିଶ୍ରାମନେଲି । ଅପରାହ୍ଣ ତିନିଟାବେଳେ ସେ ସବୁଦିନପାଇଁ ଆଖିବୁଜିଦେଇଥିଲା । ସଙ୍ଗେ ସଙ୍ଗେ ସେକ୍ରେଟେରୀଏଟ୍‌କୁ ଖବର ଆସିଲା । କିନ୍ତୁ ସେ ସମ୍ବାଦ ମୋଠାରୁ ଲୁଚାଇ ରଖାହୋଇଥିଲା । ଭଦ୍ରକର ଶ୍ରୀ ପ୍ରଫୁଲ୍ଲ ମହାନ୍ତି ଆସି କହିଲେ ନଳିନୀ ଦେବୀଙ୍କର ଦେହ ବର୍ତ୍ତମାନ ବେଶି ଖରାପ ହୋଇଛି ବୋଲି ଖବର ଆସିଛି, ଚାଲନ୍ତୁ ଯିବା । ମୁଁ ସାଙ୍ଗେ ସାଙ୍ଗେ ବାହାରିପଡ଼ିଲି । ମୋ ମନଟା କେମିତି ଗୁଡ଼େଇ ପୁଡ଼େଇ ହେଉଥାଏ । ଆଶଙ୍କା ଓ ଅଧୀରତା ଭିତରେ ମୁଁ ପଚାରିଲି, ''ଆମେ ପହଞ୍ଚିବା ପୂର୍ବରୁ କିଛି ହୋଇଯିବ ନାହିଁ ତ ?'' ସେ ଉତ୍ତର ଦେଇଥିଲେ ଯେ, ସବୁ କଥା କିଛି ଘଟିଲେ ରାତିରେ ଘଟେ । ମୁଁ ପ୍ରାୟ ସାଢ଼େ ଚାରିଟାବେଳେ ନର୍ସିଂହୋମ୍‌ରେ ପହଞ୍ଚିଲି । ବାବୁଲ୍ ଓ ପୁତୁରାମାନେ ଶୋକାତୁର ହୋଇ ସେଇଠି ପଡ଼ିଥାଆନ୍ତି । ନଳିନୀର ଚେହେରା ଦେଖିଲେ ଦେହରେ ପ୍ରାଣ ନାହିଁ ବୋଲି ଜଣାପଡୁନଥାଏ । ମୁଁ ନିର୍ବାକ୍ ହୋଇ ତା' ହାତକୁ ଧରି ବସିଲି । ଭାବୁଥାଏ, ବୋଧହୁଏ ସେ ପୁଣି ଫେରିଆସିବ । କିନ୍ତୁ ଆଉ ଫେରିଲାନାହିଁ । ତାକୁ ଆମ ୨୬ ନମ୍ବର କ୍ୟାଣ୍ଟନ୍‌ମେଣ୍ଟ ଘରକୁ ଆଣିବାପାଇଁ ଗୋଟିଏ ବହୁତ ଲମ୍ବା ଗାଡ଼ିର ବ୍ୟବସ୍ଥା ହୋଇଥିଲା । କିନ୍ତୁ ମୁଁ କହିଲି ଯେ ସେ ଆମର ସେଇ ଛୋଟ ଫିଆଟ୍ ଗାଡ଼ି ORC 7373 ରେ ଘରକୁ ଫେରିବ, ଆଉ ଆମର ପୁରୁଣା ଡ୍ରାଇଭର ଶେଖ୍ ସମୀର୍ ଗାଡ଼ି ଚଳାଇ ଯିବ । ତାହାହିଁ କରାହେଲା । ଓଡ଼ିଶାର ସବୁ ବୟୋଜ୍ୟେଷ୍ଠ ନେତା, ମନ୍ତ୍ରୀ, ଅଫିସର, କବି, ଲେଖକ ଓ ସାଧାରଣ

ବ୍ୟକ୍ତିଙ୍କର ସମାବେଶ ହୋଇଥିଲା ୨୬ ନମ୍ବର କ୍ୟାଣ୍ଟନ୍‌ମେଣ୍ଟ ରୋଡ୍‌ରେ । ଆମେ ପୂର୍ବରୁ ରହୁଥିବା ପ୍ରଜାତନ୍ତ୍ର ରାସ୍ତା ଦେଇ ଶୋଭାଯାତ୍ରାରେ ତାକୁ ସତୀଚଉରାକୁ ନେଲୁ । ସେଇଠି ତା'ର ଶେଷକୃତ୍ୟ ସମାପନ କରାହୋଇଥିଲା । ମୋର ନୀରସ ରାଜନୈତିକ ଜଞ୍ଜାଳମୟ ଜୀବନରେ ନଳିନୀ ପ୍ରକୃତରେ ଏକ ମରୁତୀର୍ଥ ସୃଷ୍ଟିକରିଥିଲା । ସେ ଆଉ ନାହିଁ । କିନ୍ତୁ ପରିବାରର ପ୍ରତ୍ୟେକେ ସବୁଠାରେ ତା'ର ହାତର ସ୍ପର୍ଶ ଅନୁଭବ କରୁଛନ୍ତି । ନଳିନୀଦେବୀ ମହିଳା ଶିକ୍ଷା ମହାବିଦ୍ୟାଳୟ ଆନୁକୂଲ୍ୟରେ ନଳିନୀର ସ୍ମୃତିରେ ତା'ର 'ମରୁତୀର୍ଥ' ପୁନର୍ଜନ୍ମ ଲାଭକରିପାରିଛି । କିନ୍ତୁ ତା'ର ମୃତ୍ୟୁରେ ମୋର 'ମରୁତୀର୍ଥ' ଚିରଦିନପାଇଁ ହଜିଯାଇଛି ।

## ଏକାବନ ନିର୍ବାଚନର ନୂତନ ସୋପାନ

୧୯୪୬ ମସିହାରେ ୧୯୩୫ ମସିହା ଭାରତ ଶାସନ ଆଇନ ଅନୁସାରେ ଓଡ଼ିଶା ବିଧାନସଭାକୁ ଯେଉଁ ନିର୍ବାଚନ ହୋଇଥିଲା, ଗଡ଼ଜାତ ମିଶ୍ରଣ ପରେ ପୂର୍ବତନ ଦେଶୀୟ ରାଜ୍ୟ ଅଧିବାସୀମାନଙ୍କର ପ୍ରତିନିଧି ମନୋନୟନ କରାଯାଇ ତା'ର ସଭ୍ୟସଂଖ୍ୟା ବୃଦ୍ଧିକରାଯାଇଥିଲା । ସେହି ବିଧାନସଭାର ଶେଷ ବୈଠକ ବସିଥିଲା ୧୯୫୧ ମସିହା ଅକ୍ଟୋବର ପାଞ୍ଚ ତାରିଖରେ । ସେଦିନ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ବିଧାନସଭାର ବାଚସ୍ପତି ଓ ସଭ୍ୟମାନଙ୍କୁ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ସେହି ବର୍ଷ ଡିସେମ୍ବର ମାସ ବେଳକୁ ସ୍ୱାଧୀନ ଭାରତର ନୂତନ ସମ୍ବିଧାନ ଅନୁସାରେ ସାଧାରଣ ନିର୍ବାଚନ ହେବ ବୋଲି ସୂଚନା ଦେଇଥିଲେ । ମୁଁ ସେଦିନ ବୈଠକରେ ଉପସ୍ଥିତ ଥିଲି ଏବଂ ତାହା ଉକ୍ତ ବିଧାନସଭାର ଶେଷ ଦିବସ ହୋଇଥିବାରୁ ସଭ୍ୟମାନଙ୍କ ମନରେ ହର୍ଷ ଓ ବିଷାଦର ସମନ୍ୱୟ ମୁଁ ବେଶ୍ ଅନୁଭବ କରିପାରିଥିଲି । ନୂଆ ନିର୍ବାଚନ ଆସନ୍ନ । ସମସ୍ତେ ତ ଆଜି ଏଠାରୁ ଯିବେ – କିନ୍ତୁ ସେମାନଙ୍କ ମଧ୍ୟରୁ କିଏ ପୁଣି ନିର୍ବାଚିତ ହୋଇ ଆସିବେ ତା ଅନିଶ୍ଚିତ । ସେଇ ପୁରୁଣା ଚେୟାର ବେଞ୍ଚ ଥିବ, ସେଇ ପରମ୍ପରାରେ କାର୍ଯ୍ୟ ଚାଲିବ; କିନ୍ତୁ ଆଜି ଏଠାରେ ବସିଥିବା ସଭ୍ୟମାନଙ୍କ ଭିତରୁ କେତେକ ନ ଥିବେ – ଥିବ କେବଳ ତାଙ୍କର ସ୍ମୃତି । ନୂତନର ଆଗମନରେ ପୁରାତନ କେବଳ ଇତିହାସ ହୋଇ ରହିଯିବ । ବାଚସ୍ପତି ଶ୍ରୀ ଲାଲମୋହନ ପଟ୍ଟନାୟକ ତାଙ୍କର ସ୍ୱାଭାବିକ ଗମ୍ଭୀର ଆବେଗଭରା ସ୍ୱରରେ ସମସ୍ତ ସଭ୍ୟଙ୍କୁ ଧନ୍ୟବାଦ ଦେଇ ସମସ୍ତଙ୍କର ଶୁଭେଚ୍ଛା କାମନାକରି ରାଜ୍ୟପାଳଙ୍କଦ୍ୱାରା ଅଧିବେଶନର ସମାପ୍ତି ଘୋଷଣା କରିଥିଲେ ।

୧୯୫୧ ମସିହାର ଶେଷଭାଗରେ ସମଗ୍ର ଭାରତବର୍ଷରେ ନୂତନ ସମ୍ବିଧାନ ଅନୁସାରେ ପ୍ରଥମ ଗଣତାନ୍ତ୍ରିକ ସାଧାରଣ ନିର୍ବାଚନ ହେବାର କଥା । ଓଡ଼ିଶାରେ ସେଥିପାଇଁ ସବୁ ରାଜନୈତିକ ଦଳ ପକ୍ଷରୁ ତତ୍ପରତା ପ୍ରକାଶ ପାଇଥାଏ । ରାଜନୈତିକ ଦଳ ହିସାବରେ ମୁଖ୍ୟତଃ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ କଂଗ୍ରେସ, ଗଣତନ୍ତ୍ର ପରିଷଦ, କମ୍ୟୁନିଷ୍ଟ, ସମାଜବାଦୀ ଓ ଝାଡ଼ଖଣ୍ଡ ଦଳମାନେ । କଂଗ୍ରେସ ପକ୍ଷରୁ ପ୍ରାର୍ଥୀ ମନୋନୟନ ପଦ୍ଧତି ଠିକ୍ ହୋଇଯାଇଥାଏ । ଆଗାମୀ ନିର୍ବାଚନ ପରେ କଂଗ୍ରେସ ଦଳର ଦଳପତି ରୂପେ ଶ୍ରୀ ନବକୃଷ୍ଣ ଚୌଧୁରୀ ରହିବେ ବୋଲି ଏକପ୍ରକାର ସ୍ଥିର ହୋଇଯାଇଥିଲା, କାରଣ ଶ୍ରୀ ହରେକୃଷ୍ଣ ମହତାବ ଥିଲେ କେନ୍ଦ୍ରର ଶିଳ୍ପମନ୍ତ୍ରୀ ଏବଂ ନିଶ୍ଚିତଭାବରେ ଆଶା କରାଯାଇଥିଲା ଯେ ସେ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ରହିବେ । ତେଣୁ ସେ ବ୍ୟବସ୍ଥାସଭାପାଇଁ ପ୍ରାର୍ଥୀ ନହୋଇ ଲୋକସଭା ପାଇଁ କଟକ ଲୋକସଭା ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହୋଇଥିଲେ । ଓଡ଼ିଶା ବିଧାନସଭାରେ ସେତେବେଳେ ୧୪୦ଟି ସ୍ଥାନ ଥାଏ ଏବଂ କଂଗ୍ରେସପ୍ରାର୍ଥୀ ହେବାପାଇଁ ପ୍ରାୟ ଦୁଇ ହଜାର ଦରଖାସ୍ତ ପଡ଼ିଥାଏ । ପ୍ରଦେଶ କଂଗ୍ରେସ କମିଟି ପକ୍ଷରୁ ଗଢ଼ାଯାଇଥିବା ନିର୍ବାଚନ କମିଟି ପ୍ରାର୍ଥୀ ମନୋନୟନ କାର୍ଯ୍ୟ ଆରମ୍ଭ କରିଥିଲେ ଏବଂ କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷଙ୍କ ପକ୍ଷରୁ ଦିଲ୍ଲୀରୁ ଜଣେ ନେତା ପର୍ଯ୍ୟବେକ୍ଷକ ରୂପେ ଆସିଥିଲେ । ମୁଁ କେଉଁ ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହେବି ସେ କଥା ଅନିଶ୍ଚିତ ଅବସ୍ଥାରେ ଥାଏ । ସମସ୍ତଙ୍କର ଆଶା ଥିଲା ଓ

ବାଲେଶ୍ୱର ଜିଲ୍ଲାର କଂଗ୍ରେସ କର୍ମୀମାନେ ମଧ ଚାହୁଁଥିଲେ ଯେ ମୁଁ ଆମ ଘର ଚାନ୍ଦବାଲି ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହୁଏ । ସେଇଟି ଥିଲା ଯୁଗ୍ମ ନିର୍ବାଚନମଣ୍ଡଳୀ । ଜଣେ ସବର୍ଣ୍ଣ ଓ ଅନ୍ୟ ଜଣେ ହରିଜନ ସେଠାରୁ ନିର୍ବାଚିତ ହେବାର କଥା । କିନ୍ତୁ ସେଠାରେ ମୋର ପ୍ରତିଦ୍ୱନ୍ଦ୍ୱୀ ହେଲେ ଶ୍ରୀ ଚକ୍ରଧର ବେହେରା । ଶ୍ରୀ ବେହେରାଙ୍କର ଯେ ସେଠାରେ ବେଶି ସମର୍ଥକ ଥିଲେ ତା ନୁହେଁ; କିନ୍ତୁ ଗୋଟିଏ ପରିସ୍ଥିତିରେ ପଡ଼ି ଶ୍ରୀ ନବକୃଷ୍ଣ ଚୌଧୁରୀ ତାଙ୍କୁ ଏ ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ କରାଇବେ ବୋଲି ଏକପ୍ରକାର ପ୍ରତିଶ୍ରୁତି ଦେଇଥିଲେ । ପୂର୍ବରୁ କହିଛି ଯେ ଏହି ନିର୍ବାଚନମଣ୍ଡଳୀରୁ ୧୯୪୬ରେ ଶ୍ରୀ ହରେକୃଷ୍ଣ ମହତାବ ନିର୍ବାଚିତ ହୋଇ ଆସିଥିଲେ । ସେ ଯେତେବେଳେ କେନ୍ଦ୍ରମନ୍ତ୍ରୀ ହୋଇଗଲେ, ବ୍ୟବସ୍ଥାସଭାରୁ ଇସ୍ତଫା ଦେବାରୁ ସେ ସ୍ଥାନଟି ଖାଲି ପଡ଼ିଲା । ଶ୍ରୀ ଚୌଧୁରୀ ସେତେବେଳେ ବ୍ୟବସ୍ଥାସଭାର ସଭ୍ୟ ନଥିଲେ; କିନ୍ତୁ ମୁଖ୍ୟମନ୍ତ୍ରୀ ହୋଇ ଆସିଲେ । ତେଣୁ ଖାଲିପଡ଼ିଥିବା ଚାନ୍ଦବାଲି ନିର୍ବାଚନମଣ୍ଡଳୀରୁ ସେ ବିଧାନସଭାକୁ ନିର୍ବାଚିତ ହୋଇ ଆସିବାର ସ୍ଥିରହୋଇଥିଲା । ସେତେବେଳେ କୁଆଡ଼େ ଶ୍ରୀ ବେହେରା ସେହିଠାରୁ ପ୍ରାର୍ଥୀ ହେବାପାଇଁ ଆଶାୟୀ ହୋଇଥିଲେ । ତେଣୁ ତାଙ୍କୁ ପରେ ସନ୍ତୁଷ୍ଟ କରିବା ତାଙ୍କର କର୍ତ୍ତବ୍ୟ ବୋଲି ଶ୍ରୀ ଚୌଧୁରୀ ମନେକରିଥିଲେ । ଶ୍ରୀ ହରେକୃଷ୍ଣ ମହତାବ ମଧ ଚାହିଁଥିଲେ ଯେ ଶ୍ରୀ ବେହେରା ଚାନ୍ଦବାଲି ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହୁଅନ୍ତୁ । ମୋ ପକ୍ଷରେ ସେହି ନିର୍ବାଚନମଣ୍ଡଳୀଟି ଅତି ସୁବିଧାଜନକ ହୋଇଥାଆନ୍ତା । ମାତ୍ର ଧାମନଗର ନିର୍ବାଚନମଣ୍ଡଳୀରୁ ମୁଁ ପ୍ରାର୍ଥୀ ମନୋନୀତ ହୋଇଥିଲି । ଶ୍ରୀ ମୁରଲିଧର ଜେନାଙ୍କର ମଧ ଇଚ୍ଛା ଥିଲା ଧାମନଗର ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହେବାପାଇଁ । ପରିସ୍ଥିତିର ଜଟିଳତା ହୃଦୟଙ୍ଗମ କରି ସେ ସେଥିରୁ ନିବୃତ୍ତ ହୋଇ ବରଂ ମୋ ପ୍ରତି ସହୃଦୟତା ପ୍ରକାଶ କରିଥିଲେ ।

ଏ ନିର୍ବାଚନ ହେଉଛି ସ୍ୱାଧୀନ ଭାରତରେ ସର୍ବପ୍ରଥମ ସାଧାରଣ ନିର୍ବାଚନ । ସ୍ତ୍ରୀପୁରୁଷ ନିର୍ବିଶେଷରେ ପ୍ରତ୍ୟେକ ସାବାଳକ ହୋଇଥିଲେ ଭୋଟର । ନିର୍ବାଚନରେ ଦେଖାଗଲା ଯେ କଂଗ୍ରେସର ପ୍ରକୃତ ପ୍ରତିଦ୍ୱନ୍ଦ୍ୱୀ ହୋଇଥିଲା ରାଜା ମହାରାଜାଙ୍କ ଦ୍ୱାରା ଗଠିତ ଗଣତନ୍ତ୍ର ପରିଷଦ । ସ୍ୱାଧୀନତା ପରେ ଗଡ଼ଜାତଗୁଡ଼ିକୁ ପ୍ରଦେଶ ସହିତ ମିଶାଇଦିଆଯାଇଥିଲା । ମାତ୍ର ମହାରାଜାମାନେ ତ ସ୍ୱଇଚ୍ଛାରେ ସ୍ୱାକ୍ଷର ଦେଇନଥିଲେ; ତେଣୁ ସେମାନଙ୍କ ମନରୁ ତିକ୍ତତା ଯାଇନଥିଲା, ବରଂ ପ୍ରତିଶୋଧ ନେବାର ମନୋବୃତ୍ତି କ୍ରମଶଃ ବଢ଼ିଯାଇଥିଲା । ଏତିକିବେଳେ ଦୁଇଜଣ ମହାରାଜା କଂଗ୍ରେସବିରୋଧୀ ଭୂମିକାରେ ଅଗ୍ରଣୀ ହୋଇଥିଲେ । ବଲାଙ୍ଗୀର ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ କଳାହାଣ୍ଡିର ମହାରାଜା ଶ୍ରୀ ପ୍ରତାପକେଶରୀ ଦେଓ ଗଣତନ୍ତ୍ର ପରିଷଦ ଦଳର ନେତୃତ୍ୱ ନେଇ ନିର୍ବାଚନ ପରିଚାଳନା କରିଥିଲେ । ତାହା ବହୁ ସ୍ଥାନରେ କଂଗ୍ରେସର ପରାଜୟର କାରଣ ହୋଇଥିଲା । ରାଜ୍ୟ ଭିତରେ ଥିବା ଆଞ୍ଚଳିକ ବୈଷମ୍ୟପାଇଁ କଂଗ୍ରେସ ଶାସନ ଦାୟୀ ବୋଲି କହି ସେମାନେ ପୂର୍ବତନ ଗଡ଼ଜାତ, ସମ୍ବଲପୁର ଓ କୋରାପୁଟ ଅଞ୍ଚଳର ଲୋକମାନଙ୍କ ମନରେ ତିକ୍ତଭାବ ଉଦ୍ରେକ କରାଇଥିଲେ । ରାଜାମାନଙ୍କର ରାଜତ୍ୱ ଯାଇଥିଲା; କିନ୍ତୁ ସେମାନଙ୍କ ପ୍ରଭାବ ଯାଇନଥିଲା । ସେହି ପ୍ରଭାବର ସୁଯୋଗ ନେଇ ସେମାନେ ଲୋକଙ୍କୁ କଂଗ୍ରେସ ବିରୋଧୀ କରାଇପାରିଥିଲେ ।

ପ୍ରାୟ ଦୁଇ ଶହ କୋଟି ଟଙ୍କା ଖର୍ଚ୍ଚ ହୋଇ ମହାନଦୀ ଉପରେ ପଶ୍ଚିମ ଓଡ଼ିଶାର ସମ୍ବଲପୁରଠାରେ ବହୁମୁଖୀ ହୀରାକୁଦ ବନ୍ଧ ଯୋଜନା କାର୍ଯ୍ୟକାରୀ ହୋଇ ପରେ ସେସବୁ ଅଞ୍ଚଳ ସହିତ ଓଡ଼ିଶାର ବହୁ ଅଞ୍ଚଳରେ ସୁନାର ଫସଲ ଫଳିଲା ଓ ଶିଳ୍ପ ପ୍ରସାରିତ ହେଲା । ମାତ୍ର ସେତେବେଳେ ଏହି ଅସନ୍ତୁଷ୍ଟ ରାଜାମାନେ ହୀରାକୁଦ ବନ୍ଧ ଯୋଜନାବିରୋଧୀ ଆନ୍ଦୋଳନର ନେତୃତ୍ୱ ନେଇ ଏଭଳି ପରିସ୍ଥିତି ସୃଷ୍ଟି କଲେ ଯେ ନିର୍ବାଚନରେ କଂଗ୍ରେସର ସ୍ଥିତି ସେ ଅଞ୍ଚଳରେ ପ୍ରାୟ ନିଶ୍ଚିହ୍ନ ହୋଇଯାଇଥିଲା । କେନାଲ ଖୋଳି ଚାଷୀମାନଙ୍କ ଜମିକୁ ଯେତେବେଳେ ପାଣି ଯୋଗାଇବାର ବ୍ୟବସ୍ଥା କରାହେଲା ସେ ବିଷୟରେ

ଅପପ୍ରଚାର କରି କୁହାଗଲା ଯେ ସରକାର ବିଜୁଳି ଉତ୍ପନ୍ନ କରି ପାଣିରୁ ସବୁ ସାର ଅଂଶ କାଢ଼ି ନେଇଛନ୍ତି, ତେଣୁ ସେ ପାଣିରେ ଆଉ କିଛି ଫସଲ ହେବ ନାହିଁ । ଏ ପ୍ରକାର ଉଦ୍ଭଟ କଥାରେ ମଧ୍ୟ ସାଧାରଣ ଲୋକ ସେତେବେଳେ ବିଶ୍ୱାସ କରୁଥିଲେ । ସେଥିପାଇଁ ୧୯୫୧ ମସିହା ନିର୍ବାଚନରେ ସମ୍ବଲପୁର ଜିଲ୍ଲାର ଅଧିକାଂଶ ସ୍ଥାନରେ କଂଗ୍ରେସର ପରାଜୟ ହୋଇଥିଲା । କୋରାପୁଟ ପ୍ରଭୃତି ଆଦିବାସୀବହୁଳ ଅଞ୍ଚଳରେ ଆଦିବାସୀମାନେ ପାହାଡ଼ ଉପରେ ପୋଡୁଚାଷ କରନ୍ତି । ଆଦିବାସୀମାନଙ୍କୁ ଅନ୍ୟତ୍ର ଜମି ଦେଇ ପୋଡୁଚାଷରୁ ନିବର୍ତ୍ତାଇବା ପାଇଁ ହେଉଥିବା ସରକାରୀ ଉଦ୍ୟମର କଦର୍ଥ କରି ଆଦିବାସୀମାନଙ୍କୁ କଂଗ୍ରେସବିରୋଧୀ କରାଇଦିଆଗଲା । ଏହିଭଳି ମିଥ୍ୟାପ୍ରଚାର କରି ଭୋଟ ସଂଗ୍ରହ କରିବା ଚେଷ୍ଟାରୁ ରାଜାମାନଙ୍କ ଗଣତନ୍ତ୍ର ପରିଷଦ ପଶ୍ଚାତ୍‌ପଦ ହୋଇନଥିଲା । ଜଙ୍ଗଲ ରକ୍ଷଣାବେକ୍ଷଣପାଇଁ ଯେଉଁସବୁ ନୂତନ ଆଇନ ପ୍ରଣୟନ କରାଗଲା, ତା ବିରୁଦ୍ଧରେ ମଧ୍ୟ ପୂର୍ବତନ ଗଡ଼ଜାତର ଲୋକମାନଙ୍କୁ ମତେଇ ଦିଆଯାଇଥିଲା । ମଦ, ହାଣ୍ଡିଆ, ଅଫିମ, ଗଞ୍ଜେଇ ପ୍ରଭୃତି ନିଶାଦ୍ରବ୍ୟ ଉପରେ ଥିବା ସରକାରୀ ନିୟନ୍ତ୍ରଣ ବିରୁଦ୍ଧରେ ନାନା ଅପପ୍ରଚାର କରି ଲୋକଙ୍କୁ ବିଶେଷତଃ ଆଦିବାସୀମାନଙ୍କୁ ଉତ୍ତେଜିତ କରାଯାଇଥିଲା । ତେଣୁ ସେମାନେ କଂଗ୍ରେସ ପ୍ରତି ବିମୁଖ ହୋଇଥିଲେ । ବିହାରର କଂଗ୍ରେସନେତା ଶ୍ରୀ ଜୟପାଳ ସିଂହଙ୍କ ସହିତ ମଧ୍ୟ ଗଣତନ୍ତ୍ର ପରିଷଦ ହାତ ମିଳାଇଥିଲେ କଂଗ୍ରେସକୁ ହରାଇବାପାଇଁ । ଦେଖିବାକୁ ଗଲେ ପ୍ରାୟ ସବୁ ପୂର୍ବତନ ଗଡ଼ଜାତ ଅଞ୍ଚଳ ଏବଂ ଗଡ଼ଜାତ ରାଜା ମହାରାଜାଙ୍କ ପ୍ରଭାବ ଥିବା ସମ୍ବଲପୁର ଓ କୋରାପୁଟ ଜିଲ୍ଲାର ଜମିଦାରୀ ଅଞ୍ଚଳରେ ଗଣତନ୍ତ୍ର ପରିଷଦର ଅପପ୍ରଚାର ହେତୁ କଂଗ୍ରେସ ପ୍ରାର୍ଥୀମାନଙ୍କର ପରାଜୟ ଘଟିଥିଲା । କେବଳ ମାତ୍ର ତାଳଚେର, ଢେଙ୍କାନାଳ, ରଣପୁର ପ୍ରଭୃତି ପୂର୍ବତନ ଗଡ଼ଜାତ ଅଞ୍ଚଳରେ ପୂର୍ବରୁ ପ୍ରଜାମଣ୍ଡଳ ଆନ୍ଦୋଳନଦ୍ୱାରା ଲୋକମାନଙ୍କର ରାଜନୈତିକ ଚେତନା ଜାଗ୍ରତ କରାଯାଇପାରିଥିବାରୁ ସେହଭଳି କେତେକ ସ୍ଥାନରୁ କଂଗ୍ରେସ ପ୍ରାର୍ଥୀ ଜୟଯୁକ୍ତ ହୋଇଥିଲେ ।

## ଶ୍ରୀଛାମୁ ଦର୍ଶନ

ଯେଉଁ ରାଜାମାନଙ୍କୁ ଲୋକମାନେ ନରରୂପୀ ନାରାୟଣ ବୋଲି ଧାରଣା କରିଥିଲେ, ଲୋକମାନଙ୍କର ମନରୁ ସେମାନଙ୍କର ପ୍ରଭାବ ଲୋପ ହେବା ନିଶ୍ଚୟ ସମୟସାପେକ୍ଷ । ପ୍ରଜାମାନେ ତ ପୂର୍ବରୁ ରାଜାମାନଙ୍କୁ ଦେଖିବାକୁ ବି ସୁଯୋଗ ପାଉନଥିଲେ, ତେଣୁ ସେମାନେ ଯେତେବେଳେ ଗାଆଁଗଣ୍ଡାରେ ବିଜେହେଲେ, ଦେଖିବାପାଇଁ ଲୋକ କାହିଁକି ବା ନ ଦୌଡ଼ିବେ ? ମୋତେ ବଲାଙ୍ଗୀରର ବହୁତ ଲୋକ କହିଛନ୍ତି ଯେ ପୂର୍ବେ ବଲାଙ୍ଗୀର ମହାରାଜାଙ୍କ ରାଜତ୍ୱ ସମୟରେ ଯେଉଁମାନେ ତାଙ୍କୁ ଦେଖାକରିବାପାଇଁ ଯାଉଥିଲେ, ସେମାନେ ଗୋଟିଏ କାଚ ପର୍ଦ୍ଦାର ଅନ୍ୟପଟେ ରହି ଶ୍ରୀଛାମୁଙ୍କ ଦର୍ଶନ ଲାଭକରୁଥିଲେ । ସେହି କାଚ ପ୍ରାଚୀର ତଳେ ଗୋଟିଏ ଫାଙ୍କ ଥାଏ, କଥାବାର୍ତ୍ତା ହେଲେ ସେହି ବାଟେ ଶୁଣାଯାଏ । ବଲାଙ୍ଗୀର ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ମଧ୍ୟ ଏହିପରି ଦର୍ଶନ ଦେଉଥିଲେ ବୋଲି ପ୍ରତ୍ୟକ୍ଷ ଅନୁଭବୀ ମୋତେ କହିଛନ୍ତି ।

## ମୁକୁନ୍ଦପୁର ମହାରାଜା

ରାଜାମାନଙ୍କର ରାଜନୈତିକ ପ୍ରଚାର ଓ ସଭାସମିତି ସମ୍ବନ୍ଧରେ ମୋର ଯେଉଁ ପ୍ରତ୍ୟକ୍ଷ ଅନୁଭୂତି ଅଛି ସେଥିରୁ କେତୋଟି କଥା ଏଠାରେ ଲେଖୁଛି । ଆଠମଲ୍ଲିକ ନିର୍ବାଚନମଣ୍ଡଳୀରେ ଥରେ ଗୋଟିଏ ଉପନିର୍ବାଚନ ହେଉଥାଏ । ସେତେବେଳେ ରାଜ୍ୟରେ ଯେଉଁଠି ଉପନିର୍ବାଚନ ହେଉଥିଲା, ସେଠାରେ ମୋତେ କାର୍ଯ୍ୟ କରିବାପାଇଁ ଯୋଗ୍ୟ ମନେକରି କଂଗ୍ରେସ ପକ୍ଷରୁ ପଠାଯାଉଥିଲା । ମୁଁ ମଧ୍ୟ ଉତ୍ସାହରେ ନିର୍ବାଚନ କାର୍ଯ୍ୟ କରୁଥିଲି । ଯୋଗକୁ ସେଥର ଆମର କଂଗ୍ରେସ ପ୍ରାର୍ଥୀ ଥିଲେ ନିଜେ

ଆଠମଲ୍ଲିକର ରାଜା ଶ୍ରୀ କିଶୋର ଚନ୍ଦ୍ର ଦେଓ । ଗଣତନ୍ତ୍ର ପରିଷଦ ପକ୍ଷରୁ ଜଣେ ପ୍ରାର୍ଥୀଙ୍କୁ ମଧ ଠିଆ କରାଯାଇଥିଲା । ତାଙ୍କପାଇଁ ବଲାଙ୍ଗୀର ମହାରାଜା, କଳାହାଣ୍ଡି ମହାରାଜା, ମୟୂରଭଞ୍ଜ ମହାରାଜାଙ୍କ ଭାଇ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଭଞ୍ଜ ପ୍ରଭୃତି ଆହୁରି କେତେକ ରାଜା ପ୍ରଚାର କରୁଥାଆନ୍ତି । ପୂର୍ବତନ ଗଡ଼ଜାତ ଅଞ୍ଚଳରେ କୌଣସି ସଭାରେ ରାଜା-ମହାରାଜାଙ୍କର ଭାଷଣ ଦେବାର କଥା ହେଲେ ଲୋକ ସୁଅଭଳି ଛୁଟନ୍ତି; କିନ୍ତୁ କଂଗ୍ରେସ ହେଉ ବା ଗଣତନ୍ତ୍ର ପରିଷଦ ହେଉ, କୌଣସି ଦଳର କୌଣସି ନେତାଙ୍କ ଭାଷଣ ଶୁଣିବାକୁ ସେମାନେ ଆଗ୍ରହୀ ହୁଅନ୍ତି ନାହିଁ । ମୁଁ ମନ୍ତ୍ରୀ ଥିଲେ ମଧ ମୋ ସଭାର ଅବସ୍ଥା ସେହିଭଳି ହେଉଥାଏ । ରାଜାଙ୍କ ସଭାକୁ ନଯାଇ ମନ୍ତ୍ରୀଙ୍କ ସଭାକୁ ବା ଲୋକ କାହିଁକି ଯିବେ ? ତେଣୁ ଦିନେ ମୁଁ ଗୋଟିଏ ଉପାୟ ବାହାରକଲି । ଗୋଟିଏ ସ୍ଥାନରେ ଆମର ସଭା ହେବାର ଥିଲା । ଆମର କର୍ମୀମାନଙ୍କୁ ଶିଖାଇଦେଲି ଯେ ସେମାନେ ସେଦିନର ସଭାରେ 'ମୁକୁନ୍ଦପୁର ମହାରାଜା' ଭାଷଣ ଦେବେ ବୋଲି ଆଗରୁ ପ୍ରଚାର କରିବେ । ଆମ ଗାଆଁଟିର ନାମ ମୁକୁନ୍ଦପୁର । ସେଥିରେ କିଛି ଅସତ୍ୟ ନଥିଲା, ଖାଲି ତା' ସାଙ୍ଗକୁ ମହାରାଜା ଶବ୍ଦଟି ଯୋଡ଼ାହେଲା ଲୋକମାନଙ୍କୁ ଆକୃଷ୍ଟ କରିବାପାଇଁ । ସଭା ଆରମ୍ଭ ହେଲା । ସଭାରେ ବହୁ ଲୋକଙ୍କର ସମାବେଶ ହୋଇଥିଲା । ଗୋଟିଏ ଲମ୍ବା ଚାଦର କାନ୍ଧରେ ଝୁଲାଇ ମୁଁ ସଭାମଞ୍ଚକୁ ଉଠିଥିଲି ଗୋଟିଏ ଅଭିଜାତ ଠାଣିରେ, କାହିଁକି ନା ମୟୂରଭଞ୍ଜର ଲାଲସାହେବ ଶ୍ରୀ ପ୍ରଫୁଲ୍ଲ ଭଞ୍ଜଦେଓ ଗୋଟିଏ ଲମ୍ବା ଚାଦର ବ୍ୟବହାର କରୁଥିବାର ମୁଁ ଦେଖିଥିଲି । 'ମୁକୁନ୍ଦପୁର ମହାରାଜା'ଙ୍କ ଭାଷଣ ଶୁଣିବାପାଇଁ ସେଠାରେ ଭଲ କଂଗ୍ରେସ ସଭାଟିଏ ହୋଇଗଲା ।

## ଛାମୁଙ୍କୁ ଅପମାନ

ରାଜାମାନେ କିପରି ପ୍ରଚାର କରନ୍ତି ବର୍ତ୍ତମାନ ସେ ବିଷୟରେ ଗୋଟିଏ କଥା କହୁଛି । ଆମର ପ୍ରାର୍ଥୀ ଆଠମଲ୍ଲିକ ରାଜାସାହେବ ଥରେ ରାତି ଦଶଟାବେଳେ ସଭା କରିବାପାଇଁ ଗୋଟିଏ ଗାଆଁରେ ପହଞ୍ଚିଲେ । ମୁଁ ତାଙ୍କ ସାଙ୍ଗରେ ଥାଏ । ସଭାରେ ବହୁଲୋକ ସମାବେଶ ହୋଇଥାଏ । ରାଜାଙ୍କ ସହ ପଞ୍ଚାୟତ ସାହେବ ମଧ ସଭାକୁ ଯାଇଥିଲେ । ସଭା ଆରମ୍ଭ ହେବା କ୍ଷଣି ଜଣେ ଲୋକ ଠିଆହୋଇ ପଚାରିଲା, ''ଛାମୁ ! ଭୋଟ ଦେଲେ ଆମ୍ଭମାନଙ୍କର କ'ଣ ଲାଭ ହେବ ?'' ଏ କଥା ଶୁଣିବାମାତ୍ରେ ପଞ୍ଚାୟତ ସାହେବ ହଠାତ୍ ରାଗିଯାଇ ରାଜାଙ୍କୁ ଶୀଘ୍ର ସେ ସ୍ଥାନ ଛାଡ଼ି ଚାଲିଯିବାପାଇଁ ଅନୁରୋଧ କରିଥିଲେ । ସାଧାରଣ ଲୋକଟାଏ ଏପରି ପଚାରିବାଟା ରାଜାଙ୍କୁ ଅପମାନ ବୋଲି ସେ କହିଥିଲେ । ରାଜା ଉଠିବାକୁ ଆରମ୍ଭକଲେ । ମୁଁ ବଡ଼ ଅପ୍ରତିଭ ହୋଇପଡ଼ିଥିଲି । ମୁଁ କଥାଟାକୁ ସମ୍ଭାଳିନେବା ପାଇଁ ଉଦ୍ୟମ କରୁଥାଏ ; କିନ୍ତୁ ପଞ୍ଚାୟତ ଚିତ୍କାର କରି କହୁଥା'ନ୍ତି, ଏଭଳି ଅଭଦ୍ର ସ୍ଥାନରେ ଛାମୁଙ୍କର ଦଣ୍ଡେ ରହିବା ଉଚିତ୍‌ନୁହେଁ । ସଭାସ୍ଥଳରେ ଯେତେ ଲୋକ ଥିଲେ ସମସ୍ତେ ରାଜାଙ୍କର ଗୋଡ଼ତଳେ ପଡ଼ିଗଲେ ଓ ସେ ଲୋକକୁ ତିରସ୍କାର କରିବାକୁ ଲାଗିଲେ । ସେ ଲୋକ ମଧ ଗୋଡ଼ ତଳେ ପଡ଼ିଥାଏ । ତା'ପରେ ରାଜା ଶାନ୍ତହେଲେ । ମୁଁ କିଛି କହିଥିଲି, ରାଜା ମଧ କିଛି କହିଲେ । ଅଧଘଣ୍ଟାଏ ଭିତରେ ସଭାକାର୍ଯ୍ୟ ସମାପ୍ତ ହୋଇଥିଲା ।

ଏଭଳି ଅନେକ ଘଟଣା ଉଲ୍ଲେଖ କରିବାର ତାତ୍ପର୍ଯ୍ୟ ହେଉଛି ଯେ ରାଜୁଡ଼ା, ସାମନ୍ତବାଦୀ, ପୁଞ୍ଜିବାଦୀ ଓ ବୁର୍ଜୁଆ ମନୋବୃତ୍ତି କେବଳ ରାଜା, ଜମିଦାର, ଉଚ୍ଚଜାତି, ପୁଞ୍ଜିପତି ଓ ବୁର୍ଜୁଆଙ୍କ ଜନ୍ମଗତ ବା ଅଭ୍ୟାସଗତ ଗୁଣ ନୁହେଁ; ଖଟିଖିଆ, ଗରିବ, ଶିକ୍ଷିତ, ବୁଦ୍ଧିଜୀବୀ ଏଭଳି ଲୋକେ ମଧ ପରିସ୍ଥିତିର ପ୍ରଭାବରେ ସାମନ୍ତବାଦ ଓ ପୁଞ୍ଜିବାଦର ପୂଜାରୀ ହୋଇପାରନ୍ତି, ତେଣୁ ପ୍ରଗତି ପ୍ରତିହତ ହୁଏ । ଦେଶକୁ ସ୍ୱାଧୀନ କରିବାପାଇଁ ସଂଗ୍ରାମ ଯେତିକି କଷ୍ଟସାଧ, ଅଜ୍ଞତାର ଅନ୍ଧକାରରୁ ମୁକ୍ତ କରି ଏକ ସ୍ୱାଧୀନଚେତା ସମାଜ ଗଢ଼ିତୋଳିବା ତତୋଽଧିକ କଷ୍ଟସାଧ ।

# ଉପକୂଳ ଅଞ୍ଚଳର ରାଜନୈତିକ ଚିତ୍ର

ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ସମାଜବାଦୀ ଓ କମ୍ୟୁନିଷ୍ଟ ଦଳମାନେ କଂଗ୍ରେସ ସହ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ । ତା'ଛଡ଼ା ପୁରୀ ଜିଲ୍ଲାରେ ଦୁଇଜଣ ବିଶିଷ୍ଟ ନେତା ପଣ୍ଡିତ ନୀଳକଣ୍ଠ ଦାସ ଓ ପଣ୍ଡିତ ଗୋଦାବରୀଶ ମିଶ୍ର କଂଗ୍ରେସ ବିରୁଦ୍ଧରେ ପ୍ରତିଦ୍ୱନ୍ଦ୍ୱିତା କରି କଂଗ୍ରେସକୁ ଦୁର୍ବଳ କରାଇପାରିଥିଲେ । ପଣ୍ଡିତ ନୀଳକଣ୍ଠ ଦାସ 'ସ୍ୱାଧୀନ ଜନସଂଘ' ନାମରେ ଗୋଟିଏ ଦଳ ଗଢ଼ି ନିଜେ ସତ୍ୟବାଦୀ ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହୋଇ ବହୁ ଅଧିକ ଭୋଟ ପାଇ ଜୟଯୁକ୍ତ ହୋଇଥିଲେ । ସେହିଭଳି ପଣ୍ଡିତ ଗୋଦାବରୀଶ ମିଶ୍ର ବାଣପୁର ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହୋଇ କଂଗ୍ରେସକୁ ପରାଜିତ କରିଥିଲେ । ସମାଜବାଦୀ ଦଳ ମୟୂରଭଞ୍ଜ, ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲାରେ ବହୁ ପ୍ରାର୍ଥୀ ଠିଆ କରାଇଥିଲେ । ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ କଟକ ଜିଲ୍ଲା ବଡ଼ଚଣା ନିର୍ବାଚନମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ହୋଇଥିଲେ । ତାଙ୍କ ବିରୁଦ୍ଧରେ ଡକ୍ଟର ଜଗନ୍ନାଥ ଦାସ ଥିଲେ ସାମଜବାଦୀ ଦଳର ପ୍ରାର୍ଥୀ । ନବବାବୁଙ୍କ ମନ୍ତ୍ରିମଣ୍ଡଳବେଳେ ଛାତ୍ର ଆନ୍ଦୋଳନ ସମୟରୁ ଅନେକ ଛାତ୍ରଙ୍କର ତାଙ୍କ ଉପରେ ଅସନ୍ତୋଷ ଥିଲା । ସମାଜବାଦୀ ଦଳ ଏଭଳି ସବୁ ଛାତ୍ରଙ୍କୁ ବଡ଼ଚଣାରେ ପହଞ୍ଚାଇ ନବବାବୁଙ୍କୁ ପରାସ୍ତ କରିବାପାଇଁ ବହୁ ଉଦ୍ୟମ କରିଥିଲେ । ଅନ୍ୟମାନଙ୍କ ଭିତରେ ଜଣେ ଛାତ୍ରନେତା ଥିଲେ ଶ୍ରୀ ଗୋବିନ୍ଦ ଚନ୍ଦ୍ର ଦାସ । ପରେ ସେ ରାଜ୍ୟ ସରକାରଙ୍କ ଆଡ୍‌ଭୋକେଟ୍ ଜେନେରାଲ୍ ହୋଇଥିଲେ । ନିର୍ବାଚନ ପୂର୍ବର ଦିନକର ଘଟଣା । ମୁଖ୍ୟମନ୍ତ୍ରୀଙ୍କପାଇଁ ବାରବାଟୀ କିଲ୍ଲା ମଧ୍ୟରେ ଥିବା ସରକାରୀ ବାସଭବନରେ ନବବାବୁ ରହୁଥାନ୍ତି । ଗୋବିନ୍ଦ ଦାସଙ୍କ ନେତୃତ୍ୱରେ କେତେକ ଛାତ୍ର ସେଠାରେ ଯାଇ ପହଞ୍ଚି ତାଙ୍କ ବାସଭବନ ଭିତରେ ପ୍ରବେଶ କରିବାପାଇଁ ଉଦ୍ୟମ କଲେ । ପହରା ଦେଉଥିବା ସଶସ୍ତ୍ର ପୁଲିସ ଛାତ୍ରମାନଙ୍କୁ ଅଟକାଇଥିଲେ । ଠିକ୍ ସେହି ସମୟରେ ମୁଁ ଯାଇ ପହଞ୍ଚିଲି । ମୁଁ ସେମାନଙ୍କୁ କେତେକ କଥା ବୁଝାଇଲି । ସେମାନେ ବି ମୋ ସହିତ ବହୁତ ଯୁକ୍ତିତର୍କ କଲେ । ସେମାନଙ୍କୁ ପୁଲିସ ଅଟକାଇବା ପୁଲିସର ଆପତ୍ତିଜନକ ବ୍ୟବହାର ବୋଲି କହିଥିଲେ । ମୁଖ୍ୟମନ୍ତ୍ରୀଙ୍କ ଘର ଆଗରେ ପହରାଦେବା ଏବଂ ବିନାନୁମତିରେ କାହାକୁ ପ୍ରବେଶ କରାଇନଦେବା ପୁଲିସର କର୍ତ୍ତବ୍ୟ, ତେଣୁ ପୁଲିସର କାର୍ଯ୍ୟକୁ ଅପମାନଜନକ ବୋଲି ମନେକରିବା ଠିକ୍ ହେବନାହିଁ ବୋଲି ମୁଁ ବୁଝାଇଥିଲି । କିନ୍ତୁ ସେମାନଙ୍କର ଯୁକ୍ତି ଥିଲା ଯେ ଗୋଟିଏ ଗଣତାନ୍ତ୍ରିକ ଦେଶରେ ଜଣେ ନିର୍ବାଚିତ ମୁଖ୍ୟମନ୍ତ୍ରୀ ପୁଲିସ ଗହଣରେ ରହିବା ଉଚିତନୁହେଁ, ତେଣୁ ନବବାବୁଙ୍କ ଉପରେ ସେମାନେ ଅସନ୍ତୁଷ୍ଟ ଥିଲେ । ନିର୍ବାଚନର ସୁଯୋଗ ନେଇ ନବବାବୁଙ୍କୁ ହରାଇବାପାଇଁ ସମାଜବାଦୀମାନେ ବଡ଼ ତତ୍ପର ହୋଇଥିଲେ ମଧ୍ୟ ନବବାବୁ ବହୁ ଅଧିକ ଭୋଟ ପାଇ ଜୟଯୁକ୍ତ ହୋଇଥିଲେ । ନବବାବୁଙ୍କ ବିଜୟପାଇଁ ସ୍ୱର୍ଗତ ଧନଞ୍ଜୟ ଲେଙ୍କା, ଶ୍ରୀ ମାନଗୋବିନ୍ଦ ସାମଲ, ଶ୍ରୀ ଶଶିଭୂଷଣ ଦାସ ପ୍ରଭୃତି କର୍ମୀ ବହୁତ ଉଦ୍ୟମ କରିଥିଲେ ।

ପୁଲିସର କାର୍ଯ୍ୟ ସମ୍ବନ୍ଧରେ ସେତେବେଳେ ସାମ୍ୟବାଦୀ ଦଳ ଲୋକଙ୍କର ନାନାପ୍ରକାର ବିପରୀତ ଧାରଣା ଥିବା ପରି ମୋର ମନେହେଉଛି । ଏହି ସମ୍ବନ୍ଧରେ ମୋର କେତୋଟି କଥା ମନେପଡ଼େ । କେରଳ ରାଜ୍ୟରେ ଶ୍ରୀ ଥାନୁ ପିଲାଇଙ୍କ ନେତୃତ୍ୱରେ ପ୍ରଥମ ଥର ପାଇଁ ଭାରତବର୍ଷରେ ସମାଜବାଦୀ ଦଳର ମନ୍ତ୍ରିମଣ୍ଡଳ ଗଠନ କରାଯାଇଥିଲା । କୌଣସି ଏକ ସ୍ଥାନରେ ଆଇନ ଶୃଙ୍ଖଳାରେ ଗୁରୁତର ବ୍ୟାଘାତ ଘଟିବାରୁ ପୁଲିସକୁ ଗୁଳିଚାଳନା କରିବାକୁ ପଡ଼ିଥିଲା । ଜଣେ ଲୋକ ପ୍ରାଣ ହରାଇଲା । ତା'ପରେ ଭାରତୀୟ ସମାଜବାଦୀ ଦଳ କାର୍ଯ୍ୟକାରୀ କମିଟିର ବୈଠକ ବସିଲା । ଗୋଟିଏ ସମାଜବାଦୀ ସରକାର କ୍ଷମତାରେ ଥାଉ ଥାଉ ଗୁଳିଚାଲିବାଟା ଅନ୍ୟାୟ ବୋଲି ଘୋଷଣା କରି କେରଳ ସରକାରର ନିନ୍ଦାବାଦ କରାଯାଇଥିଲା । ଶେଷରେ ଥାନୁ ପିଲାଇଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାକୁ ପଡ଼ିଥିଲା । ପରବର୍ତ୍ତୀ କାଳରେ ଶ୍ରୀ ପିଲାଇ ରାଜ୍ୟପାଳ ଥିଲାବେଳେ ତାଙ୍କ ସହିତ

ମୋର ଦେଖାହୋଇଥିଲା । ସେ ମୋତେ ତାଙ୍କର ସାମ୍ୟବାଦୀ ବନ୍ଧୁମାନଙ୍କର ଏହି ବିକୃତ ଚିନ୍ତା ବିଷୟ କହି ସେମାନଙ୍କ କଥାରେ ଶାସନ ପରିଚାଳନା କରିବା ଅସମ୍ଭବ ବୋଲି ମତ ବ୍ୟକ୍ତ କରିଥିଲେ । ଏହି ପ୍ରସଙ୍ଗରେ ଆମ ଏଠାକାର ପୂର୍ବତନ ସାମ୍ୟବାଦୀ ନେତା ଏବଂ ବର୍ତ୍ତମାନ ଜନତା ଦଳର ନେତା ମୋର ବନ୍ଧୁ ଶ୍ରୀ ବିଶ୍ୱନାଥ ପଣ୍ଡିତଙ୍କ କଥା ମନେପଡ଼େ । ମୁଁ ମୁଖ୍ୟମନ୍ତ୍ରୀ ଥିଲାବେଳେ ସେ ଥିଲେ ଜନତା ଦଳ ରାଜ୍ୟ ଶାଖାର ସଭାପତି । ଦୁହେଁ ସାଙ୍ଗହୋଇ କୌଣସି ଗୋଟିଏ ସରକାରୀ କାର୍ଯ୍ୟରେ ପୁରୀ ଯାଇଥିଲୁ । ମୁଁ ଯାଉଥିବାରୁ ସରକାରୀ ବିଧି ଅନୁଯାୟୀ ମୋତେ ଅଭିବାଦନ ଜଣାଇବାପାଇଁ ସଶସ୍ତ୍ର ପୁଲିସ ବାହିନୀ ସର୍କିଟ୍ ହାଉସ ସାମ୍ନାରେ ଠିଆହୋଇରହିଥା'ନ୍ତି । ସେମାନଙ୍କର ଅଭିବାଦନ ଗ୍ରହଣ କରିବାପାଇଁ ମୁଁ ଯେତେବେଳେ ଗାଡ଼ି ଦୁଆର ଖୋଲି ବାହାରେ, ବିଶ୍ୱନାଥବାବୁ ମୋତେ ଟାଣିଧରିଲେ । ପୁଲିସମାନଙ୍କଠାରୁ ଏ ପ୍ରକାର ଅଭିବାଦନ ନିଆଯିବନାହିଁ ବୋଲି କୁଆଡ଼େ ସ୍ଥିରହୋଇଥିଲା ବୋଲି ସେ ମୋତେ କହିଲେ । ମୁଁ ତାଙ୍କ କଥା ଶୁଣି ଆଶ୍ଚର୍ଯ୍ୟ ହୋଇଥିଲି । ତାଙ୍କୁ ବୁଝାଇ କହିଥିଲି ଯେ ଏ ଅବସ୍ଥାରେ ପୁଲିସବାହିନୀଠାରୁ ଅଭିନନ୍ଦନ ଗ୍ରହଣ କରିବାକୁ ମନାକରିଦେବାର ଅର୍ଥ ହେବ ସେମାନଙ୍କ ପ୍ରତି ଅପମାନଜନକ ଏବଂ ହତାଦର । ତେଣୁ ତାଙ୍କ କଥା ନଶୁଣି ମୁଁ ଯାଇ ପୁଲିସଙ୍କ ଅଭିବାଦନ ଗ୍ରହଣ କରିଥିଲି ।

ମୁଁ ପୂର୍ବରୁ କହିଛି ଯେ ଧାମନଗର ନିର୍ବାଚନମଣ୍ଡଳୀର ମୁଁ କଂଗ୍ରେସ ପ୍ରାର୍ଥୀ ହୋଇଥିଲି । ସାମ୍ୟବାଦୀ ଦଳ ପକ୍ଷରୁ ଶ୍ରୀ ବୈଷ୍ଣବ ଚରଣ ନାୟକ ମୋ ବିରୁଦ୍ଧରେ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ, ଆଉ ଜଣେ ସ୍ୱାଧୀନ ପ୍ରାର୍ଥୀ ମଧ୍ୟ ଥିଲେ । ସେତେବେଳେ ରାସ୍ତାଘାଟର ସୁବିଧା କିଛି ନଥିଲା, ତେଣୁ ପ୍ରଚାର କାର୍ଯ୍ୟ କରିବା ଆଦୌ ସହଜ ନଥିଲା । ଆଜିକାଲି ଯେଉଁଭଳି ଗୋଟିଏ ଗୋଟିଏ ବିଧାନସଭା ନିର୍ବାଚନମଣ୍ଡଳୀ ଭିତରେ ପ୍ରାୟ ଶହେ ଯାଏଁ ଭୋଟକେନ୍ଦ୍ର ଖୋଲାଯାଇଛି, ସେତେବେଳେ ସେପରି ନ ଥିଲା । ଗୋଟିଏ ଗୋଟିଏ ନିର୍ବାଚନମଣ୍ଡଳୀରେ ସେତେବେଳେ ତିନି ଚାରୋଟି ମାତ୍ର ଭୋଟକେନ୍ଦ୍ର ମାତ୍ର ଖୋଲୁଥିଲା ଏବଂ ଭୋଟ ଏକା ଦିନକରେ ନସରି ତିନି ଚାରିଦିନରେ ସରୁଥିଲା । ଗୋଟିଏ ଭୋଟକେନ୍ଦ୍ର ଅଧୀନରେ ଥିବା ଗାଆଁଗୁଡ଼ିକୁ କେତୋଟି ଗ୍ରୁପ୍‌ରେ ବିଭକ୍ତ କରାହୋଇଥାଏ । ଯେଉଁ ଗ୍ରୁପ୍‌ପାଇଁ ଯେଉଁଦିନ ଧାର୍ଯ୍ୟ ହୋଇଥାଏ ସେଇ ଗ୍ରୁପ୍ ସେଦିନ ଆସି ସେଠାରେ ଭୋଟ ଦେଉଥିଲେ । ପ୍ରତ୍ୟେକ ପ୍ରାର୍ଥୀଙ୍କପାଇଁ ଅଲଗା ଅଲଗା ଭୋଟ ବାକ୍ସ ରଖାଯାଇଥାଏ । ବାକ୍ସ ଉପରେ ସେହି ପ୍ରାର୍ଥୀଙ୍କ ନିର୍ବାଚନ ସଙ୍କେତ ମରାହୁଏ । ଭୋଟ କାଗଜ ଖଣ୍ଡେ ଖଣ୍ଡେ ମିଳେ । ଯାହାର ଯେଉଁ ପ୍ରାର୍ଥୀଙ୍କୁ ଭୋଟ ଦେବାର ଇଚ୍ଛା ସେ ସେହି ପ୍ରାର୍ଥୀଙ୍କ ବାକ୍ସରେ ଭୋଟକାଗଜ ପକାଏ । ଆଜିକାଲି ପରି ତଫସିଲଭୁକ୍ତ ଜାତିଙ୍କପାଇଁ ପୃଥକ ନିର୍ବାଚନମଣ୍ଡଳୀ ନଥିଲା । ସେମାନଙ୍କ ପ୍ରତିନିଧି ନିର୍ବାଚନପାଇଁ କେତେକ ଯୁଗ୍ମ ନିର୍ବାଚନମଣ୍ଡଳୀ ଥିଲା । ଯୁଗ୍ମ ନିର୍ବାଚନମଣ୍ଡଳୀରେ ଦୁଇ ପୃଥକ ରଙ୍ଗର ଦୁଇଟି ଭୋଟ କାଗଜ ମିଳେ ଏବଂ ହରିଜନ ପ୍ରାର୍ଥୀଙ୍କ ନିର୍ବାଚନ ସଙ୍କେତ ଚାରିପାଖରେ ଗୋଟିଏ ବୃତ୍ତ ଚିହ୍ନ ଥାଏ । ମୋ ନିର୍ବାଚନମଣ୍ଡଳୀରେ ନିର୍ବାଚନ ପ୍ରଚାର କାର୍ଯ୍ୟ କରିବାପାଇଁ ମୁଁ ଦିନେ ଧାମନଗରଠାରୁ ବାହାରିଲି । ମୋ ସହିତ ଥାଆନ୍ତି ସର୍ବଶ୍ରୀ ମୁରଲୀଧର ଜେନା, ସାଗର ଭୂୟାଁ, ବାବାଜିଚରଣ ନାୟକ, ମୁରଲୀଧର ପଣ୍ଡା, ଉମାକାନ୍ତ ପଣ୍ଡା, ପୂର୍ଣ୍ଣ ନାୟକ ଓ ବାମନ ଚରଣ ପଣ୍ଡା ପ୍ରଭୃତି କର୍ମୀ । ଜଣେ ଭାରିଆ ଆମର ବିଛଣାପତ୍ର ଧରି ଚାଲିଥାଏ । ଧାମନଗରଠାରୁ ବାହାରି ଦୋବଲ ଦେଇ ଆନନ୍ଦପୁର, ଷେଣ୍ଡପୁର, କଣ୍ଟାପାରି, ମିଶ୍ରପୁର, ଫଳପୁର, ଅର୍ଜୁନପୁର, ଅସ୍ତକ, ଧୁଷୁରୀ, ବେତାଳୀଗାଁ, ସୁନ୍ଦରପୁର, ଖଡ଼ିମାହାରା, କାଶୀମପୁର, ଲୁଣିଆ, କଟସାହି, କୋଠର, କଲ୍ୟାଣୀ, ଚୂଡ଼ାକୁଟି, ଧାମନଗର ଦେଇ ସାତ ଆଠ ଦିନ ଭିତରେ ଜଗନ୍ନାଥ ସଡ଼କ ଧରିଲୁ । ବାଟରେ ବିଭିନ୍ନ ସ୍ଥାନରେ ରହି ସଭାସମିତି କରି ଖରାବେଳେ ଓ ରାତିରେ ବିଶ୍ରାମ ନେଇ ପୁଣି ତା' ପରଦିନ ପ୍ରଚାର କାର୍ଯ୍ୟରେ ବାହାରୁଥିଲୁ । ଲୋକେ ମାଇକ୍ ପ୍ରଚାର ଶୁଣିବାରେ ସେତେ ଅଭ୍ୟସ୍ତ ନଥିଲେ । ଦିନେ ବହୁତ ଆଡ଼େ ବୁଲାବୁଲି କରି

ତିଆଡ଼ିସାଇ ବୋଲି ଗୋଟେ ଜାଗାରେ ରହିବାପାଇଁ ଯାଇଥିଲୁ । ଆମେ ସେଠାରେ ପହଞ୍ଚିଲା ବେଳକୁ ବେଶି ରାତି ହୋଇଗଲା । କୃଷ୍ଣପକ୍ଷ ରାତି, ସେ ଗାଆଁର ଚାରିପାଖେ ବହୁତ ନାଳ ଓ ତା' ଭିତରେ କୁଆରିଆ ପାଣି ପଶିଥାଏ । ସ୍ଥାନେ ସ୍ଥାନେ ବାଉଁଶ ଧାରଣା ଉପରେ ଯିବାପାଇଁ ଅସ୍ଥାୟୀ ପୋଲ ହୋଇଥାଏ । ଅନ୍ଧାର ରାତିରେ ପୋଲ ଖୋଜିବାକୁ ଟିକିଏ କଷ୍ଟ ହୋଇଥିଲା । ଶ୍ରୀ ଧାଗର ଭୂୟାଁଙ୍କ ପାଖରେ ଯେଉଁ ହାତମାଇକ୍ ଥିଲା ସେଥିରେ ସେ ହୁରିପକାଇ ଡାକିଲେ । ଦଶ ପନ୍ଦର ମିନିଟ୍‌କାଳ ସେ ଡାକିଲେ ବି କେହି ଜବାବ ଦେଲେନାହିଁ କି ଆସିଲେନାହିଁ । ତା'ପରେ ବହୁତ କଷ୍ଟରେ ଆମେ ପୋଲଟି ପାଇଲୁ । ଗାଆଁ ଭିତରକୁ ଯାଇ ଏତେ ଡାକିବାସତ୍ତ୍ୱେ କାହିଁକି କେହି ଶୁଣୁନାହାନ୍ତି ବୋଲି ପଚାରିବାରୁ ସେ ଗ୍ରାମର ଲୋକ କହିଲେ, "ଆଜ୍ଞା ! ଯେଉଁଳି ଘଁ ଘଁ ଶୁଭିଲା, ଆମେ ଭାବିଲୁ ବ୍ରହ୍ମରାକ୍ଷସ ଆସି ଡାକୁଛି । ତେଣୁ କବାଟ ବନ୍ଧା ଦେଇ ବସିଛୁ ।" ଅବଶ୍ୟ ନିର୍ବାଚନ ଶେଷ ଆଡ଼କୁ ଭଦ୍ରକ ସବ୍‌ଡ଼ିଭିଜନ୍‌ରେ ନିର୍ବାଚନ କାର୍ଯ୍ୟ ଚଳାଇବାପାଇଁ ବିଜୁବାବୁ ଗୋଟିଏ ଲ୍ୟାଣ୍ଡ ରୋଭର୍ ଗାଡ଼ି ଦେଇଥିଲେ । କେଉଁଠି କେମିତି ଅଳ୍ପ ପାଣି ପଡ଼ିଲେ ସେ ଗାଡ଼ି ପଶି ଚାଲିଯାଉଥିଲା । ସେହି ଗାଡ଼ିରେ କେତେଗୁଡ଼ିଏ ନାଳ ପାରିହୋଇ ମୁଁ ଯେତେବେଳେ ଧୁଷୁରୀ ପାଖରେ ପହଞ୍ଚେ, ଗାଡ଼ି ଦେଖିବାପାଇଁ ପ୍ରାୟ ହଜାରେ ଲୋକ ଠୁଳ ହୋଇଯାଇଥିଲେ । ମୋ ସହିତ ମୋ ସ୍ତ୍ରୀ ନଳିନୀ ସେହି ଗାଡ଼ିରେ ନିର୍ବାଚନ କାର୍ଯ୍ୟ ଉପଲକ୍ଷେ ଯାଇଥିଲା ଓ ଅସ୍ତକରେ ଶ୍ରୀ ମୁରଲୀ ଜେନାଙ୍କ ଘରେ ରହିଥିଲା । ସେଠାରେ ବହୁ ସ୍ତ୍ରୀଲୋକଙ୍କ ସାଙ୍ଗେ ମିଶି ସେ ପ୍ରଚାର କାର୍ଯ୍ୟ କରିଥିଲା । ନିର୍ବାଚନରେ ମୁଁ ଜୟଯୁକ୍ତ ହୋଇଥିଲି ।

ଏହି ସମୟରେ ମୋତେ ଚାନ୍ଦବାଲି ନିର୍ବାଚନମଣ୍ଡଳୀରେ ଶ୍ରୀ ଚକ୍ରଧର ବେହେରାଙ୍କପାଇଁ କିଛିଦିନ ବୁଲାବୁଲି କରିବାକୁ ପଡ଼ିଥିଲା । ସେଠି ମୁଁ ଗୋଟିଏ ବଡ଼ ଅସୁବିଧାଜନକ ପରିସ୍ଥିତିର ସମ୍ମୁଖୀନ ହୋଇଥିଲି । ମୋର ଭାଣିଜୀଜୋଇଁ ଶ୍ରୀ ରବିନାରାୟଣ ଜେନା ସ୍ୱାଧୀନ ପ୍ରାର୍ଥୀରୂପେ ସେହି ନିର୍ବାଚନମଣ୍ଡଳୀରେ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ ଏବଂ ଆମ ଘରେ ସେ ତାଙ୍କର ଅଫିସ୍ ଖୋଲିଦେଇଥିଲେ । ମୁଁ ଘରକୁ ନଯାଇ ତିହିଡ଼ିଠାରେ ଡାକବଙ୍ଗଳାରେ ରହି କଂଗ୍ରେସ ପ୍ରାର୍ଥୀ ଶ୍ରୀ ବେହେରାଙ୍କପାଇଁ କାମ କରିଥିଲି । ମୋ ଜୀବନରେ ମୁଁ କେବେ ନିଜ ଦଳ ପ୍ରାର୍ଥୀ ବିରୁଦ୍ଧରେ କାର୍ଯ୍ୟ କରିନାହିଁ । ପ୍ରାର୍ଥୀ ମନୋନୟନ ପର୍ଯ୍ୟନ୍ତ ବିରୁଦ୍ଧମତ ପ୍ରକାଶ କରିପାରିଥାଏଁ, ମାତ୍ର ଥରେ ଦଳୀୟ ପ୍ରାର୍ଥୀରୂପେ ଜଣେ ଘୋଷିତ ହେଲେ ତା' ବିରୁଦ୍ଧରେ କେବେ କାର୍ଯ୍ୟ କରିନାହିଁ । କିନ୍ତୁ ବହୁ ନେତୃସ୍ଥାନୀୟ ଲୋକ ଦଳୀୟ ପ୍ରାର୍ଥୀ ଠିଆକରାଇ ତାଙ୍କୁ ହରାଇବାପାଇଁ ଉଦ୍ୟମ କରିଥିବାର ବହୁ କଥା ମୁଁ ଜାଣିଛି । ଏହି ନିର୍ବାଚନରେ ଶ୍ରୀ ମଦନମୋହନ ପଟ୍ଟନାୟକଙ୍କ ନିର୍ବାଚନମଣ୍ଡଳୀରେ ଏହି ପ୍ରକାର ଅନ୍ତର୍ଘାତୀ କାର୍ଯ୍ୟ ହୋଇଥିବାର ମୁଁ ଜାଣିଛି । ଶ୍ରୀ ଚକ୍ରଧର ବେହେରା ଜୟଯୁକ୍ତ ହୋଇଥିଲେ । ବାଲେଶ୍ୱର ଜିଲ୍ଲାର ବାରଟି ସ୍ଥାନରୁ କଂଗ୍ରେସ ଏଗାରଟି ସ୍ଥାନରେ ଜୟଯୁକ୍ତ ହୋଇଥିଲା । କେବଳ ଭୋଗରାଇରୁ ଶ୍ରୀ ଲକ୍ଷ୍ମୀକାନ୍ତ ଭଞ୍ଜ ସ୍ୱାଧୀନ ପ୍ରାର୍ଥୀ ହିସାବରେ ଜୟଯୁକ୍ତ ହୋଇଥିଲେ ।

ବିଧାନସଭାର ୧୪୦ଟି ସ୍ଥାନରୁ ଏହି ନିର୍ବାଚନରେ କଂଗ୍ରେସ ୬୮ଟି ସ୍ଥାନ ଅଧିକାର କରିଥିଲା । ତେଣୁ ବିଧାନସଭାରେ କଂଗ୍ରେସ ଦଳ ସଂପୂର୍ଣ୍ଣ ସଂଖ୍ୟାଗରିଷ୍ଠ ହୋଇପାରିଲାନାହିଁ । ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଓଡ଼ିଶାରେ ନିର୍ବାଚନ ଫଳାଫଳ କଂଗ୍ରେସ ପକ୍ଷରେ ଭଲ ହୋଇନଥିଲା । ମନ୍ତ୍ରିମଣ୍ଡଳ ଗଠନ କରିବାପାଇଁ ଖୁବ୍ କମ୍‌ରେ ୭୧ ଜଣ ସଭ୍ୟ ଆବଶ୍ୟକ । ଆମ ଦଳର ତିନୋଟି କମ୍ ପଡୁଥାଏ । ପରେ ବିଧାନସଭାର ଛ'ଜଣ ସ୍ୱାଧୀନ ସଭ୍ୟ କଂଗ୍ରେସ ଦଳରେ ଯୋଗଦେବାରୁ କଂଗ୍ରେସ ସଂଖ୍ୟାଗରିଷ୍ଠ ହୋଇ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ୧୯୫୨ ଫେବୃୟାରୀ ମାସରେ ମନ୍ତ୍ରିମଣ୍ଡଳ ଗଠନ କରିଥିଲା । ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଛଡ଼ା ସର୍ବଶ୍ରୀ ରାଧାନାଥ ରଥ, ଦୀନବନ୍ଧୁ ସାହୁ, ସଦାଶିବ ତ୍ରିପାଠୀ, କିଶୋରଚନ୍ଦ୍ର ଭଞ୍ଜଦେଓ, ସୁନାରାମ ସୋରେନ୍

ପ୍ରମୁଖ ମନ୍ତ୍ରିମଣ୍ଡଳର ସଭ୍ୟ ଥିଲେ ଏବଂ ମୋ ସହିତ ଶ୍ରୀ ଭୈରବଚନ୍ଦ୍ର ମହାନ୍ତି, ଶ୍ରୀମତୀ ବସନ୍ତ ମଞ୍ଜରୀ ଦେବୀ, ଶ୍ରୀ କୃପାନିଧି ନାୟକ, ତୀର୍ଥବାସୀ ପ୍ରଧାନ ଓ ଶ୍ରୀ ଅନୁପ ସିଂହଦେଓ ଉପମନ୍ତ୍ରୀରୂପେ ଶ୍ରୀ ଚୌଧୁରୀଙ୍କ ମନ୍ତ୍ରୀ ପରିଷଦରେ ଯୋଗଦେଇଥିଲୁ । କିଛିଦିନ ପରେ ଶ୍ରୀ ଦୀନବନ୍ଧୁ ସାହୁ ନିର୍ବାଚନ ମକଦ୍ଦମାରେ ହାରିଯିବାରୁ ଶ୍ରୀ ସତ୍ୟପ୍ରିୟ ମହାନ୍ତି ସେହି ମନ୍ତ୍ରିମଣ୍ଡଳରେ ଯୋଗଦେଲେ ।

ଏହିଠାରେ ଆଉ ଗୋଟିଏ ଘଟଣା ଉଲ୍ଲେଖ କରିବା ଉଚିତ ବୋଲି ମୁଁ ମନେକରୁଛି । ନିର୍ବାଚନ ଫଳାଫଳ ଘୋଷଣା ପରେ ଯେତେବେଳେ ମନ୍ତ୍ରିମଣ୍ଡଳ ଗଠନ ବିଷୟରେ ଆଲୋଚନା ଚାଲିଥାଏ ସେତିକିବେଳେ ଶ୍ରୀ ବିଜୁ ପଟ୍ଟନାୟକ ଶିକ୍ଷା ଓ ଅନ୍ୟ କେତେକ ବିଭାଗର ମନ୍ତ୍ରୀ ହେବାପାଇଁ ଇଚ୍ଛା ପ୍ରକାଶ କରିଥିଲେ । ଏ ପ୍ରକାର ଇଚ୍ଛା ପ୍ରକାଶ କରିବାଟା କିଛି ଅସ୍ୱାଭାବିକ ନଥିଲା । କାରଣ ସେ ଜଣେ ଅତି ଉତ୍ସାହୀ ଓ ପ୍ରଗତିଶୀଳ ସାହସୀ ଯୁବକ ଥିଲେ ଏବଂ ଶିକ୍ଷାପ୍ରସାର ଓ ଉନ୍ନୟନ କାର୍ଯ୍ୟ ସମ୍ବନ୍ଧରେ ତାଙ୍କର ଦୂରଦୃଷ୍ଟି ଓ ଆନୁଷଙ୍ଗିକ ଜ୍ଞାନ ମଧ୍ୟ ଥିଲା । ଶ୍ରୀ ଚୌଧୁରୀଙ୍କ ସହିତ ତାଙ୍କର ଖୁବ୍ ସଦ୍‌ଭାବ ଥିଲା । ମାତ୍ର ତାଙ୍କର ମନ୍ତ୍ରୀ ହେବାର ଇଚ୍ଛାଟାକୁ ଶ୍ରୀ ଚୌଧୁରୀ ପସନ୍ଦ କରୁନଥିଲେ । ସେତେବେଳେ ଶ୍ରୀ ପଟ୍ଟନାୟକ କେତେକ ଶିଳ୍ପ ସହିତ ବିଶେଷ ଭାବରେ ଜଡ଼ିତ ଥିଲେ ଏବଂ ସେ ଅବସ୍ଥାରେ ତାଙ୍କୁ ମନ୍ତ୍ରିମଣ୍ଡଳରେ ନେଲେ ସୁନ୍ଦର ଓ ସମୀଚୀନ ହେବନାହିଁ ବୋଲି ଶ୍ରୀ ଚୌଧୁରୀ ମତ ବ୍ୟକ୍ତ କରିଥିଲେ । ବିଜୁବାବୁଙ୍କର ମନ୍ତ୍ରୀହେବାର ଇଚ୍ଛା ଓ ନବବାବୁଙ୍କର ତାଙ୍କୁ ମନ୍ତ୍ରିମଣ୍ଡଳରେ ନେବା ପାଇଁ ଅନିଚ୍ଛା ବିଷୟଟି ପ୍ରଚାରିତ ହୋଇଯାଇଥିଲା । ତେଣୁ ବିଷୟଟି ଟିକିଏ ଜଟିଳ ହୋଇଯାଇଥିଲା । କିନ୍ତୁ ନବବାବୁ ଜନସମାଜରେ ରାଜନୈତିକ ସହଯୋଗୀଙ୍କ ସମ୍ମାନ ରକ୍ଷା ସଂପର୍କରେ ସଚେତନ ଥିଲେ । ବିଜୁବାବୁଙ୍କୁ ମନ୍ତ୍ରିମଣ୍ଡଳରେ ନେବାପାଇଁ ନବବାବୁଙ୍କ ଅନିଚ୍ଛାର କାରଣ ସେ ଜାଣିସାରିଥା'ନ୍ତି । ମନ୍ତ୍ରିମଣ୍ଡଳରେ ଯୋଗ ଦେବାକୁ ତାଙ୍କର ଇଚ୍ଛା ଜାଣିବାପାଇଁ ଶ୍ରୀ ଚୌଧୁରୀ ବିଜୁବାବୁଙ୍କୁ ଖଣ୍ଡିଏ ଚିଠି ଲେଖିଲେ । ତା'ର ଉତ୍ତରରେ ବିଜୁବାବୁ ଶ୍ରୀ ଚୌଧୁରୀଙ୍କୁ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ବୁଝାଇ ଲେଖିଥିଲେ ଯେ ସେତେବେଳକାର ପରିସ୍ଥିତିରେ ସେ ମନ୍ତ୍ରିମଣ୍ଡଳରେ ଯୋଗଦେବାକୁ ଇଚ୍ଛା କରୁନାହାନ୍ତି । ଏହାଦ୍ୱାରା ଦୁଇଟି କାର୍ଯ୍ୟ ସାଧିତ ହୋଇଥିଲା । ଜଣେ ରାଜନୈତିକ ସହକର୍ମୀର ସମ୍ମାନ ରହିବା ସଙ୍ଗେ ସଙ୍ଗେ ମୁଖ୍ୟମନ୍ତ୍ରୀଙ୍କର ଉଦ୍ଦେଶ୍ୟ ସାଧିତ ହୋଇଥିଲା । ଏହାପରେ ବିଜୁବାବୁଙ୍କର ନବବାବୁଙ୍କ ପ୍ରତି ଶ୍ରଦ୍ଧା ଓ ସହଯୋଗ କିଛି ଊଣା ହୋଇନଥିଲା ।

## କନିଷ୍ଠତମ ଉପମନ୍ତ୍ରୀ

ଶ୍ରୀ ଚୌଧୁରୀଙ୍କର ମନ୍ତ୍ରିମଣ୍ଡଳରେ ଉପମନ୍ତ୍ରୀ ହିସାବରେ ମୁଁ ଥିଲି ବୟସରେ ସବୁଠାରୁ କନିଷ୍ଠତମ ସଭ୍ୟ । ଏତେ ଶୀଘ୍ର ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇବି, ଏକଥା ମୁଁ ଆଶାକରିନଥିଲି । ସ୍ୱାଧୀନତା ପ୍ରାପ୍ତିର ପ୍ରାରମ୍ଭରେ ତ୍ୟାଗ ଓ ଯୋଗ୍ୟତା ବିଚାରର ବାତାବରଣ ଭିତରେ ମନ୍ତ୍ରୀପଦ ଲାଭ କରିବାକୁ ଆଶା କରିବା ଗୋଟିଏ ଦୁଃସାହସ ବୋଲି ମନେହେଉଥିଲା । ତା'ଛଡ଼ା ଭାରତବର୍ଷରେ ସେତେବେଳଯାଏ କୌଣସି ରାଜ୍ୟରେ ବା କେନ୍ଦ୍ରରେ ଉପମନ୍ତ୍ରୀ ପଦ ସୃଷ୍ଟି ହୋଇନଥିଲା । ଭାରତବର୍ଷରେ ୧୯୫୧ ମସିହା ନିର୍ବାଚନ ପରେ ସର୍ବପ୍ରଥମ କରି ଓଡ଼ିଶାରେ ଉପମନ୍ତ୍ରୀ ପଦ ସୃଷ୍ଟି କରାଯାଇ ଆମ୍ଭମାନଙ୍କୁ ମନ୍ତ୍ରିମଣ୍ଡଳରେ ଅନ୍ତର୍ଭୁକ୍ତ କରାଗଲା । ଆମ ରାଜ୍ୟରେ ଏହି ପଦ ସୃଷ୍ଟି ହେବା ପରେ ପରେ ଅନ୍ୟ ରାଜ୍ୟମାନେ ତାହା ଅନୁକରଣ କରିଥିଲେ । ପ୍ରଥମେ ଆମ ରାଜ୍ୟ ସ୍ୱରାଷ୍ଟ୍ର ବିଭାଗର ଗୋଟିଏ ଛୋଟ ଶାଖା ଜେଲ୍ ବିଭାଗର ଉପମନ୍ତ୍ରୀରୂପେ ମୁଁ ନିଯୁକ୍ତ ହୋଇଥିଲି । ମୋର ମନେହୁଏ ଧୀରେ ଧୀରେ ପାହାଚକୁ ପାହାଚ ଅଗ୍ରସର ହେବା ଯେପରି ମୋ ଜୀବନର ଗୋଟିଏ ସହଜାତ ଘଟଣା । ଉଚ୍ଚାଭିଳାଷ-ଲିପ୍‌ସା ଘେନି ସହସା ଉତ୍‌ଥାନ ବା ସହସା ପତନ ଅପେକ୍ଷା ସାଧନା ଓ ଅଭିଜ୍ଞତା ଫଳରେ କ୍ରମଉନ୍ନତି ବରଂ ଶ୍ରେୟସ୍କର ବୋଲି ମୁଁ ମନେକରେ । ବରଂ ଈଶ୍ୱରଙ୍କ ପାଖରେ ମୁଁ ଋଣୀ ଅନୁଭବ

କରିଥିଲି ଯେ ଏକାବନ ମସିହାରେ ସାଧାରଣ ନିର୍ବାଚନ ମୋତେ ଜୀବନ ପଥରେ ଅଗ୍ରସର ହେବାପାଇଁ ଗୋଟିଏ ନୂତନ ସୋପାନ ଆରୋହଣ କରିବାକୁ ସମର୍ଥ କରିଥିଲା । ସେଇଥିପାଇଁ ଗୋଟିଏ ଅତି ଛୋଟ ବିଭାଗର ଦାୟିତ୍ୱ ପ୍ରଥମେ ମୋତେ ଦିଆଯାଇଥିଲା ବୋଲି ମୁଁ ଆଦୌ ଅସନ୍ତୋଷ ପ୍ରକାଶ କରିନଥିଲି । ଈଶ୍ୱରଙ୍କ ଇଚ୍ଛା ପୂର୍ଣ୍ଣ ହେଉ ବୋଲି ପ୍ରାର୍ଥନା କରି ଏହି ନୂତନ ଦାୟିତ୍ୱର ପରିସର ମଧ୍ୟରେ ଯେପରି ଭାବରେ କାର୍ଯ୍ୟ କରିବାର କଥା ତାହା ମୁଁ ବୁଝି ବିଚାରି ଆରମ୍ଭ କରିଥିଲି ଏବଂ ସେହିପରିଭାବରେ ବ୍ୟବସ୍ଥାସଭାର ସମ୍ମୁଖୀନ ହେଉଥିଲି । ୧୯୪୨ ଅଗଷ୍ଟ ଆନ୍ଦୋଳନରେ ଆମ୍ଭେମାନେ ଜେଲ୍ ଜୀବନ ଯାପନକରି ଯେଉଁ ଅଭିଜ୍ଞତା ଅର୍ଜନ କରିଥିଲୁ ସେଥିରୁ ମୁଁ ଅନୁଭବ କରୁଥିଲି ଯେ ଜେଲ୍‌ରେ କଏଦୀମାନଙ୍କୁ ମନୁଷ୍ୟ ଭାବରେ ରଖିବାକୁ ହେଲେ କେତେକ ସଂସ୍କାର ପ୍ରବର୍ତ୍ତନ କରିବା ଆବଶ୍ୟକ । ତେଣୁ ମୁଖ୍ୟମନ୍ତ୍ରୀଙ୍କ ସହିତ ପରାମର୍ଶ କରି ଗୋଟିଏ ଜେଲ୍ ସଂସ୍କାର କମିଟି (Jail Reform Committee) ଗଠନ କରାଗଲା । ପୂର୍ବତନ ବିଧାନସଭାର ଅଧ୍ୟକ୍ଷ ଶ୍ରୀ ଲାଲ୍‌ମୋହନ ପଟ୍ଟନାୟକ କମିଟିର ସଭାପତି ହେଲେ, ମୁଁ, ପୂର୍ବତନ ମନ୍ତ୍ରୀ ରାଜକୃଷ୍ଣ ବୋଷ ଓ କନିକାର ରାଜାସାହେବ ଶ୍ରୀ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ ପ୍ରଭୃତି ସଭ୍ୟ ରହିଥିଲୁ । ଓଡ଼ିଶାର ଜେଲ୍ ବିଭାଗର ନିର୍ଦ୍ଦେଶକ (Inspector General of Prisons) ଶ୍ରୀ ଡେଭିଡ୍ ରବୀନ୍ ସାହୁ କମିଟିର ସେକ୍ରେଟେରୀ ଥିଲେ । ଏହି ଜେଲ୍ ସଂସ୍କାର କମିଟି ଓଡ଼ିଶାର ବିଭିନ୍ନ ଜେଲ୍‌ଖାନା ବ୍ୟତୀତ ଭାରତର ଅନ୍ୟାନ୍ୟ ରାଜ୍ୟର କେତେକ ଜେଲ୍‌ଖାନା ପରିଦର୍ଶନ କରି ଜେଲ୍ ପରିଚାଳନା ଓ କଏଦୀମାନଙ୍କ ସୁବିଧା ଓ ସଂସ୍କାର ପାଇଁ ଥିବା ବିଭିନ୍ନ ବ୍ୟବସ୍ଥା ଭଲଭାବରେ ଅନୁଧ୍ୟାନ କରିଥିଲେ । ଜନସାଧାରଣଙ୍କଠାରୁ ମଧ୍ୟ ସାକ୍ଷ୍ୟ ଗ୍ରହଣ କରାଯିବା ପରେ ସମସ୍ତ ତଥ୍ୟର ପୁଙ୍ଖାନୁପୁଙ୍ଖ ବିଚାର କରି କମିଟି ଜେଲ୍ ସଂସ୍କାର ସମ୍ପର୍କରେ ଅନେକ ଉପାଦେୟ ସୁପାରିସ୍ କରିଥିଲେ ।

ପଶ୍ଚିମ ବଙ୍ଗଳାର ଆଲ୍ଲୀପୁର ଜେଲ୍ ପରିଦର୍ଶନ କରିବାପାଇଁ ଶ୍ରୀ ଲାଲ୍‌ମୋହନ ପଟ୍ଟନାୟକଙ୍କ ସହ ଆମେ ସମସ୍ତେ ଯାଇଥିଲୁ । ଆଲ୍ଲୀପୁର ଜେଲ୍ ଭିତରେ ବୁଲି ଦେଖୁଦେଖୁ ସେଠାରେ ଜଣେ କଏଦୀଙ୍କୁ ଦେଖି ମୁଁ ଓ ରାଜକୃଷ୍ଣବାବୁ ଆଶ୍ଚର୍ଯ୍ୟ ହୋଇଯାଇଥିଲୁ । କଏଦୀଙ୍କ ନାମ ଶ୍ରୀ ଭାସ୍କର ଆଚାର୍ଯ୍ୟ ଏବଂ ସେ ରାଜକୃଷ୍ଣବାବୁଙ୍କର ଜଣେ ପରିଚିତ ବ୍ୟକ୍ତି । ମୁଁ କେନ୍ଦ୍ରାପଡ଼ା ଉପନିର୍ବାଚନରେ କାମ କରିବାକୁ ଯାଇଥିବା ସମୟରେ ରାଜକୃଷ୍ଣବାବୁ ତାଙ୍କୁ ମୋ ସହ କାମ କରିବାକୁ ପଠାଇଥିଲେ । ସେ ମୋ ସହିତ ଯିବା ସମୟରେ ବାଟରେ ମୋର ଏପରି ପରିଚର୍ଯ୍ୟା କରୁଥିଲେ ଯେ ଖୁବ୍ କମ୍ ସମୟ ମଧ୍ୟରେ ସେ ମୋର ଅନୁରକ୍ତ ହୋଇଗଲେ । ମୁଁ କେନ୍ଦ୍ରାପଡ଼ା ଡାକବଙ୍ଗଳାରେ ଥାଏ । ସେ ମଧ୍ୟ ମୋ ସଙ୍ଗେ ସେଇଠି ରହିଲେ । ଉପନିର୍ବାଚନ କାର୍ଯ୍ୟରେ ମୋତେ ଅନେକ ଦିନ ସେଠାରେ ରହିବାକୁ ପଡ଼ିଲା । ମୁଁ ଉପମନ୍ତ୍ରୀ ଥିବାରୁ ଫାଇଲ୍‌ପତ୍ର ମୋ ପାଖକୁ ଯାଏ । ମୁଁ ଗୋଟିଏ ଓଳି ଫାଇଲ୍ କାମକରେ ଓ ଅନ୍ୟ ଓଳି ପ୍ରଚାର କାର୍ଯ୍ୟରେ ଯାଏ । ଭାସ୍କରବାବୁ ଖୁବ୍ ଚାଲାକ୍ ଲୋକ । ଲେଖାପଢ଼ା ମଧ୍ୟ ଭଲ ଭାବରେ ଜାଣନ୍ତି । ମୋର ଅଜାଣତରେ ସେ ମୋ ଦସ୍ତଖତ ଅନୁକରଣ କରିବାକୁ ଲାଗିଲେ ଏବଂ କୌଣସି ପ୍ରକାରେ ମୋର ଗୋଟିଏ ସରକାରୀ ପ୍ୟାଡ୍ ହସ୍ତଗତ କରିନେଲେ । ତା'ପରେ ସେ କଲିକତା ଯାଇ ମୋର ପର୍ସନାଲ୍ ଆସିଷ୍ଟାଣ୍ଟ ବୋଲି ସେଠାରେ ପରିଚୟଦେଇ ଓଡ଼ିଶାରେ ବ୍ୟବସାୟ କରୁଥିବା ବ୍ୟବସାୟୀ ଓ ଖଣିମାଲିକମାନଙ୍କ ସଂପର୍କରେ ଆସିଲେ । କାହାକୁ କଣ୍ଟ୍ରାକ୍ଟରି କରାଇଦେବେ ଓ କାହାକୁ ଖଣିପଟ୍ଟା କରାଇଦେବେ ବୋଲି ପ୍ରଲୋଭନ ଦେଖାଇ ପ୍ୟାଡ୍‌ରେ ମୋର ଜାଲ୍ ଦସ୍ତଖତ କରି ସେମାନଙ୍କୁ ଠକାଇ ଅର୍ଥ ସଂଗ୍ରହ କରିବାରେ ଲାଗିଲେ । କଲିକତା ପୁଲିସଙ୍କଠାରେ ଏ ପ୍ରକାର ଠକେଇ ସଂକ୍ରାନ୍ତରେ କେତେକ ଅଭିଯୋଗ ହୋଇଥିଲା । ସେ ସମ୍ବନ୍ଧରେ କେତେକ କାଗଜପତ୍ର ଧରି ସେଠାକାର ପୁଲିସ ମୋ ପାଖକୁ ଆସି ମୋର ବିବୃତି ନେଇଥିଲେ । ମୋର ଦସ୍ତଖତ ଜାଲ୍ ହୋଇଛି ବୋଲି ମୁଁ କହିଥିଲି । ଆଇନ ଅନୁସାରେ କମିସନଦ୍ୱାରା ମୋର ସାକ୍ଷ୍ୟ ନିଆଯାଇଥିଲା । ଶେଷରେ ଶ୍ରୀ ଆଚାର୍ଯ୍ୟ ଠକ

ବୋଲି ପ୍ରମାଣିତ ହେଲେ ଓ ସେଥିପାଇଁ ସଜା ପାଇ ଜେଲ୍‌ଗଲେ । ଆମକୁ ଦେଖି ସେ ବଡ଼ ଅପ୍ରସ୍ତୁତ ହୋଇପଡ଼ିଥିଲେ । ଭାସ୍କରବାବୁ କି ପ୍ରକୃତିର ଲୋକ ରାଜକୃଷ୍ଣବାବୁ ସେହିଦିନ ଠିକ୍‌ଭାବରେ ବୁଝିଥିଲେ ।

ଜେଲ୍ ସଂସ୍କାର କମିଟିର ବହୁ ବୈଠକ ବସିଥିଲା । ଆମ୍ଭେମାନେ ବିଭିନ୍ନ ସ୍ଥାନ ପରିଦର୍ଶନ କରି ଯାହା ଦେଖିଥିଲୁ ଓ ଅନୁଭବ କରିଥିଲୁ ତଦନୁସାରେ ରିପୋର୍ଟ ପ୍ରସ୍ତୁତ ହେଲା; କିନ୍ତୁ ରାଜକୃଷ୍ଣବାବୁ କୁଣ୍ଠିତ ହୋଇଥିଲେ ସେଥିରେ ଦସ୍ତଖତ କରିବାପାଇଁ । ତାଙ୍କର ଯୁକ୍ତି ଥିଲା ଯେ ପୃଥିବୀର ବିଭିନ୍ନ ଉନ୍ନତ ଦେଶକୁ ଯାଇ ସେଠାକାର ଜେଲ୍ ଅବସ୍ଥା ଅନୁଧ୍ୟାନ ନକଲେ ଯୁଗୋପଯୋଗୀ ସୁପାରିଶ୍ ସମ୍ବଳିତ ଏକ ପୂର୍ଣାଙ୍ଗ ରିପୋର୍ଟ ଦେବା ସମ୍ଭବ ହେବନାହିଁ । ଆମେରିକା, ଇଂଲଣ୍ଡ ଓ ରୁଷିଆ ପ୍ରଭୃତି ଉନ୍ନତ ଦେଶକୁ ଯାଇ ସେଠାକାର ଜେଲ୍ ଅବସ୍ଥା ସ୍ୱଚକ୍ଷୁରେ ପରିଦର୍ଶନ କରିବା ପରେହିଁ ଜେଲ୍ ସଂସ୍କାର ସମ୍ବନ୍ଧରେ ଉପଯୁକ୍ତ ସୁପାରିସ୍ କରାଯିବା ଉଚିତ ବୋଲି ତାଙ୍କର ଇଚ୍ଛା ଥିଲା । ଏ ବିଷୟରେ ମୁଁ ମୁଖ୍ୟମନ୍ତ୍ରୀ ଶ୍ରୀ ଚୌଧୁରୀଙ୍କ ସହ କଥାବାର୍ତ୍ତା କରିଥିଲି । ଜେଲ୍ ସଂସ୍କାର କମିଟି ଦେଶ ବାହାରକୁ ଯିବା କଥାଟା ସେ ଆଦୌ ପସନ୍ଦକଲେନାହିଁ । ତେଣୁ ରାଜକୃଷ୍ଣବାବୁଙ୍କ ମତ ଗ୍ରହଣ କରାଯାଇପାରିଲା ନାହିଁ । ମୁଁ ଯାଇ ରାଜକୃଷ୍ଣବାବୁଙ୍କୁ ସବୁ କଥା ବୁଝାଇ କହିଥିଲି । ତା'ପରେ ସେ ନିଜର ସମ୍ମତି ଦେଇ ରିପୋର୍ଟରେ ଦସ୍ତଖତ କରିଥିଲେ । ଜେଲ୍ ପରିଚାଳନା ଓ ସଂସ୍କାର ସମ୍ବନ୍ଧରେ ବିଭିନ୍ନ ସୁପାରିସ୍ ମଧ୍ୟରେ କଏଦୀମାନଙ୍କ ପାଇଁ ସାନିଟାରୀ ପାଇଖାନା, ଇଲେକ୍‌ଟ୍ରିକ୍ ଲାଇଟ୍ ଓ ପଙ୍ଖାର ବ୍ୟବସ୍ଥା କରାଇବା, ଖାଦ୍ୟର ପରିମାଣ ବଢ଼ାଇବା ଓ ପୁଷ୍ଟିକର ଖାଦ୍ୟ ଦେବା ଏବଂ କଏଦୀମାନେ ବ୍ୟବହାର କରୁଥିବା ଲୁଗାପଟା ସମ୍ବନ୍ଧରେ ଏହି କମିଟି ଅନେକ ଉପାଦେୟ ପରାମର୍ଶ ଦେଇଥିଲେ ।

## ଗୁଣଗ୍ରାହୀ ଅଭିଭାବକ ନବବାବୁ

ଅଳ୍ପ କେତେମାସ ଜେଲ୍ ବିଭାଗର ଉପମନ୍ତ୍ରୀ ହିସାବରେ କାର୍ଯ୍ୟ କଲା ପରେ ଦିନେ ମୁଖ୍ୟମନ୍ତ୍ରୀ ଶ୍ରୀ ଚୌଧୁରୀ ମୋତେ ଡାକି କହିଲେ, ''ତୁମେ ସ୍ୱରାଷ୍ଟ୍ର ବିଭାଗର ଦାୟିତ୍ୱ ସମ୍ପୂର୍ଣ୍ଣ ଭାବରେ ନିଅ ।'' ବର୍ତ୍ତମାନର ପଲିଟିକାଲ୍ ଆଣ୍ଡ୍ ସର୍ଭିସେସ୍ ଡିପାର୍ଟମେଣ୍ଟ୍ ବା ଜେନେରାଲ୍ ଆଡ୍‌ମିନିଷ୍ଟ୍ରେସନ୍ ଡିପାର୍ଟମେଣ୍ଟ୍ ଏବଂ ହୋମ୍ ଡିପାର୍ଟମେଣ୍ଟର ସମସ୍ତ କାମ ସେତେବେଳେ ହୋମ୍ ଡିପାର୍ଟମେଣ୍ଟର ଅନ୍ତର୍ଭୁକ୍ତ ଥିଲା । ହଠାତ୍ ଏ ବିଭାଗଟିକୁ ଯେ ମୋତେ ଦିଆଗଲା ତା' ନୁହେଁ । ମୁଖ୍ୟମନ୍ତ୍ରୀ କେତେକ ବିଷୟ ପରୀକ୍ଷା କରି ଦେଖିସାରିବା ପରେ ସମଗ୍ର ବିଭାଗଟିର ଦାୟିତ୍ୱ ମୋ ଉପରେ ନ୍ୟସ୍ତ କରିବାପାଇଁ ସ୍ଥିର କରିଥିଲେ । ମୋର ମନେଅଛି, ସେ ସମୟରେ କେତେକ ବଡ଼ ବଡ଼ ପୁଲିସ ଅଫିସରଙ୍କ ପଦୋନ୍ନତି ସମ୍ବନ୍ଧରେ ସେମାନଙ୍କ ସିନିୟରିଟି ପ୍ରଶ୍ନ ନେଇ କେତେକ ବିବାଦ ଚାଲିଥାଏ । ସେଥିରେ ଇଣ୍ଡିଆନ୍ ପୁଲିସ ସର୍ଭିସ୍‌ର ସର୍ବଶ୍ରୀ ଏ.କେ. ଘୋଷ, ଶ୍ରୀକାନ୍ତ ଘୋଷ, ବ୍ରଜବିହାରୀ ମିଶ୍ର ଓ ରାମକୃଷ୍ଣ ପାଢ଼ୀ ପ୍ରଭୃତି ଅଫିସର୍‌ମାନେ ସଂପୃକ୍ତ ଥିଲେ । ଫାଇଲ୍‌ରେ ବିବରଣୀ ଖୁବ୍ ଦୀର୍ଘ ଓ ଜଟିଳ ହୋଇପଡ଼ିଥାଏ । ସବୁ କଥା ବିଶଦଭାବରେ ପଢ଼ି ତା'ପରେ ନିଷ୍ପତ୍ତି ନେବା କାର୍ଯ୍ୟବ୍ୟସ୍ତତା ଯୋଗୁଁ ମୁଖ୍ୟମନ୍ତ୍ରୀଙ୍କ ପକ୍ଷରେ ସମ୍ଭବ ହୋଇନଥାଏ । ମୁଁ ଶୁଣୁଥିଲି ଯେ ସେ ଅନେକ ଥର ତାକୁ ଅଧ୍ୟୟନ କରୁଥିଲେ ଓ ରଖିଦେଉଥିଲେ । ଶେଷରେ ତାଙ୍କ ପରସ୍‌ନାଲ୍ ଆସିଷ୍ଟାଣ୍ଟ୍ ଶ୍ରୀ କୈଳାସ ବୋଷଙ୍କ ହାତରେ ଫାଇଲ୍‌ଟି ମୋ ପାଖକୁ ପଠାଇଥିଲେ ମୋର ମତ ଦେବାପାଇଁ । ମୁଁ ତାଙ୍କରି ହାତରେ ଫାଇଲ୍‌ଟି ଫେରାଇ ଦେଇଥିଲି ଓ କହିଥିଲି ଯେ ମୁଁ ସେହି ଫାଇଲ୍ ଅଧ୍ୟୟନ କରି ମୋର ମତ ଦେବାପାଇଁ ମୁଖ୍ୟମନ୍ତ୍ରୀ ଫାଇଲ୍‌ରେ ଲେଖି ନ ଦେଲେ ମୁଁ ମତ ଦେବା ସମୀଚୀନ ହେବନାହିଁ, କାରଣ ସେତେବେଳେ ମୁଁ ସ୍ୱରାଷ୍ଟ୍ର ବିଭାଗର କେବଳ ଗୋଟିଏ ଅଂଶର ଦାୟିତ୍ୱରେ ଥାଏ । ସେହିପରି ଆଦେଶସହ ଫାଇଲ୍‌ଟି ପୁଣି ମୋ ପାଖକୁ ଆସିଲା । ସ୍ୱରାଷ୍ଟ୍ର ବିଭାଗ ବହୁତ କଥା ପରୀକ୍ଷା କରି ଶ୍ରୀ ଶ୍ରୀକାନ୍ତ ଘୋଷଙ୍କର ସିନିୟରିଟିକୁ ଉପେକ୍ଷା କରିବା ପାଇଁ ପରାମର୍ଶ ଦେଇଥିଲେ । କିନ୍ତୁ ଫାଇଲ୍‌ରେ ଲିଖିତ ପର୍ଯ୍ୟାଲୋଚନା

ପୂର୍ଣ୍ଣାଙ୍ଗ ଓ ସନ୍ତୋଷଜନକ ହୋଇନଥିବାରୁ ସମସ୍ତ ତଥ୍ୟ ଭଲଭାବରେ ପରୀକ୍ଷା କରିବାପାଇଁ ମୁଖ୍ୟମନ୍ତ୍ରୀ ଫାଇଲ୍‌ଟିକୁ ମୋ ପାଖକୁ ପଠାଇଥିଲେ । ସେଥିପୂର୍ବରୁ ଶ୍ରୀ ଶ୍ରୀକାନ୍ତ ଘୋଷ ଓଡ଼ିଶାର ରେଳ ବିଭାଗରେ ବର୍ଷକ ପାଇଁ ଏସ୍.ପି. ହିସାବରେ କାର୍ଯ୍ୟ କରିଥିଲେ, କିନ୍ତୁ ତାହା ଅନୁମୋଦିତ ନିଯୁକ୍ତି ନୁହେଁ ବୋଲି ଡିପାର୍ଟମେଣ୍ଟ ମତ ଦେଇଥିଲେ । ସେହି କାରଣରୁ ତାଙ୍କ ସ୍ଥାନ ଅନ୍ୟମାନଙ୍କଠାରୁ ତଳକୁ ଖସାଇଦିଆହୋଇଥିଲା । ମୁଁ ସେ ସମ୍ବନ୍ଧରେ ସମସ୍ତ କାଗଜପତ୍ର ସ୍ୱରାଷ୍ଟ୍ର ବିଭାଗରୁ ମଗାଇଲି । ଏହା କାହିଁକି ଅନୁମୋଦିତ ନିଯୁକ୍ତି ବୋଲି ବିବେଚିତ ହେଉନାହିଁ ତାହା ଜାଣିବାକୁ ଚାହିଁଲି । ଆଗରୁ ନିୟମ ଥିଲା ଯେ ସିନିୟର ପଦବୀରେ ଯେ ଅସ୍ଥାୟୀ ଭାବରେ ନିଯୁକ୍ତ ହେବେ ତାଙ୍କୁ ସେହି ପଦବୀରେ ଇଂଲଣ୍ଡର ସେକ୍ରେଟେରୀ ଅଫ୍ ଷ୍ଟେଟ୍‌ସ (ସ୍ୱରାଷ୍ଟ୍ରମନ୍ତ୍ରୀ) ଅନୁମୋଦନ କଲେ ଯାଇ ତାହା ଅନୁମୋଦିତ ନିଯୁକ୍ତି ବୋଲି ଧରାଯିବ । ଏହା ଥିଲା ପରାଧୀନ ଭାରତର ପ୍ରଶାସନିକ ନିୟମ । ଏ କ୍ଷେତ୍ରରେ ଶ୍ରୀକାନ୍ତ ଘୋଷଙ୍କର ରେଳବାଇରେ ନିଯୁକ୍ତି ଅନୁମୋଦିତ ହୋଇନଥିଲା । ବର୍ଷେକାଳ ଶ୍ରୀ ଏସ୍.କେ. ଘୋଷ ରେଳବାଇ ବିଭାଗ ଏସ୍.ପି. ରୂପେ କାର୍ଯ୍ୟ କରିଥିବା କଥା କେହି ଅସ୍ୱୀକାର କରୁନଥିଲେ । ଯେଉଁ ନିୟମ ଅନୁସାରେ ସେକ୍ରେଟାରୀ ଅଫ୍ ଷ୍ଟେଟ୍‌ସଙ୍କ ପାଖକୁ ନିଯୁକ୍ତି ଅନୁମୋଦନପାଇଁ ପଠାଯାଏ ସେ ନିୟମ ଯେଉଁ ପୁସ୍ତକରେ ଥିଲା ତାହା ମୁଁ ବାହାରକଲି । ସବୁ ଅନୁଧାନ କଲା ପରେ ମୁଁ ମତ ଦେଇଥିଲି ଯେ ନିୟମ ଅନୁସାରେ ସ୍ୱରାଷ୍ଟ୍ର ବିଭାଗ ଯଥାସମୟରେ ବିଲାତରେ ଥିବା ସେକ୍ରେଟେରୀ ଅଫ୍ ଷ୍ଟେଟ୍‌ସ ବିଭାଗକୁ ଲେଖାଲେଖି କରି ଅନୁମୋଦନ ଆଣିବା କଥା । ମାତ୍ର ବିଭାଗୀୟ ଅବହେଳା ଯୋଗୁଁ ସେତେବେଳେ ତାହା ଅଣାଯାଇପାରିନାହିଁ । ସେଥିପାଇଁ ସଂପୃକ୍ତ ଅଫିସର କ୍ଷତିଗ୍ରସ୍ତ ହେବା ଉଚିତ ନୁହେଁ । ସବୁ ପ୍ରାସଙ୍ଗିକ ଘଟଣା ଓ ଯୁକ୍ତି ବୁଝାଇ ମୋତେ ଗୋଟିଏ ଦୀର୍ଘ ନୋଟ୍ ଲେଖିବାକୁ ପଡ଼ିଥିଲା । ତା'ପରେ ଫାଇଲ୍‌ଟି ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠାଇଦେଇଥିଲି । ମୁଖ୍ୟମନ୍ତ୍ରୀ ମୋ ମତକୁ ଅନୁମୋଦନ କରିଥିଲେ ।

ସେହିପରି ଆଉ ଗୋଟିଏ ଜଟିଳ ଘଟଣା ଉପରେ ମୁଖ୍ୟମନ୍ତ୍ରୀ ମୋର ମତାମତ ଲୋଡ଼ିଥିଲେ । କଟକର ପୁରୁଣା ସଚିବାଳୟରେ ପ୍ରଚାର ବିଭାଗର ଜିନିଷପତ୍ର ଥିବା ଘରେ ଦିନେ ହଠାତ୍ ନିଆଁଲାଗି ଜିନିଷପତ୍ର ପୋଡ଼ି ନଷ୍ଟହୋଇଗଲା । ତତ୍କାଳୀନ ପ୍ରଚାର ବିଭାଗ ମୁଖ୍ୟ ଶ୍ରୀ ସୁଧୀର ଘୋଷଙ୍କ ଉପରେ ଦୋଷାରୋପ କରି କେତେକ ସମ୍ବାଦପତ୍ରରେ ଅଭିଯୋଗ ହୋଇଥିଲା ଯେ ସେ ପ୍ରଚାର ବିଭାଗର ଜିନିଷପତ୍ର କିଣାକିଣି ଓ ହିସାବପତ୍ରରେ ଗଣ୍ଡଗୋଳ କରିଥିବାରୁ ଜାଣିଶୁଣି ନିଆଁ ଲଗାଇ ଦେଇଛନ୍ତି । କିଣାନହୋଇଥିବା ଜିନିଷ କିଣାହୋଇଛି ବୋଲି ଦର୍ଶାଇ ସେ ବାବଦରେ ସରକାରଙ୍କଠାରୁ ଟଙ୍କା ଠକି ନେବାର ଉଦ୍ଦେଶ୍ୟ ଆରୋପ କରାଯାଇଥିଲା । ଏ ପ୍ରକାର ଫାଇଲ୍ ଉପରେ ମୁଁ ମତାମତ ଦେବା ସଙ୍ଗତ ନୁହେଁ ବୋଲି କହିଥିଲି, କାରଣ ଉକ୍ତ ବିଭାଗର ତତ୍କାଳୀନ ଉପମନ୍ତ୍ରୀ ଥିଲେ ଶ୍ରୀ ଅନୁପ ସିଂହଦେଓ । ବୋଧହୁଏ ଶ୍ରୀ ଅନୁପ ସିଂହଦେଓ ବିଷୟଟିକୁ ଯେପରି ଭାବରେ ବିଚାରକରିଥିଲେ ସେଥିରେ ମୁଖ୍ୟମନ୍ତ୍ରୀଙ୍କର ହୃଦ୍‌ବୋଧ ହୋଇନଥିଲା । ତେଣୁ ବିଷୟଟିକୁ ପୁଙ୍ଖାନୁପୁଙ୍ଖ ଅଧ୍ୟୟନ କରି ମୋର ମତାମତ ଦେବାପାଇଁ ମୁଖ୍ୟମନ୍ତ୍ରୀ ଫାଇଲ୍‌ରେ ନିର୍ଦ୍ଦେଶ ଦେଇଥିଲେ । ପୁଲିସ ମଧ୍ୟ ବିଷୟଟି ବିଭିନ୍ନ ଦିଗରୁ ଅନୁସନ୍ଧାନ କରିଥିଲେ । ବିଭାଗର ଯେତେ କର୍ମଚାରୀ ସମସ୍ତଙ୍କୁ ପଚରାଉଚରା କରି ପୁଲିସ ସେମାନଙ୍କର ବିବୃତି ଲିପିବଦ୍ଧ କରିଥିଲେ । ପ୍ରଚାର ବିଭାଗର କର୍ମଚାରୀମାନଙ୍କର ବକ୍ତବ୍ୟ ଥିଲା ଯେ ବିଦ୍ୟୁତ୍ ଲାଇନ୍‌ରେ କୌଣସି ତ୍ରୁଟି ଯୋଗୁଁ ଆକସ୍ମିକ ଭାବରେ ନିଆଁ ଲାଗିଥିଲା । ପୋଡ଼ିଯାଇଥିବା କାଗଜପତ୍ରର ଅବଶିଷ୍ଟାଂଶ ଯାହା ଥିଲା ଏବଂ ତା'ର ଯେଉଁ ତାଲିକା ପ୍ରସ୍ତୁତ ହୋଇଥିଲା ମୁଁ ତାକୁ ମଧ୍ୟ ପରୀକ୍ଷା କରିଥିଲି । ସବୁଠାରୁ ବେଶି ବିଚାର୍ଯ୍ୟ ବିଷୟ ଲକ୍ଷ୍ୟ କଲି ଯେ ଷ୍ଟକ୍ ରେଜିଷ୍ଟର୍ ଓ ଆକାଉଣ୍ଟସ୍ ବୁକ୍ ପୋଡ଼ିଯାଇନଥିଲା । ସେହି କଥାଟି ଉପରେ ଜୋର୍ ଦେଇ ମୁଁ ଦର୍ଶାଇଥିଲି ଯେ ଯଦି ମନ୍ଦ ଉଦ୍ଦେଶ୍ୟରେ ଘରେ ନିଆଁ ଲଗାଇ ଦିଆଯାଇଥାଆନ୍ତା ତା'ହେଲେ ସଂପୃକ୍ତ

ବ୍ୟକ୍ତିମାନେ ପ୍ରଥମେ ଷ୍ଟକ୍ ରେଜିଷ୍ଟର୍ ଓ ଆକାଉଣ୍ଟସ୍ ବୁକ୍ ଯେପରି ପୋଡ଼ିଯିବ ତା'ର ବ୍ୟବସ୍ଥା କରିଥା'ନ୍ତେ । ତେଣୁ ଯେଉଁମାନଙ୍କୁ ଅଭିଯୁକ୍ତ କରାଯାଉଥିଲା ସେମାନଙ୍କର ଅପରାଧୀ ମନୋଭାବର କୌଣସି ଲକ୍ଷଣ ନଥିଲା ବୋଲି ଏଥିରୁ ଜଣାଯାଉଥିଲା । ସବୁ ତଥ୍ୟ ଭଲଭାବରେ ଅନୁସନ୍ଧାନ କରି ଏବଂ ସାବଧାନତା ସହକାରେ ଫାଇଲ୍ ଓ ଅନ୍ୟାନ୍ୟ କାଗଜପତ୍ର ଅଧ୍ୟୟନ କରିବା ପରେ ବିଜୁଳି ସଂଯୋଗରୁ ଆକସ୍ମିକ ଭାବରେ ଘରେ ନିଆଁ ଲାଗିଯାଇଥିବା ସମ୍ଭାବନାହିଁ ଗ୍ରହଣଯୋଗ୍ୟ ବୋଲି ମତ ଦେଇଥିଲି । ମୋର ଏହି ମତ ସହିତ ମୁଖ୍ୟମନ୍ତ୍ରୀ ଏକମତ ହୋଇଥିଲେ ।

ସେହି ଲୋକସମ୍ପର୍କ ବିଭାଗରେ ୧୯୬୭ ମସିହାରେ ଘଟିଥିବା କାଗଜପୋଡ଼ି ଘଟଣାର କେତେକ ତଥ୍ୟ ଏଠାରେ ଉଲ୍ଲେଖ କରିବା ପ୍ରାସଙ୍ଗିକ ହେବ । ଉପରିସ୍ଥ ରାଜନୈତିକ ବା ସରକାରୀ ପଦାଧିକାରୀ ବ୍ୟକ୍ତିମାନଙ୍କ ମଧ୍ୟରେ ବାଦବିବାଦ ଓ ସଂକୀର୍ଣ୍ଣ ପ୍ରତିହିଂସାପରାୟଣତା ହେତୁ ତଳତଳିଆ କର୍ମଚାରୀ କିପରି ବିପଦଗ୍ରସ୍ତ ହୁଅନ୍ତି, ଏହି ଘଟଣା ତା'ର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ସେହି ବର୍ଷ ସାଧାରଣ ନିର୍ବାଚନରେ ଓଡ଼ିଶାରେ କଂଗ୍ରେସର ଘୋର ବିପର୍ଯ୍ୟୟ ଘଟିଲା । ତତ୍କାଳୀନ ଲୋକସମ୍ପର୍କ ଓ ପର୍ଯ୍ୟଟନ ବିଭାଗର ନିର୍ଦ୍ଦେଶକ ଶ୍ରୀ ଶଶିଭୂଷଣ ମିଶ୍ର ପ୍ରାୟ ବର୍ଷକ ଆଗରୁ ଦେଇଥିବା ଇସ୍ତଫାପତ୍ର ସରକାର ଗ୍ରହଣ କରିନେବା ପାଇଁ ସେ ଜିଦ୍‌ଧରିଲେ । କାରଣ ଆଗରୁ ତ ଅଧିକ କାଳ ଚାକିରି ଜୀବନରେ ରହିବାକୁ ତାଙ୍କର ଇଚ୍ଛା ନଥିଲା, ଏବେ ଅଣ-କଂଗ୍ରେସ ସରକାରର ପ୍ରଶସ୍ତି ଗାନ କରିବାକୁ ସେ ସମ୍ପୂର୍ଣ୍ଣ ଅନିଚ୍ଛା ପ୍ରକାଶ କରିଥିଲେ । ତାଙ୍କର ବିଚାରାଧୀନ ଇସ୍ତଫାପତ୍ର ଗୃହୀତହେଲା । ମାର୍ଚ୍ଚ ତିନି ତାରିଖରେ ସ୍ୱରାଷ୍ଟ୍ର ବିଭାଗର ଖୋଦ୍ ସେକ୍ରେଟେରୀଙ୍କୁ ସେ ଦାୟିତ୍ୱ ହସ୍ତାନ୍ତର କରି ଚାକିରି ଜୀବନରୁ ଅବ୍ୟାହତି ନେଇ ସାଧାରଣ ଜୀବନରେ ପୁନଃପ୍ରବେଶକଲେ । ସେ କ୍ଷମତା ହସ୍ତାନ୍ତର କରିବା ଦିନହିଁ ପ୍ରଜାତନ୍ତ୍ର ସମ୍ବାଦପତ୍ରରେ ତାଙ୍କ ବିରୁଦ୍ଧରେ ତହବିଲ ଗଣ୍ଡଗୋଳ ଅଭିଯୋଗ କରି ଉଦ୍ଦେଶ୍ୟ-ପ୍ରଣୋଦିତ ଏକ ସମ୍ବାଦ ପ୍ରକାଶପାଇଲା । ତେଣୁ ଶେଷ ମୁହୂର୍ତ୍ତରେ ରାଜନୈତିକ ତଥା ବ୍ୟକ୍ତିଗତ ବିଦ୍ୱେଷ ହେତୁ ତାଙ୍କ ବିରୁଦ୍ଧରେ ପ୍ରକାଶିତ ଏହି କୁତ୍ସାମୂଳକ ସମ୍ବାଦ ପ୍ରତି ସେ ସ୍ୱରାଷ୍ଟ୍ର ବିଭାଗ ଶାସନ-ସଚିବଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ଏବଂ ସଙ୍ଗେ ସଙ୍ଗେ ଶାସନ ସଚିବଙ୍କର ବିଶ୍ୱାସଭାଜନ ଜଣେ ଗେଜେଟେଡ୍ ଅଫିସରଙ୍କଦ୍ୱାରା ତହବିଲ ଓ ଆକାଉଣ୍ଟସ କାଗଜପତ୍ର ତନଖି କରିନେବାପାଇଁ ଲିଖିତ ଦାବି କରିଥିଲେ । ତାଙ୍କ ଅନୁରୋଧକ୍ରମେ ତାହା କରାଗଲା ପରେହିଁ ସେ ସେହି ଶାସନ ସଚିବଙ୍କୁ କ୍ଷମତା ହସ୍ତାନ୍ତର କରିଥିଲେ । କିନ୍ତୁ କାଣ୍ଡୋଉ ବୋହୂ ଶାଶୁ-ଶଶୁରଙ୍କ ଉପରେ ରାଗି ପିଲାଙ୍କ ଉପରେ ଦାଉ ସାଧିଲା ପରି ସ୍ୱତନ୍ତ୍ର-ଜନକଂଗ୍ରେସ ସରକାର ଅମଳରେ ରାଗ ଶୁଝାଗଲା ପୂର୍ବତନ ନିର୍ଦ୍ଦେଶକଙ୍କ ନିର୍ଦ୍ଦୋଷ ଷ୍ଟେନୋଗ୍ରାଫରଙ୍କ ଉପରେ । ନିର୍ଦ୍ଦେଶକ ସରକାରୀ କାର୍ଯ୍ୟରୁ ଅବ୍ୟାହତି ନେଇ ଯିବାର ପ୍ରାୟ ଦୁଇ ସପ୍ତାହ ବିତିଯାଇଥାଏ । ସ୍ୱତନ୍ତ୍ର-ଜନକଂଗ୍ରେସ ସରକାର ଗାଦିନସୀନ ହେବା ପରେ ପରେ ଲୋକସଂପର୍କ ଓ ପର୍ଯ୍ୟଟନ ନିର୍ଦ୍ଦେଶକଙ୍କ ଅଫିସ୍ ହତା ଭିତରେ କେତେକ କାଗଜ ପୋଡ଼ିଦିଆଯାଇଛି ବୋଲି ସମ୍ବାଦ ପ୍ରକାଶ ପାଇଲା । ପୂର୍ବତନ ନିର୍ଦ୍ଦେଶକଙ୍କ ବିଶ୍ୱସ୍ତ ବ୍ୟକ୍ତି ବୋଲି ସନ୍ଦେହ କରାଯାଉଥିବା ଷ୍ଟେନୋଗ୍ରାଫର ଶ୍ରୀ ନୃସିଂହ ଚରଣ ଶତପଥୀଙ୍କୁ ସେହି ଅଭିଯୋଗରେ ତା'ପରଦିନ ସସ୍‌ପେଣ୍ଡ କରିଦିଆଗଲା । ଯଦିଓ ନିଜେ ଶାସନ-ସଚିବ ତତ୍‌କ୍ଷଣାତ୍ ଘଟଣାସ୍ଥଳ ପରିଦର୍ଶନ କରି ଓ ଦରପୋଡ଼ା କାଗଜପତ୍ର ଦେଖିସାରିବା ପରେ ସେଗୁଡ଼ିକ ଅଦରକାରୀ କାଗଜପତ୍ର ବୋଲି ସେଥିପ୍ରତି ଗୁରୁତ୍ୱ ଆରୋପ କରିନଥିଲେ ।

"The Home Secretary, Mr. V. Natarajan, visited the spot and collected the debries. Official circles, however did not attach any significance to the incident. They would not also like to offer any comment except that 'old invitation cards and cyclostyled papers' were found out among the

debries. According to these circles the papers were set on fire 'in good faith', but it was a foolish act on the part of the concerned employee'. It was reported that an official of the Directorate had asked the concerned employee to clear up the old irrelevant papers." (Amrita Bazar Patrika, 18.3.67)

ଅନ୍ୟାନ୍ୟ ଇଂରାଜୀ ଏବଂ ଓଡ଼ିଆ ସମ୍ବାଦପତ୍ରରେ ମଧ୍ୟ ଏହିଭଳି ସମ୍ବାଦ ପ୍ରକାଶ ପାଇଥିଲା । କିଛିକାଳ ପରେ ଶ୍ରୀ ନଟରାଜନ୍ ବଦଳିହୋଇଯାଇଥିଲେ । ବିଚରା ଷ୍ଟେନୋଗ୍ରାଫର୍ ଶ୍ରୀ ଶତପଥୀଙ୍କୁ ସସ୍‌ପେନ୍‌ସନ୍, ଡିସ୍‌ମିସାଲ୍ ନୋଟିସ୍, ଦରମାକାଟ ଓ ତଳପାହିଆକୁ ଖସିବାର ନାନା ଦଣ୍ଡାଦେଶ ଓ ଧମକ ସହିବାକୁ ପଡ଼ିଲା । ସରକାରଙ୍କ ଆଇନ ବିଭାଗ ଏତାଦୃଶ ଅବିଚାରିତ ଦଣ୍ଡାଦେଶକୁ ବେଆଇନ ଘୋଷଣା କରିବାରୁ ଶ୍ରୀ ଶତପଥୀଙ୍କ ଦଣ୍ଡାଦେଶକୁ ବାତିଲ୍ କରାଯାଇ ପୁନର୍ବାର ନୂଆ ସସ୍‌ପେନ୍‌ସନ୍ ଦଣ୍ଡ ଓ ବିଚାର ଚାଲିଥିଲା । ଏହି କାଗଜପୋଡ଼ି ଅଭିଯୋଗ ଓ ବିଚାରର ପ୍ରହେଳିକା ଉଦ୍‌ଘାଟନ କରିବାର ଏଠାରେ ବିଶେଷ ପ୍ରୟୋଜନନାହିଁ । ତେବେ ପାଠକମାନଙ୍କ କୌତୂହଳ ମେଣ୍ଟାଇବାପାଇଁ ଭାତ ହାଣ୍ଡିରୁ ଗୋଟିଏ ଚିପିଲା ଭଳି ଦୃଷ୍ଟାନ୍ତଟିଏ ଉଲ୍ଲେଖ କରିବାକୁ ପଡ଼ୁଛି । ସ୍ୱତନ୍ତ୍ର-ଜନକଂଗ୍ରେସ ସରକାରଙ୍କର ଜଣେ ଗଣୁଆ ସମର୍ଥକ ସଭ୍ୟଙ୍କୁ ଉତ୍ତର ଦେଇ ୨୮.୩.୬୭ ତାରିଖରେ ରାଜ୍ୟ ବିଧାନସଭାରେ ଖୋଦ୍ ମୁଖ୍ୟମନ୍ତ୍ରୀ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ପ୍ରତିଶ୍ରୁତି ଦେଇଥିଲେ ଯେ ଲୋକସଂପର୍କ ବିଭାଗର ଆକାଉଣ୍ଟସ୍ ସଂକ୍ରାନ୍ତୀୟ କାଗଜପତ୍ର ପୋଡ଼ିଦିଆଯାଇଛି କି ନାହିଁ ସେକଥା ସରକାର ତଦନ୍ତ କରୁଛନ୍ତି । ପ୍ରଶ୍ନକର୍ତ୍ତାଙ୍କ ପ୍ରଶ୍ନର ଉଦ୍ଦେଶ୍ୟ ସେତେବେଳର ରାଜନୈତିକ ପଟ୍ଟଭୂମିରେ ବେଶ୍ ଇଙ୍ଗିତପୂର୍ଣ୍ଣ ମନେହୋଇଥିଲା । କିନ୍ତୁ ବିଚରା ଶତପଥୀଙ୍କ ଭାଗ୍ୟର ବିଡ଼ମ୍ବନା ଯେ ସରକାରୀ ନିୟମ ସଂପୂର୍ଣ୍ଣ ଲଙ୍ଘନ କରାଯାଇ ପ୍ରଥମରୁ ଦରପୋଡ଼ା କାଗଜର ପ୍ରାମାଣିକ ତାଲିକା ପାଇବା ଅଧିକାରରୁ ତାଙ୍କୁ ବଞ୍ଚିତ କରାଗଲା । ଅନେକ ଲଢ଼େଇ ଭିଡ଼େଇ ପରେ ଯେତେବେଳେ ତାଲିକା ମିଳିଲା, ଦୁଇ ଦଫାରେ ଦୁଇ ପ୍ରକାର ତାଲିକା ଦିଆଗଲା । ହୁଏତ କୌଣସି ମନ୍ଦ ଉଦ୍ଦେଶ୍ୟରେ ପରେ କେତେକ ଦରକାରୀ କାଗଜପତ୍ର ପୋଡ଼ାପୋଡ଼ି କରି ପୂର୍ବ ଦରପୋଡ଼ା କାଗଜ ସହିତ ମିଶାଇଦିଆଯାଇଥିଲା । ଜଣେ ଅଫିସରଙ୍କ ହେପାଜତରେ ଗୋପନୀୟ ରଖାଯାଇଥିବା ଦରପୋଡ଼ା କାଗଜଗୁଡ଼ିକୁ ଅବଶେଷରେ ଅଭିଯୁକ୍ତ ଶତପଥୀ ସିଭିଲ୍ ସର୍ଭିସେସ୍ (କଣ୍ଟ୍ରୋଲ୍ - କ୍ଲାସିଫିକେସନ୍ ଆଣ୍ଡ ଆପିଲ୍) ରୁଲ୍‌ସ ବଳରେ ତଦାରଖ କରିଥିଲେ ଏବଂ ସେହି ଦରପୋଡ଼ା କାଗଜ ଭିତରେ ପ୍ରକୃତରେ ଆକାଉଣ୍ଟସ ସଂକ୍ରାନ୍ତୀୟ କେତେକ କାଗଜ ଥିବାର ପ୍ରମାଣ ଦର୍ଶାଇ ବିଧାନସଭା ଗୃହରେ ଖୋଦ୍ ମୁଖ୍ୟମନ୍ତ୍ରୀ ଦେଇଥିବା ପ୍ରତିଶ୍ରୁତି ଅନୁସାରେ ଏହାର ବିହିତ ତଦନ୍ତ କରି ପ୍ରକୃତ ଦୋଷୀକୁ ଖୋଜି ଦଣ୍ଡ ଦେବାକୁ ଦାବିକରିଥିଲେ । ଆଶ୍ଚର୍ଯ୍ୟର କଥା ଯେ ଯେଉଁ ଆକାଉଣ୍ଟସ କାଗଜପତ୍ର ନେଇ ପୂର୍ବତନ ନିର୍ଦ୍ଦେଶକ ଶ୍ରୀ ମିଶ୍ର ବହୁ ଖୋଳତାଡ଼ କରିଥିଲେ ସେହି କାଗଜପତ୍ରର ଦରପୋଡ଼ା ଅଂଶ ଧରାପଡ଼ିଥିଲା ଏବଂ ନିଜେ ଶତପଥୀଙ୍କର କେତେକ ବିଶେଷ ସ୍ୱାର୍ଥଥିବା ଫାଇଲ୍ ମଧ୍ୟ ପୋଡ଼ାଯାଇଥିବାର ପ୍ରମାଣ ମିଳିଥିଲା । କିନ୍ତୁ ଏସବୁ ଅକାଟ୍ୟ ପ୍ରମାଣକୁ ଏଡ଼ାଇଦେଇ ଭଣ୍ଡାରି ମୁଣ୍ଡରେ ଅଠା ବୋଳାଗଲା । 'ନିର୍ମଳ ଶାସନ'ର ତୁହାକୁ ତୁହା ଭାଷଣର କଳରୋଳ ଭିତରେ ଶତପଥୀଙ୍କ ଗୁହାରି କାହାରିକୁ ଶୁଣାଗଲାନାହିଁ । ରାଜନୈତିକ ନେତାମାନଙ୍କ ଅନୁଗ୍ରହ ଆଶାରେ ବା ବିରାଗଭାଜନ ହେବା ଭୟରେ ଉଚ୍ଚ ସରକାରୀ କର୍ମଚାରୀମାନେ ଅନ୍ୟ କର୍ମଚାରୀଙ୍କ ପ୍ରତି ଅବିଚାର କରିବା ଏକାନ୍ତ ଗର୍ହିତ କଥା । ଅନେକ ବର୍ଷ ପରେ ସ୍ୱରାଷ୍ଟ୍ର ବିଭାଗର ଜଣେ ସ୍ୱାଧୀନଚେତା ଅତିରିକ୍ତ ଶାସନ-ସଚିବ ସମସ୍ତ କଥା ଅନୁଧାନ କରି ଶତପଥୀଙ୍କୁ ସଂପୂର୍ଣ୍ଣ ନିର୍ଦ୍ଦୋଷ ବୋଲି ନାନା ତଥ୍ୟ ଓ ଯୁକ୍ତି-ସମ୍ବଳିତ ଅଭିମତ ଦେଇଥିଲେ । ମୁଁ ମୁଖ୍ୟମନ୍ତ୍ରୀ ଥିବାବେଳେ ସେ ଫାଇଲ୍ ମୋ ପାଖକୁ

ଆସିଲା ଏବଂ ମୁଁ ତାଙ୍କ ସହିତ ଏକମତ ହୋଇଥିଲି । ନୃସିଂହବାବୁ ଗେଜେଟେଡ୍ ପାହିଆକୁ ଉନ୍ନୀର୍ଣ୍ଣ ହୋଇଛନ୍ତି ଏବଂ ତାଙ୍କ କର୍ମନିଷ୍ଠାପାଇଁ ବହୁ ଉଚ୍ଚ କର୍ମଚାରୀ ଓ ମନ୍ତ୍ରୀଙ୍କର ପ୍ରଶଂସାଭାଜନ ହୋଇଛନ୍ତି ।

ଅବସ୍ଥାଚକ୍ରରେ କେତେକ ବର୍ଷ ସରକାରୀ ଚାକିରି କରୁଥିଲେ ମଧ୍ୟ ନିଜର ଦୃଢ଼ ରାଜନୈତିକ ମତ ଓ ସ୍ପଷ୍ଟବାଦିତା ହେତୁ ଶ୍ରୀ ଶଶିଭୂଷଣ ମିଶ୍ରଙ୍କର ଅନେକ ପ୍ରତିପତ୍ତିସମ୍ପନ୍ନ ବ୍ୟକ୍ତିଙ୍କ ସହିତ ତୀବ୍ର ମତଭେଦ ଘଟିବାର ଅବକାଶ ଥିଲା । ତେଣୁ ତାଙ୍କର କେତେକ ଅନୁରକ୍ତ ନିରପରାଧ ସହକର୍ମୀ ପରବର୍ତ୍ତୀ ସରକାର ଅମଳରେ ଅବସ୍ଥାର ଦାସ ପରି ଦହଗଞ୍ଜ ସହିଥିଲେ । ଶ୍ରୀ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ନୂତନ ମନ୍ତ୍ରିମଣ୍ଡଳ ଗଢ଼ାଯିବା ପରେ ମୋର ପରାମର୍ଶ ଓ ଉଦ୍ୟମରେ ସେ ଭାରତ ସରକାରରୁ ଓଡ଼ିଶା ଲୋକସମ୍ପର୍କ ଓ ପର୍ଯ୍ୟଟନ ନିର୍ଦ୍ଦେଶକରୂପେ ପ୍ରଥମେ ଡେପୁଟେସନ୍‌ରେ ଆସିଥିଲେ । ସେତେବେଳକୁ ସେ ଭାରତ ସରକାରରେ ପ୍ରଥମ ଶ୍ରେଣୀ ପାହିଆରେ କାର୍ଯ୍ୟ କରୁଥିଲେ ଓ ଚାକିରିରେ କନଫର୍ମ ହୋଇସାରିଥିଲେ । ଡେପୁଟେସନ୍ ସମୟ ବିତିଯିବା ପରେ ଓଡ଼ିଶା ସରକାର ତାଙ୍କୁ ଛାଡ଼ିବାକୁ ନ ଚାହିଁବାରୁ ଭାରତ ସରକାରଙ୍କ ପରାମର୍ଶକ୍ରମେ ନିୟମାନୁସାରେ ତାଙ୍କୁ ଏଠାରେ ନିର୍ଦ୍ଦେଶକ ପଦରେ କନଫର୍ମ କରାଯାଇଥିଲା । ଭାରତ ସରକାରରେ ତାଙ୍କର ଅଧିକ ପଦୋନ୍ନତିର ସୁଯୋଗ ଓ ସେଣ୍ଟ୍ରାଲ୍ ଇନ୍‌ଫର୍ମେସନ୍ ସର୍ଭିସ୍‌ରେ ସର୍ବୋଚ୍ଚ ଦରମାହାର ଅନେକ ଅଧିକ ଥିଲେ ମଧ୍ୟ ଆମ୍ଭମାନଙ୍କ ସହିତ ଆନ୍ତରିକତା ଏବଂ ନିକଟ ଭବିଷ୍ୟତରେ ପୁନର୍ବାର ରାଜନୈତିକ ଓ ସାମ୍ବାଦିକ ଜୀବନକୁ ଫେରିଆସିବା ଅଭିଳାଷ ହେତୁ ସେ କେନ୍ଦ୍ର ସରକାରୀ ଚାକିରିରେ ଲିଅନ୍ ଛାଡ଼ିଦେବାକୁ ରାଜିହୋଇଥିଲେ । କିନ୍ତୁ ୧୯୬୬ ମସିହା ପ୍ରାରମ୍ଭରୁ ତାଙ୍କର ଇସ୍ତଫାପତ୍ର ଦାଖଲ କରିଦେଇଥିଲେ ଏବଂ କେତେଥର ତାଗିଦ୍ ପତ୍ର ମଧ୍ୟ ଦେଇଥିଲେ । କାରଣ ଚାକିରିକାଳ ଭିତରେ ଘଟିଥିବା ଅନେକ କଥାରେ ତାଙ୍କ ମନରେ ଅସନ୍ତୋଷ ଜନ୍ମିଥିଲା । ସେହି ଇସ୍ତଫାପତ୍ର ୧୯୬୬ ମାର୍ଚ୍ଚ ମାସରେ ଗୃହୀତ ହୋଇଥିଲା । ମୁଁ ପ୍ରଦେଶ କଂଗ୍ରେସ ସଭାପତି ହେବା ପରେ ସେ ପ୍ରଦେଶ କଂଗ୍ରେସ କମିଟିର ଅନ୍ୟତମ ସାଧାରଣ ସମ୍ପାଦକ ରୂପେ କାର୍ଯ୍ୟ କରିଥିଲେ । ସେ ଚାକିରି ଛାଡ଼ିଥିବା ସମ୍ବାଦ ପାଇ ୟୁ.ଏନ୍.ଆଇ.ର ତତ୍କାଳୀନ ଚିଫ୍ ଏଡ଼ିଟର୍ ତଥା ଜେନେରାଲ୍ ମ୍ୟାନେଜର ପ୍ରଖ୍ୟାତ ସାମ୍ବାଦିକ ଶ୍ରୀ କୁଲଦୀପ ନାୟାର ତାଙ୍କୁ ସଙ୍ଗେ ସଙ୍ଗେ ଭୁବନେଶ୍ୱରରେ ରାଜ୍ୟସ୍ତରୀୟ ପ୍ରତିନିଧିରୂପେ ନିଯୁକ୍ତି ଦେଇ ତାଙ୍କ ପାଖକୁ ଟେଲିପ୍ରିଣ୍ଟର ଯୋଗେ ସମ୍ବାଦ ପଠାଇଥିଲେ । ଶ୍ରୀ ନାୟାର ମଧ୍ୟ ପୂର୍ବରୁ ସେଣ୍ଟ୍ରାଲ୍ ଇନ୍‌ଫର୍ମେସନ୍ ସର୍ଭିସ୍‌ରେ କାମ କରୁଥିବାରୁ ସେମାନଙ୍କ ମଧ୍ୟରେ ବନ୍ଧୁତା ଥିଲା । ମାତ୍ର କଂଗ୍ରେସର ଦୁର୍ଦ୍ଦିନରେ ଶଶିବାବୁ ନିଜର ଆୟକରୀ ବୃତ୍ତିଗତ ଜୀବନ ପ୍ରତି ସମୁଚିତ ଧ୍ୟାନ ନଦେଇ କଂଗ୍ରେସ କାମରେ ଅଧିକ ମନୋନିବେଶ କରିଥିଲେ । ସେଥିପାଇଁ ତାଙ୍କୁ ଅନେକ ସମୟରେ ଦୁଃଖଦୁର୍ଦ୍ଦଶା ସହିବାକୁ ପଡ଼ିଛି ।

ରାଜନୈତିକ ଭେଦାଭେଦର ଊର୍ଦ୍ଧ୍ୱରେ ନବକୃଷ୍ଣ ଚୌଧୁରୀଙ୍କର ଅନେକ ସଦ୍‌ଗୁଣ ମୋର ଅବିସ୍ମରଣୀୟ । ରାଜନୀତିରେ ସମସ୍ତ କ୍ଷୁଦ୍ରତାର ଊର୍ଦ୍ଧ୍ୱରେ ରହି ସେ ବିରୋଧୀମାନଙ୍କର ମଧ୍ୟ ଗୁଣଗ୍ରାହୀ ବନ୍ଧୁପରି ଆଚରଣ କରୁଥିଲେ । ମୁଖ୍ୟମନ୍ତ୍ରୀ ଆସନରେ ରହି ସେ ବାରମ୍ବାର ମୋ ପ୍ରତି ଗୁଣଗ୍ରାହୀ ଅଭିଭାବକ ପରି ବ୍ୟବହାର କରିଛନ୍ତି । ମୁଁ ଉପମନ୍ତ୍ରୀ ଥିବାବେଳେ ମୁଖ୍ୟମନ୍ତ୍ରୀ ମୋର କର୍ମଦକ୍ଷତାରେ ସନ୍ତୁଷ୍ଟ ହେବାରୁ ସମଗ୍ର ସ୍ୱରାଷ୍ଟ୍ର ବିଭାଗଟି ମୋ ଦାୟିତ୍ୱକୁ ଆସିଥିଲା ଏବଂ ମୁଁ ପୂରା ସ୍ୱରାଷ୍ଟ୍ର ବିଭାଗର ଉପମନ୍ତ୍ରୀ ହୋଇଥିଲି । ସ୍ୱରାଷ୍ଟ୍ର ବିଭାଗର କେବଳ ଗୋଟିଏ ଅଂଶ ପ୍ରଚାର ବିଭାଗଟି ରହିଥିଲା ଶ୍ରୀ ଅନୁପ ସିଂହଦେଓଙ୍କ ଦାୟିତ୍ୱରେ । ସ୍ୱୟଂ ମୁଖ୍ୟମନ୍ତ୍ରୀ ଏହି ବିଭାଗର ମନ୍ତ୍ରୀ ଥିବାରୁ ଓ ତାଙ୍କୁ ଅନ୍ୟ ସମସ୍ତ ବିଭାଗର ଦାୟିତ୍ୱ ବହନ କରିବାକୁ ପଡୁଥିବାରୁ ମୋତେହିଁ ସ୍ୱରାଷ୍ଟ୍ର ବିଭାଗର ପୂର୍ଣ୍ଣ ଦାୟିତ୍ୱ ତୁଲାଇବାକୁ ପଡୁଥିଲା । ଶାସନ ଓ ଶାନ୍ତିଶୃଙ୍ଖଳା ନିୟନ୍ତ୍ରଣ ସମ୍ବନ୍ଧୀୟ

ପ୍ରଶାସନିକ ବିଭାଗ ହୋଇଥିବାରୁ ସ୍ୱରାଷ୍ଟ୍ର ବିଭାଗଟି ଥିଲା ଅତି ଗୁରୁତ୍ୱପୂର୍ଣ୍ଣ ବିଭାଗ । ମୋର ସେପରି ପ୍ରଶାସନିକ ଅଭିଜ୍ଞତା ନଥିଲା । ତେଣୁ ମୋତେ ସତର୍କ ପ୍ରଶାସନିକ-ଆଚାରଦ୍ୱାରା ଅଭିଜ୍ଞତା ଅର୍ଜନ କରିବାକୁ ପଡ଼ିଥିଲା । ଶାସନ ଦାୟିତ୍ୱରେ ଥିବା ବହୁ ବଡ଼ ବଡ଼ ଅଫିସର୍ ତଥା ରାଜ୍ୟର ପୁଲିସ ବାହିନୀ ସମେତ ସେ ବିଭାଗର ଦାୟିତ୍ୱରେ ଥିବା ବଡ଼ ବଡ଼ ପୁଲିସ ଅଫିସର୍ଙ୍କ ସହିତ କାର୍ଯ୍ୟ କରିବାକୁ ପଡ଼ିଥିଲା । ତେଣୁ ଅତି ସତର୍କ ଓ ସାବଧାନତାର ସହିତ କାର୍ଯ୍ୟ କରିବାକୁ ହୋଇଥିଲା । ଏ ବିଭାଗର ସେତେବେଳେ ସେକ୍ରେଟେରୀ ଥିଲେ ରାୟବାହାଦୂର ସୋମନାଥ ମହାପାତ୍ର । ପ୍ରଶାସନିକ କ୍ଷେତ୍ରରେ ସେ ଥିଲେ ଜଣେ ସୁଦକ୍ଷ ଅଫିସର୍ । ତାଙ୍କର ବିଶେଷତ୍ୱ ଥିଲା ମନ୍ତ୍ରୀଙ୍କ ସହିତ ପୂର୍ଣ୍ଣ ସହଯୋଗ କରି ସରକାରଙ୍କ ନୀତିଗତ ଚିନ୍ତାଧାରା ଅନୁସାରେ କାର୍ଯ୍ୟ ସଂପାଦନ କରିବା । ପ୍ରଶାସନିକ କ୍ଷେତ୍ରରେ କୌଣସି ଗୁରୁତ୍ୱପୂର୍ଣ୍ଣ ବିଷୟରେ ନିଷ୍ପତ୍ତି ନେବାକୁ ଥିଲେ କିମ୍ବା କୌଣସି ବିବାଦମୂଳକ ବିଷୟରେ ବିଚାର କରିବାକୁ ଥିଲେ ସେ ମନ୍ତ୍ରୀଙ୍କ ସହିତ ପ୍ରଥମେ ଆଲୋଚନା କରି ସେ ବିଷୟରେ ସରକାରଙ୍କର ନୀତିଗତ ଚିନ୍ତାଧାର କ'ଣ ତାହା ଜାଣିନିଅନ୍ତି । ତେଣୁ ସଚିବାଳୟରେ ମୋ' ସହିତ ତାଙ୍କର କୌଣସି ବିଷୟରେ ମତଭେଦ ହେବାର ଅବକାଶ ନଥିଲା । କିନ୍ତୁ ପ୍ରଶାସନିକ ଆଚାରରେ ସେ ଅଭିଜ୍ଞ ଓ ଧୂରନ୍ଧର ଥିବାରୁ ଅନେକ ସମୟରେ ମୋତେ ତାଙ୍କର ପରାମର୍ଶ ଗ୍ରହଣ କରିନେବାକୁ ପଡୁଥିଲା । ଆଉ ଜଣେ ସୁଦକ୍ଷ ପୁଲିସ ଅଫିସର୍ ଶ୍ରୀ ବି.ରାୟ ସେତେବେଳେ ଥିଲେ ପୁଲିସ ବିଭାଗର ଇନ୍ସପେକ୍ଟର ଜେନେରାଲ୍ । ପୁଲିସ ବିଭାଗ ଓ ପୁଲିସ ବାହିନୀ ଉପରେ ତାଙ୍କର ପୂର୍ଣ୍ଣମାତ୍ରାରେ କର୍ତ୍ତୃତ୍ୱ ଥିଲା । ପୁଲିସ ବିଭାଗର ଶୃଙ୍ଖଳା ରକ୍ଷା ଦିଗରେ ସେ ବିଶେଷ ସଚେତନ ଥିଲେ । ଆମେ ରାଜନୈତିକ ଲୋକ ହୋଇଥିବାରୁ ଶୃଙ୍ଖଳା ସମ୍ପର୍କରେ ଆମର କୋହଳ ମନୋଭାବ ସହିତ ତାଙ୍କର ମନୋଭାବର ଅମେଳ ହେଉଥିଲା । ଏହାର ସମାଧାନପାଇଁ ମୁଁ ଗୋଟିଏ ପନ୍ଥା ବାହାର କରିଥିଲି । କୌଣସି ବିଷୟରେ ମତଭେଦ ହେଲେ ମୁଁ ସ୍ୱରାଷ୍ଟ୍ର ବିଭାଗର ଶାସନ-ସଚିବ ଏବଂ ପୁଲିସ ଆଇ.ଜି.ଙ୍କୁ ଏକତ୍ର ବସାଇ ବିଷୟଟି ଆଲୋଚନା କରିବା ପରେ ନିଷ୍ପତ୍ତି ନେଉଥିଲି । ବିଦେଶୀ ଶାସନ ସମୟରେ ପୁଲିସର ଆଚାର ବ୍ୟବହାର ବିଷୟରେ ଜନସାଧାରଣଙ୍କର ତିକ୍ତ ଅନୁଭୂତି ମୋର କାର୍ଯ୍ୟକ୍ଷେତ୍ରରେ ପ୍ରତିଫଳିତ ହେଉଥିଲା । ପୁଲିସର କାର୍ଯ୍ୟକଳାପ ସଂପର୍କରେ ଯେଉଁସବୁ ଗୁରୁତର ଅଭିଯୋଗ ମୋ ଦୃଷ୍ଟିକୁ ଆସେ ସେଗୁଡ଼ିକ ମୋ ଅଫିସ୍‌ରେ ନୋଟ୍‌କରି ରଖାଯାଏ । ପ୍ରତି ସପ୍ତାହରେ ଥରେ ଆଇ.ଜି. ମୋ ପାଖକୁ ଆସି ସେସବୁ ସମ୍ବନ୍ଧରେ ମୋ ସହିତ ଆଲୋଚନା କରନ୍ତି ଏବଂ ଆବଶ୍ୟକୀୟ କାର୍ଯ୍ୟାନୁଷ୍ଠାନ କରିବାପାଇଁ ଅଭିଯୋଗଗୁଡ଼ିକ ନୋଟ୍ କରି ନେଇଯା'ନ୍ତି । ଜରୁରୀ ଏବଂ ଅତ୍ୟାବଶ୍ୟକ ସମସ୍ୟା ଉପୁଜିଲେ ମୁଁ ଡି.ଆଇ.ଜି. ଓ ଜିଲ୍ଲାସ୍ତରରେ ଥିବା ଏସ୍.ପି.ମାନଙ୍କ ସହିତ ଯୋଗାଯୋଗ ରଖି ଖବର ନେଉଥିଲି ଏବଂ ଗଣତନ୍ତ୍ର ଶାସନରେ ତାହା ଅନିବାର୍ଯ୍ୟ ବୋଲି ଅଭିଜ୍ଞତାରୁ ଉପଲବ୍ଧି କରିଥିଲି । ଏହିପରି ଭାବରେ ମୁଁ ଘରୋଇ ବିଭାଗର ଉପମନ୍ତ୍ରୀ ଥାଇ ସମସ୍ତଙ୍କ ସହିତ ସହଯୋଗ ସ୍ଥାପନ କରି କାର୍ଯ୍ୟରେ ଅଗ୍ରସର ହୋଇଥିଲି । ଗଣତାନ୍ତ୍ରିକ ବ୍ୟବସ୍ଥା ଭିତରେ କି ପ୍ରକାର ଆଚରଣ ଅବଲମ୍ବନ କଲେ ଲୋକଙ୍କୁ ସନ୍ତୁଷ୍ଟ କରିବା ସଙ୍ଗେ ସଙ୍ଗେ ନିର୍ବିଘ୍ନରେ ଶାସନ ପରିଚାଳନା କରାଯାଇପାରିବ ତାହା ଶିଖିବାପାଇଁ ମୁଁ ବହୁତ ଉଦ୍ୟମ କରିଥିଲି । ବ୍ୟବସ୍ଥାସଭାରେ ଓ ପ୍ରଶାସନିକ କ୍ଷେତ୍ରରେ ଆଚରଣ ସମ୍ବନ୍ଧୀୟ କେତେକ ବହି ମଧ୍ୟ ଅଧ୍ୟୟନ କରିଥିଲି । ମୁଖ୍ୟମନ୍ତ୍ରୀ ଶ୍ରୀ ଚୌଧୁରୀ ମଧ୍ୟ ଇଂଲଣ୍ଡରେ କ୍ୟାବିନେଟ୍ ସିଷ୍ଟମ୍ କିପରି କାର୍ଯ୍ୟ କରେ ସେ ସମ୍ବନ୍ଧରେ କେତେକ ପୁସ୍ତକ ମୋତେ ଦେଇଥିଲେ । ଏସବୁ ସମ୍ବନ୍ଧରେ ଶ୍ରୀ ଚୌଧୁରୀଙ୍କର ଯେ ଯଥେଷ୍ଟ ଜ୍ଞାନ ଥିଲା ତାହ ସ୍ୱୀକାର କରିବାକୁ ହେବ । ବିଧାନସଭାରେ ତାଙ୍କର ସଂସଦୀୟ ଗଣତନ୍ତ୍ର, ପ୍ରଶାସନିକ ଆଚାର, ପ୍ରଜାତନ୍ତ୍ର ଶାସନର ବିକେନ୍ଦ୍ରୀକରଣ, ଲୋକମତ, ସାଧାରଣ ଲୋକଙ୍କର ସ୍ୱାର୍ଥ ଓ ଅଧିକାର ସମ୍ବନ୍ଧୀୟ ଭାଷଣ ଯେ ସର୍ବୋତ୍କୃଷ୍ଟ ଥିଲା ତାହା ନିଃସନ୍ଦେହ । ସେସବୁ

ନମ୍ରତା ସହ ଉଚ୍ଚ ପ୍ରଜାତନ୍ତ୍ର ଆଦର୍ଶବାଦରେ ପରିପୂର୍ଣ୍ଣ ଥିଲା । କ୍ଷମତା ପ୍ରତି ସେ ଆସକ୍ତ ନଥିଲେ । ସେ ଭଲଭାବରେ ବୁଝିଥିଲେ ଯେ କ୍ଷମତା ଲୋକଙ୍କୁ ଭ୍ରଷ୍ଟାଚାରୀ କରିଦିଏ । ସେ ବିଷୟରେ ସେ ଆମ୍ଭମାନଙ୍କୁ ସତର୍କ କରାଇଦେଇଥିଲେ । ସେତେବେଳେ ଭାରତବର୍ଷରେ ଖୁବ୍ କମ୍ ଲୋକ ଏହି ପ୍ରକାର ସମୟ ଉପଯୋଗୀ ସାରଗର୍ଭକ କଥା କହୁଥିଲେ । ସେହି ସମୟରେ ଆମ ଦେଶର ଅନ୍ୟାନ୍ୟ ନେତାମାନଙ୍କର ଯେଉଁସବୁ ଭାଷଣ ଜାତୀୟ ସମ୍ବାଦପତ୍ରରେ ପ୍ରକାଶ ପାଏ ତା' ସହିତ ଶ୍ରୀ ଚୌଧୁରୀଙ୍କର ଭାଷଣକୁ ତୁଳନା କରି ଆମ୍ଭମାନଙ୍କର ଧାରଣା ହେଉଥିଲା ଯେ ତାହା ଅତି ଉତ୍କୃଷ୍ଟ ଓ ଆଦର୍ଶସ୍ଥାନୀୟ । ନବବାବୁ ପ୍ରଚାର ଆଡ଼ମ୍ବରକୁ ପସନ୍ଦ କରୁନଥିଲେ । ତେଣୁ ତାଙ୍କର ବହୁ କଥା ଖବରକାଗଜରେ ପ୍ରକାଶିତ ହେଉନଥିଲା । ଆଉ ମଧ୍ୟ ଇଂରାଜୀ ଭାଷାରେ ଧୁରନ୍ଧର ଥିଲେ ମଧ୍ୟ ସେ ଓଡ଼ିଆରେ ଭାଷଣ ଦେଉଥିବାରୁ ବଡ଼ ବଡ଼ ଇଂରାଜୀ ସମ୍ବାଦପତ୍ରଗୁଡ଼ିକରେ ତାଙ୍କର ବକ୍ତବ୍ୟଗୁଡ଼ିକ ଭଲଭାବରେ ସର୍ବଭାରତୀୟ ସ୍ତରରେ ପ୍ରକାଶ ପାଇପାରୁନଥିଲା । ତାଙ୍କରି ଅମଳରେ ଓଡ଼ିଆ ଓଡ଼ିଶାରେ ସରକାରୀ ଭାଷାରୂପେ ପ୍ରଚଳନ କରିବାପାଇଁ ଆଇନ ପାଶ୍ ହୋଇଥିଲା ।

## କ୍ଷମତାର ସମୀକ୍ଷା

ନିରଙ୍କୁଶ କ୍ଷମତା ଯେ କ୍ଷମତାର ଅଧିକାରୀଙ୍କୁ ଭ୍ରଷ୍ଟାଚାରୀ କରିଦିଏ (Power corrupts, and absolute power corrupts absolutely) ଏହି ଉକ୍ତିଟି ମୁଁ ସବୁବେଳେ ମନରେ ରଖିଥାଏ । ମୋର ଅଳ୍ପ ବୟସରେ ପ୍ରଶାସନିକ ଆଚାର ସମ୍ବନ୍ଧରେ ବିଶେଷ ଅଭିଜ୍ଞତା ନଥାଇ ଏଡ଼େ ବଡ଼ ଗୁରୁତ୍ୱପୂର୍ଣ୍ଣ ବିଭାଗର ଦାୟିତ୍ୱ ମୁଖ୍ୟମନ୍ତ୍ରୀ ମୋ ଉପରେ ନ୍ୟସ୍ତ କରିଥିବାରୁ ତାହା କିପରି ସୁରୁଖୁରୁରେ ତଥା ଠିକ୍ ଭାବରେ ତୁଲାଇବି ସେଥିପାଇଁ ମୁଁ ବଡ଼ ଚିନ୍ତିତ ଥିଲି । ତା ବ୍ୟତୀତ କ୍ୟାବିନେଟ୍ ପଦ୍ଧତିରେ (Cabinet System) ମିଳିତ ଦାୟିତ୍ୱ ଭିତରେ କାର୍ଯ୍ୟ ନିର୍ବାହ କରିବାକୁ ହେଲେ କିଛି ସ୍ୱତନ୍ତ୍ର ଗୁଣ ହାସଲ କରିବାକୁ ହେବ । ମନ୍ତ୍ରିମଣ୍ଡଳ କହିଲେ ବହୁ ସଭ୍ୟବିଶିଷ୍ଟ ଗୋଟିଏ ଅନୁଷ୍ଠାନ ଏବଂ ସମସ୍ତଙ୍କୁ ସାଙ୍ଗରେ ନେଇ ଚଳିବା ପରି ଅଭ୍ୟାସ ନଥିଲେ ଶାସନରେ ଅସୁବିଧା ସୃଷ୍ଟି ହେବାର ଯଥେଷ୍ଟ ସମ୍ଭାବନା ଥାଏ । ତେଣୁ ସମସ୍ତଙ୍କ ସହିତ ମନମିଳାଇ ଚଳିବାକୁ ସ୍ଥିର କରିଥିଲି । ମନୁଷ୍ୟମାତ୍ରେ ଭିନ୍ନ ମତ ରହିବା ସ୍ୱାଭାବିକ । ଆଲୋଚନାବେଳେ କିଏ କେତେ ପ୍ରକାର ମନ୍ତବ୍ୟ ଦିଅନ୍ତି । ଜଣକର ବିରୁଦ୍ଧ ମତକୁ ଅନ୍ୟ ଜଣକ ପାଖରେ ଯାଇ କହିଲେ ବେଳେ ବେଳେ ନିଜ ଦଳ ଓ ଶାସନ ଭିତରେ ଜଟିଳ ପରିସ୍ଥିତି ସୃଷ୍ଟି ହୋଇଥାଏ । ତେଣୁ ମନ୍ତ୍ରିପରିଷଦ ଭିତରେ ବା ଦଳ ଭିତରେ ଏହି ପ୍ରକାରର କୁତ୍ସା ଚୁଗୁଲି ସହିତ ସଂପୃକ୍ତ ନ ହେବା ପାଇଁ ମୁଁ ମୋର ଆଚରଣକୁ ସଂଯତ କରିଥାଏ । କାରଣ ମୁଁ ଭଲଭାବରେ ହୃଦୟଙ୍ଗମ କରିଥିଲି ଯେ ଉନ୍ନତି ବା ଅବନତି ନିଜ ଜିହ୍ୱାର ଅଧୀନ ଓ ଜିହ୍ୱା ହେଉଛି ବିଷ ତଥା ଅମୃତର ଖଣିସଦୃଶ । ସେଇଥିପାଇଁ ମୋ ବିଷୟରେ ଅନେକେ ମତ ବ୍ୟକ୍ତ କରନ୍ତି ଯେ ମୋ'ଠାରୁ ଗୋଟିଏ କଥା ବାହାର କରିବା ସହଜ ନୁହେଁ । ଅନେକ କଥା ମୋ କାନକୁ ଆସେ, ମୁଁ ତାକୁ ନିଜ ମନ ଭିତରେ ରଖେ । ଯେଉଁଟି ଭଲ ତାହା ଅନ୍ୟ ଆଗରେ ପ୍ରକାଶ କରେ; ମନ୍ଦଟି ମୋ ମନ ଭିତରେ ଘୋଡ଼ାଇଦିଏ ।

ଗଣତନ୍ତ୍ର ଶାସନରେ କ୍ଷମତାସୀନ ବ୍ୟକ୍ତି ସାଧାରଣ ଲୋକଙ୍କ ସହିତ ସଂପର୍କ ରଖିବା ଓ ସେମାନଙ୍କୁ ଅବାଧରେ ସାକ୍ଷାତ୍ ସୁଯୋଗ ଦେବା ହେଉଛି ଏକ ଅପରିହାର୍ଯ୍ୟ ଆଚରଣ । ସେଥିପାଇଁ ଲୋକଙ୍କୁ ସାକ୍ଷାତ୍ ଦେଇ ଧୈର୍ଯ୍ୟର ସହିତ ସେମାନଙ୍କ କଥା ଶୁଣିବା ମୋର କର୍ତ୍ତବ୍ୟ ବୋଲି ମୁଁ ଧରିନେଇଥିଲି । ମୁଁ ଏଥିରେ ଏପରି ଅଭ୍ୟସ୍ତ ହୋଇଯାଇଥିଲି ଯେ ଜଣେ ଲୋକ କୌଣସି ସମସ୍ୟା ନେଇ ଆସିଲେ ତାହା ଶୁଣିବା ପରେ ଯେତେ ଅଯୌକ୍ତିକ ବା ଦୁରୂହ ବୋଧ ହେଲେ ମଧ୍ୟ ହୋଇପାରିବନାହିଁ ବୋଲି ହଠାତ୍ କହିଦେଉନଥିଲି । ବୁଝି ବିଚାରି ଯାହା କରିବା ସମ୍ଭବ ତାହା

କରୁଥିଲି । ଅନେକ ସମୟରେ ଅନୁରୋଧଟି ସଂପୂର୍ଣ୍ଣ ଅସମ୍ଭବ ବୋଲି ଜାଣିଥିଲେ ମଧ୍ୟ ସାକ୍ଷାତ୍‌କାରୀଙ୍କୁ ନିରାଶ କରିବାକୁ ମୋର ମନ ବଳୁନଥିଲା । ଶାସନର ବିଭିନ୍ନ ସ୍ତରକୁ ଯାଇ ମୁଖ୍ୟମନ୍ତ୍ରୀ ହେବା ପରେ ମଧ୍ୟ ମୋର ଏହି ମନୋବୃତ୍ତି ବଦଳିନଥିଲା । ତେଣୁ ମୁଁ ଅଯଥା ସମୟ ନଷ୍ଟ କରେ ଓ ଉଚ୍ଚ ଆସନରେ ରହି ଲଘୁ ଆଚରଣ କରେ ବୋଲି ଅନେକ ବନ୍ଧୁ ମୋତେ ସମାଲୋଚନା କରନ୍ତି । ନିଜର ଆଚାରବ୍ୟବହାର ଓ ଚାଲିଚଳନ ସମ୍ବନ୍ଧରେ କେତେକ କଥା ଲେଖୁଥିବାରୁ କାହାରି କାହାରି ମନରେ ଏ ପ୍ରଶ୍ନ ଉଠିପାରେ ଯେ ବୋଧହୁଏ ମୁଁ ଜଣେ ଆତ୍ମାଭିମାନୀ ବ୍ୟକ୍ତି, ତେଣୁ ନିଜର ଗୁଣଗାନ କରି ଆତ୍ମସନ୍ତୋଷ ଲାଭକରୁଛି । ସେ ପ୍ରକାର ମୋର ପ୍ରକୃତି ନୁହେଁ । ବରଂ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଗୁଣାବଳୀର ପ୍ରଶଂସା ଓ ମୋ ଉପରେ ଓ ଅନ୍ୟମାନଙ୍କ ଉପରେ ତାହାର ପ୍ରଭାବ କଥା କହୁ କହୁ ଏସବୁ କଥା ଲେଖିଗଲି । ଏ ସଂପର୍କରେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ନ୍ୟାୟାଧୀଶ ତଥା ରାଷ୍ଟ୍ରନୀତିଜ୍ଞ ଶ୍ରୀ ଏମ୍.ସି. ଚଗଲା ତାଙ୍କ ଆତ୍ମଜୀବନୀରେ ନିଜ ଆଚରଣ ସମ୍ବନ୍ଧରେ ଯାହା ଲେଖିଛନ୍ତି ତାହା ଏଠାରେ ଉଦ୍ଧାର କରିବା ପ୍ରାସଙ୍ଗିକ ହେବ ବୋଲି ମୁଁ ମନେକରୁଛି । ସେ ଲେଖିଛନ୍ତି : "Why I am writing all this and exposing my inner self to public scrutiny ? Because I feel that in an autobiography the readers would want to know not only what the author did or said, but also what sort of a man he is. After all, however enentful one's life might have been, one is not an automation, one is a human being with flesh and blood, with weakness and faults, emotions and sensibilities." ତାଙ୍କ ମତରେ "In the last analysis all that you leave behind is the kindness and consideration you have shown to people, and which is remembered."

କ୍ରୋଧ ଓ ଅହଂକାର ମନୁଷ୍ୟର ପ୍ରଧାନ ଶତ୍ରୁ । ଜଣେ ରାଜନୀତିଜ୍ଞ ନେତା ପକ୍ଷରେ ଏହି ଦୁଇଟି ଯେ ସବୁଠାରୁ ଅତି ମାରାତ୍ମକ, ଏ କଥା ମୁଁ ଭଲଭାବରେ ହୃଦୟଙ୍ଗମ କରିଥିଲି । ତେଣୁ ଯେକୌଣସି ଅବସ୍ଥାରେ ଥିଲେ ମଧ୍ୟ ମୁଁ ସହଜରେ ରାଗୁନଥିଲି ଏବଂ କାହାରି କାର୍ଯ୍ୟରେ ମୋର କ୍ରୋଧ ହେଲେ ମଧ୍ୟ ମୁଁ ସେଭଳି ଭାବ ପ୍ରକାଶ କରୁନଥିଲି । ଖୁବ୍ ବେଶି ହେଲେ ଗୁମ୍ କରି ବସିଯାଇ ସଂପୃକ୍ତ ବ୍ୟକ୍ତିଙ୍କ ସହିତ କଥାବାର୍ତ୍ତା କରେନାହିଁ । କ୍ରୋଧ ଅବସ୍ଥାରେ କୌଣସ ନିଷ୍ପତ୍ତି ନିଏନାହିଁ । ସରକାରୀ ସ୍ତରରେ କୌଣସି ବିଷୟରେ ମୋର କ୍ରୋଧ ଜାତହୋଇଥିଲେ ସେ ବିଷୟରେ ନିଷ୍ପତ୍ତି କିଛିଦିନ ସ୍ଥଗିତ ରଖିଦିଏ । ସାଧାରଣ ଅବସ୍ଥା ଆସିଲେ ତା'ଉପରେ ବିଚାରକରି ନିଷ୍ପତ୍ତି ନେଇଥାଏ । ସ୍ୱରାଷ୍ଟ୍ର ବିଭାଗର ଉପମନ୍ତ୍ରୀଠାରୁ ଆରମ୍ଭକରି ରାଜ୍ୟର ମୁଖ୍ୟମନ୍ତ୍ରୀ ହେବା ପର୍ଯ୍ୟନ୍ତ ମୁଁ ବହୁ ଅପ୍ରୀତିକର ପରିସ୍ଥିତିର ସମ୍ମୁଖୀନ ହୋଇଛି । ଉଚ୍ଚପାହ୍ୟା ଅଫିସରଙ୍କଠାରୁ ଆରମ୍ଭକରି ତଳ ପାହ୍ୟା ପର୍ଯ୍ୟନ୍ତ ବହୁ ଲୋକଙ୍କ କାର୍ଯ୍ୟରେ ଅସନ୍ତୁଷ୍ଟ ହେବାର ଅବକାଶ ଉପୁଜିଥିଲା; କିନ୍ତୁ ସେଥିପାଇଁ ମୁଁ କାହାରି ଉପରେ ଆକ୍ରୋଶ ରଖି ପ୍ରତିଶୋଧ ନେବାର ଉଦ୍ୟମ କରେନାହିଁ । ଘରୋଇ ଓ ବ୍ୟକ୍ତିଗତ ବ୍ୟାପାରରେ ମଧ୍ୟ ମୁଁ ତଦନୁରୂପ ଆଚରଣ ପ୍ରଦର୍ଶନ କରିଥାଏ । ଘରୋଇ କାର୍ଯ୍ୟପାଇଁ ନିଯୁକ୍ତ ବ୍ୟକ୍ତିମାନଙ୍କ ପ୍ରତି କର୍କଶ ବ୍ୟବହାରକୁ ମୁଁ ଆଦୌ ସହ୍ୟକରିପାରେନାହିଁ । ସେମାନଙ୍କ ପ୍ରତି କେହି କୌଣସି ପ୍ରକାର ରୁକ୍ଷ ଆଚରଣ ଦେଖାଇଲେ ମୁଁ ଅସନ୍ତୋଷ ପ୍ରକାଶ କରିଥାଏ । ମୋର ପରିବାରବର୍ଗ ସମୟସମୟରେ ମୋର ଏ ପ୍ରକାର ଆଚରଣ ହେତୁ ଅସ୍ୱସ୍ତି ଭୋଗନ୍ତି । ଅନେକ ସମୟରେ ଲୋକର ଜୀବିକା ଉପରେ ଆଞ୍ଚ ଆସିଲା ପରି ଘଟଣା ମଧ୍ୟ ଆମର ବିଚାରପାଇଁ ଆସିଥାଏ । ଏହି ସମୟରେ ମୋର ବିଚାରଧାରା ମାନବୋଚିତ ସମ୍ବେଦନଶୀଳତାଦ୍ୱାରା ପ୍ରଭାବିତ ହୋଇଥାଏ । ଏହି ପ୍ରକାରର ଅନେକ

ଓଜରଆପତ୍ତି ଓ ସମସ୍ୟା ମୋ ପାଖକୁ ଆସିଛି ଏବଂ ମୁଁ ଏହି ଉଦାର ବିଚାରଧାରାରେ ପ୍ରଭାବିତ ହୋଇ ନ୍ୟାୟ ଦେବାକୁ ଉଦ୍ୟମ କରିଛି । ଅନେକ କ୍ଷେତ୍ରରେ ଅପାତ୍ରରେ ଦାନ ଦେଇଛି ବୋଲି ସମାଲୋଚିତ ମଧ ହୋଇଛି । ଏ ସଂପର୍କରେ କେତୋଟି ଘଟଣା ଉଲ୍ଲେଖ କଲେ ସମୀଚୀନ ହେବ ବୋଲି ମନେକରୁଛି ।

## ଗଫୁରର ଦୁଃଖ କଥା

୧୯୬୨ରୁ ୧୯୬୭ ମସିହା ପର୍ଯ୍ୟନ୍ତ ମୁଁ ଆମ ରାଜ୍ୟର ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ ଥିଲି । ସଯଦ୍ ଗଫୁର ଅଲ୍ଲୀ ନାମକ ଜଣେ ପାକିସ୍ତାନୀ ଗୁପ୍ତଚରକୁ ମୁଁ ଆମ ରାଜ୍ୟରେ ରହିବାକୁ ପ୍ରଶ୍ରୟ ଦେଇଥିଲି ବୋଲି ମୋ ବିରୁଦ୍ଧରେ ଗୋଟିଏ ଅଭିଯୋଗ ପରବର୍ତ୍ତୀ ସ୍ୱତନ୍ତ୍ର-ଜନକଂଗ୍ରେସ ମିଳିତ ସରକାରଙ୍କ ଦ୍ୱାରା ନିଯୁକ୍ତ ଖାନ୍ନା କମିଶନ ଆଗରେ ବିଚାରପାଇଁ ଆସିଥିଲା । ଏହି ଅଭିଯୋଗରେ ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ୍ ମିତ୍ର ମଧ ଅଭିଯୁକ୍ତ ଥିଲେ । ଆମେ ଦୁଇଜଣ ସଲାସୁତୁରା ହୋଇ ଜଣେ ପାକିସ୍ତାନୀକୁ ରାଜ୍ୟରେ ରଖି ତା' ଦ୍ୱାରା ପାକିସ୍ତାନକୁ ଗୁପ୍ତ ସମ୍ବାଦ ପ୍ରେରଣ କରୁଥିଲୁ ବୋଲି ଅଭିଯୋଗ ହୋଇଥିଲା । ମୋ ବିରୁଦ୍ଧରେ ଅଭିଯୋଗ ହୋଇଥିଲା ଯେ ଦଣ୍ଡ ଦେଇଂ ସଯଦ୍ ଗଫୁର୍ ଅଲ୍ଲୀଙ୍କୁ ଏଠାରୁ ପାକିସ୍ତାନକୁ ଦେଶାନ୍ତର କରିଦେବା ନିମିତ୍ତ ତାଙ୍କ ବିରୁଦ୍ଧରେ ଯେଉଁ ମକଦ୍ଦମା ହୋଇଥିଲା ତାହା ପ୍ରତ୍ୟାହାର କରିବାପାଇଁ ମୁଁ ଆଦେଶ ଦେଇଥିଲି । ସଯଦ୍ ଗଫୁର୍ ଅଲ୍ଲୀଙ୍କ ଘର ଥିଲା ଯାଜପୁର ସବ୍‌ଡିଭିଜନ୍‌ର ବରୀ ଗ୍ରାମରେ । ତାଙ୍କର ଘରବାଡ଼ି, ସ୍ତ୍ରୀ, ତିନୋଟି ଝିଅ ଓ ଗୋଟିଏ ପୁଅ ବରୀରେ ବାସକରୁଥିଲେ । ୧୯୪୭ରେ ଭାରତ ବିଭାଜନବେଳେ କୌଣସି କାରଣରୁ ଘରେ କଳହ ହେବାରୁ ଗଫୁର୍ କଲିକତା ପଳାଇଥିଲା । ସେଠାରୁ ପୂର୍ବ-ପାକିସ୍ତାନକୁ ପଳାଇ ଗୋଟିଏ ପାନ ଦୋକାନ କରି ସେଠାରେ ରହିଥିଲା ଏବଂ ନିଜକୁ ପାକିସ୍ତାନୀ ବୋଲି ପରିଚିତ କରାଇ ଅସ୍ଥାୟୀଭାବରେ ପୂର୍ବ-ପାକିସ୍ତାନର କୃଷି ବିଭାଗରେ ପିଅନ କାର୍ଯ୍ୟ କରୁଥିଲା । କିଛିଦିନ ପରେ ନିଜ ଭିଟାମାଟି ଓ ପିଲାକବିଲାଙ୍କ ମୋହରେ ସେଠାରୁ ଗୋଟିଏ ପାକିସ୍ତାନୀ ଭିସା ଧରି ସେ ଓଡ଼ିଶାକୁ ଫେରିଆସିଲା । ଓଡ଼ିଶାକୁ ଆସିଲା ପରେ ନିୟମ ଅନୁଯାୟୀ କିଛିକାଳ ଅସ୍ଥାୟୀ ଭାବରେ ରହିବାପାଇଁ କଟକ ଜିଲ୍ଲା କର୍ତ୍ତୃପକ୍ଷଙ୍କଠାରୁ ଅନୁମତି ପାଇଥିଲା । ତା'ର ସେ ଅସ୍ଥାୟୀ ସମୟର ମିଆଦ ପୂରିଯିବାରୁ ଏବଂ ସେ ପୁଣି ପାକିସ୍ତାନ ଲେଉଟି ନ ଯାଇ ଏଠାରେ ରହିବାରୁ ତା' ବିରୁଦ୍ଧରେ ବୈଦେଶିକ ନାଗରିକ ଆଇନ (Foreigners Act) ଅନୁସାରେ ମକଦ୍ଦମା ହୋଇଥିଲା । ଗଫୁର୍ ଅଲ୍ଲୀ ବୀରେନ୍ ବାବୁଙ୍କ ପାଖରେ ଥିଲା ଏବଂ ତାଙ୍କ ପରିବାର ସଂପୃକ୍ତ ଥିବା ଓଡ଼ିଶା ଏଜେନ୍ସିସ ନାମକ ବ୍ୟବସାୟ ପ୍ରତିଷ୍ଠାନରୁ ଦରମା ପାଉଥିଲା ବୋଲି ଅଭିଯୋଗ ହୋଇଥିଲା । ଗଫୁର୍ ଅଲ୍ଲୀର ସ୍ତ୍ରୀ ତା'ର ସ୍ୱାମୀଙ୍କ ଔରସରୁ ଚାରିଗୋଟି ପିଲା ଥିବା କଥା ବର୍ଣ୍ଣନା କରି ତା'ର ସ୍ୱାମୀଙ୍କୁ ତାଙ୍କର ନିଜ ଘର ବରୀ ଗ୍ରାମରେ ରହିବାପାଇଁ ଓ ତାଙ୍କୁ ଭାରତୀୟ ବୋଲି ଘୋଷଣା କରିବାକୁ କରୁଣ ଆବେଦନ କରିଥିଲା । ସର୍ବୋଦୟନେତ୍ରୀ ଶ୍ରୀମତୀ ରମାଦେବୀ ତା' ଦୁଃଖରେ ସମବେଦନା ଜଣାଇ ସେ ଯାହା କହୁଛି ତାହା ସତ୍ୟ ବୋଲି ସୁପାରିସ୍ କରି ମୋତେ ଚିଠି ଲେଖିଥିଲେ । ଘରୋଇ ବିଭାଗ ପୁଲିସ ଆଇନର ଖଣ୍ଡାଧାରରେ ଚାଲି, ଗଫୁର୍ ପରିବାରର ଦୁଃଖ ବିଚାର ନକରି, ଗଫୁର୍‌କୁ ଧରିନେଇ ପାକିସ୍ତାନ ସୀମା ଆରପାରିରେ ଛାଡ଼ିଦେବାପାଇଁ ମୋ ପାଖକୁ ସୁପାରିସ ପଠାଇଥିଲେ । ମୁଁ କିନ୍ତୁ ତା'ର ଦରଖାସ୍ତ ବିଚାର କରିବାପାଇଁ ଅଦେଶ ଦେଇଥିଲି । ମାତ୍ର ଘରୋଇ ବିଭାଗ ବାରମ୍ବାର ମୋ ପାଖକୁ ମୋର ନିଷ୍ପତ୍ତି ପରିବର୍ତ୍ତନ କରିବାକୁ ଫାଇଲ୍ ପଠାଉଥାଆନ୍ତି । ଏହି ସମୟରେ ଦିଲ୍ଲୀରେ ରାଜ୍ୟ ମୁଖ୍ୟମନ୍ତ୍ରୀ ଓ ଘରୋଇ ମନ୍ତ୍ରୀମାନଙ୍କର ଗୋଟିଏ ସମ୍ମିଳନୀ ତତ୍କାଳୀନ ପ୍ରଧାନମନ୍ତ୍ରୀ ଲାଲବାହାଦୁର ଶାସ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା । ଉକ୍ତ ସମ୍ମିଳନୀରେ ମୁଁ ଏହି ଗଫୁର୍ ପରିବାରର କରୁଣ କାହାଣୀ ବର୍ଣ୍ଣନା କରି

ଏ ବିଷୟରେ ନ୍ୟାୟତଃ କ'ଣ କରିବା ଉଚିତ ସେଥିପାଇଁ ପରାମର୍ଶ ଲୋଡ଼ିଥିଲି । ଉତ୍ତରରେ ଶ୍ରୀ ଲାଲବାହାଦୁର ଶାସ୍ତ୍ରୀ କହିଥିଲେ, "There was bound to be some amount of humanitarian consideration in dealing with such questions"..ଦିଲ୍ଲୀରୁ ଫେରି ମୁଁ ଏହି କଥାଟି ଫାଇଲ୍‌ରେ ଉଲ୍ଲେଖ କରିଦେଇଥିଲି ଏବଂ ମାନବିକତା ଦୃଷ୍ଟିକୋଣରୁ ବିଷୟଟିକୁ ବିଚାର କରିବାପାଇଁ ଆଦେଶ ଦେଇଥିଲି । ତଦନୁସାରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଗଲା ଏବଂ. ଗଫୁର୍ ବିରୁଦ୍ଧରେ ମକଦ୍ଦମା ପ୍ରତ୍ୟାହୃତ ହୋଇ ତାକୁ ଭାରତୀୟ ନାଗରିକରୂପେ ସ୍ୱୀକୃତି ମିଳିଥିଲା । ବିଚାରପତି ଖାନ୍ନା ମୋର ଉପରୋକ୍ତ ଉକ୍ତିରେ ସନ୍ତୁଷ୍ଟ ହୋଇ ତାହା ଗ୍ରହଣ କରିଥିଲେ । ବୀରେନ୍‌ବାବୁଙ୍କ ପାଖରେ ଗଫୁର୍ ଥିଲା, ଓଡ଼ିଶା ଏକ୍ସେସରୁ ଦରମା ପାଉଥିଲା ଓ କେସ୍ ପ୍ରତ୍ୟାହୃତ ହେବାରେ ବୀରେନ୍‌ବାବୁ ମୋ ଉପରେ ପ୍ରଭାବ ପକାଇଥିଲେ ବୋଲି ଅଭିଯୋଗ ହୋଇଥିଲା । ଏ ସମସ୍ତ କଥା ସେ ଅସ୍ୱୀକାର କରିଥିଲେ । ଏ ସଂପର୍କରେ ବୀରେନ୍‌ବାବୁଙ୍କୁ ମୁଁ କହିଥିଲି – ଓଡ଼ିଶା ଏକ୍ସେସର ଦରମା ଖାତାରେ ଗଫୁର୍‌ର ନାମ ଥିବା ଦୃଷ୍ଟିରୁ ତୁମେ ତାହା ସ୍ୱୀକାର କଲେ କୌଣସି ଅସୁବିଧା ହେବନାହିଁ, କାରଣ ଅନ୍ୟ କଥାର ଦାୟିତ୍ୱ ସବୁ ମୁଁ ନେଉଛି । ବୀରେନ୍‌ବାବୁ କହିଥିଲେ "ଜଣେ ପାକିସ୍ତାନୀକୁ ପାଖରେ ରଖିବା ଗୁରୁତର ଅଭିଯୋଗ । ଓଡ଼ିଶା ଏକ୍ସେସର ଦରମା ଖାତାରେ ଥିବା ନାମ ବିଷୟରେ କିଛି ଚିନ୍ତା କରିବାର ନାହିଁ । I have found out another Gaffar Ali". ମାଲିମକଦ୍ଦମା ଉପରକୁ କଥା ଗଲେ ମହତ୍ ଉଦ୍ଦେଶ୍ୟରେ କରାଯାଇଥିବା କାମକୁ ବି ଅସ୍ୱୀକାର କରିବାକୁ ମଣିଷ ବାଧ୍ୟ ହୁଏ ।

## ପୁଲିସ ଧର୍ମଘଟ କଥା

୧୯୭୯ ମସିହାରେ ମୁଁ ରାଜ୍ୟର ମୁଖ୍ୟମନ୍ତ୍ରୀ ଥାଏ । ସେହି ବର୍ଷ ମେ ମାସରେ ରାଜ୍ୟରେ ପୁଲିସ ସିପାହିମାନଙ୍କ ମଧ୍ୟରେ ସେମାନଙ୍କ ଦରମା, ଭତ୍ତା ଓ ଅନ୍ୟାନ୍ୟ ଚାକିରି ସର୍ତ୍ତ ସମ୍ବନ୍ଧରେ ଅସନ୍ତୋଷ ପ୍ରକାଶ ପାଇଥିଲା । ଦିନେ ରାତି ପ୍ରାୟ ୧୨ଟା ସମୟରେ ଭୁବନେଶ୍ୱରରେ ଥିବା ସେଭେନ୍‌ଥ ବାଟାଲିୟନ୍ (7th Battalion) ଶୋଭାଯାତ୍ରାରେ ଆସି ମୋର ସରକାରୀ ବାସଭବନ ଆଗରେ ପହଞ୍ଚିଥିଲେ । ମୁଁ ସେତେବେଳେ ଶୋଇଥିଲି । ସେହି ଅବସ୍ଥାରେ ମୋତେ ଖବରଦିଆଗଲା । ମୁଁ ନିଦରୁ ଉଠିଆସି ଗେଟ୍ ପାଖରେ ସେମାନଙ୍କୁ ସାକ୍ଷାତ୍ ଦେଇ ସେମାନଙ୍କ ପାଖରୁ ଗୋଟିଏ ସ୍ମାରକ ପତ୍ର ନେଇଥିଲି ଏବଂ ବ୍ୟାରେକ୍‌କୁ ଫେରିଯାଇ କାର୍ଯ୍ୟରେ ଯୋଗଦେବାକୁ ପରାମର୍ଶ ଦେଇଥିଲି । ଏହି ସମୟରେ ଭୁବନେଶ୍ୱରରେ ଥିବା କେନ୍ଦ୍ରୀୟ ରିଜର୍ଭ ଫୋର୍ସ ମଧ୍ୟ ଧର୍ମଘଟ ଆରମ୍ଭ କରିଦେଇଥିଲେ । ପଞ୍ଜାବ, ମଧ୍ୟପ୍ରଦେଶ, ଆନ୍ଧ୍ରପ୍ରଦେଶ, ହରିଆନା, ବିହାର ଓ ଉତ୍ତରପ୍ରଦେଶ ପ୍ରଭୃତି ରାଜ୍ୟରେ ମଧ୍ୟ ପୁଲିସ ସିପାହି ତଥା ଅନ୍ୟ ଫୋର୍ସମାନେ ଧର୍ମଘଟ କରିଥିଲେ । ଆମର ଏଠାକାର ସିପାହିମାନଙ୍କର ନେତାମାନେ କାମରେ ଯୋଗଦେବାପାଇଁ ମୋତେ ପ୍ରତିଶ୍ରୁତି ଦେଇଥିଲେ ମଧ୍ୟ କେନ୍ଦ୍ରୀୟ ରିଜର୍ଭ ପୁଲିସ ବାହିନୀ ଧର୍ମଘଟ କରିବାରୁ ତାହାଦ୍ୱାରା ଉତ୍ସାହିତ ହୋଇ ସେମାନେ ପ୍ରତିଶ୍ରୁତି ପାଳନ କଲେନାହିଁ । ପୁଲିସ ଅଶାନ୍ତି ବିଷୟରେ ଆଲୋଚନା କରି ତାହାର ବିହିତ ପ୍ରତିକାର କରିବାପାଇଁ ଦିଲ୍ଲୀରେ ସେତେବେଳେ ସବୁ ରାଜ୍ୟର ମୁଖ୍ୟମନ୍ତ୍ରୀ ଓ ସ୍ୱରାଷ୍ଟ୍ରମନ୍ତ୍ରୀମାନଙ୍କର ଗୋଟିଏ ସମ୍ମିଳନୀ ଡକାଯାଇଥାଏ । ଆମର ଏଠାକାର ସିପାହିମାନଙ୍କୁ ମୁଁ ଅନୁରୋଧ କରିଥିଲି ଦିଲ୍ଲୀ ସମ୍ମିଳନୀର ନିଷ୍ପତ୍ତିକୁ ଅପେକ୍ଷା କରିବାପାଇଁ । ସେମାନେ ମୋ ପାଖରେ ସମସ୍ତ ବିଷୟରେ ରାଜି ହୋଇଗଲେ; ମାତ୍ର ଅନ୍ୟମାନଙ୍କ ପ୍ରରୋଚନାରେ ପଡ଼ି କାର୍ଯ୍ୟରେ ଯୋଗଦେଲେନାହିଁ । ରାଜ୍ୟର ବିଭିନ୍ନ ଜିଲ୍ଲାକୁ ଏ ଅଶାନ୍ତି ବ୍ୟାପିବାରେ ଲାଗିଲା । ଏପରିକି ପୁରୀ ରଥଯାତ୍ରାରେ କାର୍ଯ୍ୟ କରିବାପାଇଁ ଯେଉଁ ସିପାହିମାନେ ଯାଇଥିଲେ ସେମାନେ ଧର୍ମଘଟ କରିବସିଲେ । ରାଜ୍ୟରେ ଶାନ୍ତିଶୃଙ୍ଖଳା ରକ୍ଷା

କରିବାପାଇଁ ଆମେ କେନ୍ଦ୍ର ରିଜର୍ଭ ପୁଲିସ ବାହିନୀ ଉପରେ ନିର୍ଭର କରୁଥିଲୁ, ମାତ୍ର ସେଇମାନେ ସବୁଠାରୁ ଚରମ ବିଶୃଙ୍ଖଳ ଆଚରଣ ପ୍ରଦର୍ଶନ କରିଥିଲେ । ଆମର ସିପାହିମାନେ କେବଳ ରୋଲ୍ କଲ୍‌ରେ ଅନୁପସ୍ଥିତ ରହିବା ବ୍ୟତୀତ ଅନ୍ୟ କୌଣସି ଅସୁବିଧା ସୃଷ୍ଟିକରିନଥିଲେ । କିନ୍ତୁ କେନ୍ଦ୍ରୀୟ ରିଜର୍ଭ ପୁଲିସ ବାହିନୀ ସମସ୍ତ ଅସ୍ତ୍ରଶସ୍ତ୍ର ନିଜ ଅକ୍ତିଆରକୁ ନେଇଯାଇ ବ୍ୟାରାକ୍ ଭିତରକୁ କାହାରିକୁ ଛାଡ଼ିନଥିଲେ । ପରିଶେଷରେ ସେନାବାହିନୀର ଯବାନମାନେ ଆସି ସେମାନଙ୍କୁ ଅକ୍ତିଆରକୁ ଆଣିଥିଲେ । ସେନାବାହିନୀର ଲଢୁଆ ସୈନ୍ୟମାନେ ଯେଉଁପରି ଭାବରେ କେନ୍ଦ୍ରୀୟ ରିଜର୍ଭ ପୁଲିସ ବାହିନୀର ବ୍ୟାରେକ୍‌ଗୁଡ଼ିକୁ ରାତ୍ରିର ଅନ୍ଧକାର ମଧ୍ୟରେ ଦଖଲ କରିବାପାଇଁ ଅଭିଯାନ ଆରମ୍ଭ କରିଥିଲେ ତାହା ଅତ୍ୟନ୍ତ ନାଟକୀୟ ହୋଇଥିଲା । ଆମ ରାଜ୍ୟ ପୁଲିସ ଫୌଜ ଭିତରେ ଏହି ଅଶାନ୍ତି ରାଜ୍ୟର ବିଭିନ୍ନ ସ୍ଥାନକୁ ବ୍ୟାପିବାରେ ଯେଉଁମାନେ ନେତୃତ୍ୱ ଦେଉଥିଲେ ସେମାନଙ୍କ ମଧ୍ୟରୁ ୪୭ ଜଣଙ୍କୁ ଆମ ସମ୍ବିଧାନର ୩୧୧ ଧାରା ଅନୁସାରେ ରାଜ୍ୟପାଳଙ୍କ ଆଦେଶମତେ କାର୍ଯ୍ୟରୁ ବହିଷ୍କାର କରାଯାଇଥିଲା । କିନ୍ତୁ ମୁଁ ଆପାତତଃ ଶୃଙ୍ଖଳାରକ୍ଷା ନିମନ୍ତେ ସେମାନଙ୍କୁ ଚାକିରିରୁ ବହିଷ୍କାର କରିବା ସଙ୍ଗେ ସଙ୍ଗେ ପୁଲିସ ଫୌଜର ଦାବିଗୁଡ଼ିକ ସହୃଦୟତାର ସହ ବିଚାର କରିବାରେ ମନଦେଉଥାଏ । ସେମାନଙ୍କର ଭତ୍ତା, ପଦୋନ୍ନତି ଓ ଅନ୍ୟାନ୍ୟ କେତେକ ଦାବି କେତେକାଂଶରେ ଗ୍ରହଣ କରିଥିଲି । ତା' ଦ୍ୱାରା ରାଜ୍ୟସରକାରଙ୍କୁ ବାର୍ଷିକ ଦୁଇକୋଟିରୁ ଅଧିକ ଟଙ୍କାର ଖର୍ଚ୍ଚଭାର ବହନ କରିବାକୁ ପଡ଼ିଥିଲା । ଏହି ଘୋଷଣା ପ୍ରକାଶ ପାଇବା ପରେ ସିପାହିମାନଙ୍କ ଭିତରେ ସନ୍ତୋଷ ଭାବ ପରିଲକ୍ଷିତ ହୋଇଥିଲା ଏବଂ ସମସ୍ତ କାର୍ଯ୍ୟ ସ୍ୱାଭାବିକ ଭାବରେ ଚାଲିଥିଲା । ଏହା ପରେ ମୋ ବିଚାରରେ ବଡ଼ କଥା ହେଲା ଚାକିରିରୁ ବହିଷ୍କୃତ ହୋଇଥିବା ପୁଲିସ କର୍ମଚାରୀମାନଙ୍କର ଆବେଦନ । ବହିଷ୍କୃତ ହୋଇଥିବା ବ୍ୟକ୍ତିମାନେ ମୋ ପାଖକୁ ଅନେକ ଥର ଦୌଡ଼ାଦୌଡ଼ି ଆରମ୍ଭ କରିଦେଇଥିଲେ । ସେମାନଙ୍କପାଇଁ ଅନ୍ୟମାନେ ମଧ୍ୟ ବାରମ୍ବାର ଅନୁରୋଧ କରୁଥା'ନ୍ତି । ଏହି ଶାସ୍ତି ବିଧାନକୁ ଭିତ୍ତି କରି ଆଉ କେତେକ ବାହାର ଲୋକ କେତେକଙ୍କୁ ଉସ୍‌କାଇବାରେ ଲାଗିଲେ । ଚାକିରିରୁ ବିହଷ୍କୃତ ହୋଇଥିବା ପ୍ରତ୍ୟେକ କର୍ମଚାରୀ ଅନ୍ୟମାନଙ୍କଦ୍ୱାରା ବିପଥଗାମୀ ହୋଇ ଉତ୍ତେଜିତ ଅବସ୍ଥାରେ ଯାହା ନକରିବାର କଥା ତା' କରିପକାଇଛନ୍ତି ବୋଲି ଉଲ୍ଲେଖ କରି ମୋତେ ଅନୁତାପସୂଚକ ଆବେଦନପତ୍ର ଦେଇଥା'ନ୍ତି । ସେମାନଙ୍କୁ ପୁନର୍ବାର ନିଯୁକ୍ତି ଦେବାପାଇଁ ମୁଁ ଯେତେବେଳେ ନିର୍ଦ୍ଦେଶ ଦିଏ, ସେତେବେଳେ ସ୍ୱରାଷ୍ଟ୍ର ବିଭାଗ, ଆଇନ ବିଭାଗ ତଥା ଆଡ୍‌ଭୋକେଟ୍ ଜେନେରାଲ୍ ଓ ଚିଫ୍ ସେକ୍ରେଟେରୀ ପ୍ରମୁଖ ଏହାର ଘୋର ବିରୋଧ କରିଥିଲେ । ଏପରିକି ଆଡ୍‌ଭୋକେଟ୍ ଜେନେରାଲ୍ ମତ ଦେଇଥିଲେ ଯେ ଯଦି ସେମାନଙ୍କୁ ପୁନଃନିଯୁକ୍ତିପାଇଁ ଆମେ ଆଦେଶ ଦେଉ ଓ କେହି ଯଦି ଏହି ଆଦେଶ ବିରୁଦ୍ଧରେ ହାଇକୋର୍ଟକୁ ଯାଆନ୍ତି ତା'ହେଲେ ହାଇକୋର୍ଟ ଉକ୍ତ ନିଯୁକ୍ତି ଆଦେଶକୁ ରଦ୍ଦ କରିଦେବାର ଅବକାଶ ରହିଛି । ଏ ପ୍ରକାରର ସବୁ ପ୍ରତିକୂଳ ଅବସ୍ଥା ସତ୍ତ୍ୱେ ମୁଁ ମାନବୋଚିତ ଅନୁକମ୍ପାର ବଶବର୍ତ୍ତୀ ହୋଇ ସହୃଦୟତାର ସହ ସେହି ଆବେଦନ ବିଚାର କରି ସେମାନଙ୍କର ପୁନଃନିଯୁକ୍ତିପାଇଁ ଆଦେଶ ଦେଇଥିଲି । ମୁଁ ଆଶଙ୍କା କରିଥିଲି ଯେ ଫାଇଲ୍‌ଟି ରାଜ୍ୟପାଳଙ୍କ ନିକଟକୁ ଗତାନୁଗତିକ ପନ୍ଥାରେ ପଠାଇଦେଲେ ହୁଏତ ଆଇନର ତୀକ୍ଷ୍ଣ ଖଣ୍ଡାଧାରରେ ଅନୁମୋଦିତ ନହୋଇ ପୁନର୍ବିବେଚନାପାଇଁ ଫେରିଆସିବ । ତେଣୁ ନିଜ ହାତରେ ଫାଇଲ୍‌ଟି ନେଇ ରାଜ୍ୟପାଳଙ୍କୁ ଦେଇଥିଲି । ରାଜ୍ୟପାଳ ଶ୍ରୀ ଶଙ୍କର ଦୟାଲ୍ ଶର୍ମା ପ୍ରଥମେ ପୁନଃନିଯୁକ୍ତି ଆଦେଶ ପାଇଁ ସମ୍ମତି ଦେବାକୁ କୁଣ୍ଠା ପ୍ରକାଶ କରିଥିଲେ । ମୁଁ ତାଙ୍କୁ ବୁଝାଇଦେଇଥିଲି ଯେ ଯାହାର ଦଣ୍ଡ ଦେବାର ଅଧିକାର ଅଛି, ସେ ପୁଣି କ୍ଷମା ଆଚରଣ କରିପାରେ ଓ ମାନବିକତା ଦୃଷ୍ଟିକୋଣରୁ ଏହାହିଁ କରିବା ଉଚିତ । ରାଜ୍ୟପାଳ ଗୋଟିଏ ଦିନ ଫାଇଲ୍‌ଟି ତାଙ୍କ ପାଖରେ ରଖିଥିଲେ ଏବଂ ପରଦିନ ମୋ ନିଷ୍ପତ୍ତିକୁ ଅନୁମୋଦନ କରି ଫାଇଲ୍‌ଟିକୁ ଯଥାରୀତି ଫେରାଇଦେଇଥିଲେ ।

# ତରୁଣ ଆଇ.ପି.ଏସ୍.ଙ୍କ କରୁଣ ଅବସ୍ଥା

ମୋର ଆଉ ଗୋଟିଏ ନିଷ୍ପତ୍ତି ଅପାତ୍ରରେ ଅନୁକମ୍ପା ବୋଲି ସମାଲୋଚିତ ହୋଇଥିଲା । ଏହା କୋଡ଼ିଏ ବର୍ଷ ତଳର କଥା । ଭାରତୀୟ ପୁଲିସ ସର୍ଭିସ୍‌ର ଜଣେ ଅଳ୍ପବୟସ୍କ ସ୍ୱଳ୍ପ ଅଭିଜ୍ଞ ଅଫିସରଙ୍କର ଗୋଟିଏ ଗୁରୁତର ଦୋଷକୁ ମୁଁ ମାର୍ଜନା କରିଦେଇଥିଲି ବୋଲି କୁହାଯାଇଥିଲା । କୋରାପୁଟ ଜିଲ୍ଲା ରାୟଗଡ଼ା ସବ୍‌ଡିଭିଜନ୍‌ର ଗୋଟିଏ ଦୁର୍ଭେଦ୍ୟ ଅଞ୍ଚଳ ଭିତରେ ଗୋଟିଏ ନରହତ୍ୟା ଅଭିଯୋଗ ମାମଲା ତଦାରଖ କରିବାର (supervision) ଦାୟିତ୍ୱ ଉକ୍ତ ଅଫିସରଙ୍କ ଉପରେ ଥିଲା । ତାଙ୍କ ତତ୍ତ୍ୱାବଧାନ ରିପୋର୍ଟରେ ନରହତ୍ୟା ଘଟଣା ସତ୍ୟ ଏବଂ ହତ୍ୟାକାରୀ ଆସାମୀମାନେ ଶବକୁ ଗୋପନରେ ନଷ୍ଟକରିଦେଇଥିବା କଥା ମଧ୍ୟ ସତ୍ୟ ବୋଲି ସେ ଲେଖିଥିଲେ । ତେଣୁ ଅଭିଯୋଗପତ୍ର (charge sheet) ଅଦାଲତରେ ଦାଖଲ କରିବାକୁ ସେ ନିର୍ଦ୍ଦେଶ ଦେଇଥିଲେ । ବିଧିବଦ୍ଧ କାର୍ଯ୍ୟାନୁଷ୍ଠାନ ଆରମ୍ଭ ହୋଇ ଦୌରା ଅଦାଲତରେ ବିଚାର ଆରମ୍ଭ ହୋଇଯାଇଥିଲା । ମକଦ୍ଦମାର ଶୁଣାଣି ଚାଲିଥିଲାବେଳେ ଦିନେ ହତ୍ୟାରେ ମୃତ ବୋଲି କୁହାଯାଉଥିବା ବ୍ୟକ୍ତି ସ୍ୱୟଂ ହଠାତ୍ ଅଦାଲତରେ ହାଜର ହୋଇ ଯୋଡ଼ ହସ୍ତରେ କହିଥିଲେ, ''ହଜୁର, ମୁଁ ବଞ୍ଚିଛି । ମୋତେ ହତ୍ୟା କରିବାକୁ ଉଦ୍ୟମ ହେବାବେଳେ ମୁଁ ଖସି ପଳାଇଯାଇ ଆଜିପର୍ଯ୍ୟନ୍ତ ଆନ୍ଧ୍ର ରାଜ୍ୟରେ ଲୁଚିରହିଥିଲି ।'' ଅଦାଲତରେ 'ମୃତ' ବ୍ୟକ୍ତିର ଏତାଦୃଶ ଉପସ୍ଥିତି ଘୋର ଚାଞ୍ଚଲ୍ୟ ସୃଷ୍ଟିକରିଥିଲା । ଆଉ କିଛିଦିନ ବିଳମ୍ବ ହୋଇଥିଲେ ହୁଏତ ଆସାମୀମାନେ ଦଣ୍ଡପାଇଯାଇଥା'ନ୍ତେ । ପ୍ରାଣଦଣ୍ଡ ଆଦେଶ ହେବାର ସମ୍ଭାବନା ମଧ୍ୟ ଥିଲା । ତତ୍ତ୍ୱାବଧାନକାରୀ ଅଫିସରଙ୍କର ଉପରଠାଉରିଆ ତଦାରଖ ପାଇଁ ନିରୀହ ଲୋକମାନେ ଦଣ୍ଡପାଇଯାଉଥିଲେ । ତେଣିକି ଏକ ବିସ୍ଫୋରକ ପରିସ୍ଥିତି ସୃଷ୍ଟିହୋଇଥିଲା ସେହି ଅଫିସରଙ୍କ ବିରୁଦ୍ଧରେ । ଚାକିରିରୁ ତଡ଼ା ହେବା (ଡିସ୍‌ମିସ୍) ପାଇଁ କାର୍ଯ୍ୟାନୁଷ୍ଠାନ ଆରମ୍ଭ ହୋଇଯାଇଥିଲା । ଚାକିରି ଯିବାଭଳି ଦୋଷ ବି ଥିଲା । ଅଫିସରଜଣକ ଅନୁତପ୍ତ ଏବଂ ତା' ସାଙ୍ଗକୁ ତାଙ୍କର ପରିବାରବର୍ଗ ଦୈନ୍ୟ ଓ ଦୁର୍ଦ୍ଦଶାଗ୍ରସ୍ତ । ତେଣୁ ଜୀବିକା ନନେଇ ଆଉ ଯାହା କରାଯାଇପାରିବ ସେ ଦିଗରେ ମୁଁ ମନଦେଲି । ମୁଁ ସେତେବେଳେ ଉପଲବ୍ଧି କରିପାରିଥିଲି ଯେ 'ମୃତ' ବ୍ୟକ୍ତିଙ୍କ ଖୁଣି ଆସାମୀମାନଙ୍କୁ ଧରି ଚାଲାଣ କରିବାରେ ପୁଲିସର ନିଷ୍କ୍ରିୟତା ଓ ଅପାରଗତା ବିରୁଦ୍ଧରେ ଜନମତର ଗୋଟିଏ ବିସ୍ଫୋରକ ଅବସ୍ଥା ଭିତରେ ସେହି ଯୁବକ ଅଫିସର ତରବରରେ ଗୋଟିଏ ପ୍ରମାଦପୂର୍ଣ୍ଣ ନିଷ୍ପତ୍ତି କରିପକାଇଥିଲେ; ସେଥିରେ ତାଙ୍କର କୌଣସି ମନ୍ଦ ଉଦ୍ଦେଶ୍ୟ ନଥିଲା । ତେଣୁ ପ୍ରଶାସନିକ କ୍ଷେତ୍ରରେ ସହାନୁଭୂତି ତାଙ୍କର ପ୍ରାପ୍ୟ । ଜୀବିକା ଖଣ୍ଡକ ରହିଗଲା । ବର୍ତ୍ତମାନ ସେ ନିଜର କର୍ମକୁଶଳତା ହେତୁ ଉଚ୍ଚପଦରେ ଅଧିଷ୍ଠିତ ।

ସରକାରୀ ସଂସ୍ଥାରେ ତଳ ପାହିଆରୁ ଉପର ପର୍ଯ୍ୟନ୍ତ ଲକ୍ଷ ଲକ୍ଷ ଲୋକ ଚାକିରି କରନ୍ତି । ଚାକିରି ଜୀବନରେ ନିଯୁକ୍ତି, ବଦଳି, ପଦୋନ୍ନତି, ବରଖାସ୍ତ, ବାଧ୍ୟତାମୂଳକ ଅବସରଗ୍ରହଣ, ଜଣେ ଅନ୍ୟ ଜଣକର ସିନିୟରଟିକୁ ଅତିକ୍ରମ କରିବା ଓ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ପ୍ରଭୃତି ସମସ୍ୟା ପ୍ରାୟ ଲାଗିରହିଥାଏ । ଏସବୁ ସମସ୍ୟା ଉପରେ ସରକାରଙ୍କର ବିଚାର ଓ ନିଷ୍ପତ୍ତିର ଆବଶ୍ୟକତା ପଡ଼ିଥାଏ । ଏ ସମସ୍ତ ବିଷୟ ଆଇନାନୁମୋଦିତ ଚାକିରି ନିୟମକୁ ଅନୁସରଣ କରି ବିଚାରବନ୍ତ ଭାବରେ ନିଷ୍ପତ୍ତି ନ କଲେ ଚାକିରି କରୁଥିବା ଲୋକଙ୍କ ଭିତରେ ଈର୍ଷା ଓ ମନସ୍ତାପ ଜାଗରିତ ହୁଏ । ଏଥିରେ ମଧ୍ୟ ମାନବୋଚିତ କ୍ଷମା, ସମ୍ବେଦନଶୀଳତା ଓ ସହାନୁଭୂତି ସହ ବିଚାର କରିବାର ଆବଶ୍ୟକତା ଥାଏ । ଏସବୁ ବିଷୟରେ ଦୀର୍ଘ ପ୍ରାୟ ପଚିଶ ବର୍ଷର ମନ୍ତ୍ରିତ୍ୱ ସମୟରେ ମୋତେ ଅନେକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେବାକୁ ପଡ଼ିଛି । ମାତ୍ର ହଠାତ୍ କୌଣସି କଥା ବାହାରୁ ଶୁଣି ତଦ୍ୱାରା ପ୍ରଭାବିତ ହୋଇ ନିଷ୍ପତ୍ତି ନେବାକୁ ମୁଁ ସବୁବେଳେ ନାପସନ୍ଦକରେ । ଅନେକ ଲୋକ ଆସି ଅନେକ କଥା କହନ୍ତି ।

ଲୋକପ୍ରତିନିଧିମାନେ ମଧ୍ୟ ବହୁତ କଥା କହନ୍ତି । ସରକାରୀ ସୂତ୍ରରୁ ମଧ୍ୟ ମୋ ପାଖରେ ଏସବୁ ସମ୍ପର୍କରେ ବହୁ ସମସ୍ୟା ଆସି ପହଞ୍ଚେ । ମୁଁ ସମସ୍ତ ଦିଗରୁ ବିଚାରକରି ନିଷ୍ପତ୍ତି ନେବାକୁ ଉଦ୍ୟମ କରିଥାଏ । କେଉଁଠି ଯେ ବ୍ୟତିକ୍ରମ ଘଟିନଥିବ ସେ କଥା କହିବା ଠିକ୍ ହେବନାହିଁ । ମାତ୍ର ମୋ ବିଚାରବୁଦ୍ଧିରେ ନିୟମାନୁଯାୟୀ ନ୍ୟାୟ ଦେବାକୁ ମୁଁ ଉଦ୍ୟମ କରିଛି । ଅନେକ ସମୟରେ ଧର୍ମକୁ ଚାହିଁ ନ୍ୟାୟ ଦେଇଛି । ଅଫିସର୍‌ମାନଙ୍କ ଭିତରେ ଅଯଥା ଈର୍ଷା ଓ ମନସ୍ତାପ ଯେପରି ସୃଷ୍ଟି ନହୁଏ ସେଥିପାଇଁ ମଧ୍ୟ ଧ୍ୟାନ ଦେଇଛି । ଅତି କମ୍‌ରେ ଦିନିବର୍ଷ ଜଣେ କର୍ମଚାରୀ ଗୋଟିଏ ଜାଗାରେ ନରହିଲେ ସାଧାରଣତଃ ବଦଳି ପ୍ରସ୍ତାବକୁ ମୁଁ ପସନ୍ଦ କରେନାହିଁ । ଭଲ କାମ କରି ତା'ଠାରୁ ଅଧିକ ସମୟ ରହିଲେ ମଧ୍ୟ ମୋର ଆପତ୍ତି ନଥାଏ । ଏଇଟା ମୋର ଦୁର୍ବଳତା ହେଉ ବା ଯାହା କିଛି ହେଉ, ସାଧାରଣତଃ ଯେ ଯେଉଁଠାରେ ରହିଥାଆନ୍ତି ତାଙ୍କର ବସା ଭାଙ୍ଗିବାକୁ ମୁଁ ଆଗ୍ରହୀ ହୁଏନାହିଁ । କିନ୍ତୁ ଯେଉଁଠାରେ ଲୋକଙ୍କର ସେବା ପରିବର୍ତ୍ତେ ଲୋକଙ୍କର ଦୁଃଖ ବୃଦ୍ଧି ପାଇବାର ସମ୍ଭାବନା ଥାଏ ସେ କ୍ଷେତ୍ରରେ ବଦଳିକୁ ଏଡ଼ାଇଦିଆଯାଏନାହିଁ । ଅନେକ ସମୟରେ ସ୍ଥାନୀୟ ପୁଲିସମାନଙ୍କ ବିରୁଦ୍ଧରେ ବହୁ ଲୋକପ୍ରତିନିଧି ଅଭିଯୋଗ ଆଗତକରି ସେମାନଙ୍କୁ ବଦଳି କରିବାପାଇଁ କହନ୍ତି । ମୁଁ କଥାଟି ଶୁଣିବାମାତ୍ରେ କାର୍ଯ୍ୟାନୁଷ୍ଠାନ କରେନାହିଁ । ପ୍ରଥମେ ଯେଉଁମାନେ ଆସି ଅଭିଯୋଗ ଉପସ୍ଥାପନ କରନ୍ତି ସେମାନଙ୍କର ଅସୁବିଧା କ'ଣ ଓ ତାହା କିପରି ଭାବରେ ଦୂରକରିପାରିବି ସେ ବିଷୟରେ ସେମାନଙ୍କ ସହିତ ଆଲୋଚନା କରେ ଏବଂ ସଂପୃକ୍ତ ଅଫିସର୍‌ମାନଙ୍କ ଉପରିସ୍ଥ ଅଫିସର୍‌ମାନଙ୍କ ଜରିଆରେ ଲୋକପ୍ରତିନିଧିମାନଙ୍କର ଯୁକ୍ତିଯୁକ୍ତ ଅସୁବିଧା ଦୂରକରିବାପାଇଁ ଉଦ୍ୟମ କରିଥାଏ । ଏହା ସତ୍ତ୍ୱେ ଯେଉଁଠାରୁ ବାରମ୍ବାର ଅଭିଯୋଗ ଆସେ ସେହିଠାରେ ବଦଳି କଥା ବିଚାର କରି ବିହିତ ପଦକ୍ଷେପ ନେବାପାଇଁ ଉପରିସ୍ଥ ଅଫିସରମାନଙ୍କୁ ନିର୍ଦ୍ଦେଶ ଦେଇଥାଏ । ମୋ କାର୍ଯ୍ୟକାଳ ମଧ୍ୟରେ କୌଣସି ବିଷୟ କାର୍ଯ୍ୟକାରୀ କରିବା ପାଇଁ ସେହି ଦାୟିତ୍ୱରେ ଥିବା ଅଫିସର୍‌ଙ୍କୁ ବାଧ କରିନାହିଁ କିମ୍ବା ମୋ ନିଜର ଇଚ୍ଛା ସେମାନଙ୍କ ଉପରେ ଲଦିଦେଇନାହିଁ । ସେମାନଙ୍କୁ ନିଜେ ବିଚାରକରି ଦେଖିବା ପାଇଁ କହିଥାଏ । ମାତ୍ର ଯେଉଁଠାରେ କୌଣସି ଅଫିସର୍ ଲୋକପ୍ରତିନିଧିମାନଙ୍କୁ ଜାଣିଶୁଣି ଅନାଦର କରନ୍ତି ଓ ସେମାନଙ୍କୁ ଅପ୍ରିୟ କରିବାପାଇଁ ଅସୁବିଧା ପରିସ୍ଥିତି ସୃଷ୍ଟିକରନ୍ତି ସେ କ୍ଷେତ୍ରରେ ମୁଁ ହସ୍ତକ୍ଷେପ କରିଥାଏ । ମୁଁ ମୁଖ୍ୟମନ୍ତ୍ରୀ ଥିବା ସମୟରେ ଦକ୍ଷିଣାଞ୍ଚଳ ପୁଲିସ ସଂସ୍ଥାର କେତେକ ସ୍ଥାନରୁ ଖବର ପାଇଲି ଯେ ଯଦି କୌଣସି ଲୋକପ୍ରତିନିଧି କୌଣସି କାର୍ଯ୍ୟ ନିମନ୍ତେ ସ୍ଥାନୀୟ ପୁଲିସ ଅଫିସରକୁ ଅନୁରୋଧ କରନ୍ତି ତା'ହେଲେ ପୁଲିସ ଆଇ.ଜି.ଙ୍କ ନିର୍ଦ୍ଦେଶମତେ ସେମାନେ ସେଭଳି ଅନୁରୋଧକୁ ବିଚାରକୁ ନେବେନାହିଁ, ବରଂ ସେ ସମ୍ବନ୍ଧରେ ଆଇ.ଜି.ଙ୍କ ପାଖକୁ ରିପୋର୍ଟ ପଠାଇବେ । ଏ ସମ୍ବନ୍ଧରେ ଡି.ଆଇ.ଜି. ସ୍ତରରୁ ଗୋଟିଏ ସାର୍କୁଲାର ଏସ୍.ପି.ମାନଙ୍କ ପାଖକୁ ଯାଇଥିବାର ଖବର ମିଳିଲା । ଆଇ.ଜି.ଙ୍କୁ ଏକଥା ପଚାରିଥିଲି ଏବଂ ମୋର ଅସନ୍ତୋଷ ପ୍ରକାଶ କରିଥିଲି । ପ୍ରଥମେ ସେ ମାନିଲେନାହିଁ; କିନ୍ତୁ ପରେ ତାହା ସଂଶୋଧନ କରିଥିଲେ । ଏହା ହେଉଛି ନୌକରସାହି ଅଧିକାରପ୍ରମତ୍ତ ମନୋଭାବ । ଏ ପ୍ରକାର ମନୋଭାବର ପରିବର୍ତ୍ତନପାଇଁ ମୁଁ ସବୁବେଳେ ସରକାରୀ ଅଫିସରମାନଙ୍କୁ ପରାମର୍ଶ ଦେଇଥାଏ ।

## ରାଉରକେଲା ସାମ୍ପ୍ରଦାୟିକ ଦଙ୍ଗା

ଚାକିରିରେ ପଦୋନ୍ନତି ଗୋଟିଏ ସାଧାରଣ କଥା । ନିୟମାନୁସାରେ ତାହା କରାଗଲେ ସେ ବିଷୟରେ କାହାରି କିଛି ଆପତ୍ତି ନଥାଏ; କିନ୍ତୁ ନିୟମକାନୁନ୍‌କୁ ବେଖାତିର କରି ପ୍ରିୟାପ୍ରୀତି ତୋଷଣ ରୀତିରେ କିମ୍ବା ନିଜକୁ ସୁହାଇଲା ଭଳି ଅନ୍ୟ ଅଫିସର୍‌ମାନଙ୍କୁ ଅତିକ୍ରମ କରାଇ ଯଦି କାହାରିକୁ ପଦୋନ୍ନତି ଦିଆଯାଏ ତାହା କର୍ମଚାରୀ ମହଲରେ ବହୁ ସ୍ତରରେ ଭୟଙ୍କର ଈର୍ଷା ଓ ଅସନ୍ତୋଷ ସୃଷ୍ଟି

କରାଏ । ୧୯୬୪ ମସିହାରେ ଯେତେବେଳେ ରାଉରକେଲାରେ ଭୟଙ୍କର ସାଂପ୍ରଦାୟିକ ଦଙ୍ଗା ଘଟିଲା ସେତେବେଳେ ଅତ୍ୟଧିକ ଭାବପ୍ରବଣତାର ବଶବର୍ତ୍ତୀ ହୋଇ କୌଣସି କଥାକୁ ଧୈର୍ଯ୍ୟର ସହିତ ବିଚାରକୁ ନନେଇ ପୁଲିସ ପ୍ରଶାସନିକ ଅଫିସରମାନଙ୍କ ବିରୁଦ୍ଧରେ ତରବରରେ କେତେକ ବିବେଚନାହୀନ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଥିଲା । ମୁଁ ସେତେବେଳେ ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ ଥିଲି । ଶ୍ରୀ ବୀରେନ୍ ମିତ୍ର ମୁଖ୍ୟମନ୍ତ୍ରୀ ଓ ଶ୍ରୀ ବିଜୁ ପଟ୍ଟନାୟକ ଯୋଜନା ବୋର୍ଡ଼ର ଅଧ୍ୟକ୍ଷ ଥିଲେ । ସେ ଦୁଇଜଣ ନିଜ ନିଜ ଭିତରେ ପରାମର୍ଶ କରିବା ପରେ, ବୋଧହୁଏ ଜନମତକୁ ଶାନ୍ତ କରିବା ଉଦ୍ଦେଶ୍ୟରେ, କୌଣସି ସରକାରୀ ପ୍ରଣାଳୀକୁ ଅନୁସରଣ ନକରି ମୁଖ୍ୟମନ୍ତ୍ରୀ ତୁରନ୍ତ କାର୍ଯ୍ୟାନୁଷ୍ଠାନ ଆରମ୍ଭ କରିଦେଇଥିଲେ । ଏଥିରେ କଲେକ୍ଟର, ଡି.ଆଇ.ଜି. ପ୍ରଭୃତି ବଡ଼ ବଡ଼ ଅଫିସରମାନେ ସଂପୃକ୍ତ ଥିଲେ । ମୁଁ ଏହାର ଘୋର ବିରୋଧ କରିଥିଲି, କାରଣ ଏହା ଅନ୍ୟାୟ ତଥା ଅବିଚାରିତ ଭାବରେ କରାଯାଇଛି ବୋଲି ମୁଁ ଦର୍ଶାଇଥିଲି । ତେଣୁ ଯେଉଁସବୁ କାର୍ଯ୍ୟାନୁଷ୍ଠାନ ଆରମ୍ଭ କରାଯାଇଥିଲା ତାହା ପରିବର୍ତ୍ତିତ ହୋଇଥିଲା; କିନ୍ତୁ ଜଣେ ପୁଲିସ ସବ୍‌ଇନ୍‌ସ୍‌ପେକ୍ଟରଙ୍କ ବିରୁଦ୍ଧରେ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶ ଅନୁସାରେ ପୁଲିସ ସୁପରିନ୍‌ଟେଣ୍ଡେଣ୍ଟ ଯେଉଁ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥିଲେ ତାହାର ପରିବର୍ତ୍ତନ କରାଯାଇନଥିଲା । ଉକ୍ତ ଏସ.ଆଇ. ଏହି ଆଦେଶ ବିରୁଦ୍ଧରେ ହାଇକୋର୍ଟରେ ଆବେଦନ କରିଥିଲେ ଏବଂ ସେଥିରେ ସେ ଜିତିଥିଲେ । ଏଥିପାଇଁ ସରକାରଙ୍କୁ ଆଠ ହଜାର ଟଙ୍କା କ୍ଷତିପୂରଣ ଦେବାକୁ ପଡ଼ିଥିଲା । ଏହି ରାଉରକେଲା ଗଣ୍ଡଗୋଳ ସଂକ୍ରାନ୍ତରେ ମୁଁ ତତ୍କାଳୀନ ପୁଲିସ ଆଇ.ଜି.ଙ୍କୁ ସ୍ଥାନାନ୍ତରିତ କରି ତାଙ୍କ ତଳେ ନିକଟତମ ପାହିଆରେ ଥିବା ପୁଲିସ ଅଫିସର ଶ୍ରୀ ଏସ୍.କେ. ଘୋଷଙ୍କୁ ଆଇ.ଜି.ଭାବରେ ନିଯୁକ୍ତି ଦେଇଥିଲି । ସେତେବେଳର ସମସ୍ତ ଘଟଣା ନଜାଣିଥିବା କେତେକ ଲୋକ ମୋର ଏ କାର୍ଯ୍ୟର ସମାଲୋଚନା କରିଥିଲେ । ଜଣଙ୍କୁ ଅତିକ୍ରମ କରି ଆଉ ଜଣଙ୍କର ପଦୋନ୍ନତି ହେଲା ସତ; କିନ୍ତୁ ବହୁତ ବିଚାର ଆଲୋଚନା କରି ସାଧାରଣ ସ୍ୱାର୍ଥ ଦୃଷ୍ଟିରୁ ଯାହା ନକଲେ ନଚଳିବ, ତାହା କରିବାକୁ ବାଧ୍ୟହୋଇଥିଲି । ପୂର୍ବତନ ଆଇ.ଜି. ଶ୍ରୀ ଜେ.ସି. ଘୋଷ ଜଣେ ସୁଦକ୍ଷ ଅଫିସର୍ ଥିଲେ, ସେଥିରେ କିଛି ସନ୍ଦେହର ଅବକାଶ ନଥିଲା । ଜଣେ ନ୍ୟାୟବାନ୍ ଓ ଧର୍ମପରାୟଣ ବ୍ୟକ୍ତି ହିସାବରେ ପୁଲିସ ବିଭାଗରେ ତାଙ୍କର ଖୁବ୍ ଖ୍ୟାତି ଥିଲା; ମାତ୍ର ଅନେକ ବିବେଚନା କରି ମୁଁ ଦେଖିଥିଲି ଯେ ପରିବର୍ତ୍ତିତ ଅବସ୍ଥାରେ ଯେତେବେଳେ ଘନ ଘନ ଅକସ୍ମାତ୍ ଭାବରେ ଶାନ୍ତିଶୃଙ୍ଖଳାରେ ବ୍ୟାଘାତ ଘଟୁଛି ତା'ର ମୁକାବିଲା କରିବାପାଇଁ ଯେଉଁ କ୍ଷିପ୍ରତା ଓ ସାହସ ଆବଶ୍ୟକ ତାହା ତାଙ୍କର ଅଭାବ ହେଉଥିଲା । ଯେତେବେଳେ ରାଉରକେଲାରେ ସାଂପ୍ରଦାୟିକ ଦଙ୍ଗା ଖବର ମିଳିଲା ତୁରନ୍ତ ସେଠାକୁ ଯିବାପାଇଁ ମୁଁ ଆଇ.ଜି.ଙ୍କୁ ଆଦେଶ ଦେଇଥିଲି ଏବଂ ମୋର ଆଦେଶମତେ ତାଙ୍କର ବ୍ୟବହାର ନିମନ୍ତେ ରାଜ୍ୟ ସରକାରଙ୍କର ଉଡ଼ାଜାହାଜକୁ ପ୍ରସ୍ତୁତ ରଖାଯାଇଥିଲା । ସେଦିନ ସେ ତୁରନ୍ତ ଉଡାଜାହାଜ ଯୋଗେ ଯାଇଥିଲେ ପରିସ୍ଥିତିକୁ କିଛିମାତ୍ରାରେ ଆୟତ୍ତକୁ ଆଣିବାରେ ସକ୍ଷମ ହୋଇପାରିଥା'ନ୍ତେ । ମାତ୍ର ସେ ଉଡାଜାହାଜରେ ନଯାଇ ମଟରଗାଡ଼ିରେ ଯାଇ ଦିନକ ପରେ ରାଉରକେଲାରେ ପହଞ୍ଚିଲେ । ସେ କାହିଁକି ଉଡ଼ାଜାହାଜରେ ନଯାଇ ମଟର ଯୋଗେ ବିଳମ୍ବରେ ପହଞ୍ଚିଲେ ବୋଲି ଖବର ନେବାରୁ ଜଣାଗଲା ଯେ ସେ ଉଡ଼ାଜାହାଜରେ ଚଢ଼ିବାକୁ ଭୟକଲେ । ସେହି ଛୋଟିଆ ଉଡ଼ାଜାହାଜଟି କାଳେ କେଉଁଠାରେ ଖସିପଡ଼ିବ ବୋଲି ତାଙ୍କର ଆଶଙ୍କା ହେଲା । ଶାନ୍ତିଶୃଙ୍ଖଳା ରକ୍ଷାକରିବାପାଇଁ କ୍ଷିପ୍ରତା ଓ ସାହସ ପୁଲିସର ସବୁଠାରୁ ବଳି ଆବଶ୍ୟକ ଏବଂ ପୁଲିସ ବାହିନୀର ଯେ ମୁଖ୍ୟ ସେ ଯଦି ଏଭଳି ପରିସ୍ଥିତିରେ ଉଡ଼ାଜାହାଜରେ ଚଢ଼ିବାକୁ ଭୟ କରିବେ, ତା'ହେଲେ ସେ ବା କିପରି ଏ ପ୍ରକାର ସଙ୍କଟମୟ ପରିସ୍ଥିତିର ସମ୍ମୁଖୀନ ହେବାପାଇଁ ପୁଲିସ ବାହିନୀକୁ ନେତୃତ୍ୱ ଦେବାକୁ ସକ୍ଷମ ହେବେ ? ପୂର୍ବରୁ ମୁଁ କେତେକ କଥା ଲକ୍ଷ୍ୟ କରୁଥିଲି । ଉଲ୍ଲିଖିତ ଘଟଣା ମୋର ଧାରଣାକୁ ଦୃଢ଼ୀଭୂତ କରିଥିଲା । ତେଣୁ ତାଙ୍କୁ ପରିବର୍ତ୍ତନ କରି ଟ୍ରାନ୍‌ସପୋର୍ଟ କର୍ପୋରେସନ୍‌ର ଚେୟାରମ୍ୟାନରୂପେ

ଅବସ୍ଥାପିତ କରାଇଥିଲି । ତାଙ୍କ ସହିତ ଅତିରିକ୍ତ ପୁଲିସ ଆଇ.ଜି. ରୂପେ କାର୍ଯ୍ୟ କରୁଥିବା ଅଫିସର୍ ତାଙ୍କ ସ୍ଥାନରେ ଅବସ୍ଥାପିତ ହୋଇଥିଲେ । ପରିବର୍ତ୍ତନର ଯଥାର୍ଥତା ପରେ ସମସ୍ତେ ଭଲରୂପେ ଉପଲବ୍ଧି କରିଥିଲେ । ନୂଆ ଆଇ.ଜି. ଶ୍ରୀ ଶ୍ରୀକାନ୍ତ ଘୋଷ ଜଣେ ସୁଦକ୍ଷ ପୁଲିସ ଅଫିସର୍ ରୂପେ ପରିଚିତ ଥିଲେ ଏବଂ ତାଙ୍କର କାର୍ଯ୍ୟକାଳ ମଧ୍ୟରେ ନିଜର କାର୍ଯ୍ୟଦକ୍ଷତା ବଳରେ ବେଶ୍ ସୁନାମ ଅର୍ଜନ କରିଥିଲେ । ତାଙ୍କରି ସମୟରେ ପୁଲିସ ବିଭାଗର ସଂପ୍ରସାରଣ ଓ ଅଭିବୃଦ୍ଧି ବିଶେଷଭାବରେ ହୋଇଥିଲା । ତାଙ୍କରି ପରାମର୍ଶ ଅନୁସାରେ ରାଉରକେଲା ଏବଂ ତା'ର ପାର୍ଶ୍ୱବର୍ତ୍ତୀ ସ୍ଥାନମାନଙ୍କରେ ଶିଳ୍ପ-ବାଣିଜ୍ୟର ସଂପ୍ରସାରଣ ହେତୁ ସୁନ୍ଦରଗଡ଼ ଜିଲ୍ଲା ଓ କେନ୍ଦୁଝର ଜିଲ୍ଲାକୁ ନେଇ ରାଉରକେଲାକୁ କେନ୍ଦ୍ରକରି ଗୋଟିଏ ନୂତନ ପୁଲିସ ରେଞ୍ଜ ସୃଷ୍ଟି କରାଯାଇ ରାଉରକେଲାରେ ଜଣେ ଡି.ଆଇ.ଜି.ଙ୍କୁ ଅବସ୍ଥାପିତ କରାଯାଇଥିଲା । ତା' ବ୍ୟତୀତ ସିପାହି ଓ କନେଷ୍ଟବଳମାନଙ୍କ ପିଲାଙ୍କର ଶିକ୍ଷା ଓ ପରିବାର କଲ୍ୟାଣପାଇଁ କେତେଗୁଡ଼ିଏ କାର୍ଯ୍ୟ ସେ ଆରମ୍ଭ କରିଥିଲେ । ତାଙ୍କଦ୍ୱାରା ରଚିତ ବହୁ ପୁସ୍ତକ ଭାରତ ତଥା ଭାରତ ବାହାରେ ଆଦୃତ ହୋଇଛି । ଏହା ତାଙ୍କର ବୌଦ୍ଧିକ ପାରଦର୍ଶିତାର ପରିଚୟ ଦିଏ ।

## ସିପାହି ଆନ୍ଦୋଳନ

ରାଉରକେଲାରେ ଯେଉଁ ଦଙ୍ଗା ହୋଇଥିଲା ଏବଂ ତତ୍‌ସମ୍ପର୍କୀୟ ଅପରିହାର୍ଯ୍ୟ କାରଣରୁ ଯେଉଁଳି ଆଇ.ଜି.ଙ୍କର ପରିବର୍ତ୍ତନ କରାଯାଇଥିଲା, ଠିକ୍ ସେହି ପ୍ରକାରର ପରିସ୍ଥିତିରୁ ୧୯୭୯ ମସିହାରେ ମଧ୍ୟ ପୁଲିସ ଆଇ.ଜି. ପରିବର୍ତ୍ତନ କଥା ଉଠିଥିଲା, ଯେତେବେଳେ ଭାରତର ବିଭିନ୍ନ ସ୍ଥାନରେ ପୁଲିସମାନଙ୍କ ଭିତରେ ଅଶାନ୍ତି ସୃଷ୍ଟିହୋଇଥିଲା । ଆଇ.ଜି. ପୁଲିସ ଆମ ଓଡ଼ିଶାରେ ସେ ପ୍ରକାର କିଛି ଘଟିବନାହିଁ ବୋଲି ସରକାରଙ୍କୁ ଧାରଣା ଦେଇଥିଲେ । ଯେଉଁ ଦିନ ସନ୍ଧ୍ୟାବେଳେ ଭୁବନେଶ୍ୱରର ସପ୍ତମ ବାଟାଲିୟନ୍‌ରେ ଅଶାନ୍ତି ସୃଷ୍ଟିହୋଇଥିଲା ଏବଂ ରାତି ଆଠଟାବେଳେ ଓଡ଼ିଶା ମିଲିଟାରୀ ପୁଲିସ ଡି.ଆଇ.ଜି. ସେମାନଙ୍କଠାରୁ ସ୍ମାରକପତ୍ର ଗ୍ରହଣ ନକରିବାରୁ ଗଣ୍ଡଗୋଳ ଆରମ୍ଭ ହୋଇଯାଇଥିଲା, ସେହିଦିନ ରାତି ନ'ଟା ବେଳେ ପୁରୀ ଏକ୍‌ସ୍‌ପ୍ରେସ୍ ଯୋଗେ ଆଇ.ଜି. ଛୁଟିରେ ଅନ୍ୟ ରାଜ୍ୟରେ ଥିବା ତାଙ୍କ ଘରକୁ ବାହାରିଯାଇଥିଲେ । ନିଜେ ଆଇ.ଜି. ହୋଇ ସେ ଯଦି ସଶସ୍ତ୍ର ବାହିନୀ ଭିତରେ ଅଶାନ୍ତି ସୃଷ୍ଟି ହେବାକୁ ଯାଉଛି ବୋଲି ଜାଣିନପାରିଲେ, ତାହା କେବେହେଲେ ତାଙ୍କ ଦକ୍ଷତା ପକ୍ଷେ ପ୍ରଶଂସନୀୟ କଥା ନୁହେଁ । ଭୁବନେଶ୍ୱର-କଟକ ମଧ୍ୟରେ ଦୂରତ୍ୱ ବେଶି ନୁହେଁ । ସମ୍ବାଦ ପାଇବାକୁ ପାଞ୍ଚ ମିନିଟ୍ ସମୟ ମଧ୍ୟ ଲାଗିବନାହିଁ । କଟକ ଷ୍ଟେସନ୍‌ରୁ ମଧ୍ୟ ସେ ଫେରିଆସିପାରିଥାଆନ୍ତେ, କାରଣ ସେଦିନ ଗାଡ଼ି କଟକ ଷ୍ଟେସନ୍‌ରୁ ରାତି ପ୍ରାୟ ସାଢ଼େ ନ'ଟାରେ ଛାଡ଼ିଥିଲା । ଗାଡ଼ି ଚାଲିଗଲା ପରେ ବାଲେଶ୍ୱର ଏସ୍.ପି.ଙ୍କୁ କୁହାଗଲା ଯେ ପୁରୀ ଏକ୍‌ସ୍‌ପ୍ରେସ୍‌କୁ ବାଲେଶ୍ୱରରେ ଅଟକାଇ ଆଇ.ଜି.ଙ୍କୁ ଖୋଜି ମଟରଗାଡ଼ିଦ୍ୱାରା କଟକ ଫେରାଇଦେବାପାଇଁ । ବାଲେଶ୍ୱରର ଏସ୍.ପି. ନିର୍ଦ୍ଦେଶାନୁସାରେ ଆଇ.ଜି.ଙ୍କୁ ଖବରଦେଇ ମଟରଗାଡ଼ିଦ୍ୱାରା କଟକ ପଠାଇଦେଇଥିଲେ । ଏହି ଘଟଣା ପରେ ତାଙ୍କ ଦାୟିତ୍ୱବୋଧ ଉପରେ ସରକାରଙ୍କର ଆସ୍ଥା ଟିକିଏ ଟଳମଳ ହୋଇଯାଇଥିଲା । ତା' ବ୍ୟତୀତ ପୁଲିସ ଆନ୍ଦୋଳନ ବେଳେ ଜଣେ ଆଇ.ଜି. ଯେପରି ଭାବରେ ଅବସ୍ଥାର ସମ୍ମୁଖୀନ ହେବା କଥା ସେ ତାହା କରିପାରିନଥିଲେ । ରଥଯାତ୍ରା ଓଡ଼ିଶାର ଏକ ପ୍ରଧାନ ପର୍ବ ଏବଂ ସମଗ୍ର ଭାରତବର୍ଷରୁ ଓ ବିଦେଶରୁ ବହୁଲୋକଙ୍କର ସେଠାରେ ସମାବେଶ ହୋଇଥାଏ । ରଥଯାତ୍ରାରେ ସମଗ୍ର ପୁଲିସ ବ୍ୟବସ୍ଥା ସେ ନିଜେ ପର୍ଯ୍ୟବେକ୍ଷଣ କରିବା କଥା ନିର୍ଦ୍ଧାରିତ ହୋଇଥିଲା; କିନ୍ତୁ ସେ ସେଠାକୁ ଗଲେନାହିଁ । ପୁରୀର ଜନସାଧାରଣଙ୍କର ସାହାଯ୍ୟ ସହଯୋଗରେ ଶାନ୍ତିଶୃଙ୍ଖଳା ରକ୍ଷାକରାଯାଇଥିଲା । କାରଣ ସେଠାକୁ ଡିଉଟିରେ ଯାଇଥିବା ପୁଲିସ୍‌ମାନେ ଧର୍ମଘଟରେ

ଯୋଗଦେଇଥିଲେ । ଅନ୍ୟପକ୍ଷେ, ପୁଲିସ ଆସିଷ୍ଟାଣ୍ଟ ସବ୍-ଇନ୍‌ସ୍‌ପେକ୍ଟରଠାରୁ ଇନ୍‌ସ୍‌ପେକ୍ଟରମାନେ ସଭ୍ୟଥିବା ପୁଲିସ ଆସୋସିଏସନ୍ ଏକ ସଭା କରି ସିପାହିମାନଙ୍କର ଏତାଦୃଶ ଆନ୍ଦୋଳନର ନିନ୍ଦା କରି ପ୍ରସ୍ତାବ କଲାବେଳେ ଉକ୍ତ ଆସୋସିଏସନ୍ ପ୍ରତି ଆଇ.ଜି.ଙ୍କର ବ୍ୟବହାର ଆଦୌ ସନ୍ତୋଷଜନକ ବିବେଚିତ ହୋଇନଥିଲା । ଅନେକ ବର୍ଷ ଧରି ଉକ୍ତ ଆସୋସିଏସନ୍ ସରକାରଙ୍କ ସହିତ ସେମାନଙ୍କର ବିଭିନ୍ନ ସମସ୍ୟା ଆଲୋଚନା କରିଆସୁଥିଲେ ଏବଂ କେତେକାଂଶରେ ବିଭିନ୍ନ ସମସ୍ୟାର ସମାଧାନର ବ୍ୟବସ୍ଥା କରିଆସୁଥିବା ସ୍ଥଳେ ଆଇ.ଜି. ଉକ୍ତ ଆସୋସିଏସନ୍ ସରକାରଙ୍କ ସ୍ୱୀକୃତିପ୍ରାପ୍ତ ନୁହେଁ ବୋଲି ଆପତ୍ତି ଉଠାଇ ସେମାନଙ୍କ ମଧ୍ୟରେ ଅସନ୍ତୋଷ ସୃଷ୍ଟିକରିଥିଲେ । ଦେଶକାଳପାତ୍ର ବିବେଚନାରେ ପୁଲିସ ପ୍ରଶାସନ କ୍ଷେତ୍ରରେ ସର୍ବୋଚ୍ଚ ପ୍ରଶାସକଙ୍କର ଏହା ଗୋଟିଏ ଅବିବେକ କାର୍ଯ୍ୟ ଭଳି ହୋଇଥିଲା । ଏହିସବୁ କାରଣରୁ ତାଙ୍କୁ ପରିବର୍ତ୍ତନ କରିବାର ଚିନ୍ତା ଆରମ୍ଭହେଲା । ମାତ୍ର ମୁଁ ହଠାତ୍ କୌଣସି ଆଦେଶ ଦେଲିନାହିଁ ତାଙ୍କ ପଦମର୍ଯ୍ୟାଦା ପ୍ରତି ଅସୁନ୍ଦର ହେବ ବୋଲି; କିନ୍ତୁ ପରେ ତଦନୁଯାୟୀ କାର୍ଯ୍ୟ କରାହୋଇଥିଲା । କେବଳ ପ୍ରଶାସନିକ ଆବଶ୍ୟକତା ବ୍ୟତୀତ ତାଙ୍କ ପ୍ରତି ମୋର ଅନ୍ୟ କୌଣସି ପ୍ରକାର ଅଶ୍ରଦ୍ଧା ନଥିଲା । ତାଙ୍କ ପରେ ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀ ଆଇ.ଜି. ହୋଇଥିଲେ । ସେ କାହାରି ସିନିୟରିଟିକୁ ଅତିକ୍ରମ କରିନଥିଲେ । ସିନିୟରିଟି ଅନୁସାରେ ଓଡ଼ିଶାରେ ଥିବା ଅଫିସରମାନଙ୍କ ଭିତରେ ଆଇ.ଜି. ହେବାପାଇଁ ତାଙ୍କର ପାଳି ପଡ଼ିଥିଲା । ଏହି ନିଯୁକ୍ତି ମୋ ଜାଣିବାରେ ପୁଲିସ ମହଲରେ ସନ୍ତୋଷ ଜାତ କରିଥିଲା; କାରଣ ସେ କୁଟିଳ ପ୍ରକୃତିର ବ୍ୟକ୍ତି ନଥିଲେ — ସରଳ ଓ ଧର୍ମଭୀରୁ ଥିଲେ ।

## କେତୋଟି ସ୍ମୃତି-ପରିକ୍ରମା

ସ୍ୱାଧୀନତା ସଂଗ୍ରାମରେ ନିଜକୁ ଜଣେ ଶୃଙ୍ଖଳିତ ସୈନିକ ଜ୍ଞାନ କରି ଯେପରି ସତର୍କ ତଥା ସାହସିକ ପଦକ୍ଷେପ ନେବାକୁ ପଡୁଥିଲା, ପରବର୍ତ୍ତୀ କାଳରେ ମୋର ବ୍ୟବସ୍ଥାପକ ତଥା ରାଜନୈତିକ ଜୀବନରେ ସହାୟକ ହେବାଭଳି ଅନୁକୂଳ ଆଚରଣରେ ମୋତେ ଅଭ୍ୟସ୍ତ ହେବାକୁ ପଡ଼ିଥିଲା । ତେଣୁ ପ୍ରଶାସନିକ, ବ୍ୟବସ୍ଥାପକ, ଦଳୀୟ ତଥା ନିର୍ବାଚନ ରାଜନୀତିରେ ଅନେକ ପ୍ରତ୍ୟାଶିତ ଓ ଅପ୍ରତ୍ୟାଶିତ ଦାୟିତ୍ୱ ବହନ କରିବାପାଇଁ ନେତୃସ୍ଥାନୀୟ ବ୍ୟକ୍ତି ଓ ବନ୍ଧୁମାନଙ୍କଦ୍ୱାରା ବଛାଯିବାର ସୁଯୋଗ ମୋ ଭାଗ୍ୟରେ ଜୁଟୁଥିଲା । ଏହି ପ୍ରସଙ୍ଗରେ କେତେକ ସ୍ମୃତି-ପରିକ୍ରମା ଆବଶ୍ୟକ ବୋଧକରୁଛି । ନିଜ ମନରେ ଯେପରି ଅହଂକାର ନ ଉପୁଜେ, ସେ ଦିଗରେ ସଚେତନ ରହିବା ମୋର ସ୍ୱଭାବ । ସବୁ କଥାରେ ନିଜକୁ ପ୍ରଶଂସା କରି ଅନ୍ୟକୁ ନ୍ୟୂନ ମନେକରିବାକୁ ମୁଁ ଆଦୌ ପସନ୍ଦ କରେନାହିଁ । ତେଣୁ କୌଣସି କାର୍ଯ୍ୟର ମର୍ଯ୍ୟାଦା ନିଜ ସରକାର ବା ଦଳର ପ୍ରାପ୍ୟ ଜ୍ଞାନକରି ଅନେକ ସ୍ଥଳରେ 'ମୁଁ' ଶବ୍ଦ ପ୍ରୟୋଗ ନକରି 'ଆମେ' ଶବ୍ଦ ବ୍ୟବହାର କରିବାକୁ ମୁଁ ଭଲପାଏ । ସାଧାରଣତଃ ଯେଉଁମାନେ ମୁଖ୍ୟମନ୍ତ୍ରୀ ହୁଅନ୍ତି ଏବଂ ତାଙ୍କ ନେତୃତ୍ୱରେ ଯେଉଁ ମନ୍ତ୍ରିମଣ୍ଡଳ ଗଠନ କରାଯାଏ, ସେ କଥାକଥାକେ ମୋ ସରକାର ବୋଲି କହନ୍ତି; କିନ୍ତୁ ମୁଁ ମୁଖ୍ୟମନ୍ତ୍ରୀ ଥିଲାବେଳେ ସେପରି ଗତାନୁଗତିକ ଭାଷା ବ୍ୟବହାର କରିବାକୁ ମୋତେ ଆଦୌ ଭଲ ଲାଗୁନଥିଲା । ମନ୍ତ୍ରୀ ଥିବାବେଳେ ଗସ୍ତରେ ଗଲେ, କି ପ୍ରକାର ଆଚରଣ ମୁଁ ଅବଲମ୍ବନ କରିବି ସେ କଥା ସ୍ଥିର କରିନେଇଥାଏ । ଯେଉଁ ସ୍ଥାନକୁ ମୋର ଗସ୍ତରେ ଯିବାର କଥା ସେ ସ୍ଥାନଟିର ବିଭିନ୍ନ ଶ୍ରେଣୀ ତଥା ବିଭିନ୍ନ ସ୍ତରର ବିଶିଷ୍ଟ ଲୋକ ତଥା ସମାଜର ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟ କରୁଥିବା ସମାଜସେବୀ ଓ କର୍ମୀମାନଙ୍କର ତାଲିକା ମୋର ସାଧ୍ୟମତେ ଆଗରୁ ସଂଗ୍ରହ କରୁଥିଲି ଏବଂ ସେ ସ୍ଥାନକୁ ଯିବା ପୂର୍ବରୁ ସେମାନଙ୍କୁ ଖଣ୍ଡିଏ ଖଣ୍ଡିଏ ଚିଠି ନିଜ ଦସ୍ତଖତରେ ପଠାଉଥିଲି । ସେ ଚିଠିରେ ସେମାନଙ୍କୁ ଅନୁରୋଧ କରୁଥିଲି, ଦେଖାହେଲେ ଖୁସି ହେବି ବୋଲି । ଏହିପରି ଭାବରେ ସମଗ୍ର ଓଡ଼ିଶାରେ ମୋର ଗସ୍ତ କାର୍ଯ୍ୟକ୍ରମ ଆରମ୍ଭ କରିଥିଲି ଠିକ୍

୧୯୫୨ ମସିହାରେ ପ୍ରଥମ ମନ୍ତ୍ରିପରିଷଦରେ ଯୋଗଦେବା ପରେ ପରେ । ମୁଁ ପହଞ୍ଚିବା ପୂର୍ବରୁ ଗସ୍ତ ସମୟରେ ମୋର ରହଣି ସ୍ଥାନମାନଙ୍କରେ ବହୁଲୋକଙ୍କର ସମାବେଶ ହେଉଥିଲା । ଫଳରେ ସବୁ ଶ୍ରେଣୀର ଲୋକେ ଖୁବ୍ ସନ୍ତୁଷ୍ଟ ହେଉଥିଲେ । ତା'ଛଡ଼ା ମୁଁ ଯେଉଁ ସ୍ଥାନକୁ ଯାଏ, ସେହି ସ୍ଥାନର ଜଣାଶୁଣା ବୟୋଜ୍ୟେଷ୍ଠ ବ୍ୟକ୍ତିମାନଙ୍କ ଘରକୁ ନିଜେ ଯାଇ ଦେଖାକରିଥାଏ । ଏହି ଆଚରଣ ଫଳରେ ମୋ ମନର ସ୍ୱାଭାବିକ ନମ୍ରତା ଅଧିକ ପରିମାର୍ଜିତ ହେବା ସଙ୍ଗେ ସଙ୍ଗେ ମୁଁ ଅଶେଷ ଆତ୍ମସନ୍ତୋଷ ଲାଭକରୁଥିଲି ।

ଅନେକ ସମୟରେ ମନୁଷ୍ୟର ବ୍ୟବହାର ଏବଂ ତା'ର କଟୂକ୍ତି ତା'ପାଇଁ ଶତ୍ରୁ ସୃଷ୍ଟି କରିଥାଏ । ଏ କଥା ଭଲଭାବରେ ମନେରଖି ମୁଁ ସ୍ଥିର କରିଥାଏ ଯେ ଲୋକଙ୍କୁ କୌଣସି କଥାରେ ସାହାଯ୍ୟ କରି ସେମାନଙ୍କୁ ସନ୍ତୋଷ ଦେଇନପାରିଲେ ମଧ ମୋର ବ୍ୟବହାରଦ୍ୱାରା ଯେପରି କେହି ଅସନ୍ତୁଷ୍ଟ ନ ହୁଅନ୍ତି । ଡକ୍ଟର ହରେକୃଷ୍ଣ ମହତାବ ଯେତେବେଳେ ଦ୍ୱିତୀୟ ଥରପାଇଁ ମୁଖ୍ୟମନ୍ତ୍ରୀ କହିଲେ, ମନ୍ତ୍ରିମଣ୍ଡଳର ପାରମ୍ପରିକ କାର୍ଯ୍ୟ ଓ ଆନୁଷ୍ଠାନିକ ବୈଠକପାଇଁ ଏକ ନୂତନ ପଦ୍ଧତି ସୃଷ୍ଟି କରିଥିଲେ । ଏହାର ଉଦ୍ଦେଶ୍ୟ ଥିଲା, କୌଣସି ବିଷୟରେ ମନ୍ତ୍ରିମଣ୍ଡଳରେ ମତାନୈକ୍ୟ କିମ୍ବା ମନ୍ତ୍ରୀ-ମନ୍ତ୍ରୀଙ୍କ ଭିତରେ ଥିବା ମତାନ୍ତରକୁ ପଦାରେ ନପକାଇବା । ଏହି ପଦ୍ଧତିକୁ "Informal Cabinet Meeting' ବା ମନ୍ତ୍ରିମଣ୍ଡଳର ଅଣଆନୁଷ୍ଠାନିକ ବୈଠକରୂପେ କାର୍ଯ୍ୟକାରୀ କରାଯାଉଥିଲା । ଏହି କାର୍ଯ୍ୟର ସଂପାଦନା କରିବାପାଇଁ ସେ ମୋତେ "Informal Cabinet"ର ସେକ୍ରେଟେରୀ ଦାୟିତ୍ୱ ଦେଇଥିଲେ । ମନ୍ତ୍ରିମଣ୍ଡଳ ବୈଠକ ବସିବା ଦିନ ସ୍ଥିରହେଲେ ସବୁ ବିଭାଗ ସେମାନଙ୍କର ପ୍ରସ୍ତାବ ବା memorandum ପ୍ରସ୍ତୁତ କରି ମନ୍ତ୍ରୀମାନଙ୍କ ଗୋଚରାର୍ଥେ ବାଣ୍ଟନ୍ତି ଏବଂ ସେଗୁଡ଼ିକ କ୍ୟାବିନେଟ୍ ବୈଠକରେ ଆଲୋଚିତ ହୋଇ ତା'ଉପରେ ନିଷ୍ପତ୍ତି ନିଆଯାଏ । ଅନେକ ସମୟରେ ଗୋଟିଏ ଗୋଟିଏ ବିଷୟ ଉପରେ କ୍ୟାବିନେଟ୍ ବୈଠକରେ ତୀବ୍ର ମତଭେଦ ପ୍ରକାଶପାଇଥାଏ । କ୍ୟାବିନେଟ୍ ବୈଠକରେ ଚିଫ୍ ସେକ୍ରେଟେରୀ ଉପସ୍ଥିତ ରହନ୍ତି ଏବଂ ଦରକାରପଡ଼ିଲେ ଯେଉଁ ବିଷୟଟି ଆଲୋଚିତ ହେଉଥାଏ ସେ ବିଭାଗର ସେକ୍ରେଟେରୀ ଉପସ୍ଥିତ ଥାଆନ୍ତି । ସରକାରୀ କର୍ମଚାରୀଙ୍କ ଉପସ୍ଥିତିରେ ଏଭଳି ମତାନ୍ତର ସ୍ପୃହଣୀୟ ନୁହେଁ । ତା'ଛଡ଼ା ଏହାଦ୍ୱାରା ମନ୍ତ୍ରିମଣ୍ଡଳରେ ମତାନ୍ତର କଥାଟା ବାହାରେ ପ୍ରକାଶିତ ହୋଇଯିବାର ଯଥେଷ୍ଟ ସମ୍ଭାବନା ଥାଏ । ଏ ପ୍ରକାର ଅସୁନ୍ଦର ପରସ୍ଥିତିକୁ ଏଡ଼ାଇବାପାଇଁ କ୍ୟାବିନେଟ୍‌ର ଏହି ଅଣଆନୁଷ୍ଠାନିକ ବୈଠକର ବ୍ୟବସ୍ଥା କରାଯାଇଥାଏ । କ୍ୟାବିନେଟ୍ ବସିବା ପୂର୍ବରୁ ଆଉ ଏକ ଅଣଆନୁଷ୍ଠାନିକ ବୈଠକର ଆୟୋଜନ ମୁଁ ନିଜେ କରୁଥିଲି ଏବଂ ସେଥିପାଇଁ ମୋ ଦସ୍ତଖତରେ ମନ୍ତ୍ରୀଙ୍କ ପାଖକୁ ଚିଠି ଯାଉଥିଲା । କ୍ୟାବିନେଟ୍‌ରେ ଯେଉଁସବୁ କଥା ପଡ଼ିବାର ଥାଏ ସେସବୁ ଏହି ଅଣଆନୁଷ୍ଠାନିକ ବୈଠକରେ ଆଲୋଚିତ ହୋଇ ଯେଉଁ ବିଷୟ ଉପରେ ଯାହା ନିଷ୍ପତ୍ତି ନିଆଯାଉଥିଲା ମୁଁ ତାହା ଲେଖିରଖୁଥିଲି ଏବଂ ଏହି ବୈଠକ ପରେ ସାଙ୍ଗେ ସାଙ୍ଗେ ତାହାର ଗୋଟିଏ ଗୋଟିଏ କପି ସବୁ ମନ୍ତ୍ରୀଙ୍କ ପାଖକୁ ପଠାଇଦେଉଥିଲି । ମନ୍ତ୍ରିମଣ୍ଡଳ ଯେତେବେଳେ ଆନୁଷ୍ଠାନିକ ଭାବରେ ବସୁଥିଲା ସେତେବେଳେ ଆମ୍ଭମାନଙ୍କ ଭିତରେ ପୂର୍ବରୁ ସ୍ଥିରହୋଇଥିବା କଥାହିଁ ମର୍ଯ୍ୟାଦାପୂର୍ଣ୍ଣ ବାତାବରଣରେ ଆଲୋଚନା କରାଯାଇ ନିଷ୍ପତ୍ତି ନିଆଯାଉଥିଲା । ଖୁବ୍ କମ୍ ସମୟ ମଧରେ ମନ୍ତ୍ରିମଣ୍ଡଳର ବୈଠକ ସମାପ୍ତ ହୋଇଯାଉଥିଲା । କୌଣସି କୌଣସି ବିଷୟରେ ମତଭେଦ ଦେଖାଦେଉଥିଲେ ମୁଁ କଥାବାର୍ତ୍ତା ମାଧମରେ ଯୋଗସୂତ୍ର ରକ୍ଷାକରି ସେଗୁଡ଼ିକର ସମାଧାନ କରୁଥିଲି ଏବଂ ମୁଖ୍ୟମନ୍ତ୍ରୀଙ୍କର ଦୃଷ୍ଟିକୁ ଆଣୁଥିଲି । କ୍ୟାବିନେଟ୍ ପଦ୍ଧତିରେ ଏଭଳି ଅଣ-ଆନୁଷ୍ଠାନିକ ମନ୍ତ୍ରିମଣ୍ଡଳ ବୈଠକ ନିଶ୍ଚୟ ଏକ ଉପାଦେୟ ବ୍ୟବସ୍ଥା ଏବଂ ବିଶେଷତଃ ବିଭିନ୍ନ ଦଳକୁ ନେଇ ଗଠିତ ମିଳିତ ମନ୍ତ୍ରିମଣ୍ଡଳରେ ଏହାର ଆବଶ୍ୟକତା ଅଧିକ ଉପଲବ୍ଧି କରାଯାଇଥାଏ ।

୧୯୫୩ ମସିହାଠାରୁ ୧୯୫୫ ମସିହା ଯାବତ୍ ବିଧାନସଭାରେ ପୁଲିସ ବିଭାଗର ଖର୍ଚ୍ଚ ଦାବି ସଂକ୍ରାନ୍ତୀୟ ବଜେଟ୍ ଯେତେବେଳେ ଆଲୋଚିତ ହୁଏ ସେତେବେଳେ ଗୃହରେ ଖୁବ୍ ଉତ୍ତେଜନା ପ୍ରକାଶ ପାଉଥିଲା । ସେ ଦିନମାନଙ୍କରେ ଦେଖାଯାଉଥିଲା ଯେ ଗୃହରେ ପ୍ରାୟ ସମସ୍ତ ସଭ୍ୟ ଉପସ୍ଥିତ ରହନ୍ତି । ଦର୍ଶକ ଗ୍ୟାଲେରୀ ମଧ୍ୟ ଭରପୂର ରହେ । ମୁଁ ବଜେଟ୍ ଉପସ୍ଥାପିତ କରେ ଏବଂ ତା'ଉପରେ ଆଲୋଚନା ଆରମ୍ଭ ହୁଏ । ଆଲୋଚନାରେ ମୋଟାମୋଟି ସବୁ ସଭ୍ୟ ଭାଗନେଉଥିଲେ । ଅଧିକାଂଶ ସଭ୍ୟ ନିଜ ନିଜ ଅଞ୍ଚଳରେ ପୁଲିସର କାର୍ଯ୍ୟକଳାପ ସମ୍ବନ୍ଧରେ ନାନା ଅଭିଯୋଗ ଗୃହରେ ଉପସ୍ଥାପନ କରୁଥିଲେ । କେତେକ ବିରୋଧୀ ଦଳର ସଭ୍ୟ ସେମାନଙ୍କର ରାଜନୈତିକ ଦୃଷ୍ଟିକୋଣକୁ ଆଖି ଆଗରେ ରଖି ପୁଲିସ କାର୍ଯ୍ୟକଳାପର ସମାଲୋଚନା କରିବା ସଙ୍ଗେ ସଙ୍ଗେ ପୁଲିସ କାର୍ଯ୍ୟ ସହିତ ସରକାରଙ୍କୁ ମଧ୍ୟ ଜଡ଼ିତ କରୁଥିଲେ । ଇଂରେଜ ସରକାରଙ୍କ ଅମଳରୁ ପୁଲିସ ଆଚରଣର ଯେଉଁ ପରମ୍ପରା ରହିଆସିଥିଲା ସେ ଦୃଷ୍ଟିରୁ ବିଚାରକଲେ ସଭ୍ୟମାନଙ୍କର ସମାଲୋଚନାର ବାସ୍ତବତାକୁ ସଂପୂର୍ଣ୍ଣ ଅସ୍ୱୀକାର କରି ହେବ ନାହିଁ । ପୁଲିସର ଉଦ୍ଧତ ଆଚରଣ ଓ ଦୁର୍ନୀତି ସଂପର୍କରେ ଯେଉଁସବୁ ଅଭିଯୋଗ ଆସେ, ଯେତେଦୂର ସମ୍ଭବ, ସେ ବିଷୟରେ ତଥ୍ୟ ସଂଗ୍ରହ କରି ଗୃହରେ ଉପସ୍ଥାପିତ କରୁଥିଲି ଏବଂ ଯେଉଁ ଖବର ତତ୍‌କ୍ଷଣାତ୍ ସଂଗ୍ରହ କରିବା ସମ୍ଭବ ହେଉନଥିଲା ତାହା ସଂଗୃହୀତ ହେଲା ପରେ ସେ ବିଷୟରେ ସଂପୃକ୍ତ ସଭ୍ୟଙ୍କ ସହ ଗୃହ ବାହାରେ ଆଲୋଚନା କରୁଥିଲି । ଅନେକ ସମୟରେ ପୁଲିସ ଗର୍ହିତ କାର୍ଯ୍ୟ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାପାଇଁ ପ୍ରତିଶ୍ରୁତି ଦେବା ସଙ୍ଗେ ସଙ୍ଗେ ମୋ ଦାୟିତ୍ୱାଧୀନ ପୁଲିସର ସେଭଳି ଆଚରଣପାଇଁ ଗୃହରେ ମଧ୍ୟ ଦୁଃଖ ପ୍ରକାଶ କରୁଥିଲି । ବ୍ୟବସ୍ଥାସଭା ଅଧିବେଶନ ମୁଲତବି ହେବା ପରେ ସଭ୍ୟମାନଙ୍କର ବାସ୍ତବ ଅଭିଯୋଗଗୁଡ଼ିକ ସମ୍ବନ୍ଧରେ ମୁଁ ସ୍ୱରାଷ୍ଟ୍ର ବିଭାଗର ଶାସନ-ସଚିବ ଓ ପୁଲିସ ଆଇ.ଜି.ଙ୍କ ସହ ଆଲୋଚନା କରି ତାହାର ପ୍ରତିକାର ନିମନ୍ତେ ନିର୍ଦ୍ଦେଶ ଦେଉଥିଲି । ସ୍ୱର୍ଗୀୟ ପଣ୍ଡିତ ଗୋଦାବରୀଶ ମିଶ୍ର ବ୍ୟବସ୍ଥାସଭାରେ ଜଣେ ବିଶିଷ୍ଟ ତଥା ଅଭିଜ୍ଞ ସଭ୍ୟରୂପେ ସମୟ ସମୟରେ ପୁଲିସ ବଜେଟ୍ ଉପରେ ମୁଖ୍ୟ ବକ୍ତାଭାବେ ଆଲୋଚନା ଆରମ୍ଭ କରୁଥିଲେ । ତାଙ୍କ ପ୍ରତି ମୋର ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନ ଥିଲା । ସେ ଜଣେ ବାଗ୍ମୀ ଥିଲେ ଏବଂ ପୁଲିସ ବଜେଟ୍ ଉପରେ ତାଙ୍କର ସମାଲୋଚନା ଅତ୍ୟନ୍ତ ତିକ୍ତ ଥିଲା । ମୋର ମନେଅଛି, ୧୯୫୪ ବଜେଟ୍ ଅଧିବେଶନରେ ମୁଁ ପୁଲିସ ବିଭାଗପାଇଁ ମୋଟ ଏକ କୋଟି ତେପନ ଲକ୍ଷ ଟଙ୍କା ଖର୍ଚ୍ଚଦାବି ଉପସ୍ଥାପିତ କରିଥିଲି । ପୁଲିସ ବିଭାଗର ଖର୍ଚ୍ଚ ବଢ଼ାଇବା ଉଚିତ ନୁହେଁ ବୋଲି ପଣ୍ଡିତ ମିଶ୍ର ଦାବି କରିଥିଲେ ଏବଂ ସେ ଖର୍ଚ୍ଚକୁ କମେଇଦେବାପାଇଁ ଗୃହରେ କାଟ୍ ପ୍ରସ୍ତାବ ଦେଇଥିଲେ । ପୁନଶ୍ଚ ପୁଲିସ କାର୍ଯ୍ୟରେ ଅସନ୍ତୋଷ ପ୍ରକାଶ କରି ଦେଶରେ ଆଦୌ ପୁଲିସ ନ ରହିଲେ ଚଳିବ ବୋଲି କହିଥିଲେ । ତାଙ୍କର ବକ୍ତବ୍ୟ ଥିଲା, ''ଏ ବ୍ୟୟ ସରକାର କମାନ୍ତୁ, ପୁଲିସ ଆମର ଦରକାରନାହିଁ, ଆମେ ଆମର ପୁଲିସ ହେବା । ଲୋକେ ତାଙ୍କର ପୁଲିସ ହେବେ, ଲୋକେ ତାଙ୍କର ସ୍ୱାର୍ଥ ଜଗିବେ, ଲୋକେ ତାଙ୍କର ଘର ଜଗିବେ, ପଡୋଶୀ ଘରକୁ ଜଗିବେ, ଗାଁକୁ ଗାଁ ମଧ୍ୟ ଜଗିବେ । ମାନ୍ୟବର ମନ୍ତ୍ରୀ ଲକ୍ଷ୍ୟ କରିଥିବେ ଯେ ଆଗେ ଆମର ପୁଲିସ ନ ଥିଲେ, ଲୋକେ ନିଜେ ନିଜକୁ ଜଗୁଥିଲେ ଓ ନିଜ ଗାଁକୁ ମଧ୍ୟ ଜଗୁଥିଲେ ।'' ସ୍ୱାଧୀନ ଭାରତରେ ପୁଲିସ ରହିବା ନରହିବା ବିଷୟରେ ପିଲାଦିନେ ମୋର ମଧ୍ୟ ଏଭଳି ଅପରିପକ୍ୱ ଧାରଣା ଥିଲା ବୋଲି ମୁଁ ଆଗରୁ କହିଛି । ସେହି କଥା ମୁଁ ବ୍ୟବସ୍ଥାସଭାରେ ଉଲ୍ଲେଖ କରିଥିଲି ଏବଂ ଆମ ରାଜ୍ୟର ପୂର୍ବତନ ଅର୍ଥମନ୍ତ୍ରୀଙ୍କ ଭଳି ଏଡ଼େ ବଡ଼ ଜଣେ ଅଭିଜ୍ଞ ବ୍ୟକ୍ତିଙ୍କର ଏ ପ୍ରକାର ଅବାସ୍ତବ ଚିନ୍ତାଧାରାର ସମାଲୋଚନା କରିଥିଲି । ପଣ୍ଡିତ ମିଶ୍ରଙ୍କ ମନ୍ତ୍ରିତ୍ୱ ସମୟରେ ଓଡ଼ିଶାର ଆୟତନ ସହିତ ଗଡ଼ଜାତ ମିଶ୍ରଣ ପରେ ଓଡ଼ିଶାର ଆୟତନର ତୁଳନା କରି ତାଙ୍କ ଭଳି ଜଣେ ବିଜ୍ଞ ବ୍ୟକ୍ତି ସମସ୍ତ ସମସ୍ୟାକୁ କିପରି ବିଚାରକୁ ନନେଉଛନ୍ତି ତାହା ବଡ଼ ଆଶ୍ଚର୍ଯ୍ୟଜନକ ବୋଲି ମଧ୍ୟ ମୁଁ ଉତ୍ତରରେ କହିଥିଲି । ପଣ୍ଡିତ ମିଶ୍ର ଅର୍ଥମନ୍ତ୍ରୀ ଥିବାବେଳେ ଆମ

ପ୍ରଦେଶର ମୋଟ ବଜେଟ୍‌ର ପରିମାଣ ମାତ୍ର ପ୍ରାୟ ଦୁଇ କୋଟି ଟଙ୍କା ଥିଲା । ତଥାପି ସେତେବେଳେ ସେ ନିଜେ ପୁଲିସ ବିଭାଗର ଖର୍ଚ୍ଚବୃଦ୍ଧିକୁ ଯୁକ୍ତିଯୁକ୍ତ ବୋଲି ଦର୍ଶାଇ ବ୍ୟବସ୍ଥାସଭାରେ ଯେଉଁ ଭାଷଣ ଦେଉଥିଲେ ସେଥିପ୍ରତି ମୁଁ ତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲି ଓ ସେଥିରେ ସେ ବଡ଼ ଅପ୍ରସ୍ତୁତ ହୋଇପଡ଼ିଥିଲେ । ଇଜିପ୍‌ଟରେ ରାଜା ଫାରୁକ୍ କିପରି ଅଳ୍ପ ଖର୍ଚ୍ଚରେ ତାଙ୍କର ରାଜ୍ୟର ପୁଲିସ ସଂସ୍ଥା ଚଳାଇପାରୁଥିଲେ ସେ କଥା ସେ ଗୋଟିଏ ପୁସ୍ତକରୁ ପଢ଼ି ଶୁଣାଇଥିଲେ । ତା'ର ଉତ୍ତରରେ ମୁଁ କହିଥିଲି ଯେ ଆମ ଦେଶରେ ସ୍ୱାଧୀନତା ପୂର୍ବରୁ ଅନେକ ରାଜା ଥିଲେ ଯେଉଁମାନେ ନାମକୁମାତ୍ର କିଛି ଖର୍ଚ୍ଚ କରି ତାଙ୍କ ରାଜ୍ୟରେ ପୁଲିସ ସଂସ୍ଥା ରଖିଥିଲେ । ରାଜୁଡ଼ା ଶାସନରେ ପୁଲିସ କର୍ମଚାରୀଙ୍କ ଦରମା ଖୁବ୍ କମ୍ ଥିଲା ଏବଂ ସେମାନେ ଲୋକଙ୍କ ପାଖରୁ ମାରିପିଟି କିଛି ଖାଉଥିଲେ ଓ କିଛି ଆଦାୟ କରି ରାଜାଙ୍କୁ ଆଣି ଭେଟିସ୍ୱରୂପ ଦେଉଥିଲେ । ତେଣୁ କିଛି ଖର୍ଚ୍ଚ ନକରି ମଧ୍ୟ ଗଡ଼ଜାତ ରାଜାମାନଙ୍କର ଗୋଟିଏ ଗୋଟିଏ ପୁଲିସ ବିଭାଗ ଥିଲା । ସେହିପରି ଇଜିପ୍‌ଟର ରାଜା ଫାରୁକ୍ ଯେ ତାଙ୍କ ରାଜ୍ୟରେ ନକରୁଥିବେ ସେ କଥା ଗୋଦାବରୀଶବାବୁ ଅସ୍ୱୀକାର କରିପାରିବେନାହିଁ ବୋଲି ମୁଁ କହିଥିଲି । ଅତି ବିନୟସହକାରେ ମୋତେ କହିବାକୁ ହେଉଛି ଯେ ବ୍ୟବସ୍ଥାସଭାରେ ପଣ୍ଡିତ ଗୋଦାବରୀଶ ମିଶ୍ର ସରକାରଙ୍କୁ ଅପଦସ୍ଥ କରିବାପାଇଁ କପୋଳକଳ୍ପିତ ହିସାବ ବା ଅସତ୍ୟ ବିବରଣୀ ଉପସ୍ଥାପିତ କରିବା କଥା ମୋତେ ବିଶେଷଭାବେ ବିସ୍ମିତ କରିଥିଲା । ସେ ବମ୍ବେ, ମାନ୍ଦ୍ରାଜ ଓ ଆସାମ ପ୍ରଭୃତି ରାଜ୍ୟମାନଙ୍କରେ ଲୋକସଂଖ୍ୟା ତୁଳନାରେ ପୁଲିସ ବିଭାଗର ଖର୍ଚ୍ଚ ମୁଣ୍ଡପିଛା ଯାହା ପଡୁଛି, ଓଡ଼ିଶାରେ ତା' ଅପେକ୍ଷା ଯଥେଷ୍ଟ ବେଶୀ ପଡୁଛି ବୋଲି ଗୃହରେ ତାଙ୍କଦ୍ୱାରା ସଂକଳିତ ତଥ୍ୟପୂର୍ଣ୍ଣ ଏକ ବିବୃତି ଦେଇଥିଲେ । ସେବର୍ଷ ଓଡ଼ିଶାରେ ପୁଲିସ ବିଭାଗ ଖର୍ଚ୍ଚ ମୁଣ୍ଡପିଛା ଚଉଦ ଅଣା ଦୁଇପାହୁଲା ଥିଲା; ମାତ୍ର ସେ ଉକ୍ତ ପରିମାଣକୁ ବଢ଼ାଇ ଏକ ଟଙ୍କା ଏକ ଅଣା ଛ' ପାହୁଲା ବୋଲି ଦର୍ଶାଇଥିଲେ । ସେବର୍ଷ ମାନ୍ଦ୍ରାଜରେ ମୁଣ୍ଡପିଛା ପୁଲିସ ବିଭାଗର ଖର୍ଚ୍ଚ ଛ'ଅଣା ଛ'ପାହୁଲା ମାତ୍ର ଥିଲା ବୋଲି ସେ ତଥ୍ୟ ଦେଇଥିଲେ । ପ୍ରକୃତରେ ତାହା ଥିଲା ଏକ ଟଙ୍କା ଦୁଇଅଣା । ବମ୍ବେ ପ୍ରଦେଶରେ ପୁଲିସ ବିଭାଗର ମୁଣ୍ଡପିଛା ଖର୍ଚ୍ଚ ପ୍ରକୃତରେ ଏକ ଟଙ୍କା ଏକ ଅଣା ଥିବାସ୍ଥଳେ ସେ ମାତ୍ର ଦଶ ଅଣା ବୋଲି ଗୃହକୁ ଜଣାଇଥିଲେ । ପ୍ରକୃତ ତଥ୍ୟସବୁ ସରକାରୀ ରେକର୍ଡ଼ରୁ ସଂଗ୍ରହ କରି ମୁଁ ବ୍ୟବସ୍ଥାସଭାରେ ଉପସ୍ଥାପନ କରିବା ସଙ୍ଗେ ସଙ୍ଗେ ପଣ୍ଡିତ ମିଶ୍ର ବ୍ୟବସ୍ଥାସଭାର ସଭ୍ୟମାନଙ୍କୁ ବିଭ୍ରାନ୍ତ କରିବା ଉଦ୍ଦେଶ୍ୟରେ ଏ ପ୍ରକାର ଅସତ୍ୟ ତଥ୍ୟ ପରିବେଷଣ କରି ବ୍ୟବସ୍ଥାସଭାର ମର୍ଯ୍ୟାଦା ହାନି କରୁଛନ୍ତି ବୋଲି ଅଭିଯୋଗ କରିଥିଲି । ମୁଁ ମାନ୍ଦ୍ରାଜ ଓ ବମ୍ବେ ସରକାରଙ୍କର ବଜେଟ୍ ରିପୋର୍ଟ ବ୍ୟବସ୍ଥାସଭାରେ ପଢ଼ି ଶୁଣାଇଥିଲି; ତେଣୁ ତାକୁ ଖଣ୍ଡନ କରିବାର କୌଣସି ଉପାୟ ତାଙ୍କର ନଥିଲା । ସେ ବଡ଼ ଅପ୍ରସ୍ତୁତ ହୋଇପଡ଼ିଥିଲେ । ଗୃହରେ ହାସ୍ୟରୋଳ ଉଠିଥିଲା । ଏହିପରି ପ୍ରତିଥର ପୁଲିସ ବଜେଟ୍ ଆଲୋଚନା ସମୟରେ ମୋର ପଣ୍ଡିତ ମିଶ୍ରଙ୍କ ସହିତ ବାଦାନୁବାଦ ଓ ତର୍କବିତର୍କ ହୋଇଥାଏ । ଏବେ ମଧ୍ୟ ମୋ ମନରେ ସନ୍ଦେହ ରହିଯାଇଛି, ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ପରି ଜଣେ ବିଦ୍ୱାନ୍ ପ୍ରକୃତରେ ଜାଣିଶୁଣି ସରକାରଙ୍କୁ ଯୁକ୍ତିରେ ବିପର୍ଯ୍ୟସ୍ତ କରିବାପାଇଁ ଏଭଳି ବିଭ୍ରାନ୍ତିକର ହିସାବ ଉପସ୍ଥାପିତ କରୁଥିଲେ ନା ବିଧାନସଭା କାର୍ଯ୍ୟରେ ତାଙ୍କର ସହାୟତାପାଇଁ ସେ ନିର୍ଭର କରୁଥିବା ଅନ୍ୟ କୌଣସି ତଥାକଥିତ ରାଜନୈତିକ ବନ୍ଧୁଙ୍କ ପ୍ରବଞ୍ଚନା ହେତୁ ତାଙ୍କୁ ପ୍ରତାରିତ ଓ ଅପଦସ୍ଥ ହେବାକୁ ପଡୁଥିଲା !

ଆଉ ଜଣେ ବିଶିଷ୍ଟ ବ୍ୟକ୍ତି ସ୍ୱର୍ଗୀୟ ପଣ୍ଡିତ ନୀଳକଣ୍ଠ ଦାସଙ୍କର ଉପସ୍ଥିତି ବ୍ୟବସ୍ଥାସଭାରେ ବିଶେଷ ଭାବରେ ଅନୁଭୂତ ହେଉଥିଲା । ସେ ପୂର୍ବରୁ କେନ୍ଦ୍ର ବ୍ୟବସ୍ଥାସଭାରେ ସଭ୍ୟ ଥିବାରୁ ବ୍ୟବସ୍ଥାସଭା ପରିଚାଳନା ସମ୍ବନ୍ଧରେ ତାଙ୍କର ପ୍ରଭୂତ ଅଭିଜ୍ଞତା ଥିଲା । ବ୍ୟବସ୍ଥାସଭାର ବାଚସ୍ପତି ଥିଲେ ଶ୍ରୀ ନନ୍ଦକିଶୋର ଦାସ ଏବଂ ଉପବାଚସ୍ପତି ଥିଲେ ମୌଲବୀ ମହମ୍ମଦ ହନିଫ୍ । ପଣ୍ଡିତ

ନୀଳକଣ୍ଠ ଦାସ କେତେକ ବିଷୟରେ ବୈଧାନିକ ପ୍ରଶ୍ନମାନ ଉତ୍‌ଥାପନ କରି ବାଚସ୍ପତିଙ୍କୁ ବଡ଼ ଅଡୁଆରେ ପକାଉଥିଲେ । ବାଚସ୍ପତି ଶ୍ରୀ ନନ୍ଦକିଶୋର ଦାସ ଥିଲେ ଜଣେ ଉଚ୍ଚଶିକ୍ଷିତ ବ୍ୟକ୍ତି । ତେଣୁ ବିଭିନ୍ନ ଦେଶର ସଂସଦୀୟବ୍ୟବସ୍ଥା ପଦ୍ଧତି ଅଧ୍ୟୟନ କରି ବୈଧାନିକ ପ୍ରଶ୍ନଗୁଡ଼ିକର ଯୁକ୍ତିଯୁକ୍ତ ନିଷ୍ପତ୍ତି ଦେବାପାଇଁ ତାଙ୍କର କିଛି ଅସୁବିଧା ହେଉନଥିଲା । ପଣ୍ଡିତ ନୀଳକଣ୍ଠ ଦାସ ଏ ପ୍ରକାର ବୈଧାନିକ ପ୍ରଶ୍ନ ବ୍ୟବସ୍ଥାସଭାରେ ଉତ୍‌ଥାପନ କରି ଗୃହର ପରମ୍ପରା ଓ ଗାମ୍ଭୀର୍ଯ୍ୟ ବୃଦ୍ଧି କରିବାରେ ସହାୟକ ହେଉଥିଲେ ।

ଶ୍ରୀ ଚୌଧୁରୀଙ୍କ ମନ୍ତ୍ରିମଣ୍ଡଳରେ ସ୍ୱର୍ଗତ ଦୀନବନ୍ଧୁ ସାହୁ ଥିଲେ ଜଣେ ବିଶିଷ୍ଟ ମନ୍ତ୍ରୀ । ଆଇନଜ୍ଞ ହିସାବରେ ତାଙ୍କର ବିଶେଷ ଖ୍ୟାତି ଥିଲା । ମନ୍ତ୍ରିମଣ୍ଡଳ ଆଗରେ ଉପୁଜୁଥିବା ନାନା ସମସ୍ୟାରେ ତାଙ୍କର ପରାମର୍ଶ ଅତ୍ୟନ୍ତ ମୂଲ୍ୟବାନ୍ ବିବେଚିତ ହେଉଥିଲା । ମାତ୍ର ୧୯୫୪ ମସିହାରେ ଏକ ନିର୍ବାଚନ ମକଦ୍ଦମାରେ ହାରିଯିବା ପରେ ସେ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇଥିଲେ । ତା'ପରେ କେନ୍ଦ୍ରାପଡ଼ା ନିର୍ବାଚନମଣ୍ଡଳୀରେ ଖାଲିପଡ଼ିଥିବା ସ୍ଥାନ ପୂରଣ ନିମନ୍ତେ ଉପନିର୍ବାଚନ କାର୍ଯ୍ୟନିର୍ଘଣ୍ଟ ଘୋଷଣା କରାଯାଇଥିଲା । ଏଥର ନିର୍ବାଚନମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ହୋଇଥିଲେ ଶ୍ରୀ ପୁରୁଷୋତ୍ତମ ନାୟକ । ତାଙ୍କ ବିରୁଦ୍ଧରେ ଲଢୁଥିଲେ ଶ୍ରୀ ଯଦୁମଣି ମଙ୍ଗରାଜ । ଏଥିପୂର୍ବରୁ ଶ୍ରୀ ସାହୁଙ୍କଠାରୁ ନିର୍ବାଚନରେ ହାରିଯିବା ପରେ ଶ୍ରୀ ଯଦୁମଣି ମଙ୍ଗରାଜହିଁ ନିର୍ବାଚନ ମକଦ୍ଦମା କରିଥିଲେ । ଶ୍ରୀ ପୁରୁଷୋତ୍ତମ ନାୟକ ଜଣେ ଅତି ସାଧାରଣ କଂଗ୍ରେସ କର୍ମୀ ଥିଲେ; କିନ୍ତୁ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଶ୍ରୀ ମଙ୍ଗରାଜ କଂଗ୍ରେସ ପରିତ୍ୟାଗ କରିଥିବା ଜଣେ ପ୍ରଭାବଶାଳୀ ନେତା ଥିଲେ । ତାଙ୍କର ଭାଷଣ ଖୁବ୍ କୌତୁକପୂର୍ଣ୍ଣ ଏବଂ ଥଟ୍ଟା ପରିହାସରେ ସେ ଥିଲେ ଧୂରନ୍ଧର । ନିର୍ବାଚନ ସଂଗ୍ରାମରେ ସେ ଖଣ୍ଡାୟତ ସଂପ୍ରଦାୟର ଜଣେ ଗଣୁଆ ଲୋକରୂପେ ଆବିର୍ଭୂତ ହୋଇଥିଲେ । କେନ୍ଦ୍ରାପଡ଼ା ନିର୍ବାଚନମଣ୍ଡଳୀର ଅଧିକାଂଶ ଭୋଟର ଥାଆନ୍ତି ଖଣ୍ଡାୟତ । ଜାତିଆଣ ଭାବର ପ୍ରଚାରକରି ଲୋକଙ୍କର ସମର୍ଥନ ଲାଭ କରିବାପାଇଁ ସେ ଉଦ୍ୟମ କରୁଥା'ନ୍ତି । ମୁଁ ଖଣ୍ଡାୟତ ଜାତିର ଲୋକ ହୋଇଥିବାରୁ ଯଦୁମଣିବାବୁଙ୍କର ଜାତିଆଣ ଭାବର ପ୍ରଚାରକୁ ଖଣ୍ଡନ କରିବାପାଇଁ ଓ ପୁରୁଷୋତ୍ତମବାବୁଙ୍କପାଇଁ ନିର୍ବାଚନ ପ୍ରଚାର କାର୍ଯ୍ୟ ଚଳାଇବାକୁ ପ୍ରଦେଶ କଂଗ୍ରେସ କମିଟି ତରଫରୁ ମୋତେ ନିର୍ଦ୍ଦେଶ ଦିଆଯାଇଥିଲା । ମୁଁ କେନ୍ଦ୍ରାପଡ଼ାରେ ପ୍ରାୟ ଦଶ କୋଡ଼ିଏ ଦିନ ରହି ନିର୍ବାଚନ କାର୍ଯ୍ୟ ପରିଚାଳନା କରିଥିଲି । କିଛିଦିନ କେନ୍ଦ୍ରାପଡ଼ାରେ ରହିବା ପରେ ମୁଁ ଇନ୍ଦୁପୁରକୁ କେନ୍ଦ୍ରକରି ମୋର ପ୍ରଚାର କାର୍ଯ୍ୟ ଆରମ୍ଭକରିଥିଲି । କେନ୍ଦ୍ରାପଡ଼ା ନିର୍ବାଚନମଣ୍ଡଳୀ ଭିତରେ ଇନ୍ଦୁପୁର ଥିଲା ଗୋଟିଏ ପ୍ରସିଦ୍ଧ କେନ୍ଦ୍ରସ୍ଥାନ । ଇନ୍ଦୁପୁର ପାଖରେ ନିକିରେଇ ବୋଲି ଗୋଟିଏ ଖଣ୍ଡାୟତବହୁଳ ଗ୍ରାମ ଅଛି । ଗ୍ରାମଟି ଯଦୁମଣିବାବୁଙ୍କ ପ୍ରଚାରର ଦୁର୍ଗ ଭଳି ଥାଏ । ମୁଁ ସେ ଗାଆଁକୁ ଯାଇଥିଲି । ମୋର ଉପସ୍ଥିତି ସେଠାରେ ଉତ୍ତେଜନା ସୃଷ୍ଟି କରିଥିଲା । ପ୍ରଥମ ଅବସ୍ଥାରେ ସେ ଗାଆଁର ଲୋକମାନେ ମୋର ପ୍ରବଳ ବିରୋଧ କରିଥିଲେ; ମାତ୍ର ସବୁକଥା ଭଲଭାବରେ ହୃଦୟଙ୍ଗମ କଲା ପରେ ସେମାନେ ମୋତେ ସ୍ୱାଗତ କରିଥିଲେ ଓ କଂଗ୍ରେସ ପ୍ରାର୍ଥୀଙ୍କୁ ସମର୍ଥନ ଜଣାଇଥିଲେ । ସେହି ଗ୍ରାମର ଏକ ଖୋଲା ପଡ଼ିଆରେ ସଂଧ୍ୟାବେଳେ ଗୋଟିଏ ସାଧାରଣ ସଭାର ଆୟୋଜନ କରାଯାଇଥିଲା । ଉକ୍ତ ସଭା ଚାଲିଥିବା ସମୟରେ ହଠାତ୍ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ନିକିରେଇରେ ମୋ ଉପରେ ମାଡ଼ହୋଇଥିବାର ଖବର ପାଇ ସେଠାରେ ଯାଇ ପହଞ୍ଚିଥିଲେ । ମାତ୍ର ସେଭଳି ଅପ୍ରୀତିକର ପରିସ୍ଥିତି ସୃଷ୍ଟି ହୋଇ ନ ଥିଲା । ମୁଁ ଇନ୍ଦୁପୁର ଡାକବଙ୍ଗଳାରେ ରହି ସାଇକେଲ୍‌ରେ ବିଭିନ୍ନ ଗାଆଁକୁ ପ୍ରଚାର କାର୍ଯ୍ୟରେ ଯାଉଥାଏ । ମୋର ମନେଅଛି, ମୁଁ ସେଇ ନିର୍ବାଚନମଣ୍ଡଳୀର 'ଘାଗରା' ବୋଲି ଗୋଟିଏ ଗାଆଁକୁ ଯାଇଥିଲି । ସେଠାରେ ଶ୍ରୀ ପତିତପାବନ ପରିଡ଼ାଙ୍କ ଘରେ ରହି ପ୍ରଚାର କାର୍ଯ୍ୟ ଆରମ୍ଭ କରିଥିଲି । ଦିନକର ଘଟଣା, ତାଙ୍କ ଘର ପାଖରେ ଥିବା କେନାଲ୍ ଉପରେ ପାରିହେବାପାଇଁ ପଡ଼ିଥିବା ଗୋଟିଏ କାଠ ଉପରେ ଆସୁ

ଆସୁ ଏପରିଭାବରେ ପଡ଼ିଲି ଯେ ମୋ ହାତ ଭାଙ୍ଗିଗଲା ଓ ଚେତା ମଧ୍ୟ ବୁଡ଼ିଯାଇଥିଲା । ପତିତବାବୁ ହେରିକା ଆସି ମୋତେ ତାଙ୍କ ଘରକୁ ନେଇଯାଇଥିଲେ । ତା'ପରେ କୌଣସିମତେ ସେମାନେ ମୋତେ ସାଷ୍ଟମ କରି ଇନ୍ଦୁପୁର ଡାକବଙ୍ଗଳାକୁ ନେଇଥିଲେ । ସେଠାରେ ମୋତେ ଭୀଷଣ ଜର ହେଲା । ନିର୍ବାଚନ ଆଉ ମାତ୍ର ଦୁଇ ତିନି ଦିନ ଥାଏ, ତେଣୁ ସେ ସ୍ଥାନ ଛାଡ଼ି ଆସିବାକୁ ମୋର ଇଚ୍ଛା ହେଉନଥାଏ । ଶେଷରେ କେନ୍ଦ୍ରାପଡ଼ା ଡାକ୍ତରଙ୍କ ପରାମର୍ଶ ଅନୁସାରେ ମୁଁ କଟକ ଫେରିଆସିଥିଲି । ଇନ୍ଦୁପୁର ଡାକବଙ୍ଗଳା ଏକ ନିର୍ଜନ ସ୍ଥାନରେ । ସେତେବେଳେ ସେଠାକାର ଅନୁଭୂତି ଆଜି ହୁଏତ ବିଶ୍ୱାସ କରିହେବନାହିଁ । ରାତି ହେଲାକ୍ଷଣି ଦଶ ବାରଟା ହେଟାବାଘ ସେଇ ବଙ୍ଗଳା ଚାରିପାଖରେ ବୁଲନ୍ତି । ତେଣୁ ସଂଧ୍ୟା ହେଲାକ୍ଷଣି ଆମ୍ଭେମାନେ କବାଟ କିଳି ଘରଭିତରେ ରହୁ । ଏହି ଉପନିର୍ବାଚନରେ ଶ୍ରୀପୁରୁଷୋତ୍ତମ ନାୟକ ଜୟଯୁକ୍ତ ହୋଇଥିଲେ ।

## ବ୍ୟବସ୍ଥାପକଙ୍କ ଦରମା ଓ ପେନ୍‌ସନ୍ : ପେଟରେ ଭୋକ ମୁହଁରେ ଲାଜ

୧୯୫୪ ମସିହାରେ ବିଧାନସଭା ସଭ୍ୟମାନଙ୍କ ଦରମା, ଭତ୍ତା, ଗସ୍ତଖର୍ଚ୍ଚ, ଘରଭଡ଼ା ଓ ଅନ୍ୟାନ୍ୟ ସୁବିଧା-ସମ୍ବଳିତ ଗୋଟିଏ ବିଲ୍ ମୁଁ ବିଧାନସଭାରେ ଉପସ୍ଥାପିତ କରିଥିଲି । ମୋର ମନେଅଛି, ଏହି ବିଲ୍‌ଟି ଆଲୋଚନାବେଳେ ଗୃହରେ ନାନାପ୍ରକାର କୌତୂହଳ ସୃଷ୍ଟି ହୋଇଥିଲା । ୧୯୩୭ ମସିହାରେ ସଭ୍ୟମାନଙ୍କର ମାସିକ ଦରମା ପଞ୍ଚସ୍ତରି ଟଙ୍କା ମାତ୍ର ରଖାଯାଇଥିଲା ଓ ପରେ ତାହା ଶହେ ଟଙ୍କାକୁ ବୃଦ୍ଧି କରାଯାଇଥିଲା । ଅନ୍ୟାନ୍ୟ ସୁବିଧା ସୁଯୋଗ ବ୍ୟତୀତ ଦରମା ହିସାବରେ ସଭ୍ୟମାନଙ୍କୁ ମାସିକ ଦେଢ଼ ଶହ ଟଙ୍କା ଦେବାପାଇଁ ମୁଁ ସରକାରୀ ପ୍ରସ୍ତାବ ଆଣିଥିଲି । ଡକ୍ଟର ପ୍ରାଣକୃଷ୍ଣ ପରିଜା ମାସକୁ ଦେଢ଼ ଶହ ଟଙ୍କା ପରିବର୍ତ୍ତେ ଦୁଇ ଶହ ଟଙ୍କା ଦିଆଯିବା ନିମନ୍ତେ ସଂଶୋଧନ ପ୍ରସ୍ତାବ ଆଣିଥିଲେ । ମାନ୍ୟବର ସଭ୍ୟମାନଙ୍କର ଭିତିରି ଇଚ୍ଛା ଦରମା ଓ ଭତ୍ତା ବୃଦ୍ଧିପାଉ, କିନ୍ତୁ 'ପେଟରେ ଭୋକ ମୁହଁରେ ଲାଜ' ପରି କେତେକ ସଭ୍ୟ ଦରମା ବୃଦ୍ଧି ପ୍ରସ୍ତାବକୁ ବିରୋଧ କରୁଥାଆନ୍ତି । ବିଶେଷତଃ ସାମ୍ୟବାଦୀ ଦଳ ଓ କମ୍ୟୁନିଷ୍ଟ ଦଳର ସଭ୍ୟମାନେ ତଥା କେତେକ ଉତ୍କଟ ଗାନ୍ଧିବାଦୀ ସଦସ୍ୟ ଏହାର ସମାଲୋଚନା କରୁଥିଲେ । ସାମ୍ୟବାଦୀ ଦଳ ପକ୍ଷରୁ ଶ୍ରୀ ନିଶାମଣି ଖୁଣ୍ଟିଆ କହିଥିଲେ, ଯେପର୍ଯ୍ୟନ୍ତ ସମାଜର ସର୍ବନିମ୍ନ ସ୍ତରରେ ରହିଥିବା ଲୋକଙ୍କର ଆର୍ଥିକ ଅବସ୍ଥାର ଉନ୍ନତି ନହୋଇଛି ସେପର୍ଯ୍ୟନ୍ତ ସଭ୍ୟମାନେ ଅଧିକ ଦରମା ନେବା ଉଚିତ ନୁହେଁ । କମ୍ୟୁନିଷ୍ଟମାନଙ୍କ ପକ୍ଷରୁ ସର୍ବଶ୍ରୀ ହରିହର ଦାସ, ବୈଷ୍ଣବ ପଟ୍ଟନାୟକ ଓ ଗଙ୍ଗାଧର ପାଇକରାୟ ପ୍ରମୁଖ ସେହି ପ୍ରକାର ଯୁକ୍ତି ବାଢ଼ି ପ୍ରସ୍ତାବଟିର ବିରୋଧ କରିଥିଲେ । ତା' ବ୍ୟତୀତ ଉତ୍କଟ ଗାନ୍ଧୀବାଦୀ ସଦସ୍ୟମାନେ ତାଙ୍କର ଆଦର୍ଶ ଦର୍ଶାଇ ପ୍ରସ୍ତାବଟିର ତୀବ୍ର ସମାଲୋଚନା କରିଥିଲେ । ବିଲ୍‌ଟିର ଉଦ୍ଦେଶ୍ୟ ଓ ଯଥାର୍ଥତା ସମ୍ବନ୍ଧରେ ବୁଝାଇବାକୁ ଯାଇ ଦଳଗତ ଦୃଷ୍ଟିକୋଣରୁ ସଭ୍ୟମାନଙ୍କର ଦରମା ବୃଦ୍ଧି ସମ୍ବନ୍ଧୀୟ ପ୍ରସ୍ତାବଟିକୁ ସମାଲୋଚନା ନକରି ବାସ୍ତବ ପରିସ୍ଥିତି ଓ ନିଜର ବିବେକ ଅନୁସାରେ ନୂତନ ବ୍ୟବସ୍ଥାର ବିଚାର କରିବା ଉଚିତ ବୋଲି ମୁଁ କହିଥିଲି । ବହୁବର୍ଷ ଧରି ଗଣତନ୍ତ୍ର ଆଦର୍ଶରେ ପରିଚାଳିତ ହୋଇଆସୁଥିବା ଦେଶମାନଙ୍କରେ ପାର୍ଲିଆମେଣ୍ଟ ସଦସ୍ୟମାନଙ୍କର ଦରମା ଓ ଭତ୍ତା ସମ୍ବନ୍ଧୀୟ ବିଷୟ ଆଲୋଚନା କଲାବେଳେ ସଭାଗୃହରେ କି ପ୍ରକାର ପ୍ରଣାଳୀ ଅନୁସରଣ କରାଯାଏ ମୁଁ ସେକଥା ଦର୍ଶାଇଥିଲି । ସେଠି ପାର୍ଲିଆମେଣ୍ଟମାନଙ୍କରେ ଏ ବିଷୟରେ ମତ ବ୍ୟକ୍ତ କରିବାପାଇଁ ସଭ୍ୟମାନଙ୍କୁ ଦଳୀୟ କଟକଣାରୁ ମୁକ୍ତ କରି ପୂର୍ଣ୍ଣ ସ୍ୱାଧୀନତା ଦିଆଯାଇଥାଏ । ବ୍ରିଟିଶ୍ ପାର୍ଲିଆମେଣ୍ଟରେ ସଭ୍ୟମାନଙ୍କର ଦରମା ଭତ୍ତା ସମ୍ବନ୍ଧୀୟ ଆଲୋଚନାବେଳେ କିପରି ସଭ୍ୟମାନଙ୍କୁ ଦଳୀୟ କଟକଣାରୁ ମୁକ୍ତ ରଖାଯାଇଥିଲା ସେ ନଜିର ମଧ୍ୟ ମୁଁ ଦର୍ଶାଇ ଥିଲି । ବହୁ ଦିନର ଦାବି ଫଳରେ ୧୯୧୧

ମସିହାରେ ବ୍ରିଟିଶ୍ ପାର୍ଲିଆମେଣ୍ଟର ସଦସ୍ୟମାନଙ୍କୁ ଦରମା ଦେବା ବିଷୟ ସ୍ଥିରହୋଇଥିଲା । ପ୍ରଫେସର୍ ପିଟର ଜି. ରିଚାର୍ଡ୍ ତାଙ୍କଦ୍ୱାରା ରଚିତ 'ଦି ବ୍ୟାକ୍ ବେଞ୍ଚରସ୍' (The Back Benchers) ପୁସ୍ତକରେ ଲେଖିଛନ୍ତି – The introduction of payment to Members in 1911 led, as was intended, to the entry into the Commons of men without private wealth, who surrendered their normal means of livelihood at the commencement of their Parliamentary service." ପ୍ରଥମେ ବ୍ରିଟିଶ୍ ଲିବରାଲ୍ ପାର୍ଟି ଏବଂ ଲେବର୍ ପାର୍ଟିର ସଦସ୍ୟମାନେ ବେତନ ବ୍ୟବସ୍ଥା ପାଇଁ ଦାବି କରିଥିଲେ । ରକ୍ଷଣଶୀଳ ଦଳ (Conservative Party)ର ଅଧିକାଂଶ ସଭ୍ୟ ଏହାର ଘୋର ବିରୋଧ କରିଥିଲେ । ବେତନ ବ୍ୟବସ୍ଥା ହେବାର କିଛିବର୍ଷ ପରେ ସଭ୍ୟମାନଙ୍କ ପାଇଁ ପେନ୍‌ସନ୍ ବ୍ୟବସ୍ଥା କରାଯାଇଥିଲା । ବ୍ରିଟିଶ୍ ପାର୍ଲିଆମେଣ୍ଟର ସଦସ୍ୟମାନେ ଏକସମୟରେ ବର୍ଷକୁ ଚାରି ଶହ ପାଉଣ୍ଡ କରି ବେତନ ପାଉଥିଲେ ଓ ପରେ ତାହା ଛ'ଶହ ପାଉଣ୍ଡକୁ ବୃଦ୍ଧି ପାଇଥିଲା । ଇଂଲଣ୍ଡର ଲେବର୍ ପାର୍ଟି ସରକାରଙ୍କୁ ସମାଜବାଦୀ ଆଦର୍ଶଦ୍ୱାରା ପରିଚାଳିତ ସରକାର ବୋଲି କୁହାଯାଇଥାଏ । ସେଠାକାର ଲେବର୍ ପାର୍ଟି ନେତା ଆଟ୍‌ଲି ଯେତେବେଳେ ସରକାର ଗଠନ କରିଥିଲେ ସେ ସଭ୍ୟମାନଙ୍କର ଦରମାକୁ ବାର୍ଷିକ ଏକ ହଜାର ପାଉଣ୍ଡକୁ ବୃଦ୍ଧି କରିଥିଲେ ଏବଂ କିଛିଦିନ ପରେ ୧୯୫୩ ମସିହା ବେଳକୁ ସେହି ଆଟ୍‌ଲିଙ୍କ ସମୟରେ ପୁନଶ୍ଚ ତାହା ବୃଦ୍ଧି ପାଇ ଦେଢ଼ହଜାର ପାଉଣ୍ଡରେ ପହଞ୍ଚିଥିଲା ।

ଏଠାରେ ଉଲ୍ଲେଖ କରିବାର କଥା ଯେ ୧୯୭୧ ମସିହାରେ ଏହି ଦରମା ବର୍ଷକୁ ଚାରି ହଜାର ପାଉଣ୍ଡକୁ ବୃଦ୍ଧି ପାଇଥିଲା । ୧୯୮୨ ମସିହାଠାରୁ ବ୍ରିଟିଶ୍ ପାର୍ଲିଆମେଣ୍ଟ ସଦସ୍ୟମାନେ ବର୍ଷକୁ ୧୩,୯୫୦ ପାଉଣ୍ଡ ବେତନ ଆକାରରେ ପାଇଲେ । ଏହା ବ୍ୟତୀତ ଭତ୍ତା ଓ ଅନ୍ୟାନ୍ୟ ସୁବିଧା ବାବଦକୁ ବର୍ଷକୁ ୮,୪୮୦ ପାଉଣ୍ଡ ପାଉଥିଲେ ।

ସଭ୍ୟମାନଙ୍କ ବେତନ ଓ ଭତ୍ତା ବୃଦ୍ଧି ପ୍ରସ୍ତାବ ଯେତେବେଳେ ଶ୍ରମିକଦଳର ସରକାରଙ୍କ ସମୟରେ ବ୍ରିଟିଶ୍ ପାର୍ଲିଆମେଣ୍ଟରେ ଆଲୋଚନା ହେଲା, ସେତେବେଳେ ପାର୍ଲିଆମେଣ୍ଟରେ ସେ ଦଳର ସଭ୍ୟମାନଙ୍କୁ ସେମାନଙ୍କର ସ୍ୱାଧୀନ ମତ ବ୍ୟକ୍ତ କରିବାପାଇଁ ଦଳୀୟ ଶୃଙ୍ଖଳାରୁ ମୁକ୍ତ କରିଦିଆଯାଇଥିଲା । ସଂସଦୀୟ ଗଣତନ୍ତ୍ରର କ୍ରମବିକାଶ ସମ୍ବନ୍ଧରେ ମୁଁ କେତେକ କଥା ଦର୍ଶାଇଥିଲି ଏବଂ ବହୁବର୍ଷ ତଳେ କିପରି କୌଣସି ଦରମା କିମ୍ବା ଭତ୍ତା ନନେଇ ଲୋକେ ପାର୍ଲିଆମେଣ୍ଟର ସଭ୍ୟ ହୋଇ ରହିବାକୁ ଚାହୁଁଥିଲେ ସେ କଥା ମଧ କହିଥିଲି । ସେମାନେ ସମସ୍ତେ ପ୍ରାୟ ସମାଜର ଜଣେ ଜଣେ ପ୍ରତିଷ୍ଠିତ ତଥା ଧନ୍ୟାଢ଼୍ୟ ବ୍ୟକ୍ତି ଥିଲେ । ସେମାନେ ବିନା ପଇସାରେ କେବଳ ସମ୍ମାନଲାଭ ଆଶାରେ ସଂସଦର ସଭ୍ୟ ହୋଇ ସରକାରଙ୍କୁ ସାହାଯ୍ୟ କରିବାପାଇଁ ଆଗେଇ ଆସୁଥିଲେ । ସେତେବେଳର ଲୋକମାନେ ସେମାନଙ୍କର ଏଭଳି କାର୍ଯ୍ୟକୁ ଏକପ୍ରକାର ତ୍ୟାଗରୂପେ ବିବେଚନା କରୁଥିଲେ; କିନ୍ତୁ ବର୍ତ୍ତମାନ ତାହା ଆଦୌ ସମ୍ଭବ କିମ୍ବା ସମୀଚୀନ ନୁହେଁ । ସେ ପ୍ରକାର ପନ୍ଥା ଯଦି ଆମ୍ଭେମାନେ ଅନୁସରଣ କରିବା ତା'ହେଲେ କୌଣସି ଗରିବ ଲୋକ ଆମ ବ୍ୟବସ୍ଥାସଭାର ସଭ୍ୟ ହୋଇପାରିବେନାହିଁ; କେବଳ ଅବସ୍ଥାପନ୍ନ ବ୍ୟକ୍ତିମାନେ ସଭ୍ୟ ହେବାକୁ ଆଗ୍ରହୀ ହେବେ । ତେଣୁ ଯେଉଁ ସଦସ୍ୟମାନେ ମୁଖଲଜ୍ଜାରେ ପଡ଼ି କାଳେ ସେମାନେ ପ୍ରଗତିଶୀଳ ବିବେଚିତ ହେବେନାହିଁ ବୋଲି ଲୋକ ଅପବାଦକୁ ଭୟକରି ବେତନ ବୃଦ୍ଧି ପ୍ରସ୍ତାବଟିକୁ ବିରୋଧ କରୁଛନ୍ତି, ସେମାନେ ଭୁଲ କରୁଛନ୍ତି ବୋଲି ମୁଁ କହୁଥିଲି । କାରଣ ଆମ ଦେଶରେ ଆମେ ନୂଆକରି ଗଣତନ୍ତ୍ର ପ୍ରତିଷ୍ଠା କରିଛୁ ଏବଂ ମାନ୍ୟବର ସଭ୍ୟମାନେ କିପରି ସୁଚାରୁରୂପେ ସେହି କାର୍ଯ୍ୟ ତୁଲାଇବା ସଙ୍ଗେ ସଙ୍ଗେ ଉଚ୍ଚ ମାନର ପରମ୍ପରା ସୃଷ୍ଟି କରିପାରିବେ ସେ ଦିଗରେ ଆମ୍ଭମାନଙ୍କୁ ବିହିତ ସୁବିଧାସୁଯୋଗ ପ୍ରତି ଦୃଷ୍ଟିଦେବାକୁ ପଡ଼ିବ ।

ମୋର ମନେଅଛି, ଡକ୍ଟର ପ୍ରାଣକୃଷ୍ଣ ପରିଜା ମୋ କଥାକୁ ପୂର୍ଣ୍ଣମାତ୍ରାରେ ସମର୍ଥନ କରି ଗୋଟିଏ ଶ୍ଳୋକ ଆବୃତ୍ତି କରିଥିଲେ । ଉକ୍ତ ନୀତିବାକ୍ୟ ମାଧ୍ୟମରେ ସେ ବୁଝାଇ କହିଥିଲେ ଯେ ଲୋକେ ନିନ୍ଦା କରନ୍ତୁ ବା ପ୍ରଶଂସା କରନ୍ତୁ, ଭଲ କହନ୍ତୁ ବା ମନ୍ଦ କହନ୍ତୁ, ଯାହା କରିବା ସମୀଚୀନ ଓ ବିବେକାନୁମୋଦିତ ତାହା କରିବା ବିଧେୟ ଅଟେ । ସାମ୍ୟବାଦୀ ଦଳ ଓ କମ୍ୟୁନିଷ୍ଟ ଦଳର ସଭ୍ୟମାନେ ଏହାକୁ ବିରୋଧ କରିବାରେ ଲାଗିଲେ । ଅନ୍ୟାନ୍ୟ ଭତ୍ତା ଓ ସୁବିଧା ବ୍ୟତୀତ ସଭ୍ୟମାନଙ୍କର ଦରମା ମାସକୁ ଦୁଇ ଶହ ଟଙ୍କା ହେବା ପ୍ରସ୍ତାବଟି ଗୃହୀତ ହୋଇଯାଇଥିଲା । ଶ୍ରୀ ଉପେନ୍ଦ୍ର ମହାନ୍ତି ସେତେବେଳେ ବ୍ୟବସ୍ଥାସଭାରେ କଂଗ୍ରେସ ସଭ୍ୟ ଥିଲେ । ସେ ଭାରି କୌଶଳୀ । ଯେଉଁମାନେ ବଡ଼ ବଡ଼ ନୀତି ଆଦର୍ଶର କଥା କହି ଏବଂ ନିଜକୁ ପ୍ରଗତିଶୀଳ ବୋଲି ପରିଚୟ ଦେଇ ଏ ବ୍ୟବସ୍ଥାକୁ ବିରୋଧ କରୁଥିଲେ ସେମାନଙ୍କର ଉଚ୍ଚ ଆଦର୍ଶକୁ ପ୍ରଶଂସା କରି ବିଲ୍‌ଟି ଆଇନ୍‌ରେ ପରିଣତ ହେବାସତ୍ତ୍ୱେ ସେମାନଙ୍କର ଆଦର୍ଶ କିପରି କାର୍ଯ୍ୟକାରୀ ହୋଇପାରିବ ସେଥିପାଇଁ ସେ ଗୋଟିଏ ସଂଶୋଧନ ପ୍ରସ୍ତାବ ଆଣିଥିଲେ, "Provided that a member may forego either full or any portion of his salary for any length of period, the duration of which in no case shall be less than three months, if he so desires and communicates his intention to the Secretary of the Legislative Assembly to that effect." ଉକ୍ତ ସଂଶୋଧନ ପ୍ରସ୍ତାବଟି ବ୍ୟବସ୍ଥାସଭାରେ ଗୃହୀତ ହୋଇଯାଇଥିଲା ଏବଂ ପରେ ଦେଖାଗଲା ଯେ କେହି ଜଣେ ହେଲେ ସଭ୍ୟ ଉକ୍ତ ସଂଶୋଧିତ ବ୍ୟବସ୍ଥାର ସୁବିଧା ନେଇନଥିଲେ । ପ୍ରତ୍ୟେକ ସଦସ୍ୟ ମାସକୁ ମାସ ବର୍ଦ୍ଧିତ ବେତନ ନେଇଥିଲେ ।

ମୁଁ ମୁଖ୍ୟମନ୍ତ୍ରୀ ଥିବାବେଳେ ଆଉ ଥରେ ଏହି ପ୍ରକାରର ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଥିଲା । ପ୍ରସ୍ତାବଟି ଥିଲା ପାଞ୍ଚ ବର୍ଷରୁ ଉର୍ଦ୍ଧ୍ୱ ସମୟ ବ୍ୟବସ୍ଥା ସଭାରେ ସଭ୍ୟ ହୋଇଥିବା ବ୍ୟକ୍ତିମାନଙ୍କପାଇଁ ପେନ୍‌ସନ୍ ବ୍ୟବସ୍ଥା ସଂପର୍କରେ । ମୁଁ ମୁଖ୍ୟମନ୍ତ୍ରୀ ହେବା ପୂର୍ବରୁ ଏହି ପ୍ରସ୍ତାବଟି ଆମର ପୂର୍ବତନ ସରକାରଙ୍କ ଅମଳରେ ଆଇନରୂପେ ଗୃହୀତ ହୋଇଯାଇଥାଏ; କିନ୍ତୁ ଏହା ରାଜ୍ୟରେ କାର୍ଯ୍ୟକାରୀ ହୋଇପାରିନଥାଏ । ମୁଁ ମନ୍ତ୍ରିମଣ୍ଡଳ ଗଠନ କଲା ପରେ ଆମ ରାଜ୍ୟ ଜନତାଦଳର ସଭାପତି ଶ୍ରୀ ବିଶ୍ୱନାଥ ପଣ୍ଡିତ ଏହି ବ୍ୟବସ୍ଥାଟିକୁ ରଦ୍ଦ କରିବାପାଇଁ ମୋତେ ଅନୁରୋଧ କରିଥିଲେ । ସେତେବେଳକୁ ଅନ୍ୟାନ୍ୟ ରାଜ୍ୟ ବିଧାନସଭା ତଥା ପାର୍ଲିଆମେଣ୍ଟରେ ଏ ସଂପର୍କରେ କିଭଳି ସବୁ ବ୍ୟବସ୍ଥା ହୋଇଥାଏ ସେସବୁ କଥା ମୋତେ ଭଲଭାବରେ ଜଣାନଥିଲା । ଆମ ଦଳ ସଭାପତିଙ୍କ ପରାମର୍ଶ ଅନୁସାରେ ମୁଁ ଉକ୍ତ ଆଇନଟିକୁ ରଦ୍ଦ କରିବାପାଇଁ ବିଧାନସଭାରେ ନୋଟିସ୍‌ଟିଏ ଦେଇଥିଲି । ପରେ ଖବର ନେବାରେ ଜାଣିଲି ଯେ ପାର୍ଲିଆମେଣ୍ଟରେ ଏବଂ ଅନ୍ୟାନ୍ୟ କେତେକ ରାଜ୍ୟରେ ପେନ୍‌ସନ୍ ଦେବାର ବ୍ୟବସ୍ଥା କରାଯାଇଛି ଓ ତଦନୁସାରେ ପୂର୍ବତନ ପାର୍ଲିଆମେଣ୍ଟ ସଭ୍ୟ ଓ ପୂର୍ବତନ ରାଜ୍ୟ ବିଧାନସଭାର ସଭ୍ୟମାନେ ପେନ୍‌ସନ୍ ପାଉଥାଆନ୍ତି । ମଧ୍ୟପ୍ରଦେଶ, ଉତ୍ତରପ୍ରଦେଶ, ପଞ୍ଜାବ, ଆନ୍ଧ୍ରପ୍ରଦେଶ ଓ ମହାରାଷ୍ଟ୍ର ପ୍ରଭୃତି ରାଜ୍ୟରେ ବିଧାନସଭାର ପୂର୍ବତନ ସଦସ୍ୟମାନେ ପେନ୍‌ସନ୍ ପାଉଥା'ନ୍ତି ଏବଂ ପୂର୍ବତନ ପାର୍ଲିଆମେଣ୍ଟ ସଦସ୍ୟମାନେ ମଧ୍ୟ କେନ୍ଦ୍ର ସରକାରଙ୍କଠାରୁ ପେନ୍‌ସନ୍ ପାଉଥା'ନ୍ତି । ଏପରି ଅବସ୍ଥାରେ ଖବର ନେଇ ବୁଝିଲି ଯେ ଆମ ରାଜ୍ୟର ଶ୍ରୀ ହରେକୃଷ୍ଣ ମହତାବ, ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ, ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ, ବଲାଙ୍ଗୀରର ପୂର୍ବତନ ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ପୁଅ ଶ୍ରୀ ଆର୍. ଆର୍. ସିଂହଦେଓ ପ୍ରମୁଖ ପୂର୍ବତନ ପାର୍ଲିଆମେଣ୍ଟ ସଦସ୍ୟମାନେ କେନ୍ଦ୍ରସରକାରଙ୍କ ଆଇନ ଅନୁସାରେ ପେନ୍‌ସନ୍ ପାଉଛନ୍ତି । ଏ ଅବସ୍ଥାରେ ବିଷୟଟିର ପୁନର୍ବିଚାର କରିବାପାଇଁ ମୁଁ ଇଚ୍ଛା ପ୍ରକାଶ କରିଥିଲି । ଶ୍ରୀ ବିଶ୍ୱନାଥ ପଣ୍ଡିତ ପୂର୍ବତନ ସାମ୍ୟବାଦ ଦଳ ଐତିହ୍ୟର ଦାୟାଦ । ବିଧାନସଭା ସଭ୍ୟମାନଙ୍କର ବେତନ ବୃଦ୍ଧି ସଂପର୍କରେ ସାମ୍ୟବାଦୀମାନେ

ଯେଉଁଭଳି ବିରୁଦ୍ଧ ମତ ବ୍ୟକ୍ତ କରିଥିଲେ ସେହିପରି ଭାବରେ ଶ୍ରୀ ପଣ୍ଡିତ ବିଧାୟକମାନଙ୍କ ଭତ୍ତା ବ୍ୟବସ୍ଥାଟିକୁ ରଦ୍ଦ କରିଦେବାପାଇଁ ଦୃଢ଼ପରିକର ଥିଲେ । ସେଥିନିମନ୍ତେ ଆମ ଦଳର ଜଣେ ତୁଙ୍ଗ ନେତା ତଥା ତତ୍କାଳୀନ କେନ୍ଦ୍ର ଇସ୍ପାତ୍ ଓ ଖଣି ମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କର ଦୃଷ୍ଟିକୁ ଶ୍ରୀ ପଣ୍ଡିତ ଏହି ବିଷୟଟିକୁ ଆଣିଥିଲେ । ଶ୍ରୀ ପଟ୍ଟନାୟକ ମୋତେ ଖଣ୍ଡେ ଚିଠି ଲେଖି ତାଙ୍କର ବିରକ୍ତି ପ୍ରକାଶ କରି ମୁଁ ଏ ପ୍ରକାର ଉଦ୍ୟମରୁ ନିବୃତ୍ତ ହେବାକୁ ପରାମର୍ଶ ଦେଇଥିଲେ । ସେତେବେଳକୁ ଶ୍ରୀ ପଟ୍ଟନାୟକଙ୍କର ପୂର୍ବତନ ପାର୍ଲିଆମେଣ୍ଟ ସଦସ୍ୟ ଓ ଅନ୍ୟାନ୍ୟ କେତେକ ରାଜ୍ୟର ପୂର୍ବତନ ବିଧାନସଭା ସଦସ୍ୟମାନେ ପେନ୍‌ସନ୍ ପାଉଛନ୍ତି ବୋଲି ଆଦୌ ଧାରଣା ନଥିଲା । ମୁଁ ଶ୍ରୀ ପଟ୍ଟନାୟକଙ୍କ ଚିଠିର ଉତ୍ତରରେ ଲେଖିଥିଲି ଯେ ଉତ୍ତରପ୍ରଦେଶ ଭଳି ଏକ ଉନ୍ନତ ରାଜ୍ୟର ପୂର୍ବତନ ସଦସ୍ୟମାନେ ଯଦି ପେନ୍‌ସନ୍ ପାଆନ୍ତି ତା'ହେଲେ ଓଡ଼ିଶା ପରି ଏକ ଅନୁନ୍ନତ ଆଦିବାସୀବହୁଳ ରାଜ୍ୟର ବ୍ୟବସ୍ଥାପକମାନେ ସେଥିରୁ କାହିଁକି ବା ବଞ୍ଚିତ ହେବେ ? ପୂର୍ବରୁ ଉଲ୍ଲେଖ କରିଥିବା ଆମ ରାଜ୍ୟର ପାର୍ଲିଆମେଣ୍ଟ ସଦସ୍ୟମାନେ ପେନ୍‌ସନ୍ ନେଉଥିବା ଦୃଷ୍ଟାନ୍ତ ମଧ୍ୟ ଦେଇଥିଲି । ଏହାପରେ ବିଜୁବାବୁ କଥାଟିର ଗୁରୁତ୍ୱ ବୁଝିପାରି ଚୁପ୍ ରହିଥିଲେ । ମୁଁ ସେହି ଆଇନସିଦ୍ଧ ବ୍ୟବସ୍ଥାଟିକୁ କାର୍ଯ୍ୟକାରୀ କରାଇବା ଉଦ୍ଦେଶ୍ୟରେ ପୂର୍ବରୁ ତାହାକୁ ରଦ୍ଦ କରିବାପାଇଁ ଆଗତ କରିଥିବା ନୋଟିସ୍‌କୁ ପ୍ରତ୍ୟାହାର କରିବାପାଇଁ ଆଉ ଏକ ପ୍ରସ୍ତାବ ଦେଇଥିଲି । ବ୍ୟବସ୍ଥାସଭାର ଜନତାଦଳ ସଦସ୍ୟମାନଙ୍କ ବୈଠକରେ ଏ ବିଷୟଟି ବହୁବାର ଆଲୋଚିତ ହୋଇଥିଲା ଏବଂ ଶେଷରେ ପ୍ରସ୍ତାବଟି ବ୍ୟବସ୍ଥାସଭାରେ ଆଗତ କରାଗଲେ ସେ ସଂକ୍ରାନ୍ତରେ ସଭ୍ୟମାନେ ସେମାନଙ୍କର ସ୍ୱାଧୀନ ମତ ବ୍ୟକ୍ତ କରିପାରିବେ ବୋଲି ସ୍ଥିରହୋଇଥିଲା । ବ୍ୟବସ୍ଥାସଭାରେ ପେନ୍‌ସନ୍ ଆଇନଟିକୁ ରଦ୍ଦ କରିବାପାଇଁ ପୂର୍ବରୁ ଯେଉଁ ନୋଟିସ୍ ଦିଆଯାଇଥିଲା ତାକୁ ପ୍ରତ୍ୟାହାର କରିନେବାକୁ ମୋତେ ଅନୁମତି ମିଳିଥିଲା । ପରିଶେଷରେ ଆଇନଟି କାର୍ଯ୍ୟକାରୀ ହେଲା ଓ ବିଧାନସଭାର ପୂର୍ବତନ ସଦସ୍ୟମାନେ ପେନ୍‌ସନ୍ ପାଇଥିଲେ । ଯେଉଁ ସଭ୍ୟମାନେ ପାଞ୍ଚ ବର୍ଷ ବ୍ୟବସ୍ଥାସଭାରେ ସଦସ୍ୟରୂପେ କାର୍ଯ୍ୟ କରି ପେନ୍‌ସନ୍ ପାଇବାକୁ ହକ୍‌ଦାର ହୋଇଛନ୍ତି କିନ୍ତୁ ସେତେବେଳେ ପେନ୍‌ସନ୍ ବ୍ୟବସ୍ଥାର ବିରୋଧ କରିଥିଲେ, ସେମାନେ ମଧ୍ୟ ପେନ୍‌ସନ୍ ଗ୍ରହଣ କରୁଛନ୍ତି । ଶ୍ରୀ ପଣ୍ଡିତ ପାଞ୍ଚବର୍ଷ ବ୍ୟବସ୍ଥାସଭାର ସଭ୍ୟରୂପେ କାର୍ଯ୍ୟ କରିନଥିବାରୁ ପେନ୍‌ସନ୍ ପାଇବାର ଆଇନାନୁମୋଦିତ ଯୋଗ୍ୟତା ଆସିନାହିଁ । ତେଣୁ ସେ ପେନ୍‌ସନ୍ ନେବା ନନେବା କଥା ଏଠାରେ ଅପ୍ରାସଙ୍ଗିକ ।

ଗୋଟିଏ ଗଣତାନ୍ତ୍ରିକ ଦେଶରେ ସଂସଦ ସଭ୍ୟମାନେ ଜନସାଧାରଣଙ୍କର ପ୍ରତିନିଧିତ୍ୱ କରୁଛନ୍ତି । ଲୋକପ୍ରତିନିଧି ହିସାବରେ ସାଂସଦମାନଙ୍କରେ ସୁଚାରୁରୂପେ କାର୍ଯ୍ୟ କରି ଜନକଲ୍ୟାଣ କରିବା ନିମନ୍ତେ ସେମାନଙ୍କପାଇଁ ପ୍ରୟୋଜନୀୟ ବ୍ୟବସ୍ଥା କରିବାରେ କୁଣ୍ଠିତ ହେବା ଆଦୌ ଉଚିତନୁହେଁ । ଯୁଗ ବଦଳିଛି, ବର୍ତ୍ତମାନ ସାଧାରଣ ଲୋକମାନେ ପାର୍ଲିଆମେଣ୍ଟ ବା ବିଧାନସଭାର ସଭ୍ୟରୂପେ ନିର୍ବାଚିତ ହୋଇପାରୁଛନ୍ତି । ପ୍ରତିନିଧି ହିସାବରେ କାର୍ଯ୍ୟ କରିବାପାଇଁ ତାଙ୍କର ଯାହା ଆବଶ୍ୟକ ଖର୍ଚ୍ଚ, ତାହାର ଯଦି ଆଇନାନୁମୋଦିତ ବ୍ୟବସ୍ଥା କରାନଯାଏ ତା'ହେଲେ ସେମାନେ ତାଙ୍କର କାର୍ଯ୍ୟ ଠିକ୍‌ଭାବରେ କରିପାରିବେନାହିଁ । ହୁଏତ ସେମାନଙ୍କୁ ଗର୍ହିତ ପନ୍ଥା ବା ଦୁର୍ନୀତିର ଆଶ୍ରୟ ନେବାକୁ ପଡ଼ିବ । କିନ୍ତୁ ଏ କଥା ନିଶ୍ଚିତ ଯେ ବ୍ୟବସ୍ଥାପକମାନଙ୍କପାଇଁ ବ୍ୟୟବ୍ୟବସ୍ଥାର କିଛିଟା ସୀମା ରହିବା ଆବଶ୍ୟକ । ତାହା ନହେଲେ ସଂସଦୀୟ ବ୍ୟବସ୍ଥା ଓ ଅଧିକାରର ଅପବ୍ୟବହାର ହେବା ସୁନିଶ୍ଚିତ । ସେହିଭଳି ମନ୍ତ୍ରୀମାନଙ୍କର ଦରମା ଓ ଭତ୍ତା ଇତ୍ୟାଦି ଆଉ ଏକ ସମସ୍ୟା ।

## ମନ୍ତ୍ରୀଙ୍କ ଦାୟିତ୍ୱ ଓ ଦରମା

ଶାସନ ଚଳାଇବା ମନ୍ତ୍ରିମଣ୍ଡଳର ଦାୟିତ୍ୱ । ମୁଖ୍ୟମନ୍ତ୍ରୀ ତଥା ଅନ୍ୟ ମନ୍ତ୍ରୀମାନଙ୍କର ଦରମା ଯୁକ୍ତିଯୁକ୍ତଭାବରେ ନିରୂପଣ କରାଯିବା ଉଚିତ । ମନ୍ତ୍ରୀମାନଙ୍କର ଦାୟିତ୍ୱ ଠିକ୍ ଭାବରେ ତୁଲାଇବା

ପାଇଁ ଯଦି ଆବଶ୍ୟକ ଖର୍ଚ୍ଚ ବ୍ୟବସ୍ଥା କରାନଯାଏ ତା'ହେଲେ ଅସଦ୍ ଉପାୟରେ ଉପାର୍ଜନର ସମ୍ଭାବନା ସୃଷ୍ଟିହୋଇପାରେ । ତେଣୁ ଲୋକଙ୍କୁ ଦେଖାଇହେଲାଭଳି ମନ୍ତ୍ରୀମାନଙ୍କର ଅଳ୍ପ ବେତନ ସ୍ଥିରକରି ପ୍ରଗତିଶୀଳ ଆଖ୍ୟା ଅର୍ଜନ କରିବା ଉଦ୍ୟମକୁ ମୁଁ ଆଦୌ ପସନ୍ଦ କରେନାହିଁ । ମୋ ଜ୍ଞାତସାରରେ ଯେତେ ଥର ଏ ପ୍ରସ୍ତାବ ମନ୍ତ୍ରିମଣ୍ଡଳ କିମ୍ବା ଦଳ ଆଗରେ ଆସିଛି ତାହା ସମାଲୋଚିତ ହୋଇଯିବ ଅମୀମାଂସିତ ରହିଯାଏ; କାରଣ ଲୋକଚକ୍ଷୁରେ କାଳେ ଏପ୍ରକାର ପଦକ୍ଷେପ ନିନ୍ଦିତ ହୋଇଯିବ ବୋଲି ଭୟ ଥାଏ । ମନ୍ତ୍ରୀମାନଙ୍କୁ ଉଚିତ ଦରମା ଓ ଭତ୍ତା ନଦେବାର ଅର୍ଥ ସେମାନଙ୍କୁ ଅନ୍ୟର ସାହାଯ୍ୟ ନେଇ ଚଳିବା କଥା ଜାଣି ଆଖିବୁଜିଦେବା । ଆମରି ଓଡ଼ିଶାର କୁଳବୃଦ୍ଧ ମଧୁସୂଦନ ଦାସ ବିହାର- ଓଡ଼ିଶା କାଉନସିଲର୍ ସଭ୍ୟ ଥିଲାବେଳେ ସ୍ୱାୟତ୍ତଶାସନ ବିଭାଗର ମନ୍ତ୍ରୀ ହୋଇଥିଲେ । ମନ୍ତ୍ରୀ ହୋଇ ଦରମା ନନେବାକୁ ସ୍ଥିରକରି, ତତ୍‌କାଳୀନ ବିହାର-ଓଡ଼ିଶା ଗଭର୍ଣ୍ଣର ସାର୍ ହେନେରୀ ହୁଇଲର୍‌ଙ୍କ ପାଖକୁ ୧୯୨୩ ମସିହା ମାର୍ଚ୍ଚ ଆଠ ତାରିଖରେ ଖଣ୍ଡିଏ ଚିଠି ଲେଖିଥିଲେ । କିନ୍ତୁ ଗଭର୍ଣ୍ଣର ସାର୍ ହୁଇଲର୍ ତାଙ୍କ କଥା ଗ୍ରହଣ କରିନଥିଲେ । ଘଟଣାଟି ହେଉଛି, ଥରେ ବିହାର-ଓଡ଼ିଶା କାଉନ୍‌ସିଲ୍‌ରେ ଭାଷଣ ପ୍ରସଙ୍ଗରେ ଶ୍ରୀ ଦାସ କହିଥିଲେ ଯେ ମନ୍ତ୍ରୀଭାବରେ ବିନା ବେତନରେ କାର୍ଯ୍ୟ କରିବାକୁ ସେ ପ୍ରସ୍ତୁତ ଅଛନ୍ତି । ଉକ୍ତ ବକ୍ତବ୍ୟକୁ ଲକ୍ଷ୍ୟକରି ବିହାର-ଓଡ଼ିଶା କାଉନ୍‌ସିଲ୍‌ର ଶ୍ରୀ ଗଣେଶଦତ୍ତ ସିଂହ ନାମକ ଜଣେ ସଦସ୍ୟ ବଜେଟ୍ ଅଧିବେଶନରେ ଗୋଟିଏ ଖର୍ଚ୍ଚକାଟ ପ୍ରସ୍ତାବ (Cut Motion) ଆଣିଥିଲେ ଯେ ମନ୍ତ୍ରୀମାନଙ୍କର ଦରମା ମାସକୁ ଏକ ହଜାର ଟଙ୍କା ଲେଖାଏଁ କମାଇଦିଆଯାଉ । ସେତେବେଳେ ବିହାର-ଓଡ଼ିଶା କାଉନ୍‌ସିଲ୍‌ର ମନ୍ତ୍ରୀମାନେ ମାସକୁ ପାଞ୍ଚ ହଜାର ଟଙ୍କା ବେତନ ପାଉଥିଲେ । ମଧୁବାବୁ ମଧ ସେହି ପରିମାଣ ଦରମା ନେଉଥିଲେ । କାଟ୍ ପ୍ରସ୍ତାବକୁ ମଧୁବାବୁ ମନ୍ତ୍ରୀ ହିସାବରେ ବିରୋଧ କରିଥିଲେ; ମାତ୍ର ତାଙ୍କ ନିଜ କଥା କହିବାକୁ ଯାଇ ସେ କହିଥିଲେ ଯେ ଏକ ହଜାର ଟଙ୍କା କାଟିବା କଥା ଯାହାହେଉ, ସେ ବିନା ବେତନରେ କାର୍ଯ୍ୟ କରିବାକୁ ପ୍ରସ୍ତୁତ । କଥାଟା ସେତିକିରେ ତୁଟିଲାନାହିଁ । ବାବୁ ଗଣେଶଦତ୍ତ ସିଂହ ମଧୁବାବୁଙ୍କୁ ଉତ୍ତେଜିତ କରିବା ଉଦ୍ଦେଶ୍ୟରେ ସମୟସମୟରେ କାଉନ୍‌ସିଲ୍‌ରେ ସେ କଥା ଉଠାଇବାକୁ ଲାଗିଲେ । ମଧୁବାବୁଙ୍କୁ ଏଥିପାଇଁ ଟିକେ ଅସ୍ୱସ୍ତିକର ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଥିଲା । ତେଣୁ ମଧୁବାବୁ ଗଭର୍ଣ୍ଣରଙ୍କୁ ଏକ ପତ୍ର ଲେଖି ତାଙ୍କୁ ଅବୈତନିକ ମନ୍ତ୍ରୀ ଭାବରେ କାର୍ଯ୍ୟ କରିବା ନିମନ୍ତେ ସୁଯୋଗ ଦିଆଯିବାକୁ ଅନୁରୋଧ କରିଥିଲେ । ତଦ୍ ସଙ୍ଗେ ସଙ୍ଗେ ତାଙ୍କୁ ମନ୍ତ୍ରୀପଦ ସହିତ ପାଟନା ହାଇକୋର୍ଟ ଓ ଅନ୍ୟାନ୍ୟ ଅଦାଲତରେ ଓକିଲାତି କରିବାପାଇଁ ମଧ ଅନୁମତି ମାଗିଥିଲେ । ଏହା ନହେଲେ ମନ୍ତ୍ରୀପଦରୁ ଅବ୍ୟାହତି ଦେବାକୁ ସେ ଉକ୍ତ ଚିଠିରେ ଅନୁରୋଧ କରିଥିଲେ । ମନ୍ତ୍ରୀପଦରେ ରହି ଓକିଲାତି କରିବାଟାକୁ ଗଭର୍ଣ୍ଣର ନାପସନ୍ଦ କରିଥିଲେ । ତେଣୁ ୧୯୨୩ ମସିହା ଫେବୃୟାରୀ ମାସ ଏଗାର ତାରିଖରେ ସାର୍ ହୁଇଲର୍ ତାଙ୍କ ଉତ୍ତରରେ ମଧୁବାବୁଙ୍କୁ ଲେଖିଥିଲେ :

"I am in receipt of your letter of the 7th/8th instant, in which you give your reasons for suggesting that you are willing to work as a Minister in an honorary capacity, if allowed to earn your living by practising as a Vakil. While not in agreement with the arguments which you urge in justification of such a course, I am afraid, there are to my mind serious practical objections to it. x x x x x Secondly, it appears to me to be an absolute impossibility that a Minister should appear as a legal practitioner in courts subordinate to the Government of which he is a member. I know no such precedent for such a position x x x I regret that I do not see my way to accept your proposition."– "Madhusudan Das" By S. Mohanty

ଏଠାରେ ଗଭର୍ଣ୍ଣରଙ୍କ ସହିତ ଶ୍ରୀ ମଧୁସୂଦନ ଦାସଙ୍କର ଏ ସମ୍ବନ୍ଧରେ କେତେକ ଆଲୋଚନା ଓ ପତ୍ର ବିନିମୟ ହୋଇଥିଲା । ମଧୁବାବୁ ତାଙ୍କ ନିଷ୍ପତ୍ତିରେ ଅଟଳ ରହିଥିଲେ ଏବଂ ତାଙ୍କ ଇସ୍ତଫାପତ୍ର ଗ୍ରହଣକରିନେବାପାଇଁ ଗଭର୍ଣ୍ଣରଙ୍କୁ ଅନୁରୋଧ କରିଥିଲେ । ପରିଶେଷରେ ମାର୍ଚ୍ଚ ମାସ ୯ ତାରିଖରେ ମଧୁବାବୁଙ୍କ ଇସ୍ତଫାପତ୍ର ଗଭର୍ଣ୍ଣର ଗ୍ରହଣକରିନେଇଥିଲେ ।

ଜଣେ ମନ୍ତ୍ରୀ ଥାଇ ତାଙ୍କ ତଳେ କାର୍ଯ୍ୟ କରୁଥିବା ହାକିମମାନଙ୍କ ଆଗରେ ଓକିଲାତି କରିବା ଶାସନଗତ ଅସଙ୍ଗତ କଥା ହେବ ବୋଲି ଗଭର୍ଣ୍ଣର ଅନୁଭବ କରିଥିଲେ । ସେତେବେଳେ ମଧୁବାବୁଙ୍କର ଇସ୍ତଫାକୁ କେତେକ ଲୋକ ପସନ୍ଦ କରିଥିଲେ ଓ ଆଉ କେତେକ ନାପସନ୍ଦ କରିଥିଲେ; କିନ୍ତୁ ଆଜିକାଲି କେହି ମନ୍ତ୍ରୀ ଯଦି ଏପ୍ରକାର ପ୍ରସ୍ତାବ ଦିଅନ୍ତି ତେବେ ତାଙ୍କର ହାସ୍ୟାସ୍ପଦ ହେବା ବ୍ୟତୀତ ଅନ୍ୟ ଗତି ନାହିଁ । ମଧୁବାବୁଙ୍କର ସେତେବେଳକାର ନିଷ୍ପତ୍ତି ମୋ ମତରେ ଯଥାର୍ଥ ନଥିଲା । ସେତେବେଳେ ରାଜା, ଜମିଦାର, ଧନାଢ଼୍ୟ ବ୍ୟକ୍ତିମାନେ ମନ୍ତ୍ରୀ ହେଉଥିଲେ । ଉଦାହରଣସ୍ୱରୂପ, ଦରଭଙ୍ଗା ଜମିଦାରୀର ମହାରାଜା ବିହାର-ଓଡ଼ିଶା କାଉନ୍ସିଲ୍‌ର ସଭ୍ୟ ଥାଇ ମନ୍ତ୍ରୀ ହୋଇଥିଲେ । ସେପ୍ରକାର ଲୋକଙ୍କ ପକ୍ଷରେ ବିନା ବେତନରେ ମନ୍ତ୍ରୀଭାବରେ କାର୍ଯ୍ୟ କରିବାଟା କିଛି ଅସ୍ୱାଭାବିକ ନୁହେଁ; କିନ୍ତୁ ସେପ୍ରକାର ମନୋବୃତ୍ତି ଆଜିକାଲିକା ଯୁଗରେ ଖାପଖାଇବନାହିଁ । ମଧୁବାବୁଙ୍କ ସମୟରେ ଏକପ୍ରକାର ରାଜତନ୍ତ୍ର ଯୁଗ ଥିଲା କହିଲେ ଚଳେ । ସବୁଠାରୁ ଆଶ୍ଚର୍ଯ୍ୟର କଥା ହେଲା ଯେ ସେତେବେଳେ ଯେଉଁ ଗଣେଶଦତ୍ତ ସିଂହ ମନ୍ତ୍ରିମାନଙ୍କ ବେତନ ପାଞ୍ଚ ହଜାରରୁ ଏକ ହଜାର କମାଇ ଦେବାର କାଟ୍ ପ୍ରସ୍ତାବ ଆଣିଥିଲେ, ମଧୁବାବୁ ମନ୍ତ୍ରୀପରିଷଦରୁ ବିଦାୟ ନେବା ପରେ ସେ ଠିକ୍ ତାଙ୍କରି ଜାଗାରେ ସ୍ୱାୟତ୍ତଶାସନ ବିଭାଗର ମନ୍ତ୍ରୀ ହୋଇଥିଲେ ଓ ନିର୍ବିକାର ଭାବରେ ମାସକୁ ମାସ ପାଞ୍ଚ ହଜାର ଟଙ୍କା ଲେଖାଏଁ ବେତନ ନେଇଥିଲେ ।

ଓଡ଼ିଶାରେ ଦୁଇଟି ପରସ୍ପରବିରୋଧୀ କଥା ବିଭିନ୍ନ ସମୟରେ ପ୍ରଶଂସିତ ହୋଇଥିଲା । ସରକାରଙ୍କ ଅଧସ୍ତନ କୋର୍ଟମାନଙ୍କରେ ଓକିଲ ଭାବରେ ହାଜର ହୋଇ ରୋଜଗାର କରି ସରକାରଙ୍କଠାରୁ ବେତନ ନ ନେଇ ମନ୍ତ୍ରୀଭାବରେ କାର୍ଯ୍ୟ କରିବାପାଇଁ ମଧୁବାବୁଙ୍କ ଘୋଷଣାକୁ ଓଡ଼ିଶାବାସୀ ସେତେବେଳେ ସ୍ୱାଗତ ଜଣାଇଥିଲେ । ଏ ଘଟଣା ଘଟିଥିଲା ୧୯୨୩ ମସିହାରେ । ଏହାର ଠିକ୍ ଚଉଦ ବର୍ଷ ପରେ ଓଡ଼ିଶା ମନ୍ତ୍ରିମଣ୍ଡଳର ଜଣେ ଅଧସ୍ତନ କର୍ମଚାରୀ ରେଭିନ୍ୟୁ କମିଶନରଙ୍କୁ ମନ୍ତ୍ରିପରିଷଦ ଉପର ପଦବୀ ଲାଟ୍ ପଦରେ ନିଯୁକ୍ତ କରିବାପାଇଁ ବିଲାତ ସରକାରଙ୍କ ମଞ୍ଜୁରପ୍ରାପ୍ତ ଘୋଷଣା ପ୍ରକାଶ ପାଇଥିଲା । ସେତେବେଳେ ତା'ର ଦୃଢ଼ ପ୍ରତିବାଦସ୍ୱରୂପ ଇସ୍ତଫା ଦେବାକୁ ପ୍ରଧାନମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କ ନିଷ୍ପତ୍ତି ମଧ ଓଡ଼ିଶାବାସୀଙ୍କଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା । ୧୯୬୧ ମସିହାରେ ଶ୍ରୀ ବିଜୁପଟ୍ଟନାୟକ ଓଡ଼ିଶାରେ ମନ୍ତ୍ରିମଣ୍ଡଳ ଗଠନକଲେ ଏବଂ ମୁଁ ଓ ବୀରେନ୍‌ବାବୁ ପ୍ରମୁଖ ତାଙ୍କ ମନ୍ତ୍ରିମଣ୍ଡଳର ସଭ୍ୟରୂପେ ଶପଥ ନେଇଥିଲୁ । ଦିନେ ବିଜୁବାବୁ ଓ ବୀରେନ୍‌ବାବୁ ଦୁହେଁ ମିଶି ପରାମର୍ଶ କରି ସ୍ଥିର କରିଥିଲେ ଯେ ସେମାନେ ବିନା ବେତନରେ କିମ୍ବା ନାମକୁମାତ୍ର ଏକ ଟଙ୍କା ବେତନ ନେଇ ମୁଖ୍ୟମନ୍ତ୍ରୀ ଓ ମନ୍ତ୍ରୀ ହିସାବରେ କାମ କରିବେ । ମୁଁ ସେ ଦୁହିଁଙ୍କର ଏ ପ୍ରକାର ନିଷ୍ପତ୍ତି କଥା ଶୁଣି ଘୋର ପ୍ରତିବାଦ କରିଥିଲି । ଏ ପ୍ରକାର ନିଷ୍ପତ୍ତିଦ୍ୱାରା ଅନ୍ୟ ମନ୍ତ୍ରୀମାନଙ୍କୁ ସର୍ବସାଧାରଣରେ ଅପମାନିତ କରିବା ବ୍ୟତୀତ ଅଧିକ କିଛି ହେବ ନାହିଁ ବୋଲି ମୁଁ କହିଥିଲି ଏବଂ ସେ ପ୍ରକାର ପରିସ୍ଥିତି ଉପୁଜିଲେ ନିଜ ଆତ୍ମସମ୍ମାନ ସମ୍ପର୍କରେ ସଚେତନ ଥିବା କୌଣସି ବ୍ୟକ୍ତି ମନ୍ତ୍ରିମଣ୍ଡଳରେ ମନ୍ତ୍ରୀ ହୋଇ ରହିବା ସମ୍ଭବ ହେବନାହିଁ ବୋଲି ଜଣାଇଦେଇଥିଲି । କାରଣ ସବୁ ମନ୍ତ୍ରୀଙ୍କର ବ୍ୟକ୍ତିଗତ ଆର୍ଥିକ ସ୍ୱଚ୍ଛଳତା ସମାନଥିବା ସମ୍ଭବ ନୁହେଁ । ତେଣୁ ସେ କଥା ଆଉ ବିଶେଷ ପ୍ରଘଟିତ ନହୋଇ ସେତିକିରେ ବନ୍ଦହୋଇଗଲା ।

## ଜେମି ବେଓ୍ୱା ଓ ଯୋଗିନୀଖିଆ ଉପାଖ୍ୟାନ

୧୯୫୪ ମସିହାରେ ଓଡ଼ିଶାର ବହୁ ଜିଲ୍ଲାରେ ଅନାବୃଷ୍ଟି ହେତୁ ଫସଲ ନଷ୍ଟ ହୋଇଥିଲା । ସେହି ବର୍ଷ ସେପ୍ଟେମ୍ବର ଓ ଅକ୍ଟୋବର ମାସରେ ଓଡ଼ିଶା ବିଧାନସଭାରେ ମରୁଡ଼ି ପରିସ୍ଥିତି ସମ୍ପର୍କରେ ବହୁବାର ଆଲୋଚନା ହୋଇଥିଲା । ମରୁଡ଼ିଜନିତ ପରିସ୍ଥିତି ଦିନମଜୁରିଆ, ଖଟିଖିଆ ଓ କ୍ଷେତ ମଜୁରିଆମାନଙ୍କୁ ବିଶେଷ ଭାବରେ ବାଧିଥିଲା । ସେମାନଙ୍କୁ ତୁରନ୍ତ ସାହାଯ୍ୟ ଦିଆଯିବା ସଙ୍ଗେ ସଙ୍ଗେ କାମ ଯୋଗାଇ ଦେବାର ବ୍ୟବସ୍ଥା ମଧ କରାଯାଇଥିଲା । ରାସ୍ତାଘାଟ ତିଆରି, କେନାଲ୍ ଓ ପୋଖରୀଖୋଳା ପ୍ରଭୃତି ନାନାପ୍ରକାର ଶ୍ରମଭିତ୍ତିକ କାର୍ଯ୍ୟର ବ୍ୟବସ୍ଥା କରାଯାଇଥିଲା । ଫଳରେ ମୂଲ ଲାଗି ଦି'ପଇସା ରୋଜଗାର କରିବାର ସୁବିଧା ସେମାନେ ପାଇଥିଲେ । ଏହା ସତ୍ତ୍ୱେ ବିରୋଧୀ ରାଜନୈତିକ ଦଳମାନେ, ବିଶେଷକରି କମ୍ୟୁନିଷ୍ଟ ଓ ସୋସାଲିଷ୍ଟ ଦଳର ସଦସ୍ୟମାନେ, ସରକାର ଲୋକଙ୍କ ଦୁଃଖଦୁର୍ଦ୍ଦଶା ପ୍ରତି ଉଦାସୀନ ବୋଲି ଅଭିଯୋଗ କରି ଖାଇବାକୁ ନପାଇ ଲୋକେ ପୋକମାଛି ପରି ମଲେଣି ବୋଲି ପ୍ରଚାର କରିବାରେ ଲାଗିଲେ । ୧୯୫୫ ମସିହା ମାର୍ଚ୍ଚ ମାସ ୫ ତାରିଖ ଦିନ ବିଧାନସଭା ଅଧିବେଶନରେ କମ୍ୟୁନିଷ୍ଟ ସଭ୍ୟ ଶ୍ରୀ ଗୋବିନ୍ଦ ପ୍ରଧାନ ବିଧାନସଭାରେ ଏକ ମୁଲତବୀ ପ୍ରସ୍ତାବ ଆଗତ କରିବାକୁ ଯାଇ କହିଥିଲେ, ମରୁଡ଼ି ଯୋଗୁଁ ଖାଦ୍ୟାଭାବ ଏପରି ହେଲାଣି ଯେ କଟକ ଜିଲ୍ଲା ତିର୍ତ୍ତୋଲ ଥାନାର କୁଜଙ୍ଗ ଅଞ୍ଚଳରେ ସିକୁ ଗ୍ରାମର ଜେମି ବେଓ୍ୱା ନାମକ ଜଣେ ବୃଦ୍ଧାଙ୍କର ମାର୍ଚ୍ଚ ପହିଲା ତାରିଖରେ ଅନାହାରରେ ମୃତ୍ୟୁ ଘଟିଛି । ରାଜସ୍ୱମନ୍ତ୍ରୀ ଶ୍ରୀ ସଦାଶିବ ତ୍ରିପାଠୀ ଏ ସଂକ୍ରାନ୍ତୀୟ ପ୍ରସ୍ତାବର ଉତ୍ତରରେ କହିଥିଲେ ଯେ ତାଙ୍କ ପାଖରେ ସେ ଅଞ୍ଚଳରେ ଏ ପ୍ରକାର ଗୁରୁତର ପରିସ୍ଥିତି ଉପୁଜିଥିବାର କୌଣସି ଖବର ନାହିଁ । ଶ୍ରୀ ଗୋବିନ୍ଦ ପ୍ରଧାନ ନିଜେ ସେହି ଅଞ୍ଚଳ ବୁଲି ଦେଖିଆସିଛନ୍ତି ବୋଲି ଜବାବ ଦେଇଥିଲେ । ଅବସ୍ଥା ବଡ଼ ଗୁରୁତର, ଲୋକଙ୍କ ଘରେ ଖାଇବାକୁ ଭାତନାହିଁ କି ସେ ଅଞ୍ଚଳରେ ଧାନଚାଉଳ ମଧ ମିଳୁନାହିଁ । ଲୋକେ କଙ୍କଣାଡ଼, ମୁଠିଶାଗ, କଳମଶାଗ ଓ ତେନ୍ତୁଳିପତ୍ର ଇତ୍ୟାଦି ନାନା ଅଖାଦ୍ୟ ଖାଇ ଜୀବନ ବଞ୍ଚାଉଛନ୍ତି । ପଣ୍ଡିତ ଗୋଦାବରୀଶ ମିଶ୍ର ସରକାରଙ୍କ ଉଦାସୀନତାରେ ତୀବ୍ର ଅସନ୍ତୋଷ ପ୍ରକାଶ କରି ଏ ପ୍ରକାର ଗୋଟିଏ ନିର୍ଦ୍ଦିଷ୍ଟ ଅଭିଯୋଗ ସଂକ୍ରାନ୍ତରେ ପ୍ରକୃତ ତଥ୍ୟ ସଂଗ୍ରହ କରି ଗୃହରେ ଉପସ୍ଥାପନ କରିବାପାଇଁ ଦାବି କରିଥିଲେ । ଶ୍ରୀ ଗୋବିନ୍ଦ ପ୍ରଧାନଙ୍କ କଥାରେ ମୋର ଟିକିଏ ଅବିଶ୍ୱାସ ହେଲା; କାରଣ ସେ ଥିଲେ ଗଞ୍ଜାମ ଜିଲ୍ଲାର ଲୋକ । କଟକ ଜିଲ୍ଲାର ଏତେ ସଭ୍ୟ ଥାଉ ଥାଉ ଏବଂ ଏ ବିଷୟରେ ସେମାନଙ୍କର କୌଣସି ଅଭିଯୋଗ ନଥିବା ସତ୍ତ୍ୱେ ଗୋବିନ୍ଦବାବୁ କିପରି ଏଭଳି ଖବର ସଂଗ୍ରହ କରିବାକୁ ସକ୍ଷମ ହେଲେ ବୋଲି ମୋ ମନରେ ପ୍ରଶ୍ନ ଉଠିଲା । ମୋର ମନେଅଛି, ସେହି ବିଷୟଟି ଉପରେ ପଣ୍ଡିତ ଗୋଦାବରୀଶ ମିଶ୍ର ଓ ଶ୍ରୀ ସୁରେନ୍ଦ୍ର ପଟ୍ଟନାୟକଙ୍କ ଭିତରେ ଖୁବ୍ ବାକ୍‌ବିତଣ୍ଡା ହୋଇଥିଲା । ଶ୍ରୀ ମିଶ୍ର ଅଭିଯୋଗଟିର ଗୁରୁତ୍ୱ ଦୃଷ୍ଟିରୁ ରାଜସ୍ୱମନ୍ତ୍ରୀ ନିଜେ ସେ ସ୍ଥାନକୁ ଯାଇ ପ୍ରକୃତ ଅବସ୍ଥା ଅନୁଧ୍ୟାନ କରି ଗୃହରେ ସଠିକ୍ ବିବରଣୀ ପ୍ରଦାନ କରିବା ଉଚିତ ହେବ ବୋଲି ଦାବି କରିଥିଲେ । ରାଜସ୍ୱମନ୍ତ୍ରୀ ଶ୍ରୀ ତ୍ରିପାଠୀ ଏଭଳି ଦାବିର କୌଣସି ଯଥାର୍ଥତାନାହିଁ ବୋଲି ଦର୍ଶାଇ ଜଣେ ମାଜିଷ୍ଟ୍ରେଟ୍‌ଙ୍କ ଦ୍ୱାରା ପ୍ରକୃତ ତଥ୍ୟ ସଂଗ୍ରହ କରାଯାଇପାରିବ ବୋଲି କହିଥିଲେ । ମୁଁ କିନ୍ତୁ ଏହି ସମାଧାନ ସୂତ୍ରରେ ସନ୍ତୁଷ୍ଟ ହୋଇନଥିଲି । ନିଜେ ସେ ସ୍ଥାନକୁ ଯାଇ ପ୍ରକୃତ ଅବସ୍ଥା ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରିବାର ଇଚ୍ଛା ପ୍ରକାଶ କରିଥିଲି । ଶେଷରେ ମୋତେ ତାହାହିଁ କରିବାକୁ ପଡ଼ିଥିଲା । ଏହି ମୁଲତବୀ ପ୍ରସ୍ତାବଟି ଆସିବା ଦିନ ଶନିବାର ପଡ଼ିଥାଏ; ତେଣୁ ସକାଳବେଳା ଅଧିବେଶନ ବସିଥିଲା । ସେହିଦିନ ଉପରବେଳା ମୁଁ ଖାଇସାରି ବାହାରିପଡ଼ିଲି । ସ୍ଥିରକଲି ଯେ ଛଦ୍ମବେଶରେ ଯିବି । ଆସେମ୍ବ୍ଲି ସେକ୍ରେଟେରୀ ଥାଆନ୍ତି ଶ୍ରୀ ପ୍ରଫୁଲ୍ଲ ପଟ୍ଟନାୟକ । ତାଙ୍କଠାରୁ ଗୋଟିଏ ମିଲ୍‌ଧୋତି ଓ ଖଣ୍ଡେ ମିଲ୍‌କନା ସାର୍ଟ ମାଗି ପିନ୍ଧିଲି ଏବଂ ଛତା ଖଣ୍ଡିଏ ହାତରେ ଧରି ବାହାରିଲି । ମୁଁ ଜିପ୍‌ର ପଛପଟେ ବସିଲି । ଆଗରେ ମୋର ପର୍ସନାଲ୍ ଆସିଷ୍ଟାଣ୍ଟ ବସିଲେ । ଡ୍ରାଇଭର ଓ ପି.ଏ.ଙ୍କୁ

କୁହାଯାଇଥାଏ କୁଜଙ୍ଗରେ ମୋର ପରିଚୟ ଗୋପନ ରଖିବାପାଇଁ । ଅପରାହ୍ଣ ପ୍ରାୟ ପାଞ୍ଚଟା ବେଳେ ଯାଇ କୁଜଙ୍ଗରେ ପହଞ୍ଚିଲି । ମୁଁ ସେତେବେଳକୁ ଚଷମା ବ୍ୟବହାର କରୁଥାଏ; କିନ୍ତୁ ସେତେବେଳେ ଚଷମା ପିନ୍ଧିଲିନାହିଁ । ସେଦିନ ଥାଏ କୁଜଙ୍ଗ ହାଟ । ଗାଡ଼ିଟି ହାଟଠାରୁ କିଛି ଦୂରରେ ରଖିଦେଇ ହାଟରେ ଯେଉଁଠି ମାଛଶୁଖୁଆ କାରବାରହେଉଥାଏ ସେଠାକୁ ଗଲି । ସେତେବେଳକୁ ତ ଓଡ଼ିଶାର ମଫସଲ ଅଞ୍ଚଳରେ ମୋତେ ବେଶୀ ଲୋକ ଚିହ୍ନି ନ ଥା'ନ୍ତି, ମୁଁ କୁଆଡ଼ୁ ଆସିଲି ଓ କାହିଁକି ଆସିଛି ବୋଲି କେତେକ ଲୋକ ପଚାରିଥିଲେ । ମୁଁ କହିଥିଲି, ବାଲେଶ୍ୱରରୁ ଆସିଛି, ମୋର ମାଛ କାରବାର କରିବାର ଇଚ୍ଛା । ସେମାନେ ମୋତେ ବ୍ୟବସାୟରେ ସାହାଯ୍ୟ କରିବାର ପ୍ରତିଶ୍ରୁତି ମଧ ଦେଇଥିଲେ । ସେମାନଙ୍କ ସହ କଥାବାର୍ତ୍ତା ଛଳରେ କେନାଲ୍ ଆଡ଼କୁ ଯିବା ସମୟରେ ଦେଖିଲି ଯେ ଗୋଟିଏ ଡଙ୍ଗାରେ କଟକ ଆଡ଼କୁ ଆସିବାପାଇଁ ଚାଉଳ ବସ୍ତା ଲଦା ହେଉଛି । ମୁଁ ସେମାନଙ୍କ ସମ୍ମୁଖରେ ବିସ୍ମୟ ପ୍ରକାଶ କରି ପଚାରିଲି, ''ଖବରକାଗଜରେ ବାହାରିଛି ତୁମ ଅଞ୍ଚଳରେ ଦୁର୍ଭିକ୍ଷ ପଡ଼ିଛି ବୋଲି — ତା' ହେଲେ ତୁମେମାନେ କିପରି ଏଠାରୁ କଟକକୁ ଚାଉଳ ଛାଡ଼ିଦେଉଛ ?'' ସେ ଅଞ୍ଚଳରେ ସେପରି ସାଂଘାତିକ ଅବସ୍ଥା ଉପୁଜିନାହିଁ ବୋଲି ସେମାନେ କହିଥିଲେ । ମୁଁ ମଧ ଦେଖିଲି ହାଟର ବିଭିନ୍ନ ସ୍ଥାନରେ ଚାଉଳ ବିକ୍ରି ହେଉଛି । କୁଜଙ୍ଗ ହାଟ ସେ ଅଞ୍ଚଳର କେନ୍ଦ୍ରସ୍ଥଳ । ସେଠାରୁ ମୁଁ ବିଭିନ୍ନ ଅଞ୍ଚଳର ଖବର ସଂଗ୍ରହ କରିବାରେ ଲାଗିଲି । ହାଟର ଖୁବ୍ ନିକଟରେ କୁଜଙ୍ଗ ତହସିଲ ଅଫିସ୍ । ସନ୍ଧ୍ୟା ହୋଇଗଲା ପରେ କାହାରିକୁ କିଛି ନକହି ତହସିଲ୍‌ଦାରଙ୍କୁ ମୋ ପାଖକୁ ଡାକିଆଣିବାକୁ ପି.ଏ.ଙ୍କୁ ପଠାଇଲି । ମୋ ଆସିବା ସମ୍ପର୍କରେ କାହାରିକୁ କିଛି ନକହିବା ପାଇଁ ତହସିଲ୍‌ଦାରଙ୍କୁ ମଧ ସତର୍କ କରାଇଦେଇଥିଲି । ଅନ୍ୟ ଜଣେ ଅଫିସର୍‌ରୂପେ ମୋର ପରିଚୟ ଦେଇ ସେ ତାଙ୍କ ଅଫିସ୍‌ରେ ମୋର ରହିବାର ବନ୍ଦୋବସ୍ତ କରିଦେଇଥିଲେ । କୁଜଙ୍ଗରେ ଗୋଟିଏ ପୁଲିସ ଫାଣ୍ଡି (Out Post) ଥିଲା, ରାତିରେ ସେଠାକୁ ଗଲି । ସେହି ଆଉଟ୍ ପୋଷ୍ଟରେ ଥିବା ଏ.ଏସ୍.ଆଇ. ମୋତେ ବଡ଼ କଷ୍ଟରେ ଚିହ୍ନିଲେ । ପ୍ରଥମେ ସେ ଏକଥା ବିଶ୍ୱାସ କରିପାରୁନଥିଲେ । ପରେ ମୋର ପି.ଏ. ସମସ୍ତ ବିଷୟ ବୁଝାଇଦେଇ ମୋର ଆସିବା ବିଷୟ ଗୁପ୍ତ ରଖିବାପାଇଁ କହିଥିଲେ । ଥାନାମାନଙ୍କରେ ଜନ୍ମ-ମୃତ୍ୟୁର ହିସାବ ଖାତା ଥାଏ । ସେ ଖାତା ତଦାରଖ କରି ସିଜୁ ଗ୍ରାମର ଗତ ଏକ ମାସ ମଧରେ ମୃତ୍ୟୁ ସମ୍ବନ୍ଧୀୟ ଖବର ପଚାରି ବୁଝିଥିଲି । ଖାତାରୁ ଜଣାଗଲା ଯେ ଗତ ଏକ ମାସ ମଧରେ ସେ ଗାଆଁର କାହାରି ମୃତ୍ୟୁ ହୋଇନାହିଁ । ପୁନଶ୍ଚ ଜେମି ବେଓ୍ୱା ନାମ୍ନୀ କୌଣସି ବିଧବା ମରିବା ଖବର ଆଦୌ ସତ ନୁହେଁ ବୋଲି ଜଣାଗଲା । ସେଠାରୁ ସେ ଗାଆଁର ଚୌକିଦାର ନାମ ପଚାରି ବୁଝିଲି । ଆହୁରି ମଧ ସେହିଠାରୁ ଖବର ପାଇଲି ଯେ କମ୍ୟୁନିଷ୍ଟ ନେତା ଶ୍ରୀ ଲୋକନାଥ ଚୌଧୁରୀ ଗାଆଁ ଗଣ୍ଡାରେ ବୁଲି କମ୍ୟୁନିଷ୍ଟ କର୍ମୀମାନଙ୍କଦ୍ୱାରା ଆୟୋଜିତ ସଭାମାନଙ୍କରେ ମରୁଡ଼ି ଓ ଅନାହାର ମୃତ୍ୟୁ ସମ୍ବନ୍ଧୀୟ କାଳ୍ପନିକ ତଥ୍ୟ ଦେଇ ଭାଷଣ ଦେଉଥିଲେ ।

ତା'ପରଦିନ ସକାଳେ ଖଣ୍ଡିଏ ସାଇକେଲ ଚଢ଼ି ଏକୁଟିଆ ସିଜୁ ଗାଆଁ ଆଡ଼େ ଚାଲିଲି । କୁଜଙ୍ଗଠାରୁ ସେ ଗାଆଁଟି ପ୍ରାୟ ପାଞ୍ଚ ଛଅ ମାଇଲ୍ ଦୂର । ବାଟରେ ଯାଉ ଯାଉ ଗୋଟିଏ ଜାଗାରେ କେନାଲ ଖୋଳାଯାଉଥିବାର ଦେଖିଲି । ସେଠାରେ ପ୍ରାୟ ପାଞ୍ଚ ଶହ ଯାଏଁ ଲୋକ କାମ କରୁଥାଆନ୍ତି । କାମ ପାଖକୁ ଯାଇ ଏହା କି ପ୍ରକାର କାମ ଓ କେତେ ଦିନ ହେଲା ଆରମ୍ଭ ହେଲାଣି ବୋଲି ପଚାରିଥିଲି । ଲୋକଙ୍କୁ ଧନ୍ଦା ଯୋଗାଇବା ଉଦ୍ଦେଶ୍ୟରେ କାମ ଅଳ୍ପ ଦିନ ହେଲା ଆରମ୍ଭ କରାଯାଇଛି ବୋଲି ସେମାନେ ମୋତେ କହିଥିଲେ । ସେଠାରେ କାମକରୁଥିବା ସେହି ଗାଆଁର ଲୋକମାନେ ମୋ ସମ୍ପର୍କରେ ଜାଣିବାକୁ ଚାହିଁବାରୁ ମୁଁ କହିଥିଲି ଯେ କନକପୁର ରାସ୍ତାର ଠିକା ମୁଁ ନେଇଛି, ମୋର କିଛି ଲୋକ ଦରକାର । ସେଥିନିମନ୍ତେ ମୁଁ ସେମାନଙ୍କର ସାହାଯ୍ୟ ଲୋଡ଼ିଥିଲି । ସେମାନେ ମୋତେ କହିଥିଲେ, ଆମ ଏଠାକାର ଲୋକମାନେ ପାଖରେ ହେଉଥିବା କାମ କରିବାକୁ ଅରାଜି; ସେମାନେ ଏତେ ଦୂର କାମ କରିବାକୁ ଯିବେନାହିଁ । ସେଠାରେ କାମ କରୁଥିବା ଅଧିକାଂଶ ଲୋକ ଖୋର୍ଦ୍ଧା ଓ ବ୍ରହ୍ମପୁର ଅଞ୍ଚଳର ଲୋକ ବୋଲି

ବୁଝାପଡ଼ିଥିଲା । ତା'ପରେ ସିଜୁ ଗାଆଁ ଆଡ଼େ ଚାଲିଲି । ହିଡ଼ ବାଟରେ ସାଇକେଲ୍ ଧରି ଯାଉଥିବା ସମୟରେ ଦେଖିଲି ଯେ ବିଲରେ ସ୍ତ୍ରୀଲୋକମାନେ ବସି ମୁଠି ଶାଗ ତୋଳୁଛନ୍ତି । ସେଗୁଡ଼ାକ କ'ଣ ବୋଲି ମୁଁ ସେମାନଙ୍କୁ ପଚାରିଥିଲି ଓ ଭାତ ଖାଇବାକୁ ନପାଇବାରୁ ସେଗୁଡ଼ାକ ଖାଇବାପାଇଁ ତୋଳୁଛନ୍ତି କି ବୋଲି ପ୍ରଶ୍ନକରିଥିଲି । ସେମାନେ କହିଲେ, ''ଯାକୁ ମୁଠି ଶାଗ କହନ୍ତି, ଶୁଖୁଆ ସାଙ୍ଗରେ ମିଶାଇ ରାନ୍ଧିଦେଲେ ବଡ଼ ସୁଆଦିଆ ଲାଗେ । ପଖାଳ ଭାତ ସାଙ୍ଗେ ଖାଇଲେ ପାଟି ସୁଆଦ ଛାଡ଼ିବନି ।'' ଆଉ କିଛି ଦୂର ଯାଇ ଦେଖିଲି ଗୋଟିଏ ସାହିରେ ଜଣେ ଚଣାବାଲା ଚାଉଳ ବଦଳରେ ଚଣା ବିକୁଛି । ମାଣେ ଚାଉଳ ବଦଳରେ ମାଣେ ଚଣା । ମୁଁ ସେଠି ପଚାରିଥିଲି, ''ଇଆଡ଼େ ପରା ଖାଇବାକୁ ମିଳୁନାହିଁ – ତେବେ ଚଣା ବଦଳରେ ଲୋକେ ଚାଉଳ କାହିଁକି ଦେଉଛନ୍ତି ?'' ସେମାନେ ମୋ କଥା ଶୁଣି ହସିଲେ । ସେଠାରୁ ଯାଇ 'ସିଜୁ' ଗାଆଁ ସ୍କୁଲ୍ ପାଖରେ ପହଞ୍ଚିଲି । ଗାଆଁର କେତେକ ଲୋକ ଆସି ରୁଣ୍ଡ ହୋଇଗଲେ ଓ ମୋର ସେଠାକୁ ଯିବାର ଉଦ୍ଦେଶ୍ୟ ସମ୍ବନ୍ଧରେ ନାନା ପ୍ରଶ୍ନ ପଚାରିଥିଲେ । ମାଛ କାରବାର କରିବା ମୋର ଉଦ୍ଦେଶ୍ୟ ଏବଂ ମୁଁ ବାଲେଶ୍ୱରରୁ ଆସିଛି ବୋଲି ସେମାନଙ୍କୁ କହିଥିଲି । ସ୍କୁଲ୍‌ରେ ବସି କଥାବାର୍ତ୍ତା ହେଉଛୁ, ଦୂରରୁ ଦେଖିଲି ଦୁଇଜଣ ପ୍ୟାଣ୍ଟପିନ୍ଧା ବାବୁ ଗାଆଁଆଡ଼କୁ ଆସୁଛନ୍ତି । ନିଶ୍ଚୟ ଏଥର ଧରାପଡ଼ିଯିବାର ଆଶଙ୍କା କରି ପରିସ୍ରା କରିବା ବାହାନାରେ ବାବୁ ଦୁଇଜଣ ଆସୁଥିବା ରାସ୍ତାରେ କିଛି ଦୂର ଆଗକୁ ଚାଲିଗଲି ଓ ମିଛଟାରେ ପରିସ୍ରା କରି ବସିଲି । ସେମାନେ ଯେତେବେଳେ ମୋ ପାଖରେ ପହଞ୍ଚିଲେ ମୁଁ ଉଠିପଡ଼ି ସେମାନଙ୍କୁ ମୋର ସବୁକଥା ଚୁମ୍ବକରେ କହିଦେଇ ସେଭଳି ପରିସ୍ଥିତିରେ ମୋର ପରିଚୟ ଗୋପନ ରଖିବାକୁ ଜଣାଇଦେଇଥିଲି । ସେ ଗାଆଁ ଲୋକ ମୋତେ ପୁଲିସ ଲୋକ ବୋଲି ସନ୍ଦେହ କରି ବିଭିନ୍ନ କଥା ପଚାରିଥିଲେ ଓ ମୁଁ ସେମାନଙ୍କ ସହିତ ରାସ୍ତା ମଝିରେ କି କଥାବାର୍ତ୍ତା ହେଲି ବୋଲି ପ୍ରଶ୍ନକରିଥିଲେ । ମୁଁ କହିଲି ସେ ଦୁଇଜଣ ଆସିଛନ୍ତି ତୁମ ଗାଆଁ ଚୌକିଆକୁ ଗିରଫ କରିବାପାଇଁ; କାରଣ ତୁମ ଗାଆଁ ଚୌକିଆ ଏ ଗାଆଁରେ ଘଟୁଥିବା ମୃତ୍ୟୁ ରିପୋର୍ଟ ପୁଲିସକୁ ଦେଉନାହିଁ । ସେମାନେ ଏହା ଶୁଣି ବଡ଼ ବ୍ୟସ୍ତ ହୋଇ କହିଥିଲେ ଯେ ଚୌକିଆ ଜଣକ ଖୁବ୍ ଭଲ ଲୋକ । ଏହା ଭିତରେ ଆମ ଗାଆଁର କେହି ଲୋକ ମରିନାହାନ୍ତି । ମୁଁ କହିଲି ଯେ ମୁଁ ମଧ ସେଇ କଥା ଅନୁମାନ କରି ସେ ବାବୁ ଦୁଇଜଣଙ୍କୁ କହିଥିଲି । ମାତ୍ର ସେମାନେ କହିଲେ, ଏ ଗାଆଁର ଲୋକେ ସତ କହୁନାହାନ୍ତି; କାରଣ ଜେମି ବେଓ୍ୱା ମରିଛି । ସେହି ସମ୍ବନ୍ଧରେ ରିପୋର୍ଟ ସଂଗ୍ରହ କରିବାପାଇଁ କଲେକ୍ଟର ସେମାନଙ୍କୁ ପଠାଇଛନ୍ତି । ଚୌକିଆକୁ ଧରିନେଇଯିବାପାଇଁ ମଧ ନିର୍ଦ୍ଦେଶ ଅଛି ବୋଲି ସେମାନେ କହିଲେ । ଏକଥା ଶୁଣି ଗାଆଁବାଲା କହିଲେ, ''ଜେମି ବେଓ୍ୱା କାହିଁକି ମରିବ – ସେ ତ ବଞ୍ଚିଛି ।'' ଚୌକିଆକୁ ଡକାଗଲା ଓ ଆମ୍ଭେମାନେ ସମସ୍ତେ ଜେମି ବେଓ୍ୱା ଘରଆଡ଼େ ଚାଲିଲୁ । ଯାଉ ଯାଉ ବାଟରେ ଦେଖିଲୁ କାନ୍ଥମାନଙ୍କରେ ଲେଖା ଅଛି, ''ବିରାଟ ସାଧାରଣ ସଭା ହେବ । ଭାଷଣ ଦେବେ କମ୍ୟୁନିଷ୍ଟ ନେତା ଶ୍ରୀ ଗୋବିନ୍ଦ ପ୍ରଧାନ ।'' ଆମ୍ଭେମାନେ ଜେମି ବେଓ୍ୱାର ଘରେ ପହଞ୍ଚିଲାବେଳକୁ ସେ ଗାଧୋଇବାକୁ ଯାଇଥିଲା । ତା' ପୁଅ ଘରୁ ବାହାରିଆସି ତା'ର ମା' ମରିଯାଇଥିବାର ଖବର ଶୁଣି ଆଶ୍ଚର୍ଯ୍ୟ ହୋଇଥିଲା । ଦୌଡ଼ିଯାଇ ପୋଖରୀ ତୁଠରେ ଏ ଖବର ଜଣାଇ ମା'କୁ ଡାକିଆଣିଲା । ତା' ମାଆ ସିଆଡୁ ବଡ଼ ପାଟିରେ ବକି ବକି ଆସିଲା, ''ଯୋଗିନୀଖିଆ, ବାଡ଼ିପଡ଼ା, ମୁଁ ବଞ୍ଚି ଥାଉ ଥାଉ ମରିଯାଇଛି ବୋଲି ଖବରକାଗଜରେ ବାହାରକରିଛନ୍ତି !'' ତା' ବିଷୟରେ ସବୁ କଥା ବୁଝିଲୁ, ସେ କିପରି ଚଳେ ସେ ବିଷୟରେ ମଧ ବୁଝିଥିଲୁ । ଆମ୍ଭେମାନେ ସେଠାକୁ ଯାଇଥିଲୁ ଓ ଜେମି ବେଓ୍ୱା ବଞ୍ଚିଛି ବୋଲି ସେ ଗାଆଁର ଲୋକମାନେ ଖଣ୍ଡିଏ କାଗଜରେ ଲେଖି ସମସ୍ତଙ୍କଠାରୁ ଦସ୍ତଖତ କରାଇ ଆମ୍ଭମାନଙ୍କୁ ଦେଇଥିଲେ । ପୁଲିସ ହାବୁଡ଼ରୁ ମୁଁ ଗାଆଁଲୋକଙ୍କୁ ସାହାଯ୍ୟ କରିଥିବାରୁ ସେମାନେ ଖୁସିହୋଇଥିଲେ । ମୁଁ ବ୍ୟବସାୟ ସମ୍ବନ୍ଧରେ କଥାବାର୍ତ୍ତା କରିବାପାଇଁ ପରେ ଆସିବିବୋଲି କହି ସେମାନଙ୍କଠାରୁ ବିଦାୟ ନେଇ ଫେରିଆସିଥିଲି ।

ଭୁବନେଶ୍ୱର ଫେରିଆସି ଅର୍ଥମନ୍ତ୍ରୀ ଶ୍ରୀ ରାଧାନାଥ ରଥଙ୍କୁ ଏ ସମସ୍ତ ଘଟଣାର ଗୋଟିଏ ରିପୋର୍ଟ ଦେଇଥିଲି । ସେ ରିପୋର୍ଟଟି ପଢ଼ି ଆଚମ୍ବିତ ହୋଇଯାଇଥିଲେ । ମାର୍ଚ୍ଚ ଦଶ ତାରିଖ ଦିନ ବ୍ୟବସ୍ଥାସଭାରେ ପ୍ରଶ୍ନୋତ୍ତର ପରେ ମୁଁ ଛଦ୍ମବେଶରେ ଯାଇ ରିପୋର୍ଟ ସଂଗ୍ରହ କରିଥିବା କଥା ଘୋଷଣା କରି ରିପୋର୍ଟରେ ଥିବା ସମସ୍ତ ତଥ୍ୟ ଯେତେବେଳେ ଗୃହରେ ପ୍ରକାଶ କରିଥିଲି, ସେତେବେଳେ ଶ୍ରୀ ଗୋବିନ୍ଦ ପ୍ରଧାନ, ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ସମେତ ବିରୋଧୀ ଦଳର ବହୁ ସଦସ୍ୟଙ୍କର ମୁହଁ କଳାପଡ଼ିଯାଇଥିଲା । ସରକାରୀ ଦଳର ସଭ୍ୟମାନେ ଆନନ୍ଦରେ ଟେବୁଲ୍ ବାଡ଼େଇ ମୋ କାର୍ଯ୍ୟର ପ୍ରଶଂସା କରିଥିଲେ । ଆଲୋଚନାର ଉତ୍ତରରେ ରାଧାନାଥବାବୁ କହିଲେ ଯେ ବିଷୟଟି ହେଉଛି ସେଇଆ, ଯାହାକୁ ଇଂରାଜୀରେ କହନ୍ତି, "Without foundation. It is a story which is considered to be absolute fiction from beginning to the end." ମୁଁ ନିଜେ ଛଦ୍ମବେଶରେ ଯାଇ ଘଟଣାଟି ଅନୁସନ୍ଧାନକରି ରିପୋର୍ଟ ଦେଇଥିଲି ବୋଲି ସେମାନେ ତା'ର ପ୍ରତିବାଦ କରିପାରି ନଥିଲେ । ତା' ନହୋଇ ଯଦି ସରକାରୀ ଅଫିସରମାନଙ୍କ ମାଧମରେ କଥାଟାର ସତ୍ୟାସତ୍ୟ ଅନୁସନ୍ଧାନ କରାଯାଇଥାଆନ୍ତା , ତେବେ ତାକୁ ଅସତ୍ୟ ବୋଲି ପ୍ରତିବାଦ କରି ନାନାପ୍ରକାର ଆଲୋଡ଼ନ ସୃଷ୍ଟି କରିଥାଆନ୍ତା ।

ପୂର୍ବକାଳରେ ପ୍ରଜାବତ୍ସଳ ସୁଶାସକ ରାଜା ଓ ରାଜକର୍ମଚାରୀମାନେ ନିଜେ ଛଦ୍ମବେଶରେ ଯାଇ ଗୋପନରେ ରାଜ୍ୟର ନାନା ହାଲ୍‌ଚାଲ୍‌ର ଖବର ସଂଗ୍ରହ କରୁଥିଲେ ବୋଲି ପଢ଼ିଥିଲି । ମୋର କର୍ମଜୀବନର ପ୍ରାରମ୍ଭରେ ପ୍ରଶାସନ କ୍ଷେତ୍ରରେ ସେହି ଉତ୍ସାହ ସ୍ୱତଃ ପ୍ରତିଫଳିତ ହୋଇଥିଲା । ସେଥିପାଇଁ ଏକାଧିକ ଥର ମୁଁ ଛଦ୍ମବେଶରେ ସରକାରୀ ପରିଦର୍ଶନରେ ଯାଇଛି । ଥରେ ବିଧାନସଭାର ସଭ୍ୟ ଶ୍ରୀ ମହେଶ୍ୱର ସୁବାହୁସିଂଙ୍କଠାରୁ ପାଲଲହଡ଼ା ଏସ୍.ଡ଼ି.ଓ.ଙ୍କ ବିରୁଦ୍ଧରେ କେତେକ ଅଭିଯୋଗ ଆଣି ଶ୍ରୀ ପବିତ୍ରମୋହନ ପ୍ରଧାନ ମୁଖ୍ୟମନ୍ତ୍ରୀଙ୍କ ଆଗରେ ଉପସ୍ଥାପିତ କରିଥିଲେ । ଏସ୍.ଡ଼ି.ଓ.ଙ୍କ ବିରୁଦ୍ଧରେ ପ୍ରଥମ ଅଭିଯୋଗ ଥିଲା ଯେ ସେ କଚେରିରେ ଲୋକଙ୍କ ପ୍ରତି ଦୁର୍ବ୍ୟବହାର ପ୍ରଦର୍ଶନ କରୁଛନ୍ତି । ଓକିଲମାନଙ୍କ ପ୍ରତି ମଧ ତାଙ୍କର ବ୍ୟବହାର ତଦନୁରୂପ ହେଉଛି । ଉନ୍ନତିମୂଳକ କାର୍ଯ୍ୟମାନ ଲୋକମତ ଅନୁସାରେ ନକରି ନିଜ ଇଚ୍ଛାନୁସାରେ କରୁଛନ୍ତି । ମୁଖ୍ୟମନ୍ତ୍ରୀ ଶ୍ରୀ ଚୌଧୁରୀ ଏ କଥାଟିର ସତ୍ୟାସତ୍ୟ ସମ୍ପର୍କରେ ବୁଝିବାପାଇଁ ମୋତେ ଦାୟିତ୍ୱ ଦେଇଥିଲେ । ଛଦ୍ମବେଶରେ ସେଠାକୁ ଯାଇ ଏ ସମ୍ପର୍କରେ ଅନୁସନ୍ଧାନ କରିବାପାଇଁ ମୁଁ ସ୍ଥିରକରିଥିଲି । ମୁଁ ସେତେବେଳେ ପ୍ୟାଣ୍ଟ ପିନ୍ଧୁଥାଏ । ଗୋଟିଏ କଳାକୋଟ୍ ଯୋଗାଡ଼କରି ବାହାରିପଡ଼ିଲି । ପାଲଲହଡ଼ା ଯିବା ବାଟରେ 'ଖମାର' ପାଖରେ ମୋର ପୋଷାକ ବଦଳ କରି ନିଜକୁ ଓକିଲ ବେଶରେ ସଜାଇଦେଲି । ଜିପ୍ ଯାଇ ପାଲଲହଡ଼ା ଡାକବଙ୍ଗଳା ନିକଟରେ ପହଞ୍ଚିଲା । ମୁଁ ଜଣେ ଅଫିସର୍ ବୋଲି ସେଠାରେ ମୋର ପି.ଏ.ମୋର ପରିଚୟ ଦେଇଥିଲେ । ଡାକବଙ୍ଗଳାରେ ସେତେବେଳେ ଅନ୍ୟ କେହି ଅତିଥି ନଥିଲେ । ସେଠାରୁ ଗୋଟିଏ ସାଇକେଲ୍ ଯୋଗାଡ଼ କରି କଚେରିଆଡ଼େ ଚାଲିଲି । କଚେରି ପରିସର ଭିତରେ କେତେକ ଲୋକଙ୍କ ସହିତ ବାର୍ତ୍ତାଳାପ ମାଧମରେ ମୁଁ ନୂଆ ଓକିଲାତି ପାସ୍‌କରିଥିବା ବିଷୟ ଓ ସେଠାରେ ଓକିଲାତି କଲେ କିପରି ଚଳିବ ସେ ସମ୍ପର୍କରେ ବୁଝିବାକୁ ଆସିଛି ବୋଲି ଧାରଣା ଦେଇଥିଲି । ମୁଁ ସେଠାରେ ଓକିଲାତି ବ୍ୟବସାୟ ଆରମ୍ଭକଲେ ଭଲ ଚାଲିବ ବୋଲି ସେମାନେ ଆଶ୍ୱାସନା ଦେଇଥିଲେ । କଥାପ୍ରସଙ୍ଗରେ ହାକିମ ଭଲ ହେଲେ ସିନା ଓକିଲାତି ଭଲଚାଲିବ ବୋଲି ପ୍ରଶ୍ନ ଉଠାଇ ସେଠାକାର ହାକିମ କିପରି ଧରଣର ବୋଲି ମୁଁ ପଚାରିଥିଲି । ସେଠାକାର ଏସ୍.ଡ଼ି.ଓ. ଥାଆନ୍ତି ଶ୍ରୀ ସୁରେନ୍ଦ୍ରନାଥ ଶର୍ମା । ବିଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ କଥା କହି ଏସ୍.ଡି.ଓ.ଙ୍କ ସମ୍ବନ୍ଧରେ ଖବର ସଂଗ୍ରହ କରିଥିଲି । ଯେଉଁ ପ୍ରକାରର ଦୁର୍ବ୍ୟବହାର କଥା ଅଭିଯୋଗ ହୋଇଥିଲା ତା'ର ବିଶେଷ କିଛି ସୂଚନା ମିଳିଲାନାହିଁ । ଲୋକମତ ଓ ଆବଶ୍ୟକତା ଅନୁସାରେ ଉନ୍ନତିମୂଳକ କାର୍ଯ୍ୟ ନହୋଇ ଏସ୍.ଡି.ଓ. ଇଚ୍ଛାନୁସାରେ ଅନାବଶ୍ୟକ ସ୍ଥାନମାନଙ୍କରେ କାର୍ଯ୍ୟ ହେଉଥିବାର ଯେଉଁ ଅଭିଯୋଗ ହୋଇଥିଲା ସେ ସମ୍ପର୍କରେ ଖବର ନେଇ ଜାଣିବାକୁ ପାଇଥିଲି ଯେ ରେଭିନ୍ୟୁ ବୋର୍ଡ଼ ମେମ୍ବର ଶ୍ରୀ

ଶିବରମଣ ଯେଉଁସବୁ ସ୍ଥାନମାନଙ୍କରେ କାର୍ଯ୍ୟ କରିବାପାଇଁ ନିର୍ଦ୍ଦେଶ ଦେଇଥିଲେ ସେହି ସ୍ଥାନମାନଙ୍କରେ ଉନ୍ନତିମୂଳକ କାର୍ଯ୍ୟମାନ କରାଯାଉଥିଲା ଏବଂ କେତେକ ସ୍ଥାନ ବଛାଯିବା ସମ୍ବନ୍ଧରେ ଲୋକଙ୍କର ଅଭିଯୋଗ ଥିଲା । କଚେରି ଓ କୋର୍ଟ ସମୟରେ ହାକିମ ସାଧାରଣ ଲୋକମାନଙ୍କ ପ୍ରତି ତଥା ଓକିଲମାନଙ୍କ ପ୍ରତି କିପରି ବ୍ୟବହାର କରୁଥିଲେ ସେ କଥା ବୁଝିବା ପରେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲି ଯେ ହାକିମ ଟିକିଏ ତୁରୁତୁରିଆ ପ୍ରକୃତିର ଲୋକ ଥିଲେ । ତେଣୁ ଶୀଘ୍ର ଶୀଘ୍ର ମୋକଦ୍ଦମାର ବିଚାର ଶେଷ କରିବାପାଇଁ ଓକିଲମାନେ ସେମାନଙ୍କର ବକ୍ତବ୍ୟ ଉପସ୍ଥାପନ କରିବାରେ ଅଧିକ ସମୟ ନନେବାପାଇଁ କହୁଥିଲେ । ଯେଉଁମାନେ ବେଶୀ ସମୟ ଚାହୁଁଥିଲେ ସେମାନଙ୍କ ପ୍ରତି ସେ ସମୟସମୟରେ ଅସନ୍ତୋଷ ପ୍ରକାଶ କରୁଥିଲେ । ଏହା ବ୍ୟତୀତ ସେ ଓକିଲମାନଙ୍କ ପ୍ରତି କୌଣସି ପ୍ରକାରର ଦୁର୍ବ୍ୟବହାର ପ୍ରଦର୍ଶନ କରୁନଥିଲେ । ସେଠାକାର ମୋହରୀରମାନେ ମୋତେ ସେଠାରେ ଓକିଲାତି କରିବାପାଇଁ ଉତ୍ସାହିତ କରି କହିଲେ ଯେ ହାକିମ ଭାରି ଭଲଲୋକ ଓ ମୁଁ ସେଠାକୁ ଆସି ଓକିଲାତି କଲେ ଭଲହେବ । ସେଠାରେ ମୋତେ କେହି ମନ୍ତ୍ରୀ ବୋଲି ଚିହ୍ନିପାରିନଥିଲେ । ଫେରିଆସି ମୁଖ୍ୟମନ୍ତ୍ରୀଙ୍କୁ ସମସ୍ତ ବିଷୟରେ ରିପୋର୍ଟ ଦେଇଥିଲି । କିପରି ଛଦ୍ମବେଶରେ ଯାଇ ଏସବୁ ବିଷୟରେ ଖବର ସଂଗ୍ରହ କରିଥିଲି ତାଙ୍କୁ କହିଲି । ଉନ୍ନତିମୂଳକ କାର୍ଯ୍ୟର ସ୍ଥାନ ନିରୂପଣକୁ କେନ୍ଦ୍ରକରି ସ୍ଥାନୀୟ ହାକିମଙ୍କ ବିରୁଦ୍ଧରେ ସାଧାରଣ ଲୋକମାନଙ୍କର ଯେଉଁ କେତୋଟି ଅଭିଯୋଗ ଥିଲା ସେସବୁ ବିଷୟରେ ରେଭିନ୍ୟୁ ବୋର୍ଡ଼ ସଦସ୍ୟ ଶ୍ରୀ ଶିବରମଣଙ୍କ ସହିତ ମୁଖ୍ୟମନ୍ତ୍ରୀ ନିଜେ ଆଲୋଚନା କରିବା ଉଚିତ ହେବ ବୋଲି ମୁଁ ପରାମର୍ଶ ଦେଇଥିଲି; କାରଣ ତାଙ୍କରି ନିର୍ଦ୍ଦେଶ ଅନୁସାରେ କେତେକ ଉନ୍ନୟନ କାର୍ଯ୍ୟପାଇଁ ସେହି ସ୍ଥାନଗୁଡ଼ିକ ବଛାଯାଇଥିଲା ।

ସ୍ୱରାଷ୍ଟ୍ର ବିଭାଗର ଉପମନ୍ତ୍ରୀ ଥିଲାବେଳେ ସହରମାନଙ୍କରେ ରାତିରେ ଯେଉଁ ପୁଲିସମାନଙ୍କର ଡିଉଟି କରିବା କଥା ସେମାନେ ତାହା ନକରି ଶୋଉଛନ୍ତି ଏବଂ ଥାନାକୁ କେହି ରାତିରେ ସାହାଯ୍ୟପାଇଁ ଆସି ଡାକିଲେ ମଧ୍ୟ ନିଦରୁ ଉଠୁନାହାନ୍ତି ବୋଲି ଅଭିଯୋଗମାନ ଆସିଥିଲା । ଏ ସମ୍ପର୍କରେ ତଦାରଖ କରିବାପାଇଁ ମୁଁ ବିନା କାର୍ଯ୍ୟ-ନିର୍ଘଣ୍ଟରେ ହଠାତ୍ ରାତିରେ ଯାଇ ପୁଲିସ ଷ୍ଟେସନ୍ ପରିଦର୍ଶନ କରୁଥିଲି । ପୁରୀ ସହରରେ ଥିବା ଗୋଟିଏ ଫାଣ୍ଡି ଓ ବାଲେଶ୍ୱର ଟାଉନ୍‌ର ବିଚାରଗଞ୍ଜ ଫାଣ୍ଡିରେ କର୍ତ୍ତବ୍ୟରେ ମୁତୟନ ଥିବା ପୁଲିସମାନେ ଶୋଇଥିବା ସମୟରେ ମୁଁ ନିଜେ ଯାଇ ବନ୍ଧୁକ ନେଇଆସିଥିଲି ଏବଂ ତା'ପରେ ସେମାନଙ୍କୁ ସତର୍କ କରାଇଦେଇଥିଲି । ଏହି କଥା ସେତେବେଳେ ଖବରକାଗଜମାନଙ୍କରେ ପ୍ରକାଶ ପାଇଥିଲା । ଏ ପ୍ରକାର କାର୍ଯ୍ୟକୁ ଜନସାଧାରଣ ଖୁବ୍ ପ୍ରଶଂସା କରିଥିଲେ । ଦିନେ ଶ୍ରୀ ହରେକୃଷ୍ଣ ମହତାବ ଏ ବିଷୟରେ ମୋ ସହିତ ଆଲୋଚନା କରି ଏ ପ୍ରକାର ଆକସ୍ମିକ ପରିଦର୍ଶନରୁ ନିବୃତ୍ତ ରହିବାପାଇଁ ପରାମର୍ଶ ଦେଇଥିଲେ । ସବୁ କଥାରେ ଗୋଟିଏ ସୀମା ଥାଏ; ମୁଁ ଯୁବକ ଥିବାରୁ ଶାସନସମ୍ପର୍କୀୟ ପଦ୍ଧତିର ସୀମା ଅତିକ୍ରମ କରିଯାଉଛି ବୋଲି ସେ ମତ ପ୍ରକାଶ କରିଥିଲେ ।

## ଝିମିଟିଖେଳରୁ ମହାଭାରତ : ଦୁଇଟି ପର୍ବ

୧୯୫୫ ମସିହା ବ୍ୟବସ୍ଥାସଭାର ବଜେଟ୍ ଅଧିବେଶନ ସମୟରେ ଏକ କୌତୂହଳପ୍ରଦ ଘଟଣା ଘଟିଥିଲା । ତତ୍‌କାଳୀନ ବିଧାନସଭାର ସଦସ୍ୟ ଶ୍ରୀ ବୀରେନ୍ ମିତ୍ର ବଡ଼ ଅସ୍ଥିର ଓ ଚଞ୍ଚଳ ପ୍ରକୃତିର ଲୋକ ଥିଲେ । ଦିନେ ବିଧାନସଭା ପ୍ରାଙ୍ଗଣରେ ତାଙ୍କ ପିଲାଳିଆ ସ୍ୱଭାବର ଖେଳ ଆମ୍ଭମାନଙ୍କ ପକ୍ଷରେ କାଳହୋଇଥିଲା । ମଧ୍ୟାହ୍ନ ଭୋଜନପାଇଁ ବିଧାସସଭା ମୁଲତବି ରହିଥାଏ । ଅପରାହ୍ଣ ଅଧିବେଶନ ବସିବାର ଅଳ୍ପ ସମୟ ପୂର୍ବରୁ ବୀରେନ୍‌ବାବୁ ଖାମଖିଆଲ ଭାବରେ ପହରା ଦେଉଥିବା ଜଣେ ପୁଲିସଙ୍କ ହାତରୁ ବନ୍ଧୁକଟି ଛଡ଼ାଇନେଇ ବିଧାନସଭା ଲବିରେ ଏବଂ ଗୃହ ଭିତରେ ବସିଥିବା ସଭ୍ୟମାନଙ୍କୁ ବନ୍ଧୁକ ଦେଖାଇ ମାରି ଗୋଡ଼ାଇବା ଭଳି ବ୍ୟବହାର ଦେଖାଇଥିଲେ । ଏଥିରେ କେତେକ ସଭ୍ୟ ଛାନିଆଁ ହୋଇ ଝରକାବାଟେ ଡିଆଁମାରି ବାହାରପଟେ ପଡ଼ିଲେ ଓ ଆଉ କେତେକ ଟେବୁଲ୍ ଚେୟାର୍ ତଳେ ପଶିଗଲେ ।

ବୀରେନ୍‌ବାବୁ କୌତୁକରେ ଏପରି କରୁଛନ୍ତି ବୋଲି ଜାଣିବା ପରେ ସେମାନେ ଆଶ୍ୱସ୍ତ ହୋଇଥିଲେ । ବୀରେନ୍‌ବାବୁ ଥିଲେ ସରକାରୀ ଦଳର ସଦସ୍ୟ । ତେଣୁ ବିରୋଧୀ ଦଳର ନେତା ଶ୍ରୀ ଶ୍ରଦ୍ଧାକର ସୂପକାର ଏ ଘଟଣାରେ ସରକାରଙ୍କୁ ଅସୁବିଧାରେ ପକାଇବାର ସୁଯୋଗ ପାଇଥିଲେ । ବିଧାନସଭାର ଅପରାହ୍ଣ ବୈଠକ ଯେତେବେଳେ ଆରମ୍ଭହେଲା ଶ୍ରୀ ସୂପକାର ସେହି ଘଟଣା ସମ୍ବନ୍ଧରେ ବାଚସ୍ପତିଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ବୀରେନ୍‌ବାବୁଙ୍କୁ ପାଗଳ ବୋଲି କହି ତାଙ୍କୁ ତୁରନ୍ତ ପାଗଳଖାନାକୁ ପଠାଇବାପାଇଁ ସେ ମତ ବ୍ୟକ୍ତ କରିଥିଲେ । ବାଚସ୍ପତି ସେଦିନ କଥାଟା ପ୍ରତି ଗୁରୁତ୍ୱ ଦେଇନଥିଲେ; କାରଣ ଘଟଣାଟି ବିଧାନସଭା ବୈଠକ ଚାଲିଥିବା ସମୟରେ ଘଟିନଥିଲା । ଉପରୋକ୍ତ ଘଟଣାଟି ବିଧାନସଭା ବିରତି ସମୟର ଘଟଣା ହୋଇଥିବାରୁ ତାହା ନିଜ ନିଜ ମଧ୍ୟରେ ସମାଧାନ ହୋଇଯାଇପାରେ ବୋଲି ସେ ଧାରଣା ପୋଷଣ କରିଥିଲେ । ମାତ୍ର ଶ୍ରୀ ସୂପକାର ଘଟଣାଟି ପ୍ରତି ବାରମ୍ବାର ବାଚସ୍ପତିଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଶେଷରେ ବିଷୟଟିକୁ ସ୍ୱାଧିକାର କମିଟିକୁ ପଠାଇ ଦେବାକୁ ବାଚସ୍ପତି ଘୋଷଣା କରିଥିଲେ । ସ୍ୱାଧୀକାର କମିଟିର ବିଚାର ନିମନ୍ତେ ତାହା ନପଠାଇବା ପାଇଁ ସରକାରୀ ଦଳ ପକ୍ଷରୁ ନାନା ଯୁକ୍ତିକରି ପ୍ରତିରୋଧ କରାଯାଇଥିଲା; କିନ୍ତୁ ବାଚସ୍ପତି ତାଙ୍କ ନିଷ୍ପତ୍ତି ପରିବର୍ତ୍ତନ କରିନଥିଲେ । ପାଟିତୁଣ୍ଡ କରି ସେଦିନ କଥାଟା ଉଡ଼େଇ ଦିଆହୋଇଥିଲା ସତ; କିନ୍ତୁ ସେଦିନ ସରକାରୀଦଳ ଅସ୍ୱସ୍ତି ଅନୁଭବ କରିଥିଲେ ।

୧୯୫୪ ମସିହା ଅକ୍ଟୋବର ମାସରେ ଗଞ୍ଜାମ ଜିଲ୍ଲା ପାରଳାଖେମୁଣ୍ଡିରେ ଓଡ଼ିଆ ଓ ତେଲୁଗୁଭାଷୀଙ୍କ ମଧ୍ୟରେ ପିଲାଖେଳରୁ ଗୋଟିଏ ଅପ୍ରୀତିକର ଘଟଣା ଘଟିଥିଲା । ଓଡ଼ିଆ ଛାତ୍ରମାନେ ଗୋଟିଏ ନାଟକ ଅଭିନୟ କରୁଥିଲେ । ସେଠାରେ କେତେକ ତେଲୁଗୁ ଛାତ୍ର ଗଣ୍ଡଗୋଳ କରିଥିଲେ । ତା'ପରେ ତେଲୁଗୁ ଛାତ୍ରମାନେ ଯେତେବେଳେ ସେମାନଙ୍କର ନାଟକ ଅଭିନୟ କଲେ, ସେଠାର ଓଡ଼ିଆ ଛାତ୍ରମାନେ ଗଣ୍ଡଗୋଳକଲେ । କଥାଟା ହଠାତ୍ ଏପରି ଆକାର ଧାରଣ କରିଥିଲା ଯେ ପରିଶେଷରେ ଏହା ଗୋଟିଏ ଓଡ଼ିଆ-ତେଲୁଗୁ ସାମ୍ପ୍ରଦାୟିକ ସଂଘର୍ଷର ରୂପ ନେଇଥିଲା । ପାରଳାଖେମୁଣ୍ଡି ସହରର ଲୋକସଂଖ୍ୟା ସେତେବେଳେ ପ୍ରାୟ ପଚିଶ ହଜାର ଥିଲା । ସ୍ଥାନୀୟ ପୁଲିସ ଓ ମାଜିଷ୍ଟ୍ରେଟ୍‌ମାନେ ଅବସ୍ଥାକୁ ଆୟତ୍ତ କରିବାପାଇଁ ଉଦ୍ୟମ କରିଥିଲେ ମଧ୍ୟ ସେଠାରେ ପୁଲିସ ସଂଖ୍ୟା ଅଳ୍ପ ଥିବାରୁ ଗଣ୍ଡଗୋଳ ହଠାତ୍ ବ୍ୟାପିଯାଇଥିଲା । ତା'ପରେ ସଙ୍ଗେ ସଙ୍ଗେ ଛତ୍ରପୁରରୁ ଅଧିକସଂଖ୍ୟକ ସଶସ୍ତ୍ର ପୁଲିସ୍ ଯାଇ ପହଞ୍ଚିଥିଲେ । ଅବସ୍ଥା ସମ୍ପୂର୍ଣ୍ଣ ଆୟତ୍ତାଧୀନ ହେଲାବେଳକୁ ଦିନେ ଦୁଇ ଦିନ ଭିତରେ କେତେକ ଦୋକାନପତ୍ର ଲୁଟ୍‌ତରାଜ ଓ ଭଙ୍ଗାରୁଜା ହୋଇସାରିଥିଲ । ଜାତୀୟ ସମ୍ବାଦପତ୍ରମାନଙ୍କରେ ଏହା ପ୍ରକାଶିତ ହୋଇଥିଲା । ପ୍ରକୃତ ଘଟଣା ନଜାଣି ଆନ୍ଧ୍ରର କେତେକ ନେତୃସ୍ଥାନୀୟ ବ୍ୟକ୍ତି ତେଲୁଗୁମାନଙ୍କ ଉପରେ ଓଡ଼ିଆମାନେ ଅତ୍ୟାଚାର କରୁଛନ୍ତି ବୋଲି ବିବୃତିମାନ ଦେଇଥିଲେ ଏବଂ ଓଡ଼ିଶା ସରକାର ସଂଖ୍ୟାନ୍ୟୂନ ଜାତିର ଲୋକଙ୍କର ନିରାପତ୍ତା ରକ୍ଷା କରିବାରେ ବିଫଳ ହୋଇଛନ୍ତି ବୋଲି ଅଭିଯୋଗ ହୋଇଥିଲା । ମୁଁ ନିଜେ ସେ ସ୍ଥାନକୁ ଯାଇ ଓଡ଼ିଆ ଓ ତେଲୁଗୁମାନଙ୍କ ଭିତରେ କିପରି ସଦ୍‌ଭାବ ଫେରିଆସିବ ସେ ଦିଗରେ ଉଦ୍ୟମ କରିଥିଲି । ବ୍ରହ୍ମପୁରର କେତେକ ବ୍ୟକ୍ତି ଆନ୍ଧ୍ର ନେତାମାନଙ୍କୁ ଆସି ଅବସ୍ଥା ଦେଖିଯିବାକୁ ଲେଖିଥିଲେ । ଅବିଭକ୍ତ ମାନ୍ଦ୍ରାଜ ପ୍ରଦେଶର ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ଟି. ପ୍ରକାଶମ୍ ଆସିବାପାଇଁ ଇଚ୍ଛାପ୍ରକାଶ କରିଥିଲେ ଏବଂ ଗୋଟିଏ ନିର୍ଦ୍ଦିଷ୍ଟ ଦିନ ଆସି ପାରଳାଖେମୁଣ୍ଡିରେ ପହଞ୍ଚିବେ ବୋଲି ତାଙ୍କର ବ୍ରହ୍ମପୁରର ବନ୍ଧୁମାନଙ୍କ ପାଖକୁ ଲେଖିଥିଲେ । ଶ୍ରୀ ଟି. ପ୍ରକାଶମ୍ ଜଣେ ବୟୋଜ୍ୟେଷ୍ଠ ନେତା ଥିଲେ । ସେ ଆସି କାଳେ କିଛି ଏକତରଫା ବିବୃତି ଦେଇ ପରିସ୍ଥିତିକୁ ଅଧିକ ଜଟିଳ କରିବା ସଙ୍ଗେ ସଙ୍ଗେ ସର୍ବଭାରତୀୟ ସ୍ତରରେ ଓଡ଼ିଶା ସରକାରଙ୍କ ପ୍ରତି ଖରାପ ଧାରଣା ସୃଷ୍ଟିକରିପାରନ୍ତି ଭାବି ମୁଖ୍ୟମନ୍ତ୍ରୀ ଶ୍ରୀ ଚୌଧୁରୀ ବଡ଼ ଚିନ୍ତିତ ଅବସ୍ଥାରେ ଥିଲେ । ତେଣୁ ସେଠାକୁ ଯାଇ ପରିସ୍ଥିତିକୁ ଠିକ୍ ବାଟରେ ସମ୍ଭାଳିନେବାପାଇଁ ସେ ମୋ ଉପରେ ଦାୟିତ୍ୱ ଦେଇଥିଲେ । ଶ୍ରୀ ଟି. ପ୍ରକାଶମ୍‌ଙ୍କ ଆସିବାପାଇଁ ଧାର୍ଯ୍ୟ ଦିନର ଗୋଟିଏ ଦିନ ଆଗରୁ

ମୁଁ ଯାଇ ସେଠାରେ ପହଞ୍ଚିଥିଲି । ଶ୍ରୀ ଟି. ପ୍ରକାଶମ୍‌ଙ୍କର ବନ୍ଧୁମାନେ ତାଙ୍କର ରହିବା, ଖାଇବା ଓ ଯିବାଆସିବାର ସ୍ୱତନ୍ତ୍ର ବ୍ୟବସ୍ଥା କରିଥାଆନ୍ତି । ମୁଁ ପହଞ୍ଚିବା ପରେ ଗଞ୍ଜାମ କଲେକ୍ଟରଙ୍କୁ କହିଥିଲି ଯେ ଶ୍ରୀ ଟି. ପ୍ରକାଶମ୍‌ଙ୍କର ଯିବା ଆସିବା, ରହିବା ଓ ଖାଇବା ପିଇବାର ସମସ୍ତ ବନ୍ଦୋବସ୍ତ ଓଡ଼ିଶା ସରକାରଙ୍କ ତରଫରୁ କରାଯିବ । ସେ ଯେଉଁ ସ୍ଥାନରେ ଓ ଯେଉଁ ସମୟରେ ଓଡ଼ିଶା ଭିତରକୁ ପ୍ରବେଶ କରିବା କଥା ମୁଁ କଲେକ୍ଟର ପ୍ରଭୃତିଙ୍କୁ ଧରି ଆଗରୁ ସେହି ସ୍ଥାନରେ ଅପେକ୍ଷା କରି ରହିଥିଲି । ଆମର ତେଲୁଗୁଭାଷୀ ବନ୍ଧୁମାନେ ସେଠାରେ ଆମର ଉପସ୍ଥିତି ଯୋଗୁଁ ଟିକିଏ ଅଡୁଆ ଅନୁଭବ କରୁଥିବାର ମନେହେଉଥାଏ । ମୁଁ ପୂର୍ବରୁ କେବେ ଶ୍ରୀ ଟି. ପ୍ରକାଶମ୍‌ଙ୍କୁ ଦେଖିବାର ସୁଯୋଗ ପାଇନଥିଲି । ମାତ୍ର ସେ ଜଣେ ପ୍ରତିଷ୍ଠିତ ନେତା ଥିବାରୁ ତାଙ୍କ ବିଷୟରେ ବହୁତ କଥା ଜାଣିଥିଲି । ତାଙ୍କ ଗାଡ଼ି ଆସି ଆମ୍ଭେମାନେ ଠିଆହୋଇଥିବା ସ୍ଥାନରେ ଅଟକିଲା । ମୁଁ ସ୍ୱାଗତ କରିବା ସଙ୍ଗେ ସଙ୍ଗେ ତାଙ୍କ ପ୍ରତି ଆମ ମୁଖ୍ୟମନ୍ତ୍ରୀଙ୍କର ଶ୍ରଦ୍ଧା ଓ ଶୁଭେଚ୍ଛା ଜଣାଇଥିଲି । କିନ୍ତୁ ମୁଁ ତାଙ୍କୁ ପଚାରିଲି ଯେ ଓଡ଼ିଶା ସରକାର ତାଙ୍କଠାରେ କି ଅପରାଧ କଲା ଯେ ତାଙ୍କର ଓଡ଼ିଶା ଆଗମନ ବିଷୟ ଆମ ସରକାରଙ୍କୁ ଜଣାଇଲେ ନାହିଁ । ତାହା ଶୁଣି ତାଙ୍କର ଏ ବିଷୟରେ ତ୍ରୁଟି ରହିଯାଇଥିବାର ଅନୁଭବ କରି ସେ ଦୁଃଖ ପ୍ରକାଶ କରିଥିଲେ । ତା'ପରେ ସେ ଆମ ରାଜ୍ୟ ସରକାରଙ୍କ ଅତିଥି ବୋଲି ଜଣାଇଥିଲି ଏବଂ ସେ ସାଦରେ ଆମର ଆତିଥ୍ୟ ଗ୍ରହଣକରିଥିଲେ ଓ ମୋ ସହିତ ଡାକବଙ୍ଗଳାକୁ ଯାଇଥିଲେ । ସେଠାରେ ସମସ୍ତ ତେଲୁଗୁଭାଷୀ ବନ୍ଧୁମାନେ ଯାଇ ଉପସ୍ଥିତ ହୋଇଥିଲେ । ଆମ୍ଭମାନଙ୍କ ଉପସ୍ଥିତିରେ ସବୁ କଥା ଆଲୋଚିତ ହୋଇଥିଲା । ତେଲୁଗୁ ବନ୍ଧୁମାନେ ସେମାନଙ୍କ କଥା କହିଥିଲେ । ଓଡ଼ିଆମାନେ ମଧ୍ୟ ସେମାନଙ୍କ କଥା ଶ୍ରୀ ଟି. ପ୍ରକାଶମ୍‌ଙ୍କ ଆଗରେ ପ୍ରକାଶ କରିଥିଲେ । ସରକାରଙ୍କ ପକ୍ଷରୁ କି ପଦକ୍ଷେପ ନିଆଯାଇଛି ମୁଁ ସେ କଥା ବୁଝାଇଥିଲି । ପାରଳାଖେମୁଣ୍ଡିରେ କିଛି ସମୟ ଅବସ୍ଥାନ କଲା ପରେ ମଧ୍ୟାହ୍ନ ଭୋଜନ ସାରି ଉଭୟେ ଏକାସାଙ୍ଗରେ ବ୍ରହ୍ମପୁର ବାହାରିଲୁ । ବ୍ରହ୍ମପୁର ଡାକବଙ୍ଗଳାରେ ସରକାରଙ୍କ ତରଫରୁ ତାଙ୍କର ରହିବାର ବ୍ୟବସ୍ଥା କରାଯାଇଥିଲା । ବ୍ରହ୍ମପୁରର ତେଲୁଗୁ ଓ ଓଡ଼ିଆ ବନ୍ଧୁମାନେ ତାଙ୍କୁ ଘଟଣା ସମ୍ବନ୍ଧରେ ସବୁ କଥା କହିଥିଲେ । ସନ୍ଧ୍ୟାବେଳେ ବ୍ରହ୍ମପୁର ଟାଉନ୍‌ହଲ୍‌ରେ ଗୋଟିଏ ସଭା ଆୟୋଜନ କରାଯାଇଥିଲା । ଉକ୍ତ ସଭାରେ ସେ ଅତୀତରେ ଘଟିଯାଇଥିବା ପରିସ୍ଥିତିପାଇଁ ଉଭୟ ସଂପ୍ରଦାୟକୁ ଦାୟୀ କରି ଦୁଃଖ ପ୍ରକାଶ କରିଥିଲେ ଏବଂ ଓଡ଼ିଶା ସରକାର ପାରଳାଖେମୁଣ୍ଡିର ଦଙ୍ଗା ପରେ ଯେଉଁସବୁ ପଦକ୍ଷେପ ନେଇଥିଲେ ତାକୁ ପ୍ରଶଂସା କରି କହିଥିଲେ । ସେ ସଭାରେ ମୁଁ ଓଡ଼ିଶାବାସୀ ଓ ସରକାରଙ୍କ ତରଫରୁ ତାଙ୍କୁ ଧନ୍ୟବାଦ ଅର୍ପଣ କରିଥିଲି । ତା'ପରଦିନ ବିଦାୟ ନେଲାବେଳେ ଶ୍ରୀ ପ୍ରକାଶମ୍ କହିଥିଲେ, "Mr. Routray, you have managed me well. Please convey my thanks to your Chief Minister."

## ବିନୋବାଜୀଙ୍କ ପଦଯାତ୍ରା

ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ଓଡ଼ିଶାରେ ଭୂଦାନ ଆନ୍ଦୋଳନ ବ୍ୟାପକଭାବରେ ପ୍ରସାରିତ ହୋଇଥିଲା । ୧୯୫୫ ମସିହା ଜାନୁଆରୀ ୨୬ ତାରିଖ ପ୍ରଜାତନ୍ତ୍ର ଦିବସରେ ଆଚାର୍ଯ୍ୟ ବିନୋବାଭାବେ ଓଡ଼ିଶା ଆଗମନ କରିଥିଲେ । ବିନୋବାଜୀ ଓଡ଼ିଶା ଆସିବା ପୂର୍ବରୁ ପଶ୍ଚିମ-ବଙ୍ଗଳାରେ ପଦଯାତ୍ରା କରୁଥିଲେ । ଓଡ଼ିଶାରେ ପଦାର୍ପଣ କରିବାର ପୂର୍ବଦିନ ସେ ମେଦିନୀପୁର ଜିଲ୍ଲାର ଦାନ୍ତୁନଠାରେ ଥିଲେ । ଜାନୁୟାରୀ ୨୬ ତାରିଖ ଦିନ ସେ ବାଲେଶ୍ୱର ଜିଲ୍ଲା ସୀମାରେ ଅବସ୍ଥିତ ଲକ୍ଷ୍ମଣନାଥ ରୋଡ଼ରେ ଆସି ପହଞ୍ଚିଥିଲେ । ରାଜ୍ୟ ସରକାରଙ୍କ ପକ୍ଷରୁ ସ୍ୱାଗତ ଜଣାଇବାପାଇଁ ମୁଁ ସେଠାରେ ଉପସ୍ଥିତ ଥିଲି । ଶ୍ରୀ ଅତୁଲ୍ୟ ଘୋଷ, ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ସେନ, ଶ୍ରୀ ନିକୁଞ୍ଜବିହାରୀ ମାଇତି, ଶ୍ରୀମତୀ ଆଭା ମାଇତି ଓ ଶ୍ରୀ ଚାରୁଚନ୍ଦ୍ର ମହାନ୍ତି ପ୍ରମୁଖ ପଶ୍ଚିମ-ବଙ୍ଗଳାର ନେତାମାନେ ବିନୋବାଜୀଙ୍କ ସହିତ ଆସି ଓଡ଼ିଶା ସୀମାରୁ ତାଙ୍କଠାରୁ ବିଦାୟ ନେଇ ଯାଇଥିଲେ । ତା'ପରେ ଆମ୍ଭେମାନେ ତାଙ୍କୁ ସ୍ୱାଗତ ଜଣାଇ ଲକ୍ଷ୍ମଣନାଥ

ରୋଡ଼ରେ ଖୋଲାଯାଇଥିବା ଏକ ଅସ୍ଥାୟୀ କ୍ୟାମ୍ପକୁ ଶୋଭାଯାତ୍ରାରେ ପାଛୋଟି ଆଣିଥିଲୁ । ଶ୍ରୀ ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର ଦାସ, ଶ୍ରୀମତୀ ରମାଦେବୀ, ଶ୍ରୀମତୀ ମାଳତୀ ଚୌଧୁରୀ, ଶ୍ରୀ ମନମୋହନ ଚୌଧୁରୀ, ଶ୍ରୀ ନୀଳାମ୍ବର ଦାସ, ଶ୍ରୀ କରୁଣାକର ପାଣିଗ୍ରାହୀ ଓ ସର୍ଦ୍ଦାର ସୁରେନ୍ଦ୍ରନାଥ ଦାସ ପ୍ରମୁଖ ତାଙ୍କୁ ସ୍ୱାଗତ ଜଣାଇ ତାଙ୍କ ସହିତ ପଦଯାତ୍ରା ନିମନ୍ତେ ସେଠାରେ ଉପସ୍ଥିତ ଥାଆନ୍ତି । ଲକ୍ଷ୍ମଣନାଥ ରୋଡ଼ରେ ଗୋଟିଏ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା । ଉକ୍ତ ସଭାରେ ବିନୋବାଜୀ ଭୂଦାନ ସମ୍ବନ୍ଧରେ ଲୋକଙ୍କୁ ବୁଝାଇଥିଲେ । ସେଦିନ ରାତିରେ ବିନୋବାଜୀ ଲକ୍ଷ୍ମଣନାଥ ରୋଡ଼ରେ ରହି ପରଦିନ ଓଡ଼ିଶାରେ ତାଙ୍କର ପଦଯାତ୍ରା ଆରମ୍ଭ କରିଥିଲେ । ଆମ ରାଜ୍ୟର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ଓଡ଼ିଶାରେ ଭୂଦାନ ଆନ୍ଦୋଳନରେ ମୁଖ୍ୟଭୂମିକା ଗ୍ରହଣ କରିଥିଲେ । ସେ ନିଜେ ଭୂଦାନ କାର୍ଯ୍ୟରେ ବିଶେଷ ଆଗ୍ରହ ଓ ଉତ୍ସାହ ପ୍ରଦର୍ଶନ କରୁଥିବାରୁ ସରକାରୀ କର୍ମଚାରୀମାନେ ମଧ ଆନ୍ଦୋଳନର ସଫଳତାପାଇଁ କାର୍ଯ୍ୟ କରିଥିଲେ । କେତେକ କ୍ଷେତ୍ରରେ ଶାସନକଳ ଭୂଦାନ ଆନ୍ଦୋଳନକୁ ସାହାଯ୍ୟ କରିବାପାଇଁ ସରକାରଙ୍କର ନିର୍ଦ୍ଦେଶ ମଧ ଥିଲା । କାରଣ ଏହି ଆନ୍ଦୋଳନ ମାଧମରେ ଭୂସଂସ୍କାରକୁ ତ୍ୱରାନ୍ୱିତ କରିବାପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରାଯାଇପାରୁଥିଲା । ବିନୋବାଜୀ ପ୍ରତ୍ୟେକ ଜମିମାଲିକଙ୍କୁ ନିଜ ଜମିର ଏକ-ଷଷ୍ଠାଂଶ ଭୂମିହୀନଙ୍କୁ ଦାନ କରିବାପାଇଁ ନିବେଦନ କରୁଥିଲେ । ଓଡ଼ିଶାର ବହୁ ଅଞ୍ଚଳରେ ବିନୋବାଜୀ ପଦଯାତ୍ରା କରିଥିଲେ । ତା'ଫଳରେ ବହୁ ଜମିମାଲିକ ଭୂମିହୀନମାନଙ୍କୁ ଭୂମିଦାନ କରିଥିଲେ । ଏତେ ପରିମାଣରେ ଜମି ଲୋକମାନେ ଦାନକରିଥିଲେ ଯେ ତାକୁ ବିଧିବଦ୍ଧଭାବରେ କିପରି ଭୂମିହୀନମାନଙ୍କ ମଧରେ ବଣ୍ଟନ କରାଯିବ, ତା'ର ବ୍ୟବସ୍ଥା କରିବାପାଇଁ ଆମ ରାଜ୍ୟରେ ଗୋଟିଏ ଭୂଦାନ ଯଜ୍ଞ ସମିତି ଗଠିତ ହୋଇଥିଲା ଏବଂ ତା'ର ପ୍ରଥମ ସଭାପତିରୂପେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଦାୟିତ୍ୱ ଗ୍ରହଣ କରିଥିଲେ । ଏ କଥା ନିଶ୍ଚିତଭାବରେ ସ୍ୱୀକାର କରିବାକୁ ପଡ଼ିବ ଯେ ଅନେକ ଭୂମିହୀନ ଲୋକ ଏହି ଆନ୍ଦୋଳନ ଫଳରେ କିଛି କିଛି ଜମି ପାଇ ଉପକୃତ ହୋଇଥିଲେ । ମୁଖ୍ୟମନ୍ତ୍ରୀ ପଦ ଛାଡ଼ିବା ପରେ ଶ୍ରୀ ନବକୃଷ୍ଣ ଚୌଧୁରୀ ତାଙ୍କର ସମସ୍ତ ଶକ୍ତି ଓ ସାମର୍ଥ୍ୟ ଭୂଦାନ ଆନ୍ଦୋଳନରେ ବିନିଯୋଗ କରିଥିଲେ ଏବଂ ତାଙ୍କ ସହିତ ତାଙ୍କ ପରିବାରର ସମସ୍ତେ ଭୂଦାନ ଓ ସର୍ବୋଦୟ ଆନ୍ଦୋଳନରେ ନିଜନିଜକୁ ଉତ୍ସର୍ଗ କରିଥିଲେ । ଏପ୍ରକାର ତ୍ୟାଗ ଓ ଆଦର୍ଶ ସମଗ୍ର ଭାରତବର୍ଷରେ ବିରଳ । ଭୂଦାନ ଓ ସର୍ବୋଦୟ ଆନ୍ଦୋଳନକୁ ତ୍ୱରାନ୍ୱିତ କରିବା ଦିଗରେ କାର୍ଯ୍ୟ କରିବା ଥିଲା ନବବାବୁଙ୍କ ମୁଖ୍ୟମନ୍ତ୍ରୀ ପଦ ତ୍ୟାଗ କରିବାର ଅନ୍ୟତମ କାରଣ । ନବବାବୁଙ୍କର ଗୋଟିଏ ବିଶିଷ୍ଟ ଗୁଣ ହେଉଛି ଯେ ଯେତେବେଳେ ଯେଉଁ ଆଦର୍ଶରେ ସେ ଅନୁପ୍ରାଣିତ ହେଉଥିଲେ ସେଥିରେ ସେ ଏକଧାନରେ ନିମଗ୍ନ ହୋଇଯାଆନ୍ତି । ବିନୋବାଜୀଙ୍କ ଆଦର୍ଶରେ ନବବାବୁ ଏଭଳି ଭାବରେ ଅନୁପ୍ରାଣିତ ହୋଇଥିଲେ ଯେ ସେ ବିନୋବାଜୀଙ୍କର ଗୋଟିଏ କାଠ ପ୍ରତିମୂର୍ତ୍ତି କରି ବେଳେବେଳେ ତାକୁ କାଖରେ ଧରି ବୁଲୁଥିଲେ । ଗତ ପଚିଶ ବର୍ଷ ହେଲା ସରକାରଙ୍କର ଭୂମିହୀନଙ୍କୁ ଭୂମିଦେବା ଯୋଜନା କାର୍ଯ୍ୟକାରୀ ହେଉଛି ସତ; କିନ୍ତୁ ଭୂଦାନ ଆନ୍ଦୋଳନ ଫଳରେ ଯେତେ ଲୋକ ଜମି ପାଇଥିଲେ ତା'ଠାରୁ ଅଧିକ ଲୋକଙ୍କୁ ବର୍ତ୍ତମାନ ସୁଦ୍ଧା ସରକାର ଜମି ପଟ୍ଟା ଦେଇପାରିନାହାନ୍ତି ।

## ଓଡ଼ିଶାରେ ସୀମା-ଆନ୍ଦୋଳନ : କର୍ତ୍ତବ୍ୟରେ ବିରୋଧାଭାସ

ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କର ମନ୍ତ୍ରିମଣ୍ଡଳ ସମୟରେ ମୁଁ ସ୍ୱରାଷ୍ଟ୍ର ବିଭାଗର ଉପମନ୍ତ୍ରୀ ହିସାବରେ ରାଜ୍ୟର ଶାନ୍ତିଶୃଙ୍ଖଳା ରକ୍ଷା କରିବା ଦାୟିତ୍ୱରେ ଥିଲି । ସେ ସମୟର ସବୁଠାରୁ ବଡ଼ ଘଟଣା ହୋଇଥିଲା ରାଜ୍ୟର ସୀମା-ଆନ୍ଦୋଳନ । ଷଢ଼େଇକଳା ଓ ଖରସୁଆଁ ପ୍ରଥମେ କିପରି ଆମ ରାଜ୍ୟରେ ମିଶି ଥିଲା ଏବଂ ପରେ ତାହା କିପରି ଯାଇ ବାହାର ରାଜ୍ୟ ସହିତ ସାମିଲ ହୋଇଥିଲା ସେ ବିଷୟରେ କେତେକ କଥା ମୁଁ ପୂର୍ବରୁ କହିଛି । ଆମ ରାଜ୍ୟର ସୀମା ବାହାରେ କେତେକ ଓଡ଼ିଆ ଭାଷାଭାଷୀ ଅଞ୍ଚଳ

ରହିଯାଇଥିବାରୁ ଆମ୍ଭମାନଙ୍କ ମନରେ ଯେପରି ଅସନ୍ତୋଷ ଥିଲା, ଅନ୍ୟାନ୍ୟ ବହୁ ରାଜ୍ୟରେ ମଧ୍ୟ ତଦ୍ରୂପ ଅସନ୍ତୋଷ ପ୍ରକାଶ ପାଉଥିଲା । ତାହା ବ୍ୟତୀତ ସ୍ୱାଧୀନତା ପରେ ଜରୁରୀକାଳୀନ ଭିତ୍ତିରେ ଦେଶୀୟ ରାଜ୍ୟଗୁଡ଼ିକୁ ସମଗ୍ର ଭାରତବର୍ଷରେ ଖାସ୍ ଶାସନାଧୀନ କରାଯାଇଥିବାରୁ ସେସବୁ ରାଜ୍ୟର ଭାଷାଭାଷୀଙ୍କ ପ୍ରତି ବିଶେଷଭାବେ ଦୃଷ୍ଟି ଦିଆନଯାଇ ତରବରିଆ ଭାବରେ କେତେକ ଅଞ୍ଚଳକୁ ନେଇ କେତେକ ରାଜ୍ୟ ସହିତ ମିଶାଇ ଦିଆଯାଇଥିଲା ଓ କେତେକ ନୂତନ ରାଜ୍ୟ ମଧ୍ୟ ଗଠିତ ହୋଇଥିଲା ; ସେଥିପାଇଁ ରାଜ୍ୟ ପୁନର୍ଗଠନର ଆବଶ୍ୟକତା ପଡ଼ିଥିଲା । ସେସବୁ ବିଷୟ ବିଚାରାଲୋଚନା କରି ଭାରତ ସରକାରଙ୍କୁ ପରାମର୍ଶ ଦେବାପାଇଁ ସୟଦ୍ ଫଜଲ୍ ଅଲ୍ଲୀଙ୍କ ସଭାପତିତ୍ୱରେ ୧୯୫୩ ମସିହାରେ କେନ୍ଦ୍ର ସରକାର ଗୋଟିଏ ରାଜ୍ୟ ପୁନର୍ଗଠନ କମିଶନ୍ ଗଠନ କରିଥିଲେ । ଉକ୍ତ କମିଶନ୍‌ରେ ଫଜଲ୍ ଅଲ୍ଲୀଙ୍କ ବ୍ୟତୀତ ସର୍ଦ୍ଦାର କେ.ଏମ୍.ପାନିକର୍ ଓ ପଣ୍ଡିତ ହୃଦୟନାଥ କୁଞ୍ଜରୁ ସଭ୍ୟ ଥିଲେ । ସୟଦ୍ ଫଜଲ୍ ଅଲ୍ଲୀ ଥିଲେ ଓଡ଼ିଶାର ରାଜ୍ୟପାଳ । ନବନିଯୁକ୍ତ ରାଜ୍ୟ ପୁନର୍ଗଠନ କମିଶନର ସଭାପତି ହେବାପାଇଁ ତାଙ୍କୁ ରାଜ୍ୟପାଳ ପଦ ଛାଡ଼ିବାକୁ ପଡ଼ିଥିଲା । ମୁଁ ସେତେବେଳେ ଏ କଥାଟାକୁ ଆଦୌ ପସନ୍ଦ କରିନଥିଲି । ମୁଁ ଭାବିଥିଲି ଯେ ତାଙ୍କର ଏ ନିଯୁକ୍ତିଦ୍ୱାରା ଆମ ରାଜ୍ୟର ବିଶେଷ କିଛି ଲାଭ ହେବନାହିଁ; କାରଣ ସେ ଆମ ରାଜ୍ୟର ରାଜ୍ୟପାଳ ହେବା ପୂର୍ବରୁ ବିହାରର ପାଟନା ହାଇକୋର୍ଟରେ ପ୍ରଧାନ ବିଚାରପତି ଥିଲେ । ତେଣୁ ନିଷ୍ପତ୍ତି ନେବାବେଳକୁ ସେ ନିଶ୍ଚୟ ଅଡୁଆରେ ପଡ଼ିବେ ଓ ସେ ପ୍ରକାର ଅଡୁଆକୁ ଏଡାଇବାକୁ ଯାଇ ଉଭୟ ରାଜ୍ୟକୁ ସନ୍ତୁଷ୍ଟ କରିବାପାଇଁ ଚେଷ୍ଟା କରିବେ । ମୋର ଆଶଙ୍କା ସତ୍ୟରେ ପରିଣତ ହୋଇଥିଲା । ସବୁ ରାଜ୍ୟମାନଙ୍କୁ ରାଜ୍ୟ ପୁନର୍ଗଠନ କମିଶନଙ୍କ ପାଖରେ ସେମାନଙ୍କର ଦାବିସମ୍ବଳିତ ସ୍ମାରକପତ୍ର ଦେବାକୁପଡ଼ିଥିଲା । ଆମ ରାଜ୍ୟ ପାଇଁ ସ୍ମାରକପତ୍ର ପ୍ରସ୍ତୁତ କରିବାର ଦାୟିତ୍ୱ ସ୍ୱରାଷ୍ଟ୍ର ବିଭାଗ ଉପରେ ପଡ଼ିଥିଲା । ଏଥିପାଇଁ ଆମ୍ଭମାନଙ୍କୁ ବହୁ ପରିଶ୍ରମ କରିବାକୁ ପଡ଼ିଥିଲା । ଆମ ସୌଭାଗ୍ୟକୁ ଶ୍ରୀ ରାଧାନାଥ ରଥ ଥିଲେ ରାଜ୍ୟର ଅର୍ଥ ଓ ଶିକ୍ଷା ତଥା ସମାଜକଲ୍ୟାଣ ବିଭାଗର ମନ୍ତ୍ରୀ । ତାଙ୍କରି ତତ୍ତ୍ୱାବଧାନରେ ବସ୍ତୁତଃ ରାଜ୍ୟ ସରକାରଙ୍କର ସ୍ମାରକପତ୍ରଟି ପ୍ରସ୍ତୁତ ହୋଇଥିଲା । ରାଜ୍ୟର ଭୌଗୋଳିକ ତଥା ଐତିହାସିକ ସ୍ଥିତି ସମ୍ବନ୍ଧରେ ତାଙ୍କର ଯେ ଯଥେଷ୍ଟ ଜ୍ଞାନ ଥିଲା ତାହା ସ୍ୱୀକାର୍ଯ୍ୟ ଏବଂ ସବୁପ୍ରକାର ତଥ୍ୟ ସଂଗ୍ରହ କରିବା ଦିଗରେ ସେ ଯେ ଖୁବ୍ ପାରଙ୍ଗମ ଥିଲେ ଏ କଥା ମଧ୍ୟ ନିଃସନ୍ଦେହରେ କୁହାଯାଇପାରେ । ବିହାରରେ ଥିବା ସିଂହଭୂମି, ଷଡ଼େଇକଳା, ଖରସୁଆଁ ତଥା ଆନ୍ଧ୍ରପ୍ରଦେଶ, ମଧ୍ୟପ୍ରଦେଶ ଓ ପଶ୍ଚିମବଙ୍ଗ ସହିତ ମିଶି ରହିଥିବା ଓଡ଼ିଆଭାଷାଭାଷୀ ଅଞ୍ଚଳଗୁଡ଼ିକର ଲୋକସଂଖ୍ୟା, ଭାଷା, ଶିକ୍ଷା, ସଂସ୍କୃତି, ଅବସ୍ଥିତି ତଥା ଓଡ଼ିଶା ସହିତ ସେ ଅଞ୍ଚଳଗୁଡ଼ିକର ସମ୍ପର୍କ ସମ୍ବନ୍ଧୀୟ ସମସ୍ତ ତଥ୍ୟ ସଂଗ୍ରହ କରି ସେସବୁ ଅଞ୍ଚଳକୁ ଓଡ଼ିଶା ସହିତ ମିଶାଇବାପାଇଁ ବଳିଷ୍ଠ ଯୁକ୍ତି, ପ୍ରାମାଣିକ ତଥ୍ୟ ତଥା ଦାବି ସ୍ମାରକପତ୍ରରେ ଉଲ୍ଲେଖ କରାଯାଇ କମିଶନଙ୍କ ଆଗରେ ଉପସ୍ଥାପିତ କରାଯାଇଥିଲା । ଏଥିପୂର୍ବରୁ ମଧ୍ୟ ୧୯୫୩ ମସିହାରେ ଓଡ଼ିଶା ବିଧାନସଭାରେ ଓଡ଼ିଶା ସହିତ ଷଡ଼େଇକଳା ଓ ଖରସୁଆଁର ପୁନଃମିଶ୍ରଣପାଇଁ ଗୋଟିଏ ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା ଏବଂ ସେ ପ୍ରସ୍ତାବକୁ କେନ୍ଦ୍ର ସରକାରଙ୍କ ପାଖକୁ ବିଚାରପାଇଁ ପଠାଇଦିଆଯାଇଥିଲା । ସେ ପ୍ରସ୍ତାବ ପ୍ରତି ମଧ୍ୟ କମିଶନଙ୍କ ଦୃଷ୍ଟି ଆକର୍ଷଣ କରାଯାଇଥିଲା । ଏହା ସତ୍ତ୍ୱେ ୧୯୫୫ ନଭେମ୍ବର ମାସରେ ରାଜ୍ୟ ପୁନର୍ଗଠନ କମିଶନ ଯେଉଁ ରିପୋର୍ଟ ଦେଲେ ତାହା ଓଡ଼ିଶାବାସୀଙ୍କ ପକ୍ଷରେ ଘୋର ନୈରାଶ୍ୟଜନକ ହୋଇଥିଲା । ଓଡ଼ିଶାର ଯଥାର୍ଥ ଦାବି ପ୍ରତି କମିଶନ ପୂରାପୂରି ଧ୍ୟାନ ଦେଇନାହାନ୍ତି ଏବଂ ଆମ ରାଜ୍ୟ ପକ୍ଷରୁ ଦିଆଯାଇଥିବା ସ୍ମାରକପତ୍ରର ଯଥାଯଥ ବିଚାର କରାଯାଇନାହିଁ ବୋଲି ଓଡ଼ିଶାବାସୀଙ୍କ ପକ୍ଷରୁ ଅଭିଯୋଗ ଓ ଅସନ୍ତୋଷ ପ୍ରକାଶ ପାଇଥିଲା । ସେହି ବର୍ଷ ନଭେମ୍ବର ମାସରେ କମିଶନଙ୍କ ରିପୋର୍ଟ ପ୍ରକାଶ ପାଇଲାବେଳକୁ ଆମ ରାଜ୍ୟର ବିଧାନସଭା ଅଧିବେଶନ ଚାଲିଥାଏ । କମିଶନଙ୍କ ରିପୋର୍ଟ ସମ୍ପର୍କରେ ବିଧାନସଭାରେ ଘୋର ଉଦ୍‌ବେଗ ପ୍ରକାଶପାଇଥିଲା । ଓଡ଼ିଶା ପ୍ରତି କମିଶନ ଅନ୍ୟାୟ କରିଛନ୍ତି ବୋଲି

ଦଳମତନିର୍ବିଶେଷରେ କ୍ଷୋଭ ପ୍ରକାଶ ପାଇଥିଲା । ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ, ଅର୍ଥ ଓ ଶିକ୍ଷାମନ୍ତ୍ରୀ ଶ୍ରୀ ରାଧାନାଥ ରଥ, ପଣ୍ଡିତ ନୀଳକଣ୍ଠ ଦାଶ, ପଣ୍ଡିତ ଗୋଦାବରୀଶ ମିଶ୍ର, ଶ୍ରୀ ଶ୍ରଦ୍ଧାକର ସୂପକାର, ଶ୍ରୀ ବିଜୟ କୁମାର ପାଣି (ଯାହାଙ୍କର ପୈତୃକ ବାସସ୍ଥାନ ଥିଲା ସିଂହଭୂମି), ଶ୍ରୀ ପ୍ରତାପ କେଶରୀ ଦେଓ, ଶ୍ରୀ ନିଶାମଣି ଖୁଣ୍ଟିଆ ଓ ଶ୍ରୀ ହରିହର ଦାସ ପ୍ରମୁଖ ଆଲୋଚନାରେ ଭାଗନେଇଥିଲେ । ପରସ୍ପର ପ୍ରତି ଦୋଷାରୋପ କରିବା ଅଭ୍ୟାସ ଆମେ ସେତେବେଳେ ମଧ୍ୟ ଭୁଲିନଥିଲୁ । ନାନା ତର୍କବିତର୍କ ଓ ବିଚାରାଲୋଚନା ପରେ ରାଜ୍ୟ ପୁନର୍ଗଠନ କମିଶନଙ୍କ ନିଷ୍ପତ୍ତିର ପୁନର୍ବିଚାରପାଇଁ ଗୋଟିଏ ପ୍ରସ୍ତାବ ବିଧାନସଭାରେ ୧୯୫୫ ମସିହା ନଭେମ୍ବର ୨୮ ତାରିଖରେ ସର୍ବସମ୍ମତିକ୍ରମେ ଗୃହୀତ ହୋଇ କେନ୍ଦ୍ର ସରକାରଙ୍କ ନିକଟକୁ ପଠାଯାଇଥିଲା । ପ୍ରସ୍ତାବଟି ହେଲା :

"This Assembly notes with deep regret and disappointment that the Commission has completely ignored the claims of Orissa so far as the re-adjustment of its boundaries is concerned. A perusal of the recommendations reveals that the Commission has not given any consideration to the facts and arguments advanced by the State Government in their Memorandum in regard to this matter.

This Assembly, therefore, urges upon the Government of India to review the recommendations of the Commission in the light of the just and legitimate claims put forth by the State Government in their Memoranda and take such measures as are necessary to readjust the boundaries of the Orissa State so as to integrate with it the areas claimed, particularly the Sadar and Saraikala Sub-divisions of Singhbhum District of Bihar."

## ଓଡ଼ିଶା କଂଗ୍ରେସର ସ୍ୱାଭାବିକ ପ୍ରତିକ୍ରିୟା

ଓଡ଼ିଶା ଓ ଅନ୍ୟ ରାଜ୍ୟମାନଙ୍କ ସମ୍ପର୍କରେ ରାଜ୍ୟ ପୁନର୍ଗଠନ କମିଶନଙ୍କ ସୁପାରିସ୍ ସମ୍ବନ୍ଧରେ ନାନା ଅସନ୍ତୋଷ ପ୍ରକାଶ ପାଇବାରୁ କେନ୍ଦ୍ର ସରକାର କମିଶନଙ୍କ ସୁପାରିସ୍ ଗ୍ରହଣ କରିବା ପୂର୍ବରୁ କଂଗ୍ରେସର ଏକ ଉଚ୍ଚ କ୍ଷମତାସମ୍ପନ୍ନ କମିଟି ଗଠନ କରାଯାଇଥିଲା । କେନ୍ଦ୍ର ସରକାର ସମସ୍ୟାଟି ସଂପର୍କରେ ସେହି କମିଟିର ପରାମର୍ଶ ଲୋଡ଼ିଥିଲେ । ଚାରିଜଣ ବିଶିଷ୍ଟ ନେତାଙ୍କୁ ନେଇ ଉକ୍ତ କମିଟି ଗଠନ କରାଯାଇଥିଲା । ରାଜ୍ୟ ପୁନର୍ଗଠନ କମିଶନ ସୁପାରିସ୍ ସମ୍ବନ୍ଧରେ ଆମର ଅସନ୍ତୋଷ ସରକାରୀ ସ୍ତରରେ କେନ୍ଦ୍ର ସରକାରଙ୍କୁ ଜଣାଇଦେବା ପରେ ସମସ୍ୟାର ଗୁରୁତ୍ୱ ଦୃଷ୍ଟିରୁ ରାଜ୍ୟ କଂଗ୍ରେସ କମିଟିର ବୈଠକ ଡକାଯାଇ ଏ ପରିସ୍ଥିତିରେ କଂଗ୍ରେସ ଲୋକ ହିସାବରେ ଆମ୍ଭମାନଙ୍କର କର୍ତ୍ତବ୍ୟ କ'ଣ ତାହା ଆଲୋଚିତ ହୋଇଥିଲା । କେନ୍ଦ୍ର ସ୍ତରରେ ଏଥିପାଇଁ କଂଗ୍ରେସ ପକ୍ଷରୁ ଗୋଟିଏ କମିଟି ଗଢ଼ାଯାଇଥିବା ହେତୁ ଆମ ରାଜ୍ୟ କଂଗ୍ରେସର ଏହି ପଦକ୍ଷେପ ମଧ୍ୟ ଯୁକ୍ତିଯୁକ୍ତ ଥିଲା । ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ଏ ପରିପ୍ରେକ୍ଷୀରେ ଉତ୍ତେଜନା ଓ ଅଶାନ୍ତିର ସୂଚନା ଦେଖିବାକୁ ମିଳିଥିଲା । କଂଗ୍ରେସ କମିଟିର ସେହି ବୈଠକରେ ମୁଁ ଉପସ୍ଥିତ ଥିଲି ଓ ଆଲୋଚନାରେ ମଧ୍ୟ ଭାଗ ନେଇଥିଲି । ବହୁ ବିଚାରାଲୋଚନା ପରେ ଏହି ପ୍ରସ୍ତାବଟି ଗୃହୀତ ହୋଇଥିଲା ।

"While still appealing to the public and outside Orissa to pursue peaceful and constitutional methods for the redress of our grievances, the Committee, after careful consideration of the issues at stake, feel its imperative duty to register its emphatic protest against the injustice that is sought to be perpetuated against Orissa by rejecting her minimum claims. The Committee further feels that while reaffirming its unstinted faith in peaceful and

constitutional methods it is our duty to register our protest in a disciplined and constitutional manner."

ଉକ୍ତ ପ୍ରସ୍ତାବରେ ରାଜ୍ୟ ପୁନର୍ଗଠନ କମିଟିର ନିଷ୍ପତ୍ତିଦ୍ୱାରା ରାଜ୍ୟରେ କି ପ୍ରକାର ଅସନ୍ତୋଷ ପ୍ରକାଶ ପାଇଛି ଏବଂ ସେଥିରେ କଂଗ୍ରେସ ଲୋକମାନେ ଯେଉଁସବୁ ଅସୁବିଧାର ସମ୍ମୁଖୀନ ହେଉଥା'ନ୍ତି ସେ କଥା ବର୍ଣ୍ଣନା କରି ଆହୁରି କୁହାଯାଇଥିଲା, "Further, the Committee feels that it will not be possible to hold any office of trust and responsibility by the members of the Congress on its behalf." ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ତଥା ନେତୃବର୍ଗଙ୍କର ହାତମୁଠ ଗଣ କରିବା ସଙ୍ଗେ ସଙ୍ଗେ ସର୍ବଭାରତୀୟ ସ୍ତରରେ ଗଠିତ ହୋଇଥିବା ଉଚ୍ଚ କ୍ଷମତାସମ୍ପନ୍ନ କଂଗ୍ରେସ କମିଟିଙ୍କ ଉପରେ ଆମର ନ୍ୟାଯ୍ୟ ଦାବି ସମ୍ବନ୍ଧରେ ଚାପ ପକାଇବାପାଇଁ ରାଜ୍ୟ କଂଗ୍ରେସ କମିଟି ଏ ପ୍ରକାର ପ୍ରସ୍ତାବ ଗ୍ରହଣ କରିବାର ଯେ ଆବଶ୍ୟକତା ଥିଲା ଏଥିରେ କୌଣସି ସନ୍ଦେହ ନାହିଁ । ତା' ବ୍ୟତୀତ ମୁଖ୍ୟମନ୍ତ୍ରୀଙ୍କ ହାତମୁଠକୁ ଗଣ କରିବାପାଇଁ ଆମ୍ଭେମାନେ ଆମର ଇସ୍ତଫାପତ୍ର ଲେଖି ମୁଖ୍ୟମନ୍ତ୍ରୀଙ୍କ ହାତରେ ଦେଇଥିଲୁ । ମୁଖ୍ୟମନ୍ତ୍ରୀ ଶ୍ରୀଚୌଧୁରୀ ଓ ରାଜ୍ୟ କଂଗ୍ରେସ ସଭାପତି ଶ୍ରୀ ବିଶ୍ୱନାଥ ଦାସ ଏ ସମ୍ବନ୍ଧରେ କେନ୍ଦ୍ର ସରକାର ତଥା କଂଗ୍ରେସର ତୁଙ୍ଗ ନେତୃବର୍ଗଙ୍କ ସହିତ ଆଲୋଚନା କରିବାପାଇଁ ଜାନୁଆରୀ ତୃତୀୟ ସପ୍ତାହରେ ଦିଲ୍ଲୀ ଯାଇଥିଲେ । ଠିକ୍ ସେତିକିବେଳକୁ ପ୍ରଧାନମନ୍ତ୍ରୀ କଂଗ୍ରେସର ଉଚ୍ଚକ୍ଷମତାସମ୍ପନ୍ନ କମିଟିର ପରାମର୍ଶକ୍ରମେ ରାଜ୍ୟ ପୁନର୍ଗଠନ କମିଶନଙ୍କ ରିପୋର୍ଟ ଗ୍ରହଣ କଲେ ବୋଲି ଘୋଷଣା କରିଥିଲେ । ଓଡ଼ିଶା ସମ୍ବନ୍ଧରେ ରାଜ୍ୟ ପୁନର୍ଗଠନ କମିଟିର ଅନ୍ୟାୟ ସିଦ୍ଧାନ୍ତର କୌଣସି ପରିବର୍ତ୍ତନ କରାଗଲା ନାହିଁ । ଓଡ଼ିଶାବାସୀଙ୍କ ସବୁପ୍ରକାର ଆଶା ଓ ଆକାଂକ୍ଷା ଧୂଳିସାତ୍ ହୋଇଯାଇଥିଲା ।

ଓଡ଼ିଶା ସମ୍ପର୍କରେ କେନ୍ଦ୍ର ସରକାରଙ୍କର ଏହି ଅନ୍ୟାୟ ନିଷ୍ପତ୍ତି ଘୋଷିତ ହେବା ପରେ ସମଗ୍ର ରାଜ୍ୟରେ ଅଭୂତପୂର୍ବ ଉତ୍ତେଜନା ଓ ଭୟଙ୍କର ପ୍ରତିକ୍ରିୟା ପ୍ରକାଶପାଇଥିଲା । ଚାରିଆଡ଼େ ଅଶାନ୍ତିର ବାତାବରଣ ବ୍ୟାପିଯାଇଥିଲା । କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ବ୍ରହ୍ମପୁର, ଭୁବନେଶ୍ୱର ଓ ରାଜ୍ୟର ଅନ୍ୟାନ୍ୟ ଅଞ୍ଚଳରେ ହଜାର ହଜାର ସଂଖ୍ୟାରେ ଛାତ୍ର, ବୁଦ୍ଧିଜୀବୀମାନଙ୍କ ସମେତ ସମାଜର ସବୁ ଶ୍ରେଣୀର ଲୋକ ଉତ୍ତେଜନା ପ୍ରକାଶ କରି ଆନ୍ଦୋଳନାତ୍ମକ ପନ୍ଥା ଅନୁସରଣ କରିଥିଲେ । ରାଜ୍ୟର ଚାରିଆଡ଼େ ଲୋକେ ରେଳଲାଇନ୍ ଉପରେ ବସି ଟ୍ରେନ୍ ଚଳାଚଳରେ ବ୍ୟାଘାତ ଘଟାଇଥିଲେ । ଅନେକ ସରକାରୀ ସମ୍ପତ୍ତି ନିଆଁ ଲଗାଇ ନଷ୍ଟକରିଦିଆଯାଇଥିଲା । କଟକ ରେଡ଼ିଓ ଷ୍ଟେସନ୍‌କୁ ଅଚଳ କରିଦେବାପାଇଁ ଉଦ୍ୟମ କରାଯାଇଥିଲା । ପୁରୀ ରେଳଷ୍ଟେସନ୍‌ରେ ନିଆଁ ଲଗାଇ ଦିଆଯାଇଥିଲା । ଅବସ୍ଥା ଆୟତ୍ତ କରିବା ନିମନ୍ତେ ଯଥେଷ୍ଟ ସଂଖ୍ୟକ ପୁଲିସ ମଧ୍ୟ ନଥିଲେ । ଫଳରେ ଅବସ୍ଥା ସମ୍ଭାଳିବା ଆମ୍ଭମାନଙ୍କ ପକ୍ଷରେ ଅତି କଷ୍ଟକର ବ୍ୟାପାର ହୋଇପଡ଼ିଥିଲା । ଏକ ପକ୍ଷରେ ଗୋହତ୍ୟା, ଅନ୍ୟପକ୍ଷରେ ବ୍ରହ୍ମହତ୍ୟା ପାପର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଏକ ପକ୍ଷରେ ରାଜ୍ୟର ସ୍ୱାର୍ଥପ୍ରତି ଅନୁରକ୍ତି, ଅନ୍ୟ ପକ୍ଷରେ ରାଷ୍ଟ୍ରର ସ୍ୱାର୍ଥ ସମ୍ପର୍କରେ କର୍ତ୍ତବ୍ୟବୋଧ । କଂଗ୍ରେସ କର୍ମକର୍ତ୍ତା ଭାବରେ ନିଜ ରାଜ୍ୟର ସ୍ୱାର୍ଥରକ୍ଷା ଏବଂ ସରକାରୀ କର୍ମକର୍ତ୍ତା ଭାବରେ ରାଜ୍ୟରେ ନିରାପତ୍ତାରକ୍ଷା ପାଇଁ କର୍ତ୍ତବ୍ୟ ସମ୍ପାଦନ କଲାବେଳେ ଆପାତତଃ ଏକ ଘୋର ବିରୋଧାଭାସ ସୃଷ୍ଟିହୋଇଥିଲା । ଅବସ୍ଥାକୁ ଆୟତ୍ତାଧୀନ କରିବା ଉଦ୍ଦେଶ୍ୟରେ ପୁରୀ ରେଳଷ୍ଟେସନ୍ ଏବଂ କଟକର ଆକାଶବାଣୀ ଭବନ ନିକଟରେ ପୁଲିସକୁ ଗୁଳି ଚଳାଇବାକୁ ପଡ଼ିଥିଲା । ଏହି ଗୁଳିକାଣ୍ଡରେ ପୁରୀର ଶ୍ରୀ ବେଙ୍ଗପାଣିଆ, ଶ୍ରୀ ହରିହର ମହାପାତ୍ର ଏବଂ କଟକରେ ଶ୍ରୀ ସୁନୀଲ୍ କୁମାର ଦେ ପ୍ରାଣହରାଇଥିଲେ । ଉଲ୍ଲେଖଯୋଗ୍ୟ କଥା ଯେ କଟକ ରେଡ଼ିଓ ଷ୍ଟେସନ୍ ପାଖରେ ଯେଉଁ ଉତ୍ତେଜନା ସୃଷ୍ଟିହୋଇଥିଲା ତାହାର ନେତୃତ୍ୱ ନେଇଥିଲେ ମୁଖ୍ୟମନ୍ତ୍ରୀଙ୍କ ସହଧର୍ମିଣୀ ଶ୍ରୀମତୀ ମାଳତୀ ଚୌଧୁରୀ । ଅବସ୍ଥା ଏକପ୍ରକାର ଅଣାୟତ୍ତ ଓ ଅସମ୍ଭାଳ ହୋଇଯାଇଥିଲା । ରାଜ୍ୟରେ ଯେତିକି

ପୁଲିସ ଫୋର୍ସ ଥିଲେ, ସେମାନଙ୍କ ସାହାଯ୍ୟରେ ଅବସ୍ଥାକୁ ଆୟତ୍ତ କରିବା ସମ୍ଭବପରନୁହେଁ ବୋଲି ଅନୁଭବ କରାଯାଇଥିଲା । ତୁରନ୍ତ କୌଣସି ପ୍ରତିକାର ବ୍ୟବସ୍ଥା ନହେଲେ ସମଗ୍ର ରାଜ୍ୟରେ ଭୟଙ୍କର ଅଶାନ୍ତି ତଥା ଅପୂରଣୀୟ କ୍ଷତି ଘଟିବାର ଆଶଙ୍କା ପ୍ରକାଶପାଇଥିଲା । ମୁଖ୍ୟମନ୍ତ୍ରୀ ସେତେବେଳେ ଦିଲ୍ଲୀରେ ଥିଲେ ଏବଂ ଅନ୍ୟାନ୍ୟ ବୟୋଜ୍ୟେଷ୍ଠ ମନ୍ତ୍ରୀମାନେ ମଧ୍ୟ ରାଜଧାନୀରେ ଅନୁପସ୍ଥିତ ଥିଲେ । ଟେଲିଫୋନ୍‌ଦ୍ୱାରା କାହାରି ସହିତ ସମ୍ପର୍କ ମଧ୍ୟ ସ୍ଥାପନ କରାଯାଇପାରିନଥିଲା । ଏଭଳି ଏକ ଅପ୍ରତ୍ୟାଶିତ ଜଟିଳ ପରିସ୍ଥିତି ଭିତରେ ସ୍ୱରାଷ୍ଟ୍ର ବିଭାଗ ଉପମନ୍ତ୍ରୀ ହିସାବରେ ଶାନ୍ତି-ଶୃଙ୍ଖଳା ରକ୍ଷାକରିବାର ଦାୟିତ୍ୱ ସମ୍ପର୍କରେ ମୋତେହିଁ ନିଷ୍ପତ୍ତି ନେବାକୁ ପଡ଼ିଥିଲା । ମୁଁ ସେତେବେଳେ କଟକର କ୍ୟାଣ୍ଟନ୍‌ମେଣ୍ଟ ରୋଡ଼ର ଷୋଳ ନମ୍ବର ବଙ୍ଗଳାରେ ରହୁଥିଲି । ଅର୍ଥମନ୍ତ୍ରୀ ଶ୍ରୀ ରାଧାନାଥ ରଥ କଟକରେ ଥିଲେ ମଧ୍ୟ ତାଙ୍କ ସହିତ ସମ୍ପର୍କ ସ୍ଥାପନ କରାଯାଇପାରିନଥିଲା, କାରଣ ସମାଜ ପ୍ରେସ ସେତେବେଳେ ଲାଲ୍‌ବାଗ ରାଜଭବନ ସନ୍ନିକଟ ନିମଚଉଡ଼ି ପାଖରେ ଥାଏ ଏବଂ ସେ ସେହିଠାରେ ରହୁଥିଲେ । ସମାଜ ପ୍ରେସ୍ ଓ ରାଧାନାଥବାବୁଙ୍କ ଘର ସୀମାଆନ୍ଦୋଳନର ବିକ୍ଷୋଭକାରୀ, ଏପରିକି ଦୁର୍ବୃତ୍ତମାନଙ୍କର ଲକ୍ଷ୍ୟସ୍ଥଳ ହୋଇଥାଏ । ସେଠାରେ ଅନବରତ ଟେକାପଥର ପଡୁଥାଏ ଏବଂ ନିଆଁଲଗାଇଦେବାର ଉଦ୍ୟମ ମଧ୍ୟ ହେଉଥାଏ । ନିରାପତ୍ତା ଦୃଷ୍ଟିରୁ ସେ ସ୍ଥାନ ଏବଂ ସେଠାକାର ବାତାବରଣ ଅତ୍ୟନ୍ତ ବିପଜ୍ଜନକ ହୋଇପଡ଼ିଥାଏ । ତେଣୁ ରାଜ୍ୟପାଳ ଶ୍ରୀ କୁମାରସ୍ୱାମୀ ରାଜା ରାଜଭବନକୁ ଚାଲିଆସିବାପାଇଁ ରାଧାନାଥବାବୁଙ୍କୁ ଅନୁରୋଧ କରିବାରୁ ସେ ସେଠାରେ ଯାଇ ରହିଥିଲେ । କଟକରେ ଟେଲିଫୋନ୍ ଲାଇନ୍ କାଟିଦିଆଯାଇଥିବାରୁ ତାଙ୍କ ସହିତ ପରାମର୍ଶପାଇଁ ଟେଲିଫୋନ୍ ସଂଯୋଗ ମଧ୍ୟ ସ୍ଥାପନ କରାଯାଇପାରିନଥିଲା । ଚିଫ୍ ସେକ୍ରେଟେରୀ ଶ୍ରୀ ବି. ମୁଖାର୍ଜୀ ସେତେବେଳେ ଭୁବନେଶ୍ୱରରେ ରହୁଥିଲେ । ତାଙ୍କ ସହିତ ଟେଲିଫୋନ୍ ଯୋଗାଯୋଗ କରିବା ମଧ୍ୟ କଷ୍ଟକର ହୋଇପଡ଼ିଥିଲା । କଟକ ଭୁବନେଶ୍ୱର ଟେଲିଫୋନ୍ ଲାଇନ୍ ସବୁ କଟା ହୋଇଯାଇଥାଏ । ମୁଁ ପୁଲିସ ବିଭାଗ ବେତାର ସଂଯୋଗ ଦ୍ୱାରା ବାର୍ତ୍ତା ପଠାଇ (wireless message) ତାଙ୍କୁ କଟକ ଡକାଇଲି । ଭୁବନେଶ୍ୱର-କଟକ ମଧ୍ୟରେ ସେତେବେଳେ ଗାଡ଼ି ଚଳାଚଳ ପ୍ରାୟ ବନ୍ଦହୋଇଯାଇଥାଏ । ବହୁ କଷ୍ଟରେ ସେ ଗୋଟିଏ ମାଲଗାଡ଼ିରେ ବସି କଟକ ଷ୍ଟେସନ୍‌ରେ ଓହ୍ଲାଇ ସେଠାରୁ ରିକ୍‌ସାରେ ଯାଇ ମୋ ପାଖରେ ପହଞ୍ଚିଲେ । ମୋ ଘର ପଛପଟେ ପୁଲିସ ଆଇ.ଜି.ଙ୍କ ଅଫିସ୍ । ସେତେବେଳେ ପରିସ୍ଥିତି ସମ୍ପର୍କରେ ଅବଗତ ହେବା ନିମନ୍ତେ ଓ ବିଶୃଙ୍ଖଳ ପରିସ୍ଥିତିକୁ ଆୟତ୍ତ କରିବା ଦିଗରେ କାର୍ଯ୍ୟ କରିବାପାଇଁ ମୁଁ ପ୍ରାୟ ଅଧିକାଂଶ ସମୟରେ ଆଇ.ଜି. ଅଫିସ୍‌ରେ ଉପସ୍ଥିତ ରହୁଥାଏ । ଚିଫ୍ ସେକ୍ରେଟେରୀ ସେଠାରେ ପହଞ୍ଚିବା ପରେ ମୁଁ, ସେ ଓ ଆଇ.ଜି. ଏକାଠି ବସି ଉପସ୍ଥିତ ପରିସ୍ଥିତିର ସମୀକ୍ଷା କରି କ'ଣ କରାଯିବ, ସେ ବିଷୟରେ ବିଚାର ଆଲୋଚନା କଲୁ । ସୈନ୍ୟବାହିନୀର ସହାୟତା ବିନା ପରିସ୍ଥିତିକୁ ସମ୍ଭାଳିବା ଅସମ୍ଭବ ହୋଇପଡ଼ିବ ବୋଲି ଆମ୍ଭେମାନେ ଅନୁଭବ କରିଥିଲୁ । ତେଣୁ ତୁରନ୍ତ ସୈନ୍ୟବାହିନୀ ଅଣାଇବା ନିମନ୍ତେ ମୁଁ ନିର୍ଦ୍ଦେଶ ଦେଇଥିଲି । ଶ୍ରୀ ବି. ମୁଖାର୍ଜୀ ତୁରନ୍ତ ଦିଲ୍ଲୀ ସହିତ ସଂଯୋଗ ସ୍ଥାପନ କରି ଆମ ମୁଖ୍ୟମନ୍ତ୍ରୀଙ୍କ ସମ୍ମତି ନେଇଥିଲେ । କେନ୍ଦ୍ର ସ୍ୱରାଷ୍ଟ୍ର ବିଭାଗ ଓ ପ୍ରତିରକ୍ଷା ବିଭାଗକୁ ବେତାରବାର୍ତ୍ତାମାନ ପଠାଇଥିଲେ । ତା ପରିଦିନ ସକାଳେ ଉଡ଼ାଜାହାଜ ଓ ସ୍ୱତନ୍ତ୍ର ଟ୍ରେନ୍‌ଯୋଗେ କଲିକତାରୁ ସୈନ୍ୟବାହିନୀର ଯବାନ୍‌ମାନେ ଆସି ଭୁବନେଶ୍ୱର ଓ କଟକରେ ପହଞ୍ଚିଥିଲେ । ସେମାନଙ୍କୁ ତୁରନ୍ତ ବିଭିନ୍ନ ସ୍ଥାନକୁ ପଠାଯାଇଥିଲା । ପୁରୀ ଓ କଟକ ପ୍ରଭୃତି ସହରମାନଙ୍କରେ ଜନସାଧାରଣଙ୍କୁ ସତର୍କ କରାଇଦେବା ଉଦ୍ଦେଶ୍ୟରେ ବିମାନବାହିନୀର ବିମାନଗୁଡ଼ିକୁ ଅଳ୍ପ ଉଚ୍ଚରେ ଉଡ଼ାଯାଇଥିଲା । ସୈନ୍ୟବାହିନୀର ଯବାନ୍‌ମାନେ ବିଭିନ୍ନ ସ୍ଥାନକୁ ଯାଇ ଶାନ୍ତିଶୃଙ୍ଖଳା ରକ୍ଷା କାର୍ଯ୍ୟରେ ପୁଲିସକୁ ସାହାଯ୍ୟ କରିଥିଲେ । ସୈନ୍ୟମାନଙ୍କୁ କୌଣସିଠାରେ ଗୁଳି ଚଳାଇବାକୁ ପଡ଼ିନଥିଲା । ସୈନ୍ୟବାହିନୀର ସାହାଯ୍ୟ ଯଦି ନିଆଯାଇନଥା'ନ୍ତା ପୁଲିସକୁ ବହୁ ଜାଗାରେ ଗୁଳି ଚଳାଇବାକୁ ପଡ଼ିଥା'ନ୍ତା ଓ ତଦ୍ୱାରା ବହୁଲୋକ ମୃତାହତ ହେବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇପାରିନଥା'ନ୍ତା । ସୈନ୍ୟବାହିନୀ

ଆସିବାରେ ବିଳମ୍ବ ଘଟିଥିଲେ ଅବସ୍ଥା ଆହୁରି ଖରାପ ଆଡ଼କୁ ଗତିକରିଥାଆନ୍ତା; ଖବର ପଠାଇବାର ମାତ୍ର ଦଶ ବାର ଘଣ୍ଟା ଭିତରେ ସେମାନେ ଆସି ପହଞ୍ଚିଯାଇଥିଲେ । ରାଜ୍ୟର ବିଭିନ୍ନ ସ୍ଥାନରେ ସୈନ୍ୟବାହିନୀର ଯବାନ୍ ଓ ପୁଲିସ ପଇଁତରା ମାରିବାରୁ ଅବସ୍ଥାର ଦ୍ରୁତ ପରିବର୍ତ୍ତନ ହୋଇଥିଲା ଏବଂ କ୍ରମେ ଶୃଙ୍ଖଳା ଫେରିଆସିଥିଲା ।

ଏତିକିବେଳେ ବିରୋଧୀଦଳର ନେତାମାନେ ଲୋକଙ୍କୁ ଉତ୍ତେଜିତ କରିବାପାଇଁ ଖୁବ୍ ତତ୍ପର ହୋଇଥଲେ । ଉତ୍ତେଜନାପୂର୍ଣ୍ଣ ଭାଷଣ ଦେବା ଛଡ଼ା ୧୪୪ ଧାରା ଭାଙ୍ଗି ଜେଲ୍ ଯିବାପାଇଁ ଆଗକୁ ବାହାରିପଡ଼ିଥିଲେ । ମୋର ମନେଅଛି, ସେତେବେଳକାର ଗଣତନ୍ତ୍ର ଦଳର ତୁଙ୍ଗ ନେତା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଦଳେ ଲୋକଙ୍କୁ ସାଙ୍ଗରେ ଧରି ଚାଲି ଚାଲି ଆସି ମୁଁ ରହୁଥିବା କ୍ୟାଣ୍ଟନ୍‌ମେଣ୍ଟ ରୋଡ୍‌ର ୧୬ ନମ୍ବର କୋଠିରେ ପହଞ୍ଚିଥିଲେ । ମୁଁ ଆସି ତାଙ୍କୁ ସାକ୍ଷାତ୍ କରିବା ସମୟରେ ସେ କହିଥିଲେ, ''ଗୁଳି ଚଳେଇବାଟା ଆପଣ ବନ୍ଦକରନ୍ତୁ ।'' ମୁଁ ତାଙ୍କୁ ଏ ପରିପ୍ରେକ୍ଷୀରେ ପଚାରିଥିଲି, ''ଆପଣ ଜଣେ ମହାରାଜା ଥିଲେ ଏବଂ ଗୋଟିଏ ରାଜ୍ୟ ଚଳାଉଥିଲେ; ଆପଣ କେବଳ ଶାନ୍ତି ଶୃଙ୍ଖଳା ରକ୍ଷା କରିବାପାଇଁ ଆଦେଶ ଦେଉଥିଲେ ନା ଗୁଳି ଚଳାଇ ଶାନ୍ତିଶୃଙ୍ଖଳା ରକ୍ଷା କରିବାପାଇଁ ନିର୍ଦ୍ଦେଶ ଦେଇଥିଲେ ?'' ମୋ କଥା ଶୁଣି ସେ ଟିକେ ଅପ୍ରସ୍ତୁତ ହୋଇପଡ଼ିଥିଲେ । ମୁଁ କହିଥିଲି, ''ସଂସଦୀୟ ଗଣତନ୍ତ୍ର ଶାସନରେ ଗୁଳି ଚଳାଇବାପାଇଁ ମନ୍ତ୍ରୀମାନେ ପୁଲିସକୁ ଆଦେଶ ଦିଅନ୍ତିନାହିଁ । ଶାନ୍ତିଶୃଙ୍ଖଳା ରକ୍ଷା କରିବାପାଇଁ ଆମ୍ଭେମାନେ ନିର୍ଦ୍ଦେଶ ଦେଇଥାଉଁ । ଶାନ୍ତିଶୃଙ୍ଖଳା ରକ୍ଷା କରିବା ଦାୟିତ୍ୱରେ ଥିବା ମାଜିଷ୍ଟ୍ରେଟ୍ ଓ ପୁଲିସ ପରିସ୍ଥିତିର ଗୁରୁତ୍ୱ ଦେଖି ଯଦି ଗୁଳି ଚଳାଇବାଟା ନିହାତି ଆବଶ୍ୟକ ପଡ଼େ, ତା'ହେଲେ ସେ କଥା ସେମାନେ କରିଥା'ନ୍ତି । ବରଂ ଆମ୍ଭେମାନେ ଯେତେଦୂର ସମ୍ଭବ ଗୁଳି ନଚଳାଇ ଶାନ୍ତିଶୃଙ୍ଖଳା ରକ୍ଷା କରିବା ଉଦ୍ୟମ ଅବ୍ୟାହତ ରଖିବାପାଇଁ ପରାମର୍ଶ ଦେଇଥାଉଁ ।'' ସେ ମୋ ସହିତ ଆଲୋଚନା ସାରି ସେଠାରୁ ଚାଲି ଚାଲି ବକ୍‌ସିବଜାର ଦେଇ ଗୌରୀଶଙ୍କର ପାର୍କ ନିକଟରେ ୧୪୪ ଧାରା ଭଙ୍ଗ କରି ଗିରଫ ହୋଇଥିଲେ । ତିନି ଚାରି ଦିନ ଜେଲ୍‌ରେ ରହିବା ପରେ ସେ ଜାମିନ୍‌ରେ ଖଲାସ ହୋଇ ଆସିଥିଲେ । ସେ ଜେଲ୍‌ରେ ଥିବା ସମୟରେ ତାଙ୍କର ସମସ୍ତ ସୁବିଧା ତଥା ଯତ୍ନ ପ୍ରତି ଦୃଷ୍ଟିଦେବାକୁ ମୁଁ ଜେଲ୍ କର୍ତ୍ତୃପକ୍ଷଙ୍କୁ ନିର୍ଦ୍ଦେଶ ଦେଇଥିଲି । ସମ୍ବଲପୁରରେ ଆନ୍ଦୋଳନର ପ୍ରଥମ ଦିନ ପରିସ୍ଥିତି ଅଧିକ ଜଟିଳ ହୋଇଥିଲା ଏବଂ ପୁଲିସ ଗୁଳିରେ ଶ୍ରୀ ଲକ୍ଷ୍ମୀପ୍ରସାଦ ମିଶ୍ର ଆହତ ହୋଇଥିଲେ । ପରେ ଶ୍ରୀ ମିଶ୍ର ସେହି ନିର୍ବାଚନମଣ୍ଡଳୀରୁ ବିଧାନସଭାକୁ ନିର୍ବାଚିତ ହୋଇ ମନ୍ତ୍ରୀ ହୋଇଥିଲେ ।

ଏହିସବୁ ଘଟଣାର ଅଳ୍ପଦିନ ପରେ ୧୯୫୬ ମସିହା ଫେବୃୟାରୀ ମାସ ଶେଷ ସପ୍ତାହ ବେଳକୁ ଆସିଥିଲା ଓଡ଼ିଶା ବିଧାନସଭାର ବଜେଟ୍ ଅଧିବେଶନ । ଅଧିବେଶନଟି ବଡ଼ ଉତ୍ତେଜନାପୂର୍ଣ୍ଣ ହୋଇଥିଲା । ଏଥିରେ ଯେଉଁସବୁ ବିଷୟ ଆଲୋଚିତ ହୋଇଥିଲା, ସେଗୁଡ଼ିକ ମଧ୍ୟରୁ ରାଜ୍ୟ ପୁନର୍ଗଠନ କମିଶନ ଓ କେନ୍ଦ୍ର ସରକାରଙ୍କର ଓଡ଼ିଶା ସୀମା ନିର୍ଦ୍ଧାରଣ ସମ୍ପର୍କୀୟ ନିଷ୍ପତ୍ତି ତଥା ସେହି କାରଣରୁ ଉପୁଜିଥିବା ରାଜ୍ୟବ୍ୟାପୀ ବିଶୃଙ୍ଖଳା ଓ ତାକୁ ଆୟତ୍ତ କରିବା ସମୟରେ ପୁଲିସର କାର୍ଯ୍ୟାନୁଷ୍ଠାନ ପ୍ରଭୃତି ମୁଖ୍ୟ ବିଷୟ ରୂପେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ରାଜ୍ୟ ପୁନର୍ଗଠନ ତଥା କେନ୍ଦ୍ର ସରକାରଙ୍କଦ୍ୱାରା ଉପେକ୍ଷିତ ଆମ ରାଜ୍ୟର ଷଢ଼େଇକଳା, ଖରସୁଆଁ ଓ ଅନ୍ୟାନ୍ୟ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ସମ୍ପର୍କୀୟ ନିଷ୍ପତ୍ତିରେ ବିରୋଧୀଦଳର ନେତାମାନେ ରାଜ୍ୟ କଂଗ୍ରେସ ଦଳକୁ ଦାୟୀ କରିବା ସଙ୍ଗେ ସଙ୍ଗେ ରାଜ୍ୟରେ ଘଟିଥିବା ହିଂସାତ୍ମକ କାର୍ଯ୍ୟ, ଜଳାପୋଡ଼ା, ଭଙ୍ଗାରୁଜା ତଥା ପୁଲିସର ଗୁଳିକାଣ୍ଡ ନିମନ୍ତେ କଂଗ୍ରେସ ଉପରେ ଦୋଷାରୋପ କରିଥିଲେ । କଂଗ୍ରେସ ପକ୍ଷରୁ ଦୃଢ଼ ଭାବରେ ଏସବୁ ଅଭିଯୋଗଗୁଡ଼ିକୁ ଖଣ୍ଡନ କରାଯାଇଥିଲା । ଏ କଥା ନିଶ୍ଚିତ ଯେ ଓଡ଼ିଶାର ନ୍ୟାଯ୍ୟଦାବି ପ୍ରତି ଅବିଚାର କରାଯାଇଥିବା ବେଳେ କଂଗ୍ରେସଲୋକେ କ୍ଷୋଭ ପ୍ରକାଶ କରିଥିଲେ ଏବଂ ହିଂସାତ୍ମକ କାର୍ଯ୍ୟ ନକରି ଶାନ୍ତିପୂର୍ଣ୍ଣ ଭାବରେ ଆନ୍ଦୋଳନ କରିବାପାଇଁ କଂଗ୍ରେସ ଲୋକେ ମଧ୍ୟ ଆହ୍ୱାନ ଦେଇଥିଲେ । କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷଙ୍କୁ

ରାଜ୍ୟ କଂଗ୍ରେସ ନେତାମାନଙ୍କ ପକ୍ଷରୁ ସାବଧାନ କରାଇ ଦେଇ କୁହାଯାଇଥିଲା ଯେ ଓଡ଼ିଶା ପ୍ରତି ଯେଉଁ ଅନ୍ୟାୟ କରାଯାଇଥିଲା, ତା'ର ସୁବିଚାର କରାନଗଲେ ରାଜ୍ୟ ମଧ୍ୟରେ ଦଳର କାର୍ଯ୍ୟ ତୁଲାଇବା ସେମାନଙ୍କ ପକ୍ଷରେ ସମ୍ଭବ ହେବନାହିଁ । ଇସ୍ତଫା ଦେବା ପ୍ରସ୍ତାବ ମଧ୍ୟ ଜଣାଇ ଦିଆଯାଇଥିଲା । ଆମ ରାଜ୍ୟବାସୀଙ୍କ ମଧ୍ୟରେ ସେତେବେଳେ ଯେଉଁ ତୀବ୍ର ପ୍ରତିକ୍ରିୟା ଜନ୍ମିଥିଲା, ରାଜ୍ୟ କଂଗ୍ରେସ ଲୋକଙ୍କ ଆଚରଣରେ ମଧ୍ୟ ତାହା ପ୍ରତିଫଳିତ ହୋଇଥିଲା । ତେଣୁ ସୀମା ପୁନର୍ଗଠନ ନିଷ୍ପତ୍ତି ବିରୁଦ୍ଧରେ କଂଗ୍ରେସ ପକ୍ଷରୁ ଯେପରି ସ୍ୱର ଉତ୍ତୋଳନ କରାଯାଇଥିଲା ତାହା ଅତ୍ୟନ୍ତ ସ୍ୱାଭାବିକ । ଆଉ ମଧ୍ୟ, କଂଗ୍ରେସ ଲୋକେ ଯଦି ସେଭଳି ପ୍ରତିବାଦ କରିନଥା'ନ୍ତେ ତେବେ ଆମ ରାଜ୍ୟର କଂଗ୍ରେସଲୋକେ ଏବଂ କଂଗ୍ରେସ ସରକାର ରାଜ୍ୟର ସ୍ୱାର୍ଥରକ୍ଷା କରିବାପାଇଁ ଅନ୍ୟାୟ ବିରୁଦ୍ଧରେ ଦୃଢ଼ ପ୍ରତିବାଦ କଲେନାହିଁ ବୋଲି ଦୋଷାରୋପ କରିବା ଯଥାର୍ଥ ହୋଇଥାଆନ୍ତା । କିନ୍ତୁ ହିଂସାତ୍ମକ କାର୍ଯ୍ୟପାଇଁ କଂଗ୍ରେସକୁ ଦାୟୀ କରିବା ଏବଂ ଶାନ୍ତିଶୃଙ୍ଖଳା ରକ୍ଷାକରିବାପାଇଁ ପୁଲିସର କାର୍ଯ୍ୟାନୁଷ୍ଠାନକୁ ଅବାଞ୍ଛନୀୟ କହିବା ସମ୍ପୂର୍ଣ୍ଣ ଅନୁଚିତ । ବିଦେଶୀ ଇଂରେଜ ସରକାରଙ୍କ ବିରୁଦ୍ଧରେ ଆମର ସ୍ୱାଧୀନତା ସଂଗ୍ରାମ ଚାଲିଥିଲାବେଳେ ହିଂସାତ୍ମକ ହେଉ ବା ଅହିଂସ ହେଉ, ଆମକୁ ଅନେକ ଉପାୟରେ କାର୍ଯ୍ୟ ହାସଲ କରିବାକୁ ହୋଇଥିଲା । କିନ୍ତୁ ଆମର ସ୍ୱାଧୀନ ଦେଶରେ ଯେତେବେଳେ ଗଣତନ୍ତ୍ର ଶାସନ ଚାଲିଛି ସେତେବେଳେ କୌଣସି ଅନ୍ୟାୟ କିମ୍ବା ଅବିଚାର ପାଇଁ ଆମର ସର୍ବସାଧାରଣ ସମ୍ପତ୍ତି ରେଳଲାଇନ୍ ତାଡ଼ିପକାଇବା, ଷ୍ଟେସନ୍ ପୋଡ଼ିଦେବା, ରେଡ଼ିଓ ଷ୍ଟେସନକୁ ଅକାମୀ କରିଦେବା ଓ ପେଟ୍ରୋଲ ଢାଳିଦେଇ ସରକାରୀ ଅଫିସ୍, ଘରଦ୍ୱାର, ଯାନବାହନ ଇତ୍ୟାଦି ପୋଡ଼ିପକାଇବା ନିଶ୍ଚୟ ଜନସ୍ୱାର୍ଥବିରୋଧୀ କାର୍ଯ୍ୟ । କୌଣସି ଦାୟିତ୍ୱସମ୍ପନ୍ନ ବ୍ୟକ୍ତି ଏଭଳି ଆଚରଣକୁ ଉତ୍ସାହିତ କରିବା କଦାପି ସମୀଚୀନ ନୁହେଁ ।

## ସେଇ ଦରପୋଡ଼ା କାଠ

ରାଜ୍ୟ ସରକାରଙ୍କ ପକ୍ଷରୁ ଆମ ରାଜ୍ୟର ସୀମା ସମ୍ପର୍କରେ ଏବଂ ରାଜ୍ୟର ହିତଦୃଷ୍ଟିରୁ ଯେଉଁସବୁ ପଦକ୍ଷେପ ନିଆଯାଇଥିଲା ତାହା ମୁଖ୍ୟମନ୍ତ୍ରୀ ଶ୍ରୀ ଚୌଧୁରୀ ଓ ଅର୍ଥମନ୍ତ୍ରୀ ଶ୍ରୀ ରାଧାନାଥ ରଥ ବ୍ୟବସ୍ଥା ସଭାରେ ପ୍ରାଞ୍ଜଳଭାବରେ ବୁଝାଇଥିଲେ । ଓଡ଼ିଶାରେ ଗଡ଼ଜାତ ମିଶ୍ରଣ ଆରମ୍ଭରୁ ଷଢେଇକଳା ରାଜାଙ୍କର ଆଚରଣ କିପରି ମିଶ୍ରଣବିରୋଧୀ ଥିଲା ଓ ବିହାର ସଙ୍ଗରେ ମିଶିବାପାଇଁ ସେ କି ପ୍ରକାର ଷଡ଼ଯନ୍ତ୍ର କରିଥିଲେ ସେକଥା ଶ୍ରୀ ରଥ ବ୍ୟବସ୍ଥାସଭାରେ ପ୍ରକାଶ କରିଥିଲେ । ''ମୋତେ ଯେତେ ମାଠିବୁ ମାଠ, ମୁଁ ସେଇ ଦରପୋଡ଼ା କାଠ'' ରୀତିରେ ରାଜା-ମହାରାଜାଙ୍କଦ୍ୱାରା ଗଠିତ ଗଣତନ୍ତ୍ର ଦଳର ସଭ୍ୟମାନେ ଦୋଷାରୋପ କରିଥିଲେ ଯେ ରାଜ୍ୟ କଂଗ୍ରେସର ନେତୃବର୍ଗ ଷଢେଇକଳା ଓ ଖରସୁଆଁକୁ ବିହାର ପାଖରେ ବନ୍ଧାପକାଇ ଶେଷରେ ବିକ୍ରିକରିଦେଲେ । ଏ ପ୍ରକାର ଦୋଷାରୋପ କରିବାରେ ବିଶେଷ ନେତୃତ୍ୱ ନେଇଥିଲେ ବିଧାନସଭା ସଦସ୍ୟ କଳାହାଣ୍ଡିର ମହାରାଜା ଶ୍ରୀ ପ୍ରତାପ କେଶରୀ ଦେଓ । ଏସବୁ ପ୍ରତାରଣାମୂଳକ କଥା ଶୁଣି ମୁଁ ନିଜେ ଅସ୍ୱସ୍ତି ଅନୁଭବ କରିବା ସଙ୍ଗେ ସଙ୍ଗେ ଉତ୍ତେଜିତ ମଧ୍ୟ ହୋଇଥିଲି । ଷଢେଇକଳା ଓ ଖରସୁଆଁ ପ୍ରଥମେ ଓଡ଼ିଶାରେ ମିଶିବା ଓ ତା'ପରେ ବିହାରକୁ ହସ୍ତାନ୍ତର ହେବା ସମ୍ବନ୍ଧୀୟ ଷଡ଼ଯନ୍ତ୍ରମୂଳକ କାର୍ଯ୍ୟର ପ୍ରାମାଣିକ ଇତିହାସ କିପରି ବିଧାନସଭା ସଭ୍ୟମାନଙ୍କ ଆଗରେ ଏବଂ ସର୍ବସାଧାରଣରେ ପ୍ରକାଶ କରିବି ସେଥିପାଇଁ ମୁଁ ବିଶେଷଭାବରେ ଚିନ୍ତିତ ଥିଲି । ୧୯୪୮ ମସିହାରେ ରାଜା-ମହାରାଜାମାନେ ଯେତେବେଳେ ଓଡ଼ିଶାରେ ଇଉନିୟନ୍ ଆନ୍ଦୋଳନ କରି ଆଦିବାସୀମାନଙ୍କୁ ରାଜ୍ୟ ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ କରିବାପାଇଁ ଉତ୍ସାହିତ କରୁଥିଲେ ସେତେବେଳେ ସେହି ରାଜା-ମହାରାଜାମାନଙ୍କର କଲିକତାରେ ଥିବା କେତେକ ଅଫିସ୍ ଗୃହ ଖାନତଲାସ କରି ପୁଲିସ ସେଠାରୁ ଅନେକ ସନ୍ଦେହଜନକ କାଗଜପତ୍ର ଜବତ କରି ଆଣିଥିବା କଥା ପୂର୍ବରୁ ଉଲ୍ଲେଖ କରିଛି । ସେଥିମଧ୍ୟରୁ କେତୋଟିମାତ୍ର ଦଲିଲ୍ ପୂର୍ବରୁ ବ୍ୟବହାରକରିବା ପ୍ରୟୋଜନ ହୋଇଥିଲା । ଅବଶିଷ୍ଟ ବହୁ କାଗଜପତ୍ର

ଦୁଇଟି ବସ୍ତାରେ ଭର୍ତ୍ତିହୋଇ ପୁଲିସ ଆଇ.ଜି.ଙ୍କ ଅଫିସ୍‌ରେ ମହଜୁଦ୍ ରଖାଯାଇଥିଲା । ସେ ଦୁଇଟି ବସ୍ତାକୁ ମୋ ବାସଭବନକୁ ନେଇଆସିଲି । ସେଗୁଡ଼ିକୁ ତନ୍ନ ତନ୍ନ କରି ଦେଖି ଅନେକ ରହସ୍ୟପୂର୍ଣ୍ଣ ଚିଠି ଓ ଗୁପ୍ତ କାରବାର ସମ୍ପର୍କୀୟ କାଗଜପତ୍ର ବାହାରକରିଥିଲି । ସଙ୍ଗେ ସଙ୍ଗେ ଅନେକ ଚିଠିର ଫଟୋଷ୍ଟାଟ୍ କପି ମଧ କରାଇନେଲି ବ୍ୟବସ୍ଥାସଭାରେ ଆଲୋଚନା ବେଳେ ଉପସ୍ଥାପନ କରିବାପାଇଁ । ଏହି ସମୟରେ ଘରୋଇ ବିଭାଗର ବଜେଟ୍ ଗୃହରେ ଉପସ୍ଥାପିତ ହୋଇଥିଲା । ପୁଣି ସ୍ୱରଉଠିଲା ସେହି ଷଢେଇକଳା ଖରସୁଆଁ ଓ ସୀମା ଆନ୍ଦୋଳନ କଥା ଏବଂ କଂଗ୍ରେସ ବିରୁଦ୍ଧରେ ରାଜ୍ୟସ୍ୱାର୍ଥବିରୋଧୀ କାର୍ଯ୍ୟର ଅଭିଯୋଗ । ଦଳୀୟ ସ୍ୱାର୍ଥପାଇଁ ଶସ୍ତା ବାହାବା ନେବା ଉଦ୍ଦେଶ୍ୟରେ, ରାଜ୍ୟର ସ୍ୱାର୍ଥରକ୍ଷାପାଇଁ ପରାମର୍ଶ ପରିବର୍ତ୍ତେ ପ୍ରତାରଣା ଓ କାଦୁଅଫିଙ୍ଗାର ପର୍ବ ଆରମ୍ଭ ହୋଇଗଲା । ସୀମା ଆନ୍ଦୋଳନ ସମୟରେ ପୁଲିସର କାର୍ଯ୍ୟାନୁଷ୍ଠାନ ସମ୍ବନ୍ଧରେ ବିରୋଧୀ ଦଳର ସଦସ୍ୟମାନେ ମୋତେ ମଧ ତିରସ୍କାର କରିବାକୁ ଲାଗିଲେ । ବିରୋଧୀ ପକ୍ଷଙ୍କ ଷଡ଼ଯନ୍ତ୍ରର ଇତିହାସ ପଦାରେ ପୂରାପୂରି ପକାଇନ ଦେଲେ ଆଉ ରକ୍ଷାନାହିଁ ବୋଲି ଭାବି ମୁଁ ପ୍ରତିଆକ୍ରମଣ ଆରମ୍ଭ କଲି । ଆଲୋଚନାର ଉତ୍ତରରେ କହିଥିଲି ଯେ ଯେଉଁମାନେ ସୀମା-ଆନ୍ଦୋଳନର ନେତୃତ୍ୱ ନେଉଛନ୍ତି, ଷଢେଇକଳା ଓ ଖରସୁଆଁ ସମେତ ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକ ଓଡ଼ିଶା ସହିତ ମିଶିବା ପାଇଁ ବ୍ୟାକୁଳତା ପ୍ରକାଶ କରୁଛନ୍ତି, ସେମାନେ କିପରି ବୃହତ୍ତର ଉତ୍କଳ ଗଠନ ଦିଗରେ ଶେଷପର୍ଯ୍ୟନ୍ତ ବାଧା ଦେଇଥିଲେ ସେକଥା ସମସ୍ତେ ଜାଣିବା ଉଚିତ । ସ୍ୱାଧୀନତାର ଠିକ୍ ପରବର୍ତ୍ତୀ କାଳରେ ଦ୍ରୁତ ଘଟଣାପ୍ରବାହ ଭିତରେ ଏବଂ ନ୍ୟସ୍ତସ୍ୱାର୍ଥମାନଙ୍କଦ୍ୱାରା ନାନା ପ୍ରତିକୂଳ ପରିସ୍ଥିତି ସୃଷ୍ଟିକରାଯାଉଥିବା ସତ୍ତ୍ୱେ ଯେତେବେଳେ ଗଡ଼ଜାତ ରାଜ୍ୟଗୁଡ଼ିକୁ ଓଡ଼ିଶା ସହିତ ମିଶାଇଦିଆଯାଇ ବୃହତ୍ତର ଉତ୍କଳ ଗଠନର ସ୍ୱପ୍ନ ସଫଳ ହେଲା, ସେତେବେଳେ ମଧ ସେହି ନିଷ୍ପତ୍ତିକୁ ଓଲଟପାଲଟ କରିଦେବାପାଇଁ ରାଜାମହାରାଜାମାନେ କିପରି ଷଡ଼ଯନ୍ତ୍ର କରୁଥିଲେ ତାହାର ବୃତ୍ତାନ୍ତ ସମସ୍ତଙ୍କୁ ଜଣାଇବା ମୋ ପକ୍ଷେ ବିଧେୟ । ଏହିମାନଙ୍କର ହୀନ ଚକ୍ରାନ୍ତ ଯୋଗୁଁ କିପରି ଅତି ଦୁଃଖର ସହିତ ଓଡ଼ିଶାବାସୀଙ୍କୁ ଷଢେଇକଳା ଖରସୁଆଁ ରାଜ୍ୟ ଦୁଇଟିକୁ ହରାଇବାକୁ ପଡ଼ିଥଲା ସେ ସମ୍ବନ୍ଧରେ କେତେକ ପ୍ରାମାଣିକ କାଗଜପତ୍ର ବିପୁଳ ଉତ୍ତେଜନା ଭିତରେ ବିଧାନସଭାର ପୁଲିସ ବଜେଟ୍ ଆଲୋଚନାର ଉତ୍ତର ଦେବାକୁ ଯାଇ ମୁଁ ବିଧାନସଭା ଗୃହରେ ଉପସ୍ଥାପିତ କରିଥିଲି ।

## ''ଗଲା ଖରସୁଆଁ ଷଢେଇକଳା''

ଷଢେଇକଳା ଓ ଖରସୁଆଁ ରାଜ୍ୟର ମିଶ୍ରଣ ସମ୍ବନ୍ଧୀୟ ଇତିହାସ ହେଉଛି ଅତି ବିଚିତ୍ର, ଷଡ଼ଯନ୍ତ୍ରପୂର୍ଣ୍ଣ ତଥା ରହସ୍ୟମୟ । ଓଡ଼ିଶାର ଜଣେ ଖ୍ୟାତନାମା କବି ବ୍ୟଥିତ ହୋଇ ବ୍ୟଙ୍ଗକରି ଲେଖିଥିଲେ, ''ଗଲା ଖରସୁଆଁ ଷଢେଇକଳା, ତଥାପି ଓଡ଼ିଶା ବିଶାଳ ହେଲା ।'' ପୁନରୁକ୍ତି ହେଉଥିବା ସତ୍ତ୍ୱେ ଘଟଣାଟିର ଗୁରୁତ୍ୱ ଦୃଷ୍ଟିରୁ ଏଠାରେ କେତେକ ବିଶଦ ବିବରଣୀ ଉଲ୍ଲେଖ କରିବା ଆବଶ୍ୟକ ହେଉଛି । ୧୯୪୭ ମସିହା ଡିସେମ୍ବର ଚଉଦ ତାରିଖ ଚୁକ୍ତି ଅନୁଯାୟୀ ୧୯୪୮ ଜାନୁୟାରୀ ପହିଲା ତାରିଖରେ ପଚିଶଟି ଗଡ଼ଜାତ ରାଜ୍ୟର ଶାସନଭାର ବିଧିବଦ୍ଧଭାବେ ଓଡ଼ିଶା ସରକାର ଗ୍ରହଣ କରିବେ ବୋଲି ସ୍ଥିର ହୋଇଥିଲା । ମାତ୍ର ସେହି ସମୟରେ ଷଢେଇକଳା ଓ ଖରସୁଆଁର ଆଦିବାସୀମାନଙ୍କ ମଧରେ ଘୋର ଉତ୍ତେଜନା ପ୍ରକାଶପାଇଥିଲା । ଅବସ୍ଥା କ୍ରମେ ଜଟିଳ ଆକାର ଧାରଣକଲା ଓ ଭାରତ ସରକାରଙ୍କ ନିର୍ଦ୍ଦେଶାନୁଯାୟୀ ଓଡ଼ିଶା ସରକାର ଜଣେ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କୁ ପୁଲିସ ଦେଇ ଅବସ୍ଥା ସମ୍ଭାଳିବାକୁ ସେଠାକୁ ପଠାଇଥିଲେ । ବିହାର ସରକାର ଏହାର ପ୍ରତିବାଦ କରିଥିଲେ; କିନ୍ତୁ ସବୁଠାରୁ ବଳି ଆଶ୍ଚର୍ଯ୍ୟର କଥା ଯେ ଷଢେଇକଳା ରାଜା ମଧ ବିହାର ସରକାର ସଙ୍ଗେ ସ୍ୱର ମିଳାଇ ଏହାର ପ୍ରତିବାଦ କରିଥିଲେ । ୧୯୪୭ ଡିସେମ୍ବର ଚଉଦ ତାରିଖରେ ହୋଇଥିବା ଚୁକ୍ତି ଅନୁସାରେ ସେହି ମାସ କୋଡ଼ିଏ ତାରିଖରେ ଭାରତ ସରକାର ଓଡ଼ିଶା ଓ ବିହାର

ସରକାରଙ୍କୁ ଜଣାଇଦେଇଥିଲେ ଯେ ଷଢ଼େଇକଳା ଓ ଖରସୁଆଁର ଶାସନଭାର ବର୍ତ୍ତମାନପାଇଁ ଓଡ଼ିଶା ସରକାର ହାତକୁ ନେବେ ଏବଂ ପରେ ବିଷୟଟି ସବୁ ଦିଗରୁ ପୁଙ୍ଖାନୁପୁଙ୍ଖ ଭାବରେ ଆଲୋଚନା କରାଯାଇ ନିଷ୍ପତ୍ତି ଗ୍ରହଣ କରାଯିବ । ପୁନଶ୍ଚ ୧୯୪୮ ମସିହା ଜାନୁୟାରୀ ପହିଲାରେ ଭାରତ ସରକାର ଜଣାଇଦେଲେ ଯେ ଉପରୋକ୍ତ ଦୁଇଟି ରାଜ୍ୟ ବିହାର ସହିତ ମିଶିବ କି ଓଡ଼ିଶା ସହିତ ମିଶିବ ସେ ବିଷୟରେ ବିଚାର କରି ଦେଖିବାପାଇଁ ଗୋଟିଏ ଟ୍ରିବ୍ୟୁନାଲ ନିଯୁକ୍ତ ହେଉଛି; ମାତ୍ର ଆପାତତଃ ଦୁଇଟି ରାଜ୍ୟର ଶାସନଭାର ଓଡ଼ିଶା ସରକାରଙ୍କ ଉପରେ ନ୍ୟସ୍ତ ରହିବ । ବିହାର ସରକାର ଏହା ବିରୁଦ୍ଧରେ ଆପତ୍ତି କରିଥିଲେ ଓ ତତ୍ ସଙ୍ଗେ ସଙ୍ଗେ ଶେଷ ନିଷ୍ପତ୍ତି ନହେବା ପର୍ଯ୍ୟନ୍ତ ଏ ଦୁଇଟି ରାଜ୍ୟ କେନ୍ଦ୍ର ଶାସନାଧୀନ ରଖାଯିବାକୁ ଅନୁରୋଧ କରିଥିଲେ । ବିହାର ସରକାର ଯୁକ୍ତି ବାଢ଼ିଥିଲେ ଯେ ଏ ଦୁଇଟି ରାଜ୍ୟ ପ୍ରଥମରୁ ଓଡ଼ିଶା ସରକାରଙ୍କ ଅଧୀନରେ ରହିଲେ ବିଭିନ୍ନ ଉପାୟରେ ଓଡ଼ିଶା ସରକାର ଓଡ଼ିଶା ସପକ୍ଷରେ ଜନମତ ସୃଷ୍ଟି କରିବାପାଇଁ ତଥା ଟ୍ରିବ୍ୟୁନାଲ୍‌ଙ୍କ ମତ ଉପରେ ପ୍ରଭାବ ପକାଇବାର ସୁଯୋଗ ପାଇବେ । ଭାରତ ସରକାର ବିହାର ସରକାରଙ୍କର ଉପରୋକ୍ତ ପରାମର୍ଶ ଗ୍ରହଣ କରିନଥିଲେ; ମାତ୍ର ବିବାଦମୂଳକ କାର୍ଯ୍ୟରୁ ନିବୃତ୍ତ ରହିବାପାଇଁ ନିର୍ଦ୍ଦେଶ ଦେଇଥିଲେ । ଅନ୍ୟ ପକ୍ଷରେ ଯେଉଁ ଅନୁସନ୍ଧାନ ଟ୍ରିବ୍ୟୁନାଲ୍ ନିଯୁକ୍ତ ହେବାର କଥା ଥିଲା, ତାହା ଷଢ଼େଇକଳା ଓ ଖରସୁଆଁ ସମେତ ସମଗ୍ର ସିଂହଭୂମି ଜିଲ୍ଲା ଉପରେ ଓଡ଼ିଶାର ନ୍ୟାଯ୍ୟ ଦାବିକୁ ବିଚାରକୁ ନେଉ ବୋଲି ଓଡ଼ିଶା ସରକାର ଦାବି କରିଥିଲେ । ଷଢ଼େଇକଳା ରାଜାଙ୍କର ମତିଗତି ସେତେବେଳକୁ ଏକପ୍ରକାର ସ୍ପଷ୍ଟ ହୋଇଯାଇଥିଲା । ଓଡ଼ିଶା ସରକାରଙ୍କୁ ସାହାଯ୍ୟ କରିବା ପରିବର୍ତ୍ତେ ସେ ମିଶ୍ରଣବିରୋଧୀ ଆନ୍ଦୋଳନକୁ ପୂର୍ଣ୍ଣ ସମର୍ଥନ ଜଣାଇଥିଲେ ଏବଂ ସେଥିପାଇଁ କିପରି ପୁଲିସକୁ ଗୁଳି ଚଳେଇବାକୁ ପଡ଼ିଥିଲା ସେ କଥା ପୂର୍ବରୁ କହିଛି ।

ଏହିଠାରେ ମୋର ଅନ୍ୟ ଏକ ରହସ୍ୟମୟ ଘଟଣା ମନେପଡୁଛି । ୧୯୪୭ ମସିହା ଡିସେମ୍ବର ମାସ ଚଉଦ ତାରିଖରେ ଘୋଷିତ ଚୁକ୍ତି ଅନୁଯାୟୀ ଓଡ଼ିଶା ସହିତ ଷଢ଼େଇକଳା ଓ ଖରସୁଆଁର ମିଶ୍ରଣକୁ ଅନ୍ୟଥା କରିବାପାଇଁ ଯେଉଁ ଆନ୍ଦୋଳନର ସୂତ୍ରପାତ ହୋଇଥିଲା ତାହା ସେଇ ଦୁଇଟି ରାଜ୍ୟର ରାଜପରିବାରଙ୍କ ଇଙ୍ଗିତରେହିଁ ହୋଇଥିଲା । ସେଥିରୁ ସେମାନଙ୍କୁ ନିବର୍ତ୍ତାଇବାପାଇଁ ଏବଂ ସେହି ରାଜ୍ୟଦୁଇଟିର ରାଜାମାନଙ୍କର ସମର୍ଥନ ହାସଲ କରିବାପାଇଁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ମହତାବ ଗୋଟିଏ କୌଶଳ ଅବଲମ୍ବନ କରିଥିଲେ । ବଣୁଆ ହାତୀକୁ ଧରିବାକୁ ହେଲେ ଯେପରି ପୋଷାହାତୀର ସାହାଯ୍ୟ ଦରକାର ପଡ଼େ, ସେହିପରି ଷଢ଼େଇକଳା ଓ ଖରସୁଆଁ ରାଜାଦ୍ୱୟଙ୍କୁ ମଣେଇବାପାଇଁ ଖରସୁଆଁ ରାଜାଙ୍କ ଜାମାତା କନିକା ରାଜା ଶ୍ରୀ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ ଓ କେଉଁଝର ରାଜାଙ୍କ ଭାଇ ଛୋଟରାୟ ସାହେବ ଶ୍ରୀ ଲକ୍ଷ୍ମୀନାରାୟଣ ଭଞ୍ଜଦେଓଙ୍କୁ ମହତାବବାବୁ ସେମାନଙ୍କ ପାଖକୁ ପଠାଇଥିଲେ । ଶ୍ରୀ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ ସେତେବେଳେ ଓଡ଼ିଶା ବିଧାନସଭାର ବିରୋଧୀଦଳର ନେତା ଥିଲେ । ପୂର୍ବତନ ଗଡ଼ଜାତ ରାଜାମାନଙ୍କୁ କେତେକ ସୁବିଧା ଓ ଅଧିକାର ଦେଲେ ସେମାନଙ୍କୁ ଓଡ଼ିଶା ସରକାରଙ୍କ ସହିତ ସହଯୋଗ କରିବାପାଇଁ ମନାଇଁପାରିବେ ବୋଲି ସେ କେତେକ ପ୍ରସ୍ତାବ ଦେଇଥିଲେ । ଶ୍ରୀ ଭଞ୍ଜଦେଓଙ୍କ ସମାଧାନ ସୂତ୍ର ଭିତରେ ଓଡ଼ିଶାରେ ଦୁଇ ପରିଷଦବିଶିଷ୍ଟ ବିଧାନସଭା (Legislative Assembly and Legislative Council) ରହିବା ଏବଂ ଉକ୍ତ ବିଧାନପରିଷଦରେ ରାଜବଂଶର ଲୋକଙ୍କପାଇଁ କେତୋଟି ସ୍ଥାନ ସଂରକ୍ଷିତ ରହିବାର ପ୍ରସ୍ତାବ ଥିଲା । ଆଉ ମଧ କଥା ଥିଲା ଯେ ମନ୍ତ୍ରିମଣ୍ଡଳରେ ମଧ ରାଜାମାନଙ୍କପାଇଁ ଅନ୍ତତଃ ଗୋଟିଏ ସ୍ଥାନ ସଂରକ୍ଷିତ ହୋଇ ରହିବ । ଏହା ବ୍ୟତୀତ ଶିକ୍ଷା, ସ୍ୱାସ୍ଥ୍ୟ ଓ ସ୍ଥାନୀୟ ରାସ୍ତାଘାଟ ସମ୍ବନ୍ଧୀୟ କେତେକ ସ୍ୱାୟତ୍ତଶାସନ ଅଧିକାର ରାଜାମାନଙ୍କ ଦାୟିତ୍ୱରେ ରହିବାର ପ୍ରସ୍ତାବ ଦିଆଯାଇଥିଲା । ରାଜାମାନଙ୍କର କିଛି କିଛି ହାତପାଣି ରହିବା ଓ ସେମାନେ ପୂର୍ବରୁ ଯେଉଁସବୁ

ପ୍ରତିଶ୍ରୁତି ପାଇଥିଲେ ସେଗୁଡ଼ିକୁ ମଧ୍ୟ ଓଡ଼ିଶା ସରକାର ସମ୍ମାନର ସହିତ ପାଳନ କରିବା କଥା ଶ୍ରୀ ଭଞ୍ଜଦେଓଙ୍କ ପ୍ରସ୍ତାବଗୁଡ଼ିକ ମଧ୍ୟରେ ସ୍ଥାନ ପାଇଥିଲା । ଯେକୌଣସି ଉପାୟରେ ହେଉ ପଛେ ଏ ଦୁଇଟି ରାଜ୍ୟ କୌଣସିମତେ ଓଡ଼ିଶା ସହିତ ରହିବା ଲକ୍ଷ୍ୟ ହାସଲ କରିବା ଥିଲା ମହତାବଙ୍କର ଉଦ୍ଦେଶ୍ୟ । ତେଣୁ ଶ୍ରୀ ମହତାବ ନିଜ ପକ୍ଷରୁ ଏସବୁ ପ୍ରସ୍ତାବରେ ସମ୍ମତି ଦେଇଥିଲେ ଏବଂ କେନ୍ଦ୍ର ସରକାରଙ୍କଦ୍ୱାରା ତଥା ଶାସନବିଧାୟକସଭାରେ ସେଗୁଡ଼ିକ ଗ୍ରହଣ କରାଇନେବାକୁ ଉଦ୍ୟମ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଶ୍ରୀ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ ଓ ଶ୍ରୀ ଲକ୍ଷ୍ମୀନାରାୟଣ ଭଞ୍ଜଦେଓ ଉଭୟେ ଯାଇ ଷଢ଼େଇକଳା ରାଜାଙ୍କ ସହ ସାକ୍ଷାତ୍ କରି ଏସବୁକଥା କହି ପୂର୍ବ ଅଧିକାର ବିନିମୟରେ ଓଡ଼ିଶା ସରକାରଙ୍କ ସହିତ ସହଯୋଗ କରି ଏଭଳି ସୁବିଧାସୁଯୋଗ ଭୋଗକରିବାକୁ ପ୍ରବର୍ତ୍ତାଇଥିଲେ । ଷଢ଼େଇକଳାର ରାଜା କୁଆଡ଼େ ଏଥିପ୍ରତି ଆଗ୍ରହ ପ୍ରକାଶ କରିଥିଲେ; ମାତ୍ର ଠିକ୍ ସେହି ସମୟରେ ଢେଙ୍କାନାଳ ରାଜା ସେଠାରେ ପହଞ୍ଚି ତାଙ୍କୁ ଓଡ଼ିଶା ସରକାରଙ୍କ ବିରୁଦ୍ଧରେ ଉସ୍କାଇଥିଲେ ଏବଂ ପ୍ରସ୍ତାବଗୁଡ଼ିକ ପ୍ରକୃତରେ କାର୍ଯ୍ୟକାରୀ ନହେବା ପର୍ଯ୍ୟନ୍ତ ମହତାବଙ୍କ କଥାରେ ବିଶ୍ୱାସ କରି ତାଙ୍କ ଫନ୍ଦିରେ ପଡ଼ିବା ଉଚିତ ହେବନାହିଁ ବୋଲି ମତାଇଥିଲେ । ସୁବିଧା ହାସଲ ଓ ସହଯୋଗ ପ୍ରସ୍ତାବ ଏକସମୟରେ କାର୍ଯ୍ୟକାରୀ ହେବା ଉଚିତ ବୋଲି ସେମାନେ ଚାହିଁଲେ । ଏଭଳି ପ୍ରସ୍ତାବଗୁଡ଼ିକ କାର୍ଯ୍ୟକାରୀ କରିବାକୁ ହେଲେ ଅନେକ ଆନୁଷଙ୍ଗିକ ପଦକ୍ଷେପ ନେବାକୁ ପଡ଼ିବ ଓ ତାହା ସମୟସାପେକ୍ଷ ବୋଲି ମହତାବବାବୁ କହିବାରୁ ଆଲୋଚନା ଫଳପ୍ରଦ ହୋଇନଥିଲା । ଇତ୍ୟବସରରେ ସେମାନଙ୍କ ମଧ୍ୟରେ ବିହାର ସରକାରଙ୍କଠାରୁ ଅଧିକ ସୁବିଧାସୁଯୋଗ ହାସଲ କରିବାର ଉଦ୍ୟମ ଓ ଆଶା ସୃଷ୍ଟି ହେଲା । ବିହାର ରାଜ୍ୟର କେତେକ ନେତାଙ୍କ ସହିତ ଏ ସଂକ୍ରାନ୍ତରେ ସେମାନଙ୍କର ଯେଉଁ ପତ୍ର ବିନିମୟ ହୋଇଥିଲା ସେଥିରୁ ଏହାର ସ୍ପଷ୍ଟ ସୂଚନା ମିଳେ ।

ତା'ପରେ ୧୯୪୮ ମସିହା ଫେବୃୟାରୀ ମାସରେ ଏ ଦୁଇଟି ରାଜ୍ୟର ଭବିଷ୍ୟତ ନିର୍ଣ୍ଣୟ କରିବାପାଇଁ ଭାରତ ସରକାର ବମ୍ବେ ହାଇକୋର୍ଟର ବିଚାରପତି ଶ୍ରୀଯୁକ୍ତ ବାଉଦେକରଙ୍କୁ ନିଯୁକ୍ତ କରିଥିଲେ । ଏହି ଘୋଷଣା ପ୍ରକାଶ ପାଇବା ପରେ ପରେ ଷଢ଼େଇକଳା ରାଜା ଓ ତାଙ୍କର ପଟାୟତ ଓଡ଼ିଶା ସରକାରଙ୍କ କର୍ମଚାରୀମାନଙ୍କ ବିରୁଦ୍ଧରେ ଅଭିଯାନ ଆରମ୍ଭ କରିଦେଇଥିଲେ । ସେମାନେ ପୂର୍ବେ ଯେଉଁ ପ୍ରଜା ସମିତି ଗଠନ କରି ପ୍ରଜାମଣ୍ଡଳ ବିରୁଦ୍ଧରେ ଛିଡ଼ାକରାଇଥିଲେ, ବର୍ତ୍ତମାନ ସେହି ପ୍ରଜା ସମିତିକୁ ଓଡ଼ିଶାବିରୋଧୀ କାର୍ଯ୍ୟରେ ଲଗାଇଥିଲେ । ପ୍ରଚାର ହେଲା ତାଙ୍କ ରାଜ୍ୟର କିଛି ସ୍ୱାତନ୍ତ୍ର୍ୟ ରହିବା ଆବଶ୍ୟକ । ତାଙ୍କ ନିଜର ଗୋଟିଏ ଆଇନସଭା ରହିଲେ ସେମାନେ ନିଜପାଇଁ ଆଇନ ପ୍ରଣୟନ କରିପାରିବେ । ଓଡ଼ିଶା ସହିତ ସେମାନଙ୍କୁ ଜବରଦସ୍ତି ମିଶାଇଦିଆଯାଇ ସେମାନଙ୍କର ସେହି ସ୍ୱାଧିକାରକୁ ଯେପରି ବଳିଦିଆଯାଇଛି ତାହା ବରଦାସ୍ତ କରାଯିବନାହିଁ । ରାଜା-ମହାରାଜାଙ୍କର ମତିଗତି ବଡ଼ ବିଚିତ୍ର ! ତତ୍କାଳୀନ ବଲାଙ୍ଗୀର ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ, କଳାହାଣ୍ଡିର ମହାରାଜା ଶ୍ରୀ ପ୍ରତାପ କେଶରୀ ଦେଓ ପ୍ରମୁଖ ନିଭୃତରେ ଷଢ଼େଇକଳା ଓ ଖରସୁଆଁର ଏହି ଓଡ଼ିଶାବିରୋଧୀ ଆନ୍ଦୋଳନ ସହିତ ସଂପୃକ୍ତ ଥିଲେ । ସେମାନଙ୍କ ଅନିଚ୍ଛାସତ୍ତ୍ୱେ ଦେଶୀୟ ରାଜ୍ୟଗୁଡ଼ିକର ଓଡ଼ିଶା ସହିତ ମିଶ୍ରଣ ହୋଇଯାଇଥିଲା । ମିଶ୍ରଣଟାକୁ ଓଲଟପାଲଟ ନକରିପାରିଲେ ମଧ୍ୟ ଓଡ଼ିଶାର ପୂର୍ବତନ ଗଡ଼ଜାତ ରାଜ୍ୟଗୁଡ଼ିକୁ ମିଶାଇ ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ଗଠନ କରିପାରିଲେ ଅନ୍ତତଃପକ୍ଷେ ସେମାନଙ୍କର ପ୍ରାଧାନ୍ୟ ସେଠାରେ ବଜାୟରହିପାରିବ ଓ ସେମାନଙ୍କ ମଧ୍ୟରୁ କେହି ଜଣେ ରାଜପ୍ରମୁଖ ହୋଇପାରିବେ ବୋଲି ଆଶା ଜାଗ୍ରତ ହୋଇଥିଲା । ଏ କାର୍ଯ୍ୟ ପରିଚାଳନା ନିମନ୍ତେ ଏକ ଘାଟି ଦରକାର । ତେଣୁ ଷଢ଼େଇକଳା ଓ ଖରସୁଆଁକୁ ଓଡ଼ିଶା ହାତରୁ ଛଡ଼ାଇନେଲେ ସେମାନଙ୍କର ଉଦ୍ଦେଶ୍ୟ ସାଧିତ ହୋଇପାରିବ ବୋଲି ସେମାନେ ଭାବିଥିଲେ । ସେହି ରାଜ୍ୟଦୁଇଟିରେ ଗଣ୍ଡଗୋଳିଆ ପରିସ୍ଥିତି ସୃଷ୍ଟି ହେଲେ ସେମାନଙ୍କର ସୁବିଧା ହେବ ବୋଲି ସେମାନଙ୍କ ସହିତ ଷଢ଼େଇକଳା ରାଜା ମଧ୍ୟ ଆଶାପୋଷଣ କରିଥିଲେ । ଏକ

ପକ୍ଷରେ ଭାରତ ସରକାରଙ୍କୁ ଗଣ୍ଡଗୋଳର କାରଣ ସଂକ୍ରାନ୍ତରେ କୁହାଗଲା ଯେ ସେହି ରାଜ୍ୟଦୁଇଟିର ଅଧିବାସୀମାନେ ଓଡ଼ିଶା ଶାସନାଧୀନ ହୋଇ ରହିବାକୁ ଚାହାଁନ୍ତିନାହିଁ । ଅନ୍ୟ ଦିଗରେ ବିହାର ସହିତ ମିଶିବାପାଇଁ ଷଢ଼େଇକଳା ଓ ଖରସୁଆଁର ଅଧିବାସୀମାନେ ବ୍ୟାକୁଳ ବୋଲି ବିହାର ସରକାରଙ୍କୁ କୁହାଯାଇଥିଲା । ଜୟପାଳ ସିଂଙ୍କୁ କୁହାଗଲା ଯେ ଷଢ଼େଇକଳା ଓ ଖରସୁଆଁ ପ୍ରସ୍ତାବିତ ଝାଡ଼ଖଣ୍ଡ ରାଜ୍ୟରେ ମିଶିବ । ବିହାର ଓ ଓଡ଼ିଶା ସରକାରଙ୍କ ମଧ୍ୟରେ ମନୋମାଳିନ୍ୟ ସୃଷ୍ଟି କରିଦେଇ ଏବଂ ଭାରତ ସରକାରଙ୍କୁ ଧୂଆଁବାଣ ମାରି ମଝିରେ ରାଜାରାଜୁଡ଼ାମାନେ ସେମାନଙ୍କର ଈପ୍‌ସିତ 'ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ୟୁନିୟନ୍' ନାମକ ସ୍ୱତନ୍ତ୍ର ରାଜ୍ୟ ଗଠନ ମସୁଧାରେ ପୂର୍ଣ୍ଣପ୍ରାଣ ଦେଇ ଆନ୍ଦୋଳନରେ ଲାଗିପଡ଼ିଲେ । ବିହାର ସହିତ ମିଶି ଷଢ଼େଇକଳା ଓ ଖରସୁଆଁର ରାଜାମାନେ ତାଙ୍କର ପୂର୍ବ ପରିକଳ୍ପିତ 'ପ୍ରଜାରାଜ୍ୟ' ସ୍ଥାପନ ଅଭିସନ୍ଧିରେ ଲିପ୍ତରହିଥିଲେ । ବ୍ୟବସ୍ଥାସଭାରେ ଆଲୋଚନା ସମୟରେ ସଭ୍ୟମାନଙ୍କର ଅବଗତି ନିମନ୍ତେ ମୁଁ ସେସବୁ ତଥ୍ୟ ଉପସ୍ଥାପିତ କରି ସମସ୍ତ ରହସ୍ୟ ଉଦ୍‌ଘାଟିତ କରିଥିଲି । ଗୋଟିଏ ଚିଠିରେ ଷଢ଼େଇକଳାର ପଞ୍ଚାୟତ ସାହେବ ୧୯୪୮ ମସିହା ଏପ୍ରିଲ ୧୯ ତାରିଖରେ ଲେଖିଥିଲେ, "ଆମେ ଚାହୁଁ ବିହାରକୁ ଯିବା । ଥରେ ଓଡ଼ିଶା କବଳରୁ ମୁକୁଳିଲେ ଆମେ ଅନ୍ୟ ଗଡ଼ଜାତମାନଙ୍କୁ ନେତୃତ୍ୱ ଦେଇପାରିବୁ । ଦିଲ୍ଲୀ ଆମ ନିବେଦନରେ ଟିକେ ତରଳିଲାପରି ଦିଶୁଛି । ଆମେ ଯେଉଁ ଧରଣର ପ୍ରଜାରାଜ୍ୟ କଥା କଳ୍ପନା କରୁଛୁ, ପରିଶେଷରେ ତାହା ମିଳିବ ବୋଲି ଦୃଢ଼ ଆଶା ରହିଛି ।" ଏହି ପ୍ରସଙ୍ଗରେ ଅନ୍ୟ ଏକ ଚିଠିର ନକଲ ମୁଁ ବିଧାନସଭାରେ ଉପସ୍ଥାପିତ କରିଥିଲି । ତାହା ଷଢ଼େଇକଳାର ରାଜା ଏପ୍ରିଲ୍ ଚାରି ତାରିଖରେ କୁମାର ପ୍ରତାପଙ୍କୁ ଲେଖିଥିଲେ :

ଗୋପନୀୟ

କ୍ୟାମ୍ପ-ପାଟିଆଲା ହାଉସ୍, ନୂଆଦିଲ୍ଲୀ
ଷଢ଼େଇକଳା, ତା ୪ ଏପ୍ରିଲ୍, ୧୯୪୮

ପ୍ରିୟ ମଝିଆଁ ଭାଇ,

ଆପଣ କୋରିଆ ରାଜାସାହେବଙ୍କଠାରୁ ୨୪ ହଜାର ୮ ଶହ ଟଙ୍କାର ଗୋଟିଏ ଚେକ୍ ପାଇଥିଲେ । ଏହି ଟଙ୍କାର କେତେକାଂଶ ଆନ୍ଦୋଳନପାଇଁ ଖର୍ଚ୍ଚ କରିବାକୁ ହେବ । ଏହି କାମପାଇଁ ଦଶ ହଜାର ଟଙ୍କାର ଗୋଟିଏ ଚେକ୍ ଶ୍ରୀ ମଧୁସୂଦନ ମହାନ୍ତିଙ୍କ ନାମରେ କାଟିଦେବେ । ଏହି ପତ୍ର ନେଇ ଶ୍ରୀ ମହାନ୍ତି ଆପଣଙ୍କ ସଙ୍ଗେ ସାକ୍ଷାତ୍ କରିବେ । ପତି ଓ ମୁଁ ଏ ବିଷୟରେ କଥାବାର୍ତ୍ତା କରିଛୁ । ଟ୍ରିବ୍ୟୁନାଲ୍ ଖୁବ୍ ଶୀଘ୍ର ଷଢ଼େଇକଳା ପରିଦର୍ଶନ କରିବାକୁ ଆସିବେ । ଆପଣ ଅବିଳମ୍ବେ ଷଢ଼େଇକଳା ଚାଲିଆସନ୍ତୁ ।

କୁମାର ବିଜୟ ପ୍ରତାପ ସିଂହ
୩୧, କାମାକ୍ ଷ୍ଟ୍ରିଟ୍, କଲିକତା

ଆପଣଙ୍କର ସ୍ନେହର
ଏ.ପି.ସିଂହ

ଉଲ୍ଲିଖିତ କେତୋଟି ଦୃଷ୍ଟାନ୍ତରୁ ଷଢ଼େଇକଳା ରାଜା ଏବଂ ସେ ରାଜବଂଶର ଲୋକମାନଙ୍କର ଓଡ଼ିଶା ସହିତ ନମିଶିବାପାଇଁ ମନୋଭାବ ଓ ଷଡ଼ଯନ୍ତ୍ର ସମ୍ପର୍କରେ ବୁଝିବାରେ ପାଠକମାନଙ୍କର କିଛି ଅସୁବିଧା ହେବନାହିଁ । ଏହି ରାଜ୍ୟଦୁଇଟି ଓଡ଼ିଶାରେ ରହିବ କି ବିହାରକୁ ଯିବ, ସେ ବିଷୟ ବିଚାର କରିବାପାଇଁ କେନ୍ଦ୍ର ସରକାର ଜଣେ ବିଚାରପତିଙ୍କୁ ନିଯୁକ୍ତ କରିଥାଆନ୍ତି । ତେଣୁ ଓଡ଼ିଆପ୍ରେମୀ ତଥା ଓଡ଼ିଶା ସହିତ ମିଶ୍ରଣ ସପକ୍ଷବାଦୀ ଲୋକଙ୍କ ଆଗରେ ଉପସ୍ଥିତ କର୍ତ୍ତବ୍ୟ ଆସିଥିଲା କିପରି ଅନୁକୂଳ ଜନମତ ସୃଷ୍ଟି କରି ପ୍ରମାଣ କରିବେ ଯେ ଷଢ଼େଇକଳା ଓ ଖରସୁଆଁର ଅଧିବାସୀ ଓଡ଼ିଶା ସହିତ ମିଶି ରହିବାକୁ ଚାହାନ୍ତି । ମାତ୍ର ସେ କଥା କରିବା ଦୂରେଥାଉ, ଏ ପରିସ୍ଥିତିରେ ଓଡ଼ିଶାର ଦାବି କିପରି ବ୍ୟର୍ଥ ହେବ ସେଥିପାଇଁ ଜୟପାଳ ସିଂଙ୍କ ସହିତ ଚକ୍ରାନ୍ତ କରି ରାଜବଂଶୀୟ ଲୋକମାନେ ଷଡ଼ଯନ୍ତ୍ରରେ ଲିପ୍ତ ରହିଥିଲେ । ବଲାଙ୍ଗୀରର ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଷଢ଼େଇକଳା ରାଜାଙ୍କର ଦ୍ୱିତୀୟ ପୁତ୍ର ଥିଲେ । ସେ ବଲାଙ୍ଗୀର ରାଜବଂଶକୁ ପୋଷ୍ୟପୁତ୍ର ହୋଇ ଆସିଥିଲେ ।

ଷଢ଼େଇକଳାକୁ କେନ୍ଦ୍ରକରି 'ଇଉନିୟନ୍' ପାଇଁ ଆନ୍ଦୋଳନ କରିବାରେ ସେ ଅତ୍ୟନ୍ତ ଲିପ୍ତ ଥିଲେ। ତେଣୁ ଷଢ଼େଇକଳା ରାଜପରିବାରବର୍ଗଙ୍କର ଓଡ଼ିଶାବିରୋଧୀ କାର୍ଯ୍ୟ ସହିତ ଶ୍ରୀ ଆର୍.ଏନ୍.ସିଂହଦେଓଙ୍କର ଯେ ସମ୍ପର୍କ ନ ଥିଲା, ଏକଥା ବିଶ୍ୱାସ କରିବା ସହଜ ନୁହେଁ। 'ଚିହ୍ନିରଖ ଭ୍ରାତାଙ୍କ ବଦନ' ଶିରୋନାମା ତଳେ ତତ୍କାଳୀନ ବଲାଙ୍ଗୀର ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଏବଂ ତାଙ୍କ ନିଜ ପିତା ଷଢ଼େଇକଳା ରାଜା ଶ୍ରୀ ଏ.ଏନ୍.ସିଂହଦେଓ ଲେଖିଥିବା ଦୁଇଟି ଅଭିସନ୍ଧିମୂଳକ ଚିଠିରୁ ଉଦ୍ଧୃତି ଦେଇ ଏହାପରେ ଯେଉଁ ଆଲୋଚନା କରାଯାଇଛି, ସେଥିରେ ପାଟଣା ମହାରାଜାଙ୍କ ଅଭିସନ୍ଧି ସ୍ପଷ୍ଟ ପ୍ରମାଣିତ ହୋଇଯାଇଛି। ଷଢ଼େଇକଳାର ପଟ୍ଟାୟତଙ୍କୁ ଗିରଫ କରି କଟକ ଅଣାଯାଉଥିବା ବାଟରେ ସେ ପାଟଣା ମହାରାଜାଙ୍କ ନେତୃତ୍ୱରେ ପରିଚାଳିତ ୟୁନିୟନ୍ ମୁଭମେଣ୍ଟର ଅସଲ ମତଲବ କହିପକାଇଥିଲେ। ରିପୋର୍ଟରେ ଅଛି ଯେ ସେ କୁଆଡ଼େ କହିଥିଲେ–

"The ruler of Saraikella and his sons, like other rulers, are opposed to the merger with any province. They were moving in their own way and talks to this effect are going on at Delhi. Within the next two months interesting developments would take place. That is why the pro-union movement is being carried on alongside other movements."

ଏମାନଙ୍କ ଚକ୍ରାନ୍ତରେ ଓଡ଼ିଶା ସରକାରଙ୍କୁ ବଦ୍‌ନାମ କରିବାପାଇଁ ସେଠାରେ ନାନାପ୍ରକାର ଅଶାନ୍ତି ସୃଷ୍ଟି କରାଯାଇଥିଲା। ଏପରିକି ଶ୍ରୀ ପ୍ରଫୁଲ୍ଲ କୁମାର ତ୍ରିପାଠୀ ନାମକ ଜଣେ ଓଡ଼ିଆ ମାଜିଷ୍ଟ୍ରେଟଙ୍କ ସହିତ ଅନ୍ୟ କେତେକ କର୍ମଚାରୀଙ୍କୁ ହତ୍ୟା କରିବାପାଇଁ ଉଦ୍ୟମ କରାଯାଇଥିଲା। ସୌଭାଗ୍ୟକ୍ରମେ ସେ ଚକ୍ରାନ୍ତଟି ଧରାପଡ଼ିଯାଇଥିଲା। ମୋର ମନେଅଛି, ସେତେବେଳେ ଓଡ଼ିଶା ବିଧାନସଭାରେ ମଧ୍ୟ ସେହି ହତ୍ୟା ଷଡ଼ଯନ୍ତ୍ର କଥା ଉତ୍‌ଥାପିତ ହୋଇଥିଲା। ବିଧାନସଭା ସଦସ୍ୟ ଶ୍ରୀ ଜୟକୃଷ୍ଣ ମହାନ୍ତି ଏହି ଷଡ଼ଯନ୍ତ୍ର ସମ୍ବନ୍ଧରେ ବିଧାନସଭାରେ ବହୁ ପ୍ରଶ୍ନ ଉତ୍‌ଥାପନ କରିଥିଲେ।

ପ୍ରସ୍ତାବିତ ଟ୍ରିବ୍ୟୁନାଲ୍ କାର୍ଯ୍ୟକାରୀ ହୋଇପାରିଲାନାହିଁ। ଯେଉଁ ବିଚାରପତିଙ୍କୁ ନିଯୁକ୍ତ କରାଯାଇଥିଲା, ସେ ଦାୟିତ୍ୱ ନେବାରେ ବହୁ ବିଳମ୍ବ କରିଥିଲେ। ତେଣୁ ଭାରତ ସରକାର ବିଷୟଟି ନିଷ୍ପତ୍ତି କରିବା ଭାର ନିଜ ହାତକୁ ନେଇଥିଲେ। ୧୯୪୮ ମସିହା ମେ' ମାସ ସତର ତାରିଖରେ ଏ ଦୁଇଟି ରାଜ୍ୟର ଶାସନଭାର ବିହାର ସରକାରଙ୍କ ହାତରେ ନ୍ୟସ୍ତକରାଯାଇଥିଲା। କି ପ୍ରକାର ପରିସ୍ଥିତିରେ ସେକଥା କରାଗଲା, ତାହା ମୁଁ ପୂର୍ବରୁ ଅନ୍ୟ ପ୍ରସଙ୍ଗରେ ବର୍ଣ୍ଣନା କରିଛି। ଓଡ଼ିଶା ଶାସନ ଅଧୀନରୁ ଷଢ଼େଇକଳା ଓ ଖରସୂଆଁ ଚାଲିଗଲାବେଳେକୁ ଷଢ଼େଇକଳାର ରାଜବଂଶୀୟ ଲୋକେ ଲେଶମାତ୍ର ଦୁଃଖିତ ହୋଇନଥିଲେ; ବରଂ ବିହାର ଅଧୀନକୁ ସେ ଦୁଇଟି ରାଜ୍ୟ କିପରି ଶୀଘ୍ର ହସ୍ତାନ୍ତରିତ ହେବ ସେଥିପାଇଁ ସେମାନେ ଖୁବ୍ ବ୍ୟସ୍ତ ଥିଲେ। ଏ ଦୁଇଟି ରାଜ୍ୟ ବିହାର ଅଧୀନକୁ ଯିବା ପୂର୍ବରୁ ୧୯୪୮ ମସିହା ମେ' ମାସ ଦଶ ତାରିଖ ଓ ଚଉଦ ତାରିଖରେ ସେ ସମ୍ପର୍କରେ ଷଢ଼େଇକଳାର କୁମାର ସାହେବଙ୍କୁ ଶ୍ରୀ ଜୟପାଳ ସିଂ ଯେଉଁ ଚିଠି ଦୁଇଟି ଲେଖିଥିଲେ ନିମ୍ନରେ ମୁଁ ତାହା ଉଦ୍ଧାର କରୁଛି। ତାହା ପଢ଼ିଲେ ଜଣାଯିବ କିପରି ଭାବରେ ଏ ଦୁଇଟି ରାଜ୍ୟକୁ ଓଡ଼ିଶାରୁ କାଢ଼ି ନେବାପାଇଁ ଉଦ୍ୟମ ହେଉଥିଲା।

ଷଢ଼େଇକଳା କୁମାର ସାହେବ,
୩।୧ କମାକ୍ ଷ୍ଟ୍ରିଟ୍, କଲିକତା

୨୧୭, ଇମ୍ପେରିଆଲ୍ ହୋଟେଲ୍
ନୂଆଦିଲ୍ଲୀ
ମେ' ୧୦,୧୯୪୮

ପ୍ରିୟ କୁମାର ସାହେବ,

ଯଦିଓ ସପ୍ତାହକ ପର୍ଯ୍ୟନ୍ତ କୌଣସି ଘୋଷଣା ପ୍ରକାଶ ପାଉନାହିଁ ତଥାପି ଏ କଥା ନିର୍ଦ୍ଧାର୍ଯ୍ୟ ଯେ ଶ୍ରୀ ମହତାବ ହାରିଗଲେ; ଷଢ଼େଇକଳା ଓ ଖରସୂଆଁ ବିହାର ଶାସନାଧୀନ ହେବ। ଏହାର

ପରବର୍ତ୍ତୀ କାର୍ଯ୍ୟକ୍ରମ ମଧ୍ୟ ଏହିଭଳି କଠିନ ହେବ ଏବଂ ମୁଁ ଆଶାକରୁଛି ଯେ ଅନ୍ତତଃ ଛୋଟନାଗପୁର ଗଡ଼ଜାତ ମଣ୍ଡଳୀର ଅବଶିଷ୍ଟ ନ'ଟି ରାଜ୍ୟ ଏତିକିବେଳେ ଅଣ୍ଡାଭିଡ଼ି ଟଙ୍କା ବିଞ୍ଚାଡ଼ିବାକୁ ବାହାରିବେ, ତା'ହେଲେ ନିର୍ଦ୍ଦିଷ୍ଟ କାମ ହୋଇପାରିବ ।

ଆପଣଙ୍କର ବିଶ୍ୱସ୍ତ
ଜୟପାଳ ସିଂହ

X X X X

ନୂଆଦିଲ୍ଲୀ
ମେ' ୧୪ ତାରିଖ, ୧୯୪୮

ପ୍ରିୟ କୁମାର ସାହେବ,

ଏହି ପତ୍ରଖଣ୍ଡିକ ପାଇ ଆପଣ ସିଂହଭୂମି ଚାଲିଯିବେ । କାରଣ ଷଢ଼େଇକଳା ଓ ଖରସୁଆଁର ହସ୍ତାନ୍ତର ଉତ୍ସବ ଅନୁଷ୍ଠିତ ହେଲାବେଳକୁ ଆପଣ ସେଠାରେ ଉପସ୍ଥିତ ରହିପାରିବେ । ଅଳ୍ପ କେତେଦିନ ଭିତରେ ଏ ଦୁଇଟି ରାଜ୍ୟ ଆମକୁ ମିଳିଯାଉଛି ।

ଅବଶ୍ୟ ଓଡ଼ିଆମାନେ ଗଣ୍ଡଗୋଳ କରିବାକୁ ଚେଷ୍ଟାକରିବେ । କିନ୍ତୁ ଆମକୁ ଏ ସମସ୍ତ ଛୋଟ ଛୋଟ କଥାରୁ ଅଲଗା ରହିବାକୁ ପଡ଼ିବ ଓ ଦୁଇଟି ରାଜ୍ୟକୁ ଓଡ଼ିଶାରୁ ବାହାରକରିଆଣି ବିହାର ହାତରେ ଦେଇଦେବା କାର୍ଯ୍ୟ ଯେପରି ନିର୍ବିଘ୍ନରେ ସମାପନ ହୁଏ, ତହିଁର ବ୍ୟବସ୍ଥା କରିବାକୁ ହେବ । ପରେ ଆମେ ଭଡ଼ାଟିଆ ଓଡ଼ିଆଙ୍କୁ ଦେଖିନେବା । । ଇତି ।

ଆପଣଙ୍କର ବିଶ୍ୱସ୍ତ
ଜୟପାଳ ସିଂହ

## ଭଲକରି ଚିହ୍ନିରଖ ଭ୍ରାତାଙ୍କ ବଦନ

ଯେଉଁ କେତୋଟି ଦୃଷ୍ଟାନ୍ତ ଉପରେ ଦିଆଗଲା, ସେଥିରୁ ଭଲଭାବରେ ଜଣାପଡ଼ିବ ଯେ ଓଡ଼ିଶାବାସୀ ଷଢ଼େଇକଳା ଓ ଖରସୁଆଁ ହରାଇବା ଏବଂ ସେହି ଦୁଇଟି ଗଡ଼ଜାତ ରାଜ୍ୟ ବିହାରଶାସନାଧୀନ ହେବାପାଇଁ ଓଡ଼ିଶା ସରକାର ଦାୟୀ ନୁହଁନ୍ତି; ଦାୟୀ ହେଉଛନ୍ତି ଷଢ଼େଇକଳାର ରାଜପରିବାର ଓ ଓଡ଼ିଶାର ଅନ୍ୟାନ୍ୟ ରାଜା-ମହାରାଜାମାନେ, ଯେଉଁମାନେ କି ଓଡ଼ିଶା ସହିତ ଗଡ଼ଜାତ ରାଜ୍ୟଗୁଡ଼ିକ ମିଶିଯିବାରୁ ରାଗରେ ରକ୍ତଚାଉଳ ଗୋବାଉଥିଲେ ଏବଂ ପୃଥକ୍ 'ୟୁନିୟନ' ଗଠନପାଇଁ ଆନ୍ଦୋଳନ ସହିତ ଜଡ଼ିତ ଥିଲେ । ଷଢ଼େଇକଳା ଓ ଖରସୁଆଁ ବିହାର ପ୍ରଦେଶ ସହିତ ମିଶିଲା; କିନ୍ତୁ ତା'ପରେ ଘଟଣା ହେଲା ବଡ଼ କୌତୂହଳପ୍ରଦ । କଥାରେ ଅଛି, ''ପଳେଇ ପଶିଲି ମାଉସୀ ଘରେ, ମାଉସୀ ମାରିଲା ଦି' ପାହାରେ ।'' ଆପଣା ମାଆକୁ ପ୍ରତାରିତ ଓ ପ୍ରତ୍ୟାଖ୍ୟାନ କରିବା ପରେ ଷଢ଼େଇକଳା ଓ ଖରସୁଆଁର ରାଜାମାନେ ଯେଉଁ ଅଭିସନ୍ଧି ଘେନି ବିହାର ସଙ୍ଗେ ମିଶିଥିଲେ, ତାହା ତ ସଫଳ ହେଲାନାହିଁ; ବରଂ ଗୋଡ୍ରମାରୁମାନଙ୍କୁ ଅନ୍ୟମାନେ ଯେପରି ସନ୍ଦେହ କରନ୍ତି, ଦୂରଛଡ଼ା କରି ରଖନ୍ତି; ଏମାନେ ସେଠାରେ ସେହିପରି ଦଶା ଭୋଗିଲେ । ନେଡ଼ିଗୁଡ଼ କହୁଣିକୁ ବୋହିଗଲା ପରେ ଏହି ରାଜା-ମହାରାଜାମାନେ ଏକସ୍ୱରରେ ଚିତ୍କାର କରିବାର ଶୁଣାଗଲା, ''ଷଢ଼େଇକଳା ଓ ଖରସୁଆଁକୁ ବିହାରରୁ ଫେରାଇଆଣି ଓଡ଼ିଶା ସହିତ ମିଶାଯାଉ ।'' ବିହାର ସରକାରଙ୍କଠାରୁ ଉପଯୁକ୍ତ ଶିକ୍ଷା ପାଇବା ପରେ ବୋଧହୁଏ ଏ ରାଜା-ମହାରାଜାଙ୍କର ଚୈତନ୍ୟ ଉଦୟ ହେଲା । ବିହାରଠାରୁ କିପରି ଭାବରେ ହତାଶ ହୋଇଥିଲେ ସେ ବିଷୟ ଶ୍ରୀ ନୃପେନ୍ଦ୍ର ନାରାୟଣ ସିଂହଦେଓ ତାଙ୍କର ବଡ଼ ଗାଟ କୁମାର ବିନୟ ପ୍ରତାପଙ୍କୁ ଲେଖିଥିବା ଚିଠିରୁ ଜଣାପଡ଼େ । ସେ ସଫା ଲେଖିଥିଲେ – ଓଡ଼ିଶା ନୁହେଁ, ବିହାର ନୁହେଁ, 'ୟୁନିୟନ୍' ହିଁ ଏକମାତ୍ର ପନ୍ଥା । ଏ ଚିଠିଟି ଉଦ୍ଧୃତ ହେଲା –

ଷଢ଼େଇକଳା
ଜୁନ୍ ୨୨ ତାରିଖ, ୧୯୪୮ ମସିହା

ପ୍ରିୟ ବଡ଼ ଗାଗା,

ଆପଣ ଏଠାରୁ ଯିବା ପରଠାରୁ ମୁଁ ଆପଣଙ୍କଠାରୁ କୌଣସି ଚିଠିପତ୍ର ପାଇନାହିଁ । ଆପଣ ପାଟ୍ନା ଯାଇଥିଲେ । ସେଠାରେ କ'ଣ ହେଲା ମୁଁ କିଛି ଜାଣିପାରିଲିନାହିଁ । ଆମେ ଜାମସେଦପୁର ଯାଇଥିଲୁ ଏବଂ ବାପା ରାଞ୍ଚି ଯାଇଛନ୍ତି । ସମ୍ପତ୍ତିବାଡ଼ି ତାଲିକା ସମ୍ବନ୍ଧରେ ଏଠାରେ ମୁଁ କେତେକ କଥାବାର୍ତ୍ତା କରିସାରିଲା ପରେ ତାଙ୍କ ପାଖକୁ ଯିବାର କଥା ରହିଛି । କିନ୍ତୁ ବିହାର କର୍ମଚାରୀମାନେ କୌଣସି କାମକୁ ନୁହନ୍ତି । ମୁଁ କୌଣସି କଥାବାର୍ତ୍ତା କରିବାକୁ ସମୟ ପାଇନାହିଁ । ସେମାନେ ଏପର୍ଯ୍ୟନ୍ତ ଉପରଦେଖାଣିଆ କଥାରେ ମାତୁଛନ୍ତି । ଜଗଲାଲ୍ ଚୌଧୁରୀ ଏଠାକୁ ଆସିଥିଲେ । ମୁଁ ଶୁଣୁଛି କମିଶନର ଆସୁଛନ୍ତି । କିନ୍ତୁ ଏଭଳି ପରିଦର୍ଶନରେ ଆସି ବାହାରିଯିବାରେ ସମସ୍ୟାର ସମାଧାନ ହୋଇପାରିବନାହିଁ । ବିହାର ଲୋକେ ତ ବେଶ୍ ସୁନ୍ଦର କଥାବାର୍ତ୍ତା କରୁଛନ୍ତି; କିନ୍ତୁ ସେମାନେ କାର୍ଯ୍ୟକ୍ଷେତ୍ରରେ କଅଣ କରୁଛନ୍ତି ତାହା ଦେଖିବାକୁ ବାକି ରହିଛି । ଏଠାରେ ଅନେକ ଲୋକ ଭାବୁଛନ୍ତି ଯେ ସେମାନଙ୍କ ଭ୍ରମ ଦୂରହୋଇ ବର୍ତ୍ତମାନ ଆଖି ଖୋଲିଯାଇଛି । ଯୁଆଡ଼କୁ ଗଲେ ସେମାନଙ୍କର ଏକ ଦଶା । ତେଣୁ ୟୁନିୟନହିଁ ଏକମାତ୍ର ସମାଧାନର ଉପାୟ । ଇତି ।

ଆପଣଙ୍କର ବିଶ୍ୱସ୍ତ
ନୃପେନ୍ଦ୍ର

ଅଧିକାଂଶ ପାଠକମାନଙ୍କ ସୁବିଧାପାଇଁ ଇଂରାଜୀରେ ଲେଖା ଚିଠିଗୁଡ଼ିକର ଓଡ଼ିଆ ତର୍ଜମା ଉପରେ ଦିଆଯାଇଛି ।

ଅନ୍ଧାରରେ ବାଡ଼ି ବୁଲାଇଲାଭଳି ଓଡ଼ିଶାର କେତେକ ଲୋକ କେତେବେଳେ ୟାକୁ ଦାୟୀ କରନ୍ତି ତ ପୁଣି କେତେବେଳେ ତାକୁ । କିନ୍ତୁ ପ୍ରକୃତରେ ଏଥିପାଇଁ କିଏ ଦାୟୀ, ବୋଧହୁଏ ବର୍ତ୍ତମାନ ବୁଝିବାକୁ କିଛି ବାକି ରହିଲାନାହିଁ । ଓଡ଼ିଶାର କଂଗ୍ରେସ ନେତାମାନଙ୍କୁ ଷଢ଼େଇକଳା ଓ ଖରସୁଆଁ ଆମ ରାଜ୍ୟରୁ ଚାଲିଯିବାରେ ଯେଉଁମାନେ ଦାୟୀ କରନ୍ତି, ସେମାନଙ୍କ ସହିତ ମୁଁ ଏକମତ ହୋଇପାରୁନାହିଁ । ଯେଉଁ ସମୟରେ ଏସବୁ ଘଟଣା ଘଟିଲା, ମୁଁ ସେତେବେଳେ ଓଡ଼ିଶା କଂଗ୍ରେସ ଓ ଶାସନ ସହିତ ଘନିଷ୍ଠଭାବରେ ସଂପୃକ୍ତ ଥିଲି । ଗଡ଼ଜାତ ରାଜ୍ୟଗୁଡ଼ିକର ଓଡ଼ିଶା ସହିତ ମିଶ୍ରଣପାଇଁ ଓ ବିଶେଷକରି ଷଢ଼େଇକଳା ଓ ଖରସୁଆଁ ରାଜ୍ୟ ବିଷୟରେ ଓଡ଼ିଶାର ନେତାମାନଙ୍କର ଯେଉଁ ଉଦ୍‌ବେଗ ଥିଲା, ମୁଁ ତାହା ଜାଣିଛି । ଯେଉଁମାନେ କହନ୍ତି ଶ୍ରୀ ହରେକୃଷ୍ଣ ମହତାବ ଏ ଦୁଇଟି ରାଜ୍ୟକୁ ବିହାର ପାଖରେ ବନ୍ଧାପକାଇ ଶେଷରେ ବିକ୍ରିକରିଦେଲେ, ସେମାନେ ହେଉଛନ୍ତି ସେହି ଲୋକ ଯେଉଁମାନେ କି ପ୍ରଥମରୁ ଓଡ଼ିଶା ସହିତ ରାଜ୍ୟଗୁଡ଼ିକର ମିଶ୍ରଣ ବିରୁଦ୍ଧରେ ଥାଇ ବୃହତ୍ତର ଉତ୍କଳ ଗଠନରେ ନାନାପ୍ରକାର ବାଧାବିଘ୍ନ ସୃଷ୍ଟି କରୁଥିଲେ ଏବଂ ଗଡ଼ଜାତ ମିଶ୍ରଣ ହୋଇ ସ୍ୱତନ୍ତ୍ର ଓଡ଼ିଶା ଗଠିତ ହେବା ପରେ ମଧ୍ୟ ଆମ ରାଜ୍ୟଟି କିପରି ବିଭକ୍ତ ହେବ ସେଥିପାଇଁ ଆନ୍ଦୋଳନ କରିବାକୁ ପଶ୍ଚାତ୍‌ପଦ ହୋଇନଥିଲେ । ଶ୍ରୀ ମହତାବଙ୍କ ପରବର୍ତ୍ତୀ ଆଚରଣହିଁ କେତେକ ଲୋକଙ୍କ ମନରେ କଂଗ୍ରେସଦଳ ଓ ନେତାମାନଙ୍କ ନିଷ୍ଠା ସଂପର୍କରେ ଭ୍ରାନ୍ତ ଧାରଣା ସୃଷ୍ଟି କରିଥିଲା । ଓଡ଼ିଶାବାସୀଙ୍କ ମନରେ ରାଜ୍ୟ ପୁନର୍ଗଠନ କମିଶନଙ୍କ ରିପୋର୍ଟଜନିତ ନୈରାଶ୍ୟ, ସୀମା-ଆନ୍ଦୋଳନ ହେତୁ ରାଜ୍ୟରେ ବ୍ୟାପକ ବିଶୃଙ୍ଖଳା ଓ ଲୋକମାନଙ୍କ ମଧ୍ୟରେ ଗଭୀର ଅସନ୍ତୋଷ ହେତୁ ଯେଉଁ ଗଣ୍ଡଗୋଳିଆ ଓ ତିକ୍ତ ପରିସ୍ଥିତି ସୃଷ୍ଟି ହୋଇଥିଲା, ଦୂରରେ ଥାଇ କେନ୍ଦ୍ରର ସେ ସମୟର ରାଜ୍ୟପାଳ ଶ୍ରୀ ମହତାବ ତା'ର ସୁବିଧା ନେଇଥିଲେ ।

# ଦାୟୀ କିଏ ?

ରାଜ୍ୟ ପୁନର୍ଗଠନ କମିଶନଙ୍କୁ ଓଡ଼ିଶାର ଦାବି ସମ୍ବନ୍ଧରେ ହୃଦ୍‌ବୋଧ କରାଇବା ଉଦ୍ଦେଶ୍ୟରେ ବିଚ୍ଛିନ୍ନାଞ୍ଚଳମାନଙ୍କରେ ଓଡ଼ିଶା ସପକ୍ଷରେ ଲୋକମତ ସୃଷ୍ଟିକରିବା ଓ ଆଦିବାସୀ ନେତାମାନଙ୍କୁ ପ୍ରଭାବିତ କରିବାଠାରୁ ଆରମ୍ଭକରି ସ୍ମାରକପତ୍ର ପ୍ରସ୍ତୁତ କରିବା ପର୍ଯ୍ୟନ୍ତ ରାଜ୍ୟର ହିତଦୃଷ୍ଟିରୁ ଆମ ରାଜ୍ୟ ସରକାର ଗୋପନୀୟଭାବରେ କେତେକ ପଦକ୍ଷେପ ନେଇଥିବା କଥା ମୁଁ ଜାଣିଥିଲି । ମୁଁ ଥାଏ ରାଜ୍ୟ ସ୍ୱରାଷ୍ଟ୍ର ବିଭାଗର ଉପମନ୍ତ୍ରୀ ଏବଂ ରାଜ୍ୟ ପୁନର୍ଗଠନ କମିଶନଙ୍କ ଆଗରେ ଉପସ୍ଥାପିତ କରିବା ଉଦ୍ଦେଶ୍ୟରେ ଓଡ଼ିଶାର ଦାବି ସମ୍ପର୍କୀୟ ସମସ୍ତ କାର୍ଯ୍ୟ ସ୍ୱରାଷ୍ଟ୍ର ବିଭାଗ ଆନୁକୂଲ୍ୟରେ ଅର୍ଥମନ୍ତ୍ରୀ ଶ୍ରୀ ରାଧାନାଥ ରଥଙ୍କ ନିର୍ଦ୍ଦେଶ ଓ ପରାମର୍ଶରେ କରାଯାଉଥାଏ । ସେଥିପାଇଁ ସେହି ସମ୍ବନ୍ଧୀୟ କେତେକ ଗୁପ୍ତ କଥା ଜାଣିବାର ସୁବିଧା ମୋର ଥିଲା । ଗଡ଼ଜାତମିଶ୍ରଣ ଆନ୍ଦୋଳନରେ ମହତାବବାବୁ ପୂର୍ବରୁ ଅଗ୍ରଣୀ ଭୂମିକା ନେଇଥିଲେ; ତେଣୁ ସେହି ବିଶ୍ୱାସରେ ମୋ'ଠାରୁ ସେ ବର୍ତ୍ତମାନ ପରିସ୍ଥିତିରେ ମଧ ରାଜ୍ୟ ସରକାରଙ୍କ ଅନେକ ଗୋପନ ଉଦ୍ୟମ କଥା ଜାଣିପାରିଥିଲେ । କେନ୍ଦ୍ର ସରକାରଙ୍କଠାରେ ଭଲେଇହେବାପାଇଁ ଓ ଦିଲ୍ଲୀ ମହଲରେ ନିଜର ପ୍ରତିପତ୍ତି ବଢ଼ାଇବାପାଇଁ ସେଗୁଡ଼ିକ ସେ ବିକୃତ ଓ ଅତିରଞ୍ଜିତ କରି ବ୍ୟବହାର କରିଥିଲେ । ୧୯୫୬ ମସିହା ଏପ୍ରିଲ ମାସ ୧୫ ଓ ୨୦ ତାରିଖରେ ମହତାବବାବୁ ବମ୍ବେ ରାଜ୍ୟପାଳ ଥାଇ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଓ କେନ୍ଦ୍ର ଶିକ୍ଷାମନ୍ତ୍ରୀ ମୌଲାନା ଆଜାଦ୍‌ଙ୍କୁ ରାଜ୍ୟର ସ୍ୱାର୍ଥବିରୋଧୀ ଯେଉଁ ଚିଠିମାନ ଲେଖିଥିଲେ ସେଥିରୁ ମହତାବଙ୍କ ଉଲ୍ଲିଖିତ ଉଦ୍ଦେଶ୍ୟ ବୁଝିବା ଅତି ସହଜ । ରାଜ୍ୟର ହିତକୁ ପଛରେ ପକାଇଦେଇ, ରାଜ୍ୟର ନେତୃବର୍ଗଙ୍କ ବଦ୍‌ନାମ କରାଇ, ନିଜେ କିପରି ମୁଖ୍ୟମନ୍ତ୍ରୀ ହୋଇ ଓଡ଼ିଶା ଆସିବେ ସେ ଦିଗରେ କେନ୍ଦ୍ର ନେତାମାନଙ୍କ ମନରେ ଅନୁକୂଳ ମନୋଭାବ ସୃଷ୍ଟି କରିବା ଥିଲା ସେ ପ୍ରକାର ଚିଠି ଲେଖିବାର ଉଦ୍ଦେଶ୍ୟ । ତାହା ହୋଇନଥିଲେ ସାଧୁ ଉଦ୍ଦେଶ୍ୟରେ ଓଡ଼ିଶାର ସ୍ୱାର୍ଥ ପାଇଁ ଯେଉଁସବୁ କାର୍ଯ୍ୟ ଗୁପ୍ତଭାବରେ କରାଯାଉଥିଲା ତାକୁ କେନ୍ଦ୍ର କର୍ତ୍ତୃପକ୍ଷଙ୍କ ପାଖରେ ବଖାଣିବାର ଅର୍ଥ ଆଉ କଅଣ ହୋଇପାରେ ? ସେଥିରୁ ଓଡ଼ିଶାର ଲୋକମାନଙ୍କ ମନରେ ଧାରଣା ଜନ୍ମିଥିଲା ଯେ ମହତାବ ଜଣେ ରାଜ୍ୟସ୍ୱାର୍ଥବିରୋଧୀ ନେତା । ମହତାବବାବୁ ତାତ୍କାଳିକ ନୀତି ଅନୁସାରେ ସବୁ କାର୍ଯ୍ୟ କରନ୍ତି । ସୀମା କମିଶନ ଓ ବିଚ୍ଛିନ୍ନାଞ୍ଚଳ ଦାବି ସମ୍ପର୍କରେ ଓଡ଼ିଶା ସରକାର ଓ ନେତୃବର୍ଗ ସତ୍ ଉଦ୍ଦେଶ୍ୟରେ କରିଥିବା ଯେଉଁସବୁ ପ୍ରଚ୍ଛନ୍ନ ଓ ପ୍ରକାଶ୍ୟ ଉଦ୍ୟମକୁ ମହତାବବାବୁ ଅତ୍ୟନ୍ତ ଅବାଞ୍ଛିତ ଓ ଗର୍ହିତ କାର୍ଯ୍ୟରୂପେ ପଣ୍ଡିତ ନେହେରୁ ପ୍ରଭୃତି ନେତୃବର୍ଗଙ୍କ ଆଗରେ ଉପସ୍ଥାପିତ କରିଥିଲେ, ସେ ନିଜେ ପୂର୍ବରୁ ମୁଖ୍ୟମନ୍ତ୍ରୀ ଥିବା ସମୟରେ ଖର୍ସେଇକଳା ଓ ଖରସୁଆଁ ଦୁଇଟି ରାଜ୍ୟକୁ ଓଡ଼ିଶାରେ ରଖିବାପାଇଁ ସେହିପରି ବହୁ କାର୍ଯ୍ୟ କରିଥିଲେ । ସେତେବେଳେ ତାଙ୍କର ସେହି କାର୍ଯ୍ୟକୁ ବାଞ୍ଛିତ କାର୍ଯ୍ୟ ବୋଲି କହିବାର ଆବଶ୍ୟକତା ଥିଲା । ପରେ ନିଜର ଉଦ୍ଦେଶ୍ୟ ସାଧନପାଇଁ ତାକୁହିଁ ଅବାଞ୍ଛିତ କାର୍ଯ୍ୟ ବୋଲି କହିବାକୁ ସେ କୁଣ୍ଠା ପ୍ରକାଶ କରିନଥିଲେ । ରାଜ୍ୟର ଶାସନ ସହିତ ଘନିଷ୍ଠଭାବରେ ସଂପୃକ୍ତ ଥାଇ ଏବଂ ରାଜ୍ୟ ପୁନର୍ଗଠନ ସଂପର୍କୀୟ କାଗଜପତ୍ର ଅଧ୍ୟୟନ କରି ମୋର ନିର୍ଦ୍ଦିଷ୍ଟ ମତ ହେଉଛି ଯେ, ଏ ଦୁଇଟି ରାଜ୍ୟ ଓଡ଼ିଶା ଶାସନ ଅଧୀନରୁ ଚାଲିଯିବାପାଇଁ ଦାୟୀ ହେଉଛନ୍ତି ଖର୍ସେଇକଳାର ରାଜାସାହେବ, ତାଙ୍କର ମୁରବି ବଲାଙ୍ଗୀରର ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହ ଦେଓ ଓ କଳାହାଣ୍ଡିର ମହାରାଜା ଶ୍ରୀ ପ୍ରତାପ କେଶରୀ ଦେଓ । ଏହା ବ୍ୟତୀତ ମୟୂରଭଞ୍ଜର ମହାରାଜାଙ୍କୁ ମଧ କେତେକ ପରିମାଣରେ ଦାୟୀ କରାଯିବ । ୧୯୪୮ ମସିହା ମେ' ମାସରେ ଭାରତ ସରକାର ନିଷ୍ପତ୍ତି କରିଥିଲେ ଯେ, ଖର୍ସେଇକଳା ଓ ଖରସୁଆଁ ସିଂହଭୂମ ଜିଲ୍ଲାରେ ଏକ ଦ୍ୱୀପ ଭଳି ଅବସ୍ଥିତ ହୋଇଥିବାରୁ ସିଂହଭୂମି ଜିଲ୍ଲା ଯେଉଁ ରାଜ୍ୟ ସହିତ ରହିଛି ସେହି ରାଜ୍ୟ ବ୍ୟତୀତ ଅନ୍ୟ

କୌଣସି ରାଜ୍ୟ ପକ୍ଷରେ ଷଢ଼େଇକଳା ଓ ଖରସୁଆଁକୁ ଶାସନ କରିବା ସମ୍ଭବ ନୁହେଁ । ତେଣୁ ଏ ଦୁଇଟି ରାଜ୍ୟକୁ ବିହାର ସହିତ ମିଶାଇ ଦିଆଯାଇଥିଲା । ମୁଁ ଏହିଠାରେ ସ୍ମରଣ କରାଇଦେବାକୁ ଚାହେଁ ଯେ, ସେତେବେଳେ ମୟୂରଭଞ୍ଜ ରାଜ୍ୟ ଓଡ଼ିଶା ସହିତ ମିଶିନଥିଲା । ଯଦି ମୟୂରଭଞ୍ଜର ମହାରାଜା ସେତେବେଳେ ଓଡ଼ିଶା ସହିତ ମୟୂରଭଞ୍ଜର ମିଶ୍ରଣକୁ ବିଳମ୍ବିତ କରିନଥା'ନ୍ତେ ତା'ହେଲେ ଭାରତ ସରକାର ଯେଉଁ ଯୁକ୍ତି ବାଢ଼ି ଏ ରାଜ୍ୟ ଦୁଇଟିକୁ ବିହାରକୁ ଫେରାଇଦେଇଥିଲେ ସେ ପ୍ରକାର ଯୁକ୍ତି କରିପାରି ନଥା'ନ୍ତେ; କାରଣ ଷଢ଼େଇକଳା ମୟୂରଭଞ୍ଜର ସୀମାକୁ ଲାଗି ଅବସ୍ଥିତ । ଯେତେବେଳେ ଷଢ଼େଇକଳା ଓ ଖରସୁଆଁ ଓଡ଼ିଶା ସହିତ ମିଶିଥିଲା ସେତିକିବେଳେ ଯଦି ମୟୂରଭଞ୍ଜ ଓଡ଼ିଶା ସହିତ ମିଶିଯାଇଥା'ନ୍ତା, ତା'ହେଲେ ମୟୂରଭଞ୍ଜ ଭିତରେ ଓଡ଼ିଶା ସରକାରଙ୍କୁ ଷଢ଼େଇକଳା ଓ ଖରସୁଆଁ ରାଜ୍ୟ ଦୁଇଟିକୁ ଯାଇ ଶାସନକାର୍ଯ୍ୟ ପରିଚାଳନା କରିବାରେ କୌଣସି ଅସୁବିଧା ହୋଇନଥା'ନ୍ତା । ମୟୂରଭଞ୍ଜ ସେତେବେଳେ ଓଡ଼ିଶା ସହିତ ନଥିବାରୁ ଏ ଦୁଇଟି ରାଜ୍ୟ ସହିତ ସିଧାସଳଖ ସଂପର୍କ ସ୍ଥାପନ କରିବାର ଅସୁବିଧାକୁ ଦର୍ଶାଇ ଭାରତ ସରକାର ରାଜ୍ୟ ଦୁଇଟିକୁ ବିହାର ସହିତ ମିଶେଇବାର ନିଷ୍ପତ୍ତି ନେଇଗଲେ । ଉପଯୁକ୍ତ ଶିକ୍ଷା ଲାଭ କରିବା ପରେ ସେଇ ବନ୍ଧୁମାନେ ବ୍ୟାକୁଳ ହେଲେ କିପରି ଏ ରାଜ୍ୟ ଦୁଇଟି ଓଡ଼ିଶା ସହିତ ମିଶିବ । ବର୍ତ୍ତମାନ ପରିସ୍ଥିତିରେ, ନିକଟଭବିଷ୍ୟତରେ ତାହା କେବେ ସମ୍ଭବ ହେବ ବୋଲି ମୁଁ ଆଶାକରିପାରୁନାହିଁ ।

ବର୍ତ୍ତମାନ ରାଜ୍ୟ ପୁନର୍ଗଠନ କମିଶନଙ୍କ ସୁପାରିସ ବିଷୟରେ ପଦେ କହିବାକୁ ଇଚ୍ଛା ହେଉଛି । କମିଶନଙ୍କ ସୁପାରିସରେ ଓଡ଼ିଶାବାସୀ ଯେ ଘୋର କ୍ଷୁବ୍ଧ ଓ ଉତ୍କ୍ଷିପ୍ତ ହୋଇଥିଲେ, ଏଥିରେ କୌଣସି ସନ୍ଦେହନାହିଁ । ଆମ ମନ୍ତ୍ରିମଣ୍ଡଳର ସମସ୍ତ ସଭ୍ୟ ମଧ୍ୟ ବିଶେଷଭାବରେ ମର୍ମାହତ ହୋଇଥିଲେ । ତା ସତ୍ତ୍ୱେ କି ପରିପ୍ରେକ୍ଷୀରେ କମିଶନ ଏ ପ୍ରକାର ନିଷ୍ପତ୍ତି କରିଥିଲେ ତାହା ବିଚାରକରି ସେଥିରୁ ମଧ୍ୟ ଆମ୍ଭମାନଙ୍କର କିଛି ଶିକ୍ଷା ଅର୍ଜନ କରିବାର ଅଛି । ରାଜ୍ୟ ପୁନର୍ଗଠନ କମିଶନ ବିଚାରକରିଥିଲେ ଯେ ଷଢ଼େଇକଳା ଓ ଖରସୁଆଁ ରାଜ୍ୟଦୁଇଟିର ସିଂହଭୂମ ଜିଲ୍ଲାର ପୋଡ଼ାହାଟ ରାଜ୍ୟ ସହିତ ଐତିହାସିକ ସାମଞ୍ଜସ୍ୟ ରହିଥିବା ଯୋଗୁଁ ଏବଂ ବିହାର ରାଜ୍ୟର ଛୋଟନାଗପୁର ଡିଭିଜନ ଶାସନ ଦାୟିତ୍ୱରେ ଥିବାରୁ ଏ ଦୁଇଟି ଅଞ୍ଚଳ ବିହାର ସହିତ ରହିବା ଉଚିତ । ବର୍ତ୍ତମାନ ଦେଖାଯାଉ, ସୀମା-ଆନ୍ଦୋଳନର ତୁଙ୍ଗ ନେତା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଏବଂ ତାଙ୍କ ନିଜ ପିତା ଖୋଦ୍ ଷଢ଼େଇକଳା ରାଜା ଏ ସଂପର୍କରେ କି ପ୍ରକାର ଅଭିମତ ଦେଇଥିଲେ । ୧୯୪୭ ମସିହା ଜୁଲାଇ ମାସ ୩୦ ତାରିଖରେ ଷଢ଼େଇକଳା ରାଜା ଶ୍ରୀ ଏ.ପି.ସିଂହ ତତ୍କାଳୀନ ବ୍ରିଟିଶ୍ ରେସିଡେଣ୍ଟ କର୍ଣ୍ଣେଲ୍ ଟଡ୍‌କୁ ଗୋପନୀୟ ସ୍ମାରକପତ୍ର ଦେଇଥିଲେ । ସେଥିରେ ଲେଖିଥିଲେ :

"Similarly, Singhbhum with its rulers of Purohat and Sareikella was never within Orissa, but was part of Bihar.It was never conquered by the Moghuls and the Pathans, or the Marhattas nor was it ever under any king of Orissa. Their connection begins with the British direct and not through any intermediary x x x How, Mr. Mahtab claims these States as belonging to Orissa historically or geographically, one cannot comprehend at all."

ଅର୍ଥାତ୍ ପୋଡ଼ାହାଟ ଓ ଷଢ଼େଇକଳା ରାଜ୍ୟ ସମେତ ସିଂହଭୂମ କେବେ ଓଡ଼ିଶାରେ ନଥିଲା । ଏହା ବିହାରର ଗୋଟିଏ ଅଂଶ । ମୋଗଲ, ପଠାଣ ବା ମରହଟ୍ଟା କେହି ଏହାକୁ ଜୟ କରିନଥିଲେ କିମ୍ବା ଏହା କେବେହେଲେ କୌଣସି ଓଡ଼ିଶା ରାଜାଙ୍କ ଅଧୀନରେ ନଥିଲା । ସେମାନେ ଇଂରେଜଙ୍କ ସହିତ ସିଧାସଳଖ ସଂପର୍କ ପ୍ରତିଷ୍ଠା କରିଥିଲେ । ଐତିହାସିକ କିମ୍ବା ଭୌଗୋଳିକ ଦୃଷ୍ଟିରୁ ଏହି ଗଡ଼ଜାତ ରାଜ୍ୟଗୁଡ଼ିକ ଓଡ଼ିଶାର ବୋଲି ଶ୍ରୀ ମହତାବ କିପରି ଦାବି କରୁଛନ୍ତି ତାହା ଆଦୌ

ବୁଝିହେଉନାହିଁ ବୋଲି ଉକ୍ତ ସ୍ମାରକପତ୍ରରେ ଜଣାଇଦିଆଯାଇଥିଲା । ଷଢ଼େଇକଳା ରାଜା ଏଇ ମର୍ମରେ ଗୋପନ ଲେଖାଂ ଲେଖିବାର ମାତ୍ର ମାସକ ପୂର୍ବରୁ ଜୁନ୍ ୩୦ ତାରିଖରେ ତାଙ୍କ ପୁତ୍ର ବଲାଙ୍ଗୀର ମହାରାଜା ବ୍ରିଟିଶ୍ ଭାଇସ୍‌ରାୟଙ୍କ ପାଖକୁ ଲେଖିଥିଲେ, ‘‘ଗତ କେତେ ବର୍ଷ ହେଲା ଓଡ଼ିଶା ଦେଶୀୟ ରାଜ୍ୟମାନଙ୍କ ପ୍ରତି ଓଡ଼ିଶା ପ୍ରାଦେଶିକ ସରକାରଙ୍କ ମତିଗତି ଯେ ବନ୍ଧୁଭାବାପନ୍ନ ନୁହେଁ, ଏହା ମହାମାନ୍ୟ ବଡ଼ଲାଟ୍‌ଙ୍କୁ ଅଜଣା ନଥିବ । ଓଡ଼ିଶା ପ୍ରଦେଶ ସହ ଏହିସବୁ ଦେଶୀୟ ରାଜ୍ୟକୁ ମିଶାଇଦେବାପାଇଁ ଓଡ଼ିଶାର ପ୍ରଧାନମନ୍ତ୍ରୀ ଯେଉଁ ପ୍ରସ୍ତାବ ଦେଇଛନ୍ତି, ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ଏହି ମିଶ୍ରଣକୁ ସମର୍ଥନ କରି ସ୍ମାରକପତ୍ରରେ ଇତିହାସକୁ ଯେଭଳି ବିକୃତ କରିଛନ୍ତି, ଓଡ଼ିଶା ପ୍ରଦେଶର ନେତାମାନେ ଯେଉଁସବୁ ବିବୃତି ପ୍ରକାଶ କରିଛନ୍ତି ଏବଂ ଓଡ଼ିଶା ପ୍ରଦେଶର ସମ୍ବାଦପତ୍ରମାନେ ଯେଭଳି ମତ ପ୍ରକାଶ କରୁଛନ୍ତି, ସେସବୁ ଫଳରେ ଓଡ଼ିଶାର ଦେଶୀୟ ରାଜ୍ୟର ଶାସନମାନଙ୍କ ମନରେ ସନ୍ଦେହ ଓ କ୍ରୋଧ ଜାତହୋଇଥିଲା ।’’ ଓଡ଼ିଶାପ୍ରତି ସମସ୍ତ ରାଜନ୍ୟମଣ୍ଡଳୀଙ୍କର ଅସହିଷ୍ଣୁତା ସୃଷ୍ଟିହୋଇଥିବାର କାରଣସ୍ୱରୂପ ଷଢ଼େଇକଳାର ରାଜା ଉଲ୍ଲିଖିତ ସ୍ମାରକପତ୍ରରେ ଯାହା ଲେଖିଥିଲେ ତାହା ଓଡ଼ିଶାବାସୀଙ୍କ ପକ୍ଷେ ଆହୁରି ଦୁଃଖଦାୟକ । ସେ ଲେଖିଥିଲେ :

"The Congress of Orissa has been jealous of this progress and is casting a covetous eye on the resources of these States in order to enrich the Province quickly. With this selfish motive they created agitation in these States in 1938 and 1942 when the Rulers of the States were compelled to arrest the Congress leaders at the bidding of the Government."

ନିଜେ ଷଢ଼େଇକଳା ରାଜା ଓ ତାଙ୍କ ଜନ୍ମିତ ପୁତ୍ର ବଲାଙ୍ଗୀର ମହାରାଜା ଯଦି ଓଡ଼ିଶା ସହିତ ଦେଶୀୟ ରାଜ୍ୟ ମିଶ୍ରଣ ଏବଂ ଷଢ଼େଇକଳା ଓ ଖରସୁଆଁର ପୋଡ଼ାହାଟ ତଥା ବିହାର ସହିତ ଐତିହାସିକ ସଂପର୍କ ସମ୍ବନ୍ଧରେ ଏ ପ୍ରକାର ମତ ପୋଷଣ କରନ୍ତି ଏବଂ ତାହା ପୁଣି ଲିଖିତ ଆକାରରେ କେନ୍ଦ୍ରସରକାରଙ୍କୁ ଜଣାଇପାରନ୍ତି, ତା’ହେଲେ କମିଶନ ଯେଉଁ ମତ ବ୍ୟକ୍ତ କଲେ ସେଥିରେ ଆମେ କାହିଁକି ବା ଆଶ୍ଚର୍ଯ୍ୟ ହେବା ? ନେଡ଼ିଗୁଡ଼ କହୁଣିକୁ ବୋହିଗଲା ପରେ କୌଣସି ସମସ୍ୟାର ସମାଧାନ କରିବା ସାଧ୍ୟାତୀତ ହୋଇଥାଏ । ପୋଡ଼ାହାଟ ରାଜବଂଶ ଷଢ଼େଇକଳା ଓ ଖରସୁଆଁ ରାଜବଂଶର ପିତୃପୁରୁଷ । ପୋଡ଼ାହାଟର ସ୍ୱଦେଶପ୍ରେମୀ ରାଜା ଅର୍ଜୁନ ସିଂହ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ସିପାହି-ବିଦ୍ରୋହ କାଳରେ ବ୍ରିଟିଶ୍ ସାମ୍ରାଜ୍ୟ ବିରୁଦ୍ଧରେ ଲଢ଼ି ମୁଣ୍ଡ ନୁଆଁଇ ନଥିଲେ । ସେଥିପାଇଁ ଶେଷରେ ତାଙ୍କୁ ଫାଶୀଦଣ୍ଡ ହୁକୁମ ହୋଇଥିଲା । ଜନସାଧାରଣଙ୍କୁ ଭୀତତ୍ରସ୍ତ କରିବା ଉଦ୍ଦେଶ୍ୟରେ ତାଙ୍କର ମନ୍ତ୍ରୀ ଜଗୁ ଦିଆନ୍‌ଙ୍କୁ ଜନଗହଳି ସ୍ଥାନରେ ଅତି ନିର୍ମମଭାବରେ ହତ୍ୟାକରାଗଲା । ଷଢ଼େଇକଳା ଓ ଖରସୁଆଁର ସେତେବେଳେ ସ୍ୱତନ୍ତ୍ର ରାଜ୍ୟରୂପେ ଅସ୍ତିତ୍ୱନଥିଲା । ପୋଡ଼ାହାଟ ରାଜାଙ୍କ ଭାଇବିରାଦରମାନେ ଏହି ଦୁଇ ଅଞ୍ଚଳର ଶାସନ-ପରିଚାଳନାରେ ନିଯୁକ୍ତ ଥିଲେ । ସିପାହିବିଦ୍ରୋହବେଳେ ସେମାନେ ନିଜ ପିତୃବଂଶ ପ୍ରତି ବିଶ୍ୱାସଘାତକତା କରି ପରେ ତାହାରି ପୁରସ୍କାର ସ୍ୱରୂପ ନିଜ ନିଜ ଅଞ୍ଚଳର ରାଜପଦବୀ ହାସଲ କରିଥିଲେ । ମୟୂରଭଞ୍ଜ ମହାରାଜା ବ୍ରିଟିଶ୍ ସରକାରଙ୍କ ସହିତ ସ୍ୱତନ୍ତ୍ର ବନ୍ଧୁତାରେ ଆବଦ୍ଧ ଥିବାରୁ ତାଙ୍କରି ଉଦ୍ୟମରେ ପୋଡ଼ାହାଟର ବିଦ୍ରୋହୀ ରାଜା ଅର୍ଜୁନ ସିଂହଙ୍କୁ ଫାଶୀଦଣ୍ଡ ପରିବର୍ତ୍ତେ ଯାବଜ୍ଜୀବନ କାରାବାସ ଆଦେଶ ହେଲା; କିନ୍ତୁ ତାଙ୍କୁ ରାଜ୍ୟ ହରାଇବାକୁ ପଡ଼ିଥିଲା । ନିଜର ପିତୃବଂଶ ପ୍ରତି ସିପାହି-ବିଦ୍ରୋହ ସମୟରେ ଯେଉଁମାନେ ବିଶ୍ୱାସଘାତକତା କରିଥିଲେ ପରେ ସେହିମାନେ ମାତୃଭୂମି ଓଡ଼ିଶା ପ୍ରତି ବିଶ୍ୱାସଘାତକତା କଲେ ଗଡ଼ଜାତ ମିଶ୍ରଣ ସମୟରେ ।

ଷଢ଼େଇକଳା ରାଜାଙ୍କର ଘନିଷ୍ଠ ସମ୍ପର୍କ ଥିଲା ବଲାଙ୍ଗୀର ମହାରାଜା ଶ୍ରୀ ଆର.ଏନ୍.ସିଂହଦେଓ, କଳାହାଣ୍ଡିର ମହାରାଜା ଶ୍ରୀ ପ୍ରତାପକେଶରୀ ଦେଓ ଏବଂ ଓଡ଼ିଶାର ଅନ୍ୟାନ୍ୟ କେତେକ ରାଜା ମହାରାଜାଙ୍କ ସହିତ । ଓଡ଼ିଶା ସହିତ ଯେତେବେଳେ ଷଢ଼େଇକଳା ଓ ଖରସୁଆଁ ମିଶିକରିଥିଲା, ସେତେବେଳେ ଯଦି ସେମାନେ ସାମାନ୍ୟ ଓଡ଼ିଆପ୍ରୀତି ଦେଖାଇଥା'ନ୍ତେ ତା'ହେଲେ ଷଢ଼େଇକଳା ଓ ଖରସୁଆଁରେ ଶାନ୍ତିଶୃଙ୍ଖଳା ରକ୍ଷା କରିବାରେ କୌଣସି ବ୍ୟାଘାତ ସୃଷ୍ଟି ହୋଇନଥା'ନ୍ତା ଓ ବିହାର ରାଜ୍ୟକୁ ସେ ଦୁଇଟି ରାଜ୍ୟ ହସ୍ତାନ୍ତରିତ ହୋଇନଥା'ନ୍ତା । କିନ୍ତୁ ତା' ନକରି ସେଠାରେ ସେମାନେ ଆଦିବାସୀମାନଙ୍କୁ ମତେଇଦେଲେ ଓଡ଼ିଶା ସରକାରଙ୍କ ବିରୁଦ୍ଧରେ । ଓଡ଼ିଶାର ଅନ୍ୟ ଅଞ୍ଚଳମାନଙ୍କରେ ବୁଲି ଓଡ଼ିଶାକୁ କିପରି ବିଭକ୍ତ କରି ନିଜପାଇଁ ଆଉ ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ଗଠନ କରାଯିବ ସେଥିପାଇଁ ଆନ୍ଦୋଳନ କରିଥିଲେ । ଏମାନଙ୍କର ରାଜ୍ୟଗୁଡ଼ିକ ଓଡ଼ିଶା ସହିତ ମିଶିଯାଇଥିବାରୁ ସେହି ଦୁଃଖ ଭୁଲି ନପାରି ଅନେକଦିନ ପର୍ଯ୍ୟନ୍ତ ସେମାନଙ୍କର ଚିନ୍ତାଧାରା ଅତି ବିଷାକ୍ତ ଓ ମାରାତ୍ମକ ହୋଇ ରହିଥିଲା । ଓଡ଼ିଶାର କେତେକ ଅଞ୍ଚଳକୁ ନେଇ ହାଇଦ୍ରାବାଦ ସହିତ ମିଶାଇ ଗୋଟିଏ ରାଜ୍ୟ କରିବାପାଇଁ ଏମାନଙ୍କର ପରିକଳ୍ପନା ଥିଲା । ଏପରିକି କଟକର ଜଣେ ମୁସଲିମ୍ ଲିଗ୍ ନେତା ଓଡ଼ିଶା ରାଜାମାନଙ୍କର ହାଇଦ୍ରାବାଦ ନିଜାମଙ୍କ ସହିତ ଯୋଗସୂତ୍ର ସ୍ଥାପନ କରିବା କାର୍ଯ୍ୟରେ ଗୁପ୍ତଚର ନିଯୁକ୍ତ ଥିଲେ । ଏହି ବିଷୟଟି ଓଡ଼ିଶା ବିଧାନସଭାରେ ଉତ୍‌ଥାପିତ ହୋଇଥିଲା । ଶେଷରେ ଷଢ଼େଇକଳା ରାଜା ପାପର ପ୍ରାୟଶ୍ଚିତ୍ତ କରିବାପାଇଁ ଓ ବିହାର ସହିତ ମିଶ୍ରଣକୁ ଅନ୍ୟଥା କରିବାପାଇଁ ସୁପ୍ରିମ୍‌କୋର୍ଟକୁ ଦୌଡ଼ିଥିଲେ । ତାଙ୍କ ନିଜର ଓ ତାଙ୍କ ପୁତ୍ରଙ୍କର ଯେଉଁ ମତ ଉପରେ ଉଦ୍ଧାର କରାଯାଇଛି, ସେ ପୃଷ୍ଠଭୂମିରେ ବୋଧହୁଏ ସୁପ୍ରିମ୍‌କୋର୍ଟ ତାଙ୍କ ଆବେଦନକୁ ପତ୍ରପାଠେ ନାକଚ କରିଦେଇଥିଲେ ।

ମୋର ମନେଅଛି, ଓଡ଼ିଶା ବ୍ୟବସ୍ଥାସଭା ଗୃହରେ ଷଢ଼େଇକଳା ଓ ଖରସୁଆଁ ତଥା ଓଡ଼ିଶାକୁ ବିଭକ୍ତ କରିବାପାଇଁ ରାଜାମାନଙ୍କର ୟୁନିୟନ ଆନ୍ଦୋଳନ ସମ୍ପର୍କୀୟ ଷଡ଼ଯନ୍ତ୍ରମୂଳକ କାଗଜପତ୍ରଗୁଡ଼ିକୁ ମୁଁ ଯେତେବେଳେ ଗୋଟିକ ପରେ ଗୋଟିଏ ଉପସ୍ଥାପିତ କରିଥିଲି ସେତେବେଳେ ପ୍ରବଳ ଉତ୍ତେଜନା ପ୍ରକାଶପାଇଥିଲା । ସଭା ପରେ ବାଚସ୍ପତି ଶ୍ରୀ ନନ୍ଦକିଶୋର ଦାସ ମୋତେ ତାଙ୍କ ଅଫିସକୁ ଡାକି ଖୁସିରେ କୁଣ୍ଢେଇପକାଇ କହିଲେ, ''ଆଜି ତୁମେ ଆମ କଂଗ୍ରେସ ଲୋକଙ୍କର ଇଜ୍ଜତ ରଖିଦେଲ ।'' ତା'ପରେ ସର୍ବସାଧାରଣଙ୍କର ଅବଗତିପାଇଁ ମୁଁ ଏସବୁ ଚିଠି ଓ କାଗଜପତ୍ର ଏକତ୍ରିତ କରି ଓ ତା'ର ଓଡ଼ିଆ ଅନୁବାଦ କରାଇ ''ବୃହତ୍ତର ଉତ୍କଳ ଗଠନରେ ବାଧାବିଘ୍ନ'' ନାମକ ଗୋଟିଏ ପୁସ୍ତିକା ଲୋକସମ୍ପର୍କ ବିଭାଗ ପକ୍ଷରୁ ପ୍ରକାଶ କରିବାପାଇଁ ନିର୍ଦ୍ଦେଶ ଦେଇଥିଲି । ସେତେବେଳକାର ଜଣେ ସୁଲେଖକ ରାଜକର୍ମଚାରୀ ଶ୍ରୀ ବିଭୂତିଭୂଷଣ ତ୍ରିପାଠୀଙ୍କ ସହାୟତାରେ ପୁସ୍ତିକାଟି ସଂକଳନ କରାଯାଇଥିଲା । ବହିଟି ଲେଖିବା ସମୟରେ ସେ ଆଶଙ୍କା କରିଥିଲେ କାଳେ ସେ ବହିଟି ଲେଖୁଥିବା କଥା ବିରୋଧୀ ଦଳର ନେତାମାନେ ଜାଣିବେ ଏବଂ ସେମାନେ କ୍ଷମତାକୁ ଆସିଲେ ଆକ୍ରୋଶ ରଖି ତାଙ୍କର କ୍ଷତି କରିବେ । ମୁଁ ଆଜିପର୍ଯ୍ୟନ୍ତ ତାଙ୍କର ଏହି ପୁସ୍ତିକା ସଂକଳନ କଥା କାହାରିକୁ କହି ନ ଥିଲି; ବର୍ତ୍ତମାନ ସେ ଅବସର ନେଇସାରିଲେଣି, ତେଣୁ ଲେଖୁଛି ।

## ମେଦିନୀପୁର

ପଶ୍ଚିମବଙ୍ଗଳା ମେଦିନୀପୁର ଜିଲ୍ଲାର କେତେକ ଅଞ୍ଚଳକୁ ଓଡ଼ିଶା ସହିତ ମିଶାଇବାପାଇଁ ଆମ ସରକାରଙ୍କ ତରଫରୁ କମିଶନଙ୍କୁ ଦିଆଯାଇଥିବା ସ୍ମାରକପତ୍ରରେ ଦାବି କରାହୋଇଥିଲା; ମାତ୍ର କମିଶନ ତାହା ଅଗ୍ରାହ୍ୟ କରିଦେଇଥିଲେ । କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ ଷଢ଼େଇକଳା ଓ ଖରସୁଆଁରେ ଯେତେ ଓଡ଼ିଆ ଅଛନ୍ତି ତା'ଠାରୁ ବହୁଗୁଣରେ ଅଧିକ ଓଡ଼ିଆ ମେଦିନୀପୁର ଜିଲ୍ଲାରେ ଅଛନ୍ତି; ମାତ୍ର ସେଠିକା ଲୋକେ କଲିକତା ସହିତ ଏପରି ଭାବରେ ସଂପୃକ୍ତ ଯେ ସେମାନେ ଓଡ଼ିଆ

ହେଲେ ମଧ୍ୟ ଓଡ଼ିଶା ସହିତ ମିଶିବାକୁ ଇଚ୍ଛା କରନ୍ତିନାହିଁ । ସେଠି ଓଡ଼ିଆମାନଙ୍କୁ ନେତୃତ୍ୱଦେବାପାଇଁ ସେଭଳି ମଧ୍ୟ ନେତା କେହି ବାହାରନ୍ତିନାହିଁ । ଜଣେ ଥିଲେ, କିନ୍ତୁ ମୁଁ ଶୁଣିଛି ଆମ ପ୍ରଦେଶର ନେତୃବର୍ଗଙ୍କ ବ୍ୟବହାର ଯୋଗୁଁ ସେ ମଧ୍ୟ ଓଡ଼ିଶା ସହିତ ମିଶିବାକୁ ଆଗ୍ରହୀ ହୋଇନଥିଲେ । ସେ ହେଉଛନ୍ତି ସ୍ୱର୍ଗୀୟ ଶ୍ରୀ ବରେନ୍ଦ୍ରନାଥ ସାସମଲ । ସେ ତାଙ୍କ ସମୟରେ ମେଦିନୀପୁରର ଜଣେ ବଡ଼ ନେତା ଥିଲେ । ନିଜକୁ ଓଡ଼ିଆ ବୋଲି ପରିଚୟ ଦେବାରେ ସେ କୁଣ୍ଠିତ ହେଉନଥିଲେ । ମୁଁ ଅନେକ ଲୋକ କହିବାର ଶୁଣିଛି ଯେ ଶ୍ରୀ ସାସମଲ ଜଣେ ଗଣୁଆ କଂଗ୍ରେସ ନେତା ଥିଲେ ଏବଂ ୧୯୩୨ରେ ପୁରୀଠାରେ ଯେଉଁ ନିଖିଳ ଭାରତ କଂଗ୍ରେସ ଅଧିବେଶନ ବସିବାର ପ୍ରସ୍ତାବ ଥିଲା ସେଥିରେ ସେ କୁଆଡ଼େ ଆଶା କରିଥିଲେ ଅଭ୍ୟର୍ଥନା ସମିତିର ସଭାପତି ହେବାପାଇଁ; କିନ୍ତୁ ପଣ୍ଡିତ ନୀଳକଣ୍ଠ ଦାସ ପ୍ରଭୃତି ଆମର ତୁଙ୍ଗ କଂଗ୍ରେସ ନେତାମାନେ ସେଥିପ୍ରତି ସହାୟତା ନକରିବାରୁ ତାଙ୍କର ମନ ଭାଙ୍ଗିଗଲା । ତା ନ ହୋଇଥିଲେ ସେତିକିବେଳୁ ଶ୍ରୀ ସାସମଲ ଯଦି ଉଦ୍ୟମ କରିଥାଆନ୍ତେ ମେଦିନୀପୁର ଜିଲ୍ଲା ବୋଧହୁଏ ଓଡ଼ିଶା ସହିତ ମିଶିଯାଇଥା'ନ୍ତା । ବଙ୍ଗପ୍ରଦେଶ ସେତେବେଳେ ମଧ୍ୟ ଏକ ବିରାଟ ପ୍ରଦେଶ ଥିଲା । ତେଣୁ ଏତକ ଓଡ଼ିଆବହୁଳ ଅଞ୍ଚଳର ଓଡ଼ିଶା ସହିତ ମିଶ୍ରଣରେ ବୋଧହୁଏ ବିଶେଷ କିଛି ବାଧା ଉପୁଜି ନ ଥା'ନ୍ତା ବୋଲି କେତେକ କହନ୍ତି । ମେଦିନୀପୁରର ବହୁ ଅଞ୍ଚଳରେ ଲୋକେ ଘରେ ଓଡ଼ିଆରେ କଥାବାର୍ତ୍ତା ହୁଅନ୍ତି ଏବଂ ବଙ୍ଗଳା ଅପେକ୍ଷା ଓଡ଼ିଆ ଭଲ ବୁଝନ୍ତି । ୧୯୬୮ ମସିହାରେ ପଶ୍ଚିମ-ବଙ୍ଗଳାରେ ସାଧାରଣ ନିର୍ବାଚନ ହେଉଥାଏ । କଂଗ୍ରେସ ନେତା ଶ୍ରୀ ଅତୁଲ୍ୟ ଘୋଷ ମୋତେ ମେଦିନୀପୁର ଯାଇ କଂଗ୍ରେସପାଇଁ ପ୍ରଚାର କରିବାକୁ ଅନୁରୋଧ କରିଥିଲେ । ମୁଁ ସେତେବେଳକାର ନେତା ଶ୍ରୀ ଶ୍ୟାମସୁନ୍ଦର ମହାପାତ୍ରଙ୍କୁ ସାଙ୍ଗରେ ଧରି ବାଲେଶ୍ୱରରୁ ମେଦିନୀପୁର ଯାଇଥିଲି ଏବଂ ସେଠାରେ ବହୁ ଅଞ୍ଚଳରେ ବୁଲାବୁଲି କରି ସଭାସମିତିରେ ଯୋଗଦେବା ପରେ ମୋର ଉପରୋକ୍ତ ଧାରଣା ଆହୁରି ଦୃଢ଼ୀଭୂତ ହୋଇଥିଲା ।

## ଦଳେଇଘାଇର ଦାରୁଣ କଥା

୧୯୫୫ ମସିହା ସେପ୍‌ଟେମ୍ବର ମାସ ପ୍ରଥମ ସପ୍ତାହରେ ଓଡ଼ିଶାରେ ଗୋଟିଏ ପ୍ରଳୟଙ୍କରୀ ବନ୍ୟା ହୋଇଥିଲା । ଦଳେଇଘାଇ ବନ୍ଧଟି କଟକ ଜିଲ୍ଲାର ଏକ ବ୍ୟାପକ ଅଞ୍ଚଳର ଜୀବନନାଡିକା ବୋଲି କୁହନ୍ତି । ଏହି ବନ୍ଧ ଭାଙ୍ଗିଯିବା ଫଳରେ ଜଳସେଚିତ ଅଚଳର ଫସଲ ନଷ୍ଟ ହେବା ସଙ୍ଗେ ସଙ୍ଗେ ବହୁ ଘରଦ୍ୱାର ନଷ୍ଟହୋଇଥିଲା । ଲୋକଙ୍କ ଉଦ୍ଧାର ଓ ସାହାଯ୍ୟ ବଣ୍ଟନପାଇଁ ସୈନ୍ୟ ବିଭାଗର ବୋଟ୍ ଅଣାଯାଇଥିଲା । ବ୍ୟବସ୍ଥାସଭାରେ ଏବଂ ବାହାରେ ଅଭିଯୋଗ ହୋଇଥିଲା ଯେ ବନ୍ଧବାଡ଼ ବିଭାଗର ଅବହେଳା ଯୋଗୁଁ ବନ୍ଧଟି ଭାଙ୍ଗିଯାଇଥିଲା । ଆହୁରି ଗୋଟିଏ ପ୍ରଚାର ହୋଇଥିଲା ଯେ କଟକ ସହରକୁ ରକ୍ଷା କରିବାକୁ ଯାଇ ସରକାର ଏ ବନ୍ଧଟିକୁ ଭାଙ୍ଗିଦେଇଛନ୍ତି । କୌଣସି ସହର ତଳେ ବନ୍ଧ ଭାଙ୍ଗିଲେ ସେହି ସହରକୁ ରକ୍ଷା କରିବାପାଇଁ ବନ୍ଧ କାଟିଦେଇଛନ୍ତି ବୋଲି ସାଧାରଣତଃ ସରକାରଙ୍କ ନାଆଁରେ ଭିତ୍ତିହୀନ ଅଭିଯୋଗ ହୋଇଥାଏ । ଏଇଟା ଚିରାଚରିତ ଲୋକାପବାଦ । ସେ ବର୍ଷ ବନ୍ୟାଜଳର ପ୍ରକୋପ ଏଡ଼େ ବେଶି ହେଲା ଯେ ଦଳେଇଘାଇ ଭାଙ୍ଗିଗଲା । କଙ୍କଡ଼ାକୁ ଗୋଲିପାଣି ସୁହାଏ । ଏହି ବନ୍ୟାର ବିଭୀଷିକାକୁ ବଳିପଡ଼ିଥିଲା କେତେକ ରାଜନୈତିକ ଶଠତା । ଦୁଇଥର ଦଳେଇଘାଇ ବନ୍ୟାର ଇତିହାସରୁ ଏହା ସୁସ୍ପଷ୍ଟ ।

## ନେତୃତ୍ୱ ପରିବର୍ତ୍ତନ : ଆସକ୍ତି ଓ ଅନାସକ୍ତିର ପରିଣତି

ଦଳେଇଘାଇ ବନ୍ଧଭଙ୍ଗା ବିଧ୍ୱସ୍ତ ଅଞ୍ଚଳରେ ଅର୍ଥମନ୍ତ୍ରୀ ଶ୍ରୀ ରାଧାନାଥ ରଥ ରିଲିଫ୍ ପରିଚାଳନା କାର୍ଯ୍ୟ ନିଜେ ଦେଖୁଥାଆନ୍ତି । ମୁଖ୍ୟମନ୍ତ୍ରୀ ଶ୍ରୀ ଚୌଧୁରୀ ସେହି ଅଞ୍ଚଳର ଲୋକ । ତା'ଛଡ଼ା

ସାଧାରଣତଃ ସାହାଯ୍ୟ ଯେପରି ଭାବରେ ଦିଆଯାଏ ତା'ଠାରୁ ଆହୁରି ଅଧିକ ମୁକ୍ତହସ୍ତରେ ସେହି ବିପନ୍ନ ଅଞ୍ଚଳରେ ସରକାରଙ୍କ ପକ୍ଷରୁ ସାହାଯ୍ୟ ଦିଆଯାଇଥିଲା । ଦଳମତନିର୍ବିଶେଷରେ ଯେଉଁମାନେ ସମାଜ ସେବା କରୁଥିଲେ ସେ ପ୍ରକାର ସମାଜସେବୀଙ୍କ ମାଧମରେ ରିଲିଫ୍ କାର୍ଯ୍ୟ କରାଯାଉଥିଲା । ଦଳମତନିର୍ବିଶେଷରେ ସ୍ଥାନୀୟ ବ୍ୟବସ୍ଥାସଭାର ସଭ୍ୟମାନଙ୍କ ମାଧମରେ ମଧ ରିଲିଫ୍ କାର୍ଯ୍ୟ କରାଯାଇଥିଲା । ସର୍ବଗ୍ରାସୀ ବନ୍ୟାର ପ୍ରତିରୋଧ ବା ସେଇ ବନ୍ୟା-ପ୍ରକୋପରୁ ଲକ୍ଷ ଲକ୍ଷ ଲୋକଙ୍କୁ ରକ୍ଷାକରିବାରେ ସରକାରଙ୍କ ଚରମ ଅବହେଳା ଓ ଦାୟିତ୍ୱହୀନତା ଅଭିଯୋଗ କରି ବ୍ୟବସ୍ଥା ସଭାରେ ମନ୍ତ୍ରିମଣ୍ଡଳ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଆଗତ କରାଯାଇଥିଲା । ରିଲିଫ୍ କାର୍ଯ୍ୟରେ ଅନୀତି ଆଚରଣ କରିଛନ୍ତି ବୋଲି ସମାଜବାଦୀ ଦଳର ନେତାମାନେ କଂଗ୍ରେସଦଳର ସଭ୍ୟମାନଙ୍କ ବିରୁଦ୍ଧରେ ଅଭିଯୋଗ କରିଥିଲେ । ସେହିଭଳି ସମାଜବାଦୀ ଦଳର କେତେକ ନେତୃସ୍ଥାନୀୟ ବ୍ୟକ୍ତି ରିଲିଫ୍ ବଣ୍ଟନରେ ଦୁର୍ନୀତି କରିଛନ୍ତି ବୋଲି ମଧ ଅଭିଯୋଗ ହୋଇଥିଲା । ଏହି ବନ୍ୟା ସମୟରେ ମୁଁ ନିଜେ ବହୁ ଅଞ୍ଚଳକୁ ଯାଇଥିଲି । ଏ ପ୍ରକାରର ଗୋଟିଏ ଦୈବୀଦୁର୍ବିପାକକୁ ସମ୍ଭାଳିବାରେ ଦୋଷତ୍ରୁଟି ଯେ ଦେଖାନଯିବ ଏକଥା କେହି କହିପାରିବେନାହିଁ । କିନ୍ତୁ ଲୋକଙ୍କର ଦୁଃଖକୁ ଲାଘବ କରିବାପାଇଁ ସରକାର ସବୁପ୍ରକାର ସାହାଯ୍ୟ ବ୍ୟବସ୍ଥା କରିଥିଲେ । ବନ୍ୟାକ୍ଲିଷ୍ଟ ଅଞ୍ଚଳର ବହୁ କରୁଣ ଚିତ୍ର ସେତେବେଳେ ଖବରକାଗଜମାନଙ୍କରେ ପ୍ରକାଶପାଇଥିଲା । ଆମ ଓଡ଼ିଶାର ଅନ୍ୟତମ ନେତା ମହତାବବାବୁ ସେତେବେଳେ ବମ୍ବେର ରାଜ୍ୟପାଳ ଥାଆନ୍ତି । ତିନି ଚାରି ମାସ ପରେ ଡିସେମ୍ବର ମାସ ଶେଷବେଳକୁ ସେ ବନ୍ୟାଞ୍ଚଳ ପରିଦର୍ଶନ କରିବାପାଇଁ ଆସିଥିଲେ । ସେ ବିଭିନ୍ନ ସ୍ଥାନକୁ ଯାଇଥିଲେ ଏବଂ ସରକାର ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କୁ ଯେପରି ଭାବରେ ସାହାଯ୍ୟ କରୁଥା'ନ୍ତି ସେଥିରେ ସନ୍ତୁଷ୍ଟ ନହୋଇ ଖୋଲା ଖୋଲି ସମାଲୋଚନା କରିଥିଲେ । ତାଙ୍କର ଏ ପ୍ରକାର ସମାଲୋଚନା ଖବରକାଗଜରେ ମଧ ପ୍ରକାଶ ପାଇଥିଲା । ମୁଖ୍ୟମନ୍ତ୍ରୀ ଶ୍ରୀ ଚୌଧୁରୀ, ଅର୍ଥମନ୍ତ୍ରୀ ଶ୍ରୀ ରାଧାନାଥ ରଥ ଓ ପୂର୍ତ୍ତ ବିଭାଗର ଉପମନ୍ତ୍ରୀ ଶ୍ରୀ ଭୈରବଚନ୍ଦ୍ର ମହାନ୍ତି ଶ୍ରୀ ମହତାବଙ୍କର ଏ ପ୍ରକାର କାର୍ଯ୍ୟପାଇଁ ଘୋର ଅସନ୍ତୋଷ ପ୍ରକାଶ କରିଥିଲେ । ଅନ୍ୟାନ୍ୟ ମନ୍ତ୍ରୀ ଓ ଦଳର ଲୋକମାନେ ଶ୍ରୀ ମହତାବଙ୍କର ଏ ପ୍ରକାର କାର୍ଯ୍ୟକୁ ନାପସନ୍ଦ କରିଥିଲେ ଓ ଆଉ କେତେକ ଦୁଃଖିତ ହୋଇଥିଲେ । ମୁଁ ଶ୍ରୀ ଚୌଧୁରୀଙ୍କର ମନ୍ତ୍ରିମଣ୍ଡଳରେ ଥିଲେ ମଧ ମହତାବଙ୍କର ଜଣେ ସମର୍ଥକ ବୋଲି ଖୋଲାଖୋଲି ଭାବରେ ପରିଚିତ ଥିଲି; କିନ୍ତୁ ସେତେବେଳେ ମହାତାବବାବୁଙ୍କର ଏ ପ୍ରକାର ସମାଲୋଚନା ମୋ ମନକୁ ପାଉନଥିଲା ଓ ମୁଁ ବଡ଼ ଅସ୍ୱସ୍ତି ଅନୁଭବ କରିଥିଲି । ସେ ଥିଲେ ଅନ୍ୟ ଏକ ରାଜ୍ୟର ରାଜ୍ୟପାଳ । ସେଠାରୁ ଆସି ଅନ୍ୟ ଗୋଟିଏ ରାଜ୍ୟରେ ସେ ରାଜ୍ୟର ସରକାରଙ୍କୁ ଖୋଲାଖୋଲି ସମାଲୋଚନା କରିବା ଗୋଟିଏ ପ୍ରଶାସନିକ ଅସଙ୍ଗତି ଭଳି ମଧ ମୋର ମନେହେଲା । ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ଶ୍ରୀ ମହତାବଙ୍କର ଏ ପ୍ରକାର କାର୍ଯ୍ୟରେ ଅସନ୍ତୁଷ୍ଟ ହୋଇ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍ ନେହେରୁଙ୍କୁ ଚିଠି ଲେଖି ସବୁ ଜଣାଇଥିଲେ । ଏ ପ୍ରକାର ଈର୍ଷାପରାୟଣ ଓ ଅସଙ୍ଗତ କାର୍ଯ୍ୟ ଦେଖି ତାଙ୍କ ମନ ଭାଙ୍ଗିପଡ଼ିଥିଲା ବୋଲି କହି ତାଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ଅବ୍ୟାହତି ଦେବାପାଇଁ ସେ ସେହି ଚିଠିରେ ପଣ୍ଡିତ ନେହେରୁଙ୍କୁ ଅନୁରୋଧ କରିଥିଲେ । ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କର ଶ୍ରୀ ଚୌଧୁରୀଙ୍କ ସମ୍ପର୍କରେ ଖୁବ୍ ଉଚ୍ଚ ଧାରଣା ଥାଏ । ସେ ତାଙ୍କର ଅନୁରୋଧ ରକ୍ଷା କରିପାରିବେନାହିଁ ବୋଲି ଜଣାଇଦେଇଥିଲେ । ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାପାଇଁ ଶ୍ରୀ ଚୌଧୁରୀ ପଣ୍ଡିତ ନେହେରୁଙ୍କୁ ଲେଖିଥିବା ଚିଠି ବିଷୟଟି ଖବରକାଗଜରେ ବାହାରି ଯାଇଥିଲା ଏବଂ ତାହାର ପ୍ରତିକ୍ରିୟା ଦଳ ଭିତରେ ଏବଂ ରାଜ୍ୟର ଶାସନକଳରେ ପ୍ରତିଫଳିତ ହୋଇଥିଲା । ଦଳ ଭିତରେ ପ୍ରଚାରିତ ହୋଇଥିଲା ଯେ ଶ୍ରୀ ମହତାବ ତାଙ୍କ ବିରୁଦ୍ଧରେ କାର୍ଯ୍ୟ କରୁଛନ୍ତି ବୋଲି ନବବାବୁ ବିରକ୍ତହୋଇ ଦାୟିତ୍ୱରୁ ଅବ୍ୟାହତି ନେବାପାଇଁ ଚାହୁଁଛନ୍ତି । ଶ୍ରୀ ମହତାବଙ୍କର କୂଟନୀତି ଏହିଠାରେ ଫଳପ୍ରଦ ହୋଇଥିଲା ।

ନବବାବୁ ବଡ଼ ଅନାସକ୍ତ ପ୍ରକୃତିର ଲୋକ । ସେଥିପାଇଁ ତାଙ୍କୁ କେହି କେହି ବାବାଜି ବୋଲି କହୁଥିଲେ । ତାଙ୍କୁ ଟିକିଏ ବିରକ୍ତ କରାଇଦେଲେ ସେ ଥଳି ମୁଣି ବାନ୍ଧି ପଳାଇବାକୁ ବାହାରନ୍ତି । ମହତାବ ତାଙ୍କର ଏଇ ପ୍ରକୃତିର ସୁଯୋଗନେଇ ତାଙ୍କୁ ସବୁବେଳେ ବ୍ୟତିବ୍ୟସ୍ତ କରାଇବାକୁ ଉଦ୍ୟମ କରିଥିଲେ; ଅଥଚ ମହତାବ ଆମ୍ଭମାନଙ୍କୁ କହନ୍ତି ଯେ ଚୌଧୁରୀ ବଂଶର ଲୋକେ ଗୋଇଠା ନଖାଇଲେ ହଟିବେନାହିଁ । ତେଣୁ ବର୍ତ୍ତମାନ ଦୈବୀଦୁର୍ଯୋଗର ସୁଯୋଗ ନେଇ ପଣ୍ଡିତ ନେହେରୁଙ୍କ ପାଖରେ ନବବାବୁଙ୍କ ବିରୁଦ୍ଧରେ କୁତ୍ସାରଟନା କରି ତାଙ୍କୁ ଉସ୍‌କାଉଥିଲେ ଯେପରି ସେ ଧୈର୍ଯ୍ୟଚ୍ୟୁତ ହୋଇ ଗାଦି ଛାଡ଼ି ପଳାଇବେ । ବନ୍ୟାବିଧ୍ୱସ୍ତ ଅଞ୍ଚଳଠାରୁ ବହୁ ଦୂରରେ ରହି ଓ ବମ୍ବେର ରାଜ୍ୟପାଳ ଥାଇ ଶ୍ରୀ ମହତାବ ପ୍ରଧାନମନ୍ତ୍ରୀ ନେହେରୁ ଓ ମୌଲାନା ଅଜାଦ୍‌ଙ୍କୁ ଗୁପ୍ତ ଚିଠି ଲେଖି ଏବଂ ସେମାନଙ୍କ ପାଖରେ ଅସତ୍ୟ ତଥ୍ୟ ପରିବେଷଣ କରି ଆମ ରାଜ୍ୟଶାସନର ଦୁର୍ନାମ କରିବାରେ ଲାଗିପଡ଼ିଥିଲେ । ଦଳେଇଘାଇ ପ୍ରଭୃତି ନଦୀବନ୍ଧମାନଙ୍କର ମରାମତିରେ ଅବହେଳା ଓ ସତର୍କତାମୂଳକ ବ୍ୟବସ୍ଥାର ଅଭାବ କଥା ଅଭିଯୋଗ କରି ୧୯୫୫ ମସିହା ସେପ୍‌ଟେମ୍ବର ମାସର ପ୍ରଳୟଙ୍କରୀ ବନ୍ୟାକୁ ମନୁଷ୍ୟକୃତ ବନ୍ୟା ବୋଲି ଶ୍ରୀ ମହତାବ ଦର୍ଶାଇ ଥିଲେ । ଅପାରଗ ଓ ଭୟାଳୁ ମନ୍ତ୍ରୀମାନଙ୍କ ଯୋଗୁଁ ଲୋକଙ୍କର ଦୁର୍ଦ୍ଦଶା ବଢ଼ିବା ସଙ୍ଗେ ସଙ୍ଗେ ରାଜ୍ୟଶାସନରେ ତାଙ୍କ ମତରେ ଯେଉଁ ଅଧୋଗତି ଘଟିଥିଲା ତାହାକୁ କେବଳ ରାଷ୍ଟ୍ରପତି ଶାସନ ପ୍ରବର୍ତ୍ତନକରି ସଂଶୋଧନ କରାଯାଇପାରେ ବୋଲି ଶ୍ରୀ ମହତାବ ସେମାନଙ୍କୁ ଗୁପ୍ତ ପରାମର୍ଶ ଦେଇଥିଲେ । ଶ୍ରୀ ମହତାବଙ୍କର ଏହି ସବୁ ଗୁପ୍ତ ଚିଠି ପରେ ପଦାକୁ ବାହାରିଥିଲା ଓ ସେଗୁଡ଼ିକ ଓଡ଼ିଶା ହାଇକୋର୍ଟର ଗୋଟିଏ ମକଦ୍ଦମାରେ ନଥିଭୁକ୍ତ ହୋଇଥିଲା(O.J.C.No. 418 of 1967) । ଯଦିଓ ବନ୍ୟା ହେବାର ତିନିମାସ ପରେ ସେହି ବର୍ଷ ଡିସେମ୍ବର ମାସ ଶେଷବେଳକୁ ଶ୍ରୀ ମହତାବ ଓଡ଼ିଶା ଆସିଥିଲେ ଏବଂ ସେତେବେଳେ ସେ ବନ୍ୟାକ୍ଲିଷ୍ଟ ଅଞ୍ଚଳ ଦେଖିବାକୁ ଯାଇଥିଲେ, ତାଙ୍କ ଯିବା ପୂର୍ବରୁ ରାଜ୍ୟର ମୁଖ୍ୟମନ୍ତ୍ରୀ, ଅର୍ଥମନ୍ତ୍ରୀ ବା ଅନ୍ୟ କୌଣସି ମନ୍ତ୍ରୀ କୁଆଡ଼େ ବନ୍ୟାବିଧ୍ୱସ୍ତ ଅଞ୍ଚଳକୁ ଯାଇନଥିଲେ ବୋଲି ଗୋଟିଏ ଅତି କଞ୍ଚା ମିଛ କଥା ମହତାବ ସେସବୁ ଚିଠିରେ ଲେଖିଥିଲେ । ମୁଖ୍ୟମନ୍ତ୍ରୀ ଶ୍ରୀ ଚୌଧୁରୀ ଦଳେଇଘାଇ ପ୍ରଭୃତି ବନ୍ୟାକ୍ଲିଷ୍ଟ ଅଞ୍ଚଳକୁ ଯିବା କଥା ମୁଁ ଭଲଭାବରେ ଜାଣିଥିଲି । ଅର୍ଥମନ୍ତ୍ରୀ ଶ୍ରୀ ରାଧାନାଥ ରଥ ଲୋକଙ୍କୁ ରିଲିଫ୍ ଦେବା ଦାୟିତ୍ୱରେ ଥାଇ ଘନ ଘନ ବନ୍ୟାକ୍ଲିଷ୍ଟ ଅଞ୍ଚଳକୁ ଯାଇଥିବା କଥା ମୁଁ ଜାଣେ ଏବଂ ତାଙ୍କ ସହିତ ସେ ଅଞ୍ଚଳର ହଂସୁଆ ନଦୀରେ ମିଲିଟାରୀ ବୋଟ୍‌ରେ କେତେଥର ମୁଁ ଯାଇଥିବା କଥା ମଧ୍ୟ ମନେଅଛି ।

ମହତାବବାବୁ ଆମ୍ଭମାନଙ୍କୁ କହନ୍ତି ଯେ ଲୋକମାନଙ୍କର ସ୍ମରଣଶକ୍ତି ଖୁବ୍ କମ୍ ଓ ତାହାର ସୁଯୋଗ ନେଇ ଗୋଟିଏ ମିଛକଥାକୁ ବାରମ୍ବାର କୁହାଗଲେ ଏବଂ ଖବରକାଗଜରେ ଲେଖାଗଲେ ତାହା ସତ୍ୟରେ ପରିଣତ ହୋଇଯାଏ । ପ୍ରଜାତନ୍ତ୍ର ଖବରକାଗଜକୁ ବ୍ୟବହାର କରିବାର ସୁଯୋଗ ଥିବା ସତ୍ତ୍ୱେ ଆମ୍ଭେମାନେ ଏହି ଉପାୟ ଅବଲମ୍ବନକରି ଲୋକମତକୁ ହଲଚଲ କରାଉନଥିଲୁ ବୋଲି ସେ ଆମ୍ଭମାନଙ୍କ ଉପରେ ଅସନ୍ତୋଷ ପ୍ରକାଶ କରି ନିଜେ ବମ୍ବେରୁ ସେହି ପ୍ରକାର ସମ୍ବାଦମାନ ସୃଷ୍ଟିକରି ଓ ଲେଖାମାନ ଲେଖି ପ୍ରଜାତନ୍ତ୍ରକୁ ପଠାଉଥିଲେ । ଦୈବୀଦୁର୍ବିପାକ ଯୋଗୁଁ ବନ୍ୟା ହୁଏ ବୋଲି ଶ୍ରୀ ମହତାବ ପରେ ୧୯୮୨ ମସିହା ସେପ୍‌ଟେମ୍ବର ମାସରେ ଯେଉଁ ବନ୍ୟା ହୋଇଥିଲା ଏବଂ ଯେଉଁଥିରେ ଦଳେଇ ଘାଇ ପ୍ରଭୃତି ଘାଇ ଭାଙ୍ଗିଥିଲା, ସେତେବେଳକୁ ଯାଇ ବୁଝିପାରିଥିଲେ ବୋଲି ମନେହୁଏ । ୧୯୮୨ ମସିହା ବନ୍ୟା ସମୟରେ ସେ ନଦୀବନ୍ଧ ମରାମତି ଓ ସତର୍କତାମୂଳକ ବ୍ୟବସ୍ଥାର ଅବହେଳା କଥା ଆଦୌ ଉଠାଇନଥିଲେ । ତାଙ୍କର ଏ ପ୍ରକାର ଆଚରଣ ତାଙ୍କ ମୁହଁରୁ ବାରମ୍ବାର ଶୁଣାଯାଇଥିବା ଗୃହସ୍ଥର ତାତ୍କାଳିକ ନୀତି ସହିତ ବେଶ୍ ଖାପ୍‌ଖାଇଥିଲା । ୧୯୫୫ ମସିହା ବନ୍ୟାରେ ଦଳେଇଘାଇ ବନ୍ଧ ଭାଙ୍ଗିଥିଲା ଏବଂ ପୁନଶ୍ଚ ସେଇ ଦଳେଇଘାଇ ବନ୍ଧ ୧୯୮୨ ମସିହାରେ

ମଧ ଭାଙ୍ଗିଥିଲା । ଶ୍ରୀ ମହତାବଙ୍କ ଭାଷାରେ ପ୍ରଥମଟି ଥିଲା ମନୁଷ୍ୟକୃତ; ମାତ୍ର ୧୯୮୨ ମସିହାଟା ହେଲା ଦୈବୀକୃତ । ସେତେବେଳକାର ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ଅର୍ଥମନ୍ତ୍ରୀ ଶ୍ରୀ ରାଧାନାଥ ରଥ ବନ୍ୟା ପ୍ରପୀଡ଼ିତ ଲୋକଙ୍କୁ ରକ୍ଷା କରିନପାରି କୁଆଡ଼େ ସେମାନଙ୍କର ଦୁର୍ଦ୍ଦଶାର କାରଣ ହୋଇ ସେମାନଙ୍କୁ ମୃତ୍ୟୁମୁଖକୁ ଠେଲିଦେଇଥିଲେ; ମାତ୍ର ୧୯୮୨ମସିହା ବନ୍ୟାବେଳେ ଦୈବୀବିପର୍ଯ୍ୟୟକୁ ଧୈର୍ଯ୍ୟ ଓ ଦମ୍ଭ ଧରି ସମ୍ମୁଖୀନ ହେବାକୁ ପଡ଼ିବ; ''ଈଶ୍ୱରଙ୍କ ସୃଷ୍ଟି ଈଶ୍ୱର ରକ୍ଷାକରିବେ'' ବୋଲି ଶ୍ରୀ ମହତାବ ସେପ୍‌ଟେମ୍ବର ମାସ ପାଞ୍ଚ ତାରିଖ ପ୍ରଜାତନ୍ତ୍ରରେ ସାଧୁବାଣୀ ଶୁଣାଇଥିଲେ । ପରିବର୍ତ୍ତିତ ଅବସ୍ଥାରେ ଏ ପ୍ରକାର ନୀତିବାକ୍ୟ ଗହନ ଅର୍ଥପୂର୍ଣ୍ଣ ଥିଲା ପରି ଜଣାଗଲା ।

ତେବେ ଏଥିରୁ ଅବଶ୍ୟ ଅନ୍ତତଃ ଗୋଟିଏ ସତ୍ୟ ମାନିବାକୁ ପଡ଼ିବ – ସମାଜ ଭିତରେ 'ମହାଜନ' ବୋଲି ପରିଚିତ ବ୍ୟକ୍ତିମାନଙ୍କ ଆଚରଣରେ ଯେଉଁ କାରଣରୁ ହେଲେ ମଧ ଯଦି ଏପରି ବିଭ୍ରାନ୍ତି ଦେଖାଦିଏ, ତେବେ ''ଈଶ୍ୱରଙ୍କ ସୃଷ୍ଟି ଈଶ୍ୱର ରକ୍ଷା ନକଲେ'' ଏ ଭଳି ମହାଜନମାନଙ୍କ ହାବୁଡ଼ରେ ପଡ଼ି ସମାଜ ଯେ ଧ୍ୱଂସ ହୋଇଯିବ, ଏହା ସତ୍ୟ ।

୧୯୫୧-୧୯୫୨ ମସିହାରେ ପ୍ରଥମ ସାଧାରଣ ନିର୍ବାଚନ ପରେ ସମସ୍ତେ ଆଶାକରିଥିଲେ ଯେ ଶ୍ରୀ ହରେକୃଷ୍ଣ ମହତାବ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ନିଶ୍ଚୟ ସ୍ଥାନପାଇବେ । ମୋ ମନରେ ମଧ ଏ ସମ୍ବନ୍ଧରେ ଟିକିଏ ହେଲେ ସନ୍ଦେହ ନଥିଲା । କିନ୍ତୁ କାହିଁକି କେଜାଣି ପଣ୍ଡିତ ନେହେରୁ ତାଙ୍କ ମନ୍ତ୍ରିମଣ୍ଡଳରେ ଶ୍ରୀ ମହତାବଙ୍କୁ ନେଲେନାହିଁ । କ୍ଷମତା-ରାଜନୀତିରେ ସାବଧାନରେ ନଚଳିଲେ ଅନେକ ସମୟରେ ଅସୁବିଧା ଭୋଗକରିବାକୁ ପଡ଼େ ଏବଂ ତାହାହିଁ ବୋଧହୁଏ ଶ୍ରୀ ମହତାବଙ୍କ ପ୍ରତି ପ୍ରଯୁଜ୍ୟ ହୋଇପାରେ । ବିଶେଷତଃ ଗୋଟିଏ ମନ୍ତ୍ରିମଣ୍ଡଳରେ ରହି ମିଳିତ ଦାୟିତ୍ୱବୋଧ ଘେନି ଚଳିବାକୁ ହେଲେ ସବୁଠାରୁ ବେଶି ସାବଧାନତା ଓ ସଂଯମର ଯେ ଆବଶ୍ୟକତା ଥାଏ, ଏଥିରେ କୌଣସ ସନ୍ଦେହନାହିଁ । ସେହିପ୍ରକାର ସାବଧାନତା ଓ ସଂଯମ ଶ୍ରୀ ମହତାବଙ୍କଠାରେ ଅଭାବ ଥିବାର ପଣ୍ଡିତ ନେହେରୁ ଲକ୍ଷ୍ୟ କରିଥିଲେ ବୋଲି ମୁଁ ବିଜୁବାବୁ ଓ ନବବାବୁଙ୍କଠାରୁ ଏବଂ ଦିଲ୍ଲୀରୁ ଶୁଣିବାକୁ ପାଇଥିଲି । ଶ୍ରୀ ମହତାବଙ୍କର ଅବ୍ୟାପାରେ-ସୁବ୍ୟାପାର ଆଚରଣ ହେତୁ ପଣ୍ଡିତ ନେହେରୁଙ୍କର ତାଙ୍କ ଉପରେ ଅସନ୍ତୋଷ ଜନ୍ମିଥିବା କଥା ମୁଁ ଜାଣିବାକୁ ପାଇଥିଲି । ଶ୍ରୀ ମହତାବ କେନ୍ଦ୍ର ଶିଳ୍ପମନ୍ତ୍ରୀ ହିସାବରେ ତାଙ୍କ ଦାୟିତ୍ୱରେ ଥିବା ବିଷୟ ପ୍ରତି ଅଧିକ ଧାନ ନଦେଇ ଅନ୍ୟାନ୍ୟ ମନ୍ତ୍ରୀମାନଙ୍କ ଦାୟିତ୍ୱରେ ଥିବା ବିଭାଗମାନଙ୍କର କାର୍ଯ୍ୟକଳାପ ସମ୍ବନ୍ଧରେ ବହୁ ପ୍ରକାର ତ୍ରୁଟି ଦେଖାଇ କୁଆଡ଼େ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କୁ ଅନେକ ସମୟରେ ନାନା ପରାମର୍ଶ ଦେବାକୁ ଲାଗିଲେ । ଶ୍ରୀ ମହତାବଙ୍କ ଏ ପ୍ରକାର ଆଚରଣକୁ ପ୍ରଧାନମନ୍ତ୍ରୀ ଆଦୌ ପସନ୍ଦକରୁନଥିଲେ ଏବଂ କୌଣସି ବନ୍ଧୁଙ୍କ ଜରିଆରେ ଏ କଥା ସେ ମହତାବଙ୍କୁ କୁଆଡ଼େ ଜଣାଇଦେଇଥିଲେ । ସେହି ସମୟରେ ଏସବୁ କଥା ଶ୍ରୀ ପଟ୍ଟନାୟକ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ଚୌଧୁରୀଙ୍କ ପାଖରେ କହିବାର ମୁଁ ଶୁଣିଥିଲି । ଶ୍ରୀ ପଟ୍ଟନାୟକ ୧୯୬୮ ମସିହା ଜାନୁୟାରୀ ପହିଲାରେ ଓଡ଼ିଶା ହାଇକୋର୍ଟରେ ଯେଉଁ ସତ୍ୟପାଠ କରିଥିଲେ; ସେଥିରେ ସେ ସେହି ଉକ୍ତିକୁ ସମର୍ଥନ କରିଥିଲେ । ସତ୍ୟପାଠ କରି ଶ୍ରୀ ପଟ୍ଟନାୟକ କହିଥିଲେ :

"He (Mr. Mahtab) did not leave the Central Cabinet in 1952 by his own choice, but he was dropped out by late Shree Nehru when a new Cabinet was formed after 1952 election because of his several lapses and irregularities as Minister, apart from his constant interference in the other ministries of Government of India, for which he had received letters of warning from the Prime Minister,Pandit Nehru."

ସ୍ୱାଧୀନତା ପୂର୍ବରୁ ଶ୍ରୀ ନେହେରୁଙ୍କର ଯେଉଁ ମନ୍ତ୍ରିମଣ୍ଡଳ ଥିଲା ସେଥିରେ ନେହେରୁଙ୍କୁ ମୁକାବିଲା କରିବା ଭଳି ଆଉ ଜଣେ ସମକକ୍ଷ ନେତା ଥିଲେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍ । ଏହି ଦୁଇନେତାଙ୍କ

ଭିତରେ କେତେକ ସମୟରେ ଗୁରୁତର ମତଭେଦ ହେଉଥିଲା; ତେଣୁ ସେତେବେଳେ ନେତୃତ୍ୱ ଭିତରେ ଏକପ୍ରକାର ବିଭେଦ ସୃଷ୍ଟିହେଉଥିଲା । ସେଭଳି ଉଚ୍ଚକୋଟିର ଦୁଇନେତାଙ୍କ ଭିତରେ ଉପୁଜୁଥିବା ମତଭେଦ ଭିତରେ ତିକ୍ତତା ନଥିଲା । କିନ୍ତୁ ମହତାବ ବାବୁ ନିଜ ସ୍ୱାର୍ଥ ଦୃଷ୍ଟିରୁ ବିଚାରକରି ଏଭଳି କେତେକ କ୍ଷେତ୍ରରେ ଅବାଞ୍ଛିତ ଉତ୍ସାହ ଦେଖାଇଥିଲେ । ତାଙ୍କର କେତେକ କାର୍ଯ୍ୟ ଆପାତତଃ ନେହେରୁଙ୍କ ସପକ୍ଷରେ ପ୍ରଚାରଧର୍ମୀ ହୋଇଥିଲେ ମଧ୍ୟ ଉଦାରମନା ନେହେରୁ ବୋଧହୁଏ ଏଭଳି ଆଚରଣକୁ ଶୁଭଦୃଷ୍ଟିରେ ଦେଖୁନଥିଲେ । ଅନେକେ ମହତାବବାବୁଙ୍କ Road Ahead ପୁସ୍ତିକାର ବକ୍ତବ୍ୟର ଓ ଏହାର ପ୍ରକାଶନ ସମୟକୁ ଏକ ସୁବିଧାବାଦୀ ଭୂମିକା ଓ ସର୍ଦ୍ଦାର ପଟେଲ୍‌ଙ୍କ ବ୍ୟକ୍ତିତ୍ୱ ପ୍ରତି ତାଙ୍କର ଅସୌଜନ୍ୟ ବୋଲି ମନେକରୁଥିଲେ । ତା ବ୍ୟତୀତ ପ୍ରଥମ ସାଧାରଣ ନିର୍ବାଚନ ବେଳକୁ ସର୍ଦ୍ଦାର ପଟେଲ୍ ଆଉ ଇହଧାମରେ ନଥିଲେ । ତେଣୁ ଏହାପରେ ଥିଲା ନେହେରୁଙ୍କର ଏକପ୍ରକାର ନିରଙ୍କୁଶ ନେତୃତ୍ୱ ଏବଂ ମନ୍ତ୍ରିମଣ୍ଡଳରେ ସହଯୋଗୀ ମନ୍ତ୍ରୀ ବାଛିବାର ନିଷ୍ପତ୍ତି ମୋଟାମୋଟି କେବଳ ତାଙ୍କରହିଁ ଥିଲା । ତାଙ୍କ ମନ୍ତ୍ରିମଣ୍ଡଳର ତାଲିକା ଯେଉଁଦିନ ବାହାରିଲା ସେଥିରେ ଶ୍ରୀ ମହତାବଙ୍କ ନାମ ନଥିବାରୁ ଆମ୍ଭେମାନେ ବିବ୍ରତ ହୋଇପଡ଼ିଥିଲୁ । ବୀରେନ୍‌ବାବୁ ଓ ମୁଁ ନବବାବୁଙ୍କ ପାଖକୁ ଯାଇଥିଲୁ । ନବବାବୁ ମଧ୍ୟ ଦୁଃଖିତ ଏବଂ ଚିନ୍ତିତ ଥିଲେ । ତାଙ୍କୁ ଆମେ ଅନୁରୋଧ କରିଥିଲୁ ଦିଲ୍ଲୀଯାଇ ନେହେରୁଙ୍କ ସହିତ କଥାବାର୍ତ୍ତା କରି କୌଣସିମତେ ମହତାବବାବୁଙ୍କୁ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ସ୍ଥାନଦେବାପାଇଁ । ନବବାବୁ ପଣ୍ଡିତ ନେହେରୁଙ୍କୁ ଆମ ଆଗରେ ଟେଲିଫୋନ୍ କରିଥିଲେ । ନେହେରୁଙ୍କ ସହିତ କଥାବାର୍ତ୍ତା କରି ନବବାବୁ ନିରୁତ୍ସାହିତ ହୋଇଥିଲେ ଏବଂ ଆମ୍ଭମାନଙ୍କୁ କହିଥିଲେ ଯେ ମହତାବବାବୁଙ୍କୁ ବର୍ତ୍ତମାନ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ନେବା ବୋଧହୁଏ ସମ୍ଭବ ହେବନାହିଁ । କିଛିଦିନ ପରେ ମହତାବବାବୁଙ୍କୁ ପାର୍ଲିଆମେଣ୍ଟ କଂଗ୍ରେସଦଳର ସେକ୍ରେଟେରୀ-ଜେନେରାଲ୍ କରାଯାଇଥିଲା । ମାତ୍ର ସେଥିରେ ସେ ସନ୍ତୁଷ୍ଟ ହୋଇ ରହିବା ଲୋକ ନୁହନ୍ତି । ସ୍ୱାଧୀନତା ପୂର୍ବରୁ କେନ୍ଦ୍ର ବ୍ୟବସ୍ଥାସଭାରେ କଂଗ୍ରେସ୍‌ଦଳର ଆଉଜଣେ ଓଡ଼ିଆ ସଦସ୍ୟ ପଣ୍ଡିତ ନୀଳକଣ୍ଠ ଦାସ ସେକ୍ରେଟେରୀ ହୋଇଥିଲେ । ଶ୍ରୀ ମହତାବ ପାର୍ଲିଆମେଣ୍ଟରେ କଂଗ୍ରେସଦଳର ସେକ୍ରେଟେରୀ ହିସାବରେ ଆମେରିକା ପ୍ରଭୃତି କେତେକ ଦେଶକୁ ଯାଇଥିଲେ । ଶ୍ରୀ ମହତାବ ସବୁବେଳେ ଆମ୍ଭମାନଙ୍କୁ କହନ୍ତି ଯେ, ''କୁର୍ସି ଛାଡ଼ିବ ନାହିଁ'' । କିନ୍ତୁ ୧୯୫୦ରେ ସେ ଯଦି ସେହି ପରାମର୍ଶଟିକୁ ନିଜ ପ୍ରତି ପ୍ରଯୁଜ୍ୟ କରିଥାଆନ୍ତେ, ଓଡ଼ିଶାରେ କୁର୍ସି ଛାଡ଼ି କେନ୍ଦ୍ର କୁର୍ସିଆଡ଼େ ମନ ବଳାଇ ନଥାନ୍ତେ ତାହେଲେ ତାଙ୍କୁ ବୋଧହୁଏ ପରେ ମନସ୍ତାପ କରିବାକୁ ପଡ଼ିନଥା'ନ୍ତା । ମୁଁ ସେତେବେଳେ ନିଜେ ଦେଖିଛି କି ପ୍ରକାର ମନସ୍ତାପ ମଧ୍ୟରେ ସେ ଦିନ କାଟୁଥିଲେ । ନବବାବୁ ମଧ୍ୟ ସମୟସମୟରେ ଯାଇ ନେହେରୁଙ୍କୁ କହୁଥିଲେ ଯେ ମହତାବଙ୍କ ଭଳି ଜଣେ ସକ୍ରିୟ ନେତାଙ୍କୁ ନିଷ୍କ୍ରିୟ କରି ରଖିବା ଉଚିତ ହେବନାହିଁ । ଶୀଘ୍ର କିଛି ନହେଲାକ୍ଷଣି ମହତାବବାବୁ ଉଛନ୍ନ ହେଲେ । ନବବାବୁ ଗୋଲକଧନ୍ଦାରେ ପଡ଼ିଲେ; ସ୍ୱେଚ୍ଛାରେ ଗାଦି ଛାଡ଼ି ମହତାବଙ୍କୁ ଥାଇଥାନ କରିବେ ବୋଲି ସେ ତାଙ୍କ ବନ୍ଧୁମାନଙ୍କ ପାଖରେ ପ୍ରକାଶକଲେ ଏବଂ ତାଙ୍କ ବ୍ୟବହାରରୁ ମଧ୍ୟ ତାହା ଜଣାଗଲା । ମାତ୍ର ମହତାବବାବୁ ସେଥିରେ ବିଶ୍ୱାସ କରୁନଥା'ନ୍ତି । ବିଜୁ ପଟ୍ଟନାୟକ ପ୍ରଭୃତି ତାଙ୍କ ମନରେ ପ୍ରତ୍ୟୟ ଜନ୍ମାଇଲେ । ପଶ୍ଚିମ ବଙ୍ଗଳା କଲ୍ୟାଣୀଠାରେ ଅନୁଷ୍ଠିତ ହେଉଥିବା ଜାତୀୟ କଂଗ୍ରେସକୁ ଯିବା ପୂର୍ବରୁ କଟକ ସ୍ୱରାଜ ଆଶ୍ରମରେ ପ୍ରଦେଶ କଂଗ୍ରେସର ଗୋଟିଏ ଜରୁରୀ ବୈଠକ ବସିଥିଲା । ସେହିଠାରେ ନବବାବୁ ତାଙ୍କର ସିଦ୍ଧାନ୍ତ ଜଣାଇଦେବା କଥା ହୋଇଥିଲା । ବୈଠକ ବସିଲା । ସମସ୍ତେ ଆଶାୟୀ ଥିଲେ ନବବାବୁ ତାଙ୍କ ମନକଥା କହିବେ । ସେ ଅନେକ କଥା କହିଲେ; କିନ୍ତୁ ଗାଦି ଛାଡ଼ିଯିବା ବିଷୟ କିଛି କହିଲେନାହିଁ । ଆମେ ମହତାବ ବାବୁଙ୍କପାଇଁ ମନ ଦୁଃଖରେ କଲ୍ୟାଣୀ କଂଗ୍ରେସକୁ ଯାଇଥିଲୁ । କୁର୍ସି ଫେରସ୍ତ ପାଇବା କଥା ନୋହିଲା । ଶେଷରେ ବମ୍ବେର ରାଜ୍ୟପାଳରୂପେ ସେ ନିଯୁକ୍ତ ହୋଇଥିଲେ ।

## ବମ୍ବେ ରାଜଭବନରୁ ପ୍ରରୋଚନା

ବମ୍ବେରେ ବର୍ଷେ ଖଣ୍ଡେ ରହିଲା ପରେ ଶ୍ରୀ ମହତାବ ପୁଣି ଅସ୍ଥିର ଅନୁଭବ କଲେ । ୧୯୫୫ ମସିହା ବନ୍ୟାବିପତ୍ତି ପରେ ସେ ବିଶେଷଭାବରେ ଉଦ୍‌ଗ୍ରୀବ ହୋଇପଡ଼ିଥିଲେ କୌଣସିମତେ ଓଡ଼ିଶାକୁ ମୁଖ୍ୟମନ୍ତ୍ରୀ ହୋଇ ଫେରିଆସିବାପାଇଁ । କିନ୍ତୁ ଆସିବେ କିପରି, ତାହାହିଁ ହେଲା ପ୍ରଶ୍ନ । ଆଗରୁ କହିଛି ନବବାବୁ ସାମାନ୍ୟ କଥାରେ ଚିଡ଼ିଯାଇ ଇସ୍ତଫା ଦେବାପାଇଁ ବାହାରିପଡ଼ନ୍ତି । ତାଙ୍କର ଏହି ସ୍ୱଭାବର ସୁବିଧା ନିଆଯାଇଥିଲା । ସେତେବେଳେ ଓଡ଼ିଶା ବିଧାନସଭା କଂଗ୍ରେସଦଳ ଦୁଇଟି ଗୋଷ୍ଠୀରେ ବିଭକ୍ତ ହୋଇଥିଲା । ଗୋଟିଏ ମୁଖ୍ୟମନ୍ତ୍ରୀ ଶ୍ରୀ ଚୌଧୁରୀଙ୍କ ଗୋଷ୍ଠୀ ଓ ଅନ୍ୟଟି ମହତାବ ଗୋଷ୍ଠୀ । ନବବାବୁଙ୍କ ମନ୍ତ୍ରିମଣ୍ଡଳର ସବୁ ସଭ୍ୟ ଥିଲେ ତାଙ୍କ ସପକ୍ଷରେ । କେବଳ ମୁଁ ମହତାବ ଗୋଷ୍ଠୀରେ ଥାଏ । ଶ୍ରୀ ବୀରେନ୍ ମିତ୍ର, ଶ୍ରୀ ବିଜୁ ପଟ୍ଟନାୟକ, ଶ୍ରୀ ଦୀନବନ୍ଧୁ ସାହୁ ଓ ଶ୍ରୀ ବନମାଳୀ ପଟ୍ଟନାୟକ ମଧ ମହତାବ ଗୋଷ୍ଠୀର ଅନ୍ତର୍ଭୁକ୍ତ ଥିଲେ । କିନ୍ତୁ ଦଳର ଅଧିକାଂଶ ସଭ୍ୟଙ୍କର ଶ୍ରୀ ଚୌଧୁରୀଙ୍କ ପ୍ରତି ସମର୍ଥନ ଥିଲା । ରାଜ୍ୟ ପୁନର୍ଗଠନ କମିଶନ ରିପୋର୍ଟ ପରେ ଯେଉଁ ସୀମା ଆନ୍ଦୋଳନ ହୋଇଥିଲା, ସେଥିପାଇଁ ଓଡ଼ିଶା ଜନଦରବାରରେ ସରକାରର ମର୍ଯ୍ୟାଦା ବହୁପରିମାଣରେ ସମାଲୋଚିତ ହେଉଥିଲା । ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାକଥା ବାରମ୍ବାର ଶ୍ରୀ ଚୌଧୁରୀ କହୁଥିବାରୁ ତାହା ଦଳକୁ ଦୁର୍ବଳ କରିଦେଉଛି ବୋଲି ଆମ୍ଭେମାନେ ଅଭିଯୋଗ କରିଥିଲୁ । ନିର୍ବାଚନ ପୂର୍ବରୁ ଜନମତକୁ କଂଗ୍ରେସଦଳ ସପକ୍ଷରେ ଆକୃଷ୍ଟ କରିବାପାଇଁ ଯେତେ ଶୀଘ୍ର ସମ୍ଭବ ଏକ ଟାଣୁଆ ନେତୃତ୍ୱକୁ କ୍ଷମତାସୀନ କରାଇବା ଏକାନ୍ତ ଆବଶ୍ୟକ ବୋଲି ଆମର ମନେହେଉଥାଏ । ଏହି ପରିପ୍ରେକ୍ଷୀରେ ଆଗାମୀ ନିର୍ବାଚନରେ କଂଗ୍ରେସକୁ ଜୟଯୁକ୍ତ କରାଇବାକୁ ହେଲେ ନେତୃତ୍ୱର ପରିବର୍ତ୍ତନ ଯେ ଏକାନ୍ତ ଆବଶ୍ୟକ ଏ କଥା ଆମ୍ଭେମାନେ କହିବାକୁ ଲାଗିଲୁ । ଏଦିଗରେ ଆମେ କ'ଣ କରୁଛୁ ଓ କେତେଦୂର ଅଗ୍ରସର ହେଲୁ ଜାଣିବାପାଇଁ ପ୍ରାୟ ପ୍ରତିଦିନ ରାତିରେ ବୀରେନ୍ ମିତ୍ରଙ୍କର କଟକ ଟେଲିଫୋନ୍ ୩୦୨ ନମ୍ବରକୁ ବମ୍ବେରୁ ମହତାବଙ୍କ ପାଖରୁ ଟେଲିଫୋନ୍ ଆସେ । କେତେବେଳେ ଟେଲିଫୋନ୍ ଆସିବ ତା'ର ସମୟ ଆମ୍ଭମାନଙ୍କୁ ଜଣାଥାଏ, ତେଣୁ ଆମ୍ଭେମାନେ ଯାଇ ସେଠାରେ ଏକତ୍ରିତ ହୋଇଥାଉ । ସେ କଥାବାର୍ତ୍ତା ପୁଣି ପାଞ୍ଚ ଦଶ ମିନିଟ୍‌ରେ ସରେନାହିଁ; ସମୟସମୟରେ ଅଧଘଣ୍ଟାଏ ପର୍ଯ୍ୟନ୍ତ ଚାଲିଥାଏ । ବମ୍ବେ ଲାଟ୍‌ଙ୍କ ଟେଲିଫୋନ୍ – ତାକୁ କାଟିବ ବା କିଏ ? ଏହିପରି କାର୍ଯ୍ୟ ବହୁଦିନ ଚାଲିଲା । କିନ୍ତୁ ସେ ସେଠାରେ ଅସ୍ଥିର ଯେ ଶୀଘ୍ର କାହିଁକି କିଛି ହେଉନାହିଁ ? ନବବାବୁଙ୍କ ଗୋଷ୍ଠୀ ମଧ ଖୁବ୍ ଜୋର୍‌ସୋର୍‌ରେ ମହତାବଙ୍କ ବିରୁଦ୍ଧରେ ଲାଗିଲେ ଏବଂ ନବବାବୁ ଇସ୍ତଫାଦେଇ ଯାଇପାରିବେ ନାହିଁ ବୋଲି ସେମାନେ ଜିଦ୍ ଧରି ବସିଲେ । ଆମ୍ଭମାନଙ୍କର ଏକମାତ୍ର ଅସ୍ତ୍ରଥାଏ ନବବାବୁଙ୍କର ଅନାସକ୍ତି । ଆମ ପକ୍ଷରୁ କୁହାଯାଉଥାଏ ନବବାବୁଙ୍କର ରହିବାର ଇଚ୍ଛାନାହିଁ, ତେଣୁ ଏପରି ଜଣେ ଅନିଚ୍ଛୁକ ଓ ଅନାସକ୍ତ ନେତାଙ୍କୁ ନେଇ ନିର୍ବାଚନ କିପରି ଲଢ଼ାଯିବ ? ଲୋକେ ବା କାହିଁକି ଆମକୁ ସମର୍ଥନ କରିବେ ?

ବନ୍ୟାଜନିତ ପରିସ୍ଥିତିରୁ ବିଭିନ୍ନ ସମସ୍ୟାକୁ ନେଇ ଯେଉଁ ଅସନ୍ତୋଷ ସୃଷ୍ଟିହୋଇଥିଲା, ତାହାର ସୁବିଧା ନେଇ ନବବାବୁଙ୍କର ମନ୍ତ୍ରିମଣ୍ଡଳକୁ ଅପ୍ରିୟ କରିବାକୁ ମହତାବବାବୁ ତାଙ୍କ ଗୋଷ୍ଠୀର ଲୋକଙ୍କୁ ପରାମର୍ଶ ଦେଉଥିଲେ । ବିଧାନସଭା ସଦସ୍ୟ ଶ୍ରୀ ଦିନବନ୍ଧୁ ସାହୁ ଶ୍ରୀ ମହତାବଙ୍କୁ ଗୋଟିଏ ଚିଠି ଲେଖି ତାଙ୍କୁ ସୂଚନା ଦେଇଥିଲେ ଯେ ସେ ରାଜ୍ୟପାଳ ପଦ ଛାଡ଼ିଦେଇ ଆସି ଓଡ଼ିଶା ଲୋକଙ୍କର ସେବାରେ ନିଜକୁ ନିୟୋଜିତ କଲେ ତା'ର ଫଳ ଖୁବ୍ ଭଲହେବ । କିନ୍ତୁ ସେତେବେଳେ ରାଜ୍ୟପାଳ ପଦ ଛାଡ଼ିବାପାଇଁ ମହତାବବାବୁ ପ୍ରସ୍ତୁତ ନଥିଲେ । ସେହି ସମୟରେ ମହତାବବାବୁ, ବିରେନ୍ ବାବୁ ଓ ଦୀନବନ୍ଧୁବାବୁଙ୍କୁ ଦୁଇ ଖଣ୍ଡି ଚିଠି ଲେଖିଥିଲେ । କଂଗ୍ରେସ ସଭାପତି ଶ୍ରୀ ଧେବର ସେତିକିବେଳେ

ବଲାଙ୍ଗୀର ଓ ସମ୍ବଲପୁର ପ୍ରଭୃତି ଅଞ୍ଚଳକୁ ଆସିବାର ଥିଲା । ଏକଥା ଜାଣି ମହତାବବାବୁ ତାଙ୍କ ଗୋଷ୍ଠୀର ଲୋକଙ୍କୁ ଲେଖିଥିଲେ ଶ୍ରୀ ଧେବରଙ୍କୁ କଟକଆଡ଼କୁ ନେବାପାଇଁ ଦାବି କରିବାକୁ । କାରଣ ଧେବରଭାଇ ସମ୍ବଲପୁର ଓ ବଲାଙ୍ଗୀରଆଡ଼େ ଗଲେ ଓଡ଼ିଶା କଂଗ୍ରେସ ଓ ସରକାରଙ୍କ ବିଷୟରେ ଭଲ ଧାରଣା ନେଇ ଫେରିବେ । ତାଙ୍କର ନିର୍ଦ୍ଦେଶ ଥିଲା ଯେ ଧେବରଙ୍କୁ କଟକଆଡ଼େ ନେଇ ତାଙ୍କ ଆଗରେ କଂଗ୍ରେସର ବିଶିଷ୍ଟ ଲୋକମାନେ ସରକାର ଓ ରାଜ୍ୟ କଂଗ୍ରେସ ବିରୁଦ୍ଧରେ ପ୍ରକାଶ୍ୟ ଭାବରେ କୁହନ୍ତୁ । ସେଥିପାଇଁ ସେ ଲେଖିଥିଲେ, ବିହାରକୁ ଯେତେବେଳେ ଧେବରଭାଇ ଯାଇଥିଲେ ସେତେବେଳେ ସେଠାକାର କଂଗ୍ରେସ ଲୋକେ ତାଙ୍କ ଆଗରେ ସରକାର ତଥା ବିହାର ରାଜ୍ୟ କଂଗ୍ରେସ ବିରୁଦ୍ଧରେ ପ୍ରକାଶ୍ୟ ଭାବରେ ଅସନ୍ତୋଷ ପ୍ରକାଶ କରିବାରୁ ସେ କଥାଟାକୁ ଠିକ୍ ବୁଝିପାରିଥିଲେ ଓ ସେମାନେ ଭଲ ଫଳ ପାଇଥିଲେ । ୧୯୫୫ ମସିହା ଅକ୍ଟୋବର ମାସ ଏଗାର ତାରିଖରେ ମହତାବ ବାବୁ ଏଇ ମର୍ମରେ ବମ୍ବେରୁ ସିଧାସଳଖ ବିଧାନସଭା ସଦସ୍ୟ ଶ୍ରୀ ବୀରେନ୍ ମିତ୍ରଙ୍କୁ ଲେଖିଥିଲେ; "You may have seen the press reports of Dhebar's visit Patna. If you have not, then see the newspapaers from the 2nd to 5th of this month.You will see that hundreds of people complained to Dhebar that neither the Congress nor the Government were listening to the grievances of the people. They made demonstrations to convince Dhebar and he was convinced. He mildly rebuked the Government of Bihar also. This is what is called public life. If there is any point of view that has to be clearly put forth in a straight manner, there should not be any inhibition there. Then alone public life develops. In the absence of that it must be presumed that everything goes on well. I read in the papers that Dhebar is coming to Orissa to tour in Bolangir. Sambalpur and Mayurbhanj. This shows that he will not have the opportunity of knowing the actual affairs, for in those parts there is no Congress at all and he would be persuaded to believe what is said to him. He should be approached to come down to Cuttack and know how Congress is working. There should be that demand. Those who will make this demand should come to the front themselves. They cannot get this done by some unknown and junior persons as is the practice in Orissa. Honest and straight course is always good and produces result." ବମ୍ବେ ରାଜ୍ୟପାଳ ପଦରୁ ଇସ୍ତଫା ଦେଇ ଓଡ଼ିଶାରେ ଲୋକଙ୍କର ସେବାରେ ନିଜକୁ ନିୟୋଜିତ କରିବାପାଇଁ ବିଧାନସଭା ସଦସ୍ୟ ଶ୍ରୀ ଦିନବନ୍ଧୁ ସାହୁ ଶ୍ରୀ ମହତାବଙ୍କୁ ଯେଉଁ ସୂଚନା ଦେଇଥିଲେ ସେ ବିଷୟରେ ସେ ଉକ୍ତ ଚିଠିରେ ବୀରେନ୍‌ବାବୁଙ୍କୁ ଆହୁରି ଲେଖିଥିଲେ, "Then about my going – Sri Dinabandhu Sahoo has made out a point that I should go now. There are many flaws in that letter which he has written to me. First, I have to make out a case to my friends at the headquarters. I should not allow them to think I go there to start troubles. In short my present position not as the Governor but as a top rank Congressman creates that difficulty. Next, if and when I go, must see thing through. I donot believe in half hearted measures. But I know most of you are not prepared that way. Next, the technique of starting an opposition requires that it should start in the Congress Party itself. For instance, a regular opposition group inside the Assembly Party and the P.C.C. It is possible that many requisition meetings of the P.C.C. and of

the party may have to be called. As far as I see there is none in the party who can do it. I am not a member of the party. But I can do that in the P.C.C. But the present time of distress is not suitable for the purpose. Dinabandhu Babu says that I should take charge of non-official relief work. Who will give me that charge ? As far as I see, both the P.C.C. and the Ministry are determined to go any length to serve their purpose and interest of the country is nowhere near their mind. The reports that I have received have shocked me and I find myself in a different world now. It is surpising how the public opinion tolerates this kind of unfair and unjust work."

## ଅସହିଷ୍ଣୁତାରୁ ଅସଂଯତ ଆକ୍ଷେପ

ଶ୍ରୀ ଦୀନବନ୍ଧୁ ସାହୁ ଆଶାକରୁଥିଲେ ଯେ ମହତାବବାବୁ ସେହିକ୍ଷଣି ରାଜ୍ୟପାଳ ପଦ ଛାଡ଼ି ଓଡ଼ିଶା ଆସି ଲୋକଙ୍କ ସେବାକାର୍ଯ୍ୟରେ ଲାଗିବାପାଇଁ । ମହତାବବାବୁ ସେ କଥା କରିପାରୁ ନଥା'ନ୍ତି । ତେଣୁ କାଳେ ଦୀନବନ୍ଧୁବାବୁ ନିରୁତ୍ସାହିତ ହୋଇଯିବେ, ସେଥିପାଇଁ ଶ୍ରୀ ମହତାବ ୧୯୫୫ ମସିହା ସେପ୍ଟେମ୍ବର ୨୨ ତାରିଖରେ ଦୀନବନ୍ଧୁବାବୁଙ୍କ ଖଣ୍ଡିଏ ଗୁପ୍ତ ଚିଠି ଲେଖି ସେଥିରେ ସେ ଓଡ଼ିଶାର କଂଗ୍ରେସ ଭିତରେ ବହୁଦିନରୁ ଥିବା ଦଳାଦଳିର ଇତିହାସ ବର୍ଣ୍ଣନା କରି ସ୍ୱର୍ଗୀୟ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଓ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କୁ ରକ୍ଷଣଶୀଳ ଦଳ ବୋଲି କହି ଅନ୍ୟାନ୍ୟ କଥା ଭିତରେ ଲେଖିଥିଲେ :

"Now I tell you my mistakes. I committed a grave blunder in not crushing the conservative element out of existence which I could have done. It was mistake to have thought that they would correct themselves. The second blunder for which the whole Province is now suffering was to place Naba Babu in the vanguard. His innerself he kept concealed so many years. It is really surprising and a wonderful feat. Now these mistakes have been committed. The remedy is that some at least must remain firm and give kicks even if they lose at the first instance. But in the interest of public life that is necessary. For about two years I was the only person to kick. In the interest of the Province I should have stayed on to kick and kick till the situation was corrected. But, every friend asked me to come away and I noticed that I had become an object of pity even amongst friends. For me personally there was always the scope to go out and find new fields. By coming away I have personally gained immensely. But I think the Province has lost. Any way, there is it. I would implore you to resist and be firm and the situation will be corrected in a year before the next election, I feel sure. Somehow my fear is that at a certain stage the resistance will collapse.

ଶ୍ରୀ ମହତାବ ଯାହା ଲେଖିଛନ୍ତି ତା'ର ମର୍ମ ହେଉଛି, ଶ୍ରୀ ଗୋପବନ୍ଧୁ ଚୌଧୁରୀ ଓ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଭଳି 'ରକ୍ଷଣଶୀଳ' ଲୋକମାନଙ୍କର ସେ ମୂଳୋତ୍ପାଟନ ନକରି ଗୋଟିଏ ମସ୍ତବଡ଼ ଭୁଲ କରିଛନ୍ତି ଏବଂ ତା'ଛଡ଼ା ନବକୃଷ୍ଣ ଚୌଧୁରୀଙ୍କ ଭଳି ଜଣେ 'ଧର୍ମବକ'ଙ୍କୁ ଆଣି ଆଗରେ ଥୋଇ ରାଜ୍ୟର କ୍ଷତି କରିବା ତାଙ୍କର ଗୋଟିଏ ଭୁଲ । ଏହାର ଏକମାତ୍ର ପ୍ରତିକାର ହେଉଛି ଯେ କେତେକ ଲୋକ ଦୃଢ଼ ହୋଇ ତାଙ୍କୁ ଗୋଇଠା ମାରିବାପାଇଁ ପ୍ରସ୍ତୁତ ହେଲେ ଅବସ୍ଥା ସୁଧୁରିପାରେ । ଦୁଇ

ବର୍ଷକାଳ ସେ କେବଳ ଗୋଇଠା ମାରୁଥିଲେ । ପ୍ରଦେଶର ହିତଦୃଷ୍ଟିରୁ ସେ ବମ୍ବେ ନଯାଇ ଏଠାରେ ରହି ଅବସ୍ଥା ନ ସୁଧୁରିବା ପର୍ଯ୍ୟନ୍ତ ତାଙ୍କର ଗୋଇଠା ଉପରେ ଗୋଇଠା କୋଡ଼ିବା ଉଚିତ ହୋଇଥା'ନ୍ତା ବୋଲି ସେ କହିଛନ୍ତି । କେବଳ ଅସହିଷ୍ଣୁତାରୁ ଏପରି ଅସଂଯତ କଥା କୁହାଯାଇପାରେ । ଗୋପବାବୁ ଓ ନବବାବୁଙ୍କ ପ୍ରତି ରକ୍ଷଣଶୀଳତାର ଆକ୍ଷେପ କରିବା ନିଶ୍ଚୟ ହାସ୍ୟାସ୍ପଦ କଥା ।

ନେତୃତ୍ୱ ପରିବର୍ତ୍ତନପାଇଁ ଆମ୍ଭେମାନେ ଯେପରି ଭାବରେ ଗତି କରୁଥାଉ, ଶ୍ରୀ ମହତାବ ସେଥିରେ ଆଦୌ ସନ୍ତୁଷ୍ଟ ହେଉନଥା'ନ୍ତି । ସେ ଚାହୁଁଥା'ନ୍ତି ନବବାବୁଙ୍କର ମୁଖ୍ୟମନ୍ତ୍ରୀ ପଦରୁ ଯିବା କଥାଟାକୁ ତ୍ୱରାନ୍ୱିତ କରିବାପାଇଁ । ତାଙ୍କର ଇଚ୍ଛା ଥାଏ ଯେ ରାଜ୍ୟରେ ଶାସନକ୍ଷେତ୍ରରେ ଓ କଂଗ୍ରେସ ଦଳରେ ଆମେ ଏଭଳି ପରିସ୍ଥିତି ସୃଷ୍ଟିକରୁ ଯାହାଫଳରେ ସେ ଛାଟିପିଟି ହୋଇ ପଳାଇବେ । ଦଳରେ ଅନାସ୍ଥା ପ୍ରସ୍ତାବ ଆଣି ତାଙ୍କୁ ତଡ଼ିଦେବାପାଇଁ ଶ୍ରୀ ମହତାବଙ୍କର ଥିଲା ପରାମର୍ଶ । ଆମେ ଦଳର ସବୁ ଲୋକଙ୍କୁ ତାଙ୍କ ସପକ୍ଷରେ କହିପାରୁନାହୁଁ ବୋଲି ତାଙ୍କର ଥାଏ ଅଭିଯୋଗ । ଦଳ ଭିତରେ ଅବସ୍ଥା ସୂଚକ କଥା କହି ନବବାବୁଙ୍କୁ ବିବ୍ରତ କରିବାପାଇଁ ଅନେକ ଥର ଉଦ୍ୟମ ହୋଇଥିଲା; କିନ୍ତୁ ସେଥିରେ ଆମ୍ଭେମାନେ କୃତକାର୍ଯ୍ୟ ହୋଇନଥିଲୁ । ବୀରେନ୍‌ବାବୁ ମହତାବବାବୁଙ୍କର ସବୁ କଥାରେ ହଁ ମାରନ୍ତି; ମାତ୍ର ନବବାବୁଙ୍କ ପ୍ରତି ତାଙ୍କର ସମ୍ମାନ ଓ ମମତା ଏତେ ଅଧିକ ଥିଲା ଯେ ତାଙ୍କୁ ଦେଖିଲାକ୍ଷଣି ସେ ଚୁପ୍ ରହନ୍ତି । ବିଜୁବାବୁ ମଧ୍ୟ ନବବାବୁଙ୍କୁ ସମ୍ମାନ କରୁଥିଲେ; କିନ୍ତୁ ତାଙ୍କ ଉପରେ ଶ୍ରୀ ମହତାବଙ୍କର ପ୍ରଭାବ ମଧ୍ୟ ଯଥେଷ୍ଟ ଥିଲା । ମୁଁ ମନ୍ତ୍ରୀ ପରିଷଦରେ ଥାଇ ମଧ୍ୟ ମହତାବ ଗୋଷ୍ଠୀର ବୈଠକରେ ଯୋଗଦେଉଥିଲି । ନବବାବୁ ବାରମ୍ବାର ଇସ୍ତଫା ଦେଇ ଯିବା କଥା କହି ଶାସନକୁ ଦୁର୍ବଳ କରିଦେଲେଣି ବୋଲି ମୁଁ ମଧ୍ୟ ଅଭିଯୋଗ କରୁଥିଲି । ଯେଉଁ ବ୍ୟକ୍ତିଙ୍କର ଇଚ୍ଛା ନାହିଁ ରହିବାପାଇଁ ତାଙ୍କୁ ରଖିଲେ ଦଳ ବା ରାଜ୍ୟର ମଙ୍ଗଳ ହେବନାହିଁ ବୋଲି କହି ଏହି ମର୍ମରେ ଆମ୍ଭେମାନେ ବହୁ ଚିଠି ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଏବଂ ଅନ୍ୟାନ୍ୟ ନେତୃବର୍ଗଙ୍କ ପାଖକୁ ପଠାଇଥିଲୁ । ପ୍ରଜାତନ୍ତ୍ରରେ ନବବାବୁଙ୍କ ବିରୁଦ୍ଧରେ ଧାରାବାହିକ ଲେଖା ପ୍ରକାଶପାଉଥାଏ ଏବଂ ସେହିପରି ଭାବରେ ସମ୍ବାଦ ମଧ୍ୟ ପରିବେଷଣ କରାଯାଉଥାଏ । କିନ୍ତୁ ସମାଜ ନବବାବୁଙ୍କୁ ପୂର୍ଣ୍ଣ ସମର୍ଥନ କରୁଥାଏ । ମୁଁ ମହତାବବାବୁଙ୍କୁ ଆଣିବା ଉଦ୍ୟମରେ ପୂରାପୂରି ଲିପ୍ତ ଥିଲି ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ଚୌଧୁରୀ ଭଲଭାବରେ ଜାଣିଥିଲେ, ତଥାପି ସେ ବିଷୟରେ ସେ କେବେ ମୋତେ କିଛି କହୁନଥିଲେ । କିନ୍ତୁ ଭୈରବବାବୁ ପ୍ରଭୃତିଙ୍କ କାର୍ଯ୍ୟକୁ ସେ ଯେପରି ପ୍ରଶଂସା କରୁଥିଲେ, ମୋ କାର୍ଯ୍ୟକୁ ସେପରି ପ୍ରଶଂସା କରୁନଥିଲେ । ଏହା ସ୍ୱାଭାବିକ ବୋଲି ଭାବି ମୁଁ ବିଶେଷ ବିବ୍ରତ ହେଉନଥିଲି । ଆମର ଏସବୁ ଉଦ୍ୟମକୁ ଶ୍ରୀ ମହତାବ ଦୂରରେ ରହି ବୁଝିପାରୁନଥା'ନ୍ତି, ତେଣୁ ସେ ଅଧୀର ହେଉଥାଆନ୍ତି । ଅତି ଅସ୍ଥିର ହୋଇ ବେଳେବେଳେ ସେ ଅଭିଯୋଗ କରନ୍ତି ଯେ ତାଙ୍କ ପାଖରେ ଉପରଠାଉରିଆ କଥା କହି ନବବାବୁଙ୍କଦ୍ୱାରା ଆମେ ସବୁ ବଶୀଭୂତ ହୋଇଗଲୁଣି । ସେ ସବୁବେଳେ କହନ୍ତି ଯେ ଓଡ଼ିଶାର ଚାରିଆଡ଼େ ଅବସ୍ଥା ବଡ଼ ଶୋଚନୀୟ ଏବଂ ଓଡ଼ିଶା ଆସି ଅବସ୍ଥା ସୁଧାରିବା ଓ ଲୋକଙ୍କୁ ସାହାଯ୍ୟ କରିବାପାଇଁ ସେ ବହୁଆଡ଼ୁ ଚିଠି ପାଉଛନ୍ତି । ସମ୍ବାଦ ପରିବେଷଣ କରିବାପାଇଁ ଆମ ହାତରେ ପ୍ରଜାତନ୍ତ୍ର କାଗଜ ଥାଉ ଥାଉ ଆମେ ଏ ଅବସ୍ଥାର ସୁଯୋଗ ନେଇପାରୁନାହୁଁ ବୋଲି ସେ ଅଭିଯୋଗ କରନ୍ତି । ୧୯୫୬ ମସିହା ଜୁନ୍ ମାସ ବେଳକୁ ବମ୍ବେରେ ନିଖିଳ ଭାରତ କଂଗ୍ରେସ କମିଟିର ଗୋଟିଏ ବୈଠକ ବସିବାର ଥିଲା । ଆମେ ମହତାବ ଗୋଷ୍ଠୀର ଲୋକ ଏଠାରେ ସ୍ଥିରକଲୁ ଯେ ଏ ଅଧିବେଶନବେଳେ ବମ୍ବେରେ ପ୍ରଧାନମନ୍ତ୍ରୀଙ୍କଠାରୁ ଆରମ୍ଭ କରି ଅନ୍ୟ ସବୁ ନେତାଙ୍କୁ ଦେଖାକରି ଓଡ଼ିଶା ରାଜ୍ୟ ଓ ଦଳର ଦୁରବସ୍ଥା ବିଷୟ ସମସ୍ତଙ୍କୁ ଉପଲବ୍ଧି କରାଇବୁ ଏବଂ ନେତୃତ୍ୱ ପରିବର୍ତ୍ତନ କଥା କହିବୁ । ସେତେବେଳେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଥାଆନ୍ତି ଶ୍ରୀ ବିଶ୍ୱନାଥ ଦାସ । ନବବାବୁ ବାରମ୍ବାର ଯିବାକଥା କହି ରାଜ୍ୟରେ ଯେଉଁ ଅନିଶ୍ଚିତ ପରିସ୍ଥିତି ସୃଷ୍ଟି କରୁଛନ୍ତି ସେ ବିଷୟରେ କେତେ ଥର ଆମେ

ବିଶ୍ୱନାଥବାବୁଙ୍କ ସହ ଆଲୋଚନା କରିଥିଲୁ । ତା ବ୍ୟତୀତ ଆସନ୍ତା ନିର୍ବାଚନ ପରିଚାଳନାପାଇଁ ଯେଉଁ ଟଙ୍କା ଦରକାର, ତାହା ସଂଗ୍ରହ କରିବାରେ ନବବାବୁଙ୍କଠାରୁ ଯେ କୌଣସି ସାହାଯ୍ୟ ମିଳିବନାହିଁ ଏ କଥା ଅନେକ ଅନୁଭବ କରୁଥାଆନ୍ତି । ସଭାପତି ହିସାବରେ ବିଶ୍ୱନାଥବାବୁଙ୍କର ଅନୁଭୂତି ସେଇଆ ବୋଲି ସେ କେତେଥର ଆମ୍ଭମାନଙ୍କ ଆଗରେ କହିଥିଲେ । ବିଶ୍ୱନାଥବାବୁଙ୍କୁ ମଧ ଆମେ ପ୍ରବର୍ତ୍ତାଇଥିଲୁ ବମ୍ବେରେ ସର୍ବଭାରତୀୟ ନେତାମାନଙ୍କୁ ଓ ବିଶେଷକରି ପ୍ରଧାନମନ୍ତ୍ରୀଙ୍କୁ ଓଡ଼ିଶାର ଏହି ଅବସ୍ଥା ବିଷୟ କହିବା ପାଇଁ । ଆମ୍ଭମାନଙ୍କର ଏହି ଉଦ୍ୟମ ମହତାବବାବୁଙ୍କୁ ଜଣାଇ ଦିଆଯାଉଥାଏ । କିନ୍ତୁ ନବବାବୁଙ୍କୁ ତଡ଼ିଦେବାପାଇଁ ପରିସ୍ଥିତି ସୃଷ୍ଟି ନକଲେ ଏସବୁ କୁହାବୋଲାରେ କିଛି ହେବନାହିଁ ବୋଲି ନିର୍ଦ୍ଦିଷ୍ଟ ମତ ଥାଏ ମହତାବବାବୁଙ୍କର । ତେଣୁ ଆମ୍ଭମାନଙ୍କୁ ବେଶି ଉତ୍ସକେଇବାପାଇଁ ଏବଂ ତାଙ୍କପାଇଁ ଆମକୁ ଅଧିକ ସମ୍ବେଦନଶୀଳ କରିବା ଉଦ୍ଦେଶ୍ୟରେ ସେ ରାଜନୀତିରୁ ଓହରିଯାଇ ଆଧ୍ୟାତ୍ମିକ କାର୍ଯ୍ୟରେ ନିଜକୁ ନିୟୋଜିତ କରିବା କଥା ଆମକୁ କହୁଥିଲେ । ଏକଥା ଶୁଣିଲାକ୍ଷଣି ପ୍ରକୃତରେ ଆମ୍ଭେମାନେ ବଡ଼ ବ୍ୟସ୍ତ ହେଉଥାଉ ଏବଂ ଅସହାୟ ମଧ ଅନୁଭବ କରୁଥାଉ । ଏହି ମର୍ମରେ ମୋତେ, ଦୀନବନ୍ଧୁବାବୁ, ବନମାଳୀବାବୁପ୍ରଭୃତିଙ୍କୁ ସେ ଚିଠି ଲେଖିଥିଲେ । ୧୯୫୬ ମସିହା ମେ ମାସ ବାଇଶ ତାରିଖରେ ମୁଁ ବମ୍ବେରୁ ଶ୍ରୀଯୁକ୍ତ ମହତାବଙ୍କ ପାଖରୁ ନିମ୍ନ ଚିଠିଟି ପାଇଥିଲି । ଚିଠିଟି ଇଂରାଜୀରେ ଲେଖାଥିଲା । ତାର ଓଡ଼ିଆ ଅନୁବାଦ ନିମ୍ନରେ ଉଦ୍ଧାରକରୁଛି । ଅସଲ ଇଂରାଜୀ ଚିଠିର ଫଟୋଚିତ୍ର ଅନ୍ୟତ୍ର ଦିଆଯାଇଛି ।

"ତୁମ ଚିଠି ପାଇଛି । ବମ୍ବେ ଆସିଲେ ତୁମେ ମୋ ସହିତ ରହିଲେ ମୁଁ ଖୁସିହେବି । ମୁଁ ଭାବୁଛି ନବବାବୁ, ବିଶ୍ୱନାଥବାବୁ ଓ ନିତ୍ୟାନନ୍ଦବାବୁ ମଧ ଏହି ରାଜଭବନରେ ରହିବେ । ବନମାଳୀ ଓ ଦୀନବନ୍ଧୁ ମଧ ରହିବେ । ଯାହା ଜଣାପଡୁଛି ସେ ସମୟରେ ଓଡ଼ିଶାରୁ ବହୁ ଲୋକଙ୍କର ସମାବେଶ ଏଠାରେ ହେବ । ତୁମେ ବିଶ୍ୱନାଥବାବୁଙ୍କ ସହ କ'ଣ କଥାବାର୍ତ୍ତା ହେଲ ମୁଁ ଜାଣେନାହିଁ । ମୋ ମନର ଅବସ୍ଥା କଥା ମୁଁ ଓଡ଼ିଶାରେ କାହା ପାଖକୁ ଲେଖିନାହିଁ । କାରଣ ମୁଁ ଭାବୁଛି ଓଡ଼ିଶାରେ ଏପରି କେହି ଜଣେ ନାହାନ୍ତି ଯେଉଁମାନେ କୌଣସି ବିଷୟକୁ ଗଭୀର ଭାବରେ ପର୍ଯ୍ୟବେକ୍ଷଣ ଓ ଅନୁଧ୍ୟାନ କରନ୍ତି । ସେ ଯାହହେଉ, ତା ମୋର ଧାରଣା । ମୁଁ ନିତ୍ୟାନନ୍ଦବାବୁଙ୍କୁ ଏସବୁ କଥା ଏଇ ଆଶାରେ ଲେଖିଛି ଯେ ତୁମ୍ଭେମାନେ ଯେତେବେଳେ ବମ୍ବେ ଆସିବ, ସେ ତାହା ତୁମ୍ଭମାନଙ୍କୁ ଜଣାଇଦେବେ ।

ମୁଁ ସେଠାକାର କଂଗ୍ରେସ ଅନୁଷ୍ଠାନର ଆଭ୍ୟନ୍ତରୀଣ ଅବସ୍ଥା ସଂପର୍କରେ ଟିକିନିଖି ଖବର ପାଇଲା ପରେ ସେ ବିଷୟରେ ଗଭୀର ଚିନ୍ତାକରି ସ୍ଥିରକରିଛି ଯେ ଓଡ଼ିଶା ରାଜନୀତିରେ ମୁଁ ଆଉଥରେ ପ୍ରବେଶ କରିବା କଥା ଚିନ୍ତା କରିବିନାହିଁ । ଓଡ଼ିଶାର ସବୁ ପ୍ରକାର ରାଜନୈତିକ କାର୍ଯ୍ୟପାଇଁ ମୁଁ ମଲିଣି ଏବଂ ହଜିଗଲିଣି ବୋଲି ଧରିନେବାକୁ ହେବ । ମୁଁ ଓଡ଼ିଶାପାଇଁ ଯାହା କରିଛି ସେ ଭଲ ହେଉ ବା ମନ୍ଦ ହେଉ ତାହା ରହିବ; କିନ୍ତୁ ମୁଁ ଓଡ଼ିଶା ରାଜନୀତିରୁ ଶାନ୍ତିର ସହିତ ଅବ୍ୟାହତି ନେଉଛି । ଏହା ତୁମକୁ ତଥା ଅନ୍ୟମାନଙ୍କୁ ହତାଶକରିପାରେ । ମୁଁ ତୁମକୁ ତଥା ଅନ୍ୟ ବନ୍ଧୁମାନଙ୍କୁ ନିର୍ଭର ଜବାବ ଦେଉଛି ଯେ ଯେଉଁମାନଙ୍କ ସହିତ ମୁଁ ୧୯୪୬ ମସିହାରୁ କାର୍ଯ୍ୟ କରିଆସୁଅଛି ସେମାନଙ୍କ ବ୍ୟକ୍ତିଗତ ଓ ସାଧାରଣ ଜୀବନରେ ସେମାନେ କିପରି ପ୍ରତିଷ୍ଠିତ ହେବେ ସେ ଦିଗରେ ସେମାନଙ୍କୁ ସବୁମତେ ସାହାଯ୍ୟ କରିବି ଏବଂ ତୁମମାନଙ୍କୁ ସବୁବେଳେ ମୋର ଭାଇ ଓ ପୁତୁରା ପରି ଦେଖି ତୁମର ମଙ୍ଗଳରେହିଁ ମୋର ମଙ୍ଗଳ ବୋଲି ଭାବିବି । କିନ୍ତୁ ମୁଁ ଆଉ ପ୍ରତ୍ୟକ୍ଷ ଭାବରେ ଓଡ଼ିଶା ରାଜନୀତିରେ ଜଡ଼ିତ ହେବିନାହିଁ । ମନୁଷ୍ୟ ଜୀବନରେ ଗୋଟିଏ ସମୟ ଆସେ ଯେତେବେଳେ ସେ ଆପେ ଆପେ କୌଣସି କାର୍ଯ୍ୟରୁ ଓହରିଆସିବା ଉଚିତ । ଏହା ହେଉଛି କର୍ମର ବିଧାନ । ମନେହେଉଛି, ଓଡ଼ିଶାରୁ ମୋର କର୍ମ ସରିଗଲାଣି ଏବଂ ମୁଁ ଆଉଥରେ ସେ ମାୟାରେ ଜଡ଼ିତ ହେବା ଉଚିତ ନୁହେଁ । ମୋତେ

ଯଦି ଓଡ଼ିଶାରେ କେବେ କିଛି କାର୍ଯ୍ୟ କରିବାକୁ ହୁଏ ତା'ହେଲେ ତାହା ହେଉଛି ଲୋକମାନଙ୍କର ଆଧାତ୍ମିକ ଉନ୍ନତିପାଇଁ କିଛି ମୌଳିକ କାର୍ଯ୍ୟ ମାତ୍ର ନିର୍ବାଚନ ରାଜନୀତି ବା ଅନ୍ୟ କୌଣସି କାର୍ଯ୍ୟନୁହେଁ । ଏ ବିଷୟରେ ଆଉ ବିଶେଷ ଆଲୋଚନା ନକରି ଏ ଅବସ୍ଥାକୁ ତୁମ୍ଭେମାନେ ଗ୍ରହଣ କରିନେବା ଉଚିତ । ତା'ପରେ ମୋତେ ଜଣାଅ କିପରି ମୁଁ ତୁମ୍ଭମାନଙ୍କୁ ତୁମ କାର୍ଯ୍ୟରେ ସାହାଯ୍ୟ କରିପାରିବି । ଏ ସଂପର୍କରେ ଆଉ ବୃଥା ବ୍ୟସ୍ତ ହେବା ଉଚିତ ନୁହେଁ । ଏହାକୁ ସ୍ଥିରଚିତ୍ତରେ ବୁଝି ଏଥିରେ ସବୁଦିନପାଇଁ ପୂର୍ଣ୍ଣଚ୍ଛେଦ ପଡ଼ିଲା ବୋଲି ଧରିନିଅ । ଏହା ବାହାରେ ପ୍ରଚାରିତ ହେବା ଉଚିତନୁହେଁ । ଏହା କେବଳ ତୁମପାଇଁ ଓ ଅନ୍ୟାନ୍ୟ ବିଶ୍ୱସ୍ତ ବନ୍ଧୁମାନଙ୍କର ଅବଗତିପାଇଁ ଉଦ୍ଦିଷ୍ଟ । ଅଖିଳ ଭାରତ କଂଗ୍ରେସ କମିଟି ଅଧିବେଶନ ସମୟରେ ଏଠାରେ ତୁମ୍ଭମାନଙ୍କ ସହ ଦେଖାହେବାର ଆଶାରେ ରହିଲି ।''

ଏ ଚିଠିଟି ପାଇ ମୁଁ ଆମ ଗୋଷ୍ଠୀର ବିଶ୍ୱସ୍ତ ବନ୍ଧୁମାନଙ୍କୁ ଦେଖାଇଥିଲି । ସମସ୍ତେ ମହତାବବାବୁଙ୍କର ଏ ବୈରାଗ୍ୟ ଏବଂ ଅଭିମାନଭରା ଚିଠିର ଅର୍ଥ ବୁଝି ବ୍ୟସ୍ତହୋଇପଡ଼ିଥିଲେ । ଭଦ୍ରକରେ ଛାତ୍ରଜୀବନରୁ ମହତାବବାବୁଙ୍କ ପ୍ରତି ତ ସହଜେ ମନରେ ସମ୍ମାନ ଜାତ ହୋଇଥିଲା, ମୋର ରାଜନୈତିକ ଜୀବନର ପ୍ରାରମ୍ଭରୁ ବିଭିନ୍ନ ସମୟରେ ମୁଁ ତାଙ୍କର ପରାମର୍ଶରେ କାର୍ଯ୍ୟ କରିଥିଲି ଏବଂ ସେ ମୋତେ ନାନା କ୍ଷେତ୍ରରେ କାର୍ଯ୍ୟ କରିବାର ସୁଯୋଗ ଦେଇଥିଲେ । ତେଣୁ ତାଙ୍କର ଉଲ୍ଲିଖିତ ଅନୁତାପ ଓ ଅଭିମାନ ମୋର ହୃଦୟକୁ ସ୍ପର୍ଶକରିଥିଲା । ଆମ ସମର୍ଥକମାନଙ୍କର ଗୋଟିଏ ବୈଠକ ବସିଥିଲା । ବମ୍ବେର କଂଗ୍ରେସ ଅଧିବେଶନ ସମୟରେ ନେତାମାନଙ୍କୁ କ'ଣ କହି ପ୍ରଭାବିତ କରାଯିବ, ସେ କଥା ମଧ୍ୟ ଆଲୋଚିତ ହୋଇଥିଲା । ଓଡ଼ିଶା ପରିସ୍ଥିତି ବିଷୟରେ ବମ୍ବେରେ କଂଗ୍ରେସ ନେତାମାନଙ୍କୁ ଗୋଟିଏ ସ୍ମାରକପତ୍ର ଦେବାକଥା ସ୍ଥିରହେଲା ଏବଂ ସେଥିପାଇଁ ଦସ୍ତଖତ ସଂଗ୍ରହ ଅଭିଯାନ ଆରମ୍ଭ ହୋଇଯାଇଥିଲା । ନବବାବୁଙ୍କର ସମର୍ଥକମାନେ ଆମ୍ଭମାନଙ୍କର ଏ ଉଦ୍ୟମର ଖବର ପାଇ ଏହା କିପରି ପଣ୍ଡ କରିବେ ସେଥିପାଇଁ ଉଦ୍ୟମ କରିଥିଲେ । ଆମ୍ଭମାନଙ୍କର ସଜବାଜ ଦେଖି ନବବାବୁ ମଧ୍ୟ ବିରକ୍ତି ପ୍ରକାଶକରି ଆଉ ରହିବେନାହିଁ ବୋଲି କହିବାକୁ ଲାଗିଲେ । ତେଣୁ ତାଙ୍କର ସମର୍ଥକମାନେ ଅନେକ ସମୟରେ ନିରୁତ୍ସାହିତ ହୋଇଯାଉଥିଲେ । ଆମର ବହୁସଂଖ୍ୟକ ସମର୍ଥକ କିପରି ବମ୍ବେ ଯାଇପାରିବେ ତା'ର ସଂପୂର୍ଣ୍ଣ ଦାୟିତ୍ୱ ବିଜୁ ପଟ୍ଟନାୟକ ନେଇଥିଲେ । କଳିଙ୍ଗ ଏୟାର ଲାଇନ୍‌ସ୍‌ର ଗୋଟିଏ ସ୍ୱତନ୍ତ୍ର ବିମାନଯୋଗେ ବିଜୁ ପଟ୍ଟନାୟକ ଆମ ସମର୍ଥକମାନଙ୍କୁ ନେଇ ବମ୍ବେ ଯାଇଥିଲେ । ମହତାବବାବୁ ସବୁବେଳେ ମହାନିର୍ବାଣତନ୍ତ୍ରରେ ଗୃହସ୍ଥ ଓ ରାଜନୈତିକ ବ୍ୟକ୍ତିମାନଙ୍କ ପ୍ରତି ଉଦ୍ଦିଷ୍ଟ ପରାମର୍ଶକୁ ଉଦ୍ଧାର କରି କହନ୍ତି – ଅବସ୍ଥା ବିଚାର କରି ଉଦ୍ୟମ କରିବାକୁ ହେବ ଏବଂ ସମୟ ବିଚାରକରି କାର୍ଯ୍ୟ କରିବାକୁ ହେବ । ତାଙ୍କର ଉପରଲିଖିତ ଚିଠିର ମର୍ମ ଗୋଟିଏ ଅବସ୍ଥା ଉପଯୋଗୀ ଉଦ୍ୟମ ଓ ସମୟ ଉପଯୋଗୀ କାର୍ଯ୍ୟ ଭଳି ବର୍ତ୍ତମାନ ମନେହେଉଛି । କିନ୍ତୁ ସେତେବେଳେ ସାଧାରଣ ନିର୍ବାଚନ ତ ଆଉ ଅଳ୍ପ ଦିନ ବାକି ଥାଏ; ତେଣୁ ତାଙ୍କର ଏପ୍ରକାର ବୈରାଗ୍ୟ ଦେଖି ଆମ୍ଭମାନଙ୍କ ମନରେ ବଡ଼ ଉଦ୍‌ବେଗ ଜାତହୋଇଥିଲା । ନେତୃତ୍ୱର ପରିବର୍ତ୍ତନ କିପରି ଶୀଘ୍ର ହେବ ସେଥିପାଇଁ ଆହୁରି ଜୋର୍‌ରେ ଲାଗିଲୁ ।

୧୯୫୬ ମସିହା ଜୁନ୍ ମାସରେ ବମ୍ବେଠାରେ ନିଖିଳ ଭାରତ କଂଗ୍ରେସ କମିଟିର ଅଧିବେଶନ ବସିଥିଲା । ଆମ୍ଭେମାନେ ପୂର୍ବ ପ୍ରସ୍ତୁତି ଅନୁସାରେ ବମ୍ବେରେ ରହି ବମ୍ବେକୁ ଆସିଥିବା ସବୁ ନେତାଙ୍କୁ ଦେଖାକରିଥିଲୁ । ଓଡ଼ିଶା ବିଷୟ ବିଚାରକରି ତୁରନ୍ତ ରାଜ୍ୟରୁ ଅନିଶ୍ଚିତ ଅବସ୍ଥା ଦୂର କରିବାପାଇଁ ଅନୁରୋଧ କରିଥିଲୁ । ବିଜୁବାବୁ ଜଣ ଜଣ କରି ସବୁ ନେତାଙ୍କୁ ଭେଟି ଓଡ଼ିଶାର ଅନିଶ୍ଚିତ ଅବସ୍ଥା କିପରି ଦଳର କ୍ଷତି କରୁଛି, ସେ କଥା ବୁଝାଇଥିଲେ । ବମ୍ବେରେ ମଧ୍ୟ ନବବାବୁ ମୁଖ୍ୟମନ୍ତ୍ରୀ ପଦ ପ୍ରତି ସେହିପରି ଅନାସକ୍ତ ଭାବ ପ୍ରଦର୍ଶନ କରିଥିଲେ । ଏସବୁ ଲକ୍ଷ୍ୟ କରିବା ପରେ ତତ୍କାଳୀନ ବମ୍ବେ

ରାଜ୍ୟର ମୁଖ୍ୟମନ୍ତ୍ରୀ ଶ୍ରୀ ମୋରାରଜୀ ଦେଶାଇ ମଧ୍ୟ ମହତାବବାବୁ କିପରି ଆସି ଓଡ଼ିଶାର ନେତୃତ୍ୱ ନେବେ ସେ ଦିଗରେ ଉଦ୍ୟମ କରିଥିଲେ । ପଣ୍ଡିତ ନେହେରୁଙ୍କର କିନ୍ତୁ ଇଚ୍ଛା ନଥାଏ ଓଡ଼ିଶାରେ ନେତୃତ୍ୱ ପରିବର୍ତ୍ତନପାଇଁ । ତଥାପି ନବବାବୁଙ୍କର ଏଭଳି ଅନାସକ୍ତ ଭାବ ଦେଖି ସେ ଟିକିଏ ବିଚଳିତ ହୋଇଯାଉଥିଲେ । ତାହାର ସୁଯୋଗ ମଧ୍ୟ ଆମ୍ଭେମାନେ ନେଇଥିଲୁ । ମୌଲାନା ଆଜାଦ, ଡକ୍ଟର ବିଧାନରାୟ, ଶ୍ରୀ ମୋରାରଜୀ ଦେଶାଇ, ପଣ୍ଡିତ ଗୋବିନ୍ଦବଲ୍ଲଭ ପନ୍ତ ପ୍ରଭୃତି ନେତାମାନେ ମଧ୍ୟ ନବବାବୁଙ୍କର ଏ ଅନାସକ୍ତ ଓ ବୀତସ୍ପୃହ ଭାବ ଦେଖି ବିବ୍ରତ ହୋଇଥିଲେ ଏବଂ ସେ କଥା ସେମାନେ ପଣ୍ଡିତ ନେହେରୁଙ୍କ ସହିତ ଆଲୋଚନା କରିବା ପରେ ନିଖିଳ ଭାରତ କଂଗ୍ରେସ କମିଟିର ଏହି ବମ୍ବେ ଅଧିବେଶନ ସମୟରେ ଉଚ୍ଚସ୍ତରରେ ଏକପ୍ରକାର ନିଷ୍ପତ୍ତି ନିଆଯାଇଥିଲା ଯେ ଓଡ଼ିଶାର ନେତୃତ୍ୱ ପରିବର୍ତ୍ତନ ହେବ ଓ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ପରିବର୍ତ୍ତେ ଶ୍ରୀ ମହତାବ ଓଡ଼ିଶାର ଦାୟିତ୍ୱ ନେବେ । ମୋର ମନେପଡୁଛି, ମୁଁ ବମ୍ବେ ରାଜଭବନରେ ରହୁଥାଏ, ଓଡ଼ିଶାର ଅନ୍ୟାନ୍ୟ ବନ୍ଧୁମାନେ ଯାଇ ମୋ ପାଖରେ ବସିଥା'ନ୍ତି, ଆମେ ଓଡ଼ିଶା ରାଜନୀତିରେ ନେତୃତ୍ୱ ପରିବର୍ତ୍ତନ ବିଷୟ କଥାବାର୍ତ୍ତା ହେଉଥାଉ । ସେହି ସମୟରେ ବମ୍ବେର ମୁଖ୍ୟମନ୍ତ୍ରୀ ଶ୍ରୀ ମୋରାରଜୀ ଦେଶାଇ ଆସି ପହଞ୍ଚିଲେ । ଆମକୁ ସେଠାରେ ଦେଖି ସେ କହିଲେ, "So you have turned the Bombay Government House into a place of conspiracy against Naba Babau."

## ବଡ଼ଭାଇଙ୍କ ବିୟୋଗ

ଓଡ଼ିଶାରେ ଏହି ଅସ୍ଥିରତା ସମୟରେ ମୋର ମନରେ ଅଧୈର୍ଯ୍ୟ ଓ ଅସ୍ଥିରତା ସୃଷ୍ଟିକରିଥିଲା ୧୯୫୬ ଅଗଷ୍ଟ ୨୮ ତାରିଖରେ ମୋର ବଡ଼ଭାଇଙ୍କ ବିୟୋଗ । ଅଗଷ୍ଟ ୧୫ ତାରିଖ ସ୍ୱାଧୀନତା ଦିବସ ଉପଲକ୍ଷେ ଆନୁଷ୍ଠାନିକ ସରକାରୀ ଉତ୍ସବରେ ଯୋଗଦେବାପାଇଁ ମୁଁ ରାଜଧାନୀ ବାହାରକୁ ଯାଇଥାଏ । କଲିକତାରେ ମୋର ବଡ଼ଭାଇ ଗୁରୁତର ଅସୁସ୍ଥ ବୋଲି ମୋତେ ଖବର ଦିଆଗଲା । ସ୍ୱାଧୀନତା ଦିବସ ପରଦିନ ଫେରିଆସି ପୁରୀ ଏକ୍ସପ୍ରେସ୍‌ଯୋଗେ ନଳିନୀ ଓ ବାବୁଲ୍‌କୁ ନେଇ କଲିକତା ଯାଇଥିଲି । ଭାଇ ବଡ଼ ଅସୁସ୍ଥ ଥିଲେ । ତାଙ୍କ ପାଖରେ ତାଙ୍କ ସାନଝିଅ କୁନ୍ତଳା ଥାଏ । ଆମ୍ଭେମାନେ ପହଞ୍ଚିଯିବାରୁ ସେ ଦେଖିଲାକ୍ଷଣି ଖୁସିହୋଇଥିଲେ । କଲିକତାରେ ବହୁ ବଡ଼ ବଡ଼ ଡାକ୍ତରଙ୍କୁ ଆଣି ତାଙ୍କର ଚିକିତ୍ସାର ବ୍ୟବସ୍ଥା କରିଥିଲି; କିନ୍ତୁ ତା'ର କିଛି ଫଳ ହେଲାନାହିଁ । ସେ ଦେହତ୍ୟାଗ କଲାବେଳେ ମୁଁ, ନଳିନୀ, ବାବୁଲ୍ ଓ କୁନ୍ତଳା ସମସ୍ତେ ତାଙ୍କ ପାଖରେ ଥିଲୁ । କୁନ୍ତଳାର ଡାକନାମ ଥିଲା କୁନ । ଠିକ୍ ଶେଷନିଃଶ୍ୱାସ ଛାଡ଼ିବା ପୂର୍ବରୁ ସେ କୁନ ହାତକୁ ଆଣି ମୋ ହାତରେ ରଖି ମୋ ଉପରେ ତାର ସର୍ବଶେଷ ଦାୟିତ୍ୱ ଛାଡ଼ିଦେଇ ଆଖି ବୁଜିଦେଲେ । ମୋର ବାପାଙ୍କର ୧୯୩୮ ମସିହାରେ ପରଲୋକ ହୋଇଥିଲା । ବାପାଙ୍କୁ ହରାଇବାର ଦୁଃଖ ଆମେ ଭୁଲିଯାଇଥିଲୁ ଏହି ଭାଇଙ୍କ ପାଇଁ । ମୋର ମନେଅଛି— ୧୯୫୬ ମସିହା ଜାନୁୟାରୀ ମାସରେ ଯେତେବେଳେ ଓଡ଼ିଶାରେ ସୀମା-ଆନ୍ଦୋଳନ ଚାଲିଥାଏ, ସେତେବେଳେ ବାବୁଲ୍, ନଳିନୀ କଲିକତାରେ ତାଙ୍କ ପାଖରେ ଥାଆନ୍ତି । ସେ ବଡ଼ ଓଡ଼ିଆପ୍ରେମୀ ଥିଲେ । ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ଓଡ଼ିଶା ସହିତ ନମିଶିବାରୁ ସେ ଖୁବ୍ ଦୁଃଖିତ ଥିଲେ । ସୀମା ବିଷୟରେ କେନ୍ଦ୍ର ସରକାରଙ୍କ ବିଚାର ବିରୁଦ୍ଧରେ ପ୍ରତିବାଦସ୍ୱରୂପ ଯେତେବେଳେ ମନ୍ତ୍ରୀମାନଙ୍କର ଇସ୍ତଫା ଦେବା କଥା ଉଠିଥିଲା । ସେ ମୋତେ ଇସ୍ତଫା ଦେବାକୁ ପରାମର୍ଶ ଦେଇ ଚିଠି ଲେଖିଥିଲେ, ''ତୁ ଭାବୁଥିବୁ ମନ୍ତ୍ରୀ ହୋଇ ତ ଗାଡ଼ି ଚଢ଼ିବାର ଅଭ୍ୟାସ ହୋଇଯାଇଛି— ମନ୍ତ୍ରିତ୍ୱ ଗଲେ କ'ଣ କରିବୁ ବୋଲି । ତୋର ସେ ଅସୁବିଧା ମୁଁ ଦୂରକରିବି ।''

## ମଝିଆ ଭାଇଙ୍କ ବିୟୋଗ

ବଡ଼ଭାଇଙ୍କ ମୃତ୍ୟୁର ୩୨ ବର୍ଷ ପରେ ୧୯୮୮ ମସିହା ମାର୍ଚ୍ଚ ୧୯ ତାରିଖରେ ମୋର ମଝିଆ ଭାଇ ଆନନ୍ଦ ପ୍ରସାଦ ରାଉତରାୟଙ୍କ ଦେହାନ୍ତ ହୋଇଥିଲା । ଘରର ସମସ୍ତ ଦାୟିତ୍ୱ ମୁରବି ହିସାବରେ ସେ ଚଳାଇ ଆସୁଥିଲେ । ତାଙ୍କ ମୃତ୍ୟୁରେ ଆମ୍ଭମାନଙ୍କୁ ବହୁତ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା । କିନ୍ତୁ ମୋର ଭାଉଜ ଶ୍ରୀମତୀ ଭଗବତୀ ରାଉତରାୟ ଘରର ବିଭିନ୍ନ କାର୍ଯ୍ୟର ଦାୟିତ୍ୱ ଭଲ ଭାବରେ ତୁଲାଇ ଆସୁଛନ୍ତି ।

## 'ଥ୍ରୀ ମସ୍କେଟିୟର୍ସ'

ଓଡ଼ିଶାରେ କଂଗ୍ରେସ ସରକାରର ନେତୃତ୍ୱ ପରିବର୍ତ୍ତନ ବିଷୟରେ ଉଚ୍ଚ କର୍ତ୍ତୃପକ୍ଷଙ୍କ ମହଲରେ ଯେଉଁସବୁ କଥାବାର୍ତ୍ତା ହୋଇଥିଲା, ସେ ବିଷୟ ଯେତେବେଳେ ଜଣାପଡ଼ିଗଲା ସେତେବେଳେ ନବବାବୁଙ୍କୁ ସମର୍ଥନ କରୁଥିବା ସଭ୍ୟମାନେ ଭୀଷଣ ଅସନ୍ତୁଷ୍ଟ ଓ ଉତ୍ତେଜିତ ହୋଇଥିଲେ । ସେମାନଙ୍କର ଘନ ଘନ ବୈଠକ ବସିଲା । ନେତୃତ୍ୱ ପରିବର୍ତ୍ତନର ଆବଶ୍ୟକତାନାହିଁ ବୋଲି ଉଚ୍ଚ କର୍ତ୍ତୃପକ୍ଷଙ୍କୁ ବାରମ୍ବାର ଜଣାଇଦିଆଗଲା । ବିଜୁବାବୁ, ବୀରେନ୍‌ବାବୁ ଓ ମୋ ଉପରେ ସେମାନେ କ୍ରୋଧ ପ୍ରକାଶ କରିବାରେ ଲାଗିଲେ । ସେମାନେ ଉଚ୍ଚ କର୍ତ୍ତୃପକ୍ଷଙ୍କ ପାଖରେ ଅଭିଯୋଗ କରିଥିଲେ ଯେ ସାଧାରଣ କଂଗ୍ରେସ ଲୋକ ଏବଂ ବ୍ୟବସ୍ଥାସଭାର ଅଧିକ ସଂଖ୍ୟକ ସଭ୍ୟ ଶ୍ରୀ ହରେକୃଷ୍ଣ ମହତାବଙ୍କୁ ଚାହାନ୍ତିନାହିଁ; କିନ୍ତୁ ଆମେ ତିନି ଜଣ କଳେ-ବଳେ-କୌଶଳେ ମହତାବଙ୍କ ନେତୃତ୍ୱକୁ ଓଡ଼ିଶା ଉପରେ ଲଦିଦେବାକୁ ଚାହୁଁଛୁ । ଶ୍ରୀ ବିଜୁ ପଟ୍ଟନାୟକଙ୍କ ଟଙ୍କା ବଳରେ ମୁଁ ଏବଂ ବୀରେନ୍‌ବାବୁ ଲୋକମାନଙ୍କୁ ବଶୀଭୂତ କରି ନବକୃଷ୍ଣ ଚୌଧୁରୀଙ୍କ ପରିବର୍ତ୍ତେ ହରେକୃଷ୍ଣ ମହତାବଙ୍କୁ ମୁଖ୍ୟମନ୍ତ୍ରୀରୂପେ ଆଣିବାକୁ ଚାହୁଁଛୁ । ଯେଉଁମାନେ ଆମ କଥାରେ ରାଜିହେଉନାହାନ୍ତି ସେମାନଙ୍କୁ ଆମେ କୁଆଡ଼େ ଭୟଭୀତ କରେଇ ସେମାନଙ୍କ ସମର୍ଥନ ହାସଲ କରୁଛୁ । ସେଥିପାଇଁ ସେତେବେଳେ ଆମ ତିନିଜଣଙ୍କୁ ଆଲେକ୍‌ଜାଣ୍ଡାର୍ ଡୁମାଁଙ୍କ ଭାଷାରେ, "The Three Musketeers" ବା 'ତିନି ବନ୍ଧୁକଧାରୀ ସିପାହି' ବୋଲି କେତେକ ଟାପରା କରୁଥିଲେ । ଏହି ନେତୃତ୍ୱ ପରିବର୍ତ୍ତନ ସମୟରେ ଆମେ ତିନିଜଣ ପ୍ରାୟ ଅଧିକାଂଶ ସମୟରେ ଏକତ୍ର ବସି ଆଲୋଚନା କରୁଥିଲୁ ଏବଂ ତିନିହେଁ ମିଶି ବିଭିନ୍ନ ସ୍ଥାନକୁ ଯାଉଥିଲୁ । ବୀରେନ୍‌ବାବୁଙ୍କର ଅଭ୍ୟାସ ବଡ଼ ପାଟି କରିବା । ତାଙ୍କ କଥାବାର୍ତ୍ତା ମଧ୍ୟ ଧମକ ଦେଲାଭଳି । ବିଜୁବାବୁଙ୍କର ଲମ୍ବକାୟ ଚେହେରା ଦେଖିଲାକ୍ଷଣି ଲୋକେ ଟିକିଏ ଶଙ୍କିଯାଆନ୍ତି ଏବଂ ମୋର ମନ୍ତ୍ରୀପଦର ପ୍ରଭାବ ଥାଏ । ଏହି ତିନି ଜଣଙ୍କ ସହଯୋଗକୁ ଅନେକେ ବରଖାସ୍ତ କରୁନଥିଲେ । ସେଥିପାଇଁ ପବିତ୍ରବାବୁ ପ୍ରଭୃତି ଆମକୁ ମହତାବଙ୍କର ବନ୍ଧୁକଧାରୀ ବା Three Musketeers ଆଖ୍ୟା ଦେଇଥିଲେ । ଶ୍ରୀ ପବିତ୍ରମୋହନ ପ୍ରଧାନ ତାଙ୍କର 'ମୁକ୍ତିପଥେ ସୈନିକ' ପୁସ୍ତକରେ ଏହି ତିନି ବନ୍ଧୁକଧାରୀଙ୍କ କଥା ବିଶେଷ ଭାବରେ ବର୍ଣ୍ଣନା କରିଛନ୍ତି । ମନେପଡୁଛି, ନେତୃତ୍ୱ ପରିବର୍ତ୍ତନ କରି ମହତାବବାବୁଙ୍କୁ ମୁଖ୍ୟମନ୍ତ୍ରୀ ଭାବରେ ଆଣିବା ଦିଗରେ ପବିତ୍ରବାବୁଙ୍କର ସମର୍ଥନ ମୁଁ ଲୋଡ଼ିଥିଲି । ମୋର ଧାରଣା ଥିଲା ପବିତ୍ରବାବୁଙ୍କୁ ନବବାବୁ ତାଙ୍କ ମନ୍ତ୍ରିମଣ୍ଡଳରେ ନେଇ ନଥିବାରୁ ସେ ମନେ ମନେ ଅସନ୍ତୁଷ୍ଟ ଥିଲେ; ତେଣୁ ମହତାବବାବୁଙ୍କୁ ଆଣିବା ବିଷୟରେ ସେ ଆମ୍ଭମାନଙ୍କୁ ନିଶ୍ଚୟ ସାହାଯ୍ୟ କରିବେ । ମୋ କଥା ଶୁଣି ପବିତ୍ରବାବୁ କହିଥିଲେ, ସେ ମହତାବବାବୁଙ୍କୁ ଆଣିବା ପ୍ରସ୍ତାବର ପକ୍ଷପାତୀ ନୁହନ୍ତି । ପ୍ରାୟ ଘଣ୍ଟାଏ କାଳ ତା'ର କାରଣ ସେ ମୋତେ ବୁଝାଇଥିଲେ । ତାଙ୍କର ସ୍ୱାଭାବିକ ଭଙ୍ଗୀ ଓ ଭାଷାରେ ସେ ମୋତେ ବୁଝାଇଥିଲେ ଯେ, ମହତାବବାବୁ ଜଣେ 'ଚାପିଙ୍ଗ ଥିଓରୀ'ର ଲୋକ । ତାଙ୍କୁ ପ୍ରଶ୍ରୟ ଦେଲେ ସେ ତୁମକୁ 'ଚାପିବେ, ଚାପିବେ, ଚାପିବେ' ବୋଲି ତିନି

ଥର କହି ବୁଝାଇ ଦେଇଥିଲେ ଯେ ବାମନ ଅବତାରରେ ଭଗବାନ ଯେପରି ବଳିଙ୍କୁ ଚାପି ଚାପି ପାତାଳ ଯାଏଁ ଚାପିଦେଇଥିଲେ, ସେହିପରି ମହତାବବାବୁ ଆସିଲେ ସେମାନଙ୍କୁ ଚାପିବେ । ଅତଏବ ତାଙ୍କର ମତ ଥିଲା ଯେ ମହତାବବାବୁଙ୍କ ଭଳି 'ଚାପିଙ୍ଗ ଥିଓରୀ' ଲୋକଙ୍କର ଆଉ ଓଡ଼ିଶା ଆସିବାର ଆବଶ୍ୟକତାନାହିଁ । ସେ ଯାହାହେଉ, ବିଷୟଟି ଯେତେବେଳେ ମୁଣ୍ଡିମାରିବା ଅବସ୍ଥାକୁ ଆସିଗଲାଣି ସେତେବେଳେ ଆଉ ନ୍ୟାୟ-ଅନ୍ୟାୟ, ନୀତି-ଅନୀତି, ମୁହଁ ମୁଲାଇଜାକୁ ଅପେକ୍ଷା ନକରି ନେତୃତ୍ୱର ଆଶୁ ପରିବର୍ତ୍ତନ କାର୍ଯ୍ୟରେ ଆମେ ଲାଗିଗଲୁ । ସେହିପରି ନବବାବୁଙ୍କୁ ସମର୍ଥନ କରୁଥିବା ବନ୍ଧୁମାନେ ମଧ ଲାଗିପଡ଼ିଥା'ନ୍ତି । ସେମାନଙ୍କ ପକ୍ଷରେ ବଡ଼ ଅସୁବିଧା ଥିଲା ନବବାବୁଙ୍କ ମତିଗତି । ଏକଥା ନିଶ୍ଚିତ ଯେ, ଯଦି ନବବାବୁ ଛାଡ଼ି ଚାଲିଯିବେନାହିଁ ବୋଲି କହିଥାଆନ୍ତେ, ସେତେବେଳେ ନେତୃତ୍ୱର ପରିବର୍ତ୍ତନ ଆଦୌ ହୋଇନଥାନ୍ତା । ନବବାବୁଙ୍କ ଉପରେ ବହୁତ ଚାପ ଦିଆଯାଉଥାଏ ସେ କିପରି ରହନ୍ତୁ । କିନ୍ତୁ ନିଶ୍ଚିତ ଭାବରେ ସେ ଜବାବଟି କେହି ତାଙ୍କ ପାଖରୁ ପାଇପାରୁନଥାନ୍ତି । ସେ ବରଂ କହୁଥାଆନ୍ତି, କୌଣସି ଗୋଷ୍ଠୀକୁ ସନ୍ତୁଷ୍ଟ କରି ସେମାନଙ୍କର ସ୍ୱାର୍ଥ ସାଧନରେ ସାହାଯ୍ୟ କରିବାପାଇଁ ସେ ଆଉ ରହିପାରିବେ ନାହିଁ । ତାଙ୍କ ମନ୍ତ୍ରିମଣ୍ଡଳରେ ତାଙ୍କର ଖୁବ୍ ବିଶ୍ୱସ୍ତ ବନ୍ଧୁ ଥିଲେ ଶ୍ରୀ ସଦାଶିବ ତ୍ରିପାଠୀ । ସେ ମଧ ନବବାବୁଙ୍କୁ ବହୁତ ବୁଝାଇବାକୁ ଲାଗିଲେ, କିନ୍ତୁ ତାଙ୍କୁ ସେ ବୁଝାଇପାରିଲେନାହିଁ । ତେଣୁ ନେତୃତ୍ୱ ପରିବର୍ତ୍ତନର ବହୁ ପୂର୍ବରୁ ସଦାଶିବବାବୁ ତାଙ୍କର ଇସ୍ତଫାପତ୍ର ଲେଖି ନବବାବୁଙ୍କ ପାଖକୁ ପଠାଇଦେଇଥିଲେ । ସଦାଶିବବାବୁ ମହତାବଙ୍କର ଆସିବାଟାକୁ ଆଦୌ ପସନ୍ଦକରୁନଥିଲେ । ତେଣୁ ନେତୃତ୍ୱ ପରିବର୍ତ୍ତନ ପୂର୍ବରୁ ସେ ନିଜ ବାଟ କାଟିବାରେ ଲାଗିଲେ । ୧୯୫୬ ମସିହା ଅକ୍ଟୋବର ମାସ ତୃତୀୟ ସପ୍ତାହରେ ଶ୍ରୀ ଚୌଧୁରୀ ଇସ୍ତଫା ଦେଇ ଚାଲିଗଲା ପରେ ବମ୍ୱେ ରାଜ୍ୟପାଳ ପଦରୁ ଇସ୍ତଫା ଦେଇ ଡକ୍ଟର ମହତାବ ଓଡ଼ିଶା ଆସି ମୁଖ୍ୟମନ୍ତ୍ରୀ ହିସାବରେ ଶାସନ ଦାୟିତ୍ୱ ଗ୍ରହଣ କରିଥିଲେ ।

## ୧୯୫୭ ସାଧାରଣ ନିର୍ବାଚନଠାରୁ ଅସାଧାରଣ ଅଧ୍ୟାୟ

ସାଧାରଣ ନିର୍ବାଚନର ଅବ୍ୟବହିତ ପୂର୍ବରୁ ଶ୍ରୀ ମହତାବ ଯେଉଁ ମନ୍ତ୍ରିମଣ୍ଡଳ ଗଠନ କଲେ, ତାହା ଥିଲା ଏକପ୍ରକାର କାମଚଳା ସରକାର । ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରିପରିଷଦରେ ଯେଉଁମାନେ ଥିଲେ, ସେମାନଙ୍କ ଭିତରୁ ପାଞ୍ଚ ଜଣ ବାଦ୍‌ଯାଇ ଆଉ ସମସ୍ତେ ଏ କାମଚଳା ମନ୍ତ୍ରିପରିଷଦରେ ରହିଥିଲେ । ଶ୍ରୀ ସଦାଶିବ ତ୍ରିପାଠୀ ଆଗରୁ ତ ଇସ୍ତଫା ଦେଇ ଚାଲିଯାଇଥିଲେ; କିନ୍ତୁ ସର୍ବଶ୍ରୀ ଭୈରବଚନ୍ଦ୍ର ମହାନ୍ତି, କୃପାନିଧି ନାୟକ, ତୀର୍ଥବାସୀ ପ୍ରଧାନ ଓ ସୋନାରାମ ସୋରେନ୍‌ଙ୍କୁ ମହତାବବାବୁ ଇଚ୍ଛାକରି ବାଦ୍‌ଦେଇଥିଲେ । ମୁଖ୍ୟମନ୍ତ୍ରୀ ହୋଇସାରିବା ପରେ ତାଙ୍କର ପ୍ରତିଶୋଧପରାୟଣ ମନୋବୃତ୍ତି ପ୍ରକାଶ ପାଇଥିଲା । ଯେଉଁ କଂଗ୍ରେସ ଲୋକମାନେ ତାଙ୍କର ମୁଖ୍ୟମନ୍ତ୍ରୀରୂପେ ଆସିବା କଥାକୁ ବିରୋଧ କରିଥିଲେ, ସେମାନଙ୍କ ପ୍ରତି ସେ ଭଲ ବ୍ୟବହାର କରିନଥିଲେ ଏବଂ କେତେକଙ୍କୁ ଦୁର୍ବ୍ୟବହାର କରିବାର ଘଟଣା ମଧ ଜଣାପଡ଼ିଥିଲା । ଶ୍ରୀ ଚୌଧୁରୀଙ୍କ ସରକାର କରିଥିବା କେତେକ କାର୍ଯ୍ୟକୁ ମଧ ସେ ସମାଲୋଚନା କରିଥିଲେ । ତାଙ୍କର ଏହି ପ୍ରତିଶୋଧପରାୟଣ ମନୋବୃତ୍ତି ଆଗାମୀ ଦ୍ୱିତୀୟ ସାଧାରଣ ନିର୍ବାଚନପାଇଁ ପ୍ରାର୍ଥୀ ବାଛିବାରେ ମଧ ପରିସ୍ଫୁଟ ହୋଇଥିଲା । ବାଲେଶ୍ୱର ଜିଲ୍ଲା ସୋର ନିର୍ବାଚନମଣ୍ଡଳୀର ଶ୍ରୀନୀଳାମ୍ବର ଦାସ ଜଣେ ସ୍ୱାଧୀନତା-ସଂଗ୍ରାମୀ ଓ ପ୍ରତିଷ୍ଠିତ ସଂଗଠକ ଭାବରେ ପରିଚିତ । ଅସହଯୋଗ ଆନ୍ଦୋଳନରେ ସେ ମହତାବଙ୍କର ଜଣେ ସହକର୍ମୀ ଥିଲେ । ସେ ବିଧାନସଭାର ସଭ୍ୟ ଥାଇ ନବବାବୁ ମୁଖ୍ୟମନ୍ତ୍ରୀ ହୋଇ ରହନ୍ତୁ ବୋଲି ମତ ଦେଇଥିଲେ । ସେଥିପାଇଁ ମହତାବବାବୁ ତାଙ୍କ ଉପରେ କୋପାନ୍ୱିତ ଥିଲେ ଏବଂ କେତେକ କ୍ଷେତ୍ରରେ କଟୁବାକ୍ୟ ପ୍ରୟୋଗ କରି ଦୁର୍ବ୍ୟବହାର ପ୍ରଦର୍ଶନ କରିଥିଲେ । ନୀଳାମ୍ବରବାବୁ ସୋର ନିର୍ବାଚନମଣ୍ଡଳୀର ବାସିନ୍ଦା

ହୋଇଥିବାରୁ ୧୯୫୭ ମସିହା ନିର୍ବାଚନରେ ସେଠାରୁ ପ୍ରାର୍ଥୀ ହେବାକୁ ମନସ୍ଥ କରିଥିଲେ । ତାହା ନ କରେଇଦେବା ଉଦ୍ଦେଶ୍ୟରେ ନିଜେ ମହତାବବାବୁ ସୋରରୁ ପ୍ରାର୍ଥୀ ହୋଇଥିଲେ । ମହତାବ୍‌ବାବୁଙ୍କ ପ୍ରତିରୋଧ ସତ୍ତ୍ୱେ ନୀଳାମ୍ବରବାବୁ ନୀଳଗିରି ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହୋଇପାରିଥିଲେ । ମହତାବ୍‌ବାବୁ କଂଗ୍ରେସ ଦଳର ନେତା ଥାଇ ତାଙ୍କୁ ସାହାଯ୍ୟ କରିବା ପରିବର୍ତ୍ତେ ହରାଇବାପାଇଁ ସବୁ ପ୍ରକାର ବ୍ୟବସ୍ଥା କରିଥିବା କଥା ମୁଁ ଜାଣିଥିଲି । ଓଡ଼ିଶାର ଦ୍ୱିତୀୟ ସାଧାରଣ ନିର୍ବାଚନ ୧୯୫୭ ମସିହା ମାର୍ଚ୍ଚ ମାସରେ ହେବାପାଇଁ ଘୋଷଣା ପ୍ରକାଶ ପାଇବା ପରେ ନିର୍ବାଚନପାଇଁ ସବୁ ରାଜନୈତିକ ଦଳଙ୍କର ତତ୍ପରତା ପ୍ରକାଶପାଇଥିଲା । କଂଗ୍ରେସଦଳ ପକ୍ଷରୁ ଶ୍ରୀ ମହତାବଙ୍କ ନେତୃତ୍ୱରେ ନିର୍ବାଚନ ପରିଚାଳିତ ହେବ ବୋଲି ଆଗରୁ ସ୍ଥିର ହୋଇଥିଲା । ତେଣୁ ପ୍ରାର୍ଥୀ ମନୋନୟନ କିପରି ଭାବରେ ହେବ ସେ ଦିଗରେ କାର୍ଯ୍ୟ ଆରମ୍ଭ ହୋଇଥିଲା । ଏକାସାଙ୍ଗରେ ରାଜ୍ୟ ବିଧାନସଭା ଓ ଲୋକସଭା ନିର୍ବାଚନ ହେବାର କଥା । ଉଭୟ ସଭାପାଇଁ ପ୍ରାର୍ଥୀ ମନୋନୟନ କାର୍ଯ୍ୟ ଆରମ୍ଭ ହୋଇଥିଲା । ଶ୍ରୀ ବିଶ୍ୱନାଥ ଦାସ ସେତେବେଳେ ଥାଆନ୍ତି ପ୍ରଦେଶ କଂଗ୍ରେସ କମିଟିର ସଭାପତି । ପ୍ରଦେଶ କଂଗ୍ରେସ ନିର୍ବାଚନ କମିଟି ଗଢ଼ାଯାଇ ୧୪୦ଟି ବିଧାନସଭା ଆସନ ଓ ୨୦ଟି ଲୋକସଭା ଆସନପାଇଁ ପ୍ରାର୍ଥୀ ମନୋନୟନ କାର୍ଯ୍ୟ ଆରମ୍ଭ ହେଲା । କଟକ ସ୍ୱରାଜ୍ୟ ଆଶ୍ରମରେ ଏହି ନିର୍ବାଚନ କମିଟିର ବୈଠକ ବସିଥିଲା । କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷଙ୍କ ପକ୍ଷରୁ ପର୍ଯ୍ୟବେକ୍ଷକରୂପେ ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ଡକ୍ଟର ବିଧାନଚନ୍ଦ୍ର ରାୟ ଆସିଥିଲେ । ମୋର ନିର୍ବାଚନମଣ୍ଡଳୀ ଏଥର ପରିବର୍ତ୍ତନ ହୋଇଥିଲା । ମୁଁ ଆଗରୁ ଧାମନଗର ନିର୍ବାଚନମଣ୍ଡଳୀକୁ ପ୍ରତିନିଧିତ୍ୱ କରୁଥିଲି । ଏଥର ସେଠାରୁ ଶ୍ରୀ ମୁରଲୀଧର ଜେନାଙ୍କୁ ପ୍ରାର୍ଥୀ କରିବାପାଇଁ ସ୍ଥିର ହୋଇଥିଲା । ଚାନ୍ଦବାଲି ଯୁଗ୍ମ ନିର୍ବାଚନ ମଣ୍ଡଳୀରୁ ମୁଁ ପ୍ରାର୍ଥୀ ହୋଇଥିଲି । ଓଡ଼ିଶାରେ ନିର୍ବାଚନ କଂଗ୍ରେସ ପକ୍ଷରେ ଆଦୌ ସୁବିଧାଜନକ ହୋଇନଥିଲା । ଯେଉଁ ଆଶାକରି ନେତୃତ୍ୱ ପରିବର୍ତ୍ତନ କରାଯାଇଥିଲା, ସେ ଆଶା ପୂରଣ ହୋଇପାରିଲାନାହିଁ । କଂଗ୍ରେସକୁ ବିରୋଧ କରିଥିଲା ମୁଖ୍ୟତଃ ଗଣତନ୍ତ୍ର ପରିଷଦ । ରାଜ୍ୟ ପୁନର୍ଗଠନ କମିଶନଙ୍କର ସୀମା ନିର୍ଦ୍ଧାରଣ ସମ୍ପର୍କୀୟ ରିପୋର୍ଟ ପ୍ରକାଶିତ ହେବା ପରେ ଓଡ଼ିଶାରେ ଯେଉଁସବୁ ଆନ୍ଦୋଳନ ଓ ଅଶାନ୍ତି ଘଟିଥିଲା, ତା'ର ସୁଯୋଗ ପୂରାପୂରି ବିରୋଧୀ ଦଳମାନେ ନେଇଥିଲେ ଓ ସବୁଠାରୁ ବେଶି ସୁଯୋଗ ନେଇଥିଲା ଗଣତନ୍ତ୍ର ପରିଷଦ । ସେ ଦଳ ଗୋଟିଏ ନୂତନ ନିର୍ବାଚନ କୌଶଳ ପ୍ରୟୋଗ କରି ଲୋକମତକୁ ପ୍ରଭାବିତ କରିଥିଲା । ଓଡ଼ିଶା ସୀମା ନିର୍ଦ୍ଧାରଣ ସମ୍ବନ୍ଧରେ କେନ୍ଦ୍ର ସରକାରଙ୍କର ଓଡ଼ିଶା ପ୍ରତି ଅନ୍ୟାୟର ପ୍ରତିବାଦ କରି ନିର୍ବାଚନର ଠିକ୍ ତିନି ଚାରି ମାସ ପୂର୍ବରୁ ନିଜ ଦଳର ବିଧାନସଭା ଓ ଲୋକସଭାର ସଦସ୍ୟମାନଙ୍କୁ ଇସ୍ତଫା ଦେବାପାଇଁ ଗଣତନ୍ତ୍ର ପରିଷଦ ନିର୍ଦ୍ଦେଶ ଦେଇଥିଲା । ସେମାନେ ସେହି ଅନୁସାରେ ଇସ୍ତଫା ଦେଇଥିଲେ । କୌଶଳଟି ସେମାନଙ୍କ ପକ୍ଷରେ ବିଶେଷଭାବରେ ଫଳପ୍ରଦହୋଇଥିଲା । ବିଶେଷକରି ପୂର୍ବତନ ଗଡଜାତଅଞ୍ଚଳମାନଙ୍କରେ ଗଣତନ୍ତ୍ରପରିଷଦ ଅଧିକ ସ୍ଥାନ ଅଧିକାର କରିଥିଲା । ସମ୍ବଲପୁର ଜିଲ୍ଲା ପୂର୍ବତନ ଗଡ଼ଜାତ ଅଞ୍ଚଳ ନୁହେଁ; ମାତ୍ର ଗଣତନ୍ତ୍ର ପରିଷଦର ସଂକୀର୍ଣ୍ଣ ନିର୍ବାଚନ କୌଶଳ ଓ ପ୍ରଚାର ଫଳରେ ସେ ଜିଲ୍ଲାର ବାରଟି ବିଧାନସଭା ଆସନରୁ ସେହି ଦଳ ନ'ଟି ସ୍ଥାନ ଦଖଲ କରିଥିଲା; କଂଗ୍ରେସ ଦୁଇଟି ମାତ୍ର ସ୍ଥାନ ଓ ଗୋଟିଏ ସ୍ଥାନ କମ୍ୟୁନିଷ୍ଟ ଦଳ ପାଇଥିଲା । ସେହିଭଳି କୋରାପୁଟ ଜିଲ୍ଲାର ବାରଟି ବିଧାନସଭା ଆସନ ମଧ୍ୟରୁ ଗଣତନ୍ତ୍ର ଓ କଂଗ୍ରେସଦଳ ଅଧା ଅଧା ସ୍ଥାନ ଅଧିକାର କରିଥିଲେ ।

## ମୋ ନିର୍ବାଚନ କଥା

ମୁଁ ଚାନ୍ଦବାଲି ଯୁଗ୍ମ ନିର୍ବାଚନମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା କରୁଥିଲି । ମୋର ସହଯୋଗୀ ହରିଜନପ୍ରାର୍ଥୀ ଥିଲେ ଶ୍ରୀ ନନ୍ଦକିଶୋର ଜେନା । ଗଣତନ୍ତ୍ରଦଳ ପକ୍ଷରୁ ଏହି ନିର୍ବାଚନମଣ୍ଡଳୀର ସଂରକ୍ଷିତ ସ୍ଥାନଟି

ପାଇଁ ଚାନ୍ଦବାଲି ଓ କନିକା ଅଞ୍ଚଳର ଜଣାଶୁଣା ସମାଜସେବୀ ଶ୍ରୀ ଘନଶ୍ୟାମ ଦାସ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ଉଦ୍ଦେଶ୍ୟ ସାଧନ ପାଇଁ ଘନଶ୍ୟାମ ଯେପରି ନିରବଚ୍ଛିନ୍ନ ଉଦ୍ୟମରେ ଲାଗିରହନ୍ତି, ତାହା ବିଚାରକଲେ ନିଃସନ୍ଦେହରେ କୁହାଯାଇ ପାରିବ ଯେ ଲୋକପ୍ରତିନିଧି ହେବାର ଯୋଗ୍ୟତା ତାଙ୍କର ଯଥେଷ୍ଟ ଥିଲା । ସେହି ଦୃଷ୍ଟିରୁ ସେ ଜଣେ ଚାଣୁଆ ପ୍ରତିଦ୍ୱନ୍ଦ୍ୱୀ ଥିଲେ । ଏହି ନିର୍ବାଚନମଣ୍ଡଳୀଟି ଚାନ୍ଦବାଲି, ତିହିଡ଼ି, ବାଁଶଡ଼ା, ବାସୁଦେବପୁର – ଏହି ଚାରିଗୋଟି ଥାନାକୁ ନେଇ ଗଠିତ ହୋଇଥିଲା । ଶ୍ରୀ ଚକ୍ରଧର ବେହେରାଙ୍କୁ ଏଥର କଂଗ୍ରେସ ଟିକେଟ୍ ଦିଆନଗଲା ବୋଲି ସେ ସ୍ୱାଧୀନଭାବରେ ମୋ ବିରୁଦ୍ଧରେ ଛିଡ଼ାହୋଇଥିଲେ । ଶ୍ରୀ ବେହେରା କନିକା ପ୍ରଜା-ଆନ୍ଦୋଳନର ଜଣେ ନେତା ଥିଲେ ବୋଲି ମୁଁ ଆଗରୁ କହିଛି । ଏହା ସତ୍ତ୍ୱେ ଶ୍ରୀ ବେହେରା ଏହି ନିର୍ବାଚନମଣ୍ଡଳୀରେ ଜାତିଆଣ ଭାବ ସୃଷ୍ଟି କରିବାକୁ ଉଦ୍ୟମ କରୁଥିଲେ । ତାହାଦ୍ୱାରା ସେ କେତେକ ଲୋକଙ୍କୁ ପ୍ରଭାବିତ କରି ସେମାନଙ୍କର ସମର୍ଥନ ପାଉଥିଲେ । ଚାନ୍ଦବାଲି ଓ ବାଁଶଡ଼ାର ଅନେକ ଅଞ୍ଚଳ ପ୍ରାୟ ବିଚ୍ଛିନ୍ନ ହୋଇ ରହିଥାଏ, କାରଣ ସେତେବେଳେ ରାସ୍ତାଘାଟ ସେଠି ହୋଇନଥିଲା । ରାସ୍ତା ତିଆରି କରାଇବାରେ ମଧ୍ୟ ସେ ବିଶେଷ ଆଗ୍ରହୀ ହେଉନଥିଲେ । ସେ କଂଗ୍ରେସ ସଦସ୍ୟ ଥିଲାବେଳେ ମୁଁ ଥରେ ତାଙ୍କୁ ଘଣ୍ଟେଶ୍ୱର ଓ ବାଁଶଡ଼ା ପ୍ରଭୃତି ଅଞ୍ଚଳକୁ ରାସ୍ତା ନିର୍ମାଣ କରିବା ବିଷୟରେ କହିଥିଲି । ସେ ମୋତେ କହିଥିଲେ, ''ଆପଣ ସେ ବିଷୟରେ ଆଦୌ ବ୍ୟସ୍ତ ହୁଅନ୍ତୁନାହିଁ, ମୁଁ ସେଠିକାର ସମସ୍ତ କଥା ବୁଝୁଛି । ରାସ୍ତା କରିଦେବି, ମଟରଗାଡ଼ି ଚାଲିବ, ଏପଟୁ ସମସ୍ତେ ସୁବିଧାରେ ଯାଇ ଚା' ଦୋକାନରେ ଚା' ଖାଇ ମୋ ବିରୁଦ୍ଧରେ ପ୍ରଚାର କରିବେ ।'' ବାଁଶଡ଼ା ଥାନାଟି ଥିଲା ଗୋଟିଏ ନୂଆ ଥାନା । ମୁଁ ସ୍ୱରାଷ୍ଟ୍ର ବିଭାଗର ଉପମନ୍ତ୍ରୀ ଥିଲାବେଳେ ଏ. ଥାନାଟି କରାଇଥିଲି; କିନ୍ତୁ ସେ ତାକୁ ଆଦୌ ପସନ୍ଦ କରୁନଥିଲେ । ଏ ଅଞ୍ଚଳରେ ସବୁବେଳେ ମାଡ଼ଗୋଳ, ପିଟାପିଟି ଓ ତେଣ୍ଟାଭୂଷାରେ ବହୁଲୋକ ମରନ୍ତି । ଏସବୁ ଅଞ୍ଚଳ ଏକରକମ ବିଚ୍ଛିନ୍ନ ରହୁଥିବାରୁ ସହଜରେ ପୁଲିସ ମଧ୍ୟ ଯାଇ ପହଞ୍ଚିପାରୁ ନଥିଲେ । ସେଇଥିପାଇଁ ସେ ଥାନାଟି ମୁଁ ବସାଇଥିଲି । ସେଠାକାର ଲୋକେ ଶ୍ରୀ ବେହେରାଙ୍କୁ ଭାରି ଭୟକରୁଥିଲେ, କାରଣ ସେ ଥିଲେ କ୍ଷମତାସୀନ କଂଗ୍ରେସଦଳର ବିଧାୟକ । ତାଙ୍କ ଗୋଷ୍ଠୀ ଲୋକଙ୍କ ଉତ୍ପାତ ସମ୍ବନ୍ଧରେ ଅଭିଯୋଗ ହେଲେ କର୍ତ୍ତୃପକ୍ଷ ଶୁଣୁନଥିଲେ । ତେଣୁ ସେ ଯେତେବେଳେ କଂଗ୍ରେସ ଛାଡ଼ିଲେ ସେତେବେଳେ ସେ ଅଞ୍ଚଳର ବହୁଲୋକ ଆଶ୍ୱସ୍ତ ହୋଇଥିଲେ । ମୋର ମନେଅଛି, ନିର୍ବାଚନ ପ୍ରଚାରରେ ମୁଁ ଯେତେବେଳେ ଯାଇଥିଲି, ବାଁଶଡ଼ା ଥାନାର ବଇଁଚିଆଠାରେ ଗୋଟିଏ ସାଧାରଣ ସଭା ହୋଇଥିଲା । ସେ ଅଞ୍ଚଳର ବହୁ ବଙ୍ଗାଳୀ ବାସିନ୍ଦା ସଭାରେ ଉପସ୍ଥିତ ଥିଲେ । ସେଠାରେ ସାଧାରଣଙ୍କ ପକ୍ଷରୁ ମୋତେ ଗୋଟିଏ ଅଭିନନ୍ଦନପତ୍ର ଦିଆଯାଇଥିଲା । ସେଥିରେ ଲେଖାଥିଲା, ''ଆପଣ ଆମ୍ଭମାନଙ୍କୁ କଂଗ୍ରେସ ସମର୍ଥିତ ଗୁଣ୍ଡାମିରୁ ରକ୍ଷାକରନ୍ତୁ ।'' ଏ ନିର୍ବାଚନରେ ମୁଁ ଏବଂ ମୋର ସହଯୋଗୀ ହରିଜନପ୍ରାର୍ଥୀ ଶ୍ରୀ ନନ୍ଦକିଶୋର ଜେନା ଉଭୟ ଜୟଯୁକ୍ତ ହୋଇଥିଲୁ । ବାଲେଶ୍ୱର ଜିଲ୍ଲାରେ କଂଗ୍ରେସ ପକ୍ଷରେ ଏ ନିର୍ବାଚନ ଫଳାଫଳ ବିଶେଷ ଭଲ ହୋଇ ନ ଥିଲା । ସୋର ନିର୍ବାଚନମଣ୍ଡଳୀରେ ମୁଖ୍ୟମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବଙ୍କର ପ୍ରତିଦ୍ୱନ୍ଦ୍ୱୀ ଥିଲେ ଗଣତନ୍ତ୍ର ପରିଷଦ ପ୍ରାର୍ଥୀ ଶ୍ରୀ ବାସୁଦେବ ନାୟକ । ସେଠି ପ୍ରତିଦ୍ୱନ୍ଦ୍ୱିତା ଖୁବ୍ ତୀବ୍ର ହେଉଥିଲା । ଶ୍ରୀ ନାୟକ ଯେତେ ଭୋଟ ପାଇବାର ଆଶାକରାଯାଉଥିଲା, ତା'ଠାରୁ ଅଧିକ ଭୋଟ ପାଇଥିଲେ । ଭଦ୍ରକରୁ କଂଗ୍ରେସପ୍ରାର୍ଥୀ ମହମ୍ମଦ ହନିଫ୍‌ଙ୍କୁ ସ୍ୱାଧୀନପ୍ରାର୍ଥୀ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ପରାସ୍ତ କରିଥିଲେ । ଉତ୍ତର ବାଲେଶ୍ୱରରୁ ବସ୍ତା ଛଡ଼ା ଅନ୍ୟସ୍ଥାନଗୁଡ଼ିକ ପ୍ରଜାସୋସାଲିଷ୍ଟ ଦଳ ଦଖଲ କରିଥିଲେ । ଉପକୂଳବର୍ତ୍ତୀ ଅଞ୍ଚଳରେ ପ୍ରଜାସୋସାଲିଷ୍ଟଦଳ ଓ କମ୍ୟୁନିଷ୍ଟଦଳ ପ୍ରତିଦ୍ୱନ୍ଦ୍ୱିତା କରି ଅନେକ ସ୍ଥାନରେ କଂଗ୍ରେସର ପରାଜୟର କାରଣ ହୋଇଥିଲେ । ସେହିପରି ମୟୂରଭଞ୍ଜ ଓ ସୁନ୍ଦରଗଡ଼ରୁ ଏଥର ଝାଡ଼ଖଣ୍ଡଦଳ ପାଞ୍ଚଟି ସ୍ଥାନ ଅଧିକାର କରିଥିଲା । ୧୯୫୫ ମସିହାର ଶେଷବେଳକୁ ପଣ୍ଡିତ

ଗୋଦାବରୀଶ ମିଶ୍ର ଗଣତନ୍ତ୍ର ପରିଷଦରେ ଯୋଗଦେଇଥିଲେ; କିନ୍ତୁ ଏହି ନିର୍ବାଚନ ପୂର୍ବରୁ ତାଙ୍କର ପରଲୋକ ହୋଇଯାଇଥିଲା । ତା' ନହୋଇଥିଲେ ପୁରୀ ଜିଲ୍ଲାର ଆଉ କେତୋଟି ସ୍ଥାନ ଗଣତନ୍ତ୍ର ପରିଷଦକୁ ଯାଇଥାଆନ୍ତା । ଏ ନିର୍ବାଚନରେ ପୁରୀ ଜିଲ୍ଲାରୁ ଏକମାତ୍ର କଂଗ୍ରେସପ୍ରାର୍ଥୀ ପଣ୍ଡିତ ନୀଳକଣ୍ଠ ଦାସ ସତ୍ୟବାଦୀ ନିର୍ବାଚନମଣ୍ଡଳୀରୁ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥିଲେ । ତେରଗୋଟି ଜିଲ୍ଲାର ସବୁ ନିର୍ବାଚନମଣ୍ଡଳୀ କଥା ବିସ୍ତୃତ ଭାବରେ ଏଠାରେ କହିବା ଅନାବଶ୍ୟକ ।

## ଦଳବଦଳ ହଟଚମଟ ଆରମ୍ଭ

ନିର୍ବାଚନ ଫଳାଫଳ ଘୋଷଣା ପରେ ଜଣାଗଲା ଯେ, ବିଧାନସଭାର ମୋଟ ୧୪୦ଟି ସ୍ଥାନ ମଧ୍ୟରୁ କଂଗ୍ରେସ ଛପନଟି ଓ କଂଗ୍ରେସର ମୁଖ୍ୟ ବିରୋଧୀଦଳ ହିସାବରେ ଲଢ଼ୁଥିବା ଗଣତନ୍ତ୍ରପରିଷଦ ପାଇଲା ଏକାବନଟି । ତା'ଛଡ଼ା ପ୍ରଜାସୋସାଲିଷ୍ଟ ଏଗାର, କମ୍ୟୁନିଷ୍ଟ ନଅ, ଲୋହିଆ ସୋସାଲିଷ୍ଟ ଗୋଟିଏ ଓ ଝାଡ଼ଖଣ୍ଡଦଳ ପାଞ୍ଚଟି ସ୍ଥାନ ଅଧିକାର କରିଥିଲେ । ସାତଜଣ ସ୍ୱାଧୀନପ୍ରାର୍ଥୀ ଜୟଯୁକ୍ତ ହୋଇଥିଲେ । ଲୋକସଭା ନିର୍ବାଚନରେ ସର୍ବମୋଟ କୋଡ଼ିଏଟି ସ୍ଥାନରୁ କଂଗ୍ରେସ ପାଇଲା ଆଠଟି ଏବଂ ଗଣତନ୍ତ୍ର ପରିଷଦ ପାଇଥିଲା ଛ'ଟି । ଦୁଇଟି ସ୍ଥାନରେ ପ୍ରଜାସୋସାଲିଷ୍ଟ ଦଳ, ଗୋଟିକରେ କମ୍ୟୁନିଷ୍ଟ ଦଳ ଏବଂ ଅନ୍ୟ ତିନୋଟି ସ୍ଥାନରେ ସ୍ୱାଧୀନ ପ୍ରାର୍ଥୀମାନେ ଜୟଯୁକ୍ତ ହୋଇଥିଲେ ।

ନିର୍ବାଚନ ଫଳାଫଳ ବାହାରିବା ପରେ ଆମ୍ଭେମାନେ ବଡ଼ ବିମର୍ଷ ହୋଇପଡ଼ିଥିଲୁ । ଡକ୍ଟର ମହତାବ ଖୁବ୍ ଚିନ୍ତିତ ହୋଇପଡ଼ିଥିଲେ । ବିଧାନସଭାକୁ ଏତେ କମ୍‌ସଂଖ୍ୟକ କଂଗ୍ରେସ ସଭ୍ୟ ଭୋଟ୍ ପାଇ ଆସିବେ ବୋଲି ଆମେ ଭାବିନଥିଲୁ । ମୋଟ ସଭ୍ୟ ସଂଖ୍ୟାର ଅଧାଅଧି ମଧ କଂଗ୍ରେସ ପାଇ ପାରିଲାନାହିଁ । ବହୁପ୍ରକାର କଳ୍ପନାଜଳ୍ପନା ଚାଲିଲା । କୌଣସି ଦଳ ଏକକ ସଂଖ୍ୟାଗରିଷ୍ଠତା ଲାଭ କରିପାରିନଥିଲା । କଂଗ୍ରେସ କେବଳ ସର୍ବାଧିକ ସଦସ୍ୟଥିବା ଦଳ (single largest party) ହୋଇଥିଲା । କଂଗ୍ରେସ ଯେ ଖୁବ୍ ବେଶି ସଂଖ୍ୟାଧିକ ଥିଲା ତା' ନୁହେଁ, କେବଳ ଗଣତନ୍ତ୍ର ପରିଷଦ ଠାରୁ ମାତ୍ର ପାଞ୍ଚଟି ସ୍ଥାନ ଅଧିକ ପାଇଥିଲା । ସେହି ଦଳର ସହଯୋଗ ହାସଲ କରିବାପାଇଁ କଥାବାର୍ତ୍ତା କରିବାକୁ ବିଜୁ ପଟ୍ଟନାୟକଙ୍କୁ ଦାୟିତ୍ୱ ଦିଆଯାଇଥିଲା । ବିଜୁବାବୁଙ୍କ ଘରେ ଗଣତନ୍ତ୍ରପରିଷଦର ନେତା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ, ଶ୍ରୀ ସୁରେନ୍ଦ୍ର ମହାନ୍ତି, ବିଜୁବାବୁ ଓ ମହତାବବାବୁ ଏକତ୍ର ବସି କିପରି ଗଣତନ୍ତ୍ର ପରିଷଦର ସହଯୋଗ ମିଳିବ ସେ ବିଷୟରେ ଆଲୋଚନା ଚଳାଇଥା'ନ୍ତି; କିନ୍ତୁ ତାହା ସମ୍ଭବ ହେଲାନାହିଁ । ମହତାବବାବୁଙ୍କ ସହିତ ଆମ୍ଭମାନଙ୍କର ଘନ ଘନ ପରାମର୍ଶ ହେଉଥାଏ । ବୀରେନ୍‌ବାବୁ, ବିଜୁବାବୁ ଓ ମୁଁ ବିଶେଷଭାବରେ ତତ୍ପର ଥାଉଁ । ଏହି ସମୟରେ ଆମ ରାଜ୍ୟର ରାଜ୍ୟପାଳ ଥିଲେ ଭୀମସେନ ସାଚାର । ଏଭଳି ଆଲୋଚନା ଓ ପରାମର୍ଶ ଚାଲିଥିବା ସମୟରେ ମୋର ତାଙ୍କ ସହିତ ଦେଖାହୋଇଥିଲା । ସେ ମୋତେ କହିଥିଲେ, "All is fair in love and war, nothing is foul for you. Go ahead." ବର୍ତ୍ତମାନ ମନେହେଲା ଯେକୌଣସିମତେ ସମର୍ଥକ ସଂଖ୍ୟା ବୃଦ୍ଧିକରି ବିଧାନସଭାରେ ଶକ୍ତି ପରୀକ୍ଷାରେ ଜିଣିବା ସମ୍ବନ୍ଧରେ ରାଜ୍ୟପାଳଙ୍କୁ ସନ୍ତୁଷ୍ଟ କରାଇଲେ ସେ ଡକ୍ଟର ମହାତାବଙ୍କୁ ସରକାର ଗଢ଼ିବାପାଇଁ ଡାକିବେ । ତାହା କରିବାପାଇଁ ଡକ୍ଟର ମହତାବଙ୍କଠାରୁ ନିର୍ଦ୍ଦେଶ ମିଳିଲା ଓ ସେ କାର୍ଯ୍ୟରେ ଆମ୍ଭେମାନେ Three Musketeers ଲାଗିଗଲୁ । ଯୋଜନା ପ୍ରସ୍ତୁତ କଲୁ ଯେ କିପରି ଝାଡ଼ଖଣ୍ଡ ଦଳର ଆଦିବାସୀ ସଦସ୍ୟମାନଙ୍କୁ ଅକ୍ତିଆର କରିବୁ ଏବଂ ତା ସଙ୍ଗେ ସଙ୍ଗେ ସ୍ୱାଧୀନ ସଭ୍ୟମାନଙ୍କ ମଧ୍ୟରୁ କେତେକଙ୍କୁ ଆଣି କଂଗ୍ରେସରେ ମିଶାଇବୁ । ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ଥାଆନ୍ତି ଜଣେ ସ୍ୱାଧୀନ ସଭ୍ୟ । ସେ ଥିଲେ ଘୋର ମହତାବବିରୋଧୀ, ତେଣୁ ସ୍ୱାଧୀନ ସଭ୍ୟମାନଙ୍କୁ ନେଇ ସେ ଗୋଟିଏ ଗୋଷ୍ଠୀ ଗଢ଼ିବାକୁ ଉଦ୍ୟମ କଲେ । ପୁରୀ ଜିଲ୍ଲା ପିପିଲି ନିର୍ବାଚନ ମଣ୍ଡଳୀରୁ ଜଣେ ସ୍ୱାଧୀନ ସଭ୍ୟ ଶ୍ରୀ ରାମଚନ୍ଦ୍ର ପଟ୍ଟନାୟକ

ନିର୍ବାଚିତ ହୋଇ ଆସିଥା'ନ୍ତି । କଲିକତାରେ ଯେତେବେଳେ ଓଡ଼ିଆମାନଙ୍କ ଭିତରେ ମୁଁ କାମ କରୁଥିଲି ସେତେବେଳେ ତାଙ୍କ ସହିତ ମୋର ଘନିଷ୍ଠତା ଥିଲା । ଏହା ବ୍ୟତୀତ ସେ ବିଶ୍ୱନାଥ ଦାସଙ୍କର ଜଣେ ଗୁଣଗ୍ରାହୀ ତଥା ସମର୍ଥକ ଥିଲେ । ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ଚେଷ୍ଟା କରୁଥାଆନ୍ତି ଶ୍ରୀ ରାମଚନ୍ଦ୍ର ପଟ୍ଟନାୟକଙ୍କ ସାହାଯ୍ୟରେ ଗୋଟିଏ ସ୍ୱାଧୀନ ଗୋଷ୍ଠୀ ଗଢ଼ିବାପାଇଁ; କିନ୍ତୁ ମୁଁ ତାଙ୍କୁ ଆଣି ମହତାବଙ୍କ ପାଖରେ ପହଞ୍ଚାଇଥିଲି । ସେ ଥିଲେ ଜଣେ ଛୋଟିଆ ଶିଳ୍ପପତି, ତେଣୁ ଅର୍ଥଲୋଭର ପ୍ରଶ୍ନ ସେଠି ନଥିଲା । ତାଙ୍କର ସମର୍ଥନ ମିଳିଗଲା । କେଉଁଝରରେ ଶ୍ରୀ କୃଷ୍ଣଚନ୍ଦ୍ର ମହାପାତ୍ର ବୋଲି ଜଣେ ଆଦିବାସୀ ସଭ୍ୟ ସ୍ୱାଧୀନ ଭାବରେ ନିର୍ବାଚିତ ହୋଇଥିଲେ । ତାଙ୍କ ପାଖକୁ ମୋତେ ଯିବାକୁ ହୋଇଥିଲା । କେଉଁଝରଗଡ଼ଠାରୁ ପ୍ରାୟ ପାଞ୍ଚ ମାଇଲ୍ ଦୂରରେ ତାଙ୍କ ଗାଆଁ । ମୁଁ ଯାଇ ତାଙ୍କ ଗାଆଁରେ ପହଞ୍ଚି ତାଙ୍କୁ ସାଙ୍ଗରେ ଧରି ଭୁବନେଶ୍ୱର ଆସିଲି । ଏ ମହାଶୟ ନିର୍ବାଚନରେ ଅକସ୍ମାତ୍ ଜିତିଥିଲେ । ବିଶେଷ କିଛି ଖର୍ଚ୍ଚ ବି କରିନଥିଲେ; କିନ୍ତୁ ନିର୍ବାଚନ ସଙ୍କେତ ହିସାବରେ ହାତୀ ଚିହ୍ନ ପାଇଥିଲେ । କେଉଁଝରର ଛୋଟରାୟ ସାହେବ ଶ୍ରୀ ଲକ୍ଷ୍ମୀନାରାୟଣ ଭଞ୍ଜଦେଓ ସେଥର ଲୋକସଭାକୁ ସ୍ୱାଧୀନ ପ୍ରାର୍ଥୀ ହିସାବରେ ଜୟଯୁକ୍ତ ହୋଇଥିଲେ । ତାଙ୍କର ନିର୍ବାଚନ ସଙ୍କେତ ଥିଲା ହାତୀ । ଲୋକସଭା ଓ ବିଧାନସଭା ନିର୍ବାଚନ ଏକ ସମୟରେ ହେଉଥିଲା । ବହୁସଂଖ୍ୟକ ଲୋକ ଆସି ଛୋଟରାୟ ସାହେବଙ୍କର ହାତୀ ଚିହ୍ନରେ ମୋହର ଦେବା ସଙ୍ଗେ ସଙ୍ଗେ ବିଧାନସଭା ପାଇଁ ପ୍ରାର୍ଥୀ ଶ୍ରୀ କୃଷ୍ଣଚନ୍ଦ୍ର ମହାପାତ୍ରଙ୍କର ହାତୀ ଚିହ୍ନରେ ମଧ ମୋହର ମାରିଥିଲେ । କୃଷ୍ଣବାବୁଙ୍କୁ ଭୁବନେଶ୍ୱର ଆଣିଲି । ବିଜୁବାବୁ ଓ ବୀରେନ୍‌ବାବୁଙ୍କ ସହିତ କଥାବାର୍ତ୍ତା ହେଲା । ନିଜ ନିର୍ବାଚନପାଇଁ ସେ ଦଶ ହଜାର ଟଙ୍କା ଖର୍ଚ୍ଚ କରିଥିଲେ ବୋଲି କହିଲେ; କିନ୍ତୁ ପ୍ରକୃତରେ ତାଙ୍କର କିଛି ଖର୍ଚ୍ଚ ହୋଇନଥିଲା । ନିର୍ବାଚନରେ ସେ କେବଳ ହାତୀ ଲାଙ୍ଗୁଡ଼ ଧରି ପାରହୋଇଥିଲେ । ତାଙ୍କ କଥା ବୁଝିବାର ଦାୟିତ୍ୱ ବିଜୁ ପଟ୍ଟନାୟକ ନେଇଥିଲେ । ତାଙ୍କ କଥା ବୁଝାହେଲା ଓ ସେ କଂଗ୍ରେସକୁ ସମର୍ଥନ କରିବେ ବୋଲି ଜଣାଇଲେ । ମିତ୍ରୋଦୟ ସିଂହ ବରିହା ନାମକ ଜଣେ ସଭ୍ୟ ଗଣତନ୍ତ୍ର ପରିଷଦର ପ୍ରାର୍ଥୀରୂପେ ସମ୍ବଲପୁରର ପଦ୍ମପୁର ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇଥିଲେ । ତାଙ୍କୁ କିପରି ଗଣତନ୍ତ୍ରଦଳରୁ ଆଣି କଂଗ୍ରେସ ଦଳରେ ମିଶାଯିବ ସେଥିପାଇଁ ଉଦ୍ୟମ ଆରମ୍ଭ ହୋଇଥିଲା । କଟକରେ ସେ କୌଣସି ଗୋଟିଏ ହୋଟେଲରେ ରହୁଥିଲେ । ତାଙ୍କର କୌଣସି ବନ୍ଧୁଙ୍କ ଜରିଆରେ ତାଙ୍କୁ ବୀରେନ୍‌ବାବୁଙ୍କ ଘରକୁ ଅଣାଯାଇଥିଲା । ବୀରେନ୍‌ବାବୁ ତାଙ୍କୁ ନେଇ ପ୍ରଜାତନ୍ତ୍ରର ଦୋତାଲା ଘର ଉପରେ ରହୁଥିବା ମହତାବବାବୁଙ୍କ ରହିବା ସ୍ଥାନରେ ପହଞ୍ଚାଇଥିଲେ । ତାଙ୍କ ସାଙ୍ଗରେ କଥାବାର୍ତ୍ତା ଛିଡ଼ିଗଲା । ଗୋଟିଏ ଗାଡ଼ି କିଣିବାପାଇଁ ତାଙ୍କୁ ସାହାଯ୍ୟ କରିବାକୁ ଜବାବ୍ ଦିଆଯାଇଥିଲା । କେଉଁଝରର ଖଣି ବ୍ୟବସାୟୀ ମହମ୍ମଦ ସିରାଜଉଦ୍ଦୀନ ସେଠାରେ ଥାଆନ୍ତି । ତାଙ୍କ ପାଖରୁ କୋଡ଼ିଏ ହଜାର ଟଙ୍କା ନିଆଯାଇ ଶ୍ରୀ ବରିହାଙ୍କୁ ଯେତେବେଳେ ଦିଆଗଲା ସେ ତାକୁ ଫୋପାଡ଼ିଦେଇଥିଲେ । ତା'ର କାରଣ ବୁଝିବାରୁ ଜଣାଗଲା ଯେ ଗାଡ଼ିର ଦାମ୍ ତେଇଶ ହଜାର, ତେଣୁ ସେ ତେଇଶ ହଜାର ନେବେ । ସିରାଜଉଦ୍ଦୀନ ସେଠାରେ ଉପସ୍ଥିତ ଥିଲେ, କୌଣସି ଅସୁବିଧା ହେଲାନାହିଁ । ସେ ତାଙ୍କ ପ୍ରାପ୍ୟ ପାଇଲେ ଓ କଂଗ୍ରେସରେ ଯୋଗଦେଇଥିଲେ । ଶ୍ରୀ ମୋଚିରାମ ତିରିଆ ନାମକ ଆଉଜଣେ ଆଦିବାସୀ ସଭ୍ୟ ଗଣତନ୍ତ୍ର ପରିଷଦର ଟିକେଟ୍‌ରେ ନିର୍ବାଚିତ ହୋଇଥିଲେ । ତାଙ୍କୁ ରାଇରଙ୍ଗପୁରର କେତେକ ଲୋକଙ୍କ ଦ୍ୱାରା କଟକ ଅଣାଗଲା । ତାଙ୍କର ଆମ୍ଭମାନଙ୍କ ସହ ଦେଖାହେଲା । ତାଙ୍କର ସମସ୍ତ ବିଷୟ ବୁଝିବାର ଦାୟିତ୍ୱ ବୀରେନ୍‌ବାବୁ ଓ ବିଜୁବାବୁ ନେଇଥିଲେ । ତେଣୁ ସେ କଂଗ୍ରେସରେ ଯୋଗଦେଇଥିଲେ । ଏହିପରି ଅହୁରି କେତେକ ସ୍ୱାଧୀନ ସଭ୍ୟ ଓ ଗଣତନ୍ତ୍ରପରିଷଦ ସଭ୍ୟଙ୍କୁ ଅଣାଯାଇ କଂଗ୍ରେସରେ ଯୋଗଦେବାର ବ୍ୟବସ୍ଥା କରାଯାଇଥିଲା ।

ପ୍ରଜାସୋସାଲିଷ୍ଟ ଦଳର ସମର୍ଥନ ପାଇବାର ଆଶା ଆମର ନଥିଲା; କାରଣ ସେମାନେ ଗଣତନ୍ତ୍ର ପରିଷଦ ସହିତ ବିଶେଷଭାବରେ ଜଡ଼ିତ ଥିଲେ । ଏପରିକି ଗଣତନ୍ତ୍ର ପରିଷଦକୁ ମନ୍ତ୍ରିମଣ୍ଡଳ ଗଠନ କରିବାରେ ସାହାଯ୍ୟ କରିବାପାଇଁ ସେମାନେ ଆଗ୍ରହୀ ଥିଲେ । କମ୍ୟୁନିଷ୍ଟ ଦଳର ଥିଲେ ନ'ଜଣ ସଭ୍ୟ । ସେମାନଙ୍କର ସମର୍ଥନ କିପରି ହାସଲ କରିବୁ ସେଥିପାଇଁ ବୀରେନ୍‌ବାବୁ ଜୋର୍‌ସୋର୍‌ରେ ଲାଗିଯାଇଥିଲେ । ପୁରୀ ଜିଲ୍ଲା କାକଟପୁର ନିର୍ବାଚନମଣ୍ଡଳୀରୁ କମ୍ୟୁନିଷ୍ଟ ଦଳପକ୍ଷରୁ ନିର୍ବାଚିତ ହୋଇଥିଲେ ଶ୍ରୀ ମୋହନ ଦାସ । ତାଙ୍କ ସହିତ ବୀରେନ୍‌ବାବୁଙ୍କର ଖୁବ୍ ଘନିଷ୍ଠତା ଥିଲା । ଶ୍ରୀ ମୋହନ ଦାସଙ୍କ ଜରିଆରେ ଅନ୍ୟମାନଙ୍କୁ ଡକାଯାଇ ମହତାବବାବୁଙ୍କ ସହିତ କଥାବାର୍ତ୍ତା ହେଲା । କମ୍ୟୁନିଷ୍ଟ ସଦସ୍ୟ ଶ୍ରୀ ମୋହନ ଦାସ ଓ ଶ୍ରୀ ହରିହର ଦାସଙ୍କ ସହିତ ଶ୍ରୀ ମହତାବ ଏବଂ ବୀରେନ୍‌ବାବୁ ଗୋପନ ମନ୍ତ୍ରଣା କରିଥିଲେ । ମୁଁ ମଧ୍ୟ ଆଲୋଚନା ସମୟରେ ଉପସ୍ଥିତ ଥିଲି । କମ୍ୟୁନିଷ୍ଟ ସଭ୍ୟମାନଙ୍କ ସମର୍ଥନ ପାଇବାପାଇଁ ସେମାନଙ୍କ ନିର୍ବାଚନରେ ଖର୍ଚ୍ଚହୋଇଥିବା ବାବଦ ପଚାଶ ହଜାର ଟଙ୍କା ଶ୍ରୀ ମୋହନ ଦାସ ଓ ଶ୍ରୀ ହରିହର ଦାସଙ୍କ ହାତରେ ଦିଆଯାଇଥିଲା । ସେମାନେ ସେ ଟଙ୍କା ନେଇଥିଲେ; କିନ୍ତୁ ତା' ପରଦିନ ଆଣି ଫେରାଇଦେଇଥିଲେ । ତା' ଦେଖି କମ୍ୟୁନିଷ୍ଟମାନଙ୍କ ପ୍ରତି ମୋର କେତେକ ପୂର୍ବଧାରଣା ମୁଁ ପରିବର୍ତ୍ତନ କରିଥିଲି । ଆଦର୍ଶକୁ ଜଳାଞ୍ଜଳି ଦେଇ ସେମାନେ କିଣାହୋଇପାରିବେ ନାହିଁ, ସେ ଧାରଣା ସେଦିନ ମୋର ଦୃଢ଼ହୋଇଥିଲା । ଟଙ୍କା ଫେରାଇଦେଲେ ସତ; ମାତ୍ର ସେମାନେ କହିଥିଲେ ଯେ ଗଣତନ୍ତ୍ର ପରିଷଦଭଳି ଗୋଟିଏ ରକ୍ଷଣଶୀଳଦଳକୁ ସେମାନେ ସାହାଯ୍ୟ କରିପାରିବେ ନାହିଁ । ମାତ୍ର କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ିଲେ ଯେତେଦୂର ସମ୍ଭବ ସେମାନେ ସାହାଯ୍ୟ କରିବେ । ତାହା ହିଁ ସେମାନେ ପରୋକ୍ଷରେ କରିଥିଲେ । ସେମାନେ ଅନେକ ସମୟରେ ବ୍ୟବସ୍ଥା ସଭାରେ ବଳ କଷାକଷିରେ ନିରପେକ୍ଷ ରହୁଥିଲେ । କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ିବା ପୂର୍ବରୁ ଗଣତନ୍ତ୍ର ପରିଷଦର ନେତାମାନେ ତାଙ୍କ ଦଳ ମନ୍ତ୍ରିମଣ୍ଡଳ ଗଢ଼ିବାପାଇଁ କମ୍ୟୁନିଷ୍ଟ ଦଳର ସମର୍ଥନ ଲୋଡ଼ିଥିଲେ । କମ୍ୟୁନିଷ୍ଟ ଦଳର ଜଣେ ସର୍ବଭାରତୀୟ ନେତା ଶ୍ରୀ ରାମମୂର୍ତ୍ତି ସେତେବେଳେ କଟକ ଆସିଥିଲେ । ତାଙ୍କ ସହିତ ଗଣତନ୍ତ୍ରପରିଷଦ ନେତାମାନେ ଦେଖାକରିଥିଲେ; କିନ୍ତୁ କମ୍ୟୁନିଷ୍ଟମାନେ ତାଙ୍କୁ ସାହାଯ୍ୟ କରିପାରିବେ ନାହିଁ ବୋଲି ସେ କହିଥିଲେ । କମ୍ୟୁନିଷ୍ଟଦଳ ପକ୍ଷରୁ ଏ ସଂପର୍କରେ ସେତେବେଳେ ଗୋଟିଏ ବିବୃତି ମଧ୍ୟ ପ୍ରକାଶ ପାଇଥିଲା । କମ୍ୟୁନିଷ୍ଟଦଳର ବିବୃତି ଡକ୍ଟର ମହତାବଙ୍କୁ ମନ୍ତ୍ରିମଣ୍ଡଳ ଗଠନ କରିବାରେ ସାହାଯ୍ୟ କରିଥିଲା । ସେମାନଙ୍କର ବିବୃତି ରାଜ୍ୟପାଳଙ୍କୁ ମଧ୍ୟ ମନ୍ତ୍ରିମଣ୍ଡଳ ଗଢ଼ିବାପାଇଁ କଂଗ୍ରେସଦଳପତିଙ୍କୁ ନିମନ୍ତ୍ରଣ କରିବାରେ ସାହାଯ୍ୟ କରିଥିଲା ।

ଝାଡ଼ଖଣ୍ଡ ଦଳର ଯେଉଁ ପାଞ୍ଚଜଣ ସଭ୍ୟ ନିର୍ବାଚିତ ହୋଇଥିଲେ, ସେମାନଙ୍କର ସମର୍ଥନ କିପରି ହାସଲ କରାଯିବ ସେ ବିଷୟରେ ଆମ୍ଭମାନଙ୍କର ଆଲୋଚନା ହୋଇଥିଲା । ଝାଡ଼ଖଣ୍ଡ ଦଳର ନେତା ଥିଲେ ସ୍ୱର୍ଗତ ଜୟପାଳ ସିଂ । ସେ ଥିଲେ ବିଜୁ ପଟ୍ଟନାୟକଙ୍କର ଜଣେ ବନ୍ଧୁ । ତେଣୁ ଜୟପାଳ ସିଂଙ୍କ ସହିତ କଥାବାର୍ତ୍ତା କରି ସେମାନଙ୍କର ସାହାଯ୍ୟ ଲୋଡ଼ିବାପାଇଁ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଉପରେ ଦାୟିତ୍ୱ ଦିଆଯାଇଥିଲା । ଝାଡ଼ଖଣ୍ଡର ସଭ୍ୟମାନେ ମଧ୍ୟ ବିଭିନ୍ନ ସ୍ଥାନରେ ରହୁଥିଲେ । ତିନିଜଣ ରହୁଥିଲେ ମୟୂରଭଞ୍ଜରେ ଓ ଅନ୍ୟ ଦୁଇଜଣ ରହୁଥିଲେ ସୁନ୍ଦରଗଡ଼ରେ । ସେମାନଙ୍କ ସହିତ ଆମର ଚିହ୍ନାପରିଚୟ ବି ନଥିଲା । ଶ୍ରୀ ସୁନ୍ଦରମୋହନ ହେମ୍ବ୍ରମ୍‌ଙ୍କୁ ମୁଁ ରେଭେନ୍‌ସା କଲେଜ୍‌ରେ ପଢ଼ିଲାଦିନୁ ଚିହ୍ନିଥିଲି । ସେ ମଧ୍ୟ ମୋତେ ଜାଣିଥିଲେ; କିନ୍ତୁ ବିଶେଷ ସଂପର୍କ ନଥିଲା । ବାରିପଦା ଟେଲିଫୋନ୍ କରି ବୁଝିଲୁ ଯେ ସେ ମଫସଲରେ ରହୁଛନ୍ତି । ତେଣୁ ତାଙ୍କ ସହିତ ସଂପର୍କ ସ୍ଥାପନ କରିବା ଟିକିଏ ସମୟସାପେକ୍ଷ ଥିଲା; କିନ୍ତୁ ମହତାବବାବୁ ଇଆଡ଼େ ବ୍ୟସ୍ତ ତୁରନ୍ତ କିପରି ସରକାର ଗଠନ କରାଯିବ । ସେ ପ୍ରତିଦିନ ରାଜ୍ୟପାଳଙ୍କୁ ଦେଖା କରୁଥିଲେ ଏବଂ ସବୁ ଦଳ ଓ କଂଗ୍ରେସ ଦଳର ସ୍ଥିତି ସମ୍ବନ୍ଧରେ

ତାଙ୍କୁ କହୁଥିଲେ । ଝାଡ଼ଖଣ୍ଡଦଳର ସଭ୍ୟମାନଙ୍କର ସମର୍ଥନ ପାଇବା ନିଶ୍ଚିତ ହେବା ପୂର୍ବରୁ ସେ ରାଜ୍ୟପାଳଙ୍କୁ କହିଦେଲେ ଯେ ଝାଡ଼ଖଣ୍ଡଦଳର ସଭ୍ୟମାନେ ତାଙ୍କୁ ସମର୍ଥନ କରିବେ ବୋଲି ଲେଖିଛନ୍ତି; କିନ୍ତୁ ସେତେବେଳକୁ ପ୍ରକୃତରେ ସେମାନଙ୍କଠାରୁ ସେପ୍ରକାର କୌଣସି ଲେଖା ମିଳିନଥିଲା । ଆସେମ୍ବ୍ଲିର ୧୪୦ ଜଣ ସଭ୍ୟଙ୍କ ଭିତରୁ ନିରପେକ୍ଷ ରହିବାପାଇଁ ଘୋଷଣା କରିଥିବା ନଅଜଣ କମ୍ୟୁନିଷ୍ଟ ସଭ୍ୟଙ୍କୁ ବାଦ୍‌ଦେଲେ ବାକି ରହିଥିଲେ ୧୩୧ ଜଣ ସଭ୍ୟ । ସେହି ୧୩୧ ଜଣ ସଭ୍ୟଙ୍କ ମଧ୍ୟରୁ ତାଙ୍କପ୍ରତି ୬୮ ଜଣ ସଭ୍ୟଙ୍କର ସମର୍ଥନ ଅଛି ବୋଲି ସେ ଲିଖିତ ଆକାରରେ ରାଜ୍ୟପାଳଙ୍କୁ ଦେଇଥିଲେ । ସେ ହିସାବ କରି ଦେଖାଇ ଦେଇଥିଲେ ଯେ କଂଗ୍ରେସ ଦଳର ୫୬ ଜଣ ସଭ୍ୟ, ଗଣତନ୍ତ୍ର ଦଳ ଛାଡ଼ି ଆସି କଂଗ୍ରେସରେ ମିଶିଥିବା ସଭ୍ୟସଂଖ୍ୟା ଥିଲା ୩, ସ୍ୱାଧୀନ ସଭ୍ୟ ୪, ଝାଡ଼ଖଣ୍ଡଦଳର ୫ ଜଣ, ଏହିପରି ମୋଟ ୬୮ ଜଣ ସଭ୍ୟଙ୍କର ସମର୍ଥନ ତାଙ୍କ ପଛରେ ଥିଲା । ଯେଉଁ ସଭ୍ୟମାନେ ସମର୍ଥନ ଜଣାଇ ମହତାବଙ୍କୁ ଚିଠି ଲେଖିଛନ୍ତି ସେସବୁ କାଗଜପତ୍ର ରାଜ୍ୟପାଳ ଡକ୍ଟର ମହତାବଙ୍କଠାରୁ ଚାହିଁଥିଲେ । ସେ ଆଶା କରି ନଥିଲେ ଯେ ରାଜ୍ୟପାଳ ଚିଠିଗୁଡ଼ିକ ଦେଖିବାକୁ ଚାହିଁବେ । ତେଣୁ ସେଦିନ ରାଜଭବନରୁ ଫେରି ଝାଡ଼ଖଣ୍ଡ ସଭ୍ୟମାନେ ତାଙ୍କୁ ସମର୍ଥନ କରୁଛନ୍ତି ବୋଲି ସେହିଦିନ ସେମାନଙ୍କର ଦସ୍ତଖତ ସମ୍ବଳିତ ଚିଠି କିପରି ଆସିବ ତା'ର ବ୍ୟବସ୍ଥା କରିବାପାଇଁ ଆମକୁ କହିଲେ । ଏତେ ଶୀଘ୍ର ଏ କାର୍ଯ୍ୟ ହେବା ଅସମ୍ଭବ, ତେଣୁ ଉପାୟ ଚିନ୍ତା କରିବାରେ ଲାଗିଲୁ । ଶେଷରେ କଂଗ୍ରେସଦଳର ନେତା ଶ୍ରୀ ହରେକୃଷ୍ଣ ମହତାବଙ୍କୁ ସମ୍ବୋଧନ କରି ସେ ସରକାର ଗଢ଼ିଲେ ସମର୍ଥନ କରିବାକୁ ସମ୍ମତି ଜଣାଇ ଝାଡ଼ଖଣ୍ଡଦଳ ସଭ୍ୟମାନଙ୍କର ଯେଉଁ ଚିଠିଟି ରାଜ୍ୟପାଳଙ୍କୁ ଦିଆଯାଇଥିଲା ସେଥିରେ ସେହି ପାଞ୍ଚଜଣ ନିର୍ବାଚିତ ସଭ୍ୟଙ୍କର ପ୍ରକୃତ ଦସ୍ତଖତ ନଥିଲା । ମହତାବବାବୁ ସେ ଚିଠିଟି ନେଇ ଅନ୍ୟାନ୍ୟ କାଗଜ ସହ ରାଜ୍ୟପାଳଙ୍କୁ ଦେଇଥିଲେ । ଏହାପରେ ରାଜ୍ୟପାଳ ସନ୍ତୁଷ୍ଟ ହୋଇଥିଲେ ଯେ ମହତାବଙ୍କ ନେତୃତ୍ୱରେ କଂଗ୍ରେସ ସରକାର ଗଠନ କରିପାରିବ । ତେଣୁ ମନ୍ତ୍ରିମଣ୍ଡଳ ଗଠନ କରିବାପାଇଁ ରାଜ୍ୟପାଳ ଚିଠି ଲେଖି ଆମନ୍ତ୍ରଣ କରିଥିଲେ । ଦସ୍ତଖତ ଜାଲ୍ କରାଯାଇ ସିନା କାମ ଚଳିଗଲା; କିନ୍ତୁ ପରବର୍ତ୍ତୀ ଅବସ୍ଥା କିପରି ସମ୍ଭାଳିବୁ ସେ ବିଷୟରେ ଚିନ୍ତାରେ ପଡ଼ିଲୁ । କାରଣ ଭୟହେଉଥାଏ ଯଦି ଝାଡ଼ଖଣ୍ଡ ସଭ୍ୟମାନେ ପ୍ରତିବାଦ କରିଦିଅନ୍ତି, ତା'ହେଲେ ବଡ଼ ଅଡୁଆ ହୋଇଯିବ । ବିଜୁବାବୁ ଦିଲ୍ଲୀ ଟେଲିଫୋନ୍ କରି ଜୟପାଳ ସିଂଙ୍କ ସହିତ କଥାବାର୍ତ୍ତା କରିଥିଲେ । ତା'ପରେ ଦୁଇଟି ଗାଡ଼ି ପଠାଇ ମୟୂରଭଞ୍ଜ ଓ ସୁନ୍ଦରଗଡ଼ର ଝାଡ଼ଖଣ୍ଡ ସଭ୍ୟଙ୍କୁ ରାଜଧାନୀକୁ ଅଣାଇଲୁ । ମହତାବବାବୁଙ୍କ ସହିତ ସେମାନଙ୍କୁ ନେଇ ସାକ୍ଷାତ୍ କରାଇଲୁ । କଥାବାର୍ତ୍ତା କରି ଜଣାଗଲା ସେମାନଙ୍କର ସମର୍ଥନ ହାସଲ କରିବାକୁ ହେଲେ ବହୁତ ଦାମ୍ ଦେବାକୁ ପଡ଼ିବ । ସେମାନଙ୍କୁ ସନ୍ତୁଷ୍ଟ କରାଗଲା । ତା'ଛଡ଼ା ଜୟପାଳ ସିଂଙ୍କ ସହିତ କଥାବାର୍ତ୍ତା କରି ତାଙ୍କୁ କିପରି ସନ୍ତୁଷ୍ଟ କରାଯିବ ତା'ର ଦାୟିତ୍ୱ ନେଲେ ବିଜୁବାବୁ । ମହତାବବାବୁଙ୍କ ମୁଖ୍ୟମନ୍ତ୍ରୀ ହେବାରେ ବିଜୁ ପଟ୍ଟନାୟକଙ୍କର ଅବଦାନ ତଥା ଅର୍ଥବଳରେ ସଭ୍ୟ ସଂଗ୍ରହର ପାରଦର୍ଶିତା ଥିଲା ବହୁତ ବେଶି; ଯାହାଦ୍ୱାରା ମହତାବବାବୁ ସହଜରେ ମୁଖ୍ୟମନ୍ତ୍ରୀ ହୋଇପାରିଥିଲେ ।

୧୯୫୭ ମସିହା ଏପ୍ରିଲ୍ ମାସ ପ୍ରଥମ ସପ୍ତାହରେ ଶ୍ରୀ ମହତାବ ତାଙ୍କର ନୂତନ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ସେ ମନ୍ତ୍ରିମଣ୍ଡଳରେ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ସହଯୋଗୀ ମନ୍ତ୍ରୀ ହିସାବରେ ମୁଁ, ସର୍ବଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ, ରାଧାନାଥ ରଥ, ଦୀନବନ୍ଧୁ ସାହୁ, ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ, ସତ୍ୟପ୍ରିୟ ମହାନ୍ତି, ପବିତ୍ରମୋହନ ପ୍ରଧାନ, ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ ଓ ଶ୍ରୀମତୀ ବସନ୍ତମଞ୍ଜରୀ ଦେବୀ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀରୂପେ ନିଯୁକ୍ତ ହୋଇଥିଲୁ । ସର୍ବଶ୍ରୀ ଶାନ୍ତନୁ କୁମାର ଦାସ, ବୀରବିକ୍ରମ ସିଂହ ବରିହା, କୁମୁଦ ଚନ୍ଦ୍ର ସିଂହଦେଓ, ଅନୁପ ସିଂହଦେଓ ଓ ହିମାଂଶୁ ଶେଖର ପାଢ଼ୀ ପ୍ରମୁଖ ଉପମନ୍ତ୍ରୀରୂପେ ନିଯୁକ୍ତ ହୋଇଥିଲେ । କଂଗ୍ରେସ ସଂଖ୍ୟାଗରିଷ୍ଠ ନଥାଇ

ହରେକୃଷ୍ଣ ମହତାବଙ୍କୁ ମନ୍ତ୍ରିମଣ୍ଡଳରେ ରହିବାର ସୁଯୋଗ ଦେଇଥିବାରୁ ରାଜ୍ୟପାଳଙ୍କ କାର୍ଯ୍ୟକୁ ବିରୋଧୀଦଳର ନେତାମାନେ ପତ୍ରପତ୍ରିକାରେ ସମାଲୋଚନା କରିଥିଲେ । ରାଜ୍ୟପାଳ ସେତେବେଳେ ମଧ ବିଭିନ୍ନ ଦଳମାନଙ୍କର ସ୍ଥିତି ବିଷୟରେ ଉଲ୍ଲେଖ କରି କେଉଁ ଭିତ୍ତିରେ କଂଗ୍ରେସକୁ ରାଜ୍ୟ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ସୁବିଧା ଦେଇଥିଲେ, ସେ ସମ୍ପର୍କରେ ଗୋଟିଏ ବିବୃତି ଦେଇଥିଲେ । ରାଜ୍ୟପାଳ ଭୀମସେନ ସାଚାର ପ୍ରକୃତରେ ଜଣେ ଉଚ୍ଚକୋଟୀର ଉଦାରମନା ସମାଜସେବୀ ଥିଲେ । ଆର୍ଯ୍ୟ ସମାଜର ସେ ଜଣେ ସଭ୍ୟ ଥିଲେ ଏବଂ ମୁଁ ରାଜଭବନରୁ ଶୁଣିଛି – ସେ ଯାହା ଦରମା ପାଉଥିଲେ ସେଥିରୁ ପ୍ରତିମାସ ପାଞ୍ଚ ଶହ ଟଙ୍କା ଆର୍ଯ୍ୟସମାଜକୁ ପଠାଇଦେଉଥିଲେ । ସେ ସାଧାରଣ ଲୋକଙ୍କ ସହିତ ସମ୍ପର୍କ ରଖିବାକୁ ଭଲପାଉଥିଲେ ଏବଂ ମନ୍ତ୍ରୀମାନଙ୍କ ଘରକୁ ଯାଇ ସେମାନଙ୍କ ସହିତ ମିଳାମିଶା କରୁଥିଲେ । ଅନ୍ୟ କୌଣସି ରାଜ୍ୟପାଳ ଏଭଳି କରିବା ମୁଁ ଜାଣେନାହିଁ ।

ମନ୍ତ୍ରିମଣ୍ଡଳ ଗଠନ ପରେ ମନ୍ତ୍ରୀମାନେ ସରକାରୀ କାର୍ଯ୍ୟ ଆରମ୍ଭକଲେ । ସରକାରୀ କାର୍ଯ୍ୟ ସୁରୁଖୁରୁରେ ଚାଲିଲା । ୧୯୫୭ ମସିହା ମେ' ମାସ ସତେଇଶ ତାରିଖ ଦିନ ବିଧାନସଭାର ଅଧିବେଶନ ଡକାଯାଇ ବାଚସ୍ପତି ଓ ଉପବାଚସ୍ପତି ନିର୍ବାଚନ ହୋଇଥିଲା । ପଣ୍ଡିତ ନୀଳକଣ୍ଠ ଦାସ ଓ ଶ୍ରୀ ଯଦୁମଣି ମଙ୍ଗରାଜ ଯଥାକ୍ରମେ ବାଚସ୍ପତି ଓ ଉପବାଚସ୍ପତିରୂପେ ନିର୍ବାଚିତ ହୋଇଥିଲେ । ତା'ପରଦିନ ବିଧାନସଭାରେ ରାଜ୍ୟପାଳ ଭାଷଣଦେଲେ । ବିଧାନସଭାର ଅଧିବେଶନ ଆରମ୍ଭହୋଇଗଲା । ବର୍ତ୍ତମାନ ସମସ୍ୟା ହେଲା ମନ୍ତ୍ରିମଣ୍ଡଳ କିପରି ଭାବରେ ବିଧାନସଭାର ସମ୍ମୁଖୀନ ହେବ । ଅଧିବେଶନ ସମୟରେ ସବୁଦିନ ଆମକୁ ସତର୍କ ହୋଇ ରହିବାକୁ ପଡୁଥିଲା । ଏଭଳି ପରିସ୍ଥିତି କେବେ କଂଗ୍ରେସକୁ ସମ୍ମୁଖୀନ ହେବାକୁ ପଡ଼ିନଥିଲା । ବିଧାନସଭା ଭିତରେ ଏବଂ ବାହାରେ ପ୍ରାୟ ପ୍ରତିଦିନ ଟଣା କଷାକଷି କାର୍ଯ୍ୟ ଚାଲିଥାଏ । ଯେଉଁ ସଭ୍ୟମାନେ କଂଗ୍ରେସରେ ଯୋଗଦେଇଥାଆନ୍ତି ସେମାନଙ୍କୁ ବାହାରେ ଜୋର୍ ଜବରଦସ୍ତ କରି କଂଗ୍ରେସରୁ ଛଡ଼ାଇନେବାପାଇଁ ମଧ ଉଦ୍ୟମ ହେଉଥାଏ । କଂଗ୍ରେସ ପକ୍ଷରୁ ମଧ ଉଦ୍ୟମ ହେଉଥାଏ ବିରୋଧୀ ଦଳରୁ ଆଉ କିଛି ସଭ୍ୟଙ୍କୁ ପ୍ରବର୍ତ୍ତାଇ କଂଗ୍ରେସରେ ମିଶାଇବା ପାଇଁ । ପୂର୍ବରୁ ଛ'ଜଣ ସ୍ୱାଧୀନ ସଭ୍ୟଙ୍କ ମଧରୁ ଚାରିଜଣ କଂଗ୍ରେସରେ ଯୋଗଦେଇଥିଲେ, ତା'ପରେ ଆଉ ଜଣେ ମଧ କଂଗ୍ରେସରେ ମିଶିଥିଲେ । ବଜେଟ୍ ଅଧିବେଶନରେ ପ୍ରତ୍ୟେକ ଖର୍ଚ୍ଚ ପ୍ରସ୍ତାବ ଉପରେ ବ୍ୟବସ୍ଥାସଭାରେ ଭୋଟ୍ ଦାବି ହେଉଥାଏ । ଟଣା କଷାକଷିରେ ଭୋଟର ପାର୍ଥକ୍ୟ ମାତ୍ର ତିନି ଚାରି ରହେ । ସେଥିପାଇଁ ଗଣତନ୍ତ୍ର ଦଳର ଆଉ ଦୁଇ ତିନି ଜଣ ସଭ୍ୟ କିପରି କଂଗ୍ରେସ ଦଳକୁ ଆସିବେ ସେଥିପାଇଁ ଆମ୍ଭମାନଙ୍କ ପକ୍ଷରୁ ଉଦ୍ୟମ ଆରମ୍ଭ ହୋଇଥିଲା । ଟଙ୍କା ପଇସା ଖର୍ଚ୍ଚ କରି ଟଣା କଷାକଷି ସମୟରେ ବିରୋଧୀ ଦଳର କେତେକ ସଭ୍ୟଙ୍କୁ ଅନୁପସ୍ଥିତ କରାଇଦେବାପାଇଁ ଉଦ୍ୟମ କରାଯାଉଥିଲା ଏବଂ ସେଥିରେ ଅନେକ ସମୟରେ ଆମ ଉଦ୍ୟମ ମଧ ସଫଳ ହେଉଥିଲା । ଏଭଳି ଅବସ୍ଥାରେ ବିଧାନସଭାରେ ସବୁବେଳେ ବିରୋଧୀ ଦଳର ସମ୍ମୁଖୀନ ହେବାକୁ କଂଗ୍ରେସଦଳ ପକ୍ଷରେ ବଡ଼ କଷ୍ଟକର ହୋଇଥିଲା । ଯେଉଁମାନେ କଂଗ୍ରେସରେ ନୂଆକରି ମିଶିଥାଆନ୍ତି ସେମାନଙ୍କୁ ପ୍ରଲୋଭିତ କରି କଂଗ୍ରେସରୁ ଓହରାଇ ନେବାପାଇଁ ଉଦ୍ୟମ ବିରୋଧୀ ଦଳ ପକ୍ଷରୁ ଚାଲିଥାଏ । ଦଳର ଦୁର୍ବଳତା ବୁଝିପାରି ଯେଉଁମାନେ ନୂଆକରି କଂଗ୍ରେସରେ ମିଶିଥାଆନ୍ତି ଓ କଂଗ୍ରେସକୁ ସମର୍ଥନ କରୁଥାଆନ୍ତି ସେମାନେ ସେମାନଙ୍କର ଭାଉ ବଢ଼ାଇବାରେ ମଧ ଲାଗିଥାଆନ୍ତି । ସେଥିପାଇଁ ସେମାନଙ୍କୁ ସନ୍ତୁଷ୍ଟ କରି ରଖିବା ବେଳେ ବେଳେ ଅସମ୍ଭବ ହୋଇପଡ଼େ । ସେମାନଙ୍କ ଭିତରୁ କେତେକଙ୍କର ପ୍ରତିଥର ଘରକୁ ଗଲାବେଳେ ସେମାନଙ୍କ ସ୍ତ୍ରୀଙ୍କ ପାଇଁ ସୁନାଗହଣା ଦରକାର ପଡ଼େ । ତା' ଛଡ଼ା ଜୟପାଳ ସିଂଙ୍କୁ ସନ୍ତୁଷ୍ଟ କରିବା ଆଉ ଗୋଟିଏ ସମସ୍ୟା । ସେ ମଝିରେ ମଝିରେ ଭୁବନେଶ୍ୱର ଚାଲିଆସନ୍ତି । ସେ ଆସିଲାକ୍ଷଣି ମହତାବବାବୁ ଅତି ବ୍ୟସ୍ତ ହୋଇ 'ବିଜୟ'ଙ୍କୁ ଖୋଜନ୍ତି । ବିଜୁବାବୁ ଯେଉଁଠି ଥାଆନ୍ତୁ ପଛେ ତାଙ୍କୁ ଭୁବନେଶ୍ୱର ଅଣାଯାଏ ଏବଂ ସେ ଜୟପାଳ ସିଂଙ୍କୁ ନେଇ

ପୁରୀ ରେଲୱେ ହୋଟେଲ୍‌ରେ ରଖି ଅତିଥି ସତ୍କାର କରି ଅନ୍ୟାନ୍ୟ ଦାବି ପୂରଣ କରନ୍ତି । ଏହା ସେତେବେଳେ ଜଣାଶୁଣା କଥା ଥିଲା ଯେ ଶ୍ରୀ ଜୟପାଳ ସିଂ ଅନ୍ତରେ ସନ୍ତୁଷ୍ଟ ହୁଅନ୍ତିନାହିଁ ।

## ରାଜନୈତିକ ଘାଟିମୂଲ୍ୟ ଓ ଘାଟ ମୂଲ୍ୟ

କେବେଳ ଯେ ବିଧାନସଭା ଅଧିବେଶନ ବସିଥିଲାବେଳେ ଦୁର୍ବଳ ସଭ୍ୟମାନଙ୍କୁ ଦଳ ପରିବର୍ତ୍ତନ କରିବାପାଇଁ ପ୍ରବର୍ତ୍ତାଯାଉଥାଏ ତା' ନୁହେଁ; ଅଧିବେଶନ ପରେ ମଧ ସେହି କାର୍ଯ୍ୟ ଅବ୍ୟାହତ ରହିଥାଏ । ମଝିରେ ମଝିରେ କିଏ କଂଗ୍ରେସ ଦଳରୁ ଯାଇ ଗଣତନ୍ତ୍ର ଦଳରେ ମିଶିଲାଣି ବା ଗଣତନ୍ତ୍ର ଦଳରୁ ଯାଇ କଂଗ୍ରେସରେ ମିଶିଲାଣି, ଏ ପ୍ରକାର ସମ୍ବାଦ ଖବରକାଗଜରେ ବାହାରୁଥାଏ । କଂଗ୍ରେସଦଳର ସଂଖ୍ୟା କମିଗଲାଣି କହି ସମୟସମୟରେ ବିରୋଧୀ ଦଳର ନେତା କଂଗ୍ରେସ ମନ୍ତ୍ରିମଣ୍ଡଳକୁ ବରଖାସ୍ତ କରିବା ପାଇଁ ଦାବି କରୁଥିଲେ । ଥରେ ମୟୂରଭଞ୍ଜର ତିନିଜଣ ଝାଡ଼ଖଣ୍ଡ ସଭ୍ୟ କଂଗ୍ରେସ ସରକାରଠାରୁ ସେମାନଙ୍କର ସମର୍ଥନ ପ୍ରତ୍ୟାହାର କରିନେଲେଣି ବୋଲି ସେମାନଙ୍କ ନାମରେ ଟେଲିଗ୍ରାମ୍ ଆସି ରାଜ୍ୟପାଳଙ୍କ ପାଖରେ ପହଞ୍ଚିଥିଲା । ବିରୋଧୀ ଦଳର ନେତା ରାଜ୍ୟପାଳଙ୍କୁ ଦେଖାକରି ସେମାନେ ପ୍ରକୃତରେ ସେମାନଙ୍କର ସମର୍ଥନ କଂଗ୍ରେସଠାରୁ ପ୍ରତ୍ୟାହାର କରିଛନ୍ତି ବୋଲି କହିଥିଲେ । ସେଥିପାଇଁ ତା' ପରଦିନ ସକାଳ ନଅଟାବେଳେ ସେ ତିନିଜଣ ସଭ୍ୟଙ୍କର ଚିଠି ଦେଖାଇବାପାଇଁ ରାଜ୍ୟପାଳ ବିରୋଧୀ ଦଳର ନେତାଙ୍କୁ କହିଲେ । ମୁଖ୍ୟମନ୍ତ୍ରୀ ଖବର ନେଇ ଜାଣିଲେ ଯେ କଳାହାଣ୍ଡି ମହାରାଜା ଶ୍ରୀ ପ୍ରତାପକେଶରୀ ଦେଓ ରାଇରଙ୍ଗପୁରରେ ରହି ସେମାନଙ୍କୁ ହାତ କରିନେବାକୁ ଉଦ୍ୟମ କରୁଛନ୍ତି । ସେମାନେ ପ୍ରକୃତରେ ସେମାନଙ୍କର ସମର୍ଥନ ପ୍ରତ୍ୟାହାର କରିନାହାନ୍ତି ବୋଲି ମୁଖ୍ୟମନ୍ତ୍ରୀ ରାଜ୍ୟପାଳଙ୍କୁ କହିଥିଲେ । ମୁଁ ସେତେବେଳେ ରାଜଧାନୀରେ ନଥିଲି, କାରଣ ବାଲେଶ୍ୱର ଜିଲ୍ଲା ବସ୍ତା ନିର୍ବାଚନମଣ୍ଡଳୀରେ ଗୋଟିଏ ଉପନିର୍ବାଚନର ସେଦିନ ଭୋଟ ଗ୍ରହଣ ହେଉଥିଲା । ତେଣୁ ବିଜୁବାବୁ ଓ ବୀରେନ୍‌ବାବୁଙ୍କୁ ରାଇରଙ୍ଗପୁର ପଠାଗଲା । ବସ୍ତା ନିର୍ବାଚନମଣ୍ଡଳୀରେ ଭୋଟ ଗ୍ରହଣ ଚାଲିଥାଏ । ମୁଁ ଦିନ ଗୋଟାକବେଳେ ଖାଇସାରି ରାଜଧାନୀକୁ ଫେରିଲି । ଗାଡ଼ି ଭିତରେ ଟିକିଏ ଶୋଇପଡ଼ିଥାଏ । ଭଦ୍ରକଠାରେ ଡ୍ରାଇଭର ଗାଡ଼ି ଅଟକାଇ କହିଲା, ବାଟରେ ବିଜୁବାବୁ ଓ ବୀରେନ୍ ବାବୁ ଛିଡ଼ାହୋଇଛନ୍ତି । ସେମାନେ ଯାଉଥିବା ଗାଡ଼ିଟି ବାଟରେ ଖରାପହୋଇଯାଇଥାଏ । ରାସ୍ତା ପାଖରେ ଗୋଟିଏ ମୋଟର ଗ୍ୟାରେଜ୍‌ରେ ମରାମତି କରାଯାଉଥାଏ । ମୋତେ ଦେଖି ସେମାନେ ମୋତେ ସାଙ୍ଗରେ ନେଇ ମୋ ଗାଡ଼ିରେ ରାଇରଙ୍ଗପୁର ବାହାରିଲେ । ରାଇରଙ୍ଗପୁରରେ ଆମେ ସନ୍ଧ୍ୟାବେଳକୁ ପହଞ୍ଚିଲୁ । ସେଠି ସଭ୍ୟମାନଙ୍କୁ ଭେଟିଲୁ । ବହୁକଷ୍ଟରେ ସେମାନଙ୍କ ପାଖରୁ ବୁଝିଲୁ ଯେ କଳାହାଣ୍ଡି ମହାରାଜା ତାଙ୍କ ପାଖରୁ ଗୋଟିଏ ଲେଖାରେ ଦସ୍ତଖତ କରାଇ ନେଇଯାଇଛନ୍ତି । ସେତେବେଳେ କଳାହାଣ୍ଡି ମହାରାଜା ସେଇ ରାଇରଙ୍ଗପୁରରେ ଥିଲେ ବୋଲି ଜାଣିଲୁ । ତା' ପରେ ସେହି ସଭ୍ୟମାନଙ୍କ ସହିତ ଅନେକ ଆଲୋଚନା ହେଲା । ଆମର ରାଇରଙ୍ଗପୁର ବନ୍ଧୁମାନେ ମଧ ସେଠାରେ ଏକତ୍ରିତ ହୋଇଥିଲେ । ତାଙ୍କୁ ବୁଝାସୁଝା କରିବା ପରେ, କଳାହାଣ୍ଡି ମହାରାଜା ସେମାନଙ୍କଠାରୁ ନାନାପ୍ରକାର ପ୍ରଲୋଭନ ଦେଖାଇ ଓ ଜୋର୍‌କରି ଖଣ୍ଡିଏ ଚିଠି ରାଜ୍ୟପାଳଙ୍କ ପାଖକୁ ଲେଖାଇନେଇଥିଲେ ବୋଲି ସେମାନେ ଆଉ ଖଣ୍ଡେ ଚିଠି ଲେଖିଲେ । ସେ ଚିଠିଟି ଧରି ସେଇ ରାତିରେ ଆମେ ପୁଣି ଭୁବନେଶ୍ୱର ବାହାରିଲୁ । ବାଟରେ କଳାହାଣ୍ଡି ମହାରାଜାଙ୍କ ଗାଡ଼ି ଭୁବନେଶ୍ୱର ଆଡ଼କୁ ଆସୁଥିବାର ଦେଖିଲୁ । ଜୋର୍‌ରେ ଗାଡ଼ି ଚଳାଇ ସେ ଗାଡ଼ିକୁ ଟପି ଆସିଲୁ । ଡ୍ରାଇଭରକୁ ବରାଦ ହେଲା ଖୁବ୍ ଜୋର୍‌ରେ ଗାଡ଼ି ଚଳାଇବାପାଇଁ । ପ୍ରାୟ ଭୋର୍ ଚାରିଟାବେଳେ ଆସି ଖଣ୍ଡଗିରି ଘାଟ ପାଖରେ ଆମ ଗାଡ଼ି ପହଞ୍ଚିଲା । ସେତେବେଳେ ପୋଲ ନଥାଏ, ଡଙ୍ଗାରେ ଗାଡ଼ି ପାରହେଉଥିଲା । ଘାଟିବାଲା ବୀରେନ୍‌ବାବୁଙ୍କୁ ପୂର୍ବରୁ ଭଲଭାବେ ଚିହ୍ନିଥିଲା ।

ସେ ଆମ ଗାଡ଼ି ପାରକରାଇଦେଲା । ବୀରେନ୍‌ବାବୁ ତାକୁ ଶହେଟଙ୍କା ବକ୍‌ସିସ୍ ଦେଇ ସକାଳ ନଅଟା ପର୍ଯ୍ୟନ୍ତ ଆଉ କାହା ଗାଡ଼ି ପାରିନକରିବାକୁ କହିଲେ । ବୀରେନ୍‌ବାବୁ କହୁଛନ୍ତି, ପୁଣି ଶହେଟଙ୍କା ମିଳିଲାଣି; ତେଣୁ ସେ ନିଶ୍ଚୟ ସେଇଆ କରିବ ବୋଲି କହି ତା ଡଙ୍ଗାରେ ପାଣି ପୂରାଇଦେଲା । ପରେ ଶୁଣିଲି କଳାହାଣ୍ଡି ମହାରାଜା ସେଠାରେ ପହଞ୍ଚି ପାରିକରିଦେବାକୁ ନାଉରିଆକୁ ଅନେକ ଅନୁରୋଧ କରିଥିଲେ । କିନ୍ତୁ ସେ କହିଲା ଯେ ତା ଡଙ୍ଗାରେ ପାଣି ପଶିଯାଇଛି – ଡଙ୍ଗା ଉଠାଇବାକୁ ବହୁତ ସମୟ ଲାଗିବ । ଆମେ ଆଗେ ଆସି ଭୁବନେଶ୍ୱରରେ ପହଞ୍ଚି ମହତାବବାବୁଙ୍କୁ ଚିଠି ଖଣ୍ଡକ ଦେଲୁ । ସେ ନଅଟା ପୂର୍ବରୁ ଯାଇ ରାଜ୍ୟପାଳଙ୍କୁ ସେ ଚିଠି ଖଣ୍ଡିକ ଦେଇଦେଲେ । ସେଦିନ ଏଗାରଟା ପର୍ଯ୍ୟନ୍ତ କଳାହାଣ୍ଡି ମହାରାଜା ଭୁବନେଶ୍ୱରରେ ପହଞ୍ଚିପାରିନଥିଲେ । ସଭ୍ୟସଂଖ୍ୟା କମ୍ ଥିବାରୁ ଆସେମ୍ବ୍ଲିରେ ଗୋଟିଏ ଗୋଟିଏ ଘାଟି ପାରିହେବାକୁ ଯେଉଁ ବିପୁଳ ବ୍ୟୟ କରିବାକୁ ପଡୁଥିଲା ତା ତୁଳନାରେ ନଦୀଘାଟର ବିଚରା ନାଉରୀକୁ ଶହେଟି ଟଙ୍କା ଦେବା ଅତି ସାମାନ୍ୟ ନିଶ୍ଚୟ ।

ସେହିଦିନ ବସ୍ତା ଉପନିର୍ବାଚନର ଫଳାଫଳ ଘୋଷଣା ପ୍ରକାଶପାଇଥିଲା ଏବଂ ସେଠାରେ କଂଗ୍ରେସ ପ୍ରାର୍ଥୀ ଶ୍ରୀ ଅକ୍ଷୟ ନାରାୟଣ ପ୍ରହରାଜ ଜୟଯୁକ୍ତ ହେବାରୁ ନିରୁତ୍ସାହପୂର୍ଣ୍ଣ ବାୟୁମଣ୍ଡଳ ମଧ୍ୟରେ କଂଗ୍ରେସ ମହଲରେ ଟିକିଏ ଉତ୍ସାହ ଦେଖିବାକୁ ମିଳିଥିଲା । ୧୯୫୭ ମସିହାରେ ଯେଉଁ ସାଧାରଣ ନିର୍ବାଚନ ହୋଇଥିଲା ସେଥିରେ ସୋସାଲିଷ୍ଟ ପ୍ରାର୍ଥୀ ଶ୍ରୀ ମହେଶ୍ୱର ବାଗ୍‌ଙ୍କୁ ହରାଇ ଶ୍ରୀ ପହରାଜ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ପରେ ସୋସାଲିଷ୍ଟ ପ୍ରାର୍ଥୀ ଶ୍ରୀ ବାଗ୍‌ଙ୍କ ପକ୍ଷରୁ ଅକ୍ଷୟବାବୁଙ୍କ ନିର୍ବାଚନକୁ ଅସିଦ୍ଧ ଘୋଷଣା କରିବା ପାଇଁ ଗୋଟିଏ ମକଦ୍ଦମା ହୋଇଥିଲା । ନିର୍ବାଚନଟି ଅସିଦ୍ଧ ହେବାରୁ ଏହି ନିର୍ବାଚନର ଆବଶ୍ୟକତା ପଡ଼ିଥିଲା । ମକଦ୍ଦମାରେ ଅକ୍ଷୟବାବୁ ହାରିଲେ କ'ଣ ହେବ ମହେଶ୍ୱର ବାଗ୍‌ଙ୍କ ବିରୁଦ୍ଧରେ ଲଢ଼ି ସେ ପୁଣି ନିର୍ବାଚନରେ ଜିଣିଥିଲେ । ସୋସାଲିଷ୍ଟ ଦଳର ପ୍ରାର୍ଥୀ ଶ୍ରୀ ବାଗ୍ ଥିଲେ ଜଣେ ଗ୍ରାଜୁଏଟ୍; କିନ୍ତୁ ଶ୍ରୀ ପ୍ରହରାଜ ସ୍କୁଲ ଜୀବନରୁ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇଥିବାରୁ ତାଙ୍କର ଅନ୍ୟାନ୍ୟ ସୁବିଧା ଥିବା ସତ୍ତ୍ୱେ ବିଶ୍ୱବିଦ୍ୟାଳୟରେ ଉଚ୍ଚ ଶିକ୍ଷା ଲାଭ କରିବାର ସୁଯୋଗରୁ ବଞ୍ଚିତ ହୋଇଥିଲେ । ଏ ସମ୍ବନ୍ଧରେ ଗୋଟିଏ ମଜାକଥା ମୋର ମନେପଡ଼େ । ଉତ୍ତର ବାଲେଶ୍ୱର ଅଞ୍ଚଳରେ ବିଶ୍ୱବିଦ୍ୟାଳୟ ଡିଗ୍ରୀ ପ୍ରତି ସେତେବେଳେ ଖୁବ୍ ଖାତିର ଥାଏ । ତେଣୁ ସୋସାଲିଷ୍ଟ କର୍ମୀମାନେ ମହେଶ୍ୱରବାବୁଙ୍କର ବି.ଏ. ପାସ୍ ଉପାଧି କଥାଟା ଉପରେ ଜୋର୍‌ଦେଇ ସେହି କଥାଟାକୁ ଲୋକଙ୍କ ଆଗରେ ବିଶେଷ ଭାବରେ ପ୍ରଚାର କରୁଥାଆନ୍ତି । କାନ୍ଥବାଡ଼ରେ ସର୍ବତ୍ର ଏହିକଥା ଲେଖାଥାଏ ଏବଂ ଅହର୍ନିଶ ଧ୍ୱନି ଦିଆଯାଉଥାଏ, ''ଆମର ପ୍ରାର୍ଥୀ କିଏ ? ମହେଶ୍ୱରବାବୁ ବି.ଏ. ।'' ଅକ୍ଷୟବାବୁଙ୍କ ବିଜୟ ପରେ କଂଗ୍ରେସ ପକ୍ଷରୁ ବସ୍ତା ଅଞ୍ଚଳରେ ବହୁ ବିଜୟ ଶୋଭାଯାତ୍ରା ବାହାରିଥାଏ ଏବଂ ସେଥିରେ ପ୍ରଧାନ ଧ୍ୱନି ଥାଏ ''କିଆବୁଦା ମୂଳେ କିଏରେ ? ମହେଶ୍ୱର ବାଗ୍ ବି.ଏ.ରେ ।'' ଏ ପ୍ରକାର ଧ୍ୱନି ସେତେବେଳେ ଖୁବ୍ କୌତୂହଳ ସୃଷ୍ଟିକରିଥିଲା । ଆଜିପର୍ଯ୍ୟନ୍ତ ଲୋକେ ଏ କଥାଟିକୁ ମନେରଖିଛନ୍ତି ଏବଂ ମହେଶ୍ୱରବାବୁଙ୍କ ସାଙ୍ଗମାନେ ଏବେ ମଧ୍ୟ ତାଙ୍କୁ ଏହି କଥା କହି ଥଟ୍ଟା ପରିହାସ କରନ୍ତି । ଏହି ନିର୍ବାଚନ ପ୍ରସଙ୍ଗରେ ଆଉ ଗୋଟିଏ କଥା ମଧ୍ୟ ମୋର ମନେପଡ଼େ । ସୋସାଲିଷ୍ଟମାନଙ୍କ ପକ୍ଷରୁ ମୁଖ୍ୟ ପ୍ରଚାରକ ଥାଆନ୍ତି ଶ୍ରୀ ବିଶ୍ୱନାଥ ପଣ୍ଡିତ । ତାଙ୍କର ସ୍ୱଭାବ ଟିକିଏ ଚିଡ଼ିଚିଡ଼ିଆ । ସଭାରେ ତାଙ୍କୁ ପ୍ରଶ୍ନକଲେ ସେ ହଠାତ୍ କୋପାନ୍ୱିତ ହୋଇଯାଆନ୍ତି । ତାଙ୍କର ଏପ୍ରକାର ସ୍ୱଭାବର ସୁବିଧା ଆମ୍ଭେମାନେ ନେଇଥିଲୁ । ପ୍ରତ୍ୟେକ ସଭାରେ ତାଙ୍କୁ ଚିଡ଼ାଇବାପାଇଁ ଆମ ପକ୍ଷରୁ ବ୍ୟବସ୍ଥା ହୋଇଥାଏ ଏବଂ ତାଙ୍କର କ୍ରୋଧ ଓ ଅସହିଷ୍ଣୁତା ହେତୁ ତାଙ୍କ ସଭାରେ ସେ ନିଜେ ଅନେକ ସମୟରେ ବିଶୃଙ୍ଖଳାର କାରଣ ହୋଇଥାଆନ୍ତି । ବିଶିଷ୍ଟ ସମାଜବାଦୀ ନେତା ବାଲେଶ୍ୱରର ଶ୍ରୀ ରବୀନ୍ଦ୍ର ମୋହନ ଦାସ ମୁଖ୍ୟତଃ ସୋସାଲିଷ୍ଟ ଦଳ ପକ୍ଷରୁ ଏହି ନିର୍ବାଚନ ଦାୟିତ୍ୱରେ ଥିଲେ । ସେ ଜଣେ ଅତି ସଚ୍ଚୋଟ, ସମ୍ମାନିତ ରାଜନୈତିକ କର୍ମୀ ବୋଲି ସମଗ୍ର ଜିଲ୍ଲାରେ

ପ୍ରତିଷ୍ଠା ଅର୍ଜନ କରିଥା'ନ୍ତି । ତେଣୁ ତାଙ୍କର ଉପସ୍ଥିତି ଓ ପ୍ରଚାର ହେତୁ ଆମମାନଙ୍କ ମନରେ ବେଶ୍ ଉଦ୍‌ବେଗ ଥାଏ । ବାଲେଶ୍ୱର ଜିଲ୍ଲାରେ କଂଗ୍ରେସର ମୂଳଦୁଆ ଯେଉଁ କେତେଜଣ ବ୍ୟକ୍ତି ଦେଇଥିଲେ ସେମାନଙ୍କ ଭିତରେ ରବିବାବୁ ଥିଲେ ଅନ୍ୟତମ । ସେ କଂଗ୍ରେସ ଛାଡ଼ି ସୋସାଲିଷ୍ଟ ଦଳରେ ଯୋଗଦେଇଥିଲେ । ରବିବାବୁ ଓ ତାଙ୍କର ସହଧର୍ମିଣୀ ଶ୍ରୀମତୀ ଗୋଦାବରୀ ଦେବୀ ସମାଜସେବା ଓ ରଚନାତ୍ମକ କାର୍ଯ୍ୟରେ ଓଡ଼ିଶାରେ ଖ୍ୟାତି ଅର୍ଜନ କରିଥିଲେ । ବାଲେଶ୍ୱର ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ଓଡ଼ିଶା ବିଧାନସଭାର ସେ ଜଣେ ସମ୍ମାନିତ ସଭ୍ୟ ଓ ବିରୋଧୀଦଳର ନେତା ହୋଇପାରିଥିଲେ ।

## 'ସେଇ ବଳେ ଚୋର' : ଧେବର ଭାଇ

ସରକାରଙ୍କ ଉପରେ ବିପଦ ପରେ ବିପଦ ମାଡ଼ିଆସୁଥାଏ ଏବଂ ମନ୍ତ୍ରିମଣ୍ଡଳକୁ ରକ୍ଷାକରିବା ବ୍ୟୟସାପେକ୍ଷ ହୋଇଥାଏ । ସେତେବେଳେ ସଭ୍ୟମାନଙ୍କ କିଣାବିକା କଥାଟା ବିଶେଷଭାବରେ ପ୍ରଚାରିତ ହୋଇଯାଇଥାଏ ଏବଂ ତାହାଦ୍ୱାରା କ୍ରମେ କଂଗ୍ରେସର ମର୍ଯ୍ୟାଦା ହାନୀ ହେଉଥାଏ । ଶ୍ରୀ ବିଜୁ ପଟ୍ଟନାୟକ ଟଙ୍କା ଖର୍ଚ୍ଚ କରୁଥାଆନ୍ତି, ତା' ଛଡ଼ା ବହୁ ଖଣିମାଲିକ ଓ ବ୍ୟବସାୟୀ ଖର୍ଚ୍ଚ କରିବାପାଇଁ ପ୍ରସ୍ତୁତ ହୋଇ ଭୁବନେଶ୍ୱରରେ ଥାଆନ୍ତି । ଦୁର୍ନୀତିମୂଳକ କାର୍ଯ୍ୟଦ୍ୱାରା ସରକାରଙ୍କୁ ବଞ୍ଚାଇ ରଖାଯାଇଛି ବୋଲି ଅଭିଯୋଗ ହେଉଥାଏ । କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷଙ୍କଠାରେ ମଧ୍ୟ ଏ ପ୍ରକାର ଅଭିଯୋଗ ଯାଇ ପହଞ୍ଚିଥିଲା । ଏହି ସବୁ କାର୍ଯ୍ୟଦ୍ୱାରା କଂଗ୍ରେସ କଳଙ୍କିତ ହୋଇଯାଉଛି ବୋଲି ଉଚ୍ଚ କର୍ତ୍ତୃପକ୍ଷଙ୍କ ଧାରଣା ହୋଇଥିଲା । ଶ୍ରୀ ୟୁ.ଏନ୍. ଧେବର ସେତେବେଳେ ଥିଲେ ନିଖିଳ ଭାରତ କଂଗ୍ରେସ କମିଟିର ସଭାପତି । ସେ ନିଜେ ଓଡ଼ିଶା ଆସିଥିଲେ ଏସବୁ ବିଷୟ ଅନୁସନ୍ଧାନ କରିବାପାଇଁ । କେତେକ କଂଗ୍ରେସ ଲୋକ ମଧ୍ୟ ତାଙ୍କୁ ଦେଖାକରି ବହୁତ ଟଙ୍କା ଖର୍ଚ୍ଚକରି ସଭ୍ୟମାନଙ୍କୁ କିଣାଯାଇ କିପରି ସରକାରଙ୍କୁ ବଞ୍ଚାଇ ରଖାଯାଇଛି ସେ କଥା କହିଥିଲେ । ମୁଖ୍ୟମନ୍ତ୍ରୀ ମହତାବବାବୁଙ୍କୁ କଂଗ୍ରେସ ସଭାପତି ଶ୍ରୀ ଧେବର ଯେତେବେଳେ ଅଭିଯୋଗ କଥାମାନ ପଚାରନ୍ତି ସେତେବେଳେ ସେ କହିଥିଲେ ଯେ ଏ ବିଷୟରେ ସେ କିଛି ଜାଣନ୍ତିନାହିଁ । ଏ ପ୍ରକାର ଦୁର୍ନୀତିମୂଳକ କାର୍ଯ୍ୟ ଓ ଟଙ୍କା ଦେଇ ସଭ୍ୟ କିଣିବା କାର୍ଯ୍ୟ ବୀରେନ୍ଦ୍ରବାବୁ ଓ ବିଜୁବାବୁ ପ୍ରଭୃତିଙ୍କଦ୍ୱାରା ସେ କରାଉଛନ୍ତି ବୋଲି କେତେକ ବ୍ୟକ୍ତି ତାଙ୍କ ଦୃଷ୍ଟିକୁ ଆଣିଥିବାର ଧେବର ଭାଇ କହିବାରୁ ଶ୍ରୀ ମହତାବ ସଫା କହିଦେଇଥିଲେ ଯେ ଟଙ୍କାପଇସା ନେଣଦେଣ କଥା ସେ କିଛି ଜାଣନ୍ତିନାହିଁ; ସେମାନେ ଯଦି କରୁଥିବେ ତାହାହେଲେ ସେମାନଙ୍କ ସ୍ୱାର୍ଥପାଇଁ କରୁଥିବେ । ତା'ପରେ ଆମ୍ଭେମାନେ ଯେତେବେଳେ ଶ୍ରୀ ଧେବରଙ୍କୁ ଦେଖାକଲୁ ସେ ଆମ୍ଭମାନଙ୍କୁ ଏ ସବୁ କଥା ପଚାରିଥିଲେ । ଗୋଟିଏ ସଂଖ୍ୟାନ୍ୟୂନ ସରକାରଙ୍କୁ ସ୍ଥାୟୀ କରିବାପାଇଁ ଯାହାସବୁ କରାଯାଉଥିଲା, ତାହା ଆମେ ତାଙ୍କ ପାଖରେ କିଛି କିଛି କହିଥିଲୁ । ଦଳର ନେତା ସେକଥା ଜାଣନ୍ତି କି ନାହିଁ ସେ କଥା ପଚାରିବାରୁ ଆମେ କହିଥିଲୁ, ''ଦଳର ନେତା ସେକଥା ଜାଣନ୍ତି ଓ ତାଙ୍କ ଗୋଚରରେ ଏସବୁ କାର୍ଯ୍ୟ ହେଉଛି ।'' ଦଳର ନେତା ଏସବୁ କଥା ଜାଣନ୍ତିନାହିଁ ବୋଲି ତାଙ୍କୁ କହିଛନ୍ତି ବୋଲି କହି ଶ୍ରୀ ଧେବର କହିଲେ, ''ଯା'ର ଜନ୍ମେ କରି ଚୁରି, ସେଇ ବଳେ ଚୋର୍ ।''

## ବିଜୁବାବୁଙ୍କୁ ମାଡ଼ ଓ କଳାହାଣ୍ଡିଙ୍କ କାରାବାସ କଥା

ବିଧାନସଭାରେ କଂଗ୍ରେସର ସଂଖ୍ୟାଲଘୁ ସରକାରଙ୍କୁ ଅନ୍ୟମାନଙ୍କ ସାହାଯ୍ୟ ଓ ସମର୍ଥନରେ ରଖିବା ବେଳକୁବେଳ ଅସମ୍ଭବ ହୋଇପଡ଼ିଲା । ପ୍ରଥମେ ଯେଉଁ ମିତ୍ରୋଦୟ ସିଂହ ବରିହା ଆସି କଂଗ୍ରେସ ଦଳରେ ଯୋଗଦେଇଥିଲେ, ସେ ପୁଣି ସ୍ୱତନ୍ତ୍ର ଦଳକୁ ଫେରିଯାଇଥିଲେ । ଏ ଅବସ୍ଥାରେ

ଆଉ ଯେଉଁମାନେ ରହିଲେ ସେମାନଙ୍କର ଦାବି ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଲା । ବର୍ତ୍ତମାନ ଗଣତନ୍ତ୍ର ଦଳ କଂଗ୍ରେସ ଦଳର କିଛି ସଭ୍ୟଙ୍କୁ ତାଙ୍କ ଦଳକୁ ନେବାପାଇଁ ଉଦ୍ୟମ ଆରମ୍ଭ କରିଥିଲେ । କଂଗ୍ରେସ ଦଳର ସଭ୍ୟ ଉପମନ୍ତ୍ରୀ ଶ୍ରୀ ଅନୁପ ସିଂହଦେଓଙ୍କୁ ଲୋକସଭା ସଦସ୍ୟ କଳାହାଣ୍ଡି ମହାରାଜା ଶ୍ରୀ ପ୍ରତାପକେଶରୀ ଦେଓ ପ୍ରଭାବିତ କରି କୁଆଡ଼େ ନେଇଯାଇଥିଲେ । ଏ ବିଷୟରେ ଉପମନ୍ତ୍ରୀ ଅନୁପ ସିଂହଦେଓଙ୍କ ପାଖରେ କାର୍ଯ୍ୟ କରୁଥିବା ସରକାରୀ କର୍ମଚାରୀମାନେ କିଛି ଜାଣିପାରିନଥିଲେ । ଉପମନ୍ତ୍ରୀଙ୍କ ପାଖରେ ଯେଉଁସବୁ ସରକାରୀ କାଗଜପତ୍ର ଥିଲା, ତାହା କେଉଁଠାରେ ସେ ରଖିଦେଇଥିଲେ ତା'ର ସନ୍ଧାନ ମଧ୍ୟ ମିଳିନଥିଲା । ତା'ପରେ ଖବର ମିଳିଲା ଯେ ଶ୍ରୀ ଅନୁପ ସିଂହଦେଓଙ୍କୁ ଗଣତନ୍ତ୍ର ଦଳରେ ମିଶାଇବାପାଇଁ ଗୋଟିଏ ଗୁପ୍ତ ସ୍ଥାନରେ ରଖି କଳାହାଣ୍ଡି ମହାରାଜା ପ୍ରବର୍ତ୍ତାଉଛନ୍ତି । କଂଗ୍ରେସ ମନ୍ତ୍ରିମଣ୍ଡଳକୁ ଭାଙ୍ଗିଦେଇ ଗଣତନ୍ତ୍ରଦଳ ଅନ୍ୟମାନଙ୍କ ସହିତ ମିଶି ମନ୍ତ୍ରିମଣ୍ଡଳ ଗଠନକଲେ ସେଥିରେ ଶ୍ରୀ ଅନୁପ ସିଂହଦେଓଙ୍କୁ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀ କରାଯିବ ବୋଲି କୁଆଡ଼େ ପ୍ରତିଶ୍ରୁତି ଦିଆଯାଇଥିଲା । ଅନୁପବାବୁଙ୍କର ବାସଭବନକୁ ମୁଖ୍ୟମନ୍ତ୍ରୀ ବହୁବାର ଟେଲିଫୋନ୍ କରିଥିଲେ; କିନ୍ତୁ ସେଠାରୁ କିଛି ସନ୍ଧାନ ପାଇନଥିଲେ । ଶେଷରେ ଗୁଇନ୍ଦା ପୁଲିସଠାରୁ ସନ୍ଧାନ ମିଳିଲା ଯେ, ଉପମନ୍ତ୍ରୀ ଅନୁପ ସିଂହଦେଓଙ୍କୁ ଗଣତନ୍ତ୍ରଦଳର ବିଧାନସଭା ସଦସ୍ୟ ସୁନ୍ଦରଗଡ଼ ରାଜାଙ୍କର ଭୁବନେଶ୍ୱର ବାସଭବନରେ ଲୁଚାଇରଖାଯାଇଛି । ଏକଥା ଶୁଣି ଶ୍ରୀ ବିଜୁ ପଟ୍ଟନାୟକ ହଠାତ୍ ଚାଲିଲେ ସୁନ୍ଦରଗଡ଼ ରାଜାଙ୍କ ଘରକୁ । ସେଠାରେ କଳାହାଣ୍ଡି ମହାରାଜା, ସୁନ୍ଦରଗଡ଼ ରାଜା ଓ ଗଣତନ୍ତ୍ରଦଳର ଆହୁରି କେତେକ ବିଧାନସଭା ସଦସ୍ୟ ବସିଥିବାର ବିଜୁବାବୁ ଦେଖିଲେ । ସେମାନଙ୍କ ପାଖରେ କଂଗ୍ରେସଦଳର ଅନ୍ୟ ଜଣେ ସଭ୍ୟ ଗଞ୍ଜାମ ଜିଲ୍ଲାର ଦିଗପହଣ୍ଡି ପ୍ରତିନିଧି ଶ୍ରୀ ମୋହନ ନାୟକଙ୍କୁ ମଧ୍ୟ ବିଜୁବାବୁ ବସିଥିବାର ଦେଖିଥିଲେ; କିନ୍ତୁ ଅନୁପବାବୁଙ୍କୁ ପାଇନଥିଲେ । ଆଗରୁ ଶ୍ରୀ ମୋହନ ନାୟକଙ୍କୁ ଗଣତନ୍ତ୍ର ଦଳର ଲୋକେ କୁଆଡ଼େ ଶିଖାଇ ନେଇଯାଇଛନ୍ତି ବୋଲି ସନ୍ଦେହ କରାଯାଇଥିଲା; କିନ୍ତୁ ସେ ସମ୍ବନ୍ଧରେ କିଛି ସଠିକ ସମ୍ବାଦ ନଥିଲା । ଏହିଠାରେ ମୋହନ ନାୟକ ଅକସ୍ମାତ୍ ବିଜୁବାବୁଙ୍କ ହାବୁଡ଼ରେ ପଡ଼ିଥିଲେ ଏବଂ ଛାନିଆରେ ବାଡ଼ିପଟ ପାଚେରି ଡେଇଁ ପଳାଇଯାଇଥିଲେ । ବିଜୁବାବୁ ଯାଇଥିଲେ ଅନୁପବାବୁଙ୍କ ସନ୍ଧାନରେ, ତେଣୁ ସେଠାରେ ସେ ଅନୁପବାବୁଙ୍କୁ ଖୋଜିଥିଲେ । ସେ ବିଷୟରେ କେହି କିଛି ତାଙ୍କୁ ନକହିବାରୁ ସେ ଗୋଟିଏ ଘର ଭିତରକୁ ପଶିଯାଇ ଦେଖିଲେ ଯେ ଅନୁପବାବୁ ଗୋଟିଏ ଖଟ ଉପରେ ନିଘୋଡ଼ ନିଦରେ ଶୋଇପଡ଼ିଛନ୍ତି । ବିଜୁବାବୁ ତାଙ୍କୁ ଉଠାଇଲେ, କିନ୍ତୁ ସେ ଚେତନାଶୂନ୍ୟପରି ହୋଇଥିବାରୁ ବିଜୁବାବୁଙ୍କୁ ପ୍ରଥମେ ଚିହ୍ନିପାରିନଥିଲେ । ବିଜୁବାବୁ ଯେତେବେଳେ ଅନୁପବାବୁଙ୍କ ହାତଧରି ଉଠାଇବାକୁ ଉଦ୍ୟମକଲେ, ସୁନ୍ଦରଗଡ଼ ରାଜାଙ୍କର ଦୁଇଜଣ ଭୃତ୍ୟ ଆସି ବିଜୁବାବୁଙ୍କୁ ବାଧା ଦେଇଥିଲେ । ବିଜୁବାବୁ ସେମାନଙ୍କୁ ଠେଲିଦେଇ ଅନୁପବାବୁଙ୍କୁ ଖଟ ଉପରୁ ଉଠାଇ ବାହାରକୁ ଆଣିବାକୁ ଉଦ୍ୟମ କରିବାରୁ ଆହୁରି ଅଧିକ ଲୋକ ଆସି ବିଜୁବାବୁଙ୍କୁ ଆକ୍ରମଣକଲେ । କଳାହାଣ୍ଡି ମହାରାଜା ଗୋଟିଏ ବନ୍ଧୁକ ଆଣି ବିଜୁବାବୁଙ୍କ ଆଡ଼କୁ ଲକ୍ଷ୍ୟ କରି ଦେଖାଇଲେ । ଠେଲାପେଲା ଓ ଧସ୍ତାଧସ୍ତିରେ ବିଜୁବାବୁଙ୍କ ଜାମା ଚିରିଯାଇଥିଲା । ବହୁତ ଲୋକ ବାଧାଦେବାରୁ ଅନୁପବାବୁଙ୍କୁ ସାଙ୍ଗରେ ନେଇ ଆସିବା ବିଜୁବାବୁଙ୍କ ପକ୍ଷରେ ସମ୍ଭବ ହୋଇନଥିଲା; କିନ୍ତୁ ପରେ ଆସିବାପାଇଁ ଅନୁପବାବୁ ତା'ରି ଭିତରେ ବିଜୁବାବୁଙ୍କୁ କହିଥିଲେ । ବିଜୁବାବୁ ଚିରାଜାମା ସହ ଯେଉଁ ଅବସ୍ଥାରେ ସୁନ୍ଦରଗଡ଼ ରାଜାଙ୍କ ଘରୁ ଫେରିଥିଲେ, ତାହା ଦେଖି କଂଗ୍ରେସ ଦଳର ଲୋକେ ବଡ଼ ଉତ୍ତ୍ୟକ୍ତ ହୋଇଥିଲେ । ମୁଖ୍ୟମନ୍ତ୍ରୀ ଶ୍ରୀ ମହତାବବାବୁଙ୍କୁ ବିଜୁବାବୁ ସମସ୍ତ ଘଟଣା କହିଥିଲେ । ତା'ପରେ ବିଜୁବାବୁଙ୍କୁ ସାଙ୍ଗରେଧରି ମୁଖ୍ୟମନ୍ତ୍ରୀ ଉଦ୍ୟାନମାର୍ଗରେ ରହୁଥିବା ସ୍ୱରାଷ୍ଟ୍ର ମନ୍ତ୍ରୀଙ୍କ ଘରକୁ ଯାଇଥିଲେ । ମୁଁ ମଧ୍ୟ ସେଠାରେ ଯାଇ ପହଞ୍ଚିଥିଲି । ଆହୁରି କେତେକ ବିଧାନସଭା ସଦସ୍ୟ ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ଏ ପରିସ୍ଥିତିରେ କ'ଣ କରାଯିବ ସେଠାରେ ଆଲୋଚନା

କରାଯାଇଥିଲା । ସ୍ୱରାଷ୍ଟ୍ର ମନ୍ତ୍ରୀ ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ପୂର୍ବରୁ ଓଡ଼ିଶା ହାଇକୋର୍ଟର ପ୍ରଧାନ ବିଚାରପତି ଥିଲେ । ଭାରତୀୟ ପିଙ୍ଗଳ କୋର୍ଡ୍‌ର କେଉଁ କେଉଁ ଦଫାରେ ଲୋକସଭା ସଦସ୍ୟ କଳାହାଣ୍ଡି ମହାରାଜା ଶ୍ରୀ ପ୍ରତାପ କେଶରୀ ଦେଓ, ଉପମନ୍ତ୍ରୀ ଶ୍ରୀ ଅନୁପ ସିଂହଦେଓ ଓ ସୁନ୍ଦରଗଡ଼ ରାଜା ଶ୍ରୀ ଉଦିତ ପ୍ରତାପ ଦେଓ ପ୍ରଭୃତି ବିଧାନସଭା ସଦସ୍ୟଙ୍କୁ ଗିରଫ୍ କରାଯିବ ସେ ବିଷୟରେ ଏସ୍.ପି.ଙ୍କୁ ଡାକି ସେ ପରାମର୍ଶ ଦେଇଥିଲେ । ଆଇ.ଜି. ମଧ୍ୟ ସେଠାରେ ଆସି ପହଞ୍ଚିଥିଲେ । ଏସ୍.ପି. ଓ ଆଇ.ଜି. ପ୍ରଥମେ ଟିକେ କୁଣ୍ଠା ପ୍ରକାଶ କରିବାର ଜଣାଯାଇଥିଲା; କିନ୍ତୁ ଯେତେବେଳେ ମୁଖ୍ୟମନ୍ତ୍ରୀ ଓ ସ୍ୱରାଷ୍ଟ୍ରମନ୍ତ୍ରୀ ଉଭୟ ଗୋଟିଏ କଥା କହୁଥା'ନ୍ତି ସେତେବେଳେ ସେମାନେ ଆଉ ବିଶେଷ କିଛି କହିନଥିଲେ । କଳାହାଣ୍ଡି ମହାରାଜାଙ୍କ ବିରୁଦ୍ଧରେ ଅଭିଯୋଗ ହୋଇଥିଲା ଯେ ସେ କଂଗ୍ରେସଦଳର ସଭ୍ୟ ଶ୍ରୀ ମୋହନ ନାୟକଙ୍କୁ ହରଣଚାଳ କରି ଭୟ ଦେଖାଇ ନିଜର ଗଣତନ୍ତ୍ର ଦଳକୁ ନେବାପାଇଁ ଗୋଟିଏ ଜାଗାରେ ବନ୍ଦକରି ରଖିଥିଲେ ଏବଂ ଉପମନ୍ତ୍ରୀ ଶ୍ରୀ ଅନୁପ ସିଂହଦେଓଙ୍କୁ କୁଶିକ୍ଷା ଦେଇ ଅନ୍ୟାୟ ଉପାୟରେ ପ୍ରଭାବିତ କରି ସରକାରୀ ଫାଇଲପତ୍ରକୁ ନେଇଯାଇଥିଲେ । ସୁନ୍ଦରଗଡ଼ ରାଜାଙ୍କ ବିରୁଦ୍ଧରେ ମଧ୍ୟ ଏହି ପ୍ରକାର ଅଭିଯୋଗ କରାଯାଇଥିଲା । ବିଜୁବାବୁଙ୍କ ଉପରେ କଳାହାଣ୍ଡି ମହାରାଜାଙ୍କ ଆକ୍ରମଣ ହେତୁ ମହତାବବାବୁ ଖୁବ୍ କ୍ରୋଧାନ୍ୱିତ ହୋଇଥିଲେ । ସେ ଚାହୁଁଥିଲେ ଯେ କୌଣସିମତେ କଳାହାଣ୍ଡି ମହାରାଜାଙ୍କୁ ଦିନକପାଇଁ ହେଲେ ଜେଲ୍‌ରେ ବନ୍ଦକରି ରଖିବାକୁ ପଡ଼ିବ ।

ଉପରୋକ୍ତ ଅଭିଯୋଗ ଅନୁସାରେ ଥାନାରେ ଏତାଲା କରାଯାଇ କଳାହାଣ୍ଡି ମହାରାଜା, ସୁନ୍ଦରଗଡ଼ ରାଜା ଓ ଶ୍ରୀ ଅନୁପ ସିଂହଦେଓଙ୍କୁ ଶନିବାର ଦିନ ଚାରିଟାବେଳେ ଗିରଫ୍ କରାଗଲା ଏବଂ ତା'ପରେ ଖୋର୍ଦ୍ଧା ଜେଲ୍‌କୁ ପଠାଯାଇଥିଲା । ସେତେବେଳେ ଭୁବନେଶ୍ୱର ଖୋର୍ଦ୍ଧା ସବ୍‌ଡିଭିଜନ୍ ଭିତରେ ଥାଏ ଏବଂ ଭୁବନେଶ୍ୱରରେ ସ୍ୱତନ୍ତ୍ର ଜେଲଖାନା ନଥାଏ । ଉପମନ୍ତ୍ରୀ ଥାଉ ଥାଉ ଶ୍ରୀ ଅନୁପ ସିଂହଦେଓଙ୍କୁ ଗିରଫ୍ କରିବା ଅସମୀଚୀନ ଓ ଅସୁନ୍ଦର ହେବ ବୋଲି ତାଙ୍କୁ ସେହିଦିନ ଗିରଫ୍ କରିବା ପୂର୍ବରୁ ଉପମନ୍ତ୍ରୀ ପଦରୁ ବହିଷ୍କାର କରାଯାଇଥିଲା ।

## ପ୍ରେସ୍‌ପ୍ରତି ଅସୂୟା ଓ ଅକଳସଲାମି

ଓଡ଼ିଶାରେ ସଂସଦୀୟ ଗଣତନ୍ତ୍ରର ଅଧୋଗତି ସମ୍ବନ୍ଧରେ ସର୍ବସାଧାରଣ ଜାଣିବାପାଇଁ ଏବଂ ଗୋଟିଏ ସଂଖ୍ୟାନ୍ୟୂନ ସରକାରକୁ ବଞ୍ଚାଇ ରଖିବାପାଇଁ ବିରୋଧୀ ଦଳର ସଭ୍ୟମାନଙ୍କ ଉପରେ ରାଜନୈତିକ ଉତ୍ପୀଡ଼ନ, ପ୍ରତିହିଂସାପରାୟଣ ଆକ୍ରୋଶମୂଳକ କାର୍ଯ୍ୟ ଚାଲୁଥିବା ସମ୍ବାଦ ପ୍ରେସ୍ ଟ୍ରଷ୍ଟ ଅଫ୍ ଇଣ୍ଡିଆ ସର୍ବଭାରତୀୟ ସ୍ତରରେ ପରିବେଷଣ କରିଥିଲା । ସେ ସମ୍ବାଦଗୁଡ଼ିକ ବିଭିନ୍ନ ଖବରକାଗଜମାନଙ୍କରେ ପ୍ରକାଶପାଇଥିଲା । କଲିକତାରୁ ପ୍ରକାଶପାଉଥିବା 'ଷ୍ଟେଟ୍‌ସମ୍ୟାନ୍' ଓ ମାନ୍ଦ୍ରାଜରୁ ପ୍ରକାଶପାଉଥିବା 'ହିନ୍ଦୁ' ଖବରକାଗଜରେ ଓଡ଼ିଶାର କ୍ଷମତା ଅପବ୍ୟବହାର କରି ବିଧାନସଭା ସଭ୍ୟମାନଙ୍କ ବିରୁଦ୍ଧରେ ନାନାପ୍ରକାର ମୋକଦ୍ଦମା ସୃଷ୍ଟିକରି ସେମାନଙ୍କୁ ଗିରଫ୍ କରାଯାଉଛି ବୋଲି ସ୍ୱତନ୍ତ୍ର ସମ୍ବାଦମାନ ପ୍ରକାଶପାଇଥିଲା । ଓଡ଼ିଶାରେ ସେତେବେଳେ ପ୍ରେସ୍ ଟ୍ରଷ୍ଟ ଅଫ୍ ଇଣ୍ଡିଆର ପ୍ରତିନିଧି ଥିଲେ ସ୍ୱର୍ଗତ ଏନ୍.ଆର୍. ସ୍ୱାମୀ । ଷ୍ଟେଟ୍‌ସମ୍ୟାନ୍ ଓ ହିନ୍ଦୁ ଖବରକାଗଜର ମଧ୍ୟ ଶ୍ରୀ ଏନ୍. ଆର୍. ସ୍ୱାମୀ ଓଡ଼ିଶା ପ୍ରତିନିଧି ଥିଲେ । ଏସବୁ ସମ୍ବାଦପତ୍ରଗୁଡ଼ିକ ପଢ଼ି ମୁଖ୍ୟମନ୍ତ୍ରୀ ବିଶେଷ କ୍ରୋଧାନ୍ୱିତ ହୋଇଥିଲେ । ଅଭିଜ୍ଞ ଓ ଅବସରପ୍ରାପ୍ତ ବିଚାରପତି ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ନିଜେ ସ୍ୱରାଷ୍ଟ୍ର ବିଭାଗ ମନ୍ତ୍ରୀ । ଶ୍ରୀ ଏନ୍.ଆର୍.ସ୍ୱାମୀଙ୍କୁ କିପରି ଉଚିତ ଶିକ୍ଷା ଦିଆଯିବ ସେ ବିଷୟରେ ମୁଖ୍ୟମନ୍ତ୍ରୀ ଓ ସ୍ୱରାଷ୍ଟ୍ରମନ୍ତ୍ରୀ ଯେତେବେଳେ ଆଲୋଚନା କରନ୍ତି, ମୁଁ ସେଠାରେ ଉପସ୍ଥିତ ଥିଲି । ଶ୍ରୀ ସ୍ୱାମୀଙ୍କୁ ଓଡ଼ିଶାରୁ ହଟାଇ ତାଙ୍କର ସର୍ବନାଶ କରିବାପାଇଁ ସ୍ଥିରକରାଯାଇଥିଲା । କେତେକ

ଆମେରିକାନ୍‌ଙ୍କ ସହିତ କୁଆଡ଼େ ସେତେବେଳେ ଶ୍ରୀ ସ୍ୱାମୀଙ୍କର ବନ୍ଧୁତା ଥିଲା ବୋଲି ସେଠାରେ ଆଲୋଚନା କରାଯାଇଥିଲା । ତେଣୁ ଆମେରିକାର ଗୁପ୍ତଚର ବିଭାଗ (C.I.A.)ସହିତ ତାଙ୍କର ନିଶ୍ଚୟ ସମ୍ପର୍କ ଥିବ ବୋଲି ଧରିନିଆଯାଇଥିଲା । ସେଇ ସମସାମୟିକ ବହୁ ଘଟଣା ଓ ସ୍ୱାଧୀନତା ପୂର୍ବରୁ ଛାତ୍ର ଆନ୍ଦୋଳନ ପ୍ରଭୃତି ଘଟଣାବେଳେ ଶ୍ରୀ ସ୍ୱାମୀଙ୍କ କାର୍ଯ୍ୟକଳାପ ଓ ଆଚରଣ ଲକ୍ଷ୍ୟକରି ମୋର ତାଙ୍କ ସମ୍ପର୍କରେ ଯେଉଁ ଧାରଣା ଓ ଅଭିଜ୍ଞତା ହୋଇଥିଲା, ତାହାରି ଉପରେ ନିର୍ଭର କରି ମୁଁ ମତ ଦେଇଥିଲି ଯେ ଶ୍ରୀ ସ୍ୱାମୀ ତାଙ୍କର ବୃତ୍ତିଗତ କାର୍ଯ୍ୟରେ କେବେହେଲେ ବିଦେଶୀ ଲୋକ କିମ୍ବା ସଂସ୍ଥା ସହିତ ସଂପୃକ୍ତ ନଥିବେ । ମୋର ଏପ୍ରକାର ମତାମତକୁ ଗ୍ରହଣ ନକରି ନିଜ ପରିକଳ୍ପିତ ମାର୍ଗରେ ମୁଖ୍ୟମନ୍ତ୍ରୀ ଓ ସ୍ୱରାଷ୍ଟ୍ରମନ୍ତ୍ରୀ ଆଲୋଚନା ଚାଲୁରଖିଥିଲେ । ସ୍ୱାମୀଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବା ନିମିତ୍ତ ରାଜ୍ୟ ଗୋଇନ୍ଦା ବିଭାଗଦ୍ୱାରା ଗୋଟିଏ ଗୁପ୍ତ ରିପୋର୍ଟ ପ୍ରସ୍ତୁତକରି ରଖିବାପାଇଁ ସ୍ଥିରକରାଯାଇଥିଲା । ଗଣତନ୍ତ୍ର ଦଳର ରାଜା ମହାରାଜାମାନଙ୍କର ସେ କୁଆଡ଼େ 'ବୋତଲ ବନ୍ଧୁ' (Bottle Friend) ଥିଲେ ଏବଂସେମାନଙ୍କଠାରୁ ଟଙ୍କା ନେଇ କଂଗ୍ରେସ ସରକାର ବିରୁଦ୍ଧରେ ସମ୍ବାଦ ପଠାଉଛନ୍ତି ବୋଲି ଅଭିଯୋଗ କରାଯିବା କଥା ସ୍ଥିରହୋଇଥିଲା । ସେତେବେଳେ ସ୍ୱରାଷ୍ଟ୍ର ବିଭାଗର ଶାସନସଚିବ ଥିଲେ ଶ୍ରୀ ପ୍ରାଣନାଥ ମହାନ୍ତି । ତାଙ୍କୁ ଡକାଯାଇଥିଲା ଓ ଶ୍ରୀ ସ୍ୱାମୀଙ୍କ ନାମରେ ଏସବୁ ଅଭିଯୋଗ ସମ୍ବନ୍ଧରେ ପି. ଟି. ଆଇ., ଷ୍ଟେଟ୍‌ସମ୍ୟାନ୍ ଓ ହିନ୍ଦୁ ଖବରକାଗଜକୁ ଲେଖିବା କଥା ତାଙ୍କୁ କୁହାଯାଇଥିଲା । ସେ ପ୍ରଥମେ ଟିକିଏ କୁଣ୍ଠାବୋଧ କରି ସେଭଳି ଲେଖିବାକୁ ପଛାଇଥିଲେ । ମାତ୍ର ଶ୍ରୀ ପାଣିଗ୍ରାହୀ ତାଙ୍କୁ ସବୁ କଥା ବୁଝାଇ ବାଟ ବତାଇ ଦେଇଥିଲେ । ୧୯୫୮ ମସିହା ଜୁନ୍‌ମାସ ସାତ ତାରିଖରେ ଓଡ଼ିଶା ସରକାରଙ୍କର ସ୍ୱରାଷ୍ଟ୍ର ବିଭାଗ ଶାସନସଚିବ ପ୍ରେସ୍ ଟ୍ରଷ୍ଟ ଅଫ୍ ଇଣ୍ଡିଆ ଲିମିଟେଡ୍‌ର ମ୍ୟାନେଜରଙ୍କୁ ଗୋପନ ଚିଠି ଲେଖିଲେ "Government are of the view that Shree N.R.Swami, the present representative of the P.T.I. in Orissa, has been deliberately misrepresenting facts about the Governement of Orissa and individual Ministers in his press report with a view to discredit the present party in power. Information has also been received that he has been siding with the Ganatantra Parishad of Orissa and is in the pay roll of a foreign embassy interested in the ousting of the Congress Government from power in Orissa. In the interest of administration, Government desire that Shree N.R.Swami should be quickly replaced, preferably before August 1958." ଏ ଚିଠିଟି ପାଇବାର ସାତଦିନ ଭିତରେ ପି.ଟି.ଆଇ.ର ଜେନେରାଲ ମ୍ୟାନେଜର ଭୁବନେଶ୍ୱରରେ ପହଞ୍ଚି ମୁଖ୍ୟମନ୍ତ୍ରୀଙ୍କୁ ଦେଖା କରିଥିଲେ । ଶ୍ରୀ ଏନ୍.ଆର୍.ସ୍ୱାମୀଙ୍କ ବିରୁଦ୍ଧରେ ତିଆରିହୋଇଥିବା ରିପୋର୍ଟଟି ତାଙ୍କୁ ଦେଖାଇଦିଆଯାଇଥିଲା । ତା'ପରେ ଶ୍ରୀ ସ୍ୱାମୀଙ୍କର କଟକରୁ ଆନ୍ଧ୍ରପ୍ରଦେଶର ବିଜୟଓ୍ୱାଡ଼ାକୁ ବଦଳି ଆଦେଶ ଆସିଥିଲା; କିନ୍ତୁ ଶ୍ରୀ ସ୍ୱାମୀ ବିଜୟଓ୍ୱାଡ଼ା ନ ଯାଇ ଅକାଳରେ ଚାକିରିରୁ ଅବସର ନେଇଥିଲେ । ଷ୍ଟେଟ୍‌ସମ୍ୟାନ୍ ଓ ହିନ୍ଦୁ ଖବରକାଗଜ କର୍ତ୍ତୃପକ୍ଷମାନଙ୍କୁ ସ୍ୱାମୀଙ୍କ ବିରୁଦ୍ଧରେ ରାଜ୍ୟ ସରକାରଙ୍କ ପାଖରୁ ଏହି ପ୍ରକାର ଅଭିଯୋଗମାନ କରାଯାଇ ଚିଠି ଯାଇଥିଲା । ମାତ୍ର ସେମାନେ ତା' ଉପରେ କିଛି କାର୍ଯ୍ୟାନୁଷ୍ଠାନ କରିନଥିଲେ । କ୍ରୋଧାନ୍ୱିତ ହୋଇ ଜଣେ ସାମ୍ବାଦିକଙ୍କ ବୃତ୍ତିଗତ ଜୀବନରେ କିପରି କ୍ଷତିକରାଯାଇପାରେ, ତାହା ଉପରୋକ୍ତ ଘଟଣାରୁ ଅନୁମାନ କରାଯାଇପାରେ ।

ପି.ଟି.ଆଇ. ସମ୍ବାଦଦାତା ସ୍ୱର୍ଗୀୟ ଶ୍ରୀ ଏନ୍.ଆର୍. ସ୍ୱାମୀଙ୍କ ବିରୁଦ୍ଧରେ ଓଡ଼ିଶା ସରକାରଙ୍କ ପକ୍ଷରୁ ଯେଉଁ ଚିଠିଟି ଲେଖାଯାଇଥିଲା, ତାହା ମୁଖ୍ୟମନ୍ତ୍ରୀ ଶ୍ରୀ ମହତାବ ଓ ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀ ପାଣିଗ୍ରାହୀଙ୍କ ସହିତ ଆଲୋଚନା କଲା ପରେ ସେମାନଙ୍କ ପରାମର୍ଶକ୍ରମେ ଲେଖିଥିଲେ ବୋଲି ସ୍ୱରାଷ୍ଟ୍ର ବିଭାଗର ଶାସନ ସଚିବ ଶ୍ରୀ ପ୍ରାଣନାଥ ମହାନ୍ତି ସ୍ୱୀକାର କରିଥିଲେ । କିନ୍ତୁ ଶ୍ରୀ ମହତାବ

ଏହାକୁ ଅସ୍ୱୀକାର କରି କହିଥିଲେ ଯେ ଏ ସମ୍ପର୍କୀୟ ଖବର ଓ ଶ୍ରୀ ସ୍ୱାମୀଙ୍କ ବିରୋଧରେ ଅଭିଯୋଗ ବିଷୟରେ ସେ ସମ୍ପୂର୍ଣ୍ଣ ଭାବରେ ଅନଭିଜ୍ଞ ଥିଲେ ଏବଂ ପ୍ରଥମ ଥର ପାଇଁ ଏ ସମ୍ବାଦ ଖବରକାଗଜରେ ପ୍ରକାଶ ପାଇବା ପରେ ସେ ଦିଲ୍ଲୀ ଯାଉଥିବା ବାଟରେ ଦମ୍‌ଦମ୍ ବିମାନ ଘାଟିଠାରେ ଜାଣିବାକୁପାଇ ଆଶ୍ଚର୍ଯ୍ୟ ହେଲେ ।

ଇତିମଧ୍ୟରେ ଓଡ଼ିଶା ସରକାରଙ୍କ ସାମ୍ବାଦିକଙ୍କ ବିରୁଦ୍ଧରେ ଚରିତ୍ର ସଂହାର ଅଭିଯାନ ଓ ସର୍ବନାଶ କରିବା ପାଇଁ ଆକ୍ରୋଶମୂଳକ ପଦକ୍ଷେପ ସାରା ଭାରତବର୍ଷରେ ଚହଳ ସୃଷ୍ଟି କରିଥିଲା । ଏହି ଘଟଣା ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ଜବାହରଲାଲ ନେହେରୁଙ୍କୁ ମଧ୍ୟ ବଡ଼ ଅପ୍ରସ୍ତୁତ ଅବସ୍ଥାରେ ପକାଇ ଥିଲା । ଏ ବିଷୟଟି ରାଜ୍ୟସଭାରେ ଅତି ତିକ୍ତଭାବରେ ସମାଲୋଚିତ ହୋଇଥିଲା ଏବଂ ତା'ର ଉତ୍ତରରେ ୧୯୫୮ ମସିହା ଅଗଷ୍ଟ କୋଡ଼ିଏ ତାରିଖରେ ପ୍ରଧାନମନ୍ତ୍ରୀ ନେହେରୁ ରାଜ୍ୟସଭାରେ କହିଥିଲେ, "I agree that it is a serious matter and the Home Secretary did not function as he should have done. Of course, the serious matter is not only the Home Secretary writing, but the possible basis of his writing. We enquired into the basis and we found that he did not have sufficient justification in doing so. Even if he had justification, he had no business to write."

ପ୍ରଧାନମନ୍ତ୍ରୀଙ୍କର କଟୁ ମନ୍ତବ୍ୟରେ ଛାନିଆଁହୋଇ ନିଜର ସଫେଇ ଦେବାବେଳେ ସ୍ୱରାଷ୍ଟ୍ର ବିଭାଗ ଶାସନ ସଚିବଙ୍କୁ ବିପଦରେ ପକାଇବାପାଇଁ ମୁଖ୍ୟମନ୍ତ୍ରୀ କୁଣ୍ଠାବୋଧ କରିନଥିଲେ । ନିଜେ ସଚ୍ଚୋଟ, ଏକଥା ପ୍ରମାଣ କରିବାପାଇଁ ସଙ୍ଗେ ସଙ୍ଗେ ଶ୍ରୀ ସ୍ୱାମୀଙ୍କ ବିରୁଦ୍ଧରେ ଲେଖାଯାଇଥିବା ଚିଠିଟି ପ୍ରତ୍ୟାହାର କରାଗଲା ବୋଲି କହି ସ୍ୱରାଷ୍ଟ୍ର ସଚିବଙ୍କ ବିରୁଦ୍ଧରେ ଏକ ଅନୁସନ୍ଧାନ କରିବା କଥା ସ୍ଥିରକଲେ । ସେ କଥା ଖବରକାଗଜରେ ନିମ୍ନମତେ ପ୍ରକାଶିତ ହୋଇଥିଲା । "The Orissa Government has withdrawn its letter.....The Chief Minister said that he had ordered a departmental inquiry into the circumstances in which the letter was written by the Home Secretary." Times of India, 14th July, 1958.

ଏହି ପରିପ୍ରେକ୍ଷୀରେ ଆତ୍ମମର୍ଯ୍ୟାଦାକୁ ବଜାୟ ରଖିବାପାଇଁ ଶ୍ରୀ ଏନ. ଆର୍‌.ସ୍ୱାମୀ ଆଉ ଚାକିରି କରିବା ଉଚିତ ମନେ ନ କରି ପ୍ରେସ୍ ଟ୍ରଷ୍ଟ ଅଫ୍ ଇଣ୍ଡିଆରୁ ଅବସର ଗ୍ରହଣକଲେ ଓ କଟକ ସବ୍‌ଅର୍ଡ଼ିନେଟ୍ ଜଜ୍ କୋର୍ଟରେ ଓଡ଼ିଶା ସରକାରଙ୍କ ବିରୁଦ୍ଧରେ ଗୋଟିଏ ମାନହାନୀ ମୋକଦ୍ଦମା କରି କ୍ଷତିପୂରଣ ଚାହିଁଥିଲେ । ଉକ୍ତ ମୋକଦ୍ଦମାରେ ଶ୍ରୀ ସ୍ୱାମୀ ଜିତିଥିଲେ ଏବଂ ମାନହାନୀ ଓ ଅନ୍ୟାନ୍ୟ କ୍ଷତିପୂରଣ ବାବଦରେ ଟ ୪୦,୦୦୦,୦୦ (ଚାଳିଶ ହଜାର ଟଙ୍କା) ପାଇବେ ବୋଲି ବିଚାରପତି ରାୟଦେଇଥିଲେ । ଏହି ମୋକଦ୍ଦମାରେ ମାନ୍ୟବର ବିଚାରପତି ମୁଖ୍ୟମନ୍ତ୍ରୀ ଶ୍ରୀ ମହତାବଙ୍କ କଥାକୁ ଅସତ୍ୟ ବୋଲି ଆଖ୍ୟା ଦେଇ କହିଥିଲେ, "I am not very much impressed with the credibility of D.W.2 Dr.H.K.Mahtab..."

ଏହି ରାୟ ବିରୁଦ୍ଧରେ ଓଡ଼ିଶା ହାଇକୋର୍ଟରେ ସରକାର ଅପିଲ୍ କରିଥିଲେ । ମାନ୍ୟବର ହାଇକୋର୍ଟ ତଳ କୋର୍ଟର ସିଦ୍ଧାନ୍ତକୁ କାଏମ କଲେ; ମାତ୍ର କ୍ଷତିପୂରଣ ବାବଦ ଚାଳିଶ ହଜାର ଟଙ୍କାକୁ ନିୟମାନୁସାରେ ପୁନଃମୂଲ୍ୟାୟନ କରି ଅଠେଇଶ ହଜାରକୁ କମାଇଦେଇଥିଲେ । ସରକାର ଶ୍ରୀ ସ୍ୱାମୀଙ୍କୁ ଏହି ଅକଳସଲାମୀ ଦେବାକୁ ପଡ଼ିଥିଲା । ଜଜ୍‌କୋର୍ଟର ରାୟ ଉପରେ ମତାମତ ଦେଇ ମାନ୍ୟବର ହାଇକୋର୍ଟ ମନ୍ତବ୍ୟ ଦେଇଥିଲେ :

"Ultimately the learned trial Judge discarded the evidence of D.W 2 (Dr. Mahtab) as not being correct and as not representing the truth, and relied upon the evidence of D.W.3, the then Home Secretary.

"The learned trial Judge relied upon the statement of the Home Secretary that the Home Minister and the Chief Minister had discussions before the letters were issued...The learned Government Advocate pressed upon us to examine the matter and hold otherwise. But as the evidence stands, the conclusion of the learned trial Judge appears to us not to be open to dispute of doubt."

ମାନ୍ୟବର ବିଚାରପତି ଶ୍ରୀ ସୁକାନ୍ତ ରାୟ ଓ ଶ୍ରୀ ରଙ୍ଗନାଥ ମିଶ୍ର ସେମାନଙ୍କର ରାୟରେ ଆହୁରି ମଧ୍ୟ କହିଥିଲେ, "It was not really in the broader interest of journalism, but it was the attitude of vindictiveness and personal vindication which actuated the Home Minister (Mr. Lingaraj Panigraahi) to initiate the matter of transfer of the plentiff by making the allegations. The Chief Minister (Dr. H.K.Mahtab) was a party to the game and the defamatory letter was issued as a result of joint deliberation of the Home Minister and the Chief Minister as testified by the Home Secretary. (I.L.R.Cuttack Series, April, 30,1970)

୧୯୫୮ ଓ ୧୯୫୯ ମସିହାରେ ଆମ ରାଜ୍ୟରେ ସରକାର କିପରି ଚାଲିଥିଲା ସେ ସମ୍ବନ୍ଧରେ ଜଣେ ବୈଦେଶିକ ଅଧ୍ୟାପକ ଯାହା ଲେଖିଛନ୍ତି ଏ ସଂକ୍ରାନ୍ତରେ ତାହା ଉଲ୍ଲେଖ କରାଯାଇପାରେ । ସେ ଅଧ୍ୟାପକ ହେଉଛନ୍ତି ଡକ୍ଟର ଏଫ୍.ଜି. ବେଲି । ଲଣ୍ଡନ ବିଶ୍ୱବିଦ୍ୟାଳୟର ସ୍କୁଲ୍ ଅଫ୍ ଓରିଏଣ୍ଟାଲ୍ ଆଣ୍ଡ ଆଫ୍ରିକାନ୍ ଷ୍ଟଡିଜ୍ ପ୍ରତିଷ୍ଠାନରେ ସେ ଏସିୟାନ୍ ଆଂଥ୍ରୋପୋଲଜି ବିଭାଗରେ ପ୍ରାଧ୍ୟାପକ ଥିଲେ । ଡକ୍ଟର ବେଲି ୧୯୫୮-୫୯ରେ ଓଡ଼ିଶାରେ ଗବେଷଣା କରୁଥିଲେ । ଗବେଷଣା ପରେ "Politics and Social Change–Orissa in 1959" ଶିରୋନାମାରେ ଓଡ଼ିଶାର ତତ୍କାଳୀନ ରାଜନୀତି ଓ ସାମାଜିକ ବିବର୍ତ୍ତନ ସଂପର୍କରେ ଗୋଟିଏ ପୁସ୍ତକ ରଚନା କରିଥିଲେ । ସେଥିରେ ସେ ଲେଖିଛନ୍ତି, "Oriya politicians in 1959 said that their trouble had been 'instability'. No party had an effective majority; toomuch time went into balancing the narrow interests that kept the majority intact or in trying to upset them." Dr. Bailyଙ୍କ ମତରେ, "This 'instability' led to the unsavoury intrigues of April and May, 1958, of which everyone seems to have been ashamed. It also led to the disproportionate tenderness which the Ministry showed to even the least of its supporters, with the result that narrow local interests were advanced before general welfare. Congress came more and more to be held together by a very delicate balancing of interests. Moral actions tended to be replaced by expedient action." ସେ ଆହୁରି କହିଛନ୍ତି, "In April, 1958 four of those who had left Ganatantra and gone to Congress went back again. A few days later three Congress members, including a Deputy Minister, resigned from the party. The following day this Deputy Minister and four members of the Ganatantra, two of them M.L.As., were arrested on a complaint of conspiracy."

## କଂଗ୍ରେସ-ଗଣତନ୍ତ୍ର ପରିଷଦ : ଏକ ସୁବିଧାବାଦୀ ସହଯୋଗ

୧୯୫୯ ମସିହା ବଜେଟ୍ ଅଧିବେଶନ ବେଳକୁ ଅନୁଭବ କରାଯାଇଥିଲା ଯେ ଏଣିକି ସରକାର ଚଳାଇବା ଏକପ୍ରକାର ଅସମ୍ଭବ । ଅବସ୍ଥା ଆସି ଚରମ ସୀମାରେ ପହଞ୍ଚିଲା ସେହିଦିନ, ଯେଉଁଦିନ

ଅଚାନକଭାବରେ ବିରୋଧୀଦଳ ଭୋଟ ଦାବି କରି ସରକାରଙ୍କର ଗୋଟିଏ ପ୍ରସ୍ତାବକୁ ନାକଚ କରିଦେଇଥିଲେ । ମନ୍ତ୍ରୀ ଶ୍ରୀ ସତ୍ୟପ୍ରିୟ ମହାନ୍ତି ଓଡ଼ିଶା ପୌରସଂସ୍ଥା ନିର୍ବାଚନକୁ ବିଧିବଦ୍ଧ କରିବା ପାଇଁ ଗୋଟିଏ ବିଲ୍ ଆଣିବାକୁ ଗୃହର ଅନୁମତି ଲାଗି ଗୋଟିଏ ପ୍ରସ୍ତାବ ଆଣିଥିଲେ । ପ୍ରଚଳିତ ପ୍ରଥାନୁସାରେ କୌଣସି ବିଲ୍ ଆଣିବାପାଇଁ ଅନୁମତିସୂଚକ ପ୍ରସ୍ତାବକୁ ବିରୋଧ କରାଯାଏନାହିଁ; ମାତ୍ର ସେଦିନ ବିରୋଧୀଦଳର ନେତା ଅକସ୍ମାତ୍ ସେହି ପ୍ରସ୍ତାବ ଉପରେ ଭୋଟ ଦାବି କରିଥିଲେ । କଂଗ୍ରେସଦଳ ସେତେବେଳେ ସଜାଗ ନଥିଲା । ଗଣତିରେ ବିରୋଧୀଦଳ ପକ୍ଷରେ ଏକାବନଟି ଏବଂ ସରକାରଙ୍କ ପକ୍ଷରେ ତେୟାଳିଶିଟି ଭୋଟ ହେଲା । ତେଣୁ ସରକାରଙ୍କର ପ୍ରସ୍ତାବ ବିଧାନସଭାରେ ନାକଚ ହୋଇଯାଇଥିଲା । ଏହାପରେ ବିରୋଧୀଦଳ ପକ୍ଷରୁ ଦାବି ହୋଇଥିଲା, ସରକାର ଇସ୍ତଫା ଦିଅନ୍ତୁ । ମାତ୍ର ଏ ପ୍ରକାର ଅଚାନକ ଭୋଟ ଦାବି (Snap voting) ର ବୈଧାନିକ ପରିଣତି କ'ଣ ହେବ ସେ ବିଷୟରେ ବିଚାର କରିବାପାଇଁ ସମୟ ଦରକାର ବୋଲି ଦର୍ଶାଇ ବ୍ୟବସ୍ଥାସଭାକୁ ପରଦିନ ପର୍ଯ୍ୟନ୍ତ ମୁଲତବୀ ରଖିବାପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ମହତାବ ବାଚସ୍ପତିଙ୍କୁ ଅନୁରୋଧ କରିଥିଲେ ଏବଂ ତାହାହିଁ କରାଯାଇଥିଲା । ପରଦିନ ମୁଖ୍ୟମନ୍ତ୍ରୀ ବିଧାନସଭାରେ ଗୋଟିଏ ବିବୃତି ଦେଇ କହିଥିଲେ ଯେ ଏ ପ୍ରକାର ଅଚାନକ ଭୋଟରେ ପରାସ୍ତହେଲେ ସରକାର ଇସ୍ତଫା ଦେବାର କଥା ନୁହେଁ; କାରଣ ଏହା ଅନାସ୍ଥା ପ୍ରସ୍ତାବ ନୁହେଁ । ସରକାରୀ ଦଳର ସଭ୍ୟମାନଙ୍କର ଆକସ୍ମିକ ଅନୁପସ୍ଥିତିର ସୁଯୋଗ ନେଇ ଅଚାନକ ଭୋଟ ଦାବିକରି ସରକାରଙ୍କର କୌଣସି ପ୍ରସ୍ତାବକୁ ନାକଚ କରିବା ଅର୍ଥ ସେହି ପ୍ରସ୍ତାବଟି ନାକଚ ହେଲା, କିନ୍ତୁ ତାହାଦ୍ୱାରା ସରକାର ନାକଚ ହେଲେନାହିଁ । ତେଣୁ ମନ୍ତ୍ରିମଣ୍ଡଳ ଇସ୍ତଫା ଦେବା ଅନାବଶ୍ୟକ ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ । ଭବିଷ୍ୟତରେ କ'ଣ ହେବାକୁ ଯାଉଛି ସେ ବିଷୟରେ ମୁଖ୍ୟମନ୍ତ୍ରୀ ତାଙ୍କ ବିବୃତିରେ ସେହିଦିନ ସୂଚନା ଦେଇଥିଲେ । ରାଜନୈତିକ ସ୍ଥିରତା ନଥିଲେ ଶାସନ କାର୍ଯ୍ୟ ତଥା ଯୋଜନାକାର୍ଯ୍ୟ ସୁରୁଖୁରୁରେ କାର୍ଯ୍ୟକାରୀ କରିବା ଅସମ୍ଭବ ବୋଲି କହି ମୁଖ୍ୟମନ୍ତ୍ରୀ ସେଦିନ ବିରୋଧୀଦଳର ନେତାମାନଙ୍କର ସହଯୋଗ କାମନା କରିଥିଲେ । ରାଜ୍ୟପାଳଙ୍କ ଭାଷଣ ଉପରେ ଆଲୋଚନା କରି ଶ୍ରୀ ବିଜୁ ପଟ୍ଟନାୟକ ମଧ୍ୟ ମୁଖ୍ୟମନ୍ତ୍ରୀଙ୍କର ଉକ୍ତିକୁ ସମର୍ଥନ କରି ଯୋଜନାର ଅଗ୍ରଗତିପାଇଁ ରାଜନୈତିକ ଅସ୍ଥିରତାକୁ ଏଡ଼ାଇ ସହଯୋଗମୂଳକ ବାତାବରଣ ସୃଷ୍ଟି କରିବାକୁ ବିରୋଧୀଦଳର ନେତାମାନଙ୍କୁ ଅନୁରୋଧ କରିଥିଲେ । ଏ ଦୁଇଜଣଙ୍କର ଭାଷଣ ଶୁଣିଲା ପରେ ଗୃହର ସାଧାରଣ ସଭ୍ୟମାନଙ୍କ ମନରେ ଧାରଣା ହୋଇଥିଲା ଯେ କୌଣସି ରାଜନୈତିକ ପରିବର୍ତ୍ତନ ନିଶ୍ଚୟ ହେବାକୁ ଯାଉଛି ଏବଂ ରାଜ୍ୟରେ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହୋଇପାରେ । ଅବଶ୍ୟ ମୁଖ୍ୟମନ୍ତ୍ରୀ ଓ ବିଜୁ ପଟ୍ଟନାୟକ ଯେଉଁ ଧରଣର କଥା ବ୍ୟବସ୍ଥା ସଭାରେ କହିଲେ ସେ ବିଷୟଟି ଆମ୍ଭମାନଙ୍କ ସହିତ ପୂର୍ବରୁ ଆଲୋଚିତ ହୋଇଥିଲା । ବିଧାନସଭା ଯେପରି ଭାବରେ ଚାଲିଥାଏ ଓ ବିଶେଷତଃ କଂଗ୍ରେସ ଦଳକୁ ବିଧାନସଭାରେ ଯେଉଁସବୁ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡୁଥାଏ ସେଥିରେ କଂଗ୍ରେସ ଦଳର ଲୋକେ ଆଦୌ ସନ୍ତୁଷ୍ଟ ନଥିଲେ । ବିଧାନସଭାକୁ ଭାଙ୍ଗିଦେଇ ପୁନି ନିର୍ବାଚନ କରିବା ପାଇଁ ମଧ୍ୟ କେହି ପ୍ରସ୍ତୁତ ନଥିଲେ । ତେଣୁ ଏକମାତ୍ର ଉପାୟ ଥିଲା ଗଣତନ୍ତ୍ର ଦଳର ସହଯୋଗରେ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିବା । ଏ ବିଷୟରେ ଦଳର ସଭ୍ୟମାନଙ୍କ ସହିତ ବହୁ ଆଲୋଚନା ହୋଇଥିଲା ଏବଂ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିବା ପ୍ରସ୍ତାବ ସପକ୍ଷରେ ସାଧାରଣ ଭାବରେ ମତ ପ୍ରକାଶ ପାଇଥିଲା । ଯେଉଁମାନେ ଭବିଷ୍ୟତ ସମ୍ବନ୍ଧରେ କେତେ ଆଶଙ୍କା କରିଥିଲେ, ସେତେବେଳକାର ପରିସ୍ଥିତିରେ ଅନ୍ୟ କୌଣସି ପନ୍ଥା ନଥିଲା ବୋଲି ସେମାନେ ମଧ୍ୟ ଅନୁଭବ କରିଥିଲେ । ଏ ପ୍ରସ୍ତାବଟି କିପରି କାର୍ଯ୍ୟକାରୀ ହେବ ତାହା ଥିଲା ଚିନ୍ତାର ବିଷୟ, କାରଣ କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷ ସାଧାରଣ ଭାବରେ ସେତେବେଳକାର ପରିସ୍ଥିତିରେ ମିଳିତ ମନ୍ତ୍ରିମଣ୍ଡଳ ଗଠନ ସପକ୍ଷରେ ନଥିଲେ । ମୁଖ୍ୟମନ୍ତ୍ରୀ ଶ୍ରୀ ମହତାବ, ମୁଁ, ବିଜୁବାବୁ ଓ ବୀରେନ୍‌ବାବୁ ପ୍ରଭୃତି ଏକତ୍ର

ବସି ଏ ବିଷୟ ଆଲୋଚନା କରିଥିଲୁ । ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିବାପାଇଁ ମହତାବବାବୁଙ୍କର ପୂର୍ଣ୍ଣ ଇଚ୍ଛା ଥାଏ; କିନ୍ତୁ ପ୍ରଧାନମନ୍ତ୍ରୀଙ୍କ ସମେତ କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷଙ୍କ ସହ ପ୍ରଥମେ କଥାବାର୍ତ୍ତା କରିବାକୁ ସେ ସଂକୋଚ ଅନୁଭବ କରୁଥିଲେ । ତେଣୁ ମିଳିତ ମନ୍ତ୍ରିମଣ୍ଡଳ ଗଠନ ପ୍ରସ୍ତାବଟି କିପରି କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷଙ୍କଦ୍ୱାରା ଗୃହୀତ ହେବ, ତାହାର ଦାୟିତ୍ୱ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଉପରେ ଦିଆଯାଇଥିଲା । ବିଜୁବାବୁ ଦିଲ୍ଲୀ ଯାଇଥିଲେ । ପ୍ରଧାନମନ୍ତ୍ରୀ ଶ୍ରୀ ଜବାହରଲାଲଙ୍କୁ ଓଡ଼ିଶା ପରିସ୍ଥିତି ବିଷୟରେ ସବୁ କଥା ବୁଝାଇଥିଲେ ଏବଂ ମିଳିତ ମନ୍ତ୍ରିମଣ୍ଡଳ ଗଠନ ପ୍ରସ୍ତାବ ମଧ୍ୟ ତାଙ୍କୁ କହିଥିଲେ । ଅନ୍ୟାନ୍ୟ ନେତୃବର୍ଗଙ୍କ ସହିତ ମଧ୍ୟ ସେ କଥାବାର୍ତ୍ତା କରିଥିଲେ । ଏଥିପାଇଁ ତାଙ୍କୁ ଅନେକଥର ଦିଲ୍ଲୀ ଯିବାକୁ ପଡ଼ିଥିଲା । ଶେଷରେ ଗୋଟିଏ ମିଳିତ କାର୍ଯ୍ୟକ୍ରମକୁ ଭିତ୍ତିକରି ଓଡ଼ିଶାରେ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରାଯାଇପାରେ ବୋଲି କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷ ସମ୍ମତି ଦେଇଥିଲେ । ପୂର୍ବରୁ ଗଣତନ୍ତ୍ରଦଳର ନେତା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ସହିତ ମୁଖ୍ୟମନ୍ତ୍ରୀ ଓ ବିଜୁବାବୁଙ୍କର କଥାବାର୍ତ୍ତା ହୋଇଥିଲା । ମିଳିତ ମନ୍ତ୍ରିମଣ୍ଡଳ ଗଠନ ପ୍ରସ୍ତାବକୁ ଶ୍ରୀ ସିଂହଦେଓ ସ୍ୱାଗତ ଜଣାଇଥିଲେ । ଯୋଜନା ମାଧ୍ୟମରେ ଦେଶର ଅଭ୍ୟୁଦୟ ଓ ଅଗ୍ରଗତି ହାସଲ କରିବା ସମ୍ବନ୍ଧରେ ନାଗପୁର କଂଗ୍ରେସରେ ଗୃହୀତ ହୋଇଥିବା ପ୍ରସ୍ତାବଟି ମିଳିତ ମନ୍ତ୍ରିମଣ୍ଡଳ କାର୍ଯ୍ୟର ମୂଳଭିତ୍ତି ହେବ ବୋଲି ଉଭୟ କଂଗ୍ରେସ ଓ ଗଣତନ୍ତ୍ର ଦଳର ନେତାମାନଙ୍କ ମଧ୍ୟରେ ରାଜିନାମା ହୋଇଥିଲା ।

୧୯୫୯ ମସିହା ବଜେଟ୍ ଅଧିବେଶନ ସମାପ୍ତ ହେବା ପରେ ଆମେସବୁ ସହଯୋଗୀ ମନ୍ତ୍ରୀ ଓ ଉପମନ୍ତ୍ରୀମାନେ ଆମ୍ଭମାନଙ୍କର ଇସ୍ତଫାପତ୍ର ମୁଖ୍ୟମନ୍ତ୍ରୀ ଶ୍ରୀ ମହତାବଙ୍କ ହାତରେ ଦେଇଦେଲୁ । ମେ' ମାସ ପ୍ରଥମ ସପ୍ତାହରେ ଶ୍ରୀ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା ଏବଂ ସେଥିରେ ପ୍ରଥମରୁ ମାତ୍ର ଆଉ ଦୁଇଜଣ ସଭ୍ୟଙ୍କୁ ନିଆଯାଇଥିଲା । ସେମାନେ ହେଲେ ଗଣତନ୍ତ୍ର ଦଳର ନେତା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ କଂଗ୍ରେସ ଦଳର ଶ୍ରୀ ରାଧାନାଥ ରଥ । ପ୍ରାୟ ତିନିମାସ ପରେ ଏହି ତିନିଜଣିଆ ମନ୍ତ୍ରିମଣ୍ଡଳର ସଂପ୍ରସାରଣର ଆବଶ୍ୟକତା ଅନୁଭବ କରାଯାଇଥିଲା । ଜୁଲାଇମାସ ଶେଷ ବେଳକୁ ମନ୍ତ୍ରିମଣ୍ଡଳ ସଂପ୍ରସାରିତ ହୋଇଥିଲା ଏବଂ ଉଭୟ ଦଳରୁ ଆଉ ଆଠଜଣ ସଭ୍ୟ ଏହି ମନ୍ତ୍ରିମଣ୍ଡଳରେ ଯୋଗଦେଇଥିଲେ । ଏହି ଏଗାରଜଣିଆ ମନ୍ତ୍ରିମଣ୍ଡଳରେ ମୁଖ୍ୟମନ୍ତ୍ରୀଙ୍କୁ ଛାଡ଼ି ଉଭୟ ଦଳରୁ ପାଞ୍ଚଜଣ କରି ସଭ୍ୟ ନିଆଯାଇଥିଲେ । କଂଗ୍ରେସ ଦଳରୁ ଥିଲେ ମୁଖ୍ୟମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବ, ମୁଁ ଓ ସର୍ବଶ୍ରୀ ରାଧାନାଥ ରଥ, ସତ୍ୟପ୍ରିୟ ମହାନ୍ତି, ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ ଓ ବୃନ୍ଦାବନ ନାୟକ । ଗଣତନ୍ତ୍ର ଦଳରୁ ଥିଲେ ସର୍ବଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ, ରାଜବଲ୍ଲଭ ମିଶ୍ର, ଡକ୍ଟର ରାମ ପ୍ରସାଦ ମିଶ୍ର, ଶ୍ରୀ ଉଦିତ ପ୍ରସାଦ ଦେଓ ଓ ଶ୍ରୀ ଲକ୍ଷ୍ମୀ ପ୍ରସାଦ ମିଶ୍ର । ମନ୍ତ୍ରିମଣ୍ଡଳ ଗଠନ ହେବା ପରେ ଆମ୍ଭମାନଙ୍କୁ ଗାଁରିଆଡ଼େ ବୁଲି ସେତେବେଳକାର ପରିସ୍ଥିତିରେ ମିଳିତ ମନ୍ତ୍ରିମଣ୍ଡଳର ଆବଶ୍ୟକତା ସମ୍ବନ୍ଧରେ ବୁଝାଇବାକୁ ପଡ଼ିଥିଲା । ମାତ୍ର କିଛିଦିନ ଗଲା ପରେ ମିଳିତ ମନ୍ତ୍ରିମଣ୍ଡଳର କାର୍ଯ୍ୟକାରୀତା ସମ୍ବନ୍ଧରେ କେତେକ ଅସୁବିଧା ଲକ୍ଷ୍ୟ କରାଯାଇଥିଲା । ଏହି ମନ୍ତ୍ରିମଣ୍ଡଳ ଗଠନ ହେବା ପୂର୍ବରୁ ଶ୍ରୀ ମହତାବଙ୍କ ସମେତ ଆମ୍ଭମାନଙ୍କର ଆଶା ଥିଲା ଯେ ଏକସଙ୍ଗରେ କାମକଲେ ଦୁଇଟି ଦଳର ମିଶ୍ରଣ ଆପେ ଆପେ ହୋଇଯିବ ଏବଂ ଓଡ଼ିଶାରେ ରାଜନୈତିକ ସ୍ଥିରତାର ବାଟ ଫିଟିଯିବ; କିନ୍ତୁ କାର୍ଯ୍ୟକ୍ଷେତ୍ରରେ ଦେଖାଗଲା ଯେ ଶାସନ କ୍ଷେତ୍ରରେ ଦୁଇଟି ଭାଗୁଆଳିଦଳ ହିସାବରେ କାର୍ଯ୍ୟ ଚାଲିଲା । ମନ୍ତ୍ରିମଣ୍ଡଳର ବୈଠକ ପୂର୍ବରୁ ମନ୍ତ୍ରିମଣ୍ଡଳରେ ଥିବା ଗଣତନ୍ତ୍ରଦଳର ସଭ୍ୟମାନେ ତାଙ୍କର ନେତା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଘରେ ବସି ମନ୍ତ୍ରିମଣ୍ଡଳ ବୈଠକରେ କ'ଣ କରାଯିବ ସେ ବିଷୟରେ ଆଲୋଚନା କରୁଥିଲେ ; କିନ୍ତୁ ଆମେ କଂଗ୍ରେସ ଦଳର ମନ୍ତ୍ରୀମାନେ ସେପରି କରୁ ନ ଥିଲୁ । ଏ ପରିସ୍ଥିତିରେ ମନ୍ତ୍ରିମଣ୍ଡଳ ବୈଠକରେ ତୀବ୍ର ମତଭେଦ ପ୍ରକାଶପାଉଥିଲା ଏବଂ ଅଫିସରମାନଙ୍କ ଆଗରେ ଆମ୍ଭେମାନେ ଅପ୍ରସ୍ତୁତ

ହୋଇପଡୁଥିଲୁ । ଏହି କାରଣରୁ ଆବଶ୍ୟକତା ପଡ଼ିଥିଲା ଅଣଅନୁଷ୍ଠାନିକ ମନ୍ତ୍ରିମଣ୍ଡଳ ବୈଠକର ପ୍ରଚଳନ, ଯେଉଁ କଥା ମୁଁ ଆଗରୁ ଉଲ୍ଲେଖ କରିଛି । ତାହା ପରଠାରୁ ମନ୍ତ୍ରିମଣ୍ଡଳ ବୈଠକ ସୁରୁଖୁରୁରେ ଅଳ୍ପ ସମୟ ଭିତରେ ସମାପ୍ତ ହୋଇଯାଉଥିଲା ।

## କେତୋଟି ବିପଦ ଆପଦ କଥା

ଶ୍ରୀ ମହତାଙ୍କ ମନ୍ତ୍ରିମଣ୍ଡଳରେ ମୁଁ ମନ୍ତ୍ରୀ ଥିବା ସମୟରେ ୧୯୫୭ ମସିହା ଅଗଷ୍ଟ ମାସ ଶେଷବେଳକୁ ମୋର ଚାନ୍ଦବାଲି ନିର୍ବାଚନମଣ୍ଡଳୀର ବାସୁଦେବପୁର ଓ ବାଁଶଡା ଅଞ୍ଚଳରେ ସମୁଦ୍ର ଢେଉ ମାଡ଼ିଆସି ବହୁ ଧନଜୀବନ, ଗୋରୁଗାଈ ନଷ୍ଟକରିଥିଲା । ସେହି ସମୟରେ ବାଲେଶ୍ୱର ଜିଲ୍ଲାର ନଦୀମାନଙ୍କରେ ବଡ଼ ବନ୍ୟା ହୋଇଥିଲା ଏବଂ ବସ୍ତାଠାରେ ଜଳକା ନଦୀରେ ପୋଲ ବୁଡ଼ିଯିବାରୁ ରେଳ ଚଳାଚଳ ମଧ୍ୟ ବନ୍ଦହୋଇଥିଲା । ମୁଁ ସେଦିନ କଲିକତାରୁ ଭୁବନେଶ୍ୱର ରେଳରେ ଆସୁଥାଏ । ଗାଡ଼ି ଆସି ସୁବର୍ଣ୍ଣରେଖା ନଦୀ କୂଳରେ ରାଜଘାଟ ଷ୍ଟେସନ୍ ପାଖରେ ଅଟକିଲା । ବାଲେଶ୍ୱର କଲେକ୍ଟରଙ୍କୁ ଖବର ଦେବାରୁ ସେ ଆସି ମୋତେ ସେଠାରୁ ବାଲେଶ୍ୱର ନେଇଯାଇଥିଲେ । ତାଙ୍କଠାରୁ ଲୁଣାଢେଉ ମାଡ଼ିଆସି ବାସୁଦେବପୁର ଅଞ୍ଚଳରେ ଯେଉଁ ପରିସ୍ଥିତି ସୃଷ୍ଟିହୋଇଥିଲା ସେ ବିଷୟରେ ଖବର ପାଇଥିଲି । ତେଣୁ ବାଲେଶ୍ୱରରେ ପହଞ୍ଚି ଶୀଘ୍ର ମୁଁ ଯାଇଥିଲି ବାସୁଦେବପୁରର ସମୁଦ୍ରକୂଳିଆ ଅଞ୍ଚଳକୁ । ସେତେବେଳକୁ କୌଣସି ଅଫିସର ମଧ୍ୟ ସେ ଅଞ୍ଚଳରେ ପହଞ୍ଚି ପାରି ନଥାନ୍ତି । ମୁଁ ଯାଇ ସେଠାରେ ଦେଖେଁ ସାତ ଆଠ ଫୁଟ ଉଚ୍ଚରେ ସମୁଦ୍ର ଢେଉ ପୂରା ଚାରି ପାଞ୍ଚ ମାଇଲ ଉପକୂଳ ଅଞ୍ଚଳରେ ମାଡ଼ିଯାଇ ଘରଦ୍ୱାର ସବୁ ଭାଙ୍ଗିଦେଇଛି । ବହୁ ଗୋରୁଗାଈ ମରି ପଡ଼ିଥିବାର ଦେଖିଲି । ଲୋକଙ୍କର ହାହାକାର ଅବସ୍ଥା । ତେଣୁ ଅସହାୟ ଲୋକଙ୍କୁ ସାହାଯ୍ୟ କରିବାପାଇଁ ତୁରନ୍ତ ରିଲିଫ୍ କାର୍ଯ୍ୟ ଆରମ୍ଭ ହୋଇଥିଲା । ସମୁଦ୍ର କୂଳରେ ଥିବା ସବୁ ଗାଆଁକୁ ଯିବା ବଡ଼ କଷ୍ଟକର ଥିଲା । କିନ୍ତୁ ମୁଁ ନିଜେ ସେଠାରେ ଉପସ୍ଥିତ ରହିବାରୁ ସ୍ଥାନୀୟ ଅଫିସରମାନେ ଖୁବ୍ ଜୋର୍‌ସୋର୍‌ରେ ଲୋକଙ୍କୁ ସାହାଯ୍ୟଦେବା କାର୍ଯ୍ୟରେ ଲାଗିଯାଇଥିଲେ । ବହୁବର୍ଷ ପୂର୍ବେ ଯେଉଁ ଲୁଣା ବନ୍ଧ ସମୁଦ୍ର କୂଳରେ କେତେକ ଅଞ୍ଚଳରେ ନିର୍ମାଣ କରାଯାଇଥିଲା, ତାହା ଏକପ୍ରକାର ଭଟେଇଯାଇଥିଲା । ଲୋକେ ମୋତେ କହିଥିଲେ, ଯଦି ବଡ଼ ଲୁଣାବନ୍ଧ ଥା'ନ୍ତା ତାହାହେଲେ ସମୁଦ୍ର ଢେଉକୁ ଅନେକ ପରିମାଣରେ ଅଟକାଇ ଦେଇଥାଆନ୍ତା । ତେଣୁ ତୁରନ୍ତ ଧାମରାଠାରୁ ଗମେଇ ନଦୀ ପର୍ଯ୍ୟନ୍ତ ଲୁଣାବନ୍ଧ ନିର୍ମାଣ କରିବାପାଇଁ ମୋ ପାଖରେ ଲୋକମାନେ ଦାବି କରିଥିଲେ । ସମୁଦ୍ର ଜୁଆରଦ୍ୱାରା ଏପ୍ରକାର ଦୈବୀଦୁର୍ବିପାକ ପୂର୍ବରୁ କେବେ ସେ ଅଞ୍ଚଳରେ ହୋଇନଥିଲା, ଏହା ପ୍ରଥମ ବୋଲି ସେମାନେ ମୋତେ କହିଥିଲେ । ଓଡ଼ିଶାରେ ଏହା ପୂର୍ବରୁ କେବେ ଏପରି ହୋଇଥିଲା କି ନାହିଁ ମୋର ସନ୍ଦେହ । କିନ୍ତୁ ୧୯୭୧ ମସିହାରେ ଶ୍ରୀ ବିଶ୍ୱନାଥ ଦାସଙ୍କର ମନ୍ତ୍ରିମଣ୍ଡଳ ସମୟରେ ଏହି ପ୍ରକାରର ବିପ୍ଲାବ୍ କଟକ ଜିଲ୍ଲାର ରାଜନଗର, ମହାକାଳପଡ଼ା ଓ ଜମ୍ବୁ ପ୍ରଭୃତି ଅଞ୍ଚଳରେ ଘଟିଥିଲା । ତାହା ମଧ୍ୟ ଖୁବ୍ ଭୟଙ୍କର ହୋଇଥିଲା ଓ ସେଥିରେ ପ୍ରାୟ ଦଶ ହଜାର ଲୋକ ମରିଥିଲେ । ସେ ଭୟଙ୍କର ଚିତ୍ର ମୁଁ ସ୍ୱଚକ୍ଷୁରେ ଦେଖିଥିଲି । ବାସୁଦେବପୁର ଅଞ୍ଚଳରେ ୧୯୫୭ ମସିହାରେ ଯେଉଁ ପ୍ରାକୃତିକ ବିପର୍ଯ୍ୟୟ ଘଟିଥିଲା, ସେତେବେଳେ ଲୋକଙ୍କୁ ଭଲଭାବରେ ସାହାଯ୍ୟ କରାଯାଇଥିଲା । ରାଜ୍ୟପାଳ ଶ୍ରୀ ସୁଖାଙ୍କର ଏ ଅଞ୍ଚଳ ପରିଦର୍ଶନ କରିବାକୁ ଯାଇଥିଲେ ଏବଂ ଲୋକମାନଙ୍କୁ ଅଧିକ ସାହାଯ୍ୟ ଦେବାପାଇଁ ସରକାରଙ୍କୁ ସୁପାରିସ୍ କରିଥିଲେ । ଏହା ପରେ ପରେ ସମୁଦ୍ର କୂଳେ କୂଳେ ଲୁଣାବନ୍ଧ ତିଆରି କାର୍ଯ୍ୟ ଆରମ୍ଭହୋଇଯାଇଥିଲା । ପିଇବା ପାଣିର ଅଭାବ ସବୁଠାରୁ ଅଧିକ ଉତ୍କଟ ଭାବରେ ଅନୁଭବ କରାଯାଇଥିଲା । ସମୁଦ୍ର କୂଳଠାରୁ ଦଶ ପନ୍ଦର ମାଇଲ ମଧ୍ୟବର୍ତ୍ତୀ ଅଞ୍ଚଳରେ ଥିବା ଗାଆଁମାନଙ୍କରେ ଲୁଣିଆ ପୋଖରୀ ପାଣି ବ୍ୟତୀତ ଅନ୍ୟ କୌଣସି ପିଇବା ପାଣିର ସୁବିଧା ନଥାଏ ।

ଗୋଳିଆ ଲୁଣିପାଣି ପିଇବା ବ୍ୟତୀତ ଅନ୍ୟ କୌଣସି ଉପାୟ ନ ଥାଏ । କୂଅ ଖୋଳିବା ସେ ଅଞ୍ଚଳରେ ଅସମ୍ଭବ, କାରଣ ପାଞ୍ଚ ସାତ ଶହ ଫୁଟ ତଳକୁ ଖୋଳିଲେ ଯାଇ ମଧୁରପାଣି ମିଳେ । ପିଇବା ପାଣିର ଏପରି ଅଭାବ ଯୋଗୁଁ ଅଫିସରମାନେ ମଧ ସେ ସବୁ ଅଞ୍ଚଳକୁ ବିଶେଷ ଭାବରେ ଯାଉନଥିଲେ; ଯେବେ ଯାଉଥିଲେ ବୋତଲରେ ପିଇବାପାଣି ସାଙ୍ଗରେ ନେଉଥିଲେ ଏବଂ ତାହା ଶେଷ ହେବା ପୂର୍ବରୁ ପଳାଇଆସୁଥିଲେ । ମୁଁ ରାଜଧାନୀରୁ ଫେରି ମୁଖ୍ୟମନ୍ତ୍ରୀଙ୍କ ସହିତ ପିଇବାପାଣି ଅଭାବ ବିଷୟ ଆଲୋଚନା କରିଥିଲି । ତାଙ୍କର ମଧ ଏହି ଅଞ୍ଚଳ ସମ୍ବନ୍ଧରେ ସେହି ପ୍ରକାର ଅନୁଭୂତି ଥିଲା । ସମୁଦ୍ରକୂଳିଆ ଅଞ୍ଚଳମାନଙ୍କରେ ଗଭୀର ନଳକୂପ ଖୋଳିବା ଉଦ୍ଦେଶ୍ୟରେ ଗୋଟିଏ ଯୋଜନା ପ୍ରଥମଥରପାଇଁ ପ୍ରସ୍ତୁତ କରାଯାଇଥିଲା ଏବଂ ତାହା ମୁଖ୍ୟମନ୍ତ୍ରୀ ଓ ମନ୍ତ୍ରିମଣ୍ଡଳ ଅନୁମୋଦନ କରିଥିଲେ । ଗୋଟିଏ ଟିଉବ୍‌ୱେଲ୍ ଖୋଳିବାରେ ସେତେବେଳେ ଖର୍ଚ୍ଚ ହେଉଥିଲା ପ୍ରାୟ ପାଞ୍ଚ ହଜାର ଟଙ୍କା, କାରଣ ପାଞ୍ଚଶହ ଫୁଟରୁ ଏକ ହଜାର ଫୁଟ ଗଭୀରକୁ ନଳ ପକାଇବାକୁ ପଡୁଥିଲା ମଧୁର ଜଳ ପାଇବାପାଇଁ । ବହୁ ସଂଖ୍ୟାରେ ଏହି ପ୍ରକାର ନଳକୂପ ଏ ଅଞ୍ଚଳରେ ଖୋଳାଯାଇଥିଲା ଏବଂ ଅନେକ ଜାଗାରେ ଟିଉବ୍‌ୱେଲ୍‌ରୁ ଆପେ ଆପେ ପାଣି ବାହାରୁଥିଲା ଏବଂ ଖୁବ୍ ସୁନ୍ଦର ପରିଷ୍କାର ମିଠାପାଣି ବାହାରୁଥିଲା । ସେଠାକାର ଲୋକେ ପ୍ରଥମଥରପାଇଁ ଏ ପ୍ରକାର ପାଣି ଦେଖିବାକୁ ପାଇଥିଲେ । ମୋର ମନେଅଛି, ବିଦେଇପୁର ଗ୍ରାମରେ ଏହିପରି ଗୋଟିଏ ନଳକୂପ ବସାଯାଇ ଯେତେବେଳେ ପାଣି ବାହାରେ ସେତେବେଳେ ମୁଁ ସେଠାରେ ଉପସ୍ଥିତ ଥିଲି । ସେ ଗ୍ରାମର ଜଣେ ବୟୋଜ୍ୟେଷ୍ଠ ବ୍ୟକ୍ତି ଶ୍ରୀ ବିଷ୍ଣୁମୋହନ ପାଣିଗ୍ରାହୀ ମୋତେ ଦେଖି କହିଥିଲେ, "ଭଗୀରଥ ଯେପରି ଗଙ୍ଗାକୁ ପୃଥିବୀ ପୃଷ୍ଠକୁ ଆଣିଥିଲେ ଆପଣ ସେହିପରି ଏ ଅଞ୍ଚଳରେ ନଳକୂପ ଖୋଳାଇ ଏତେ ଗଭୀରରୁ ପାଣି ବାହାର କରିବାର ବ୍ୟବସ୍ଥା କରି ଆମ୍ଭମାନଙ୍କର ବହୁଦିନର ଗୋଟିଏ ଅଭାବ ପୂରଣ କରିପାରିଛନ୍ତି ।" ଏ ପ୍ରକାର ନଳକୂପ କେବେ ସେ ଅଞ୍ଚଳରେ ନଥିଲା । ସେହି ୧୯୫୭ ମସିହାଠାରୁ ଯୋଜନାବଦ୍ଧ ଭାବରେ ଯେଉଁ ଗଭୀର ନଳକୂପ ଖୋଳା କାର୍ଯ୍ୟକ୍ରମ ଆରମ୍ଭହେଲା, ତାହା ଆଜିପର୍ଯ୍ୟନ୍ତ ଚାଲିଛି । କଟକ, ବାଲେଶ୍ୱର ଓ ପୁରୀ ଜିଲ୍ଲାମାନଙ୍କରେ ସମୁଦ୍ରକୂଳିଆ ପ୍ରତ୍ୟେକ ଗ୍ରାମରେ ଏହିପ୍ରକାର ପିଇବାପାଣିର ବ୍ୟବସ୍ଥା କରାଯାଉଛି । ମୁଁ ଶୁଣିଛି, ୧୯୪୪ ମସିହାରେ ପୀରହାଟ ପାଖରେ ଗୋଟିଏ ଗଭୀର ନଳକୂପ ଖୋଳାଯାଇଥିଲା ବୋଲି ନିଜେ ତତ୍କାଳୀନ ଲାଟ୍‌ସାହେବ ସାର୍ ହଥର୍ଣ୍ଣ ଲୁଇସ୍ ତାକୁ ଉଦ୍‌ଘାଟନ କରିବାପାଇଁ ଯାଇଥିଲେ ।

୧୯୫୮ ମସିହାରେ ଚାନ୍ଦବାଲି, ବାଂଶଡ଼ା ଓ ବାସୁଦେବପୁର ଅଞ୍ଚଳରେ ଖାଦ୍ୟାଭାବ ପଡ଼ିଥିଲା । ଯାହା କିଛି ଧାନ ଚାଉଳ ସେ ଅଞ୍ଚଳରେ ଥିଲା ସେଗୁଡ଼ିକ ସମୁଦ୍ର ବାଟରେ ତତ୍କାଳୀନ ପୂର୍ବ ପାକିସ୍ତାନକୁ ଚୋରାରେ ଚାଲିଯାଉଥିଲା ବୋଲି ଅଭିଯୋଗ ହେଉଥାଏ । ସେ ଅଞ୍ଚଳର ଅବସ୍ଥା ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବାପାଇଁ ମୁଁ ବାସୁଦେବପୁର ବାଟ ଦେଇ ଧାମରା ପାଖକୁ ଯାଇଥିଲି । ବାଂଶଡ଼ା ଅଞ୍ଚଳର ଅବସ୍ଥା ବୁଝିବା ପରେ ଧାମରାରୁ ବୈତରଣୀ ବାଟେ ବୋଟ୍‌ରେ ମୋର ଚାନ୍ଦବାଲି ଯିବାର କାର୍ଯ୍ୟକ୍ରମ ଥାଏ । ଆମପାଇଁ ସେଠାରେ ଗୋଟିଏ ଛୋଟିଆ ପୁଲିସ ପାଓ୍ୱାର ବୋଟ୍ ରଖାଯାଇଥାଏ । ବାଂଶଡ଼ାର ଖାଦ୍ୟ ପରିସ୍ଥିତି ବୁଝିବା ପରେ ମୁଁ ସେହି ବୋଟ୍‌ରେ ଉପରବେଳା ପ୍ରାୟ ଚାରିଟାବେଳେ ଚାନ୍ଦବାଲିରୁ ବାହାରିଥିଲି । ମୋ ସାଙ୍ଗରେ ଯୋଗାଣ ବିଭାଗର ସେକ୍ରେଟେରୀ ଶ୍ରୀ ଜଗନ୍ନାଥ ମିଶ୍ର ଓ ମୋର ପରସନାଲ୍ ଆସିଷ୍ଟାଣ୍ଟ ଶ୍ରୀ ଆକୁଳାନନ୍ଦ ଦେହୁରୀ ଥାଆନ୍ତି । କିଛି ବାଟ ଗଲା ପରେ ହଠାତ୍ ଆକାଶ ମେଘାଚ୍ଛନ୍ନ ଦେଖାଗଲା ଏବଂ ତାହା ସାଙ୍ଗକୁ ତୋଫାନ ମଧ ହୋଇଥିଲା । ଏତେ ଜୋର୍‌ରେ ପବନ ହେଲା ଯେ ଆମର ବୋଟ୍‌ଟି ଓଲଟିଯିବା ଅବସ୍ଥାକୁ ଆସିଯାଇଥିଲା । ପାଣି ସେଠାରେ ଅକାଟକୋତ, ନଦୀର ଓସାର ସେଠାରେ ପ୍ରାୟ ଦୁଇମାଇଲ୍ ହେବ । ସମୁଦ୍ରରୁ ଢେଉ ମାଡ଼ିଆସୁଥାଏ । କୂଳରେ ଜଙ୍ଗଲ ଓ କୁମ୍ଭୀର ଭୟ । ଏହି ସମୟରେ ଜୋର୍‌ରେ ତୋଫାନ ହେବାରୁ

ବୋଟ୍‌ଟି କଡ଼େଇ ହୋଇଯାଇଥିଲା ଏବଂ ହଠାତ୍ ବୋଟ୍ ମୁଣ୍ଡରେ ଥିବା ଲଙ୍ଗର ପାଣିରେ ପଡ଼ିଯାଇଥିଲା । ଲଙ୍ଗରଟି ତଳେ ଲାଗିଯାଇଥିଲେ ବୋଟ୍‌ଟି ବୁଡ଼ିଯାଇଥାଆନ୍ତା ଓ ଆମେ ସମସ୍ତେ ବୁଡ଼ି ମରିଥାଆନ୍ତୁ । ଲଙ୍ଗରର ଚେନ୍ ଚାଳିଶ ଫୁଟ୍ ଲମ୍ବ ଥିଲା; କିନ୍ତୁ ସେଠାରେ ଜଳର ଗଭୀରତା ଷାଠିଏ ଫୁଟ, ଠାଏ ଠାଏ ଅଧିକ ଥିଲା । ତେଣୁ ଲଙ୍ଗର ମାଟିରେ ଲାଗିନଥିଲା ଏବଂ ଆମ୍ଭେମାନେ ରକ୍ଷାପାଇଯାଇଥିଲୁ । ବୋଟ୍ ଅଣେଇ ହୋଇଯିବାରୁ ସେଥିରେ କିଛି ପାଣି ପଶିଯାଇଥିଲା । ବୋଟ୍ ଚାଳକ କୌଣସିମତେ ଲଙ୍ଗର ଉଠାଇ ଦେଇ ଆହୁଲା ମାରି ମାରି ବୋଟ୍‌କୁ ନେଇ ଗୋଟିଏ ବଣ ପାଖରେ ଲଗାଇଲା । ସେଠାରେ କୂଳକୁ ଓହ୍ଲାଇବା ସମ୍ଭବ ନଥିଲା । ତେଣୁ ପାଗ ସୁଧୁରିବା ପର୍ଯ୍ୟନ୍ତ ସେହି ବୋଟ୍‌ରେ ଅପେକ୍ଷା କରି ରହିଥିଲୁ । ଏହିପ୍ରକାର ଭୟଙ୍କର ପରିସ୍ଥିତି ଦେଖି ଆମର ଯୋଗାଣ ବିଭାଗ ସେକ୍ରେଟେରୀ ତାଙ୍କର ପ୍ୟାଣ୍ଟ୍ ଖୋଲିଦେଇ ଗାମୁଛା ଖଣ୍ଡେ ପିନ୍ଧି ପ୍ରାର୍ଥନା କରିବସିଲେ । ତାଙ୍କର ଏ ଅବସ୍ଥା ଦେଖି ଆକୁଳି ଟିକିଏ ହସିଦେଇଥିଲା । ତା'ର ହସ ଦେଖି ସେ ଅତ୍ୟନ୍ତ କ୍ରୋଧ ପ୍ରକାଶ କରିଥିଲେ । ଭଗବାନ୍‌ଙ୍କ ଦୟାରୁ ଆମ୍ଭେମାନେ ରକ୍ଷାପାଇଥିଲୁ ଏବଂ ବହୁ କଷ୍ଟରେ ଅନ୍ଧାରରେ ଆସ୍ତେ ଆସ୍ତେ ଆସି ଅନେକ ରାତିରେ ଚାନ୍ଦବାଲିରେ ପହଞ୍ଚିଥିଲୁ । ଆମେ ଏପ୍ରକାର ବିପଦରୁ ବର୍ତ୍ତିକରି ଆସିଥିଲୁ ବୋଲି ଆମ୍ଭମାନଙ୍କୁ ଦେଖିବାପାଇଁ ବହୁ ଲୋକ ଚାନ୍ଦବାଲିରେ ରୁଣ୍ଡହୋଇଯାଇଥିଲେ ।

## ରାଜସାକ୍ଷୀଙ୍କ ଉକ୍ତି ଓ ଆମେ

ଶ୍ରୀ ମହତାବଙ୍କ ମନ୍ତ୍ରିମଣ୍ଡଳ ସମୟରେ କେନ୍ଦୁଝର ଜିଲ୍ଲାର ଖଣିମାଲିକ ମହମ୍ମଦ ସିରାଜଉଦ୍ଦୀନ୍ ବହୁ ଅର୍ଥ ବିନିମୟରେ ଶାସନ କଳରୁ ସବୁ ପ୍ରକାର ସୁବିଧା ହାସଲ କରିଥିଲେ ବୋଲି ବିଧାନସଭାରେ ଓ ବିଧାନସଭା ବାହାରେ ନାନାପ୍ରକାର ଅଭିଯୋଗ ହେଉଥିଲା । ୧୯୫୯ ମସିହା ବଜେଟ୍ ଅଧିବେଶନ ପ୍ରାରମ୍ଭରୁ ରାଜ୍ୟପାଳ ଯେଉଁ ଭାଷଣ ଦେଇଥିଲେ ସେଥିରେ ମହମ୍ମଦ ସିରାଜଉଦ୍ଦୀନ୍ ଗୋଟିଏ ଫେରୋକ୍ରୋମ୍ କାରଖାନା ବସାଇବାପାଇଁ ଲାଇସେନ୍‌ସ ପାଇଥିବା ଏବଂ ବିଦେଶରୁ ଯନ୍ତ୍ରପାତି ଆଣିବାପାଇଁ ଅନୁମତି ପାଇଥିବା କଥା ଉଲ୍ଲେଖ ଥିଲା । ତେଣୁ ପୂର୍ବରୁ ଯେଉଁ ସବୁ ଅଭିଯୋଗ ହେଉଥିଲା ଯେ କଂଗ୍ରେସର ଓ କଂଗ୍ରେସ ନେତାମାନଙ୍କର ପ୍ରଧାନ ପୃଷ୍ଠପୋଷକ ଥିଲେ ମହମ୍ମଦ ସିରାଜଉଦ୍ଦୀନ, ସେ ବିଷୟଟି ଆଲୋଚନା କରିବାର ସୁଯୋଗ ସଭ୍ୟମାନେ ପାଇଥିଲେ । ବିଧାନସଭାରେ ଅଭିଯୋଗ ହୋଇଥିଲା ଯେ, ବିଗତ ଦୁଇ ବର୍ଷ ମଧ୍ୟରେ ଓଡ଼ିଶାର ଜଣେ କ୍ଷମତାଶାଳୀ ନେତାଙ୍କୁ ଓ ତାଙ୍କ ଅନୁଷ୍ଠାନକୁ ମହମ୍ମଦ ସିରାଜ୍‌ଉଦ୍ଦୀନ୍ କୁଆଡ଼େ ସତର ଲକ୍ଷ ଟଙ୍କା ଦେଇଥିଲେ । ଏହା ପୂର୍ବରୁ ମଧ୍ୟ ବିଧାନସଭାରେ ପ୍ରଶ୍ନ ଛଳରେ ଓ ଆଲୋଚନା ପ୍ରସଙ୍ଗରେ ମହମ୍ମଦ ସିରାଜ୍‌ଉଦ୍ଦୀନ୍‌ଙ୍କ ଖଣି ପଟ୍ଟା, ଶିଳ୍ପ ଓ କ୍ରୋମ୍ ରପ୍ତାନୀ ବିଷୟରେ ବହୁ ପ୍ରଶ୍ନ ଉଠିଥିଲା । ଏକୁଟିଆ ଯେ ମହମ୍ମଦ ସିରାଜ୍‌ଉଦ୍ଦୀନ୍ କଂଗ୍ରେସକୁ ଓ କଂଗ୍ରେସନେତାମାନଙ୍କୁ ଟଙ୍କା ଦାନକରୁଥିଲେ ତାହା ନୁହେଁ, ଆହୁରି ବହୁତ ଖଣିମାଲିକ, ବ୍ୟବସାୟୀ ଓ ଶିଳ୍ପପତି ମଧ୍ୟ ସାହାଯ୍ୟ କରୁଥିଲେ । ମାତ୍ର ମହମ୍ମଦ ସିରାଜ୍‌ଉଦ୍ଦୀନ୍ ଜଣେ ଅତି ଉଦାର ଦିଲ୍‌ଦାର୍ ବ୍ୟକ୍ତି ଥିଲେ । ଅନ୍ୟ ଶିଳ୍ପପତିମାନଙ୍କର ଦାନ ଥାଏ ସର୍ତ୍ତସାପେକ୍ଷ ଓ କୌଣସି ସାନୁଗ୍ରହ ନିଷ୍ପତ୍ତି ନିମନ୍ତେ; ମାତ୍ର ମହମ୍ମଦ ସିରାଜ୍‌ଉଦ୍ଦୀନ୍‌ଙ୍କର ସାହାଯ୍ୟରେ ବିଶେଷ ଭାବରେ ସେ ପ୍ରକାର ସର୍ତ୍ତ ଏପରିକି ପ୍ରତ୍ୟାଶା ପ୍ରକାଶ ପାଏନାହିଁ । ଶ୍ରୀ ମହତାବଙ୍କୁ ସେ ବଡ଼ ଭକ୍ତିକରୁଥିଲେ, ତେଣୁ ତାଙ୍କକଥାରେ ଦାନ କରିବାକୁ ସେ କେବେ କୁଣ୍ଠିତ ହେଉନଥିଲେ; ବରଂ କ'ଣ ଆବଶ୍ୟକ ସେ ନିଜେ ପଚାରି ବୁଝୁଥିଲେ । ସେ କିପରି ଦିଲ୍‌ଦାର୍ ବ୍ୟକ୍ତି ଥିଲେ ସେ ବିଷୟରେ ମୋର ଗୋଟିଏ ଘଟଣା ମନେପଡ଼େ । ଦିନେ ପ୍ରଜାତନ୍ତ୍ର ପ୍ରାଙ୍ଗଣରେ ମହମ୍ମଦ ସିରାଜ୍‌ଉଦ୍ଦୀନ୍ ଆମ୍ଭମାନଙ୍କ ପାଖରେ ବସିଥାଆନ୍ତି । ସେଠାରେ ମୁଁ ଥାଏ ଓ ବୀରେନ୍‌ବାବୁ ଥାଆନ୍ତି । କଟକ ଚୌଧୁରୀବଜାର ଲୋକମାନଙ୍କ ପକ୍ଷରୁ ଶ୍ରୀ କହ୍ନେଇ ଦଳେଇ ଓ ଶ୍ରୀ ରାଜକିଶୋର ସାହୁ ପ୍ରଭୃତି ଆସି

ଦୁର୍ଗା ମେଢ଼ ତିଆରିପାଇଁ ସିରାଜୁଦ୍ଦୀନ୍‌ଙ୍କୁ ଚାନ୍ଦା ମାଗିଥିଲେ । ରୁପାରେ ଦୁର୍ଗାମେଢ଼ଟିଏ କରିଦେଲେ ସବୁ ଦିନପାଇଁ ରହିବ ବୋଲି କହି ସେ ସାଙ୍ଗେ ସାଙ୍ଗେ ନିଜ ଆଡ଼ୁ କଥା ଦେଇଥିଲେ ଏବଂ ପ୍ରତିଶ୍ରୁତି ପୂରଣ କରିଥିଲେ । ସେଥିପାଇଁ ସେ ପନ୍ଦର ହଜାର ଟଙ୍କା ଦାନକରିଥିଲେ । ଏହା ୧୯୪୮ ମସିହାର ଘଟଣା । ବର୍ତ୍ତମାନ ସେ ରୂପା ମେଢ଼ ଅଛି । ପ୍ରତିବର୍ଷ ସେ ମେଢ଼ରେ ଦୁର୍ଗା ପୂଜାପାଉଛନ୍ତି ।

ମହମ୍ମଦ ସିରାଜୁଦ୍ଦୀନ୍ କଂଗ୍ରେସକୁ ଓ ପ୍ରଜାତନ୍ତ୍ର ପ୍ରଚାର ସମିତିକୁ ବହୁତ ସାହାଯ୍ୟ କରୁଥିଲେ । ଭଦ୍ରଖ କଲେଜ ଯେ ଆଜି ଏଡ଼େ ବଡ଼ ଅନୁଷ୍ଠାନରେ ପରିଣତ ହୋଇଛି, ତାହା ମୂଳରେ ଥିଲା ମହମ୍ମଦ ସିରାଜୁଦ୍ଦୀନ୍‌ଙ୍କ ଦାନ । କଂଗ୍ରେସକୁ ସାଧାରଣ ନିର୍ବାଚନ ତଥା ଉପନିର୍ବାଚନ ସମୟରେ ସେ ବହୁତ ସାହାଯ୍ୟ କରୁଥିଲେ । ୧୯୫୭ ସାଧାରଣ ନିର୍ବାଚନ ପୂର୍ବରୁ ମହମ୍ମଦ ସିରାଜୁଦ୍ଦୀନ୍ ଏକାଥରକେ ସେ ସମୟରେ ଏକ ଲକ୍ଷ ଟଙ୍କା ଦେବାର ମୁଁ ଓ ସ୍ୱର୍ଗୀୟ ବୀରେନ୍ ମିତ୍ର ଦେଖିଥିଲୁ । ପ୍ରଦେଶ କଂଗ୍ରେସ ହିସାବ ଆଡ଼କୁ ମଞ୍ଜୁରୀ କରିବାକୁ ପଚାଶ ହଜାର ଟଙ୍କା ପ୍ରଦେଶ କଂଗ୍ରେସ କୋଷାଧ୍ୟକ୍ଷଙ୍କ ପାଖକୁ ପଠାଇଦିଆଯାଇଥିଲା ଏବଂ ବାକି ଟଙ୍କାଗୁଡ଼ାକ 'Against rainy days' (ଅସମୟ ପାଇଁ) ରଖାଗଲା ବୋଲି କୁହାଯାଇଥିଲା । ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ୧୯୬୩ ମସିହା ଜୁଲାଇ ଚଉଦ ତାରିଖରେ ବାଲେଶ୍ୱର ଗାନ୍ଧୀ ତତ୍ତ୍ୱ ପ୍ରଚାର କେନ୍ଦ୍ରରେ ଯେଉଁ ଭାଷଣ ଦେଇଥିଲେ, ତାହା ଏହି ପରିପ୍ରେକ୍ଷୀରେ ଅତ୍ୟନ୍ତ ଯଥାର୍ଥ । ତାଙ୍କର ଏହି ଭାଷଣ ସେହି ବର୍ଷ ଜୁଲାଇ ବାଇଶ ତାରିଖ ସମାଜ ସମ୍ବାଦପତ୍ରରେ ପ୍ରକାଶପାଇଥିଲା । ସେଥିରେ ସେ ରାଜସାକ୍ଷୀ ଭଳି ସ୍ୱୀକାର କରି କହିଥିଲେ, ''ନିର୍ବାଚନ ସମୟରେ ବଡ଼ ବଡ଼ ଖଣିମାଲିକ ଓ ଅନ୍ୟ ବ୍ୟବସାୟୀମାନଙ୍କଠାରୁ ପ୍ରଚୁର ଟଙ୍କା ଆଦାୟ କରାଯାଏ, ଯାହାର କୌଣସି ହିସାବ ରଖାଯାଏନାହିଁ । ଦଳ ତରଫରୁ ଯେଉଁ ବ୍ୟକ୍ତିମାନେ ଏ ପ୍ରକାର ଅର୍ଥ ସଂଗ୍ରହ କରନ୍ତି, ସେମାନେ କିଛି ସେଥିରୁ ପ୍ରାର୍ଥୀମାନଙ୍କୁ ଓ ନିଜ ଗୋଷ୍ଠୀର ଲୋକମାନଙ୍କୁ ଦିଅନ୍ତି; କିଛି ତାଙ୍କର ନିଜର ଅନୁଷ୍ଠାନପାଇଁ ରଖନ୍ତି ଏବଂ ଆଉ କିଛି ନିଜେ ଆତ୍ମସାତ୍ କରନ୍ତି ।''

ଶ୍ରୀ ମହତାବଙ୍କର ଅତି ନିକଟରେ ଥାଇ ମୁଁ ତାଙ୍କର ଗୋଟିଏ ଗୁଣ ଭଲଭାବରେ ଲକ୍ଷ୍ୟ କରିଛି । ସାହାଯ୍ୟ ପାଇଲେ କୃତଜ୍ଞତା ପ୍ରକାଶ କରିବା ସେ ଜାଣନ୍ତିନାହିଁ । ସାହାଯ୍ୟ ପାଇଛନ୍ତି ବୋଲି ପ୍ରକାଶ କରିବାକୁ ସେ କୁଣ୍ଠିତ ହୁଅନ୍ତି । ସାହାଯ୍ୟ ଦେଇଥିବା ବ୍ୟକ୍ତି କୌଣସି ବିପଦରେ ପଡ଼ିଲେ ଟିକିଏ ସାହାଯ୍ୟ କରିବାକୁ ମଧ ସେ ଆଗ୍ରହ ଦେଖାନ୍ତିନାହିଁ । ଏ ସମ୍ପର୍କରେ ଗୋଟିଏ ଘଟଣା ମୋର ମନେପଡ଼େ । ୧୯୫୯ ମସିହାରେ ବହିଃଶୁଳ୍କ ଫାଙ୍କି ଅଭିଯୋଗରେ ମହମ୍ମଦ ସିରାଜୁଦ୍ଦୀନ୍‌ଙ୍କ କଲିକତା ବାସଭବନ ଓ ଅଫିସ୍ ଖାନତଲାସ ହେଉଥାଏ । ମହତାବଙ୍କଠାରୁ କିଛି ପରାମର୍ଶ ଆଶାରେ ମହମ୍ମଦ ସିରାଜୁଦ୍ଦୀନ୍ ଅତି ବ୍ୟସ୍ତହୋଇ କଲିକତାରୁ ଘନ ଘନ ଫୋନ୍‌କରୁଥା'ନ୍ତି । ମୁଖ୍ୟମନ୍ତ୍ରୀଙ୍କର ପର୍ସନାଲ୍ ଆସିଷ୍ଟାଣ୍ଟ ମହତାବବାବୁଙ୍କୁ ଯେତେବେଳେ ଫୋନ୍ ଲାଇନ୍ ଦେବାକୁ ଚାହାନ୍ତି ସେତେବେଳେ ଫୋନ୍ ଧରିବାକୁ ଶ୍ରୀ ମହତାବ ଅନିଚ୍ଛା ପ୍ରକାଶ କରନ୍ତି । ଏହିଭଳି ଅନେକ ଥର ଫୋନ୍ ଆସେ । ଶେଷରେ ମୁଖ୍ୟମନ୍ତ୍ରୀଙ୍କ ପି.ଏ. ଆସି ମୋତେ କହିଲେ, ଉପକାରୀ ମହମ୍ମଦ ସିରାଜୁଦ୍ଦୀନ୍ ଅତି ବ୍ୟସ୍ତହୋଇ ତାଙ୍କ ସହିତ କଥାବାର୍ତ୍ତା କରିବାପାଇଁ ଫୋନ୍‌କରୁଥିବାରୁ ତାଙ୍କ ସହିତ କଥାବାର୍ତ୍ତା କରିବାପାଇଁ ମୁଁ ଅନୁରୋଧ କରିଥିଲି । ପୁଲିସ କୁଆଡ଼େ ଫୋନ୍‌ରେ ତାଙ୍କର କଥାବାର୍ତ୍ତାକୁ ଯାଞ୍ଚକରୁଥିବେ, ତେଣୁ ସେ ଫୋନ୍‌ରେ କଥାବାର୍ତ୍ତା ହେବାକୁ ମନାକରିଥିଲେ । ସିରାଜୁଦ୍ଦୀନ କିପରି ଭାବରେ ମହତାବବାବୁଙ୍କୁ ସାହାଯ୍ୟ କରୁଥିଲେ ସେ କଥା ମୁଁ ଜାଣିଥିଲି । ତେଣୁ ମୁଖ୍ୟମନ୍ତ୍ରୀଙ୍କର ପର୍ସନାଲ୍ ଆସିଷ୍ଟାଣ୍ଟ କୈଳାସବାବୁ କଲିକତା ଯାଇ ସିରାଜୁଦ୍ଦୀନଙ୍କ ସହ ଦେଖାକରି ତାଙ୍କର ବ୍ୟସ୍ତତାର କାରଣ କ'ଣ ବୁଝିବାପାଇଁ ମୁଁ ମୁଖ୍ୟମନ୍ତ୍ରୀଙ୍କୁ କହିଲି । ସେ ସେଥିରେ ରାଜିହୋଇନଥିଲେ । କୌଣସି ସରକାରୀ କାର୍ଯ୍ୟରେ ମୁଁ କଲିକତା ଯାଇ ସିରାଜୁଦ୍ଦୀନ୍‌ଙ୍କ ବ୍ୟସ୍ତତାର କାରଣ ବୁଝିବାକୁ

ସେ ମୋତେ ପରାମର୍ଶ ଦେଇଥିଲେ । ମୋର ସେଦିନ ବାଲେଶ୍ୱରରେ ଗୋଟିଏ ସରକାରୀ କାର୍ଯ୍ୟ ଥାଏ । ମୁଁ ବାଲେଶ୍ୱର ଯାଇଥିଲି । ଗୋଟିଏ କାମ ପରେ ମୋର କଲିକତା ଯିବାର ମଧ୍ୟ ଥାଏ । ଉଲ୍ଲିଖିତ କାରଣରୁ ମୁଁ ସେହି ରାତିରେ ପୁରୀ ଏକ୍ସପ୍ରେସ୍‌ଯୋଗେ ବାଲେଶ୍ୱରରୁ କଲିକତା ଯାଇଥିଲି । ସିରାଜ୍‌ଉଦ୍ଦୀନଙ୍କ ଘର ଓ ଅଫିସ୍ ଖାନତଲାସ ହେଉଥାଏ; ମାତ୍ର ସେ ସ୍ଥାନରେ ସେ ନରହିବାପାଇଁ ତାଙ୍କର ଓକିଲ ତାଙ୍କୁ ପରାମର୍ଶ ଦେଇଥାଆନ୍ତି । ତେଣୁ ପାର୍କଷ୍ଟ୍ରିଟ୍‌ରେ ଆଉଜଣେ ଭଦ୍ରଲୋକଙ୍କ ଘରେ ସେ ରହୁଥାଆନ୍ତି । ମୁଁ ସେଠାକୁ ଗଲି । ମହମ୍ମଦ ସିରାଜ୍‌ଉଦ୍ଦୀନ ମୋତେ ଦେଖି ଭୋ ଭୋ ହୋଇ କାନ୍ଦିପକାଇଲେ । ସେ କହିଥିଲେ, ''ହରେକୃଷ୍ଣ ମହତାବଙ୍କର ମୁଁ କି ସେବା ନକରିଛି ? ମାତ୍ର ମୋର ବିପଦ ବେଳେ ପଦେକଥା କହିବାକୁ ନାରାଜ ହେଲେ ।'' ମୁଁ ସାନ୍ତ୍ୱନା ଦେଇ କହିଥିଲି ଯେ ସେ ମୋତେ ପଠାଇଛନ୍ତି । ମାତ୍ର ତାହା ଶୁଣି ସେ ମୋତେ କହିଥିଲେ, ''ମୁଁ ଜାଣେ, ଆପଣ ଯେଉଁଠାରୁ ଟିକିଏ ସାହାଯ୍ୟ ପାଇଥିବେ ତାହା ଆପଣ ଭୁଲନ୍ତିନାହିଁ । ତେଣୁ ମୋର ବିପଦ କଥା ଶୁଣିବା କ୍ଷଣି ଆପଣ ନିଶ୍ଚୟ ଆସନ୍ତେ । ମାତ୍ର ଯେଉଁ ମହତାବଙ୍କର ମୁଁ ଏତେ ସେବା କରିଛି ସେ କ'ଣ କଲେ ?'' ମହତାବବାବୁଙ୍କଠାରୁ ସେ କ'ଣ ଆଶା କରୁଛନ୍ତି ବୋଲି ମୁଁ ପଚାରିଥିଲି । ସେ କହିଥିଲେ, ''ମୋରାରଜୀ ଦେଶାଇ କେନ୍ଦ୍ରରେ ଅର୍ଥମନ୍ତ୍ରୀ ଅଛନ୍ତି । ବହିଃଶୁଳ୍କ ଫାଙ୍କିଦେଇଛି ବୋଲି ମୋ ଉପରେ ଯେଉଁ ଅଭିଯୋଗ ହୋଇଛି ସେଥିପାଇଁ ସେ ବାବଦରେ ମୁଁ ବର୍ତ୍ତମାନ ଦଶଲକ୍ଷ ଟଙ୍କା ଡିପୋଜିଟ୍ କରିବାପାଇଁ ପ୍ରସ୍ତୁତ ଅଛି ଏବଂ ବିଚାର ପରେ ସରକାରଙ୍କର ଯାହା ନ୍ୟାଯ୍ୟ ପ୍ରାପ୍ୟ ହେବ ସେଥିରୁ ତାହା ସରକାର ନେଇପାରିବେ । ଏ କଥା ମହତାବବାବୁ ମୋରାରଜୀ ଦେଶାଇଙ୍କୁ କହି ମୋତେ ଏ ଅପମାନରୁ ରକ୍ଷା କରନ୍ତୁ । ସେ କଥା କହିବାକୁ ଟିକିଏ ସମୟ ଲାଗିପାରେ । ତେଣୁ ଏଠାରେ ପଶ୍ଚିମ ବଙ୍ଗଳାର ମୁଖ୍ୟମନ୍ତ୍ରୀ ବିଧାନଚନ୍ଦ୍ର ରାୟଙ୍କୁ କହିଲେ ସେ ଉପସ୍ଥିତ କ୍ଷେତ୍ରରେ ଏଠାକାର ବହିଃଶୁଳ୍କ କର୍ତ୍ତୃପକ୍ଷଙ୍କୁ କହି କିଛିଟା ସାହାଯ୍ୟ କରିପାରିବେ ।'' ଏ କଥା ଶୁଣି ମୁଁ ମହତାବବାବୁଙ୍କ ପାଖକୁ ଭୁବନେଶ୍ୱର ଫୋନ୍ କଲି । ପ୍ରଥମ ଅବସ୍ଥାରେ ସେ ଅନିଚ୍ଛା ପ୍ରକାଶ କରିଥିଲେ ଫୋନ୍ ଧରିବାପାଇଁ । ମୋ ପାଖରୁ ଫୋନ୍ ଆସିଛି ବୋଲି ଯେତେବେଳେ ସେ ଜାଣିଲେ ସେତେବେଳେ ଯାଇ ସେ ଫୋନ୍ ଧରିଥିଲେ । ମୁଁ ତାଙ୍କୁ ସବୁକଥା କହିଥିଲି ଏବଂ ସେ ମୋରାରଜୀ ଦେଶାଇଙ୍କୁ କହିବେ ବୋଲି କହି ମୋର ଅନ୍ୟ କଥା ନଶୁଣି ଫୋନ୍ ଛାଡ଼ିଦେଇଥିଲେ । ମୁଁ ଆଉଥରେ ଫୋନ୍ ଲଗାଇ ସେ ବିଧାନବାବୁଙ୍କୁ ସିରାଜ୍‌ଉଦ୍ଦୀନ୍‌ଙ୍କୁ ସାହାଯ୍ୟ କରିବା କଥା କହିବାକୁ କହିଲି । ସେ ବିଧାନବାବୁଙ୍କୁ ଟେଲିଫୋନ୍ କରିବାକୁ କୁଣ୍ଠିତହୋଇଥିଲେ ଏବଂ ମୁଁ ଯାଇ ବିଧାନବାବୁଙ୍କୁ ଏ କଥା କୁହେ ବୋଲି ପରାମର୍ଶ ଦେଇଥିଲେ । ମୁଁ ଯାଇ ବିଧାନବାବୁଙ୍କୁ ଦେଖାକରିବି, କେବଳ ସେତକ ସେ ବିଧାନବାବୁଙ୍କୁ କହିବାପାଇଁ ମୁଁ ତାଙ୍କୁ ଅନୁରୋଧ କରିଥିଲି । ତାହା ଶୁଣି ସେ କହିଲେ, ''ତୁମକୁ ବିଧାନବାବୁ ଭଲଭାବରେ ଜାଣନ୍ତି । ସେଦିନ ସମସ୍ତଙ୍କ ଆଗରେ ତୁମକୁ ଥଟ୍ଟା କରୁଥିଲେ । ତୁମେ ତାଙ୍କୁ ଦେଖାକରି ସବୁ କଥା କୁହ ।'' ସାମାନ୍ୟ ଏତିକି ସାହାଯ୍ୟ କରିବାପାଇଁ ସେ କୁଣ୍ଠିତ ହୋଇ ମୋ ଉପରେ ସବୁ କଥା ଲଦିଦେଇଥିଲେ । ମୁଁ ତା'ପରେ ପଶ୍ଚିମବଙ୍ଗଳା ସରକାରଙ୍କ ସଚିବାଳୟକୁ ଯାଇଥିଲି । ପ୍ରଥମେ ପଶ୍ଚିମ ବଙ୍ଗଳାର ତତ୍କାଳୀନ ଖାଦ୍ୟମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ସେନ୍‌ଙ୍କୁ ଦେଖାକରି ସବୁ କଥା କହିଥିଲି ଏବଂ ବିଶେଷକରି ସିରାଜଉଦ୍ଦୀନ୍ କଂଗ୍ରେସକୁ କିପରି ସାହାଯ୍ୟ କରିଛନ୍ତି ସେ ବିଷୟ ତାଙ୍କୁ କହିଥିଲି । ପ୍ରଫୁଲ୍ଲବାବୁ ମୋ ସାଙ୍ଗରେ ବିଧାନବାବୁଙ୍କ ପାଖକୁ ଯାଇଥିଲେ । ବିଧାନ ବାବୁ ମୋଠାରୁ ଓ ମୋ ସହିତ ଯାଇଥିବା ସିରାଜଉଦ୍ଦୀନଙ୍କ ଜଣେ ନିଜ ଲୋକଠାରୁ ସବୁ କଥା ବୁଝିବା ପରେ ସଙ୍ଗେ ସଙ୍ଗେ ବହିଃଶୁଳ୍କ କଲେକ୍ଟରଙ୍କୁ ଫୋନ୍ କରି କହିଥିଲେ, "Well, why do you treat people as criminals ? In this case the man (Md. Sirajudhin) is prepared to deposit ten lakhs of rupees towards your alleged dues. Instead of humiliating him,

you can settle the matter with him and realise your dues." ଏ କଥା ଶୁଣି ମହମ୍ମଦ ସିରାଜ୍‌ଉଦ୍ଦୀନଙ୍କୁ ତାଙ୍କ ପାଖକୁ ପଠାଇବାପାଇଁ ବହିଃଶୁଳ୍କ ବିଭାଗର କଲେକ୍ଟର ବିଧାନବାବୁଙ୍କୁ ଅନୁରୋଧ କରିଥିଲେ । ବିଧାନବାବୁ ବର୍ତ୍ତମାନ ସ୍ୱର୍ଗରେ, ମାତ୍ର ଏହାର ସତ୍ୟତା ବିଷୟରେ ସାକ୍ଷ୍ୟ ଦେବାପାଇଁ ମର୍ତ୍ତ୍ୟରେ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ସେନ୍ ଅଛନ୍ତି । ମହମ୍ମଦ ସିରାଜଉଦ୍ଦୀନ ଯେପରି ଭାବରେ କଂଗ୍ରେସକୁ ସାହାଯ୍ୟକରନ୍ତି ସେ କଥା ଶୁଣି ପଶ୍ଚିମ ବଙ୍ଗଳାର ମୁଖ୍ୟମନ୍ତ୍ରୀ ଶ୍ରୀ ବିଧାନ ରାୟ ଆଗେଇ ଆସିଥିଲେ ତାଙ୍କୁ ବିପଦବେଳେ ସାହାଯ୍ୟ କରିବାକୁ; ମାତ୍ର ଯିଏ ସବୁପ୍ରକାର ସାହାଯ୍ୟ ପାଇଛନ୍ତି ସେ ସାହାଯ୍ୟ କରିବା ଦୂରେ ଥାଉ ପଦେ କଥା କହିବାକୁ ମଧ୍ୟ କୁଣ୍ଠିତ ହୋଇଥିଲେ । ଆହୁରି ମଧ୍ୟ ଅର୍ଥମନ୍ତ୍ରୀ ଶ୍ରୀ ଦେଶାଇଙ୍କୁ ମହତାବବାବୁ ମହମ୍ମଦ ସିରାଜଉଦ୍ଦୀନଙ୍କ ବିଷୟରେ ଯାହା କହିବାକୁ କହିଥିଲେ ତାହା କଲେନାହିଁ । ଏହାପରେ ମୁଁ ଆଉ ପ୍ରଦେଶ କଂଗ୍ରେସ ସଭାପତି ବୀରେନ୍ ମିତ୍ର ଦୁଇ ଜଣ ଶ୍ରୀ ଦେଶାଇଙ୍କୁ ଦେଖାକରି ସିରାଜଉଦ୍ଦୀନ୍ କଂଗ୍ରେସକୁ ସାହାଯ୍ୟ କରିବା ଏବଂ ତାଙ୍କର ଉପସ୍ଥିତ ବିପଦ ସଂପର୍କରେ ସବୁକଥା ଜଣାଇଥିଲୁ ।

## ବିଜୁବାବୁଙ୍କ ସମ୍ପର୍କରେ ନେହେରୁଙ୍କ ଉକ୍ତି

ଉଲ୍ଲିଖିତ କଥାବାର୍ତ୍ତା ପ୍ରସଙ୍ଗରେ ସେଦିନ ଡାକ୍ତର ବିଧାନ ଚନ୍ଦ୍ର ରାୟ ମୋତେ ବିଜୁବାବୁଙ୍କ ସମ୍ପର୍କରେ କେତେକ କଥା ପଚାରିଥିଲେ । ବିଧାନବାବୁ ସେତେବେଳେ ବିଜୁବାବୁଙ୍କୁ ଭଲ ଭାବରେ ଜାଣିନଥିଲେ । ବିଜୁବାବୁଙ୍କ ସମ୍ବନ୍ଧରେ କେତେକ ବିଷୟ ବିଧାନବାବୁ ପଚାରିଲା ପରେ ବିଜୁବାବୁଙ୍କ ସଂପର୍କରେ ତାଙ୍କୁ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ କ'ଣ କହିଥିଲେ ସେ କଥା ଆମକୁ କହିଥିଲେ । ପଣ୍ଡିତ ନେହେରୁ କୁଆଡ଼େ ତାଙ୍କୁ କହିଥିଲେ, "Bidhan Babu, do you know Biju Pattnaik ? A remarkable youngman, very daring and very much pushing. I like such type of youngman, but sometimes you do not know where he will land you."

ପଣ୍ଡିତ ନେହେରୁଙ୍କର ଶ୍ରୀ ବିଜୁ ପଟ୍ଟନାୟକଙ୍କ ସମ୍ବନ୍ଧରେ ଏ ପ୍ରକାର ଧାରଣା ଥିବା ବିଷୟଟିକୁ ଭାରତର ଆଉ ଜଣେ ବିଶିଷ୍ଟ ବ୍ୟକ୍ତି ଏବେ ଅନୁମୋଦନ କରିଥିଲେ । ୧୯୮୨ ମସିହା ଜାନୁୟାରୀ ମାସ ପାଞ୍ଚ ତାରିଖରେ ରାଷ୍ଟ୍ରପତି ଶ୍ରୀ ନୀଲମ୍ ସଞ୍ଜୀବ ରେଡ୍ଡି ଓଡ଼ିଶା ଆସିଥିଲେ । ମୁଖ୍ୟମନ୍ତ୍ରୀ ରାଜ୍ୟ ସରକାରଙ୍କର ଅତିଥି ଭବନରେ ଶ୍ରୀ ରେଡ୍ଡିଙ୍କ ସମ୍ବର୍ଦ୍ଧନା ଉଦ୍ଦେଶ୍ୟରେ ଏକ ଟୀ' ଭୋଜିର ଆୟୋଜନ କରିଥିଲେ । ଉକ୍ତ ଅନୁଷ୍ଠାନରେ ରାଷ୍ଟ୍ରପତିଙ୍କ ଦୁଇପାଖରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଓ ମୁଁ ବସିଥିଲୁ । ହସଖୁସି ଭିତରେ ରାଷ୍ଟ୍ରପତି ବିଜୁ ପଟ୍ଟନାୟକଙ୍କ କଥା ଉଠାଇ କହିଥିଲେ, "Biju is avoiding to see me since the last quarter of 1979. In Pandit Nehru's estimation Biju was a dangerous youngman. Before Biju became Chief Minister, once Panditjee told me about Biju and said that this dangerous youngman is going to be the Chief Minister of Orissa. He is dangerously active and you do not know what he will do." ଏ ଖବରଟା ବେଶ୍ ହାସ୍ୟରସ ସୃଷ୍ଟି କରିଥିଲା ।

ମହମ୍ମଦ ସିରାଜ୍‌ଉଦ୍ଦୀନ୍‌ଙ୍କୁ କିନ୍ତୁ ବିଜୁବାବୁ ପସନ୍ଦ କରୁନଥିଲେ । ନିର୍ଦ୍ଦିଷ୍ଟ କାରଣ ମୋତେ ଜଣା ନଥିଲା, ମାତ୍ର ମୋର ମନେହେଉଥିଲା ବୋଧହୁଏ ବ୍ୟବସାୟିକ ପ୍ରତିଦ୍ୱନ୍ଦ୍ୱିତା ହେତୁ କିମ୍ବା ସିରାଜ୍‌ଉଦ୍ଦୀନ୍‌ଙ୍କର ମହତାବଙ୍କ ସହ ଘନିଷ୍ଠତାକୁ ବିଜୁବାବୁ ଭଲ ପାଉ ନଥିଲେ । ବୀରେନ୍‌ବାବୁ ଓ ମୁଁ ମହତାବଙ୍କ ପ୍ରତି ବିଶ୍ୱସ୍ତ ଥାଉ ବୋଲି ଆମ ସାଙ୍ଗରେ ସିରାଜ୍‌ଉଦ୍ଦୀନ୍‌ଙ୍କର ସଂପର୍କ ଥିଲା । ଆମ ନିଜର ନିର୍ବାଚନ ସମୟରେ ଏବଂ ମୋ ରାଜନୈତିକ ଜୀବନରେ ଅଭାବୀମାନଙ୍କୁ ଆବଶ୍ୟକସ୍ଥଳେ ସାହାଯ୍ୟ ଦେବାପାଇଁ ସେ ଆମକୁ ସାହାଯ୍ୟ କରୁଥିଲେ । ସେଥିପାଇଁ ତାଙ୍କର ବିପଦ ସମୟରେ

ତାଙ୍କୁ ଯାଇ କଲିକତାରେ ଦେଖାକରିବାକୁ ମୁଁ କୁଣ୍ଠିତ ହୋଇନଥିଲି ଓ ମୋଦ୍ୱାରା ଯାହା ସମ୍ଭବ ତାହା କରିଥିଲି । ଦିନେ ମୁଁ ଘରେ ବସି ଅଫିସ କାର୍ଯ୍ୟ କରୁଛି କଥାପ୍ରସଙ୍ଗରେ ଶ୍ରୀ ଶଶିଭୂଷଣ ମିଶ୍ର ମୋତେ କହିଥିଲେ ଯେ ତାଙ୍କୁ କୁଆଡ଼େ ଶ୍ରୀ ଜୟନ୍ତୀଲାଲ ଆହିୟା (ରାମବାବୁ)ଙ୍କ ବାପା ସ୍ୱର୍ଗୀୟ ଚତୁର୍ଭୁଜ ଆହିୟା କହିଥିଲେ, ''ରାଉତରାୟଙ୍କୁ, ଯେ ଗିଲାସେ ପାଣିଦେଇଥିବ ସେ କଥା ମଧ୍ୟ ସେ ଭୁଲିବେନାହିଁ ।'' ଏହାର ଅର୍ଥ କ'ଣ ହୋଇପାରେ ମୁଁ ଚିନ୍ତା କରିବାକୁ ଲାଗିଲି । ଏ କଥା ନିଶ୍ଚିତ ଯେ ମୁଁ କାହାରି ପାଖରୁ ଟିକିଏ ସାହାଯ୍ୟ ପାଇଲେ କୃତଜ୍ଞତା ପ୍ରକାଶ କରିବାକୁ ଭୁଲେନାହିଁ । କିନ୍ତୁ ରାମବାବୁଙ୍କ ବାପା ନିଶ୍ଚୟ କଥାଟାକୁ ଟିକେ ବାହୁଲ୍ୟ କରି କହିଛନ୍ତି ବୋଲି ମୁଁ ଭାବିଥିଲି । ଉପକାର କାହାଠାରୁ ପାଇଥିଲେ ତା' ମନେରଖିବା ମୋର ସ୍ୱଭାବ ଏବଂ ଯେଉଁ ଦୀର୍ଘ ସମୟ ମୁଁ ଶାସନକ୍ଷେତ୍ରରେ ରହିଥିଲି, ସେ ସମୟରେ ମଧ୍ୟ ସେହି ପ୍ରକାର ଆଚରଣ ଅନୁସରଣ କରୁଥିଲି । କାହାରିଦ୍ୱାରା ଉପକୃତ ହୋଇଥିଲେ ତାଙ୍କ କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରିବାକୁ ଉଦ୍ୟମ କରିଥିଲି ଏବଂ ସେମାନଙ୍କର କାର୍ଯ୍ୟ ନ ହୋଇପାରିଲେ ମଧ୍ୟ ସେମାନଙ୍କୁ ସବୁକଥା ବୁଝାଇ ସନ୍ତୁଷ୍ଟ କରି ଛାଡୁଥିଲି । ମୁଁ କାହାରିକୁ ଆଶା ବା ପ୍ରତିଶ୍ରୁତି ସହଜରେ ଦିଏନାହିଁ, ତେଣୁ କାହାରିକୁ ପ୍ରତାରିତ କରିବା ଓ ନିରାଶ କରିବାର ଅବକାଶ ମୋ ପାଖରେ ଖୁବ୍ କମ୍ ଥାଏ । ନିଶ୍ଚିତଭାବରେ ହେବାକାର୍ଯ୍ୟ ନହେବା ପର୍ଯ୍ୟନ୍ତ ସେ ବିଷୟରେ କାହାରିକୁ ନିର୍ଭର ଜବାବ ଦେବା ମୋର ଆଚରଣର ବିରୁଦ୍ଧ । ମହମ୍ମଦ ସିରାଜଉଦ୍ଦୀନ୍‌ଙ୍କ ସହିତ ମୋ ସମ୍ପର୍କ ସମ୍ବନ୍ଧରେ ଗୋଟିଏ ଛୋଟିଆ ଘଟଣା ମୋର ମନେଅଛି । ୧୯୫୮ ମସିହାରେ ମୋର ଝିଅାରୀ ବାହାଘର ବେଳକୁ ମୁଁ ତାଙ୍କ ପାଖକୁ ନିମନ୍ତ୍ରଣ ପଠାଇଥିଲି । ସେ ସେହି ନିମନ୍ତ୍ରଣ ପତ୍ର ଉପରେ କୁଆଡ଼େ ତାଙ୍କ ମେନେଜରଙ୍କୁ ଲେଖିଥିଲେ ତିନି ଶହ ଟଙ୍କା ମଧ୍ୟରେ ଗୋଟିଏ ସୁନାହାର ବିବାହ ଉପହାର ପାଇଁ କିଣିବାକୁ । ମହମ୍ମଦ ସିରାଜଉଦ୍ଦୀନ୍‌ଙ୍କ ଘର ବହିଃଶୁଳ୍କ ବିଭାଗ ତଲାସ କଲାବେଳେ ସେହି ଲେଖାଟି ମିଳିଥିଲା । ତାହା ଶ୍ରୀ ଗୁଲଜାରିଲାଲ ନନ୍ଦାଙ୍କ ଦୃଷ୍ଟିକୁ ଅଣାଯାଇଥିଲା ଓ ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା । ମୋତେ ଯେତେବେଳେ ସେକଥା ପଚରାଗଲା ମୁଁ ଝିଅାରୀର ବିବାହ ସମୟରେ ସେ ଉପହାର ପାଇଥିବା କଥା ସ୍ୱୀକାର କରିଥିଲି । ବ୍ୟାପାରଟି ପ୍ରଧାନମନ୍ତ୍ରୀ ଶ୍ରୀ ଲାଲବାହାଦୂର ଶାସ୍ତ୍ରୀଙ୍କ ଦୃଷ୍ଟିକୁ ଅଣାଯାଇଥିଲା । ଉପହାରଟି ଗ୍ରହଣକରିବା ମୋ ପକ୍ଷରେ ଅଶିଷ୍ଟତା ହୋଇଥିଲା ବୋଲି ଶାସ୍ତ୍ରୀଜୀ ମତ ଦେଇଥିଲେ । ବହୁ କୈଫିୟତ୍ ପରେ ମୁଁ ସେଥିରୁ ତ୍ରାହିପାଇଥିଲି । ବିଷୟଟି ଓଡ଼ିଶା ବିଧାନସଭାରେ ମଧ୍ୟ ଉଠିଥିଲା ।

## ମେଣ୍ଟରେ ଫାଙ୍କ

ମିଳିତ ମନ୍ତ୍ରିମଣ୍ଡଳ କିପରି ଭାବରେ ଗଠିତହେଲା ପୂର୍ବରୁ ସେ କଥା କହିଛି । ଏ ମନ୍ତ୍ରିମଣ୍ଡଳ ଗଠନ ହେବା ପରେ ବିଧାନସଭାରେ ମିଳିତ ଦଳ ଖୁବ୍ ସଂଖ୍ୟାଗରିଷ୍ଠ ହୋଇଥିଲା । ତେଣୁ ବିଧାନସଭାରେ ସରକାରୀ କାର୍ଯ୍ୟ କରିବାରେ ଆଉ କିଛି ଅସୁବିଧା ଅନୁଭବ କରାଯାଇନଥିଲା । ପୂର୍ବରୁ ଯେପରି ପ୍ରତିଦିନ ବା ଦିନକୁ ଦୁଇ ତିନିଥର ଭୋଟ ଦାବି ହୋଇ ଡିଭିଜନ ଘଣ୍ଟି ବାଜୁଥିଲା ଆଉ ସେପ୍ରକାର ଘଣ୍ଟି ବାଜୁନଥିଲା । ମାତ୍ର ଆଠ ଦଶମାସ ପରେ ଦେଖାଗଲା ଯେ ସରକାରୀ କାର୍ଯ୍ୟ ଦଳୀୟ ଦୃଷ୍ଟିକୋଣରୁ ପରିଚାଳିତ୍ ହେଉଛି ଏବଂ ରାଜ୍ୟର ବିଭିନ୍ନ ଅଞ୍ଚଳରେ ଦୁଇଦଳର କର୍ମୀଙ୍କ ମଧ୍ୟରେ ସହଯୋଗ ପରିବର୍ତ୍ତେ ସଂଘର୍ଷର ବାତାବରଣ ସୃଷ୍ଟି ହେବାରେ ଲାଗିଛି । ମୁଖ୍ୟମନ୍ତ୍ରୀ ଶ୍ରୀ ମହତାବଙ୍କର ପୂର୍ଣ୍ଣ ଆଶା ଓ ବିଶ୍ୱାସ ଥିଲା ଯେ ଗଣତନ୍ତ୍ର ଦଳ କଂଗ୍ରେସରେ ମିଶିଯିବ ଏବଂ ପଶ୍ଚିମ ଓଡ଼ିଶାରେ କଂଗ୍ରେସର ନେତୃତ୍ୱ ରାଜା-ମହାରାଜାମାନେ ନେଇପାରିବେ । ମୋର ମନେଅଛି, ମଧ୍ୟପ୍ରଦେଶର ରାୟପୁରଠାରେ ନିଖିଳ ଭାରତ କଂଗ୍ରେସ କମିଟିର ଗୋଟିଏ ବୈଠକ ଚାଲିଥାଏ । ଠିକ୍ ସେହିଦିନ ଗଣତନ୍ତ୍ର ଦଳର ଗୋଟିଏ ସ୍ୱତନ୍ତ୍ର ବୈଠକ ଡକାଯାଇଥାଏ କଂଗ୍ରେସ ସହିତ ସେମାନଙ୍କର

ମିଶ୍ରଣ ବିଷୟ ଆଲୋଚନା କରାଯାଇ ସିଦ୍ଧାନ୍ତ ନେବାପାଇଁ । ମହତାବବାବୁ ରାୟପୁରଠାରେ ମୋତେ ବ୍ୟସ୍ତହୋଇ ପଚାରୁଥାଆନ୍ତି, ଓଡ଼ିଶାରେ ଗଣତନ୍ତ୍ର ଦଳର ନିଷ୍ପତ୍ତି କ'ଣ ହେଲା ? ମୁଁ ଖବର ନେଇ ବୁଝିଲି ଗଣତନ୍ତ୍ରଦଳରେ ବହୁମତରେ ମିଶ୍ରଣ ବିରୁଦ୍ଧରେ ନିଷ୍ପତ୍ତି ହେଲା । ମୋଠାରୁ ଏ ସମ୍ବାଦ ଶୁଣି ମହତାବବାବୁ ଖୁବ୍ ମନ ଖରାପ କରିଥିଲେ ଏବଂ ଏକପ୍ରକାର ଭାଙ୍ଗିପଡ଼ିଥିଲେ । ଏ ପରିସ୍ଥିତିରେ ସେ କିପରି ସରକାର ଚଳାଇବେ ସେ ବିଷୟରେ ଖୁବ୍ ଚିନ୍ତିତ ଥିବାର ଦେଖାଯାଇଥିଲା । ଆମ କଂଗ୍ରେସ ଦଳର ଲୋକଙ୍କୁ ଏଣିକି ସନ୍ତୁଷ୍ଟ କରି ରଖିବା ଦୁରୁହ ବ୍ୟାପାର ହୋଇପଡ଼ିବ ବୋଲି ଆମେ ଆଶଙ୍କା କରିଥିଲୁ । କଂଗ୍ରେସଲୋକେ ମିଶ୍ରଣ ସପକ୍ଷରେ ଥିଲେ ଏବଂ ସେଥିପାଇଁ ସେମାନେ ଅନେକ କଥା ସହ୍ୟକରୁଥିଲେ; ମାତ୍ର ଗଣତନ୍ତ୍ରଦଳର ଲୋକଙ୍କର ଆଶଙ୍କା ହୋଇଥିଲା ଯେ କଂଗ୍ରେସଦଳ ଭଳି ଗୋଟିଏ ବଡ଼ ଦଳ ସହିତ ମିଶ୍ରଣ ହେଲେ ସେମାନଙ୍କର ଅସ୍ତିତ୍ୱ ଲୋପପାଇଯିବ ।

ବର୍ତ୍ତମାନ କଂଗ୍ରେସ ଓ ଗଣତନ୍ତ୍ରଦଳ ମିଶ୍ରଣର ଆଉ ଆଶା ରହିଲାନାହିଁ । ଦୁଇଟି ଦଳ ନିଜ ନିଜର ଦୃଷ୍ଟିକୋଣରୁ ସରକାର ପରିଚାଳନା କରିବାରେ ଲାଗିଲେ । ଏ ଅବସ୍ଥାରେ ଗଣତନ୍ତ୍ର ଦଳ ଅଧିକ ସୁବିଧା ହାସଲ କରିବାର ସୁଯୋଗ ପାଇଥିଲେ । ଏଥିପାଇଁ କଂଗ୍ରେସ ମହଲରେ ଆସ୍ତେ ଆସ୍ତେ ଅସନ୍ତୋଷ ବଢ଼ିବାରେ ଲାଗିଲା । ମାତ୍ର ଯେକୌଣସି ଉପାୟରେ ସରକାର ଚଳାଇବାର ଉଦ୍ଦେଶ୍ୟ ଥିଲା ମହତାବବାବୁଙ୍କର । ତେଣୁ ନାନା ଉପାୟରେ ସେ ଗଣତନ୍ତ୍ର ଦଳର ନେତାମାନଙ୍କୁ ସନ୍ତୁଷ୍ଟ କରି ରଖିବାରେ ଲାଗିଥିଲେ । ଅନେକ କ୍ଷେତ୍ରରେ କଂଗ୍ରେସଦଳର ଲୋକଙ୍କ ଅପେକ୍ଷା ଗଣତନ୍ତ୍ରଦଳର ଲୋକଙ୍କୁ ସେ ବିଶେଷ ପ୍ରାଧାନ୍ୟ ଦେଉଥିଲେ । ପଶ୍ଚିମ ଓଡ଼ିଶା ଜିଲ୍ଲାମାନଙ୍କରେ କଂଗ୍ରେସ ଅନୁଷ୍ଠାନକୁ ସକ୍ରିୟ କରି ଗଢ଼ିତୋଳିବାରେ ମୁଖ୍ୟମନ୍ତ୍ରୀ ବିଶେଷ ଆଗ୍ରହ ପ୍ରକାଶ କରୁନଥିଲେ, କାରଣ ତାଙ୍କର ଆଶଙ୍କା ଥିଲା ଯେ ସେପରି କଲେ କାଳେ ଗଣତନ୍ତ୍ରଦଳର ନେତାମାନେ ଅସନ୍ତୁଷ୍ଟ ହେବେ । ବଲାଙ୍ଗୀର, କଳାହାଣ୍ଡି, ଫୁଲବାଣୀ, ସମ୍ବଲପୁର, ସୁନ୍ଦରଗଡ଼ ଓ କେଉଁଝର ପ୍ରଭୃତି ଜିଲ୍ଲାମାନଙ୍କରୁ ଯେଉଁ କଂଗ୍ରେସ କର୍ମୀମାନେ ରାଜଧାନୀକୁ ଆସୁଥିଲେ, ସେମାନେ ଗଣତନ୍ତ୍ରଦଳର ମନ୍ତ୍ରୀମାନଙ୍କଠାରୁ ଭଲ ବ୍ୟବହାର ପାଉନଥିଲେ । ମୁଖ୍ୟମନ୍ତ୍ରୀ ମଧ ସେମାନଙ୍କ ପ୍ରତି ଭଲ ବ୍ୟବହାର କରୁନାହାନ୍ତି ବୋଲି କଂଗ୍ରେସ ଲୋକେ ଅଭିଯୋଗ କରିଥିଲେ । ପଶ୍ଚିମ ଓଡ଼ିଶାର କେତେକ ପୁରୁଣା କଂଗ୍ରେସ ଲୋକଙ୍କ ପ୍ରତି ମୁଖ୍ୟମନ୍ତ୍ରୀ ଅତି ତାଚ୍ଛଲ୍ୟ ବ୍ୟବହାର କରିଥିବାର ଅଭିଯୋଗ ମଧ ହୋଇଥିଲା ।

ଥରେ ମୁଖ୍ୟମନ୍ତ୍ରୀ ଶ୍ରୀ ମହତାବ କଳାହାଣ୍ଡି ଜିଲ୍ଲା ଗସ୍ତରେ ଯାଇଥିଲେ । ତାହାର ସୁଯୋଗ ନେଇ ଜିଲ୍ଲାର କଂଗ୍ରେସ କର୍ମୀମାନେ ଭବାନୀପାଟଣାଠାରେ ଜିଲ୍ଲା କଂଗ୍ରେସ ଅଫିସଠାରେ ଏକତ୍ରିତ ହୋଇଥିଲେ । ଜିଲ୍ଲା କଂଗ୍ରେସ ଅଫିସକୁ ଯିବାପାଇଁ ତାଙ୍କର ସମୟନାହିଁ ବୋଲି କହି ମୁଖ୍ୟମନ୍ତ୍ରୀ କଳାହାଣ୍ଡି ମହାରାଜାଙ୍କ ରାଜପ୍ରାସାଦକୁ ଯାଇ ସେଠାରେ ରାତ୍ରିଯାପନ କରିଥିଲେ । ଏଥିରେ କଂଗ୍ରେସ କର୍ମୀମାନେ ଅପମାନିତ ଓ ମର୍ମାହତ ହୋଇଥିଲେ । ଏହି ସମୟରେ ଶ୍ରୀ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀଙ୍କର ଏ ପ୍ରକାର ଆଚରଣର ଘୋର ପ୍ରତିବାଦ ଓ ସମାଲୋଚନା କରିଥିଲେ । ଶ୍ରୀ ମହତାବ ନିଜ ଆଚରଣର ଯଥାର୍ଥତା ବୁଝାଇବାକୁ ଯାଇ କଳାହାଣ୍ଡି ମହାରାଜା ପଶ୍ଚିମ ଓଡ଼ିଶାର ଜଣେ ସ୍ୱାଭାବିକ ନେତା (natural leader) ବୋଲି କହିଥିଲେ, ତେଣୁ ତାଙ୍କର ଆତିଥ୍ୟ ଗ୍ରହଣକରିବାରେ କିଛି ତ୍ରୁଟି ନାହିଁ ବୋଲି ଦର୍ଶାଇଥିଲେ । ଏସବୁ କଥା ସେତେବେଳେ ଖବରକାଗଜମାନଙ୍କରେ ପ୍ରକାଶିତ ହୋଇଥିଲା । ମହତାବ ବାବୁଙ୍କର ଏ ପ୍ରକାର ଉକ୍ତିରେ ରାଜ୍ୟର କଂଗ୍ରେସ ଲୋକମାନେ ବିଶେଷ ଦୁଃଖିତହୋଇଥିଲେ ଏବଂ ଏହା ଫଳରେ ପଶ୍ଚିମ ଓଡ଼ିଶାରେ କଂଗ୍ରେସ ଲୋକଙ୍କର ନୈତିକ ମନୋବଳ ଭାଙ୍ଗିପଡ଼ିଥିଲା । ତାହା ବ୍ୟତୀତ ମହତାବବାବୁ ଖୋଲାଖୋଲି କହିବାରେ ଲାଗିଲେ ଯେ ପଶ୍ଚିମ ଓଡ଼ିଶାର ନେତାମାନଙ୍କର ବିନା ସାହାଯ୍ୟରେ କୌଣସି ରାଜନୈତିକ ଦଳ ଓଡ଼ିଶାରେ ସଂଖ୍ୟାଗରିଷ୍ଠ ହୋଇପାରିବନାହିଁ । ତେଣୁ ସେମାନଙ୍କୁ ସାଙ୍ଗରେ ନେଇ ସବୁକାର୍ଯ୍ୟ କରିବାକୁ ପଡ଼ିବ ।

ମହତାବବାବୁଙ୍କର ଏ ପ୍ରକାର ଚିନ୍ତାଧାରାକୁ କଂଗ୍ରେସ ଲୋକେ ଗ୍ରହଣ କରିପାରିନଥିଲେ । ପଶ୍ଚିମ ଓଡ଼ିଶାରେ କଂଗ୍ରେସ ଲୋକଙ୍କ ମଧ୍ୟରେ ଘୋର ଅସନ୍ତୋଷ ପ୍ରକାଶ ପାଇଥିଲା । ବିଜୁ ପଟ୍ଟନାୟକ ଏ ପ୍ରକାର ପରିସ୍ଥିତିର ପୂର୍ଣ୍ଣ ସୁଯୋଗ ନେଇଥିଲେ ଏବଂ ଖୋଲାଖୋଲି ଭାବରେ ମହତାବଙ୍କର ଏ ପ୍ରକାର ରକ୍ଷଣଶୀଳ ଚିନ୍ତାଧାରା ବିରୋଧରେ କଂଗ୍ରେସ କର୍ମୀମାନଙ୍କୁ ଉତ୍ତେଜିତ କରିବାକୁ ଲାଗିଲେ । ଏ ପରିପ୍ରେକ୍ଷୀରେ ଶ୍ରୀ ବୀରେନ୍ ମିତ୍ର ବିଜୁବାବୁଙ୍କୁ ପୂର୍ଣ୍ଣ ସମର୍ଥନ ଜଣାଇଥିଲେ ।

କଂଗ୍ରେସକୁ ସକ୍ରିୟକଲେ ପୂର୍ବ ଗଡ଼ଜାତ ଅଞ୍ଚଳମାନଙ୍କରୁ ବହୁ କଂଗ୍ରେସ ପ୍ରାର୍ଥୀ ଏକ ମଧ୍ୟବର୍ତ୍ତୀ କାଳୀନ ନିର୍ବାଚନରେ ଜୟଯୁକ୍ତ ହୋଇପାରିବେ ବୋଲି ଆଶା ପ୍ରକାଶ କରି ବିଜୁ ପଟ୍ଟନାୟକ ମହତାବ ବାବୁଙ୍କୁ ଚିଠି ଲେଖିଥିଲେ । ମହତାବବାବୁ ସେକଥା ପ୍ରତି ଗୁରୁତ୍ୱ ନଦେଇ ସେସବୁ ଅଞ୍ଚଳରେ ରାଜା-ମହାରାଜାମାନେ ସ୍ୱାଭାବିକ ନେତା ବୋଲି କହିବାକୁ ଲାଗିଥିଲେ । ସେଥିପାଇଁ ୧୯୬୦ ମସିହା ଫେବୃୟାରୀ ମାସ ଅଣତିରିଶ ତାରିଖରେ ବିଜୁ ପଟ୍ଟନାୟକ ମହତାବବାବୁଙ୍କୁ ଖଣ୍ଡିଏ ଚିଠି ଦେଇ ଲେଖିଥିଲେ, "It, however, makes great difficulty for Congressmen in ex-state area when you chose to stay in the palace of the Ganatantra Maharaja, Kalahandi and declared him as natural leader of the people in public meetings to the detriment of the Congress Party and Congressmen's prestige. How has this impudent feudal lord in Orissa become undisputed leader of the people in a socialist pattern? It is because, Orissa Congress and administration under your leadership for last so many years signally failed to awaken the masses in these areas in progressive thoughts of Congress ideology." (Rejoinder field by Sri Biju Pattnaik in Orissa High Court in O.J.C. No. 418 of 1967)

କାଳକ୍ରମେ ଦେଖାଗଲା ଯେ ମୁଖ୍ୟମନ୍ତ୍ରୀ ମହତାବ ଅର୍ଥମନ୍ତ୍ରୀ ତଥା ଗଣତନ୍ତ୍ରଦଳର ନେତା ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କର ଗୋଟିପଣେ ହୋଇଯିବାର ଲାଗିଲେ । ସିଂହଦେଓଙ୍କ କଥାରେ ସବୁବେଳେ ମୁଖ୍ୟମନ୍ତ୍ରୀ ବେଶି ଗୁରୁତ୍ୱ ଦେଲେ । ମହାରାଜାଙ୍କ ସହିତ କଥାବାର୍ତ୍ତା କଲାବେଳେ ମହତାବଙ୍କଠାରେ ହୀନମନ୍ୟତା ଲକ୍ଷ୍ୟକରାଯାଉଥିଲା । ମନ୍ତ୍ରିମଣ୍ଡଳ ବୈଠକରେ ସଭାପତିତ୍ୱ କରନ୍ତି ମୁଖ୍ୟମନ୍ତ୍ରୀ । ମନ୍ତ୍ରିମଣ୍ଡଳ ବୈଠକ ବସିଥିବାବେଳେ ଯଦି କେବେ ଅର୍ଥମନ୍ତ୍ରୀ ସିଂହଦେଓ ଡେରିରେ ଆସି ମନ୍ତ୍ରିମଣ୍ଡଳ ବସିଥିବା ଘରେ ପ୍ରବେଶକରନ୍ତି, ମୁଖ୍ୟମନ୍ତ୍ରୀ ମହତାବ ଚେୟାର ଛାଡ଼ି ଛିଡ଼ାହେବାଭଳି ଅଙ୍ଗଭଙ୍ଗୀ କରନ୍ତି । ଏ ଦୃଶ୍ୟ ଆମ କେତେଜଣଙ୍କୁ ଭଲଲାଗୁନଥିଲା । ତାଙ୍କ ମନ୍ତ୍ରିମଣ୍ଡଳରେ ଆହୁରି କେତେକ ବୟୋଜ୍ୟେଷ୍ଠ ବ୍ୟକ୍ତି ଥିଲେ । ଯଦି ସେମାନଙ୍କ ପ୍ରତି ସେ ସେହିପ୍ରକାର ସମ୍ମାନ ପ୍ରଦର୍ଶନ କରୁଥାଆନ୍ତେ ସେଥିରେ କାହାରି କିଛି ଭାବିବାର ନଥିଲା । ମାତ୍ର ସେ ମହାରାଜା ସିଂହଦେଓଙ୍କ ପ୍ରତି ଏ ପ୍ରକାର ଭିନ୍ନ ଆଚରଣ ଦେଖାଉଥିବାରୁ କଥାଟା ସୁନ୍ଦର ଦେଖାଯାଉନଥିଲା । ଘରୋଇ ବୈଠକରେ ଯଦି ମହତାବ ସିଂହଦେଓଙ୍କ ପ୍ରତି ସେ ପ୍ରକାର ସମ୍ମାନ ଦେଖାଉଥାଆନ୍ତେ ସେଥିରେ କାହାରି କିଛି କହିବାର ନ ଥିଲା । ମାତ୍ର ମନ୍ତ୍ରିମଣ୍ଡଳ ବୈଠକ ଅନୁଷ୍ଠାନିକ ଭାବରେ ଯେତେବେଳେ ବସେ, ସେଥିରେ ମୁଖ୍ୟମନ୍ତ୍ରୀ ସଭାପତି ହିସାବରେ ସମସ୍ତଙ୍କଠାରୁ ଉଚ୍ଚରେ ଏବଂ ସେହିପରି ଭାବରେ କାର୍ଯ୍ୟ କରିବା ବିଧେୟ ।

## ବିଚିତ୍ର ବିଚାର

ଉଭୟ ମହତାବ ଓ ସିଂହଦେଓ ମଧ୍ୟରେ ଏ ପ୍ରକାର ଘନିଷ୍ଠତା ପରବର୍ତ୍ତୀ କାଳରେ ୧୯୬୨ ଲୋକସଭା ନିର୍ବାଚନ ସମୟରେ ବିଶେଷଭାବରେ ମହତାବଙ୍କୁ ସହାୟକ ହୋଇଥିଲା । ୧୯୬୨ ମସିହାରେ ଯେଉଁ ଲୋକସଭା ନିର୍ବାଚନ ହୋଇଥିଲା, ସେଥିରେ ମହତାବ ବାଲେଶ୍ୱର ଜିଲ୍ଲାରୁ ପ୍ରାର୍ଥୀ

ହେବାପାଇଁ ମୁଁ ପ୍ରସ୍ତାବ ଦେଇଥିଲି ଏବଂ ତାଙ୍କୁ ଅନୁରୋଧ କରିଥିଲି । ବାଲେଶ୍ୱର ଜିଲ୍ଲା ଥିଲା ମହତାବଙ୍କ କର୍ମକ୍ଷେତ୍ର ଏବଂ ବାଲେଶ୍ୱର ଲୋକସଭା ନିର୍ବାଚନମଣ୍ଡଳୀ ତାଙ୍କ ପ୍ରତି ଯେ ଅତିଶୟ ସୁବିଧାଜନକ ହୋଇଥାଆନ୍ତା ଏଥିରେ କୌଣସି ସନ୍ଦେହ ନଥିଲା । କିନ୍ତୁ ସେ ବାଲେଶ୍ୱରରୁ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ଅନିଚ୍ଛା ପ୍ରକାଶ କରିଥିଲେ । ଢେଙ୍କାନାଳ ଓ ସମ୍ବଲପୁର ଜିଲ୍ଲାର ଅନୁଗୁଳ-ଦେଓଗଡ଼ ଲୋକସଭା ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହେବାପାଇଁ ସେ ଅତିଶୟ ଆଗ୍ରହୀ ଥିଲେ । ଏହି ନିର୍ବାଚନମଣ୍ଡଳୀଟି ଏକପ୍ରକାର ଗଣତନ୍ତ୍ର ଦଳର ଦୁର୍ଭେଦ୍ୟ ଦୁର୍ଗଭଳି ଥିଲା । ଏହି ଲୋକସଭା ନିର୍ବାଚନମଣ୍ଡଳୀ ଯେଉଁ ସାତଗୋଟି ବିଧାନସଭା ନିର୍ବାଚନମଣ୍ଡଳୀକୁ ନେଇ ଗଠିତ ହୋଇଥିଲା, ସେଗୁଡ଼ିକ ମଧ୍ୟରୁ କେବଳ ଅନୁଗୁଳକୁ ଛାଡ଼ିଦେଲେ ଆଉ ଛଅଟି ନିର୍ବାଚନମଣ୍ଡଳୀର ଅଧିକାଂଶ ଥିଲା ପୂର୍ବତନ ଗଡ଼ଜାତ ଅଞ୍ଚଳ ଏବଂ ସେସବୁ ଅଞ୍ଚଳରେ ରାଜା-ମହାରାଜାମାନଙ୍କର ପ୍ରଭାବ ଓ ପ୍ରତିପତ୍ତି ଯଥେଷ୍ଟ ଥିଲା । ତେଣୁ ସେଠାରୁ ପ୍ରାର୍ଥୀ ନହେବାକୁ ମୁଁ ମହତାବଙ୍କୁ ଅନୁରୋଧ କରିଥିଲି । ସେ କିନ୍ତୁ ଏକ ବିଚିତ୍ର ବିଚାର କରି ଉକ୍ତ ନିର୍ବାଚନମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା କରିବାପାଇଁ ପ୍ରବଳ ଇଚ୍ଛା ପ୍ରକାଶ କରିଥିଲେ; ତେଣୁ କଂଗ୍ରେସଦ୍ୱାରା ସେହି ନିର୍ବାଚନମଣ୍ଡଳୀ ପାଇଁ କଂଗ୍ରେସ ପ୍ରାର୍ଥୀରୂପେ ମନୋନୀତ ହୋଇଥିଲେ । ଗଣତନ୍ତ୍ରଦଳରୁ ମଧ୍ୟ ଜଣେ ନେତୃସ୍ଥାନୀୟ ବ୍ୟକ୍ତି ଶ୍ରୀ ସୁନ୍ଦରମଣି ପଟେଲ ପ୍ରାର୍ଥୀପତ୍ର ଦାଖଲ କରିଥିଲେ । ପ୍ରାର୍ଥୀପତ୍ର ଯାଞ୍ଚ ପରେ କେବଳ କଂଗ୍ରେସ ଓ ଗଣତନ୍ତ୍ରଦଳର ଦୁଇଜଣ ପ୍ରାର୍ଥୀ ପ୍ରତିଦ୍ୱନ୍ଦ୍ୱିତା ପାଇଁ ରହିଲେ । ତା'ପରେ ଶ୍ରୀ ସିଂହଦେଓଙ୍କ ସହିତ ମହତାବଙ୍କର ଗୋପନ ବୁଝାମଣା ଅନୁଯାୟୀ ଗଣତନ୍ତ୍ର ଦଳ ତାଙ୍କର ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେବାରୁ ମହତାବ ଲୋକସଭାକୁ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥିଲେ । ଯେଉଁ ଗଣତନ୍ତ୍ର ଦଳ କଂଗ୍ରେସକୁ ସର୍ବତ୍ର ତୀବ୍ର ପ୍ରତିଦ୍ୱନ୍ଦ୍ୱିତା କରିଥାଏ ସେ ଦଳ ପୁଣି ତାଙ୍କର ଅଧିକ ପ୍ରଭାବ ଓ ପ୍ରତିପତ୍ତି ଥିବା ଅଞ୍ଚଳରୁ କିପରି କଂଗ୍ରେସ ପ୍ରାର୍ଥୀ ଶ୍ରୀ ହରେକୃଷ୍ଣ ମହତାବଙ୍କୁ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ କରାଇଦେଲେ ତାହାହିଁ ବିଚାର କରିବାର କଥା । ବହୁ ଅର୍ଥ ବିନିମୟରେ ଏ କାର୍ଯ୍ୟ ସାଧିତ ହୋଇଥିଲା ବୋଲି ସେତେବେଳେ ଡିଣ୍ଡିମ ବାଜିଥିଲା । ଆଉ କେତେକ ଏହାକୁ ରାଜନୀତିରେ ନିମକହାରାମ ଜାଗିରି ବୋଲି ବର୍ଣ୍ଣନା କରିଥିଲେ ।

## ସ୍ୱାଧୀନତା ସଂଗ୍ରାମୀଙ୍କ ଭତ୍ତା ଓ ସନନ୍ଦ : ଆନନ୍ଦ ଓ ନିରାନନ୍ଦର ଅନୁଭୂତି

ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସେତେବେଳେ ରାଜ୍ୟ ସରକାରଙ୍କ ପକ୍ଷରୁ ପେନ୍‌ସନ୍ ଦିଆଯାଉଥିଲା । ଏଭଳି ଅବସ୍ଥାଟିକୁ ଅର୍ଥମନ୍ତ୍ରୀ ମହାରାଜା ସିଂହଦେଓ ଆଦୌ ପସନ୍ଦ କରିପାରୁ ନ ଥିଲେ । ପଶ୍ଚିମ ଓଡ଼ିଶାରେ କେତେକ ଅବାଞ୍ଛିତ ଲୋକ ସ୍ୱାଧୀନତା ସଂଗ୍ରାମୀ ପେନ୍‌ସନ୍ ପାଉଛନ୍ତି ବୋଲି ଶ୍ରୀ ସିଂହଦେଓ ମୁଖ୍ୟମନ୍ତ୍ରୀଙ୍କୁ କହୁଥିବା ବିଷୟ ମୋର ମନେଅଛି । ମହାରାଜାଙ୍କ ପକ୍ଷେ ସ୍ୱାଧୀନତା ସଂଗ୍ରାମୀମାନଙ୍କ ପ୍ରତି ଉଦାର ହୋଇ ନପାରିବାର ଯୁକ୍ତିଯୁକ୍ତ କାରଣ ଥାଇପାରେ । ମହତାବବାବୁ ନିଜେ ମଧ୍ୟ ରାଜନୈତିକ ପେନ୍‌ସନ୍ ସମ୍ବନ୍ଧରେ ସେହି ପ୍ରକାର ମନୋଭବ ପୋଷଣ କରୁଥିଲେ । ତେଣୁ 'ଅବାଞ୍ଛିତ' ବ୍ୟକ୍ତିଙ୍କର ପେନ୍‌ସନ୍ କାଟିବାପାଇଁ ସେ ମୋତେ, ଶ୍ରୀ ରାଧାନାଥ ରଥ ଓ ଶ୍ରୀ ଦୀନବନ୍ଧୁ ସାହୁଙ୍କୁ ନେଇ ଗୋଟିଏ କମିଟି ଗଠନ କରିଥିଲେ । ଉକ୍ତ କମିଟିର ଆବାହକ ହେଲି ମୁଁ । ମୁଁ ନିଜେ ଚାହୁଁଥିଲି କିପରି ଦୁଃସ୍ଥ ସ୍ୱାଧୀନତା ସଂଗ୍ରାମୀମାନେ କିଛି କିଛି ଭତ୍ତା ପାଆନ୍ତୁ; ମାତ୍ର ମୋତେ କରାଗଲା ସେମାନଙ୍କର ଭତ୍ତା କାଟିବା କମିଟିର ଆବାହକ । କଥାଟି ମୋ ମନକୁ ଆଦୌ ପାଇଲାନାହିଁ । ତେଣୁ ଟାଳଟୁଳ କରି ସେ କମିଟିର ବୈଠକ ଆଦୌ ଡାକିଲିନାହିଁ । ଶେଷରେ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କର ପ୍ରରୋଚନାରେ ପଡ଼ି ଶ୍ରୀ ମହତାବଙ୍କର କମିଟି ଗଠନ କରିବାର ଉଦ୍ଦେଶ୍ୟ ପଣ୍ଡହୋଇଯାଇଥିଲା । କଥାରେ ଅଛି 'କିସ ପୁଣି ଦେଖା ନ ଯାଏ ବଞ୍ଚିଥିଲେ

ଜୀବନେ ।' ମହତାବବାବୁ ନିଜେ ଦେଶର ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ । ପରେ ସେ ରାଜ୍ୟ ସରକାରଙ୍କର ରାଜନୈତିକ ପେନ୍‌ସନ୍ କମିଟିର ଜଣେ ସଭ୍ୟ ହେଲେ । ସେତେବେଳେ ଖବରକାଗଜରେ ପ୍ରକାଶ ପାଇଲା ଯେ ଏହି କମିଟି ଓଡ଼ିଶାରୁ କେତେ ହଜାର ସ୍ୱାଧୀନତା ସଂଗ୍ରାମୀଙ୍କୁ ମାସକୁ ତିନି ଶହ ଟଙ୍କା ପେନ୍‌ସନ୍ ପାଇବା ଉଚିତ ବୋଲି କେନ୍ଦ୍ର ସରକାରଙ୍କୁ ସୁପାରିଶ କରିଥିଲେ । ଏବେ ସେ ସ୍ୱାଧୀନତା ସଂଗ୍ରାମୀମାନଙ୍କର ସ୍ୱାର୍ଥରକ୍ଷାପାଇଁ ଉଦ୍ଦିଷ୍ଟ ଏକ ସର୍ବଭାରତୀୟ କମିଟିର ସଭାପତି ମଧ୍ୟ ହୋଇଛନ୍ତି । ରାଜନୈତିକ ପେନ୍‌ସନ୍ ସମ୍ବନ୍ଧରେ ଶ୍ରୀ ମହତାବଙ୍କର ପରସ୍ପରବିରୋଧୀ ମନୋଭାବ ୧୯୭୨ ମସିହାରେ ପ୍ରକାଶିତ ତାଙ୍କର ଆତ୍ମଜୀବନୀ 'ସାଧନାର ପଥେ'ରେ ଲିଖିତ ବିଦ୍ରୂପାତ୍ମକ ମନ୍ତବ୍ୟରୁ ଜାଣିବାର କଥା । ସେ ପରିହାସ କଲା ପରି ଲେଖିଛନ୍ତି, ''କେଉଁଠି ଆସି ତଥାକଥିତ ଦୁଃସ୍ଥ ରାଜନୈତିକ କର୍ମୀଙ୍କର ପେନ୍‌ସନ୍ ପହଞ୍ଚିଲାଣି । ସେଥିରେ ତ ମୁଁ ଅନୁଭବ କରୁଛି ଯେ ସହିଦମାନେ ସ୍ୱର୍ଗରେ ଥାଇ ଦୁଃଖିତ ହେଉଥିବେ ଯେ ତାଙ୍କ ପୁଣ୍ୟତକ ବିକ୍ରୀହୋଇଯାଉଛି । ଆଉ ସେମାନଙ୍କର ନାମକୁ ନେଇ କିଛି କହିବାର କାହାର କୌଣସି ଅଧିକାର ନାହିଁ x x x ଆଜି ବାପ, ଗୋସେଇଁବାପ କେବେ କେଉଁଠି କଂଗ୍ରେସ ସଭାରେ ଯୋଗଦେଇଥିଲେ ବୋଲି ପୁଅ ନାତି ପେନ୍‌ସନ୍ ଦାବି କରୁଛନ୍ତି । ଓଡ଼ିଶାରେ କୌଣସି ସମୟରେ ଏକ ସଙ୍ଗରେ ସାତ ଶହ ରାଜବନ୍ଦୀ ଜେଲ୍‌ରେ ନଥିଲେ । ଏମାନଙ୍କ ମଧ୍ୟରୁ ଅତି ବେଶି ହେଲେ ଏକଶହ ସାହାଯ୍ୟ ପାଇବାର ଯୋଗ୍ୟ ହୋଇପାରନ୍ତି । ପୁଣି ସମସ୍ତ ଆନ୍ଦୋଳନ ୧୯୪୫ ମସିହାରେ ଶେଷ ହୋଇଯାଇଥିବାରୁ ୧୯୬୧ ମସିହା ବେଳକୁ ତିରିଶ ଚାଳିଶ ବର୍ଷ ବୟସ୍କ ଲୋକଙ୍କର କାହାରି କୌଣସି ଆନ୍ଦୋଳନ ସହିତ ସମ୍ପର୍କ ନଥିବାର କଥା, ତଥାପି ଶହ ଶହ ଲୋକଙ୍କୁ ପେନ୍‌ସନ୍ ଦିଆଯାଉଛି କଂଗ୍ରେସପାଇଁ ନିର୍ବାଚନରେ କାମ କରିବାକୁ କର୍ମୀ ନିଯୁକ୍ତି ଉଦ୍ଦେଶ୍ୟରେ । ତ୍ୟାଗ କରି କଂଗ୍ରେସ ଯାହା କିଛି ପୁଣ୍ୟ ଅର୍ଜନ କରିଥିଲା, ତାହା ପେନ୍‌ସନ୍‌ରେ ବିକ୍ରୀ ହୋଇଗଲା ବୋଲି ମୁଁ ଦୁଃଖିତ ଓ ଲଜ୍ଜିତ ।''

ଏକ ପକ୍ଷରେ ଆମେ ଥୋକେ ସ୍ୱାଧୀନତା ସଂଗ୍ରାମୀ ଆମର ସେହି ପୁଣ୍ୟକୁ ପୁଞ୍ଜିକରି ଦେଶରେ କ୍ଷମତା ଓ ପ୍ରଭାବକୁ କରାୟତ୍ତ କରି ନାନା ସତ୍ ଓ ଅସତ୍ ଉପାୟରେ ନିଜର ଧନଦୌଲତ ବଢ଼ାଇବା । ଏପରିକି ଆମର ଏତାଦୃଶ କଳଙ୍କମୟ ଆଚରଣରୁ ସାରା ଦେଶରେ ସ୍ୱାଧୀନତା ସଂଗ୍ରାମ ଓ ସଂଗ୍ରାମୀଙ୍କ ଭାବମୂର୍ତ୍ତିକୁ ଆମ ଦାୟାଦ ଯୁବସମାଜ ଆଗରେ ଏବଂ ଇତିହାସ ପୃଷ୍ଠାରେ କଳଙ୍କିତ କରିବା ; ତଥାପି ଆମେ ଲଜ୍ଜିତ ହେବାନାହିଁ । ସେହି 'ପୁଣ୍ୟ'କୁ ପୁଞ୍ଜିକରି ଲୋକସମର୍ଥନ ଲୋଡ଼ି ଲୋକପ୍ରତିନିଧି ନିର୍ବାଚିତ ହେବା, ଦରମା ପାଇବା ଏବଂ ସେଥିପାଇଁ ଅବଶିଷ୍ଟ ଜୀବନ ପାଇଁ ପେନ୍‌ସନ୍ ଆଦାୟ କରିବା– ସେଥିରେ ପାପ ହେବ ନାହିଁ । ଅଥଚ ବ୍ୟକ୍ତିଗତ ପ୍ରତ୍ୟାଶା ନରଖି ଯେଉଁମାନେ ଏ ଦେଶର ସ୍ୱାଧୀନତା ସମରରେ ଭାଗନେଇଥିଲେ ସେମାନଙ୍କୁ କିଛି ସାହାଯ୍ୟ ଦେଲେ 'କଂଗ୍ରେସ ତ୍ୟାଗ କରି ଯେଉଁ ପୁଣ୍ୟ ଅର୍ଜନ କରିଥିଲା ତାହା ପେନ୍‌ସନ୍‌ରେ ବିକ୍ରୀ ହୋଇଗଲା' ବୋଲି ବ୍ୟଙ୍ଗ, ବିଦ୍ରୂପ ବା ବେଦନା ପ୍ରକାଶ କରିବା ଅତ୍ୟନ୍ତ ଅହେତୁକ ବୋଲି ମୋର ଧାରଣା ।

ସ୍ୱାଧୀନତା ସଂଗ୍ରାମର ସମାପ୍ତି ଓ ଠିକ୍ ସ୍ୱାଧୀନତା ପ୍ରାପ୍ତିର ପରେ ଯେଉଁ ଲୋକମାନଙ୍କୁ ଦଶ ଟଙ୍କାରୁ ଚାଳିଶ ଟଙ୍କା ପର୍ଯ୍ୟନ୍ତ ମାସିକ ଭତ୍ତା ଦେବାର ବ୍ୟବସ୍ଥା କରାଯାଇଥିଲା, ତାହା ଯେ ଅତି ଯୁକ୍ତିଯୁକ୍ତ, ନ୍ୟାୟସଙ୍ଗତ ଓ ଯଥାର୍ଥ ଏଥିରେ କୌଣସି ସନ୍ଦେହନାହିଁ । ଅବଶ୍ୟ କେତେକ ଅବାଞ୍ଛିତ ଲୋକ ଯେ ପାଉ ନଥିବେ ତାହା ଅସ୍ୱୀକାର କରିହେବନାହିଁ, ମାତ୍ର ସେପରି ଦୃଷ୍ଟାନ୍ତ ଖୁବ୍ ଅଳ୍ପ; ଶହେରେ ଦୁଇ ତିନି ହୋଇପାରେ । ବର୍ତ୍ତମାନ ଭାରତ ସରକାରଙ୍କର ବର୍ଦ୍ଧିତ ମାସକୁ ତିନି ଶହ ଟଙ୍କା ଭତ୍ତା ଯୋଜନାରେ ଯେପରି ଶହେରେ ପଞ୍ଚସ୍ତରି ଜଣ 'ଅବାଞ୍ଛିତ' ବ୍ୟକ୍ତି ଭତ୍ତା ପାଉଛନ୍ତି ଓଡ଼ିଶା ସରକାରଙ୍କର ସେତେବେଳକାର ଭତ୍ତା ଯୋଜନାରେ ସେପରି ଘଟିନଥିଲା । ଯେଉଁ ଲୋକମାନେ ସେତେବେଳେ ରାଜନୈତିକ ଭତ୍ତା କାଟିବାପାଇଁ ଇଚ୍ଛା ପ୍ରକାଶ କରୁଥିଲେ, ବର୍ତ୍ତମାନ ସେଇମାନେହିଁ

ଅଧିକ ସଂଖ୍ୟକ ଅବାଞ୍ଛିତ ବ୍ୟକ୍ତି କିପରି କେନ୍ଦ୍ର ଭତ୍ତା ପାଆନ୍ତୁ ସେଥିପାଇଁ ଉତ୍ସାହ ଦେଖାଇବାକୁ ପଛାଉନାହାନ୍ତି । ରାଜନୈତିକ ସ୍ୱାଧୀନତା ସଂଗ୍ରାମୀ ଭତ୍ତା ବ୍ୟାପାରରେ ଯେଭଳି ଭ୍ରଷ୍ଟାଚାର ପ୍ରବେଶ କରିଛି, ତାହା ବର୍ଣ୍ଣନା କରିହେବନାହିଁ । ଦେଶର ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ଯେଉଁ ବ୍ୟକ୍ତିମାନେ ତ୍ୟାଗ ସ୍ୱୀକାର କରିଥାଆନ୍ତି, ସେମାନେ ଦେଶବାସୀଙ୍କର ଯେ ନମସ୍ୟ ସେଥିରେ କୌଣସି ସନ୍ଦେହନାହିଁ । ସେମାନଙ୍କୁ ଓ ସେମାନଙ୍କର ପିଲାପିଲିଙ୍କୁ ଭତ୍ତା ଆକାରରେ ସାହାଯ୍ୟ ଦେବା ଦେଶ ଓ ଜାତିର ଏକାନ୍ତ କର୍ତ୍ତବ୍ୟ । ମାତ୍ର ମହତାବବାବୁଙ୍କ ଉଲ୍ଲିଖିତ ମାପକାଠି ପ୍ରୟୋଗ କଲେ ସ୍ୱାଧୀନତା ସଂଗ୍ରାମ ସମାପ୍ତିର ଦୀର୍ଘ ପଞ୍ଚତିରିଶ ବର୍ଷ ପରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ସରକାର ସ୍ୱାଧୀନତା ସଂଗ୍ରାମୀଙ୍କପାଇଁ ଦରଦ ଦେଖାଇ ମାସକୁ ଯେଉଁ ଦୁଇ ଶହ ଟଙ୍କା ଓ ପରେ ତିନି ଶହ ଟଙ୍କା ଭତ୍ତା ପାଇବାପାଇଁ କୋହଳ ଯୋଜନା କଲେ ତାହାକୁ କେବଳ ରାଜନୈତିକ ଉଦ୍ଦେଶ୍ୟ ସାଧନ ଉଦ୍ଦେଶ୍ୟରେ କପଟ ଦରଦ ବୋଲିହିଁ ବୁଝିବାକୁ ହେବ । ତଦ୍ୱାରା ତ୍ୟାଗର ମୂଲ୍ୟ କଳଙ୍କିତ ହେବା ସଙ୍ଗେ ସଙ୍ଗେ ଦେଶରେ ଦୁର୍ନୀତି ଓ ଭ୍ରଷ୍ଟାଚାରକୁ ଜାଣିଶୁଣି ପ୍ରଶ୍ରୟ ଦିଆଗଲା । ସ୍ୱାଧୀନତା ପ୍ରାପ୍ତିର ପାଞ୍ଚ ଦଶ ବର୍ଷ ଭିତରେ ସ୍ୱାଧୀନତା ସଂଗ୍ରାମୀ ହିସାବରେ ମାସକୁ ମାତ୍ର କୋଡ଼ିଏ ଚାଳିଶ ଟଙ୍କା ରାଜନୈତିକ ଭତ୍ତା ଦିଆଯିବାର ଯେଉଁ ବ୍ୟବସ୍ଥା ହୋଇଥିଲା ସେଥିରେ ପ୍ରକୃତରେ ଯେଉଁମାନେ ସ୍ୱାଧୀନତା ସଂଗ୍ରାମୀ ଓ ଦୁଃସ୍ଥ ସେହିମାନେ ପାଉଥିଲେ । ସେତେବେଳର କୋଡ଼ିଏ ଚାଳିଶ ଟଙ୍କା ମାସିକ ଭତ୍ତାର ମୂଲ୍ୟ ଆଜିକାଲି ଦୁଇ ଶହ ଟଙ୍କାଠାରୁ ଢେର୍ ବେଶି । ତାକୁଇ ଭିତ୍ତିକରି ସେମାନଙ୍କୁ ଅଧିକ ସାହାଯ୍ୟ ଦେବା କଥା ଯଦି କେନ୍ଦ୍ର ସରକାର ବ୍ୟବସ୍ଥା କରିଥାଆନ୍ତେ, ତାହାହେଲେ ଯେଉଁମାନେ ଦୁଃସ୍ଥ ସ୍ୱାଧୀନତା ସଂଗ୍ରାମୀ ଓ ଯେଉଁମାନେ ତ୍ୟାଗକରିଥିଲେ ସେମାନଙ୍କ ପ୍ରତି ସୁବିଚାର କରାହୋଇଥାଆନ୍ତା । ତା' ପରିବର୍ତ୍ତେ ବର୍ତ୍ତମାନ ତ୍ୟାଗୀ ବଦଳରେ ଭୋଗୀ ମଧ୍ୟ କେନ୍ଦ୍ର ସରକାରଙ୍କର ବର୍ଦ୍ଧିତ ଭତ୍ତା ପାଇବେ ବୋଲି ଘୋଷଣା କରାଯାଇଛି । ଜଣକର ମାସକୁ କୋଡ଼ିଏ ହଜାର ଟଙ୍କା ଆୟ ଥିଲେ ମଧ୍ୟ ସେ କେନ୍ଦ୍ର ଭତ୍ତା ମାସକୁ ତିନି ଶହ ଟଙ୍କା ନେଇପାରିବେ । ଜେଲ୍ ଯାଇଥିବା କଥା ପ୍ରମାଣପାଇଁ ଲାଞ୍ଚ ଦେଇ ମିଥ୍ୟା ଜେଲ୍ ଯାଇଥିବା ସାର୍ଟିଫିକେଟ୍ ଯୋଗାଡ଼ କରି ସଂପୃକ୍ତ କମିଟି ସଭ୍ୟ ଓ କର୍ମଚାରୀଙ୍କୁ ଲାଞ୍ଚ ଦେଇ ଭତ୍ତା ପାଇବାପାଇଁ ଯେପରି ଦୌଡ଼ାଦୌଡ଼ି ଚାଲିଛି ତାହା ଦେଖି ଆଶ୍ଚର୍ଯ୍ୟ ହେବାକୁ ପଡୁଛି । ଗୁପ୍ତରେ ବା under ground ରେ ରହି ସ୍ୱାଧୀନତା ସଂଗ୍ରାମ କରିଥିଲେ ବା କଷ୍ଟଭୋଗକରିଥିଲେ ବୋଲି ଖଣ୍ଡେ ସାର୍ଟିଫିକେଟ୍ ହାସଲ କରିପାରିଲେ କୁଆଡ଼େ କେନ୍ଦ୍ର ସରକାରଙ୍କ ଭତ୍ତା ମିଳିବ ବୋଲି କୁହାଯାଇଛି । ସେଥିପାଇଁ କେତେକ ଲୋକ କେତେ ଆଶା କରି ଏପାଖ ସେପାଖ ଦୌଡ଼ାଦୌଡ଼ି କରି, ଲାଞ୍ଚ ଦେଇ ଓ ମିଛ କହି ପଦସ୍ଥ ବ୍ୟକ୍ତି ଓ ଲୋକପ୍ରତିନିଧିଙ୍କଠାରୁ ସାର୍ଟିଫିକେଟ୍ ଖଣ୍ଡେ ହାସଲ କରିବା ଉଦ୍ଦେଶ୍ୟରେ ଯେପରି ବିକଳ ହେଉଛନ୍ତି ତାହା ଦେଖିଲେ ଯେ ପ୍ରକୃତ ସ୍ୱାଧୀନତା ସଂଗ୍ରାମୀ ତାଙ୍କୁ ନିଶ୍ଚୟ ଲାଜ ଲାଗିବ । ଶହ ଶହ ବ୍ୟକ୍ତି ଏହି ପ୍ରକାର ସାର୍ଟିଫିକେଟ୍ ପାଇବାପାଇଁ ମୋ ପାଖକୁ ଆସିଛନ୍ତି । ମୁଁ ସେମାନଙ୍କୁ ବୁଝାଇଶୁଝାଇ ଫେରାଇଦେଇଛି । ବାଲେଶ୍ୱର ଜିଲ୍ଲାର ଇରମ୍ ଓ ଲୁଣିଆରେ ୧୯୪୨ ମସିହା ଅଗଷ୍ଟ ଆନ୍ଦୋଳନ ସମୟରେ ଯେଉଁ ଗୁଳିକାଣ୍ଡ ଘଟିଥିଲା ସେହି ଗୁଳିକାଣ୍ଡରେ ଉଭୟ ସ୍ଥାନରେ ପ୍ରାୟ ଚାଳିଶ ଜଣ ଲୋକ ପ୍ରାଣହରାଇଥିଲେ । ଯେଉଁମାନେ ଗୁଳିମାଡ଼ରେ ପ୍ରାଣ ହରାଇଥିଲେ ସେମାନଙ୍କ ବଂଶର ଲୋକେ ନିଶ୍ଚୟ ଭତ୍ତା ପାଇବା କଥା । ଯେଉଁମାନେ ଗୁଳିଚୋଟରେ ଅକର୍ମଣ୍ୟ ହୋଇଥିଲେ ବା ଜେଲ୍ ଯାଇଥିଲେ ସେମାନେ ମଧ୍ୟ ଭତ୍ତା ପାଇବାର କଥା । ଯେଉଁ ସ୍ଥାନମାନଙ୍କରେ ଗୁଳିକାଣ୍ଡ ହୋଇଥିଲା ବର୍ତ୍ତମାନ ସେଠାରୁ ବହୁତ ଲୋକ ଆସି ମୋତେ କହୁଛନ୍ତି ଯେ ଇରମ୍ ଓ ଲୁଣିଆରେ ପୁଲିସ ଯେତେବେଳେ ଗୁଳିକରିଥିଲେ ସେତେବେଳେ ଆନ୍ଦୋଳନକାରୀମାନଙ୍କୁ ଗୋପନୀୟ ଭାବରେ ଯେଉଁମାନେ ସାହାଯ୍ୟ କରୁଥିଲେ ସେମାନଙ୍କୁ କେନ୍ଦ୍ର ସରକାରଙ୍କର ଭତ୍ତା ମିଳିବା ଉଚିତ । ସେଥିପାଇଁ ସେମାନଙ୍କର ଦରକାର

ସାର୍ଟିଫିକେଟ୍ ଯେ ସେମାନେ ଗୁପ୍ତରେ ରହି ଆନ୍ଦୋଳନକାରୀମାନଙ୍କୁ ସାହାଯ୍ୟକରୁଥିଲେ । ଭତ୍ତା ଦେବାର ଓ ପାଇବାର ଉଦ୍ଦେଶ୍ୟ ଓ ସୀମା ଆସି କେଉଁଠି ଓ କେଉଁ ସ୍ତରରେ ପହଞ୍ଚିଲାଣି ବିଚାର କରିବାର କଥା । ଇରମ୍‌ର ଯେଉଁ ସଭାରେ ପୁଲିସ ଗୁଳିକରିଥିଲେ ସେହି ସଭାରେ ବ୍ରିଟିଶ୍ ଅତ୍ୟାଚାର ଯୁଗରେ ମଧ୍ୟ ପ୍ରାୟ ଚାରି ପାଞ୍ଚ ହଜାର ଲୋକ ସାହସ ବାନ୍ଧି ଯୋଗଦେଇଥିଲେ । ସେ ସମସ୍ତେ କାହିଁକି ଏ ପ୍ରକାର ଭତ୍ତା ପାଇବାରୁ ବଞ୍ଚିତ ହେବେ ? ବର୍ତ୍ତମାନ ଏ ପ୍ରକାର ଭତ୍ତାପାଇଁ ଓଡ଼ିଶାର ଯେତେ ଲୋକ ଆବେଦନ କରିଛନ୍ତି ବା ପାଉଛନ୍ତି ସେତେ ସଂଖ୍ୟକ ସକ୍ରିୟ ସ୍ୱାଧୀନତା ସଂଗ୍ରାମୀ ରାଜ୍ୟରେ ଥିଲେ କି ନା ସନ୍ଦେହ । ଯେଉଁମାନେ ସ୍ୱାଧୀନତା ସଂଗ୍ରାମ ସମୟରେ ଜନ୍ମ ହୋଇ ନଥିଲେ ସେମାନେ ମଧ୍ୟ କେନ୍ଦ୍ର ସରକାରଙ୍କଠାରୁ ଭତ୍ତା ପାଉଥିବାର ଦେଖାଯାଉଛି । ଯେଉଁମାନେ ଏ ପ୍ରକାର ଭତ୍ତା ପାଉଛନ୍ତି ସେମାନେ ସେମାନଙ୍କର ଗାଆଁ ଲୋକଙ୍କର ଈର୍ଷାର ପାତ୍ର ହେଉଛନ୍ତି । ତେଣୁ କେନ୍ଦ୍ର ଭତ୍ତା ପାଇଥିବା ଅବାଞ୍ଛିତ ବ୍ୟକ୍ତି ଯେକୌଣସି ରାଜନୈତିକ ଦଳକୁ ସାହାଯ୍ୟ କରିପାରିବ, ସେ ପ୍ରକାର ଆଶା କରିବା ବୃଥା ।

## ଇନ୍ଦିରା ଗାନ୍ଧୀ ଓ ଇନ୍ଦ୍ରଦ୍ୟୁମ୍ନ ମହାରାଜା ବୃତ୍ତାନ୍ତ

ସ୍ୱାଧୀନତା ସଂଗ୍ରାମରେ ଦେଶପାଇଁ ତ୍ୟାଗର ମୂଲ୍ୟ ଆଜି କେଉଁଠି ଆସି ପହଞ୍ଚିଲାଣି ତାହାହିଁ ବିଚାର କରିବାର ବିଷୟ । ତ୍ୟାଗକୁ ଭ୍ରଷ୍ଟାଚାରରେ ପରିଣତ କରି ଓ ତାକୁ ଭଙ୍ଗେଇ ତା'ରି ଉପରେ ଚଳିବା ପ୍ରବୃତ୍ତିକୁ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଉତ୍ସାହିତ କରିବାରେ ସାହାଯ୍ୟ କରିଥିଲେ । ଏକ ସମୟରେ ନିର୍ବାଚନ ସଭା ତଥା କଂଗ୍ରେସ ସମ୍ମିଳନୀମାନଙ୍କରେ ଶ୍ରୀମତୀ ଗାନ୍ଧୀ ଲୋକଙ୍କର ସାହାଯ୍ୟ ଓ ସହାନୁଭୂତି ଲାଭ କରିବା ଉଦ୍ଦେଶ୍ୟରେ ତାଙ୍କ ନେହେରୁ ବଂଶ ଦେଶପାଇଁ ଯେଉଁ ତ୍ୟାଗ କରିଛନ୍ତି ତାହାର ପଟାନ୍ତର ନାହିଁ ବୋଲି କହୁଥିଲେ, ''ସ୍ୱାଧୀନତା ସଂଗ୍ରାମକୁ ନେହେରୁ ବଂଶର ଯାହା ଅବଦାନ ସେ ପ୍ରକାର ଆଉ କାହାର ନାହିଁ ।'' ତେଣୁ ପରୋକ୍ଷରେ ସେ କହୁଥିଲେ ଯେ ତାଙ୍କ ନେହେରୁ ବଂଶର ତ୍ୟାଗକୁ ହିସାବକୁ ନେଇ ଦେଶବାସୀ ତାଙ୍କ ବଂଶପ୍ରତି କୃତଜ୍ଞ ହୋଇ ରହିବା ଉଚିତ । ନିଜର ବା ନିଜ ବଂଶର ତ୍ୟାଗକୁ ବଢ଼ାଇ କରି କହିବା ଭାରତୀୟ ସଂସ୍କୃତିବିରୁଦ୍ଧ । ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ଏ ପ୍ରକାର ଉକ୍ତିକୁ ସମ୍ପୂର୍ଣ୍ଣ ନାପସନ୍ଦ କରି ତାଙ୍କର ପିଉସୀ ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତ ତାଙ୍କ ଆତ୍ମଜୀବନୀ 'ସୁଖର ପରିସର' (The Scope of Happiness) ରେ ଲେଖିଛନ୍ତି, "Some days earlier, she (Indira) had mentioned in one of her election speeches that the Nehru family had contributed more than any other to the independence struggle. This had not been received well by the public, and several members of the family, too, had felt ashamed that such a statement had been made. This question now put to me reflected the feelings of the Press. I was asked if I felt the same way as my niece. My answer was immediate. I replied, 'For what my family has done for India it has been amply rewarded'. There were approving cheers." ଅର୍ଥାତ୍ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ତାଙ୍କ ବଂଶର ତ୍ୟାଗ ବିଷୟରେ ଯେପରି ଭାବରେ ବଢ଼େଇ କରୁଛନ୍ତି ସେଥିରେ ସେ (ବିଜୟଲକ୍ଷ୍ମୀ ପଣ୍ଡିତ) ଓ ତାଙ୍କର ବଂଶର ଅନ୍ୟାନ୍ୟମାନେ ବିଶେଷ ଭାବରେ ଲଜ୍ଜିତ । ତାଙ୍କ ମତରେ ତାଙ୍କ ନେହେରୁ ବଂଶ ଭାରତପାଇଁ ଯାହା କରିଛନ୍ତି, ତାହାର ପ୍ରଚୁର ପ୍ରତିଦାନ ସେମାନେ ପାଇସାରିଛନ୍ତି । କିଂବଦନ୍ତୀ ଅଛି ଯେ, ଜଗନ୍ନାଥ ମନ୍ଦିରର ପ୍ରତିଷ୍ଠାତା ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ସ୍ୱୟଂ ଜଗନ୍ନାଥ ସନ୍ତୁଷ୍ଟ ହୋଇ ପଚାରିଲେ, ''କି ବର ମାଗୁଛୁ ମାଗେ, ଯେଉଁ ବର ମାଗିବୁ ସେ ବର ଦେବି ।'' ଇନ୍ଦ୍ରଦ୍ୟୁମ୍ନ ବିନୀତ ହୋଇ କହିଲେ, ''ପ୍ରଭୁ ! ମୋ ବଂଶରେ ମୋର ଅବଦାନପାଇଁ

ଅହଂକାର କରିବାପାଇଁ କେହି ନ ରହନ୍ତୁ । ତେଣୁ ମୋ ବଂଶ ନିର୍ବଂଶ ହୋଇଯାଉ । ଦୟାକରି ଏହି ବର ଦିଅ ପ୍ରଭୁ !'' ଏଇ ହେଲା ଆମ ସଂସ୍କୃତି ଓ ଐତିହ୍ୟର ଶିକ୍ଷା ।

ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ, ଯାହାଙ୍କର ବଂଶ ପ୍ରାୟ ତିରିଶ ବର୍ଷ ବ୍ୟାପୀ ଦେଶର ପ୍ରଧାନମନ୍ତ୍ରୀ ହୋଇସାରିଲେଣି, ସେ ଯଦି ତାଙ୍କ ପିତା ଓ ପିତାମହଙ୍କ ତ୍ୟାଗପାଇଁ ଅଧିକ ପ୍ରତିଦାନ ଆଶା କରନ୍ତି, ତାହାହେଲେ ଆମ ଇରମ୍ ଓ ଲୁଣିଆ ପ୍ରଭୃତି ଗ୍ରାମମାନଙ୍କରେ ଅକ୍ଷାରି ବ୍ରିଟିଶ୍ ଶାସନ ଅମଳରେ ଅଗଷ୍ଟ ବିପ୍ଳବର ଆହ୍ୱାନରେ ଯେଉଁ ଗ୍ରାମବାସୀମାନେ ପୁଲିସର ଆଖିବୁଜା ଗୁଳିଚାଳନର ସମ୍ମୁଖୀନ ହୋଇଥିଲେ କିମ୍ବା ଆନ୍ଦୋଳନକାରୀମାନଙ୍କୁ ବିଭିନ୍ନ ଭାବରେ ସାହାଯ୍ୟ ଓ ସାହସ ଦେଇଥିଲେ, ଯେଉଁ ଗ୍ରାମବାସୀମାନେ ପୁଲିସ ପ୍ରତିହିଂସା ଓ ଅତ୍ୟାଚାର ଭୟରେ ମାସ ମାସ ଧରି ଘରଛାଡ଼ି ଏଣେତେଣେ ଲୁଚିବୁଲୁଥିଲେ, ସେମାନେ କାହିଁକି ସେମାନଙ୍କର କଷ୍ଟ ଓ ତ୍ୟାଗପାଇଁ ପୁରସ୍କୃତ ହେବାକୁ ଆଶା ନକରିବେ ? ପୂର୍ବତନ ଗଡ଼ଜାତ ରାଜ୍ୟ ତାଳଚେରରୁ ଯେଉଁ ତିରିଶ ହଜାର ଲୋକ ରାଜଦରବାରର ଦାରୁଣ ଅତ୍ୟାଚାର ଭୟରେ ଘରଛାଡ଼ି ଆସି ଅନେକ ଦିନ ପର୍ଯ୍ୟନ୍ତ ଅନୁଗୁଳରେ ଆଶ୍ରୟ ନେଇଥିଲେ, ନୀଳଗିରି ରାଜ୍ୟର ଯେଉଁ ହଜାର ହଜାର ଲୋକଙ୍କ ଘରେ ନିଆଁ ଲଗାଇ ଦିଆଯାଇଥିଲା, ଯେଉଁମାନଙ୍କୁ ରାଜ୍ୟ ଛାଡ଼ି ପଳାଇଆସି ବାଲେଶ୍ୱର ଅଞ୍ଚଳରେ ଆଶ୍ରୟ ନେବାକୁ ପଡ଼ିଥିଲା, ସେମାନଙ୍କ ପକ୍ଷରେ ସେହି ଦୁଃଖ କଷ୍ଟ କ'ଣ ତ୍ୟାଗ ନୁହେଁ ? ଯେଉଁମାନେ ନୀଳଗିରି ରାଜ୍ୟରୁ ରାଜ ଆଦେଶରେ ବହିଷ୍କୃତ ହୋଇଥିଲେ କିମ୍ବା ନିଜ ଘରେ ବା ଗାଆଁରେ ଅନ୍ତରୀଣ ବନ୍ଦୀ ହୋଇଥିଲେ, ସେମାନଙ୍କୁ କାହିଁକି କେନ୍ଦ୍ର ଭତ୍ତାରୁ ବଞ୍ଚିତ କରାଯାଉଛି ?

ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ଜେଲ୍ ଯିବା, ନିଜ ଅଞ୍ଚଳରୁ ବହିଷ୍କୃତ ହେବା ବା ନିଜ ଗାଆଁରେ ଅଟକବନ୍ଦୀ ହେବା ଏବଂ ଅନ୍ୟ କୌଣସି ଭାବରେ ଅତ୍ୟାଚାରିତ ହେବା ସମ୍ପର୍କରେ ପ୍ରମାଣପତ୍ର ପାଇବାପାଇଁ ପାର୍ଲିଆମେଣ୍ଟ ବା ବିଧାନସଭା ସଭ୍ୟ କିମ୍ବା ପୂର୍ବତନ ସଭ୍ୟମାନଙ୍କ ପାଖକୁ ଯେପରି ଦୌଡ଼ାଦୌଡ଼ି ଚାଲିଛି ତାହା ଗୋଟିଏ ପ୍ରହସନରେ ପରିଣତ ହୋଇଛି । କିଏ କାହାକୁ ପ୍ରମାଣପତ୍ର ଦେବ ? ପାର୍ଲିଆମେଣ୍ଟ ସଦସ୍ୟମାନେ ହେଲେ ଦେଶର ସବୁଠାରୁ ବଡ଼ ଲୋକପ୍ରତିନିଧି । କେନ୍ଦ୍ରଭତ୍ତା ପାଇବାରେ ସେମାନଙ୍କ ପ୍ରମାଣପତ୍ରର ମୂଲ୍ୟ ନିଶ୍ଚୟ ବେଶି । ସେଥିପାଇଁ ସଦସ୍ୟ ମହାଶୟ ଜୀବିତ ନଥାଇ ମଧ୍ୟ ପିଛିଲା ତାରିଖ ସହ ତାଙ୍କର ପ୍ରମାଣପତ୍ର ଆମ ରାଜ୍ୟରେ ବିକ୍ରି ହେଉଥିବାର ଖବର ମୁଁ ପାଇଛି । ଇଏ ତ ଗଲା ମୃତ ଲୋକପ୍ରତିନିଧି ପ୍ରତି ସମ୍ମାନରଏକ ନିଦର୍ଶନ । ଜୀବିତ ଏମ୍.ପି.ମାନଙ୍କ କଥା ବିଚାରକରାଯାଉ । ସ୍ୱାଧୀନତା ସଂଗ୍ରାମୀ ଜୀବିତ ଏମ୍.ପି. ଏବଂ ପୂର୍ବତନ ଏମ୍.ପି.ମାନଙ୍କୁ ୧୯୭୬ ମସିହାରେ ତାମ୍ରପତ୍ର ବା ସନନ୍ଦ ଦେବାପାଇଁ ପାର୍ଲିଆମେଣ୍ଟ ଭବନର କେନ୍ଦ୍ର ପ୍ରକୋଷ୍ଠରେ (Central Hall) ଯେଉଁ ଉତ୍ସବ ହୋଇଥିଲା ସେଠାର କେତେକ ପ୍ରହସନ ଓ ଭ୍ରଷ୍ଟାଚାର ସମ୍ପର୍କରେ ମୋର ଅନୁଭୂତି ଏଠାରେ କହୁଛି । ଏ ଉତ୍ସବ ପୂର୍ବରୁ ଏମ୍.ପି.ମାନଙ୍କୁ ସରକାରଙ୍କପକ୍ଷରୁ ଚିଠି ଲେଖା ହୋଇଥିଲା ଯେ ସେମାନେ ଜେଲ୍ ବରଣ କରିଥିଲେ, ବହିଷ୍କୃତ ବା ଗୃହବନ୍ଦୀ ହୋଇଥିଲେ ସେ ବିଷୟରେ ବିଶଦ ବିବରଣୀ ସ୍ୱରାଷ୍ଟ୍ର ବିଭାଗକୁ ପଠାଇବାପାଇଁ । ମୁଁ ସେତେବେଳେ ରାଜ୍ୟସଭାର ସଭ୍ୟ ଥିଲି, ଅଥଚ ମୋ ପାଖକୁ ଚିଠି ଆସିନଥିଲା । ଆମ ରାଜ୍ୟର ଜଣେ ଅଫିସର୍ ସେତେବେଳେ କେନ୍ଦ୍ର ସ୍ୱରାଷ୍ଟ୍ର ବିଭାଗରେ କାର୍ଯ୍ୟ କରୁଥିଲେ । ଉତ୍ସବର ଚାରି ପାଞ୍ଚ ଦିନ ପୂର୍ବରୁ ଦିନେ ସେ ମୋତେ ପାର୍ଲିଆମେଣ୍ଟ ହାଉସ୍‌ରେ ଦେଖିଲେ । ବୋଧହୁଏ ସେହି କାରଣରୁ ଠିକ୍ ତା'ପରେ ମୋ ପାଖକୁ ସ୍ୱରାଷ୍ଟ୍ର ବିଭାଗରୁ ଗୋଟିଏ ଚିଠି ପଠାଯାଇ ହାତେ ହାତେ ତା'ର ଉତ୍ତର ନିଆଯାଇଥିଲା । ସେଣ୍ଟ୍ରାଲ୍ ହଲ୍‌ରେ ଅନୁଷ୍ଠିତ ହେଉଥିବା ଉତ୍ସବରେ ଯେଉଁମାନଙ୍କର ସନନ୍ଦ ପାଇବାର କଥା, ସେମାନଙ୍କ ଆସନ ସେମାନଙ୍କ ନାମର ଇଂରାଜୀ ବର୍ଣ୍ଣମାଳା କ୍ରମରେ ସ୍ଥିର କରାଯାଇଥିଲା । ମୁଁ ଯାଇ ମୋ ସ୍ଥାନରେ ବସିଲି । ଆମ ଓଡ଼ିଶାର ବନମାଳୀ ପଟ୍ଟନାୟକ ଯାଇ ତାଙ୍କ ଆସନରେ

ବସିଲେ । ତା'ପରେ ଦେଖିଲି ଯେ ବିଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ପୂର୍ବତନ ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀ ଗୁଲ୍‌ଜାରୀଲାଲ୍ ନନ୍ଦାଙ୍କ ପାଖରେ ସନନ୍ଦ ନେବାପାଇଁ ବସିଛନ୍ତି ଓଡ଼ିଶାର ଜଣେ ରାଜ୍ୟସଭା ସଦସ୍ୟ । ଶ୍ରୀମତୀ ଇନ୍ଦିରା ଗାନ୍ଧୀ ମଧ୍ୟ ସେ ଉତ୍ସବରେ ସନନ୍ଦ ପାଇଥିଲେ । ଉତ୍ସବ ସମାପ୍ତ ହେବା ପରେ ବନମାଳୀବାବୁ ଓ ମୁଁ ଓଡ଼ିଶାର ଅନ୍ୟ ସଦସ୍ୟ ଜଣକ ସନନ୍ଦ ପାଇବା ବିଷୟରେ ଆଶ୍ଚର୍ଯ୍ୟ ହୋଇଥିଲୁ । ତାଙ୍କୁ ପଚାରିବାରୁ ଜାଣିଲୁ ଯେ ଥରେ ସେ କୁଆଡ଼େ ବଲାଙ୍ଗୀରରୁ କଳାହାଣ୍ଡି ରାଜ୍ୟକୁ ଯାଉଥିଲେ ଏବଂ ସେତେବେଳେ କଳାହାଣ୍ଡି ଦରବାର ତାଙ୍କ ରାଜ୍ୟକୁ ଯିବାପାଇଁ ତାଙ୍କୁ ନିଷେଧ କରିଥିଲେ । ସେ କିନ୍ତୁ ଉକ୍ତ ନିଷେଧାଦେଶକୁ ଅମାନ୍ୟ କରିନଥିଲେ । ସେ ତାହାହିଁ କୁଆଡ଼େ ଲେଖିଥିଲେ ଏବଂ କେନ୍ଦ୍ର ସରକାର ତାକୁ ବିଚାର କରି ତାଙ୍କୁ ସନନ୍ଦ ପ୍ରଦାନ କରିଥିଲେ । ଅନ୍ୟାନ୍ୟ ଏମ୍.ପି.ମାନଙ୍କ ସହ କଥା ହୋଇ ବୁଝିଲି ଯେ ଯେତେ ଏମ୍.ପି. ସେଦିନ ସନନ୍ଦ ପାଇଥିଲେ ସେଥିରୁ ପ୍ରାୟ ଅଧାଅଧି ଥିଲେ ଏହିଭଳି ସ୍ୱାଧୀନତା ସଂଗ୍ରାମୀ । ଖବର ନେବାରେ ଜାଣିଲି ଯେ ଏମ୍.ପି.ମାନେ ଯାହା ଲେଖିଦେଲେ ତାହାର ସତ୍ୟାସତ୍ୟ ଅନୁସନ୍ଧାନ ନକରି ବା ରାଜ୍ୟସରକାରଙ୍କଠାରୁ ନବୁଝି ତାହା ସତ୍ୟ ବୋଲି ଧରିନେଇ ସେମାନଙ୍କୁ ସନନ୍ଦ ପ୍ରଦାନ କରାଯାଇ ଥିଲା । ତେଣୁ ଦୁର୍ନୀତି ଓ ଭ୍ରଷ୍ଟାଚାରକୁ ଯଦି ପାର୍ଲିଆମେଣ୍ଟ ଭବନ ଉତ୍ସବରେ ଏହିପରି ଭାବରେ ସଇମୋହର ଦିଆଯାଇପାରେ, ତାହାହେଲେ ତଳ ସ୍ତରରେ କ'ଣ ଘଟିବ ସେ କଥା ବିଚାର୍ଯ୍ୟ ।

## ବିଜୁ-ମହତାବ ବିବାଦ : କଂଗ୍ରେସର ନୂଆ ଭରସା

ସହଯୋଗୀ ବନ୍ଧୁମାନଙ୍କ ସହିତ ଶ୍ରୀ ହରେକୃଷ୍ଣ ମହତାବଙ୍କ ଆଚରଣ ଓ ବ୍ୟବହାର ବଡ଼ ବିଚିତ୍ର ଥିଲା । ସେ ଅନେକ ସମୟରେ ଆମ୍ଭମାନଙ୍କ ଆଗରେ କହନ୍ତି, "To me friends and colleagues are like old shoes" ଅର୍ଥାତ୍ ବନ୍ଧୁମାନଙ୍କ ସହିତ ତାଙ୍କର ବନ୍ଧୁତା ଓ ସ୍ନେହ ନିଜର ଆବଶ୍ୟକତା ଉପରେ ନିର୍ଭର କରେ । ଜୋତା କାମ ଦେଉଥିବା ପର୍ଯ୍ୟନ୍ତ ବ୍ୟବହୃତ ହୁଏ ଏବଂ ତା'ପରେ ତାକୁ ଫିଙ୍ଗି ଦିଆଯାଏ । ତାଙ୍କ ମତରେ ବନ୍ଧୁତା ସେହିପ୍ରକାର । ସେ କହନ୍ତି, ବନ୍ଧୁର utility (ନିଜ ପାଇଁ କାମ୍‌ତି) ଯେ ପର୍ଯ୍ୟନ୍ତ ଅଛି ସେ ଥାଉ, ତା'ପରେ ସେ ଯାଉ । ତାଙ୍କ ମୁହଁରୁ ଏକଥା ଶୁଣିଲାବେଳେ ବୀରେନ୍‌ବାବୁ ଅବାକ୍ ହୋଇ ବସିଯାଆନ୍ତି । ଏହା ସେ ମୁହଁରେ କହୁଥିଲେ; ମାତ୍ର ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହେବାର କେତେ ମାସ ପରେ ତାଙ୍କର ଆଚରଣ ଠିକ୍ ସେହି ପ୍ରକାର ହୋଇଥିଲା । ନବବାବୁଙ୍କୁ ବିଦାୟ ଦେଇ ସେ କିପରି ବମ୍ବେରୁ ଆସି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବେ ସେଥିରେ ଦରକାର ଥିଲା ବିଜୁବାବୁ ଓ ବୀରେନ୍ ବାବୁ ପ୍ରଭୃତିଙ୍କ ସାହାଯ୍ୟ । ସେହିପରି ଗୋଟିଏ ସଂଖ୍ୟାନ୍ୟୂନ ସରକାର ଚଳାଇବାରେ ଓ ବଞ୍ଚାଇ ରଖିବାରେ ସେମାନଙ୍କର ସାହାଯ୍ୟ ଦରକାର ପଡୁଥିଲା । ବିଜୁବାବୁଙ୍କ 'ବ୍ୟତିରେକେ କଂଗ୍ରେସ-ଗଣତନ୍ତ୍ର ମିଳିତ ମନ୍ତ୍ରିମଣ୍ଡଳ ଓଡ଼ିଶାରେ ହୋଇପାରିନଥାନ୍ତା । ସେ କାର୍ଯ୍ୟରେ ବିଜୁବାବୁଙ୍କର 'ୟୁଟିଲିଟି' ମହତାବ ବାବୁ ଭଲଭାବରେ ବୁଝିପାରି ତାଙ୍କୁ ବ୍ୟବହାର କରିବାରେ ଆଗ୍ରହୀ ହୋଇଥିଲେ । ମାତ୍ର ଏସବୁ କାର୍ଯ୍ୟ ହାସଲ କରିସାରିବା ପରେ କୁର୍ସି କିପରି ସ୍ଥାୟୀ ହେବ ସେ ବିଷୟରେ ସେ ଚିନ୍ତା କରିବାକୁ ଲାଗିଲେ । ବହୁ ଅଭିଜ୍ଞତା ପରେ ତାଙ୍କର କୁଆଡ଼େ ଦୃଢ଼ ଧାରଣା ହୋଇଥିଲା ଯେ, ରାଜାରାଜୁଡ଼ାମାନେ ପଶ୍ଚିମ ଓଡ଼ିଶାରେ ଥିଲେ 'ସ୍ୱାଭାବିକ ନେତା' (natural leader) ଏବଂ ସେମାନଙ୍କୁ ଯେକୌଣସି ମତେ ସାଙ୍ଗରେ ନେଇ ନ ଚାଲିଲେ ଓଡ଼ିଶାରେ କଂଗ୍ରେସ କେବେ ସଂଖ୍ୟାଗରିଷ୍ଠ ହୋଇ କ୍ଷମତାକୁ ଆସିପାରିବନାହିଁ । କଂଗ୍ରେସ ଏକାକୀ ଓଡ଼ିଶାରେ ସଂଖ୍ୟାଗରିଷ୍ଠ ହୋଇପାରିବନାହିଁ ବୋଲି ମହତାବଙ୍କର ଏ ପ୍ରକାର ଚିନ୍ତାଧାରାକୁ ବିଜୁ ପଟ୍ଟନାୟକ ଓ ତାଙ୍କର ବନ୍ଧୁମାନେ ବିରୋଧକରିଥିଲେ । ଗଣତନ୍ତ୍ର ଦଳର ନେତୃବୃନ୍ଦ ତଥା ବଲାଙ୍ଗୀର ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ କଳାହାଣ୍ଡି ମହାରାଜା ପ୍ରତାପ କେଶରୀ

ଦେଓ ପ୍ରଭୃତିଙ୍କୁ ସେ ଆଉ ନଛାଡ଼ିଲା ଭଳି ମନୋବୃତ୍ତି ପ୍ରକାଶ କରିବାକୁ ଲାଗିଲେ । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ କଂଗ୍ରେସ ନେତା ରୂପେ ଆମକୁ ପ୍ରଭାବିତ କରିଥିବା ମହତାବ ବାବୁ ତାଙ୍କର ସେହି ନୂତନ ଏକାନ୍ତ ବିଶ୍ୱାସଭାଜନ ବନ୍ଧୁମାନଙ୍କ ଗହଣରେ ଆମ ଆଗରେ 'ଅଗରପଡ଼ାର ରାଜା' ମହତାବଙ୍କ ପରି ପ୍ରତୀତ ହେଲେ । ଏହି ପରିପ୍ରେକ୍ଷୀରେ ବିଜୁବାବୁ ଓ ବୀରେନ୍‌ବାବୁ ପ୍ରଭୃତି ମହତାବଙ୍କ ପକ୍ଷରେ 'ପୁରୁଣା ଜୋତା' ଭଳି ହୋଇଯାଇଥିଲେ । ମହତାବବାବୁଙ୍କ ବିଚାର କରିବାର ଥିଲା ଯେ ଯେଉଁ ଉତ୍ସାହୀ, କାର୍ଯ୍ୟଦକ୍ଷ ଓ ଯୋଗ୍ୟ ଯୁବକମାନେ ତାଙ୍କ ସେବାରେ ଲାଗିଥିଲେ ସେମାନେ ମନୁଷ୍ୟ । ତେଣୁ ସେମାନଙ୍କର ଆଶା, ଆକାଙ୍‌କ୍ଷା ଓ ଉଚ୍ଚ ଅଭିଳାଷ ଥିବା ସ୍ୱାଭାବିକ । ମହତାବବାବୁ ଯେତେବେଳେ ନୂଆ 'ଜୋତା' ପିନ୍ଧି ପୁରୁଣା 'ଜୋତା'କୁ ଫିଙ୍ଗିଦେବା ଭଳି ବ୍ୟବହାର କଲେ, ସେତେବେଳେ ସେମାନେ ନିଜେ ସଂଗଠିତ ହୋଇ ଶାସନ କ୍ଷମତାକୁ ଆସିବାପାଇଁ ଇଚ୍ଛା ପ୍ରକାଶ କରିବା ଏବଂ ଉଦ୍ୟମ କରିବା ଆଦୌ ଅସ୍ୱାଭାବିକ ନୁହେଁ ।

ଗଣତନ୍ତ୍ର ପରିଷଦ ଯେତେବେଳେ କଂଗ୍ରେସ ସହିତ ମିଶିବାକୁ ମନାକରି ତାଙ୍କର ସ୍ୱତନ୍ତ୍ରତାକୁ ରକ୍ଷା କରି ନିଜର ଆସନ ସୁଦୃଢ଼ କରିବାରେ ଲାଗିଲେ ସେତେବେଳେ ରାଜ୍ୟ କଂଗ୍ରେସକୁ ତୁରନ୍ତ ଦୃଢ଼ ଓ ସକ୍ରିୟ କରି ରଖିବାର ଆବଶ୍ୟକତା ବିଜୁ ପଟ୍ଟନାୟକ ପ୍ରଭୃତି ଅନୁଭବ କରିଥିଲେ । କିପରି ରାଜ୍ୟ କଂଗ୍ରେସ ଓ ଜିଲ୍ଲା କଂଗ୍ରେସ ସଂଗଠନଗୁଡ଼ିକ ଦୃଢ଼ ଓ ସକ୍ରିୟ ହେବ ସେ ସମ୍ବନ୍ଧରେ ବିଜୁ ପଟ୍ଟନାୟକ ଆମ୍ଭମାନଙ୍କ ସହ ଆଲୋଚନା କରି ମହତାବଙ୍କ ପରାମର୍ଶ ଲୋଡ଼ୁଥିଲେ । କଂଗ୍ରେସ ସଂଗଠନର ଦାୟିତ୍ୱ ନେବା ପାଇଁ ମଧ୍ୟ ବିଜୁ ପଟ୍ଟନାୟକ ଆଗ୍ରହ ପ୍ରକାଶ କରିଥିଲେ । ଏଥିରେ ଖୁସି ହେବା ପରିବର୍ତ୍ତେ ମହତାବବାବୁ ଆତଙ୍କିତ ହୋଇଥିଲେ ଏବଂ ତାହା କିପରି ନ ହୋଇପାରିବ ସେଥିପାଇଁ ଉଦ୍ୟମ କରିଥିଲେ । କଂଗ୍ରେସ ସଂଗଠନକୁ ସମସ୍ତ ଜିଲ୍ଲାରେ ସକ୍ରିୟ କରିବା ଉଦ୍ଦେଶ୍ୟରେ ବିଜୁବାବୁ ପ୍ରତ୍ୟେକ ଜିଲ୍ଲାରେ କଂଗ୍ରେସର ବାର୍ତ୍ତା ପ୍ରଚାର କରିବାପାଇଁ ଦଳର ଛାପାଖାନା ବସାଇବାର ଗୋଟିଏ ଯୋଜନା କରିଥିଲେ । କଂଗ୍ରେସ ଅନୁଷ୍ଠାନର ପ୍ରଚାରପତ୍ର ଆଦି ନିୟମିତ ବାହାରିବା ସଙ୍ଗେ ସଙ୍ଗେ ଛପାଛପି ବ୍ୟବସାୟ କରି ଲାଭ ହେଲେ ସେଥିରୁ କଂଗ୍ରେସ ଅନୁଷ୍ଠାନ ସାହାଯ୍ୟ ପାଇପାରିବ । ତା'ଛଡ଼ା କେତେକ କର୍ମୀ ମଧ୍ୟ ସଂଗଠନପାଇଁ ଓ ସାମୟିକ ଭାବରେ ନିଜ ନିଜ ପାଇଁ ଆୟର ସୁଯୋଗ ପାଇବେ ବୋଲି ସେ ବିଚାରକରିଥିଲେ । କଂଗ୍ରେସ ଅନୁଷ୍ଠାନଗୁଡ଼ିକୁ ଦୈନନ୍ଦିନ କାର୍ଯ୍ୟନିର୍ବାହ କରିବାରେ ଆତ୍ମନିର୍ଭରଶୀଳ କରିବା ଥିଲା ଶ୍ରୀ ପଟ୍ଟନାୟକଙ୍କର ଚିନ୍ତାଧାରା । ଗଣତନ୍ତ୍ର ପରିଷଦ ଦୁର୍ଗ ଭେଦକରିବା ଥିଲା ତାଙ୍କର ଲକ୍ଷ୍ୟ । ତେଣୁ ବଲାଙ୍ଗୀର ଜିଲ୍ଲା କଂଗ୍ରେସ କମିଟିପାଇଁ ଗୋଟିଏ ପ୍ରେସ୍ ଅବିଳମ୍ବେ ବସାଯାଇଥିଲା । ମାତ୍ର ମହତାବବାବୁ ଏ ପ୍ରକାର ଉଦ୍ୟମକୁ ବିଦ୍ରୂପ କରିବାକୁ ଲାଗିଲେ । ବିଜୁ ପଟ୍ଟନାୟକ ପ୍ରଦେଶ କଂଗ୍ରେସ କମିଟିର ସଭାପତି ହେଲେ ନିଜର ସାଙ୍ଗଠନିକ ଯୋଜନା କାର୍ଯ୍ୟକାରୀ କରି କଂଗ୍ରେସକୁ ସକ୍ରିୟ କରିପାରିବେ ବୋଲି ତାଙ୍କର ଦୃଢ଼ ମତ ଥିଲା । ମାତ୍ର ମହତାବବାବୁ ତା'ର ବିରୋଧ କରିଥିଲେ । ତେଣୁ ଯେତେବେଳେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ପଦପାଇଁ ବିଜୁବାବୁ ପ୍ରାର୍ଥୀ ହେଲେ, ମହତାବବାବୁଙ୍କ ସାହାଯ୍ୟରେ ବନମାଳୀ ପଟ୍ଟନାୟକ ପ୍ରତିଦ୍ୱନ୍ଦ୍ୱିତା କରି ତାଙ୍କୁ ଚାରୋଟି ଭୋଟରେ ହରାଇଦେଇଥିଲେ । ମୁଁ ସେତେବେଳେ ପ୍ରଦେଶ କଂଗ୍ରେସ କମିଟିର ଜଣେ ସଭ୍ୟ ଥିଲି । ପ୍ରକାଶ୍ୟ ଭାବରେ ବିଜୁବାବୁଙ୍କୁ ସାହାଯ୍ୟ କରିନଥିଲେ ମଧ୍ୟ ମୋର ଭୋଟଟି ତାଙ୍କୁ ଦେଇଥିଲି ।

ରାଜନୀତିରେ ନୀତିଗତ ଚିନ୍ତାଧାରା ଓ ଆଦର୍ଶବାଦର ସ୍ଥାୟିତ୍ୱ ସମ୍ବନ୍ଧରେ ଶ୍ରୀ ମହତାବଙ୍କର ବିଚାର ଅଭିନବ ଓ ଅଦ୍ଭୁତ । କ୍ଷମତାର ଆସ୍ଥାନ ନିଶ୍ଚିତ ରହିଲେ ନୀତିର ଉତ୍କର୍ଷ ବା ନିକୃଷ୍ଟତା ସମ୍ବନ୍ଧରେ ବିଚାର ଅନାବଶ୍ୟକ ବୋଲି ସେ ମନେକରନ୍ତି । କୁର୍ସିକୁ ଜାବୁଡ଼ି ଧରିରଖିପାରିଲେ ଦଳ ନୀତିଭ୍ରଷ୍ଟ ହୋଇ ରସାତଳକୁ ଗଲେ ମଧ୍ୟ ଯାଏ ଆସେ ନାହିଁ । ସ୍ୱର୍ଗୀୟ ଯଦୁମଣି ମଙ୍ଗରାଜଙ୍କ

ଭାଷାରେ, ''ମହତାବର ନିଇତି ଗୋଟିଏ ନୀତି'' । ତେଣୁ ପଶ୍ଚିମ ଓଡ଼ିଶା ଓ ଗଡ଼ଜାତ ଅଞ୍ଚଳରେ କଂଗ୍ରେସଦଳ ନିଶ୍ଚିହ୍ନ ହେଲେ ମଧ୍ୟ କୌଣସିମତେ ମନ୍ତ୍ରିମଣ୍ଡଳ ଚାଲୁରଖିବା ଥିଲା ମହତାବଙ୍କର ଉଦ୍ଦେଶ୍ୟ । କିନ୍ତୁ ଆମ୍ଭମାନଙ୍କ ପକ୍ଷରେ ଏ ପ୍ରକାର ପରିସ୍ଥିତି ବଡ଼ ଅସୁଖକର ହେଉଥାଏ । ଏ ପ୍ରକାର ଅବସ୍ଥାରୁ ଆମ ଦଳର ନେତାଙ୍କୁ କିପରି ଉଦ୍ଧାର କରାଯିବ ତାହା ମଧ୍ୟ ଆମର ଚିନ୍ତାର ବିଷୟ ହୋଇପଡ଼ିଥିଲା । ମିଳିତ ମନ୍ତ୍ରିମଣ୍ଡଳ ଭାଙ୍ଗିଦେଲା ପରେ ରାଜ୍ୟରେ ଯେଉଁ ସାନି ନିର୍ବାଚନ ହେବ ତା'ର ନେତୃତ୍ୱ ତାଙ୍କରି ଉପରେ ନ୍ୟସ୍ତ କରାହେବାର ଆଶା ଶ୍ରୀ ମହତାବଙ୍କୁ ଦେବାପାଇଁ ବିଜୁ ପଟ୍ଟନାୟକଙ୍କୁ ଆମେ ପରାମର୍ଶ ଦେଇଥିଲୁ । ବିଜୁ ପଟ୍ଟନାୟକ ମହତାବଙ୍କ ସହିତ ବହୁବାର ଆଲୋଚନା କରି ସେ ପ୍ରକାର ଆଶା ଦେଇଥିଲେ । ଶେଷରେ ୧୯୬୦ ଫେବୃୟାରୀ ଅଣତିରିଶ ତାରିଖରେ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ମହତାବଙ୍କୁ ଖଣ୍ଡିଏ ଚିଠି ଲେଖି ତାଙ୍କର ମାନସିକ ଅବସାଦ ଓ ସ୍ଥିତିଶୀଳତାକୁ ତ୍ୟାଗ କରିବାକୁ ଅନୁରୋଧ କରିଥିଲେ । ଶ୍ରୀମହତାବ ତାଙ୍କର ଅତୀତର ସକ୍ରିୟ ଓ ଜୀବନ୍ତ ମନୋବୃତ୍ତିର ଯଦି ପୁନଃଜାଗରଣ କରନ୍ତି ତାହାହେଲେ ତାଙ୍କର ବିଶ୍ୱସ୍ତ ଅନୁଗାମୀ ହୋଇ କାର୍ଯ୍ୟ କରିବେ ବୋଲି ବିଜୁ ପଟ୍ଟନାୟକ ତାଙ୍କୁ ପ୍ରତିଶ୍ରୁତି ଦେଇଥିଲେ । ମାତ୍ର ଉକ୍ତ 'ସ୍ୱାଭାବିକ ନେତା'ମାନଙ୍କୁ ଛାଡ଼ି କଂଗ୍ରେସ ଓଡ଼ିଶାରେ କେବେ ସଂଖ୍ୟାଗରିଷ୍ଠ ହୋଇପାରିବ ନାହିଁ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିବାରୁ ଶ୍ରୀ ମହତାବ କଂଗ୍ରେସକୁ ସକ୍ରିୟ କରିବା ଦିଗରେ ବିଜୁ ପଟ୍ଟନାୟକଙ୍କର ଉଦ୍ୟମକୁ ବିଦ୍ରୂପ କରିବାକୁ ଲାଗିଲେ । ବିଜୁ ପଟ୍ଟନାୟକ ତାଙ୍କର ଉପରୋକ୍ତ ଚିଠିରେ ଲେଖିଥିଲେ :

"You have stated repeating that Orissa Congress should only concentrate in the four coastal districts and ex-state areas should be left to the Ganatatra Parishad Rajahs. Knowing Orissa Congress position as you do and without any more capacity or courage to revitalise it, you have reached a mental state where you want this coalition to continue at all costs to enable you to carry on as the Chief Minister, You also want this position should be maintained till the next election and drift to a situation by which Congress would have to come to an electoral alliance with Ganatantra Parishad and the same position may be continued with yourself as the Chief Minister. As a congressman, I do resent this defeatist and degrading attitude."

ତାଙ୍କୁ ବିଦ୍ରୂପ କରିବାପାଇଁ ଓ ତୁଙ୍ଗ ମହଲରେ ତାଙ୍କ ଅଭିଳାଷ ଓ କାର୍ଯ୍ୟ ସମ୍ବନ୍ଧରେ ଖରାପ ଧାରଣା ସୃଷ୍ଟି କରିବାପାଇଁ ତାଙ୍କ ବିରୁଦ୍ଧରେ ଶ୍ରୀ ମହତାବଙ୍କ ଉଦ୍ଦେଶ୍ୟମୂଳକ ପ୍ରଚାରକୁ ଲକ୍ଷ୍ୟ କରି ଶ୍ରୀ ପଟ୍ଟନାୟକ ଉକ୍ତ ଚିଠିରେ ଲେଖିଥିଲେ :

"You also know that no one can retard the attempts of Congressmen to rehabilitate themselves in ex-state areas and that these Congressmen have not looked upon your attitude with favour. Consequently, what else can you do but spread tendentious propaganda against me by trying to belittle my efforts... and to misrepresent my attitudes ? Here again, you must understand that I seek no favours from the highest in the land and I also know that men who matter do possess razor-edge mind which can easily see through subterfuse."

ଶ୍ରୀ ମହତାବଙ୍କର ଅତୀତର ଗତିଶୀଳ ଭୂମିକା ବିଷୟ ତାଙ୍କୁ ସ୍ମରଣ କରାଇଦେଇ ପୁଣି ସେଇ ପ୍ରଗତିଶୀଳ ଶକ୍ତିର ପୁନରୁଦ୍ଧାର କରିପାରିଲେ ସେ କିପରି ତାଙ୍କର ଅନୁଗାମୀ ହୋଇ କାର୍ଯ୍ୟ କରିବେ, ସେ ସମ୍ବନ୍ଧରେ ଶ୍ରୀ ପଟ୍ଟନାୟକ ସେହି ଚିଠିରେ ଆହୁରି ଲେଖିଥିଲେ :

"Finally, you must understand that by breed, background and tradition, I am a disciplined person. When I undertake to do something, I carry it out ruthlessly like a sledge-hammer. As I told you so many times during your last meeting, if you can go back mentally 15 years and can generate the dynamism and confidence which you possessed in those days, I can assure you that in spite of all omissions of the past, the sledge-hammer can again be at your side in the task of rebuilding the State and the party. If, however, you have neither the will nor the courage for it, I must proceed my own way ceaselessly and fearlessly, to achieve the party's objectives. The choice is yours. There is no midway."

## ବାହାପିଆଙ୍କ ବହପ

ମିଳିତ ମନ୍ତ୍ରିମଣ୍ଡଳ ଯେଭଳି ଭାବରେ କାର୍ଯ୍ୟ କରୁଛି ତାହାଦ୍ୱାରା ଗଣତନ୍ତ୍ର ପରିଷଦର ପ୍ରଭାବ କିପରି ବଢୁଛି, କଂଗ୍ରେସ ଦଳର ପ୍ରଭାବ କିପରି ହ୍ରାସପାଉଛି, ମହତାବବାବୁ କଂଗ୍ରେସକୁ ସକ୍ରିୟ କରିବା ଦିଗରେ କିପରି ଉଦାସୀନ, କଂଗ୍ରେସ ଲୋକେ କିପରି ତାଙ୍କ ପ୍ରତି ବିତୃଷ୍ଣ ଓ ଉପୁଜିଥିବା ପରିସ୍ଥିତିପାଇଁ କିପରି ହତୋତ୍ସାହ ମନେକରୁଛନ୍ତି, ସେସବୁ ବିଷୟରେ ବିଜୁବାବୁଙ୍କ ଉପରୋକ୍ତ ଚିଠି ପାଇ ଶ୍ରୀ ମହତାବ କ୍ରୋଧାନ୍ୱିତ ହୋଇପଡ଼ିଥିଲେ । ସେହି ଉତ୍ତେଜିତ ଅବସ୍ଥାରେ ସେ ଗୋଟିଏ ଅତି କଡ଼ା ଓ ଧମକପୂର୍ଣ୍ଣ ଚିଠି ବିଜୁ ପଟ୍ଟନାୟକଙ୍କୁ ଲେଖି ତାଙ୍କର ପୂର୍ବ ଚରିତ୍ରାଦି ସମ୍ପର୍କରେ ସନ୍ଦେହ ପ୍ରକାଶ କଲାଭଳି ଆଭାସ ଦେଇଥିଲେ । ଆହୁରି ମଧ ସେଥିରେ ସେ ବିଜୁବାବୁଙ୍କର ସିଂଥେଟିକ୍ ପେଟ୍ରୋଲ୍ ଉତ୍ପାଦନ ପରିକଳ୍ପନା ସଂକ୍ରାନ୍ତୀୟ କାରବାର ଓ ଓଡ଼ିଶା ଟେକ୍ସଟାଇଲ୍ ମିଲ୍ ସମ୍ବନ୍ଧରେ ନାନା ଦୁର୍ନୀତି ଅଭିଯୋଗ କରି ସେଗୁଡ଼ିକର ତଦନ୍ତ କରାଇ ତାଙ୍କର ଆଚରଣକୁ ପଦାରେ ପକାଇଦେବାପାଇଁ ଧମକ ଦେଇଥିଲେ । ୧୯୬୦ ମସିହା ମାର୍ଚ୍ଚମାସ ତିନି ତାରିଖରେ ମହତାବବାବୁ ସେହି ଯେଉଁ ଚିଠି ଦେଇଥିଲେ; ସେଥିରେ ଅନ୍ୟାନ୍ୟ ବିଷୟ ମଧରେ ଲେଖିଥିଲେ, "I am also circulating, in addition to these papers, some other papers such as the report of the Public Accounts Committee on the sythetic petrol deal of yours and the report of the Auditor of the Company Law Administration of the Government of India on the Orissa Textile Mills and few other reports. I am asking either the Congress President or the Prime Minister to appoint a small committee to investigate into these things. You are right that as leader of the party for the last many years, I owe responsibility for all that has happened and to these alone I referred. I am now sufficiently experienced not to be misled by the so-called idealism of all persons without verification of their antecedents." ବିଜୁବାବୁ ମଧ ମହତାବବାବୁଙ୍କୁ ବଳି ଆହୁରି କଡ଼ା ଭାଷାରେ ଉତ୍ତର ଦେଇ ସେ କିପରି ରାଜା-ମହାରାଜାମାନଙ୍କର ସ୍ତାବକ ହୋଇ କଂଗ୍ରେସର କ୍ଷତିକରୁଛନ୍ତି ସେକଥା ଲେଖିଥିଲେ । ଧମକରେ ସେ ଡରିବା ଲୋକ ନୁହନ୍ତି ବୋଲି ଜଣାଇଦେଇ ବିଜୁବାବୁ ଲେଖିଥିଲେ, ଯେଉଁମାନେ ଅନ୍ୟକୁ ଧମକ ଦେଇ ଡରାନ୍ତି ସେମାନେ କାପୁରୁଷ ଓ ଏ ପ୍ରକାର ଆଘାତର ମୁଁ ତୁରନ୍ତ ପ୍ରତିଘାତ କରିଥାଏ । ମୁଁ ବାହାପିଆଙ୍କ ବହପ ସହ୍ୟ କରିପାରେନାହିଁ । (I am extremely allergic to bullies) । ସେହି ମାର୍ଚ୍ଚମାସ ସାତ ତାରିଖରେ ଶ୍ରୀ ମହତାବଙ୍କ ଚିଠିର ଉତ୍ତରରେ ବିଜୁବାବୁ ଜବାବ ଦେଇଥିଲେ, "I am amazed that after long 14 years, you wish to verify my antecedents, Since I have decided

to enter the public field as a whole time affair, you may be sure that I am fully prepared that all my activities of the past and future be judged keenly in public glare and weighed by public scrutiny. Hence your suggestion of a high level committee to examine these affairs now is most opportune and I can only request you to see to it that this is done without any delay.

"In your last letter you have not met even a single political point raised by me in my earlier reply. Instead you have side-tracked the whole issue. While you are engaged in blasphemy, you may please remember one strong trait of my character that I am extremely allergic to bullies."

ମହତାବବାବୁ ଓ ବିଜୁବାବୁଙ୍କ ମଧ୍ୟରେ ଏଭଳି ପତ୍ର ବିନିମୟ ଚାଲିଥିବାବେଳେ ଓଡ଼ିଶା ବିଧାନସଭାର ବଜେଟ ଅଧିବେଶନ ଆରମ୍ଭ ହୋଇଥାଏ । ଚିଠିପତ୍ରଗୁଡ଼ିକ ସମ୍ବାଦପତ୍ରମାନଙ୍କରେ ପ୍ରକାଶପାଉଥାଏ । ତେଣୁ ସେସବୁ ବିଷୟ ଆଲୋଚନା କରିବାପାଇଁ ବିଧାନସଭାର ବିରୋଧୀ ଦଳର ସଭ୍ୟମାନେ ଗୋଟିଏ ମୁଲତବୀ ପ୍ରସ୍ତାବ ଆଣିଲେ । ବାଚସ୍ପତି ମୁଲତବୀ ପ୍ରସ୍ତାବର ଆଲୋଚନାପାଇଁ ଅନୁମତି ଦେଉନଥିଲେ । ମାତ୍ର ମନ୍ତ୍ରୀ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଯେତେବେଳେ ଶିଳ୍ପ ବିଭାଗର ଖର୍ଚ୍ଚଦାବି ଆଗତ କଲେ ସେତେବେଳେ ସେସବୁ ବିଷୟ ବିଧାନସଭାରେ ଆଲୋଚିତ ହେଲା । ସେହି ସମୟରେ ମହତାବବାବୁ ଅନେକ ଦିନ ଧରି ଅସୁସ୍ଥ ଥିଲେ । ସେ ବିଧାନସଭା ବୈଠକକୁ ଆସୁ ନ ଥା'ନ୍ତି । ବିଧାନସଭା ଆଲୋଚନାରେ ସରକାରଙ୍କ ତ୍ରୁଟି ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ସରକାରଙ୍କର ମନ୍ଦ ଉଦ୍ଦେଶ୍ୟ ପଦାରେ ପଡ଼ିଥିଲା । ବିଜୁ ପଟ୍ଟନାୟକଙ୍କର କୋଇଲାରୁ ପେଟ୍ରୋଲ ବାହାର କରିବା ଯୋଜନା ସମ୍ବନ୍ଧୀୟ ପ୍ରୋଜେକ୍ଟ ରିପୋର୍ଟ ସେ ସରକାରଙ୍କୁ ଦେଇଛନ୍ତି, ସେ ବିଷୟରେ ହିସାବ କିତାବ ସେ ସରକାରଙ୍କଠାରେ ଦାଖଲ କରିଛନ୍ତି ଏବଂ ତାଙ୍କଠାରୁ ସରକାରଙ୍କର ଆଉ କିଛି ପାଉଣା ପାଇବାର ନାହିଁ ବୋଲି ଯେଉଁ ମହତାବ ସରକାର ମାତ୍ର ବର୍ଷକ ତଳେ ବିଧାନସଭାରେ କହିଥିଲେ, ସେହି ସରକାର ପୁଣି କିପରି ବିପରୀତ କଥା କହୁଛନ୍ତି ବୋଲି ବିରୋଧୀ ଦଳର ବହୁ ସଦସ୍ୟ ସରକାରଙ୍କର ସାଧୁତା ଉପରେ ସନ୍ଦେହ ପ୍ରକାଶ କରିଥିଲେ । ଶ୍ରୀ ବିଜୁ ପଟ୍ଟନାୟକ ମଧ୍ୟ ଏ ସମ୍ବନ୍ଧରେ ବିଧାନସଭାରେ ତାଙ୍କର ବକ୍ତବ୍ୟ ଦେଇଥିଲେ ଏବଂ ବ୍ୟକ୍ତିଗତ ଆକ୍ରୋଶ ଘେନି କେବଳ ତାଙ୍କୁ ବଦ୍‌ନାମ୍ କରିବା ମତଲବରେ ଆଗରୁ ଫଏସଲା ହୋଇଯାଇଥିବା ବିଷୟମାନ ଉଠାଇ ଅଯଥା ହଇଚଇ କରାଯାଉଛି ବୋଲି ସେ ଅଭିଯୋଗ କରିଥିଲେ । ମନ୍ତ୍ରୀ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଆଲୋଚନାର ଉତ୍ତର ଦେଇଥିଲେ; ମାତ୍ର ବିଜୁବାବୁଙ୍କ ଉପରେ ଶ୍ରୀ ମହତାବଙ୍କର କ୍ରୋଧ ହେତୁ ଗଲାକଥାକୁ ଅକାରଣ ଖୋଳତାଡ଼ କରିବାକୁ ଉଦ୍ୟମ କରାଯାଉଛି ବୋଲି ସଭ୍ୟମାନଙ୍କ ମଧ୍ୟରେ ଯେଉଁ ସନ୍ଦେହ ଜାତହୋଇଥିଲା ତାହା ଦୂର କରିପାରିନଥିଲେ । ମହତାବବାବୁ ଏ ସବୁ ଚିଠିପତ୍ର ଓ ତତ୍ ସମ୍ବନ୍ଧୀୟ କାଗଜପତ୍ର ସମ୍ବାଦପତ୍ରମାନଙ୍କୁ ପଠାଇବାବେଳେ ମୁଁ ତାଙ୍କ ବାସଭବନ ଏକାମ୍ର ନିବାସରେ ଉପସ୍ଥିତଥିଲି । ଦଳର ସ୍ୱାର୍ଥ ଦୃଷ୍ଟିରୁ ସେଗୁଡ଼ିକ ଖବରକାଗଜକୁ ନଦେବାପାଇଁ ମୁଁ ଅନୁରୋଧ କରିଥିଲି; ମାତ୍ର ମୋ କଥା ସେ ଶୁଣି ନ ଥିଲେ । ସେତେବେଳେ ସେ ଅତ୍ୟଧିକ କ୍ରୋଧାନ୍ୱିତ ହୋଇ ବଡ଼ ବିଚଳିତ ଅବସ୍ଥାରେ ଥିଲେ । କେବଳ ସେତିକିରେ କଥା ସରିନାହିଁ । ସେଇ କ୍ରୋଧ ଅବସ୍ଥାରେ ମୋରି ଆଗରେ କଳିଙ୍ଗ ଟ୍ୟୁବ୍‌ସର ଜଣେ ବଡ଼ ଅଂଶୀଦାର ଶ୍ରୀ ଶାନ୍ତିପ୍ରସାଦ ଜୈନଙ୍କୁ ପଠାଇବାପାଇଁ ଖଣ୍ଡିଏ ଚିଠି ଷ୍ଟେନୋଗ୍ରାଫରକୁ ଡାକି ଦେଇଥିଲେ । ଶ୍ରୀ ଶାନ୍ତିପ୍ରସାଦ ଜୈନ ବ୍ୟବସାୟକ୍ଷେତ୍ରରେ ବିଜୁବାବୁଙ୍କ ଶତ୍ରୁତାଚରଣ କରୁଥିଲେ ବୋଲି ଧାରଣା ଥାଏ । ମହତାବବାବୁଙ୍କ ଚିଠିର ସାରମର୍ମ ଥିଲା ବିଜୁବାବୁଙ୍କୁ ତାଙ୍କ କଳିଙ୍ଗ ଟ୍ୟୁବ୍‌ସ ଶିଳ୍ପ ପ୍ରତିଷ୍ଠାନରେ ଅସୁବିଧାରେ ପକାଇବାର ମସୁଧା । ଶ୍ରୀ ମହତାବଙ୍କର ଘନିଷ୍ଠ ସଂପର୍କରେ ଆସି ମୁଁ ତାଙ୍କୁ ଯାହା

ବୁଝିଛି ସେଥିରେ ମୋର ଧାରଣା ଯେ ସେ କ୍ରୋଧାନ୍ୱିତ ହେଲେ ନିଜକୁ ସମ୍ଭାଳି ପାରନ୍ତି ନାହିଁ ଏବଂ ଯାହା ଉପରେ ରାଗନ୍ତି ତା'ର ସର୍ବନାଶ କରିବାକୁ ବାହାରିପଡ଼ନ୍ତି । ତାଙ୍କ କ୍ରୋଧ ଏ ପ୍ରକାରର ବିଚିତ୍ର ଯେ ସେ ଯାହା ଉପରେ ରାଗିବେ ତା'ର କିଛି କ୍ଷତି କରିବାକୁ ସୁବିଧା ନପାଇଲେ ଗାଆଁର ମାମଲାବାଜ୍ ଲୋକମାନେ ଅନ୍ୟ ଉପରେ ଦାଉ ସାଧିବା ଉଦ୍ଦେଶ୍ୟରେ ଅନ୍ୟ କିଛି ସୁବିଧା ନମିଳିଲେ ଯେପରି ଅତତଃପକ୍ଷେ ବିପକ୍ଷ ଲୋକର ଧାନ କିଆରିରେ ଗୋରୁ ପୂରାଇ ଦେଇ କିମ୍ବା ତା'ର ଗୋରୁଗାଈଙ୍କୁ ଦୁଇ ପାହାର ପକାଇ ବା କାଞ୍ଜିଆହୁଦାରେ ପୂରାଇଦେଇ ଟିକିଏ ସନ୍ତୋଷ ଲାଭ କରନ୍ତି, ଶ୍ରୀ ମହତାବଙ୍କର କ୍ରୋଧ ଠିକ୍ ସେହି ପ୍ରକାରର । ଏହି ପ୍ରକାରର ଗୋଟିଏ କୌତୂହଳ କଥା ମୋର ମନେପଡ଼େ । ବର୍ତ୍ତମାନ ପ୍ରଜାତନ୍ତ୍ର ସମ୍ବାଦପତ୍ରର ଭୁବନେଶ୍ୱର ପ୍ରତିନିଧିରୂପେ କାର୍ଯ୍ୟ କରୁଥିବା ଶ୍ରୀ ନାରାୟଣ ରଥ ପୂର୍ବରୁ ସମାଜରେ ଏବଂ ତା' ପୂର୍ବରୁ ପ୍ରଜାତନ୍ତ୍ରରେ କିଛି ବର୍ଷ କାର୍ଯ୍ୟ କରୁଥିଲେ । ଚାନ୍ଦିନୀଚୌକ ପୋଷ୍ଟ ଅଫିସ୍ ସାମ୍ନାରେ ଶ୍ରୀ ମୋତିଲାଲ ପଣ୍ଡିତଙ୍କଠାରୁ ପ୍ରଜାତନ୍ତ୍ର ଅଫିସ୍ ନେଇଥିବା ଗୋଟିଏ ଦୋତାଲା ଘର ଉପର ମହଲାରେ ପ୍ରଜାତନ୍ତ୍ର କର୍ମଚାରୀ ହିସାବରେ ନାରାୟଣବାବୁ ସପରିବାର ରହୁଥା'ନ୍ତି । ପ୍ରଜାତନ୍ତ୍ରରୁ ଚାକିରି ଛାଡ଼ିଲା ପରେ ମଧ ଘର ଛାଡ଼ିନପାରି ସେ କିଛିକାଳ ସେଠାରେ ରହୁଥିଲେ । ତାଙ୍କୁ ଘର ଛାଡ଼ିବାପାଇଁ ଅନେକ ଥର ନୋଟିସ ଦିଆଯାଇଥିଲେ ମଧ ଅନ୍ୟତ୍ର ଘର ଯୋଗାଡ଼ ନକରିବା ପର୍ଯ୍ୟନ୍ତ ସେ ଘରଛାଡ଼ି ଯାଇପାରୁନଥା'ନ୍ତି । ତାଙ୍କୁ ବଳପୂର୍ବକ ବାହାରକରିବାର ମସୁଧା ଥିଲା; ମାତ୍ର ସମ୍ମୁଖରେ କେବଳ ପଚାଶଗଜ ଦୂରରେ ଲାଲବାଗ ଥାନା ଥିବାରୁ ତାହା କରିବାଟା ସୁବିଧାଜନକ ମନେହେଲାନାହିଁ । ମହତାବବାବୁଙ୍କ ନିର୍ଦ୍ଦେଶ ହେଲା ଯେ ଜଣେ ଗୁଣ୍ଡା ପ୍ରକୃତିର ଲୋକକୁ କିଛି ପଇସା ଦିଆଯାଉ ଏବଂ ସେ କିଛିଦିନ ସକାଳେ ଓ ସନ୍ଧ୍ୟାବେଳେ ଲେଙ୍ଗୁଟି ମାରି ନାରାୟଣବାବୁଙ୍କ ଘର ଆଗରେ ସେମାନଙ୍କୁ ଦେଖାଇ ବାହୁସ୍ଫୋଟ ମାରି ଦଣ୍ଡବୈଠକମାରୁ, ତା'ହେଲେ ନାରାୟଣବାବୁ ବିବ୍ରତ ହୋଇ ଘରଛାଡ଼ି ଚାଲିଯିବେ ।

୧୯୭୧ ମସିହାରେ ଶ୍ରୀ ବିଶ୍ୱନାଥ ଦାଶ ଉତ୍କଳ କଂଗ୍ରେସ ଓ ସ୍ୱତନ୍ତ୍ର ଦଳ ମିଳିତ ମନ୍ତ୍ରିମଣ୍ଡଳର ମୁଖ୍ୟମନ୍ତ୍ରୀ ହୋଇଥିଲେ । ମୁଁ ଥାଏ ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ । ଦିନେ ବିଧାନସଭା ଅଧିବେଶନ ସମୟରେ ବିରୋଧୀଦଳମାନଙ୍କ ପକ୍ଷରୁ ଗୋଟିଏ ପଟୁଆର ବିଧାନସଭାଆଡ଼କୁ ଅଣାଯାଇଥିଲା । ବିଧାନସଭା ଅଧିବେଶନ ସମୟରେ ରାଜନୈତିକ ଦଳମାନଙ୍କର ପଟୁଆର ବିଧାନସଭାର କେତେଦୂର ପର୍ଯ୍ୟନ୍ତ ଆସିପାରିବ ସେ ବିଷୟରେ ପୁଲିସ ଓ ମାଜିଷ୍ଟ୍ରେଟ ଆଗରୁ ସ୍ଥିର କରିଥାଆନ୍ତି ଏବଂ ନିର୍ଦ୍ଦିଷ୍ଟ ସ୍ଥାନରେ ବାଡ଼ ବାନ୍ଧିଦିଆଯାଇଥାଏ । ସେଦିନ ପଟୁଆରକାରୀମାନେ ନିର୍ଦ୍ଦିଷ୍ଟ ସୀମା ଅତିକ୍ରମ କରି ବଳପୂର୍ବକ ବିଧାନସଭାକୁ ଆସିବାପାଇଁ ଉଦ୍ୟମ କରିବାରୁ ପୁଲିସ ସହିତ ସଂଘର୍ଷ ହୋଇଥିଲା । ପୁଲିସ ଲାଠି ଓ ଲୁହବୁହା ଗ୍ୟାସ୍ ପ୍ରୟୋଗ କରିଥିଲେ । ଫଳରେ କେତେକ ଲୋକ ଆହତ ହୋଇଥିଲେ । ବିରୋଧୀଦଳର ସଭ୍ୟମାନେ ବିଧାନସଭା ଭିତରେ ଅପ୍ରୀତିକର ଅବସ୍ଥା ସୃଷ୍ଟିକରିବାକୁ ଉଦ୍ୟମ କରିବାରୁ ବାଚସ୍ପତି ବିଧାନସଭାକୁ ମୁଲତବୀ କରିଦେଲେ । ବିଧାନସଭା ପ୍ରାଙ୍ଗଣରେ ବିରୋଧୀଦଳର ସଭ୍ୟମାନେ ବିକ୍ଷୋଭ ପ୍ରଦର୍ଶନ କରି ମନ୍ତ୍ରୀମାନଙ୍କ ପ୍ରକୋଷ୍ଠ ଆଡ଼କୁ ଧାଇଁଥିଲେ । କୌଣସିମତେ ପାସ୍ ଯୋଗାଡ଼ କରିପାରିଥିବା ଅନେକ ବାହାର ଲୋକ ବି ସେମାନଙ୍କ ସହିତ ଥିବାର ଦେଖାଯାଇଥିଲା । ମୁଖ୍ୟମନ୍ତ୍ରୀଙ୍କ ପ୍ରକୋଷ୍ଠ ଆଗରେ ସେମାନେ ବିକ୍ଷୋଭ ପ୍ରଦର୍ଶନ କରିଥିଲେ । ମୁଖ୍ୟମନ୍ତ୍ରୀ ସେମାନଙ୍କୁ ବୁଝାଇବାକୁ ଚେଷ୍ଟାକରୁଥିଲେ । ଏହି ସମୟରେ ବାରଣ୍ଡାରେ ଛିଡ଼ାହୋଇ ଶ୍ରୀ ହରେକୃଷ୍ଣ ମହାତବ ପାଟିକରି କହୁଥା'ନ୍ତି, ''ଚେମେଡ଼ା ବୁଢ଼ାକୁ ବାହାରକୁ ଘୋଷାରିଆଣ ।'' ମୁଁ ମୋର କୋଠରି ଦୁଆର ପାଖରେ ଛିଡ଼ାହୋଇ ଏ କଥା ଶୁଣିପାରୁଥାଏ । ମହତାବବାବୁ ଜଣେ ପୂର୍ବତନ ମୁଖ୍ୟମନ୍ତ୍ରୀ ଓ ରାଜ୍ୟପାଳ ଥିଲେ; ବୟସ୍କ ନେତା ମଧ । ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାଶଙ୍କର ବୟସ ସେତେବେଳକୁ ୮୩ ବର୍ଷ । ସେ ମଧ୍ୟ ଥିଲେ ଜଣେ ପୂର୍ବତନ ରାଜ୍ୟପାଳ । ଏ ପ୍ରକାର ଜଣେ

ପଦସ୍ଥ ବ୍ୟକ୍ତି ଆଉ ଜଣେ ବୟୋଜ୍ୟେଷ୍ଠ ପଦସ୍ଥ ବ୍ୟକ୍ତିଙ୍କ ପ୍ରତି ଏଭଳି ଆଚରଣ ପ୍ରଦର୍ଶନ କରିବା କେତେଦୂର ସମୀଚୀନ ତାହାହିଁ ବିଚାର୍ଯ୍ୟ । ୧୯୭୧ ମସିହା ନିର୍ବାଚନ ପରେ ଶ୍ରୀ ମହତାବ ଉଦ୍ୟମ କରୁଥିଲେ ମୁଖ୍ୟମନ୍ତ୍ରୀ ହେବାପାଇଁ; ମାତ୍ର ତାହା ସମ୍ଭବ ହୋଇପାରିନଥିଲା । ସେ ସ୍ଥାନରେ ବିଶ୍ୱନାଥବାବୁ ମୁଖ୍ୟମନ୍ତ୍ରୀ ହେବାଟା ତାଙ୍କ ପକ୍ଷରେ ଦୁଃସହ ହୋଇଥିଲା । ତେଣୁ ଶ୍ରୀ ବିଶ୍ୱନାଥ ଦାଶଙ୍କର ଲାଞ୍ଛନାରେ ଥିଲା ଶ୍ରୀ ମହତାବଙ୍କର ସନ୍ତୋଷ । ପୁନରୁକ୍ତି ହେଲେ ମଧ ବିଷୟଟିର ତାତ୍ପର୍ଯ୍ୟ ଓ ସାଧାରଣ ଜୀବନର ସମୀକ୍ଷା ଦୃଷ୍ଟିରୁ ଅନ୍ୟତ୍ର ପ୍ରାସଙ୍ଗିକ ଘଟଣାଟିର ବିସ୍ତୃତ ବର୍ଣ୍ଣନା ଦିଆଯାଇଛି ।

ମୁଁ ମୁଖ୍ୟମନ୍ତ୍ରୀ ଥିଲାବେଳେ ଆମର ରାଜ୍ୟପାଳ ଥିଲେ ଶ୍ରୀ ଭଗବତ୍ ଦୟାଲ୍ ଶର୍ମା । ସେ ଜଣେ ଅତି ଧର୍ମପରାୟଣ ଲୋକ ଥିଲେ । ଜଗନ୍ନାଥ ମନ୍ଦିର ପରିଚାଳନା ଏବଂ ଶ୍ରୀ ଜଗନ୍ନାଥଙ୍କର ପୂଜା ଅର୍ଚ୍ଚନା ଓ ଅନ୍ୟାନ୍ୟ ଆନୁଷ୍ଠାନିକ ବିଧିବିଧାନ ତଥା କ୍ରିୟାକଳାପରେ ସଂସ୍କାର ଆଣିବା ଉଦ୍ଦେଶ୍ୟରେ ଗୋଟିଏ କମିଟି ଗଠନ କରିବାପାଇଁ ରାଜ୍ୟପାଳ ମୋତେ ପରାମର୍ଶ ଦେଇଥିଲେ । ରାଜ୍ୟର ବୟୋଜ୍ୟେଷ୍ଠ ଏବଂ ଅଭିଜ୍ଞ ବ୍ୟକ୍ତିମାନଙ୍କୁ ଉକ୍ତ କମିଟିର ସଭ୍ୟରୂପେ ରଖିବାପାଇଁ ସେ ମୋ ସହିତ ଆଲୋଚନା କରିଥିଲେ । ସେହି ଅନୁସାରେ ମୁଁ ଗୋଟିଏ ଉଚ୍ଚସ୍ତରୀୟ କମିଟି ଗଠନ କରିଥିଲି । ଉକ୍ତ କମିଟିର ସଭାପତି ହୋଇଥିଲେ ନିଜେ ରାଜ୍ୟପାଳ ମହୋଦୟ ଏବଂ ସଭ୍ୟରୂପେ ସର୍ବଶ୍ରୀ ବିଶ୍ୱନାଥ ଦାସ, ହରେକୃଷ୍ଣ ମହତାବ, ରାଧାନାଥ ରଥ ଓ ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରଭୃତି ଥିଲେ । ତେଣୁ ରାଜ୍ୟପାଳ ଶ୍ରୀ ଶର୍ମା ଆମ ରାଜ୍ୟର ବୟୋଜ୍ୟେଷ୍ଠ ବ୍ୟକ୍ତିମାନଙ୍କର ଘନିଷ୍ଠ ସମ୍ପର୍କରେ ଆସିଥିଲେ । ଦିନେ ରାଜ୍ୟପାଳ ଶ୍ରୀ ଶର୍ମା କଥାପ୍ରସଙ୍ଗରେ ହିନ୍ଦୀ ଓ ଇଂରାଜୀ ମିଶାମିଶି ଭାଷାରେ ମୋତେ କହିଥିଲେ, ଭାଇ ! ତୁମ ରାଜ୍ୟରେ ଦୁଇଜଣ ବୃଦ୍ଧ ବ୍ୟକ୍ତିଙ୍କୁ ମୁଁ ଦେଖିଲି, ଜଣେ ଭୟାନକ ବ୍ୟକ୍ତି, terrible person ଏବଂ କୁତ୍ସାରଟନା କରିବାରେ expert । ଅନ୍ୟର ହଇରାଣରେ ସେ ସନ୍ତୋଷ ପାଆନ୍ତି । କାହାରି ବିଷୟରେ ଭଲକଥା ଶୁଣିବାବେଳେ ସେ ଅମନୋଯୋଗୀ ମାତ୍ର ମନ୍ଦକଥା ଶୁଣିବାକୁ ଆଗ୍ରହୀ, keeps his ears wide open । ଅନ୍ୟ ଜଣଙ୍କ ସାଧୁ ଓ ଶାନ୍ତ ପ୍ରକୃତିର, saintly, He never speaks ill of anybody, ସେ ବଡ଼ ଧର୍ମପରାୟଣ ଓ ଅନ୍ୟର ଦୁଃଖରେ ସମବେଦନା ଜଣାନ୍ତି । He is very considerate, କିନ୍ତୁ କୌଣସି ବିଷୟରେ ଶୀଘ୍ର ମତ ଦିଅନ୍ତିନାହିଁ, very scepitical, ବଡ଼ ସନ୍ଦିଗ୍ଧମନା ।

## ବିଧାନ ରାୟଙ୍କ ବିଫଳ ଚିକିତ୍ସା

ମହତାବବାବୁ ଓ ବିଜୁବାବୁଙ୍କ ମଧରେ ଯେଉଁସବୁ ପତ୍ର ବିନିମୟ ହୋଇଥିଲା ସେଗୁଡ଼ିକ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇବାଦ୍ୱାରା ବିରୁଦ୍ଧଦଳର ଲୋକମାନେ କଂଗ୍ରେସ ଦଳର ତଥା ନେତାମାନଙ୍କର କୁତ୍ସାରଟନା କରିବାକୁ ଖୋରାକ ପାଇଥିଲେ । କଂଗ୍ରେସ ଲୋକେ ଏହାଦ୍ୱାରା ନିଜକୁ ଅପମାନିତ ବୋଧକରୁଥିଲେ । ମୁଁ ନିଜେ ବଡ଼ ଅସୁବିଧା ଅନୁଭବ କରିଥିଲି । ମହତାବବାବୁଙ୍କ ମନ୍ତ୍ରିମଣ୍ଡଳରେ ମୁଁ ଜଣେ ବିଶ୍ୱସ୍ତ ମନ୍ତ୍ରୀ ଏବଂ ବିଜୁବାବୁଙ୍କ ସହିତ ମୋର ଘନିଷ୍ଠତା ଥାଏ । ମୁଁ ଚାହୁଁଥାଏ କୌଣସିମତେ ମିଳାମିଶା ହୋଇ ବିଷୟଟିର ସମାଧାନ ହେଉ । ଏହି ସମୟରେ ମୁଁ ଦିନେ ଖାଦ୍ୟ ଓ ଯୋଗାଣ ବିଭାଗ ସମ୍ବନ୍ଧୀୟ କୌଣସି କାର୍ଯ୍ୟରେ ପଶ୍ଚିମ ବଙ୍ଗଳାର ଖାଦ୍ୟମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ସେନ୍‌ଙ୍କ ସହ ଆଲୋଚନା କରିବାପାଇଁ କଲିକତା ଯାଇଥାଏ । ସରକାରୀ କାର୍ଯ୍ୟ ଆଲୋଚନା ପରେ ଆମ ରାଜ୍ୟର ରାଜନୈତିକ ପରିସ୍ଥିତି ବିଷୟରେ ମୁଁ ତାଙ୍କ ସହିତ ଆଲୋଚନା କରିଥିଲି । ବିଜୁବାବୁ ଓ ମହତାବବାବୁଙ୍କ ମଧରେ ଯେଉଁ କଟୁ ଚିଠିପତ୍ର ବିନିମୟ ହୋଇଥିଲା ସେ ବିଷୟରେ ପ୍ରଫୁଲ୍ଲବାବୁ କେତେକ କଥା ପଚାରିଥିଲେ । ମୁଁ ତାଙ୍କୁ ସବୁକଥା କହିବା ପରେ ଓଡ଼ିଶାର ଏ ପ୍ରକାର ପରିସ୍ଥିତି ଉପୁଜିବାରୁ କଂଗ୍ରେସ ପକ୍ଷରେ ବଡ଼ ଅସୁନ୍ଦର ଅବସ୍ଥା ସୃଷ୍ଟି ହେଉଛି ବୋଲି ସେ ମତ ବ୍ୟକ୍ତ କରିଥିଲେ । ଦୁଇଜଣ ଆଲୋଚନା କରି ସ୍ଥିର କଲୁ ଯେ

ପଶ୍ଚିମ ବଙ୍ଗଳାର ମୁଖ୍ୟମନ୍ତ୍ରୀ ଡାକ୍ତର ବିଧାନଚନ୍ଦ୍ର ରାୟ ଓଡ଼ିଶା ବ୍ୟାପାରରେ ହସ୍ତକ୍ଷେପ କରି ସମାଧାନ କରାଇଦେଲେ ମଙ୍ଗଳ ହେବ । ତେଣୁ ଆମେ ଦୁଇଜଣ ବିଧାନବାବୁଙ୍କ ପାଖକୁ ଯାଇଥିଲୁ । ଆମେ କିଛି ନକହୁଣୁ ସେ ମହତାବ ଓ ବିଜୁ ପଟ୍ଟନାୟକଙ୍କ ଚିଠିପତ୍ର ବିଷୟରେ ପଚାରିଥିଲେ ଏବଂ କହିଥିଲେ, ''ମହତାବ ପିଲାଙ୍କ ଭଳି ବ୍ୟବହାର କରି ବେଲାଇନ୍‌ରେ ଚାଲିଯାଉଛନ୍ତି ।'' ମୁଁ ବିଧାନବାବୁଙ୍କୁ ସବୁ କଥା କହି ସେ ବିଷୟରେ ସମାଧାନ କରିବାପାଇଁ ଅନୁରୋଧ କରିଥିଲି । ଠିକ୍ ସେତିକିବେଳେ ମହତାବଙ୍କର ଅସୁସ୍ଥତା କଥା ଖବରକାଗଜରେ ବାହାରିଥାଏ । ବିଧାନବାବୁ କୋରାପୁଟ ଜିଲ୍ଲାର ଦଣ୍ଡକାରଣ୍ୟ ଅଞ୍ଚଳରେ କେତେକ କାର୍ଯ୍ୟ ଦେଖିବାକୁ ଯିବାର ପ୍ରସ୍ତାବ ଥାଏ, ମାତ୍ର ସେଥିପାଇଁ ନିର୍ଦ୍ଦିଷ୍ଟ ଦିନ ଠିକ୍ ହୋଇନଥାଏ । ସେ ତାଙ୍କର ପୁନର୍ବସତି ବିଭାଗର ସଚିବଙ୍କୁ ଡାକି ଦଣ୍ଡକାରଣ୍ୟ ଯିବାର କାର୍ଯ୍ୟକ୍ରମ ସ୍ଥିରକଲେ ଏବଂ ମହତାବବାବୁଙ୍କୁ ଫୋନ୍ କଲେ ତାଙ୍କ ସ୍ୱାସ୍ଥ୍ୟ ବିଷୟ ଜାଣିବାପାଇଁ । ମୁଁ ତାଙ୍କ ପାଖରେ ଅଛି ବା ମହତାବଙ୍କ ବିଷୟରେ ତାଙ୍କୁ କିଛି କହିଛି ବୋଲି ନ କହିବାକୁ ମୁଁ ବିଧାନବାବୁଙ୍କୁ ପରାମର୍ଶ ଦେଇଥିଲି । ମହତାବବାବୁଙ୍କ ସହିତ ଯେତେବେଳେ ଫୋନ୍ ଲାଗିଲା ବିଧାନବାବୁ କହିଥିଲେ, ''ମୁଁ ଦଣ୍ଡକାରଣ୍ୟ ଯାଉଛି, ତୁମେ ଅସୁସ୍ଥ ବୋଲି ଖବରକାଗଜରୁ ଜାଣିଲି । ତେଣୁ ଦଣ୍ଡକାରଣ୍ୟରୁ ଫେରିଲାବେଳେ ଭୁବନେଶ୍ୱରରେ ଓହ୍ଲାଇ ତୁମକୁ ଦେଖିଆସିବି ।''

ମୁଁ କଲିକତାରୁ ଫେରି ବିଧାନବାବୁଙ୍କ ସହିତ ମୋର ଯେଉଁ କଥାବାର୍ତ୍ତା ହୋଇଥିଲା ସେ ବିଷୟ ବା ତାଙ୍କର ଭୁବନେଶ୍ୱର ଆସିବା କଥା କାହାରିକୁ କିଛି କହିନଥିଲି । ମହତାବଙ୍କ ସ୍ୱାସ୍ଥ୍ୟ ଅବସ୍ଥା ଦେଖିବାପାଇଁ ପଶ୍ଚିମବଙ୍ଗଳାର ମୁଖ୍ୟମନ୍ତ୍ରୀ ଡାକ୍ତର ବିଧାନ ଚନ୍ଦ୍ର ରାୟ ଆସୁଛନ୍ତି ବୋଲି ଖବରକାଗଜରେ ବାହାରିଲା । ଯେଉଁଦିନ ବିଧାନବାବୁ ତାଙ୍କର କେତେକ ସହଯୋଗୀ ମନ୍ତ୍ରୀ ଓ କର୍ମଚାରୀଙ୍କ ସହିତ ଗୋଟିଏ ସ୍ୱତନ୍ତ୍ର ବିମାନଯୋଗେ ଭୁବନେଶ୍ୱର ବିମାନ ବନ୍ଦରରେ ପହଞ୍ଚିଲେ, ସେଠାରେ ମୁଁ ଉପସ୍ଥିତି ଥିଲି । ବିଧାନବାବୁଙ୍କୁ ପାଛୋଟି ନେବାପାଇଁ ମୁଖ୍ୟମନ୍ତ୍ରୀ ତାଙ୍କର ପ୍ରତିନିଧି ହିସାବରେ ଶ୍ରୀ ରାଧାନାଥ ରଥଙ୍କୁ ପଠାଇଥାଆନ୍ତି । ବିଧାନ ରାୟଙ୍କ ସାଙ୍ଗରେ ଆସିଥିବା ଲୋକମାନେ ପ୍ରଥମେ ବିମାନ ଭିତରୁ ବାହାରିଆସିଲେ, ଶେଷରେ ବାହାରିଲେ ବିଧାନବାବୁ । ବିଧାନବାବୁ ଉଡ଼ାଜାହାଜରୁ ଓହ୍ଲାଇବା ସିଡ଼ି ଉପରେ ଥାଇ ଆମ୍ଭମାନଙ୍କୁ କହିଲେ, ''ଓହେ ରାଧାନାଥ ! ତୁମେ ଆମର ମନ୍ତ୍ରୀମାନଙ୍କୁ ଓ ଅନ୍ୟ ସହକର୍ମୀମାନଙ୍କୁ ତୁମର ଅତିଥିଭବନକୁ ନେଇଯାଅ । ନୀଳମଣି ! ମୋତେ ତୁମେ ମହତାବଙ୍କ ଘରକୁ ନେଇଚାଲ ।'' ମୁଁ ବିଧାନବାବୁଙ୍କୁ ମହତାବଙ୍କର ଏକାମ୍ର ନିବାସକୁ ନେଇଯାଇଥିଲି । ସେଠାରେ ସେତେବେଳେ ଶ୍ରୀ ମୋତିଲାଲ୍ ପଣ୍ଡିତ ଥିଲେ । ମହତାବଙ୍କର ସ୍ୱାସ୍ଥ୍ୟ ପରୀକ୍ଷା କରିବା ବିଧାନବାବୁଙ୍କର କେବଳ ଗୋଟିଏ ବାହାନା ଥିଲା । ସେ ତାଙ୍କର ସ୍ୱାସ୍ଥ୍ୟ ଦେଖିବା ସଙ୍ଗେ ସଙ୍ଗେ ନିରୋଳାରେ ବିଜୁବାବୁ ଓ ତାଙ୍କ ଭିତରେ ଯେଉଁ ବାଦବିବାଦ ଚାଲିଥିଲା ସେ ବିଷୟରେ କଥାବାର୍ତ୍ତା ହୋଇଥିଲେ । ଏ କଥାବାର୍ତ୍ତା ପ୍ରାୟ ଘଣ୍ଟାଏ କାଳ ଚାଲିଥିଲା । ବିଧାନବାବୁ ସେହିଦିନ ଉପରଓଳି କଲିକତା ଫେରିଯାଇଥିଲେ । ମାତ୍ର ତାଙ୍କର ଆସିବାର ଅସଲ ଉଦ୍ଦେଶ୍ୟ କେହି ଜାଣିପାରି ନ ଥିଲେ । ବୋଧହୁଏ ମହତାବବାବୁ ବିଧାନବାବୁଙ୍କୁ ଧରାଛୁଆଁ ଦେଇନଥିଲେ । ମହତାବବାବୁଙ୍କର ଦେହ ଭଲହୋଇଗଲା । ମାତ୍ର ଯେଡେ ବଡ଼ ଡାକ୍ତର ହେଲେ ବି ବିଧାନ ରାୟଙ୍କ ଔଷଧ ଅସଲ ରୋଗଟାକୁ ନଧରିବାରୁ ସମାଧାନର କୌଣସି ପ୍ରଶ୍ନ ଉଠିଲାନାହିଁ । ଅଳ୍ପ କିଛିଦିନ ଅବସ୍ଥାର ଉପଶମ ପରେ ସେହି 'ଅସଲ ରୋଗ' ଉତ୍କଟ ହୋଇଉଠିଥିଲା ।

## ୧୯୬୦ର ବନ୍ୟା ବିପତ୍ତି

ଓଡ଼ିଶାର ଲୋକମାନେ ବାରମ୍ବାର ଦୁଇଟି ଦୈବୀ ବିପତ୍ତିର ସମ୍ମୁଖୀନ ହୋଇଥା'ନ୍ତି; ଗୋଟିଏ ବିପତ୍ତି ହେଲା ଅତ୍ୟଧିକ ବୃଷ୍ଟି ହେତୁ ବନ୍ୟା ଓ ଅନ୍ୟଟି ହେଲା ବୃଷ୍ଟି ଅଭାବରୁ ମରୁଡ଼ି । ଏଭଳି ବିପତ୍ତି

ଲୋକଙ୍କର ଅତ୍ୟଧିକ ଦୁଃଖ ଦୁର୍ଦ୍ଦଶାର କାରଣ ହୁଏ । ପ୍ରତିକାରପାଇଁ ସରକାରଙ୍କ ଉପରେ ବିଶେଷ ଭାବରେ ଚାପ ପଡ଼େ । ଗୋଟିଏ ହଠାତ୍ ଆସି ଲୋକଙ୍କର ଘରଦ୍ୱାର, ଫସଲ ଉଜାଡ଼ିହୋଇଯାଏ ଏବଂ ଅନ୍ୟଟି ଧୀରେ ଧୀରେ ଲୋକଙ୍କର ଦୁର୍ଗତି ଓ ବିନାଶର କାରଣ ହୋଇଥାଏ । ବନ୍ୟା ଓ ମରୁଡ଼ିର ପରିଣାମ ସମୟସମୟରେ ଅତି ଭୟଙ୍କର ହୋଇଥାଏ । ପରିସ୍ଥିତିର ସମ୍ମୁଖୀନ ହୋଇ ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କୁ ସାହାଯ୍ୟ କରିବା କାର୍ଯ୍ୟରେ ସରକାରୀ କଳ ନାନାପ୍ରକାର ଅସୁବିଧାରେ ପଡ଼ନ୍ତି । ବନ୍ୟା ସାଙ୍ଗକୁ ବାତ୍ୟା ମିଶିଲେ ତାହା ଆହୁରି ଭୟଙ୍କର ହୁଏ । ବନ୍ୟା ହଠାତ୍ ଆସୁଥିବାରୁ ପ୍ରଥମ ଅବସ୍ଥାରେ ତାହା ଅନେକ ସମୟରେ ସରକାର ଓ ସରକାରୀ କଳକୁ ଦୋହଲାଇଦେଇଥାଏ । ଓଡ଼ିଶାରେ ବନ୍ୟା କିଛି ନୂଆ ନୁହେଁ । ପ୍ରତି ତିନି ଚାରି ବର୍ଷରେ ଥରେ ନିଶ୍ଚିତ ଭାବରେ ବନ୍ୟା ଆସେ । ଆମର ବନ୍ୟାଞ୍ଚଳର ଲୋକେ ବନ୍ୟାର ସମ୍ମୁଖୀନ ହେବାରେ ଅଭ୍ୟସ୍ତ ହୋଇଗଲେଣି । ଓଡ଼ିଶାରେ ୧୯୫୫ ମସିହାରେ ଯେଉଁ ପ୍ରଳୟଙ୍କରୀ ବନ୍ୟା ହୋଇଥିଲା ସେତେବେଳେ ଲୋକଙ୍କର ଦୁଃଖଦୁର୍ଦ୍ଦଶା ଦେଖି ସେମାନଙ୍କୁ ସାନ୍ତ୍ୱନା ଦେବାପାଇଁ ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍ ନେହେରୁ କଟକ ଆସିଥିଲେ ଏବଂ ବାରବାଟୀ ପଡ଼ିଆରେ ଗୋଟିଏ ସଭାରେ ଭାଷଣ ଦେବାବେଳେ ଲୋକଙ୍କୁ ସାହସ ଦେବାକୁ ଯାଇ କହିଥିଲେ ଯେ ବନ୍ୟାଜଳରେ ପ୍ରବାହିତ ହୋଇ ଆସୁଥିବା ପଟୁ ମାଟିରୁ ଓଡ଼ିଶାର ଜନ୍ମ । କୋଟି କୋଟି ବର୍ଷ ଧରି ବନ୍ୟା ଜଳରେ ଭାସିଆସୁଥିବା ପଟୁମାଟିରେ ଓଡ଼ିଶା ଗଢ଼ାହୋଇଥିବାର କଥା ଲୋକଙ୍କୁ ବୁଝାଇ ପଣ୍ଡିତ ନେହେରୁ ଓଡ଼ିଶାବାସୀ ଧୈର୍ଯ୍ୟ ଓ ଦୂରଦୃଷ୍ଟିର ସହ ପରିସ୍ଥିତିର ମୁକାବିଲା କରିବାପାଇଁ ପରାମର୍ଶ ଦେଇଥିଲେ ।

ବନ୍ୟାର ପଟୁମାଟିରୁ କ୍ଷେତ ଉର୍ବର ହେଲା ପରି ଓଡ଼ିଶାରେ ବନ୍ୟା ବିପତ୍ତି ଅନେକ ଥର ଅନେକଙ୍କ ରାଜନୈତିକ ବିପ୍ଳବ ଘଟାଇଛି ଏବଂ ଅନେକେ ସେହି ବନ୍ୟାର 'ପଟୁମାଟି'ରୁ ଭଲ ରାଜନୈତିକ ଫସଲ ଅମଳ କରିଛନ୍ତି । ଏମିତି ବହୁ ବନ୍ୟା ବିପତ୍ତି ମୁଁ ଅଙ୍ଗେ ନିଭେଇଛି ଏବଂ ବନ୍ୟାଗ୍ରସ୍ତ ଲୋକଙ୍କ ଭିତରେ କାର୍ଯ୍ୟ କରିବାର ସୁବିଧା ପାଇଛି । ମୋର ନିଜର ଅନୁଭୂତି ଏହି ଯେ ହଠାତ୍ ବନ୍ୟା ଆସିଲାକ୍ଷଣି ସମସ୍ତଙ୍କର ବୁଦ୍ଧି ବଣାହୋଇଯାଏ । ସରକାର ଘାବରେଇଯାଆନ୍ତି, ଲୋକେ ଉତ୍ତେଜିତ ହୁଅନ୍ତି ଏବଂ ଦୁଇ ତିନି ଦିନ ବିଭ୍ରାନ୍ତିକର ପରିସ୍ଥିତି ଦେଖାଦିଏ । ପ୍ରକୃତ ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କଠାରୁ ଦେଖଣାହାରୀମାନେ ବେଶି ଉତ୍ତେଜିତ ହେବାର ଦେଖାଯାଏ । ସରକାର ଯେଉଁପ୍ରକାର ସାହାଯ୍ୟ କଲେ ମଧ ପ୍ରଥମ ଅବସ୍ଥାରେ ବଦ୍‌ନାମ୍ ଛଡ଼ା ସୁନାମ ତାଙ୍କୁ ମିଳେନାହିଁ । ପ୍ରତ୍ୟେକଟି ବିଷୟ ଓ ଅବ୍ୟବସ୍ଥା ପାଇଁ ସରକାରଙ୍କ ଉପରେ ଦୋଷାରୋପ କରିବା ଗୋଟିଏ ମାମୁଲି ଅଭ୍ୟାସରେ ପରିଣତ ହୋଇଯାଇଛି । ତେଣୁ ବନ୍ୟା ସମୟରେ ସରକାରଙ୍କର ସାହାଯ୍ୟ ଓ ତ୍ରାଣ କାର୍ଯ୍ୟ ଆଦିରେ ତ୍ରୁଟି ଦେଖାଇ ଲୋକଙ୍କ ଭିତରେ ଅସନ୍ତୋଷ ସୃଷ୍ଟିକରି ସରକାରଙ୍କୁ ଅପ୍ରିୟ କରିବାର ସୁଯୋଗ ବିରୁଦ୍ଧ ରାଜନୈତିକ ଦଳର ଲୋକମାନେ ନେଇଥା'ନ୍ତି । କେବଳ ସେତିକିରେ କଥା ରହେନାହିଁ । କ୍ଷମତାରେ ଥିବା ଶାସକ ଦଳ ଭିତରେ ଦାୟିତ୍ୱରେ ଥିବା ନେତାଙ୍କୁ ମଧ କ୍ଷମତାପ୍ରୟାସୀ ବ୍ୟକ୍ତିମାନେ ଲୋକଙ୍କ ଆଗରେ ଅପ୍ରିୟ କରିବାର ସୁଯୋଗ ନିଅନ୍ତି । ୧୯୫୫ ମସିହା ବନ୍ୟା ଦୁର୍ଦ୍ଦଶାର ସୁଯୋଗ ମହତାବବାବୁ ନେଇଥିଲେ । ୧୯୬୦ ମସିହାରେ ହୋଇଥିବା ବନ୍ୟା ଦୁର୍ଯୋଗର ରାଜନୈତିକ ସୁଯୋଗ ବିଜୁ ପଟ୍ଟନାୟକ ନେଲେ ।

## ବିଜୁଙ୍କ ଉଡ଼ାଜାହାଜରୁ ଖାଦ୍ୟ ଯୋଗାଣ

୧୯୬୦ ମସିହାରେ ଓଡ଼ିଶାରେ ଗୋଟିଏ ପ୍ରଳୟଙ୍କରୀ ବନ୍ୟା ହୋଇଥିଲା । ଅଗଷ୍ଟ ମାସ ୧୫ ତାରିଖରେ ବଡ଼ ବନ୍ୟା ଆସିଲା । ତା'ର ସାତ ଦିନ ପୂର୍ବରୁ ମଧ ଗୋଟିଏ ବନ୍ୟା ଆସିଥିଲା । ସେହି ବନ୍ୟାଜଳ ନିଷ୍କାସିତ ହେବା ପୂର୍ବରୁ ବଡ଼ ବନ୍ୟାଟି ଆସିଯାଇଥିଲା । ଏକା ସମୟରେ ସୁବର୍ଣ୍ଣରେଖା

ନଦୀଠାରୁ ଆରମ୍ଭ କରି ମହାନଦୀ ପର୍ଯ୍ୟନ୍ତ ସବୁ ନଦୀରେ ବନ୍ୟା ହୋଇଗଲା । ଦୁଇଟି ବନ୍ୟାର ଜଳ ମିଶିଗଲା ବେଳକୁ ପୂର୍ଣ୍ଣମୀ ତିଥି ପଡ଼ିଥାଏ । ବନ୍ୟାଜଳ ନିଷ୍କାସିତ ନହୋଇ ଅନେକ ଦିନ ଜମି ରହିଲା । ଜେନାପୁର ରେଲଷ୍ଟେସନ୍ ନିକଟରେ ବ୍ରାହ୍ମଣୀ ନଦୀର ପୋଲ ଭାଙ୍ଗିଯାଇଥିଲା । ତେଣୁ ରେଳ ଚଳାଚଳ ସଂପୂର୍ଣ୍ଣରୂପେ ବନ୍ଦହୋଇଯାଇଥିଲା । ମୁଁ ସେଦିନ ବାଲେଶ୍ୱରରେ ଥିଲି ସ୍ୱାଧୀନତା ଦିବସ ଉପଲକ୍ଷ୍ୟେ ପୁଲିସ ପ୍ୟାରେଡ୍‌ରେ ରାଷ୍ଟ୍ରୀୟ ଅଭିନନ୍ଦନ ଗ୍ରହଣ କରିବାପାଇଁ । ମୁଁ କଟକ ଫେରିନଆସି ବାଲେଶ୍ୱର ଜିଲ୍ଲାର ବହୁ ବନ୍ୟାଞ୍ଚଳ ତଥା କଟକ ଜିଲ୍ଲାର ଆଳି ପ୍ରଭୃତି ଅଞ୍ଚଳ ବୁଲି ଅବସ୍ଥା ଲକ୍ଷ୍ୟକଲି । ସରକାରୀ ସାହାଯ୍ୟ କିପରି ଦିଆଯାଇପାରିବ ସେ ବିଷୟରେ ସ୍ଥାନୀୟ ଅଫିସରମାନଙ୍କ ସହିତ ଆଲୋଚନା କରି ବ୍ୟବସ୍ଥା କରିଥିଲି । ମୁଁ ଯେତେବେଳେ ସେସବୁ ଅଞ୍ଚଳ ଡଙ୍ଗାରେ ବୁଲି ଦେଖୁଥିଲି ଏବଂ ଗୋଟିଏ ଗାଆଁରେ ବସିଥିଲି ସେତେବେଳେ ଆମ ମୁଣ୍ଡ ଉପରେ ଗୋଟିଏ ଉଡାଜାହାଜ ଖୁବ୍ ଅଳ୍ପ ଉଚ୍ଚରେ ଉଡ଼ିବାର ଲକ୍ଷ୍ୟକରିଥିଲି । ସେଦିନ ମୁଁ ଭଦ୍ରକରୁ ଗୋଟିଏ ରେଳବାଇ ଟ୍ରଲି ସାହାଯ୍ୟରେ ବ୍ରାହ୍ମଣୀ ନଦୀ ପୋଲ ପର୍ଯ୍ୟନ୍ତ ଆସି ଡଙ୍ଗାରେ ବ୍ରାହ୍ମଣୀ ନଦୀ ପାରହେଲି । ତା'ପରେ କଟକରେ ଆସି ପହଞ୍ଚିଥିଲି । ସରକାରଙ୍କ ପକ୍ଷରୁ ସାହାଯ୍ୟ ଦେବା କାର୍ଯ୍ୟ ଆରମ୍ଭ ହୋଇଥାଏ । ଅନେକ ସ୍ଥାନରେ ରାସ୍ତା ଓ ପୋଲ ଭାଙ୍ଗିଥିବାରୁ ରିଲିଫ୍ କାର୍ଯ୍ୟ ପରିଚାଳନାରେ ବିଳମ୍ବ ହେଉଥାଏ । ଦୀର୍ଘ ଦିନ ଜଳ ନିଷ୍କାସିତ ନହୋଇ ଜମିରହିବାରୁ ଗାଆଁମାନଙ୍କରେ ସାହାଯ୍ୟ ପହଞ୍ଚିବାରେ ଅସୁବିଧା ହେଉଥାଏ । ମୁଁ ବାଲେଶ୍ୱରରୁ ଫେରି ଶୁଣିଲି ଯେ ବନ୍ୟା ଘେର ଭିତରେ ବିଚ୍ଛିନ୍ନ ହୋଇ ରହିଥିବା ଗାଆଁମାନଙ୍କରେ ଉଡ଼ାଜାହାଜରୁ ଖାଦ୍ୟ ପକାଇବାପାଇଁ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀଙ୍କୁ ଗୋଟିଏ ପ୍ରସ୍ତାବ ଦେଇଥିଲେ । ମାତ୍ର ମୁଖ୍ୟମନ୍ତ୍ରୀ ସେଥିରେ ରାଜିନହେବାରୁ ବିଜୁବାବୁ ତାଙ୍କର କଳିଙ୍ଗ ଏୟାର ଲାଇନ୍‌ସରୁ ଦୁଇଟି ବିମାନ ଆଣି ନିଜ ଖର୍ଚ୍ଚରେ ବନ୍ୟାଜଳ ଘେର ଭିତରେ ଥିବା ଗାଆଁମାନଙ୍କରେ ଆକାଶମାର୍ଗରୁ ଖାଦ୍ୟ ପକାଇବାକୁ ସ୍ଥିର କରିଥିଲେ । ମୁଁ ଚାନ୍ଦବାଲି ବନ୍ୟାଞ୍ଚଳରେ ବୁଲିଲାବେଳେ ଆକାଶରେ ଯେଉଁ ଉଡ଼ାଜାହାଜ ଉଡ଼ିବାର ଦେଖିଥିଲି ସେଇଟା ବିଜୁବାବୁଙ୍କର ସେହି ଉଡ଼ାଜାହାଜ । ବନ୍ୟାର ବିଭୀଷିକା ଆକାଶମାର୍ଗରୁ ଦେଖାଇବାପାଇଁ ସେଥିରେ ସେ ଖବରକାଗଜର ପ୍ରତିନିଧିମାନଙ୍କୁ ନେଇଥିଲେ । ବିଜୁବାବୁ ଓ ଖବରକାଗଜର ପ୍ରତିନିଧିମାନଙ୍କ ସହିତ ମୋର ଯେତେବେଳେ କଟକରେ ଦେଖାହୁଏ ସେମାନେ ମୋତେ କହିଥିଲେ, ''ଚାନ୍ଦବାଲି ଓ ଆଳି ବନ୍ୟାଞ୍ଚଳରେ ଗାଆଁଗୁଡ଼ିକ ବୁଡ଼ିଯାଇ ଟିକେ ଟିକେ ଦେଖାଯାଉଛି । ସେଥିରେ ଲୋକ ଆଉ ନାହାନ୍ତି । ଗୋରୁଗାଈ ଓ ଲୋକସବୁ ମରିଗଲେଣି ।'' ମୁଁ କହିଥିଲି ଯେ ସେମାନେ ଯେତେବେଳେ ଉପରେ ଉଡାଜାହାଜରେ ଉଡ଼ି ବୁଲୁଥିଲେ ମୁଁ ସେତେବେଳେ ସେମାନଙ୍କ ଚକ୍ଷୁରେ ବୁଡ଼ିଯାଇଥିବା ଭଳି ଗୋଟିଏ ଗାଆଁରେ ଥିଲି । ଲୋକ କେହି ମରିନାହାନ୍ତି । ଗୋରୁଗାଈ ସବୁ ଗାଆଁମାନଙ୍କରେ ଅଛନ୍ତି । ସେମାନେ ମୋ କଥାରେ ବିଶ୍ୱାସ କରିନଥିଲେ । ବନ୍ୟାଞ୍ଚଳମାନଙ୍କରେ ଗାଆଁଗୁଡ଼ିକର ଅବସ୍ଥିତି ବିଷୟରେ ମୁଁ ସେମାନଙ୍କୁ କହିଥିଲି । ସାଧାରଣତଃ ଗୋଟିଏ ଖୋଲା ଛତା ଉପର ସଦୃଶ ଭୂମିଖଣ୍ଡ ଉପରେ ଗାଆଁଗୁଡ଼ିକ ଅବସ୍ଥିତ । ବନ୍ୟାଜଳ ଚାରିପାଖରୁ ଘେରିଯାଏ କିନ୍ତୁ ଘର ସେତେ ସହଜରେ ଭାଙ୍ଗେନାହିଁ । ଲୋକେ ବିନା ଡଙ୍ଗାରେ ବାହାରକୁ ଯାଇ ପାରନ୍ତି ନାହିଁ, ମାତ୍ର କଷ୍ଟେମଷ୍ଟେ ଭୋକଉପାସରେ ସେହିଠାରେ ଥାଆନ୍ତି । ଆକାଶମାର୍ଗରୁ ଗାଆଁଗୁଡ଼ିକ ଛତା ଆକାରରେ ଟାପୁ ଭଳି ଦେଖାଯାଏ । ମୋ କଥା ଶୁଣି ବିଜୁବାବୁ ବିରକ୍ତ ହୋଇଥିଲେ ଏବଂ ମୋ କଥାକୁ ବିଶ୍ୱାସ ନକରି ଏକପ୍ରକାର ପ୍ରତ୍ୟାଖ୍ୟାନ କରିଥିଲେ । ଆକାଶମାର୍ଗରୁ ଉଡାଜାହାଜ ଯୋଗେ ଖାଦ୍ୟ ପଦାର୍ଥ ପକାଇବା ବିଷୟରେ ମହତାବଙ୍କ ସହିତ ବିଜୁବାବୁଙ୍କର ବିତର୍କ ହୋଇଥିବା ବିଷୟରେ ମୋତେ କିଛି ଜଣାନଥିଲା । କାରଣ ସେ ସମୟରେ ମୁଁ ବାଲେଶ୍ୱର ଜିଲ୍ଲାରେ ଥିଲି । ଉଡାଜାହାଜରୁ ଖାଦ୍ୟ ପକାଇବାପାଇଁ ବିଜୁବାବୁଙ୍କର ଚାଉଳ ଦରକାର ପଡ଼ିଲା । ସେତେବେଳେ ଚାଉଳ ଉପରେ କଣ୍ଟ୍ରୋଲ୍ ଥାଏ, ତେଣୁ

ମୋଟା ଖର୍ଚ୍ଚି ପାଇଁ ଚାଉଳ ଖୋଲା ବଜାରରେ ମିଳୁନଥାଏ । ନଗଦ ଟଙ୍କା ଦେଇ ଚାଉଳ ନେବାପାଇଁ ସେ ମୋତେ ଗୋଟିଏ ଦରଖାସ୍ତ ଦେଇଥିଲେ ଏବଂ ନଗଦ ଟଙ୍କା ନେଇ ଚାଉଳ ଦେବାପାଇଁ ମୁଁ ଯୋଗାଣ ବିଭାଗକୁ ଆଦେଶ ଦେଇଥିଲି । ତାଙ୍କର ଯେତେ ଚାଉଳ ଦରକାର ସେ ଉଚିତ ମୂଲ୍ୟ ଦେଇ କଟକ କଲେକ୍ଟରଙ୍କ ପାଖରୁ ନେଇଥିଲେ । ସ୍ୱେଚ୍ଛାସେବକମାନେ କଟକ ସହିଦ ଭବନରେ ଉଡ଼ାଜାହାଜରୁ ପକାଇଲା ଭଳି ଥଳିରେ ଚାଉଳ ଓ ସିଝାଆଳୁ ପ୍ରଭୃତି କେତେକ ଜିନିଷ ପୂରାଇ ପୁଡ଼ିଆ ବାନ୍ଧୁଥିଲେ । ସହିଦ ଭବନକୁ ଯାଇ ସେସବୁ କାର୍ଯ୍ୟ ଦେଖିବାକୁ ମୋର କୌତୂହଳ ହୋଇଥିଲା, କାରଣ ଆକାଶମାର୍ଗରୁ ଉଡ଼ାଜାହାଜରୁ ଖାଦ୍ୟ ପକାଇବା କାର୍ଯ୍ୟ ଓଡ଼ିଶାରେ ପୂର୍ବରୁ କେବେ ହୋଇନଥିଲା । ଏହା ଥିଲା ସେତେବେଳକାର ଲୋକଙ୍କ ମତରେ ପ୍ରଥମ ଦୁଃସାହସିକ କାର୍ଯ୍ୟ । ମୁଁ ସହିଦ ଭବନକୁ ଯାଇ ଦେଖେଁ ଯେ ତାହା ଲୋକାରଣ୍ୟ । ଗୋଟିଏ ନୂଆ କଥା, ତେଣୁ ସମସ୍ତେ ଆଗ୍ରହର ସହିତ ପୁଡ଼ିଆ ବନ୍ଧା କାର୍ଯ୍ୟ ଦେଖୁଥା'ନ୍ତି । ଏସବୁ ଖବର ମହତାବବାବୁ ରଖୁଥା'ନ୍ତି ଏବଂ ଏହା ତାଙ୍କ ପକ୍ଷରେ ବଡ଼ ଅସହ୍ୟ ହୋଇଥିଲା । ଦିନକ ପରେ ମୁଁ ଭୁବନେଶ୍ୱର ଯାଇ ବାଲେଶ୍ୱର ଜିଲ୍ଲାର ବନ୍ୟା ପରିସ୍ଥିତି ବିଷୟରେ ଆଲୋଚନା କରିବାପାଇଁ ମହତାବଙ୍କୁ ଦେଖାକଲି । ସେତେବେଳେ ସେ ମୋ ପ୍ରତି ବଡ଼ ଉଦାସୀନ ଭାବ ଦେଖାଇଥିଲେ । ଉଡ଼ାଜାହାଜରୁ ପକାଇବା ନିମନ୍ତେ ଯୋଗାଣ ବିଭାଗରୁ ଚାଉଳ ଦେବାଟାକୁ ସେ ପସନ୍ଦ କରିନଥିଲେ । ଚାଉଳ ଅଭାବ ସମୟରେ ଉଡ଼ାଜାହାଜରୁ ଚାଉଳ ପକାଇ ନଷ୍ଟକରାଯାଉଛି ବୋଲି ସେ ମତ ଦେଇଥିଲେ । ଦୁଇ ତିନି ଦିନ ଉଡ଼ାଜାହାଜରୁ ବିଭିନ୍ନ ଅଞ୍ଚଳରେ ଖାଦ୍ୟ ପଡ଼ିଥିଲା । ସେସବୁ ଦେଖି ମହତାବବାବୁ ଆହୁରି କ୍ରୋଧାନ୍ୱିତ ହେଉଥା'ନ୍ତି । କାହା ଅନୁମତିରେ ଆକାଶରୁ ଉଡ଼ାଜାହାଜରେ ଚାଉଳ ଓ ଖାଦ୍ୟ ପଦାର୍ଥ ଇତ୍ୟାଦି ପକାଗଲା ଏବଂ କେଉଁ ଆଇନ ବଳରେ ତାହା କରାଗଲା ସେ ସେକଥା ବୁଝିଥିଲେ ଓ ଏଥିପାଇଁ ଶ୍ରୀ ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ କିଛି କାର୍ଯ୍ୟାନୁଷ୍ଠାନ ହୋଇପାରିବ କି ନା ସେ ବିଷୟରେ ସେ ଆଇନଜ୍ଞମାନଙ୍କର ପରାମର୍ଶ ଲୋଡ଼ିଥିଲେ । ମାତ୍ର ସେପ୍ରକାର କିଛି କଲେ ଅସୁନ୍ଦର ହେବ ବୋଲି ଆମ୍ଭେମାନେ ତାଙ୍କୁ କହିଥିଲୁ ।

## ସାମ୍ବାଦିକଙ୍କ ଉପରେ କ୍ରୋଧ

ଓଡ଼ିଶାର ବନ୍ୟାବିପନ୍ନ ଭୋକିଲା ଲୋକଙ୍କୁ ବିଜୁ ପଟ୍ଟନାୟକ ତାଙ୍କ ନିଜ ଖର୍ଚ୍ଚରେ ତାଙ୍କର କଳିଙ୍ଗ ଏୟାର ଲାଇନ୍ସର ଉଡ଼ାଜାହାଜ ଯୋଗେ ଆକାଶମାର୍ଗରୁ ଖାଦ୍ୟ ଯୋଗାଇବା ସମ୍ବାଦ ଭାରତବର୍ଷର ସବୁ ଖବରକାଗଜରେ ଭଲଭାବରେ ପ୍ରକାଶିତ ହୋଇଥିଲା । କଂଗ୍ରେସର ଦଳାଦଳି ହେତୁ ବନ୍ୟାକ୍ଲିଷ୍ଟ ଲୋକଙ୍କୁ ସାହାଯ୍ୟ ଦେବା କାର୍ଯ୍ୟ ମଧ ଗୋଷ୍ଠୀଗତ ରାଜନୀତି କାର୍ଯ୍ୟ କରୁଛି ବୋଲି କେତେକ ଖବର କାଗଜରେ ପ୍ରକାଶ ପାଇଥିଲା । କଲିକତାରୁ ପ୍ରକାଶପାଉଥିବା ଷ୍ଟେଟ୍ସମ୍ୟାନ୍ ଖବରକାଗଜରେ ଏହି ପ୍ରକାର ସମ୍ବାଦ ପ୍ରକାଶିତ ହୋଇଥିଲା । ସେତେବେଳେ ବିଜୁ ପଟ୍ଟନାୟକ ମଧ ସରକାରଙ୍କର ସାହାଯ୍ୟ ଦେବା କାର୍ଯ୍ୟରେ ଗୋଷ୍ଠୀଗତ ରାଜନୀତି କାର୍ଯ୍ୟ କରୁଛି ବୋଲି ଖବରକାଗଜରେ ବିବୃତି ଦେଇଥିଲେ । ତେଣୁ ସମ୍ବାଦପତ୍ରଗୁଡ଼ିକରେ ସେହି ପ୍ରକାର ସମ୍ବାଦ ପ୍ରକାଶ ପାଇଥିଲା । ପୁନର୍ବାର ଷ୍ଟେଟ୍ସମ୍ୟାନ୍ ଖବରକାଗଜର ପ୍ରତିନିଧି ସ୍ୱର୍ଗତ ଏନ୍.ଆର୍. ସ୍ୱାମୀ ମୁଖ୍ୟମନ୍ତ୍ରୀଙ୍କର କ୍ରୋଧର ଶିକାର ହୋଇଥିଲେ । ଶ୍ରୀ ଏନ୍.ଆର୍. ସ୍ୱାମୀଙ୍କ ବିରୁଦ୍ଧରେ ଶ୍ରୀ ମହତାବଙ୍କର ପ୍ରଥମ ଅଭିଯାନ ବିଷୟ ମୁଁ ଆଗରୁ କହିଛି । ସେ ଅଭିଯାନରେ ଶ୍ରୀ ସ୍ୱାମୀ ପ୍ରେସ୍ ଟ୍ରଷ୍ଟ ଅଫ୍ ଇଣ୍ଡିଆରୁ ବହିଷ୍କୃତ ହୋଇଥିଲେ । ବର୍ତ୍ତମାନ ଷ୍ଟେଟ୍ସମ୍ୟାନ୍ କାଗଜରୁ ତାଙ୍କର ଚାକିରି ନେବା ଉଦ୍ଦେଶ୍ୟରେ ୧୯୬୦ ମସିହା ଅଗଷ୍ଟ ମାସ ୩୦ ତାରିଖରେ ରାଜ୍ୟ ସରକାରଙ୍କର ଲୋକସମ୍ପର୍କ ବିଭାଗ ପକ୍ଷରୁ ଶ୍ରୀ ସ୍ୱାମୀଙ୍କୁ କୈଫିୟତ୍ ମାଗି ଚିଠି ଲେଖାଯାଇଥିଲା, "I am directed to refer

to despatches dated Cuttack, August 25 and August 27 published in the Statesman dated August 26 and August 28 respectively under the main headlines 'Plane Dropping Food to Marooned' and 'Orissa Faces Fresh Threat, Split in Congress Widens' and to say that while the efforts of everybody now is to focus public attention on the seriousness of the floods, you appear to have resorted to inaccurate, misleading and unbalanced reports. I am directed to request you to explain as to why your accredition will not be withdrawn." ଏହି ମର୍ମରେ ଷ୍ଟେଟ୍‌ସମ୍ୟାନ୍‌ର ସଂପାଦକଙ୍କୁ ମଧ୍ୟ ଗୋଟିଏ ଚିଠି ଲେଖାଯାଇଥିଲା । ତା' ଛଡ଼ା କଲିକତାରେ ଷ୍ଟେଟ୍‌ସମ୍ୟାନ୍‌ର ସଂପାଦକଙ୍କ ଆଗରେ ଶ୍ରୀ ମହତାବ ଶ୍ରୀ ସ୍ୱାମୀଙ୍କ ବିରୁଦ୍ଧରେ କେତେକ ଅଭିଯୋଗ ଆଣିଥିଲେ । କିନ୍ତୁ ଶ୍ରୀ ସ୍ୱାମୀଙ୍କ ବିରୁଦ୍ଧରେ ଷ୍ଟେଟ୍‌ସମ୍ୟାନ୍ ପରିଚାଳନା କର୍ତ୍ତୃପକ୍ଷଙ୍କ ତରଫରୁ କୌଣସି କାର୍ଯ୍ୟାନୁଷ୍ଠାନ କରାଯାଇନଥିଲା । ପରେ ଶ୍ରୀ ସ୍ୱାମୀଙ୍କ ସୂତ୍ରରୁ ଶୁଣିବାକୁ ପାଇଥିଲି ଯେ ଶ୍ରୀ ମହତାବ ଷ୍ଟେଟ୍‌ସମ୍ୟାନ୍‌ର ସଂପାଦକଙ୍କ ସହିତ କଲିକତାରେ କଥାବାର୍ତ୍ତା ବେଳେ ନିଜର ଭୁଲ୍ ନିଜେ ବୁଝିପାରିଥିଲେ । ଷ୍ଟେଟ୍‌ସମ୍ୟାନ୍‌ର କର୍ତ୍ତୃପକ୍ଷ କୁଆଡ଼େ ୧୯୫୫ ମସିହାରେ ଓଡ଼ିଶାରେ ଯେଉଁ ବନ୍ୟା ହୋଇଥିଲା ସେ ସମୟରେ ମହତାବଙ୍କର ପ୍ରଜାତନ୍ତ୍ର କାଗଜରେ ଯେଉଁ ପ୍ରକାର ସମ୍ବାଦ ପରିବେଷଣ କରାଯାଉଥିଲା ସେଥିପ୍ରତି ଶ୍ରୀ ମହତାବଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ସେହି ବନ୍ୟା ସମୟରେ 'ପ୍ରଜାତନ୍ତ୍ର' ସମ୍ବାଦ ପରିବେଷଣର ଏକମାତ୍ର ଉଦ୍ଦେଶ୍ୟ ଥିଲା ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ସରକାରକୁ ଅପ୍ରିୟ କରାଇ ବିତାଡ଼ନ କରିବା ।

ଅନ୍ୟ ଏକ ଖବରରୁ ଜଣାଯାଇଥିଲା ଯେ ମହତାବବାବୁ କଲିକତାଠାରେ ଷ୍ଟେଟ୍‌ସମ୍ୟାନ୍‌ର ଖୋଦ୍ ସଂପାଦକଙ୍କ ସହିତ ସାକ୍ଷାତ କରିଥିଲେ ବୋଲି ବାହାରକୁ ଜଣାଯାଇଥିଲେ ମଧ୍ୟ ପ୍ରକୃତରେ ସେ ତାଙ୍କ ସହିତ ସାକ୍ଷାତ୍ କରିନଥିଲେ । ସେତେବେଳେ ଅନେକ ଗୋରାସାହେବ ଷ୍ଟେଟ୍‌ସମ୍ୟାନ୍‌ର ସଂପାଦନା କାର୍ଯ୍ୟରେ ନିଯୁକ୍ତ ଥିଲେ । ମହତାବବାବୁ ଅନ୍ୟ ଜଣେ ସାହେବ କର୍ମଚାରୀଙ୍କ ସହିତ ସାକ୍ଷାତ୍ କରିଥିଲେ ମଧ୍ୟ ନିଜେ ସଂପାଦକଙ୍କ ସହିତ ସାକ୍ଷାତ୍ କରିଥିବାର ଖବର ଏଠାରେ ପ୍ରଚାରିତ ହୋଇଥିଲା । ୧୯୬୦ ମସିହା ବନ୍ୟା ସମୟରେ ଓଡ଼ିଶାରେ ପ୍ରଥମକରି ଉଡ଼ାଜାହାଜ ସାହାଯ୍ୟରେ ଆକାଶମାର୍ଗରୁ ଲୋକମାନଙ୍କୁ ଖାଦ୍ୟ ପଦାର୍ଥ ଦିଆଯାଇଥିଲା । ଏହା ସେତେବେଳେ ଗୋଟିଏ ଅସାଧାରଣ କାର୍ଯ୍ୟ ଥିଲା; ମାତ୍ର ଏଣିକି ବନ୍ୟା ସମୟରେ ଉଡ଼ାଜାହାଜରୁ ଖାଦ୍ୟ ପକାଇବା ଗୋଟିଏ ମାମୁଲି ବ୍ୟାପାରରେ ପରିଣତ ହୋଇଛି । ଆକାଶମାର୍ଗରୁ ଖାଦ୍ୟ ବନ୍ୟାଞ୍ଚଳରେ ପକାଇବାଦ୍ୱାରା ବିପନ୍ନ ଲୋକମାନଙ୍କର ଯେ ସବୁ ଖାଦ୍ୟ ସମସ୍ୟା ତୁଟିଯାଏ ତା' ନୁହେଁ । କେବଳ ଉଡ଼ାଜାହାଜରୁ ଖାଦ୍ୟ ପଡ଼ିଲେ ଖାଇବା ପାଇଁ ସମସ୍ତେ ଅନାଇ ବସିଥାଆନ୍ତି ତା ବି ମଧ୍ୟ ନୁହେଁ । ଉଡ଼ାଜାହାଜରୁ ଖାଦ୍ୟ ପଡ଼ିଲା ବେଳେ କେତେକ ଖାଦ୍ୟ ପାଣିରେ ପଡ଼ି ନଷ୍ଟ ହୁଏ; ମାତ୍ର ଗୋଟିଏ କଥା ନିଶ୍ଚିତ ଯେ ଉଡ଼ାଜାହାଜରୁ ଆକାଶମାର୍ଗରୁ ଖାଦ୍ୟ ପଡ଼ିବାଟା ଲୋକଙ୍କ ମନରେ ଦମ୍ଭ ଓ ଭରସା ଜନ୍ମାଏ । ବନ୍ୟାଞ୍ଚଳର ଲୋକେ ଅନୁଭବ କରନ୍ତି ଯେ ସେମାନଙ୍କ ଦୁଃଖରେ ସେମାନଙ୍କୁ ସାହାଯ୍ୟ କରିବାପାଇଁ ସରକାର ତଥା ଦେଶବାସୀ ଜାଗ୍ରତ । ତା' ବ୍ୟତୀତ ଯେଉଁ ଗାଆଁରେ ଖାଦ୍ୟ ପଡ଼େ ସେଠାକାର ଦୁଃସ୍ଥ ଅଭାବୀ ଲୋକେ ବିଶେଷ ଭାବରେ ଉପକୃତ ହୁଅନ୍ତି । ଆକାଶମାର୍ଗରୁ ଖାଦ୍ୟ ପଡ଼ିଲାକ୍ଷଣି ଗାଆଁର ଲୋକେ ଆଗେ ସେହି ପ୍ରକାର ଦୁଃସ୍ଥ ଲୋକଙ୍କୁ ଖାଦ୍ୟ ଦିଅନ୍ତି ଏବଂ ତା'ପରେ ଅନ୍ୟମାନଙ୍କୁ ଦେଇଥାଆନ୍ତି ।

ବିଜୁବାବୁଙ୍କର କଳିଙ୍ଗ ଏୟାର ଲାଇନ୍‌ସର ଡାକୋଟା ବିମାନଚାଳକମାନେ ଆକାଶମାର୍ଗରୁ ଖାଦ୍ୟ ପକାଇବାରେ ଖୁବ୍ ଦକ୍ଷ ଥିଲେ । କାରଣ ସେହି ଏୟାର ଲାଇନ୍‌ସ ସୃଷ୍ଟିହୋଇଥିଲା ଭାରତ

ସୀମାନ୍ତର ଦୁର୍ଗମ ପାର୍ବତ୍ୟ ଅଞ୍ଚଳରେ ସେନାବାହିନୀକୁ ଆକାଶମାର୍ଗରୁ ଖାଦ୍ୟ ଯୋଗାଇବାପାଇଁ । ସେହି ବିମାନଚାଳକମାନେ ବିମାନଗୁଡ଼ିକୁ ଯେପରି ଖୁବ୍ ଅଳ୍ପ ଉଚ୍ଚରେ ଉଡ଼ାଇ ଖାଦ୍ୟ ପକାଇପାରନ୍ତି, ସବୁ ବିମାନଚାଳକଙ୍କର ସେଭଳି ଦକ୍ଷତା ନଥାଏ । ସେଇଥିପାଇଁ ବିଜୁବାବୁ ୧୯୬୦ ମସିହା ବନ୍ୟାବେଳେ ତାଙ୍କର କଳିଙ୍ଗ ଏୟାର୍ ଲାଇନ୍‌ସର ଉଡ଼ାଜାହାଜ ଆଣି ନିଜ ଖର୍ଚ୍ଚରେ ଆକାଶମାର୍ଗରୁ ଖାଦ୍ୟ ପକାଇଥିଲେ । ପରେ ମୁଁ ବୁଝିପାରିଥିଲି ଯେ ତାହା ଫଳରେ ସେ ରାଜନୈତିକ ଚେସ୍ ପାଲିରେ ଆଖିରେ ଦେଖିଲାଭଳି ଗୋଟି ଚଳାଇ ଏକ କିସ୍ତି ଲଗାଇ ଦେଇଥିଲେ । ବିଜୁବାବୁଙ୍କର ଏହି ଖେଳ ମୋ ପକ୍ଷରେ ଗୋଟିଏ କାଳ ହୋଇଥିଲା । ଉଡ଼ାଜାହାଜରୁ ଖାଦ୍ୟ ପକାଇବାପାଇଁ ଉଚିତ ଦାମ୍ ନେଇ ମଧ ଯୋଗାଣ ବିଭାଗରୁ ଚାଉଳ ଯୋଗାଇବା କାର୍ଯ୍ୟକୁ ମହତାବବାବୁ ନାପସନ୍ଦ କରିଥିଲେ । ଖାଦ୍ୟପୁଡ଼ିଆ ବନ୍ଧା ହେଉଥିବା ଶହୀଦ ଭବନରେ ମୋର ଉପସ୍ଥିତିକୁ ମୁଖ୍ୟମନ୍ତ୍ରୀ ଆଦୌ ସହିନପାରି ଖୁବ୍ ବିରକ୍ତି ପ୍ରକାଶ କରିଥିଲେ । ଏସବୁ କଥା ମୋତେ ଆସି ସ୍ୱର୍ଗୀୟ ମୁରଲୀଧର ଜେନା କହିଥିଲେ । ବିଜୁବାବୁ ଓ ବୀରେନ୍‌ବାବୁଙ୍କ ସହିତ ମୋର ସଂପର୍କକୁ ମହତାବବାବୁ ପସନ୍ଦ କରୁନାହାନ୍ତି ବୋଲି ମୁରଲୀବାବୁ ମୋତେ କହିଥିଲେ । ଏସବୁ ବିଷୟରେ ଆମେ ଦୁହେଁ ବହୁତ ସମୟ କଥାବାର୍ତ୍ତା ହେଲୁ । ବିଜୁବାବୁ ଓ ବୀରେନ୍‌ବାବୁଙ୍କ ସହିତ ସଂପର୍କଟା ଏକାବେଳକେ ତୁଟାଇଦେବା ସହଜ ନୁହେଁ ବୋଲି ମୁରଲୀବାବୁ ମୋ ସହିତ ଏକମତ ହୋଇଥିଲେ । ମୋର ଅସୁବିଧା ଓ ଅନୁଭୂତି ସଂପର୍କରେ ମୁରଲୀବାବୁ ସଂପୂର୍ଣ୍ଣ ଅନୁକୂଳ ମତ ପ୍ରକାଶ କରିଥିଲେ । କିନ୍ତୁ ମହତାବବାବୁଙ୍କୁ ସନ୍ତୁଷ୍ଟ କରିବାପାଇଁ ମୋତେ କିଛି କରିବାକୁ ହେବ ବୋଲି ସେ ପରାମର୍ଶ ଦେଇଥିଲେ । ମହତାବବାବୁ ବୀରେନ୍‌ବାବୁଙ୍କୁ ଜାଣିବା ପୂର୍ବରୁ ବୀରେନ୍ ବାବୁ ଥିଲେ ମୋର ବନ୍ଧୁ । ତାହାଛଡ଼ା ବିଜୁବାବୁଙ୍କ ସହିତ ମହତାବବାବୁଙ୍କର ଖୁବ୍ ଘନିଷ୍ଠତା ଥିଲା । ସବୁ କଥାରେ ବିଜୁବାବୁ ମହତାବବାବୁଙ୍କୁ ସାହାଯ୍ୟ କରୁଥିଲେ । ଏକାସାଙ୍ଗରେ ମୁଁ, ବିଜୁବାବୁ ଓ ବୀରେନ୍‌ବାବୁ କାର୍ଯ୍ୟ କରୁ କରୁ ଆମ୍ଭମାନଙ୍କ ଭିତରେ ଘନିଷ୍ଠତା ବଢ଼ିଥିଲା । କିନ୍ତୁ ମହତାବବାବୁଙ୍କର କ୍ରୋଧ କଥା ମୁରଲୀବାବୁ ମୋତେ କହିବା ପରେ ମୁଁ ଟିକେ ସାବଧାନ ହୋଇଥିଲି । ବୀରେନ୍‌ବାବୁ ପ୍ରଜାତନ୍ତ୍ର ପରିସର ବିହାରୀବାଗରେ ରହୁଥିଲେ । ମୁଁ ପ୍ରାୟ ସବୁଦିନ ସନ୍ଧ୍ୟାବେଳେ ତାଙ୍କ ପାଖକୁ ଯାଉଥିଲି । ଏଣିକି ସେଠାକୁ ଯିବା ଆସିବା ଟିକେ କମେଇଦେଲି । ପ୍ରତିଦିନ ଯିବା ପରିବର୍ତ୍ତେ ସମୟ ସମୟରେ ଯାଉଥିଲି । ସେତିକି ମଧ ସେ ସହ୍ୟ କରିପାରି ନଥିଲେ । ମୋତେ ସେ ଏଣିକି ଏକ ପ୍ରକାର ସନ୍ଦେହ ଚକ୍ଷୁରେ ଦେଖି ମୋ ପ୍ରତି ଉଦାସୀନ ଭାବ ଦେଖାଇବାରେ ଲାଗିଲେ । ଆମର ସହଯୋଗୀ ମନ୍ତ୍ରୀବୃନ୍ଦଙ୍କ ପାଖରେ ମଧ ମୋ ବିଷୟରେ ତିକ୍ତ ସମାଲୋଚନା ଆରମ୍ଭ କରିଦେଇଥିଲେ । 'ପ୍ରଜାତନ୍ତ୍ର' ସହିତ ଆମ୍ଭମାନଙ୍କର ସଂପର୍କ ଅତି ଘନିଷ୍ଠ ଥିଲା । 'ପ୍ରଜାତନ୍ତ୍ର' ଯେତେବେଳେ ପ୍ରଥମେ କଟକରୁ ପ୍ରକାଶିତ ହେଲା ସେତେବେଳେ ବୀରେନ୍‌ବାବୁ ଓ ମୁଁ କଟକ ସହରରେ 'ପ୍ରଜାତନ୍ତ୍ର'ର ପ୍ରସାର ପାଇଁ ହକର୍ କାର୍ଯ୍ୟ ମଧ କରିଥିଲୁ । ମୋ ନାମରେ ଓ ବୀରେନ୍‌ବାବୁଙ୍କ ନାମରେ ପ୍ରଜାତନ୍ତ୍ର ପ୍ରଚାର ସମିତିରେ ପଚାଶ ହଜାର ଟଙ୍କା କରି ଅଂଶ ମଧ ଥିଲା । ଅନ୍ୟ ଦାତାମାନଙ୍କଠାରୁ ଆଦାୟ ହୋଇଥିବା ଟଙ୍କା ଏହିପରି ଭାବରେ ଆମ ନାମରେ ମଜୁରା କରାଯାଇଥିଲା । ଆମେ ତିନିଜଣ ପ୍ରଜାତନ୍ତ୍ର ପ୍ରଚାର ସମିତିର ଅଂଶୀଦାର ଥିଲୁ ଓ ପରିଚାଳନା ବୋର୍ଡ଼ର ସଭ୍ୟ ମଧ ଥିଲୁ । ମଝିରେ ମଝିରେ କେତେଥର ଆମ୍ଭମାନଙ୍କୁ ସଭ୍ୟପଦରୁ କାଟି ଦିଆଯିବା ଏବଂ ପୁଣି ରଖାଯିବାର ଦୃଷ୍ଟାନ୍ତ ମଧ ରହିଛି । ଶେଷଥର କେବେ ସେ ଅନୁଷ୍ଠାନରୁ ଆମ୍ଭମାନଙ୍କୁ ବିଦାୟ ଦିଆଗଲା ସେ କଥା ମୋର ମନେନାହିଁ । କଟକରେ କିମ୍ବା ଅନ୍ୟ କେଉଁଠାରେ ମୋର ଘରନଥିଲା । ପ୍ରଜାତନ୍ତ୍ର ପରିସର ମଧରେ ମୋତେ ଖଣ୍ଡିଏ ଜାଗା ମିଳିବ ଓ ମୁଁ ସେଠାରେ ଘର କରିବି ବୋଲି ଆଗରୁ ସ୍ଥିର ହୋଇଥିଲା । ଲୋକସେବକମଣ୍ଡଳ ବା ହିନ୍ଦ୍ ସେବକ ସମାଜ ଭଳି ପ୍ରଜାତନ୍ତ୍ର ପ୍ରଚାର ସମିତିର ଯେଉଁ ଭବିଷ୍ୟତ ରୂପରେଖ କୁହାଯାଉଥିଲା ଏବଂ ଆମର ରାଜନୈତିକ ଜୀବନକୁ ସେଥିସହିତ

ସଂଶ୍ଳିଷ୍ଟ କରି ରଖିବାର ବିଚାର ହେତୁ ଆଗରୁ ଏଭଳି ପ୍ରସ୍ତାବ ପ୍ରତି ମୁଁ ଆକୃଷ୍ଟ ଥିଲି । ଘର କରିବାପାଇଁ ସରକାରୀ ଋଣ ଯୋଗାଡ଼ କରିବା ନିୟମ ଦୃଷ୍ଟିରୁ ଜାଗା ଖଣ୍ଡିକ ମୋ ନାମରେ ରେଜେଷ୍ଟ୍ରି କରିବାପାଇଁ ମୁଁ କହିଥିଲି । ସେତେବେଳକୁ ମହତାବବାବୁଙ୍କର ମୋ ପ୍ରତି ଏତେ ଅଧିକ ସନ୍ଦେହ ଓ କ୍ରୋଧ ଜାତ ହୋଇସାରିଛି ବୋଲି ମୋର ଧାରଣା ନଥାଏ । ମୋ ନାମରେ ଜାଗାଟି ରେଜେଷ୍ଟ୍ରି କରିବାକୁ ସେ କୁଣ୍ଠିତ ହୋଇଥିଲେ । ମାତ୍ର ଘରକାମ ଆରମ୍ଭ କରିବାକୁ ସେ ମୋତେ କହିଥିଲେ । ଏ ଅବସ୍ଥାରେ ମୁଁ କଅଣ କରିବି କିଛି ସ୍ଥିର କରିପାରୁନଥିଲି । ସେତେବେଳେକାର ବିଶିଷ୍ଟ ଆଡ୍‌ଭୋକେଟ୍ ଏବଂ ପରେ ଓଡ଼ିଶା ହାଇକୋର୍ଟର ବିଚାରପତି ହୋଇଥିବା ମୋର ଜଣେ ବୟସ୍କ ବନ୍ଧୁ ଶ୍ରୀ ରାଜକିଶୋର ଦାସଙ୍କ ପରାମର୍ଶ ଲୋଡ଼ିଲି । ସେ ମୋତେ କହିଥିଲେ, ''ନୀଳମଣି ! ତୁମେ ଏ ଅବସ୍ଥାରେ ପ୍ରଜାତନ୍ତ୍ର ପରିସର ଭିତରେ ଆଦୌ ଘରକାର୍ଯ୍ୟ ଆରମ୍ଭ କର ନାହିଁ । ପ୍ରଥମେ ଜାଗା ତୁମ ନାମରେ ରେଜେଷ୍ଟ୍ରି କରାଯାଉ, ତା'ପରେ ଘର କରିବ । ସେ କଥା ନ କରି ତୁମେ ଯଦି ସେଠାରେ ଘର କରିପକାଅ, ତୁମର ତ୍ରୁଟି ମହତାବଙ୍କ ହାତରେ ପଡ଼ିବ ଏବଂ ତା'ପରେ ସେ ତୁମକୁ ଉଠବସ କରାଉଥିବେ । ତାହାହିଁ ମହତାବଙ୍କ ଉଦ୍ଦେଶ୍ୟ ।'' ତେଣୁ ପ୍ରଜାତନ୍ତ୍ର ପରିସର ଭିତରେ ଘର କରିବାର ଆଶା ଛାଡ଼ିଦେଇ ମୁଁ କଟକଚଣ୍ଡୀ ଛକ ପାଖରେ ଜମି କିଣି ଘରକରିଥିଲି ।

## ୧୯୬୧-୬୨ : ଓଡ଼ିଶା ରାଜନୀତିରେ ନବକଳେବର

ବର୍ଷୀୟାନ ନେତାମାନଙ୍କ ହାତରୁ ଅପେକ୍ଷାକୃତ କମ୍ ବୟସ୍କ ନେତା, ଯୁବକ ଓ ତରୁଣମାନଙ୍କ ହାତକୁ ଓଡ଼ିଶାରେ କଂଗ୍ରେସଦଳ ଓ ସରକାରର ନେତୃତ୍ୱ ଆସିଥିଲା ୧୯୬୧-୬୨ ମସିହାରେ । ବହୁ ଦୃଷ୍ଟିରୁ ଓଡ଼ିଶା କଂଗ୍ରେସ ରାଜନୀତିରେ ଏହା ନବକଳେବର ସମୟ । ଏହା ପରେ ସ୍ୱାଧୀନ ଭାରତରେ ଓଡ଼ିଶାରେ ପ୍ରଥମ କରି ନିରଙ୍କୁଶ ସଂଖ୍ୟାଗରିଷ୍ଠ କଂଗ୍ରେସ ସରକାର ପ୍ରତିଷ୍ଠା ଏବଂ ଓଡ଼ିଶାରେ ବହୁକାଳରୁ ଅଭିଳଷିତ ଜାତୀୟ କଂଗ୍ରେସ ଅଧିବେଶନ ହେବା ଭଳି ବହୁ ସ୍ୱପ୍ନ ସଫଳହୋଇଥିଲା । ଏହି ଅବସ୍ଥାରେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଶ୍ରୀ ବନମାଳୀ ପଟ୍ଟନାୟକଙ୍କ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଆଣିବା ପାଇଁ ପ୍ରଦେଶ କଂଗ୍ରେସ କମିଟିର ଗୋଟିଏ ବରାଦୀ ବୈଠକ ଆହୂତ ହେଉ ବୋଲି ଦାବି କରି ଦସ୍ତଖତ ସଂଗ୍ରହ କାର୍ଯ୍ୟ ଚାଲିଲା । ରାଜ୍ୟ କଂଗ୍ରେସ କର୍ତ୍ତୃପକ୍ଷଙ୍କର ନିଷ୍କ୍ରିୟତା ଓ କଂଗ୍ରେସ ଲୋକଙ୍କର ଅସନ୍ତୋଷ ବିଷୟରେ କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷଙ୍କ ପାଖରେ ବାରମ୍ବାର ଅଭିଯୋଗ କରାଯାଇଥିଲା । କଂଗ୍ରେସକୁ ସକ୍ରିୟ କରିବା ଉଦ୍ଦେଶ୍ୟରେ ଏକ କାର୍ଯ୍ୟକ୍ରମ ଦେଇ, ପ୍ରଦେଶ କଂଗ୍ରେସ କମିଟିର ସଭାପତି ହେବା ପାଇଁ ବିଜୁ ପଟ୍ଟନାୟକଙ୍କର ପ୍ରଥମ ଉଦ୍ୟମ ବିଫଳ ହୋଇଥିଲା । କିନ୍ତୁ ଆସ୍ତେ ଆସ୍ତେ କର୍ମୀମାନଙ୍କ ମଧ୍ୟରେ ବିଜୁବାବୁଙ୍କ ସଂଗ୍ରାମୀ ମନୋବୃତ୍ତି ପ୍ରତି ସମର୍ଥନ ବଢୁଥାଏ । ନିଜ ସପକ୍ଷରେ ଗୋଟିଏ ଆସ୍ଥାସୂଚକ ପ୍ରସ୍ତାବ ଆଣି ପ୍ରଦେଶ କଂଗ୍ରେସ ସଭ୍ୟମାନଙ୍କର ମତ ଲୋଡ଼ିବାପାଇଁ କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷ ବନମାଳୀବାବୁଙ୍କୁ ପରାମର୍ଶ ଦେଇଥିଲେ । ଏଥିପାଇଁ ୧୯୬୧ ମସିହା ଜାନୁୟାରୀ ମାସରେ ଭୁବନେଶ୍ୱର ପାନ୍ଥନିବାସରେ ପ୍ରଦେଶ କଂଗ୍ରେସ କମିଟିର ବୈଠକ ବସିଲା । ବନମାଳୀବାବୁ ନିଜ ଆଡୁ ଗୋଟିଏ ଆସ୍ଥା ପ୍ରସ୍ତାବ ଆଗତ କରିଥିଲେ । ମୁଁ ବାଲେଶ୍ୱର ଓ ମୟୂରଭଞ୍ଜର ବନ୍ଧୁମାନଙ୍କୁ ବିଜୁବାବୁଙ୍କୁ ସମର୍ଥନ କରିବାପାଇଁ ପରାମର୍ଶ ଦେଇଥିଲି । ପ୍ରସ୍ତାବ ଉପରେ ଭୋଟ ନିଅଯିବାରୁ ବନମାଳୀବାବୁ ହାରିଯାଇଥିଲେ । ତା'ପରେ ସେହି ବୈଠକରେ ବିଜୁ ପଟ୍ଟନାୟକ ପ୍ରଦେଶ କଂଗ୍ରେସ କମିଟିର ନୂଆ ସଭାପତି ରୂପେ ନିର୍ବାଚିତ ହୋଇଥିଲେ । ସେ ସଭାପତି ନିର୍ବାଚିତ ହେବାର ଅଳ୍ପ ସମୟ ଭିତରେ ମୋ ସହିତ କୌଣସି ପ୍ରକାର ପରାମର୍ଶ ନକରି ପ୍ରଦେଶ କଂଗ୍ରେସ କମିଟିର ସାଧାରଣ ସଂପାଦକ ରୂପେ ମୋ ନାମ ଘୋଷଣା କରିଦେଲେ । କଥାଟା ମୋତେ ଆହୁରି ଅଡୁଆରେ ପକାଇଦେଲା । ଜାଣିଶୁଣି ସେ ଏ

ପ୍ରକାର ନିଷ୍ପତ୍ତି ନେଇଥିଲେ – ମୋ ପ୍ରତି ମହତାବଙ୍କର ସନ୍ଦେହ ବୃଦ୍ଧି କରିବା ଉଦ୍ଦେଶ୍ୟରେ । ମୁଁ ମୋର ଅନିଚ୍ଛା ପ୍ରକାଶକରିଥିଲି; ମାତ୍ର ସେ କୌଣସିମତେ ଶୁଣିବା ଲୋକ ନୁହନ୍ତି । ବନମାଳୀବାବୁଙ୍କ ବହିଷ୍କାର ଓ ବିଜୁବାବୁ ସଭାପତି ନିର୍ବାଚିତ ହେବାଦ୍ୱାରା ମହତାବବାବୁ ବିଶେଷ ଭାବରେ ବିଚଳିତ ହେବାର ଦେଖାଗଲା । ଶ୍ରୀ ମୁରଲୀଧର ଜେନା ଆସି ମୋତେ ସବୁକଥା କହିଥିଲେ । ଏ ପ୍ରକାର ପରିସ୍ଥିତିରେ ମୁଁ ପ୍ରଦେଶ କଂଗ୍ରେସ କମିଟିର ସଂପାଦକ ଦାୟିତ୍ୱରେ ରହିବାକୁ ମୁରଲୀବାବୁ ଚାହିଁଥିଲେ । ମୁରଲୀବାବୁ ଭାବିଥିଲେ ଯେ ବିଜୁବାବୁ ବଡ଼ ତୁରୁତୁରିଆ ଲୋକ, କେତେବେଳେ କ'ଣ କରିପକାଇବେ, ତେଣୁ ମୁଁ ସଂପାଦକ ଥିଲେ ଅନ୍ତତଃ ବିଚାରବନ୍ତ ଭାବରେ କାର୍ଯ୍ୟ ପରିଚାଳନା କରାଯିବ ।

ନବକଳେବର ପରେ ପରେ ତ ଜାକଜମକରେ ରଥଯାତ୍ରା ହେବାର କଥା । ବିଜୁବାବୁ ସଭାପତି ହିସାବରେ ପ୍ରଦେଶ କଂଗ୍ରେସ କମିଟି ଦାୟିତ୍ୱ ନେବା ପରେ ଏକାବେଳକେ ଅସ୍ଥିର । ତୁରନ୍ତ କିପରି ପ୍ରାଦେଶିକ ଓ ଜିଲ୍ଲା କଂଗ୍ରେସ ଅନୁଷ୍ଠାନ ସକ୍ରିୟ ହେବ ସେଥିପାଇଁ ସବୁପ୍ରକାର ଧ୍ୟାନ ଦିଆଗଲା । ଶ୍ରୀ ଭବାନୀ ଚରଣ ପଟ୍ଟନାୟକ କଂଗ୍ରେସ କମିଟିର ଆଉ ଜଣେ ସଂପାଦକ ରୂପେ ନିଯୁକ୍ତ ହୋଇଥିଲେ । ସବୁ ଜିଲ୍ଲା କଂଗ୍ରେସ କମିଟିକୁ ଅସ୍ଥାୟୀ ଭାବରେ ପୁନର୍ଗଠନ କରାଯାଇଥିଲା ଏବଂ ଅନୁଷ୍ଠାନକୁ ସକ୍ରିୟ କରିବା କାର୍ଯ୍ୟକ୍ରମ ଉଦ୍ଦେଶ୍ୟରେ ଆର୍ଥିକ ସାହାଯ୍ୟ ଯୋଗାଇ ଦିଆଯାଇଥିଲା । ଗଣତନ୍ତ୍ର ପରିଷଦର ପ୍ରଧାନ ଦୁର୍ଗ ବିବେଚିତ ହେଉଥିବା ବଲାଙ୍ଗୀର ଜିଲ୍ଲାରେ କଂଗ୍ରେସ କମିଟିପାଇଁ ଗୋଟିଏ ଛାପାଖାନା ଗୋଟିଏ ଛାପାଖାନା କିଣିଦିଆଯାଇଥିଲା । ଜିଲ୍ଲା କଂଗ୍ରେସ କର୍ମକର୍ତ୍ତାମାନେ ନିଜ ଅଫିସ ପାଖରେ ସେହି ଛାପାଖାନା ପକାଇ କଂଗ୍ରେସ ପ୍ରଚାରପତ୍ର ପ୍ରଭୃତି ଛପାଛପି ଆରମ୍ଭ କରିଦେଇଥିଲେ । ରାଜ୍ୟର କଂଗ୍ରେସ ଲୋକମାନଙ୍କ ଭିତରେ ଅଭୂତପୂର୍ବ ଉତ୍ସାହ ଦେଖାଦେଲା । ମିଳିତ ମନ୍ତ୍ରିମଣ୍ଡଳର କାର୍ଯ୍ୟକଳାପରେ, ବିଶେଷକରି ଗଣତନ୍ତ୍ର ଦଳର ମନ୍ତ୍ରୀମାନଙ୍କର କଂଗ୍ରେସ ପ୍ରତି ଅସୂୟାପ୍ରବଣ ମନୋଭାବରେ, କଂଗ୍ରେସ ଲୋକେ ଆଗରୁ ଅସନ୍ତୁଷ୍ଟ ଥିଲେ – ତା'ର ସଂପୂର୍ଣ୍ଣ ସୁବିଧା ଶ୍ରୀ ପଟ୍ଟନାୟକ ନେଇଥିଲେ । କଂଗ୍ରେସ ଓ ଗଣତନ୍ତ୍ର ଦଳର ମିଳିତ ମନ୍ତ୍ରିମଣ୍ଡଳରୁ କଂଗ୍ରେସକୁ ଓହରାଇ ଆଣି ମନ୍ତ୍ରିମଣ୍ଡଳର ପତନ ଘଟାଇବା ପାଇଁ ଆଲୋଚନା ଆରମ୍ଭ ହୋଇଯାଇଥିଲା । ତରବରିଆ ଭାବରେ ଏସବୁ କାର୍ଯ୍ୟ ନକରିବାପାଇଁ ମୁଁ ମତ ଦେଇଥିଲି । ସଭାପତିଙ୍କ କଟକ ବାସଭବନ ଆନନ୍ଦ ଭବନଠାରେ ପ୍ରଦେଶ କଂଗ୍ରେସ କମିଟିର ଗୋଟିଏ ବୈଠକ ବସି ଅତି ନିଭୃତରେ ଦୁଇଦିନ ଧରି ଆଲୋଚନା ଚାଲିଥିଲା । ଅଧିକାଂଶ ସଭ୍ୟ ମତ ଦେଇଥିଲେ ଯେ ମିଳିତ ମନ୍ତ୍ରିମଣ୍ଡଳ ବେଶି ଦିନ ରହିଲେ କଂଗ୍ରେସ ପକ୍ଷରେ କ୍ଷତି ଛଡ଼ା କିଛି ଲାଭ ହେବନାହିଁ । ତା'ଛଡ଼ା ମୁଖ୍ୟମନ୍ତ୍ରୀ ମହତାବଙ୍କ ଦୃଷ୍ଟିଭଙ୍ଗୀ ବିଷୟରେ ଆଲୋଚନା କରାଯାଇ ମତ ପ୍ରକାଶ ପାଇଲା ଯେ ତାହା ଦଳପକ୍ଷେ ଆଦୌ ସହାୟକ ନୁହେଁ, ବରଂ କ୍ଷତିକାରକ । ଏ ପରିପ୍ରେକ୍ଷୀରେ ରହିସମ୍ଭାଳି ସତର୍କ ପଦକ୍ଷେପ ନେବାପାଇଁ ମୋର ପରାମର୍ଶ ସେମାନଙ୍କ ପକ୍ଷେ ଆଦୌ ଯୁକ୍ତିଯୁକ୍ତ ମନେ ହୋଇନଥିଲା । ସର୍ବୋପରି ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ହେଲେ ତା'ର ସମସ୍ତ ଦାୟିତ୍ୱ ପୂର୍ଣ୍ଣମାତ୍ରାରେ ବିଜୁବାବୁ ବହନ କରିବାକୁ ଯେତେବେଳେ ଆଗେଇଆସିଲେ ସେ ଅବସ୍ଥାରେ ମିଳିତ ମନ୍ତ୍ରିମଣ୍ଡଳକୁ ତୁରନ୍ତ ଭାଙ୍ଗିବାପାଇଁ ନିଷ୍ପତ୍ତି ନେବାକୁ କେହି ପଛେଇନଥିଲେ । ବର୍ତ୍ତମାନ ଯେପରି ରାଜ୍ୟମାନଙ୍କର ନିର୍ବାଚନ ଚଳାଇବାପାଇଁ ସମସ୍ତ ଖର୍ଚ୍ଚ କଂଗ୍ରେସର କେନ୍ଦ୍ର ଅନୁଷ୍ଠାନ ଓ କେନ୍ଦ୍ର ନେତୃତ୍ୱ ପାଖରୁ ଆସୁଛି ସେତେବେଳେ ସେ ପ୍ରକାର ବ୍ୟବସ୍ଥା ନଥିଲା । ନିଜ ରାଜ୍ୟର ନିର୍ବାଚନ ଖର୍ଚ୍ଚ ପାଇଁ ଟଙ୍କା ଉଠାଇବା ଭାର ଥିଲା ରାଜ୍ୟ କଂଗ୍ରେସ ନେତୃତ୍ୱର । କେତେକ କ୍ଷେତ୍ରରେ ରାଜ୍ୟ କଂଗ୍ରେସ କେନ୍ଦ୍ରୀୟ କଂଗ୍ରେସକୁ ସାହାଯ୍ୟ କରୁଥିଲେ । ବହୁ ଆଲୋଚନା ପରେ କଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳରୁ ଓହରି ଆସିବାପାଇଁ ନିଷ୍ପତ୍ତି ନିଆଯାଇଥିଲା ଏବଂ ତାହା ତୁରନ୍ତ ବିଧାନସଭାର କଂଗ୍ରେସ ଦଳର ସଭାପତି ତଥା ମୁଖ୍ୟମନ୍ତ୍ରୀ ଶ୍ରୀ ମହତାବଙ୍କୁ ଜଣାଇ ଦେବାପାଇଁ ସଭାପତିଙ୍କୁ କ୍ଷମତା ଦିଆଯାଇଥିଲା । ପ୍ରସ୍ତାବଟି କାର୍ଯ୍ୟକାରୀ

କରିବାପାଇଁ ସେହି ସମୟଟି ଉପଯୁକ୍ତ ନଥିଲା ବୋଲି ମୁଁ ମତ ଦେଇଥିଲି । କାରଣ ସେତେବେଳେକୁ ବିଧାନସଭାର ବଜେଟ୍ ଅଧିବେଶନ ରାଜ୍ୟପାଳଙ୍କଦ୍ୱାରା ଆହୂତ ହୋଇସାରିଥିବାରୁ ବଜେଟ୍ ବ୍ୟବସ୍ଥା ଅନୁମୋଦିତ କରିବାରେ କେତେକ ଜଟିଳତା ସୃଷ୍ଟି ହେବା ସ୍ୱାଭାବିକ । ମାତ୍ର ବିଜୁବାବୁ ଦଳର ନିଷ୍ପତ୍ତିକୁ ମୁଖ୍ୟମନ୍ତ୍ରୀଙ୍କୁ ଅବିଳମ୍ବେ ଜଣାଇଦେଇଥିଲେ ।

ଦଳପତି ହିସାବରେ ଶ୍ରୀ ମହତାବ ବିଧାନସଭା କଂଗ୍ରେସ ଦଳର ଗୋଟିଏ ବୈଠକ ତାଙ୍କର ଏକାମ୍ରନିବାସ ବାସଭବନରେ ଡାକିଲେ । ବୈଠକଟି ବେଶ୍ ଗାମ୍ଭୀର୍ଯ୍ୟପୂର୍ଣ୍ଣ ବାତାବରଣ ମଧ୍ୟରେ ଅନୁଷ୍ଠିତ ହେଲା । ମାତ୍ର ବିଜୁବାବୁ ଓ ବୀରେନ୍‌ବାବୁ ପ୍ରଭୃତି ସଭ୍ୟମାନେ ସେଠାକୁ ଯାଇନଥିଲେ । ମୁଁ ସେଠାରେ ଉପସ୍ଥିତ ଥିଲି । ପ୍ରଦେଶ କଂଗ୍ରେସ କମିଟିରେ ମିଳିତ ମନ୍ତ୍ରିମଣ୍ଡଳ ସମ୍ବନ୍ଧରେ ଗୃହୀତ ହୋଇଥିବା ପ୍ରସ୍ତାବ ବିଷୟ ସେଠାରେ ଆଲୋଚନା ହୋଇଥିଲା । ବିଧାନସଭା ବଜେଟ୍ ଅଧିବେଶନ ଆହୂତ ହୋଇଯାଇଥିବାରୁ ପ୍ରସ୍ତାବ ଉପରେ କାର୍ଯ୍ୟାନୁଷ୍ଠାନ କରିବାଦ୍ୱାରା ଯେଉଁ ଅସୁବିଧା ସୃଷ୍ଟି ହେବ ତା'ଉପରେ ଆଲୋଚନା କରାଯାଇଥିଲା । ଏ ସଂପର୍କରେ ନିଖିଳ ଭାରତ କଂଗ୍ରେସ କମିଟିର ସଭାପତିଙ୍କ ପରାମର୍ଶ ଆବଶ୍ୟକ ବୋଲି ଅନୁଭବ କରାଯାଇଥିଲା । ସେତେବେଳେ କଂଗ୍ରେସ ସଭାପତି ଥାଆନ୍ତି ଶ୍ରୀ ସଂଜୀବ ରେଡ୍ଡି । ତାଙ୍କର ସେତେବେଳେ କଲିକତା ଆସିବାର ଥାଏ । ଦଳପତିଙ୍କଠାରୁ ଚିଠି ଓ ରିପୋର୍ଟ ନେଇ କଲିକତା ଯାଇ କଂଗ୍ରେସ ସଭାପତିଙ୍କ ସହିତ ପରାମର୍ଶ କରି ମତାମତ ଆଣିବାର ଦାୟିତ୍ୱ ମୋ ଉପରେ ପଡ଼ିଥିଲା । ବିଧାନସଭା ଅଧିବେଶନ ପରେ ପ୍ରଦେଶ କଂଗ୍ରେସ କମିଟିର ପ୍ରସ୍ତାବ କାର୍ଯ୍ୟକାରୀ କରାଯାଉ ବୋଲି କଂଗ୍ରେସ କମିଟିର କଟକ ବୈଠକରେ ମୁଁ ଯେଉଁ ମତ ଦେଇଥିଲି ସେ କଥା ବୋଧହୁଏ ମହତାବବାବୁ ଜାଣିଥିଲେ । ତେଣୁ ସେ ମୋତେ କଂଗ୍ରେସ ସଭାପତିଙ୍କ ପାଖକୁ ପଠାଇଥିଲେ । ମୁଁ କଲିକତା ଯାଇ କଂଗ୍ରେସ ନେତା ଶ୍ରୀ ଅଶୋକ କୁମାର ଦତ୍ତଙ୍କ ଘରେ କଂଗ୍ରେସ ସଭାପତିଙ୍କୁ ଦେଖାକରିଥିଲି । ବିଧାନସଭାର ବଜେଟ୍ ଅଧିବେଶନକୁ ସୁରୁଖୁରୁରେ ଚଳାଇ ନେଇ ଅନ୍ୟ ପନ୍ଥା ବିଚାର କରିବାପାଇଁ ସେ ପରାମର୍ଶ ଦେଇ ଦଳପତିଙ୍କ ପାଖକୁ ମୋ ହାତରେ ଖଣ୍ଡିଏ ଚିଠି ଦେଇଥିଲେ । ସେତିକିବେଳେ ଶ୍ରୀ ସଂଜୀବ ରେଡ୍ଡି ଓଡ଼ିଶା ବିଷୟରେ ମୋତେ ଅନେକ କଥା ପଚାରିଥିଲେ । ମହତାବବାବୁଙ୍କ କଥା ତ ପଚାରିବା କଥା; ମାତ୍ର ଅନ୍ୟମାନଙ୍କ ମଧ୍ୟରେ ନବବାବୁ ଓ ବିଶ୍ୱନାଥବାବୁଙ୍କ ବିଷୟରେ ପଚାରିଲେ । ଓଡ଼ିଶା ମିଳିତ ମନ୍ତ୍ରିମଣ୍ଡଳ ବିଷୟ ମୋ ସହିତ ଆଲୋଚନା କଲାବେଳେ କଂଗ୍ରେସ ସଭାପତି ଶ୍ରୀ ରେଡ୍ଡି ମୋତେ କହିଥିଲେ, ''ପାର୍ଲିଆମେଣ୍ଟାରୀ ପଦ୍ଧତିରେ ଶାସନରେ ଦୁଇଟି ଦଳର ମିଳିତ ମନ୍ତ୍ରିମଣ୍ଡଳ କାର୍ଯ୍ୟ କଲେ, ସାଧାରଣତଃ ଯେଉଁ ଦଳଟି ବାମପନ୍ଥୀ ଓ ଅଗ୍ରଗାମୀ ଦଳ ଅନ୍ୟ ଦଳଟିକୁ ଗ୍ରାସ କରିଥାଏ । ତୁମ ଓଡ଼ିଶା ମିଳିତ ମନ୍ତ୍ରିମଣ୍ଡଳରେ ସାମନ୍ତବାଦୀ ଦଳ ଗଣତନ୍ତ୍ର ପରିଷଦ ତୁଳନାରେ କଂଗ୍ରେସ ଦଳକୁ ନିଶ୍ଚୟ ଅଧିକ ପ୍ରଗତିଶୀଳ ବିଚାରିବାର କଥା । କିନ୍ତୁ ଗଣତନ୍ତ୍ର ପରିଷଦ ତୁମକୁ ଗ୍ରାସ କରିବେ ବୋଲି ତୁମ୍ଭେମାନେ ଯେ ଆଶଙ୍କା କରୁଛ ଏହା ବିସ୍ମୟର କଥା । ପ୍ରେସ୍‌ରେ ଯାହାସବୁ ବାହାରୁଛି, ବିଜୁ ପଟ୍ଟନାୟକ ତ କହୁଛନ୍ତି ଗଣତନ୍ତ୍ର ପରିଷଦ ତୁମ ଦଳକୁ ଗ୍ରାସ କରିସାରିଲାଣି (They have already devoured you) । କିନ୍ତୁ ପଟ୍ଟନାୟକ ଅନେକ ସମୟରେ ଖୁବ୍ ଅସାବଧାନ ଓ ତୁରୁତୁରିଆ କାମ କରିପକାନ୍ତି, ସେଥିପ୍ରତି ସାବଧାନ ଥିବ (But be very careful, Pattanaik is sometimes very reckless and hasty in his actions)."

କଂଗ୍ରେସ ସଭାପତି ଶ୍ରୀ ସଂଜୀବ ରେଡ୍ଡିଙ୍କଠାରୁ ଚିଠି ଆଣି ମୁଁ ଶ୍ରୀ ମହତାବଙ୍କୁ ଦେଇଥିଲି । କଂଗ୍ରେସ ସଭାପତିଙ୍କର ନିର୍ଦ୍ଦେଶ ଓ ପରାମର୍ଶ ଅନୁସାରେ କାର୍ଯ୍ୟ ହେବ ବୋଲି ସ୍ଥିରହୋଇଥିଲା । ମୁଁ ଏକଥା ମଧ୍ୟ ବିଜୁବାବୁ ଓ ବୀରେନ୍‌ବାବୁ ପ୍ରଭୃତିଙ୍କୁ କହିଥିଲି । ତରବର ଓ ଅବିବେକୀ ଭାବରେ କୌଣସି କାର୍ଯ୍ୟ ନକରିବାକୁ କଂଗ୍ରେସ ସଭାପତି ଯେପରି ଭାବରେ ମୋତେ ସତର୍କ କରାଇଦେଇଥିଲେ

ସେ ବିଷୟ ମୁଁ ସେମାନଙ୍କୁ କହିଥିଲି । ମୋ କଥା ସେମାନଙ୍କ ମନକୁ ପାଇଲାନାହିଁ । ମୁଁ ମନ୍ତ୍ରୀ ଥିବାରୁ ମନ୍ତ୍ରିତ୍ୱ କିପରି ଶୀଘ୍ର ଚାଲିନଯିବ ସେଥିପାଇଁ ମୁଁ କଲିକତା ଯାଇ କଂଗ୍ରେସ ସଭାପତିଙ୍କଠାରୁ ସେ ପ୍ରକାର ପରାମର୍ଶ ନେଇଆସିଛି ବୋଲି ସେମାନେ ଭାବିଲେ । ସେହିଭଳି ମନ୍ତବ୍ୟ ମଧ ପ୍ରକାଶ କଲେ । ମୁଁ ସେମାନଙ୍କ ନିକଟରୁ ଫେରିଲା ପରେ ସେମାନେ କେତେଜଣ ଏକତ୍ରିତ ହୋଇ ଗୋଟିଏ ଗୋପନ ବୈଠକରେ ଆଲୋଚନା କରିଥିଲେ । ମହତାବବାବୁ ଖବର ପାଇଥିଲେ ଯେ ବିଧାନସଭା ବସିବାର ପ୍ରଥମ ଦିନ କେତେକ କଂଗ୍ରେସ ସଭ୍ୟ ଅପ୍ରୀତିକର ଓ ଅବାଞ୍ଛିତ ପରିସ୍ଥିତି ସୃଷ୍ଟି କରିବାପାଇଁ ବଦ୍ଧପରିକର । ତେଣୁ ଏ ପ୍ରକାର ଅସୁନ୍ଦର ପରିସ୍ଥିତିର ସମ୍ମୁଖୀନ ନହେବାପାଇଁ ସେ ଇସ୍ତଫା ଦେବା ପାଇଁ ସ୍ଥିର କରି ଏକପ୍ରକାର ଛାନିଆ ଅବସ୍ଥାରେ ରାଜ୍ୟପାଳଙ୍କ ହାତରେ ତାଙ୍କ ମନ୍ତ୍ରିମଣ୍ଡଳର ଇସ୍ତଫା ପତ୍ର ଦେଇଦେଲେ । ରାଜ୍ୟପାଳ ତାହା ଗ୍ରହଣ କଲେ ବୋଲି ଘୋଷଣା କରିଥିଲେ । ତା'ପରେ ରାଜ୍ୟରେ ରାଷ୍ଟ୍ରପତି ଶାସନ ଜାରି ହୋଇଥିଲା ।

## ୧୯୬୨ ନିର୍ବାଚନ

୧୯୬୨ ମସିହା ଜାନୁୟାରୀ ମାସରେ ଦେଶରେ ସାଧାରଣ ନିର୍ବାଚନ ହେବା କଥା । ୧୯୬୧ ମସିହା ଫେବୃୟାରୀ ମାସରେ ଯେତେବେଳେ ଓଡ଼ିଶା ବିଧାନସଭାକୁ ଭାଙ୍ଗିଦିଆଯାଇଥିଲା, ବିରୋଧୀଦଳମାନେ ଅନୁମାନ କରିଥିଲେ ଯେ ରାଜ୍ୟରେ ନିର୍ବାଚନ ଦଶ ମାସ ପରେ କିମ୍ବା ଗ୍ରୀଷ୍ମକାଳ ପରେ ହେବ । ପ୍ରଧାନମନ୍ତ୍ରୀଙ୍କ ସହିତ ଯେତେବେଳେ ବିଜୁ ପଟ୍ଟନାୟକ ଓଡ଼ିଶାର ନିର୍ବାଚନ ସଂକ୍ରାନ୍ତରେ କଥାବାର୍ତ୍ତା କରନ୍ତି ସେ କୁଆଡ଼େ କହିଥିଲେ ଯେ ନିର୍ବାଚନ ଆମର ପ୍ରସ୍ତୁତି ଉପରେ ନିର୍ଭରକରେ । ଏ କଥାଟି ଆମେ ଗୋପନ ରଖିଥିଲୁ । ପ୍ରଧାନମନ୍ତ୍ରୀ ଶ୍ରୀ ନେହେରୁ କିଛିଦିନପାଇଁ ବିଦେଶ ଗ୍ରସ୍ତରେ ଯାଇଥିଲେ । ମେ' ମାସରେ ନିର୍ବାଚନ ହେବ ବୋଲି ଭାବି ଆମେମାନେ ପ୍ରସ୍ତୁତ ହେବାରେ ଲାଗିଥିଲୁ । ମାର୍ଚ୍ଚ ମାସ ମଧଭାଗରେ ପ୍ରଦେଶ ନିର୍ବାଚନ କମିଟି ଗଠିତ ହେଲା । ପ୍ରଦେଶ ନିର୍ବାଚନ କମିଟିର ସମ୍ପାଦକରୂପେ ବିଜୁବାବୁ ମୋର ନାମ ଘୋଷଣା କଲେ । ସଭାପତି ବିଜୁବାବୁ ଓ ମୋ ସମେତ ବାରଜଣ ସଭ୍ୟଙ୍କୁ ନେଇ ପ୍ରଦେଶ ନିର୍ବାଚନ କମିଟି ଗଢ଼ାଗଲା । ସର୍ବଶ୍ରୀ ହରେକୃଷ୍ଣ ମହତାବ, ବିଶ୍ୱନାଥ ଦାସ, ନିତ୍ୟାନନ୍ଦ କାନୁନ୍‌ଗୋ, ସୁରେନ୍ଦ୍ର ନାଥ ପଟ୍ଟନାୟକ, ବୀରେନ୍ ମିତ୍ର ଓ ପବିତ୍ର ମୋହନ ପ୍ରଧାନ ପ୍ରଭୃତି ସେଥିରେ ସଭ୍ୟ ଥିଲେ । ମହତାବବାବୁ ନିର୍ବାଚନ କମିଟି ବୈଠକରେ ଯୋଗଦେଉନଥିଲେ କି ସହଯୋଗ କରୁନଥିଲେ, ବରଂ ନିର୍ବାଚନରେ କଂଗ୍ରେସ କଦାପି ସଂଖ୍ୟାଗରିଷ୍ଠ ହୋଇପାରିବ ନାହିଁ ବୋଲି ପ୍ରଜାତନ୍ତ୍ର କାଗଜ ଜରିଆରେ ପ୍ରଚାର ଆରମ୍ଭ କରିଦେଇଥିଲେ । ପ୍ରଧାନମନ୍ତ୍ରୀ ବିଦେଶ ଗସ୍ତରୁ ଯେଉଁଦିନ ଫେରିଲେ ଦିଲ୍ଲୀ ବିମାନବନ୍ଦରଠାରେ ବିଜୁ ପଟ୍ଟନାୟକ ତାଙ୍କୁ ଦେଖାକରି ଓଡ଼ିଶାରେ ଶୀଘ୍ର ମଧବର୍ତ୍ତୀକାଳୀନ ନିର୍ବାଚନ ହେବା ଆବଶ୍ୟକ ବୋଲି ଜଣାଇଥିଲେ । ତାହା ଶୁଣି ପଣ୍ଡିତ ନେହେରୁ କହିଥିଲେ, ''ଓଡ଼ିଶା ପାଇଁ ଯଦି ଏଇଟା ସୁବିଧାଜନକ, ମୋ ଆଡୁ ଅସୁବିଧା ନାହିଁ । ଆଚ୍ଛା ସବୁ ଠିକ୍‌ଠାକ୍ କର ।'' ତା' ପରେ ଜୁନ୍ ମାସରେ ମଧବର୍ତ୍ତୀକାଳୀନ ନିର୍ବାଚନ ହେବ ବୋଲି ନିର୍ବାଚନ କମିଶନଙ୍କର ଘୋଷଣା ପ୍ରକାଶପାଇଥିଲା । ଏପ୍ରିଲ୍ ମାସ ଦ୍ୱିତୀୟ ସପ୍ତାହରେ ପ୍ରଦେଶ ନିର୍ବାଚନ କମିଟି ବସି ୧୪୦ ଜଣ କଂଗ୍ରେସପ୍ରାର୍ଥୀ ମନୋନୟନ ବିଷୟରେ ଚୂଡ଼ାନ୍ତ ନିଷ୍ପତ୍ତି ନେଇଥିଲେ । କେନ୍ଦ୍ର ପାର୍ଲିଆମେଣ୍ଟାରୀ ବୋର୍ଡ଼ର ପ୍ରତିନିଧି ଭାବରେ ଶ୍ରୀ ଅତୁଲ୍ୟ ଘୋଷ, ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ସେନ ଓ ଶ୍ରୀ ବିଜୟ ସଂହ ନାହାର ପ୍ରଦେଶ ନିର୍ବାଚନ କମିଟି ବୈଠକରେ ଯୋଗଦେଇଥିଲେ । ସେମାନଙ୍କ ସମ୍ମୁଖରେ ପ୍ରାର୍ଥୀ ମନୋନୟନ କରାଯାଇଥିଲା । ଶ୍ରୀ ବିଶ୍ୱନାଥ ଦାସ ରାଜ୍ୟ ବିଧାନସଭାପାଇଁ ପ୍ରାର୍ଥୀ ହୋଇଥିଲେ; ମାତ୍ର ଶ୍ରୀ ହରେକୃଷ୍ଣ ମହତାବ ପ୍ରାର୍ଥୀ ହେବାପାଇଁ ରାଜି ହୋଇନଥିଲେ । ପ୍ରାର୍ଥୀ ମନୋନୟନ କାର୍ଯ୍ୟ ସୁରୁଖୁରୁରେ ଶେଷହୋଇଥିଲା ଓ ନିର୍ବାଚନ

ପରିଚାଳନାର ଦାୟିତ୍ୱ ବିଜୁ ପଟ୍ଟନାୟକଙ୍କ ଉପରେ ଥିଲା । ଅପ୍ରେଲ ମାସ ଶେଷବେଳକୁ କଂଗ୍ରେସ ପ୍ରାର୍ଥୀମାନଙ୍କର ନିର୍ବାଚନ ପ୍ରଚାରପାଇଁ ୧୪୦ଟି ନୂଆ ଜିପ୍ ଆସି କଟକରେ ପହଞ୍ଚିଥିଲା । ଓଡ଼ିଶାରେ ପ୍ରଥମ ଥରପାଇଁ ପ୍ରାର୍ଥୀ ପତ୍ର ଦାଖଲ କରିବା ପୂର୍ବରୁ କଂଗ୍ରେସ ପ୍ରାର୍ଥୀମାନେ ଗୋଟିଏ ଗୋଟିଏ ନୂଆ ଜିପ୍ ନିର୍ବାଚନ କାର୍ଯ୍ୟ ଆରମ୍ଭ କରିବାପାଇଁ ପାଇଯାଇଥିଲେ ।

ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ପ୍ରାର୍ଥୀ ହେବାପାଇଁ ମୁଁ ମହତାବବାବୁଙ୍କୁ ଅନୁରୋଧ କରିଥିଲି; ମାତ୍ର ସେ ରାଜି ହୋଇନଥିଲେ । ସେ କଂଗ୍ରେସପ୍ରାର୍ଥୀ ହୋଇ ବିଧାନସଭାକୁ ଆସିଥିଲେ ହୁଏତ ପୁଣି ମୁଖ୍ୟମନ୍ତ୍ରୀ ହୋଇପାରିଥାନ୍ତେ, କାରଣ ଶ୍ରୀ ବିଜୁ ପଟ୍ଟନାୟକଙ୍କର ସ୍ୱଭାବ ହେଉଛି ଜଣେ ଉତ୍ସାହଦାତା ତଥା ପ୍ରଥମ ପ୍ରବର୍ତ୍ତକ ଭଳିଆ । ସେ ଗୋଟିଏ କାର୍ଯ୍ୟ କରିବାପାଇଁ ଖୁବ୍ ଉତ୍ସାହ ପ୍ରଦର୍ଶନ କରନ୍ତି; ମାତ୍ର କାର୍ଯ୍ୟଟି ଚାଲୁହୋଇଯିବା ପରେ ତାଙ୍କର ମନ ଆଉ ସେଥିରେ ରହେନାହିଁ । ଗୋଟିଏ କୌଣସି ବଡ଼ କାର୍ଯ୍ୟ କରିବାପାଇଁ ବା ଶିଳ୍ପ ପ୍ରତିଷ୍ଠାରେ କମ୍ପାନୀର ପ୍ରଥମ ପ୍ରବର୍ତ୍ତକ ହେବାପାଇଁ ସାହସ ତାଙ୍କର ଊଣାନଥାଏ, ମାତ୍ର ଶିଳ୍ପଟି ପ୍ରତିଷ୍ଠିତ ହେବା ପରେ ସେ ସେଥିରୁ ଓହରିଯାଆନ୍ତି । କଟକ ସହର ନିକଟବର୍ତ୍ତୀ ମହାନଦୀର ଅପର ପାର୍ଶ୍ୱରେ ଅବସ୍ଥିତ ଚୌଦ୍ୱାର ଶିଳ୍ପାଞ୍ଚଳଟି ଦିନେ ଅତି ଉପେକ୍ଷିତ ଅନୁନ୍ନତ ଜଙ୍ଗଲଭୂଇଁ ଥିଲା । ଆଜି ଚୌଦ୍ୱାର ଅଞ୍ଚଳରେ ଯେଉଁ ବିରାଟ ଶିଳ୍ପନଗରୀ ଗଢ଼ିଉଠିଛି ସେଥିପାଇଁ ବିଜୁ ପଟ୍ଟନାୟକଙ୍କର ଦାନ ଅବିସ୍ମରଣୀୟ । ଓଡ଼ିଶା ଟେକ୍ସଟାଇଲ୍ ମିଲ୍‌ର ପ୍ରବର୍ତ୍ତକ ହେଉଛନ୍ତି ବିଜୁ ପଟ୍ଟନାୟକ; କିନ୍ତୁ ସେ ମିଲ୍ ଯେତେବେଳେ ଭାରତରେ ଗୋଟିଏ ବୃହତ୍ ଲୁଗା କଳ ରୂପେ ଖ୍ୟାତି ଅର୍ଜନ କଲା, ତା'ପରେ ସେଠାରେ ଆଉ ବିଜୁ ପଟ୍ଟନାୟକ ନାହାନ୍ତି । କଳିଙ୍ଗ ଟ୍ୟୁବ୍‌ସର ସେ ପ୍ରବର୍ତ୍ତକ ଓ ପ୍ରତିଷ୍ଠାତା, ତାକୁ ବି ସେ ଉପେକ୍ଷା କରିଛନ୍ତି । ଏଭଳି ଅନେକ ଶିଳ୍ପର ପରିକଳ୍ପନା ଓ ପ୍ରତିଷ୍ଠାର ସୁଖ୍ୟାତି ତାଙ୍କର ଅଛି; କିନ୍ତୁ କେଉଁଠାରେ ଆଉ ସେ ନାହାନ୍ତି । କଂଗ୍ରେସକୁ ସଂଖ୍ୟାଗରିଷ୍ଠ କରାଇ ମୁଖ୍ୟମନ୍ତ୍ରୀ ହେଲେ, ମାତ୍ର ଦୁଇ ବର୍ଷ ପରେ ସେ ସ୍ଥାନରୁ ଆପେ ଆପେ ଅପସରି ଗଲେ । ଶ୍ରୀ ମହତାବ କହିବାର ଶୁଣାଯାଏ, ବିଜୟକୁ ସେ ମଣିଷ କରିଛନ୍ତି । ବିଜୟର ଏ ପ୍ରକାର ସ୍ୱଭାବ ଯଦି ସେ ବୁଝିପାରିଥା'ନ୍ତେ ତା' ହେଲେ ତାଙ୍କର କ୍ରୋଧର କାରଣ କିଛି ନଥାନ୍ତା । ମାତ୍ର ସେକଥା ସେ ବୁଝିଲେ ନାହିଁ କି ନିର୍ବାଚନରେ ଛିଡ଼ା ହେଲେନାହିଁ; ପରନ୍ତୁ ସବୁ ପ୍ରକାର ଉଦ୍ୟମ କଲେ ଆମ୍ଭମାନଙ୍କୁ ନିର୍ବାଚନରେ ହରାଇ ଆତ୍ମସନ୍ତୋଷ ଲାଭ କରିବାପାଇଁ । ବାଲେଶ୍ୱର ଜିଲ୍ଲାରେ କେବଳ ଧାମନଗର ନିର୍ବାଚନମଣ୍ଡଳୀର କଂଗ୍ରେସ ପ୍ରାର୍ଥୀ ଶ୍ରୀ ମୁରଲୀଧର ଜେନାଙ୍କ ବ୍ୟତୀତ ଆଉ ସବୁ କଂଗ୍ରେସ ପ୍ରାର୍ଥୀମାନଙ୍କୁ ହରାଇବାପାଇଁ ସେ ଉଦ୍ୟମ କରିଥିଲେ । ଭଦ୍ରକର ସ୍ୱାଧୀନପ୍ରାର୍ଥୀ ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କୁ ସାହାଯ୍ୟ କରି ନିଜର ୧୯୨୧ ମସିହାର ସହକର୍ମୀ ମହମ୍ମଦ ହନିଫ୍‌ଙ୍କୁ ମଧ୍ୟ ହରାଇବା ଉଦ୍ୟମରୁ ସେ ବିରତ ହୋଇନଥିଲେ । ମୋର ନିର୍ବାଚନମଣ୍ଡଳୀରେ ସ୍ୱାଧୀନପ୍ରାର୍ଥୀ ଶ୍ରୀ ଚକ୍ରଧର ବେହେରାଙ୍କୁ ସେ ସାହାଯ୍ୟ କରିଥିଲେ । ଗୋଟିଏ ପୂର୍ବ ପରିକଳ୍ପିତ ଚତୁର ଯୋଜନା ଅନୁସାରେ ସେ ଆମ୍ଭମାନଙ୍କ ବିରୁଦ୍ଧରେ କାର୍ଯ୍ୟ କରିବାରେ ଲାଗିଥିଲେ । ଶ୍ରୀ ଗୋପୀନାଥ ଦାସ ହେଉଛନ୍ତି ମହତାବବାବୁଙ୍କର ସାନ ଭାଇ । ଆମ୍ଭମାନଙ୍କ ନିର୍ବାଚନମଣ୍ଡଳୀରେ ଥିବା ସ୍କୁଲ୍ କର୍ତ୍ତୃପକ୍ଷଙ୍କ ସହିତ ଗୋପୀନାଥବାବୁ ସଂପର୍କ ସ୍ଥାପନ କରି ମହତାବଙ୍କ ସଭାପତିତ୍ୱରେ ସ୍କୁଲ୍‌ମାନଙ୍କରେ ପୁରସ୍କାର ବିତରଣୀ ସଭା ଭଳି ଅନୁଷ୍ଠାନମାନ ଆୟୋଜନରେ ଲାଗିଯାଇଥିଲେ । ହନିଫ୍‌ବାବୁ ଓ ମୁଁ ସ୍ଥିର କଲୁ ଯେ ମହତାବ ବାବୁ ଯେଉଁଠାକୁ ଯାଉଛନ୍ତି ଆମେ ତାଙ୍କ ସାଙ୍ଗରେ ଯିବାପାଇଁ ବାହାରିବୁ । ସେ ଭଦ୍ରକ ଡାକବଙ୍ଗଳାରେ ପହଞ୍ଚିଲେ ଆମେ ଦୁଇଜଣ ମଧ୍ୟ ସେଠାରେ ଯାଇ ପହଞ୍ଚିଯାଉ । ସେ ତ ଆମ କଂଗ୍ରେସ ଦଳର ଜଣେ ନେତା ଥାଆନ୍ତି, ତେଣୁ ଆମକୁ ସାଙ୍ଗରେ ଯିବାପାଇଁ ମନା କରିପାରନ୍ତିନାହିଁ । ଏହିପରି ଅନେକ ସ୍କୁଲ୍‌ର ପୁରସ୍କାର ବିତରଣୀ ସଭାକୁ ତାଙ୍କ ସହିତ ଆମେ ଦୁଇଜଣ ଯାଇଥିଲୁ । ଆଜି ଗୋଟିଏ ପୁରସ୍କାର ବିତରଣୀ ସଭାରେ ଯୋଗଦେବାର ସୁଯୋଗକୁ ତାଙ୍କ ଭାଷଣ ମାଧ୍ୟମରେ

ଯଦି ଦ୍ୱାଦଶ ବୋଲି କହିଛନ୍ତି, ତା'ପର ସଭାରେ ସେଇଟା ତାଙ୍କର ବିଂଶତମ ସୁଯୋଗ ବୋଲି କହୁଥିଲେ । ହନିଫ୍‌ବାବୁ ଓ ମୋ ନିର୍ବାଚନମଣ୍ଡଳୀର କେତେକ ପୁରସ୍କାର ବିତରଣୀ ସଭାରେ ସେ ଏହିପରି ଭାବରେ ଯୋଗଦେଇଥିଲେ । ବାଲେଶ୍ୱର ଜିଲ୍ଲାର ସେତେବେଳକାର ଜଣେ ଲୋକସମ୍ପର୍କ ଅଫିସର ଶ୍ରୀ ବିଷ୍ଣୁମୋହନ ମହାପାତ୍ର ମୋତେ କହିଥିଲେ ଯେ ମହତାବବାବୁ ଯେଉଁ ଆଡ଼େ ଯାଉଛନ୍ତି ରାସ୍ତାର ଦୁଇ ପାଖେ ତିନି ମାଇଲବ୍ୟାପୀ ଅଞ୍ଚଳର ବାୟୁମଣ୍ଡଳକୁ କଂଗ୍ରେସ ବିରୁଦ୍ଧରେ ବିଷାକ୍ତ କରିଦେଇ ଯାଉଛନ୍ତି । ମୁଁ ତାଙ୍କୁ ପଚାରିଲି, ''ସେ ତ ସବୁ ରାସ୍ତାରେ ବୁଲିଲେଣି, ଆଉ ଆମ ପାଇଁ ବାକି ରହିଲା କେଉଁ ଅଞ୍ଚଳ ?'' ଥରେ ମହତାବବାବୁ ମୋ ନିର୍ବାଚନମଣ୍ଡଳୀର ବାରାପୁର ସ୍କୁଲ୍‌ର ପୁରସ୍କାର ବିତରଣୀ ସଭାକୁ ଯାଇଥିଲେ । ମୁଁ ମଧ୍ୟ ତାଙ୍କ ସଙ୍ଗରେ ଯାଇଥିଲି । ଫେରିଲାବେଳକୁ ଇରମ୍ ପାଢ଼ୀଙ୍କ ଘରେ ରାତ୍ରିଭୋଜନର ବ୍ୟବସ୍ଥା ହୋଇଥିଲା । ମୁଁ ଯେତେବେଳେ ତାଙ୍କ ସଙ୍ଗରେ ଗଲି ମୋତେ ଉକ୍ତ ରାତ୍ରିଭୋଜନରେ ଯୋଗ ଦେବାକୁ ଉଦ୍ୟୋକ୍ତାମାନେ ଡାକିବାକୁ ବାଧ୍ୟ ହୋଇଥିଲେ । ଖାଇବା ପୂର୍ବରୁ ଗୋଟିଏ ସ୍ଥାନରେ ସମସ୍ତେ ବସିଛୁ, 'ଏକ' ଯିବା ବାହାନାରେ ମହତାବବାବୁ ସେଠାରୁ ଉଠି ଚାଲିଗଲେ । ପ୍ରାୟ ଅଧଘଣ୍ଟାକରୁ ଅଧିକ ସମୟ ଅତିବାହିତ ହେଲେ ମଧ୍ୟ ସେ ଆଉ ବସିବା ସ୍ଥାନକୁ ଫେରିଲେ ନାହିଁ । ପରେ ଜଣାଗଲା ଯେ ଗୋଟିଏ ଘରେ କବାଟକିଳି ଇରମ୍ ଜମିଦାରଙ୍କ ପୁଅ ଶ୍ରୀ ରତିକାନ୍ତ ପାଢ଼ୀଙ୍କ ସହିତ ସେ କ'ଣ ଆଲୋଚନା କରୁଛନ୍ତି । ସେହିଠାରେ ମହତାବବାବୁ ରତିକାନ୍ତବାବୁଙ୍କୁ ମୋ ବିରୁଦ୍ଧରେ ନିର୍ବାଚନରେ ଜଣେ ସ୍ୱାଧୀନ ପ୍ରାର୍ଥୀ ଭାବରେ ଛିଡ଼ା ହେବାପାଇଁ ପ୍ରବର୍ତ୍ତାଇଥିଲେ ବୋଲି ପରେ ଜଣାପଡ଼ିଲା ଏବଂ ଦେଖାଗଲା ଯେ ରତିକାନ୍ତବାବୁ ନିର୍ବାଚନରେ ମୋ ବିରୁଦ୍ଧରେ ଲଢ଼ିଥିଲେ । ରତିକାନ୍ତବାବୁ ନିର୍ବାଚନରେ ଜିତିବା ମହତାବବାବୁଙ୍କର ପ୍ରକୃତ ଉଦ୍ଦେଶ୍ୟ ନଥିଲା । ଇରମ୍ ପ୍ରଭୃତି ନଈ ଘେରି ଅଞ୍ଚଳରୁ ମୁଁ ସବୁବେଳେ ଅଧିକ ଭୋଟ ପାଇଥାଏ । ତେଣୁ ରତିକାନ୍ତବାବୁ ସେହି ଅଞ୍ଚଳରୁ ଛିଡ଼ା ହୋଇଗଲେ ଯଦି ସ୍ଥାନୀୟ ଲୋକ ହିସାବରେ ଅନ୍ତତଃ ମୋର କିଛି ଭୋଟ କମାଇ ଦେଇପାରନ୍ତି, ତା'ହେଲେ ଚକ୍ରଧରବାବୁ ଜିତିବାପାଇଁ ତାହା ସାହାଯ୍ୟ କରିବ ଏହାହିଁ ଥିଲା ମସୁଧା । ଏକଥା ରତିକାନ୍ତବାବୁ ବୁଝିନପାରି ଶ୍ରୀ ମହତାବଙ୍କ ଫନ୍ଦିରେ ପଡ଼ିଗଲେ ବୋଲି ଲୋକେ ବିଚାର କଲେ । ଏ ସମ୍ବନ୍ଧରେ ଆଉ ଗୋଟିଏ ମଜା ଘଟଣା ମୋର ମନେପଡ଼େ । ମୋ ନିର୍ବାଚନମଣ୍ଡଳୀରେ ବିରସ ବୋଲି ଗୋଟିଏ ଗ୍ରାମ ଅଛି । ସେଠାକାର ସ୍କୁଲ୍‌ରେ ପୁରସ୍କାର ବିତରଣୀ ସଭା ତାଙ୍କ ସଭାପତିତ୍ୱରେ ହେବାର ଆୟୋଜନ ହୋଇଛି ବୋଲି ମହତାବବାବୁ ବିରସ ଯିବାକୁ ବାହାରିଲେ । ମୁଁ ଓ ହନିଫ୍‌ବାବୁ ତାଙ୍କ ସଙ୍ଗରେ ବାହାରିଲୁ । ବିରସ ହେଉଛି ଭଦ୍ରକଠାରୁ ପ୍ରାୟ ପଚିଶ ମାଇଲ ଦୂର । ଗାଡ଼ିରେ ଯିବା ସମୟରେ ବାଟରେ ବାସୁଦେବପୁର ବଜାର ଉପରେ ସେଠାକାର ସରପଞ୍ଚ ଶ୍ରୀ କୃଷ୍ଣ ପଣ୍ଡା ଛିଡ଼ା ହୋଇଥିବାର ଦେଖିଲି । ଶ୍ରୀ କୃଷ୍ଣ ପଣ୍ଡା ଥିଲେ ବିରସ ସ୍କୁଲ୍ କମିଟିର ସଭାପତି । ପୁରସ୍କାର ବିତରଣୀ ସଭାର ଆୟୋଜନ ସମ୍ବନ୍ଧରେ ମୋର ସନ୍ଦେହ ହେଉଛି ବୋଲି ମୁଁ ମହତାବଙ୍କୁ କହିଲି ଏବଂ ସ୍କୁଲ୍‌ର ସଭାପତିଙ୍କୁ ବାସୁଦେବପୁର ବଜାରରେ ଛିଡ଼ା ହୋଇଥିବାର ଦେଖିଲି ବୋଲି କହିଥିଲି; ମାତ୍ର ସେ କହିଲେ, ''ତୁମେ କିଛି ଜାଣନାହିଁ. ସବୁ ବନ୍ଦୋବସ୍ତ ହୋଇଛି ବୋଲି ମୁଁ ଆଜି ସକାଳେ ମଧ୍ୟ ଖବର ପାଇଛି ।'' ଗୋପୀନାଥ ବାବୁ ମଧ୍ୟ ସେଥିରେ ହଁ ମାରିଲେ । ପଚିଶ ମାଇଲ୍ ବାଟ ଅତିକ୍ରମ କରି ଆମ୍ଭେମାନେ ବିରସରେ ପହଞ୍ଚିଲୁ । ସେଠାକାର ସ୍କୁଲ୍ ପ୍ରାଙ୍ଗଣରେ ଗୋଟିଏ କୁଆ ମଧ୍ୟ ଉଡୁନଥିବାର ଦେଖିଲୁ । ମହତାବବାବୁ ବଡ଼ ଅପ୍ରସ୍ତୁତ ହୋଇଗଲେ ଏବଂ କହିଲେ, ''ଯାହାହେଉ ଗୋଟିଏ ନୂଆ ଅଞ୍ଚଳ ଦେଖାହୋଇଗଲା ।'' ଏକଥା ଶୁଣି ହନିଫ୍‌ବାବୁ ହସିଦେଲେ । ମହତାବବାବୁ ବଡ଼ ଗମ୍ଭୀର ହୋଇ ଭଦ୍ରକ ଫେରିଲେ । ବାଟରେ କାହା ସାଙ୍ଗରେ ପଦେହେଲେ କଥା କହିନଥିଲେ ।

## 'ଘବ୍‌ରାଓ ମତ୍ - ତେଜ୍‌ସେ କହୋ'

୧୯୬୧ ମସିହାରେ ଓଡ଼ିଶାର ଏହି ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ସମୟରେ କଂଗ୍ରେସ ତରଫରୁ ପ୍ରଚାରପାଇଁ ପଣ୍ଡିତ ଜବାହରଲାଲ ନେହେରୁ ରେଳଯୋଗେ ଗୋଟିଏ ସ୍ୱତନ୍ତ୍ର ବଗିରେ ବାଲେଶ୍ୱର ଆସିଥିଲେ । ବାଲେଶ୍ୱର ସହରରେ ଗୋଟିଏ ବିରାଟ ସଭା ହୋଇଥିଲା । ବାଲେଶ୍ୱରରୁ ସେ ଭଦ୍ରକ ଆସିଥିଲେ । ଭଦ୍ରକରେ ଗୋଟିଏ ବିରାଟ ଜନସଭାରେ ଶ୍ରୀ ନେହେରୁ ଭାଷଣ ଦେଇଥିଲେ । ତାଙ୍କ ଭାଷଣ ପରେ ମୁଁ ଜନସାଧାରଣଙ୍କ ତରଫରୁ ତାଙ୍କୁ ଧନ୍ୟବାଦ ଦେବାପାଇଁ ଛିଡ଼ାହୋଇ ତରବରରେ ଦୁଇ ଚାରି ପଦ କହି ମୋର ବକ୍ତବ୍ୟ ଶେଷ କଲାବେଳେ ପଣ୍ଡିତଜୀ ହଠାତ୍ ଉଠିପଡ଼ି ପଛଆଡୁ ମୋର ଦୁଇ କାନ୍ଧରେ ହାତ ରଖି କହିଲେ, ''ଘବରାଓ ମତ୍, ତେଜ୍ ସେ କହୋ ।'' ସେ କଥା ଲକ୍ଷ୍ୟ କରି ଜନତାଙ୍କ ମଧ୍ୟରେ ବିପୁଳ ହର୍ଷଧ୍ୱନି ଓ କରତାଳି ହୋଇଥିଲା ।

୧୯୬୧ ମସିହା ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ କଂଗ୍ରେସର ଆଶାତୀତ ବିଜୟ ସାରା ଭାରତ ବର୍ଷରେ ଚମକ ସୃଷ୍ଟିକରିଥିଲା । ସେତେବେଳର ବିଧାନସଭାର ମୋଟ ୧୪୦ଟି ଆସନ ମଧ୍ୟରୁ କଂଗ୍ରେସ ୮୨ଟି ଆସନ ଦଖଲ କରି ବିଧାନସଭାରେ ନିରଙ୍କୁଶ ସଂଖ୍ୟାଗରିଷ୍ଠ ଦଳ ରୂପେ ବିବେଚିତ ହୋଇଥିଲା । ସ୍ୱାଧୀନତା ପରେ ସେପର୍ଯ୍ୟନ୍ତ ଓଡ଼ିଶାରେ କଂଗ୍ରେସ ବିଧାନସଭାରେ ଏକାକୀ ସଂପୂର୍ଣ୍ଣ ସଂଖ୍ୟାଗରିଷ୍ଠ ଦଳ ହେବାର ସୁଯୋଗ ପାଇନଥିଲା । ଏହି ନିର୍ବାଚନର ଫଳାଫଳ ଘୋଷଣା ପରେ ଶ୍ରୀ ବିଜୁ ପଟ୍ଟନାୟକଙ୍କର ଖ୍ୟାତି ସାରା ଦେଶରେ ବୃଦ୍ଧିପାଇଥିଲା । ଓଡ଼ିଶାର ଏହି ମଧ୍ୟବର୍ତ୍ତୀକାଳୀନ ନିର୍ବାଚନର ଫଳାଫଳ ସମ୍ବନ୍ଧରେ ୧୯୬୧ ମସିହା ଜୁନ୍ ମାସ ବାର ତାରିଖରେ ଦିଲ୍ଲୀରୁ ପ୍ରକାଶିତ 'ହିନ୍ଦୁସ୍ଥାନ ଟାଇମ୍‌ସ' ଖବରକାଗଜ ତା'ର ସଂପାଦକୀୟ ମନ୍ତବ୍ୟରେ ଶ୍ରୀ ବିଜୁବାବୁଙ୍କ ନେତୃତ୍ୱର ପ୍ରଶଂସା ଏବଂ ମହତାବବାବୁ ଓ ତାଙ୍କ ସମର୍ଥକମାନଙ୍କ ଭଗାରୀ-ଭାଇ ତୁଲ୍ୟ ଭୂମିକା ସମ୍ବନ୍ଧରେ ସମାଲୋଚନା କରି ଲେଖିଥିଲେ, "The decision to go to the polls in Orissa without waiting for the general election has been justified by the result x x x x though there were signs lately that the situtation was becoming a little more fluid. It was not easy to forecast a decisive showing of opinion one way or the other. The Congress, in addition, entered the contest with the disadvantage of a serious fissure in its own ranks. Dr. Mahtab who had for so long dominated the organisation remained aloof and critical. Many of those in sympathy with his stand or resentful of the new leadership, offered themselves as independent candidates. The voters thus did not have the clear choice of alternatives, which is necessary ordinarily for arriving at an unambiguous verdict. That the Congress has nevertheless won such a verdict is due mainly to the organizing capacity and drive of its new leader, Mr. Bijayananda Pattanaik."

ନିର୍ବାଚନ ଫଳାଫଳ ଘୋଷଣା ହେବା ପରେ କଟକ ଆନନ୍ଦଭବନଠାରେ ନିର୍ବାଚିତ କଂଗ୍ରେସ ବ୍ୟବସ୍ଥାପକମାନଙ୍କର ଗୋଟିଏ ବୈଠକ ବସି ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ଦଳର ନେତା ନିର୍ବାଚିତ କରାଗଲା । ପ୍ରଦେଶ କଂଗ୍ରେସର ସାଧାରଣ ସଂପାଦକ ହିସାବରେ ବିଜୁବାବୁ ଆମର ଦଳପତି ରୂପେ ନିର୍ବାଚିତ ହେବା ବିଷୟ ନିୟମାନୁସାରେ ମୁଁ ରାଜ୍ୟପାଳଙ୍କୁ ଜଣାଇଦେଇଥିଲି । ରାଜ୍ୟପାଳ ଶ୍ରୀ ସୁକ୍‌ଠଣକରଙ୍କର ଆମନ୍ତ୍ରଣକ୍ରମେ ବିଜୁବାବୁ ତାଙ୍କ ନେତୃତ୍ୱରେ ଓଡ଼ିଶାର ନୂତନ ମନ୍ତ୍ରିମଣ୍ଡଳ ଗଠନ କଲେ । ମୁଁ ତାଙ୍କ ମନ୍ତ୍ରିମଣ୍ଡଳରେ ସ୍ୱରାଷ୍ଟ୍ର, ଯୋଗାଣ, ବାଣିଜ୍ୟ ଓ ଶ୍ରମ ବିଭାଗର ମନ୍ତ୍ରୀରୂପେ ଶପଥ ନେଇଥିଲି । ସର୍ବଶ୍ରୀ ବୀରେନ୍ ମିତ୍ର, ସଦାଶିବ ତ୍ରିପାଠୀ, ପବିତ୍ରମୋହନ ପ୍ରଧାନ, ଡକ୍ଟର ଜଗନ୍ନାଥ

ରାଓ ଓ ଶ୍ରୀ ହରିହର ସିଂ ମର୍ଦ୍ଦରାଜ କ୍ୟାବିନେଟ୍ ପାହ୍ୟାରେ ଏବଂ ସର୍ବଶ୍ରୀ ବୃନ୍ଦାବନ ନାୟକ, ଟି. ସାଙ୍ଗାନ୍ନା, ପ୍ରହ୍ଲାଦ ମଲ୍ଲିକ, ବୀର ବିକ୍ରମାଦିତ୍ୟ ବରିହା, ସନ୍ତୋଷ କୁମାର ସାହୁ, ଚନ୍ଦ୍ରମୋହନ ସିଂ, ଚିତ୍ତରଞ୍ଜନ ନାୟକ ଓ ଶ୍ରୀମତୀ ସରସ୍ୱତୀ ପ୍ରଧାନ ଉପମନ୍ତ୍ରୀରୂପେ ମନ୍ତ୍ରିପରିଷଦରେ ଯୋଗ ଦେଇଥିଲେ । ଶ୍ରୀ ବୃନ୍ଦାବନ ନାୟକ ଠିକ୍ ଏହା ପୂର୍ବ ମନ୍ତ୍ରିମଣ୍ଡଳରେ ଜଣେ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀ ଥିଲେ । ବିଜୁ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳରେ ଜଣେ ଉପମନ୍ତ୍ରୀ ହେବାର ସମ୍ମତି ଦେଇ ରାଜ୍ୟର ପ୍ରଶାସନିକ କ୍ଷେତ୍ରରେ ସେ ଏକ ଇତିହାସ ସୃଷ୍ଟି କରିଥିଲେ । ତାଙ୍କର 'ମନ୍ତ୍ରୀ ପାଇଟି' ପାଇବା ଲାଳସାର ତୃପ୍ତି ପାଇଁ ସେ ଏହିଭଳି ଅପ୍ରାସଙ୍ଗିକ ଆଚରଣ କରିପାରୁଥିବା ଲୋକମୁଖରେ ଆଲୋଚିତ ହେଉଥିଲା । ରାଜନୈତିକ ଦଳର ଭବିଷ୍ୟତ ଆଶା ଦେଖି ସେ ତାଙ୍କର ଅନୁରକ୍ତି ନିର୍ଦ୍ଧାରଣ କରିଥା'ନ୍ତି । ମାତ୍ର ସମୟ ସମୟରେ ତାଙ୍କର ଗଣନା ଭୁଲ୍ ହୋଇଯିବାର ଦେଖାଯାଇଛି ।

## ପଞ୍ଚାୟତ ଶିଳ୍ପ ଓ ଗରିବୀ ହଟାଓ କାର୍ଯ୍ୟକ୍ରମ

ଶ୍ରୀ ବିଜୁ ପଟ୍ଟନାୟକ ଜଣେ ଉତ୍ସାହୀ, ସାହସୀ ଓ ପ୍ରଗତିଶୀଳ ନେତା ହିସାବରେ ପରିଚିତ ଥିଲେ । ଶିଳ୍ପ ପ୍ରସାରରେ ତାଙ୍କର ଜ୍ଞାନ ଓ ଅଭିଜ୍ଞତା ଯଥେଷ୍ଟ ଥିଲା । ତେଣୁ ମୁଖ୍ୟମନ୍ତ୍ରୀ ହିସାବରେ ଓଡ଼ିଶାରେ ଶିଳ୍ପ ପ୍ରସାର ଓ ବାଣିଜ୍ୟ ବ୍ୟବସାୟର ଅଗ୍ରଗତିପାଇଁ ସେ ବିଶେଷ ଦୃଷ୍ଟି ଦେଇଥିଲେ । ତାଙ୍କରି ଚିନ୍ତାଧାରା ଅନୁସାରେ ରାଜ୍ୟରେ ଦ୍ରୁତ ଶିଳ୍ପ ପ୍ରସାର ନିମନ୍ତେ ଓଡ଼ିଶା ଶିଳ୍ପ ଉନ୍ନୟନ କର୍ପୋରେସନ୍ ଗଠିତ ହୋଇଥିଲା । ଅଣଟିକସ ସୂତ୍ରରୁ ରାଜ୍ୟରେ ଆୟ ବୃଦ୍ଧି କରିବା ଲକ୍ଷ୍ୟରେ ଜଙ୍ଗଲ କର୍ପୋରେସନ୍, ଖଣି କର୍ପୋରେସନ୍ ଓ ନିର୍ମାଣ କର୍ପୋରେସନ୍ ଆଦି ବହୁ ସରକାରୀ ସଂସ୍ଥା ଗଠିତ ହୋଇଥିଲା । ତାଙ୍କରି ମନ୍ତ୍ରିମଣ୍ଡଳ ସମୟରେ କୋରାପୁଟ ଜିଲ୍ଲାରେ ବାଲିମେଳା ବିଦ୍ୟୁତ୍ ଯୋଜନା ଓ ମିଗ୍ କାରଖାନା ହୋଇଥିଲା । ଗ୍ରାମାଞ୍ଚଳରୁ ଗରିବୀ ହଟାଇବା ଉଦ୍ଦେଶ୍ୟରେ ମଫସଲ ଅଞ୍ଚଳରେ କୃଷିଭିତ୍ତିକ କ୍ଷୁଦ୍ର ଶିଳ୍ପ ଅନୁଷ୍ଠାନ କରିବା କାର୍ଯ୍ୟକ୍ରମ ପ୍ରଚଳନ କରାଯାଇଥିଲା । ତାଙ୍କର ନେତୃତ୍ୱରେ ପଞ୍ଚାୟତ ସମିତି ଶିଳ୍ପାନୁଷ୍ଠାନ ଯୋଜନା ସେହି ସମୟରେ ହୋଇଥିଲା । ପଞ୍ଚାୟତ ଶିଳ୍ପପାଇଁ ରାଜ୍ୟରେ ପ୍ରତ୍ୟେକ ଜିଲ୍ଲାପାଇଁ ଅନେକଗୁଡ଼ିଏ ପୁରସ୍କାର ଘୋଷଣା କରାଯାଇଥିଲା । ଉନ୍ନୟନ କାର୍ଯ୍ୟ କରିବାରେ ପଞ୍ଚାୟତମାନଙ୍କ ମଧ୍ୟରେ ପ୍ରତିଯୋଗିତା ଘୋଷଣା କରାଯାଇଥିଲା । ଯେଉଁ ପଞ୍ଚାୟତ ଓ ପଞ୍ଚାୟତ ସମିତିଗୁଡ଼ିକ ଉନ୍ନୟନ କାର୍ଯ୍ୟରେ ଉତ୍କୃଷ୍ଟ ବିବେଚିତ ହେଉଥିଲେ ସେମାନେ ପୁରସ୍କୃତ ହୋଇ ସେହି ଟଙ୍କାରେ ସଂପୃକ୍ତ ପଞ୍ଚାୟତମାନଙ୍କରେ ଛୋଟିଆ ଧରଣର ଶିଳ୍ପ ପ୍ରତିଷ୍ଠା କରୁଥିଲେ । ଏହି ପୁରସ୍କାରଗୁଡ଼ିକର ମୂଲ୍ୟ ପଚିଶ ହଜାର ଟଙ୍କାରୁ ଲକ୍ଷେ ଟଙ୍କା ପର୍ଯ୍ୟନ୍ତ ଥିଲା । ସେତେବେଳର ବଜାରେ କ୍ଷୁଦ୍ରଶିଳ୍ପପାଇଁ ଏହି ପାଣ୍ଠି କିଛି କମ୍ ନୁହେଁ । ତା'ଛଡ଼ା ସମବାୟ ବ୍ୟାଙ୍କ୍ ଓ ଅନ୍ୟ ପୁଞ୍ଜିଲଗାଣ ଅନୁଷ୍ଠାନମାନେ ମଧ୍ୟ ପୁରସ୍କୃତ ହୋଇଥିବା ପଞ୍ଚାୟତମାନଙ୍କୁ ଶିଳ୍ପ ପ୍ରତିଷ୍ଠା ପାଇଁ ଅନୁରୂପ ଋଣ ଦେବାର ବ୍ୟବସ୍ଥା ହୋଇଥିଲା । ରାଜ୍ୟର ତିନୋଟି ପ୍ରଶାସନିକ ଡିଭିଜନ୍‌ରେ ପଞ୍ଚାୟତ ସମିତି ଶିଳ୍ପ ପାଇଁ କୋଟିଏ ଟଙ୍କା କରି ତିନୋଟି ପୁରସ୍କାର ମଧ୍ୟ ପ୍ରତି ବର୍ଷ ଘୋଷଣା କରାଯାଉଥିଲା । ଯେଉଁ ପଞ୍ଚାୟତ ସମିତିଟି ଡିଭିଜନ୍‌ରେ ଅଧିକ ଉନ୍ନୟନ କାର୍ଯ୍ୟ କରିବାରେ ଉତ୍କୃଷ୍ଟ ବିବେଚିତ ହେଉଥିଲେ ସେ ସମିତି କୋଟିଏ ଟଙ୍କା ଶିଳ୍ପ ପ୍ରତିଷ୍ଠା କରିବାପାଇଁ ପୁରସ୍କାର ପାଉଥିଲେ ।

ବର୍ତ୍ତମାନ ଗରିବୀ ହଟାଓ ଧ୍ୱନି ଓ କାର୍ଯ୍ୟକ୍ରମକୁ ଯେତେ ନୂଆ ନୂଆ ରୂପରେ ଉପସ୍ଥାପିତ କରାଯାଉ ନା କାହିଁକି ପ୍ରକୃତରେ ସେହି ସମୟରେ ଓଡ଼ିଶାରେ ଏକ ବାସ୍ତବ ଗ୍ରାମାଭିମୁଖୀ 'ଗରିବୀ ହଟାଓ' ଅର୍ଥନୈତିକ କାର୍ଯ୍ୟକ୍ରମ ଓ ଆହ୍ୱାନ ଦିଆଯାଇପାରିଥିଲା । ଓଡ଼ିଶାର ପଞ୍ଚାୟତ ଶିଳ୍ପ ଯୋଜନା କମିଶନଙ୍କ ଦ୍ୱାରା ଏପରି ଉଚ୍ଚ ପ୍ରଶଂସିତ ହୋଇଥିଲା ଯେ ଏହାକୁ ଆଦର୍ଶ ରୂପେ ଗ୍ରହଣ କରିବାପାଇଁ

କମିଶନ ପକ୍ଷରୁ ଅନ୍ୟ ରାଜ୍ୟମାନଙ୍କୁ ପରାମର୍ଶ ଦିଆଯାଇଥିଲା । କେତେକ ଅର୍ଥନୀତି ଅଧ୍ୟାପକ ନିଜର ପି.ଏଚ୍.ଡ଼ି. ଉପାଧିପାଇଁ ଏବଂ ଭାରତର କେତେକ ବିଶିଷ୍ଟ ସାମ୍ବାଦିକ ମଧ୍ୟ ଏହି ଯୋଜନା ସଂପର୍କରେ ସ୍ୱତନ୍ତ୍ର ଅଧ୍ୟୟନ କରୁଥିଲେ ଓ ପ୍ରବନ୍ଧ ପ୍ରକାଶ କରୁଥିଲେ । ଜଣେ ପ୍ରାବନ୍ଧିକ ହିସାବ କରି ଲେଖିଥିଲେ ଯେ ସେ ସମୟରେ ପଞ୍ଚାୟତ ସମିତି ବା ବ୍ଲକ୍ ଅଞ୍ଚଳ ଉନ୍ନୟନମୂଳକ କାମମାନ କେନ୍ଦ୍ରୀୟ ଅନୁଦାନରେ ହେଉଥିଲା । ଏବେ ହୁଏତ ବିଶ୍ୱାସ କରି ହେବନାହିଁ ଯେ ଓଡ଼ିଶାରେ ଏପରି ଗ୍ରାମାଭିମୁଖୀ ପଞ୍ଚାୟତ ଶିଳ୍ପ ଯୋଜନା ପ୍ରବର୍ତ୍ତନ କରାଯାଇଥିଲା ଯେ ତଦ୍ୱାରା ବ୍ଲକ୍ ଅଞ୍ଚଳରେ ଏକ ନିର୍ଦ୍ଧାରିତ ସମୟ ସୀମା ଭିତରେହିଁ ଭାରତ ସରକାରଙ୍କର ଏ ବାବଦ ବାର୍ଷିକ ସମସ୍ତ ଅନୁଦାନର ଅଶୀ ଗୁଣ ଅର୍ଥ ଖଟାଯାଇପାରିଥା'ନ୍ତା । ତେଣୁ କୁହାଯାଇଥିଲା, "It will complement in a good measure the 'Back to the village' call of Gandhiji".

ମୋର ବାସୁଦେବପୁର ନିର୍ବାଚନମଣ୍ଡଳୀରେ ବାସୁଦେବପୁର ପଞ୍ଚାୟତ ସମିତି ୧୯୬୫ ମସିହାରେ ସାରା ରାଜସ୍ୱ ଡିଭିଜନ୍‌ରେ ଉନ୍ନୟନ କାର୍ଯ୍ୟ କରିବାରେ ଉତ୍କୃଷ୍ଟ ବିବେଚିତ ହେବାରୁ କୋଟିଏ ଟଙ୍କା ପୁରସ୍କାର ପାଇଥିଲେ । ଏହି ପଞ୍ଚାୟତ ସମିତିର ଚେୟାରମ୍ୟାନ୍ ସେତେବେଳେ ଥିଲେ ଶ୍ରୀ ଭଗବାନ ନାୟକ ଏବଂ ସେ ରାଜ୍ୟପାଳଙ୍କ ହାତରୁ ମୋ ଉପସ୍ଥିତିରେ ତାଙ୍କ ପଞ୍ଚାୟତ ସମିତି ପକ୍ଷରୁ କୋଟିଏ ଟଙ୍କା ପୁରସ୍କାର ଓ ପ୍ରଶଂସାପତ୍ର ଗ୍ରହଣ କରିଥିଲେ । ବାସୁଦେବପୁରଠାରେ ଏହି କୋଟିଏ ଟଙ୍କାକୁ ମୂଳଭିତ୍ତି କରି ନଡ଼ାରୁ କାର୍ଡ଼ବୋର୍ଡ଼ (Card Board) ତିଆରି କରିବାପାଇଁ ଗୋଟିଏ ଶିଳ୍ପ ପ୍ରତିଷ୍ଠା କରିବାକୁ ସବୁ ସ୍ଥିରହୋଇସାରିଥିଲା । ଏହାଛଡ଼ା ବ୍ୟାଙ୍କ ଆଉ ଦୁଇ କୋଟି ଟଙ୍କା ଖଟାଇବାପାଇଁ ମଧ୍ୟ ରାଜିହୋଇଯାଇଥିଲେ । ସ୍ଥାନ ନିରୂପଣ କାର୍ଯ୍ୟ ମଧ୍ୟ ସରିଥିଲା । ବାସୁଦେବପୁରଠାରେ ଏହି ପ୍ରସ୍ତାବିତ ଶିଳ୍ପ ସମ୍ବନ୍ଧରେ ମୋର ଗୋଟିଏ ତିକ୍ତ ଅନୁଭୂତି ଲେଖିବାକୁ ବାଧ୍ୟ ହେଉଛି । ବାସୁଦେବପୁର ନିର୍ବାଚନମଣ୍ଡଳୀରେ ୧୯୬୭ ମସିହା ନିର୍ବାଚନରେ ମୋ ବିରୁଦ୍ଧରେ ଶ୍ରୀ ହରେକୃଷ୍ଣ ମହତାବ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ଶ୍ରୀ ମହତାବ ଭାବିଲେ ଏହି ଶିଳ୍ପଟି ବାସୁଦେବପୁରରେ ମୋ ସମୟରେ ପ୍ରତିଷ୍ଠିତ ହୋଇଗଲେ ସେ କାର୍ଯ୍ୟଟି ମୋତେ କୁଆଡ଼େ ନିର୍ବାଚନରେ ସାହାଯ୍ୟ କରିବ । ତେଣୁ ତାହା ବନ୍ଦ କରିବା ପାଇଁ ଉଦ୍ୟମ କରିବାକୁ ଶ୍ରୀ ମହତାବ ପଶ୍ଚାତ୍‌ପଦ ହୋଇନଥିଲେ । ୧୯୬୭ ମସିହା ଜାନୁୟାରୀ ମାସ ସାଧାରଣତନ୍ତ୍ର ଦିବସରେ ଏହି ପଞ୍ଚାୟତ ସମିତି ଶିଳ୍ପର ଶିଳାନ୍ୟାସ ଉତ୍ସବ କରିବାପାଇଁ ଶିଳ୍ପ ବିଭାଗ ପ୍ରସ୍ତୁତ ହେଉଥିଲେ । ଏହି ସମୟରେ ଖାଇବା ଥାଳିରେ ବିଷ ପକାଇବା ଭଳି ଶ୍ରୀ ମହତାବ ଶିଳ୍ପ ବିଭାଗର ସେକ୍ରେଟେରୀଙ୍କୁ ୧୯୬୭ ମସିହା ଜାନୁୟାରୀ ବାର ତାରିଖରେ ନିମ୍ନ ଚିଠିଟି ଲେଖିଥିଲେ, "I understand that Government in the Industries Department is, under political pressure, contemplating to make a show of some ceremony for the establishment of an industry in Basudevpur area on the 26th January, 1967. As far as I know, a Card Board Industry was recommended for this area, but this was not agreed to by the Government of India under technical advice. If for political reasons, Government commit themselves to something which is technically wrong, then I think, the services will not escape their portion of responsibility at the end. Usually no new work is undertaken on the eve of election because in that case future Government is committed to something which they may not approve. It is for this reason certain guarantees have been provided for the services under the Constitution. I am therefore writing this letter protesting against any such move as mentioned above. If necessary, I may represent this to the President of India also."

ଧମକ ଦେଇ କାର୍ଯ୍ୟ ହାସଲ କରିବା ମାନବ ଚରିତ୍ରର ଏହା ଏକ ବିଚିତ୍ର ଦୃଷ୍ଟାନ୍ତ । ତାଙ୍କର ଏ କାର୍ଯ୍ୟଦ୍ୱାରା ବାସୁଦେବପୁର ସବୁଦିନପାଇଁ ଗୋଟିଏ ଶିଳ୍ପ ପ୍ରତିଷ୍ଠା କରିବାର ସୁଯୋଗ ହରାଇଲା । ଏହି ଶିଳାନ୍ୟାସ ପ୍ରସ୍ତାବ ଥିଲା ଆସନ୍ନ ନିର୍ବାଚନର ବହୁ ପୂର୍ବ କଥା । ମାତ୍ର ମହତାବବାବୁ ନିଜେ ମୁଖ୍ୟମନ୍ତ୍ରୀ ଥିଲାବେଳେ ଉପନିର୍ବାଚନମାନଙ୍କର ଭୋଟ ଗ୍ରହଣର ସାତ ଦିନ ଆଗରୁ ମଧ୍ୟ ଉଦ୍‌ଘାଟନ, ଶୁଭଦାନ ଓ ଶିଳାନ୍ୟାସ ପ୍ରଭୃତି କାର୍ଯ୍ୟ କରିବାକୁ ପଛାଉନଥିଲେ । ୧୯୫୯ ମସିହାରେ ଜଗତ୍‌ସିଂହପୁରର ଉପନିର୍ବାଚନରେ ସେ ଏହି ପ୍ରକାର ବହୁ ଅସଙ୍ଗତ କାର୍ଯ୍ୟ କରିବାର ମୁଁ ଜାଣେ । ସାଙ୍ଗେ ସାଙ୍ଗେ ଗୋଟିଏ ନୂଆ ବ୍ଲକ୍ ଘୋଷଣା କରି ତା'ର ଶୁଭ ମୁଖ୍ୟମନ୍ତ୍ରୀ ଶ୍ରୀ ମହତାବ ନିଜେ ଦେଇଥିଲେ । ତାଙ୍କର ଏ ପ୍ରକାର ଅସମୀଚୀନ କାର୍ଯ୍ୟପାଇଁ ବିଧାନସଭାରେ ଘମାଘୋଟ ଆଲୋଚନା କରାଯାଇଥିଲା, ବାସୁଦେବପୁରର ଯେଉଁ ଶିଳ୍ପର ଶୁଭଦାନ ଉତ୍ସବ ଶ୍ରୀ ମହତାବ ବନ୍ଦକରାଇଥିଲେ, ତାହା ସରକାରଙ୍କ ଅନୁଗ୍ରହରୁ ହେବାକୁ ଯାଉନଥିଲା । ତାହା ସେଠାକାର ପଞ୍ଚାୟତ ସମିତିର ସ୍ୱ-ଅର୍ଜିତ ପୁରସ୍କାର ଅର୍ଥରେ ହେବାକୁ ଯାଉଥିଲା । ୧୯୬୭ ମସିହାରେ ସ୍ୱତନ୍ତ୍ର ଏବଂ ଜନକଂଗ୍ରେସର ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ସେଥିରେ ଶ୍ରୀ ମହତାବ ଥିଲେ ଜଣେ ପୁରୋଧା । ଖାଇବା ଥାଳିରେ ବିଷ ପକାଇ ସେ ବାସୁଦେବପୁରବାସୀଙ୍କର ଯେଉଁ କ୍ଷତି କରିଥିଲେ, ସେ କ୍ଷତିପୂରଣ କରିବାପାଇଁ ସେ ପ୍ରତିନିଧି ନିର୍ବାଚିତ ହେବା ପରେ ମଧ୍ୟ ଟିକିଏ ହେଲେ ମନ ଦେଇନଥିଲେ । ସେ ନିର୍ବାଚନମଣ୍ଡଳୀର ପ୍ରତିନିଧି ହୋଇ ଉନ୍ନତିମୂଳକ କାମ କରିବା ଦୂରେଥାଉ; ଉକ୍ତ ନିର୍ବାଚନମଣ୍ଡଳୀର ସ୍ୱ-ଅର୍ଜିତ ପୁରସ୍କାରରୁ ସେମାନଙ୍କୁ ବଞ୍ଚିତକରିଥିଲେ ।

## ପୂର୍ବ ଭାରତର ପ୍ରବେଶଦ୍ୱାର ପାରାଦ୍ୱୀପ

ଶ୍ରୀ ବିଜୁ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳ ସମୟରେ ଗୋଟିଏ ଅତି ଉତ୍କୃଷ୍ଟ ଓ ଉଲ୍ଲେଖଯୋଗ୍ୟ କାର୍ଯ୍ୟ ହେଉଛି ସମୃଦ୍ଧିଶାଳୀ ଓଡ଼ିଶା ନିର୍ମାଣ ନିମନ୍ତେ ପାରାଦ୍ୱୀପଠାରେ ଭାରତର ସବୁଠାରୁ ଗଭୀରତମ ବନ୍ଦର ଓ ଉକ୍ତ ବନ୍ଦର ସହିତ ସଂଯୋଗ କରୁଥିବା ଏକ୍‌ସପ୍ରେସ ହାଇଓଏ ନିର୍ମାଣ । ଭାରତର ଖଣିଜ ସଂପଦଭରା ଅଞ୍ଚଳମାନଙ୍କ ମଧ୍ୟରେ ଓଡ଼ିଶାର କେଉଁଝର ଜିଲ୍ଲା ଓ କଟକର ସୁକିନ୍ଦା ଅଞ୍ଚଳ ଆଦି ଅଗ୍ରଗଣ୍ୟ । ଏହି ଏକ୍‌ସପ୍ରେସ୍‌ଓଏ ଉକ୍ତ ସମୃଦ୍ଧ ଖଣିଅଞ୍ଚଳ ସହିତ ପାରାଦ୍ୱୀପ ବନ୍ଦରକୁ ସଂଯୋଗ କରୁଅଛି । ଏହି ଦୁଇଟି ଯୋଜନା ଶ୍ରୀ ପଟ୍ଟନାୟକଙ୍କର ଏକପ୍ରକାର ଦୁଃସାହସିକ କାର୍ଯ୍ୟ ଏବଂ ସେଥିପାଇଁ ସେ ଓଡ଼ିଶାରେ ଚିରସ୍ମରଣୀୟ ହୋଇ ରହିବେ । ଏହି ଦୁଇଗୋଟି ଯୋଜନାରେ ସେତେବେଳେ ପ୍ରାୟ ପଚାଶ କୋଟି ଟଙ୍କା ଖର୍ଚ୍ଚ ହୋଇଥିଲା । ବିଜୁ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲାବେଳକୁ ତୃତୀୟ ଯୋଜନାକାଳ । ତୃତୀୟ ଯୋଜନାରେ ଭାରତବର୍ଷରେ ନିର୍ମାଣ ହେବାକୁ ଥିବା ବଡ଼ ବନ୍ଦରମାନଙ୍କ ଭିତରେ ପାରାଦ୍ୱୀପର ବା ଓଡ଼ିଶାର ଅନ୍ୟ କୌଣସି ସ୍ଥାନର ନାମଗନ୍ଧ ବି ନଥିଲା । ଏକ ପକ୍ଷରେ ପାରାଦ୍ୱୀପକୁ ପରିବହନର ସୁବିଧାପାଇଁ ରେଳରାସ୍ତା ନଥିବାରୁ ଆମର ବଡ଼ ବନ୍ଦରଟିଏପାଇଁ ଦାବି ଗ୍ରହଣଯୋଗ୍ୟ ହେଉ ନଥାଏ । ତେଣେ ରେଳରାସ୍ତାପାଇଁ କହିଲେ ବନ୍ଦର ହେବାର ବ୍ୟବସ୍ଥା ନଥିବାରୁ ରେଳରାସ୍ତା କଥା କେହି ଶୁଣୁନଥିଲେ । ପାରାଦ୍ୱୀପର ବୃହତ ବନ୍ଦର ନିର୍ମାଣ କଥାଟା ଯେପରି 'ବୋଇତବନ୍ଦାଣ' ପର୍ବପାଳନ ଭିତରେ ସୀମାବଦ୍ଧ ରହିଯାଇଥାଏ । ତେଣୁ ବନ୍ଦର ସହିତ ପରିବହନ ବ୍ୟବସ୍ଥାପାଇଁ ନିଜର ଏକ୍‌ସପ୍ରେସ୍‌ଓଏ ନିର୍ମାଣ କରିବା ପ୍ରସ୍ତାବ ଉଠିଲା । ଏହି ଯୋଜନାଗୁଡ଼ିକୁ ଦେଶର ଯୋଜନା କମିଶନ ଅନୁମୋଦନ କରିନଥିଲେ । ଏଥିପାଇଁ ବଜେଟ୍‌ରେ ଟଙ୍କାର ବ୍ୟବସ୍ଥା ମଧ୍ୟ କରାଯାଇନଥିଲା । କିନ୍ତୁ କୌଣସି କଥାକୁ ଖାତିର ନକରି କାର୍ଯ୍ୟ ଆରମ୍ଭ କରିବାକୁ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ଆଦେଶ ଦେଇଥିଲେ । ୧୯୬୨ ମସିହା ଜାନୁୟାରୀ ତିନି ତାରିଖରେ ପାରାଦ୍ୱୀପ ବନ୍ଦରର ଶୁଭଦେବାପାଇଁ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କୁ ଆମନ୍ତ୍ରଣ

କରାଯାଇଥିଲା ଏବଂ ପ୍ରଧାନମନ୍ତ୍ରୀ ସମ୍ମତି ମଧ ଦେଇଥିଲେ । ପ୍ରଧାନମନ୍ତ୍ରୀଙ୍କ ପାରାଦ୍ୱୀପ ଆସିବା କଥା ଯେପରି ସମ୍ବାଦପତ୍ରରେ ବାହାରିଛି ତା'ପରେ ବାହାରିପଡ଼ିଲେ ସର୍ବଶ୍ରୀ ହରେକୃଷ୍ଣ ମହତାବ, ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ସୁରେନ୍ଦ୍ର ଦ୍ୱିବେଦୀ । ଏମାନେ ସେତେବେଳେ ସେମାନଙ୍କର ରାଜ୍ୟପ୍ରୀତିର ପରକାଷ୍ଠା ପ୍ରଦର୍ଶନକରି ବନ୍ଦର ଶୁଭଦେବା ନିମନ୍ତେ ପଣ୍ଡିତ ନେହେରୁଙ୍କ ପାରାଦ୍ୱୀପ ଆଗମନକୁ ଖୋଲାଖୋଲି ଭାବରେ ସମ୍ବାଦପତ୍ରମାନଙ୍କରେ ବିରୋଧ କରିଥିଲେ । ଏମାନେ ଖବରକାଗଜରେ ବିବୃତି ଦେଇ କହିଥିଲେ ଯେ ପାରାଦ୍ୱୀପ ବନ୍ଦର କଳ୍ପନା ବିଜୁ ପଟ୍ଟନାୟକଙ୍କର ଗୋଟିଏ ପ୍ରହସନ ଏବଂ ଯେଉଁ ଯୋଜନାକୁ ଦେଶର ଯୋଜନା କମିଶନ ଅନୁମୋଦନ କରିନାହାନ୍ତି ସେ ଯୋଜନାର ଶୁଭ ପ୍ରଧାନମନ୍ତ୍ରୀ ଦେବାଟା ଅତ୍ୟନ୍ତ ଅସମୀଚୀନ । କିନ୍ତୁ ଶ୍ରୀ ନେହେରୁ ଥିଲେ ଅସାଧାରଣ ହୃଦୟବାନ୍ ତଥା ଉଚ୍ଚମନା ନେତା । ଜାତିର ଅଗ୍ରଗତିପାଇଁ ଜଣେ ଯୁବକ ଯଦି ଦୁଃସାହସିକ କାର୍ଯ୍ୟ କରିବାପାଇଁ ଆଗେଇଯାଉଛନ୍ତି, ପୁଣି ଏକ ଅନଗ୍ରସର ରାଜ୍ୟର ଅଗ୍ରଗତି ଉଦ୍ଦେଶ୍ୟରେ, ସେଥିରେ ତାଙ୍କୁ ଉତ୍ସାହିତ କରିବା ତାଙ୍କର କର୍ତ୍ତବ୍ୟ ବୋଲି ନେହେରୁ ମନେକରି କୌଣସି କଥାକୁ ଭ୍ରୂକ୍ଷେପ ନକରି ନିର୍ଦ୍ଦିଷ୍ଟ ଦିନରେ ପାରାଦ୍ୱୀପ ଆସିବାପାଇଁ ସମ୍ମତି ଜଣାଇଥିଲେ ଓ ଆସିଥିଲେ । ଅଳ୍ପ ସମୟ ମଧରେ ନେହେରୁଙ୍କ ରହିବାପାଇଁ ପାରାଦ୍ୱୀପଠାରେ ଗୋଟିଏ ଅତିଥିଭବନ ନିର୍ମାଣ କରାଯାଇଥିଲା ଓ ତା'ର ନାମ ରଖାଯାଇଥିଲା 'ନେହେରୁ ନିବାସ' । ଅଳ୍ପ ସମୟ ମଧରେ କେତେଗୁଡ଼ିଏ ରାସ୍ତା ମଧ ନିର୍ମାଣ କରାଯାଇଥିଲା । ଖୁବ୍ କମ୍ ସମୟ ମଧରେ ପାରାଦ୍ୱୀପର ସମସ୍ତ ଅଞ୍ଚଳକୁ ବିଦ୍ୟୁତ୍ ଯୋଗାଣ କରିବାପାଇଁ ଏକ୍ଜିକ୍ୟୁଟିଭ ଇଂଜିନିୟର ଶ୍ରୀ ଏନ୍.ସି.ଦାସଙ୍କୁ ଦାୟିତ୍ୱ ଦିଆଯାଇଥିଲା । ସେ ତାହା ଖୁବ୍ ଶୀଘ୍ର ସମାପ୍ତକରିଥିଲେ । ପ୍ରଧାନମନ୍ତ୍ରୀ କୁଜଙ୍ଗର ଅନନ୍ତପୁର ଲକ୍ଠାରୁ ମହାନଦୀ ଜଳପଥରେ ପାଓ୍ୱାର୍ ବୋଟ୍ ସାହାଯ୍ୟରେ ପାରାଦ୍ୱୀପ ଯିବାପାଇଁ ବ୍ୟବସ୍ଥା କରାଯାଇଥିଲା । ମୁଁ ସେତେବେଳେ ଥିଲି ଓଡ଼ିଶାର ରାଜ୍ୟ ବନ୍ଦର ବିଭାଗର ମନ୍ତ୍ରୀ । ତେଣୁ ମୋତେ ଅନେକ କଥା ବୁଝାଶୁଝା କରିବାକୁ ପଡ଼ିଥିଲା ।

ଜଳଯାତ୍ରାର ସ୍ମୃତି ଅତି ଅପାସୋରା ହୋଇ ରହିଛି ଓ ରହିଥିବ । ଅନନ୍ତପୁର ଲକ୍ଠାରୁ ପାରାଦ୍ୱୀପରେ ପହଞ୍ଚିବା ପର୍ଯ୍ୟନ୍ତ ବୋଟ୍‌ରେ ପ୍ରାୟ ଦୁଇଘଣ୍ଟା ସମୟ ଲାଗିବାର କଥା । ପ୍ରଧାନମନ୍ତ୍ରୀଙ୍କ ସହିତ ନିରୋଳାରେ କଥାବାର୍ତ୍ତା କରିବାପାଇଁ ସେହି ସମୟଟିହିଁ ଏକମାତ୍ର ଉପଯୁକ୍ତ ସମୟ ଥିଲା । ନେହେରୁ ଥିଲେ ଆମ୍ଭମାନଙ୍କର ପ୍ରଧାନମନ୍ତ୍ରୀ ଏବଂ ତା ସଙ୍ଗେ ସଙ୍ଗେ ଦଳର ସର୍ବଶ୍ରେଷ୍ଠ ନେତା । ତେଣୁ ସେହି ସମୟ ମଧରେ ଆମ୍ଭେମାନେ ନେହେରୁଙ୍କ ସହିତ ରାଜ୍ୟର ଉନ୍ନୟନ ତଥା ରାଜନୈତିକ ବ୍ୟାପାର ସମ୍ବନ୍ଧରେ ମନଖୋଲା କଥାବାର୍ତ୍ତା ହୋଇପାରିବୁ ବୋଲି ଠିକ୍‌କରିଥିଲୁ । କିନ୍ତୁ ସେଥିପାଇଁ ଆମକୁ ଗୋଟିଏ ବଡ଼ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା– ସେ ଅସୁବିଧାଟି ଥିଲା ରାଜ୍ୟପାଳ ଶ୍ରୀ ସୁକ୍ଠଣକରଙ୍କ ଉପସ୍ଥିତି । ପ୍ରଶାସନିକ ଆଦବକାଇଦା ବା ପ୍ରଟୋକଲ୍ ଦୃଷ୍ଟିରୁ ରାଜ୍ୟପାଳ ପ୍ରଧାନମନ୍ତ୍ରୀଙ୍କ ସହିତ ବୋଟ୍‌ରେ ରହିବାର କଥା, ମାତ୍ର ତାଙ୍କ ଉପସ୍ଥିତିରେ ଆମ୍ଭେମାନେ ନେହେରୁଙ୍କ ସହିତ ଖୋଲାଖୋଲି କଥାବାର୍ତ୍ତା ହୋଇପାରିବୁ ନାହିଁ ବୋଲି ଅନୁଭବ କରିଥିଲୁ । ରାଜ୍ୟପାଳ ନେହେରୁଙ୍କ ପାଇଁ ଉଦ୍ଦିଷ୍ଟ ବୋଟ୍‌ରେ ନଯାଇ ଆଉ ଗୋଟିଏ ସ୍ୱତନ୍ତ୍ର ବୋଟ୍‌ରେ ଯିବାପାଇଁ ମୁଖ୍ୟମନ୍ତ୍ରୀ ତାଙ୍କୁ ପ୍ରସ୍ତାବ ଦେଇଥିଲେ । ମାତ୍ର ଶ୍ରୀ ସୁକ୍ଠଣକର ଥିଲେ ଜଣେ ଜବରଦସ୍ତ ଅମଲାତନ୍ତ୍ରବାଦୀ ଶାସକ । ସେ ସହଜରେ ସେଥିରେ ରାଜି ହୋଇନଥିଲେ । ଏଥିପାଇଁ ମୁଖ୍ୟମନ୍ତ୍ରୀ ଓ ରାଜ୍ୟପାଳଙ୍କ ଭିତରେ ମତଭେଦ ହୋଇଥିଲା । ଆମ୍ଭମାନଙ୍କର ପ୍ରକୃତ ଉଦ୍ଦେଶ୍ୟ ମୁଁ ଯାଇ ରାଜ୍ୟପାଳଙ୍କୁ ବୁଝାଇ କହିବାରୁ ଶେଷରେ ଗୋଟିଏ ଉପାୟ ସ୍ଥିରକରାଗଲା । ଉପାୟଟି ହେଲା ରାଜ୍ୟପାଳ କିଛି ସମୟ ପୂର୍ବରୁ ନେହେରୁଙ୍କ ଆଗେ ଆଗେ ଅନ୍ୟ ବୋଟ୍‌ରେ ଯାଇ ପାରାଦ୍ୱୀପଠାରେ ନେହେରୁଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବେ । ସମସ୍ତ ବ୍ୟବସ୍ଥା ସେହି ଅନୁସାରେ କରାଯାଇଥିଲା । ଜଳଯାତ୍ରାବେଳେ

ପ୍ରଧାନମନ୍ତ୍ରୀଙ୍କ ଗହଣରେ ବିଜୁବାବୁ, ବୀରେନ୍‌ବାବୁ, ଓ ମୁଁ ରହିଥିଲୁ । ପୂର୍ବରୁ ପ୍ରଧାନମନ୍ତ୍ରୀ ଖୁବ୍ କର୍ମକ୍ଳାନ୍ତ ହୋଇପଡ଼ିଥିଲେ । ବିଜୁବାବୁ ଓଡ଼ିଶାର ଉନ୍ନୟନ ସଂପର୍କରେ ଗୋଟିଏ ସଂକ୍ଷିପ୍ତ ନୋଟ୍ ଓ ନକ୍‌ସା ତିଆରିକରି ପାଖରେ ରଖିଥାଆନ୍ତି । ସମୟଟି ହେଉଛି ଗୋଧୂଳି ସମୟ । ପଣ୍ଡିତ ନେହେରୁ ଚା' ଖାଇ ସିଗାରେଟ୍ ଧରି ଡେକ୍ ଉପରେ ଗୋଟିଏ ଆରାମ୍‌ଚେୟାର୍‌ରେ ଅତି ହାଲୁକା ମନରେ ବିଶ୍ରାମ ନେଉଥାଆନ୍ତି । ଏହି ସମୟରେ ବିଜୁବାବୁ ତାଙ୍କର ନକ୍‌ସା ଓ କାଗଜପତ୍ର ଧରି ତାଙ୍କ ପାଖରେ ଉପସ୍ଥିତ ହୋଇଥିଲେ ଓ ଓଡ଼ିଶାର କ୍ଷିପ୍ର ଅଭିବୃଦ୍ଧି ଓ ଉନ୍ନୟନ ସମ୍ବନ୍ଧୀୟ ନକ୍‌ସା ଓ କାଗଜପତ୍ର ପଣ୍ଡିତ ନେହେରୁଙ୍କୁ ଦେଖାଇବାପାଇଁ ଉଦ୍ୟମ କରିଥିଲେ । ହଠାତ୍ ନେହେରୁ ଚିଡିଉଠି ଚିତ୍କାର କରି କହିଲେ, "You damn fool, you have no sense of proportion. I am having a little relaxation and you choose to disturb me." ଏକଥା ଶୁଣି ଆମେ ଛାନିଆଁ ହୋଇଥିଲୁ । କିନ୍ତୁ ଶ୍ରୀ ବିଜୁ ପଟ୍ଟନାୟକ ଘାବେରେଇବା ଲୋକ ନୁହନ୍ତି; ସେ ମଧ ପାଟି କରି କହିଥିଲେ, "A slight glance of the Prime Minister at this can change the fate of this backward State and you are reluctant to do that. After Nehru, will India ever have a Prime Minister who will rise above his own State interest & look to the interest of poor-state like Orissa ? ଏକଥାଶୁଣି ନେହେରୁ ଠୋ ଠୋ ହସିଉଠି କହିଲେ, "Oh ! you know the trick." ତା'ପରେ ସେ ଅତି ପ୍ରଫୁଲ୍ଲଚିତ୍ତ ଓ ହସ ହସ ମୁଖରେ ଆମ୍ଭମାନଙ୍କୁ ଥରେ ଅନାଇ ନକ୍‌ସାଟି ଦେଖିଥିଲେ ଓ ନୋଟ୍‌ଟି ମଧ ପଢ଼ିଥିଲେ । ଓଡ଼ିଶାର ଉନ୍ନୟନ ଓ ତତ୍‌ସମ୍ବନ୍ଧୀୟ ପ୍ରାକୃତିକ ସମ୍ପଦ ବିଷୟରେ ବିଜୁ ପଟ୍ଟନାୟକ କେତେକ କଥା ତାଙ୍କୁ କହିଥିଲେ । ଏହି ଘଟଣାଟି ଓଡ଼ିଶା ପକ୍ଷରେ ଏକ ଅପୂର୍ବ ତଥା ଅବିସ୍ମରଣୀୟ ସୁଯୋଗ । ନେହେରୁଙ୍କର ଅକସ୍ମାତ୍ କ୍ରୋଧ ନିମିଷକ ମଧ୍ୟରେ ଉଭେଇଯାଇଥିଲା ଓ କ୍ରୋଧ ପରିବର୍ତ୍ତେ ପ୍ରଶାନ୍ତଚିତ୍ତରେ ସେ ସମସ୍ତ ବିଷୟ ହୃଦୟଙ୍ଗମ କରିଥିଲେ । ମାତ୍ର ମାସକ ମଧ୍ୟରେ ଆମର ସେ ସମୟର ଯୋଜନା ଅଟକଳ ଯାହା ଥିଲା ତାହା ଆଉ ଶହେକୋଟି ଟଙ୍କା ବଢ଼ାଇଦିଆଯାଇଥିଲା ଏବଂ ଓଡ଼ିଶାପାଇଁ ଯେଉଁ ପରିମାଣରେ କେନ୍ଦ୍ର ସାହାଯ୍ୟ ମିଳିବା କଥା ଥିଲା ତା'ଉପରେ ଆଉ ଅଧିକ ସାହାଯ୍ୟ ମିଳିବାର ବ୍ୟବସ୍ଥା ପ୍ରଧାନମନ୍ତ୍ରୀ କରିଥିଲେ । ପାର୍ଲିଆମେଣ୍ଟରେ ସେଥିପାଇଁ ନେହେରୁଙ୍କୁ ତିକ୍ତ ସମାଲୋଚନାର ଶରବ୍ୟ ହେବାକୁ ପଡ଼ିଥିଲା । ଏହାର ଉତ୍ତରରେ ପାର୍ଲିଆମେଣ୍ଟରେ ନେହେରୁ କହିଥିଲେ ଯେ, ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କର କାର୍ଯ୍ୟ କରିବାପାଇଁ ଉତ୍ସାହ, ସାହସ ଓ ଦକ୍ଷତା ଅଛି । ଓଡ଼ିଶା ସରକାର ଅନେକ କାର୍ଯ୍ୟ ଯୋଜନା ମାଧ୍ୟମରେ ଆରମ୍ଭ କରିଦେଇଛନ୍ତି । ସେମାନେ କାମ କରିଜାଣନ୍ତି; ତେଣୁ ସେମାନଙ୍କୁ ସାହାଯ୍ୟ କରିବା ଉଚିତ । ନେହେରୁଙ୍କର ଏ ପ୍ରକାର ଉକ୍ତିରେ ଅନେକ ନେତୃସ୍ଥାନୀୟ ବ୍ୟକ୍ତି ବିଜୁ ପଟ୍ଟନାୟକଙ୍କ ପ୍ରତି ଈର୍ଷାନ୍ୱିତ ହୋଇଥିଲେ ।

ପାରାଦ୍ୱୀପରେ ପହଞ୍ଚି ଶ୍ରୀ ନେହେରୁ ତାଙ୍କପାଇଁ ନିର୍ମିତ ନେହେରୁ ନିବାସରେ ରାତ୍ରିଭୋଜନ ପରେ ବିଶ୍ରାମ ନେଇଥିଲେ । ପରଦିନ ସକାଳେ ପାରାଦ୍ୱୀପ ବନ୍ଦରର ଶୁଭ ଦେବା ଉତ୍ସବ ମହାସମାରୋହରେ ଭାରତର ପ୍ରିୟ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କଦ୍ୱାରା ସଂପାଦିତ ହୋଇଥିଲା । ସାଧାରଣତଃ କୌଣସି ପ୍ରକଳ୍ପର ଶୁଭ ଦେଲାବେଳେ ଯେପରି ପାରମ୍ପରିକ ରୀତିରେ ମାର୍ବଲ୍ ପ୍ରସ୍ତରରେ ଲେଖାଯାଏ ସେପରି ରୀତିରେ ପାରାଦ୍ୱୀପ ବନ୍ଦରର ଭିତ୍ତି ସ୍ଥାପନହୋଇନଥିଲା । କାରଣ ସମାଲୋଚକମାନଙ୍କର ଅଭିଯୋଗ ଥିଲା ଭାରତର ପ୍ରଧାନମନ୍ତ୍ରୀ ଓଡ଼ିଶାର ବିଜୁ ପଟ୍ଟନାୟକଙ୍କର ଗୋଟିଏ କାଳ୍ପନିକ ବନ୍ଦର ପ୍ରକଳ୍ପର ଭିତ୍ତି ସ୍ଥାପନ କରିବା ସମୀଚୀନ ହେବନାହିଁ । ତେଣୁ ପ୍ରସ୍ତର ଫଳକ ଉପରେ ଲେଖାଥିଲା ଏକ ହୃଦୟସ୍ପର୍ଶୀ ବାଣୀ: "Willed by the people, I commend you to this yet another National Venture" । ସେଦିନ ପଣ୍ଡିତଜୀ ତାଙ୍କର ଓଜସ୍ୱିନୀ

ଭାଷଣରେ ଓଡ଼ିଶା ସରକାରଙ୍କର ଏ ପ୍ରକାର ସାହସିକ କାର୍ଯ୍ୟକୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଦେଶ ଓ ଜାତି ପାଇଁ ଏହି ପ୍ରକାର ସାହସିକ ପଦକ୍ଷେପ ନେବାକୁ ସେ ଉତ୍ସାହିତ କରିଥିଲେ । ପାରାଦ୍ୱୀପ ବନ୍ଦରକୁ ଆଶୀର୍ବାଦ କରି ତାହା ଗୋଟିଏ ଜାତୀୟ କାର୍ଯ୍ୟ ବୋଲି କହି ଭବିଷ୍ୟତରେ ଜାତିର ତଥା ଦେଶର ଅଗ୍ରଗତିରେ ନିଶ୍ଚୟ ମାଇଲଖୁଣ୍ଟ ସଦୃଶ ପ୍ରତୀୟମାନ ହେବ ବୋଲି ସେ ଆଶା ପୋଷଣ କରିଥିଲେ । ଜାନୁୟାରୀ ତିନି ତାରିଖ ଦିନ ପାରାଦ୍ୱୀପ ବନ୍ଦରର ଭିତ୍ତିସ୍ଥାପନ କରି ନେହେରୁ ଭୁବନେଶ୍ୱର ଫେରିଥିଲେ ।

ବହୁ ନିନ୍ଦା, ଅପବାଦ, ପ୍ରତିରୋଧ ଓ ପ୍ରତିଶୋଧ ସତ୍ତ୍ୱେ ପାରାଦ୍ୱୀପ ନିର୍ଦ୍ଧାରିତ ସମୟ ଭିତରେ ପୂର୍ବଭାରତର ପ୍ରବେଶପଥରୂପେ ଗୌରବ ଅର୍ଜନ କରି ଗଢ଼ାହେଲା । ସେପର୍ଯ୍ୟନ୍ତ ବମ୍ବେ ବନ୍ଦର ପାଖରେ ଥିଲା ପଶ୍ଚିମ ଉପକୂଳରେ ଭାରତର ପ୍ରବେଶପଥ (Gateway of India) । ୧୯୬୫ ମସିହା ଜୁନ୍ ପହିଲା ତାରିଖରେ ଓଡ଼ିଶା ସରକାର ପୂର୍ବ ପରିକଳ୍ପନାମତେ ଭାରତର ଗଭୀରତମ ବନ୍ଦର ପାରାଦ୍ୱୀପକୁ ଭାରତସରକାରଙ୍କୁ ସମର୍ପଣକଲେ । ସେତେବେଳେ ପ୍ରଖ୍ୟାତ ନିଷ୍ଠାବାନ୍ ଦେଶପ୍ରେମୀ ସାମ୍ବାଦିକ ଶ୍ରୀ ବି.ଜି.ଭର୍ଗିଜ୍ ଟାଇମ୍‌ସ ଅଫ୍ ଇଣ୍ଡିଆରେ ଏକ ସ୍ୱତନ୍ତ୍ର ପ୍ରବନ୍ଧରେ ଲେଖିଥିଲେ, "The project has evoked controversy and criticism. But five or ten years from today, there is little doubt that Paradeep will stand out as one of the finest achievements of the Third Plan. Paradeep is not just an individual project. It is also a symbol. x x x 'Paradeep' is a symbol of the 'effete system' to which the country has become prisoner and of the outmoded frame-work of development. The restrictive influence of the system costs the country dearly in money and time and Paradeep is 'irregular' and has become a 'scandal' because it has broken out the system and worse, succeeded. x x x Paradeep is a splendid achievement and an ornament in the Third Plan. It is grossly 'irregular'. However, it is not the project but the 'system' and the narrow, suffocating atmosphere it breeds that stands condemned." (June 9. 1965) ଭର୍ଗିଜ୍ ଏବେ 'ଇଣ୍ଡିଆନ୍ ଏକ୍‌ସପ୍ରେସ୍' ଦୈନିକ ଇଂରାଜୀ ସମ୍ବାଦପତ୍ରର ମୁଖ୍ୟ ସମ୍ପାଦକ । ସେ ଗାନ୍ଧିବାଦୀ ଆଦର୍ଶରେ ଅନୁପ୍ରାଣିତ ଏବଂ ଜୟପ୍ରକାଶଙ୍କର ଜଣେ ପ୍ରଧାନ ସମର୍ଥକ ରୂପେ ପରିଚିତ । ଗୋଟିଏ ଉପଭୋଗ୍ୟ ଘଟଣା ଏଠାରେ ଉଲ୍ଲେଖ କରୁଛି । ଏଭଳି ଉଚ୍ଚକୋଟୀର ବ୍ୟକ୍ତିତ୍ୱ ଥିବାଭଳି ସାମ୍ବାଦିକମାନଙ୍କୁ ମଧ ମଦ ପିଆଇଦେଇ ଭାରତବର୍ଷସାରା ଏଭଳି ଲେଖାର ପ୍ରଚାର କରାଇଦିଆଯାଉଛି ବୋଲି ସେତେବେଳକାର ଲୋକସଂପର୍କ ଓ ପର୍ଯ୍ୟଟନ ନିର୍ଦ୍ଦେଶକଙ୍କ କାର୍ଯ୍ୟକୁ ଆକ୍ଷେପ କରାଯାଇଥିଲା ଏବଂ ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରି ଲିଖିତ ଅଭିଯୋଗ ମଧ କରାଯାଇଥିଲା । ସେତେବେଳକୁ ଶ୍ରୀ ସଦାଶିବ ତ୍ରିପାଠୀ ମୁଖ୍ୟମନ୍ତ୍ରୀ ଥାଆନ୍ତି । ଦିନେ ସଦାଶିବ ବାବୁ ଓ ମୁଁ ତାଙ୍କ ବାସଭବନରେ ବସି ଆଲୋଚନା କରୁଥିବାବେଳେ ଲୋକସଂପର୍କ ବିଭାଗ ନିର୍ଦ୍ଦେଶକ ଆସି ସେଠାରେ ଆମକୁ କହିଲେ, ''ମୋ ବିରୁଦ୍ଧରେ ତ ଏତେ ମଦ ପିଆଇଥିବା ଅଭିଯୋଗ ସରକାରଙ୍କ ଦୃଷ୍ଟିକୁ ଅଣାଗଲାଣି । ଏତେ ମଦଖର୍ଚ୍ଚ ତ ସରକାରୀ ତହବିଲ୍‌ରୁ ଦିଆଯାଇ ପାରିବନାହିଁ । କଥାଟା ସରକାରଙ୍କ ଦୃଷ୍ଟିକୁ ଯେତେବେଳେ ଆସିଲାଣି ଅନ୍ତତଃ ଟଙ୍କାଟା କିପରି ମଞ୍ଜୁରା ହେବ ଆପଣମାନେ ଦୟାକରି ସେତକ ହେଲେ ସୁବିଧା କରିଦିଅନ୍ତୁ ।'' ମୁଖ୍ୟମନ୍ତ୍ରୀ ତାଙ୍କ କଥାର ଇଙ୍ଗିତ ବୁଝିପାରି ରହସ୍ୟ କରି କହିଥିଲେ, ''ଆହେ ଶଶିବାବୁ ! ଆମେ ସିନା ମନ୍ତ୍ରୀ ଆଉ ତୁମେ ସରକାରୀ ଚାକିରିଆ; କାହା କୋଷ୍ଠି କାହାକୁ ଜଣାନାହିଁ ? ମଦପ୍ରତି ଖାଲି ଦୃଷ୍ଟି ଆକର୍ଷଣ କରୁ କରୁ ତୁମକୁ ଏତେ ନିଶା ହୋଇଯାଉଚି କାହିଁକି ? ବସ, କଫି ଖାଇବା, ମଦନିଶାକୁ କଫି କାଟିପକାଏ ।''

# ଭୁବନେଶ୍ୱର କଂଗ୍ରେସ : ଏକ ଐତିହାସିକ ଅଧିବେଶନ

ପ୍ରଧାନମନ୍ତ୍ରୀ ପାରାଦ୍ୱୀପରୁ ଭୁବନେଶ୍ୱର ଫେରି ରାଜଭବନରେ ରାତ୍ରିଯାପନ କରି ପରଦିନ ସକାଳେ ପାଟନା ଅଭିମୁଖେ ଯାତ୍ରାକରିଥିଲେ । ପାଟନାଠାରେ ନିଖିଳ ଭାରତ ଜାତୀୟ କଂଗ୍ରେସର ସାଧାରଣ ଅଧିବେଶନ ୧୯୬୨ ମସିହା ଜାନୁୟାରୀ ୮ତାରିଖରେ ବସିବାର ଥାଏ । ସେଥିରେ ଯୋଗଦେବାପାଇଁ ପଣ୍ଡିତ ନେହେରୁ ସେଠାକୁ ଗଲେ । ତା ପରବର୍ତ୍ତୀ କଂଗ୍ରେସ ଅଧିବେଶନ ଓଡ଼ିଶାରେ କରିବାପାଇଁ ନିମନ୍ତ୍ରଣ ଦେବାକୁ ଆମର ସ୍ଥିରହୋଇଥାଏ । ରାଜ୍ୟ କଂଗ୍ରେସ ପକ୍ଷରୁ ନିମନ୍ତ୍ରଣପତ୍ର ଧରି ମୁଁ ପ୍ରଧାନମନ୍ତ୍ରୀଙ୍କର ସେହି ସ୍ୱତନ୍ତ୍ର ବିମାନରେ ପାଟନା ଯାଇଥିଲି । ପାଟନା କଂଗ୍ରେସର ଖୋଲା ଅଧିବେଶନରେ ପରବର୍ତ୍ତୀ କଂଗ୍ରେସ ଅଧିବେଶନ ଭୁବନେଶ୍ୱରରେ ଅନୁଷ୍ଠିତ ହେବାପାଇଁ ଓଡ଼ିଶା ପକ୍ଷରୁ ଆମନ୍ତ୍ରଣ ଜଣାଇବାର ସୌଭାଗ୍ୟ ମୋର ଘଟିଥିଲା । ବହୁବର୍ଷ ପୂର୍ବରୁ ଓଡ଼ିଶାରେ ଜାତୀୟ କଂଗ୍ରେସ ଅଧିବେଶନ କରିବାର ଯେଉଁ ଆଗ୍ରହ ଓଡ଼ିଶା କଂଗ୍ରେସକର୍ମୀ ଓ ଓଡ଼ିଶାବାସୀଙ୍କ ମନରେ ଥିଲା, ଏହି ଆମନ୍ତ୍ରଣ ଗୃହୀତ ହେବା ପରେ ସେହି ଆଶା ଫଳବତୀ ହୋଇଥିଲା । ଏହି ପ୍ରସଙ୍ଗରେ ଉଲ୍ଲେଖ କରିବାର କଥା ଯେ ୧୯୩୧ରେ କରାଚୀ କଂଗ୍ରେସ ଅଧିବେଶନରେ ଓଡ଼ିଶା ପକ୍ଷରୁ ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ନିମନ୍ତ୍ରଣ ଜଣାଇଥିଲେ ପରବର୍ତ୍ତୀ ଅଧିବେଶନ ଓଡ଼ିଶାରେ କରିବାପାଇଁ । ଏହି ନିମନ୍ତ୍ରଣ ଗ୍ରହଣ କରାଯାଇଥିଲା । ୧୯୩୨ ଏପ୍ରିଲ ମାସରେ ପୁରୀଠାରେ କଂଗ୍ରେସ ଅଧିବେଶନ କରିବାର ସମସ୍ତ ଆୟୋଜନ ଚାଲିଥାଏ । ପଣ୍ଡିତ ନୀଳକଣ୍ଠ ଦାସ ଅଭ୍ୟର୍ଥନା ସମିତିର ସଭାପତି ଥାଆନ୍ତି । କିନ୍ତୁ ୧୯୩୨ ଜାନୁୟାରୀ ପାଞ୍ଚ ତାରିଖରେ ଭାରତବର୍ଷରେ କଂଗ୍ରେସ ହଠାତ୍ ବେଆଇନ୍ ଘୋଷିତ ହେଲା ଏବଂ ପୁରୀ ବଳିଆପଣ୍ଡାଠାରେ କଂଗ୍ରେସ ଅଧିବେଶନପାଇଁ ଯେଉଁ ବ୍ୟବସ୍ଥାମାନ କରାଯାଉଥିଲା ତାହାକୁ ମଧ୍ୟ ଇଂରେଜ ସରକାର ବେଆଇନ ଘୋଷଣା କରିଦେଲେ । ଓଡ଼ିଶାବାସୀଙ୍କର ଏକ ବଡ଼ ଆଶା ନିଷ୍ଫଳ ହୋଇଯାଇଥିଲା । ଏହାର ପ୍ରାୟ ତେଇଶ ବର୍ଷ ପରେ ୧୯୫୫ ମସିହା ମେ ମାସରେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିବା ସମୟରେ ବ୍ରହ୍ମପୁରଠାରେ କେବଳ ନିଖିଳ ଭାରତ କଂଗ୍ରେସ କମିଟିର ଏକ ବୈଠକ ହୋଇଥିଲା ଏବଂ ବତିଶ ବର୍ଷ ପରେ ଭୁବନେଶ୍ୱରଠାରେ ଜାତୀୟ କଂଗ୍ରେସର ପୂର୍ଣ୍ଣାଙ୍ଗ ଅଧିବେଶନ ହେବାର ସୁଯୋଗ ଘଟିଲା । ଚୀନ୍‌ର ଭାରତ ଆକ୍ରମଣ ଓ ଚୀନ୍-ଭାରତ ଯୁଦ୍ଧ ହେତୁ ୧୯୬୩ରେ କଂଗ୍ରେସ ଅଧିବେଶନ ହୋଇନଥିଲା । ତେଣୁ ୧୯୬୪ ମସିହାରେ ଭୁବନେଶ୍ୱରଠାରେ କଂଗ୍ରେସ ଅଧିବେଶନ ଅନୁଷ୍ଠିତହେଲା । ଦୁର୍ଭାଗ୍ୟର କଥା ଯେ, ସେହି କଂଗ୍ରେସ ଅଧିବେଶନରେ ଯୋଗଦେବାପାଇଁ ପଣ୍ଡିତ ନେହେରୁଙ୍କର ଓଡ଼ିଶା ଆଗମନ ଥିଲା ଓଡ଼ିଶାରେ ସେହି ମହାନ୍ ନେତାଙ୍କର ଶେଷ ଗସ୍ତ । ସେତିକିବେଳେ ଭୁବନେଶ୍ୱର ରାଜଭବନରେ ସେ ଅସୁସ୍ଥ ହୋଇପଡ଼ିଥିଲେ ।

ଭୁବନେଶ୍ୱର କଂଗ୍ରେସ ଅଧିବେଶନ ଏକ ଯୁଗାନ୍ତକାରୀ ଓ ଅବିସ୍ମରଣୀୟ ଅଧିବେଶନ ବୋଲି ଅନେକେ କୁହନ୍ତି । ବାସ୍ତବିକ ଏହା କେବଳ କଂଗ୍ରେସ ଇତିହାସରେ ନୁହେଁ, ସାରା ଭାରତ ତଥା ଓଡ଼ିଶା ଇତିହାସରେ ମଧ୍ୟ ଅନେକ କାରଣରୁ ମହନୀୟ । ଓଡ଼ିଶାରେ ଜାତୀୟ ଆନ୍ଦୋଳନର ଭଗୀରଥ, କଂଗ୍ରେସର ପ୍ରାଣପ୍ରତିଷ୍ଠାତା ଉତ୍କଳମଣି ଗୋପବନ୍ଧୁଙ୍କ ନାମରେ ଏଠାରେ ଗଢ଼ିଉଠିଥିଲା ଅତି ମାର୍ଜିତ, ସୁନ୍ଦର, ସାଡ଼ମ୍ବର, ଚିତ୍ତାକର୍ଷକ ବିରାଟ ଗୋପବନ୍ଧୁନଗର । ଓଡ଼ିଶାର ସେହି ବରେଣ୍ୟ ବୀରପୁରୁଷଙ୍କ ସ୍ମୃତିରେ ଭାରତର ଡାକତାର ବିଭାଗ ପ୍ରକାଶକଲେ ସ୍ୱତନ୍ତ୍ର ଡାକଟିକଟ । ଜଣେ ଓଡ଼ିଆଙ୍କୁ ସମ୍ମାନ କରିବାରେ ଭାରତୀୟ ଡାକତାର ବିଭାଗପକ୍ଷେ ଏହା ପ୍ରଥମ ଘଟଣା । ଭୁବନେଶ୍ୱର କଂଗ୍ରେସରେହିଁ ଭାରତବର୍ଷର ଯୁଗାନ୍ତକାରୀ ଅର୍ଥନୈତିକ ଓ ରାଜନୈତିକ ପ୍ରସ୍ତାବ ଗ୍ରହଣ କରାଯାଇଥିଲା । ଜଣେ କଂଗ୍ରେସ ଇତିହାସପ୍ରଣେତା ଶ୍ରୀ ହର୍ଷଦେଓ ମାଲବ୍ୟଙ୍କ ଭାଷାରେ, "The Bhubaneswar

Resolution on Democracy and Socialism clearly laid down that Indian Planning should be consciously so directed that it leads to the creation of a socialist society. It called for elimination of privileges, disparities and exploitation. It warned against concentration of wealth and means of production in a few hands. It called upon a ceilling on income and property in private hands, for workers' participation in management, completion of entire programme of land reforms within two years, etc." ଅନ୍ୟ ଜଣେ ଗ୍ରନ୍ଥକାର ଡକ୍ଟର ଶଙ୍କର ଘୋଷ ଲେଖିଛନ୍ତି, "In January 1964 in Bhubaneswar, the Congress accepted a socialist state as its goal." ଏଭଳି ପ୍ରଗତିଶୀଳ ଯୁଗାନ୍ତକାରୀ ନିଷ୍ପତ୍ତି ନେବା ପଛରେ ପଣ୍ଡିତଜୀଙ୍କର ଆଶୀର୍ବାଦ, ନୂତନ କଂଗ୍ରେସ ସଭାପତି ଶ୍ରୀ କାମରାଜ ନାଦରଙ୍କ ଦୃଢ଼ତା ଏବଂ ସର୍ବଶ୍ରୀ ଲାଲ୍‌ବାହାଦୂର ଶାସ୍ତ୍ରୀ, ଶ୍ରୀ କୃଷ୍ଣମେନନ୍ ଓ ଶ୍ରୀ ବିଜୁ ପଟ୍ଟନାୟକଙ୍କ ବଳିଷ୍ଠ ଭୂମିକା ନିହିତ ଥିଲା ।

ତା' ଛଡ଼ା ଭୁବନେଶ୍ୱର କଂଗ୍ରେସ ଅଧିବେଶନପାଇଁ ସବୁ ଦିଗରୁ ଯେଉଁଭଳି ସୁବନ୍ଦୋବସ୍ତ କରାଯାଇଥିଲା ସେଭଳି ତ୍ରୁଟିବିହୀନ ଆୟୋଜନ ପୂର୍ବେ କେଉଁଠି ହୋଇନଥିଲା; ଆଜିପର୍ଯ୍ୟନ୍ତ ମଧ୍ୟ ହୋଇନାହିଁ ବୋଲି କଂଗ୍ରେସ ବିଭାଜନ ପର୍ଯ୍ୟନ୍ତ ଜାତୀୟ ସ୍ତରରେ ଦାୟିତ୍ୱସମ୍ପନ୍ନ ସାମ୍ବାଦିକମାନେ ବହୁବାର କହିବାର ମୁଁ ଶୁଣିଛି । ଅଖିଳ ଭାରତ କଂଗ୍ରେସ କମିଟିର ସଭାମଣ୍ଡପଟି ଯେପରି ଭାବରେ ସୁନ୍ଦର, ସାଡ଼ମ୍ବର ଓ ଆକର୍ଷଣୀୟ ହୋଇଥିଲା ତାହା ପୂର୍ବରୁ ଅନୁଷ୍ଠିତ ସମସ୍ତ ସଭାମଣ୍ଡପଠାରୁ ରୁଚିକର ଓ ଉତ୍କୃଷ୍ଟ ଥିଲା ବୋଲି ସମସ୍ତେ ଅନୁଭବ କରିଥିଲେ । କଂଗ୍ରେସ ଅଧିବେଶନ ମଣ୍ଡପ ଓ ପ୍ରେକ୍ଷାଳୟ ଓଡ଼ିଶାର ନିପୁଣ ଶିଳ୍ପୀ ଓ କର୍ମୀମାନଙ୍କ କଳ୍ପନା ଓ କରଣୀରେ ଏପରି କମନୀୟ ହୋଇଥିଲା ଯେ ପଣ୍ଡିତ ନେହେରୁ ମଣ୍ଡପ ଉପରକୁ ଉଠିବା ପରେ ଚାରିଆଡ଼କୁ କିଛି କ୍ଷଣ ମୁଗ୍ଧ ହୋଇ ଚାହିଁ ଦେଖିଥିଲେ । କିନ୍ତୁ ହାୟ ! ସେହି ମଣ୍ଡପ ଉପରେ କେତେ ସମୟ ବସିବା ପରେ ସେ ଅସୁସ୍ଥତା ଅନୁଭବ କରିଥିଲେ; ତେଣୁ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଓ ଶ୍ରୀ ବିଜୁ ପଟ୍ଟନାୟକ ତାଙ୍କୁ ସେଠାରୁ ରାଜଭବନକୁ ଘେନିଯାଇଥିଲେ । ତା'ପରେ ଶ୍ରୀ ନେହେରୁ ଆଉ ଅଧିବେଶନରେ ଯୋଗ ଦେଇନଥିଲେ । ଗୋଟିଏ ଦିନ ରାଜଭବନରେ ବିଶ୍ରାମନେବା ପରେ ସେ ଦିଲ୍ଲୀ ଫେରିଯାଇଥିଲେ । ଦିଲ୍ଲୀ ଯିବା ଦିନ ସକାଳ ପ୍ରାୟ ଛ'ଘଣ୍ଟା ସମୟରେ ଭୁବନେଶ୍ୱର ରାଜଭବନ ପରିସରମଧ୍ୟକୁ ଗୋଟିଏ ହେଲିକେପ୍ଟର ଅଣାଯାଇଥିଲା । ସେହି ହେଲିକେପ୍ଟରଯୋଗେ ପଣ୍ଡିତ ନେହେରୁ ପ୍ରତିରକ୍ଷା ବିଭାଗର ଚାରିବାଟିଆ ବିମାନ ବନ୍ଦରକୁ ଯାଇଥିଲେ ଏବଂ ସେଠାରୁ ଗୋଟିଏ ସ୍ୱତନ୍ତ୍ର ଉଡ଼ାଜାହାଜରେ ଦିଲ୍ଲୀ ଅଭିମୁଖେ ଯାତ୍ରା କରିଥିଲେ । ସେଦିନ ସକାଳେ ରାଜଭବନରୁ ଶ୍ରୀ ନେହେରୁଙ୍କର ବାହାରିବା ଦୃଶ୍ୟ ଭୁଲିହେବନାହିଁ । ସେ ବଡ଼ ରୁଗ୍ଣ ଓ ବିଷଣ୍ଣ ଦେଖାଯାଉଥାଆନ୍ତି । ଶକ୍ତିର ଅଫୁରନ୍ତ ଉତ୍ସ ପରି ଯେଉଁ ନେହେରୁ ଆମ ଆଗରେ ଚିରଦିନ ଉଭାହୋଇଥିଲେ ତାଙ୍କୁ ସେଦିନ ପୋର୍ଟିକୋଠାରୁ ହେଲିକେପ୍ଟରଯାଏଁ ମାତ୍ର କେତେ ଗଜ ମଧ୍ୟ ଗୋଟିଏ ଗାଡ଼ିରେ ନିଆଯାଇଥିଲା । ତାଙ୍କ ସ୍ୱାସ୍ଥ୍ୟର ଏଭଳି ଅବସ୍ଥା କଥା ସେତେବେଳେ କିଛିଟା ଗୋପନ ରଖାଯାଇଥିଲା । ପଣ୍ଡିତ ନେହେରୁ ସେହି ଗାଡ଼ିରୁ ଓହ୍ଲାଇ ଯେତେବେଳେ ହେଲିକେପ୍ଟର ପାଖକୁ ବାହାରିଲେ ସେତେବେଳେ ସେଠାରେ ଆଉ ଗୋଟିଏ ସାମାନ୍ୟ ଦୁର୍ଘଟଣା ଘଟିବା କଥା ମୋର ମନେଅଛି । ନେହେରୁ ଗାଡ଼ିରୁ ବାହାରି ଆସିଲା ପରେ ଗାଡ଼ିର କବାଟଟି ତାଙ୍କର ସିକ୍ୟୁରିଟି ଅଫିସର ଶ୍ରୀ ମେହେରା ହଠାତ୍ ଜୋର୍‌ରେ ବନ୍ଦ କରିଦେଇଥିଲେ । ବିଜୁବାବୁଙ୍କ ହାତ ସେହି କବାଟ ଫାଙ୍କରେ ଥିଲା । ତାଙ୍କର ଆଙ୍ଗୁଠି ଭୀଷଣଭାବରେ ଚାପିହୋଇ ରକ୍ତ ବାହାରିଥିଲା । ମାତ୍ର ବିଜୁବାବୁ କାହାରିକୁ କିଛିନକହି, ନିଜର କଷ୍ଟ ହେଉଛି ବୋଲି ନଜଣାଇ ଛିଡ଼ାହୋଇ ରହିଥାଆନ୍ତି । ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଏ କଥା ଲକ୍ଷ୍ୟକରି ହଠାତ୍ ରାଜଭବନଆଡ଼େ

ଦୌଡ଼ିଯାଇଥିଲେ । ସେଠାରୁ ଫ୍ରିଜ୍‌ରୁ ବରଫ ଆଣି ବିଜୁବାବୁଙ୍କ ଆଙ୍ଗୁଠିରେ ଦେଇ ନିଜ ରୁମାଲ୍‌ରେ ବାନ୍ଧି ଦେଇଥିଲେ । ସେତେବେଳଯାଏ ସେଠାରେ ଉପସ୍ଥିତ ଥିବା ବ୍ୟକ୍ତିମାନେ ଜାଣିନଥିଲେ ଯେ ବିଜୁବାବୁଙ୍କ ହାତରେ ଏପରିଭାବରେ ଆଘାତ ଲାଗିଛି । ସେଠାରେ ମୋ ବ୍ୟତୀତ ରାଜ୍ୟପାଳ ଶ୍ରୀ ଖୋସଲା, ମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ୍ ମିତ୍ର, ପୁରୀ ଜିଲ୍ଲା ପୁଲିସ ସୁପରିନ୍‌ଟେଣ୍ଡେଣ୍ଟ ଶ୍ରୀ ଗୋବିନ୍ଦଚନ୍ଦ୍ର ସେନାପତି ପ୍ରଭୃତି ଅଳ୍ପ କେତେଜଣ ଉପସ୍ଥିତ ଥିଲେ ।

ମହାନ୍ ଜବାହରଲାଲ୍‌ଙ୍କର ଓଡ଼ିଶାରୁ ଶେଷ ବିଦାୟର ଏହି କରୁଣ ଦୃଶ୍ୟ ମୋ ସ୍ମୃତିପଟକୁ ଏବେ ମଧ ମଝିରେ ମଝିରେ ଆନ୍ଦୋଳିତ କରେ । ଭୁବନେଶ୍ୱର କଂଗ୍ରେସ ଅଧିବେଶନ ପରେ ସଭାମଣ୍ଡପରେ ଶ୍ରୀ ନେହେରୁଙ୍କ ଉପସ୍ଥିତିର ଗୌରବ କଂଗ୍ରେସ ଇତିହାସରୁ ଚିରକାଳପାଇଁ ଲୁପ୍ତ ହୋଇଗଲା । ସେହି ବର୍ଷ ମେ ମାସ ସତେଇଶ ତାରିଖରେ ପଣ୍ଡିତ ନେହେରୁଙ୍କ ଦେହାନ୍ତ ହେଲା । ଜଣେ ବିଶିଷ୍ଟ ରେଡ଼ିଓ ବାର୍ତ୍ତାକାର ଡିମେଲୋଙ୍କ ଭାଷାରେ, ''ସେଦିନ ନେହେରୁ ପୃଥିବୀବକ୍ଷରୁ ଲୀନ ହୋଇଯାଇ ସେହିଦିନ ସନ୍ଧ୍ୟାରେ ବିଶ୍ୱ ଆକାଶରେ ଉଦ୍‌ଭାସିତ ହେଲେ ଏକ ନୂଆ ନକ୍ଷତ୍ର ରୂପରେ ।'' ପଣ୍ଡିତ ନେହେରୁଙ୍କର ଏହି ଶେଷ ଓଡ଼ିଶା ଗସ୍ତ ସମୟରେ କଂଗ୍ରେସ ଅଧିବେଶନ ଆରମ୍ଭହେବା ପୂର୍ବରୁ ସେ ମହାନଦୀର ଟିକରପଡ଼ା ଯୋଜନାର ଭିତ୍ତିସ୍ଥାପନକରିଥିଲେ । ବୌଦ ଓ ସୋନପୁର ଅଞ୍ଚଳର ଲୋକମାନେ ଏହି ଯୋଜନାକୁ ବିରୋଧକରୁଥିଲେ । ଆଶଙ୍କା କରାଯାଉଥିଲା ଯେ ସେସବୁ ଅଞ୍ଚଳରୁ ବହୁତ ଲୋକ ଆସି ପ୍ରଧାନମନ୍ତ୍ରୀ ଭିତ୍ତିସ୍ଥାପନ କରିବାବେଳେ ଗଣ୍ଡଗୋଳ କରିବେ । ଗଣ୍ଡଗୋଳକାରୀମାନଙ୍କ ନେତାମାନଙ୍କର ଉଦ୍ଦେଶ୍ୟ ଥାଏ କୌଣସିମତେ ଏକ ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରାଇ ଲୋକଙ୍କ ଉପରେ ପୁଲିସ ପକ୍ଷରୁ ଲାଠି ଓ ଗୁଳିଚାଳନା କରାଇଦିଆଯାଇପାରିଲେ ରାଜ୍ୟରେ ବିଶେଷ ଉତ୍ତେଜନା ସୃଷ୍ଟିହୋଇଯିବ ଏବଂ ସେମାନଙ୍କର ଅଭିଯୋଗ ପ୍ରତି ଦେଶସାରା ସମସ୍ତଙ୍କର ଦୃଷ୍ଟି ପଡ଼ିବ । ମୁଁ ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ ଥିବାରୁ ସେଭଳି ପରିସ୍ଥିତି ନ ଉପୁଜି ସୁରୁଖୁରୁରେ କିପରି ଉତ୍ସବଟି ସମାପ୍ତ ହେବ ସେ ଦିଗରେ ମୋତେ ବିଶେଷ ଦୃଷ୍ଟିଦେବାକୁ ପଡ଼ିଥିଲା । ବୌଦ ଓ ସୋନପୁର ଲୋକଙ୍କୁ ତ ବେଶି ମତାଯାଉଥାଏ । ତେଣୁ ପୁଲିସ ବଳପ୍ରୟୋଗ ନକରି ବୌଦ ଓ ସୋନପୁର ଅଞ୍ଚଳର ଲୋକଙ୍କୁ କିପରି ଉତ୍ସବ ସ୍ଥାନକୁ ଆଦୌ ନଆସିବାର ବାଟ କରାଯିବ, ସେ ବିଷୟରେ ଆମ୍ଭମାନଙ୍କୁ ବହୁତ ଚିନ୍ତା କରିବାକୁ ପଡ଼ିଥିଲା । ସେତେବେଳକାର ଜଣେ ପଦସ୍ଥ ଅଫିସର ଗୋଟିଏ ଅଭିନବ କୌଶଳ ବାହାରକଲେ । କୌଶଳଟି ବଡ଼ କୌତୂହଳପୂର୍ଣ୍ଣ । ସଂପୃକ୍ତ ଅଞ୍ଚଳରେ ପୂର୍ବରୁ ଘୋଷଣା କରାଯାଇଥିଲା ଯେ ଟିକରପଡ଼ା ଅଞ୍ଚଳରେ ଭୟଙ୍କର ଭାବରେ ହଇଜା ଲାଗିଛି, କଲେରା ଇଞ୍ଜେକ୍‌ସନ ନଦେଇ କାହାରିକୁ ସେଠାକୁ ଛଡ଼ାଯିବନାହିଁ । ତିରିଶ ଚାଳିଶ ଜଣ ଲୋକ ଅତି ବଡ଼ ବଡ଼ ଇଂଜେକ୍‌ସନ୍ ଛୁଞ୍ଚି ଓ ସିରିଞ୍ଜ୍ ଧରି ବୌଦ-ଟିକରପଡ଼ା ରାସ୍ତା ଉପରେ, ନଈଘାଟରେ ଏବଂ ଆଉ କେତୋଟି ରାସ୍ତାରେ କଲେରା ଇଞ୍ଜେକ୍‌ସନ୍ ଦେବା ବାହାନାରେ ଜଗିରହିଲେ । ଲୋକ ଦେଖିଲାକ୍ଷଣି ଡାମଣଭଳି ବଡ଼ ବଡ଼ ଇଞ୍ଜେକ୍‌ସନ୍ ଛୁଞ୍ଚିଲଗା ସିରିଞ୍ଜ୍ ଧରି ଇଞ୍ଜେକ୍‌ସନ୍ ଦେବାକୁ ଦୌଡ଼ାଦୌଡ଼ି କରୁଥିଲେ । ଗୋଇନ୍ଦା ବିଭାଗର କେତେକ କନେଷ୍ଟବଳ ସାଦା ପୋଷାକରେ ରାସ୍ତାର ବିଭିନ୍ନ ସ୍ଥାନରେ ରହି ଡାକ୍ତରମାନେ କିପରି ସେମାନଙ୍କୁ ସେହି ବଡ଼ ବଡ଼ ଛୁଞ୍ଚିରେ ଫୋଡ଼ି ଇଞ୍ଜେକ୍‌ସନ୍ ଦେବାକୁ ଗୋଡ଼ାଉଥିଲେ ସେକଥା ଲୋକଙ୍କୁ କହି ଛାନିଆଁ କରାଇଦେଉଥା'ନ୍ତି । ପ୍ରକୃତରେ ଡାକ୍ତର ବା କମ୍ପାଉଣ୍ଡର କେହି ସେଠାକୁ ଯାଇନଥିଲେ । ଏପରିକି ଗୋରୁଗାଈଙ୍କୁ ଇଞ୍ଜେକ୍‌ସନ୍ ଦେବା ଛୁଞ୍ଚି ଓ ସିରିଞ୍ଜ୍ କିଛି ଯୋଗାଡ଼ କରି ବ୍ୟବହାର କରାଯାଇଥିବାର ମୁଁ ଶୁଣିଲି । କଲେରା ଇଞ୍ଜେକ୍‌ସନ୍ ଦିଆଯାଉଥିବା କଥା ଖୁବ୍ ଜୋର୍‌ସୋର୍‌ରେ ପ୍ରଚାରିତ ହୋଇଗଲା । ଏକଥା ଶୁଣି ଆତଙ୍କିତ ହୋଇ ବୌଦ ଓ ସୋନପୁରଆଡୁ ଲୋକେ ଆଉ ଆସିଲେନାହିଁ ଏବଂ ଅନ୍ୟଆଡୁ ମଧ ଖୁବ୍ କମ୍ ଲୋକ ଆସିଥିଲେ । ଟିକରପଡ଼ାରେ ଯେଉଁ ପାହାଡ଼ ଉପରେ ଶ୍ରୀ ନେହେରୁ ଟିକରପଡ଼ା ବନ୍ଧର ଭିତ୍ତିସ୍ଥାପନ

କଲେ ସେଠାରେ ମୁଁ ଉପସ୍ଥିତ ଥିଲି । ମୋଟାମୋଟି ତିନି ଶହ ଖଣ୍ଡେ ଲୋକ ସେଠାରେ ଉପସ୍ଥିତ ଥିଲେ ଏବଂ ତା'ଭିତରୁ ଅଧାରୁ ବେଶି ଥିଲେ ସରକାରୀ କର୍ମଚାରୀ । ଏହି ପ୍ରକାର କୌଶଳ ଓ ଅମାର୍ଜିତ ଉପାୟ ଅବଲମ୍ବନ କରି ଗୋଟିଏ ଅସୁନ୍ଦର ପରିସ୍ଥିତିକୁ ଏଡ଼ାଇଦେବାକୁ ପଡ଼ିଥିଲା ଏବଂ ଅବାଞ୍ଛିତ ଭାବରେ ହିଂସାକାଣ୍ଡ ସୃଷ୍ଟି କରିବାପାଇଁ ବିରୋଧୀ ଦଳର ଚକ୍ରାନ୍ତ ଭଣ୍ଡୁରହୋଇଗଲା । ସେଥିପାଇଁ ବୋଧହୁଏ ବାକ୍ୟ ଅଛି; ''ଯଦ୍ୟପି ଶୁଦ୍ଧଂ, ଲୋକବିରୁଦ୍ଧଂ, ନାଦରଣୀୟଂ ନାକରଣୀୟଂ ।''

## ବିଦେଶଯାତ୍ରା

୧୯୬୩ ମସିହାରେ ଆନ୍ତର୍ଜାତିକ ଶ୍ରମ ସଂଗଠନ (I.L.O) ବାର୍ଷିକ ସମ୍ମିଳନୀରେ ଯୋଗଦେବା ପାଇଁ ଭାରତୀୟ ପ୍ରତିନିଧିଦଳର ନେତାରୂପେ କେନ୍ଦ୍ର ସରକାର ମୋତେ ମନୋନୀତ କରିଥିଲେ । ମୁଁ ସେତେବେଳେ ଆମ ରାଜ୍ୟରେ ଶ୍ରମବିଭାଗର ମଧ ମନ୍ତ୍ରୀ ଥିଲି । ଏହି ଆନ୍ତର୍ଜାତିକ ଶ୍ରମ ସଂଗଠନ ଏକ ଆନ୍ତର୍ମହାଦେଶୀୟ ସଂସ୍ଥା । ମିଳିତ ରାଷ୍ଟ୍ରସଂଘ (U.N.O.) ଠାରୁ ଏହା ଅନେକ ପୁରାତନ ସଙ୍ଗଠନ । ପ୍ରଥମ ମହାଯୁଦ୍ଧ ପରେ ପରେ ୧୯୧୯ ମସିହାର ଶାନ୍ତି ସମାଧାନରୁ ଏହାର ଉଦ୍ଭବ । ପରବର୍ତ୍ତୀ କାଳରେ ମିଳିତ ଜାତିସଂଘର ଏକ ସ୍ୱତନ୍ତ୍ର ସଂସ୍ଥାରୂପେ ଏହା କାର୍ଯ୍ୟ କରିଆସୁଅଛି । ଏହା ପୃଥିବୀର ସମସ୍ତ ସରକାରଙ୍କର ଆନ୍ତର୍ଜାତିକ ସଂଗଠନମାନଙ୍କ ମଧରେ ଅନନ୍ୟ; ସଭ୍ୟ ରାଷ୍ଟ୍ରମାନଙ୍କର ତ୍ରିପାକ୍ଷିକ ପ୍ରତିନିଧିଦଳ, ଯଥା– ସରକାର, ଶ୍ରମିକ ଓ ମାଲିକ ପ୍ରତିନିଧିତ୍ୱ କରନ୍ତି ।

ଏହି ସଂଗଠନର ଭୂମିକା ଓ ଲକ୍ଷ୍ୟ ଯେପରି ମହତ୍ତ୍ୱପୂର୍ଣ୍ଣ ବିଭିନ୍ନ କ୍ଷେତ୍ରରେ ଏହାର ସାଫଲ୍ୟ ମଧ ସେହିପରି ଆଦୃତ ହୋଇପାରିଛି । ଶ୍ରମିକମାନଙ୍କର କେବଳ ବୃତ୍ତିଗତ ସୁବିଧା ଓ ସୁଖସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟିଦେବାରେ ଏହାର ଲକ୍ଷ୍ୟ ସୀମାବଦ୍ଧ ନୁହେଁ । ଶ୍ରମମଙ୍ଗଳ କାର୍ଯ୍ୟକ୍ରମ ଜରିଆରେ ଶ୍ରମିକଶ୍ରେଣୀକୁ ସବୁ ଦେଶରେ ସମାଜ ଓ ରାଷ୍ଟ୍ରର ଏକ ପ୍ରଧାନ ଶକ୍ତିରୂପେ ପ୍ରତିଷ୍ଠିତ କରାଇବା ପାଇଁ ଏହି ସଂଗଠନ ମାଧମରେ ଏକ ବ୍ୟାପକ ଓ ମୌଳିକ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ଏହି ଦୃଷ୍ଟିରୁ ଆନ୍ତର୍ଜାତିକ ଶ୍ରମ ସଂଗଠନର କାର୍ଯ୍ୟାବଳୀ ସମସ୍ତ ଆନ୍ତର୍ଜାତିକ ସଂସ୍ଥା ମଧରେ ଅତୁଳନୀୟ ଏବଂ ଏହାର ସୁଦୂରପ୍ରସାରୀ ସମାଜମଙ୍ଗଳ କାର୍ଯ୍ୟକ୍ରମ ମଧ ଅନୁପମ ବିବେଚିତ ହୋଇଛି । ଅର୍ଦ୍ଧଶତାବ୍ଦୀବ୍ୟାପୀ ଅଭୁତପୂର୍ବ ଫଳପ୍ରସୂ ସମାଜମଙ୍ଗଳ କାର୍ଯ୍ୟପାଇଁ ଏହି ସଂଗଠନ ୧୯୬୯ ମସିହାରେ ନୋବେଲ୍ ପୁରସ୍କାର ମଧ ପାଇଥିଲା । ଆଧୁନିକ ସମାଜବିଜ୍ଞାନକୁ ଅନୁଶୀଳନ କରି ଶ୍ରମ ଆଇନ, ଶ୍ରମିକ କଲ୍ୟାଣ ଓ ଶ୍ରମ ସଂସ୍ଥାନର ମାନ ନିର୍ଦ୍ଧାରଣ କରିବାଠାରୁ ଆରମ୍ଭକରି ନିଯୁକ୍ତିର ସୁରକ୍ଷା, ଟ୍ରେଡ୍ ୟୁନିୟନ୍ ଓ ନାଗରିକ ଅଧିକାର ସୁରକ୍ଷା, ଏପରିକି ବିଭିନ୍ନ ସ୍ତରରେ ଗୁରୁତ୍ୱପୂର୍ଣ୍ଣ ସାମାଜିକ ଓ ଅର୍ଥନୈତିକ ନିଷ୍ପତ୍ତି ଗ୍ରହଣ କରିବାରେ ଶ୍ରମିକମାନଙ୍କୁ ସାମିଲ୍ କରିବା ପର୍ଯ୍ୟନ୍ତ ବହୁବିଧ କାର୍ଯ୍ୟରେ ଏହି ସଂଗଠନ ସଫଳ ପଦକ୍ଷେପ ନେଇପାରିଛି । ସାମାଜିକ ଓ ଶ୍ରମ ନୀତି ନିର୍ଦ୍ଧାରଣ, ପରିଚାଳନା, ତାଲିମ୍, ବୈଜ୍ଞାନିକ ପଦ୍ଧତିରେ ଶ୍ରମଶକ୍ତି ବିନିଯୋଗ, ବେକାରି ଦୂର କରିବାପାଇଁ ସମବାୟଭିତ୍ତିକ ଉଦ୍ୟୋଗ, ଗ୍ରାମାଞ୍ଚଳରେ ଶିଳ୍ପପ୍ରସାର ଏବଂ ଏ ସମସ୍ତ କାର୍ଯ୍ୟପାଇଁ ପ୍ରାସଙ୍ଗିକ ତଥ୍ୟ ସଂକଳନ, ଗବେଷଣା ଆଦି ସର୍ବବିଧ କାର୍ଯ୍ୟରେ ସଭ୍ୟ-ରାଷ୍ଟ୍ରମାନେ ଏହି ସଂଗଠନଠାରୁ ଦିଗ୍‌ଦର୍ଶନ ଓ ବୈଷୟିକ ସାହାଯ୍ୟ ପାଇଆସୁଛନ୍ତି । ମଧଇଉରୋପର ସୁଇଜରଲାଣ୍ଡ ଦେଶର ଜେନେଭା ସହରରେ ଏହି ସଂସ୍ଥାର ମୁଖ୍ୟ କାର୍ଯ୍ୟାଳୟ । ପୃଥିବୀର ପ୍ରାୟ ସବୁ ଦେଶ ଏହି ଅନୁଷ୍ଠାନର ସଭ୍ୟଶ୍ରେଣୀଭୁକ୍ତ । ୧୯୬୩ ମସିହାରେ ୧୨୧ଟି ଦେଶ ଏହି ଶ୍ରମିକ ଆନ୍ତର୍ଜାତିକ ସଂସ୍ଥାର ସଭ୍ୟ ଥିଲେ । ମିଳିତ ଜାତିସଂଘର ସଭ୍ୟ ନଥିଲେ ମଧ କୌଣସି ଦେଶ ଏହି ଶ୍ରମିକ ସଂସ୍ଥାରେ ସଭ୍ୟ ହେବାକୁ ବାରଣ ନଥିଲା । ୧୯୬୩ ମସିହାରେ ଚୀନ୍ ଦେଶ ମିଳିତ ଜାତିସଂଘର ସଭ୍ୟ ନଥିଲା, ମାତ୍ର ଏହି ଆନ୍ତର୍ଜାତିକ ଶ୍ରମିକ ସଂସ୍ଥାର ସଭ୍ୟ ହୋଇ ରହିଥିଲା ।

ଭାରତୀୟ ଜାତୀୟ ୟୁନିୟନ୍ କଂଗ୍ରେସ ସେତେବେଳେ ଆମ ଦେଶର ଶ୍ରମିକମାନଙ୍କର ସ୍ୱୀକୃତିପ୍ରାପ୍ତ ଶ୍ରମିକ ଅନୁଷ୍ଠାନ ଥିଲା । ତେଣୁ ଉକ୍ତ ଶ୍ରମିକ ଅନୁଷ୍ଠାନରୁ ଦୁଇଜଣ ଶ୍ରମିକ ନେତା ଶ୍ରୀ ରାମମୂର୍ତ୍ତି ଓ ତତ୍କାଳୀନ ପାର୍ଲିଆମେଣ୍ଟ ସଦସ୍ୟ ଓ କେନ୍ଦ୍ରସରକାରଙ୍କର ଶ୍ରମବିଭାଗର ପୂର୍ବତନ ଉପମନ୍ତ୍ରୀ ଶ୍ରୀ ଆବେଦ୍ ଅଲ୍ଲୀ ଆମ ପ୍ରତିନିଧି ଦଳରେ ଥିଲେ । ମାଲିକମାନଙ୍କର ପ୍ରତିନିଧି ଥିଲେ ସୁବିଖ୍ୟାତ ଶିଳ୍ପପତି ଶ୍ରୀ ନାଭାଲ ଟାଟା ଓ ଶ୍ରୀ ସ୍ୱାମୀନାଥନ୍ । ଆମକୁ ମେ ମାସ ଶେଷ ସପ୍ତାହରେ ଜେନେଭା ଯିବାକୁ ପଡ଼ିଥିଲା । ଯିବା ପୂର୍ବରୁ ଆମ ଦେଶର ସେତେବେଳକାର ଶ୍ରମମନ୍ତ୍ରୀ ଶ୍ରୀ ଗୁଲଜାରିଲାଲ ନନ୍ଦାଙ୍କ ସହିତ ମୁଁ ଦେଖାକରି ପ୍ରତିନିଧିଦଳର ନେତା ହିସାବରେ ମୋର ଭାଷଣ ଓ କାର୍ଯ୍ୟ ଉପଲକ୍ଷେ ବିଭିନ୍ନ ସମସ୍ୟା ନେଇ ଭାରତ ସରକାରଙ୍କ ନୀତି ଓ ଆଭିମୁଖ୍ୟ ସଂପର୍କରେ ପରାମର୍ଶ କରିଥିଲି । କେନ୍ଦ୍ର ଶ୍ରମ ମନ୍ତ୍ରଣାଳୟର ତତ୍କାଳୀନ ସେକ୍ରେଟେରୀ ଶ୍ରୀ ଆର. ଏଲ୍. ମେହେଟ୍ଟା ଆମ ପ୍ରତିନିଧିଦଳର ସେକ୍ରେଟେରୀରୂପେ ଜେନେଭା ଯାଇଥିଲେ । ଶ୍ରୀ ମେହେଟ୍ଟା ଆମ ଓଡ଼ିଶା ସର୍ଭିସ୍‌ର ଜଣେ ଅଫିସର ଥିଲେ; ତେଣୁ ପ୍ରତିନିଧିଦଳର ସେକ୍ରେଟେରୀରୂପେ ସେ ଯିବାଦ୍ୱାରା ମୋ ପକ୍ଷରେ ଅନେକଟା ସୁବିଧାଜନକ ହୋଇଥିଲା । ମୁଁ ମେ' ମାସ ଏକତ୍ରିଶ ତାରିଖରେ ବମ୍ବେ ଛାଡ଼ି ଜେନେଭା ଅଭିମୁଖେ ଯାତ୍ରା କରିଥିଲି । ସମ୍ମିଳନୀରେ ଯୋଗଦେବାପାଇଁ ଯିବା ଆସିବା, ଜେନେଭାରେ ରହିବା, ଖାଇବା ଓ ପରିବହନର ସମସ୍ତ ଖର୍ଚ୍ଚ ସରକାର ବହନ କରୁଥିଲେ । କେବଳ କଲିକତାରୁ ଜେନେଭା ଏବଂ ଫେରିଲାବେଳେ ଜେନେଭାରୁ ଲଣ୍ଡନ ଓ ସେଠାରୁ ମସ୍କୋ ଦେଇ ଦିଲ୍ଲୀ ଆସିବାପାଇଁ ଉଡ଼ାଜାହାଜରେ ପ୍ରଥମ ଶ୍ରେଣୀର ଟିକଟ୍ ମୋତେ ମିଳିଥାଏ । ମୋର ବିଶେଷ ଆଗ୍ରହ ଥିଲା ଏହି ଅବସରରେ ଫ୍ରାନ୍‌ସ, ଜର୍ମାନୀ, ଇଂଲଣ୍ଡ ଓ ରୁଷିଆ ପ୍ରଭୃତି କେତେକ ଦେଶରେ କିଛି ସମୟ କଟାଇ କେତେକ ବିଷୟ ଅନୁଧ୍ୟାନ କରିବାକୁ । କୂଟନୈତିକ ପ୍ରତିନିଧିମାନଙ୍କୁ ଯେଉଁପରି ମର୍ଯ୍ୟାଦାର ପାସ୍‌ପୋର୍ଟ (Red Passport) ଓ ଭିସା ମିଳେ, ମୋତେ ସେହି ପ୍ରକାର ପାସ୍‌ପୋର୍ଟ ଓ ଭିସା ମିଳିଥିଲା । ମୋ ଇଚ୍ଛାମତେ ଅନ୍ୟାନ୍ୟ ଦେଶକୁ ଯିବାର ଅନୁମତି ମିଳିଲା, ମାତ୍ର ସେହି ଖର୍ଚ୍ଚପାଇଁ ବୈଦେଶିକ ମୁଦ୍ରା କିପରି ମିଳିବ ତାହହିଁ ହୋଇଥିଲା ମୋ ପକ୍ଷରେ ଗୋଟିଏ ବଡ଼ ସମସ୍ୟା । ଦିଲ୍ଲୀରେ ବୁଝିଲି ଯେ ଜେନେଭା ସମ୍ମିଳନୀରେ ଯୋଗଦେବାପାଇଁ ଯାହା ଖର୍ଚ୍ଚ ତା' ଉପରେ ଆଉ ଗୋଟିଏ ଟଙ୍କାର ବି ବୈଦେଶିକ ମୁଦ୍ରା ମିଳିବାର ଅନୁମତି କେବଳ ଅର୍ଥମନ୍ତ୍ରୀଙ୍କ ବ୍ୟତୀତ ଆଉ କେହି ଦେଇପାରିବେନାହିଁ । ସେତେବେଳେ ଅର୍ଥମନ୍ତ୍ରଣାଳୟରେ ଶ୍ରୀ ମୋରାରଜୀ ଦେଶାଇଙ୍କ କଡ଼ା ଶାସନ ଜାହିର୍ ଥାଏ । ସମସ୍ତେ କହୁଥା'ନ୍ତି ତାଙ୍କଠାରୁ ଏ ଦିଗରେ କିଛି ସାହାଯ୍ୟ ପାଇବା ଏକାବେଳେ ଅସମ୍ଭବ । ଦିନେ ଅର୍ଥମନ୍ତ୍ରୀ ଶ୍ରୀ ଦେଶାଇ ଦିଲ୍ଲୀ ବାହାରକୁ ଗସ୍ତରେ ଯାଇଥିଲେ । ସେଦିନ ତାଙ୍କର ଅର୍ଥବିଭାଗର ଉପମନ୍ତ୍ରୀ ଶ୍ରୀମତୀ ତାରକେଶ୍ୱରୀ ସିହ୍ନା କୌଣସିମତେ ମୋପାଇଁ ଅଧିକ ତିନି ଶହ ମାତ୍ର ଟଙ୍କାର ବୈଦେଶିକ ମୁଦ୍ରା ମଞ୍ଜୁରି କରିଦେଇଥିଲେ । ସେତିକି ଅର୍ଥ ବିଦେଶରେ କେତେକ ଅଧିକ ସ୍ଥାନରେ ରହିବା, ବୁଲିବା ଓ ଖାଇବା ନିମନ୍ତେ ବିଶେଷ ସହାୟକ ହେଲାନାହିଁ । ଖୁବ୍ ଖେଣ୍ଡିଖାଣ୍ଡି ଖର୍ଚ୍ଚକରି ଚଳିବାକୁ ବାଧହେଲି ।

ଯିବାଦିନ ମୁଁ କଲିକତାରୁ ବମ୍ବେ ଗଲି । ସେଠାରୁ Air India International ଉଡ଼ାଜାହାଜରେ ଜେନେଭା ଅଭିମୁଖେ ଯାତ୍ରା କରିଥିଲି । ବମ୍ବେ ବିମାନ ବନ୍ଦରଠାରେ ମୋତେ ଚାଳିଶ ଟଙ୍କାର ବୈଦେଶିକ ମୁଦ୍ରା ବାଟରେ ଖର୍ଚ୍ଚପାଇଁ ମିଳିବାର କଥା । ମୁଁ କଲିକତାରୁ ଗୋଟିଏ ଶହେଟଙ୍କିଆ ନୋଟ୍ ସାଙ୍ଗରେ ନେଇଥିଲି । ବମ୍ବେ ବିମାନବନ୍ଦରରେ ସେଥିରୁ ଚାଳିଶ ଟଙ୍କା ଦେଇ ଅନୁରୂପ ମୂଲ୍ୟର ଆମେରିକାନ୍ ଡଲାର ନେଇଥିଲି । ବମ୍ବେରେ ଶହେଟଙ୍କିଆ ନୋଟ୍‌ଟି ଭଙ୍ଗାଇ ଚାଳିଶ ଟଙ୍କା ମୂଲ୍ୟର ବୈଦେଶିକ ମୁଦ୍ରା ସଂଗ୍ରହ କରିବା ପରେ ବାକି ଛ'ଖଣ୍ଡି ଦଶଟଙ୍କିଆ ନୋଟ୍ ମୋ ପାଖରେ ରହିଯାଇଥିଲା । ସେଠାରେ ଆଉ କାହାକୁ ସେ ଟଙ୍କା ଦେଇଦେବାର ସୁବିଧା ମଧ ନ ଥିଲା, ତେଣୁ

ସେ ଟଙ୍କା ମୋ ପାଖରେ ରହିଲା । କୂଟନୈତିକ ପାସପୋର୍ଟ ଥିବାରୁ ଜେନେଭା ବିମାନ ବନ୍ଦରରେ କେହି କିଛି ତଲାସ୍ କରିନଥିଲେ । ଜେନେଭାରେ ଗୋଟିଏ ସ୍ଥାନରେ ଆଖିରେ ପଡ଼ିଲା ଗୋଟିଏ ବ୍ୟାଙ୍କର ସାଇନ୍‌ବୋର୍ଡ଼ରେ ଲେଖାହୋଇଛି ଯେ ସେଠାରେ ଭାରତୀୟ ମୁଦ୍ରା ବିନିମୟରେ ବୈଦେଶିକ ମୁଦ୍ରା ମିଳେ । ମନେପଡ଼ିଲା ମୋ ପାଖରେ ଛ'ଖଣ୍ଡି ଦଶଟଙ୍କିଆ ନୋଟ୍ ବଳିପଡ଼ିଥିବା କଥା । ତାକୁ ସେଠାରେ ବଦଳକରିଦେଲି । ଏତେ ସହଜରେବୈଦେଶିକ ମୁଦ୍ରା ମିଳିଯିବାରୁ ମୁଁ ଭାରି ଖୁସିହୋଇଥିଲି । ସେତେବେଳେ ମୁଁ ଭାବିଲି ଦୁଇ ତିନି ହଜାର ଟଙ୍କାର ଭାରତୀୟ ନୋଟ୍ ଯଦି ମୁଁ ସାଙ୍ଗରେ ନେଇଆସିଥାନ୍ତି ତା'ହେଲେ ମୋର ବିଶେଷ କିଛି ଅସୁବିଧା ହୋଇନଥା'ନ୍ତା । କିନ୍ତୁ ଯେତେବେଳେ ମନେକଲି ଯେ ନିଜ ଦେଶ ସୀମା ଛାଡ଼ିବା ପରେ ଭାରତୀୟ ମୁଦ୍ରା ପାଖରେ ରହିବା ମଧ୍ୟ ଦୋଷାବହ ଏବଂ ଅବସ୍ଥାଚକ୍ରରେ କୂଟନୈତିକ ପାସ୍‌ପୋର୍ଟର କରାମତି ହେତୁ ବଳକା ଷାଠିଏ ଟଙ୍କାଟା ମୋ ପାଖରେ ରହିଯାଇ ପାରିଥିଲା, ସେତେବେଳେ ପୁରୋହିତଙ୍କ 'ବିଦେଶେ ନିୟମ ନାସ୍ତି' ବାକ୍ୟ ମନେପକାଇ ନିଜ ମନକୁ ସାନ୍ତ୍ୱନା ଦେଇଥିଲି । ଆଉ ଗୋଟିଏ କଥା ହେତୁ ମଧ୍ୟ ମୁଁ ମୋର ଏହି ତ୍ରୁଟିକୁ ଅତ୍ୟନ୍ତ ଗୌଣ ବୋଲି ନିଜ ମନକୁ ବୁଝାଇଥିଲି । ବମ୍ବେରୁ ଗଲାବେଳେ ଆମ ପ୍ରତିନିଧିଦଳର ଅନ୍ୟତମ ସଭ୍ୟ ଶ୍ରୀ ଆବେଦ ଅଲ୍ଲୀ ଓ ମୁଁ ଏକା ଉଡ଼ାଜାହାଜରେ ଯାଉଥିଲୁ । କିନ୍ତୁ ଶ୍ରୀ ଆବେଦ ଅଲ୍ଲୀଙ୍କୁ ମୋ'ରି ପରି ଭାରତ ସରକାରଙ୍କ ପକ୍ଷରୁ ପ୍ରଥମ ଶ୍ରେଣୀ ଟିକେଟ୍ ମିଳିଥିଲେ ମଧ୍ୟ ଶସ୍ତା ଶ୍ରେଣୀ ବା ଇକନମିକ୍ କ୍ଲାସ୍‌ରେ ବସିବାର ମୁଁ ଦେଖିଥିଲି । କିଛି ସମୟ ପରେ ସେ ମୋ ପାଖକୁ ଆସି କହିଲେ ଯେ ମୁଁ ଯଦି ଇଚ୍ଛା କରେ ତା'ହେଲେ ମୋର ଟିକଟ୍‌ର ଶ୍ରେଣୀ ବଦଳାଇ ତାଙ୍କ ପରି ଶସ୍ତା ଶ୍ରେଣୀରେ ବସିପାରେ । ତା' ଦ୍ୱାରା ମୋତେ ଦୁଇ ହଜାର ଟଙ୍କା ସାଙ୍ଗେ ସାଙ୍ଗେ ଫେରସ୍ତ ମିଳିବ । ତେଣୁ ସେ ଶସ୍ତା ଶ୍ରେଣୀକୁ ଟିକଟ ବଦଳାଇଛନ୍ତି ବୋଲି ମୋତେ କହିଥିଲେ । ମୁଁ କିନ୍ତୁ ସେଥିରେ ରାଜି ହୋଇନଥିଲି । ମୁଁ ତାଙ୍କୁ କହିଥିଲି ଯେ ଯାତ୍ରାକାଳରେ ଟିକେଟ୍‌ର ଶ୍ରେଣୀ ବଦଳାଇ ସଞ୍ଚୟ କରିବା କଥାଟା କେନ୍ଦ୍ର ସରକାର କିମ୍ବା ବିଚାରବନ୍ତ ଲୋକଙ୍କ ଗୋଚରକୁ ଆସିଲେ ନିଶ୍ଚୟ ବଡ଼ ଅସୁନ୍ଦର ହେବ । ମୋ କଥାକୁ ସେ ଗୁରୁତ୍ୱ ଦେଇ ନ ଥିଲେ । ସେ ଶସ୍ତା ଶ୍ରେଣୀରେ ବସିକରି ଜେନେଭା ଗଲେ ଏବଂ ମୁଁ ପ୍ରଥମ ଶ୍ରେଣୀରେ ବସିଯାଇଥିଲି । କଲିକତା ଅମୃତବଜାର ପତ୍ରିକାର ସଂପାଦକ ଶ୍ରୀ ତୁଷାରକାନ୍ତି ଘୋଷ ସେହି ବିମାନରେ ଜଣେ ଯାତ୍ରୀ ଥିଲେ । ବାଟରେ ତାଙ୍କ ସହିତ ଆଳାପ ଆଲୋଚନା କରି ସମୟ କଟାଇବାର ସୁଯୋଗ ଘଟିଥିଲା ।

ଏଠାରେ ମୁଁ ଉଲ୍ଲେଖ କରିବାକୁ ବାଧ୍ୟହେଉଛି ଯେ ଅନେକ ସମୟରେ 'ଶୃଙ୍ଖଳା'ର ଅବିଚାରିତ ପ୍ରୟୋଗ ବିଶୃଙ୍ଖଳାକୁ ପ୍ରଶ୍ରୟ ଦିଏ । ଅନାବଶ୍ୟକ ବିଦେଶ ଭ୍ରମଣ ଓ ବୈଦେଶିକ ମୁଦ୍ରା ଅପବ୍ୟୟ ଉପରେ କଟକଣା ନିଶ୍ଚୟ ସ୍ୱାଗତଯୋଗ୍ୟ । ମାତ୍ର କୌଣସି ଏକ ନିର୍ଦ୍ଦିଷ୍ଟ ଜାତୀୟ କର୍ତ୍ତବ୍ୟ ସମ୍ପାଦନ ଉପଲକ୍ଷେ ବିଶିଷ୍ଟ ବ୍ୟକ୍ତିମାନେ ବିଦେଶ ଯିବା ଅବସରରେ ଯଦି ଅଳ୍ପ କିଛି ଅଧିକ ବ୍ୟୟରେ ଅନ୍ୟ କେତେକ କର୍ତ୍ତବ୍ୟ ସମ୍ପାଦନ କରିଆସିବା କିମ୍ବା ସେମାନଙ୍କ କର୍ମକ୍ଷେତ୍ରରେ ସହାୟକ ହେବା ଭଳି ଅନୁସନ୍ଧାନ ବା ଅଭିଜ୍ଞତା ଅର୍ଜନ କରିବା ଅଯୌକ୍ତିକ ହୋଇନଥାଏ, ତେବେ ସେଭଳି ଅବିଚାରିତ 'ଶୃଙ୍ଖଳା'ର ପ୍ରୟୋଗରୁ ସୁଫଳ ମିଳେନାହିଁ । ଆମ ଦେଶରେ ନିଶା-ନିବାରଣ ଭଳି ଅନେକ କ୍ଷେତ୍ରରେ ଏକ ପକ୍ଷରେ ଏହିଭଳି ଅବିଚାରିତ ଶୃଙ୍ଖଳା ଓ ଅନ୍ୟ ପକ୍ଷେ ଘୋର ବିଶୃଙ୍ଖଳାର ଦଶା ଆମ୍ଭେମାନେ ଭୋଗ କରିଆସୁଛୁ । ବମ୍ବେ ଛାଡ଼ିବା ପରେ କେବଳ ରୋମ୍ ଓ ବିରୁଟ୍ ବିମାନବନ୍ଦରମାନଙ୍କରେ ପ୍ରାୟ ଅଧଘଣ୍ଟେ ଲେଖାଏଁ ରହି ରମଣୀୟ ଆଲ୍‌ପସ୍ ପର୍ବତମାଳାର ଦୃଶ୍ୟ ଅତିକ୍ରମ କରି ଜେନେଭା ବିମାନବନ୍ଦରରେ ଆମର ବିମାନ ଅବତରଣ କରିଥିଲା । ମୁଁ ପହଞ୍ଚିଲାକ୍ଷଣି ଭାରତୀୟ ଦୂତାବାସରୁ ମଟରଗାଡ଼ି ନେଇ ଆସିଥିବା ଜଣେ କର୍ମଚାରୀ ମୋତେ ସାହାଯ୍ୟ କରିଥିଲେ ଏବଂ ଜେନେଭା ସହରରେ ମୋର ରହିବା ସ୍ଥାନକୁ ନେଇଯାଇଥିଲେ । ସହରକୁ ଯିବାପୂର୍ବରୁ

ଯେଉଁଠାରେ ଯାତ୍ରୀମାନଙ୍କର ଜିନିଷପତ୍ର ଯାଞ୍ଚକରାଯାଏ ସେଠାକୁ ମୁଁ ଯାଇଥିଲି । ମୋ ପାଖରେ ସୁଟ୍‌କେଶ୍‌ରେ ଥିଲା ତିରିଶ ଟିଣ ରିଜେଣ୍ଟ୍ ସିଗାରେଟ୍ । ବିଦେଶରେ ଖର୍ଚ୍ଚ କମାଇବାପାଇଁ ମୁଁ ଏକାବେଳକେ ଦୁଇ ମାସର ସିଗାରେଟ୍ ସାଙ୍ଗରେ ନେଇଯାଇଥିଲି । ଆଗରୁ ବି ଶୁଣିଥିଲି, ବିଦେଶରେ ସିଗାରେଟ୍ ଦାମ୍ ଖୁବ୍ ଅଧିକ । ଇଉରୋପରେ ଗୋଟିଏ ଦେଶରୁ ଅନ୍ୟ ଦେଶକୁ ସିଗାରେଟ୍ ନେବା ମନା । ସିଗାରେଟ୍ ଥିଲା ନିଷିଦ୍ଧ ଜିନିଷ । ସିଗାରେଟ୍ ପ୍ୟାକେଟ୍ ବା ଟିଣ ଗୋଟିଏ ଦେଶରୁ ଅନ୍ୟ ଦେଶକୁ ନେବା ବେଆଇନ । ମୁଁ ତ ନିଜ ଖର୍ଚ୍ଚପାଇଁ ସିଗାରେଟ୍ ନେଇଥାଏ, ତଥାପି ରେଡ୍ ପାସ୍‌ପୋର୍ଟ ଏତେଗୁଡ଼ିଏ ସିଗାରେଟ୍‌କୁ କୂଟନୈତିକ ମର୍ଯ୍ୟାଦା ଦେବ କି ନାହିଁ ମୋର ସନ୍ଦେହ ହେଲା । ସେଠାକାର ଯାଞ୍ଚକାରୀ ଅଫିସର ଯେତେବେଳେ ମୋତେ ପଚାରିଥିଲେ ସିଗାରେଟ୍ ଅଛି କି ବୋଲି, ମୁଁ ସେତେବେଳେ କିଛି କଥା ନ କହି ଆସ୍ତେ ଟିକିଏ ମୁଣ୍ଡ ଟୁଙ୍ଗାରିଦେଲି । ଭାରତୀୟ ତେଲେଙ୍ଗାମାନେ ତ ସମ୍ମତି ଦେଲାବେଳେ ଦୁଇପାଖକୁ ମୁଣ୍ଡ ହଲାନ୍ତି । ବିଦେଶୀ ଅଫିସର କ'ଣ ବୁଝିଲେ କେଜାଣି, ମୁଁ ନାହିଁ କରୁଛି ବୋଲି ବୋଧହୁଏ ଭାବିଥିଲେ କିମ୍ବା ରେଡ୍ ପାସ୍‌ପୋର୍ଟ ଥିବାରୁ ମୋତେ ଛାଡ଼ିଦେଇଥିଲେ । ମୋର ରହିବାପାଇଁ ହୋଟେଲ୍ ଡି-ରୋନେ (Hotel de-Rohne) ରେ ବନ୍ଦୋବସ୍ତ କରାଯାଇଥିଲା । ସେଇଟି ଜେନେଭାର ପ୍ରସିଦ୍ଧ ହୋଟେଲ୍‌ମାନଙ୍କ ମଧ୍ୟରୁ ଅନ୍ୟତମ । ଦେଖିଲି ସେଠାରେ ରହୁଥିବା ଲୋକେ ବେଶି ଭାଗ ଆମେରିକାନ୍ । ଏହି ହୋଟେଲ୍‌ରେ ଭାରତୀୟ ପ୍ରତିନିଧି ଦଳର ନେତା ହିସାବରେ ମୋପାଇଁ ଲଗାଲଗି ଦୁଇଟି କୋଠରି ରଖାଯାଇଥିଲା, ଗୋଟିଏ ରହିବାପାଇଁ ଓ ଅନ୍ୟଟି ମୋର ଅଫିସ୍‌ପାଇଁ । ଏହାର ସମସ୍ତ ଖର୍ଚ୍ଚ ଆମ ଦେଶ ଦୂତାବାସ ବହନ କରିଥାଏ । ଗୋଟିଏ କୋଠରିର ଦିନକର ଭଡ଼ା ଥିଲା ସେତେବେଳକାର ମୂଲ୍ୟରେ ଦେଢ଼ ଶହ ଟଙ୍କା । ତେଣୁ ମୋପାଇଁ ଦୈନିକ ତିନି ଶହ ଟଙ୍କା କେବଳ ଘରଭଡ଼ା ବାବଦରେ ଖର୍ଚ୍ଚ ହେଉଥିଲା । ଆଜିକାଲି ବଜାରରେ କେତେ ହେବଣି କେଜାଣେ ! ଦୈନିକ ଘରଭଡ଼ା ଭିତରେ କେବଳ ସକାଳ ଜଳଖିଆଟା ମିଶିଥାଏ । ଶ୍ରୀ ଆବେଦ ଅଲ୍ଲୀ ମଧ୍ୟ ଏହି ହୋଟେଲ୍‌ରେ ରହୁଥିଲେ । ଜେନେଭା ପ୍ରାକୃତିକ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ ଗୋଟିଏ ସୁନ୍ଦର ସହର । ରୋନେ ନଦୀ ଏହି ସହର ମଧ୍ୟରେ ପୂର୍ବରୁ ପଶ୍ଚିମଆଡ଼େ ବହିଯାଉଛି । ଦୁଇ କୂଳରେ ବିସ୍ତୃତ ଜେନେଭା ନଗରୀ ନଦୀ ଉପରେ ନିର୍ମିତ ଆଠଟି ସେତୁରେ ଛନ୍ଦାଛନ୍ଦି ହୋଇ ଗଢ଼ିଉଠିଛି । ରୋନେ ନଦୀ ଜଳର ରଙ୍ଗ ଗାଢ଼ ନୀଳ । ସହରର ଗୋଟିଏ କୋଣରେ ଜେନେଭା ହ୍ରଦ । ସହରର ସୌନ୍ଦର୍ଯ୍ୟକୁ ହ୍ରଦଟି ଆହୁରି ରମଣୀୟ କରିଛି । ନଦୀଟିର ନାଆଁରେ ସେ ହୋଟେଲ୍‌ର ନାମ ହୋଟେଲ- ଡି-ରୋନେ (Hotel de-Rohne) ।

## ଭାଷାର ପାଚେରିପାଇଁ ହଟହଟା

ଜେନେଭାରେ ପହଞ୍ଚି ମୋର ପ୍ରଧାନ ଚିନ୍ତା ହୋଇଥିଲା କ'ଣ ଖାଇବି ? ହୋଟେଲ୍‌କୁ ଖାଇବାକୁ ଗଲି; ମାତ୍ର କ'ଣ ଖାଇବି କିଛି ଜାଣିପାରିଲିନାହିଁ । ହୋଟେଲ୍‌ରେ ଖାଦ୍ୟ ପରିବେଷଣ କରୁଥିବା ଲୋକମାନେ ଆଦୌ ଇଂରାଜୀ ବୁଝୁନଥିଲେ, ଫ୍ରେଞ୍ଚ ବା ଜର୍ମାନୀ ଭାଷାରେ କଥାବାର୍ତ୍ତା ହେଉଥିଲେ । ମୋତେ ଇଂରାଜୀ ବ୍ୟତୀତ ଅନ୍ୟ କିଛି ୟୁରୋପୀୟ ଭାଷା ଜଣାନଥାଏ । ହୋଟେଲ୍‌ମାନଙ୍କରେ ମାଂସ କାରବାର ବେଶି । ଯେଉଁ ମାଂସ ମୁଁ ଖାଇବାକୁ ଚାହୁଁଥାଏ ତାହା ଇଂରାଜୀରେ କହିଲା ବେଳକୁ ସେମାନେ ବୁଝିପାରୁନଥାନ୍ତି । ମୋର ଯାଡ଼େ ଭୟହେଉଥାଏ କାଳେ ମୋତେ ଗୋରୁମାଂସ ଦେଇଦେବେ । ୟୁରୋପୀୟ ଦେଶମାନଙ୍କରେ ଛେଳିମାଂସ ମିଳେନାହିଁ; ମାତ୍ର ମେଣ୍ଢାମାଂସ ମିଳେ । ସେସବୁ ଦେଶମାନଙ୍କରେ ସବୁଠାରୁ ଲୋକପ୍ରିୟ ମାଂସ ହେଉଛି ଗୋରୁମାଂସ । ଏପରି ଅବସ୍ଥାରେ ହୋଟେଲ୍‌ରେ ସେଦିନ କୌଣସି ମାଂସ ଜିନିଷ ନଖାଇବାକୁ ମୁଁ ସ୍ଥିରକଲି । ତେଣୁ ମାଖନ ଲଗେଇ ଖାଲି ପାଉଁରୁଟି ଓ ସାଲାଡ୍ ଖାଇ ରହିଲି । ମୁଁ ଏ ପ୍ରକାର ଖାଇବାର ଦେଖି ସେମାନେ ହସାହସି

ହେଲେ । ଭାଷାର ପାଚେରି ଏପରି ପରିସ୍ଥିତି ସୃଷ୍ଟି କରିଥିଲା । ଖାଇସାରି ଯେଉଁ ବଜାରରେ ମାଂସ ପ୍ରଭୃତି ଜିନିଷ ବିକ୍ରି ହେଉଥାଏ ସେଠାକୁ ଗଲି । ସେଠାରେ ଦେଖିଲି ବିକ୍ରିପାଇଁ ପ୍ରତ୍ୟେକ ମାଂସ ଉପରେ କାଠି ମରାଯାଇ ସେଟା କି ମାଂସ ତା'ର ଚିହ୍ନଟପତ୍ର ଝୁଲୁଥାଏ । ସେସବୁ ମଧ୍ୟ ଫରାସୀ ଭାଷାରେ ଲେଖାଥାଏ; କିନ୍ତୁ ଲିପିଗୁଡ଼ିକ ରୋମାନ୍ ଲିପି । ୟୁରୋପରେ ସବୁ ଭାଷାର ଅକ୍ଷର ରୋମାନ୍ ଲିପିରେ । ତେଣୁ ମାଂସ ଉପରେ କାଠିରେ ଝୁଲୁଥିବା ଚିହ୍ନପତ୍ରରୁ ସବୁ ମାଂସ ନାମ ଟିପି ଆଣିଲି । ତା'ପରେ ଯେତେବେଳେ ଖାଇବାକୁ ଗଲି ସେଇ ଲେଖା ହୋଟେଲ୍‌ର ଖାଦ୍ୟ ପରିବେଷଣକାରୀକୁ ଦେଖାଇବାରୁ ମୋର ବିଶେଷ କୌଣସି ଅସୁବିଧା ହେଲାନାହିଁ । ଏହିପରି ଭାବରେ ମୁଁ ସେଠାରେ ଚଳି ଯାଇଥିଲି । ଗୋରୁମାଂସକୁ ଫରାସୀ ଭାଷାରେ କ'ଣ କହନ୍ତି ତା' ମଧ୍ୟ ଲେଖିନେଇଥାଏ । ହୋଟେଲ୍‌ରେ ଖାଇଲାବେଳେ ତାକୁ ଦେଖାଇ ସେ ମାଂସ ମୋତେ ନଦେବାପାଇଁ କହିଥାଏ । ଦିନେ ଗୋଟିଏ ହୋଟେଲ୍‌ରେ ଯେତେବେଳେ ଗୋରୁମାଂସ ମୋତେ ନଦେବାପାଇଁ କହିଥିଲି, ସେତେବେଳ ଖାଦ୍ୟ ପରିବେଷଣ କରୁଥିବା ଜଣେ ଝିଅ ଆଶ୍ଚର୍ଯ୍ୟ ହୋଇ ତା'ର କାରଣ ପଚାରିଥିଲା । ସେ କହିଥିଲା ଯେ ଭାରତୀୟମାନେ ଗୋରୁମାଂସ ଖାଇବାର ସେ ଜାଣେ– ମୁଁ କାହିଁକି ଖାଉନାହିଁ ବୋଲି ସେ ଆଶ୍ଚର୍ଯ୍ୟ ହୋଇଥିଲା । ଭାରତୀୟ ଦୂତାବାସର ଜଣେ କର୍ମଚାରୀ ସବୁଦିନେ ଗୋରୁମାଂସ ସେହି ହୋଟେଲ୍‌ରୁ ଖାଆନ୍ତି– ତେଣୁ ମୁଁ କାହିଁକି ନଖାଇବି ତାହାର କାରଣ ପଚାରିଥିଲା । ମୁଁ ତାକୁ ଭାରତୀୟ ସଂସ୍କୃତି, ବିଭିନ୍ନ ଧର୍ମ ଓ ଖାଦ୍ୟାଭ୍ୟାସ କଥା ଅଳ୍ପକେ ବୁଝାଇଦେଇଥିଲି ।

## ଶ୍ରମ-ସମ୍ମିଳନୀ କଥା

ଆନ୍ତର୍ଜାତିକ ଶ୍ରମ ସଂଗଠନର ସାଧାରଣ ଅଧିବେଶନ ପନ୍ଦର ଦିନଯାଏଁ ଚାଲିଥିଲା । ମଝିରେ ମଝିରେ ଛୁଟିପଡ଼ିଯାଉଥାଏ; ତେଣୁ ପ୍ରାୟ ଏକମାସ ଜେନେଭାରେ ରହିବାକୁ ପଡ଼ିଥିଲା । ଏହି ଶ୍ରମିକ ଅନୁଷ୍ଠାନର ସଦର କାର୍ଯ୍ୟାଳୟ ଗୋଟିଏ ବିରାଟ ସଂସ୍ଥା । ଗୋଟିଏ ବିରାଟ ପ୍ରାଙ୍ଗଣ ମଧ୍ୟରେ ବହୁସଂଖ୍ୟକ ବହୁତଳବିଶିଷ୍ଟ ସୌଧ ଗଢ଼ିଉଠିଛି । ସେଥିମଧ୍ୟରେ ସଭା ଓ ସମ୍ମିଳନୀପାଇଁ ଗୋଟିଏ ଅତି ପ୍ରଶସ୍ତ ଗଣଭବନ ଅଛି । ଦେଶମାନଙ୍କର ନାମର ପ୍ରଥମ ବର୍ଣ୍ଣମାଳା ଅନୁସାରେ ସେଠାରେ ଆସନର ବ୍ୟବସ୍ଥା କରାଯାଇଥାଏ । ସେଠାରେ ସାଧାରଣଭାବରେ ନିଜ ରାଷ୍ଟ୍ରର ନୀତି ଓ ଆଭିମୁଖ୍ୟ ବୟାନ କରି ପ୍ରତ୍ୟେକ ରାଷ୍ଟ୍ରର ପ୍ରତିନିଧିଙ୍କୁ ନିଜର ବକ୍ତବ୍ୟ ଉପସ୍ଥାପନ କରିବାକୁ ହୁଏ । ସେ ଭାଷଣଟି ଲିଖିତ ଭାଷଣ । ସମ୍ମିଳନୀରେ ଭାଷଣ ଦେବା ପୂର୍ବରୁ ତାହାର ଗୋଟିଏ ନକଲ ସମ୍ମିଳନୀ କାର୍ଯ୍ୟାଳୟରେ ଦେବାକୁ ପଡ଼େ । ଆମ ପ୍ରତିନିଧି ଦଳର ନେତା ହିସାବରେ ମୋର ଏହି ମୁଖ୍ୟ ବକ୍ତବ୍ୟଟି ମୁଁ ଦିଲ୍ଲୀ ଛାଡ଼ିବା ପୂର୍ବରୁ ପ୍ରସ୍ତୁତ କରିନେଇଥିଲି । ଆମ ଦେଶ ଆନ୍ତର୍ଜାତିକ ଶ୍ରମିକ ସଂସ୍ଥାର ନୀତି, ନିୟମ, ଆଦର୍ଶ ଓ ନିର୍ଦ୍ଦେଶ ଅନୁସାରେ କିପରି ଶ୍ରମିକ ମଙ୍ଗଳ ଉଦ୍ଦେଶ୍ୟରେ କାର୍ଯ୍ୟ କରୁଛି, ତାହା ସେଥିରେ ବର୍ଣ୍ଣନା କରାଯାଇଥିଲା । ତାହାଛଡ଼ା ଅନ୍ୟାନ୍ୟ ବହୁ ବିଷୟ ବିଭିନ୍ନ ଦେଶପକ୍ଷରୁ ଉତ୍‌ଥାପିତ ହୋଇ ସମ୍ମିଳନୀରେ ଆଲୋଚିତ ହୋଇ ନିଷ୍ପତ୍ତି ନିଆଯାଉଥାଏ । ସେସବୁ ବିଷୟରେ ମୋତେ କି ମତ ଦେବାକୁ ପଡ଼ିବ ସେ ବିଷୟରେ ମୁଁ ଆମର ପ୍ରତିନିଧିଦଳର ବୈଠକ ବସାଇ ଆଲୋଚନା କରି ନିଷ୍ପତ୍ତି ନେଉଥାଏ । ମୁଁ ସେଠାରେ ଯେଉଁ ମତ ଦିଏ ତାହା ଆମ ଦେଶର ମତ ବୋଲି ଧରାଯାଉଥାଏ । ବେଳେବେଳେ କୌଣସି ଗୁରୁତର ବିଷୟ ସମ୍ମିଳନୀରେ ଆଲୋଚନା ଓ ନିଷ୍ପତ୍ତିପାଇଁ ଆସୁଥିଲେ ଆମ୍ଭେମାନେ ଦିଲ୍ଲୀ ସହିତ ପରାମର୍ଶ କରୁଥାଉଁ ।

ପ୍ରତ୍ୟେକ ଦିନ ଭିନ୍ନ ଭିନ୍ନ ରାଷ୍ଟ୍ରର ପ୍ରତିନିଧିଙ୍କ ପକ୍ଷରୁ ବନ୍ଧୁମିଳନର ବ୍ୟବସ୍ଥା କରାଯାଉଥାଏ । କେଉଁଠି ମଧ୍ୟାହ୍ନ ଭୋଜନ ତ କେଉଁଠି ଚା'ପାନ ଓ ଅନ୍ୟ କେଉଁଠି ରାତ୍ରିଭୋଜନର ବ୍ୟବସ୍ଥା । ପ୍ରତ୍ୟେକ ଦେଶର ପ୍ରତିନିଧି ଦଳ ଯେପରି ଅନ୍ୟାନ୍ୟ ପ୍ରତିନିଧିମାନଙ୍କୁ ବନ୍ଧୁମିଳନରେ ଆପ୍ୟାୟିତ

କରିପାରିବେ ସେଥିପାଇଁ ସେହି ଦେଶର ସରକାର ଅର୍ଥ ବ୍ୟବସ୍ଥା କରିଥା'ନ୍ତି । ଆମ ଦେଶ ପକ୍ଷରୁ ମଧ ସେହିପରି ହୋଇଥିଲା । ପ୍ରତିନିଧି ଦଳର ନେତା ହିସାବରେ ନିର୍ଦ୍ଦେଶ ଦେଲେ ଆମର ସେଠାକାର ଦୂତାବାସ ବନ୍ଧୁମିଳନର ଖର୍ଚ୍ଚ ବହନ କରୁଥିଲେ । ବିଦେଶରେ ବନ୍ଧୁମିଳନରେ ଆମ ଦେଶର ଅତିଥିସତ୍କାର ସମ୍ବନ୍ଧରେ ଗୋଟିଏ କୌତୂହଳଜନକ କଥା ମୋର ମନେପଡ଼େ । ଅନ୍ୟାନ୍ୟ ରାଷ୍ଟ୍ରର ପ୍ରତିନିଧିମାନଙ୍କୁ ବନ୍ଧୁମିଳନକୁ ଆମନ୍ତ୍ରଣ କରି ଆପ୍ୟାୟିତ କରିବାପାଇଁ ମୁଁ ଇଚ୍ଛା ପ୍ରକାଶ କଲି । ପରସ୍ପର ସୌହାର୍ଦ୍ଦ୍ୟ ବୃଦ୍ଧି ଓ ମତବିନିମୟ ପାଇଁ ଏହା ଏକ ସୁନ୍ଦର ଅବକାଶ । ଆମ ପ୍ରତିନିଧି ଦଳର ସମ୍ପାଦକ ତଥା କେନ୍ଦ୍ର ସରକାରଙ୍କ ଶ୍ରମମନ୍ତ୍ରଣାଳୟର ସେକ୍ରେଟେରୀ ଶ୍ରୀ ଆର. ଏଲ୍. ମେହେଟା କୌଣସି ବନ୍ଧୁମିଳନର ବ୍ୟବସ୍ଥା ଭାରତୀୟ ପ୍ରତିନିଧି ଦଳ ପକ୍ଷରୁ ନହେଲେ ଭଲ ହେବ ବୋଲି ମୋତେ ପରାମର୍ଶ ଦେଇଥିଲେ । ଏଥିପୂର୍ବରୁ ୧୯୬୨ ମସିହାରେ ଆନ୍ତର୍ଜାତିକ ଶ୍ରମିକ ସଂସ୍ଥାର ସମ୍ମିଳନୀକୁ ଆସିଥିବା ଭାରତୀୟ ପ୍ରତିନିଧିଦଳର ମଧ ସେକ୍ରେଟେରୀରୂପେ ସେ ଯାଇଥିଲେ ଏବଂ ଦଳର ନେତା ଥିଲେ ଗୁଜରାଟ ରାଜ୍ୟର ଶ୍ରମମନ୍ତ୍ରୀ । ଜେନେଭାରେ ଏହି ପ୍ରକାର ବନ୍ଧୁମିଳନପାଇଁ ଗୁଜରାଟର ଶ୍ରମମନ୍ତ୍ରୀ ଚୁଡ଼ାଭଜା, ଗାଣ୍ଠିଆ, ସେଉ ଓ ପିଇବାପାଇଁ ଲେମ୍ବୁ ସରବତ ଦେଇ କେତେକ ରାଷ୍ଟ୍ରର ପ୍ରତିନିଧିଙ୍କୁ ଆପ୍ୟାୟିତ କରିଥିଲେ ; ମାତ୍ର ମଦ୍ୟପାନର ବ୍ୟବସ୍ଥା କରିନଥିଲେ । ଯେଉଁ ଅତିଥିମାନେ ଆସିଥିଲେ ସେମାନେ ଭାରତୀୟ ବନ୍ଧୁମିଳନ ସମ୍ବନ୍ଧରେ ସେମାନଙ୍କର ଅନୁଭୂତି ଅନ୍ୟମାନଙ୍କ ଆଗରେ ବର୍ଣ୍ଣନା କରିଥିଲେ । ଏହାଫଳରେ ଭାରତୀୟ ପ୍ରତିନିଧିମାନଙ୍କର ଆତିଥ୍ୟ ଗ୍ରହଣ କରିବାକୁ କେହି ବିଶେଷ ଆଗ୍ରହୀ ହୋଇନଥିଲେ । ତେଣୁ ବରଂ ବନ୍ଧୁମିଳନ ନକରିବାପାଇଁ ଶ୍ରୀ ମେହେଟା ମୋତେ ପରାମର୍ଶ ଦେଇଥିଲେ । ଆମ ସରକାରଙ୍କର ନିଶା ନିବାରଣ ନୀତି କଥା ଉଲ୍ଲେଖ କରି ଏ କ୍ଷେତ୍ରରେ କ'ଣ କରାଯିବ ସେ ସମ୍ବନ୍ଧରେ ମୁଁ ସେମାନଙ୍କର ପରାମର୍ଶ ଲୋଡ଼ିଥିଲି । ବିଦେଶରେ ଆମ ଦେଶର ଦୂତାବାସରେ ବିଦେଶୀ ଅତିଥିମାନଙ୍କୁ କିପରି ଭାବରେ ସତ୍କାର କରାଯାଏ ସେହି ନିୟମ ସେ ମୋତେ ଦେଖାଇଥିଲେ । ସେଥିରେ ଥିଲା ଯେ ବିଦେଶୀ ବନ୍ଧୁଙ୍କର ଆତିଥ୍ୟସତ୍କାର କଲାବେଳେ ସେମାନଙ୍କର ରୁଚି ଅନୁସାରେ ସାମାନ୍ୟ ମଦ୍ୟପାନର ବ୍ୟବସ୍ଥା କରାଯାଇପାରେ, ମାତ୍ର ତାହା ଅତି ଆଡ଼ମ୍ବରପୂର୍ଣ୍ଣ ହେବା ଅନୁଚିତ । ତାହା ଦେଖିବା ପରେ ସେହି ଅନୁସାରେ ସାମାନ୍ୟ ମଦ୍ୟପାନର ବ୍ୟବସ୍ଥା ବିଦେଶୀ ବନ୍ଧୁମାନଙ୍କପାଇଁ ଆୟୋଜନ କରିବାକୁ ମୁଁ ନିର୍ଦ୍ଦେଶ ଦେଇଥିଲି । ତାହାହିଁ କରାଯାଇଥିଲା ଏବଂ ବିଦେଶୀ ବନ୍ଧୁମାନଙ୍କୁ ଚର୍ଚ୍ଚା କଲାବେଳେ ଆମକୁ ଆଉ କିଛି ଅସୁବିଧା ହୋଇନଥିଲା । କିନ୍ତୁ ଏଥିରେ ଶ୍ରୀ ଆବେଦ ଅଲ୍ଲୀ ବଡ଼ ଅସନ୍ତୁଷ୍ଟ ହୋଇଥିଲେ । ମାଦକଦ୍ରବ୍ୟ ସେବନ ସମ୍ବନ୍ଧରେ ଗାନ୍ଧିଜୀଙ୍କର ନିର୍ଦ୍ଦେଶ କଥା କହି ସେ ଏହାର ପ୍ରତିବାଦ କରିଥିଲେ । ସେ ପରେ ଏ ବିଷୟ ପ୍ରତି ଭାରତୀୟ ଶ୍ରମମନ୍ତ୍ରୀ ଶ୍ରୀ ଗୁଲଜାରିଲାଲ ନନ୍ଦାଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଶ୍ରୀ ନନ୍ଦା ଅତିଶୟ ଅସନ୍ତୁଷ୍ଟ ହୋଇ ମୋ ପାଖରୁ ଏକପ୍ରକାର କୈଫିୟତ୍ ତଲବ କରିଥିଲେ । ଭାରତୀୟ ବନ୍ଧୁମିଳନ ପ୍ରତି ବିଦେଶୀମାନଙ୍କର ପ୍ରତିକୂଳ ଧାରଣା ତଥା ଭାରତୀୟ ଦୂତାବାସରେ ପ୍ରଚଳିତ ନିୟମପ୍ରତି ମୁଁ ଶ୍ରୀ ନନ୍ଦାଙ୍କର ଦୃଷ୍ଟି ଆକର୍ଷଣ କରି ତାଙ୍କ ଚିଠିର ଉତ୍ତର ଦେଇଥିଲି । ତା'ପରେ ସେ ନୀରବ ରହିଥିଲେ ।

ଶ୍ରୀ ଆବେଦ ଅଲ୍ଲୀ ଜଣେ ଗାନ୍ଧୀବାଦୀ ନେତା ଓ ଗାନ୍ଧିଜୀଙ୍କର ସହକର୍ମୀ ଥିଲେ । ମାତ୍ର ଜେନେଭାଯାତ୍ରା ଭିତରେ ତାଙ୍କର କେତେକ ବିଚାର ଗାନ୍ଧୀବାଦର ବିରୁଦ୍ଧ ଥିଲାଭଳି ମୋର ମନେହୋଇଥିଲା । ବମ୍ବେରୁ ଜେନେଭା ଗଲାବେଳେ ଉପର ଶ୍ରେଣୀ ଉଡ଼ାଜାହାଜ ଟିକେଟକୁ ତଳ ଶ୍ରେଣୀକୁ ବଦଳାଇଦେବାକୁ ସେ ମୋତେ ଯେଉଁ ପରାମର୍ଶ ଦେଇଥିଲେ, ସେ କଥା ମୁଁ ଆଗରୁ କହିଛି । ହୋଟେଲରେ ମୋତେ ଅଫିସ୍‌ପାଇଁ ଯେଉଁ କୋଠରିଟି ମିଳିଥିଲା, ତାକୁ ଭଡ଼ା ଦେଇଦେବାପାଇଁ ସେ ମୋତେ ପରାମର୍ଶ ଦେଇଥିଲେ । ସେଥିରୁ କୁଆଡ଼େ ମୋତେ ପ୍ରତିଦିନ ଏକଶହ ଟଙ୍କା ମିଳିଥାନ୍ତା ।

ମାତ୍ର ତାଙ୍କର ସେ ପ୍ରକାର ପରାମର୍ଶକୁ ମୁଁ ଗ୍ରହଣ କରିପାରିନଥିଲି । ହୋଟେଲ୍‌ରେ ରହିବାପାଇଁ କୋଠରି ଭଡ଼ା ଛଡ଼ା ପ୍ରତ୍ୟେକ ପ୍ରତିନିଧିଙ୍କୁ ପ୍ରତିଦିନ ଖାଇବା ଖର୍ଚ୍ଚପାଇଁ ପଚାଶ ଫ୍ରାଙ୍କ୍ ଲେଖାଏଁ ଫରାସୀ ମୁଦ୍ରା ମିଳୁଥିଲା । ଶ୍ରୀ ଆବେଦ ଅଲ୍ଲୀ ଏହି ପଚାଶ ଫ୍ରାଙ୍କ୍‌କୁ ଖାଇବାରେ ଖର୍ଚ୍ଚ କରନ୍ତିନାହିଁ । ପୂର୍ବରୁ କହିଛି ଯେ ସକାଳ ଜଳଖିଆଟା (Break-fast) ହୋଟେଲ୍ ଭଡ଼ା ଭିତରେ ଅନ୍ତର୍ଭୁକ୍ତ; ତେଣୁ ସେଥିପାଇଁ କିଛି ଅଧିକା ଅର୍ଥ ବ୍ୟୟ କରିବାକୁ ପଡ଼େନାହିଁ । ଶ୍ରୀ ଆବେଦ ଅଲ୍ଲୀ ସକାଳେ କ'ଣ ଖାଆନ୍ତି ତା'ର ଗୋଟିଏ ତାଲିକା ହୋଟେଲ୍ କର୍ମକର୍ତ୍ତାଙ୍କୁ ଦେଇଦିଅନ୍ତି । ସେ ତାଲିକାରେ ଥିଲା ଛ'ଗ୍ଲାସ୍ ଦୁଧ, ଚାରିଟା ପାଉଁରୁଟି, ଆଠଟି ଅଣ୍ଡା, କର୍ଣ୍ଣଫ୍ଲେକ, ମଖନ, ଜେଲି ଓ ବିଭିନ୍ନ ପ୍ରକାର ଫଳ । ଏତିକିରେ ସେ ଦିନସାରା ଚଳିଯାଆନ୍ତି । ଅଭାବ ପଡ଼ିଲେ ସାମାନ୍ୟ କିଛି ଖାଦ୍ୟ ପଦାର୍ଥ ବାହାରୁ କିଣିଆଣନ୍ତି । ହୋଟେଲ୍‌ରେ ପୋଡ଼ା ସିଗାରେଟ୍ ରଖିବାପାଇଁ ବଡ଼ ବଡ଼ ଦାନି (ଆସ୍‌ଟ୍ରେ) ଦେଇଥାଆନ୍ତି । ସେ ସେଥିରେ ଦହି ବସାଇ ରଖିବାର ମୁଁ ଦେଖିଛି । ପ୍ରତିଦିନ ସମ୍ମିଳନୀକୁ ଯିବା ଆସିବା କରିବା ପାଇଁ ମୋ ପାଖକୁ ଆମର ଦୂତାବାସରୁ ମଟରଗାଡ଼ି ଆସେ । ମୁଁ ଯେତେ ଅନୁରୋଧ କଲେ ମଧ ସେ ମୋ ସାଙ୍ଗରେ ଗାଡ଼ିରେ ଯିବାକୁ ଅନିଚ୍ଛା ପ୍ରକାଶ କରନ୍ତି । ପରେ ଜାଣିବାକୁ ପାଇଲି ସେ ସମ୍ମିଳନୀକୁ ପଦବ୍ରଜରେ ଯିବା ଆସିବା କରି ଦୂତାବାସଠାରୁ ଟ୍ୟାକ୍‌ସି ଭଡ଼ା ବିଲ୍ କରି ନେଉଥିଲେ ।

ଭାରତୀୟ ଖାଦ୍ୟ ଜେନେଭାରେ ଆଦୌ ମିଳେନାହିଁ । ଗୋମାଂସ ସେଠାରେ ପ୍ରଧାନ ଖାଦ୍ୟ ଓ ଦାମିକା ମଧ । ମୁଁ ପ୍ରାୟ କୁକୁଡ଼ାମାଂସ, ପାଉଁରୁଟି, ପୁଡ଼ିଂ ଓ ସାଲାଡ୍ ପ୍ରଭୃତି ଖାଇ ଚଳାଇ ଦେଉଥାଏ । ମଝିରେ ମଝିରେ କେଉଁଠି ମାଛ ମିଳିଲେ ଖାଉଥାଏ । ଦିନେ ପାକିସ୍ତାନ ଦୂତାବାସ ମଧ୍ୟାହ୍ନ ଭୋଜନ ପାଇଁ ମୋତେ ନିମନ୍ତ୍ରଣ କରିଥିଲେ । ମୁଁ ସେଥିରେ ଯୋଗଦେଇଥିଲି । ଆହୁରି ଅନେକ ଦେଶର ପ୍ରତିନିଧି ମଧ ସେଥିରେ ଯୋଗଦେଇଥିଲେ । ଗୋଟିଏ ବଡ଼ ଟେବୁଲ ଚାରିପଟେ ଚେୟାର ପଡ଼ିଥାଏ । ଆମ୍ଭମାନଙ୍କ ପ୍ଲେଟ୍‌ରେ ଖାଦ୍ୟପଦାର୍ଥ ଦିଆଯାଇଥିଲା । ମୋ ପାଖରେ ପାକିସ୍ତାନ ଦୂତାବାସର ଜଣେ ସେକ୍ରେଟେରୀଙ୍କର ସହଧର୍ମିଣୀ ବସିଥାଆନ୍ତି । ତାଙ୍କ ସହିତ କଥାବାର୍ତ୍ତା କରି ଜାଣିଲି, ସେ ପୂର୍ବବଙ୍ଗର ଝିଅ । ମୁଁ ଓଡ଼ିଶାର ଲୋକ ବୋଲି ସେ ଜାଣିଲେ । ଆମେ ବଙ୍ଗଳାରେ ମଧ କଥାବାର୍ତ୍ତା ହେଲୁ । ମୋ ପ୍ଲେଟ୍‌ରେ ଯେଉଁ ଖାଦ୍ୟପଦାର୍ଥ ବଢ଼ାଯାଇଥିଲା ତାକୁ ଦେଖି ସେ ଚମକି ପଡ଼ିଥିଲେ ଓ ସେଗୁଡ଼ିକ ଗୋରୁମାଂସ କହି ମୋତେ ଖାଇବାକୁ ମନାକଲେ । ମୁଁ ମଧ ତାଙ୍କ କଥା ଶୁଣି ଚମକିପଡ଼ିଲି । ମୋତେ ଗୋରୁମାଂସରେ ତିଆରି ଖାଦ୍ୟ ନଦେଇ ଅନ୍ୟ ମାଂସରେ ତିଆରି ଖାଦ୍ୟ ଦେବାକୁ ସେ ଭଦ୍ରମହିଳା ଖାନ୍‌ସମାକୁ ନିର୍ଦ୍ଦେଶ ଦେଇଥିଲେ । ସେଦିନ ମୋର ମନେହେଲା ପ୍ରକୃତରେ ଜାତିଧର୍ମନିର୍ବିଶେଷରେ ସ୍ତ୍ରୀଲୋକମାନଙ୍କର ଧର୍ମନିଷ୍ଠା ଅଧିକ । ସେଥିପାଇଁ ଜଣେ ହିନ୍ଦୁ ଲୋକର ପ୍ଲେଟ୍‌ରେ ଗୋମାଂସ ଦେଖି ସେ ନିଜେ ମୁସଲମାନ ହୋଇ ମଧ୍ୟ ସହ୍ୟ କରିପାରି ନଥିଲେ । ତାଙ୍କର ଏ ପ୍ରକାର ସହାନୁଭୂତିପାଇଁ ମୁଁ ତାଙ୍କୁ ଅଶେଷ ଧନ୍ୟବାଦ ଦେଇଥିଲି ।

ଜେନେଭାରେ ମୋର୍ ସବୁ ଟଙ୍କା ସରିବାକୁ ବସିଲା । ଅନ୍ୟାନ୍ୟ ଦେଶମାନଙ୍କୁ କିପରି ଯିବି, ତା' ମୋର ଗୋଟିଏ ଚିନ୍ତାର ବିଷୟ ହୋଇଥିଲା । ଏହି ସମୟରେ ଶ୍ରମ ଓ ନିଯୋଗ ସମ୍ବନ୍ଧରେ ତାଲିମ୍ ପାଇସାରି ଶ୍ରୀମତୀ କାମିନୀ ଅଧିକାରୀ ନାମ୍ନୀ ଜଣେ ମହିଳା ଜେନେଭାରୁ କଲିକତା ଆସୁଥିଲେ । ତାଙ୍କ ସହିତ କଥାବାର୍ତ୍ତାରୁ ଜାଣିଲି ଯେ ସେ ପଶ୍ଚିମ ବଙ୍ଗଳାର ତତ୍କାଳୀନ ମନ୍ତ୍ରୀ ଓ ମୋର ପଢ଼ାସାଥୀ ଓ ବନ୍ଧୁ କୁମାରୀ ଆଭା ମାଇତିଙ୍କୁ ଜାଣିଥିଲେ । ଜେନେଭାରେ ମୋର ଅର୍ଥାଭାବ କଥା ବିଜୁବାବୁଙ୍କୁ ଫୋନ୍‌ରେ ଜଣାଇ ଦେବାପାଇଁ ତାଙ୍କରି ହାତରେ ଶ୍ରୀମତୀ ଆଭା ମାଇତିଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖିଲି । ମୁଁ ଚିଠି ଦେବାର ଗୋଟିଏ ସପ୍ତାହ ମଧ୍ୟରେ ପଶ୍ଚିମ ଜର୍ମାନୀରୁ ବିଜୁବାବୁଙ୍କ ପୁଅ ଜେନେଭା ଆସି ମୋତେ ଦେଢ଼ଶହ ପାଉଣ୍ଡ ବ୍ରିଟିଶ୍ ମୁଦ୍ରା ଦେଇଯାଇଥିଲେ । ସେ ସେତେବେଳେ

ପଶ୍ଚିମ ଜର୍ମାନୀରେ ପଢୁଥା'ନ୍ତି । ଏହି ଅର୍ଥ ପାଇପାରିବାରୁ ମୁଁ ୟୁରୋପର ଅନ୍ୟାନ୍ୟ ଦେଶକୁ ଯାଇ ଅନେକ କଥା ଅନୁଧ୍ୟାନ କରିବାକୁ ସମର୍ଥ ହେଲି । କଲିକତାରୁ ଜେନେଭା ଅଭିମୁଖେ ଯାତ୍ରାକଲାବେଳେ ଦମ୍‌ଦମ୍ ବିମାନ ବନ୍ଦରଠାରେ ଓଡ଼ିଶା ଟେକ୍‌ସଟାଇଲ୍ ମିଲ୍‌ର ଶ୍ରୀ ପ୍ରତାପ ସିଂଙ୍କ ସହିତ ଦେଖାହୋଇଥିଲା । ମୋର ବୈଦେଶିକ ମୁଦ୍ରା ପାଇବାର ଅସୁବିଧା କଥା ସେ ଶୁଣିଥିଲେ । ଦିନେ ଦେଖେଁ ଯେ ହୋଟେଲ୍‌ରେ ମୋ ରୁମ୍‌ପାଇଁ ନିର୍ଦ୍ଦିଷ୍ଟ ଚିଠି ଥାଳିରେ ପାଞ୍ଚଶହ ଫ୍ରାଙ୍କ୍ ଫରାସୀ ମୁଦ୍ରା ଗୋଟିଏ ଖାମ୍‌ରେ ରହିଛି । ପ୍ରତାପ ସିଂହଙ୍କର ସୁଇଜରଲ୍ୟାଣ୍ଡରେ ଥିବା ଜଣେ ବନ୍ଧୁ ସେ ଟଙ୍କା ରଖିଯାଇଥିଲେ ବୋଲି ତା'ସହିତ ଥିବା ଲେଖାରୁ ଜାଣିଲି । ପ୍ରତାପ ସିଂହ କୁଆଡ଼େ ତାଙ୍କୁ ମୋ ଅସୁବିଧା କଥା ଲେଖିଥିଲେ । ସେ ଭଦ୍ରଲୋକଙ୍କ ସହିତ ମୋର କେବେ ଦେଖାହୋଇନାହିଁ । ଟଙ୍କା ପାଇଲି କି ନାହିଁ ସେ ଆଉ ଖବର ନେଇନଥିଲେ ।

ସୁଇଜରଲ୍ୟାଣ୍ଡରେ ଚୋରି ପ୍ରାୟ ନାହିଁ କହିଲେ ଚଳେ । ଜେନେଭାରେ ଦେଖିଲି ହକରମାନେ ବୁଲି ବୁଲି ଖବରକାଗଜ ବିକନ୍ତିନାହିଁ । ଗୋଟିଏ ଗୋଟିଏ ସ୍ଥାନରେ ରାସ୍ତା ପାଖରେ ଖବରକାଗଜ ଥୁଆହୋଇଥାଏ । ଲୋକମାନେ ଆପେ ଆପେ ଖବରକାଗଜ ନେଇ ଗୋଟିଏ ବାକ୍‌ସରେ ପଇସା ଗଳେଇ ଦେଇ ଯାଆନ୍ତି । ସେଠାରେ ଲୋକଙ୍କର ଆର୍ଥିକ ଅବସ୍ଥା ଏତେ ସ୍ୱଚ୍ଛଳ ଯେ, ଏପରିକି ହୋଟେଲ୍‌ରେ ଯେଉଁମାନେ ଖାଦ୍ୟ ପରିବେଷଣ କରନ୍ତି ସେମାନଙ୍କର ନିଜର ମଟରଗାଡ଼ି ଥାଏ । ସୁଇଜରଲ୍ୟାଣ୍ଡ ଗୋଟିଏ ଅତି ଉନ୍ନତ ଓ ପ୍ରଗତିଶୀଳ ଦେଶ । କିନ୍ତୁ ସବୁଠାରୁ ଆଶ୍ଚର୍ଯ୍ୟର କଥା ସେତେବେଳେ ସେଠାକାର ସ୍ତ୍ରୀଲୋକମାନଙ୍କର ଭୋଟ ଦେବାର ଅଧିକାର ନଥିଲା । ସ୍ତ୍ରୀଲୋକମାନଙ୍କର ବିଚାର ବୁଦ୍ଧି ଉପରେ ସୁଇସ୍ ଲୋକମାନଙ୍କର ବିଶ୍ୱାସ ନାହିଁ ବୋଲି ମୋତେ କେତେକ ଲୋକ କହିଥିଲେ । ପରବର୍ତ୍ତୀ କାଳରେ ସୁଇଜରଲ୍ୟାଣ୍ଡର ମହିଳାମାନଙ୍କୁ ଭୋଟ ଅଧିକାର ଦିଆଯାଇଥିଲା; ମାତ୍ର କିଛିକାଳ ପରେ ରାଜନୈତିକ ବ୍ୟାପାରରେ ଅଧିକ ଜଡ଼ିତ ହେବାଦ୍ୱାରା ସେମାନଙ୍କର ନିଜ ସାମାଜିକ ଦାୟିତ୍ୱ ସମ୍ପାଦନରେ ଅବହେଳା ଘଟୁଛି ବୋଲି ଯୁକ୍ତିକରି ସେମାନେ ସ୍ୱେଚ୍ଛାକ୍ରମେ ଏହି ଅଧିକାର ପ୍ରତ୍ୟାଖ୍ୟାନ କରିଥିଲେ । ସେଠାରେ ରହିବା ସମୟରେ ଶ୍ରୀ ଆବେଦ ଅଲ୍ଲୀ ପ୍ରତିଦିନ କିଛି ନା କିଛି ଜିନିଷ କିଣିବାରେ ବ୍ୟସ୍ତ ଥାଆନ୍ତି । ସେଗୁଡ଼ିକ ଆମ ଦେଶକୁ କିପରି ଆଣିଲେ ମୁଁ ଜାଣେନାହିଁ । ମୁଁ ଦୁଇଟି ମାତ୍ର ଘଣ୍ଟା କିଣିଥିଲି ଓ ସେ ଦୁଇଟି ଆଣିବାକୁ ବେଶ୍ ଅସୁବିଧା ଭୋଗିଥିଲି ।

## ଜେନେଭାରୁ ପ୍ୟାରିସ୍ ଓ ଲଣ୍ଡନ

ଆନ୍ତର୍ଜାତିକ ଶ୍ରମିକ ସଂସ୍ଥାର ସମ୍ମିଳନୀ ଜୁନ୍ ମାସ ଶେଷ ସପ୍ତାହରେ ସମାପ୍ତ ହୋଇଥିଲା । ତାହାପରେ ମୁଁ ସେଠାରୁ ପ୍ୟାରିସ୍ ଯାଇଥିଲି ଏବଂ ସେଠାରେ ଚାରିଦିନ ରହିବା ପରେ ଜୁଲାଇ ପହିଲାରେ ଲଣ୍ଡନ ଅଭିମୁଖେ ଯାତ୍ରା କରିଥିଲି । ଭାରତର ପୂର୍ବତନ ଶାସକଙ୍କ ଭୂମି ଇଂଲଣ୍ଡ ଏବଂ ଲଣ୍ଡନ ଦେଖିବାପାଇଁ ମୋ ମନରେ ଏକପ୍ରକାର ଜଣେ ଜିଜ୍ଞାସୁ ଛାତ୍ରଭଳି କୌତୂହଳ ଥାଏ । ଲଣ୍ଡନ୍ ବିମାନବନ୍ଦରରେ ପହଞ୍ଚି ମୁଁ ଅକ୍‌ସ୍‌ଫୋର୍ଡ଼ ଷ୍ଟ୍ରିଟ୍‌ରେ ଅବସ୍ଥିତ ଗୋଟିଏ ହୋଟେଲ୍‌କୁ ଯାଇଥିଲି । ସେହି ହୋଟେଲ୍‌ରେ ମୋର ରହିବାର ବ୍ୟବସ୍ଥା କରାଯାଇଥିଲା । ଜିନିଷପତ୍ର ହୋଟେଲ୍‌ରେ ରଖି ଟିକିଏ ବୁଲିବାପାଇଁ ବାହାରିଥିଲି । ଚାଲି ଚାଲି ବୁଲି ପ୍ରାୟ ତିନିଶହ ଗଜ ଦୂର ଗଲା ପରେ ଦେଖିଲି ଗୋଟିଏ ଗଳିରାସ୍ତାର ଗୋଟିଏ ଘରର ଚିହ୍ନ ଫଳକରେ ଲେଖାଥାଏ ଆହ୍ଲାବାଦ ରେସ୍ତୋରାଁ । ପ୍ରଥମେ ନିଜ ଆଖିକୁ ମଧ୍ୟ ବିଶ୍ୱାସ କରିପାରିଲିନାହିଁ, ବାରମ୍ବାର ତାକୁ ପଢ଼ିଥିଲି– 'ଆହ୍ଲାବାଦ ରେସ୍ତୋରାଁ' । ସେଇ ଘରର ଝରକା ପାଖକୁ ଯାଇ ଟିକିଏ ଛିଡ଼ାହେଲି । ଭିତରେ କେତେକ ଲୋକ କଥାବାର୍ତ୍ତା ହେଉଥିଲେ । କଥାଭାଷା ମୋତେ ଓଡ଼ିଆ ପରି ମନେହେଲା । ମୁଁ ଆହୁରି ଆଶ୍ଚର୍ଯ୍ୟ ହୋଇପଡ଼ିଲି । ପରେ ଜାଣିଲି ସେମାନେ ଥିଲେ ପୂର୍ବପାକିସ୍ତାନର ବଙ୍ଗାଳି ମୁସଲମାନ ଏବଂ ହୋଟେଲ୍ ମାଲିକ ମଧ୍ୟ

ଥିଲେ ଜଣେ ବଙ୍ଗୀୟ ମୁସଲମାନ । ସେଠାରେ ସବୁପ୍ରକାର ଭାରତୀୟ ଖାଦ୍ୟ ମିଳେବୋଲି ଜାଣି ମୁଁ ଖୁସି ହେଲି । ଲଣ୍ଡନ ରହଣି ସମୟରେ ମୁଁ ରାତ୍ରିଭୋଜନ ପ୍ରାୟ ସେହି ହୋଟେଲ୍‌ରେ କରୁଥିଲି । ଲଣ୍ଡନରେ ଦଶଦିନ ଥିଲି । ଯେଉଁଦିନ ଲଣ୍ଡନରେ ପହଞ୍ଚେ ସେହିଦିନ ଜଣେ ଭାରତୀୟ ବନ୍ଧୁ ମୋତେ ଦେଖାକରିଥିଲେ । ସେ ଭଦ୍ରଲୋକ ମୋତେ ତାଙ୍କ ଅତିଥିରୂପେ ସାହାଯ୍ୟ କରିବାରୁ ଆଉ କିଛି ଅସୁବିଧା ଭୋଗିବାକୁ ପଡ଼ିନଥିଲା ।

ଲଣ୍ଡନରେ ପହଞ୍ଚିବାର ପରଦିନହିଁ ମୁଁ ବ୍ରିଟିଶ୍ ପାର୍ଲିଆମେଣ୍ଟ ଅଧିବେଶନ ଦେଖିବାପାଇଁ ଆଗ୍ରହ ପ୍ରକାଶ କରିଥିଲି । ସ୍ୱତନ୍ତ୍ର ଦର୍ଶକ ପାସ୍ ପାଇବାପାଇଁ ଟିକିଏ ସମୟ ଲାଗିଲା । ସେଥିପାଇଁ ଆମର ଭାରତୀୟ ହାଇକମିଶନ୍ ଅଫିସ୍ ବନ୍ଦୋବସ୍ତ କରିଥିଲେ; କିନ୍ତୁ ପ୍ରଟୋକଲ୍ ମର୍ଯ୍ୟାଦାପାଇଁ ଅପେକ୍ଷା ନକରି ମୁଁ ପାର୍ଲିଆମେଣ୍ଟ ଭବନରେ ହାଉସ୍ ଅଫ୍ କମନ୍‌ସକୁ (House of Commons) ଯାଇଥିଲି । ସେଠାରେ ବିନା ପାସ୍‌ରେ ମଧ୍ୟ ପାର୍ଲିଆମେଣ୍ଟ ହାଉସ୍ ଦେଖିବାର ସୁବିଧା ଥାଏ । ଦର୍ଶକମାନେ ଲାଇନ୍ ଲଗାଇ ଛିଡ଼ା ହୋଇଥାଆନ୍ତି । ସେହି ଲାଇନ୍‌ରେ ଦର୍ଶକମାନେ ଆସ୍ତେ ଆସ୍ତେ ଆଗକୁ ଯାଇ ବାଚସ୍ପତିଙ୍କ ସାମ୍ନାରେ ଥିବା ଗ୍ୟାଲେରୀ ଉପରେ ପାଞ୍ଚମିନିଟ୍ ରହି ବାହାରକୁ ଚାଲିଯାଆନ୍ତି । ମୁଁ ସେଠାକୁ ଯାଇ ସେହିପରି ଲାଇନ୍‌ରେ ଛିଡ଼ା ହୋଇ ପ୍ରଥମ ଦିନ ବ୍ରିଟିଶ୍ ପାର୍ଲିଆମେଣ୍ଟ ଦେଖିଲି । ପରଦିନ କମନ୍ ୱେଲ୍‌ଥ ଭିଜିଟର୍ସ ଗ୍ୟାଲେରୀରେ ବସିବାପାଇଁ ଖଣ୍ଡେ ପାସ୍ ମୋତେ ମିଳିଥିଲା । ସେଠାରେ ବସି ହାଉସ୍ ଅଫ୍ କମନ୍‌ସର ଗୋଟିଏ ଦିନର କାର୍ଯ୍ୟାବଳୀ ଅନୁଧ୍ୟାନ କରିବାର ସୁଯୋଗ ନେଇଥିଲି । ବ୍ରିଟିଶ୍ ପାର୍ଲିଆମେଣ୍ଟ ବହୁ ପୁରାତନ ଗଣତାନ୍ତ୍ରିକ ଐତିହ୍ୟର ପ୍ରତୀକ । ୧୫୪୭ ମସିହାରେ ୱେଷ୍ଟ ମିନିଷ୍ଟର୍ ପ୍ରାସାଦ ମଧ୍ୟରେ ଥିବା ସେଣ୍ଟ ଷ୍ଟିଫେନ୍‌ସ ଗିର୍ଜାଟି ପାର୍ଲିଆମେଣ୍ଟ ସଦସ୍ୟମାନଙ୍କୁ ସଭାଗୃହରୂପେ ବ୍ୟବହାର କରିବାପାଇଁ ମିଳିଥିଲା । ୧୮୩୪ ମସିହା ପର୍ଯ୍ୟନ୍ତ ଏହା ସେହିପରି ଭାବରେ ପାର୍ଲିଆମେଣ୍ଟର ସଭାଗୃହରୂପେ ବ୍ୟବହୃତ ହୋଇଥିଲା । ୧୮୩୪ ମସିହାରେ ସମଗ୍ର ୱେଷ୍ଟ୍ ମିନିଷ୍ଟର୍ ପ୍ରାସାଦଟି ଅଗ୍ନିଦ୍ୱାରା ଧ୍ୱସ୍ତବିଧ୍ୱସ୍ତ ହୋଇଯାଇଥିଲା । ସେଣ୍ଟ ଷ୍ଟିଫେନ୍‌ସ ଗିର୍ଜାର ତଳଭାଗର କେତେକ ଅଂଶ ପୋଡ଼ିନଯାଇ ରହିଯାଇଥିଲା । ସେହି ରକ୍ଷା ପାଇଯାଇଥିବା ଧ୍ୱଂସାବଶେଷକୁ ଭିତ୍ତିକରି ସାର୍ ଚାର୍ଲସ୍ ବେରୀଙ୍କର ନକ୍‌ସା ଅନୁସାରେ ମରାମତି ଓ ତିଆରି ହୋଇଥିବା କକ୍ଷଟିକୁ ପାର୍ଲିଆମେଣ୍ଟ ସଦସ୍ୟମାନେ ସଭାଗୃହରୂପେ ବ୍ୟବହାର କରିଥିଲେ । ଦ୍ୱିତୀୟ ମହାସମର ଭିତରେ ୧୯୪୧ ମସିହାରେ ଏହି ସଭାଗୃହ ବା ପାର୍ଲିଆମେଣ୍ଟ ହାଉସ୍ ଜର୍ମାନ୍ ବୋମାମାଡ଼ରେ ଭାଙ୍ଗିଯାଇଥିଲା । ତାହାପରେ ସେହି ପୁରୁଣା ଗୃହକୁ ଭିତ୍ତିକରି ପାର୍ଲିଆମେଣ୍ଟ ହାଉସ୍ ପୁନଃ ନିର୍ମିତ ହୋଇ ୧୯୫୦ ମସିହାରେ ଉଦ୍‌ଘାଟିତ ହୋଇଥିଲା । ବ୍ରିଟିଶ୍ ଜାତି ନିଜର ପୁରାତନ ସଂସ୍କୃତି ଓ ପଦ୍ଧତି ପ୍ରତି ବଡ଼ ଅନୁରାଗୀ । ସେମାନଙ୍କ ଦେଶର ଯେତେ ଅଗ୍ରଗତି ହେଲେ ମଧ୍ୟ ସେମାନେ ପୁରାତନ ନକ୍‌ସାରେ ତିଆରି ହୋଇଥିବା ପୁରୁଣା ପାର୍ଲିଆମେଣ୍ଟ ହାଉସ୍‌ର ଭିତ୍ତି ଓ ସ୍ଥିତିକୁ ନିଜର ସ୍ମୃତିରେ ଅକ୍ଷୁଣ୍ଣ ରଖିବାକୁ ଚାହାନ୍ତି । ଆମ ଦେଶର ଦିଲ୍ଲୀ ପାର୍ଲିଆମେଣ୍ଟ ଭବନ ଯେପରି ଆଡ଼ମ୍ବରପୂର୍ଣ୍ଣ, ବ୍ରିଟିଶ୍ ପାର୍ଲିଆମେଣ୍ଟ ହାଉସ୍ ସେ ପ୍ରକାର ନୁହେଁ; ଯଦିଓ ଆମର ପାର୍ଲିଆମେଣ୍ଟ ଭବନ ସେହି ବ୍ରିଟିଶ୍ ଅମଳରେ ଗଢ଼ା ସୌଧ । ସେମାନେ ଚାହିଁଲେ ହୁଏତ ସବୁଠାରୁ ଉତ୍କୃଷ୍ଟ ଏକ ପାର୍ଲିଆମେଣ୍ଟ ସୌଧ ନିର୍ମାଣ କରିପାରନ୍ତେ; ମାତ୍ର ପୁରାତନର ଗୌରବକୁ ସେମାନେ ଛାଡ଼ିବାକୁ ଚାହାନ୍ତିନାହିଁ । କୁହାଯାଏ ଯେ, ବ୍ରିଟିଶ୍ ପାର୍ଲିଆମେଣ୍ଟ ପୃଥିବୀର ବିଭିନ୍ନ ଦେଶରେ ପ୍ରଚଳିତ ଥିବା ପାର୍ଲିଆମେଣ୍ଟାରୀ ପଦ୍ଧତି ଏବଂ ସଂସଦୀୟ ପ୍ରତିନିଧିମୂଳକ ଶାସନ ବ୍ୟବସ୍ଥାର ଜନନୀ; [British Parliament is called the mother of Parliaments]. ଏହି ଉକ୍ତିର ସତ୍ୟତା ସଂପର୍କରେ କୌଣସି ସନ୍ଦେହନାହିଁ । ସେଥିପାଇଁ ବୋଧହୁଏ ବ୍ରିଟେନ୍‌ର ଲୋକେ ପୁରାତନକୁ ରକ୍ଷା କରିବା ଦିଗରେ ବିଶେଷ ଆଗ୍ରହୀ । ସବୁଠାରୁ ବିସ୍ମୟର କଥା ଏହି ଯେ, ବ୍ରିଟିଶ୍ ପାର୍ଲିଆମେଣ୍ଟର ସଭ୍ୟସଂଖ୍ୟା

ବୃଦ୍ଧି ପାଇଲେ ମଧ ସେମାନେ ପୁରୁଣା ସଭାକକ୍ଷକୁ ଭାଙ୍ଗି ନୂଆ ପ୍ରଶସ୍ତ କକ୍ଷ ନିର୍ମାଣ କରିବା ପାଇଁ ଆଗ୍ରହୀ ନୁହନ୍ତି । ପୁରୁଣା ସଭାକକ୍ଷରେ ଗୁଞ୍ଜାଗୁଞ୍ଜି ହୋଇ ବସୁଥିଲେ ମଧ ତାହାହିଁ ତାଙ୍କ ପକ୍ଷରେ ଶ୍ରେୟସ୍କର । ୧୯୬୩ ମସିହାରେ ବ୍ରିଟିଶ୍ ପାର୍ଲିଆମେଣ୍ଟର ସଭ୍ୟସଂଖ୍ୟା ଥିଲା ୬୩୦ । ମାତ୍ର ପାର୍ଲିଆମେଣ୍ଟ ହାଉସ୍‌ରେ ୪୩୭ ଜଣ ସଭ୍ୟଙ୍କର ବସିବାପାଇଁ ଆସନ ଥାଏ । ସେମାନେ ଜାଣିଶୁଣି ପାର୍ଲିଆମେଣ୍ଟ କକ୍ଷରେ ବସିବାର ଆସନ ବଢ଼ାଇ ନାହାନ୍ତି । ସେମାନଙ୍କ ମତରେ ପାର୍ଲିଆମେଣ୍ଟ କେବଳ ଗତାନୁଗତିକ ଉଦ୍‌ବୋଧନ ଦେବାର ସ୍ଥାନ ନୁହେଁ । ସେଠାରେ ଯେଉଁସବୁ ଯୁକ୍ତିତର୍କ ହୁଏ ତାହା ବିଚାର ଆଲୋଚନା ବା କଥାବାର୍ତ୍ତା କରିବା ଢଙ୍ଗରେ ହୁଏ । ଆଲୋଚନାପାଇଁ ଯେତେବେଳେ ଯେଉଁ ବିଷୟବସ୍ତୁ ଥାଏ ସେଥିରେ ଯେଉଁମାନେ ବିଶେଷଜ୍ଞ ଓ ବିଶେଷଭାବରେ ଆଗ୍ରହୀ ସେମାନେହିଁ ସେତେବେଳେ ଉପସ୍ଥିତ ରହିବା ବାଞ୍ଛନୀୟ । ଏହି ପ୍ରସଙ୍ଗରେ ଦର୍ଶକମାନଙ୍କପାଇଁ ହାଉସ୍ ଅଫ୍ କମନ୍‌ସର ପ୍ରକାଶିତ ଏକ ପୁସ୍ତିକା, A Guide for Visitorର ପ୍ରଥମ ପୃଷ୍ଠାରୁ ଗୋଟିଏ ଅଂଶ ଉଦ୍ଧାର କଲେ ଭଲହେବ "In its shape and size the present Chamber is almost a replica of Barry's, though its decoration is less ornate, and larger galleries have been provided for visitors. The general seating arrangement of the House are in effect merely an enlargement of those in use over four hundred years ago in St. Stephen's Chapel, when Members sat in the choir stalls, and the Speaker's Chair stood on the altar steps. There are 630 Members of Parliament, but there is seating accommodation (including the side galleries) for only 437. This restriction is deliberate; the house is not a forum for set orations; its debates are largely conversational in character; and for many of them –highly specialised in theme or of a routine nature – few Members are present, being engaged on other Parliamentary duties in the Palace of Westminister. Thus, a small and intimate Chamber is more convenient. Conversely, on great occasions, when the House is full and Member's have to sit in the gangways, or cluster round the Speaker's chair, at the Bar and in the side galleries, the drama of Parliament is enhanced and there is, as Sir Winston Churchill once put it, 'a sense of crowd and urgency'." ଯେତେବେଳେ ଡିଭିଜନ୍ ଘଣ୍ଟି ବାଜେ ସେତେବେଳେ ଭୋଟ ଦେବାପାଇଁ ସବୁ ସଭ୍ୟ ଗୃହ ଭିତରକୁ ଆସନ୍ତି, ମାତ୍ର ସମସ୍ତଙ୍କର ବସିବାପାଇଁ ଆସନ ନ ଥାଏ । ଦୁଇଧାଡ଼ି ମଧରେ ଯିବା ଆସିବାପାଇଁ ଯେଉଁ ରାସ୍ତା (gangway) ଥାଏ ସେଥିରେ ସଭ୍ୟମାନେ ବସିଯାଆନ୍ତି । ଆଉ କେତେକ ବାଚସ୍ପତିଙ୍କ ମଣ୍ଡପ ପାଖରେ ଜମାହୋଇ ତାଙ୍କର ମଣ୍ଡପର ଧାରରେ ବାହାରିଥିବା କାଠ କାର୍ଣ୍ଣିସ୍ ଉପରେ ବସିପଡ଼ନ୍ତି । ଏହିପରି ଭାବରେ ସଭ୍ୟମାନେ ବସିବାର ମୁଁ ଦେଖିଛି ।

ବାଚସ୍ପତିଙ୍କ ବସିବା ଆସନ ଆଗରେ ଗୋଟିଏ ଟେବୁଲ୍ ପଡ଼ିଥାଏ ଏବଂ ସେହି ଟେବୁଲ୍ ସାମନାରେ ପ୍ରାୟ ଲାଗିରହିଥିବା ଭଳି ଆଉ ଗୋଟିଏ ଲମ୍ବା ଟେବୁଲ୍ ପଡ଼ିଥାଏ । ଗୋଟିଏ ପାଖରେ ପ୍ରଧାନମନ୍ତ୍ରୀଙ୍କ ସହିତ ଆଉ କେତେଜଣ ମନ୍ତ୍ରୀ ଓ ଅନ୍ୟପାଖରେ ବିରୁଦ୍ଧ ଦଳର ନେତାଙ୍କ ସମେତ କେତେ ଜଣ ସଭ୍ୟ ଏହି ଟେବୁଲ୍‌ଟିକୁ ଆବୋରି ବସିଥା'ନ୍ତି । ଏହିଠାରେ ସଭ୍ୟମାନଙ୍କର ଗୋଟିଏ ଆଚରଣ ଲକ୍ଷ୍ୟକରି ମୁଁ ବିସ୍ମିତ ହୋଇଥିଲି । ଆମ ଦେଶରେ ପାର୍ଲିଆମେଣ୍ଟରେ ବା ବିଧାନସଭାରେ ଅଧକ୍ଷଙ୍କ ଆଗରେ ଟେବୁଲ୍ ଉପରେ ଗୋଡ଼ ଟେକି ବସିବା ଅତି ଅସମ୍ମାନଜନକ କାର୍ଯ୍ୟ ଏବଂ ଏ ପ୍ରକାର ସଭ୍ୟମାନଙ୍କୁ ଦଣ୍ଡିତ ହେବାକୁ ପଡ଼ିଥାଏ । ମାତ୍ର ବ୍ରିଟିଶ୍ ପାର୍ଲିଆମେଣ୍ଟ ହାଉସ୍‌ରେ ସେ ପ୍ରକାର ବ୍ୟବହାର ଅତି ମାମୁଲି ଓ ଆଦୌ ଧର୍ତ୍ତବ୍ୟ ନୁହେଁ । ବିରୋଧୀ ଦଳର ତତ୍କାଳୀନ ନେତା

ଶ୍ରମିକ ଦଳର ମିଷ୍ଟର ହେରାଲ୍ଡ ଉଇଲ୍‌ସନ୍ ସ୍ପିକରଙ୍କର ଠିକ୍ ସାମନାରେ ତାଙ୍କ ପାଦୁକାପରିହିତ ପାଦ ଦୁଇଟି ଟେବୁଲ୍ ଉପରେ ଥୋଇ ଆରାମ୍ କରୁଥିବାର ମୁଁ ନିଜେ ଦେଖିଛି । ଏପରି ଘଟଣା ଆମ ଦେଶରେ ଘଟିଲେ ଗୃହରେ ପ୍ରବଳ ଆଲୋଡନ ହେବା ସଙ୍ଗେ ସଙ୍ଗେ ଖବରକାଗଜରେ ଦେଶସାରା ଚହଳ ପଡ଼ିଯିବ । ଅବଶ୍ୟ ଓଡ଼ିଶା ବିଧାନସଭାରେ ଜଣେ ମାନ୍ୟବର ସଦସ୍ୟ ମୁଖ୍ୟମନ୍ତ୍ରୀଙ୍କ ଟେବୁଲ୍ ଉପରେ ପାଦୁକା ସ୍ଥାପନ କରିବା ପ୍ରସଙ୍ଗ ଏହି ବ୍ରିଟିଶ୍ ପରମ୍ପରା ସହିତ ତୁଳନୀୟ ନୁହେଁ; ଏହା ପ୍ରତିକ୍ରିୟା ପ୍ରକାଶପାଇଁ ପରମ୍ପରା ଲଂଘନର ଏକ ବିଳକ୍ଷଣ ଦୃଷ୍ଟାନ୍ତ ।

ସେତେବେଳେ ବ୍ରିଟେନ୍‌ର ଶାସକଦଳ ଥିଲା ରକ୍ଷଣଶୀଳ (Conservative) ଦଳ ଏବଂ ଦଳପତି ହିସାବରେ ହାରୋଲଡ୍ ମାକ୍‌ମିଲାନ୍ ଥିଲେ ପ୍ରଧାନମନ୍ତ୍ରୀ । ଶ୍ରମିକଦଳ ଥିଲା ପ୍ରଧାନ ବିରୋଧୀଦଳ ଏବଂ ତା'ର ନେତା ହାରୋଲଡ୍ ଉଇଲ୍‌ସନ୍ ଥିଲେ ବିରୋଧୀଦଳର ନେତା । ଦୁଇ ନେତାଙ୍କ ମଧ୍ୟରେ ବାକ୍ୟ ବିନିମୟ ହେବାର ମୁଁ ଦେଖିଛି । କୌଣସି ଗୋଟିଏ କଥାରେ ହଠାତ୍ ପ୍ରଧାନମନ୍ତ୍ରୀ ମାକ୍‌ମିଲାନ୍ ଟିକିଏ କ୍ରୋଧ ପ୍ରକାଶକରିବାକୁ ବିରୋଧୀ ଦଳର ନେତା କହିଥିଲେ, "A Prime Minister should not be petulant" । ଏହାର ଉତ୍ତରରେ ପ୍ରଧାନମନ୍ତ୍ରୀ କହିଥିଲେ ଯେ – ଧୈର୍ଯ୍ୟର ଗୋଟିଏ ସୀମା ଅଛି । ସେମାନଙ୍କ ଭିତରେ ଏତକ ଅପ୍ରୀତିକର ବାକ୍ୟ ବିନିମୟ ସେ ଦିନର ଖବରକାଗଜମାନଙ୍କର ଗୋଟିଏ ଆକର୍ଷଣୀୟ ସମ୍ବାଦ ହୋଇଥିଲା ।

ମୋର ଲଣ୍ଡନ ରହଣି ସମୟରେ ମୁଁ ଇଂଲଣ୍ଡର ପ୍ରଧାନ ପୁଲିସ କାର୍ଯ୍ୟାଳୟ Scotland Yard ଦେଖିବାକୁ ଯାଇଥିଲି । Scotland Yard ଏବଂ ବ୍ରିଟେନ୍‌ର ପୁଲିସ ଟ୍ରେନିଂ କଲେଜ ଦେଖିଯିବା ପାଇଁ ମୁଁ ଆଗରୁ ବ୍ରିଟେନ୍‌ର ସ୍ୱରାଷ୍ଟ୍ର ବିଭାଗକୁ ଲେଖିଥିଲି, ତେଣୁ ସେମାନେ Scotland Yardକୁ ସେହି ଅନୁସାରେ ନିର୍ଦ୍ଦେଶ ଦେଇଥିଲେ । Scotland Yardରୁ ମୁଁ ରହୁଥିବା ହୋଟେଲ୍‌କୁ ଗୋଟିଏ ଚିଠିସହ ମୋର ପରିଦର୍ଶନ କାର୍ଯ୍ୟନିଘଣ୍ଟ ଆସିଥିଲା । ମୁଁ ସେତେବେଳେ ହୋଟେଲ୍‌ରେ ନଥିଲି । ଚିଠିଟି ସେମାନେ ହୋଟେଲ୍ ମ୍ୟାନେଜରଙ୍କ ହାତରେ ମୋତେ ଦେବାପାଇଁ ଦେଇ ଯାଇଥିଲେ । ହୋଟେଲ୍ ମ୍ୟାନେଜର Scotland Yardରୁ ଆସିଥିବା ଚିଠିଟି ଦେଖି ବଡ଼ ଅସ୍ଥିର ହୋଇଥିଲେ ଏବଂ ଚିଠିଟି ମୋତେ ନଦେବା ପର୍ଯ୍ୟନ୍ତ ସେ କୁଆଡ଼େ ସ୍ଥିର ହୋଇ ବସିପାରିନଥିଲେ । ସେଠାକାର ଲୋକଙ୍କର ସ୍କଟଲାଣ୍ଡ ୟାର୍ଡ ପ୍ରତି ଭୟ ଯେତିକି ସମ୍ମାନ ମଧ୍ୟ ସେତିକି । ଏହାପରେ ଉକ୍ତ ହୋଟେଲ୍‌ରେ ମୋ ପ୍ରତି ସମସ୍ତଙ୍କର ବ୍ୟବହାର ବଦଳିଯାଇଥିଲା । ମୋର ରହିବା ଓ ଖାଇବା ସମ୍ବନ୍ଧରେ ସେମାନେ ଏଣିକି ବିଶେଷ ଯତ୍ନବାନ୍ ହୋଇଥିଲେ । ସ୍କଟଲାଣ୍ଡ ୟାର୍ଡର କାର୍ଯ୍ୟାଳୟର ପରିସର ସେତେ ବିସ୍ତୃତ ନୁହେଁ । ଆମ ରାଜ୍ୟରେ କଟକରେ ଥିବା ପୁଲିସ ଆଇ.ଜି. ଅଫିସ୍ ଘର ବରଂ ତା'ଠାରୁ ବଡ଼ । ମୋତେ ସ୍କଟଲାଣ୍ଡ ୟାର୍ଡର ସମସ୍ତ ବିଭାଗ ବୁଲାଇ ଦେଖାଇବା ପରେ ଲଣ୍ଡନର ପ୍ରାୟ ପଚାଶ ମାଇଲ ଦୂରରେ ଥିବା ସେମାନଙ୍କର ପୁଲିସ ଟ୍ରେନିଂ କଲେଜକୁ ନେଇଥିଲେ । ସେଠାରେ ତାଲିମ୍ ପାଉଥିବା ପ୍ରାୟ ପାଞ୍ଚଶହ ଯୁବକଙ୍କୁ ମୁଁ ଗୋଟିଏ ପାରେଡ୍‌ରେ ଭେଟିଥିଲି । ସେମାନଙ୍କର ମଧ୍ୟାହ୍ନ ପଙ୍‌କ୍ତି ଭୋଜନରେ ମଧ୍ୟ ଯୋଗଦେଇଥିଲି । ଗୋଟିଏ ବିଷୟ ଦେଖି ମୁଁ ଅତି ବିସ୍ମିତ ହୋଇଥିଲି । ତାଲିମ୍ ପାଉଥିବା ଯୁବକମାନେ ପ୍ରାୟ ଦେଖିବାକୁ ସମାନ । ସେମାନଙ୍କର ଉଚ୍ଚତା, ଆକୃତି ଓ ନାକର ଗଠନ ପ୍ରାୟ ସମାନ ।

ଦିନେ ଅକ୍‌ସଫୋର୍ଡ ୟୁନିଭରସିଟି ଦେଖିବାକୁ ଯାଇଥିଲି । ଏହା ଲଣ୍ଡନଠାରୁ ବହୁ ଦୂରରେ । ସେଠାରେ ଅଧ୍ୟୟନ କରୁଥିବା ଆମର କେତେକ ଭାରତୀୟ ଛାତ୍ରଙ୍କ ସହିତ ମଧ୍ୟ ମୋର ଦେଖାହୋଇଥିଲା । ବିଶ୍ୱବିଦ୍ୟାଳୟ ଅଫିସ୍ ଓ ବିଭିନ୍ନ ବିଭାଗର ଘରଗୁଡ଼ିକ ସେଭଳି ପ୍ରକାଣ୍ଡ ନୁହେଁ । ଆମ କଟକର ରେଭେନ୍‌ସା କଲେଜର ପ୍ରାଙ୍ଗଣ ଓ କୋଠାବାଡ଼ି ଅକ୍‌ସଫୋର୍ଡ ବିଶ୍ୱବିଦ୍ୟାଳୟର ପ୍ରାଙ୍ଗଣ ଓ କୋଠାବାଡ଼ିଠାରୁ ବଡ଼ । କିନ୍ତୁ ଅଧ୍ୟାପନାର ଆଦର୍ଶ ଓ ଉତ୍କୃଷ୍ଟ ପରମ୍ପରାହିଁ ଏହାର ବଡ଼ପଣ

ବୋଧହେଲା । ଲଣ୍ଡନର ହାଇଡ୍ ପାର୍କ ଗୋଟିଏ ପ୍ରସିଦ୍ଧ ସ୍ଥାନ । ସେହିଠାରେ ସମସ୍ତଙ୍କର ସାଧାରଣ ସଭା ଅନୁଷ୍ଠିତ ହୁଏ । ସେଠାରେ ସଭାରେ ଭାଷଣ ଶୁଣିବାକୁ ବେଶୀ ଲୋକ ଆସନ୍ତି ନାହିଁ, ମାତ୍ର ସଭାର ଭାଷଣ ଓ ବିଷୟବସ୍ତୁ ଖବରକାଗଜମାନଙ୍କରେ ବିଶଦଭାବରେ ପ୍ରକାଶିତ ହୁଏ । ମୁଁ ଗୋଟିଏ ସଭାରେ ଦେଖିଲି, କୌଣସି ଯୁଦ୍ଧରେ ଗୋଟିଏ ଗୋଡ଼ ବିକଳାଙ୍ଗ ହୋଇଥିବା ଜଣେ ବ୍ୟକ୍ତି ଭାଷଣ ଦେଉଥାଆନ୍ତି । ତାଙ୍କର ବିଷୟବସ୍ତୁ ହେଲା, ଦେଶପାଇଁ ସେ ଯେପରି ତ୍ୟାଗ କରିଛନ୍ତି ସେଥିପାଇଁ ସେ କାହିଁକି ବିଲାତର ପ୍ରଧାନମନ୍ତ୍ରୀ ନହେବେ ? ପ୍ରାୟ ତିନିଶହ ଖଣ୍ଡେ ଲୋକ ସେ ସଭାରେ ଉପସ୍ଥିତ ଥିଲେ ଏବଂ ମଝିରେ ମଝିରେ ଘନ ଘନ କରତାଳି ପଡୁଥାଏ । ପ୍ରତିଦିନ ପ୍ରାୟ ଆଠ ଦଶଟି ସଭା ଏହି ହାଇଡ୍ ପାର୍କ ଭିତରେ ବିଭିନ୍ନ ସ୍ଥାନରେ ବିଭିନ୍ନ ବ୍ୟକ୍ତି ଓ ଅନୁଷ୍ଠାନମାନଙ୍କ ପକ୍ଷରୁ ଅନୁଷ୍ଠିତ ହୁଏ ।

ଲଣ୍ଡନ ସହରରେ ଗୋଟିଏ ଭାରତୀୟ ତରକାରୀ କେନ୍ଦ୍ର ଅଛି । ସେଠାକୁ ଖାଇବାକୁ ଗଲେ ବହୁ ଭାରତୀୟଙ୍କ ସହ ଦେଖାହୁଏ । ମୁଁ ବି ଏହି ତରକାରି କେନ୍ଦ୍ରକୁ ଯାଇଥିଲି । ସେଠାରେ ମୁଁ ଆମ ରାଜ୍ୟର ଅର୍ଥବିଭାଗର ଶାସନ ସଚିବ ଶ୍ରୀ କେ. ଏସ୍. ବାବାଙ୍କୁ ଭେଟିଥିଲି । ସେ ଆମ ରାଜ୍ୟର ସରକାରୀ କାର୍ଯ୍ୟରେ ହଲାଣ୍ଡ ଯାଇଥିଲେ ଏବଂ ଲଣ୍ଡନ ବାଟଦେଇ ଫେରୁଥିଲେ । ବ୍ରିଟିଶ୍ ପ୍ରଧାନମନ୍ତ୍ରୀଙ୍କର ସରକାରୀ ବାସଭବନ ଦଶ ନମ୍ବର ଡାଉନିଂ ଷ୍ଟ୍ରିଟ୍ (10-Downing Street) ଦେଖିବାକୁ ଗଲି । ଘରଟି ଗୋଟିଏ ଏକମୁହାଁ ରାସ୍ତାରେ ଅବସ୍ଥିତ । ବାସଭବନଟି ସେପରି ଆକର୍ଷଣୀୟ ନୁହେଁ । ଆମ ରାଜ୍ୟର ମୁଖ୍ୟମନ୍ତ୍ରୀଙ୍କର ବାସଭବନ ତା'ଠାରୁ ବେଶୀ ଆକର୍ଷଣୀୟ । ବ୍ରିଟେନ୍‌ର ରାଜପ୍ରାସାଦ ବକିଂହାମ୍ ପାଲେସ୍ ଦେଖିବାକୁ ଗଲି । ଏହି ରାଜପ୍ରାସାଦଠାରୁ ତା' ପାଖରେ ଛିଡ଼ାହୋଇଥିବା ବହୁତାଲାବିଶିଷ୍ଟ ହିଲ୍‌ଟନ୍ ହୋଟେଲ୍ ଆହୁରି ବେଶୀ ଆକର୍ଷଣୀୟ । ଆମ ରାଜ୍ୟର ରାଜଭବନ ତା'ଠାରୁ ସୁନ୍ଦର ବୋଲି ମୋର ମନେହେଲା । କିନ୍ତୁ ସବୁଠାରୁ ପ୍ରାଚୀନତାର ଛାପ ବ୍ରିଟିଶ୍‌ଜାତିକୁ ଯେପରି ବିମୋହିତ କରୁଛି, ଆଗନ୍ତୁକମାନଙ୍କୁ ସେହିପରି ପ୍ରଭାବିତ କରୁଛି । ଲଣ୍ଡନରେ ଥିଲାବେଳେ ମୁଁ ଇଣ୍ଡିଆ ହାଉସ୍‌କୁ ଯାଇଥିଲି । ସେତେବେଳକାର ଭାରତୀୟ ହାଇକମିଶନର୍ ଶ୍ରୀ ଚଗଲାଙ୍କ ସହିତ ସେଠାରେ ମୋର ସାକ୍ଷାତ୍ ଆଲୋଚନା ହୋଇଥିଲା ।

## ବିଭକ୍ତ ବର୍ଲିନ୍‌ରୁ ମାର୍କସିଷ୍ଟ ମସ୍କୋ

ଲଣ୍ଡନରେ ଦଶ ଦିନ ରହିବା ପରେ ମୁଁ ପଶ୍ଚିମ ଜର୍ମାନୀ ଓ ରୁଷିଆ ଅଭିମୁଖେ ଯାତ୍ରାକରିଥିଲି । ରୁଷ ଦେଶକୁ ଯିବା ସମ୍ବନ୍ଧରେ ଗୋଟିଏ ଅସୁବିଧା ବିଷୟ ମୁଁ ଏଠାରେ କହିବାକୁ ଚାହୁଁଛି । ମୁଁ ଯେତେବେଳେ ଜେନେଭାରେ ଥିଲି ସେଠାରେ ଆମ ଦେଶର ଦୂତାବାସ ଦାୟିତ୍ୱରେ ଥିଲେ ଶ୍ରୀ ଅମୃତଲାଲ ମେହେଟ୍ଟା । ସେ ପରେ ବିଜୁବାବୁଙ୍କର ସମୁଦୀ ହେଲେ । ବିଜୁବାବୁଙ୍କ ଝିଅ ତାଙ୍କ ପୁଅକୁ ବିବାହ କରିଛନ୍ତି । ମେହେଟ୍ଟା ଦିନେ ଆସି ମୋତେ ହୋଟେଲ୍‌ରେ ଦେଖାକରି କହିଲେ ଯେ ମୋର ରୁଷ ପରିଭ୍ରମଣରେ ଯିବା ପ୍ରସ୍ତାବ ବାତିଲ୍ କରିବାକୁ ଭାରତ ସରକାର ପ୍ରସ୍ତାବ ଦେଇଛନ୍ତି । ମୁଁ ତାହା ଶୁଣି ବିବ୍ରତ ହେବା ସଙ୍ଗେ ସଙ୍ଗେ ଆଶ୍ଚର୍ଯ୍ୟ ହେଲି । ତାଙ୍କଠାରୁ ଜାଣିବାକୁ ପାଇଲି ଯେ ରୁଷ ଦେଶରେ ଥିବା ଆମର ଦୂତାବାସ ଭାରତ ସରକାରଙ୍କୁ ଜଣାଇଥିଲେ ଯେ ସେମାନେ ଅନ୍ୟ କାର୍ଯ୍ୟରେ ବ୍ୟସ୍ତ ଥିବାରୁ ମୋର ରହିବା ଓ ଅନ୍ୟାନ୍ୟ ବିଷୟରେ ସୁବିଧା କରିବାକୁ ଅସମର୍ଥ ହେବେ । ମୁଁ ଏକଥା ଆମ ପ୍ରତିନିଧି ଦଳର ସେକ୍ରେଟେରୀ ଶ୍ରୀ ଆର୍.ଏଲ୍.ମେହେଟ୍ଟାଙ୍କ ସହିତ ଆଲୋଚନା କଲି । ତାଙ୍କ ପରାମର୍ଶକ୍ରମେ ଗୋଟିଏ ରାତ୍ରିଭୋଜନକୁ ରୁଷ ଦେଶର ପ୍ରତିନିଧିମାନଙ୍କୁ ନିମନ୍ତ୍ରଣ କରାଯାଇଥିଲା । ରାତ୍ରିଭୋଜନ ସମୟରେ କଥାପ୍ରସଙ୍ଗରେ ଶ୍ରୀ ମେହେଟ୍ଟା ମୋର ରୁଷ ଦେଶ ପରିଦର୍ଶନ ବାତିଲ୍ ହେବା କଥା ଉଠାଇଥିଲେ । ତାହା ଶୁଣିବାକ୍ଷଣି ସେମାନେ ଜିଦ୍ ଧରିଥିଲେ ଯେ

ମୋତେ ନିଶ୍ଚୟ ମସ୍କୋ ଯିବାକୁ ହେବ । ମୁଁ ଯିବାକୁ ଅନୁକୂଳ ମତ ପ୍ରକାଶ କରିବାରୁ କେଉଁ ଦିନ କେଉଁ ସମୟରେ ମସ୍କୋରେ ପହଞ୍ଚିବି ସେ କଥା ସେମାନେ ଟିପିନେଇଥିଲେ ।

ମୁଁ ଲଣ୍ଡନରୁ ପଶ୍ଚିମ ଜର୍ମାନୀର ଗୋଟିଏ ବଡ଼ ଶିଳ୍ପନଗରୀ 'ଫ୍ରାଙ୍କଫୋର୍ଟ' ଯାଇଥିଲି ଏବଂ ସେଠାରେ ଦୁଇଦିନ ରହିଲା ପରେ ପଶ୍ଚିମ ବର୍ଲିନ୍‌ରେ ପହଞ୍ଚିଥିଲି । ପଶ୍ଚିମ ଜର୍ମାନୀର ହିଲ୍‌ଟନ୍ ହୋଟେଲ୍‌ରେ ମୋର ରହିବାର ବ୍ୟବସ୍ଥା ହୋଇଥିଲା । ପଶ୍ଚିମ ବର୍ଲିନ୍ ଗୋଟିଏ ବିରାଟ ନଗରୀ । ୧୯୬୩ରେ ଏହାର ଲୋକସଂଖ୍ୟା ପ୍ରାୟ ତେଇଶି ଲକ୍ଷ ଥିଲା ଏବଂ ବର୍ତ୍ତମାନ ତାହା ନିଶ୍ଚୟ ତିରିଶ ଲକ୍ଷ ହୋଇଥିବ । ଏହି ସହରଟି ପଶ୍ଚିମ ଜର୍ମାନୀ ଦେଶରେ ଅନ୍ତର୍ଭୁକ୍ତ; ମାତ୍ର ସ୍ଥଳପଥରେ ପଶ୍ଚିମ ଜର୍ମାନୀଠାରୁ ବିଚ୍ଛିନ୍ନ । କାରଣ ଗୋଟିଏ ଦ୍ୱୀପଭଳି ଏହା ପୂର୍ବଜର୍ମାନୀର ଇଲାକା ମଝିରେ ରହିଛି । ଗୋଟିଏ ଶକ୍ତିଶାଳୀ ଆନ୍ତର୍ଜାତିକ ଚୁକ୍ତି ଅନୁସାରେ କେବଳ ଆକାଶମାର୍ଗରେ ତେଇଶ ମାଇଲ ଓସାରର ଗୋଟିଏ ମୁକ୍ତ ସଂକୀର୍ଣ୍ଣ ଅଂଶ ପଶ୍ଚିମ ଜର୍ମାନୀ ଓ ପଶ୍ଚିମ ବର୍ଲିନ୍‌କୁ ସଂଯୁକ୍ତ କରୁଛି । ଏହି ସଂକୀର୍ଣ୍ଣ ଆକାଶମାର୍ଗରେ ପଶ୍ଚିମ ଜର୍ମାନୀରୁ ପଶ୍ଚିମ ବର୍ଲିନ୍‌କୁ ଉଡାଜାହାଜରେ ଯାତାୟାତ କରାଯାଏ । ଏଥିପାଇଁ ଆକାଶମାର୍ଗରେ ନିରାପତ୍ତା ଉଦ୍ଦେଶ୍ୟରେ ଦ୍ୱିତୀୟ ମହାଯୁଦ୍ଧକାଳୀନ ମିତ୍ରଶକ୍ତିମାନଙ୍କର ଗୋଟିଏ କେନ୍ଦ୍ର ସଂସ୍ଥା ଅଛି । ଦୁଇ ଅଞ୍ଚଳର ଅଧିବାସୀଙ୍କର ଯାତାୟାତ ଓ ପରିବହନ ଆଦି ସମସ୍ତ କାର୍ଯ୍ୟ ଆକାଶମାର୍ଗ ଦେଇ ଚଳେ । ଏଠାରେ ତିନିଟି ଦେଶର ଉଡ଼ାଜାହାଜ ସଂସ୍ଥା କାର୍ଯ୍ୟ କରନ୍ତି – ସେମାନେ ହେଲେ ଏୟାର୍ ଫ୍ରାନ୍‌ସ, ବ୍ରିଟିଶ୍-ୟୁରୋପିଆନ୍ ଏୟାର୍ ଉଏଜ୍ ଏବଂ ପ୍ୟାନ୍ -ଆମେରିକାନ୍ ଏୟାର୍ ଉଏଜ୍ । ପଶ୍ଚିମ ଜର୍ମାନୀର ଉଡ଼ାଜାହାଜ ସଂସ୍ଥା ସେତେବେଳେ ଏହି ଆକାଶମାର୍ଗରେ ଚଳାଚଳ କରିବାପାଇଁ ଅନୁମତି ନଥିଲା । ଏହି ତିନିଟି ସଂସ୍ଥାର ଉଡାଜାହାଜ ପ୍ରତିଦିନ ବହୁବାର ଯାତାୟାତ କରନ୍ତି । ସେତେବେଳେ କେବଳ ପ୍ୟାନ୍ -ଆମେରିକାନ୍ ଏୟାର୍ ଉଏଜ୍ ଦିନକୁ ଦୁଇପଟରୁ ୫୪ ଥର ଲେଖାଏଁ ମୋଟ ୧୦୮ ଥର ପରିବହନ କାର୍ଯ୍ୟ କରୁଥିଲା ।

ବର୍ଲିନ୍ ସହରଟି ବିଗତ ମହାଯୁଦ୍ଧ ପରେ ଦୁଇ ଭାଗରେ ବିଭକ୍ତ ହୋଇଛି —ପଶ୍ଚିମ ବର୍ଲିନ୍ ଓ ପୂର୍ବ ବର୍ଲିନ୍ । ପୂର୍ବ ବର୍ଲିନ୍ ସହରର ଲୋକସଂଖ୍ୟା ପଶ୍ଚିମ ବର୍ଲିନ୍ ସହରର ଅଧା ହେବ । ବର୍ଲିନ୍ ସହରଟି ଯେଉଁଠି ପୂର୍ବ ଓ ପଶ୍ଚିମ ଦୁଇ ଭାଗରେ ବିଭକ୍ତ ହୋଇଛି ଏବଂ ଯାହାଦ୍ୱାରା ବିଭକ୍ତ କରାହୋଇଛି ତାକୁହିଁ କହନ୍ତି ବର୍ଲିନ୍ ପ୍ରାଚୀର । ମୁଁ ଯେତେବେଳେ ସେଠାକୁ ଯାଇଥିଲି, ସେତେବେଳେ ଇଟା ବା ପଥରର ପ୍ରାଚୀର ନଥିଲା । ଏହି ବିଭକ୍ତ କରିଥିବା ସ୍ଥାନଟି ତେଇଶ୍ ମାଇଲ୍ ଲମ୍ବା । ସ୍ଥାନେ ସ୍ଥାନେ କଣ୍ଟା ଓ ତାରବାଡ଼ ପ୍ରାଚୀର କାର୍ଯ୍ୟ କରୁଥାଏ ; କିନ୍ତୁ ସୀମା ଉପରେ ଥିବା ପୂର୍ବ ବର୍ଲିନ୍ ପଟର ଘରଗୁଡ଼ିକର ପଶ୍ଚିମ ବର୍ଲିନ୍ ସହର ଆଡ଼କୁ ଥିବା ଦରଜା ଓ ଝରକାଗୁଡ଼ିକ ଇଟା, ବାଲି, ସିମେଣ୍ଟଦ୍ୱାରା ବନ୍ଦକରି ଦିଆଯାଇଥାଏ । କାର୍ଯ୍ୟତଃ ଏଗୁଡ଼ିକ ସୀମା-ପ୍ରାଚୀରର ଅଂଶଭଳି କାମକରୁଥାଏ । ସୀମା ଉପରେ ଥିବା ଗଳିରାସ୍ତା ଓ ଫାଙ୍କା ପଡ଼ିଆ ଉପରେ କଣ୍ଟା ଓ ତାରବାଡ଼ ଦିଆଯାଇଥିଲା । ଏପରିପରି କୃତ୍ରିମ ଉପାୟରେ ଗୋଟିଏ ବଡ଼ ସହରକୁ ବିଭକ୍ତ କରାଯାଇଅଛି । ଅବିଭକ୍ତ ବର୍ଲିନ୍ ସହରର ସମସ୍ତ ଲୋକ ଥିଲେ ଜର୍ମାନଜାତିର ଲୋକ । ଭାଇବନ୍ଧୁ ସାଇପଡ଼ିଶା ଭାବରେ ସବୁଦିନେ ଚଳିଆସୁଥିଲେ । ବିଗତ ବିଶ୍ୱଯୁଦ୍ଧ ପରେ ସହରଟି ହଠାତ୍ ଦୁଇ ଭାଗରେ ବିଭକ୍ତ ହୋଇଗଲା । ପୂର୍ବ ବର୍ଲିନ୍ ରହିଲା ରୁଷ ଦେଶର ଅଧୀନରେ ଓ ପଶ୍ଚିମ ଜର୍ମାନୀ ରହିଲା ଫ୍ରାନ୍‌ସ, ବ୍ରିଟିଶ୍ ଓ ଆମେରିକାନ୍‌ମାନଙ୍କ ଅଧୀନରେ । ଏହି ପ୍ରକାର କୃତ୍ରିମ ଓ ଅସ୍ୱାଭାବିକ ଭାବରେ ଗୋଟିଏ ଜାତିର ଲୋକ ନିଜର ଭାଇବନ୍ଧୁ, ପଡ଼ିଶାଙ୍କଠାରୁ ବାଧ୍ୟତାମୂଳକଭାବରେ ବିଚ୍ଛିନ୍ନ ହେବା କେତେ କଷ୍ଟଦାୟକ ତାହା ଅନୁମାନ କରାଯାଇପାରେ । ମଝିରେ କଣ୍ଟା ତାରବାଡ଼ ଏବଂ ତା'ର ଦୁଇପାଖରେ ସ୍ଥାନେ ସ୍ଥାନେ ମୁହାଁମୁହିଁ ହୋଇ ଛିଡ଼ାହୋଇଛନ୍ତି ଉଭୟ ପକ୍ଷର ସେନାବାହିନୀ । ଦିନ ରାତି ଚବିଶ ଘଣ୍ଟା ତାରି ମଝିରେ ଅଳ୍ପ ଦୂରରେ ଛିଡ଼ାହୋଇ ଅନାଅନି ଠାରଠୁର ହେଉଥା'ନ୍ତି ଗୋଟିଏ ଜାତିର ଭାଇବନ୍ଧୁ ଓ କୁଟୁମ୍ବମାନେ;

ଯେଉଁମାନେ କି ସେମାନଙ୍କର ବିନାଦୋଷରେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇଛନ୍ତି । ସେମାନେ ଛିଡ଼ା ହୋଇ ଦୀର୍ଘ ନିଶ୍ୱାସ ମାରିବାର ମୁଁ ଲକ୍ଷ୍ୟକରିଛି । ପଶ୍ଚିମ ବର୍ଲିନ୍‌ର କେତେକ ସ୍ଥାନରେ ଅହରହ ନିଆଁ ଜଳୁଥିବାର ମୁଁ ଦେଖିଲି । ସେ ନିଆଁ କୁଆଡ଼େ ସହରଟି ବିଭକ୍ତ ହେବା ଦିନରୁ ଜଳୁଥିଲା; ସବୁଦିନେ ଜଳୁଥିବ, ଯେପର୍ଯ୍ୟନ୍ତ ଗୋଟିଏ ଜାତିର ଭାଇଭଉଣୀମାନେ ପୁଣି ଏକତ୍ରିତ ନହୋଇଛନ୍ତି । ନିଆଁ ଜଳୁଥିବା ସ୍ଥାନରେ ଉପସ୍ଥିତ ହୋଇଥିବା ଲୋକମାନଙ୍କୁ ପଚାରି ବୁଝିଲି ନିଆଁ ଜାଳିବାର ଉଦ୍ଦେଶ୍ୟ । ସେମାନେ ଛଳ ଛଳ ଆଖିରେ ଦୀର୍ଘନିଶ୍ୱାସ ମାରି ତାହାହିଁ ମୋତେ କହିଥିଲେ । ଏହାକୁ ଲକ୍ଷ୍ୟକରି ବୋଧହୁଏ ଜନ୍ ଗୁଂଥର ତାଙ୍କର 'ଇନ୍‌ସାଇଡ୍ ୟୁରୋପ' ପୁସ୍ତକରେ ଲେଖିଛନ୍ତି, "The division of Germany into two segments is a constant irritant, and this could be an issue on which some future nationalist demagogue might easily wax fat." ଜର୍ମାନ୍ ଗୋଟିଏ ବିଚିତ୍ର ଜାତି ଏବଂ ସେହି ଲୋକଙ୍କର ସ୍ୱେଦାଶାନୁରାଗ ବଡ଼ ଗଭୀର । ଜାତି ହିସାବରେ ଜର୍ମାନ୍‌ମାନେ ନିଜ ଜାତିର ଶ୍ରେଷ୍ଠତା ପାଇଁ ଗର୍ବ ଅନୁଭବ କରନ୍ତି । ବିଗତ ଦୁଇଗୋଟି ମହାଯୁଦ୍ଧ ଏହି ଜର୍ମାନ୍ ଦେଶରୁ ଉଦ୍ଭବ ହୋଇଥିଲା । ସେ ଜାତି ଯେପରି ଭାବରେ ଖଣ୍ଡବିଖଣ୍ଡ ହୋଇଛି ସେଥିରେ ସେମାନେ ବିଶେଷ ଭାବରେ ମର୍ମାହତ । କିଏ ଜାଣେ, ଭବିଷ୍ୟତରେ କେହି ଜଣେ ଅତି ଚରମପନ୍ଥୀ ବିପ୍ଳବୀ ନବାହାରିବ ଏବଂ ଜର୍ମାନ୍ ଜାତିର ସ୍ୱଦେଶାନୁରାଗ ଓ ଅହଙ୍କାରକୁ ଜାଗ୍ରତ କରି ପୃଥିରେ ପୁଣି ଏକ ଯୁଦ୍ଧର ଆଶଙ୍କା ସୃଷ୍ଟି ନକରିବ ? ଜାତି ବିଚ୍ଛିନ୍ନ ହେବାର ଯନ୍ତ୍ରଣା ସେମାନଙ୍କ ପକ୍ଷରେ ଭୁଲିବା ଅସମ୍ଭବ । ତାହା ଦିନେ ବିସ୍ଫୋରଣ ଘଟାଇପାରେ ଏବଂ ସେ ବିସ୍ଫୋରଣକୁ ସିମେଣ୍ଟ ପଲସ୍ତରା ଇଟା ପ୍ରାଚୀରଦ୍ୱାରା ରୁଦ୍ଧ କରାଯାଇ ନ ପାରେ ।

ଜର୍ମାନ୍ ଜାତି ଛଡ଼ା ଅନ୍ୟ ଜାତିର ଲୋକଙ୍କୁ ଗୋଟିଏ ସ୍ଥାନରେ ପଶ୍ଚିମ ବର୍ଲିନ୍‌ରୁ ପୂର୍ବ ବର୍ଲିନ୍‌କୁ ଦେଖିବାପାଇଁ ଯିବାକୁ ଛଡ଼ାଯାଏ; କିନ୍ତୁ ଗାଡ଼ିର ଡ୍ରାଇଭର ଓ ବ୍ୟାଖ୍ୟାକାର ବଦଳାଇ ଯିବାକୁ ପଡ଼େ । ସେହି ନିର୍ଦ୍ଦିଷ୍ଟ ସ୍ଥାନରେ ଗେଟ୍ ପର୍ଯ୍ୟନ୍ତ ପଶ୍ଚିମ ବର୍ଲିନ୍‌ର ଗାଡ଼ିରେ ଯିବାକୁ ପଡ଼େ ଏବଂ ସେଠାରୁ ପୂର୍ବ ବର୍ଲିନ୍ ଗାଡ଼ିରେ ଯିବାକୁ ପଡ଼େ । ପଶ୍ଚିମ ବର୍ଲିନ୍‌ର ବ୍ୟାଖ୍ୟାକାର ନ ଯାଇ ପୂର୍ବ ବର୍ଲିନ୍‌ର ବ୍ୟାଖ୍ୟାକାର ସେ ଗାଡ଼ିରେ ଯାଆନ୍ତି । ପୂର୍ବ ବର୍ଲିନ୍ ଭିତରକୁ ପଶିଲାବେଳେ ସମସ୍ତଙ୍କୁ ତଲାସ୍ କରାଯାଏ । ମୁଁ ସେହିପରି ଭାବରେ ପୂର୍ବ ବର୍ଲିନ୍ ଭିତରକୁ ଯାଇଥିଲି । ହିଟ୍‌ଲରଙ୍କ ସରକାରୀ କାର୍ଯ୍ୟାଳୟର ଭଗ୍ନାବଶେଷ ପୂର୍ବ ବର୍ଲିନ୍‌ରେ ଦେଖିବାକୁ ପାଇଥିଲି । ତାହା ବୋମାମାଡ଼ଦ୍ୱାରା ଭାଙ୍ଗିଯାଇଥିଲା ଏବଂ ସେତବେଳ ପର୍ଯ୍ୟନ୍ତ ଆଉ ମରାମତି ବା ପୁନଃନିର୍ମାଣ ହୋଇନଥିଲା । ଯେଉଁ ରାସ୍ତାର ଗେଟ୍ ଦେଇ ଆମ୍ଭେମାନେ ପୂର୍ବ ବର୍ଲିନ୍‌କୁ ଯାଇଥିଲୁ ସେହି ଗେଟ୍‌ର ପଶ୍ଚିମ ବର୍ଲିନ୍ ପଟେ ଗୋଟିଏ ଉଚ୍ଚ ମଣ୍ଡପ ଛିଡ଼ା ହୋଇ ଥିବାର ମୁଁ ଦେଖିବାକୁ ପାଇଥିଲି । ପଚାରି ବୁଝିଲି ଯେ ମୋର ସେଠାକୁ ଯିବାର ମାସକ ତଳେ ପଶ୍ଚିମ ବର୍ଲିନ୍‌କୁ ଆମେରିକାର ରାଷ୍ଟ୍ରପତି ଜନ୍ କେନେଡ଼ି ଆସିଥିଲେ ଏବଂ ସେ ସେହି ମଣ୍ଡପ ଉପରେ ଛିଡ଼ାହୋଇ ପୂର୍ବ ବର୍ଲିନ୍ ଦେଖିଥିଲେ । ଯୁଦ୍ଧ ସମୟରେ ମିତ୍ରଶକ୍ତି ତଥା ରୁଷ ଦେଶର ବୋମାମାଡ଼ ଦ୍ୱାରା ବର୍ଲିନ୍ ସହରଟି ସଂପୂର୍ଣ୍ଣଭାବରେ ଧ୍ୱଂସ ହୋଇଯାଇଥିଲା । ୧୯୬୩ ମସିହାରେ ମୁଁ ଅନେକ ସ୍ଥାନରେ ଧ୍ୱଂସାବଶେଷ ଦେଖିବାକୁ ପାଇଥିଲି । ଏହି ଧ୍ୱଂସାବଶେଷ ବେଶି ଦେଖିବାକୁ ପାଇଥିଲି ପୂର୍ବ ବର୍ଲିନ୍‌ରେ । ପଶ୍ଚିମ ବର୍ଲିନ୍ ଓ ପୂର୍ବ ବର୍ଲିନ୍ ଦୁଇଟି ସହର ବୁଲି ଦେଖିଲା ପରେ ମୋର ଧାରଣା ହୋଇଥିଲା ଯେ ପଶ୍ଚିମ ବର୍ଲିନ୍‌ରେ ଭାଙ୍ଗିଯାଇଥିବା ଘରଗୁଡ଼ିକ ମଧ୍ୟରୁ ଶତକଡ଼ା ପ୍ରାୟ ଅଶୀ ଭାଗ ସେତେବେଳକୁ ମରାମତି ବା ପୁନଃନିର୍ମାଣ ହୋଇଥିଲା । ଶିଳ୍ପ, ବାଣିଜ୍ୟ, ଶିକ୍ଷା ଓ ଅନ୍ୟାନ୍ୟ ଦିଗରେ ପଶ୍ଚିମ ବର୍ଲିନ୍ ଦ୍ରୁତ ଅଗ୍ରଗତି କରୁଥିବାବେଳେ ପୂର୍ବ ବର୍ଲିନ୍ ବଡ଼ ମନ୍ଥର ଗତିରେ ଅଗ୍ରସର ହେଉଥିବାର ମୁଁ ଅନୁଭବ କରିଥିଲି । ଉଭୟ ସହରରେ ହିଟ୍‌ଲରଙ୍କ ପ୍ରତି ଘୃଣାଭାବ ପ୍ରଦର୍ଶନ କରାଯାଉଥାଏ । କୌଣସି ଗୋଟିଏ ସ୍ଥାନରେ ହିଟ୍‌ଲରଙ୍କ ପ୍ରତିକୃତି ମୁଁ ଦେଖିବାକୁ ପାଇନଥିଲି ।

ହିଟ୍‌ଲର ସମ୍ବନ୍ଧୀୟ ପୁସ୍ତକ ବା ତାଙ୍କ ଫଟୋ ରଖିବା ଉଭୟ ଜର୍ମାନୀରେ ନିଷିଦ୍ଧ । ବର୍ଲିନ୍‌ର ଲୋକେ ସଂପୂର୍ଣ୍ଣଭାବରେ ହୃଦୟଙ୍ଗମ କରନ୍ତି ଯେ ତାଙ୍କର ବିରାଟ୍ ଜର୍ମାନ୍ ଜାତିର ଧ୍ୱଂସ ପାଇଁ ହିଟ୍‌ଲରହିଁ ଦାୟୀ । ପୂର୍ବ ବର୍ଲିନ୍‌ରେ ରୁଷ ଦେଶର କମ୍ୟୁନିଷ୍ଟ ସରକାରଙ୍କର କର୍ତ୍ତୃତ୍ୱ ଓ ପ୍ରଭାବ ବିଶେଷ ଭାବରେ ଅନୁଭୂତ ହେଉଥାଏ । ଆମ ବସ୍‌ରେ ଗାଇଡ୍ ଭାବରେ ଥିବା ପୂର୍ବ ବର୍ଲିନ୍‌ର ଝିଅଟି ଦୀର୍ଘନିଃଶ୍ୱାସ ମାରି କେତେଗୁଡ଼ିଏ ଉଇଲୋ ଗଛ ଦେଖାଇ ଦେଇ କହିଥିଲା ସେଗୁଡ଼ିକ ରୁଷିଆରୁ ଅଣାଯାଇ ସେଠାରେ ଲଗାଯାଇଥିଲା; କାରଣ ରୁଷ ଦେଶର ସୈନ୍ୟମାନେ କୁଆଡ଼େ ସେ ଗଛକୁ ଖୁବ୍ ଭଲ ପାଆନ୍ତି । କହିଲାବେଳେ ସେ ଝିଅଟିର ଭାବଭଙ୍ଗୀରୁ ବେଶ୍ ବୁଝାଯାଉଥାଏ ଯେ ରୁଷ୍ ଦେଶରୁ ଗଛ ଆଣି ପୂର୍ବ ବର୍ଲିନ୍‌ରେ ଲଗାଇବା କଥାକୁ ସେ ଘୃଣା କରୁଥିଲା । ପଶ୍ଚିମ ବର୍ଲିନ୍ ମିତ୍ରଶକ୍ତିଙ୍କ କର୍ତ୍ତୃତ୍ୱରେ ଥିଲେ ମଧ୍ୟ ସେଠାକାର ବାସିନ୍ଦାମାନେ ତା' ଅନୁଭବ କରୁନଥିଲେ । ସବୁ କ୍ଷେତ୍ରରେ ସେମାନଙ୍କର ସ୍ୱାଧୀନତା ଥିଲା । ୧୯୬୩ରେ ମିତ୍ରଶକ୍ତିଙ୍କ ପକ୍ଷରୁ ପଶ୍ଚିମ ବର୍ଲିନ୍‌ରେ ଏଗାର ହଜାର ସୈନ୍ୟ ଥିଲେ । ମାତ୍ର ସେମାନେ ପଶ୍ଚିମ ବର୍ଲିନ୍‌ର ଆଭ୍ୟନ୍ତରୀଣ ବ୍ୟାପାରରେ କୌଣସି ପ୍ରକାର ହସ୍ତକ୍ଷେପ କରୁନଥିଲେ । ସେମାନେ କେବଳ ସୀମାନ୍ତରେ ପ୍ରହରୀ କାର୍ଯ୍ୟ କରୁଥିଲେ ଏବଂ ଯେକୌଣସି ଜରୁରୀ ପରିସ୍ଥିତିପାଇଁ ଜାଗ୍ରତ ହୋଇ ରହିଥିଲେ । ପଶ୍ଚିମ ବର୍ଲିନ୍ ଏକାବେଳକେ ପଶ୍ଚିମ ଜର୍ମାନୀର ଶାସନ ଅନ୍ତର୍ଭୁକ୍ତ ନୁହେଁ । ପଶ୍ଚିମ ଜର୍ମାନୀ ପାର୍ଲିଆମେଣ୍ଟକୁ ପଶ୍ଚିମ ବର୍ଲିନ୍ ସହରରୁ ବାଇଶଜଣ ପ୍ରତିନିଧି ପଠାଯାଆନ୍ତି; ମାତ୍ର ସେଠାରେ ସେ ପ୍ରତିନିଧିମାନଙ୍କର ଭୋଟ ଦେବାର ଅଧିକାର ନଥାଏ । କିନ୍ତୁ ପଶ୍ଚିମ ଜର୍ମାନୀ ସରକାର ପଶ୍ଚିମ ବର୍ଲିନ୍‌କୁ ସବୁ ପ୍ରକାର ସାହାଯ୍ୟ କରେ ଏବଂ ତା ସହିତ ସବୁ ପ୍ରକାର ସଂପର୍କ ରଖିଥାଏ । ପଶ୍ଚିମ ଜର୍ମାନୀ ସରକାରଙ୍କର ଅନେକଗୁଡ଼ିଏ ବିଭାଗର ବ୍ରାଞ୍ଚ ଅଫିସ୍ ପଶ୍ଚିମ ବର୍ଲିନ୍ ଲୋକଙ୍କ ସହିତ ସଂପର୍କ ରଖିବାପାଇଁ ପଶ୍ଚିମ ବର୍ଲିନରେ ଅବସ୍ଥିତ । କୁହାଯାଉଥାଏ ଯେ ପଶ୍ଚିମ ଜର୍ମାନୀର ରାଜଧାନୀ ବନ୍‌ରେ ପଶ୍ଚିମ ଜର୍ମାନୀ ସରକାରଙ୍କର ଯେତେ କର୍ମଚାରୀ କାମ କରିନ୍ତି ତା'ଠାରୁ କୁଆଡ଼େ ବେଶି ପଶ୍ଚିମ ବର୍ଲିନ୍‌ରେ ଏହି ବ୍ରାଞ୍ଚ ଅଫିସ୍‌ମାନଙ୍କରେ କାର୍ଯ୍ୟ କରନ୍ତି । ୧୯୬୩ ମସିହାରେ ମୁଁ ବୁଝିଥିଲି ଯେ ପଶ୍ଚିମ ଜର୍ମାନୀ ସରକାର ପ୍ରତି ବର୍ଷ ପାଞ୍ଚ ଶହ ମିଲିଅନ୍ ଡଲାର ପଶ୍ଚିମ ବର୍ଲିନ୍‌କୁ ସାହାଯ୍ୟ ଆକାରରେ ଦେଉଥିଲା ।

ପଶ୍ଚିମ ବର୍ଲିନ୍ ସହରରେ ହିଲ୍‌ଟନ୍ ହୋଟେଲ୍‌ଟି ସବୁଠାରୁ ବଡ଼ ଓ ସୁନ୍ଦର ହୋଟେଲ୍ । ମୋତେ ସେହିଠାରେ ଭାରତୀୟ ଖାଦ୍ୟ ଖାଇବାକୁ ମିଳିଥିଲା । ସେହିଠାରୁ ମୁଁ ପୂର୍ବ ଜର୍ମାନୀ ଦେଇ ମସ୍କୋ ଯାଇଥିଲି । ହିଲ୍‌ଟନ ହୋଟେଲ୍‌ରେ ବହୁତ ଆମେରିକାନ୍ ପର୍ଯ୍ୟଟକ ରହନ୍ତି । ମୁଁ ମସ୍କୋ ଅଭିମୁଖେ ଯାତ୍ରା କରିବା ପୂର୍ବରୁ କେତେକ ଆମେରିକାନ୍ ମୋତେ ସାବଧାନ କରାଇ ଦେଇଥିଲେ ରୁଷ ଦେଶ ବିରୁଦ୍ଧରେ ଲେଖାଥିବା କୌଣସି ବହି ବା କାଗଜପତ୍ର ସାଙ୍ଗରେ ନନେବାପାଇଁ । ସେମାନେ ମୋତେ କହିଥିଲେ ଯେ ସାଙ୍ଗରେ ଥିବା ସମସ୍ତ ବହି ଓ କାଗଜପତ୍ର ରୁଷ ଦେଶର ଗୋଇନ୍ଦା ପୁଲିସ ମସ୍କୋ ବିମାନ ବନ୍ଦରରେ ଯାଞ୍ଚକଲା ପରେ ଯାଇ ମୋତେ ଭିତରକୁ ଛାଡ଼ିବେ । ଏକଥା ଶୁଣି ମୋ ପାଖରେ ଥିବା ବହିପତ୍ର ମୁଁ ନିଜେ ଯାଞ୍ଚ କରିବାକୁ ଲାଗିଥିଲି । କେତେକ କାଗଜପତ୍ର ଚିରାଚିରି କରି ଫିଙ୍ଗି ଦେଇଥିଲି; ମାତ୍ର ସବୁ ତନ୍ନ ତନ୍ନ କରି ଦେଖିବାକୁ ସମୟ ନଥିଲା । ଗଲାବେଳେ ମନରେ ମୋର ଏଥିପାଇଁ ଆଶଙ୍କା ଥାଏ । ସେ ଯାହାହେଉ, ଶେଷରେ ମସ୍କୋ ଯିବାପାଇଁ ପୂର୍ବ ବର୍ଲିନ୍ ବିମାନ ବନ୍ଦରକୁ ଯାଇଥିଲି । ପୁଣି ସେହି ପ୍ରବେଶ ଦ୍ୱାର ଦେଇ ଯିବାକୁ ପଡ଼ିଥିଲା । ମାତ୍ର ଏଥର ବିମାନ ବନ୍ଦର ଗାଡ଼ିରେ ଆମ୍ଭେମାନେ ଯାଉଥିବାରୁ ଗେଟ୍‌ରେ ଯାଞ୍ଚ ହୋଇନଥିଲା । ବିମାନବନ୍ଦରରେ ଉଡ଼ାଜାହାଜଟି ଆମ୍ଭମାନଙ୍କୁ ଅପେକ୍ଷା କଲାଭଳି ରହିଥିଲା । ଆମ୍ଭେମାନେ ସେଠାରେ ପହଞ୍ଚିବାର ଅଳ୍ପ ସମୟ ପରେ ବିମାନଟି ମସ୍କୋ ଅଭିମୁଖେ ଯାତ୍ରା କରିଥିଲା । ମସ୍କୋ ବିମାନ ବନ୍ଦରରେ ପହଞ୍ଚିଲାକ୍ଷଣି ମୁଁ ଦେଖିଲି ମୋତେ ଅପେକ୍ଷା କରି ରହିଛନ୍ତି ସେହି ବନ୍ଧୁମାନେ ଯେଉଁମାନଙ୍କ ସହିତ ମୋର

ଚ୍ଚେନେଭାରେ ପରିଚୟ ହୋଇଥିଲା । ବିମାନ ବନ୍ଦରରେ ଆଉ ମୋର ଜିନିଷପତ୍ର ଯାଞ୍ଚ ହୋଇନଥିଲା । ସେଠାରୁ ରୁଷୀୟ ବନ୍ଧୁମାନେ ମୋର ରହିବାପାଇଁ ବନ୍ଦୋବସ୍ତ ହୋଇଥିବା ୟୁକ୍ରାଇନ୍ ହୋଟେଲ୍କୁ ନେଇ ଯାଇଥିଲେ । ଟିକିନିଖି ଯାଞ୍ଚ ହେବା ବିଷୟରେ ହିଲ୍ଟନ ହୋଟେଲ୍ରେ ଯେଉଁ ଆମେରିକାନ୍ ବନ୍ଧୁମାନେ କହିଥିଲେ ସେ ବିଷୟରେ ପଚରାପଚରି କରି ବୁଝିଲି ଯେ ଆମେରିକାନ୍ ପର୍ଯ୍ୟଟକମାନଙ୍କର ସମସ୍ତ କାଗଜପତ୍ର ସାବଧାନତାର ସହ ଟିକିନିଖି କରି ରୁଷ ଗୋଇନ୍ଦା ପୁଲିସ ଦେଖନ୍ତି ।

ରୁଷ ଦେଶର ରାଜଧାନୀ ମସ୍କୋ ସହରରେ ମୁଁ ସାତ ଦିନ ଅବସ୍ଥାନ କରିଥିଲି । ୧୯୬୩ ମସିହାରେ ବୃହତ୍ତର ମସ୍କୋର ଲୋକସଂଖ୍ୟା ଥିଲା ଷାଠିଏ ଲକ୍ଷ । ବର୍ତ୍ତମାନ ନିଶ୍ଚୟ ଅଶୀ ଲକ୍ଷରୁ ଊର୍ଦ୍ଧ୍ୱ ହୋଇଥିବ । ମସ୍କୋ ନଦୀ ମସ୍କୋ ସହର ପାଖଦେଇ ପ୍ରବାହିତ । କ୍ରେମଲିନ୍ ରୁଷ ସରକାରଙ୍କର ପ୍ରଧାନ ସରକାରୀ କାର୍ଯ୍ୟାଳୟ । ସେଠାରେ ମୁଁ ରୁଷ ଦେଶର ସର୍ବୋଚ୍ଚ ସଂସଦ ଦେଖିଥିଲି । ସେଠାରେ ପ୍ରାୟ ଏକ ହଜାରରୁ ଊର୍ଦ୍ଧ୍ୱ ଲୋକଙ୍କର ବସିବାପାଇଁ ବ୍ୟବସ୍ଥା ରହିଛି । ରେଡ୍ଫୋର୍ଟ ଏବଂ ରେଡ୍ ସ୍କୋୟାର ଦୁଇଟି ଦର୍ଶନୀୟ ସ୍ଥାନ । ରେଡ୍ ସ୍କୋୟାରରେ ଲେନିନ୍ ମୁସୋଲିୟମ୍ ଅନ୍ୟ ଏକ ଦର୍ଶନୀୟ ସ୍ଥାନ । ଏହିଠାରେ ଲେନିନ୍ଙ୍କ ଶରୀର ଅବିକୃତ ଭାବରେ ଗୋଟାପଣେ ସଂରକ୍ଷିତ ହୋଇ ରହିଛି । ଦର୍ଶନ କରିବା ପାଇଁ ପ୍ରତିଦିନ ହଜାର ହଜାର ଲୋକ ସେଠାକୁ ଆସନ୍ତି । ଲେନିନ୍ ପୁସ୍ତକାଗାର ଦେଖି ମୁଗ୍ଧ ହେଲି । ଶୁଣିଲି ପୃଥିବୀରେ ଯେଉଁ ତିନିଗୋଟି ବୃହତ୍ ପୁସ୍ତକାଗାର ଅଛି ତା' ଭିତରୁ ଲେନିନ୍ ପୁସ୍ତକାଗାର ଗୋଟିଏ । ମସ୍କୋରେ ସବୁଠାରୁ ବେଶି ଆକର୍ଷଣୀୟ ବିଷୟ ହେଉଛି ମାଟିତଳେ ଚାଲୁଥିବା ମେଟ୍ରୋ ଇଲେକ୍ଟ୍ରିକ୍ ଟ୍ରେନ୍ । ରୁଷବାସୀଙ୍କର ଏହା ଗୋଟିଏ ଗର୍ବର ବସ୍ତୁ । ବିଶିଷ୍ଟ ପର୍ଯ୍ୟଟକମାନେ ମସ୍କୋ ଗଲେ ସେମାନଙ୍କୁ ସର୍ବପ୍ରଥମେ ସେହି ମାଟିତଳେ ଚାଲୁଥିବା ଟ୍ରେନ୍ର ବ୍ୟବସ୍ଥା ଦେଖାଇବାକୁ ନିଆଯାଏ । ଷ୍ଟେସନ୍ଗୁଡ଼ିକ ପୂରାପୂରି ମାର୍ବଲ ପଥରରେ ଆଚ୍ଛାଦିତ । ମସ୍କୋ ସହର ବ୍ୟତୀତ ଗ୍ରାମ୍ୟଜୀବନ ଦେଖିବା ପାଇଁ କେତେକ ଗାଆଁକୁ ମଧ୍ୟ ମୁଁ ଯାଇଥିଲି । ଗୋଟିଏ ଗାଆଁର ନାମ ଥିଲା ଗର୍କି । ସେ ଗାଆଁରେ ଥିବା କେତେକ ସାଧାରଣ ଅନୁଷ୍ଠାନ ଦେଖିଥିଲି । ଉକ୍ତ ଗାଆଁଟି ଖୁବ୍ ଉନ୍ନତ ବୋଲି ଅନୁଭବ କରିଥିଲି । ଶୁଣିବାକୁ ପାଇଲି ଯେତେବେଳେ କୌଣସି ବିଶିଷ୍ଟ ପର୍ଯ୍ୟଟକ ଯାଆନ୍ତି ସେମାନଙ୍କୁ ସେହି ଗାଆଁକୁ ନିଆଯାଏ । ସେହି ଗାଆଁର ଅବସ୍ଥା ଦେଖି ରୁଷ ଦେଶର ସବୁ ଗାଆଁର ଅବସ୍ଥା ବିଷୟରେ ଧାରଣା କରିବା ସମ୍ଭବ ନୁହେଁ ।

ମସ୍କୋ ହୋଟେଲ୍ମାନଙ୍କରେ ଖାଦ୍ୟ ପରିବେଷଣ ସେତେବେଳେ ୟୁରୋପ ତୁଳନାରେ ଅମାର୍ଜିତ ମନେହେଲା । ଖାଇବାକୁ ଯାଉଥିବା ଲୋକଙ୍କ ପ୍ରତି ପରିବେଷଣକାରୀମାନଙ୍କର ବ୍ୟବହାର ଅତ୍ୟନ୍ତ ଅବହେଳାପୂର୍ଣ୍ଣ । ଜଣକର ଖାଇବା ଆରମ୍ଭ ହେଲେ ତା' ଶେଷ କରିବାକୁ ଅନ୍ତତଃ ଦୁଇ ତିନି ଘଣ୍ଟା ଲାଗେ । ଗୋଟିଏ ଖାଦ୍ୟପଦାର୍ଥ ପରିବେଷଣ କଲା ପରେ ଅନ୍ୟଟି ଆସିବାକୁ ପ୍ରାୟ ଆହୁରି ଅଧଘଣ୍ଟେ ଲାଗେ । ୟୁରୋପର ଅନ୍ୟାନ୍ୟ ଦେଶର ହୋଟେଲ୍ମାନଙ୍କରେ ଖାଦ୍ୟ ପରିବେଷଣକାରୀମାନେ ଯେଉଁପରି ଖାଦ୍ୟ ଟେବୁଲ୍ ଆଖପାଖରେ ସବୁବେଳେ ଉପସ୍ଥିତ ଥାଆନ୍ତି ଏବଂ କ'ଣ ଦରକାର ବାରମ୍ବାର ପଚାରି ବୁଝୁଥା'ନ୍ତି, ମସ୍କୋ ହୋଟେଲ୍ମାନଙ୍କରେ ସେ ପ୍ରକାର ଆଶା କରିବା ସ୍ୱପ୍ନ । ୟୁରୋପର ଅନ୍ୟାନ୍ୟ ହୋଟେଲ୍ମାନଙ୍କରେ ପରିବେଷଣକାରୀମାନେ ବକସିସ୍ ପାଆନ୍ତି, ତେଣୁ ସେମାନଙ୍କର କର୍ତ୍ତବ୍ୟବୋଧ ଛଡ଼ା ମଧ୍ୟ ଖାଇବାକୁ ଆସୁଥିବା ଲୋକମାନଙ୍କର ଯତ୍ନ ନେବାପାଇଁ ସେମାନେ ଆଗ୍ରହ ପ୍ରକାଶ କରନ୍ତି । ମସ୍କୋରେ ବକ୍ସିସ୍ ମନା, ତେଣୁ ଆଗ୍ରହ ଊଣା । ଦିନେ ଦୁଇ ଦିନ ଖାଇ ମୁଁ ଅତି ବିରକ୍ତ ହୋଇଗଲି । ଶେଷରେ ଭାବିଲି ବକ୍ସିସ୍ ଦେଲେ ବୋଧହୁଏ ଠିକ୍ ସମୟରେ ଏବଂ ଭଲ ଭାବରେ ଖାଇବାକୁ ମିଳିବ । ଜଣକୁ ଗୋଟେ ରୁବେଲ୍ ବକ୍ସିସ୍ ଦେଇଥିଲି । ସେ ଅତିଶୟ ଆନନ୍ଦିତ ହୋଇଥିଲା ଏବଂ ତା' ପରଠାରୁ ମୋର ଆଉ ଖାଇବାରେ ଅସୁବିଧା ହୋଇନଥିଲା । ସେହିପରି ହୋଟେଲ୍ର ଯେଉଁ କୋଠରିରେ ମୁଁ ରହୁଥିଲି ସେଥିପାଇଁ ମଧ୍ୟ

ଜଣେ ପରିଚାରକ ଥିଲା । ସେ ମଧ୍ୟ ମନଦେଇ ତା'ର କାମ କରୁନଥିଲା । ତାକୁ କିଛି ବକ୍‌ସିସ୍ ଦେବାରୁ ସେ ମଧ୍ୟ ଭାରି ଖୁସି ହୋଇଥିଲା ଏବଂ ମୋର ଲୁଗାପଟା ସଫା କରିବା ସଙ୍ଗେ ସଙ୍ଗେ ଅଧିକ କାର୍ଯ୍ୟ କରିବାକୁ ଲାଗିଲା । ମସ୍କୋ ଛାଡ଼ି ଆସିବା ଦିନ ମୋର ଜିନିଷପତ୍ରସବୁ ଉକ୍ତ ପରିଚାରକ ବୁହାବୁହି କରି ଗାଡ଼ିରେ ରଖିଥିଲା ।

ମସ୍କୋ ସହରର ରାସ୍ତାଗୁଡ଼ିକ ଖୁବ୍ ଚଉଡ଼ା । ରାସ୍ତା କଡ଼ରେ ଖୁବ୍ ଲମ୍ବା ଲମ୍ବା ବଡ଼ ବଡ଼ ଫ୍ଲାଟ୍ ଟାଇପ୍ ଘର । ବଜାରରେ ସୂକ୍ଷ୍ମ ଓ ସୁନ୍ଦର ଜିନିଷ ଦେଖିବାକୁ ମିଳେନାହିଁ । ଅଧିକାଂଶ ଲୋକ ପ୍ରାୟ ଏକପ୍ରକାର ପୋଷାକ ପିନ୍ଧୁଥିବାର ଦେଖିଲି । ମହିଳାମାନେ ମଧ୍ୟ ସେଇ ଏକପ୍ରକାର ପୋଷାକ ପିନ୍ଧିଥାଆନ୍ତି । ରୁଷ ଦେଶର ଲୋକେ ଅତ୍ୟଧିକ ମଦ୍ୟପାନ କରୁଥିବାର ମୁଁ ଦେଖିଲି । ୟୁରୋପର ଅନ୍ୟାନ୍ୟ ଦେଶରେ ଯେତେ ସହର ମୁଁ ବୁଲି ଦେଖିଲି କେଉଁଠାରେ ଲୋକେ ରାସ୍ତାରେ ମାତାଲ୍ ହୋଇ ବୁଲୁଥିବାର ବା ପଡ଼ିଥିବାର ମୁଁ ଦେଖିନଥିଲି । କିନ୍ତୁ ମସ୍କୋ ସହରରେ ସେ ପ୍ରକାର ଦୃଶ୍ୟ ବହୁତ ଦେଖିଥିଲି । ଦିନେ ମୁଁ ରହୁଥିବା ହୋଟେଲ୍ ପାଖରେ ଦେଖିଲି ଯେ ଜଣେ ମାତାଲ୍ ଓ ଆଉ ଜଣେ ପୁଲିସ ମାଟିରେ ଗଡ଼ାଗଡ଼ି ହେଉଛନ୍ତି । ପୁଲିସ ସେ ମାତାଲ୍‌କୁ ଧରି ଥାନାକୁ ନେବାକୁ ଚାହୁଁଥିଲା; କିନ୍ତୁ ତାକୁ ଅକ୍ତିଆର କରିପାରୁନଥିଲା । ଶେଷରେ ହୋଟେଲ୍‌ରୁ ଦୁଇ ତିନି ଜଣ ଲୋକଙ୍କୁ ପୁଲିସ ଡାକିଲା । ସେମାନେ ଯାଇ ସେ ଲୋକକୁ ଅକ୍ତିଆର କଲେ ଏବଂ ତାର ଦୁଇ ହାତକୁ ପଛରେ ବାନ୍ଧିଦେଇ ତାକୁ ଥାନାକୁ ନିଆଯାଇଥିଲା ।

ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନପାଇଁ ଯେଉଁଦିନ ମୁଁ ମସ୍କୋ ବିମାନ ବନ୍ଦରକୁ ଆସେ ସେତେବେଳେ ମୋର ସମସ୍ତ ଖର୍ଚ୍ଚ ଯାଇ ଆହୁରି କେତେକ ରୁଷ ମୁଦ୍ରା ରୁବେଲ ମୋ ପାଖରେ ରହିଯାଇଥିଲା । ମୁଁ ସେଗୁଡ଼ିକ ଡ୍ରାଇଭରକୁ ବକ୍‌ସିସ୍ ହିସାବରେ ଦେବାକୁ ଚାହିଁଥିଲି । କିନ୍ତୁ ମୋ ସାଙ୍ଗରେ ଆସୁଥିବା ରୁଷଦେଶର ବନ୍ଧୁମାନେ ତା ନକରିବାକୁ ଅନୁରୋଧ କରିଥିଲେ, କାରଣ ବକ୍‌ସିସ୍ ପ୍ରଥା ସେମାନଙ୍କର ଚଳୁନଥିଲା । ଶେଷରେ ସେଇ ପଇସାରେ ମସ୍କୋ ବିମାନ ବନ୍ଦରରେ କେତେକ ଖାଦ୍ୟପଦାର୍ଥ କିଣି ଆମେ ସମସ୍ତେ ମିଶି ଖାଇଥିଲୁ । ମସ୍କୋ ବିମାନବନ୍ଦରଟି ଖୁବ୍ ବଡ଼; ମାତ୍ର ଆମ ଦେଶର ଦିଲ୍ଲୀ, ବମ୍ବେ ଓ କଲିକତା ପ୍ରଭୃତି ବିମାନବନ୍ଦରମାନଙ୍କରେ ଯେଉଁକି ବହୁତଗୁଡ଼ିଏ କୋଠାବାଡ଼ି ଥାଏ, ସେ ପ୍ରକାର ମସ୍କୋ ବିମାନବନ୍ଦରରେ ନଥିଲା । ଆମ ଦେଶର କଲିକତା, ବମ୍ବେ ଓ ଦିଲ୍ଲୀର ବିମାନବନ୍ଦର ଦେଖିବାକୁ ଯେପରି ସୁନ୍ଦର ମସ୍କୋ ବିମାନବନ୍ଦର ସେପରି ନୁହେଁ ବୋଲି ମୋର ମନେହେଲା । ମସ୍କୋଠାରୁ ଇଣ୍ଡିଆନ୍ ଏୟାର ଲାଇନ୍‌ସର ବିମାନରେ ମୁଁ ଦିଲ୍ଲୀ ଅଭିମୁଖେ ଯାତ୍ରାକରିଥିଲି ।

ଦରିଆପାରି ଦେଶମାନଙ୍କ ସମ୍ପର୍କରେ ମୋର ଏହିସବୁ ସ୍ମୃତି ଓ ଅନୁଭୂତି ଦୀର୍ଘ କୋଡ଼ିଏ ବାଇଶ ବର୍ଷ ତଳର କଥା । ତେଣୁ ବର୍ତ୍ତମାନର ପରିବର୍ତ୍ତନ ଦୃଷ୍ଟିରୁ ଏଥିରେ ଅନେକ ଅମେଳ ଲକ୍ଷ୍ୟ କରାଯିବା ଅସମ୍ଭବ ନୁହେଁ ।

## ସ୍ୱଦେଶ ବାହୁଡ଼ା ପରେ : କେତେକ କଥା, କେତେକ ବ୍ୟଥା

ବିଲାତରେ ଦେଖିଆସିଲି ସଂସଦୀୟ ଶାସନ ପଦ୍ଧତିର ଅନୁକୂଳ ପରମ୍ପରା ପ୍ରତିଷ୍ଠା ଓ ସୁରକ୍ଷା ପାଇଁ ରାଜନୀତିଜ୍ଞମାନଙ୍କର ଆଗ୍ରହ । ରୁଷିଆରେ ଦେଖିଲି ଉଭୟ ଶାସକ ଓ ଶାସିତଙ୍କ ଅକୁଣ୍ଠ ଶୃଙ୍ଖଳାବୋଧ । ଦୁଇ ମାସ ପରେ ଦେଶକୁ ଫେରିଆସି ଲକ୍ଷ୍ୟ କଲି ଏହି ଉଭୟ ମାନଦଣ୍ଡକୁ ଉପେକ୍ଷା କରି ଭାରତର ରାଜନୈତିକ କ୍ଷେତ୍ରରେ ପରସ୍ପର ଈର୍ଷା, ଦ୍ୱେଷ ଓ ସଂହାରର ଏକ ଅସ୍ୱସ୍ତିକର ପ୍ରକ୍ରିୟା ଆରମ୍ଭ ହୋଇଯାଇଛି ଏବଂ ଓଡ଼ିଶା ହୋଇଛି ଏହି ନୂତନ ପ୍ରକ୍ରିୟା ଓ ପ୍ରତିକ୍ରିୟାର ପରୀକ୍ଷାଗାର । ମୁଁ ଯେଉଁ ଦୁଇ ମାସ ବିଦେଶରେ ରହିଥିଲି, ସେହି ସମୟରେ ଓଡ଼ିଶାର ରାଜନୀତି କ୍ଷେତ୍ରରେ ଅନେକ ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିଯାଇଥିଲା । ଏହି ସମୟରେ ପୂର୍ବତନ କେନ୍ଦ୍ରମନ୍ତ୍ରୀ ଶ୍ରୀ କେଶବ ଦେବ

ମାଲବ୍ୟ ଓ ମହମ୍ମଦ ସିରାଜଉଦ୍ଦୀନ ବ୍ୟାପାର ସମ୍ବନ୍ଧୀୟ କେତେକ ଅପବାଦମୂଳକ କାହାଣୀ ଲୋକସଭାରେ ଆଲୋଚିତ ହୋଇ ଖବରକାଗଜମାନଙ୍କରେ ପ୍ରକାଶପାଇଥିଲା । ତା' ସାଙ୍ଗରେ ଓଡ଼ିଶାର କଂଗ୍ରେସନେତା ଓ ସେ ସମୟର ଉପମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ୍ ମିତ୍ରଙ୍କୁ ମହମ୍ମଦ ସିରାଜ୍‌ଉଦ୍ଦୀନଙ୍କ କମ୍ପାନୀ ପାଞ୍ଚ ବର୍ଷ ମଧ୍ୟରେ ଏକ ଲକ୍ଷ ଅଣଚାଷ ହଜାର ଟଙ୍କା ଦେଇଥିଲେ ବୋଲି କମ୍ପାନୀ ହିସାବଖାତାରୁ ବାହାରିଥିବାର ଖବରକାଗଜରେ ପ୍ରକାଶପାଇଥିଲା । ଓଡ଼ିଶା କଂଗ୍ରେସକୁ ମହମ୍ମଦ ସିରାଜ୍‌ଉଦ୍ଦୀନ ଅର୍ଥ ସାହାଯ୍ୟ କରନ୍ତି ବୋଲି ଶ୍ରୀ ବୀରେନ୍ ମିତ୍ର ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଉକ୍ତ ଏକ ଲକ୍ଷ ଅଣଚାଷ ହଜାର ଟଙ୍କା କିପରିଭାବରେ କଂଗ୍ରେସର ଦଳୀୟ କାର୍ଯ୍ୟରେ ଖର୍ଚ୍ଚହୋଇଥିଲା ତା'ର ହିସାବ ପ୍ରଦେଶ କଂଗ୍ରେସ କମିଟି ପକ୍ଷରୁ ପ୍ରଧାନମନ୍ତ୍ରୀ ତଥା କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷଙ୍କୁ ବୁଝାଇ ଦେଇଥିଲେ । ଏହାର ସତ୍ୟାସତ୍ୟ ବୁଝିବାକୁ ପଣ୍ଡିତ ଜବାହରଲାଲ୍ ନେହେରୁ ସେତେବେଳେ ରାଜନୀତିରୁ ଅବସର ନେଇ ସର୍ବୋଦୟ କାର୍ଯ୍ୟ କରୁଥିବା ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କୁ ଦିଲ୍ଲୀ ଡକାଇଥିଲେ । ଓଡ଼ିଶାର କେତେକ କଂଗ୍ରେସନେତା ଯେପରିଭାବରେ ଖଣିମାଲିକ, କେନ୍ଦୁପତ୍ର ବ୍ୟବସାୟୀ ଓ ଅନ୍ୟାନ୍ୟ ଶିଳ୍ପପତିମାନଙ୍କଠାରୁ ଅର୍ଥ ଆଦାୟ କରନ୍ତି ସେ ବିଷୟରେ ଶ୍ରୀ ଚୌଧୁରୀ ଖୋଲାଖୋଲି ଭାବରେ ପଣ୍ଡିତ ନେହେରୁଙ୍କୁ କହିଥିଲେ । ତାଙ୍କଠାରୁ ସବୁ କଥା ବୁଝିଲା ପରେ ପଣ୍ଡିତ ନେହେରୁ ବୀରେନ୍‌ବାବୁଙ୍କୁ ଦୋଷମୁକ୍ତ କରି ଗୋଟିଏ ବିବୃତି ଦେଇଥିଲେ । ଲୋକସଭାରେ ମଧ ପଣ୍ଡିତ ନେହେରୁ ସେହି କଥା କହିଥିଲେ । ମାତ୍ର ଏଥିରେ ସନ୍ତୁଷ୍ଟ ନହୋଇ କେତେକ ରାଜନୈତିକ ନେତା ସମ୍ବାଦପତ୍ରମାନଙ୍କରେ ବୀରେନ୍‌ବାବୁଙ୍କ ବିରୁଦ୍ଧରେ କୁତ୍ସାରଟନା କରିବାକୁ ଲାଗିଲେ ଓ ସେମାନଙ୍କ ଅକ୍ତିଆରରେ ଥିବା ସମ୍ବାଦପତ୍ରମାନଙ୍କରେ ଧାରାବାହିକ ଭାବରେ ବୀରେନ୍‌ବାବୁଙ୍କ ବିରୁଦ୍ଧରେ ଆକ୍ଷେପମୂଳକ ସମ୍ବାଦ ପରିବେଷଣ କରିବାରେ ଲାଗିଥିଲେ । ଗୋଟିଏ ଫେରୋକ୍ରୋମ୍ ପ୍ଲାଣ୍ଟ ଓଡ଼ିଶାରେ ବସାଇବାର ଜବାବ ଦେଇ ମହମ୍ମଦ ସିରାଜଉଦ୍ଦୀନ ଯେଉଁ କ୍ରୋମାଇଟ୍ ଖଣି ପଟ୍ଟା ପାଇ ଅଧିକ ଲାଭବାନ୍ ହୋଇଥିଲେ ସେଥିରେ ଶ୍ରୀ ମିତ୍ର ଓ ଶ୍ରୀ ମାଲବ୍ୟ ତାଙ୍କୁ ସାହାଯ୍ୟ କରିଥିଲେ ବୋଲି କେତେକ ଆକ୍ଷେପମୂଳକ ସମ୍ବାଦ ସମ୍ବାଦପତ୍ରମାନଙ୍କରେ ପ୍ରକାଶପାଇଥିଲା । ଏସବୁ କଥା ଶୁଣି ବୀରେନ୍‌ବାବୁ ବିଶେଷଭାବରେ ଉତ୍‌କ୍ଷିପ୍ତ ଓ ଉତ୍ତେଜିତ ହୋଇଥିଲେ । ସେତେବେଳେ 'ଓଡ଼ିଶାଏଜେଣ୍ଟ' ନାମରେ ବୀରେନ୍‌ବାବୁଙ୍କ ସ୍ତ୍ରୀଙ୍କର ଗୋଟିଏ ବ୍ୟବସାୟ ସଂସ୍ଥାର ଭଲ ବ୍ୟବସାୟ ଚାଲିଥାଏ ଏବଂ ସେହି ବ୍ୟବସାୟରୁ ଉପାର୍ଜିତ ଲାଭ ଟଙ୍କାରେ ବୀରେନ୍‌ବାବୁ ରାଜନୀତି ତଥା ଅନ୍ୟାନ୍ୟ କ୍ଷେତ୍ରରେ ସାହାଯ୍ୟକାର୍ଯ୍ୟ ସୁରୁଖୁରୁରେ କରିପାରୁଥିଲେ । ଶ୍ରୀ ବୀରେନ୍ ମିତ୍ରଙ୍କର ବ୍ୟବସାୟ କରିବାର ପ୍ରଧାନ ଓ ଏକମାତ୍ର ଉଦ୍ଦେଶ୍ୟ ଥିଲା ଅର୍ଥ ରୋଜଗାର କରି ରାଜନୀତି କରିବା ସଙ୍ଗେ ସଙ୍ଗେ ଗରିବ ଛାତ୍ର ଓ ଦୁଃସ୍ଥ ଲୋକ ତଥା ଅନ୍ୟାନ୍ୟ ସାଧାରଣ ଅଭାବୀ ଲୋକମାନଙ୍କୁ ଭଲଭାବରେ ସାହାଯ୍ୟ କରିପାରିବା । ଏହି କାର୍ଯ୍ୟ ପୂର୍ବରୁ ସେ ବ୍ୟବସାୟୀ, ଖଣିମାଲିକ ଓ ଶିଳ୍ପପତିମାନଙ୍କଠାରୁ ଚାନ୍ଦା ଆଣି କରୁଥିଲେ । ତାହାଦ୍ୱାରା ନିଜ ଆତ୍ମସମ୍ମାନ ଉପରେ କିପରି ଆଘାତ ଆସେ ସେ କଥା ସେ ଅନେକ ସମୟରେ ମୋତେ କହୁଥିଲେ । ଓଡ଼ିଶା ଏଜେଣ୍ଟ ବ୍ୟବସାୟ ପ୍ରତିଷ୍ଠାନ କଥା ସେ ଅନେକ ସମୟରେ ମୋତେ କହୁଥିଲେ । ଓଡ଼ିଶା ଏଜେଣ୍ଟ ବ୍ୟବସାୟ ପ୍ରତିଷ୍ଠାନର ଆୟ ତାଙ୍କୁ ଏହି ପ୍ରକାର ଦୟନୀୟ ଅବସ୍ଥାରୁ ରକ୍ଷାପାଇବାରେ ବିଶେଷଭାବରେ ସାହାଯ୍ୟ କରିଥିଲା । ଅର୍ଥପାଇଁ ତାଙ୍କୁ ଆଉ କାହାରି ପାଖରେ ହାତ ପାତିବାକୁ ପଡୁନାହିଁ ବୋଲି ସେ ପ୍ରକାଶ୍ୟଭାବରେ ସମସ୍ତଙ୍କ ପାଖରେ କହୁଥିଲେ । ବୀରେନ୍‌ବାବୁ ଜଣେ ଅତି ଅମାୟିକ ତଥା ଖୋଲା ହୃଦୟର ଲୋକ ଥିଲେ । କୌଣସି କଥା ସେ ଲୁଚାଇ ପାରନ୍ତିନାହିଁ । ତାଙ୍କ ସ୍ତ୍ରୀଙ୍କ ନାମରେ ଥିବା ବ୍ୟବସାୟରୁ କେତେ ଲାଭ ହେଲା ଓ କେତେ କାହାକୁ ଦେଲେ ସେସବୁ କଥା ସ୍ଥାନକାଳପାତ୍ର ନିର୍ବିଶେଷରେ କହି ଡିଣ୍ଡିମ ପିଟନ୍ତି । କିନ୍ତୁ ଦୁନିଆଟା ଏତେ ସରଳ ନୁହେଁ । ଉପକୃତ ହୋଇଥିବା ଲୋକ ଉପକାରୀର କ୍ଷତି

କରିବାପାଇଁ ଟିକିଏ ହେଲେ ଦ୍ୱିଧା କରନ୍ତିନାହିଁ । ବହୁ ଗରିବ ଛାତ୍ର, ରାଜନୈତିକ କର୍ମୀ ଓ ସାଧାରଣ ଲୋକଙ୍କୁ ସେ ସାହାଯ୍ୟ କରୁଥିଲେ । ବିଭିନ୍ନ ପର୍ବପର୍ବାଣି ଓ ସାମାଜିକ କାର୍ଯ୍ୟପାଇଁ ହାତଖୋଲା ଅର୍ଥ ଦାନ କରି ଗୌରବ ଅନୁଭବ କରୁଥିଲେ । ମୁଁ ଜାଣେ, ୧୯୬୨ ମସିହା ଦୁର୍ଗାପୂଜାରେ ବୀରେନ୍‌ବାବୁ କଟକ ସହରରେ ବାଉନ ହଜାର ଟଙ୍କା ବାଣ୍ଟିଥିଲେ । ସେତେବେଳେ କେତେକ ବିରୋଧୀ ଦଳର ଲୋକ ମଧ୍ୟ ବୀରେନ୍‌ବାବୁଙ୍କଠାରୁ ସାହାଯ୍ୟ ନେଉଥିଲେ ।୧୯୬୨ ମସିହାରେ ବୀରେନ୍ ମିତ୍ରଙ୍କ ସ୍ତ୍ରୀଙ୍କର ଯେତିକି ମାତ୍ର ବ୍ୟବସାୟ ଚାଲିଥିଲା, ଚୀନ-ଭାରତ ଯୁଦ୍ଧ ସମୟରେ ବୀରେନ୍‌ବାବୁ ସେଥିରୁ ଜାତୀୟ ଦେଶରକ୍ଷା ପାଣ୍ଠିକୁ ଏକଲକ୍ଷ ଟଙ୍କା ଦାନ କରିଦେଇଥିଲେ । ଏଭଳି ଦିଲ୍‌ଦାର 'ନବାବୀ ମିଜାଜ ଓ ଅବିଚାରିତ ବହ୍ୱାଡ଼ମ୍ବର ପାଇଁ ସେ ନିଜେ ଯେପରି ରାଜ-ଭିକାରିର ଆଦର ପାଇଛନ୍ତି, ଜୀବନରେ ତାହାଠାରୁ ଅଧିକ ଲାଞ୍ଛନା ଏବଂ ଶେଷ ଜୀବନରେ ଅଭାବର ଘୋର ତାଡ଼ନା ଭୋଗିଛନ୍ତି ।

## ବିଷାଦବେଳର ଆମୋଦ କଥା

ଚୀନାମାନଙ୍କର ଏହି ଭାରତ ଆକ୍ରମଣ ସମୟରେ ଆଉ ଗୋଟିଏ କୌତୂହଳପ୍ରଦ କଥା ମୋର ମନେପଡ଼େ । ଚୀନ୍ ଦେଶର ସୈନ୍ୟବାହିନୀ ଯେପରିଭାବରେ ହିମାଳୟ ଅତିକ୍ରମ କରି କ୍ଷିପ୍ର ଗତିରେ ଆମ ଦେଶ ଭିତରକୁ ପ୍ରବେଶକରିଥିଲେ ସେଥିରୁ ଆଶଙ୍କା କରାଯାଉଥିଲା ଯେ ସେ ଯୁଦ୍ଧ ଅନେକକାଳ ଲାଗିରହିବ । ତେଣୁ ଆମର ସୈନ୍ୟବାହିନୀକୁ ବୃଦ୍ଧି କରିବାର ଆବଶ୍ୟକତା ଅନୁଭବ କରାଯାଇଥିଲା ଏବଂ ସେହି ଅନୁସାରେ ନୂତନ ସୈନ୍ୟ ସଂଗ୍ରହ କାର୍ଯ୍ୟ ଆମ ରାଜ୍ୟରେ ମଧ୍ୟ ଆରମ୍ଭ ହୋଇଯାଇଥିଲା । ସୈନ୍ୟବାହିନୀରେ ଯୋଗଦେବାପାଇଁ ଓଡ଼ିଶାର ଯୁବକମାନଙ୍କୁ ସରକାରଙ୍କ ପକ୍ଷରୁ ଆହ୍ୱାନ କରାଯାଇଥିଲା । ପ୍ରଥମେ ଯେଉଁ ଯୁବକମାନେ ସୈନ୍ୟବାହିନୀରେ ଯୋଗଦେବାପାଇଁ ଆଗଭର ହୋଇ ଆସିଥିଲେ ସେମାନଙ୍କୁ ଉଦ୍‌ବୋଧନ ଦେବା ଉଦ୍ଦେଶ୍ୟରେ ବାରବାଟୀ କିଲ୍ଲା ପଡ଼ିଆରେ ଗୋଟିଏ ସଭାର ଆୟୋଜନ କରାଯାଇଥିଲା । ସେଥିରେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ, ଉପମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ର ଓ ସ୍ୱରାଷ୍ଟ୍ରମନ୍ତ୍ରୀ ହିସାବରେ ମୁଁ ସୈନ୍ୟବାହିନୀରେ ଯୋଗ ଦେବାପାଇଁ ଆଗଭର ହୋଇଥିବା ଯୁବକମାନଙ୍କୁ ଉଦ୍‌ବୋଧନ ଦେଇଥିଲୁ । ଚୀନାମାନଙ୍କ ସହିତ ହେଉଥିବା ଯୁଦ୍ଧରେ ଭାଗନେବାପାଇଁ ଯେଉଁ ଓଡ଼ିଆ ଯୁବକ ସୈନ୍ୟରୂପେ ମନୋନୀତ ହୋଇ ଯୁଦ୍ଧରେ ଭାଗନେବେ ସେମାନଙ୍କୁ ପାଞ୍ଚ ଏକର ଲେଖାଏଁ ଚାଷ ଜମି ସରକାର ମାଗଣାରେ ଯୋଗାଇଦେବେ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ସେଠାରେ ଘୋଷଣା କରିଥିଲେ । ଉପମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ୍ ମିତ୍ର ତାଙ୍କ ସ୍ତ୍ରୀଙ୍କ ନାମରେ ପରିଚାଳିତ 'ଓଡ଼ିଶା ଏଜେଣ୍ଟ' ବ୍ୟବସାୟ ପ୍ରତିଷ୍ଠାନ ପକ୍ଷରୁ ପ୍ରତିରକ୍ଷା ପାଣ୍ଠିକୁ ଏକ ଲକ୍ଷ ଟଙ୍କା ଦାନ ଦେବା କଥା ସେଠାରେ ଘୋଷଣା କରିଥିଲେ । ତତ୍ ସଙ୍ଗେ ସଙ୍ଗେ ନୂଆକରି ସୈନ୍ୟବାହିନୀରେ ଯୋଗ ଦେଉଥିବା ଯୁବକମାନଙ୍କୁ ଉଦ୍‌ବୋଧନ ଦେଇ କହିଥିଲେ, ''ଯେଉଁମାନେ ସୈନ୍ୟବାହିନୀରେ ଯୋଗ ଦେଇଛନ୍ତି ଏବଂ ଆଉ ଯେଉଁମାନେ ଯୋଗଦେବାପାଇଁ ଆଗ୍ରହୀ ସେମାନଙ୍କୁ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ ମୁଁ ସେମାନଙ୍କୁ ଗୋଟିଏ ବିଷୟରେ ସତର୍କ କରିଦେବାକୁ ଚାହେଁ ଯେ, ଯୁଦ୍ଧକ୍ଷେତ୍ର ଖେଳଘର କଥା ନୁହେଁ, ଏକଥା ସେମାନେ ଭଲଭାବରେ ବୁଝିବା ଉଚିତ । ସେଠାରେ ଯେତେବେଳେ କମାଣ ଫୁଟିବ ବା ବୋମା ବିସ୍ଫୋରଣ ହେବ ସେ ଶବ୍ଦ ଅତ୍ୟନ୍ତ ଭୟଙ୍କର, ଶୁଣିଲାକ୍ଷଣି ଝାଡ଼ାହୋଇଯିବ । ପ୍ୟାଣ୍ଟ୍ ଫାଟିଯାଇ ଝାଡ଼ାବାହରିଯିବ । ଚାରିଟା ପ୍ୟାଣ୍ଟ୍ ଏକସଙ୍ଗରେ ପିନ୍ଧିଥିଲେ ମଧ୍ୟ ତାହା ଫାଟିଯାଇ ଝାଡ଼ା ବାହାରିବ । ଯୁଦ୍ଧରେ ସୈନିକ ହେବା ଛୋଟିଆ କଥା ନୁହେଁ, ବୁଝିଶୁଝି ନାମ ଲେଖାଅ, ପରେ ଆମକୁ ଦୋଷ ଦେବନାହିଁ । ତୁମେ ମୋର ନିଜର ପିଲା, ସେଥିପାଇଁ ସବୁ କଥା କହିଦେଉଛି ।'' ତାଙ୍କର ଏପ୍ରକାର କଥା ଶୁଣି ସଭାରେ ଅସମ୍ଭବ ଭାବରେ ହାସ୍ୟରୋଳ ପଡ଼ିଥିଲା । ବୀରେନ୍‌ବାବୁ ଯୁଦ୍ଧରେ ସୈନିକ ହେବାପାଇଁ ଯୁବକମାନଙ୍କୁ

ଉତ୍ସାହିତ କରୁଛନ୍ତି କି ନିରୁତ୍ସାହିତ କରୁଛନ୍ତି ଲୋକେ ବୁଝିପାରି ନ ଥିଲେ । ବୀରେନ୍‌ବାବୁ ଅତି ଖୋଲା ହୃଦୟର ଲୋକ, ତାଙ୍କ ମନକୁ ଯାହା ଆସିଲା ତାହା କହିପକାଉଥିଲେ ।

ସେହିଭଳି ଚୀନ୍‌ର ଆକ୍ରମଣ ବିରୁଦ୍ଧରେ ଦେଶବାସୀଙ୍କୁ ଜାଗ୍ରତ କରିବା ଉଦ୍ଦେଶ୍ୟରେ ଆଉ ଜଣେ ନେତାଙ୍କର ଉଦ୍‌ବୋଧନ ମୋର ମନେପଡ଼େ । ସେ ଥିଲେ ଆମର ଶିକ୍ଷାମନ୍ତ୍ରୀ ଶ୍ରୀ ପବିତ୍ରମୋହନ ପ୍ରଧାନ । ଚୀନା କମ୍ୟୁନିଷ୍ଟଙ୍କ ବିରୁଦ୍ଧରେ ସେ ଗୋଟିଏ ଅଭିନବ ଓ କୌତୂହଳପୂର୍ଣ୍ଣ ପ୍ରଚାରମାର୍ଗ ଉଦ୍‌ଭାବନ କରିଥିଲେ । ତାଙ୍କର ନିର୍ଦ୍ଦେଶ ଅନୁସାରେ ରାଜ୍ୟ ପ୍ରଚାର ବିଭାଗ ବିଭିନ୍ନ ସ୍ଥାନରେ ଏବଂ ବିଶେଷକରି କମ୍ୟୁନିଷ୍ଟ ପ୍ରଭାବିତ ଅଞ୍ଚଳମାନଙ୍କରେ ତାଙ୍କପାଇଁ ସଭାର ଆୟୋଜନ କରୁଥିଲେ । ମାତ୍ର କେତୋଟି ଦିନ ଭିତରେ ପବିତ୍ରବାବୁ ଦୁଇ ଶହ ସଭାରେ ଭାଷଣ ଦେଇଥିଲେ ବୋଲି ସେ ନିଜେ କହୁଥିଲେ । ଗାମ୍ଭୀର୍ଯ୍ୟପୂର୍ଣ୍ଣ ପରିବେଶ ମଧ୍ୟରେ ସଭାମାନଙ୍କରେ ଶ୍ରୀ ପ୍ରଧାନ ତାଙ୍କର ଭାଷଣ ଆରମ୍ଭକରି ଚୀନାମାନଙ୍କୁ ଭଲକରି ଚିହ୍ନି ରଖିବାକୁ କହି ସଭାରେ ଉପସ୍ଥିତଥିବା ଅଗଣିତ ସ୍ତ୍ରୀପୁରୁଷ ଶ୍ରୋତାମାନଙ୍କୁ କମ୍ୟୁନିଷ୍ଟମାନଙ୍କର ଆଚରଣ ସମ୍ବନ୍ଧରେ ବୁଝାଇବାକୁ ଯାଇ କହୁଥିଲେ, "ଚୀନାମାନେ ରାକ୍ଷସ ପ୍ରକୃତିର ଲୋକ । ସେମାନେ ସାପ, ବେଙ୍ଗ, ଶିଆଳ, କୁକୁର ପ୍ରଭୃତିଙ୍କର ମାଂସ ଖାଆନ୍ତି । ସେମାନେ ଜାତି, ଧର୍ମ, ନୀତି, ଅନୀତି ଓ ବୈବାହିକ ଜୀବନରେ ବିଶ୍ୱାସ କରନ୍ତିନାହିଁ । ଚୀନାମାନେ ଭାରତକୁ ଦଖଲ କରିଗଲେ ଆମର ଭେଣ୍ଡିଆ ପୁରୁଷ ସମସ୍ତଙ୍କୁ ଧରିନେଇ ବନ୍ଦୀ ଶିବିରରେ ରଖି ପିଠାରେ ଚାବୁକ୍ ଦେଇ ଦିନରାତି ବେଠିଆ ପରି ଖଟାଇ କେବଳ ଗଣ୍ଡେ ଭାତ ଓ ମୁନ୍ଦେ ପେଜ ଦେବେ ଏବଂ ସେଠାରେ ସେମାନଙ୍କୁ ନଂପୁସକ କରିପକାଇବେ । ଏହା ପରେ ଆମ ଦେଶର ଯେଉଁଆଡ଼କୁ ଯିବ ଖାଲି ଦେଖିବ ଚୀନାଛୁଆ । ଭାଇଭଉଣୀ ସମସ୍ତଙ୍କୁ କହୁଛି, ସାବଧାନ ହୁଅ, ନହେଲେ ବିପତ୍ତି ପଡ଼ିବ । ସୁନା, ରୁପା, ଟଙ୍କା ପଇସା ଯାହା ପାରୁଛ ଯୁଦ୍ଧ ପାଣ୍ଠିକୁ ଦାନ କର । ଭେଣ୍ଡିଆମାନେ ସୈନ୍ୟବାହିନୀରେ ଯୋଗଦିଅ ।" ପବିତ୍ରବାବାବୁ ଯେତେବେଳେ ତାଙ୍କର କହିବା କଥାଗୁଡ଼ିକୁ ବ୍ୟାଖ୍ୟା ଓ ମୁଦ୍ରାରେ ବୁଝାନ୍ତି ସେତେବେଳେ ଶ୍ରୋତାମାନେ ହସତାମସା, ଚାହିଁଚାପରା ମଧ୍ୟରେ ଆତ୍ମହରା ହୋଇଯାଉଥିଲେ । ପବିତ୍ରବାବୁ ଖୁବ୍ ଉଗ୍ର ଜାତୀୟତାବାଦୀରୂପେ ନାନା କଷ୍ଟ ବରଣ କରିଛନ୍ତି । ଆମର ଜାତୀୟତା ଓ ସଂସ୍କୃତିର ବିରୋଧୀ ଶକ୍ତି ଭାବରେ କମ୍ୟୁନିଷ୍ଟବାଦ ଓ କମ୍ୟୁନିଷ୍ଟମାନଙ୍କ ସଂପୂର୍ଣ୍ଣ ମୂଳୋତ୍ପାଟନ ଉଦ୍ଦେଶ୍ୟରେ ହିଁ ସେ ଏପରି ବିଶ୍ଳେଷଣ କରୁଥିଲେ ।

## ଅହେତୁକ ଅଭିମାନରୁ ହଟହଟା

ସମ୍ବାଦପତ୍ରମାନଙ୍କରେ ବୀରେନ୍‌ବାବୁଙ୍କ ନାମରେ ଯେଉଁ କୁତ୍ସାରଟନା କରାଯାଉଥିଲା ତାକୁ ଖଣ୍ଡନ କରିବାପାଇଁ ଓ ବୀରେନ୍‌ବାବୁଙ୍କର ଆୟ ଓ ଆୟର ପନ୍ଥା ସମ୍ବନ୍ଧରେ ସ୍ପଷ୍ଟ ଧାରଣା ଜନସାଧାରଣଙ୍କୁ ଦେବା ଆବଶ୍ୟକ ହେଉଥିଲା ବୋଲି ବୀରେନ୍‌ବାବୁ ଓ ବିଜୁବାବୁ ଅନୁଭବ କରିଥିଲେ । ତେଣୁ ମୁଖ୍ୟମନ୍ତ୍ରୀ ବିଜୁବାବୁ ୧୯୬୩ ମସିହା ଜୁନ୍ ମାସ ୨୮ ତାରିଖରେ ଗୋଟିଏ ସାମ୍ବାଦିକ ସମ୍ମିଳନୀ ଡାକି ବୀରେନ୍‌ବାବୁଙ୍କର ମହମ୍ମଦ ସିରାଜ୍‌ଉଦ୍ଦୀନଙ୍କ ସହ ସମ୍ପର୍କ, ବୀରେନ୍‌ବାବୁ ତିନି ବର୍ଷ ଭିତରେ ବ୍ୟବସାୟରୁ ଷୋଳ ଲକ୍ଷ ଟଙ୍କା ଲାଭକରିଥିବା ବିଷୟ ଓ ତାଙ୍କର ଅନ୍ୟାନ୍ୟ ଦାନ ଖଇରାତ ବିଷୟରେ ସ୍ପଷ୍ଟୀକରଣ ଦେଇଥିଲେ । ବିଜୁବାବୁ ବୀରେନ୍‌ବାବୁଙ୍କୁ ବ୍ୟବସାୟ କରିବାରେ କିପରି ସାହାଯ୍ୟ କରିଥିଲେ ସେ କଥା କହିବା ସଙ୍ଗେ ସଙ୍ଗେ ବୀରେନ୍‌ବାବୁଙ୍କର ରାଜନୈତିକ କାର୍ଯ୍ୟ ଚଳାଇବାରେ ବା ଦାନ ଖଇରାତ କରିବାରେ ଆଉ କୌଣସି ଶିଳ୍ପପତି ବା ବ୍ୟବସାୟୀଙ୍କ ଉପରେ ନିର୍ଭର କରିବାକୁ ପଡୁନାହିଁ ବୋଲି ସେହି ସାମ୍ବାଦିକ ସମ୍ମିଳନୀରେ ବିଜୁବାବୁ କହିଥିଲେ । ମହମ୍ମଦ ସିରାଜ୍‌ଉଦ୍ଦୀନଙ୍କ ସହିତ ବୀରେନ୍‌ବାବୁଙ୍କର ସଂପର୍କ ବିଷୟ କହିବାକୁ ଯାଇ ବିଜୁବାବୁ କହିଥିଲେ ଯେ ଯେଉଁ ସମୟରେ ବୀରେନ୍‌ବାବୁ ସିରାଜ୍‌ଉଦ୍ଦୀନଙ୍କଠାରୁ ଟଙ୍କା ନେବା କଥା ସିରାଜ୍‌ଉଦ୍ଦୀନଙ୍କ ହିସାବରୁ

ବାହାରୁଛି ସେ ସମୟରେ ବୀରେନ୍‌ବାବୁ କ୍ଷମତାରେ ନଥିଲେ । ମହମ୍ମଦ ସିରାଜ୍‌ଉଦ୍ଦୀନ କ୍ରୋମାଇଟ୍ ଖଣି ପଟ୍ଟା ପାଇବା ପ୍ରଭୃତି ଯାହା କିଛି ସୁବିଧା ସୁଯୋଗ ଓଡ଼ିଶା କଂଗ୍ରେସ ସରକାରଙ୍କଠାରୁ ନେଇଥିଲେ ସେସବୁ ଶ୍ରୀ ହରେକୃଷ୍ଣ ମହତାବ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ଥିଲାବେଳର କଥା । ଏହାଦ୍ୱାରା ଶ୍ରୀ ବିଜୁ ପଟ୍ଟନାୟକ ଯେ କିପରି ଅବିମୃଷ୍ୟକାରିତାର ପରିଚୟ ଦେଇଥିଲେ ତାହା ତାଙ୍କର ଉପରୋକ୍ତ ସାମ୍ବାଦିକ ସମ୍ମିଳନୀରୁ ଅନୁମାନ କରିବାର କଥା । ଉତ୍ତେଜିତ ହେଲେ ସେ ଏକାବେଳକେ ଲଗାମ୍‌ଛଡ଼ା ହୋଇଯାଆନ୍ତି । ତାଙ୍କୁ ପରାମର୍ଶ ଦେଇ ବାଧାଦେବାକୁ କେହି ସାହସ କରନ୍ତିନାହିଁ । ତରବର ହୋଇ ଅବିବେକୀ କାର୍ଯ୍ୟ କଲାବେଳେ ମୁଁ ବେଳେବେଳେ ତାଙ୍କୁ ବାଧାଦେଉଥିଲି । ମାତ୍ର ସେ ସମୟରେ ମୁଁ ବିଦେଶରେ ଥିଲି । ମୁଁ ଓଡ଼ିଶାରେ ଉପସ୍ଥିତ ଥିଲେ ନିଶ୍ଚୟ ବିଜୁବାବୁ ଓ ବୀରେନ୍‌ବାବୁଙ୍କ ଆଲୋଚନାବେଳେ ଥାଆନ୍ତି ଏବଂ ଏସବୁ ବିଷୟରେ ସାମ୍ବାଦିକ ସମ୍ମିଳନୀ କରିବା ଯେ ଗୋଟିଏ ନିର୍ବୋଧ କାର୍ଯ୍ୟ ସେ କଥା କହି ତାହା କରାଇଦେଇନଥା'ନ୍ତି ।

ଏହିଠାରେ ମୋର ବିଜୁବାବୁଙ୍କର ସାମ୍ବାଦିକ ସମ୍ମିଳନୀ ସମ୍ବନ୍ଧରେ ଆଉ ଗୋଟିଏ କଥା ମନେପଡ଼େ । ବିଷୟଟି ହେଉଛି ଚୀନାମାନଙ୍କର ଭାରତ ଆକ୍ରମଣ କଥା । ଯେପରି ଭାବରେ ଭାରତ ସରକାର ଚୀନାମାନଙ୍କର ଆକ୍ରମଣର ପ୍ରତିରୋଧ କରୁଥିଲେ, ଶ୍ରୀ ବିଜୁ ପଟ୍ଟନାୟକ ଆଦୌ ସେଥିରେ ସନ୍ତୁଷ୍ଟ ନଥିଲେ । ସେ କହୁଥିଲେ ହିମାଳୟପରି ପାହାଡ଼ିଆ ଅଞ୍ଚଳରେ ପଦାତିକ ସୈନ୍ୟବାହିନୀଦ୍ୱାରା ଚୀନାମାନଙ୍କର ଗତିରୋଧ କରିବା ଅସମ୍ଭବ, ତେଣୁ ବହୁସଂଖ୍ୟକ ଲଢୁଆ ବିମାନଦ୍ୱାରା ହିମାଳୟ ଅଞ୍ଚଳରେ ଏବଂ ହିମାଳୟର ଅପରପାର୍ଶ୍ୱରେ ଛାଉଣି କରି ରହିଥିବା ଚୀନା ସୈନ୍ୟମାନଙ୍କ ଉପରେ ବୋମା ନିକ୍ଷେପ କରିବା ଏକାନ୍ତ ଆବଶ୍ୟକ । ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ତାଙ୍କ ଅଫିସ୍‌କୁ ମୋତେ ଓ ବହୁ ବିଧାନସଭା ସଦସ୍ୟଙ୍କୁ ଡାକି ଏସିଆ ମହାଦେଶ ତଥା ଭାରତବର୍ଷର ମାନଚିତ୍ର କାନ୍ଥରେ ଟଙ୍ଗାଇ ଚୀନ୍ ସୈନ୍ୟମାନଙ୍କର ସମାବେଶ ସ୍ଥାନ, ପାହାଡ଼ିଆ ଅଞ୍ଚଳରେ ଆମ ପକ୍ଷର ଅସୁବିଧା ଏବଂ ଏ ପରିସ୍ଥିତିରେ କି ପ୍ରକାର ଯୁଦ୍ଧକୌଶଳ ଦରକାର ସେ ବିଷୟରେ ବୁଝାଇଥିଲେ । ଏସବୁ ବିଷୟ ଆମକୁ ନ କହି ପ୍ରଧାନମନ୍ତ୍ରୀ ତଥା ଦେଶରକ୍ଷା ମନ୍ତ୍ରୀଙ୍କୁ ଜଣାଇବା ତାଙ୍କର କର୍ତ୍ତବ୍ୟ ବୋଲି ମୁଁ ତାଙ୍କୁ କହିଥିଲି । ସେ କୁଆଡ଼େ ସେସବୁ କଥା ପଣ୍ଡିତ ନେହେରୁଙ୍କୁ କହିଥିଲେ; ମାତ୍ର ପ୍ରଧାନମନ୍ତ୍ରୀ କୁଆଡ଼େ ବିମାନ ଆକ୍ରମଣକୁ ପସନ୍ଦ କରୁନାହାନ୍ତି ବୋଲି କହି ଭୟଙ୍କର ଭାବରେ କ୍ରୋଧ ପ୍ରକାଶ କରିଥିଲେ । ତା'ପରେ ବିଜୁବାବୁ ଭୁବନେଶ୍ୱରରେ ଗୋଟିଏ ସାମ୍ବାଦିକ ସମ୍ମିଳନୀ ଡାକି ଏସବୁ ଯୁଦ୍ଧକୌଶଳ କଥା ସେଠାରେ କହି ପ୍ରତିରକ୍ଷା ବିଭାଗ ତଥା ପ୍ରଧାନମନ୍ତ୍ରୀଙ୍କର ତୀବ୍ର ସମାଲୋଚନା କରିବାପାଇଁ ମନସ୍ଥ କରିଥିଲେ । ମୁଁ ତାଙ୍କୁ ଏ ପ୍ରକାର ସାମ୍ବାଦିକ ସମ୍ମିଳନୀ ନଡାକିବାପାଇଁ ଦୃଢ଼ ପରାମର୍ଶ ଦେଇଥିଲି । ତାଙ୍କ ସହିତ ମୋର ଏ ସମ୍ବନ୍ଧରେ ତୀବ୍ର ବାକ୍ୟ ବିନିମୟ ହୋଇଥିଲା । ମୁଁ କହିଥିଲି ଯେ ଯୁଦ୍ଧକୌଶଳ ବିଷୟରେ ସାମ୍ବାଦିକ ସମ୍ମିଳନୀରେ ଆଲୋଚନା କରି ପଣ୍ଡିତ ନେହେରୁଙ୍କ ଭଳି ପ୍ରଧାନମନ୍ତ୍ରୀଙ୍କୁ ସମାଲୋଚନା କରିବା ତାଙ୍କର ଧୃଷ୍ଟତା ହେବ । ପ୍ରଧାନମନ୍ତ୍ରୀଙ୍କର ପ୍ରତିଆକ୍ରମଣରେ ତାଙ୍କ ସମ୍ମାନ ସାଧାରଣ ଚକ୍ଷୁରେ ଅତ୍ୟନ୍ତ କ୍ଷୁଣ୍ଣ ହୋଇଯିବ । ବହୁ ଉତ୍ତେଜନା ଓ ଯୁକ୍ତିତର୍କ ପରେ ସାମ୍ବାଦିକ ସମ୍ମିଳନୀ ଡାକିବା କଥା ବନ୍ଦ ହୋଇଥିଲା ।

ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କର ୧୯୬୩ ମସିହା ଜୁନ୍ ୨୮ ତାରିଖରେ ସାମ୍ବାଦିକ ସମ୍ମିଳନୀରେ ଯେଉଁ ବିଷୟବସ୍ତୁ ଆଲୋଚିତ ହୋଇଥିଲା ତା' ଉପରେ ଶ୍ରୀ ମହତାବ ତାଙ୍କର ପ୍ରତିକ୍ରିୟା ପ୍ରକାଶ କରି ଜୁଲାଇ ପହିଲାରେ ସାମ୍ବାଦିକମାନଙ୍କୁ କହିଥିଲେ, "Even if Mr. K.D. Malaviya and Mr. Biren Mitra were to be defended at my cost, I would demand a judicial inquiry into the matter. Was it the only charge that Malaviya, like a simple child, granted something to Serajudhin on the insistent recommendation

of the Orissa Government when I was the Chief Minister, or were there many other charges ? The demand of the opposition is that an open judicial inquiry should be held and the Chief Minister has strengthened the demand."

ଶ୍ରୀ ବୀରେନ୍ ମିତ୍ରଙ୍କର ସ୍ତ୍ରୀ ଶ୍ରୀମତୀ ଇଶ୍ୱରାମ୍ମାଙ୍କ ନାମରେ ପରିଚାଳିତ ଓଡ଼ିଶା ଏଜେଣ୍ଟ ଅଳ୍ପ କେତେଦିନ ମଧ୍ୟରେ ଷୋଳ ଲକ୍ଷ ଟଙ୍କା ଲାଭ କରିଛି ବୋଲି ଯେଉଁ ଅପରିଣାମଦର୍ଶୀ ବିବୃତିଟି ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ସାମ୍ବାଦିକ ସମ୍ମିଳନୀରେ ଦେଲେ ତାହାଦ୍ୱାରା ବହୁ ଲୋକଙ୍କୁ ଅପରିମିତ କ୍ଷତି ସହିବାକୁ ପଡ଼ିଥିଲା । ଏଥିପାଇଁ କଂଗ୍ରେସ ମନ୍ତ୍ରିମଣ୍ଡଳକୁ ବହୁ ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼ିଥିଲା ଏବଂ ଶ୍ରୀ ବୀରେନ୍ ମିତ୍ର ସର୍ବସ୍ୱାନ୍ତ ହେବା ସଙ୍ଗେ ସଙ୍ଗେ ତାଙ୍କ ବଂଶର ଲୋକଙ୍କୁ ନାନାପ୍ରକାର ନିର୍ଯାତନା ଭୋଗ କରିବାକୁ ପଡ଼ିଥିଲା । ବର୍ତ୍ତମାନସୁଦ୍ଧା ସେମାନେ ସେ ଉକ୍ତିର ଦାଉରୁ ମୁକ୍ତି ପାଇ ନାହାନ୍ତି । କେନ୍ଦ୍ର ସରକାରଙ୍କ ଆୟକର ବିଭାଗ ଶ୍ରୀ ବୀରେନ୍ ମିତ୍ରଙ୍କର ମୃତ୍ୟୁ ପରେ ମଧ୍ୟ ତାଙ୍କ ପରିବାରକୁ ସେଥିରୁ ତ୍ରାହି ଦେଇନାହାନ୍ତି । ମୁଁ ଶୁଣିବାକୁ ପାଇଥିଲି ଯେ 'ଓଡ଼ିଶା ଏଜେଣ୍ଟ'ର ଷୋଳ ଲକ୍ଷ ଟଙ୍କା ଲାଭ କଥା ବିଜୁବାବୁ ସାମ୍ବାଦିକ ସମ୍ମିଳନୀରେ କହୁନଥିଲେ, ମାତ୍ର ବୀରେନ୍‌ବାବୁ ତାଙ୍କର ବନ୍ଧୁ ଶୈଳେନ୍ ମହାପାତ୍ରଙ୍କଦ୍ୱାରା ବିଜୁବାବୁଙ୍କୁ ସ୍ମରଣ କରାଇ ସେ ବିଷୟଟି କୁହାଇଥିଲେ । ଶ୍ରୀ ମହତାବଙ୍କୁ ମଧ୍ୟ ଶ୍ରୀ ବୀରେନ୍‌ବାବୁଙ୍କ ଉପରେ ପ୍ରତିଶୋଧ ନେବାର ଖୋରାକ୍ ମିଳିଯାଇଥିଲା ଏବଂ ସେହି କଥାକୁ ବାରମ୍ବାର ପ୍ରଜାତନ୍ତ୍ରରେ ସେ ଫେଣେଇବାକୁ ଲାଗିଲେ । ଶ୍ରୀ ମହତାବଙ୍କ ଅଭିଯୋଗ ଥିଲା ଯେ ଓଡ଼ିଶା ଏଜେଣ୍ଟ ଓଡ଼ିଶା ସରକାରଙ୍କୁ ଜିନିଷପତ୍ର ଯୋଗାଇ ଏବଂ ସେଥିରେ ସରକାରଙ୍କୁ ଠକାଇ ଅଳ୍ପ ସମୟ ଅଧରେ ଷୋଳ ଲକ୍ଷ ଟଙ୍କା ଲାଭ କରିଛନ୍ତି । ଖରାପ ଜିନିଷ ଦେଇ ଭଲ ଜିନିଷର ଦାମ୍ ନେଇ ଲାଭବାନ୍ ହୋଇଛନ୍ତି ବୋଲି ପ୍ରଜାତନ୍ତ୍ରରେ ଆକ୍ଷେପମୂଳକ ସମ୍ବାଦ ପ୍ରକାଶ ପାଇଥିଲା । ଇତ୍ୟବସରରେ ବିରୋଧୀ ଦଳର ନେତା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ସମେତ ୯୩ ଜଣ ବିଧାୟକ ବୀରେନ୍ ମିତ୍ରଙ୍କ ସହ ତାଙ୍କ ମନ୍ତ୍ରିମଣ୍ଡଳର କେତେକ ସଭ୍ୟ ଓ ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ ନାନାପ୍ରକାର ଦୁର୍ନୀତି ଅଭିଯୋଗ ସମ୍ବଳିତ ଗୋଟିଏ ସ୍ମାରକପତ୍ର ରାଷ୍ଟ୍ରପତିଙ୍କ ପାଖରେ ଦାଖଲ କରିଥିଲେ । ଶ୍ରୀ ବିଜୁ ପଟ୍ଟନାୟକ ଓଡ଼ିଶା ସରକାରଙ୍କୁ ତାଙ୍କର ବଡ଼ବିଲ ଲୁହା କାରଖାନାକୁ ବେଶୀ ଦାମ୍‌ରେ ବିକ୍ରୟ କରି ସରକାରଙ୍କୁ ଠକାଇ ଲାଭବାନ୍ ହୋଇଛନ୍ତି ବୋଲି ଶ୍ରୀ ମହତାବ ଅଭିଯୋଗ କରିଥିଲେ । ତା'ଛଡ଼ା ଲୋକସଭାର ସଦସ୍ୟ ଥିବାରୁ ଦିଲ୍ଲୀରେ ରହି ଏ ସମ୍ବନ୍ଧରେ ଜାତୀୟ ସ୍ତରରେ ଖବରକାଗଜଗୁଡ଼ିକୁ ପ୍ରଭାବିତ କରିବାପାଇଁ ଶ୍ରୀ ମହତାବ ଲାଗିପଡ଼ିଥିଲେ । ଶ୍ରୀ ମହତାବ ନିଜେ ଓଡ଼ିଶା ଏଜେଣ୍ଟଦ୍ୱାରା ବିଶେଷଭାବରେ ଉପକୃତ ହୋଇଥିଲେ କି ନାହିଁ କହିହେବନାହିଁ । ତାଙ୍କର ପ୍ରିୟ ଓ ବିଶ୍ୱସ୍ତ ବ୍ୟକ୍ତିମାନେ ଅବଶ୍ୟ 'ଓଡ଼ିଶା ଏଜେଣ୍ଟ' ଦ୍ୱାରା ବିଶେଷ ଭାବରେ ଉପକୃତ ହୋଇଥିଲେ । ଓଡ଼ିଶା ଏଜେଣ୍ଟ ବ୍ୟାପାର ନେଇ ବୀରେନ୍‌ବାବୁଙ୍କୁ ବହୁ ଅନୁସନ୍ଧାନର ସମ୍ମୁଖୀନ ହେବାକୁ ପଡ଼ିଥିଲା । କେନ୍ଦ୍ର ଗୁଇନ୍ଦା ବିଭାଗଠାରୁ ଆରମ୍ଭକରି ୟୁନିୟନ କ୍ୟାବିନେଟ୍ ସବ୍‌କମିଟି ପର୍ଯ୍ୟନ୍ତ ସମସ୍ତେ ଅନୁଧ୍ୟାନ କରି ସେମାନଙ୍କର ମତାମତ ଦେଇଥିଲେ । କ୍ୟାବିନେଟ୍ ସବ୍‌କମିଟି ଶ୍ରୀ ବୀରେନ୍ ମିତ୍ରଙ୍କ ସ୍ତ୍ରୀଙ୍କ ନାମରେ ଥିବା ଓଡ଼ିଶା ଏଜେଣ୍ଟଙ୍କର ଓଡ଼ିଶା ସରକାରଙ୍କ ସହିତ ଜିନିଷପତ୍ର ଯୋଗାଣ ସମ୍ପର୍କୀୟ ବ୍ୟାପାର ତଥା ବିଜୁବାବୁଙ୍କର ବଡ଼ବିଲ କଳିଙ୍ଗ ଲୁହା କାରଖାନା ବିକ୍ରୀ ଓ ଆଉ କେତେକ କାରବାର ସମ୍ବନ୍ଧୀୟ ବିଷୟରେ ମତ ଦେଇଥିଲେ ଯେ ଉଭୟ ଶ୍ରୀ ମିତ୍ର ଓ ଶ୍ରୀ ପଟ୍ଟନାୟକ ବ୍ୟକ୍ତିଗତ ଭାବରେ ଲାଭବାନ୍ ହୋଇନାହାନ୍ତି; ମାତ୍ର ସରକାରୀ କାର୍ଯ୍ୟ କଲା ବେଳେ ସେମାନେ ଶାସନଗତ ଅସଙ୍ଗତି ଆଚରଣ ପ୍ରଦର୍ଶନ କରିଛନ୍ତି । ସମସ୍ତ ବିଷୟ ଅନୁଧ୍ୟାନ କଲାପରେ ସେମାନେ ଯେଉଁ ମତାମତ ଦେଇଛନ୍ତି ତା' ଉପରେ ଆଉ କୌଣସି କମିଶନ ଦ୍ୱାରା

ଅନୁଧ୍ୟାନର ଆବଶ୍ୟକତା ନାହିଁ ବୋଲି କ୍ୟାବିନେଟ୍ ସବ୍‌କମିଟି ପରାମର୍ଶ ଦେଇଥିଲେ । କ୍ୟାବିନେଟ୍ ସବ୍‌କମିଟିର ସିଦ୍ଧାନ୍ତକୁ ପ୍ରଧାନମନ୍ତ୍ରୀ ଶ୍ରୀ ଲାଲ୍‌ବାହାଦୁର ଶାସ୍ତ୍ରୀ ୧୯୬୫ ମସିହା ଜାନୁଆରୀ ୧୫ ତାରିଖରେ ନିମ୍ନ ମର୍ମରେ ଶ୍ରୀ ବୀରେନ୍ ମିତ୍ରଙ୍କୁ ଖଣ୍ଡିଏ ଗୋପନ ଚିଠିରେ ଜଣାଇଥିଲେ ।

Prime Minister's House
New Delhi
January 15, 1965.

My dear Biren Mitraji,

As you are aware, a sub-committee of the Union Cabinet has examined the various allegations which have been made in connection with certain transactions of the Orissa Government. This sub-committee has since given its report, of which a copy is attached. The sub-committee had given the finding that an examination of the available material did not reveal that in the various transactions in which Shri Pattanaik is concerned, he has personally derived any pecuniary benefits. This finding has been given by the committee after a detailed examination.

The sub-committee has, however, felt that the manner in which certain government transactions were conducted by Shri Pattanaik and yourself did involve improprieties. The sub-committee has recorded its profound concern on this.

Thus while the examination of the available material by the sub-committee did not reveal that in the transactions in question any personal pecuniary benefits had been derived, there still remains the question of improprieties to which the sub-committee had drawn attention. I would therefore, request you to consider the resulting situation. I hope you would write to me soon.

Yours sincerely,
Sd/-Lal Bahadur

Shree Biren Mitra,
Chief Minister of Orissa,
Bhubaneswer,

ଠିକ୍ ଅବିକଳ ଏହି ପ୍ରକାର ଗୋଟିଏ ଚିଠି ପ୍ରଧାନମନ୍ତ୍ରୀ ଶାସ୍ତ୍ରୀଜୀ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ମଧ୍ୟ ଲେଖିଥିଲେ । ଶେଷରେ ଶ୍ରୀ ବୀରେନ୍ ମିତ୍ରଙ୍କୁ ଏଥିପାଇଁ ମୁଖ୍ୟମନ୍ତ୍ରୀ ପଦ ଛାଡ଼ିବାକୁ ପଡ଼ିଥିଲା ।

କ୍ୟାବିନେଟ୍ ସବ୍‌କମିଟିର ସିଦ୍ଧାନ୍ତକୁ ବୀରେନ୍ ମିତ୍ର ଓ ବିଜୁ ପଟ୍ଟନାୟକଙ୍କୁ ଜଣାଇ ଦେବା ପରେ ପ୍ରଧାନମନ୍ତ୍ରୀ ଶ୍ରୀ ଲାଲ୍‌ବାହାଦୁର ଶାସ୍ତ୍ରୀ ୧୯୬୫ ମସିହା ଫେବୃଆରୀ ମାସ ୨୨ ତାରିଖରେ ପାର୍ଲିଆମେଣ୍ଟରେ ମଧ୍ୟ ଆମ୍ଭମାନଙ୍କ ସମ୍ବନ୍ଧରେ ଗୋଟିଏ ବିବୃତି ଦେଇଥିଲେ । ସେଥିରେ ପ୍ରଧାନମନ୍ତ୍ରୀ କହୁଥିଲେ, "As the house is aware, a memorial dated 28th July, 1964, containing allegations against Shri B. Pattanaik, Shri Biren Mitra and some Ministers of the Orissa Government was submitted to the President on 13th August, 1964. The memorial was signed by Shri Rajendra Narayan Singh Deo, leader of the Opposition in the Orissa Vidhan Sabha and 62 others of that State. Supplementary memoranda were submitted to the President on 21st September, 1964 and on 12th October, 1964.

I requested a committee consisting of some of my Cabinet colleagues to examine the matter.

The Home Minister sent the memorial dated 28th of July alongwith a statement of the supplementary allegations to Shri B. Pattanaik and Shri Biren Mitra for their comments. Shri Biren Mitra was further informed that where an allegation was against any of his colleagues in the State Cabinet, he might also wish to have their comments before making his own observations.

The committee carefully examined the comments received from Shri B. Patnaik, Shri Biren Mitra and the ministers concerned. The Committee came to the conclusion that their examination of the material available did not reveal that Shri Pattanaik or Shri Mitra had personally derived any pecuniary benefit from the various transactions in which they were concerned. The committee however found that in sevaral transactions, improprieties were definitely involved, for which responsibility had to be borne by Shri Pattanaik and Shri Mitra. The committee felt that the normal standards of public conduct had not been maintained. The findings of the committee which were accepted by the Central Cabinet were communicated to Shri Pattanaik and Shri Mitra. Shri Mitra has since submitted his resignation from the office of the Chief Minister of Orissa. Shri Pattanaik has resigned from the chairmanship of the State Planning Board and does not hold any office under the State Government.

In regard to Shri Nilamoni Routray certain allegations related to a period during which he was not a Minister. The committee felt that it would not be appropriate to consider those allegations. In regard to another allegation relating to a period when he was a Minister, the committee came to the conclusion that there was no sufficient material to justify any adverse inference being drawn against him. Similarly, in the cases of Shri Sadashiva Tripathy and Shri Brindaban Naik, the committee found that there were no grounds for any adverse inference being drawn.

I know some Hon'ble Members may like to pursue this matter further, but I would submit to the House that the Cabinet Sub-Committee has devoted much time to it and made a very careful examination. On the basis of their findings, I came to the conclusion that it is only in the case of Orissa that some action .was called for. Shri Biren Mitra and Shri Pattanaik have already rendered their resignations. I would appeal to you that this matter be allowed to end there. X X X"

କ୍ୟାବିନେଟ୍ ସବ୍‌କମିଟିଙ୍କ ରିପୋର୍ଟ ଓ ଶାସ୍ତ୍ରୀଜୀଙ୍କ ପରାମର୍ଶ ମହତାବବାବୁ ପ୍ରଭୃତିଙ୍କୁ ସନ୍ତୋଷ ଦେଲାନାହିଁ । ପ୍ରତିଶୋଧ ନେବାର ଅନୁକୂଳ ସମୟ ଅନ୍ୱେଷଣରେ ସେମାନେ ରହିଲେ । ତା'ପରେ ଯେତେବେଳେ ଜନକଂଗ୍ରେସ-ସ୍ୱତନ୍ତ୍ର ମିଳିତ୍ ମନ୍ତ୍ରିମଣ୍ଡଳ ଗଠନ କରାଯାଇଥିଲା ସେତେବେଳେ ୧୯୬୭ ମସିହା ଅକ୍ଟୋବର ୨୬ ତାରିଖରେ ଦିଲ୍ଲୀ ହାଇକୋର୍ଟର ବିଚାରପତି ଶ୍ରୀ ଏଚ୍.ଆର୍. ଖାନ୍ନାଙ୍କ ଅଧ୍ୟକ୍ଷତାରେ ଗୋଟିଏ ତଦନ୍ତ କମିଶନ ବସାଯାଇଥିଲା । ଶ୍ରୀ ବୀରେନ୍ ମିତ୍ରଙ୍କ ବିରୁଦ୍ଧରେ ଓଡ଼ିଶା ଏଜେଣ୍ଟ ସମ୍ବନ୍ଧୀୟ ଅଭିଯୋଗର ଅନୁଧ୍ୟାନ ଭାର ଏହି ଖାନ୍ନା କମିଶନଙ୍କୁ ଦିଆଯାଇଥିଲା । ଏଠାରେ ଉଲ୍ଲେଖଯୋଗ୍ୟ ବିଷୟ ହେଉଛି ଯେ, ୟୁନିୟନ କ୍ୟାବିନେଟ୍ ସବ୍‌କମିଟି ଏ ବିଷୟରେ

ପୂର୍ବରୁ ଯେଉଁ ସିଦ୍ଧାନ୍ତ ଦେଇଥିଲେ ବିଚାରପତି ଖାନ୍ନା ତଦନୁରୂପ ସିଦ୍ଧାନ୍ତ ଦେଇ କେତେକ ଶାସନଗତ ଅସଙ୍ଗତି ଜନିତ ତ୍ରୁଟି କଥା କହିଥିଲେ । ଓଡ଼ିଶା ଏଜେନ୍ସିସ ଯୋଗାଇଥିବା ଜିନିଷରେ ଓଡ଼ିଶା ସରକାରଙ୍କୁ ଠକାଇବାର ପ୍ରଶ୍ନ ନଥିଲା । ଅନ୍ୟାନ୍ୟ କମ୍ପାନୀମାନଙ୍କ ଦରଠାରୁ ଓଡ଼ିଶା ଏଜେନ୍ସି ଆହୁରି କମ୍ ଦରରେ ଜିନିଷପତ୍ର ଯୋଗାଇଥିବା କଥା ଖାନ୍ନା କମିଶନ ସ୍ୱୀକାର କରିଥିଲେ । ଏହାଦ୍ୱାରା ବୀରେନ୍ ମିତ୍ର ଓ ବିଜୁବାବୁ ଖାନ୍ନା କମିଶନଙ୍କ ରିପୋର୍ଟ ଅନୁଯାୟୀ ଦୋଷଯୁକ୍ତ ହୋଇଥିଲେ ଏବଂ ଖାନ୍ନା କମିଶନ ପାଖରେ ଅନ୍ୟ କଂଗ୍ରେସ ମନ୍ତ୍ରୀ ଓ ଉପମନ୍ତ୍ରୀମାନଙ୍କ ବିରୁଦ୍ଧରେ ଆଗତ ସମସ୍ତ ଅଭିଯୋଗର ଅସାରତା ପ୍ରତିପାଦିତ ହୋଇଥିଲା । ଅବଶେଷରେ ଅନ୍ୟ ଏକ କମିଶନ ନିଯୁକ୍ତିବେଳେ ମହତାବବାବୁ ନିଜ ଜାଲରେ ନିଜେ ଛନ୍ଦି ହୋଇଯାଇଥିଲେ ।

## "... ତା ମନ୍ଦ ଚିନ୍ତନ୍ତି ଗୋବିନ୍ଦ"

କଥାରେ ଅଛି ଯିଏ, ଯେଉଁ ଗାତ ଖୋଳେ ସେ ସେହି ଗାତରେ ପଡ଼େ । ଶ୍ରୀ ମହତାବଙ୍କ କ୍ଷେତ୍ରରେ ତାହାହିଁ ଘଟିଥିଲା ବୋଲି ମନେହୁଏ । ୧୯୬୩ ମସିହା ଜୁନ୍‌ମାସରେ ମହମ୍ମଦ ସିରାଜ୍‌ଉଦ୍ଦୀନଙ୍କୁ କ୍ରୋମାଇଟ୍ ଖଣି ପଟ୍ଟା ସମ୍ବନ୍ଧରେ ମାଲବ୍ୟ ଓ ବୀରେନ୍ ମିତ୍ରଙ୍କ ବିରୁଦ୍ଧରେ ବିଚାରବିଭାଗୀୟ ତଦନ୍ତ ପାଇଁ ମହତାବ ଉଚ୍ଚସ୍ୱରରେ ଦାବି କରିଥିଲେ । ଶେଷରେ ଅନ୍ୟ ଉଦ୍ଦେଶ୍ୟରେ ଫିଙ୍ଗୁଥିବା କାଦୁଅ ତାଙ୍କ ନିଜ ମୁହଁରେ ବୋଳିହୋଇଯାଇଥିଲା । ସତେ ଅବା ସେ ଅନ୍ୟମାନଙ୍କ ମନ୍ଦ ପାଞ୍ଚ କଲାବେଳେ ଗୋବିନ୍ଦ ତାଙ୍କରି କଥା ବିଚାର କରୁଥିଲେ । ଏହି କ୍ରୋମାଇଟ୍ ଖଣି ପଟ୍ଟା ସମ୍ବନ୍ଧରେ ମୁଖ୍ୟମନ୍ତ୍ରୀ ମହତାବ ମହମ୍ମଦ ସିରାଜ୍‌ଉଦ୍ଦୀନଙ୍କୁ ବିଶେଷ ଅବାଞ୍ଛିତ ଅନୁଗ୍ରହ ଦେଖାଇଥିଲେ ବୋଲି କଂଗ୍ରେସ ବିଧାନସଭା ସଦସ୍ୟମାନଙ୍କ ପକ୍ଷରୁ ରାଷ୍ଟ୍ରପତିଙ୍କ ପାଖରେ ଅଭିଯୋଗ ହୋଇଥିଲା । ଏ ବିଷୟରେ କେନ୍ଦ୍ର ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀ ୱାଇ. ବି. ଚୌହାନ୍ ଓ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଭିତରେ କେତେକ ପତ୍ର ବିନିମୟ ହୋଇଥିଲା । ଶେଷରେ ଶ୍ରୀ ମହତାବଙ୍କ ବିରୁଦ୍ଧରେ ହୋଇଥିବା ଅଭିଯୋଗଗୁଡ଼ିକରେ କିଛି ଆପାତତଃ ପ୍ରମାଣ ଅଛି କି ନାହିଁ ସେ ବିଷୟ ଅନୁଧ୍ୟାନ କରି ମତ ଦେବାପାଇଁ ସୁପ୍ରିମ୍‌କୋର୍ଟର ଅବସରପ୍ରାପ୍ତ ଜଜ୍ ଶ୍ରୀ ଜେ. ଆର୍. ମୁଧଲକରଙ୍କୁ ଓଡ଼ିଶା ସରକାର ନିଯୁକ୍ତ କରିଥିଲେ । ଶ୍ରୀ ମହତାବଙ୍କ ଛଡ଼ା ଆହୁରି କେତେକ ମନ୍ତ୍ରୀଙ୍କ ବିରୁଦ୍ଧରେ ମଧ୍ୟ ଅଭିଯୋଗ ଥିଲା । ସେଗୁଡ଼ିକ ମଧ୍ୟ ଶ୍ରୀମୁଧଲକର ଅନୁଧ୍ୟାନ କରିଥିଲେ । ୧୯୬୮ ମସିହା ସେପ୍‌ଟେମ୍ବର ମାସ ୨୬ ତାରିଖରେ ସେ ତାଙ୍କର ରିପୋର୍ଟ ଦେଇଥିଲେ । ଅନ୍ୟାନ୍ୟ ମନ୍ତ୍ରୀମାନଙ୍କୁ ଦୋଷମୁକ୍ତ କରି ଶ୍ରୀ ମୁଧଲକର କେବଳ ଶ୍ରୀ ହରେକୃଷ୍ଣ ମହତାବଙ୍କ ବିରୁଦ୍ଧରେ ହୋଇଥିବା ଅଭିଯୋଗଗୁଡ଼ିକରେ ଆପାତ ପ୍ରମାଣଯୋଗ୍ୟ ତଥ୍ୟ ଅଛି ବୋଲି ମତ ଦେଇ ସେଗୁଡ଼ିକର ପୂର୍ଣ୍ଣ ଅନୁସନ୍ଧାନପାଇଁ ଗୋଟିଏ ତଦନ୍ତ କମିଶନ ବସାଇବାକୁ ସ୍ପଷ୍ଟ ସୁପାରିଶ କରିଥିଲେ । କ୍ରୋମାଇଟ୍ ଖଣି ପଟ୍ଟା ବିଷୟରେ ଶ୍ରୀ ମୁଧଲକର ତାଙ୍କ ରିପୋର୍ଟରେ କହିଥିଲେ, "That the grant of a lease of a chromite mine to Mohammed Sirajudhin even after receipt of a telegram from Government of India withdrawing permission to the grant of lease does not prima facie seem to be justified and the transaction needs to be enquired into including the responsibility of Dr. Mahtab in this regard."

ଶ୍ରୀ ମୁଧଲକରଙ୍କର ଏ ପ୍ରକାର ସୁପାରିଶ ପରେ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ମନ୍ତ୍ରିମଣ୍ଡଳ ଅନ୍ୟାନ୍ୟ ଅଭିଯୋଗସହ ମହମ୍ମଦ ସିରାଜ୍‌ଉଦ୍ଦୀନ୍‌ଙ୍କୁ ଦିଆଯାଇଥିବା କ୍ରୋମାଇଟ୍ ଖଣି ପଟ୍ଟା ଓ ସିରାଜଉଦ୍ଦୀନଙ୍କ ହିସାବ ଖାତାରେ ମହତାବ ନେଇଥିବା ଯେଉଁ ଟଙ୍କା କଥା ଉଲ୍ଲେଖ ଅଛି ସେ ବିଷୟସବୁ ତଦନ୍ତ କରିବାପାଇଁ ଗୋଟିଏ କମିଶନ ନିଯୁକ୍ତ ହେବା ଆବଶ୍ୟକ ବୋଲି ନିଷ୍ପତ୍ତି

ନେଇଥିଲେ । ସେହି ଅନୁସାରେ ରାଷ୍ଟ୍ରପତି ଶାସନ ସମୟରେ ୧୯୭୧ ମସିହା ଜୁନ୍ ମାସ ଆଠ ତାରିଖରେ ଆସାମ ଓ ରାଜସ୍ଥାନ ହାଇକୋର୍ଟର ପୂର୍ବତନ ପ୍ରଧାନ ବିଚାରପତି ଶ୍ରୀ ସରଯୂପ୍ରସାଦଙ୍କ ଅଧକ୍ଷତାରେ ଗୋଟିଏ ତଦନ୍ତ କମିଶନ ବସାଯାଇଥିଲା । ମହମ୍ମଦ ସିରାଜଉଦ୍ଦୀନଙ୍କୁ କ୍ରୋମାଇଟ୍ ଖଣି ପଟ୍ଟା ଦେବା ସମ୍ବନ୍ଧୀୟ ଫାଇଲ୍‌ରେ ମୁଖ୍ୟମନ୍ତ୍ରୀ ଶ୍ରୀ ମହତାବଙ୍କର ସମସ୍ତ ନୋଟ୍ ଅଧ୍ୟୟନ କରି ଅଭିଜ୍ଞ ବିଚାରପତି ସରଯୂପ୍ରସାଦ ମହତାବବାବୁଙ୍କ ସମ୍ପର୍କରେ ଅତି କଟୁ ମନ୍ତବ୍ୟ ତଥା ପ୍ରତିକୂଳ ମତ ଦେଇଛନ୍ତି । ବିଭାଗୀୟ ମନ୍ତ୍ରୀ ଶ୍ରୀ ଦୀନବନ୍ଧୁ ସାହୁଙ୍କର ମତକୁ ଉପେକ୍ଷା କରି ଏବଂ ସେକ୍ରେଟେରୀଙ୍କର ପରାମର୍ଶକୁ ଅଗ୍ରାହ୍ୟ କରି ଶ୍ରୀ ମହତାବ ମହମ୍ମଦ ସିରାଜ୍‌ଉଦ୍ଦୀନଙ୍କ ପକ୍ଷଭୁକ୍ତ ଲୋକଭଳି ତାଙ୍କୁ କ୍ରୋମାଇଟ୍ ଖଣି ପଟ୍ଟାଦେବା ବ୍ୟାପାରରେ ଅତି ଅସାଧାରଣ ବ୍ୟାକୁଳତା ତଥା ଅସମୀଚୀନ ଆଗ୍ରହ ପ୍ରଦର୍ଶନ କରିଥିଲେ ବୋଲି ସରଯୂପ୍ରସାଦ କମିଶନ ମତ ବ୍ୟକ୍ତ କରିଛନ୍ତି । କେନ୍ଦ୍ର ସରକାରଙ୍କର ତତ୍କାଳୀନ ଶିଳ୍ପନୀତି ଅନୁସାରେ ଯେଉଁ ସଂସ୍ଥା ବା ପକ୍ଷମାନେ ଫେରୋକ୍ରୋମ୍ କାରଖାନା ରାଜ୍ୟରେ ବସାଇବାପାଇଁ ଲାଇସେନ୍‌ସ ପାଇବେ ସେହିମାନଙ୍କୁ କେବଳ କ୍ରୋମାଇଟ୍ ଖଣି ପଟ୍ଟା ମିଳିବାର କଥା । କିନ୍ତୁ ଏ କ୍ଷେତ୍ରରେ ଓଡ଼ିଶାରେ ଫେରୋକ୍ରୋମ୍ କାରଖାନା ବସାଇବାପାଇଁ M/s. Sirajudhin & Co. କେନ୍ଦ୍ର ସରକାରଙ୍କଠାରୁ ଲାଇସେନ୍‌ସ ପାଇଥିଲେ, ଅଥଚ ମହମ୍ମଦ ସିରାଜ୍‌ଉଦ୍ଦୀନଙ୍କୁ ଖଣି ପଟ୍ଟା ଦିଆହେବାକୁ ଯାଉଥିଲା । ଆଇନ ଅନୁସାରେ M/s Sirajudhin & Co. ଓ Mohammed Sirajudhin ଦୁଇଟି ସ୍ୱତନ୍ତ୍ର ସଂସ୍ଥା । ତେଣୁ ମହମ୍ମଦ ସିରାଜ୍‌ଉଦ୍ଦୀନଙ୍କୁ ଖଣି ପଟ୍ଟା ଦେବାଟା ଶିଳ୍ପପତି ଓ ସରକାରୀ ନିୟମର ବିରୁଦ୍ଧାଚରଣ କରୁଥିବା କଥା ସରକାରଙ୍କର ସଂପୃକ୍ତ ଖଣି ତଥା ଶିଳ୍ପବିଭାଗୀୟ ସେକ୍ରେଟେରୀମାନେ ଦର୍ଶାଇଥିଲେ । ମାତ୍ର ମୁଖ୍ୟମନ୍ତ୍ରୀ ଶ୍ରୀ ମହତାବ ସେଥିପ୍ରତି ଭ୍ରୁକ୍ଷେପ କରିନଥିଲେ । ଏକଥା ପ୍ରତି କେନ୍ଦ୍ର ସରକାରଙ୍କର ଦୃଷ୍ଟି ଆକର୍ଷଣ କରିବାକୁ ଶ୍ରୀ ମହତାବ ପସନ୍ଦ କରିନଥିଲେ । ମାତ୍ର ନିଜକୁ ଦୋଷମୁକ୍ତ କରିବା ଉଦ୍ଦେଶ୍ୟରେ ସଂପୃକ୍ତ ସେକ୍ରେଟେରୀମାନେ କେନ୍ଦ୍ର ସରକାରଙ୍କୁ ପ୍ରକୃତ ଅବସ୍ଥାଟି ଖୁବ୍ ବିଳମ୍ବରେ ଜଣାଇଥିଲେ । କମିଶନ ତାଙ୍କ ରିପୋର୍ଟର ୪୯ ଓ ୫୦ ପୃଷ୍ଠାରେ ଲେଖିଛନ୍ତି, "Shri Mahtab appears to have taken almost a partisan attitude and gone out of his way to help Sirajudhin, in spite of all the cautious notes submitted by the Secretaries. Shri Mahatab even entered special pleas in favour of Sirajudhin and fell foul of the Secretaries if they pointed out anything which was material in the interest of the State." ରାଜ୍ୟ ସରକାରଙ୍କଠାରୁ ସ୍ପଷ୍ଟୀକରଣପାଇଁ କେନ୍ଦ୍ର ସରକାରଙ୍କୁ ବିଳମ୍ବରେ ଯାଇଥିବା ଚିଠି ବିଷୟରେ ଅସନ୍ତୋଷ ପ୍ରକାଶ କରି କମିଶନ ତାଙ୍କ ରିପୋର୍ଟରେ ୪୮ ପୃଷ୍ଠାରେ ଲେଖିଛନ୍ତି, "But the letter was sent too late, since the lease was executed the very next day before the Government of India could take any further action on the letter of the Secretary." କେନ୍ଦ୍ର ସରକାରଙ୍କର ଶିଳ୍ପନୀତି ଅନୁସାରେ ମହମ୍ମଦ ସିରାଜଉଦ୍ଦୀନ୍‌ଙ୍କୁ ଖଣି ପଟ୍ଟା ଦିଆଯାଇ ନଥିବାରୁ ତାକୁ ରଦ୍ଦ କରିବା ପାଇଁ କେନ୍ଦ୍ର ସରକାର ବିଚାର କରୁଥିବା କଥା ଜଣାପଡ଼ିଥିଲା, ତେଣୁ ଦିଲ୍ଲୀରୁ କୌଣସି ନିର୍ଦ୍ଦେଶ ଆସିବା ପୂର୍ବରୁ ଖଣି ପଟ୍ଟା ସମ୍ପାଦନ କାର୍ଯ୍ୟ ସଂପୂର୍ଣ୍ଣ ହେବାପାଇଁ ଭୁବନେଶ୍ୱରରେ ଉଦ୍ୟମ ହୋଇଥିଲା ।

ଏ ବିଷୟଟି ସହିତ ସମ୍ବନ୍ଧଥିବା ଗୋଟିଏ ଘଟଣା ମୋର ମନେପଡୁଛି । ୧୯୫୯ ମସିହା ମାର୍ଚ୍ଚ ମାସରେ ଦିନେ ସକାଳେ ମୁଖ୍ୟମନ୍ତ୍ରୀ ଶ୍ରୀ ମହତାବ ଭୁବନେଶ୍ୱରରୁ ମୋ ପାଖକୁ ଫୋନ୍ କଲେ । ମୁଁ ସେତେବେଳେ କଟକ କ୍ୟାଣ୍ଟନ୍‌ମେଣ୍ଟ ରୋଡ଼ରେ ରହୁଥାଏ । ମହତାବବାବୁ ସେଦିନ ବାଲେଶ୍ୱର ଯିବାର କଥା । ମୁଁ ଯାଇ ତାଙ୍କୁ ଯୋବ୍ରାଠାରେ ମହାନଦୀର ଖରାଦିନିଆ ରାସ୍ତା ପାଖରେ

ଦେଖାକରିବାପାଇଁ ସେ ମୋତେ ଅନୁରୋଧ କଲେ । ମୁଁ ଯୋଗ୍ରାଠାରେ ଅପେକ୍ଷା କରିଥାଏ, ମହତାବବାବୁ ଆସି ପହଞ୍ଚିଲେ । ତାଙ୍କର ଗାଡ଼ି ବନ୍ଦ ହେଲା, ମୁଁ ଗାଡ଼ି ପାଖକୁ ଗଲି । ମହମ୍ମଦ ସିରାଜଉଦ୍ଦୀନ୍ ମଧ ସେଠାରେ ଆସି ପହଞ୍ଚିଲେ । ସେଦିନ ସିରାଜୁଉଦ୍ଦୀନଙ୍କର ଖଣି ପଟ୍ଟା କାର୍ଯ୍ୟ ଯେପରି ସମ୍ପାଦିତ ହୋଇଯାଏ ସେ ବିଷୟ କଟକ କଲେକ୍ଟରଙ୍କୁ କହିଦେବାପାଇଁ ମହତାବବାବୁ ମୋତେ ପରାମର୍ଶ ଦେଇଗଲେ । କଟକର କଲେକ୍ଟରଙ୍କ ଅଫିସ୍ ତଥା ବାସଭବନକୁ ଫୋନ୍‌କରି ବୁଝିଲି ଯେ ସେଦିନ ସେ ବାଙ୍କୀ ଗସ୍ତରେ ଯାଇଥିଲେ । ଶୀଘ୍ର ସେଇଦିନ କଟକ ଫେରିଆସିବାପାଇଁ କଲେକ୍ଟରଙ୍କୁ ଖବର ପଠାଯାଇଥିଲା । କଲେକ୍ଟର ଦସ୍ତଖତ କଲା ପରେ ଅତିରିକ୍ତ ଜିଲ୍ଲାପାଳ ପଟ୍ଟା ରେଜିଷ୍ଟ୍ରେସନ୍ କରିବା କଥା । କଲେକ୍ଟର ଆସିବା ବିଳମ୍ବ ହେବାରୁ ଯେତେ ରାତି ହେଲେ ମଧ ଅପେକ୍ଷା କରିବାପାଇଁ ମୁଁ ଅତିରିକ୍ତ ଜିଲ୍ଲାପାଳଙ୍କୁ କହିଥିଲି । ସେ ଅପେକ୍ଷା କରି ରହିଥିଲେ । କଲେକ୍ଟର ବହୁତ ରାତିରେ ପହଞ୍ଚି ସରକାରୀ ବାସଭବନରେ ଶୋଇଯାଇଥିଲେ । ମହତାବଙ୍କ ନିର୍ଦ୍ଦେଶାନୁଯାୟୀ ସେଇ ରାତାରାତି କାମ କରିବା କଥା, ତେଣୁ ତାଙ୍କୁ ନିଦରୁ ଉଠାଇ ମୁଖ୍ୟମନ୍ତ୍ରୀଙ୍କର ଇଚ୍ଛା କଥା କହିଥିଲି । ସେହି ରାତିରେ କଲେକ୍ଟର କାଗଜପତ୍ର ଦସ୍ତଖତ କରିବାରୁ ରେଜିଷ୍ଟ୍ରେସନ୍ କାର୍ଯ୍ୟ ସମ୍ପାଦିତ ହୋଇଥିଲା । ଏହି ଖଣି ପଟ୍ଟା ଦେବାରେ ଶ୍ରୀ ମହତାବଙ୍କର ଆଚରଣ ଅତ୍ୟନ୍ତ ଦୋଷାବହ ଓ ସନ୍ଦେହଯୁକ୍ତ କହି ଶେଷରେ କମିଶନ ସଂକ୍ଷିପ୍ତ ଭାବରେ ତାଙ୍କ ରିପୋର୍ଟର ୫୧ ପୃଷ୍ଠାରେ ନିମ୍ନ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ।

"In conclusion, I hold that Shri Mahtab was guilty of gross favouritism, improprieties and abuse of his power as Chief Minister in granting lease of chromite mines to Sirajudhin to the great detriment and loss of the State."

## ପିଠାବଣ୍ଟା ମାଙ୍କଡ଼ ଉପାଖ୍ୟାନ

ଶ୍ରୀ ପଟ୍ଟନାୟକଙ୍କର ଆଉ ଗୋଟିଏ ଅବିବେକ ଓ ଫନ୍ଦିରେ ପଡ଼ିଲାଭଳିଆ ଅବିମୃଷ୍ୟକାରୀ ନିଷ୍ପତ୍ତି ବହୁ ଲୋକଙ୍କୁ ତଥା ରାଜ୍ୟ ସରକାରଙ୍କୁ ସେ ସମୟରେ ଅସୁବିଧାରେ ପକାଇଥିଲା । କଂଗ୍ରେସ ଦଳର କେତେକ ଅସନ୍ତୁଷ୍ଟ ଗୋଷ୍ଠୀର ଲୋକ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ଓ ବୀରେନ୍‌ବାବୁଙ୍କ ସମେତ ଅନ୍ୟାନ୍ୟ ମନ୍ତ୍ରୀମାନଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗ କରି ଗୋଟିଏ ସ୍ମାରକପତ୍ର କଂଗ୍ରେସ ସଭାପତି ଶ୍ରୀ କାମରାଜଙ୍କୁ ଦେଇଥିଲେ । କଂଗ୍ରେସ ସଭାପତି ଶ୍ରୀ କାମରାଜ କଂଗ୍ରେସ ଅନୁଷ୍ଠାନ ପକ୍ଷରୁ ଥିବା ଆଇନଜ୍ଞ ପ୍ୟାନେଲ୍‌କୁ (Lawyers Panel) ଉକ୍ତ ଅଭିଯୋଗଗୁଡ଼ିକ ଅନୁସନ୍ଧାନପାଇଁ ପଠାଇଥିଲେ । କଂଗ୍ରେସ ଆଇନଜ୍ଞ ପ୍ୟାନେଲ୍ ପକ୍ଷରୁ ତାହାର ସମ୍ପାଦକ ଶ୍ରୀ ଦୀପକ ଚୌଧୁରୀ ନାମକ ଦିଲ୍ଲୀର ଜଣେ ଓକିଲ ଭୁବନେଶ୍ୱର ଆସି ଅଭିଯୋଗଗୁଡ଼ିକ ସମ୍ବନ୍ଧରେ କେତେକ ଅନୁସନ୍ଧାନ କରିଥିଲେ । ଏହି ସମୟରେ ଦିଲ୍ଲୀରେ ଇଣ୍ଡିଆନ୍ ଏକ୍ସପ୍ରେସ୍ ଖବରକାଗଜରେ ବିଜୁବାବୁଙ୍କ ବିରୁଦ୍ଧରେ କେତେକ ମାନହାନିସୂଚକ ଲେଖା ପ୍ରକାଶପାଇବାରୁ ବିଜୁବାବୁ ସେ କାଗଜ ବିରୁଦ୍ଧରେ ଗୋଟିଏ ମାନହାନି ମକଦ୍ଦମା କରିଥିଲେ । ତା'ଛଡ଼ା ସରକାରଙ୍କ ସହିତ ବୀରେନ୍‌ବାବୁଙ୍କର ଓଡ଼ିଶା ଏଜେଣ୍ଟର କାରବାରଦ୍ୱାରା ଏବଂ ବିଜୁବାବୁଙ୍କର ବଡ଼ବିଲ କଳିଙ୍ଗ ଲୁହା କାରଖାନା କିଣିବାରେ ଓଡ଼ିଶା ସରକାର କ୍ଷତିଗ୍ରସ୍ତ ହେଉଥିବା ଅଭିଯୋଗ ସମ୍ପର୍କରେ ଅନୁସନ୍ଧାନ କରିବା ଭାର ଓଡ଼ିଶା ପବ୍ଲିକ୍ ଏକାଉଣ୍ଟସ କମିଟିର ଚେୟାରମ୍ୟାନ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ଯେପରି ଭାବରେ ଏହି ସବୁ ବିଷୟ ଅନୁଧାନ ଓ ଅନୁସନ୍ଧାନ କରିବାପାଇଁ ବିରୋଧୀ ଦଳର ନେତା ଶ୍ରୀ ସିଂହଦେଓଙ୍କ ଉପରେ ନ୍ୟସ୍ତ କରାଗଲା ତାହା ବିଜୁବାବୁଙ୍କର ଗୋଟିଏ ଦୁଃସାହସିକ ଆସ୍ପର୍ଦ୍ଧା । ଦିନେ ବିଧାନସଭାରେ କଂଗ୍ରେସ ସରକାରଙ୍କର ଦୁର୍ନୀତି ସମ୍ବନ୍ଧରେ କହିଲାବେଳେ ଶ୍ରୀ ସିଂହଦେଓ

ବୀରେନ୍‌ବାବୁଙ୍କର ଓଡ଼ିଶା ଏଜେଣ୍ଟର କାରବାର ଓ ବିଜୁବାବୁଙ୍କର ବଡ଼ବିଲ ଲୁହା କାରଖାନା ବିକ୍ରୀ ପ୍ରଭୃତି କେତେକ ବିଷୟରେ ଅତି କଟୁ ସମାଲୋଚନା କରିଥିଲେ ଏବଂ ନିରପେକ୍ଷ ତଦନ୍ତପାଇଁ ଦାବି କରିଥିଲେ । ଏହି ସମୟରେ ଶ୍ରୀ ପଟ୍ଟନାୟକ ବ୍ୟବସ୍ଥାସଭାର ଆଲୋଚନାରେ ବାଧାଦେଇ ଛିଡ଼ା ହୋଇ କହିଥିଲେ ଯେ ପବ୍ଲିକ୍ ଏକାଉଣ୍ଟସ କମିଟିର ଚେୟାରମ୍ୟାନ୍ ହିସାବରେ ଶ୍ରୀ ସିଂହଦେଓଙ୍କ ବିଚାର ବୁଦ୍ଧି ଓ ନିରପେକ୍ଷତା ଉପରେ ତାଙ୍କର ଯଥେଷ୍ଟ ଆସ୍ଥା ଅଛି । ତେଣୁ ସେହି ଅଭିଯୋଗଗୁଡ଼ିକର ତଦନ୍ତ ନିଜେ ଶ୍ରୀ ସିଂହଦେଓ କରନ୍ତୁ ବୋଲି ଶ୍ରୀ ପଟ୍ଟନାୟକ ଘୋଷଣା କରିଥିଲେ ଏବଂ ତା'ପରେ ତାଙ୍କୁ ଚିଠିଲେଖି ଜଣାଇଦେଇଥିଲେ । ତାଙ୍କର ଏ ପ୍ରକାର ଆଚରଣରେ ମୁଁ ଏବଂ ମୋର ଅନ୍ୟ ବନ୍ଧୁମାନେ ଆଚମ୍ବିତ ହୋଇଥିଲୁ ଏବଂ ଶ୍ରୀ ପଟ୍ଟନାୟକଙ୍କର ଅବିବେକତା ହେତୁ ଆମକୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିବ ବୋଲି ମୁଁ ତାଙ୍କ ଉପରେ ଦୋଷାରୋପ କରିଥିଲି । ଶ୍ରୀ ସିଂହଦେଓ ଥିଲେ ବହୁ କାଳରୁ କଂଗ୍ରେସର ପରମ ରାଜନୈତିକ ଶତ୍ରୁ ଏବଂ ଅଯଥା ଦୋଷଦର୍ଶୀ ସମାଲୋଚକ । ତାଙ୍କରି ହାତରେ ତରବାରି ଦିଆଗଲା ଆମ୍ଭମାନଙ୍କର ରାଜନୈତକ ହତ୍ୟା ପାଇଁ । ବିବାଦ ଆରମ୍ଭ ହେଲା କଂଗ୍ରେସର ଦୁଇ ଗୋଷ୍ଠୀ ଭିତରେ ଆଭ୍ୟନ୍ତରୀଣ ମତଭେଦରୁ । ବିଚାର ଭାର ଛାଡ଼ିଦିଆଗଲା କଂଗ୍ରେସ ଆଦର୍ଶ, ଲକ୍ଷ୍ୟ ଓ ସଂଗଠନର ଶତ୍ରୁ ସିଂହଦେଓଙ୍କ ହାତରେ । ଏହାର ଶେଷ ପରିଣତି ହେଲା, ୧୯୬୭ ବେଳକୁ ଥୋକେ କଂଗ୍ରେସ ଲୋକଙ୍କୁ କରଗତ କରି ପାଟଣା ମହାରାଜା ସିଂହଦେଓ ଓଡ଼ିଶାର ମୁଖ୍ୟମନ୍ତ୍ରୀରୂପେ ଗାଦିନସୀନ ହେଲେ । ଓଡ଼ିଶା ରାଜନୀତିରେ ଏହା ପିଠାବଣ୍ଟା ମାଙ୍କଡ଼ ଉପାଖ୍ୟାନର ଅନୁରୂପ । ଶ୍ରୀ ପଟ୍ଟନାୟକଙ୍କର ଏପ୍ରକାର ଆସ୍ପର୍ଦ୍ଧାରେ କି ବିଚକ୍ଷଣତା ଥିଲା ତାହା ଆମ୍ଭେମାନେ ବୁଝିପାରିନଥିଲୁ । କିଛିଦିନ ପରେ ଶ୍ରୀ ସିଂହଦେଓ ସେ ଅନୁସନ୍ଧାନର ଦାୟିତ୍ୱ ନେଇପାରିବେ ନାହିଁ ବୋଲି ଶ୍ରୀ ପଟ୍ଟନାୟକଙ୍କୁ ଲେଖିଥିଲେ । ତାହା ଜାଣି ଆମ୍ଭେମାନେ ଆଶ୍ୱସ୍ତ ହୋଇଥିଲୁ । ସେ ଆପେ ଆପେ ଏହି ଦାୟିତ୍ୱରୁ ଅପସରି ଯିବାର ପ୍ରକାଶ୍ୟ ସଫେଇ ଯାହା ହେଉନା କାହିଁକି, ଅସଲ କାରଣ କ'ଣ ଥିଲା ତାହା ଜଣାନାହିଁ ।

## ଅସଙ୍ଗତ ପଦ୍ଧତିରେ ଅସଙ୍ଗତିର ବିଚାର

ବିଜୁବାବୁଙ୍କର ମାନହାନି ମକଦ୍ଦମା ଏବଂ ପବ୍ଲିକ୍ ଏକାଉଣ୍ଟ କମିଟି ଭଳି ଗୋଟିଏ ବୈଧାନିକ ସଂସ୍ଥାର ବିଚାର ପରିସର ମଧ୍ୟରେ ସେତେବେଳେ ବିଷୟଟି ଥିବାରୁ କଂଗ୍ରେସ ଆଇନଜ୍ଞ ପ୍ୟାନେଲ୍‌ର ସଂପାଦକ ଦୀପକ ଚୌଧୁରୀ ଯେଉଁ ତଦନ୍ତ କରୁଥିଲେ ତାହା ଆଇନବିରୁଦ୍ଧ ହେବ ବୋଲି ସେ ଆଉ ଅଗ୍ରସର ହୋଇନଥିଲେ । କେନ୍ଦ୍ର ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀ ଗୁଲଜାରିଲାଲ ନନ୍ଦା କିଛୁ ଛାଡ଼ିବା ଲୋକ ନଥିଲେ । ଦୁର୍ନୀତି ପୋଛି କେତେଦୂର ପରିଷ୍କାର କରାଗଲାଣି ସେ ବିଷୟରେ ପ୍ରତିଦିନ ସମ୍ବାଦପତ୍ରମାନଙ୍କରେ କିଛି ନକହିଲେ ତାଙ୍କୁ ଶାନ୍ତି ମିଳୁନଥିଲା । ଓଡ଼ିଶା କଂଗ୍ରେସ ଅସନ୍ତୁଷ୍ଟ ଗୋଷ୍ଠୀଙ୍କ ପ୍ରରୋଚନାରେ ବିରୋଧୀଦଳର ନେତା ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ଅନ୍ୟାନ୍ୟ ବିରୋଧୀଦଳର ୬୨ ଜଣ ବିଧାୟକଙ୍କ ସ୍ୱାକ୍ଷରରେ ଆମମାନଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗ କରି ଯେଉଁ ସ୍ମାରକପତ୍ରଟି ରାଷ୍ଟ୍ରପତିଙ୍କୁ ଦିଆଯାଇଥିଲା ଏବଂ ଅନ୍ୟ ସୂତ୍ରରୁଯେଉଁ ଅଭିଯୋଗ ପାଇଥିଲେ ସେସବୁ ଦୁର୍ନୀତି ଅଭିଯୋଗଗୁଡ଼ିକର ଗୋପନ ତଦନ୍ତ କରି ତାଙ୍କର ବିଚାରପାଇଁ ଗୋଟିଏ ରିପୋର୍ଟ ଦେବାକୁ କେନ୍ଦ୍ର ତଦନ୍ତ ବ୍ୟୁରୋକୁ ନନ୍ଦାଜୀ ନିର୍ଦ୍ଦେଶ ଦେଇଥିଲେ । କେନ୍ଦ୍ର ତଦନ୍ତ ବ୍ୟୁରୋକୁ ସେ ବିଷୟରେ ସାହାଯ୍ୟ କରିବାପାଇଁ ଶ୍ରୀ ନନ୍ଦା ଶ୍ରୀ ବୀରେନ୍ ମିତ୍ର ଓ ଶ୍ରୀ ପଟ୍ଟନାୟକଙ୍କୁ ଚିଠି ଲେଖିଥିଲେ । ଏହିଠାରେ ଶ୍ରୀ ପଟ୍ଟନାୟକଙ୍କର ଆଉ ଗୋଟିଏ ନିର୍ବୋଧତା ଓ ବିଚାରଶୂନ୍ୟ ଆସ୍ପର୍ଦ୍ଧା ହେତୁ ଆମ୍ଭମାନଙ୍କର ଓ ତାହା ସହିତ ରାଜ୍ୟ କଂଗ୍ରେସର ପ୍ରଭୂତ କ୍ଷତି ହୋଇଥିଲା । ଆମ୍ଭମାନଙ୍କ ମଧ୍ୟରେ ଶ୍ରୀ ନନ୍ଦାଙ୍କର ଚିଠି ବିଷୟରେ ଆଲୋଚନା ହୋଇଥିଲା । ଏ ପ୍ରକାର ଅନୁରୋଧରେ ରାଜି ନହେବାପାଇଁ

ମୁଁ ଦୃଢ଼ ଭାବରେ ମତ ଦେଇଥିଲି । ସେଥିରେ ରାଜି ହେବାଟା ପ୍ରଶାସନିକ ପରମ୍ପରା ବିରୁଦ୍ଧ ଓ ଶତ୍ରୁ ପକ୍ଷକୁ ସୁହାଇବା ଭଳି ଆତ୍ମଘାତୀ କାର୍ଯ୍ୟ ବୋଲି ମୁଁ କହିଥିଲି । ତା' ପରିବର୍ତ୍ତେ ଶ୍ରୀ ନନ୍ଦାଜୀ ବା ଅନ୍ୟ କୌଣସି ଜଣେ ବୟୋଜ୍ୟେଷ୍ଠ ମନ୍ତ୍ରୀଙ୍କଦ୍ୱାରା ଆମ୍ଭମାନଙ୍କ ବିରୁଦ୍ଧରେ ଅଭିଯୋଗ ସମ୍ବନ୍ଧୀୟ ଫାଇଲପତ୍ର ଅନୁସନ୍ଧାନ କରାଯିବା ସମୀଚୀନ ହେବ ବୋଲି ସ୍ୱରାଷ୍ଟ୍ରମନ୍ତ୍ରୀଙ୍କୁ ଲେଖିବାପାଇଁ ମୁଁ କହିଥିଲି ଏବଂ ସଂପୃକ୍ତ ଫାଇଲ୍‌ରେ ପରାମର୍ଶ ଦେଇଥିଲି । ମାତ୍ର ମୋ ପରାମର୍ଶକୁ ବିଜୁବାବୁ ଓ ବୀରେନ୍‌ବାବୁ ଗ୍ରହଣ କରିନଥିଲେ । ସେମାନେ କହିଥିଲେ ଯେ କେନ୍ଦ୍ର ତଦନ୍ତ ବ୍ୟୁରୋ ଅଫିସରମାନଙ୍କୁ ଫାଇଲ ପତ୍ର ଦେଖାଇବାକୁ ଯଦି ଆମେ ରାଜି ନହେଉ ତା'ହେଲେ ଆମ୍ଭମାନଙ୍କର କିଛି ଗଲ୍‌ତି ଥିବାରୁ ଆମେ ଭୟକରୁଛୁ ବୋଲି ସ୍ୱରାଷ୍ଟ୍ର ମନ୍ତ୍ରୀଙ୍କର ଧାରଣା ହେବ । ସେମାନେ କୁଆଡ଼େ ଆମକୁ ଭୀରୁ ବୋଲି ମନେକରିବେ । ତେଣୁ ସ୍ୱରାଷ୍ଟ୍ରମନ୍ତ୍ରୀଙ୍କର ଅନୁରୋଧରେ ରାଜି ହେବାଟା ଗୋଟିଏ ବୀରୋଚିତ କାର୍ଯ୍ୟ ବୋଲି ମନେକରି ଅତି ଧୃଷ୍ଟତା ସହକାରେ କେନ୍ଦ୍ର ତଦନ୍ତ ବ୍ୟୁରୋଦ୍ୱାରା ଅନୁସନ୍ଧାନ ପ୍ରସ୍ତାବରେ ସମ୍ମତି ଦେଇ ରାଜ୍ୟ ସରକାର କେନ୍ଦ୍ର ସ୍ୱରାଷ୍ଟ୍ରମନ୍ତ୍ରୀଙ୍କର ଚିଠିର ଉତ୍ତର ଦେଇଥିଲେ । ବିଛା ମନ୍ତ୍ର ନଜାଣି ସାପ ଗାତରେ ହାତ ପୂରାଇବା ଭଳି ଏହି ଚିନ୍ତାଶୂନ୍ୟ ଅସଙ୍ଗତ ନିଷ୍ପତ୍ତି ହେତୁ ପରବର୍ତ୍ତୀ କାଳରେ ତୁମୁଳ କାଣ୍ଡ ହୋଇଥିଲା ।

ଦିଲ୍ଲୀରୁ କେନ୍ଦ୍ର ତଦନ୍ତ ବ୍ୟୁରୋର ଅଫିସରମାନେ ଭୁବନେଶ୍ୱର ଆସିଲେ । ଯେଉଁସବୁ ବିଷୟରେ ଦୁର୍ନୀତି ଅଭିଯୋଗ ହୋଇଥିଲା ସେହି ସଂପର୍କୀୟ ସମସ୍ତ ଫାଇଲ୍‌ପତ୍ର ଆମ ସଚିବାଳୟର ବିଭାଗୀୟ ସେକ୍ରେଟେରୀମାନଙ୍କଠାରୁ ସେମାନେ ନେଇ ଅନୁଧ୍ୟାନ ଓ ଅନୁସନ୍ଧାନ କରିବାରେ ଲାଗିଯାଇଥିଲେ । କେତେକ ଫାଇଲ୍ ପରେ ଫେରାଇବାପାଇଁ ଦିଲ୍ଲୀ ନେଇଯାଇଥିଲେ ଏବଂ ଅନ୍ୟ କେତେକ ଫାଇଲ୍‌ରୁ ଆବଶ୍ୟକୀୟ ଅଂଶଗୁଡ଼ିକ ନକଲ କରି ନେଇଥିଲେ । ପୁଲିସ ଅଫିସରମାନେ ଯେପରି ଭାବରେ ଅପରାଧ ସଂକ୍ରାନ୍ତୀୟ ତଦନ୍ତ କରନ୍ତି ସେହିପରି ଭାବରେ ଫାଇଲ୍‌ର ବିଷୟବସ୍ତୁ ସବୁ ଉପସ୍ଥାପିତ କରି ଦୋଷାରୋପ କରିବାଭଳି ରିପୋର୍ଟ ତିଆରି କରିବାରେ ସେମାନେ ଲାଗିଯାଇଥିଲେ । ଅପରାଧ ଅନୁସନ୍ଧାନ କରିବାରେ ଗୋଇନ୍ଦା ବିଭାଗର ଅଫିସରମାନେ ଅଭ୍ୟସ୍ତ ଥିଲେ । ଗୋଟିଏ ବିଷୟକୁ ସବୁ ଦିଗରୁ ଆଲୋଚନା କରି ମନ୍ତ୍ରୀମାନଙ୍କ ସ୍ତରରେ ଯେଉଁସବୁ ନିଷ୍ପତ୍ତି ନିଆଯାଏ ତା'ର ଗୁରୁତ୍ୱ ଯଥୋଚିତ ଭାବରେ ଉପଲବ୍ଧି କରିବା ଏଭଳି ଜଣେ କର୍ମଚାରୀଙ୍କ ପକ୍ଷରେ ସମ୍ଭବନୁହେଁ । କିନ୍ତୁ ଅତ୍ୟନ୍ତ ପରିତାପର ବିଷୟ ଏହି ଯେ, ସେ କଥାଟି ଆମ ଦେଶର ସ୍ୱରାଷ୍ଟ୍ର ମନ୍ତ୍ରୀ ଅନୁଭବ କରିପାରି ନଥିଲେ । ଅତୀତରେ ୧୯୩୯ ମସିହାରେ ଶ୍ରୀ ବିଶ୍ୱନାଥ ଦାସ ଯେତେବେଳେ ଆମ ପ୍ରଦେଶର ପ୍ରଧାନମନ୍ତ୍ରୀ ଥିଲେ ସେତେବେଳେ କେତେକ ଅସନ୍ତୁଷ୍ଟ କଂଗ୍ରେସ ଲୋକ ତାଙ୍କ ବିରୁଦ୍ଧରେ କଂଗ୍ରେସ ଉଚ୍ଚକର୍ତ୍ତୃପକ୍ଷଙ୍କ ପାଖରେ ଦୁର୍ନୀତି ଅଭିଯୋଗ କରିଥିଲେ । ତା'ର ଅନୁସନ୍ଧାନ ଗୋଇନ୍ଦା ପୁଲିସଙ୍କଦ୍ୱାରା ହୋଇନଥିଲା । ମୁଁ ଜାଣେ ତା'ର ଅନୁସନ୍ଧାନପାଇଁ କଂଗ୍ରେସର ତୁଙ୍ଗନେତା ଡକ୍ଟର ରାଜେନ୍ଦ୍ରପ୍ରସାଦ ଓଡ଼ିଶା ଆସିଥିଲେ । ପ୍ରଶାସନିକ କ୍ଷେତ୍ରରେ ମନ୍ତ୍ରୀମାନଙ୍କ ସ୍ତରରେ ଯେଉଁସବୁ ନିଷ୍ପତ୍ତି ନିଆଯାଏ ସେ ସମ୍ବନ୍ଧରେ ଅନୁଧ୍ୟାନ, ଅନୁସନ୍ଧାନ ଓ ମୂଲ୍ୟାୟନ କିପରି ଭାବରେ କରାଯାଏ ତାହା ସେକାଳକାର ଅଭିଜ୍ଞ ନେତାମାନଙ୍କୁ ଜଣାଥିଲା । ସେ ସମୟରେ ଏ ପ୍ରକାର ପରମ୍ପରା ଥିଲେ ମଧ୍ୟ ନନ୍ଦାଜୀ ତାକୁ ଉପେକ୍ଷା କରି ନିଜେ ଶସ୍ତା ଲୋକପ୍ରିୟତା ପ୍ରଲୋଭନରେ ଅତି ଅସୁନ୍ଦର ଓ ଅବାଞ୍ଛନୀୟ ପରମ୍ପରା ସୃଷ୍ଟିକରିବାକୁ ଆଗ୍ରହୀ ହୋଇଥିଲେ । ଏ ପ୍ରକାର ପୁଲିସ ଅନୁସନ୍ଧାନଦ୍ୱାରା ମନ୍ତ୍ରିମଣ୍ଡଳ ତଥା ମନ୍ତ୍ରୀମାନଙ୍କର ସମ୍ମାନକୁ ସାଧାରଣ ଚକ୍ଷୁରେ ଓ ସରକାରୀ କଳ ଭିତରେ ଅବମାନନା କରାଯାଇଥିଲା । କେନ୍ଦ୍ର ତଦନ୍ତ ବ୍ୟୁରୋ ଅଫିସରମାନଙ୍କଠାରୁ ଗୁପ୍ତ ରିପୋର୍ଟ ପାଇଲା ପରେ ଓଡ଼ିଶାରେ କଂଗ୍ରେସନେତା ଓ ମନ୍ତ୍ରୀମାନଙ୍କ ବିରୁଦ୍ଧରେ କି ପ୍ରକାର କାର୍ଯ୍ୟାନୁଷ୍ଠାନ କରାଯିବ ତାହା ସ୍ଥିରକରିବା ସହଜ ହେବ ବୋଲି ଏହି ତଦନ୍ତର ଅସଲ ଉଦ୍ଦେଶ୍ୟ ଥିଲା । ଅଫିସରମାନେ ସେମାନଙ୍କର ଗୁପ୍ତ ରିପୋର୍ଟ ପ୍ରସ୍ତୁତ

କରି ସେତବେଳକାର ପ୍ରଧାନମନ୍ତ୍ରୀ ଶ୍ରୀ ଲାଲବାହାଦୁର ଶାସ୍ତ୍ରୀ ଓ ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀ ନନ୍ଦାଙ୍କୁ ଦେଇଥିଲେ; କିନ୍ତୁ ଅତି ଆଶ୍ଚର୍ଯ୍ୟର କଥା ଯେ କେନ୍ଦ୍ର ସରକାର ଉକ୍ତ ଗୁପ୍ତ ରିପୋର୍ଟକୁ ଗୁପ୍ତରେ ରଖିପାରିଲେ ନାହିଁ । ସେଥିରୁ ଗୋଟିଏ ଅବିକଳ ନକଲ ଆଣି ଲୋକସଭାର ସଦସ୍ୟ ଶ୍ରୀ ଏଚ.ଭି.କାମାଥ ଲୋକସଭାର ଟେବୁଲ ଉପରେ ଉପସ୍ଥାପନ କରି ସଭାଗୃହରେ ଓ ବାହାରେ ଆଲୋଡ଼ନ ସୃଷ୍ଟି କରିଥିଲେ । ଲୋକସଭାର କଂଗ୍ରେସ ସଦସ୍ୟମାନେ ଏ ପ୍ରକାର ଗୋଟିଏ କାଳ୍ପନିକ ଅସମର୍ଥିତ ରିପୋର୍ଟ ଏପରି ଭାବରେ ଲୋକସଭାରେ ଉପସ୍ଥାପିତ ହୋଇପାରିବ ନାହିଁ ବୋଲି ବୈଧାନିକ ପ୍ରଶ୍ନ ଉଠାଇଥିଲେ । କେନ୍ଦ୍ର ତଦନ୍ତ ବ୍ୟୁରୋର ଅଫିସରମାନେ ସରକାରଙ୍କୁ ଯେଉଁ ରିପୋର୍ଟ ଦେଇଥିଲେ ସେହି ରିପୋର୍ଟର ତାହା ଅବିକଳ ନକଲ ବୋଲି ଶ୍ରୀ କାମାଥ ଶପଥସହ ସୁପାରିସ୍ କରିବାରୁ ବାଚସ୍ପତି ଗୃହରେ ତାହା ଉପସ୍ଥାପିତ ହୋଇପାରିବ ବୋଲି ନିଷ୍ପତ୍ତି ଦେଇଥିଲେ । ଲୋକସଭାରେ ରିପୋର୍ଟଟି ଉପସ୍ଥାପିତ ହେବା ପରେ ତାହା ସାଧାରଣ ସଂପତ୍ତି ହୋଇ ଯାଇଥିଲା । ଦେଶର ଖବରକାଗଜ ଓ ବିରୋଧୀ ପକ୍ଷମାନଙ୍କୁ କିଛିଦିନପାଇଁ ଖୋରାକ୍ ମିଳିଯାଇଥିଲା । କେନ୍ଦ୍ର ତଦନ୍ତ ବ୍ୟୁରୋର ଏହି ଗୁପ୍ତ ରିପୋର୍ଟଟି ପ୍ରଖ୍ୟାତ ସାମ୍ବାଦିକ ଶ୍ରୀ କୁଲଦୀପ ନାୟାରଙ୍କ ସହାୟତାରେ ପ୍ରକଟିତ ହୋଇ ବିରୁଦ୍ଧଦଳର ନେତାମାନଙ୍କ ହସ୍ତଗତ ହୋଇଥିଲା ବୋଲି ପରେ ଜଣାଯାଇଥିଲା । ବାର୍ତ୍ତାଜୀବୀ ସାମ୍ବାଦିକରୂପେ ୟୁ.ଏନ୍.ଆଇ.ରେ ଯୋଗଦେବା ପୂର୍ବରୁ ସେ ପ୍ରେସ୍ ଇନ୍‌ଫର୍ମେସନ୍ ବ୍ୟୁରୋର କେନ୍ଦ୍ର ସ୍ୱରାଷ୍ଟ୍ର ବିଭାଗର ଇନ୍‌ଫର୍ମେସନ୍ ଅଫିସର ଥିଲେ ଏବଂ ସରକାରୀ ମହଲରେ ତାଙ୍କର ଘନିଷ୍ଠ ସମ୍ପର୍କ ଥିଲା । ଥରେ ଭୁବନେଶ୍ୱରରେ ମହତାବବାବୁ ଶ୍ରୀ କୁଲଦୀପ ନାୟାରଙ୍କୁ ଗୋଟିଏ ମଧ୍ୟାହ୍ନ ଭୋଜନରେ ଆପ୍ୟାୟିତ କରିଥିଲେ । ମୁଁ ସେଥିରେ ଯୋଗଦେଇଥିଲି । ଉକ୍ତ ସି.ବି.ଆଇ. ରିପୋର୍ଟ ପ୍ରକାଶ କରିବା ପଛରେ ତାଙ୍କର ଭୂମିକା କଥା ଶ୍ରୀ ନାୟାର କଥାପ୍ରସଙ୍ଗରେ କହିଥିଲେ । ଗୋଇନ୍ଦା ପୁଲିସମାନଙ୍କର ଏକତରଫା ଅପରିପକ୍ୱ ରିପୋର୍ଟକୁ ସତ୍ୟବୋଲି ଧରିନେଇ ଓଡ଼ିଶାର କଂଗ୍ରେସ ମନ୍ତ୍ରିମଣ୍ଡଳକୁ ଗୋଟିଏ ଦୁର୍ନୀତିଗ୍ରସ୍ତ ସରକାର ବୋଲି ଆଖ୍ୟାଦେଇ ସମ୍ବାଦପତ୍ରମାନଙ୍କରେ ବିବୃତି ଓ ସମ୍ବାଦମାନ ପରିବେଷିତ ହୋଇଥିଲା । ଓଡ଼ିଶା ବିଧାନସଭାରେ ମଧ୍ୟ ତାହା ବିଶେଷଭାବରେ ପ୍ରତିଧ୍ୱନିତ ହୋଇଥିଲା । ଶେଷରେ କେନ୍ଦ୍ର ତଦନ୍ତ ବ୍ୟୁରୋ ରିପୋର୍ଟ ଉପରେ ୟୁନିୟନ୍ କ୍ୟାବିନେଟ୍ ସବ୍‌କମିଟି ସମୀକ୍ଷା କରି ତାହା ଦୁର୍ନୀତି ନୁହେଁ, ଶାସନଗତ ଅସଙ୍ଗତି ବୋଲି କହି ଯେଉଁ ମତ ଦେଇଥିଲେ ତାହା ମୁଁ ପୂର୍ବରୁ ଉଲ୍ଲେଖ କରିଛି । ଜଷ୍ଟିସ୍ ଚଗଲାଙ୍କ ପରି ପ୍ରବୀଣ ଓ ଅନାସକ୍ତ ବ୍ୟକ୍ତି ଏହି ସବ୍‌କମିଟିରେ ଥିଲେ । କ୍ୟାବିନେଟ୍ ସବ୍‌କମିଟିଙ୍କ ମତ ପ୍ରକାଶିତ ହେବା ପରେ ପ୍ରକୃତ କଥା କ'ଣ ତାହା ସାଧାରଣ ଲୋକ ବୁଝିପାରିଥିଲେ ।

କଂଗ୍ରେସର ଅସନ୍ତୁଷ୍ଟ ଗୋଷ୍ଠୀର ଲୋକମାନେ କଟକରେ କେତେକ ଲୁହା ବ୍ୟବସାୟୀଙ୍କ ବିରୁଦ୍ଧରେ ହୋଇଥିବା ମକଦ୍ଦମାଗୁଡ଼ିକ ମୁଁ ଅନ୍ୟାୟ ଭାବରେ ନିର୍ଦ୍ଦେଶ ଦେଇ ପ୍ରତ୍ୟାହାର କରାଇଦେଇଥିଲି ବୋଲି ଅଭିଯୋଗ କରି ମୋ ବିରୁଦ୍ଧରେ ଦୁର୍ନୀତିର ଆକ୍ଷେପ କରିଥିଲେ । ଅଭିଯୋଗ କରିବା ସଙ୍ଗେ ସଙ୍ଗେ ସେଗୁଡ଼ିକ ପ୍ରଜାତନ୍ତ୍ର ଓ ଇଷ୍ଟର୍ଣ୍ଣ ଟାଇମ୍‌ସ ଖବରକାଗଜରେ ମଧ୍ୟ ପ୍ରକାଶକରିଥିଲେ ଏବଂ ପ୍ରକାଶିତ ସମ୍ବାଦ ପ୍ରତି ସେମାନେ ସ୍ୱରାଷ୍ଟ୍ରମନ୍ତ୍ରୀଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । କେନ୍ଦ୍ର ତଦନ୍ତ ବ୍ୟୁରୋ ଏହି ଅଭିଯୋଗଟିକୁ ଅନୁସନ୍ଧାନ କରିଥିଲେ ଏବଂ ଯୋଗାଣ ବିଭାଗରୁ ସେ ସଂପର୍କୀୟ ସମସ୍ତ ଫାଇଲ୍‌ପତ୍ର ନେଇଯାଇଥିଲେ । ପୁଲିସ ଅଫିସରମାନେ ଯେଉଁ ଦୃଷ୍ଟିକୋଣରୁ ଓ ଯେପରି ଭାବରେ ପୁଲିସ କେସ୍‌ସବୁ ତଦନ୍ତକରନ୍ତି ସେହିପରି ଭାବରେ ସରକାରୀ ଫାଇଲ୍‌ପତ୍ର ଅନୁସନ୍ଧାନ କରି ମୋର କାର୍ଯ୍ୟ ସନ୍ଦେହଜନକ ବୋଲି ତାଙ୍କ ରିପୋର୍ଟରେ ମତ ଦେଇଥିଲେ । କେନ୍ଦ୍ର ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀ ଗୁଲଜାରିଲାଲ ନନ୍ଦା ମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ୍ ମିତ୍ରଙ୍କ ଜରିଆରେ ମୋଠାରୁ ସ୍ପଷ୍ଟୀକରଣ ଚାହିଁଥିଲେ । ଏକଥା ନିଶ୍ଚିତ ଯେ ମକଦ୍ଦମା ଗୁଡ଼ିକ ପ୍ରତ୍ୟାହାରପାଇଁ

ଫାଇଲ୍‌ରେ ମୋର ଆଦେଶ ଥିଲା, ମାତ୍ର ତାହା କେଉଁ ଅବସ୍ଥାରେ ହେଲା ତାହାକେନ୍ଦ୍ର ତଦନ୍ତ ବ୍ୟୁରୋର ଅଫିସର୍‌ମାନେ ଫାଇଲ୍ ପତ୍ର ପଢ଼ି ବୁଝିବାରେ ଅକ୍ଷମ ହୋଇଛନ୍ତି ବୋଲି ମୁଁ ଅଭିଯୋଗ କରିଥିଲି । ବିଷୟଟିକୁ ଭଲଭାବେ ହୃଦୟଙ୍ଗମ କରିବାକୁ ହେଲେ ତା'ର ପୂର୍ବାପର ଘଟଣା ସମ୍ବନ୍ଧରେ କିଛି ଜାଣିବା ଆବଶ୍ୟକ । କଟକର ଲୁହା ବ୍ୟବସାୟୀଙ୍କ ବିରୁଦ୍ଧରେ ହୋଇଥିବା ମକଦ୍ଦମାଗୁଡ଼ିକ ପ୍ରତ୍ୟାହାର କରିନେବାପାଇଁ ସେମାନଙ୍କ ପକ୍ଷରୁ ଓଡ଼ିଶା ଚେମ୍ବର ଅଫ୍ କମର୍ସର ସଭାପତି ବହୁ ପୂର୍ବରୁ ୧୯୬୦ ମସିହା ମାର୍ଚ୍ଚ ମାସ ୧୫ ତାରିଖରେ ମୁଖ୍ୟମନ୍ତ୍ରୀ ଶ୍ରୀ ମହତାବଙ୍କୁ ଦରଖାସ୍ତ କରିଥିଲେ । ଏ ପ୍ରକାର ଆବେଦନ କରିବାପାଇଁ ସେମାନେ କାହିଁକି ଉତ୍ସାହିତ ହୋଇଥିଲେ ସେ କଥା ମୋର ମନେଅଛି । କଟକରେ ଶ୍ରୀ ନରେନ୍ ସୁର ନାମକ ଜଣେ ଖ୍ୟାତନାମା କଣ୍ଟ୍ରାକ୍ଟର ଥିଲେ । ମହତାବବାବୁ କହନ୍ତି ସେ ତାଙ୍କର ସହପାଠୀ ଥିଲେ । ରାଜ୍ୟ ସରକାରଙ୍କ ସଚିବାଳୟଠାରୁ ଆରମ୍ଭ କରି ଅନ୍ୟାନ୍ୟ ବହୁ ବଡ଼ ବଡ଼ ନିର୍ମାଣ କାର୍ଯ୍ୟ ସେ କରୁଥିଲେ । ପ୍ରଜାତନ୍ତ୍ରର ପରିସରରେ ନାନା ନିର୍ମାଣ କାର୍ଯ୍ୟର ଦାୟିତ୍ୱ ଶ୍ରୀ ନରେନ୍ ସୁର ନେଇଥିଲେ । ସରକାରଙ୍କର ଲୁହା ନିୟନ୍ତ୍ରଣ ଆଦେଶକୁ ଅମାନ୍ୟ କରିଥିବା ଅଭିଯୋଗରେ ତାଙ୍କ ନାମରେ ଗୋଟିଏ ଫୌଜଦାରୀ ମକଦ୍ଦମା ହୋଇଥିଲା । ଶ୍ରୀ ନରେନ୍ ସୁର ସେହି ମକଦ୍ଦମାଟି ପ୍ରତ୍ୟାହାର କରିଦେବାପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ମହତାବଙ୍କୁ ଆବେଦନ କରିଥିଲେ । ମହତାବବାବୁ ୧୯୬୦ ମସିହା ଫେବୃୟାରୀ ପହିଲା ତାରିଖରେ ମକଦ୍ଦମାଟି ପ୍ରତ୍ୟାହାର କରିବାପାଇଁ ଆଦେଶ ଦେଇଥିଲେ । ଶ୍ରୀ ନରେନ୍ ସୁରଙ୍କ ବିରୁଦ୍ଧରେ ବିଚାରାଧୀନ ମକଦ୍ଦମାଟି ପ୍ରତ୍ୟାହୃତ ହେବା କଥା ଜାଣି ସେହି ନଜିର ଦେଇ କଟକର ଅନ୍ୟାନ୍ୟ ଲୁହା ବ୍ୟବସାୟୀଙ୍କ ବିରୁଦ୍ଧରେ ହୋଇଥିବା ମକଦ୍ଦମାଗୁଡ଼ିକ ପ୍ରତ୍ୟାହାର କରିବାପାଇଁ ଆବେଦନ କରିବାକୁ ସେମାନେ ଉତ୍ସାହିତ ହୋଇଥିଲେ । ଶ୍ରୀ ନରେନ୍ ସୁରଙ୍କ ବିରୁଦ୍ଧରେ ହୋଇଥିବା ମକଦ୍ଦମାଟିକୁ ପ୍ରତ୍ୟାହାର କରିବାପାଇଁ ଆଦେଶ ଦେଲାବେଳେ ଯୋଗାଣ ବିଭାଗ କାହିଁକି ଏ ପ୍ରକାର ମକଦ୍ଦମା ଶ୍ରୀ ସୁରଙ୍କ ବିରୁଦ୍ଧରେ କରିଥିଲେ ବୋଲି ମୁଖ୍ୟମନ୍ତ୍ରୀ ଫାଇଲ୍‌ରେ ମଧ୍ୟ ନିଜର ଅସନ୍ତୋଷ ଓ ବିରକ୍ତି ପ୍ରକାଶ କରିଥିଲେ । ଏହି ନରେନ୍ ସୁରଙ୍କ ଆଚରଣ ବିଷୟରେ ପ୍ରଜାତନ୍ତ୍ରର ତତ୍କାଳୀନ ସଂପାଦକ ଓ ପରେ ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇଥିବା ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଦିନେ ଗୋଟିଏ କଥା ମୋତେ କହିଥିଲେ । ପ୍ରଜାତନ୍ତ୍ର ଅନୁଷ୍ଠାନର ବହୁ ନିର୍ମାଣ କାର୍ଯ୍ୟ ଦାୟିତ୍ୱରେ କୁଆଡ଼େ ଶ୍ରୀ ସୁର ଥିଲେ ଏବଂ ସେ ମହତାବବାବୁଙ୍କର ଜଣେ ପରମ ବନ୍ଧୁ ଥିଲେ । ନିର୍ମାଣ କାର୍ଯ୍ୟ ସମ୍ବନ୍ଧୀୟ ବହୁ ବହୁ ଯନ୍ତ୍ରପାତି ଓ ଆବଶ୍ୟକୀୟ ଉପକରଣମାନ ପ୍ରଜାତନ୍ତ୍ରର ପରିସର ମଧ୍ୟରେ ସେ ମହଜୁଦ କରି ରଖିଥିଲେ । ୧୯୬୧ ମସିହା ଫେବୃୟାରୀ ମାସରେ ଯେଉଁ ଦିନ ରାଜ୍ୟରେ ମହତାବଙ୍କ ସରକାର ଭାଙ୍ଗିଲା ତା'ପରଦିନ ସକାଳେ ସେ ଯେପରି ଚକ୍ଷୁଲଜ୍ଜାହୀନ ଓ ଭଦ୍ରତାବିବର୍ଜ୍ଜିତ ତଥା ନାଟକୀୟ ଭାବରେ ଅସମାପ୍ତ କାର୍ଯ୍ୟକୁ ଛାଡ଼ିଦେଇ ତାଙ୍କର ସମସ୍ତ ଯନ୍ତ୍ରପାତି ଓ ଉପକରଣ ପ୍ରଭୃତି ଧରି ଏକମୁହାଁ ହୋଇ ପଳାଇଯାଇଥିଲେ ସେ କଥା ମୋ ପାଖରେ ବର୍ଣ୍ଣନାକରି ଜାନକୀବାବୁ ତାଙ୍କର ବ୍ୟଙ୍ଗାତ୍ମକ ହସ ସମ୍ଭାଳି ପାରିନଥିଲେ ।

ପ୍ରଶାସନିକ ବ୍ୟାପାରରେ ପୁଲିସ ଅଫିସର୍‌ମାନଙ୍କର ଅନୁସନ୍ଧାନର ପ୍ରଣାଳୀ ଓ ବିଚାରଧାରା ଏବଂ ପ୍ରଶାସନିକ ବ୍ୟକ୍ତି ତଥା ବିଚାରପତିମାନଙ୍କର ଅନୁଧ୍ୟାନ ପ୍ରଣାଳୀ ଓ ବିଚାରଧାରା ମଧ୍ୟରେ ଯେଉଁ ପାର୍ଥକ୍ୟ ଥାଏ ତା ମୋ ବିରୁଦ୍ଧରେ ହୋଇଥିବା ଏହି ଅଭିଯୋଗ ସମ୍ବନ୍ଧରେ ୟୁନିୟନ୍ କ୍ୟାବିନେଟ୍ ସବ୍‌କମିଟି, ବିଚାରପତି ଏଚ୍.ଆର. ଖାନ୍ନା ଓ ବିଚାରପତି ସରଯୂ ପ୍ରସାଦଙ୍କର ମତାମତ ଜାଣିଲେ ବେଶ୍ ବୁଝାପଡ଼େ । କ୍ୟାବିନେଟ୍ ସବ୍-କମିଟିଙ୍କର ଅନୁଧ୍ୟାନ ବିଷୟରେ ମୁଁ ଆଗରୁ କିଛି ସୂଚନା ଦେଇଛି । ଏଇ ମକଦ୍ଦମାଗୁଡ଼ିକର ପ୍ରତ୍ୟାହାର ସମ୍ବନ୍ଧୀୟ ଅଭିଯୋଗ ଖାନ୍ନା କମିଶନଙ୍କ ଆଗରେ ମଧ୍ୟ ଉଠିଥିଲା । କମିଶନ ତାଙ୍କ ରିପୋର୍ଟରେ ୪୫୯ ପୃଷ୍ଠାରେ ଲେଖିଛନ୍ତି, "I have given the matter my earnest consideration and find that the basic orders

for the withdrawal of the criminal cases were made by Dr. Mahatab on July 19,1960 , and Sri Routray on July 20,1960. Whatever doubts might have been left in the matter was set at naught by the order dated January 21,1961 of Shri Routray. The said order made it clear that the cases against the iron dealers for the alleged violation of Iron & Steel (Control) Order were to be withdrawn." ପରେ ଉକ୍ତ କମିଶନ ସେହି ପୃଷ୍ଠାରେ କହିଛନ୍ତି, "There can obviously be no impropriety in seeking the enforcement of an earlier order once it is made."

ଏହି ବିଷୟଟି ସରଯୂ ପ୍ରସାଦ କମିଶନ ଆଗରେ ମଧ ଉପସ୍ଥାପିତ ହୋଇଥିଲା । ମକଦ୍ଦମାଗୁଡ଼ିକ ପ୍ରତ୍ୟାହାର ସମ୍ବନ୍ଧରେ ମୁଖ୍ୟମନ୍ତ୍ରୀ ଶ୍ରୀ ମହତାବ ବା ଯୋଗାଣମନ୍ତ୍ରୀ ହିସାବରେ ମୋ କାର୍ଯ୍ୟରେ କିଛି ସନ୍ଦେହ କରିବାର ନଥିଲା ବୋଲି କମିଶନ ସବୁ କଥା ଅନୁଧାନ କରି ମତ ଦେଇଥିଲେ । ଏଠାରେ କମିଶନ ମୋର କାର୍ଯ୍ୟ ପ୍ରଣାଳୀକୁ ପସନ୍ଦକରି ସେ ବିଷୟରେ ତାଙ୍କର ମତ ଦେଇଥିଲେ । କମିନ ତାଙ୍କ ରିପୋର୍ଟରେ ୮୮ ପୃଷ୍ଠାରେ କହିଛନ୍ତି, "In the instant circumstnces I feel very doubtful of there being anything suspicious about the orders passed either by the Chief Minister or the Minister (Supply). There was no intention on their part, in my opinion, to give a short shrift to the points raised by the Law Secretary. I do realise that perhaps these gentlemen would have shown better discretion in examining the matter with a little more care; but that can only tantamount to an error of judgement, if at all, and not to any impropriety or favouritism. At the same time, I feel that it would also have been appropriate on the part of the Minister or the Chief Minister to consult Shri Radhanath Rath in whose time the prosecutions were started and who appears to have taken some interest in directing the prosecutions. The joint responsibility of the Cabinet also points in this direction, Shri Rath being still a member of the Cabinet. Even in one of his earliest notes, the Minister (Supply) very rightly endorsed his file to the Chief Minister, observing that since prosecutions had been started during the time of another Minister of Supply, the Chief Minister himself should look into the matter."

ସଂସଦୀୟ ଗଣତନ୍ତ୍ର ଓ ମନ୍ତ୍ରିପରିଷଦ ପଦ୍ଧତିରେ ଆମ ଦେଶ ଓ ଶାସନ ପରିଚାଳିତ ହେଉଛି । The Prime Minister or the Chief Minister as the case may be is the first among the equals. ଅର୍ଥାତ୍ ଦେଶରେ ଏବଂ ରାଜ୍ୟରେ ମନ୍ତ୍ରିପରିଷଦରେ ସମାନସ୍କନ୍ଧ ବ୍ୟକ୍ତିମାନଙ୍କ ମଧ୍ୟରେ ପ୍ରଧାନମନ୍ତ୍ରୀ ବା ମୁଖ୍ୟମନ୍ତ୍ରୀଙ୍କ ସ୍ଥାନ ହେଉଛି ପ୍ରଥମ । ସେଥିପାଇଁ ଅଧସ୍ତନ ମନ୍ତ୍ରୀ ନକହି ସହଯୋଗୀ ମନ୍ତ୍ରୀ ବୋଲି କୁହାଯାଏ । ମୁଖ୍ୟମନ୍ତ୍ରୀ ଓ ସହଯୋଗୀ ମନ୍ତ୍ରୀମାନଙ୍କ ମଧ୍ୟରେ ସହୃଦୟତା ଓ ବିଶ୍ୱାସ ହେଉଛି ପ୍ରଧାନ ଆଧାର; ଯାହା ଉପରେ ମନ୍ତ୍ରିମଣ୍ଡଳ ତିଷ୍ଠି ରହି କାର୍ଯ୍ୟ ପରିଚାଳନା କରେ । ସହଯୋଗୀ ମନ୍ତ୍ରୀମାନେ ମୁଖ୍ୟମନ୍ତ୍ରୀଙ୍କର ଆସ୍ଥାଭାଜନ ହେବା ଆବଶ୍ୟକ ଏବଂ ସେହିପରି ସହଯୋଗୀ ମନ୍ତ୍ରୀମାନଙ୍କର ମୁଖ୍ୟମନ୍ତ୍ରୀଙ୍କ ଉପରେ ବିଶ୍ୱାସ ରହିବା ବାଞ୍ଛନୀୟ । ପାରସ୍ପରିକ ବିଶ୍ୱାସ ନରହିଲେ ମନ୍ତ୍ରିମଣ୍ଡଳ କାର୍ଯ୍ୟ କରିବା ଅସମ୍ଭବ ହୁଏ ଏବଂ ଶାସନକ୍ଷେତ୍ରରେ ଶୃଙ୍ଖଳା ରକ୍ଷା କରାଯାଇ ପାରେ ନାହିଁ । ଯେ ମୁଖ୍ୟ ତାଙ୍କର ଅନ୍ତତଃ ରାଜନୈତିକ ସାଧୁତାରେ ବିଶ୍ୱାସଥିବା ଆବଶ୍ୟକ । ମୁଖ୍ୟମନ୍ତ୍ରୀଙ୍କ ଉପରେ ବିଶ୍ୱାସ ରଖି ତାଙ୍କ ସହଯୋଗୀ ମନ୍ତ୍ରୀ ଯଦି କିଛି ନିଷ୍ପତ୍ତି ନେଇଥାଏ ଏବଂ

ସେଥିରେ ଯଦି କିଛି ସଙ୍କଟ ଉପୁଜେ ତାହାର ଦାୟିତ୍ୱ ନେବାପାଇଁ ମୁଖ୍ୟମନ୍ତ୍ରୀ ପଶ୍ଚାତ୍‌ପଦ ହେବା ଅନୁଚିତ ଓ ଅସୁନ୍ଦର ହେବ । ଯଦି ସେପ୍ରକାର ନହୋଇ କଥାଟା ଅନ୍ୟ ପ୍ରକାରର ହୁଏ ତା'ହେଲେ ପରିସ୍ଥିତି କିପରି ଜଟିଳ ହୁଏ ଏବଂ ସେଥିରେ କେତେ ସତର୍କତା ଆବଶ୍ୟକ ସେ ସମ୍ବନ୍ଧରେ କିଛି ଜାଣିବାର କଥା । ଶାସନ ଦାୟିତ୍ୱରେ ଥାଇ ସତ୍ ଅଭିପ୍ରାୟରେ କାର୍ଯ୍ୟନିର୍ବାହ କଲାବେଳେ ମୋତେ ସେହିଭଳିଆ ଗୋଟିଏ ଅଚିନ୍ତନୀୟ ଓ ଅସ୍ୱାସ୍ଥ୍ୟକର ଅବସ୍ଥାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ମୁଖ୍ୟମନ୍ତ୍ରୀଙ୍କ ଅଭିପ୍ରାୟକୁ ଆନ୍ତରିକତା ସହକାରେ କାର୍ଯ୍ୟକାରୀ କଲି; ମାତ୍ର ଯେତେବେଳେ ସେ ସମ୍ବନ୍ଧରେ ଅପବାଦ ଉଠିଲା ସେତେବେଳେ ସେସବୁ କାର୍ଯ୍ୟର ଦାୟିତ୍ୱକୁ ମୋ ଉପରକୁ ପକାଇ ଦେଇ ସେ ନିଜେ କିପରି ନିଷ୍କଳଙ୍କ ବୋଲି ପ୍ରତିପାଦନ କରିବାକୁ ଉଦ୍ୟମ କରିଥିଲେ ତାହା ସଂପୃକ୍ତ ଫାଇଲପତ୍ର ଅଧ୍ୟୟନ କଲେ ଜଣାପଡ଼ିବ । ସେଥିରୁ ବୁଝାପଡ଼ିବ ଯେ ଶ୍ରୀ ମହତାବ ଏ କ୍ଷେତ୍ରରେ ଜଣେ ବିଶ୍ୱାସଭାଜନ ମୁଖ୍ୟମନ୍ତ୍ରୀ ଭଳି ଆଚରଣ ପ୍ରଦର୍ଶନ କରିନାହାନ୍ତି । ମୁଖ୍ୟମନ୍ତ୍ରୀ ଓ ସହଯୋଗୀ ମନ୍ତ୍ରୀମାନଙ୍କ ମଧ୍ୟରେ ଯେଉଁ ପ୍ରତ୍ୟୟ ଓ ଆସ୍ଥାସୂଚକ ସଂପର୍କ ରହିବା ବିଧେୟ ତାହା ଶ୍ରୀ ମହତାବ ତାଙ୍କର ଅବିଶ୍ୱସ୍ତ ପନ୍ଥାଦ୍ୱାରା ସଂପୂର୍ଣ୍ଣଭାବେ ନଷ୍ଟ କଲାଭଳି ମନେହେଉଛି । ଏ ସଂପର୍କରେ ୧୯୬୪ ମସିହା ଜୁଲାଇ ୨୩ ତାରିଖରେ ଭାରତର ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀ ନନ୍ଦାଙ୍କ ଦୃଷ୍ଟିକୁ ଆଣିବାପାଇଁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ୍ ମିତ୍ରଙ୍କୁ ମୁଁ ଯେଉଁ ଚିଠିଟି ଲେଖିଥିଲି ତାହା ସଂପୂର୍ଣ୍ଣ ଭାବରେ ଏଠାରେ ଉଦ୍ଧାର କରିବାକୁ ମନସ୍ଥ କରିଥିଲି; ମାତ୍ର ତାହା ଅତି ଦୀର୍ଘ ହେବ ବୋଲି ସେଥିରୁ କେତେକ ଅଂଶ ଏଠାରେ ଉଦ୍ଧାର କରୁଛି । ୧୯୬୦ ମସିହା ମାର୍ଚ୍ଚ ୧୫ ତାରିଖରେ ଓଡ଼ିଶା ଚେମ୍ବର ଅଫ୍ କମର୍ସର ସଭାପତି ମୁଖ୍ୟମନ୍ତ୍ରୀଙ୍କୁ ଲୁହା ବ୍ୟବସାୟୀମାନଙ୍କ ବିରୁଦ୍ଧରେ ଯେଉଁ ମକଦ୍ଦମା ହୋଇଥିଲା ତାହା ପ୍ରତ୍ୟାହାର କରିବାପାଇଁ ଯେଉଁ ଦରଖାସ୍ତ ଦେଇଥିଲେ ତାହା ଉପରେ ମୁଖ୍ୟମନ୍ତ୍ରୀଙ୍କର ଆଦେଶ ଥିଲା,– "Minister, Supply – Please examine this. If nothing is likely to come out the cases, they may be withdrawn."

Sd/-H. Mahtab, 30.4.60

ତାହା ପାଇ ଯୋଗାଣ ବିଭାଗର ମନ୍ତ୍ରୀ ହିସାବରେ ମୁଁ ଆଦେଶ ଦେଇଥିଲି, "Secretary, (Supply) C. M's observation above. Please examine this in the Department."

N. Routray, 2.5.60

ଯୋଗାଣ ବିଭାଗ ପରୀକ୍ଷା କଲା ପରେ ମୁଁ ସେ ସମ୍ବନ୍ଧରେ ଲେଖିଥିଲି– "C.M. may kindly go through the elaborate note of the Secretary (Supply) about the withdrawal of the criminal cases against a dozen of iron merchants of Cuttack. C.M.wanted, on the memorial of the Orissa Chamber of Commerce to examine these cases. C.M. further wanted to examine the chances of success of these cases in the Court of Law. The Department have examined it very carefully. They have examined both the merits and demerits of the case, I have also carefully looked into these points. In my opinion these cases have been instituted without carefully examining the Iron Control Order and instructions from the Iron and Steel Controller. Since these cases were instituted at a time when the Department was in charge of another Minister and I was out of office, I am submitting these cases for consideration of the Chief Minister. If C.M., after going through these notes as examined in the Department, feels that legal opinion is necessary, he may kindly consult Law Secretary in the matter."

ଆଇନ ବିଭାଗର ତତ୍କାଳୀନ ସେକ୍ରେଟାରୀ ଥିଲେ ଶ୍ରୀ ବୀରେନ୍ ଦାସ । ପରେ ସେ ହାଇକୋର୍ଟର ବିଚାରପତି ହୋଇଥିଲେ । ଏ ବିଷୟଟିକୁ ଅଧ୍ୟୟନ କରି ୧୯୬୦ ଜୁଲାଇ ମାସ ୧୬ ତାରିଖରେ ସେ ମତ ଦେଇଥିଲେ, "It is reasonably clear from the Controller's letter read in the light of the letter of the year 1955 referred to therein, that there was undoubtedly prevailing a certain degree of confusion regarding the position and degree of control in relation to dealers in scrap iron and producers of iron and steel out of the scrap materials. x x x In view of the matter, the appeal conveyed in the letter of the Chamber of Commerce is not without substance and Government may legitimately allow the benefit of the confused state of affairs in favour of the persons now proceeded against, and it may be very reasonably expected that if such a position is advanced by the Public Prosecutor before the court, the chances are that the court will not decline to consent to the withdrawal of the prosecution."

ଆଇନ ବିଭାଗର ସେକ୍ରେଟେରୀଙ୍କର ଏହି ମନ୍ତବ୍ୟ ଉପରେ ମୁଖ୍ୟମନ୍ତ୍ରୀ ଆଦେଶ ଦେଇଥିଲେ, "Minister, Supply will please see. In view of what Secretary, Law says, the cases may be withdrawn and to satisfy the Court other points raised by Secretary, Law may be looked into."

Sd/– H.Mahtab, 19.7.60

ମୁଖ୍ୟମନ୍ତ୍ରୀଙ୍କର ଏହି ନୋଟ୍ ତଳେ ମୁଁ ଯୋଗାଣ ବିଭାଗକୁ ଆଦେଶ ଦେଇଥିଲି, "Action may be taken as observed by C.M."

Sd/– N. Routray, 20.7.60

ମୋର ଚିଠିରେ ଉକ୍ତ ଆଦେଶଗୁଡ଼ିକୁ ଉଦ୍ଧାର କଲା ପରେ ଉକ୍ତ ଚିଠିର ଶେଷ ଭାଗରେ ମୁଁ କେନ୍ଦ୍ର ସ୍ୱରାଷ୍ଟ୍ରମନ୍ତ୍ରୀଙ୍କ ଉଦ୍ଦେଶ୍ୟରେ ମୁଖ୍ୟମନ୍ତ୍ରୀଙ୍କୁ ଲେଖିଥିଲି — "You will now fully appreciate the position as to how the question of withdrawal of these cases was opened and ended. After the orders of the Chief Minister and the undue interest shown by him at various stages, what was left for a Minister to do ? The orders passed by the Chief Minister on the body of the representation of the Chamber were enough for a Minister working under him to follow up necessary action.X X X "

## କାମରାଜ ଯୋଜନା ଓ ପ୍ରବଞ୍ଚନା

କାମରାଜ ଯୋଜନାରୂପେ ବହୁ ପ୍ରଶଂସିତ ଯେଉଁ ନାଟକଟି ଭାରତୀୟ ରାଜନୀତିରେ ଅଭିନୀତ ହୋଇଥିଲା, ତାହାର ଅନେକ ସ୍ୱଗତୋକ୍ତି ଓ ନେପଥ୍ୟ କଥା ଏବେବି ଅଜଣା ରହିଯାଇଛି । ଶ୍ରୀ ବିଜୁ ପଟ୍ଟନାୟକଙ୍କର ଆଉ ଗୋଟିଏ ଉଦ୍ଭଟ ନିଷ୍ପତ୍ତି ଥିଲା କାମରାଜ ଯୋଜନା ଅନୁସାରେ ତାଙ୍କର ମୁଖ୍ୟମନ୍ତ୍ରୀ ପଦ ତ୍ୟାଗ । ତାମିଲ୍‌ନାଡୁର ମୁଖ୍ୟମନ୍ତ୍ରୀ ଶ୍ରୀ କେ.କାମରାଜ ଅନେକ ବର୍ଷ ସେ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇଥିଲେ । ସେ ଭାବିଥିଲେ ଯେ ଅନେକ ଦିନ ମୁଖ୍ୟମନ୍ତ୍ରୀ ହୋଇ ରହିବା ହେତୁ ସେ ଜନସାଧାରଣଙ୍କ ମଧ୍ୟରେ ଅପ୍ରିୟ ହୋଇଯାଉଛନ୍ତି । ତା' ଛଡ଼ା ନେତୃସ୍ଥାନୀୟ ବ୍ୟକ୍ତିମାନେ ବେଶିଦିନ ଧରି କ୍ଷମତାକୁ ଜାବୁଡ଼ିରହୁଥିବାରୁ କଂଗ୍ରେସ ଲୋକେ ଅପ୍ରିୟ ହେବା ସଂଗେ ସଂଗେ ଅନୁଷ୍ଠାନ ଦୁର୍ବଳ ହେବାରେ ଲାଗିଛି । ଶ୍ରୀ କାମରାଜ ଏହି ବିଷୟଟିକୁ ଶ୍ରୀ ବିଜୁ ପଟ୍ଟନାୟକଙ୍କ ସହ ଆଲୋଚନା

କରିଥିଲେ । ଯେଉଁ ନେତୃସ୍ଥାନୀୟ ବ୍ୟକ୍ତିମାନେ ଅଧିକ ଦିନ ମନ୍ତ୍ରୀହିସାବରେ ରହିଲେଣି ସେମାନେ ସ୍ୱଇଚ୍ଛାରେ ସେଥିରୁ ଅପସରି ଯାଇ ସାଙ୍ଗଠନିକ କାର୍ଯ୍ୟରେ ନିଜକୁ ନିୟୋଜିତ କରିବା ବିଧେୟ ବୋଲି ସେମାନେ ସ୍ଥିର କରିଥିଲେ । ଏହି ବିଷୟଟି ଶ୍ରୀ କାମରାଜ ଓ ଶ୍ରୀ ବିଜୁ ପଟ୍ଟନାୟକ ପ୍ରଧାନମନ୍ତ୍ରୀ ଶ୍ରୀ ନେହେରୁଙ୍କ ସହ ଆଲୋଚନା କରିଥିଲେ । ପଣ୍ଡିତ ନେହେରୁ ସେତେବେଳେ କାଶ୍ମୀର ରାଜ୍ୟର ପହେଲଗାଁଓରେ ବିଶ୍ରାମ ନେଉଥିଲେ, ସେତିକିବେଳେ ଏ ବିଷୟଟି ବିଶେଷଭାବରେ ଆଲୋଚିତ ହୋଇଥିଲା । ଶ୍ରୀ ନେହେରୁ ଯୋଜନାଟିକୁ ପସନ୍ଦ କରିଥିଲେ । ଏହି ପ୍ରସ୍ତାବ ଓ ଚିନ୍ତାଧାରାକୁ କାମରାଜ ଯୋଜନା କୁହାଯାଉଥିଲା । ଶ୍ରୀ କାମରାଜ ଓ ଶ୍ରୀ ପଟ୍ଟନାୟକ ଆଶାକରିଥିଲେ ଯେ ଶ୍ରୀ ନେହେରୁ ମଧ୍ୟ ଏହି ଯୋଜନା ଅନୁସାରେ ପ୍ରଧାନମନ୍ତ୍ରୀ ପଦ ଛାଡ଼ି କଂଗ୍ରେସ ସଂଗଠନ ପ୍ରତି ଦୃଷ୍ଟି ଦେବେ । ତା ହୋଇନଥିଲା । କେନ୍ଦ୍ର ମନ୍ତ୍ରିମଣ୍ଡଳରୁ ଶ୍ରୀ ମୋରାରଜୀ ଦେଶାଇ, ଶ୍ରୀ ଏସ୍.କେ.ପାଟିଲ୍ ଓ ଶ୍ରୀ ଜଗଜ୍ଜୀବନ ରାମ ପ୍ରଭୃତି କେତେକ ମନ୍ତ୍ରୀପଦ ଛାଡ଼ିଥିଲେ ଏବଂ ରାଜ୍ୟମାନଙ୍କରୁ ତାମିଲ୍‌ନାଡୁର ମୁଖ୍ୟମନ୍ତ୍ରୀ ଶ୍ରୀ କାମରାଜ, କାଶ୍ମୀର ମୁଖ୍ୟମନ୍ତ୍ରୀ ବକ୍ସି ଗୋଲାମ୍ ମହମ୍ମଦ, ପଶ୍ଚିମବଙ୍ଗଳାରୁ ଶ୍ରୀ ଅଜୟ ମୁଖାର୍ଜୀ ଏବଂ ଅନ୍ୟାନ୍ୟ ରାଜ୍ୟରୁ ଆହୁରି କେତେକ ମନ୍ତ୍ରୀ ପଦତ୍ୟାଗ କରିଥିଲେ । ମୁଁ ଶୁଣିଛି ଯେ ଏହି କାମରାଜ ଯୋଜନାର ମୁଖ୍ୟ ଉଦ୍ଦେଶ୍ୟ ମଧ୍ୟ ଥିଲା ଯେ ପଣ୍ଡିତ ନେହେରୁ ପ୍ରଧାନମନ୍ତ୍ରୀ ପଦ ତ୍ୟାଗକରି ଆଉ କାହାରିକୁ ସେଥିପାଇଁ ତାଲିମ୍ ହେବାକୁ ସୁଯୋଗଦେଇ ନିଜେ ସଂଗଠନ ପ୍ରତି ଦୃଷ୍ଟି ଦେବେ । ସେ ଉଦ୍ଦେଶ୍ୟ କାର୍ଯ୍ୟକାରୀ ନହେବାରୁ ଶ୍ରୀ ଏସ୍.କେ.ପାଟିଲ୍ ଏହି ଯୋଜନାଟିକୁ ଗୋଟିଏ ସୁଚିନ୍ତିତ ଷଡ଼ଯନ୍ତ୍ର ବୋଲି ଆଖ୍ୟା ଦେଇଥିଲେ । ଶ୍ରୀ ମୋରାରଜୀ ଦେଶାଇ ପ୍ରଭୃତି କେତେଜଣଙ୍କୁ କେନ୍ଦ୍ର ମନ୍ତ୍ରିମଣ୍ଡଳରୁ ବିଦାୟ ଦେବା ଉଦ୍ଦେଶ୍ୟରେ କାମରାଜ ଯୋଜନା ପ୍ରସ୍ତୁତ କରାଯାଇଥିଲା ବୋଲି ଶ୍ରୀ ପାଟିଲ ନେହେରୁଙ୍କୁ ଆକ୍ଷେପ କଲାଭଳି ଗୋଟିଏ ବିବୃତି ଦେଇଥିଲେ । ମୁଁ ନିଜେ ଭାବୁଛି ଯେ ଶ୍ରୀ ପାଟିଲ୍‌ଙ୍କର ଆଶଙ୍କାରେ କିଛି ଯଥାର୍ଥତା ଥିଲା । ପଣ୍ଡିତ ନେହେରୁ ଯଦି ଆନ୍ତରିକତା ସହକାରେ ଯୋଜନାର ଉଦ୍ଦେଶ୍ୟକୁ କାର୍ଯ୍ୟକାରୀ କରି ନିଜେ ପ୍ରଧାନମନ୍ତ୍ରୀ ପଦରୁ ଓହରିଆସିଥାଆନ୍ତେ ଏବଂ ତାଙ୍କ ଜୀବିତ ଅବସ୍ଥାରେ ଆଉ କୌଣସି ନେତାଙ୍କ ଉପରେ ସେ ଦାୟିତ୍ୱ ଅର୍ପିତ ହେବାର ସୁଯୋଗ ଦେଇଥାଆନ୍ତେ ତା'ହେଲେ ହୁଏତ ପରବର୍ତ୍ତୀ କାଳରେ ତାଙ୍କ ସ୍ଥାନରେ କ୍ଷମତାସୀନ ହେବାପାଇଁ ଯେଉଁ ଅବାଞ୍ଛନୀୟ ସଂଘର୍ଷ ଓ ପରିସ୍ଥିତି ସୃଷ୍ଟିହେଲା ତା ନିଶ୍ଚିତ ଭାବରେ ଏଡ଼ାଇ ଦିଆଯାଇପାରିଥାଆନ୍ତା । ତାହା ନହୋଇ ଯେପରି ଭାବରେ ଯୋଜନା କାର୍ଯ୍ୟକାରୀ ହେଲା ତା' ଭଲ କରିବା ପରିବର୍ତ୍ତେ ଅନେକ କ୍ଷେତ୍ରରେ ସମସ୍ୟା ସୃଷ୍ଟି କରିଥିଲା ।

ସବୁଠାରୁ ଆଶ୍ଚର୍ଯ୍ୟ ବିଷୟ ହୋଇଥିଲା ଏହି କାମରାଜ ଯୋଜନାନୁସାରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରୁ ଶ୍ରୀ ବିଜୁ ପଟ୍ଟନାୟକଙ୍କର ବିଦାୟ । ଯେକୌଣସି ଦୃଷ୍ଟିକୋଣରୁ ବିଚାରକଲେ ଶ୍ରୀ ପଟ୍ଟନାୟକ କାମରାଜ ଯୋଜନାର ପରିସର ଭିତରକୁ ଆସୁନଥିଲେ । ସେତେବେଳେକୁ ମାତ୍ର ଅଢ଼େଇବର୍ଷ ସେ ହୋଇଥିଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ସେ ଆଦୌ ଲୋକପ୍ରିୟତା ହରାଇନଥିଲେ, ବରଂ ତାଙ୍କର ଲୋକପ୍ରିୟତା ବୃଦ୍ଧିପାଉଥାଏ । ସେ ରାଜ୍ୟର ଦ୍ରୁତ ଉନ୍ନତିପାଇଁ ଦୃଢ଼ତାର ସହିତ ବହୁ ସୁଦୂରପ୍ରସାରୀ ଫଳପ୍ରସୂ ପ୍ରକଳ୍ପର କାର୍ଯ୍ୟ ଆରମ୍ଭ କରିଦେଇଥିଲେ । ସେ ମୁଖ୍ୟମନ୍ତ୍ରୀ ଥିବାରୁ କଂଗ୍ରେସ ଅନୁଷ୍ଠାନ ମଧ୍ୟ ଶକ୍ତିଶାଳୀ ହେବାକୁ ଯାଉଥାଏ । ମୁଖ୍ୟମନ୍ତ୍ରୀ ହେବା ପୂର୍ବରୁ ସେ କେବେ ମନ୍ତ୍ରୀ ମଧ୍ୟ ନଥିଲେ । ତେଣୁ ମୁଖ୍ୟମନ୍ତ୍ରୀ ପଦ ଛାଡ଼ିବା ପ୍ରଶ୍ନ ତାଙ୍କ ପ୍ରତି ଆଦୌ ପ୍ରଯୁଜ୍ୟ ନଥିଲା । ଗୋଟିଏ ପ୍ରତିକ୍ରିୟାଶୀଳ ମିଳିତ ମନ୍ତ୍ରିମଣ୍ଡଳର ପତନ ଘଟାଇ ସେ କଂଗ୍ରେସକୁ ପ୍ରଥମଥରପାଇଁ ବିଧାନସଭାରେ ସଂଖ୍ୟାଗରିଷ୍ଠ କରି ରାଜ୍ୟର ଦାୟିତ୍ୱ ନେଇଥିବାରୁ ଜନସାଧାରଣଙ୍କ ମନରେ ନୂତନ ଆଶା ଜାଗ୍ରତ କରି ଅପୂର୍ବ ଉତ୍ସାହ ଉନ୍ମାଦନା ସଂଚାର କରିପାରିଥିଲେ । ଶ୍ରୀ ପଟ୍ଟନାୟକ ଓଡ଼ିଶାର ଉନ୍ନତି ଓ ଅଗ୍ରଗତିର ପ୍ରତୀକ

ଏବଂ ଆଶା ଓ ଭରସାରୂପେ ବିବେଚିତ ହେଉଥିଲେ ବୋଲି କହିଲେ ଚଳେ । ମାତ୍ର କଥାରେ ଅଛି, ''ଅବ୍ୟବସ୍ଥିତ ଚିତ୍ତସ୍ୟ ପ୍ରସାଦୋପି ଭୟଙ୍କର'' । ସମସ୍ତ ଦକ୍ଷତା, ପ୍ରଶାସନିକ ବିଚକ୍ଷଣତା ସତ୍ତ୍ୱେ ଶ୍ରୀ ବିଜୁ ପଟ୍ଟନାୟକ ଜଣେ ଅବ୍ୟବସ୍ଥିତ ଓ ଚଞ୍ଚଳମନା ବ୍ୟକ୍ତି ଥିଲେ । ମୁଁ ଆଗରୁ କହିଛି ଯେ ଜଣେ କମ୍ପାନୀ ପ୍ରମୋଟର୍ ସଦୃଶ ସେ ରାଜନୈତିକ କାର୍ଯ୍ୟକଳାପରେ ମଧ୍ୟ ସେହିପରି କୌଶଳ ପ୍ରୟୋଗ କରୁଥିଲେ । ଗୋଟିଏ ନୂଆକାର୍ଯ୍ୟର ସେ ଜଣେ ଉତ୍ସାହଦାତା ଓ ସ୍ରଷ୍ଟା; ମାତ୍ର କାର୍ଯ୍ୟଟି ସଂପୂର୍ଣ୍ଣ ସଂପାଦିତ ହେବାପାଇଁ ଅପେକ୍ଷା ନକରି କିଛିଦୂର ଆଗେଇନେବା ପରେ ତାକୁ ଛାଡ଼ି ଚାଲିଯିବା ବିଜୁ ପଟ୍ଟନାୟକଙ୍କର ପ୍ରକୃତି । ଏ ପ୍ରକାର ବ୍ୟକ୍ତିଙ୍କର ଅନୁଗ୍ରହ ମଧ୍ୟ ବେଳେ ବେଳେ ଲୋକଙ୍କ ପକ୍ଷରେ ଭୟଙ୍କର ହୋଇଥାଏ ଏବଂ ତା ପ୍ରକୃତରେ କିପରି ଭୟଙ୍କର ହୋଇଥିଲା ସେ ବିଷୟ ପରବର୍ତ୍ତୀ ଘଟଣାରୁ ଜଣାପଡ଼େ । ତାଙ୍କର ମୁଖ୍ୟମନ୍ତ୍ରୀ ପଦ ତ୍ୟାଗ କରିବା କଥାଟାକୁ ମୁଁ ଆଦୌ ଗ୍ରହଣ କରିପାରିନଥିଲି । ମୁଁ ଅତି କଟୁ ଭାଷାରେ ତାଙ୍କ ସିଦ୍ଧାନ୍ତ ଓ ଚିନ୍ତାଧାରାର ତୀବ୍ର ସମାଲୋଚନା କରିଥିଲି । ମୁଁ ତାଙ୍କୁ ସାବଧାନ କରାଇ କହିଥିଲି ଯେ ସେ ଅଯଥାରେ କୁର୍ସି ଛାଡ଼ିଯାଉଛନ୍ତି, ମାତ୍ର ଦିନେ ସେ ସେଥିପାଇଁ ଅନୁତପ୍ତ ହେବେ । କିନ୍ତୁ ମୁଁ ଦେଖିଥିଲି ଯେ ଶ୍ରୀ ବୀରେନ୍ ମିତ୍ର ମୁଖ୍ୟମନ୍ତ୍ରୀ ପଦ ଛାଡ଼ିବାପାଇଁ ବରଂ ଶ୍ରୀ ପଟ୍ଟନାୟକଙ୍କୁ ଉତ୍ସାହିତ କରୁଥିଲେ । କାରଣ ବୀରେନ୍‌ବାବୁ ଥିଲେ ଉପମୁଖ୍ୟମନ୍ତ୍ରୀ । ତେଣୁ ବିଜୁବାବୁ ଗଲେ ବୀରେନ୍‌ବାବୁ ମୁଖ୍ୟମନ୍ତ୍ରୀ ହେବା କଥାଟା ଥିଲା ନିଶ୍ଚିତ । ବିଜୁବାବୁଙ୍କ ଯିବା ଅପେକ୍ଷା ବୀରେନ୍‌ବାବୁ ମୁଖ୍ୟମନ୍ତ୍ରୀ ହେବା ଯେ ରାଜ୍ୟ ପକ୍ଷରେ ଗୋଟିଏ ବିପଦ ସେକଥା ମୁଁ ଭଲ ଭାବରେ ଉପଲବ୍ଧି କରିଥିଲି ଓ ସେଇଟାହିଁ ଥିଲା ମୋର ଆଶଙ୍କା । ଶ୍ରୀ ବିଜୁ ପଟ୍ଟନାୟକ କାମରାଜ ଯୋଜନାରେ ଉଦ୍‌ବୁଦ୍ଧ ହୋଇ ୧୯୬୩ ମସିହା ଅକ୍ଟୋବର ପହିଲା ତାରିଖରେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ । ଶ୍ରୀ ବୀରେନ୍ ମିତ୍ର ମୁଖ୍ୟମନ୍ତ୍ରୀ ଭାବରେ ଅକ୍ଟୋବର ଦୁଇ ତାରିଖରେ ଶପଥ ଗ୍ରହଣ କରିଥିଲେ । ଶ୍ରୀ ପବିତ୍ରମୋହନ ପ୍ରଧାନ ବୀରେନ୍‌ବାବୁଙ୍କ ମନ୍ତ୍ରିମଣ୍ଡଳରେ ରହିଲେ ନାହିଁ । ମାତ୍ର ଆମେ ସବୁ ଯେଉଁମାନେ ଶ୍ରୀ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳରେ ଥିଲୁ ବୀରେନ୍‌ବାବୁଙ୍କ ମନ୍ତ୍ରିମଣ୍ଡଳରେ ମଧ୍ୟ ରହିଲୁ । ଏହାଛଡ଼ା ଶ୍ରୀ ସତ୍ୟପ୍ରିୟ ମହାନ୍ତି ନୂଆକରି ଏହି ମନ୍ତ୍ରିମଣ୍ଡଳରେ ଯୋଗଦେଇଥିଲେ । ତା'ପରେ ଚାଲିଲା ବୀରେନ୍‌ବାବୁଙ୍କର ଦରବାରୀ ଶାସନ । ବୀରେନ୍‌ବାବୁଙ୍କ ଛଡ଼ା ଆଉ କେହି ସେତେବେଳେ ମୁଖ୍ୟମନ୍ତ୍ରୀ ହୋଇଥିଲେ ବିଜୁବାବୁ ବୋଧହୁଏ ସନ୍ତୁଷ୍ଟ ହୋଇନଥା'ନ୍ତେ; କାରଣ ସେ ବୁଝିଥିଲେ ଯେ ତାଙ୍କୁ ନପଚାରି ବୀରେନ୍‌ବାବୁ କୌଣସି କାର୍ଯ୍ୟ କରିବେନାହିଁ । ବିଜୁବାବୁ ଆହୁରି ଆଶ୍ୱସ୍ତ ହୋଇଥିଲେ ଯେତେବେଳେ ବୀରେନ୍‌ବାବୁ ଘୋଷଣା କଲେ ଯେ ବିଜୁବାବୁ ତାଙ୍କର ରାମଚନ୍ଦ୍ରଙ୍କ ଭଳି ବଡ଼ଭାଇ ଓ ସେ ତାଙ୍କର ସାନଭାଇ ଭରତ । ରାମଚନ୍ଦ୍ର ଯେତେବେଳେ ବନବାସ ଯାଇଥିଲେ ସେତେବେଳେ ଭରତ ଯେପରି ତାଙ୍କ କଠଉ ପୂଜା କରି ଶାସନ ଚଳାଉଥିଲେ ସେ ସେହି ଭରତଙ୍କ ଭଳି ବିଜୁବାବୁଙ୍କ କଠଉ ପୂଜା କରି ଶାସନକାର୍ଯ୍ୟ ପରିଚାଳନା କରିବେ । କଥାଟା ନିଶ୍ଚୟ ବିଜୁବାବୁଙ୍କ ମନକୁ ପାଇଥିଲା । କାମରାଜ ଯୋଜନାରେ ମୁଖ୍ୟମନ୍ତ୍ରୀ ପଦରୁ ସେ ବିଦାୟନେଇଥିଲେ; ମାତ୍ର ସଚିବାଳୟରେ ମୁଖ୍ୟମନ୍ତ୍ରୀଙ୍କ ଅଫିସ୍ ଘରଟି ଯୋଜନାବୋର୍ଡ଼ ଚେୟାରମ୍ୟାନ୍-ବିଜୁବାବୁଙ୍କପାଇଁ ରହିଲା । ମୁଖ୍ୟମନ୍ତ୍ରୀ ବୀରେନ୍‌ବାବୁ ଆଉ ଗୋଟିଏ ଛୋଟିଆ ଘରେ ଅଫିସ୍ କରି କାର୍ଯ୍ୟ ଚଳାଇଲେ । ମନେହେଲା ଯେପରି ବିଜୁବାବୁଙ୍କ କଠଉ ସ୍ଥାନାନ୍ତରିତ କରିବାକୁ ବୀରେନ୍‌ବାବୁ ଚାହିଁନଥିଲେ । ଏ ଘଟଣାଟି ଛୋଟିଆ ହୋଇପାରେ; କିନ୍ତୁ ଏହା ସଚିବାଳୟ ଓ ଶାସନକ୍ଷେତ୍ରରେ ପ୍ରତିକୂଳ ବାୟୁମଣ୍ଡଳ ସୃଷ୍ଟିକରିଥିଲା । ଅନେକ ଲୋକ ଏ କଥାଟାକୁ ଆଦୌ ପସନ୍ଦ କରିନଥିଲେ । ଶାସନର ସମସ୍ତ କାର୍ଯ୍ୟ ବିଜୁବାବୁଙ୍କର ଇଙ୍ଗିତରେ ପରିଚାଳିତ ହେଉଛି ବୋଲି ଲୋକମାନଙ୍କର ଧାରଣା ହୋଇଥିଲା ।

ଶ୍ରୀ ବୀରେନ୍ ମିତ୍ର ଜଣେ ଅତି ହୃଦୟବାନ୍ ବ୍ୟକ୍ତି ଥିଲେ; ମାତ୍ର ଶାସନ ଚଳାଇବାପାଇଁ ଯେଉଁ ଗୁଣ, ଗାମ୍ଭୀର୍ଯ୍ୟ ଓ ସହିଷ୍ଣୁତା ଆବଶ୍ୟକ ତାହା ତାଙ୍କ ନିକଟରେ ନଥିଲା । ପ୍ରଶାସନିକ ଆଚାର କ'ଣ

ସେ କଥା ବୁଝିବାକୁ ତାଙ୍କର ଧୈର୍ଯ୍ୟ ନଥିଲା । ପଦମର୍ଯ୍ୟାଦା ଓ ପ୍ରାସଙ୍ଗିକ ଶିଷ୍ଟାଚାର ପ୍ରତି ସେ ଭ୍ରୂକ୍ଷେପ କରୁନଥିଲେ । କୌଣସି ବିଷୟ ଘଣ୍ଟାଏ ପଢ଼ି ଶୁଣି ବୁଝିବାକୁ ତାଙ୍କର ଆଗ୍ରହ ନଥିଲା । ଜନତାର ନେତା ହିସାବରେ ସରକାରୀ କାର୍ଯ୍ୟର ଗୋପନୀୟତାକୁ ଖାତିର୍ ନଥିଲା । ସବୁ କଥାରେ ଅବ୍ୟବସ୍ଥିତ । ତାଙ୍କର କୌଣସି ନିଷ୍ପତ୍ତିରେ ସ୍ଥିରତା ନଥାଏ । ଉପସ୍ଥିତ ଲୋକମାନଙ୍କ ଅନୁନୟ, ବିନୟ ବା ପ୍ରଭାବ ଅନୁସାରେ ତାଙ୍କ ନିଷ୍ପତ୍ତିରେ ଘଡିକେ ଘୋଡା ଛୁଟେ । ସକାଳେ ଯଦି ଦଶ ଜଣ ଲୋକଙ୍କଠାରୁ ଗୋଟିଏ କଥା ଶୁଣି ସେ ଗୋଟିଏ ନିଷ୍ପତ୍ତି ଦେଇଛନ୍ତି, କିଛି ସମୟ ପରେ କୋଡ଼ିଏ ଜଣ ଆସି ତାଙ୍କୁ ଅନ୍ୟ କଥା ବୁଝାଇଦେଲେ ପ୍ରଥମ ନିଷ୍ପତ୍ତି ବଦଳିଯାଏ ଏବଂ ଆଉ କିଛି ସମୟ ପରେ ଆହୁରି ଅଧିକ ଲୋକ ଆସି ସେ ନିଷ୍ପତ୍ତି ବିରୁଦ୍ଧରେ କିଛି କହନ୍ତି ତ ସେଇଟା ମଧ୍ୟ ବଦଳିଯାଏ । ସବୁବେଳେ ତିରିଶ ଚାଳିଶ ଜଣ ଲୋକ ତାଙ୍କ ନିକଟରେ ବସିରହୁଥିଲେ ଏବଂ ସେହିମାନଙ୍କ ଆଗରେ ସେ ଅଫିସରମାନଙ୍କ ସହିତ ସରକାରୀ କାର୍ଯ୍ୟ ବିଷୟରେ ଆଲୋଚନା କରୁଥିଲେ । ସାଧୁ, ସନ୍ଥ, ଜ୍ୟୋତିଷ ଓ କରକୋଷ୍ଠି ଗଣକମାନଙ୍କ ଉପରେ ତାଙ୍କର ଅଗାଧ ବିଶ୍ୱାସ । ମୋର ମନେଅଛି, କଟକ କାଳିଆବୋଦା ବାବାଜିଙ୍କୁ ଦେଖିଲେ ସେ କିପରି ଲମ୍ୱାହୋଇ ଗୋଡ଼ତଳେ ପଡ଼ି ମୁଣ୍ଡିଆମାରନ୍ତି । କାଳିଆବୋଦା ବାବାଜି ଅସମ୍ଭବଭାବେ ପାନଖାଉଥିଲେ । ବାବାଜି ପାଟିରୁ କାଢ଼ି ପାନମୋଣ୍ଡାଏ ପକାଇଦେଲେ ବୀରେନ୍‌ବାବୁ ସଙ୍ଗେ ସଙ୍ଗେ ତାକୁ ନେଇ ନିଜ ପାଟିରେ ପୂରାଇ ପ୍ରସାଦ ଭଳି ଖାଇଯାଉଥିଲେ । ଆଉ ଜଣେ ବାବା କଟକ ଆସୁଥିଲେ । ତାଙ୍କୁ ଦେଖିଲାକ୍ଷଣି ବୀରେନ୍‌ବାବୁ ମଧ୍ୟ ଏହି ପ୍ରକାର ବ୍ୟବହାର କରୁଥିଲେ । ଜ୍ୟୋତିଷ କିମ୍ବା କରକୋଷ୍ଠି ଗଣକ ଆସିଲେ ବୀରେନ୍‌ବାବୁଙ୍କର ସବୁ ଅଫିସ୍‌କାର୍ଯ୍ୟ ବନ୍ଦହୋଇଯାଏ । ଅଳ୍ପ ସମୟ ମଧ୍ୟରେ ବୀରେନ୍‌ବାବୁଙ୍କ ସହ ସେମାନଙ୍କ କାର୍ଯ୍ୟ ସରେନାହିଁ । ଦିନେ ଦୁଇଦିନ ମଧ୍ୟ ସେମାନଙ୍କୁ ଅଟକାଇରଖି ସେମାନଙ୍କର ଗଣନା ବିଷୟରେ ପଚାରନ୍ତି । ସେମାନଙ୍କର ବେଶ୍ ଭଲଭାବରେ ଚର୍ଚ୍ଚାକରି ସେମାନଙ୍କୁ ସନ୍ତୁଷ୍ଟ କରି ବିଦାୟ ଦିଅନ୍ତି । ଯଦି ସେମାନେ ତାଙ୍କ ବିଷୟରେ କୌଣସି ଅନୁକୂଳ ମତ ଦିଅନ୍ତି ବା ତାଙ୍କର ଉନ୍ନତ ଭବିଷ୍ୟଦ୍ ଭାଗ୍ୟଫଳ କଥା କହନ୍ତି ବୀରେନ୍‌ବାବୁ ସେଥିରେ ସନ୍ତୁଷ୍ଟ ହୁଅନ୍ତିନାହିଁ । ନିର୍ଦ୍ଦିଷ୍ଟ କେଉଁ ବର୍ଷ କେଉଁ ମାସ ଓ ଦିନଠାରୁ ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତରେ ଭାଗ୍ୟଫଳ ଆରମ୍ଭ, ତାହା ଜାଣିବାକୁ ମଧ୍ୟ ସେ ଅତି ବ୍ୟାକୁଳ ହୋଇପଡ଼ନ୍ତି । ଜ୍ୟୋତିଷମାନଙ୍କର ଗଣନାକୁ ସେ ଗୁପ୍ତରେ ରଖିପାରନ୍ତିନାହିଁ । ଯେଉଁ ସମୟଠାରୁ ତାଙ୍କର ଭଲ ଦିନ ପଡ଼ିବ ବୋଲି ଜ୍ୟୋତିଷମାନେ କହନ୍ତି ସେ ସମସ୍ତଙ୍କୁ କହନ୍ତି ସେହି ସମୟ ପର୍ଯ୍ୟନ୍ତ ଅପେକ୍ଷା କରିବାପାଇଁ । ମୋତେ ଥରେ ବୀରେନ୍‌ବାବୁ କହିଥିଲେ ଯେ ତାଙ୍କୁ କୌଣସି ଜ୍ୟୋତିଷ କହିଯାଇଛନ୍ତି ଯେ ଅମୁକ ଦିନଠାରୁ ତାଙ୍କର ଭଲଦିନ ପଡ଼ିବ । "ଦେଖିବୁ ସେହିଦିନ ପରେ ମୁଁ ଚାନ୍ଦିରେ ହାତ ଦେଲେ ତାହା ସୁନା ହୋଇଯିବ ।" ଏଭଳି ଅନ୍ଧବିଶ୍ୱାସ ମୁଁ ଆଉ କାହାରିଠାରେ ଦେଖିବାକୁ ପାଇନଥିଲି । ସେଥିପାଇଁ ଅନେକ ଅବାଞ୍ଛିତ ଲୋକ ତାଙ୍କୁ ଶୋଷଣ କରିବାକୁ ଛାଡୁନଥିଲେ । ଆଉ ଗୋଟିଏ କଥା ଏଠାରେ ନ କହି ରହିପାରୁନାହିଁ । ଭାରତର ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀ ଗୁଲ୍‌ଜାରୀଲାଲ୍ ନନ୍ଦାଙ୍କ ପାଖରେ ପଣ୍ଡିତ ହାବିଳିରାମ ନାମକ ଜଣେ ଜ୍ୟୋତିଷ ଓ ଭବିଷ୍ୟତବକ୍ତା ଥିଲେ । ସେ ଜ୍ୟୋତିଷଙ୍କର ନନ୍ଦାଜୀଙ୍କ ଉପରେ ଖୁବ୍ ପ୍ରଭାବ ଥିଲା । ବୀରେନ୍‌ବାବୁଙ୍କର କଥାକଥିତ ଦୁର୍ନୀତି ବିଷୟରେ ନନ୍ଦାଜୀ ଅନୁସନ୍ଧାନ କରୁଥିଲେ । ବୀରେନ୍‌ବାବୁଙ୍କ ଉପରେ ନନ୍ଦାଜୀଙ୍କର ଖରାପ ଧାରଣା ବଦଳାଇବାପାଇଁ ଆମର କେତେକ ବନ୍ଧୁ ପଣ୍ଡିତ ହାବିଳିରାମଙ୍କୁ କହିଥିଲେ । ବୀରେନ୍‌ବାବୁ କିପରି ଦାନଧର୍ମ କରନ୍ତି ଓ ଦୁଃଖୀଲୋକଙ୍କୁ ମୁକ୍ତହସ୍ତରେ ସାହାଯ୍ୟ କରନ୍ତି ସେକଥା ହାବିଳିରାମଙ୍କୁ କୁହାଗଲା ଏବଂ ସେ ଯାଇ ନନ୍ଦାଜୀଙ୍କୁ କୁଆଡ଼େ ସେ ବିଷୟ କହିଥିଲେ । ଥରେ କାହାକୁ କିଛି ଖବର ନଦେଇ ଜ୍ୟୋତିଷ ହାବିଳିରାମ ମହାଶୟ ଗୁପ୍ତରେ ଭୁବନେଶ୍ୱରରେ ପହଞ୍ଚିଯାଇ ବୀରେନ୍‌ବାବୁଙ୍କ ଦାନଖଇରାତ ଓ ଦରବାର ଦେଖିଥିଲେ । ତା'ପରେ ସେ ଯେଉଁ ହୋଟେଲ୍‌ରେ ରହିଥିଲେ ସେହି

ହୋଟେଲ୍‌ରୁ ବୀରେନ୍‌ବାବୁଙ୍କୁ ଫୋନ୍ କରିଥିଲେ । ବୀରେନ୍‌ବାବୁ ଗାଡ଼ି ପଠାଇ ତାଙ୍କୁ ନିଜ ବାସଭବନକୁ ଆଣିଥିଲେ । ସେ ଦୁଇ ତିନି ଦିନ ଭୁବନେଶ୍ୱରରେ ରହିଥିଲେ । ପୁରୀ, କୋଣାର୍କ ପ୍ରଭୃତି ସ୍ଥାନକୁ ଯିବାପାଇଁ ତାଙ୍କର ବ୍ୟବସ୍ଥା କରାଯାଇଥିଲା । ଭୁବନେଶ୍ୱରରେ ରହିବା ସମୟରେ ସେ ପ୍ରତିଦିନ ବୀରେନ୍‌ବାବୁଙ୍କ ପାଖକୁ ଆସୁଥିଲେ । ହାବିଳିରାମ ଯେତେବେଳେ ଭୁବନେଶ୍ୱରରେ ଥିଲେ ସେତେବେଳେ ବୀରେନ୍‌ବାବୁଙ୍କର ଦରବାରରେ କିପରି ବେଶି ଭିଡ଼ ହେବ ଏବଂ ଦାନଖଇରାତ ଓ ଅନ୍ୟାନ୍ୟ ସାହାଯ୍ୟ ନେବା ଲୋକଙ୍କ ସଂଖ୍ୟା କିପରି ବୃଦ୍ଧିପାଇବ ସେଥିପ୍ରତି ଦୃଷ୍ଟି ଦିଆଯାଇଥିଲା । ଏହାର ଉଦ୍ଦେଶ୍ୟ ଥିଲା ଯେ ପଣ୍ଡିତ ହାବିଳିରାମ ଏସବୁ କଥା ଦେଖି ନନ୍ଦାଜୀଙ୍କ ପାଖରେ ସବୁ କଥା କହିବେ । ଏହାପରେ ହାବିଳିରାମଜୀ ବୀରେନ୍‌ବାବୁଙ୍କଠାରୁ ପାଞ୍ଚ ହଜାର ଟଙ୍କା ବିଦାକି ନେଇ ଦିଲ୍ଲୀ ପ୍ରତ୍ୟାବର୍ତ୍ତନ କରିଥିଲେ ।

ମୁଖ୍ୟମନ୍ତ୍ରୀ ବୀରେନ୍‌ବାବୁ ସରକାରୀ ଫାଇଲ୍ କାର୍ଯ୍ୟ କରିବାକୁ ସମୟ ପାଆନ୍ତିନାହିଁ । ତାଙ୍କର ସରକାରୀ ବାସଭବନରେ ଖାଲି ଦେହରେ ଲୁଙ୍ଗି ଖଣ୍ଡେ ପିନ୍ଧି ବସିଥାଆନ୍ତି । ସଚିବାଳୟ ଅଫିସ୍‌କୁ ଖୁବ୍ କମ୍ ଆସୁଥିଲେ । ସେ ସଚିବାଳୟ ଅଫିସ୍‌କୁ ଆସିଲେ ମୋ ପକ୍ଷରେ ସରକାରୀ କାର୍ଯ୍ୟ କରିବା ଅନେକ ସମୟରେ ଅସମ୍ଭବ ହୋଇପଡ଼େ । ସେ ତାଙ୍କର ସଚିବାଳୟ ଅଫିସ୍‌କୁ ଆସିଲେ ମୁଁ ଅନେକ ସମୟରେ ମୋର ଅଫିସ୍ ଘର କବାଟ ଭିତରୁ ବନ୍ଦକରି କାମକରେ । ତାହା କଲେ ମଧ୍ୟ ତାଙ୍କ ଦାଉରୁ ରକ୍ଷାନାହିଁ । ସେ ମୋର ଅଫିସ୍ ଦୁଆରମୁହଁରେ ଛିଡ଼ାହୋଇ କବାଟକୁ ଏପରି ଭାବରେ ଗୋଡ଼ହାତରେ ବାଡ଼ଉଥିଲେ ଯେ ସେ ଦୃଶ୍ୟ ଦେଖିବାପାଇଁ ଦୁଆରମୁହଁରେ ବହୁଲୋକ ରୁଣ୍ଡହୋଇଯାଆନ୍ତି । ତେଣୁ ବାଧ୍ୟହୋଇ ମୁଁ ଦୁଆର ଖୋଲି ବାହାରକୁ ଆସେ ଏବଂ ସେଦିନ ଆଉ କୌଣସି ସରକାରୀ କାର୍ଯ୍ୟ ହେବନାହିଁ ବୋଲି ଧରିନିଏ । ତାଙ୍କ ପାଖରେ ଅନେକ ସମୟରେ ଫାଇଲ୍ ଜମା ହୋଇ ଯାଉଥାଏ । ସେକ୍ରେଟେରୀମାନେ ଅନେକ ସମୟରେ ଆସି ନିଜନିଜର ଜରୁରୀ ଫାଇଲ୍ ହାତେ ହାତେ ନିଷ୍ପତ୍ତି କରାଇ ନେଉଥାଆନ୍ତି । ଆଉ ଅନେକ ଫାଇଲ୍ ମୁଖ୍ୟମନ୍ତ୍ରୀଙ୍କର ପର୍ସନାଲ୍ ଆସିଷ୍ଟାଣ୍ଟ ଶ୍ରୀ କୈଳାସ ଘୋଷ ଆଣି ତାଙ୍କ ପାଖରେ ଥୋଇ ଦସ୍ତଖତ କରାଇନେଉଥିଲେ । ସମୟସମୟରେ କେତେକ ଜଟିଳ ଫାଇଲ୍ ଆସେ ଯେଉଁଥିରେ ସେକ୍ରେଟେରୀଙ୍କ ମତ ସହିତ ସେ ଏକମତ ହୁଅନ୍ତିନାହିଁ । ସେ କ୍ଷେତ୍ରରେ ନିଜ ଭିନ୍ନମତ ଅନୁସାରେ ନିଷ୍ପତ୍ତି ନେବାକୁ ହେଲେ ଫାଇଲ୍‌ଟି ପଢ଼ି ଯୁକ୍ତିଯୁକ୍ତ ଆଦେଶ ଦେବାକୁ ପଡ଼େ । ତାଙ୍କର ପି.ଏ. କୈଳାସବାବୁ ସେସବୁ ଫାଇଲ୍ ଆଣି ମୋ ପାଖରେ ଥୋଇଦେଇ ମୁଖ୍ୟମନ୍ତ୍ରୀଙ୍କର ଇଚ୍ଛାଟା ମୋତେ କହିଦେଇଯାଆନ୍ତି । ମୁଁ ଫାଇଲ୍ ପଢ଼ାପଢ଼ି କରି ନୋଟ୍ ଡାକିଦେଇଥାଏ ଓ ସେ ତାକୁ ଦେଖି ଦସ୍ତଖତ କରନ୍ତି ।

## ପରଝିଅ ପିଲୁବେନ୍, ଘରପୁଅ ୱାଲ୍‌କଟ୍ !

ରାଜନୈତିକ ଦ୍ୱେଷ ମଣିଷକୁ କେତେ ତଳକୁ ଟାଣିନେଇପାରେ ତାହା ବୀରେନ୍‌ବାବୁଙ୍କର ମୁଖ୍ୟମନ୍ତ୍ରିତ୍ୱ ସମୟର ଗୋଟିଏ ଘଟଣା ଅନୁମାନ କରାଯାଇପାରେ । ଘଟଣାଟି ଘଟିଥିଲା ୧୯୬୩ ମସିହା ଡିସେମ୍ବର ମାସ ୨୮ ତାରିଖରେ, ଠିକ୍ ଭୁବନେଶ୍ୱର କଂଗ୍ରେସ ଅଧିବେଶନ ପୂର୍ବରୁ । ଭୁବନେଶ୍ୱର କଂଗ୍ରେସ ଅଧିବେଶନ ବେଳେ ସେବକ ହିସାବରେ ସାହାଯ୍ୟ କରିବାପାଇଁ କଂଗ୍ରେସ ସେବାଦଳ ସ୍ୱେଚ୍ଛାସେବକରୂପେ ତାଲିମ୍ ନେବାକୁ ବହୁ ଯୁବକ-ଯୁବତୀ ଆଗଭର ହୋଇଥିଲେ । ସେମାନଙ୍କୁ ତାଲିମ୍ ଦେବାପାଇଁ ଭାରତର ବିଭିନ୍ନ ସ୍ଥାନରୁ ଯେଉଁ ଅଭିଜ୍ଞ ସେବାଦଳ ଶିକ୍ଷକ-ଶିକ୍ଷୟିତ୍ରୀ ଆସିଥିଲେ ସେମାନଙ୍କ ମଧ୍ୟରେ ଥିଲେ ଜଣେ ପାର୍ସୀ ଯୁବତୀ । ସେ ବମ୍ବେରୁ ଆସିଥିଲେ । ଆମର ଏଠାରେ ସ୍ୱେଚ୍ଛାସେବକବାହିନୀ ଅନୁଷ୍ଠାନ ତଥା ଶ୍ରୀ ଭବାନୀ ଚରଣ ପଟ୍ଟନାୟକ ଓ ଆଶୁତୋଷ ସ୍ୱାଇଁ ପ୍ରଭୃତି କଂଗ୍ରେସ କର୍ମୀମାନେ ବୁଝୁଥିଲେ । କୁମାରୀ ପିଲୁବେନ୍ ଭୁବନେଶ୍ୱରରେ

ରହିବା ସମୟରେ ଦିନେ ଖଣ୍ଡଗିରି ପ୍ରଭୃତି କେତେକ ସ୍ଥାନ ଦେଖିବାପାଇଁ ଆଦିବାସୀମଙ୍ଗଳ ବିଭାଗର ଜଣେ ଅଫିସର୍‌ଙ୍କ ସହିତ ତାଙ୍କ ଜିପ୍ ଗାଡ଼ିରେ ଯାଇଥିଲେ । ଆଦିବାସୀ ଗ୍ରାମମଙ୍ଗଳ ବିଭାଗ କଂଗ୍ରେସ ଅଧିବେଶନପାଇଁ ଆୟୋଜିତ ବିରାଟ ପ୍ରଦର୍ଶନୀରେ ଭାଗନେଇଥିବାରୁ କର୍ମଚାରୀମାନେ ସାହାଯ୍ୟ ସହଯୋଗ କରୁଥିଲେ । ଖଣ୍ଡଗିରି ଓ ଉଦୟଗିରି ପ୍ରଭୃତି ସ୍ଥାନ ଦେଖି ଫେରିଲାବେଳେ ସେଇ ୨୮ ତାରିଖ ସନ୍ଧ୍ୟା ପ୍ରାୟ ଛ'ଟା ବେଳେ ଗୋଟିଏ ଟ୍ରକ୍ ଧକ୍କାରେ ଖଣ୍ଡଗିରି ଛକରେ ଜିପ୍‌ଟି ଅକସ୍ମାତ୍ ଦୁର୍ଘଟଣାଗ୍ରସ୍ତ ହେଲା । କୁମାରୀ ପିଲୁବେନ୍ ଜିପ୍ ଆଗସିଟ୍‌ରେ ଗୋଟିଏ ପାଖରେ ବସିଥିଲେ । ଅଫିସର୍ ଜଣକ ଗାଡ଼ି ଚଳାଉଥିଲେ । ଦୁର୍ଘଟଣାରେ ଆହତ ହୋଇ କୁମାରୀ ପିଲୁବେନ୍ ସଂଜ୍ଞାହୀନ ଅବସ୍ଥାରେ ସେହିଠାରେ ପଡ଼ିଥିଲେ । ସେହି ସମୟରେ ବ୍ରହ୍ମପୁରଆଡୁ ଦୁର୍ନୀତିନିବାରଣ ବିଭାଗର ଏସ୍.ପି. ଶ୍ରୀ ନଗେନ୍ ରାୟ ତାଙ୍କ ଗାଡ଼ିରେ ଆସୁଥିଲେ । ସେ ଉକ୍ତ ଝିଅଟିକୁ ଭୁବନେଶ୍ୱର ବଡ଼ଡାକ୍ତରଖାନାକୁ ନେଇ ଯାଇଥିଲେ । ଡାକ୍ତରଖାନାରେ ପହଞ୍ଚିଲାକ୍ଷଣି ଝିଅଟିର ମୃତ୍ୟୁ ହୋଇଯାଇଥିଲା । ମୁଁ ସେଦିନ ଭୁବନେଶ୍ୱରରେ ନ ଥିଲି, ମୋର କଟକ ଘରେ ଥିଲି । ଦୁର୍ନୀତି ନିବାରଣ ବିଭାଗର ଏସ୍.ପି. ଶ୍ରୀ ନଗେନ୍ ରାୟ କଟକରେ ମୋ ଘରକୁ ଯାଇ ଏହି ଦୁଃସମ୍ବାଦ ମୋତେ ଦେଇଥିଲେ । ଝିଅଟି ମରିଯିବା ପରେ ଭୁବନେଶ୍ୱରରୁ ବମ୍ବେ ଫୋନ୍ କରାଯାଇଥିଲା । ତା'ର ମୃତ ଶରୀରକୁ ଝାରସୁଗୁଡ଼ା ରେଳ ଷ୍ଟେସନ୍‌ରୁ ବମ୍ବେ ମେଲ୍‌ରେ ବମ୍ବେ ପଠାଇଦେବାପାଇଁ ବମ୍ବେରୁ ତା'ର ପରିବାରବର୍ଗଙ୍କଠାରୁ ନିର୍ଦ୍ଦେଶ ଆସିଥିଲା । ପାର୍ସୀ ସଂପ୍ରଦାୟର ଚିରାଚରିତ ରୀତି ଅନୁସାରେ ଶବକୁ ଗୋଟାମତେ ସେମାନଙ୍କର ଶବସଂସ୍କାର ସ୍ଥାନ Tower of Silence ଉପରେ ରଖିଦିଆଯାଏ ଏବଂ ସେଠାରେ ଶାଗୁଣା, ଚିଲ ପ୍ରଭୃତି ମାଂସାଶୀ ପକ୍ଷୀମାନେ ଆହାର କରନ୍ତି । ତେଣୁ ଶବକୁ କଟାକଟି କରି ମରଣୋତ୍ତର ପରୀକ୍ଷା (Postmortem) ନକରି ପୁଲିସ ତଦନ୍ତ ପରେ ଅକ୍ଷତଭାବରେ ଗାଡ଼ିରେ ପଠାଇଦେବାକୁ ଝିଅଟିର ଆତ୍ମୀୟସ୍ୱଜନମାନେ ଅନୁରୋଧ କରିଥିଲେ । ଏକଥା ଭୁବନେଶ୍ୱରରେ ଥିବା ମୁଖ୍ୟମନ୍ତ୍ରୀ ଓ ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ଦୃଷ୍ଟିକୁ ଅଣାଯାଇଥିଲା ଏବଂ ସେମାନେ ସେଥିରେ ଏକମତ ହେବାରୁ ଦୁଇ ତିନି ଜଣ ଡାକ୍ତରଙ୍କ ଉପସ୍ଥିତିରେ ଅପମୃତ୍ୟୁ ଘୋଷଣା ପରେ ପୁଲିସ ଶବକୁ ନେଇଯିବାପାଇଁ ଅନୁମତି ଦେଇଥିଲେ । ଏଭଳି ଅନୁମତି ଦେବା ମଧ୍ୟ ଆଇନସମ୍ମତ କାର୍ଯ୍ୟ । ଶବକୁ ଝାରସୁଗୁଡ଼ା ନିଆଯାଇ ବମ୍ବେ ମେଲ୍‌ରେ ପଠାଇଦିଆଯାଇଥିଲା ।

ତା'ପରେ ଚାଲିଲା ଦୋଷଦର୍ଶୀଙ୍କ କୁତ୍ସାବୟାନ । ଆମର ରାଜନୈତିକ ଶତ୍ରୁମାନେ ପ୍ରଚାର କରିବାକୁ ଲାଗିଲେ ଯେ କୁମାରୀ ପିଲୁବେନ୍ ସିଧୁଆଙ୍କ ଉପରେ ବଳାତ୍କାର ଅତ୍ୟାଚାର ଆମ୍ଭମାନଙ୍କ ଗୋଚରରେ ହୋଇଥିଲା ଏବଂ ଘଟଣାଟି ଚାପିଦେବା ଉଦ୍ଦେଶ୍ୟରେ ମରଣୋତ୍ତର ପରୀକ୍ଷା କରା ନ ଯାଇ ଶବକୁ ବମ୍ବେ ପଠାଇଦିଆଯାଇଥିଲା । ଯେତେବେଳେ ଜନକଂଗ୍ରେସ ଓ ସ୍ୱତନ୍ତ୍ରଦଳ ମିଳିତ ମନ୍ତ୍ରିମଣ୍ଡଳ ସମୟରେ ଆମ୍ଭମାନଙ୍କ ବିରୁଦ୍ଧରେ ବିଚାରପତି ଶ୍ରୀ ଖାନ୍ନାଙ୍କ ଅଧ୍ୟକ୍ଷତାରେ କମିଶନ ବସିଥିଲା, ସେତେବେଳେ ଅଭିଯୋଗ ଆସିଥିଲା ଯେ ମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ୍ ମିତ୍ର, ମୁଁ, ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀ ଜଗନ୍ନାଥ ରାଓ ଓ ଆଦିବାସୀ ବିଭାଗର ମନ୍ତ୍ରୀ ଶ୍ରୀ ଟି. ସାଙ୍ଗାନ୍ନା ପିଲୁବେନ୍‌ଙ୍କ ଉପରେ ହୋଇଥିବା ପାଶବିକ ଅତ୍ୟାଚାର ସହ ସଂପୃକ୍ତ । ବିଜୁବାବୁଙ୍କ ନାମ ମଧ୍ୟ କେତେକ ପ୍ରଚାରପତ୍ରରେ ଯୋଡ଼ାଯାଇଥିଲା ।

ଖାନ୍ନା କମିଶନ ଆଗରେ ମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ୍ ମିତ୍ର ଏ ସମ୍ବନ୍ଧରେ କିଛି ଜାଣନ୍ତିନାହିଁ ବୋଲି କହିଥିଲେ । ସ୍ୱାସ୍ଥ୍ୟମନ୍ତ୍ରୀ ଓ ଆଦିବାସୀ ମଙ୍ଗଳ ବିଭାଗର ମନ୍ତ୍ରୀ ମଧ୍ୟ କମିଶନ ଆଗରେ ସେହିପରି ଭାବରେ କହିଥିଲେ । ଖାନ୍ନା କମିଶନ ଆଗରେ ମୁଁ କହିଥିଲି ଯେ ଜୀବିତ ବା ମୃତ କୁମାରୀ ପିଲୁବେନ୍‌ଙ୍କୁ ମୁଁ ସ୍ୱଚକ୍ଷୁରେ ଦେଖିନଥିଲି । ମାତ୍ର ପରଦିନ କଟକରୁ ଭୁବନେଶ୍ୱର ଆସିବା ପରେ ଦୁର୍ଘଟଣା ସମ୍ବନ୍ଧୀୟ ସମସ୍ତ କଥା ଅନୁଧ୍ୟାନ କରି ବୁଝିଥିଲି । ପାର୍ସୀ ସଂପ୍ରଦାୟର ଚିରାଚରିତ

ଶବସଂସ୍କାର ରୀତି ପ୍ରତି ସମ୍ମାନ ଦେଖାଇବାପାଇଁ ଶବକୁ ବ୍ୟବଚ୍ଛେଦ ନକରି କେବଳ ପୁଲିସ ତଦନ୍ତ ପରେ ବମ୍ବେ ପଠାଇ ଦିଆଯାଇଛି । ପୁଲିସର କାର୍ଯ୍ୟକୁ ରାଜ୍ୟ ସରକାର ଅନୁମୋଦନ କରିଥିଲେ ବୋଲି ମୁଁ ଖାନ୍ନା କମିଶନ ଆଗରେ ଜଣାଇଥିଲି । କମିଶନ ମୋ କଥାକୁ ଗ୍ରହଣ କରିଥିଲେ ଏବଂ ତାଙ୍କ ରିପୋର୍ଟର ୬୮୯ ପୃଷ୍ଠାରେ କହିଥିଲେ, "There is nothing to indicate that the respondents did anything in the matter. I therefore, hold that there is no substance in the chrge contained in the allegation." ଅଭିଯୋଗକାରୀମାନଙ୍କର ରୁଚି କି ପ୍ରକାର ତା ମଧ୍ୟ ଏହି ଘଟଣାରୁ ଜଣାପଡୁଛି । କିନ୍ତୁ ବୀରେନ୍‌ବାବୁ ଏସବୁ କଥାରେ ଡରିଯାଆନ୍ତି । ମୁଁ ପୁଲିସ ଅଫିସର୍‌ଙ୍କ ସହ କଥାବାର୍ତ୍ତା କରି ବୁଝିଥିଲି ଯେ ମୁଖ୍ୟମନ୍ତ୍ରୀଙ୍କର ନିର୍ଦ୍ଦେଶ ଅନୁସାରେ ସେମାନେ କାର୍ଯ୍ୟ କରିଥିଲେ । ଏହା ସତ୍ତ୍ୱେ ବୀରେନ୍‌ବାବୁ ଏସବୁ କଥାକୁ ଅସ୍ୱୀକାର କରିବାଟାକୁ ମୁଁ ଆଦୌ ପସନ୍ଦ କରିନଥିଲି । ସେ କଥା ମଧ୍ୟ ମୁଁ ତାଙ୍କୁ କହିଥିଲି । ଏହାଦ୍ୱାରା ଅଫିସରମାନଙ୍କ ଆଗରେ ମନ୍ତ୍ରୀମାନଙ୍କର ମର୍ଯ୍ୟାଦା ହାନି ହେଉଛି ବୋଲି ମୁଁ ମୁଖ୍ୟମନ୍ତ୍ରୀଙ୍କୁ ସୂଚାଇଦେଇଥିଲି । ମଢ଼ ପଡ଼ିଲେ ଶାଗୁଣାମାନେ ଯେଉଁଠି ଥାଆନ୍ତୁ ପଛେ ଆସି ସେଠାରେ ପହଞ୍ଚିଯାଆନ୍ତି । ସେହିପରି ବିଚାରୀ ପିଲୁବେନ୍‌ଙ୍କ ମୃତ୍ୟୁପରେ ଅପବାଦ ରଟନାକାରୀମାନଙ୍କ ଚରିତ୍ର ଚିତ୍ରଗୁପ୍ତଙ୍କ ପାଞ୍ଜିରେ ଲିପିବଦ୍ଧ ହୋଇଥିବ ନିଶ୍ଚୟ । ସୁଦୂର ବମ୍ବେର ବିଚାରୀ ପାର୍ସୀ-ଯୁବତୀ କୁମାରୀ ପିଲୁବେନ୍ ଓଡ଼ିଶା ଭୂଇଁରେ ଜାତୀୟ କଂଗ୍ରେସର ସ୍ୱେଚ୍ଛାସେବିକାରୂପେ ଶେଷ ରକ୍ତ ଟିକକ ଢାଳିଦେଇ ଶେଷନିଃଶ୍ୱାସ ତ୍ୟାଗକଲା । ଏ ଓଡ଼ିଶାବାସୀ କ'ଣ ସତେ ଏପରି ନିଷ୍ଠୁର, ଅନୁଦାର, ନୀଚ ? ଆମେ 'ଆହା' ପଦେ କହିଲୁନାହିଁ । ଆମେ ଭାଇ ବିଦ୍ୱେଷରେ ମାତି ସୁଦୂରାଗତା ସ୍ୱର୍ଗତା ପରଝିଅଟି ନାଆଁରେ ଅପବାଦ ରଟାଇ ବାହାବା ନେଲୁ !

ସେହିଭଳି ଆଉ ଗୋଟିଏ ରହସ୍ୟଜନକ ଅଭିଯୋଗ କଥା ମନେପଡୁଛି । ୱାଲ୍‌କଟ୍ ନାମକ ଜଣେ ଆମେରିକାନ୍ ଆନ୍ତର୍ଜାତିକ ଚୋରା ସୁନା ଚାଲାଣକାରୀର କଥା ୧୯୬୪ ଓ ୧୯୬୫ ମସିହାରେ ଖୁବ୍ ଶୁଣାଯାଉଥିଲା । ଆମ ଦେଶକୁ ଆସି ସେ ବମ୍ବେ ପ୍ରଭୃତି କେତେକ ସ୍ଥାନରେ ଚୋରା ବ୍ୟବସାୟୀଙ୍କ ସହିତ ସମ୍ପର୍କ ରଖି ଚୋରା ସୁନା କାରବାର କରୁଥିବାର ଖବର ସେତେବେଳେ ଖବରକାଗଜମାନଙ୍କରେ ପ୍ରକାଶପାଉଥିଲା । ୱାଲ୍‌କଟ୍ ତାଙ୍କ ନିଜ ଉଡ଼ାଜାହାଜରେ ଚୋରା ସୁନା ଆଣି ସମୁଦ୍ରକୂଳ ପ୍ରଭୃତି ସ୍ଥାନମାନଙ୍କରେ ଓହ୍ଲାଇ ଚୋରା ବ୍ୟବସାୟୀମାନଙ୍କୁ ସୁନା ଦେଉଥିବାର ଖବର ମଧ୍ୟ ଶୁଣାଯାଉଥିଲା । ୱାଲ୍‌କଟ୍‌ଙ୍କ ସହିତ ଶ୍ରୀ ବିଜୁ ପଟ୍ଟନାୟକଙ୍କ ନାମ ଯୋଡ଼ିବାକୁ ତତ୍କାଳୀନ ସମାଜବାଦୀନେତା ଲୋକସଭା ସଦସ୍ୟ ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ କେବେ ପଛାଉ ନ ଥିଲେ । ବିଜୁବାବୁଙ୍କ ନାମରେ କୁତ୍ସାରଟନା କରିବା ସେତେବେଳେ ଶ୍ରୀ ଦ୍ୱିବେଦୀଙ୍କର ଏକରକମ ଦୈନନ୍ଦିନ ଅଭ୍ୟାସ ହୋଇଯାଇଥିଲା । କେବଳ ବିଜୁ ପଟ୍ଟନାୟକଙ୍କ କୁତ୍ସାରଟନା ଶ୍ରୀ ଦ୍ୱିବେଦୀଙ୍କୁ ସର୍ବଭାରତୀୟ ନେତା ସୋପାନକୁ ଯିବାରେ ସହାୟକ ହେଲାଭଳି ଘଟିଥିଲା । ୧୯୬୫ ମସିହା ଜୁନ୍ ମାସ ପନ୍ଦର ତାରିଖ ରାତି ପ୍ରାୟ ଦଶ ଘଣ୍ଟା ସମୟରେ ଭୁବନେଶ୍ୱର ବିମାନଘାଟୀ ଉପରେ ଗୋଟିଏ ବିମାନ ବହୁସମୟ ଘୂରିବୁଲୁଥିବାର ମୁଁ ଲକ୍ଷ୍ୟ କରିଥିଲି । ସେ ବିମାନଟି ସମ୍ବନ୍ଧରେ ମୋର ସନ୍ଦେହ ହେବାରୁ ମୁଁ ବିଜୁବାବୁଙ୍କ ବିମାନଘାଟି ପାଖରେ ଥିବା ଘରକୁ ଫୋନ୍ କରିଥିଲି । ସେ ସେତେବେଳକୁ ଶୋଇଥିଲେ । ତାଙ୍କୁ ଉଠାଇବାପାଇଁ ତାଙ୍କ ଖାନ୍‌ସମାକୁ କହିଥିଲି । ବିଜୁବାବୁ ଫୋନ୍ ଧରିବାରୁ ମୁଁ ତାଙ୍କୁ ବିମାନଘାଟି ଉପରେ ଉଡୁଥିବା ବିମାନଟି କଥା କହିଥିଲି । ସେ ବାହାରକୁ ଯାଇ ବିମାନଟି ଘୂରୁଥିବାର ଦେଖିଥିଲେ ଏବଂ ସଙ୍ଗେ ସଙ୍ଗେ ବିମାନଘାଟିକୁ ବାହାରି ପଡ଼ିଥିଲେ । ବିମାନଟି ବିପଦରେ ପଡ଼ିଛି ବୋଲି ସେ ବୁଝିପାରିଥିଲେ । ଭୁବନେଶ୍ୱର ବିମାନ ବନ୍ଦରରେ ବିମାନଟି ଓହ୍ଲାଇବାକୁ ଚାହୁଁଥିଲା, ମାତ୍ର ବିମାନବନ୍ଦରରେ ରାତ୍ରିରେ ବିମାନ ଅବତରଣ କରିବାର ସୁବିଧା ସେତେବେଳେ ନଥିଲା ।

ବିଜୁବାବୁ ବିମାନ ଚଳାଇବା ସମ୍ବନ୍ଧରେ ଜଣେ ସାହସୀ ଓ ଅଭିଜ୍ଞ ବ୍ୟକ୍ତି ଥିଲେ । ସେ ତାଙ୍କର ଉପସ୍ଥିତବୁଦ୍ଧି ଓ ସାହସର ପରିଚୟ ଦେଇଥିଲେ । ବିଜୁବାବୁ ବିମାନବନ୍ଦର ଭିତରକୁ ଗାଡ଼ି ନେଇ ବିମାନ ଓହ୍ଲାଇବା ରାସ୍ତା (runway) ଉପରେ ମଟରଗାଡ଼ିର ଉଜ୍ଜ୍ୱଳ ଆଲୁଅ ପକାଇଥିଲେ ଏବଂ ସେହି ଆଲୋକିତ ରନ୍‌ଓଏ ଉପରେ ବିପଦଗ୍ରସ୍ତ ବିମାନଟି ନିରାପଦରେ ଅବତରଣ କରିଥିଲା । ସଙ୍ଗେ ସଙ୍ଗେ ଡାକରା ପାଇ ପୁଲିସ କର୍ମଚାରୀ, ଦମକଳ ଏବଂ ଓଡ଼ିଶା ସରକାରଙ୍କ ଚିଫ୍ ପାଇଲଟ୍ ଅଫିସର ମଧ୍ୟ ସେଠାରେ ପହଞ୍ଚିଥିଲେ ।

ଜଣାଗଲା ଯେ ବିମାନଟି ଆମେରିକାର ଗୋଟିଏ ଘରୋଇ କମ୍ପାନୀର । ବିମାନଟି କରାଚୀରୁ କଲିକତା ଅଭିମୁଖେ ଯାଉଥିଲା । ବାଟରେ ପାଗ ଖରାପ ଯୋଗୁଁ ଘୂରି ଘୂରି ତା'ର ପେଟ୍ରୋଲ ସରିବା ଉପରେ ଥିଲା, ତେଣୁ ଭୁବନେଶ୍ୱର ବିମାନବନ୍ଦର ଦେଖି ସେଠାରେ ଓହ୍ଲାଇବାକୁ ଉଦ୍ୟମ କରୁଥିଲା । ମାତ୍ର ବିମାନବନ୍ଦରରେ ଆଲୁଅ ନଥିବାରୁ ଅନନ୍ୟୋପାୟ ପାଇଲଟ୍ ଉପରେ ଘୂରି ନିରାପଦ ଲ୍ୟାଣ୍ଡିଂ ପାଇଁ ଚେଷ୍ଟା କରୁଥିଲେ । ପାଇଲଟ୍‌ଙ୍କ ନାମ ଥିଲା ମିଷ୍ଟର ଡେଭିସ୍ ଏବଂ ସେ ଜଣେ ଆମେରିକାନ୍ । ବିମାନବନ୍ଦର ଆଇନ ଅନୁସାରେ ବିମାନଟିକୁ ସଙ୍ଗେ ସଙ୍ଗେ ଜବତ କରାଯାଇଥିଲା ଏବଂ ପାଇଲଟ୍‌କୁ ରାଜ୍ୟସରକାରଙ୍କର ଅତିଥିଭବନରେ ପୁଲିସ ପହରାରେ ରଖାଯାଇଥିଲା । କେନ୍ଦ୍ର ତଦନ୍ତ ବ୍ୟୁରୋ, କେନ୍ଦ୍ର ଶୁଳ୍କ ବିଭାଗ ପ୍ରଭୃତିଙ୍କୁ ସେହି ରାତିରେ ଖବର ଦିଆଯାଇଥିଲା । ତା'ପରଦିନ ଶ୍ରୀ ହରେକୃଷ୍ଣ ମହତାବଙ୍କର ପ୍ରଜାତନ୍ତ୍ର କାଗଜରେ ବିଜୁବାବୁଙ୍କ ଉପସ୍ଥିତିରେ ନିଶୀଥରେ ଭୁବନେଶ୍ୱର ବିମାନବନ୍ଦରରେ ବିମାନଟି ଓହ୍ଲାଇବା କଥା ଲେଖି 'କଟକରେ ସୁନାଦର କମିଲା' ଶୀର୍ଷକ ସମ୍ବାଦଟିଏ ଗ୍ରାମ୍ୟଚତୁରତା ସହକାରେ ପରିବେଷଣ କରାଯାଇଥିଲା । ଗୁଜବ ରଟନା କରିଦିଆଯାଇଥିଲା ଯେ ଉଆଲକଟ୍ ଚୋରା ସୁନା ଆଣି ବିଜୁବାବୁଙ୍କୁ ଦେଇଦେଇଛି । ଶ୍ରୀ ଦ୍ୱିବେଦୀଙ୍କୁ ମଧ୍ୟ ଖୋରାକ୍ ମିଳିଗଲା । ପ୍ରଜାତନ୍ତ୍ରରେ ମୋର କେତେକ ବନ୍ଧୁ ଥାଆନ୍ତି । ସେମାନଙ୍କୁ ଫୋନ୍ କରି ପଚାରିଥିଲି ଏ ପ୍ରକାର ସମ୍ବାଦ ତାଙ୍କ କାଗଜରେ କିପରି ବାହାରିଲା ବୋଲି । ସେମାନେ କହିଲେ ଯେ ସେଟା ଥିଲା ସ୍ୱୟଂ କର୍ତ୍ତାଙ୍କର ସମ୍ବାଦ । ମୁଁ ବଡ଼ ଅସୁଖୀ ଅନୁଭବ କରିଥିଲି । ମୁଁ ଭାବିଥିଲି ଜଣେ ନିରୀହ ଭଦ୍ରଲୋକ ଶୋଇଥିଲା, ମୁଁ ତାକୁ ଉଠାଇ ବିପଦରେ ପକାଇଦେଲି । କେନ୍ଦ୍ର ଗୁଇନ୍ଦା ବିଭାଗର ବଡ଼ ବଡ଼ ଅଫିସରମାନେ ପରଦିନ ଆସି ଭୁବନେଶ୍ୱରରେ ପହଞ୍ଚିଯାଇଥିଲେ । କେନ୍ଦ୍ର ତଦନ୍ତ ବ୍ୟୁରୋର ଅଫିସରମାନେ ମଧ୍ୟ ଆସିଥିଲେ । ଉଡ଼ାଜାହାଜ ଭିତରେ କୌଣସିଠାରେ ସୁନା ଲୁଚାଇ ରଖାଯାଇଛି କି ନା ସେ ବିଷୟ ଜାଣିବାର ଯନ୍ତ୍ର ମଧ୍ୟ ଅଣାଯାଇଥିଲା । କଲିକତାରେ ଥିବା ଆମେରିକା ଦୂତାବାସରୁ ମଧ୍ୟ ଅଫିସରମାନେ ଆସିଥିଲେ । ବିମାନଟିର ବହୁ ଅଂଶ ଖୋଲି ଦେଖାଯାଇଥିଲା– କିଛି ବାହାରିଲାନାହିଁ । ସବୁପ୍ରକାର ଅନୁସନ୍ଧାନ କଲା ପରେ ଜଣାଗଲା ଯେ ବିମାନଚାଳକ ଉଆଲକଟ୍ ନୁହେଁ ଡେଭିସ୍ । ବିମାନଟି ଆମେରିକାର ଗୋଟିଏ ଘରୋଇ କମ୍ପାନୀର । ଫର୍ମୋଜା ଦେଶର ଟାଇପେ ସହରର ଜଣେ ବ୍ୟକ୍ତି ସେ ଉଡ଼ାଜାହାଜଟି କିଣିଥିଲା । କ୍ରେତାଙ୍କୁ ଉଡ଼ାଜାହାଜଟି ହସ୍ତାନ୍ତର କରିବାପାଇଁ ପାଇଲଟ୍ ଡେଭିସ୍ ଫର୍ମୋଜା ଯାଉଥିଲା । ବାଟରେ ବିପଦଗ୍ରସ୍ତ ହୋଇ ଭୁବନେଶ୍ୱର ବିମାନଘାଟି ଉପରେ ଘୂରୁଥିଲା ଏବଂ ବିଜୁବାବୁଙ୍କ ଉପସ୍ଥିତ ବୁଦ୍ଧି ହେତୁ ବିମାନଟି ସହିତ ପାଇଲଟ୍‌ର ପ୍ରାଣ ରକ୍ଷାପାଇଥିଲା । ଏହାହିଁ ହେଲା କେନ୍ଦ୍ର ଗୁଇନ୍ଦା ବିଭାଗ ସମେତ ଅନ୍ୟାନ୍ୟ ତଦନ୍ତକାରୀଙ୍କ ରିପୋର୍ଟ ।

## ଜେସୋରର ପଦଧ୍ୱନି ରାଉରକେଲା ରାଏଟ୍

୧୯୬୬ର ରାଉରକେଲା ସାଂପ୍ରଦାୟିକ ଦଙ୍ଗା ଓଡ଼ିଶା ଇତିହାସରେ ଗୋଟିଏ କଳଙ୍କ । ଏହା ପୂର୍ବରୁ ଆମ ରାଜ୍ୟରେ ଏପରି ଭାବରେ ସାଂପ୍ରଦାୟିକ ଦଙ୍ଗା କେବେ ହୋଇନଥିଲା । ରାଉରକେଲା

ସହର ଆଧୁନିକ ଶିଳ୍ପ ସଭ୍ୟତାର ପ୍ରଭାବରେ ଗଢ଼ି ଉଠିଛି ଏକ ଅନୁନ୍ନତ ଘଞ୍ଚ ଅରଣ୍ୟ ଅଞ୍ଚଳ ଭିତରେ । ଏକ ଶାନ୍ତ ଆଦିମ ଜନଜୀବନକୁ ପଛରେ ପକାଇ ଦେଇ ସେଠାରେ ଏକ ନୂଆ କସ୍‌ମୋପଲିଟାନ୍ ଜୀବନ ସୃଷ୍ଟିହେଲା ସମାଜରେ ବହୁ ବାଞ୍ଛିତ ଓ ଅବାଞ୍ଛିତ ଘାତ ପ୍ରତିଘାତ ସୃଷ୍ଟି କରି । ଲୁହା କାରଖାନା କାମ ଆରମ୍ଭ ହେବା ପରଠାରୁ ଅତି ଅଳ୍ପ ସମୟ ଭିତରେ ରାଉରକେଲାର ଲୋକସଂଖ୍ୟା ଖୁବ୍ ବଢ଼ିଗଲା । ଆଗନ୍ତୁକ ନୂଆ ବାସିନ୍ଦାମାନଙ୍କ ଭିତରୁ ଅଧିକାଂଶ ଏ ରାଜ୍ୟର ବାସିନ୍ଦା ନଥିଲେ । ବିଭିନ୍ନ ଧର୍ମ ଓ ମତାବଲମ୍ବୀ ଲୋକ ମଧ୍ୟ ଏଠାରେ ବସତି କଲେଣି । ସେଠିକାର ବାସିନ୍ଦାଙ୍କ ମଧ୍ୟରୁ ପୂର୍ବରୁ ମୁସଲମାନମାନଙ୍କର ସଂଖ୍ୟା ଖୁବ୍ କମ୍ ଥିଲା । ମାତ୍ର ଲୁହା କାରଖାନା ବସିବା ପରେ ଅନ୍ୟାନ୍ୟ ସ୍ଥାନରୁ ବହୁ ମୁସଲମାନ ଜୀବିକା ଖୋଜି ଆସି ସେଠାରେ ରହିବାକୁ ଆରମ୍ଭ କରିଥିଲେ । ସୁନ୍ଦରଗଡ଼ ଜିଲ୍ଲାଟି ଆଦିବାସୀବହୁଳ ଅଞ୍ଚଳ । ରାଉରକେଲା ଆଖପାଖ ଅଞ୍ଚଳଗୁଡ଼ିକ ଆଦିବାସୀମାନଙ୍କଦ୍ୱାରା ଭରପୂର । ସାଧାରଣତଃ ଆଦିବାସୀମାନେ ସାଂପ୍ରଦାୟିକ ଗଣ୍ଡଗୋଳରେ ଭାଗ ନିଅନ୍ତିନାହିଁ । କିନ୍ତୁ ଏଥର ରାଉରକେଲାରେ ଘଟିଥିବା ସାଂପ୍ରଦାୟିକ ଦଙ୍ଗାରେ ସେମାନଙ୍କ ପକ୍ଷରୁ ମଧ୍ୟ ଖୁବ୍ ଜୋର୍‌ସୋର୍‌ରେ ଆକ୍ରମଣ ହୋଇଥିଲା ।

ସେହି ବର୍ଷ ମାର୍ଚ୍ଚ ମାସରେ ପ୍ରାୟ ଅଧିକାଂଶ ଦିନ ପଶ୍ଚିମ ବଙ୍ଗଳାରୁ ତତ୍କାଳୀନ ପୂର୍ବ ପାକିସ୍ତାନର ହିନ୍ଦୁ ଶରଣାର୍ଥୀମାନଙ୍କୁ ସ୍ୱତନ୍ତ୍ର ଟ୍ରେନ୍ ଯୋଗେ ହଜାର ହଜାର ସଂଖ୍ୟାରେ ମଧ୍ୟପ୍ରଦେଶରେ ଥିବା ମାନା ଶରଣାର୍ଥୀ ଶିବିର ଏବଂ ଓଡ଼ିଶାର କୋରାପୁଟ ଜିଲ୍ଲାରେ ଥିବା ଦଣ୍ଡକାରଣ୍ୟ ଶରଣାର୍ଥୀ ଶିବିରକୁ ନିଆଯାଉଥିଲା । ରାଉରକେଲା ଷ୍ଟେସନ୍‌ରେ ଏହି ଗାଡ଼ିସବୁ ରହେ । ପ୍ରତ୍ୟେକ ସ୍ପେଶାଲ୍ ଟ୍ରେନ୍‌ରେ ପ୍ରାୟ ଦୁଇ ହଜାର ଯାଏଁ ଶରଣାର୍ଥୀଙ୍କୁ ନିଆଯାଉଥିଲା । ଗାଡ଼ିଗୁଡ଼ିକ ଯେଉଁସବୁ ଷ୍ଟେସନ୍‌ରେ ରହୁଥାଏ, ସେଠାକାର ହିନ୍ଦୁ ଲୋକେ ଶରଣାର୍ଥୀମାନଙ୍କୁ ଖାଇବାକୁ ଦେଇଥିଲେ । ରାଉରକେଲାର ହିନ୍ଦୁ ସଂପ୍ରଦାୟର ଲୋକେ ଶରଣାର୍ଥୀମାନଙ୍କୁ ଖାଇବାକୁ ଦେବାପାଇଁ ଗୋଟିଏ କମିଟି ଗଠନ କରିଥିଲେ । ଶରଣାର୍ଥୀ ଗାଡ଼ିଗୁଡ଼ିକ ଯେତେବେଳେ ରାଉରକେଲା ଦେଇ ଯାଏ ମଝିରେ ମଝିରେ ଶରଣାର୍ଥୀମାନଙ୍କ ଉପରେ ତତ୍କାଳୀନ ପୂର୍ବ ପାକିସ୍ତାନ ମୁସଲମାନମାନଙ୍କର ଅତ୍ୟାଚାର ସମ୍ବନ୍ଧରେ ନାନା ଗୁଜବ ମଧ୍ୟ ରଚନା କରି ଦିଆଯାଇଥିଲା । ଦିନେ ଗାଡ଼ିରେ ଯାଉଥିବା ଶରଣାର୍ଥୀମାନଙ୍କ ମଧ୍ୟରୁ ଜଣେ ରାଉରକେଲା ଷ୍ଟେସନ୍‌ରେ ଜଣେ ମୁସଲ୍‌ମାନ ହକର୍‌ଠାରୁ ପାଉଁରୁଟି କିଣି ଖାଇବା ପରେ ବାନ୍ତି କରିବାକୁ ଲାଗିଲେ । ପ୍ରଚାର କରି ଦିଆଗଲା ଯେ ମୁସଲମାନମାନେ ଶରଣାର୍ଥୀମାନଙ୍କୁ ବାଟରେ ବିଷ ମିଶାଯାଇଥିବା ଖାଦ୍ୟ ଦେଇ ମାରିଦେବାର ଷଡ଼ଯନ୍ତ୍ରରେ ଅଛନ୍ତି । ଆହୁରି ପ୍ରଚାର କରିଦିଆଯାଇଥିଲା ଯେ ଶରଣାର୍ଥୀମାନଙ୍କ ମଧ୍ୟରେ ଉକ୍ତ ସ୍ୱତନ୍ତ୍ର ଟ୍ରେନ୍‌ରେ ଅନେକ ସ୍ତ୍ରୀଲୋକ ଅଛନ୍ତି; ଯେଉଁମାନଙ୍କର ସ୍ତନ ମୁସଲମାନମାନେ କାଟିଦେଇଛନ୍ତି । ଏହା ସଂପୂର୍ଣ୍ଣ ଅସତ୍ୟ । ତଥାପି ଗୁଜବ ଶୁଣି ଲୋକେ ଉତ୍ତ୍ୟକ୍ତ ହୋଇଉଠିଲେ । ଶରଣାର୍ଥୀମାନଙ୍କର ସାହାଯ୍ୟ ପାଇଁ ରାଉରକେଲାରେ ଯେଉଁ କମିଟି ଗଠିତ ହୋଇଥିଲା, ସେଥିରେ ରାଷ୍ଟ୍ରୀୟ ସ୍ୱଂୟ ସେବକ ସଂଘର କେତେକ ଲୋକ ମଧ୍ୟ ଥିଲେ । ସେମାନେ ମଧ୍ୟ ହିନ୍ଦୁମାନଙ୍କ ଉପରେ ମୁସଲମାନମାନଙ୍କ ଅତ୍ୟାଚାର ସଂପର୍କରେ ଅନେକ ମନଗଢ଼ା କାହାଣୀ ଓ ଗୁଜବ ପ୍ରଚାର କରିବାକୁ ଲାଗିଲେ । ମାର୍ଚ୍ଚ ଉଣେଇଶ ତାରିଖ ଦିନ ଖୁବ୍ ସକାଳୁ ଷ୍ଟେସନ୍‌ରେ ଶରଣାର୍ଥୀମାନଙ୍କୁ ଖାଇବାକୁ ଦେବା ସମୟରେ ସେଠାରେ ଥିବା ଦୁଇ ତିନିଜଣ ମୁସଲମାନଙ୍କୁ ସନ୍ଦେହ ଚକ୍ଷୁରେ ଦେଖି କେତେକ ଲୋକଙ୍କ ପକ୍ଷରୁ ସେମାନଙ୍କୁ ସେଠାରୁ ଚାଲିଯିବାପାଇଁ କୁହାଯାଇଥିଲା । ସେମାନେ ନଯିବାରୁ ସେମାନଙ୍କ ସହିତ ବାକ୍ୟ ବିନିମୟ ହେଉ ହେଉ ଗଣ୍ଡଗୋଳ ଆରମ୍ଭ ହୋଇଯାଇଥିଲା । ଗଣ୍ଡଗୋଳରେ ଷ୍ଟେସନ୍‌ରେ କେତେକ ଲୋକ ଆହତ ହୋଇଥିଲେ ଏବଂ ଆହତ ବ୍ୟକ୍ତିମାନଙ୍କ ମଧ୍ୟରୁ ଜଣଙ୍କର ଡାକ୍ତରଖାନାରେ ମୃତ୍ୟୁ ହୋଇଯାଇଥିଲା । ଏହାପରେ ସମଗ୍ର ରାଉରକେଲା ଅଞ୍ଚଳରେ ଉତ୍ତେଜନା ସୃଷ୍ଟିହୋଇଥିଲା । କୋଡ଼ିଏ ତାରିଖ ଦିନ ସକାଳେ ଉତ୍ତେଜନା

ପ୍ରବଳଭାବେ ବୃଦ୍ଧି ପାଇ ସାଂପ୍ରଦାୟିକ ଦଙ୍ଗାରେ ପରିଣତ ହେଲା । ରାଉରକେଲାର ନୂଆ ଓ ପୁରୁଣା ସହର ଅଞ୍ଚଳରେ ବିଭିନ୍ନ ସ୍ଥାନରେ ହାଣକାଟ, ଛୁରୀ ମରାମରି ଆରମ୍ଭ ହୋଇଯାଇଥିଲା । ପ୍ରାୟ ଚାଳିଶ ପଚାଶ ଜଣ ଲୋକ ସେଦିନ ଦଙ୍ଗାରେ ପ୍ରାଣ ହରାଇଥିଲେ । ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ପୁଲିସ ସୁପରିନ୍‌ଟେଣ୍ଡେଣ୍ଟ୍ ସେମାନଙ୍କ ପାଖରେ ଥିବା ଅଳ୍ପସଂଖ୍ୟକ ଫୋର୍ସଙ୍କ ଦ୍ୱାରା ଅବସ୍ଥା ଆୟତ୍ତ କରିପାରି ନଥିଲେ । ଖୁବ୍ କମ୍ ସଂଖ୍ୟାରେ ପୁଲିସ ଥିଲେ । ଏ ପ୍ରକାର ଦଙ୍ଗା ହେବ ବୋଲି କେହି କେବେ ଆଶଙ୍କା କରିନଥିଲେ । ରାଉରକେଲାରେ ଦଙ୍ଗା ହେବା ସଙ୍ଗେ ସଙ୍ଗେ ଝାରସୁଗୁଡ଼ା, ସମ୍ବଲପୁର ଓ ବ୍ରଜରାଜନଗର ପ୍ରଭୃତି ଅଞ୍ଚଳରେ ଉତ୍ତେଜନା ସୃଷ୍ଟି ହୋଇ କେତେକ ଜାଗାରେ ହାଣକାଟ, ଛୁରା ମରାମରି ଭଳି ହିଂସାକାଣ୍ଡ ଆରମ୍ଭ ହୋଇଯାଇଥିଲା । ଭୁବନେଶ୍ୱରରେ ଖବର ପହଞ୍ଚିବା ମାତ୍ରେ ଓଡ଼ିଶା ସାମରିକ ପୁଲିସ ବାହିନୀକୁ ବିଭିନ୍ନ ସ୍ଥାନକୁ ପଠାଇବାର ବ୍ୟବସ୍ଥା କରାଯାଇଥିଲା । ଏଭଳି ପରିସ୍ଥିତିର ପ୍ରତିକ୍ରିୟାସ୍ୱରୂପ କଟକ, ଭଦ୍ରକ, ବାଲେଶ୍ୱର, ଯାଜପୁର, ମୟୂରଭଞ୍ଜ ଓ ବରହମ୍ପୁର ଭଳି ଅନ୍ୟାନ୍ୟ ଅଞ୍ଚଳରେ ଯେପରି ସାଂପ୍ରଦାୟିକ ଦଙ୍ଗାହାଙ୍ଗାମା ଆରମ୍ଭ ହୋଇନଯାଏ ସେଥିପାଇଁ କଠୋର ସତର୍କତା ଅବଲମ୍ବନ କରିବା ଆବଶ୍ୟକ ପଡ଼ିଲା । ସେହିସବୁ ଅଞ୍ଚଳରେ ମଧ୍ୟ ଅଧିକ ସଂଖ୍ୟକ ପୁଲିସ ଫୋର୍ସ ରଖିବାର ଆବଶ୍ୟକତା ପଡ଼ିଲା । ସେହି କୋଡ଼ିଏ ତାରିଖ ଦିନ ମୁଁ ଏବଂ ମୁଖ୍ୟମନ୍ତ୍ରୀ ଶ୍ରୀ ମିତ୍ର ରାଉରକେଲା ଯିବାପାଇଁ ବାହାରିଲୁ; କିନ୍ତୁ ସେଠାରୁ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ପାଖରୁ ଖବର ଆସିଲା ଯେ ସେମାନେ ଅବସ୍ଥାକୁ ଆୟତ୍ତ କରିବାପାଇଁ ଲାଗିପଡ଼ିଛନ୍ତି ଏବଂ ଆମ୍ଭମାନଙ୍କ ପରିଦର୍ଶନ ପ୍ରତି ଦୃଷ୍ଟି ଦେଉ ଦେଉ ସେମାନଙ୍କ ଜରୁରୀ କାର୍ଯ୍ୟରେ ହୁଏତ କିଛିଟା ବ୍ୟତିକ୍ରମ ଘଟିବ । ତେଣୁ ସେଦିନ ନଯିବାପାଇଁ ଆମକୁ ଅନୁରୋଧ ଆସିଲା । ତୁରନ୍ତ ସୈନ୍ୟ ବିଭାଗର ସାହାଯ୍ୟ ଆବଶ୍ୟକ ବୋଲି ଆମେ ଅନୁଭବ କରିଥିଲୁ ଏବଂ ସେହି ଅନୁସାରେ ଦିଲ୍ଲୀ ସହିତ ସଂପର୍କ ରକ୍ଷାକରାଯାଇଥିଲା । ରାଞ୍ଚି ଛାଉଣୀରୁ ତୁରନ୍ତ ରାଉରକେଲାକୁ ସୈନ୍ୟ ପଠାଇବାପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ କେନ୍ଦ୍ର ସରକାରଙ୍କୁ ଅନୁରୋଧ କରାଯାଇଥିଲା । ଏକୋଇଶ ତାରିଖ ଦିନ ସକାଳେ ରାଞ୍ଚିରୁ ସୈନ୍ୟବାହିନୀ ଆସି ପହଞ୍ଚିଥିଲେ ।

ରାଉରକେଲା ସହରରେ ସାଂପ୍ରଦାୟିକ ଦଙ୍ଗା ଆରମ୍ଭ ହେବା ସଙ୍ଗେ ସଙ୍ଗେ ରାଉରକେଲାର ଉପକଣ୍ଠବର୍ତ୍ତୀ ଅଞ୍ଚଳମାନଙ୍କରେ ଏହା ବ୍ୟାପିଯାଇଥିଲା । ରାଜଗାଙ୍ଗପୁର, କୁଲୁଙ୍ଗା, କାଂସବାହଲ, ଜଳଦା, ଝିରପାଣି, ବଣ୍ଡମୁଣ୍ଡା, କୁଆଁରମୁଣ୍ଡା ଓ ବୀରମିତ୍ରପୁର ପ୍ରଭୃତି ଅଞ୍ଚଳମାନଙ୍କରେ ମଧ୍ୟ ଦଙ୍ଗା ଆରମ୍ଭ ହୋଇଯାଇଥିଲା । ଏସବୁ ସ୍ଥାନରେ ସଂଖ୍ୟାଲଘୁ ସଂପ୍ରଦାୟର ଅନେକ ଲୋକଙ୍କ ଦୋକାନଘର ପ୍ରଭୃତିରେ ନିଆଁ ଲଗାଇବାଠାରୁ ଆରମ୍ଭକରି ଛୁରାମାଡ଼, ହଣାକଟା ମଧ୍ୟ ହୋଇଥିଲା । ରାଉରକେଲାଠାରୁ ଚାରି ମାଇଲ୍ ଦୂରରେ ଅବସ୍ଥିତ ଜଳଦା ଗ୍ରାମରେ ଯେଉଁ ନୃଶଂସ କାଣ୍ଡ ଘଟିଥିଲା ତାହା ବର୍ଣ୍ଣନାତୀତ । ଏହି ଜଳଦା ଗ୍ରାମରେ ପ୍ରାୟ ପଚାଶ ଘର ମୁସଲମାନ ସଂପ୍ରଦାୟର ଲୋକ ବାସ କରୁଥିଲେ । ସାଂପ୍ରଦାୟିକ ଗଣ୍ଡଗୋଳ ଆରମ୍ଭ ହେଲା ପରେ ଜଳଦା ଆଖପାଖରେ ବିକ୍ଷିପ୍ତ ଭାବରେ ରହୁଥିବା ମୁସଲମାନମାନେ ପଳାଇଆସି ଜଳଦା ଗାଆଁର ମୁସଲମାନମାନଙ୍କ ଘରେ ଆଶ୍ରୟ ନେଇଥିଲେ । ମାର୍ଚ୍ଚ ମାସ କୋଡ଼ିଏ ତାରିଖ ଦିନ ଜଳଦା ଗାଆଁରେ ମୁସଲମାନମାନଙ୍କ ସଂଖ୍ୟା ପାଞ୍ଚ ଶହରୁ ଊର୍ଦ୍ଧ୍ୱ ହୋଇଥିଲା । ସେହିଦିନ ସେ ଗାଆଁ ଉପରେ ଆକ୍ରମଣ ହୋଇଥିଲା । କେତେକ ମୁସଲମାନ ଘରେ ନିଆଁ ଲଗାଇ ଦିଆଯାଇଥିଲା । କେତେଜଣ ହାଣଖାଇଥିଲେ । ଏହା ପରେ ପୁଲିସ ପହଞ୍ଚି ଯାଇ ଗୁଳିଚଳାଇବାରୁ ଆକ୍ରମଣକାରୀମାନେ ପଳାଇଥିଲେ । ଯାହାହେଉ, ସେଦିନ ପୁଲିସ ସାହାଯ୍ୟରେ ସଂଖ୍ୟାଲଘୁ ସଂପ୍ରଦାୟର ଲୋକମାନେ କୌଣସିମତେ ସେ ଆକ୍ରମଣର ପ୍ରତିରୋଧ କରିଥିଲେ । ପୁଲିସ ସେ ଗାଆଁରୁ ଫେରିଗଲା ବେଳେ ତା' ପରଦିନ ପୁଣି ଆସିବେ ବୋଲି କହିଯାଇଥିଲେ । କିନ୍ତୁ ତା'ପରଦିନ ବହୁସଂଖ୍ୟାରେ ଲୋକ ଆସି ସେହି ଗାଆଁରେ ଆକ୍ରମଣ

କରିଥିଲେ । ଆକ୍ରମଣକାରୀଙ୍କ ଭିତରେ ଧନୁଃଶରଧାରୀ ବହୁତ ଆଦିବାସୀ ଲୋକ ଥିଲେ । ସେ ଗାଆଁରେ ଥିବା ସଂଖ୍ୟାଲଘୁ ସଂପ୍ରଦାୟର ଲୋକେ ଆଉ ନିଜକୁ ରକ୍ଷାକରିପାରିନଥିଲେ । ଘରଗୁଡ଼ିକରେ ପେଟ୍ରୋଲ୍ ପକାଇ ନିଆଁ ଲଗାଇ ଦିଆଯାଇଥିଲା । ପିଲାଛୁଆଙ୍କ ସମେତ ପ୍ରାୟ ତିନି ଶହରୁ ଅଧିକ ଲୋକଙ୍କର ପ୍ରାଣହାନି ଘଟିଥିଲା । ତିନି ଚାରି ଦିନ ପରେ ମୁଁ ଯେତେବେଳେ ସେ ଗାଆଁକୁ ଗଲି, ଗାଆଁ କୂଅମାନଙ୍କରେ ମୃତଦେହ ପଡ଼ିଥିବାର ମଧ୍ୟ ଦେଖିଥିଲି । ସେଠାରେ ଜାଣିବାକୁ ପାଇଥିଲି ଯେ ଏକୋଇଶ ତାରିଖ ଦିନ ପୁଲିସ ପୁଣି ସେ ଗାଆଁକୁ ଆସିବେ ବୋଲି କହିଯାଇଥିଲେ; ମାତ୍ର ଆସି ନ ଥିଲେ ।

ସୈନ୍ୟବାହିନୀ ରାତ୍ରିରୁ ଆସି ପହଞ୍ଚିଲା ପରେ ଅବସ୍ଥା ଆୟତ୍ତ କରିବାପାଇଁ କଠୋର ବ୍ୟବସ୍ଥା ଗ୍ରହଣ କରାଯାଇଥିଲା । ରାଉରକେଲା ସହର ଓ ଅନ୍ୟାନ୍ୟ ସ୍ଥାନମାନଙ୍କରେ ପ୍ରାୟ ସାତ ଦିନ କାଳ ସାନ୍ଧ୍ୟ ଆଇନ ଜାରି କରାଯାଇଥିଲା । କେତେକ ସ୍ଥାନରେ ଆକ୍ରମଣକାରୀଙ୍କୁ ଘଉଡ଼େଇବାପାଇଁ ପୁଲିସ ପକ୍ଷରୁ ଗୁଳି ମଧ୍ୟ ଚଳାହୋଇଥିଲା । ଆଦିବାସୀମାନେ ବହୁସଂଖ୍ୟାରେ ଏହି ସାଂପ୍ରଦାୟିକ ଦଙ୍ଗାରେ ଭାଗନେଇଥିଲେ । ସେଥିପାଇଁ ଅବସ୍ଥା ଆହୁରି ବେଶି ଗୁରୁତର ହୋଇଥିଲା । ଏକ ପକ୍ଷରେ ଆଦିବାସୀମାନଙ୍କ ଉପରେ ଗୁଳି ଚଳାଇ ଅବସ୍ଥା ଆୟତ୍ତକଲେ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ଆଦିବାସୀମାନେ ଉତ୍କ୍ଷିପ୍ତ ହୋଇ ନାନା କାଣ୍ଡ ଭିଆଇବାର ଆଶଙ୍କା ଥିଲା । ଅନ୍ୟପକ୍ଷରେ ଯେଉଁ ସାଂପ୍ରଦାୟିକ ଅଭିସନ୍ଧିସମ୍ପନ୍ନ ତଥାକଥିତ ଧର୍ମଧ୍ୱଜାଧାରୀମାନଙ୍କ ଇଙ୍ଗିତରେ ହଜାର ହଜାର ଆଦିବାସୀ ଅନ୍ଧ ଭଳି ହିଂସ୍ର ହୋଇଉଠିଥିଲେ ସେହି ଶଠମାନଙ୍କ ପାପପାଇଁ ସରଳବିଶ୍ୱାସୀ ଆଦିବାସୀମାନଙ୍କୁ ବଣପାହାଡ଼ଘେରା ଅଞ୍ଚଳରେ ନିର୍ମମ ଭାବରେ ଆୟତ୍ତ କରିବାକୁ ହେଲେ ବହୁ ଆଦିବାସୀ ମୃତାହତ ହୋଇଥାନ୍ତେ । କିଛି ଦିନ ପାଇଁ ସହରର ଶାନ୍ତି ଶୃଙ୍ଖଳା ରକ୍ଷାକରିବାର ଦାୟିତ୍ୱ ସୈନ୍ୟବାହିନୀଙ୍କ ଉପରେ ନ୍ୟସ୍ତ କରାଯାଇଥିଲା ।

ଏହି ସମୟରେ ଭୁବନେଶ୍ୱରରେ ବିଧାନସଭାର ଅଧିବେଶନ ଚାଲିଥାଏ । ରାଉରକେଲା ପରିସ୍ଥିତି ସମ୍ବନ୍ଧରେ ବିଧାନସଭାରେ ଅତିଶୟ ଉଦ୍‌ବେଗ ପ୍ରକାଶପାଇଥିଲା । ସ୍ୱରାଷ୍ଟ୍ରମନ୍ତ୍ରୀ ହିସାବରେ ସାଂପ୍ରଦାୟିକ ଦଙ୍ଗା ତଥା ତାକୁ ଆୟତ୍ତ କରିବାପାଇଁ ଯେଉଁସବୁ ଉଦ୍ୟମ ହେଉଥିଲା ସେ ବିଷୟରେ ସରକାରଙ୍କ ପକ୍ଷରୁ ବିଧାନସଭାରେ ମୁଁ ଗୋଟିଏ ବିବୃତି ଦେଇଥିଲି । ସବୁ ଦଳର ନେତାମାନେ ମଧ୍ୟ ଗୋଟିଏ ମିଳିତ ବିବୃତି ଦେଇ ସାଂପ୍ରଦାୟିକ ଦଙ୍ଗାକୁ ନିନ୍ଦାକରିଥିଲେ ଏବଂ ସେଥିରୁ ନିବୃତ୍ତ ହୋଇ ଜନସାଧାରଣଙ୍କୁ ଶାନ୍ତ ରହିବାପାଇଁ ସେମାନେ ନିବେଦନ କରିଥିଲେ । ତା'ଛଡ଼ା ଶାନ୍ତି ପ୍ରତିଷ୍ଠାପାଇଁ ଜନମତ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଦଳ-ମତ-ନିର୍ବିଶେଷରେ କେତେକ ବିଧାୟକଙ୍କୁ ରାଉରକେଲା ପ୍ରଭୃତି ଅଞ୍ଚଳକୁ ପଠାଯାଇଥିଲା । ସେମାନେ ବିଭିନ୍ନ ସ୍ଥାନରେ ଲୋକଙ୍କ ସହିତ ସଂପର୍କ ସ୍ଥାପନ କରି ସାଂପ୍ରଦାୟିକ ଦଙ୍ଗାରୁ ନିବୃତ୍ତ ରହିବାପାଇଁ ପରାମର୍ଶ ଦେଇଥିଲେ । ଶ୍ରୀ ବିଜୁ ପଟ୍ଟନାୟକ ମଧ୍ୟ ନିଜେ ଯାଇ ସେସବୁ ଅଞ୍ଚଳରେ ବୁଲି ସାଧାରଣ ଅବସ୍ଥା ଫେରାଇଆଣିବାରେ ସାହାଯ୍ୟ କରିଥିଲେ । ସର୍ବୋଦୟ ନେତା ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀମତୀ ମାଳତୀ ଚୌଧୁରୀ ଓ ଶ୍ରୀ ମନମୋହନ ଚୌଧୁରୀ ପ୍ରଭୃତି ରାଉରକେଲାରେ ରହି ଉଭୟ ସଂପ୍ରଦାୟ ମଧ୍ୟରେ ସଦ୍‌ଭାବ ଫେରାଇ ଆଣିବାପାଇଁ ଉଦ୍ୟମ କରିଥିଲେ । ମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ୍ ମିତ୍ର ଓ ମୁଁ ସେଠାକୁ ଅନେକ ଥର ଯାଇଥିଲୁ । କେତେକ ସ୍ଥାନରେ ଆଶ୍ରୟ କେନ୍ଦ୍ର ଖୋଲାଯାଇ ସେଠାରେ ବହୁ କ୍ଷତିଗ୍ରସ୍ତ ଲୋକଙ୍କୁ ଆଶ୍ରୟ ଦିଆଯାଇଥିଲା ଏବଂ ଅନ୍ୟାନ୍ୟ ପ୍ରକାର ସାହାଯ୍ୟ ମଧ୍ୟ କରାଯାଉଥିଲା ।

## ପ୍ରଶାସନିକ ଅବହେଳାର କେତୋଟି ଅକୁହା କଥା

ପ୍ରଶାସନିକ କ୍ଷେତ୍ରରେ ଏହି ରାଉରକେଲା ଘଟଣାରୁ ମୋର ଯେଉଁ ଅଭିଜ୍ଞତା ହୋଇଥିଲା ସେ ବିଷୟରେ କେତେକ କଥା ଏଠାରେ କହୁଛି । ବିଧାନସଭାରେ ଓ ସର୍ବସାଧାରଣରେ ଯାହା କହିବାର

କଥା ତା' କହି ସେଥିରେ ମୁଁ ସନ୍ତୁଷ୍ଟନଥିଲି । କାରଣ ଆସନ୍ନ ସାଂପ୍ରଦାୟିକ ଦଙ୍ଗାକୁ କିପରି ପ୍ରତିରୋଧ କରାଯିବ ଏବଂ ଦଙ୍ଗା ଘଟିଲେ ତାକୁ କିପରି ତୁରନ୍ତ ଆୟତ୍ତ କରାଯିବ ସେ ବିଷୟରେ ପ୍ରଶାସନ ପକ୍ଷରୁ ଯେପରି ଭାବରେ ଜାଗ୍ରତ ରହିବାର କଥା ଏବଂ ଆଗୁଆ ପଦକ୍ଷେପମାନ ନେବାର କଥା ତାହା ହୋଇ ନଥିଲା ବୋଲି ମୁଁ ଅନୁଭବ କରିଥିଲି । ମାର୍ଚ୍ଚ ମାସ ଉଣେଇଶ ତାରଖ ପୂର୍ବରୁ ସେଠାରେ ଯେଉଁ ସବୁ ଗୁଜବ ରଟନା କରାଯାଉଥିଲା ସେ ବିଷୟରେ ସରକାରଙ୍କ ପାଖରେ ବିଶେଷ ଖବର ନଥିଲା । ସ୍ଥାନୀୟ ଅଫିସରମାନେ ସେ ବିଷୟରେ କିଛି କିଛି ଖବର ପାଉଥିଲେ ମଧ୍ୟ ତାକୁ ଗୁରୁତ୍ୱ ଦେଇନଥିଲେ । ଯଦି ଗୁରୁତ୍ୱ ଦିଆଯାଇଥାଆନ୍ତା ତା'ହେଲେ ରାଉରକେଲାର ପୁଲିସ ସୁପରିନ୍‌ଟେଣ୍ଡେଣ୍ଟ୍ ଠିକ୍ ସେହି ସମୟରେ ରାଉରକେଲା ଛାଡ଼ି କଟକରେ ନଥାନ୍ତେ । ଡିଭିଜନାଲ୍ କମିଶନର ମଧ୍ୟ ଏ ବିଷୟରେ ଆଦୌ ସଚେତନ ନଥିଲେ କିମ୍ବା କୌଣସି ଖବର ରଖୁନଥିଲେ । ସେ ଯଦି ନିଜ କର୍ତ୍ତବ୍ୟ ସଂପର୍କରେ ସଚେତନ ଥାଆନ୍ତେ ତା'ହେଲେ ଠିକ୍ ସେହି ସମୟରେ କଟକରେ ଗୋଟିଏ ସାଂସ୍କୃତିକ ସଭାରେ ଭାଷଣ ଦେବାପାଇଁ ନିଜର କର୍ମସ୍ଥଳ ଛାଡ଼ି ଆସିନଥାନ୍ତେ । ଆମର ଜଣେ ପ୍ରବୀଣ ଅଫିସର ଶ୍ରୀ ପ୍ରାଣନାଥ ମହାନ୍ତି ଥିଲେ ସେ ଡିଭିଜନର କମିଶନର । ମୋର ମନେପଡ଼େ ଯେ ମୁଁ ତାଙ୍କୁ ଡକାଇ ରାଉରକେଲା ଦଙ୍ଗା ସମ୍ବନ୍ଧରେ ଖବର ଅନ୍ତର ଦେଇ ତୁରନ୍ତ କଟକରୁ ସେଠାକୁ ଚାଲିଯିବା ପାଇଁ ପରାମର୍ଶ ଦେଇଥିଲି । ଏ ସମ୍ବନ୍ଧରେ ଶ୍ରୀ ଏସ୍.କେ. ଘୋଷ ତାଙ୍କ Crisis in Administration ପୁସ୍ତକରେ ଲେଖିଛନ୍ତି, "The Divisional Commissioner is responsible for the general superintendence and control of District Magistrates and Collectors with regard to maintenance of law and order. He is also required to advise the State Government on any serious threat to peace or breach of law and order. The Divisional Commissioner, Sambalpur Division, did not keep any touch with the law and order situation and he was outside the area of disturbances from 18 to 20 and did not visit the trouble spots till some days after the disturbances."

"In Rourkela, a senior Police Officer similarly exhibited utter lack of leadership. He conveniently absented himself from his jurisdiction from 17 to 19 and went to Cuttack on the plea of attending a meeting, without the permission of his superior, in spite of his previous knowledge of the distrurbances at Rourkela Railway Station from 14 and the build-up of tension and apprehension throughout his district.". ସବୁଠାରୁ ବିସ୍ମୟର କଥା ହେଲା ଯେ ଦଙ୍ଗା ବିଷୟରେ ଆମେ ରାଉରକେଲାରୁ ଖବର ପାଇଲୁ; କିନ୍ତୁ ସେ ବିଷୟରେ ଆମ ପୁଲିସ ଆଇ.ଜି.ଙ୍କ ଅଫିସ ଆଦୌ ସଜାଗନଥିଲା । ସରକାରଙ୍କର ଗୁଇନ୍ଦା ବିଭାଗ ପୂର୍ବରୁ ସରକାରଙ୍କୁ କିଛି ଖବର ଦେଇ ନ ଥିଲେ । ରାଉରକେଲାର ଦଙ୍ଗା କଥା ଶୁଣିବା ମାତ୍ରେ ମୁଁ ଆମ ରାଜ୍ୟର ଆଇ.ଜି. ଶ୍ରୀ ଜେ.ସି. ଘୋଷଙ୍କୁ ସଙ୍ଗେ ସଙ୍ଗେ ରାଜ୍ୟ ସରକାରଙ୍କର ଉଡାଜାହାଜ ଯୋଗେ ରାଉରକେଲା ଯାଇ ସେଠାକାର ଅବସ୍ଥାକୁ ଆୟତ୍ତାଧୀନ କରିବାପାଇଁ ପରାମର୍ଶ ଦେଇଥିଲି । ତାଙ୍କୁ କହିଲା ପରେ ମୋର ଧାରଣା ହେଲା ଯେ ସେ ଉଡ଼ାଜାହାଜ ଯୋଗେ ରାଉରକେଲା ଗଲେ । ରାଜ୍ୟ ସରକାରଙ୍କର ଉଡ଼ାଜାହାଜ ପାଇଲଟ୍‌ଙ୍କୁ ମଧ୍ୟ କୁହାଯାଇଥିଲା ତାଙ୍କୁ ନେଇଯିବାପାଇଁ ଏବଂ ସେ ମଧ୍ୟ ପ୍ରସ୍ତୁତ ହୋଇ ରହିଥିଲେ । କିନ୍ତୁ ଅତି ବିସ୍ମୟର କଥା ଯେ, ଆଇ.ଜି. ଶ୍ରୀ ଜେ. ସି. ଘୋଷ ଦିନକ ପରେ ଯାଇ ରାଉରକେଲାରେ ପହଞ୍ଚିଲେ । ଖବର ନେବାରୁ ଜାଣିବାକୁ ପାଇଲି ଯେ ରାଜ୍ୟ ସରକାରଙ୍କର ଏତେ ଛୋଟିଆ ଉଡ଼ାଜାହାଜରେ ଚଢ଼ିବାକୁ ସେ ଡରୁଥିଲେ, ତେଣୁ ଉଡ଼ାଜାହାଜରେ ତାଙ୍କୁ ନେବା ପାଇଁ ପାଇଲଟ୍ ପ୍ରସ୍ତୁତ ରହିଥିଲେ ମଧ୍ୟ ସେ ସେଥିରେ ନ ଯାଇ ମଟରଗାଡ଼ିରେ ଯିବାକୁ

ନିଜ ପାଇଁ ନିରାପଦ ମଣିଥିଲେ । ମଣିଷ ହିସାବରେ ଶ୍ରୀ ଜେ.ସି. ଘୋଷ ଯେତେ ଭଲ ହୋଇଥିଲେ ମଧ୍ୟ ସେତେବେଳେ ମୁଁ ଭଲଭାବରେ ଅନୁଭବ କରିଥିଲି ଯେ କୌଣସି ବିପଦ ବା ଆତଙ୍କ ସମୟରେ ନିଜ ଉପରକୁ ଦାୟିତ୍ୱ ନେଇ ପୁଲିସ ବାହିନୀକୁ ନେତୃତ୍ୱ ଦେବାକୁ ସେ ଅକ୍ଷମ; ତେଣୁ ତୁରନ୍ତ ତାଙ୍କୁ ଛୁଟିରେ ଯିବା ପାଇଁ ନିର୍ଦ୍ଦେଶ ଦେଇ ତାଙ୍କ ସ୍ଥାନରେ ଶ୍ରୀ ଶ୍ରୀକାନ୍ତ ଘୋଷଙ୍କୁ ଆଇ.ଜି. ରୂପେ ନିଯୁକ୍ତ କରିଥିଲି । ଶ୍ରୀ ଜେ.ସି. ଘୋଷ ଛୁଟିରୁ ଫେରିବା ପରେ ତାଙ୍କୁ କମର୍ସିଆଲ୍ ଟ୍ରାନ୍ସପୋର୍ଟ ସଂସ୍ଥାର ଚେୟାରମ୍ୟାନ୍ ରୂପେ ନିଯୁକ୍ତ କରାଯାଇଥିଲା । ସୁନ୍ଦରଗଡ଼ର କଲେକ୍ଟର ଶ୍ରୀ ଭବକୃଷ୍ଣ ମହାନ୍ତିଙ୍କର କାର୍ଯ୍ୟ ମଧ୍ୟ ସନ୍ତୋଷଜନକ ବୋଧ ହୋଇନଥିଲା । ଶ୍ରୀ ବି. ଶିବରମଣ ଆଇ.ସି.ଏସ୍. ସେତେବେଳେ ଆମ ରାଜ୍ୟର ମୁଖ୍ୟ ଶାସନ ସଚିବ ଥିଲେ । ସେ ଜଣେ ଅତି ସୁଦକ୍ଷ ପ୍ରଶାସକ ଥିଲେ ଏବଂ ତାଙ୍କର ପ୍ରଶଂସନୀୟ ସାମର୍ଥ୍ୟ ଓ କାର୍ଯ୍ୟ ସମ୍ବନ୍ଧରେ ସବୁ କ୍ଷେତ୍ରରେ ସୁଖ୍ୟାତି ଥିଲା । ସେ ନିଜେ ରାଉରକେଲା ଯାଇଥିଲେ ଏବଂ ସେଠାରେ ଶାସନର ଶୋଚନୀୟ ଅଧୋଗତି ଦେଖି ବିସ୍ମିତ ହୋଇଥିଲେ । ବିପନ୍ନ ଲୋକମାନଙ୍କର ଥଇଥାନ ସମ୍ବନ୍ଧୀୟ କାର୍ଯ୍ୟ ତତ୍ତ୍ୱାବଧାନ କରିବା ସଙ୍ଗେ ସଙ୍ଗେ ସ୍ଥାନୀୟ ଅଫିସରମାନଙ୍କର ଅବହେଳା ବୁଝିବାପାଇଁ ଆଉ ଜଣେ ପୁରୁଖା ପ୍ରଶାସକ ଶ୍ରୀ ଭି.ଏସ୍. ମାଥ୍ୟୁସ୍‌ଙ୍କୁ ରାଉରକେଲା ପଠାଯାଇଥିଲା । ଶ୍ରୀ ମାଥ୍ୟୁସ୍ ମଧ୍ୟ ସେଠାରେ କିଛି ଦିନ ରହି କ୍ଷତିଗ୍ରସ୍ତ ଲୋକମାନଙ୍କର ଥଇଥାନ ସମ୍ବନ୍ଧରେ ସ୍ଥାନୀୟ ଅଫିସରମାନଙ୍କୁ ସାହାଯ୍ୟ କରିଥିଲେ । ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ଏସ୍.ପି.ଙ୍କର ଅବହେଳାପାଇଁ ସେମାନଙ୍କୁ ସସ୍‌ପେଣ୍ଡ କରାଯାଇଥିଲା ଏବଂ ପରେ ସେଥିରୁ ମୁକ୍ତହୋଇ ସେମାନେ ଛୁଟିରେ ଯାଇଥିଲେ । ସେହିଭଳି ସେ ଅଞ୍ଚଳର ଡି.ଆଇ.ଜି.ଙ୍କର କାର୍ଯ୍ୟ ସନ୍ତୋଷଜନକ ନଥିଲା ବୋଲି ଶ୍ରୀ ଉପେନ୍ଦ୍ର ଦୀକ୍ଷିତ ଓ ଶ୍ରୀ ବିଜୁ ପଟ୍ଟନାୟକ ଆମ୍ଭମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ସେଥିପାଇଁ ତାଙ୍କଠାରୁ କୈଫିୟତ୍ ତଲବ କରାଯାଇ ତାଙ୍କୁ ତାଗିଦ୍ କରାଯାଇଥିଲା । ଆବଶ୍ୟକତା ଅନୁସାରେ ଆମର ପୁଲିସ ଫୋର୍ସ ନଥିବା କଥା ଆମ୍ଭେମାନେ ସେତେବେଳେ ଅନୁଭବ କରୁଥିଲୁ । ରାଉରକେଲା ଗୋଟିଏ ନୂତନ ସହର । ସେଠି ନାନାପ୍ରକାର ଲୋକ ବସବାସକରନ୍ତି; ମାତ୍ର ସେଠାରେ ଆମର କୌଣସି ସ୍ୱତନ୍ତ୍ର ପୁଲିସବାହିନୀ ନଥିଲା । ସମଗ୍ର ରାଜ୍ୟ ପାଇଁ ଆମର ସେତେବେଳେ ଥିଲେ ମାତ୍ର ଦୁଇଗୋଟି ସିପାହି ବାଟାଲିୟନ୍ । ଗୋଟିଏ ବାଟାଲିୟନ୍‌ରେ ହଜାରେ ସିପାହି ଥାଆନ୍ତି । ସେଥିରେ ରନ୍ଧାବଢ଼ା ଓ ଅନ୍ୟାନ୍ୟ ସେବା କାର୍ଯ୍ୟରେ ନିଯୁକ୍ତ ଲୋକଙ୍କୁ ବାଦ୍ ଦେଲେ ୭୫୦ ଜଣ ଲଢୁଆ ସିପାହି ଥାଆନ୍ତି । ଏହି ଅନୁଭୂତି ପରେ ରାଜ୍ୟ ପୁଲିସ ସଂସ୍ଥାର ସଂପ୍ରସାରଣ ବିଶେଷ ଭାବରେ କରାଯାଇଥିଲା । ଦୁଇ ବାଟାଲିୟନ୍ ସିପାହି ସଂଖ୍ୟା ସଂପ୍ରସାରିତ ହୋଇ ଛଅ ବାଟାଲିୟନ୍‌ରେ ପରିଣତ ହୋଇଥିଲା । ସେଥିରୁ କେବଳ ଗୋଟିଏ ବାଟାଲିୟନ୍ ରାଉରକେଲାରେ ରଖାଯାଇଥିଲା । ରାଉରକେଲାକୁ କେନ୍ଦ୍ର କରି ସୁନ୍ଦରଗଡ଼ ଓ କେନ୍ଦୁଝର ଜିଲ୍ଲାକୁ ନେଇ ଗୋଟିଏ ନୂତନ ପୁଲିସ ରେଞ୍ଜ ସୃଷ୍ଟି କରାଯାଇ ଜଣେ ଡି.ଆଇ.ଜିଙ୍କଠାରେ ଦାୟିତ୍ୱ ନ୍ୟସ୍ତ କରାଗଲା । ରାଉରକେଲା ଅଞ୍ଚଳରେ ବହୁତ ନୂଆ ଥାନା ମଧ୍ୟ ଖୋଲାଯାଇଥିଲା ।

ରାଉରକେଲାର ସାଂପ୍ରଦାୟିକ ଦଙ୍ଗା ସାରା ଭାରତରେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଦଙ୍ଗାର କାରଣ ସମ୍ପର୍କରେ ବିଭିନ୍ନ ମତ ପ୍ରକାଶପାଇଥିଲା । ପ୍ରକୃତ କାରଣ ଜାଣିବାପାଇଁ ବୈଜ୍ଞାନିକ ପ୍ରଣାଳୀରେ ଅନୁଧ୍ୟାନ ଓ ଗବେଷଣାର ଆବଶ୍ୟକତା ଅଛି ବୋଲି ଶ୍ରୀ ନବକୃଷ୍ଣ ଚୌଧୁରୀ ଲୋକନାୟକ ଶ୍ରୀ ଜୟପ୍ରକାଶ ନାରାୟଣଙ୍କୁ ଲେଖିଥିଲେ । ତେଣୁ ଲୋକନାୟକଙ୍କ ନିର୍ଦ୍ଦେଶରେ Gandhian Institute of Social Studies ପକ୍ଷରୁ ମନୋବିଜ୍ଞାନ ଅଧ୍ୟାପକ ଡକ୍ଟର ପି.ଏନ୍. ସିଂଙ୍କ ଅଧ୍ୟକ୍ଷତାରେ ଆଉ ଦୁଇଜଣ ଅଧ୍ୟାପକ ଶ୍ରୀ ବି.ବି. ଚାଟାର୍ଜୀ ଓ ଶ୍ରୀ ଜି. ରାଓଙ୍କୁ ନେଇ ଗଠିତ ଗୋଟିଏ ବିଶେଷଜ୍ଞ ଦଳ ଏହାର ଅନୁସନ୍ଧାନ ଦାୟିତ୍ୱ ନେଇଥିଲେ । ସେମାନଙ୍କ ରିପୋର୍ଟକୁ ଭିତ୍ତି କରି Riots in Rourkela ନାମକ ଗୋଟିଏ ପୁସ୍ତକ ପ୍ରକାଶ ପାଇଥିଲା । ଏହି ପୁସ୍ତକର ୧୨୭ ପୃଷ୍ଠାରେ

ସେମାନେ ଲେଖିଛନ୍ତି, "The communal outburst in Rourkela, popularly known as the Rourkela riots, began in the first week of March. The actual dates of happenigs were from 5th to 25th March, 1964. The flare-up was sudden and abrupt in as much as it took place after two weeks of the Calcutta riots and four weeks after the riots of Jessore had subsided. One feature of these riots is that they do not really subside at a given point of time, but just drag on. Even if they do, as it has to happen ultimately, it is difficult to know when the actual halt comes. What subsides suddenly is the virulence of convulsions, although sporadic cases of loot, arson, or stealthy back-stabbing goes on for quite some time even after official 'peace' is established. Viewed from this perspective the riots at Rourkela would certainly be regarded as a continuation of its two predecessors.

ପୂର୍ବ ପାକିସ୍ତାନର ଜେସୋର ସହରରେ ସାଂପ୍ରଦାୟିକ ଦଙ୍ଗାରେ ଯେଉଁ ଅତ୍ୟାଚାର ହୋଇଥିଲା, ତା'ର ପ୍ରତିଶୋଧସ୍ୱରୂପ କଲିକତାରେ ସାଂପ୍ରଦାୟିକ ଦଙ୍ଗା ହୋଇଥିଲା ଏବଂ ତା'ପରେ ତାହା ରାଉରକେଲାରେ ପ୍ରତିଧ୍ୱନିତ ହୋଇଥିଲା ବୋଲି ସେମାନେ ମତଦେଇଥିଲେ । ଏହି ଦଙ୍ଗାର ଏକ ବିଶେଷତ୍ୱ ଥିଲା ଯେ ଯେଉଁ ଆଦିବାସୀମାନେ କେବେ ଏ ଧରଣର ସାଂପ୍ରଦାୟିକ ଦଙ୍ଗାରେ ଯୋଗ ଦିଅନ୍ତିନାହିଁ, ସେମାନେ ଏଥର ପୂର୍ଣ୍ଣ ଭାବରେ ହିନ୍ଦୁମାନଙ୍କ ସହ ଯୋଗଦେଇ ମୁସଲମାନମାନଙ୍କ ଉପରେ ଅତ୍ୟାଚାର କରିଥିଲେ ବୋଲି ଉକ୍ତ ବିଶେଷଜ୍ଞମାନେ ମତ ଦେଇଥିଲେ । ସେମାନଙ୍କ ମତରେ, "The seeds of trouble were sown in running special trains carrying East Pakistan refugees from Howrah to Mana Camp in Madhya Pradesh.'

ଓଡ଼ିଶା ବିଧାନସଭାରେ ରାଉରକେଲା ସାଂପ୍ରଦାୟିକ ଦଙ୍ଗା ବିଷୟ ଆଲୋଚନା ହେଲାବେଳେ ପାକିସ୍ତାନର ଗୁପ୍ତଚରମାନେ ଭାରତବର୍ଷରେ ଏ ପ୍ରକାର ଅଶାନ୍ତି ସୃଷ୍ଟି କରୁଛନ୍ତି ବୋଲି ଶ୍ରୀ ବିଜୁ ପଟ୍ଟନାୟକ ଅଭିଯୋଗ କରିଥିଲେ । ଲୋକସଭାରେ ଶ୍ରୀ ଲାଲବାହାଦୁର ଶାସ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ଉକ୍ତିରେ ଯଥାର୍ଥତା ଥିଲା ଭଳି କେତେକ କଥା କହିଥିଲେ । ଆନ୍ତର୍ଜାତିକ ନିରାପତ୍ତା କାଉନ୍ସିଲ୍‌ରେ ଭାରତକୁ ବଦ୍‌ନାମ କରିବା ଉଦ୍ଦେଶ୍ୟରେ ପାକିସ୍ତାନ ଆମ ଦେଶରେ ଗଣ୍ଡଗୋଳ ଭିଆଉଛି ବୋଲି ଶାସ୍ତ୍ରୀଜୀ ଅଭିଯୋଗ କରିଥିଲେ । ପାକିସ୍ତାନରେ ହିନ୍ଦୁମାନଙ୍କୁ ମୁସଲମାନମାନେ ହତ୍ୟାକରୁଥିବାରୁ ତା'ର ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଭାରତବର୍ଷରେ ସାଂପ୍ରଦାୟିକ ଦଙ୍ଗାରେ ମୁସଲମାନମାନଙ୍କୁ ହତ୍ୟା କରାଯାଉଛି ବୋଲି ମତ ପ୍ରକାଶ ପାଉଥିଲା । ସେଥିରେ ଅତ୍ୟନ୍ତ ବ୍ୟଥିତ ହୋଇ ଲୋକନାୟକ ଜୟପ୍ରକାଶ ନାରାୟଣ ଏକ ମର୍ମସ୍ପର୍ଶୀ ବିବୃତି ଦେଇଥିଲେ : "If Indian Hindus kill Indian Muslims for no other reason than that Pakistan Muslims have killed Pakistani Hindus, it is a complete vindication of the two-nation theory. It simply means that we affirm in action what we loudly repudiate in words. It should be clear that such a split state of mind can have only one result : gradual undermining of the very basis of our nation". (The Statesman, Delhi Edition, 27.3.1966)

## ନେହେରୁଙ୍କ ବିୟୋଗ ପରେ ଆମର ଦୁର୍ଯୋଗ

ଭୁବନେଶ୍ୱର କଂଗ୍ରେସ ଅଧିବେଶନ ସମୟରେ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଯେଉଁ ଅସୁସ୍ଥତା ହେତୁ ହଠାତ୍ ଦିଲ୍ଲୀ ପ୍ରତ୍ୟାବର୍ତ୍ତନ କରିଥିଲେ, ସେଇ ଅସୁସ୍ଥତାରୁ ସେ ଆଉ ସଂପୂର୍ଣ୍ଣଭାବେ ଆରୋଗ୍ୟ

ଲାଭ କରି ନ ଥିଲେ । ୧୯୬୪ ମସିହା ମେ' ମାସ ୨୭ ତାରିଖରେ ପଣ୍ଡିତ ନେହେରୁ ଇହଧାମ ତ୍ୟାଗକଲେ । ଆମ ଦେଶ ପକ୍ଷରେ ଯେ ଏକ ଅପୂରଣୀୟ କ୍ଷତି ଘଟିଲା, ଏ କଥା କହିବା ବାହୁଲ୍ୟ ମାତ୍ର । ଓଡ଼ିଶା ପକ୍ଷରେ କେବଳ ଅପୂରଣୀୟ କ୍ଷତି ନୁହେଁ, ଏହା ଥିଲା ଗୋଟିଏ ବିରାଟ ଦୁର୍ଯୋଗ । ଓଡ଼ିଶା ଭଳି ଗୋଟିଏ ଅନୁନ୍ନତ ରାଜ୍ୟର ଦାରିଦ୍ର୍ୟ ପ୍ରତି ପଣ୍ଡିତ ନେହେରୁଙ୍କ ପରି ସହାନୁଭୂତିସମ୍ପନ୍ନ ପ୍ରଧାନମନ୍ତ୍ରୀ ଆଉ ମିଳିବେ ନାହିଁ । ସେ ଥିଲେ ଅତି ଉଦାର, ହୃଦୟବାନ୍ ମହାନ୍ ନେତା । ଯୁବକସୁଲଭ ଉତ୍ସାହ ଉନ୍ମାଦନାକୁ ଉତ୍ସାହିତ, ନିୟନ୍ତ୍ରିତ ଓ ସୁନିୟୋଜିତ କରି ଉନ୍ନତିମୂଳକ କାର୍ଯ୍ୟରେ ଅଗ୍ରସର ହେବାକୁ ଅକୁଣ୍ଠ ଆଶୀର୍ବାଦ କରୁଥିଲେ ଏବଂ ନିଷ୍କପଟ ତ୍ରୁଟିକୁ ମାର୍ଜନା କରିବାକୁ ପଶ୍ଚାଦ୍‌ପଦ ହେଉ ନ ଥିଲେ । ତାଙ୍କର ବିୟୋଗ ଓଡ଼ିଶା କଂଗ୍ରେସ ଓ ତାହାର ନେତୃବର୍ଗଙ୍କ ପକ୍ଷେ ଦୁର୍ଭାଗ୍ୟରେ ପରିଣତ ହେଲା । ତା'ପରେ ଆରମ୍ଭହୋଇଥିଲା ସେମାନଙ୍କର ଦୁର୍ଗତି । ମୁଁ ଏହାକୁ ଆମର ପରିବାରର ପିତୃତୁଲ୍ୟ ମୁରବିକୁ ହରାଇବା ସହିତ ତୁଳନାକରେ । ମୋର ମନେପଡ଼େ ଯେଉଁଦିନ ପଣ୍ଡିତଜୀଙ୍କର ତିରୋଧାନ ଘଟିଲା ସେହିଦିନର ଗୋଟିଏ ଘଟଣା । ଶ୍ରୀ ବିରେନ୍ ମିତ୍ର ଥାଆନ୍ତି ଆମର ମୁଖ୍ୟମନ୍ତ୍ରୀ । ପ୍ରଧାନମନ୍ତ୍ରୀଙ୍କ ମୃତ୍ୟୁ ସମ୍ବାଦ ପାଇ ଶ୍ରୀ ମିତ୍ର ଓ ଶ୍ରୀ ବିଜୁ ପଟ୍ଟନାୟକ ବିମାନଯୋଗେ ଦିଲ୍ଲୀ ବାହାରିଲେ । ମୁଁ ସେମାନଙ୍କ ସାଙ୍ଗରେ ଯିବାକୁ ବାହାରିଥିଲି, ମାତ୍ର ସେମାନେ ମୋର ଯିବାଟାକୁ ପସନ୍ଦ କରିନଥିଲେ । ସେମାନେ ମୋତେ କହିଥିଲେ, ''ତୁମେ ଭୁବନେଶ୍ୱର ରାଜଧାନୀରେ ରହ, ଆଜି ହୁଏତ ଆମ ଦେଶକୁ Military take over କରିପାରେ । ତୁମେ ପୁଲିସ ଆଇ.ଜି.ଙ୍କୁ ସତର୍କ କରିଦିଅ; ସେ ଯେପରି ଜାଗ୍ରତ ହୋଇ ରହିବେ ।'' ମୁଁ କଥାଟାର ଲଘୁତା ଦର୍ଶାଇବା ପାଇଁ କହିଥିଲି, ''ସେ ପ୍ରକାର ପରିସ୍ଥିତି ଉପୁଜିଲେ ପୁଲିସ ଆଇ.ଜି. କ'ଣ ସେଥିରେ ବାଧା ଦେଇପାରିବେ ?'' ସେମାନେ ଚାଲିଗଲେ, ମୁଁ ସେମାନଙ୍କ ସହ ଯାଇ ନ ଥିଲି । ଭୁବନେଶ୍ୱରରେ ରହି ରାଜ୍ୟ ସରକାରଙ୍କ ପକ୍ଷରୁ ଗୋଟିଏ ଶୋକସଭା ପ୍ୟାରେଡ୍ ପଡ଼ିଆରେ ଆୟୋଜନ କରାଇଥିଲି । ତା' ପରଦିନ ସକାଳେ ପଣ୍ଡିତ ନେହେରୁଙ୍କର ମୃତଶରୀର ଦର୍ଶନ କରିବା ପାଇଁ ଆମର ତତ୍କାଳୀନ ରାଜ୍ୟପାଳ ଶ୍ରୀ ଖୋସଲା ଗୋଟିଏ ସ୍ୱତନ୍ତ୍ର ବିମାନରେ ଦିଲ୍ଲୀ ବାହାରିଥିଲେ । ମୋର ଖୁବ୍ ଇଚ୍ଛା ଥିଲା ନେହେରୁଙ୍କର ମୃତଶରୀର ଦର୍ଶନ କରି ଶବ ଶୋଭାଯାତ୍ରାରେ ଯୋଗ ଦେବା ପାଇଁ । ତେଣୁ ରାଜ୍ୟପାଳ ଖୋସଲାଙ୍କ ସହିତ ସ୍ୱତନ୍ତ୍ର ବିମାନରେ ମୁଁ ଦିଲ୍ଲୀ ଯାଇଥିଲି ।

ଦିଲ୍ଲୀରେ ପହଞ୍ଚି ମୁଁ ଓ ରାଜ୍ୟପାଳ ଓଡ଼ିଶା ଭବନକୁ ଯାଇଥିଲୁ ଏବଂ ସେଠାରୁ ପ୍ରଧାନମନ୍ତ୍ରୀଙ୍କ ବାସଭବନକୁ ଯାଇ ନେହେରୁଙ୍କ ପ୍ରତି ଶେଷ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଥିଲୁ । ପ୍ରଧାନମନ୍ତ୍ରୀଙ୍କର ବାସଭବନରୁ ମୁଁ ବିଜୁବାବୁଙ୍କର ଆଓରଙ୍ଗଜେବ୍ ରୋଡ୍‌ରେ ଥିବା ବାସଭବନକୁ ଯାଇଥିଲି । ସେଠାରେ ମୁଖ୍ୟମନ୍ତ୍ରୀ ବୀରେନ୍‌ବାବୁ ମଧ ଥିଲେ । ନେହେରୁଙ୍କର ଶବଶୋଭାଯାତ୍ରାରେ ଯିବାପାଇଁ ମୁଁ ସେମାନଙ୍କୁ କହିବାରୁ ସେମାନେ ଯାଇପାରିବେନାହିଁ ବୋଲି କହିଥିଲେ । ଦଶ ପନ୍ଦର ଜଣ ଏମ୍.ପି. ମଧ ସେଠାରେ ଉପସ୍ଥିତ ଥିଲେ । ନେହେରୁଙ୍କ ପରେ କିଏ ପ୍ରଧାନମନ୍ତ୍ରୀ ହେବେ ସେମାନେ ସେ ବିଷୟରେ ଆଲୋଚନା କରୁଥିଲେ । ସେମାନେ ଶବ ଶୋଭାଯାତ୍ରାରେ ଗଲେନାହିଁ ; ମାତ୍ର ମୁଁ ଯାଇଥିଲି । ଦିଲ୍ଲୀ ରାଜଦାଣ୍ଡରେ ଜନସମୁଦ୍ରର ବିରାଟ ବିଷଣ୍ଣ ପଟୁଆର । ସତେ ଅବା ଆକୁମାରୀହିମାଳୟ ସମଗ୍ର ଭାରତବାସୀଙ୍କ ହାହାକାରର ଏକ ମୂର୍ତ୍ତିମନ୍ତ ଜନସ୍ରୋତ ଦେଖିଲି । ରାଜଦାଣ୍ଡର ଦୁଇ ପାର୍ଶ୍ୱର ପ୍ରତ୍ୟେକ ଇଞ୍ଚ ସ୍ଥାନ, ପ୍ରତ୍ୟେକ କୋଠାବାଡ଼ି ଲୋକାରଣ୍ୟ । ପ୍ରତ୍ୟେକ ମନ ହୁଏତ ସେଦିନ ତା'ର ପ୍ରିୟତମ ବ୍ୟକ୍ତିଙ୍କୁ ହରାଇ ବିକଳ ହେଉଛି, ହାହାକାର କରୁଛି । ସେଇ ଜନସ୍ରୋତ ସହିତ ମୁଁ ମିଶିଯାଇ ଶ୍ମଶାନ ଘାଟ ରାଜଘାଟରେ ପହଞ୍ଚିଲି । ଶ୍ମଶାନଘାଟ ପଡ଼ିଆଟି ସେତେବେଳେ ଲୋକାରଣ୍ୟ ହୋଇଯାଇଥାଏ । ଅଧିକାଂଶ ପାର୍ଲିଆମେଣ୍ଟ ସଦସ୍ୟ ସେଠାରେ ଉପସ୍ଥିତ ଥିଲେ । ଭବିଷ୍ୟତ୍ ବିଷୟରେ ସେମାନେ ନିଜ ନିଜ ଭିତରେ କଥାବାର୍ତ୍ତା ହେଉଥିବାର ମୁଁ ଶୁଣିଲି । ସେମାନଙ୍କ କଥାବାର୍ତ୍ତା

ଶୁଣି ମୋର ଧାରଣା ହେଲା ଯେ ଶ୍ରୀ ଲାଲବାହାଦୁର ଶାସ୍ତ୍ରୀ ପ୍ରଧାନମନ୍ତ୍ରୀ ହେବାର ସମ୍ଭାବନା ଥିଲା ବେଶି । ଶବଦାହ ପରେ ମୁଁ ବିଜୁବାବୁଙ୍କ ଘରକୁ ଯାଇଥିଲି । ସେଠାରେ ନୂଆ ପ୍ରଧାନମନ୍ତ୍ରୀ କିଏ ହେବେ ସେ ବିଷୟରେ ଆଲୋଚନା ଚାଲିଥାଏ । ସେମାନେ କୁହାକୁହି ହେବାର ଶୁଣିଲି ଯେ ଶ୍ରୀ ମୋରାରଜୀ ଦେଶାଇ ପ୍ରଧାନମନ୍ତ୍ରୀ ହେବାର ସମ୍ଭାବନା ଅଧିକ । ଶ୍ମଶାନରେ ବହୁଲୋକଙ୍କ ମୁହଁରୁ ଶ୍ରୀ ଲାଲବାହାଦୁର ଶାସ୍ତ୍ରୀଙ୍କ ନାମ ମୁଁ ଶୁଣିଲି ବୋଲି କହିବାରୁ ବୀରେନ୍‌ବାବୁ ବିରକ୍ତି ପ୍ରକାଶ କରି କହିଥିଲେ, "You rustic Cuttack fellow, do not talk of Delhi politics. Two hundred M.P.'s names are in my pocket. They are all for Morarji Bhai.' ମୁଁ ଚୁପ୍ ହୋଇ ସେଠାରୁ ଓଡ଼ିଶା ଭବନକୁ ଫେରିଆସିଲି । ଓଡ଼ିଶା ଭବନ ପାଖରେ ଉତ୍ତରପ୍ରଦେଶ ଭବନ । ସେଠାରେ ଉତ୍ତରପ୍ରଦେଶ ରାଜ୍ୟପାଳ ଶ୍ରୀ ବିଶ୍ୱନାଥ ଦାସ ରହୁଥା'ନ୍ତି । ମୁଁ ଯାଇ ତାଙ୍କୁ ଦେଖାକଲି । ସେ ମଧ୍ୟ ଶ୍ରୀ ଲାଲବାହାଦୁର ଶାସ୍ତ୍ରୀ ପ୍ରଧାନମନ୍ତ୍ରୀ ହେବାର ସମ୍ଭାବନା ବେଶି ବୋଲି କହିଥିଲେ । ମାତ୍ର ଆମର ଦୁଇ ବନ୍ଧୁ ଶ୍ରୀ ମୋରାରଜୀ ଦେଶାଇ କିପରି ପ୍ରଧାନମନ୍ତ୍ରୀ ହେବେ ସେଥିପାଇଁ ଖୁବ୍ ଜୋର୍‌ସୋର୍‌ରେ ଲାଗିପଡ଼ିଥିଲେ । ନେତା ନିର୍ବାଚନ ବିଷୟରେ ଏଭଳି ଭାବରେ ଚିହ୍ନା ନପଡ଼ିବା ପାଇଁ ମୁଁ ସେମାନଙ୍କୁ ଅନୁରୋଧ କରିଥିଲି । ମୋ କଥାକୁ ସେମାନେ କର୍ଣ୍ଣପାତ କରିନଥିଲେ । ଆମର ରାଜ୍ୟସଭା ସଦସ୍ୟ ଶ୍ରୀ ଭବାନୀ ଚରଣ ପଟ୍ଟନାୟକ ଶ୍ରୀ ମୋରାରଜୀ ଦେଶାଇଙ୍କ ଦୂତସ୍ୱରୂପ ସେମାନଙ୍କ ପାଖରେ ଲାଗିରହିଥା'ନ୍ତି । ନେତା ମନୋନୟନ ବିଷୟ ଆଲୋଚନା କରିବାପାଇଁ କେନ୍ଦ୍ର ପାର୍ଲିଆମେଣ୍ଟାରୀ ବୋର୍ଡ଼ ବୈଠକ ବସିଲା । ବିଜୁବାବୁ ସେତେବେଳେ କେନ୍ଦ୍ର କଂଗ୍ରେସ କାର୍ଯ୍ୟକାରୀ କମିଟିର ଜଣେ ପ୍ରଭାବଶାଳୀ ସଭ୍ୟ ଥିଲେ । ବିଜୁବାବୁ ଓ ମୁଖ୍ୟମନ୍ତ୍ରୀ ହିସାବରେ ବୀରେନ୍ ବାବୁ ଉଭୟ ଉକ୍ତ ପାର୍ଲିଆମେଣ୍ଟାରୀ ବୋର୍ଡ଼ ବୈଠକରେ ଯୋଗଦେଇଥିଲେ । ଶ୍ରୀ ମୋରାରଜୀ ଦେଶାଇ ପ୍ରଧାନମନ୍ତ୍ରୀ ନହେଲେ ଦେଶରେ ମିଲିଟାରୀ ଶାସନ ଆସନ୍ନ ବୋଲି ଉଭୟ ବିଜୁବାବୁ ଓ ବୀରେନ୍‌ବାବୁ ଦୃଢ଼ତାର ସହିତ ପାର୍ଲିଆମେଣ୍ଟାରୀ ବୋର୍ଡ଼ ବୈଠକରେ କହିଥିଲେ ବୋଲି ପଶ୍ଚିମ ବଙ୍ଗଳାର ସେତେବେଳକାର ମୁଖ୍ୟମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ସେନ୍ ମୋତେ କହିଥିଲେ । ବୀରେନ୍‌ବାବୁ କୁଆଡ଼େ ଅତି ଉତ୍ତେଜିତ ହୋଇ ଲଗାମଛଡ଼ା ଭାବରେ ଶ୍ରୀ ଦେଶାଇ ପ୍ରଧାନମନ୍ତ୍ରୀ ନହେଲେ ମିଲିଟାରୀ ଶାସନ ହୋଇଯିବ ବୋଲି ଉକ୍ତ ବୈଠକରେ କହିଥିଲେ । ତା'ପରେ ପ୍ରଫୁଲ୍ଲବାବୁ ମୋତେ କହିଥିଲେ, ''ନୀଳମଣି, ତୁମର ଦୁଇ ବନ୍ଧୁ ବିଜୁ ଓ ବୀରେନ୍ ଯେପରି ଭାବରେ ମିଲିଟାରୀ ଶାସନ ସମ୍ବନ୍ଧରେ କଥାବାର୍ତ୍ତା କରୁଛନ୍ତି ସେମାନଙ୍କ ସ୍ଥାନ ଜେଲ୍‌ରେ ହେବା ଉଚିତ – ବେଶି ତୁମର ବୀରେନ୍ ।''

ନେତା ନିର୍ବାଚନ ବିଷୟରେ ଏବଂ ପାର୍ଲିଆମେଣ୍ଟାରୀ ବୋର୍ଡ଼ ବୈଠକରେ ଯେପରି ଭାବରେ ବିଜୁବାବୁ ଓ ବୀରେନ୍‌ବାବୁ ଚିହ୍ନାପଡ଼ିଲେ, ସେଥିରେ ସେ ଦୁଇଜଣଙ୍କର ତଥା ଆମ ରାଜ୍ୟର ପ୍ରଭୂତ କ୍ଷତି ହୋଇଥିଲା । ଶ୍ରୀ ଲାଲ୍‌ବାହାଦୁର ଶାସ୍ତ୍ରୀ ଜଣେ ଅମାୟିକ, ବିନୟୀ ତଥା ସାଧୁ ପ୍ରକୃତିର ଲୋକ ଥିଲେ । ଶ୍ରୀ ବିଜୁ ପଟ୍ଟନାୟକଙ୍କ ସହ ତାଙ୍କର ଭଲ ସମ୍ପର୍କ ଥିଲା । ଭୁବନେଶ୍ୱର କଂଗ୍ରେସ ଅଧିବେଶନ ସମୟରେ ପରସ୍ପର ଥଟ୍ଟା ତାମସା ହେଉଥିଲେ । ଉଭୟ ନେହେରୁଙ୍କର ନିକଟତର ଲୋକ ହୋଇଥିବାରୁ ସେମାନଙ୍କ ମଧ୍ୟରେ ଆତ୍ମୀୟତା ଓ ବନ୍ଧୁତା ଥିଲା । ଭବିଷ୍ୟତ୍ ପାଇଁ ନେହେରୁଙ୍କ ଆଖି କାହା ଉପରେ ଥାଇପାରେ ବୋଲି ବିଜୁବାବୁ ଓ ଶାସ୍ତ୍ରୀ କଥାବାର୍ତ୍ତା ହୋଇ ପରସ୍ପରକୁ ଆଙ୍ଗୁଳି ଦେଖାଇବାର ମୁଁ ଦେଖିଛି । ଓଡ଼ିଶା ପ୍ରତି ମଧ୍ୟ ସେ ଖୁବ୍ ସହାନୁଭୂତିଶୀଳ ଥିଲେ । ମାତ୍ର ନେତା ନିର୍ବାଚନ ସମୟରେ ବିଜୁବାବୁ ଓ ବୀରେନ୍‌ବାବୁଙ୍କ ଆଚରଣ ତାଙ୍କୁ ଆମ୍ଭମାନଙ୍କ ପାଖରୁ ଦୂରେଇନେଇଥିଲା । ତା'ର ଫଳ ବିଜୁବାବୁ ଓ ବୀରେନ୍‌ବାବୁଙ୍କୁ ସଦ୍ୟ ଭୋଗିବାକୁ ପଡ଼ିଥିଲା । ଆମ୍ଭମାନଙ୍କର କୌଣସି ସମସ୍ୟାରେ ଶାସ୍ତ୍ରୀଜୀ ସ୍ୱତଃ ସାହାଯ୍ୟ କରିବାକୁ ଆଗ୍ରହୀ ହେଉନଥିଲେ । କ୍ୟାବିନେଟ୍ ସବ୍‌କମିଟି, କେନ୍ଦ୍ର ତଦନ୍ତ

ବ୍ୟୁରୋ ଓ ଅନ୍ୟାନ୍ୟ ଅଭିଯୋଗ ଉପରେ ବୀରେନ୍‌ବାବୁଙ୍କର ମତ ଜାଣିବା ପରେ ଶାସ୍ତ୍ରୀଜୀ ଚାହିଁଥିଲେ ବୀରେନ୍‌ବାବୁ ମୁଖ୍ୟମନ୍ତ୍ରୀ ହୋଇ ରହିପାରିଥାଆନ୍ତେ, ମାତ୍ର ସେତେଟା ସହାନୁଭୂତି ତାଙ୍କଠାରୁ ଆଶା କରିବା ସମ୍ଭବ ହେଲା ନାହିଁ । ସେହିଭଳି ବିଜୁବାବୁଙ୍କ ସମ୍ବନ୍ଧରେ ଅନେକ ଘଟଣା ନେଇ ମଧ୍ୟ ସେ ବଡ଼ ଉଦାସୀନଭାବ ଦେଖାଇଥିଲେ । କିଛିଦିନ ପରେ ଏତେଟା ଉଦାସୀନ ହେବା ଉଚିତନୁହେଁ ବୋଲି ଶାସ୍ତ୍ରୀଜୀ ନିଜେ ଅନୁଭବ କରିଥିଲେ ଏବଂ ତାସ୍‌କେଣ୍ଟ ଯିବାବେଳେ କୁଆଡ଼େ ବିଜୁବାବୁଙ୍କୁ କହିଯାଇଥିଲେ ଯେ ସେଠାରୁ ଫେରିଲେ ଓଡ଼ିଶା ବିଷୟରେ ପୁନର୍ବିଚାର କରିବେ । ମାତ୍ର ସେ ଆଶ୍ୱାସନାକୁ କାର୍ଯ୍ୟରେ ପରିଣତ କରିବାକୁ ସେ ଆଉ ରହିଲେ ନାହିଁ ।

## ସଦାଚାରୀ ଶାସ୍ତ୍ରୀଜୀ

ଶାସ୍ତ୍ରୀଜୀ ବଡ଼ ସ୍ନେହୀ ଥିଲେ । ଭୁବନେଶ୍ୱର କଂଗ୍ରେସ ଅଧିବେଶନ ସମୟରେ କଟକରେ ଶ୍ରୀ ବିବୁଧେନ୍ଦ୍ର ମିଶ୍ର ପୀଡ଼ିତ ଥିବା କଥା ସେ ଶୁଣିଥିଲେ । ସାଙ୍ଗେ ସାଙ୍ଗେ କଟକ ଯାଇ ସେ ତାଙ୍କୁ ଦେଖି ଆସିଥିଲେ । ଶ୍ରୀ ମିଶ୍ର କେନ୍ଦ୍ରର ଜଣେ ଉପମନ୍ତ୍ରୀ ଥାଆନ୍ତି । ସେଥିପାଇଁ ଯେ ଶାସ୍ତ୍ରୀଜୀ ତାଙ୍କୁ ଦେଖିବାକୁ ଯାଇଥିଲେ ସେ କଥା ଭାବିଲେ ଠିକ୍ ହେବନାହିଁ, ବନ୍ଧୁମାନଙ୍କ ପ୍ରତି ତାଙ୍କର ସ୍ୱାଭାବିକ ଶ୍ରଦ୍ଧାର ଏହା ଗୋଟିଏ ନିଦର୍ଶନ ମାତ୍ର । ସେ ପ୍ରଧାନମନ୍ତ୍ରୀ ଥିଲାବେଳେ ମୁଁ କେତେଥର ତାଙ୍କୁ ଦେଖାକରିବାର ସୁଯୋଗ ପାଇଥିଲି । ତାଙ୍କର ସ୍ନେହପୂର୍ଣ୍ଣ ଆଚରଣ ମୋତେ ଅଭିଭୂତ କରିଥିଲା । ବେଳେବେଳେ ସେ ତାଙ୍କର ବାସଭବନ ବଗିଚାରେ ବୁଲିଲାବେଳେ ସାକ୍ଷାତ ଦିଅନ୍ତି । ମୁଁ ଦିନେ ସେ ସୁଯୋଗ ପାଇଥିଲି । ସେ ମୋ କମର ଉପରେ ହାତ ପକାଇ ବୁଲି ବୁଲି କଥାବାର୍ତ୍ତା କରିଥିଲେ । ସେ ଥିଲେ ବାଙ୍ଗରା ହୋଇ ଛୋଟିଆ ମଣିଷଟିଏ, ତେଣୁ ସେ କାନ୍ଧରେ ହାତ ପକାଇ ନପାରି କମର ଉପରେ ହାତପକାଇଥିଲେ । ଦୁଇଟି ବିଷୟରେ ମୋର ପ୍ରଧାନମନ୍ତ୍ରୀଙ୍କ ସହ ସେଦିନ ପରାମର୍ଶ କରିବାର ଥିଲା । ଗୋଟିଏ ଥିଲା ଓଡ଼ିଶାର ବାରବାଟୀ ଲଟେରି ଓ ଅନ୍ୟଟି ଥିଲା ଓଡ଼ିଶାରେ ସାଧାରଣ ନିର୍ବାଚନ ପ୍ରସଙ୍ଗରେ । ମୋର ତାଙ୍କ ସହିତ ସେଥର ସାକ୍ଷାତ୍ ହୋଇଥିଲା ୧୯୬୫ ମସିହା ଭାରତ-ପାକିସ୍ତାନ ଯୁଦ୍ଧର ଅବସାନ ପରେ । ବାରବାଟୀ ଲଟେରିକୁ ଗୋଟିଏ ଜୁଆଖେଳ ବୋଲି କହି ତାକୁ ବନ୍ଦକରିବାପାଇଁ ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀ ଗୁଲ୍‌ଜାରୀ ଲାଲ ନନ୍ଦ ବାରମ୍ବାର ଚିଠି ଦେଇଥିଲେ । ନନ୍ଦାଜୀଙ୍କର ବାରବାଟୀ ଲଟେରି ପ୍ରତି ଏ ପ୍ରକାର ମନୋଭାବ ଜାଣି ବାରବାଟୀ ଲଟେରିର ଉଦ୍ୟୋକ୍ତା ଶ୍ରୀ ଭୈରବ ଚନ୍ଦ୍ର ମହାନ୍ତି ବଡ଼ ବ୍ୟସ୍ତ ହେଉଥାଆନ୍ତି । ରାଜ୍ୟର ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ ହିସାବରେ ମୁଁ ଏ ବିଷୟଟି ସମ୍ପର୍କରେ ଅବଗତ ଥିଲି । ନନ୍ଦାଜୀଙ୍କର ପ୍ରସ୍ତାବରେ ମୁଁ ରାଜି ହୋଇ ନ ଥିଲି । କଲିକତା, ମାନ୍ଦ୍ରାଜ ପ୍ରଭୃତି ସ୍ଥାନମାନଙ୍କରେ ଘୋଡ଼ାଦୌଡ଼ (Race Course) ପ୍ରତିଯୋଗିତାରେ ଘୋଡ଼ା ଉପରେ କିପରି ଟଙ୍କା ବାଜି ଲଗାଯାଉଛି ସେଥିପ୍ରତି ଶ୍ରୀ ନନ୍ଦାଙ୍କର ଦୃଷ୍ଟି ଆକର୍ଷଣ କରିଥିଲି । ଯଦି ଘୋଡ଼ାଦୌଡ଼ ଭଳି ଜୁଆଖେଳ ଚାଲୁରହିବ ତେବେ ଜନସ୍ୱାର୍ଥପାଇଁ ଉଦ୍ଦିଷ୍ଟ ବାରବାଟୀ ଲଟେରି କାହିଁକି ବନ୍ଦହେବ ସେ ବିଷୟରେ ମୁଁ ନନ୍ଦାଜୀଙ୍କୁ ଆଗରୁ ଲେଖିଥିଲି । ନନ୍ଦାଜୀ ଖୁବ୍ ଜିଦ୍‌ଖୋର ଲୋକ ବୋଲି ଭୈରବବାବୁ ଜାଣିଥିଲେ, ତେଣୁ ଏ ବିଷୟଟି ପ୍ରତି ପ୍ରଧାନମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କଲେ ଭଲହେବ ବୋଲି ସେ ମୋତେ କହିଥିଲେ । ସେଇ ଅନୁସାରେ ଏଥର ସାକ୍ଷାତବେଳେ ବାରବାଟୀ ଲଟେରି ବିଷୟ ଶାସ୍ତ୍ରୀଙ୍କୁ କହିଥିଲି । କଲିକତା 'ରେସ୍‌କୋର୍ସ' କଥାର ଦୃଷ୍ଟାନ୍ତ ଦେବା ସଙ୍ଗେ ସଙ୍ଗେ ବାରବାଟୀ ଲଟେରି ଦ୍ୱାରା ଓଡ଼ିଶାରେ କିପରି କ୍ରୀଡ଼ାକୁ ଉତ୍ସାହିତ କରିବା ବ୍ୟତୀତ ବିରାଟ ଷ୍ଟେଡ଼ିୟମ୍ ନିର୍ମିତ ହେଉଛି ତାହା ତାଙ୍କ ଦୃଷ୍ଟିକୁ ଆଣିଥିଲି । ଶାସ୍ତ୍ରୀଜୀ ଘୋଡ଼ାଦୌଡ଼ ଓ ବାରବାଟୀ ଲଟେରିକୁ ତୁଳନା କରି ଟିକିଏ ଚିନ୍ତା କରି କରି କହିଲେ— ତୁମ ଯୁକ୍ତିରେ ନିଶ୍ଚୟ କିଛି ଯଥାର୍ଥତା ଅଛି, ତେଣୁ ତାହା ବିଚାର୍ଯ୍ୟ । ଏହାପରେ ବାରବାଟୀ ଲଟେରି ପ୍ରତି ଶ୍ରୀ ନନ୍ଦାଜୀ କୋହଳ

ମନୋବୃତ୍ତି ପୋଷଣ କରିଥିଲେ ଓ ବାରବାଟୀ ଲଟେରି ବନ୍ଦ ହୋଇ ନଥିଲା । ଏ କଥା ଭୈରବବାବୁ ଭଲ ଭାବରେ ଜାଣିଥିଲେ ଓ ଶ୍ରୀ ସୁବୋଧ ବିଶ୍ୱାସ କିଛି କିଛି ଜାଣନ୍ତି ବୋଲି ମୋର ବିଶ୍ୱାସ । ସେତେବେଳେ ଯଦି ବାରବାଟୀ ଲଟେରି ବନ୍ଦ ହୋଇଯାଇଥାଆନ୍ତା ତା'ହେଲେ ଷ୍ଟେଡ଼ିୟମ୍ ନିର୍ମାଣ କାର୍ଯ୍ୟ ପୂର୍ଣ୍ଣାଙ୍ଗ ହୋଇପାରିନଥା'ନ୍ତା ।

ଏହିଠାରେ ବାରବାଟୀ ଷ୍ଟେଡ଼ିୟମ୍ ଓ ଲଟେରି ବିଷୟରେ ମୋର ଆଉ ଗୋଟିଏ କଥା ମନେପଡ଼େ । ଷ୍ଟେଡ଼ିୟମଟି ହୋଇଗଲା ପରେ ବାହାଦୂରୀ ନେବାପାଇଁ ବହୁତ ଲୋକ ବାହାରିପଡ଼ୁଛନ୍ତି । କିନ୍ତୁ ମୂଳରୁ ଶେଷପର୍ଯ୍ୟନ୍ତ ତାହା ଯେ ସ୍ୱର୍ଗତ ଭୈରବ ଚନ୍ଦ୍ର ମହାନ୍ତିଙ୍କର କୀର୍ତ୍ତି, ତାହା ନିଃସନ୍ଦେହରେ ସ୍ୱୀକାର୍ଯ୍ୟ । ଯେଉଁ ଜମି ଉପରେ ଷ୍ଟେଡ଼ିୟମ୍ ତିଆରିହୋଇଛି, ତାହା କଟକର ପୁରୁଣା ସେକ୍ରେଟେରୀଏଟ୍‌ର ଜମି ଥିଲା । ପ୍ରଥମେ ସେ ସ୍ଥାନରେ ଖେଳପଡ଼ିଆ କରିବାପାଇଁ କୌଣସି ଗୋଟିଏ କ୍ରୀଡ଼ା ଅନୁଷ୍ଠାନ ପକ୍ଷରୁ ସରକାରଙ୍କୁ ଭୈରବବାବୁ ଆବେଦନ କରିଥିଲେ । ଶ୍ରୀ ସୋମନାଥ ମହାପାତ୍ର ସେତେବେଳେ ସ୍ୱରାଷ୍ଟ୍ର ବିଭାଗର ସେକ୍ରେଟେରୀ ଥିଲେ ଏବଂ ସେହି ଜାଗା ସରକାରଙ୍କର ଆବଶ୍ୟକ ହେବ ବୋଲି କହି ଖେଳପଡ଼ିଆପାଇଁ ଦେବାକୁ ମନାକରିଦେଲେ । ମୁଁ ସେତେବେଳେ ସ୍ୱରାଷ୍ଟ୍ର ବିଭାଗର ଉପମନ୍ତ୍ରୀ ଥିଲି । ଭୈରବବାବୁ ମୋ ସହିତ ସେ ଜାଗା ବିଷୟରେ କଥାବାର୍ତ୍ତା କରିଥିଲେ ଓ ତା'ପରେ ସେ ଜାଗା କ୍ରୀଡ଼ାର ଉନ୍ନତିପାଇଁ ଖେଳପଡ଼ିଆ ଉଦ୍ଦେଶ୍ୟରେ ଦିଆଯାଉ ବୋଲି ମୁଁ ଆଦେଶ ଦେଇଥିଲି । ଜଣେ କୌଣସି ଭଲକାମ କରି କୀର୍ତ୍ତି ଅର୍ଜନ କଲେ ନିନ୍ଦୁକମାନେ ଅସହିଷ୍ଣୁ ହୋଇପଡ଼ନ୍ତି । ସେଇ ଅବସ୍ଥା ସ୍ୱର୍ଗୀୟ ଭୈରବଚନ୍ଦ୍ର ମହାନ୍ତିଙ୍କ ଭାଗ୍ୟରେ ଘଟିଥିଲା । କେତେକ ବ୍ୟକ୍ତି ଭୈରବବାବୁଙ୍କ ବିରୁଦ୍ଧରେ ଗୁରୁତର ଅଭିଯୋଗ ଆଣିଥିଲେ ଯେ ବାରବାଟୀ ଷ୍ଟେଡ଼ିୟମ୍ କାର୍ଯ୍ୟରେ ବହୁ ଦୁର୍ନୀତିପୂର୍ଣ୍ଣ ରହସ୍ୟ ଅଛି ଓ ଭୈରବବାବୁ ଲଟେରିରୁ ଉଠିଥିବା ଟଙ୍କା ଆତ୍ମସାତ୍ କରିଛନ୍ତି । ସ୍ୱତନ୍ତ୍ର ଜନକଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳ ବେଳେ ଏହି ପ୍ରକାର ଅଭିଯୋଗ ସମ୍ବଳିତ ଗୋଟିଏ ସ୍ମାରକପତ୍ର ସରକାରଙ୍କୁ ଦିଆଯାଇଥିଲା । ତା' ଗଡ଼ି ଗଡ଼ି ଆସି ୧୯୭୧ ମସିହାରେ ଶ୍ରୀ ବିଶ୍ୱନାଥ ଦାସଙ୍କ ମନ୍ତ୍ରିମଣ୍ଡଳ ସମୟରେ ନିଷ୍ପତ୍ତି ସ୍ତରକୁ ଆସିଥିଲା । ଏଥିପାଇଁ ଭୈରବବାବୁଙ୍କ ବିରୁଦ୍ଧରେ ଗୋଟିଏ କମିଶନ ବସାଇବାପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସ ନିଷ୍ପତ୍ତି କରିଥିଲେ । ଅବସରପ୍ରାପ୍ତ ବିଚାରପତି ଶ୍ରୀ ଅଭିମନ୍ୟୁ ମିଶ୍ରଙ୍କ ଅଧକ୍ଷତାରେ ସେହି କମିଶନ ବସିବ ବୋଲି ସ୍ଥିରକରାଯାଇଥିଲା । ସରକାରୀ ବିଜ୍ଞପ୍ତିପାଇଁ ସ୍ୱରାଷ୍ଟ୍ର ବିଭାଗକୁ ବିଷୟଟି ଆସିଥିଲା । ମୁଁ ସେତେବେଳେ ଥାଏ ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ । ଏହି ପ୍ରକାର ଜଣେ କୀର୍ତ୍ତିମାନ୍ ବ୍ୟକ୍ତିଙ୍କର କାର୍ଯ୍ୟର ପ୍ରଶଂସା କରିବା ପରିବର୍ତ୍ତେ କୁତ୍ସା ଓ ଅଭିଯୋଗ ଦେଖି ମୁଁ ଦୁଃଖିତ ହୋଇଥିଲି । ବିଷୟଟି ଭଲକରି ବୁଝିବାପାଇଁ ମୁଁ ଭୈରବବାବୁଙ୍କୁ ଡକାଇଥିଲି । ଅଭିଯୋଗ ହେବା କଥା ଭୈରବବାବୁ ଜାଣିଥିଲେ; ମାତ୍ର ତା' ଉପରେ ଏ ପ୍ରକାର ନିଷ୍ପତ୍ତି ହେବା କଥା ତାଙ୍କୁ ଜଣା ନ ଥିଲା । ମୋଠାରୁ ଏକଥା ଶୁଣି ସେ ଦୁଃଖିତ ହେବା ସଙ୍ଗେ ସଙ୍ଗେ ଆଖି ଛଳଛଳ କରିପକାଇଥିଲେ । ବହୁ ଉଦ୍ୟମ କରି ବାରବାଟୀ ଷ୍ଟେଡ଼ିୟମ୍ ଭଳି କୀର୍ତ୍ତିସ୍ତମ୍ଭ ଯେ ଛିଡ଼ାକରେଇପାରିଛି ସେ ପ୍ରକାର ବ୍ୟକ୍ତିକୁ ଅପବାଦରୁ ଉଦ୍ଧାର କରିବା ଦିଗରେ ସାହାଯ୍ୟ କରିବା ମୋର କର୍ତ୍ତବ୍ୟ ବୋଲି ମୁଁ ଅନୁଭବ କଲି । ସ୍ୱରାଷ୍ଟ୍ର ବିଭାଗ ଲଟେରି ପାଇଁ ଅନୁମତି ଦିଅନ୍ତି ଏବଂ ତାକୁ ନିୟନ୍ତ୍ରଣ ମଧ୍ୟ କରନ୍ତି । ସ୍ୱରାଷ୍ଟ୍ର ବିଭାଗ ସହିତ କୌଣସି ସ୍ତରରେ ପରାମର୍ଶ ନକରି ଗୋଟିଏ କମିଶନ ବସାଇ ଅନୁସନ୍ଧାନ କରିବାର ନିଷ୍ପତ୍ତି କିପରି ନିଆଗଲା, ମୁଁ ସେ ବିଷୟରେ ମୁଖ୍ୟମନ୍ତ୍ରୀଙ୍କ ସହିତ ଆଲୋଚନା କରିଥିଲି । ଅନେକ ଥର ସେହି ପ୍ରସଙ୍ଗରେ ଆଲୋଚନା କରାଯିବାରୁ କିଛି ସମୟ ଅତିବାହିତ ହେଲା । ସ୍ୱରାଷ୍ଟ୍ରବିଭାଗ ସହିତ ପରାମର୍ଶ ନକରି ଏପରି ନିଷ୍ପତ୍ତି ନେବାର ପ୍ରଶାସନିକ ତ୍ରୁଟି ଏବଂ ଭୈରବବାବୁଙ୍କର ପ୍ରଶଂସନୀୟ ଅବଦାନ ସତ୍ତ୍ୱେ ତାଙ୍କୁ ଅପବାଦ ଦେବା ବିରୁଦ୍ଧରେ ମୋର ଦୃଢ଼ ମତକୁ ବିଶ୍ୱନାଥବାବୁ ଉପେକ୍ଷା କରିପାରିନଥିଲେ । ଏହି ବିଷୟରେ

କାର୍ଯ୍ୟାନୁଷ୍ଠାନ କରିବାର ଆବଶ୍ୟକତା ନାହିଁ ବୋଲି ମୋର ମୁଖ୍ୟମନ୍ତ୍ରୀଙ୍କ ସହିତ ହୋଇଥିବା ଆଲୋଚନା କଥା ତାଙ୍କ ମନ୍ତ୍ରିମଣ୍ଡଳର ଅବସାନ ପୂର୍ବରୁ ସଂପୃକ୍ତ ଫାଇଲ୍‌ରେ ଲେଖିଦେଇଥିଲି । ତେଣୁ କାର୍ଯ୍ୟାନୁଷ୍ଠାନ ବନ୍ଦହୋଇଥିଲା । ମୁଁ ଏସବୁ କଥା କାହାରି ପାଖରେ କହି ନାହିଁ । ଭୈରବବାବୁ ଏଥିପାଇଁ ବନ୍ଧୁ ହିସାବରେ ସବୁବେଳେ କୃତଜ୍ଞତା ପ୍ରକାଶ କରୁଥିଲେ । ମୁଁ ଜାଣେ ନାହିଁ ସେ ତାଙ୍କର ବନ୍ଧୁବର୍ଗଙ୍କଠାରେ ଏସବୁ କଥା କହିଛନ୍ତି କି ନାହିଁ । ଭୈରବବାବୁ ଯେ ନିଜର ଏକାଗ୍ର ସାଧନା ବଳରେ ଐତିହାସିକ ବାରବାଟୀକୁ ପୁନର୍ବାର କର୍ମମୁଖର କରି ଆମର ଐତିହ୍ୟକୁ ମର୍ଯ୍ୟାଦାବନ୍ତ କରିଗଲେ, ଏକଥା ଇତିହାସ ନିଶ୍ଚୟ ସ୍ୱୀକାର କରିବ ।

ପ୍ରଧାନମନ୍ତ୍ରୀ ଶ୍ରୀ ଶାସ୍ତ୍ରୀଜୀଙ୍କ ସହିତ ମୋର ଆଲୋଚନାର ଅନ୍ୟ ବିଷୟଟି ଥିଲା ଆମ ରାଜ୍ୟର ନିର୍ବାଚନ କଥା । ଆମ ରାଜ୍ୟରେ ୧୯୬୧ ମସିହା ଜୁନ୍ ମାସରେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ହୋଇଥିଲା । ଆମ ବିଧାନସଭାର ପାଞ୍ଚ ବର୍ଷ ପରମାୟୁ ୧୯୬୬ ମସିହା ଜୁନ୍ ମାସରେ ପୂରିଯାଉଥିଲା । ଆମେ ଚାହୁଁଥିଲୁ ଆମ ରାଜ୍ୟର ନିର୍ବାଚନ ଦେଶର ସାଧାରଣ ନିର୍ବାଚନ ସହିତ ୧୯୬୭ ମସିହାରେ ହେଉ । ଆମର ଆବେଦନ ବିଚାର୍ଯ୍ୟ ବୋଲି ଶାସ୍ତ୍ରୀଜୀ ମତ ଦେଇଥିଲେ । ଏହି ନିର୍ବାଚନ ପ୍ରସଙ୍ଗରେ ସେ ମୋତେ ଗୋଟିଏ ଅତି ଉପାଦେୟ କଥା କହିଥିଲେ । ୧୯୬୫ ମସିହା ଭାରତ-ପାକିସ୍ତାନ ଯୁଦ୍ଧରେ ପ୍ରଧାନମନ୍ତ୍ରୀ ଶାସ୍ତ୍ରୀଜୀଙ୍କ ନେତୃତ୍ୱରେ ଭାରତ ଅପୂର୍ବ ବିଜୟ ହାସଲ କରିଥିବାରୁ କଂଗ୍ରେସ ସରକାରଙ୍କର ମର୍ଯ୍ୟାଦା ଦେଶରେ ବୃଦ୍ଧିପାଇଥିଲା । ତେଣୁ ତା'ର ସୁବିଧା ନେଇ ସେହି ସମୟରେ ଦେଶରେ ଆଗତୁରା ସାଧାରଣ ନିର୍ବାଚନ କରାଇନେଲେ କଂଗ୍ରେସ ପକ୍ଷରେ ଫଳାଫଳ ଭଲ ହେବ ବୋଲି ତାଙ୍କୁ କୁଆଡ଼େ ଅନେକ ବନ୍ଧୁ ପରାମର୍ଶ ଦେଇଥିଲେ ବୋଲି ଶାସ୍ତ୍ରୀଜୀ ମୋତେ କହିଥିଲେ । ସେ କିନ୍ତୁ ସେମାନଙ୍କ ପ୍ରସ୍ତାବରେ ରାଜି ନୁହଁନ୍ତି ବୋଲି ସେମାନଙ୍କୁ କହିଥିଲେ । ତାଙ୍କ ମତରେ ଯେଉଁ ଯୁଦ୍ଧ ଦଳମତନିର୍ବିଶେଷରେ ସମସ୍ତଙ୍କର ସାହାଯ୍ୟ ଓ ସହଯୋଗରେ ଲଢ଼ାଯାଇ ଜୟଲାଭ କରାଯାଇଛି, ତାହାକୁ କେବଳ କଂଗ୍ରେସ ଦଳର ଲାଭପାଇଁ ବ୍ୟବହାର କରିବା ଗୋଟିଏ ବଡ଼ ରାଜନୈତିକ ଅସାଧୁତା ଓ ଚରମ ବିଶ୍ୱାସଘାତକତା ବ୍ୟତୀତ ଆଉ କିଛି ହେବନାହିଁ । ସେମାନଙ୍କର କଥା ଶୁଣିଲାକ୍ଷଣି ତାଙ୍କର ଶରୀର କମ୍ପିଉଠିଥିଲା ବୋଲି ସେ ମୋତେ କହିଥିଲେ । ଦେଶରେ ଜଣେ ନୀତିଜ୍ଞାନବିବର୍ଜିତ ନେତାରୂପେ ପ୍ରତିଷ୍ଠିତ ହେବାକୁ ସେ ପ୍ରୟାସୀ ନୁହଁନ୍ତି ବୋଲି ବନ୍ଧୁମାନଙ୍କୁ କହିଥିବା କଥା ମଧ୍ୟ ମୋତେ କହିଥିଲେ । ମୋର ମନେହୁଏ, ଏହି ପ୍ରକାର କଥାସବୁ ସେତେବେଳେ ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହୋଇଥିଲା । ବଙ୍ଗଳାଦେଶ ମୁକ୍ତିସଂଗ୍ରାମ ତଥା ପାକିସ୍ତାନ ସହିତ ଯୁଦ୍ଧ ସମୟରେ ଦଳମତନିର୍ବିଶେଷରେ ଭାରତର ଆଭିମୁଖ୍ୟ ଓ ଯୁଦ୍ଧ ଉଦ୍ୟମରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ସରକାର ସମଗ୍ର ବିରୋଧୀଦଳଙ୍କର ଯେଉଁ ଅପୂର୍ବ ସହଯୋଗ ଲାଭକରିଥିଲେ ସେସବୁ କଥା ମନରୁ ପୋଛିଦେଇ, ଯୁଦ୍ଧର ବିଜୟକୁ ନିଜ ଦଳର ସୁବିଧାପାଇଁ ବ୍ୟବହାର କରି ବହୁ ରାଜ୍ୟରେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ କରାଇନେବାକୁ ଶ୍ରୀମତୀ ଗାନ୍ଧୀ ତିଳେମାତ୍ର ବିବେକର ତାଡ଼ନା ଅନୁଭବ କରିନଥିଲେ ବୋଲି ଉଲ୍ଲେଖ କରି ଠିକ୍ ସେହି ପ୍ରକାର ପରିସ୍ଥିତିରେ ପ୍ରଧାନମନ୍ତ୍ରୀ ସ୍ୱର୍ଗତ ଲାଲବାହାଦୁର ଶାସ୍ତ୍ରୀଙ୍କ ଆଚରଣ ସମ୍ବନ୍ଧରେ ଶ୍ରୀ କୁଲ୍‌ଦୀପ୍ ନାୟର ତାଙ୍କର 'India After Nehru' ପୁସ୍ତକରେ ଲେଖିଛନ୍ତି, — "The climate was so favourable to Mrs. Gandhi that she decided to have a mid-term poll to State Legislatures. After winning the 1965 war, Shastri had also toyed with the idea for some time. Kamraj was insistent that the party should cash in on the euphoria following the victory over Pakistan. However, Shastri held back his consent and argued that the war had been won by the nation, by all parties, and it would be unfair for the Congress to take advantage of that. Mrs. Gandhi did not

have such qualms." କେଡ଼େ ନୀତିବାନ୍ ଓ ମହାନ୍ ନେତା ନ ଥିଲେ ଶ୍ରୀ ଲାଲବାହାଦୁର ଶାସ୍ତ୍ରୀ ! ଏହି ପ୍ରକାର ନେତାଙ୍କ ହାତରେ ଗଣତନ୍ତ୍ର ରକ୍ଷାକରିବାର ଭାର ଅର୍ପଣ କରି ଦେଶବାସୀ ନିଶ୍ଚିନ୍ତ ରହିପାରିଥାଆନ୍ତେ ଏଥିରେ କୌଣସି ସନ୍ଦେହ ନଥିଲା । ଶାସ୍ତ୍ରୀଜୀ ଦୀର୍ଘାୟୁ ହୋଇଥିଲେ ଆମ ଦେଶର ଗଣତନ୍ତ୍ରକୁ ନିଶ୍ଚୟ ସୁଦୃଢ଼ କରିଯାଇଥାଆନ୍ତେ; ମାତ୍ର ବିଧିର ବିଧାନ ଅନ୍ୟ ପ୍ରକାର ।

ଓଡ଼ିଶାର କଂଗ୍ରେସ ନେତାମାନଙ୍କ ବିରୁଦ୍ଧରେ ଦୁର୍ନୀତି ଓ ଅସଙ୍ଗତି ଅଭିଯୋଗ ପ୍ରସଙ୍ଗରେ ପ୍ରଧାନମନ୍ତ୍ରୀ ଶାସ୍ତ୍ରୀଜୀ ଓ କେନ୍ଦ୍ର ସ୍ୱରାଷ୍ଟ୍ରମନ୍ତ୍ରୀ ନନ୍ଦାଜୀଙ୍କର କେତେକ ପଦକ୍ଷେପର ଅପରିଣାମଦର୍ଶିତା ସଂପର୍କରେ ମୁଁ ପୂର୍ବରୁ କେତେକ ସୂଚନା ଦେଇଛି ସତ । ସଂସଦୀୟ ଗଣତନ୍ତ୍ରରେ ରାଜନୈତିକ ଓ ପ୍ରଶାସନିକ କ୍ଷେତ୍ରରେ ଦଳୀୟ ଓ ପ୍ରଶାସନିକ ନେତୃତ୍ୱର ଦୂରଦୃଷ୍ଟି ପ୍ରସଙ୍ଗରେ ଏହି ଆଲୋଚନା କରାଯାଇଛି । ସୁସ୍ଥ ଗଣତାନ୍ତ୍ରିକ ପରମ୍ପରା ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ଶାସ୍ତ୍ରୀଜୀଙ୍କର ପ୍ରଗାଢ଼ ଆଗ୍ରହ ହେତୁ ହୁଏତ କେତେକ କ୍ଷେତ୍ରରେ ଅବାଞ୍ଛିତ ପରିଣତି ଘଟିଛି; କିନ୍ତୁ ନନ୍ଦାଜୀଙ୍କ ପରି ସେ ସଦାଚାର ଦୁହାର ଅବିବେକ ପ୍ରବକ୍ତା ନଥିଲେ । ଅତ୍ୟନ୍ତ ସ୍ୱଳ୍ପକାଳର ପ୍ରଧାନମନ୍ତ୍ରିତ୍ୱ ସମୟରେ ଶାସ୍ତ୍ରୀଜୀଙ୍କର କ୍ଷୁଦ୍ର କଳେବର ମଧ୍ୟରୁ ଗଣତାନ୍ତ୍ରିକ ମୂଲ୍ୟବୋଧର ଶ୍ରେଷ୍ଠ ବ୍ୟକ୍ତିତ୍ୱ ପ୍ରସ୍ଫୁଟିତ ହୋଇଉଠିଥିଲା ।

## ବିଧାନସଭାରେ ଅପକୀର୍ତ୍ତିରୁ ବ୍ୟାପକ ଛାତ୍ର ଅଶାନ୍ତି

୧୯୬୪ରେ ଓଡ଼ିଶାର ଯେଉଁ ଛାତ୍ର ଅଶାନ୍ତି ଘଟିଲା ମୋ ମତରେ ତାହାର ଐତିହାସିକ ଗୁରୁତ୍ୱ ରହିଛି । ଛାତ୍ରମାନଙ୍କ ଅପେକ୍ଷା ଆମ ଭଳି ରାଜନୈତିକ ବ୍ୟକ୍ତିମାନଙ୍କର ନୈତିକ ବଳର ଅଭାବ କିପରି ସମସ୍ତଙ୍କୁ ଅଧୋଗତି ଆଡ଼କୁ ଟାଣି ନେଇଯାଏ, ତାହାର ଏକ ଅନାସକ୍ତ ବିଚାର ପାଇଁ ଏହି ବ୍ୟାପକ ଛାତ୍ର ଅଶାନ୍ତିର ଟିକିଏ ବିଶେଷ ବିବରଣୀ ଦେବା ଆବଶ୍ୟକ ହେଉଛି । ଶ୍ରୀ ବୀରେନ୍ ମିତ୍ରଙ୍କର ମନ୍ତ୍ରିମଣ୍ଡଳରେ ରାଜ୍ୟ ବିଧାନସଭାର ପବିତ୍ରତା ରକ୍ଷା କରିବା ଦିଗରେ ଆମ୍ଭମାନଙ୍କର ଅପାରଗତା ଗୋଟିଏ ଉଲ୍ଲେଖଯୋଗ୍ୟ ଘଟଣା । ମୁଁ ସେତେବେଳେ ଥିଲି ଆମ ରାଜ୍ୟର ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ । ତେଣୁ ମୁଁ ସେ ଦୋଷରୁ ସଂପୂର୍ଣ୍ଣ ରୂପେ ତ୍ରାହି ପାଇପାରିବି ନାହିଁ । ୧୯୬୪ ମସିହା ସେପ୍‌ଟେମ୍ବର ଦୁଇ ତାରିଖ ଉପରବେଳା ପ୍ରାୟ ଚାରିଟାବେଳେ ବିଧାନସଭା ପରିସର ତଥା ଗୃହ ମଧ୍ୟରେ ଯେଉଁ ଘଟଣାମାନ ଘଟିଥିଲା, ତାହା ଓଡ଼ିଶାର ସଂସଦୀୟ ଗଣତନ୍ତ୍ର ଇତିହାସରେ ଗୋଟିଏ ବଡ଼ କଳଙ୍କ । ସେଦିନ କେତେକ ଛାତ୍ର ଓ ଅନ୍ୟାନ୍ୟ ବାହାର ଲୋକ ଅବାଧରେ ବିଧାନସଭା ପରିସର ମଧ୍ୟରେ ବଳପୂର୍ବକ ପ୍ରବେଶକରି ଓ ଅସଭ୍ୟତା ପ୍ରଦର୍ଶନକରି ଯେଉଁ ଲଜ୍ଜାଜନକ ଆଚରଣ କଲେ, ତାହାର ପଟାନ୍ତର ଆମ ଦେଶରେ କେଉଁଠି ନଥିଲା । ବିଧାନସଭା ଗୃହ ଭିତରେ ଜବରଦସ୍ତ ପ୍ରବେଶକରି ଚେୟାର, ଟେବୁଲ ଭାଙ୍ଗି, କାଗଜପତ୍ର ଚିରି, ଟେକାପଥର ଫିଙ୍ଗି ଏବଂ ବାଚସ୍ପତିଙ୍କ ଆସନରେ ପରିସ୍ରା କରିବାଭଳି ଅକଥନୀୟ ଘୋର ନିନ୍ଦନୀୟ ଘଟଣାମାନ ସାରା ଦେଶରେ ଓ ଦେଶ ବାହାରେ ପ୍ରଚାରିତ ହୋଇ ରାଜ୍ୟର ସୁନାମକୁ କଳଙ୍କିତ କରିଥିଲା । ଦୁର୍ବୃତ୍ତମାନଙ୍କର ଦୌରାତ୍ମ୍ୟ ହେତୁ ବିଧାନସଭା ଆଉ ମୁହୂର୍ତ୍ତେ ଚଳାଇବା ଅସମ୍ଭବ ମନେ କରି ଉପବାଚସ୍ପତି ଶ୍ରୀ ଲୋକନାଥ ମିଶ୍ର ତା'ପରଦିନକୁ ବିଧାନସଭା ମୁଲତବୀ କରିଦେଇଥିଲେ । ଜାତୀୟ ସ୍ତରରେ ସମସ୍ତ ସମ୍ବାଦପତ୍ର ଏ ବୀଭତ୍ସ ଘଟଣାର କଠୋର ନିନ୍ଦା ଓ ସମାଲୋଚନା କରିବା ସଙ୍ଗେ ସଙ୍ଗେ ରାଜ୍ୟ ସରକାରଙ୍କୁ ତାଙ୍କର ଚରମ ନିଷ୍କ୍ରିୟତା ପାଇଁ ଭର୍ତ୍ସନା କରିଥିଲେ । ପାର୍ଲିଆମେଣ୍ଟରେ ଏ ଘଟଣାର ପ୍ରତିକ୍ରିୟା ପ୍ରତିଧ୍ୱନିତ ହୋଇଥିଲା । ପ୍ରଧାନମନ୍ତ୍ରୀ ଶାସ୍ତ୍ରୀଜୀ ଏ ଘଟଣାରେ ଅତ୍ୟନ୍ତ ବିବ୍ରତ ହୋଇଥିଲେ । ସମ୍ବାଦପତ୍ରମାନଙ୍କରେ ଏ ଘଟଣାକୁ କିପରି ଗୁରୁତ୍ୱ ଦିଆଯାଉଥିଲା ତା'ର ଗୋଟିଏ ନିଦର୍ଶନ ଏଠାରେ ଦେଉଛି । ନିମ୍ନୋକ୍ତ ସମ୍ବାଦଟି ୧୯୬୪ ମସିହା ସେପ୍‌ଟେମ୍ବର ଚାରି ତାରିଖ The Statesman ଖବର କାଗଜର ପ୍ରଥମ ପୃଷ୍ଠାରେ ପ୍ରକାଶ ପାଇଥିଲା ।

**YELLING STUDENTS INVADE ORISSA ASSEMBLY : MOCK SESSION HELD**

"Never before has the Orissa Assembly witnessed such scenes of hooliganism as today with over one thousand slogan-shouting students stormed past the guards into the visitor's gallery while thousand others forcibly entered the Assembly compound from all sides damaging cars, smashing window panes and furniture and ransacking the chambers of some ministers as this 'invasion swelled'. The students were demanding that immediate action be taken against an Orissa Road Transport bus conductor who earlier in the day was involved with a student in a scuffle in which the student sustained a cut in the mouth. For full ninety minutes there was complete mob rule in the Assembly compound. The Deputy Speaker Mr. Lokanath Mishra, hurriedly adjourned the House at 4.45 P.M. and hurried to his chamber. Fortunately, the guards at the visitors gallery closed the Assembly Hall door, preventing a further invasion. Simultaneously, all the entries to the Assembly House and lobbies were closed and the doors bolted with the Members confined inside."

ସେଦିନର ଅଶାନ୍ତି ଉଦ୍ଭବ ହୋଇଥିଲା ଗୋଟିଏ ଅତି ସାମାନ୍ୟ ଘଟଣାରୁ । ଓଡ଼ିଶା ରୋଡ୍ ଟ୍ରାନ୍ସପୋର୍ଟ ବସ୍‌ରେ କଟକଆଡ଼ୁ ଆସୁଥିବା ଭୁବନେଶ୍ୱର କୃଷିମହାବିଦ୍ୟାଳୟର ଜଣେ ଛାତ୍ର କୁଆଡ଼େ ପଇସା ଦେଇ ଟିକଟ୍ ପାଇନଥିଲେ । ସେ ଟିକେଟ୍‌ପାଇଁ ଜିଦ୍ କରିବାରୁ କଣ୍ଡକ୍ଟର ଟିକେଟ୍ ଗୋଛାଟି ବଢ଼ାଇଦେଇଥିଲେ ସେଥିରୁ ସେ ତାଙ୍କ ଟିକେଟ୍ ନେଇନେବାପାଇଁ । ଛାତ୍ରଜଣକ ତା ଟିକେଟ୍ ଖଣ୍ଡକ ନେଇ ଅନ୍ୟ ଟିକେଟ୍ ଗୋଛାଟି କୁଆଡ଼େ ଫିଙ୍ଗିଦେଇଥିଲେ । ଏଥିରେ ସେମାନଙ୍କ ମଧରେ ଧସ୍ତାଧସ୍ତି ହୋଇ ଛାତ୍ରଟିର ଓଠରୁ ରକ୍ତ ବାହାରିଥିଲା । ଛାତ୍ରଟି ଆସି ଥାନାରେ ଏତଲା ଦେବାରୁ ସଂପୃକ୍ତ କଣ୍ଡକ୍ଟରଙ୍କୁ ଗିରଫ କରାଯାଇ ହାଜତରେ ରଖାଯାଇଥିଲା । ଏସବୁ କାର୍ଯ୍ୟ ହୋଇଥିଲା ସକାଳ ପ୍ରାୟ ଏଗାରଟା ସମୟରେ । ତା'ପରେ ଛାତ୍ରଜଣକ କୃଷି ମହାବିଦ୍ୟାଳୟକୁ ଚାଲିଯାଇଥିଲେ । ସବୁ କଥା ଏକ ପ୍ରକାର ତୁଟିଯାଇଥିଲା । ଉପରଓଳି ପ୍ରାୟ ଅଢ଼େଇଟା ସମୟରେ କୃଷି ମହାବିଦ୍ୟାଳୟର ଦଳେ ଛାତ୍ର ଆସି ଥାନା ପାଖରେ ପହଞ୍ଚି ପୁଲିସ ହାଜତରେ ଥିବା ଅଭିଯୁକ୍ତ ବ୍ୟକ୍ତିଙ୍କୁ ସେମାନଙ୍କ ହାତରେ ଛାଡ଼ି ଦେବା ପାଇଁ ଜିଦ୍‌ଧରିଥିଲେ । ପୁଲିସ ତାହା ନ କରିବାରୁ ସେମାନେ ପରିବହନ ବିଭାଗର ସବୁ ବସ୍‌କୁ ଅଟକାଇ ଭଙ୍ଗାରୁଜା କରିବାରେ ଲାଗିଲେ । ଏହି ସମୟରେ ବକ୍‌ସି ଜଗବନ୍ଧୁ କଲେଜରୁ ବହୁ ଛାତ୍ର ଆସି ସେମାନଙ୍କ ସହିତ ମିଶିଥିଲେ । ଅନ୍ୟ କାର୍ଯ୍ୟ ଉପଲକ୍ଷେ ଭୁବନେଶ୍ୱର ଆସିଥିବା ପୁରୀ କଲେକ୍ଟର ଓ ପୁଲିସ ସୁପରିନ୍‌ଟେଣ୍ଡେଣ୍ଟ ସେତିକିବେଳେ ସେଠାରେ ପହଞ୍ଚି ଭଙ୍ଗାରୁଜା କାର୍ଯ୍ୟରୁ ଛାତ୍ରମାନଙ୍କୁ ନିବର୍ତ୍ତାଇବାକୁ ଉଦ୍ୟମ କରିଥିଲେ । କଂଗ୍ରେସର ଅସନ୍ତୁଷ୍ଟ ଗୋଷ୍ଠୀ ନେତାମାନଙ୍କର କେତେକ ଯୁବକ ମଧ ସେଠାରେ ଉପସ୍ଥିତ ଥିଲେ । ସେଦିନ ଥାଏ କାପିଟାଲ ହାଟପାଳି, ତେଣୁ ଥାନା ପାଖରେ ଖୁବ୍ ଜନଗହଳି ଥାଏ । ହଠାତ୍ କୁଆଡ଼େ ଜଣେ ଅଣଛାତ୍ର ଯୁବକ ସେଠାରେ ଅଟକିଥିବା ଗୋଟିଏ ବସ୍ ଛାତ ଉପରକୁ ଉଠିଯାଇ ଏକ ଉତ୍ତେଜନାପୂର୍ଣ୍ଣ ଭାଷଣ ଦେଇ ସମସ୍ତଙ୍କୁ ବିଧାନସଭାକୁ ଯିବାପାଇଁ ଆହ୍ୱାନ କରିଥିଲେ । ଏହା ପରେ ପ୍ରାୟ ପାଞ୍ଚ ଶହରୁ ଊର୍ଦ୍ଧ୍ୱ ଛାତ୍ର ଓ ଅଣଛାତ୍ର ଦୌଡ଼ିଥିଲେ ବିଧାନସଭାଆଡ଼େ । ସେ ସମୟରେ ବିଧାନସଭା ପାଖରେ ଅତି ଅଳ୍ପ ସଂଖ୍ୟାରେ ଜଗୁଆଳି ପୁଲିସ ମୁତୟନ ହେଉଥିଲେ । ଅଧିବେଶନବେଳେ ବିଧାନସୌଧ ଚାରିପାଖ ରାସ୍ତା ଉପରେ ଆଜିକାଲି ପରି କାଠବାଡ଼ ବନ୍ଦୋବସ୍ତ ମଧ କରାଯାଉନଥିଲା । ଏତେ ଅଧିକ ଲୋକଙ୍କୁ ଖୋଲା ରାସ୍ତାରେ ଅଟକାଇ ରଖିବା ଅଳ୍ପସଂଖ୍ୟକଜଗୁଆଳି ପୁଲିସଙ୍କ ପକ୍ଷେ

ସମ୍ଭବ ହୋଇ ନ ଥିଲା । ଗେଟ୍‌ରେ ଅଟକାଇଲାକ୍ଷଣି ସେମାନେ ବିଧାନସଭା ପାଚେରି ଲୁହାବାଡ଼ ଅତିକ୍ରମ କରି ଭିତରେ ପ୍ରବେଶ କରିଥିଲେ । ଏସ୍.ପି. ଆଉ କେତେକ ପୁଲିସ ଆଣି ସେଠାରେ ପହଞ୍ଚି ଯାଇଥିଲେ । ପୁଲିସ୍ ଅନଧିକାର ପ୍ରବେଶକାରୀଙ୍କୁ ଘଉଡ଼ାଇବାକୁ ବାହାରିଲା ବେଳେ ମୁଖ୍ୟମନ୍ତ୍ରୀ ସେଠାରେ ପହଞ୍ଚି ଛାତ୍ରମାନଙ୍କ ଉପରେ କାର୍ଯ୍ୟାନୁଷ୍ଠାନ ନ କରିବାକୁ ଚିତ୍କାର କରି ଜଣାଇ ଦେଇଥିଲେ । ମୁଖ୍ୟମନ୍ତ୍ରୀ ବିଧାନସଭା ଆଗରେ ଥିବା ପଡ଼ିଆରେ ତଳେ ବସିପଡ଼ି ଶାନ୍ତ ହେବାପାଇଁ ହାତଯୋଡ଼ି ନିବେଦନ କରିଥିଲେ । ଛାତ୍ରମାନଙ୍କ ମଧ୍ୟରେ ଦୁଷ୍ଟ ପ୍ରକୃତିର ଲୋକ ମଧ୍ୟ ଥାଆନ୍ତି । ସେମାନେ ମୁଖ୍ୟମନ୍ତ୍ରୀଙ୍କୁ ପରିହାସ କରି ତାଙ୍କ ଉପରକୁ ମାଟି ଗୋଡ଼ି ପକାଇବାକୁ ଲାଗିଲେ । ଅବସ୍ଥା ଖରାପ ଆଡ଼କୁ ଗତିକରିବାରୁ ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ଏସ୍.ପି. ମୁଖ୍ୟମନ୍ତ୍ରୀଙ୍କୁ ନିଜ ପ୍ରକୋଷ୍ଠ ଭିତରକୁ ଚାଲିଯିବାପାଇଁ ଅନୁରୋଧ କରିଥିଲେ । ତା'ପରେ ହଠାତ୍ ବିଧାନସଭା ଭିତରକୁ ଓ ବିଧାନସଭା ଗ୍ୟାଲେରୀ ଭିତରକୁ ଦୁର୍ବୃତ୍ତମାନେ ପ୍ରବେଶ କରି ସେମାନଙ୍କର ଦୁଷ୍କର୍ମ ଆରମ୍ଭ କରିଦେଇଥିଲେ । ସେମାନଙ୍କର ଦୌରାତ୍ମ୍ୟ ଓ ଦୁଷ୍କର୍ମ ସମ୍ବନ୍ଧରେ ମୁଁ ଆଗରୁ କିଛି ସୂଚନା ଦେଇଛି । ଦର୍ଶକ ଗ୍ୟାଲେରୀରେ ପ୍ରବେଶକରିଯାଇଥିବା ଦୁର୍ବୃତ୍ତମାନେ ସେଠାରେ ନାନା ପ୍ରକାର ଧ୍ୱନି ଦେଇ ଗୃହ ମଧ୍ୟକୁ ଛିଣ୍ଡା କାଗଜ ଓ ଟେକା ପକାଇଥିଲେ । ବିନା ବଳପ୍ରୟୋଗରେ ସେମାନଙ୍କୁ ବିଧାନସଭା ପରିସର ମଧ୍ୟରୁ ବାହାର କରାଯାଇପାରିବ ନାହିଁ ବୋଲି ଅନୁଭବ କରାଯାଇଥିଲା । ମାତ୍ର ବିଧାନସଭା ପରିସର ମଧ୍ୟରେ ବାଚସ୍ପତିଙ୍କ ବିନାନୁମତିରେ ପୁଲିସ ବଳ ପ୍ରୟୋଗ କରିପାରିବେନାହିଁ । ତେଣୁ ଆବଶ୍ୟକ କାର୍ଯ୍ୟାନୁଷ୍ଠାନ କରିବାପାଇଁ ସେଠାରେ ଉପସ୍ଥିତ ଥିବା ଉପବାଚସ୍ପତିଙ୍କୁ ମୁଁ ଅନୁରୋଧ କରିଥିଲି । ବିଧାନସଭାର ସେକ୍ରେଟେରୀ ଶ୍ରୀ ନୀଳକଣ୍ଠ ରଥ ଉପବାଚସ୍ପତି ଶ୍ରୀ ଲୋକନାଥ ମିଶ୍ରଙ୍କଠାରୁ ଲିଖିତ ଆଦେଶ ଆଣି ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ଏସ୍.ପି.ଙ୍କୁ ଦେଇଥିଲେ । ଦୁର୍ବୃତ୍ତମାନେ ବର୍ବରୋଚିତ କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ସେମାନଙ୍କୁ ଅଧିକ ବଳପ୍ରୟୋଗ କରି ପୁଲିସ ବାହାର କରିଦେଇପାରିଥାଆନ୍ତେ; ମାତ୍ର ଏହାର ପ୍ରତିବନ୍ଧକ ହୋଇଥିଲେ ସ୍ୱୟଂ ମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ୍ ମିତ୍ର । ଛାତ୍ରମାନଙ୍କ ଦେହରେ ହାତ ନଦେବାକୁ ମୁଖ୍ୟମନ୍ତ୍ରୀ ପୁଲିସ୍‌କୁ ଆଦେଶ ଦେଇଥଲେ । ପୁଲିସ୍ କାର୍ଯ୍ୟରେ ଏ ପ୍ରକାର ଅଯଥା ହସ୍ତକ୍ଷେପ ନ କରିବା ପାଇଁ ମୁଁ ମୁଖ୍ୟମନ୍ତ୍ରୀଙ୍କୁ ବହୁତ ବୁଝାଇଥିଲି, ମାତ୍ର ସେ ମୋ କଥାକୁ ଅଗ୍ରାହ୍ୟ କରିଥିଲେ । ଉପବାଚସ୍ପତି ମଧ୍ୟ ମୁଖ୍ୟମନ୍ତ୍ରୀଙ୍କୁ କହିଥିଲେ ଯେ ପ୍ରୟୋଜନ ଅନୁସାରେ ବଳ ପ୍ରୟୋଗ କରି ଦୁର୍ବୃତ୍ତମାନଙ୍କୁ ବିଧାନସଭା ମଧ୍ୟରୁ ଘଉଡ଼ାଇଦିଆଯାଉ । ମାତ୍ର କାହାରି କଥା ଶୁଣିବାକୁ ସେ ନାରାଜ । କାନ୍ଦକାଟ କରି ସମସ୍ତଙ୍କ ଆଗରେ ମୁଖ୍ୟମନ୍ତ୍ରୀ ଗୋଟିଏ ଅଦ୍ଭୁତ ଦୃଶ୍ୟ ସୃଷ୍ଟି କରିଥିଲେ; ମାତ୍ର ତାଙ୍କର ସରଳତାକୁ ଦୁର୍ବୃତ୍ତମାନେ ଦୁର୍ବଳତା ମନେକରି ଦୁଷ୍କର୍ମ କରିବା ପାଇଁ ଅଧିକ ନିର୍ଭୟ ଓ ଉତ୍ସାହିତ ହୋଇଥିଲେ । ଶେଷରେ ବିଧାନସଭାର ସଭ୍ୟମାନଙ୍କୁ ତଡ଼ିଦେଇ ଦୁର୍ବୃତ୍ତମାନେ ସେମାନଙ୍କର ଆସନ ଅଧିକାର କରିଥିଲେ ଏବଂ ଜଣେ ବାଚସ୍ପତିଙ୍କ ଆସନରେ ବସି ସେଠାରେ ମକ୍ ପାର୍ଲିଆମେଣ୍ଟ ଅଭିନୟ କରିଥିଲେ । ଅତି ଲଜ୍ଜାକର ପରିସ୍ଥିତି ଭିତରେ ମୁଖ୍ୟମନ୍ତ୍ରୀଙ୍କ ସହ ଆମେ ସମସ୍ତେ ଗୋଟିଏ ଭୟାନକ ଅସଭ୍ୟ ନାଟକର ନୀରବ ଦ୍ରଷ୍ଟା ହୋଇଥିଲୁ । ଏସବୁ କୁକର୍ମ ସତ୍ତ୍ୱେ ସେଦିନ ସେହି ଛାତ୍ରମାନେ ବୀରେନ୍‌ବାବୁଙ୍କର ଜୟଜୟକାର କରିଥିଲେ । ଏହା ଦେଖି ବୀରେନ୍‌ବାବୁଙ୍କର ହୃଦ୍‌ବୋଧ ହେଲା ଯେ ବିଧାନସଭାର ସାର୍ବଭୌମତ୍ୱ ଓ ମର୍ଯ୍ୟାଦାକୁ କ୍ଷୁଣ୍ଣ କରିଥିବା ହେତୁ ଛାତ୍ରମାନେ ଦୁଃଖ ପ୍ରକାଶ କରି ଗୋଟିଏ ବିବୃତି ଦେବେ । ମାତ୍ର ଶେଷରେ ସେ ନିରାଶ ହୋଇଥିଲେ । ମୁଖ୍ୟମନ୍ତ୍ରୀଙ୍କ ଆଚରଣରେ ଅସନ୍ତୁଷ୍ଟ ହୋଇ ମୁଁ ତାଙ୍କୁ ଦୁଇ ତିନି ଦିନ ଦେଖା କରି ନ ଥିଲି । ତାଙ୍କ କାର୍ଯ୍ୟକୁ ଅଧିକାଂଶ ଲୋକ ନାପସନ୍ଦ କରିବାରୁ ସେ ବଡ଼ ଅନୁତପ୍ତ ହୋଇଥିଲେ । ନିଜ କର୍ମର ପ୍ରାୟଶ୍ଚିତ୍ତ ସ୍ୱରୂପ ସେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାପାଇଁ ପ୍ରଧାନମନ୍ତ୍ରୀ ଓ କଂଗ୍ରେସ ସଭାପତିଙ୍କୁ ଲେଖିଥିଲେ । ୧୯୬୪ ମସିହା ସେପ୍ଟେମ୍ବର ତିନି ତାରିଖରେ ସେ ପ୍ରଧାନମନ୍ତ୍ରୀ ଶାସ୍ତ୍ରୀଜୀଙ୍କୁ ଲେଖିଥିବା ଚିଠିରେ

ଉଲ୍ଲେଖ କରିଥିଲେ, "Although as Chief Minister I have no locus standi within the precincts of the Assembly, I took it upon myself and ordered the police not to use violence under any circumstances. The police was manhandled and the Superintendent of Police was badly injured, and yet under my orders the entire police and the magistracy displayed exemplary restraint under great prov-ocation. I have no doubt that if normal law and order procedure were to be adopted, many students and the rowdy elements would have been demolished, I had to decide between bloodshed and restoring the prestige of the sovereign House of the State. I regret to state that I failed to uphold the dignity and sacredness of Orissa's House of Legislature and have therefore decided to relinquish forthwith my charge as Chief Minister of the State." (Orissa Assembly Proceedings, 22.9.64)

ବାଚସ୍ପତି ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ସେତେବେଳେ ଅସୁସ୍ଥ ଥିଲେ, ତେଣୁ ବିଧାନସଭାର ସମସ୍ତ କାର୍ଯ୍ୟ ଉପବାଚସ୍ପତି ଚଳାଉଥିଲେ । ପ୍ରଧାନମନ୍ତ୍ରୀଙ୍କ ନିକଟକୁ ଇସ୍ତଫାପତ୍ର ପଠାଇଦେଇ ଶ୍ରୀ ମିତ୍ର ଉପବାଚସ୍ପତିଙ୍କୁ ଜଣାଇଦେଇଥିଲେ ଯେ ସେ ଆଉ ଏ ଅବସ୍ଥାରେ ବିଧାନସଭା କାର୍ଯ୍ୟ ଚଳାଇ ପାରିବେ ନାହିଁ, ତେଣୁ ବିଧାନସଭା ସେପ୍ଟେମ୍ବର ବାଇଶ ତାରିଖ ପର୍ଯ୍ୟନ୍ତ ମୁଲତବୀ ରହିଥିଲା । ଏହା ମଧ୍ୟରେ ଦିଲ୍ଲୀରେ କଂଗ୍ରେସ ପାର୍ଲିଆମେଣ୍ଟାରୀ ବୋର୍ଡ଼ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାପାଇଁ ଶ୍ରୀ ମିତ୍ରଙ୍କୁ ଅନୁମତି ଦେଇଦେଇଥିଲେ । ମୁଁ ଆଗରୁ କହିଛି ଯେ ବୀରେନ୍‌ବାବୁଙ୍କ ନିଷ୍ପତ୍ତିରେ କୌଣସି ସ୍ଥିରତା ନ ଥାଏ, ବର୍ତ୍ତମାନ ତାଙ୍କର ଇସ୍ତଫା ଦେଇ ଚାଲିଯିବା ସଂପର୍କରେ ସେ ଆଉ ଥରେ ଚିନ୍ତା କରିବାକୁ ଲାଗିଲେ । କଟକରୁ ବହୁତ ଲୋକ ଆସି ମୁଖ୍ୟମନ୍ତ୍ରୀ ପଦ ନଛାଡ଼ିବାକୁ ତାଙ୍କୁ ଅନୁରୋଧ କରିଥିଲେ । ତାଙ୍କର ଇସ୍ତଫାପତ୍ର ସମ୍ପର୍କରେ ବିଚାର କରିବାପାଇଁ ସେପ୍ଟେମ୍ବର ଅଠର ତାରିଖକୁ କଂଗ୍ରେସ ବିଧାନସଭା ଦଳର ଗୋଟିଏ ବୈଠକ ଡକାଯାଇଥିଲା । ସେଦିନ କେନ୍ଦ୍ର ପାର୍ଲିଆମେଣ୍ଟାରୀ ବୋର୍ଡ଼ ପକ୍ଷରୁ ଶ୍ରୀ ଅତୁଲ୍ୟ ଘୋଷ ଆସିଥିଲେ ଏବଂ ସେ ବିଧାନସଭା କଂଗ୍ରେସ ଦଳର ବୈଠକରେ ଯୋଗ ଦେଇଥିଲେ । ବୀରେନ୍‌ବାବୁ ତାଙ୍କର କଟକର ଲୋକମାନଙ୍କୁ ଧାରଣା ଦେଇଥିଲେ ଯେ ଅଠର ତାରିଖ ଦିନ ଦଳର ବୈଠକ ସମୟରେ ଭୁବନେଶ୍ୱରରେ ତାଙ୍କ ସପକ୍ଷରେ ବହୁ ଲୋକଙ୍କ ସମାବେଶ ଉପରେ ତାଙ୍କର ମୁଖ୍ୟମନ୍ତ୍ରୀ ହୋଇ ରହିବା ନରହିବା ନିର୍ଭରକରେ । ଅଠର ତାରିଖ ଦିନ ଦଳର ବୈଠକ ପୂର୍ବରୁ ଭୁବନେଶ୍ୱରରେ ଗୋଟିଏ ବିରାଟ ପଟୁଆର ବାହାରିଥିଲା । ''ବୀରେନ୍‌ବାବୁ ଇସ୍ତାଫା ପତ୍ର ପ୍ରତ୍ୟାହାରକର'' ଧ୍ୱନିରେ ଭୁବନେଶ୍ୱର ଆକାଶ କମ୍ପିଯାଇଥିଲା । ଦଳ ବୈଠକରେ ବୀରେନ୍‌ବାବୁଙ୍କୁ ଅନୁରୋଧ କରାଗଲା ଇସ୍ତଫା ନଦେବାପାଇଁ । ବୀରେନ୍‌ବାବୁ ତାଙ୍କର ଇସ୍ତଫାପତ୍ର ପ୍ରତ୍ୟାହାର କରି ନେଇଥିଲେ ଏବଂ କଂଗ୍ରେସ କର୍ତ୍ତୃପକ୍ଷଙ୍କୁ ବୁଝାଇବାର ଦାୟିତ୍ୱ ନେଇଥିଲେ ଶ୍ରୀ ଅତୁଲ୍ୟ ଘୋଷ । ମୁଖ୍ୟମନ୍ତ୍ରୀଙ୍କର ଇସ୍ତଫା ଦେବା ଓ ପ୍ରତ୍ୟାହାର କରିନେବା କଥା ବିଧାନସଭାରେ ଆଲୋଚିତ ହୋଇଥିଲା । ବିଧାନସଭା ଗୃହରେ ମୁଖ୍ୟମନ୍ତ୍ରୀଙ୍କୁ ବଡ଼ ଅପ୍ରୀତିକର ଅବସ୍ଥାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଯାହାସବୁ ଘଟଣା ଘଟିଗଲା ସେସବୁ ବିଚାରକୁ ନେଲାକ୍ଷଣି ମୋର ମନେହେଉଥାଏ ଯେ ନିଷ୍ଚିତ ଭାବରେ ସରକାରଙ୍କର ମର୍ଯ୍ୟାଦାହାନି ହୋଇଥିଲା । ବୀରେନ୍‌ବାବୁଙ୍କର ଖୋଲା ଦରବାରୀ ଶାସନ ହେତୁ ସରକାରଙ୍କର କୌଣସି କଥା ଗୁପ୍ତ ରହିଲାନାହିଁ । ମୁଖ୍ୟମନ୍ତ୍ରୀ ହିସାବରେ ବୀରେନ୍‌ବାବୁଙ୍କ ଏତାଦୃଶ ଆଚରଣ ହେତୁ ସରକାରଙ୍କର ଦୁର୍ବଳତା ପଦାରେ ପଡ଼ିଥିଲା । ଅଶାନ୍ତି ସୃଷ୍ଟି କରିବାକୁ ପ୍ରୟାସୀ ବ୍ୟକ୍ତିମାନେ ସରକାରଙ୍କର ପିତ୍ତ କେତେ, ତାହା ଜାଣିସାରି ଭବିଷ୍ୟତରେ ଅଧିକ ଗଣ୍ଡଗୋଳ ଭିଆଇବା ପାଇଁ ଉତ୍ସାହୀ ହୋଇଥିଲେ । ୧୯୬୪ ମସିହା ଛାତ୍ର ଆନ୍ଦୋଳନ ସମ୍ବନ୍ଧରେ ତଦନ୍ତ

କରିବାପାଇଁ ନିଯୁକ୍ତ ବିଚାରପତି ବର୍ମନ କମିଶନ ତାଙ୍କର ରିପୋର୍ଟରେ ନିମ୍ନମତେ ମତ ବ୍ୟକ୍ତ କରିଛନ୍ତି – "The Chief Minister presumably with the best of intentions in a friendly spirit intervened in the matter and stopped the police from taking action. This friendliness and leniency on the part of the Chief Minister were not appreciated by the students in their angry mood; they thought that it was a weakness of the administration; the students thought they could do as they liked; the police could not do anything to them. This incident undoubtedly emboldened the students to the extent that they thought they could succeed in any matter that they chose to take up with the Government. This psychology among the students was the primary cause of students agitation all over Orissa. Once a law and order situtation arises, the matter should be left to the police to tackle and interference with the police at such a stage is dangerous.'

ସରକାରଙ୍କ ଦୁର୍ବଳତା ପଦାରେ ପଡ଼ିଲେ ତା'ର ପରିଣତି କ'ଣ ହୁଏ ଗୋଟିଏ ମାସ ନ ପୁରୁଣୁ ତାହା ଆମ୍ଭେମାନେ ଅନୁଭବ କରିଥିଲୁ । ବୀରେନ୍‌ବାବୁଙ୍କର ଇସ୍ତଫା ପ୍ରତ୍ୟାହାର କରିନେବା ତାଙ୍କ ପକ୍ଷରେ କ୍ଷତିକାରକ ହୋଇଥିଲା । ଏହି ଘଟଣାର ପାଞ୍ଚ ମାସ ପରେ ବୀରେନ୍‌ବାବୁଙ୍କୁ ମୁଖ୍ୟମନ୍ତ୍ରୀ ପଦ ଛାଡ଼ିବାକୁ ପଡ଼ିଥିଲା । ସେପ୍ଟେମ୍ବର ମାସ ଅଠର ତାରିଖରେ ଇସ୍ତାଫାପତ୍ର ପ୍ରତ୍ୟାହାର ନକରି ସେ ମୁଖ୍ୟମନ୍ତ୍ରୀ ପଦ ଛାଡ଼ି ଚାଲିଯାଇଥିଲେ ଅନେକ ଦୃଷ୍ଟିରୁ ବୀରେନ୍‌ବାବୁ ଅତ୍ୟନ୍ତ ମର୍ଯ୍ୟାଦାର ସହ ବିଦାୟ ନେଇଥାଆନ୍ତେ ।

## ୧୯୬୪ର ଛାତ୍ର ଆନ୍ଦୋଳନ

ଓଡ଼ିଶାରେ ୧୯୬୪ ମସିହା ଶେଷଭାଗରେ ଗୋଟିଏ ବଡ଼ ଧରଣର ଛାତ୍ର ଅଶାନ୍ତି ଦେଖା ଦେଇଥିଲା । ସେହି ବର୍ଷ ସେପ୍ଟେମ୍ବର ମାସ ଦୁଇ ତାରିଖରେ ଛାତ୍ରମାନଙ୍କ ନେତୃତ୍ୱରେ ଭୁବନେଶ୍ୱର ରାଜଧାନୀ ଥାନା ପାଖରେ ଓ ବିଧାନସଭା ଗୃହରେ ଯାହାସବୁ ଘଟିଥିଲା, ତା' ଆଗରୁ କହିଛି । ସେଠାରେ କେତେକ ଛାତ୍ରଙ୍କ ପକ୍ଷରୁ ଯେଉଁ ଅକ୍ଷମଣୀୟ ଆଚରଣ ପ୍ରଦର୍ଶନ କରାଯାଇଥିଲା ଓ ସେଥିପ୍ରତି ସରକାର ଯେପରି କୋହଳ ମନୋଭାବ ଓ ଉଦାରତା ଦେଖାଇଥିଲେ, ତାହା ଏକପ୍ରକାର ଅପାତ୍ରରେ ଦାନ ଦେଲାଭଳି ମନେହେଲା । ସେପ୍ଟେମ୍ବର ଦୁଇ ତାରିଖ ସେହି ଛାତ୍ରମାନଙ୍କର ଦାବି ଥିଲା ଯେ ତଥାକଥିତ ଦୋଷୀକୁ ପୁଲିସ୍ ସେମାନଙ୍କ ହାତରେ ସମର୍ପଣ କରିଦେଉ, ସେମାନେ ତାର ବିଚାର କରିବେ । ଠିକ୍ ସେହିପରି କଟକର କେତେକ ଛାତ୍ର ଦାବୀ କରିଥିଲେ ଯେ ଜଣେ ଛାତ୍ରକୁ ଅପମାନ ଦେଇଥିବା ଅଭିଯୋଗରେ ଅଭିଯୁକ୍ତ ରେଡ଼ିଓ ଦୋକାନୀକୁ ପୁଲିସ ଛାତ୍ରମାନଙ୍କ ହାତରେ ଅର୍ପଣ କରୁ, ତା'ର ଉପଯୁକ୍ତ ବିଚାର ସେମାନେ କରିବେ । କଟକ ରେଭେନ୍‌ସା କଲେଜ ପାଖ ଷ୍ଟେସନ୍ ବଜାରରେ ଗୋଟିଏ ରେଡ଼ିଓ ଦୋକାନ ଥିଲା । କଟକ ଇଞ୍ଜିନିୟରିଂ ସ୍କୁଲ୍‌ର ଜଣେ ଛାତ୍ରଠାରୁ ରେଡ଼ିଓ ମରାମତି ବାବଦରେ ଦୋକାନୀର କିଛି ଟଙ୍କା ପାଇବାର ଥିଲା । ସେପ୍ଟେମ୍ବର ଛବିଶ ତାରିଖ ସକାଳେ ଏହି ବାକି ପାଉଣା ସମ୍ବନ୍ଧରେ ରେଡ଼ିଓ ଦୋକାନୀ ଓ ଛାତ୍ରଟି ମଧ୍ୟରେ ଝଗଡ଼ା ହୋଇଥିଲା । ଅନ୍ୟ ଛାତ୍ରମାନଙ୍କ ସାହାଯ୍ୟରେ ଦୋକାନୀକୁ ଉପଯୁକ୍ତ ଶିକ୍ଷା ଦେବ ବୋଲି ଛାତ୍ରଟି ଦୋକାନୀକୁ ଧମକ ଦେଇଥିଲା । ଦୋକାନୀ ଭୟରେ ମଙ୍ଗଳାବାଗ ଥାନାକୁ ଏ ବିଷୟରେ ଖବର ଦେଇଥିଲା । ମଙ୍ଗଳାବାଗ ପୁଲିସ ସନ୍ଧ୍ୟାବେଳେ ଷ୍ଟେସନ ବଜାରର ସେହି ଦୋକାନ ପାଖରେ ପହଞ୍ଚି ଦେଖିଥିଲେ ଯେ ପ୍ରାୟ ଶହେ ଖଣ୍ଡେ ଛାତ୍ର ଦୋକାନ ପାଖରେ ରୁଣ୍ଡହୋଇ ଦୋକାନୀଠାରୁ କ୍ଷମା ପ୍ରାର୍ଥନା ଆଦାୟ କରିବାପାଇଁ ତାକୁ ଖୋଜୁଛନ୍ତି । ସେତେବେଳେ ଦୋକାନୀ ସେଠାରେ ନଥିଲା ।

ମଙ୍ଗଳାବାଗ ଥାନାରୁ ଆସିଥିବା ପୁଲିସମାନେ ପିଲାମାନଙ୍କୁ ବୁଝାଇଥିଲେ ଏବଂ ଦୋଷୀ ବିରୁଦ୍ଧରେ ଆଇନ ଅନୁସାରେ କାର୍ଯ୍ୟାନୁଷ୍ଠାନ କରାଯିବ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଛାତ୍ରମାନେ ସେଠାରୁ ଚାଲିଯିବାପାଇଁ ପୁଲିସ ପରାମର୍ଶ ଦେଇଥିଲେ । ମାତ୍ର ଛାତ୍ରମାନେ ଶୁଣିବା ଅବସ୍ଥାରେ ନଥିଲେ । କ୍ରମେ ରେଭେନ୍‌ସା କଲେଜ, ମଧୁସୂଦନ ଆଇନ କଲେଜ ଓ ଇଞ୍ଜିନିୟରିଂ ସ୍କୁଲ୍ ପ୍ରଭୃତିରୁ ପ୍ରାୟ ହଜାରେରୁ ଊର୍ଦ୍ଧ୍ୱ ଛାତ୍ର ସେଠାରେ ଆସି ଏକତ୍ରିତ ହୋଇଥିଲେ । ଏହି ଉତ୍ତେଜନାର ଖବର ପାଇ ଅତିରିକ୍ତ ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ପୁଲିସ ସୁପରିନ୍‌ଟେଣ୍ଡେଣ୍ଟ ଅଧିକ ପୁଲିସ ସହ ସେଠାରେ ପହଞ୍ଚିଥିଲେ । ସେମାନେ ଛାତ୍ରମାନଙ୍କୁ ବହୁତ ବୁଝାଇଥିଲେ ସେଠାରୁ ଚାଲିଯିବାପାଇଁ । ମାତ୍ର ରେଡ଼ିଓ ଦୋକାନୀକୁ ସେମାନଙ୍କ ହାତରେ ସମର୍ପଣ ନକଲେ ସେମାନେ ସେଠାରୁ ଯିବେନାହିଁ ବୋଲି ଜିଦ୍‌କରିଥିଲେ । ଛାତ୍ରମାନେ ଉନ୍ମତ୍ତ ହୋଇ ପୁଲିସମାନଙ୍କ ପ୍ରତି ଖରାପ ବ୍ୟବହାର କରିଥିଲେ, ରେଡ଼ିଓ ଦୋକାନ ଭିତରେ ପଶି ଜିନିଷପତ୍ର ଭଙ୍ଗାରୁଜା କରିଥିଲେ । ପୁଲିସ ସେଥିରେ ବାଧା ଦେବାରୁ ପୁଲିସ ଉପରକୁ ଟେକାପଥର ଫିଙ୍ଗିଥିଲେ । ବାଉଁଶଫାଳିଆଗୁଡ଼ିଏ ଆଣି କେତେକ ପୁଲିସଙ୍କୁ ପିଟାପିଟିକରିଥିଲେ । ଅବସ୍ଥା ଅସମ୍ଭାଳ ହେବାରୁ ଅତିରିକ୍ତ ଜିଲ୍ଲା ମାଜିଷ୍ଟ୍ରେଟ୍ ସମବେତ ଜନତାକୁ ବେଆଇନ ବୋଲି ଘୋଷଣା କରି ବଳପ୍ରୟୋଗ ଦ୍ୱାରା ସେମାନଙ୍କୁ ହଟାଇବା ପାଇଁ ଆଦେଶ ଦେଇଥିଲେ । ଏହି ଅବସ୍ଥାରେ ଅସମ୍ଭବ ଭାବରେ ପଥର ବୃଷ୍ଟି ହୋଇଥିଲା । ପୁଲିସଙ୍କୁ ଲାଠିଚାଳନା ଓ ଲୁହବୁହା ଗ୍ୟାସ୍ ପ୍ରୟୋଗ କରିବାକୁ ପଡ଼ିଥିଲା । ରେଭେନ୍‌ସା କଲେଜ ଅତି ପାଖରେ ଥିବାରୁ ଛାତ୍ରମାନଙ୍କ ପକ୍ଷରୁ ପୁଲିସ ଉପରେ ଆକ୍ରମଣ କରିବାର ସୁବିଧାଥିଲା । ପ୍ରାୟ ରାତି ତିନିଟା ପର୍ଯ୍ୟନ୍ତ ପୁଲିସ ଉପରକୁ ଟେକା ପଥର ଫିଙ୍ଗି ଛାତ୍ରମାନେ ପୁଲିସ ସହିତ ସଂଘର୍ଷ କରିଥିଲେ । ଆଇନ କଲେଜ ହଷ୍ଟେଲ୍ ରାସ୍ତା ପାଖରେ ଥିବାରୁ ସେଠାରୁ ମଧ ପୁଲିସ ଉପରକୁ ଟେକା ପଥର ପଡ଼ିଥିଲା ।

ମୁଁ ସେଦିନ କଟକରେ ମୋର କ୍ୟାଣ୍ଟନ୍‌ମେଣ୍ଟ ରୋଡ୍ ବାସଭବନରେ ଥାଏ । ରାତି ପ୍ରାୟ ଏଗାରଟା ସମୟରେ ଜଣେ ଛାତ୍ର ମୋତେ ଟେଲିଫୋନ୍ କରି ପୁଲିସର ଲାଠିଚାଳନା କଥା ଅଭିଯୋଗ କରିଥିଲେ ଏବଂ ମୁଁ ନିଜେ ସେ ସ୍ଥାନକୁ ଯାଇ ସବୁ କଥା ବୁଝିବାପାଇଁ ଦାବି କରିଥିଲେ । ସେ ସମୟରେ ମୋର ସେ ଘଟଣାସ୍ଥଳକୁ ଯିବା ଅନୁଚିତ ବୋଲି ମୁଁ ଅନୁଭବ କରିଥିଲି । ସେହିଦିନ ରାତିରେ ମଙ୍ଗଳାବାଗ ଥାନା ଅଞ୍ଚଳରେ ୧୪୪ ଧାରା ଜାରିକରାଯାଇଥିଲା । ତା' ପରଦିନ ୨୭ ତାରିଖ ସକାଳେ ରେଭେନ୍‌ସା କଲେଜ ଅଞ୍ଚଳରେ ଗଣ୍ଡଗୋଳ ଆରମ୍ଭ ହୋଇଥିଲା । ଆଇନ ଶୃଙ୍ଖଳାରେ ଥରେ ଗଣ୍ଡଗୋଳିଆ ପରିସ୍ଥିତି ସୃଷ୍ଟି ହେଲେ ଦୁର୍ବୃତ୍ତ ଓ ସମାଜବିରୋଧୀମାନେ ଛାତ୍ର ସମାବେଶ ଭିତରେ ସାମିଲ ହୋଇଯାଇ ଅବସ୍ଥାର ପୂର୍ଣ୍ଣ ସୁଯୋଗ ନେଇଥା'ନ୍ତି ଏବଂ ରାଜନୈତିକ ଦଳମାନେ ମଧ ସେଥିରୁ କିଛି ଫାଇଦା ଉଠାଇବାକୁ ଚେଷ୍ଟା କରନ୍ତି । ଦୁର୍ବୃତ୍ତମାନେ ଗୋଟିଏ ପୁଲିସ ଗାଡ଼ିରେ ନିଆଁ ଲଗାଇଦେଲେ ଓ ପୁଲିସଙ୍କ ଉପରକୁ ଟେକାପଥର ମାଡ଼ ହେଲା । ତେଣୁ ପୁଣି ଲାଠି ଚାଳନା ଓ ଲୁହବୁହା ବାଷ୍ପ ପ୍ରୟୋଗ କରିବାକୁ ପଡ଼ିଥିଲା । ରେଭେନ୍‌ସା କଲେଜ ହତାକୁ ଦୁର୍ବୃତ୍ତମାନେ ଆଶ୍ରୟସ୍ଥଳ ଭାବରେ ବ୍ୟବହାର କରି ସେଠାରୁ ବାରମ୍ବାର ପୁଲିସଙ୍କୁ ଆକ୍ରମଣ କରୁଥିଲେ । ତେଣୁ ସେଠାରୁ ମଧ ସେମାନଙ୍କୁ ଲାଠିଚାଳନା କରି ଘଉଡ଼ାଇ ଦିଆ ହୋଇଥିଲା । ମଧୁସୂଦନ ଆଇନ କଲେଜ ହଷ୍ଟେଲ୍ ମଧ ଦୁର୍ବୃତ୍ତମାନଙ୍କ ଆଶ୍ରୟସ୍ଥଳ ହୋଇଥିଲା । ହଷ୍ଟେଲ୍ ଭିତରୁ ରାସ୍ତା ଉପରକୁ ଅଜସ୍ର ଟେକାପଥର ବୃଷ୍ଟି ହୋଇଥିଲା । ଫଳରେ ସାଧାରଣ ଲୋକଙ୍କର ଯିବା ଆସିବା ବନ୍ଦହୋଇଯାଇଥିଲା । ସେଠାରେ ମଧ ପୁଲିସ ପ୍ରବେଶ କରି ଦୁର୍ବୃତ୍ତମାନଙ୍କୁ ସେଠାରୁ ଘଉଡ଼ାଇ ଦେଇଥିଲେ ।

ସେତେବେଳେ ଓଡ଼ିଶା ବିଧାନସଭାର ଅଧିବେଶନ ଚାଲିଥାଏ । ସେପ୍ଟେମ୍ବର ମାସ ଅଠେଇଶ ତାରିଖ ଦିନ ସ୍ୱରାଷ୍ଟ୍ର ବିଭାଗ ମନ୍ତ୍ରୀ ହିସାବରେ ବିଧାନସଭାରେ ଏହି ଗଣ୍ଡଗୋଳ ସମ୍ପର୍କରେ ମୋତେ

ଗୋଟିଏ ମୁଲତବୀ ପ୍ରସ୍ତାବ ଉପରେ ବିବୃତି ଦେବାକୁ ପଡ଼ିଥିଲା । ପ୍ରଥମ ଅବସ୍ଥାରେ ସେଦିନ ବିରୋଧୀ ଦଳର ସଭ୍ୟମାନେ ମଧ୍ୟ ଛାତ୍ରମାନଙ୍କର ଆଚରଣକୁ ନାପସନ୍ଦ କରିଥିଲେ । ସେତିକିରେ ସେମାନଙ୍କର ରାଜନୈତିକ ଉଦ୍ଦେଶ୍ୟ ସାଧିତ ନହୋଇଥିବାରୁ ବୋଧହୁଏ ପରେ ସେମାନେ ଅବସ୍ଥା ପ୍ରତି ସେମାନଙ୍କର ଦୃଷ୍ଟିଭଙ୍ଗୀ ବଦଳାଇଥିଲେ । ସେମାନେ ଛାତ୍ରମାନଙ୍କର ଆଚରଣ ପ୍ରତି ଗୁରୁତ୍ୱ ନଦେଇ ପୁଲିସ ଅତ୍ୟଧିକ ବଳପ୍ରୟୋଗ କରିଥିବାର ଅଭିଯୋଗକରି ସେଥିପାଇଁ ବିଚାରବିଭାଗୀୟ ତଦନ୍ତ ଆବଶ୍ୟକ ବୋଲି ଦାବି କରିଥିଲେ । ଅଭିଯୋଗ ହୋଇଥିଲା ଯେ ରେଭେନ୍‌ସା କଲେଜ ପ୍ରିନ୍‌ସିପାଲଙ୍କଠାରୁ ଅନୁମତି ନନେଇ ପୁଲିସ ରେଭେନ୍‌ସା କଲେଜ ହତା ଭିତରେ ପ୍ରବେଶ କରି ଲାଠି ଚାଳନା କରିଛନ୍ତି । ମୁଁ ତାହା ସ୍ୱୀକାର କରି କହିଥିଲି ଯେ ଆକ୍ରମଣକାରୀ ଅପରାଧୀମାନଙ୍କୁ ଘଉଡ଼ାଇ ନେବାବେଳେ ପୁଲିସ୍ କଲେଜ ହତା ମଧ୍ୟରେ ପ୍ରବେଶ କରିଛନ୍ତି ଏବଂ ସେହି ଅବସ୍ଥାରେ ଅନୁମତି ପାଇଁ ଅପେକ୍ଷା ନ କରି ପ୍ରବେଶ କରିଛନ୍ତି । ଅନୁମତି ନେବାପାଇଁ ଅବସର ନ ଥିଲା । ଅପରାଧୀମାନଙ୍କୁ ଘଉଡ଼ାଇବା ଅବସ୍ଥାରେ ପୁଲିସର ଯେକୌଣସି ସ୍ଥାନକୁ ପ୍ରବେଶ କରିବାର ଅଧିକାର ରହିଛି । କଂଗ୍ରେସଦଳର ସଭ୍ୟମାନେ ବିଚାର ବିଭାଗୀୟ ତଦନ୍ତର ପକ୍ଷପାତୀ ନ ଥିଲେ । କଟକରେ ସାମାନ୍ୟ କଥାରେ ଛାତ୍ରମାନେ ଯେ ବୀଭତ୍ସ କାଣ୍ଡ ଭିଆଇଥିଲେ ଏବଂ ଯେପରି ଭାବରେ ପୁଲିସ୍ ଉପରକୁ ଟେକାପଥର ଫିଙ୍ଗି ଖଣ୍ଡଯୁଦ୍ଧ କରିଥିଲେ, ତାହା ସତ୍ତ୍ୱେ ପୁଲିସ କେବଳ ଲାଠି ଓ ଲୁହବୁହା ଗ୍ୟାସ ପ୍ରୟୋଗ କରି ଏଭଳି ଗୁରୁତର ପରିସ୍ଥିତିକୁ ଯେପରି ଆୟତ୍ତ କରିପାରିଥିଲେ, ସେଥିରେ ବିଭାଗୀୟ ତଦନ୍ତର ଆବଶ୍ୟକତା ନାହିଁ ବୋଲି କଂଗ୍ରେସ ଦଳର ସଭ୍ୟମାନେ ବ୍ୟବସ୍ଥା ସଭାରେ ମତ ବ୍ୟକ୍ତ କରିଥିଲେ ।

ଛୋଟ ଛୋଟ ଘଟଣାରେ ବିଚାରବିଭାଗୀୟ ତଦନ୍ତ କରାଇ ପୁଲିସର ନୈତିକ ବଳ ନ ଭାଙ୍ଗିବା ପାଇଁ କେନ୍ଦ୍ର ସରକାରଙ୍କର ମଧ୍ୟ ପରାମର୍ଶ ଥାଏ । ଏଠାରେ ଗୋଟିଏ ବ୍ୟକ୍ତିଗତ ଝଗଡ଼ାକୁ କେନ୍ଦ୍ରକରି ଦୋକାନରେ ଜିନିଷପତ୍ର ଭଙ୍ଗାଭଙ୍ଗି ହେଲା ଏବଂ ପୁଲିସ ଉପରେ ଟେକାପଥର ଆକ୍ରମଣ ହେଲା । ପୁଲିସ କେବଳ ଲାଠି ଓ ଲୁହବୁହା ଗ୍ୟାସ୍ ବ୍ୟବହାର କରି ଅବସ୍ଥା ଆୟତ୍ତ କରିଥିଲେ । କାହାରି ପ୍ରାଣହାନି ହୋଇନଥିଲା । ଏପରି ଅବସ୍ଥାରେ ବିଚାରବିଭାଗୀୟ ତଦନ୍ତର ଆବଶ୍ୟକତା ନାହିଁ ବୋଲି ମୁଁ ବିଧାନସଭାରେ କହିଥିଲି । କିଛିଦିନ ତଳେ ବିଧାନସଭାରେ ଛାତ୍ରମାନେ ଯେଉଁ କାଣ୍ଡ ଭିଆଇଥିଲେ ଏବଂ ତା'ପରେ ଯେଉଁସବୁ ଘଟଣା ଘଟିଲା ସେ କଥା ମୁଁ ଆଗରୁ କହିଛି । ସେ ଘଟଣା ପରେ ମୁଖ୍ୟମନ୍ତ୍ରୀ ଶ୍ରୀ ମିତ୍ର ବିଧାନସଭାକୁ ଆସୁନଥିଲେ । ତେଣୁ ବିଧାନସଭାରେ ବିରୋଧୀଦଳର ସବୁପ୍ରକାର ଆକ୍ରମଣକୁ ମୋତେ ମୁକାବିଲା କରିବାକୁ ପଡୁଥିଲା । ବିଚାର ବିଭାଗୀୟ ତଦନ୍ତ ହେବନାହିଁ ବୋଲି ସରକାରଙ୍କ ପକ୍ଷରୁ କହିଲା ପରେ ଯେ ସବୁ ଶାନ୍ତ ହୋଇଗଲା ତା' ନୁହେଁ । ପ୍ରତିଦିନ ବିଧାନସଭାରେ ସେହି ଛାତ୍ର ଅଶାନ୍ତି ବିଷୟରେ ନାନା ପ୍ରକାର କଥା ଦୁଇ ତିନି ଘଣ୍ଟା ଆଲୋଚିତ ହେଉଥାଏ । କଂଗ୍ରେସର ଅସନ୍ତୁଷ୍ଟ ଗୋଷ୍ଠୀ ମଧ୍ୟ ଏ ଅବସ୍ଥାର ସୁଯୋଗ ନେବାକୁ ବାହାରିପଡ଼ିଥିଲେ । ଅସନ୍ତୁଷ୍ଟ ଗୋଷ୍ଠୀର ନେତା ଥିଲେ ଶ୍ରୀ ମହତାବ । ତାଙ୍କର ପ୍ରଜାତନ୍ତ୍ର ଖବରକାଗଜ ଛାତ୍ରମାନଙ୍କର ମୁଖପତ୍ର ପରି ହୋଇଯାଇଥିଲା । ପ୍ରଜାତନ୍ତ୍ରର ସଂପାଦକ ଥିଲେ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ । ପ୍ରଜାତନ୍ତ୍ର ପରିସର ହୋଇଥିଲା ଛାତ୍ରଅଶାନ୍ତି ଓ ଭଙ୍ଗାରୁଜା ହିଂସାତ୍ମକ କାର୍ଯ୍ୟର ପରାମର୍ଶକେନ୍ଦ୍ର । ଛାତ୍ରମାନଙ୍କୁ ଉତ୍ତେଜିତ କଲା ଭଳି ସମ୍ବାଦ ପରିବେଷଣ କରାଯାଉଥିଲା ଏବଂ ସେହିପରି ଉତ୍ତେଜିତ କରିବା ଉଦ୍ଦେଶ୍ୟରେ ସଂପାଦକୀୟମାନ ପ୍ରଜାତନ୍ତ୍ର ଓ ଇଷ୍ଟର୍ଣ୍ଣ ଟାଇମ୍‌ସରେ ଲେଖାଯାଉଥିଲା । ସରକାରଙ୍କର ଛାତ୍ର ଅଶାନ୍ତି ସମ୍ବନ୍ଧରେ ସରକାରୀ ପ୍ରେସ୍ ବିଜ୍ଞପ୍ତି ପ୍ରଜାତନ୍ତ୍ର ଛପାଉନଥିଲା । ଯେତେବେଳେ ଛପାଉଥିଲା, ତାହା ଅତି ଗୌଣ ସ୍ଥାନରେ ବା ବିକୃତ ଭାବରେ ପ୍ରକାଶ ପାଉଥିଲା । ସମାଧାନର କୌଣସି ଉଦ୍ୟମ ହେଲେ ତାହା କିପରି ଅକୃତକାର୍ଯ୍ୟ ହେବ, ତାହା ଥିଲା ପ୍ରଜାତନ୍ତ୍ର ସହିତ ସଂପୃକ୍ତ

ଥିବା ଛାତ୍ରମାନଙ୍କର ଭିତିରି ଉଦ୍ଦେଶ୍ୟ । ସେତେବେଳେ ଶ୍ରୀ ମହତାବଙ୍କ ନେତୃତ୍ୱରେ ଥିବା ଅସନ୍ତୁଷ୍ଟ ଗୋଷ୍ଠୀର କଂଗ୍ରେସ ସଭ୍ୟମାନେ ବିଚାରବିଭାଗୀୟ ତଦନ୍ତ ସପକ୍ଷରେ ନଥିଲେ । ସେମାନଙ୍କର ଉଦ୍ଦେଶ୍ୟ ପରେ ମୁଁ ବୁଝିପାରିଥିଲି । ସେମାନଙ୍କର ଆଶଙ୍କା ଥିଲା କାଳେ ଯଦି ମୁଁ ବିଚାରବିଭାଗୀୟ ତଦନ୍ତ କଥାରେ ରାଜିହୋଇଯାଏ, ତା'ହେଲେ ଛାତ୍ର-ଅଶାନ୍ତି ବନ୍ଦହୋଇଯିବ ଓ ଶାସନ ସୁରୁଖୁରୁରେ ଚାଲିବ ।

ଶ୍ରୀ ମହତାବଙ୍କର ରାଜନୈତିକ ଆଚରଣ ବଡ଼ ଗହନ ଓ ଜଟିଳ । ସେ କହନ୍ତି କଥାଏ ତ କରନ୍ତି କଥାଏ ବୋଲି ମୋର ଅଭିଜ୍ଞତା ହୋଇଛି । ଏ ସମ୍ବନ୍ଧରେ ମୋର ଗୋଟିଏ କଥା ମନେପଡ଼େ । ୧୯୭୯ ମସିହାର ଶେଷ ଭାଗରେ ଗଞ୍ଜାମ ଜିଲ୍ଲାର ଖଲିକୋଟଠାରେ ଥିବା କଲେଜରେ ଧର୍ମଘଟ ହୋଇଥିଲା । ମୁଁ ସେତେବେଳେ ମୁଖ୍ୟମନ୍ତ୍ରୀ ଥାଏ । ଓଡ଼ିଶା ରୋଡ୍ ଟ୍ରାନ୍ସପୋର୍ଟ ବସ୍ କର୍ମଚାରୀଙ୍କ ସହିତ ଛାତ୍ରମାନଙ୍କର ଝଗଡ଼ା ହେବାରୁ ରାସ୍ତାରେ ସବୁ ବସ୍ ଚଳାଚଳ ବନ୍ଦହୋଇଯାଇଥିଲା । କଲେଜଟି ଠିକ୍ ରାସ୍ତା ପାଖରେ । ପୁଲିସ ଯେତେ ଉଦ୍ୟମ କଲେ ମଧ ସେ ରାସ୍ତାରେ ବସ୍ ଚଳାଚଳ ହୋଇପାରିଲା ନାହିଁ, କାରଣ କଲେଜ ହତା ଭିତରେ ରହି ଛାତ୍ରମାନେ ଟେକା ପଥର ବୃଷ୍ଟି କରୁଥିଲେ । ତେଣୁ ପୁଲିସକୁ ହତା ଭିତରେ ପଶି ଛାତ୍ରମାନଙ୍କୁ ଘଉଡ଼ାଇଦେବା ଆବଶ୍ୟକ ପଡ଼ିଥିଲା । ତା'ର ପ୍ରତିବାଦ କରି ଛାତ୍ର ଧର୍ମଘଟ ଚାଲୁରହିଥିଲା । ଶ୍ରୀ ବିଜୁ ପଟ୍ଟନାୟକ ସେଠାକୁ ସେହି ସମୟରେ ଯାଇଥିଲେ । ସେ ମଧ ପୁଲିସ କାର୍ଯ୍ୟରେ ଅସନ୍ତୋଷ ପ୍ରକାଶ କରିଥିଲେ ଏବଂ ଛାତ୍ରମାନଙ୍କର ତଥା ସ୍ଥାନୀୟ ବିଧାନସଭା ସଦସ୍ୟା ଶ୍ରୀମତୀ ସୁଜ୍ଞାନୀ କୁମାରୀ ଦେବୀଙ୍କର ବିଚାରବିଭାଗୀୟ ତଦନ୍ତ ଦାବିକୁ ସମର୍ଥନ କରିଥିଲେ । ଠିକ୍ ସେହି ସମୟରେ ପୁରୀରେ ବସ୍‌ମାଲିକମାନଙ୍କ ସହିତ ଛାତ୍ରମାନଙ୍କର ଝଗଡ଼ା ହୋଇଥିଲା ଏବଂ ପୁଲିସକୁ ଲାଠିଚାଳନା କରିବାକୁ ପଡ଼ିଥିଲା । ପୁରୀରେ ମଧ ସେମାନେ ବିଚାରବିଭାଗୀୟ ତଦନ୍ତ ଚାହୁଁଥିଲେ । ପ୍ରଜାତନ୍ତ୍ର କାଗଜରେ ଛାତ୍ରମାନଙ୍କୁ ଉତ୍ସାହିତ ଓ ଉତ୍ତେଜିତ କରିବା ଭଳି ସମ୍ବାଦ ପରିବେଷଣ କରାଯାଉଥିଲା । ମୁଁ ଶ୍ରୀ ମହତାବଙ୍କର ପରାମର୍ଶ ଲୋଡ଼ିଥିଲି । ବିଚାର ବିଭାଗୀୟ ତଦନ୍ତ ବିରୁଦ୍ଧରେ ସେ ମୋତେ ପରାମର୍ଶ ଦେଇଥିଲେ । ଶେଷରେ ଖଲ୍ଲିକୋଟ ଏବଂ ପୁରୀ ଘଟଣା ବିଷୟରେ ବିଚାରବିଭାଗୀୟ ତଦନ୍ତ ହେବ ବୋଲି ମୁଁ ଘୋଷଣା କରିଥିଲି । ତା'ପରେ ଉଭୟ ସ୍ଥାନରେ ଅବସ୍ଥା ଶାନ୍ତ ହୋଇଥିଲା । ଶ୍ରୀ ମହତାବଙ୍କର ଭିତିରି ଉଦ୍ଦେଶ୍ୟ ସେହି ସମୟରେ ମୁଁ ଜାନକୀବଲ୍ଲଭ ପଟ୍ଟନାୟକଙ୍କଠାରୁ ଜାଣିବାକୁ ପାଇଥିଲି । ଯେତେବେଳେ ଏହି ଛାତ୍ର ଗଣ୍ଡଗୋଳ ଚାଲିଥାଏ, ଲୋକସଭା ନିର୍ବାଚନ ପ୍ରଚାର ଉଦ୍ଦେଶ୍ୟରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ପୁରୀଠାରେ ଗୋଟିଏ ସଭାରେ ଭାଷଣ ଦେବାର କାର୍ଯ୍ୟକ୍ରମ ଥାଏ । ପୁରୀରେ ସେତେବେଳେ ଛାତ୍ରଧର୍ମଘଟ ଚାଲିଥାଏ । କୌଣସି ରାଜନୈତିକ ଦଳକୁ ପୁରୀରେ ସଭା କରାଇଦେବେ ନାହିଁ ବୋଲି ଛାତ୍ରମାନେ ଘୋଷଣା କରିଥାଆନ୍ତି । ପ୍ରଜାତନ୍ତ୍ର ଖବରକାଗଜ ପୁରୀ ଛାତ୍ରମାନଙ୍କୁ ଉତ୍ତେଜିତ କରିବାରେ ଲାଗିଥାଏ । ଶ୍ରୀମତୀ ଗାନ୍ଧୀଙ୍କର ଓଡ଼ିଶାରେ କାର୍ଯ୍ୟକ୍ରମ ସମ୍ବନ୍ଧରେ ପରାମର୍ଶ କରିବାକୁ ଜାନକୀବାବୁ ମୋ ପାଖକୁ ଆସିଥିଲେ । ପୁରୀରେ ଛାତ୍ର ଅଶାନ୍ତି ଚାଲିଥିଲାବେଳେ ଶ୍ରୀମତୀ ଗାନ୍ଧୀଙ୍କର ସଭା ସେଠାରେ ନକରିବାପାଇଁ ମୁଁ ପରାମର୍ଶ ଦେଇଥିଲି । ଜାନକୀବାବୁ ଇଚ୍ଛା କରୁଥାଆନ୍ତି କିପରି ଛାତ୍ରଅଶାନ୍ତି ବନ୍ଦହେଉ, ତା'ହେଲେ ଶ୍ରୀମତୀ ଗାନ୍ଧୀଙ୍କର ପୁରୀ କାର୍ଯ୍ୟକ୍ରମ ସୁରୁଖୁରୁରେ ହୋଇପାରିବ । ଯେଉଁ ଛାତ୍ର ଅଶାନ୍ତି ଚାଲିଥାଏ, ସେଥିରେ ପ୍ରଜାତନ୍ତ୍ରର ଭୂମିକା ସମ୍ବନ୍ଧରେ ଜାନକୀବାବୁ ଓ ମୁଁ କଥାବାର୍ତ୍ତା ହୋଇଥିଲୁ । ଛାତ୍ରମାନଙ୍କୁ ଅଯଥା ଉତ୍ତେଜିତ କରିବା କାର୍ଯ୍ୟରୁ ପ୍ରଜାତନ୍ତ୍ର ଯେପରି ନିବୃତ୍ତ ହେବ ସେଥିପାଇଁ ମହତାବବାବୁଙ୍କୁ ବୁଝାଇବାପାଇଁ ମୁଁ ଜାନକୀବାବୁଙ୍କୁ ପରାମର୍ଶ ଦେଇଥିଲି । ସେତିକିବେଳେ ଜାନକୀବାବୁ ମୋତେ କହିଥିଲେ, ''ମୁଁ ଏହି ଛାତ୍ର ଅଶାନ୍ତି ବିଷୟରେ ମହତାବଙ୍କ ସହିତ କଥାବାର୍ତ୍ତା ହୋଇଥିଲି । ତାଙ୍କୁ ମୁଁ କ'ଣ ପରାମର୍ଶ ଦେବି ? ସେ ମୋତେ ୧୯୬୪ ମସିହା

ଛାତ୍ର ଆନ୍ଦୋଳନ କଥା ସ୍ମରଣ କରାଇଦେଇ ଓଲଟି କହିଲେ, ଆସ ୧୯୬୪ ମସିହାର ଅବସ୍ଥା ସୃଷ୍ଟି କରିବା ।'' ଏହିଠାରେ ଜାନକୀବାବୁ ଅଜାଣତରେ ସ୍ୱୀକାରକରିଥିଲେ ୧୯୬୪ ମସିହାର ଛାତ୍ର ଆନ୍ଦୋଳନ ସମୟରେ ତାଙ୍କର ଏବଂ ମହତାବବାବୁଙ୍କର କି ଭୂମିକା ଥିଲା ।

## ଭଗବାନଙ୍କ ଭକ୍ତ ଓ ପ୍ରସାଦପ୍ରିୟ ସେବକ

୧୯୮୦-୮୧ ମସିହାରେ ଜାନକୀବାବୁଙ୍କର ମୁଖ୍ୟମନ୍ତ୍ରିତ୍ୱ ସମୟରେ ଯେଉଁ ଛାତ୍ର ଅଶାନ୍ତି ବ୍ୟାପକ ହୋଇଥିଲା, ତା'ର ପ୍ରଥମ ଅବସ୍ଥାରେ ପ୍ରଜାତନ୍ତ୍ର ଓ ଇଷ୍ଟର୍ଣ୍ଣ ଟାଇମ୍ସ ଚେତେଇଦେଇଥିଲେ ୧୯୬୪ ମସିହା ଛାତ୍ର ଆନ୍ଦୋଳନ ବେଳେ ଜାନକୀବାବୁଙ୍କର ଉତ୍ତେଜନାପ୍ରଦ ଧ୍ୱଂସମୂଳକ ଭୂମିକା କଥା । ଉକ୍ତ ଛାତ୍ର ଆନ୍ଦୋଳନ ସମୟରେ କଟକ ବାଦାମବାଡ଼ିଠାରେ ବସ୍ ଚଳେଇବାକୁ ଉଦ୍ୟମ କରି ପୁଲିସ ଯେଉଁ ଗୁଳିଚଳାଇଥିଲେ ସେଥିରେ ଶ୍ରୀ ମହତାବ ପ୍ରଜାତନ୍ତ୍ରରେ ଲେଖିଥିଲେ, ସେ କୁଆଡ଼େ ନିର୍ଦ୍ଦିଷ୍ଟ ଭାବରେ ଜାଣିଥିଲେ ଯେ ଜଣେ ମନ୍ତ୍ରୀ ଭୁବନେଶ୍ୱରରୁ ବସ୍‌ରେ ବନ୍ଧୁକଧାରୀ ପୁଲିସ ବସାଇ ପଠାଇଥିଲେ ଏବଂ ମନ୍ତ୍ରୀଙ୍କର ନିର୍ଦ୍ଦେଶ ଥିଲା ଯେକୌଣସି ପ୍ରକାରେ ବଳ ପ୍ରୟୋଗ କରି ବସ୍ ଚଳାଇବାକୁ ହେବ । ତେଣୁ ମନ୍ତ୍ରୀଙ୍କର ଆଦେଶ ପାଳନ କରିବାକୁ ଯାଇ ପୁଲିସକୁ ଗୁଳି ଚଳେଇବାକୁ ପଡ଼ିଥିଲା ।

ତା'ପରେ ଦେଖିବାକୁ ମିଳିଥିଲା ଯେ ଶ୍ରୀ ମହତାବଙ୍କର ସ୍ୱର ଏକାବେଳକେ ବଦଳିଯାଇଥିଲା । ଜାନକୀବାବୁଙ୍କର ମୁଖ୍ୟମନ୍ତ୍ରିତ୍ୱର ପ୍ରଥମ ଭାଗରେ ଯେଉଁ ଛାତ୍ର ଆନ୍ଦୋଳନ ହୋଇଥିଲା, ୧୯୮୦ ମସିହା ବନ୍ୟା ସମୟରେ ସମ୍ବଲପୁର ଓ ବଲାଙ୍ଗୀର ଅଞ୍ଚଳରେ ଛାତ୍ରମାନେ ଯେପରି ଆଚରଣ ଦେଖାଇଥିଲେ, ପ୍ରଜାତନ୍ତ୍ର ସମ୍ବାଦ ପରିବେଷଣରେ ତଥା ଶ୍ରୀ ମହତାବଙ୍କ ଗାଆଁ ମଜ୍‌ଲିସ୍ ଲେଖାରେ ସେଥିପାଇଁ ଛାତ୍ରମାନଙ୍କୁ ଉତ୍ସାହିତ କରାଯାଇଥିଲା । ମାତ୍ର ପରେ ଯେତେବେଳେ ସେ ତାଙ୍କର ସ୍ୱର ବଦଳାଇଲେ ସମ୍ବଲପୁରର ଛାତ୍ରମାନେ କ୍ରୋଧାନ୍ୱିତ ହୋଇ ତାଙ୍କୁ 'ସରକାରୀ ସାଧୁ'ର ଆଖ୍ୟା ଦେଇଥିଲେ । ବିଭିନ୍ନ ସମୟରେ ମହତାବବାବୁ ଓ ପ୍ରଜାତନ୍ତ୍ର ସହିତ ସଂପୃକ୍ତ ଥିବା ଅନେକଙ୍କର ଧାରଣା ଯେ ଶ୍ରୀ ମହତାବ ତାଙ୍କର ପ୍ରଜାତନ୍ତ୍ର କାଗଜକୁ ଗୋଟିଏ instrument for blackmailing ରୂପେ ବ୍ୟବହାର କରି ଧମକାଇ ସୁବିଧା ହାସଲ କରିବାର ଆୟୁଧ କରିଆସିଛନ୍ତି । ଖବରକାଗଜର ଧମକପୂର୍ଣ୍ଣ ଲେଖାକୁ ଅସ୍ତ୍ରରୂପେ ବ୍ୟବହାର କରି କାର୍ଯ୍ୟ ହାସଲ କରିବା ତାଙ୍କର କୌଶଳ । ଶ୍ରୀ ମହତାବ କୌଣସି ନୀତିର ସ୍ଥାୟିତ୍ୱ ଉପରେ ବିଶ୍ୱାସ କରନ୍ତିନାହିଁ । ସେଥିପାଇଁ ତାଙ୍କର ଗୋଟିଏ ଗାଆଁ ମଜ୍‌ଲିସ୍‌ରେ ସେ ଲେଖିଥିଲେ ଯେ ଗୃହସ୍ଥମାନେ ଅବସ୍ଥା ଓ ସମୟ ବୁଝି କାର୍ଯ୍ୟ କରିବା ଉଚିତ । ତାଙ୍କ ମତରେ ରାଜନୈତିକ ଲୋକମାନେ ମଧ କୌଣସି ନୀତି ଉପରେ ଜୋର୍ ନଦେଇ ଯେଉଁ ସମୟରେ ଓ ଯେଉଁ ଅବସ୍ଥାରେ ଯାହା କରିବା ଦରକାର ତାହା କରିବା ଉଚିତ । ଏଥିରୁ ବୁଝିବାକୁ ହେବ ଯେ ନିଜର କୌଣସି ଗୋଟିଏ କାର୍ଯ୍ୟ ହାସଲ କରିବା ଉଦ୍ଦେଶ୍ୟରେ ପ୍ରଥମ ଅବସ୍ଥାରେ ଛାତ୍ରମାନଙ୍କୁ ମତାଇଦିଆଯାଇପାରେ; ମାତ୍ର ନିଜର ସେହି କାର୍ଯ୍ୟ ହାସଲ ଆରମ୍ଭ ହେଲେ ସ୍ୱର ବଦଳାଇଦେବା ଗୃହସ୍ଥର କାର୍ଯ୍ୟ ।

୧୯୮୦ ମସିହା ନଭେମ୍ବର ମାସରେ କଟକର ଆଠଗଡ଼ ବିଧାନସଭା ନିର୍ବାଚନ ମଣ୍ଡଳୀରୁ ଗୋଟିଏ ଉପନିର୍ବାଚନ ହେବାର ଥାଏ ଏବଂ ସେଥିରେ ପ୍ରାର୍ଥୀ ଥିଲେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ । ତା'ପୂର୍ବରୁ ଶ୍ରୀ ମହତାବ 'ପ୍ରଜାତନ୍ତ୍ର' କାଗଜରେ ଅତି ଉଲଗ୍ନ ଭାବରେ ଜାନକୀବାବୁ ଓ ତାଙ୍କ ସରକାରଙ୍କ କାର୍ଯ୍ୟକଳାପ ସମ୍ବନ୍ଧରେ ସମାଲୋଚନା କରୁଥିଲେ । ପଶ୍ଚିମ-ଓଡ଼ିଶାରେ ସେତେବେଳେ ଛାତ୍ର ଅଶାନ୍ତି ଉପୁଜିଥିଲା । ସେମାନଙ୍କୁ ଉସ୍‌କାଇବା ଭଳି ଲେଖା ମଧ ପ୍ରଜାତନ୍ତ୍ରରେ ପ୍ରକାଶପାଉଥାଏ । ହଠାତ୍ ଶ୍ରୀ ମହତାବ 'ଗାଆଁ ମଜ୍‌ଲିସ୍' ଲେଖା ବନ୍ଦକରିଦେବାରୁ ସମ୍ବଲପୁର

ଗଙ୍ଗାଧର ମେହେର କଲେଜର ଜଣେ ଛାତ୍ର ଶ୍ରୀ ସଂଜୟ କୁମାର ସୂପକାର କୁଆଡ଼େ ତାଙ୍କୁ ଚିଠି ଲେଖି ତା'ର କାରଣ ପଚାରିଥିଲେ । ଶ୍ରୀ ମହତାବ ନଭେମ୍ବର ଛବିଶ ତାରିଖ ପ୍ରଜାତନ୍ତ୍ରରେ ପ୍ରକାଶିତ ଗାଆଁ ମଜ୍‌ଲିସ୍‌ରେ ଲେଖିଥିଲେ ଯେ ମୁଖ୍ୟମନ୍ତ୍ରୀଙ୍କ ନିର୍ବାଚନ ହେତୁ ଗାଆଁମଜ୍‌ଲିସ୍ ବନ୍ଦ ଥିଲା, କାରଣ ଗୋଟିଏ ଉପ-ନିର୍ବାଚନରେ ଯେତେବେଳେ ମୁଖ୍ୟମନ୍ତ୍ରୀ ସମ୍ମୁଖୀନ ସେତେବେଳେ ସେଠି କୌଣସି ମନ୍ତବ୍ୟ ପ୍ରକାଶ କଲେ ସେଥିପ୍ରତି ରାଜନୈତିକ ଆକ୍ଷେପ ଓ ଉଦ୍ଦେଶ୍ୟ ଆରୋପ କରାଯାଇପାରିବ ବୋଲି ସେ ସେଥିରୁ କ୍ଷାନ୍ତହୋଇଥିଲେ । ତାଙ୍କ ଲେଖାଦ୍ୱାରା ସେ ସେତେବେଳେ ନିର୍ବାଚନକୁ ପ୍ରଭାବିତ କରିବାଟାକୁ ପସନ୍ଦ କରୁନଥିଲେ । ମୁଁ ସେତେବେଳେ ଧରିନେଇଥିଲି ଯେ ନୀତିଗତ ଭାବରେ ସେ ତାହା କରିଥିଲେ । କିନ୍ତୁ ପରେ ଜଣାଗଲା ଯେ ସେଇଟା ଥିଲା ତାଙ୍କର 'ତାତ୍କାଳିକ' ନୀତିର ଅନ୍ୟ ଏକ ନିଦର୍ଶନ । ୧୯୮୧ ମସିହା ଜୁନ୍ ମାସରେ କଟକ ଲୋକସଭା ନିର୍ବାଚନବେଳକୁ ସେ ନୀତି ଆଉ ପ୍ରଯୁଜ୍ୟ ହେଲାନାହିଁ । Backmailing ବା ଧମକାଇ ଲାଭବାନ୍ ହେବାର କୌଶଳ ଫଳପ୍ରଦ ହୋଇଥିଲା । ତେଣୁ ଚତୁର ଗୃହସ୍ଥ ପରି ଅବସ୍ଥା ଓ ସମୟକୁ ଦେଖି କାର୍ଯ୍ୟ କରିବା ସଂପର୍କରେ ଶ୍ରୀ ମହତାବ ନିଜର ପରାମର୍ଶକୁ ନିଜେ କାମରେ ପ୍ରୟୋଗ କଲେ । ଦୁଇ ବାହୁକୁ ଊର୍ଦ୍ଧ୍ୱକୁ ଟେକି ଭାବବିହ୍ୱଳ ସଂକୀର୍ତ୍ତନିଆ ଭାବରେ ମହତାବବାବୁ ଅତି ନଗ୍ନ ରୂପରେ କଂଗ୍ରେସ ପ୍ରାର୍ଥୀଙ୍କୁ ସମର୍ଥନ କରି ଲୋକଦଳ ପ୍ରାର୍ଥୀଙ୍କ ବିରୁଦ୍ଧରେ ମେ' ମାସ ଚବିଶ ତାରିଖ ପ୍ରଜାତନ୍ତ୍ରର 'ଗାଆଁ ମଜ୍‌ଲିସ୍'ରେ ଲେଖିବାକୁ ଆରମ୍ଭ କରିଦେଇଥିଲେ । କହିବା ବାହୁଲ୍ୟ ଯେ ସଂକୀର୍ତ୍ତନକାରୀଙ୍କ ମଧ୍ୟରେ ଅନେକ ଥାଆନ୍ତି ପ୍ରକୃତ ଭକ୍ତ, ଅନେକ କେବଳ ପ୍ରସାଦପ୍ରିୟ ସେବକ ।

ନଗର ଉନ୍ନୟନ ଓ ଖଣି ବିଭାଗର ରାଷ୍ଟ୍ରମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳଙ୍କ ବିରୁଦ୍ଧରେ ଧାରାବାହିକ ଭାବରେ 'ପ୍ରଜାତନ୍ତ୍ର'ରେ କୁତ୍ସାରଟନା କରାଗଲା । ଶ୍ରୀ ବିଶ୍ୱାଳଙ୍କ ବିରୁଦ୍ଧରେ କି ପ୍ରକାର କୁତ୍ସାରଟନା କରାଯାଉଥିଲା, ତାହା କୋରାପୁଟ ବିଜ୍ଞାପିତ ଅଞ୍ଚଳ ପରିଷଦର ଚେୟାରମ୍ୟାନଙ୍କୁ ଶ୍ରୀ ମହତାବ ଯେଉଁ ଚିଠି ଲେଖିଥିଲେ ସେଥିରୁ ଜଣାପଡ଼େ । ସେ ଚିଠିର ଫଟୋଷ୍ଟାଟ୍ କପି 'ସମାଜ' କାଗଜରେ ପ୍ରକାଶ ପାଇଥିଲା । ଅନେକ ଦିନ ଶ୍ରୀ ବିଶ୍ୱାଳ ବ୍ଲାକ୍‌ମେଲିଂ ସାମ୍ବାଦିକତାର ଶିକାର ହୋଇଥିଲେ ଏବଂ ତତ୍କାଳୀନ ରାଜସ୍ୱ ମନ୍ତ୍ରୀ ଶ୍ରୀ କାହ୍ନୁଚରଣ ଲେଙ୍କାଙ୍କୁ ମଧ୍ୟ ଶ୍ରୀ ବିଶ୍ୱାଳଙ୍କ ବିରୁଦ୍ଧରେ ବ୍ୟବହାର କରାଯାଇଥିଲା ବୋଲି ଅନେକଙ୍କର ଧାରଣା । ୧୯୮୦ ମସିହାର ମହତାବ ଜୟନ୍ତୀର ଉଦ୍ୟୋକ୍ତା ଥିଲେ ଶ୍ରୀ କାହ୍ନୁଚରଣ ଲେଙ୍କା ଏବଂ ୧୯୮୧ ମସିହାର ମହତାବ ଜୟନ୍ତୀର ପୁରୋଧା ହୋଇ ସନ୍ତୋଷଜନକ କାର୍ଯ୍ୟ କରି ବିଶ୍ୱାଳ Blackmailing ରୁ ଉଦ୍ଧାରପାଇପାରିଥିଲେ । କାର୍ଯ୍ୟ ହାସଲ ହୋଇଯିବା ପରେ ଗୃହସ୍ଥର ତାତ୍କାଳିକ ନୀତି ଅନୁସାରେ କାହ୍ନୁବାବୁଙ୍କ ଉପରେ ଆକ୍ରମଣ ଆରମ୍ଭ ହୋଇଯାଇଥିଲା । ଶ୍ରୀ ମହତାବ ଥରେ ତାଙ୍କ 'ଗାଆଁ ମଜ୍‌ଲିସ୍'ରେ ଲେଖିଥିଲେ ଯେ ଦଳଗତ ରାଜନୀତିରେ ଅଂଶ ଗ୍ରହଣ କରିବେ ନାହିଁ ବୋଲି ସେ ଯେଉଁ ନିଷ୍ପତ୍ତି ନେଇଥିଲେ ସେଥିରେ ସେ କୁଆଡ଼େ ଅଟଳ ଅଛନ୍ତି । ମାତ୍ର ଶ୍ରୀ କାହ୍ନୁଚରଣ ଲେଙ୍କାଙ୍କୁ କେନ୍ଦ୍ର କରି ତାଙ୍କର ୧୯୮୧ ମସିହା ଜୁଲାଇ ମାସ ପଚିଶ ତାରିଖ ପ୍ରଜାତନ୍ତ୍ରରେ ପ୍ରକାଶିତ 'ଗାଆଁ ମଜ୍‌ଲିସ୍'ରେ ଦଳଗତ ଓ ଗୋଷ୍ଠୀଗତ ବିଦ୍ୱେଷମୂଳକ ପ୍ରଚାର ରାଜନୀତି ଛଡ଼ା ଆଉ କ'ଣ ହୋଇପାରେ ? ସେ ପ୍ରକାର ଲେଖାର ଉଦ୍ଦେଶ୍ୟ ବୁଝିବା ମଧ୍ୟ କଷ୍ଟସାଧ୍ୟ ନୁହେଁ । ଦେଶ ପାଇଁ ନ ହେଲେ ମଧ୍ୟ କାଳ ଓ ପାତ୍ର ବିବେଚନାରେ ତାହା ହୁଏତ ଏକାନ୍ତ ଦରକାର ଥିଲା । ତାହା ହିଁ ଚତୁର ଗୃହସ୍ଥର ତାତ୍କାଳିକ ନୀତି ।

ଗୃହସ୍ଥର ତାତ୍କାଳିକ ନୀତି ଅନୁସାରେ ଶ୍ରୀମତୀ ଗାନ୍ଧୀ ଓ ତାଙ୍କ ଦଳକୁ ସନ୍ତୁଷ୍ଟ କରିବା ଶ୍ରୀ ମହତାବଙ୍କର ହୁଏତ ପୁଣି ଆବଶ୍ୟକ ପଡ଼ିଥିଲା । ଶ୍ରୀ ମହତାବ ଭଲଭାବରେ ବୁଝିଥିଲେ ଯେ, ଶ୍ରୀମତୀ ଗାନ୍ଧୀଙ୍କ ପୁତ୍ର ଶ୍ରୀ ରାଜୀବ ଗାନ୍ଧୀଙ୍କୁ ସମର୍ଥନ କଲାଭଳି ଲେଖା ଲେଖିଲେ ଶ୍ରୀମତୀ ଗାନ୍ଧୀ ସନ୍ତୁଷ୍ଟ ହେବେ । ଶ୍ରୀ ରାଜୀବ ଗାନ୍ଧୀ ରାଜନୀତିକୁ ଆସିଲେ ବୋଲି ଯେଉଁମାନେ ପାରିବାରିକ

ରାଜନୀତିର ଦ୍ୱାହି ଦେଇ ତା'ର ସମାଲୋଚନା କରୁଛନ୍ତି, ସେମାନେ କାହିଁକି ସେହି ପାରିବାରିକ ପ୍ରଶ୍ନ ଉଠାଇ ନ ଥିଲେ ଯେତେବେଳେ ଓଡ଼ିଶାର ଗୋପବନ୍ଧୁ ଚୌଧୁରୀ ଓ ତାଙ୍କ ସ୍ତ୍ରୀ ଶ୍ରୀମତୀ ରମାଦେବୀ ଏବଂ ସେମାନଙ୍କର ପୁଅ ଝିଅ ଭାଇ ବିରାଦର ପ୍ରଭୃତି ସବଂଶେ ରାଜନୀତି ଓ ସର୍ବୋଦୟରେ ପ୍ରବେଶ କରି ନେତା ଭାବରେ ବିବେଚିତ ହୋଇଥିଲେ ? ସେହି ପ୍ରଶ୍ନ ହଠାତ୍ ମହତାବବାବୁ ଆବିଷ୍କାର କଲେ । ଶ୍ରୀ ମହତାବଙ୍କର ଉପମା ବଡ଼ ଚମତ୍କାର । ସବୁ ପ୍ରକାର ଭୋଗବିଳାସ ଓ ଐଶ୍ୱର୍ଯ୍ୟକୁ ବିସର୍ଜନ କରି, ନିଜ ନିଜର ଜୀବନକୁ ବିପନ୍ନ କରି ଯେଉଁ ବଂଶର ଆବାଳବୃଦ୍ଧବନିତା ସମସ୍ତେ କେବଳ ଦେଶର ସ୍ୱାଧୀନତା ପାଇଁ ତିଳ ତିଳ କରି ତ୍ୟାଗ ସ୍ୱୀକାର କଲେ, ସମାଜରେ ସେମାନଙ୍କ ପ୍ରତିଷ୍ଠା ସହିତ ଶ୍ରୀମତୀ ଗାନ୍ଧୀଙ୍କର ପୁତ୍ର ରାଜୀବଙ୍କର ପ୍ରତିଷ୍ଠାପାଇଁ ଉଦ୍ୟମକୁ ତୁଳନା କରିବା ନିଶ୍ଚୟ ଅତ୍ୟନ୍ତ ହାସ୍ୟାସ୍ପଦ ଓ ଉଦ୍ଭଟ ବିଚାର । ସ୍ୱର୍ଗତ ଗୋପବନ୍ଧୁ ଚୌଧୁରୀଙ୍କର ସାନଭାଇ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ବଂଶର ମଧ ସମସ୍ତେ ରାଜନୀତି ଓ ସର୍ବୋଦୟ କାର୍ଯ୍ୟରେ ନେତୃତ୍ୱ ନେଇଥିଲେ । ଓଡ଼ିଶାରେ ଚୌଧୁରୀ ବଂଶର ତ୍ୟାଗ ଅତୁଳନୀୟ । ସେଥିପାଇଁ ସେମାନେ ଲୋକଙ୍କର ଶ୍ରଦ୍ଧାଭାଜନ ହୋଇପାରିଥିଲେ ଏବଂ ରାଜନୀତିରେ ସେମାନଙ୍କର ପ୍ରତିଷ୍ଠାକୁ କେହି ପ୍ରଶ୍ନ କରିବାର ଲେଶମାତ୍ର ଅବକାଶ ନଥିଲା । ଚୌଧୁରୀ ବଂଶର ମହିମା ସମ୍ବନ୍ଧରେ ଏଠାରେ ମୋର ଗୋଟିଏ କଥା ମନେପଡ଼େ । ୧୯୭୮ ମସିହା ଡିସେମ୍ବର ମାସ ଶେଷ ସପ୍ତାହରେ ରାଷ୍ଟ୍ରପତି ଶ୍ରୀ ସଂଜୀବ ରେଡ଼ି ଓଡ଼ିଶା ଆସିଥିଲେ । ତାଙ୍କର ଆସିବା ପୂର୍ବରୁ ଦିଲ୍ଲୀ ରାଷ୍ଟ୍ରପତି ଭବନରୁ ବାର୍ତ୍ତା ଆସିଲା ଯେ ରାଷ୍ଟ୍ରପତି ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କୁ ଦେଖିବାକୁ ଚାହୁଁଛନ୍ତି । ଏହି ବାର୍ତ୍ତା ପାଇ ଆମ୍ଭେମାନେ ବଡ଼ ଅସୁବିଧାରେ ପଡ଼ିଥିଲୁ । ନବବାବୁଙ୍କୁ ଭୁବନେଶ୍ୱର ଆସି ରାଷ୍ଟ୍ରପତିଙ୍କୁ ଦେଖା କରିବା କଥା କହିବାକୁ ଆମ୍ଭେମାନେ ସାହସ କରିନଥିଲୁ । ତେଣୁ ରାଷ୍ଟ୍ରପତି ଭବନକୁ ସମ୍ବାଦ ପଠାଇଲୁ ଯେ ନବବାବୁ ଭୁବନେଶ୍ୱରରେ ରହନ୍ତିନାହିଁ, ସେ ଶହେ ମାଇଲ୍ ଦୂରରେ ଅନୁଗୁଳଠାରେ ତାଙ୍କର ଆଶ୍ରମରେ ରହନ୍ତି । ରାଷ୍ଟ୍ରପତି ଭବନରୁ ଖବର ଆସିଲା ରାଷ୍ଟ୍ରପତି ଅନୁଗୁଳ ଆଶ୍ରମକୁ ଯାଇ ନବବାବୁଙ୍କୁ ଦେଖିବେ । ସେହି ଅନୁସାରେ ବ୍ୟବସ୍ଥା କରାଗଲା ଏବଂ ଶ୍ରୀ ରେଡ଼ି ଡିସେମ୍ବର ଅଠାଇଶ ତାରିଖରେ ଅନୁଗୁଳ ଆଶ୍ରମକୁ ଯାଇ ନବବାବୁ ଓ ମାଳତୀ ଦେବୀଙ୍କୁ ଦେଖି ଅତ୍ୟନ୍ତ ସୁଖୀ ହୋଇଥିଲେ । ରାଷ୍ଟ୍ରପତିଙ୍କ ସଙ୍ଗରେ ମୁଁ ଓ ରାଜ୍ୟପାଳ ଥିଲୁ । ନବବାବୁଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ସମ୍ମାନ ଦେଖି ମୁଁ ଅଭିଭୂତ ହୋଇଥିଲି । ଅନୁଗୁଳରୁ ଫେରିଲାବେଳେ ହେଲିକେପ୍ଟରରେ ଚୌଧୁରୀ ବଂଶର ସମସ୍ତଙ୍କ ବିଷୟ ଶ୍ରୀ ରେଡ଼ି ମୋତେ ପଚାରି ବୁଝିଥିଲେ । ଟିକେ ନୀରବ ରହିଲା ପରେ କହିଥିଲେ, "Embodiment of what is called sacrifice and dedication. A rare example indeed.'

ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହେବା ପରେ ପ୍ରଥମ ଅବସ୍ଥାରେ ସେ ଶ୍ରୀ ମହତାବଙ୍କର କ୍ରୋଧର ଶିକାର ହୋଇଥିଲେ । ତାଙ୍କ ମନ୍ତ୍ରିମଣ୍ଡଳ ଗଠନର ପ୍ରଥମ ଅବସ୍ଥାରେ ମହତାବଙ୍କଠାରୁ ଦୂରେଇ ରହିବାକୁ ସେ ଉଦ୍ୟମ କରିଥିଲେ । ପଶ୍ଚିମ ଓଡ଼ିଶାରେ ୧୯୮୦ ମସିହା ବନ୍ୟା ସମୟରେ ସମ୍ବଲପୁରର ଛାତ୍ରମାନେ ବିପନ୍ନ ଲୋକଙ୍କ ସାହାଯ୍ୟପାଇଁ ରିଲିଫ୍ ସାମଗ୍ରୀ ସଂଗ୍ରହ କଲାବେଳେ କେତେକ ବ୍ୟବସାୟୀଙ୍କ ସହିତ ଛାତ୍ରମାନଙ୍କର ଯେଉଁ ସଂଘର୍ଷ ହୋଇଥିଲା, ସେ ସମ୍ବନ୍ଧରେ ଶ୍ରୀ ମହତାବଙ୍କର ମତାମତକୁ ଶ୍ରୀ ପଟ୍ଟନାୟକ ସମାଲୋଚନା କରିବାରୁ ସେଥିରେ ମହତାବବାବୁ ଖୁବ୍ ଉତ୍‌କ୍ଷିପ୍ତ ହୋଇଥିଲେ । ପଶ୍ଚିମ ଓଡ଼ିଶାରେ ସେ ସମୟର ଆନ୍ଦୋଳନ ଓ ଅଶାନ୍ତିକୁ ଲକ୍ଷ୍ୟକରି ମୁଖ୍ୟମନ୍ତ୍ରୀ କୁଆଡ଼େ କହିଥିଲେ ଯେ ସେ ଓଡ଼ିଶାରେ ଆସାମ ପରିସ୍ଥିତି ସୃଷ୍ଟି କରିବାକୁ ଦେବେନାହିଁ । ଆସାମରେ ସେଠାକାର ପ୍ରକୃତ ବାସିନ୍ଦାମାନଙ୍କ ନ୍ୟାଯ୍ୟ ଦାବି ବିଦେଶୀମାନଙ୍କର ବହିଷ୍କାର ସମ୍ବନ୍ଧୀୟ ଆନ୍ଦୋଳନ ହେତୁ ଯେଉଁ ପରିସ୍ଥିତି ଉପୁଜିଥିଲା ମୁଖ୍ୟମନ୍ତ୍ରୀ ତାକୁହିଁ ଲକ୍ଷ୍ୟକରି ସେ ପ୍ରକାର କଥା କହିଥିଲେ । ମହତାବବାବୁ ଜାନକୀବାବୁଙ୍କର ସେ ପ୍ରକାର ଉକ୍ତିର ତୀବ୍ର ସମାଲୋଚନା କରିଥିଲେ ।

୧୯୮୦ ମସିହାରେ ବଂଶଧାରା ନଦୀର ବନ୍ୟା ସମୟରେ ଗୁଣପୁରଠାରେ ସରକାରୀ ଅବହେଳାରେ କ୍ରୋଧାନ୍ୱିତ ହୋଇ ଜନତା ମୁଖ୍ୟମନ୍ତ୍ରୀଙ୍କ ପ୍ରତି ଯେଉଁ କୁତ୍ସିତ ଆଚରଣ ପ୍ରଦର୍ଶନ କରିଥିଲେ, ତାହା ରୁଚିବିରୁଦ୍ଧ ବୋଲି କୌଣସି ଖବରକାଗଜ ପ୍ରକାଶ କରିନଥିଲେ, ମାତ୍ର ପ୍ରଜାତନ୍ତ୍ରରେ ସେସବୁ କଥା ପ୍ରକାଶପାଇଥିଲା । ସେତେବେଳେ ମୁଖ୍ୟମନ୍ତ୍ରୀଙ୍କ ବିରୁଦ୍ଧ ମତବାଦୀ ବୋଲି ପରିଚିତ ଶ୍ରୀ କାହ୍ନୁ ଚରଣ ଲେଙ୍କା ମହତାବଙ୍କ ଜୟନ୍ତୀର ପ୍ରଧାନ ଉଦ୍ୟୋକ୍ତା ସ୍ଥାନ ପାଉଥିଲେ । ସେ ସମୟରେ ଶ୍ରୀ ମହତାବ ଧାରାବାହିକ ଭାବରେ ଜାନକୀବାବୁଙ୍କୁ ବିଦ୍ରୂପ କରି ନାନାଭାବରେ ଲେଖା ପ୍ରକାଶକରି ତାଙ୍କୁ ଉଚ୍ଛନ୍ନ କରିଦେଉଥିଲେ । ମହତାବବାବୁଙ୍କ ରାଜନୈତିକ ବ୍ଲାକ୍‌ମେଲିଂପାଇଁ ଜାନକୀବାବୁ ବଡ଼ ଚିନ୍ତିତ ଥିଲେ । ଶେଷରେ ଶ୍ରୀ ସତ୍ୟପ୍ରିୟ ମହାନ୍ତିଙ୍କର ଜୟନ୍ତୀ ଉତ୍ସବରେ ଅଶ୍ରୁ ନିର୍ଗତ କରି ତାଙ୍କର ଜିହ୍ୱା ଥିବା ପର୍ଯ୍ୟନ୍ତ ସେ କେବେ ମହତାବଙ୍କର ସମାଲୋଚନା କରିବେନାହିଁ ବୋଲି କହି ମହତାବଙ୍କର ବ୍ଲାକ୍‌ମେଲିଂ ଓ ଗଞ୍ଜଣାରୁ ଉଦ୍ଧାରପାଇଥିଲେ ।

ତତ୍‌ପରେ ଜାନକୀବାବୁ ଓ ସରକାରଙ୍କ ପ୍ରତି ପ୍ରଜାତନ୍ତ୍ରର ଆଭିମୁଖ୍ୟ ସହାନୁଭୂତିଶୀଳ ମନେହେଲା । ଅଥଚ ସେହି ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ ପ୍ରକାଶିତ ଇଂରାଜୀ ସାପ୍ତାହିକ ଇଷ୍ଟର୍ଣ୍ଣ ଟାଇମ୍‌ସ ସରକାରଙ୍କ ବିରୁଦ୍ଧରେ ନିର୍ଭୀକ ସମାଲୋଚନାମୂଳକ ଲେଖାମାନେ ପ୍ରକାଶ କରି କ୍ରମଶଃ ଲୋକପ୍ରିୟତା ଅର୍ଜନ କରିବାକୁ ଲାଗିଲା । ଏଥିପାଇଁ ଇଷ୍ଟର୍ଣ୍ଣ ଟାଇମ୍‌ସର ସମ୍ପାଦକ ଶ୍ରୀ ଜୟନ୍ତ ଦାସଙ୍କର ଖ୍ୟାତି ବଢ଼ିଥିଲା । ମହତାବବାବୁଙ୍କ ବିହାରିବାଗ ଭିତରୁ କିଛି କାଳ ଏହିପରି ଭାବରେ ଦୁଇ ପ୍ରକାର ବିସମ୍ବାଦର ସ୍ରୋତ ବହିଚାଲିଲା । ତେଣୁ ଅନେକେ ମନେକରିଥିଲେ ଯେ ଶ୍ରୀ ଜୟନ୍ତ ଦାସଙ୍କ ବ୍ୟକ୍ତିଗତ ପ୍ରତିଷ୍ଠା ମହତାବ ବାବୁଙ୍କ ପକ୍ଷେ ଅପରିହାର୍ଯ୍ୟ ମନେହେବାରୁ ସେ ଇଷ୍ଟର୍ଣ୍ଣ ଟାଇମ୍‌ସ୍‌ର ଏଭଳି ସମ୍ପାଦକୀୟ ନୀତିରେ ହସ୍ତକ୍ଷେପ କରୁନଥିଲେ । ଶ୍ରୀ ଜୟନ୍ତ ଦାସ ଥିଲେ ଉଚ୍ଚଶିକ୍ଷିତ । ସେ ସର୍ବଭାରତୀୟ ଚାକିରୀରେ ଉଚ୍ଚପଦବୀ ପରିତ୍ୟାଗ କରି ଆଇନ ବ୍ୟବସାୟ ଓ ସାମ୍ବାଦିକତା କ୍ଷେତ୍ରକୁ ଆସିଥିଲେ । ସ୍ୱନାମଧନ୍ୟ ଆଇନଜ୍ଞ ସ୍ୱର୍ଗତ ରାମଚନ୍ଦ୍ର ଦାସଙ୍କର ସେ ପୌତ୍ର ଏବଂ ଓଡ଼ିଶା ହାଇକୋର୍ଟର ତତ୍କାଳୀନ ବିଚାରପତି ନବକୁମାର ଦାସଙ୍କର ପୁତ୍ର; କିନ୍ତୁ ସାମ୍ବାଦିକତା କ୍ଷେତ୍ରରେ ଜୟନ୍ତ ଦାସଙ୍କ ଏତାଦୃଶ ଅପରିହାର୍ଯ୍ୟତାର ହଠାତ୍ ଅବସାନ ଘଟିଲା ୧୯୮୧ ମସିହା ସେପ୍‌ଟେମ୍ବର ନ' ତାରିଖ ପରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଅଧକ୍ଷ ମହତାବ ବାବୁଙ୍କ ବିଚାରରେ ଏବଂ କୁହାଗଲା ଇଷ୍ଟର୍ଣ୍ଣ ଟାଇମ୍‌ସ୍‌କୁ ମଧ୍ୟ ହଠାତ୍ ବନ୍ଦ କରିଦିଆହେଲା ପୁନଃପ୍ରକାଶର ଆୟୋଜନ କରିବା ପାଇଁ । ଓଡ଼ିଶାର ସାମ୍ବାଦିକତା କ୍ଷେତ୍ରରେ ଏହି ଘଟଣା କିଛିଟା ସନ୍ଦେହଜନକ ଓ ଅମର୍ଯ୍ୟାଦାଜନକ ବାତାବରଣ ସୃଷ୍ଟି କରିଥିଲା । ଏତିକିବେଳେ ଇଷ୍ଟର୍ଣ୍ଣ ଟାଇମ୍‌ସର ଦାୟିତ୍ୱ ନେବାପାଇଁ ମୋତେ ମହତାବବାବୁ ଅନୁରୋଧ କରିବାରୁ ମୁଁ ବିସ୍ମିତ ହୋଇଥିଲି । ସେ ଏହି ପ୍ରସ୍ତାବ ଅନ୍ୟ କେତେ ଥର ମଧ୍ୟ ଉଠାଇଥିଲେ । ମୁଁ ଏ ପ୍ରସ୍ତାବକୁ ପସନ୍ଦ କରିପାରି ନଥିଲି । ପ୍ରଜାତନ୍ତ୍ର ପ୍ରଚାର ସମିତି ସହିତ ମୋର ଯେଉଁ ସମ୍ପର୍କ ଥିଲା ସେ ବିଷୟ ପୂର୍ବରୁ କହିଛି । କୌଶଳକ୍ରମେ ସବୁଥିରୁ ଆମ୍ଭମାନଙ୍କ ସମ୍ପର୍କ ଛିନ୍ନ କରିସାରିବା ପରେ ତାଙ୍କର ମୋ ପ୍ରତି ହଠାତ୍ ଏ ପ୍ରକାର ଆକସ୍ମିକ ଅନୁକମ୍ପାର କାରଣ ମୁଁ ବୁଝିପାରିନଥିଲି । ଯେଉଁ ବନ୍ଧୁମାନେ ଏ କଥା ଜାଣିଲେ ସେମାନେ ତାହା ମହତାବବାବୁଙ୍କ ଗୃହସ୍ଥର ତାତ୍କାଳିକ ନ୍ୟାୟ ସହିତ ଖାପଖାଉଛି ବୋଲି ମତ ଦେଇଥିଲେ ।

୧୯୮୧ ମସିହାରେ ଛାତ୍ରମାନଙ୍କୁ ଭଙ୍ଗାରୁଜା ପ୍ରଭୃତି ହିଂସାକାଣ୍ଡ ପରିତ୍ୟାଗ କରି ଅହିଂସା ଆଚରଣ ଅବଲମ୍ବନ କରିବା ପାଇଁ ଶ୍ରୀ ମହତାବ ପରାମର୍ଶ ଦେଉଥିଲେ । ରାଜନୈତିକଦଳମାନଙ୍କୁ ମଧ୍ୟ ସେ ସେହି ପ୍ରକାର ଉପଦେଶ ଦେଇଛନ୍ତି । କାରଣ ତାତ୍କାଳିକ ଅବସ୍ଥା ଓ ସମୟ ତାହା ଦରକାର କରୁଛି; ମାତ୍ର ୧୯୭୪ ମସିହା ଛାତ୍ର ଆନ୍ଦୋଳନ ସମୟରେ ଶ୍ରୀ ମହତାବଙ୍କ ପ୍ରଜାତନ୍ତ୍ର ଖବରକାଗଜର ଯେଉଁ ଭୂମିକା ଥିଲା ସେଥିରେ ସେ ଭଙ୍ଗାରୁଜା କାର୍ଯ୍ୟକୁ ଉତ୍ସାହିତ କରୁଥିଲେ ବୋଲି ସେତେବେଳେ

ଲୋକମୁଖରୁ ଶୁଣାଯାଉଥିଲା । ସେହି ସମୟରେ ସତ୍ୟପ୍ରିୟ ମହାନ୍ତିଙ୍କ ଘରେ ନିଆଁଲଗାଇବା, ବିଜୁ ପଟ୍ଟନାୟକଙ୍କ ଘରେ ଜିନିଷପତ୍ର ଭଙ୍ଗାରୁଜା କରିବା ତଥା ମୋ ଜମି ଉପରେ ଥିବା ବୀରେନ୍ବାବୁଙ୍କର ଓଡ଼ିଶା ଏଜେଣ୍ଟସର କାଠ ଓ ଆସବାବ ଦୋକାନରେ ନିଆଁଲଗାଇବା କାର୍ଯ୍ୟସବୁ କେଉଁ ସୂତ୍ରରୁ ହୋଇଥିଲା ତାହା ପରେ ପରେ ଅଜଣା ରହିନଥିଲା । ପରବର୍ତ୍ତୀ କାଳରେ ଯୁବନେତା ଶ୍ରୀ ହରିବନ୍ଧୁ ଦାସ ଓ ଶ୍ରୀ ଭାଗବତ ବେହେରା ପ୍ରଭୃତି ଏସବୁ ଘଟଣା ସମ୍ବନ୍ଧରେ ଅନେକ ବିଷୟ କଥାପ୍ରସଙ୍ଗରେ ମୋତେ କହିଥିଲେ । ଧ୍ୱଂସାତ୍ମକ କାର୍ଯ୍ୟ କରିବା ଓ ବିସ୍ଫୋରଣ ଘଟାଇବା ଉଦ୍ଦେଶ୍ୟରେ ସେତେବେଳେ ତାଳଚେର କୋଇଲା ଖଣିରୁ ଡିନାମାଇଟ୍ (Dynamite) ଅଣାଯାଇଥିଲା ବୋଲି ମୁଁ ସେହି ଆଲୋଚନାରୁ ଜାଣିବାକୁ ପାଇଥିଲି । ଡିନାମାଇଟ୍ ବ୍ୟବହାର କରିବାର ସୁବିଧାନଥିବାରୁ ଏବଂ ତାହା କିପରି ବ୍ୟବହାର କରାଯାଏ ସେ ସମ୍ବନ୍ଧରେ ଜ୍ଞାନ ନଥିବାରୁ ସେଗୁଡ଼ିକ ବ୍ୟବହୃତ ହୋଇ ପାରିନଥିଲା ଏବଂ ଶେଷରେ ତାହା ଗୋଟିଏ ପୋଖରୀରେ ପକାଇ ଦିଆଯାଇଥିଲା । ଭୁବନେଶ୍ୱର ପୁରୁଣା ଷ୍ଟେସନ୍ ବଜାରରେ ଥିବା ମୋ ଜମି ଉପରେ ବୀରେନ୍ବାବୁ ଜଣେ ପଞ୍ଜାବୀ ବ୍ୟବସାୟୀଙ୍କୁ ଓଡ଼ିଶା ଏଜେଣ୍ଟସ ପକ୍ଷରୁ ଆସବାବପତ୍ର ପ୍ରଭୃତି ତିଆରି ପାଇଁ କାଠ ଦୋକାନ କରିବାକୁ କହିଥିଲେ । ଜମିଖଣ୍ଡିକ ଉପରେ ଘର ନ ହୋଇ ଖାଲି ପଡ଼ିଥିଲା । ମୁଁ ଅନିଚ୍ଛା ପ୍ରକାଶ କଲେ ମଧ୍ୟ ସେ ଦୋକାନ ସେଠାରେ ହୋଇଥିଲା, କାରଣ ବୀରେନ୍ବାବୁ କିଛି ଶୁଣିବା ଲୋକ ନଥିଲେ । ତାଙ୍କର ବନ୍ଧୁ ହିସାବରେ ମୁଁ ବିଶେଷ ପ୍ରତିରୋଧ କରିପାରିନଥିଲି । ମୋତେ ସେ ପଞ୍ଜାବୀ ବ୍ୟବସାୟୀ ଆଦୌ ଭଡ଼ା ଦେଉ ନ ଥିଲେ । ଘର କରିବାପାଇଁ ବ୍ୟବସ୍ଥା କରି ମୁଁ ଯେତେବେଳେ ସେ ବ୍ୟବସାୟୀଙ୍କୁ ସ୍ଥାନ ଛାଡ଼ିବାପାଇଁ କହେ, ସେ ଛାଡ଼ି ନ ଥିଲେ । ସେତେବେଳକୁ ସେହି ଜମି ଉପରେ ବହୁତ ଟଙ୍କା ଖଟାଇ ସେ ଗୋଟିଏ କାଠ କାରଖାନା ଓ ଅସ୍ଥାୟୀ ବାସଘର କରିପକାଇଥିଲେ । ସେହି ହେତୁରୁ ସେ ସ୍ଥାନ ନଛାଡ଼ି ମୋତେ ଭଡାଟଙ୍କା ଦେବାପାଇଁ ସେ ପ୍ରସ୍ତାବ ଦେଇଥିଲେ । ମୁଁ ସେଥିରେ ରାଜି ହୋଇ ନଥିଲି । ଆମ ଭିତରେ ଯେତେବେଳେ ଏ ବିଷୟରେ ଟଣାଓଟରା ଲାଗିଥାଏ ସେହି ସମୟରେ ଦୁର୍ବୃତ୍ତମାନେ ସେଠାରେ ନିଆଁ ଲଗାଇଦେଇଥିଲେ ଏବଂ ତଦ୍ୱାରା ସେଠାରେ ଥିବା ସମସ୍ତ ଘର, ଆସବାବ ଓ ଅନ୍ୟାନ୍ୟ ଜିନିଷପତ୍ର ଜଳି ଭସ୍ମ ହୋଇଯାଇଥିଲା । ଏହାଦ୍ୱାରା ମୋର ଯଦିଓ ତୁରନ୍ତ ଲାଭ ହୋଇଥିଲା, ସେହି ବିଚରା ଉଦ୍‌ବାସ୍ତୁ ପଞ୍ଜାବୀ ବ୍ୟବସାୟୀ ସର୍ବସ୍ୱାନ୍ତ ହୋଇ ସପରିବାର ପଣ୍ଡିଚେରୀର ଶ୍ରୀମାଙ୍କ ଆଶ୍ରମକୁ ପଳାଇଥିଲେ । ଏହି କାଠ କାରଖାନାରେ ମୋର କିଛି ସ୍ୱାର୍ଥ ଥିଲା ବୋଲି ବୋଧହୁଏ ଦୁରଭିସନ୍ଧିସମ୍ପନ୍ନ ପକ୍ଷଙ୍କର ଧାରଣା ଥିଲା । ଏଥିରୁ ମୋର ପରୋକ୍ଷରେ ଉପକାର ହେବାର ସମ୍ଭାବନା ଥିବାର ଜାଣିଥିଲେ ସେମାନେ କେବେହେଲେ ସେଠାରେ ନିଆଁ ଲଗାଇ ନଥାନ୍ତେ । କାରଣ ଜମିଖଣ୍ଡିକ ଯେପରି ଜବରଦଖଲରେ ଥିଲା, ବିନା ମାଲିମକଦ୍ଦମାରେ ମୁଁ ଆଉ ଫେରିପାଇ ନଥାନ୍ତି କି ବୀରେନ୍ବାବୁଙ୍କ ମୁହଁମତରେ ମାଲିମକଦ୍ଦମା ବି କରିପାରିନଥାନ୍ତି ।

୧୯୬୫ ମସିହାରେ କଂଗ୍ରେସ ସଭାପତି ଶ୍ରୀଯୁକ୍ତ କାମରାଜ ନାଦର ଓଡ଼ିଶା ଗସ୍ତରେ ଆସିଥିଲେ । ମହତାବବାବୁ କିପରି ହିଂସାତ୍ମକ କାର୍ଯ୍ୟକୁ ଉତ୍ସାହିତ କରୁଛନ୍ତି ସେ ବିଷୟରେ ସେତେବେଳେ ତାଙ୍କ ଆଗରେ ବହୁ କଂଗ୍ରେସ ବ୍ୟକ୍ତିଙ୍କ ପକ୍ଷରୁ ଅଭିଯୋଗ କରାଯାଇଥିଲା; କିନ୍ତୁ ଓଡ଼ିଶାର ରାଜନୈତିକ ହିଂସାଚରଣ ପ୍ରଶମିତ ହେଲାନାହିଁ । ଏହା ପରିଣତିସ୍ୱରୂପ ମୋର ମନେପଡ଼େ ୧୯୬୭ ମସିହା ଫେବୃୟାରୀ ମାସ ଆଠ ତାରିଖରେ ଭୁବନେଶ୍ୱରରେ ଅନୁଷ୍ଠିତ ସାଧାରଣ ସଭାରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ନାକଫଟା ବୃତ୍ତାନ୍ତ । ଶ୍ରୀମତୀ ଗାନ୍ଧୀଙ୍କର ଭୁବନେଶ୍ୱର ନିର୍ବାଚନ ସଭାକଥା ଘୋଷିତ ହେବା ସଙ୍ଗେ ସଙ୍ଗେ ଶ୍ରୀ ମହତାବ ତାଙ୍କର ପ୍ରଜାତନ୍ତ୍ର କାଗଜରେ ଭୁବନେଶ୍ୱରରେ ସଭା ନ କରିବା ପାଇଁ ଶ୍ରୀମତୀ ଗାନ୍ଧୀଙ୍କୁ ଏକପ୍ରକାର ଧମକଦେଇଥିଲେ । ସେ ସୂଚନା ଦେଇଥିଲେ ଯେ ଭୁବନେଶ୍ୱରରେ ଶ୍ରୀମତୀ ଗାନ୍ଧୀ ସଭାକଲେ ସେଠି ଗଣ୍ଡଗୋଳ ହେବ ଏବଂ ସେଥିପାଇଁ ଶ୍ରୀମତୀ ଗାନ୍ଧୀ ଦାୟୀ

ହେବେ । ଶ୍ରୀମତୀ ଗାନ୍ଧୀଙ୍କର ଭୁବନେଶ୍ୱର ସଭାରେ ଯେଉଁ ବୀଭତ୍ସକାଣ୍ଡ ଘଟିଲା, ତାହା ପଛରେ କାହାର ପ୍ରଚ୍ଛନ୍ନ ହାତ ଥିଲା ବୁଝିବାକୁ କାହାରି ଅସୁବିଧା ହୋଇନଥିଲା । ଏଇଟି ଥିଲା କଂଗ୍ରେସ ଦ୍ୱାରା ଆୟୋଜିତ ନିର୍ବାଚନ ସଭା । ଭୁବନେଶ୍ୱରରୁ ବିଧାନସଭା ଓ ଲୋକସଭା ପାଇଁ କଂଗ୍ରେସ ପ୍ରାର୍ଥୀ ଥିଲେ ଯଥାକ୍ରମେ ଶ୍ରୀ ସତ୍ୟପ୍ରିୟ ମହାନ୍ତି ଓ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ । ବିଧାନସଭାକୁ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ ଜନକଂଗ୍ରେସ ପ୍ରାର୍ଥୀ ଶ୍ରୀ ହରେକୃଷ୍ଣ ମହତାବ । ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ ସେଠାରେ ଭାଷଣ ଦେବାବେଳେ ଗଣ୍ଡଗୋଳକାରୀଙ୍କର ଟେକାପଥର ମାଡ଼ରେ ତାଙ୍କର ନାକ ଫାଟି ରକ୍ତ ବୋହିଯାଇଥିଲା । ଗଣ୍ଡଗୋଳକାରୀଙ୍କର ନେତା ଥିଲେ ଶ୍ରୀ ମହତାବଙ୍କର ଚେଲା ଶ୍ରୀ ବିପ୍ଳବୀ ରାଉତ । ଟେକା ପଥର ପଡ଼ିବା ବେଳେ ସେହି ମଣ୍ଡପ ଉପରେ ଥାଇ ମାଇକ୍‌ରେ ଶ୍ରୀ ସତ୍ୟପ୍ରିୟ ମହାନ୍ତି ଚିତ୍କାର କରି କହୁଥାଆନ୍ତି; ''ମହତାବି ଟେକା ଆସିଲା'' । ସେତେବେଳେ ସମସ୍ତେ ଏହି ଜଘନ୍ୟ ଘଟଣାର ନିନ୍ଦାକରିଥିଲେ; କିନ୍ତୁ ମହତାବବାବୁ ତାଙ୍କ ପ୍ରଜାତନ୍ତ୍ର କାଗଜରେ ଲେଖିଲେ ଯେ ଫୁଟ୍‌ବଲ୍ ଖେଳିଲାବେଳେ ବେଳେ ବେଳେ ଫାଉଲ୍ ହୋଇଥାଏ । ତେଣୁ ଶ୍ରୀମତୀ ଗାନ୍ଧୀ ତାଙ୍କର ନାକଫଟାକୁ ଜଣେ ଖେଳଓ୍ୱାର୍ଡ଼ ମନୋବୃତ୍ତିରେ ଗ୍ରହଣ କରିନେବା ଉଚିତ ।

ଟେକାପଥର୍ ମାଡ଼ ଯୋଗୁଁ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ନାକ ଫାଟିଯିବା ଦୁର୍ଘଟଣା ୧୯୬୭ ମସିହା ଫେବୃୟାରୀ ମାସ ଆଠ ତାରିଖ ସନ୍ଧ୍ୟାରେ ଭୁବନେଶ୍ୱର ପରେଡ୍ ପଡ଼ିଆରେ ଅନୁଷ୍ଠିତ ସାଧାରଣ ସଭାରେ ଘଟିଥିଲା । ଏହି ଦୁର୍ଘଟଣା ଘଟାଇବାର ଷଡ଼ଯନ୍ତ୍ର ସହିତ ଯେଉଁମାନେ ସଂପୃକ୍ତ ତା'ର ସୂଚନା ମିଳେ ତା'ର ପୂର୍ବଦିନ ସାତ ତାରିଖ ସନ୍ଧ୍ୟାରେ କଟକରୁ ପ୍ରକାଶିତ ପ୍ରଜାତନ୍ତ୍ର ଖବରକାଗଜ ଲେଖାରୁ । ସେତେବେଳେ ପ୍ରଜାତନ୍ତ୍ରର ସଂପାଦକ ଥିଲେ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ । ଯେ ପରେ ଆମ ରାଜ୍ୟରେ ଇନ୍ଦିରା କଂଗ୍ରେସ ସରକାରର ମୁଖ୍ୟମନ୍ତ୍ରୀ ହେଲେ । ସେଦିନ ଜାନକୀ ବାବୁ ତାଙ୍କ ସଂପାଦକୀୟ ଲେଖାରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ ଜନକଂଗ୍ରେସ ନେତା ଶ୍ରୀ ହରେକୃଷ୍ଣ ମହତାବଙ୍କର ପରାମର୍ଶକୁ ଉପେକ୍ଷା କରି ଭୁବନେଶ୍ୱରରେ ନିର୍ବାଚନ ସଭାରେ ଭାଷଣ ଦେବାକୁ ଆସୁଥିବାରୁ ତାଙ୍କୁ ଧମକପୂର୍ଣ୍ଣ ଭର୍ତ୍ସନା କରିଥିଲେ । ସେହି ଦିନର ପ୍ରଜାତନ୍ତ୍ରର ''ଇନ୍ଦିରା ଗାନ୍ଧୀଙ୍କୁ ଖୋଲା ଚିଠି'' ଶିରୋନାମାରେ ଜଣେ ବେନାମୀ ଭୋଟଦାତାଙ୍କ ନାମରେ ଯେଉଁ ଅରୁଚିକର, ଅଶ୍ଳୀଳ ଓ ଅମାର୍ଜିତ ଚିଠି ଖଣ୍ଡିକ ପ୍ରକାଶପାଇଥିଲା, ସେହି ଭୋଟଦାତା ଜଣକ ସ୍ୱୟଂ କର୍ତ୍ତା ଥିଲେ ବୋଲି ପ୍ରଜାତନ୍ତ୍ର ମହଲରୁ ମୁଁ ଜାଣିବାକୁ ପାଇଥିଲି । ସେଥିରେ ଲେଖାଥିଲା — ''ଇନ୍ଦିରା ବହେନ୍, ଆପଣ ଭାରତର ମାତା, ଭଗ୍ନୀ କି କ'ଣ ଆମେ ଜାଣିନଥିଲୁ; କିନ୍ତୁ ବିଜୁ ପଟ୍ଟନାୟକ ଆମକୁ ମେଷ୍ଟାଶାଳ ସଭାରେ ଜଣାଇଦେଲେ ଯେ ଆପଣ ଅନ୍ୟ କାହାର ବହେନ୍ ବା ଭଉଣୀ ନୁହଁନ୍ତି, ଆପଣ ହେଉଛନ୍ତି ତାଙ୍କର ଧରମଭଉଣୀ । ସେ ସେଦିନ ଦିବାସ୍ୱପ୍ନ ଦେଖି କହିଲେ— ଇନ୍ଦିରା ବହେନ୍ ହେବେ ଭାରତର ପ୍ରଧାନମନ୍ତ୍ରୀ, ମୁଁ ହେବି ଓଡ଼ିଶାର ମୁଖ୍ୟମନ୍ତ୍ରୀ । ବିଜୁ ପଟ୍ଟନାୟକଙ୍କର ପ୍ରଧାନ କାମ ହେବ ଦେଶର କୋଷାଗାର ଲୁଣ୍ଠନ କରିବା, ଆପଣଙ୍କର କାମ ହେବ ଖର୍ଚ୍ଚ ଦେଖାଇ ତାକୁ ଘୋଡ଼ାଇବା, ତାଙ୍କ ମୁହଁରେ ଅଳନ୍ଧୁ ଲାଗିଲେ ପୋଛିଦେବା । x x x ଆପଣ ଯେ ଚାଳିଶ କୋଟି ଟଙ୍କା ଖର୍ଚ୍ଚ କରି ପ୍ରଧାନମନ୍ତ୍ରୀ ହୋଇଛନ୍ତି ସେ କଥା ମୁଁ କହୁନାହିଁ, ମୁଁ ଜାଣେ ତାହା ଭାରତର ସମସ୍ତେ ଜାଣନ୍ତି । ଆପଣଙ୍କ ମୂଳଧନ ଆପଣଙ୍କ ଶାରୀରିକ ଗୁଣ । ଆପଣଙ୍କ ନାମ ପ୍ରିୟଦର୍ଶିନୀ । ଆପଣ ଯେଉଁଦିନ ପ୍ରଧାନମନ୍ତ୍ରୀ ହେଲେ ପରେ ପରେ ଡକ୍ଟର ରାଧାକ୍ରିଷ୍ଣନ୍, ଡକ୍ଟର ଲୋହିଆ ମତ ପ୍ରକାଶ କରିଥିଲେ, 'ଯାହାହେଉ ଏଣିକି ଖବରକାଗଜମାନଙ୍କରେ ଏକ ସୁନ୍ଦରୀ ମହିଳାଙ୍କର ଚିତ୍ର ପ୍ରକାଶପାଇବ । ଆପଣ ଓଡ଼ିଶା ଆସୁଛନ୍ତି କ'ଣ ପରାଜୟର ଭବିଷ୍ୟତ ଚିତ୍ରକୁ ଦୂରଦୃଷ୍ଟି ସହ ଦେଖିବାପାଇଁ ? ଭଲ, ଦେଖନ୍ତୁ । ନିଜର ସ୍ୱଜନମାନଙ୍କୁ ଯାଇ କହନ୍ତୁ ଯେ ଏଠାରେ ଫୁଲମାଳଗୁଡ଼ିକ ଜୋତାମାଳ ଓ ଝାଞ୍ଚୁଣୀମାଳରେ ପରିଣତ ହୋଇଛି ।'' ପ୍ରଧାନମନ୍ତ୍ରୀଙ୍କ ଭଳି ଜଣେ ସଂଭ୍ରାନ୍ତ ଭଦ୍ରମହିଳାଙ୍କ ସମ୍ବନ୍ଧରେ

ପ୍ରଜାତନ୍ତ୍ର ପୃଷ୍ଠାରେ ଏଭଳି ଗୋଟିଏ ବୀଭତ୍ସ, ରୁଚିବିରୁଦ୍ଧ ଲେଖାର ସଂକଳନ କରିଥିଲେ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ । ଏଭଳି ଅନେକ ଘଟଣା ଦେଖିଲେ ରାଜନୈତିକ ନୀତି ବୟାନକାରୀ ସଂକୀର୍ଣ୍ଣନିଆଙ୍କ ମଧ୍ୟରେ କିଏ ପ୍ରକୃତ ଭକ୍ତ ଆଉ କିଏ କେବଳ ତାତ୍କାଳିକ ପ୍ରସାଦଲୋଭୀ ସେବକ ସେ କଥା ନିଶ୍ଚୟ ବୁଦ୍ଧିମାନ୍ ଲୋକେ ବୁଝିପାରୁଥିବେ ।

## ଚିରା କମିଜ୍, ଫଟା କଂଗ୍ରେସ

କଂଗ୍ରେସ ମଧ୍ୟରେ ଦଳାଦଳି ୧୯୬୪ ମସିହାର ଛାତ୍ର ଆନ୍ଦୋଳନକୁ ବିଶେଷ ଭାବରେ ଉତ୍ସାହିତ କରିଥିଲା । ୧୯୬୧ ମସିହା ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ଶ୍ରୀ ମହତାବ ଇଚ୍ଛାକରୁଥିଲେ କଂଗ୍ରେସର ପରାଜୟ । ତେଣୁ କଂଗ୍ରେସର ବିପୁଳ ବିଜୟ ଦେଖି ସେ ଘୋର ହତାଶ ହୋଇପଡ଼ିଥିଲେ । କିଛିଦିନ ବିଷାଦଗ୍ରସ୍ତ ଓ ନିସ୍ତେଜ ହୋଇ ବସିରହିଥିଲେ । ବିଧାନସଭାରେ ଶ୍ରୀ ମୁରଲୀଧର ଜେନାଙ୍କ ଭଳି କେତେଜଣଙ୍କର ତାଙ୍କ ପ୍ରତି ଅନୁରକ୍ତି ଅଥବା ସହାନୁଭୂତି ଥିଲା, ମାତ୍ର ସେମାନେ ମଧ୍ୟ ହତୋତ୍ସାହ ହୋଇ ରହିଥିଲେ । ତତ୍କାଳୀନ ପି.ଏସ୍.ପି. ନେତା ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ପାର୍ଲିଆମେଣ୍ଟ ଭିତରେ ଓ ବାହାରେ ବିଜୁବାବୁଙ୍କ ବିରୁଦ୍ଧରେ ଯେଉଁ ଦୁର୍ନୀତି ଅଭିଯୋଗର ଅଭିଯାନ ଚଳାଇଥିଲେ, ସେଥିରୁ ମହତାବବାବୁ ବହୁତ ଆଶ୍ୱାସନା ପାଉଥିଲେ । ଅପରପକ୍ଷେ ବିଜୁବାବୁଙ୍କ ଅସାବଧାନ ଆଚରଣ କଂଗ୍ରେସ ଦଳ ମଧ୍ୟରେ ମହତାବଙ୍କର ସମର୍ଥକ ଗୋଷ୍ଠୀ ଗଠନ କରିବାରେ ସାହାଯ୍ୟ କରିଥିଲା । ଯେତେଦିନ ପର୍ଯ୍ୟନ୍ତ ଶ୍ରୀ ପବିତ୍ର ମୋହନ ପ୍ରଧାନ ମନ୍ତ୍ରୀ ହୋଇଥିଲେ ସେ ଶ୍ରୀ ମହତାବଙ୍କଠାରୁ ଦୂରରେ ରହୁଥିଲେ । ବିଜୁବାବୁ ମୁଖ୍ୟମନ୍ତ୍ରୀ ରହିବାଯାଏଁ ସେ ଶ୍ରୀ ମହତାବଙ୍କଠାରୁ ଦୂରରେ ରହୁଥିଲେ । ବିଜୁବାବୁ ମୁଖ୍ୟମନ୍ତ୍ରୀ ପଦ ଛାଡ଼ିଦେଇ ବୀରେନ୍‌ବାବୁଙ୍କୁ ମୁଖ୍ୟମନ୍ତ୍ରୀ ପଦରେ ବସାଇବାରୁ ପବିତ୍ରବାବୁ ବୀରେନ୍‌ବାବୁଙ୍କ ମନ୍ତ୍ରିମଣ୍ଡଳରେ ମନ୍ତ୍ରୀ ହୋଇ ରହିବାକୁ ଚାହିଁଲେନାହିଁ । ମନ୍ତ୍ରିମଣ୍ଡଳରୁ ଯିବା ପରେ ଶ୍ରୀ ମହତାବଙ୍କ ସହିତ ତାଙ୍କର ସଂପର୍କ ଘନିଷ୍ଠ ହେବାକୁ ଲାଗିଲା । ତା'ଛଡ଼ା ୧୯୬୪ ମସିହା ଅଗଷ୍ଟ ମାସ ଶେଷବେଳକୁ ପ୍ରଦେଶ କଂଗ୍ରେସ କାର୍ଯ୍ୟକାରୀ କମିଟିର ବୈଠକରେ ଯେଉଁ ନିନ୍ଦନୀୟ ଘଟଣା ଘଟିଲା ତାହା କଂଗ୍ରେସର ଦଳାଦଳି ଓ ଗୋଷ୍ଠୀ ବିବାଦକୁ ବଢ଼ାଇଦେଇଥିଲା । ଶ୍ରୀ ମହତାବଙ୍କୁ କେନ୍ଦ୍ରକରି ଗଢ଼ିଉଠୁଥିବା କଂଗ୍ରେସର ଅସନ୍ତୁଷ୍ଟ ଗୋଷ୍ଠୀ କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷଙ୍କ ନିକଟରେ ଆମ୍ଭମାନଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗ କରିଥିଲେ । ସେହି ଅଭିଯୋଗଗୁଡ଼ିକର ସତ୍ୟାସତ୍ୟ ସଂପର୍କରେ ଜାଣିବାପାଇଁ କଂଗ୍ରେସ ସଭାପତି ଶ୍ରୀ କାମରାଜ ପ୍ରଦେଶ କଂଗ୍ରେସର ତତ୍କାଳୀନ ସଭାପତି ଶ୍ରୀ ବିଜୟ କୁମାର ପାଣିଙ୍କ ପାଖକୁ ପଠାଇ ଦେଇଥିଲେ । ସେହି ବିଷୟ ଆଲୋଚନା କରିବାପାଇଁ ଦିନେ ଶ୍ରୀ ପାଣି ତାଙ୍କ ଭୁବନେଶ୍ୱର ବାସଭବନଠାରେ ପ୍ରଦେଶ କଂଗ୍ରେସ କାର୍ଯ୍ୟକାରୀ କମିଟିର ଗୋଟିଏ ବୈଠକ ଡାକିଥିଲେ । ମୁଁ ସେ ବୈଠକରେ ଉପସ୍ଥିତ ଥିଲି । ଶ୍ରୀ ବିଜୁ ପଟ୍ଟନାୟକ, ମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ୍ ମିତ୍ର, ଶ୍ରୀ ସଦାଶିବ ତ୍ରିପାଠୀ, ଶ୍ରୀ ବନମାଳୀ ପଟ୍ଟନାୟକ ଓ ଶ୍ରୀ ପବିତ୍ରମୋହନ ପ୍ରଧାନ ପ୍ରମୁଖ ଯୋଗଦେଇଥିଲେ । ପବିତ୍ରବାବୁ ବିଜୁବାବୁଙ୍କ ବିରୁଦ୍ଧରେ ଉଠାଇବା ଗୋଟିଏ ଦୁର୍ନୀତି ଅଭିଯୋଗ କେଉଁ ସୂତ୍ରରୁ ଜାଣିଲେ ବୋଲି ବିଜୁବାବୁ ଉତ୍ତ୍ୟକ୍ତ ହୋଇ ତାଙ୍କୁ ଜୋର୍ ଦେଇ ପଚାରିଥିଲେ । ପବିତ୍ରବାବୁ ବାରମ୍ବାର କହୁଥାଆନ୍ତି, "It is said". ଏହା ଶୁଣି ଶୁଣି ବିଜୁବାବୁ ଅତିଶୟ ଅଧୈର୍ଯ୍ୟ ହୋଇ ଉଠିପଡ଼ି ପବିତ୍ରବାବୁଙ୍କ ପାଖକୁ ଦୌଡ଼ିଆସି ତାଙ୍କ କମିଜକୁ ଧରିପକାଇଥିଲେ । ମୁଁ ହଠାତ୍ ଉଠିପଡ଼ି ବିଜୁବାବୁଙ୍କୁ ବାଧାଦେଇ ଠେଲି ଦେଇଥିଲି । ଏହି ଅବସ୍ଥାରେ ପବିତ୍ରବାବୁଙ୍କର କାମିଜ୍ ଚିରିଯାଇଥିଲା । ବିଜୁବାବୁ ଏପରି ଭାବରେ କ୍ରୋଧାନ୍ୱିତ ହୋଇପଡ଼ିଥିଲେ ଯେ ସେ ହିତାହିତଜ୍ଞାନ ହରାଇଥିଲେ । ଏ ଘଟଣାରେ ମୁଁ ବିଶେଷ ଭାବରେ ସ୍ତମ୍ଭୀଭୂତ ହୋଇଯାଇଥିଲି । ଅନ୍ୟମାନେ ସମସ୍ତେ ମଧ୍ୟ ସେହିପରି ଭାବରେ ସ୍ତମ୍ଭୀଭୂତ

ହୋଇଯାଇଥିଲେ । କିଛି ସମୟ ସମସ୍ତେ ଚୁପ୍ ହୋଇ ବସିରହିଥିଲେ । ପବିତ୍ରବାବୁ ଓ ବନମାଳୀ ପଟ୍ଟନାୟକ ବୈଠକ ଛାଡ଼ି ଚାଲିଯାଇଥିଲେ । ଏହା ଯେ ବିଜୁବାବୁଙ୍କ ପକ୍ଷରେ ଅତ୍ୟନ୍ତ ଗର୍ହିତ କାର୍ଯ୍ୟ ତା ସମସ୍ତେ ଉପଲବ୍ଧି କରିପାରିଥିଲେ ଏବଂ ଏହାଦ୍ୱାରା ଆମ୍ଭେମାନେ ସମସ୍ତେ ଅପମାନିତ ହୋଇଥିଲୁ । ପରେ ଏ ଘଟଣାର କିଛି ଗୋଟାଏ ସମାଧାନ ହେବାପାଇଁ ଉଦ୍ୟମ ହୋଇଥିଲା; ମାତ୍ର ତାହା କରାଇ ନଦେବା ଲୋକଙ୍କର ମଧ କିଛି ଅଭାବ ନଥିଲା । ବିଜୁବାବୁ ସାମାନ୍ୟ ଉତ୍ତେଜନାର ବଶବର୍ତ୍ତୀ ହୋଇ ଗୋଟିଏ ଅକାର୍ଯ୍ୟ କରିପକାଇଥିଲେ ଓ ପବିତ୍ରବାବୁ ସମସ୍ତଙ୍କୁ ଉକ୍ତ୍ୟ କରିବାପାଇଁ ସେହି ଚିରା ଜାମାକୁ ଧରି ସବୁଆଡ଼େ ବୁଲି ଦେଖାବାରେ ଲାଗିଥିଲେ । ପବିତ୍ରବାବୁ ଓ ବନମାଳୀବାବୁ ବୈଠକ ଛାଡ଼ି ଛାଡ଼ି ଚାଲିଗଲାବେଳେ ସେମାନଙ୍କୁ କେହି ଅଟକାଇନଥିଲେ । ତାହା କରାଯାଇଥିଲେ ନିଶ୍ଚୟ କିଛି ମାତ୍ରାରେ ଦୁଃଖ ଓ କ୍ରୋଧ ଉପଶମ ହୋଇଥାଆନ୍ତା; ମାତ୍ର କେତେକ ବିଜୁବାବୁ ଅସନ୍ତୁଷ୍ଟ ହେବା ଭୟରେ ଆଉ କେତେକ ଘଟଣାଟିକୁ ବଢ଼ାଇଦେବା ମତଲବରେ ତାହା କରିନଥିଲେ । ସେତେବେଳେ ମୁଁ ଏ ଦିଗରେ ଉଦ୍ୟମ ନକରି ଭୁଲକରିଥିଲି ।

ଦୁର୍ଭାଗ୍ୟର କଥା ଯେ, ଅଠର ବର୍ଷ ପରେ ଓଡ଼ିଶା ଲୋକଦଳ କାର୍ଯ୍ୟକାରୀ କମିଟିର ଏକ ବୈଠକରେ ୧୯୮୨ ମସିହା ଫେବୃୟାରୀ ମାସରେ ସେହି ଘଟଣାର ପୁନରାବୃତ୍ତି ହେବାକୁ ଯାଉଥିଲା । ତାକୁ ଅଟକାଇବାକୁ ଯାଇ ମୁଁ ଝୁଣ୍ଟିପଡ଼ି ଆଣ୍ଠୁରେ ଆଘାତ ପାଇଥିଲି । ଏହି ଅଭିନୟରେ ଗୋଟିଏ ପକ୍ଷରେ ପବିତ୍ରବାବୁଙ୍କ ସ୍ଥାନରେ ଥିଲେ ଶ୍ରୀ ପଦ୍ମଚରଣ ସାମନ୍ତସିଂହାର ଓ ଅନ୍ୟ ପକ୍ଷରେ ଥିଲେ ସଭାପତି ଶ୍ରୀ ବିଜୁ ପଟ୍ଟନାୟକ । ତିକ୍ତ ଓ ଉତ୍ତେଜନାପୂର୍ଣ୍ଣ ବାକ୍ୟ-ବିନିମୟ ମଧ୍ୟରେ ଉଭୟେ ଅତ୍ୟନ୍ତ ଉତ୍ତେଜିତ ହୋଇପଡ଼ିଥିଲେ । ମନେହେଲା ପଦ୍ମଚରଣବାବୁ ତାଙ୍କ ବୟସସୁଲଭ ଶାଳୀନତା ଭୁଲିଯିବାବେଳେ ସଭାପତି ତାଙ୍କର ସହନଶୀଳତା ହରାଇଥିଲେ । ଉକ୍ତ୍ୟ ଅବସ୍ଥାରେ ପଦ୍ମଚରଣବାବୁ ବୈଠକ ଛାଡ଼ି ଚାଲିଯାଉଥିଲେ । ମୁଁ ଦୌଡ଼ିଯାଇ ତାଙ୍କୁ ଅଟକାଇଦେଇଥିଲି । କାରଣ ମୁଁ ଆଶଙ୍କା କରିଥିଲି ଯେ ପବିତ୍ରବାବୁଙ୍କ କାମିଜଚିରା ଘଟଣା ଭଳି କିଛି ଘଟିପାରେ । ମୁଁ ଏହି ଅବସ୍ଥାରେ ଝୁଣ୍ଟିପଡ଼ି ଖଣ୍ଡିଆ ହେଲି । ମାତ୍ର ଏହା ଫଳରେ କେତେକ ଅସୁନ୍ଦର ପରିଣତିକୁ ଏଡାଇଦିଆଯାଇଥିଲା । ଏହାପରେ ଅତି ସ୍ୱାଭାବିକ ଭାବରେ ବୈଠକ କାର୍ଯ୍ୟ ଚାଲିଥିଲା; କିନ୍ତୁ ପରଦିନ କେତେକ ଖବରକାଗଜରେ ପ୍ରକାଶ ପାଇଥିଲା ଯେ କୁଆଡ଼େ ଲୋକଦଳ ବୈଠକରେ ଦୁଇଗୋଷ୍ଠୀ ଭିତରେ ଯେଉଁ ଧସ୍ତା ଧସ୍ତି ଲାଗିଥିଲେ, ସେଥିରେ ସମାଧାନ କଲାବେଳେ ମୁଁ ଜଖମ ହୋଇଥିଲି । ଏ ସମ୍ବାଦ ଏକାବେଳକେ କାଳ୍ପନିକ । ଏ ସମ୍ବାଦ ଅସତ୍ୟ ବୋଲି ଲୋକଦଳ ସାଧାରଣ ସମ୍ପାଦକ ତା'ର ପ୍ରତିବାଦ କରିଥିଲେ ।

ପବିତ୍ରବାବୁଙ୍କ କାମିଜ ଛିଣ୍ଡା ଘଟଣାର ପ୍ରାୟ ସପ୍ତାହକ ପରେ ପ୍ରଥମେ ଭୁବନେଶ୍ୱର ଏବଂ ତା'ପରେ କଟକରେ ଛାତ୍ର ଅଶାନ୍ତିର ଉଦ୍‌ଭବ ହୋଇଥିଲା । ଏହି ପରିପ୍ରେକ୍ଷୀରେ ଛାତ୍ର ଆନ୍ଦୋଳନକୁ ଉସ୍‌କାଇବାପାଇଁ ଯୋଗ୍ୟ ଲୋକଙ୍କର ଆଉ କିଛି ଅଭାବ ରହିଲାନାହିଁ । ଛାତ୍ର ଆନ୍ଦୋଳନକୁ ରାଜ୍ୟ ସାରା କିପରି ପ୍ରସାର କରାଯିବ ସେଥିପାଇଁ ଉଦ୍ୟମ ଆରମ୍ଭ ହୋଇଥିଲା । ପ୍ରଥମ ଅବସ୍ଥାରେ ନିର୍ଦ୍ଦିଷ୍ଟ ରାଜନୈତିକ ଆସକ୍ତି ନଥିବା ସାଧାରଣ ଛାତ୍ରମାନେ ଆନ୍ଦୋଳନ ପ୍ରତି ବିଶେଷ ଉତ୍ସାହ ଦେଖାଉ ନ ଥିଲେ । ସମାଜବାଦୀ ଦଳର ଛାତ୍ରନେତା ଶ୍ରୀ ଭାଗବତ ବେହେରା ମହତାବବାବୁଙ୍କ ଭଳି କଂଗ୍ରେସର କେତେକ ଅସନ୍ତୁଷ୍ଟ ନେତାଙ୍କ ସହ ସଂପର୍କ ରଖି ଛାତ୍ରମାନଙ୍କ ଭିତରେ କିପରି ତିକ୍ତତା ବୃଦ୍ଧିପାଇ ଉତ୍ତେଜନା ସୃଷ୍ଟି ହେବ ସେ ଦିଗରେ କାର୍ଯ୍ୟ କରିଥିଲେ । ସେତେବେଳେ କୌଣସି ଛାତ୍ର କ୍ରିୟାନୁଷ୍ଠାନ କମିଟି ନ ଥିଲେ ମଧ ତଥାକଥିତ କ୍ରିୟାନୁଷ୍ଠାନ କମିଟି ନାମରେ ସେ ଛାତ୍ରମାନଙ୍କୁ ନିର୍ଦ୍ଦେଶ ଦେବାକୁ ଆରମ୍ଭ କରିଦେଇଥିଲେ । ପ୍ରଜାତନ୍ତ୍ର ଖବରକାଗଜ ତାଙ୍କୁ ସାହାଯ୍ୟ କରିବାପାଇଁ ଏବଂ ତାଙ୍କର ସମ୍ବାଦ ପରିବେଷଣ କରିବାପାଇଁ ବିଶେଷ ଆଗ୍ରହ ପ୍ରକାଶ କରିଥିଲା । କଂଗ୍ରେସ ବିରୁଦ୍ଧରେ ଥିବା ରାଜନୈତିକ ଦଳମାନେ ଛାତ୍ର ଆନ୍ଦୋଳନ ମାଧ୍ୟମରେ ସରକାରଙ୍କୁ ଅପ୍ରିୟ କରିବା ଉଦ୍ଦେଶ୍ୟରେ

ଆନ୍ଦୋଳନକୁ ବ୍ୟାପକ କରିବାପାଇଁ ଛାତ୍ରମାନଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସିଥିଲେ । ରାଜ୍ୟର ବିଭିନ୍ନ ସ୍ଥାନରେ ଛାତ୍ର ଧର୍ମଘଟ ହୋଇଥିଲା । ସଭା ଓ ଶୋଭାଯାତ୍ରାମାନଙ୍କରେ ବିଚାରବିଭାଗୀୟ ତଦନ୍ତପାଇଁ ଦାବି କରାଯାଇଥିଲା । ସରକାରୀ ଅଫିସ୍ ଆଗରେ ଧାରଣାଦେଇ ଅଫିସ୍ କାର୍ଯ୍ୟରେ ବାଧାଦେବା ମଧ୍ୟ ଛାତ୍ରମାନଙ୍କର କାର୍ଯ୍ୟକ୍ରମର ପରିସରଭୁକ୍ତ ଥିଲା । କଟକର କଲେକ୍ଟରଙ୍କ ଅଫିସ୍ ଆଗରେ ପ୍ରାୟ ସବୁଦିନେ ସଭା, ଶୋଭାଯାତ୍ରା, ଧାରଣାଦେବା ଇତ୍ୟାଦି ନାନାପ୍ରକାର ବିକ୍ଷୋଭ ପ୍ରଦର୍ଶନ କରାଯାଉଥିଲା । ଛାତ୍ରମାନଙ୍କୁ ଉତ୍ତେଜିତ କରି କୌଣସି ପ୍ରକାରେ ଅପ୍ରୀତିକର ଘଟଣା ଘଟାଇବା ପାଇଁ ମଧ୍ୟ ଉଦ୍ୟମ ହେଉଥାଏ । ପୁଲିସ ଲାଠି ଓ ଗୁଳି ଚଳାଇଲେ ଆନ୍ଦୋଳନପ୍ରତି ଲୋକଙ୍କର ସହାନୁଭୂତି ବଢ଼ିବ ବୋଲି ପୁଲିସକୁ ଉତ୍ତେଜିତ କଲାଭଳି ପରିସ୍ଥିତି ସୃଷ୍ଟି କରାଯାଉଥାଏ । କିନ୍ତୁ କଟକରେ ମାଜିଷ୍ଟ୍ରେଟ୍ ଓ ପୁଲିସମାନେ ଅପୂର୍ବ ଧୈର୍ଯ୍ୟ ପ୍ରଦର୍ଶନ କରିଥିଲେ । ମୋର ମଧ୍ୟ ସେମାନଙ୍କୁ ସେହିପ୍ରକାର ନିର୍ଦ୍ଦେଶ ଥାଏ । ଦିନେ ହଜାର ହଜାର ସଂଖ୍ୟାରେ ଛାତ୍ର କଟକ କଲେକ୍ଟର ଅଫିସ୍ ସାମନାରେ ରୁଣ୍ଡ ହୋଇଥିଲେ । ଅଫିସ୍ ଭିତରେ ପଶି ଛାତ ଉପରକୁ ଉଠିଯାଇ କଳାପତାକା ଉଡ଼ାଇଥିଲେ । କଲେକ୍ଟରଙ୍କୁ ମଧ୍ୟ ଗାଳି ଗୁଲଜ କରୁଥାଆନ୍ତି । ଶ୍ରୀ ପଦ୍ମନାଭ ମିଶ୍ର ଥିଲେ ସେତେବେଳେ କଟକ ଜିଲ୍ଲାର କଲେକ୍ଟର । ସେ ମୋତେ ଫୋନ୍‌କରି ଛାତ୍ରମାନଙ୍କର ଗର୍ହିତ କାର୍ଯ୍ୟକଳାପ ସମ୍ବନ୍ଧରେ କହିଥିଲେ । ଧୈର୍ଯ୍ୟର ସହିତ ପରିସ୍ଥିତି ମୁକାବିଲା କରି କୌଣସି ପ୍ରକାର ଅପ୍ରୀତିକର ଘଟଣା ଘଟିବାକୁ ନଦେଇ ଦିନଟି ପାର କରିଦେଲେ ସେ ପ୍ରଶଂସିତ ହେବେ ବୋଲି ମୁଁ କଲେକ୍ଟର ଶ୍ରୀ ମିଶ୍ରଙ୍କୁ କହିଥିଲି । ସେ ଅତି ଧୈର୍ଯ୍ୟ ସହକାରେ ଛାତ୍ରମାନଙ୍କର ସବୁପ୍ରକାର ଅପ୍ରୀତିକର କାର୍ଯ୍ୟକଳାପକୁ ସହ୍ୟ କରି ଦିନଟି ବିତାଇବା ପରେ ମୋତେ ଜଣାଇଥିଲେ । ମୁଁ ତାଙ୍କୁ ସେଥିପାଇଁ ଧନ୍ୟବାଦ ଦେଇଥିଲି ଓ ତାଙ୍କ ଧୈର୍ଯ୍ୟକୁ ପ୍ରଶଂସା କରିଥିଲି । କଟକ ସହରରେ ହିଂସାକାଣ୍ଡ ଘଟାଇବାପାଇଁ ରାଜନୈତିକ ବ୍ୟକ୍ତିମାନଙ୍କର ଚକ୍ରାନ୍ତ ପଣ୍ଡ ହୋଇଥିଲା । କଟକ ଜିଲ୍ଲାର ଜଗତସିଂହପୁରର କଲେଜ ଓ ସ୍କୁଲ ଛାତ୍ରମାନେ ସାଧାରଣ ଲୋକଙ୍କ ସହିତ ମିଶି ନାନାପ୍ରକାର ହିଂସାକାଣ୍ଡ ଘଟାଇଥିଲେ । ସେଠାର ଛାତ୍ର ଓ ଜନସାଧାରଣ ମିଶି ପ୍ରାୟ ପାଞ୍ଚ ହଜାର ଲୋକ ଥାନା ଆକ୍ରମଣ କରିଥିଲେ ଓ ପୁଲିସ କ୍ୱାର୍ଟରମାନଙ୍କରେ ନିଆଁ ଲଗାଇ ଦେଇଥିଲେ । ସେଠାରେ ଗୁଳି ଚଳାଇବାକୁ ପଡ଼ିଥିଲା । ଗୁଳିଚୋଟରେ କୃଷ୍ଣ ପ୍ରସାଦ ମହାନ୍ତି ନାମକ ଜଣେ ଛାତ୍ର ପ୍ରାଣହରାଇଥିଲେ ।

ବାଲେଶ୍ୱର ଜିଲ୍ଲାର ସବୁ ଶିକ୍ଷାନୁଷ୍ଠାନରେ ଧର୍ମଘଟ ହୋଇଥିଲା । ଛାତ୍ରମାନେ ସଭା, ଶୋଭାଯାତ୍ରା ଓ ଅଫିସ୍ ଆଗରେ ନାନାପ୍ରକାର ବିକ୍ଷୋଭ କରିଥିଲେ । ଶହ ଶହ ଛାତ୍ର ଗିରଫ ହୋଇଥିଲେ । ଗିରଫ କଲାପରେ ଅଳ୍ପ ସମୟ ଅଟକାଇ ରଖି ଜଳଖିଆ ଖାଇବାକୁ ଦେବା ପରେ ଛାଡ଼ିଦିଆଯାଉଥିଲା । ସେଠାରେ ଶ୍ରୀ କେ.ସି.ସିଂହଦେଓ ଥିଲେ କଲେକ୍ଟର ଓ ଶ୍ରୀ ରସିକ ମୋହନ ପଟ୍ଟନାୟକ ଏସ୍.ପି. ଥିଲେ । ସେମାନେ ମୋ ସହିତ ଘନ ଘନ ସଂପର୍କ ରଖୁଥିଲେ । ସେମାନେ ଅତି ଧୈର୍ଯ୍ୟର ସହିତ ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ । ବାଲେଶ୍ୱର ଜିଲ୍ଲାର କୌଣସି ସ୍ଥାନରେ ଲାଠି ବା ଲୁହବୁହା ଗ୍ୟାସ୍ ପ୍ରୟୋଗ କରିବାକୁ ପଡ଼ିନଥିଲା । ଗଞ୍ଜାମ ଜିଲ୍ଲାରେ ବ୍ୟାପକ ଛାତ୍ରଅଶାନ୍ତି ସୃଷ୍ଟି ହୋଇଥିଲା । ବ୍ରହ୍ମପୁର ସହରରେ ଅକ୍ଟୋବର ଅଣତ୍ରିଶ ତାରିଖ ଦିନ ଭୟଙ୍କର ଅଶାନ୍ତ ଅବସ୍ଥା ସୃଷ୍ଟି ହୋଇଥିଲା । ତାକୁ ସମ୍ଭାଳିବା ପାଇଁ ମାଜିଷ୍ଟ୍ରେଟଙ୍କ ଆଦେଶରେ ଗୁଳି ଚଳାଇବାକୁ ପଡ଼ିଥିଲା । ସେଠାରେ ପାଞ୍ଚ ହଜାରରୁ ଉର୍ଦ୍ଧ୍ୱ ଛାତ୍ର ଓ ଜନତା ମିଶି ଉତ୍ତ୍ୟକ୍ତ ଅବସ୍ଥାରେ ଏସ୍.ଡ଼ି.ଓ.ଙ୍କ ଅଫିସ୍ ଉପରେ ଆକ୍ରମଣ କରିଥିଲେ । ଗୁଳିମାଡ଼ ଫଳରେ ଶ୍ରୀ ବସନ୍ତ କୁମାର ଆଚାର୍ଯ୍ୟ ଓ ଶ୍ରୀ ସୋମନାଥ ଜେନା ପ୍ରାଣ ହରାଇଥିଲେ । କଳାହାଣ୍ଡି ଜିଲ୍ଲାର ଭବାନୀପାଟଣା ସହରରେ ଛାତ୍ର ଧର୍ମଘଟ ହୋଇଥିଲା ଓ ନାନା ପ୍ରକାର ଅଶାନ୍ତି ସୃଷ୍ଟି କରାଯାଇଥିଲା । ସେଠାରେ ପୁଲିସ୍‌କୁ ଗୁଳି ଚଳାଇବାକୁ ପଡ଼ିଥିଲା; ମାତ୍ର କାହାରି ପ୍ରାଣହାନି ଘଟି ନ ଥିଲା ।

ରାଜଧାନୀ ଭୁବନେଶ୍ୱରରେ ଅକ୍ଟୋବର ଅଠେଇଶ ତାରିଖ ଦିନ ବ୍ୟାପକ ଅଶାନ୍ତ ପରିବେଶ ସୃଷ୍ଟି କରାହୋଇଥିଲା । ସେଦିନ ସକାଳେ ବକ୍‌ସି ଜଗବନ୍ଧୁ କଲେଜର ଛାତ୍ରମାନେ ଭୁବନେଶ୍ୱର ଏସ୍.ଡ଼ି.ଓ.ଙ୍କ କୋର୍ଟ ପାଖରେ ଆସି ଜମାହୋଇଥିଲେ । ସେଠାରୁ ଚାଲିଯିବାପାଇଁ ମାଜିଷ୍ଟ୍ରେଟ ସେମାନଙ୍କୁ ଆଦେଶଦେଇଥିଲେ । ମାତ୍ର ଛାତ୍ରମାନେ ସେକଥା ନଶୁଣି ପୁଲିସ ଉପରକୁ ଟେକାପଥର ପକାଇବାରୁ ସେଠାରେ ଲାଠି ଚଳାଇଥିଲେ । ସେମାନଙ୍କୁ ଘଉଡ଼ାଇ ଦେବାକୁ ପଡ଼ିଥିଲା । ସେହିଦିନ ମଧ୍ୟାହ୍ନରେ ପୁଣି ରାଜମହଲ ଛକ ପାଖରେ ବହୁଲୋକ ଏକତ୍ରିତ ହୋଇ ପୁଲିସ୍ ଉପରକୁ ଟେକାପଥର ପକାଇଥିଲେ । ମାତ୍ର ପୁଲିସ୍ ସେମାନଙ୍କୁ ସେଠାରୁ ଘଉଡ଼ାଇ ଦେଇଥିଲେ । ତାପରେ ଜଣାଗଲା ଯେ ଛାତ୍ରଙ୍କ ସହିତ ବହୁସଂଖ୍ୟକ ଦୁର୍ବୃତ୍ତ କ୍ୟାପିଟେଲ୍ ଥାନାକୁ ଆକ୍ରମଣ କରିବାପାଇଁ ମସୁଧା କରୁଥିଲେ । ଉପରଓଳି ପ୍ରାୟ ତିନିଟା ସମୟରେ ପାଞ୍ଚ ହଜାରରୁ ଉର୍ଦ୍ଧ୍ୱ ଲୋକ ଥାନା ସମ୍ମୁଖରେ କିଛିଦୂରରେ ଏକତ୍ରିତ ହେବାକୁ ଲାଗିଲେ । ଆସ୍ତେ ଆସ୍ତେ ସେମାନଙ୍କର ସଂଖ୍ୟା ବୃଦ୍ଧି ପାଇବାକୁ ଲାଗିଲା । ସେଦିନ ପୁଣି ରାଜଧାନୀ ହାଟ ଥିଲା । ଭୁବନେଶ୍ୱର ଏସ୍.ଡ଼ି.ଓ. ଲୋକମାନଙ୍କୁ ଥାନା ଆଗରେ ଜମା ହୋଇ ନ ରହିବାକୁ ଅନୁରୋଧ କରିଥିଲେ । ସେମାନେ ସେକଥା ଶୁଣିଲେନାହିଁ; ବରଂ ଥାନା ଆଡ଼କୁ ଆସ୍ତେ ଆସ୍ତେ ଆଗେଇବାରେ ଲାଗିଥିଲେ । ପୁଲିସ ଟେକାପଥର ମାଡ଼ରେ ଆହତ ହେଲେ । ରାଜଧାନୀ ଥାନାରେ ଡି.ଆଇ.ଜି. ଶ୍ରୀ ଦାମୋଦର ଛୋଟରାୟ ଉପସ୍ଥିତ ଥିଲେ । ମୁଁ ସେତେବେଳେ ମୋର ସଚିବାଳୟ ଅଫିସ୍‌ରେ ଥାଏ । ମୁଖ୍ୟମନ୍ତ୍ରୀ ଦିଲ୍ଲୀରେ ବିଜୁବାବୁଙ୍କ ଘରେ ଥିଲେ । ସେ ମଝିରେ ମଝିରେ ଦିଲ୍ଲୀରୁ ଫୋନ୍‌କରି ମୋଠାରୁ ଅବସ୍ଥା ବୁଝୁଥିଲେ । ଭୁବନେଶ୍ୱରର ପରିସ୍ଥିତି ବଡ଼ ଉତ୍ତେଜନାପୂର୍ଣ୍ଣ ହୋଇ ରହିଥାଏ । ରାଜଧାନୀ ଥାନା ସାମ୍ନାର ପରିସ୍ଥିତି ଅତିଶୟ ଉଦ୍‌ବେଗଜନକ ଅବସ୍ଥାରେ ଥାଏ । ଡି.ଆଇ.ଜି. ଘନ ଘନ ଫୋନ୍ କରି ଥାନା ସମ୍ମୁଖର ଅବସ୍ଥା କଥା ମୋତେ ଜଣାଉଥାଆନ୍ତି । ମୁଁ କଥାବାର୍ତ୍ତା ଭିତରେ ସୂଚନା ଦେଉଥାଏ ଯେ ଗୁଳି ନଚଳାଇ ଅବସ୍ଥା ସମ୍ଭାଳି ପାରିଲେ ଭଲ ହେବ । ସେଠାରେ ଅବସ୍ଥା ଅତି ସାଂଘାତିକ ହେବା କଥା ସେ ମୋତେ ଫୋନ୍‌ରେ ଜଣାଇଥିଲେ । ଅପରାହ୍ଣ ଚାରିଟା ସମୟରେ ଅବସ୍ଥା ଅତିଶୟ ଅସମ୍ଭାଳ ଓ ବିପଜ୍ଜନକ ହେବାରୁ ସବ୍‌ଡିଭିଜନାଲ ମାଜିଷ୍ଟ୍ରେଟ ଗୁଳି ଚଳାଇବାକୁ ଆଦେଶ ଦେଇଥିଲେ । ଗୁଳିରେ ଶ୍ରୀ ଦିବାକର ରଥ ନାମକ ଜଣେ ବ୍ୟକ୍ତି ଆଘାତ ପାଇଥିଲେ । ସେ ବଞ୍ଚିଯାଇଥିବା କଥା ଶୁଣି ମୁଁ ଆଶ୍ୱସ୍ତ ହୋଇଥିଲି । ଶ୍ରୀ ଛୋଟରାୟ ମୋତେ ସବୁ ଘଟଣା ଜଣାଇଦେଇଥିଲେ । ଏହାପରେ ଦିଲ୍ଲୀରୁ ମୁଖ୍ୟମନ୍ତ୍ରୀଙ୍କ ପାଖରୁ ପୁଣି ଫୋନ୍ ଆସିଲା ଅବସ୍ଥା ବିଷୟରେ ଖବର ଜାଣିବାପାଇଁ । ମୁଁ ତାଙ୍କୁ କ୍ୟାପିଟାଲ୍ ଥାନା ଆଗରେ ଫାୟାରିଂ (ଗୁଳି) ହେବା କଥା କହିବା ମାତ୍ରେ ସେ 'ଫା.. ଫା..' ହୋଇ ଚିତ୍କାର କରୁ କରୁ ହଠାତ୍ ଧଡ଼୍‌ଧାଡ଼୍ ହୋଇ ଫୋନ୍ ଲାଇନ୍ କଟି ଯାଇଥିଲା । ଆଉ କିଛି କଥାବାର୍ତ୍ତା ହୋଇପାରିନଥିଲା । ପରେ ଶୁଣିଲି ଯେ, ସେ ବିଜୁବାବୁଙ୍କ ଘର ପଛ ପଡ଼ିଆରେ ବସି ଫୋନ୍ କରୁଥିଲେ ଏବଂ ମୋଠାରୁ ଭୁବନେଶ୍ୱରରେ ଫାୟାରିଂ ହେବା କଥା ଶୁଣି ଛାନିଆଁରେ ଫା.....ଫା.....ଫା....ପାଟି କରୁ କରୁ କମ୍ପିଉଠି ଚେୟାର, ଟେବୁଲ ଓ ଟେଲିଫୋନ ସହ ଗଡ଼ିପଡ଼ିଥିଲେ । ବୀରେନ୍‌ବାବୁ କଥାବାର୍ତ୍ତାରେ ଯେତିକି ଦାମ୍ଭିକ ଜଣାପଡ଼ନ୍ତି ବିପଦଆପଦବେଳେ ତାହାର ଠିକ୍ ବିପରୀତ ପରିସ୍ଥିତି ସୃଷ୍ଟି କରନ୍ତି ।

## ପାରିବାରିକ ବିପତ୍ତିର ସ୍ମୃତି

ଏହି ଛାତ୍ର ଆନ୍ଦୋଳନ ସମୟରେ ମୁଁ ଥିଲି ଆନ୍ଦୋଳନକାରୀ ତଥା ଆମ କଂଗ୍ରେସର ଅସନ୍ତୁଷ୍ଟ ଗୋଷ୍ଠୀ ନେତାମାନଙ୍କର ଆକ୍ରୋଶର କେନ୍ଦ୍ର । ଭୁବନେଶ୍ୱର ବିଧାନସଭାରେ ସେହି ବର୍ଷ ସେପ୍‌ଟେମ୍ବର ମାସରେ ଯେଉଁସବୁ ଅଶୋଭନୀୟ ଘଟଣା ଘଟିଥିଲା, ସେଥିରେ ମୁଖ୍ୟମନ୍ତ୍ରୀ ବୀରେନ୍‌ବାବୁ ବିଶେଷଭାବରେ ମର୍ମାହତ ହୋଇପଡ଼ିଥିଲେ ଏବଂ ଶାସନକ୍ଷେତ୍ରରେ ସବୁ କଥାରେ ନିସ୍ପୃହ ରହୁଥିଲେ ।

ସ୍ୱରାଷ୍ଟ୍ରମନ୍ତ୍ରୀ ହିସାବରେ ଆନ୍ଦୋଳନ ସମ୍ବନ୍ଧୀୟ ସମସ୍ତ ଭାର ମୋ ଉପରେ ନିର୍ଭର କରୁଥାଏ । ବିଚାର-ବିଭାଗୀୟ ତଦନ୍ତ ପାଇଁ ମୁଁ ରାଜି ନହେଲେ ତାହା ହୋଇପାରିବନାହିଁ ବୋଲି ସେତେବେଳେ ସମସ୍ତଙ୍କର ଧାରଣା ହୋଇଥିଲା । ଆନ୍ଦୋଳନ ସମ୍ବନ୍ଧରେ ସରକାରଙ୍କ ପକ୍ଷରୁ ଯାହା କହିବାର କଥା ତାହା କେବଳ ମୁଁ କହୁଥିଲି । ତେଣୁ ସମସ୍ତଙ୍କର ଦୃଷ୍ଟି ମୋ ଉପରେ ପଡୁଥିଲା । ମୋର କ୍ୟାଣ୍ଟନ୍‌ମେଣ୍ଟ୍ ରୋଡ୍ କଟକଚଣ୍ଡୀ ଛକ ବାସଭବନ ପାଖଆଖରେ ବହୁ ଶିକ୍ଷାନୁଷ୍ଠାନ ଅବସ୍ଥିତ । ମୋର କଟକ ବାସଭବନ ହୋଇଥିଲା ଆନ୍ଦୋଳନକାରୀମାନଙ୍କର ଲକ୍ଷ୍ୟସ୍ଥଳ । ମୁଁ ସେତେବେଳେ ଭୁବନେଶ୍ୱରରେ ରହୁଥାଏ; ମାତ୍ର ମୋର ସ୍ତ୍ରୀ, ପୁଅ ଓ ଅନ୍ୟମାନେ କଟକରେ ରହୁଥାନ୍ତି । ସେଠାରେ ସେମାନେ ଦୁର୍ବୃତ୍ତମାନଙ୍କର ନାନାପ୍ରକାର ବିଦ୍ରୂପର ଶିକାର ହେଉଥା'ନ୍ତି । ମଝିରେ ମଝିରେ ଟେକାପଥର ବୃଷ୍ଟିହେଉଥାଏ । ଆନ୍ଦୋଳନକାରୀମାନଙ୍କ ପକ୍ଷରୁ ଦୁର୍ବ୍ୟବହାର ଯେତେବେଳେ ସୀମା ଅତିକ୍ରମ କଲା, ଆଇନ୍‌ଶୃଙ୍ଖଳା ଅଧିକାରୀମାନେ ମୋ' ଘରଠାରେ ପୁଲିସ୍ ମୁତୟନ ବ୍ୟବସ୍ଥା କରିଥିଲେ । ମୋର ପୁଅ ଶ୍ରୀମାନ୍ ବିଜୟଶ୍ରୀ ସେତେବେଳେ କେମ୍ବ୍ରିଜ୍ ସ୍କୁଲ୍‌ରେ ପଢୁଥିଲା । ତା'ର କିଛି ଅନିଷ୍ଟ କରିବା ଦୁର୍ବୃତ୍ତମାନଙ୍କର ଉଦ୍ଦେଶ୍ୟ ବୋଲି ମୋ ପାଖରେ ଖବର ପହଞ୍ଚିଲା । ତେଣୁ ମୁଁ ମୋର ସ୍ତ୍ରୀକୁ ସାବଧାନ କରାଇଦେଇଥିଲି । ସେ ତାକୁ ଆଉ ବାହାରକୁ ଛାଡିନଥିଲା । ସମୟସମୟରେ କେହି କେହି ପିଲା ଆସି କଥାବାର୍ତ୍ତା କରିବାକୁ ବିଜୟଶ୍ରୀକୁ ଖୋଜନ୍ତି । ମାତ୍ର ତା'ର ମାମା ତାକୁ ବାହାରକୁ ଛାଡ଼େନାହିଁ । ପରେ ଶୁଣିବାକୁ ପାଇଲି ଯେ ମୋର ପୁଅକୁ ବିପନ୍ନ କରିବାପାଇଁ ଗୋଟିଏ ଷଡ଼ଯନ୍ତ୍ର ହୋଇଥିଲା, କଟକର ଏକ ଖବରକାଗଜ ଅଫିସ୍‌କୁ କେନ୍ଦ୍ରକରି କାର୍ଯ୍ୟ କରୁଥିବା ଆନ୍ଦୋଳନକାରୀମାନେ ଚକ୍ରାନ୍ତ କରିଥିଲେ ଯେକୌଣସିମତେ ମୋର ପୁଅକୁ ହରଣଚାଳ କରି ନେଇଗଲେ ମୋତେ ଜବତ୍ କରିପାରିବେ । ମୋର ପୁଅକୁ ନେଇ କୌଣସି ଗୋଟିଏ ଗୁପ୍ତ ସ୍ଥାନରେ ରଖି ଛାତ୍ରମାନଙ୍କର ଦାବି ମାନିନେବାପାଇଁ ମୋତେ ବାଧ୍ୟକରିବେ । ମୁଁ ସେଥିରେ ରାଜି ନ ହେଲେ ମୋ ପିଲାର ଅନିଷ୍ଟ କରିବେ ବୋଲି ଧମକ ଦେଇଥାଆନ୍ତେ । ଏହା କେତେକ ନେତାଙ୍କ ଗୋଚରରେ ହେଉଥିଲା ବୋଲି ପରେ ମୁଁ ଶୁଣିବାକୁ ପାଇଥିଲି । ସେହି ଚକ୍ରାନ୍ତ ସହିତ ସଂପୃକ୍ତଥିବା କେତେକ ପିଲା ମୋ ପୁଅକୁ ମଧ୍ୟ ଏସବୁ କଥା ପରେ କହିଥିଲେ । ସେମାନେ ବିଜୟଶ୍ରୀକୁ କୁଆଡ଼େ କହିଥିଲେ ଯେ ସେମାନେ ତାକୁ ଶିଖାଇ ନେଇଯିବାପାଇଁ ଉଦ୍ୟମ କରିଥିଲେ । ଆମର ଏକମାତ୍ର ସନ୍ତାନପ୍ରତି ଏ ବିପତ୍ତିର କଥା ଯେତେବେଳେ ଆମର ମନେପଡ଼େ, ଆମ ଶରୀର ମଧ୍ୟସ୍ଥ କଙ୍କାଳ ଶିହରିଯାଏ । ବିଶେଷତଃ ସେହି ସମୟରୁ ମୋ ସ୍ତ୍ରୀର ରାଜନୈତିକ ବ୍ୟକ୍ତିମାନଙ୍କ ପ୍ରତି ଅସହିଷ୍ଣୁତା ବିଶେଷ ବଢ଼ିଯାଇଥିଲା । ଏହାଛଡ଼ା ତାଲଚେର କୋଇଲା ଖଣିରୁ ଯେଉଁ ଡିନାମାଇଟ୍ ଅଣାଯାଇଥିବା କଥା ପୂର୍ବରୁ କୁହାଯାଇଛି, ତାହାଦ୍ୱାରା ମୋର କଟକ ଘରକୁ ଉଡ଼ାଇଦେବାର ମସୁଧା ମଧ୍ୟ ଥିଲା । ମାତ୍ର ପୁଲିସ ପହରାହେତୁ ତାହା ସମ୍ଭବ ହୋଇନଥିଲା ବୋଲି ସେହି ଚକ୍ରାନ୍ତ ସହିତ ସଂପୃକ୍ତ ଥିବା ଜଣେ ବ୍ୟକ୍ତିଙ୍କଠାରୁ ପରେ ମୁଁ ଶୁଣିବାକୁ ପାଇଥିଲି ।

## ଗୁଳି କରିବାର ଅଧିକାର ଓ ତାହାର ବିଚାର

ଶାନ୍ତିଶୃଙ୍ଖଳା ରକ୍ଷା କରିବାକୁ ଯାଇ ଯଦି କୌଣସି ସ୍ଥାନରେ ପୁଲିସକୁ ଗୁଳି ଚଳାଇବାକୁ ପଡ଼େ ସେ ଅବସ୍ଥାରେ ଲୋକେ ସାଧାରଣତଃ ଭାବନ୍ତି ଯେପରି ସରକାରଙ୍କ ଆଦେଶରେ ଗୁଳି ହୋଇଛି । ଅନେକ ସମୟରେ ଏହିପରି ଧାରଣା ମଧ୍ୟ ସୃଷ୍ଟିକରି ଦିଆଯାଏ । ସରକାର କହିଲେ ମନ୍ତ୍ରିମଣ୍ଡଳକୁ ବୁଝାଏ । ତେଣୁ ମୁଖ୍ୟମନ୍ତ୍ରୀ ବା ସଂପୃକ୍ତ ମନ୍ତ୍ରୀଙ୍କ ଆଦେଶରେ ଗୁଳି ହେବାଟା ନିଶ୍ଚିତ ବୋଲି ସାଧାରଣ ଲୋକେ ଧରିନିଅନ୍ତି । ତେଣୁ ମନ୍ତ୍ରୀମାନଙ୍କ ଉପରେ ବିଶେଷକରି ସ୍ୱରାଷ୍ଟ୍ରମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀଙ୍କ ଉପରେ ଗାଳି ବର୍ଷଣ ହୋଇଥାଏ । ପ୍ରଶାସନ କ୍ଷେତ୍ରରେ ବିଶେଷତଃ ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ ହିସାବରେ ମୋର ଦୀର୍ଘ ଅନୁଭୂତିରୁ ମୁଁ କହୁଛି ଯେ ଏ ପ୍ରକାର ଚିନ୍ତାଧାରା ଏକାବେଳକେ ଅଯଥାର୍ଥ

ଓ ଅସଙ୍ଗତ । ଗୁଳିହେବା ପରେ ସରକାର ଜାଣନ୍ତି, ତା ପୂର୍ବରୁ ନୁହେଁ । ପୂର୍ବରୁ କହିଛି, ଭୁବନେଶ୍ୱରରେ ଅତ୍ୟନ୍ତ ଉତ୍ତେଜନାପୂର୍ଣ୍ଣ ପରିସ୍ଥିତି ସୃଷ୍ଟି ହେବା ସତ୍ତ୍ୱେ ସ୍ୱରାଷ୍ଟ୍ରମନ୍ତ୍ରୀ ଥାଇ ମଧ୍ୟ ଗୁଳିଚାଳନା ନକରି କୌଣସିମତେ ଅବସ୍ଥା ଆୟତ୍ତ କରିବାକୁ ମୁଁ କିପରି ପରାମର୍ଶ ଦେଉଥିଲି । ଆଇନଶୃଙ୍ଖଳା ରକ୍ଷାକାରୀମାନଙ୍କର ଜୀବନ ବିପନ୍ନ ହେଲେ କିମ୍ବା ଦୁର୍ବୃତ୍ତମାନଙ୍କୁ ଆୟତ୍ତ କରିବାପାଇଁ ଏକାନ୍ତ ଅପରିହାର୍ଯ୍ୟ ହେଲେ ସେମାନେ ଗୁଳି ଚଳାଇବାପାଇଁ ଆଦେଶ ଦିଅନ୍ତି । ଅତି ସାବଧାନତାର ସହିତ ମାଜିଷ୍ଟ୍ରେଟଙ୍କ ଆଦେଶ ଓ ତତ୍ତ୍ୱାବଧାନରେ ଗୁଳି ହୋଇଥାଏ । ଗୁଳି ନଚଳାଇ, ଜୀବନ ହାନି ନକରି ଯେକୌଣସି ବିସ୍ଫୋରକ ପରିସ୍ଥିତିସତ୍ତ୍ୱେ ଆଇନ ଓ ଶୃଙ୍ଖଳା ରକ୍ଷାକରାଗଲେ ସରକାର ତଥା ମନ୍ତ୍ରୀମାନେ ଅପୂର୍ବ ଆଶ୍ୱସ୍ତି ଅନୁଭବ କରନ୍ତି, ଏହା ମୋର ପ୍ରଶାସନିକ କ୍ଷେତ୍ରରେ ଦୀର୍ଘଦିନର ଅନୁଭୂତି । ବେଳେବେଳେ କୌଣସି କୌଣସି ମୁଖ୍ୟମନ୍ତ୍ରୀ ବା ସ୍ୱରାଷ୍ଟ୍ରମନ୍ତ୍ରୀ ଅତି ବାହାଦୁରି ଦେଖାଇ କହିଥାଆନ୍ତି ଯେ ଅବସ୍ଥା ଆୟତ୍ତ କରିବାପାଇଁ 'shoot at sight' ଅର୍ଥାତ୍ ଦେଖିଲାମାତ୍ରେ ଗୁଳି କରିବାକୁ ସେମାନେ ପୁଲିସକୁ ନିର୍ଦ୍ଦେଶ ଦେଇଛନ୍ତି । ଶ୍ରୀ ସିଦ୍ଧାର୍ଥ ଶଙ୍କର ରାୟ ପଶ୍ଚିମବଙ୍ଗଳାର ମୁଖ୍ୟମନ୍ତ୍ରୀ ଥିବାବେଳେ ଥରେ ପୁଲିସକୁ ଏହି ପ୍ରକାର 'shoot at sight' ଆଦେଶ ଦେବାକଥା ମୁଁ ଖବରକାଗଜରେ ପଢ଼ିଥିଲି । ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ୧୯୮୦ ମସିହାରେ ଆମ ରାଜ୍ୟରେ ଘଟିଥିବା ଗୋଟିଏ ଗଣ୍ଡଗୋଳ ସମୟରେ ସେହି ପ୍ରକାର 'shoot at sight' ଆଦେଶ ଦେବା କଥା ସମ୍ବାଦପତ୍ରରେ ପ୍ରକାଶପାଇଥିଲା । ପ୍ରଶାସନିକ କ୍ଷେତ୍ରରେ ଏହା ଅନଭିଜ୍ଞତା ଛଡ଼ା ଆଉ କିଛି ନୁହେଁ । Shoot at sight ବୋଲି ଯଦି ଖୋଦ୍ ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ବା ସ୍ୱରାଷ୍ଟ୍ରମନ୍ତ୍ରୀ ଆଦେଶ ଦିଅନ୍ତି, ତା'ହେଲେ ଆଇନର ଶାସନ ପରିବର୍ତ୍ତେ ଅତ୍ୟାଚାରୀର ପୀଡ଼ନ ସ୍ୱତଃ ପ୍ରବର୍ତ୍ତିତ ହୋଇଯିବ । ଗଣତାନ୍ତ୍ରିକ ପଦ୍ଧତିରେ ପରିଚାଳିତ ଦେଶରେ ଆଇନର ଶାସନ (rule of law) ହିଁ ସାମ୍ବିଧାନିକ ବ୍ୟବସ୍ଥା । ସେହି ଶାସନ ବ୍ୟବସ୍ଥା ମଧ୍ୟରେ ମନ୍ତ୍ରୀ ଯେତେ ବଡ଼ ପଦାଧିକାରୀ ହେଲେ ମଧ୍ୟ ତାଙ୍କଠାରୁ ଏ ପ୍ରକାର ଆଦେଶ ଆଇନସମ୍ମତ ହୋଇନପାରେ । ଖୁବ୍ ବେଶି ହେଲେ ଜଣେ ମୁଖ୍ୟମନ୍ତ୍ରୀ ବା ସ୍ୱରାଷ୍ଟ୍ରମନ୍ତ୍ରୀ ଆଦେଶ ଦେଇପାରନ୍ତି ଯେ law and order must be maintained at any cost, ଅର୍ଥାତ୍ ଯେକୌଣସି ପ୍ରକାରେ ଆଇନଶୃଙ୍ଖଳା ବଜାୟ ରଖିବାକୁ ହେବ— ତା'ଠାରୁ ଅଧିକ କହିବା କୌଣସିମତେ ସଙ୍ଗତ ବା ଆଇନସମ୍ମତ ନୁହେଁ । ମୂଲ୍ୟ ବା cost ଟା କ'ଣ ହେବ ତାହା ପରିସ୍ଥିତିର ପ୍ରତ୍ୟକ୍ଷ ଦାୟିତ୍ୱରେ ଥିବା ଅଫିସରମାନଙ୍କର ବିଜ୍ଞ ବିଚାର ଉପରେ ଛାଡ଼ିଦିଆଯାଏ ଏବଂ ତାହାହିଁ ମୋର ଅନୁଭୂତି ।

ବିଚାରବିଭାଗୀୟ ତଦନ୍ତପାଇଁ ଆଦେଶଦେବା ବିରୁଦ୍ଧରେ ପ୍ରଥମେ ମୁଁ ଯେଉଁ ନୀତିଗତ ନିଷ୍ପତ୍ତି ନେଇଥିଲି ଛାତ୍ର ଆନ୍ଦୋଳନକୁ ଆୟତ୍ତ କରିବାକୁ ଯାଇ ଦୁଇ ତିନି ଜାଗାରେ ଗୁଳିଚାଳନାରେ ପ୍ରାଣହାନି ଘଟିବାରୁ ମୁଁ ସେ ବିଷୟରେ ପୁନର୍ବିଚାର କରିଥିଲି । ଏକଥା ସତ୍ୟ ଯେ ଗୁଳି କରିବାକୁ ତୁଚ୍ଛାଟାରେ କୌଣସି ଅଫିସର୍ ଆଦେଶ ଦିଅନ୍ତିନାହିଁ, ବିବେକ ଓ ବିବେଚନା ଶକ୍ତି ଖଟାଇ ସେମାନେ ଆଦେଶ ଦେଇଥାଆନ୍ତି । ତଥାପି ଯେଉଁଠାରେ ପ୍ରାଣହାନି ଘଟିଲା, ସେଠାକାର ଏପରି ଗୁରୁତର କାର୍ଯ୍ୟାନୁଷ୍ଠାନର ଯଥାର୍ଥତା ସମ୍ବନ୍ଧରେ ଲୋକଙ୍କ ମନରୁ ସନ୍ଦେହ ଦୂରକରିବା ମଧ୍ୟ ସରକାରଙ୍କର କର୍ତ୍ତବ୍ୟ । ମୁଖ୍ୟମନ୍ତ୍ରୀଙ୍କ ସହିତ ମୁଁ ଏ ବିଷୟ ଆଲୋଚନା କରିଥିଲି । ମୋର ଏ ପ୍ରକାର ମନୋଭାବ ଦେଖି ସେ ଖୁସି ହୋଇଥିଲେ । ଶ୍ରୀମତୀ ରମାଦେବୀ ଓ ଆମର ଆଡ୍‌ଭୋକେଟ୍ ଜେନେରାଲ୍ ଶ୍ରୀ ଦୀନବନ୍ଧୁ ସାହୁଙ୍କ ସହିତ ଆମ୍ଭେମାନେ କଥାବାର୍ତ୍ତା ହୋଇଥିଲୁ । ସେମାନେ ଛାତ୍ର ନେତାମାନଙ୍କ ସହିତ ସଂପର୍କ ସ୍ଥାପନ କରିଥିଲେ । ୧୯୬୪ ମସିହା ନଭେମ୍ବର ମାସ ପାଞ୍ଚ ତାରିଖରେ ଭୁବନେଶ୍ୱରଠାରେ ମୋର ସରକାରୀ ବାସଭବନରେ ଛାତ୍ରନେତାମାନେ ଏକତ୍ରିତ ହୋଇଥିଲେ । ମୁଖ୍ୟମନ୍ତ୍ରୀ ଓ ଶିକ୍ଷାମନ୍ତ୍ରୀଙ୍କ ଛଡ଼ା ଶ୍ରୀମତୀ ରମାଦେବୀ ଓ ଶ୍ରୀ ଦୀନବନ୍ଧୁ ସାହୁ ସେଠାରେ ଉପସ୍ଥିତ ଥିଲେ । ବହୁତ ରାତିପର୍ଯ୍ୟନ୍ତ

ଛାତ୍ରମାନଙ୍କ ସହିତ ଆମ୍ଭମାନଙ୍କର ଆଲୋଚନା ହୋଇଥିଲା । ଛାତ୍ରନେତାମାନେ ମୋ ଘରେ ରାତ୍ରିଭୋଜନ କରିଥିଲେ । ଆଲୋଚନାରେ ସ୍ଥିର ହେଲା ଯେ ୧୯୬୪ ମସିହା ସେପ୍‌ଟେମ୍ବର ମାସ ଛବିଶ ତାରିଖଠାରୁ ନଭେମ୍ବର ପାଞ୍ଚ ତାରିଖ ପର୍ଯ୍ୟନ୍ତ ଛାତ୍ର ଆନ୍ଦୋଳନ ସହିତ ସଂପୃକ୍ତଥିବା ସବୁ ଘଟଣାର ବିଚାର ବିଭାଗୀୟ ତଦନ୍ତ ହେବ । ଏହାପରେ ଛାତ୍ରମାନେ ତାଙ୍କର ଆନ୍ଦୋଳନକୁ ପ୍ରତ୍ୟାହାର କଲେ ବୋଲି ଘୋଷଣା କରିଥିଲେ । ମୋର ମନେପଡ଼େ ଏହି ଆଲୋଚନା ସମୟରେ ଛାତ୍ରମାନଙ୍କ ପକ୍ଷରୁ ଅନ୍ୟମାନଙ୍କ ଭିତରେ ଶ୍ରୀ ଭାଗବତ ବେହେରା ଓ ଶ୍ରୀ ତ୍ରିଲୋଚନ କାନୁନ୍‌ଗୋ ଉପସ୍ଥିତ ଥିଲେ । ପରେ ଏ ଦୁଇଜଣ ଛାତ୍ରନେତା ଓଡ଼ିଶା ବିଧାନସଭାର ସଭ୍ୟ ହୋଇଥିଲେ । ଜଣେ ହାଇକୋର୍ଟ ବିଚାରପତିଙ୍କଦ୍ୱାରା ତଦନ୍ତ କରାଯିବା କଥା ସ୍ଥିରକରାଯାଇଥିଲା । ଜଣେ ବିଚାରପତିଙ୍କୁ ମନୋନୀତ କରିବାପାଇଁ ଓଡ଼ିଶା ହାଇକୋର୍ଟର ପ୍ରଧାନ ବିଚାରପତିଙ୍କୁ ମୁଁ ଚିଠି ଲେଖିଥିଲି । କେଉଁ କେଉଁ ବିଷୟସବୁ ତଦନ୍ତ ହେବ ଓ କେଉଁମାନଙ୍କ କାର୍ଯ୍ୟକଳାପ ଓ ଆଚରଣ ତଦନ୍ତ ପରିସରଭୁକ୍ତ ହେବ, ତାହା ମୁଁ ଆମର ଆଇନ ବିଭାଗ ଓ ସ୍ୱରାଷ୍ଟ୍ର ବିଭାଗର ଶାସନ ସଚିବମାନଙ୍କ ସହିତ ଆଲୋଚନା କରି ସ୍ଥିର କରିଥିଲି ।

ଓଡ଼ିଶା ହାଇକୋର୍ଟର ବିଚାରପତି ଶ୍ରୀ ସତ୍ୟଭୂଷଣ ବର୍ମନଙ୍କ ଅଧ୍ୟକ୍ଷତାରେ ତଦନ୍ତ କମିଶନ ନିଯୁକ୍ତ କରାଗଲା । ବିଚାରପତି ବର୍ମନ କମିଶନଙ୍କୁ ତଦନ୍ତ କରିବାକୁ ଏକବର୍ଷ ଆଠ ମାସ ସମୟ ଲାଗିଥିଲା । ରିପୋର୍ଟଟି ଦୁଇ ଭାଗରେ ବିଭକ୍ତ । ପରିଶିଷ୍ଟସବୁକୁ ଛାଡ଼ି ୧୦୨୩ ପୃଷ୍ଠା ସମ୍ବଳିତ । ଛାତ୍ରମାନଙ୍କର ଆଚରଣ, ଶିକ୍ଷାପଦ୍ଧତି, ପୁଲିସର କର୍ତ୍ତବ୍ୟ ଓ ଆଚରଣ ସମ୍ବନ୍ଧୀୟ ଦେଶବିଦେଶର ବହୁ ତଥ୍ୟ ସମ୍ବଳିତ ଏହି ରିପୋର୍ଟଟି ନିଶ୍ଚୟ ଯେ ବିଶେଷ ଶିକ୍ଷାପ୍ରଦ ତାହା ସ୍ୱୀକାର କରିବାକୁ ହେବ । କିନ୍ତୁ ମୁଁ ଜାଣେନା ଏହି ଜ୍ଞାନଗର୍ଭ ରିପୋର୍ଟଟି କେତେଜଣ ପଢ଼ିଛନ୍ତି । ଏପରିକି ଯେଉଁମାନେ ବିଚାର ବିଭାଗୀୟ ତଦନ୍ତ ଦାବି କରୁଥିଲେ ସେମାନେ ଏହି ରିପୋର୍ଟଟି ପଢ଼ିଛନ୍ତି କି ନାହିଁ ସନ୍ଦେହ । ଜଣେ ବିଚାରପତିଙ୍କ ସ୍ୱାଭାବିକ ସୂକ୍ଷ୍ମଦର୍ଶୀ ଅନୁଧ୍ୟାନଦ୍ୱାରା ପ୍ରତ୍ୟେକ ଘଟଣାକୁ ସବୁ ଦୃଷ୍ଟିକୋଣରୁ ସମୀକ୍ଷା କରି କମିଶନ ତାଙ୍କର ସୁଚିନ୍ତିତ ସିଦ୍ଧାନ୍ତ ଦେଇଛନ୍ତି । ଛାତ୍ର ଆନ୍ଦୋଳନର ଉତ୍ପତ୍ତିସ୍ଥଳ ରେଡ଼ିଓ ଦୋକାନ ପାଖ ଘଟଣାରେ ଛାତ୍ରମାନଙ୍କର ଆଚରଣ ସଂପୂର୍ଣ୍ଣ ଅନ୍ୟାୟ ବୋଲି କହି ପୁଲିସର କାର୍ଯ୍ୟାନୁଷ୍ଠାନକୁ ଯଥାର୍ଥ ଓ ମାତ୍ରାଧିକ ନୁହେଁ ବୋଲି କମିଶନ ମତ ବ୍ୟକ୍ତ କରିଛନ୍ତି । ଛାତ୍ରମାନଙ୍କର ଓ ସାଧାରଣ ଲୋକ ସମେତ ବିରୋଧୀଦଳର ବିଧାନସଭା ସଦସ୍ୟଙ୍କର ଗୋଟିଏ ଅଭିଯୋଗ ଥିଲା ଯେ ରେଭେନ୍‌ସା କଲେଜ ପ୍ରିନ୍‌ସପାଲଙ୍କର ବିନାନୁମତିରେ କଲେଜ ହତା ଭିତରେ ପୁଲିସ ପ୍ରବେଶକରି ଲାଠି ପ୍ରୟୋଗକରି ସେଠାରୁ ଆନ୍ଦୋଳନକାରୀଙ୍କୁ ଘଉଡ଼ାଇଦେବା ଏକାନ୍ତ ଅନ୍ୟାୟ । ରେଭେନ୍‌ସା କଲେଜ ହତା ଓ ଆଇନ କଲେଜରେ ପୁଲିସ ପ୍ରବେଶ କଥା ମୁଁ ବିଧାନସଭାରେ ସ୍ୱୀକାର କରିଥିଲି । ଯେଉଁଠାରେ ଅନୁଷ୍ଠାନ ପରିସର ଭିତରୁ ପୁଲିସ ଉପରେ ଆକ୍ରମଣ କରି ନାନାପ୍ରକାର ଆଇନବିରୁଦ୍ଧ ହିଂସାତ୍ମକ କାର୍ଯ୍ୟ ଚାଲେ, ସେଠାରେ ଅଧ୍ୟକ୍ଷଙ୍କ ଅନୁମତିକୁ ଅପେକ୍ଷାକରି ପୁଲିସ ଅସହାୟ ନୀରବଦ୍ରଷ୍ଟା ହୋଇ ନପାରନ୍ତି ବୋଲି ବୁଝାଇଥିଲି । କମିଶନ ତାଙ୍କ ରିପୋର୍ଟର ଅଷ୍ଟମ ପରିଚ୍ଛେଦରେ କହିଛନ୍ତି :
"That it was evident from the manner in which the mob behaved inside the college campus that they were under the impression that the police would not venture to enter the college campus; it was under this impression that the mob continued their lawless activities using the college campus as their fort and as a place of safe shelter. The magistrates rightly took the decision that there was no other alternative but to ward off the crowd gathering inside the college campus; accordingly the students and others inside the college campus were chased to go

away from the vacant space in front of the Ravenshaw College building where the said nuisance was continuing; that it was in these circumstances that the police entry and chase into the college campus was justified." ଯେଉଁ ପରିସ୍ଥିତିରେ ପୁଲିସ ଆଇନ୍ କଲେଜ ଛାତ୍ରାବାସରେ ପ୍ରବେଶ କରିଥିଲେ, ତାହା ମଧ୍ୟ ଆଇନସମ୍ମତ ଓ ଯଥାର୍ଥ ବୋଲି କମିଶନ କହିଛନ୍ତି । ଆଜିକାଲି ମଧ୍ୟ ଅନେକ ସମୟରେ ପୁଲିସ କାହିଁକି ଅଧ୍ୟକ୍ଷଙ୍କ ବିନାନୁମତିରେ କଲେଜ ହତାରେ ପ୍ରବେଶକଲା ବୋଲି ଅଭିଯୋଗ କରାହେଉଛି ଏବଂ ତାକୁହିଁ ଭିତ୍ତିକରି ଅଶାନ୍ତି ସୃଷ୍ଟି ହେଉଛି । ୧୯୬୪ ମସିହାରେ ରେଭେନ୍‌ସା କଲେଜ ହତା ମଧ୍ୟରେ ପୁଲିସ ପ୍ରବେଶ ସମ୍ବନ୍ଧରେ କମିଶନ ଯେଉଁ ମତ ଦେଇଛନ୍ତି ତାହା ବର୍ତ୍ତମାନ ମଧ୍ୟ ପ୍ରଯୁଜ୍ୟ । ମୁଁ ମୁଖ୍ୟମନ୍ତ୍ରୀ ଥିବା ସମୟରେ ୧୯୭୯ ମସିହାରେ ଖଲ୍ଲିକୋଟଠାରେ ଥିବା କଲେଜ ହତାରେ ଏହି ପ୍ରକାର ପରିସ୍ଥିତିରେ ପୁଲିସ ପ୍ରବେଶ କରିଥିଲେ । ବର୍ତ୍ତମାନ ସାଧାରଣ ରାସ୍ତା ପାଖରେ ବହୁ କଲେଜ ଗଢ଼ିଉଠିଲାଣି ଏବଂ ବସ୍ ପରିବହନ କର୍ମଚାରୀ ଓ ଛାତ୍ରମାନଙ୍କ ମଧ୍ୟରେ ଝଗଡ଼ା ଥରକୁ ଥର ଘଟୁଛି । ସାମାନ୍ୟ କଥାରେ ବସ୍ ଚଳାଚଳ ବନ୍ଦହୋଇଯାଉଛି । ସେ କ୍ଷେତ୍ରରେ ଅଧ୍ୟକ୍ଷଙ୍କ ଅନୁମତି ନମିଳିଲା ପର୍ଯ୍ୟନ୍ତ ପୁଲିସ ଯଦି ନୀରବଦ୍ରଷ୍ଟା ହୋଇ ରହନ୍ତି, ତେବେ ଯାତ୍ରୀମାନଙ୍କର ଅବସ୍ଥା କ'ଣ ହେବ ତାହା ଅନୁମାନ କରାଯାଇପାରେ । ଅନୁମତିର ଆକ୍ଷରିକ ଅର୍ଥକୁ ଧରିବସିଲେ ଆଇନଶୃଙ୍ଖଳା ରକ୍ଷା କରିବା ସମ୍ଭବ ହେବନାହିଁ । ବହୁ କ୍ଷେତ୍ରରେ ଅଧ୍ୟକ୍ଷମାନେ ଏପ୍ରକାର ଅନୁମତି ଦେବାକୁ ସୁଖ ପାଆନ୍ତିନାହିଁ, ତେଣୁ ସହଜରେ ମିଳନ୍ତିନାହିଁ । ଏହି ପ୍ରସଙ୍ଗରେ ସଚେତନ ରହିବାର କଥା ଯେ, ଶିକ୍ଷାୟତନଗୁଡ଼ିକର ପବିତ୍ରତା ରକ୍ଷାକରିବାର ପ୍ରଥମ ଦାୟିତ୍ୱ ଛାତ୍ରମାନଙ୍କର । ସେଥିପାଇଁ ଅନୁକୂଳ ବାତାବରଣ ଅବ୍ୟାହତ ରଖିବା ସେମାନଙ୍କର କର୍ତ୍ତବ୍ୟ ।

ଭୁବନେଶ୍ୱର, ବ୍ରହ୍ମପୁର, ଭବାନୀପାଟଣା ଓ ଜଗତ୍‌ସିଂହପୁର ପ୍ରଭୃତି ଯେଉଁଠାରେ ଗୁଳି ହୋଇଥିଲା, ସେଠାରେ ଘଟିଥିବା ସମସ୍ତ ଘଟଣା କମିଶନ ତନ୍ନ ତନ୍ନ ଅନୁଧ୍ୟାନ କରି କୌଣସି ସ୍ଥାନରେ ଘଟଣାକୁ ଆୟତ୍ତ କରିବାକୁ ଯାଇ ଯେତିକି ଆବଶ୍ୟକ ତା'ଠାରୁ ଅଧିକ ବଳ ପ୍ରୟୋଗ ହୋଇନାହିଁ ବୋଲି ମତ ଦେଇଛନ୍ତି ।

## ମହତାବଙ୍କ ହଟଚମଟ

୧୯୬୪ ମସିହାର ଛାତ୍ର ଆନ୍ଦୋଳନ କଥା ଆଲୋଚନା କଲାବେଳେ ମୋର ମନେପଡ଼େ ୧୯୬୭ ମସିହାର ଛାତ୍ର ଅଶାନ୍ତି କଥା । ୧୯୬୪ ମସିହାର ଛାତ୍ର ଆନ୍ଦୋଳନକୁ ବ୍ୟାପକ ଓ ହିଂସାତ୍ମକ କରି ହରେକୃଷ୍ଣ ମହତାବ ପ୍ରଭୃତି ନେତାମାନେ କିପରି ଛାତ୍ରମାନଙ୍କୁ ଆମ୍ଭମାନଙ୍କ ବିରୁଦ୍ଧରେ ବ୍ୟବହାର କରୁଥିଲେ ସେକଥା ଆଗରୁ କହିଛି । ମାତ୍ର ୧୯୬୭ ମସିହାର ଛାତ୍ର ଆନ୍ଦୋଳନର ଏକମାତ୍ର କାରଣ ଥିଲେ ଶ୍ରୀ ମହତାବ । କଥାରେ ଅଛି, 'One who sows the wind must reap the whirlwind' ଅର୍ଥାତ୍ 'ଆପଣା କଲା କର୍ମମାନ, ଆଗୁଁ ହୋଇବ ସାବଧାନ' । ଏହି ଉକ୍ତିଟି ଏଠାରେ ଶ୍ରୀ ମହତାବଙ୍କ ପକ୍ଷରେ ପ୍ରଯୁଜ୍ୟ । କେତେକ ଛାତ୍ରଙ୍କର ସବୁପ୍ରକାର ବିଶୃଙ୍ଖଳ ଆଚରଣ ଓ ଅସୌଜନ୍ୟକୁ ଉତ୍ସାହିତକରିବା ଦିଗରେ ଶ୍ରୀ ମହତାବଙ୍କର ପ୍ରଜାତନ୍ତ୍ର ସମସ୍ତଙ୍କୁ ଟପିଯାଇଥିଲା । ଶ୍ରୀ ମହତାବ ରାଜନୀତି କ୍ଷେତ୍ରରେ ହିଂସାତ୍ମକ ଆଚରଣକୁ ପ୍ରୋତ୍ସାହିତ କରିବାକୁ କେବେ ପଶ୍ଚାତ୍‌ପଦ ହେଉନଥିଲେ । ୧୯୬୪ ମସିହାରେ ଛାତ୍ରମାନଙ୍କୁ ସେ ଯେଉଁ ଶିକ୍ଷାଦେଇଥିଲେ, ତା'ର ସଦ୍ୟଫଳ ତାଙ୍କୁ ୧୯୬୭ ମସିହା ସେପ୍ଟେମ୍ବର ମାସରେ ଭୋଗିବାକୁ ପଡ଼ିଥିଲା । ୧୯୬୭ ମସିହା ସେପ୍ଟେମ୍ବର ମାସରେ ଉତ୍ତର-ଓଡ଼ିଶାରେ ବିଶେଷକରି ବାଲେଶ୍ୱର ଜିଲ୍ଲାରେ ଗୋଟିଏ ପ୍ରଳୟଙ୍କରୀ ବନ୍ୟା ହୋଇଥିଲା । ଏକାସାଙ୍ଗରେ ସୁବର୍ଣ୍ଣରେଖା, ବୁଢ଼ାବଳଙ୍ଗ, ସାଳନ୍ଦୀ, ବୈତରଣୀ ଓ ବ୍ରାହ୍ମଣୀରେ ଭୟଙ୍କର ବନ୍ୟା ହୋଇଥିଲା । କେବଳ ବାଲେଶ୍ୱର

ଜିଲ୍ଲାରେ ପ୍ରାୟ ଆଠ ଲକ୍ଷ ଲୋକ ବନ୍ୟାବିପନ୍ନ ହେବା ସଙ୍ଗେ ସଙ୍ଗେ ନାନା ଦୁର୍ଦ୍ଦଶାଗ୍ରସ୍ତ ହୋଇଥିଲେ । ବହୁଲୋକଙ୍କର ଘରଦ୍ୱାରା ଭାଙ୍ଗିଥିଲା, ଫସଲ ନଷ୍ଟ ହୋଇଥିଲା ଓ ତା ସଙ୍ଗେ ସଙ୍ଗେ ଅସଂଖ୍ୟ ଗୋରୁଗାଈ ନଷ୍ଟହୋଇଥିଲେ । ସେତେବେଳେ ଥାଏ ଆମ ରାଜ୍ୟରେ ସ୍ୱତନ୍ତ୍ର-ଜନକଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳ । ଏହି ମିଳିତ ଦଳର ତୁଙ୍ଗନେତା ଥିଲେ ଶ୍ରୀ ହରେକୃଷ୍ଣ ମହତାବ । ବନ୍ୟା ହେବାର ପ୍ରାୟ ତିନି ସପ୍ତାହ ବିତିଯିବା ପରେ ସେ ବନ୍ୟାଞ୍ଚଳ ପରିଦର୍ଶନ କରିବାପାଇଁ ବାଲେଶ୍ୱରରେ ପହଞ୍ଚିଥିଲେ । ସେତେବେଳକୁ ରିଲିଫ୍ ଓ ବନ୍ୟାସାହାଯ୍ୟ ଯଥେଷ୍ଟ ପରିମାଣରେ ଦିଆଯାଇନଥିବା କଥା ଅଭିଯୋଗ କରି ଲୋକମାନେ ଅସନ୍ତୁଷ୍ଟ ହୋଇ ରହିଥିଲେ । ଶ୍ରୀ ମହତାବ ବାଲେଶ୍ୱର ସର୍କିଟ୍ ହାଉସ୍‌ରେ ପହଞ୍ଚି ସେପ୍‌ଟେମ୍ବର ତେଇଶ ତାରିଖ ସକାଳେ ଯେତେବେଳେ ବନ୍ୟାଞ୍ଚଳ ଦେଖିବାପାଇଁ ବାହାରିଲେ, ସେତେବେଳେ ପ୍ରାୟ ଏକ ହଜାରରୁ ଊର୍ଦ୍ଧ୍ୱ ଲୋକ ସର୍ବଶ୍ରୀ ଅନନ୍ତ ଶତପଥୀ, ଚିତ୍ତରଞ୍ଜନ ଷଡ଼ଙ୍ଗୀ, ଅଧିପ ଦାସ, ବାଦଲ ମହାନ୍ତି ଓ ମନୀନ୍ଦ୍ର ସାମଲ ପ୍ରଭୃତି ଛାତ୍ରମାନଙ୍କ ନେତୃତ୍ୱରେ ତାଙ୍କୁ ଘେରାଉକରିଥିଲେ । ତାଙ୍କ ଗାଡ଼ି ଆଗରେ ଶୋଇ ଗାଡ଼ିକୁ ଛାଡ଼ିନଥିଲେ । ସର୍କିଟ୍ ହାଉସ୍‌ରୁ ଷ୍ଟେସନ୍ ପର୍ଯ୍ୟନ୍ତ ତାଙ୍କୁ ଛାତ୍ରମାନେ ଚଲେଇ ଚଲେଇ ନେଇଥିଲେ । ଲୋକମାନଙ୍କ କହିବାର ଥିଲା ଯେ ଏତେ ବିଳମ୍ବରେ ଆସି ବନ୍ୟାବିଦ୍ଧ୍ୱସ୍ତ କ'ଣ ବୁଝିବ ? ଲୋକମାନଙ୍କର ଦୁର୍ଦ୍ଦଶା କିପରି ଅନୁଭବ କରିବ ? ତେଣୁ ତାଙ୍କୁ ଫେରିଯିବାପାଇଁ ଛାତ୍ରମାନେ ବାଧ କରିଥିଲେ । ଏ ଦାବି ଯେ ଯୁକ୍ତିଯୁକ୍ତ ସେକଥା ମୁଁ କହିବିନାହିଁ । କିନ୍ତୁ ଜଣେ ବୟୋଜ୍ୟେଷ୍ଠ ନେତା ଲୋକମାନଙ୍କ ଉପରେ ଲାଠି ଚାଳନା କରି ଓ ଲୁହବୁହା ଗ୍ୟାସ୍ ପ୍ରୟୋଗ କରି ବନ୍ୟାଞ୍ଚଳ ଦେଖିବାକୁ ଯିବାପାଇଁ ଜିଦ୍ କରିବାଟାକୁ ମୁଁ ପସନ୍ଦ କରିପାରିନଥିଲି । ସେଦିନ ବାଲେଶ୍ୱରରେ ପୁଲିସକୁ ଦୁଇ ଥର ଲାଠି ଚାଳନା କରିବାକୁ ପଡ଼ିଥିଲା । ବହୁ ଛାତ୍ର ଆହତ ହୋଇଥିଲେ ଏବଂ ଗିରଫ ମଧ ହୋଇଥିଲେ । ଏହାର ପ୍ରତିକ୍ରିୟା ସାରା ଉତ୍ତର-ଓଡ଼ିଶାରେ ବ୍ୟାପିଥିଲା ଏବଂ ବାଲେଶ୍ୱର ଜିଲ୍ଲାର ସବୁ ଶିକ୍ଷାନୁଷ୍ଠାନରେ ଧର୍ମଘଟ ହୋଇଥିଲା । ଭଦ୍ରକରେ ଛାତ୍ରମାନଙ୍କ ଉପରେ ଅତି ନିର୍ମମଭାବରେ ଲାଠିଚାଳନା କରାଯାଇଥିଲା । ଶ୍ରୀ ମହତାବଙ୍କ ଗାଆଁ ଆଗରପଡ଼ାରେ ବିକ୍ଷୋଭ ପ୍ରଦର୍ଶନ କରାଯାଇଥିଲା ଏବଂ ସେଠି ମଧ ପୁଲିସକୁ ଲାଠିଚାଳନା କରିବାକୁ ପଡ଼ିଥିଲା । ଏହି ଛାତ୍ର ଅଶାନ୍ତି କଟକ ଭୁବନେଶ୍ୱରକୁ ମଧ ବ୍ୟାପିଥିଲା । ଛାତ୍ରମାନଙ୍କ ଉପରେ ବିଭିନ୍ନ ସ୍ଥାନରେ ଯେଉଁ ଲାଠିଚାଳନା ହେଲା, ବିଶେଷକରି ବାଲେଶ୍ୱରରେ ଛାତ୍ରମାନଙ୍କୁ ଶ୍ରୀ ମହତାବ ଗୋଇଠା ମାରିବା ଏବଂ ସେ କୌଣସି ସରକାରୀ ପଦାଧିକାରୀ ନହୋଇଥିଲେ ମଧ ତାଙ୍କର ନିର୍ଦ୍ଦେଶରେ ଯେଉଁ ଲାଠିଚାଳନା ହେବା ଅଭିଯୋଗ ହେଲା, ସେସବୁ ଘଟଣାର ବିଚାରବିଭାଗୀୟ ତଦନ୍ତ ଜଣେ ହାଇକୋର୍ଟ ଜଜ୍‌ଙ୍କଦ୍ୱାରା କରାଯିବାପାଇଁ ଦଳମତନିର୍ବିଶେଷରେ ଛାତ୍ରମାନଙ୍କର ସବୁ ଅନୁଷ୍ଠାନ ଦାବି କରିଥିଲେ ।

ଏ ସମ୍ବାଦ ପାଇ ମୁଖ୍ୟମନ୍ତ୍ରୀ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ମହତାବବାବୁଙ୍କୁ ତାଙ୍କର ବାଲେଶ୍ୱର ଜିଲ୍ଲା ଗସ୍ତ ରଦ୍ଦ କରି ଶୀଘ୍ର ଭୁବନେଶ୍ୱର ଫେରିଆସିବାପାଇଁ ପରାମର୍ଶ ଦେଇଥିଲେ । ମହତାବଙ୍କ ପକ୍ଷରେ କୌଣସି ଅଞ୍ଚଳକୁ ଯିବା ମଧ ସମ୍ଭବ ହୋଇପାରିନଥିଲା । ତେଣୁ ବନ୍ୟାଞ୍ଚଳ ପରିଦର୍ଶନ ନକରି ସେ ଫେରିଆସିଥିଲେ । ବାଲେଶ୍ୱରରେ ଯେଉଁସବୁ ଘଟଣା ଘଟିଲା ସେସବୁ ସଂପର୍କରେ ଶ୍ରୀ ମହତାବଙ୍କର ଆଚରଣ ନାପସନ୍ଦ କରି ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଭାପତି ହିସାବରେ ମୁଁ ସେପ୍‌ଟେମ୍ବର ତେଇଶ ତାରିଖ ଖବରକାଗଜରେ ଗୋଟିଏ ବିବୃତି ଦେଇଥିଲି । ମୋ ବିବୃତି ପଢ଼ିବା ପରେ ମହତାବବାବୁ କ୍ରୋଧାନ୍ୱିତ ହୋଇ ବାଲେଶ୍ୱରରେ ଉପୁଜିଥିବା ଅଶାନ୍ତିପାଇଁ କଂଗ୍ରେସଲୋକେ ଦାୟୀ ବୋଲି ଓଲଟା ଅଭିଯୋଗ କରି ଗୋଟିଏ ବିବୃତି ଦେଇଥିଲେ । ନିଜର ଆଚରଣକୁ ଯଥାର୍ଥ ବୋଲି କହି ଆନ୍ଦୋଳନାତ୍ମକ କାର୍ଯ୍ୟରୁ କ୍ଷାନ୍ତ ହେବାପାଇଁ ଛାତ୍ରମାନଙ୍କୁ ତଥା ରାଜନୈତିକ ଦଳମାନଙ୍କୁ ଧମକପୂର୍ଣ୍ଣ ପରାମର୍ଶ ଦେଇଥିଲେ । ଛାତ୍ରମାନେ ତାଙ୍କ ପ୍ରତି ବାଲେଶ୍ୱରରେ

ଯେଉଁ ବ୍ୟବହାର କଲେ ସେଥିରେ କୁଆଡ଼େ ଉତ୍‌କ୍ଷିପ୍ତ ହୋଇ ରୂପ୍‌ସାରୁ ଦୁଇ ହଜାର ଠେଙ୍ଗାବାଲା ଛାତ୍ରମାନଙ୍କୁ ମୁକାବିଲା କରିବାପାଇଁ ବାଲେଶ୍ୱର ଆସୁଥିଲେ; କିନ୍ତୁ ସେ ନିଜେ ସେମାନଙ୍କୁ ଫେରାଇଦେଇଥିଲେ ବୋଲି ଉକ୍ତ ବିବୃତିରେ କହିଥିଲେ । ତାଙ୍କର ଏହି ବିବୃତିର ସମ୍ପୂର୍ଣ୍ଣ ଅସାରତା ମୁଁ ପରେ ରୂପ୍‌ସା ଯାଇଥିବାବେଳେ ବୁଝିପାରିଥିଲି । ଦୁଇ ହଜାର ଲାଠିବାଲା ବାଲେଶ୍ୱର ଆସିବାକଥା ସଂପୂର୍ଣ୍ଣ ଅସତ୍ୟ ଓ ମନଗଢ଼ା ବୋଲି ସେଠାରେ ଜାଣିଥିଲି ।

ଶ୍ରୀ ମହତାବଙ୍କର ଏ ଆକ୍ଷେପମୂଳକ ବିବୃତିକୁ ସମାଲୋଚନା କରି ମୁଁ ଆଉ ଗୋଟିଏ ବିବୃତି ଦେଇଥିଲି ଯାହାକି ସେପ୍‌ଟେମ୍ବର ସତେଇଶ ତାରିଖ ସମାଜ ଓ କଳିଙ୍ଗ କାଗଜରେ ପ୍ରକାଶ ପାଇଥିଲା । ସେଥିରେ ମୁଁ କହିଥିଲି ଯେ ବାଲେଶ୍ୱରରେ ଯେଉଁ ଘଟଣାକୁ ନେଇ ଗଣ୍ଡଗୋଳର ସୂତ୍ରପାତ ହେଲା ଯଦି ଶ୍ରୀ ମହତାବ ସାମାନ୍ୟ ଧୈର୍ଯ୍ୟ ପ୍ରଦର୍ଶନ କରିଥାଆନ୍ତେ ଏବଂ ଜିଦ୍‌ଖୋର ମନୋଭାବ ଧରି ପୁଲିସବାହିନୀ ସହାୟତାରେ ଏତେ ବିଳମ୍ବରେ ବନ୍ୟାଞ୍ଚଳ ପରିଦର୍ଶନପାଇଁ ଚାହିଁ ନଥାନ୍ତେ ତା'ହେଲେ ଅପ୍ରୀତିକର ପରିଣତିକୁ ଏଡ଼ାଇ ଦିଆଯାଇପାରିଥାଆନ୍ତା । ମୁଁ ଅଭିଯୋଗ କରିଥିଲି ଯେ, ମହତାବବାବୁ ବାଲେଶ୍ୱରରୁ ଅପଦସ୍ଥ ହୋଇ ଫେରିଆସିଲା ପରେ ତାଙ୍କର ରାଜନୈତିକ ଜୀବନର କଳଙ୍କମୟ ଭୂମିକା ସହ ସଂପୃକ୍ତ ହେବାକୁ ଚାହୁଁ ନଥିବା ବ୍ୟକ୍ତିମାନଙ୍କ ବିରୁଦ୍ଧରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ପ୍ରବର୍ତ୍ତାଉଛନ୍ତି । ମୁଁ ଆହୁରି କହିଥିଲି, ''ବାଲେଶ୍ୱରରେ ଯାହା ଘଟିଗଲା, ସରକାରୀ ପ୍ରେସ ବିଜ୍ଞପ୍ତିରେ ଯାହା କୁହାଯାଇଛି ଓ ଶ୍ରୀ ମହତାବ ତାଙ୍କ ବିବୃତିରେ ଯାହା କହିଛନ୍ତି ସେଥିରୁ ସ୍ପଷ୍ଟ ହୋଇଛି ଯେ ଶ୍ରୀ ମହତାବଙ୍କର କ୍ରୋଧ ଓ ଏକଜିଦିଆ ମନୋବୃତ୍ତି ଯୋଗୁଁ ସ୍ଥାନୀୟ କର୍ତ୍ତୃପକ୍ଷ ବଳପ୍ରୟୋଗର ଫଳ କ'ଣ ହେବ ତାହା ବିଚାର କରିପାରିଲେନାହିଁ ।'' ଏ କଥା ବାଲେଶ୍ୱରର ତତ୍କାଳୀନ ଜିଲ୍ଲା ମାଜିଷ୍ଟ୍ରେଟ ମୋ ପାଖରେ ସ୍ୱୀକାର କରିଥିଲେ । ଏ ଘଟଣାରେ ଶ୍ରୀ ମହତାବ ବିଶେଷଭାବରେ ଅପମାନିତ ହୋଇଥିଲେ ।

## 'ମିଗ୍' ହେଲେ ମୁଖ୍ୟମନ୍ତ୍ରୀ

ଶ୍ରୀ ବିଜୁ ପଟ୍ଟନାୟକ ଓ ଶ୍ରୀ ବିରେନ୍ ମିତ୍ରଙ୍କ ବିରୁଦ୍ଧରେ ଯେଉଁ ଦୁର୍ନୀତି ଅଭିଯୋଗ ହୋଇଥିଲା ଏବଂ ତା'ଉପରେ କେନ୍ଦ୍ର ତଦନ୍ତ ବ୍ୟୁରୋ ଯେଉଁ ରିପୋର୍ଟ ଦେଇଥିଲେ ସେସବୁ ଅନୁଧ୍ୟାନ କରି ଇଉନିୟନ୍ କ୍ୟାବିନେଟ୍ ସବ୍‌କମିଟି ଯେଉଁ ରିପୋର୍ଟ ଦେଇଥିଲେ ଯେ ବିଷୟରେ ଆଗରୁ କୁହାଯାଇଛି । କ୍ୟାବିନେଟ୍ ସବ୍‌କିମିଟି ରିପୋର୍ଟ ଉପରେ ମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ୍ ମିତ୍ର ଓ ରାଜ୍ୟ ଯୋଜନା ବୋର୍ଡ଼ ଚେୟାରମ୍ୟାନ୍ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ପ୍ରଧାନମନ୍ତ୍ରୀ ଶ୍ରୀ ଲାଲ୍‌ବାହାଦୁର ଶାସ୍ତ୍ରୀ ଯେଉଁ ଚିଠି ଲେଖିଥିଲେ ସେ ବିଷୟରେ ମଧ୍ୟ ପୂର୍ବରୁ ଉଲ୍ଲେଖ କରାଯାଇଛି । ଶାସ୍ତ୍ରୀଜୀଙ୍କ ଚିଠିର ଉତ୍ତର ସେମାନେ ଦେଇଥିଲେ ।

୧୯୬୫ ମସିହା ଜାନୁୟାରୀ ମାସରେ ଶାସ୍ତ୍ରୀଜୀ କଲିକତା ଆସି ରାଜଭବନରେ ରହୁଥିଲେ । ସେଠାକୁ ସେ ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ରଙ୍କୁ ଡକାଇଥିଲେ ଏବଂ ବୀରେନ୍‌ବାବୁଙ୍କ ସହିତ କଥାବାର୍ତ୍ତା କଲାବେଳେ ସେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବା ଉଚିତ ବୋଲି ମତ ବ୍ୟକ୍ତ କରିଥିଲେ । ବିଜୁବାବୁ ଓଡ଼ିଶା ଯୋଜନାବୋର୍ଡ଼ ଚେୟାରମ୍ୟାନ୍ ପଦରୁ ଇସ୍ତଫା ଦେବା ଉଚିତ ବୋଲି ମଧ୍ୟ ସେ କହିଥିଲେ । ଜାନୁୟାରୀ ମାସ ଅଣତିରିଶ ତାରିଖରେ ବିଜୁବାବୁ ଯୋଜନାବୋର୍ଡ଼ ଚେୟାରମ୍ୟାନ୍ ପଦରୁ ଇସ୍ତଫା ଦେଲେ ଏବଂ ପ୍ରାୟ ତିନି ସପ୍ତାହ ପରେ ଫେବୃୟାରୀ କୋଡ଼ିଏ ତାରିଖରେ ବୀରେନ୍‌ବାବୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । ବହୁ ଲୋକଙ୍କର ଧାରଣା ଥିଲା ଯେ ବୀରେନ୍‌ବାବୁ ଇସ୍ତଫା ଦେବା ପରେ ମୁଁ ଓଡ଼ିଶା ବିଧାନସଭା କଂଗ୍ରେସ ଦଳର ନେତାରୂପେ ନିର୍ବାଚିତ ହୋଇ ମୁଖ୍ୟମନ୍ତ୍ରୀ ହେବି, କିନ୍ତୁ କାହିଁକି କେଜାଣି ସେତେବେଳେ ଶ୍ରୀ ବିଜୁ ପଟ୍ଟନାୟକ ମୁଁ ମୁଖ୍ୟମନ୍ତ୍ରୀ ହେବା ଚାହୁଁନଥିଲେ । ବୀରେନ୍

ବାବୁ ପଦତ୍ୟାଗକରି ଯିବା ପୂର୍ବରୁ ଦିନେ ହଠାତ୍ ବିଜୁବାବୁ ଦିଲ୍ଲୀରୁ ବୀରେନ୍‌ବାବୁଙ୍କୁ ଟେଲିଫୋନ୍ କରି ସଙ୍କେତରେ କହିଲେ ଯେ ଦିଲ୍ଲୀରେ କଂଗ୍ରେସ ପାର୍ଲିଆମେଣ୍ଟାରୀ ବୋର୍ଡରେ କୁଆଡ଼େ ସ୍ଥିର ହୋଇଛି ଯେ, 'MIG' ହେବ 'RICE MILL' ନୁହେଁ । ଏହି ସାଙ୍କେତିକ ସମ୍ବାଦର ଅର୍ଥ ହେଲା କୋରାପୁଟର (ଯେଉଁଠି ମିଗ୍ ଫାକ୍ଟରୀ ଅଛି) ସଦାଶିବ ତ୍ରିପାଠୀ ମୁଖ୍ୟମନ୍ତ୍ରୀ ହେବେ ଏବଂ ବାଲେଶ୍ୱରର (ଯେଉଁଠି ବେଶି ରାଇସ୍ ମିଲ୍) ନୀଳମଣି ରାଉତରାୟ ହେବେନାହିଁ ବୋଲି କଂଗ୍ରେସ ପାର୍ଲିଆମେଣ୍ଟାରୀ ବୋର୍ଡ଼ ସ୍ଥିର କରିଥିଲେ । ଏ ଟେଲିଫୋନ୍ ଯେତେବେଳେ ବୀରେନ୍‌ବାବୁ ପାଆନ୍ତି ମୁଁ ସେତେବେଳେ ତାଙ୍କ ପାଖରେ ଥିଲି । ଏ ସମ୍ବାଦରେ ବୀରେନ୍‌ବାବୁ ବିଶେଷ ଦୁଃଖିତ ହୋଇଥିଲେ । ତା'ପରେ ନେତା ନିର୍ବାଚନପାଇଁ ଓଡ଼ିଶା ବିଧାନସଭା କଂଗ୍ରେସ ଦଳର ବୈଠକ ଡକାଗଲା । ବିଜୁବାବୁଙ୍କର ଏ ପ୍ରକାର ଆଚରଣରେ ବହୁ ସଭ୍ୟ ଦୁଃଖିତ ହୋଇଥିଲେ । ମୁଁ ଆଗରୁ ଶୁଣିଥିଲି ଯେ ନେତା ନିର୍ବାଚନ ବିଷୟଟି ଦଳ ଉପରେ ଛାଡ଼ିଦିଆଯିବ । ମୁଁ ଦଳପତି ହିସାବରେ ନିର୍ବାଚିତ ହେବାରେ କୌଣସି ଅସୁବିଧା ନଥିଲା । କିନ୍ତୁ ବିଜୁବାବୁଙ୍କର ଏ ଖେଳଟା ଅସୁବିଧା ସୃଷ୍ଟି କଲା । ଶ୍ରୀ ଅତୁଲ୍ୟ ଘୋଷ ସେତେବେଳେ ଥିଲେ ପାର୍ଲିଆମେଣ୍ଟାରୀ ବୋର୍ଡ଼ର ଜଣେ ସଭ୍ୟ । ସେ କଲିକତାରେ ଥିଲେ । ମୁଁ ପଶ୍ଚିମବଙ୍ଗଳାର ମନ୍ତ୍ରୀ ଶ୍ରୀମତୀ ଆଭା ମାଇତିଙ୍କୁ ଟେଲିଫୋନ୍ କରିଥିଲି ଅତୁଲ୍ୟବାବୁଙ୍କ ପ୍ରକୃତ କଥା ବୁଝିବାପାଇଁ । ସେ ଯାଇ ସଙ୍ଗେ ସଙ୍ଗେ ଅତୁଲ୍ୟବାବୁଙ୍କ ସହ କଥାବାର୍ତ୍ତା କଲେ । ଅତୁଲ୍ୟବାବୁ ଶ୍ରୀମତୀ ମାଇତିଙ୍କୁ କହିଥିଲେ, ''ବିଜୁ ଯାହା କହୁଛି ସବୁ ମିଛ କଥା । ପାର୍ଲିଆମେଣ୍ଟାରୀ ବୋର୍ଡ଼ରେ କାହାରି ନାମ ସ୍ଥିର ହୋଇନାହିଁ । କଂଗ୍ରେସ ବିଧାନସଭା ଦଳ ଉପରେ ସେ ବିଷୟ ଛାଡ଼ିଦିଆଯାଇଛି । ତେଣୁ ନୀଳମଣି ପ୍ରତିଦ୍ୱନ୍ଦ୍ୱିତା କରିପାରେ ।'' ମୁଁ ଏହି କଥା ସମସ୍ତଙ୍କ ଆଗରେ କହିଥିଲି । ଏକଥା ଶୁଣି ଶ୍ରୀ ବିଜୁ ପଟ୍ଟନାୟକ ବଡ଼ କ୍ରୋଧାନ୍ୱିତ ହୋଇଥିଲେ । ବିଜୁବାବୁ ତା'ପରେ ଶ୍ରୀ ସଦାଶିବ ତ୍ରିପାଠୀଙ୍କ ସପକ୍ଷରେ ମତ ସୃଷ୍ଟି କରିବାକୁ ବାହାରିପଡ଼ିଲେ । ଆମ୍ଭମାନଙ୍କ ମଧ୍ୟରେ ଏଥିପାଇଁ ବଚସା ମଧ୍ୟ ହୋଇଥିଲା । ତା'ପରେ ଦିନେ ବୀରେନ୍‌ବାବୁ ଓ ବିଜୁବାବୁ ମୋ ଘରକୁ ଆସିଲେ ଓ ମୋତେ ବୁଝାଇଥିଲେ । ବହୁ ଚିନ୍ତାକରି ମୁଁ ସ୍ଥିରକରିଥିଲି ଯେ ଝଗଡ଼ା କରି ଦଳରେ ବିଭେଦ ସୃଷ୍ଟି କରି ମୁଖ୍ୟମନ୍ତ୍ରୀ ହେବା ମୋ ପକ୍ଷରେ ଉଚିତ ହେବନାହିଁ । ତେଣୁ ଦଳର ବୈଠକ ଦିନ ଶ୍ରୀ ସଦାଶିବ ତ୍ରିପାଠୀଙ୍କୁ ନେତାରୂପେ ବଛାଯାଇଥିଲା । ସେ ଫେବୃୟାରୀ ଏକୋଇଶ ତାରିଖ ଦିନ ମୁଖ୍ୟମନ୍ତ୍ରୀ ଭାବରେ ଶପଥ ନେଇଥିଲେ ଏବଂ ମୁଁ ଉପମୁଖ୍ୟମନ୍ତ୍ରୀ ରୂପେ ଶପଥ ପାଠ କରିଥିଲି । ଅନ୍ୟ ଯେଉଁ ମନ୍ତ୍ରୀ ଓ ଉପମନ୍ତ୍ରୀମାନେ ବୀରେନ୍‌ବାବୁଙ୍କ ମନ୍ତ୍ରିମଣ୍ଡଳରେ ଥିଲେ ସେମାନେ ମଧ୍ୟ ଶ୍ରୀ ତ୍ରିପାଠୀଙ୍କ ମନ୍ତ୍ରିମଣ୍ଡଳରେ ରହିଥିଲେ ।

କିଛିଦିନ ପରେ ଶ୍ରୀ ବିଜୁ ପଟ୍ଟନାୟକଙ୍କର ଉଦ୍ଦେଶ୍ୟ ବୁଝିବାକୁ ମୋତେ କିଛି ଅସୁବିଧା ହୋଇ ନଥିଲା । ତାଙ୍କର ଉଦ୍ଦେଶ୍ୟ ଥିଲା ତାଙ୍କ କଥାରେ ବସଉଠ ହେବାଭଳି ଜଣେ ବ୍ୟକ୍ତିଙ୍କୁ ମୁଖ୍ୟମନ୍ତ୍ରୀ କରାଇବାକୁ । ସେ ଯେତେବେଳେ ଇଚ୍ଛା କରିବେ ସେତେବେଳେ ତାଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ଚାଲିଯିବାପାଇଁ ପରାମର୍ଶ ଦେଇପାରିବେ । କିନ୍ତୁ ମୁଁ ମୁଖ୍ୟମନ୍ତ୍ରୀ ହେଲେ ମୋ ପ୍ରତି ଦଳର ସଦସ୍ୟମାନଙ୍କର ସ୍ୱାଭାବିକ ସହାନୁଭୂତି ଓ ସମର୍ଥନ ରହିବ ଏବଂ ତାଙ୍କର ଇଚ୍ଛା ଅନୁରୂପ କାର୍ଯ୍ୟ କରିବା ସମ୍ଭବପର ହେବନାହିଁ ବୋଲି ସେ ଅନୁଭବ କରିଥିଲେ । ତେଣୁ ସେ ନେତା ନିର୍ବାଚନ ସମୟରେ ଏ ପ୍ରକାର କୌଶଳ ପ୍ରୟୋଗ କରିଥିଲେ । ଶ୍ରୀ ସଦାଶିବ ତ୍ରିପାଠୀ କଂଗ୍ରେସର ପୁରୁଖା ଓ ମୋଠାରୁ ବୟସ୍କ ଲୋକ ଥିଲେ । ତେଣୁ ମୋତେ କିଛି ଅଡୁଆ ଲାଗିନଥିଲା । ସବୁ କଥାରେ ସେ ମଧ୍ୟ ମୋର ପରାମର୍ଶ ଲୋଡୁଥିଲେ । ତେଣୁ ଆମ ଦୁଇଜଣଙ୍କ ମଧ୍ୟରେ ସହଯୋଗ ଓ ସଦ୍‌ଭାବ ଥିଲା ।

## ଓଡ଼ିଶା କଂଗ୍ରେସରେ ଇନ୍ଦିରା ଅଧ୍ୟାୟ

୧୯୬୬ ମସିହା ଜାନୁୟାରୀ ମାସ ଏଗାର ତାରିଖରେ ଶ୍ରୀ ଲାଲବାହାଦୁର ଶାସ୍ତ୍ରୀଙ୍କର ଆକସ୍ମିକ ମୃତ୍ୟୁ ପରେ ଦିଲ୍ଲୀ ସିଂହାସନ ପାଇଁ ପୁଣି ସଂଘର୍ଷ ଆରମ୍ଭ ହୋଇଯାଇଥିଲା । ଆମ୍ଭମାନଙ୍କୁ ପୁଣି ଗୋଟିଏ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ପରବର୍ତ୍ତୀ ନେତା କିଏ ହେବ ସେ ବିଷୟରେ ଆଲୋଚନା ଆରମ୍ଭ ହୋଇଯାଇଥିଲା । ଶାସ୍ତ୍ରୀଙ୍କର ମୃତ୍ୟୁ ଯେଉଁଦିନ ହୁଏ ସେହିଦିନ ଶ୍ରୀ ମୋରାରଜୀ ଦେଶାଇ ଓଡ଼ିଶାର କୋରାପୁଟ ଜିଲ୍ଲାରେ ଥିଲେ । ରାଜ୍ୟ ସରକାରଙ୍କର ବିମାନ ପଠାଯାଇ ତାଙ୍କୁ ଭୁବନେଶ୍ୱର ଅଣାଗଲା । ଏଠାରୁ ସେ ବିମାନଯୋଗେ ଦିଲ୍ଲୀ ଯାତ୍ରା କରିଥିଲେ । ଭୁବନେଶ୍ୱରରୁ ଗଲାବେଳେ ଶ୍ରୀ ଦେଶାଇ ତାଙ୍କର ଭାବୀନେତା ହେବା ବିଷୟରେ ଏକପ୍ରକାର ନିଶ୍ଚିତ ଥିଲେ । ମାତ୍ର ଏଥର କଂଗ୍ରେସ ସଭାପତି ଶ୍ରୀ କାମରାଜ ନେତା ନିର୍ବାଚନରେ ଭାଗ୍ୟନିୟନ୍ତ୍ରକ ହୋଇଥିଲେ । ଶାସ୍ତ୍ରୀଜୀଙ୍କ ମୃତ୍ୟୁବେଳକୁ ଶ୍ରୀ କାମରାଜ ମାନ୍ଦ୍ରାଜରେ ଥିଲେ । ସେଠାରୁ ସେ ଦିଲ୍ଲୀ ଆସିଲାବେଳେ ବାଟରେ ବିମାନରେ ବିଳବିଳେଇ ହେଲାଭଳି ଭବିଷ୍ୟତ ନେତା ସମ୍ବନ୍ଧରେ ଇନ୍ଦିରାଙ୍କ ନାମ କେତେଥର ଉଚ୍ଚାରଣ କରିଥିଲେ । ସମ୍ବାଦଦାତାମାନେ ସମ୍ବାଦପତ୍ରରେ ତାହା ପ୍ରକାଶ କରିଦେଇଥିଲେ । ଏଥିରେ ଶ୍ରୀ ଦେଶାଇ ବଡ଼ ଅସନ୍ତୁଷ୍ଟ ହୋଇଥିଲେ । ପ୍ରଧାନମନ୍ତ୍ରୀ ଭାବରେ କିଏ ଲାଲବାହାଦୁରଙ୍କର ଉତ୍ତରାଧିକାରୀ ହେବ ସେ ବିଷୟରେ ଦୁଇଟି ସ୍ୱତନ୍ତ୍ର ଗୋଷ୍ଠୀ ଗଢ଼ିଉଠିଲେ । ଗୋଟିଏ ଗୋଷ୍ଠୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ କେନ୍ଦ୍ରକରି ଉଦ୍ୟମ କଲାବେଳେ ଅନ୍ୟଟି ମୋରାରଜୀ ଦେଶାଇଙ୍କୁ କେନ୍ଦ୍ର କରି ଅଭିଯାନ ଆରମ୍ଭ କରିଦେଇଥିଲେ । ଶ୍ରୀ ନେହେରୁଙ୍କ ମୃତ୍ୟୁ ପରେ ଉତ୍ତରାଧିକାରୀ ନିର୍ବାଚନପାଇଁ ପ୍ରଥମ ସଂଘର୍ଷରେ ଆମ୍ଭେମାନେ ଯେଉଁ ଅଡୁଆରେ ପଡ଼ିଥିଲୁ ସେ କଥା ପୂର୍ବରୁ କହିଛି । ବର୍ତ୍ତମାନ ଠିକ୍ ସେହି ପ୍ରକାର ପରିସ୍ଥିତି ଉପୁଜିଥିଲା । ଶ୍ରୀ ଭବାନୀ ଚରଣ ପଟ୍ଟନାୟକ ପୁଣି ଶ୍ରୀ ବିଜୁ ପଟ୍ଟନାୟକଙ୍କର ପରାମର୍ଶଦାତା ହୋଇପଡ଼ିଥିଲେ । ଏଥର ପଦାକୁ ନବାହାରି ବିଜୁବାବୁ ତାଙ୍କର ଆଉରଙ୍ଗଜେବ ରୋଡ଼ସ୍ଥ ବାସଭବନରେ ଥାଇ ଶ୍ରୀ ଦେଶାଇଙ୍କ ସପକ୍ଷରେ ମତ ସୃଷ୍ଟି କରୁଥିଲେ । କିନ୍ତୁ ଉପରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ସମର୍ଥନ କଲାଭଳି କଥାବାର୍ତ୍ତା କରୁଥିଲେ । ତେବେ ପୂର୍ବଥର ପରି ଉପରେପଡ଼ି ବିଶେଷଭାବରେ ନେତା ମନୋନୟନ ଜଡ଼ିତ ହେଉନଥିଲେ । କେବଳ ଓଡ଼ିଶାର ପାର୍ଲିଆମେଣ୍ଟ ସଦସ୍ୟମାନଙ୍କ ସହିତ ସେ ଅତି ସତର୍କତା ସହିତ ଯାହା କଥାବାର୍ତ୍ତା କରୁଥିଲେ ।

## ଅଣ୍ଟିଛୁରୀ ତଣ୍ଟିରେ

ଶ୍ରୀ ଭବାନୀ ଚରଣ ପଟ୍ଟନାୟକ ଶ୍ରୀ ମୋରାରଜୀ ଦେଶାଇଙ୍କର ବିଶ୍ୱସ୍ତ ପ୍ରତିନିଧିଭାବରେ ଓଡ଼ିଶାର ପାର୍ଲିଆମେଣ୍ଟ ସଦସ୍ୟଙ୍କର ସମର୍ଥନପାଇଁ ବିଜୁବାବୁଙ୍କ ପାଖରେ ଭିଡ଼ି ରହିଥାଆନ୍ତି । ସେତେବେଳକୁ ସେହିଭଳି ଶ୍ରୀମତୀ ନନ୍ଦିନୀ ଶତପଥୀ ଯେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ଜଣେ ବିଶ୍ୱସ୍ତ ହୋଇସାରିଥା'ନ୍ତି ସେକଥା ବିଜୁବାବୁ ବୁଝିନଥା'ନ୍ତି; ଶୁଣିଥିଲେ ମଧ୍ୟ ସେ ବିଶ୍ୱାସ କରିପାରୁନଥିଲେ, କାରଣ ସମସ୍ତଙ୍କର ବିରୋଧସତ୍ତ୍ୱେ ଶ୍ରୀମତୀ ନିର୍ମଳା ପଣ୍ଡାଙ୍କ ଦାବୀକୁ ଉପେକ୍ଷା କରି ବିଜୁବାବୁ ନନ୍ଦିନୀ ଶତପଥୀଙ୍କୁ ରାଜ୍ୟସଭାକୁ ପଠାଇଥିଲେ । ତେଣୁ ସେ ନିଶ୍ଚୟ ତାଙ୍କର ଏକାନ୍ତ ବିଶ୍ୱସ୍ତ ଓ କୃତଜ୍ଞ ସମର୍ଥକ ବୋଲି ବିଜୁବାବୁ ଆଶାକରିଥିଲେ । ଶ୍ରୀମତୀ ନିର୍ମଳା ପଣ୍ଡା ୧୯୬୧ ମସିହା ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ପ୍ରଚାରକାର୍ଯ୍ୟ କରୁଥିବା ସମୟରେ ଜିପ୍ ଦୁର୍ଘଟଣାରେ ପଡ଼ି ତାଙ୍କର ଗୋଟିଏ ହାତ ହରାଇଥିଲେ । ତେଣୁ ସବୁରି ସ୍ୱାଭାବିକ ସହାନୁଭୂତି ତାଙ୍କ ପ୍ରତି ଥିଲା । କିନ୍ତୁ ବିଜୁ ପଟ୍ଟନାୟକ ନନ୍ଦିନୀ ଶତପଥୀଙ୍କପାଇଁ ଜିଦ୍‌ଧରିଥିଲେ । ସେହି ସାହାଯ୍ୟପାଇଁ କୃତଜ୍ଞତା ପ୍ରକାଶ

କରିବାର ସୁଯୋଗ ବର୍ତ୍ତମାନ ନନ୍ଦିନୀ ଦେବୀ ପାଇଥିଲେ । ଅତି ଧୂର୍ତ୍ତତା ସହକାରେ ଜଣେ ନିରୀହା ନାରୀ ଭାବରେ ନନ୍ଦିନୀ ଦେବୀ ଦିନେ କୁଆଡ଼େ ବିଜୁ ପଟ୍ଟନାୟକଙ୍କୁ ଗୋଟିଏ କାଛ ପାଖକୁ ଡାକିନେଇ ନେତା ନିର୍ବାଚନ ଲଢ଼େଇରେ ସେ (ନନ୍ଦିନୀ ଦେବୀ) କ'ଣ କରିବେ ସେ ସମ୍ବନ୍ଧରେ ବିଜୁ ପଟ୍ଟନାୟକଙ୍କର ପରାମର୍ଶ ଲୋଡ଼ିଥିଲେ । ବିଜୁ ପଟ୍ଟନାୟକ କଥାଟା ଗୋପନ ରଖିବାପାଇଁ ଅତି ବିଶ୍ୱାସରେ ଶ୍ରୀ ଦେଶାଇଙ୍କ ନାମ ନନ୍ଦିନୀ ଶତପଥୀଙ୍କୁ କହିଦେଇଥିଲେ । ଅପୂର୍ବ ସୁଯୋଗ ମିଳିଗଲା ନନ୍ଦିନୀ ଶତପଥୀଙ୍କୁ ଇନ୍ଦିରା ଗାନ୍ଧୀଙ୍କର ଅତି ବିଶ୍ୱସ୍ତ ହୋଇ ନିଜର ଭବିଷ୍ୟତ ପଥ ଉଜ୍ଜ୍ୱଳ କରିବା ସଙ୍ଗେ ସଙ୍ଗେ ଶ୍ରୀମତୀ ଗାନ୍ଧୀଙ୍କ ମନକୁ ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ ବିଷାକ୍ତ କରିବାପାଇଁ । ସେ ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ କାନରେ ସବୁ କଥା ଫୋଡ଼ିଦେବାକୁ ମୁହୂର୍ତ୍ତେ ଅପେକ୍ଷା କରିନଥିଲେ । ବିଜୁବାବୁଙ୍କର ସରଳବିଶ୍ୱାସ ବା ନିର୍ବୋଧତା ପୁଣି ଆମ ଦୁର୍ଯୋଗର କାରଣ ହୋଇଗଲା । ଏହାପରେ ଶ୍ରୀମତୀ ଗାନ୍ଧୀ ବ୍ୟକ୍ତିଗତଭାବରେ ଓଡ଼ିଶାର ପାର୍ଲିଆମେଣ୍ଟ ସଦସ୍ୟମାନଙ୍କୁ ଡାକି ସେମାନଙ୍କର ସମର୍ଥନ ଲୋଡ଼ିଥିଲେ । ବିଜୁ ପଟ୍ଟନାୟକଙ୍କ ପ୍ରତି ତାଙ୍କର ଆଉ ବିଶ୍ୱାସ ରହିଲାନାହିଁ । ମଧ୍ୟପ୍ରଦେଶ ଭବନରେ ମଧ୍ୟପ୍ରଦେଶ ମୁଖ୍ୟମନ୍ତ୍ରୀ ଶ୍ରୀ ଦ୍ୱାରକା ପ୍ରସାଦ ମିଶ୍ରଙ୍କ ଆମନ୍ତ୍ରଣରେ ଅଧିକାଂଶ ମୁଖ୍ୟମନ୍ତ୍ରୀ ଏକତ୍ରିତ ହୋଇଥିଲେ । ଶ୍ରୀମତୀ ଇନ୍ଦିରା ଗାନ୍ଧୀ ପ୍ରଧାନମନ୍ତ୍ରୀ ହେବା ଉଚିତ ବୋଲି ସେହିଠାରେ ଗୋଟିଏ ପ୍ରସ୍ତାବ ଗୃହୀତ ହୋଇଥିଲା । ମୁଖ୍ୟମନ୍ତ୍ରୀମାନଙ୍କର ପ୍ରସ୍ତାବଟି ବିଶେଷଭାବରେ ଅନ୍ୟମାନଙ୍କୁ ପ୍ରଭାବିତ କରିଥିଲା । ନେତା ନିର୍ବାଚନପାଇଁ ଶ୍ରୀମତୀ ଗାନ୍ଧୀ ଓ ଶ୍ରୀ ଦେଶାଇଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ହୋଇଥିଲା । ବହୁ ଅଧିକ ସମର୍ଥନ ପାଇ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ପାର୍ଲିଆମେଣ୍ଟର କଂଗ୍ରେସଦଳର ନେତାରୂପେ ନିର୍ବାଚିତ ହୋଇ ପ୍ରଧାନମନ୍ତ୍ରୀ ହୋଇଥିଲେ । ଏହାପରେ ଶ୍ରୀ ବିଜୁ ପଟ୍ଟନାୟକ ଯାଇ ଶ୍ରୀମତୀ ଗାନ୍ଧୀଙ୍କୁ ସାକ୍ଷାତ୍ କରି ଅଭିନନ୍ଦନ ଜଣାଇଥିଲେ । ମାତ୍ର ଶ୍ରୀମତୀ ଗାନ୍ଧୀ ବଡ଼ ଉଦାସୀନ ଭାବ ପ୍ରଦର୍ଶନ କରିଥିଲେ । ଶ୍ରୀମତୀ ଗାନ୍ଧୀ ପ୍ରଧାନମନ୍ତ୍ରୀ ହେବାର ଅଳ୍ପଦିନ ମଧ୍ୟରେ ଜଣେ ଉପମନ୍ତ୍ରୀ ହିସାବରେ ଶ୍ରୀମତୀ ନନ୍ଦିନୀ ଶତପଥୀ ନିଯୁକ୍ତି ପାଇଥିଲେ । ବିଜୁ ପଟ୍ଟନାୟକଙ୍କର ନିଜ ଛୁରୀ ବର୍ତ୍ତମାନ ଦାଢୁଆ ହୋଇ ରହିଲା ଧୀରେ ଧୀରେ ତାଙ୍କ ତଣ୍ଟି କାଟିବାପାଇଁ । ନେହେରୁ ପରିବାର ସହିତ ଶ୍ରୀ ଦିନେଶ ସିଂଙ୍କର ଖୁବ୍ ଘନିଷ୍ଠତା ଥିଲା ବୋଲି ଶ୍ରୀ କୁଲଦୀପନାୟାର ତାଙ୍କର India After Nehru ପୁସ୍ତକରେ ଉଲ୍ଲେଖ କରିଛନ୍ତି । କେବଳ କାନକୁହା ଫୁସ୍‌ଫାସ୍ ଅଭିଯାନଦ୍ୱାରା ଶ୍ରୀମତୀ ଗାନ୍ଧୀଙ୍କ ମନ୍ତ୍ରିମଣ୍ଡଳରୁ ତାଙ୍କୁ ଅପସାରଣ କରାଯାଇଥିଲା । କୁଲଦୀପ ନାୟାର ଲେଖିଛନ୍ତି, "A whispering campaign against Mrs. Gandhi began. Dinesh Singh, then Minister of State for External Affairs, was made a target, but for different reason. He was then the most important member of her Kitchen Cabinet'.' ଶ୍ରୀମତୀ ଗାନ୍ଧୀଙ୍କ କାନରେ ଫୁସଫୁସ୍ କରି କୁହାଗଲା, "This man is bringing a bad name to the P.M. and she would be safe from scandal and slander if he was out of the Ministry as early as possible." ଏହା ପରେ ଶ୍ରୀ ଦୀନେଶ ସିଂହ ମନ୍ତ୍ରୀପଦ ହରାଇବା ସଙ୍ଗେ ସଙ୍ଗେ ଶ୍ରୀମତୀ ଗାନ୍ଧୀଙ୍କର ଅନୁଗ୍ରହ ମଧ୍ୟ ହରାଇଥିଲେ ।

ବିଜୁ ପଟ୍ଟନାୟକଙ୍କୁ ଦୀନେଶ ସିଂହଙ୍କ ଦଶା ଭୋଗିବାକୁ ପଡ଼ିଥିଲା । ଯେଉଁ ବିଜୁ ପଟ୍ଟନାୟକଙ୍କର ନେହେରୁ ପରିବାର ସହିତ ଏପ୍ରକାର ଘନିଷ୍ଠ ସଂପର୍କ ତାହା ଛିନ୍ନ ନକଲେ ସୁବିଧା ହେବନାହିଁ ବୋଲି କୁଆଡ଼େ କେତେକ ମନେକଲେ । ତେଣୁ ଇନ୍ଦିରାଙ୍କ ଦରବାରରେ ବିଜୁ ପଟ୍ଟନାୟକଙ୍କର ପତନ ଘଟାଇବାପାଇଁ ଚକ୍ରାନ୍ତ ଚାଲିଥିଲା । ଏହି ସମୟରେ ଶ୍ରୀମତୀ ଗାନ୍ଧୀ କାନକୁହା କଥା ଶୁଣିବାକୁ ପ୍ରଶ୍ରୟ ଦେଉଥିବାର ଜଣାଯାଉଥିଲା । ତେଣୁ ବିଜୁ ପଟ୍ଟନାୟକଙ୍କ ସମ୍ବନ୍ଧରେ ନାନାପ୍ରକାର ମନଗଢ଼ା

ସୌଜନ୍ୟହୀନ ଗୁଜବ ଇନ୍ଦିରାଙ୍କ କାନରେ କୁହାଯାଉଥିଲା ବୋଲି ସେତେବେଳେ ଜଣାଯାଉଥାଏ । ପରିସ୍ଥିତି ଏପ୍ରକାର ଜଘନ୍ୟ ହୋଇଥାଏ ଯେ କେନ୍ଦ୍ର ମନ୍ତ୍ରିମଣ୍ଡଳର ବହୁ ନେତୃସ୍ଥାନୀୟ ବ୍ୟକ୍ତି ଭୀତତ୍ରସ୍ତ ପରିବେଶ ମଧ୍ୟରେ ଚଳୁଥିଲେ ବୋଲି ଶୁଣାଯାଉଥାଏ । ଶ୍ରୀ ଜଗଜ୍ଜୀବନ ରାମ ମଧ୍ୟ ମୋତେ ଥରେ ସେହି କଥା କହୁଥିଲେ । କାନକୁହା ବିଷୟଟିର ପରିଣାମ ଏପ୍ରକାର ଭୟାନକ ହୋଇଥାଏ ଯେ ପାର୍ଲିଆମେଣ୍ଟ ସଭ୍ୟମାନେ ନିଜ ନିଜ ଭିତରେ ପାର୍ଲିଆମେଣ୍ଟ ହାଉସ୍ ସେଣ୍ଟ୍ରାଲ୍ ହଲ୍‌ରେ କଥାବାର୍ତ୍ତା କଲାବେଳେ କୁଆଡ଼େ ସତର୍କତା ଅବଲମ୍ବନ କରୁଥିଲେ । ସ୍ୱର୍ଗୀୟ ସର୍ଦ୍ଦାର ଯୋଗେନ୍ଦ୍ର ସିଂହ ଆମ ରାଜ୍ୟକୁ ରାଜ୍ୟପାଳ ହୋଇ ଆସିବା ପୂର୍ବରୁ ରାଜ୍ୟସଭାର ସଦସ୍ୟ ଥିଲେ । ଏହି କାନକୁହା ସମ୍ବନ୍ଧରେ ତାଙ୍କର ଅନୁଭୂତି ସେ ବହୁବାର ଆମ୍ଭମାନଙ୍କ ଆଗରେ ବର୍ଣ୍ଣନା କରିବାର ମୁଁ ଶୁଣିଛି । ସର୍ଦ୍ଦାର ଯୋଗେନ୍ଦ୍ର ସିଂହ ଆମ ରାଜ୍ୟରୁ ଯାଇ ରାଜସ୍ଥାନର ରାଜ୍ୟପାଳ ହେବାର ଅଳ୍ପଦିନ ପରେ ଓଡ଼ିଶାର ଗୁରୁଦ୍ୱାର ଅନୁଷ୍ଠାନର କୌଣସି ଗୋଟିଏ ଉତ୍ସବକୁ ଆସିଥିଲେ । ମୁଁ ସେତେବେଳେ ଅସୁସ୍ଥ ହୋଇ ଶଯ୍ୟାଶାୟୀ ହୋଇଥାଏ । ଶ୍ରୀ ମହତାବଙ୍କ ସହିତ ସର୍ଦ୍ଦାର ଯୋଗେନ୍ଦ୍ର ସିଂହ ମୋତେ ଦେଖିବାକୁ ଆସିଥିଲେ । ଓଡ଼ିଶାରେ ଶାସନ ସଂକଟ ଘଟାଇବା ସମ୍ବନ୍ଧରେ ସେ ଦୁଇଜଣ ମୋ ସହିତ ଆଲୋଚନା କରିଥିଲେ । କଥାପ୍ରସଙ୍ଗରେ ସେମାନେ ଉଭୟେ ରାମାୟଣରେ ବର୍ଣ୍ଣିତ 'ମନ୍ଥରା' ନାରୀ ଚରିତ୍ର କଥା କହି ସମସ୍ତଙ୍କୁ ହସାଇଥିଲେ ।

ପଣ୍ଡିତ ନେହେରୁ ଓ ତାଙ୍କ ପରିବାର ସହିତ ବିଜୁ ପଟ୍ଟନାୟକଙ୍କର କି ପ୍ରକାର ଘନିଷ୍ଠ ସଂପର୍କ ଥିଲା ତାହା ବିଜୁ ପଟ୍ଟନାୟକ ଆମକୁ କହିଥିବା ଗୋଟିଏ ଘଟଣାରୁ ଜଣାପଡ଼େ । ଥରେ ବିଜୁ ପଟ୍ଟନାୟକ ଇଣ୍ଡୋନେସିଆରୁ ସଦ୍ୟ ଫେରି ପ୍ରଧାନମନ୍ତ୍ରୀଙ୍କ ବାସଭବନରେ ନେହେରୁଙ୍କ ସହିତ ମଧ୍ୟାହ୍ନ ଭୋଜନରେ ଯୋଗଦେଇଥିଲେ । ସେଠାରେ ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତ ଓ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ପ୍ରଭୃତି ତାଙ୍କର ପରିବାରବର୍ଗ ଥାଆନ୍ତି । ନେହେରୁ ବିଜୁବାବୁଙ୍କୁ ଇଣ୍ଡୋନେସିଆ ଅବସ୍ଥା ଓ ଡକ୍ଟର ସୁକର୍ଣ୍ଣୋଙ୍କ ବିଷୟ ପଚାରିଥିଲେ । ବିଜୁ ପଟ୍ଟନାୟକ ହସି ହସି କହିଲେ ଯେ ଡକ୍ଟର ସୁକର୍ଣ୍ଣୋ ନେହେରୁଙ୍କ ପାଖକୁ ଗୋଟିଏ ବାର୍ତ୍ତା ଦେଇଛନ୍ତି । ନେହେରୁ କୁଆଡ଼େ ବଡ଼ କୌତୂହଳୀ ହୋଇ ପଚାରିଲେ ସେ ବାର୍ତ୍ତାଟି କ'ଣ ? ବିଜୁ ପଟ୍ଟନାୟକ କୌତୂହଳୀ ନେହେରୁଙ୍କୁ ଏହି ମଜା ବାର୍ତ୍ତାଟି ଜଣାଇଥିଲେ । ଡକ୍ଟର ସୁକର୍ଣ୍ଣୋ କୁଆଡ଼େ ତାଙ୍କୁ କହିଥିଲେ, "ତୁମ ପଣ୍ଡିତ ନେହେରୁଙ୍କ ଦିମାକ୍ ଭଲରହୁନାହିଁ । ତାଙ୍କର ଆଉ ଥରେ ବାହାହେବା ଦରକାର ପଡୁଛି । ପଣ୍ଡିତ ନେହେରୁଙ୍କୁ କୁହ ତାଙ୍କ ପସନ୍ଦଯୋଗ୍ୟ ଇଣ୍ଡୋନେସିଆର ଯେକୌଣସି ରମଣୀଙ୍କୁ ବାଛିବେ । ମୁଁ ନେଇ ତାଙ୍କୁ ପଣ୍ଡିତ ନେହେରୁଙ୍କ ପାଖରେ ପହଞ୍ଚାଇ ଦେବି ।" ଏ କଥା ଶୁଣି ନେହେରୁ କୁଆଡ଼େ ଖୁବ୍ ଜୋର୍‌ରେ ହସିଉଠିଥିଲେ ଓ ତାଙ୍କ ସହିତ ଅନ୍ୟମାନେ ମଧ୍ୟ ହସିଥିଲେ । କିନ୍ତୁ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଟିକିଏ ଗମ୍ଭୀର ହୋଇଯାଇଥିଲେ । ହସ ବନ୍ଦହେବା ପରେ ନେହେରୁ ପଚାରିଥିଲେ— ସୁକର୍ଣ୍ଣୋ ଆଉ କ'ଣ କହିଥିଲେ ? ତାହା ଶୁଣି ବିଜୁ ପଟ୍ଟନାୟକ କୁଆଡ଼େ କହିଥିଲେ, "ତା'ହେଲେ କ'ଣ ସୁକର୍ଣ୍ଣୋଙ୍କ କଥା ମନକୁ ପାଉଛି ?" ଏ କଥା ଶୁଣି ସମସ୍ତଙ୍କ ମଧ୍ୟରେ ପୁଣି ହାସ୍ୟରୋଳ ସୃଷ୍ଟିହୋଇଥିଲା ।

## ଓଡ଼ିଶାରେ 'ମରୁଡ଼ି' ରାଜନୀତି

ଶ୍ରୀ ତ୍ରିପାଠୀଙ୍କ ମନ୍ତ୍ରିମଣ୍ଡଳକୁ ୧୯୬୫-୬୬ ମସିହାରେ ଗୋଟିଏ ଅତି ଉତ୍କଟ ଦୈବୀ ବିପତ୍ତିର ସମ୍ମୁଖୀନ ହେବାକୁ ପଡ଼ିଥିଲା । ୧୯୬୫ ମସିହା ସେପ୍‌ଟେମ୍ବର-ଅକ୍ଟୋବର ମାସ ବେଳକୁ ପ୍ରାୟ ସମଗ୍ର ଓଡ଼ିଶାରେ ଅନାବୃଷ୍ଟି ହେତୁ ଆତଙ୍କ ପଡ଼ିଯାଇଥିଲା । ବର୍ଷା ଅଭାବରୁ ପ୍ରାୟ ସବୁଆଡ଼େ ଫସଲ ହାନି ହୋଇଥିଲା ; ମାତ୍ର ପଶ୍ଚିମ-ଓଡ଼ିଶାରେ ଏହା ଅତି ଉତ୍କଟ ଆକାର ଧାରଣ କରିଥିଲା । ସୁନ୍ଦରଗଡ଼, ସମ୍ବଲପୁର, ବଲାଙ୍ଗୀର ଓ କଳାହାଣ୍ଡି ଜିଲ୍ଲାମାନଙ୍କରେ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କଠାରୁ ଅଧିକ

ପରିମାଣରେ ଫସଲ ନଷ୍ଟ ହୋଇଗଲା । ସବୁଠାରୁ ଅଧିକ ଶୋଚନୀୟ ଅବସ୍ଥା ସୃଷ୍ଟିହୋଇଥିଲା କଳାହାଣ୍ଡି ଜିଲ୍ଲାର ନୂଆପଡ଼ା ଓ ସମ୍ବଲପୁର ଜିଲ୍ଲାର ପଦ୍ମପୁର ସବ୍‌ଡିଭିଜନମାନଙ୍କରେ । ଏସବୁ ଅଞ୍ଚଳରେ ଆଦୌ ବୃଷ୍ଟି ହୋଇନଥିଲା । ଏସବୁ ଅଞ୍ଚଳରେ ବିଆଳି, ଶାରଦ ଓ ରବିଫସଲ ସମୂଳେ ନଷ୍ଟ ହୋଇଯାଇଥିଲା । ସେ ସମୟରେ ଏସବୁ ଅଞ୍ଚଳରେ ଏକପ୍ରକାର ଆତଙ୍କ ପଡ଼ିଯାଇଥିଲା । ସେ ସମୟ ପୁଣି ଥିଲା ଭାରତ-ପାକିସ୍ତାନ ଯୁଦ୍ଧ ସମୟ । କ୍ରମେ କ୍ରମେ ମରୁଡ଼ିଜନିତ ପରିସ୍ଥିତିର ଉତ୍କଟତା ବୃଦ୍ଧିପାଇ ୧୯୬୬ ଫେବୃୟାରୀ, ମାର୍ଚ୍ଚ, ଏପ୍ରିଲ୍ ବେଳକୁ କଳାହାଣ୍ଡି ପ୍ରଭୃତି ଜିଲ୍ଲାମାନଙ୍କରେ ଏକପ୍ରକାର ଦୁର୍ଭିକ୍ଷ ପଡ଼ିଯାଇଥିଲା । ସେସବୁ ଅଞ୍ଚଳର ଲୋକମୁଖରୁ ଶୁଣାଯାଇଥିଲା ଯେ ଏପ୍ରକାର ମରୁଡ଼ି ସେମାନଙ୍କର ଜୀବଦ୍ଦଶା ମଧ୍ୟରେ କେବେ ଘଟିନଥିଲା । ଫସଲ ନଷ୍ଟ ହେତୁ ଚାଷୀମାନେ ତ ବିପନ୍ନ ହେଲେ, ସେମାନଙ୍କଠାରୁ ଅଧିକ ଦୁର୍ଦ୍ଦଶାଗ୍ରସ୍ତ ହୋଇଥିଲେ କ୍ଷେତ ମଜୁରିଆମାନେ । ଲୋକଙ୍କ ଘରେ ସୁନା, ରୁପା, କଂସାବାସନ, ଗୋରୁଗାଈ କିଛି ରହିଲା ନାହିଁ । ବେପାରୀମାନେ ଯାଇ ଗାଆଁଗଣ୍ଡାରୁ ଗାଡ଼ି ଗାଡ଼ି କଂସା ବାସନକୁସନ କିଣିଆଣୁଥିବାର ମୁଁ ନିଜେ ଦେଖିଛି । ଖାଇବାକୁ ନପାଇ ଲୋକେ ଘରଦ୍ୱାର ଛାଡ଼ି ବହୁସଂଖ୍ୟାରେ ବାହାରକୁ ପଳାଇଯାଇଥିଲେ । ମରୁଡ଼ି ହେତୁ ଏ ପ୍ରକାର ଭୟଙ୍କର ବିପନ୍ନ ଅବସ୍ଥା ସୃଷ୍ଟି ହେବା ସମ୍ବନ୍ଧରେ ପୂର୍ବରୁ ମୋର ଅଭିଜ୍ଞତା ନଥିଲା । ମରୁଡ଼ିଜନିତ ସେ ପ୍ରକାର ଦୁର୍ଦ୍ଦଶା ମୁଁ ଆଜିପର୍ଯ୍ୟନ୍ତ କେଉଁଠାରେ ଦେଖିନାହିଁ । ୧୯୪୪ ମସିହାରେ ଆମ ରାଜ୍ୟର ଉତ୍ତର-ବାଲେଶ୍ୱର ଅଞ୍ଚଳରେ ଖାଦ୍ୟାଭାବ ଯୋଗୁଁ ଯେପରି ବିପନ୍ନ ଅବସ୍ଥା ସୃଷ୍ଟିହୋଇଥିଲା ପ୍ରାୟ ସେହି ପ୍ରକାର ଅବସ୍ଥା ଏଥର ମରୁଡ଼ିରେ କଳାହାଣ୍ଡିର କେତେକ ଅଞ୍ଚଳରେ ଦେଖିବାକୁ ମିଳିଥିଲା । ମୁଁ ଥାଏ ରାଜ୍ୟର ଯୋଗାଣ ମନ୍ତ୍ରୀ, ତେଣୁ ବିପନ୍ନ ଅଞ୍ଚଳକୁ ଖାଦ୍ୟ ଯୋଗାଇବା ଦାୟିତ୍ୱ ଥିଲା ମୋର । ସେତେବେଳେ ରାଜ୍ୟ ସରକାରଙ୍କ ହାତରେ ପ୍ରାୟ ଏକ ଲକ୍ଷ ଟନ୍ ଚାଉଳ ମହଜୁଦ୍ ଥିଲା । ସେସବୁର ବେଶି ଭାଗ ବାଲେଶ୍ୱର; କଟକ ପ୍ରଭୃତି ଅଞ୍ଚଳରେ ଚାଉଳକଳଗୁଡ଼ିକରେ ଗଚ୍ଛିତ ହୋଇ ରହିଥିଲା । ମୋର ମନେପଡ଼େ, ସେତେବେଳେ ପ୍ରାୟ ପ୍ରତିଦିନ ଗୋଟିଏ ଦୁଇଟି କରି ସ୍ପେଶାଲ୍ ଟ୍ରେନ୍‌ରେ ସୁନ୍ଦରଗଡ଼, କଳାହାଣ୍ଡି ଓ ବଲାଙ୍ଗୀର ପ୍ରଭୃତି ଅଞ୍ଚଳକୁ ଚାଉଳ ପଠାଯାଉଥିଲା । ଗୋଟିଏ ସ୍ପେଶାଲ୍ ଟ୍ରେନ୍‌ରେ ପ୍ରାୟ ଏକ ହଜାର ଟନ୍ ଚାଉଳ ବୁହାହୋଇ ଯାଇପାରୁଥିଲା । ମରୁଡ଼ି ସମୟରେ ବହୁ ଅଞ୍ଚଳରେ ଜଳାଶୟମାନଙ୍କରୁ ପାଇପଦ୍ୱାରା ଜଳ ଯୋଗାଇ ମଧ୍ୟ ଫସଲ ବଞ୍ଚାଯାଇ ପାରି ନଥିଲା । ଏଣେ ଦୀର୍ଘକାଳ ବର୍ଷା ଅଭାବରୁ ଜଳାଶୟଗୁଡ଼ିକ ମଧ୍ୟ ଶୁଖିଗଲା । ସରକାରଙ୍କ ପକ୍ଷରୁ ଲୋକମାନଙ୍କୁ ରିଲିଫ୍ ଦେବାପାଇଁ ବ୍ୟାପକ ବ୍ୟବସ୍ଥା କରାଯାଇଥିଲା । ବିଭିନ୍ନ ସ୍ଥାନରେ ସରକାରଙ୍କ ପକ୍ଷରୁ ଲୋକଙ୍କୁ ରନ୍ଧାଖାଦ୍ୟ ଯୋଗାଇ ଦେବାର ବ୍ୟବସ୍ଥା ମଧ୍ୟ ହୋଇଥିଲା । ବହୁ ଦାତବ୍ୟ ସେବାନୁଷ୍ଠାନଙ୍କ ପକ୍ଷରୁ ମଧ୍ୟ ଅନ୍ନଛତ୍ର ଖୋଲାଯାଇ ଲୋକମାନଙ୍କୁ ଖାଇବାକୁ ଦିଆଯାଉଥିଲା । ବିପନ୍ନ ଲୋକଙ୍କୁ କାମଧନ୍ଦା ଯୋଗାଇଦେବା ଉଦ୍ଦେଶ୍ୟରେ ଅତି ବ୍ୟାପକ ଭାବରେ ରାସ୍ତାଘାଟ ତିଆରି, କୂଅ ପୋଖରୀ ଖୋଳା ଆଦି ନାନାରକମ ମାଟିକାମ କରାଯାଉଥିଲା— ଉଦ୍ଦେଶ୍ୟ ଥିଲା ଲୋକେ କାମକରି କିଛି ରୋଜଗାର କରି ଚାଉଳ କିଣି ଚଳିଯିବେ । ଲୋକେ ଯେପରି ଉଚିତ ଦରରେ ଚାଉଳ ପାଇପାରିବେ ତା'ର ବ୍ୟବସ୍ଥା ମଧ୍ୟ କରାଯାଇଥିଲା । ଗରିବ ଲୋକମାନଙ୍କୁ ସରକାରୀ ସୂତ୍ରରୁ ରିହାତି ଦରରେ ଚାଉଳ ମଧ୍ୟ ଯୋଗାଯାଉଥିଲା । ରିଲିଫ୍ କାର୍ଯ୍ୟ ସୁଚାରୁରୂପେ ତଥା ଯୁଦ୍ଧକାଳୀନ ଭିତ୍ତିରେ କରିବାପାଇଁ ଶ୍ରୀ ଭି.ଏସ୍. ମ୍ୟାଥ୍ୟୁସ୍‌କୁ ସ୍ପେଶାଲ ରିଲିଫ୍ କମିଶନରରୂପେ ନିଯୁକ୍ତ କରାଯାଇଥିଲା ।

ପଶ୍ଚିମ-ଓଡ଼ିଶାରେ ଅନାବୃଷ୍ଟିହେତୁ ଯେଉଁ ସଙ୍କଟ ଉପୁଜିଥିଲା ତାହା ସମଗ୍ର ଭାରତବର୍ଷର ଲୋକଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ମରୁଡ଼ିଗ୍ରସ୍ତ ଅଞ୍ଚଳ ଦେଖିବାପାଇଁ ୧୯୬୬ ମେ ମାସ ତେର ତାରିଖରେ ଓଡ଼ିଶା ଆସିଥିଲେ । ସେ ଦୁଇଦିନ

ଓଡ଼ିଶାରେ ରହିଥିଲେ । ତାଙ୍କର ଭୁବନେଶ୍ୱରରେ ରହଣି ସମୟରେ ବହୁ ନେତୃସ୍ଥାନୀୟ ବ୍ୟକ୍ତି ଓ ସମାଜସେବୀ ତାଙ୍କୁ ସାକ୍ଷାତ୍‌କରିଥିଲେ । ମୋର ମନେଅଛି, ଆମର ଏଠାକାର ସର୍ବୋଦୟ କର୍ମୀମାନେ ସରକାରଙ୍କ ବିରୁଦ୍ଧରେ ଦୁଇଟି ଅଭିଯୋଗ ଆଣିଥିଲେ । ଗୋଟିଏ ହେଲା, କଳାହାଣ୍ଡି ପ୍ରଭୃତି ଅଞ୍ଚଳର ଲୋକମାନେ ଧାନ ଚାହୁଁଛନ୍ତି; କିନ୍ତୁ ସରକାର ତାଙ୍କୁ ଚାଉଳ ଯୋଗାଉଛନ୍ତି, ତେଣୁ କୁଣ୍ଡା ପ୍ରଭୃତି ଗୋଖାଦ୍ୟର ଅଭାବ ପଡୁଛି । ଆଉ ଗୋଟିଏ ଦାବି ହେଲା, ସାଧାରଣ ଲୋକଙ୍କୁ ଯେଉଁ ଚାଉଳ ଯୋଗାଇ ଦିଆଯାଉଛି ତା'ର ସରକାରୀ ବଜାରଦର କମେଇଦେବା ଦରକାର । ମୁଖ୍ୟମନ୍ତ୍ରୀଙ୍କ ସହିତ ସର୍ବୋଦୟ କର୍ମୀମାନଙ୍କର ଖୁବ୍ ଆତ୍ମୀୟତା ଥିଲା । ଏହି ଦୁଇଟି ପ୍ରସ୍ତାବ ସେତେବେଳକୁ ସରକାରଙ୍କ ବିଚାରଧୀନ ଥାଏ । ତେଣୁ ମୋର ବିଶ୍ୱାସ ଥାଏ ଏ ଦୁଇଟି ବିଷୟରେ ମୁଖ୍ୟମନ୍ତ୍ରୀଙ୍କଠାରୁ ସେମାନେ କିଛି ସୂଚନା ପାଇଥିଲେ, ତେଣୁ ଏ ପ୍ରକାର ଅଭିଯୋଗ ପ୍ରଧାନମନ୍ତ୍ରୀଙ୍କ ଆଗରେ ଉପସ୍ଥାପନା କରିଥିଲେ । ଏ ବିଷୟରେ ପ୍ରଧାନମନ୍ତ୍ରୀ ମୁଖ୍ୟମନ୍ତ୍ରୀଙ୍କୁ ପଚାରିବାରୁ ସେ କୁଆଡ଼େ କହିଥିଲେ ଯେ ସେ ଦୁଇଟି ପ୍ରସ୍ତାବ ସମ୍ବନ୍ଧୀୟ ଫାଇଲ୍ ଯୋଗାଣମନ୍ତ୍ରୀ ହିସାବରେ ମୋ ପାଖରେ କାର୍ଯ୍ୟକାରୀ ହେବା ଅବସ୍ଥାରେ କେତେଦିନ ହେଲା ପଡ଼ିରହିଛି ଏବଂ ମୁଁ ସେ ଫାଇଲ୍ ତାଙ୍କ ପାଖକୁ ଫେରାଉନାହିଁ । ମୋର ମନେପଡ଼େ, ଶ୍ରୀମତୀ ଇନ୍ଦିରା ଗାନ୍ଧୀ ରାତି ଆଠଟାବେଳେ ମୋତେ ରାଜଭବନକୁ ଡାକିଥିଲେ । ମୁଖ୍ୟମନ୍ତ୍ରୀ ଓ ମୋ ଭିତରେ ସହଯୋଗନାହିଁ ବୋଲି ସେ କଥା ପ୍ରସଙ୍ଗରେ କହିଥିଲେ । କଳାହାଣ୍ଡିର ବିପନ୍ନ ଲୋକଙ୍କୁ ଚାଉଳ ପରିବର୍ତ୍ତେ ଧାନ ଯୋଗାଇବା ଓ ସେଠାରେ ବିକ୍ରି ହେଉଥିବା ସରକାରୀ ଚାଉଳର ଦର କମାଇବା ସମ୍ବନ୍ଧୀୟ ଫାଇଲ୍ ଦୁଇଟି ମୁଁ ଅଟକାଇ ରଖିଛି ଓ ଏ ସମ୍ବନ୍ଧରେ ମୁଖ୍ୟମନ୍ତ୍ରୀଙ୍କ ସହିତ ମୁଁ ଏକମତ ନହେଉଥିବାରୁ ବିପନ୍ନ ଲୋକମାନେ ସାହାଯ୍ୟରୁ ବଞ୍ଚିତ ହେଉଛନ୍ତି ବୋଲି ତାଙ୍କର ଧାରଣା ହୋଇଥାଏ । ମୁଁ ପ୍ରଧାନମନ୍ତ୍ରୀଙ୍କୁ ପ୍ରକୃତ କଥା ବୁଝାଇଥିଲି । ପ୍ରଥମ କଥା ହେଲା ଧାନ ଦେବା ବିଷୟ । ସରକାରଙ୍କ ପକ୍ଷରୁ ସଂଗ୍ରହ କରାଯାଇଥିବା ପ୍ରାୟ ସବୁ ଧାନ ଏପ୍ରିଲ୍ ମେ' ମାସ ବେଳକୁ ଚାଉଳ କରାହୋଇଯାଇଥାଏ । ତା'ଛଡ଼ା ଆମେ ଲୋକଙ୍କୁ ଏକାଥରକେ ଦୁଇ ତିନିକିଲୋ ପର୍ଯ୍ୟନ୍ତ ବିକ୍ରି ବା ସାହାଯ୍ୟ କରୁଥାଉ । ଦୁଇ ତିନିକିଲୋ ଚାଉଳ ବାହାରିବାଭଳି ଅଳ୍ପ ଧାନ ନେଇ ଥରକୁଥର ତାକୁ ଚାଉଳରେ ପରିଣତ କରିବା କାହାରି ପକ୍ଷରେ ଆଦୌ ସୁବିଧାଜନକ ନୁହେଁ । ଯଦି ଥରକେ ଯଥେଷ୍ଟ ପରିମାଣରେ ଧାନ ଦିଆଯାଏ ତା'ହେଲେ ତାକୁ ଚାଉଳରେ ପରିଣତ କରିବା ସୁବିଧାଜନକ ଏବଂ ସେଥିରୁ ଗୋଖାଦ୍ୟ ସଂଗ୍ରହ କରାଯାଇପାରିବ । ମାତ୍ର ଏତେ ଅଳ୍ପ ଧାନ ଦେଲେ ଭୋକିଲା ଲୋକ ତୁରନ୍ତ ସାହାଯ୍ୟ ପାଇବା ପରିବର୍ତ୍ତେ ହଟହଟା ଭୋଗିବେ । ଦ୍ୱିତୀୟ କଥା ହେଲା, ସରକାରୀ ଚାଉଳର ଦର ସେ ଅଞ୍ଚଳରେ ଶସ୍ତା କରିଦେବା ପ୍ରଶ୍ନ । କଳାହାଣ୍ଡିର ବିପନ୍ନ ଅଞ୍ଚଳଗୁଡ଼ିକ ମଧ୍ୟପ୍ରଦେଶର ସୀମାରେ ଅବସ୍ଥିତ । ମଧ୍ୟପ୍ରଦେଶର ଚାଉଳଦର ସହିତ ଆମ ଦର ପ୍ରାୟ ସମାନ ଥାଏ । ଆମ ଅଞ୍ଚଳର ବଜାରଦର ଯଦି କମାଇଦିଆଯାଏ ତା'ହେଲେ ମଧ୍ୟପ୍ରଦେଶର ସୀମାରେ ଥିବା ବେପାରୀ ଓ ଖାଉଟିମାନେ ଆସି ଆମ ଅଞ୍ଚଳରୁ ଚାଉଳ କିଣି ନେଇଯିବେ । ତଦ୍ୱାରା ବିପନ୍ନ ଅଞ୍ଚଳରେ ବରଂ ଚାଉଳର ଅଭାବ ପଡ଼ିବ । ତେଣୁ ଓଡ଼ିଶା ସରକାର ଚାଉଳଦର କମାଇବା ଆଦୌ ସମୀଚୀନ ହେବନାହିଁ ବୋଲି ମୁଁ ମତ ଦେଇଥିଲି । ତା'ଛଡ଼ା ବିପନ୍ନ ଗରିବ ଲୋକମାନଙ୍କୁ ଯେଉଁ ଚାଉଳ ବିକ୍ରି କରାଯାଉଥାଏ, ତାହା ସରକାରୀ ସାହାଯ୍ୟଦ୍ୱାରା ରିହାତି ଦରରେ ବିକ୍ରୟ କରାଯାଉଥାଏ । ଏ ପରିପ୍ରେକ୍ଷୀରେ ଆମ ରାଜ୍ୟର ସେହି ଅଞ୍ଚଳରେ ଚାଉଳଦର କମେଇଦେବାଦ୍ୱାରା ବିପନ୍ନ ଲୋକଙ୍କର ବରଂ କ୍ଷତି ହେବ, ଲାଭ ହେବନାହିଁ ବୋଲି ମୁଁ ପ୍ରଧାନମନ୍ତ୍ରୀଙ୍କୁ ବୁଝାଇଥିଲି । ସେ ମୋ କଥା ଶୁଣିଲେ ଏବଂ ତା'ପରେ ଟିକିଏ ଚିନ୍ତା କରିବାକୁ ଲାଗିଲେ । ପରଦିନ ତାଙ୍କ ସହିତ ମୋର କଳାହାଣ୍ଡି ଯିବାର ଥିଲା, ତେଣୁ ଏ ବିଷୟରେ ପରେ ଆଲୋଚନା କରିବେ ବୋଲି କହିଥିଲେ । ଭୁବନେଶ୍ୱରରୁ ସେ ହେଲିକେପ୍‌ଟରେ ଯୋଗେ ମରୁଡ଼ିଗ୍ରସ୍ତ ଅଞ୍ଚଳ ଦେଖିବାପାଇଁ କଳାହାଣ୍ଡି ଯାଇଥିଲେ ।

ତାଙ୍କ ସହିତ ମୁଁ ଓ ମୁଖ୍ୟମନ୍ତ୍ରୀ ଯାଇଥିଲୁ । ଶ୍ରୀମତୀ ଗାନ୍ଧୀ କଳାହାଣ୍ଡି ଜିଲ୍ଲାର ଖଡ଼ିଆଳ ପ୍ରଭୃତି ଅଞ୍ଚଳରେ ଲୋକମାନଙ୍କର ଅବସ୍ଥା ବୁଝିବାପାଇଁ କେତେକ ଗାଆଁ ଭିତରକୁ ମଧ୍ୟ ଯାଇଥିଲେ । ଆମେମାନେ ତାଙ୍କ ସହିତ ଥିଲୁ । ଠାଏ ଠାଏ ସେ ଆମମାନଙ୍କୁ ଟିକିଏ ଆଡ଼େଇଦେଇ ଏକୁଟିଆ ଲୋକଙ୍କ ସହିତ ମିଶି କଥାବାର୍ତ୍ତା କରିଥିଲେ । ସେହିଠାରେ ସେମାନଙ୍କୁ ପଚାରି ବୁଝିଥିଲେ ଯେ ସରକାର ଯେଉଁ ଖାଦ୍ୟ ଯୋଗାଉଛନ୍ତି ତାକୁ ଧାନ ଆକାରରେ ଦେଲେ ଭଲ ହେବ ନା ଚାଉଳ ଆକାରରେ ଦେଲେ ଭଲହେବ । ଚାଉଳ ଆକାରରେ ଦେଲେ ସେମାନଙ୍କର ସୁବିଧା ହେବ ବୋଲି ଲୋକେ ଶ୍ରୀମତୀ ଗାନ୍ଧୀଙ୍କୁ କହିଥିଲେ । ସେଠାରୁ ଫେରିଆସି ଶ୍ରୀମତୀ ଗାନ୍ଧୀ ମୋତେ କହିଥିଲେ, "I have understood the problem. It seems your appreciation is correct". ତା'ପରେ ପ୍ରଧାନମନ୍ତ୍ରୀ ଏ ବିଷୟରେ ମୁଖ୍ୟମନ୍ତ୍ରୀଙ୍କ ସହିତ କଥାବାର୍ତ୍ତା ହୋଇଥିଲେ । ଚାଉଳ ପରିବର୍ତ୍ତେ ଧାନ ଦେବା କଥା ହୋଇନଥିଲା କିମ୍ବା ଚାଉଳଦର କମେଇବା ଆବଶ୍ୟକ ପଡ଼ିନଥିଲା । ଘୋର ମରୁଡ଼ି କାଳରେ ବିପନ୍ନ ଲୋକଙ୍କ ଭାଗ୍ୟକୁ ନେଇ ରାଜନୈତିକ ପଶାପାଲିରେ ଗୋଟି ଚଳାଇବାପାଇଁ ମଧ୍ୟ ଆମେ ସଙ୍କୋଚ କରୁନାହିଁ ।

## କାମରାଜଙ୍କ ତିକ୍ତ ଅନୁଭୂତି

୧୯୬୫ ମସିହା ଜୁନ୍‌ମାସ ଦ୍ୱିତୀୟ ସପ୍ତାହରେ ନିଖିଳ ଭାରତ କଂଗ୍ରେସ କମିଟିର ସଭାପତି ଶ୍ରୀ କାମରାଜ ଓଡ଼ିଶା ଗସ୍ତରେ ଆସିଥିଲେ । ସେ ପ୍ରାୟ ଏକ ସପ୍ତାହ ଓଡ଼ିଶାରେ କଟାଇଥିଲେ । କଟକ, ପୁରୀ, ବାଲେଶ୍ୱର, ମୟୂରଭଞ୍ଜ, କେଉଁଝର, ସୁନ୍ଦରଗଡ଼ ଓ ସମ୍ବଲପୁର ପ୍ରଭୃତି ଜିଲ୍ଲାମାନଙ୍କୁ ଯାଇଥିଲେ । ତାଙ୍କ ସାଙ୍ଗରେ ମୁଁ, ମୁଖ୍ୟମନ୍ତ୍ରୀ ଶ୍ରୀ ତ୍ରିପାଠୀ, ବିଜୁବାବୁ ଓ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଶ୍ରୀ ବିଜୟ କୁମାର ପାଣି ପ୍ରଭୃତି ଯାଇଥିଲୁ । କାମରାଜ ଜିଲ୍ଲା କଂଗ୍ରେସ କର୍ମୀ ସମ୍ମିଳନୀମାନଙ୍କରେ ଉଦ୍‌ବୋଧନ ଦେବାଛଡ଼ା ସାଧାରଣ ସଭାମାନଙ୍କରେ ମଧ୍ୟ ଭାଷଣ ଦେଇଥିଲେ । ସେ ଯେଉଁଠିକୁ ଯାଉଥିଲେ ସେ ଅଞ୍ଚଳର ବିଶିଷ୍ଟ ବ୍ୟକ୍ତିମାନେ ତାଙ୍କୁ ସାକ୍ଷାତ୍ କରି ସରକାରଙ୍କ ବିରୁଦ୍ଧରେ ସେମାନଙ୍କ ଅଭିଯୋଗ ତଥା ସ୍ଥାନୀୟ ସମସ୍ୟା ସଂପର୍କରେ ତାଙ୍କର ଦୃଷ୍ଟି ଆକର୍ଷଣ କରୁଥିଲେ । ମୋର ମନେପଡ଼େ, ସମ୍ବଲପୁରରେ କାମରାଜଙ୍କ ସହିତ ଆମର ରହଣି ସମୟରେ ସର୍ବଶ୍ରୀ ପର୍ଶୁରାମ ମିଶ୍ର, ମାନଭଞ୍ଜନ ବହିଦାର ଓ ଶ୍ରଦ୍ଧାକର ସୂପକାର ପ୍ରଭୃତି ବିଶିଷ୍ଟ ବ୍ୟକ୍ତିମାନେ ସମ୍ବଲପୁରଠାରେ ଗୋଟିଏ ବିଶ୍ୱବିଦ୍ୟାଳୟ ସ୍ଥାପନ କରିବାପାଇଁ ଆମ୍ଭମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ସେହିଦିନ ଆମ୍ଭେମାନେ ସ୍ଥିରକରିଥିଲୁ ଯେ ସମ୍ବଲପୁର ସହିତ ବ୍ରହ୍ମପୁରରେ ମଧ୍ୟ ଆଉ ଗୋଟିଏ ବିଶ୍ୱବିଦ୍ୟାଳୟ କରିବାକୁ ହେବ । ସେହି ଅନୁସାରେ ୧୯୬୬ ମସିହାରେ ସମ୍ବଲପୁରରେ ଗୋଟିଏ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଯାଇଥିଲା । ପୁରୀ ଜିଲ୍ଲାର ରାଜନୈତିକ ସମ୍ମିଳନୀ ସେହି ସମୟରେ ଶ୍ରୀ ରଘୁନାଥ ରାୟ ଓ ଶ୍ରୀ ସିଦ୍ଧ ମାନସିଂହ ପ୍ରଭୃତିଙ୍କ ଉଦ୍ୟମରେ ଖୋର୍ଦ୍ଧା ସବ୍‌ଡିଭିଜନ୍‌ର କୁହୁଡ଼ିଠାରେ ଅନୁଷ୍ଠିତ ହୋଇଥିଲା । କାମରାଜ ସେ ସମ୍ମିଳନୀରେ ଉଦ୍‌ବୋଧନ ଦେଇଥିଲେ । ଭୁବନେଶ୍ୱରରେ କଂଗ୍ରେସ ସଭାପତିଙ୍କ ସହିତ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ପରିଚାଳିତ ଅସନ୍ତୁଷ୍ଟ ଗୋଷ୍ଠୀ କଂଗ୍ରେସ ଲୋକଙ୍କର କଂଗ୍ରେସବିରୋଧୀ କାର୍ଯ୍ୟ ସମ୍ବନ୍ଧରେ ବିଶଦ ଆଲୋଚନା କରାଯାଇଥିଲା । ଶ୍ରୀ କାମରାଜ ସେତିକିବେଳେ ମିଳାମିଶାପାଇଁ ଉଦ୍ୟମ କରିଥିଲେ । ଅସନ୍ତୁଷ୍ଟଗୋଷ୍ଠୀର ବ୍ୟକ୍ତିମାନେ କାମରାଜଙ୍କ ସହିତ ଥରେ କଥାବାର୍ତ୍ତା କରିଥିଲେ । ମାତ୍ର ଦ୍ୱିତୀୟ ଥର ବେଳକୁ ସେମାନେ କାମରାଜଙ୍କ ସହିତ ସମୟ ସ୍ଥିରକରିଥିଲେ ମଧ୍ୟ ଆସିନଥିଲେ । ଅସନ୍ତୁଷ୍ଟ ଗୋଷ୍ଠୀର କଂଗ୍ରେସ ନେତାମାନଙ୍କର ଦାବି ହୋଇଥିଲା ବିଜୁବାବୁ ଓ ବୀରେନ୍‌ବାବୁଙ୍କୁ କଂଗ୍ରେସରୁ ବହିଷ୍କାର କରିବାପାଇଁ, ତା' ନହେଲେ ମିଳାମିଶା କରିବାପାଇଁ କଥାବାର୍ତ୍ତା କରିବା ଅନାବଶ୍ୟକ

ବୋଲି ସେମାନେ କହିଥିଲେ । କାମରାଜ ଏହିଥର ତାଙ୍କର ଓଡ଼ିଶା ଗସ୍ତ ସମୟରେ ଅସନ୍ତୁଷ୍ଟ କଂଗ୍ରେସ ଲୋକଙ୍କର କଂଗ୍ରେସବିରୋଧୀ କାର୍ଯ୍ୟ ସମ୍ବନ୍ଧରେ ଭଲଭାବରେ ହୃଦୟଙ୍ଗମ କରି ମହତାବ ଏହା ମୂଳରେ ଅଛନ୍ତି ବୋଲି ସ୍ପଷ୍ଟ ଧାରଣା କରିଥିଲେ । ଅସନ୍ତୁଷ୍ଟ ଗୋଷ୍ଠୀର ନେତାମାନେ ମିଳାମିଶା ସମ୍ବନ୍ଧରେ କଥାବାର୍ତ୍ତା କରିବାପାଇଁ କାମରାଜଙ୍କ ସହିତ ସମୟ ଠିକ୍ କରିଥିଲେ ଏବଂ ସେହି ସମୟରେ କାମରାଜ ଅପେକ୍ଷା କରି ବସିଥିଲେ ମଧ ସେମାନେ ଆସିଲେନାହିଁ । ସେମାନଙ୍କର ଏହି ପ୍ରକାର ଆଚରଣରେ ସେ ଖୁବ୍ କ୍ଷୁବ୍ଧ ହୋଇଥିଲେ । ତେଣୁ ଓଡ଼ିଶା ଛାଡ଼ିଲାବେଳେ କାମରାଜ ତାଙ୍କର ସ୍ୱାଭାବିକ କଥାବାର୍ତ୍ତାର ଢଙ୍ଗରେ କହିଦେଇଗଲେ, ''No talk, Discipline...Action...Action''. କାମରାଜଙ୍କର ଓଡ଼ିଶା ଛାଡ଼ିବା ପରେ ସେଇ ଜୁନ୍ ମାସ ତେର ତାରିଖ ଦିନ ପ୍ରଦେଶ କଂଗ୍ରେସ କମିଟି ତଥା ବିଧାନସଭା କଂଗ୍ରେସ ଦଳର ଗୋଟିଏ ମିଳିତ ବୈଠକ ଅନୁଷ୍ଠିତ ହୋଇଥିଲା । ସେଠାରେ ଅସନ୍ତୁଷ୍ଟ ଗୋଷ୍ଠୀର କଂଗ୍ରେସ ଲୋକଙ୍କର କାର୍ଯ୍ୟକଳାପ ଓ ଆଚରଣ ସମ୍ବନ୍ଧରେ ବହୁତ ଆଲୋଚନା ହୋଇଥିଲା । ସେମାନଙ୍କର କଂଗ୍ରେସ ନେତାଙ୍କ ବିରୁଦ୍ଧରେ କୁତ୍ସାରଟନା ଓ ଦଳବିରୋଧୀ କାର୍ଯ୍ୟପାଇଁ ସେମାନଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନପାଇଁ ସର୍ବସମ୍ମତିକ୍ରମେ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା ଏବଂ କାର୍ଯ୍ୟାନୁଷ୍ଠାନପାଇଁ ପ୍ରଦେଶ କଂଗ୍ରେସ ସଭାପତିଙ୍କୁ କ୍ଷମତା ଦିଆଯାଇଥିଲା ।

ପ୍ରଦେଶ କଂଗ୍ରେସ କମିଟି ଅସନ୍ତୁଷ୍ଟ କଂଗ୍ରେସ ବ୍ୟକ୍ତିମାନଙ୍କ ବିରୁଦ୍ଧରେ ଶାସ୍ତିବିଧାନପାଇଁ ପ୍ରସ୍ତୁତ ହେଲାବେଳେ ଦିଲ୍ଲୀରୁ ଶ୍ରୀ କାମରାଜ ନିର୍ଦ୍ଦେଶ ଦେଇଥିଲେ ହଠାତ୍ କାର୍ଯ୍ୟାନୁଷ୍ଠାନ ଗ୍ରହଣ ନ କରି କିଛିଦିନ ଅପେକ୍ଷା କରିବାପାଇଁ । ପୁଣି ଥରେ ସେ ମିଳାମିଶାପାଇଁ ଉଦ୍ୟମ କରିଥିଲେ । ସେ ଅସନ୍ତୁଷ୍ଟ ଗୋଷ୍ଠୀର ନେତା ସର୍ବଶ୍ରୀ ମହତାବ, ପବିତ୍ରମୋହନ ପ୍ରଧାନ ଓ ବନମାଳୀ ପଟ୍ଟନାୟକ ପ୍ରଭୃତିଙ୍କୁ ଦିଲ୍ଲୀ ଡକାଇଥିଲେ । ସେମାନେ ଯିବାପାଇଁ କଥା ଦେଇଥିଲେ; କିନ୍ତୁ ଶେଷରେ ଗଲେ ନାହିଁ । କଂଗ୍ରେସରୁ ଅଲଗା ହୋଇଯିବା ପାଇଁ ସେମାନେ ଉଦ୍ୟମ କରିଥିଲେ । ମହତାବଙ୍କ ନେତୃତ୍ୱରେ ଗୋଟିଏ ଜନକଂଗ୍ରେସ ଦଳ ଗଠନ କରିବାପାଇଁ ସେମାନେ ମନସ୍ଥ କରିଥିଲେ । ଏହି ସମୟରେ ସର୍ବଭାରତୀୟ ସ୍ତରରେ ଶ୍ରୀ ଚରଣ ସିଂହଙ୍କ ନେତୃତ୍ୱରେ ଗୋଟିଏ ଦଳ ଗଠିତ ହେବାପାଇଁ ଉଦ୍ୟମ ହେଉଥାଏ । ୧୯୬୬ ମସିହା ଅକ୍ଟୋବର ମାସ ପାଞ୍ଚ ତାରିଖରେ ସର୍ବଶ୍ରୀ ବନମାଳୀ ପଟ୍ଟନାୟକ, ହିମାଂଶୁ ଶେଖର ପାଢ଼ୀ, ମୁରଲୀଧର ଜେନା, ଉପେନ୍ଦ୍ର ମହାନ୍ତି, ଶାନ୍ତନୁ କୁମାର ଦାସ, ପବିତ୍ରମୋହନ ପ୍ରଧାନ, ବୀର ବିକ୍ରମାଦିତ୍ୟ ସିଂହ ବରିହା ଓ ମନମୋହନ ଟୁଡୁ କଂଗ୍ରେସରୁ ଅଲଗା ହୋଇ ବିଧାନସଭାରେ ଜନକଂଗ୍ରେସ ଦଳ ହିସାବରେ ସ୍ୱତନ୍ତ୍ରଭାବରେ ବସିବେ ବୋଲି ଘୋଷଣା କରିଥିଲେ । ଏଥିପୂର୍ବରୁ କଂଗ୍ରେସ ବିଧାୟକ ଦଳର ନେତା ନିର୍ବାଚନବେଳେ ପବିତ୍ରବାବୁ ବୀରେନ୍ଦ୍ରବାବୁଙ୍କ ବିରୁଦ୍ଧରେ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ ଏବଂ ଉଲ୍ଲିଖିତ ଅନ୍ୟ ସାତଜଣ ବିଧାୟକ ତାଙ୍କୁ ସମର୍ଥନ କରିଥିଲେ ।

## ମନ୍ତ୍ରୀମେଳିରୁ ଇସ୍ତଫା ବଳି

ମୁଖ୍ୟମନ୍ତ୍ରୀ ଶ୍ରୀ ସଦାଶିବ ତ୍ରିପାଠୀ ଦାୟିତ୍ୱ ନେବାର ମାତ୍ର ଅଳ୍ପ କେତେ ମାସ ପରେ ତାଙ୍କର ଶାରୀରିକ ଅସୁସ୍ଥତା ହେତୁ ପ୍ରାୟ ଅବିରତ ଶଯ୍ୟାଶାୟୀ ହେଉଥିଲେ । ତାଙ୍କର ସାଧାରଣ ସ୍ୱାସ୍ଥ୍ୟ ଭଲ ନଥାଏ ଏବଂ ମଝିରେ ମଝିରେ ସେ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ଶଯ୍ୟାଶାୟୀ ହେଉଥାଆନ୍ତି । ସାଧାରଣତଃ ସହକର୍ମୀ ଓ ଅନ୍ୟମାନଙ୍କ ସହିତ ନିୟମିତ ଦେଖାସାକ୍ଷାତ୍ ଓ ଆଳାପ ଆଲୋଚନା ଶାସନକ୍ଷେତ୍ରରେ ବହୁ ସମସ୍ୟାର ସମାଧାନରେ ସହାୟକ ହୋଇଥାଏ; ମାତ୍ର ତାହାସବୁ ଏକପ୍ରକାର ବନ୍ଦ ଥିଲା । ତାଙ୍କର ବିଶ୍ରାମ ଓ ମାନସିକ ଶାନ୍ତି ଏକାନ୍ତ ଆବଶ୍ୟକ ବୋଲି ଡାକ୍ତରମାନଙ୍କର ପରାମର୍ଶ ଥିଲା । ତେଣୁ ଉପମୁଖ୍ୟମନ୍ତ୍ରୀ ଭାବରେ ମୋ ଉପରେ ଏକପ୍ରକାର ସବୁ ଦାୟିତ୍ୱ ନ୍ୟସ୍ତ ଥାଏ । ଦିନେ ସଦାଶିବବାବୁ ମୋତେ ତାଙ୍କ ଶଯ୍ୟା ପାଖକୁ ଡାକି ସବୁ କାର୍ଯ୍ୟ ସମର୍ପି ଦେଲାଭଳି କଥାବାର୍ତ୍ତା

କରିଥିଲେ । ମନ୍ତ୍ରିମଣ୍ଡଳର ବୈଠକକୁ ସେ ଅଧିକାଂଶ ସମୟରେ ଆସିପାରୁନଥିଲେ, ତେଣୁ ମୋ ଅଧକ୍ଷତାରେ ବୈଠକ ଅନୁଷ୍ଠିତ ହେଉଥିଲା । ଦିଲ୍ଲୀରେ ମୁଖ୍ୟମନ୍ତ୍ରୀମାନଙ୍କର ସମ୍ମିଳନୀ ଡକାଗଲେ ସେଥିରେ ମୁଁ ଯୋଗଦେଉଥିଲି । ଉଣାଅଧିକେ ସବୁ କାର୍ଯ୍ୟ ପ୍ରାୟ ସୁରୁଖୁରୁରେ ଚାଲିଯାଉଥିଲା । ୧୯୬୬ ମସିହା ସେପ୍ଟେମ୍ବର ମାସ ଗାରି ତାରିଖରେ ମନ୍ତ୍ରୀମାନଙ୍କ ଦାୟିତ୍ୱରେ ଥିବା କେତେକ ବିଭାଗର ଅଦଳ ବଦଳ ସମ୍ବନ୍ଧରେ ହଠାତ୍ ଗୋଟିଏ ବିଜ୍ଞପ୍ତି ପ୍ରକାଶପାଇଥିଲା । ମୋ ଦାୟିତ୍ୱରେ ଯେଉଁ ବିଭାଗଗୁଡ଼ିକ ଥିଲା ସେଥିରେ କୌଣସି ପରିବର୍ତ୍ତନ କରା ହୋଇନଥିଲା । ଏହି ବିଜ୍ଞପ୍ତି ଅନୁସାରେ ଅଳ୍ପ କେତେଜଣ ମନ୍ତ୍ରୀଙ୍କର ବିଭାଗର ଅଦଳବଦଳ ହୋଇଥିଲା । ଶ୍ରୀ ସତ୍ୟପ୍ରିୟ ମହାନ୍ତିଙ୍କ ଦାୟିତ୍ୱରେ ଥିଲା ଶିକ୍ଷା, ପୂର୍ତ୍ତ, ପରିବହନ ଓ ସାଂସ୍କୃତିକ ବିଭାଗ । ଶ୍ରୀ ମହାନ୍ତିଙ୍କଠାରୁ ପୂର୍ତ୍ତ, ପରିବହନ, ସାଂସ୍କୃତିକ ବିଭାଗ ବାହାରକରିନେଇ ମୁଖ୍ୟମନ୍ତ୍ରୀ ନିଜ ଦାୟିତ୍ୱରେ ରଖିଥିଲେ ଏବଂ ତା' ପରିବର୍ତ୍ତେ ରାଜସ୍ୱ ଓ ଅବକାରୀ ବିଭାଗ ଶ୍ରୀ ମହାନ୍ତିଙ୍କୁ ଦେଇଥିଲେ । ଶ୍ରୀ ଟି. ସାଙ୍ଗାନାଙ୍କ ପାଖରୁ ଗ୍ରାମଗୋଷ୍ଠୀ ଓ ପଞ୍ଚାୟତରାଜ ବାହାରକରି ନିଆଯାଇ କେବଳ ଆଦିବାସୀ ମଙ୍ଗଳ ବିଭାଗ ରଖାଯାଇଥିଲା । ଗ୍ରାମଗୋଷ୍ଠୀ ବିଭାଗ କୃଷିମନ୍ତ୍ରୀ ଶ୍ରୀ ରାମପ୍ରସାଦ ମିଶ୍ରଙ୍କ ପାଖକୁ ଯାଇଥିଲା । ଏ ପ୍ରକାର ଆକସ୍ମିକ ବିଭାଗ ଅଦଳ ବଦଳରେ ବିଭିନ୍ନ କ୍ଷେତ୍ରରେ ନାନାପ୍ରକାର ପ୍ରତିକ୍ରିୟା ପ୍ରକାଶପାଇଥିଲା । ଶ୍ରୀ ସତ୍ୟପ୍ରିୟ ମହାନ୍ତିଙ୍କଠାରୁ ପୂର୍ତ୍ତ ବିଭାଗ କାଢ଼ିନେବା ପଛରେ ଦୁର୍ନୀତି ଅଭିଯୋଗ କାରଣ ବୋଲି ପ୍ରକାଶପାଇଥିଲା । ଶ୍ରୀ ମହତାବ ଓ ଶ୍ରୀ ବନମାଳୀ ପଟ୍ଟନାୟକ ବିଭାଗ ଅଦଳ ବଦଳ ପୂର୍ବରୁ କେତେକ ସାଧାରଣ ସଭାରେ ଶ୍ରୀ ମହାନ୍ତିଙ୍କ ବିରୁଦ୍ଧରେ ଦୁର୍ନୀତିର କୁତ୍ସା ରଟନା କରିଥିଲେ । ସେ ଯାହାହେଉ, ମୁଖ୍ୟମନ୍ତ୍ରୀ ତାଙ୍କ ଦାୟିତ୍ୱରୁ ପୂର୍ତ୍ତବିଭାଗଟି ବାହାର କରିନେବା ଘଟଣାରେ ସତ୍ୟପ୍ରିୟବାବୁ ଅତ୍ୟନ୍ତ ମର୍ମାହତ ହୋଇଥିଲେ । ସେ ଆମ୍ଭମାନଙ୍କ ଭିତରେ ଜଣେ ବୟୋଜ୍ୟେଷ୍ଠ ବିଷୟୀ ବ୍ୟକ୍ତି ଥିଲେ । ତାଙ୍କର ଏ ପ୍ରକାର ବିଷାଦ ଦେଖି ଆମେ ତାଙ୍କର ସହଯୋଗୀ ମନ୍ତ୍ରୀ ହିସାବରେ ଅତ୍ୟନ୍ତ ଅସ୍ୱସ୍ତି ଅନୁଭବ କରୁଥିଲୁ । ମୁଖ୍ୟମନ୍ତ୍ରୀ ଅନେକ ସମୟରେ ମୋ ସହିତ ପରାମର୍ଶ କରୁଥିବାରୁ କେତେକ ମହଲରେ ଧାରଣା ହୋଇଥିଲା ଯେ ମୋ ଜ୍ଞାତସାରରେ ବିଭାଗ ଅଦଳ ବଦଳ ହୋଇଛି । ତାହା ମୋ ଅଜାଣତରେ ହୋଇଛି ବୋଲି କହି ମୁଁ ସେ ଭ୍ରାନ୍ତ ଧାରଣାକୁ ପରିଷ୍କାର କରିଦେଇଥିଲି । ବିଭାଗ ଅଦଳବଦଳ କରିବା ମୁଖ୍ୟମନ୍ତ୍ରୀଙ୍କର ସ୍ୱକୀୟ କ୍ଷମତା ଅନ୍ତର୍ନିହିତ ଅଧିକାର । ତେଣୁ ସେଥିରେ ଅନ୍ୟମାନଙ୍କର କିଛି କହିବାର ନଥାଏ; କିନ୍ତୁ ଏଠାରେ କଥାଟି ହେଲା ଯେ ମୁଖ୍ୟମନ୍ତ୍ରୀ ତାଙ୍କର ଦୀର୍ଘ ଅସୁସ୍ଥତା ହେତୁ ଅନେକ ସମୟରେ ଶଯ୍ୟାଶାୟୀ ଥିଲେ । ମାତ୍ର ହଠାତ୍ ଟିକିଏ ସୁସ୍ଥ ହେଲାକ୍ଷଣି ଏ ପ୍ରକାର ବିଭାଗ ଅଦଳବଦଳ କରିବାରୁ ସନ୍ଦେହର ଅବକାଶ ରହିଥିଲା । ସେ ଯାହାହେଉ, ଚୁପ୍‌ଚାପ୍ ରହିବା ଛଡ଼ା ଏ ବିଷୟରେ ଆମର ଆଉ କିଛି କରିବାର ନଥିଲା । ମୁଖ୍ୟମନ୍ତ୍ରୀଙ୍କର ଏଭଳି ଆକସ୍ମିକ ପଦକ୍ଷେପକୁ ଅନେକ ସହକର୍ମୀ ସୌଜନ୍ୟହୀନ ଓ ଅସମ୍ମାନଜନକ ମନେକରିଥିଲେ ।

ବିଭାଗ ଅଦଳବଦଳ ସମ୍ବନ୍ଧୀୟ ବିଜ୍ଞପ୍ତି ପ୍ରକାଶ ପାଇବାର ଦୁଇ ଦିନ ପରେ ଶ୍ରୀ ବିଜୁ ପଟ୍ଟନାୟକ ଦିଲ୍ଲୀରୁ ଭୁବନେଶ୍ୱର ଫେରିଲେ । ସତ୍ୟପ୍ରିୟବାବୁ ବିଜୟବାବୁଙ୍କୁ ଦେଖାକରି ସବୁ କଥା କହିଥିଲେ । ମୋ ଅଜାଣତରେ ବିଭାଗ ଅଦଳବଦଳ ହୋଇଛି ବୋଲି ମୁଁ ତାଙ୍କୁ କହିଥିଲି । ଅନ୍ୟାନ୍ୟ ମନ୍ତ୍ରୀ ଓ ଉପମନ୍ତ୍ରୀମାନେ ଆସି ବିଜୁବାବୁଙ୍କ ଘରେ ଆଲୋଚନାରେ ଯୋଗଦେଇଥିଲେ । ସତ୍ୟପ୍ରିୟବାବୁ ଆପତ୍ତି କରିଥିଲେ ଯେ ମହତାବବାବୁ ଓ ବନମାଳୀ ପଟ୍ଟନାୟକଙ୍କ କୁପରାମର୍ଶରେ ପରିଚାଳିତ ହୋଇ ମୁଖ୍ୟମନ୍ତ୍ରୀ ତାଙ୍କୁ ଅପଦସ୍ଥ କରିବାପାଇଁ ଏବଂ ଆଗାମୀ ନିର୍ବାଚନ ସକାଶେ ପାଣ୍ଠି ଆଦାୟରେ ସେହିମାନଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ଏହା କରିଛନ୍ତି । ଏସବୁ କଥା ଶୁଣି ବିଜୁବାବୁ ଉତ୍‌କ୍ଷିପ୍ତ ହୋଇପଡ଼ିଥିଲେ ଏବଂ ଆମ୍ଭମାନଙ୍କ ସମ୍ବନ୍ଧରେ ମୁଖ୍ୟମନ୍ତ୍ରୀଙ୍କର ଯାହା ଧାରଣା ସେ ଆମ୍ଭମାନଙ୍କୁ କହିଥିଲେ । ମନ୍ତ୍ରିମଣ୍ଡଳରେ ଥିବା ସହଯୋଗୀମାନଙ୍କ କାର୍ଯ୍ୟକଳାପ ଯୋଗୁଁ ସେ ରାଜନୈତିକ ସଙ୍ଗତି

ଓ ସାଧୁତା ବଜାୟ ରଖି ନିଜର ବିବେକାନୁସାରେ ସୁଶାସନ କରିପାରୁନାହାନ୍ତି ବୋଲି ଶ୍ରୀ ତ୍ରିପାଠୀ କଂଗ୍ରେସ ସଭାପତିଙ୍କ ପାଖରେ ଅଭିଯୋଗ କରିଥିବା କଥା ଶ୍ରୀ ପଟ୍ଟନାୟକ ଆମ୍ଭମାନଙ୍କୁ କହିଥିଲେ । ସେହି କାରଣ ଦର୍ଶାଇ ସଦାଶିବବାବୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫାଦେଇ କୁଆଡ଼େ କଂଗ୍ରେସ ସଭାପତିଙ୍କୁ ଚିଠି ଲେଖିଥିଲେ ବୋଲି ଶ୍ରୀ ପଟ୍ଟନାୟକ ଆମ୍ଭମାନଙ୍କ ଆଗରେ ପ୍ରକାଶକରିଥିଲେ । ପ୍ରଥମେ ଆମେ ଆଲୋଚନା କରିଥିଲୁ ଯେ ଏ ବିଷୟରେ ସତ୍ୟପ୍ରିୟବାବୁ କିଛି କାର୍ଯ୍ୟାନୁଷ୍ଠାନ କରିବା ଆବଶ୍ୟକ । ତାଙ୍କ ଉପରେ ମୁଖ୍ୟମନ୍ତ୍ରୀଙ୍କର ଆସ୍ଥା ନାହିଁ ବୋଲି କହି ସତ୍ୟପ୍ରିୟବାବୁ ଇସ୍ତଫା ଦେଲେ ଭଲହେବ ବୋଲି ଆମ୍ଭେମାନେ ଭାବିଥିଲୁ; ମାତ୍ର ତାହା କରିବାକୁ ସତ୍ୟପ୍ରିୟବାବୁ ପ୍ରସ୍ତୁତ ଥିଲାଭଳି ମନେ ହେଲାନାହିଁ । ତାଙ୍କର ଇଚ୍ଛା ଥିଲା ଯେ ସମସ୍ତେ ମେଳିବାନ୍ଧି ଗୋଟିଏ କିଛି କଲେ ଭଲହେବ । ବିଜୁବାବୁ ମଧ ମେଳି କଥାଟାକୁ ପସନ୍ଦ କରିଥିଲେ । ଆମ୍ଭେମାନେ ବଡ଼ ଅଡୁଆ ଅବସ୍ଥାରେ ପଡ଼ିଥିଲୁ । ଏଣେତେଣେ ବୟୋଜ୍ୟେଷ୍ଠ ସହକର୍ମୀଙ୍କର ବିଷାଦ ଓ ଦୟନୀୟ ଅବସ୍ଥା, ତେଣେ ନେତାଙ୍କର ତାହାହିଁ ଆନ୍ତରିକ ଇଚ୍ଛା । ସଙ୍ଗେ ସଙ୍ଗେ ବିଜୁବାବୁ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ସହିତ ଫୋନ୍‌ରେ କଥାବାର୍ତ୍ତା ହେଲେ । ତା'ପରେ ଆମମାନଙ୍କୁ କହିଲେ, ''ବଢ଼ଭଉଣୀ ଠିକ୍ ଅଛି ।'' ବିଭାଗ ଅଦଳବଦଳ କଥା ଲେଖି ଇସ୍ତଫା ଦେବା କଥା ଲେଖିବାଟା ସମୀଚୀନ ହେବନାହିଁ ବୋଲି ବିଚାରକରି କେବଳ ଆମ୍ଭମାନଙ୍କ ଉପରେ ମୁଖ୍ୟମନ୍ତ୍ରୀଙ୍କର ଆସ୍ଥା ନଥିବାର କାରଣ ଦର୍ଶାଇ ଚିଠି ଦେବାକୁ ସ୍ଥିରହୋଇଥିଲା । ଶ୍ରୀ ସତ୍ୟପ୍ରିୟ ମହାନ୍ତିଙ୍କର ପ୍ରକାଶ୍ୟ ଇଚ୍ଛା ଓ ବିଜୁବାବୁଙ୍କର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ସାଧନ କରିବାପାଇଁ ଆମେ ମନ୍ତ୍ରୀ ଓ ଉପମନ୍ତ୍ରୀମାନେ ବିବେକଶୂନ୍ୟଭାବରେ ମେଳିବାନ୍ଧି ଗୋଟିଏ ଫାନ୍ଦରେ ପଡ଼ିଯାଇଥିଲୁ । ଉପମୁଖ୍ୟମନ୍ତ୍ରୀ ଥିବାରୁ ମୁଁ ଅଧିକ ବିଚାରଶକ୍ତିସମ୍ପନ୍ନ ହେବି ବୋଲି ମୋର ବନ୍ଧୁମାନେ ଆଶା କରିଥିଲେ, ମାତ୍ର ରାଜନୈତିକ ପ୍ରରୋଚନାର ବଶବର୍ତ୍ତୀ ହୋଇ ମନ୍ତ୍ରୀମେଳିର ନେତୃତ୍ୱ ନେଇ ମନ୍ତ୍ରିପରିଷଦ ଇତିହାସରେ ଗୋଟିଏ ହାସ୍ୟାସ୍ପଦ ପରିସ୍ଥିତି ସୃଷ୍ଟି କରିବାରେ ମୁଁ ପଶ୍ଚାତ୍‌ପଦ ହୋଇନଥିଲି । ମୁଁ ପ୍ରଥମ ସ୍ୱାକ୍ଷରକାରୀ ଭାବରେ ଅନ୍ୟ ଏଗାରଜଣ ମନ୍ତ୍ରିପରିଷଦର ସଭ୍ୟମାନଙ୍କର ଦସ୍ତଖତ ୧୯୬୬ ମସିହା ସେପ୍ଟେମ୍ବର ଆଠ ତାରିଖରେ ମୁଖ୍ୟମନ୍ତ୍ରୀ ଶ୍ରୀ ତ୍ରିପାଠୀଙ୍କୁ ଲେଖିଥିଲି :

''ଆମ୍ଭେମାନେ ଦୁଃଖର ସହିତ ଅନୁଭବ କରୁଛୁ କି ଆମ୍ଭେମାନେ ଆଉ ଆପଣଙ୍କର ବିଶ୍ୱାସଭାଜନ ହୋଇ ରହିନାହୁଁ । ଆପଣ କଂଗ୍ରେସ ସଭାପତିଙ୍କଠାରେ ଯେପ୍ରକାର ଆପତ୍ତି କରିଛନ୍ତି ସେଥିରେ ଆମର ଏ ଧାରଣା ଆହୁରି ଦୃଢ଼ୀଭୂତ ହୋଇଛି । ଆପଣ କଂଗ୍ରେସ ସଭାପତିଙ୍କଠାରେ ଆପତ୍ତି କରିଛନ୍ତି କି, ରାଜନୈତିକ ସଙ୍ଗତି ଓ ସାଧୁତା ବଜାୟରଖି ଆପଣ ନିଜର ବିବେକମତେ ସୁଶାସନ ପରିଚାଳନା କରିବା ବାଟରେ ଆମେ ଆପଣଙ୍କର ଅନ୍ତରାୟ ହେଉଛୁ ଏବଂ ଏହି କାରଣରୁ ଆପଣ ଇସ୍ତଫା ଦେବାକୁ ଅନୁମତି ପାଇବାପାଇଁ କଂଗ୍ରେସ ସଭାପତିଙ୍କ ଉପରେ ଚାପ ପକାଇଅଛନ୍ତି । ଆମର କିନ୍ତୁ ହୃଦ୍‌ବୋଧ ହୋଇଛି ଯେ ଆମେ ସବୁବେଳେ ନିର୍ମଳ ବିବେକର ବିଚାରରେ ପରିଚାଳିତ ହୋଇ କାର୍ଯ୍ୟ କରିଛୁ । ତେଣୁ ଆମକୁ ବଦ୍‌ନାମ କରିବା ସମ୍ପୂର୍ଣ୍ଣ ଅନ୍ୟାୟ । ଆପଣ ନିଜ ଇଚ୍ଛା ଅନୁସାରେ ଅବାଧରେ ଶାସନ ଚଳାନ୍ତୁ, ଏହା ଆମ ସମସ୍ତଙ୍କର ଇଚ୍ଛା । ତେଣୁ ଆପଣ ଏପରି ମନଗଢ଼ା କାରଣରେ ଇସ୍ତଫା ଦିଅନ୍ତୁ, ଏହା ଆମେ ଚାହୁଁନାହୁଁ । ବରଂ ତା ପରିବର୍ତ୍ତେ ଏତଦ୍ୱାରା ଆମେ ଆମର ଇସ୍ତଫାପତ୍ର ଦାଖଲ କରୁଛୁ । ଆପଣ ଦୟାକରି ସଙ୍ଗେ ସଙ୍ଗେ ତାହା ଗ୍ରହଣ କରନ୍ତୁ । ଏଣିକି ଆମ ବିଭାଗଗୁଡ଼ିକର ସମସ୍ତ ଫାଇଲ୍ ଯେପରି ସିଧାସଳଖ ଆପଣଙ୍କ ନିକଟକୁ ପଠାଯିବ ସେଥିପାଇଁ ଚିଫ୍ ସେକ୍ରେଟେରୀଙ୍କୁ ନିର୍ଦ୍ଦେଶ ଦେବାପାଇଁ ଆମ୍ଭେମାନେ ଆପଣଙ୍କୁ ଅନୁରୋଧ କରୁଛୁ ।''

ଆମମାନଙ୍କର ଏହି ଚିଠିଖଣ୍ଡିକ ମୁଖ୍ୟମନ୍ତ୍ରୀଙ୍କୁ ଦେବାପାଇଁ ପ୍ରଦେଶ କଂଗ୍ରେସ ସଭାପତି ଶ୍ରୀ ବିଜୟ କୁମାର ପାଣିଙ୍କୁ ଦେଇଥିଲି । ସେ ତାହା ମୁଖ୍ୟମନ୍ତ୍ରୀଙ୍କୁ ଦେଇଥିଲେ । ଏହାପରେ ଚାରିଆଡ଼େ ଚହଳପଡ଼ିଯାଇଥିଲା ଶାସନସଙ୍କଟ ଓ ମନ୍ତ୍ରୀ ଉପମନ୍ତ୍ରୀମାନଙ୍କର ଇସ୍ତଫା ଦେବା ବିଷୟ । ସର୍ବଭାରତୀୟ

ସ୍ତରରେ ଖବରକାଗଜମାନଙ୍କରେ ଓଡ଼ିଶାରେ ମନ୍ତ୍ରୀମାନଙ୍କ ଧର୍ମଘଟ ଶିରୋନାମାରେ ସମ୍ବାଦ ପ୍ରକାଶ ପାଇଥିଲା । ମୋର ମନେହୁଏ, ଏ ପ୍ରକାର ସମ୍ବାଦ ପରିବେଷଣରେ କିଛି ଯଥାର୍ଥତା ଥିଲା; କାରଣ ଯେଉଁ ଚିଠିରେ ଆମେ ଇସ୍ତଫା ଦେବା କଥା ମୁଖ୍ୟମନ୍ତ୍ରୀଙ୍କୁ ଲେଖିଥିଲୁ, ସେଥିରେ ଆମେ ତାଙ୍କୁ ଅନୁରୋଧ କରିଥିଲୁ ଫାଇଲ୍‌ପତ୍ର ଆମ ପାଖକୁ ନପଠାଇବା ପାଇଁ ଚିଫ୍ ସେକ୍ରେଟେରୀଙ୍କୁ ନିର୍ଦ୍ଦେଶ ଦେବାକୁ । ସଂସଦୀୟ ଗଣତନ୍ତ୍ରରେ ମନ୍ତ୍ରିପରିଷଦର ପ୍ରଶାସନିକ କ୍ଷେତ୍ରରେ ଏ ପ୍ରକାର ଆଚରଣ ଆଦୌ ସମୀଚୀନ ନୁହେଁ । ମନ୍ତ୍ରୀଙ୍କର ଇସ୍ତଫାପତ୍ର ଗୃହୀତ ନହେବା ପର୍ଯ୍ୟନ୍ତ ସଚିବାଳୟରେ କାର୍ଯ୍ୟ କରୁଥିବା ଅମଲାତନ୍ତ୍ରର କର୍ମଚାରୀମାନେ ମନ୍ତ୍ରୀଙ୍କ ପାଖକୁ ଫାଇଲ୍ ପଠାଇବାକୁ ବାଧ । ତେଣୁ ଫାଇଲ୍‌ପତ୍ର ନପଠାଇବାପାଇଁ ନିର୍ଦ୍ଦେଶ ଦେବା ପ୍ରସ୍ତାବ ଏକାବେଳକେ ଅସଙ୍ଗତ । ଏ ପ୍ରକାର ଆଚରଣ କେବଳ ଶ୍ରମିକ ସଙ୍ଗଠନ ପକ୍ଷେ ଶୋଭନୀୟ, ମନ୍ତ୍ରିପରିଷଦରେ ନୁହେଁ । ତା' ଛଡ଼ା ମିଳିତ ଇସ୍ତଫାପତ୍ର ଦେବା ଆଉ ଗୋଟିଏ ଅଭିନବ ବ୍ୟାପାର । ସେଥିପାଇଁ ଖବରକାଗଜମାନଙ୍କରେ ଏବଂ ବିଧାନସଭାରେ ଆମକୁ ବିଦ୍ରୋହୀ ମନ୍ତ୍ରୀ ବୋଲି ଆଖ୍ୟାଦେଇ ଆମ କାର୍ଯ୍ୟକୁ ଧର୍ମଘଟ ବୋଲି ବିଦ୍ରୂପ କରାଯାଇଥିଲା । ଆମ କାର୍ଯ୍ୟକୁ ସମାଲୋଚନା କରି ୧୯୬୬ ମସିହା ଅକ୍ଟୋବର ମାସ ପାଞ୍ଚ ତାରିଖରେ ବିରୋଧୀଦଳର ନେତା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ବିଧାନସଭାରେ ମୁଲତବୀ ପ୍ରସ୍ତାବଟିଏ ଆଗତ କରିଥିଲେ, "The business of the House may be adjourned to discuss the constitutional and moral propriety of the general strike of Ministers by their en-bloc resignation and the one week's Cabinet crisis in the State from the 8th to 14th September 1966, their subsequent withdrawal of resignations, the unseemly public controversies and mud-slinging, the stalemate and the demoralisation in the administration which is still continuing as a result of the undesirable and irresponsible actions of the Ministers."

୧୯୬୬ ମସିହା ସେପ୍‌ଟେମ୍ବର ୧୦ ତାରିଖରେ ସମାଜ ଖବରକାଗଜରେ ''ମୁଖ୍ୟମନ୍ତ୍ରୀ ପଦ ପାଇଁ ଚାଲିଥିବା ଭିତିରି କୌଶଳ ପଦାରେ ପଡ଼ିଲା'' ଶୀର୍ଷକ ସମ୍ବାଦରେ ପ୍ରକାଶପାଇଥିଲା, ''ବିଜୁବାବୁ ନିଜେ ମୁଖ୍ୟମନ୍ତ୍ରୀ ହେବାକୁ ଅନିଚ୍ଛୁକ ବୋଲି କଂଗ୍ରେସ ସଭାପତିଙ୍କୁ ଲିଖିତ ଭାବରେ ଜଣାଇଥିଲେ ହେଁ ଏଣେ ମୁଖ୍ୟମନ୍ତ୍ରୀ ଶ୍ରୀ ତ୍ରିପାଠୀଙ୍କୁ ଇସ୍ତଫା ଦେବାଲାଗି ମୌଖିକ ଭାବରେ କହିଅଛନ୍ତି ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ତ୍ରିପାଠୀ ଗତ ପହିଲା ତାରିଖରେ କଂଗ୍ରେସ ସଭାପତି ଶ୍ରୀ କାମରାଜଙ୍କୁ ଏକ ଚିଠି ଲେଖି ଜଣାଇଦେଇଥିଲେ । ଅସୁସ୍ଥତାସତ୍ତ୍ୱେ ସେ (ଶ୍ରୀ ତ୍ରିପାଠୀ) କ୍ଷମତାକୁ ଜାବୁଡ଼ି ଧରି ରହିଛନ୍ତି ବୋଲି କେତେକ ମହଲରେ ପ୍ରକାଶ ପାଉଥିବାର ଶ୍ରୀ ବିଜୁ ପଟ୍ଟନାୟକ ତାଙ୍କୁ କହିଛନ୍ତି ବୋଲି ମଧ ସେ (ଶ୍ରୀ ତ୍ରିପାଠୀ) କାମରାଜଙ୍କୁ ଉକ୍ତ ଚିଠିରେ ଲେଖିଛନ୍ତି ଏବଂ ସେହି ଦୃଷ୍ଟିରୁ ତାଙ୍କୁ ଇସ୍ତଫା ଦେବାପାଇଁ ଅନୁମତି ଦିଆଯିବାକୁ ସେ ଅନୁରୋଧ କରିଛନ୍ତି । ସେପ୍‌ଟେମ୍ବର ପହିଲା ତାରିଖରେ ଏହି ଚିଠିକୁ କେନ୍ଦ୍ରକରି ମୁଖ୍ୟମନ୍ତ୍ରୀଙ୍କ ବିରୋଧରେ ତାଙ୍କର ସହଯୋଗୀ ମନ୍ତ୍ରୀ ଓ ଉପମନ୍ତ୍ରୀମାନେ ଗତକାଲି ସେମାନଙ୍କର ଇସ୍ତଫାପତ୍ର ମିଳିତଭାବରେ ଦେଇଥିବାର ସେମାନଙ୍କର ଚିଠିରୁ ଜଣାଯାଉଛି ।

''ଶ୍ରୀ ବିଜୁ ପଟ୍ଟନାୟକ ଗତ ସାତ ତାରିଖରେ ମୁଖ୍ୟମନ୍ତ୍ରୀ ତ୍ରିପାଠୀଙ୍କ ନିକଟକୁ ଚିଠି ଲେଖି ଶ୍ରୀ ତ୍ରିପାଠୀ ଶ୍ରୀ କାମରାଜଙ୍କୁ ଭୁଲ୍ କଥା କହିଥିବାର ଅଭିଯୋଗ କରିବା ସଙ୍ଗେ ସଙ୍ଗେ ଶ୍ରୀ ତ୍ରିପାଠୀ କଂଗ୍ରେସଦଳକୁ ବଦ୍‌ନାମ କରିବାକୁ ଚେଷ୍ଟା କରୁଛନ୍ତି ବୋଲି ସେ (ଶ୍ରୀ ପଟ୍ଟନାୟକ) ତାଙ୍କ ପତ୍ରରେ ଅଭିଯୋଗ କରିଛନ୍ତି । ଶ୍ରୀ ତ୍ରିପାଠୀ ଇସ୍ତଫା ଦେବା ଉଚିତ ବୋଲି କଂଗ୍ରେସ ସଭାପତି ସୂଚନା ଦେଇଥିବା କଥା ସେ (ଶ୍ରୀ ପଟ୍ଟନାୟକ) ମୁଖ୍ୟମନ୍ତ୍ରୀଙ୍କୁ କେବେ କହିନାହାନ୍ତି ବୋଲି ଗତ ସାତ ତାରିଖ ପତ୍ରରେ ଉଲ୍ଲେଖ କରିଛନ୍ତି ।''

ଆମେ ମନ୍ତ୍ରୀମାନେ ଗୋଟିଏ ଫାନ୍ଦରେ ପଡ଼ି ମେଳିବାନ୍ଧି ଇସ୍ତଫା ଦେବାଟା ବର୍ତ୍ତମାନ ସ୍ପଷ୍ଟ

ହେବାକୁ ଲାଗିଲା । କାମରାଜ ଯୋଜନାରେ ବିଜୁବାବୁ ମୁଖ୍ୟମନ୍ତ୍ରୀ ପଦ ଛାଡ଼ିଲାବେଳେ ମୁଁ ତାଙ୍କୁ ନ ଛାଡ଼ିବାପାଇଁ ଅନୁରୋଧ କରିଥିଲି ଏବଂ ସେ କୁର୍ସି ଛାଡ଼ିଲେ ପରେ ପସ୍ତେଇବାକୁ ପଡ଼ିବ ବୋଲି ସାବଧାନ କରାଇଦେଇଥିଲି । ମୋର ସେକଥା ସେ ଶୁଣିନଥିଲେ । ପୁଣି ବିରେନ୍‌ବାବୁଙ୍କର ଇସ୍ତଫା ପରେ କି ଉପାୟରେ ବିଜୁବାବୁ ସଦାଶିବ ବାବୁଙ୍କୁ ମୁଖ୍ୟମନ୍ତ୍ରୀ କରାଇଥିଲେ ସେ କଥା ଆଗରୁ କୁହାଯାଇଛି । ମୁଖ୍ୟମନ୍ତ୍ରୀ ଶ୍ରୀ ତ୍ରିପାଠୀ ୧୯୬୬ ମସିହା ସେପ୍‌ଟେମ୍ବର ପହିଲା ତାରିଖରେ କଂଗ୍ରେସ ସଭାପତି ଶ୍ରୀ କାମରାଜଙ୍କୁ ଖଣ୍ଡିଏ ଚିଠିରେ ଲେଖିଥିଲେ, ''ଅଗଷ୍ଟ ତେଇଶ ତାରିଖରେ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ଲେଖିଥିବା ପତ୍ରର ନକଲ ପଠାଇଥିବାରୁ ଆପଣଙ୍କୁ ବହୁତ ଧନ୍ୟବାଦ । ବିଜୁ ଦିଲ୍ଲୀରୁ ଫେରିବା ସଙ୍ଗେ ସଙ୍ଗେ ମୋ ସହିତ ସାକ୍ଷାତ୍ କରିଥିବାରୁ ଓ ଯେତେ ଶୀଘ୍ର ସମ୍ଭବ ସେ ମୋତେ ଅବ୍ୟାହତି ଦେବେ ବୋଲି ଆପଣଙ୍କ ପତ୍ରର ପ୍ରକୃତ ତାତ୍ପର୍ଯ୍ୟ ବୋଲି ବୁଝାଇଥିବାରୁ ତାଙ୍କ ପ୍ରତି ମଧ୍ୟ କୃତଜ୍ଞତା ଜଣାଉଛି । ସେ ସଙ୍କେତ ଦେବାମାତ୍ରେ ଅପସରିଯିବାପାଇଁ ପ୍ରସ୍ତୁତ ହୋଇ ରହିବାକୁ ସେ ମୋତେ ପରାମର୍ଶ ଦେଇଥିଲେ । ଆହୁରି ମଧ୍ୟ ସେ କହୁଛନ୍ତି ଯେ ଅସୁସ୍ଥତାସତ୍ତ୍ୱେ ମୁଁ କ୍ଷମତାକୁ ଜାବୁଡ଼ି ଧରି ବସିଛି ବୋଲି କେତେକ ମହଲରେ ବିସ୍ମୟ ପ୍ରକାଶପାଉଛି । ସାଧାରଣ ନିର୍ବାଚନ କ୍ରମେ ପାଖେଇ ଆସୁଥିବା ଦୃଷ୍ଟିରୁ ଦଳର କେତେକ ପ୍ରଭାବଶାଳୀ ସଭ୍ୟ ଆନ୍ତରିକତା ସହିତ ଅନୁଭବ କରୁଛନ୍ତି ଯେ ଶାସନଗତ ସଙ୍ଗତି ଓ ରାଜନୈତିକ କ୍ଷେତ୍ରରେ ସାଧୁତା ସଂପର୍କରେ ପୁରୁଣାକାଳିଆ ଚିନ୍ତାଧାରା ନେଇ ମୁଁ କଂଗ୍ରେସଦଳକୁ ବିଶେଷ କିଛି ସାହାଯ୍ୟ କରିପାରିବିନାହିଁ । ଆପଣଙ୍କୁ ଖୋଲାଖୋଲି ଭାବରେ ଜଣାଇଦେବାକୁ ଚାହେଁ ଯେ ମୋର ବନ୍ଧୁମାନେ ବହୁ ଘଟଣାରେ ଯାହା କରୁଛନ୍ତି ତାହାକୁ ଅନୁମୋଦନ କରିବା ବା ବିନା ଆପତ୍ତିରେ ମାନିନେବା ମୋ ପକ୍ଷରେ ଅତି କଷ୍ଟକର ହୋଇପଡ଼ିଛି ।'' ଏହା ଲେଖି ଶ୍ରୀ ତ୍ରିପାଠୀ ତାଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାପାଇଁ ଅନୁମତି ଦେବାକୁ କଂଗ୍ରେସ ସଭାପତି ଶ୍ରୀ କାମରାଜଙ୍କୁ ଅନୁରୋଧ କରିଥିଲେ । ଏହାପରେ ଶ୍ରୀ ତ୍ରିପାଠୀ ଉକ୍ତ ଚିଠିଟିକୁ ଖବରକାଗଜରେ ପ୍ରକାଶ କରିବାପାଇଁ ଦେଇଥିଲେ ।

ଶ୍ରୀ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଶ୍ରୀ ତ୍ରିପାଠୀଙ୍କୁ ୧୯୬୬ ମସିହା ସେପ୍‌ଟେମ୍ବର ସାତ ତାରିଖରେ ଯେଉଁ ଚିଠି ଲେଖିଥିଲେ ସେଥିରେ ଥିଲା, ''ଆପଣଙ୍କର ଏ କ'ଣ ହେଲା ? ଓଡ଼ିଶାପାଇଁ ଏହା କ'ଣ ଏକ ବିଶ୍ୱାସଘାତକତାର ବର୍ଷ– ପ୍ରଥମରେ ମହତାବ୍‌ବାବୁ, ଦ୍ୱିତୀୟରେ ନବବାବୁ ଏବଂ ଏବେ ଆପଣ ! ରାଜନୈତିକ ସଂଗତି ଓ ସାଧୁତାର ସହିତ କିମ୍ବା ଆପଣଙ୍କର ବିଚାର ଅନୁଯାୟୀ ଶାସନ ଚଳାଇବା ପଥରେ ସେମାନେ ପ୍ରତିବନ୍ଧକ ହେଉଥିବା କାରଣ ଦର୍ଶାଇ ଆପଣଙ୍କ ତଥାକଥିତ ଇସ୍ତଫା ଉପରେ ଆପଣ ଚାପ ଦେଉଛନ୍ତି ବୋଲି କହି କଂଗ୍ରେସ ଦଳର ସୁନାମରେ କାଳି ଦେବାକୁ ଯାଉଛନ୍ତି କାହିଁକି ? ମହତାବ୍‌ବାବୁ ଆପଣଙ୍କୁ ବିସ୍ମୃତିର ଅତଳଗର୍ଭରେ ପକାଇଦେଇଥିଲେ । ସେ ଅବସ୍ଥାରେ ଗୋଟାଇଆଣି ଆପଣଙ୍କୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ କରିବା ବୋଧହୁଏ ଓଡ଼ିଶା କଂଗ୍ରେସରହିଁ ଏକମାତ୍ର ଅପରାଧ । ତା'ପରେ ଯେତେବେଳେ ଆପଣ ମୋତେ କହିଲେ ଯେ ଆପଣଙ୍କ ବୁଦ୍ଧିଦାତା ନବବାବୁ ଇସ୍ତଫା ଦେବାଲାଗି ଆପଣଙ୍କୁ ପରାମର୍ଶ ଦେଇଛନ୍ତି, ସେତେବେଳେ ଅଗଷ୍ଟ ତେଇଶ ତାରିଖରେ ମୋ ପାଖକୁ ଲେଖାଯାଇଥିବା କଂଗ୍ରେସ ସଭାପତିଙ୍କ ଚିଠି ବ୍ୟାଖ୍ୟା କରି ମୁଁ ଆପଣଙ୍କୁ ବୁଝାଇବା ସମୟରେ ଆପଣ ଇସ୍ତଫାପାଇଁ ପ୍ରସ୍ତୁତ ହୋଇ ରହନ୍ତୁ ବୋଲି ମୁଁ ଯେ କହିଲି ଏହା ଆପଣ ଗୋଟିଏ ଅଭିସନ୍ଧି ରଖି କହିଛନ୍ତି । ଏହା ଏକ ନିର୍ବୋଧତା ଏବଂ ଯେଉଁ ଲୋକ ସଂପଦବିପଦ ସବୁ ସମୟରେ ଆପଣଙ୍କ ପଛରେ ଠିଆହୋଇ ଆସିଛି ତା' ମନରେ ଏହା ନିଶ୍ଚୟ ଆଘାତ ଦେବ । ଅନ୍ୟ ସମସ୍ତଙ୍କ ଭିତରେ ଆପଣ ଯେ ଏଭଳି ଦୋମୁହାଁ କାରବାର କରିପାରନ୍ତି, ଏହା ମୁଁ କେବେ ବିଶ୍ୱାସ କରି ନ ଥିଲି । କୃତଜ୍ଞତା ଶବ୍ଦ ରାଜନୀତିର ଅଭିଧାନରୁ ଉଠାଇ ଦିଆଯିବା ଉଚିତ ବୋଲି କଂଗ୍ରେସ ସଭାପତି ଯେଉଁ ମନ୍ତବ୍ୟ କରିଥିଲେ, ତହିଁରୁହିଁ ସମସ୍ତ ପରିସ୍ଥିତି ବେଶ୍ ଜଣାପଡୁଛି । ପରାମର୍ଶ ଛଳରେ ଯଦି ମୁଁ ପଦେ

ଆପଣଙ୍କୁ କହିପାରେ ସେ ପଦକ ହେଉଛି ଆପଣଙ୍କର ପୁରୁଣା ସହଯୋଗୀମାନଙ୍କୁ ଆପଣ ଡକାଇପଠାନ୍ତୁ ଏବଂ ସେମାନଙ୍କ ପ୍ରତି ଯେଉଁ ଅନ୍ୟାୟ କରିଛନ୍ତି ତା'ର ସଂଶୋଧନ କରନ୍ତୁ ।''

ଶ୍ରୀ ବିଜୁ ପଟ୍ଟନାୟକଙ୍କର ଉପରୋକ୍ତ ଚିଠିର ଉତ୍ତର ଦେଇ ସେହି ସେପ୍ଟେମ୍ବର ସାତ ତାରିଖରେ ମୁଖ୍ୟମନ୍ତ୍ରୀ ଶ୍ରୀ ତ୍ରିପାଠୀ ତାଙ୍କ ପତ୍ରରେ ଲେଖିଥିଲେ, ''ମୁଁ ଏଠାରେ ଦୃଢ଼ଭାବରେ କହିବାକୁ ଚାହେଁ ଯେ କଂଗ୍ରେସ ସଭାପତି ଶ୍ରୀ କାମରାଜଙ୍କୁ ୧୯୬୬ ସେପ୍ଟେମ୍ବର ପହିଲାରେ ମୁଁ ଯେଉଁ ପତ୍ର ଲେଖିଥିଲି ସେଥିରେ ମୋର କୌଣସି ଅକୃତଜ୍ଞତା ପ୍ରକାଶ ପାଇନାହିଁ କିମ୍ବା ମୋ ଉପରେ ନ୍ୟସ୍ତ ହୋଇଥିବା ଆସ୍ଥା ବା ବିଶ୍ୱାସର ମୁଁ ବିରୁଦ୍ଧାଚରଣ କରିନାହିଁ । ଆପଣ ଯେପରି ନେତୃତ୍ୱ ଗ୍ରହଣ କରିପାରିବେ ଏବଂ ଯାହା କଂଗ୍ରେସ ସଭାପତିଙ୍କର ଇଚ୍ଛା ବୋଲି ଆପଣ ମୋତେ ସୂଚନା ଦେଇଛନ୍ତି, ସେ ଦୃଷ୍ଟିରୁ ପଦତ୍ୟାଗପାଇଁ ମୁଁ ଯେ ପ୍ରସ୍ତୁତ, ସେହି କଥାହିଁ ସେ ପତ୍ରରେ ସ୍ପଷ୍ଟ ଓ ଦ୍ୱିଧାହୀନ ଭାବରେ ଜଣାଇଦେଇଛି ।'' ୧୯୬୬ ମସିହା ସେପ୍ଟେମ୍ବର ଆଠ ତାରିଖରେ ଶ୍ରୀ ବିଜୁ ପଟ୍ଟନାୟକ ଶ୍ରୀ ତ୍ରିପାଠୀଙ୍କୁ ତାଙ୍କ ପତ୍ରରେ ଲେଖିଥିଲେ– ଆପଣ ମୋପାଇଁ ସ୍ଥାନ ଛାଡ଼ିଦେବେ ବୋଲି ଆପଣଙ୍କ ସାତ ତାରିଖ ପତ୍ରରେ ଅନୁଗ୍ରହ କରି ଯାହା ଲେଖିଛନ୍ତି ମୁଁ ସେଥିରେ ବାସ୍ତବିକ ମୁଗ୍ଧ ହୋଇଛି; କିନ୍ତୁ ମୁଁ ଯାହା ଦେଖୁଛି ପୂରା ଘରଟାହିଁ ଭୁଶୁଡ଼ି ପଡ଼ିଛି । ଏକ ନିର୍ବାଚନ ବର୍ଷରେ ଶାସନକ୍ଷେତ୍ରରେ କୌଣସି ପରିବର୍ତ୍ତନ ଏଡ଼ାଇବା କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷଙ୍କର ଇଚ୍ଛା ଏବଂ ମୋର ମଧ ଇଚ୍ଛା । ଆପଣ ମନଧ୍ୟାନ ଦେଇ ବହୁଦିନ ହେଲା କାମ କରିପାରୁ ପାରୁନାହାନ୍ତି । ତା' ସତ୍ତ୍ୱେ ବୀରେନ୍, ନୀଳମଣି ଓ ଅନ୍ୟମାନେ ପରିସ୍ଥିତିକୁ ସହ୍ୟ କରିଛନ୍ତି । ଏକ ନିର୍ମଳ ଓ ଉତ୍ତମ ସରକାର ପ୍ରତିଷ୍ଠା ପାଇଁ ଆପଣଙ୍କର ଯେ ଆନ୍ତରିକ ଇଚ୍ଛା ତାହା ଶୁଣିବାପାଇଁ ଭଲଲାଗୁଛି, କିନ୍ତୁ ବର୍ତ୍ତମାନ ସମସ୍ୟା ହେଲା ସରକାର ତ ନିଜେ ଭାଙ୍ଗିପଡୁଛି । ମୁଁ ତେଣୁ ଆପଣଙ୍କୁ ପରାମର୍ଶ ଦେଇଥିଲି ଯେ ମନ୍ତ୍ରିମଣ୍ଡଳର ଆପଣଙ୍କର ସବୁ ସହକର୍ମୀଙ୍କୁ ଡାକି ସବୁ କଥା ସମାଧାନ କରିନିଅନ୍ତୁ । ଆପଣଙ୍କ ଆଚରଣରେ ସେମାନେ ଗଭୀର ଭାବରେ କ୍ଷୁବ୍ଧ ହୋଇଥିବାର ଜଣାପଡୁଛି ।

ଏହା ପରେ ମୁଖ୍ୟମନ୍ତ୍ରୀ ଶ୍ରୀ ତ୍ରିପାଠୀ ୧୯୬୬ ମସିହା ସେପ୍ଟେମ୍ବର ମାସ ଦଶ ତାରିଖରେ ମୋ ପାଖକୁ ନିମ୍ନ ଚିଠି ଲେଖିଥିଲେ –

ପ୍ରିୟ ନୀଳମଣି ବାବୁ,

ମୋ ମନ୍ତ୍ରିମଣ୍ଡଳର ସହଯୋଗୀମାନଙ୍କ ସାଧୁତା ସମ୍ପର୍କରେ ପ୍ରଶ୍ନ ଉଠାଇ ମୁଁ କଂଗ୍ରେସ ସଭାପତିଙ୍କ ପାଖକୁ ଚିଠି ଦେଇଥିବାର କାରଣ ଦର୍ଶାଇ ଆପଣ ଓ ମନ୍ତ୍ରିମଣ୍ଡଳର ଆଉ ଏଗାର ଜଣ ସଭ୍ୟ ଇସ୍ତଫା ପ୍ରଦାନ କରି ଯେଉଁ ଚିଠି ଦେଇଛନ୍ତି ତାହା ପାଇ ମୁଁ ବିସ୍ମିତ । ମୁଁ ବିସ୍ମିତ ଯେ ଆପଣ ଏଭଳି ଏକ ସିଦ୍ଧାନ୍ତ ଗ୍ରହଣ କରିପାରିଲେ । ମୁଁ ବିଶ୍ୱାସ କରୁଛି ଯେ ଆପଣଙ୍କୁ ପ୍ରକୃତ ଘଟଣା ସମ୍ପର୍କରେ ସମ୍ପୂର୍ଣ୍ଣ ଅନବହିତ ରଖାଯାଇଛି ଏବଂ ଆପଣ ତୃତୀୟ ପକ୍ଷର ଖବରରେ ଏଭଳି ଏକ ପଦକ୍ଷେପ ନେଇଛନ୍ତି । ମୋର ଅନୁରୋଧ, ଆପଣ ଦୟାକରି ଏ ନିଷ୍ପତ୍ତିର ପୁନର୍ବିଚାର କରିବେ ଏବଂ ଇସ୍ତଫା ପ୍ରତ୍ୟାହାର କରିନେବେ । କଂଗ୍ରେସ ସଭାପତିଙ୍କ ପାଖକୁ ମୁଁ ଯେଉଁ ପତ୍ର ଲେଖିଛି, ସେଥିରେ ଆପଣ ବା ମନ୍ତ୍ରିମଣ୍ଡଳର ଅନ୍ୟ କୌଣସି ସହଯୋଗୀଙ୍କ ବିଷୟରେ କିଛି ଉଲ୍ଲେଖ ଅଛି କି ନାହିଁ ତାହା ଆପଣ କଂଗ୍ରେସ ସଭାପତିଙ୍କୁ ପଚାରି ବୁଝିବାକୁ ମୁଁ ପରାମର୍ଶ ଦେଉଛି । ଅନ୍ୟ ପକ୍ଷରେ ମୋର ଅସୁସ୍ଥତାବେଳେ ଆପଣମାନେ ସମସ୍ତେ ଶାସନକାର୍ଯ୍ୟ ସୁରୁଖୁରୁରେ ଓ ଦକ୍ଷତା ସହକାରେ ଚଳାଇଥିବା ଯୋଗୁଁ ମୁଁ ସବୁବେଳେ ଆନନ୍ଦ ଅନୁଭବ କରିଆସିଛି । କହିବା ବାହୁଲ୍ୟ ଯେ ଏ ବିଷୟରେ ଅଧିକ ସ୍ପଷ୍ଟୀକରଣ ପାଇଁ ଆଲୋଚନା ହେଲେ ମୁଁ ତାହାକୁ ସ୍ୱାଗତ କରିବି ।

ଆପଣଙ୍କର ବିଶ୍ୱସ୍ତ
ସ୍ୱା/ଏସ୍. ତ୍ରିପାଠୀ

ମୁଖ୍ୟମନ୍ତ୍ରୀଙ୍କର ଉପରୋକ୍ତ ଚିଠି ବିଷୟରେ ଆମ୍ଭମାନଙ୍କ ମଧ୍ୟରେ ଆଲୋଚନା ହୋଇଥିଲା । ଚିଠିରେ ଯେଉଁ ବିଷୟ ଲେଖାଥିଲା, ସେ ବିଷୟରେ ବିଶେଷ କିଛି ଆଲୋଚନା କରିବାର ନଥିଲା—କାରଣ ତାହା ଥିଲା ଗୌଣ । ଆମ ଆଗରେ ମୁଖ୍ୟ ବିଷୟ ଥିଲା ବିଭାଗ ଅଦଳବଦଳ । ସେ ବିଷୟରେ ମୁଖ୍ୟମନ୍ତ୍ରୀଙ୍କର ମତିଗତି ନ ଜାଣିଲେ କଥାବାର୍ତ୍ତାରୁ କିଛି ଭଲ ଫଳ ହେବାର ଆଶା ନଥିଲା । ଜଣାଗଲା ଯେ ଆମ ଚିଠିରେ ଆମେ ଯେଉଁ ବିଷୟ ଲେଖିଥିଲୁ ସେ ବିଷୟରେ ଆମ୍ଭମାନଙ୍କ ମନରୁ ସନ୍ଦେହ ଦୂର କରିବା ଦିଗରେ ମୁଖ୍ୟମନ୍ତ୍ରୀ ଆଲୋଚନା କରିବେ; ମାତ୍ର ବିଭାଗ ଅଦଳବଦଳ ସମ୍ବନ୍ଧରେ ସେ ଯେଉଁ ନିଷ୍ପତ୍ତି ନେଇଛନ୍ତି ସେଥିରେ କୌଣସି ପରିବର୍ତ୍ତନ ନକରିବା ବିଷୟରେ ସେ ଅଟଳ । ଆମ୍ଭମାନଙ୍କର ଇଚ୍ଛା ଥାଏ, ଯଦି କୌଣସିମତେ ପୂର୍ତ୍ତ ବିଭାଗ ଶ୍ରୀ ସତ୍ୟପ୍ରିୟ ମହାନ୍ତିଙ୍କ ହାତକୁ ଫେରିଯାଏ ଏବଂ ସେ ଆଶ୍ୱସ୍ତ ହୁଅନ୍ତି, ତାହାହେଲେ ସମାଧାନ ହେବାରେ କିଛି ଅସୁବିଧା ହେବନାହିଁ । ବିଶ୍ୱସ୍ତ ସୂତ୍ରରୁ ଆମ୍ଭେମାନେ ଖବର ପାଇଲୁ ଯେ ମୁଖ୍ୟମନ୍ତ୍ରୀ ଶ୍ରୀ ତ୍ରିପାଠୀ ସେତେବେଳକୁ ଶ୍ରୀ ମହତାବ ଓ ଶ୍ରୀ ବନମାଳୀ ପଟ୍ଟନାୟକଙ୍କ ପ୍ରଭାବରେ ପଡ଼ିଗଲେଣି । ଶ୍ରୀ ମହତାବ ସେତେବେଳକୁ ସ୍ଥିର କରିସାରିଥିଲେ ଭୁବନେଶ୍ୱର ନିର୍ବାଚନମଣ୍ଡଳୀରୁ ବିଧାନସଭାକୁ ନିଜେ ପ୍ରାର୍ଥୀ ହେବେ । ତାଙ୍କର ପ୍ରତିଦ୍ୱନ୍ଦ୍ୱିତା କରିବେ କଂଗ୍ରେସପ୍ରାର୍ଥୀ ସତ୍ୟପ୍ରିୟ ମହାନ୍ତି । ତେଣୁ ସତ୍ୟପ୍ରିୟବାବୁଙ୍କ ହାତରେ ପୂର୍ତ୍ତବିଭାଗ ରହିଲେ ଭୁବନେଶ୍ୱରର ସବୁ କଣ୍ଟ୍ରାକ୍ଟରଙ୍କର ଆର୍ଥିକ ଓ ଅନ୍ୟାନ୍ୟ ସାହାଯ୍ୟ ପୂର୍ତ୍ତବିଭାଗର ମନ୍ତ୍ରୀ ହିସାବରେ ସେ ପାଇପାରିବେ । ସେଇଟା ମହତାବଙ୍କ ପକ୍ଷେ ବଡ଼ ଅସୁବିଧାଜନକ ହେବ । ତେଣୁ ସଦାଶିବବାବୁ ଯେପରି ତାଙ୍କର ନିଷ୍ପତ୍ତିରେ ଅଟଳ ରହିବେ ସେ ଦିଗରେ ମହତାବ ତାଙ୍କୁ ଉତ୍ସାହିତ କରିବାରେ ଲାଗିଥିଲେ । ସଦାଶିବବାବୁ ଓ ମହତାବବାବୁଙ୍କ ଭିତରେ ଫୋନ୍‌ରେ କଥାବାର୍ତ୍ତା କଥା କେତେକ ଲୋକ ଶୁଣି ଆମକୁ କହିଥିଲେ । ବିରୁଦ୍ଧ ଦଳର ନେତାମାନେ ମଧ୍ୟ ସଦାଶିବବାବୁଙ୍କୁ ଦେଖାକରି ତାଙ୍କୁ ଉସ୍‌କାଇବାରେ ଲାଗିଥିଲେ । ଆମ୍ଭେମାନେ ଇସ୍ତଫା ଦେଇ ଚାଲିଗଲେ ମଧ୍ୟ ଶ୍ରୀ ତ୍ରିପାଠୀ ଯଦି ମୁଖ୍ୟମନ୍ତ୍ରୀ ହୋଇ ରହନ୍ତି ତା'ହେଲେ ବିଧାନସଭାରେ ସରକାରୀ କାର୍ଯ୍ୟ ତୁଲାଇବାରେ କିଛି ଅସୁବିଧା ହେବନାହିଁ ବୋଲି ବିରୁଦ୍ଧ ଦଳର ନେତାମାନେ ତଥା ଅସନ୍ତୁଷ୍ଟ ଗୋଷ୍ଠୀର ବିଧାନସଭାର କଂଗ୍ରେସ ସଭ୍ୟମାନେ ତାଙ୍କୁ ପ୍ରତିଶ୍ରୁତି ଦେଇଥିଲେ । ବିଧାନସଭାରେ କୌଣସି ବିଷୟରେ ସେମାନେ ଭୋଟ ଦାବି କରିବେନାହିଁ ବୋଲି ଶ୍ରୀ ତ୍ରିପାଠୀଙ୍କୁ କଥା ଦେଇଥିଲେ । ୧୯୬୭ ସାଧାରଣ ନିର୍ବାଚନ ଆଉ ପାଞ୍ଚମାସ ମାତ୍ର ବାକିଥାଏ । ଆଉ ଥରେ ବିଧାନସଭା ବସିବାର ଥାଏ ଏବଂ ତା' ପୁଣି ଅଳ୍ପଦିନ ପାଇଁ । ଏହି ଅବସରରେ ସଦାଶିବବାବୁ ଭାବିଲେ ବିଜୁ ପଟ୍ଟନାୟକଙ୍କୁ ଗୋଟିଏ ଶିକ୍ଷା ଦେବାପାଇଁ । କଂଗ୍ରେସର ଯାହାହେଉ ପଛେ ସେଥିପାଇଁ ସେ ଆଦୌ ଚିନ୍ତିତ ନଥିଲେ । କଂଗ୍ରେସ ସଭାପତି ଘନ ଘନ ଫୋନ୍ କରୁଥା'ନ୍ତି ତୁରନ୍ତ ଓଡ଼ିଶା ଅଡୁଆ ତୁଟାଇଦେବାପାଇଁ । ପରିସ୍ଥିତି ଦିନକୁ ଦିନ ଖରାପ ହେବାକୁ ଯାଉଥାଏ । କଂଗ୍ରେସ ମର୍ଯ୍ୟାଦା ଲୋକଚକ୍ଷୁରେ କ୍ଷୁଣ୍ଣ ହେଉଥାଏ । ଲକ୍ଷ୍ୟ କରାଗଲା ଯେ କଂଗ୍ରେସର ମୁଖ୍ୟମନ୍ତ୍ରୀ ଆସ୍ତେ ଆସ୍ତେ ଯାଇ ବିରୋଧୀ ଦଳର ଲୋକଙ୍କ କବ୍‌ଜାରେ ପଡ଼ିଗଲେଣି । ତେଣୁ କୌଣସିମତେ ଏ ଜଟିଳ ପରିସ୍ଥିତିରୁ ଉଧୁରି ଆସିବା ବୁଦ୍ଧିମାନ୍‌ର କାର୍ଯ୍ୟ ହେବ ବୋଲି ଆମ୍ଭେମାନେ ଭାବିଲୁ । ଆମର ଅଭିଯୋଗସବୁ କଂଗ୍ରେସ ସଭାପତି ଯଦି ବୁଝିବାକୁ ପ୍ରତିଶ୍ରୁତି ଦିଅନ୍ତି ଏବଂ ଇସ୍ତଫାପତ୍ର ପ୍ରତ୍ୟାହାର କରିନେବାକୁ ସେ ଯଦି ପରାମର୍ଶ ଦିଅନ୍ତି ତା'ହେଲେ ଆମ୍ଭେମାନେ ଆମର ଇସ୍ତଫାପତ୍ର ପ୍ରତ୍ୟାହାର କରିନେବୁ ବୋଲି ସ୍ଥିରକରିଥିଲୁ । ବିଜୁବାବୁ ଶ୍ରୀ କାମରାଜଙ୍କ ସହିତ ଏ ବିଷୟରେ କଥାବାର୍ତ୍ତା ହୋଇଥିଲେ । ତା'ପରେ ଶ୍ରୀ କାମରାଜ ମୋ ସହିତ ଟେଲିଫୋନ୍‌ରେ କଥାବାର୍ତ୍ତା କରିଥିଲେ । ଇସ୍ତଫାପତ୍ର ପ୍ରତ୍ୟାହାର କରିନେବାକୁ ସେ ମୋତେ ପରାମର୍ଶ ଦେଇଥିଲେ । ଆମ୍ଭମାନଙ୍କର ଅଭିଯୋଗଗୁଡ଼ିକ ସମ୍ବନ୍ଧରେ ସେ ବୁଝିବେ ବୋଲି କହିଥିଲେ ଏବଂ ଲିଖିତ ଆକାରରେ ସବୁ କଥା ତାଙ୍କୁ ସେପ୍ଟେମ୍ବର ଚବିଶ ତାରିଖରେ କେରଳ ରାଜ୍ୟର ଏର୍ଣ୍ଣାକୁଲମ୍‌ଠାରେ କଂଗ୍ରେସ

ଅଧିବେଶନ ସମୟରେ ଦେବାପାଇଁ କହିଥିଲେ । ସେହିଠାରେ ଆମର ଅନ୍ୟାନ୍ୟ ମନ୍ତ୍ରୀମାନେ ତାଙ୍କୁ ଦେଖାକରିବାପାଇଁ ସେ ମତ ଦେଇଥିଲେ । ସେପ୍ଟେମ୍ବର ଚଉଦ ତାରିଖ ଦିନ ଆମ୍ଭେମାନେ ଇସ୍ତଫାପତ୍ର ପ୍ରତ୍ୟାହାର କରିନେଇଥିଲୁ । କିନ୍ତୁ ସେ ଯାହାହେଉ, ଏହାଦ୍ୱାରା ଆମ୍ଭମାନଙ୍କର ବ୍ୟକ୍ତିଗତ ମର୍ଯ୍ୟାଦା ହାନିହେବା ସଙ୍ଗେ ସଙ୍ଗେ କଂଗ୍ରେସର ମର୍ଯ୍ୟାଦାରେ ଯଥେଷ୍ଟ ଆଞ୍ଚ ଆସିଥିଲା ।

ଏର୍ଣ୍ଣାକୁଲମ୍ ଯିବା ପୂର୍ବରୁ ଆମ୍ଭେମାନେ ମୁଖ୍ୟମନ୍ତ୍ରୀ ଶ୍ରୀ ସଦାଶିବ ତ୍ରିପାଠୀଙ୍କର କାର୍ଯ୍ୟଦ୍ୱାରା କିପରି କଂଗ୍ରେସର ଅନିଷ୍ଟ ହେଉଛି, କଂଗ୍ରେସ-ବିରୋଧୀ ଲୋକଙ୍କୁ ସନ୍ତୁଷ୍ଟ କରିବାପାଇଁ ସେହିମାନଙ୍କ ପରାମର୍ଶରେ ସେ କିପରି ବିଭାଗ ଅଦଳବଦଳ କରିଛନ୍ତି ଏବଂ ସେ ବିରୋଧୀ ଦଳର ଲୋକମାନଙ୍କ ସହିତ ସମ୍ପର୍କ ରଖି କଂଗ୍ରେସକୁ ଦୁର୍ବଳ କରିବା ଦିଗରେ କିପରି ସାହାଯ୍ୟ କରୁଛନ୍ତି ସେସବୁ ବିଷୟ ଉଲ୍ଲେଖ କରି କଂଗ୍ରେସ ସଭାପତିଙ୍କୁ ଦେବାପାଇଁ ଗୋଟିଏ ସ୍ମାରକପତ୍ର ପ୍ରସ୍ତୁତ କରିଥିଲୁ । ଅଧିକାଂଶ ମନ୍ତ୍ରୀ ଓ କଂଗ୍ରେସ ବ୍ୟବସ୍ଥାପକ କଂଗ୍ରେସ ସଭାପତିଙ୍କୁ ଭେଟିବାପାଇଁ ଏର୍ଣ୍ଣାକୁଲମ୍ ଯାଇଥିଲେ । ସେଠାରେ ଆମ୍ଭେମାନେ କଂଗ୍ରେସ ସଭାପତିଙ୍କୁ ଭେଟି ସ୍ମାରକପତ୍ରଟି ଦେଇଥିଲୁ ଏବଂ ଓଡ଼ିଶାରେ କଂଗ୍ରେସ ପରିସ୍ଥିତି ତଥା ଆମ୍ଭମାନଙ୍କର ଅଭିଯୋଗ ବିଷୟ ତାଙ୍କ ସହିତ ଆଲୋଚନା କରିଥିଲୁ । କାମରାଜ ଆମ ସ୍ମାରକପତ୍ର ଉପରେ ନିର୍ଦ୍ଦିଷ୍ଟଭାବରେ କିଛି କହିନଥିଲେ । କିନ୍ତୁ ପରେ ଶ୍ରୀ ସଂଜୀବ ରେଡ୍ଡିଙ୍କୁ ତାଙ୍କ ପକ୍ଷରୁ ଓଡ଼ିଶା ପଠାଇ ସବୁ କଥା ବୁଝି କିଛି କାର୍ଯ୍ୟାନୁଷ୍ଠାନ କରିବେ ବୋଲି କହିଥିଲେ । ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ମଧ୍ୟ ସେହିଠାରେ ଭେଟି ଆମେ ତାଙ୍କ ସହିତ ଓଡ଼ିଶା ପରିସ୍ଥିତି ବିଷୟ ଆଲୋଚନା କରିଥିଲୁ । କାମରାଜଙ୍କ ଅପେକ୍ଷା ଶ୍ରୀମତୀ ଗାନ୍ଧୀ ଆମ୍ଭମାନଙ୍କ ବିଷୟ ଭଲଭାବରେ ଶୁଣିଥିଲେ । କାମରାଜ ଯେପରିଭାବରେ ଓଡ଼ିଶା ବ୍ୟାପାର ବୁଝୁଥିଲେ ସେଥିରେ ଶ୍ରୀମତୀ ଗାନ୍ଧୀ ସନ୍ତୁଷ୍ଟ ଥିଲାଭଳି ଜଣାଗଲାନାହିଁ । ଆସନ୍ନ ନିର୍ବାଚନ ଦୃଷ୍ଟିରୁ ଓଡ଼ିଶାରେ ନେତୃତ୍ୱ ପରିବର୍ତ୍ତନ ହେଲେ ଭଲ ହେବ ବୋଲି ସେ ଭାବୁଥିବାର ଆଭାସ ତାଙ୍କ କଥାବାର୍ତ୍ତାରୁ ଆମ୍ଭେମାନେ ଜାଣିବାକୁ ପାଇଥିଲୁ । ତାଙ୍କର ଇଚ୍ଛା ଥାଏ ଯେ ବିଜୁ ପଟ୍ଟନାୟକ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ହୋଇ ଯାହା କରିବାର କରୁ ମାତ୍ର ଦିଲ୍ଲୀ ରାଜନୀତିରେ ପ୍ରବେଶ ନକରୁ । ଓଡ଼ିଶା ବିଷୟ ସେ କଂଗ୍ରେସ ସଭାପତିଙ୍କ ସହିତ ଆଲୋଚନା କରିବେ ବୋଲି ଆମ୍ଭମାନଙ୍କୁ କହିଥିଲେ ।

କେରଳରୁ ଫେରି ଆମ୍ଭମାନଙ୍କୁ ଅକ୍ଟୋବର ପାଞ୍ଚ ତାରିଖଠାରୁ ରାଜ୍ୟ ବିଧାନସଭାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ବିଧାନସଭାରେ ଆମର ଇସ୍ତଫା ଓ ଇସ୍ତଫା ପ୍ରତ୍ୟାହାର ବିଷୟ ବହୁତ ଆଲୋଚିତ ହୋଇଥିଲା । ବିରୋଧୀ ଦଳର ସଦସ୍ୟମାନେ ଆମ୍ଭମାନଙ୍କର ସମାଲୋଚନା କଲାବେଳେ ମୁଖ୍ୟମନ୍ତ୍ରୀ ଶ୍ରୀ ସଦାଶିବ ତ୍ରିପାଠୀ ତାହା ଖୁବ୍ ଉପଭୋଗ କଲାଭଳି ମନେହେଉଥାଏ । ଏଥର ବିଧାନସଭାର ସରକାରୀ କାର୍ଯ୍ୟସବୁ ଶୀଘ୍ର ଶୀଘ୍ର ସରିଯାଇଥାଏ । ବିରୋଧୀ ଦଳର ନେତାମାନଙ୍କ ସହିତ ମୁଖ୍ୟମନ୍ତ୍ରୀଙ୍କର ଭିତିରି ବୁଝାମଣା ଅନୁସାରେ କୌଣସି ବିଷୟରେ ଭୋଟ ଦାବି କରାଯାଇ ନ ଥିଲା । ଏହି ଅଧିବେଶନଟି ଥିଲା ତତ୍କାଳୀନ ବିଧାନସଭାର ଶେଷ ଅଧିବେଶନ । ବାଚସ୍ପତି ବା ଉପବାଚସ୍ପତିଙ୍କ ଅନୁପସ୍ଥିତିରେ ଶ୍ରୀ ଗଦାଧର ଦତ୍ତ ଚେୟାରମ୍ୟାନ୍ ହିସାବରେ ବିଧାନସଭା କାର୍ଯ୍ୟ ସେହି ସମୟରେ ଚଳାଉଥା'ନ୍ତି । ସେଦିନ ବ୍ୟବସ୍ଥାସଭାରେ ପବ୍ଲିକ୍ ଅଣ୍ଡରଟେକିଙ୍ଗ୍ କମିଟିର ରିପୋର୍ଟ ସେହି କମିଟିର ଚେୟାରମ୍ୟାନ୍ ଶ୍ରୀ ନାରାୟଣଚନ୍ଦ୍ର ପତି ଉପସ୍ଥାପିତ କରିବାର କାର୍ଯ୍ୟକ୍ରମ ଥାଏ । ରିପୋର୍ଟଟି ଅତି ଗୁରୁତ୍ୱପୂର୍ଣ୍ଣ ଥିଲା । ସେହି ରିପୋର୍ଟଟି ପ୍ରକାଶିତ ହୋଇଥିଲେ ବିଜୁବାବୁଙ୍କ ସମ୍ବନ୍ଧରେ ବଡ଼ବିଲ ଲୁହା କାରଖାନା ହସ୍ତାନ୍ତର ନେଇ କେତେକ ଭିତିହୀନ ଅଭିଯୋଗର ଅସାରତା ଜଣାପଡ଼ିଯାଇଥା'ନ୍ତା । କଂଗ୍ରେସ ବିରୁଦ୍ଧରେ ଯେଉଁସବୁ କୁତ୍ସା ରଟନା କରାଯାଉଥିଲା ତାହା କେତେକ ପରିମାଣରେ ଖଣ୍ଡନ ହୋଇପାରିଥାଆନ୍ତା । ଚେୟାରମ୍ୟାନ୍ ଶ୍ରୀ ଦତ୍ତ ଏପରି ଭାବରେ ବୈଠକ ପରିଚାଳନା କରିଥିଲେ ଯେ ସେହି ରିପୋର୍ଟଟି ସେଦିନ ଗୃହରେ ଉପସ୍ଥାପିତ ହୋଇପାରିଲାନାହିଁ । ମୁଖ୍ୟମନ୍ତ୍ରୀ ମଧ୍ୟ

ସେତିକିବେଳକୁ ଗୃହରେ ଅନୁପସ୍ଥିତ ରହିଲେ । ମୁଁ ଯେତେ ଯୁକ୍ତିତର୍କ କଲେ ମଧ ଶ୍ରୀ ଦର ରିପୋର୍ଟଟି ଉପସ୍ଥାପିତ ହେଲା ବୋଲି ଘୋଷଣା କଲେନାହିଁ । ପରେ ଜଣାଗଲା ଯେ ମୁଖ୍ୟମନ୍ତ୍ରୀଙ୍କର ମଧ ଉଦ୍ଦେଶ୍ୟ ଥିଲା ଯେ ସେ ରିପୋର୍ଟଟି ବ୍ୟବସ୍ଥାସଭାରେ ଉପସ୍ଥାପିତ ନ ହେଉ । ବୋଧହୁଏ ଶ୍ରୀ ଦର ମୁଖ୍ୟମନ୍ତ୍ରୀଙ୍କର ଉଦ୍ଦେଶ୍ୟ ସାଧନରେ ସହାୟକ ହୋଇଥିଲେ ।

କଂଗ୍ରେସ ସଭାପତିଙ୍କର ନିର୍ଦ୍ଦେଶ ଅନୁସାରେ ଶ୍ରୀ ସଂଜୀବ ରେଡ୍ଡି ଚଉଦ ତାରିଖରେ ଓଡ଼ିଶା ଆସିଥିଲେ । ସେ ଭୁବନେଶ୍ୱରରେ ଦୁଇ ଦିନ ରହି କଂଗ୍ରେସ ଅନୁଷ୍ଠାନ ସମ୍ବନ୍ଧରେ କଥାବାର୍ତ୍ତା କରିଥିଲେ । ମୁଖ୍ୟମନ୍ତ୍ରୀ ଶ୍ରୀ ତ୍ରିପାଠୀ ଯେପରି ଭାବରେ ବିରୁଦ୍ଧ ଦଳର ଲୋକଙ୍କୁ ସାହାଯ୍ୟ କରୁଥା'ନ୍ତି ସେ ବିଷୟରେ ତାଙ୍କ ପାଖରେ ଅନେକ ଦୃଷ୍ଟାନ୍ତ ଉପସ୍ଥାପିତ କରାଯାଇଥିଲା । ବିଭାଗ ଅଦଳବଦଳ କେଉଁ ପରିପ୍ରେକ୍ଷୀରେ କରାଯାଇଥିଲା ସେ ବିଷୟରେ ମଧ ମୁଁ ତାଙ୍କୁ କହିଥିଲି । ମୁଖ୍ୟମନ୍ତ୍ରୀ ଯେଉଁସବୁ ବିଭାଗ ଅଦଳବଦଳ କରିଛନ୍ତି ସେସବୁ ପରିବର୍ତ୍ତନ ନକରି କେବଳ ପୂର୍ତ୍ତ ବିଭାଗ ଶ୍ରୀ ସତ୍ୟପ୍ରିୟ ମହାନ୍ତିଙ୍କ ହାତକୁ ଫେରିଆସିଲେ ଶ୍ରୀ ମହତାବଙ୍କର ଚକ୍ରାନ୍ତ ପଣ୍ଡ ହୋଇଯିବ ବୋଲି ଆମେ ଶ୍ରୀ ରେଡ୍ଡିଙ୍କୁ କହିଥିଲୁ । ଶ୍ରୀ ରେଡ୍ଡି ଆମ କଥାକୁ ହୃଦୟଙ୍ଗମ କରିଥିଲେ । ବିଭାଗ ଅଦଳବଦଳ କରିବାର ସଂପୂର୍ଣ୍ଣ ଅଧିକାର ମୁଖ୍ୟମନ୍ତ୍ରୀଙ୍କର ଥିଲେ ମଧ କଂଗ୍ରେସର ହିତଦୃଷ୍ଟିରୁ ପୂର୍ତ୍ତ ବିଭାଗଟି ଶ୍ରୀ ମହାନ୍ତିଙ୍କୁ ଫେରାଇଦେଲେ ଭଲ ହେବ ବୋଲି ଶ୍ରୀ ରେଡ୍ଡି କୁଆଡ଼େ ମୁଖ୍ୟମନ୍ତ୍ରୀଙ୍କୁ ପରାମର୍ଶ ଦେଇଥିଲେ; କିନ୍ତୁ ମୁଖ୍ୟମନ୍ତ୍ରୀ ତାଙ୍କ ପରାମର୍ଶକୁ ଗ୍ରହଣକରିନଥିଲେ । ଶ୍ରୀ ରେଡ୍ଡି ଆମ୍ଭମାନଙ୍କୁ କହିଥିଲେ ଯେ ତୁମର ମୁଖ୍ୟମନ୍ତ୍ରୀ କଂଗ୍ରେସର କେଉଁଠା ମଙ୍ଗଳ ହେବ ସେ ବିଷୟ ଚିନ୍ତାନକରି କେବଳ ତାଙ୍କର ନିଜର ସମ୍ମାନ ବିଷୟରେ ବେଶୀ ସଚେତନ । ତେଣୁ ନିର୍ବାଚନ ପାଖେଇ ଆସୁଥିବାରୁ ଅନେକ ବିଷୟ ହଜମ କରି କଂଗ୍ରେସର ମର୍ଯ୍ୟାଦା ରକ୍ଷା କରିବାପାଇଁ ଆମ୍ଭମାନଙ୍କୁ କାର୍ଯ୍ୟ କରିବାକୁ ପଡ଼ିବ ବୋଲି ସେ ପରାମର୍ଶ ଦେଇଥିଲେ । ଏହି ପରିପ୍ରେକ୍ଷୀରେ ୧୯୬୭ ସାଧାରଣ ନିର୍ବାଚନପାଇଁ ଓଡ଼ିଶାରେ କଂଗ୍ରେସକୁ ପ୍ରସ୍ତୁତ ହେବାକୁ ପଡ଼ିଲା । ରାଜ୍ୟରେ କଂଗ୍ରେସ ପକ୍ଷରୁ ନିର୍ବାଚନର ପରିଚାଳନା କାହା ଉପରେ ନ୍ୟସ୍ତ ହେବ ସେ ବିଷୟରେ ମଧ ବାଦାନୁବାଦ ହୋଇଥିଲା । ନିୟମ ଅନୁସାରେ ରାଜ୍ୟର ନିର୍ବାଚନ କମିଟିର ଚେୟାରମ୍ୟାନ୍ ପ୍ରଦେଶ କଂଗ୍ରେସ କମିଟିର ସଭାପତି ହେବା କଥା । ତାହା ହେଲେ ସୁବିଧା ହେବନାହିଁ ବୋଲି ସମସ୍ତେ ଅନୁଭବ କରିଥିଲେ । ତେଣୁ ଉକ୍ତ ନିର୍ବାଚନ କମିଟିର ଚେୟାରମ୍ୟାନ୍ ହିସାବରେ ଶ୍ରୀ ବିଜୁ ପଟ୍ଟନାୟକ ନିର୍ବାଚିତ ହୋଇଥିଲେ । କଂଗ୍ରେସ ପ୍ରାର୍ଥୀ ମନୋନୟନ ସମ୍ବନ୍ଧରେ ମଧ ଗୁରୁତର ମତଭେଦ ହୋଇଥିଲା । ପ୍ରାର୍ଥୀ ମନୋନୟନ ସମୟରେ ପର୍ଯ୍ୟବେକ୍ଷଣ ପାଇଁ ଉଚ୍ଚ କଂଗ୍ରେସ କର୍ତ୍ତୃପକ୍ଷଙ୍କ ପକ୍ଷରୁ ପଶ୍ଚିମ ବଙ୍ଗଳାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ସେନ୍ ଆସିଥିଲେ । ତାଙ୍କର ନିରପେକ୍ଷତାକୁ ସନ୍ଦେହକରି କଂଗ୍ରେସ ପାର୍ଲିଆମେଣ୍ଟାରୀ ବୋର୍ଡ଼ ପାଖରେ ଅଭିଯୋଗ କରାଯାଇଥିଲା ଏବଂ କେତେକ ସମ୍ବାଦ ମଧ ପ୍ରକାଶ କରାଯାଇଥିଲା । ମୁଖ୍ୟମନ୍ତ୍ରୀ ଓ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଶ୍ରୀ ବିଜୟ କୁମାର ପାଣି ଦିଲ୍ଲୀ ଯାଇ ଆମ ନିର୍ବାଚନ କମିଟି ତାଲିକାରେ ଅନେକ ପରିବର୍ତ୍ତନ କରାଇଥିଲେ । ଏହିପରି ବାଦାନୁବାଦ ଓ ଠେଲାପେଲା ଭିତରେ ବିଧାନସଭାର ୧୪୦ଟି ସ୍ଥାନପାଇଁ କଂଗ୍ରେସ ପ୍ରାର୍ଥୀ ତାଲିକା ଚୂଡ଼ାନ୍ତ ହୋଇଥିଲା । ଶ୍ରୀ ବିଜୁ ପଟ୍ଟନାୟକ କଟକ ଜିଲ୍ଲାର ପାଟକୁରା ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହୋଇଥିଲେ ଏବଂ ମୁଁ ମୋର ପୂର୍ବ ନିର୍ବାଚନମଣ୍ଡଳୀ ବାଲେଶ୍ୱର ଜିଲ୍ଲାର ବାସୁଦେବପୁରରୁ ପ୍ରାର୍ଥୀ ହୋଇଥିଲି । ଶ୍ରୀ ବୀରେନ୍ ମିତ୍ର କଟକ ସହରରୁ ପ୍ରାର୍ଥୀ ହୋଇଥିଲେ ।

## ବିଜୁ ପଟ୍ଟନାୟକ ଥାଉ ଥାଉ ଆଉ କିଏ ?

ଏକଥା ଏ ଲେଖକର ଉକ୍ତି ନୁହେଁ, ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର । ଏଥର ମଧ ଓଡ଼ିଶାରେ ନିର୍ବାଚନର ସମସ୍ତ ଦାୟିତ୍ୱ ଶ୍ରୀ ବିଜୁ ପଟ୍ଟନାୟକ ନିଜେ ବହନ କରିଥିଲେ । କଂଗ୍ରେସ ପକ୍ଷରୁ ନିର୍ବାଚନ

ପାଇଁ ସାଧାରଣ ପ୍ରସ୍ତୁତିଠାରୁ ଆରମ୍ଭ କରି ନିର୍ବାଚନମଣ୍ଡଳୀମାନଙ୍କରେ ପ୍ରାର୍ଥୀମାନଙ୍କର ସମସ୍ତ ଖର୍ଚ୍ଚ ଶ୍ରୀ ପଟ୍ଟନାୟକଙ୍କୁ ହିଁ ତୁଲାଇବାକୁ ପଡ଼ିଥିଲା । ମୁଁ ଭଲଭାବରେ ଜାଣେ, ବଡ଼ ବଡ଼ ଶିଳ୍ପପତିମାନଙ୍କଠାରୁ ବିଜୁବାବୁ ଚାନ୍ଦା ନେଉନଥିଲେ । ବଡ଼ ବଡ଼ ଶିଳ୍ପପତିମାନେ ମଧ୍ୟ ତାଙ୍କୁ ଈର୍ଷା କରନ୍ତି, ତେଣୁ ତାଙ୍କୁ ଅର୍ଥ ସାହାଯ୍ୟ କରିବାପାଇଁ ଆଗ୍ରହୀ ହୁଅନ୍ତିନାହିଁ । ମୁଁ ଜାଣେ, ଥରେ ଟାଟା କମ୍ପାନୀ ପଚାଶ ହଜାର ଟଙ୍କାର ଗୋଟିଏ ଚେକ୍ କଂଗ୍ରେସ ପାଣ୍ଠିପାଇଁ ବିଜୁ ପଟ୍ଟନାୟକଙ୍କ ପାଖକୁ ପଠାଇଥିଲେ । ଶ୍ରୀ ବିଜୁ ପଟ୍ଟନାୟକ ଚେକ୍‌ଟି ଚିରିଦେଇ ଫେରାଇଦେଇଥିଲେ – ମୋରି ସାମ୍ନାରେ ସେ ଏ କଥା କରିଥିଲେ । ମୁଁ ଏଥିରେ ବିରକ୍ତହୋଇଥିଲି ଏବଂ ତାଙ୍କର ବ୍ୟବହାରକୁ ପସନ୍ଦ କରିନଥିଲି । ମୁଁ ତାଙ୍କୁ କହିଥିଲି ଯେ, ତୁମେ ଟାଟା କମ୍ପାନୀଙ୍କଠାରୁ ଟଙ୍କା ନନେଇପାର, ମାତ୍ର ଚେକ୍‌ଟି ଚିରିଦେବା ତୁମ ପକ୍ଷରେ ସଂପୂର୍ଣ୍ଣ ଅନୁଚିତ । ସେ ମୋତେ ବୁଝାଇଥିଲେ ଯେ ଚେକ୍‌ଟି ଚିରି ନଦେଲେ ହୁଏତ ତାକୁ ଆଉ କେହି ବ୍ୟବହାରକରିବେ, ସେଇଥିପାଇଁ ସେ ଚିରିଦେଇଥିଲେ । ସେଥିରେ କିନ୍ତୁ ମୁଁ ସନ୍ତୁଷ୍ଟ ହୋଇ ନ ଥିଲି । ବିଜୁ ପଟ୍ଟନାୟକ କୋଟି କୋଟି ଟଙ୍କା ଆୟ କରିଛନ୍ତି ଏବଂ ସେହିପରି କୋଟି କୋଟି ଟଙ୍କା ଅକୁଣ୍ଠଭାବରେ ବ୍ୟୟ କରିଛନ୍ତି । ୧୯୬୦ ମସିହାରୁ ଆଜିପର୍ଯ୍ୟନ୍ତ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଯେତେ ନିର୍ବାଚନ ଲଢ଼ାଯାଇଛି ତାର ପ୍ରାୟ ସମସ୍ତ ଖର୍ଚ୍ଚ ସେ ନିଜେ ବହନ କରିଛନ୍ତି ଏ କଥା ମୁଁ ଭଲଭାବରେ ଜାଣେ । ଅନେକ କ୍ଷମତାଶାଳୀ ବ୍ୟକ୍ତିଙ୍କ ପରି ବିଜୁ ପଟ୍ଟନାୟକ ଅହଂକାରୀ, କ୍ରୋଧୀ ଓ ଚାଟୁପ୍ରିୟ ହୋଇପାରନ୍ତି; କିନ୍ତୁ ମୁକ୍ତହସ୍ତରେ ନିଜର ଅର୍ଥ ଦଳପାଇଁ ଓ ଅନ୍ୟମାନଙ୍କପାଇଁ ଖର୍ଚ୍ଚ କରିବା ଦିଗରେ ବିଜୁ ପଟ୍ଟନାୟକଙ୍କ ଭଳି ଦ୍ୱିତୀୟ ବ୍ୟକ୍ତି ମୁଁ ଆଉ ଦେଖିନାହିଁ କି ଜାଣିନାହିଁ । ସେଇଥିପାଇଁ ତାଙ୍କର ଅନେକ କଥାକୁ ମୁଁ ପସନ୍ଦ କରୁନଥିଲେ ମଧ୍ୟ ତାଙ୍କର ଏହି ଗୁଣକୁ ପ୍ରଶଂସା କରିଆସିଛି । ଏହି ପ୍ରକାର ଅନୁଭୂତି କେବଳ ମୋର ନୁହେଁ ଅନ୍ୟାନ୍ୟ ବନ୍ଧୁମାନଙ୍କର ମଧ୍ୟ । ଅର୍ଥପାଇଁ ବିଜୁ ପଟ୍ଟନାୟକ ରାଜନୀତି କରନ୍ତିନାହିଁ, କ୍ଷମତା ଓ ସମ୍ମାନପାଇଁ କରନ୍ତି । ଅର୍ଥ ଉପାର୍ଜନପାଇଁ ଯଦି ବିଜୁବାବୁ ରାଜନୀତି କରୁଥାନ୍ତେ ତା'ହେଲେ ଦଳପାଇଁ ସେ ନିଜ ହାତରୁ ଯେତେ ଟଙ୍କା ଖର୍ଚ୍ଚ କଲେଣି ତାକୁହିଁ ଗଚ୍ଛିତ ରଖିଥିଲେ ସେ ଭାରତବର୍ଷରେ ଆଜି ଜଣେ ବଡ଼ ବିତ୍ତଶାଳୀ ବ୍ୟକ୍ତି ହୋଇ ବସିଥାଆନ୍ତେ । ଏ କଥା ନିଃସନ୍ଦେହରେ କୁହାଯାଇପାରେ – ଦଳପାଇଁ ସେ ନିଜ ହାତରୁ କୋଟି କୋଟି ଟଙ୍କା ବ୍ୟୟ କରିଛନ୍ତି । ଖର୍ଚ୍ଚ କରିବା ଦିଗରେ ସେ ଆଦୌ ସଂକୀର୍ଣ୍ଣମନା ନୁହନ୍ତି ଏବଂ ଏ କଥା ତାଙ୍କର ଶତ୍ରୁମାନେ ମଧ୍ୟ ଅନୁଭବ କରନ୍ତି ।

୧୯୬୭ ମସିହା ନିର୍ବାଚନ ପରେ ମୁଁ ଯେତେବେଳେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଦାୟିତ୍ୱ ନେଲି ସେତେବେଳେ ଜିପ୍ ଆଣିବା ବାବଦରେ ସତର ଲକ୍ଷ ଟଙ୍କା ଓ ଅନ୍ୟାନ୍ୟ ଖର୍ଚ୍ଚ ବାବଦରେ ପାଞ୍ଚ ଲକ୍ଷ ଟଙ୍କା ବାକିପଡ଼ିଥିଲା । ନିର୍ବାଚନରେ କଂଗ୍ରେସର ବିପର୍ଯ୍ୟୟ ହେତୁ ବିଜୁ ପଟ୍ଟନାୟକ ବିମର୍ଷ ହୋଇପଡ଼ି କଲିକତାରେ ରହୁଥାଆନ୍ତି । ସେତିକିବେଳେ ସେ ମୋତେ କହିଥିଲେ ଯେ ସେପର୍ଯ୍ୟନ୍ତ କେନ୍ଦ୍ର କଂଗ୍ରେସ କମିଟି ଫଣ୍ଡରୁ ସେ କେବେ କିଛି ନେଇନଥିଲେ । ଏହି ଥରର ଦେଣା ବାଇଶି ଲକ୍ଷ ଟଙ୍କା ପରିଶୋଧ କରିବା ଦାୟିତ୍ୱ ନେବାପାଇଁ ମୁଁ ଦିଲ୍ଲୀ ଯାଇ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଓ କଂଗ୍ରେସ ସଭାପତି କାମରାଜଙ୍କୁ ଅନୁରୋଧ କରିବାପାଇଁ ସେ ମୋତେ ପରାମର୍ଶ ଦେଇଥିଲେ । ମୁଁ ଦିଲ୍ଲୀ ଯାଇ ସେ କଥା କାମରାଜଙ୍କୁ କହିଲି; କିନ୍ତୁ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ସେ କଥା ଜଣାଇବାପାଇଁ ସେ ମୋତେ କହିଲେ । ମୁଁ ଯାଇ ଶ୍ରୀମତୀ ଗାନ୍ଧୀଙ୍କୁ କହିବାରୁ ସେ ମୋ କଥାଟିକୁ ହସରେ ଉଡ଼ାଇଦେଇ ବିଜୁ ପଟ୍ଟନାୟକ ଥାଉ ଥାଉ କିଏ ସେ ଦାୟିତ୍ୱ ନେଇପାରିବ ବୋଲି କହିଥିଲେ । ତାଙ୍କର ଏହି ମନ୍ତବ୍ୟ ବିଜୁବାବୁଙ୍କୁ ଜଣାଇଦେବାକୁ ମଧ୍ୟ ସେ ମୋତେ କହିଥିଲେ । ମୁଁ ବିଜୁବାବୁଙ୍କୁ ସବୁ କହିଲା ପରେ ସେ ଅକୁଣ୍ଠଭାବରେ ବାକୀ ଥିବା ଟଙ୍କା ପରିଶୋଧ କରିଥିଲେ । ଶ୍ରୀମତୀ ଗାନ୍ଧୀଙ୍କର ଏହି ପ୍ରଶଂସା ପ୍ରସଙ୍ଗରେ ବିଜୁବାବୁଙ୍କ ସମ୍ପର୍କରେ ଅନ୍ୟ କେତେକ କଥା ମନକୁ ଆସୁଛି । ଓଡ଼ିଶାରେ ଛୋଟ ଉଡ଼ାଜାହାଜ ଓ

ହେଲିକେପ୍ଟରରେ ବୁଲି ନିର୍ବାଚନ ପ୍ରଚାର କରିବା କାର୍ଯ୍ୟ ପ୍ରଥମେ ବିଜୁ ପଟ୍ଟନାୟକ ଆରମ୍ଭ କରିଥିଲେ । ୧୯୬୭ ମସିହା ନିର୍ବାଚନ ସମୟରେ ଗୋଟିଏ ଛୋଟ ଉଡ଼ାଜାହାଜରେ ଯାଇ, ଓଡ଼ିଶାର ବହୁ ଅଞ୍ଚଳରେ ଓହ୍ଲାଇ ସେ ନିର୍ବାଚନ ସଭାମାନଙ୍କରେ ଭାଷଣ ଦେଇଥିଲେ । ମୁକ୍ତହସ୍ତରେ ଅର୍ଥ ବ୍ୟୟ କରିବାରେ ସେ ଯେଉଁଳି ଅଦ୍ୱିତୀୟ, ସାହସିକତାରେ ମଧ୍ୟ ସେହିପରି ।

ଜଣକ ମନରେ ସ୍ୱତଃ ପ୍ରଶ୍ନ ଉଠିପାରେ ଯେ ଏତେ ଟଙ୍କା ବିଜୁ ପଟ୍ଟନାୟକ ଆଣନ୍ତି କେଉଁଆଡୁ ? ତାଙ୍କର ଅର୍ଥର ଉତ୍ପତ୍ତିସ୍ଥଳ (source) ଥିଲା ତାଙ୍କର ଶିଳ୍ପ ଓ ବ୍ୟବସାୟ ପ୍ରତିଷ୍ଠାନ । ରାଜନୈତିକ କାର୍ଯ୍ୟରେ ସେହି ପ୍ରତିଷ୍ଠାନଗୁଡ଼ିକ ତାଙ୍କୁ ଅର୍ଥ ଯୋଗାଇବା ସଂସ୍ଥା ହିସାବରେ କାର୍ଯ୍ୟ କରୁଥିଲେ । ସେଗୁଡ଼ିକ ହେଲା କଳିଙ୍ଗ ଟିଉବ୍ସ, କଳିଙ୍ଗ ଇଣ୍ଡଷ୍ଟ୍ରିଜ, କଳିଙ୍ଗ ଆଇରନ୍ ୱାର୍କସ୍, କଳିଙ୍ଗ ଏୟାର ଜଏଜ୍, ବି. ପଟ୍ଟନାୟକ ମାଇନ୍ସ ଏବଂ ଓଡ଼ିଶା ଟେକ୍ସଟାଇଲ୍ସ ମିଲ୍ସ ଭଳି ସଂସ୍ଥାମାନେ । ଆମର ପ୍ରାଚୀନ ପରିଚୟ କଳିଙ୍ଗ ନାମଟି ପ୍ରତି ତାଙ୍କ ମନର ଐକାନ୍ତିକ ଆକର୍ଷଣ ଥିଲା । କଳିଙ୍ଗ ଫାଉଣ୍ଡେସନ୍ ଟ୍ରଷ୍ଟ ପ୍ରତିଷ୍ଠା କରି ସେ ଜଗତରେ କଳିଙ୍ଗ ନାମର ଟେକ ରଖିବାପାଇଁ ବହୁସମ୍ମାନିତ କଳିଙ୍ଗ ପୁରସ୍କାର ପ୍ରତିଷ୍ଠା କରିଛନ୍ତି । ୧୯୫୨ ମସିହା ନିର୍ବାଚନ ସମୟରେ କେତେଗୁଡ଼ିଏ ଜିପ୍ ଓ ଲ୍ୟାଣ୍ଡରୋଭର୍ ଗାଡ଼ି ଓଡ଼ିଶା ଟେକ୍ସଟାଇଲ୍ ମିଲ୍ସ ହିସାବରୁ କିଣାଯାଇ କଂଗ୍ରେସ ନିର୍ବାଚନ କାର୍ଯ୍ୟରେ ଲଗାଯାଇଥିବା କଥା ମୁଁ ଜାଣେ । ବିଜୁ ପଟ୍ଟନାୟକଙ୍କର ଲାଭ ଲୋକସାନ ହିସାବ ବିଦ୍ୟା ମଧ୍ୟ ଅଦ୍ଭୁତ ପ୍ରକାର । ୧୯୬୧ ମସିହା ନିର୍ବାଚନ ସମୟରେ ୧୪୦ଟି ନୂଆ ଜିପ୍ କଳିଙ୍ଗ ଟିଉବ୍ସ ଦାୟିତ୍ୱରେ ଅଣାଯାଇ ପ୍ରଦେଶ କଂଗ୍ରେସ ଜରିଆରେ କଂଗ୍ରେସ ପ୍ରାର୍ଥୀମାନଙ୍କୁ ଯୋଗାଇ ଦିଆଯାଇଥିଲା । ସେଥିରୁ କେତେ ଖଣ୍ଡ କଳିଙ୍ଗ ଟିଉବ୍ସ କିଣିଥିଲେ ଆଉ ସବୁ ଋଣସୂତ୍ରରେ ଆସିଥିଲା । ପ୍ରତ୍ୟେକ ଜିପ୍‌ପାଇଁ ମୂଲ୍ୟ ହ୍ରାସ ଓ ଭଡ଼ାବାବଦରେ ଦଶ ହଜାର ଟଙ୍କା କରି ପ୍ରଦେଶ କଂଗ୍ରେସ କମିଟିକୁ କାଗଜପତ୍ରରେ ବହନ କରିବାକୁ ପଡ଼ିଥିଲା; ପ୍ରକୃତରେ ତାକୁ ବିଜୁ ପଟ୍ଟନାୟକ ବହନ କରିଥିଲେ । କଳିଙ୍ଗ ଟିଉବ୍ସର ଲାଭ ଅଂଶରୁ ହେଉ ବା ସେ ସଂସ୍ଥାର ଅନ୍ୟ ଉପାର୍ଜନରୁ ହେଉ ସେ ତାହା ତୁଲାଇଥିଲେ । ଏହି ପ୍ରକାରେ ଶ୍ରୀ ପଟ୍ଟନାୟକଙ୍କ କର୍ତ୍ତୃତ୍ୱରେ ଥିବା ସବୁ ବ୍ୟବସାୟ ଅନୁଷ୍ଠାନ ନାନା ଉପାୟ ଅବଲମ୍ବନ କରି ଶ୍ରୀ ପଟ୍ଟନାୟକଙ୍କ ଇଙ୍ଗିତରେ କଂଗ୍ରେସକୁ ସାହାଯ୍ୟ କରୁଥିଲେ । ୧୯୬୧ ମସିହାରେ ଯେଉଁସବୁ ଜିପ୍ ଜିଲ୍ଲା କଂଗ୍ରେସ କମିଟିମାନଙ୍କୁ ଯୋଗାଇଦିଆଯାଇଥିଲା ସେଥିରୁ ପ୍ରାୟ ଦଶ ବାରଟି ଆଉ ଫେରିଲାନାହିଁ । ସେ ଜିପ୍ ବର୍ତ୍ତମାନ ସୁଦ୍ଧା କଂଗ୍ରେସ କମିଟି ପାଖରେ କିମ୍ବା ବ୍ୟକ୍ତିବିଶେଷଙ୍କ ପାଖରେ ରହିଛି । ସେମାନଙ୍କ ଭିତରୁ ହୁଏତ କେହି କେହି ତାଙ୍କର ବିରୋଧୀ ପକ୍ଷକୁ ଯାଇଛନ୍ତି — କିନ୍ତୁ ଗାଡ଼ି ଫେରାଇନାହାନ୍ତି ।

ପାରାଦୀପ ବନ୍ଦର ସଂସ୍ଥା କଳିଙ୍ଗ ଇଣ୍ଡଷ୍ଟ୍ରୀରୁ ବହୁ ଟ୍ୟୁବ୍‌ଲାର ଟ୍ରସ୍ କିଣିଥିବା ବିଷୟରେ ଅଭିଯୋଗ ହୋଇଥିଲା । କଳିଙ୍ଗ ଟିଉବ୍ସ ଲିମିଟେଡ୍‌ରୁ ଓଡ଼ିଶା ସରକାର ଓ ପାରାଦୀପ ବନ୍ଦର ବହୁ ପରିମାଣରେ ପାଇପ୍ କିଣିବା ବିଷୟରେ ମଧ୍ୟ ଅଭିଯୋଗ ହୋଇଥିଲା । କିଣାବିକା କଥା ସତ । ଏହି ଦୁଇଟିଯାକ ଅନୁଷ୍ଠାନ ଓଡ଼ିଶା ରାଜ୍ୟରେ ଅବସ୍ଥିତ ଏବଂ ଓଡ଼ିଶାର ଶ୍ରମିକଙ୍କ ଭାତହାଣ୍ଡିପରି, ତେଣୁ ସେଠାରୁ କିଣିବା ଅନ୍ୟାୟ ନୁହେଁ । ତଥାପି ସରକାର ବା ପାରାଦୀପ ବନ୍ଦରକୁ ଅଧିକ ଦାମ୍ ଯେ ଦେବାକୁ ପଡ଼ିଥିଲା ତା ନୁହେଁ; ବରଂ ଅନ୍ୟମାନଙ୍କ ମାଲ୍ ତୁଳନାରେ ଦାମ୍ କମ୍ ପଡ଼ିଥିଲା ବୋଲି ଖାନା କମିଶନ ଅନୁସନ୍ଧାନ କରି କହିଛନ୍ତି । ଅଳ୍ପ ଲାଭାଂଶ ରଖି ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ନିରବଚ୍ଛିନ୍ନ ଭାବରେ ଅଧିକ ଉତ୍ପାଦନ ଓ ବିକ୍ରୟ (turnover) କରିବା ହେଲା ଅଧିକ ଉପାର୍ଜନର ପ୍ରକୃଷ୍ଟ ପନ୍ଥା । ଏହି ପ୍ରକାର ପ୍ରତିଯୋଗିତା ସବୁ ଶିଳ୍ପପତି ଓ ବ୍ୟବସାୟୀ କରନ୍ତି; ମାତ୍ର ପାର୍ଥକ୍ୟ ଏତିକି ଯେ, ଅନ୍ୟମାନେ ସେହି ଲାଭକୁ ନିଜେ ରଖନ୍ତି, କିନ୍ତୁ ବିଜୁ ପଟ୍ଟନାୟକ ରାଜନୈତିକ କାର୍ଯ୍ୟରେ ଖର୍ଚ୍ଚ କରନ୍ତି । କଳିଙ୍ଗ ଟିଉବ୍ସ ଲିମିଟେଡ୍ ବିଜୁ ପଟ୍ଟନାୟକଙ୍କ ରାଜନୈତିକ କାର୍ଯ୍ୟରେ ବିଶେଷଭାବରେ ସହାୟକ ହେଉଥିଲା ।

ଏହିସବୁ କାରଣରୁ ହେଉ ବା ଅନ୍ୟ କୌଣସି କାରଣରୁ ହେଉ, କଳିଙ୍ଗ ଟିଉବ୍‌ସ କମ୍ପାନୀର ଅବସ୍ଥା ଖରାପ ହେବାରୁ ସେ ତାକୁ ବିକ୍ରି କରିଦେଇଛନ୍ତି । କଳିଙ୍ଗ ଟିଉବ୍‌ସ ତାଙ୍କ ହାତରୁ ଚାଲିଯିବା ପରେ ଅର୍ଥ ଆୟୋଜନରେ ସେ ଅସୁବିଧା ଭୋଗ କରୁଛନ୍ତି ବୋଲି ମୁଁ ଅନୁଭବ କରୁଛି । ଅତୀତରେ କଳିଙ୍ଗ ଟିଉବ୍‌ସ ଆୟରୁ ବହୁ ରାଜନୈତିକ ଓ ସାମାଜିକ କାର୍ଯ୍ୟପାଇଁ ବିପୁଳ ଅର୍ଥ ବ୍ୟୟ ହୋଇଥିଲା । ତେଣୁ ସେହି ସଂସ୍ଥା ପ୍ରତି ଅନେକ ରାଜନୈତିକ ବ୍ୟକ୍ତିଙ୍କର ଶୁଭେଚ୍ଛା ଥିଲା ଏବଂ ସେହି କାରଣରୁ ମୁଁ ଚାହୁଁ ନଥିଲି ଯେ ବିଜୁବାବୁ କଳିଙ୍ଗ ଟିଉବ୍‌ସ କାରଖାନାଟି ବିକି ଦିଅନ୍ତୁ । ମୁଁ ମୁଖ୍ୟମନ୍ତ୍ରୀ ଥିଲାବେଳେ କମ୍ପାନୀର ଆର୍ଥିକ ଅବସ୍ଥା ସୁଧାରିବା ଦିଗରେ ସାହାଯ୍ୟ କରିବାପାଇଁ ରାଜ୍ୟସରକାର ବ୍ୟାଙ୍କଠାରେ ଛଅକୋଟି ଟଙ୍କାର ଗ୍ୟାରେଣ୍ଟି ଦେବାପାଇଁ ନିଷ୍ପତ୍ତି ନେଇଥିଲେ । ମାତ୍ର ବିଜୁ ପଟ୍ଟନାୟକ ଶେଷରେ ସେହି ପ୍ରସ୍ତାବ ଗ୍ରହଣ କରିନଥିଲେ । ବିଜୁ ପଟ୍ଟନାୟକଙ୍କର ଖର୍ଚ୍ଚର ପ୍ରଣାଳୀ ଓ ସାହାଯ୍ୟ ଦେବାର ଢଙ୍ଗ ମଧ୍ୟ ଅଦ୍ଭୁତ । ନିର୍ବାଚନରେ ନିଜେ ପ୍ରାର୍ଥୀ ମନେ ମନେ ଯେତେ ଖର୍ଚ୍ଚର ଅଟକଳ କରିଥିବେ, ବିଜୁ ପଟ୍ଟନାୟକ ତାହାଠାରୁ ଅଧିକ ଅଟକଳ କରିପକାଇବେ ଏବଂ ତା ମଧ୍ୟ ବହନ କରିବେ । ତାଙ୍କର ଗୋଟିଏ ଦୋଷ ଯେ ଟଙ୍କା ଦେଲାବେଳେ ସେ ଅନ୍ୟର ଆତ୍ମସମ୍ମାନ ପ୍ରତି ଦୃଷ୍ଟି ରଖନ୍ତିନାହିଁ, ସେଥିପାଇଁ ନେବା ଲୋକକୁ ଅନ୍ୟମାନଙ୍କ ଆଗରେ ଅନଭିପ୍ରେତ ଭାବରେ ନ୍ୟୁନ କରିପକାନ୍ତି । କେନ୍ଦ୍ରରେ ସ୍ୱରାଷ୍ଟ୍ରମନ୍ତ୍ରୀ ହେବା ପୂର୍ବରୁ ଥରେ ଶ୍ରୀ ଉମାଶଙ୍କର ଦୀକ୍ଷିତ ପଣ୍ଡିତ ନେହେରୁଙ୍କଠାରୁ ପରିଚୟପତ୍ର ଧରି National Herald କାଗଜପାଇଁ ଅର୍ଥ ସଂଗ୍ରହ ଉଦ୍ଦେଶ୍ୟରେ ବିଜୁ ପଟ୍ଟନାୟକଙ୍କ ପାଖକୁ ଆସିଥିଲେ । ବିଜୁ ପଟ୍ଟନାୟକ କୁଆଡ଼େ ମୋଟା ପରିମାଣ ଟଙ୍କାର ଗୋଟିଏ ଚେକ୍ କାଟି ବାମ ହାତରେ ତାଙ୍କ ପାଖକୁ ଫିଙ୍ଗିଦେଇଥିଲେ ଏବଂ ନେଲାବେଳେ କୁଆଡ଼େ ଶ୍ରୀ ଦୀକ୍ଷିତଙ୍କ ମୁହଁଟି ଫିକାପଡ଼ିଯାଇଥିଲା । ଚେକ୍‌ଟି କୁଆଡ଼େ ପଚାଶ ହଜାର ଟଙ୍କାର ଥିଲା ବୋଲି ମୁଁ ଶୁଣିବାକୁ ପାଇଥିଲି; ମାତ୍ର ଯେଉଁ ଢଙ୍ଗରେ ଚେକ୍‌ଟି ତାଙ୍କୁ ଦିଆଯାଇଥିଲା ସେଥିରେ ସେ ଅସୁଖୀ ହେବା କଥା ମୁଁ ଜାଣିବାକୁ ପାଇଥିଲି । ୧୯୭୩, ୧୯୭୪ ଓ ୧୯୭୫ ମସିହାରେ ବହୁବାର ତାଙ୍କର ଉଦ୍ୟାନମାର୍ଗ ପାର୍ଟି ଅଫିସ୍‌ରେ ବିଡ଼ା ବିଡ଼ା ଶହେଟଙ୍କିଆ ନୋଟ୍ ଆମ୍ଭମାନଙ୍କ ଆଗରେ ଶ୍ରୀ ମହତାବଙ୍କୁ ବାମ ହାତରେ ବିଜୁବାବୁ ବଢ଼ାଇଦେବାର ଓ ଶ୍ରୀ ମହତାବ ମୁହଁକୁ ଫିକାକରି ତାହା ନେବାର ମୁଁ ଦେଖିଛି । ସେସବୁ ଟଙ୍କା ସେ କୁଆଡ଼େ ପ୍ରଜାତନ୍ତ୍ରପାଇଁ ଦେଉଥିଲେ । ଦାନ ଯେତେ କ୍ଷୁଦ୍ର ବା ଅଧିକ ହେଲେ ମଧ୍ୟ ଏଭଳି ପ୍ରକାଶ୍ୟ ଆଚରଣକୁ ମୁଁ ପସନ୍ଦ କରେନାହିଁ । କାହାକୁ ଦଶଟି ଟଙ୍କା ଦେଲେ ମଧ୍ୟ ଅନ୍ୟମାନଙ୍କ ଅଗୋଚରରେ ଦେବାକୁ ମୁଁ ପସନ୍ଦ କରେ । ବିଜୁ ପଟ୍ଟନାୟକ ଯେପରି ଭାବରେ ଟଙ୍କା ଖର୍ଚ୍ଚକରନ୍ତି ସେଥିରୁ ଜଣାଯାଏ ଯେ ଟଙ୍କାପ୍ରତି ତାଙ୍କର ମୋହ ନଥାଏ । ବେଳେବେଳେ ଖର୍ଚ୍ଚ କରିବାରେ ସେ ଆତ୍ମସନ୍ତୋଷ ଲାଭ କରିଥାଆନ୍ତି । ୧୯୭୫ ମସିହା ଏପ୍ରିଲ୍ ପହିଲା ଦିନ ଲୋକନାୟକ ଜୟପ୍ରକାଶ ନାରାୟଣ ଭୁବନେଶ୍ୱରରେ ଥିଲେ । ତାଙ୍କର ହଠାତ୍ କଲିକତା ଯିବାକୁ ପଡ଼ିଲା । ରାଜ୍ୟ ସରକାରଙ୍କର ଉଡ଼ାଜାହାଜ ଭଡ଼ାରେ ମିଳିଲାନାହିଁ । ବିଜୁବାବୁଙ୍କ ନିର୍ଦ୍ଦେଶରେ ଦୁଇ ଘଣ୍ଟା ଭିତରେ ତାଙ୍କ କଳିଙ୍ଗ ଏୟାର ଓଏକ୍ ଉଦ୍ୟମରେ କଲିକତାରୁ ଗୋଟିଏ ବଡ଼ ଉଡ଼ାଜାହାଜ (ଫକର୍ ଫ୍ରେଣ୍ଡସିପ୍) ଆସି ଭୁବନେଶ୍ୱରରେ ପହଞ୍ଚିଥିଲା । ବିଜୁ ପଟ୍ଟନାୟକଙ୍କୁ ପନ୍ଦର ହଜାର ଟଙ୍କା ଖର୍ଚ୍ଚ ବହନ କରିବାକୁ ପଡ଼ିଥିଲା ।

## ଦୁଃସାହସୀ ବିଜୁବାବୁ

ଜଣେ ପାଇଲଟ୍ ହିସାବରେ ବିଜୁ ପଟ୍ଟନାୟକଙ୍କ ସାହସ ସମ୍ବନ୍ଧରେ ବହୁତ ଗଳ୍ପ ଶୁଣିବାକୁ ମିଳେ । ଗୋଟିଏ ଐତିହାସିକ ଓ ରୋମାଞ୍ଚକାରୀ ଗଳ୍ପ ହେଉଛି, ୧୯୪୬ ଠାରୁ ୧୯୪୯ ମସିହା ମଧ୍ୟରେ ଡଚ୍‌ମାନଙ୍କ ବିରୁଦ୍ଧରେ ଇଣ୍ଡୋନେସିଆର ସଶସ୍ତ୍ର ମୁକ୍ତିସଂଗ୍ରାମ ସମୟରେ ସେଠାକାର କେତେକ ବିପ୍ଳବୀ ନେତାଙ୍କୁ ଡଚ୍ ସୈନ୍ୟମାନେ ଘେରିରହିଥିବାବେଳେ ବିଜୁ ପଟ୍ଟନାୟକ ନିଜ ଉଡ଼ାଜାହାଜରେ

ସେମାନଙ୍କୁ ଧରି ଖସି ପଳାଇଆସିବା ଏକ ଦୁଃସାହସର କଥା । ଡକ୍ଟର ହାଟା ଓ ଡକ୍ଟର ସେରିୟାର ପ୍ରଭୃତି ନେତାମାନଙ୍କ ସହିତ ସେମାନଙ୍କ ମୁକ୍ତିସଂଗ୍ରାମ ସମୟରେ ବିଜୁ ପଟ୍ଟନାୟକ ସଂପର୍କ ରଖୁଥିଲେ । ଆମ ଦେଶ ସେତେବେଳକୁ ସ୍ୱାଧୀନ ହେଲାଣି । ପଣ୍ଡିତ ନେହେରୁ ଇଣ୍ଡୋନେସିଆର ନେତାମାନଙ୍କୁ ସେମାନଙ୍କର ସଂଗ୍ରାମରେ ସାହାଯ୍ୟ କରିବାକୁ ଇଚ୍ଛୁକ ଥିଲେ । ତେଣୁ ବିଜୁ ପଟ୍ଟନାୟକଙ୍କୁ ନେହେରୁ ଇଣ୍ଡୋନେସିଆ ପଠାଇଥିଲେ । କଳିଙ୍ଗ ଏୟାର ଉଏଜ୍‌ର ଗୋଟିଏ ବିମାନ ଧରି ବିଜୁ ପଟ୍ଟନାୟକ ଇଣ୍ଡୋନେସିଆର ଗୋଟିଏ କାମଚଳା ବିମାନ ଅବତରଣ ଘାଟିରେ ଓହ୍ଲାଇଥିଲେ ଓ ଜଣେ ଭାରତୀୟ ବ୍ୟବସାୟୀ ହିସାବରେ ପରିଚୟପତ୍ର ଦେଖାଇଥିଲେ । ସେଠାରେ ସେ ଇଣ୍ଡୋନେସିଆର ନେତାମାନଙ୍କ ସହ ସଂପର୍କ ସ୍ଥାପନ କରିଥିଲେ । ଡଚ୍ ପୁଲିସଙ୍କଦ୍ୱାରା ଗିରଫଦାରୀକୁ ଏଡ଼ାଇବାପାଇଁ ଇଣ୍ଡୋନେସିଆ ମୁକ୍ତିସଂଗ୍ରାମ ଆତ୍ମଗୋପନକାରୀ ନେତାମାନେ ଲୁଚି ଛପି ଆନ୍ଦୋଳନ ଚଳାଇଥିଲେ । ସେମାନଙ୍କ ଭିତରୁ କେତେଜଣଙ୍କୁ ଡଚ୍ କବଳରୁ ରକ୍ଷା କରିବାପାଇଁ ସ୍ଥାନାନ୍ତରିତ କରି କୌଣସି ଗୋଟିଏ ନିରାପଦ ସ୍ଥାନକୁ ନେବା ଦରକାର ପଡ଼ିଲା । ଭାରତକୁ ଆସିଲେ ନିରାପଦରେ ରହିବା ସଙ୍ଗେ ସଙ୍ଗେ ପଣ୍ଡିତ ନେହେରୁଙ୍କ ସହିତ ପରାମର୍ଶ ମଧ୍ୟ ହୋଇପାରିବ, ତେଣୁ ଭାରତକୁ ଆସିବା କଥା ସେମାନେ ସ୍ଥିର କରିଥିଲେ । କିନ୍ତୁ କିପରି ସେଠାରୁ ଆସିବେ ତାହାହିଁ ଥିଲା ପ୍ରଶ୍ନ । ସେତେବେଳେ ଇଣ୍ଡୋନେସିଆର ସମଗ୍ର ଆକାଶମାର୍ଗ ଡଚ୍ ସୈନ୍ୟମାନଙ୍କର ତତ୍ତ୍ୱାବଧାନରେ ଥାଏ । ଦିନ ବାରଟା ବାଜିଗଲେ ତେଣିକି ବିଳାସୀ ମିଜାଜ୍ ନେଇ ଗାଧୁଆ ପାଧୁଆ କରି ଆରାମ କରିବା ହେଉଛି ଡଚ୍‌ମାନଙ୍କର ଜାତୀୟ ଅଭ୍ୟାସ । ଦିନେ ଠିକ୍ ସେହି ସମୟରେ ଡଚ୍ ସୈନ୍ୟମାନେ ଆରାମ କରୁଥା'ନ୍ତି, ସେତିକିବେଳେ ଡକ୍ଟର ସେରିୟାର ଓ ଆଉ କେତେକ ବିପ୍ଳବୀ ନେତାଙ୍କୁ ପାଇଲଟ ବିଜୁ ପଟ୍ଟନାୟକ ନିଜ ଉଡ଼ାଜାହାଜରେ ବସାଇ ଚମ୍ପଟ ମାରି ଭାରତକୁ ପଳାଇଆସିଥିଲେ । ଇଣ୍ଡୋନେସିଆର ଆଉ ଜଣେ ବିପ୍ଳବୀ ନେତା ଡକ୍ଟର ହାଟାଙ୍କୁ ମଧ୍ୟ ବିଜୁ ପଟ୍ଟନାୟକ ସେହିପରି ଭାବରେ ସେଠାରୁ ନେଇଆସିଥିଲେ । ଏ ପ୍ରକାର ଦୁଃସାହସ ପ୍ରକୃତରେ ବିରଳ । ଡଚ୍ ସୈନ୍ୟମାନଙ୍କଦ୍ୱାରା ଧରାପଡ଼ିଥିଲେ ସମସ୍ତଙ୍କର ଅବସ୍ଥା କ'ଣ ହୋଇଥା'ନ୍ତା ତାହା ଅନୁମାନ କରାଯାଇପାରେ । ଏ ବିଷୟରେ ଲେଫଟ୍‌ନାଣ୍ଟ ଜେନେରାଲ୍ ବି.ଏସ.କାଉଲ୍ ତାଙ୍କ ପୁସ୍ତକ The Untold Storyରେ ଲେଖିଛନ୍ତି, "Biju Pattanaik, whom I had known for many years, and who had not yet become the Chief Minister of Orissa, came to see me in my office one day. He was once an ace pilot and had carried out some daring escapades in Indonesia during that country's struggle for independence and rescued some of its popular leaders". ଇଣ୍ଡୋନେସିଆ ସ୍ୱାଧୀନ ହେବା ପରେ ସେଠାକାର ସରକାର ବିଜୁ ପଟ୍ଟନାୟକଙ୍କ ଅବଦାନ ପାଇଁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଛି । ତାଙ୍କ ବିମାନର ଓ ତାଙ୍କ ନିଜର ଛବି ଥାଇ ସ୍ୱତନ୍ତ୍ର ଡାକଟିକଟ ମଧ୍ୟ ପ୍ରଚଳନ କରିଛନ୍ତି । ଜାଭା, ସୁମାତ୍ରା, ବାଲି ପ୍ରଭୃତି ଦ୍ୱୀପପୁଞ୍ଜକୁ ନେଇ ଗଠିତ ଇଣ୍ଡୋନେସିଆ ସହିତ କଳିଙ୍ଗ ସଂସ୍କୃତିର ଅତି ପ୍ରାଚୀନ ସଂପର୍କର ପରିପ୍ରେକ୍ଷୀରେ ଓଡ଼ିଶାବାସୀଙ୍କ ପକ୍ଷରେ ଏହା କମ୍ ଗୌରବର କଥା ନୁହେଁ ।

ବିଜୁ ପଟ୍ଟନାୟକ ଜଣେ ସ୍ୱାଭାବିକ ବିଦ୍ରୋହୀ ଚରିତ୍ରର ବ୍ୟକ୍ତିଭଳି ମନେହୁଅନ୍ତି । ଯେଉଁଠାରେ ରାଜଶକ୍ତି ବିରୁଦ୍ଧରେ ବିଦ୍ରୋହ ଦେଖାଦିଏ ତାହା ସହିତ ଜଡ଼ିତ ହେବାକୁ ସେ ଆଗ୍ରହୀ ହେଉଥିଲେ ଏବଂ ସେଥିରେ ସଙ୍କଟାପନ୍ନ ହେବାର ସାହସ ତାଙ୍କର ଥିଲା । ସେଥିପାଇଁ ପଣ୍ଡିତ ନେହେରୁ ବିଜୁ ପଟ୍ଟନାୟକଙ୍କୁ କେତେକ ବିପଦସଙ୍କୁଳ, ଦୁଃସାହସିକ କାର୍ଯ୍ୟର ଭାର ଦେଉଥିଲେ । ଯେପରି ଇଣ୍ଡୋନେସିଆ ମୁକ୍ତିସଂଗ୍ରାମର ନେତାମାନଙ୍କ ସହିତ ତାଙ୍କର ଯୋଗସୂତ୍ର ଥିଲା, ସେହିପରି ନେପାଳର ବିପ୍ଳବୀ ନେତା ସ୍ୱର୍ଗୀୟ ବି.ପି. କୋଇରାଲାଙ୍କ ନେତୃତ୍ୱରେ ନେପାଳର ରାଜଶକ୍ତି ବିରୁଦ୍ଧରେ ୧୯୫୦ ମସିହାର ସଶସ୍ତ୍ର ବିଦ୍ରୋହ ସହିତ ଶ୍ରୀ ନେହେରୁଙ୍କ ଜ୍ଞାତସାରରେ ବିଜୁ ପଟ୍ଟନାୟକ ସଂପର୍କ ରଖିଥିଲେ । ବିଜୁ ପଟ୍ଟନାୟକ

ଓ ଶ୍ରୀ ରଫି ଅହମଦ କିଦ୍‌ୱାଇ ଗୁପ୍ତ ପରାମର୍ଶ କରି ନେପାଳୀ ବିଦ୍ରୋହୀମାନଙ୍କୁ ଅସ୍ତ୍ରଶସ୍ତ୍ର ଯୋଗାଇବାର ବ୍ୟବସ୍ଥା କରିଥିଲେ । ଥରେ ସେ ନିଜେ ଗୋଟିଏ ବିମାନ ଚଳାଇନେଇ ବନ୍ଧୁକ ଓ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ରର ପୁଟୁଳିସବୁ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଜଙ୍ଗଲରେ ବିଦ୍ରୋହୀମାନଙ୍କ ପାଖରେ କିପରି ପକାଇଥିଲେ, ସେସବୁ କଥା ସେତେବେଳେ ବିଜୁବାବୁ ଆମ ପାଖରେ ବର୍ଣ୍ଣନା କରୁଥିବା କଥା ମୋର ମନେଅଛି । ମୁଁ ମୁଖ୍ୟମନ୍ତ୍ରୀ ଥିଲାବେଳେ ଥରେ ଦିଲ୍ଲୀରେ ବିଜୁ ପଟ୍ଟନାୟକଙ୍କ ବାସଭବନରେ ଶ୍ରୀ ବି. ପି. କୋଇରାଲାଙ୍କ ସହିତ ମୋର ଦେଖାହୋଇଥିଲା । ଅତୀତରେ ନେପାଳ ରାଜଶକ୍ତି ବିରୁଦ୍ଧରେ ସେମାନେ ସଶସ୍ତ୍ର ବିପ୍ଳବ କଲାବେଳେ ବିଜୁ ପଟ୍ଟନାୟକ କିପରି ସାହସର ସହିତ ସେମାନଙ୍କୁ ସାହାଯ୍ୟ କରୁଥିଲେ ସେକଥା ଶ୍ରୀ କୋଇରାଲା ମୋତେ କହିଥିଲେ । ନେପାଳୀ ବିଦ୍ରୋହୀମାନଙ୍କୁ ସେତେବେଳେ ଏହିପରିଭାବରେ ଦଶ ହଜାର ବନ୍ଧୁକ ଯୋଗାଇଦିଆଯାଇଥିଲା । କୋଇରାଲାଙ୍କର ପୂର୍ବପରି ସଂଗ୍ରାମ କରିବାର ଯୋଜନା ଥିଲେ, ତାଙ୍କପାଇଁ ସେହିପରି ସରଞ୍ଜାମ ଯୋଗାଡ଼ କରାଯାଇପାରିବ ବୋଲି ବିଜୁ ପଟ୍ଟନାୟକ ସେଠାରେ ମନ୍ତବ୍ୟ କରିଥିଲେ । ସେ କଥାରେ ଶ୍ରୀ କୋଇରାଲା ନୀରବ ରହିଥିଲେ । ବିଜୁ ପଟ୍ଟନାୟକ ସେତେବେଳେ କେନ୍ଦ୍ରରେ ଜଣେ ମନ୍ତ୍ରୀ ଥିଲେ ।

## ୧୯୬୭ର ବିପର୍ଯ୍ୟୟ : ଦକ୍ଷିଣପନ୍ଥୀଙ୍କ ମଉକା

୧୯୬୭ ସାଧାରଣ ନିର୍ବାଚନ ମୋଟାମୋଟି ସାରା ଭାରତରେ କଂଗ୍ରେସ କପାଳରେ ବିରାଟ ବିପର୍ଯ୍ୟୟର ଆଲେଖ୍ୟ ଲେଖିଦେଇଥିଲା । ବହୁ ରାଜ୍ୟରେ କଂଗ୍ରେସ ଦାରୁଣ ପରାଜୟ ଭୋଗିବା ପରେ ଅଣକଂଗ୍ରେସ ସରକାରମାନ ଗଢ଼ାଯାଇଥିଲା; କିନ୍ତୁ ନିର୍ବାଚନ ପୂର୍ବରୁ ଓଡ଼ିଶା କଂଗ୍ରେସ ନେତାମାନଙ୍କ ବିରୁଦ୍ଧରେ ତୁହାଇ ତୁହାଇ ଯେଉଁ ଦୁର୍ନୀତିର ଦୁଆ ଉଠିଥିଲା, ସେଥିପାଇଁ ଓଡ଼ିଶାରେ କଂଗ୍ରେସକୁ ବିଶେଷ କ୍ଷତି ସହିବାକୁ ପଡ଼ିଥିଲା ଏବଂ ଓଡ଼ିଶା କଥାଟା ବେଶି ଆଖିରେ ପଡ଼ିଲା । ଏହି ନିର୍ବାଚନରେ ବିଭିନ୍ନ ରାଜ୍ୟରେ ଦକ୍ଷିଣପନ୍ଥୀ ଦଳମାନଙ୍କର କେବଳ ପ୍ରଭାବ ବଢ଼ିନଥିଲା, ଅଣକଂଗ୍ରେସ ଦୁଆର ସଂପୂର୍ଣ୍ଣ ଫାଇଦା ନେଇପାରିଥିଲେ ସେହିମାନେ । ଏପରିକି କେତେକ ରାଜ୍ୟରେ ନିଜକୁ ବାମପନ୍ଥୀ ବୋଲାଉଥିବା କମ୍ୟୁନିଷ୍ଟ ଓ ସୋସାଲିଷ୍ଟମାନେ ମଧ୍ୟ ଜନସଂଘ ଭଳି ସାଂପ୍ରଦାୟିକ ଓ ପୁଞ୍ଜିବାଦୀ ଦଳମାନଙ୍କ ସହିତ ହାତ ମିଳାଇ ସଂଯୁକ୍ତ ବିଧାୟକ ଦଳ ଗଢ଼ିବାର ମଉକା ନେଇଥିଲେ । ଏହାଫଳରେ ଭାରତବର୍ଷରେ ଲୋକଙ୍କ ପ୍ରଗତିଶୀଳ ରାଜନୈତିକ ଚେତନା ପ୍ରତିହତ ହୋଇଥିଲା ଏବଂ ଲୋକଚକ୍ଷୁରେ ଗଣତାନ୍ତ୍ରିକ ଓ ସମାଜବାଦୀ ଜନମତ ଅସ୍ପଷ୍ଟ ହୋଇଯାଇଥିଲା । କଂଗ୍ରେସର କ୍ଷତି ହେଲା ସତ, ପ୍ରକୃତରେ ଦେଶରେ ସମାଜବାଦୀ ଓ ଗଣତାନ୍ତ୍ରିକ ଅଗ୍ରଗତି ବ୍ୟାହତହେଲା ।

ଏଥିପୂର୍ବରୁ କ୍ଷମତା ଲୋଭରେ ଥରେ କଂଗ୍ରେସ ଓଡ଼ିଶାରେ ଗଣତନ୍ତ୍ର ପରିଷଦ ସହିତ ମିଳିତ ମନ୍ତ୍ରିମଣ୍ଡଳ ଗଢ଼ି ଏହିଭଳି ଦୁର୍ଗତିର ସମ୍ମୁଖୀନ ହୋଇଥିଲା । ୧୯୬୭ ମସିହା ନିର୍ବାଚନ ପୂର୍ବରୁ ଓଡ଼ିଶା କଂଗ୍ରେସର ମର୍ଯ୍ୟାଦା ନାନା ଦୃଷ୍ଟିରୁ ଏକାବେଳକେ ତଳକୁ ଖସିଯାଇଥାଏ । କେତେକ କଂଗ୍ରେସଲୋକ ପୂର୍ବରୁ କଂଗ୍ରେସରୁ ଅଲଗା ହୋଇଯାଇ ଜନକଂଗ୍ରେସ ନାମରେ ଆଉ ଗୋଟିଏ ଦଳ ଗଢ଼ିଥାଆନ୍ତି । ଆଉ କେତେକ ବ୍ୟକ୍ତି କଂଗ୍ରେସ ଭିତରେ ଥିଲେ ମଧ୍ୟ ଯେ ପ୍ରକାର ବିବାଦର ସୂତ୍ରପାତ କରିଥା'ନ୍ତି ସେ କଥା ଆଗରୁ କୁହାଯାଇଛି । ସେମାନେ ନିର୍ବାଚନ ଦାୟିତ୍ୱ ନେବାକୁ ସାହସ କରୁନଥିଲେ; ମାତ୍ର ଯେଉଁମାନେ ଦାୟିତ୍ୱ ନେବାକୁ ପ୍ରସ୍ତୁତ ସେମାନଙ୍କର ଦୁର୍ନାମ ରଟାଇବାରେ ଲିପ୍ତ ଥିଲେ । ନିର୍ବାଚନ ପୂର୍ବରୁ ପ୍ରାୟ ତିନି ବର୍ଷକାଳ ଧାରାବାହିକ ଭାବରେ ଓଡ଼ିଶା କଂଗ୍ରେସ ନେତାମାନଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗ ଓ କୁତ୍ସାରଟନାଦ୍ୱାରା ଲୋକଚକ୍ଷୁରେ କଂଗ୍ରେସ ଦୁର୍ବଳ ଓ ହୀନ ହୋଇପଡ଼ିଥାଏ । ତାହାଛଡ଼ା କଂଗ୍ରେସ ବିରୁଦ୍ଧରେ ଲଢ଼ିବାପାଇଁ କିମ୍ଭୂତକିମାକାର ଲୋକଙ୍କର ମିଳନ ହେବାର ଦେଖାଯାଇଥିଲା । ନିଜକୁ ଗାଦିଚ୍ୟୁତ କରିଥିବା ନେତାମାନଙ୍କର କୌଣସିମତେ ପତନ ଘଟାଇ ନିଜେ

ଗାଦିନସୀନ ହୋଇ ତାଙ୍କର ଗ୍ରାମ୍ୟ ପ୍ରତିହିଂସାପରାୟଣ ହୃଦୟକୁ ଶାନ୍ତ କରିବା ଉଦ୍ଦେଶ୍ୟରେ ଶ୍ରୀ ମହତାବ ଆଗରୁ ପାଗ ବାନ୍ଧି କଂଗ୍ରେସ ବିରୁଦ୍ଧରେ ଖଡ୍‌ଗ ଉତ୍ତୋଳନ କରିଥିଲେ । ଶ୍ରୀ ରାଧାନାଥ ରଥ ଦେଶରୁ ଅପବ୍ୟୟ, ଅନାଚାର ଓ ଅସଙ୍ଗତ କାର୍ଯ୍ୟ ନିର୍ମୂଳ କରିବା ଆଶାରେ 'ସମାଜ' ଖବରକାଗଜକୁ ସର୍ବତୋଭାବେ ରାଜ୍ୟ କଂଗ୍ରେସ ବିରୁଦ୍ଧରେ ବ୍ୟବହାର କରିବାକୁ କୁଣ୍ଠିତ ହୋଇନଥିଲେ । ସର୍ବୋଦୟନେତା ଶ୍ରୀ ନବକୃଷ୍ଣ ଚୌଧୁରୀ ପୂର୍ବ ଗଞ୍ଜଣା ଓ ତାଡ଼ନାକୁ ପୋଛିପକାଇ ଦେଶରୁ କଂଗ୍ରେସର 'କୁଶାସନକୁ' ଟାଉଆରେ ପିଠା ଓଲଟାଇଲା ଭଳି ଓଲଟାଇଦେବାପାଇଁ ଶ୍ରୀ ମହତାବଙ୍କ ଭଳି ବିରୋଧୀ ଲୋକଙ୍କ ସହିତ ସ୍ୱର ମିଳାଇବାକୁ ବାହାରିପଡ଼ିଥିଲେ । ପ୍ରଜାସମାଜବାଦୀ ଦଳକୁ ମଧ୍ୟ ଅପୂର୍ବ ସୁଯୋଗ ମିଳିଥିଲା । ସେମାନଙ୍କର ନେତା ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ କେବଳ ଶ୍ରୀ ବିଜୁ ପଟ୍ଟନାୟକଙ୍କର କୁତ୍ସାରଟନା କରି କରି ଠିକ୍ ସେତିକିବେଳକୁ ଜଣେ ସର୍ବଭାରତୀୟ ନେତା ହୋଇଥାଆନ୍ତି । ଏହିପ୍ରକାର ଅର୍ଜିତ ଖ୍ୟାତିକୁ ଶ୍ରୀ ଦ୍ୱିବେଦୀ କଂଗ୍ରେସ ବିରୁଦ୍ଧରେ ବ୍ୟବହାର କରିବାର ସୁଯୋଗ ଏହି ନିର୍ବାଚନରେ ପାଇଥାଆନ୍ତି । ସର୍ବଭାରତୀୟ କ୍ଷେତ୍ରରେ କଂଗ୍ରେସର ପ୍ରଭାବ ହ୍ରାସ ହେଲାବେଳକୁ ବୟୋଜ୍ୟେଷ୍ଠ ନେତା ଚକ୍ରବର୍ତ୍ତୀ ରାଜଗୋପାଳାଚାରୀଙ୍କର ଆଶୀର୍ବାଦ ପାଇ ସ୍ୱତନ୍ତ୍ର ଦଳର ନେତା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ପଶ୍ଚିମ ଓଡ଼ିଶାରେ ନିଜର ଦୃଢ଼ ଆସନକୁ ଆହୁରି ସୁଦୃଢ଼ କରି ସବୁ ରାଜନୈତିକ ଦଳଙ୍କୁ ସେ ଅଞ୍ଚଳରୁ ହଟାଇ ଦେବାର ଚତୁର ଉଦ୍ୟମ ଆରମ୍ଭ କରିଦେଇଥିଲେ । ଭିନ୍ନ ଭିନ୍ନ ଅଭିସନ୍ଧି ଘେନି ଗୋଟିଏ ସର୍ବସମ୍ମତ ଉଦ୍ଦେଶ୍ୟ ସାଧନରେ ସମସ୍ତେ ଏକଜୁଟ୍ ହେଲେ । ଉଦ୍ଦେଶ୍ୟ ହେଲା ଓଡ଼ିଶାରେ କଂଗ୍ରେସର ବିଧ୍ୱଂସ । ଏହି ଉଦ୍ଦେଶ୍ୟ ୧୯୬୭ ମସିହା ନିର୍ବାଚନରେ ଭଲଭାବରେ ସାଧିତ ହୋଇଥିଲା । ନିର୍ବାଚନରେ କଂଗ୍ରେସର ଘୋର ବିପର୍ଯ୍ୟୟ ହୋଇଥିଲା । କଂଗ୍ରେସ ମାତ୍ର ଏକତ୍ରିଶଟି ସ୍ଥାନ ଅଧିକାର କରିଥିଲା । ମୋର ଏବଂ ବିଜୁବାବୁଙ୍କର ପରାଜୟ ହୋଇଥିଲା । ସ୍ୱତନ୍ତ୍ର ଦଳ ଅଣଚାଶଟି ସ୍ଥାନ ଅଧିକାର କରିଥିଲା ଏବଂ ଜନକଂଗ୍ରେସ ଛବିଶଟି ସ୍ଥାନ ପାଇଥିଲା । ପ୍ରଜାସୋସାଲିଷ୍ଟ ଦଳ ମଧ୍ୟ ସେଥର ଏକୋଇଶଟି ଆସନ ଅଧିକାର କରିବାର ଆଶାତୀତ ସୁଯୋଗ ଲାଭକଲା । ବାକିତକ ସ୍ଥାନ ସଂଯୁକ୍ତ ସୋସାଲିଷ୍ଟ, କମ୍ୟୁନିଷ୍ଟ ଦଳ ଏବଂ ସ୍ୱାଧୀନ ପ୍ରାର୍ଥୀମାନେ ଦଖଲ କରିଥିଲେ ।

ଏହିଠାରେ ମୋର ନିଜ ନିର୍ବାଚନ ବିଷୟରେ ଦୁଇ ପଦ କହିବାକୁ ଚାହୁଁଛି । ବାସୁଦେବପୁର ମୋର ପୁରୁଣା ନିର୍ବାଚନମଣ୍ଡଳୀ । ଏହି ନିର୍ବାଚନମଣ୍ଡଳୀର ବହୁ ଉନ୍ନତିମୂଳକ କାର୍ଯ୍ୟ ସହିତ ମୁଁ ଜଡ଼ିତଥିଲି । ସେଠା ଲୋକଙ୍କର ସୁଖଦୁଃଖ ବୁଝିବାରେ ମୁଁ କେବେ ହେଳାକରିନଥିଲି । ନିର୍ବାଚନମଣ୍ଡଳୀରେ ଅନ୍ତର୍ଭୁକ୍ତ ବାଁଶଡ଼ା ଓ କନିକା ଅଞ୍ଚଳରେ ଲୋକମାନେ ପୂର୍ବେ ବହୁପ୍ରକାର ଉତ୍ପୀଡ଼ନର ସମ୍ମୁଖୀନ ହେଉଥିଲେ । ମୁଁ ଏହି ଅଞ୍ଚଳର ପ୍ରତିନିଧିତ୍ୱ କରିବା ପରେ ସେ ସବୁର ଅବସାନ ଘଟିଥିଲା । ଆଗରୁ ଏ ନିର୍ବାଚନମଣ୍ଡଳୀକୁ ପକ୍‌କା ରାସ୍ତା ନଥିଲା । ମୋ ସମୟରେହିଁ ବିଭିନ୍ନ ସ୍ଥାନକୁ ପକ୍‌କା ରାସ୍ତା ହୋଇଥିଲା । ତା'ଛଡ଼ା ବିରାଟ ଲୁଣାବନ୍ଧ ନିର୍ମାଣ ଓ ଗଭୀର ନଳକୂପ ଖୋଳାଇ ପିଇବା ପାଣିର ବ୍ୟବସ୍ଥା ମୋରି ସମୟରେ ହୋଇଥିଲା । ୧୯୬୧ ନିର୍ବାଚନରେ ମୋତେ ହରାଇବାପାଇଁ ଶ୍ରୀ ହରେକୃଷ୍ଣ ମହତାବ ଦଳବିରୋଧୀ କାର୍ଯ୍ୟରେ ଲିପ୍ତ ହୋଇ ସ୍ୱାଧୀନ ପ୍ରାର୍ଥୀମାନଙ୍କୁ ସାହାଯ୍ୟ କରି ନିରାଶହୋଇଥିଲେ, ସେକଥା ପୂର୍ବରୁ କୁହାଯାଇଛି । ଏଥର ମୋତେ କିପରି ଏହି ନିର୍ବାଚନମଣ୍ଡଳୀରେ ହରାଇବେ ସେଥିପାଇଁ ମହତାବବାବୁ ବଡ଼ ଉଦ୍‌ବିଗ୍ନ ହୋଇପଡ଼ିଥିଲେ । ସେ ଭଦ୍ରକ ଯାଇ ବାସୁଦେବପୁରର ବହୁ ଲୋକଙ୍କ ସହ ପରାମର୍ଶ କଲେ କିଏ ପ୍ରାର୍ଥୀ ହେଲେ ମୋତେ ହରାଇପାରିବ । କୌଣସି ପ୍ରାର୍ଥୀଙ୍କର ନାମ ସଲାକାରମାନଙ୍କ ମନକୁ ପାଇଲା ନାହିଁ । ଶିମୁଳିଆରେ ଶ୍ରୀ ଦିବାକର ଘଡ଼େଇ ନାମକ ଜଣେ ସମାଜସେବୀ ଅଛନ୍ତି । ତାଙ୍କ ଘର ବାସୁଦେବପୁର ନିର୍ବାଚନମଣ୍ଡଳୀର ବାଁଶଡ଼ା ଅଞ୍ଚଳରେ । ସେ ମୋର ବନ୍ଧୁ ଏବଂ ତାଙ୍କର ମଧ୍ୟ ବନ୍ଧୁ; କିନ୍ତୁ ମହତାବବାବୁ ଜଣେ ବୟୋଜ୍ୟେଷ୍ଠ ନେତା ହୋଇଥିବାରୁ ଦିବାକରବାବୁ ତାଙ୍କ ଆଡ଼କୁ ଟିକେ ବେଶୀ ଢଳିଥିଲେ ।

ମହତାବବାବୁ ନିଜେ ନ ଲଢ଼ିଲେ କଂଗ୍ରେସବିରୋଧୀ ହାଉଆ ସତ୍ତ୍ୱେ ବାସୁଦେବପୁରରେ ମୋ ବିରୁଦ୍ଧରେ ଅନ୍ୟ କେହି ଜିତିବା ସମ୍ଭବ ନୁହେଁ ବୋଲି ସେ କହିବାରୁ ଶ୍ରୀ ମହତାବ ବାସୁଦେବପୁରରେ ମୋ ସହିତ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ସେ ଜଣେ ବୟୋଜ୍ୟେଷ୍ଠ ପୁରୁଣା ନେତା । ବାଲେଶ୍ୱର ଜିଲ୍ଲାରେ ତାଙ୍କର ଖ୍ୟାତି ଯଥେଷ୍ଟ ଥିଲା । ସେ ଲଢ଼ିଥିଲେ ମୋ ବିରୁଦ୍ଧରେ । ବାସୁଦେବପୁରରେ ନିର୍ବାଚନ ଲଢ଼େଇଲେ ତାଙ୍କର ଆବିର୍ଭାବ ଲୋକଙ୍କୁ ବିଶେଷଭାବରେ ଆକୃଷ୍ଟ କରିଥିଲା । ମୁଁ ସେତେବେଳକୁ ଲୋକଙ୍କର ଦେହଘଷା ହୋଇଯାଇଥାଏ । ବଡ଼ ନେତା ଦେଖି ଲୋକଙ୍କର ଆଶା ଆକାଙ୍‌କ୍ଷା ମଧ୍ୟ ବଢ଼ିଯାଇଥିଲା । କୌଣସି ପକ୍ଷର ନିର୍ବାଚନ ପ୍ରସ୍ତୁତି କିଛି କମ୍ ନଥିଲା । ମୋ ପକ୍ଷରୁ ଶ୍ରୀ ଭଗବାନ ଚରଣ ନାୟକଙ୍କ ଉପରେ ନିର୍ବାଚନର ଦାୟିତ୍ୱ ନ୍ୟସ୍ତ ଥାଏ । ସର୍ବଶ୍ରୀ ଗୋବିନ୍ଦ ମହାପାତ୍ର, ଅମଳାକାନ୍ତ ପାଢ଼ୀ, ଭାସ୍କର ଚନ୍ଦ୍ର ଦାସ, ଆଦିକନ୍ଦ ମଲ୍ଲିକ, କୃଷ୍ଣ ପଣ୍ଡା, ଭାକୁ କରଣ, ଗୌରାଙ୍ଗ ଚନ୍ଦ୍ର ମହାନ୍ତି, ସନାତନ ରାଉତ, ନଗେନ୍ଦ୍ର ନାଥ ମହାନ୍ତି, ବଳରାମ ପାଣ୍ଡବ, ସୁଦର୍ଶନ ମାହୁନ୍ତ, ଗୋଲକ ମଲ୍ଲିକ, ଭାଗୀରଥି ଜେନା, କିଶୋର ନାୟକ ଓ ରତ୍ନନିଧି ମହାନ୍ତି ପ୍ରଭୃତି ବାସୁଦେବପୁର ଅଞ୍ଚଳରେ ମୋ ନିର୍ବାଚନ କାମ ତୁଲାଇବାର ଦାୟିତ୍ୱ ନେଇଥାଆନ୍ତି । ବାଁଶଡ଼ା ଓ କନିକା ଅଞ୍ଚଳରେ ସର୍ବଶ୍ରୀ ଭଗବାନ ଦୀକ୍ଷିତ, ଦୁର୍ଯ୍ୟୋଧନ ମିଶ୍ର, କରୁଣାସିନ୍ଧୁ କର, ହେମନ୍ତ କିଶୋର ରାଉତ, ଆଦିକନ୍ଦ ଦାସ, ଲକ୍ଷ୍ମୀକାନ୍ତ ଜେନା, ବଂଶୀଧର ନାୟକ, ଦେବେନ୍ଦ୍ର ନାଥ ଜେନା, ଜୀବନ ଦାସ, ଜଗନ୍ନାଥ ପାତ୍ର, ଭଗବାନ ବିଶ୍ୱାଳ, ସୁର ଦୀକ୍ଷିତ, ଅନନ୍ତ ଜେନା, ମାଗୁଣି ଚରଣ ନାୟକ ଓ ମୁକୁନ୍ଦ ପାତ୍ର ପ୍ରଭୃତି ନିର୍ବାଚନ ଦାୟିତ୍ୱ ନେଇଥିଲେ । ମୋର ପୁତୁରା ଶ୍ରୀ ମୁକ୍ତିକାନ୍ତ ରାଉତରାୟ ମଧ୍ୟ ଏହି ନିର୍ବାଚନମଣ୍ଡଳୀରେ ରହି ମୋ ପକ୍ଷରୁ ସବୁକଥା ବୁଝୁଥିଲେ । ମୋତେ ବାଲେଶ୍ୱର ଜିଲ୍ଲା ଓ ମୟୂରଭଞ୍ଜ ଜିଲ୍ଲାରେ ବୁଲି ନିର୍ବାଚନ କାର୍ଯ୍ୟ କରିବାକୁ ହେଉଥାଏ । ତେଣୁ ମଝିରେ ମଝିରେ ମୁଁ ବାସୁଦେବପୁର ଓ ବାଁଶଡ଼ା ଅଞ୍ଚଳକୁ ଯାଇ ଉଲ୍ଲିଖିତ ବନ୍ଧୁମାନଙ୍କ ସହ ସମ୍ପର୍କ ରଖି ସଭାସମିତି କରି ଫେରିଆସୁଥିଲି ।

ଶ୍ରୀ ହରେକୃଷ୍ଣ ମହତାବ ଏହି ନିର୍ବାଚନମଣ୍ଡଳୀରେ ବହୁସ୍ଥାନରେ ସଭା କରିଥିଲେ । ସବୁବେଳେ ତାଙ୍କ ସାଙ୍ଗରେ ତାଙ୍କ ଭାଇ ଶ୍ରୀ ଗୋପୀନାଥ ଦାସ, ଶ୍ରୀ ଚକ୍ରଧର ବେହେରା, ଗୁଆଗଡ଼ିଆର ଶ୍ରୀ ଯୋଗେନ୍ଦ୍ରନାଥ ନାୟକ ଓ ଶ୍ରୀ ବୈକୁଣ୍ଠ ପଟ୍ଟନାୟକ ବୁଲୁଥିଲେ । ଏହି ନିର୍ବାଚନ ପୂର୍ବରୁ ହଠାତ୍ ସମୁଦ୍ରରେ ଇଲିସି ମାଛ ଉଠିଥିଲେ । ନିର୍ବାଚନମଣ୍ଡଳୀଟିର ଦୀର୍ଘ ସମୁଦ୍ର ଉପକୂଳରେ ବହୁସଂଖ୍ୟକ ଧୀବର ବାସ କରନ୍ତି । ଏଥର ଏତେ ମାଛ ଉଠିଥିଲେ ଯେ ଏଭଳି କେବେ ଦେଖାନଥିଲା । ପ୍ରଚାର କରିଦିଆଗଲା ଯେ ହରେକୃଷ୍ଣ ମହତାବ ଜଣେ ମହାପୁରୁଷ । ଏଠାରେ ନିର୍ବାଚନରେ ତାଙ୍କର ଆବିର୍ଭାବ ହେତୁ ଏଭଳି ପ୍ରଚୁର ମାଛ ଧରିବାକୁ ମିଳୁଛି । ଏତେ ଜୋର୍‌ରେ ଏକଥା ପ୍ରଚାରିତ ହୋଇଯାଇଥିଲା ଯେ ବହୁଲୋକ ଦୌଡ଼ିଲେ ମହତାବଙ୍କୁ ଦେଖିବାକୁ । ତାଙ୍କ ସାନଭାଇ ଶ୍ରୀ ଗୋପୀନାଥ ଦାସ କହିବାକୁ ଲାଗିଲେ ଯେ ବଡ଼ଭାଇଙ୍କ ବାମଚକ୍ଷୁରୁ ଗୋଟିଏ ଜ୍ୟୋତି ନିର୍ଗତ ହେଉଛି । ତାକୁ ମଧ୍ୟ ଦେଖିବାପାଇଁ ସଭାସମିତିରେ ଲୋକ ଭିଡ଼ ଜମାଇଲେ । କାହାକୁ 'ବଡ଼ପୁରୁଷଙ୍କ' କୃପାରୁ ସେ ଜ୍ୟୋତି ଦେଖାଗଲା, କାହାକୁ ଦେଖାଗଲାନାହିଁ; କିନ୍ତୁ ପ୍ରଚାରଟା ଖୁବ୍ ଜୋର୍‌ସୋର୍‌ରେ ଚାଲିଲା । ମହାତାବବାବୁଙ୍କ ସଭାରେ ପ୍ରଥମେ ଫୁଲମାଳ ପରିବର୍ତ୍ତେ ଟଙ୍କାମାଳ ଦିଆଯାଉଥିଲା । ପରେ ଶୁଣିଲି ଏହାର ଭିତିରି କଥା ହେଲା ଯେ ଟଙ୍କାକିଆ ନୋଟ୍ ଗୁନ୍ଥାଯାଇ ଦୁଇଟା ରୋଟି ମାଳ ଗୋପୀନାଥବାବୁ ନିଜ ପାଖରେ ରଖିଥାଆନ୍ତି । ସେହିଗୁଡ଼ିକ ସଭାରେ ମହତାବଙ୍କ ବେକରେ ଗଳାଇଦିଆଯାଏ ଏବଂ ସେଗୁଡ଼ିକ ବାହାରିଲାକ୍ଷଣି ପୁଣି ଗୋପୀନାଥବାବୁ ତାକୁ ରଖିନିଅନ୍ତି ଓ ତା ପରବର୍ତ୍ତୀ ସଭାରେ ତାକୁହିଁ ବ୍ୟବହାର କରନ୍ତି । ଯେଉଁସବୁ ଅଞ୍ଚଳକୁ ମହତାବବାବୁ ଯାଉଥିଲେ ସେଠାରେ ଲୋକେ ଯାହାସବୁ ଦାବି କରୁଥିଲେ କରିଦେବାପାଇଁ ସେ ତୁରନ୍ତ ପ୍ରତିଶ୍ରୁତି ଦେଉଥିଲେ । ନିର୍ବାଚନ ସଭାମାନଙ୍କରେ ମହତାବବାବୁଙ୍କ ପ୍ରଚାର କୌଶଳ ଗାଉଁଲି ଲୋକଙ୍କର ମନକୁ ବେଶ୍ ଆକୃଷ୍ଟ କରିପାରୁଥିଲା । ସେତେବେଳେ ଦୋକ୍ତା ଦର ବଢ଼ିଥାଏ । କିଲୋକର

ଦାମ୍ ଥିଲା ନଅ ଟଙ୍କା । ମାତ୍ର ରସଗୋଲାର କିଲୋପ୍ରତି ଦର ଥିଲା ଛଅ ଟଙ୍କା । ପାଟିରେ ଦୋକ୍ତା ଜାକିବା ଗାଉଁଲି ଲୋକଙ୍କର ଗୋଟିଏ ଅଭ୍ୟାସ । ଦୋକ୍ତା ଦର ସେମାନଙ୍କୁ ବାଧୁଥାଏ । ମହତାବବାବୁ ତା'ର ସୁଯୋଗ ନେଇ ନିର୍ବାଚନ ସଭାମାନଙ୍କରେ ବୁଝାଉଥିଲେ ଯେ ଆମର ମା'ବୁଢ଼ୀମାନେ ପାଟିରେ ଟିକେ ଟିକେ ଦୋକ୍ତା ଜାକନ୍ତି, ସେତିକି କଂଗ୍ରେସ ସରକାର ବରଦାସ୍ତ କରିପାରିଲେନାହିଁ । ଦୋକ୍ତା କିଲୋ ଏ ସରକାର ଅମଳରେ ନଅ ଟଙ୍କା ହେଲାଣି । ଯୋଗାଣମନ୍ତ୍ରୀ ନୀଳମଣି ରାଉତରାୟ ସକାଳେ ଗୋଟିଏ କିଲୋ ରସଗୋଲା ଜଳଖିଆ ଖାଆନ୍ତି; ତେଣୁ ତା'ର ଦାମ୍ କିଲୋପ୍ରତି ଛ'ଟଙ୍କା ହୋଇଛି । ଏପ୍ରକାର ଚାଲାକି କଥା ଲୋକମାନଙ୍କ ମନକୁ ଦୋହଲାଇଦେଉଥାଏ । ଲୋକଙ୍କର ତାଙ୍କ କଥାରେ ନାହିଁନଥିବା ବିଶ୍ୱାସ ହୋଇଯାଇଥିଲା । ଏହିଭଳି ରାଜନୈତିକ ପରିସ୍ଥିତି ଓ ନିର୍ବାଚନ କୌଶଳରେ ମହତାବବାବୁ ମୋତେ ହରାଇଥିଲେ । ନିର୍ବାଚନର ଅଳ୍ପ କିଛିକାଳ ପରେ ବାସୁଦେବପୁର ନିର୍ବାଚନମଣ୍ଡଳୀର ଲୋକେ ବୁଝିଲେ ଶ୍ରୀ ମହତାବଙ୍କର କି ପ୍ରକାର ପ୍ରତିଶ୍ରୁତି ଓ ପ୍ରତିପତ୍ତି । ସେ ଆଉ କେବେ ସେ ନିର୍ବାଚନମଣ୍ଡଳୀର ମାଟି ମାଡ଼ିଲେନାହିଁ କିମ୍ବା ସେଠାକାର ଲୋକଙ୍କ କଥା ବୁଝିଲେନାହିଁ । ବାସୁଦେବପୁର ଲୋକେ ତାଙ୍କ ପାଖକୁ ଗଲେ ଦେଖା ମିଳୁନଥିଲା । ମୁଁ ନିର୍ବାଚନରେ ହାରିଥିଲେ ମଧ ପୂର୍ବପରି ବାସୁଦେବପୁର ନିର୍ବାଚନମଣ୍ଡଳୀ ସହ ସଂପର୍କ ରଖିଥିଲି । ମୁଁ ସେଠାକୁ ଗଲେ ଲୋକ ଆସି ମୋ ପାଖରେ ଶ୍ରୀ ମହତାବଙ୍କର ସେମାନଙ୍କ ଅଞ୍ଚଳ ପ୍ରତି ଅବହେଳା ଓ ଲୋକଙ୍କ ପ୍ରତି ଦୁର୍ବ୍ୟବହାରର କାହାଣୀମାନ କହନ୍ତି । ଥରେ ଦଳେ ଲୋକ ବାସୁଦେବପୁରରୁ ଆସି ମହତାବଙ୍କୁ ଭେଟି ତାଙ୍କୁ ଆକ୍ଷେପ କରି କହିଥିଲେ ଯେ ନିର୍ବାଚନବେଳେ ବଡ଼ ବଡ଼ କଥା ଓ ପ୍ରତିଶ୍ରୁତି ସେ ଦେଇଥିଲେ; ମାତ୍ର ପ୍ରତିଶ୍ରୁତି ଅନୁସାରେ କାର୍ଯ୍ୟ କରିବା ଦୂରେଥାଉ, ଓଲଟା ସେମାନଙ୍କ ପ୍ରତି ଦୁର୍ବ୍ୟବହାର କରୁଛନ୍ତି । ଏତକ ଶୁଣି ସେ କୁଆଡ଼େ କୋପାନ୍ୱିତ ହୋଇ କହିଥିଲେ, ''ତୁମେ ସବୁ ବେଇମାନ୍ । ନୀଳମଣି ରାଉତରାୟ ତୁମ ଅଞ୍ଚଳପାଇଁ କେତେ କାମ ନକରିଛି ? ତୁମେ ତାକୁ ଚିତାକାଟିଲ, ଆଉ ମୋତେ ଶିଖାଉଛ ପ୍ରତିନିଧି ହିସାବରେ ପ୍ରତିଶ୍ରୁତି ପାଳନ କରିବାକୁ !'' ସେମାନେ ଭାଗ୍ୟକୁ ନିନ୍ଦି ଫେରିଲେ । ବାସୁଦେବପୁର ସାରା ସେହି କଥାଟି ଖୁବ୍ ଜୋର୍‌ରେ ପ୍ରଚାରିତ ହୋଇଥିଲା । ଆଜିପର୍ଯ୍ୟନ୍ତ ସେକଥା ଲୋକଙ୍କ ମନରେ ଅଛି । ଚାନ୍ଦବାଲି ଓ ବାଁଶଡ଼ା ଅଞ୍ଚଳରେ ରାଜନୀତି ସ୍ୱତନ୍ତ୍ର ପ୍ରକାରର । ମହତାବଙ୍କ ସାହାଯ୍ୟରେ ସ୍ୱତନ୍ତ୍ର-ଜନକଂଗ୍ରେସ ଶାସନବେଳେ ଶ୍ରୀ ଚକ୍ରଧର ବେହେରା ତାଙ୍କର ପୁରୁଣା ପ୍ରତିପତ୍ତି ବିସ୍ତାର କରିବା ଉଦ୍ଦେଶ୍ୟରେ ଚାନ୍ଦବାଲିରେ ଆସନ ମାଡ଼ି ବସିଥିଲେ । ସେତିକିବେଳେ ଚାନ୍ଦବାଲିରେ କଲେଜ ପ୍ରତିଷ୍ଠାପାଇଁ ବ୍ୟବସାୟୀମାନଙ୍କଠାରୁ ବହୁ ଅର୍ଥ ଆଦାୟ ହୋଇଥିଲା, ମାତ୍ର ତାହା କଲେଜ ହେବା କାର୍ଯ୍ୟରେ ଲାଗିଲାନାହିଁ । ମହତାବବାବୁଙ୍କ ପାଖରେ ଏ ବିଷୟରେ ଆପତ୍ତି ହେଲେ ମଧ ସେ କିଛି ଶୁଣିଲେନାହିଁ । ପରେ ସେଠାକାର ବ୍ୟବସାୟୀମାନଙ୍କର ଆର୍ଥିକ ସାହାଯ୍ୟ ଓ ଜନସାଧାରଣଙ୍କର ସାହାଯ୍ୟ ସହଯୋଗରେ ସେଠାରେ କଲେଜ ପ୍ରତିଷ୍ଠିତ ହୋଇଥିଲା । ସେତେବେଳେ ବ୍ୟବସ୍ଥାସଭା ସଭ୍ୟପଦ ଛଡ଼ା ଲୋକସଂପର୍କ ଓ ଉନ୍ନୟନ କାର୍ଯ୍ୟ ଦୃଷ୍ଟିରୁ ପଞ୍ଚାୟତ ସମିତିର ନିର୍ବାଚିତ ଚେୟାରମ୍ୟାନ୍ ପଦ ମଧ ମର୍ଯ୍ୟାଦାସଂପନ୍ନ ଥିଲା । ଶ୍ରୀ ମହତାବଙ୍କ ପରାମର୍ଶରେ ଶ୍ରୀ ବେହେରା ଚାନ୍ଦବାଲି ପଞ୍ଚାୟତ ସମିତିର ଚେୟାରମ୍ୟାନ୍ ନିର୍ବାଚନରେ ୧୯୬୮ ଜାନୁୟାରୀ ମାସରେ ପ୍ରାର୍ଥୀ ହୋଇଥିଲେ । ସରକାରୀ କଳ ଶ୍ରୀ ବେହେରାଙ୍କୁ ସାହାଯ୍ୟ କରୁଥାଏ । ଆମ ଦଳର ଜଣେ ଯୁବକ କର୍ମୀ ଶ୍ରୀ ଦୁର୍ଯ୍ୟୋଧନ ମିଶ୍ରଙ୍କୁ ପ୍ରାର୍ଥୀ ହେବାପାଇଁ ମୁଁ ପରାମର୍ଶ ଦେଇଥିଲି । ନିର୍ବାଚନରେ ଶ୍ରୀ ବେହେରାଙ୍କୁ ପରାସ୍ତ କରି ଶ୍ରୀ ଦୁର୍ଯ୍ୟୋଧନ ମିଶ୍ର ଚେୟାରମ୍ୟାନ୍ ରୂପେ ନିର୍ବାଚିତ ହୋଇଥିଲେ । ଏହା ଫଳରେ ସେ ଅଞ୍ଚଳରେ ଶ୍ରୀ ବେହେରାଙ୍କ ଦଳର ଜନସ୍ୱାର୍ଥବିରୋଧୀ କାର୍ଯ୍ୟକଳାପ ବାଧାପ୍ରାପ୍ତ ହୋଇଥିଲା ।

ବାସୁଦେବପୁର ନିର୍ବାଚନମଣ୍ଡଳୀରେ ମୋର ସବୁଠାରୁ ବଡ଼ ସମର୍ଥକ ଓ ସାହାଯ୍ୟକାରୀ ଥିଲେ ସ୍ୱର୍ଗୀୟ ଜଗବନ୍ଧୁ ନାୟକ । କଲିକତାରେ ତାଙ୍କର ବହୁତ ଘରବାଡ଼ି ଥିଲା ଓ ସେଠାରେ

ବ୍ୟବସାୟରେ ସେ ଖୁବ୍ ପ୍ରତିଷ୍ଠା ଲାଭ କରିଥିଲେ । ତାଙ୍କ ପିତା ସ୍ୱର୍ଗୀୟ ଅଟଳବିହାରୀ ନାୟକଙ୍କ ନାମରେ ସେ ବାସୁଦେବପୁରରେ ଗୋଟିଏ କଲେଜ ପ୍ରତିଷ୍ଠା କରିଥିଲେ । ଶ୍ରୀ ଜଗବନ୍ଧୁ ନାୟକ ତାଙ୍କର ସାନଭାଇ ଶ୍ରୀ ଭଗବାନ ଚରଣ ନାୟକଙ୍କୁ ମୋତେ ସାହାଯ୍ୟ କରିବାପାଇଁ ଖୁବ୍ ଉତ୍ସାହିତ କରୁଥିଲେ । ନିର୍ବାଚନ ସମୟରେ ସେ ନିଜେ କଲିକତାରୁ ଆସି ବାସୁଦେବପୁର ଅଞ୍ଚଳରେ ବୁଲାବୁଲି କରି ଆମ ପକ୍ଷରୁ ନିର୍ବାଚନ କାର୍ଯ୍ୟ କିପରିଭାବରେ ପରିଚାଳିତ ହେଉଛି, ସେ ବିଷୟରେ ବୁଝିବାକୁ ଖୁବ୍ ଆଗ୍ରହ ପ୍ରକାଶ କରୁଥିଲେ । ଜଗବନ୍ଧୁବାବୁ ମୋର ସମର୍ଥକ ଥିବାରୁ ତାଙ୍କର ଦାଦାପୁଅ ଭାଇ ସ୍ୱର୍ଗୀୟ ଯୋଗେନ୍ଦ୍ର ନାୟକ ଶ୍ରୀ ହରେକୃଷ୍ଣ ମହତାବଙ୍କୁ ଯାନବାହନ ଦେଇ ନିର୍ବାଚନରେ ସହଯୋଗ କରୁଥିଲେ । ମୋ ପରାଜୟରେ ଯୋଗୀବାବୁ ବିଶେଷ ସନ୍ତୋଷ ଲାଭ କରିଥିଲେ । ନିୟତିର ଗତି ଏପରି ଯେ ଦୈବଯୋଗକୁ ମୋର ଝିଆରୀ ପ୍ରମିଳାସହ ଯୋଗୀବାବୁଙ୍କ ପୁଅ ଭକ୍ତହରିର ବିବାହ ପ୍ରସ୍ତାବ ଆସିଲା । ବିବାହ ବିଷୟରେ କୌଣସି ଜବାବ ମୋର ମଝିଆଁଭାଇ ଦେଇପାରିନଥିଲେ । ଯୋଗୀବାବୁ ଜନକଂଗ୍ରେସଦଳର ସଭ୍ୟ ଥିଲେ ଓ ମହତାବଙ୍କୁ ସାହାଯ୍ୟ କରି ମୋତେ ନିର୍ବାଚନରେ ହରାଇଥିଲେ । ସେହି ହେତୁ ଏହି ବିବାହ ପ୍ରସ୍ତାବରେ ସମ୍ମତି ଦେବାକୁ ସେ ସଙ୍କୋଚ ପ୍ରକାଶ କରିଥିଲେ । ଏହି ବିବାହ ପ୍ରସ୍ତାବ କଥା ଶୁଣି ବାସୁଦେବପୁରରେ ମୋର ସମର୍ଥକମାନେ ମଧ ପସନ୍ଦ କରିନଥିଲେ । ପାତ୍ରଟି ସବୁ ଦୃଷ୍ଟିରୁ ଯୋଗ୍ୟ ଥିଲା ଓ ଘର ମଧ ଭଲଥିଲା, କେବଳ ରାଜନୈତିକ ଦ୍ୱନ୍ଦ ଓ ମତଭେଦ ପ୍ରସ୍ତାବର ପ୍ରତିବନ୍ଧକ ଥିଲା । ଭାଇ ମୋର ମତାମତ ପଚାରିବାରୁ ସେହିଠାରେ ମୋର ଝିଆରୀର ବିଭାଘର ହେବ ବୋଲି ମୁଁ କହିଥିଲି । ମୋ କଥା ଶୁଣି ସେ ବିସ୍ମିତ ହୋଇଥିଲେ । ବାସୁଦେବପୁରର ଆମର ଅନ୍ୟାନ୍ୟ ବନ୍ଧୁମାନେ ମଧ ମୋର ସମ୍ମତିରେ ବିସ୍ମୟ ପ୍ରକାଶ କରିଥିଲେ । ରାଜନୈତିକ ମତଭେଦ ଓ ସାମାଜିକ ସମ୍ପର୍କ ଏ ଦୁଇଟି ପୃଥକ୍ ବିଷୟ । ସାମାଜିକ ସମ୍ବନ୍ଧ ସ୍ଥାପନ ଦିଗରେ ରାଜନୀତି ପ୍ରତିବନ୍ଧକ ହେବା ଆଦୌ ସମୀଚୀନ ନୁହେଁ– ମୋର ଏପ୍ରକାର ମତାମତ ଜାଣିବା ପରେ ଭାଇ ପ୍ରସ୍ତାବରେ ସମ୍ମତି ଦେଇଥିଲେ । ବିବାହ ପରେ ଆମର ଝିଅ ଓ ଜ୍ୱାଇଁ ସୁଖରେ ଅଛନ୍ତି ।

ଏହି ୧୯୬୭ ସାଧାରଣ ନିର୍ବାଚନରେ ଶ୍ରୀ ମହତାବ ଭୁବନେଶ୍ୱର ଓ ବାସୁଦେବପୁର ଦୁଇଟି ନିର୍ବାଚନମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା କରି ଉଭୟ ସ୍ଥାନରୁ ଜୟଯୁକ୍ତ ହୋଇଥିଲେ । ଆଇନ ଅନୁସାରେ ତାଙ୍କୁ ଗୋଟିଏ ସ୍ଥାନରୁ ଇସ୍ତଫା ଦେବାକୁ ପଡ଼ିଥିଲା । ମୋତେ ନିର୍ବାଚନରେ ହରାଇ ବିଧାନସଭାକୁ ଆସିବାକୁ ନଦେବା ଥିଲା ମହତାବଙ୍କର ପ୍ରତିହିଂସା-ପ୍ରଣୋଦିତ ଅଭିପ୍ରାୟ । ବାସୁଦେବପୁର ବିଧାନସଭା ସ୍ଥାନଟି ଖାଲିପଡ଼ିଲେ ଉପନିର୍ବାଚନରେ ମୋର ବିଜୟ ସୁନିଶ୍ଚିତ ହେବ ବୋଲି ଉପଲବ୍ଧି କରି ସେ ଭୁବନେଶ୍ୱରରୁ ଇସ୍ତଫା ଦେଇଥିଲେ । ଭୁବନେଶ୍ୱର ଉପନିର୍ବାଚନରେ ଶ୍ରୀ ମହତାବଙ୍କର ସହଧର୍ମିଣୀ ଶ୍ରୀମତୀ ସୁଭଦ୍ରା ମହତାବ ଜନକଂଗ୍ରେସ ପ୍ରାର୍ଥୀରୂପେ ଜୟଲାଭକରିଥିଲେ । ସୁଭଦ୍ରା ଦେବୀ ଜଣେ ଅତି ଉଦାର ଓ ମହୀୟସୀ ମହିଳା ଥିଲେ ଏବଂ ଅସହଯୋଗ ଆନ୍ଦୋଳନ ସମୟରେ ଆଇନ ଅମାନ୍ୟ କରି ଓ ସତ୍ୟାଗ୍ରହରେ ଯୋଗଦେଇ ଏକାଧିକବାର କାରାବରଣ କରିଥିଲେ । ଅଗରପଡ଼ାର ରାଣୀ ହିସାବରେ ସେ ବାଲେଶ୍ୱର ଜିଲ୍ଲାରେ ବିଶେଷଭାବରେ ପରିଚିତା ଥିଲେ ଏବଂ ତାଙ୍କର ଦେଶପ୍ରେମ ତଥା କାରାବରଣ ଲୋକମାନଙ୍କ ମଧରେ ଅପୂର୍ବ ଉତ୍ସାହ ଓ ଉତ୍ତେଜନା ସୃଷ୍ଟିକରିପାରିଥିଲା । ମୋତେ ଓ ମୋର ସ୍ତ୍ରୀ ନଳିନୀକୁ ସେ ଘନିଷ୍ଠ ଭାବରେ ଜାଣିଥିଲେ ଓ ସ୍ନେହ କରୁଥିଲେ । ମୋ ପ୍ରତି ଶ୍ରୀ ମହତାବଙ୍କ ପ୍ରତିହିଂସାପରାୟଣ ମନୋଭାବକୁ ସେ ପସନ୍ଦ କରୁନଥିବା କଥା ତାଙ୍କ ପାଖରେ ଚଳପ୍ରଚଳ ହେଉଥିବା ଲୋକମାନେ ମୋତେ କହୁଥିଲେ । ସେହି ମହୀୟସୀ ମହିଳାଙ୍କର ପରଲୋକ ହୋଇଯାଇଛି ।

୧୯୬୭ ସାଧାରଣ ନିର୍ବାଚନ ପରେ ସ୍ୱତନ୍ତ୍ର ଓ ଜନକଂଗ୍ରେସ ଦଳ ମିଶି ପଞ୍ଚସ୍ତରୀ ଜଣ ସଭ୍ୟ ହେବାରୁ ବିଧାନସଭାରେ ସଂଖ୍ୟାଗରିଷ୍ଠତା ହାସଲ କରି ପୂର୍ବ ନିଷ୍ପତ୍ତି ଅନୁସାରେ ମାର୍ଚ୍ଚ ମାସରେ

ସ୍ୱତନ୍ତ୍ର-ଜନକଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳ ଗଢ଼ିଲେ । ପୂର୍ବରୁ ମହତାବବାବୁ ବଡ଼ ଆଶା ରଖିଥିଲେ ମୁଖ୍ୟମନ୍ତ୍ରୀ ହେବାକୁ, ମାତ୍ର ମିଳିତ ଦଳରେ ସ୍ୱତନ୍ତ୍ର ଦଳର ସଭ୍ୟସଂଖ୍ୟା ଅଧିକ ଥିବାରୁ ତାଙ୍କ ନେତା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ମୁଖ୍ୟମନ୍ତ୍ରୀ ହେବାପାଇଁ ସେମାନେ ଦାବି କରିଥିଲେ । ମହତାବଙ୍କୁ କୁଆଡ଼େ ଶ୍ରୀ ମାସାନୀ ପ୍ରଭୃତି ସ୍ୱତନ୍ତ୍ର ଦଳର ନେତାମାନେ ଆଗରୁ ଆଶା ଦେଇଥିଲେ ଯେ, ମିଳିତ ଦଳର ଅଂଶୀଦାରମାନଙ୍କର ଆନୁପାତିକ ସଂଖ୍ୟା ବିଚାରକୁ ନନେଇ ସେମାନେ ମହତାବଙ୍କୁ ହିଁ ମୁଖ୍ୟମନ୍ତ୍ରୀ କରିବେ । କିନ୍ତୁ ଏହା ଅତି ଅସଙ୍ଗତ ଓ ଅଯୌକ୍ତିକ ବୋଲି କହି ଚକ୍ରବର୍ତ୍ତୀ ଶ୍ରୀ ରାଜଗୋପାଳାଚାରୀ ଶ୍ରୀ ସିଂହଦେଓ ମୁଖ୍ୟମନ୍ତ୍ରୀ ହେବାପାଇଁ ମତ ଦେଇଥିଲେ । ଫଳରେ ଏହି ମନ୍ତ୍ରିମଣ୍ଡଳରେ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ମୁଖ୍ୟମନ୍ତ୍ରୀ ଓ ଶ୍ରୀ ପବିତ୍ରମୋହନ ପ୍ରଧାନ ଉପମୁଖ୍ୟମନ୍ତ୍ରୀ ହୋଇଥିଲେ । ସର୍ବଶ୍ରୀ ସୁରେନ୍ଦ୍ରନାଥ ପଟ୍ଟନାୟକ, ରାଜବଲ୍ଲଭ ମିଶ୍ର, ବନମାଳୀ ପଟ୍ଟନାୟକ, ନିତ୍ୟାନନ୍ଦ ମହାପାତ୍ର, ହରିହର ପଟେଲ, ହରପ୍ରସାଦ ମହାପାତ୍ର, ଏନ୍. ରାମଶେଷାୟା, ଶାନ୍ତନୁକୁମାର ଦାସ, ମୁରାରିପ୍ରସାଦ ମିଶ୍ର ଓ ଦୟାନିଧି ନାୟକ ମନ୍ତ୍ରୀଭାବରେ ଏବଂ ସର୍ବଶ୍ରୀ ହିମାଂଶୁ ଶେଖର ପାଢ଼ୀ, ଅନନ୍ତ ନାରାୟଣ ସିଂହଦେଓ, ମନମୋହନ ଟୁଡୁ, କାର୍ତ୍ତିକ ମାଝି, ବୃନ୍ଦାବନ ତ୍ରିପାଠୀ, ଗୋବିନ୍ଦ ମୁଣ୍ଡା ଓ ଗଙ୍ଗାଧର ପ୍ରଧାନ ପ୍ରମୁଖ ଉପମନ୍ତ୍ରୀ ଭାବରେ ମନ୍ତ୍ରିପରିଷଦରେ ଯୋଗ ଦେଇଥିଲେ । ଶ୍ରୀ ନନ୍ଦକିଶୋର ମିଶ୍ର ବାଚସ୍ପତି ଓ ଶ୍ରୀ ହରିହର ବାହିନୀପତି ଉପବାଚସ୍ପତି ରୂପେ ନିର୍ବାଚିତ ହୋଇଥିଲେ ।

ସ୍ୱତନ୍ତ୍ର-ଜନକଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେବା ପରେ କଂଗ୍ରେସ ଲୋକଙ୍କ ଭିତରେ ଆତଙ୍କ ସୃଷ୍ଟି ହୋଇଥିଲା । କାରଣ ବିଶେଷକରି ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଜନକଂଗ୍ରେସ ଲୋକମାନେ ଶାସନ ଦମ୍ଭରେ ବିଭିନ୍ନ ସ୍ଥାନରେ ଉତ୍ପାତ ଆରମ୍ଭ କରିଥିଲେ । କେତେକ ସ୍ଥାନରେ କଂଗ୍ରେସ ଲୋକଙ୍କ ଉପରେ ମାଡ଼ ଦିଆଯାଇଥିଲା । କଂଗ୍ରେସ ଲୋକଙ୍କୁ ଦେଖିଲାକ୍ଷଣି ଜନକଂଗ୍ରେସ ସମର୍ଥକମାନେ ନାନା ଉପାୟରେ ବିଦ୍ରୂପ କରୁଥିଲେ । ଏହି ପରିସ୍ଥିତିରେ ସମୟସମୟରେ ସଂଘର୍ଷ ଉପୁଜୁଥିଲା । ନୂତନ ଧର୍ମ-ଦୀକ୍ଷା ନେଇ ସଦ୍ୟ ଧର୍ମଛଡ଼ାମାନେ ଯେପରି ଉତ୍ପାତ କରନ୍ତି, ଜନକଂଗ୍ରେସ ଲୋକମାନେ ଠିକ୍ ସେହି ପ୍ରକାର ବ୍ୟବହାର କରିଥିଲେ । କେତେକ ସ୍ଥାନରେ କଂଗ୍ରେସ ଲୋକ ବାହାରକୁ ବାହାରି ପାରୁନଥିଲେ । ନିର୍ବାଚନରେ ଜୟଲାଭ କଲେ ବିଜେତାକୁ ଯେ ମହାନୁଭବ ଆଚରଣ ପ୍ରଦର୍ଶନ କରିବାକୁ ହୁଏ ସେକଥା ହୁଏତ ଜନକଂଗ୍ରେସର ପ୍ରତିହିଂସାପରାୟଣ ନେତା ଶ୍ରୀ ହରେକୃଷ୍ଣ ମହତାବଙ୍କୁ ଜଣାନଥିଲା । ନିର୍ବାଚନ ପୂର୍ବରୁ ଭଦ୍ରକରେ ଶ୍ରୀ ମହତାବଙ୍କ ଭାଷଣ ଆମ୍ଭମାନଙ୍କ ବିରୁଦ୍ଧରେ ଉତ୍ତେଜନା ଓ ବିଦ୍ୱେଷ ସୃଷ୍ଟି କରିବାରେ ସାହାଯ୍ୟ କରିଥିଲା । ଅଫିସରମାନଙ୍କୁ ମଧ୍ୟ ସେ ଗାଉଁଲି ଭାଷାରେ ଗାଳିଫଜିତ୍ କରିଥିଲେ । ଭଦ୍ରକରେ ସେତେବେଳେ ଏସ୍.ଡି.ଓ. ଥିଲେ ଶ୍ରୀ ମଦନମୋହନ ମହାନ୍ତି ଓ ସେକେଣ୍ଡ ଅଫିସର ଥିଲେ ଶ୍ରୀ କ୍ଷେତ୍ରମୋହନ ମଙ୍ଗରାଜ । ସେମାନଙ୍କୁ ଧମକଦେବାକୁ ଯାଇ ମହତାବ ବାବୁ ଅତି ତଳକୁ ଖସିଯାଇ ଭଦ୍ରକ ଗାନ୍ଧିପଡ଼ିଆରେ ଅନୁଷ୍ଠିତ ଗୋଟିଏ ସଭାରେ କହିଥିଲେ, "ଏମାନେ ଚୁଙ୍ଗୁଡ଼ି ମାଛ, ଚୁଙ୍ଗୁଡ଼ି ଚିପିଲେ ମୁଣ୍ଡରେ ଗୁହ; ମୁତି ଦେଲେ ଯେଉଁମାନେ ଭାସିଯିବେ, ସେମାନେ ପୁଣି ହାକିମଗିରି...ଇବେ !" ଶ୍ରୀ ମହତାବଙ୍କର ଏ ପ୍ରକାର ରୁଚିବର୍ଜିତ ଆଚରଣ ଭଦ୍ରକରେ ସେତେବେଳେ ସମାଲୋଚନାର ବିଷୟ ହୋଇଥିଲା । ନିର୍ବାଚନରେ ଜନକଂଗ୍ରେସ ଜୟଲାଭ କଲାପରେ ଶ୍ରୀ ମହତାବଙ୍କର ଅହଙ୍କାର ବହୁ ଗୁଣରେ ବଢ଼ିଯାଇଥିଲା ଏବଂ କଂଗ୍ରେସ ଲୋକ ବା ଯେଉଁ ଅଫିସରମାନେ କଂଗ୍ରେସର ଅନୁରାଗୀ ଥିଲେ ବୋଲି ସେ ଭାବୁଥିଲେ ସେମାନଙ୍କ ପ୍ରତି ସେ ଦୁର୍ବ୍ୟବହାର କରୁଥିଲେ । ଏପ୍ରକାର ନିରୁତ୍ସାହମୟ ଅବସ୍ଥାରେ ପ୍ରଦେଶ କଂଗ୍ରେସ ଅଫିସଠାରୁ ଆରମ୍ଭକରି ଜିଲ୍ଲା କଂଗ୍ରେସ ଓ ଆଞ୍ଚଳିକ ଅଫିସମାନଙ୍କରେ ପ୍ରାୟ ତାଲାପଡ଼ିଯାଇଥିଲା । ବିଜୁବାବୁ ଅତି ବିମର୍ଷ ଅବସ୍ଥାରେ କଲିକତାରେ ରହୁଥିଲେ । ପ୍ରଦେଶ କଂଗ୍ରେସ କମିଟିର ସଭାପତି ଶ୍ରୀ ବିଜୟ କୁମାର ପାଣି ଆଉ

ଦାୟିତ୍ୱ ନେଇପାରିବେନାହିଁ ବୋଲି କହି ତାଙ୍କର ଇସ୍ତଫାପତ୍ର ସଂପାଦକ ଶ୍ରୀ ବିଜୟକୃଷ୍ଣ ଦେଙ୍କ ପାଖକୁ ପଠାଇଦେଇଥିଲେ । ବିଧାନସଭାରେ ଆମର ଯେଉଁ ଏକତ୍ରିଂଶ ଜଣ କଂଗ୍ରେସ ସଭ୍ୟ ଥିଲେ ସେମାନେ ପ୍ରାୟ ନିସ୍ତେଜ ଅବସ୍ଥାରେ ଥାଆନ୍ତି । କଂଗ୍ରେସ ସରକାର କୁଆଡ଼େ ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟଦ୍ୱାରା ସରକାରଙ୍କର ଗଚ୍ଛାଘର ଶୂନ୍ୟକରିଯାଇଥିବା ଅଭିଯୋଗ କରି ବିଧାନସଭାରେ କଂଗ୍ରେସ ସଭ୍ୟମାନଙ୍କୁ ପ୍ରବଳ ଆକ୍ରମଣର ସମ୍ମୁଖୀନ ହେବାକୁ ପଡୁଥାଏ ।

## କଂଗ୍ରେସର ସାଂଗଠନିକ ଶକ୍ତି ସଞ୍ଚାର

ଏହି ପରିପ୍ରେକ୍ଷୀରେ ଶ୍ରୀ ବିଜୟ କୁମାର ପାଣିଙ୍କ ଇସ୍ତଫାପତ୍ର ଗ୍ରହଣକରି ନୂଆ ସଭାପତି ନିର୍ବାଚନ କରିବା ଉଦ୍ଦେଶ୍ୟରେ ୧୯୬୭ ମସିହା ଜୁଲାଇ ମାସ ଅଠେଇଶ ତାରିଖରେ କଟକ ସ୍ୱରାଜ ଆଶ୍ରମରେ ପ୍ରଦେଶ କଂଗ୍ରେସ କମିଟିର ବୈଠକ ବସିଥିଲା । ସେତେବେଳର ପରିସ୍ଥିତିରେ ପ୍ରଦେଶ କଂଗ୍ରେସ ସଭାପତି ଦାୟିତ୍ୱ ଅତି ଆୟାସସାଧ୍ୟ ବୋଧ ହେଉଥିଲା– ତେଣୁ ଆକର୍ଷଣୀୟ ନଥିଲା । ବନ୍ଧୁମାନଙ୍କ ପରାମର୍ଶକ୍ରମେ ମୁଁ ଦାୟିତ୍ୱ ନେବାକୁ ସମ୍ମତ ହେବାରୁ ଶ୍ରୀ ପାଣିଙ୍କର ଇସ୍ତଫାପତ୍ର ଗୃହୀତ ହେଲା । ମୁଁ ସର୍ବସମ୍ମତିକ୍ରମେ ସଭାପତି ନିର୍ବାଚିତ ହୋଇଥିଲି । ଏହି ଦାୟିତ୍ୱରେ ମୋତେ ଚାରିବର୍ଷ କାଳ ରହିବାକୁ ପଡ଼ିଥିଲା । ବହୁ ଐତିହାସିକ ଘଟଣା, ଅଘଟଣା ଓ ଦୁର୍ଘଟଣା ଏହି ସମୟ ମଧ୍ୟରେ ଘଟିଥିଲା । ଅବିଭକ୍ତ କଂଗ୍ରେସର ମୁଁ ହେଉଛି ଓଡ଼ିଶା ପ୍ରଦେଶ କଂଗ୍ରେସର ଶେଷ ସଭାପତି ।

ସରକାରରେ ନଥାଇ ସଂଗଠନ କାର୍ଯ୍ୟ ଚଳାଇବାର ଏକ ପରୀକ୍ଷା ସମୟ ଆସିଥାଏ । ସଭାପତି ରୂପେ ନିର୍ବାଚିତ ହେବା ପରେ ମୁଁ ପ୍ରଥମେ କଂଗ୍ରେସ ଲୋକଙ୍କୁ ଉଦ୍‌ବୋଧନ ଦେଇ କହିଥିଲି ଯେ ନିର୍ବାଚନରେ କଂଗ୍ରେସ ବିପର୍ଯ୍ୟୟରୁ ଶିକ୍ଷା ଅର୍ଜନକରି ସମ୍ମିଳିତ ଉଦ୍ୟମଦ୍ୱାରା କଂଗ୍ରେସ ଅନୁଷ୍ଠାନର ଶକ୍ତି ବୃଦ୍ଧିକରି ତା'ର ପୂର୍ବ ଗୌରବ ଫେରାଇ ଆଣିବାପାଇଁ ଶପଥ ନେବାକୁ ହେବ । ନିଜ ନିଜ ମଧ୍ୟରେ ମତାନ୍ତର ଭୁଲି ଦଳକୁ ପୁଣି ସଂଗଠିତ ଓ ସୁଦୃଢ଼ କରିବାକୁ ମୁଁ ଆହ୍ୱାନ ଦେଇଥିଲି ଏବଂ ଜନସାଧାରଣଙ୍କ ସହିତ ତଥା ସେମାନଙ୍କର ସମସ୍ୟା ସହିତ ଘନିଷ୍ଠ ସଂପର୍କ ରଖିବାପାଇଁ ପରାମର୍ଶ ଦେଇଥିଲି । ପରଦିନ ପୁଣି ପ୍ରଦେଶ କଂଗ୍ରେସ କମିଟି ଓ ରାଜ୍ୟ ବିଧାନସଭାର ମିଳିତ ବୈଠକ ସେହି ସ୍ୱରାଜ ଆଶ୍ରମରେ ବସିଲା । ଜିଲ୍ଲା କଂଗ୍ରେସ କମିଟିଗୁଡ଼ିକୁ କିପରି ସକ୍ରିୟ କରାଯିବ ସେ ସମ୍ବନ୍ଧରେ ଆଲୋଚନା ହୋଇ କେତେକ ନିର୍ଦ୍ଦିଷ୍ଟ କାର୍ଯ୍ୟପନ୍ଥା ସ୍ଥିରକରାଯାଇଥିଲା । ପ୍ରଦେଶ କଂଗ୍ରେସର ଆର୍ଥିକ ଅବସ୍ଥା ସେତେବେଳେ ଅତି ଶୋଚନୀୟ ଥାଏ । ଦେ'ଣା ପରିଶୋଧ କରିବାକୁ ଥିଲା ବାଇଶ ଲକ୍ଷ ଟଙ୍କା ଏବଂ ଦୈନନ୍ଦିନ ଖର୍ଚ୍ଚପାଇଁ ବ୍ୟାଙ୍କରେ ମାତ୍ର ଶହେ ଖଣ୍ଡେ ଟଙ୍କା ଥାଏ । ପ୍ରଦେଶ କଂଗ୍ରେସ କମିଟିର ଅଫିସ୍ ଖର୍ଚ୍ଚ, କର୍ମଚାରୀମାନଙ୍କର ଦରମା, ଡ୍ରାଇଭରମାନଙ୍କର ଦରମା ଓ ସ୍ୱରାଜ ଆଶ୍ରମରେ ମେସ୍ ଚଳାଇବା ଇତ୍ୟାଦି ବାବଦରେ ସେତେବେଳେ ମାସକୁ ପ୍ରାୟ ତିନି ହଜାର ଟଙ୍କା ଦରକାର ପଡୁଥାଏ । ଦେ'ଣା ପରିଶୋଧର ଦାୟିତ୍ୱ ଯେତେବେଳେ ବିଜୁବାବୁଙ୍କୁ ବହନ କରିବାକୁ ପଡୁଥାଏ ସେତେବେଳେ ଦୈନିକ ଖର୍ଚ୍ଚପାଇଁ ତାଙ୍କୁ ମାଗିବାକୁ ମୋର ମନ ଆଦୌ ବଳିଲା ନାହିଁ । ସେତେବେଳକାର ପରିସ୍ଥିତିରେ ମାସକୁ ତିନିହଜାର ଟଙ୍କା ଆଦାୟ କରିବାକୁ ମୁଁ ଅଣନିଃଶ୍ୱାସୀ ହୋଇ ଯାଉଥାଏ । କ୍ଷମତାରେ ଥିଲାବେଳେ ଯେଉଁ ବ୍ୟବସାୟୀମାନେ ଦେଖାକରିବାକୁ କଂଗ୍ରେସ ଲୋକଙ୍କ ପାଖକୁ ଦିନକୁ ଦଶଥର ଦୌଡୁଥିଲେ ଏବେ ସେମାନଙ୍କ ପାଖକୁ ଗଲେ ମଧ୍ୟ ଦେଖାମିଳୁନଥାଏ । ଯେଉଁମାନେ କଂଗ୍ରେସପାଇଁ ଅନ୍ୟୂନ ହଜାରେ ଟଙ୍କା ଚାନ୍ଦା ଯାଚୁଥିଲେ ସେମାନଙ୍କଠାରୁ ଏକାବନ ଟଙ୍କା ବାହାରକରିବା ବଡ଼ ଦୁରୂହ ବ୍ୟାପାର ହେଉଥାଏ । ଆମ୍ଭମାନଙ୍କୁ ଦେଖିଲେ ନଦେଖିଲାପରି ଏଡ଼ାଇଦେବା ହୋଇଥିଲା ସାଧାରଣତଃ ବ୍ୟବସାୟୀମାନଙ୍କର ଆଚରଣ । କ୍ଷମତାସୀନ ବ୍ୟକ୍ତିଙ୍କ ପାଖରେ କୁଆର ହେଲାକ୍ଷଣି ଆର ପାଖରେ ଭଟ୍ଟା– ଏହାହିଁ ମୋର ସେତେବେଳକାର ଅନୁଭୂତି ।

କେନ୍ଦୁପତ୍ର ବ୍ୟବସାୟୀମାନେ ଓଡ଼ିଶା ରାଜନୀତିକୁ କଳଙ୍କିତ କରନ୍ତି; ମାତ୍ର ମୁଁ ସେତେବେଳେ ସେମାନଙ୍କ ପାଖକୁ ଦଶଥର ଦୌଡ଼ିଲେ ମଧ୍ୟ ପ୍ରଦେଶ କଂଗ୍ରେସ ପାଇଁ ଗୋଟିଏ ପଇସା ଆଦାୟ କରିପାରୁ ନଥାଏ । ଓଡ଼ିଶାର ସବୁ କେନ୍ଦୁପତ୍ର ବ୍ୟବସାୟୀଙ୍କ ଅଫିସ କଲିକତା ହରିସନ୍ ରୋଡ଼ରୁ ବାହାରିଥିବା ଆର୍ମାନିୟନ ଷ୍ଟ୍ରିଟ୍‌ରେ ଅବସ୍ଥିତ । ମୁଁ ସେଠାକୁ ଅନେକ ଥର ଯାଇଥିଲି । ପୁଣି କେନ୍ଦୁପତ୍ର ବ୍ୟବସାୟୀମାନଙ୍କ ମଧ୍ୟରେ ଜଣେ ମୁଖ୍ୟ ବ୍ୟକ୍ତି ଶ୍ରୀ ଗୋପାଳ ଘୋଷଙ୍କୁ ଡକାଇ ପଶ୍ଚିମ ବଙ୍ଗଳାର ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ସେନ୍ ଓଡ଼ିଶା କଂଗ୍ରେସକୁ ସାହାଯ୍ୟ କରିବାକୁ କହିଥିଲେ ମଧ୍ୟ ସେ ଦେବେ ଦେବେ ବୋଲି କହି ଗୋଟିଏ ପଇସା ଦେଇନଥିଲେ; କିନ୍ତୁ ଏଣେ ଖବରକାଗଜରେ ପ୍ରକାଶିତ ହେଉଥାଏ ଯେ ପ୍ରାୟ କୋଟିଏ ଟଙ୍କାର ରିହାତି ପାଇବାପାଇଁ ପଚିଶ ଲକ୍ଷ ଟଙ୍କାର ଥଳିଧରି ସ୍ୱତନ୍ତ୍ର-ଜନକଂଗ୍ରେସ ମନ୍ତ୍ରୀଙ୍କ ଦୁଆରେ କେନ୍ଦୁପତ୍ର ବ୍ୟବସାୟୀମାନେ ଅଧିଆ ପଡ଼ିଥାଆନ୍ତି । ମୋର ଏ ପ୍ରକାର ତିକ୍ତ ଅନୁଭୂତି ପରେ ମୁଁ ଓଡ଼ିଶା ରାଜନୀତିରେ କେନ୍ଦୁପତ୍ର ବ୍ୟବସାୟ ସଂପର୍କରେ ନବବାବୁଙ୍କ କଟୁମନ୍ତବ୍ୟ ମନେପକାଇଥିଲି ଏବଂ ଭବିଷ୍ୟତରେ କେବେ କ୍ଷମତାକୁ ଆସିଲେ କେନ୍ଦୁପତ୍ର ବ୍ୟବସାୟକୁ ଜାତୀୟକରଣ କରାଇବି ବୋଲି ମନସ୍ଥ କରିଥିଲି । କାଳକ୍ରମେ ମୋର ଏହି ଉଦ୍ୟମ ସଫଳ ହୋଇଥିଲା ।

କଂଗ୍ରେସ ସଂଗଠନକୁ ସୁଦୃଢ଼ କରିବା ନିମନ୍ତେ ମୁଁ ପୂରା ସମୟ ଦେଇ କାର୍ଯ୍ୟ ଆରମ୍ଭ କରିଥିଲି । ଶ୍ରୀ ପ୍ରତାପଚନ୍ଦ୍ର ମହାନ୍ତି ଓ ଶ୍ରୀ ଲକ୍ଷ୍ମଣ ମଲ୍ଲିକ ପ୍ରଦେଶ କଂଗ୍ରେସ କମିଟିର ସଂପାଦକରୂପେ ନିଯୁକ୍ତ ହୋଇଥିଲେ । ସେମାନଙ୍କର ପୂର୍ଣ୍ଣ ସହଯୋଗଦ୍ୱାରା ପ୍ରଦେଶ କଂଗ୍ରେସର କାର୍ଯ୍ୟ ସକ୍ରିୟ ଭାବରେ ପରିଚାଳିତ ହୋଇଥିଲା । ମୁଁ ପ୍ରତିଦିନ ସ୍ୱରାଜ ଆଶ୍ରମରେ ପ୍ରଦେଶ କଂଗ୍ରେସ କମିଟିର କାର୍ଯ୍ୟାଳୟକୁ ଯାଉଥିଲି । ସବୁ ଜିଲ୍ଲାରେ କଂଗ୍ରେସ କର୍ମୀମାନଙ୍କର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ସେଥିରେ ମୁଁ ଓ ବିଜୁବାବୁ ଉଭୟ ଯୋଗଦେଉଥାଉଁ । ପ୍ରାୟ ସବୁ ଜିଲ୍ଲାର ସଦର ମହକୁମାମାନଙ୍କରେ କଂଗ୍ରେସ ପକ୍ଷରୁ ସାଧାରଣ ସଭାମାନ କରାଯାଉଥାଏ । ମୁଁ ଓ ଶ୍ରୀ ବିଜୁ ପଟ୍ଟନାୟକ ଏହି ସଭାମାନଙ୍କରେ ଯୋଗଦେଉଥାଉଁ । ସାଧାରଣ ସଭାମାନଙ୍କରେ ବହୁ ଜନସମାବେଶ ହେଉଥାଏ । ପ୍ରାୟ ବର୍ଷକ ଭିତରେ ଆମ ରାଜ୍ୟରେ କଂଗ୍ରେସର ଶକ୍ତି ବୃଦ୍ଧିପାଇବା ଅନୁଭୂତ ହୋଇଥିଲା । ଜିଲ୍ଲାଗୁଡ଼ିକ ସକ୍ରିୟ ହେବା ପରେ ସ୍ୱରାଜ ଆଶ୍ରମରେ ମୁଁ ଗୋଟିଏ ରାଜ୍ୟସ୍ତରୀୟ କଂଗ୍ରେସକର୍ମୀ ସମ୍ମିଳନୀ କରାଇଥିଲି । ଆମର ସବୁ କର୍ମୀ ଅତି ଉତ୍ସାହର ସହିତ ସମ୍ମିଳନୀର ସଫଳତାପାଇଁ କାର୍ଯ୍ୟ କରିଥିଲେ । ରାତିଦିନ ଲାଗି ସ୍ୱରାଜ ଆଶ୍ରମକୁ ଖୁବ୍ ଭଲଭାବରେ ସଜାସଜି କରିଥିଲେ । ସାଙ୍ଗରେ ଚୁଡ଼ାଚାଉଳ ଧରି ସବୁ ଜିଲ୍ଲାରୁ କଂଗ୍ରେସ କର୍ମୀମାନେ ଆସିଥିଲେ । ଏହି ସମ୍ମିଳନୀରେ ସ୍ଥିରହୋଇଥିଲା ଯେ ଏଣିକି ଲୋକଙ୍କର ସମସ୍ୟାର ସମାଧାନପାଇଁ ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମ ଗ୍ରହଣ କରିବାକୁ ହେବ । ମୋଟ ଉପରେ ସମ୍ମିଳନୀଟି ବିଶେଷ ଉତ୍ସାହଉଦ୍ଦୀପନା ସୃଷ୍ଟିକରିଥିଲା ଏବଂ କଂଗ୍ରେସ ଲୋକଙ୍କ ଭିତରେ ନୂତନ ଆତ୍ମବିଶ୍ୱାସ ସୃଷ୍ଟି କରିଥିଲା । ଏ ସଂପର୍କରେ ମୋର ଗୋଟିଏ କଥା ମନେଅଛି । ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ସେହି ସମୟରେ ପ୍ରଜାତନ୍ତ୍ରରୁ ସଂପର୍କ ତୁଟାଇ ସ୍ୱରାଜ ଆଶ୍ରମ ସନ୍ନିକଟ କଲେଜ ଲେନ୍‌ରେ ରହୁଥିଲେ । ସେଠୁ ତାଙ୍କର 'ପୌରୁଷ' ପତ୍ରିକା ପ୍ରକାଶକରୁଥିଲେ । ମୁଁ ସେହି କଲେଜ ଲେନ୍ ଦେଇ ସ୍ୱରାଜ ଆଶ୍ରମକୁ ପ୍ରତିଦିନ ଯିବାଆସିବା କରୁଥାଏ । ଦିନେ ତାଙ୍କ ଘର ପାଖରେ ତାଙ୍କ ସହିତ ମୋର ଦେଖାହେଲା । ଆମର ସ୍ୱରାଜ ଆଶ୍ରମରେ ଅନୁଷ୍ଠିତ ହୋଇଥିବା ସମ୍ମିଳନୀକୁ ସେ ଖୁବ୍ ପ୍ରଶଂସା କରିଥିଲେ ଏବଂ କହିଥିଲେ, ''ଆପଣ ଏଠାରେ ଗୋଟିଏ Little A.I.C.C. କରିଦେଲେ ।'' ତା'ପରେ କେତେ ଥର ଆମ ଦୁଇଜଣଙ୍କର ଆଲୋଚନା ପରେ ସେ କଂଗ୍ରେସରେ ଯୋଗଦେଇଥିଲେ । ତା'ପୂର୍ବରୁ ସେ ଜଣେ ଜନକଂଗ୍ରେସ ସମର୍ଥିତ ପ୍ରାର୍ଥୀରୂପେ ନିର୍ବାଚନ ରାଜନୀତିରେ ଯୋଗଦେଇ ସେଥିରୁ ସଂପର୍କ ତୁଟାଇ ବସିଥିଲେ ।

ପ୍ରଦେଶ କଂଗ୍ରେସ ସକ୍ରିୟ ହେବାରୁ ସ୍ୱରାଜ ଆଶ୍ରମ ନାନାବିଧ କଂଗ୍ରେସ ସଂପର୍କୀୟ ଅନୁଷ୍ଠାନର

କେନ୍ଦ୍ର ହୋଇଉଠିଥିଲା । ଯୁବ କଂଗ୍ରେସ, ମହିଳା କଂଗ୍ରେସ ଓ ଶ୍ରମିକ ବିଭାଗ ପ୍ରଭୃତିର ସଭାସମିତି ଆଲୋଚନାଦ୍ୱାରା ସ୍ୱରାଜ ଆଶ୍ରମ ମୁଖରିତ ହୋଇଥିଲା । ଏହା କ୍ଷମତାସୀନ ଜନକଂଗ୍ରେସ ଲୋକଙ୍କ ପକ୍ଷରେ ଅସହ୍ୟ ହୋଇଥିଲା । ସ୍ୱରାଜ ଆଶ୍ରମ ମଧ୍ୟରେ ଗୋଟିଏ ଘରକୁ ଜନକଂଗ୍ରେସ ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ର ନାଥ ପଟ୍ଟନାୟକ ଚାବିଦେଇ ବନ୍ଦକରି ରଖିଥିଲେ । ପୂର୍ବରୁ କଂଗ୍ରେସର ଜଣେ କର୍ମୀ ହିସାବରେ ସେହି ଘରେ ସେ ରହୁଥିଲେ । ପ୍ରଦେଶ କଂଗ୍ରେସର କାର୍ଯ୍ୟ ବୃଦ୍ଧିପାଇବାରୁ ସ୍ୱରାଜ ଆଶ୍ରମରେ ସ୍ଥାନାଭାବ ପଡ଼ିଥିଲା । ତେଣୁ ସେ ଘରଟି ଛାଡ଼ିଦେବାପାଇଁ ଶ୍ରୀ ସୁରେନ୍ଦ୍ର ପଟ୍ଟନାୟକଙ୍କୁ ଖବର ଦିଆଯାଇଥିଲା; ମାତ୍ର ତାଙ୍କର ଘର ଛାଡ଼ିବା ତ ଦୂରର କଥା ବରଂ ଉଦ୍ୟମ ହୋଇଥିଲା ବଳପ୍ରୟୋଗ କରି ଆମ୍ଭମାନଙ୍କୁ ସ୍ୱରାଜ ଆଶ୍ରମରୁ ବାହାରକରିଦେବାକୁ । କଟକ ସ୍ୱରାଜ ଆଶ୍ରମଟି କଟକ ଜିଲ୍ଲା କଂଗ୍ରେସ କମିଟିର ସଂପତ୍ତି । କଟକ ଜିଲ୍ଲା କଂଗ୍ରେସ କମିଟିର ଅନୁମତିକ୍ରମେ ସେଠାରେ ପ୍ରାଦେଶିକ କଂଗ୍ରେସ କାର୍ଯ୍ୟାଳୟ ଥିଲା । ଏହି ସଂପତ୍ତିର ୧୯୪୦ ମସିହା ଟ୍ରଷ୍ଟ ଦଲିଲ୍ ଅନୁସାରେ ଟ୍ରଷ୍ଟି ଥିଲେ ସର୍ବଶ୍ରୀ ଭାଗୀରଥି ମହାପାତ୍ର, ନିତ୍ୟାନନ୍ଦ କାନୁନ୍‌ଗୋ, ନବକୃଷ୍ଣ ଚୌଧୁରୀ, ହରେକୃଷ୍ଣ ମହତାବ, ପ୍ରାଣକୃଷ୍ଣ ପଢ଼ିହାରୀ, ମଦନମୋହନ ପଟ୍ଟନାୟକ ଓ ସ୍ୱାମୀ ବିଚିତ୍ରାନନ୍ଦ ଦାସ । କେତେକ ଟ୍ରଷ୍ଟି ମରିଯିବା ପରେ ସେମାନଙ୍କ ସ୍ଥାନରେ ସର୍ବଶ୍ରୀ ପବିତ୍ରମୋହନ ପ୍ରଧାନ, ସୁରେନ୍ଦ୍ର ନାଥ ପଟ୍ଟନାୟକ ଓ ବନମାଳୀ ପଟ୍ଟନାୟକ ଟ୍ରଷ୍ଟି ରୂପେ ନିଆଯାଇଥିଲେ ବୋଲି ଶୁଣାଯାଉଥିଲା । ସେତେବେଳେ ଅଧିକାଂଶ ଟ୍ରଷ୍ଟି ଜନକଂଗ୍ରେସ ଲୋକ ହୋଇଥିବାରୁ ସେମାନେ ପ୍ରଦେଶ କଂଗ୍ରେସ ଅଫିସକୁ ସେଠାରୁ ଉଠାଇନେବାପାଇଁ ଆମକୁ କହୁଥାଆନ୍ତି, ଆମେ ସେକଥା ଶୁଣୁନଥାଉ । ତେଣୁ ଜବରଦସ୍ତି ଦଖଲ କରିନେବା ଥିଲା ସେମାନଙ୍କ ଉଦ୍ଦେଶ୍ୟ । ଦିନେ ସନ୍ଧ୍ୟାବେଳେ ମୁଁ ପ୍ରଦେଶ କଂଗ୍ରେସ ଅଫିସରେ ବସିଛି, ହଠାତ୍ କେତେକ ଲୋକଙ୍କ ସହିତ ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ରନାଥ ପଟ୍ଟନାୟକ ଆସି ସେଠାରେ ପହଞ୍ଚିଥିଲେ । ଆମ୍ଭେମାନେ କାହିଁକି ପ୍ରଦେଶ କଂଗ୍ରେସ ଅଫିସ୍ ସ୍ୱରାଜ ଆଶ୍ରମରୁ ଉଠାଇ ନନେଉଛୁ ସେ କଥା ସେମାନେ ଆମକୁ ପଚାରିଥିଲେ । ଆମର ଉଠିଯିବାର ପ୍ରଶ୍ନ ନାହିଁ ବୋଲି ମୁଁ କହିଥିଲି । ସେ କହିଥିଲେ ଯେ ସଂପତ୍ତିଟି ଟ୍ରଷ୍ଟିମାନଙ୍କର ଦାୟିତ୍ୱରେ ଅଛି ଏବଂ ଟ୍ରଷ୍ଟିମାନେ ଆମେ ସେଠାରେ ରହିବାକୁ ଚାହୁଁନାହାନ୍ତି; ତେଣୁ ଆମେ ସ୍ୱରାଜ ଆଶ୍ରମ ଛାଡ଼ିଯିବା ଆବଶ୍ୟକ । ସେ ମୋତେ ଟ୍ରଷ୍ଟିମାନଙ୍କର ନାମ କହିଥିଲେ । ସେମାନଙ୍କ ଭିତରୁ ଅଧିକାଂଶ ସେତେବେଳେ ଜନକଂଗ୍ରେସରେ ଥିଲେ । ମୁଁ ଉତ୍ତର ଦେଇଥିଲି ଯେ ସେମାନଙ୍କ କଥାରେ ଆମେ ଯିବୁନାହିଁ, କାରଣ କଂଗ୍ରେସଲୋକ ହିସାବରେ ସେମାନେ ଟ୍ରଷ୍ଟି ଥିଲେ । ଦଳ ପରିବର୍ତ୍ତନ ଯୋଗୁଁ ସେମାନେ ଟ୍ରଷ୍ଟି ହୋଇ ରହିବାର ଯୋଗ୍ୟତା ହରାଇଛନ୍ତି । ଉଦାହରଣ ଦେଇ ମୁଁ କହିଥିଲି ଯେ ଜଗନ୍ନାଥ ମହାପ୍ରଭୁଙ୍କର ସଂପତ୍ତିର ଟ୍ରଷ୍ଟିମାନେ ଯଦି ମୁସଲମାନ ଧର୍ମ ଗ୍ରହଣକରନ୍ତି ତେବେ କ'ଣ ସେମାନେ ଟ୍ରଷ୍ଟି ହୋଇ ରହିବେ ? ମୋ କଥା ଶୁଣି ସେ ଆଉ କିଛି ନକହି ସ୍ୱରାଜ ଆଶ୍ରମ ଛାଡ଼ି ଚାଲିଯାଇଥିଲେ । ତାହାଛଡ଼ା ମୋର ପୂର୍ବବର୍ତ୍ତୀ ସଭାପତିମାନଙ୍କ ଅମଳରୁ ପ୍ରଦେଶ କଂଗ୍ରେସ ଉପରେ ଗଡ଼ିଆସିଥିବା କେତେକ ସରକାରୀ ବକେୟା ପାଉଣା ବାବଦରେ ବ୍ୟକ୍ତିଗତଭାବରେ ଦାୟୀ କରି ମୋ ନାମରେ କେତେଗୁଡ଼ିଏ ଦେୱାନୀ ମକଦ୍ଦମା ସ୍ୱତନ୍ତ୍ର-ଜନକଂଗ୍ରେସ ସରକାରଙ୍କ ପକ୍ଷରୁ ଦାଏର କରାଯାଇଥିଲା । ଆମ୍ଭମାନଙ୍କର ବନ୍ଧୁ ଆଡ଼ଭୋକେଟ୍ ଶ୍ରୀ ଗୋକୁଳବିହାରୀ ମହାନ୍ତି ମୋପାଇଁ ବିନା ଫିସ୍‌ରେ ଲଢ଼ି ସେଗୁଡ଼ିକ ସଫଳତାର ସହିତ ଅଟକାଇ ଦେଇଥିଲେ । ସେତେବେଳେ ସ୍ୱରାଜ ଆଶ୍ରମର ଦୁଇଟି ବଖରାରେ ଶ୍ରୀ ମାଗୁଣି ଚରଣ କାନୁନ୍‌ଗୋ ଓ ଶ୍ରୀ ମୁରଲିଧର କାନୁନ୍‌ଗୋ ପ୍ରାୟ ସ୍ଥାୟୀ ବାସିନ୍ଦା ଭଳି ରହୁଥିଲେ । ମୁରଲିବାବୁ ସେତେବେଳେ ବିଧାନସଭାର ସଭ୍ୟ ଥିଲେ ।

## ଖାନ୍ନା କମିଶନ : ବହ୍ୱାଡ଼ମ୍ବର ଲଘୁକ୍ରିୟା

ସ୍ୱତନ୍ତ୍ର-ଜନକଂଗ୍ରେସ ସରକାରଙ୍କର ସର୍ବପ୍ରଧାନ ଓ ସର୍ବପ୍ରଥମ ପଦକ୍ଷେପ ହୋଇଥିଲା ୧୯୬୧ ମସିହାଠାରୁ ୧୯୬୭ ମସିହା ପର୍ଯ୍ୟନ୍ତ ଯେଉଁସବୁ ମୁଖ୍ୟମନ୍ତ୍ରୀ ଓ ମନ୍ତ୍ରୀମାନେ କାର୍ଯ୍ୟ କରିଥିଲେ, ସେମାନଙ୍କ ବିରୁଦ୍ଧରେ ହୋଇଥିବା ଦୁର୍ନୀତି ଅଭିଯୋଗଗୁଡ଼ିକର ବିଚାରବିଭାଗୀୟ ତଦନ୍ତପାଇଁ ଗୋଟିଏ କମିଶନ ନିଯୁକ୍ତ କରିବା । କମିଶନ ବସାଇବା ବିଷୟରେ ବିଶେଷ ଉତ୍ସାହୀ ଥିଲେ ଶ୍ରୀ ହରେକୃଷ୍ଣ ମହତାବ । ତେଣୁ ଆମ୍ଭମାନଙ୍କ ଉପରେ ପ୍ରତିଶୋଧ ନେବାପାଇଁ ତାଙ୍କୁ ସନ୍ତୁଷ୍ଟ କରିବା ଦୃଷ୍ଟିରୁ ଏହି କମିଶନ ବସାଯାଇଥିଲା । କାରଣ ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ ଗୋଟିଏ କମିଶନ ବସାଇବାଟା ଥିଲା ଶ୍ରୀ ମହତାବଙ୍କର ୧୯୬୧ ପୂର୍ବର ଈର୍ଷ୍ୟାପ୍ରଣୋଦିତ ଅଭିଳାଷ । ସ୍ମରଣ କରିବାର କଥା ଯେ, ସେତେବେଳେ ବିଜୁବାବୁଙ୍କ ଆକ୍ରମଣ ଫଳରେ ଓଡ଼ିଶାରେ ମହତାବ-ମହାରାଜା ମିଳିତ ମନ୍ତ୍ରିମଣ୍ଡଳ ଭାଙ୍ଗିଯାଇଥିଲା । ୧୯୬୦ ମସିହାରେ ଶ୍ରୀ ମହତାବଙ୍କର ଯେତେବେଳେ ବିଜୁ ପଟ୍ଟନାୟକଙ୍କ ସହିତ ରାଜନୈତିକ କାରଣରୁ ଝଗଡ଼ା ହୋଇଥିଲା ସେତେବେଳେ ଦିନେ ସେ ଅତ୍ୟନ୍ତ ଉତ୍ତ୍ୟକ୍ତ ହୋଇ କୋଇଲାରୁ ପେଟ୍ରୋଲ୍ ଉତ୍ପାଦନ ଯୋଜନା ଓ ଓଡ଼ିଶା ଟେକ୍ସଟାଇଲ୍ ମିଲ୍ ସମ୍ବନ୍ଧରେ ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ କିପରି ଗୋଟିଏ କମିଶନ ବସାଯାଇପାରିବ ତା ପରୀକ୍ଷା କରିବାପାଇଁ ତତ୍କାଳୀନ ଆଇନ ବିଭାଗର ସଚିବ ଶ୍ରୀ ବୀରେନ୍ ଦାସଙ୍କୁ ନିର୍ଦ୍ଦେଶ ଦେବା କଥା ମୁଁ ଜାଣିଥିଲି । ଆଇନ ବିଭାଗ ସେକ୍ରେଟାରୀ ତା ପରୀକ୍ଷାକରି କହିଥିଲେ ଯେ ସେ ସମ୍ବନ୍ଧରେ କମିଶନ ବସିଲେ ଶ୍ରୀ ମହତାବ ନିଜେ ଅସୁବିଧାରେ ପଡ଼ିଯିବେ; କାରଣ ବିଜୁ ପଟ୍ଟନାୟକଙ୍କ ସହିତ ଅପଡ଼ ହେବା ପୂର୍ବରୁ ବିଧାନସଭାରେ ସେ ସେହିସବୁ ବିଷୟ ନିକାଶ କରିଦେଇ ବିଜୁବାବୁଙ୍କର କିଛି ତ୍ରୁଟିନାହିଁ ବୋଲି କହିଛନ୍ତି । ତେଣୁ କମିଶନ ବସାଇବାଟା ତାଙ୍କ ନିଜ ପକ୍ଷରେ ଅସୁବିଧା ସୃଷ୍ଟି କରିବ ବୋଲି ଅନୁଭବ କରି ଶ୍ରୀ ମହତାବ ଆଉ ସେଥିରେ ଅଗ୍ରସର ହେବାକୁ ମନ ବଳାଇନଥିଲେ । ବର୍ତ୍ତମାନ ତାଙ୍କର ଅଭିଳାଷ ପୂରଣ କରିବାର ସୁଯୋଗ ମିଳିଥିଲା । ତାଙ୍କର ଉଦ୍ଦେଶ୍ୟ ଥିଲା ବିଜୁ ପଟ୍ଟନାୟକ, ବୀରେନ୍ ମିତ୍ର ଓ ମୋ ବିରୁଦ୍ଧରେ କମିଶନ ବସାଇବାକୁ; ମାତ୍ର ତାହାକୁ ଲୋକେ କାଳେ ପାତରଅନ୍ତର ବିଚାର ବୋଲି ଭାବିବେ ସେଥିପାଇଁ ପନ୍ଦରଜଣ ମନ୍ତ୍ରୀ ଓ ଉପମନ୍ତ୍ରୀଙ୍କ ବିରୁଦ୍ଧରେ କମିଶନ ବସିଲା । ଦିଲ୍ଲୀ ହାଇକୋର୍ଟର ଜଣେ ବିଚାରପତି ଶ୍ରୀ ଏଚ. ଆର. ଖାନ୍ନା ଜଣିକିଆ କମିଶନ ରୂପେ ନିଯୁକ୍ତ ହୋଇଥିଲେ । ଭୁବନେଶ୍ୱର ସଚିବାଳୟ ମାର୍ଗରେ ଥିବା ଷ୍ଟେଟ୍ ଲାଇବ୍ରେରି ହଲ୍‌ରେ କମିଶନଙ୍କ କାର୍ଯ୍ୟାଳୟଟି ଖୋଲିଥିଲା । ରାଜ୍ୟ ସରକାରଙ୍କ ପକ୍ଷରୁ ଆଡଭୋକେଟ୍ ଜେନେରାଲ୍ ଶ୍ରୀ ଅଶୋକ ଦାସ ଆମ୍ଭମାନଙ୍କ ବିରୁଦ୍ଧରେ ସତୁରିଟି ଅଭିଯୋଗ ଆଗତକରିଥିଲେ । ଆଡଭୋକେଟ ଜେନେରାଲ୍‌ଙ୍କୁ ସାହାଯ୍ୟ କରିବାପାଇଁ ସାନ ବଡ଼ ପ୍ରାୟ ପନ୍ଦର କୋଡ଼ିଏ ଜଣ ଓକିଲ ସରକାରଙ୍କ ପକ୍ଷରୁ ନିଯୁକ୍ତ ହୋଇଥିଲେ । ପ୍ରାୟ ପ୍ରତ୍ୟେକ ଅଭିଯୋଗରେ ଏକରୁ ଅଧିକ ମନ୍ତ୍ରୀ ବା ଉପମନ୍ତ୍ରୀଙ୍କୁ ସଂପୃକ୍ତ କରାଯାଇଥିଲା । ସେହି ହିସାବରେ ମୋ ବିରୁଦ୍ଧରେ ପନ୍ଦରଟି ଅଭିଯୋଗ ଥିଲା । ମୋ ପକ୍ଷରୁ ମୋର ବନ୍ଧୁ ବାରିଷ୍ଟର ବୀରେନ୍ଦ୍ର ମୋହନ ପଟ୍ଟନାୟକ ଓ ଆଡଭୋକେଟ୍ ଶ୍ରୀ ଗୋବିନ୍ଦଚନ୍ଦ୍ର ସାହୁ କମିଶନଙ୍କ ଆଗରେ ଜବାବ ଦେଉଥିଲେ । ଶ୍ରୀ ବିଜୁ ପଟ୍ଟନାୟକ ଓ ଶ୍ରୀ ବୀରେନ୍ ମିତ୍ର ପ୍ରଭୃତି ଆମର ଅନ୍ୟ ବନ୍ଧୁଙ୍କ ପକ୍ଷରୁ ସର୍ବଶ୍ରୀ ଦୀନବନ୍ଧୁ ସାହୁ, ବିବୁଧେନ୍ଦୁ ମିଶ୍ର, ଶୋଭେଶ ରାୟ, କାମିନୀକାନ୍ତ ପଟ୍ଟନାୟକ, ଚିତ୍ତରଞ୍ଜନ ଚକ୍ରବର୍ତ୍ତୀ, ଆର୍.ସି. ମହାନ୍ତି, ଜି.ଡି. ମହାପାତ୍ର, ଆର୍.ଏନ୍. ମହାନ୍ତି, ବି.ଏମ୍. ମହାନ୍ତି, ଏମ୍. ରହେମାନ୍, ୱାଇ. ସନ୍ୟାସୀ ରାଓ ଓ ଜି.ଏସ୍. ରଥ ପ୍ରଭୃତି ଆଡଭୋକେଟ୍‌ମାନେ ଲଢୁଥିଲେ ।

ଓକିଲ ନିଯୁକ୍ତି ସମ୍ବନ୍ଧରେ ଏହିଠାରେ ମୋର ଗୋଟିଏ କଥା ମନେପଡ଼େ । ସରକାରଙ୍କ ପକ୍ଷରୁ ଯେଉଁ ଓକିଲମାନେ ଆମ ବିରୁଦ୍ଧରେ ଲଢୁଥିଲେ ସେମାନଙ୍କ ଭିତରୁ ଜଣକର ହାଇକୋର୍ଟ ବିଚାରପତି

ନିଯୁକ୍ତି ସମ୍ବନ୍ଧୀୟ ସୁପାରିସ୍ ମୁଁ ମୁଖ୍ୟମନ୍ତ୍ରୀ ଥିଲାବେଳେ ମୋ ପାଖକୁ ଆସିଥିଲା । ଖାନ୍ନା କମିଶନଙ୍କ କଥା ମୋତେ ସ୍ମରଣ କରାଇଦେଇ ସେ ସୁପାରିସ୍‌ରେ ଏକମତ ନହେବା ପାଇଁ କେତେକ ବନ୍ଧୁ ମୋତେ କହିଥିଲେ । କଟକରେ କେତେକ ଆଇନଜୀବୀ ମଧ୍ୟ ଏହି ସୁପାରିସ୍ ବିରୁଦ୍ଧରେ ଅସନ୍ତୋଷ ପ୍ରକାଶକରି କେନ୍ଦ୍ର ଆଇନମନ୍ତ୍ରୀଙ୍କୁ ଓ ଓଡ଼ିଶାର କେତେକ ପାର୍ଲିଆମେଣ୍ଟ ସଭ୍ୟଙ୍କୁ ଭେଟିଥିଲେ । ପ୍ରଶାସନିକ କ୍ଷେତ୍ରରେ କାର୍ଯ୍ୟନିର୍ବାହ କଲାବେଳେ ଏପ୍ରକାର ଜଜ୍ ନିଯୁକ୍ତି ବିଷୟରେ ଯୋଗ୍ୟତା ଓ ସଚ୍ଚୋଟପଣିଆ ବ୍ୟତୀତ ଅନ୍ୟ ବାହ୍ୟ ବିଷୟ ବିଚାରକୁ ନେବା ସମୀଚୀନ ହେବନାହିଁ ବୋଲି ମୁଁ ସେମାନଙ୍କୁ ବୁଝାଇଥିଲି । ତାହାଛଡ଼ା ସାଧାରଣ କ୍ଷେତ୍ରରେ କେହି ଜଣେ ଉଚ୍ଚସ୍ଥାନର ଅଧିକାରୀ ହେଲେ ତାକୁ ଅତୀତର କେତେକ କଥା ମନରୁ ଲିଭାଇଦେବାକୁ ହେବ ଏବଂ ସେ ସଂକୀର୍ଣ୍ଣମନା ନହୋଇ ଉଦାରମନା ହେବା ଆବଶ୍ୟକ ବୋଲି କହିଥିଲି । ହାଇକୋର୍ଟର ବିଚାରପତି ନିଯୁକ୍ତିରେ ଗୋଟିଏ ପଦ୍ଧତି ଅଛି । ପ୍ରଥମେ ସଂପୃକ୍ତ ହାଇକୋର୍ଟର ପ୍ରଧାନ ବିଚାରପତି ଯୋଗ୍ୟତାଥିବା ବ୍ୟକ୍ତିଙ୍କର ନାମ ସୁପାରିସ୍ କରି ରାଜ୍ୟ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠାନ୍ତି । ତା'ଉପରେ ମୁଖ୍ୟମନ୍ତ୍ରୀ ତାଙ୍କର ମତ ଦେଇ ରାଜ୍ୟପାଳଙ୍କ ପାଖକୁ ପଠାନ୍ତି । ରାଜ୍ୟପାଳ ତାହା ଅନୁମୋଦନ କଲା ପରେ ତାହା ପୁଣି ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଫେରିଆସେ । ତାହାପରେ ମୁଖ୍ୟମନ୍ତ୍ରୀ ତାକୁ କେନ୍ଦ୍ର ସରକାରଙ୍କର ଆଇନମନ୍ତ୍ରୀଙ୍କ ପାଖକୁ ପଠାନ୍ତି । କେନ୍ଦ୍ର ଆଇନମନ୍ତ୍ରୀ ସୁପ୍ରିମକୋର୍ଟର ପ୍ରଧାନ ବିଚାରପତିଙ୍କ ସହ ପରାମର୍ଶ କରି ରାଷ୍ଟ୍ରପତିଙ୍କ ଅନୁମୋଦନ ପାଇଁ ପଠାନ୍ତି । ରାଷ୍ଟ୍ରପତିଙ୍କ ଅନୁମୋଦନ ପରେ ନିଯୁକ୍ତି ପରୱାନା ରାଷ୍ଟ୍ରପତି ଭବନରୁ ପ୍ରକାଶପାଏ । ଏତେ ବୈଧାନିକ କ୍ଷମତାପନ୍ନ ଅନୁଷ୍ଠାନମାନ ଯେଉଁ ବିଷୟରେ ସଂପୃକ୍ତ ସେଥିରେ ସଂକୀର୍ଣ୍ଣମନା ହେଲେ ଆଦୌ ଚଳିବ ନାହିଁ । ଏହିପରି କହି ମୋର ବନ୍ଧୁମାନଙ୍କୁ ସନ୍ତୁଷ୍ଟ କରିଥିଲି ।

ମୋର ମୁଖ୍ୟମନ୍ତ୍ରିତ୍ୱ ସମୟରେ ଓଡ଼ିଶା ହାଇକୋର୍ଟର ଆଉ ଜଣେ ବିଚାରପତି ନିଯୁକ୍ତି ସମ୍ବନ୍ଧରେ ପ୍ରତିବନ୍ଧକ ସୃଷ୍ଟି ହେବା କଥା ମୋର ମନେପଡ଼େ । ଏହି ନିଯୁକ୍ତିପାଇଁ ହାଇକୋର୍ଟର ପ୍ରଧାନବିଚାରପତି ଆଇନ ବ୍ୟବସାୟରେ ଦକ୍ଷତା, ଉପଯୋଗିତା ଓ ସାଧୁତାକୁ ବିଚାରକୁ ନେଇ ଜଣେ ଆଡଭୋକେଟଙ୍କ ନାମ ସୁପାରିସ୍ କରି ମୋ ପାଖକୁ ପଠାଇଥିଲେ । ଉକ୍ତ ଆଡଭୋକେଟଜଣକ ଅପେକ୍ଷାକୃତ ଅଳ୍ପବୟସର ଥିବାରୁ ତାଙ୍କ ସୁପାରିସ୍‌ର ଯୁକ୍ତିଯୁକ୍ତତା ସମ୍ବନ୍ଧରେ ପ୍ରଧାନ ବିଚାରପତିଙ୍କ ସହିତ ଆଲୋଚନା କରି ସନ୍ତୁଷ୍ଟ ହେବାରୁ ରାଜ୍ୟପାଳଙ୍କ ଅନୁମୋଦନକ୍ରମେ ମୁଁ କେନ୍ଦ୍ରସରକାରଙ୍କ ଆଇନମନ୍ତ୍ରୀଙ୍କ ପାଖକୁ ପ୍ରୟୋଜନୀୟ କାର୍ଯ୍ୟାନୁଷ୍ଠାନପାଇଁ ପଠାଇଥିଲି । ସେ ତାହା ସୁପ୍ରିମ୍‌କୋର୍ଟର ପ୍ରଧାନ ବିଚାରପତିଙ୍କ ପାଖକୁ ପଠାଇଥିଲେ । କେନ୍ଦ୍ର ଆଇନମନ୍ତ୍ରୀ ତଥା ସୁପ୍ରିମ୍‌କୋର୍ଟର ପ୍ରଧାନ ବିଚାରପତି ରାଜ୍ୟସରକାର ଓ ହାଇକୋର୍ଟଠାରୁ ଆମର ସୁପାରିସ୍ ସମ୍ବନ୍ଧରେ କେତେକ ସ୍ପଷ୍ଟୀକରଣ ପାଇବା ପରେ ପ୍ରଧାନ ବିଚାରପତି ତାହା ରାଷ୍ଟ୍ରପତିଙ୍କ ଅନୁମୋଦନପାଇଁ ସୁପାରିସ୍ କରି କେନ୍ଦ୍ର ସରକାରଙ୍କ ପାଖକୁ ପଠାଇଥିଲେ । ଇତ୍ୟବସରରେ କଟକର କେତେକ ଓକିଲ, ପ୍ରଧାନମନ୍ତ୍ରୀ, କେନ୍ଦ୍ର ଆଇନମନ୍ତ୍ରୀ ତଥା କେତେକ ପାର୍ଲିଆମେଣ୍ଟ ସଦସ୍ୟଙ୍କୁ ଭେଟି ପ୍ରସ୍ତାବର ଉପଯୋଗିତା ସମ୍ବନ୍ଧରେ ପ୍ରତିକୂଳ ମତ ଦେବା ସଙ୍ଗେ ସଙ୍ଗେ ତତ୍କାଳୀନ ରାଜ୍ୟ ସରକାରଙ୍କ ସୁପାରିସ୍‌ରେ ପ୍ରିୟାପ୍ରୀତିତୋଷଣ ତଥା ମନ୍ଦ ଅଭିପ୍ରାୟ ଥିଲା ବୋଲି ଅଭିଯୋଗ କରିଥିଲେ । ସେମାନଙ୍କର ଏପ୍ରକାର ବିରୋଧ ହେତୁ ପ୍ରସ୍ତାବଟି ଅଟକି ଯାଇଥିଲା । ଆହୁରି ଆଶ୍ଚର୍ଯ୍ୟର କଥା ଯେ ସୁପ୍ରିମ୍‌କୋର୍ଟର ପ୍ରଧାନ ବିଚାରପତି ତାଙ୍କ ସୁପାରିସ୍‌କୁ ପ୍ରତ୍ୟାହାର କରିନେଇଥିଲେ । ଜାଣିବାର କଥା ଯେ, ପରବର୍ତ୍ତୀ ସରକାର ଏହି ନିର୍ଦ୍ଦିଷ୍ଟ ଆଡଭୋକେଟଙ୍କ ଉପଯୋଗିତା ସମୀକ୍ଷା କଲାବେଳେ ପୂର୍ବ ସରକାରଙ୍କର ମତାମତକୁ ଏଡ଼ାଇଦେଇପାରିନଥିଲେ ଏବଂ ତାଙ୍କୁହିଁ ଜଜ୍‌ରୂପେ ନିଯୁକ୍ତି ଦିଆଯାଇଥିଲା ।

ଖାନ୍ନା କମିଶନଙ୍କ ନିଯୁକ୍ତି ଆମ ରାଜ୍ୟରେ ଗୋଟିଏ ବିଶିଷ୍ଟ ଘଟଣା । ଏହା ପୂର୍ବରୁ ଏପ୍ରକାର କମିଶନ ମୁଖ୍ୟମନ୍ତ୍ରୀ ଓ ମନ୍ତ୍ରୀମାନଙ୍କ ବିରୁଦ୍ଧରେ ବସିନଥିଲା । ତା'ଛଡ଼ା ତିନିଜଣ ମୁଖ୍ୟମନ୍ତ୍ରୀଙ୍କ ସମେତ

ପନ୍ଦରଜଣ ମନ୍ତ୍ରୀ ଏଥିରେ ସଂପୃକ୍ତ ଥିଲେ । ତେଣୁ ସମସ୍ତଙ୍କ ଦୃଷ୍ଟି ଖାନ୍ନା କମିଶନଙ୍କ କାର୍ଯ୍ୟ ଉପରେ ପଡ଼ିଥିଲା । ଆମ୍ଭମାନଙ୍କ ବିରୁଦ୍ଧରେ ଅନେକ ହାସ୍ୟାସ୍ପଦ ଓ ବିଦ୍ୱେଷମୂଳକ ଅଭିଯୋଗ କରାଯାଇଥିଲା । ମୋ ବିରୁଦ୍ଧରେ ଆଗତ ହୋଇଥିବା ସେହିଭଳି କେତେକ ଅଭିଯୋଗ ବିଷୟରେ ମୁଁ ପୂର୍ବରୁ ବର୍ଣ୍ଣନା କରିଛି । ସଂପୃକ୍ତ ହଜାର ହଜାର ଫାଇଲ୍ କମିଶନଙ୍କ ଆଦେଶ ଅନୁସାରେ ଗୋଟିଏ ସ୍ଥାନରେ ମହଜୁତ୍ ରଖାଯାଇଥିଲା । ଅଭିଯୋଗ ସଂକ୍ରାନ୍ତରେ ଫାଇଲଗୁଡ଼ିକ ସାବଧାନତାସହ ପଢ଼ି ସେଥିରୁ ତଥ୍ୟ ସଂଗ୍ରହ କରିବାର ବ୍ୟବସ୍ଥା କରାଯାଇଥିଲା । ଏଥିପାଇଁ ମୋତେ ଭୁବନେଶ୍ୱରର ଆଡଭୋକେଟ ଶ୍ରୀ ଗୋବିନ୍ଦଚନ୍ଦ୍ର ସାହୁ ସାହାଯ୍ୟ କରିଥିଲେ । ମୋ ପକ୍ଷରୁ ଯେଉଁସବୁ ଜବାବ କମିଶନ ଆଗରେ ଦାଖଲହୋଇଥିଲା ତାହା ପ୍ରଥମେ ମୁଁ ନିଜେ ଭଲଭାବରେ ଲେଖୁଥିଲି । ମୁଁ କି ଆଦେଶ କାହିଁକି ଦେଇଥିଲି ବା ନିଷ୍ପତ୍ତି ନେଇଥିଲି ସେଇଟା ମୁଁ ନିଜେ ଲେଖିବା ଓ ମୋଠାରୁ ଶୁଣି ଓକିଲ ଲେଖିବା ପୃଥକ୍ । ମୁଁ ଲେଖିଲା ପରେ ତାକୁ ମୋର ଓକିଲ ଦେଖୁଥିଲେ । ତାହାଦ୍ୱାରା ପ୍ରାଞ୍ଜଳ ତଥ୍ୟ ଉପସ୍ଥାପନ କରାଯାଇପାରୁଥିଲା ବୋଲି ବାରିଷ୍ଟର ବୀରେନ୍‌ବାବୁ କହୁଥିଲେ । ବିଚାରପତି ଖାନ୍ନାଙ୍କୁ ସବୁକଥା ଅନୁଧ୍ୟାନ କରି ସରକାର ଓ ପକ୍ଷମାନଙ୍କଠୁଁ ଶୁଣି ରିପୋର୍ଟ ଦେବାକୁ ପ୍ରାୟ ପନ୍ଦରମାସ ଲାଗିଯାଇଥିଲା । ଆମ୍ଭମାନଙ୍କ ପକ୍ଷରୁ ଆମର ଓକିଲମାନେ କମିଶନଙ୍କ ପାଖରେ ଜବାବ ସବୁ ଦାଖଲ କରି ପ୍ରାରମ୍ଭିକ ଯୁକ୍ତି ବାଢ଼ିସାରିବା ପରେ ଦିନେ ସ୍ଥିରହେଲା ଯେ ବିଜୁ ପଟ୍ଟନାୟକ କମିଶନ ଆଗରେ ଉପସ୍ଥିତ ହୋଇ ଆମର ନେତା ହିସାବରେ ଆମ୍ଭମାନଙ୍କ ବିରୁଦ୍ଧରେ ହୋଇଥିବା ଅଭିଯୋଗଗୁଡ଼ିକ ସମ୍ବନ୍ଧରେ କିଛି ବକ୍ତବ୍ୟ ଉପସ୍ଥାପିତ କରିବା ଉଚିତ । ୧୯୬୮ ମସିହା ଡିସେମ୍ବର ଛବିଶ ତାରିଖରେ ବିଜୁବାବୁ ଓ ମୁଁ କମିଶନଙ୍କ କାର୍ଯ୍ୟାଳୟରେ କମିଶନଙ୍କ ଆଗରେ ଉପସ୍ଥିତ ହୋଇଥିଲୁ । ଷ୍ଟେଟ ଲାଇବ୍ରେରି ହଲ୍‌ଟି ଲୋକମାନଙ୍କଦ୍ୱାରା ଭରପୂର ହୋଇଯାଇଥିଲା । ଘରେ ଲୋକ ନଧରିବାରୁ ବାହାରେ ବହୁ ଲୋକଙ୍କ ସମାବେଶ ହୋଇଥିଲା । ତାହା ଭିତରେ ବିଜୁ ପଟ୍ଟନାୟକ ଉଠି କମିଶନଙ୍କୁ ସମ୍ବୋଧନ କରି ଅତି ଆବେଗପୂର୍ଣ୍ଣ ଭାଷା ଓ ଭଙ୍ଗୀରେ ଭାଷଣ ଦେଇ କଂଗ୍ରେସ ସରକାରଙ୍କ ସମୟରେ ଓଡ଼ିଶାର ଆର୍ଥିକ ସ୍ଥିତି ଦେବାଳିଆ ହୋଇଥିବା ଅଭିଯୋଗ କିପରି ସଂପୂର୍ଣ୍ଣ ଭିତ୍ତିହୀନ ଓ ଅଭିସନ୍ଧିମୂଳକ, ଅତ୍ୟନ୍ତ ଅନୁନ୍ନତ ଓଡ଼ିଶାକୁ ଅନ୍ୟ ଉନ୍ନତ ରାଜ୍ୟମାନଙ୍କ ସମକକ୍ଷ କରିବାକୁ ହେଲେ କି ପ୍ରକାର ପରିକଳ୍ପନା ଓ ପଦକ୍ଷେପ ଆବଶ୍ୟକ, ସେକଥା ଅତି ସୁନ୍ଦର ଭାବରେ କମିଶନଙ୍କ ହୃଦ୍‌ବୋଧ ହେବାଭଳି ତଥ୍ୟସହ ଉପସ୍ଥାପିତ କରିଥିଲେ । ଓଡ଼ିଶାର ଦୈବଦତ୍ତ ସମ୍ପତ୍ତି, ଖଣିଜ ସଂପଦ, ନଦନଦୀ, ବନ୍ୟସଂପଦ ଓ ସୁଦୀର୍ଘ ସମୁଦ୍ର ଉପକୂଳକୁ ଲୋକଙ୍କର କାର୍ଯ୍ୟରେ ଲଗାଇ ସେମାନଙ୍କୁ ଉନ୍ନତ କରିବାକୁ ହେଲେ ପରମ୍ପରାଗତ ସନାତନୀ ପନ୍ଥା ଛାଡ଼ି ଦ୍ରୁତ ପ୍ରଗତିଶୀଳ ପନ୍ଥା ଅନୁସରଣ କରିବାକୁ ପଡ଼ିବ । ତାହାହିଁ କରିବାକୁ ଯାଇ ସେ ଯଦି କୌଣସି ଅପରାଧ କରିଥାଆନ୍ତି ତା'ହେଲେ ତାଙ୍କୁ ଦୋଷୀ ବୋଲି ଘୋଷଣା କରିବାକୁ ସେ କମିଶନଙ୍କୁ ଅନୁରୋଧ କରିଥିଲେ । ସରକାରଙ୍କ ଆଡଭୋକେଟ୍ ଜେନେରାଲ୍‌ଙ୍କୁ ଲକ୍ଷ୍ୟ କରି ସେ କହିଥିଲେ ଯେ କୋଟି କୋଟି ଟଙ୍କା ଖାଇଯାଇଛନ୍ତି ବୋଲି ଅଭିଯୋଗ ହୋଇଛି । ଏକରେ କେତୋଟି ଶୂନ୍ ଦେଲେ କୋଟିଏ ହେବ ସେ କଥା ସେ (ଆଡଭୋକେଟ ଜେନେରାଲ୍) କହିପାରିବେ କି ? ସେ କିଛି ସମୟ ଅପେକ୍ଷା କଲେ; କିନ୍ତୁ କୌଣସି ଉତ୍ତର ପାଇନଥିଲେ । ବିଜୁ ପଟ୍ଟନାୟକଙ୍କର ଇଂରାଜୀରେ ବାଗ୍ମିତା ସମସ୍ତଙ୍କୁ ଚମତ୍କୃତକରିଥିଲା । କମିଶନ ଗମ୍ଭୀର ଭାବରେ ଧୈର୍ଯ୍ୟର ସହିତ ମନ୍ତ୍ରମୁଗ୍ଧ ହେଲାଭଳି ସବୁ ଶୁଣିଥିଲେ । ବିଜୁ ପଟ୍ଟନାୟକଙ୍କର ଇଂରାଜୀ ଭାଷଣ ଶୁଣିବାରକଥା ।

ବିଚାରପତି ଖାନ୍ନା ଅନେକ ସରଜମିନ ତଦନ୍ତ ପ୍ରସଙ୍ଗରେ କେଉଁଝର ଜିଲ୍ଲାରେ ଥିବା କଳିଙ୍ଗ ଆଇରନ୍ ୱାର୍କସ୍ ଏବଂ ଖଣିଜ ସମ୍ପଦ ଅଞ୍ଚଳ ବୁଲି ଦେଖିଥିଲେ । ପାରାଦ୍ୱୀପ ବନ୍ଦର ଦେଖିବାକୁ ଯାଇ ସେ ସେଠାରେ ଦୁଇଦିନ ରହି ନାନା କଥା ଅନୁଧ୍ୟାନ କରିଥିଲେ । ସେଠାରେ ଥିବା ଅଫିସରମାନଙ୍କ ଠାରୁ ପରେ ମୁଁ ଶୁଣିବାକୁ ପାଇଥିଲି ଯେ ପାରାଦ୍ୱୀପ ବନ୍ଦର ଦେଖି ସେ ସ୍ତମ୍ଭୀଭୂତ ହୋଇଯାଇଥିଲେ ।

ବିଚାରପତି ଖାନ୍ନା କମିଶନଙ୍କ ରିପୋର୍ଟ ୧୯୬୯ ମସିହା ଜାନୁୟାରୀ ୧୫ ତାରିଖରେ ଓଡ଼ିଶା ସରକାରଙ୍କୁ ମିଳିଥିଲା । ସେଥିରେ କମିଶନ ମୋତେ ସଂପୂର୍ଣ୍ଣଭାବରେ ଦୋଷମୁକ୍ତ କରିଥିଲେ; ଏପରିକି ମୋ ବିରୁଦ୍ଧରେ ଯେତେ ଅଭିଯୋଗ ହୋଇଥିଲା କୌଣସି ସ୍ଥାନରେ ମୋର ଶାସନଗତ ଅସଙ୍ଗତିର ତ୍ରୁଟି ମଧ ନଥିଲା ବୋଲି କମିଶନ କହିଥିଲେ । ମୋ ସହିତ ଅନ୍ୟ ଏଗାରଜଣଙ୍କୁ କମିଶନ ଦୋଷମୁକ୍ତ କରିଥିଲେ । ବିଜୁ ପଟ୍ଟନାୟକ, ବୀରେନ୍ ମିତ୍ର ଓ ହରିହର ସିଂ ମର୍ଦ୍ଦରାଜଙ୍କୁ ଅନ୍ୟ ସବୁପ୍ରକାର ଉଦ୍ଦେଶ୍ୟମୂଳକ ଅଭିଯୋଗରୁ ମୁକ୍ତକରି ସେମାନଙ୍କ କାର୍ଯ୍ୟରେ କେବଳ କେତେକ ପ୍ରଶାସନିକ ଅସଙ୍ଗତି ଥିଲା ବୋଲି ମତ ବ୍ୟକ୍ତ କରିଥିଲେ । ଶ୍ରୀ ବିଜୁ ପଟ୍ଟନାୟକଙ୍କଦ୍ୱାରା ପ୍ରତିଷ୍ଠିତ ହୋଇଥିବା କମ୍ପାନୀ ଓ ବ୍ୟବସାୟ ପ୍ରତିଷ୍ଠାନଗୁଡ଼ିକ ରାଜ୍ୟ ସରକାରଙ୍କ ସହିତ ଯେଉଁ କାରବାର ସଂପର୍କ ରଖିଥିଲେ ତାହାକୁ କମିଶନ ଅସଙ୍ଗତ ବୋଲି କହିଥିଲେ । ସେସବୁ କାରବାରଦ୍ୱାରା ସରକାରଙ୍କର କିଛି ଆର୍ଥିକ କ୍ଷତି ହୋଇନଥିଲା ବୋଲି କମିଶନ କହିଥିଲେ; ମାତ୍ର ଶ୍ରୀ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିବାରୁ ତାହା ସମୀଚୀନ ହୋଇନଥିଲା । ସେହି ଶାସନଗତ ଅସଙ୍ଗତ କାର୍ଯ୍ୟହେତୁ ସେମାନେ ତାଙ୍କର ବିରୋଧୀ ଲୋକମାନଙ୍କୁ ତାଙ୍କ ବିରୁଦ୍ଧରେ ପ୍ରଚାର କରିବାର ସୁବିଧା ଦେଇଥିଲେ ବୋଲି କମିଶନ ଉଲ୍ଲେଖ କରିଥିଲେ । ସେହିହେତୁ ତାଙ୍କ ନେତୃତ୍ୱରେ କାଳିମା ଲାଗିଥିଲା ଏବଂ ସେ ନିର୍ବାଚନରେ ପରାଜିତ ହୋଇଥିଲେ । କମିଶନ ତାଙ୍କ ରିପୋର୍ଟର ୮୧୦ ପୃଷ୍ଠାରେ ବିଜୁ ପଟ୍ଟନାୟକଙ୍କର ବ୍ୟକ୍ତିତ୍ୱକୁ ଉଚ୍ଚ ପ୍ରଶଂସା କରି ଲେଖିଛନ୍ତି, "The need of Orissa is of a leader of great calibre, inspired by the cause, dedicated, devoted and determined, who may rouse the enthusiasm, which is so far dormant, of the masses, harness it to fruitful activity and thus pave the way to economic betterment and future prosperity. Shri Pattanaik gave hope of that calibre. He had the halo of an adventurous past. He had daring, dash, doggedness and the advantage of youth, good physique and a tall imposing personality. To all these may be added a touch of flamboyance. The electorate gave Shri Pattanaik a clear cut majority in the Legislature. Shri Pattanaik did commendable job in certain spheres by introducing an element of dynamism in the administration and the work he did by translating the idea of a port at Paradeep into a living reality is bound to make an impact on the history of Orissa and its future development. The irony, however, is that Shri Pattanaik allowed such a sway to the pecuniary and business interests of the companies which had been started by him and with which his family members were associated, in dealings with State Government, that within two or three years of his stewardship his public image became tarnished and the hopes, which were built around him, were shattered to pieces. Memorials and representations, some of them not without substance, were submitted against him. The architect of party victory in 1961 lost even his own election in 1967. The fall of Shri Pattanaik was not merely a loss for himself, it was a shock and disenchantment for the people who had pinned their hopes and reposed their confidence in him and with that had linked the future of Orissa."

ଖାନ୍ନା କମିଶନଙ୍କ ରିପୋର୍ଟ ସରକାର ପାଇବା ପରେ ସ୍ୱତନ୍ତ୍ର, ଜନକଂଗ୍ରେସ ତଥା ପ୍ରଜା ସୋସାଲିଷ୍ଟ ଦଳର ନେତାମାନଙ୍କ ମନରେ ନୈରାଶ୍ୟ ଓ ବିଷାଦର ଛାୟା ଖେଳିଯାଇଥିଲା । ଏହି ବ୍ୟାପାରରେ ପ୍ରଜାସୋସାଲିଷ୍ଟ ନେତା ଶ୍ରୀ ଦ୍ୱିବେଦୀଙ୍କର ଅତ୍ୟଧିକ ଆଗ୍ରହ ବଡ଼ ବିଚିତ୍ର ଥିଲା ।

ଆମମାନଙ୍କ ଖ୍ୟାତିକୁ ହୀନ କରିବା ଉଦ୍ଦେଶ୍ୟରେ କମିଶନ ବସିବାର ଅବ୍ୟବହିତ ପୂର୍ବରୁ ସେ କେନ୍ଦ୍ର ଗୋଇନ୍ଦା ପୁଲିସ ରିପୋର୍ଟକୁ ଓଡ଼ିଆରେ ଅନୁବାଦ କରି ପୁସ୍ତକ ଆକାରରେ ଛପାଇ ବାଣ୍ଟିଥିଲେ । ବିଚାରପତି ଖାନ୍ନା ତାଙ୍କ ରିପୋର୍ଟରେ ଯେପରି ଭାବରେ ବିଜୁ ପଟ୍ଟନାୟକଙ୍କୁ ଓ ତାଙ୍କର ସାହସିକ କାର୍ଯ୍ୟକୁ ଉଚ୍ଚ ପ୍ରଶଂସା କରିଥିଲେ ତାକୁ ପଢ଼ି ସେମାନେ ଲଜ୍ଜିତ ହୋଇଥିଲେ ଓ ରିପୋର୍ଟ ବେଶି ସଂଖ୍ୟାରେ ନ ଛପାଇ କାମ ଚଳିଲାଭଳି ମାତ୍ର କେତେଖଣ୍ଡ ଛପାଇଥିଲେ । ସ୍ୱତନ୍ତ୍ର, ଜନକଂଗ୍ରେସ ଓ ପ୍ରଜା ସୋସାଲିଷ୍ଟ ଦଳର ନେତାମାନେ ଚାହିଁଥିଲେ ଯେ ରିପୋର୍ଟଟି ଲୋକେ ନପଢ଼ନ୍ତୁ । ମୁଁ ସେତେବେଳେ ଖବରକାଗଜରେ ଗୋଟିଏ ବିବୃତି ଦେଇ ଅଧିକ ସଂଖ୍ୟାରେ ରିପୋର୍ଟ ଛପାଇ ତାହା ସର୍ବସାଧାରଣରେ ବିକ୍ରିର ବ୍ୟବସ୍ଥା କରିବାପାଇଁ ଦାବି କରିଥିଲି । ତା'ଛଡ଼ା ରିପୋର୍ଟଟି ଓଡ଼ିଆରେ ଅନୁବାଦ କରି ଛପାଇବାପାଇଁ ମଧ୍ୟ କହିଥିଲି । ସରକାର ମୋ ଦାବିକୁ ଉପେକ୍ଷା କରିଥିଲେ । ବିଧାନସଭାରେ ପ୍ରଜାସୋସାଲିଷ୍ଟ ଦଳର ସଭ୍ୟମାନେ ବିଚାରପତି ଖାନ୍ନାଙ୍କୁ ଭର୍ତ୍ସନା କରିବାକୁ ଲାଗିଲେ, କାରଣ ସେ ରିପୋର୍ଟରେ ଶ୍ରୀ ଖାନ୍ନା ବିଜୁ ପଟ୍ଟନାୟକଙ୍କୁ ବହୁତ ପ୍ରଶଂସା କରିଥିଲେ । ବିଜୁ ପଟ୍ଟନାୟକଙ୍କର ଓ ତାଙ୍କର ସହଯୋଗୀ ବନ୍ଧୁମାନଙ୍କର ପ୍ରଶସ୍ତି ଗାନ କରିବାପାଇଁ ସରକାର ଖାନ୍ନା କମିଶନ ବସାଇଥିଲେ ବୋଲି କହି ସେମାନେ ସରକାରଙ୍କର ନିନ୍ଦାକରିଥିଲେ । ଆଉ କେତେକ ସଭ୍ୟ ସରକାରଙ୍କ କମିଶନ ବସାଇବା ସିଦ୍ଧାନ୍ତକୁ 'ଦାସେ ଫାଶିକୁ' ଗଲାଭଳି କାର୍ଯ୍ୟ ସହିତ ତୁଳନା କରି ଜନକଂଗ୍ରେସ ନେତାମାନଙ୍କୁ ବିଦ୍ରୁପ କରିଥିଲେ । ପ୍ରକୃତରେ ଦାସେ ଫାଶିକୁ ଗଲାଭଳି କଥା ହୋଇଥିଲା ଏବଂ ତାହା କମିଶନଙ୍କ ସିଦ୍ଧାନ୍ତ ଓ ପରବର୍ତ୍ତୀ ଘଟଣାବଳୀରୁ ଜଣାପଡୁଥିଲା । ଯେଉଁ ଯୁବକମାନେ ଏକମେଳ ହୋଇ ମହତାବ ଓ ସିଂହଦେଓଙ୍କ ମିଳିତ ମନ୍ତ୍ରିମଣ୍ଡଳର ପତନ ଘଟାଇବା ସଙ୍ଗେ ସଙ୍ଗେ କଂଗ୍ରେସରେ ମହତାବଙ୍କ ନେତୃତ୍ୱର ଅବସାନ ଘଟାଇଥିଲେ, ସେ ସମସ୍ତଙ୍କର ଚରିତ୍ରକୁ କଳଙ୍କିତ କରି ସେମାନଙ୍କ ରାଜନୈତିକ ଜୀବନର ପତନ ଘଟାଇବାର ପ୍ରତିହିଂସାପରାୟଣତା ଥିଲା କମିଶନ ବସାଇବାର ଉଦ୍ଦେଶ୍ୟ । କିନ୍ତୁ ଖାନ୍ନା କମିଶନଙ୍କ ସିଦ୍ଧାନ୍ତ ଓ ମନ୍ତବ୍ୟ ଏପ୍ରକାର ମନ୍ଦ ଅଭିପ୍ରାୟକୁ ବ୍ୟର୍ଥ କରିଦେଇଥିଲା । କମିଶନ ତାଙ୍କ ରିପୋର୍ଟର ୮୧୨ ପୃଷ୍ଠାରେ କହିଛନ୍ତି, "There are certain aspects of the enquiry which enkindle hope and show that all moral values are not lost. The inquiry reveals that if there is impropriety or misuse of office in some quarters there are, by and large, a considerable number of public men who have occupied high offices and whose image emerges untarnished and unscathed. This is clear from the fact that out of the fifteen respondents, charges have not been proved against an overwhelming majority of them so far as some of them are concerned, there is not even the remotest indication of their having done anything improper with a view to secure personal gain". ପରବର୍ତ୍ତୀ କାଳରେ ମାନ୍ୟବର ଖାନ୍ନା ସୁପ୍ରିମ୍‌କୋର୍ଟର ଜଣେ ବିଚାରପତିର ଆସନ ଅଳଂକୃତ କରି ବିଶେଷ ଖ୍ୟାତି ଅର୍ଜନ କରିଥିଲେ । ଏହି ରିପୋର୍ଟ ଦେବାର ପ୍ରାୟ ଦଶବର୍ଷ ପରେ ସେ ସୁପ୍ରିମ୍‌କୋର୍ଟରୁ ଅବସର ନେଇ ଦିଲ୍ଲୀରେ ଅବସ୍ଥାନ କରୁଥିଲେ । ମୋର ମନେପଡ଼େ ୧୯୭୭ ମସିହାରେ ମୁଁ ଯେତେବେଳେ ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ହେଲି ମାନ୍ୟବର ଖାନ୍ନା ଦିନେ ଦିଲ୍ଲୀ ଓଡ଼ିଶାଭବନକୁ ଫୋନ୍ କରି ମୋତେ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ କହିଥିଲେ, "Mr. Routray ! Congratulations. I am happy that my hopes have not been belied."

ସେହି ବିଚାରପତି ଖାନ୍ନାଙ୍କର ବିଜ୍ଞତା ଓ ନିରପେକ୍ଷତା କ୍ରମେ ସାରା ଭାରତର ବୁଦ୍ଧିଜୀବୀ ମହଲରେ ଆଦୃତ ହୋଇଛି । ଭାରତର ସମ୍ବିଧାନକୁ ସଂଶୋଧନ କରିବାପାଇଁ ପାର୍ଲିଆମେଣ୍ଟର ନିରଙ୍କୁଶ କ୍ଷମତା ଅଛି କି ନାହିଁ ସେ ସଂପର୍କରେ ତାଙ୍କର ବିଚକ୍ଷଣ ବିଚାରବୁଦ୍ଧିସମ୍ପନ୍ନ ରାୟ ଏକ ଐତିହାସିକ

ଇସ୍ତାହାର ଭଳି ପ୍ରଶଂସିତ ହୋଇଛି । ସଂବିଧାନର 'ମୌଳିକ ଅଧିକାର' ସମ୍ବଳିତ ପରିଚ୍ଛେଦରେ ନାଗରିକମାନଙ୍କର ସମ୍ପତ୍ତି ଉପରେ ଯେଉଁ ମୌଳିକ ଅଧିକାର ସ୍ୱୀକୃତ ହୋଇଛି ସେ ସଂପର୍କରେ ଗୋଟିଏ ସଂଶୋଧନର ବୈଧତା ଉପରେ ସୁପ୍ରିମ୍‌କୋର୍ଟରେ ପ୍ରଶ୍ନ ଉଠିଥିଲା । ୧୯୭୩ ମସିହାରେ କେଶବାନନ୍ଦ ବନାମ କେରଳ ଷ୍ଟେଟ୍ ମକଦ୍ଦମାରେ ଶ୍ରୀମତୀ ଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ ଭାରତ ସରକାରଙ୍କ ପକ୍ଷରୁ ଜନସାଧାରଣଙ୍କ ସାର୍ବଭୌମ କ୍ଷମତା ନ୍ୟସ୍ତଥିବା ଅନୁଷ୍ଠାନ ପାର୍ଲିଆମେଣ୍ଟର ସଂବିଧାନ ଏଭଳି ସଂଶୋଧନ କରିବାପାଇଁ ନିରଙ୍କୁଶ କ୍ଷମତା ସପକ୍ଷରେ ଯୁକ୍ତି ଉପସ୍ଥାପନ କରାଯାଇଥିଲା । ପଚାଶ ବର୍ଷ ପୂର୍ବରୁ ଠିକ୍ ଏହି ଉପାୟ ଅବଲମ୍ବନ କରି ହିଟଲର୍ ଜର୍ମାନୀ ଦେଶର ସାମ୍ବିଧାନିକ କଟକଣାକୁ ପଣ୍ଡ କରିଦେଇ ସେଠାରେ ନିଜେ ନିରଙ୍କୁଶ କ୍ଷମତାର ଅଧିକାରୀ ହୋଇଥିଲେ ଏବଂ ଜର୍ମାନ ଜାତିକୁ ଶେଷରେ ଧ୍ୱଂସମୁଖକୁ ଠେଲିଦେଇଥିଲେ । ଏଭଳି ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନର ବିଚାରପାଇଁ ସୁପ୍ରିମ୍‌କୋର୍ଟର ତେରଜଣ ବିଚାରପତିଙ୍କୁ ନେଇ ଏକ 'ଫୁଲ୍ ବେଞ୍ଚ' ଗଠିତ ହୋଇଥିଲା । ଏଭଳି ଏକ ସାଂବିଧାନିକ ପ୍ରଶ୍ନର ରାୟର ପରିଣତି ସୁଦୂରପ୍ରସାରୀ ହେବା ଅତ୍ୟନ୍ତ ସ୍ୱାଭାବିକ । ତେରଜଣଙ୍କ ମଧ୍ୟରୁ ଛଅଜଣ ବିଚାରପତି ପାର୍ଲିଆମେଣ୍ଟର ଏଭଳି ନିରଙ୍କୁଶ କ୍ଷମତା ସପକ୍ଷରେ ରାୟ ଦେଇଥିଲେ । ଆଉ ଛଅଜଣ ସଂବିଧାନର କେତେକ ପ୍ରସଙ୍ଗରେ ପାର୍ଲିଆମେଣ୍ଟର ଏଭଳି ଅସୀମ ଅଧିକାର ନାହିଁ ବୋଲି ରାୟ ଦେଲେ । କିନ୍ତୁ ବିଚାରପତି ଖାନ୍ନାଙ୍କ ରାୟରେ ଅସାଧାରଣ ବୌଦ୍ଧିକ ଉତ୍କର୍ଷ ପ୍ରକଟିତ ହୋଇଥିଲା । ସେ ସିଦ୍ଧାନ୍ତ ଦେଇଥିଲେ ଯେ, ସଂବିଧାନ ସଂଶୋଧନଦ୍ୱାରା ମୌଳିକ ଅଧିକାରକୁ ସଙ୍କୁଚିତ କରାଯାଇପାରେ; ମାତ୍ର ଆମ ସଂବିଧାନ ଯେଉଁସବୁ ମୌଳିକ ଭିତ୍ତି ଉପରେ ଆଧାରିତ (Basic structure or framework) ତାହାକୁ ପରିବର୍ତ୍ତନ କରିବାର ଅଧିକାର ପାର୍ଲିଆମେଣ୍ଟର ଆଦୌ ନାହିଁ । ତେଣୁ ସଂବିଧାନର ପବିତ୍ରତା ଓ ପାର୍ଲିଆମେଣ୍ଟର ସ୍ୱାଧିକାର ସଂପର୍କରେ ବିଚାରପତି ଖାନ୍ନାଙ୍କର ଏହି ବୌଦ୍ଧିକ ବିଶ୍ଳେଷଣଦ୍ୱାରାହିଁ ଶେଷୋକ୍ତ ଛଅଜଣ ବିଚାରପତିଙ୍କ ମତ ଏକ ମହତ୍ ତାତ୍ତ୍ୱିକ ମର୍ଯ୍ୟାଦା ଲାଭକରି କାଏମହେଲା । ଆମ ସଂବିଧାନର ମୌଳିକତା ଧ୍ୱଂସମୁଖରୁ ରକ୍ଷାପାଇଗଲା । ଅବଶ୍ୟ ଅଧିକାଂଶମତରେ ଗୃହୀତ ଏହି ରାୟ ସରକାରଙ୍କ ମନକୁ ନପାଇବାରୁ ପରବର୍ତ୍ତୀ କାଳରେ ତିନିଜଣ ପୁରୁଖା ବିଚାରପତିଙ୍କ ସିନିୟରିଟିକୁ ଉପେକ୍ଷାକରାଯାଇ ବିଚାରପତି ଶ୍ରୀ ଏ. ଏନ୍. ରାୟଙ୍କୁ ପ୍ରଧାନ ବିଚାରପତି କରାଯାଇଥିବାର ଅଭିଯୋଗ ହୋଇଥିଲା । ଦେଶର ସର୍ବୋଚ୍ଚ ବିଚାରାଳୟରେ ଏ ପ୍ରକାର ଅବିଚାରିତ ପଦୋନ୍ନତି ବିରୁଦ୍ଧରେ ଆଇନଜୀବୀମାନେ ସର୍ବତ୍ର ପ୍ରତିବାଦ ଜଣାଇଥିଲେ ।

## ଆମର ପାଲଟା ଅଭିଯୋଗ

ଯେତେବେଳେ ୧୯୬୧ ମସିହାଠାରୁ ଆମ୍ଭମାନଙ୍କ ବିରୁଦ୍ଧରେ ଥିବା ଅଭିଯୋଗଗୁଡ଼ିକର ତଦନ୍ତ ପାଇଁ ସ୍ୱତନ୍ତ୍ର-ଜନକଂଗ୍ରେସ ସରକାର ଖାନ୍ନା କମିଶନ ବସାଇବାକୁ ସିଦ୍ଧାନ୍ତ ନେଲେ, ସେହି ସମୟରେ ମୁଁ ଦାବି କରିଥିଲି ଯେ ଖାନ୍ନା କମିଶନ ତଦନ୍ତର ପରିସର ବଢ଼େଇଦିଆଯାଇ ୧୯୪୬ ମସିହାଠାରୁ କାର୍ଯ୍ୟ କରିଥିବା ଯେଉଁ ମନ୍ତ୍ରୀମାନଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗ ଥିବ ସେମାନଙ୍କ ବିଷୟ ମଧ୍ୟ କମିଶନ ବିଚାରକରନ୍ତୁ । ପ୍ରଦେଶ କଂଗ୍ରେସ କମିଟିରେ ମଧ୍ୟ ସେହି ମର୍ମରେ ଗୋଟିଏ ପ୍ରସ୍ତାବ ଗୃହୀତ ହୋଇଥିଲା । ମାତ୍ର ସରକାର ତାହା ଶୁଣିନଥିଲେ । ସ୍ୱତନ୍ତ୍ର-ଜନକଂଗ୍ରେସ ନେତାମାନଙ୍କର ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟ ସମ୍ବନ୍ଧରେ ଗୋଟିଏ ସ୍ମାରକପତ୍ର ରାଷ୍ଟ୍ରପତିଙ୍କୁ ଦେଇ କମିଶନଦ୍ୱାରା ତଦନ୍ତପାଇଁ ଦାବି କରାଯିବ ବୋଲି ସ୍ଥିରହୋଇଥିଲା । ସେମାନଙ୍କ ଦୁର୍ନୀତି ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରି ଗୋଟିଏ ସ୍ମାରକପତ୍ରର ଚିଠା କରିବାର ଦାୟିତ୍ୱ ମୋ ଉପରେ ଓ ଶ୍ରୀ ଦୀନବନ୍ଧୁ ସାହୁଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ଶ୍ରୀ ହରେକୃଷ୍ଣ ମହତାବଙ୍କ ବିରୁଦ୍ଧରେ ବହୁ ପ୍ରମାଣଯୋଗ୍ୟ ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟର ସନ୍ଧାନ ମିଳିଥିଲା ।

ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ଶ୍ରୀ ପବିତ୍ରମୋହନ ପ୍ରଧାନ ପ୍ରଭୃତି ଆଉ କେତେଜଣଙ୍କ ବିରୁଦ୍ଧରେ କେତେକ ଦୁର୍ନୀତି ଅଭିଯୋଗର ସନ୍ଧାନ ମିଳିଥିଲା । ବହୁ ତଥ୍ୟସମ୍ବଳିତ ଗୋଟିଏ ସ୍ମାରକପତ୍ର ପ୍ରସ୍ତୁତ କରାଯାଇଥିଲା । ରାଜ୍ୟ ବିଧାନସଭାର କଂଗ୍ରେସଦଳର ସଭ୍ୟମାନଙ୍କ ସ୍ୱାକ୍ଷରରେ ତାହା ରାଷ୍ଟ୍ରପତି ଡକ୍ଟର ଜାକୀର୍ ହୁସେନ୍‌ଙ୍କ ପାଖକୁ ପଠାଯାଇଥିଲା । ପ୍ରଦେଶ କଂଗ୍ରେସ ସଭାପତି ଭାବରେ ସେତେବେଳେ ସ୍ୱତନ୍ତ୍ର ଭାବରେ ନିମନ୍ତ୍ରିତ ହୋଇ ମୁଁ କଂଗ୍ରେସ କାର୍ଯ୍ୟକାରୀ କମିଟିରେ ଯୋଗଦେଉଥିଲି । କଂଗ୍ରେସ କାର୍ଯ୍ୟକାରୀ କମିଟିରେ ଆମର ସ୍ମାରକପତ୍ର କଥା ପକାଇ ତଦନ୍ତପାଇଁ ଅନୁକୂଳ ମତ ସୃଷ୍ଟି କରିବାର ଦାୟିତ୍ୱ ମୋ ଉପରେ ଦିଆଯାଇଥିଲା । ରାଷ୍ଟ୍ରପତିଙ୍କୁ ଦିଆଯାଇଥିବା ଆମର ସ୍ମାରକପତ୍ରଟି ଭଲଭାବରେ ଛପାଯାଇଥିଲା ଏବଂ ସେଥିରୁ ବହୁତ କପି ମୁଁ ସାଙ୍ଗରେ ନେଇଯାଇଥିଲି । ମୋ ସାଙ୍ଗରେ ଶ୍ରୀ ଭବାନୀଚରଣ ପଟ୍ଟନାୟକ ଉକ୍ତ କମିଟି ବୈଠକକୁ ଯାଇ ସେହି ସ୍ମାରକପତ୍ରଗୁଡ଼ିକ ସଭ୍ୟମାନଙ୍କ ମଧ୍ୟରେ ବାଣ୍ଟିଦେଇଥିଲେ । ସେହି ସ୍ମାରକପତ୍ରରେ ଥିବା ଆମର ଦାବି ବିଷୟରେ ମୁଁ କଂଗ୍ରେସ କାର୍ଯ୍ୟକାରୀ କମିଟି ବୈଠକରେ କହିଥିଲି— ଗୋଟିଏ ରାଜ୍ୟରେ କଂଗ୍ରେସ ଲୋକଙ୍କୁ କଳଙ୍କିତ କରିବାକୁ ଯେତେବେଳେ ଉଦ୍ୟମ କରାଯାଉଛି, ଯେତିକି କଂଗ୍ରେସ ମନ୍ତ୍ରୀ ଥିଲେ ସେମାନଙ୍କ ବିରୁଦ୍ଧରେ ଅଭିଯୋଗ ଆଣି ଅଯଥା ସେମାନଙ୍କୁ ହଇରାଣ କରାଯାଉଛି, ସେତେବେଳେ କଂଗ୍ରେସ ବ୍ୟବସ୍ଥାପକଙ୍କ ପକ୍ଷରୁ ଆସିଥିବା ଅଭିଯୋଗ ବିଷୟରେ ଯଦି କିଛି କାର୍ଯ୍ୟାନୁଷ୍ଠାନ କରାନଯାଏ ତା'ହେଲେ ସେ ରାଜ୍ୟରେ କଂଗ୍ରେସ ଅନୁଷ୍ଠାନ କିପରି କାର୍ଯ୍ୟ କରିବ ସେ ବିଷୟ ବିଚାର କରିବାପାଇଁ ମୁଁ କମିଟିକୁ ଅନୁରୋଧ କରିଥିଲି । ଆମର ସ୍ମାରକପତ୍ରଟି କମିଟି ବୈଠକରେ ମୁଁ ପଢ଼ି ଶୁଣାଇଥିଲି । ସେଥିରେ ବହୁତ ଗୁରୁତର ଅଭିଯୋଗ ଶ୍ରୀ ମହତାବଙ୍କ ବିରୁଦ୍ଧରେ ଅଛି ବୋଲି ଅନେକ ସଭ୍ୟ ମତ ଦେଇଥିଲେ । ଏସବୁ କଥା ଶୁଣି ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ ଶ୍ରୀ ଚୌହାନଙ୍କୁ ବିଷୟଟି ବୁଝି କିଛି କରିବାପାଇଁ କହିଥିଲେ । ପରଦିନ ମୁଁ ଶ୍ରୀ ଚୌହାନଙ୍କୁ ତାଙ୍କ ଅଫିସ୍‌ରେ ଦେଖାକରି ସ୍ମାରକପତ୍ର ସମ୍ବନ୍ଧରେ ବହୁ ସମୟ ଆଲୋଚନା କରିଥିଲି । ଓଡ଼ିଶା ସରକାରଙ୍କ ସହିତ କଥାବାର୍ତ୍ତା କରି ସେ ବିଷୟରେ କାର୍ଯ୍ୟାନୁଷ୍ଠାନ କରିବେ ବୋଲି ଶ୍ରୀ ଚୌହାନ ମୋତେ ପ୍ରତିଶ୍ରୁତି ଦେଇଥିଲେ ।

କେନ୍ଦ୍ର ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ ଶ୍ରୀ ଚୌହାନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କୁ ରାଜ୍ୟ କଂଗ୍ରେସଦଳ ବିଧାନସଭା ସଭ୍ୟମାନଙ୍କ ସ୍ମାରକପତ୍ର ସମ୍ବନ୍ଧରେ ତାଙ୍କର ମତାମତ ଜାଣିବାପାଇଁ ଲେଖିଥିଲେ । ପ୍ରଥମେ ଶ୍ରୀ ସିଂହଦେଓ ଅଭିଯୋଗଗୁଡ଼ିକ ଭିତ୍ତିହୀନ ବୋଲି କହି ବିଷୟଟିକୁ ଏଡ଼ାଇଯିବାପାଇଁ ଚେଷ୍ଟାକରିଥିଲେ; ମାତ୍ର ଅଭିଯୋଗଗୁଡ଼ିକ ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ହୋଇଥିବାରୁ ତାହା ଏଡ଼ାଇଦେବା ତାଙ୍କ ପକ୍ଷରେ ସମ୍ଭବ ହୋଇନଥିଲା । ଶ୍ରୀ ଚୌହାନ ଓ ସିଂହଦେଓ ଉଭୟେ ଆଲୋଚନା କରି ସ୍ଥିରକରିଥିଲେ ଯେ ଅଭିଯୋଗଗୁଡ଼ିକ ଆପାତପ୍ରମାଣଯୋଗ୍ୟ କି ନୁହେଁ ସେ ବିଷୟ ଜଜ୍ ପାହିଆର ଜଣେ ଅଭିଜ୍ଞ ବ୍ୟକ୍ତିଙ୍କଦ୍ୱାରା ଅନୁଧ୍ୟାନ କରାଯିବା ଉଚିତ । ଶେଷରେ ସୁପ୍ରିମ୍‌କୋର୍ଟର ଜଣେ ଅବସରପ୍ରାପ୍ତ ବିଚାରପତି ଶ୍ରୀ ଜେ.ଆର୍. ମୁଧଲକରଙ୍କୁ ଏହି ଅନୁଧ୍ୟାନ କାର୍ଯ୍ୟ ପାଇଁ ୧୯୬୮ ମସିହା ମେ ମାସରେ ରାଜ୍ୟ ସରକାରଙ୍କ ତରଫରୁ ନିଯୁକ୍ତି ଦିଆଯାଇଥିଲା । ଶ୍ରୀ ମୁଧଲକର ଭୁବନେଶ୍ୱରରେ ରହି ଅନୁସନ୍ଧାନ କାର୍ଯ୍ୟ ଆରମ୍ଭକରିଥିଲେ । ଏହି ପରିପ୍ରେକ୍ଷୀରେ ସେ ମୋତେ ଡକାଇ ନାନା ପ୍ରଶ୍ନ ପଚାରିଥିଲେ । ମୁଁ ଯାହା ଜାଣିଥିଲି, କହିଲି । ସର୍ବଶ୍ରୀ ଦୀନବନ୍ଧୁ ସାହୁ, ରାଧାନାଥ ରଥ, ବୀରେନ୍ ମିତ୍ର, ସତ୍ୟପ୍ରିୟ ମହାନ୍ତି, ସଦାଶିବ ତ୍ରିପାଠୀ, ବାବୁଭାଇ ପଟେଲ୍ ଓ ଉଦୟନାଥ ପୂଜାପଣ୍ଡା ପ୍ରଭୃତି ବହୁ ବ୍ୟକ୍ତିଙ୍କଠାରୁ ସେ ତଥ୍ୟ ସଂଗ୍ରହ କରିଥିଲେ । ବିଧାନସଭା କଂଗ୍ରେସଦଳର ବହୁ ସଦସ୍ୟଙ୍କୁ ମଧ୍ୟ ଡକାଇ ସେ ନାନା ତଥ୍ୟ ସଂଗ୍ରହ କରିଥିଲେ । ମହତାବବାବୁ, ମୁଖ୍ୟମନ୍ତ୍ରୀ ସିଂହଦେଓ ଓ ଉପମୁଖ୍ୟମନ୍ତ୍ରୀ ପବିତ୍ରବାବୁଙ୍କ ସହିତ ମଧ୍ୟ ବିଚାରପତି ମୁଧଲକର କଥାବାର୍ତ୍ତା କରିଥିଲେ । ରାଜ୍ୟ ସଚିବାଳୟରୁ ସଂପୃକ୍ତ ଫାଇଲ୍‌ସବୁ ମଗାଇ ସେ ଅନୁଧ୍ୟାନ କରିଥିଲେ ଏବଂ ବିଭାଗୀୟ ସେକ୍ରେଟେରୀମାନଙ୍କଠାରୁ

କେତେକ ବିଷୟରେ ସ୍ପଷ୍ଟୀକରଣ ନେଇଥିଲେ । ସେକ୍ରେଟେରୀମାନେ ତାଙ୍କ ସହିତ ସହଯୋଗ କରିଥିଲେ । ୧୯୬୮ ମସିହା ସେପ୍ଟେମ୍ବର ମାସରେ ବିଚାରପତି ମୁଧଲକରଙ୍କ ରିପୋର୍ଟ ଓଡ଼ିଶା ସରକାରଙ୍କୁ ମିଳିଥିଲା । ସେଥିରେ ସେ ଶ୍ରୀ ମହତାବଙ୍କ ବ୍ୟତୀତ ଅନ୍ୟ ସମସ୍ତଙ୍କୁ ଦୋଷମୁକ୍ତ କରିଥିଲେ ଏବଂ ମହତାବଙ୍କ ବିରୁଦ୍ଧରେ ଥିବା ଅଭିଯୋଗଗୁଡ଼ିକରେ ଆପାତତଃ ପ୍ରମାଣଯୋଗ୍ୟ ତଥ୍ୟ ଥିବାରୁ ସେଗୁଡ଼ିକ ଗୋଟିଏ କମିଶନଦ୍ୱାରା ଅନୁସନ୍ଧାନ କରାଯିବା ପାଇଁ ନିର୍ଦ୍ଦିଷ୍ଟ ସୁପାରିସ୍ କରିଥିଲେ । ମୁଧଲକରଙ୍କ ରିପୋର୍ଟ ମୁଖ୍ୟମନ୍ତ୍ରୀଙ୍କ ହସ୍ତଗତ ହେବାବେଳକୁ କିପରି କେଜାଣି ଶ୍ରୀ ମହତାବ ମୁଖ୍ୟମନ୍ତ୍ରୀଙ୍କ ପାଖରେ ଥିଲେ । ମୁଖ୍ୟମନ୍ତ୍ରୀଙ୍କ ଘରୁ ବାହାରିଲାବେଳେ ସାମ୍ବାଦିକମାନେ ରିପୋର୍ଟରେ ମୁଧଲକର କ'ଣ କହିଛନ୍ତି ବୋଲି ମହତାବଙ୍କୁ ପଚାରିବାରୁ ସେ କୁଆଡ଼େ କହିଥିଲେ ଯେ ଉଣାଅଧିକେ ସମସ୍ତେ ଦୋଷମୁକ୍ତ । ରିପୋର୍ଟଟି ଗୁପ୍ତ ରଖିବା ଥିଲା ମହତାବଙ୍କର ଉଦ୍ଦେଶ୍ୟ, ଶ୍ରୀ ସିଂହଦେଓଙ୍କୁ ସେ ସେହି ପରାମର୍ଶ ଦେଇଥିଲେ । ରିପୋର୍ଟଟି ଆଡ୍‌ଭୋକେଟ୍ ଜେନେରାଲ୍‌ଙ୍କୁ ଦିଆଯାଇଥିଲା ପଢ଼ାପଢ଼ି କରି ପରାମର୍ଶ ଦେବାପାଇଁ । କୌଣସି ସୂତ୍ରରୁ ମୁଧଲକର ରିପୋର୍ଟରେ ମହତାବଙ୍କ ବିଷୟରେ ଥିବା ସୁପାରିସ୍‌ଗୁଡ଼ିକ ସମ୍ବାଦପତ୍ରରେ ପ୍ରକାଶିତ ହୋଇଯାଇଥିଲା । ଏଥିରେ ଶ୍ରୀ ମହତାବ କ୍ରୋଧାନ୍ୱିତ ହୋଇ ଶ୍ରୀ ସିଂହଦେଓଙ୍କ ପାଖରେ ଅଭିଯୋଗ କରିଥିଲେ ଯେ ସ୍ୱର୍ଗୀୟ ପଣ୍ଡିତ ନୀଳକଣ୍ଠ ଦାସ ତାଙ୍କର ଚରମ ରାଜନୈତିକ ଶତ୍ରୁ ଥିଲେ, ତେଣୁ ତାଙ୍କର ପୁତ୍ର ଆଡ୍‌ଭୋକେଟ୍ ଜେନେରାଲ୍ ଶ୍ରୀ ଅଶୋକ ଦାସ ବିଷୟଟି ଗୁପ୍ତରେ ସମ୍ବାଦପତ୍ରକୁ ଦେଇଛନ୍ତି ।

ଶ୍ରୀ ମହତାବ ଏହାପରେ ବିଚାରପତି ମୁଧଲକରଙ୍କ ବିରୁଦ୍ଧରେ ବିଷ ଉଦ୍‌ଗାର କରିବାକୁ ଲାଗିଥିଲେ । ତାଙ୍କର ଚରିତ୍ର ସଂହାର କରିବାଭଳି ଅକଥନୀୟ କୁତ୍ସାର କାହାଣୀ ସେ କହିବୁଲିଲେ । ବମ୍ବେରେ ରାଜ୍ୟପାଳ ଥିଲାବେଳେ ମହତାବବାବୁ ମୁଧଲକରଙ୍କ ବିଷୟରେ ଆହୁରି କେତେକ କୁତ୍ସିତ କଥା ଜାଣିଛନ୍ତି ବୋଲି ପ୍ରଚାର କରିବାକୁ ଲାଗିଲେ । ବିଚାରପତି ମୁଧଲକରଙ୍କର ଦୋଷ ହେଲା ଯେ ସେ ତାଙ୍କୁ ଦୋଷମୁକ୍ତ କରିନଥିଲେ ।

ମୁଧଲକର ରିପୋର୍ଟ ଏଭଳି ଭାବରେ ପ୍ରକାଶିତ ହୋଇଯିବା ପରେ ମହତାବବାବୁ ସ୍ୱତନ୍ତ୍ର-ଜନକଂଗ୍ରେସ ସରକାର ଉପରେ କ୍ଷୁବ୍ଧ ହୋଇପଡ଼ିଲେ । ସ୍ୱତନ୍ତ୍ର-ଜନକଂଗ୍ରେସ ମିଳିତ ସରକାରର ପତନରେ ବରଂ ତାଙ୍କର ମଙ୍ଗଳ ହେବ ବୋଲି ସେ ବିଚାରିଥିଲେ । ଆମ୍ଭେମାନେ ଶାସକ କଂଗ୍ରେସରୁ ସମ୍ପର୍କ ଛିନ୍ନ କରିବା ପରେ ସେଥିରେ ସେ ଯୋଗଦେବାପାଇଁ ଅତି ଆଗ୍ରହରେ ଉଦ୍ୟମ ଆରମ୍ଭ କରିଦେଇଥିଲେ । ନିଜେ ଜନକଂଗ୍ରେସରୁ ଇସ୍ତଫା ଦେବା ସଙ୍ଗେ ସଙ୍ଗେ ବିଧାନସଭାରୁ ଇସ୍ତଫା ଦେବାର ଧମକ ମଧ ଦେଇଥିଲେ । ତାଙ୍କର ଏ ପ୍ରକାର ଆଚରଣ ଦେଖି ପବିତ୍ରବାବୁ ପ୍ରମାଦ ଗଣିଲେ । ତେଣୁ ସେ ବିକଳ୍ପ ବ୍ୟବସ୍ଥା ସମ୍ବନ୍ଧରେ ଚିନ୍ତା ଆରମ୍ଭକଲେ । ଏହି ପରିପ୍ରେକ୍ଷୀରେ ପବିତ୍ରବାବୁ ଓ ମୋ ମଧ୍ୟରେ ସାକ୍ଷାତ୍ ହୋଇଥିଲା । ଉଭୟଙ୍କର ଜଣେ ବନ୍ଧୁ ଅତି ଗୋପନୀୟ ଭାବରେ ଏଥିପାଇଁ ବ୍ୟବସ୍ଥା କରିଥିଲେ । ଭୁବନେଶ୍ୱର ବା କଟକରେ ସାକ୍ଷାତ୍ ହେଲେ କଥାଟା ପ୍ରଘଟ ହୋଇଯିବ ବୋଲି ଫୁଲନଖରା ଡାକବଙ୍ଗଳାରେ ଅତି ଗୋପନରେ ଦୁଇଜଣଙ୍କର ଭେଟହୋଇଥିଲା । ମହତାବ ସେମାନଙ୍କୁ ଯେପରି ଭାବରେ ହଇରାଣ କରୁଥିଲେ ସେସବୁ କଥା ପବିତ୍ରବାବୁ ମୋତେ କହିଥିଲେ । ମହତାବ କୁଆଡ଼େ ଚାହୁଁଥିଲେ ଯେ ମୁଧଲକର ରିପୋର୍ଟକୁ ସିଂହଦେଓ ଘୋଡ଼ାଇରଖି ବାଏଁ ବାଏଁ ଉଡ଼ାଇଦେଇଥା'ନ୍ତେ । ତା' ନହେବାରୁ ସେ କୁଆଡ଼େ ସମସ୍ତଙ୍କ ବିରୁଦ୍ଧରେ ବିଷୋଦ୍‌ଗାର ଆରମ୍ଭ କରିଥିଲେ । ମୁଧଲକରଙ୍କ ଅନୁସନ୍ଧାନରେ ଆଉ କେହି ଧରାପଡ଼ିଲେନାହିଁ, କେବଳ ମହତାବବାବୁ ଧରାପଡ଼ିଯିବାରୁ ବିରୁଡ଼ି ବିନ୍ଧିଲାଭଳି ସେ କୁଆଡ଼େ ସମସ୍ତଙ୍କୁ ଖେଦିବାରେ ଲାଗିଥିଲେ । ସରକାରଙ୍କ ପ୍ରତି ଯଦି ମହତାବ ଅସୁବିଧା ସୃଷ୍ଟି କରନ୍ତି ତା'ହେଲେ ବିଧାନସଭା କଂଗ୍ରେସଦଳରୁ ସେ ଯେଉଁ ସାହାଯ୍ୟ ଆଶା କରୁଥିଲେ ସେ ବିଷୟରେ ଆମ୍ଭେମାନେ କଥାବାର୍ତ୍ତା ହୋଇଥିଲୁ । ସେ ପ୍ରକାର ପରିସ୍ଥିତି ଉପୁଜିଲେ କଂଗ୍ରେସ

ଦଳ ତାଙ୍କୁ ସାହାଯ୍ୟ କରିବାକୁ କୁଣ୍ଠିତ ହେବନାହିଁ ବୋଲି ମୁଁ କହିଥିଲି ।

୧୯୬୮ ମସିହା ନଭେମ୍ବର ମାସ ୧୭ ତାରିଖରେ ପ୍ରଦେଶ କଂଗ୍ରେସ କମିଟି ଓ ବିଧାନସଭା କଂଗ୍ରେସଦଳର ଗୋଟିଏ ମିଳିତ ବୈଠକ ମୋ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ବିଚାରପତି ଶ୍ରୀ ମୁଧଲକରଙ୍କ ସୁପାରିସ୍ ଅନୁସାରେ ମହତାବଙ୍କ ବିରୁଦ୍ଧରେ ତୁରନ୍ତ ଗୋଟିଏ କମିଶନ ବସାଇବା ପାଇଁ ରାଜ୍ୟ ସରକାର ତଥା କେନ୍ଦ୍ର ସରକାରଙ୍କଠାରେ ଦାବିକରି ଗୋଟିଏ ପ୍ରସ୍ତାବ ଶ୍ରୀ ଗଙ୍ଗାଧର ମହାପାତ୍ର ଆଗତ କରିଥିଲେ । ଏହି ପ୍ରସ୍ତାବ ଉପରେ ବହୁତ ଆଲୋଚନା ହୋଇଥିଲା । ଶ୍ରୀ ମହତାବ ବିଚାରପତି ମୁଧଲକରଙ୍କ ସମ୍ବନ୍ଧରେ ଯେଉଁ କୁତ୍ସାରଟନା କରୁଥିଲେ ସେ କଥା ମଧ୍ୟ ସେଠାରେ ପଡ଼ିଥିଲା । ବୈଠକରେ ମୁଧଲକରଙ୍କ ନିରପେକ୍ଷତାର ଉଚ୍ଚ ପ୍ରଶଂସା କରାଯାଇଥିଲା । ପ୍ରସ୍ତାବଟି ଗୃହୀତ ହେବା ପରେ ରାଜ୍ୟ ମୁଖ୍ୟମନ୍ତ୍ରୀ ଓ ସ୍ୱରାଷ୍ଟ୍ରମନ୍ତ୍ରୀଙ୍କ ପାଖକୁ କାର୍ଯ୍ୟାନୁଷ୍ଠାନପାଇଁ ପଠାଇଦିଆଯାଇଥିଲା ।

## ଓଡ଼ିଆ ହେବାର ଦୁର୍ଭାଗ୍ୟ

ଜଣେ ବିଚାରପତି ଭାବରେ ତାଙ୍କର କର୍ତ୍ତବ୍ୟ କରିବାକୁ ଯାଇ ବିଚାରପତି ମୁଧଲକର ଯେପରି ଅକଥନୀୟ ଓ ଅଯଥା ସମାଲୋଚନାର ପାତ୍ର ହୋଇଥିଲେ, ସେହିଭଳି ଆଉ ଜଣେ ଖ୍ୟାତନାମା ଆଇନଜ୍ଞ ଓ ବିଚାରପତି ଶ୍ରୀ ବୀରକିଶୋର ରାୟ ଅତୀତରେ କେତେକ କ୍ଷମତାଶାଳୀ ବ୍ୟକ୍ତିଙ୍କ କୋପ ଦୃଷ୍ଟିରେ ପଡ଼ିବାର ଜଣାଯାଇଥିଲା । ତାଙ୍କର ଦୁର୍ଭାଗ୍ୟ, ସେ ଓଡ଼ିଶାରେ ଜନ୍ମହୋଇଥିଲେ ଏବଂ ଓଡ଼ିଶା ହାଇକୋର୍ଟର ପ୍ରଧାନ ବିଚାରପତି ଆସନ ଲାଭକରିପାରିଥିଲେ । ୧୯୪୮ ମସିହାରୁ ୧୯୫୦ ମସିହା ପର୍ଯ୍ୟନ୍ତ ବିଚାରପତି ରାୟ ଓଡ଼ିଶା ହାଇକୋର୍ଟର ପ୍ରଧାନ ବିଚାରପତି ଥିଲେ । ସେହି ସମୟରେ ମହତାବବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଓ ପରେ କେନ୍ଦ୍ରର ଶିଳ୍ପମନ୍ତ୍ରୀ ଥିଲେ । ବୀରବାବୁ ସୁପ୍ରିମକୋର୍ଟରେ ଜଜ୍ ହେବା ପ୍ରସ୍ତାବ ଥାଏ । ଆଶା କରାଯାଉଥିଲା ଯେ ଓଡ଼ିଶାରୁ ମହତାବବାବୁ କେନ୍ଦ୍ରରେ ମନ୍ତ୍ରୀ ଥିବାରୁ ସୁପ୍ରିମ୍‌କୋର୍ଟ ଜଜ୍ ହିସାବରେ ଜଣେ ଓଡ଼ିଆ ସ୍ଥାନ ପାଇବାରେ ସେ ସହାୟକ ହେବେ ଏବଂ ସେ ମଧ୍ୟ ଜଣେ ବିଶିଷ୍ଟ ଆଡ୍‌ଭୋକେଟ୍ ଓ ଶିକ୍ଷାକ୍ଷେତ୍ରରେ ଉଚ୍ଚ ପଦମର୍ଯ୍ୟାଦାସମ୍ପନ୍ନ ବ୍ୟକ୍ତିଙ୍କ ସହିତ ବୀରବାବୁଙ୍କ ସମ୍ପର୍କରେ ଆଲୋଚନା କରୁଥିବାର ମୁଁ ଜାଣିଥିଲି । ବୀରବାବୁ ସୁପ୍ରିମ୍‌କୋର୍ଟର ଜଣେ ବିଚାରପତି ହେବାର ସମ୍ଭାବନା ବିଷୟ ସେତେବେଳେ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଉଥାଏ । ଏଥିରେ ଓଡ଼ିଶାର ଶିକ୍ଷିତ ମହଲରେ ଆନନ୍ଦ ପ୍ରକାଶ ପାଉଥାଏ । ଠିକ୍ ସେହି ସମୟରେ ବୀରବାବୁଙ୍କ ବିରୁଦ୍ଧରେ ନାନାପ୍ରକାର ଦୁର୍ନୀତି ଓ ଭ୍ରଷ୍ଟାଚାରସମ୍ବଳିତ ଗୋଟିଏ ବେନାମି ପ୍ରଚାରପତ୍ର ଦିଲ୍ଲୀ ଓ କଟକରେ, ବିଶେଷକରି ସୁପ୍ରିମ୍‌କୋର୍ଟ ଓ ହାଇକୋର୍ଟ ମହଲରେ ଗୋପନରେ ବଣ୍ଟାଯାଇଥିଲା । ବୀରବାବୁଙ୍କ ଏଭଳି ଦୁର୍ନାମ କରିବାର ଏକମାତ୍ର ଉଦ୍ଦେଶ୍ୟ ଥିଲା ତାଙ୍କୁ ସୁପ୍ରିମ୍‌କୋର୍ଟ ବିଚାରପତି କରାଇନଦେବା । ବୀରବାବୁଙ୍କ ସମ୍ବନ୍ଧରେ ଏହି ବେନାମି ପ୍ରଚାରପତ୍ର କଟକରେ କିଛିଦିନ ଗୋଟିଏ ଆଲୋଚନାର ବିଷୟବସ୍ତୁ ହୋଇଥିଲା । ବେନାମି ପ୍ରଚାରର ଉଦ୍ଭାବକ ଓ ଉତ୍ସାହଦାତାଙ୍କ ନାମ ଓକିଲ ଓ ଜଜ୍‌ମାନଙ୍କ ମହଲରେ ଅଜଣା ରହିନଥିଲା । ରାଜ୍ୟପାଳ ଶ୍ରୀ ଆସଫ୍ ଅଲ୍ଲୀଙ୍କ ଦୃଷ୍ଟି ମଧ୍ୟ ଏହି ପ୍ରଚାରପତ୍ର ଉପରେ ପଡ଼ିଥିଲା । ଏ ପ୍ରକାର କୁତ୍ସିତ ବେନାମି ପ୍ରଚାରପତ୍ରର ଉତ୍ପତ୍ତି କେଉଁଠୁ ସେ କଥା ସେ ଜାଣିପାରି ଅସନ୍ତୋଷ ପ୍ରକାଶ କରିଥିଲେ । ବୀରବାବୁ ସୁପ୍ରିମ୍‌କୋର୍ଟ ବିଚାରପତି ହୋଇନ-ପାରିବାରୁ ଅପବାଦ ରଟନାକାରୀମାନେ ଖୁବ୍ ଖୁସିହୋଇଥିଲେ । ପରେ ଜଣାପଡ଼ିଥିଲା ଯେ ଏହି ବେନାମି ପ୍ରଚାରପତ୍ର ଦିଲ୍ଲୀରେ ଛପାଯାଇଥିଲା । ବିଜୁବାବୁଙ୍କଠାରୁ ଶୁଣିଥିଲି ଦିଲ୍ଲୀରେ ଓଡ଼ିଶାର ଜଣେ ନେତା ଏହି ବେନାମି ପ୍ରଚାରପତ୍ରର ଗୋଟିଏ ପୁଡ଼ିଆ ତାଙ୍କ ହାତରେ ଓଡ଼ିଶା ପଠାଇବାକୁ ଇଚ୍ଛା-କରିଥିଲେ; ମାତ୍ର ସେ ଏପ୍ରକାର ଘୃଣ୍ୟ କାର୍ଯ୍ୟରେ ଲିପ୍ତ ହେବାକୁ ମନାକରିଦେଇଥିଲେ ।

ପରଶ୍ରୀକାତରତା, ବ୍ୟକ୍ତିଗତ ଅସହିଷ୍ଣୁତାର ବଶବର୍ତ୍ତୀ ହୋଇ ଆମେ ଯେପରି ଆମରି ଲୋକଙ୍କ ପତନ ଘଟାଉ ତାହା ଓଡ଼ିଶା ଜାତୀୟ ଚରିତ୍ରର ଏକ କଳଙ୍କ ବୋଲି କୁହାଯାଇଥାଏ । ଶ୍ରୀ ବୀରକିଶୋର ରାୟଙ୍କର ମୃତ୍ୟୁ ପରଦିନ ଓଡ଼ିଶା ହାଇକୋର୍ଟର ଜଣେ ଅଣଓଡ଼ିଆ ପ୍ରଧାନ ବିଚାରପତି ଶ୍ରୀ ଆର୍.ଏଲ୍. ନରସିଂହମ୍ କୋର୍ଟ ପରିସର ମଧ୍ୟରେ ଏକ ଶୋକସଭାରେ ଯାହା କହିଥିଲେ ସେଥିରୁ ବହୁତ କଥା ଜଣାପଡ଼େ । ବୀରବାବୁଙ୍କର ଦୁର୍ନାମକାରୀମାନଙ୍କୁ ସମସ୍ତେ ଭଲଭାବରେ ଜାଣନ୍ତି ବୋଲି କହି ଶ୍ରୀ ନରସିଂହମ୍ ଯାହା କହିଥିଲେ – ତାହା ସେଠାରେ ସମବେତ ଆମର ଓଡ଼ିଆ ଜଜ୍ ଓ ଓକିଲମାନେ ମୁଣ୍ଡ ନୁଆଁଇ ଶୁଣିଥିଲେ । ୧୯୫୮ ମସିହା ଜୁଲାଇ ୨୭ ତାରିଖ ଦିନ ଓଡ଼ିଶା ହାଇକୋର୍ଟରେ ଶ୍ରୀ ନରସିଂହମ୍ ଶୋକପ୍ରକାଶ କରି କହିଥିଲେ, "It is no exaggeration to say that in any High Court in India he would have made his mark as a great judge and would perhaps have risen to the highest post to which any judge of a High Court can aspire. There is a well-known saying that a prophet is never honoured in his own country. Had B.K. Ray remained in Patna, it is likely that he would have risen higher up in judicial ladder and adorned a seat in the Supreme Court. Unfortunately, being himself an Oriya he was naturally keen on being the first Chief Justice of Orissa High Court and chose to come here in 1948. The result is well-known to you all. Notwithstanding his outstanding legal abilities his detractors succeeded in preventing him from reaching the highest goal." (1958, Cuttack Law Times Journal, Page-697) ସ୍ୱର୍ଗୀୟ ବୀରକିଶୋର ରାୟଙ୍କ ସହଧର୍ମିଣୀ ଶ୍ରୀମତୀ ଲତିକା ରାୟ ଏବେ ମଧ୍ୟ ଏହି ବିଷୟଟି ମନେପକାଇ ଦୁଃଖକରନ୍ତି । ସୁପ୍ରିମ୍‌କୋର୍ଟର ଜଣେ ଜଜ୍ ହୋଇ ଯଶ ଅର୍ଜନ କରିବାରୁ ତାଙ୍କର ସ୍ୱାମୀଙ୍କୁ ଚକ୍ରାନ୍ତକରି ବଞ୍ଚିତ କରାଯାଇଥିଲା ବୋଲି ତାଙ୍କର ସ୍ପଷ୍ଟ ଧାରଣା ।

## ଆପଣା କଲା କର୍ମମାନ : ସରଯୂ ପ୍ରସାଦଙ୍କ ରାୟ

ମୁଧଲକର ରିପୋର୍ଟ ଯୋଗୁଁ ହିଁ ସ୍ୱତନ୍ତ୍ର ଓ ଜନକଂଗ୍ରେସଦଳ ମଧ୍ୟରେ ପ୍ରବଳ ମତଭେଦ ଘଟିବାର ଜଣାଯାଇଥିଲା । ଶ୍ରୀ ମହତାବ ମୁଖ୍ୟମନ୍ତ୍ରୀ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କୁ ସନ୍ଦେହ କରିବାକୁ ଲାଗିଲେ । ମୁଧଲକର ସୁପାରିସ୍‌କୁ ପ୍ରତ୍ୟାଖ୍ୟାନ କରି କ୍ୟାବିନେଟ୍ ଏକ ନିଷ୍ପତ୍ତି ଗ୍ରହଣ କରିବାକୁ ମହତାବ ଦାବିକରୁଥାଆନ୍ତି; ମାତ୍ର ତରବରିଆଭାବରେ କୌଣସି ନିଷ୍ପତ୍ତି ନନେଇ କଥାଟାକୁ କିଛି ସମୟ ଗଡ଼ାଇଦେବା ଥିଲା ସିଂହଦେଓଙ୍କର ଭିତିରି ଉଦ୍ଦେଶ୍ୟ । ମୁଖ୍ୟମନ୍ତ୍ରୀ ସିଂହଦେଓ ମହତାବବାବୁଙ୍କ ଆଚରଣ ଓ କାର୍ଯ୍ୟକଳାପକୁ ଲକ୍ଷ୍ୟକରି ମୁଧଲକରଙ୍କ ସୁପାରିସ୍ ଉପରେ କୌଣସି ନିଷ୍ପତ୍ତି ନନେଇ ବିଷୟଟିକୁ ଝୁଲାଇ ରଖିବା ଶ୍ରେୟସ୍କର ବିଚାରୁଥିଲେ । ଏହା ଥିଲା ତାଙ୍କର ମହତାବଙ୍କ ସହିତ ବନ୍ଧୁତା ମଧ୍ୟରେ ରାଜରକ୍ତସୁଲଭ ରାଜନୀତି । ସ୍ୱତନ୍ତ୍ର-ଜନକଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳର ଶେଷ କ୍ୟାବିନେଟ୍ ବୈଠକରେ ମୁଧଲକରଙ୍କ ସୁପାରିସ୍ ଅନୁସାରେ ମହତାବଙ୍କ ବିରୁଦ୍ଧରେ ଗୋଟିଏ କମିଶନ୍ ବସାଇବାର ନିଷ୍ପତ୍ତି ନିଆଯାଇଥିଲା ଏବଂ ୧୯୭୧ ଜାନୁୟାରୀ ମାସରେ ରାଜସ୍ଥାନ ଓ ଆସାମ ହାଇକୋର୍ଟର ପୂର୍ବତନ ପ୍ରଧାନ ବିଚାରପତି ସରଯୂ ପ୍ରସାଦଙ୍କୁ କମିଶନ ନିଯୁକ୍ତ କରାଯାଇଥିଲା । ମୁଧଲକରଙ୍କ ସୁପାରିସ୍ ଅନୁଯାୟୀ ଏହି ନିଯୁକ୍ତି ବିଜ୍ଞପ୍ତିର ଶେଷଭାଗରେ ଉଲ୍ଲେଖ ଥିଲା, "Now, therefore, the State Government, in exercise of the powers conferred by Section-3, of the Commission of Inquiry Act, 1952, hereby appoint a Commi-

ssion of Inquiry consisting of Sri Sarjoo Prasad, ex-Chief Justice of the Rajasthan and Assam High Courts to inquire into and report on and in respect of the following" :

(a) Whether Dr. H.K. Mahtab committed acts of misconduct, misappropriation, acceptance of illegal gratification, favouritism, illegalities, irregularities and improprieties and abuse of his power as Chief Minister in the matters of administration of the State in respect of the following : (1) Grant of remission of Government dues to Kendu-leaf contractors in 1959-60; (2) Grant of lease of Chromite mines to Md. Serajuddin in 1959; (3) Rapid acquisition of wealth by Dr. H.K. Mahtab between 1956 to 1960; (4) Withdrawal of criminal prosecution against ten iron and steel dealers.

ସରଯୂ ପ୍ରସାଦ କମିଶନଙ୍କ କାର୍ଯ୍ୟାଳୟ ଖୋଲିଥିଲା ଭୁବନେଶ୍ୱରସ୍ଥ ସର୍ଦ୍ଦାର ପଟେଲ୍ ହଲ୍‌ରେ । ସାକ୍ଷ୍ୟ ନେବାପାଇଁ ମୋତେ ମଧ କମିଶନ ଡାକିଥିଲେ । ସର୍ବଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ, ରାଧାନାଥ ରଥ, ଦୀନବନ୍ଧୁ ସାହୁ ଓ ସତ୍ୟପ୍ରିୟ ମହାନ୍ତିଙ୍କଠାରୁ ମଧ ସାକ୍ଷ୍ୟ ନିଆଯାଇଥିଲା । କମିଶନ ତାଙ୍କ ରିପୋର୍ଟ ୧୯୭୨ ମସିହା ମେ ମାସ ପଚିଶ ତାରିଖରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କ ହାତରେ ଦେଇଥିଲେ । କମିଶନ ଶ୍ରୀ ମହତାବଙ୍କ ସମ୍ପର୍କରେ ଅତି କଟୁମନ୍ତବ୍ୟ ଦେଇଛନ୍ତି । କେନ୍ଦୁପତ୍ର ବ୍ୟବସାୟୀମାନଙ୍କୁ ରିହାତି ଦେବା ସମ୍ପର୍କୀୟ ସମସ୍ତ ଫାଇଲପତ୍ର କମିଶନ ଦେଖିଥିଲେ । ସଂପୃକ୍ତ ଅଫିସର ଓ ମନ୍ତ୍ରୀମାନଙ୍କଠାରୁ ମଧ ଯାହା ବୁଝାଶୁଝା କରିବାର କଥା ତାହା ବୁଝିଥିଲେ । କେନ୍ଦୁପତ୍ର ବ୍ୟବସାୟୀମାନଙ୍କୁ ଏହି ରିହାତି ଦେଇ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବ ସେମାନଙ୍କଠାରୁ ଛଅଲକ୍ଷ ଟଙ୍କା ଲାଞ୍ଚ ନେଇଥିବା କଥା ନିଜେ ମହତାବବାବୁ ସମ୍ପୃକ୍ତ ମନ୍ତ୍ରୀ ଶ୍ରୀ ରାଧାନାଥ ରଥଙ୍କ ପାଖରେ ସ୍ୱୀକାର କରିଥିବା ବିଷୟ ସରଯୂ ପ୍ରସାଦ କମିଶନ ଆଗରେ ଶ୍ରୀ ରଥ ସାକ୍ଷ୍ୟ ଦେଇଥିଲେ । ଶ୍ରୀ ରଥଙ୍କ କଥା ଉପରେ କମିଶନ ବିଶ୍ୱାସ ସ୍ଥାପନ କରି ରିପୋର୍ଟର ସତେଇଶ ପୃଷ୍ଠାରେ ଲେଖିଛନ୍ତି, "I have no doubt about the truth of the statement that Shri Mahtab got Rs. 6 lakhs from the traders. Shri Rath appears to be a man of great integrity. He had been associated with the ruling Cabinet in Orissa for a very long time and even when the coalition Cabinet consisted of only three persons, he was one of them. That shows the confidence which both Shri Mahtab and Shri R.N. Singhdeo had in him."

ଏହି ଅଭିଯୋଗଟିକୁ ସବୁ ଦିଗରୁ ଅନୁଧାନ ଓ ଅନୁସନ୍ଧାନ କରି କମିଶନ ତାଙ୍କ ସିଦ୍ଧାନ୍ତରେ ରିପୋର୍ଟର ୨୯ ପୃଷ୍ଠାରେ ଲେଖିଛନ୍ତି, "In conclusion, I find Shri Mahtab was guilty of accepting illegal gratification, impropriety and abuse of his power as Chief Minister in granting remission to Kenduleaf contractors, resulting in appreciable loss to the State Revenue."

ବେଆଇନ ଭାବରେ ଧନସମ୍ପଦ ହାସଲ କରିଥିବା ସମ୍ବନ୍ଧରେ ଶ୍ରୀ ମହତାବଙ୍କ ବିରୁଦ୍ଧରେ ଯେଉଁ ଅଭିଯୋଗ ହୋଇଥିଲା ସେ ବିଷୟରେ ସମସ୍ତ ତଥ୍ୟ କମିଶନ ତାଙ୍କ ରିପୋର୍ଟ ୫୩, ୫୮, ୭୮ ଓ ୮୦ ପୃଷ୍ଠାରେ ପରୀକ୍ଷାନିରୀକ୍ଷା କରି ଦର୍ଶାଇ ଶେଷରେ ଲେଖିଛନ୍ତି ଯେ, ଶ୍ରୀ ମହତାବ ତାଙ୍କ ଯୁକ୍ତିଯୁକ୍ତ ଉପାର୍ଜନଠାରୁ ବହୁ ଅଧିକ ସମ୍ପତ୍ତି ଅକ୍ତିଆର କରିଥିଲେ । ଅନଧିକାର ଓ ବେଆଇନ ସୂତ୍ରରୁ ସେ

ନିଶ୍ଚୟ ଏହି ଉପାର୍ଜନ କରିଥିବେ । ସେ ଏହି ଉପାର୍ଜନର ହିସାବପତ୍ର ଦେବାରେ ସମ୍ପୂର୍ଣ୍ଣ ବିଫଳ ହୋଇଥିଲେ । ବିଷୟଟି ପରୀକ୍ଷା-ନିରୀକ୍ଷା ପ୍ରସଙ୍ଗରେ କମିଶନ ଉଲ୍ଲେଖ କରିଛନ୍ତି, "At the outset, I should refer to some details of the allegations on the point as set out in the affidavit of the State Government. It states that when Shri Mahtab assumed office as Chief Minister of Orissa on 19th October, 1956, he had a debit balance of Rs.11,684.4 annas in his bank account in the United Commercial Bank Ltd., Cuttack. Therefore, it appears that he deposited heavy amounts in the bank during the period from October 1956 to February 1960, in the shape of cash and cheques. The total deposits made from time to time during that period, in cash amounted to Rs.3,08,115.87p. while amount deposited by cheques came to Rs.35,717.35 paise, thus making a total sum of Rs.3,43,833.22 paise. A copy of bank account has been filed as Annex-I to the Statement. It is further pointed out that most of the cash deposits had been made between January to June, 1957, totalling about Rs.2,91,000/-. After June, 1957 most of the deposits are largely in cheques, excepting for a few items of cash deposits.

From the above accounts Shri Mahtab had issued cheques to the extent of Rs.2,29,000/- during the period from 26th June, 1957 to 1st July, 1957, both days inclusive, in favour of the State Bank of India and the Post Master General, General Post Office, Cuttack, for the purpose of investments. Out of this amount of Rs.2,29,000/-, a sum of Rs.73,000/- was invested in the purchase of National Savings Certificates through the General Post Office, Cuttack, in the name of his natural brother Shri Gopinath Das, and in the names of his nephews and nieces." x x x "Shri Mahtab admits having purchased National Savings Certificates and Annuity Certificates all for a total sum of Rs.1,56,000/- jointly in the names of himself and his wife." ବ୍ୟାଙ୍କରେ ସବୁପ୍ରକାର ଜମା ହୋଇଥିବା ଅର୍ଥର ହିସାବ କରି କମିଶନ କହିଥିଲେ, "From the above it is clear that according to the entries in his accounts he (Mahtab) made a total investment of Rs.3,91,732/- during the relevant period." ଶ୍ରୀ ମହତାବ ୧୯୫୬ ମସିହା ଅକ୍ଟୋବର ମାସରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବାକୁ ଯେତେବେଳେ ବମ୍ବେରୁ ଆସନ୍ତି, ସେତେବେଳେ ଇଉନାଇଟେଡ଼ୁ କମର୍ସିଆଲ୍ ବ୍ୟାଙ୍କରେ ତାଙ୍କ ହିସାବ ବହିରେ ଜମା ପରିବର୍ତ୍ତେ ଏଗାର ହଜାର ଟଙ୍କା ଋଣ (overdraft) ଥିଲା । ମାତ୍ର ମୁଖ୍ୟମନ୍ତ୍ରୀ ହେବା ପରେ ଦେଖାଗଲା ଯେ ୧୯୫୭ ମସିହାର ମାତ୍ର ଛଅ ମାସ ମଧ୍ୟରେ ସେ ସେହି ବ୍ୟାଙ୍କରେ ଦୁଇ ଲକ୍ଷ ଏକାନବେ ହଜାର ଟଙ୍କା ଜମାକରିଥିଲେ । ୧୯୬୦ ମସିହା ଫେବୃୟାରୀ ମାସ ବେଳକୁ ସେହି ଜମା ଖାତାରେ ତିନି ଲକ୍ଷ ଏକାନବେ ହଜାର ସାତ ଶହ ଟଙ୍କା ସଞ୍ଚିତ ଥିଲା । ଅଧିକ ସୁଧ ପାଇବା ଆଶାରେ ମହତାବବାବୁ ସେହି ଟଙ୍କାକୁ ତାଙ୍କ ନିଜ ନାମରେ ଓ ତାଙ୍କର ପରିବାରବର୍ଗଙ୍କ ନାମରେ ବିଭିନ୍ନ କିସମର ପୋଷ୍ଟାଲ୍‌ଜମା ଓ ସଞ୍ଚୟ ପତ୍ରରେ ବିନିଯୋଗ କରିଥିଲେ । ଏସବୁ ବିଷୟ ସହିତ ମହତାବବାବୁ ଦାଖଲକରିଥିବା ତାଙ୍କ ନିଜର ଓ ପରିବାରର ଆୟବ୍ୟୟ ହିସାବ ତନ୍ନ ତନ୍ନ କରି ଦେଖିବା ପରେ ଅଭିଯୋଗର ସତ୍ୟତା ଓ ପ୍ରମାଣ ସମ୍ବନ୍ଧରେ

ସନ୍ତୁଷ୍ଟ ହୋଇ ବିଚାରବିଭାଗୀୟ ତଦନ୍ତର ଅଧିଷ୍ଠାତା ଜଣେ ପୂର୍ବତନ ପ୍ରଧାନ ବିଚାରପତି ସରଯୁପ୍ରସାଦ ଲେଖିଛନ୍ତି, "All the above acquisitions of wealth and assets during such a short period, while Shri Mahtab held the office of Chief Minister, could not be attributed to his known sources of income, but must have been delivered through clandestine or unlawful sources." ପରିଶେଷରେ କମିଶନ ତାଙ୍କ ସିଦ୍ଧାନ୍ତରେ କହିଥିଲେ, "My finding is that the acquisition of wealth by Shri Mahtab was much beyond his ostensible sources of income and must have been derived through unauthorised and illegal sources for which he has completely failed to account."

ମହମ୍ମଦ ସିରାଜୁଦ୍ଦିନଙ୍କୁ ଖଣିପଟ୍ଟା ଦେବା ଓ ଲୁହାବ୍ୟବସାୟୀଙ୍କ ମକଦ୍ଦମା ପ୍ରତ୍ୟାହାର ସମ୍ବନ୍ଧୀୟ ଅଭିଯୋଗଗୁଡ଼ିକ ଖାନ୍ନା କମିଶନ ଆଗରେ ଆମ୍ଭମାନଙ୍କ ବିରୁଦ୍ଧରେ ମଧ୍ୟ ଆସିଥିବାରୁ ସେ ସମ୍ବନ୍ଧରେ ଉଭୟ ଖାନ୍ନା କମିଶନ ଓ ସରଯୁପ୍ରସାଦ କମିଶନଙ୍କ ସିଦ୍ଧାନ୍ତ ବିଷୟ ଆଗରୁ ଆଲୋଚିତ ହୋଇଛି । ଆକ୍ରୋଶମୂଳକ ଚିନ୍ତାଧାରାର ବଶବର୍ତ୍ତୀ ହୋଇ ଓଡ଼ିଶାରେ କମିଶନ ବସାଇବା ଚକ୍ରାନ୍ତକାରୀଙ୍କର ଅବଶେଷରେ ଫାଶିକୁ ଯିବା ଅବସ୍ଥା ହୋଇଥିଲା ବୋଲି ଲୋକମୁଖରେ ଶୁଣାଗଲା । ଆମ୍ଭମାନଙ୍କ ବିରୁଦ୍ଧରେ କମିଶନ ବସାଇବାପାଇଁ ମହତାବବାବୁ ସମସ୍ତଙ୍କଠାରୁ ବେଶି ଆଗ୍ରହୀ ଥିଲେ । ଖାନ୍ନା କମିଶନ ବସିଲା ପରେ ମହତାବବାବୁ ତାଙ୍କ ଖବରକାଗଜ ଜରିଆରେ ଓ ବହୁ ଉପାୟରେ ଆମ୍ଭମାନଙ୍କ ବିରୁଦ୍ଧରେ ପ୍ରବଳ ଆକ୍ରମଣ ଆରମ୍ଭ କରିଦେଇଥିଲେ । ଆତ୍ମମର୍ଯ୍ୟାଦା ରକ୍ଷା ଉଦ୍ଦେଶ୍ୟରେହିଁ ଆମେ ପ୍ରତିଆକ୍ରମଣ କରି ତାଙ୍କ ଦୁର୍ନୀତିମୂଳକ କାର୍ଯ୍ୟର ଅନୁଧ୍ୟାନ କଲୁ ଏବଂ ଅଭିଯୋଗପତ୍ର ପ୍ରସ୍ତୁତ କରି ତଦନ୍ତ କମିଶନ ଦାବୀ କଲୁ । ଆମ ବିରୁଦ୍ଧରେ କମିଶନ ତଦନ୍ତ କରୁଥିବାବେଳେ ଶ୍ରୀ ମହତାବଙ୍କ ବିରୁଦ୍ଧରେ କମିଶନ ବସିଥିଲା । ଆମେ ଦୋଷମୁକ୍ତ ହେଲୁ ଏବଂ ସେ ହେଲେ ଦୋଷଯୁକ୍ତ । ରାଜନୈତିକ ତଥା ସାମାଜିକ ନ୍ୟାୟର ଅନୁଧ୍ୟାନ ନିମନ୍ତେ ବୁଦ୍ଧିଜୀବୀମାନଙ୍କ ପକ୍ଷେ ଦୁଇଟିଯାକ କମିଶନଙ୍କ ମନ୍ତବ୍ୟ ଓ ସିଦ୍ଧାନ୍ତ କେବଳ ବିଚାର୍ଯ୍ୟ ନୁହେଁ, ଭବିଷ୍ୟତ ବଂଶଧରମାନଙ୍କପାଇଁ ଶିକ୍ଷାପ୍ରଦ ମଧ୍ୟ । ତେଣୁ 'ଆପଣା କଲା କର୍ମମାନ, ଆଗୁଁ ହୋଇବ ସାବଧାନ' ବୋଲି ଭାଗବତ୍‌କାର କହିଛନ୍ତି ।

ଶ୍ରୀ ବିଶ୍ୱନାଥ ଦାସଙ୍କ ମନ୍ତ୍ରିମଣ୍ଡଳ ବୈଠକରେ ଶ୍ରୀ ସରଯୁପ୍ରସାଦ କମିଶନଙ୍କ ରିପୋର୍ଟ ଆଲୋଚିତ ହୋଇ ଅନୁମୋଦିତ ହେବା ସଙ୍ଗେ ସଙ୍ଗେ ବିଭିନ୍ନ ଅଭିଯୋଗ ଉପରେ ତାଙ୍କ ରାୟଗୁଡ଼ିକ ଗୃହୀତ ହୋଇଥିଲା । ତଦନୁସାରେ ଆବଶ୍ୟକୀୟ ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନ ବିଷୟରେ ମଧ୍ୟ ନିଷ୍ପତ୍ତି ନିଆ-ଯାଇଥିଲା । ମୁଁ ନିଜେ କମିଶନଙ୍କ ସିଦ୍ଧାନ୍ତ ଉପରେ ଆଉ କିଛି କାର୍ଯ୍ୟାନୁଷ୍ଠାନର ପକ୍ଷପାତୀ ନଥିଲି । ମୁଁ କହିଥିଲି ଯେ କମିଶନ ଯେପରି ଭାବରେ ମହତାବଙ୍କ ସମ୍ବନ୍ଧରେ ମତ ବ୍ୟକ୍ତ କରିଛନ୍ତି ଓ ଯେଉଁ ସିଦ୍ଧାନ୍ତ ନେଇଛନ୍ତି ତାହା ପ୍ରକାଶିତ ହୋଇଗଲେ ସେ ନିନ୍ଦିତ ହୋଇଯିବେ ଏବଂ ସାଧାରଣ ଚକ୍ଷୁରେ ତାଙ୍କର ମର୍ଯ୍ୟାଦାହାନି ହିଁ ହେବ ତାଙ୍କର ଉପଯୁକ୍ତ ଶାସ୍ତି । କିନ୍ତୁ ମୋର ଏ କଥାକୁ ଅନ୍ୟମାନେ ପସନ୍ଦ କରିନଥିଲେ । କମିଶନଙ୍କ ରିପୋର୍ଟ ଅନୁସାରେ ଉତ୍କୋଚ ଗ୍ରହଣ, ବେଆଇନଭାବେ ସମ୍ପତ୍ତି ଠୁଳ ପ୍ରଭୃତି କେତେକ ବିଷୟରେ ଫୌଜଦାରୀ ମକଦ୍ଦମା ରୁଜୁ କରିବାପାଇଁ ସ୍ଥିରହୋଇଥିଲା । ସ୍ୱରାଷ୍ଟ୍ର ବିଭାଗରେ ତାହା ବିଚାର କରାଯାଇ ନିର୍ଦ୍ଦେଶ ଗଲେ ଥାନାରେ ଏତାଲା ଦିଆଯିବାର କଥା ଓ ତା'ପରେ ଗିରଫଦାରୀ ପ୍ରଭୃତି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବାର କଥା । ଏ କଥାଟା ମୋ ମନକୁ ଆଦୌ ପାଇଲାନାହିଁ । ଅତୀତର ଅନେକ କଥା ସ୍ମରଣକରି ସେ ଦିଗରେ ଅଗ୍ରସର ହେବାକୁ ଦ୍ୱିଧା ଅନୁଭବ କଲି । ଏଣେ ଏସବୁ ବିଷୟ ଚାଲିଥିବା କଥା ସନ୍ଧାନ ପାଇ ମହତାବବାବୁ ବଡ଼ ଉଦ୍‌ବିଗ୍ନ ହେଉଥାଆନ୍ତି । ମହତାବବାବୁଙ୍କ ପକ୍ଷରୁ ଅନେକ ବନ୍ଧୁ ଆସି ତାଙ୍କର ଅସହାୟତା ବିଷୟରେ ଜଣାଇ ଯେକୌଣସିମତେ କାର୍ଯ୍ୟାନୁଷ୍ଠାନ ବନ୍ଦକରିବାପାଇଁ ମୋ ପଛରେ ଲାଗିରହିଲେ । ଶ୍ରୀ ସିଂହଦେଓ ତେଣେ ବ୍ୟସ୍ତ କରୁଥାଆନ୍ତି

କିପରି ଶୀଘ୍ର କାର୍ଯ୍ୟାନୁଷ୍ଠାନ ଗ୍ରହଣକରାଯାଉ । ମୁଁ ଟାଳଟୁଳ କରି ସମୟ ଗଡ଼ାଇବାରେ ଲାଗିଥାଏ । ସ୍ୱରାଷ୍ଟ୍ର ବିଭାଗର ତତ୍କାଳୀନ ଶାସନସଚିବ ଶ୍ରୀ ପଦ୍ମନାଭ ମିଶ୍ର ମୋ ମନକଥା ଜାଣିଥା'ନ୍ତି । ସ୍ୱରାଷ୍ଟ୍ର-ବିଭାଗ କାର୍ଯ୍ୟାନୁଷ୍ଠାନ କରିବାରେ କାହିଁକି ବିଳମ୍ବ ଘଟୁଛି ଜାଣିବାପାଇଁ ଦିନେ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ଶ୍ରୀ ବିଜୁ ପଟ୍ଟନାୟକ ସାଙ୍ଗହୋଇ ଆସି ମୋ ଅଫିସରେ ପହଞ୍ଚିଥିଲେ । ମୋ ପାଇଁ ବିଳମ୍ବ ଘଟୁଛି ବୋଲି ସେମାନେ ସନ୍ଧାନ ପାଇଥିଲେ । ଏସବୁ ବିଷୟରେ ଏପରିଭାବରେ ତରବର ହୋଇ କାର୍ଯ୍ୟାନୁଷ୍ଠାନ କରିବା ଠିକ୍ ହେବନାହିଁ ବୋଲି ମୁଁ ସେମାନଙ୍କୁ କହିଥିଲି । ମୋର ଦ୍ୱିଧାଭାବ ଜାଣିପାରି ଶ୍ରୀ ସିଂହଦେଓ ମୋତେ କହିଥିଲେ, ''ଆପଣ କାହିଁକି ଏ ପ୍ରକାର ଟାଳଟୁଳ କରି କାର୍ଯ୍ୟାନୁଷ୍ଠାନ ବନ୍ଦକରୁଛନ୍ତି ? ମହତାବଙ୍କ ବିଷୟରେ ଭୃଗୁ-ସଂହିତାରେ ଲେଖାଅଛି ଯେ ସେ ତାଙ୍କର ଶେଷଜୀବନରେ ଜେଲ୍ ଯିବେ; ତେଣୁ ଆପଣ ସେଥିରେ ବାଧା ଦିଅନ୍ତୁନାହିଁ ।'' ଏ କଥାରେ ଆମେ ସମସ୍ତେ ହସିଥିଲୁ । କାର୍ଯ୍ୟାନୁଷ୍ଠାନ ଶୀଘ୍ର କରିବି ବୋଲି ସେମାନଙ୍କୁ କହିଥିଲି; ମାତ୍ର ସେପରି କାର୍ଯ୍ୟ କରିବାକୁ କାହିଁକି ସ୍ପୃହା ହେଲାନାହିଁ । ଏହିପରି ଟାଳଟୁଳ କରି ସମୟ ଗଡ଼ାଉଥାଏ । ଏହାର କିଛିଦିନ ପରେ ଶ୍ରୀ ବିଶ୍ୱନାଥ ଦାସଙ୍କ ସରକାର ଭାଙ୍ଗିଯାଇଥିଲା । ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ଦ୍ୱିତୀୟଥର ମନ୍ତ୍ରିମଣ୍ଡଳ ସମୟରେ ଶ୍ରୀ ମହତାବବାବୁଙ୍କ ବିରୁଦ୍ଧରେ ଫୌଜଦାରୀ କାର୍ଯ୍ୟାନୁଷ୍ଠାନ ହୋଇଥିଲା । ଶ୍ରୀ ସିଂହଦେଓଙ୍କର ଭୃଗୁସଂହିତାରେ ଲେଖାଥିବା ଭବିଷ୍ୟତବାଣୀ ମଧ୍ୟ ଗୋଟିଏ ଆଡୁ ସତ୍ୟହୋଇଥିଲା । ଜରୁରୀକାଳୀନ ଅବସ୍ଥାରେ ଶ୍ରୀ ମହତାବ ଗିରଫହୋଇଥିଲେ ଓ ଜେଲ୍ ଭୋଗିଥିଲେ । ଏ କଥା ମୁଁ ବହୁତ ଲୋକଙ୍କୁ କହିଥିଲି । ଶ୍ରୀ ମହତାବଙ୍କ ବିରୁଦ୍ଧରେ ହୋଇଥିବା ମକଦ୍ଦମାଗୁଡ଼ିକ ଅନେକ ବର୍ଷ କୋର୍ଟରେ ପଡ଼ିରହିଥିଲା । ମୁଁ ମୁଖ୍ୟମନ୍ତ୍ରୀ ଥିଲାବେଳେ ପ୍ରଧାନମନ୍ତ୍ରୀ ଶ୍ରୀ ମୋରାରଜୀ ଦେଶାଇଙ୍କୁ ମହତାବଙ୍କ ବିରୁଦ୍ଧରେ ଥିବା କେଶ୍‌ଗୁଡ଼ିକ ପ୍ରତ୍ୟାହାର କରିନେବାକୁ ଅନୁରୋଧ କରିଥିଲି । ମାତ୍ର ପୂର୍ବତନ ସରକାର ଏ କେଶ୍‌ଗୁଡ଼ିକ ରୁଜୁ କରିଥିବା ହେତୁ ସେ ଏଥିରେ ହସ୍ତକ୍ଷେପ କରିବାକୁ ରାଜି ହୋଇନଥିଲେ । ଏ ମକଦ୍ଦମାଗୁଡ଼ିକ କେନ୍ଦ୍ର ତଦନ୍ତ ବ୍ୟୁରୋ ରୁଜୁ କରିଥିବାରୁ ପ୍ରତ୍ୟାହାର କରାଯିବା ସମ୍ପର୍କରେ କେବଳ କେନ୍ଦ୍ର ସରକାରଙ୍କର କ୍ଷମତା ଥିଲା ।

## ମକଦ୍ଦମା ରଦ୍ଦ ହେଲା, ଦୁର୍ନୀତିର ଦୁର୍ନାମ ରହିଗଲା

ମହତାବଙ୍କ ବିରୁଦ୍ଧରେ ହୋଇଥିବା ଦୁର୍ନୀତି ଅଭିଯୋଗର ବିଚାରହୋଇଥିଲା ଭୁବନେଶ୍ୱରର ସ୍ୱତନ୍ତ୍ର ଜଜ୍‌ଙ୍କ କୋର୍ଟରେ । ସ୍ୱତନ୍ତ୍ର ଜଜ୍ ଶ୍ରୀ ଜେ.ଏମ୍. ମହାପାତ୍ର ଅଭିଯୋଗଗୁଡ଼ିକ ବିଚାର କରି ମହତାବବାବୁଙ୍କ ବିରୁଦ୍ଧରେ ଚାର୍ଜ ଫ୍ରେମ୍ କରିସାରିଥିଲେ । ଚାର୍ଜ ଫ୍ରେମ୍ କରି ସ୍ୱତନ୍ତ୍ର ଜଜ୍ ଦେଇଥିବା ଆଦେଶକୁ ନାକଚ କରିବାପାଇଁ ଓଡ଼ିଶା ହାଇକୋର୍ଟରେ ମହତାବବାବୁଙ୍କ ପକ୍ଷରୁ ରିଭିଜନ୍ ଦରଖାସ୍ତ ହୋଇଥିଲା । ଓଡ଼ିଶା ହାଇକୋର୍ଟରେ ମାନ୍ୟବର ମୁଖ୍ୟ ବିଚାରପତି ଶ୍ରୀ ରଙ୍ଗନାଥ ମିଶ୍ର ଓ ମାନ୍ୟବର ବିଚାରପତି ଶ୍ରୀ ନବକୁମାର ଦାସ ଭୁବନେଶ୍ୱର ସ୍ୱତନ୍ତ୍ର ଜଜ୍‌ଙ୍କ ସେହି ଆଦେଶକୁ ୧୯୮୧ ମସିହା ସେପ୍ଟେମ୍ବର ନଅ ତାରିଖରେ ନାକଚ କରିଦେଇଥିଲେ (52-1981-C.L.T. 473) । ମାନ୍ୟବର ବିଚାରପତିମାନେ ଅଭିଯୋଗଗୁଡ଼ିକର ସତ୍ୟାସତ୍ୟ ବା ମକଦ୍ଦମାର ଦୋଷଗୁଣ ଭିତରକୁ ନଯାଇ କେବଳ ବାର୍ଦ୍ଧକ୍ୟ ହେତୁ ଦୟାପରବଶ ହୋଇ ମକଦ୍ଦମା ଦୀର୍ଘକାଳ ଚାଲୁରହି ବିଚାରରେ ବିଳମ୍ବ ଘଟିଥିବା ଦୃଷ୍ଟିରୁ ସେ ପ୍ରକାର ଆଦେଶ ଦେଇଥିଲେ ବୋଲି ରାୟରେ ସ୍ପଷ୍ଟଭାବରେ ଲେଖିଛନ୍ତି । ସେମାନେ ରାୟରେ ଲେଖିଛନ୍ତି, ''ଡକ୍ଟର ମହତାବଙ୍କୁ ଏବେ ୮୦ ବର୍ଷ ଅତିକ୍ରମ କରିଛି ଓ ସେ ସକ୍ରିୟ ରାଜନୀତିରେ ନାହାନ୍ତି । ଅଧିକନ୍ତୁ ଏହି ମକଦ୍ଦମାରେ ଯେଉଁମାନେ ମୁଖ୍ୟସାକ୍ଷୀ ଭାବରେ ସରକାରଙ୍କ ପକ୍ଷରୁ କୋର୍ଟରେ ସାକ୍ଷ୍ୟ ଦେବା କଥା, ସେମାନଙ୍କ ମଧ୍ୟରୁ ତଦାନୀନ୍ତନ କେନ୍ଦ୍ରମନ୍ତ୍ରୀ ଶ୍ରୀ କେ.ଡି.ମାଲବ୍ୟ ଓ ରାଜ୍ୟ ଶିଳ୍ପ ଓ ଖଣିମନ୍ତ୍ରୀ ଶ୍ରୀ ଦୀନବନ୍ଧୁ ସାହୁ ଏବେ ଇହଜଗତ୍‌ରେ ନାହାନ୍ତି । ଏହି ପରିପ୍ରେକ୍ଷୀରେ ମକଦ୍ଦମା ଚାଲିଲେ

ସୁଦ୍ଧା ନ୍ୟାୟ ବିଚାର ଠିକ୍‌ରୂପେ ହୋଇପାରିବ ନାହିଁ ।'' ଓଡ଼ିଶା ହାଇକୋର୍ଟର ଏହି ରାୟ ପ୍ରକାଶ ପାଇବା ପରେ ଆମ ରାଜ୍ୟରେ ଜଣେ ବୟୋଜ୍ୟେଷ୍ଠ ନେତା ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ସେପ୍ଟେମ୍ବର ୧୬ ତାରିଖ ସମାଜ କାଗଜରେ ''ଓଡ଼ିଶାର ଦୁର୍ନୀତି ଓ ଦୁର୍ଗତି'' ଶିରୋନାମାରେ ଗୋଟିଏ ବିବୃତି ଦେଇ କହିଥିଲେ, ''ଓଡ଼ିଶା ହାଇକୋର୍ଟ ତାଙ୍କ ରାୟରେ ଲେଖିଛନ୍ତି ହରେକୃଷ୍ଣ ମହତାବ ଆଉ ସକ୍ରିୟ ରାଜନୀତିରେ ନାହାନ୍ତି, ମୁଁ ମଧ୍ୟ ରାଜନୀତିରେ ଥାଇ ନଥିଲା ପରି । x x x ମହତାବବାବୁଙ୍କ ପରି ଜଣେ ପ୍ରତିଷ୍ଠିତ ନେତା ମକଦ୍ଦମା ଜଞ୍ଜାଳରୁ ମୁକ୍ତ ହେଲେ, ଏହା ଏକ ଆଶ୍ୱସ୍ତିର କଥା । ମାତ୍ର ତାଙ୍କ ବିରୁଦ୍ଧରେ ହୋଇଥିବା ଦୁର୍ନୀତି ଅଭିଯୋଗ ଯେ ଅମୀମାଂସିତ ହୋଇ ରହିଗଲା, ଏହା ଅତ୍ୟନ୍ତ ଦୁର୍ଭାଗ୍ୟଜନକ ।''

## ନିର୍ମଳ ଶାସନ ଅଭିଯାନ

ସ୍ୱତନ୍ତ୍ର-ଜନକଂଗ୍ରେସ ସରକାରଙ୍କର ଦୁର୍ନୀତି ନିବାରଣ କାର୍ଯ୍ୟକ୍ରମରେ ପ୍ରଥମେ ପୂର୍ବତନ ମନ୍ତ୍ରୀମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଆରମ୍ଭ କରାଯାଇଥିଲା । ଦୁର୍ନୀତି ନିବାରଣ ନୁହେଁ ବ୍ୟକ୍ତିଗତ ଆକ୍ରୋଶ ସାଧନହିଁ ଥିଲା ତାହାର ଅସଲ ଉଦ୍ଦେଶ୍ୟ । ତା'ପରେ ପଞ୍ଚାୟତ ସମିତିଠାରୁ ଆରମ୍ଭକରି ଭୁବନେଶ୍ୱରର ସଚିବାଳୟ ପର୍ଯ୍ୟନ୍ତ ଦୁର୍ନୀତି ମୂଳୋତ୍ପାଟନର ଅଭିଯାନ ଉପମୁଖ୍ୟମନ୍ତ୍ରୀ ଶ୍ରୀ ପବିତ୍ର ମୋହନ ପ୍ରଧାନ ମହାଆଡ଼ମ୍ବରସହକାରେ ଆରମ୍ଭ କରିଥିଲେ । ରାଜ୍ୟରେ କେତେ ଜିଲ୍ଲା, କେତେ ସବ୍‌ଡିଭିଜନ, କେତେ ବ୍ଲକ୍, କେତୋଟି ପୌରସଭା ଓ କେତୋଟି ବିଜ୍ଞାପିତ ଅଞ୍ଚଳ ତା'ର ହିସାବ କରି ସେ ଦେଖିଥିଲେ ଯେ ଦୁର୍ନୀତି ଦୂର କରି ନିର୍ମଳ ଶାସନ ପ୍ରତିଷ୍ଠା କରିବାକୁ ହେଲେ ତାଙ୍କୁ ୩୮୨ଟି ସ୍ଥାନରେ ନିର୍ମଳ ଶାସନ ସମ୍ବନ୍ଧରେ ଦୀର୍ଘ ଭାଷଣ ଦେବାକୁ ପଡ଼ିବ । ଉପମୁଖ୍ୟମନ୍ତ୍ରୀ ଶ୍ରୀ ପ୍ରଧାନ ତାହା ଅତି ଆନ୍ତରିକତାର ସହ ଆରମ୍ଭ କରିଥିଲେ । ଶେଷରେ ହିସାବ ନିଆଯାଇ ଦେଖାଗଲା ଯେ ୩୭୫ଟି ସ୍ଥାନରେ ତାଙ୍କର ଉପସ୍ଥିତି ଓ ଭାଷଣଦ୍ୱାରା ଦୁର୍ନୀତି ନିର୍ମୂଳହୋଇଛି; ମାତ୍ର ବାକି ସାତଟି ସ୍ଥାନ ରହିଯାଇଥିଲା; କାରଣ ସେ ସ୍ଥାନମାନଙ୍କୁ ସେ ଯାଇ ଭାଷଣ ଦେଇପାରିନଥିଲେ । ପବିତ୍ରବାବୁ ଜଣେ ଅତି ସିଧାସଳଖ ସରଳ ଲୋକଭଳି ଚଳନ୍ତି । ସେ ଭାଷଣଦେବାକୁ ଅତି ଭଲପାଆନ୍ତି । ଗୋଟିଏ ଗୋଟିଏ ସଭାରେ ତିନି ଚାରି ଘଣ୍ଟା ଭାଷଣ ନଦେଲେ ସେ ସନ୍ତୋଷ ଲାଭ କରନ୍ତିନାହିଁ । ସମୟସମୟରେ ତାଙ୍କ ଭାଷଣ ଦୀର୍ଘ ସାତ ଘଣ୍ଟା ପର୍ଯ୍ୟନ୍ତ ଚାଲିଯାଏ ବୋଲି ସେ କହନ୍ତି । ତାଙ୍କ ଭାଷଣ ମଝିରେ ମଝିରେ, ଠିକ୍ ଠିକ୍ ଏକ୍‌ଦମ ଠିକ୍, Excellent, କହନ୍ତୁ, ଆହୁରି କହନ୍ତୁ' ଆୱାଜ୍ ଆସିଲେ ଓ ହାସ୍ୟରୋଳ ଉଠିଲେ ସେ ଭାବନ୍ତି ଯେ ଲୋକେ ତାଙ୍କ କଥାକୁ ପସନ୍ଦ କରୁଅଛନ୍ତି, ତେଣୁ ସେ ତାଙ୍କର ଭାଷଣକୁ ଆହୁରି ଦୀର୍ଘ କରିବାକୁ ଉତ୍ସାହିତ ହୁଅନ୍ତି । ସେ ଅନେକ ସମୟରେ କହନ୍ତି ଯେ ଦୀର୍ଘ ଭାଷଣଦ୍ୱାରା ସେ ଶ୍ରୋତାମାନଙ୍କୁ ଏକପ୍ରକାର ମୋହକରିଦେଉଥିଲେ । ଅନ୍ୟ କାହାରି ଭାଷଣରେ ଲୋକେ ଏପରି ମୁଗ୍ଧ ହୁଅନ୍ତିନାହିଁ ବୋଲି ସେ କହନ୍ତି ଏବଂ କୌଣସି ସଭାରେ ସେ ଅନୁପସ୍ଥିତ ରହିଲେ ଲୋକେ କୁଆଡ଼େ ଖୁବ୍ ଅସନ୍ତୁଷ୍ଟ ହୁଅନ୍ତି । କିନ୍ତୁ କଥାଟା ଠିକ୍ ଓଲଟା । ତାଙ୍କର ନିର୍ମଳ ଶାସନ କଥା ଗୋଟିଏ ପ୍ରହସନରେ ପରିଣତ ହୋଇଯାଇଥିବା କଥା ପବିତ୍ରବାବୁ ବୁଝିପାରି ନଥିଲେ । ସେ ଭାବୁଥିଲେ ଯେ ତାଙ୍କର ଗୋଟିଏ ମୋହିନୀଶକ୍ତି ଅଛି; ତେଣୁ ତାଙ୍କର ଭାଷଣ ଶୁଣି ଲୋକେ ବିମୋହିତ ହୋଇଯାଉଛନ୍ତି ଏବଂ ଦୁର୍ନୀତି ନିର୍ମୂଳ ହେବାରେ ଲାଗିଛି । ଏହିଠାରେ ପବିତ୍ରବାବୁଙ୍କର ଅନ୍ୟକୁ ମୋହିତ କରିବାର ଶକ୍ତି ତାଙ୍କ ନାମରେ କିପରି ଅନ୍ତର୍ନିହିତ ଅଛି, ସେ ବିଷୟରେ ସଚିବାଳୟ ମହଲରୁ ଶୁଣିଥିବା ଗୋଟିଏ କଥା ମୋର ମନେପଡ଼େ । କୌଣସି ଗୋଟିଏ ବୈଦେଶିକ ଦୂତାବାସର ଜଣେ ପ୍ରତିନିଧି ଉପମୁଖ୍ୟମନ୍ତ୍ରୀ ଶ୍ରୀ ପବିତ୍ର ମୋହନ ପ୍ରଧାନଙ୍କୁ ସଚିବାଳୟରେ ଭେଟିବା ଅବସରରେ ତାଙ୍କର ନାମ ଓ ଠିକଣା ଲେଖାଥିବା ଖଣ୍ଡିଏ କାର୍ଡ଼ (Visitor's Card) ଦେଇଥିଲେ । ପବିତ୍ରବାବୁ

ତାଙ୍କ ସହ କରମର୍ଦ୍ଦନ କରି କହିଲେ, "Please sit down, wait." ତା'ପରେ ନିଜର ସରକାରୀ ଲେଟର୍ ହେଡ୍‌ରୁ ନିଜ ନାମ ଛପାଯାଇଥିବା ଅଂଶଟି ଅତି ଯତ୍ନରେ କାଟି ଗୋଟିଏ କାର୍ଡ଼ ଭଳି କରି ପବିତ୍ରବାବୁ ସେହି ବିଦେଶୀ ରାଷ୍ଟ୍ରପ୍ରତିନିଧିଙ୍କ ହାତକୁ ବଢ଼ାଇଦେଇ କହିଥିଲେ, "Do you know the meaning of Pabitra Mohan Pradhan ?" ରାଷ୍ଟ୍ରଦୂତ କହିଥିଲେ, "I would like to know that, Your Excellency." ପବିତ୍ର ମୋହନ ପ୍ରଧାନର ଅର୍ଥ କ'ଣ ତାହା ବର୍ତ୍ତମାନ ପବିତ୍ରବାବୁ ବୁଝାଇଥିଲେ । ସେ କହିଥିଲେ, ''ପବିତ୍ର means holy, ମୋହନ means charmer, ପ୍ରଧାନ means chief. So I am the Chief Holy Charmer. ଏହା ଶୁଣି ରାଷ୍ଟ୍ରଦୂତ ମହାଶୟ ଉଚ୍ଚକଣ୍ଠରେ କହିଥିଲେ, "Your Excellency, this is wonderful. You are really the Great Chief Holy Charmer." ତା'ପରେ ଦୁଇଜଣ ଖୁବ୍ ହସାହସି ହୋଇ କିଛି ସମୟ ଆଳାପ କରି ପରସ୍ପରଠାରୁ ବିଦାୟ ନେଇଥିଲେ ।

ସରକାରୀ କର୍ମଚାରୀଙ୍କ ଭିତରୁ ଦୁର୍ନୀତି ନିର୍ମୂଳ କରିବା ଦିଗରେ ପବିତ୍ରବାବୁଙ୍କର ନିଷ୍ପାପର ଅଭିଯାନ ସମ୍ପର୍କରେ ମୁଁ ଗୋଟିଏ କଥା ଜାଣେ । ଶ୍ରୀ ଆକୁଳାନନ୍ଦ ଦେହୁରୀ ବୋଲି ମୋର ଜଣେ ପର୍ସନାଲ୍ ଆସିଷ୍ଟାଣ୍ଟ ଥିଲେ, ପରେ ସେ ଅଣ୍ଡର୍-ସେକ୍ରେଟେରୀ ହେଲେ । ପବିତ୍ରବାବୁ ୧୯୫୦ ମସିହାରେ ଯେତେବେଳେ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲର ଥିଲେ, ଶ୍ରୀ ଦେହୁରୀ ତାଙ୍କ ପାଖରେ ଜଣେ କିରାଣି ଥିଲେ । ୧୯୫୨ ମସିହା ନିର୍ବାଚନ ପରେ ଯେତେବେଳେ ପବିତ୍ରବାବୁ ମନ୍ତ୍ରୀ ନହେଲେ ସେ ସୁପାରିସ୍ କରି ଶ୍ରୀ ଦେହରୀଙ୍କୁ ମୋ ପାଖରେ ରଖାଇଦେଇଥିଲେ ଏବଂ ସେହି ଦିନରୁ ଶ୍ରୀ ଦେହୁରୀ ବିଭିନ୍ନ ପଦରେ ମୋ ପାଖରେ ରହିବା ପରେ କାହିଁକି କେଜାଣି ପବିତ୍ରବାବୁ ଶ୍ରୀ ଦେହୁରୀଙ୍କ ଉପରେ ଅସନ୍ତୁଷ୍ଟ ହୋଇଥିଲେ । ମୁଁ ୧୯୬୭ ମସିହା ନିର୍ବାଚନରେ ହାରିଯାଇଥିଲି । ସେତେବେଳକୁ ମୁଁ ଉପମୁଖ୍ୟମନ୍ତ୍ରୀ ଥାଏ । ନିର୍ବାଚନ ଫଳାଫଳ ଘୋଷଣା ହେବାମାତ୍ରେ ମୁଁ ମୋର ଇସ୍ତଫାପତ୍ର ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠାଇଦେଇ ଭୁବନେଶ୍ୱର ସରକାରୀ ବାସଭବନ ଛାଡ଼ିଦେଇ ମୋର କଟକ ଘରକୁ ଚାଲିଗଲି । ମୋର କେତେଗୁଡ଼ିଏ ବଡ଼ ବଡ଼ କଳାରଙ୍ଗର ଟ୍ରଙ୍କ୍ ଥିଲା ଏବଂ ତା' ସହିତ ଆହୁରି ଅନେକ ଜିନିଷ ମଧ ଥିଲା । ସେସବୁ ମୁଁ ସାଙ୍ଗରେ ନନେଇ ଆକୁଳିକୁ କହିଥିଲି ତା' ଘରକୁ ନେଇଯିବାପାଇଁ । ଆକୁଳି ସେ ସମସ୍ତ ଜିନିଷ ତା'ର ଘରକୁ ନେଇଯାଇଥିଲା । ବଡ ବଡ ଟ୍ରଙ୍କ୍ ଓ ବହୁତ ଜିନିଷ ଆକୁଳି ଘରକୁ ବୁହାଚାଲିଛି, ବହୁତ ପଇସା ତା'ର ହେଲାଣି – ଏଭଳି କେତେକ କଥା ପବିତ୍ରବାବୁଙ୍କ କାନରେ କୁଆଡ଼େ ପକାଯାଇଥିଲା । ପବିତ୍ରବାବୁଙ୍କ ସହିତ ଘନିଷ୍ଠତା ଥିବା ଆକୁଳିର ଜଣେ ପଡ଼ୋଶୀ ଏପ୍ରକାର କହିଥିଲେ ବୋଲି ପରେ ଜଣାପଡ଼ିଥିଲା । ଏହି ଖବରଟି ଦୁର୍ନୀତି ନିବାରଣ ବିଭାଗକୁ ପଠାଇଥିଲେ । ତା'ପରେ ଦିନେ ଦେଖାଗଲା ଯେ ଆକୁଳି ଘର ଖାନତଲାସ ହେଉଛି । ଦୁର୍ନୀତି ନିବାରଣ ବିଭାଗର ଅଫିସର୍‌ମାନେ ପ୍ରଥମେ ଆକୁଳି ଘରେ ପଶି ସେସବୁ କଳା ଟ୍ରଙ୍କ୍ କୁଆଡ଼େ ଗଲା ଖୋଜିଥିଲେ । କଳା ଟ୍ରଙ୍କଗୁଡ଼ିକ ପାଇଲେ । ସେଗୁଡ଼ିକ ସବୁ ମୋର ବହିପତ୍ରରେ ଭରପୂର ହୋଇଥିଲା । ତା'ପରେ ଆକୁଳି ସ୍ତ୍ରୀର କେତେକ ସୁନା ଗହଣା ଓ ଅନ୍ୟାନ୍ୟ କେତେକ ଜିନିଷ ଜବତ କରିଥିଲେ ଓ ଅନ୍ୟାନ୍ୟ ଜିନିଷର ତାଲିକା ମଧ କରିଥିଲେ । ସେ ଯେଉଁ ଘର କରିଥିଲା ତାକୁ ମଧ ମାପିଥିଲେ । ଏହାପରେ ଆକୁଳିର ସମ୍ପତ୍ତି ତା'ର ଆୟଠାରୁ ଅଧିକ ବୋଲି ଅଭିଯୋଗ କରି ମକଦ୍ଦମା ରୁଜୁ କରାଯାଇଥିଲା । ଭୁବନେଶ୍ୱରର ସ୍ପେଶାଲ୍ ଜଜ୍ ଶ୍ରୀ ବାଳକୃଷ୍ଣ ବେହେରାଙ୍କ କୋର୍ଟରେ ବିଚାର ଚାଲିଥିଲା । ଆକୁଳି ତା'ର ଆୟର ହିସାବରେ ମୋ ସାଙ୍ଗରେ ଗସ୍ତରେ ଗଲାବେଳେ ତା'ର ଟି.ଏ. ଓ ଡି.ଏ.ରୁ ଯାହା ସଞ୍ଚୟ ହୋଇଥିଲା ସେକଥା ଉଲ୍ଲେଖ କରିଥିଲା । କାରଣ ମୋ ସାଙ୍ଗରେ ଗଲେ ସେ ଗାଡ଼ିରେ ଯାଏ ଓ ମୋ ରୋଷେଇରୁ ଖାଏ; ତେଣୁ ତାକୁ ସେ ବାବଦରେ ଖର୍ଚ୍ଚ କରିବାକୁ ପଡୁନଥାଏ । ତା' ବ୍ୟତୀତ ମୋର ଚାରୋଟି ସାଗୁଆନ୍ କାଠର ଖଟ ତା' ଘରେ ରହିଥିଲା – ସେକଥା ମଧ ସେ ତା' ଜବାବରେ ଲେଖିଥିଲା ।

ମୋର ଭୁବନେଶ୍ୱର ଘର ତିଆରି ହେବା ପରେ ମୋ ଘରକାମରେ ଲାଗିଥିବା କାଠବନ୍ଧା ପ୍ରଭୃତି ଜିନିଷ ସେ ନେଇ ତା'ର ଘରତିଆରି କାମରେ ଲଗାଇଥିଲା ବୋଲି ତା'ର ଜବାବରେ କହିଥିଲା । ଏସବୁ ବିଷୟରେ ସାକ୍ଷୀ ଦେବାପାଇଁ ସେ ମୋ ନାମ କୋର୍ଟରେ ଦେଇଥିଲା । ମୋ ପାଖକୁ କୋର୍ଟର ସମନ ଆସିଲା । କେତେକ ଲୋକ ମୋତେ ପ୍ରବର୍ତ୍ତାଇଥିଲେ ଯେ ମୋ ପକ୍ଷରେ ଏସବୁ ବିଷୟରେ ସାକ୍ଷୀଦେବା ମର୍ଯ୍ୟାଦାହାନିକର ହେବ । ତା'ଛଡ଼ା ପବିତ୍ରବାବୁ ଯେତେବେଳେ ଦୁର୍ନୀତି ନିବାରଣ କରୁଛନ୍ତି, ମୁଁ ସେତେବେଳେ ଦୁର୍ନୀତି ତାରଣ କରୁଛି ବୋଲି ଲୋକାପବାଦ ହେବ । ଏସବୁ ପରାମର୍ଶ ସମ୍ପର୍କରେ ଚିନ୍ତା କଲାପରେ ମୁଁ ଠିକ୍ କଲି ଯେ ଜଣେ ବ୍ୟକ୍ତି ମୋ ପାଖରେ କାର୍ଯ୍ୟ କରିଛି ଏବଂ ମୋ'ଦ୍ୱାରା ସେ ଯେପରି ଭାବରେ ଉପକୃତ ହୋଇଛି ତାହା ହିଁ କହିବାପାଇଁ ତା' ବିପଦ ସମୟରେ ଚାହୁଁଛି । ତାକୁ ସାହାଯ୍ୟ କରିବା ମାନବିକତାର କାର୍ଯ୍ୟ ହେବ । ତେଣୁ ସାକ୍ଷୀ ଦେବାକୁ କୋର୍ଟକୁ ଯାଇଥିଲି ଓ ପ୍ରକୃତ କଥାସବୁ କହିଥିଲି । ପବିତ୍ରବାବୁ ମୋର ସାକ୍ଷୀ ଦେବାଟାକୁ କୋର୍ଟକୁ ପ୍ରଭାବିତ କରିବାର ଉଦ୍ୟମ ବୋଲି ତାଙ୍କ ବନ୍ଧୁମାନଙ୍କ ଆଗରେ କହିଥିଲେ । କୋର୍ଟର ରାୟ ବାହାରିଲା; ଆକୁଳି ଦଣ୍ଡପାଇଥିଲା । ଏହି ରାୟ ବିରୁଦ୍ଧରେ ସେ ହାଇକୋର୍ଟରେ ଅପିଲ୍ କରିଥିଲା । ହାଇକୋର୍ଟରେ ଆକୁଳି ନିର୍ଦ୍ଦୋଷ ବୋଲି ସାବ୍ୟସ୍ତ ହୋଇଥିଲା ଏବଂ ନିମ୍ନ କୋର୍ଟରେ ତା' ବିରୁଦ୍ଧରେ ଯେଉଁ ଦଣ୍ଡାଦେଶ ହୋଇଥିଲା ତାହା ରଦ୍ଦହୋଇଯାଇଥିଲା । ମକଦ୍ଦମା ଖର୍ଚ୍ଚ ବାବଦରେ ସରକାର ଆକୁଳିକୁ ଅନେକ ଟଙ୍କା ଦେବାର ଆଦେଶ ମଧ୍ୟ ହୋଇଥିଲା ।

ଶାସନରୁ ତ ଦୁର୍ନୀତି ନିର୍ମୂଳ ହେଲାନାହିଁ, ପବିତ୍ରବାବୁଙ୍କର ଆକ୍ରୋଶ ପରିଶ୍ରମ ନିଷ୍ଫଳ ହୋଇଥିଲା । କେବଳ 'ନିର୍ମୂଳ ଶାସନ' ଆଖ୍ୟା ପାଇବା ପବିତ୍ରବାବୁଙ୍କର ସାରହେଲା । ସେ ଯେଉଁଆଡ଼େ ଯାଉଥାଆନ୍ତି 'ନିର୍ମୂଳ ଶାସନ' ଆସିଗଲେ ବୋଲି ଲୋକେ ପରିହାସ କରିବାରେ ଲାଗିଲେ । ସ୍ୱତନ୍ତ୍ର-ଜନକଂଗ୍ରେସ ସରକାର ରାଜ୍ୟରୁ ଦୁର୍ନୀତି ନିବାରଣ କରିବାର ବଡ଼ିମା କରୁ କରୁ ଶେଷରେ ଉଭୟ ଦଳର ତୁଙ୍ଗ ନେତାମାନେ କେନ୍ଦୁପତ୍ର ଦୁର୍ନୀତିରେ ଜଡ଼ିତ ହୋଇ ଆପେ ଆପେ ନିର୍ମୂଳ ହୋଇଯାଇଥିଲେ । ସରଯୂ ପ୍ରସାଦ କମିଶନ ଓ ମିତ୍ର କମିଶନ ରିପୋର୍ଟରୁ ଏହାର କିଞ୍ଚିତ୍ ପ୍ରମାଣ ମିଳେ ।

## ନିର୍ମଳ ଶାସନର ନମୁନା

ସ୍ୱତନ୍ତ୍ର-ଜନକଂଗ୍ରେସ ଶାସନକାଳରେ ରାଜ୍ୟର ଆଇନଶୃଙ୍ଖଳାର ବ୍ୟାପକ ଅବନତି ଦେଖା-ଦେଇଥିଲା । ବ୍ୟାପକ ଛାତ୍ର ଅଶାନ୍ତି ବ୍ୟତୀତ କଟକରେ ସାଂପ୍ରଦାୟିକ ଦଙ୍ଗା ଓ ଶିକ୍ଷକମାନଙ୍କର ଧର୍ମଘଟ, ଧାରଣା ତଥା ସେମାନଙ୍କ ଉପରେ ନିର୍ମମ ଅତ୍ୟାଚାର ଭଳି ନିନ୍ଦନୀୟ ଘଟଣା ସେହି ସମୟରେ ଘଟିଥିଲା । ୧୯୬୮ ମସିହା ନଭେମ୍ବର ଶେଷ ସପ୍ତାହରେ କଟକ ସହରରେ ଗୋଟିଏ ସାମ୍ପ୍ରଦାୟିକ ଦଙ୍ଗା ହୋଇଥିଲା । ଏ ପ୍ରକାର ଦଙ୍ଗା କଟକ ସହର ଇତିହାସରେ କେବେ ହୋଇନଥିଲା । ସଂଖ୍ୟାଲଘୁ ସଂପ୍ରଦାୟ ଲୋକମାନଙ୍କ ଘରେ ଅନେକ ସ୍ଥାନରେ ନିଆଁ ଲାଗିଥିଲା । ସେମାନଙ୍କ ଦୋକାନ ଲୁଟ ହୋଇଯାଇଥିଲା ଏବଂ ସେଥିରେ ନିଆଁ ଲଗାଇଦିଆଯାଇଥିଲା । ପୁଲିସ୍ ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକମାନଙ୍କୁ ଠିକ୍ ସମୟରେ ଯଥା ସାହାଯ୍ୟ କରିପାରିନଥିଲା । ସ୍ୱତନ୍ତ୍ର-ଜନକଂଗ୍ରେସ ସରକାର ଅମଳରେ ଛାତ୍ରଧର୍ମଘଟ ଏକପ୍ରକାର ଲାଗିରହିଥିଲା । ଲାଠି, ଲୁହବୁହା ଗ୍ୟାସ୍ ପ୍ରୟୋଗ ସଙ୍ଗେ ସଙ୍ଗେ କେତେକ ସ୍ଥାନରେ ଗୁଳିଚାଳନା ମଧ୍ୟ ହୋଇଥିଲା । ଯେଉଁ ରେଭେନ୍ସା କଲେଜ ହତାରେ ବିନାନୁମତିରେ ପୁଲିସ ପ୍ରବେଶକୁ କେନ୍ଦ୍ରକରି ୧୯୬୪ ମସିହାରେ ଆନ୍ଦୋଳନ ହୋଇ ଶେଷରେ ବିଚାରବିଭାଗୀୟ ତଦନ୍ତ ବସିଥିଲା, ସେହି ରେଭେନ୍ସା କଲେଜ ହତାରେ ୧୯୬୯ ମସିହା ଅଗଷ୍ଟ ତେଇଶ ତାରିଖରେ ଜାଲିଆନାୱାଲାବାଗର ପୁନରାବୃତ୍ତି ହୋଇଥିଲା ବୋଲି ଖବରକାଗଜରେ ପ୍ରକାଶ ପାଇଥିଲା । ପୁଲିସ୍‌ର ଅତର୍କିତ ଗୁଳିରେ ଛାତ୍ର ଶ୍ରୀ ପ୍ରଦୀପ ମିଶ୍ରର ମୃତ୍ୟୁ ଘଟିଥିଲା ଓ ଶ୍ରୀ ନୀରୋଦ ମହାନ୍ତିଙ୍କ ଗୋଡ଼ରେ

ଗୁଳିମାଡ଼ ହୋଇଥିଲା । ମୁଁ ସେଦିନ କଟକରେ ଥିଲି । କଲେଜଛକରେ ଥିବା ମିଶ୍ର ପାର୍ଟନର୍ ଦୋକାନରୁ ଶ୍ରୀ ରାଜକିଶୋର ମିଶ୍ର ଫୋନ୍ କରି ମୋତେ ଏ ନିର୍ମମ ଗୁଳିକାଣ୍ଡର ସମ୍ବାଦ ଦେଇଥିଲେ । ତାଙ୍କ ଦୋକାନ ଆଗରୁ ନୀରୋଦଙ୍କୁ ରକ୍ତାକ୍ତ ଓ ସଂଜ୍ଞାହୀନ ଅବସ୍ଥାରେ ପୁଲିସ ଗାଡ଼ିରେ ନିଆଯାଇଥିବା କଥା ସେ ମୋତେ କହିଥିଲେ । ସେହିଦିନ ସନ୍ଧ୍ୟାରେ ମୁଁ ହସ୍ପିଟାଲ୍‌କୁ ଯାଇ ପ୍ରଦୀପର ମୃତଶରୀର ଓ ନିରୋଦଙ୍କୁ ସଂଜ୍ଞାହୀନ ଅବସ୍ଥାରେ ଦେଖିଥିଲି । ସେହି ସମୟର ଆଉ ଗୋଟିଏ ଘଟଣା ମୋର ମନେଅଛି ।

ପ୍ରାୟ ପାଞ୍ଚ ହଜାର ଛାତ୍ର ମେଡ଼ିକାଲ୍ ପରିସର ମଧ୍ୟରେ ଏକତ୍ରିତ ହୋଇ ପ୍ରଦୀପର ମୃତ ଦେହକୁ ଶୋଭାଯାତ୍ରା କରି ମଙ୍ଗଳାବାଗ ଥାନା ଆଗଦେଇ ବକ୍ସିବଜାରଆଡ଼େ ନେବାକୁ ଚାହିଁଥିଲେ । ପୁଲିସ୍‌ଙ୍କ ପାଖରେ ଗୁପ୍ତ ଖବର ପହଞ୍ଚିଥିଲା ଯେ ଛାତ୍ରମାନେ ମଙ୍ଗଳାବାଗ ଥାନାକୁ ଆକ୍ରମଣ କରିବାକୁ ମସୁଧା କରୁଥିଲେ । ତେଣୁ ମଙ୍ଗଳାବାଗ ଥାନା ଆଗ ରାସ୍ତାଛଡ଼ା ଅନ୍ୟ ରାସ୍ତାରେ ଯିବାପାଇଁ ପୁଲିସ୍ ଶୋଭାଯାତ୍ରାକାରୀମାନଙ୍କୁ ଅନୁମତି ଦେଇଥିଲା । ଛାତ୍ରମାନେ କିନ୍ତୁ ଜିଦ୍‌ଧରି ବସିଲେ ଯେ ସେମାନେ ନିଶ୍ଚୟ ମଙ୍ଗଳାବାଗ ଥାନା ଆଗ ରାସ୍ତାରେ ଶୋଭାଯାତ୍ରା ନେଇକରି ଯିବେ । ଶ୍ରୀ ଡି.ଏନ୍.ସିଂହ ସେତେବେଳେ କଟକରେ ଏସ୍.ପି. ଥାଆନ୍ତି । ମୁଁ ମେଡ଼ିକାଲ୍ ହତାରୁ ସେତେବେଳକୁ ଫେରିନଥାଏ । ଏସ୍.ପି. ଶ୍ରୀ ସିଂହ ଆସି ମୋତେ ଦେଖାକରି ପୁଲିସର ଆଶଙ୍କା ଓ ଅସୁବିଧା କଥା ଜଣାଇ କହିଥିଲେ, ''ସାର୍, ଆପଣ ଆମ ରାଜ୍ୟର ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ ଥିଲେ । ଆପଣ ଯଦି କହିବେ ଶୋଭାଯାତ୍ରାଟିକୁ ଶାନ୍ତିରେ ଅତିକ୍ରମ କରାଇଦେବାପାଇଁ ଓ ସେତେବେଳେ ମଙ୍ଗଳାବାଗ ଥାନା ଆଗରେ ଆପଣ ଯଦି ରହିବେ ତା'ହେଲେ ଆଇ.ଜି. ମୋତେ କହିଛନ୍ତି ମଙ୍ଗଳାବାଗ ରାସ୍ତାରେ ଶୋଭାଯାତ୍ରା ନେବାପାଇଁ ଆମେ ଆପତ୍ତି କରିବୁ ନାହିଁ ।'' ଏସ୍.ପି. ଶ୍ରୀ ଡି.ଏନ୍. ସିଂହ ସମସ୍ତ ଦାୟିତ୍ୱ ଆଣି ମୋ' ମୁଣ୍ଡ ଉପରେ ଥୋଇଦେଇଥିଲେ । ମୁଁ ଦଶମିନିଟ୍ ଖଣ୍ଡେ ଛାତ୍ରନେତାମାନଙ୍କ ସହିତ କଥାବାର୍ତ୍ତା କରିଥିଲି ଏବଂ ତା'ପରେ ଦାୟିତ୍ୱ ନେବାକୁ ରାଜିହୋଇଥିଲି । ମଙ୍ଗଳାବାଗ ଥାନା ଛକ ଉପରେ ମୁଁ ଛିଡ଼ାହୋଇ ରହିଥିଲି । ପ୍ରଦୀପର ମୃତଶରୀର ନେଇ ବିରାଟ ଶୋଭାଯାତ୍ରାଟି ଶାନ୍ତିପୂର୍ଣ୍ଣ ଭାବରେ ମଙ୍ଗଳାବାଗ ଥାନା ରାସ୍ତା ଅତିକ୍ରମ କରିଯାଇଥିଲା । ଏହାପରେ ଶ୍ରୀ ଡି.ଏନ୍. ସିଂହ ଆଇ.ଜି. ଶ୍ରୀ ବି. ମିଶ୍ରଙ୍କ ପକ୍ଷରୁ ମୋତେ କୃତଜ୍ଞତା ଜଣାଇ ବିଦାୟନେଇଥିଲେ ।

ସ୍ୱତନ୍ତ୍ର-ଜନକଂଗ୍ରେସ ସରକାରଙ୍କ ସମୟରେ ଶିକ୍ଷକ-ଆନ୍ଦୋଳନ ଅତି ବ୍ୟାପକ ହୋଇଥିଲା । ସମାନ କାର୍ଯ୍ୟକୁ ସମାନ ବେତନ, ବେସରକାରୀ କଲେଜ ଓ ସ୍କୁଲ ଶିକ୍ଷକମାନଙ୍କର ଦରମା ଓ ଭତ୍ତା ସରକାରୀ କଲେଜ ଓ ସ୍କୁଲ୍ ଶିକ୍ଷକମାନଙ୍କ ସହିତ ସମାନ କରିବା ନିମନ୍ତେ ଶିକ୍ଷକମାନଙ୍କର ଯୁଗ୍ମ-କ୍ରିୟାନୁଷ୍ଠାନ କମିଟି ଦାବି କରିଥିଲେ । ଏତଦ୍‌ବ୍ୟତୀତ ନିଯୁକ୍ତି, ପଦୋନ୍ନତି ଓ ଅନ୍ୟାନ୍ୟ ଚାକିରି ସର୍ତ୍ତରେ ପରିବର୍ତ୍ତନ ଆଣିବାପାଇଁ ଶିକ୍ଷକମାନଙ୍କର ଦାବି ମଧ୍ୟ ଥିଲା । ଶିକ୍ଷକମାନଙ୍କର ଯୁଗ୍ମ କ୍ରିୟାନୁଷ୍ଠାନ କମିଟି ଶିକ୍ଷାମନ୍ତ୍ରୀଙ୍କୁ ଏହି ସମ୍ବନ୍ଧରେ ଗୋଟିଏ ସ୍ମାରକପତ୍ର ଦେଇଥିଲେ ଏବଂ ଗୋଟିଏ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଦାବିଗୁଡ଼ିକ ପୂରଣ ନହେଲେ ଶିକ୍ଷକମାନେ ଶିକ୍ଷାମନ୍ତ୍ରୀଙ୍କ ଘର ଆଗରେ ଏକ ନିର୍ଦ୍ଦିଷ୍ଟ ଦିନଠାରୁ ଧାରଣା ଦେବେ ବୋଲି କହି ତାଙ୍କୁ ଜଣାଇଦେଇଥିଲେ । ଶିକ୍ଷକମାନଙ୍କର ଦାବିପ୍ରତି ସରକାର ଉଦାସୀନ ହେବାରୁ ଶିକ୍ଷକମାନେ ଶିକ୍ଷାମନ୍ତ୍ରୀଙ୍କ ବାସଭବନ ସମ୍ମୁଖରେ ତମ୍ବୁ ପକାଇ ପାଳି କରି ଅନଶନ କରି ଧାରଣା ଦେଇଥିଲେ । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଶିକ୍ଷକମାନେ ଦଳ ଦଳ ହୋଇ ଆସି ଶିକ୍ଷାମନ୍ତ୍ରୀଙ୍କ ଘର ଆଗରେ ଅନଶନ ଓ ଧାରଣାରେ ଯୋଗଦେଉଥାଆନ୍ତି । ଧାରଣା ଦେବା ସମୟରେ ଶିକ୍ଷକମାନେ ନାନା ଧ୍ୱନି ଦେଉଥା'ନ୍ତି । ସେତେବେଳେ ଶିକ୍ଷାମନ୍ତ୍ରୀ ବନମାଳୀ ପଟ୍ଟନାୟକଙ୍କ ବାସଭବନକୁ ପ୍ରାୟ ଅଧିକାଂଶ ଦିନ ସନ୍ଧ୍ୟାବେଳେ ହରେକୃଷ୍ଣ ମହତାବ୍ ଆସୁଥିଲେ । ମହତାବବାବୁ ଜନକଂଗ୍ରେସ ଓ ସ୍ୱତନ୍ତ୍ର ସରକାରଙ୍କ ଜଣେ ପ୍ରଭାବଶାଳୀ ନେତା ଥିବାରୁ ତାଙ୍କୁ ଦେଖିଲାକ୍ଷଣି ତାଙ୍କର ସହାନୁଭୂତି

ପାଇବା ଆଶାରେ ଶିକ୍ଷକମାନେ ଆହୁରି ଜୋର୍‌ରେ ଧ୍ୱନିମାନ ଦେଉଥିଲେ । ତାହା ଶୁଣି ମହତାବବାବୁ କୁଆଡ଼େ କ୍ରୋଧାନ୍ୱିତ ହେଉଥିଲେ । ଏ ପ୍ରକାର ଆନ୍ଦୋଳନକୁ ସରକାର ନିନ୍ଦାକରିଥିଲେ ଏବଂ ଆନ୍ଦୋଳନ ପ୍ରତ୍ୟାହାର କରିନେବାକୁ ଶିକ୍ଷାମନ୍ତ୍ରୀ ସେପ୍ଟେମ୍ବର ପାଞ୍ଚତାରିଖରେ ଶିକ୍ଷକମାନଙ୍କୁ ପରାମର୍ଶ ଦେଇଥିଲେ । ଆନ୍ଦୋଳନ ପ୍ରତ୍ୟାହୃତ ନହେଲେ ତା'ର ଶେଷ ପରିଣତି ଯାହା ହେବ ସେଥିପାଇଁ ଶିକ୍ଷକମାନେହିଁ ଦାୟୀ ହେବେ ବୋଲି ଶିକ୍ଷାମନ୍ତ୍ରୀ ଏକପ୍ରକାର ପ୍ରଚ୍ଛନ୍ନ ଧମକ ଦେଇଥିଲେ । ଏହି ପରିପ୍ରେକ୍ଷୀରେ ଶିକ୍ଷାମନ୍ତ୍ରୀଙ୍କ ଘର ଆଗରେ ସେପ୍ଟେମ୍ବର ଛଅ ତାରିଖ ଅର୍ଦ୍ଧରାତ୍ରରେ ଯେଉଁ କୁତ୍ସିତ ଘଟଣା ଘଟିଥିଲା, ତାହା ଆମ ରାଜ୍ୟକୁ ଅନ୍ୟ ରାଜ୍ୟର ଲୋକମାନଙ୍କ ଚକ୍ଷୁରେ କଳଙ୍କିତ କରିଥିଲା । ୧୯୬୯ ମସିହା ସେପ୍ଟେମ୍ବର ମାସ ଦ୍ୱିତୀୟ ସପ୍ତାହରେ ଏହି କୁତ୍ସିତ ଘଟଣା ସମ୍ବନ୍ଧୀୟ ସମ୍ବାଦ ଦେଶରେ ସବୁ ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହୋଇଥିଲା ।

ଘଟଣାଟି ହେଉଛି ଖୋଦ ଶିକ୍ଷାମନ୍ତ୍ରୀଙ୍କ ଭୁବନେଶ୍ୱର ରାଜପଥ ଉପର ବାସଭବନ ସମ୍ମୁଖରେ ଧାରଣା ଦେଉଥିବା ଶିକ୍ଷକମାନଙ୍କ ଉପରେ ସେହି ସେପ୍ଟେମ୍ବର ଛଅ ତାରିଖ ଅଧରାତିରେ ସଂଗଠିତ ଗୁଣ୍ଡାମାନେ ଆକ୍ରମଣ କରି ଅକଥନୀୟ ଅତ୍ୟାଚାର କରିଥିଲେ । ପଚିଶ ତିରିଶ ଜଣ ଗୁଣ୍ଡା ହାତରେ ଲାଠି, ତରୁଆଲ୍ ଧରି ହଠାତ୍ ଅନଶନକାରୀ ବାରଜଣ ଶିକ୍ଷକଙ୍କ ଉପରେ ଆକ୍ରମଣ ଆରମ୍ଭ କରିଦେଇ-ଥିଲେ । ପ୍ରାଣବିକଳରେ ଶିକ୍ଷକମାନେ ଦୌଡ଼ି ପଳେଇବାକୁ ଚେଷ୍ଟା କଲେ ମଧ ଗୁଣ୍ଡାମାନେ ସେମାନଙ୍କୁ ଗୋଡ଼ାଇ ଗୋଡ଼ାଇ ପିଟିଥିଲେ । ଲାଠିମାଡ଼ରେ ଦୁଇଜଣଙ୍କ ମୁଣ୍ଡ ଫାଟିଯାଇଥିଲା, ତିନିଜଣଙ୍କ ଗୋଡ଼ ଭାଙ୍ଗିଯାଇଥିଲା ଓ ଅନ୍ୟମାନେ ଭୀଷଣ ଆଘାତ ପାଇଥିଲେ । ଶିକ୍ଷକମାନେ ବସୁଥିବା ତମ୍ବୁକୁ ଗୁଣ୍ଡାମାନେ ଭାଙ୍ଗିଦେଇ ତମ୍ବୁ, ଦରି ଓ ପେଟ୍ରୋମାକ୍ସ ଲାଇଟ୍ ସମେତ ଜିନିଷପତ୍ର, ଟଙ୍କାପଇସା ସବୁ ଲୁଟିକରି ନେଇଯାଇଥିଲେ । ସେହିଠାରେ ଗୁଣ୍ଡାମାନେ କେତେକ ଖାଲି ମଦ ବୋତଲ ପକାଇଦେଇଯାଇଥିଲେ । ଶିକ୍ଷକମାନଙ୍କୁ ବଦନାମ କରିବା ଉଦ୍ଦେଶ୍ୟରେ ଏଭଳି ଫିକର କରାଯାଇଥିଲା । ଶିକ୍ଷକମାନଙ୍କୁ ମାଡ଼ଦେଇଥିବା ଗୁଣ୍ଡାମାନେ ମୁଣ୍ଡରେ କଳାକନା ବାନ୍ଧିଥିଲେ । କେତେକ କଳାଜାମା ପିନ୍ଧିଥିଲେ । ଶିକ୍ଷକମାନଙ୍କୁ ପିଟିଲାବେଳେ ଗୁଣ୍ଡାମାନେ କହୁଥିଲେ ମନ୍ତ୍ରୀଙ୍କ ଦୁଆରୁ ଧାରଣା ନଉଠାଇଲେ ସେମାନେ ଶିକ୍ଷକମାନଙ୍କର ରକ୍ତ ପିଇଯିବେ । ଶିକ୍ଷାମନ୍ତ୍ରୀଙ୍କ ବାସଭବନ ପାହାଚଠାରୁ ପ୍ରାୟ ଚାଳିଶ ଗଜ ଦୂରରେ ଏହି ବର୍ବର କାଣ୍ଡ ଘଟିଥିଲା । ଶିକ୍ଷାମନ୍ତ୍ରୀଙ୍କ କୋଠିରେ ସେଦିନ ପନ୍ଦରଜଣ ସଶସ୍ତ୍ର ସିପାହି ମୁତୟନ ହୋଇ ରହିଥିଲେ । ଶିକ୍ଷକମାନେ ପ୍ରାଣବିକଳରେ ରଡ଼ି ପକାଇଥିଲେ ସୁଦ୍ଧା ପୁଲିସ ସେଠାକୁ ଆସିନଥିଲେ । ଶିକ୍ଷାମନ୍ତ୍ରୀଙ୍କ ପଡ଼ୋଶୀ ଉପମୁଖ୍ୟମନ୍ତ୍ରୀ ଶ୍ରୀ ପବିତ୍ରମୋହନ ପ୍ରଧାନଙ୍କର ବାସଭବନ ଘଟଣାସ୍ଥଳରୁ ପ୍ରାୟ ଶହେ ଗଜ ଦୂରରେ ଥାଏ । ଗୁଣ୍ଡାମାନେ ଚଢ଼ି ଆସିଥିବା ରିକ୍ସାଗୁଡ଼ିକ କୁଆଡ଼େ ପବିତ୍ରବାବୁଙ୍କ ଫାଟକ ସାମ୍ନାରେ ରହିଥିଲା । କ୍ୟାପିଟାଲ୍ ଥାନା ମଧ ସେଠାରୁ ଖୁବ୍ ପାଖ । ଥାନାରେ ଖବର ଦିଆଯିବା ପରେ ମଧ ପୁଲିସ ଘଟଣାକୁ ଆଦୌ ଗୁରୁତ୍ୱ ଦେଇନଥିଲେ । ଦୁର୍ବୃତ୍ତମାନେ ପଳାଇଯିବାର ଘଣ୍ଟାକ ପରେ ପୁଲିସ ଘଟଣାସ୍ଥଳରେ ପହଞ୍ଚିଥିଲେ । ଏଥିରୁ ଶିକ୍ଷକମାନଙ୍କର ହୃଦ୍‌ବୋଧ ହୋଇଥିଲା ଯେ ଖୋଦ୍ ମନ୍ତ୍ରୀମାନଙ୍କ ନିର୍ଦ୍ଦେଶରେ ସେମାନଙ୍କ ଧାରଣା ଭାଙ୍ଗିବାପାଇଁ ଗୁଣ୍ଡା ଲଗାଇ ସେମାନଙ୍କ ଉପରେ ଅତ୍ୟାଚାର କରାଯାଇଥିଲା । ଏହି ମର୍ମରେ ଶିକ୍ଷକମାନେ ସେମାନଙ୍କ ପକ୍ଷରୁ ବିବୃତିମାନ ଦେଇଥିଲେ ଏବଂ ସେଗୁଡ଼ିକ ଦେଶର ସବୁ ଖବରକାଗଜରେ ପ୍ରକାଶପାଇଥିଲା । ମାତ୍ର ପ୍ରଜାତନ୍ତ୍ର ଖବରକାଗଜରେ ସମ୍ବାଦ ପ୍ରକାଶିତ ହେଲା ଯେ ଭୁବନେଶ୍ୱରର କୌଣସି ଗୋଟିଏ ବସ୍ତିରେ ଶିକ୍ଷକମାନଙ୍କର ଅସଦ୍ ଆଚରଣ ହେତୁ ଲୋକମାନେ ଉତ୍ତ୍ୟକ୍ତ ହୋଇ ଶିକ୍ଷକମାନଙ୍କର କ୍ୟାମ୍ପ୍ ଉପରେ ଚଢ଼ାଉକରିଥିଲେ । ପ୍ରଜାତନ୍ତ୍ରରେ ଆହୁରି ମଧ ପ୍ରକାଶିତ ହୋଇଥିଲା ଯେ ଶିକ୍ଷକମାନେ କୁଆଡ଼େ ମଦ ଖାଇ ନିଜ ନିଜ ଭିତରେ ମାଡ଼ ପିଟାପିଟି ହୋଇଥିଲେ । ଖାଲି ମଦବୋତଲଗୁଡ଼ିଏ କ୍ୟାମ୍ପରୁ ବାହାରିଥିବା କଥା ମଧ ପ୍ରଜାତନ୍ତ୍ରରେ ପ୍ରକାଶିତ ହୋଇଥିଲା ।

ମୁଁ ଘଟଣାସ୍ଥଳକୁ ଯାଇଥିଲି ଏବଂ ସବୁକଥା ବୁଝି ପ୍ରଦେଶ କଂଗ୍ରେସ କମିଟି ସଭାପତି ହିସାବରେ ସେପ୍ଟେମ୍ବର ମାସ ଆଠ ତାରିଖରେ ଗୋଟିଏ ବିବୃତି ଦେଇ ରାଜପଥରେ ଶିକ୍ଷାମନ୍ତ୍ରୀଙ୍କ ଘର ସାମ୍ନାରେ ପହରାଦେଉଥିବା ପୁଲିସ୍‌ଙ୍କ ଆଗରେ ଭଡ଼ାଟିଆ ଗୁଣ୍ଡାମାନଙ୍କର ଆକ୍ରମଣ ଓ ଲୁଟତରାଜ ଘଟଣା ଅତ୍ୟନ୍ତ ଦୁଃଖଦାୟକ ଓ ଲଜ୍ଜାଜନକ କହି ତା'ର ଘୋର ନିନ୍ଦାକରିଥିଲି । ଏ ସମସ୍ତ ଘଟଣା ପୂର୍ବପରିକଳ୍ପିତ ଓ ଯୋଜନାବଦ୍ଧ ଭାବରେ ଶାସନକ୍ଷମତାସମ୍ପନ୍ନ ଦଳମାନଙ୍କଦ୍ୱାରା ହୋଇଥିଲା ବୋଲି ମୁଁ ଅଭିଯୋଗ କରିଥିଲି । ଏ ପ୍ରକାର ଲୋମହର୍ଷଣକାରୀ ଅମାନୁଷିକ ବର୍ବର କାଣ୍ଡ କୌଣସି ସଭ୍ୟଜଗତରେ ଜଣାନାହିଁ ବୋଲି କହି ଏହାର ବିହିତ ଅନୁସନ୍ଧାନ ପାଇଁ ବିଚାର ବିଭାଗୀୟ ତଦନ୍ତ ଦାବି କରିଥିଲି । ଶିକ୍ଷକମାନଙ୍କ ମଧ୍ୟରେ ମତଭେଦ ଯୋଗୁଁ ସେମାନେ ନିଜ ନିଜ ଭିତରେ ମାଡ଼ପିଟ ହୋଇଛନ୍ତି ବୋଲି ଯାହା କୁହାଯାଇଛି ତା' କଟା ଘା'ରେ ଲୁଣ ଦେବା ପରି ବୋଧହେଉଛି ଏବଂ ଶାସକ କର୍ତ୍ତୃପକ୍ଷଙ୍କ ପ୍ରରୋଚନାରେ ଏଭଳି ହୀନ ଓ ନୀଚ କାର୍ଯ୍ୟ କରାଯାଇଛି ବୋଲି ମୁଁ ଦୃଢ଼ ଭାବରେ କହିଥିଲି । ଘଟଣାଟି ଯେ ଅତି ଜଘନ୍ୟ, ଏଥିରେ କାହାର ସନ୍ଦେହ ନଥିଲା । ସେପ୍ଟେମ୍ବର ଦ୍ୱିତୀୟ ସପ୍ତାହଟି ସାରା ଏହି ବର୍ବର ଘଟଣା ସମ୍ବନ୍ଧରେ ନାନା କଥା ଖବରକାଗଜମାନଙ୍କରେ ପ୍ରକାଶ ପାଇଥିଲା । ଏ ପ୍ରକାର ହୀନ ଚକ୍ରାନ୍ତର ଉଦ୍‌ଭାବକ କିଏ, ସେ ବିଷୟରେ ଅନ୍ୟମାନଙ୍କ ସହ ସାମ୍ବାଦିକମାନେ ଫୁସ୍‌ଫାସ୍ ହେଉଥାଆନ୍ତି; କିନ୍ତୁ ତାହା ଫିଟାଇ ଲେଖିବାକୁ ସାହସର ଅଭାବ ଥିଲା । ତାହା କଲେ ଧାରଣା ଦେଇଥିବା ଶିକ୍ଷକମାନଙ୍କ ପରି ଦୁର୍ଦ୍ଦଶା ଭୋଗିବାକୁ ପଡ଼ିବ ବୋଲି ଅନ୍ୟମାନେ ଆଶଙ୍କାକରୁଥିଲେ । ଏହି ଚକ୍ରାନ୍ତର ଉତ୍ପତ୍ତିସ୍ଥାନ କେଉଁଠି ସେ କଥା ମୋତେ ଅଜଣା ନଥିଲା । ଜନକଂଗ୍ରେସ ନେତାମାନଙ୍କ ଉପସ୍ଥିତିରେ ଏହି ଚକ୍ରାନ୍ତ ରୂପରେଖ ନେଇଥିଲା । ଜନକଂଗ୍ରେସ ମନ୍ତ୍ରୀମାନେ ମଧ୍ୟ ଏହି ଚକ୍ରାନ୍ତ କଥା ଜାଣିଥିଲେ । ଗୁଣ୍ଡାମାନଙ୍କ ପାଇଁ ମଦ ଯୋଗାଡ଼ କରାହୋଇଥିଲା ଓ ଖାଲି ମଦ ବୋତଲ କେତୋଟି ସେମାନେ ସାଙ୍ଗରେ ନେଇଥିଲେ । ତା'ପରେ ଅଧରାତିରେ ସେମାନେ ମାତାଲ ଅବସ୍ଥାରେ ଶିକ୍ଷକମାନଙ୍କ ଉପରେ ଏହି ବର୍ବର ଅତ୍ୟାଚାର ଆରମ୍ଭ କରିଥିଲେ । ନିଷ୍କ୍ରିୟ ରହିବାପାଇଁ ସ୍ଥାନୀୟ ପୁଲିସକୁ ସୂଚନା ଦିଆଯାଇଥିଲା । କ୍ୟାପିଟାଲ୍ ଥାନାରେ ଥିବା ଜଣେ ପୁଲିସ୍ ଅଫିସରଙ୍କୁ ମୁଁ ଏ ବିଷୟରେ ପଚାରିବାରୁ ସେ ମୋତେ କହିଥିଲେ, ''ଆଜ୍ଞା, ଆମକୁ ଏ ବିଷୟରେ କିଛି ନପଚାରିଲେ ଭଲ ।'' ପୁଲିସକୁ ଦଳୀୟ କାର୍ଯ୍ୟରେ ବ୍ୟବହାର କରିବାର ଏହା ଗୋଟିଏ ନଗ୍ନ ଦୃଷ୍ଟାନ୍ତ ।

ଏହି ଘଟଣା ସମ୍ପର୍କରେ ବିଧାୟକ ଶ୍ରୀ ରାମକୃଷ୍ଣ ପତି ମୋତେ କହିଥିଲେ ଯେ ତାଙ୍କ ପାଖରେ କୁଆଡ଼େ ଶ୍ରୀ ହରିବନ୍ଧୁ ଦାସ ତାଙ୍କର ଅପକର୍ମପାଇଁ ଅନୁତାପ କରି କହୁଥିଲେ ସେ କାହା ବୁଦ୍ଧିରେ ପଡ଼ି ନିରୀହ ଶିକ୍ଷକମାନଙ୍କ ଉପରେ ଶିକ୍ଷାମନ୍ତ୍ରୀଙ୍କ ବାସଭବନ ଆଗରେ ଚଢ଼ାଉ କରିବାପାଇଁ ଗୁଣ୍ଡା ପ୍ରକୃତିର ଲୋକମାନଙ୍କୁ ତାଙ୍କ ପାଖରେ ଜୁଟାଇଦେଇଥିଲେ । ପରେ ଶ୍ରୀ ହରିବନ୍ଧୁ ଦାସ ମୋ ପାଖରେ ମଧ୍ୟ ଏକଥା ସ୍ୱୀକାର କରିଥିଲେ । ମୁଖ୍ୟମନ୍ତ୍ରୀ ଶ୍ରୀ ସିଂହଦେଓ କୁଆଡ଼େ ଶିକ୍ଷକମାନଙ୍କ ଉପରେ ଏ ପ୍ରକାର ଆକ୍ରମଣକୁ ନିନ୍ଦାକରିବା ସଙ୍ଗେ ସଙ୍ଗେ ଦୁଃଖ ପ୍ରକାଶ କରିଥିଲେ ବୋଲି ସେତେବେଳକାର ସ୍ୱତନ୍ତ୍ରପାର୍ଟିର ଜଣେ ନେତା ଓ ମନ୍ତ୍ରୀ ଶ୍ରୀ ଅଇଁଠୁ ସାହୁ ମୋତେ କହୁଥିଲେ । ଅପ୍ରୀତିକର ଓ କଟୁ ଧ୍ୱନି ପ୍ରହାରକୁ କିପରି ନିମନ୍ତ୍ରଣକରେ, ତାହାର ଦୃଷ୍ଟାନ୍ତ ପ୍ରଜାତନ୍ତ୍ର ସ୍ତମ୍ଭରେ ମହତାବବାବୁ ବହୁବାର ଦେଉଥା'ନ୍ତି ଏବଂ ଏହାର ସତ୍ୟତା ପ୍ରମାଣ କରିବା ଉଦ୍ଦେଶ୍ୟରେ ପୂର୍ବତନ ଶାସନ ସଚିବ ସ୍ୱର୍ଗୀୟ ପି.କେ. ଚକ୍ରବର୍ତ୍ତୀଙ୍କୁ ସାକ୍ଷୀରୂପେ ସମାଧିରୁ ଉଠାଇ ଆଣିବାକୁ ସେ କୁଣ୍ଠିତ ହେଉନଥା'ନ୍ତି । ସେହି ୧୯୮୧ ମସିହା ଅଗଷ୍ଟ ମାସରେ ସାମ୍ବାଦିକ ସ୍ୱର୍ଗୀୟ ବାଳକୃଷ୍ଣ କାନୁନ୍‌ଗୋ ଓ ଇଣ୍ଡିଆନ୍ ଏକ୍ସପ୍ରେସ୍‌ର ପ୍ରତିନିଧି ଶ୍ରୀ ଅରୁଣ ସିହ୍ନାଙ୍କ ମଧ୍ୟରେ ଯେଉଁ ବାଦବିସମ୍ବାଦ ଲାଗିଥିଲା, ତା' ମଝିରେ ଶ୍ରୀ ମହତାବ ମୁଣ୍ଡ ପୂରାଇ ତାଙ୍କ ଗାଆଁ-ମଜଲିସ୍ ସ୍ତମ୍ଭରେ ଶ୍ରୀ ସିହ୍ନାଙ୍କ ଉପରେ ମାଡ଼ ହେବ ବୋଲି ଧମକର ଇସାରା ଦେଲାବେଳେ ଶିକ୍ଷକମାନଙ୍କ ଉପରେ ଶିକ୍ଷାମନ୍ତ୍ରୀଙ୍କ ଦ୍ୱାରଦେଶରେ କଟୁ ଧ୍ୱନି ପାଇଁ ଯେଉଁ ପ୍ରହାର ହୋଇଥିଲା

ତାହାର ନଜିର ଦେଇ ସେ କୁତ୍ସିତ ଘଟଣା କଥା ସମସ୍ତଙ୍କୁ ସ୍ମରଣ କରାଇ ସାମ୍ବାଦିକମାନଙ୍କ ମଧ୍ୟରେ ଏପରି ଭୟର ସଂଚାର କରାଇଥିଲେ ଯେ ବ୍ୟାପାରଟି ଫାଣ୍ଡି ଓ ଫୌଜଦାରୀ ଅଦାଲତରେ ପହଞ୍ଚିଥିଲା ।

## ଓଡ଼ିଶା କଂଗ୍ରେସର ସଂଗ୍ରାମୀ ଭୂମିକା

ଆମ ରାଜ୍ୟରେ କଂଗ୍ରେସର ଶକ୍ତି ବୃଦ୍ଧିପାଇବାରୁ ଜନକଂଗ୍ରେସ ଲୋକମାନଙ୍କର ଦୌରାତ୍ମ୍ୟ ହ୍ରାସ ପାଇଥିଲା । ଏଣିକି ରାଜ୍ୟର ଲୋକଙ୍କର ବିଭିନ୍ନ ସମସ୍ୟା ସହିତ କଂଗ୍ରେସ ଜଡ଼ିତ ରହି ସେଗୁଡ଼ିକର ସମାଧାନ ଦିଗରେ ସାହାଯ୍ୟ କରିବାରେ ଅଗ୍ରସର ହୋଇଥିଲା । ୧୯୬୯ ମସିହାରେ ରାଜ୍ୟ ସରକାର ତାଙ୍କର ପରିବହନ ସଂସ୍ଥାମାନଙ୍କରେ ବସ୍‌ଭଡ଼ା ବୃଦ୍ଧି କରିଥିଲେ । ଏହି ବସ୍‌ଭଡ଼ା ବୃଦ୍ଧିର ପ୍ରତିବାଦ କରି ପ୍ରଦେଶ କଂଗ୍ରେସ କମିଟିର ସଭାପତି ହିସାବରେ ମୁଁ ଗୋଟିଏ ବିବୃତି ଦେଇଥିଲି ଏବଂ ତାହା ପ୍ରତ୍ୟାହାର କରିନେବାକୁ ସରକାରଙ୍କୁ ଅନୁରୋଧ କରିଥିଲି, ସରକାର ସେ କଥା ଶୁଣିନଥିଲେ । ତେଣୁ ସବୁ ବିଷୟ ବିଚାରକରି ଏ ଦିଗରେ ଆମର କାର୍ଯ୍ୟପନ୍ଥା ସ୍ଥିର କରିବାପାଇଁ ମୁଁ ପ୍ରଦେଶ କଂଗ୍ରେସ କମିଟିର ଗୋଟିଏ ବୈଠକ ଡକାଇଥିଲି । ବସ୍‌ଭଡ଼ା ବୃଦ୍ଧି ବିରୁଦ୍ଧରେ ଲୋକମତ ଜାଗ୍ରତ କରି ଆନ୍ଦୋଳନ କରିବା ବିଷୟରେ ସିଦ୍ଧାନ୍ତ ନିଆଯାଇଥିଲା । ଏହି ଆନ୍ଦୋଳନ ସାରା ରାଜ୍ୟରେ ବ୍ୟାପିଥିଲା । ଏହାକୁ ସେତେବେଳେ 'ଚକବନ୍ଦ' ଆନ୍ଦୋଳନ କୁହାଯାଇଥିଲା । ପ୍ରଥମେ ରାଜଧାନୀ ଭୁବନେଶ୍ୱରଠାରେ ଏହି ବସ୍ ବନ୍ଦ ଆନ୍ଦୋଳନ ଆରମ୍ଭ କରାଯାଇଥିଲା । ଭୁବନେଶ୍ୱର ବସ୍‌ଷ୍ଟାଣ୍ଡରେ କଂଗ୍ରେସ ସ୍ୱେଚ୍ଛାସେବକମାନେ ବସ୍ ଆଗରେ ସତ୍ୟାଗ୍ରହ କରିଥିଲେ ଓ ଧାରଣା ଦେଇଥିଲେ । ମୁଁ ସେମାନଙ୍କ ସହିତ ଯୋଗଦେଇଥିଲି । ସର୍ବଶ୍ରୀ ବିଜୁ ପଟ୍ଟନାୟକ, ବିନାୟକ ଆଚାର୍ଯ୍ୟ, ଗଙ୍ଗାଧର ମହାପାତ୍ର, ସୁରେନ୍ଦ୍ର ନାୟକ, ବ୍ରଜମୋହନ ମହାନ୍ତି, ପ୍ରତାପ ଚନ୍ଦ୍ର ମହାନ୍ତି, ଶ୍ୟାମସୁନ୍ଦର ମହାପାତ୍ର, ଶଶିଭୂଷଣ ମିଶ୍ର, ପ୍ରଦ୍ୟୁମ୍ନ କିଶୋର ବଳ, ମଧୁସୂଦନ ନନ୍ଦ ଓ ପଦ୍ମଚରଣ ସାମନ୍ତସିଂହାର ପ୍ରଭୃତି ଏହି ସତ୍ୟାଗ୍ରହରେ ଯୋଗଦେଇଥିଲେ । ସେତେବେଳେ ଭୁବନେଶ୍ୱର ଏସ୍.ଡି.ଓ. ଥିଲେ ଶ୍ରୀ ରବୀନ୍ଦ୍ରମୋହନ ସେନାପତି । ବସ୍‌ଷ୍ଟାଣ୍ଡରେ ଏତେ ସତ୍ୟାଗ୍ରହୀଙ୍କର ସମାବେଶ ହୋଇଥିଲା ଯେ ସେଥିରେ ତାଙ୍କର ବସ୍ ଚଳାଇବାର ସମସ୍ତ ଉଦ୍ୟମ ବ୍ୟର୍ଥ ହୋଇଥିଲା । ଏହାପରେ ସବୁ ଜିଲ୍ଲାରେ ବସ୍‌ଭଡ଼ା ବୃଦ୍ଧି ବିରୁଦ୍ଧରେ ଆନ୍ଦୋଳନ ହୋଇଥିଲା ଏବଂ ବହୁ କଂଗ୍ରେସ ଲୋକ ଗିରଫହୋଇ ଜେଲ୍ ଯାଇଥିଲେ । ସରକାରଙ୍କ ତରଫରୁ ସେମାନଙ୍କ ବିରୁଦ୍ଧରେ ରୁଜୁ କରାଯାଇଥିବା ମକଦ୍ଦମାଗୁଡ଼ିକ ଅନେକ ଦିନ ଚାଲିଥିଲା । ଏହି ପରିପ୍ରେକ୍ଷୀରେ ଭୁବନେଶ୍ୱରଠାରେ ପ୍ରତିକ୍ରିୟାଶୀଳ ସ୍ୱତନ୍ତ୍ର ଜନକଂଗ୍ରେସ ସରକାର ବିରୁଦ୍ଧରେ ଜନଜାଗରଣର ପ୍ରତୀକ ସ୍ୱରୂପ ଗୋଟିଏ ଜନସମାବେଶ ଓ ଶୋଭାଯାତ୍ରା କରିବାପାଇଁ ଆହ୍ୱାନ ଦେବାକୁ ସ୍ଥିର କରିଥିଲୁ । ସ୍ୱର୍ଗୀୟ ଶ୍ରୀ ଦୀନବନ୍ଧୁ ସାହୁ ଓ ଶ୍ରୀ ଶଶିଭୂଷଣ ମିଶ୍ର ଏ ପ୍ରକାର ପ୍ରସ୍ତାବରେ ବିଶେଷ ଆଗ୍ରହ ଦେଖାଇଥିଲେ । ଶଶିବାବୁ ସେତେବେଳେ ରାଜ୍ୟ କଂଗ୍ରେସର ଜଣେ ସଂପାଦକ ଥିଲେ । ଆମର ଆନ୍ଦୋଳନ ଓ ପଟୁଆରକୁ 'ଓଡ଼ିଶା ବଞ୍ଚାଅ' ଆଖ୍ୟା ଦେବା କଥା ସେ ପ୍ରସ୍ତାବ ଦେଇଥିଲେ ଏବଂ ତାହା ଗୃହୀତ ହୋଇଥିଲା । ସେତେବେଳେ 'ଓଡ଼ିଶା ବଞ୍ଚାଅ' ଧ୍ୱନିଟି ଖୁବ୍ ଉତ୍ତେଜନା ସୃଷ୍ଟିକରିଥିଲା ।

୧୯୬୯ ମସିହା ଅକ୍ଟୋବର ମାସ ପ୍ରଥମ ସପ୍ତାହରେ କଂଗ୍ରେସ ପକ୍ଷରୁ ଭୁବନେଶ୍ୱରଠାରେ ଗୋଟିଏ ରାଜ୍ୟସ୍ତରୀୟ 'ଓଡ଼ିଶା ବଞ୍ଚାଅ' ପଟୁଆରର ଆୟୋଜନ କରାଯାଇଥିଲା । ଏହା ଥିଲା ଗୋଟିଏ ନାହିଁ ନଥିବା ବିରାଟ ପଟୁଆର । ରାଜ୍ୟର ବିଭିନ୍ନ ଜିଲ୍ଲାରୁ ବହୁ କଂଗ୍ରେସ ଲୋକ ଓ ସମର୍ଥକ ଆସି ଏଥିରେ ଯୋଗଦେଇଥିଲେ । ଭୁବନେଶ୍ୱରର ପୁରୁଣା ଷ୍ଟେସନ୍ ବଜାରସ୍ଥିତ ମୋ ଘରଠାରୁ ଏହି ପଟୁଆର ବାହାରିଥିଲା । ଶୋଭାଯାତ୍ରାରେ ପ୍ରାୟ ତିରିଶ ହଜାର ଲୋକ ଯୋଗଦେଇଥିଲେ । ଏହା ପୂର୍ବରୁ ଭୁବନେଶ୍ୱରରେ ଏ ପ୍ରକାର ଶୋଭାଯାତ୍ରା କେବେ ହୋଇନଥିଲା । ପ୍ରଦେଶ କଂଗ୍ରେସ କମିଟିର

ସଭାପତି ହିସାବରେ ମୁଁ ଏହି ଶୋଭାଯାତ୍ରାର ଅଗ୍ରଭାଗରେ ଥିଲି । ସର୍ବଶ୍ରୀ ବିଜୁ ପଟ୍ଟନାୟକ, ବୀରେନ୍ ମିତ୍ର, ଦୀନବନ୍ଧୁବାବୁ, ବିଜୟ କୁମାର ପାଣି, ବିନାୟକ ଆଚାର୍ଯ୍ୟ ଓ ଗଙ୍ଗାଧର ମହାପାତ୍ର ପ୍ରଭୃତି ବହୁ କଂଗ୍ରେସ ନେତା ଏହି ଶୋଭାଯାତ୍ରାରେ ଯୋଗଦେଇଥିଲେ । ଶୋଭାଯାତ୍ରା ରାଜଭବନ ପର୍ଯ୍ୟନ୍ତ ଯାଇଥିଲା । ସ୍ୱତନ୍ତ୍ର-ଜନକଂଗ୍ରେସ ମିଳିତ ସରକାରଙ୍କର ଦୁର୍ନୀତି, ଅପକର୍ମ, ଅତ୍ୟାଚାର ଓ ଅପାରଗତା ସମ୍ପର୍କରେ ଗୋଟିଏ ସ୍ମାରକପତ୍ର କଂଗ୍ରେସ ପକ୍ଷରୁ ରାଜ୍ୟପାଳଙ୍କୁ ଦେବାର କାର୍ଯ୍ୟକ୍ରମ ଆମର ଥିଲା । ରାଜ୍ୟପାଳ ଭୁବନେଶ୍ୱରରେ ରହିପାରିବେ ନାହିଁ ବୋଲି ଦୁଃଖପ୍ରକାଶ କରି ମୋତେ ଗୋଟିଏ ଚିଠି ଲେଖିଥିଲେ ଏବଂ ତାଙ୍କର ସେକ୍ରେଟେରୀଙ୍କୁ ଆମଠାରୁ ସ୍ମାରକପତ୍ରଟି ନେବାପାଇଁ ନିର୍ଦ୍ଦେଶ ଦେଇଥିଲେ । ଆମ ଶୋଭାଯାତ୍ରା ରାଜଭବନ ଗେଟ୍‌ରେ ପହଞ୍ଚିଲାକ୍ଷଣି ରାଜ୍ୟପାଳଙ୍କର ସେକ୍ରେଟେରୀ ଆସି ମୋ'ଠାରୁ ସେହି ସ୍ମାରକପତ୍ରଟି ନେଇଥିଲେ । ଶୋଭାଯାତ୍ରା ପରେ ଭୁବନେଶ୍ୱରଠାରେ ଗୋଟିଏ ବିରାଟ ଜନସଭା ଅନୁଷ୍ଠିତ ହୋଇଥିଲା ।

## ଅଶୁଭ ଶକୁନ

୧୯୬୯ ମସିହା ଏପ୍ରିଲ୍ ମାସରେ ହରିୟାନା ରାଜ୍ୟର ଫରିଦାବାଦଠାରେ ନିଖିଳ ଭାରତ କଂଗ୍ରେସ କମିଟିର ୭୨ତମ ସାଧାରଣ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଆମ ରାଜ୍ୟରୁ ଏହି କଂଗ୍ରେସ ଅଧିବେଶନରେ ପ୍ରତିନିଧିମାନଙ୍କ ବ୍ୟତୀତ ଆହୁରି ଅନେକ କଂଗ୍ରେସ ଲୋକ ଦର୍ଶକ ଭାବରେ ଯାଇଥିଲେ । ଫରିଦାବାଦ ଦିଲ୍ଲୀଠାରୁ ଅଳ୍ପ ଦୂରରେ ଅବସ୍ଥିତ । ତେଣୁ ଆମ୍ଭମାନଙ୍କ ଭିତରୁ ଅନେକେ ଦିଲ୍ଲୀରେ ରହି କଂଗ୍ରେସ ଅଧିବେଶନରେ ଯୋଗଦେଉଥାଆନ୍ତି । ଅଧିବେଶନ ପୂର୍ବଦିନ କଂଗ୍ରେସ କାର୍ଯ୍ୟକାରୀ କମିଟିର ବୈଠକ ଫରିଦାବାଦଠାରେ ଅନୁଷ୍ଠିତ ହେଲା । ମୁଁ ସ୍ୱତନ୍ତ୍ର ନିମନ୍ତ୍ରଣ ପାଇ କଂଗ୍ରେସ କାର୍ଯ୍ୟକାରୀ କମିଟି ବୈଠକରେ ଯୋଗଦେଇଥାଏ । ସେତେବେଳେ ବ୍ୟାଙ୍କ ଜାତୀୟକରଣ ବିଷୟ କାର୍ଯ୍ୟକାରୀ କମିଟି ବୈଠକରେ ମୁଖ୍ୟ ଆଲୋଚ୍ୟ ବିଷୟ ହୋଇଥାଏ । ବ୍ୟାଙ୍କମାନଙ୍କ ଉପରେ ସାମାଜିକ ନିୟନ୍ତ୍ରଣ (social control)ର ବ୍ୟବସ୍ଥା କରିବା କଥା କେନ୍ଦ୍ର ଅର୍ଥମନ୍ତ୍ରୀ ଶ୍ରୀ ମୋରାରଜୀ ଦେଶାଇ କହୁଥାଆନ୍ତି । ଅର୍ଥମନ୍ତ୍ରୀ ଦେଶାଇଙ୍କ ପ୍ରସ୍ତାବ ଉପରେ ଶ୍ରୀମତୀ ଗାନ୍ଧୀ ନିଜେ କିଛି କହୁନଥିଲେ । ଶ୍ରୀ ଚନ୍ଦ୍ରଶେଖର ସାମାଜିକ ନିୟନ୍ତ୍ରଣ ପ୍ରସ୍ତାବକୁ ବିରୋଧକରି ପୂରାପୂରି ଜାତୀୟକରଣ ପାଇଁ ପ୍ରସ୍ତାବ ଦେଇଥିଲେ । ଶେଷରେ ବହୁ ଆଲୋଚନା ପରେ ବ୍ୟାଙ୍କମାନଙ୍କ ଉପରେ ସାମାଜିକ ନିୟନ୍ତ୍ରଣ ଜାରି କରିବା କଥା ସ୍ଥିରହୋଇଥିଲା । ଶ୍ରୀ ଚନ୍ଦ୍ରଶେଖର ସେତେବେଳେ ଥାଆନ୍ତି କଂଗ୍ରେସର ଯୁବଗୋଷ୍ଠୀର ନେତା । ଶ୍ରୀମତୀ ଗାନ୍ଧୀ ତାଙ୍କୁ ନିଜର ହାତବାରିଶି ଭଳି ବ୍ୟବହାର କରୁଥିଲେ । ଶ୍ରୀ ଦେଶାଇଙ୍କୁ ନିଜେ କିଛି ନକହି ଚନ୍ଦ୍ରଶେଖର ଓ କୃଷ୍ଣକାନ୍ତଙ୍କ ଭଳି ଯୁବକମାନଙ୍କୁ ତାଙ୍କ ବିରୁଦ୍ଧରେ ଲଗାଇଦେଉଥିଲେ । କାର୍ଯ୍ୟକାରୀ କମିଟିରେ ଚନ୍ଦ୍ରଶେଖର ମୋରାରଜୀଭାଇଙ୍କୁ ସମାଲୋଚନା କଲାବେଳେ ଶ୍ରୀମତୀ ଗାନ୍ଧୀ ତାଙ୍କୁ ପରୋକ୍ଷରେ ଉତ୍ସାହିତ କଲାଭଳି ମୋର ମନେହେଉଥାଏ । ଏପ୍ରିଲ୍ ମାସ ପଚିଶ ତାରିଖ ଦିନ କଂଗ୍ରେସ ଅଧିବେଶନ ଆରମ୍ଭ ହେବାମାତ୍ରେ ଅତି ଆକସ୍ମିକଭାବରେ ଅଧିବେଶନ ମଣ୍ଡପରେ ଅଗ୍ନିକାଣ୍ଡ ଘଟି ଅତି ଅଳ୍ପ ସମୟ ମଧ୍ୟରେ ସମସ୍ତ ପେଣ୍ଡାଲ୍‌ଟି ଜଳି ଭସ୍ମୀଭୂତ ହୋଇଯାଇଥିଲା । ଏହା କଂଗ୍ରେସ ପକ୍ଷରେ ଗୋଟିଏ ଅତି ଅଶୁଭ ଲକ୍ଷଣ ବୋଲି ଅନେକେ ଅନୁଭବ କଲେ । ଫରିଦାବାଦଠାରେ ଥିବା ବିଠଲଭାଇ ପଟେଲ୍ ଭବନ ପ୍ରାଙ୍ଗଣରେ ଗୋଟିଏ ନୂତନ ମଣ୍ଡପ ନିର୍ମାଣ କରାଯାଇ ଏକ ବିଷାଦମୟ ପରିବେଶ ମଧ୍ୟରେ ଅଧିବେଶନ କାର୍ଯ୍ୟ ଆରମ୍ଭ ହୋଇଥିଲା । କଂଗ୍ରେସ ସଭାପତି ଶ୍ରୀ ଏସ୍. ନିଜଲିଙ୍ଗାପା ଅଧିବେଶନ ଉଦ୍‌ଘାଟନ କରିଥିଲେ । ଖୁବ୍ ତରବରରେ ଏଥର କଂଗ୍ରେସ ଅଧିବେଶନ କାର୍ଯ୍ୟ ସମାପ୍ତ କରାଯାଇଥିଲା । ଆମ୍ଭେମାନେ ସମସ୍ତେ ଅତି ଦୁଃଖରେ ସେଦିନ ଦିଲ୍ଲୀ ଫେରିଥିଲୁ । ମୋର ମନେହେଉଥାଏ କଂଗ୍ରେସ ଉପରକୁ ଯେପରି ଗୋଟିଏ ବଡ଼ ବିପଦ ମାଡ଼ିଆସୁଛି । ଫରିଦାବାଦ

କଂଗ୍ରେସକୁ ଯାଇଥିବା ପ୍ରାୟ ସମସ୍ତଙ୍କ ମନରେ ସେହି ପ୍ରକାର ଆଶଙ୍କା ଉଦ୍ରେକ ହୋଇଥିଲା । ଆମ୍ଭମାନଙ୍କର ଆଶଙ୍କା କିଛିଦିନ ପରେ ସତ୍ୟରେ ପରିଣତ ହୋଇଥିଲା । ଫରିଦାବାଦ କଂଗ୍ରେସ ଅଧିବେଶନ ସମାପ୍ତ ହେବାର ମାତ୍ର ଏକ ସପ୍ତାହ ମଧ୍ୟରେ ମେ ମାସ ତିନି ତାରିଖ ଦିନ ରାଷ୍ଟ୍ରପତି ଡକ୍ଟର ଜାକୀର୍ ହୋସେନ୍ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ପ୍ରାଣ ହରାଇଥିଲେ । ଡକ୍ଟର ଜାକୀର ହୋସେନ୍‌ଙ୍କର ଆକସ୍ମିକ ବିୟୋଗଠାରୁ ଦେଶ ପକ୍ଷରେ ଦୁର୍ଯୋଗ ଓ କଂଗ୍ରେସ ପକ୍ଷରେ କାଳବେଳା ଆରମ୍ଭ ହେଲା । ଏହି ସମୟରେ ଶ୍ରୀ ଚନ୍ଦ୍ରଶେଖରଙ୍କୁ କେନ୍ଦ୍ରକରି କଂଗ୍ରେସ ମଧ୍ୟରେ ଗୋଟିଏ ପ୍ରଗତିବାଦୀ ଯୁବଗୋଷ୍ଠୀ କାମ କରୁଥାଏ । କଂଗ୍ରେସ ସରକାର ସମାଜବାଦୀ କାର୍ଯ୍ୟକ୍ରମ ହାତକୁ ନେବାପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି କରିବା ଉଦ୍ଦେଶ୍ୟରେ କଂଗ୍ରେସ ଲୋକଙ୍କୁ ଅନୁପ୍ରାଣିତ କରିବାକୁ ଯାଇ ସେମାନେ କେତେକ କଂଗ୍ରେସ ନେତୃବର୍ଗଙ୍କୁ ରକ୍ଷଣଶୀଳ ଓ ପ୍ରଗତିବିରୋଧୀ ବୋଲି ଆଖ୍ୟା ଦେଉଥା'ନ୍ତି । ସେମାନଙ୍କ ବିରୁଦ୍ଧରେ ଏହି ଯୁବଗୋଷ୍ଠୀ ଅଭିଯାନ ଆରମ୍ଭ କରିଦେଇଥିଲେ । ଏମାନଙ୍କୁ 'ତରୁଣତୁର୍କ' ବୋଲି ଆଖ୍ୟା ଦିଆଯାଇଥିଲା ।

ଆମ ରାଜ୍ୟ କଂଗ୍ରେସ ଅନୁଷ୍ଠାନରେ ସେତେବେଳେ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କର ବିଶେଷ କିଛି ପ୍ରଭାବ ନଥିଲା । ୧୯୬୭ ମସିହା ନିର୍ବାଚନରେ ଓଡ଼ିଶାର କଂଗ୍ରେସର ବିପର୍ଯ୍ୟୟ ପରେ ଯେଉଁ ଅସହାୟ ଅବସ୍ଥା ସୃଷ୍ଟି ହୋଇଥିଲା, ତାକୁ ଅତିକ୍ରମ କରି ଆମ୍ଭେମାନେ ଯେପରି ଭାବରେ କଂଗ୍ରେସକୁ ଶକ୍ତିଶାଳୀ କରିଥିଲୁ ସେଥିରେ ଆମ୍ଭମାନଙ୍କର ସୁନାମ ହୋଇଥିଲା ଏବଂ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱ ପ୍ରତି ଲୋକମାନେ ପୁଣି ଆକୃଷ୍ଟ ହେବାକୁ ଲାଗିଲେ । ଏହି ସମୟରେ ମୁଁ ଓ ବିଜୁବାବୁ ସବୁ ଜିଲ୍ଲାକୁ ଯାଇ ରାଜନୈତିକ ସମ୍ମିଳନୀ କରି ଲୋକମାନଙ୍କ ମଧ୍ୟରେ ଉତ୍ସାହ ସୃଷ୍ଟି କରିବାରେ ସକ୍ଷମ ହୋଇଥିଲୁ । ଶ୍ରୀମତୀ ନନ୍ଦିନୀ ଶତପଥୀ ସେତେବେଳକୁ ଶ୍ରୀମତୀ ଗାନ୍ଧୀଙ୍କର ବିଶ୍ୱସ୍ତ ହୋଇଗଲେଣି । ଆମ୍ଭମାନଙ୍କର, ବିଶେଷକରି ବିଜୁ ପଟ୍ଟନାୟକଙ୍କର ସୁନାମ ନଷ୍ଟ ନକଲେ ଓଡ଼ିଶା ରାଜନୀତିକୁ ଅକ୍ତିଆର କରିବା ତାଙ୍କ ପକ୍ଷରେ ସୁବିଧାଜନକ ହେଉନଥାଏ । ତେଣୁ ଓଡ଼ିଶା କଂଗ୍ରେସ ଭିତରେ ବିଭେଦ ସୃଷ୍ଟି କରିବା ଉଦ୍ଦେଶ୍ୟରେ ସେ ଅଭିଯାନ ଆରମ୍ଭ କରିଦେଇଥିଲେ । ଶ୍ରୀ ଶ୍ୟାମସୁନ୍ଦର ମହାପାତ୍ର ଓ ଯୁବକଂଗ୍ରେସ ଆବାହକ ଶ୍ରୀ ପ୍ରଦ୍ୟୁମ୍ନ କିଶୋର ବଲ୍ଲ ପ୍ରଭୃତି କେତେକ ଯୁବକଙ୍କୁ ତାଙ୍କର ଉଦ୍ଦେଶ୍ୟ ସାଧନପାଇଁ ବ୍ୟବହାର କରିଥିଲେ । ମଝିରେ ମଝିରେ ନନ୍ଦିନୀ ଶତପଥୀ ଦିଲ୍ଲୀରୁ ଆସିବାବେଳେ ସ୍ୱରାଜ ଆଶ୍ରମରେ ଯୁବକଂଗ୍ରେସ ବୈଠକ ବସୁଥିଲା ଏବଂ ସେଥିରେ ସେ ଯୋଗଦେଇ ପ୍ରଦେଶ କଂଗ୍ରେସରେ ନେତୃତ୍ୱ ପରିବର୍ତ୍ତନ ବିଷୟରେ ଆଲୋଚନା କରୁଥିଲେ । ଶ୍ରୀମତୀ ଗାନ୍ଧୀ ଓଡ଼ିଶା କଂଗ୍ରେସର ନେତୃତ୍ୱ ପରିବର୍ତ୍ତନ ଚାହୁଁଛନ୍ତି ବୋଲି ସେ ବୈଠକରେ ସୂଚନା ଦେଉଥିଲେ । ତାଙ୍କଠାରୁ ଏ ପ୍ରକାର ସୂଚନା ପାଇ ସେହି ଯୁବକମାନେ ଆହୁରି ବେଶି ଉତ୍ସାହିତ ହୋଇ ପ୍ରଦେଶ କଂଗ୍ରେସ ନେତୃତ୍ୱକୁ ଦୁର୍ବଳ କରିବା ଉଦ୍ଦେଶ୍ୟରେ ନେତାମାନଙ୍କ ବିରୁଦ୍ଧରେ ନାନାପ୍ରକାର ଅଭିଯୋଗ କରିବାକୁ ଲାଗିଲେ । ପ୍ରଦେଶ କଂଗ୍ରେସ ନେତୃତ୍ୱକୁ ପ୍ରତିକ୍ରିୟାଶୀଳ ଆଖ୍ୟା ଦେଇ ଖବରକାଗଜମାନଙ୍କରେ ବିବୃତି ଦେଇ ସେମାନଙ୍କୁ ସମାଲୋଚନା କରିବାକୁ ଲାଗିଥିଲେ । ଯୁବକଂଗ୍ରେସ ଓ ନନ୍ଦିନୀ ଦେବୀଙ୍କର ଏ ପ୍ରକାର ବିଶୃଙ୍ଖଳ ଆଚରଣ ପ୍ରତି ବହୁ କଂଗ୍ରେସ ଲୋକ ଓ ଯୁବକ ମୋର ଦୃଷ୍ଟି ଆକର୍ଷଣ କରିଥିଲେ ଏବଂ ସେମାନଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାପାଇଁ ଦାବି କରିଥିଲେ । ନନ୍ଦିନୀ ଦେବୀ କେନ୍ଦ୍ରରେ ଜଣେ ଉପମନ୍ତ୍ରୀ ଥାଉ ଥାଉ କିପରି ଦଳ ଭିତରେ ବିଶୃଙ୍ଖଳାକୁ ଉତ୍ସାହିତ କରୁଛନ୍ତି ସେ ବିଷୟରେ ତାଙ୍କ ବିରୁଦ୍ଧରେ କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷଙ୍କ ପାଖରେ ଅଭିଯୋଗ ମଧ୍ୟ ହୋଇଥିଲା । କେନ୍ଦ୍ରର ଉପମନ୍ତ୍ରୀ ଥାଇ ପ୍ରଧାନମନ୍ତ୍ରୀଙ୍କର ନାମକୁ ବ୍ୟବହାର କରି ଓଡ଼ିଶାରେ କଂଗ୍ରେସ ଭିତରେ ସେ ଯେଉଁଭଳି ବିଶୃଙ୍ଖଳ ଆଚରଣ ପ୍ରଦର୍ଶନ କରୁଥିଲେ ସେ ବିଷୟରେ ଶ୍ରୀମତୀ ଗାନ୍ଧୀଙ୍କୁ ମୁଁ ଗୋଟିଏ ଚିଠି ଲେଖି ତାଙ୍କ ଦୃଷ୍ଟି ଆକର୍ଷଣ କରିଥିଲି । ସେମାନେ ସେମାନଙ୍କର କାର୍ଯ୍ୟକଳାପଦ୍ୱାରା କଂଗ୍ରେସ ଦଳର ଲୋକଙ୍କୁ ପ୍ରଭାବିତ

କରିପାରୁନଥା'ନ୍ତି ସତ; ମାତ୍ର ଖବରକାଗଜରେ ଯାହାସବୁ ସେତେବେଳେ ପ୍ରକାଶ ପାଉଥାଏ ତାହାଦ୍ୱାରା କଂଗ୍ରେସର ମର୍ଯ୍ୟାଦା ବିଶେଷଭାବରେ ହାନି ହେଉଥାଏ । ତାହାହିଁ ଥିଲା ଆମ୍ଭମାନଙ୍କର ଚିନ୍ତାର ବିଷୟ । ଏଣେ ସ୍ୱତନ୍ତ୍ର-ଜନକଂଗ୍ରେସ ଲୋକମାନେ ଆମ ଭିତରେ ଏ ପ୍ରକାର ଚରମ ବିଶୃଙ୍ଖଳା ଦେଖି ଆନନ୍ଦ ଉପଭୋଗ କରୁଥାଆନ୍ତି ।

## କଂଗ୍ରେସ ବିଭାଜନ ଅନ୍ତରାଳରେ

ପରିବାର ଭିତରେ ବିଚ୍ଛେଦ ବା ବିଭାଜନ ଯେପରି ହୃଦୟବିଦାରକ, ଆଜୀବନ ଘନିଷ୍ଠଭାବରେ ଜଡ଼ିତ ଥିବା ଅନୁଷ୍ଠାନରେ ବିଭାଜନ ଓ ବନ୍ଧୁବିଚ୍ଛେଦ ସେହିପରି ଯନ୍ତ୍ରଣାଦାୟକ — ମୋର ଏହି ଅନୁଭୂତି । ତେଣୁ ୧୯୬୯ରୁ ଭାରତୀୟ ଜାତୀୟ କଂଗ୍ରେସରେ ବିଭାଜନ ପ୍ରକ୍ରିୟାର ସୂତ୍ରପାତ ହେବା ପରେ ଆମ ପ୍ରାଦେଶିକ ସଙ୍ଗଠନରେ ତାହାର ମନ୍ଦ ପ୍ରତିକ୍ରିୟାକୁ ପ୍ରତିରୋଧ କରିବାପାଇଁ ମୁଁ ଯତ୍ପରୋନାସ୍ତି ଚେଷ୍ଟା- କରିଥିଲି । ଥରେଅଧେ କଂଗ୍ରେସ କମିଟି ବୈଠକରେ ଏବଂ ବାହାରେ ମୋତେ ଏଥିପାଇଁ ଅଶ୍ରୁବିସର୍ଜନ କରିବାକୁ ପଡ଼ିଛି । ଏହି ପରିପ୍ରେକ୍ଷୀରେ ବିଭାଜନ ବା ବିବର୍ତ୍ତନକାଳୀନ ଇତିହାସରେ ଓଡ଼ିଶା ପ୍ରଦେଶ କଂଗ୍ରେସ ନେତୃତ୍ୱର ନିଷ୍ଠାପରତା ବିଚାର୍ଯ୍ୟ । ଆମର ପ୍ରଦେଶ କଂଗ୍ରେସ କମିଟି ଯେତେବେଳେ ପୂର୍ବୋକ୍ତ ସଂଗ୍ରାମୀ ଭୂମିକା ଏବଂ ନାନା ଅଶୁଭ ଶକୁନର ଘାତପ୍ରତିଘାତ ଭିତରେ ଗତି କରୁଥାଏ ସେହି ସମୟରେ ଦିଲ୍ଲୀରୁ ବିପଦର ସଙ୍କେତ ଆସିଯାଇଥିଲା । ସେ ସଙ୍କେତ ଥିଲା ରାଷ୍ଟ୍ରପତି ନିର୍ବାଚନରେ କଂଗ୍ରେସର ପ୍ରାର୍ଥୀ ମନୋନୟନ । କଂଗ୍ରେସ ପାର୍ଲିଆମେଣ୍ଟାରୀ ବୋର୍ଡ଼ରେ ବହୁ ଆଲୋଚନା ପରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କର ଉପସ୍ଥିତିରେ ଶ୍ରୀ ନିଲମ୍ ସଞ୍ଜୀବ ରେଡ୍ଡିଙ୍କ ନାମ ରାଷ୍ଟ୍ରପତି ପଦପାଇଁ କଂଗ୍ରେସପ୍ରାର୍ଥୀ ଭାବରେ ମନୋନୀତ ହୋଇଥିଲା । ରାଷ୍ଟ୍ରପତି ନିର୍ବାଚନ ପାଇଁ ପ୍ରାର୍ଥୀପତ୍ର ଦାଖଲ କରିବା ଦିନ ଶ୍ରୀମତୀ ଗାନ୍ଧୀ ଶ୍ରୀ ରେଡ୍ଡିଙ୍କର ପ୍ରସ୍ତାବକ ହୋଇ ପ୍ରାର୍ଥୀପତ୍ର ଦାଖଲ କରିଥିଲେ । କିନ୍ତୁ ତା'ପରେ ଶ୍ରୀମତୀ ଗାନ୍ଧୀ ତାଙ୍କର ମତ ପରିବର୍ତ୍ତନ କରି ଶ୍ରୀ ଭି.ଭି. ଗିରିଙ୍କୁ ରାଷ୍ଟ୍ରପତି କରିବାକୁ ମସୁଧା କରିଥିଲେ । ଶ୍ରୀ ଭି.ଭି. ଗିରିଙ୍କୁ ପ୍ରାର୍ଥୀ ହେବାପାଇଁ ଶ୍ରୀମତୀ ଗାନ୍ଧୀ ଉତ୍ସାହିତ କରିଥିଲେ । ଏ କଥା କଂଗ୍ରେସ ମହଲରେ ଅତି ବିସ୍ମୟ ସୃଷ୍ଟି କରିଥିଲା । ରାଷ୍ଟ୍ରପତି ନିର୍ବାଚନରେ ଭୋଟ ହେବା ପୂର୍ବରୁ ପାର୍ଲିଆମେଣ୍ଟର କଂଗ୍ରେସ ସଭ୍ୟମାନଙ୍କୁ ଭୋଟ ଦେବା ସମ୍ପର୍କରେ ଦଳୀୟ ନିର୍ଦ୍ଦେଶ ଦିଆଯାଏ । ସେ ପ୍ରକାର ନିର୍ଦ୍ଦେଶ ନଦେଇ ସଭ୍ୟମାନଙ୍କୁ ତାଙ୍କର ବିବେକ ଅନୁସାରେ ଭୋଟ ଦେବାର ଅନୁମତି ଦିଆଯିବା କଥା ଶ୍ରୀମତୀ ଗାନ୍ଧୀ କହିଥିଲେ । ରାଷ୍ଟ୍ରପତି ନିର୍ବାଚନ ନେଇ ଏହି ମତଭେଦ ସମ୍ପର୍କରେ ମୁଁ ଓଡ଼ିଶା ପ୍ରଦେଶ କଂଗ୍ରେସର ସଭାପତି ହିସାବରେ ଆମର ବ୍ୟବସ୍ଥାସଭାର କଂଗ୍ରେସ ଦଳର ନେତା, ସଭ୍ୟ ଓ ଅନ୍ୟାନ୍ୟ କଂଗ୍ରେସ ବନ୍ଧୁମାନଙ୍କ ସହିତ ଆଲୋଚନା କରିଥିଲି । ଶ୍ରୀ ବୀରେନ୍ ମିତ୍ର ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ପ୍ରଥମ ଅବସ୍ଥାରେ ସମସ୍ତେ ଶ୍ରୀମତୀ ଗାନ୍ଧୀଙ୍କର ଆଚରଣକୁ ନାପସନ୍ଦ କରିଥିଲେ । କଂଗ୍ରେସ ସଭାପତି ଶ୍ରୀ ନିଜଲିଙ୍ଗାପା ଦେଶର ସବୁ ପ୍ରଦେଶ କଂଗ୍ରେସ ସଭାପତିମାନଙ୍କୁ ଫୋନ୍‌ଦ୍ୱାରା ଏ ବିଷୟରେ ସତର୍କ କରାଇଦେଇଥିଲେ ଏବଂ ରାଷ୍ଟ୍ରପତି ନିର୍ବାଚନରେ ବିବେକ ଅନୁସାରେ ଭୋଟଦେବା ପ୍ରସ୍ତାବଟିକୁ ନିନ୍ଦାକରି ଖବରକାଗଜରେ ବିବୃତି ଦେବାପାଇଁ ନିର୍ଦ୍ଦେଶ ଦେଇଥିଲେ । ଜଣେ ଶୃଙ୍ଖଳିତ କଂଗ୍ରେସ ଲୋକ ହିସାବରେ ମୁଁ ଯେଉଁ ବିବୃତି ଦେଇଥିଲି, ତାହା ଅମୃତବଜାର ପତ୍ରିକାରେ ନିମ୍ନମତେ ବାହାରିଥିଲା, "Mr. Nilamani Routray, President, Utkal Pradesh Congress Committee said in a statement issued here today that nothing could be more absurd and silly than the request of some friends in the Congress at Delhi to ask for their freedom in voting in the President Election when the Congress party itself had set up a candidate for the high office. Mr. Routray said such a request smacked off betrayal of the party and the tendency was most unfortunate, deserving

severe condemnation."

ଏହି ସମୟରେ ଖବରକାଗଜରେ ପ୍ରକାଶ ପାଇଥିଲା ଯେ ଓଡ଼ିଶାର ପନ୍ଦର ଜଣ ବିଧାୟକ ଶ୍ରୀଗିରିଙ୍କୁ କୁଆଡ଼େ ସମର୍ଥନ କରିବେ । ବିଧାନସଭା କଂଗ୍ରେସଦଳର ଜାର୍‌ପଟଦ୍ୱାର ଶ୍ରୀ ବ୍ରଜମୋହନ ମହାନ୍ତି ଏ ସମ୍ବାଦର ପ୍ରତିବାଦ କରିଥିଲେ ଏବଂ କଂଗ୍ରେସଦଳର ମନୋନୀତ ପ୍ରାର୍ଥୀ ଶ୍ରୀ ସଂଜୀବ ରେଡ୍ଡିଙ୍କୁ ଓଡ଼ିଶା ବିଧାନସଭାର ସବୁ କଂଗ୍ରେସ ସଭ୍ୟ ଭୋଟ ଦେବାପାଇଁ ଦଳ ତରଫରୁ ନିବେଦନ କରିଥିଲେ । ଦିନକ ପରେ ଦେଖାଗଲା ଯେ କଂଗ୍ରେସ ବିଧାୟକ ଦଳର ନେତା ଶ୍ରୀ ବିନାୟକ ଆଚାର୍ଯ୍ୟ ପରିଷ୍କାର କରି କିଛି କହୁନାହାନ୍ତି । ମୁଁ ଶୁଣିବାକୁ ପାଇଥିଲି ଯେ ଶ୍ରୀମତୀ ନନ୍ଦିନୀ ଶତପଥୀ ଦିଲ୍ଲୀରୁ ତାଙ୍କୁ ଫୋନ୍‌ରେ କ'ଣ ପରାମର୍ଶ ଦେଇଛନ୍ତି । ବିଧାନସଭା କଂଗ୍ରେସଦଳର ଗୋଟିଏ ବୈଠକ ଡକାଯାଇଥିଲା ଏବଂ ସେଥିରେ ସ୍ଥିର ହୋଇଥିଲା ଯେ କଂଗ୍ରେସପ୍ରାର୍ଥୀ ଶ୍ରୀ ରେଡ୍ଡିଙ୍କୁ ସମସ୍ତେ ସମର୍ଥନ କରିବେ । ବିଶେଷଭାବରେ ନିମନ୍ତ୍ରିତ ହୋଇ ଶ୍ରୀ ବିଜୁ ପଟ୍ଟନାୟକ ଏହି ବୈଠକରେ ଯୋଗଦେଇଥିଲେ । ବୀରେନ୍ ମିତ୍ର ମଧ୍ୟ ବୈଠକରେ ଉପସ୍ଥିତ ଥିଲେ । ଶ୍ରୀ ରେଡ୍ଡିଙ୍କୁ ଭୋଟଦେବାପାଇଁ କଂଗ୍ରେସ ବିଧାନସଭା ସଭ୍ୟମାନଙ୍କୁ ନିର୍ଦ୍ଦେଶ ବା 'ହୁଇପ୍' ଦେବା କଥା ସ୍ଥିର ହୋଇଥିଲା । ପ୍ରଥମେ ଶ୍ରୀ ବିନାୟକ ଆଚାର୍ଯ୍ୟ ନିର୍ଦ୍ଦେଶ ଦେବା ଅନାବଶ୍ୟକ ବୋଲି କହିଥିଲେ; ମାତ୍ର ଯେତେବେଳେ 'ହୁଇପ୍' ଦେବା କଥା ଦଳ ବୈଠକରେ ସ୍ଥିର ହେଲା ସେତେବେଳେ ସେ ରାଜି ହୋଇଥିଲେ । ସଭ୍ୟମାନଙ୍କ ପାଖକୁ ଯେଉଁ ହୁଇପ୍ ଯାଇଥିଲା ସେଥିରେ ପ୍ରଦେଶ କଂଗ୍ରେସ ସଭାପତି ହିସାବରେ ମୁଁ ଦସ୍ତଖତ କରିଥିଲି । ମୋ ବ୍ୟତୀତ ବିଧାନସଭା କଂଗ୍ରେସଦଳର ଦଳପତି ଶ୍ରୀ ବିନାୟକ ଆଚାର୍ଯ୍ୟ, ଉପଦଳପତି ଶ୍ରୀ ଗଙ୍ଗାଧର ମହାପାତ୍ର, ଜାର୍‌ପଟଦ୍ୱାର ଶ୍ରୀ ବ୍ରଜମୋହନ ମହାନ୍ତି ଓ ସେକ୍ରେଟେରୀ ଶ୍ରୀ ବନମାଳୀ ବାବୁ ମଧ୍ୟ ସେଥିରେ ଦସ୍ତଖତ କରିଥିଲେ । ଏହି ନିର୍ଦ୍ଦେଶ ସବୁ କଂଗ୍ରେସ ସଭ୍ୟମାନଙ୍କ ପାଖକୁ ପଠାଇ ଦିଆଯାଇଥିଲା ଏବଂ ଖବରକାଗଜମାନଙ୍କରେ ମଧ୍ୟ ପ୍ରକାଶ ପାଇଥିଲା । ଏହା ସତ୍ତ୍ୱେ ଆକାଶବାଣୀ ସମ୍ବାଦ ପରିବେଷଣରେ କହିଥିଲା ଯେ ଓଡ଼ିଶାରେ କଂଗ୍ରେସ ବିଧାୟକମାନଙ୍କୁ ଶ୍ରୀ ରେଡ୍ଡିଙ୍କୁ ଭୋଟ ଦେବାପାଇଁ କୌଣସି ହୁଇପ୍ ଦିଆଯାଇନାହିଁ । ମୁଁ ଏହାର ପ୍ରତିବାଦ କରି ଆକାଶବାଣୀକୁ ଲିଖିତଭାବରେ ଜଣାଇଲେ ମଧ୍ୟ ମୋର ପ୍ରତିବାଦ ବିଷୟରେ ଆକାଶବାଣୀରୁ କିଛି କୁହାଗଲା ନାହିଁ । ସେହିଦିନଠାରୁ ଆକାଶବାଣୀଦ୍ୱାରା ପରିବେଷିତ ସମ୍ବାଦ ପ୍ରତି ମୋର ବିତୃଷ୍ଣାଭାବ ରହିଆସିଛି । ଶ୍ରୀ ବିନାୟକ ଆଚାର୍ଯ୍ୟ ଏହା ମଧ୍ୟରେ ସ୍ୱର ପରିବର୍ତ୍ତନ କରି କଥାବାର୍ତ୍ତା କରିଥିଲେ । ତାଙ୍କ ବିଷୟରେ ଅଗଷ୍ଟ ଷୋଳ ତାରିଖରେ ଅମୃତ ବଜାର ପତ୍ରିକାରେ ବାହାରିଥିଲା, "Mr. Binayak Acharya said that the decision on whip was in the passive voice and was open for interpretation by the members." ଶ୍ରୀ ବୀରେନ୍ ମିତ୍ର ପ୍ରଥମରୁ କଂଗ୍ରେସପ୍ରାର୍ଥୀ ଶ୍ରୀ ରେଡ୍ଡିଙ୍କୁ ସମର୍ଥନ କରୁଥିଲେ । ମୋ ସହିତ ଏକମତ ହୋଇ ଅନ୍ୟ ସଭ୍ୟମାନଙ୍କୁ ଶ୍ରୀ ରେଡ୍ଡିଙ୍କୁ ସମର୍ଥନ କରିବା ଉଚିତ ବୋଲି କହୁଥିଲେ । ମାତ୍ର ଯେଉଁଦିନ ଭୋଟ ନିଆଯିବ ସେହିଦିନ ସକାଳେ ତାଙ୍କର ମତ ପରିବର୍ତ୍ତିତ ହୋଇଛି ବୋଲି ମୁଁ ସମ୍ବାଦ ପାଇଲି । ତାଙ୍କୁ ବହୁବାର ଫୋନ୍ କଲି; ମାତ୍ର ସେ ମିଳିଲେ ନାହିଁ । ଆମ୍ଭମାନଙ୍କୁ କାହାରିକି ଦେଖା ନ ଦେଇ ଭୋଟ ଦେବା ଦିନ ସେ ସିଧା ଯାଇ ଶ୍ରୀ ଗିରିଙ୍କୁ ଭୋଟ ଦେଇ କଟକ ଚାଲିଯାଇଥିଲେ । ପରେ ମୁଁ ଯେତେବେଳେ ବୀରେନ୍‌ବାବୁଙ୍କ ଘରକୁ ଯାଏ ସେ ମୋତେ ସିଧା ଚାହିଁପାରି ନଥିଲେ । ମୋତେ ସେ କହିଥିଲେ, ''କ'ଣ କରିବି, କାଲି ରାତିରେ ଇନ୍ଦିରା ଗାନ୍ଧୀ ନିଜେ ଫୋନ୍ କରି ଗିରିଙ୍କୁ ଭୋଟ ଦେଇ ତା'ର ସମ୍ମାନ ରକ୍ଷିବାପାଇଁ କହିଲା ।'' ବୀରେନ୍‌ବାବୁ ଅନ୍ୟାୟ କଲେ ବୋଲି ମୁଁ ତାଙ୍କୁ କହିଥିଲି । ଆମ୍ଭେମାନେ ଯେତେବେଳେ ସମସ୍ତେ ଏକତ୍ର ହୋଇ ଗୋଟିଏ ନିଷ୍ପତ୍ତି ନେଇଥିଲୁ, ସେହି ନିଷ୍ପତ୍ତି ଅନୁସାରେ କାର୍ଯ୍ୟ କରିବାକୁ ତାଙ୍କର ଯଦି ଇଚ୍ଛା ନହେଲା, ତେବେ ସେ କଥା ତାଙ୍କର ଆମକୁ ଜଣାଇବା ଉଚିତ ଥିଲା ବୋଲି ମୁଁ କହିଥିଲି । ସେ ଦୋଷ କରିଛନ୍ତି ବୋଲି ସ୍ୱୀକାର କରିଥିଲେ; ମାତ୍ର ଯାହା ଅନିଷ୍ଟ ହେବା କଥା ତାହା ହୋଇ ସାରିଥିଲା ।

# ମିଳାମିଶା ଆଶା ମିଳେଇଗଲା

ଓଡ଼ିଶାର ବିଧାନସଭାର କଂଗ୍ରେସଦଳର ସଭ୍ୟମାନେ ଦୁଇ ଭାଗ ହୋଇଯାଇଥିଲେ । କେତେକ ସଭ୍ୟ ରେଡ୍ଡିଙ୍କୁ ସମର୍ଥନ କଲାବେଳେ ଅନ୍ୟ କେତେକ ଗିରିଙ୍କୁ ସମର୍ଥନ କରିଥିଲେ । ରାଷ୍ଟ୍ରପତି ନିର୍ବାଚନର ଭୋଟଗଣତି ଦିନ ମୁଁ କଟକ ସ୍ୱରାଜ ଆଶ୍ରମରେ ଥାଏ । ଶ୍ରୀ ଗିରିଙ୍କ ବିଜୟ କଥା ଘୋଷଣା ହେଲାମାତ୍ରେ ଦଳେ ଯୁବକଂଗ୍ରେସ ସଭ୍ୟ ସ୍ୱରାଜ ଆଶ୍ରମ ଭିତରେ ନାନାପ୍ରକାର ଚିତ୍କାର କରି ବିଶୃଙ୍ଖଳ ଆଚରଣ ପ୍ରଦର୍ଶନକରିଥିଲେ । ମୁଁ ନୀରବରେ ସେ ସମସ୍ତ ଘଟଣାର ମୂକସାକ୍ଷୀ ହେବା ସଙ୍ଗେ ସଙ୍ଗେ ଏହା ଭବିଷ୍ୟତରେ ଅମଙ୍ଗଳର ସୂଚନା ବୋଲି ମନେ ମନେ ଭାବିଥିଲି । ଏହାପରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କର ବିଶୃଙ୍ଖଳ ଆଚରଣପାଇଁ ତାଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ବିଷୟରେ କଂଗ୍ରେସ ସଭାପତି ଓ ତାଙ୍କ କଂଗ୍ରେସ କାର୍ଯ୍ୟକାରୀ କମିଟି ବିଚାର କରୁଛନ୍ତି ବୋଲି ସମ୍ବାଦପତ୍ରମାନଙ୍କରେ ପ୍ରକାଶପାଇଥିଲା । ଆଉ ସେ ଦିଗରେ ଅଗ୍ରସର ନହୋଇ କଂଗ୍ରେସ ଭିତରେ କିପରି ଏକତା ରକ୍ଷା-କରାଯିବ ସେ ଦିଗରେ ପଦକ୍ଷେପ ନେବାପାଇଁ ମୁଁ କଂଗ୍ରେସ ସଭାପତିଙ୍କୁ ଗୋଟିଏ ତାରବାର୍ତ୍ତାରେ ଜଣାଇଥିଲି । କିଛିଦିନ ପରେ ଜଣାଗଲା ଯେ କଂଗ୍ରେସ କାର୍ଯ୍ୟକାରୀ କମିଟି ପ୍ରଧାନମନ୍ତ୍ରୀଙ୍କ ଉପରେ ଶାସ୍ତିବିଧାନ କଥା ନଭାବି କଂଗ୍ରେସ ମଧ୍ୟରେ କିପରି ଏକତା ରକ୍ଷା କରାଯିବ ସେ ଦିଗରେ ନିଷ୍ପତ୍ତି ନେଉଛନ୍ତି । ଏ ସମ୍ବାଦ ପାଇ ଆମ୍ଭେମାନେ ଆନନ୍ଦିତ ହୋଇଥିଲୁ ଏବଂ ନିମ୍ନମତେ କଂଗ୍ରେସ ସଭାପତିଙ୍କୁ ମୁଁ ଗୋଟିଏ ତାରବାର୍ତ୍ତା ପଠାଇଥିଲି, "I Congratulate the Congress High Command for the political maturity and wisdom they had shown in resolving the differences and settling matters. This will give added strength to the Congress Organisation."

ଆମ୍ଭମାନଙ୍କର ଆଶା ନିରାଶାରେ ପରିଣତ ହୋଇଥିଲା । କଂଗ୍ରେସ ସଭାପତି ଶ୍ରୀ ନିଜଲିଙ୍ଗାପା ଓ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କ ମଧ୍ୟରେ ମିଳାମିଶାର ଉଦ୍ୟମ ଶେଷରେ ବ୍ୟର୍ଥହୋଇଥିଲା । କଂଗ୍ରେସ ସଭାପତିଙ୍କ ଅଧ୍ୟକ୍ଷତାରେ ଯନ୍ତରମନ୍ତର ରୋଡ଼ସ୍ଥିତ କଂଗ୍ରେସ କାର୍ଯ୍ୟାଳୟରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ବୈଠକ ବସି ଶ୍ରୀମତୀ ଗାନ୍ଧୀଙ୍କ ବିରୁଦ୍ଧରେ କି ପ୍ରକାର ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ନିଆଯିବ ବୋଲି ବିଚାର ଚାଲିଥିବାବେଳେ ଉକ୍ତ କାର୍ଯ୍ୟକାରୀ କମିଟିର ଅନ୍ୟ ଦଶଜଣ ସଭ୍ୟ ପ୍ରଧାନମନ୍ତ୍ରୀଙ୍କ ବାସଭବନରେ ଗୋଟିଏ ସମାନ୍ତରାଳ ବୈଠକରେ ମିଳିତ ହୋଇ ନିଖିଳ ଭାରତ କଂଗ୍ରେସ କମିଟିର ଗୋଟିଏ ସ୍ୱତନ୍ତ୍ର ଅଧିବେଶନ ବସାଇବାକୁ ଦାବି କରିଥିଲେ । ଏହି ଦାବି କଂଗ୍ରେସ ସଭାପତିଙ୍କ ପାଖକୁ ପଠାଯାଇଥିଲା ; ମାତ୍ର ସେ ତାହାକୁ ଅଗ୍ରାହ୍ୟ କରିଦେଇଥିଲେ । ପ୍ରଧାନମନ୍ତ୍ରୀଙ୍କ ଗୋଷ୍ଠୀ ସ୍ଥିର କରିଥିଲେ ନଭେମ୍ବର ମାସ ୨୨ ଓ ୨୩ ତାରିଖରେ ଦିଲ୍ଲୀଠାରେ ନିଖିଳ ଭାରତ କଂଗ୍ରେସ କମିଟିର ଗୋଟିଏ ବିରାଟ ବୈଠକ ଆହ୍ୱାନ କରିବାକୁ । ଏହି ବୈଠକ ଡକାଇବାପାଇଁ ଚାରିଶହରୁ ଊର୍ଦ୍ଧ୍ୱ କମିଟି ସଭ୍ୟଙ୍କର ଦସ୍ତଖତରେ ଗୋଟିଏ ଦରଖାସ୍ତ କଂଗ୍ରେସ ସଭାପତିଙ୍କ ନିକଟକୁ ପଠାଯାଇଥିଲା । ଏହାକୁ ମଧ୍ୟ କଂଗ୍ରେସ ସଭାପତି ଅଗ୍ରାହ୍ୟ କରିଦେଇଥିଲେ । ଏହାସତ୍ତ୍ୱେ ସେହି ନିର୍ଦ୍ଦିଷ୍ଟ ଦିନମାନଙ୍କରେ ଦିଲ୍ଲୀଠାରେ ନିଖିଳ ଭାରତ କଂଗ୍ରେସ କମିଟିର ବରାଦି ବୈଠକ ବସିବ ବୋଲି ଶ୍ରୀମତୀ ଗାନ୍ଧୀ ସ୍ଥିର କରିଥିଲେ । ଏହି ବରାଦି ବୈଠକରେ କିପରି କମିଟିର ଅଧିକ ସଭ୍ୟ ଯୋଗଦେବେ ସେଥିପାଇଁ ପ୍ରଧାନମନ୍ତ୍ରୀଙ୍କ ଗୋଷ୍ଠୀ ପକ୍ଷରୁ ପ୍ରବଳ ଉଦ୍ୟମ ଆରମ୍ଭ ହୋଇଯାଇଥିଲା । ଓଡ଼ିଶାର ଲୋକସଭା ସଦସ୍ୟ ଶ୍ରୀ ଜଗନ୍ନାଥ ରାଓଙ୍କୁ ଶ୍ରୀମତୀ ଗାନ୍ଧୀ ଆମ୍ଭମାନଙ୍କ ସମର୍ଥନପାଇଁ ମୋ ପାଖକୁ ପଠାଇଥିଲେ । ଶ୍ରୀ ରାଓ ଓ ମୁଁ ବହୁତ ସମୟଧରି କଥାବାର୍ତ୍ତା ହୋଇଥିଲୁ । ଉକ୍ତ ଆଲୋଚନା ସମୟରେ ନନ୍ଦିନୀ ଶତପଥୀଙ୍କ କାର୍ଯ୍ୟକଳାପ ଓଡ଼ିଶାରେ କିପରି କଂଗ୍ରେସ-ବିରୋଧୀ ଶକ୍ତିମାନଙ୍କୁ ଖୋରାକ ଯୋଗାଇ ସଂଗଠନକୁ ଦୁର୍ବଳ କରୁଥିଲା

ସେ କଥା ମୁଁ ଶ୍ରୀ ରାଓଙ୍କୁ କହିଥିଲି ଏବଂ ସେ ବିଷୟ ଶ୍ରୀମତୀ ଗାନ୍ଧୀଙ୍କୁ ଜଣାଇଦେବାକୁ ଅନୁରୋଧ କରିଥିଲି । ଶ୍ରୀ ରାଓ ଦିଲ୍ଲୀ ଫେରିଯାଇ ଏସବୁ କଥା ଶ୍ରୀମତୀ ଗାନ୍ଧୀଙ୍କୁ କହିଥିଲେ । ତା'ପରେ ଶ୍ରୀମତୀ ଗାନ୍ଧୀ ଦିଲ୍ଲୀରୁ ମୋର କଟକ ଘରକୁ ଫୋନ୍ କରି ଶ୍ରୀ ରାଓଙ୍କ ସହିତ ତାଙ୍କର କଥାବାର୍ତ୍ତା ହୋଇଛି ବୋଲି ମୋତେ କହିଥିଲେ ଏବଂ ତାଙ୍କୁ କଂଗ୍ରେସର ବରାଦି ବୈଠକରେ ସାହାଯ୍ୟ କରିବାକୁ ଅନୁରୋଧ କରିଥିଲେ । ଓଡ଼ିଶାର ସବୁ ଏ.ଆଇ.ସି.ସି. ସଭ୍ୟଙ୍କୁ ସାଙ୍ଗରେ ନେଇଯିବାପାଇଁ ସେ ମୋତେ କହିଥିଲେ । ମୁଁ ବିଜୁବାବୁ ପ୍ରଭୃତିଙ୍କୁ ଶ୍ରୀମତୀ ଗାନ୍ଧୀଙ୍କ ଅନୁରୋଧ କଥା କହିଥିଲି । ବିଜୁବାବୁ ସେତେବେଳକୁ କଂଗ୍ରେସ ସଭାପତି ନିଜଲିଙ୍ଗାପାଙ୍କର କେତେକ ବିବୃତିକୁ ନାପସନ୍ଦକରି ଖବରକାଗଜରେ ବିବୃତିମାନ ଦେଇସାରିଥିଲେ । ଏହା ମଧ୍ୟରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଶ୍ରୀମତୀ ଗାନ୍ଧୀଙ୍କୁ କଂଗ୍ରେସରୁ ବହିଷ୍କାର କରିବାର ନିଷ୍ପତ୍ତିକୁ ଆମ୍ଭେମାନେ ସ୍ୱାଗତ କରିପାରିନଥିଲୁ । ମୁଁ ଓ ବିଜୁବାବୁ ଉକ୍ତ ନିଷ୍ପତ୍ତିକୁ ଦୁର୍ଭାଗ୍ୟଜନକ ବୋଲି କହି ଖବରକାଗଜମାନଙ୍କରେ ବିବୃତିମାନ ଦେଇସାରିଥିଲୁ । ତେଣୁ ଆମେ ସ୍ଥିର କରିଥିଲୁ ଯେ ଓଡ଼ିଶାର ସମସ୍ତ ଏ.ଆଇ.ସି.ସି. ସଭ୍ୟ ବରାଦି ବୈଠକରେ ଯୋଗଦେବେ । ନିଖିଳ ଭାରତ କଂଗ୍ରେସ କମିଟିରେ ଆମ ରାଜ୍ୟରୁ ସେତେବେଳେ ପଚିଶ ଜଣ ସଭ୍ୟ ଥିଲେ । ତାହା ମଧ୍ୟରୁ ଆମେ ତେଇଶ ଜଣ ବରାଦି ବୈଠକରେ ଯୋଗଦେବା ପାଇଁ ଦିଲ୍ଲୀଠାରେ ପହଞ୍ଚିଥିଲୁ । ଶ୍ରୀମତୀ ଗାନ୍ଧୀ ମୋଠାରୁ ଏ ଖବର ଜାଣି ଖୁସି ହୋଇଥିଲେ । ଏହି ବରାଦି ବୈଠକରେ ଯୋଗଦେବାପାଇଁ ଶ୍ରୀମତୀ ଗାନ୍ଧୀ ମୋତେ ଯେପରି ଫୋନ୍ କରି ଅନୁରୋଧ କରିଥିଲେ, ସେହିପରି ଅନ୍ୟ ପ୍ରଦେଶ କଂଗ୍ରେସର ସଭାପତିମାନଙ୍କୁ ତଥା ଅନ୍ୟ କେତେକଙ୍କୁ ମଧ୍ୟ ବ୍ୟକ୍ତିଗତଭାବେ ଅନୁରୋଧ କରିଥିଲେ । ମାତ୍ର ସେହି ବୈଠକରେ ଭାଷଣ ଦେଲାବେଳେ ସେ କହିଥିଲେ ଯେ ବରାଦି ବୈଠକରେ ଯୋଗଦେବା ପାଇଁ ସେ କାହାରିକୁ କିଛି କହିନାହାନ୍ତି ଏବଂ ସମସ୍ତେ ସ୍ୱଇଚ୍ଛାରେ ଏତେ ସଂଖ୍ୟାରେ ଆସି ଉପସ୍ଥିତ ହୋଇଛନ୍ତି । ଏ କଥା ଶ୍ରୀମତୀ ଗାନ୍ଧୀଙ୍କ ମୁଖରୁ ଶୁଣି ସତ୍ୟ ପ୍ରତି ତାଙ୍କର କି ପ୍ରକାର ଆସକ୍ତି ସେ ବିଷୟରେ ଆମମାନଙ୍କ ମଧ୍ୟରେ ଆଲୋଚନା ହୋଇଥିଲା । ଏହି ଅଧିବେଶନରେ କଂଗ୍ରେସ ସଭାପତି ଶ୍ରୀ ନିଜଲିଙ୍ଗାପାଙ୍କ ବିରୁଦ୍ଧରେ ହୋଇଥିବା ଅନାସ୍ଥାପ୍ରସ୍ତାବ ଗୃହୀତ ହେବାପରେ ଶ୍ରୀ ସି. ସୁବ୍ରମଣ୍ୟମ୍ ତାଙ୍କ ସ୍ଥାନରେ କଂଗ୍ରେସ ସଭାପତି ଭାବରେ ନିର୍ବାଚିତ ହୋଇଥିଲେ ।

ଅସ୍ଥାୟୀ ନୂତନ କଂଗ୍ରେସ ସଭାପତି ସୁବ୍ରମଣ୍ୟମ୍ ଯେପରି ଭାବରେ ନୂତନ କାର୍ଯ୍ୟକାରୀ କମିଟି ଗଠନ କଲେ ସେଥିରେ ଆମ୍ଭେମାନେ କ୍ଷୁବ୍ଧହୋଇଥିଲୁ । କାହାରିକୁ କିଛି ନପଚାରି ସୁବ୍ରମଣ୍ୟମ୍ ତାଙ୍କ କାର୍ଯ୍ୟକାରୀ କମିଟିରେ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କୁ ସଭ୍ୟରୂପେ ମନୋନୀତ କରିଥିଲେ ଏବଂ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଭାପତିରୂପେ ସ୍ୱତନ୍ତ୍ର ନିମନ୍ତ୍ରିତ ବ୍ୟକ୍ତି ହିସାବରେ କଂଗ୍ରେସ କାର୍ଯ୍ୟକାରୀ କମିଟିରେ ଯୋଗଦେବା କଥା ଚିଠି ଲେଖି ମୋତେ ଜଣାଇଦେଇଥିଲେ । ଆମ୍ଭେମାନେ ନିଶ୍ଚିତଭାବରେ ଆଶାକରିଥିଲୁ ଯେ ଉକ୍ତ କାର୍ଯ୍ୟକାରୀ କମିଟିରେ ବିଜୁ ପଟ୍ଟନାୟକ ସଭ୍ୟ ମନୋନୀତ ହେବେ । ମାତ୍ର ନନ୍ଦିନୀଙ୍କ ନାମ ଶୁଣି ସମସ୍ତେ ବିରକ୍ତି ପ୍ରକାଶ କରିଥିଲେ । ମୁଁ ଶ୍ରୀମତୀ ଗାନ୍ଧୀଙ୍କୁ ଦେଖାକରି ବିଜୁବାବୁଙ୍କୁ ସଭ୍ୟରୂପେ ନେବାକୁ କହିଥିଲି ଏବଂ କଂଗ୍ରେସ ସଭାପତି ସୁବ୍ରମଣ୍ୟମଙ୍କ ନିଷ୍ପତ୍ତିରେ ଅନ୍ୟମାନଙ୍କର ଅସନ୍ତୋଷ ବିଷୟ ଜଣାଇଥିଲି । ସେ ଏ ବିଷୟରେ କିଛି ଜାଣନ୍ତିନାହିଁ ବୋଲି ମୋତେ କହିଥିଲେ । ତାଙ୍କର ଏ ପ୍ରକାର କଥାକୁ ମୁଁ ବିଶ୍ୱାସ କରିପାରିନଥିଲି । ସେଦିନ ନବଗଠିତ କଂଗ୍ରେସ କାର୍ଯ୍ୟକାରୀ କମିଟିର ଗୋଟିଏ ବୈଠକ ଡକାଯାଇଥିଲା । ସ୍ୱତନ୍ତ୍ର ନିମନ୍ତ୍ରିତ ସଭ୍ୟ ଭାବରେ ଯୋଗଦେବା ନିମନ୍ତେ ମୋ ପାଖକୁ ଚିଠି ଆସିଥିଲା । ସ୍ୱତନ୍ତ୍ର ନିମନ୍ତ୍ରିତ ବ୍ୟକ୍ତି ହିସାବରେ ମୁଁ କାର୍ଯ୍ୟକାରୀ କମିଟି ବୈଠକରେ ଯୋଗ ଦେବିନାହିଁ ବୋଲି ଖଣ୍ଡିଏ ଚିଠି ଲେଖି ସୁବ୍ରମଣ୍ୟମଙ୍କୁ ଦେଖାକରି ଦେଇଥିଲି । ସେ ମୋତେ ବହୁତ ବୁଝାଇବାକୁ ଚେଷ୍ଟା କରିଥିଲେ; ମାତ୍ର ତାଙ୍କ କଥା ମୋ ମନକୁ ପାଇଲାନାହିଁ । ସୁବ୍ରମଣ୍ୟମଙ୍କ ସହିତ ମୋର ଆଲୋଚନା ସମୟରେ ଶ୍ରୀ ଗୁଲଜାରିଲାଲ୍ ନନ୍ଦା

ଉପସ୍ଥିତ ଥିଲେ । ମୋ କଥାରେ କିଛିଟା ଯଥାର୍ଥତା ଅଛି ବୋଲି ନନ୍ଦାଜୀ ସ୍ୱୀକାର କରିଥିଲେ । ସେହିଦିନ ଗୋଟିଏ ରାତ୍ରିଭୋଜନରେ ଯୋଗଦେବା ନିମନ୍ତେ ଶ୍ରୀମତୀ ଗାନ୍ଧୀ ମୋତେ ତାଙ୍କ ବାସଭବନକୁ ଆମନ୍ତ୍ରଣ କରିଥିଲେ; ମାତ୍ର ଆମ୍ଭମାନଙ୍କ ପ୍ରତି ତାଙ୍କର ଯେଉଁ ବ୍ୟବହାର ତାହାର ପ୍ରତିବାଦ କରି ମୁଁ ରାତ୍ରିଭୋଜନରେ ଯୋଗ ଦେଇପାରିବି ନାହିଁ ବୋଲି ଜଣାଇଦେଇଥିଲି । ତା' ପରଦିନ ମୁଁ ପ୍ରଧାନମନ୍ତ୍ରୀଙ୍କ ନିମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କରିଥିଲି ବୋଲି ଦିଲ୍ଲୀ ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହୋଇଥିଲା । ସେହି ସମୟରେ ୧୯୭୦ ମସିହା ଜାନୁୟାରୀ ୧୦ ତାରିଖରେ ବ୍ଲିଜ୍ (Blitz) ସାପ୍ତାହିକ କାଗଜରେ ବାହାରିଥିଲା : "During the Delhi A.I.C.C., Mr. Nilamani Routray, the Orissa P.C.C. Chief, made an issue over the inclusion of Mrs. Nandini Satpathy in the Congress Working Committee. He boycotted the Prime Minister's dinner and the C.W.C. meeting in protest. He demanded that Biju Pattanaik should be taken into the C.W.C. and nonelse."

ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ କଂଗ୍ରେସର ସାଧାରଣ ଅଧିବେଶନ ୧୯୬୯ ମସିହା ଡିସେମ୍ବର ମାସ ୨୮ ଓ ୨୯ ତାରିଖରେ ବମ୍ବେଠାରେ ହେବା କଥା ଘୋଷଣା କରାହୋଇଥିଲା । ସେହି ସମୟରେ ମଧ୍ୟ ସଂଗଠନ କଂଗ୍ରେସର ସାଧାରଣ ଅଧିବେଶନ ଗୁଜୁରାଟ ରାଜ୍ୟର ଅହମ୍ମଦାବାଦଠାରେ ହେବ ବୋଲି ଶ୍ରୀ ନିଜଲିଙ୍ଗାପା ଘୋଷଣା କରିଥିଲେ । ବର୍ତ୍ତମାନ ଓଡ଼ିଶାରୁ କିଏ କେଉଁ କଂଗ୍ରେସକୁ ଯିବ ସେ ବିଷୟରେ ଟଣାଓଟରା ଲାଗିଲା । ବମ୍ବେ କଂଗ୍ରେସ ଅଧିବେଶନରେ ଯୋଗଦେବାପାଇଁ ପ୍ରଦେଶ କଂଗ୍ରେସ ସଭ୍ୟମାନଙ୍କୁ ନିର୍ଦ୍ଦେଶ ଦେବାକୁ ମୋତେ ଆସି ନନ୍ଦିନୀ ଦେବୀ, ବିନାୟକ ଆଚାର୍ଯ୍ୟ ପ୍ରଭୃତି ଅନୁରୋଧ କରିଥିଲେ । ମୁଁ ସେଥିରେ ରାଜି ହୋଇନଥିଲି । ମୁଁ କହିଥିଲି ଯେ ମୁଁ ନିଜେ ବମ୍ବେ କଂଗ୍ରେସକୁ ଯିବି, ମାତ୍ର ସଭ୍ୟମାନଙ୍କୁ ନିର୍ଦ୍ଦେଶ ଦେବା ମୋ ପକ୍ଷରେ ସମୀଚୀନ ହେବନାହିଁ; କାରଣ ସେତେବେଳେ ପ୍ରଦେଶ କଂଗ୍ରେସ କମିଟିରେ ଉଭୟ ଗୋଷ୍ଠୀର ଲୋକ ରହିଥାଆନ୍ତି ଏବଂ ପ୍ରଦେଶ କଂଗ୍ରେସ କେଉଁ କଂଗ୍ରେସ ପ୍ରତି ଆନୁଗତ୍ୟ ପ୍ରଦର୍ଶନ କରିବ ସେ ବିଷୟରେ କିଛି ସିଦ୍ଧାନ୍ତ ନିଆଯାଇ ନଥାଏ । ମୁଁ ସେମାନଙ୍କୁ କହିଥିଲି ଯେ ଅଧିକାଂଶ ସଭ୍ୟ ଆମ୍ଭମାନଙ୍କ ସହ ବମ୍ବେ ଯିବେ; ମାତ୍ର ସେଥିରେ ସେମାନେ ସନ୍ତୁଷ୍ଟ ହୋଇନଥିଲେ; କାରଣ ଯୋଗଦେବା ଅପେକ୍ଷା ପ୍ରଚାରଟାକୁ ସେମାନେ ଅଧିକ ଗୁରୁତ୍ୱ ଦେଉଥିଲେ । ମୋ ପାଖରୁ ବିଫଳ ହୋଇ ସେମାନେ ବିଜୁବାବୁଙ୍କୁ ଦେଖାକରି ଏ ବିଷୟରେ ତାଙ୍କର ସାହାଯ୍ୟ ଲୋଡ଼ିଥିଲେ । ମାତ୍ର ମୁଁ ବିନାୟକ ବାବୁଙ୍କୁ ଯେଉଁ କଥା କହିଥିଲି ବିଜୁବାବୁଙ୍କ ପାଖରେ ମଧ୍ୟ ତାହାର ପୁନରାବୃତ୍ତି କରିଥିଲି । ଏ ଅବସ୍ଥାରେ ବିଜୁବାବୁ ନିଜେ ପ୍ରତ୍ୟେକ ସଭ୍ୟଙ୍କ ପାଖକୁ ବମ୍ବେ କଂଗ୍ରେସରେ ଯୋଗଦେବା ପାଇଁ ତାରବାର୍ତ୍ତା ପଠାଇଥିଲେ ଓ ଖବରକାଗଜରେ ଗୋଟିଏ ବିବୃତି ମଧ୍ୟ ଦେଇଥିଲେ । ସଭ୍ୟମାନଙ୍କର ବମ୍ବେ ଯାତ୍ରା ପାଇଁ ବିଜୁବାବୁ ନିଜ ଖର୍ଚ୍ଚରେ କଟକରୁ ବମ୍ବେ ପର୍ଯ୍ୟନ୍ତ ଦୁଇଟି ରେଳବଗି ବନ୍ଦୋବସ୍ତ କରିଥିଲେ । ଆମେମାନେ ସମସ୍ତେ ବମ୍ବେ କଂଗ୍ରେସକୁ ଯାଇଥିଲୁ; ମାତ୍ର ସର୍ବଶ୍ରୀ ଦୀନବନ୍ଧୁ ସାହୁ, ଭବାନୀଚରଣ ପଟ୍ଟନାୟକ, ପ୍ରହ୍ଲାଦ ମଲ୍ଲିକ ଓ ଡକ୍ଟର ହରେକୃଷ୍ଣ ମଲ୍ଲିକ ପ୍ରଭୃତି ଗୋଟିଏ ଦଳ କଂଗ୍ରେସର ଅଳ୍ପ କେତେକ ସଦସ୍ୟଙ୍କ ସହିତ ଅହମ୍ମଦାବାଦ କଂଗ୍ରେସକୁ ଯାଇଥିଲେ । ଦୀନବନ୍ଧୁବାବୁ ଭବାନୀବାବୁ ପ୍ରଭୃତିଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାପାଇଁ ଶ୍ୟାମସୁନ୍ଦର ମହାପାତ୍ର ଓ ପ୍ରଦ୍ୟୁମ୍ନ ବଳ ପ୍ରଭୃତି ବମ୍ବେରୁ ଫେରି ମୋ ପାଖରେ ଦାବି କରିଥିଲେ । ମୁଁ ସେମାନଙ୍କୁ କହିଥିଲି ଯେ, ବିଧିବଦ୍ଧଭାବରେ ଜଗଜୀବନ ରାମଙ୍କ କଂଗ୍ରେସରେ ଯୋଗ ଦେଲୁ ବୋଲି ପ୍ରଥମେ କଂଗ୍ରେସ କମିଟି ବୈଠକରେ ପ୍ରସ୍ତାବ ଗୃହୀତ ହେଲା ପରେ ଯାହା କିଛି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ; ତା' ପୂର୍ବରୁ କିଛି କରିବା ଠିକ୍ ହେବନାହିଁ । ମାତ୍ର ସେଥିରେ ସେମାନେ ସନ୍ତୁଷ୍ଟ ନ ହୋଇ ସଂଗଠନ କଂଗ୍ରେସ ଲୋକଙ୍କୁ ମୁଁ ସାହାଯ୍ୟ କରୁଛି ବୋଲି ଅଭିଯୋଗ କରି ମୋତେ ପ୍ରଦେଶ କଂଗ୍ରେସ ସଭାପତି ପଦରୁ ଅନ୍ତର କରିବାପାଇଁ

ଅଭିଯାନ ଆରମ୍ଭ କରିଦେଇଥିଲେ । ଶ୍ରୀ ଶ୍ୟାମସୁନ୍ଦର ମହାପାତ୍ର ଗୋଟିଏ 'ସୋସିଆଲିଷ୍ଟ ଫୋରମ୍' ଆରମ୍ଭ କରି ତା'ରି ନାଁରେ ଆମ୍ଭମାନଙ୍କୁ ରକ୍ଷଣଶୀଳ ସିଣ୍ଡିକେଟ୍ ଗୋଷ୍ଠୀର ସମର୍ଥକ ବୋଲି ଖବରକାଗଜ ମାଧ୍ୟମରେ ଆମ୍ଭମାନଙ୍କ ବିରୁଦ୍ଧରେ ଅଭିଯୋଗ ଚଳାଇଥିଲେ । ଯୁବକଂଗ୍ରେସର ଆବାହକ ଶ୍ରୀ ପ୍ରଦ୍ୟୁମ୍ନ ବଳ ମଧ୍ୟ ତାଙ୍କ ସହିତ ଜୁଟିଥିଲେ ।

ଜାନୁୟାରୀ ମାସ ଶେଷବେଳକୁ ଶାସକ କଂଗ୍ରେସ ସଭାପତି ଶ୍ରୀ ଜଗଜ୍ଜୀବନ ରାମ କଲିକତା ଆସିଥିଲେ । ଓଡ଼ିଶା କଂଗ୍ରେସ ବିଷୟ ଆଲୋଚନା କରିବାପାଇଁ ମୋତେ କଲିକତା ଡକାଇଥିଲେ । ତାଙ୍କ ସହିତ ସାକ୍ଷାତ୍ ସମୟରେ ସର୍ବଶ୍ରୀ ବିଜୟ ପାଣି, ପ୍ରହ୍ଲାଦ ମଲ୍ଲିକ ଓ ଦୀନବନ୍ଧୁ ସାହୁଙ୍କ ଭଳି ପୁରୁଖା କଂଗ୍ରେସ ନେତାମାନଙ୍କ କଥା ସେ ମୋତେ ପଚାରିଥିଲେ । ସେମାନେ ସମସ୍ତେ ଅହମ୍ମଦାବାଦ କଂଗ୍ରେସକୁ ଯାଇଥିବା କଥା ମୁଁ ତାଙ୍କୁ କହିଥିଲି । ଆହୁରି ମଧ୍ୟ କଂଗ୍ରେସରୁ ମୁଁ ସେମାନଙ୍କୁ ଆଜିପର୍ଯ୍ୟନ୍ତ ବହିଷ୍କାର ନକରିଛି ବୋଲି ନନ୍ଦିନୀଙ୍କଦ୍ୱାରା କେତେକ ଉତ୍ସାହିତ ହୋଇ ମୋ ବିରୁଦ୍ଧରେ ଖବରକାଗଜମାନଙ୍କରେ ଯେପରି ଭାବରେ ସମାଲୋଚନା ଆରମ୍ଭ କରିଥା'ନ୍ତି, ସେ କଥା ମୁଁ ତାଙ୍କୁ କହିଥିଲି । ତରବରିଆ ଭାବରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ ନକରିବାକୁ ଏବଂ ସଂଗଠନ କଂଗ୍ରେସରୁ ସେମାନଙ୍କୁ କିପରି ଫେରାଇ ଅଣାଯାଇପାରିବ ସେ ଦିଗରେ ଉଦ୍ୟମ କରିବାପାଇଁ ସେ ମୋତେ ପରାମର୍ଶ ଦେଇଥିଲେ । ତାଙ୍କର ଏହି ଇଚ୍ଛା ଓ ପାଣିଙ୍କୁ କହିବାପାଇଁ ସେ ମୋତେ କହିଥିଲେ । ମୁଁ କଲିକତାରୁ ଫେରି ଶ୍ରୀ ପାଣିଙ୍କୁ ଏ କଥା କହିଥିଲି । ଯେଉଁ ଯୁବକମାନେ ନନ୍ଦିନୀ ଦେବୀଙ୍କ ଦ୍ୱାରା ଉତ୍ସାହିତ ହୋଇ ବିଶୃଙ୍ଖଳ ଆଚରଣ ଦେଖାଉଛନ୍ତି, ସେମାନଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଆବଶ୍ୟକ ବୋଲି ମୋର ବିଚାର ତାଙ୍କୁ ଜଣାଇବାରୁ ସେଭଳି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାପାଇଁ ସେ ସ୍ୱୀକୃତି ଦେଇଥିଲେ । କଲିକତାରୁ ଫେରିବା ପରେ ଶ୍ୟାମସୁନ୍ଦର ମହାପାତ୍ର ଓ ପ୍ରଦ୍ୟୁମ୍ନ କିଶୋର ବଳ ପ୍ରଭୃତିଙ୍କ ଦଳସ୍ୱାର୍ଥବିରୋଧୀ ବିଶୃଙ୍ଖଳ ଆଚରଣର ବିବରଣୀ ଦେଇ ମୁଁ ଫେବୃୟାରୀ ପନ୍ଦର ତାରିଖ ଦିନ ଶ୍ୟାମସୁନ୍ଦର ମହାପାତ୍ର ଓ ପ୍ରଦ୍ୟୁମ୍ନ ବଳଙ୍କୁ କଂଗ୍ରେସର ପ୍ରାଥମିକ ସଭ୍ୟପଦରୁ ସସ୍‌ପେଣ୍ଡ କରିଥିଲି ଏବଂ ସେମାନଙ୍କଠାରୁ ବିଭିନ୍ନ ଶୃଙ୍ଖଳାଭଙ୍ଗ ଅଭିଯୋଗ ସମ୍ପର୍କରେ କୈଫିୟତ୍ ତଲବ କରିଥିଲି । ପରେ ସେମାନଙ୍କର କୈଫିୟତ୍ ସନ୍ତୋଷଜନକ ନହେବାରୁ ପ୍ରଦେଶ କଂଗ୍ରେସ କାର୍ଯ୍ୟକାରୀ କମିଟି ସେମାନଙ୍କୁ ବର୍ଷେକପାଇଁ କଂଗ୍ରେସରୁ ବହିଷ୍କାର କରିଥିଲେ । ଏହି ଦୁହେଁ ଥିଲେ ନନ୍ଦିନୀଙ୍କର ମୁଖ୍ୟ ସମର୍ଥକ ଓ ନିଜକୁ ଖୋଦ୍ ଇନ୍ଦିରା ଗାନ୍ଧୀଙ୍କ ଲୋକ ବୋଲି କହିବୁଲୁଥିଲେ । ସେହି ମାସ ବାଇଶ ତାରିଖକୁ ପ୍ରଦେଶ କଂଗ୍ରେସ କମିଟି ବୈଠକ ଡକାଯାଇଥାଏ । ନନ୍ଦିନୀ ଶତପଥୀ ଦିଲ୍ଲୀରୁ ଆସୁଥାଆନ୍ତି ସେମାନଙ୍କ ସହିତ ପରାମର୍ଶ କରି ପ୍ରଦେଶ କଂଗ୍ରେସ କମିଟି ବୈଠକରେ କ'ଣ କରାଯିବ ତା'ର ଉପାୟ ସ୍ଥିର କରିବାପାଇଁ । ତାହା ପୂର୍ବରୁ ଏହି ଦୁଇଜଣଙ୍କର ସସ୍‌ପେଣ୍ଡ ଘଟଣା ସେମାନଙ୍କ ମହଲରେ ବିସ୍ମୟ ସୃଷ୍ଟିକରିଥିଲା । ପ୍ରକୃତରେ ସେମାନେ ଇନ୍ଦିରା ଗାନ୍ଧୀଙ୍କର ଲୋକ ଥିଲେ । କାରଣ କିଛିଦିନ ପରେ ମୋର ଯେତେବେଳେ ଶ୍ରୀମତୀ ଗାନ୍ଧୀଙ୍କ ସହ ଦେଖାହୁଏ ସେ ମୋତେ କହିଥିଲେ, "You have suspended two of my men." ମୁଁ ଉତ୍ତର ଦେଇଥିଲି, ''ଆମ୍ଭେମାନେ କ'ଣ ଆପଣଙ୍କ ଲୋକ ନୋହୁ, କେବଳ ସେହି ଦୁଇଜଣ ଆପଣଙ୍କ ଲୋକ ?'' ମୁଁ ତାଙ୍କୁ କହିଥିଲି, ''ସେମାନେ ଯେତେବେଳେ ପ୍ରଦେଶ କଂଗ୍ରେସ କାର୍ଯ୍ୟାନୁଷ୍ଠାନ ବିରୁଦ୍ଧରେ କଂଗ୍ରେସ ସଭାପତିଙ୍କୁ ଆବେଦନ କରିବେ ସେତେବେଳେ ପ୍ରଦେଶ କଂଗ୍ରେସର କାର୍ଯ୍ୟାନୁଷ୍ଠାନରେ ଯଥାର୍ଥତା ଅଛି କି ନାହିଁ ତାହା ଆପଣମାନେ ବିଚାର କରିବେ ।''

ଉତ୍କଳ ପ୍ରଦେଶ କଂଗ୍ରେସର ଭବିଷ୍ୟତ ନିର୍ଣ୍ଣୟ କରିବା ଉଦ୍ଦେଶ୍ୟରେ ୧୯୭୦ ମସିହା ଫେବୃୟାରୀ ମାସ ବାଇଶ ତାରିଖକୁ କମିଟିର ବୈଠକ ଡକାଯାଇଥାଏ । ଶ୍ରୀ ଜଗଜ୍ଜୀବନ ରାମଙ୍କ କଂଗ୍ରେସ ପ୍ରତି ଆନୁଗତ୍ୟ ସ୍ୱୀକାର କରି ତାହା ସହିତ ଉତ୍କଳ ପ୍ରଦେଶ କଂଗ୍ରେସକୁ ମିଶାଇଦେବାପାଇଁ ଉକ୍ତ ବୈଠକରେ

ଗୋଟିଏ ପ୍ରସ୍ତାବ ଆମପକ୍ଷରୁ ଆଣିବାକୁ ଆମ୍ଭେମାନେ ସ୍ଥିରକରିଥାଉ । ଶ୍ରୀମତୀ ନନ୍ଦିନୀ ଶତପଥୀ ଅଯଥାରେ କଂଗ୍ରେସ ଉଚ୍ଚମହଲରେ ସନ୍ଦେହ ସୃଷ୍ଟିକରିଥିଲେ ଯେ ଆମ୍ଭେମାନେ ସଂଗଠନ କଂଗ୍ରେସ ପ୍ରତି ଆନୁଗତ୍ୟ ଦେଖାଇଲାଭଳି ପ୍ରସ୍ତାବ ଆଣିପାରୁ; ତେଣୁ ଉଚ୍ଚ କଂଗ୍ରେସ କର୍ତ୍ତୃପକ୍ଷଙ୍କ ପକ୍ଷରୁ ଜଣେ ପ୍ରତିନିଧି ପ୍ରଦେଶ କମିଟିର ସେହି ବୈଠକରେ ଯୋଗଦେବା ଆବଶ୍ୟକ ବୋଲି ସେ ଦିଲ୍ଲୀରେ ପରାମର୍ଶ ଦେଉଥିବାର ଖବର ମିଳିଲା । ପଞ୍ଜାବର ଜଣେ ପୁରୁଖା କଂଗ୍ରେସ ନେତା ତଥା କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ସର୍ଦ୍ଦାର ଦରବାରା ସିଂହ ପ୍ରଦେଶ କଂଗ୍ରେସ ବୈଠକରେ ପର୍ଯ୍ୟବେକ୍ଷକ ହିସାବରେ ଯୋଗଦେବେ ବୋଲି ମୁଁ ନିଖିଳ ଭାରତ କଂଗ୍ରେସ କମିଟି ଅଫିସ୍‌ରୁ ଗୋଟିଏ ତାରବାର୍ତ୍ତା ପାଇଲି । ସର୍ଦ୍ଦାର ଦରବାରା ସିଂହଙ୍କ ଆସିବା କଥା ଜାଣି ଓଡ଼ିଶା କଂଗ୍ରେସ ମହଲରେ କେତେପ୍ରକାର କଳ୍ପନାଜଳ୍ପନା ଚାଲିଥିଲା । କେତେକ କହୁଥିଲେ ଯେ ସେ ଆସୁଛନ୍ତି ପ୍ରଦେଶ କଂଗ୍ରେସ ସଭାପତିଙ୍କୁ କହି ପ୍ରଦେଶ କମିଟିର ବୈଠକ ବସିବା ପୂର୍ବରୁ ଶ୍ୟାମସୁନ୍ଦର ମହାପାତ୍ର ଓ ପ୍ରଦ୍ୟୁମ୍ନ ବଳଙ୍କ ଉପରୁ ସସ୍‌ପେନସନ୍ ଆଦେଶ ପ୍ରତ୍ୟାହାର କରାଇଦେବାପାଇଁ । ପ୍ରଦେଶ କଂଗ୍ରେସ ସଭାପତି ଯଦି ତାଙ୍କ ବୋଲ ମାନି କାର୍ଯ୍ୟ ନକରନ୍ତି ତା'ହେଲେ ସେ ଏହିଠାରେ ପ୍ରଦେଶ କଂଗ୍ରେସକୁ ଭାଙ୍ଗିଦେଇ ଗୋଟିଏ ଆଡ୍‌ହକ କମିଟି ଗଠନ କରିଦେବାର କ୍ଷମତା ନେଇ ଆସୁଛନ୍ତି ବୋଲି ଆଉ କେତେକ ପ୍ରଚାର କରୁଥାଆନ୍ତି । ଅନ୍ୟ କେତେକ କହୁଥାଆନ୍ତି ଯେ ସର୍ଦ୍ଦାର ଦରବାରା ସିଂହ ନିଜ ସାଙ୍ଗରେ ଶ୍ୟାମବାବୁ ଓ ପ୍ରଦ୍ୟୁମ୍ନବାବୁଙ୍କୁ ନେଇ ପ୍ରଦେଶ କଂଗ୍ରେସ ବୈଠକ ବସୁଥିବା ଗୃହକୁ ପ୍ରବେଶକରିବେ । ବିଜୁପଟ୍ଟନାୟକ ମଧ୍ୟ ସର୍ଦ୍ଦାର ଦରବାରା ସିଂହଙ୍କର ଆସିବାଟାକୁ ସନ୍ଦେହଚକ୍ଷୁରେ ଦେଖୁଥିଲେ ଏବଂ ସସ୍‌ପେଣ୍ଡ ହୋଇଥିବା ସେହି ଦୁଇଜଣଙ୍କୁ କଂଗ୍ରେସ ବୈଠକକୁ ଡାକିଦେଲେ ଆଉ କିଛି ଅସୁବିଧା ହେବନାହିଁ ବୋଲି କହିଥିଲେ । ସର୍ଦ୍ଦାର ଦରବାରା ସିଂହ ପହଞ୍ଚିବା ପରେ ତାଙ୍କ କଥା ଜାଣି ଯାହା ଉଚିତ ମନେକରିବି ତାହା କରିବି ବୋଲି ମୁଁ ବିଜୁବାବୁଙ୍କୁ କହିଲି । ଫେବୃୟାରୀ ମାସ ଏକୋଇଶ ତାରିଖ ସନ୍ଧ୍ୟାବେଳେ ପ୍ରଦେଶ କଂଗ୍ରେସ କାର୍ଯ୍ୟକାରୀ କମିଟି ବୈଠକ ବସିଥିଲା । ତା' ପରଦିନ ପ୍ରଦେଶ କଂଗ୍ରେସ କମିଟି ବୈଠକରେ ପ୍ରଦେଶ କଂଗ୍ରେସର ଆନୁଗତ୍ୟ ସମ୍ବନ୍ଧରେ ଯେଉଁ ପ୍ରସ୍ତାବ ଆଗତ ହେବ, ସେ ବିଷୟ ଆଲୋଚିତ ହୋଇଥିଲା । ଶ୍ରୀ ଜଗଜ୍ଜୀବନ ରାମଙ୍କ ଶାସକ କଂଗ୍ରେସ ପ୍ରତି ଆନୁଗତ୍ୟ ପ୍ରକାଶ କରିବା ଉଦ୍ଦେଶ୍ୟରେ ବିଜୁବାବୁ ଗୋଟିଏ ପ୍ରସ୍ତାବର ଚିଠା କରି ଆଣିଥିଲେ । ତାହା ସେଠାରେ ପଢ଼ାଯାଇ ସାଧାରଣ ଭାବରେ ଅନୁମୋଦିତ ହୋଇଥିଲା । ଶ୍ୟାମସୁନ୍ଦର ମହାପାତ୍ର ଓ ପ୍ରଦ୍ୟୁମ୍ନକିଶୋର ବଳଙ୍କ ବିରୁଦ୍ଧରେ ଯେଉଁ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଥିଲା, କାର୍ଯ୍ୟକାରୀ କମିଟିର ଅବଗତି ନିମନ୍ତେ ମୁଁ ତାହା ଉପସ୍ଥାପିତ କରିଥିଲି ।

## ଘାଟି ପରେ ଘାଟି

ବାଇଶ ତାରିଖରେ ସ୍ୱରାଜ୍ୟ ଆଶ୍ରମରେ ପ୍ରଦେଶ କଂଗ୍ରେସ କମିଟି ବୈଠକ ମୋ ସଭାପତିତ୍ୱରେ ଆରମ୍ଭ ହେଲା । ସର୍ଦ୍ଦାର ଦରବାରା ସିଂହ ବିଜୁବାବୁଙ୍କ ସହିତ ଆସି ସଭାଗୃହରେ ଉପସ୍ଥିତ ହେଲେ । ଶ୍ରୀ ମହାପାତ୍ର ଓ ଶ୍ରୀ ବଳଙ୍କୁ ବୈଠକକୁ ଡାକିଲେ ଭଲ ହେବ ବୋଲି ସେହିଠାରେ ସେ ମୋତେ କହିଥିଲେ । ସେଭଳି ଅବସ୍ଥାରେ ପ୍ରଦେଶ କଂଗ୍ରେସ କମିଟି ବୈଠକରେ ମୁଁ ସଭାପତିତ୍ୱ ନକରି ଆଉ କେହି ଜଣେ କଲେ ଭଲ ହେବ ବୋଲି ମୋ'ଠାରୁ ଉତ୍ତର ଶୁଣିବା ପରେ ସର୍ଦ୍ଦାର ଦରବାରା ସିଂହ ଉଁ ଚୁଁ କିଛି କହିନଥିଲେ । ଏହା ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବୈଠକ ହୋଇଥିବାରୁ ପ୍ରାୟ ସମସ୍ତ ସଭ୍ୟ ଉପସ୍ଥିତ ଥିଲେ । ଉତ୍ତର ପ୍ରଦେଶର ପୂର୍ବତନ ରାଜ୍ୟପାଳ ଶ୍ରୀ ବିଶ୍ୱନାଥ ଦାସ ପ୍ରଦେଶ କଂଗ୍ରେସ କମିଟିର ଜଣେ ପୂର୍ବତନ ସଭାପତି ହୋଇଥିବାରୁ କଂଗ୍ରେସ ନିୟମାବଳୀ ଅନୁସାରେ ସେ ପ୍ରଦେଶ କଂଗ୍ରେସ କମିଟିର ଜଣେ ସଭ୍ୟ ଥିଲେ, ତେଣୁ ସେ ମଧ୍ୟ ଉକ୍ତ ବୈଠକରେ ଯୋଗଦେଇଥିଲେ ।

ଯଦିଓ ବୈଠକଟି ଅତି ଗାମ୍ଭୀର୍ଯ୍ୟପୂର୍ଣ୍ଣ ବାତାବରଣ ମଧ୍ୟରେ ଅନୁଷ୍ଠିତ ହୋଇଥିଲା, ଅନ୍ୟପକ୍ଷେ ସତେ ଅବା ପିଶାଚର ରଡ଼ି ଓ କଂଗ୍ରେସ-ପରିବାରର ଆତୁରତା ମଧ୍ୟରେ ଅନୁଷ୍ଠାନଟି ଅତି ମ୍ରିୟମାଣ ଅବସ୍ଥାରେ ପଡ଼ିଥିଲାଭଳି ମନେହେଉଥାଏ । ତଥାକଥିତ ନୂତନ ଓ ପୁରାତନ ମଧ୍ୟରେ ଗୋଟିଏ ସଂଘର୍ଷର ଚିତ୍ର ପ୍ରତୀୟମାନ ହେଉଥାଏ । ଏକ ଦିଗରୁ ସ୍ୱର ଉଠୁଥାଏ – ଘରକୁ ଜଲ୍‌ଦି ଭାଙ୍ଗି ଆବର୍ଜନା ସଫାକର ଏବଂ ଅନ୍ୟ ଦିଗରୁ କୋହ ଉଠୁଥାଏ – ଆମେ ସମସ୍ତେ ଏକାସାଙ୍ଗରେ ମିଳିମିଶି ରହିବା । ଏ ପ୍ରକାରର ଦୁଇଟି ଚିନ୍ତାଧାରା ମଧ୍ୟରେ ସଂଘର୍ଷ ଚାଲିଥାଏ । ମନେହେଉଥାଏ, ଗୋଟିଏ ପକ୍ଷରେ ପିଲାର ଜନ୍ମକଲା ମା' ଓ ଅନ୍ୟ ପକ୍ଷରେ ସାବତମା' । ଗୋଟିଏ ପକ୍ଷରୁ ଆହ୍ୱାନ ଆସୁଥାଏ – ସମସ୍ତଙ୍କୁ ବୁଝାବୁଝି କରି ଗୋଟିଏ ଅନୁଷ୍ଠାନ ଭିତରେ ଏକତ୍ର କରି ରଖିବାକୁ; ଅନ୍ୟ ଦିଗରୁ ଆବାଜ୍ ଉଠୁଥାଏ – ତଥାକଥିତ ଅବାଞ୍ଛିତ ବ୍ୟକ୍ତିମାନଙ୍କୁ ବହିଷ୍କାର କରାଯିବାକୁ । ଅସ୍ତ୍ରୋପଚାର କରାଯାଉ, ତେଣିକି ପରିଣତି ଯାହାହେଉ । ଜନ୍ମକଲା ମା'ର ହୃଦୟ ଓ ସାବତମା'ର ହୃଦୟ ଭିତରେ ନିଶ୍ଚୟ ପାର୍ଥକ୍ୟ ରହିବ । ଜନ୍ମରୁ କଂଗ୍ରେସ ଅନୁଷ୍ଠାନ ସହ ସମ୍ପୃକ୍ତ ସଭ୍ୟ ଏବଂ ନବାଗତଙ୍କ ମଧ୍ୟରେ ଏହିଭଳି ପାର୍ଥକ୍ୟ ଅନୁଭୂତ ହେଉଥାଏ । ଏହି ପରିପ୍ରେକ୍ଷୀରେ ଶ୍ରୀ ଜଗଜ୍ଜୀବନ ରାମ ଯେଉଁ କଂଗ୍ରେସର ସଭାପତି ଥାଆନ୍ତି, ସେହି କଂଗ୍ରେସ ପ୍ରତି ଆନୁଗତ୍ୟ ସ୍ୱୀକାରସୂଚକ ଗୋଟିଏ ପ୍ରସ୍ତାବ ଆଗତ କରିଥିଲେ ବିଜୁ ପଟ୍ଟନାୟକ ଏବଂ ନିବେଦନ କରିଥିଲେ ସର୍ବସମ୍ମତିକ୍ରମେ ଗ୍ରହଣ କରିନେବାକୁ । ଶ୍ରୀ ନିଜଲିଙ୍ଗାପା ଯେଉଁ କଂଗ୍ରେସର ସଭାପତି ଥିଲେ ସେହି କଂଗ୍ରେସ ପ୍ରତି ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ଆନୁଗତ୍ୟ ପ୍ରକାଶ କରିବା ଉଦ୍ଦେଶ୍ୟରେ ଉପରୋକ୍ତ ପ୍ରସ୍ତାବଟି ଉପରେ ଶ୍ରୀ ଦୀନବନ୍ଧୁ ସାହୁ ଗୋଟିଏ ସଂଶୋଧନ ପ୍ରସ୍ତାବ ଆଣିଥିଲେ । ବିଜୁ ପଟ୍ଟନାୟକଙ୍କର ପ୍ରସ୍ତାବ ଉପରେ ଦିନସାରା ଆଲୋଚନା କରାଯାଇଥିଲା । ଆସନ୍ନ ବିଭାଜନକୁ ମନରେ ରଖି ସଭାପତି ହିସାବରେ ସେଠାରେ ବସି ମୁଁ ଅତ୍ୟନ୍ତ ଭଗ୍ନହୃଦୟରେ ସମସ୍ତ ଆଲୋଚନା ଶୁଣୁଥାଏ । ଆଖିରେ ଲୁହ ଆସିଯାଉଥାଏ; ମାତ୍ର ତାକୁ ଲୁଚାଇ ରଖିବାର ଉଦ୍ୟମ କରୁଥାଏ । ଶେଷରେ ଦୀନବନ୍ଧୁବାବୁଙ୍କର ସଂଶୋଧନ ପ୍ରସ୍ତାବଟି କାଟଖୋଇଯାଇଥିଲା ଏବଂ ମୂଳପ୍ରସ୍ତାବଟି ଗୃହୀତ ହୋଇଯାଇଥିଲା । ଦୀନବନ୍ଧୁବାବୁ ଓ ବିଜୟ ପାଣି ପ୍ରମୁଖ ବୈଠକ ଛାଡ଼ି ଚାଲିଯାଇଥିଲେ । ବହୁ ଘାତପ୍ରତିଘାତ ଓ ଅବିରତ ସଂଗ୍ରାମ ମଧ୍ୟରେ ଯେଉଁ କଂଗ୍ରେସ ଲୋକମାନେ ସୁଖଦୁଃଖକୁ ତିଳେହେଲେ ଖାତିର୍ ନକରି ଏକତ୍ର କାର୍ଯ୍ୟ କରିଆସୁଥିଲେ, ସେମାନେ ଆଉ ଏକତ୍ର ରହିପାରିଲେନାହିଁ । କେତେକ ଚାଲିଗଲେ; ଆମ୍ଭେମାନେ ରହିଗଲୁ । ଶେଷରେ ଏକ ବିଷାଦମୟ ପରିବେଶ ମଧ୍ୟରେ ସେଦିନ ପ୍ରଦେଶ କଂଗ୍ରେସ କମିଟିର ବୈଠକ ସମାପ୍ତ ହୋଇଥିଲା ।

ଗୋଟିଏ ଘାଟି ପାରହେବାମାତ୍ରେ ଆଉ ଗୋଟିଏ ଘାଟି ହାବୁଡ଼ିବାକୁ ପଡ଼ିଥିଲା । ୧୯୭୦ ମସିହାରେ ଓଡ଼ିଶା ବିଧାନସଭାଦ୍ୱାରା ତିନିଜଣ ବ୍ୟକ୍ତି ରାଜ୍ୟସଭାକୁ ନିର୍ବାଚିତ ହୋଇ ଯିବାର କଥା । ଓଡ଼ିଶା ବିଧାନସଭାରେ ସେତେବେଳେ କଂଗ୍ରେସର ଏକତ୍ରିଶ ଜଣ ସଭ୍ୟ ଥିଲେ । ବିଧାନସଭାର ମୋଟ ସଭ୍ୟସଂଖ୍ୟା ସେତେବେଳେ ୧୪୦ ଥାଏ । ତେଣୁ ରାଜ୍ୟସଭାକୁ ଜଣେ ସଭ୍ୟ ପଠାଇବାକୁ ହେଲେ ଯେତୋଟି ଭୋଟ ଆବଶ୍ୟକ, ତା'ଠାରୁ କଂଗ୍ରେସର ସଭ୍ୟସଂଖ୍ୟା କିଛି କମ୍ ହେଉଥାଏ । ଜଣେ କଂଗ୍ରେସ ପ୍ରାର୍ଥୀଙ୍କୁ ଜିତାଇବାକୁ ହେଲେ ଅନ୍ୟମାନଙ୍କର ସାହାଯ୍ୟ ନେବା ଏବଂ କିଛିଟା କୌଶଳ ମଧ୍ୟ ପ୍ରୟୋଗ କରିବା ଆମପକ୍ଷେ ଆବଶ୍ୟକ ହେଉଥାଏ । ମାର୍ଚ୍ଚ ପ୍ରଥମ ସପ୍ତାହରେ ନିଖିଳ ଭାରତ କଂଗ୍ରେସ କମିଟିର କେନ୍ଦ୍ର ଅଫିସରୁ ପ୍ରାର୍ଥୀ ମନୋନୟନ ସମ୍ପର୍କରେ ପ୍ରଦେଶ କଂଗ୍ରେସ କମିଟିକୁ ଚିଠି ଆସିଲା । ରାଜ୍ୟସଭାକୁ କଂଗ୍ରେସ ପ୍ରାର୍ଥୀ ମନୋନୟନ ସମ୍ବନ୍ଧରେ ବିଚାର ଆଲୋଚନା କରାଯାଇ ପାର୍ଥୀ ସ୍ଥିର କରିବାକୁ ମାର୍ଚ୍ଚ ୯ ଓ ୧୦ ତାରିଖରେ ମୋ ସଭାପତିତ୍ୱରେ ପ୍ରଦେଶ କଂଗ୍ରେସ କାର୍ଯ୍ୟକାରୀ କମିଟି ଓ ବିଧାନସଭା କଂଗ୍ରେସଦଳର ଗୋଟିଏ ମିଳିତ ବୈଠକ ବସିଲା । ବିଧାନସଭାରେ କଂଗ୍ରେସର ସଂଖ୍ୟାନ୍ୟୂନତା ହେତୁ କି କୌଶଳରେ ଓ କାହାକୁ ପ୍ରାର୍ଥୀ ଠିଆକରାଇଲେ ଆମ ଦଳ ଜିଣିବାର ସମ୍ଭାବନା ବେଶି ରହିବ, ସେ

ବିଷୟରେ ଆମ୍ଭମାନଙ୍କ ଭିତରେ ବହୁ ଆଲୋଚନା କରାଯାଇଥିଲା । ବିଜୁ ପଟ୍ଟନାୟକଙ୍କ ଭଳି ଜଣେ ପ୍ରଭାବଶାଳୀ ନେତାଙ୍କୁ ପ୍ରାର୍ଥୀରୂପେ ମନୋନୟନ କଲେ ଅନାୟାସରେ ଜିତାଯାଇପାରିବ ବୋଲି ସମସ୍ତେ ମତବ୍ୟକ୍ତ କରିଥିଲେ । ବିଜୁ ପଟ୍ଟନାୟକ ମଧ୍ୟ ଏଥିରେ ଆଗ୍ରହ ପ୍ରକାଶ କରିଥିଲେ । ସେହି ମିଳିତ ବୈଠକରେ ରାଜ୍ୟସଭା ପ୍ରାର୍ଥୀ ହେବାପାଇଁ ବିଜୁ ପଟ୍ଟନାୟକଙ୍କ ନାମ ସୁପାରିସ୍ କରାଯାଇଥିଲା । ଉକ୍ତ ସୁପାରିସ୍‌କୁ ମୁଁ ତାରବାର୍ତ୍ତାଦ୍ୱାରା କେନ୍ଦ୍ର ପାର୍ଲିଆମେଣ୍ଟାରୀ ବୋର୍ଡ଼କୁ ପଠାଇଦେଇଥିଲି । ମାର୍ଚ୍ଚ ମାସ ତେର ତାରିଖରେ କେନ୍ଦ୍ର ପାର୍ଲିଆମେଣ୍ଟାରୀ ବୋର୍ଡ଼ର ବୈଠକ ବସିଥିଲା; ମାତ୍ର ସେମାନେ ଆମ ସୁପାରିସ୍‌କୁ ଅନୁମୋଦନ ନକରି ଶ୍ରୀ ନାରାୟଣ ପାତ୍ରଙ୍କୁ ପ୍ରାର୍ଥୀରୂପେ ମନୋନୀତ କରି ତାଙ୍କ ନାମ ଘୋଷଣା କରିଦେଇଥିଲେ । ଏଥିରେ ଆମେ ସମସ୍ତେ ବିଶେଷ ବିସ୍ମିତ ହୋଇଥିଲୁଁ । ଶ୍ରୀ ନାରାୟଣ ପାତ୍ରଙ୍କ ନାମ ପ୍ରଦେଶ କଂଗ୍ରେସ ସୁପାରିସ୍ କରିନଥିଲା । ଅନ୍ତତଃପକ୍ଷେ ଶ୍ରୀ ନାରାୟଣ ପାତ୍ରଙ୍କ ବିଷୟରେ ପ୍ରଦେଶ କଂଗ୍ରେସ ଓ ବିଧାନସଭା କଂଗ୍ରେସଦଳକୁ ପଚାରିବାରଥିଲା; ମାତ୍ର ତାହା କରାଗଲାନାହିଁ । ଉପରୋକ୍ତ ଘଟଣାରେ ଆମ୍ଭମାନଙ୍କ ମଧ୍ୟରେ ଘୋର ଅସନ୍ତୋଷ ପ୍ରକାଶ ପାଇଲା । ଆମ୍ଭମାନଙ୍କ ଅସନ୍ତୋଷ କଂଗ୍ରେସ ସଭାପତି ଶ୍ରୀ ଜଗଜ୍ଜୀବନ ରାମଙ୍କୁ ଜଣାଇଦିଆଯାଇଥିଲା । ଆମର ଅଭିଯୋଗକୁ ସେ ହୃଦୟଙ୍ଗମ କରିପାରିଥିଲେ ଏବଂ ପ୍ରଧାନମନ୍ତ୍ରୀଙ୍କ ସହିତ ଏ ବିଷୟରେ କଥାବାର୍ତ୍ତା କରିବାପାଇଁ ଆମକୁ ପରାମର୍ଶ ଦେଇଥିଲେ । ବିଧାନସଭା କଂଗ୍ରେସଦଳର ଅସନ୍ତୋଷକୁ ଦଳପତି ବିନାୟକ ଆଚାର୍ଯ୍ୟ ପ୍ରଧାନମନ୍ତ୍ରୀଙ୍କୁ ଫୋନ୍ ଦ୍ୱାରା ଜଣାଇଦେଇଥିଲେ । ବିଜୁ ପଟ୍ଟନାୟକଙ୍କ ବ୍ୟତୀତ ଆଉ ଜଣେ କାହାକୁ ବାଛିଲେ ଚଳିବ ବୋଲି ପ୍ରଧାନମନ୍ତ୍ରୀ ଶ୍ରୀ ଆଚାର୍ଯ୍ୟଙ୍କୁ କହିଥିଲେ ।

## ଅସମ୍ଭାଳ ବିଜୁ-ଇନ୍ଦିରାଙ୍କ ଆତଙ୍କ

ଉପୁଜିଥିବା ପରିସ୍ଥିତି ସମ୍ବନ୍ଧରେ ଆଲୋଚନା କରିବାପାଇଁ ମାର୍ଚ୍ଚ ମାସ ଷୋଳ ତାରିଖରେ ବିଧାନସଭା କଂଗ୍ରେସଦଳର ବୈଠକ ଡକାଯାଇଥିଲା । ପ୍ରଦେଶ କଂଗ୍ରେସର ସଭାପତି ହିସାବରେ ମୁଁ ସେହି ବୈଠକରେ ଯୋଗଦେଇଥିଲି । ଶ୍ରୀ ବିଜୁ ପଟ୍ଟନାୟକ ଓ ଶ୍ରୀ ନାରାୟଣ ପାତ୍ର ଉଭୟଙ୍କୁ ଉକ୍ତ ବୈଠକକୁ ଡକାଯାଇଥିଲା । ଦୁଇଜଣଯାକ ସେଠାରେ ଉପସ୍ଥିତ ହୋଇଥିଲେ । ବିଜୁ ପଟ୍ଟନାୟକ ଓ ପ୍ରଦେଶ କଂଗ୍ରେସ ପ୍ରତି ଯେପରି ବ୍ୟବହାର କରାଗଲା, ସେଥିରେ ସଭ୍ୟମାନେ ଅତ୍ୟନ୍ତ ବିରକ୍ତି ପ୍ରକାଶ କରିଥିଲେ । ବୈଠକରେ ଉପସ୍ଥିତ ଥିବା ସମସ୍ତ ସଭ୍ୟ ପ୍ରାର୍ଥୀପତ୍ର ଦାଖଲ ନକରିବାପାଇଁ ଶ୍ରୀ ନାରାୟଣ ପାତ୍ରଙ୍କୁ ଅନୁରୋଧ କରିଥିଲେ ଏବଂ ତାହା ସତ୍ତ୍ୱେ ଯଦି ସେ ଛିଡ଼ା ହୁଅନ୍ତି ତା'ହେଲେ ସେ ସେମାନଙ୍କର ଭୋଟପାଇଁ ଆଶା ରଖିବେନାହିଁ ବୋଲି ତାଙ୍କୁ ପରିଷ୍କାରଭାବରେ କହିଦେଇଥିଲେ । ଉକ୍ତ ବୈଠକରେ ରାଜ୍ୟସଭା ପ୍ରାର୍ଥୀରୂପେ ଶ୍ରୀ ବିଜୁ ପଟ୍ଟନାୟକଙ୍କ ନାମ ପୁନର୍ବାର ସ୍ଥିର କରାଯାଇଥିଲା ଏବଂ ତାଙ୍କୁ ପ୍ରାର୍ଥୀପତ୍ର ଦାଖଲ କରିବାପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । ଓଡ଼ିଶା କଂଗ୍ରେସକୁ ପୁଣି ଥରେ ସଙ୍କଟାପନ୍ନ ଅବସ୍ଥାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଠିକ୍ ଛ'ବର୍ଷ ତଳେ ପ୍ରଦେଶ କଂଗ୍ରେସ ରାଜ୍ୟସଭା ପ୍ରାର୍ଥୀରୂପେ ଶ୍ରୀ ନାରାୟଣ ପାତ୍ରଙ୍କ ନାମ ସୁପାରିସ୍ କରିଥିଲେ । ସେତେବେଳେ କେନ୍ଦ୍ର ପାର୍ଲିଆମେଣ୍ଟାରୀ ବୋର୍ଡ଼ ଉକ୍ତ ସୁପାରିସ୍‌କୁ ଗ୍ରହଣ ନକରି ରାଜ୍ୟସଭାରୁ ଅବସର ନେଉଥିବା ଆଉ ଜଣେ ସଭ୍ୟ ଶ୍ରୀ ଧନଞ୍ଜୟ ମହାନ୍ତିଙ୍କୁ ପ୍ରାର୍ଥୀରୂପେ ବାଛିଥିଲେ । ରାଜ୍ୟସଭାକୁ ପଠାଇବାପାଇଁ ଶ୍ରୀ ନାରାୟଣ ପାତ୍ରଙ୍କୁ ଆଗରୁ ପ୍ରତିଶ୍ରୁତି ଦିଆଯାଇଥିଲା, ମାତ୍ର ପାର୍ଲିଆମେଣ୍ଟାରୀ ବୋର୍ଡ଼ର ନିଷ୍ପତ୍ତି ଅଡୁଆ ସୃଷ୍ଟି କରିଥିଲା । ଏକମାତ୍ର ଉପାୟ ଥିଲା ଶ୍ରୀ ଧନଞ୍ଜୟ ମହାନ୍ତି ଛିଡ଼ାହେବାକୁ ଯଦି ଅନିଚ୍ଛା ପ୍ରକାଶ କରନ୍ତି ତେବେ ଶ୍ରୀ ପାତ୍ରଙ୍କୁ ସୁଯୋଗ ମିଳିବ । ଶେଷରେ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଅନୁରୋଧ ରକ୍ଷାକରି ଶ୍ରୀ ଧନଞ୍ଜୟ ମହାନ୍ତି ପ୍ରାର୍ଥୀପତ୍ର ଦାଖଲ କରିନଥିଲେ । ତେଣୁ ଶ୍ରୀ ନାରାୟଣ ପାତ୍ରଙ୍କ ନାମ ରାଜ୍ୟ କଂଗ୍ରେସ ଆଉଥରେ ସୁପାରିସ୍ କରିବାମାତ୍ରକେ ପାର୍ଲିଆମେଣ୍ଟାରୀ ବୋର୍ଡ଼ ତାହା ଗ୍ରହଣ

କରିଥିଲେ । ଗତ କଥା ସ୍ମରଣ କରି ଶ୍ରୀ ନାରାୟଣ ପାତ୍ର ଅନ୍ତତଃ କୃତଜ୍ଞତା ସହକାରେ ବିଧାନସଭାର କଂଗ୍ରେସଦଳର ସଭ୍ୟମାନଙ୍କର ଅନୁରୋଧ ରକ୍ଷା କରିବେ ବୋଲି ଆଶା କରାଯାଉଥାଏ; ମାତ୍ର ତାହା ସମ୍ଭବ ହେଲାନାହିଁ । ଦିଲ୍ଲୀ ସହିତ ବାରମ୍ବାର ସମ୍ପର୍କ ସ୍ଥାପନ କରି ଜଣାଗଲା ଯେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ କାହିଁକି କେଜାଣି ବିଜୁ ପଟ୍ଟନାୟକ ପାର୍ଲିଆମେଣ୍ଟକୁ ଯିବାଟା ଚାହୁଁନଥିଲେ । ପୂର୍ବରୁ ଥରେ ପଣ୍ଡିତ ନେହେରୁଙ୍କ ଜୀବିତାବସ୍ଥାରେ ଓଡ଼ିଶାର ଗୋଟିଏ ଲୋକସଭା ଉପନିର୍ବାଚନରେ ବିଜୁ ପଟ୍ଟନାୟକଙ୍କର ପ୍ରାର୍ଥୀତ୍ୱକୁ ପାର୍ଲିଆମେଣ୍ଟାରୀ ବୋର୍ଡ଼ରେ ଶ୍ରୀମତୀ ଗାନ୍ଧୀ ବିରୋଧ କରିଥିବା କଥା ମୁଁ ଶୁଣିଥିଲି । ସେତେବେଳେ ଅବଶ୍ୟ ବିଜୁ ପଟ୍ଟନାୟକ ରାଜ୍ୟ ବିଧାନସଭାର ଜଣେ ସଭ୍ୟ ଥିଲେ । ସେତେବେଳେ ମୁଁ ଆହୁରି ମଧ୍ୟ ଶୁଣିଥିଲି ଯେ ଶ୍ରୀ ବିଜୁ ପଟ୍ଟନାୟକ ପାର୍ଲିଆମେଣ୍ଟକୁ ଗଲେ ସେଠାରେ ସଭ୍ୟମାନଙ୍କୁ ମତାଇ ନାନାପ୍ରକାର ସମସ୍ୟା ସୃଷ୍ଟି କରିପାରନ୍ତି ବୋଲି ଅନେକଙ୍କ ଆଶଙ୍କା ଥିଲା । ବର୍ତ୍ତମାନ ମଧ୍ୟ ଶ୍ରୀମତୀ ଗାନ୍ଧୀ ଭାବୁଥିଲେ ଯେ ପାର୍ଲିଆମେଣ୍ଟକୁ ସଭ୍ୟ ହୋଇ ଆସିଥିଲେ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ସମ୍ଭାଳିବା କାଠିକର ପାଠ ହେବ । ଶ୍ରୀ ନାରାୟଣ ପାତ୍ରଙ୍କର ଏକମାତ୍ର ଯୋଗ୍ୟତା ଥିଲା ଯେ ସେ ରାଷ୍ଟ୍ରପତି ନିର୍ବାଚନରେ ଶ୍ରୀଯୁକ୍ତ ଗିରିଙ୍କୁ ସମର୍ଥନ କରିଥିଲେ ଏବଂ ଶ୍ରୀ ବିଜୁ ପଟ୍ଟନାୟକଙ୍କ ପଥରୋଧ କରିବା ଉଦ୍ଦେଶ୍ୟରେ ନନ୍ଦିନୀ ଶତପଥୀ ତାଙ୍କୁ ପ୍ରାର୍ଥୀ କରିବାକୁ ଚାହୁଁଥିଲେ । ବିଜୁ ପଟ୍ଟନାୟକ ମଧ୍ୟ ଶ୍ରୀମତୀ ଗାନ୍ଧୀଙ୍କ ସହ ବହୁ ସମୟଧରି ଫୋନ୍‌ରେ କଥାବାର୍ତ୍ତା କରିଥିଲେ; ମାତ୍ର ସେ କୌଣସି ପ୍ରକାରେ ବିଜୁ ପଟ୍ଟନାୟକଙ୍କ ପ୍ରାର୍ଥୀତ୍ୱକୁ ପସନ୍ଦ କରିପାରୁନଥିଲେ । ଏହିଠାରେ ଶ୍ରୀ ବ୍ରଜମୋହନ ମହାନ୍ତି ମୋତେ ଦେଇଥିବା ଗୋଟିଏ ପ୍ରସ୍ତାବ କଥା ମୋର ମନେପଡ଼େ । ତାଙ୍କର ପ୍ରସ୍ତାବ ଥିଲା ଯଦି ରାଜ୍ୟସଭା ପାଇଁ ମୁଁ ପ୍ରାର୍ଥୀ ହୁଏ, ତା'ହେଲେ ଉପର ସ୍ତରରେ କାହାରି ଆପତ୍ତି ରହିବନାହିଁ ଓ ରାଜ୍ୟ କଂଗ୍ରେସର ସଙ୍କଟ ଦୂରହୋଇଯିବ । ମୁଁ ପ୍ରଦେଶ କଂଗ୍ରେସର ସଭାପତି ଥାଏ; ତେଣୁ ନିଜେ ସେକଥା ପ୍ରସ୍ତାବ ଦେବା ନିହାତି ଅସୁନ୍ଦର ହେବ ବୋଲି ଭାବିଥିଲି । ବିଜୁ ପଟ୍ଟନାୟକଙ୍କର ପାର୍ଲିଆମେଣ୍ଟକୁ ଯିବା ଇଚ୍ଛାଟା ଏତେ ପ୍ରବଳ ହୋଇଥିଲା ଯେ ସେ ଅବସ୍ଥାରେ ସେ ବିକଳ୍ପ ପ୍ରସ୍ତାବକୁ ବିଚାରକୁ ନେବା ଅବସ୍ଥାରେ ନଥିଲେ । ରାଜ୍ୟସଭାକୁ ମୁଁ ନିଜେ ଯିବାପାଇଁ ପ୍ରସ୍ତାବ ଦେଇ ଜିଦ୍‌ଧରିଥିଲେ କଥାଟା ମାଙ୍କଡ଼ ନିକିତି ଧରି ଚକୁଳି ଭାଗ କରିବା କଥା ଭଳି ହୋଇଥା'ନ୍ତା । ତେଣୁ ମୁଁ ସେଥିରେ ଆଗ୍ରହ ପ୍ରକାଶ କରିନଥିଲି । ଶ୍ରୀମତୀ ଗାନ୍ଧୀଙ୍କ ସହିତ କଥାବାର୍ତ୍ତା ହେବା ପରେ ବିଜୁପଟ୍ଟନାୟକ ଆଉ ପ୍ରାର୍ଥୀପତ୍ର ଦାଖଲ କରିନଥିଲେ । ସେ ଦିନଟି ଥିଲା ପ୍ରାର୍ଥୀପତ୍ର ଦାଖଲ କରିବାର ଶେଷଦିନ । ପରିସ୍ଥିତି ବଡ଼ ଗଣ୍ଡଗୋଳିଆ ହୋଇଯାଇଥିଲା । ଏ ହଇଚଇ ଭିତରେ କେତେକ କହିଥିଲେ, ଜଣେ ଆଦିବାସୀଙ୍କୁ ପ୍ରାର୍ଥୀ କରାଇଦେଲେ ସବୁ ଅଡୁଆ ତୁଟିଯିବ । ଆଦିବାସୀନେତା ଶ୍ରୀ ଟି. ସାଙ୍ଗାନ୍ନା ଏହି କଥାରେ ଉତ୍ସାହିତ ହୋଇ ପ୍ରାର୍ଥୀପତ୍ର ଦାଖଲ କରିଥିଲେ । ଦଳପତି ଶ୍ରୀ ବିନାୟକ ଆଚାର୍ଯ୍ୟଙ୍କ ନିର୍ଦ୍ଦେଶମତେ ଆଳି ନିର୍ବାଚନମଣ୍ଡଳୀର ବିଧାନସଭା ସଦସ୍ୟ ଶ୍ରୀ ଦିବାକର ନାଥ ଶର୍ମା ଶ୍ରୀ ସାଙ୍ଗାନ୍ନାଙ୍କର ପ୍ରସ୍ତାବକ ହୋଇଥିଲେ । ଏହାପରେ ପାର୍ଲିଆମେଣ୍ଟାରୀ ବୋର୍ଡ଼ରେ ଶ୍ରୀ ସାଙ୍ଗାନ୍ନାଙ୍କର ପ୍ରାର୍ଥୀତ୍ୱକୁ ଅନୁମୋଦନ ପାଇଁ ଆମର ଅନୁରୋଧ ମଧ୍ୟ ଉପେକ୍ଷିତ ହୋଇଥିଲା । ଶେଷରେ ଶ୍ରୀ ସାଙ୍ଗାନ୍ନାଙ୍କୁ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିବାପାଇଁ ଅନୁରୋଧ କରାଯାଇଥିଲା । ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିବାର ସମୟ ସେତେବେଳକୁ ଗଡ଼ିଯାଇଥିଲା । ଜଣେ ଆଦିବାସୀ ନେତା ଓ ପୂର୍ବତନ ମନ୍ତ୍ରୀ ଶ୍ରୀ ସାଙ୍ଗାନ୍ନାଙ୍କ ପ୍ରାର୍ଥୀତ୍ୱକୁ କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷ ଗ୍ରହଣ ନକରିବା କଥାରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଥିଲେ ଏବଂ ନନ୍ଦିନୀ ଦେବୀ ଦିଲ୍ଲୀରେ ଥାଇ ଚକ୍ରାନ୍ତ କରି ଏ କଥା କରାଇଦେଉନାହାନ୍ତି ବୋଲି ସମସ୍ତଙ୍କର ଧାରଣା ହୋଇଥିଲା । ନିର୍ବାଚନରୁ ଓହରିଯାଇଛନ୍ତି ବୋଲି ଗୋଟିଏ ବିବୃତି ଦେବାପାଇଁ ଶ୍ରୀ ସାଙ୍ଗାନ୍ନାଙ୍କୁ କୁହାଯାଉଥିଲା; ମାତ୍ର ସେ ତାହା କରିନଥିଲେ ।

# ବିବେକ ଅନୁସାରେ ଭୋଟ ଦାବୀ

ବର୍ତ୍ତମାନ ପ୍ରଶ୍ନ ହେଲା ଯେ କଂଗ୍ରେସପ୍ରାର୍ଥୀ ଶ୍ରୀ ନାରାୟଣ ପାତ୍ର ଭୋଟ ପାଇ କିପରି ନିର୍ବାଚିତ ହେବେ । ବିଜୁ ପଟ୍ଟନାୟକ ଆଉ ସେ ଦିଗରେ ଉତ୍ସାହ ପ୍ରଦର୍ଶନ କରିନଥିଲେ । ପ୍ରଦେଶ କଂଗ୍ରେସ ସଭାପତି ହିସାବରେ ମୁଁ ବିଧାନସଭା କଂଗ୍ରେସଦଳର ନେତା ଶ୍ରୀ ଆଚାର୍ଯ୍ୟଙ୍କ ପାଖକୁ ପାର୍ଲିଆମେଣ୍ଟାରୀ ବୋର୍ଡ଼ର ନିର୍ଦ୍ଦେଶ ଜଣାଇଦେଇଥିଲି । ସେଥିରେ ଶ୍ରୀ ନାରାୟଣ ପାତ୍ରଙ୍କୁ ଜୟଯୁକ୍ତ କରାଇବାକୁ ନିର୍ଦ୍ଦେଶ ଥିଲା ଏବଂ ସେହି ଅନୁସାରେ କାର୍ଯ୍ୟ କରିବାକୁ ପ୍ରଦେଶ କଂଗ୍ରେସ ସଭାପତି ହିସାବରେ ମୁଁ ପରାମର୍ଶ ଦେଇଥିଲି । ସେହି ମୁତାବକ ଶ୍ରୀ ଆଚାର୍ଯ୍ୟ ଦଳର ଗୋଟିଏ ବୈଠକ ଡକାଇଥିଲେ । ଉକ୍ତ ବୈଠକରେ ପାର୍ଲିଆମେଣ୍ଟାରୀ ବୋର୍ଡ଼ର ନିର୍ଦ୍ଦେଶ କଥା ପଢ଼ିଥିଲା । ସଭ୍ୟମାନେ ଶ୍ରୀ ପାତ୍ରଙ୍କୁ ସମର୍ଥନ କରିବା କଥାଟାକୁ ଆଦୌ ଗ୍ରହଣ କରିପାରିନଥିଲେ । ମୁଁ କିମ୍ବା ବିଜୁବାବୁ କେହି ଉକ୍ତ ବୈଠକରେ ଯୋଗ ଦେଇନଥିଲୁ । ବିବେକ ଅନୁସାରେ ଭୋଟ ଦେବାର ଅଧିକାର ସଭ୍ୟମାନେ ଦାବି କରିଥିଲେ । ରାଜ୍ୟସଭା ଭୋଟରେ ଆଦୌ ଅଂଶଗ୍ରହଣ ନକରିବା କଥା ମଧ କେତେକ ଉଠାଇଥିଲେ । ଓଡ଼ିଶାରେ ରାଜ୍ୟସଭା ଭୋଟକଥା ବୁଝିବାପାଇଁ ନନ୍ଦିନୀ ଶତପଥୀ ଓ ଜଗନ୍ନାଥ ରାଓ ଦିଲ୍ଲୀରୁ ଭୁବନେଶ୍ବରରେ ଆସି ପହଞ୍ଚିଥିଲେ । ନନ୍ଦିନୀ ଶତପଥୀଙ୍କୁ ବିଧାନସଭା କଂଗ୍ରେସଦଳର ବୈଠକକୁ ଡକାଯାଇଥିଲା; ମାତ୍ର ସେ ଭୟକରି ସେଠାକୁ ଆସିନଥିଲେ । ଶ୍ରୀ ଜଗନ୍ନାଥ ରାଓ ଉକ୍ତ ବୈଠକରେ ଯୋଗ ଦେଇଥିଲେ । ଅବସ୍ଥା ଏ ପ୍ରକାର ହେଲା ଯେ ସେଥିରେ କଂଗ୍ରେସପ୍ରାର୍ଥୀ ଶ୍ରୀ ପାତ୍ରଙ୍କୁ ଭୋଟ ଦେବାକୁ 'ହ୍ୱିପ୍' ଦେବା ସମ୍ଭବ ହୋଇନଥିଲା । କେବଳ ଶ୍ରୀ ପାତ୍ରଙ୍କୁ ସମର୍ଥନ କରିବାପାଇଁ ଶ୍ରୀ ଆଚାର୍ଯ୍ୟ ଓ ଶ୍ରୀ ରାଓ ସଭ୍ୟମାନଙ୍କୁ ନିବେଦନ କରିଥିଲେ । ନନ୍ଦିନୀ ଭୁବନେଶ୍ୱରରେ ଥାଇ ସୁଦ୍ଧା ବିଧାନସଭାର ସଭ୍ୟମାନଙ୍କୁ ଶ୍ରୀ ପାତ୍ରଙ୍କୁ ଭୋଟ ଦେବା କଥା କହିବାପାଇଁ ସାହସ କରିନଥିଲେ । ସେ କମ୍ୟୁନିଷ୍ଟ ଓ ସୋସାଲିଷ୍ଟ ଦଳର ସଭ୍ୟମାନଙ୍କର ସମର୍ଥନ ଲୋଡ଼ିଥିଲେ । ବିଧାନସଭାର କଂଗ୍ରେସ ସଭ୍ୟ ସ୍ୱର୍ଗତ ଦିବାକର ପଟ୍ଟନାୟକ ନନ୍ଦିନୀଙ୍କ କାର୍ଯ୍ୟକୁ ସମାଲୋଚନା କରି ଖବରକାଗଜରେ ଗୋଟିଏ ବିବୃତି ଦେଇଥିଲେ । ନନ୍ଦିନୀ ଦେବୀ ତା' ପରେ ପରେ ଭୁବନେଶ୍ୱରରେ କହିବାକୁ ଲାଗିଲେ ଯେ ବିଜୁ ପଟ୍ଟନାୟକଙ୍କ ଉପରେ ଶ୍ରୀମତୀ ଗାନ୍ଧୀ ଏକାବେଳକେ ଅସନ୍ତୁଷ୍ଟ; ତେଣୁ ତାଙ୍କ ନେତୃତ୍ୱ ଓଡ଼ିଶାରେ ଚଳିବନାହିଁ । ଏ କଥା ଶୁଣି କଂଗ୍ରେସ ସଭ୍ୟମାନେ ଆହୁରି ଉତ୍କ୍ଷିପ୍ତ ହୋଇଥିଲେ ଏବଂ ତାହା ଶ୍ରୀ ନାରାୟଣ ପାତ୍ରଙ୍କ ବିରୁଦ୍ଧରେ ଯାଇଥିଲା ।

ଏ ପ୍ରକାରର ଗଣ୍ଡଗୋଳିଆ ପରିସ୍ଥିତିର ପୂର୍ଣ୍ଣ ସୁଯୋଗ ନେଇଥିଲେ ରାଜ୍ୟସଭା ପାଇଁ ସଙ୍ଗଠନ କଂଗ୍ରେସପ୍ରାର୍ଥୀ ଶ୍ରୀ ବିନୟ କୁମାର ମହାନ୍ତି । ପୂର୍ବରୁ ସେ ଓଡ଼ିଶା କଂଗ୍ରେସ ପକ୍ଷରୁ ଜଣେ ରାଜ୍ୟସଭା ସଦସ୍ୟ ଥିଲେ; ମାତ୍ର ପ୍ରାର୍ଥୀ ହେବାର ଅଳ୍ପ କେତେଦିନ ପୂର୍ବରୁ ସେ ସଂଗଠନ କଂଗ୍ରେସକୁ ଯାଇଥିଲେ । ଶ୍ରୀ ସାଙ୍ଗାନାଙ୍କୁ ଯେଉଁ କେତେଜଣ ଭୋଟ ଦେଇଥିଲେ, ସେମାନେ ତାଙ୍କର ଦ୍ୱିତୀୟ ଭୋଟଟି ଶ୍ରୀ ବିନୟ ମହାନ୍ତିଙ୍କୁ ଦେଇଥିଲେ । ଶ୍ରୀ ମହାନ୍ତି ମଧ କେତେକ କୌଶଳ ପ୍ରୟୋଗ କରି ଆମ କଂଗ୍ରେସ ସଭ୍ୟମାନଙ୍କ ମଧ୍ୟରୁ କିଛି ସମର୍ଥକ ଯୋଗାଡ଼ କରିପାରିଥିଲେ । ଆମ୍ଭମାନଙ୍କ ସହିତ ତାଙ୍କର ବନ୍ଧୁତା ଥିବାରୁ କଂଗ୍ରେସ ସଭ୍ୟଙ୍କ ମଧ୍ୟରୁ କିଛି ସମର୍ଥନ ଯୋଗାଡ଼ କରିବାରେ ତାଙ୍କର ବିଶେଷ ଅସୁବିଧା ହୋଇନଥିଲା । ଭୋଟଗଣତିରେ ଶ୍ରୀ ନାରାୟଣ ପାତ୍ର ହାରିଯାଇଥିଲେ । ଶ୍ରୀ ବିନୟ କୁମାର ମହାନ୍ତିଙ୍କ ସହିତ ଜନ-କଂଗ୍ରେସ ପ୍ରାର୍ଥୀ ଶ୍ରୀ ସୂରଜମଲ୍ଲ ସାହା ଓ ସ୍ୱତନ୍ତ୍ର ପ୍ରାର୍ଥୀ ଶ୍ରୀ ବୀରକିଶୋର ଦେଓ ମଧ ରାଜ୍ୟସଭାକୁ ନିର୍ବାଚିତ ହୋଇଥିଲେ । ବିନୟ ମହାନ୍ତିଙ୍କ ବିଜୟ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେଇଥିଲା । କଂଗ୍ରେସର ଉଚ୍ଚକର୍ତ୍ତୃପକ୍ଷଙ୍କର ଧାରଣା ହୋଇଥିଲା ଯେ ନାରାୟଣ ପାତ୍ରଙ୍କୁ ହରାଇ ଶ୍ରୀ ବିନୟ ମହାନ୍ତିଙ୍କୁ ଜିତାଇବାରେ ବିଜୁ ପଟ୍ଟନାୟକ ସାହାଯ୍ୟ କରିଥିଲେ । ତେଣୁ ନାରାୟଣ ପାତ୍ରଙ୍କର ପରାଜୟର କାରଣ

ସମ୍ବନ୍ଧରେ ବିଧାନସଭା କଂଗ୍ରେସଦଳର ଦଳପତି ଓ ପ୍ରଦେଶ କଂଗ୍ରେସଦଳର ଦଳପତି ଓ ପ୍ରଦେଶ କମିଟିଠାରୁ କେନ୍ଦ୍ର ପାର୍ଲିଆମେଣ୍ଟାରୀ ବୋର୍ଡ଼ କୈଫିୟତ୍ ମାଗିଥିଲେ । ରାଜ୍ୟସଭା ନିର୍ବାଚନ ସମୟରେ ଶ୍ରୀ ବିଜୁ ପଟ୍ଟନାୟକଙ୍କର ଭୂମିକା କ'ଣ ଥିଲା, ସେ ବିଷୟରେ ମଧ୍ୟ ରିପୋର୍ଟ ମଗାଯାଇଥିଲା । ଏପ୍ରିଲ୍ ମାସ ଦଶ ତାରିଖରେ ବସୁଥିବା ପାର୍ଲିଆମେଣ୍ଟାରୀ ବୋର୍ଡ଼ ବୈଠକରେ ଆମର ଉତ୍ତର ଉପରେ ଆଲୋଚନା ହେବ ବୋଲି କୁହାଯାଇଥିଲା ।

ଏହି ପରିପ୍ରେକ୍ଷୀରେ ଆମ୍ଭେମାନେ ସ୍ଥିରକରିଥିଲୁ ଯେ ବ୍ୟକ୍ତିଗତଭାବରେ ପ୍ରଦେଶ କଂଗ୍ରେସ ସଭାପତି ହିସାବରେ ମୁଁ କିମ୍ବା ବିଧାନସଭା କଂଗ୍ରେସଦଳର ଦଳପତି ଶ୍ରୀ ଆଚାର୍ଯ୍ୟ ରିପୋର୍ଟ ନଦେଇ ବିଧାନସଭା କଂଗ୍ରେସଦଳଦ୍ୱାରା ଅନୁମୋଦିତ ଗୋଟିଏ ରିପୋର୍ଟ କେନ୍ଦ୍ର ପାର୍ଲିଆମେଣ୍ଟାରୀ ବୋର୍ଡ଼କୁ ଯିବା ଆବଶ୍ୟକ । ତେଣୁ ଏପ୍ରିଲ୍ ସାତ ତାରିଖକୁ ବିଧାନସଭା କଂଗ୍ରେସଦଳର ବୈଠକ ଡକାଯାଇଥିଲା । କିନ୍ତୁ ଆଶ୍ଚର୍ଯ୍ୟର କଥା ହୋଇଥିଲା ଯେ ଶ୍ରୀ ଆଚାର୍ଯ୍ୟ ଦଳ ବୈଠକ ବସିବା କଥା ଜାଣି ମଧ୍ୟ ବୈଠକରେ ଯୋଗ ନ ଦେଇ ଦିଲ୍ଲୀ ଚାଲିଯାଇଥିଲେ । ତେଣୁ ଉପଦଳପତି ଶ୍ରୀ ଗଙ୍ଗାଧର ମହାପାତ୍ରଙ୍କ ସଭାପତିତ୍ୱରେ ଦଳର ବୈଠକ ବସି ସଭ୍ୟମାନଙ୍କର ଭୂମିକା ଓ ମତାମତ ନେଇ ରାଜ୍ୟସଭା ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀଙ୍କର ପରାଜୟ ସମ୍ବନ୍ଧରେ ରିପୋର୍ଟ ପ୍ରସ୍ତୁତ କରାଯାଇଥିଲା । ସେହି ରିପୋର୍ଟରେ ପ୍ରାର୍ଥୀ ମନୋନୟନରେ ଓଡ଼ିଶା କଂଗ୍ରେସ ପ୍ରତି ଅନ୍ୟାୟ କରାଯାଇଥିବା ଘଟଣାଠାରୁ ଆରମ୍ଭକରି ଓଡ଼ିଶା କଂଗ୍ରେସ ନେତାମାନଙ୍କ ବିରୁଦ୍ଧରେ ନନ୍ଦିନୀ ଶତପଥୀଙ୍କର ଚକ୍ରାନ୍ତ କଥା ବର୍ଣ୍ଣନା କରାଯାଇଥିଲା । ରାଜ୍ୟସଭା ନିର୍ବାଚନରେ କଂଗ୍ରେସର ବିପର୍ଯ୍ୟୟ ପାଇଁ ନନ୍ଦିନୀ ଦେବୀଙ୍କୁ ପୂର୍ଣ୍ଣଭାବରେ ଦାୟୀ କରାଯାଇଥିଲା । ଦିଲ୍ଲୀରେ ରହି ଓଡ଼ିଶା ନେତାମାନଙ୍କ ବିରୁଦ୍ଧରେ ଚୁଗୁଲି କରି ସେ କଂଗ୍ରେସ ଭିତରେ ବିଭେଦ ସୃଷ୍ଟିକରି ଓଡ଼ିଶା କଂଗ୍ରେସକୁ ବଦନାମ କରୁଛନ୍ତି ବୋଲି ଉକ୍ତ ରିପୋର୍ଟରେ କୁହାଯାଇଥିଲା । ବିଧାନସଭାର କଂଗ୍ରେସଦଳର ଏହି ରିପୋର୍ଟଟି ଉପଦଳପତି ଶ୍ରୀ ଗଙ୍ଗାଧର ମହାପାତ୍ରଙ୍କର ସ୍ୱାକ୍ଷରରେ ପ୍ରଦେଶ କଂଗ୍ରେସ ସଭାପତି ହିସାବରେ ମୋ ହାତରେ ପାର୍ଲିଆମେଣ୍ଟାରୀ ବୋର୍ଡ଼କୁ ପଠାଯାଇଥିଲା । ରିପୋର୍ଟର ଶେଷାଂଶରେ ଲେଖାଥିଲା, "The Orissa Congress has been made the victim of circumstances engineered by person or persons having no influence in the State but only access to the High Command for whispering against the State Congress leaders. For nothing the State Congress has been humiliated and its leaders have been made to suffer humiliation. Hence resentment in the party, which accounts for all that happened and now happening."

## ଏକ ନମ୍ବର ସଫ୍‌ଦରଜଙ୍ଗ ରୋଡ଼

ଏ କଥା କହିଲେ ଅପ୍ରାସଙ୍ଗିକ ହେବନାହିଁ ଯେ ପଣ୍ଡିତ ନେହେରୁଙ୍କ ଜୀବନକାଳ ମଧ୍ୟରେ ବି ତାଙ୍କ ସରକାରୀ ବାସଭବନ ତିନ୍‌ମୂର୍ତ୍ତି ଭବନକୁ ରାଜନୈତିକ ବ୍ୟକ୍ତି ଓ ଜନସାଧାରଣ ଏକ ପବିତ୍ର ସୌଧରୂପେ ସମ୍ମାନ କରୁଥିଲେ । ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ସରକାରୀ ବାସଭବନ ଏକ ନମ୍ବର ସଫ୍‌ଦରଜଙ୍ଗ ରୋଡ଼ ସେଭଳି ପବିତ୍ରତାର ପାଖ ମାଡ଼ିନଥିଲେ ମଧ୍ୟ ରାଜନୈତିକ ହେରଫେରର ଦୁର୍ଗରୂପେ ସ୍ୱର୍ଗତ ନେହେରୁଙ୍କ ବାସଭବନଠାରୁ ଅଧିକ ପ୍ରସିଦ୍ଧି ଲାଭକରିପାରିଲା । ଏକ ନମ୍ବର ସଫ୍‌ଦରଜଙ୍ଗ ତୁଳନାରେ କେନ୍ଦ୍ର ସେକ୍ରେଟେରିଏଟ୍‌ରେ ପ୍ରଧାନମନ୍ତ୍ରୀଙ୍କ ସରକାରୀ ଅଫିସ ଥିବା ସାଉଥ୍ ବ୍ଲକ୍, କଂଗ୍ରେସ୍-ହାଇକମାଣ୍ଡର କାର୍ଯ୍ୟାଳୟ, ଏ.ଆଇ.ସି.ସି. ଅଫିସ୍, ଏପରିକି ପାର୍ଲିଆମେଣ୍ଟର ପ୍ରାଧାନ୍ୟ ମଧ୍ୟ ଦେଶର ରାଜନୈତିକ ପ୍ରବାହରେ ବହୁତ ପଛକୁ ପଡ଼ିଯାଇଥିବାଭଳି ମନେହେଲା । ଏପ୍ରିଲ୍ ମାସ ଦଶ ତାରିଖକୁ

କଂଗ୍ରେସ ପାର୍ଲିଆମେଣ୍ଟାରୀ ବୋର୍ଡ଼ର ବୈଠକ ସେହି ଏକ ନମ୍ବର ସଦ୍‌ଦରଜଙ୍ଗ ରୋଡ଼ରେ ବସିବାକୁ ସ୍ଥିରକରାଯାଇ ଡକାଯାଇଥାଏ । ପୁନଶ୍ଚ ପନ୍ଦର ତାରିଖ ଦିନ ସେହିଠାରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ଗୋଟିଏ ବୈଠକ ଡକାଯାଇଥାଏ । ପାର୍ଲିଆମେଣ୍ଟାରୀ ବୋର୍ଡ଼ ବୈଠକରେ ସ୍ୱତନ୍ତ୍ରଭାବରେ ଓଡ଼ିଶା ରାଜ୍ୟସଭା ନିର୍ବାଚନ ବିଷୟ ପଡ଼ିବାର ଥାଏ । ପ୍ରଦେଶ କଂଗ୍ରେସଦଳର ସଭାପତି ହିସାବରେ ମୋତେ ଓ ବିଧାନସଭା କଂଗ୍ରେସଦଳର ଦଳପତିରୂପେ ଶ୍ରୀ ବିନାୟକ ଆଚାର୍ଯ୍ୟଙ୍କୁ ପାର୍ଲିଆମେଣ୍ଟାରୀ ବୋର୍ଡ଼ ବୈଠକକୁ ଡକାଯାଇଥାଏ । ବିଧାନସଭା କଂଗ୍ରେସଦଳର ଦଳପତି ହିସାବରେ ଦଳପକ୍ଷରୁ ପ୍ରସ୍ତୁତ କରାଯାଇଥିବା ରିପୋର୍ଟ ପାର୍ଲିଆମେଣ୍ଟାରୀ ବୋର୍ଡ଼ ବୈଠକରେ ଶ୍ରୀ ଆଚାର୍ଯ୍ୟ ଉପସ୍ଥାପିତ କରିବା ବିଧେୟ । ମାତ୍ର ବିଧାନସଭା କଂଗ୍ରେସଦଳର ଉପଦଳପତି ଶ୍ରୀ ଗଙ୍ଗାଧର ମହାପାତ୍ରଙ୍କ ଅଧ୍ୟକ୍ଷତାରେ ବୈଠକ ବସି ଯେଉଁ ରିପୋର୍ଟ ପ୍ରସ୍ତୁତ କରାଯାଇଥିଲା, ତାକୁ ବୋର୍ଡ଼ ବୈଠକରେ ଉପସ୍ଥାପିତ କରିବାକୁ ଶ୍ରୀ ଆଚାର୍ଯ୍ୟ ରାଜି ହୋଇନଥିଲେ । ଦିଲ୍ଲୀରେ ନନ୍ଦିନୀ ଶତପଥୀଙ୍କ ପରାମର୍ଶକ୍ରମେ ସେ ଗୋଟିଏ ରିପୋର୍ଟ ପ୍ରସ୍ତୁତ କରିଥିଲେ । ପାର୍ଲିଆମେଣ୍ଟାରୀ ବୋର୍ଡ଼ ବୈଠକରେ ଯୋଗଦେବାପାଇଁ ମୁଁ ଯେତେବେଳେ ପ୍ରଧାନମନ୍ତ୍ରୀଙ୍କ ବାସଭବନରେ ପହଞ୍ଚେ, ସେଠାରେ ପ୍ରଧାନମନ୍ତ୍ରୀଙ୍କ ବାସଭବନସ୍ଥିତ ଅଫିସ୍ ଗୃହରେ ନନ୍ଦିନୀ ଶତପଥୀ ଓ ବିନାୟକ ଆଚାର୍ଯ୍ୟ ଦୁହେଁ ତାଙ୍କଦ୍ୱାରା ପ୍ରସ୍ତୁତ କରାଯାଇଥିବା ରିପୋର୍ଟଟି ଟାଇପ୍ କରୁଥିବାର ଦେଖିଥିଲି । ମୋତେ ଦେଖି ସେମାନେ ଟିକିଏ ଅପ୍ରତିଭ ହୋଇପଡ଼ିଥିଲେ । ତା'ପରେ ପାର୍ଲିଆମେଣ୍ଟାରୀ ବୋର୍ଡ଼ର ବୈଠକ ବସିଲା । ଉକ୍ତ ବୈଠକରେ ମୁଁ ଅଭିଯୋଗ କରିଥିଲି ଯେ, ପ୍ରଧାନମନ୍ତ୍ରୀଙ୍କର ବାସଭବନ ଯଦି ଓଡ଼ିଶାର କଂଗ୍ରେସ ନେତାମାନଙ୍କ ବିରୁଦ୍ଧରେ ନନ୍ଦିନୀ ଶତପଥୀ ଚଳାଇବାକୁ ଚକ୍ରାନ୍ତର କେନ୍ଦ୍ର ହୁଏ, ତା'ହେଲେ ଆମ୍ଭେମାନେ ଆଉ କେଉଁଠାରୁ ନ୍ୟାୟ ପାଇବାର ଆଶା ରଖିବୁ ? ଉଦାହରଣସ୍ୱରୂପ, ନନ୍ଦିନୀ ଶତପଥୀ ଓ ବିନାୟକ-ବାବୁଙ୍କଦ୍ୱାରା ପ୍ରସ୍ତୁତ ରିପୋର୍ଟ ପ୍ରଧାନମନ୍ତ୍ରୀଙ୍କ ଅଫିସ୍‌ରେ ଟାଇପ୍ ହେବା କଥା ମୁଁ ଉତ୍‌ଥାପନ କରିଥିଲି । ବିଧାନସଭା କଂଗ୍ରେସଦଳର ରାଜ୍ୟସଭା ନିର୍ବାଚନ ସମ୍ବନ୍ଧୀୟ ରିପୋର୍ଟ ମୁଁ ପାର୍ଲିଆମେଣ୍ଟାରୀ ବୋର୍ଡ଼ ବୈଠକରେ ଉପସ୍ଥାପିତ କରିବା ନିମନ୍ତେ ଯେଉଁ ପ୍ରସ୍ତାବଟି ହୋଇଥିଲା, ସେ ପ୍ରସ୍ତାବସହ ରିପୋର୍ଟଟି ମୁଁ ଉକ୍ତ ବୈଠକରେ ଉପସ୍ଥାପିତ କରିଥିଲି । ବିନାୟକ ଆଚାର୍ଯ୍ୟଙ୍କ ରିପୋର୍ଟଟିକୁ ତାଙ୍କର ବ୍ୟକ୍ତିଗତ ରିପୋର୍ଟରୂପେ ଗ୍ରହଣ କରାଯାଉ ବୋଲି ମୁଁ ବୋର୍ଡ଼ ବୈଠକରେ ଦାବି କରିଥିଲି । ପ୍ରାର୍ଥୀ ମନୋନୟନଠାରୁ ଆରମ୍ଭକରି ଭୋଟ ଗ୍ରହଣ ପର୍ଯ୍ୟନ୍ତ ଯାହାସବୁ ଘଟିଥିଲା, ସେ ବିଷୟରେ ମୁଁ ବିଶଦଭାବରେ ବୋର୍ଡ଼ ବୈଠକରେ ବୁଝାଇ କହିଥିଲି । ଶ୍ରୀ ଆଚାର୍ଯ୍ୟ କହିଲାବେଳେ ଯେଉଁଠାରେ ଭୁଲ୍ କଥା କହୁଥାଆନ୍ତି; ମୁଁ ତା'ର ପ୍ରତିବାଦ କରି ପ୍ରକୃତ ତଥ୍ୟ ପ୍ରକାଶ କରିଥିଲି । କଂଗ୍ରେସ ସଭାପତି ନିଜେ ଓଡ଼ିଶା ଆସି ଏ ସମ୍ବନ୍ଧରେ ଅନୁସନ୍ଧାନ ତଥା ଅନୁଶୀଳନ କଲେ ପ୍ରକୃତ ଘଟଣା ହୃଦୟଙ୍ଗମ କରିପାରିବେ ବୋଲି ମୁଁ ତାଙ୍କୁ ଓଡ଼ିଶା ଆସିବାକୁ ଅନୁରୋଧ କରିଥିଲି । ଆମ ବିଧାନସଭା କଂଗ୍ରେସଦଳଦ୍ୱାରା ପ୍ରସ୍ତୁତ କରାଯାଇଥିବା ରିପୋର୍ଟର ନକଲ ମୁଁ କଂଗ୍ରେସ କାର୍ଯ୍ୟକାରୀ କମିଟିର ସମସ୍ତ ସଦସ୍ୟମାନଙ୍କୁ ଦେଇଥିଲି । ପରଦିନ ମୁଁ ନିଖିଳ ଭାରତ କଂଗ୍ରେସ କମିଟି ଅଫିସ୍‌କୁ ଯାଇଥିଲି । ସେତେବେଳେ ଶ୍ରୀ ହୈମବତୀନନ୍ଦନ ବହୁଗୁଣା କଂଗ୍ରେସର ସାଧାରଣ ସମ୍ପାଦକ ଥିଲେ । ଶ୍ରୀ ବିନାୟକ ଆଚାର୍ଯ୍ୟ କିପରି ସେମାନଙ୍କ ପାଖରେ ଗୋଟିଏ କଥା କହି ପରେ ତା'ର ଓଲଟା କଥା କହିଥା'ନ୍ତି, ତା'ର କେତେକ ସୂଚନା ଶ୍ରୀ ବହୁଗୁଣା ମୋତେ ଦର୍ଶାଇଥିଲେ । ରାଜ୍ୟସଭା ନିର୍ବାଚନବେଳେ ବିଜୁ ପଟ୍ଟନାୟକ ପ୍ରାର୍ଥୀ ହେବା କଥା ଦଳ ଚାହୁଁଛି ବୋଲି କହି ସେ ଗୋଟିଏ ତାରବାର୍ତ୍ତା ନିଖିଳ ଭାରତ କଂଗ୍ରେସ କମିଟି ଅଫିସ୍‌କୁ ପଠାଇଥିଲେ । ପୁନଶ୍ଚ ସେ ଆଉ ଗୋଟିଏ ତାରବାର୍ତ୍ତାରେ କହିଥିଲେ ଯେ ପୂର୍ବର ତାରବାର୍ତ୍ତାଟି ସେ କେତେକଙ୍କ ଚାପରେ ପଡ଼ି ପଠାଇଦେଇଥିଲେ; ମାତ୍ର ତାହା ପ୍ରକୃତ କଥା ନୁହେଁ । ବିନାୟକବାବୁ ଫୋନ୍‌ରେ ଉଚ୍ଚକର୍ତ୍ତୃପକ୍ଷଙ୍କୁ ଗୋଟିଏ ସମୟରେ ଗୋଟିଏ କଥା କହି ପରେ

ପୁଣି ଫୋନ୍ କରି ତା'ର ବିପରୀତ କଥା କହୁଥିଲେ । ତାଙ୍କୁ କୁଆଡ଼େ ଜୋରଜବରଦସ୍ତ କରି ପୂର୍ବରୁ ଫୋନ୍‌ରେ କେତେକ ଲୋକ ସେ କଥା କହିବାକୁ ବାଧକରିଥିଲେ ବୋଲି ସେ କୈଫିୟତ୍ ଦେଉଥିଲେ ।

ଓଡ଼ିଶାରେ ରାଜ୍ୟସଭା ନିର୍ବାଚନରେ ତାଙ୍କଦ୍ୱାରା ମନୋନୀତ ପ୍ରାର୍ଥୀ ଯେପରିଭାବରେ ପରାଜୟ ବରଣ କଲେ, ତାହା ଶ୍ରୀମତୀ ଇନ୍ଦିରା ଗାନ୍ଧୀ ତାଙ୍କ ନିଜକୁ ପ୍ରତ୍ୟକ୍ଷ ଅପମାନ ବୋଲି ଧରିନେଇଥିଲେ । ପାର୍ଲିଆମେଣ୍ଟାରୀ ବୋର୍ଡ଼ରେ ଏ ବିଷୟଟି ଆଲୋଚନା ହେଉଥିବା ସମୟରେ ସେ ଯେପରି ଭାବରେ ମତ ବ୍ୟକ୍ତ କରୁଥାଆନ୍ତି, ସେଥିରୁ ତା'ର ସ୍ପଷ୍ଟ ସୂଚନା ମିଳିଥିଲା । ଆଲୋଚନାବେଳେ ସେ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇଯାଉଥିବା ପରି ମନେହେଉଥାଏ । ମୁଁ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ସମର୍ଥନ କରୁଥିବାରୁ ତାଙ୍କର ମୋ ପ୍ରତି ମଧ୍ୟ ବିରକ୍ତିଭାବ ଥାଏ । ସେଥର ଯେତେବେଳେ ମୁଁ ତାଙ୍କୁ ତାଙ୍କ ଅଫିସ୍‌ରେ ଦେଖାକରେ, ସେତେବେଳେ ସେ ବିଜୁ ପଟ୍ଟନାୟକଙ୍କ ଉପରେ ଅତ୍ୟନ୍ତ କ୍ରୋଧ ପ୍ରକାଶ କରି ମୋତେ କହିଥିଲେ, "What does Biju Pattanaik think of me ? Most unreliable. He should know, if I like I can crush him. Are all Pattanaiks in Orissa like this ?" ଦିଲ୍ଲୀରେ ରାଜ୍ୟସଭା ସଦସ୍ୟ ଶ୍ରୀ ଭବାନୀଚରଣ ପଟ୍ଟନାୟକଙ୍କ ରାଜନୈତିକ ଗତିବିଧି ସମ୍ବନ୍ଧରେ ମଧ୍ୟ ସେତେବେଳେ ଶ୍ରୀମତୀ ଗାନ୍ଧୀ ସନ୍ତୁଷ୍ଟ ନଥିଲେ । ବୋଧହୁଏ ଏହି ଦୁହିଁଙ୍କୁହିଁ ଲକ୍ଷ୍ୟ କରି ଓଡ଼ିଶାରେ ପଟ୍ଟନାୟକମାନଙ୍କ ସମ୍ବନ୍ଧରେ ସେ ଏପ୍ରକାର ମତ ବ୍ୟକ୍ତ କରିଥିଲେ । ମୁଁ ଏ କଥାରେ କିଛିକ୍ଷଣ ନୀରବ ହୋଇଯାଇ ଟିକିଏ ପରେ କହିଥିଲି ଯେ, ପ୍ରଧାନମନ୍ତ୍ରୀ ଇଚ୍ଛା କଲେ ଯେକୌଣସି ଲୋକକୁ ପେଷିଦେଇ ତଳିତଳାନ୍ତ କରିଦେଇପାରନ୍ତି; ମାତ୍ର ଶୁଣାକଥାରେ ବିଶ୍ୱାସ କରି ପ୍ରଧାନମନ୍ତ୍ରୀଙ୍କ ଭଳି ଜଣେ ପଦସ୍ଥ ବ୍ୟକ୍ତି ଯଦି କ୍ରୋଧାନ୍ୱିତ ହୁଅନ୍ତି, ତା'ହେଲେ ଆମ୍ଭମାନଙ୍କ ପକ୍ଷରେ ଚଳିବା ନିଶ୍ଚୟ କଷ୍ଟକର ହେବ । ଆମେ ଜାଣିବାକୁ ପାଇଛୁ ଯେ ସବୁବେଳେ କେହି କେହି ଆମ ବିରୁଦ୍ଧରେ ଆପଣଙ୍କ ପାଖରେ କହୁଛନ୍ତି । ଆମେମାନେ ଦୂରରେ ଥିବାରୁ ଆପଣଙ୍କର ସେପ୍ରକାର ଧାରଣାକୁ ପରିବର୍ତ୍ତନ କରିବାର ସୁଯୋଗ ପାଉନାହୁଁ । ଏହାପରେ ସେ ଚୁପ୍ ହୋଇ ରହିଥିଲେ । ପ୍ରଧାନମନ୍ତ୍ରୀଙ୍କର କ୍ରୋଧ କଥା ମୁଁ ଶ୍ରୀ ବହୁଗୁଣାଙ୍କୁ କହିଥିଲି । ନନ୍ଦିନୀ ସବୁବେଳେ ଚୁଗୁଲି କରି ଇନ୍ଦିରାଙ୍କ ମନକୁ ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ ବିଷାକ୍ତ କରିଦେଇଛି ବୋଲି ଶ୍ରୀ ବହୁଗୁଣା ମୋତେ କହିଥିଲେ ଏବଂ ବିଜୁ ପଟ୍ଟନାୟକ ତା' ନିଜର ତଣ୍ଟି କାଟିବାକୁ ସେହିଭଳି ଜଣେ ଭଦ୍ରମହିଳାଙ୍କୁ ଦିଲ୍ଲୀ ପଠାଇଛି ବୋଲି ସେ କହିଥିଲେ । ବିଜୁ ପଟ୍ଟନାୟକ ସେତେବେଳେ କାଶ୍ମୀରରେ ଥିଲେ । ସେ ଦିଲ୍ଲୀ ଫେରିବା ପରେ ମୁଁ ତାଙ୍କୁ ପ୍ରଧାନମନ୍ତ୍ରୀ ଯେପରି ଭାବରେ କ୍ରୋଧ ପ୍ରକାଶ କରିଥିଲେ ସେ କଥା କହିଥିଲି । ସେ ତାହା ଶୁଣି ଦବିଯିବେ କ'ଣ ଆହୁରି କମ୍ପମାନ ହୋଇ କଥାଟାକୁ ଫୁଟକାରେ ଉଡ଼ାଇଦେଇଥିଲେ ଓ ସେ ପ୍ରଧାନମନ୍ତ୍ରୀଙ୍କୁ ମଧ୍ୟ ଖାତିର୍ କରନ୍ତିନାହିଁ ବୋଲି କହିଥିଲେ । ଗୋଟିଏ ସମୟରେ ମୋତେ ବିଜୁ ପଟ୍ଟନାୟକଙ୍କଠାରୁ ଅଲଗା କରିଦେବାକୁ ଶ୍ରୀମତୀ ଗାନ୍ଧୀ ଚାହିଁଥିଲେ । ବିହାର ରାଜ୍ୟର ତତ୍କାଳୀନ ରାଜ୍ୟପାଳ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋଙ୍କଠାରୁ ମୋ ବିଷୟରେ କେତେକ କଥା ଶ୍ରୀମତୀ ଗାନ୍ଧୀ ଜାଣିବାକୁ ଚାହିଁଥିଲେ ଏବଂ ମୁଁ ବିଜୁ ପଟ୍ଟନାୟକଙ୍କଠାରୁ ଅଲଗା ହୋଇଗଲେ ଭଲ ହେବ ବୋଲି ସେ ଶ୍ରୀ କାନୁନ୍‌ଗୋଙ୍କ ପାଖରେ ମତ ବ୍ୟକ୍ତ କରିଥିଲେ । କଟକ ଆସି ଶ୍ରୀ କାନୁନ୍‌ଗୋ ମୋତେ ସେସବୁ କଥା କହିଥିଲେ ।

## ଉତ୍କଳ କଂଗ୍ରେସ : ଏକ ସାଂଗଠନିକ ବିପ୍ଳବ

୧୯୬୯ରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ବିରୁଦ୍ଧରେ 'ସିଣ୍ଡିକେଟ୍‌ଗୋଷ୍ଠୀ'ଦ୍ୱାରା ଶୃଙ୍ଖଳାଗତ ଶାସ୍ତିବିଧାନ ହେତୁ ସେ କଂଗ୍ରେସନେତା ଓ କର୍ମୀମାନଙ୍କଠାରୁ ବହୁଳ ସହାନୁଭୂତି ଓ ସମର୍ଥନ ଲାଭ କରିଥିଲେ । ୧୯୭୦ ମସିହାରେ ଶ୍ରୀମତୀ ଗାନ୍ଧୀଙ୍କ 'ସିଣ୍ଡିକେଟ୍' ଶ୍ରୀ ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ ଶାସ୍ତିବିଧାନ କରିବାର ମସୁଧାରୁ ଓଡ଼ିଶାରେ 'ଉତ୍କଳ କଂଗ୍ରେସ' ଜନ୍ମଲାଭ କରିଥିଲା । ସେତେବେଳେ

ଶ୍ରୀମତୀ ଗାନ୍ଧୀଙ୍କର ପ୍ରଗତିପନ୍ଥୀ ପଦକ୍ଷେପପାଇଁ ୧୯୬୯ରେ କଂଗ୍ରେସ-ବିଭାଜନକୁ କଂଗ୍ରେସ ଇତିହାସରେ କେହି କେହି ବିଭାଜନ ପରିବର୍ତ୍ତେ ଏକ ବୈପ୍ଲବିକ ବିବର୍ତ୍ତନରୂପେ ଚିତ୍ରଣ କରିଛନ୍ତି । ସେହିପରି ଓଡ଼ିଶାରେ ଉତ୍କଳ କଂଗ୍ରେସର ଉଦ୍ଭବ ପଛରେ ବିଜୁବାବୁଙ୍କ ପ୍ରତି କଂଗ୍ରେସ କର୍ମୀମାନଙ୍କର ବିପୁଳ ସହାନୁଭୂତି ଓ କେନ୍ଦ୍ର ନେତୃତ୍ୱ ବିରୁଦ୍ଧରେ ବିଦ୍ରୋହର ଇତିହାସ ନିହିତ ଅଛି । ଦିଲ୍ଲୀରୁ କୌଣସି ଏକ ବିଶେଷ ସୂତ୍ରରୁ ସେତେବେଳେ ସନ୍ଧାନ ମିଳିଥିଲା ଯେ, ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ କରିବାପାଇଁ କଂଗ୍ରେସ ଉଚ୍ଚକର୍ତ୍ତୃପକ୍ଷ ମସୁଧା କରୁଛନ୍ତି । ବିଜୁ ପଟ୍ଟନାୟକ ଅନାଗତବିଧାତା ପରି ଏପ୍ରିଲ୍ ମାସ ଦ୍ୱିତୀୟ ସପ୍ତାହରେ ଶାସକ କଂଗ୍ରେସରୁ ତାଙ୍କର ଇସ୍ତଫା ଜଣାଇ କଂଗ୍ରେସ ସଭାପତି ଶ୍ରୀ ଜଗଜ୍ଜୀବନ ରାମଙ୍କ ପାଖକୁ ଏକ ପତ୍ର ପଠାଇଦେଇଥିଲେ । ଉକ୍ତ ଇସ୍ତଫାପତ୍ରର ଏକ ନକଲ ଆମ ପ୍ରଦେଶ କଂଗ୍ରେସ ଅଫିସକୁ ମଧ୍ୟ ପଠାଇଥିଲେ । ଓଡ଼ିଶା କଂଗ୍ରେସ ପ୍ରତି କଂଗ୍ରେସ ହାଇକମାଣ୍ଡଙ୍କ ଦୁର୍ବ୍ୟବହାର ଓ ବୈମାତୃକ ମନୋଭାବ କଥା ସେ ଚିଠିରେ ଲେଖିଥିଲେ । କଂଗ୍ରେସ ଉଚ୍ଚକର୍ତ୍ତୃପକ୍ଷଙ୍କର ଓଡ଼ିଶା କଂଗ୍ରେସ ନେତୃବର୍ଗଙ୍କ ପ୍ରତି ଅନ୍ୟାୟ ତଥା ଦୁର୍ବ୍ୟବହାରର କେତେକ ଦୃଷ୍ଟାନ୍ତ ମଧ୍ୟ ବିଜୁବାବୁ ଉଲ୍ଲେଖ କରିଥିଲେ । ବିଜୁ ପଟ୍ଟନାୟକଙ୍କର ଇସ୍ତଫା କଥା ପ୍ରଚାରିତ ହୋଇଯିବାମାତ୍ରେ ଓଡ଼ିଶାର କଂଗ୍ରେସ ମହଲରେ ଏକ ଆଲୋଡ଼ନ ସୃଷ୍ଟି ହୋଇଥିଲା । ଶୀଘ୍ର ପ୍ରଦେଶ କଂଗ୍ରେସ କମିଟି ବୈଠକ ଡକାଇ ଉପୁଜିଥିବା ପରିସ୍ଥିତିର ପର୍ଯ୍ୟାଲୋଚନା କରାଯିବାକୁ ଚାରିଆଡୁ ଦାବି ହୋଇଥିଲା । ତେଣୁ ମେ' ମାସ ଷୋଳ ତାରିଖକୁ ପ୍ରଦେଶ କଂଗ୍ରେସ କମିଟିର ବୈଠକ ଡକାଯାଇଥିଲା । ବୈଠକର କାର୍ଯ୍ୟସୂଚୀରେ ବିଗତ ରାଜ୍ୟସଭା ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀଙ୍କର ପରାଜୟ ଓ ଶାସକ କଂଗ୍ରେସରୁ ବିଜୁ ପଟ୍ଟନାୟକଙ୍କର ଇସ୍ତଫା ବିଷୟ ଆଲୋଚନାପାଇଁ ରଖାଯାଇଥିଲା । ତା' ବ୍ୟତୀତ ଅନ୍ୟାନ୍ୟ ସାଂଗଠନିକ ବିଷୟ ଆଲୋଚନା ନିମିତ୍ତ କାର୍ଯ୍ୟସୂଚୀରେ ସ୍ଥାନପାଇଥିଲା । ଏହି ବୈଠକରେ ନନ୍ଦିନୀ ଶତପଥୀ ଓ ବିନାୟକ ଆଚାର୍ଯ୍ୟଙ୍କର କାର୍ଯ୍ୟକଳାପ ନିଶ୍ଚିତଭାବେ ଆଲୋଚିତ ହେବାର ଆଶଙ୍କା କରି କିପରି ଆହୂତ ବୈଠକଟି ବସିନପାରିବ, ସେ ଦିଗରେ ନନ୍ଦିନୀ ଦିଲ୍ଲୀ ମହଲରେ ପ୍ରବଳ ଉଦ୍ୟମ ଚଳାଇଥିଲେ । ବିଗତ ରାଜ୍ୟସଭା ନିର୍ବାଚନ ଓ ବିଜୁ ପଟ୍ଟନାୟକଙ୍କ ଇସ୍ତଫା ବିଷୟ ପ୍ରଦେଶ କଂଗ୍ରେସ କମିଟି ବୈଠକରେ ଆଲୋଚନା ନକରିବା ପାଇଁ ମୋ ପାଖକୁ ଏ.ଆଇ.ସି.ସି. ଅଫିସରୁ ନିର୍ଦ୍ଦେଶ ଆସିଥିଲା । ପ୍ରଦେଶ କଂଗ୍ରେସ କମିଟିର ବୈଠକ ଡାକିବା ନୋଟିସ୍‌ରେ କାର୍ଯ୍ୟସୂଚୀ ଦିଆଯାଇସାରିଥିଲା । ତେଣୁ ମୁଁ ସ୍ଥିର କରିଥିଲି ଯେ ପ୍ରଦେଶ କଂଗ୍ରେସ କମିଟିର ବୈଠକରେ ମୁଁ ହାଇକମାଣ୍ଡଙ୍କଠାରୁ ଆସିଥିବା ନିର୍ଦ୍ଦେଶ କଥା ଜଣାଇଦେବି ଏବଂ ସେଠାରେ ସମସ୍ତ ସଭ୍ୟଙ୍କ ଉପସ୍ଥିତିରେ ଯାହା ନିଷ୍ପତ୍ତି ନିଆଯିବ ସେହି ଅନୁସାରେ କାର୍ଯ୍ୟହେବ । ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ୧୯୭୦ ମସିହା ମେ' ୧୯ ତାରିଖ ବୈଠକ ଅତୀବ ଗୁରୁତ୍ୱପୂର୍ଣ୍ଣ । ବିଜୁ ପଟ୍ଟନାୟକଙ୍କର କଂଗ୍ରେସରୁ ଇସ୍ତଫା ଦେବାକଥା କଂଗ୍ରେସ ମହଲରେ ସର୍ବତ୍ର ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିଥିଲା । ତେଣୁ ପ୍ରଦେଶ କଂଗ୍ରେସ କମିଟିର ପ୍ରାୟ ସମସ୍ତ ସଭ୍ୟ ଉକ୍ତ ବୈଠକରେ ଯୋଗ ଦେଇଥିଲେ । ତା' ବ୍ୟତୀତ ରାଜ୍ୟର ଚାରିଆଡୁ କଂଗ୍ରେସକର୍ମୀ ଆସି ସ୍ୱରାଜ ଆଶ୍ରମରେ ଏକତ୍ରିତ ହୋଇଥିଲେ । ବିଜୁବାବୁ ଇସ୍ତଫା ଦେଇଥିବାରୁ ସେଦିନ ପ୍ରଦେଶ କଂଗ୍ରେସ କମିଟି ବୈଠକକୁ ନ ଆସିବାକୁ ସ୍ଥିରକରିଥା'ନ୍ତି; ମାତ୍ର ସଭ୍ୟମାନେ ତାଙ୍କ ମୁହଁରୁ ତାଙ୍କର ଇସ୍ତଫା ଦେବାର କାରଣ ଶୁଣିବା ପାଇଁ ବୈଠକରେ ଯୋଗଦେବାକୁ ତାଙ୍କୁ ବାଧ୍ୟକରିଥିଲେ, ତେଣୁ ସେ ଆସି ବୈଠକରେ ଯୋଗ ଦେଇଥିଲେ । ବୈଠକ ଆରମ୍ଭରେ ବିନାୟକବାବୁ ପ୍ରଭୃତି ବୈଧାନିକ ପ୍ରଶ୍ନ ଉଠାଇ ଏ.ଆଇ.ସି.ସି.ର ନିର୍ଦ୍ଦେଶମତେ ବିଗତ ରାଜ୍ୟସଭା ନିର୍ବାଚନ ଓ ବିଜୁବାବୁଙ୍କ ଇସ୍ତଫା ବିଷୟରେ ବୈଠକରେ ଆଲୋଚନା କରାଯାଇପାରିବନାହିଁ ବୋଲି ଯୁକ୍ତି ବାଢ଼ିଥିଲେ । ବିନାୟକବାବୁ ପ୍ରଭୃତିଙ୍କର ଏ ପ୍ରକାର ଯୁକ୍ତିରେ ଗୃହ ମଧ୍ୟରେ ବିଶେଷ ଉତ୍ତେଜନା ପ୍ରକାଶ ପାଇଥିଲା ଏବଂ ଏ ପ୍ରକାର ସ୍ୱେଚ୍ଛାଚାରୀ ଓ ଗଣତନ୍ତ୍ରବିରୋଧୀ ନିର୍ଦ୍ଦେଶ ବିରୁଦ୍ଧରେ କେବଳ

ଆଠ ଜଣ ସଭ୍ୟଙ୍କୁ ବାଦ୍ ଦେଇ ବାକି ସମସ୍ତ ସଭ୍ୟ ସ୍ପଷ୍ଟଭାବରେ ମତ ବ୍ୟକ୍ତ କରିଥିଲେ । ତେଣୁ କାର୍ଯ୍ୟସୂଚୀରେ ଥିବା ସମସ୍ତ ବିଷୟ ପ୍ରଦେଶ କଂଗ୍ରେସ କମିଟିର ବୈଠକରେ ଆଲୋଚିତ ହେବ ବୋଲି ସ୍ଥିର ହୋଇଥିଲା । ଏହାର ପ୍ରତିବାଦସ୍ୱରୂପ ଶ୍ରୀ ବିନାୟକ ଆଚାର୍ଯ୍ୟ ଓ ନନ୍ଦିନୀ ଶତପଥୀ ପ୍ରମୁଖ ଆଠ ଜଣ ସଭ୍ୟ ବୈଠକ ଛାଡ଼ି ଚାଲିଯାଇଥିଲେ । ସେଦିନ ବୈଠକର ଆଲୋଚନାରେ ଭାଗ ନେଇ ବହୁ ସଭ୍ୟ ଫେବୃୟାରୀ ମାସ ବାଇଶ ତାରିଖ ବୈଠକରେ ଶାସକ କଂଗ୍ରେସ ପ୍ରତି ଆନୁଗତ୍ୟ ସ୍ୱୀକାର କରି ଯେଉଁ ପ୍ରସ୍ତାବ ଗ୍ରହଣ କରାଯାଇଥିଲା, ତଦ୍ୱାରା 'ଆମ୍ଭେମାନେ ଭୁଲ୍ କରିଛୁ' ବୋଲି ମତ ବ୍ୟକ୍ତ କରିଥିଲେ । ନବାଗତ ଶାସକ କଂଗ୍ରେସ ଲୋକଙ୍କ ଔଦ୍ଧତ୍ୟ ଓ ଅଗଣତାନ୍ତ୍ରିକ ଆଚରଣକୁ ବରଦାସ୍ତ କରି ସେମାନଙ୍କ ସହିତ କାର୍ଯ୍ୟ କରିବା ଅସମ୍ଭବ ବୋଲି ବୈଠକରେ ମତ ପ୍ରକାଶ ପାଇଥିଲା । ପ୍ରାୟ ସମସ୍ତଙ୍କର ଅନୁଭୂତି ସେହିପ୍ରକାର ବୋଲି ଜଣାପଡ଼ିଥିଲା । ଏହି ପରିପ୍ରେକ୍ଷୀରେ ସମସ୍ତଙ୍କର ସୁଚିନ୍ତିତ ପରାମର୍ଶରେ ପ୍ରଦେଶ କଂଗ୍ରେସ କମିଟିର ସମ୍ପାଦକ ଶ୍ରୀ ପ୍ରତାପଚନ୍ଦ୍ର ମହାନ୍ତି ଶାସକ କଂଗ୍ରେସରୁ ଓହରିଆସି ପ୍ରଦେଶ କଂଗ୍ରେସ ତା'ର ଗତ ଫେବୃୟାରୀ ବାଇଶ ତାରିଖର ପୂର୍ବସ୍ଥିତିକୁ ଫେରିଯାଇ ସ୍ୱାଧୀନଭାବରେ ପରିଚାଳିତ ହେବା ଉଦ୍ଦେଶ୍ୟରେ ଗୋଟିଏ ପ୍ରସ୍ତାବ ଆଗତ କରିଥିଲେ । ଶାସକ କଂଗ୍ରେସର ବ୍ୟର୍ଥତା ଓ ପ୍ରଧାନମନ୍ତ୍ରୀଙ୍କର ଏକଚ୍ଛତ୍ରବାଦ ମନୋବୃତ୍ତିର କଥା ଉଲ୍ଲେଖ କରାଯାଇ ଉକ୍ତ ପ୍ରସ୍ତାବରେ ଆହୁରି କୁହାଯାଇଥିଲା ଯେ ପ୍ରଧାନମନ୍ତ୍ରୀ ରାଜ୍ୟ କଂଗ୍ରେସ ଦଳ ପ୍ରତି ବିଶ୍ୱାସ ହରାଇଥିବାରୁ ରାଜ୍ୟ କଂଗ୍ରେସଦଳ ତାଙ୍କଠାରେ ଆଉ ବିଶ୍ୱାସ ସ୍ଥାପନ କରିପାରିବନାହିଁ । ଏହା ଗୋଟିଏ ଅତୀବ ଗୁରୁତ୍ୱପୂର୍ଣ୍ଣ ଓ ଐତିହାସିକ ନିଷ୍ପତ୍ତି ହୋଇଥିବାରୁ ସମସ୍ତ ସଭ୍ୟଙ୍କୁ ଆଲୋଚନାରେ ଭାଗ ନେବାକୁ ସୁଯୋଗ ଦିଆଯାଇଥିଲା । ଉତ୍କଳ ପ୍ରଦେଶ କଂଗ୍ରେସ ସ୍ୱତନ୍ତ୍ରଭାବରେ ରହି ଗୋଟିଏ ପ୍ରାଦେଶିକ ଦଳରୂପେ କାର୍ଯ୍ୟ କରିବ ବୋଲି ବୈଠକରେ ନିଷ୍ପତ୍ତି ନିଆଯାଇଥିଲା ଏବଂ କାଳକ୍ରମେ ଏହା 'ଉତ୍କଳ କଂଗ୍ରେସ' ନାମରେ ପରିଚିତ ହୋଇଥିଲା । ଆମର ଏହି ବୈଠକରେ ପରଦିନ ଶାସକ କଂଗ୍ରେସ ସଭାପତିଙ୍କଠାରୁ ଆମ ପ୍ରଦେଶ କଂଗ୍ରେସ କମିଟିକୁ ଭାଙ୍ଗିଦେଇ ଆମ୍ଭମାନଙ୍କୁ ବହିଷ୍କାର କରାଯିବାର ଆଦେଶ ଆସିଗଲା । ସେତେବେଳକୁ ଆମେ ତାଙ୍କଠାରୁ ଅଲଗା ହୋଇ ସ୍ୱାଧୀନ ହୋଇଗଲୁଣି; ଅତଏବ ତାଙ୍କର ଆଦେଶ ଅକାମି ହୋଇଯାଇଥିଲା । ପ୍ରାୟ ମାସକ ମଧ୍ୟରେ ସବୁ ଜିଲ୍ଲାର କଂଗ୍ରେସ କମିଟିଗୁଡ଼ିକର ବୈଠକ ବସି ଉତ୍କଳ କଂଗ୍ରେସ ପ୍ରତି ଆନୁଗତ୍ୟ ପ୍ରକାଶକରି ପ୍ରସ୍ତାବମାନ ଗ୍ରହଣ କରିଥିଲେ । ବିଧାନସଭା କଂଗ୍ରେସଦଳର ନେତୃତ୍ୱ ମଧ୍ୟ ପରିବର୍ତ୍ତନ କରାଯାଇଥିଲା । ଶ୍ରୀ ବିନାୟକ ଆଚାର୍ଯ୍ୟଙ୍କୁ ଦଳପତି ପଦରୁ ବହିଷ୍କାର କରାଯାଇ ଶ୍ରୀ ଗଙ୍ଗାଧର ମହାପାତ୍ରଙ୍କୁ ଦଳପତିରୂପେ ନିର୍ବାଚିତ କରାଯାଇଥିଲା ।

ଓଡ଼ିଶାର କଂଗ୍ରେସଦଳ ଓ ରାଜନୀତିରେ ଯେପରି ଭାବରେ ଘଡ଼ିକେ ଘୋଡ଼ା ଛୁଟିଲାଭଳି ଆକସ୍ମିକ ଘଟଣାମାନ ଘଟୁଥାଏ, ସେଥିରେ ମନେହେଉଥାଏ ଯେ ସତେ ଅବା କୌଣସି ଏକ ଅଦୃଶ୍ୟ ଶକ୍ତି ପ୍ରଚ୍ଛନ୍ନ ଭାବରେ କାର୍ଯ୍ୟ କରି ଆମ୍ଭମାନଙ୍କୁ ଆଗେଇ ନେଉଥିଲା । ଏ ସଂକ୍ରାନ୍ତରେ ମୋର ଗୋଟିଏ ଅତି କୌତୂହଳ ଓ ବିସ୍ମୟକର ଅନୁଭୂତି ମନେପଡ଼େ । ଦିନେ ମୁଁ ଅକସ୍ମାତ୍ ଯାଇ ଭୁବନେଶ୍ୱର ବିମାନବନ୍ଦର ନିକଟସ୍ଥ ବିଜୁ ପଟ୍ଟନାୟକଙ୍କ ବାସଭବନରେ ପହଞ୍ଚିଲି । ସେଠାରେ ଦେଖିଲି ଯେ ଗୋଟିଏ ଘର ବନ୍ଦରହିଛି ଏବଂ ତା' ଭିତରେ ଗଞ୍ଜାମ ଜିଲ୍ଲାର ଗଞ୍ଜାରୁ ଅଣାଯାଇଥିବା 'ଭୃଗୁସଂହିତା'ର ପଣ୍ଡିତ ମହାଶୟ ପ୍ରାଚୀନ ସଂସ୍କୃତ ଭାଷାରେ ଲେଖାଥିବା ଭୃଗୁ-ଶାସ୍ତ୍ର ଧରି ବସିଛନ୍ତି ଓ ତାଙ୍କ ପାଖରେ ବିଜୁବାବୁ, ଭବାନୀ ପଟ୍ଟନାୟକ, କାମିନୀ ପଟ୍ଟନାୟକ ଓ ନବନିର୍ବାଚିତ ରାଜ୍ୟସଭା ସଦସ୍ୟ ଶ୍ରୀ ବିନୟ ମହାନ୍ତି ପ୍ରମୁଖ ବସି ଶାସ୍ତ୍ର ଶୁଣୁଥା'ନ୍ତି । ମୁଁ ପହଞ୍ଚିବାରୁ ମୋତେ ସେମାନେ ଭିତରକୁ ଡାକିଥିଲେ । ମୁଁ ସେଠାରେ ବସି ଭୃଗୁସଂହିତାରେ ଲେଖାଥିବାଭଳି ପଢ଼ାଯାଉଥିବା କଂଗ୍ରେସ ବିଭାଜନ ବିବରଣ, ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ସହିତ ଓଡ଼ିଶା କଂଗ୍ରେସ ନେତା ଶ୍ରୀ ବିଜୁ ପଟ୍ଟନାୟକଙ୍କର ସଂଘର୍ଷ ଓ

ନିକଟରେ ହୋଇଯାଇଥିବା ରାଜ୍ୟସଭା ନିର୍ବାଚନ ବିଷୟମାନ ଶୁଣିଥିଲି । ରାଜ୍ୟସଭାକୁ ଓଡ଼ିଶାରୁ କଂଗ୍ରେସ ପ୍ରାର୍ଥୀ ମନୋନୟନ ଘଟଣାରୁ ଶ୍ରୀମତୀ ଗାନ୍ଧୀଙ୍କ ସହିତ ବିଜୁ ପଟ୍ଟନାୟକଙ୍କର ଝଗଡ଼ାର ସୂତ୍ରପାତ ହେବ ବୋଲି ସେଥିରୁ ପଢ଼ାଯାଇଥିଲା । ଜଣେ ରୁଗ୍‌ଣା ବ୍ରାହ୍ମଣୀ କନ୍ୟା ଏସବୁ ଝଗଡ଼ା ଓ ମନୋମାଳିନ୍ୟ ସୃଷ୍ଟି କରୁଥିଲେ ବୋଲି ସେଠାରୁ ମଧ ପଢ଼ାଯାଇଥିଲା । ରୂପସାଦୃଶ୍ୟ ବର୍ଣ୍ଣନା ନନ୍ଦିନୀ ଶତପଥୀଙ୍କ ସହିତ ଖାପଖାଉଥାଏ । ଉକ୍ତ ଭୃଗୁସଂହିତାରୁ ଯେପରି ଭାବରେ ପଢ଼ାଯାଇଥିବାର ମୋର ମନେଅଛି ତା'ର କିଛି ଅଂଶ ମୁଁ ଏଠାରେ ଉଦ୍ଧାର କରୁଅଛି ।

କୌରବ ମଣ୍ଡଳୀରେ ସ୍ୱୟମ୍ବର ପ୍ରାର୍ଥୀ ମନୋନୟନ ନେଇ ମତାନ୍ତର ଉପୁଜିବ । ଦୁଇ ସନ୍ତାନ-ବିଶିଷ୍ଟା ଆର୍ଯ୍ୟକନ୍ୟା ଯେ କି ଅନାର୍ଯ୍ୟ ବିଧବା ସେ ଶାସନାଧିରୂଢ଼ା ଥିବେ । ଜନୈକ ଲମ୍ବକାୟ ବିମାନଚାଳକ ଯାହାଙ୍କର ଜନ୍ମ ସମୁଦ୍ରବତ୍ ଦୁଇଟି ନଦୀ ମଧସ୍ଥିତ ସ୍ଥାନରେ ଓ ନାମର ପ୍ରଥମ ଅକ୍ଷର 'ବ' ହୋଇଥିବ, ତାହାଙ୍କ ସହିତ ଭାରତ-ସାମ୍ରାଜ୍ଞୀଙ୍କର କଳହ ଉପୁଜିବ । 'ନ' ନାମଧେୟ ଜଣେ ରୁଗ୍‌ଣା ବ୍ରାହ୍ମଣ କନ୍ୟାର କୁମନ୍ତ୍ରଣାରେ 'ନ' ନାମଧେୟ ଜଣେ ଉଦ୍ରକୁ କୌରବମଣ୍ଡଳୀକୁ ସ୍ୱୟମ୍ବର କରି ଆଣିବାପାଇଁ ଭାରତ ସାମ୍ରାଜ୍ଞୀ ସ୍ଥିରକରିବେ । ମାତ୍ର 'ନ' ନାମଧାରୀ ଉଦ୍ରଙ୍କର ପରାଜୟ ହେବ । ସେହି ସ୍ଥାନରେ ଲମ୍ବକାୟଙ୍କ ସାହାଯ୍ୟରେ 'ବ' ନାମଧେୟ ଅନ୍ୟ ଜଣେ ବ୍ୟକ୍ତିଙ୍କର ସ୍ୱୟମ୍ବର ହୋଇଯିବ । ରୁଗ୍‌ଣା ବ୍ରାହ୍ମଣୀ କନ୍ୟା କୁମନ୍ତ୍ରଣା କରି ଭାରତ ସାମ୍ରାଜ୍ଞୀ ଓ ଲମ୍ବକାୟଙ୍କ ମଧରେ ଥିବା ସୁସମ୍ପର୍କକୁ ତିକ୍ତ ଓ ବିଷାକ୍ତ କରି ଛିନ୍ନକରାଇବେ । ଲମ୍ବକାୟ ଉଦ୍ର ରାଜ୍ୟର ମୁଖ୍ୟ ହୋଇ ରାଜ୍ୟରେ ଶିଳ୍ପପ୍ରସାର କରାଇବେ । ଲମ୍ବକାୟ ବନ୍ଧୁମାନଙ୍କ ମଧରେ ବିଜାତି ବିବାହ କରିଥିବା ଜଣେ ପଙ୍ଗୁକାୟଙ୍କ ସମ୍ବନ୍ଧରେ ପଢ଼ାଯାଇଥିଲା ଯେ ସେ ବ୍ୟକ୍ତି ବଡ଼ ଅବ୍ୟବସ୍ଥିତ; କିନ୍ତୁ କୁଟିଳ ନୁହନ୍ତି । ସେ କଥା ବୀରେନ୍ ମିତ୍ରଙ୍କ ପ୍ରତି ଖାପଖାଉଥିଲା । ଶ୍ମଶାନକୁ ଶବ କାନ୍ଧେଇ ନେବା ସମୟରେ ଯେଉଁ ନାମ ଉଚ୍ଚାରଣ କରାଯାଏ, ସେହି ନାମଧାରୀ ଜଣେ ବ୍ୟକ୍ତି ଲମ୍ବକାୟଙ୍କର ଚିରଶତ୍ରୁ ହୋଇ ରହିବ ବୋଲି ପଢ଼ାଗଲା । ଏହା ହରେକୃଷ୍ଣ କିମ୍ବା ହରେରାମ ହୋଇପାରେ । ଲମ୍ବକାୟ ବିମାନଚାଳକ ଶେଷରେ ବଙ୍ଗଦେଶର ମିଲିଟାରୀ ଶାସକ ହେବା କଥା ଲେଖିଥିଲା । ଶ୍ରୀ ମୋରାରଜୀ ଦେଶାଇ ଭାରତର ପ୍ରଧାନମନ୍ତ୍ରୀ ହେବା କଥା ଶାସ୍ତ୍ରରେ ଲେଖାଥିଲା । ମୋରାରଜୀ ଦେଶାଇଙ୍କର ପ୍ରଧାନମନ୍ତ୍ରୀ ହେବା କଥା ଭୃଗୁସଂହିତାରୁ ଶୁଣିଥିବା ବିଷୟ ମୁଁ ବହୁଲୋକଙ୍କ ପାଖରେ କହିଥିଲି । ସେ ସମୟରେ ସମସ୍ତେ ମୋ କଥାକୁ ହସରେ ଉଡ଼ାଇଦେଇଥିଲେ । ୧୯୭୦ ମସିହାରେ ଶ୍ରୀ ମୋରାରଜୀ ଦେଶାଇଙ୍କର ଅବସ୍ଥା ଯାହା ଥିଲା, ସେଥିରେ ତାଙ୍କର ପ୍ରଧାନମନ୍ତ୍ରୀ ହେବାକଥା ସବୁରି କଳ୍ପନାତୀତ ଥିଲା; ମାତ୍ର ଛଅବର୍ଷ ପରେ ଶ୍ରୀ ମୋରାରଜୀ ଦେଶାଇ ଯେତେବେଳେ ପ୍ରଧାନମନ୍ତ୍ରୀ ହେଲେ ସେତେବେଳେ ଭୃଗୁସଂହିତାରୁ ଶୁଣିଥିବା କଥା ମୁଁ ସେମାନଙ୍କୁ ସ୍ମରଣକରାଇଦେଇଥିଲି ।

ଭୃଗୁସଂହିତାରୁ ପଢ଼ାଯାଉଥିବା ସାଙ୍କେତିକ ଶବ୍ଦଗୁଡ଼ିକର ଅର୍ଥର ପର୍ଯ୍ୟାଲୋଚନା ବା ଅନୁଶୀଳନ କଲେ ଜଣାଯାଏ ଯେ ଆର୍ଯ୍ୟକନ୍ୟା ଅନାର୍ଯ୍ୟ ବିଧବାଭାବେ ଇନ୍ଦିରା ଗାନ୍ଧୀ, 'ବ' ନାମଧାରୀ ଲମ୍ବକାୟ ବିମାନଚାଳକ ବିଜୁବାବୁ, 'ନ' ନାମଧେୟା ରୁଗ୍‌ଣା ବ୍ରାହ୍ମଣୀ କନ୍ୟା ନନ୍ଦିନୀ ଦେବୀ ଓ 'ନ' ନାମଧାରୀ ଉଦ୍ରପ୍ରାର୍ଥୀ ନାରାୟଣ ପାତ୍ରଙ୍କ ପ୍ରତି ପ୍ରଯୁଜ୍ୟ ହୋଇପାରେ । ସେହିପରି ବିମାନଚାଳକଙ୍କର ଚିରଶତ୍ରୁ ଶ୍ମଶାନ ଯିବା ସମୟରେ ନାମ ଉଚ୍ଚାରଣଧାରୀ ହରେକୃଷ୍ଣ ମହତାବ ବୋଲି ଓଡ଼ିଶାର ଦୀର୍ଘ ରାଜନୈତିକ ପରିସ୍ଥିତି ଅନୁଧ୍ୟାନ କଲେ ବୁଝାପଡ଼େ । ସେହିପରି ଜିତିଥିବା 'ବ' ନାମଧାରୀ ପ୍ରାର୍ଥୀ ବିଜୟ ମହାନ୍ତି ବୋଲି ଜଣାଯାଏ ।

ଓଡ଼ିଶାର ସ୍ୱତନ୍ତ୍ର-ଜନକଂଗ୍ରେସ ସରକାରର ପରମାୟୁ ନ ପୂରୁଣୁ ଅନ୍ତର୍ଦ୍ୱନ୍ଦ୍ୱ ହେତୁ ୧୯୭୧ ମସିହା ଜାନୁଆରୀ ମାସ ନଅ ତାରିଖରେ ତାହାର ପତନ ହୋଇଥିଲା । ଶ୍ରୀ ହରେକୃଷ୍ଣ ମହତାବଙ୍କର ଆଚରଣ ହେତୁ ଜନକଂଗ୍ରେସ ଦଳରେ ଗୁରୁତର ମତଭେଦ ସୃଷ୍ଟିହୋଇଥିଲା । ଏ ସମ୍ବନ୍ଧରେ

ଶ୍ରୀ ଶୁକଦେବ ନନ୍ଦ ତାଙ୍କର "Coalition Politics in Orissa' ବହିରେ ଲେଖିଛନ୍ତି, "Stay of Mahtab away from the corridors of power made him unhappy and the scandal of the Mudholkar Report made him feel helplessly uncomfortable and jeolous of Singh Deo and others who were exonerated by Mudholkar. Apprehending follow-up action on Mudholkar's recommendations, he worked for an early dissolution of the Assembly. x x x And the Deputy Chief Minister (Shri Pradhan) who had frustrated the earlier designs of Dr. Mahtab became the victim of a hasty and ill-considered decision in supporting Dr. Mahtab to withdraw support from the Coalition Government." (Page 259)।

ଏ ଅବସ୍ଥାରେ ଜନକଂଗ୍ରେସଦଳ ପକ୍ଷରେ ଆଉ ବେଶିଦିନ ମନ୍ତ୍ରିମଣ୍ଡଳରେ ରହିବା ଅସମ୍ଭବ ହୋଇପଡ଼ିଥାଏ । ସେଇଥିପାଇଁ ବିଧାନସଭାର ଜନକଂଗ୍ରେସ ଦଳର ନେତା ଶ୍ରୀ ପବିତ୍ର ମୋହନ ପ୍ରଧାନ କୌଣସି ଆଳରେ ମନ୍ତ୍ରିମଣ୍ଡଳରୁ ଓହରି ଆସିବାପାଇଁ ସୁଯୋଗ ଅପେକ୍ଷାରେ ଥାଆନ୍ତି । ଏହି ସମୟରେ କେନ୍ଦୁପତ୍ର ଠିକାଦାରମାନଙ୍କୁ ସ୍ୱତନ୍ତ୍ରଦଳର ମନ୍ତ୍ରୀମାନେ ପ୍ରାୟ ପଚାଶ ଲକ୍ଷ ଟଙ୍କାର ରିହାତି ଦେବାପାଇଁ ୧୯୭୦ ମସିହା ଅକ୍ଟୋବର ମାସରେ ନିଷ୍ପତ୍ତି ନେଇଥିଲେ । ଏ ପ୍ରକାରର ନିଷ୍ପତ୍ତି କ୍ୟାବିନେଟ୍‌ଦ୍ୱାରା ଅନୁମୋଦିତ ହେବା ଆବଶ୍ୟକ ବୋଲି ଜନକଂଗ୍ରେସ ପକ୍ଷରୁ ଦାବି ହୋଇଥିଲା । ନିଷ୍ପତ୍ତିଟି କାର୍ଯ୍ୟକାରୀ ହେବା ପୂର୍ବରୁ କ୍ୟାବିନେଟ୍‌ରେ ପକାଇବାକୁ ମୁଖ୍ୟମନ୍ତ୍ରୀ ଶ୍ରୀ ସିଂହଦେଓ ରାଜି-ହୋଇଥିଲେ । ଏଣେ ବିଷୟଟି କ୍ୟାବିନେଟ୍‌କୁ ଆସିବାରେ ବିଳମ୍ବ ହେଲାବେଳକୁ ତେଣେ ଜନକଂଗ୍ରେସକୁ ଭାଙ୍ଗିଦେଇ ଶାସକ କଂଗ୍ରେସରେ ଯୋଗଦେବା ନିମନ୍ତେ ଜନକଂଗ୍ରେସ ନେତା ଶ୍ରୀ ମହତାବ ବ୍ୟାକୁଳ । ଏ ଅବସ୍ଥାରେ ଅନ୍ୟ କୌଣସି ଗତ୍ୟନ୍ତର ନଥିବାରୁ ସ୍ୱତନ୍ତ୍ରଦଳର କେନ୍ଦୁପତ୍ର କାରବାର ନିଷ୍ପତ୍ତିକୁ ଆଳ କରି ପବିତ୍ରବାବୁ ମନ୍ତ୍ରିମଣ୍ଡଳରୁ ଜନକଂଗ୍ରେସଦଳ ତା'ର ସମର୍ଥନ ପ୍ରତ୍ୟାହାର କଲା ବୋଲି ଘୋଷଣା କରି ରାଜ୍ୟପାଳଙ୍କୁ ଜଣାଇଦେଇଥିଲେ । ଶ୍ରୀ ମହତାବଙ୍କର ଚକ୍ରାନ୍ତରେ ପଡ଼ି ସେ ଏ ପ୍ରକାର ପଦକ୍ଷେପ ନେଇଥିଲେ ବୋଲି ଶ୍ରୀ ପ୍ରଧାନ ୧୯୭୧ ମସିହା ମାର୍ଚ୍ଚ ମାସ କୋଡ଼ିଏ ତାରିଖରେ ଦେଇଥିବା ତାଙ୍କ ବିବୃତିରୁ ଜଣାପଡ଼େ । ସେଥିରେ ସେ କହିଥିଲେ, "I was a victim of Mahtab's conspiracy. I will stay in the Capital and teach Mahtab a lesson, when occasion comes." ଜନକଂଗ୍ରେସ ବିଧାନସଭାଦଳର ନେତା ତଥା ଉପମୁଖ୍ୟମନ୍ତ୍ରୀ ଶ୍ରୀ ପ୍ରଧାନ ସମର୍ଥନ ପ୍ରତ୍ୟାହାର କରିନେବା ପରେ ମଧ୍ୟ ମୁଖ୍ୟମନ୍ତ୍ରୀ ଶ୍ରୀ ସିଂହଦେଓ ସରକାର ଚଳାଇ ବିଧାନସଭାର ସମ୍ମୁଖୀନ ହେବାପାଇଁ ଉଦ୍ୟମ କରିଥିଲେ । ତେଣୁ ଜାନୁୟାରୀ ମାସ ପନ୍ଦର ତାରିଖକୁ ରାଜ୍ୟ ବିଧାନସଭାର ବୈଠକ ଡକାଯାଇଥିଲା । ମାତ୍ର ଶେଷରେ ତାହା ସୁବିଧାଜନକ ହେବ ନାହିଁ ବୋଲି ହୃଦ୍‌ବୋଧ କରି ଶ୍ରୀ ସିଂହଦେଓ ତାଙ୍କ ମନ୍ତ୍ରିମଣ୍ଡଳର ଇସ୍ତଫାପତ୍ର ଜାନୁୟାରୀ ମାସ ନଅ ତାରିଖ ସନ୍ଧ୍ୟା ସାଢ଼େ ସାତଟାରେ ରାଜ୍ୟପାଳଙ୍କୁ ଦେଇଥିଲେ ଏବଂ ତାହା ରାଜ୍ୟପାଳଙ୍କଦ୍ୱାରା ଗୃହୀତ ହେଲା ବୋଲି ଘଣ୍ଟାକ ପରେ ରାତ୍ରି ପ୍ରାୟ ସାଢ଼େ ଆଠଟାବେଳେ ରାଜଭବନରୁ ଘୋଷଣା ପ୍ରକାଶପାଇଥିଲା । ରାଜ୍ୟପାଳ ଡକ୍ଟର ଆନ୍‌ସାରୀ ହୁଏତ ନିଜେ ଅନଭିଜ୍ଞ ଥିବାରୁ କିମ୍ବା ତାଙ୍କ ସରକାରୀ ପରାମର୍ଶଦାତା-ମାନଙ୍କଠାରୁ ଠିକ୍ ପରାମର୍ଶ ପାଇ ନ ଥିବାରୁ ମନ୍ତ୍ରିମଣ୍ଡଳର ଇସ୍ତଫାପତ୍ର ପାଇଲାକ୍ଷଣି ସଙ୍ଗେ ସଙ୍ଗେ ତାହା ଗ୍ରହଣ କରିନେଇ ଶାସନରେ ଶୂନ୍ୟତା ସୃଷ୍ଟିକରି ଏକ ଅସାମ୍ବିଧାନିକ କାର୍ଯ୍ୟ କରିପକାଇଥିଲେ । ଇସ୍ତଫା ଗ୍ରହଣ କରିବା ସଙ୍ଗେ ସଙ୍ଗେ ବିକଳ୍ପ ବ୍ୟବସ୍ଥା ହେବା ପର୍ଯ୍ୟନ୍ତ ରାଜ୍ୟପାଳ ବିଦାୟୀ ମନ୍ତ୍ରିମଣ୍ଡଳକୁ କାମ ଚଳାଇବାକୁ ଅନୁରୋଧ କରିବାର କଥା; କାରଣ ଆମର ସଂବିଧାନ ଅନୁସାରେ ବିଧାନସଭା ବଳବତ୍ତର ଥିଲାବେଳେ ରାଜ୍ୟରେ ରାଷ୍ଟ୍ରପତି-ଶାସନ ଜାରିନହେବା ପର୍ଯ୍ୟନ୍ତ ମନ୍ତ୍ରିମଣ୍ଡଳର ବିନା

ପରାମର୍ଶରେ ରାଜ୍ୟପାଳ ମୁହୂର୍ତ୍ତେ ସୁଦ୍ଧା କାର୍ଯ୍ୟ କରିପାରିବେ ନାହିଁ । ଯେ ପର୍ଯ୍ୟନ୍ତ ରାଜ୍ୟରେ ରାଷ୍ଟ୍ରପତି-ଶାସନର ହୁକୁମନାମା ଜାରି ନହୋଇଥାଏ, ସେ ପର୍ଯ୍ୟନ୍ତ ବିଦାୟୀ ମନ୍ତ୍ରିମଣ୍ଡଳ କାର୍ଯ୍ୟତଃ କାମଚଳା ମନ୍ତ୍ରିମଣ୍ଡଳ ହୋଇ ରହିବାର କଥା । ଡକ୍ଟର୍ ଆନ୍‌ସାରୀ ତାହା ନକରି ଶାସନରେ ଦୁଇଦିନ ପାଇଁ ସାଂବିଧାନିକ ଶୂନ୍ୟତା ସୃଷ୍ଟି କରିଥିଲେ । ସେ ସମୟ ମଧ୍ୟରେ ରାଜ୍ୟପାଳଙ୍କ ନାମରେ ଯେତେକ କାର୍ଯ୍ୟ ହୋଇଥିଲା, ତାହା ଆଇନସମ୍ମତ ହୋଇନଥିଲା; ସେଗୁଡ଼ିକ ପୁନଶ୍ଚ ଆଇନଦ୍ୱାରା ବିଧିବଦ୍ଧ କରାଯାଇଥିଲା । ଏପରି ପରିସ୍ଥିତି ଭାରତରେ କେଉଁଠି କେବେ ଉପୁଜି ନଥିଲା ଏବଂ ଏହା ଦେଶର ଶାସନତାନ୍ତ୍ରିକ ଇତିହାସରେ ଏକ ଅଭୂତପୂର୍ବ ଘଟଣା । ଏହାଦ୍ୱାରା ପ୍ରଶାସନିକ କ୍ଷେତ୍ରରେ ଗୋଟିଏ ହାସ୍ୟାସ୍ପଦ ଅବସ୍ଥା ସୃଷ୍ଟିହୋଇଥିଲା । ଏହା ଆମର ଗଣତାନ୍ତ୍ରିକ ଶାସନପଦ୍ଧତିର ଏକ କଳଙ୍କମୟ ପରମ୍ପରା ହୋଇ ରହିଗଲା । ପରେ ମୁଁ ଶୁଣିବାକୁ ପାଇଥିଲି ଯେ କୌଣସି କାରଣରୁ ରାଜ୍ୟପାଳ ଡକ୍ଟର ଆନ୍‌ସାରୀ ମୁଖ୍ୟମନ୍ତ୍ରୀ ଶ୍ରୀ ସିଂହଦେଓଙ୍କ ଉପରେ ଅତ୍ୟନ୍ତ ଅସନ୍ତୁଷ୍ଟ ଥିଲେ । ତେଣୁ ତାଙ୍କ ମନ୍ତ୍ରିମଣ୍ଡଳର ଇସ୍ତଫାପତ୍ର ପାଇଲାକ୍ଷଣି ତା' ଉପରେ ଗୃହୀତ ହେଲା ବୋଲି ଲେଖିଦେଇ ସଙ୍ଗେ ସଙ୍ଗେ ରାଜଭବନରୁ ବିଜ୍ଞପ୍ତି ପ୍ରକାଶ କରିଦେଇଥିଲେ ।

ଜାନୁୟାରୀ ମାସ ଏଗାର ତାରିଖ ଦିନ ଓଡ଼ିଶାରେ ରାଷ୍ଟ୍ରପତି-ଶାସନ ଜାରି ହୋଇଥିଲା; ମାତ୍ର ବିଧାନସଭାକୁ ଭାଙ୍ଗି ଦିଆଯାଇନଥିଲା । ଉତ୍କଳ କଂଗ୍ରେସର ସଭାପତି ହିସାବରେ ମୁଁ ତୁରନ୍ତ ବିଧାନ-ସଭାକୁ ଭାଙ୍ଗି ଆସନ୍ନ ଲୋକସଭା ନିର୍ବାଚନ ସହିତ ଓଡ଼ିଶା ବିଧାନସଭାର ନିର୍ବାଚନ କରିବାପାଇଁ ଦାବି କରିଥିଲି । ଏହି ସମୟରେ ମହତାବବାବୁ ଯେକୌଣସି ପ୍ରକାରେ ଏକ ବିକଳ୍ପ ସରକାର ଗଠନ କରିବାପାଇଁ ଉଦ୍ୟମ କରିଥିଲେ; ତେଣୁ ବିଧାନସଭା ଭାଙ୍ଗିନଦେବାପାଇଁ ସେ ଶାସକ କଂଗ୍ରେସର ଉଚ୍ଚକର୍ତ୍ତୃପକ୍ଷଙ୍କୁ ପ୍ରଭାବିତ କରିବାପାଇଁ ଚେଷ୍ଟାକରିଥିଲେ । ତାଙ୍କର ଏ ପ୍ରକାର ଉଦ୍ୟମକୁ ଉତ୍କଳ କଂଗ୍ରେସ ଓ ପବିତ୍ରବାବୁଙ୍କର ଜନକଂଗ୍ରେସ ଗୋଷ୍ଠୀର ବିଧାନସଭା ସଦସ୍ୟମାନେ ବିରୋଧ କରିବାରୁ ତାହା ହୋଇପାରିଲାନାହିଁ । ବିକଳ୍ପ ସରକାର ଗଢ଼ିପାରିଥିଲେ ଶ୍ରୀ ସିଂହଦେଓଙ୍କ ମନ୍ତ୍ରିମଣ୍ଡଳ ଦ୍ୱାରା ନିଯୁକ୍ତ ସରଜୁପ୍ରସାଦ କମିଶନକୁ ରଦ୍ଦ କରାଯାଇପାରିଥାନ୍ତା ବୋଲି ମହତାବ ଆଶାକରୁଥିଲେ; ମାତ୍ର ତାଙ୍କର ଉଦ୍ୟମ ସଫଳ ହୋଇନଥିଲା । ପରିଶେଷରେ ଜାନୁୟାରୀ ମାସ ତେଇଶ ତାରିଖ ଦିନ ଓଡ଼ିଶା ବିଧାନସଭାକୁ ଭାଙ୍ଗିଦିଆଗଲା ବୋଲି ଘୋଷଣା ପ୍ରକାଶପାଇଥିଲା । ଏହାପରେ ମାର୍ଚ୍ଚ ମାସ ପାଞ୍ଚ ତାରିଖର ଲୋକସଭା ନିର୍ବାଚନ ସହିତ ଓଡ଼ିଶା ବିଧାନସଭା ନିର୍ବାଚନ ହେବ ବୋଲି ନିର୍ବାଚନ କମିଶନ ଘୋଷଣା କରିଥିଲେ । ଫେବୃୟାରୀ ମାସ ଦୁଇ ତାରିଖକୁ ଉତ୍କଳ କଂଗ୍ରେସର ଏକ ବୈଠକ ଡକା-ଯାଇଥିଲା । ବିଧାନସଭାର ଏବଂ ଲୋକସଭାର ପ୍ରତ୍ୟେକ ସ୍ଥାନ ପାଇଁ ଉତ୍କଳ କଂଗ୍ରେସ ପ୍ରାର୍ଥୀ ଠିଆ-କରାଇବ ବୋଲି ସ୍ଥିରକରାଯାଇଥିଲା । ଉତ୍କଳ କଂଗ୍ରେସର ନିର୍ବାଚନ ଇସ୍ତାହାରରେ କୁହାଯାଇଥିଲା, "ଉତ୍କଳ କଂଗ୍ରେସ ଆଜି ରାଜ୍ୟବାସୀଙ୍କୁ ଏକ ମହାନ୍ ବିପ୍ଳବର ପଥରେ ଆଗେଇନେବାର ଶପଥ ନେଇଛି । ଆମକୁ ସଂଗ୍ରାମ କରିବାକୁ ହେବ ଦାରିଦ୍ର୍ୟ, ଅବିଚାର, ଅନ୍ୟାୟ ଏବଂ ଶୋଷଣ ବିରୁଦ୍ଧରେ । ଉତ୍କଳ କଂଗ୍ରେସ ଆଜି ସେଥିପାଇଁ ନିଜକୁ ଏକ ସ୍ୱାଧୀନ ପ୍ରାଦେଶିକ ଦଳ ଭାବରେ ଗଢ଼ିସାରିଛି । ସେ ଆଜି ଏକ ସଂଗ୍ରାମୀ ଭୂମିକାରେ ଅବତୀର୍ଣ୍ଣ । ନିର୍ବାଚନ ଜରିଆରେ ସଂଖ୍ୟାଗରିଷ୍ଠ ଶାସନର ମୁଖ୍ୟ ଆସନରେ ବସି ନିଶ୍ଚିନ୍ତ ମନରେ ଦେଶବାସୀଙ୍କୁ ସୌଖୀନ ସମାଜବାଦୀ ନୀତିବାକ୍ୟ ଶୁଣାଇବାର କଳ୍ପନା ଉତ୍କଳ କଂଗ୍ରେସର ନାହିଁ । ମାତ୍ର ସମାଜବାଦର ବାସ୍ତବ ରୂପାୟନ ପାଇଁ ଆବଶ୍ୟକ ହେଲେ ଓଡ଼ିଶାର ମନ୍ତ୍ରୀ ଦିଲ୍ଲୀ ରାଜଧାନୀରେ ବୈପ୍ଳବିକ ଜନବିକ୍ଷୋଭର ନେତୃତ୍ୱ ନେବାପାଇଁ ଦୃଢ଼ସଂକଳ୍ପବଦ୍ଧ । ସେ ଓଡ଼ିଶାର ଦାରିଦ୍ର୍ୟ ଲୋପ ନହେବା ପର୍ଯ୍ୟନ୍ତ ନିଜେ ଶାସନଗାଦିରେ ବସିବନାହିଁ କିମ୍ବା କାହାରିକୁ ସୁଖନିଦ୍ରା ଯିବାକୁ ଦେବନାହିଁ । କାରଣ ଉତ୍କଳ ଭୂମିରେ ଦାରିଦ୍ର୍ୟ ହେଲା ମନୁଷ୍ୟକୃତ ଅବହେଳା ଓ ଅବିଚାରପ୍ରସୂତ । ଦିଲ୍ଲୀର ମୋଗଲ ଶାସନଠାରୁ ଆରମ୍ଭକରି ମରହଟ୍ଟା ଶାସନ ଏବଂ ଇଂରେଜ

ଶାସନଠାରୁ ଆରମ୍ଭକରି ଇନ୍ଦିରା ଶାସନ ପର୍ଯ୍ୟନ୍ତ କେହିହେଲେ ଓଡ଼ିଶା ପ୍ରତି ସମୁଚିତ ନ୍ୟାୟ ପ୍ରଦର୍ଶନ କରିନାହାନ୍ତି । ତେଣୁ ଏହି ପୁଞ୍ଜୀଭୂତ ଅସନ୍ତୋଷ ତଥା ଅବିଚାର ବିରୁଦ୍ଧରେ ଓଡ଼ିଶାବାସୀଙ୍କୁ ସଂଗ୍ରାମ କରିବାକୁହିଁ ପଡ଼ିବ । ସେ ସଂଗ୍ରାମ ଦିଲ୍ଲୀର ଶାସକଦଳ ସହିତ ସାମିଲ ରହି କିମ୍ବା ଓଡ଼ିଶାର ଏହି ଅଥର୍ବ ଶାସନ ସହିତ ସମଝୌତା କରି ନୁହେଁ । ଅତଏବ ଉତ୍କଳ କଂଗ୍ରେସ ଏକ ସ୍ୱାଧୀନ ଭୂମିକାରେ ଅବତୀର୍ଣ୍ଣ ହୋଇଛି । ସେ ଓଡ଼ିଶା ଜନମତର ସ୍ପଷ୍ଟ ଜବାବ ପାଇଁ ଓଡ଼ିଶା ବିଧାନସଭାର ୧୪୦ଟିଯାକ ସ୍ଥାନ ଏବଂ ପାର୍ଲିଆମେଣ୍ଟ ପାଇଁ ସମସ୍ତ ସ୍ଥାନରେ ପ୍ରାର୍ଥୀ ଦେବାକୁ ସ୍ଥିର କରିଛି । ଏ ସଂଗ୍ରାମ ଉତ୍କଳ କଂଗ୍ରେସର ନୁହେଁ; ଏହା ଉତ୍କଳ-ଜନନୀର, ଦୁଇ କୋଟି ଜନତାର ସଂଗ୍ରାମ ।''

## ୧୯୭୧ ନିର୍ବାଚନ : ଅପରିହାର୍ଯ୍ୟ ସାଲିସ୍ ରାଜନୀତି

ଉତ୍କଳ କଂଗ୍ରେସର ପ୍ରାର୍ଥୀ ମନୋନୟନ କାର୍ଯ୍ୟ ତିନି ଚାରି ଦିନ ମଧ୍ୟରେ ସମାପ୍ତ କରିବାକୁ ପଡ଼ିଥିଲା । ମୁଁ ମୋର ପୁରୁଣା ନିର୍ବାଚନମଣ୍ଡଳୀ ବାସୁଦେବପୁରରୁ ବିଧାନସଭାକୁ ପ୍ରାର୍ଥୀ ହୋଇଥିଲି । ଏହା ବ୍ୟତୀତ ବାଲେଶ୍ୱର ଲୋକସଭା ନିର୍ବାଚନମଣ୍ଡଳୀରୁ ମଧ୍ୟ ପ୍ରାର୍ଥୀ ହୋଇଥିଲି । ଉତ୍କଳ କଂଗ୍ରେସ ପକ୍ଷରୁ ଏଥର ନିର୍ବାଚନରେ ଦୁଇ ଜଣ ପୂର୍ବତନ ମୁଖ୍ୟମନ୍ତ୍ରୀ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ – ସେମାନେ ହେଲେ ଶ୍ରୀ ବିଜୁ ପଟ୍ଟନାୟକ ଓ ଶ୍ରୀ ବୀରେନ୍ ମିତ୍ର । ଶ୍ରୀ ବିଜୁ ପଟ୍ଟନାୟକ ଚାରିଗୋଟି ବିଧାନସଭା ନିର୍ବାଚନମଣ୍ଡଳୀରୁ ଓ ଗୋଟିଏ ଲୋକସଭା ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହୋଇଥିଲେ । ସେହିପରି ବୀରେନ୍ ମିତ୍ର କଟକ ସହରର ଉଭୟ ବିଧାନସଭା ଓ ଲୋକସଭା ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହୋଇଥିଲେ । ସବୁଥର ପରି ଏଥର ମଧ୍ୟ ନିର୍ବାଚନର ସମସ୍ତ ଦାୟିତ୍ୱ ବିଜୁବାବୁ ନେଇଥିଲେ । ବାସୁଦେବପୁର ନିର୍ବାଚନମଣ୍ଡଳୀର ବିଦାୟୀ ସଭ୍ୟ ଥିଲେ ଶ୍ରୀ ହରେକୃଷ୍ଣ ମହତାବ । ଏଥରକ ସେ ଆଉ ସେଠାରୁ ପ୍ରାର୍ଥୀ ହୋଇନଥିଲେ । ଶ୍ରୀ ମହତାବଙ୍କ ଉଦ୍ୟମରେ ଶ୍ରୀ ଚକ୍ରଧର ବେହେରା ଶାସକ କଂଗ୍ରେସର ପ୍ରାର୍ଥୀରୂପେ ସେହି ନିର୍ବାଚନମଣ୍ଡଳୀରୁ ମୋ ବିରୁଦ୍ଧରେ ଠିଆହୋଇଥିଲେ । ଏଥର ମୋତେ ମୋ ନିର୍ବାଚନମଣ୍ଡଳୀରେ ବିଶେଷ ପରିଶ୍ରମ କରିବାକୁ ପଡ଼ିନଥିଲା । ପୂର୍ବଥର ଶ୍ରୀ ମହତାବଙ୍କୁ ସମର୍ଥନ ଜଣାଇ ନିର୍ବାଚିତ କରାଇବା ପରେ ସେଠାକାର ଲୋକଙ୍କର ତାଙ୍କ ସମ୍ପର୍କରେ ଯେଉଁ ତିକ୍ତ ଅନୁଭୂତି ହୋଇଥିଲା, ତାହା ମୋତେ ଏଥର ନିର୍ବାଚନରେ ବିଶେଷ ସାହାଯ୍ୟ କରିଥିଲା । ପୂର୍ବଥର ବାଁଶଡ଼ା ଅଞ୍ଚଳର ମହତାବବାବୁଙ୍କୁ ସାହାଯ୍ୟ କରିଥିବା ସର୍ବଶ୍ରୀ ଦିବାକର ଘଡ଼େଇ, ମଧୁସୂଦନ ଜେନା ଓ କାହ୍ନୁଚରଣ ବିଶ୍ୱାଳ ପ୍ରମୁଖ ଏଥର ଆପଣାଛାଏଁ ମୋତେ ସାହାଯ୍ୟ କରିଥିଲେ । ମୋର ପୁରୁଣା ସମର୍ଥକମାନଙ୍କ ବ୍ୟତୀତ ସର୍ବଶ୍ରୀ ଗୌରାଙ୍ଗ ନାୟକ, ଜୟୀ ଜେନା, ବୀର ମହାନ୍ତି, ଚନ୍ଦ୍ରଶେଖର ପଣ୍ଡା, ବୀର ପତି ଓ ଶିବଚରଣ ତରେଇ ପ୍ରମୁଖ କେତେକ ନୂତନ ବ୍ୟକ୍ତି ମୋତେ ସାହାଯ୍ୟ କରିବାକୁ ଆଗେଇ ଆସିଥିଲେ । ସେହିପରି ବାସୁଦେବପୁର ଅଞ୍ଚଳର ସର୍ବଶ୍ରୀ ରତିକାନ୍ତ ପାଢ଼ୀ, କମଳା ପ୍ରସାଦ କର, ଲକ୍ଷ୍ମୀନାରାୟଣ ପଟ୍ଟନାୟକ, ସନାତନ ମହାନ୍ତି, ମନିନ୍ଦ୍ରକୁମାର ରାୟ, ନିତ୍ୟାନନ୍ଦ ସାହୁ, ରାମକୃଷ୍ଣ ଓ ବୈରାଗୀ ମହାନ୍ତି ପ୍ରମୁଖ ମୋତେ ସାହାଯ୍ୟ କରିବା ପାଇଁ ଆଗଭର ହୋଇ ବାହାରିପଡ଼ିଥିଲେ । ମୋର ନିର୍ବାଚନମଣ୍ଡଳୀ ଦୁଇଟି ସ୍ୱତନ୍ତ୍ର ଅଞ୍ଚଳରେ ବିଭକ୍ତ – ଗୋଟିଏ ହେଲା ବାସୁଦେବପୁର ଓ ଅନ୍ୟଟି ବାଁଶଡ଼ା । ବାସୁଦେବପୁର ଅଞ୍ଚଳର ନିର୍ବାଚନ ଦାୟିତ୍ୱ ସର୍ବଶ୍ରୀ ଭଗବାନ୍ ଚରଣ ନାୟକ, ଶ୍ରୀ ଆଦିକନ୍ଦ ମଲ୍ଲିକ ଓ ଶ୍ରୀ କମଳାକାନ୍ତ ପାଢ଼ୀଙ୍କ ଉପରେ ନ୍ୟସ୍ତ ଥିଲା ଏବଂ ବାଁଶଡ଼ା ଅଞ୍ଚଳଟିର ଦାୟିତ୍ୱ ଶ୍ରୀ ଦୁର୍ଯ୍ୟୋଧନ ମିଶ୍ର ଓ ଶ୍ରୀ କରୁଣାସିନ୍ଧୁ କରଙ୍କ ଉପରେ ନ୍ୟସ୍ତ କରିଥିଲି । ସେମାନେ ସବୁ କଥା ବୁଝି ମୋ ତରଫରୁ ନିର୍ବାଚନ କାର୍ଯ୍ୟ ଚଳାଇଥିଲେ । ତେଣୁ ମୋତେ ଏଥର ମୋ ନିର୍ବାଚନମଣ୍ଡଳୀକୁ ବେଶି ଯିବାକୁ ପଡ଼ି ନ ଥିଲା । ବିଧାନସଭା ନିର୍ବାଚନମଣ୍ଡଳୀରୁ ମୁଁ ଜୟଲାଭ କରିଥିଲି; ମାତ୍ର ବାଲେଶ୍ୱର ଲୋକସଭା ନିର୍ବାଚନମଣ୍ଡଳୀରେ ମୋର ପରାଜୟ ହୋଇଥିଲା । ଅବଶ୍ୟ ମୁଁ ବିଧାନସଭା ପାଇଁ ବିଶେଷ ଆଗ୍ରହୀ ଥିଲି ଏବଂ ବାଲେଶ୍ୱର ଲୋକସଭା ନିର୍ବାଚନମଣ୍ଡଳୀରୁ

ନାମକୁ ମାତ୍ର ଛିଡ଼ା ହୋଇଥିଲି । ୧୯୭୧ ମସିହା ନିର୍ବାଚନରେ ଉତ୍କଳ କଂଗ୍ରେସ ନେତା ଶ୍ରୀ ବିଜୁ ପଟ୍ଟନାୟକଙ୍କର ପରାଜୟ ସବୁଠାରୁ ବଳି ଦୁଃଖଦାୟକ ହୋଇଥିଲା । ଏଥର ଲୋକସଭା ନିର୍ବାଚନଟିକୁ ଅତି ସହଜ ମନେକରି ସେ ଚାରିଗୋଟି ବିଧାନସଭା ନିର୍ବାଚନମଣ୍ଡଳୀ ଓ ଗୋଟିଏ ଲୋକସଭା ନିର୍ବାଚନମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ଭୁବନେଶ୍ୱର ବିଧାନସଭା ନିର୍ବାଚନମଣ୍ଡଳୀରୁ ଶ୍ରୀ ମହତାବଙ୍କ ବିରୁଦ୍ଧରେ ଉତ୍କଳ କଂଗ୍ରେସ ପକ୍ଷରୁ ଶ୍ରୀ ଶଶିଭୂଷଣ ମିଶ୍ରଙ୍କୁ ମନୋନୀତ କରାଯାଇଥିଲା । ମାତ୍ର ଶେଷ ମୁହୂର୍ତ୍ତରେ କେତେକ ବନ୍ଧୁଙ୍କ ପ୍ରରୋଚନାରେ ବିଜୁବାବୁ ନିଜେ ସେଠାରୁ ପ୍ରାର୍ଥୀପତ୍ର ଦାଖଲ କରିଥିଲେ । ପରିବର୍ତ୍ତିତ ଅବସ୍ଥାରେ ସେ ଇନ୍ଦିରା -ହାୱାକୁ ବିଶେଷ ଗୁରୁତ୍ୱ ନଦେଇ ନିଜର ଲୋକପ୍ରିୟତା ଯାହା ଥିଲା ତା'ଠାରୁ ଅଧିକ ଲୋକପ୍ରିୟ ବୋଲି ମନେକରିଥିଲେ । ନିଜ ନିର୍ବାଚନମଣ୍ଡଳୀଗୁଡ଼ିକୁ ଯେଉଁପରି ଭାବରେ ଦୃଷ୍ଟି ଦେବା କଥା, ତାହା ନ କରି ଓଡ଼ିଶା ସାରା ବୁଲି ଉତ୍କଳ କଂଗ୍ରେସ ପ୍ରାର୍ଥୀମାନଙ୍କ ପାଇଁ ପ୍ରଚାର କାର୍ଯ୍ୟରେ ଲାଗିଥିଲେ । ଫଳରେ ସେ ଲଢୁଥିବା ସମସ୍ତ ନିର୍ବାଚନମଣ୍ଡଳୀଗୁଡ଼ିକରେ ପରାଜୟ ବରଣ କରିଥିଲେ । ତାଙ୍କର ପରାଜୟ ଉତ୍କଳ କଂଗ୍ରେସକୁ ଏକ ଦାରୁଣ ଆଘାତ ଦେଇଥିଲା ଏବଂ ଦଳର କର୍ମୀମାନଙ୍କ ମଧ୍ୟରେ ବିଶେଷ ନୈରାଶ୍ୟ ସୃଷ୍ଟି କରିଥିଲା । ଉତ୍କଳ କଂଗ୍ରେସର ଅନ୍ୟ ନେତା ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ୍ ମିତ୍ର ମଧ୍ୟ ହାରିଯାଇଥିଲେ । ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ସଦାଶିବ ତ୍ରିପାଠୀ, ପୂର୍ବତନ ଉପମୁଖ୍ୟମନ୍ତ୍ରୀ ଶ୍ରୀ ପବିତ୍ରମୋହନ ପ୍ରଧାନ, ଶ୍ରୀ ବିଜୟକୁମାର ପାଣି, ଶ୍ରୀ ଦୀନବନ୍ଧୁ ସାହୁ, ଶ୍ରୀ ଲୋକନାଥ ଚୌଧୁରୀ ଓ ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ ପ୍ରମୁଖ ଅନ୍ୟାନ୍ୟ ଦଳର ନେତାମାନେ ମଧ୍ୟ ଏହି ନିର୍ବାଚନରେ ହାରିଯାଇଥିଲେ । ଦେଶରେ ଇନ୍ଦିରା ହାୱା ଏପରି ଭାବରେ ପ୍ରବାହିତ ହୋଇଥିଲା ଯେ ସେଥିରେ ଶାସକ କଂଗ୍ରେସକୁ ମୁକାବିଲା କରିବା କଷ୍ଟକର ହୋଇପଡ଼ିଥିଲା । ଓଡ଼ିଶାରେ ଉତ୍କଳ କଂଗ୍ରେସ ଆଶାତୀତ ଫଳଲାଭ କରି ନ ଥିଲେ ମଧ୍ୟ ଯେପରି ଭାବରେ ଶାସକ କଂଗ୍ରେସର ମୁକାବିଲା କରିଥିଲା ଅନ୍ୟତ୍ର କୌଣସି ପ୍ରାଦେଶିକ ଦଳ ସେପରି ଭାବରେ କରିପାରି ନଥିଲେ । କେବଳ ପଶ୍ଚିମବଙ୍ଗରେ ମାର୍କସିଷ୍ଟ କମ୍ୟୁନିଷ୍ଟ ଦଳ ଶାସକ କଂଗ୍ରେସର ମୁକାବିଲା କରିବାରେ ସକ୍ଷମ ହୋଇଥିଲା । ଓଡ଼ିଶା ବିଧାନସଭାର ସର୍ବମୋଟ ୧୨୦ଟି ସ୍ଥାନ ମଧ୍ୟରୁ ଶାସକ କଂଗ୍ରେସ ଏକାବନଟି ସ୍ଥାନ ଦଖଲ କରିଥିଲେ ମଧ୍ୟ ସଂଖ୍ୟାଗରିଷ୍ଠ ହୋଇପାରି ନଥିଲା । ଉତ୍କଳ କଂଗ୍ରେସ ବତିଶଟି ଓ ସ୍ୱତନ୍ତ୍ର ଦଳ ଛତିଶଟି ସ୍ଥାନରେ ଜୟଲାଭ କରିଥିଲା । ଏହା ବ୍ୟତୀତ ଝାଡ଼ଖଣ୍ଡ ଦଳ, ପି.ଏସ୍.ପି. ଓ କମ୍ୟୁନିଷ୍ଟ ଦଳ ପ୍ରତ୍ୟେକେ ଚାରୋଟି ଲେଖାଏଁ ସ୍ଥାନ ଦଖଲ କରିଥିଲେ । ଅବଶିଷ୍ଟ ସ୍ଥାନମାନଙ୍କରେ ସଂଗଠନ କଂଗ୍ରେସ, ମାର୍କସିଷ୍ଟ କମ୍ୟୁନିଷ୍ଟ ଦଳ ଓ ସ୍ୱାଧୀନ ସଭ୍ୟମାନେ ଜୟଲାଭ କରିଥିଲେ । ଏଣୁ ୧୯୭୧ ମସିହା ନିର୍ବାଚନରେ ଓଡ଼ିଶା ବିଧାନସଭାରେ କୌଣସି ଦଳ ସଂଖ୍ୟାଗରିଷ୍ଠ ହୋଇପାରିନଥିଲେ । ନିର୍ବାଚନ ଫଳ ଘୋଷିତ ହେବାପରେ ଶାସକ କଂଗ୍ରେସ ସହିତ ଉତ୍କଳ କଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ପ୍ରସ୍ତୁତ ବୋଲି ଉତ୍କଳ କଂଗ୍ରେସର ସଭାପତି ହିସାବରେ ମୁଁ ସାମ୍ବାଦିକମାନଙ୍କୁ କହିଥିଲି । ତାହା ପ୍ରକାଶିତ ହେବା ପରେ ଶାସକ କଂଗ୍ରେସ ପକ୍ଷରୁ କୁହାଯାଇଥିଲା ଯେ ସେମାନେ କାହାରି ସହିତ ମିଳିତ ମନ୍ତ୍ରିମଣ୍ଡଳ ଗଠନରେ ଭାଗ ନେବେନାହିଁ; ମାତ୍ର ଉତ୍କଳ କଂଗ୍ରେସର ଶାସକ କଂଗ୍ରେସ ସହିତ ମିଶ୍ରଣକୁ ସେମାନେ ସ୍ୱାଗତ କରିବେ କିମ୍ବା ଉତ୍କଳ କଂଗ୍ରେସ ସମର୍ଥନ ଦେଲେ ଶାସକ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରିବ । ଶାସକ କଂଗ୍ରେସ ସହିତ ଉତ୍କଳ କଂଗ୍ରେସର ମିଶ୍ରଣ ସମ୍ବନ୍ଧରେ କଥାବାର୍ତ୍ତା କରିବାପାଇଁ ଶାସକ କଂଗ୍ରେସର ସର୍ବଶ୍ରୀ ବନମାଳୀ ପଟ୍ଟନାୟକ, ବ୍ରଜମୋହନ ମହାନ୍ତି, ଲକ୍ଷ୍ମଣ ମଲ୍ଲିକ ଓ ଅନ୍ନଦା ପ୍ରସାଦ ରାୟ ପ୍ରମୁଖ ନେତାମାନେ ମୋର କଟକ ଘରଠାରେ ପହଞ୍ଚି ମୋ ସହିତ ଆଲୋଚନା ଆରମ୍ଭ କରିଥିଲେ । ଏହା ବ୍ୟତୀତ ରାଜାବଗିଚାର ଶ୍ରୀ ଉଦ୍ଧବ ସାମନ୍ତରାୟଙ୍କ ଘରେ ମହତାବଙ୍କ ସହିତ ମୋର ଭେଟ ହୋଇଥିଲା । ପାଞ୍ଚୋଟି ନିର୍ବାଚନମଣ୍ଡଳୀରେ ପରାଜିତ ହୋଇଥିବା ବିଜୁ ପଟ୍ଟନାୟକଙ୍କ ଭଳି ଜଣେ ପରିତ୍ୟକ୍ତ ନେତାଙ୍କ ସହିତ ରହିବା ମୋ ପକ୍ଷରେ ସମୀଚୀନ ହେବ ନାହିଁ; ତେଣୁ ମିଳିତ ମନ୍ତ୍ରିମଣ୍ଡଳ ଶବ୍ଦ ଉଚ୍ଚାରଣ ନ କରି

ତାଙ୍କ ନେତୃତ୍ୱରେ ଶାସକ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କଲେ ଏବଂ ସେଥିରେ ମୁଁ ଉପମୁଖ୍ୟମନ୍ତ୍ରୀ ହେବାକୁ ରାଜି ହୋଇଗଲେ ସବୁ ଠିକ୍‌ଠାକ୍ ହୋଇଯିବ ବୋଲି ମହତାବ ବାବୁ ମୋତେ ପରାମର୍ଶ ଦେଇଥିଲେ । ମାତ୍ର ମୁଁ ସେଥିରେ ରାଜି ହୋଇନଥିଲି ।

ନୈରାଶ୍ୟ ଓ ବିଷାଦପୂର୍ଣ୍ଣ ପରିବେଶ ମଧ୍ୟରେ ଉତ୍କଳ କଂଗ୍ରେସର କାର୍ଯ୍ୟକାରୀ କମିଟି ଓ ନବନିର୍ବାଚିତ ବିଧାୟକମାନଙ୍କର ଗୋଟିଏ ବୈଠକ ଅନୁଷ୍ଠିତ ହୋଇଥିଲା । ଶ୍ରୀ ବିଜୁ ପଟ୍ଟନାୟକ ଓ ଶ୍ରୀ ବୀରେନ୍ ମିତ୍ର ଉଭୟେ ଉକ୍ତ ବୈଠକରେ ଯୋଗଦେଇଥିଲେ । ଉକ୍ତ ବୈଠକରେ ମୁଁ ଉତ୍କଳ କଂଗ୍ରେସ ବିଧାନସଭା ଦଳର ନେତାରୂପେ ନିର୍ବାଚିତ ହୋଇଥିଲି । ମୁଁ ସେତେବେଳେ ଉତ୍କଳ କଂଗ୍ରେସର ସଭାପତି ଥିଲି । ସେହି ବୈଠକରେ ମୁଁ ସଭାପତି ପଦରୁ ଇସ୍ତଫା ଦେଇଥିଲି ଏବଂ ମୋ ସ୍ଥାନରେ ଶ୍ରୀ ବିଜୁ ପଟ୍ଟନାୟକ ସର୍ବସମ୍ମତିକ୍ରମେ ସଭାପତି ନିର୍ବାଚିତ ହୋଇଥିଲେ । ଆମ୍ଭମାନଙ୍କର ଉକ୍ତ ବୈଠକରେ ମନ୍ତ୍ରିମଣ୍ଡଳ ଗଠନ ସମ୍ବନ୍ଧରେ ଗୋଟିଏ ପ୍ରସ୍ତାବ ନିଆଯାଇ କୁହାଯାଇଥିଲା ଯେ ଓଡ଼ିଶାର ଜନସାଧାରଣଙ୍କର ଆଶା-ଆକାଙ୍କ୍ଷାକୁ ପୂରଣ କରିବାପାଇଁ ରାଜ୍ୟରେ ଏକ ଦୃଢ଼ ସରକାର ପ୍ରତିଷ୍ଠା କରି ସମାଜବାଦ ଭିତ୍ତିରେ ଦେଶକୁ ବିତ୍ତବଶାଳୀ କରାଇବାକୁ ସମଭାବାପନ୍ନ ଦଳ ଓ ବ୍ୟକ୍ତିବିଶେଷଙ୍କର ସକ୍ରିୟ ସହଯୋଗ ଓ ସମର୍ଥନ ଆବଶ୍ୟକ । ଓଡ଼ିଶାର ଜନସାଧାରଣ କୌଣସି ଗୋଟିଏ ରାଜନୈତିକ ଦଳକୁ ସରକାର ଗଠନ କରିବାପାଇଁ ନିରଙ୍କୁଶ କ୍ଷମତା ଦେଇନଥିବାରୁ ଉପସ୍ଥିତ ପରିସ୍ଥିତିରେ ଏକ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହେବା ଅପରିହାର୍ଯ୍ୟ । ମାତ୍ର ଜନତାର ରାୟକୁ ଶାସକ କଂଗ୍ରେସ ଦଳ ଅବଜ୍ଞା ପ୍ରଦର୍ଶନକରି ଏବଂ ରାଜନୈତିକ ଅସହିଷ୍ଣୁତା ପ୍ରକାଶକରି କୌଣସି ଦଳ ସହିତ ମିଳିତ ମନ୍ତ୍ରିମଣ୍ଡଳ ଗଠନନକରିବାକୁ ଘୋଷଣା କରିବା ଅଶୋଭନୀୟ ଓ ଦୁଃଖଦାୟକ ବୋଲି ଉକ୍ତ ପ୍ରସ୍ତାବରେ କୁହାଯାଇଥିଲା । ଉତ୍କଳ କଂଗ୍ରେସର ଏହି ବୈଠକରେ ପୂର୍ବତନ ବିଧାନସଭା ସଦସ୍ୟ ଶ୍ରୀ କରୁଣାକର ପାଣିଗ୍ରାହୀଙ୍କ ମୃତ୍ୟୁରେ ଶୋକପ୍ରକାଶ କରି ଗୋଟିଏ ପ୍ରସ୍ତାବ ଗୃହୀତ ହୋଇଥିଲା । ବିଗତ ନିର୍ବାଚନ ସମୟରେ ବାଲେଶ୍ୱର ଜିଲ୍ଲାରେ ଆମ୍ଭେମାନେ ଏହି ଦାରୁଣ ଦୁଃଖର ସମ୍ମୁଖୀନ ହୋଇଥିଲୁ । ଠିକ୍ ଭୋଟଗ୍ରହଣର ପୂର୍ବଦିନ ୧୯୭୧ ମସିହା ମାର୍ଚ୍ଚ ମାସ ଚାରି ତାରିଖରେ ଆମ୍ଭମାନଙ୍କର ପରମ ବନ୍ଧୁ ତଥା ଓଡ଼ିଶାର ଜଣେ ବିଶିଷ୍ଟ ନେତା ଓ ସ୍ୱାଧୀନତାସଂଗ୍ରାମୀ ଶ୍ରୀ କରୁଣାକର ପାଣିଗ୍ରାହୀଙ୍କର ପରଲୋକ ହୋଇଯାଇଥିଲା । ସେ ଜଣେ ଅବସ୍ଥାପନ୍ନ ଲୋକ ଥିଲେ, ମାତ୍ର ଆଜୀବନ ଦେଶ ଓ ମାନବ ସେବାରେ ନିଜକୁ ନିୟୋଜିତ କରି ଓଡ଼ିଶାରେ ବିଶେଷ ଖ୍ୟାତି ଅର୍ଜନ କରିପାରିଥିଲେ । ସାଧାରଣ ଲୋକଙ୍କର ସେ ଜଣେ ଉପକାରୀ ବନ୍ଧୁ ଥିଲେ । ସମୟ ଅସମୟ ନବିଚାରି ସେ ଅହର୍ନିଶ ସାଧାରଣ କାର୍ଯ୍ୟରେ ଲାଗିଥିଲେ ଏବଂ ବହୁ ଲୋକଙ୍କୁ ସାହାଯ୍ୟ କରିଥିଲେ । ତାଙ୍କର ଅମାୟିକ ଆଚରଣ ବାଲେଶ୍ୱରବାସୀଙ୍କର ଚିରସ୍ମରଣୀୟ ହୋଇ ରହିବ । ପ୍ରାୟ ଅର୍ଦ୍ଧଶତାବ୍ଦୀ କାଳ ସେ ବାଲେଶ୍ୱର ଜିଲ୍ଲାର ସୁଖଦୁଃଖ ସହିତ ଜଡ଼ିତଥିଲେ ।

ଓଡ଼ିଶା ବିଧାନସଭା ଶାସକ କଂଗ୍ରେସ ଦଳର ନେତା ହିସାବରେ ଶ୍ରୀ ହରେକୃଷ୍ଣ ମହତାବ ନିର୍ବାଚିତ ହୋଇଥିଲେ । ନେତା ନିର୍ବାଚିତ ହେବା ପରେ ୧୯୭୧ ମସିହା ମାର୍ଚ୍ଚ ମାସ ଏକୋଇଶ ତାରିଖରେ ଶ୍ରୀ ମହତାବ ନିମ୍ନ ମର୍ମରେ ମୋ ପାଖକୁ ଖଣ୍ଡିଏ ଚିଠି ଲେଖିଥିଲେ :

ପ୍ରିୟ ବନ୍ଧୁ,

ଆପଣ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିଦ୍ୱାରା ଗୃହୀତ ଓ ପାର୍ଲିଆମେଣ୍ଟାରୀ ବୋର୍ଡ଼ଦ୍ୱାରା ଅନୁମୋଦିତ ପ୍ରସ୍ତାବ ଦେଖିଥିବେ ବୋଲି ଭାବୁଛି । ଆପଣଙ୍କ ସଦ୍ୟ ଅବଗତି ନିମନ୍ତେ ମୁଁ ଏଥିସହିତ ଉକ୍ତ ପ୍ରସ୍ତାବର ଏକ ନକଲ ପଠାଉଛି । ମୁଁ ଯେତେଦୂର ଜାଣେ, ଉତ୍କଳ କଂଗ୍ରେସର ବହୁସଂଖ୍ୟକ ସଭ୍ୟ ଖୋଲାଖୋଲି ଭାବରେ ସମାଜବାଦରେ ବିଶ୍ୱାସକରନ୍ତି ଏବଂ ଜନସାଧାରଣଙ୍କଉନ୍ନତି ନିମନ୍ତେ ପ୍ରଗତିଶୀଳ ପଦକ୍ଷେପ ଗ୍ରହଣ କରିବା ନିମନ୍ତେ ଇଚ୍ଛା ପ୍ରକାଶ କରନ୍ତି । ସେହି ଦୃଷ୍ଟିରୁ ଆପଣଙ୍କୁ

ଅନୁରୋଧ କରିବାକୁ ସାହସ କରୁଛି ଯେ ଶ୍ରୀ ଜଗଜ୍ଜୀବନ ରାମଙ୍କ ପରିଚାଳିତ କଂଗ୍ରେସରେ ଯୋଗ ଦେଇ କେବଳ ସରକାର ଗଠନରେ ନୁହେଁ; ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱରେ କଂଗ୍ରେସର ସମାଜବାଦୀ ନୀତିକୁ କାର୍ଯ୍ୟକାରୀ କରିବା ଦିଗରେ ପୂର୍ଣ୍ଣପ୍ରାଣରେ ସହଯୋଗ କରିବା ନିମନ୍ତେ ଦୟାକରି ବିଚାରକରନ୍ତୁ ।

ମୁଁ ଆପଣଙ୍କଠାରୁ ଶୀଘ୍ର ଉତ୍ତର ଆଶାକରୁଛି । ଆପଣ ଏହି ଚିଠିକୁ ଆପଣଙ୍କ ଦଳର ପ୍ରତ୍ୟେକ ସଭ୍ୟଙ୍କୁ ବ୍ୟକ୍ତିଗତ ଭାବରେ ପଢ଼ାଇବେ ବୋଲି ଆଶା ।

ଆପଣଙ୍କର ବିଶ୍ୱସ୍ତ
ହରେକୃଷ୍ଣ ମହତାବ

ଶ୍ରୀ ମହତାବଙ୍କ ଚିଠିର ଉତ୍ତର ମୁଁ ନିମ୍ନମତେ ଲେଖିଥିଲି :

ପ୍ରିୟ ବନ୍ଧୁ,

ଆପଣଙ୍କର ୧୯୭୧ ମସିହା ମାର୍ଚ୍ଚ ଏକୋଇଶ ତାରିଖ ଚିଠି ପାଇଁ ବିଶେଷ ଧନ୍ୟବାଦ । ମୁଁ ଯତ୍ନର ସହିତ ଚିଠିଟି ଓ ତତ୍‌ସଂଲଗ୍ନ ପ୍ରସ୍ତାବଟି ପଢ଼ିଲି ।

ଉତ୍କଳ କଂଗ୍ରେସର ସମାଜବାଦ ଉପରେ ପୂର୍ଣ୍ଣ ବିଶ୍ୱାସ ଥିଲେ ମଧ୍ୟ ଅର୍ଥନୈତିକ ସମତା ଆଣିବା ଓ ଚିରକାଳପାଇଁ ବୈଷମ୍ୟ ଦୂରକରିବା ଲାଗି ସଂଗ୍ରାମ ଚଳାଇବାପାଇଁ ଆମ ଲୋକମାନଙ୍କ ଚେତନାକୁ ଜାଗ୍ରତ କରିବାର ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ନେଇ ଶ୍ରୀ ଜଗଜ୍ଜୀବନ ରାମଙ୍କ ପରିଚାଳିତ କଂଗ୍ରେସଠାରୁ ପୃଥକ୍ ହୋଇ ରହିବ ।

ଓଡ଼ିଶା ଦୀର୍ଘଦିନଧରି ଯେଉଁ ବୈଷମ୍ୟର ଶିକାର ହୋଇଆସିଛି, ଅବିଳମ୍ବେ ତାହାର ଦୂରୀକରଣ ହେବ ବୋଲି ତୁଙ୍ଗ ମହଲରୁ କୌଣସି ନିର୍ଦ୍ଦିଷ୍ଟ ପ୍ରତିଶ୍ରୁତି ନଥିବାସ୍ଥଳେ ଆମ୍ଭେମାନେ ଆପଣଙ୍କ ଅନୁରୋଧ ରକ୍ଷାକରି ଶାସକ କଂଗ୍ରେସର ଜାତୀୟ ସ୍ତରରେ କଂଗ୍ରେସ(ଜ)ର ସମାଜବାଦ କାର୍ଯ୍ୟକ୍ରମ ପ୍ରତି ସମର୍ଥନ ଅବ୍ୟାହତ ରଖିଲେ ମଧ୍ୟ ଆମ ରାଜ୍ୟ ଓ ଭାରତର ଅନ୍ୟାନ୍ୟ ଧନୀ ରାଜ୍ୟ ମଧ୍ୟରେ ଥିବା ବିରାଟ ପାର୍ଥକ୍ୟ ଦୂର କରିବା ଦିଗରେ ଆମର ସଂଗ୍ରାମ ଅବ୍ୟାହତ ରଖିବୁ; ଯେଉଁଥିପାଇଁକି ଓଡ଼ିଶାର ଜନସାଧାରଣ ଆମ ପ୍ରତି ବିପୁଳ ସମର୍ଥନ ଜଣାଇଛନ୍ତି । x x x ମୁଁ ଏଥି ସହିତ ୧୯୭୧ ମସିହା ମାର୍ଚ୍ଚ ଷୋଳ ତାରିଖ ଓ ସତର ତାରିଖରେ ଓଡ଼ିଶାର ଦାବି ପ୍ରତି ଗୁରୁତ୍ୱ ଦେଇ ଆମ ଦଳର କାର୍ଯ୍ୟକାରୀ ସମିତି ଓ ଉତ୍କଳ କଂଗ୍ରେସ ବିଧାନସଭା ଦଳର ଯୁଗ୍ମ-ବୈଠକରେ ଗୃହୀତ ପ୍ରସ୍ତାବର ଏକ୍ ନକଲ ପଠାଉଛି । ମୁଁ ନିଶ୍ଚିତ ଯେ ଜାତୀୟ ସ୍ତରରେ ଚାପ ପକାଇ ଓଡ଼ିଶାର ନ୍ୟାଯ୍ୟ ଦାବି ହାସଲ କରିବା ବିଷୟ ଆପଣ ନିଶ୍ଚୟ ପସନ୍ଦ କରିବେ । ଦୀର୍ଘଦିନଧରି ଆମ ରାଜ୍ୟ ଭୋଗୁଥିବା ଆଞ୍ଚଳିକ ବୈଷମ୍ୟ ଦୂରକରି ସମାଜବାଦୀ କାର୍ଯ୍ୟକ୍ରମ ରୂପାୟିତ କରିବାର ମୂଳ ଆଧାର ଉପରେ ଆମ ଦଳର ନୀତି ପ୍ରତିଷ୍ଠିତ ହୋଇଥିବାରୁ ଏହି ଲକ୍ଷ୍ୟ ସାଧନ ନିମନ୍ତେ ଆମ ଦଳ ସରକାରରେ ଯୋଗଦେବା ବିଷୟ ବିଚାର କରିବା ଲାଗି ପ୍ରସ୍ତୁତ ଅଛି ବୋଲି ଆମ ଦଳର ଏଥିସଂଲଗ୍ନ ପ୍ରସ୍ତାବରୁ ସ୍ପଷ୍ଟ ବୁଝିପାରିବେ ।

ଆପଣଙ୍କର
ନୀଳମଣି ରାଉତରାୟ

ପ୍ରଥମେ ଉତ୍କଳ କଂଗ୍ରେସ ଶାସକ କଂଗ୍ରେସ ସହିତ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିବା ଦିଗରେ ବିଶେଷ ଆଗ୍ରହ ପ୍ରକାଶ କରିଥିଲା; କିନ୍ତୁ ସେଥିରେ ଶାସକ କଂଗ୍ରେସ ରାଜି ନହୋଇ ଉତ୍କଳ କଂଗ୍ରେସ ଶାସକ କଂଗ୍ରେସ ସହିତ ମିଶିଯାଉ ବୋଲି ଗୋଟିଏ ପ୍ରସ୍ତାବ ଦେଇଥିଲେ । ଶ୍ରୀ ମହତାବ ମଧ୍ୟ ସେହି ମର୍ମରେ ଚିଠି ଲେଖିଥିଲେ । ମୋ'ଠାରୁ ଚିଠିର ଉତ୍ତର ପାଇବା ପରେ ସେ ଆଉ ସେ ଦିଗରେ ଅଗ୍ରସର ହୋଇନଥିଲେ । ଶାସକ କଂଗ୍ରେସ ସହିତ ଆମର ଏହିପରି ଭାବରେ ଆଲୋଚନା ଚାଲିଥିଲାବେଳେ ଲୋକସଭାର ସ୍ୱତନ୍ତ୍ର ଦଳର ସଭ୍ୟ ଶ୍ରୀ ପ୍ରତାପକେଶରୀ ଦେଓ ଖବରକାଗଜରେ

ଗୋଟିଏ ବିବୃତି ଦେଇ କହିଥିଲେ ଯେ ଜଣେ ନିର୍ଦ୍ଦଳୀୟ ବ୍ୟକ୍ତିଙ୍କୁ ମୁଖ୍ୟମନ୍ତ୍ରୀ କରି ସ୍ୱତନ୍ତ୍ର ଦଳ, ଉତ୍କଳ କଂଗ୍ରେସ ଓ ଝାଡ଼ଖଣ୍ଡ ଦଳ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ଉଦ୍ୟମ ଆରମ୍ଭ ହେବା ଉଚିତ । ଉକ୍ତ ବିବୃତିଟି ସେତେବେଳେ ଆମ୍ଭମାନଙ୍କ ଭିତରୁ ଅନେକଙ୍କ ମନକୁ ପାଇଥିଲା । ଏହାପରେ ସ୍ୱତନ୍ତ୍ର, ଉତ୍କଳ କଂଗ୍ରେସ ଓ ଝାଡ଼ଖଣ୍ଡ ଦଳଗୁଡ଼ିକୁ ନେଇ ମିଳିତ ମନ୍ତ୍ରିମଣ୍ଡଳ ଗଠନ ବିଷୟ ଆମ୍ଭମାନଙ୍କ ଭିତରେ ଆଲୋଚିତ ହୋଇଥିଲା । ପ୍ରଥମେ ବିଜୁବାବୁ, ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ମୁଁ ଏକାଠି ବସି ମିଳିତ ମନ୍ତ୍ରିମଣ୍ଡଳ ଗଠନ ବିଷୟରେ ଆଲୋଚନା ଆରମ୍ଭ କରିଥିଲୁ । ଝାଡ଼ଖଣ୍ଡ ଦଳର ନେତା ଶ୍ରୀ ସିଦ୍ଧିଲାଲ ମୁର୍ମୁଙ୍କ ସହିତ ଶ୍ରୀ ଚନ୍ଦ୍ରମୋହନ ସିଂହ ଓ ଶ୍ରୀ ମନ୍ମଥ ମିଶ୍ର ପ୍ରଭୃତି ମୟୂରଭଞ୍ଜର ବନ୍ଧୁମାନଙ୍କ ମାଧ୍ୟମରେ ସମ୍ପର୍କ ସ୍ଥାପନ କରାଯାଇଥିଲା । ଶେଷରେ ତିନି ଦଳକୁ ନେଇ ଗୋଟିଏ ମିଳିତ ସାମ୍ମୁଖ୍ୟ ଗଠନ କରାଯିବା ପାଇଁ ସ୍ଥିରକରାଯାଇଥିଲା ।

ଜଣେ ବୟୋଜ୍ୟେଷ୍ଠ ନିର୍ଦ୍ଦଳୀୟ ବ୍ୟକ୍ତିଙ୍କୁ ମିଳିତ ସାମ୍ମୁଖ୍ୟର ନେତା କରିବା ସମ୍ପର୍କରେ ଶ୍ରୀ ରାଧାନାଥ ରଥ, ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଓ ଶ୍ରୀ ବିଶ୍ୱନାଥ ଦାସଙ୍କ କଥା ଆମ୍ଭମାନଙ୍କ ଭିତରେ ଆଲୋଚିତ ହୋଇଥିଲା । ପ୍ରଥମ ଦୁଇଜଣ ଅନିଚ୍ଛା ପ୍ରକାଶ କରିବାରୁ ଶ୍ରୀ ବିଶ୍ୱନାଥ ଦାସଙ୍କୁ ରାଜି କରାଇପାରିଲେ ସବୁଠାରୁ ଭଲ ହେବ ବୋଲି ଆମ୍ଭମାନଙ୍କ ମଧ୍ୟରେ ବହୁ ମତ ପ୍ରକାଶ ପାଇଥିଲା । ଏହାପରେ ମୋ ସହିତ ଶ୍ରୀ ପ୍ରତାପ ଚନ୍ଦ୍ର ମହାନ୍ତି ଓ ଆଉ ଜଣେ ଦୁଇ ଜଣ ବନ୍ଧୁ ଶ୍ରୀ ବିଶ୍ୱନାଥ ଦାସଙ୍କୁ ତାଙ୍କର କଟକ କାଜିବଜାରସ୍ଥିତ ବାସଭବନରେ ସାକ୍ଷାତକରି ଏହି ପ୍ରସଙ୍ଗରେ ଆଲୋଚନା କରିବା ପାଇଁ ଭୁବନେଶ୍ୱର ବିମାନବନ୍ଦର ନିକଟସ୍ଥ ବିଜୁବାବୁଙ୍କ ବାସଭବନକୁ ସାଙ୍ଗରେ ନେଇ ଆସିଥିଲୁ । ବିଜୁବାବୁଙ୍କ ବାସଭବନରେ ସିଂହଦେଓ, ବିଜୁ ପଟ୍ଟନାୟକ, ସିଦ୍ଧିଲାଲ ମୁର୍ମୁ ଏବଂ ମୋ ଉପସ୍ଥିତିରେ ବିଶ୍ୱନାଥବାବୁଙ୍କ ସହିତ ମିଳିତ ସାମ୍ମୁଖ୍ୟର ନେତୃତ୍ୱ ସମ୍ବନ୍ଧରେ ଆଲୋଚନା ହୋଇଥିଲା । ଏହି ମିଳିତ ସାମ୍ମୁଖ୍ୟର ନେତୃତ୍ୱ ଗ୍ରହଣପାଇଁ ବିଶ୍ୱନାଥ ବାବୁ ରାଜିହୋଇଥିଲେ । ତିନିଗୋଟି ଦଳଦ୍ୱାରା ଅନୁମୋଦିତ ସତରଦଫା-ସମ୍ବଳିତ କାର୍ଯ୍ୟକ୍ରମକୁ ଦେଖି ପଢ଼ି ସେ ଅନୁମୋଦନ କରିଥିଲେ । ଏହା ପରେ ମିଳିତ ସାମ୍ମୁଖ୍ୟର ତିନି ଜଣ ନେତା, ଉତ୍କଳ କଂଗ୍ରେସ-ସ୍ୱତନ୍ତ୍ର ଦଳ ଓ ଝାଡ଼ଖଣ୍ଡ ଦଳ ପକ୍ଷରୁ ଯଥାକ୍ରମେ ମୁଁ, ସିଂହଦେଓ ଏବଂ ମୁର୍ମୁ ଏକତ୍ର ଯାଇ ରାଜ୍ୟପାଳଙ୍କୁ ଦେଖାକରି ଆମ୍ଭମାନଙ୍କର ମିଳିତ ସାମ୍ମୁଖ୍ୟ ଗଠନ ବିଷୟ ଜଣାଇଥିଲୁ ଏବଂ ଶ୍ରୀ ବିଶ୍ୱନାଥ ଦାସ ଉକ୍ତ ସାମ୍ମୁଖ୍ୟର ନେତାରୂପେ ନିର୍ବାଚିତ ହୋଇଥିବା କଥା ଲିଖିତଭାବରେ ରାଜ୍ୟପାଳଙ୍କୁ ଜଣାଇଦେଇଥିଲୁ । ମିଳିତ ସାମ୍ମୁଖ୍ୟର ନେତା ହିସାବରେ ଶ୍ରୀ ବିଶ୍ୱନାଥ ଦାସ ରାଜ୍ୟପାଳଙ୍କୁ ଗୋଟିଏ ଚିଠି ଲେଖି ଜଣାଇଥିଲେ ଯେ ଓଡ଼ିଶା ବିଧାନସଭାର ସେତେବେଳେ ନିର୍ବାଚିତ ୧୩୬ ଜଣ ସଭ୍ୟଙ୍କ ମଧ୍ୟରୁ ୭୩ ଜଣ ସଦସ୍ୟଙ୍କର ତାଙ୍କ ପ୍ରତି ସମର୍ଥନ ଥିବାରୁ ତାଙ୍କୁ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ରାଜ୍ୟପାଳ ଆମନ୍ତ୍ରଣ କରିବା ବିଧେୟ । ରାଜ୍ୟପାଳ ଡକ୍ଟର ଆନ୍‌ସାରୀ ମିଳିତ ସାମ୍ମୁଖ୍ୟ ସଭ୍ୟମାନଙ୍କର ତାଲିକା ତଥା ସମର୍ଥକମାନଙ୍କ ନାମ ପରୀକ୍ଷା କଲା ପରେ ଅପ୍ରେଲ ମାସ ତିନି ତାରିଖ ଦିନ ମନ୍ତ୍ରିମଣ୍ଡଳ ଗଠନ କରିବାପାଇଁ ଆମନ୍ତ୍ରଣ କରି ଶ୍ରୀ ବିଶ୍ୱନାଥ ଦାସଙ୍କୁ ଚିଠି ଦେଇଥିଲେ । ଆମର ପୂର୍ବରୁ ସ୍ଥିରହୋଇଥିଲା ଯେ ଶ୍ରୀଯୁକ୍ତ ଦାସଙ୍କ ମନ୍ତ୍ରିମଣ୍ଡଳରେ ମୁଖ୍ୟମନ୍ତ୍ରୀଙ୍କ ଛଡ଼ା ଉତ୍କଳ କଂଗ୍ରେସରୁ ଛଅ ଜଣ, ସ୍ୱତନ୍ତ୍ର ଦଳରୁ ଛଅ ଜଣ ଓ ଝାଡ଼ଖଣ୍ଡ ଦଳରୁ ଜଣେ ଏହିପରି ଆଉ ତେରଜଣ ମନ୍ତ୍ରୀ ରହିବେ । ସେହି ଅନୁସାରେ ସାମ୍ମୁଖ୍ୟର ନେତା ଶ୍ରୀ ବିଶ୍ୱନାଥ ଦାସ ରାଜ୍ୟପାଳଙ୍କ ପାଖରେ ତାଲିକା ଦେଇଥିଲେ ଓ ସେହି ତିନି ତାରିଖ ରାତି ନ'ଟା ସମୟରେ ରାଜଭବନରେ ଏକ ଗାମ୍ଭୀର୍ଯ୍ୟପୂର୍ଣ୍ଣ ପରିବେଶ ମଧ୍ୟରେ ମନ୍ତ୍ରିମଣ୍ଡଳ ଶପଥ ଗ୍ରହଣ କରିଥିଲେ । ଶ୍ରୀ ବିଶ୍ୱନାଥ ଦାସ ମୁଖ୍ୟମନ୍ତ୍ରୀରୂପେ ଏବଂ ସର୍ବଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ, ମୁଁ, ପ୍ରତାପ ଚନ୍ଦ୍ର ମହାନ୍ତି, ବୃନ୍ଦାବନ ନାୟକ, ଅନନ୍ତ ନାରାୟଣ ସିଂହଦେଓ, ପ୍ରହ୍ଲାଦ ମଲ୍ଲିକ, ନଟବର ପ୍ରଧାନ, ଶରତ କୁମାର କର, ରାମକୃଷ୍ଣ ପଟ୍ଟନାୟକ, ଅଇଁଠୁ ସାହୁ, ଦୟାନିଧି ନାୟକ, ଗଙ୍ଗାଧର

ପ୍ରଧାନ ଓ ସିଦ୍ଧିଲାଲ ମର୍ମୁ ପ୍ରମୁଖ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀଭାବରେ ଶପଥ ନେଇଥିଲୁ । ଏପ୍ରିଲ୍ ମାସ ବାର ତାରିଖରେ ବାଚସ୍ପତି ନିର୍ବାଚନ ହେଲା । ମିଳିତ ସାମ୍ମୁଖ୍ୟ ପ୍ରାର୍ଥୀ ଶ୍ରୀ ନନ୍ଦକିଶୋର ମିଶ୍ର ବାଚସ୍ପତି ନିର୍ବାଚିତ ହୋଇଥିଲେ । ମଇ ମାସ ଛଅ ତାରିଖ ଉପବାଚସ୍ପତି ନିର୍ବାଚନରେ ମିଳିତ ସାମ୍ମୁଖ୍ୟ ପ୍ରାର୍ଥୀ ଶ୍ରୀ ନାରାୟଣ ବୀରବର ସାମନ୍ତ ନିର୍ବାଚିତ ହୋଇଥିଲେ । କିଛିଦିନ ପରେ ସର୍ବଶ୍ରୀ ଡମ୍ବରୁ ମାଝୀ, ଯଦୁନାଥ ଦାସ ମହାପାତ୍ର, ଘାସିରାମ ମାଝୀ, ବୀରଭଦ୍ର ସିଂହ, ଭାନୁଗଙ୍ଗ ତ୍ରିଭୁବନ ଦେଓ, ସହରାଇ ଓରାମ, ପ୍ରଫୁଲ୍ଲ କୁମାର ଦାଶ, ଦେବରାଜ ସାହୁ, ଶରତ୍ କୁମାର ଦେବ, ଗୋବିନ୍ଦ ଚନ୍ଦ୍ର ସେଠ, ରାମଚନ୍ଦ୍ର ପ୍ରହରାଜ ଓ ରବି ସିଂହ ମାଝୀ ଉପମନ୍ତ୍ରୀ ନିଯୁକ୍ତ ହୋଇଥିଲେ ।

## ବିଶ୍ୱନାଥ ଦାସ ମନ୍ତ୍ରିମଣ୍ଡଳର ମର୍ଯ୍ୟାଦା

ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କର ନେତୃତ୍ୱରେ ମିଳିତ ସାମ୍ମୁଖ୍ୟ ମନ୍ତ୍ରିମଣ୍ଡଳ ମର୍ଯ୍ୟାଦାବନ୍ତ ଭାବରେ କାର୍ଯ୍ୟ ଆରମ୍ଭ କରିଥିଲେ । ୧୯୩୭ ମସିହାରେ ଓଡ଼ିଶାର ପ୍ରଧାନମନ୍ତ୍ରୀ ହିସାବରେ ଶ୍ରୀ ବିଶ୍ୱନାଥ ଦାସ ସାରା ଦେଶରେ ପ୍ରତିଷ୍ଠା ଲାଭ କରିପାରିଥିଲେ । ସେହି ପ୍ରତିଷ୍ଠା ତାଙ୍କୁ ବର୍ତ୍ତମାନ ମଧ୍ୟ ବିଶେଷଭାବରେ ସହାୟକ ହୋଇଥିଲା । ଜଣେ ବୟୋଜ୍ୟେଷ୍ଠ, ଅଭିଜ୍ଞ ରାଜନୈତିକ ବ୍ୟକ୍ତି ହିସାବରେ ସେ ଜନସାଧାରଣଙ୍କର ସମ୍ମାନଭାଜନ ହୋଇଥିଲେ । ଦିଲ୍ଲୀରେ ତାଙ୍କର ସୁନାମ ଥିଲା । ଉତ୍ତରପ୍ରଦେଶରେ ପାଞ୍ଚବର୍ଷକାଳ ରାଜ୍ୟପାଳ ଥିଲାବେଳେ ସେ ବହୁ ବିଶିଷ୍ଟ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ସମ୍ପର୍କରେ ଆସିଥିଲେ । ମୁଖ୍ୟମନ୍ତ୍ରୀ ହିସାବରେ ଦିଲ୍ଲୀମହଲରେ ରାଜ୍ୟର ସ୍ୱାର୍ଥ ସମ୍ବନ୍ଧୀୟ କାର୍ଯ୍ୟ ହାସଲ କରିବାରେ ତାହା ମଧ୍ୟ ସହାୟକ ହୋଇଥିଲା । ମନ୍ତ୍ରିମଣ୍ଡଳ ଗଠନ କରିବାର ଅଳ୍ପଦିନ ପରେ ଦିଲ୍ଲୀରେ ମୁଖ୍ୟମନ୍ତ୍ରୀମାନଙ୍କର ଗୋଟିଏ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଦେଶର ଶାନ୍ତିଶୃଙ୍ଖଳା ବିଷୟରେ ସେଠାରେ ଆଲୋଚନା ହେବାର ଥାଏ । ରାଜ୍ୟର ସ୍ୱରାଷ୍ଟ୍ର ମନ୍ତ୍ରୀ ହିସାବରେ ମୁଁ ତାଙ୍କ ସାଙ୍ଗରେ ଯାଇଥିଲି । ତାଙ୍କ କଥା ଅନ୍ୟମାନେ ସମ୍ମାନର ସହ ଶୁଣିବାର ମୁଁ ସେଠାରେ ଲକ୍ଷ୍ୟ କରିଥିଲି । ଆମ ରାଜ୍ୟର ବିଭିନ୍ନ କାର୍ଯ୍ୟ ସମ୍ବନ୍ଧରେ ବିଶ୍ୱନାଥ ବାବୁ ସମୟସମୟରେ କେନ୍ଦ୍ର ମନ୍ତ୍ରୀମାନଙ୍କୁ ସାକ୍ଷାତ୍ କରୁଥିଲେ । ମୁଖ୍ୟମନ୍ତ୍ରୀ ଶ୍ରୀ ଦାସଙ୍କ କଥା ପ୍ରତି କେନ୍ଦ୍ର ମନ୍ତ୍ରୀମାନେ ବିଶେଷ ଗୁରୁତ୍ୱ ଦେଉଥିଲେ । ଦକ୍ଷିଣ-ପୂର୍ବ ରେଳୱେର ସଦର କାର୍ଯ୍ୟାଳୟ କଲିକତାରେ ଅବସ୍ଥିତ । ଦକ୍ଷିଣ-ପୂର୍ବ ରେଳୱେର ଅଧିକାଂଶ ଗତିପଥ ଓଡ଼ିଶାରେ ଏବଂ କେନ୍ଦ୍ରସ୍ଥଳ ହେଉଛି ଓଡ଼ିଶା । ତେଣୁ ଏହାର ସଦର କାର୍ଯ୍ୟାଳୟ କଲିକତାରେ ନରହି ଓଡ଼ିଶାରେ ରହିବା ଉଚିତ ବୋଲି ଓଡ଼ିଶାର ଲୋକେ ସବୁବେଳେ ଦାବି କରି ଆସିଛନ୍ତି । ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସ ଏ ବିଷୟଟିକୁ ଖୁବ୍ ଭଲଭାବରେ ଏବଂ ଦୃଢ଼ତାର ସହିତ କେନ୍ଦ୍ର ରେଳ ବିଭାଗ ମନ୍ତ୍ରୀ ଶ୍ରୀ କେ. ହନୁମନ୍ତେୟାଙ୍କ ପାଖରେ ଉପସ୍ଥାପିତ କରିପାରିଥିଲେ । ଶ୍ରୀ ହନୁମନ୍ତେୟା ଥିଲେ ବିଶ୍ୱନାଥବାବୁଙ୍କର ଜଣେ ପୁରୁଣା ବନ୍ଧୁ । ଦିନେ ରେଳଭବନରେ ଦକ୍ଷିଣ-ପୂର୍ବ ରେଳୱେର ସଦର କାର୍ଯ୍ୟାଳୟର ଅବସ୍ଥିତି ବିଷୟ ଆଲୋଚନା କରିବାପାଇଁ ବିଭାଗୀୟ ବଡ଼ ଅଫିସରମାନଙ୍କୁ ସେ ଡକାଇଥିଲେ । ବିଶ୍ୱନାଥବାବୁଙ୍କ ଉପସ୍ଥିତିରେ ସେ ସେମାନଙ୍କ ସହ ଆଲୋଚନା କରିଥିଲେ । ଆଲୋଚନା ସମୟରେ ମୁଁ ଉପସ୍ଥିତ ଥାଏ । ବିଶ୍ୱନାଥବାବୁ ରେଳୱେ ମାନଚିତ୍ର ଓ ଓଡ଼ିଶାର ମାନଚିତ୍ର ଦେଖାଇ ଦକ୍ଷିଣ-ପୂର୍ବ ରେଳୱେର ସଦର କାର୍ଯ୍ୟାଳୟ ଓଡ଼ିଶାରେ ରହିବା ସପକ୍ଷରେ ଦୃଢ଼ ଯୁକ୍ତି ଉପସ୍ଥାପିତ କରିଥିଲେ । ଶ୍ରୀ ହନୁମନ୍ତେୟା ଓଡ଼ିଶା ଦାବିର ଯଥାର୍ଥତା ଅନୁଭବ କରିପାରିଥିଲେ । ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କର ଅନୁରୋଧକ୍ରମେ ଶ୍ରୀ ହନୁମନ୍ତେୟା ୧୯୭୨ ମସିହା ପ୍ରଥମ ଭାଗରେ ଓଡ଼ିଶା ଆସିଥିଲେ ଏବଂ ଦକ୍ଷିଣ-ପୂର୍ବ ରେଳବାଇର ସଦର କାର୍ଯ୍ୟାଳୟକୁ ଓଡ଼ିଶାକୁ କିପରି ସ୍ଥାନାନ୍ତରିତ ହେବ, ସେ ବିଷୟଟି ପ୍ରତି ବିଶେଷ ଧ୍ୟାନ ଦେଉଥିବାର ଆମେ ଲକ୍ଷ୍ୟ କରିଥିଲୁ । ମାତ୍ର ଆମର ଦୁର୍ଭାଗ୍ୟକୁ ଅଳ୍ପଦିନ ପରେ ହନୁମନ୍ତେୟା କେନ୍ଦ୍ର ମନ୍ତ୍ରୀପଦରୁ ଇସ୍ତଫା ଦେଇଥିଲେ । ଓଡ଼ିଶାରେ ଶ୍ରୀ ବିଶ୍ୱନାଥ ଦାସଙ୍କ ଠିକ୍ ପରେ ଯେ ମୁଖ୍ୟମନ୍ତ୍ରୀ ହେଲେ ସେ ଏ

ବିଷୟଟି ପ୍ରତି ଆଉ ବିଶେଷ ଗୁରୁତ୍ୱ ଦେଲେନାହିଁ; କାରଣ ତାଙ୍କ ଉପରେ ପଶ୍ଚିମ ବଙ୍ଗଳାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ସିର୍ଦ୍ଧାର୍ଥଶଙ୍କର ରାୟଙ୍କର ଏପରି ପ୍ରଭାବ ଥିଲା ଯେ ସେ ତାଙ୍କୁ ଅସନ୍ତୁଷ୍ଟ କରିବାକୁ ଚାହୁଁ ନଥିଲେ ।

୧୯୭୧ ମସିହା ମେ' ମାସରେ ବିଧାନସଭାର ପ୍ରଥମ ଅଧିବେଶନ ଡକାଯାଇଥିଲା । ରାଜ୍ୟପାଳ ଡକ୍ଟର ଆନ୍‌ସାରୀଙ୍କ ଉଦ୍‌ଘାଟନ ଅଭିଭାଷଣ ପରେ ବଙ୍ଗଳା ଦେଶର ଜନସାଧାରଣଙ୍କର ବୀରୋଚିତ ସଂଗ୍ରାମପ୍ରତି ଓଡ଼ିଶାର ଜନସାଧାରଣଙ୍କ ପକ୍ଷରୁ ସହାନୁଭୂତି ପ୍ରଦର୍ଶନ କରି ଓ ସେ ଦେଶର ବିପଦବେଳେ ଉଦାର ଭାବରେ ସାହାଯ୍ୟ କରିବାପାଇଁ ନିବେଦନ ଜଣାଇ ଓଡ଼ିଶା ବିଧାନସଭାରେ ସର୍ବସମ୍ମତିକ୍ରମେ ଗୋଟିଏ ପ୍ରସ୍ତାବ ଗୃହୀତ ହୋଇଥିଲା । ବଙ୍ଗଳାଦେଶର ନିରସ୍ତ୍ର ନିରୀହ ଜନତା ଉପରେ ପାକିସ୍ତାନ ଫୌଜଙ୍କର ବର୍ବର ଆକ୍ରମଣ ଓ ଅତ୍ୟାଚାରକୁ ଓଡ଼ିଶା ସରକାର ଓ ଓଡ଼ିଶା ଜନସାଧାରଣ ଭାରତ ସରକାର ଓ ସମଗ୍ର ଦେଶବାସୀଙ୍କ ସହ ମିଶି ସମସ୍ୱରରେ ନିନ୍ଦାବାଦ କରୁଛି ବୋଲି ଉକ୍ତ ପ୍ରସ୍ତାବରେ ଘୋଷଣା କରାଯାଇଥିଲା । ବଙ୍ଗଳାଦେଶ ସରକାରଙ୍କୁ ତୁରନ୍ତ ସ୍ୱୀକୃତି ଦେବାପାଇଁ ମଧ୍ୟ ଭାରତ ସରକାରଙ୍କୁ ନିବେଦନ କରାଯାଇଥିଲା । ସାଧାରଣତଃ ଏ ପ୍ରକାର ପ୍ରସ୍ତାବ ଗୋଟିଏ ରାଜ୍ୟ ବିଧାନସଭାରେ ଆସିବାର କଥା ନୁହେଁ; ମାତ୍ର ସେତେବେଳେ ବଙ୍ଗଳାଦେଶରେ ଚାଲିଥିବା ନରହତ୍ୟା ସମ୍ବନ୍ଧରେ ଆମ ଦେଶବାସୀ ଏଭଳି ଭାବରେ ଉଦ୍‌ବିଗ୍ନ ଥିଲେ ଯେ ସେଥିରେ ଆମ ରାଜ୍ୟ ବିଧାନସଭା ମାଧ୍ୟମରେ ରାଜ୍ୟବାସୀଙ୍କ ମନୋଭାବ ପ୍ରତିଫଳିତ ନହୋଇଥିଲେ କଥାଟି ଅତି ଅସ୍ୱାଭାବିକ ହୋଇଥାଆନ୍ତା । ପ୍ରସ୍ତାବଟି ଗୃହୀତ ହେବାପରେ ସେହି ଦିନ ବିଧାସଭାରେ ମୁଁ ଗୋଟିଏ ଅତି ଅବାଞ୍ଛିତ ପରିସ୍ଥିତିର ସମ୍ମୁଖୀନ ହୋଇଥିଲି । କଲିକତାରେ ଥିବା ଓଡ଼ିଶା ସରକାରଙ୍କର ଉତ୍କଳ ଭବନରେ ପାକିସ୍ତାନର ଡେପୁଟି ହାଇକମିଶନରଙ୍କୁ ଓଡ଼ିଶା ସରକାରଙ୍କର ଅତିଥି ଭବନରେ ଆଶ୍ରୟ ଦିଆଯାଉଛି ଓ ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ ହିସାବରେ ମୁଁ ଏ ପ୍ରକାର ଅବାଞ୍ଛନୀୟ ଓ ଗର୍ହିତ କାର୍ଯ୍ୟପାଇଁ ଦାୟୀ ବୋଲି ବିଧାନସଭାରେ କୁହାଯାଇଥିଲା । ଘଟଣାଟି ହେଲା ଯେ କଲିକତାରେ ଥିବା ପାକିସ୍ତାନର ଡେପୁଟି ହାଇକମିଶନରଙ୍କ ଘରକୁ ଲୋକମାନେ ଆକ୍ରମଣ କରିଥିଲେ । ପାକିସ୍ତାନର ଡେପୁଟି ହାଇକମିଶନର ଲୁଚିକରି ପଳାଇଯାଇ ପଶ୍ଚିମ ବଙ୍ଗଳା ସରକାରଙ୍କ ଶରଣ ପଶିଲେ । ଏଭଳି କ୍ଷେତ୍ରରେ ଏପରିକି ଶତ୍ରୁପକ୍ଷର ରାଷ୍ଟ୍ରଦୂତମାନଙ୍କୁ ମଧ୍ୟ ଶରଣ ଦେବା ଯେକୌଣସି ସରକାରଙ୍କ କର୍ତ୍ତବ୍ୟ; କିନ୍ତୁ ତାଙ୍କୁ କେଉଁଠାରେ ଲୁଚାଇରଖିବେ ତାହା ପଶ୍ଚିମ ବଙ୍ଗଳା ସରକାରଙ୍କ ପକ୍ଷରେ ଏକ ସମସ୍ୟା ହୋଇପଡ଼ିଲା । ପଶ୍ଚିବ ବଙ୍ଗଳା ସରକାର ଭାବିଲେ ଯେ ଓଡ଼ିଶା ସରକାରଙ୍କର ଉତ୍କଳ ଭବନରେ ପାକିସ୍ତାନର ଡେପୁଟି ହାଇକମିଶନରଙ୍କୁ କିଛି ସମୟ ଆଶ୍ରୟ ଦେଇ ରଖିବା ନିରାପଦ ହେବ । ତେଣୁ ଉତ୍କଳ ଭବନରେ ପଶ୍ଚିମ ବଙ୍ଗଳା ସରକାରଙ୍କର ଗୋଟିଏ ବଖରା ଘର ଆବଶ୍ୟକ ବୋଲି ପଶ୍ଚିମ ବଙ୍ଗଳା ଚିଫ୍ ସେକ୍ରେଟେରୀ ଆମ ରାଜ୍ୟର ହୋମ୍ ସେକ୍ରେଟେରୀଙ୍କ ପାଖକୁ ତାରକରିଥିଲେ । ସେଠାରେ ପାକିସ୍ତାନର ଡେପୁଟି ହାଇକମିଶନରଙ୍କ ରହିବା କଥା ସେ ଉଲ୍ଲେଖ କରିନଥିଲେ । ପାକିସ୍ତାନୀ ଡେପୁଟି ହାଇକମିଶନର ସେଠାରେ ଥିବା କଥା ଆମକୁ ଜଣାପଡ଼ଇଲାବେଳକୁ ସେ ସେଠାରୁ ଅନ୍ୟତ୍ର ଚାଲିଯାଇଥିଲେ । ଏ ପରିପ୍ରେକ୍ଷୀରେ ପଶ୍ଚିମବଙ୍ଗଳା ସରକାରଙ୍କ ଅନୁରୋଧ ରକ୍ଷାକରିବାରେ କୌଣସି ଅସମୀଚୀନ କାର୍ଯ୍ୟ ହୋଇନାହିଁ ବୋଲି ମୁଁ ଦୃଢ଼ତାର ସହିତ କହିଥିଲି । ସେତିକିରେ ଗୃହରେ ଉତ୍ତେଜନା ହ୍ରାସପାଇଥିଲା ।

୧୯୭୧ ମସିହା ସାଧାରଣ ନିର୍ବାଚନ ପରେ ଆମ ରାଜ୍ୟରେ ବିଧାନସଭାକୁ ପାଞ୍ଚଗୋଟି ଓ ଲୋକସଭାକୁ ଗୋଟିଏ ଉପନିର୍ବାଚନ ହୋଇଥିଲା । ସବୁ ନିର୍ବାଚନରେ ମିଳିତ ସାମ୍ମୁଖ୍ୟ ପ୍ରାର୍ଥୀମାନେ ଜୟଯୁକ୍ତ ହୋଇଥିଲେ । ଏଥିରୁ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ମିଳିତ ମନ୍ତ୍ରିମଣ୍ଡଳ ପ୍ରତି ମୋଟାମୋଟି ଜନସମର୍ଥନ ପ୍ରମାଣିତ ହୋଇଥିଲା । ଶ୍ରୀ ବିଶ୍ୱନାଥ ଦାସ ବିଧାନସଭାର ସଭ୍ୟ ନ ଥାଇ ମୁଖ୍ୟମନ୍ତ୍ରୀ ହୋଇଥିଲେ । ତେଣୁ ନିୟମ ଅନୁସାରେ ଛ'ମାସ ମଧ୍ୟରେ ସେ ବିଧାନସଭାକୁ ନିର୍ବାଚିତ ହୋଇ ଆସିବାର

କଥା । ରାଉରକେଲା ନିର୍ବାଚନମଣ୍ଡଳୀରୁ ଶ୍ରୀ ଦାସ ସ୍ୱାଧୀନପ୍ରାର୍ଥୀରୂପେ ନିର୍ବାଚିତ ହୋଇଥିଲେ । ରାଉରକେଲା ଉପନିର୍ବାଚନ ଗୋଟିଏ ସ୍ମରଣୀୟ ଘଟଣା । ସେଠାରେ ମୁଖ୍ୟମନ୍ତ୍ରୀଙ୍କୁ ହରାଇବାପାଇଁ ଶାସକ କଂଗ୍ରେସ ତା'ର ସମସ୍ତ ଶକ୍ତି ଖଟାଇଥିଲା । ବିଧାନସଭାରେ ବିରୁଦ୍ଧ ଦଳର ନେତା ଶ୍ରୀ ବିନାୟକ ଆଚାର୍ଯ୍ୟ ସେଠାରେ ବିଶ୍ୱନାଥବାବୁଙ୍କ ବିରୁଦ୍ଧରେ ଶାସକ କଂଗ୍ରେସ ପ୍ରାର୍ଥୀ ହୋଇଥିଲେ । ଶାସକ କଂଗ୍ରେସ ନେତାଙ୍କୁ ହରାଇ ଆମର ସମର୍ଥିତ ସ୍ୱାଧୀନ ପ୍ରାର୍ଥୀ ମୁଖ୍ୟମନ୍ତ୍ରୀ ଶ୍ରୀ ଦାସ ଜୟଯୁକ୍ତ ହୋଇଥିଲେ । ନୟାଗଡ଼ ଓ ଭଦ୍ରକ ଉପନିର୍ବାଚନରେ ଉତ୍କଳ କଂଗ୍ରେସ ପ୍ରାର୍ଥୀରୂପେ ଯଥାକ୍ରମେ ଶ୍ରୀ ଅଚ୍ୟୁତାନନ୍ଦ ମହାନ୍ତି ଓ ଭଦ୍ରକ କଲେଜର ପୂର୍ବତନ ଅଧକ୍ଷ ଶ୍ରୀ ବଳରାମ ସାହୁ ଜୟଯୁକ୍ତ ହୋଇଥିଲେ । ଭଦ୍ରକରୁ ଶାସକ କଂଗ୍ରେସ ପ୍ରାର୍ଥୀ ଥିଲେ ଯୁବନେତା ଶ୍ରୀ ପ୍ରଫୁଲ୍ଲ କୁମାର ସାମଲ । ସେ ବଳରାମ ବାବୁଙ୍କର ଜଣେ ଛାତ୍ର ଥିଲେ ଏବଂ ଜଣେ ବିନୟୀ ଓ କଷ୍ଟସହିଷ୍ଣୁ ସମାଜସେବୀ ହିସାବରେ ଖ୍ୟାତି ଅର୍ଜନ କରିପାରିଥିଲେ । ଏଠାରେ ପ୍ରତିଦ୍ୱନ୍ଦ୍ୱିତା ଗୁରୁ ଓ ଶିଷ୍ୟଙ୍କ ମଧରେ ହେଉଥିଲା ଏବଂ ଶିଷ୍ୟ ମାତ୍ର ଅଠର ଶହ ଭୋଟ କମ୍ ପାଇ ଗୁରୁଙ୍କଠାରୁ ପରାସ୍ତ ହୋଇଥିଲେ । ଏଠାକାର ମୁସଲମାନ ଭୋଟଦାତାମାନଙ୍କୁ ପ୍ରଭାବିତ କରିବା ଉଦ୍ଦେଶ୍ୟରେ ଶାସକ କଂଗ୍ରେସ ନେତା ତଥା ପୂର୍ବତନ ରାଷ୍ଟ୍ରପତି ଜନାବ ଫକୀରୁଦ୍ଦୀନ ଅଲ୍ଲି ଅହମ୍ମଦ ପ୍ରଚାରପାଇଁ ଭଦ୍ରକ ଆସିଥିଲେ । ଭଦ୍ରକ ନିର୍ବାଚନମଣ୍ଡଳୀରେ ଶ୍ରୀ ବଳରାମ ସାହୁଙ୍କ ପ୍ରାର୍ଥୀତ୍ୱ ପ୍ରତି ଆମ ଦଳର ସାଧାରଣ କର୍ମୀମାନଙ୍କର ସମର୍ଥନ ନ ଥିଲା, ସେମାନେ ଶ୍ରୀ ରତ୍ନାକର ମହାନ୍ତିଙ୍କୁ ମନୋନୀତ କରିବାକୁ ଚାହୁଁଥିଲେ । ତେଣୁ ସମସ୍ତଙ୍କର ସହଯୋଗ ପାଇବାପାଇଁ ମୋତେ ବିଶେଷ ଉଦ୍ୟମ କରିବାକୁ ପଡ଼ିଥିଲା । କଲିକତାରେ ପ୍ରବାସୀ ଓଡ଼ିଆମାନଙ୍କର ସଙ୍ଗଠନର ଜଣେ କର୍ମୀ ହିସାବରେ ମୁଁ ରତ୍ନାକରବାବୁଙ୍କୁ ଆଗରୁ ଜାଣିଥିଲି । ତାଙ୍କୁ ବୁଝାବୁଝି କରି ଶାନ୍ତ କରାଇ ତାଙ୍କର ସହଯୋଗ ପାଇଥିଲି । ପରବର୍ତ୍ତୀକାଳରେ ୧୯୭୭ ନିର୍ବାଚନରେ ଶ୍ରୀ ମହାନ୍ତି ଭଦ୍ରକରୁ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ରାଜନଗର ନିର୍ବାଚନମଣ୍ଡଳୀର ଉପନିର୍ବାଚନରେ ଉତ୍କଳ କଂଗ୍ରେସ ନେତା ଶ୍ରୀ ବିଜୁ ପଟ୍ଟନାୟକ ପ୍ରାର୍ଥୀ ହୋଇଥିଲେ ଏବଂ ବହୁ ଅଧିକ ଭୋଟରେ ଜୟଯୁକ୍ତ ହୋଇଥିଲେ । କଳାହାଣ୍ଡିର ଲୋକସଭା, ବିଧାନସଭା ଓ ମୟୂରଭଞ୍ଜ ଲୋକସଭା ଉପନିର୍ବାଚନରେ ଯଥାକ୍ରମେ ସ୍ୱତନ୍ତ୍ର ଦଳର ପ୍ରାର୍ଥୀ ଶ୍ରୀ ରଘୁନାଥ ପ୍ରହରାଜ ଓ ଉତ୍କଳ କଂଗ୍ରେସ ପ୍ରାର୍ଥୀ ଶ୍ରୀ ଚନ୍ଦ୍ରମୋହନ ସିଂହ ଜୟଯୁକ୍ତ ହୋଇଥିଲେ । ରାଉରକେଲା ଉପନିର୍ବାଚନ ସମୟରେ ଆମ ରାଜ୍ୟର ରାଜ୍ୟପାଳ ଡକ୍ଟର ଆନ୍‌ସାରୀ ଛୁଟିରେ ଗଲେ ଏବଂ ତାଙ୍କ ସ୍ଥାନରେ ସର୍ଦ୍ଦାର ଯୋଗେନ୍ଦ୍ର ସିଂହ ଆମ ରାଜ୍ୟର ରାଜ୍ୟପାଳ ହୋଇ ଆସିଲେ । ସାଧାରଣତଃ ଜଣେ ରାଜ୍ୟପାଳ ଛୁଟିରେ ଗଲାବେଳେ ରାଜ୍ୟ ହାଇକୋର୍ଟର ପ୍ରଧାନ ବିଚାରପତି ଅସ୍ଥାୟୀ ଭାବରେ ରାଜ୍ୟପାଳ ଦାୟିତ୍ୱ ନେଇଥାଆନ୍ତି; କିନ୍ତୁ ଏଠାରେ ସେ ପ୍ରକାର କରାନଯାଇ ଏକାବେଳକେ ଜଣେ ନୂଆ ରାଜ୍ୟପାଳଙ୍କୁ ନିଯୁକ୍ତ କରାଯାଇଥିଲା । ଏହାର କାରଣ ମୁଁ ପରେ ଜାଣିବାକୁ ପାଇଲି । ଶାସକ କଂଗ୍ରେସର କେନ୍ଦ୍ର ମହଲରେ ଧାରଣା ସୃଷ୍ଟି ହୋଇଥିଲା ଯେ ରାଉରକେଲା ଉପନିର୍ବାଚନରେ ଶ୍ରୀ ବିଶ୍ୱନାଥ ଦାସ ହାରିଯିବେ; ତେଣୁ ସେହି ପରିସ୍ଥିତିରେ ଯେଉଁ ରାଜନୈତିକ ଅସ୍ଥିରତା ବା ସଙ୍କଟ ଉପୁଜିବ ତାକୁ ସମ୍ଭାଳିବାପାଇଁ କେନ୍ଦ୍ର ସରକାରଙ୍କର ଜଣେ ବିଶ୍ୱସ୍ତ ଲୋକ ରାଜ୍ୟପାଳ ଭାବରେ ଓଡ଼ିଶାରେ ରହିଥିବା ଆବଶ୍ୟକ । ସେଇଥିପାଇଁ କେନ୍ଦ୍ର ସରକାର ସର୍ଦ୍ଦାର ଯୋଗେନ୍ଦ୍ର ସିଂହଙ୍କୁ ରାଜ୍ୟପାଳଭାବେ ନିଯୁକ୍ତ କରି ପଠାଇଥିଲେ । ସର୍ଦ୍ଦାର ଯୋଗେନ୍ଦ୍ର ସିଂହ କଥାପ୍ରସଙ୍ଗରେ ମୋ ପାଖରେ ଏକଥା ସ୍ୱୀକାର କରିଥିଲେ ।

## ଏକସ୍ତରିର ଦୈବୀ ବିପତ୍ତି

ଶ୍ରୀ ବିଶ୍ୱନାଥ ଦାସଙ୍କ ମନ୍ତ୍ରିମଣ୍ଡଳ ସମୟରେ ୧୯୭୧ ମସିହାରେ ଆମ ରାଜ୍ୟରେ ଯେଉଳି ଭାବରେ ବାରମ୍ବାର ପ୍ରାକୃତିକ ବିପତ୍ତି ଘଟିଥିଲା, ତାହା ଅଭୂତପୂର୍ବ କହିବାକୁ ହେବ । ରାଜ୍ୟର ବ୍ରାହ୍ମଣୀ

ଓ ବୈତରଣୀ ଦୁଇ ନଦୀରେ ପ୍ରବଳ ବନ୍ୟା ହୋଇଥିଲା । ଥରକୁଥର ବନ୍ୟାଜଳ ମାଡ଼ିଆସି ଅସ୍ୱାଭାବିକ ଭାବେ ଦୀର୍ଘକାଳ ପର୍ଯ୍ୟନ୍ତ ଜମିରହିବାରୁ ମରାମତି ହେଉଥିବା ବନ୍ଧବାଡ଼ ଧୋଇହୋଇଯାଉଥାଏ । ଥରକୁଥର ବନ୍ୟାଜଳ ସମ୍ପୂର୍ଣ୍ଣରୂପେ ନିଷ୍କାସିତ ହେବା ପୂର୍ବରୁ ତା'ରି ଉପରେ ଦ୍ୱିତୀୟ ଓ ତୃତୀୟଥର ପାଇଁ ନଈରେ ବଢ଼ିପାଣି ଆସିଲା । ବନ୍ୟାର ଠିକ୍ ପରେ ପରେ ଅକ୍ଟୋବର ମାସ ଅଣ ତିରିଶ ତାରିଖରେ ଏକ ପ୍ରଳୟଙ୍କରୀ ଘୂର୍ଣ୍ଣିବାତ୍ୟା ଓଡ଼ିଶାର ଉପକୂଳ ଅଞ୍ଚଳମାନଙ୍କରେ ଅଠର ଘଣ୍ଟାବ୍ୟାପୀ ଅଭୂତପୂର୍ବ ପ୍ରଳୟ ଲୀଳା ସୃଷ୍ଟି କରିଥିଲା । ଏହା ଫଳରେ ପ୍ରାୟ ଦଶ ହଜାରରୁ ଊର୍ଦ୍ଧ୍ୱ ଲୋକ ମୃତ୍ୟୁମୁଖରେ ପଡ଼ିଥିଲେ ଏବଂ ବିପନ୍ନ ଅଞ୍ଚଳର ଲୋକେ ଅକଥନୀୟ ଦୁର୍ଦ୍ଦଶା ଭୋଗକରିଥିଲେ । ଘଣ୍ଟାକୁ ୧୭୫ କିଲୋମିଟର ବେଗରେ ବାତ୍ୟା କଟକ, ବାଲେଶ୍ୱର, ପୁରୀ, ମୟୂରଭଞ୍ଜ, କେନ୍ଦୁଝର ଓ ଢେଙ୍କାନାଳ ଜିଲ୍ଲାର ବ୍ୟାପକ ଅଞ୍ଚଳରେ ଚାଷ ଓ ବାସର ସର୍ବଗ୍ରାସୀ ଧ୍ୱଂସଲୀଳା ଘଟାଇଥିଲା । ବାତ୍ୟା ସଙ୍ଗେ ସଙ୍ଗେ ଉପକୂଳର ପ୍ରାୟ ପନ୍ଦର ମାଇଲ ଭିତରକୁ ଲୁଣା ଢେଉ ମାଡ଼ିଆସିବା ଫଳରେ ପ୍ରଭୂତ କ୍ଷୟ-କ୍ଷତି ଘଟି ଲୋକେ ଅକଥନୀୟ ଦୁର୍ଦ୍ଦଶା ଭୋଗିଥିଲେ । ପ୍ରାୟ ଦଶହଜାର ଲୋକଙ୍କର ପ୍ରାଣନାଶ ଛଡ଼ା ଅସଂଖ୍ୟ ଗୃହପାଳିତ ପଶୁ ଭାସିଯାଇ ମରିଥିଲେ । ସମୁଦ୍ର ଉପକୂଳରେ ଜମ୍ଭୁ ପ୍ରଭୃତି କେତେକ ଅଞ୍ଚଳ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇଯାଇଥିଲା । ପାରାଦ୍ୱୀପ ବନ୍ଦରର ମଧ୍ୟ ବହୁତ କ୍ଷତି ଘଟିଥିଲା । ଏସବୁ କ୍ଷତିଗ୍ରସ୍ତ ଅଞ୍ଚଳରେ ଶ୍ରୀ ବିଜୁ ପଟ୍ଟନାୟକ ନିଜ ବ୍ୟକ୍ତିଗତ ଉଦ୍ୟମ ଓ ସାହସିକତା ହେତୁ ସର୍ବପ୍ରଥମେ ପହଞ୍ଚିପାରିଥିଲେ । ଘୂର୍ଣ୍ଣିବାତ୍ୟାରେ ଅଭୂତପୂର୍ବ କ୍ଷୟକ୍ଷତି ଓ ପ୍ରାଣହାନି ବିଷୟ ଶ୍ରୀ ପଟ୍ଟନାୟକ ପ୍ରଥମେ ଲୋକଦୃଷ୍ଟିକୁ ଆଣିଥିଲେ । ପାରାଦ୍ୱୀପଠାରୁ ଚାନ୍ଦବାଲି ପର୍ଯ୍ୟନ୍ତ ବିପନ୍ନ ଅଞ୍ଚଳରେ ତୁରନ୍ତ ଆକାଶମାର୍ଗରୁ ଖାଦ୍ୟବିତରଣ କରାଯାଇଥିଲା । ସୈନ୍ୟ ବିଭାଗ ଅଫିସର ଓ ଜବାନମାନେ ଆସି ମିଲିଟାରୀ ବୋଟ୍ ସାହାଯ୍ୟରେ ବିଭିନ୍ନ ଅଞ୍ଚଳରେ ସାହାଯ୍ୟ କାମ କରିଥିଲେ । ମୁଁ ଓ ବିଜୁ ପଟ୍ଟନାୟକ କେନ୍ଦ୍ର ଅର୍ଥମନ୍ତ୍ରୀ ଶ୍ରୀ ଚୌହାନଙ୍କୁ ସାଙ୍ଗରେ ନେଇ ବିପନ୍ନ ଅଞ୍ଚଳର କ୍ଷୟକ୍ଷତି ଦେଖାଇଥିଲୁ । ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ବାତ୍ୟାବିପନ୍ନ ଅଞ୍ଚଳକୁ ନଭେମ୍ବର ମାସ ଉଣେଇଶ ତାରିଖରେ ଆସିଥିଲେ । ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସ ପ୍ରଧାନମନ୍ତ୍ରୀଙ୍କ ସାଙ୍ଗରେ ଯାଇ ତାଙ୍କୁ ଘୂର୍ଣ୍ଣିବାତ୍ୟାବିଧ୍ୱସ୍ତ ଅଞ୍ଚଳର ଦଶା ଦେଖାଇଥିଲେ । ଚାନ୍ଦବାଲିଠାରେ ଗୋଟିଏ ସାଧାରଣସଭାରେ ମୁଁ ପ୍ରଧାନମନ୍ତ୍ରୀଙ୍କୁ ସ୍ୱାଗତ ଜଣାଇଥିଲି । ଲୋକମାନଙ୍କର ଦୁଃଖ ଲାଘବ କରିବା ଉଦ୍ଦେଶ୍ୟରେ ରାଜ୍ୟସରକାରଙ୍କ ପକ୍ଷରୁ ସବୁପ୍ରକାର ସାହାଯ୍ୟର ବ୍ୟବସ୍ଥା କରାଯାଥିଲା ଏବଂ ତା' ସଙ୍ଗେ ସଙ୍ଗେ ବିପନ୍ନ ଅଞ୍ଚଳର ଲୋକମାନଙ୍କର ଆତ୍ମପ୍ରତ୍ୟୟ ପ୍ରତିଷ୍ଠା ତଥା ସେମାନଙ୍କର ଅର୍ଥନୈତିକ ସ୍ଥିତିର ପୁନରୁଦ୍ଧାର ଉଦ୍ଦେଶ୍ୟରେ କୃଷି, ଜଳସେଚନ ଓ ପାନୀୟ ଜଳଯୋଗାଣ ପାଇଁ କେତେଗୁଡ଼ିଏ ଯୋଜନା କାର୍ଯ୍ୟକାରୀ କରାଯାଇଥିଲା । ବାତ୍ୟାବିପନ୍ନ ଅଞ୍ଚଳର ଲୋକମାନଙ୍କର ଦୁର୍ଦ୍ଦଶାପ୍ରତି ଜାତୀୟ ଖବରକାଗଜ ମାଧ୍ୟମରେ ବିଶେଷଭାବେ ଦୃଷ୍ଟି ଆକର୍ଷଣ କରାଯାଇଥିବାରୁ ରାଜ୍ୟବାହାରୁ ବହୁ ବେସରକାରୀ ସେବାସଂସ୍ଥା ଆସି ବିପନ୍ନ ଲୋକଙ୍କୁ ନାନାପ୍ରକାର ସାହାଯ୍ୟ କରିଥିଲେ । ବମ୍ବେର ଜଣେ ବିଶିଷ୍ଟ ବ୍ୟବସାୟୀ ଶ୍ରୀ ମୋଫତଲାଲ୍ ଆସି ମୁଖ୍ୟମନ୍ତ୍ରୀ ଓ ଆମ୍ଭମାନଙ୍କ ସହ ପରାମର୍ଶ କରି ବ୍ୟାପକ ଅଞ୍ଚଳରେ ଖାଦ୍ୟ ବିନିମୟର ବିଭିନ୍ନ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ । ଏହାଦ୍ୱାରା ମଜୁରିଆ ଶ୍ରେଣୀର ଲୋକମାନେ ବିଶେଷଭାବରେ ଉପକୃତ ହୋଇଥିଲେ । ଏ ପ୍ରକାର ଘୂର୍ଣ୍ଣିବାତ୍ୟା ଓଡ଼ିଶାରେ କେବେ ହୋଇ ନଥିଲା । ୧୯୬୭ ମସିହାରେ ମଧ୍ୟ ଓଡ଼ିଶାରେ ଗୋଟିଏ ବଡ଼ ଘୂର୍ଣ୍ଣିବାତ୍ୟା ହୋଇଥିଲା; କିନ୍ତୁ ଏ ଘୂର୍ଣ୍ଣିବାତ୍ୟାର ପ୍ରକୋପ ତା'ଠାରୁ ପ୍ରାୟ ଚାରି-ପାଞ୍ଚ ଗୁଣ ଅଧିକ। ସେତେବେଳର ଘୂର୍ଣ୍ଣିବାତ୍ୟାରେ ସମୁଦ୍ର ଜୁଆର ଏଥରଭଳି ଉପକୂଳ ଭିତରକୁ ମାଡ଼ିଆସି ନଥିଲା । ମୋ ଜାଣିବାରେ ୧୯୫୭ ମସିହାରେ ଚାନ୍ଦବାଲି ଓ ବାସୁଦେବପୁର ସମୁଦ୍ର ଉପକୂଳରେ ସମୁଦ୍ର ଜୁଆର ସ୍ଥଳଭାଗକୁ ମାଡ଼ିଆସି ବହୁତ କ୍ଷତି ଘଟାଇଥିଲା ।

୧୯୮୦ ମସିହା ପରି ୧୯୭୧ରେ କେନ୍ଦ୍ରରୁ ବିପୁଳ ଅର୍ଥସାହାଯ୍ୟ ମିଳିନଥିଲା; ଅଥଚ ଏଡ଼େ

ବଡ଼ ବ୍ୟାପକ ଓ ଅଭୂତପୂର୍ବ ଦୈବୀ ବିପତ୍ତିବେଳେ ଯେଉଁଭଳି କ୍ଷିପ୍ରତା ଓ ଦକ୍ଷତା ସହିତ ସରକାରୀ ଓ ବେସରକାରୀ ସାହାଯ୍ୟ, ଉଦ୍ଧାର ଓ ପୁନର୍ବସତି କାର୍ଯ୍ୟ ସମାହିତ ହୋଇଥିଲା, ୧୯୮୦ ମସିହାର ଦୈବୀ ଦୁର୍ବିପାକବେଳେ କେନ୍ଦ୍ରର ବିପୁଳ ସାହାଯ୍ୟ ସହଯୋଗସତ୍ତ୍ୱେ ତାହାର କାଣିଚାଏ ହୋଇପାରିଲା ନାହିଁ ବୋଲି ଲୋକେ ଅନୁଭବ କଲେ । ରାଜନୈତିକ ନେତୃତ୍ୱର ଅଭିଜ୍ଞତା କିମ୍ବା ଅପାରଗତା ଏହାର କାରଣ ବୋଲି ସମାଲୋଚନା ହେଲା । ୧୯୭୧ ମସିହା ଦୈବୀଦୁର୍ବିପାକବେଳେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସ ସାହାଯ୍ୟ ଓ ତ୍ରାଣକାର୍ଯ୍ୟ ପାଇଁ ବ୍ୟୟବରାଦ କରିବାରେ ଯେପରି ଅକୁଣ୍ଠ ଥିଲେ, ଅପବ୍ୟୟ କିମ୍ବା ଦୁର୍ନୀତି ଅଭିଯୋଗ ଶୁଣିଲେ ସେହିପରି କଠୋର ଦୃଷ୍ଟି ଦେଉଥିଲେ । ଏହାହିଁ ଥିଲା ତାଙ୍କ ଅନାସକ୍ତ ମର୍ଯ୍ୟାଦାବନ୍ତ ନେତୃତ୍ୱର ଅନ୍ୟତମ ବୈଶିଷ୍ଟ୍ୟ ।

## ଶିଶୁପାଳ ଉପାଖ୍ୟାନ

ଓଡ଼ିଶା ଶାସନର ଶୀର୍ଷ ଆସନରେ ଶ୍ରୀ ବିଶ୍ୱନାଥ ଦାସ ଅଧିଷ୍ଠିତ ହେଲେ ରାଜନୀତିର ଅତି ଆକସ୍ମିକ ଘଟଣାପ୍ରବାହ ଭିତରେ । ଅଶୀତି ବର୍ଷରୁ ଊର୍ଦ୍ଧ୍ୱ ଜଣେ ପ୍ରବୀଣ ନେତାଙ୍କ ପ୍ରତି ଆମ ରାଜ୍ୟରେ ଏବଂ ବାହାରେ ବିଶେଷ ମର୍ଯ୍ୟାଦା ପ୍ରକାଶପାଉଥାଏ । ମହତାବବାବୁ ପୂର୍ବରୁ ଅତ୍ୟନ୍ତ ଆଶାୟୀ ହୋଇପଡ଼ି ଶେଷରେ ଅତ୍ୟନ୍ତ ହତୋତ୍ସାହ ହୋଇପଡ଼ିଥା'ନ୍ତି । ଏଣେ ତାଙ୍କରି ସ୍ୱତନ୍ତ୍ର-ଜନକଂଗ୍ରେସ ମେଣ୍ଟ ସରକାର ବସାଇଯାଇଥିବା ସରଜୁପ୍ରସାଦ କମିଶନର ଫାଶ ତାଙ୍କ ମୁଣ୍ଡ ଉପରେ ଝୁଲି ରହିଥାଏ । ଏଭଳି ମୌକାରେ ନିଜେ ମୁଖ୍ୟମନ୍ତ୍ରୀ ହୋଇନପାରି ବିଶ୍ୱନାଥବାବୁଙ୍କୁ ସେହି ସ୍ଥାନରେ ବରଣ କରାଯିବାରୁ ତାଙ୍କର ଖୁବ୍ ଗାତ୍ରଦାହ ହେବାର କ୍ରମେ ଜଣାପଡ଼ିଥିଲା । ମୁଖ୍ୟମନ୍ତ୍ରୀ ହେବା ଉଦ୍ଦେଶ୍ୟରେ ହିଁ ସେ ଶାସକ କଂଗ୍ରେସରେ ଯୋଗଦେଇଥିଲେ ଏବଂ ବହୁ ଉଦ୍ୟମ ପରେ ବିଧାନସଭା ଶାସକ କଂଗ୍ରେସଦଳର ନେତାରୂପେ ନିର୍ବାଚିତ ହୋଇପାରିନଥିଲେ । ସେଥିରେ ସେ ନିରାଶ ହୋଇଥିଲେ । ଏହାକୁ ଅନେକେ ଓଡ଼ିଶା ରାଜନୀତିରେ ଶିଶୁପାଳ ଉପାଖ୍ୟାନ ବୋଲି ରହସ୍ୟ କରିବାର ମୁଁ ଶୁଣିଛି । ବହୁକାଳରୁ ଶ୍ରୀ ବିଶ୍ୱନାଥ ଦାସଙ୍କୁ ମହତାବବାବୁ ତାଙ୍କର ଜଣେ ରାଜନୈତିକ ଶତ୍ରୁ ବୋଲି ବିବେଚନା କରୁଥିଲେ । କୌଣସି ପୂର୍ବ ସୂଚନା ନଥାଇ ଅକସ୍ମାତ ସେ ହୋଇଗଲେ ରାଜ୍ୟର ମୁଖ୍ୟମନ୍ତ୍ରୀ । କଥାଟା ମହତାବବାବୁଙ୍କ ପକ୍ଷେ ବଡ଼ ଅସହ୍ୟ ହୋଇଥିଲା । ଶ୍ରୀ ମହତାବଙ୍କ ଖବରକାଗଜ ପ୍ରଜାତନ୍ତ୍ର ସାମ୍ବାଦିକତାର ନୂତନ ପରାକାଷ୍ଠା ଦର୍ଶାଇ ଧାରାବାହିକ ଓ ବ୍ୟକ୍ତିଗତ ଭାବରେ ଶ୍ରୀ ବିଶ୍ୱନାଥ ଦାସ ଓ ତାଙ୍କ ସରକାରଙ୍କ ବିରୁଦ୍ଧରେ ପ୍ରଚାର କରିବାରେ ଲାଗିଥିଲା । ଶ୍ରୀ ବିଶ୍ୱନାଥ ଦାସ ସେତେବେଳେ ୮୪ ବର୍ଷର ବୃଦ୍ଧ । ତେଣୁ ତାଙ୍କୁ ଅଶ୍ଳୀଳ ଭାଷାରେ ଭର୍ତ୍ସନା କରି ଧମକପୂର୍ଣ୍ଣ ଚିଠି ଓ ଲେଖାଦ୍ୱାରା ତାଙ୍କର ଦମ୍ଭ ଭାଙ୍ଗିଦେଲେ ସେ ଆପେ ଆପେ ପଳାଇବେ ବିଚାର କରି ଯୋଜନାବଦ୍ଧଭାବରେ ତାଙ୍କ ଉପରେ ଆକ୍ରୋଶମୂଳକ ଆକ୍ରମଣ ଆରମ୍ଭ କରାଯାଇଥିଲା । ତାଙ୍କୁ ହତ୍ୟାକରାଯିବ ବୋଲି ଧମକ ଦେଇ କେତେ ଖଣ୍ଡ ବେନାମି ଚିଠି ତାଙ୍କ ପାଖକୁ ଆସିଥିଲା । ସ୍ୱରାଷ୍ଟ୍ରମନ୍ତ୍ରୀ ହିସାବରେ ମୋତେ ସେହି ଚିଠିଗୁଡ଼ିକ ସେ ଦେଇଥିଲେ ଗୁଇନ୍ଦା ବିଭାଗଦ୍ୱାରା ଅନୁସନ୍ଧାନ କରିବାପାଇଁ । କେବଳ ପ୍ରଶାସନିକ ଆବଶ୍ୟକତା ଦୃଷ୍ଟିରୁ ସେ ଏପରି କରିଥିଲେ ମଧ୍ୟ ନିଜେ ସେଭଳି ଧମକ ପ୍ରତି ଗୁରୁତ୍ୱ ଦେଇନଥିଲେ । ଗୁଇନ୍ଦା ବିଭାଗ ନିର୍ଦ୍ଦିଷ୍ଟଭାବରେ କିଏ ଏ ପ୍ରକାର ଚିଠିସବୁ ଲେଖୁଛି ନକହିପାରିଲେ ମଧ୍ୟ ସେ ପ୍ରକାର ଚିନ୍ତାଧାରାର ଉଦ୍ଭବ କେବଳ ମହତାବଗୋଷ୍ଠୀର ଲୋକମାନଙ୍କଦ୍ୱାରା ସମ୍ଭବ ବୋଲି ମତ ଦେଇଥିଲେ । ଏହି ସମୟରେ ପ୍ରଜାତନ୍ତ୍ରରେ 'ହିଂସାପାଇଁ କ୍ଷେତ୍ର ପ୍ରସ୍ତୁତ' ଶୀର୍ଷକ ଗୋଟିଏ ବେନାମୀ ଲେଖା ଜଣେ 'ରାଜନୀତିକ ବିଜ୍ଞାନଛାତ୍ର'ଙ୍କ ନାଆଁରେ ପ୍ରକାଶପାଇଲା । ଏହି ଲେଖାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କୁ ସିଧାସଳଖ ଲକ୍ଷ୍ୟ କରି ହିଂସାତ୍ମକ ଆକ୍ରମଣର ଧମକ ଦିଆଯାଇଥିଲା । ଏହି ଲେଖାର ଅନାମିକା ଲେଖକଙ୍କ ସନ୍ଧାନନେବା ପାଇଁ ମୁଖ୍ୟମନ୍ତ୍ରୀ ମୋତେ କହିଥିଲେ । ଗୁଇନ୍ଦା ବିଭାଗ ଅନୁସନ୍ଧାନ

କରି ଜାଣିଲେ ଯେ ସେ ଲେଖାଟି କୌଣସି ରାଜନୀତି ବିଜ୍ଞାନ ଛାତ୍ର ଲେଖିନଥିଲେ, ତାହା ସ୍ୱୟଂ ପ୍ରଜାତନ୍ତ୍ର ମାଲିକଙ୍କ ଲେଖା ବୋଲି ଗୁଇନ୍ଦା ବିଭାଗ ରିପୋର୍ଟ ଦେଇଥିଲେ । ମୁଁ ସେହି ରିପୋର୍ଟଟି ମୁଖ୍ୟମନ୍ତ୍ରୀ ଶ୍ରୀ ଦାସଙ୍କୁ ଦେଖାଇଥିଲି । ସେ ତାହା ପଢ଼ି ତାଙ୍କର ଧାରଣା ସେହି ପ୍ରକାର ବୋଲି କହି 'ଜୀବନ ପ୍ରତି ମୋହ କରିବାର ବୟସ ମୁଁ ଅତିକ୍ରମ କରିସାରିଲିଣି' ବୋଲି ମନ୍ତବ୍ୟ କରି ଏଭଳି ଏକ ସାଂଘାତିକ ଅପରାଧ ମନୋବୃତ୍ତିକୁ ହସରେ ଉଡ଼ାଇ ଦେଇଥିଲେ ।

ଶ୍ରୀ ହରେକୃଷ୍ଣ ମହତାବଙ୍କ ପକ୍ଷରେ ବିଧାନସଭାରେ ଶାସକ କଂଗ୍ରେସଦଳର ନେତା ପଦରେ ମଧ୍ୟ ଶିଶୁପାଳ ଦଶା ଭୋଗିବାକୁ ପଡ଼ିଥିଲା । ଶାସକ କଂଗ୍ରେସର ଯୁବଗୋଷ୍ଠୀ ତାଙ୍କ ନେତୃତ୍ୱକୁ ବରଦାସ୍ତ କରିପାରିନଥିଲେ ଏବଂ ତାଙ୍କ କାର୍ଯ୍ୟକଳାପ ଉପରେ ଆକ୍ରମଣ ଆରମ୍ଭକରିଦେଇଥିଲେ । ସେ ବ୍ୟତିବ୍ୟସ୍ତ ହୋଇ କଂଗ୍ରେସ ବିଧାୟକ ନେତା ପଦରୁ ଇସ୍ତଫା ଦେଇପକାଇଥିଲେ ଏବଂ ତାଙ୍କ ସ୍ଥାନରେ ଶ୍ରୀ ବିନାୟକ ଆଚାର୍ଯ୍ୟ ଦଳପତି ନିର୍ବାଚିତ ହେଲେ । ଶ୍ରୀ ଆଚାର୍ଯ୍ୟଙ୍କ ସହିତ ମୋର ଭଲ ବ୍ୟକ୍ତିଗତ ସମ୍ପର୍କ ଥିଲା । ବିରୁଦ୍ଧ ଦଳର ନେତା ହୋଇ ସେ ସନ୍ତୁଷ୍ଟ ଥିଲେ । ମୁଁ ତାଙ୍କ କାର୍ଯ୍ୟରେ ସ୍ୱାଭାବିକ ସାହାଯ୍ୟ ସହଯୋଗ କରୁଥିଲି । ଶାସକ କଂଗ୍ରେସର ପ୍ରଦେଶ କଂଗ୍ରେସ କମିଟି ସଭାପତି ସେତେବେଳେ ଥିଲେ ଶ୍ରୀ ବ୍ରଜମୋହନ ମହାନ୍ତି । ତାଙ୍କର ମଧ୍ୟ ମୋ ସହିତ ଭଲ ସମ୍ପର୍କ ଥିଲା । ସେତେବେଳେ ସେ ଚାହୁଁଥିଲେ ମୁଁ ଉତ୍କଳ କଂଗ୍ରେସରୁ କିଛି ସଭ୍ୟଙ୍କ ସହିତ ଓହରିଆସି ଶାସକ କଂଗ୍ରେସ ବିଧାନସଭା ଦଳରେ ମିଶିଯାଇ ଦଳପତି ହୋଇ ମୁଖ୍ୟମନ୍ତ୍ରୀ ହେବାପାଇଁ । ଥରେ ବ୍ରଜବାବୁ ତାଙ୍କର ବନ୍ଧୁମାନଙ୍କ ସହିତ ଭୁବନେଶ୍ୱରସ୍ଥ ଶ୍ରୀ ଚିତ୍ତରଞ୍ଜନ ନାୟକଙ୍କ ଘରେ ମୋତେ ଦେଖାକରି ସେହି ପ୍ରକାର ପ୍ରସ୍ତାବ ଦେଇଥିଲେ । ଏ ଦେଖାସାକ୍ଷାତ୍ ହୋଇଥିଲା ସେମାନଙ୍କର ପ୍ରସ୍ତାବିତ ୧୯୭୨ ମସିହା ଜାନୁୟାରୀ ଛ' ତାରିଖ ଗଣବିକ୍ଷୋଭ ପୂର୍ବରୁ । ଶାସକ କଂଗ୍ରେସ, କମ୍ୟୁନିଷ୍ଟ ଓ ପ୍ରଜାସୋସାଲିଷ୍ଟ ଦଳ ପ୍ରଭୃତିଙ୍କର ମିଳିତ ଉଦ୍ୟମରେ ଏହି ଗଣବିକ୍ଷୋଭ ଆୟୋଜନ କରାଯାଉଥାଏ । ସେମାନଙ୍କର ପ୍ରସ୍ତାବିତ ବିକ୍ଷୋଭଦ୍ୱାରା ଆମ୍ଭମାନଙ୍କର ସମ୍ପର୍କ ତିକ୍ତ ହେବାର ସମ୍ଭାବନା ଅଛି ବୋଲି ମୁଁ କହିଥିଲି; କାରଣ ବିକ୍ଷୋଭରୁ କୌଣସି ଅପ୍ରୀତିକର ଘଟଣା ଉଦ୍ଭବ ହେଲେ ସ୍ୱରାଷ୍ଟ୍ରମନ୍ତ୍ରୀ ହିସାବରେ ମୋତେ ପରିସ୍ଥିତିର ଦାୟିତ୍ୱ ନେବାକୁ ପଡ଼ିବ । ସେ କହିଥିଲେ ଯେ ବିକ୍ଷୋଭ କରିବାକୁ ତାଙ୍କର ଆଦୌ ଇଚ୍ଛା ନଥିଲା; ମାତ୍ର ମହତାବ ପ୍ରଭୃତି ବିକ୍ଷୋଭପାଇଁ ବିଶେଷ ଉତ୍ସାହ ପ୍ରଦର୍ଶନ କରୁଥିବାରୁ ସେମାନଙ୍କୁ ବିକ୍ଷୋଭ କରିବାକୁ ପଡ଼ିଥିଲା । ମୁଁ ଶାସକ କଂଗ୍ରେସରେ ଯୋଗଦେଇ ମୁଖ୍ୟମନ୍ତ୍ରୀ ହେବାକୁ ରାଜି ହେଲେ ସେ ପ୍ରସ୍ତାବିତ ବିକ୍ଷୋଭ ବନ୍ଦକରିଦେବେ ବୋଲି ମୋତେ କହିଥିଲେ । ମୁଁ ସବୁ ଦିଗରୁ ବିବେଚନା ନକରି ହଠାତ୍ ସେପରି ଜବାବ ଦେଇପାରିବିନାହିଁ ବୋଲି କହିଥିଲି । ଜାନୁୟାରୀ ଛ' ତାରିଖ ବିକ୍ଷୋଭ ଶାନ୍ତିପୂର୍ଣ୍ଣ ଭାବରେ ପରିଚାଳିତ କରିବାପାଇଁ ସେ ମୋତେ ପ୍ରତିଶ୍ରୁତି ଦେଇଥିଲେ । ବିରୋଧୀଦଳର ନେତା ଶ୍ରୀ ବିନାୟକ ଆଚାର୍ଯ୍ୟ ମୋତେ ଓ ବିଶ୍ୱନାଥବାବୁଙ୍କୁ ଦେଖାକରି ବିକ୍ଷୋଭ ଶାନ୍ତିପୂର୍ଣ୍ଣ ଭାବରେ କରାଯିବ ବୋଲି ପ୍ରତିଶ୍ରୁତି ଦେଇଥିଲେ ।

## କିଏ କଂଗ୍ରେସର ପ୍ରକୃତ ଦାୟାଦ

ଶାସକ କଂଗ୍ରେସ ପକ୍ଷରୁ ଏଭଳି ଗୋପନ ପ୍ରସ୍ତାବ ବିଚାରକରିବାପାଇଁ ମୁଁ ସେତେବେଳେ କାହିଁକି ଅନୁକୂଳ ମତ ଦେଲି ବୋଲି ପ୍ରଶ୍ନ ଉଠିବା ସ୍ୱାଭାବିକ । ପ୍ରକୃତରେ କଂଗ୍ରେସର ପରମ୍ପରା ଭିତରେ ଆମ୍ଭମାନଙ୍କର ରାଜନୈତିକ ଜୀବନ ଗଢ଼ାହୋଇଥିଲା । ତେଣୁ ୧୯୭୧ ନିର୍ବାଚନ ପରେ ପରେ କୌଣସି ସମଭାବାପନ୍ନ ଦଳ ସହିତ ମିଳିତ ସରକାର ଗଢ଼ିବାପାଇଁ ଯେଉଁ ପ୍ରସ୍ତାବ ଆମେ ଗ୍ରହଣ କରିଥିଲୁ, ସେଥିରେ ଆମ ଦଳର ସଭ୍ୟମାନଙ୍କ ସ୍ୱାଭାବିକ ମନର କଥା ପ୍ରତିଫଳିତ ହୋଇଥିଲା । ସେତେବେଳେ ଗଣତାନ୍ତ୍ରିକ ଦଳ ହିସାବରେ ଶାସକ କଂଗ୍ରେସ ଓ ସ୍ୱତନ୍ତ୍ର ଦଳ ଉଭୟେ ଆମର

ସମଭାବାପନ୍ନ ହୋଇଥିଲେ ମଧ୍ୟ ପ୍ରଗତିଶୀଳ ଆଭିମୁଖ୍ୟ ଓ ରାଜନୈତିକ ଐତିହ୍ୟ ଦୃଷ୍ଟିରୁ ଶାସକ କଂଗ୍ରେସକୁ ଆମ ଦଳର ବନ୍ଧୁମାନେ ଯେ ନିକଟତର ମନେକରୁଥିଲେ, ଏହା ନିଶ୍ଚିତ । ମୁଁ ଏହି ପରିସ୍ଥିତି ସମ୍ପର୍କରେ ସମ୍ପୂର୍ଣ୍ଣ ଅବହିତ ଥିଲି । ଏହିଠାରେ କହିରଖୁଛି ଯେ କାଳକ୍ରମେ ଏହି ସ୍ୱାଭାବିକ ପ୍ରକ୍ରିୟାର ପରିଣତିସ୍ୱରୂପ ଶାସକ ଓ ଉତ୍କଳ, ଦୁଇ କଂଗ୍ରେସର ମିଶ୍ରଣ ହୋଇଥିଲା । ମାତ୍ର ଶାସକ କଂଗ୍ରେସ ନେତୃତ୍ୱର ସ୍ୱାର୍ଥାନ୍ଧତା ହେତୁହିଁ ସେହି ମିଶ୍ରଣ କ୍ଷଣସ୍ଥାୟୀ ହେଲା ଏବଂ ସେହି ଉତ୍କଳ କଂଗ୍ରେସର ନେତାମାନଙ୍କ ପ୍ରତିଷ୍ଠା ହେତୁହିଁ ଓଡ଼ିଶାରେ କଂଗ୍ରେସ ଐତିହ୍ୟ ଓ ବୁନିଆଦିର ଭିତ୍ତିଭୂମି ଉପରେ ସ୍ଥାୟୀ, ବଳିଷ୍ଠ, ବିକଳ୍ପ ଗଣତାନ୍ତ୍ରିକ ସଙ୍ଗଠନ ସୃଷ୍ଟିହୋଇପାରିଛି । ଓଡ଼ିଶାରେ ଚରମ ଦକ୍ଷିଣପନ୍ଥୀ ରାଜନୀତି ମଧ୍ୟ ଏହି କାରଣରୁ ଆଉ ମୁଣ୍ଡ ଟେକିପାରିନାହିଁ । ସର୍ବଭାରତୀୟ ରାଜନୀତିର ଆବଶ୍ୟକତା ଦୃଷ୍ଟିରୁ ତତ୍କାଳୀନ ଉତ୍କଳ କଂଗ୍ରେସର ନେତୃତ୍ୱ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ନାମ ଓ ପତାକା ବହନ କରି କାମ କରିଥିଲେ ମଧ୍ୟ ଓଡ଼ିଶାରେ ଉତ୍କଳ କଂଗ୍ରେସର ଜନ୍ମଠାରୁହିଁ କଂଗ୍ରେସ ବୁନିଆଦିର ସୁରକ୍ଷା ପାଇଁ ଏକ ନୂତନ ମିଳନପୀଠ ସୃଷ୍ଟିହୋଇଥିଲା; ସବୁ ନୀତି ଓ ଐତିହ୍ୟକୁ ଜଳାଞ୍ଜଳି ଦେଇ କୌଣସିମତେ କେବଳ ଏକ ବିକଳ୍ପ ସରକାର ଗଢ଼ିବାପାଇଁ ନୁହେଁ । ତେଣୁ ଓଡ଼ିଶାର ଅଧିକାଂଶ କଂଗ୍ରେସ କର୍ମୀ ଓ ପ୍ରେମୀ ଏହି ନେତୃତ୍ୱକୁ ଅସଲ କଂଗ୍ରେସ ବୁନିଆଦିର ନେତୃତ୍ୱ ବୋଲି ଗ୍ରହଣ କରିଆସିଛନ୍ତି । ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ଏହାହିଁ ଓଡ଼ିଶାରେ ତଥାକଥିତ 'ଅଣକଂଗ୍ରେସ' ବିକଳ୍ପ ଶକ୍ତିର ସ୍ୱାତନ୍ତ୍ର୍ୟ ।

ଓଡ଼ିଶା ବିଧାନସଭାର ଅଧିବେଶନ ୧୯୭୨ ଜାନୁୟାରୀ ଚାରି ତାରିଖରେ ଆରମ୍ଭ ହେବା ପରେ ଜାନୁୟାରୀ ଛ' ତାରିଖ ଦିନ ଭୁବନେଶ୍ୱରରେ ଶାସକ କଂଗ୍ରେସ, କମ୍ୟୁନିଷ୍ଟ ଓ ପ୍ରଜାସୋସାଲିଷ୍ଟ ଦଳ ପକ୍ଷରୁ ମିଳିତ ସାମ୍ମୁଖ୍ୟ ସରକାରଙ୍କ ବିରୁଦ୍ଧରେ ସେମାନଙ୍କ ପୂର୍ବ ପରିକଳ୍ପିତ ଗଣ-ବିକ୍ଷୋଭ କରାଗଲା । ସେଥିରେ ପ୍ରାୟ ପନ୍ଦର ହଜାର ଲୋକ ଯୋଗଦେଇଥିଲେ । ବିଧାନସଭା ପାଖକୁ ଆସିବାବେଳକୁ ଶୋଭାଯାତ୍ରା ସମ୍ମୁଖରେ ସର୍ବଶ୍ରୀ ବିନାୟକ ଆଚାର୍ଯ୍ୟ, ବନମାଳୀ ପଟ୍ଟନାୟକ, ବ୍ରଜମୋହନ ମହାନ୍ତି, ଦୁର୍ଗାଚରଣ ମହାନ୍ତି, ପ୍ରଦ୍ୟୁମ୍ନ କିଶୋର ବଳ ଓ ପ୍ରସନ୍ନ କୁମାର ଦାସ ପ୍ରଭୃତି ସବୁଦଳର ନେତୃସ୍ଥାନୀୟ ବ୍ୟକ୍ତିମାନେ ରହିଥିଲେ । ମାତ୍ର ଶ୍ରୀ ହରେକୃଷ୍ଣ ମହତାବ, ଶ୍ରୀ ବାଙ୍କବିହାରୀ ଦାସ ଓ ଶ୍ରୀ ସଦାନନ୍ଦ ମହାନ୍ତି ପ୍ରଭୃତି ନେତାମାନେ ଉକ୍ତ ଶୋଭାଯାତ୍ରାରେ ପଛକୁ ରହିଥିଲେ । ପୁଲିସ ବିଧାନସଭା ପାଖରେ କର୍ଡ଼ନକରି ଛିଡ଼ାହୋଇଥାଆନ୍ତି । ଶୋଭାଯାତ୍ରାଟି ଯେତେବେଳେ ପୁଲିସ ବ୍ୟାରିକେଡ୍ ପାଖରେ ପହଞ୍ଚେ ହଠାତ୍ ପଛରୁ ବହୁଲୋକ ଠେଲିହୋଇ ଆସି ପୁଲିସ ଉପରେ ପଡ଼ିଥିଲେ ଏବଂ ସଙ୍ଗେ ସଙ୍ଗେ ବହୁ ଟେକାପଥର ବୃଷ୍ଟି ହୋଇଥିଲା । ପୁଲିସ ଆଇ.ଜି., ଡି.ଆଇ.ଜି. ଓ ଏସ୍.ପି. ପ୍ରଭୃତି ଉଚ୍ଚ ଅଫିସରମାନେ ସେଠାରେ ଉପସ୍ଥିତ ଥିଲେ । ଏପରି ଭାବରେ ଟେକାପଥର ବୃଷ୍ଟିହୋଇଥିଲା ଯେ ବାଧହୋଇ ପୁଲିସକୁ ପ୍ରଥମେ ଲୁହବୁହା ଗ୍ୟାସ୍ ଓ ପରେ ଲାଠି ଚଳେଇବାକୁ ପଡ଼ିଥିଲା । ସର୍ବଶ୍ରୀ ବିନାୟକ ଆଚାର୍ଯ୍ୟ, ବନମାଳୀ ପଟ୍ଟନାୟକ, ଦୁର୍ଗାଚରଣ ମହାନ୍ତି ଓ ବ୍ରଜମୋହନ ମହାନ୍ତି ପ୍ରଭୃତି ପୁଲିସ ଲାଠିରେ ଜଖମ ହୋଇ ଭୁବନେଶ୍ୱର ଡାକ୍ତରଖାନାରେ ଭର୍ତ୍ତି ହୋଇଥିଲେ । ବିକ୍ଷୋଭକାରୀମାନଙ୍କୁ ଘଉଡ଼ାଇଦେଇ ଅବସ୍ଥା ଆୟତ୍ତ କରାଯାଇଥିଲା ।

## ବିଧାନ ସୌଧରେ ବର୍ବରତା

ମଧ୍ୟାହ୍ନଭୋଜନ ଛୁଟି ପରେ ବିଧାନସଭା ବୈଠକ ଆରମ୍ଭ ହେବାକ୍ଷଣି ବିରୁଦ୍ଧ ଦଳର ସଭ୍ୟମାନେ ଗୃହମଧ୍ୟରେ ଉତ୍ତେଜିତ ଭାବରେ ଚିତ୍କାର କରି ଗଣ୍ଡଗୋଳ ସୃଷ୍ଟିକରିଥିଲେ ଏବଂ ନାନା ଅକଥନୀୟ ଅଶ୍ଳୀଳ ଭାଷାରେ ମୁଖ୍ୟମନ୍ତ୍ରୀ ଓ ଅନ୍ୟାନ୍ୟ ମନ୍ତ୍ରୀଙ୍କୁ ଗାଳିଗୁଲଜ କରିଥିଲେ । ଶ୍ରୀ ସଦାନନ୍ଦ ମହାନ୍ତି ଓ ଶ୍ରୀ ବାଙ୍କବିହାରୀ ଦାସ ଶୃଙ୍ଖଳିତ ଓ ଶାନ୍ତିକାମୀ ଶୋଭାଯାତ୍ରାକାରୀଙ୍କ ଉପରେ ପୁଲିସ ଅକଥନୀୟ ଅତ୍ୟାଚାର ଓ ନିର୍ମମ ଲାଠି ପ୍ରହାର କରିବା ଅଭିଯୋଗ ଅତି ଉତ୍ତେଜିତ କଣ୍ଠରେ ନାନାପ୍ରକାର

ଅଙ୍ଗଭଙ୍ଗୀସହ ବୟାନ କରି ଏ ପରିସ୍ଥିତିରେ ବିଧାନସଭା କାର୍ଯ୍ୟ ଆଉ କରାଇଦେବେ ନାହିଁ ବୋଲି ଧମକ ଦେଇଥିଲେ । ମୁଁ ସେତେବେଳେ ଗୃହରେ ଉପସ୍ଥିତ ଥିଲି । କିଛି କହିବାପାଇଁ ଉଦ୍ୟମ କଲାବେଳେ ବିରୋଧୀ ଦଳର ସଭ୍ୟମାନେ ପାଟିତୁଣ୍ଡ କରି ମୋତେ କୁହାଇ ଦେଇ ନଥିଲେ । ଗୃହ ମଧ୍ୟରେ ପରିସ୍ଥିତି ଅସମ୍ଭାଳ ଓ ଅଶୋଭନୀୟ ହେବାରୁ ବାଚସ୍ପତି ପରଦିନକୁ ବିଧାନସଭା ମୁଲତବୀ ରଖିଲେ ବୋଲି ଘୋଷଣା କରିଥିଲେ । ଗୃହର ନେତା ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସ ସେତେବେଳେ ବିଧାନସଭା ମଧ୍ୟରେ ଥିବା ତାଙ୍କର ଅଫିସ୍ କକ୍ଷରେ ଥିଲେ । ବିଧାନସଭା ମୁଲତବୀ ରହିବାରୁ ମୁଁ ବିଧାନସଭାରେ ଥିବା ମୋ ଅଫିସ୍ କକ୍ଷକୁ ଯାଇଥିଲି । ଗଲାବେଳେ ମୁଁ ଦେଖିବାକୁ ପାଇଥିଲି ଯେ ବିରୋଧୀ ଦଳର ଦଳେ ଉତ୍ତେଜିତ ସଦସ୍ୟ ଓ ଆଉ କେତେକ ବାହାର ଲୋକଙ୍କ ମଧ୍ୟରେ ଛିଡ଼ାହୋଇ ଶ୍ରୀ ମହତାବ କ୍ରୋଧ ପ୍ରକାଶ କରି ପୁଲିସ ଅତ୍ୟାଚାର ବିଷୟରେ କହୁଥାଆନ୍ତି । ତା'ପରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କର ଇସ୍ତଫା ଦାବି କରି ନାନାପ୍ରକାର ଅଶ୍ଳୀଳ ଧ୍ୱନି ଦେଇ ସେମାନେ ମହତାବଙ୍କ ନେତୃତ୍ୱରେ ଯାଇ ବିଶ୍ୱନାଥବାବୁଙ୍କ କୋଠରିରେ ପଶି ତାଙ୍କର ଇସ୍ତଫା ଦାବିକରିଥିଲେ । ମୁଖ୍ୟମନ୍ତ୍ରୀ ସେତେବେଳେ ପ୍ରକୃତ ଅବସ୍ଥା ଜାଣିବାପାଇଁ ପୁଲିସ କଣ୍ଟ୍ରୋଲ୍ ରୁମ୍ ସହିତ ଫୋନ୍‌ରେ କଥାବାର୍ତ୍ତା କରୁଥିଲେ । ବିକ୍ଷୋଭକାରୀମାନେ ବୃଦ୍ଧ ମୁଖ୍ୟମନ୍ତ୍ରୀଙ୍କ ହାତରୁ ଟେଲିଫୋନ୍ ଛଡ଼ାଇନେଇ ଫିଙ୍ଗିଦେଲେ ଏବଂ ସଙ୍ଗେ ସଙ୍ଗେ ଇସ୍ତଫା ଦେବାପାଇଁ ଦାବି କରିଥିଲେ । ବଡ଼ ଅଭଦ୍ର ଭାଷାରେ ଗାଳିଗୁଲଜ ଦେଇ ତାଙ୍କୁ ମାରିଦେବେ ବୋଲି ଧମକଦେଇଥିଲେ । ଆହତ ହୋଇ ହସ୍ପିଟାଲରେ ପଡ଼ିଥିବା ନେତାମାନଙ୍କୁ ମୁଖ୍ୟମନ୍ତ୍ରୀ ଯାଇ ଦେଖିବାପାଇଁ ସେମାନଙ୍କ ଭିତରୁ କେତେକ ଦାବିକରୁଥାଆନ୍ତି । ମୁଖ୍ୟମନ୍ତ୍ରୀଙ୍କର ନିରାପତ୍ତା ଦାୟିତ୍ୱରେ ଥିବା ଅଫିସର୍‌ମାନଙ୍କର ପ୍ରତିରୋଧ ସତ୍ତ୍ୱେ ସେମାନେ ତାଙ୍କୁ ବାହାରକୁ ଘୋଷାରିଆଣିଥିଲେ । ମହତାବ ସେଠାରେ ଛିଡ଼ାହୋଇ ପାଟିକରି କହୁଥାଆନ୍ତି, 'ଟେମେଡ଼ା ବୁଢ଼ାକୁ ଘୋଷାରି ଆଣ, ତାକୁ ମାଡ଼ ନଦେଲେ ସେ ଯିବନାହିଁ ।' ବିଶ୍ୱନାଥବାବୁଙ୍କୁ ମାଡ଼ଖୁଆଇବା ଉଦ୍ଦେଶ୍ୟରେ ବୋଧହୁଏ ସେ ଏଭଳି ପ୍ରରୋଚନା ଦେଉଥାଆନ୍ତି । ତା'ପରେ ସେମାନେ ବିଶ୍ୱନାଥବାବୁଙ୍କୁ ଠେଲି ଠେଲି ପୋର୍ଟିକୋ ପାଖରେ ଥିବା ତାଙ୍କର ଗାଡ଼ି ପାଖକୁ ନେଇଗଲେ । ସେଠାରେ ବିଶ୍ୱନାଥବାବୁ ହସ୍ପିଟାଲରେ ଥିବା ଆହତ ନେତାମାନଙ୍କୁ ଦେଖିବାକୁ ବାହାରିଲେ । ସେତେବେଳେ ସେହି ବିକ୍ଷୋଭକାରୀମାନେ ତାଙ୍କର ଗାଡ଼ି ଆଗରେ ବସି ଦାବିକରିଥିଲେ ଯେ ମୁଖ୍ୟମନ୍ତ୍ରୀ ସେମାନଙ୍କ ସହିତ ପାଦରେ ଚାଲିକରି ହସ୍ପିଟାଲ୍ ପର୍ଯ୍ୟନ୍ତ ଯାଆନ୍ତୁ । ସେଥିରେ ମୁଖ୍ୟମନ୍ତ୍ରୀ ରାଜି ହୋଇ ନ ଥିଲେ । ଏହିଠାରେ ବିଧାନସଭାର ଆଉ କେତେକ ସଭ୍ୟ ଏ ପ୍ରକାର ବ୍ୟବହାରର ପ୍ରତିବାଦ କରିବାରୁ ତାଙ୍କ ଗାଡ଼ିକୁ ଛାଡ଼ିଦିଆଯାଇଥିଲା । ହସ୍ପିଟାଲ୍‌ରେ ମୁଖ୍ୟମନ୍ତ୍ରୀ ଆହତ ନେତାମାନଙ୍କୁ ଦେଖିଲାବେଳେ ତାଙ୍କ ପ୍ରତି ଦୁର୍ବ୍ୟବହାର କରାଯାଇଥିଲା ଏବଂ ତାଙ୍କୁ ଭିଡ଼ାଓଟରା କରାଯାଇଥିଲା । ଏହି ପ୍ରକାର ଘୋଷରାଘୋଷରିଦ୍ୱାରା ତାଙ୍କ କହୁଣି ଛିଡ଼ିଯାଇ ରକ୍ତ ବାହାରିଥିଲା । ବିଶ୍ୱନାଥବାବୁ ଜଣେ ବୟୋଜ୍ୟେଷ୍ଠ, ଅଶୀ ବର୍ଷରୁ ଊର୍ଦ୍ଧ୍ୱ ବୃଦ୍ଧ ମୁଖ୍ୟମନ୍ତ୍ରୀ । କେବଳ ଓଡ଼ିଶାରେ ନୁହେଁ, ସମଗ୍ର ଦେଶରେ ଜଣେ ସମ୍ମାନିତ ପ୍ରବୀଣ ନେତା, ଜଣେ ପୂର୍ବତନ ରାଜ୍ୟପାଳ ଓ ସ୍ୱାଧୀନତା-ସଂଗ୍ରାମୀ । ତାଙ୍କରି ପ୍ରତି ପଞ୍ଚସ୍ତରି ବର୍ଷର ଆଉ ଜଣେ ବୃଦ୍ଧ ପୂର୍ବତନ ମୁଖ୍ୟମନ୍ତ୍ରୀ, ପୂର୍ବତନ ରାଜ୍ୟପାଳ ଓ ସ୍ୱାଧୀନତା-ସଂଗ୍ରାମୀ ଶ୍ରୀ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ପରିଚାଳିତ ବିକ୍ଷୋଭକାରୀମାନେ ଯେଉଁ ଅଭଦ୍ର, ଅମାନୁଷିକ ଓ ବର୍ବର ଆଚରଣ ପ୍ରଦର୍ଶନ କଲେ, ସେଥିରେ ଦେଶବାସୀ ଲଜ୍ଜାରେ ବିସ୍ମୟ ପ୍ରକାଶ କରିଥିଲେ । ଏସବୁ ଘଟଣା ପରେ ମୁଖ୍ୟମନ୍ତ୍ରୀଙ୍କ ବାସଭବନରେ ତାଙ୍କ ସହିତ ମୁଁ ଓ ଶ୍ରୀ ସିଂହଦେଓ ଦେଖାକରି ସେଦିନ ଘଟିଥିବା ଘଟଣା ସମ୍ବନ୍ଧରେ କଥାବାର୍ତ୍ତା ହୋଇଥିଲୁ । ସବୁ ଘଟଣାକୁ ଜଣେ ହାଇକୋର୍ଟ ଜଜ୍‌ଙ୍କଦ୍ୱାରା ତଦନ୍ତ କରାଇବା କଥା ସେଠାରେ ଆମ୍ଭେମାନେ ସ୍ଥିରକରିଥିଲୁ ଏବଂ ସଙ୍ଗେ ସଙ୍ଗେ ମୁଁ ଘୋଷଣା କରିଥିଲି ଯେ ବିଧାନସଭା ଆଗରେ ପୁଲିସର ଲାଠିଚାଳନା ଯୁକ୍ତିଯୁକ୍ତ କି ନୁହେଁ ଓ ଅନ୍ୟାନ୍ୟ ଆନୁଷଙ୍ଗିକ

ଘଟଣାମାନଙ୍କର ବିଚାର ବିଭାଗୀୟ ତଦନ୍ତ ହେବ । ସାଧାରଣତଃ କୌଣସି ଅପ୍ରୀତିକର ଘଟଣା ଘଟିଲେ ଆନ୍ଦୋଳନକାରୀଙ୍କ ପକ୍ଷରୁ କିମ୍ବା ଜନସାଧାରଣଙ୍କ ପକ୍ଷରୁ ବିଚାର ବିଭାଗୀୟ ତଦନ୍ତପାଇଁ ଦାବିକରାଯାଇଥାଏ । ମାତ୍ର କୌଣସିଆଡୁ ଦାବି ହେବା ପୂର୍ବରୁ ବିଚାର ବିଭାଗୀୟ ତଦନ୍ତ କରାଇବାର ସରକାରୀ ଘୋଷଣା ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା ।

ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସ ଜାନୁୟାରୀ ସାତ ତାରିଖ ଦିନ ବିଧାନସଭାରେ ଯେଉଁ ବିବୃତି ଦେଇଥିଲେ ସେଥିରେ ସେ କହିଥିଲେ – ''ଗତ ଛ'ତାରିଖ ଦିନ ଦୁଇ ଘଣ୍ଟା ପଇଁଚାଳିଶ ମିନିଟରେ କେତେ ଜଣ ଏମ୍.ଏଲ୍.ଏ. ଓ ବାହାରର ଲୋକ ଡକ୍ଟର ମହତାବଙ୍କ ନେତୃତ୍ୱରେ ଆସେମ୍ବ୍ଲି ଭବନଠାରେ ମୋର ବିଶ୍ରାମକକ୍ଷକୁ ନିରାପତ୍ତା ବିଭାଗ ଲୋକଙ୍କ ବାରଣ ସତ୍ତ୍ୱେ ପଶିଆସିଥିଲେ । ସେମାନେ ମୋତେ ଗାଳିଗୁଲଜ କଲେ, କେତେକ ବଡ଼ ଅଭଦ୍ର ଭାଷାରେ ଗାଳିଦେଇଥିଲେ ଏବଂ କେତେକ ମୋତେ ମାରଧର କରିଥିଲେ । ଘଟଣା କ'ଣ ସବୁ ଘଟିଛି ସେ ବିଷୟରେ ଜାଣିବାପାଇଁ ମୁଁ ପୁଲିସ କଣ୍ଟ୍ରୋଲ୍ ରୁମ୍ ସହ ଫୋନ୍‌ରେ କଥାବାର୍ତ୍ତା ହେଉଥିଲି । ମୋ ହାତରୁ ଟେଲିଫୋନ୍ ଛଡ଼ାଇନେଇ ଫିଙ୍ଗିଦେଇଥିଲେ । ସେମାନଙ୍କ ଭିତରୁ କେତେକ ମୋତେ ଠେଲାପେଲା କରି ବାହାରକୁ ଟେକିନେଇଯିବାକୁ ଉଦ୍ୟମ କରିଥିଲେ । ମୁଁ ସଙ୍ଗେ ସଙ୍ଗେ ଇସ୍ତଫା ଦେବାକୁ ସେମାନେ ଦାବି କରିଥିଲେ । କେତେକ କହୁଥିଲେ, ସେମାନେ ମୋତେ ହତ୍ୟା କରିବେ : ''ତୋତେ ହତ୍ୟା କରିବୁ'' ବୋଲି କହୁଥାଆନ୍ତି । ମୁଁ ହସ୍ପିଟାଲ୍‌କୁ ଆହତ ହୋଇଥିବା ବିରୋଧୀ ଦଳର ନେତାଙ୍କୁ ଦେଖିବାକୁ ଯିବି କି ନାହିଁ ବୋଲି ମୋତେ ଡକ୍ଟର ମହତାବ ପ୍ରଶ୍ନକରୁଥିଲେ । ଆନ୍ଦୋଳନକାରୀମାନେ ମୋତେ ବଡ଼ କୁତ୍ସିତ ଭାଷାରେ ଗାଳିଦେବାକୁ ଲାଗିଥିଲେ । ମୋର ଅଧିକ ଦୁଃଖ ଯେ ଡକ୍ଟର ମହତାବଙ୍କ ଭଳି ଜଣେ ଅଭିଜ୍ଞ ମର୍ଯ୍ୟାଦାସମ୍ପନ୍ନ ବ୍ୟକ୍ତି 'ଟେମେଡ଼ା ବୁଢ଼ାକୁ ମାଡ଼ ନଦେଲେ ହେବନାହିଁ' ବୋଲି କହି ସେମାନଙ୍କୁ ପ୍ରରୋଚନା ଦେଉଥାଆନ୍ତି ।''

ବିଧାନସଭାର ଯେଉଁ ବିରୋଧୀ ଦଳର ସଭ୍ୟମାନେ ଶ୍ରୀ ମହତାବଙ୍କ ନେତୃତ୍ୱରେ ତାଙ୍କୁ ଆକ୍ରମଣ କରିବାକୁ ଯାଇଥିଲେ ସେମାନଙ୍କ ମଧ୍ୟରେ ସର୍ବଶ୍ରୀ ପ୍ରସନ୍ନ କୁମାର ଦାସ, ଶ୍ରୀବଲ୍ଲଭ ପାଣିଗ୍ରାହୀ, ଶ୍ରୀ ତ୍ରିଲୋଚନ କାନୁନ୍‌ଗୋ, ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇ, ଗଙ୍ଗାଧର ପାଇକରାୟ ଓ ଡକ୍ଟର ବେଣୁଧର ବକ୍ସିଆର ସିଂହ ପ୍ରଭୃତି ଥିଲେ ବୋଲି ମୁଖ୍ୟମନ୍ତ୍ରୀ ତାଙ୍କ ବିବୃତିରେ କହିଥିଲେ । ଜାନୁୟାରୀ ସାତ ତାରିଖ ଦିନ ବିଧାନସଭାରେ ଘଟିଥିବା ଘଟଣା ଓ ତା' ସହିତ ସମ୍ବନ୍ଧଥିବା ଘଟଣାଗୁଡ଼ିକର ବିଚାରବିଭାଗୀୟ ତଦନ୍ତ ହେବ ବୋଲି ମୁଁ ଘୋଷଣାକରିଥିଲି । ବିଧାନସଭା ମଧ୍ୟରେ ଥିବା ମୁଖ୍ୟମନ୍ତ୍ରୀଙ୍କ ଅଫିସ୍ ଭିତରେ ତାଙ୍କ ଉପରେ ଯେଉଁ ଆକ୍ରମଣ ହୋଇଥିଲା, କାଳେ ତାହା ବିଧାନସଭା ପରିସରର ସାମ୍ବିଧାନିକ ସ୍ୱାଧିକାର ଓ ସ୍ୱାତନ୍ତ୍ର୍ୟ ଦୃଷ୍ଟିରୁ ବିଚାରବିଭାଗ ତଦନ୍ତ ପରିସର ମଧ୍ୟରେ ଆସିନପାରେ ସେଥିପାଇଁ ଜାନୁୟାରୀ ଦଶ ତାରିଖ ଦିନ ବିଧାନସଭାରେ ମୁଁ ଗୋଟିଏ ସ୍ୱାଧିକାର ଭଙ୍ଗ ପ୍ରସ୍ତାବର ନୋଟିସ୍ ଦେଇଥିଲି ।

ଜାନୁୟାରୀ ଛ' ତାରିଖ ଦିନ ଓଡ଼ିଶା ବିଧାନସଭା ସମ୍ମୁଖରେ ଯେଉଁ ଘଟଣା ଘଟିଥିଲା ଏବଂ ଗୃହର ନେତା ଓ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କ ପ୍ରତି ଯେଉଁ ଦୁର୍ବ୍ୟବହାର କରାଯାଇଥିଲା, ତାହା ବିସ୍ତୃତଭାବରେ ଆମ ଦେଶର ସବୁ ଖବରକାଗଜମାନଙ୍କରେ ପ୍ରକାଶ ପାଇଥିଲା । ବିକ୍ଷୋଭକାରୀମାନଙ୍କୁ ସେମାନଙ୍କ ଦଳର ନେତାମାନେ ଠିକ୍‌ଭାବରେ ଆୟତ୍ତ କରିନପାରିବାରୁ ଏ ପ୍ରକାର ଅପ୍ରୀତିକର ଘଟଣା ଘଟିଥିଲା ବୋଲି ଦେଶର ବିଶିଷ୍ଟ ଖବରକାଗଜମାନଙ୍କରେ ମତ ବ୍ୟକ୍ତ କରାଯାଇଥିଲା ।

## ଦାସ-ମନ୍ତ୍ରିମଣ୍ଡଳରେ ଘୁଣ

ଶ୍ରୀ ବିଶ୍ୱନାଥ ଦାସଙ୍କର ମନ୍ତ୍ରିମଣ୍ଡଳ ଯେଉଁ ପରିସ୍ଥିତି ଓ ଯେଉଁ ଆକାରରେ ଗଠନ କରାଯାଇଥିଲା ତାହା ସମବର୍ଗୀୟ ମନ୍ତ୍ରିସଭା ନଥିଲା । ସେ ନିର୍ଦ୍ଦଳୀୟ ଥାଇ ତିନୋଟି ଦଳଦ୍ୱାରା ନେତାରୂପେ ମନୋନୀତ

ହୋଇଥିଲେ; ମାତ୍ର ତାଙ୍କ ମନ୍ତ୍ରିମଣ୍ଡଳରେ ଯେଉଁମାନେ ମନ୍ତ୍ରୀ ହୋଇଥିଲେ, ସେମାନଙ୍କୁ ସେ ନିଜେ ବାଛିନଥିଲେ । ସଂପୃକ୍ତ ତିନି ଦଳର ନେତାମାନେ ନିଜ ନିଜ ଦଳପକ୍ଷରୁ ମନ୍ତ୍ରୀ ବାଛିଥିଲେ ଏବଂ ମନୋନୀତ ଦଳପତି ହିସାବରେ ଶ୍ରୀ ଦାସ ସେହି ନାମଗୁଡ଼ିକ ରାଜ୍ୟପାଳଙ୍କ ପାଖକୁ ପଠାଇଦେଇଥିଲେ ସେମାନଙ୍କୁ ଶପଥପାଠ କରାଇବାକୁ । ଦଳପତିଙ୍କର ବିଶ୍ୱାସଭାଜନ ହେଲାଭଳି ବ୍ୟକ୍ତିମାନଙ୍କୁ ନିଜେ ଦଳପତି ମନୋନୀତ କରିବାର ପ୍ରଥା ଏଠାରେ ପ୍ରୟୋଗ କରାଯାଇନଥିଲା । ଏହାଫଳରେ ଘୁଣ ଲାଗିଲା ପରି ମନ୍ତ୍ରିସଭାର ସଂହତି ଓ ଶୃଙ୍ଖଳାରକ୍ଷା କ୍ଷେତ୍ରରେ କ୍ରମେ କିମ୍ଭୂତକିମାକାର ପରିସ୍ଥିତିମାନ ଉଦ୍‌ଭବ ହେଲା । ଯେଉଁ ମନ୍ତ୍ରୀମାନେ ମନ୍ତ୍ରିମଣ୍ଡଳର ସମନ୍ୱୟତା ପ୍ରତି ସମ୍ମାନ ପ୍ରଦର୍ଶନ କରି ଦଳପତି ମୁଖ୍ୟମନ୍ତ୍ରୀଙ୍କର ଜଣେ ଜଣେ ବିଶ୍ୱସ୍ତ ସହଯୋଗୀ ଭାବରେ ଚଳିବାକୁ ଉଦ୍ୟମକଲେ, ସେମାନେ ସୁରୁଖୁରୁରେ ସେମାନଙ୍କର ଦାୟିତ୍ୱ ତୁଲାଇପାରିଥିଲେ; ମାତ୍ର ଯେଉଁମାନେ ସେଥିପ୍ରତି ଭ୍ରୂକ୍ଷେପ ନ କଲେ ସେମାନେ ଅଯଥା ଦ୍ୱନ୍ଦ୍ୱ ସୃଷ୍ଟି କରିବାରେ ଲାଗିଥିଲେ । ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କୁ ସେହିପ୍ରକାର ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଶ୍ରୀ ଶୁକଦେବ ନନ୍ଦ ତାଙ୍କ "Coalitional Politics in Orissa' ପୁସ୍ତକରେ ଲେଖିଛନ୍ତି, "Of all the Chief Ministers heading coalition governments. Mr. Biswanath Das was the worst victim because some of the Utkal Congress Ministers were promoted by their leader. Mr. Biju Pattanaik who waited to replace Mr. Das, to create indiscipline in the Government. That was why Mr. Das insisted on the 18th May, 1972 that Mr. R.K. Patnaik should be removed from the office of Health Minister."

ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀ ରାମକୃଷ୍ଣ ପଟ୍ଟନାୟକ ପ୍ରଶାସନିକ କ୍ଷେତ୍ରରେ ସ୍ୱାସ୍ଥ୍ୟବିଭାଗର ପରିଚାଳନା ଯେପରି ଭାବରେ କରୁଥିଲେ, ସେଥିରେ ତାଙ୍କ ସ୍ୱାସ୍ଥ୍ୟ ବିଭାଗର ଅଫିସରମାନଙ୍କଠାରୁ ଆରମ୍ଭକରି ମୁଖ୍ୟମନ୍ତ୍ରୀଙ୍କ ପର୍ଯ୍ୟନ୍ତ ଅସନ୍ତୋଷ ସୃଷ୍ଟିହୋଇଥିଲା । ପ୍ରଶାସନିକ କ୍ଷେତ୍ରରେ ସାଧାରଣ ନିଯୁକ୍ତି ଓ ବଦଳିଠାରୁ ଆରମ୍ଭକରି ବନ୍ୟା ଓ ବାତ୍ୟାବିପନ୍ନ ଲୋକଙ୍କ ସାହାଯ୍ୟପାଇଁ ଖଟିଆ, ଔଷଧ ଓ ଟାର୍ପୁଲିନ୍ କିଣା ବ୍ୟାପାରରେ ବିଧାନସଭାରେ ଓ ବିଧାନସଭା ବାହାରେ ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀ ରାମକୃଷ୍ଣ ପଟ୍ଟନାୟକଙ୍କ ବିରୁଦ୍ଧରେ ନାନାପ୍ରକାର କାରସାଦି ଓ ଦୁର୍ନୀତି ଅଭିଯୋଗ ହୋଇଥିଲା । ବିରୁଦ୍ଧ ଦଳର ନେତା ଶ୍ରୀ ବିନାୟକ ଆଚାର୍ଯ୍ୟ ପ୍ରଭୃତି ବହୁ ବିଶିଷ୍ଟ ବ୍ୟକ୍ତି ଏସବୁ ଅଭିଯୋଗ ବିଷୟରେ ଅନୁସନ୍ଧାନ କରିବାପାଇଁ ମୁଖ୍ୟମନ୍ତ୍ରୀଙ୍କଠାରେ ଦାବିକରିଥିଲେ । ମୁଖ୍ୟମନ୍ତ୍ରୀ ସ୍ୱାସ୍ଥ୍ୟବିଭାଗର ଅଫିସରମାନଙ୍କୁ ଡକାଡକି କରି କିଛି କଥା ବୁଝିଲାବେଳକୁ ଶ୍ରୀ ରାମକୃଷ୍ଣ ପଟ୍ଟନାୟକ ତାଙ୍କ କାର୍ଯ୍ୟରେ ଅଯଥା ହସ୍ତକ୍ଷେପ କରାଯାଉଛି ବୋଲି ଅଭିଯୋଗ କରି ମୁଖ୍ୟମନ୍ତ୍ରୀଙ୍କ ବିରୁଦ୍ଧରେ ଅପବାଦ ରଟନା କରିଲାଗିଲେ ଏବଂ ବେଳେବେଳେ ସେ ଅନ୍ୟମାନଙ୍କ ଆଗରେ ମୁଖ୍ୟମନ୍ତ୍ରୀଙ୍କୁ ଅପଦସ୍ଥ କରିବାକୁ ଉଦ୍ୟମ କରୁଥିଲେ । ସ୍ୱାସ୍ଥ୍ୟ ବିଭାଗର ତତ୍କାଳୀନ ଉଚ୍ଚ କର୍ତ୍ତାମାନେ ଆତଙ୍କିତ ହୋଇ ମୋତେ ମଧ୍ୟ ସେମାନଙ୍କର ଆତଙ୍କର କାରଣ ଜଣାଇଥିଲେ । ମୁଖ୍ୟମନ୍ତ୍ରୀ ମୋ ସହିତ ମଧ୍ୟ ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କର ଆଚରଣ ସମ୍ବନ୍ଧରେ ଆଲୋଚନା କରିଥିଲେ । ମୋର ନିଜର ସ୍ଥିତି ବିଷୟରେ ମୁଖ୍ୟମନ୍ତ୍ରୀଙ୍କୁ କିଛି ଅଜଣାନଥିଲା । ମୁଖ୍ୟମନ୍ତ୍ରୀ ନିଜେ ଯେଉଳି ମିଳିତ ସାମ୍ମୁଖ୍ୟର ନେତା ଥିଲେ, ମୁଁ ସେହିପରି ଭାବରେ ବିଧାନସଭା ଉତ୍କଳ କଂଗ୍ରେସ ଦଳର ନାମକୁ ମାତ୍ର ନେତା ଥିଲି । ତଥାପି ମୁଁ ଶ୍ରୀ ରାମକୃଷ୍ଣ ପଟ୍ଟନାୟକଙ୍କୁ ତାଙ୍କ ବିରୁଦ୍ଧରେ ହେଉଥିବା ଅଭିଯୋଗ କଥା କହି ତାଙ୍କୁ ସତର୍କ କରାଇଦେଇଥିଲି ଏବଂ ମୁଖ୍ୟମନ୍ତ୍ରୀଙ୍କ ମନରୁ ତାଙ୍କ ପ୍ରତି ଥିବା ଅସନ୍ତୋଷକୁ ଦୂରକରିବାକୁ ତାଙ୍କୁ କହିଥିଲି । ଦୁର୍ନୀତି ନିବାରଣ ବିଭାଗ ଖଟିଆ ଓ ଟାର୍ପୁଲିନ୍ କିଣା ସମ୍ବନ୍ଧରେ ଯାହା ସବୁ ତଥ୍ୟ ସଂଗ୍ରହ କରିଥିଲେ ସେକଥା ମଧ୍ୟ ମୁଁ ତାଙ୍କୁ କହିଥିଲି । ଶ୍ରୀ ପଟ୍ଟନାୟକ ମୋତେ ମଧ୍ୟ ଭୁଟେଇଦେବାକୁ ଉଦ୍ୟମ କରିଥିଲେ । ମୁଖ୍ୟମନ୍ତ୍ରୀ ସ୍ୱାସ୍ଥ୍ୟମନ୍ତ୍ରୀଙ୍କ କାର୍ଯ୍ୟରେ ଅସନ୍ତୋଷ ପ୍ରକାଶ କଲାକ୍ଷଣି ସ୍ୱାସ୍ଥ୍ୟମନ୍ତ୍ରୀ ଅଭିଯୋଗ କରିବାକୁ ଲାଗିଲେ ଯେ ଅତିଶୟ ବୃଦ୍ଧ ହୋଇଥିବାରୁ

ମୁଖ୍ୟମନ୍ତ୍ରୀଙ୍କର ମସ୍ତିଷ୍କ ଆଉ ଭଲଭାବରେ କାର୍ଯ୍ୟ କରୁନାହିଁ, ସେ ଅଥର୍ବ ହୋଇଗଲାଣି; ତେଣୁ ତାଙ୍କର ବିଦାୟ ନେବା ଉଚିତ । ଶ୍ରୀ ରାମକୃଷ୍ଣ ପଟ୍ଟନାୟକ ଉତ୍କଳ କଂଗ୍ରେସ ନେତା ଶ୍ରୀ ବିଜୁ ପଟ୍ଟନାୟକଙ୍କର ଖୁବ୍ ବିଶ୍ୱାସୀ ଥିଲେ । ସେ ସବୁବେଳେ ବିଜୁବାବୁଙ୍କ କାନରେ କହିବାକୁ ଲାଗିଲେ ଯେ ବିଶ୍ୱନାଥବାବୁଙ୍କ ଭଳି ଜଣେ ଅଥର୍ବ ବ୍ୟକ୍ତିଙ୍କଦ୍ୱାରା ଶାସନ ଚାଲିପାରିବନାହିଁ; ତେଣୁ ବିଜୁ ପଟ୍ଟନାୟକଙ୍କ ଭଳି ଜଣେ କର୍ମଠ ସାହସୀ ନେତା ମୁଖ୍ୟମନ୍ତ୍ରୀ ହେବା ଆବଶ୍ୟକ ପଡୁଛି । ରାମକୃଷ୍ଣବାବୁଙ୍କ କଥା ଶୁଣି ବିଜୁବାବୁ କ୍ରମେ ସେ ଦିଗରେ ବେଶ୍ ଉତ୍ସାହ ପ୍ରଦର୍ଶନକଲେ । ମୁଁ ବିଜୁବାବୁଙ୍କୁ ରାମକୃଷ୍ଣବାବୁଙ୍କ ଆଚରଣ ବିଷୟରେ ଯେତେବେଳେ କହେ ସେ ସେଥିପ୍ରତି ଗୁରୁତ୍ୱ ନଦେଇ ବରଂ ସରକାର କିପରି ଅଚଳ ଅବସ୍ଥାକୁ ଆସିଗଲାଣି ସେ କଥା ମୋତେ କହୁଥିଲେ ।

ବିଜୁ ପଟ୍ଟନାୟକଙ୍କ ମନରେ ଧାରଣା ହୋଇଯାଇଥିଲା ଯେ ସ୍ୱାସ୍ଥ୍ୟମନ୍ତ୍ରୀ ରାମକୃଷ୍ଣ ପଟ୍ଟନାୟକ ନେତୃତ୍ୱ ପରିବର୍ତ୍ତନ କରି ବିଶ୍ୱନାଥବାବୁଙ୍କ ସ୍ଥାନରେ ତାଙ୍କୁ ଆଣି ମୁଖ୍ୟମନ୍ତ୍ରୀ କରିବାକୁ ବିଶେଷ ଆଗ୍ରହ ପ୍ରକାଶ କରୁଥିବାରୁ ତାଙ୍କ ନାମରେ ଅଯଥା ଦୁର୍ନୀତି ଅଭିଯୋଗ କରାଯାଇଥିଲା । ବିଜୁବାବୁ ବିଷୟଟିକୁ ଏଭଳିଭାବରେ ବୁଝିନଥିଲେ ଅନେକ ଅପ୍ରୀତିକର ଘଟଣା ଏଡ଼ାଇ ଦିଆଯାଇପାରିଥା'ନ୍ତା; ମାତ୍ର ତାଙ୍କର ସେ ପ୍ରକାର ଧୈର୍ଯ୍ୟ ନଥିଲା, ମୋ କଥାରେ ମଧ୍ୟ ସେ ବିଶ୍ୱାସ କରିନଥିଲେ । ପ୍ରକୃତରେ ସେତେବେଳେ ଅନୁସନ୍ଧାନରୁ ଜଣାଯାଇଥିଲା ଯେ ନିର୍ଦ୍ଦିଷ୍ଟ ପରିମାଣର ଉତ୍କୃଷ୍ଟ ଟାର୍ପୁଲିନ୍ ଖଣ୍ଡକୁ ଚାରି ଶହ ଟଙ୍କା ଦରରେ ସରକାରଙ୍କର ସାହାଯ୍ୟପ୍ରାପ୍ତ ଗୋଟିଏ ଶିଳ୍ପ ପ୍ରତିଷ୍ଠାନ ଦେବାକୁ ପ୍ରସ୍ତୁତ ଥିଲାବେଳେ ନିର୍ଦ୍ଦିଷ୍ଟ ଆକାର ଅନୁଯାୟୀ ଟାର୍ପୁଲିନ୍ ନଯୋଗାଇ ଖଣ୍ଡପିଛା ୪୫୫ ଟଙ୍କା ଦରରେ ଛୋଟିଆ, ପତଳା, ଛିଣ୍ଡା ଓ ଦଦରା ଟାର୍ପୁଲିନ୍ ଏକ ହଜାର ଖଣ୍ଡ ଯୋଗାଇ ଗୋଟିଏ ବ୍ୟବସାୟ ପ୍ରତିଷ୍ଠାନ ଚାରି ଲକ୍ଷ ପଞ୍ଚାବନ ହଜାର ଟଙ୍କା ନେଇଯାଇଥିଲା । ଏ ପ୍ରକାର ଦୁର୍ନୀତି କେବଳ ତତ୍କାଳୀନ ସ୍ୱାସ୍ଥ୍ୟମନ୍ତ୍ରୀଙ୍କ କାରସାଦି ଯୋଗୁଁ ସମ୍ଭବ ହୋଇଥିଲା ବୋଲି ଦୁର୍ନୀତି ନିବାରଣ ବିଭାଗ ନିର୍ଦ୍ଦିଷ୍ଟଭାବରେ ମତ ଦେଇଥିଲେ । ତତ୍କାଳୀନ ସ୍ୱାସ୍ଥ୍ୟ ବିଭାଗର ନିର୍ଦ୍ଦେଶକ ଶ୍ରୀ ମଦନମୋହନ ପ୍ରଧାନ ଓ ସେକ୍ରେଟେରୀ ଶ୍ରୀ ଭେଙ୍କଟରମଣଙ୍କ ଆପତ୍ତି ସତ୍ତ୍ୱେ ଏ ପ୍ରକାର କାରବାର କରାଯାଇଥିଲା ବୋଲି ଦୁର୍ନୀତି ନିବାରଣ ବିଭାଗର ଅନୁସନ୍ଧାନରୁ ଜଣାଯାଇଥିଲା । ଗୋଟିଏ ନିର୍ଦ୍ଦିଷ୍ଟ କମ୍ପାନୀ ସହିତ ଗୋପନ ସାଲିସ୍ ଅନୁସାରେ ଟେଣ୍ଡର ନୋଟିସ୍ ଦେବାକୁ ସ୍ୱାସ୍ଥ୍ୟମନ୍ତ୍ରୀ ନଭେମ୍ବର ମାସ ଆଠ ତାରିଖରେ ଆଦେଶ ଦେଇଥିଲେ । ତାହା ନଭେମ୍ବର ମାସ ଦଶ ତାରିଖ 'ମାତୃଭୂମି' ଖବରକାଗଜରେ ପ୍ରକାଶ ପାଇଥିଲା ଏବଂ ସେହି ଦଶ ତାରିଖ ଚାରିଟାବେଳେ ଟେଣ୍ଡର ଖୋଲାଯାଇ ଆଉ ଦୁଇଟି ସର୍ବନିମ୍ନ ରେଟ୍ ଦେଇଥିବା କମ୍ପାନୀକୁ ବାଦ୍ ଦେଇ ପୂର୍ବରୁ ସ୍ଥିରୀକୃତ ଏହି ବ୍ୟବସାୟ ପ୍ରତିଷ୍ଠାନକୁ ଟାର୍ପୁଲିନ୍ ଯୋଗାଇବାକୁ ହୁକୁମ ଦିଆଯାଇଥିଲା । ଦୁର୍ନୀତି ନିବାରଣ ବିଭାଗ ତାଙ୍କ ରିପୋର୍ଟରେ ଲେଖିଥିଲେ, "In view of the above, the responsibility for unreasonable tender call notice, acceptance of inferior articles at higher rates and payment of money for the same, lies entirely on the then Hon'ble Health Minister." ଏହାପରେ ଉକ୍ତ ବ୍ୟବସାୟ ପ୍ରତିଷ୍ଠାନକୁ ଦୋଷୀ ତାଲିକଭୁକ୍ତ (black listed) କରାଯାଇଥିଲା; କିନ୍ତୁ ଲୋକଚକ୍ଷୁରେ ମର୍ଯ୍ୟାଦାବନ୍ତ ବିଶ୍ୱନାଥ ଦାସ ମନ୍ତ୍ରିମଣ୍ଡଳ ନାମରେ କଳଙ୍କ ଲାଗିଥିଲା । ବନ୍ୟା, ବାତ୍ୟାପରି ପ୍ରାକୃତିକ ଦୈବୀ ବିପତ୍ତିର ସୁଯୋଗ ନେଇ, ଲୋକଙ୍କର ଦୁଃଖଦୁର୍ଦ୍ଦଶା ମୋଚନପାଇଁ ଜରୁରୀ ଆବଶ୍ୟକତାର କାରଣ ଦର୍ଶାଇ, ଦୁର୍ନୀତି ଆଚରଣଦ୍ୱାରା ଅର୍ଥ ଉପାର୍ଜନର ବାଟ ଖୋଲାଯାଇଥିଲା ବୋଲି ଏଇ ଟାର୍ପୁଲିନ୍ କିଣା ଘଟଣାକୁ ଉଲ୍ଲେଖ କରି ମନ୍ତ୍ରିମଣ୍ଡଳର ନିନ୍ଦା କରାଯାଇଥିଲା । ମୁଖ୍ୟମନ୍ତ୍ରୀ ଏଥିରେ ବଡ଼ ବ୍ୟଥିତ ହୋଇଥିଲେ । ବାତ୍ୟାରେ ଗୃହଶୂନ୍ୟ ହୋଇଥିବା ନିରାଶ୍ରୟ ବ୍ୟକ୍ତିମାନଙ୍କୁ ତୁରନ୍ତ ଆଶ୍ରୟ ଦେବାପାଇଁ ଏକ ହଜାର ଟାର୍ପୁଲିନ୍ ଅଠଚାଳିଶ ଘଣ୍ଟା ମଧ୍ୟରେ ଆବଶ୍ୟକ ବୋଲି କୁହାଗଲା । ଏ ପ୍ରକାର ଦୈବୀ ବିପତ୍ତି ସମୟରେ ନିରାଶ୍ରୟମାନଙ୍କୁ ଆଶ୍ରୟ ଦେବାର

ପ୍ରକୃତ ଆବଶ୍ୟକତା ସମ୍ବନ୍ଧରେ କିଏ ବା ପ୍ରଶ୍ନ ଉଠାଇବ ? ସେହିଭଳି ବାତ୍ୟାବିପନ୍ନ ଅଞ୍ଚଳରେ କଲେରା ରୋଗୀଙ୍କ ଶଯ୍ୟାପାଇଁ ଏକହଜାର ଖଟିଆ ମଧ୍ୟ କିଣାଯାଇଥିଲା ଏବଂ ସେଥିରେ ମଧ୍ୟ ଦୁର୍ନୀତିର ଅଭିଯୋଗ ହୋଇଥିଲା । ଏକ ହଜାର ଟାର୍ପୁଲିନ୍ କିଣାଯିବାର ଅଢ଼େଇ ମାସ ପରେ ଅର୍ଥ ବିଭାଗର ତତ୍କାଳୀନ ସେକ୍ରେଟେରୀ ଜେ.ଏସ୍.ବାଇବଲ୍ ୯ । ୨ । ୭୨ ତାରିଖରେ ମନ୍ତବ୍ୟ ଦେଇଥିଲେ, "One of the noteworthy features is that the tarpaulins have not been used for any purpose and in this transaction many irregularities have been committed, such as the question whether the tarpaulins will be required or not does not seem to have been examined at all. The fact that the need was not great is proved by the fact that although the notice was very short, the orders were placed after twenty days and the tarpaulins have not yet been used. The time allowed for furnishing quotation was extremely inadequate, the tender notice was published in only one local newspaper and that orders were not placed with the Small Scale Industry which was prepared to offer materials at lower rates."

## ଘଟ ପରିବର୍ତ୍ତନ ମସୁଧାରୁ ପଟ୍ଟ ପରିବର୍ତ୍ତନ

ଉପନିର୍ବାଚନରେ ରାଜନଗର ନିର୍ବାଚନ ମଣ୍ଡଳୀରୁ ଶ୍ରୀ ବିଜୁ ପଟ୍ଟନାୟକ ନିର୍ବାଚିତ ହୋଇ ବିଧାନସଭାକୁ ଆସିବା ପରେ ମୁଖ୍ୟମନ୍ତ୍ରୀ ହେବାର ଇଚ୍ଛାଟା ତାଙ୍କ ମନରେ ଉଠିଥାଏ । ରାମକୃଷ୍ଣବାବୁ ତାହାକୁ ଆହୁରି ଉସ୍କାଇବାକୁ ଲାଗିଥିଲେ । ବିଜୁବାବୁ ଅତି ଗୁରୁତ୍ୱ ଦେଇ ଦଳର ନେତା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ସହିତ ଏ ବିଷୟରେ ମେ' ମାସ ତେର ତାରିଖ ଦିନ ଆଲୋଚନା ଆରମ୍ଭ କରିଥିଲେ । ପ୍ରଥମେ ଶ୍ରୀ ସିଂହଦେଓ ପ୍ରସ୍ତାବଟିକୁ ସ୍ୱାଗତ କରିନଥିଲେ; ମାତ୍ର ବିଜୁ ପଟ୍ଟନାୟକଙ୍କ ମୁଣ୍ଡରେ ଯେଉଁ କଥାଟା ଢୁକେ ସେ ତାକୁ ସହଜରେ ଛାଡ଼ନ୍ତିନାହିଁ । ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ମନ୍ତ୍ରିମଣ୍ଡଳର ଭବିଷ୍ୟତ ସମ୍ବନ୍ଧରେ ବିଜୁବାବୁ ଏ ପ୍ରକାର ନୈରାଶ୍ୟଜନକ ଚିତ୍ର ସିଂହଦେଓଙ୍କ ଆଗରେ ଦେଲେ ଯେ ସେଥିରେ ସେ ଟିକିଏ ଅସ୍ଥିରହୋଇଯାଇଥିଲେ ଏବଂ ତା'ପରେ ବିଜୁବାବୁଙ୍କ ପ୍ରସ୍ତାବକୁ ବିଚାରକୁ ନେଇଥିଲେ । ଉଭୟେ ବସି ବହୁତ ସମୟ ଏ ବିଷୟରେ ଆଲୋଚନା କରିଥିଲେ ଏବଂ ଶେଷରେ ଦୁହିଁଙ୍କ ମଧ୍ୟରେ ନିଷ୍ପତ୍ତି ହୋଇଥିଲା ଯେ ବିଜୁବାବୁ ମୁଖ୍ୟମନ୍ତ୍ରୀ ହେବେ; ମାତ୍ର ଶ୍ରୀ ସିଂହଦେଓ ବିଧାନସଭାର ନେତା ହେବେ । ମିଳିତ ସାମ୍ମୁଖ୍ୟ ଦଳର ଗୋଟିଏ ବୈଠକ ଡକାଇ ସେଠାରେ ନେତୃତ୍ୱ ପରିବର୍ତ୍ତନ ବିଷୟରେ ସିଦ୍ଧାନ୍ତ ନେବା କଥା ସେମାନେ ସ୍ଥିର କରିଥିଲେ । କୌଣସି ସୂତ୍ରରୁ ଏ ସମ୍ବାଦଟି ପ୍ରଚାରିତ ହୋଇ ଖବରକାଗଜମାନଙ୍କରେ ପ୍ରକାଶିତ ହୋଇଯାଇଥିଲା । ମିଳିତ ସାମ୍ମୁଖ୍ୟ ଦଳର ନେତୃତ୍ୱ ପରିବର୍ତ୍ତନ ସମ୍ବନ୍ଧରେ ଖବରକାଗଜମାନଙ୍କରେ ପ୍ରକାଶ ପାଇଥିବା ସମ୍ବାଦ ପ୍ରତି ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କର ଦୃଷ୍ଟି ଆକର୍ଷଣ କରାଯିବାରୁ ସେ ପ୍ରସ୍ତାବଟିକୁ ସ୍ୱାଗତ ଜଣାଇବା ସଙ୍ଗେ ସଙ୍ଗେ କହିଥିଲେ ଯେ ସେ ପୂର୍ବରୁ ମିଳିତ ସାମ୍ମୁଖ୍ୟ ଦଳକୁ ଜଣାଇଦେଇଥିଲେ ଯେ ତାଙ୍କର ବୟସ ଦୃଷ୍ଟିରୁ ସେ ଆଉ ଅଧିକ ଦିନ କାର୍ଯ୍ୟ ସମ୍ପାଦନପାଇଁ ସମର୍ଥ ହୋଇପାରିବେନାହିଁ । ସେ ଏଭଳି ମତପୋଷଣ କରିବାର କାରଣ ଯାହା ହେଉନା କାହିଁକି, ମୁଖ୍ୟମନ୍ତ୍ରୀଙ୍କର ମତାମତ ପ୍ରତି ଯେତେବେଳେ ସାମ୍ବାଦିକମାନେ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଦୃଷ୍ଟି ଆକର୍ଷଣ କଲେ ସେ ପରୋକ୍ଷରେ ନେତୃତ୍ୱ ପରିବର୍ତ୍ତନ ପ୍ରସ୍ତାବ କଥା ସ୍ୱୀକାରକରିଥିଲେ । ମିଳିତ ସାମ୍ମୁଖ୍ୟର ବୈଠକ ଡକାଯିବା କଥା ମଧ୍ୟ ସେ ସ୍ୱୀକାର କରିଥିଲେ ଏବଂ ସେଠାରେ ମନ୍ତ୍ରିମଣ୍ଡଳର କାର୍ଯ୍ୟ ସମ୍ବନ୍ଧରେ ଆଲୋଚନା ହେବାର ସୂଚନା ଦେଇଥିଲେ । ଉକ୍ତ ବୈଠକରେ ମିଳିତ ସାମ୍ମୁଖ୍ୟ ଦଳର ନେତୃତ୍ୱ ପରିବର୍ତ୍ତନ ବିଷୟ ଆଲୋଚିତ ହେବାର ସମ୍ଭାବନା ଅଛି ବୋଲି ସେ କହିଥିଲେ ।

ଏହାପରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସ ରାଜ୍ୟପାଳ ସର୍ଦ୍ଦାର ଯୋଗେନ୍ଦ୍ର ସିଂହଙ୍କୁ ଦେଖାକରି ନେତୃତ୍ୱ ପରିବର୍ତ୍ତନର ସମ୍ଭାବନା ବିଷୟରେ ତାଙ୍କୁ ଆଗତୁରା ଜଣାଇଦେଇଥିଲେ । ବିଶ୍ୱନାଥବାବୁ ସୁସ୍ଥ ସାମ୍ବିଧାନିକ ପରମ୍ପରାରେ ବିଶ୍ୱାସୀ । ପ୍ରଧାନ ପ୍ରଧାନ ଘଟଣା ନେଇ ରାଜ୍ୟପାଳ ଓ ମୁଖ୍ୟମନ୍ତ୍ରୀଙ୍କ ମଧ୍ୟରେ ଯଥାଶୀଘ୍ର ବାର୍ତ୍ତା ବିନିମୟ ଓ ସଂଳାପ ହେବା ସଂସଦୀୟ ଗଣତନ୍ତ୍ରରେ ଏକ ଅନୁସୃତ ପରମ୍ପରା । ସେହି ଦୃଷ୍ଟିରୁ ରାଜ୍ୟପାଳଙ୍କ ସହିତ ତାଙ୍କର ଏହି ଆଲୋଚନାକୁ ଯେଉଁମାନେ ସେତେବେଳେ ସନ୍ଦେହ ଚକ୍ଷୁରେ ଦେଖୁଥିଲେ, ମୁଁ ସେମାନଙ୍କ ସହିତ ଏକମତ ହୋଇପାରିନଥିଲି । ନେତୃତ୍ୱ ପରିବର୍ତ୍ତନ ନକରି ଶ୍ରୀ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ଯେପରି ଶାସନ ଚାଲିଛି ସେହିପରି ଚାଲିଲେ ଭଲ ହେବ ବୋଲି ରାଜ୍ୟପାଳ ବିଶ୍ୱନାଥବାବୁଙ୍କୁ ପରାମର୍ଶ ଦେଇଥିବା କଥା ମୁଁ ପରେ ଶୁଣିବାକୁ ପାଇଥିଲି । ମୁଖ୍ୟମନ୍ତ୍ରୀ ରାଜ୍ୟପାଳଙ୍କୁ ଦେଖାକରି ଫେରିବା ପରେ ମୁଁ ରାଜଭବନକୁ ଯାଇ ରାଜ୍ୟପାଳଙ୍କ ସହିତ କଥାବାର୍ତ୍ତା ହୋଇ ତାଙ୍କର ମତାମତ ଜାଣିବାକୁ ଇଚ୍ଛାକରିଥିଲି । ଇତିମଧ୍ୟରେ ରାଜ୍ୟପାଳ ସର୍ଦ୍ଦାର ଯୋଗେନ୍ଦ୍ର ସିଂହଙ୍କ ସହିତ ମୋର ଖୁବ୍ ଘନିଷ୍ଠତା ସୃଷ୍ଟିହୋଇଥିଲା । ନେତୃତ୍ୱ ପରିବର୍ତ୍ତନପାଇଁ ଉଦ୍ୟମ ନକରିବାକୁ ସେ ମୋତେ ପରାମର୍ଶ ଦେଇଥିଲେ । ବୟସ ଦୃଷ୍ଟିରୁ ବିଶ୍ୱନାଥବାବୁ କାର୍ଯ୍ୟ କରିବାକୁ ସକ୍ଷମ ହେଉନାହାନ୍ତି; ତେଣୁ ବିଜୁବାବୁ ମୁଖ୍ୟମନ୍ତ୍ରୀ ହେଲେ ଭଲହେବବୋଲି ମୁଁ ରାଜ୍ୟପାଳଙ୍କୁ କହିବାରୁ ମୁଖ୍ୟମନ୍ତ୍ରୀ ହେବାପାଇଁ ଶ୍ରୀ ବିଜୁ ପଟ୍ଟନାୟକଙ୍କ ନାମ ଆଦୌ ନଉଠାଇବାପାଇଁ ରାଜ୍ୟପାଳ ମୋତେ ପରାମର୍ଶ ଦେଇଥିଲେ । ସେ କହିଥିଲେ ଯଦି ରାଉରକେଲା ଉପନିର୍ବାଚନରେ ବିଶ୍ୱନାଥବାବୁ ହାରିଯାଇଥାଆନ୍ତେ ଏବଂ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହେବାକୁ ଚେଷ୍ଟା କରିଥାନ୍ତେ, ତାହା କିପରି କରାଇ ନଦିଆଯିବ ସେଥିପାଇଁ ତାଙ୍କୁ ଅତି ତରବରିଆଭାବରେ ଏଠାକୁ ରାଜ୍ୟପାଳ କରି ପଠାଯାଇଥିଲା । ବିଶ୍ୱନାଥବାବୁ ଇସ୍ତଫା ଦେଲେ ସେ ବିଜୁ ପଟ୍ଟନାୟକଙ୍କୁ ଆଦୌ ଡାକିବେନାହିଁ; ବରଂ ସାମ୍ବିଧାନିକ ପରମ୍ପରା ଦୃଷ୍ଟିରୁ ସବୁଠାରୁ ସଂଖ୍ୟାଗରିଷ୍ଠ ଦଳ ଶାସକ କଂଗ୍ରେସର ନେତା ଶ୍ରୀ ବିନାୟକ ଆଚାର୍ଯ୍ୟଙ୍କୁ ମନ୍ତ୍ରିମଣ୍ଡଳ ଗଠନ କରିବାପାଇଁ ଡାକିବେ ବୋଲି ମୋତେ କହିଥିଲେ । ତେଣୁ ନେତୃତ୍ୱ ପରିବର୍ତ୍ତନରେ ଯେଉଁ ବିପଦ ଅଛି ସେ ବିଷୟରେ ରାଜ୍ୟପାଳ ମୋତେ ଘରୋଇଭାବରେ ସତର୍କ କରାଇଦେଇଥିଲେ । ଆମ ଭିତରେ ଏପ୍ରକାର ଅସ୍ଥିରତା ହେତୁ ବିରୋଧୀ ଦଳର ଲୋକମାନେ କିପରି ତତ୍ପର ହେଲେଣି ସେ ସମ୍ବନ୍ଧରେ ମୁଁ ରାଜ୍ୟପାଳଙ୍କଠାରୁ ସନ୍ଧାନ ପାଇଥିଲି । ନେତୃତ୍ୱ ପରିବର୍ତ୍ତନ କଥା ଉଠିବା ପରେ ଯେଉଁ ଅବସ୍ଥା ଉପୁଜିଥିଲା ତା'ର ସୁବିଧା ନେବାପାଇଁ ଆମ ମିଳିତ ସାମ୍ମୁଖ୍ୟ ବିଧାୟକ ଦଳର କେତେକ ସଭ୍ୟଙ୍କୁ ବହୁ ପ୍ରଲୋଭନ ଦେଖାଇ ଦଳତ୍ୟାଗ କରାଇବାକୁ ଶାସକ କଂଗ୍ରେସ ପକ୍ଷରୁ ସେତେବେଳେ ଉଦ୍ୟମ ହୋଇଥିଲା । ନେତୃତ୍ୱ ପରିବର୍ତ୍ତନପାଇଁ ଝଗଡ଼ା ଆରମ୍ଭ ହେବାରୁ କେତେକ ସଭ୍ୟ ଆମ ସରକାରର ଭବିଷ୍ୟତ ସମ୍ବନ୍ଧରେ ସନ୍ଦିହାନ ହୋଇ ମନୋବଳ ହରାଇଥିଲେ । ସେମାନଙ୍କ ମନରେ ଏ ପ୍ରକାର ଦୁର୍ବଳତାର ସୁଯୋଗ ନେବାକୁ ଶାସକ କଂଗ୍ରେସ ତତ୍ପର ହୋଇଉଠିଲେ ।

ମିଳିତ ସାମ୍ମୁଖ୍ୟ ଦଳର ନେତୃତ୍ୱ ପରିବର୍ତ୍ତନ ପ୍ରସଙ୍ଗ ପ୍ରକାଶିତ ହେବା ପରେ ନାନାପ୍ରକାର ପ୍ରତିକ୍ରିୟା ଜଣାଯାଇଥିଲା । ସବୁ କଥା ଅନିଶ୍ଚିତ ଭଳି ଲାଗିଥିଲା । ଯେଉଁ ସିଂହଦେଓ ପ୍ରଥମେ ବିଜୁବାବୁଙ୍କ କଥାରେ ସମ୍ମତି ଦେଇଥିଲେ, ସେ ମଧ୍ୟ ତାଙ୍କ ନିଷ୍ପତ୍ତିରେ ଦୃଢ଼ ନୁହନ୍ତି ବୋଲି ଜଣାଯାଇଥିଲା । ନେତୃତ୍ୱ ପରିବର୍ତ୍ତନ ହେଲେ ବିଜୁବାବୁଙ୍କୁ ମୁଖ୍ୟମନ୍ତ୍ରୀ କରିବାରେ ଯେଉଁ ବିପଦ ଥିଲା ଏବଂ ଯାହା ମୁଁ ଘରୋଇଭାବରେ ସର୍ଦ୍ଦାର ଯୋଗେନ୍ଦ୍ର ସିଂହଙ୍କଠାରୁ ଶୁଣିଥିଲି, ସେ କଥା ମୁଁ ବିଜୁବାବୁଙ୍କୁ କହିଥିଲି । ମୋ କଥା ଶୁଣି ସେ ଭୟଙ୍କର ବିରକ୍ତି ପ୍ରକାଶ କରିଥିଲେ । ତା'ପରେ ମୁଁ ତାଙ୍କୁ ଆଉ ଗୋଟିଏ ପ୍ରସ୍ତାବ ଦେଇଥିଲି । ମୁଁ କହିଥିଲି ଯେ ପ୍ରଥମେ ସେ ଉପମୁଖ୍ୟମନ୍ତ୍ରୀ ହୋଇଗଲେ ଭଲହେବ; କାରଣ ସେଥିପାଇଁ ରାଜ୍ୟପାଳଙ୍କର କିଛି କରିବାର ନଥିଲା । ଶ୍ରୀ ବିଶ୍ୱନାଥ ଦାସଙ୍କ ପାଖରେ ସେ

ଉପମୁଖ୍ୟମନ୍ତ୍ରୀ ହେଲେ ତାଙ୍କର କିଛି ସମ୍ମାନ ହାନି ହେବନାହିଁ ଏବଂ କାର୍ଯ୍ୟତଃ ସବୁ ଦାୟିତ୍ୱ ତାଙ୍କ ଉପରେ ଆସି ପଡ଼ିବ ବୋଲି ବୁଝାଇଥିଲି । ଏହିପରି ଭାବରେ କିଛିଦିନ କାର୍ଯ୍ୟ ଚାଲିଲେ ତାହାପରେ ନେତୃତ୍ୱ ପରିବର୍ତ୍ତନ ସମ୍ଭବ ହୋଇପାରେ ବୋଲି ମୁଁ ତାଙ୍କୁ କହିଥିଲି । ମୋ ପ୍ରସ୍ତାବ ସେ ବିଚାର କରିବେ ବୋଲି ମୋତେ କହିଥିଲେ । ଏହାପରେ ସିଂହଦେଓ ପ୍ରଭୃତି ଆମେ ମନ୍ତ୍ରିମଣ୍ଡଳର କେତେଜଣ ସଭ୍ୟ ଏକତ୍ର ବସି ଏ ବିଷୟରେ ଆଲୋଚନା କରୁଥିଲୁ । ନେତୃତ୍ୱ ପରିବର୍ତ୍ତନରେ ଯେଉଁ ବିପଦ ଥିଲା ତାହା ସମସ୍ତେ ଉପଲବ୍ଧି କରିପାରିଥିଲେ । ନେତୃତ୍ୱ ପରିବର୍ତ୍ତନ କଥା ଖବରକାଗଜରେ ପ୍ରକାଶିତ ହୋଇ ଯେଉଁ ଅନିଶ୍ଚିତ ଅବସ୍ଥା ସୃଷ୍ଟିହୋଇଥିଲା, ତା' କିପରି ତୁରନ୍ତ ଦୂରକରାଯିବ ସେ ବିଷୟରେ ଆମ୍ଭେମାନେ ଆଲୋଚନା କରିଥିଲୁ । ଶେଷରେ ସ୍ଥିରହୋଇଥିଲା ଯେ ଆମେ ସମସ୍ତେ ଏକତ୍ର ଯାଇ ବିଶ୍ୱନାଥବାବୁଙ୍କୁ ମୁଖ୍ୟମନ୍ତ୍ରୀ ହୋଇ ରହିବାପାଇଁ ଅନୁରୋଧ କରିବୁ । ସେଇ ଅନୁସାରେ ଆମେ ସମସ୍ତେ ଏକତ୍ର ହୋଇ ମେ ମାସ ଅଠର ତାରିଖରେ ବିଶ୍ୱନାଥବାବୁଙ୍କ ପାଖକୁ ଗଲୁ ଏବଂ ମିଳିତ ସାଙ୍ଗଠନିକ ଦଳର ନେତା ହୋଇ ରହିବାପାଇଁ ତାଙ୍କୁ ଅନୁରୋଧକଲୁ । ସେ ଆମ କଥା ଶୁଣିଥିଲେ; ମାତ୍ର ରହିବାପାଇଁ ଅନିଚ୍ଛା ପ୍ରକାଶକରିଥିଲେ । ଆମ୍ଭେମାନେ ତାଙ୍କୁ ବହୁତ ଅନୁରୋଧ କରିବାରୁ ସେ ଗୋଟିଏ ସର୍ତ୍ତରେ ଆମ୍ଭମାନଙ୍କ କଥାରେ ରାଜି ହେବେ ବୋଲି କହିଥିଲେ । ତାଙ୍କର ସର୍ତ୍ତ ଥିଲା ମନ୍ତ୍ରିମଣ୍ଡଳରୁ ଶ୍ରୀ ରାମକୃଷ୍ଣ ପଟ୍ଟନାୟକଙ୍କର ବିଦାୟ । ଶ୍ରୀ ରାମକୃଷ୍ଣ ପଟ୍ଟନାୟକ ତାଙ୍କ ପ୍ରତି ଯେଉଁ ଦୁର୍ବ୍ୟବହାର କରିଥିଲେ ସେ କଥା ସବୁ ସେ ଅତି ଦୁଃଖରେ ଆମ ପାଖରେ ବର୍ଣ୍ଣନା କରିଥିଲେ । ଦଳଭିତରେ ଯେଉଁସବୁ ବିଶୃଙ୍ଖଳା ଓ ଅଶାନ୍ତି ସୃଷ୍ଟିହୋଇଥିଲା ତାହା କେବଳ ଶ୍ରୀ ରାମକୃଷ୍ଣ ପଟ୍ଟନାୟକଙ୍କ ଦୁଷ୍କର୍ମରୁ ହୋଇଥିଲା ବୋଲି ସେ କହିଥିଲେ । ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ଶ୍ରୀ ରାମକୃଷ୍ଣ ପଟ୍ଟନାୟକ ନାନାପ୍ରକାର ମିଥ୍ୟା କଥା କହି ତାଙ୍କ ବିରୁଦ୍ଧରେ ମତାଇଦେଇଛନ୍ତି ବୋଲି ବିଶ୍ୱନାଥବାବୁ କହିଥିଲେ । ଦଳଭିତରେ ବିଶୃଙ୍ଖଳା ଏବଂ ବିଜୁ ପଟ୍ଟନାୟକ ଓ ତାଙ୍କ ଭିତରେ ମନୋମାଳିନ୍ୟପାଇଁ ବିଶ୍ୱନାଥବାବୁ ସମ୍ପୂର୍ଣ୍ଣଭାବେ ରାମକୃଷ୍ଣ ପଟ୍ଟନାୟକଙ୍କୁ ଦାୟୀ କରିଥିଲେ । ତାଙ୍କ କଥା ଶୁଣି ଆମ୍ଭେମାନେ ସ୍ତମ୍ଭୀଭୂତ ହୋଇଯାଇଥିଲୁ । ତା'ପରେ ସେତେବେଳକାର ପରିସ୍ଥିତିରେ ସେ କଥା ନ ଉଠାଇବାପାଇଁ ମୁଖ୍ୟମନ୍ତ୍ରୀଙ୍କୁ ଆମ୍ଭେମାନେ ଅନୁରୋଧ କରିଥିଲୁ । ଶ୍ରୀ ରାମକୃଷ୍ଣ ପଟ୍ଟନାୟକଙ୍କୁ ଆମ୍ଭେମାନେ ସାବଧାନ କରାଇଦେବୁ ଏବଂ ଏହାପରେ ସେ ଯେପରି ମନ୍ତ୍ରିମଣ୍ଡଳରେ ଚଳିଲାଭଳି ଆଚରଣ ପ୍ରକାଶ କରନ୍ତି ସେଥିପ୍ରତି ଆମ୍ଭେମାନେ ଦୃଷ୍ଟିଦେବୁ ବୋଲି ମୁଖ୍ୟମନ୍ତ୍ରୀଙ୍କୁ ପ୍ରତିଶ୍ରୁତି ଦେଇଥିଲୁ । ବହୁ ଅନୁରୋଧ ପରେ ମୁଖ୍ୟମନ୍ତ୍ରୀ ଶାନ୍ତହୋଇ ଆମ ଅନୁରୋଧରେ ସମ୍ମତି ଦେଇଥିଲେ ।

## ଅବୁଝାମଣା ବିଜୁ

ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କୁ ଆମେ ମନ୍ତ୍ରିମଣ୍ଡଳର ଅଧିକାଂଶ ସଭ୍ୟ ଦେଖାକରି ମୁଖ୍ୟମନ୍ତ୍ରୀ ହୋଇ ରହିବାପାଇଁ ଅନୁରୋଧ କରିବାଟା ବିଜୁବାବୁ ଆଦୌ ପସନ୍ଦ କରିନଥିଲେ । ଗୋଟିଏ ଅକର୍ମଣ୍ୟ ସରକାରକୁ ଚଳାଇବା ଅପେକ୍ଷା ବିପଦର ଆଶଙ୍କା ଥିଲେ ମଧ୍ୟ ନେତୃତ୍ୱ ପରିବର୍ତ୍ତନ କରିବା ଉଚିତ ବୋଲି ସେ ଖୋଲାଖୋଲି ଭାବରେ କହିବାକୁ ଲାଗିଥିଲେ । ଏହି ସମୟରେ କୌଣସି କାର୍ଯ୍ୟରେ ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀ ରାମକୃଷ୍ଣ ପଟ୍ଟନାୟକ ଦିଲ୍ଲୀ ଯାଇଥିଲେ । ଦିଲ୍ଲୀରୁ ଫେରି ସେ ବିଜୁବାବୁଙ୍କ ସହିତ ବହୁତ ସମୟ ନିଭୃତରେ କଥାବାର୍ତ୍ତା ହୋଇଥିଲେ । ଶ୍ରୀ ରାମକୃଷ୍ଣ ପଟ୍ଟନାୟକ ଓଡ଼ିଶାର ନେତୃତ୍ୱ ପରିବର୍ତ୍ତନ ବିଷୟରେ ରାଷ୍ଟ୍ରପତି ଶ୍ରୀ ଭି.ଭି. ଗିରିଙ୍କ ସଙ୍ଗରେ କୁଆଡ଼େ ଅନେକ କଥାବାର୍ତ୍ତା ହୋଇଥିଲେ ଏବଂ କଥାବାର୍ତ୍ତାର ବିଷୟବସ୍ତୁ ସେ ବିଜୁବାବୁଙ୍କୁ ଜଣାଇଥିଲେ । ରାଷ୍ଟ୍ରପତି ଶ୍ରୀ ଗିରି କୁଆଡ଼େ ରାମକୃଷ୍ଣବାବୁଙ୍କୁ କହିଥିଲେ ଯେ ବିଶ୍ୱନାଥ ଦାସଙ୍କ ପରିବର୍ତ୍ତେ ବିଜୁ ପଟ୍ଟନାୟକଙ୍କୁ ମୁଖ୍ୟମନ୍ତ୍ରୀ କଲେ ଭଲହେବ ଏବଂ ତାହା ତୁରନ୍ତ ହେଲେ ସେ ବିଷୟରେ କୌଣସି ଅସୁବିଧା ହେବନାହିଁ । ତା'ଛଡ଼ା ସେ ସମ୍ବନ୍ଧରେ କୌଣସି

ଅସୁବିଧା ଉପୁଜିଲେ ରାଷ୍ଟ୍ରପତି ନିଜେ ସେ କଥା ତୁଲାଇନେବେ ବୋଲି କୁଆଡ଼େ ରାମକୃଷ୍ଣବାବୁଙ୍କୁ ପ୍ରତିଶ୍ରୁତି ଦେଇଥିଲେ । ରାମକୃଷ୍ଣବାବୁଙ୍କଠାରୁ ଏ କଥା ଶୁଣି ବିଜୁବାବୁ ମୋତେ ଦିନେ ସନ୍ଧ୍ୟାବେଳେ ଉଦ୍ୟାନ ମାର୍ଗରେ ଥିବା ଉତ୍କଳ କଂଗ୍ରେସ ଅଫିସକୁ ଡକାଇପଠାଇଥିଲେ । ମୁଁ ସେଠାକୁ ଯିବା ପରେ ସେ ମୋତେ ରାମକୃଷ୍ଣବାବୁଙ୍କ ସହ ରାଷ୍ଟ୍ରପତି ଶ୍ରୀ ଗିରିଙ୍କର ଯେଉଁସବୁ କଥାବାର୍ତ୍ତା ହୋଇଥିଲା ସେ ବିଷୟ କହିଥିଲେ ଏବଂ ତୁରନ୍ତ ପାର୍ଲିଆମେଣ୍ଟ ଅଧିବେଶନ ଦିଲ୍ଲୀରେ ଚାଲିଥିଲା ସମୟରେ ଆମର କିପରି ନେତୃତ୍ୱ ପରିବର୍ତ୍ତନ କରାଯିବ ସେ ବିଷୟରେ କାର୍ଯ୍ୟାନୁଷ୍ଠାନ କରିବାକୁ ମୋତେ ପରାମର୍ଶ ଦେଇଥିଲେ । ରାମକୃଷ୍ଣବାବୁଙ୍କ ଏଭଳି କଥା ଆଦୌ ବିଶ୍ୱାସଯୋଗ୍ୟ ନୁହେଁ ବୋଲି ମୁଁ କହିଥିଲି ଏବଂ ତାଙ୍କର ଏହି କଥା ଉପରେ ନିର୍ଭର କରି କୌଣସି କାର୍ଯ୍ୟ କରିବା ଆଦୌ ସମୀଚୀନ ହେବନାହିଁ ବୋଲି ମତ ଦେଇଥିଲି । ମୋ କଥା ଶୁଣିଲାକ୍ଷଣି ବିଜୁବାବୁ ଏକାବେଳକେ ଉତ୍‌କ୍ଷିପ୍ତ ହୋଇଉଠିଥିଲେ ଏବଂ ଚିତ୍କାର କରି କହିଥିଲେ ଯେ ଯେଉଁ ବିଶ୍ୱନାଥ ଦାସ ସରକାରର ମୂଲ୍ୟ ପାହୁଲେ ମଧ ନୁହେଁ ସେ ପ୍ରକାର ଅଥର୍ବ, ଅକର୍ମଣ୍ୟ ଓ ଅପଦାର୍ଥ ସରକାର ଆମ ରାଜ୍ୟରେ ରହିବାର ଆଉ କୌଣସି ଆବଶ୍ୟକତା ନାହିଁ । ରାମକୃଷ୍ଣ ପଟ୍ଟନାୟକଙ୍କ କଥାରେ ବିଶ୍ୱାସକରି ଏପରି କାର୍ଯ୍ୟ କରିବା ଉଚିତନୁହେଁ ବୋଲି ମୁଁ ଯେଉଁ ମତ ଦେଇଥିଲି, ତାହା ବିଜୁବାବୁଙ୍କୁ ବହୁତ ଆଘାତ ଦେଇଥିଲାଭଳି ମୋତେ ଜଣାପଡ଼ିଥିଲା । ତେଣୁ ସେ କହିଥିଲେ, ''ରାମକୃଷ୍ଣ ତୁମମାନଙ୍କଠାରୁ ବହୁତ ବିଶ୍ୱାସଯୋଗ୍ୟ ।'' ଖୁବ୍ କ୍ରୋଧାନ୍ୱିତ ହୋଇ ଅତି ଉତ୍ତେଜିତ ଅବସ୍ଥାରେ ସେ ଆହୁରି କହିଥିଲେ ଯେ ଉତ୍କଳ କଂଗ୍ରେସ ଦଳ ରହିବାର ଆଉ କୌଣସି ଆବଶ୍ୟକତା ନାହିଁ । ମୁଁ ମଧ ବିଶେଷଭାବରେ ଉତ୍ତେଜିତ ହୋଇ କହିଥିଲି, ଉତ୍କଳ କଂଗ୍ରେସ ଭାଙ୍ଗିଦିଆଯାଉ; ତା'ହେଲେ ଆମେ ଯେଉଁ କଂଗ୍ରେସରୁ ଆସିଥିଲୁ ସେଠାକୁ ଫେରିଯିବୁ । ମୋ କଥା ଶୁଣି ସେ ଆହୁରି ଚିତ୍କାର କରି କହିଥିଲେ, "You can now go and join Congress, I permit you to do so" । ଉତ୍କଳ କଂଗ୍ରେସ ଆଉ ମିଳିତ ସାମ୍ମୁଖ୍ୟ ଦଳରେ ରହିବ କି ନାହିଁ, ଉତ୍କଳ କଂଗ୍ରେସର ଭବିଷ୍ୟତ୍ କ'ଣ ହେବ, ସେ କଥା ବିଚାର କରିବାପାଇଁ ଜୁନ୍ ମାସ ନଅ ତାରିଖକୁ ଉତ୍କଳ କଂଗ୍ରେସ ଓ ବିଧାନସଭାରେ ଉତ୍କଳ କଂଗ୍ରେସ ବିଧାୟକମାନଙ୍କର ଗୋଟିଏ ମିଳିତ ବୈଠକ ଡାକିବାକୁ ବିଜୁବାବୁ ତୁରନ୍ତ ନିର୍ଦ୍ଦେଶ ଦେଇଥିଲେ । କ୍ରୋଧ ଅବସ୍ଥାରେ ଏହି ବୈଠକ ଡାକିବାଦ୍ୱାରା ବିଜୁବାବୁ ଉତ୍କଳ କଂଗ୍ରେସର ବିଲୟ ତ୍ୱରାନ୍ୱିତ କରିଦେଇଥିଲେ । ଏତେଦିନର ଜଣେ ପୁରୁଣା ବନ୍ଧୁଙ୍କଠାରୁ ଏଭଳି ବ୍ୟବହାର ପାଇବା ପରେ ମୋର କେବଳ 'ଅବୁଝାମଣା ରଜା ଓ ପାଳବିଣ୍ଡା ମନ୍ତ୍ରୀ'ଙ୍କ କଥା ମନେପଡ଼ିଥିଲା । ରଜା ଅବୁଝାମଣା ହେଲେ ମନ୍ତ୍ରୀ ନିଜ ମୁହଁରେ ପାଳବିଣ୍ଡା ଦେଇ ରହିବା ଶ୍ରେୟସ୍କର । ମୁଁ ସଙ୍ଗେ ସଙ୍ଗେ ସେଠୁ ଚାଲିଆସିଥିଲି; ଆଉ ସେଠାକୁ ଫେରିନଥିଲି । ବିଜୁବାବୁ ମଧ ଆଉ ମୋତେ ଖୋଜିନଥିଲେ । ଆମ ଦୁହିଁଙ୍କ ମଧରେ ଏପରି ମତଭେଦ ଚାରିଆଡ଼େ ବ୍ୟାପକଭାବରେ ପ୍ରଚାରିତ ହୋଇଥିଲା ।

ଏହି ପରିପ୍ରେକ୍ଷୀରେ ଏଠାକାର କଂଗ୍ରେସ ନେତୃବର୍ଗ ମୋ ସହିତ ସମ୍ପର୍କ ସ୍ଥାପନ କରିବାକୁ ଲାଗିଲେ । ସେତେବେଳେ ହାଉସିଂ ବୋର୍ଡ଼ର ଚେୟାରମ୍ୟାନ ଶ୍ରୀ ଶଶିଭୂଷଣ ମିଶ୍ରଙ୍କୁ ମୁଁ ଦିଲ୍ଲୀ ପଠାଇଥିଲି ସେଠାକାର କଂଗ୍ରେସ ନେତୃବର୍ଗଙ୍କର ମତିଗତି ବୁଝିବାପାଇଁ । ସେ ଦିଲ୍ଲୀ ଯାଇ ସମସ୍ତଙ୍କ ସହ କଥାବାର୍ତ୍ତା କରିଥିଲେ । ସେତେବେଳେ ଓଡ଼ିଶା କଂଗ୍ରେସ ବିଷୟ ବୁଝିବାର ଦାୟିତ୍ୱ କେନ୍ଦ୍ର ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀ ଉମାଶଙ୍କର ଦୀକ୍ଷିତ୍‌ଙ୍କ ଉପରେ ନ୍ୟସ୍ତ ଥିଲା । ତାଙ୍କ ସହିତ ଶଶିବାବୁ ଦେଖାକରିଥିଲେ । ଶ୍ରୀ ଦୀକ୍ଷିତ୍ ଉତ୍କଳ କଂଗ୍ରେସ ଶାସକ କଂଗ୍ରେସ ସହିତ ମିଶ୍ରଣ ପ୍ରସ୍ତାବରେ ବିଶେଷ ଆଗ୍ରହ ପ୍ରକାଶ କରିଥିଲେ । ମୋ ସହିତ ଭୁବନେଶ୍ୱରରେ କଥାବାର୍ତ୍ତା କରିବାପାଇଁ ମଧପ୍ରଦେଶର ଲୋକସଭା ସଦସ୍ୟ ଶ୍ରୀ ଗାର୍ଗୀଶଙ୍କର ମିଶ୍ରଙ୍କୁ ଶ୍ରୀ ଦୀକ୍ଷିତ୍ ଭୁବନେଶ୍ୱର ପଠାଇଥିଲେ । ସେ ଆସି ମୋ ସହିତ କଥାବାର୍ତ୍ତା ହେବା ପରେ ଉମାଶଙ୍କର ଦୀକ୍ଷିତ୍‌ଙ୍କ ସହିତ ମୋର କଥାବାର୍ତ୍ତା ହୋଇଥିଲା । ଶ୍ରୀ ଦୀକ୍ଷିତ୍ ପ୍ରଧାନମନ୍ତ୍ରୀଙ୍କ ସହିତ ମଧ ମୋ ବିଷୟରେ କଥାବାର୍ତ୍ତା ହୋଇଥିଲେ । ଶାସକ କଂଗ୍ରେସରେ ଉତ୍କଳ କଂଗ୍ରେସ ମିଶିଯିବା ପରେ ପରିବର୍ତ୍ତିତ ବି[illegible] କଂଗ୍ରେସ

ଦଳ ଭିତରୁହିଁ ଦଳର ନେତାରୂପେ ଜଣେ ବଛାଯିବେ ବୋଲି ଶ୍ରୀ ଦୀକ୍ଷିତ୍ ମୋ ପାଖରେ ସ୍ପଷ୍ଟ ମତବ୍ୟକ୍ତ କରିଥିଲେ ଏବଂ ମୁଁ ଦଳପତିରୂପେ ନିର୍ବାଚିତ ହେଲେ ସେ ଖୁସି ହେବେ ବୋଲି ମୋତେ କହିଥିଲେ । ଶ୍ରୀ ଦୀକ୍ଷିତ୍ ମୋତେ ସମ୍ପୂର୍ଣ୍ଣଭାବେ ଧାରଣା ଦେଇଥିଲେ ଯେ ପରିବର୍ଦ୍ଧିତ କଂଗ୍ରେସ ବିଧାନସଭା ସଦସ୍ୟମାନଙ୍କ ମଧ୍ୟରୁହିଁ ନେତା ନିର୍ବାଚନ କରାଯିବ ଏବଂ ନନ୍ଦିନୀ ଶତପଥୀ ଓଡ଼ିଶାରେ ଆସି ନେତା ହେବା କଥା 'Out of question' ବୋଲି ସେ ମୋତେ କହିଥିଲେ । ଯଦିଓ କଂଗ୍ରେସ ସହିତ ଉତ୍କଳ କଂଗ୍ରେସର ପ୍ରଥମେ ଆନୁଷ୍ଠାନିକ ପୁନର୍ମିଳନ ହେବା ଜବାବ ଉପରେ ଆଲୋଚନା ଆରମ୍ଭ ହୋଇଥିଲା ଏହି ସମୟରେ ଦିନେ ଦିଲ୍ଲୀରୁ ଶଶିବାବୁ ମୋତେ ଟେଲିଫୋନ୍‌ରେ ଜଣାଇଥିଲେ ଯେ ତାଙ୍କୁ ଏକ ନୂତନ ପ୍ରସ୍ତାବ ଦିଆଯାଇଛି ଏବଂ ସେ ନିଜ ତାହା ପସନ୍ଦ କରିପାରୁନଥିଲେ ମଧ କର୍ତ୍ତବ୍ୟ ଦୃଷ୍ଟିରୁ ମୋତେ ଜଣାଉଛନ୍ତି । ତାଙ୍କୁ କୁଆଡ଼େ କୁହାଯାଇଥିଲା ଯେ ମୁଁ ଆନୁଷ୍ଠାନିକ ପ୍ରସ୍ତାବ ଗ୍ରହଣ ଓ ପୁନର୍ମିଳନ ପର୍ଯ୍ୟନ୍ତ ଅପେକ୍ଷା ନକରି ସଙ୍ଗେ ସଙ୍ଗେ ଦିଲ୍ଲୀ ଯାଇ କଂଗ୍ରେସ ଉଚ୍ଚକର୍ତ୍ତୃପକ୍ଷଙ୍କ ସାଙ୍ଗେ ପ୍ରତ୍ୟକ୍ଷ ସାକ୍ଷାତ୍ ଆଲୋଚନା କରି କଂଗ୍ରେସ ସଭ୍ୟଭୁକ୍ତ ହୋଇଯିବା ଉଚିତ । ଶ୍ରୀମତୀ ନନ୍ଦିନୀ ଶତପଥୀ ସେତେବେଳେ ରୁଷିଆ ଗସ୍ତରେ ଥାଆନ୍ତି, ତେଣୁ ସେ ଦିଲ୍ଲୀରେ ପହଞ୍ଚିବା ପୂର୍ବରୁ ସବୁ କାର୍ଯ୍ୟ ଫଏସଲା ହୋଇଯିବା ଉଚିତ ବୋଲି ତାଙ୍କୁ ଏକ ଯୁକ୍ତି ଦର୍ଶାଯାଇଥିଲା । ନିଜ ଦଳ ବୈଠକରେ ନପକାଇ ମୁଁ ଏଭଳି କୌଣସି ପଦକ୍ଷେପ ନେଇପାରିବି ନାହିଁ ବୋଲି ସ୍ପଷ୍ଟ ମନାକରିଦେଇଥିଲି । ଏଣେ ବିଜୁବାବୁଙ୍କର ଚପଳତା ଉତ୍କଳ କଂଗ୍ରେସ ବିଧାନସଭା ସଦସ୍ୟମାନଙ୍କର ମନୋବଳକୁ ଭାଙ୍ଗିଦେଇଥିଲା । ତେଣୁ ଉତ୍କଳ କଂଗ୍ରେସ ବିଧାନସଭା ସଦସ୍ୟମାନଙ୍କ ମଧ୍ୟରୁ ଅଧିକାଂଶ ଶାସକ କଂଗ୍ରେସରେ ମିଶିବାପାଇଁ ବିଶେଷ ଆଗ୍ରହ ଦେଖାଇଥିଲେ । ସର୍ବଶ୍ରୀ ଚିନ୍ତାମଣି ଜେନା, ତ୍ରିନାଥ ସାମନ୍ତରାୟ, ସନାତନ ଦେଓ ପ୍ରଭୃତି ଉତ୍କଳ କଂଗ୍ରେସ ବିଧାୟକମାନେ ଆସି ମୋତେ କହିଥିଲେ ଯେ ମୁଁ ଯଦି ଶୀଘ୍ର ଶାସକ କଂଗ୍ରେସରେ ମିଶିବାକୁ ସ୍ଥିର ନକରେ ତାହେଲେ ସେମାନେ ଆଉ ବିଜୁବାବୁଙ୍କର ଅନିଶ୍ଚିତ ନେତୃତ୍ୱ ପଛରେ ଦୌଡ଼ି ହଟହଟା ଓ ହାସ୍ୟାସ୍ପଦ ହେବାପାଇଁ ଉତ୍କଳ କଂଗ୍ରେସରେ ରହିବେନାହିଁ । ତା'ଛଡ଼ା ବିଶ୍ୱନାଥ ଦାସଙ୍କ ନେତୃତ୍ୱ ପରିବର୍ତ୍ତନ ନେଇ ଆମ ମଧ୍ୟରେ ବିଜୁବାବୁ ଯେଉଁ ଦୋଦୁଲ୍ୟମାନ ଅବସ୍ଥା ଆରମ୍ଭ କରିଦେଲେ, ସେଥିପାଇଁ ଉତ୍କଳ କଂଗ୍ରେସ ବିଧାୟକମାନଙ୍କ ଭିତରୁ ତିନିଜଣ ଓ ସ୍ୱତନ୍ତ୍ର ଦଳରୁ ଛ'ଜଣ ଆଗତୁରା ଯାଇ ଶାସକ କଂଗ୍ରେସରେ ମିଶିଗଲେ ବୋଲି ବିବୃତିମାନ ଦେଇଥିଲେ । ପ୍ରଦେଶ କଂଗ୍ରେସ କମିଟିର ତତ୍କାଳୀନ ସଭାପତି ଶ୍ରୀ ବ୍ରଜମୋହନ ମହାନ୍ତି ଶାସକ କଂଗ୍ରେସରେ ଆମ୍ଭମାନଙ୍କର ମିଶ୍ରଣପାଇଁ ଆମନ୍ତ୍ରଣ ଜଣାଇ ରହିଥାଆନ୍ତି । କେନ୍ଦ୍ରମନ୍ତ୍ରୀ ଶ୍ରୀ ଉମାଶଙ୍କର ଦୀକ୍ଷିତ୍ ଦିଲ୍ଲୀରୁ ଘନ ଘନ ଫୋନ୍ କରି କଥାବାର୍ତ୍ତା କରୁଥାଆନ୍ତି । ଶାସକ କଂଗ୍ରେସ ସହିତ ଉତ୍କଳ କଂଗ୍ରେସ ନମିଶି ସ୍ୱତନ୍ତ୍ର ଭାବରେ ରହିବାପାଇଁ ଶେଷରେ ଗୋଟିଏ ଉଦ୍ୟମ ହୋଇଥିଲା । ମାତ୍ର ତତ୍କାଳୀନ ପରିସ୍ଥିତିରେ ତାହା ଆଉ ସମ୍ଭବ ନୁହେଁ ବୋଲି ଅନୁଭବ କରାଯାଇଥିଲା । ଶାସକ କଂଗ୍ରେସରେ ଯୋଗଦେବାପାଇଁ ଅତିଶୟ ଆଗ୍ରହୀ ସଭ୍ୟମାନେ ମୋତେ ପ୍ରାୟ ସବୁବେଳେ ଘେରି ରହିଥାଆନ୍ତି ।

## ଶାସକ କଂଗ୍ରେସରେ ପ୍ରଜାସୋସାଲିଷ୍ଟ ପାର୍ଟିର ମିଶ୍ରଣ

ରାଜ୍ୟରେ ଏହି ପ୍ରକାର ରାଜନୀତିକ ଅସ୍ଥିରତା ସମୟରେ ଉତ୍କଳ କଂଗ୍ରେସ ମିଶ୍ରଣର ଅବ୍ୟବହିତ ପୂର୍ବରୁ ଏଠାରେ ଇନ୍ଦିରା କଂଗ୍ରେସ ସହିତ ପ୍ରଜାସୋସାଲିଷ୍ଟ ଦଳର କେତେକ ନେତାଙ୍କ ଅସ୍ୱାଭାବିକ ସଂପ୍ରୀତି ଅନେକଙ୍କ ମନରେ ବିସ୍ମୟ ଜାତକରିଥିଲା । ଇନ୍ଦିରା କଂଗ୍ରେସରେ ମିଶିଯିବାପାଇଁ ସେମାନେ ଉଦ୍‌ବିଗ୍ନ ହୋଇପଡ଼ିଥିଲେ । ଓଡ଼ିଶାରେ ସମାଜବାଦୀମାନେ କେତେବେଳେ କଂଗ୍ରେସ ସୋସାଲିଷ୍ଟ ପାର୍ଟି, କେତେବେଳେ ଖାଲି ସୋସାଲିଷ୍ଟ ପାର୍ଟି ଓ ଆଉ କେତେବେଳେ ପ୍ରଜା-ସୋସାଲିଷ୍ଟ ପାର୍ଟି ନାମରେ ପରିଚିତ ଥିଲେ । ସେମାନେ କୃଷକ, ଶ୍ରମିକ, ଯୁବକ ଓ ଛାତ୍ରମାନଙ୍କ ମଧ୍ୟରେ ସମାଜବାଦୀ

ଚିନ୍ତାଧାରା ପ୍ରବେଶ କରାଇ ଓ ସଙ୍ଗଠନମାନ ଗଢ଼ି ରାଜ୍ୟର ବହୁ ଅଞ୍ଚଳରେ ପ୍ରଭାବ ବିସ୍ତାର କରିବାରେ ସଫଳ ହୋଇଥିଲେ । ସର୍ବଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ, ବାଙ୍କବିହାରୀ ଦାସ, ରବୀନ୍ଦ୍ରମୋହନ ଦାସ, ବିଶ୍ୱନାଥ ପଣ୍ଡିତ, ପ୍ରସନ୍ନ କୁମାର ଦାସ, ଆକୁଳାନନ୍ଦ ବେହେରା, ବନମାଳୀ ମହାରଣା, ନିଶାମଣି ଖୁଣ୍ଟିଆ, ପରମାନନ୍ଦ ମହାନ୍ତି, ଗୌରମୋହନ ଦାସ, ସମରେନ୍ଦ୍ର କୁଣ୍ଡୁ, ଲୋକନାଥ ରାୟ, ପ୍ରଦୀପ୍ତ କିଶୋର ଦାସ ଓ ଅନୀଲ ଘୋଷ ପ୍ରଭୃତି ସମାଜବାଦୀ ନେତାମାନଙ୍କର ତ୍ୟାଗ ଓ କଂଗ୍ରେସ ପରମ୍ପରା ଥିଲା । ତା'ଛଡ଼ା ତ୍ୟାଗ ଓ ସମାଜବାଦର ପ୍ରବର୍ତ୍ତକ କଂଗ୍ରେସର ତୁଙ୍ଗନେତା ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ତାଙ୍କ ସହଧର୍ମିଣୀ ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ସହଯୋଗରେ ସମାଜବାଦୀ ଢାଞ୍ଚାରେ ଚାଷୀ, କ୍ଷେତମୂଲିଆ ଓ ଶ୍ରମିକମାନଙ୍କ ମଧରେ ସେମାନଙ୍କୁ ଶୋଷଣକାରୀମାନଙ୍କ ଦାଉରୁ ରକ୍ଷା କରିବା ଉଦ୍ଦେଶ୍ୟରେ ନାନାପ୍ରକାର ଆନ୍ଦୋଳନାତ୍ମକ କାର୍ଯ୍ୟ କରି ସେମାନେ ଲୋକଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲେ । ଏମାନଙ୍କ ସହିତ ଢେଙ୍କାନାଳର ସ୍ୱର୍ଗୀୟ ସାରଙ୍ଗଧର ଦାସଙ୍କ ଯୋଗଦାନ ଦଳର ମର୍ଯ୍ୟାଦା ବୃଦ୍ଧି କରିବାରେ ସହାୟକ ହୋଇଥିଲା । ବହୁ ବର୍ଷ ଆମେରିକାରେ ଜୀବନ ଯାପନ କଲା-ପରେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରି ସେ ରାଜନୀତିରେ ପ୍ରବେଶ କରିଥିଲେ । ଜଣେ ସମ୍ମାନନୀୟ ନୀତିବାଦୀ ବ୍ୟକ୍ତି ରୂପେ ସାରଙ୍ଗଧରବାବୁ ଖ୍ୟାତି ଅର୍ଜନ କରିପାରିଥିଲେ । ଭାଗଚାଷୀ ଓ ଶ୍ରମିକ ସଙ୍ଗଠନରେ ସମାଜବାଦୀମାନେ ଉଲ୍ଲେଖଯୋଗ୍ୟ ଭୂମିକା ନେବା ସଙ୍ଗେ ସଙ୍ଗେ କଂଗ୍ରେସ ଶାସନର ଅପାରଗତା ଓ ଦୋଷ-ଦୁର୍ବଳତା ପଦାରେ ପକାଇବାରେ ଏମାନେ ବିଶେଷ ଭାବରେ ସଫଳତା ଅର୍ଜନ କରିପାରିଥିଲେ । ରାଜ୍ୟରେ ଅନ୍ୟାନ୍ୟ ବାମପନ୍ଥୀ ଦଳଠାରୁ ସମାଜବାଦୀମାନେ ବିଧାନସଭା ଓ ଲୋକସଭା ନିର୍ବାଚନମାନଙ୍କରେ ଅଧିକ ଆସନ ପାଇପାରିଥିଲେ । ୧୯୫୨ ମସିହା ନିର୍ବାଚନରେ ବିଧାନସଭାରେ ଦଶଟି ଆସନ ପାଇବା ସ୍ଥଳେ ୧୯୬୭ ମସିହା ନିର୍ବାଚନରେ ୨୧ଟି ସ୍ଥାନରେ ବିଜୟୀ ହୋଇପାରିଥିଲେ ଏବଂ ୪ଟି ଲୋକସଭା ଆସନରେ ଜୟଲାଭ କରିପାରିଥିଲେ । ଶ୍ରୀ ଦ୍ୱିବେଦୀ ପ୍ରଥମେ ରାଜ୍ୟସଭା ଓ ପରେ ଲୋକସଭାକୁ ନିର୍ବାଚିତ ହୋଇ କଂଗ୍ରେସ ନେତା ଓ ମନ୍ତ୍ରୀମାନଙ୍କ ସ୍ୱଭାବ ଓ ଦୋଷତ୍ରୁଟି କଟୁ ଆକ୍ଷେପ ଓ କଟାକ୍ଷ ସହକାରେ ପାର୍ଲିଆମେଣ୍ଟରେ ବଖାଣିବାରେ ସ୍ୱର୍ଗୀୟ ରାମମନୋହର ଲୋହିଆଙ୍କ ସମକକ୍ଷ ହୋଇପାରିଥିଲେ । ଅନ୍ୟମାନଙ୍କ ଭିତରେ ଶ୍ରୀମତୀ ଗାନ୍ଧୀ ବହୁବାର ତାଙ୍କର ଏପ୍ରକାର ରୁକ୍ଷ ବଖାଣର ଶରବ୍ୟ ହୋଇଥିଲେ । ଏହା ଶ୍ରୀମତୀ ଗାନ୍ଧୀଙ୍କ ପକ୍ଷରେ କେଡ଼େ ଅସହ୍ୟ ହେଉଥିଲା, ତାହା ଦ୍ୱିବେଦୀଙ୍କ ବିଷୟରେ କିଛି କଥା ଉଠିଲେ ତାଙ୍କର ପ୍ରତିକ୍ରିୟାରୁ ଆମେମାନେ ଜାଣିବାକୁ ପାଇଥିଲୁ । କଂଗ୍ରେସର ଅନ୍ତର୍ବିବାଦ ଓ ବିଭାଜନ ପରିପ୍ରେକ୍ଷୀରେ ଗୋଟିଏ ବାମପନ୍ଥୀ ଦଳର ନିର୍ବାଚନରେ ଏ ପ୍ରକାର କୃତିତ୍ୱକୁ ବିଚାର କଲେ ଓଡ଼ିଶାରେ କାଳକ୍ରମେ ସମାଜବାଦୀମାନେ ଶାସନ କ୍ଷମତାକୁ ଆସିବାର ସମ୍ଭାବନାକୁ ସମ୍ପୂର୍ଣ୍ଣ ଏଡ଼ାଇ ଦିଆଯାଇପାରୁ ନଥିଲା ।

ତଥାପି ଏତିକିବେଳେ ଜଣାଗଲା ଯେ କ୍ଷମତାକୁ ଆସିବା ଆଶାରେ ବହୁଦିନ ସଂଗ୍ରାମ କରି କରି ସତେ ଯେପରି ଓଡ଼ିଶାର ସମାଜବାଦୀମାନେ କ୍ଳାନ୍ତ ହୋଇପଡ଼ିଥିଲେ । କଂଗ୍ରେସ ବିଭାଜନକୁ ସେମାନେ ଗୋଟିଏ ସୁଯୋଗ ବୋଲି ମନେ କରିଥିଲେ ସେଥିରେ ପ୍ରବେଶକରି କ୍ଷମତାସୀନ ହେବାର ଆଶାରେ । ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ଥିଲେ ମହତାବ ଓ ବିଜୁ ପଟ୍ଟନାୟକଙ୍କ ବିରୋଧୀ । ଏମାନେ ଏକତ୍ର ଗୋଟିଏ ଅନୁଷ୍ଠାନରେ ରହିବା ସମ୍ଭବପର ନଥିଲା । ଓଡ଼ିଶାରେ କଂଗ୍ରେସରୁ ଯାଇ ବିଜୁ ପଟ୍ଟନାୟକ ଗୋଷ୍ଠୀଙ୍କର ଉତ୍କଳ କଂଗ୍ରେସ ଗଠନ ଓ ଶାସକ କଂଗ୍ରେସରେ ଶ୍ରୀ ମହତାବଙ୍କର ପୁନଃ ପ୍ରବେଶ ପରେ ମଧ ବିଧାନସଭା ନେତୃତ୍ୱରୁ ତାଙ୍କର ଅପସାରଣ ଫଳରେ ସମାଜବାଦୀ ତୁଙ୍ଗନେତାଙ୍କ ମନରେ କଂଗ୍ରେସରେ ପ୍ରବେଶ କରି କ୍ଷମତା ପାଇବାର ପ୍ରବଳ ଆଶା ଉପୁଜିଥିବାର ମନେହେଲା । ୧୯୭୨ ମସିହା ପ୍ରଥମ ଭାଗରେ ଦିନେ କଟଣୀଠାରେ କୌଣସି ଗୋଟିଏ ଶ୍ରମିକ ଅନୁଷ୍ଠାନରେ ମୁଖ୍ୟ ଅତିଥି ଭାବରେ ଯୋଗଦେବାପାଇଁ ଶ୍ରୀ ବାଙ୍କବିହାରୀ ଦାସ ମୋତେ ସାଙ୍ଗରେ ନେଇ ଯାଉଥିଲେ । ବାଟରେ

କଥା ପ୍ରସଙ୍ଗରେ ସେ ମୋତେ କହିଥିଲେ ଯେ, ଇନ୍ଦିରା ଗାନ୍ଧୀଙ୍କ ଭଳି ଜଣେ ସମାଜବାଦୀ ଓ ପ୍ରଗତିଶୀଳା ନେତ୍ରୀଙ୍କୁ ଛାଡ଼ିଆସି ଆମ୍ଭେମାନେ ଖୁବ୍ ଭୁଲ କରିଛୁ । ତାଙ୍କର ଏପ୍ରକାର କଥାରେ ମୁଁ ବିସ୍ମିତ ହୋଇଥିଲି ଓ ମୋର ମନେହେଲା ଇନ୍ଦିରା କଂଗ୍ରେସରେ ପ୍ରବେଶ କରିବା ଅପେକ୍ଷାରେ ସେମାନେ ଯେପରି ଗାର୍ହିବସିଥିଲେ । ଏହା ପୂର୍ବରୁ ଶ୍ରୀ ଦ୍ୱିବେଦୀ ଶ୍ରୀମତୀ ଗାନ୍ଧୀଙ୍କୁ କେତେବାର ଭେଟିବାର ସମ୍ବାଦ ପ୍ରକାଶ ପାଇଥାଏ । କଂଗ୍ରେସରେ ମିଶିବା ପାଇଁ ଦ୍ୱିବେଦୀଙ୍କର ପ୍ରବଳ ଆକାଂକ୍ଷା ଜାତହୋଇଥାଏ । ତାଙ୍କର ଅଶୋଧିତ ବଖାଣରୁ ତ୍ରାହି ପାଇବାପାଇଁ ଇନ୍ଦିରାଙ୍କର ମଧ ମସୁଧା ଥାଏ । ଏହି ଦୁଇଟି ଉଦ୍ଦେଶ୍ୟର ସଂଯୋଗ ସାଧନ ହେବାରୁ ମିଶ୍ରଣ ତ୍ୱରାନ୍ୱିତ ହୋଇଥିଲା । ତାଙ୍କର ବହୁ ବିଶିଷ୍ଟ ସାଥୀଙ୍କ ବିରୋଧ ସତ୍ତ୍ୱେ ଶ୍ରୀ ଦ୍ୱିବେଦୀ ପ୍ରଜାସୋସାଲିଷ୍ଟ ଦଳକୁ ଭାଙ୍ଗି ଇନ୍ଦିରା କଂଗ୍ରେସ ଦଳ ସହ ମିଶାଇପାରିଥିଲେ । ମାତ୍ର କେତେଟା ଦିନ ପରେ ଶ୍ରୀ ବାଙ୍କବିହାରୀ ଦାସ ନନ୍ଦିନୀ ଦେବୀଙ୍କ ମନ୍ତ୍ରିମଣ୍ଡଳରେ ମନ୍ତ୍ରୀ ହୋଇପାରିଥିଲେ ଏବଂ ଶ୍ରୀ ଦ୍ୱିବେଦୀ ରାଜ୍ୟର ଯୋଜନା ବୋର୍ଡ଼ର ଉପସଭାପତି ଓ ପରେ କେନ୍ଦ୍ରରେ ଭୂସଂସ୍କାର ସମ୍ବନ୍ଧରେ ଜଣେ ପରାମର୍ଶଦାତା ହିସାବରେ ନିଯୁକ୍ତି ପାଇଥିଲେ । କିଛିଦିନ ପରେ ସେମାନେ ନିରାଶ ହୋଇ ଫେରିଯାଇଥିଲେ । ମାତ୍ର ଭାଙ୍ଗିଦେଇଥିବା ବାମପନ୍ଥୀ ଅନୁଷ୍ଠାନଟି ସବୁଦିନପାଇଁ ଲୋପପାଇଥିଲା ।

## ଶାସକ କଂଗ୍ରେସ ଉତ୍କଳ କଂଗ୍ରେସ ମିଶ୍ରଣ

ପୂର୍ବରୁ ଆହୂତ ଉତ୍କଳ କଂଗ୍ରେସ ସଂଗଠନ ଓ ବ୍ୟବସ୍ଥାସଭା ଦଳର ମିଳିତ ବୈଠକ ଜୁନ୍‌ମାସ ନ' ତାରିଖଦିନ ସନ୍ଧ୍ୟାବେଳେ ଉତ୍କଳ କଂଗ୍ରେସର ଅଫିସରେ ଶ୍ରୀ ବିଜୁ ପଟ୍ଟନାୟକଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ସେହି ବୈଠକରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ଘୋଷିତ ସମାଜବାଦୀ କାର୍ଯ୍ୟକ୍ରମକୁ କାର୍ଯ୍ୟରେ ପରିଣତ କରିବାପାଇଁ ତାଙ୍କ ହାତମୁଠା ଟାଣକରିବା ଉଦ୍ଦେଶ୍ୟରେ ଉତ୍କଳ କଂଗ୍ରେସ ଶାସକ କଂଗ୍ରେସ ସହିତ ମିଶ୍ରଣ ସମ୍ବନ୍ଧୀୟ ପ୍ରସ୍ତାବ ମୁଁ ଆଗତ କରିଥିଲି ଏବଂ ଶ୍ରୀ ପ୍ରତାପଚନ୍ଦ୍ର ମହାନ୍ତି ତାକୁ ସମର୍ଥନ କରିଥିଲେ । ଉତ୍କଳ କଂଗ୍ରେସ ମିଳିତ ସାମ୍ମୁଖ୍ୟ ଦଳରୁ ଓ ମନ୍ତ୍ରିମଣ୍ଡଳରୁ ଓହରି ଆସିବା କଥା ମଧ ସେ ପ୍ରସ୍ତାବରେ ଉଲ୍ଲେଖ ଥିଲା । ଏହାପରେ ଉତ୍କଳ କଂଗ୍ରେସ ଭାଙ୍ଗିଗଲା ବୋଲି ଶ୍ରୀ ବିଜୁ ପଟ୍ଟନାୟକ ସାମ୍ବାଦିକମାନଙ୍କ ଆଗରେ ଘୋଷଣା କରିଥିଲେ । ଯାହାଙ୍କ ପ୍ରତି ଦଳର ଅକୁଣ୍ଠ ସହାନୁଭୂତି ହେତୁ ଉତ୍କଳ କଂଗ୍ରେସ ଜନ୍ମଲାଭ କରିଥିଲା, ତାଙ୍କରି ଅବୁଝାମଣା ପଣରୁ ପରିଶେଷରେ ଉତ୍କଳ କଂଗ୍ରେସ ନିଜର ସ୍ୱତନ୍ତ୍ର ସତ୍ତା ଲୋପ କଲା । ପ୍ରସ୍ତାବର ଗୋଟିଏ ନକଲ ମୁଁ ନେଇ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କ ହାତରେ ଦେଇଥିଲି । ସେ ଅତି ନିର୍ବିକାର ଭାବରେ ମୋ'ଠାରୁ ସେ ପ୍ରସ୍ତାବଟି ନେଇ ପଢ଼ିଥିଲେ ଏବଂ ହସି ହସି କହିଥିଲେ, ''ଯାହାହେଉ, ଗୋଟିଏ ଜଞ୍ଜାଳରୁ ମୁଁ ତ୍ରାହି ପାଇଲି । ଭଗବାନ୍ ତୁମର ମଙ୍ଗଳ କରନ୍ତୁ ।'' ଶ୍ରୀ ଦାସ ସଙ୍ଗେ ସଙ୍ଗେ ତାଙ୍କ ମନ୍ତ୍ରିମଣ୍ଡଳର ଇସ୍ତଫାପତ୍ର ନେଇ ରାଜ୍ୟପାଳଙ୍କୁ ଦେଇଥିଲେ । ଆମ ପ୍ରସ୍ତାବର ଆଉ ଗୋଟିଏ ନକଲ ମୁଁ ନେଇ ରାଜ୍ୟପାଳଙ୍କୁ ଦେଇଥିଲି । ରାଜ୍ୟପାଳ ସର୍ଦ୍ଦାର ଯୋଗେନ୍ଦ୍ର ସିଂହ ମୋତେ ଆନନ୍ଦରେ କୁଣ୍ଢାଇ ପକାଇ କହିଥିଲେ, ''ଭାଇ ! ବର୍ତ୍ତମାନ ପ୍ରଶ୍ନ ହେଉଛି ନେତା ନିର୍ବାଚନ । ବିନାୟକ ଆଚାର୍ଯ୍ୟ ବର୍ତ୍ତମାନ ଦଳର ନେତା ଅଛନ୍ତି । ଉତ୍କଳ କଂଗ୍ରେସ ଶାସକ କଂଗ୍ରେସ ସହ ମିଶିଯିବା ପରେ କଂଗ୍ରେସ ବିଧାୟକଦଳର ପାନି ନେତା ନିର୍ବାଚନ ହେବା କଥା । ତୁମେ ଓ ଆଚାର୍ଯ୍ୟ ବସି ନିଜ ଭିତରେ ସ୍ଥିର କରିଦିଅ କିଏ ନେତା ହେବ । ଆଚାର୍ଯ୍ୟ ନିଶ୍ଚୟ ତୁମେ ନେତା ହେବା କଥା କହିବେ; ଯେହେତୁ ତୁମର ଅଭିଜ୍ଞତା ବେଶି ।'' ଏହାପରେ ବିନାୟକବାବୁ ଓ ମୁଁ ଦୁଇଜଣ କଥାବାର୍ତ୍ତା ହେଲୁ । ସ୍ଥିର ହେଲା ଯେ ଆମ ଦୁଇଜଣଙ୍କ ଭିତରୁ କିଏ ନେତା ହେବ ତାହା ଆମେ ସର୍ଦ୍ଦାରଙ୍କ ଭଳି ଜଣେ ବନ୍ଧୁଙ୍କ ପରାମର୍ଶ ଉପରେ ଛାଡ଼ିଦେବୁ । ସେହି ଅନୁସାରେ ଆମେ ଦୁଇଜଣ ରାଜ୍ୟପାଳଙ୍କ ପାଖକୁ ଗଲୁ ଏବଂ ଆମ

ଦୁଇଜଣଙ୍କ ଭିତରୁ ଯେ ନେତା ହେବାପାଇଁ ସେ ପରାମର୍ଶ ଦେବେ ଆମେ ତାହା ଗ୍ରହଣ କରିବୁ ବୋଲି କହିଆସିଥିଲୁ ।

## ବିଶ୍ୱାସଘାତକତାର ଶିକାର ଓ ଭାଗ୍ୟଚକ୍ରର କ୍ରୀଡ଼ନକ

ଦୁଇ କଂଗ୍ରେସର ମିଶ୍ରଣ ପରେ ମୁଁ ଅତୀତର ସବୁ ତିକ୍ତ ଅନୁଭୂତି ଭୁଲିଯାଇ ସମସ୍ତଙ୍କ ମଧ୍ୟରେ ଏକ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ସୃଷ୍ଟି କରିବାକୁ ଯଥାସାଧ୍ୟ ଉଦ୍ୟମ କରିଥିଲି । କିନ୍ତୁ ପରିଶେଷରେ ମୋତେ ବିଶ୍ୱାସଘାତକତା ଓ କ୍ରୁର ଭାଗ୍ୟଚକ୍ରର ଅସହାୟ କ୍ରୀଡ଼ନକ ହେବାକୁ ପଡ଼ିଥିଲା । ନିଜେ ଯାଇ ଶାସକ କଂଗ୍ରେସର ପ୍ରଦେଶ ସଭାପତିଙ୍କୁ ଆମ ମିଶ୍ରଣ ପ୍ରସ୍ତାବର ଗୋଟିଏ ନକଲ ଦେଇଥିଲି ଏବଂ ଶ୍ରୀମତୀ ନନ୍ଦିନୀ ଶତପଥୀ ଦିଲ୍ଲୀରୁ ଆସିବା ପରେ ତାଙ୍କୁ ମଧ୍ୟ ଦେଖାକରି ଭବିଷ୍ୟତ କର୍ମପନ୍ଥା ସମ୍ପର୍କରେ ଆଲୋଚନା କରିବାକୁ ଚାହିଁଥିଲି । ଉତ୍କଳ କଂଗ୍ରେସ ଶାସକ କଂଗ୍ରେସରେ ଯୋଗଦେବାର ଦିନକ ପରେ ଶ୍ରୀମତୀ ନନ୍ଦିନୀ ଶତପଥୀ ଦିଲ୍ଲୀରୁ ଆସି ଭୁବନେଶ୍ୱରରେ ପହଞ୍ଚିଲେ । ମୁଁ ଓଡ଼ିଶା ସରକାରଙ୍କର ଅତିଥି ଭବନରେ ପହଞ୍ଚିବା ବେଳକୁ ନନ୍ଦିନୀ ଦେବୀ କବାଟ ବନ୍ଦକରି ଅଳ୍ପଦିନ ପୂର୍ବରୁ ଶାସକ କଂଗ୍ରେସରେ ମିଶିଥିବା ପୂର୍ବତନ ପ୍ରଜାସୋସାଲିଷ୍ଟ ନେତା ଶ୍ରୀ ବାଙ୍କବିହାରୀ ଦାସଙ୍କ ସହିତ ଅତି ନିଭୃତରେ କଥାବାର୍ତ୍ତା ହେଉଥିଲେ । ସେମାନଙ୍କ ସହିତ ଶ୍ରୀ ବ୍ରଜମୋହନ ମହାନ୍ତି ମଧ୍ୟ ଥିଲେ । ମୁଁ ପହଞ୍ଚିବାରୁ କବାଟ ଖୋଲାହେଲା । ମୋତେ ଦେଖି ଉତ୍କଳ କଂଗ୍ରେସ ଶାସକ କଂଗ୍ରେସରେ ଯୋଗଦେବାଟା ଭଲହେଲା ବୋଲି ନନ୍ଦିନୀ ଦେବୀ କହିଲେ । କିନ୍ତୁ ପରବର୍ତ୍ତୀ କାର୍ଯ୍ୟକ୍ରମ ସମ୍ପର୍କରେ ମୁଁ ଯେତେବେଳେ ଆଲୋଚନା କରିବାକୁ ଚାହିଁଲି, ସେ ତାହା ଏଡ଼ାଇଦେଲା ଭଳି କଥାବାର୍ତ୍ତା କରିଥିଲେ । ମୋ' ପାଖରୁ ହଠାତ୍ ଚାଲିଯାଇ ସେ ଆଉ ଗୋଟିଏ କୋଠରିରେ ପଶିଯାଇଥିଲେ । ଶୁଣିଲି ସେ କୋଠରିରେ କମ୍ୟୁନିଷ୍ଟ ନେତା ରାଜ୍ୟସଭା ସଦସ୍ୟ ଭୂପେଶ ଗୁପ୍ତ ଥିଲେ । ଭୂପେଶ ଗୁପ୍ତଙ୍କ ସହିତ ନନ୍ଦିନୀ ଦେବୀ ବହୁତ ସମୟ କବାଟ ବନ୍ଦକରି କଥାବାର୍ତ୍ତା ହୋଇଥିଲେ । ସେଇ ଅତିଥି ଭବନରେ ଜାଣିବାକୁ ପାଇଲି ଯେ ଓଡ଼ିଶାରେ ସେତେବେଳକାର ପରିସ୍ଥିତିରେ ମୁଖ୍ୟମନ୍ତ୍ରୀ କିଏ ହେବ ସେ ନିଷ୍ପତ୍ତି ନିର୍ଭର କରୁଥିଲା ଅନେକଟା ଭୂପେଶ ଗୁପ୍ତଙ୍କ ପରାମର୍ଶ ଉପରେ । ଶ୍ରୀମତୀ ଗାନ୍ଧୀ ସେଥିପାଇଁ ତାଙ୍କୁ ଓଡ଼ିଶା ପଠାଇଥିଲେ ବୋଲି ମଧ୍ୟ ଲୋକେ କୁହାକୁହି ହେଉଥିଲେ । ଶ୍ରୀ ବାଙ୍କବିହାରୀ ଦାସ ମଧ୍ୟ ଶ୍ରୀ ଭୂପେଶ ଗୁପ୍ତଙ୍କ ସହିତ କଥାବାର୍ତ୍ତା କରୁଥିବାର ମୁଁ ଜାଣିବାକୁ ପାଇଥିଲି । ଏହି ପରିପ୍ରେକ୍ଷୀରେ ମୋର କେତେକ ବନ୍ଧୁ ମୋତେ ପରାମର୍ଶ ଦେଇଥିଲେ ଯେ ଶ୍ରୀ ଭୂପେଶ ଗୁପ୍ତଙ୍କୁ ମୋର ଦେଖାକରିବା ଉଚିତ, ତାହା ନକରିବାଟା ଅସୌଜନ୍ୟ ଓ ଭୁଲ୍ ହେବ । ତେଣୁ ଆମର ସ୍ଥାନୀୟ କମ୍ୟୁନିଷ୍ଟ ନେତା ଶ୍ରୀ ଲୋକନାଥ ଚୌଧୁରୀଙ୍କ ସହିତ ଯାଇ ମୁଁ ଭୂପେଶବାବୁଙ୍କ ସହିତ ସାକ୍ଷାତ୍ କରିଥିଲି । ପ୍ରକୃତ କଥାଟା ତାଙ୍କୁ କହିବାକୁ ବଡ଼ ସଂକୋଚ ଲାଗିଲା । ତେଣୁ ପ୍ରକୃତ ବିଷୟଟି ତାଙ୍କୁ ନ କହି କଥାବାର୍ତ୍ତା ହେଲାବେଳେ ଏଭଳି ବ୍ୟବହାର ପ୍ରଦର୍ଶନ କରିଥିଲି, ଯେଉଁଥିରୁ ତାଙ୍କର ମନେହେବ ଯେ ମୁଁ ତାଙ୍କୁ ବଡ଼ ଆଦର ଓ ସମ୍ମାନ କରେ । ଲୋକନାଥବାବୁ ମଧ୍ୟ ମୋ ସମ୍ବନ୍ଧରେ ଦି'ପଦ ଭଲକଥା ଭୂପେଶ ବାବୁଙ୍କୁ କହିଥିଲେ । ଅତିଥି ଭବନରେ ଶୁଣିଲି ଯେ ସେଦିନ ବିମାନଯୋଗେ ନନ୍ଦିନୀ ଶତପଥୀଙ୍କ ସହିତ ଭୂପେଶବାବୁ ଦିଲ୍ଲୀ ଫେରିଯିବା କଥା । ବ୍ୟାପାରଟା ବଡ଼ ସଙ୍ଗୀନଭଳି ମୋତେ ଜଣାଗଲା । ସେଦିନ ମୋ ସହିତ ଆଉ କିଛି କଥାବାର୍ତ୍ତା ନକରି ନନ୍ଦିନୀ ଶତପଥୀ ଦିଲ୍ଲୀ ଚାଲିଯାଇଥିଲେ । ଶ୍ରୀ ବିନାୟକ ଆଚାର୍ଯ୍ୟ ସେତେବେଳେ ଦଳର ନେତା ଥିଲେ ମଧ୍ୟ ତାଙ୍କୁ ଆଉ ପ୍ରାଧାନ୍ୟ ଦିଆଯାଉନଥାଏ । ଭୁବନେଶ୍ୱର ବିମାନ ବନ୍ଦରରେ ବିମାନ ଛାଡ଼ିବା ପର୍ଯ୍ୟନ୍ତ ବାଙ୍କବାବୁ ଓ ବ୍ରଜବାବୁ ନନ୍ଦିନୀ ଶତପଥୀଙ୍କ ସହିତ ଫୁସ୍‌ଫାସ୍ ହେବାରେ ଲାଗିଥିଲେ ବୋଲି ମୁଁ ଖବର ପାଇଥିଲି । ଏହି ସମୟରେ ପ୍ରଦେଶ କଂଗ୍ରେସ ସଭାପତି ଶ୍ରୀ ବ୍ରଜମୋହନ ମହାନ୍ତିଙ୍କ ଆଚରଣ ଶାସକ କଂଗ୍ରେସରେ ନୂଆକରି ଯୋଗଦେଇଥିବା ଉତ୍କଳ କଂଗ୍ରେସ ଲୋକଙ୍କ ମନରେ ଗଭୀର ଆଘାତ ଦେଇଥିଲା । ତାଙ୍କ ବ୍ୟବହାରରେ ସେମାନେ ଖୁବ୍ କ୍ଷୁବ୍ଧ ହୋଇଥିଲେ

ବ୍ରଜବାବୁଙ୍କ ମତ ଥିଲା ଯେ, ପୁରୁଣା ଶାସକ କଂଗ୍ରେସ ଲୋକ ଓ ଉତ୍କଳ କଂଗ୍ରେସରୁ ଆସିଥିବା ନବାଗତ କଂଗ୍ରେସ ଲୋକଙ୍କ ଭିତରେ କିଛି ପାର୍ଥକ୍ୟ ରହିବା ଉଚିତ । ନବାଗତ କଂଗ୍ରେସ ଲୋକମାନେ ହଠାତ୍ ସାମ୍ନାକୁ ନଆସି ପାଞ୍ଚ ପାହୁଣ୍ଡ ପଛେଇ ରହିବା ବିଧେୟ । ପୂର୍ବରୁ ମୋ ପାଖରେ ସେ ଯେପରି ଅନ୍ତରଙ୍ଗ ପରି ବ୍ୟବହାର କରୁଥିଲେ, ସେଥିରେ ହଠାତ୍ ଢେର୍ ପାର୍ଥକ୍ୟ ଦେଖିବାକୁ ମିଳିଥିଲା । ସେହି ସମୟରେ ବଙ୍ଗଳା ଦେଶରେ ଯେଉଁ ପାକିସ୍ତାନୀ ସୈନ୍ୟମାନେ ଭାରତୀୟ ସେନା ପାଖରେ ଆତ୍ମସମର୍ପଣ କରିଥା'ନ୍ତି, ସେମାନଙ୍କର ଛିଡ଼ାହୋଇଥିବା ଫଟୋ ଖବରକାଗଜରେ ବାହାରିଥାଏ । ସାମରିକ ବିଧି ଅନୁସାରେ ପରାଜିତ ପାକିସ୍ତାନୀ ସୈନ୍ୟମାନେ ବିଜୟୀ ଭାରତୀୟ ସେନାପତିଙ୍କ ପାଖରେ ଆତ୍ମସମର୍ପଣ କଲାବେଳେ ପାଞ୍ଚ ପାହୁଣ୍ଡ ପଛେଇଯିବାର ସଚିତ୍ର ବିବରଣ ବାହାରିଥାଏ । ବ୍ରଜବାବୁ ଶାସକ କଂଗ୍ରେସରେ ମିଶିଥିବା ଉତ୍କଳ କଂଗ୍ରେସ ଲୋକମାନଙ୍କୁ ସେହିପରି ପାଞ୍ଚ ପାହୁଣ୍ଡ ପଛେଇ ରହିବାର ନଜିର୍ ଦେଉଥିଲେ । ଅହଙ୍କାର ଓ ସଙ୍କୀର୍ଣ୍ଣତା ଭିତରେ ସେ ପୁଣି ବାଛିବାରେ ଲାଗିଲେ କାହାକୁ ଶାସକ କଂଗ୍ରେସରେ ପ୍ରବେଶ କରିବାର ଅନୁମତି ମିଳିବ ଓ କାହାକୁ ନ ମିଳିବ ।

## ବିଜୁଙ୍କ ପ୍ରତିହିଂସା

ମୁଁ ଆମ ରାଜ୍ୟପାଳ ସର୍ଦ୍ଦାର ଯୋଗେନ୍ଦ୍ର ସିଂହଙ୍କ ସହିତ ସମ୍ପର୍କ ରଖିଥାଏ । ସେ ମୋତେ କହିଥିଲେ ଦିଲ୍ଲୀରେ କିଛି ଗଣ୍ଡଗୋଳ ହେଲାଣି । ଶ୍ରୀମତୀ ନନ୍ଦିନୀ ଶତପଥୀ କିଛି ଅସୁବିଧା ସୃଷ୍ଟି କଲେଣି ବୋଲି ସେ ସନ୍ଦେହ କରିଥିଲେ । ଶୁଣାଗଲା ଯେ ଦିନେ ଦୁଇଦିନ ଭିତରେ ପାର୍ଲିଆମେଣ୍ଟାରୀ ବୋର୍ଡ଼ର ବୈଠକ ବସି ଓଡ଼ିଶାରେ କଂଗ୍ରେସ ଦଳର ନେତୃତ୍ୱ କଥା ସ୍ଥିର କରିବେ । ମୁଁ ଶ୍ରୀ ଉମାଶଙ୍କର ଦୀକ୍ଷିତ୍‌ଙ୍କୁ ଫୋନ୍ କଲି, ମାତ୍ର ତାଙ୍କୁ ପାଇଲିନାହିଁ । ତା'ପରେ ଶ୍ରୀ ଗାର୍ଗୀଶଙ୍କର ମିଶ୍ରଙ୍କୁ ଫୋନ୍ କଲି । ତାଙ୍କୁ ମଧ ପାଇଲି ନାହିଁ । ଶ୍ରୀ ଦୀକ୍ଷିତ୍‌ଙ୍କ ଘରକୁ ବାରମ୍ବାର ଫୋନ୍ କରିବାରେ ଜାଣିଲି ଯେ, ସେ ଉତ୍ତର ପ୍ରଦେଶରେ ତାଙ୍କ ଗାଆଁରେ ଖୋଲାଯାଇଥିବା ଗୋଟିଏ ଟିଉବ୍‌ୱେଲ ଉଦ୍‌ଘାଟନ ଉତ୍ସବରେ ଯୋଗ ଦେବାକୁ ଯାଇଥିଲେ । ସେ ଆଉ ସେଠାରୁ ଦୁଇ ତିନି ଦିନ ପର୍ଯ୍ୟନ୍ତ ଫେରିବେନାହିଁ ବୋଲି ଖବର ମିଳିଲା । ଶେଷରେ ମୋର ଧାରଣା ହେଲା ଯେ ସେ ଘରେ ଥିଲେ; ମାତ୍ର ଅନୁପସ୍ଥିତ ବୋଲି କୁହାଯାଉଥିଲା । ପଳାତକ ପରି ସେ ଓ ଗାର୍ଗୀଶଙ୍କର ଆଉ ଧରାଛୁଆଁ ଦେଲେନାହିଁ । ଏଣେ ବିଜୁବାବୁ କୋପାନ୍ୱିତ ହୋଇ ମୋ ପ୍ରତି ବଡ଼ ପ୍ରତିହିଂସାପରାୟଣ ହୋଇଉଠିଥିଲେ । ପ୍ରତିଶୋଧ ନେବାପାଇଁ ସେ ଉପାୟ ଖୋଜୁଥିଲେ । ବିଜୁବାବୁ ଜାଣିବାକୁ ପାଇଲେ ଯେ ରାଜ୍ୟପାଳ ସର୍ଦ୍ଦାର ଯୋଗେନ୍ଦ୍ର ସିଂହ ମୁଁ ନେତା ହେବାପାଇଁ ସୁପାରିଶ୍ କରୁଥିଲେ । ତେଣୁ ସେ ତୁରନ୍ତ ଖବରକାଗଜରେ ବିବୃତି ଦେଇ ପରିବର୍ତ୍ତିତ ଅବସ୍ଥାରେ ନନ୍ଦିନୀ ଦେବୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବା ଉଚିତ ବୋଲି ନିଜ ସମର୍ଥନ ଘୋଷଣା କରିଥିଲେ । ତାହାଛଡ଼ା ଶ୍ରୀମତୀ ଗାନ୍ଧୀଙ୍କୁ ଏହା ଜଣାଇଦେବା ଉଦ୍ଦେଶ୍ୟରେ ଶାସକ କଂଗ୍ରେସର ସାଧାରଣ ସମ୍ପାଦକ ଶ୍ରୀ ଚନ୍ଦ୍ରଜିତ୍ ଯାଦବଙ୍କୁ ମଧ ଜୁନ୍‌ମାସ ୫ର ତାରିଖରେ ଗୋଟିଏ ଚିଠି ପଠାଯାଇଥିଲା । ଶ୍ରୀମତୀ ଗାନ୍ଧୀଙ୍କ ପ୍ରଗତିଶୀଳ କାର୍ଯ୍ୟକ୍ରମ ପ୍ରତି ନନ୍ଦିନୀ ଦେବୀ ବିଶ୍ୱସ୍ତ ଥିବାରୁ ଏବଂ ତାଙ୍କର ଜାତୀୟ ସ୍ତରରେ ପ୍ରଶାସନିକ ଅଭିଜ୍ଞତା ଥିବା ଦୃଷ୍ଟିରୁ ତାଙ୍କୁ ମୁଖ୍ୟମନ୍ତ୍ରୀ କରାଗଲେ ଓଡ଼ିଶାର ସ୍ୱାର୍ଥରକ୍ଷା କରାଯାଇପାରିବ ବୋଲି ଉକ୍ତ ଚିଠିରେ କୁହାଯାଇଥିଲା । ସେହି ଚିଠିରେ ପ୍ରଥମ ସ୍ୱାକ୍ଷରକାରୀ ଥିଲେ ଶ୍ରୀ ବିଜୁ ପଟ୍ଟନାୟକ, ଦ୍ୱିତୀୟ ସ୍ୱାକ୍ଷରକାରୀ ଥିଲେ ଶ୍ରୀ ରାମକୃଷ୍ଣ ପଟ୍ଟନାୟକ ଏବଂ ତା'ପରେ ଅନ୍ୟ ଅଠେଇଶ ଜଣ ଏମ୍.ଏଲ୍.ଏ.ଙ୍କର ସ୍ୱାକ୍ଷର ଥିଲା । ପୂର୍ବରୁ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ସହିତ ସଂଘର୍ଷ ହେବାର ମୋର କିଛି କାରଣନଥିଲା, କେବଳ ବିଜୁ ପଟ୍ଟନାୟକଙ୍କ ସମ୍ମାନ ରକ୍ଷା ପାଇଁ ଶ୍ରୀମତୀ ଗାନ୍ଧୀଙ୍କ ସହିତ ମୋର ମନୋମାଳିନ୍ୟ ହୋଇଥିଲା । କାରଣ ଶ୍ରୀମତୀ ଗାନ୍ଧୀ କାନକୁହା କଥାରେ ପ୍ରଭାବିତ ହୋଇ ବିଜୁ ପଟ୍ଟନାୟକଙ୍କ ଧ୍ୱଂସ ସାଧନ ପାଇଁ ମସୁଧା କରୁଥିଲେ । ନନ୍ଦିନୀ ଦେବୀଙ୍କୁ ମୁଖ୍ୟମନ୍ତ୍ରୀ କରିବାକୁ ବିଜୁ ପଟ୍ଟନାୟକଙ୍କ ସୁପାରିସ୍

ଦେଖି ମୁଁ ସେସବୁ କଥା ସ୍ମରଣକରି ବିଶେଷ ମର୍ମାହତ ହୋଇଥିଲି । ବିଜୁବାବୁ ଯେଉଁସବୁ ଯୁକ୍ତି ଦେଇ ନନ୍ଦିନୀ ଦେବୀଙ୍କର ମୁଖ୍ୟମନ୍ତ୍ରୀ ହେବା କଥାକୁ ସୁପାରିସ୍ କରିଥିଲେ, ସେଥିରେ ଯେ ସେ ବିଶ୍ୱାସ କରୁଥିଲେ ତାହା ନୁହେଁ, ମୋତେ ମୁଖ୍ୟମନ୍ତ୍ରୀ କରାଇନଦେବା ଥିଲା ତାଙ୍କର ଉଦ୍ଦେଶ୍ୟ । କ୍ରୋଧୀ ଲୋକ ଅନେକ ସମୟରେ ବିବେକକୁ ହରାଇବସନ୍ତି, ଏ କ୍ଷେତ୍ରରେ ବିଜୁବାବୁଙ୍କର ଅବସ୍ଥା ତାହାହିଁ ହୋଇଥିଲା ବୋଲି ଭାବି ମୁଁ ନୀରବ ରହିଥିଲି । ତା'ପରେ ଦିଲ୍ଲୀରେ ପାର୍ଲିଆମେଣ୍ଟାରୀ ବୋର୍ଡ଼ର ବୈଠକ ବସିଥିଲା । ଶ୍ରୀ ଉମାଶଙ୍କର ଦୀକ୍ଷିତ୍ ଉକ୍ତ ବୋର୍ଡ଼ର ଜଣେ ସଭ୍ୟ ଥାଇ ମଧ୍ୟ ସେଥିରେ ଯୋଗଦେବାକୁ ନଆସି ତାଙ୍କ ଗାଆଁରେ ଟିଉବୱେଲ୍ ଉଦ୍‌ଘାଟନ ଉତ୍ସବରେ ଅଟକି ରହିଯାଇଥିଲେ । ପରେ ଜାଣିବାକୁ ପାଇଲି ଯେ ଶ୍ରୀ ଦୀକ୍ଷିତ୍ ଜାଣିଶୁଣି ପାର୍ଲିଆମେଣ୍ଟାରୀ ବୋର୍ଡ଼ ବୈଠକରେ ଯୋଗଦେଇନଥିଲେ । ଶ୍ରୀମତୀ ନନ୍ଦିନୀ ଦେବୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବେ ବୋଲି ବୋର୍ଡରେ ନିଷ୍ପତ୍ତି ହୋଇଥିଲା । ଏହି ନିଷ୍ପତ୍ତିପରେ ସଙ୍ଗେ ସଙ୍ଗେ ପ୍ରଧାନମନ୍ତ୍ରୀ ବିଦେଶ ଯାତ୍ରା କରିଥିଲେ । ଜୁନ୍ ମାସ ପନ୍ଦର ତାରିଖରେ ଶ୍ରୀମତୀ ନନ୍ଦିନୀ ଦେବୀଙ୍କର ମନ୍ତ୍ରିମଣ୍ଡଳ ଶପଥ ନେବା କଥା ଘୋଷଣା ହୋଇଯାଇଥିଲା । ଅବସ୍ଥା ଯେପରି ଭାବରେ ଗତି କଲା, ସେଥିରେ ମୁଁ ବିଶେଷଭାବରେ ଅସୁଖୀ ହୋଇଥିଲି । ନନ୍ଦିନୀ ଦେବୀଙ୍କର ମନ୍ତ୍ରିମଣ୍ଡଳରେ ମନ୍ତ୍ରୀ ହିସାବରେ ମୁଁ ଯୋଗ ଦେବି କି ନାହିଁ ସେ ବିଷୟରେ ମୋତେ କଠିନ ଚିନ୍ତା କରିବାକୁ ପଡ଼ିଥିଲା । ମୋର ଆଦୌ ସ୍ପୃହା ହେଉନଥାଏ ସେ ମନ୍ତ୍ରିମଣ୍ଡଳରେ ଯୋଗଦେବାକୁ । ସେ ସମୟଟି ମୋ ପକ୍ଷରେ ଅତି ସଙ୍କଟମୟ ସମୟ ଥିଲା । ମୋର ସ୍ତ୍ରୀ କର୍କଟ ରୋଗରେ ଆକ୍ରାନ୍ତ ହୋଇ ହସ୍‌ପିଟାଲରେ ଶଯ୍ୟାଶାୟୀ ହୋଇ ରହିଥାଆନ୍ତି । ମୁଁ ମନ୍ତ୍ରୀ ଥିବାରୁ ମୋ ସ୍ତ୍ରୀଙ୍କ ଚିକିତ୍ସାପାଇଁ ଅନେକ ସରକାରୀ ସୁବିଧା ସୁଯୋଗ ରହିଥାଏ । ମୁଁ ଯଦି ମନ୍ତ୍ରୀ ନହୁଏ ତା'ହେଲେ ତାଙ୍କ ଚିକିତ୍ସାରେ ବ୍ୟାଘାତ ଘଟିବ ଏବଂ ଚିକିତ୍ସକଙ୍କର ସାମାନ୍ୟ ଧ୍ୟାନ ମଧ୍ୟ ନରହିବାର ଆଶଙ୍କା କରିଥିଲି । କାରଣ ଓଡ଼ିଶା ଭିତରୁ ଓ ବାହାରୁ ଏପରିକି ବିଦେଶରୁ ମଧ୍ୟ ଚିକିତ୍ସକମାନଙ୍କ ପରାମର୍ଶ ନେବାକୁ ହେଉଥାଏ ଏବଂ ଅତି ଜରୁରୀ ଔଷଧପତ୍ର ମଧ୍ୟ ବିଦେଶରୁ ଆଣିବାକୁ ପଡୁଥାଏ । ପରିସ୍ଥିତି ମୋ ପକ୍ଷରେ ବଡ଼ ଅପମାନଜନକ ବୋଲି ମୁଁ ଅନୁମାନ କରୁଥାଏ । ଶେଷରେ ମୋ ସ୍ତ୍ରୀର ରୁଗ୍‌ଣ ଅବସ୍ଥା ମୋ ନିଷ୍ପତ୍ତିକୁ ପ୍ରଭାବିତ କରିଥିଲା । ଅସମ୍ମାନ ହେଲେ ମଧ୍ୟ ସ୍ତ୍ରୀର ଚିକିତ୍ସା କଥା ମନରେ ରଖି ମୋତେ କିଛିଦିନ ମନ୍ତ୍ରୀ ହୋଇ ରହିବାକୁ ହେବ ବୋଲି ମୁଁ ସ୍ଥିର କରିଥିଲି । ତେଣୁ ଅଗତ୍ୟା ତାଙ୍କ ମନ୍ତ୍ରିମଣ୍ଡଳରେ ଯୋଗଦେବାପାଇଁ ନନ୍ଦିନୀ ଦେବୀଙ୍କର ନିମନ୍ତ୍ରଣକୁ ମୁଁ ଗ୍ରହଣ କରିଥିଲି । ୧୯୭୨ ମସିହା ଜୁନ୍‌ମାସ ପନ୍ଦର ତାରିଖ ଦିନ ରାଜ୍ୟପାଳ ସର୍ଦ୍ଦାର ଯୋଗେନ୍ଦ୍ର ସିଂହ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଏବଂ ମୋ ସହିତ ଅନ୍ୟ ପାଞ୍ଚଜଣ ମନ୍ତ୍ରୀ ସର୍ବଶ୍ରୀ ବିନାୟକ ଆଚାର୍ଯ୍ୟ, ବ୍ରଜମୋହନ ମହାନ୍ତି, ବାଙ୍କବିହାରୀ ଦାସ, ଗଙ୍ଗାଧର ପ୍ରଧାନ ଓ ଲକ୍ଷ୍ମଣ ମଲ୍ଲିକଙ୍କୁ ଶପଥ ପାଠ କରାଇଥିଲେ । କିଛିଦିନ ପରେ ସର୍ବଶ୍ରୀ କୃପାସିନ୍ଧୁ ଭୋଇ, ଭାଗିରଥୀ ଗମାଙ୍ଗ, ଡମ୍ବରୁ ମାଝୀ, ଅଚ୍ୟୁତାନନ୍ଦ ମହାନନ୍ଦ, ଗୋବିନ୍ଦଚନ୍ଦ୍ର ସେଠ୍, ସୋମନାଥ ରଥ ପ୍ରମୁଖ ରାଷ୍ଟ୍ରମନ୍ତ୍ରୀଭାବେ ଏବଂ ସର୍ବଶ୍ରୀ ରବିସିଂ ମାଝୀ, ରାମଚନ୍ଦ୍ର ପ୍ରହରାଜ ଓ ସହରାଇଓରାମ ପ୍ରମୁଖ ଉପମନ୍ତ୍ରୀଭାବରେ ନିଯୁକ୍ତ ହୋଇଥିଲେ ।

## ଅନ୍ଦର ମହଲ ଶାସନର ଆରମ୍ଭ

ଶ୍ରୀମତୀ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ହେବାମାତ୍ରେ ଗୋଟିଏ କ୍ଷୁଦ୍ର ଅନ୍ଦର ମହଲ ସୃଷ୍ଟିକରିଥିଲେ ଓ ସେହି ମହଲର ପରାମର୍ଶରେ କାର୍ଯ୍ୟ ଆରମ୍ଭ କରିଥିଲେ । ଏହି ଗୋଷ୍ଠୀରେ (coterie) ଥିଲେ ଶ୍ରୀ ବାଙ୍କବିହାରୀ ଦାସ ଓ ଶ୍ରୀ ବ୍ରଜମୋହନ ମହାନ୍ତି । ଶ୍ରୀ ବିନାୟକ ଆଚାର୍ଯ୍ୟଙ୍କୁ ମଧ୍ୟ ସେମାନେ ଉପେକ୍ଷା କରୁଥିଲେ । ମୁଁ ଅନେକକାଳ ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ ଥିଲି । ନନ୍ଦିନୀ ଦେବୀଙ୍କର ଆସିବା ପୂର୍ବରୁ ଶ୍ରୀ ବିଶ୍ୱନାଥ ଦାସଙ୍କ ମନ୍ତ୍ରିମଣ୍ଡଳରେ ସେହି ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ ମୁଁ ଥିଲି । ତେଣୁ ଆଶାକରାଯାଉଥିଲା ଯେ ସେହି ବିଭାଗ ମୋ ପାଖରେ ରହିବ । ମାତ୍ର Coterie Rule ପାଇଁ

ପୁଲିସ ବିଭାଗ ହାତରେ ରହିବା ତାଙ୍କର ଅପରିହାର୍ଯ୍ୟ ମନେହେଲା । ତେଣୁ ନନ୍ଦିନୀ ଦେବୀ ନିଜ ପାଖରେ ସ୍ୱରାଷ୍ଟ୍ର ବିଭାଗକୁ ରଖିଥିଲେ । ଯୋଗାଣ ବିଭାଗ ମୋ ପାଖରେ ଥାଏ । ସେ ସମ୍ବନ୍ଧରେ ବାଙ୍କବାବୁ ଅର୍ଥମନ୍ତ୍ରୀ ହିସାବରେ ଏବଂ ସୋସାଲିଷ୍ଟ ଦଳରେ ଥିବାବେଳେ ଦରଦାମ୍ ବୃଦ୍ଧିବିରୋଧୀ ଆନ୍ଦୋଳନରୁ ତାଙ୍କର ଅନୁଭୂତି ଅନୁସାରେ ନାନା ସମାଲୋଚନା କରି ମୋତେ ପରାମର୍ଶ ଦେବାକୁ ଆରମ୍ଭ କରିଥିଲେ; ମାତ୍ର ମୁଁ ଅସନ୍ତୋଷ ପ୍ରକାଶକରିବାରୁ ସେ ସେଥିରୁ କ୍ଷାନ୍ତହୋଇଥିଲେ । ମନ୍ତ୍ରିମଣ୍ଡଳ ବୈଠକ ଛଡ଼ା ମୋର ମୁଖ୍ୟମନ୍ତ୍ରୀଙ୍କ ସହ ପ୍ରାୟ ଦେଖାହୁଏନାହିଁ । ମନ୍ତ୍ରୀମଣ୍ଡଳ ବୈଠକରେ ମଧ୍ୟ ବାଙ୍କବାବୁ ଠିକ୍ ମୁଖ୍ୟମନ୍ତ୍ରୀଙ୍କ ପାଖରେ ବସି ଅନେକ ସମୟରେ ଫୁସ୍‌ଫାସ୍‌ରେ ବ୍ୟାପୃତ ଥାଆନ୍ତି । ବିନାୟକବାବୁ ମଧ୍ୟ ମୁଖ୍ୟମନ୍ତ୍ରୀ ଗୋଟିଏ କ୍ଷୁଦ୍ର ଗୋଷ୍ଠୀଦ୍ୱାରା ପରିଚାଳିତ ହେବା କଥାଟାକୁ ପସନ୍ଦ କରୁନଥିଲେ । ମାତ୍ର ସେ ତାଙ୍କର ଅସନ୍ତୋଷ ପ୍ରକାଶ ନକରି ଚୁପ୍‌ଚାପ୍ ରହୁଥିଲେ । ବିନାୟକବାବୁ ତାଙ୍କର ମନକଥା ମୋ ପାଖରେ କହିବାକୁ ଚାହୁଁଥିଲେ; ମାତ୍ର ସୁଯୋଗ ପାଉନଥିଲେ । ତାଙ୍କର ନନ୍ଦିନୀ ଦେବୀଙ୍କ ପ୍ରତି ଖୁବ୍ ଭୟଥାଏ । ବିନାୟକବାବୁ ଦିନବେଳା ମୋ ସହିତ ଦେଖାକରିବାକୁ ଭୟକରୁଥିଲେ, କେବଳ ନନ୍ଦିନୀ ଦେବୀଙ୍କପାଇଁ । ସେ କଥା ସେ ମୋତେ କହିଥିଲେ । ତେଣୁ ବେଳେବେଳେ ମୋ ଘରକୁ ସେ ବେଶି ରାତିରେ ଆସୁଥିଲେ । ସମୟସମୟରେ ଆମ ଦୁଇଜଣଙ୍କର ରାଜଭବନରେ ସର୍ଦ୍ଦାର ଯୋଗେନ୍ଦ୍ର ସିଂହଙ୍କ ପାଖରେ ଭେଟହୁଏ ଏବଂ ରାଜ୍ୟପାଳଙ୍କ ପାଖରେ ବସି ଆମେ ନନ୍ଦିନୀ ଦେବୀଙ୍କର Coterie Rule ବା ଅନ୍ଦର ମହଲରୁ ଶାସନ ପରିଚାଳନା ସମ୍ବନ୍ଧରେ ଆଲୋଚନା କରୁଥିଲୁ । ରାଜ୍ୟପାଳ ସର୍ଦ୍ଦାର ଯୋଗେନ୍ଦ୍ର ସିଂହ ନନ୍ଦିନୀ ଦେବୀଙ୍କ କାର୍ଯ୍ୟକଳାପକୁ ଆଦୌ ପସନ୍ଦ କରୁନଥିଲେ । ନନ୍ଦିନୀ ଦେବୀ ମୁଖ୍ୟମନ୍ତ୍ରୀ ହେବାରୁ ସେ ନିଜେ ଚେଷ୍ଟାକରି ରାଜସ୍ଥାନର ରାଜ୍ୟପାଳରୂପେ ବଦଳି ହୋଇଯାଇଥିଲେ । ନନ୍ଦିନୀ ଦେବୀଙ୍କର ଆଚରଣ ଓ କାର୍ଯ୍ୟକଳାପ ସମ୍ବନ୍ଧରେ ପ୍ରଧାନମନ୍ତ୍ରୀଙ୍କୁ ମୁଁ ଓ ବିନାୟକବାବୁ ଜଣାଇବା କଥା ସର୍ଦ୍ଦାର ଯୋଗେନ୍ଦ୍ର ସିଂହଙ୍କ ପାଖରେ ସ୍ଥିରହୋଇଥିଲା । ଆମେ ପ୍ରଧାନମନ୍ତ୍ରୀଙ୍କୁ ଦେଖାକରି ସବୁ କଥା କହିବା ପରେ ରାଜ୍ୟପାଳ ମଧ୍ୟ ପ୍ରଧାନମନ୍ତ୍ରୀଙ୍କୁ ଦେଖାକଲାବେଳେ ଆମ ଅଭିଯୋଗ ସହିତ ଖାପ ଖାଇଲାଭଳି କଥାବାର୍ତ୍ତା ହେବେ ବୋଲି ସ୍ଥିରହୋଇଥିଲା । ଏକା ସମୟରେ ବିଭିନ୍ନ କାର୍ଯ୍ୟ ଉପଲକ୍ଷେ ମୁଁ, ବିନାୟକବାବୁ ଓ ରାଜ୍ୟପାଳ ଦିଲ୍ଲୀ ଯାଇଥିଲୁ । ମୁଁ ପ୍ରଧାନମନ୍ତ୍ରୀଙ୍କୁ ଦେଖାକରି ଯାହାସବୁ କହିବାର କଥା ଅଧଘଣ୍ଟେ ସମୟ ନେଇ କହିଥିଲି । ତା'ପରେ ବିନାୟକବାବୁ ପ୍ରଧାନମନ୍ତ୍ରୀଙ୍କୁ ଦେଖାକରି ପାଞ୍ଚ ମିନିଟରୁ କମ୍ ସମୟ ଭିତରେ ତାଙ୍କ କଥା ସାରି ଚାଲିଆସିଥିଲେ । ଦିଲ୍ଲୀରେ ଆମ ରାଜ୍ୟପାଳ ସର୍ଦ୍ଦାର ଯୋଗେନ୍ଦ୍ର ସିଂହ ସେତେବେଳେ ଇଲେକ୍‌ଟ୍ରିକ୍ ଲେନ୍‌ରେ ଥିବା ତାଙ୍କ ବସାଘରେ ରହୁଥିଲେ । ଆମେ ଦୁହେଁ ସର୍ଦ୍ଦାର ଯୋଗେନ୍ଦ୍ର ସିଂହଙ୍କ ପାଖକୁ ଯାଇଥିଲୁ । ମୁଁ ଯାହା ଶ୍ରୀମତୀ ଗାନ୍ଧୀଙ୍କୁ କହିଥିଲି ତାହା ବର୍ଣ୍ଣନା କରିଥିଲି । ବିନାୟକବାବୁ ପ୍ରଧାନମନ୍ତ୍ରୀଙ୍କୁ କ'ଣ କହିଲେ ବୋଲି ଯେତେବେଳେ ପଚରାଗଲା ସେ ଉତ୍ତର ଦେଇଥିଲେ ଯେ ସେ କିଛି କହିପାରିନାହାନ୍ତି, କାରଣ ପ୍ରଧାନମନ୍ତ୍ରୀ ତାଙ୍କୁ ସେ ବିଷୟରେ କିଛି ପଚାରିନଥିଲେ । ବିନାୟକ ବାବୁଙ୍କ ଉପରେ ସର୍ଦ୍ଦାର ଯୋଗେନ୍ଦ୍ର ସିଂହ ଖୁବ୍ ଅସନ୍ତୁଷ୍ଟ ହୋଇଥିଲେ ।

## ପାରାଦ୍ୱୀପ ଜାହାଜ କାରଖାନା : ଏକ ଅପରିପୂର୍ଣ୍ଣ ସଙ୍କଳ୍ପ

ଶିଳ୍ପ ବିଭାଗ ମୋ ଦାୟିତ୍ୱରେ ଥାଏ । ପାରାଦ୍ୱୀପରେ ଜାହାଜ ନିର୍ମାଣ କାରଖାନା ସ୍ଥାପନ କରିବା ପ୍ରସ୍ତାବ ମୁଁ ଶିଳ୍ପମନ୍ତ୍ରୀ ଥିବା ସମୟରେ ଭାରତ ସରକାରଙ୍କ ପାଖରେ ଉପସ୍ଥାପିତ କରାଯାଇଥିଲା । ଶିଳ୍ପ ବିଭାଗର ଦାୟିତ୍ୱ ମୁଁ ଜୁନ୍ ମାସ ଷୋ'ଳ ତାରିଖରେ ନେଇଥିଲି । କୌଣସି ସୂତ୍ରରୁ ଖବର ପାଇଲି ଯେ କେନ୍ଦ୍ର ସରକାର ଆମ ରାଜ୍ୟରେ ଜାହାଜ ନିର୍ମାଣ କାରଖାନା ସ୍ଥାପନ କରିବାର ଆବଶ୍ୟକତା ଅନୁଭବ କରୁଛନ୍ତି; ତେଣୁ ୧୯୭୨ ମସିହା ଜୁନ୍ ମାସ ତିରିଶ ତାରିଖରେ

ନୌ ଓ ସଡ଼କ ପରିବହନ ମନ୍ତ୍ରୀ ଶ୍ରୀ ରାଜବାହାଦୂରଙ୍କୁ ଖଣ୍ଡିଏ ଚିଠିରେ ଲେଖିଥିଲି – After the commissioning of the deepest draft port in the country at Paradeep in Orissa in 1966, the State Government have been examining all possible avenues to start industrial activities in this area to fully utilise the capacity of this major port. Till now, this port is only engaged in export of iron ore and chromite ore. You will kindly appreciate that unless the activities in the port are accelerated, particularly by setting up of industries which are suitable at port locations, the Commercial viability of the port itself would be jeopardised. It is in this context that I have been thinking of a ship-building yard at Paradeep. The Paradeep port location would particularly be suitable for construction of bulk carriers and large oil tankers of one lakh dwt and above, which are at present not being constructed in the country. x x x I would, therefore, suggest that you may please, send your experts to examine the suitability of this site for location of a shipyard. I would also suggest that the Government of India may include the construction of a Ship Building yard at Paradeep in the Fifth Five Year Plan." ମୋର ଚିଠି କେନ୍ଦ୍ରମନ୍ତ୍ରୀଙ୍କ ଉପରେ କିଛି ପ୍ରଭାବ ପକାଇଥିଲା । ଜୁଲାଇ ପାଞ୍ଚ ତାରିଖର "The Economic Times"ର ପ୍ରତିନିଧିଙ୍କୁ ଶ୍ରୀ ରାଜବାହାଦୂର କଲିକତାରେ କହିଥିଲେ, "The Government of India was yet to take a decision as to whether the next shipyard would be set up in Haldia or Paradeep. He wondered as to whether it would be worth-while to have a shipyard in Haldia at a time when Calcutta and Howrah already had a number of dockyards." ସାମ୍ବାଦିକଙ୍କ ଆଗରେ ଶ୍ରୀ ରାଜବାହାଦୂରଙ୍କ ଉଲ୍ଲିଖିତ ମନ୍ତବ୍ୟକୁ ପଶ୍ଚିମ-ବଙ୍ଗଳାର ମୁଖ୍ୟମନ୍ତ୍ରୀ ଶ୍ରୀ ସିଦ୍ଧାର୍ଥ ଶଙ୍କର ରାୟ କୁଆଡ଼େ ପସନ୍ଦ କରିନଥିଲେ । ଏହାପରେ ଶ୍ରୀ ରାଜବାହାଦୂର ଓ ସିଦ୍ଧାର୍ଥ ଶଙ୍କର ରାୟଙ୍କ ମଧ୍ୟରେ ଦେଖାସାକ୍ଷାତ୍ ହେବାକଥା ଖବରକାଗଜରେ ପ୍ରକାଶିତ ହୋଇଥିଲା । ଇତିମଧ୍ୟରେ ଶ୍ରୀ ରାଜବାହାଦୂରଙ୍କ ସହିତ ମୋର ମଧ୍ୟ ଦେଖାହୋଇଥିଲା । ଏହି ଜାହାଜ-ନିର୍ମାଣ କାରଖାନା ହଳଦିଆରେ ହେବାପାଇଁ ଶ୍ରୀ ସିଦ୍ଧାର୍ଥ ଶଙ୍କର ରାୟ ତାଙ୍କ ଉପରେ ଓ ପ୍ରଧାନମନ୍ତ୍ରୀଙ୍କ ଉପରେ ବହୁତ ପ୍ରଭାବ ପକାଉଥିଲେ ବୋଲି ସେ ମୋତେ ଘରୋଇଭାବରେ କହିଥିଲେ । ତେଣୁ ଆମ ପକ୍ଷରୁ ପ୍ରଧାନମନ୍ତ୍ରୀଙ୍କ ଉପରେ ଚାପପଡ଼ିବା ଆବଶ୍ୟକ ବୋଲି ସେ ସୂଚନା ଦେଇଥିଲେ । ମୋର ଜୁନ୍ ମାସ ତିରିଶ ତାରିଖ ଚିଠିର ଉତ୍ତର ଦେଇ ରାଜବାହାଦୂର ମୋତେ ଜଣାଇଥିଲେ, ଯେଉଁସବୁ ଜାହାଜ ତିଆରି ଓ ମରାମତି ହେବାର ସଂସ୍ଥା ଦେଶରେ ଅଛି ତାକୁ ସଂପ୍ରସାରଣ କରିବାକୁ କେନ୍ଦ୍ର ସରକାରଙ୍କର ପ୍ରସ୍ତାବ ଅଛି ଏବଂ ତା' ଛଡ଼ା "Government of India have constituted a working group to study in depth the question of setting up an additional shipyard at Haldia in West Bengal." ତେଣୁ ଏ ଅବସ୍ଥାରେ ଆମେ ଆଉ ଏକ ବଡ଼ ଜାହାଜନିର୍ମାଣ କାରଖାନା କଥା ଚିନ୍ତାନକରି ପାରାଦ୍ୱୀପ ବନ୍ଦରରେ ମାଲ ବୋହିବା ଉଦ୍ଦେଶ୍ୟରେ ବଡ଼ ବଡ଼ ବୋଟ୍ ନିର୍ମାଣ କାରଖାନା ପ୍ରତିଷ୍ଠାର ସମ୍ଭାବନା ସମ୍ପର୍କରେ ପରୀକ୍ଷା କଲେ ଭଲହେବ ବୋଲି ସେ ମୋତେ ପରାମର୍ଶ ଦେଇଥିଲେ । କେନ୍ଦ୍ରମନ୍ତ୍ରୀଙ୍କର ଏହି ଜୁଲାଇ ଊଣେଇଶ ତାରିଖ ଚିଠିର ଉତ୍ତର ରାଜ୍ୟ

ସରକାରଙ୍କ ପକ୍ଷରୁ ମୁଁ ଦେଇଥିଲି । ପାରାଦ୍ୱୀପଠାରେ ଜାହାଜ ନିର୍ମାଣ କାରଖାନାର ଆବଶ୍ୟକତା ଆଉ ଥରେ ପ୍ରତିପାଦନ କରି ସେ ଦିଗରେ ବିହିତ ପଦକ୍ଷେପ ନେବାପାଇଁ ମୁଁ ତାଙ୍କୁ ଅନୁରୋଧ କରିଥିଲି । ମୁଁ ଲେଖିଥିଲି, "Let me not conceal my feeling of distress to see the indication in your letter that your Ministry does not propose to embark on the proposal for constructing a ship-building yard in Paradeep in addition to the one for which investigations are being made by Haldia Study Group. This is contrary to what you had stated in Calcutta while talking to the reporters that the Government of India was yet to take a decision as to whether the next shipyard would be set up in Haldia or Paradeep."

"I hope and trust that you will kindly review the entire position immediately and take most expeditious steps to do justice to Paradeep and to the people of Orissa in the matter of providing a major ship-building yard and send an expert team to Paradeep to pursue our proposal with utmost speed and sympathy."

ପଶ୍ଚିମ-ବଙ୍ଗଳା ଓ ହଳଦିଆ ବନ୍ଦର ପ୍ରତି କେନ୍ଦ୍ର ସରକାର ଯେପରି ସହାନୁଭୂତି ଦେଖାଇ ବିଚାରବନ୍ତ ହେଉଥା'ନ୍ତି, ଅନ୍ତତଃ ସେତିକି ସହାନୁଭୂତି ଓ ବିଚାର ଓଡ଼ିଶାର ଲୋକେ କେନ୍ଦ୍ର ସରକାରଙ୍କଠାରୁ ଆଶା କରନ୍ତି ବୋଲି ମୁଁ ଶ୍ରୀ ରାଜବାହାଦୂରଙ୍କୁ ଦୃଢ଼ଭାବରେ ଜଣାଇଦେଇଥିଲି ଏବଂ ତାହା ନହେଲେ କେନ୍ଦ୍ର ସରକାର ତାଙ୍କ ବ୍ୟବହାରରେ ରାଜ୍ୟମାନଙ୍କ ଭିତରେ ପାତରଅନ୍ତର କରୁଛନ୍ତି ବୋଲି ଅଭିଯୋଗ ହେବା ସ୍ୱାଭାବିକ ବୋଲି ଉଲ୍ଲେଖ କରିଥିଲି । ରାଜବାହାଦୂରଙ୍କୁ ସେହି ଚିଠିଟି ଲେଖିବା ସଙ୍ଗେ ସଙ୍ଗେ ପ୍ରଧାନମନ୍ତ୍ରୀଙ୍କୁ ମୁଁ ଖଣ୍ଡେ ଚିଠି ଲେଖି ତା' ସହିତ ପାରାଦ୍ୱୀପଠାରେ ଜାହାଜ ନିର୍ମାଣ କାରଖାନା ସମ୍ବନ୍ଧୀୟ ମୋର ସବୁ ଚିଠିପତ୍ରର ନକଲ ତାଙ୍କ ପାଖକୁ ପଠାଇଥିଲି । ସେହିସବୁ ତଥ୍ୟପ୍ରତି ତାଙ୍କର ଦୃଷ୍ଟି ଆକର୍ଷଣ କରି ଓଡ଼ିଶାର ସ୍ୱାର୍ଥ ଦୃଷ୍ଟିରୁ ତାଙ୍କର ସାହାଯ୍ୟ ପ୍ରାର୍ଥନା କରିଥିଲି । ଚିଠିଟି ହେଲା :

"My dear Prime Minister,

'Willed by the people', our late lamented leader Jawaharlal Nehru had said 'I commend you to this yet another National venture' while laying the foundation for the Paradeep Port Project. We are unfortunate that the deepest port of the nation remains long neglected.

Perhaps the greatest single factor that can banish the chronic poverty of the people of Orissa would be the development of the Paradeep port area with a large number of port-based industries. With this end in view we have been pursuing several schemes with the Government of India. Enclosed are copies of my correspondences with Shri Raj Bahadurjee for construction of a major ship-building yard in Paradeep. As it appears, your personal attention to this problem is absolutely essential to our getting justice in the matter. I have no doubt that you will give very prompt attention to this request.

With kindest regards,
Yours sincerely,
N. Routray"

ଏହାପରେ ଶ୍ରୀ ରାଜବାହାଦୂର ମୋ ଚିଠିର ପ୍ରାପ୍ତିସ୍ୱୀକାର କରି ବିଷୟଟି ଆଉ ଥରେ ପରୀକ୍ଷା

କରିବେ ବୋଲି ମୋତେ ଲେଖିଥିଲେ । କିନ୍ତୁ ପ୍ରଧାନମନ୍ତ୍ରୀଙ୍କଠାରୁ ମୋ ଚିଠିର କୌଣସି ଉତ୍ତର ମୁଁ ପାଇନଥିଲି । ପାରାଦ୍ୱୀପଠାରେ ଜାହାଜ-ତିଆରି କାରଖାନାପାଇଁ ଆମ୍ଭମାନଙ୍କ ଉଦ୍ୟମ କଥା ଜାଣି ପଶ୍ଚିମବଙ୍ଗଳା ସରକାର ମଧ୍ୟ ହଳଦିଆପାଇଁ ଖୁବ୍ ତତ୍ପର ହୋଇଉଠିଥିଲେ । ହଳଦିଆ ବନ୍ଦରର ଉନ୍ନୟନ ପ୍ରତି ମୁଁ ବଡ଼ ଅସହିଷ୍ଣୁ ହୋଇପଡ଼ିଛି ବୋଲି 'ଯୁଗାନ୍ତର' ପ୍ରଭୃତି କଲିକତାର କେତେକ ଖବରକାଗଜ ମୋର ତିକ୍ତ ସମାଲୋଚନା କରିଥିଲେ । ହଳଦିଆ ବନ୍ଦରଠାରେ ଜାହାଜ ତିଆରି କାରଖାନା ହେବା କଥା ଅନୁଧ୍ୟାନ କରିବା ଉଦ୍ଦେଶ୍ୟରେ ଗୋଟିଏ କମିଟି ନିଯୁକ୍ତ କରିବା ଦିଗରେ କେନ୍ଦ୍ର ସରକାର ସମସ୍ତ ପଦକ୍ଷେପ ନେଲେଣି ବୋଲି ପଶ୍ଚିମବଙ୍ଗଳାର ଶିକ୍ଷାମନ୍ତ୍ରୀ ଶ୍ରୀ ତରୁଣକାନ୍ତି ଘୋଷଙ୍କର ଗୋଟିଏ ବିବୃତି ଖବରକାଗଜରେ ପ୍ରକାଶିତ ହୋଇଥିଲା । ଏ ସମ୍ବାଦ ପ୍ରକାଶିତ ହେବା ପରେ ଓଡ଼ିଶାରେ ଉଦ୍‌ବେଗ ପ୍ରକାଶପାଇଥିଲା । ତେଣୁ ଜୁଲାଇ ମାସ ଏକତ୍ରିଂଶ ତାରିଖରେ ମୁଁ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ପାଖକୁ ଗୋଟିଏ ତାରବାର୍ତ୍ତା ପଠାଇ ଏପ୍ରକାର ଉଦ୍ୟମର ଦୃଢ଼ ପ୍ରତିବାଦ ଜଣାଇବା ସଙ୍ଗେ ସଙ୍ଗେ ତୁରନ୍ତ ହସ୍ତକ୍ଷେପ କରି ଓଡ଼ିଶାବାସୀଙ୍କୁ ନ୍ୟାୟ ଦେବାପାଇଁ ତାଙ୍କୁ ଅନୁରୋଧ କରିଥିଲି ।

ମୁଁ ଦିଲ୍ଲୀ ଯାଇ ଆମ ରାଜ୍ୟର ସବୁ ପାର୍ଲିଆମେଣ୍ଟ ସଦସ୍ୟଙ୍କୁ ପାରାଦ୍ୱୀପଠାରେ ଜାହାଜ-ତିଆରି କାରଖାନା ପ୍ରତିଷ୍ଠା ବିଷୟରେ କେନ୍ଦ୍ର ସରକାରଙ୍କ ଉପରେ ଚାପ ପକାଇବାପାଇଁ ଅନୁରୋଧ କରିଥିଲି । ଏ ସମ୍ବନ୍ଧରେ କେନ୍ଦ୍ର ସରକାରଙ୍କ ସହିତ ରାଜ୍ୟ ସରକାରଙ୍କର ଯେଉଁ ସବୁ ଚିଠିପତ୍ର ଆଦାନପ୍ରଦାନ ହୋଇଥିଲା ତା'ର ନକଲସବୁ ସେମାନଙ୍କୁ ଦେଇଥିଲି । ପ୍ରଧାନମନ୍ତ୍ରୀଙ୍କୁ ଦେଖାକରି ପାରାଦ୍ୱୀପ ବନ୍ଦରଠାରେ ଜାହାଜ ତିଆରି କାରଖାନା ପ୍ରତିଷ୍ଠା ବିଷୟରେ ଆଲୋଚନା କରିଥିଲି । ମାତ୍ର ଆମର ଦାବି ପ୍ରତି ପ୍ରଧାନମନ୍ତ୍ରୀ ବିଶେଷ ଆଗ୍ରହ ପ୍ରକାଶ କରିନଥିଲେ । ତାଙ୍କ କଥାବାର୍ତ୍ତା ଓ ଭାବଭଙ୍ଗୀରୁ ମୁଁ ବୁଝିପାରିଥିଲି ଯେ ସେ ପଶ୍ଚିମବଙ୍ଗଳାର ମୁଖ୍ୟମନ୍ତ୍ରୀ ଶ୍ରୀ ସିଦ୍ଧାର୍ଥଶଙ୍କର ରାୟଙ୍କୁ ଅସନ୍ତୁଷ୍ଟ କରିବାକୁ ଚାହୁଁନଥିଲେ । ତେଣୁ ମୋ କଥା ପ୍ରତି ଗୁରୁତ୍ୱ ନଦେଇ ଏଡ଼େଇ ଦେଲାଭଳି ବ୍ୟବହାର କରିଥିଲେ । ଆମର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଏ ବିଷୟରେ କୌଣସି ପଦକ୍ଷେପ ନେବାକୁ ଆଗ୍ରହୀ ନଥିଲେ । ସେତେବେଳେ ଏହି ଜାହାଜ ନିର୍ମାଣ କାରଖାନା ପାରାଦ୍ୱୀପରେ ବସିବ କି ହଳଦିଆରେ ବସିବ ସେ ବିଷୟରେ ବହୁତ ବାଦାନୁବାଦ ଖବରକାଗଜରେ ପ୍ରକାଶ ପାଉଥାଏ । ମାତ୍ର ମୁଖ୍ୟମନ୍ତ୍ରୀ ସେ ବିଷୟରେ ଏକାବେଳକେ ନୀରବ ରହୁଥା'ନ୍ତି । ଏ ବିଷୟରେ ପ୍ରଧାନମନ୍ତ୍ରୀଙ୍କୁ ଖଣ୍ଡେ ଚିଠି ଲେଖିବାକୁ ମଧ୍ୟ ମୁଖ୍ୟମନ୍ତ୍ରୀ ଇଚ୍ଛୁକ ନଥିଲେ । ନନ୍ଦିନୀ ଦେବୀ ମଧ୍ୟ ସିଦ୍ଧାର୍ଥ ଶଙ୍କର ରାୟଙ୍କୁ ଅସନ୍ତୁଷ୍ଟ କରିବାକୁ ଚାହୁଁନଥିଲେ । ତେଣେ ବାରମ୍ବାର ଖବରକାଗଜରେ ସମ୍ବାଦ ପ୍ରକାଶ ପାଉଥାଏ ଯେ ଶୀଘ୍ର ହଳଦିଆଠାରେ ଜାହାଜ ନିର୍ମାଣ କାରଖାନା କରାଇନେବାପାଇଁ ପଶ୍ଚିମ-ବଙ୍ଗଳା ସରକାର ଉଦ୍ୟମ କରୁଛନ୍ତି । ମୁଁ କେବଳ ବାରମ୍ବାର ପ୍ରତିବାଦ କରି ତାଙ୍କୁ ବାଧା ଦେଉଥାଏ; କାରଣ ହଳଦିଆରେ ଜାହାଜତିଆରି କାରଖାନା ହେବା କଥା ଥରେ ନିଷ୍ପତ୍ତି ହୋଇଗଲେ ଆଉ ନିକଟ ଭବିଷ୍ୟତ୍‌ରେ ପୂର୍ବ ଉପକୂଳରେ ଅବସ୍ଥିତ ପାରାଦ୍ୱୀପଠାରେ ସେ ପ୍ରକାର କାରଖାନା ବସିବାର କୌଣସି ସମ୍ଭାବନା ରହିବନାହିଁ । ଆମ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀ ସେ ବିଷୟରେ କିଛି କରିବେନାହିଁ ବୋଲି ମୁଁ ଯେତେବେଳେ ଅନୁଭବ କଲି ସେତେବେଳେ ପାରାଦ୍ୱୀପଠାରେ ଜାହାଜ ନିର୍ମାଣ କାରଖାନା ସମ୍ବନ୍ଧୀୟ ସବୁ କଥା କ୍ୟାବିନେଟ୍‌ର ଦୃଷ୍ଟିକୁ ଆଣିବାପାଇଁ ସ୍ଥିର କଲି । ତେଣୁ ୧୯୭୩ ମସିହା ଫେବୃୟାରୀ ଦୁଇ ତାରିଖରେ ଏହି ଜାହାଜ ତିଆରି କାରଖାନା ସମ୍ବନ୍ଧରେ ଗୋଟିଏ ଦୀର୍ଘ ବିବରଣୀ କ୍ୟାବିନେଟ୍‌ରେ ପକାଇବାପାଇଁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠାଇଥିଲି । ସେଥିରେ ପାରାଦ୍ୱୀପଠାରେ ଜାହାଜ ନିର୍ମାଣ ସମ୍ବନ୍ଧରେ ରାଜ୍ୟ ସରକାରଙ୍କ ପକ୍ଷରୁ ଯେଉଁସବୁ ଉଦ୍ୟମ ହୋଇଥିଲା, ସେକଥା ବର୍ଣ୍ଣନା କରାଯାଇଥିଲା ଏବଂ ଆମର ଉଦ୍ୟମକୁ ପଣ୍ଡ କରିବାପାଇଁ ଯେଉଁସବୁ ଚକ୍ରାନ୍ତ

ଖବରକାଗଜମାନଙ୍କରେ ପ୍ରକାଶ ପାଉଥିଲା, ସେକଥା ମଧ୍ୟ ବର୍ଣ୍ଣନା କରାଯାଇଥିଲା । ତେଣୁ କ୍ୟାବିନେଟ୍ ଏ ବିଷୟରେ ସଜାଗ ରହି ଭବିଷ୍ୟତ୍ କାର୍ଯ୍ୟାନୁଷ୍ଠାନ ସ୍ଥିର କରିବାପାଇଁ ସେଥିରେ ମୁଁ ସୂଚନା ଦେଇଥିଲି । ସେହି ନୋଟ୍‌ର ଶେଷଭାଗରେ ମୁଁ ଲେଖିଥିଲି, "Such distressing reports have caused wide-spread apprehensions and resentment among the people. Therefore, I think, the Council of Ministers should look into the matter with a view to deciding the future course of action in order to ensure that the Government of India is successfully persuaded to accept our proposal and also to allay the public apprehensions over the issue."

ଏହାର ଅଳ୍ପଦିନ ପରେ ନନ୍ଦିନୀ ଦେବୀଙ୍କର ମନ୍ତ୍ରିମଣ୍ଡଳର ପତନହୋଇଥିଲା । ତେଣୁ ଏହା ଉପରେ ଆଉ ବିଶେଷ କାର୍ଯ୍ୟାନୁଷ୍ଠାନ ହୋଇନଥିଲା । କିନ୍ତୁ ଏହା ନିଶ୍ଚୟ ସ୍ୱୀକାର କରିବାକୁ ହେବ ଯେ ସେତେବେଳେ ଆମର ଶିଳ୍ପବିଭାଗ ଯଦି ବିଶେଷ ତତ୍ପର ନହୋଇ କେନ୍ଦ୍ର ସରକାରଙ୍କର ଏକତରଫା ପ୍ରସ୍ତାବକୁ ବାଧା ଦେଇ ନଥାନ୍ତା ତା'ହେଲେ ପାରାଦ୍ୱୀପଠାରେ ଜାହାଜ ତିଆରି କାରଖାନା ନିର୍ମାଣ ପ୍ରସ୍ତାବ ଆଦୌ ବିଚାରକୁ ମଧ୍ୟ ଆସିନଥାନ୍ତା । ୧୯୭୭ ମସିହାରେ ମୁଁ ଯେତେବେଳେ ରାଜ୍ୟର ମୁଖ୍ୟମନ୍ତ୍ରୀ ହେଲି ସେତେବେଳେ ସେହି ଜାହାଜ ତିଆରି କାରଖାନାର ନିର୍ମାଣ ପ୍ରସ୍ତାବ କେନ୍ଦ୍ର ସରକାରଙ୍କ ସକ୍ରିୟ ଆଲୋଚନାକୁ ଆସିଥିଲା । ଆମ ଦେଶର ତଥା ବିଦେଶର ବିଶେଷଜ୍ଞମାନଙ୍କ ଦ୍ୱାରା ଜାହାଜ ତିଆରି କାରଖାନା ନିର୍ମାଣ ସମ୍ବନ୍ଧରେ ପାରାଦ୍ୱୀପ ବନ୍ଦରର ଉତ୍କୃଷ୍ଟତା ସମ୍ବନ୍ଧରେ ପ୍ରାୟ ସବୁ ବିଶେଷଜ୍ଞ ଦଳ ନିଃସନ୍ଦେହ ହୋଇ ଅନୁକୂଳ ମତ ଦେଇସାରିଥା'ନ୍ତି । କେନ୍ଦ୍ର ସରକାରଙ୍କ ସଂପୃକ୍ତ ବିଭାଗମାନଙ୍କ ସହିତ ମୋର ବହୁବାର ଏ ସମ୍ବନ୍ଧରେ ଆଲୋଚନା ହୋଇଥିଲା । ୧୯୭୮ ମସିହାରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ମୋରାରଜୀ ଦେଶାଇ ପାରାଦ୍ୱୀପଠାରେ ଜାହାଜ ତିଆରି କାରଖାନା ନିର୍ମାଣ ହେବ ବୋଲି ପାରାଦ୍ୱୀପଠାରେ ଅନୁଷ୍ଠିତ ଗୋଟିଏ ସାଧାରଣ ସଭାରେ ଏକପ୍ରକାର ଘୋଷଣା କରିଯାଇଥିଲେ । ହଳଦିଆଠାରେ ଜାହାଜ ତିଆରି କାରଖାନା ନିର୍ମାଣର ପ୍ରଶ୍ନ ଆଉ ବର୍ତ୍ତମାନ ନାହିଁ । ପଶ୍ଚିମ-ଉପକୂଳରେ ଗୁଜୁରାଟର 'ହାଜିରିଆ' କଥା ମଧ୍ୟ ପାରାଦ୍ୱୀପ ସହିତ ବିଚାର କରାଯାଉଛି । ଛୋଟ ଓ ବଡ଼ ଦୁଇଟି ଜାହାଜ ତିଆରି କାରଖାନା ନିର୍ମାଣର ପ୍ରଶ୍ନ ମଧ୍ୟ ଥିଲା । ପୂର୍ବ ଉପକୂଳରେ ପାରାଦ୍ୱୀପ ବନ୍ଦରର ଉପଯୋଗିତା ଏଥିପାଇଁ ଯେପରି ଉପଲବ୍ଧି କରାଯାଇଛି ତାକୁ ଆଉ ଉପେକ୍ଷା କରିବା ସମ୍ଭବ ହେବ ନାହିଁ ।

## କ୍ଷମତାର ଛକାପଞ୍ଝା ଭିତରେ ଛ' ଆଠ ମାସ

ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ସମସ୍ତ କ୍ଷମତା ନିଜ ହାତରେ ଠୁଳ କରିବାକୁ ପ୍ରୟାସ କରିବାରୁ ମୋ ସହିତ ତାଙ୍କର କେତେକ ସ୍ଥଳରେ ମତାନ୍ତର ହୋଇଥିଲା । ତାଙ୍କର ଅନ୍ଦରମହଲରୁ ବିଶେଷତଃ ବ୍ରଜବାବୁ ଓ ବାଙ୍କବାବୁଙ୍କ ଆଡୁ ଏ ଦିଗରେ ତାଙ୍କୁ ମତାଇଦିଆଯାଉଥିବାର ମନେହେଉଥିଲା । କେନ୍ଦୁପତ୍ର ବ୍ୟବସାୟ ଜାତୀୟକରଣ କରିବା ସପକ୍ଷରେ, ଓଡ଼ିଶା ଖଣି କର୍ପୋରେସନ୍ ଉପରେ ଲିଙ୍କ୍‌ସ କମ୍ପାନୀର ଅତ୍ୟଧିକ ଅର୍ଥଦାବି ବିରୁଦ୍ଧରେ ମକଦ୍ଦମା ଲଢ଼ିବା ସପକ୍ଷରେ ଏବଂ ଖଦିବୋର୍ଡ଼ ପ୍ରେସିଡେଣ୍ଟ ନିଯୁକ୍ତି ଭଳି କାର୍ଯ୍ୟରେ ମୋ ମତକୁ ନାପସନ୍ଦ କରାଯିବାରୁ ଏଭଳି ମତଭେଦ ସୃଷ୍ଟି ହୋଇଥିଲା । ଏଭଳି ଆଭ୍ୟନ୍ତରୀଣ ଛକାପଞ୍ଝା ଭିତରେ ଛ' ଆଠ ମାସ ପରେ ମନ୍ତ୍ରିମଣ୍ଡଳର ଆୟୁଷ ପୂରିଗଲା । ମୁଁ ଶିଳ୍ପ ବିଭାଗର ମନ୍ତ୍ରୀ ଥିଲାବେଳେ ଓଡ଼ିଶା ଖଦିବୋର୍ଡ଼ର ପ୍ରେସିଡେଣ୍ଟ ପଦଟି ଖାଲି ପଡ଼ିଥିଲା । ଏହି ପଦବୀପାଇଁ ଅନେକ ଲୋକ ଆଶାୟୀ ଥା'ନ୍ତି । ଶ୍ରୀ ଗଙ୍ଗାଧର ମହାପାତ୍ର ସେତେବେଳେ ବିଧାନସଭାର ସଭ୍ୟ ନଥିଲେ । ଗଙ୍ଗାଧରବାବୁଙ୍କର ମଧ୍ୟ ଇଚ୍ଛା ଥାଏ ଖଦିବୋର୍ଡ଼ ସଭାପତି ହେବାପାଇଁ; କିନ୍ତୁ ତତ୍କାଳୀନ ରାଜସ୍ୱମନ୍ତ୍ରୀ ଶ୍ରୀ ବ୍ରଜମୋହନ ମହାନ୍ତି ଚାହୁଁଥାଆନ୍ତି ଗଙ୍ଗାଧର ବାବୁଙ୍କୁ କରାଇ ନଦେବାକୁ । ଆଉ

ଜଣେ କାହାକୁ ବୋର୍ଡ଼ର ସଭାପତି କରିବାପାଇଁ ବ୍ରଜବାବୁ ମୁଖ୍ୟମନ୍ତ୍ରୀଙ୍କୁ କହିଥିଲେ । ବ୍ରଜବାବୁଙ୍କ ଧାରଣା ଥିଲା ଯେ ସଂପୃକ୍ତ ଫାଇଲ୍ ମୋ ପାଖରୁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯିବ ଏବଂ ସେହିଠାରେ ଶେଷ ନିଷ୍ପତ୍ତି ହେବ । ଯୋଗ୍ୟତା ଦୃଷ୍ଟିରୁ ଗଙ୍ଗାଧରବାବୁଙ୍କୁ ଖଦିବୋର୍ଡ଼ର ସଭାପତି କରିବାପାଇଁ ମୋର ଇଚ୍ଛା ଥାଏ । ତେଣୁ ଫାଇଲ୍ ଯେତେବେଳେ ମୋ ପାଖକୁ ଆସିଲା ମୁଁ ଗଙ୍ଗାଧରବାବୁ ସଭାପତି ହେବେ ବୋଲି ନିଷ୍ପତ୍ତି ନେଇଥିଲି ଏବଂ ଶୀଘ୍ର ବିଜ୍ଞପ୍ତି ପ୍ରକାଶ କରିଦେବାକୁ ଆଦେଶ ଦେଇଥିଲି । ଖଦିବୋର୍ଡ଼ର ପ୍ରେସିଡେଣ୍ଟ କିଏ ହେବ ସେ ବିଷୟରେ ଆଲୋଚନା କରିବାକୁ ମୁଁ ଯେତେବେଳେ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ନଗଲି ଏବଂ ଫାଇଲ୍ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ନଗଲା, ସେତେବେଳେ ବ୍ରଜବାବୁ ଓ ମୁଖ୍ୟମନ୍ତ୍ରୀ ଦୁହେଁ ବଡ଼ ଅଧୈର୍ଯ୍ୟ ହୋଇପଡ଼ିଥିଲେ । ଦିନେ ନନ୍ଦିନୀ ଦେବୀଙ୍କ ସହିତ ବ୍ରଜବାବୁ ମୋ ଅଫିସ୍‌ରେ ପହଞ୍ଚି ଖଦିବୋର୍ଡ଼ ସଭାପତି କଥା କ'ଣ ହେବ ସେ ବିଷୟରେ ଆଲୋଚନା ଆରମ୍ଭ କରିଥିଲେ । ମୁଁ ଯେତେବେଳେ କହିଲି ଯେ ଶ୍ରୀ ଗଙ୍ଗାଧର ମହାପାତ୍ରଙ୍କୁ ମୁଁ ନିଯୁକ୍ତ କରିସାରିଲିଣି, ସେତେବେଳେ ନନ୍ଦିନୀ ଦେବୀ ବିସ୍ମିତ ହୋଇଥିଲେ ଏବଂ ବ୍ରଜବାବୁ ହତାଶ ହେଲାଭଳି ମୁଁ ଅନୁଭବ କରିଥିଲି । ନିଷ୍ପତ୍ତିକୁ ସ୍ଥଗିତ ରଖିବାକୁ ସେମାନେ ମୋତେ ପରାମର୍ଶ ଦେଇଥିଲେ । ଗଙ୍ଗାଧରବାବୁଙ୍କ ପାଖକୁ ଚିଠି ଚାଲିଗଲାଣି; ତେଣୁ ସେଥିରେ ଆଉ କିଛି କରିବା ବଡ଼ ଅସଙ୍ଗତ ଓ ଅସମୀଚୀନ ହେବ ବୋଲି ମୁଁ କହିଥିଲି । ସେମାନେ ବଡ଼ କ୍ଷୁଣ୍ଣ ଓ ଅସନ୍ତୁଷ୍ଟ ହୋଇ ମୋ ପାଖରୁ ଚାଲିଯାଇଥିଲେ । ପରେ ସେମାନେ ଚିଫ୍ ସେକ୍ରେଟେରୀଙ୍କୁ ଡାକି ଖଦିବୋର୍ଡ଼ ନିଯୁକ୍ତି ସମ୍ପର୍କୀୟ ନିୟମ ପଚାରି ବୁଝିଥିଲେ । ବିଭାଗୀୟ ମନ୍ତ୍ରୀଙ୍କର ଆଦେଶ ସେ ବିଷୟରେ ଯଥେଷ୍ଟ ବୋଲି ସେମାନେ ବୁଝିପାରି ନିରବ ରହିଥିଲେ । ଏଠାରେ ସ୍ମରଣ କରିବାର କଥା ଯେ ବ୍ରଜବାବୁଙ୍କ ପ୍ରରୋଚନାରେ ଗଙ୍ଗାଧରବାବୁ ଉତ୍କଳ କଂଗ୍ରେସ ଛାଡ଼ି ଅନେକ ଆଗରୁ ବ୍ୟକ୍ତିଗତ ଭାବରେ ଶାସକ କଂଗ୍ରେସରେ ଯୋଗଦେଇଥିଲେ । କିଛି ବର୍ଷ ପରେ ମଧ୍ୟ ସେ ନନ୍ଦିନୀ ଶତପଥୀଙ୍କ ମନ୍ତ୍ରିମଣ୍ଡଳରେ ଯୋଗଦେଇଥିଲେ । ସେହିଭଳି ଓଡ଼ିଶା ଶିଳ୍ପ ଉନ୍ନୟନ କର୍ପୋରେସନର ମ୍ୟାନେଜିଂ ଡାଇରେକ୍ଟରଙ୍କ ପୁନଃ ନିଯୁକ୍ତି ସମ୍ବନ୍ଧରେ ମୋର କ୍ଷମତା ପରିସର ଦେଇ ମୁଖ୍ୟମନ୍ତ୍ରୀଙ୍କର ମୋ ସହିତ ମତାନ୍ତର ଘଟିଥିଲା । ସମ୍ପୃକ୍ତ ଅଫିସର୍ ଶ୍ରୀ ଦାସମହାପାତ୍ର ପାଞ୍ଚ ବର୍ଷପାଇଁ ଗୋଟିଏ ଚୁକ୍ତି ଅନୁସାରେ ନିଯୁକ୍ତ ହୋଇଥିଲେ ଏବଂ ତାଙ୍କର ସେହି ପାଞ୍ଚ ବର୍ଷ ଚୁକ୍ତିର ସମୟ ପୂରିଯାଇଥିଲା । ସେ ଜଣେ ଅତି ଅଭିଜ୍ଞ ଓ ପାରିବାର ଲୋକ ଥିଲେ; କିନ୍ତୁ ତାଙ୍କର ଗୋଟିଏ ଦୋଷ ଯେ ଯାହା ହାତରେ ରାଜନୈତିକ କର୍ତ୍ତୃତ୍ୱ ଥାଏ ସେ ଏକାବେଳକେ ତାଙ୍କ କାର୍ଯ୍ୟରେ ଜଡ଼ିତ ହୋଇ ଚିହ୍ନାପଡ଼ିଯାଆନ୍ତି । ତାଙ୍କର କାର୍ଯ୍ୟ ସନ୍ତୋଷଜନକ ଥିବାରୁ ଶିଳ୍ପ ଉନ୍ନୟନ କର୍ପୋରେସନ ଓ ବିଭାଗୀୟ ସେକ୍ରେଟେରୀ ଆଉ ପାଞ୍ଚ ବର୍ଷ ପାଇଁ ତାଙ୍କର ନିଯୁକ୍ତି ସମୟ ବଢ଼ାଇଦେବାକୁ ସୁପାରିସ୍ କରିଥିଲେ । ମାତ୍ର ମୁଖ୍ୟମନ୍ତ୍ରୀଙ୍କର ଅନ୍ଦରମହଲର ଲୋକମାନେ ଦାସମହାପାତ୍ରଙ୍କୁ ବିଦାୟ ଦେବାକୁ ଚାହୁଁଥିଲେ । ମୋ ପାଖକୁ ଯେତେବେଳେ ସଂପୃକ୍ତ ଫାଇଲ୍ ଆସିଲା ମୁଁ ଦାସମହାପାତ୍ରଙ୍କର ନିଯୁକ୍ତି ସମୟ ଆଉ ପାଞ୍ଚ ବର୍ଷ ବଢ଼ାଇଦେବାପାଇଁ ଆଦେଶ ଦେଇଥିଲି । ମୋର ଏ ନିଷ୍ପତ୍ତିରେ ମୁଖ୍ୟମନ୍ତ୍ରୀ ଓ ତାଙ୍କ ଗୋଷ୍ଠୀର ମନ୍ତ୍ରୀମାନେ ବିଶେଷଭାବରେ ଅସନ୍ତୁଷ୍ଟ ହୋଇଥିଲେ । ସଚିବାଳୟର ପରିଚାଳନା ଓ କାର୍ଯ୍ୟର ନିୟମାବଳୀ ସେମାନେ ପରୀକ୍ଷା କରି ଦେଖିଥିଲେ । ବିଭାଗୀୟ ମନ୍ତ୍ରୀଙ୍କର ଆଦେଶ ଶିଳ୍ପ ଉନ୍ନୟନ କର୍ପୋରେସନର ମ୍ୟାନେଜିଂ ଡାଇରେକ୍ଟରଙ୍କ ନିଯୁକ୍ତି ସମ୍ବନ୍ଧରେ ଯଥେଷ୍ଟ ବୋଲି ସେଥିରୁ ସେମାନେ ଜାଣିଥିଲେ । ସଚିବାଳୟ କାର୍ଯ୍ୟ ସମ୍ବନ୍ଧୀୟ ନିୟମାବଳୀ ପରିବର୍ତ୍ତନ କରି ମୋର ଆଦେଶକୁ ରଦ୍ଦ କରିବାପାଇଁ ମୁଖ୍ୟମନ୍ତ୍ରୀଙ୍କର ଅନ୍ଦରମହଲ ଲୋକମାନେ ଲାଗିଯାଇଥିଲେ । ମାତ୍ର ଅଳ୍ପଦିନ ମଧ୍ୟରେ ନନ୍ଦିନୀ ଦେବୀଙ୍କର ସରକାର ଭାଙ୍ଗିଯାଇଥିଲା । କିନ୍ତୁ ତା'ପରେ ଶ୍ରୀ ଦାସମହାପାତ୍ର ନନ୍ଦିନୀ ଦେବୀଙ୍କ ଅନୁରାଗ ହାସଲ କରି ରାଜ୍ୟପାଳ ଶ୍ରୀ ଜଭିଙ୍କ ସାହାଯ୍ୟରେ ଶିଳ୍ପ ଉନ୍ନୟନ କର୍ପୋରେସନର ମ୍ୟାନେଜିଂ ଡାଇରେକ୍ଟରରୂପେ ରହିଯାଇଥିଲେ ।

# କଳଙ୍କିତ କେନ୍ଦୁପତ୍ର ଦୁର୍ନୀତିର ଶେଷପର୍ବ : ଜାତୀୟକରଣ

ଓଡ଼ିଶା ରାଜନୀତିରେ କେନ୍ଦୁପତ୍ର ବ୍ୟବସାୟର ପ୍ରଭାବ ବଡ଼ ବିଚିତ୍ର । ବିଭିନ୍ନ ସରକାର ଗଠନରୁ ଆରମ୍ଭକରି ତା'ର ଉତ୍‌ଥାନ ଓ ପତନ ପର୍ଯ୍ୟନ୍ତ ବହୁ କ୍ଷେତ୍ରରେ କେନ୍ଦୁପତ୍ର ବ୍ୟବସାୟର ପ୍ରଭାବ ଅନୁଭୂତ ହେଉଥିଲା । କେନ୍ଦୁପତ୍ର ପ୍ରସଙ୍ଗ ଏଥିପୂର୍ବରୁ ମଧ ଆଲୋଚନା କରିଛି । ଓଡ଼ିଶାର ପ୍ରଚୁର ପ୍ରାକୃତିକ ବନ୍ୟସମ୍ପଦ ମଧ୍ୟରୁ କେନ୍ଦୁପତ୍ର ଗୋଟିଏ ବିଶିଷ୍ଟ ସ୍ଥାନ ଅଧିକାର କରିଅଛି । ବିଡ଼ି ତିଆରିପାଇଁ କେନ୍ଦୁପତ୍ରର ଚାହିଦା ଖୁବ୍ ବେଶି । ଯେଉଁ ପ୍ରକାର କେନ୍ଦୁଗଛରୁ ପତ୍ର ସଂଗ୍ରହ କରାଯାଏ, ତାହା ଓଡ଼ିଶାର ପଶ୍ଚିମାଞ୍ଚଳରେ ସରକାରୀ ଓ ବ୍ୟକ୍ତିଗତ ମାଲିକାନାରେ ଥିବା ଜଙ୍ଗଲମାନଙ୍କରେ ବହୁଳଭାବରେ ଉଠେ । ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳ ଜିଲ୍ଲାର ଅନେକ ଲୋକଙ୍କର ଗଛରୁ କେନ୍ଦୁପତ୍ର ସଂଗ୍ରହ ସମ୍ବନ୍ଧରେ କିମ୍ଭୂତକିମାକାର ଧାରଣା ଥାଏ । ସେମାନଙ୍କର ଧାରଣା ଯେ ଏହି ପତ୍ର ଆମ୍ବ ପଣସ ଭଳି ବଡ଼ ବଡ଼ କେନ୍ଦୁଗଛରୁ ତୋଳାଯାଏ ଏବଂ ପତ୍ର ତୋଳିବାକୁ ହେଲେ ଗଛରେ ଚଢ଼ିବା ବା ସିଡ଼ି ଲଗାଇବାକୁ ପଡ଼େ । ଉପକୂଳ ଅଞ୍ଚଳରେ ଯେଉଁ କେନ୍ଦୁଗଛ ଫଳ ହୁଏ, ତାହା ବଡ଼ ଧରଣର ଗଛ । ସେହିପରି ବଡ଼ ବଡ଼ ଗଛରୁ କେନ୍ଦୁପତ୍ର ତୋଳାହୁଏ ବୋଲି ମନ୍ତ୍ରୀ ହେବା ପର୍ଯ୍ୟନ୍ତ ମୋର ଭୁଲ୍ ଧାରଣା ଥିଲା । ପରେ ଦେଖିଲି କେନ୍ଦୁପତ୍ର ତୋଳାଯାଉଥିବା ଗଛ ଛୋଟ ଛୋଟ ବୁଦା ଆକାରର, ଚ଼କେ ଛିଡ଼ାହୋଇ ସେଥିରୁ ପତ୍ର ତୋଳାଯାଏ । ଭାରତବର୍ଷରେ ଦୁଇଟି ରାଜ୍ୟ ଓଡ଼ିଶା ଓ ମଧ୍ୟପ୍ରଦେଶରେ କେନ୍ଦୁପତ୍ର ପ୍ରଚୁର ପରିମାଣରେ ଉତ୍ପନ୍ନ ହୁଏ । ମଧ୍ୟପ୍ରଦେଶରେ ହାରାହାରି ବର୍ଷକୁ ପ୍ରାୟ ଆଠ ଲକ୍ଷ କୁଇଣ୍ଟାଲ୍ କେନ୍ଦୁପତ୍ର ଉତ୍ପନ୍ନ ହୁଏ । ବର୍ଷକୁ ଓଡ଼ିଶାରୁ ଉତ୍ପନ୍ନ ହୁଏ ପାୟ ଚାରି ଲକ୍ଷ କୁଇଣ୍ଟାଲ୍ । ଏହି ଦୁଇ ରାଜ୍ୟ ଛଡ଼ା ବିହାର, ରାଜସ୍ଥାନ, ଆନ୍ଧ୍ରପ୍ରଦେଶ ଓ ପଶ୍ଚିମବଙ୍ଗଳା ପ୍ରଭୃତି ରାଜ୍ୟମାନଙ୍କରେ କିଛି କିଛି କେନ୍ଦୁପତ୍ର ଉତ୍ପନ୍ନ ହୁଏ; ମାତ୍ର ସେସବୁ ରାଜ୍ୟରୁ ସର୍ବମୋଟ ଉତ୍ପାଦନ ଛଅ ଲକ୍ଷ କୁଇଣ୍ଟାଲ୍ ହେଉଥିଲା । ଆଉ ଗୋଟିଏ ବିଶେଷ କଥା ହେଉଛି ଯେ ଓଡ଼ିଶାରୁ ଯେଉଁ କେନ୍ଦୁପତ୍ର ଉତ୍ପନ୍ନ ହୁଏ ତାହା ସବୁଠାରୁ ଉତ୍କୃଷ୍ଟ । ସେଥିପାଇଁ ଓଡ଼ିଶା କେନ୍ଦୁପତ୍ରର ଚାହିଦା ବଙ୍ଗଳାଦେଶ ଓ ଶ୍ରୀଲଙ୍କା ପ୍ରଭୃତି ଦେଶମାନଙ୍କରେ ଖୁବ୍ ବେଶି । ସେସବୁ ଦେଶ ଓଡ଼ିଶାରୁ ପ୍ରଚୁର ପରିମାଣରେ କେନ୍ଦୁପତ୍ର ଆମଦାନି କରନ୍ତି ଏବଂ ସେଥିରୁ ଆମ ଦେଶ କିଛି ବୈଦେଶିକ ମୁଦ୍ରା ଅର୍ଜନ କରେ ।

ଓଡ଼ିଶାରେ ପ୍ରଥମେ ଗୁଜୁରାଟୀ ବ୍ୟବସାୟୀମାନେ କେନ୍ଦୁପତ୍ର ବ୍ୟବସାୟ ଏକାବେଳକେ ଏକଚାଟିଆ କରି ରଖିଥିଲେ । ପଶ୍ଚିମ ଓଡ଼ିଶାରେ ପୂର୍ବତନ ଗଡ଼ଜାତ ଅଞ୍ଚଳରେ ଅଧିକ ପରିମାଣରେ କେନ୍ଦୁପତ୍ର ଉତ୍ପନ୍ନ ହୁଏ । ଗଡ଼ଜାତଗୁଡ଼ିକ ପ୍ରଦେଶ ସହିତ ମିଶ୍ରଣ ପୂର୍ବରୁ ଦେଶୀୟ ରାଜ୍ୟଗୁଡ଼ିକର ରାଜାମାନଙ୍କର ଅନୁମତିକ୍ରମେ ଗୁଜୁରାଟୀ ବ୍ୟବସାୟୀମାନେ କେନ୍ଦୁପତ୍ର ବ୍ୟବସାୟ କରୁଥିଲେ । ରାଜାମାନଙ୍କୁ ସନ୍ତୁଷ୍ଟ କରି ସେମାନେ ବ୍ୟବସାୟ କରୁଥିଲେ; ତେଣୁ ରାଜକୋଷକୁ ବିଶେଷ କିଛି ଅର୍ଥ ଯାଉନଥିଲା । ସ୍ୱାଧୀନତା ପରେ ଦେଶୀୟ ରାଜ୍ୟଗୁଡ଼ିକ ରାଜ୍ୟ ସହିତ ମିଶିଯିବା ପରେ ପ୍ରଥମ ଅବସ୍ଥାରେ କେନ୍ଦୁପତ୍ର ସଂଗ୍ରହପାଇଁ ବିଭିନ୍ନ ଅଞ୍ଚଳ ବ୍ୟବସାୟୀମାନଙ୍କୁ ପଟ୍ଟା ଦିଆଯାଉଥିଲା ଏବଂ ସରକାର ସେ ବାବଦରେ କିଛି ସଲାମି ପାଉଥିଲେ । ଏହି ଲିଜ୍ ପ୍ରଥାନୁସାରେ ସେତେବେଳେ ସରକାର ପ୍ରାୟ ତିରିଶ ଲକ୍ଷ ଟଙ୍କାର ରାଜସ୍ୱ ପାଉଥିଲେ । ଶ୍ରୀ ନବକୃଷ୍ଣ ଚୌଧୁରୀ ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ଥିବା ସମୟରେ କେନ୍ଦୁପତ୍ର ସଂଗ୍ରହ ପାଇଁ ଲିଜ୍ ପ୍ରଥା ପରିବର୍ତ୍ତନ କରାଯାଇଥିଲା । ସମ୍ବଲପୁରର ଶ୍ରୀ ବାବୁଭାଇ ପଟେଲ୍ ନାମକ ଜଣେ ଜାତୀୟବାଦୀ ଗୁଜୁରାଟୀ ବ୍ୟବସାୟୀ ନବବାବୁଙ୍କର ବନ୍ଧୁ ଥିଲେ । କେନ୍ଦୁପତ୍ର ବ୍ୟବସାୟରୁ କିପରି ବ୍ୟବସାୟୀମାନେ ପ୍ରଚୁର ଲାଭ କରୁଥିଲେ ଏବଂ ତାହା ତୁଳନାରେ ସରକାର କିପରି ଅତି କମ୍ ରାଜସ୍ୱ ପାଉଥିଲେ, ସେସବୁ ଗୁମର ନବବାବୁ ଶ୍ରୀ ବାବୁଭାଇ ପଟେଲଙ୍କଠାରୁ ଜାଣିଥିଲେ । ତେଣୁ ଶ୍ରୀ ଚୌଧୁରୀ କେନ୍ଦୁପତ୍ର ଇଉନିଟ୍‌ଗୁଡ଼ିକ ଲିଜ୍ ଦେବା ପ୍ରଥାକୁ

ପରିବର୍ତ୍ତନ କରି ବର୍ଷକିଆ ନିଲାମ ଡାକିବାପାଇଁ ନିଷ୍ପତ୍ତି କରିଥିଲେ । ଏ ପ୍ରକାର ନିଲାମଦ୍ୱାରା ପ୍ରଥମ ବର୍ଷ ନବେ ଲକ୍ଷ ଟଙ୍କା ରାଜସ୍ୱ ମିଳିଥିଲା । ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରୁ ୧୯୭୩ ମସିହା ପର୍ଯ୍ୟନ୍ତ ନିଲାମ ସୂତ୍ରରେ ସରକାର ରାଜ୍ୟ ଜଙ୍ଗଲ ବିଭାଗଦ୍ୱାରା ଏହିଭଳି କେନ୍ଦୁପତ୍ର କାରବାର କରୁଥିଲେ । ଏହାକୁ ହିଁ କୁହାଯାଉଥିଲା ସରକାରୀ ସୂତ୍ରରେ କେନ୍ଦୁପତ୍ର ବ୍ୟବସାୟ ପରିଚାଳନା (State Trading in Kendu Leaves) । ରାଜ୍ୟରେ କେନ୍ଦୁପତ୍ର ଉତ୍ପନ୍ନ ହେଉଥିବା ଅଞ୍ଚଳକୁ କେତେଗୁଡ଼ିଏ ଭାଗ ବା ଇଉନିଟ୍‌ରେ ବିଭକ୍ତ କରି ସେଗୁଡ଼ିକ ବର୍ଷକୁ ବର୍ଷ ନିଲାମ ଦିଆଯାଉଥିଲା । ତଥାପି ନାନା କାରସାଦି କରି କେନ୍ଦୁପତ୍ର ବ୍ୟବସାୟୀମାନଙ୍କର ଆୟ ବଢ଼ାଇବା ଦିଗରେ ସାହାଯ୍ୟ କରାଯାଉଥିଲା । ସରକାରଙ୍କୁ ଠକାଇ ବ୍ୟବସାୟୀମାନେ ଅଧିକ ଲାଭ କଲେ ସେଥିରୁ କିଛି ଅଂଶ ରାଜନୈତିକ ଦଳ ବା ବ୍ୟକ୍ତିବିଶେଷଙ୍କୁ ଦେଇ ସେମାନଙ୍କୁ ଦୁର୍ନୀତିଗ୍ରସ୍ତ କରାଉଥିଲେ । କେନ୍ଦୁପତ୍ର ଠିକାଦାରମାନେ ଥରେ ନିଲାମ ଧରି ଯେଉଁ ଲିଜ୍ ନେଉଥାଆନ୍ତି, ସେହି ଲିଜ୍‌ର ମିଆଦ ବଢ଼ାଇବାକୁ ଉଦ୍ୟମ କରନ୍ତି । ସେଥିପାଇଁ ସେମାନେ ଦୁର୍ନୀତିର ଆଶ୍ରୟ ନିଅନ୍ତି । କେଉଁଠି ଉତ୍କୋଚ ଦେଇ, କେଉଁଠି ଚାନ୍ଦା ଦେଇ ବା କେଉଁଠି ବ୍ୟକ୍ତିବିଶେଷଙ୍କୁ ନାନାଭାବରେ ସନ୍ତୁଷ୍ଟ କରି ସେମାନେ ଲିଜ୍ ସମୟ ବଢ଼ାଇନେଉଥିଲେ । ସେହିପରି ପ୍ରତ୍ୟେକ କେନ୍ଦୁପତ୍ର ଏଜେଣ୍ଟ ତା'ର ଲିଜ୍ ନେଉଥିବା ଇଉନିଟ୍‌ରୁ ବାର୍ଷିକ କେତେ ପତ୍ର ସଂଗ୍ରହ କରାଯିବ ତାହା ଲିଜ୍‌ଚୁକ୍ତିରେ ଲେଖାହେଉଥିଲା । ସେଥିରୁ କମ୍ କେନ୍ଦୁପତ୍ର ଉତ୍ପାଦନ କଲେ ବ୍ୟବସାୟୀମାନଙ୍କୁ ଜୋରିମାନା ଦେବାକୁ ପଡୁଥିଲା । ସେ ଜୋରିମାନାରୁ ଛାଡ଼ ପାଇବାପାଇଁ ସେମାନେ ଉଦ୍ୟମ କରୁଥିଲେ । ଛାଡ଼ କରିବା କ୍ଷମତା ମନ୍ତ୍ରୀଙ୍କ ହାତରେ ଥିଲା । ପ୍ରଚୁର ଅର୍ଥ ବିନିମୟରେ ଏହି କାର୍ଯ୍ୟ ହାସଲ ହୋଇପାରୁଥିଲା । ସର୍ବୋଚ୍ଚ ମୂଲ୍ୟ ଦେବାକୁ ପ୍ରସ୍ତାବ କରିଥିବା ବା ଟେଣ୍ଡର ଦେଇଥିବା ବ୍ୟକ୍ତିକୁ ଲିଜ୍ ମିଳିବାର କଥା; ମାତ୍ର ସର୍ବୋଚ୍ଚ ଟେଣ୍ଡରକୁ ଗ୍ରହଣ କରିବାକୁ ସରକାର ବାଧ୍ୟନଥିଲେ । ତେଣୁ କ୍ଷମତାସୀନ ଦଳ ବା ବ୍ୟକ୍ତିଙ୍କୁ ସନ୍ତୁଷ୍ଟ କରି ନରଖିଲେ ସର୍ବୋଚ୍ଚ ଟେଣ୍ଡର ଦେଇ ମଧ୍ୟ ଲିଜ୍ ମିଳିବ କି ନାହିଁ ସନ୍ଦେହ ରହୁଥିଲା । ଥରେ ଜଣେ ବ୍ୟକ୍ତି ଓଡ଼ିଶାରେ ଯେତେ କେନ୍ଦୁପତ୍ର ଇଉନିଟ୍ ଥିଲା ସେସବୁପାଇଁ ପାଞ୍ଚ କୋଟି ଟଙ୍କାର ଟେଣ୍ଡର ଡାକିଦେଇଥିଲେ । ତାଙ୍କର ଟେଣ୍ଡର ସର୍ବୋଚ୍ଚ ହେଲେ ମଧ୍ୟ ତାଙ୍କୁ ସବୁ ଇଉନିଟ୍‌ଗୁଡ଼ିକ ଲିଜ୍ ଦିଆଯାଇନଥିଲା । ଏହିସବୁ କ୍ଷେତ୍ରରେ ସୁବିଧାପାଇବାପାଇଁ କେନ୍ଦୁପତ୍ର ବ୍ୟବସାୟୀମାନେ କ୍ଷମତାରେ ଥିବା ରାଜନୈତିକ ଦଳ ଓ ସଂପୃକ୍ତ ବ୍ୟକ୍ତିମାନଙ୍କୁ ପ୍ରଚୁର ଅର୍ଥ ଦେବାକୁ କୁଣ୍ଠିତ ହେଉନଥିଲେ । କେନ୍ଦୁପତ୍ର ବ୍ୟବସାୟୀମାନେ ଅନେକ ସମୟରେ ବ୍ୟବସାୟରେ କ୍ଷତି ହେଲା ବୋଲି ଆଳ ଦେଖାଇ ରିହାତି ପାଇବାପାଇଁ ଆବେଦନ କରୁଥିଲେ । ଏହି ରିହାତି ପାଇବା ଆଶାରେ ସେମାନେ ନାନାପ୍ରକାର ଦୁର୍ନୀତିର ଆଶ୍ରୟ ନେଉଥିଲେ । ଏ ପ୍ରକାର ରିହାତି ପୁଣି ସମୂହଭାବରେ ସବୁ କେନ୍ଦୁପତ୍ର ବ୍ୟବସାୟୀମାନଙ୍କୁ ମିଳୁଥିଲା । ତେଣୁ ରିହାତି ପାଇବାପାଇଁ ସେମାନେ ସମୂହଭାବରେ ଅର୍ଥ ସଂଗ୍ରହ କରି ଯଥାସ୍ଥାନରେ ତାହା ନେଇ ଦେଉଥିଲେ ।

ଜନନ୍ଦରବାରରେ ରାଜସାକ୍ଷୀ ପରି ଶ୍ରୀ ନବକୃଷ୍ଣ ଚୌଧୁରୀ ଜଣାଇଦେଇଥିଲେ ଯେ ତାଙ୍କ ମନ୍ତ୍ରିମଣ୍ଡଳ ସମୟରେ କେନ୍ଦୁପତ୍ର ବ୍ୟବସାୟୀମାନେ କଂଗ୍ରେସ ପାଣ୍ଠିକୁ ବାରଲକ୍ଷ ଟଙ୍କା ଦେଇଥିଲେ । ସେ ସମୟରେ କଂଗ୍ରେସ ବିରୁଦ୍ଧରେ ଥିବା ଗଣତନ୍ତ୍ର ଦଳକୁ ମଧ୍ୟ କେନ୍ଦୁପତ୍ର ବ୍ୟବସାୟୀମାନେ ପ୍ରଚୁର ଅର୍ଥ ଦେଇଥିବାର ଖବର ମିଳିଥିଲା । କଂଗ୍ରେସ ଅପେକ୍ଷା ଗଣତନ୍ତ୍ର ପରିଷଦ ଓ ପରେ ସ୍ୱତନ୍ତ୍ରଦଳ କେନ୍ଦୁପତ୍ର ବ୍ୟବସାୟୀମାନଙ୍କଠାରୁ ବେଶି ଟଙ୍କା ଉଠାଇପାରୁଥିଲେ । ଗଣତନ୍ତ୍ର ଦଳରେ ରାଜାମହାରାଜାମାନେ ଥିଲେ । ସେମାନଙ୍କ ସହିତ ରାଜୁଡ଼ା ଶାସନ ଅମଳରୁ କେନ୍ଦୁପତ୍ର ବ୍ୟବସାୟୀମାନଙ୍କର ସମ୍ପର୍କ ଥିଲା; ତେଣୁ କେନ୍ଦୁପତ୍ର ବ୍ୟବସାୟୀମାନଙ୍କଠାରୁ ମୋଟା ଟଙ୍କା ଆଦାୟ କରିବା ଦିଗରେ ଗଣତନ୍ତ୍ର ଦଳର ବିଶେଷ ସୁବିଧା ଥିଲା । କେନ୍ଦୁପତ୍ର ଦୁର୍ନୀତି ୧୯୫୯ ମସିହାର କଂଗ୍ରେସ-ଗଣତନ୍ତ୍ର ମିଳିତ ମନ୍ତ୍ରିମଣ୍ଡଳବେଳେ ବିଶେଷଭାବରେ ବୃଦ୍ଧିପାଇଥିଲା । ସେହି ସମୟରେ

କେନ୍ଦୁପତ୍ର ବ୍ୟବସାୟୀମାନଙ୍କୁ ବହୁତ ରିହାତି ଦିଆଯାଉଥିଲା । ସେହି ମନ୍ତ୍ରିମଣ୍ଡଳ ସମୟରେ କେନ୍ଦୁପତ୍ର ବ୍ୟବସାୟକୁ ବର୍ଷକପାଇଁ 'Free Trade' ବା ଅବାଧ ବ୍ୟବସାୟ କରାଯାଇଥିଲା , କେନ୍ଦୁପତ୍ର ବ୍ୟବସାୟ ଉପରେ କୌଣସି କଟକଣା ରଖାଯାଇନଥିଲା । ଏହାଦ୍ୱାରା କେନ୍ଦୁପତ୍ର ବ୍ୟବସାୟୀମାନେ ପ୍ରଚୁର ଲାଭ କରିଥିଲେ ଏବଂ କ୍ଷମତାରେ ଥିବା ଲୋକଙ୍କୁ ପ୍ରଚୁର ଅର୍ଥ ଦେଉଥିଲେ । ଶ୍ରୀ ଶୁକଦେବ ନନ୍ଦଙ୍କ ପ୍ରଣୀତ 'Coalitional Politics in Orissa' ପୁସ୍ତକରୁ ଗୋଟିଏ ଅଂଶ ଏଠାରେ ଉଦ୍ଧାର କଲେ କେନ୍ଦୁପତ୍ର କାରବାରରେ ଦୁର୍ନୀତି ବିଷୟରେ କିଛି ଧାରଣା ମିଳିବ : "Political instability in Orissa has been caused to a considerable extent probably by the lack of honesty among the political leaders. The honesty varies from ideological honesty to financial honesty. Ideological dishonesty, takes the shape of floor crossing and iconoclasm. Lack of financial honesty or integrity has been almost a common cause of all premature dissolutions of government, particularly coalition governments. The Kendu leaves trade in Orissa has contributed the maximum towards such collapse of governments and almost all governments that were dissolved prematurely were victims of Kendu-leaves scandal. These Kendu leaves traders in order to gain concessions from the government tried to capture the civil servants and politicians belonging both to the government and the opposition parties by offering illegal gratification. Sometimes, as Mr. N.K. Chowdhury alleged, these traders regulated and controlled the composition of particular Cabinets. It is also true that Mr. N.K. Chowdhury's government became a victim of Kendu leaves politics. Mahtab's reputation got tarnished because of this business. The coalition government of Mr. Singh Deo was apparently a victim of Kendu leaves traders in so far as the junior partner of the coalition, the Jana Congress quit the coalition on the alleged corruption of the Swatantra Party in Kendu leaves trade. The coalition government of Mr. Biswanath Das received a serious jolt when the Utkal Congress leaders led by Biju Pattanaik (Particularly the Utkal Congress Ministers) insisted on a revision of the Kendu leaves policy of the Swatantra Party." (Page 175)

ଶ୍ରୀ ବିଶ୍ୱନାଥ ଦାସଙ୍କର ମିଳିତ ସାମ୍ମୁଖ୍ୟ ମନ୍ତ୍ରିମଣ୍ଡଳ ସମୟରେ ସ୍ୱତନ୍ତ୍ର ଦଳ ସହିତ କଂଗ୍ରେସର ଏହି କେନ୍ଦୁପତ୍ର ବ୍ୟାପାର ନେଇ ମନୋମାଳିନ୍ୟ ହୋଇଥିଲା । ମନ୍ତ୍ରିମଣ୍ଡଳ ଗଠିତ ହେବା ପରେ ମିଳିତ ସାମ୍ମୁଖ୍ୟ ଦଳ କେନ୍ଦୁପତ୍ର ବ୍ୟବସାୟକୁ ଜାତୀୟକରଣ କରାଯିବ ବୋଲି ନିଷ୍ପତ୍ତି କରିଥିଲା । ସ୍ୱତନ୍ତ୍ର ଦଳର ମନ୍ତ୍ରୀଙ୍କ ପାଖରେ ଜଙ୍ଗଲ ବିଭାଗ ଥିଲା । ସେ ଦିଗରେ ଉତ୍ସାହ ନଦେଖାଇ ଠିକାଗୁଡ଼ିକର ମିଆଦ କିପରି ବଢ଼ିବ ସେ ଦିଗରେ ଉଦ୍ୟମ ହେଉଥିବା କଥା ଜଣାପଡୁଥିଲା । ମୁଁ ତା'ର ପ୍ରତିବାଦ କରିଥିଲି । ଏ ସମ୍ବନ୍ଧରେ ବିଶ୍ୱନାଥବାବୁଙ୍କ ସମ୍ମୁଖରେ ମୋର ସିଂହଦେଓଙ୍କ ମଧ୍ୟରେ ବାଦାନୁବାଦ ହୋଇଥିଲା । ଏହି ସମୟରେ ବିଜୁବାବୁ ମଧ୍ୟ ଆସି ଆଲୋଚନାରେ ଭାଗନେଇଥିଲେ । ଶେଷରେ ପରବର୍ତ୍ତୀ ବର୍ଷରେ କେନ୍ଦୁପତ୍ର ବ୍ୟବସାୟ ଜାତୀୟକରଣ କରାଯିବ ବୋଲି ନିଷ୍ପତ୍ତି ନିଆଯାଇଥିଲା । ସେଥିପାଇଁ କେନ୍ଦୁପତ୍ର କାରବାରରେ ଜାତୀୟକରଣ କରାଯିବା କଥା ରାଜ୍ୟପାଳଙ୍କ ଭାଷଣରେ ଉଲ୍ଲେଖ କରାଯାଇଥିଲା । ଉତ୍କଳ କଂଗ୍ରେସ କେନ୍ଦୁପତ୍ର ବ୍ୟବସାୟକୁ ପ୍ରଥମେ ଜାତୀୟକରଣ କରିବ ବୋଲି

ଘୋଷଣା କରି ପରେ ପଛଘୁଞ୍ଚା ଦେଉଛି ବୋଲି ପ୍ରଜା-ସୋସାଲିଷ୍ଟ ନେତା ଶ୍ରୀ ବାଙ୍କବିହାରୀ ଦାସ ବିଧାନସଭାରେ ୧୯୭୨ ମସିହା ବଜେଟ୍ ଅଧିବେଶନବେଳେ ଅତି କଟୁ ସମାଲୋଚନା କରିଥିଲେ । ବାଙ୍କବାବୁ ଓ ତାଙ୍କ ଦଳର ସଭ୍ୟମାନେ କେନ୍ଦୁପତ୍ର ବ୍ୟବସାୟକୁ ଜାତୀୟକରଣ କରାଯାଉ ବୋଲି ବିଧାନସଭାରେ ଦାବି କରୁଥିଲେ । ସେମାନେ ବିଧାନସଭାରେ ହିସାବ କରି ଦେଖାଇ ଦେଇଥିଲେ ଯେ ଜାତୀୟକରଣ ହେଲେ ପ୍ରଥମ ବର୍ଷରେ ପାଞ୍ଚ କୋଟି ଟଙ୍କା ଲାଭହେବ ।

ଉତ୍କଳ କଂଗ୍ରେସର ଶାସକ କଂଗ୍ରେସ ସହ ମିଶ୍ରଣ ଘଟି ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ମନ୍ତ୍ରିମଣ୍ଡଳ ଗଠିତ ହେବା ପରେ କେନ୍ଦୁପତ୍ର ବ୍ୟବସାୟକୁ ସମ୍ପୂର୍ଣ୍ଣ ଭାବରେ ଜାତୀୟକରଣ କରାଯିବ ବୋଲି ଆଉ ଥରେ ଘୋଷଣା କରାଯାଇଥିଲା । କେନ୍ଦୁପତ୍ର କାରବାର ସମ୍ବନ୍ଧରେ ସରକାରୀ ନୀତି ଘୋଷିତ ହେବା ପରେ ବିଭାଗୀୟ ଅଫିସରମାନେ ସେ ଦିଗରେ କାର୍ଯ୍ୟାନୁଷ୍ଠାନ କରିବା ଉଦ୍ଦେଶ୍ୟରେ ଅଗ୍ରସର ହୋଇଥିଲେ । Department of State Public Corporations and Undertakingର ମୁଁ ମନ୍ତ୍ରୀ ଥାଏ । ଏହି ବିଭାଗ ରାଜ୍ୟର ସବୁ ସରକାରୀ କର୍ପୋରେସନକୁ ନିୟନ୍ତ୍ରଣ କରୁଥାଏ । ଶ୍ରୀ ବିଶ୍ୱନାଥ ଦାସଙ୍କର ମିଳିତ ସାମ୍ମୁଖ୍ୟ ମନ୍ତ୍ରିମଣ୍ଡଳ ସମୟରୁ କେନ୍ଦୁପତ୍ର ବ୍ୟବସାୟକୁ ଜାତୀୟକରଣ କରିବା ପ୍ରସ୍ତାବକୁ ତ୍ୱରାନ୍ୱିତ କରିବାର ସୁବିଧା ମୋର ଥିଲା । ମୋର ନିଷ୍ପତ୍ତି ଅନୁସାରେ ଏହି ବିଭାଗ କେନ୍ଦୁପତ୍ର କାରବାର କିପରି ଜାତୀୟକରଣ କରାଯିବ, ସେ ବିଷୟରେ ଗୋଟିଏ ଯୋଜନା ପ୍ରସ୍ତୁତ କରିବାପାଇଁ ଜଙ୍ଗଲ କର୍ପୋରେସନକୁ ନିର୍ଦ୍ଦେଶ ଦେଇଥିଲେ । ଜଙ୍ଗଲ ବିଭାଗ ମନ୍ତ୍ରୀ ଥିଲେ ଶ୍ରୀ ଗଙ୍ଗାଧର ପ୍ରଧାନ । କେନ୍ଦୁପତ୍ର ବ୍ୟବସାୟ କିପରି ଶୀଘ୍ର ଜାତୀୟକରଣ କରାଯିବ ସେ ଦିଗରେ କାର୍ଯ୍ୟାନୁଷ୍ଠାନ କରିବାପାଇଁ ମୁଁ ଜଙ୍ଗଲ ବିଭାଗ ମନ୍ତ୍ରୀଙ୍କୁ ମଧ୍ୟ ଅନୁରୋଧ କରିଥିଲି । ଜଙ୍ଗଲ ବିଭାଗ ପକ୍ଷରୁ ମଧ୍ୟ ଏ ବିଷୟଟି ମନ୍ତ୍ରିମଣ୍ଡଳର ନିର୍ଦ୍ଦେଶପାଇଁ ଉପସ୍ଥାପିତ କରାଯାଇଥିଲା । ଜାତୀୟକରଣପାଇଁ ଯୋଜନା ପ୍ରସ୍ତୁତ କରି ପରବର୍ତ୍ତୀ କ୍ୟାବିନେଟ୍ ବୈଠକକୁ ମେମୋରେଣ୍ଡମ ଅଣାଯିବା କଥା ସ୍ଥିର ହୋଇଥିଲା । କିଛିଦିନ ପରେ ଶୁଣିବାକୁ ପାଇଲି ଯେ ନନ୍ଦିନୀ ଦେବୀ ଓ ତାଙ୍କର ଅନ୍ଦରମହଲର ଗୋଷ୍ଠୀ କେନ୍ଦୁପତ୍ର କାରବାର ଜାତୀୟକରଣ ବିଷୟରେ ବିଶେଷ ଆଗ୍ରହୀ ହେଉନାହାନ୍ତି । ଜଙ୍ଗଲ ବିଭାଗ ମନ୍ତ୍ରୀ ମଧ୍ୟ ମୋତେ ସେହି ପ୍ରକାର ଧାରଣା ଦେଇଥିଲେ । ୧୯୭୨ ମସିହା ଅକ୍ଟୋବର ମାସ ଦଶ ତାରିଖରେ ପ୍ରଜାତନ୍ତ୍ର ଖବରକାଗଜରେ ନିମ୍ନ ସମ୍ବାଦ ପ୍ରକାଶ ପାଇଥିଲା :

''ଭୁବନେଶ୍ୱର, ତା ୯।୧୦ — ଓଡ଼ିଶାରେ କେନ୍ଦୁପତ୍ର କାରବାରର ସମ୍ପୂର୍ଣ୍ଣ ଜାତୀୟକରଣ ବ୍ୟବସ୍ଥାକୁ ପୁଣି ବିଳମ୍ବିତ କରିବାପାଇଁ ଭିତରେ ଭିତରେ ନାନା ଉଦ୍ୟମ ଆରମ୍ଭ ହୋଇଗଲାଣି ଏବଂ ବ୍ୟବସାୟୀ ଗୋଷ୍ଠୀ ଏ ବାବଦରେ ବିପୁଳ ଅର୍ଥ ବ୍ୟୟ କରୁଥିବାର ସମ୍ବାଦ ମିଳିଛି । କେନ୍ଦୁପତ୍ର କାରବାରକୁ ସମ୍ପୂର୍ଣ୍ଣଭାବେ ଜାତୀୟକରଣ କରିବାପାଇଁ ମନ୍ତ୍ରିମଣ୍ଡଳ ବୈଠକରେ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା ଏବଂ ଏଥିପାଇଁ ମଧ୍ୟ ଆବଶ୍ୟକୀୟ ଯୋଜନା ଆଦି କରାଯାଇଥିଲା । ପବ୍ଲିକ୍ ଅଣ୍ଡରଟେକିଙ୍ଗ୍ ଓ କର୍ପୋରେସନ୍ ବିଭାଗ ମନ୍ତ୍ରୀ ଶ୍ରୀ ନୀଳମଣି ରାଉତରାୟ ଏ ସମ୍ପର୍କରେ ସାମ୍ବାଦିକ ସମ୍ମିଳନୀରେ କେନ୍ଦୁପତ୍ରର ସମ୍ପୂର୍ଣ୍ଣ ଜାତୀୟକରଣ କରିବାପାଇଁ ସରକାରୀ ନିଷ୍ପତ୍ତି ଘୋଷଣା କରିଥିଲେ ଏବଂ ଏହି ବ୍ୟବସ୍ଥାରେ ଅନ୍ୟୂନ ପାଞ୍ଚ କୋଟି ଟଙ୍କା ବାର୍ଷିକ ଲାଭ ହେବା ସଙ୍ଗେ ସଙ୍ଗେ ଏହା ଏକ ବିରାଟ ନିଯୁକ୍ତି ସମ୍ଭାବନା ସୃଷ୍ଟି କରିବ ବୋଲି ପ୍ରକାଶପାଇଥିଲା । କିନ୍ତୁ ଏବେ ଯାହାସବୁ ସୂଚନା ମିଳିଛି, କେନ୍ଦୁଅଠା କେଉଁଠି କେଉଁଠି ଲାଗିଗଲାଣି । ଆହୁରି ଖବର ମିଳିଛି ଯେ ଓଡ଼ିଶା ବାହାରର ଏକ ମହଲ ମଧ୍ୟ କୁଆଡ଼େ ଏଥିରେ ହଠାତ୍ ଅତ୍ୟଧିକ ଆଗ୍ରହୀ ହୋଇଉଠୁଛନ୍ତି । ମୋଟା ଖର୍ଚ୍ଚ କାରବାର ଆରମ୍ଭ ହୋଇଛି । କୌଣସିମତେ କେନ୍ଦୁପତ୍ର ସମ୍ପୂର୍ଣ୍ଣ ଜାତୀୟକରଣ କରାଇ ନଦେବାପାଇଁ ଭିତରେ ଭିତରେ ଷଡ଼ଯନ୍ତ୍ର ଚାଲିଛି ।''

## କେନ୍ଦୁପତ୍ର କାରବାରରେ ଅର୍ଥମନ୍ତ୍ରୀଙ୍କ ଅନର୍ଥ

କେନ୍ଦୁପତ୍ର ବ୍ୟବସାୟକୁ କିପରି ଜାତୀୟକରଣ କରାନଯିବ ସେ ବିଷୟରେ ମୁଖ୍ୟମନ୍ତ୍ରୀଙ୍କ ବିଶ୍ୱାସୀ ଗୋଷ୍ଠୀରେ ମନ୍ତ୍ରଣା ଚାଲିଲା । ନନ୍ଦିନୀ ଶତପଥୀ ବ୍ୟବସ୍ଥାସଭାର ସଭ୍ୟ ନଥାଇ ମୁଖ୍ୟମନ୍ତ୍ରୀ ହୋଇଥିଲେ । ତେଣୁ ତାଙ୍କୁ ଛ'ମାସ ମଧରେ କୌଣସି ସ୍ଥାନରୁ ନିର୍ବାଚିତ ହୋଇ ବିଧାନସଭାକୁ ଆସିବାକୁ ପଡୁଥାଏ । ନଭେମ୍ବର ମାସକୁ ସେଥିପାଇଁ ଉପନିର୍ବାଚନ ହେବାର ଥାଏ । କେନ୍ଦୁପତ୍ର ସଂକ୍ରାନ୍ତୀୟ ନିଷ୍ପତ୍ତି କୌଣସିମତେ ଉପନିର୍ବାଚନର ସେ ପାଖକୁ ଗଡ଼ାଇଦେଲେ ଭଲ ହେବ ବୋଲି ସେମାନେ ବିଚାରକଲେ । ଶୀଘ୍ର ଜାତୀୟକରଣ ସମ୍ବନ୍ଧରେ ଅର୍ଥ ବିଭାଗ ଆଡୁ କିଛି ଆପତ୍ତି ଉଠିଲେ ନିଷ୍ପତ୍ତି ଗଡ଼ାଇଦିଆଯିବାକୁ ସୁବିଧା ହେବ ବୋଲି ବିଚାର କରାଯାଇଥିଲା । ଅର୍ଥବିଭାଗର ସେତେବେଳେ ମନ୍ତ୍ରୀ ଥିଲେ ବାଙ୍କବିହାରୀ ଦାସ । ଜଣେ ନିଛକ ସମାଜବାଦୀ ବୋଲି ତାଙ୍କର ଖ୍ୟାତି ଥିଲା, ତେଣୁ ତାଙ୍କଆଡୁ କିଛି ଆପତ୍ତି ଆସିଲେ ତାହା ଉଦ୍ଦେଶ୍ୟମୂଳକ ବୋଲି କେହି କହିପାରିବେନାହିଁ । ଜଙ୍ଗଲ କର୍ପୋରେସନ କେନ୍ଦୁପତ୍ର ବ୍ୟବସାୟ କିପରି ଜାତୀୟକରଣ କରାଯିବ ତାହାର ଗୋଟିଏ ଯୋଜନା ପ୍ରସ୍ତୁତ କରି ଷ୍ଟେଟ୍ ପବ୍ଲିକ କର୍ପୋରେସନ୍ ଆଣ୍ଡ ଅଣ୍ଡରଟେକିଂ ବିଭାଗ ଅର୍ଥ ବିଭାଗର ମତାମତପାଇଁ ପଠାଇଥିଲା । ଅର୍ଥମନ୍ତ୍ରୀ ଶ୍ରୀ ବାଙ୍କବିହାରୀ ଦାସ କେନ୍ଦୁପତ୍ରର ସମୂଳେ ଜାତୀୟକରଣ ପ୍ରସ୍ତାବର ବିରୋଧକରି ତା ୧୧।୧୦।୭୨ ତାରିଖରେ ଅର୍ଥ ବିଭାଗର No.7F 59/72 (PT) ଫାଇଲ୍‌ରେ ମତାମତ ଦେଇଥିଲେ, "I have grave doubts whether the Orissa Forest Corporation will be able to handle this trade, which covers practically the entire state and is seasonal and delicate. The performance of this Corporation until now has been frustrating, though they were entrusted with an easiest job. They have not even done well with regard to the few units of Kendu leaf that was given to them. Even royalty to the Forest Department has not been paid by this Corporation on various accounts. It is dangerous to entrust such a heavy responsibility to such a weak organisation, when a sizeable amount of State revenue is involved. Without improvement of the existing organisation of this public undertaking, entrusting more work will mean taking a risk, which is not worth taking. The Forest Department's comment on the Memorandum has not been answered. It would have been better, if it would have allayed the misgivings about the past activities of this Corporation.

"Kendu leaf trade has become a political issue because predecessor governments involved themselves in corruption by manipulating this trade to their own interest. That is why forgetting the general policy regarding nationalisation, attention was diverted to the question of nationalisation of Kendu leaf trade. In nationalisation programme a Government that cannot give priority to industries of mass consumption goods, that cannot nationalise trade of food stuffs, and other essential goods, should not think of nationalisation of non-essential trade, specially when all the public undertakings are in bad shape. Over-burdening them without institutional overhauling will mean careless and irresponsible expenditure of poorman's tax. I can predict that if the organisation of Orissa Forest

Corporation and other Corporations are not radically improved, we will lose this Kendu leaf trade and even will lose the only biggest source of non-tax revenue. I cannot think of a more disastrous policy than this."

ଅକ୍ଟୋବର ନଅ ତାରିଖରେ ସମ୍ବାଦ ପ୍ରକାଶ ପାଇଲା ଯେ କେନ୍ଦୁପତ୍ର କାରବାରର ଜାତୀୟକରଣ ବ୍ୟବସ୍ଥାକୁ ବିଳମ୍ବ କରାଇବାପାଇଁ ବ୍ୟବସାୟୀ ଗୋଷ୍ଠୀ ପକ୍ଷରୁ ଚକ୍ରାନ୍ତ ଚାଲିଥିଲା ଏବଂ ମୋଟା ଅର୍ଥ କାରବାର ଆରମ୍ଭ ହୋଇଥିଲା । ଏହି ପରିପ୍ରେକ୍ଷୀରେ ଅକ୍ଟୋବର ଏଗାର ତାରିଖରେ ଜଣେ ପୂର୍ବତନ ପ୍ରଜାସମାଜବାଦୀ ଅର୍ଥମନ୍ତ୍ରୀଙ୍କର କେନ୍ଦୁପତ୍ର କାରବାରର ଜାତୀୟକରଣ ବ୍ୟବସ୍ଥାକୁ ଉପରୋକ୍ତ ନୋଟ୍‌ଦ୍ୱାରା ନାପସନ୍ଦ କରିବାଟା ବଡ଼ ଅଡୁଆ ଓ ବିସ୍ମୟ ସୃଷ୍ଟିକଲା । ଅର୍ଥମନ୍ତ୍ରୀ ଶ୍ରୀ ବାଙ୍କବିହାରୀ ଦାସଙ୍କର କେନ୍ଦୁପତ୍ର କାରବାରର ଜାତୀୟକରଣ ବିରୋଧୀ ଅଭିମତ ଜାଣିବାପରେ ମୁଖ୍ୟମନ୍ତ୍ରୀ ଏବଂ ତାଙ୍କର ଘନିଷ୍ଠ ସଂପର୍କୀୟ ମନ୍ତ୍ରୀ ଓ ସମର୍ଥକମାନେ ଜାତୀୟକରଣ ବ୍ୟବସ୍ଥାକୁ ବିରୋଧ କରିବାର ନୈତିକ ଶକ୍ତି ପାଇଥିଲେ । କାରଣ ଶ୍ରୀ ବାଙ୍କବିହାରୀ ଦାସ ସମାଜବାଦୀ ପ୍ରବକ୍ତା ଥିଲେ ଏବଂ ତାଙ୍କର ମୋହର ଯେତେବେଳେ ଜାତୀୟକରଣ ବିରୋଧୀ ଯୁକ୍ତି ଉପରେ ଛାପାହୋଇଗଲା, ସେତେବେଳେ ଆଉ ସେ ବିଷୟରେ କାହାର କିଛି ସଂକୋଚ କରିବାର ରହିଲାନାହିଁ । ଏ ସଂକ୍ରାନ୍ତରେ କ୍ୟାବିନେଟ୍‌ରେ ଚୂଡ଼ାନ୍ତ ନିଷ୍ପତ୍ତି ନେବାପାଇଁ ମେମୋରାଣ୍ଡମ୍ ଆସିଲା । ମାତ୍ର ମନ୍ତ୍ରୀମାନଙ୍କ ପାଖରେ କାଗଜପତ୍ର ବିଳମ୍ବରେ ପହଞ୍ଚିଲା ବୋଲି ଆଳ ଦେଖାଇ ବିଷୟଟିକୁ ପରବର୍ତ୍ତୀ ବୈଠକପାଇଁ ସ୍ଥଗିତ ରଖାଯାଇଥିଲା । ମନ୍ତ୍ରିମଣ୍ଡଳର ପରବର୍ତ୍ତୀ ବୈଠକ ଯେଉଁଦିନ ବସିବ ବୋଲି ସ୍ଥିରହୋଇଥିଲା ସେଦିନ ବୈଠକର ଘଣ୍ଟାକ ପୂର୍ବରୁ ଜଣାଗଲା ଯେ ମୁଖ୍ୟମନ୍ତ୍ରୀ କୌଣସି ଅସୁବିଧା ଯୋଗୁଁ ଗସ୍ତରୁ ଫେରିପାରୁନାହାନ୍ତି; ତେଣୁ ତାଙ୍କର ନିର୍ଦ୍ଦେଶମତେ ବୈଠକ ବନ୍ଦକରିଦିଆଯାଇଥିଲା, କେବେ ପୁଣି ବୈଠକ ବସିବ କିଛି କୁହାଗଲାନାହିଁ । ଏଣେ ଭୁବନେଶ୍ୱର ହୋଟେଲଗୁଡ଼ିକ କେନ୍ଦୁପତ୍ର ବ୍ୟବସାୟୀମାନଙ୍କଦ୍ୱାରା ଭରପୂର ହୋଇ ରହିଥାଏ । ସେମାନେ କିଛିଦିନ ଏପାଖ ସେପାଖ ଦୌଡ଼ାଦୌଡ଼ି କରିଥିଲେ । ଆଗତୁରା କିଛି ଅର୍ଥ ବ୍ୟୟ କରିବାର ସମ୍ବାଦ ମଧ୍ୟ ଆସି ପହଞ୍ଚୁଥାଏ । କେନ୍ଦୁପତ୍ର ବ୍ୟବସାୟର ଜାତୀୟକରଣ ସପକ୍ଷବାଦୀ ସମ୍ବଲପୁରର ଶ୍ରୀ ବାବୁଭାଇ ପଟେଲ ମଝିରେ ମଝିରେ ବ୍ୟବସାୟୀମାନଙ୍କର ଦୁର୍ନୀତିମୂଳକ କାର୍ଯ୍ୟ ସମ୍ବନ୍ଧରେ ମୋତେ ସତର୍କ କରାଇଦେଉଥିଲେ । ଏହିଭଳି ଅବସ୍ଥାରେ ଦିନେ ମହତାବବାବୁ ମୋତେ ଫୋନ୍ କରି କହିଥିଲେ, ''ନୀଳମଣି ! ତୁମେ କାହିଁକି ଏହି କେନ୍ଦୁପତ୍ର କାରବାର ଜାତୀୟକରଣ କରିବାକୁ ଏତେ ଜିଦ୍ ଧରୁଛ ? କେନ୍ଦୁପତ୍ର ବ୍ୟବସାୟୀମାନେ ଆସି ମୋତେ କହୁଛନ୍ତି ମୁଁ କାଳେ ତୁମକୁ ତାଙ୍କ କଥା କହିଲେ ସବୁ ଠିକ୍‌ହୋଇଯିବ । ସେମାନେ ମୋତେ କହୁଥିଲେ ଯେ ସେମାନେ ସମସ୍ତଙ୍କୁ ସନ୍ତୁଷ୍ଟ କରିସାରିଲେଣି । ମୋତେ କହିଛନ୍ତି ତୁମକୁ ବୁଝାଶୁଝା କରିଦେଲେ ତୁମେ ଟିକିଏ ଜିଦ୍ ନଧରିଲେ ସେମାନଙ୍କର ସବୁ ସୁବିଧା ହୋଇଯିବ । ସେମାନେ ବାଙ୍କ ପାଖକୁ ଯାଇଥିଲେ । ସେମାନେ ମୋତେ କହୁଥିଲେ ଯେ ବାଙ୍କବାବୁ ସେମାନଙ୍କୁ ନିଶ୍ଚୟ ସାହାଯ୍ୟ କରିବେ ବୋଲି । ବାଙ୍କକୁ କୁଆଡ଼େ ଜ୍ୱରହୋଇଛି, ବ୍ୟବସାୟୀମାନେ ତାଙ୍କୁ ଦେଖାକରି ଆସିଛନ୍ତି । ମୁଁ ମଧ୍ୟ ବାଙ୍କକୁ ଫୋନ୍‌କରି ପଚାରିଥିଲି ଯେ ତାଙ୍କ ଦେହ କେମିତି ଅଛି, ଜ୍ୱର କମିଲାଣି କି ନାହିଁ ? ତାଙ୍କୁ ଜ୍ୱର ହେବା କଥା ମୁଁ କେମିତି ଜାଣିଲି ବୋଲି ସେ ମୋତେ ପଚାରିବାରୁ ମୁଁ କହିଲି ଯେ କେନ୍ଦୁପତ୍ର ବ୍ୟବସାୟୀମାନେ ତୁମକୁ ଦେଖି ଆସି ତୁମ ଜ୍ୱର କଥା ମୋତେ କହୁଥିଲେ । ମୋ କଥା ଶୁଣି ସେ ବଡ଼ ଅପ୍ରସ୍ତୁତ ଅନୁଭବ କଲାଭଳି ମୋତେ ଜଣାଗଲା । ସେ ଯାହାହେଉ, ତୁମର ଯାହା ଦରକାର ସେମାନେ ବୁଝିବେ ବୋଲି ମୋତେ କହିଛନ୍ତି । ସେମାନେ ପୁଣି ଆସିବେ ତୁମେ କ'ଣ କହୁଛ ସେ କଥା ମୋ ପାଖରୁ ବୁଝିବା ପାଇଁ ।'' ମହତାବବାବୁଙ୍କ ପାଖରୁ ଏ କଥା ଶୁଣି ମୁଁ ତାଙ୍କୁ ଅନୁରୋଧ କରିଥିଲି ସେ ବିଷୟରେ କିଛି ନକହିବାପାଇଁ । ନନ୍ଦିନୀ ଦେବୀଙ୍କର କଟକ ଉପନିର୍ବାଚନ ବାହାନାରେ ମୋଟା ଅର୍ଥ ହାତକରିବାପାଇଁ

ଯେ ଚକ୍ରାନ୍ତ ଚାଲିଛି ସେ ବିଷୟରେ ମୁଁ ମହତାବବାବୁଙ୍କୁ କହିଥିଲି । ମୋ କଥା ଶୁଣି ମହତାବବାବୁ କହିଥିଲେ, ''ତୁମେ ଜଳକାପରି ଅନେଇଥାଅ, ସେମାନେ ମାରିନେବାରେ ଲାଗିଛନ୍ତି । ଜାତୀୟକରଣ ବ୍ୟବସ୍ଥାକୁ ବନ୍ଦକରିବାର ଆଶା ଦେଖାଇ ସେମାନେ ଆଗତୁରା କିଛି ମାରିନେଲେଣି । ତାଙ୍କ ମାରିନେବାଟା କିପରି ବନ୍ଦକର । ତୁମେ ସାମ୍ବାଦିକମାନଙ୍କ ଆଗରେ ଜୋର୍‌ଦେଇ ଜାତୀୟକରଣ ହେବା କଥାଟା ବାରମ୍ବାର କହ । ତା'ହେଲେ ତାଙ୍କ ପଇସା ପାଣିରେ ପଡ଼ିବ ବୋଲି ଭାବି ବିଡ଼ିପତ୍ର ବ୍ୟବସାୟୀମାନେ ଆଉ ସେମାନଙ୍କୁ ଟଙ୍କା ଦେବେନାହିଁ ।''

କେନ୍ଦୁପତ୍ର କାରବାର ନିଶ୍ଚୟ ଜାତୀୟକରଣ ହେବ ବୋଲି ମୁଁ ବାରମ୍ବାର ବିବୃତି ଦେଉଥିଲି । ସେତେବେଳେ ଏ ବିଷୟଟି ପ୍ରତି ସାମ୍ବାଦିକମାନଙ୍କର ଦୃଷ୍ଟି ଖୁବ୍ ତୀକ୍ଷ୍ଣଭାବରେ ପଡ଼ିଥାଏ । ସେମାନେ ମଝିରେ ମଝିରେ ଆସି ମୋତେ ସାକ୍ଷାତ୍ କରୁଥାଆନ୍ତି ଶେଷ ନିଷ୍ପତ୍ତି ଜାଣିବାପାଇଁ । ଅକ୍ଟୋବର ମାସ ଚଉଦ ତାରିଖ ଦିନ ସମ୍ବାଦପତ୍ରରେ ପ୍ରକାଶିତ ହୋଇଥିଲା, ''ରାଜ୍ୟ କେନ୍ଦୁପତ୍ର ବ୍ୟବସାୟରେ ସମ୍ପୂର୍ଣ୍ଣ ଜାତୀୟକରଣ କରିବାପାଇଁ ସରକାର ସ୍ଥିର ନିଷ୍ପତ୍ତି ଗ୍ରହଣ କରିଛନ୍ତି ଏବଂ ଏହା ଅପରିବର୍ତ୍ତନୀୟ ବୋଲି ରାଜ୍ୟ ପବ୍ଲିକ୍ ଅଣ୍ଡରଟେକିଙ୍ଗ୍ ଶିଳ୍ପ ତଥା କର୍ପୋରେସନ ବିଭାଗର ମନ୍ତ୍ରୀ ଶ୍ରୀ ନୀଳମଣି ରାଉତରାୟ ଗତକାଲି ସନ୍ଧ୍ୟାରେ ସାମ୍ବାଦିକମାନଙ୍କ ସହ ଏକ ସାକ୍ଷାତ୍‌କାରରେ ପ୍ରକାଶ କରିଛନ୍ତି ।''

ପ୍ରକୃତରେ କେନ୍ଦୁପତ୍ର ବ୍ୟବସାୟୀମାନେ ପ୍ରାଣମୂର୍ଚ୍ଛା ଉଦ୍ୟମ କରୁଥିଲେ ଜାତୀୟକରଣ ବ୍ୟବସ୍ଥାକୁ ପଣ୍ଡ କରିବାପାଇଁ । ସେଥିପାଇଁ ସେମାନେ ପ୍ରଚୁର ଅର୍ଥ ଖର୍ଚ୍ଚ କରୁଥିଲେ । ମନ୍ତ୍ରିମଣ୍ଡଳର ସଭ୍ୟମାନଙ୍କର ଘରେ ଘରେ ବୁଲି କିପରି ଯୋଜନାଟି କାର୍ଯ୍ୟକାରୀ ନହେବ ସେଥିପାଇଁ ସବୁମତେ ଉଦ୍ୟମ କରୁଥିଲେ । ଜାତୀୟକରଣ ଯୋଜନାଟି ମନ୍ତ୍ରିମଣ୍ଡଳ ବୈଠକରେ ଆଲୋଚନା ହେଲାବେଳେ ବିଭିନ୍ନ ଦୃଷ୍ଟିକୋଣରୁ ନନ୍ଦିନୀ ଦେବୀଙ୍କର ବିଶ୍ୱାସୀ ଗୋଷ୍ଠୀର ମନ୍ତ୍ରୀମାନେ ଆଲୋଚନାରେ ଭାଗ ନେଉଥିଲେ । ଯୋଜନାରେ ନାନାପ୍ରକାର ତ୍ରୁଟି ଦେଖାଇ ସ୍ପଷ୍ଟୀକରଣ ଚାହୁଁଥିଲେ । ତେଣୁ ଯୋଜନାଟି ଗୃହୀତ ହୋଇନପାରି ପୁଣି ବିଚାରାଧୀନ ହୋଇ ରହୁଥାଏ । ମନ୍ତ୍ରିମଣ୍ଡଳ ବୈଠକରେ ଦୁଇଟି ସ୍ପଷ୍ଟ ମତ ଜଣାପଡ଼ିଥିଲା । ମୁଁ ଓ ବିନାୟକ ଆଚାର୍ଯ୍ୟଙ୍କ ଛଡ଼ା ମୁଖ୍ୟମନ୍ତ୍ରୀଙ୍କ ସହ ଆଉ ସମସ୍ତେ କେନ୍ଦୁପତ୍ର ବ୍ୟବସାୟ ଜାତୀୟକରଣ ପ୍ରସ୍ତାବକୁ ବିରୋଧକରୁଥିଲେ । ତେଣୁ ନିଷ୍ପତ୍ତି ଶୀଘ୍ର ନିଆନଯାଇ କିପରି ବିଳମ୍ବ ହେବ ତା'ର ବ୍ୟବସ୍ଥା କରୁଥିଲେ । ସେଥିପାଇଁ ୨୯।୧୦।୭୨ ତାରିଖ ପ୍ରଜାତନ୍ତ୍ରରେ ପ୍ରକାଶ ପାଇଥିଲା, ''ରାଜ୍ୟରେ କେନ୍ଦୁପତ୍ର ବ୍ୟବସାୟ ଜାତୀୟକରଣ କରିବା ନିମନ୍ତେ ଜଙ୍ଗଲ ବିଭାଗ ତଥା ଜଙ୍ଗଲ କର୍ପୋରେସନ ଯେଉଁ ମିଳିତ କାର୍ଯ୍ୟକ୍ରମ ପ୍ରସ୍ତୁତ କରିଛନ୍ତି, ତାହା କାଲି ମନ୍ତ୍ରିମଣ୍ଡଳ ବୈଠକରେ ପରସ୍ପରବିରୋଧୀ ମତାମତ ଯୋଗୁଁ ଗୃହୀତ ହୋଇପାରିଲାନାହିଁ । ଗତ ମନ୍ତ୍ରିମଣ୍ଡଳ ବୈଠକରେ କେନ୍ଦୁପତ୍ର ବ୍ୟବସାୟ ଆସନ୍ତା ଜାନୁୟାରୀ ମାସଠାରୁ ସମ୍ପୂର୍ଣ୍ଣରୂପେ ଜାତୀୟକରଣ କରାଯିବ ବୋଲି ନିଷ୍ପତ୍ତି ନିଆଯିବା ପରେ ଜଙ୍ଗଲ ବିଭାଗ ଓ ଜଙ୍ଗଲ କର୍ପୋରେସନଙ୍କୁ ତାହା କାର୍ଯ୍ୟକାରୀ କରିବା ନିମନ୍ତେ ମିଳିତ ଯୋଜନା ପ୍ରସ୍ତୁତ କରିବା ନିର୍ଦ୍ଦେଶ ଦିଆଯାଇଥିଲା ଓ ସେତେବେଳେ ମୁଖ୍ୟମନ୍ତ୍ରୀ ସାମ୍ବାଦିକମାନଙ୍କୁ ସୂଚନା ଦେଇଥିଲେ ଯେ ମନ୍ତ୍ରିମଣ୍ଡଳର ପରବର୍ତ୍ତୀ ବୈଠକରେ ଏ ସମ୍ବନ୍ଧରେ ନିଷ୍ପତ୍ତି ନିଆଯିବ । କିନ୍ତୁ କାଲି ମନ୍ତ୍ରିମଣ୍ଡଳର ମିଳିତ ବୈଠକରେ ଏ ବିଷୟରେ କୌଣସି ନିଷ୍ପତ୍ତି ନିଆଯାଇପାରିନାହିଁ । ଅର୍ଥମନ୍ତ୍ରୀ ଶ୍ରୀ ବାଙ୍କବିହାରୀ ଦାସ ମନ୍ତ୍ରିମଣ୍ଡଳ ବୈଠକ ପରେ ପରେ ସାମ୍ବାଦିକମାନଙ୍କୁ କହିଥିଲେ ଯେ ଜଙ୍ଗଲ ବିଭାଗ ଓ ଜଙ୍ଗଲ କର୍ପୋରେସନର ମିଳିତ ଯୋଜନା ମନ୍ତ୍ରିମଣ୍ଡଳର ବିଚାର ସକାଶେ ବିଳମ୍ବରେ ମିଳିବାରୁ ସେ ସମ୍ପର୍କରେ ଅଧିକ ଅନୁଧାନ ନିମନ୍ତେ ପରବର୍ତ୍ତୀ ବୈଠକକୁ ସ୍ଥଗିତ ରଖାଯାଇଛି ।

''ପରେ ପବ୍ଲିକ୍ ଅଣ୍ଡରଟେକିଙ୍ଗସ ଓ କର୍ପୋରେସନ ବିଭାଗ ମନ୍ତ୍ରୀ ଶ୍ରୀ ନୀଳମଣି ରାଉତରାୟଙ୍କ ସହ ଏକ ସାକ୍ଷାତ୍‌କାରରେ ସେ ପ୍ରକାଶ କରିଥିଲେ ଯେ, ଉକ୍ତ ମିଳିତ ଯୋଜନାରେ ଜଙ୍ଗଲ ବିଭାଗ କେନ୍ଦୁପତ୍ର ଉତ୍ପାଦନ, ସଂଗ୍ରହ ଓ ପ୍ରସ୍ତୁତି ଆଦି କରିବେ ଏବଂ ଜଙ୍ଗଲ କର୍ପୋରେସନ ତା'ର ବିକ୍ରୟ

ଦାୟିତ୍ୱ ନେବେ । ଏହି ପ୍ରକାର ବ୍ୟବସ୍ଥା ଉକ୍ତ ମିଳିତ ଯୋଜନାରେ କରାଯାଇଅଛି । ଏହି ବ୍ୟବସ୍ଥା ବର୍ତ୍ତମାନ ଅବସ୍ଥାରେ ଅତ୍ୟନ୍ତ ଉପଯୋଗୀ ବୋଲି ଶ୍ରୀ ରାଉତରାୟ ପ୍ରକାଶକରିଥିଲେ । ସେ କହିଥିଲେ ଏ ସମ୍ପର୍କରେ ମନ୍ତ୍ରିମଣ୍ଡଳ ବୈଠକରେ ଦୀର୍ଘ ଦୁଇଘଣ୍ଟା ଆଲୋଚନା ହୋଇଥିଲା ଏବଂ ଅବଶ୍ୟ ଯୋଜନାର କାର୍ଯ୍ୟକାରିତା ସମ୍ପର୍କରେ ବିଭିନ୍ନ ପ୍ରକାର ମତାମତ ତଥା ସନ୍ଦେହ କେତେକ ମହଲରୁ ପ୍ରକାଶ ପାଉଥିଲା । ବିଶେଷକରି ଅର୍ଥବିଭାଗ ପକ୍ଷରୁ ଏ ଯୋଜନାର ସଫଳତା ସମ୍ବନ୍ଧରେ ସନ୍ଦେହ ପ୍ରକାଶ କରି ଏକ ସ୍ମାରକପତ୍ର ଦିଆଯାଇଛି ଏବଂ ଏଥିରେ ବିନିଯୋଗ ନିମନ୍ତେ ଅର୍ଥର ନିଅଣ୍ଟ ସମ୍ପର୍କରେ ଦର୍ଶାଯାଇଛି । ଅର୍ଥ ବ୍ୟବସ୍ଥା ସମ୍ପର୍କରେ ଶ୍ରୀ ରାଉତରାୟଙ୍କୁ ପଚାରିବାରୁ ସେ କହିଲେ ଯେ, ସରକାର ତଥା କର୍ପୋରେସନ କିଛି ଅର୍ଥ ବିନିଯୋଗ କରିବେ ଏବଂ ଅର୍ଥ-ବିନିଯୋଗକାରୀ ବ୍ୟାଙ୍କ୍‌ମାନଙ୍କରୁ ମଧ୍ୟ ଅର୍ଥ ନିଆଯାଇ ବିନିଯୋଗ କରାଯିବ । କେନ୍ଦୁପତ୍ର ଠିକାଦାରମାନେ ଜାତୀୟକରଣ କରାଇନଦେବାକୁ ଉଦ୍ୟମ କରୁଥିବା ସମ୍ପର୍କରେ କୌଣସି ସୂଚନା ପାଇଛନ୍ତି କି ବୋଲି ଏକ ପ୍ରଶ୍ନରେ କଥାଟାକୁ ଏଡ଼ାଇଦେଇ ଶ୍ରୀ ରାଉତରାୟ କହିଥିଲେ ଯେ, ସେମାନେ ଯଦି ବାସ୍ତବରେ ସେପରି କିଛି କରୁଥାଆନ୍ତି ତେବେ କେବଳ କୁହୁଡ଼ି ପହଁରିବା ସାରହେବ ଏବଂ ସେମାନଙ୍କର ଉଦ୍ୟମ ସମ୍ପୂର୍ଣ୍ଣ ବ୍ୟର୍ଥ ହେବ । କିନ୍ତୁ କାଲି ମନ୍ତ୍ରିମଣ୍ଡଳ ବୈଠକବେଳେ ମଧ୍ୟ କେତେକ କେନ୍ଦୁପତ୍ର ବ୍ୟବସାୟୀ ସେକ୍ରେଟେରୀଏଟ୍‌ରେ ଥିଲେ । ଅନ୍ୟ ଏକ ସୂତ୍ରରୁ ଆଶଙ୍କା ଯେ ବର୍ତ୍ତମାନ କୌଣସିମତେ ଗଡ଼େଇନେଇ ଶେଷରେ ସମୟ ଅଭାବ ଆଳ ଦର୍ଶାଯାଇ ହୁଏତ ୧୯୭୩ ଜାନୁୟାରୀରୁ ସଂପୂର୍ଣ୍ଣ ଜାତୀୟକରଣ ବ୍ୟବସ୍ଥା ନକରାଯାଇ ୧୯୭୪ ଜାନୁୟାରୀରୁ କରାଯିବା ପ୍ରସ୍ତାବ ହୋଇପାରେ । ଏଥିପାଇଁ ଅଫିସର୍‌ମାନେ ମଧ୍ୟ ଖୁବ୍ ଏପାଖ ସେପାଖ କରୁଛନ୍ତି ଏବଂ ଶେଷରେ ଅର୍ଥ ବିଭାଗ ନାନା ଆଳ ଦର୍ଶାଇ ବିଳମ୍ବ କରିପାରେ ବୋଲି ମଧ୍ୟ ଆଶଙ୍କା କରାଯାଉଛି । କାଲି ମନ୍ତ୍ରିମଣ୍ଡଳ ବୈଠକରେ କୁଆଡ଼େ ଏଇ ବ୍ୟାପାର ନେଇ ବିଶେଷ ମତବିରୋଧ ପ୍ରକାଶପାଇଥିଲା ।''

ମନ୍ତ୍ରିମଣ୍ଡଳ ବୈଠକ ବସିବାରେ ବିଳମ୍ବ ହେଲା । ବୈଠକ ବସିବ ବସିବ କହି କିଛିଦିନ ଗଡ଼େଇଦେବା ବିଳମ୍ବର ଉଦ୍ଦେଶ୍ୟ ବୋଲି ଜଣାପଡ଼ିଲା । ନିର୍ବାଚନ ପାରହୋଇଗଲେ ଅବସ୍ଥା ଅନ୍ୟପ୍ରକାର ହୁଅନ୍ତା । ମୁଖ୍ୟମନ୍ତ୍ରୀଙ୍କ ବିଶ୍ୱାସୀ ଗୋଷ୍ଠୀର ଭୟହେଉଥାଏ, କାରଣ କେନ୍ଦୁପତ୍ର କାରବାର ଜାତୀୟକରଣ କରାନଗଲେ ମୁଁ ତା'ର ପ୍ରତିବାଦ କରି ଏବଂ ତାକୁହିଁ ବିବାଦୀୟ ବିଷୟ କରି ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇଦେବି, ତାହାହେଲେ ତା'ର କୁଫଳ ଉପନିର୍ବାଚନ ଉପରେ ନିଶ୍ଚୟ ପଡ଼ିବ । ମୁଁ ମଧ୍ୟ କଥାପ୍ରସଙ୍ଗରେ ସେ ପ୍ରକାର ଧମକ ଦେଉଥାଏ ଏବଂ ତାହା ସେମାନଙ୍କ କାନରେ ପଡୁଥାଏ । ତେଣୁ ସେମାନେ ଖାଲି ଟାଳଟୁଳ କରି ସମୟ ଗଡ଼େଇବାରେ ଲାଗିଥାଆନ୍ତି । ସେକଥା ବୁଝିପାରି ମୁଁ ମୁଖ୍ୟମନ୍ତ୍ରୀଙ୍କୁ ଶୀଘ୍ର ମନ୍ତ୍ରିମଣ୍ଡଳ ବୈଠକ ଡକାଇବାପାଇଁ ଲେଖିଥିଲି । କେନ୍ଦୁପତ୍ର ବ୍ୟବସାୟ ବର୍ଷର ନିର୍ଦ୍ଦିଷ୍ଟ ଋତୁକାଳୀନ ବ୍ୟବସାୟ । ସେ ଋତୁ ଆସିଯିବା ଉପରେ । ସେ ଅବସ୍ଥାରେ ବିଳମ୍ବ ନକରି ସେ କାରବାରର ଭବିଷ୍ୟତ ସମ୍ବନ୍ଧରେ ନିଷ୍ପତ୍ତି ନେବା ଜରୁରୀ ହେଲାଣି ବୋଲି ମୁଁ ଦର୍ଶାଇଥିଲି । ତେଣୁ ଆଉ ଟାଳଟୁଳ କରିବା ଯେତେବେଳେ ସମ୍ଭବ ନହେଲା, କେବଳ ଏହି ବିଷୟଟି ବିଚାର କରିବାପାଇଁ ମନ୍ତ୍ରିମଣ୍ଡଳ ବୈଠକ ଡକାଯାଇଥିଲା । ବୈଠକରେ ମନ୍ତ୍ରୀମାନଙ୍କ ଛଡ଼ା ସଂପୃକ୍ତ ବିଭାଗମାନଙ୍କର ଅଫିସର୍‌ମାନେ ଉପସ୍ଥିତ ଥାଆନ୍ତି । ମନ୍ତ୍ରିମଣ୍ଡଳ ବୈଠକରେ ତୁମୁଳ ବାଦାନୁବାଦ ଚାଲିଥିଲା । ମୁଖ୍ୟମନ୍ତ୍ରୀ ଓ ତାଙ୍କର ବିଶ୍ୱାସୀ ଗୋଷ୍ଠୀର ମନ୍ତ୍ରୀମାନେ ଚାହୁଁଥାଆନ୍ତି ଯେ ସେତେବେଳେ ଶେଷ ନିଷ୍ପତ୍ତି ନନେଇ ବର୍ଷକ ପରେ ବିଚାର କରି ନିଷ୍ପତ୍ତି ନେବାପାଇଁ, ମାତ୍ର ମୁଁ ଚାହୁଁଥାଏ ତତ୍‌କ୍ଷଣାତ୍ ନିଷ୍ପତ୍ତି । ତାଙ୍କ ପକ୍ଷରେ ବାଙ୍କବାବୁଙ୍କ ଭଳିଆ ସମାଜବାଦୀ, ବ୍ରଜବାବୁଙ୍କ ଭଳି ବିଷୟବୁଦ୍ଧିସଂପନ୍ନ କହିବୋଲିପାରିବା ମନ୍ତ୍ରୀମାନେ ଥାଆନ୍ତି । ଲକ୍ଷ୍ମଣବାବୁଙ୍କ ଭଳି ବିନୟୀ ମନ୍ତ୍ରୀ ସଙ୍କଟ ଏଡ଼ାଇବାପାଇଁ ମୋତେ ପ୍ରବର୍ତ୍ତାଉଥାଆନ୍ତି କୌଣସିମତେ ସେମାନଙ୍କ ପ୍ରସ୍ତାବରେ ରାଜି ହୋଇଯିବାପାଇଁ । ବିନାୟକବାବୁ କେନ୍ଦୁପତ୍ର କାରବାର ଜାତୀୟକରଣ ସପକ୍ଷରେ ଥାଆନ୍ତି; ମାତ୍ର ନନ୍ଦିନୀ ଦେବୀଙ୍କୁ ସେ ବଡ଼ ଭୟ

କରୁଥାଆନ୍ତି, ତେଣୁ ସେ ବେଶୀ କିଛି ଯୁକ୍ତିତର୍କ ନକରି ଚୁପ୍‌ହୋଇ ରହୁଥାଆନ୍ତି ଏବଂ ମଝିରେ ମଝିରେ ମୋ ପ୍ରସ୍ତାବକୁ ସମର୍ଥନ କଲାଭଳିଆ କଥାମାନ କହୁଥା'ନ୍ତି । ମନ୍ତ୍ରିମଣ୍ଡଳ ବୈଠକରେ ଏ ବିଷୟଟି ଗରିଘଣ୍ଟାକାଳ ଆଲୋଚନା ହୋଇଥିଲା । ଜଙ୍ଗଲ ବିଭାଗ, ଜଙ୍ଗଲ କର୍ପୋରେସନ ପ୍ରଭୃତି ବିଭାଗୀୟ ଅଫିସରମାନଙ୍କର ମନ ଜାତୀୟକରଣ ସପକ୍ଷରେ ଥାଏ । ସେମାନେ ମୋତେ ଘରେ ଦେଖାକରି ସେମାନଙ୍କର ମନକଥା କହିଥା'ନ୍ତି; କିନ୍ତୁ ବୈଠକରେ ଆମ୍ଭମାନଙ୍କର କଥାବାର୍ତ୍ତା ଶୁଣି ସେମାନେ ଅବାକ୍ ହୋଇ ବସିରହିଥାଆନ୍ତି । ପବ୍ଲିକ୍ ଅଣ୍ଡରଟେକିଙ୍ଗ୍ ବିଭାଗର ସେକ୍ରେଟେରୀ ଥାଆନ୍ତି ସେତେବେଳେ ଶ୍ରୀ ଭି.ଏସ୍.ମାଥ୍ୟୁସ୍ । ସେହି ବିଭାଗ ଜାତୀୟକରଣପାଇଁ ବିଶେଷ ଆଗ୍ରହ ଦେଖାଉଥାଏ ଏବଂ ସେହି ବିଭାଗ ଆନୁକୂଲ୍ୟରେ ଯୋଜନା ପ୍ରସ୍ତୁତ ହେଉଥାଏ । ଜାତୀୟକରଣ ନିଷ୍ପତ୍ତି ଏଡ଼ାଇଦେବା ଯେତେବେଳେ ସମ୍ଭବ ନହେଲା ପବ୍ଲିକ୍ ଅଣ୍ଡରଟେକିଙ୍ଗ୍ ବିଭାଗର ସେକ୍ରେଟେରୀଙ୍କୁ ଲକ୍ଷ୍ୟକରି ଗୋଟିଏ ଧମକପୂର୍ଣ୍ଣ ସ୍ୱରରେ ମୁଖ୍ୟମନ୍ତ୍ରୀ କହିଲେ, ''ଜାତୀୟକରଣ ତୁମ ଯୋଜନା ଅନୁସାରେ କରାଗଲେ ଯେଉଁ କୋଟି କୋଟି ଟଙ୍କା କ୍ଷତିହେବ ତୁମେ ସେଥିପାଇଁ ଦାୟୀ ହେବ ।'' ମୁଁ ତତ୍‌କ୍ଷଣାତ୍ କହିଥିଲି, ''ସେ ବିଭାଗର ମନ୍ତ୍ରୀ ହେଉଛି ମୁଁ । କ୍ୟାବିନେଟ୍ ବୈଠକରେ ଯାହା କହିବାର କଥା ସେକଥା ମୋତେ କୁହାଯାଉ ।'' ଦାୟିତ୍ୱ ନେବାପାଇଁ ପବ୍ଲିକ୍ ଅଣ୍ଡରଟେକିଙ୍ଗ୍ ବିଭାଗ ପ୍ରସ୍ତୁତ ଅଛି ବୋଲି ମୁଁ ଦୃଢ଼ତାରସହ କହିଥିଲି । ମୋ କଥାବାର୍ତ୍ତା, ଭାବଭଙ୍ଗୀରୁ ସେମାନେ ବୁଝିପାରିଥିଲେ ଯେ ମୁଁ ଗୋଟିଏ କଠିନ ପରିସ୍ଥିତି ସୃଷ୍ଟି କରିବା ଅବସ୍ଥାରେ ପହଞ୍ଚିଛି । ତେଣୁ ଅନ୍ୟ କୌଣସି ଗତ୍ୟନ୍ତର ନଥିବାରୁ ଶେଷରେ କେନ୍ଦୁପତ୍ର କାରବାରକୁ ୧୯୭୩ ମସିହା ଜାନୁୟାରୀ ମାସଠାରୁ ସମ୍ପୂର୍ଣ୍ଣଭାବରେ ଜାତୀୟକରଣ କରିବାର ନିଷ୍ପତ୍ତି ମନ୍ତ୍ରିମଣ୍ଡଳରେ ନିଆଯାଇଥିଲା । ଜଙ୍ଗଲ ବିଭାଗ ଓ ଜଙ୍ଗଲ କର୍ପୋରେସନର ମିଳିତ ଯୋଜନାଟି ମନ୍ତ୍ରିମଣ୍ଡଳରେ ଗୃହୀତ ହୋଇଥିଲା । ଗଲା କେତେ ବର୍ଷ ହେଲା ଯେଉଁ କେନ୍ଦୁପତ୍ର ବ୍ୟବସାୟ ସମ୍ବନ୍ଧୀୟ କାରବାର ଓଡ଼ିଶା ରାଜନୀତିକୁ, ରାଜନୈତିକ ଦଳ ଓ ନେତାମାନଙ୍କୁ କଳଙ୍କିତ କରିଆସୁଥିଲା, ତାହାର ଅବସାନ ଘଟାଇବାପାଇଁ ନାନା ସଂଘର୍ଷ ମଧ୍ୟରେ ଏହିପରି ଭାବରେ ଜାତୀୟକରଣ କରାଯାଇଥିଲା । ନନ୍ଦିନୀ ଦେବୀଙ୍କର କଟକ ଉପନିର୍ବାଚନ ଆଗକୁ ନଥିଲେ ସେତେବେଳେ କେନ୍ଦୁପତ୍ର କାରବାର ଜାତୀୟକରଣ ହୋଇ ନଥା'ନ୍ତା । ଉପନିର୍ବାଚନର ଠିକ୍ ପୂର୍ବରୁ ହୁଏତ ଏହି ପ୍ରଗତିଶୀଳ ପଦକ୍ଷେପର ବିରୋଧକରି ଲୋକଚକ୍ଷୁରେ ନିଜର ଭାବମୂର୍ତ୍ତିକୁ ନିନ୍ଦିତ କରିବାକୁ ମୁଁ ମୋର ଦାବିକୁ ପ୍ରତ୍ୟାଖ୍ୟାନ କରି ସରକାରକୁ ମଧ୍ୟ ବିପନ୍ନ କରିବାକୁ ଆଉ କେହି ସାହସ କରିପାରିନଥିଲେ । ମୁଁ ପ୍ରଦେଶ କଂଗ୍ରେସ ସଭାପତି ଥିଲାବେଳେ ମନେ ମନେ ଯେଉଁ ସଙ୍କଳ୍ପ କରିଥିଲି, କେନ୍ଦୁପତ୍ର ବ୍ୟବସାୟ ସମ୍ପୂର୍ଣ୍ଣ ଜାତୀୟକରଣ ହେବା ପରେ ତାହା ସଫଳ ହେଲା ବୋଲି ଆଶ୍ୱସ୍ତ ହୋଇଥିଲି ।

## ମିତ୍ର କମିଶନ ଓ ଶ୍ରୀ ସିଂହଦେଓ

ପର୍ଯ୍ୟାୟକ୍ରମେ ପ୍ରତ୍ୟେକ ସରକାରଙ୍କ ମୁଖ୍ୟମାନେ କେନ୍ଦୁପତ୍ର ବ୍ୟବସାୟୀ ଓ ଠିକାଦାରମାନଙ୍କୁ ଦୁଧିଆଳୀ ଗାଈ ମନେକରି ସେମାନଙ୍କୁ ଅସନ୍ତୁଷ୍ଟ କଲାଭଳି କୌଣସି ପଦକ୍ଷେପ ନେଉନଥିଲେ ଏବଂ ସେମାନଙ୍କୁ ଠିକାଦିଆଯାଉଥିବା ଲିଜ୍‌ର ମିଆଦ ବଢ଼ାଇବା, ଲିଜ୍‌ର ଚୁକ୍ତି ଅନୁସାରେ କେନ୍ଦୁପତ୍ର ସଂଗ୍ରହ କରିନପାରିଲେ ଜୋରିମାନାରୁ ରିହାତି ଦେବା ପ୍ରଭୃତି କେତେକ ସୁବିଧା ଦେବା କାର୍ଯ୍ୟକୁ ହେରଫେର କରି ସେମାନଙ୍କଠାରୁ ପ୍ରଚୁର ଅର୍ଥ ସଂଗ୍ରହ କରାଯାଉଥିଲା । କେନ୍ଦୁପତ୍ର ବ୍ୟବସାୟ ଜାତୀୟକରଣ ହେବା ପରେ ସେ ପ୍ରକାର ଦ୍ୱିଧାର କାରଣ ରହିଲାନାହିଁ । ଏହି ପରିପ୍ରେକ୍ଷୀରେ ୧୯୭୦ ଅପ୍ରେଲ ମାସଠାରୁ ୧୯୭୨ ମାର୍ଚ୍ଚ ମାସ ମଧ୍ୟରେ ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ଜଙ୍ଗଲ ବିଭାଗ ଦାୟିତ୍ୱରେ ଥିବା ତାଙ୍କ ସ୍ୱତନ୍ତ୍ର ଦଳର ଦୁଇଜଣ ପୂର୍ବତନ ମନ୍ତ୍ରୀ ଶ୍ରୀ ହରପ୍ରସାଦ ମହାପାତ୍ର ଓ ଶ୍ରୀ ଅଇଁଠୁ ସାହୁ ଶାସନରେ ଥିବାବେଳେ କ୍ଷମତାର ଅପବ୍ୟବହାର କରି କେନ୍ଦୁପତ୍ର ଠିକାଦାରମାନଙ୍କୁ ରିହାତି,

ଲିଜ୍‌ର ମିଆଦ ବୃଦ୍ଧି, ଚୋରିମାନାରୁ ଛାଡ଼ ଓ ନବୀକରଣ (renewal) ପ୍ରଭୃତି ଅନ୍ୟାନ୍ୟ ସୁବିଧା ଦେଇ ରାଜକୋଷର ପ୍ରଭୂତ କ୍ଷତି ଘଟାଇଥିଲେ ବୋଲି ଅଭିଯୋଗ କରି ସେସବୁର ତଦନ୍ତପାଇଁ ୧୯୭୩ ମସିହା ଫେବୃୟାରୀ ୨୨ ତାରିଖରେ ସୁପ୍ରିମ୍ କୋର୍ଟର ଅବସରପ୍ରାପ୍ତ ବିଚାରପତି ଶ୍ରୀ ଜି.କେ. ମିତ୍ରଙ୍କ ଅଧ୍ୟକ୍ଷତାରେ ସରକାର ଗୋଟିଏ କମିଶନ ବସାଇଥିଲେ । ରାଜ୍ୟ ବିଧାନସଭାରେ ପ୍ରଗତିଦଳର ସଂଖ୍ୟା ବୃଦ୍ଧିହେତୁ ନନ୍ଦିନୀ ଦେବୀଙ୍କ ସରକାର ଯେତେବେଳେ ଟଳମଳ ଅବସ୍ଥାରେ ଥାଏ, ତାଙ୍କ ସରକାରର ପତନର ଏକ ସପ୍ତାହ ପୂର୍ବରୁ ଏହି କମିଶନ ବସାଇବାର ନିଷ୍ପତ୍ତି ନିଆଯାଇଥିଲା । ଶ୍ରୀ ସିଂହଦେଓ ପ୍ରଗତିଦଳର ଜଣେ ତୁଙ୍ଗ ନେତା ଥିଲେ । ସିଂହଦେଓଙ୍କ ମନ୍ତ୍ରିମଣ୍ଡଳରେ ଉପମୁଖ୍ୟମନ୍ତ୍ରୀ ଥିବା ଶ୍ରୀ ପବିତ୍ରମୋହନ ପ୍ରଧାନ ସରକାରଙ୍କର ଏହି ଅଭିଯୋଗ ସହିତ ନିଜକୁ ସାମିଲ କରି କମିଶନ ଆଗରେ କହିଥିଲେ ଯେ କେନ୍ଦୁପତ୍ର ସମ୍ପର୍କୀୟ ଦୁର୍ନୀତିପୂର୍ଣ୍ଣ ଆଚରଣ ହେତୁ ସେ ସିଂହଦେଓ ସରକାରର ପତନ ଘଟାଇଥିଲେ । କମିଶନ ନିମ୍ନମତେ ଶ୍ରୀ ପ୍ରଧାନଙ୍କ ଅଭିଯୋଗ ନିକାଶ କରିଥିଲେ – "The Commission is not concerned with the party politics in the State and does not feel itself competent to express its views thereon."

ମାତ୍ର କମିଶନ ୧୯୭୪ ମସିହା ଅଗଷ୍ଟ ମାସରେ ତାଙ୍କ ରିପୋର୍ଟ ସରକାରଙ୍କୁ ଦେଇଥିଲେ । କମିଶନ ତାଙ୍କ ସିଦ୍ଧାନ୍ତରେ ଶ୍ରୀ ସିଂହଦେଓ ଓ ଅନ୍ୟ ଦୁଇଜଣ ମନ୍ତ୍ରୀଙ୍କର କ୍ଷମତାର ଅପବ୍ୟବହାର ଅନ୍ୟାୟ ଓ ଅସଙ୍ଗତ ଆଦେଶ ହେତୁ କେନ୍ଦୁପତ୍ର ଠିକାଦାର ଓ କିଣାଳିମାନେ ବିଶେଷ ଉପକୃତ ଓ ଲାଭବାନ୍ ହେବା ସଙ୍ଗେ ସଙ୍ଗେ ରାଜକୋଷର ପ୍ରଭୂତ କ୍ଷତି ହୋଇଛି ବୋଲି କହିଥିଲେ–"In the light of the above decisions there can be no doubt that the actions of Shri H.P. Mahapatra and Shri R.N. Singh Deo in ordering grant of rebate in purchase price to purchasers and waivers of shortfall compensation to agents and reduction in the figure of bags stipulated for were unlawful and improper. These acts being without jurisdiction were ultra vires and as such malafide. Such acts can also be described as abuses of power. x x x There can be no doubt that the said orders resulted in substantial loss of revenue to Government."

## ଲିଙ୍କ୍‌ସ "ଜିତ୍‌ନା ପୁଛା, ଉସ୍‌ସେ ଜ୍ୟାଦା ଦିଆ"

ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କର ମନ୍ତ୍ରିମଣ୍ଡଳ ସମୟରେ ଆଉ ଗୋଟିଏ ଘଟଣା ଘଟିଥିଲା; ଯାହାକୁ ଅନେକେ ଏକ ବଡ଼ଧରଣର ଦୁର୍ନୀତିପୂର୍ଣ୍ଣ କାରବାର ବୋଲି ସନ୍ଦେହକରନ୍ତି । କଟକ ଜିଲ୍ଲା ସୁକିନ୍ଦା-ଦୈତାରୀ ଆଇରନ୍ ଓର୍ ପ୍ରୋଜେକ୍ଟରେ ଓର୍ ହାଣ୍ଡଲିଙ୍ଗ୍ ପ୍ଲାଣ୍ଟ୍ ବସାଇବା ବାବଦରେ ବମ୍ବେର ମେସର୍ସ ଲିଙ୍କ୍‌ସ ମେସିନାରି ଲିମିଟେଡ୍ ତାଙ୍କ ପ୍ରାପ୍ୟ ପାଇସାରିବା ପରେ ସେହି କମ୍ପାନୀର ଅଧିକା କାର୍ଯ୍ୟ କରିଥିବା ଦାବିକୁ (claim) ସ୍ୱୀକାରକରି ଉକ୍ତ କମ୍ପାନୀକୁ ପଞ୍ଚାଅଶୀ ଲକ୍ଷ ବୟାଳିଶ ହଜାର ଟଙ୍କା ଦିଆଗଲା । ଆଇରନ୍ ଓର୍ ଡ୍ରେସିଂ ପ୍ଲାଣ୍ଟ୍ ଓର୍ ହାଣ୍ଡଲିଙ୍ଗ୍ ପ୍ଲାଣ୍ଟ ତିଆରି କରି ଦୈତାରୀଠାରେ ବସାଇବା ପାଇଁ ଓଡ଼ିଶା ଖଣି କର୍ପୋରେସନ୍ ସହିତ ମେସର୍ସ ଲିଙ୍କ୍‌ସ ମେସିନାରୀ ଲିମିଟେଡ୍ ମଧ୍ୟରେ ୧୯୬୪ ମସିହାରେ ଗୋଟିଏ ଚୁକ୍ତି ହୋଇଥିଲା । ଗୋଟିଏ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଲିଙ୍କ୍‌ସ କମ୍ପାନୀ ସେ କାର୍ଯ୍ୟ ସମାପ୍ତ କରିବା କଥା । ଯନ୍ତ୍ରପାତି ବସାଇବା ଓ ଅନ୍ୟାନ୍ୟ ବାବଦରେ ଯାହା ପ୍ରାପ୍ୟ, ଓଡ଼ିଶା ଖଣି କର୍ପୋରେସନ୍ ଲିଙ୍କ୍‌ସ କମ୍ପାନୀକୁ ତାହାଠାରୁ ଅଧିକ ଦେଇସାରିଥିଲେ ମଧ୍ୟ ସେହି କମ୍ପାନୀ ଓର୍ ହାଣ୍ଡଲିଙ୍ଗ୍ ପ୍ଲାଣ୍ଟ୍ ବସାଇବା କାର୍ଯ୍ୟ ସମାପ୍ତ କଲାନାହିଁ । ସେତେବେଳକୁ ବାର କୋଟି ଟଙ୍କାରୁ ଅଧିକ ଏହି କାର୍ଯ୍ୟ ବାବଦରେ ଖର୍ଚ୍ଚ ସରିଥାଏ । ଅଧିକା କାର୍ଯ୍ୟ କରିଛି ବୋଲି କହି କୋଟିକରୁ ଅଧିକ ଟଙ୍କା

ଓଡ଼ିଶା ସରକାରଙ୍କର ଖଣି କର୍ପୋରେସନ୍‌ଠାରୁ କରିଥିଲା । କାଳେ ଓଡ଼ିଶା ଖଣି କର୍ପୋରେସନ୍ ଅସମାପ୍ତ ଥିବା ଓର୍ ହାଣ୍ଡଲିଙ୍ଗ୍ ପ୍ଲାଣ୍ଟକୁ ଅଧିକାର କରିନେବ ବୋଲି ଲିଙ୍କ୍‌ସ କମ୍ପାନୀ ଓଡ଼ିଶା ଖଣି କର୍ପୋରେସନ୍ ବିରୁଦ୍ଧରେ କଲିକତା ହାଇକୋର୍ଟରୁ ଗୋଟିଏ ନିଷେଧ ଆଜ୍ଞା ଆଣିଥିଲା । ଏଣେ ଓଡ଼ିଶା ଖଣି କର୍ପୋରେସନ୍ ସେଥିରେ ହାତ ଦେଇପାରିବେ ନାହିଁ ବୋଲି ନିଷେଧ ଆଜ୍ଞା ଜାରି ହେଲା; ତେଣେ ଲିଙ୍କ୍‌ସ କମ୍ପାନୀ ନିଜେ ମଧ ଓର୍ ହାଣ୍ଡଲିଙ୍ଗ୍ ପ୍ଲାଣ୍ଟର କାର୍ଯ୍ୟ ସମାପ୍ତ କଲାନାହିଁ । କମ୍ପାନୀର ଅଧିକ ଟଙ୍କା ଦାବିକୁ ଓଡ଼ିଶା ଖଣି କର୍ପୋରେସନ୍ ସ୍ୱୀକାର କରିନଥିଲା; ତେଣୁ ଉଭୟଙ୍କ ମଧରେ ଗୋଟିଏ ବିବାଦ ସୃଷ୍ଟିହୋଇଥିଲା । ଏ ପ୍ରକାର ବିବାଦ ଉପୁଜିଲେ ଚୁକ୍ତି ସର୍ତ୍ତ ଅନୁସାରେ ତାହା ମଧ୍ୟସ୍ଥଦ୍ୱାରା ସମାଧାନ ହେବା କଥା । ମଧ୍ୟସ୍ଥ ନିଯୁକ୍ତି ସମ୍ବନ୍ଧରେ ମଧ ୧୯୬୯ରେ ଓଡ଼ିଶା ଖଣି କର୍ପୋରେସନ୍ ଲିଙ୍କ୍‌ସ କମ୍ପାନୀ ମଧରେ ଗୋଟିଏ ରାଜିନାମା ହୋଇଥିଲା । ଏହି ରାଜିନାମା ଅନୁସାରେ ଇଣ୍ଡିଆନ୍ ଚେମ୍ବର ଅଫ୍ କମର୍ସର ସଭାପତି ଯେଉଁ ମଧ୍ୟସ୍ଥ (arbitrator)ଙ୍କୁ ମନୋନୀତ କରିବେ ତାଙ୍କୁହିଁ ଉଭୟ ପକ୍ଷ ମାନିନେବାର କଥା । ଏହି ଅନୁସାରେ ଫଇସଲା କରିବାପାଇଁ ଜଣେ ମଧ୍ୟସ୍ଥ ନିଯୁକ୍ତ ହୋଇଥିଲେ । ଦେଖାଗଲା ଯେ ମଧ୍ୟସ୍ଥଙ୍କଦ୍ୱାରା ଏହି ନିଷ୍ପତ୍ତି ଅନେକ ଦିନ ଲାଗିବ । ଲିଙ୍କ୍‌ସ କମ୍ପାନୀର ଅଧିକ ଦାବି ଅନୁସାରେ ଟଙ୍କା ନଦେଲେ ସେ କାମ ସମାପ୍ତ କରି ଖଣି କର୍ପୋରେସନ୍‌କୁ ହସ୍ତାନ୍ତର କରିବନାହିଁ । ଶ୍ରୀ ବିଶ୍ୱନାଥ ଦାସଙ୍କ ମନ୍ତ୍ରିମଣ୍ଡଳରେ ଖଣି ବିଭାଗ ଦାୟିତ୍ୱରେ ଥିବା ସମୟରେ ମୁଁ ଓଡ଼ିଶା ଖଣି କର୍ପୋରେସନ୍‌ର ସ୍ୱତନ୍ତ୍ର ଆଡ୍‌ଭୋକେଟ୍ ଶ୍ରୀ ଗଙ୍ଗାଧର ରଥଙ୍କ ସହିତ ଆଲୋଚନା କରିଥିଲେ । ଲିଙ୍କ୍‌ସ କମ୍ପାନୀର ଦାବିରୁ ଯଦି କିଛି ନ୍ୟାଯ୍ୟ ସେତକ ଦେଇ ସାଲିସ୍ କରିବା ଆବଶ୍ୟକ କି ନାହିଁ ସେ ବିଷୟରେ ମୁଁ ତାଙ୍କ ସହିତ ପରାମର୍ଶ କରିଥିଲି । ଆଡ୍‌ଭୋକେଟ୍ ଶ୍ରୀ ରଥ ମୋତେ କହିଥିଲେ ଯେ ସେ ବିଷୟଟିକୁ ଭଲଭାବରେ ଅଧ୍ୟୟନ କରିଛନ୍ତି । ତାଙ୍କ ମତରେ ସେ କମ୍ପାନୀର ଦାବି ଆଦୌ ଗ୍ରହଣୀୟନୁହେଁ, ନ୍ୟାୟତଃ ଲିଙ୍କ୍‌ସ କମ୍ପାନୀ ଗୋଟିଏ ପଇସା ପାଇବାର ହକ୍‌ଦାରନୁହେଁ ବୋଲି ଶ୍ରୀ ରଥ ମୋତେ କହିଥିଲେ । ଆହୁରି ମଧ ଆଡଭୋକେଟ୍ ଗଙ୍ଗାଧରବାବୁ ମୋତେ ଘରୋଇଭାବରେ କହିଥିଲେ ଯେ ଓଡ଼ିଶା ଖଣି କର୍ପୋରେସନ୍‌ର ଚେୟାରମ୍ୟାନ୍ ଶ୍ରୀ ଏଲ୍.ଏନ୍. ନାୟାରଙ୍କର ବାପା ଲିଙ୍କ୍‌ସ କମ୍ପାନୀର ଜଣେ ଅଂଶୀଦାର । ସେହି ହେତୁରୁ ଲିଙ୍କ୍‌ସ କମ୍ପାନୀର ଦାବିକୁ ଗ୍ରହଣ କରିନେବାପାଇଁ ଶ୍ରୀ ନାୟାର୍ ଇଚ୍ଛା କରିଛନ୍ତି । ସେଥିରେ ରାଜିନହେବା ପାଇଁ ଆଡ୍‌ଭୋକେଟ୍ ଶ୍ରୀ ଗଙ୍ଗାଧର ରଥ ମୋତେ ପରାମର୍ଶ ଦେଇଥିଲେ । ପରେ ଜାଣିବାକୁ ପାଇଥିଲି ଯେ, ବମ୍ବେରେ ଶ୍ରୀ ନାୟାର୍‌ଙ୍କର ବାପାଙ୍କର ଲିଙ୍କ୍‌ସ କମ୍ପାନୀରେ ମାତ୍ର ତିନି ଶହ ଟଙ୍କାର ଅଂଶ ଥିଲା । ଆଡ୍‌ଭୋକେଟ୍ ଶ୍ରୀ ରଥଙ୍କର ନିର୍ଦ୍ଦିଷ୍ଟ ପରାମର୍ଶ ଥିଲା ଯେ ସରକାର ଲିଙ୍କ୍‌ସ କମ୍ପାନୀର ଅନ୍ୟାୟ ଦାବି ପାଖରେ ମୁଣ୍ଡ ନୁଆଁଇବା କୌଣସିମତେ ଉଚିତ ହେବନାହିଁ । ତେଣୁ ଉକ୍ତ କମ୍ପାନୀ ସହିତ ହୋଇଥିବା ଚୁକ୍ତିକୁ ବାତିଲ କରିବା ଆବଶ୍ୟକ ବୋଲି ସେ କହିଥିଲେ । ୧୯୭୧ ମସିହା ମଇ ମାସ ଏଗାର ତାରିଖରେ ଶ୍ରୀ ରଥ ମତଦେଇ କହିଥିଲେ, "O.M.C. cannot afford to surrender to this diabolical game nor allow the stalemate to continue. In my opinion, notice for cancellation of the contract should be issued forthwith to Lynx and a suit should be filed to inject Lynx from interfering with the plant."

ଆଡ୍‌ଭୋକେଟ୍ ଶ୍ରୀ ଗଙ୍ଗାଧର ରଥଙ୍କ ଉପରେ ମୋର ପୂର୍ଣ୍ଣ ବିଶ୍ୱାସ ଥାଏ । ତେଣୁ ଆଇନ ଅନୁସାରେ କ'ଣ କରାଯିବ ଏବଂ ସେ ସମ୍ବନ୍ଧରେ ଭାରତରେ ଯଦି କୌଣସି ବିଶିଷ୍ଟ ଆଡ୍‌ଭୋକେଟ୍‌ଙ୍କ ସହିତ ପରାମର୍ଶ କରିବା ଦରକାର ହୁଏ, ତାହା କରିବାପାଇଁ ମୁଁ ଗଙ୍ଗାଧରବାବୁଙ୍କୁ ପୂର୍ଣ୍ଣ ସ୍ୱାଧୀନତା ଦେଇଥିଲି । ଶ୍ରୀ ରଥ ଏ ବିଷୟରେ ସଲିସିଟର୍ ଜେନେରାଲ୍ ଅଫ୍ ଇଣ୍ଡିଆଙ୍କ ସହିତ ପରାମର୍ଶ କରିଥିଲେ । ସେ ପରାମର୍ଶ ଦେଇଥିଲେ ଯେ ଲିଙ୍କ୍‌ସ କମ୍ପାନୀ ସହିତ ଯେଉଁ ଚୁକ୍ତି ହୋଇଥିଲା ତାକୁ

ରଦ୍ଦକରାଯାଉ ଓ କେଉଁଝରର ଅଦାଲତରେ ଗୋଟିଏ ମକଦ୍ଦମା କରି ଲିଙ୍କ୍ସ କମ୍ପାନୀ ବିରୁଦ୍ଧରେ ଗୋଟିଏ ନିଷେଧାଜ୍ଞା ଅଣାଯାଉ । କେଉଁଝରର ଅଦାଲତରୁ ଲିଙ୍କ୍ସ କମ୍ପାନୀ ବିରୁଦ୍ଧରେ ନିଷେଧାଜ୍ଞା ଅଣାଯାଇଥିଲା । ଆଗରୁ କଲିକତା ହାଇକୋର୍ଟରେ ଗୋଟିଏ ନିଷେଧାଜ୍ଞା ଓଡ଼ିଶା ଖଣି କର୍ପୋରେସନ୍ ବିରୁଦ୍ଧରେ ଥିଲା । କେଉଁଝରର କୋର୍ଟରୁ ଖଣି କର୍ପୋରେସନ୍ ପୁଣି ଗୋଟିଏ ନିଷେଧାଜ୍ଞା ଲିଙ୍କ୍ସ କମ୍ପାନୀ ବିରୁଦ୍ଧରେ ଆଣିବାଦ୍ୱାରା କଲିକତା ହାଇକୋର୍ଟ ପ୍ରତି ଅବମାନନା କରାଯାଇଛି ବୋଲି କଲିକତା ହାଇକୋର୍ଟରୁ ପରୱାନା ଆସି ଖଣି କର୍ପୋରେସନ୍ ବିରୁଦ୍ଧରେ ଜାରିହୋଇଥିଲା । ଏହି ଅଦାଲତ ଅବମାନନା ମକଦ୍ଦମାରେ କଲିକତା ହାଇକୋର୍ଟରେ ଓଡ଼ିଶା ଖଣି କର୍ପୋରେସନ୍ ପକ୍ଷରୁ ସଲିସିଟର୍ ଜେନେରାଲ୍ ଅଫ୍ ଇଣ୍ଡିଆ ମକଦ୍ଦମା ଲଢ଼ିଥିଲେ । ସେ ଯାହାହେଉ, କଲିକତା ହାଇକୋର୍ଟ ଆମର ପ୍ରକୃତ ଉଦ୍ଦେଶ୍ୟ ବୁଝିପାରି ଓଡ଼ିଶା ଖଣି କର୍ପୋରେସନ୍‌କୁ ଦୋଷମୁକ୍ତ କରିଥିଲା । ଏହାପରେ ଏହି ଲିଙ୍କ୍ସ କମ୍ପାନୀର ମାଲିକମାନେ ଆସି ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କୁ ଦେଖାକରି ବିଷୟଟିର ସମାଧାନପାଇଁ ଦାବି କରିଥିଲେ । ତାଙ୍କର ଦାବିର ପରିମାଣ କଥା ଶୁଣି ବିଶ୍ୱନାଥବାବୁ ତଟସ୍ଥ ହୋଇଯାଇଥିଲେ । ଶେଷରେ ମୁଖ୍ୟମନ୍ତ୍ରୀ ଲିଙ୍କ୍ସ କମ୍ପାନୀର ଦାବିର ଯୁକ୍ତିଯୁକ୍ତତା ଏବଂ ସେ କମ୍ପାନୀ ପ୍ରକୃତରେ କେତେ ଅଧିକା କାର୍ଯ୍ୟ କରିଛନ୍ତି ତାହା ପରୀକ୍ଷା କରି ଦେଖି ପରାମର୍ଶ ଦେବାକୁ ତିନିଜଣ ବିଶିଷ୍ଟ ଇଞ୍ଜିନିୟର ଓ ଆଇନ ବିଭାଗ ସେକ୍ରେଟେରୀଙ୍କୁ ନେଇ ଗୋଟିଏ କମିଟି ନିଯୁକ୍ତ କରିଥିଲେ । ସେହି କମିଟି କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ବିଶ୍ୱନାଥବାବୁଙ୍କ ସରକାର ଭାଙ୍ଗିଯାଇଥିଲା ।

ଏହାପରେ ନନ୍ଦିନୀ ଦେବୀଙ୍କ ସରକାର ଆସିଗଲା । ଶ୍ରୀ ଗଙ୍ଗାଧର ରଥ ଆଡ୍‌ଭୋକେଟ୍ ଜେନେରାଲ୍ ଭାବେ ନିଯୁକ୍ତ ହୋଇଥିଲେ । ନନ୍ଦିନୀ ଦେବୀଙ୍କ ମନ୍ତ୍ରିମଣ୍ଡଳରେ ଖଣି ବିଭାଗ ରହିଲା ଶ୍ରୀ ବ୍ରଜମୋହନ ମହାନ୍ତିଙ୍କ ହାତରେ । ମୁଁ ପବ୍ଲିକ୍ ଅଣ୍ଡରଟେକିଙ୍ଗ୍ ବିଭାଗର ମନ୍ତ୍ରୀ ଥିଲି । ସେହି ହିସାବରେ ଓଡ଼ିଶା ଖଣି କର୍ପୋରେସନ୍ ମୋ ହାତରେ ଥିଲା । ସମାଧାନପାଇଁ ଲିଙ୍କ୍ସ କମ୍ପାନୀର ମାଲିକମାନେ ମୋ ପାଖକୁ ଆସିଥିଲେ । ସେମାନଙ୍କର ଦାବି ନିତାନ୍ତ ଅବାସ୍ତବ ବୋଲି ମୁଁ ମତ ଦେଇଥିଲି । ବହୁତ ଥର ଆଲୋଚନା କଲା ପରେ ସେମାନେ ମୋତେ କହିଥିଲେ ଯେ, ତାଙ୍କର ଏକ କୋଟିରୁ ଅଧିକ ଟଙ୍କା ଦାବି ସ୍ଥଳେ ଓଡ଼ିଶା ଖଣି କର୍ପୋରେସନ୍ ଯଦି ମାତ୍ର ସତୁରି ଲକ୍ଷ ଟଙ୍କା ଦିଅନ୍ତି ତା'ହେଲେ ସବୁ କଥା ସମାଧାନ ହୋଇପାରିବ । ସତୁରି ଲକ୍ଷ ଟଙ୍କା ଦାବି କରିବା ମଧ ଅବାସ୍ତବ ବୋଲି ମୁଁ ସେମାନଙ୍କୁ ଜଣାଇଦେଇଥିଲି । ସେମାନେ ଏହା ଭିତରେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀ, ଅର୍ଥମନ୍ତ୍ରୀ ବାଙ୍କବାବୁ, ରାଜସ୍ୱମନ୍ତ୍ରୀ ଓ ଖଣିମନ୍ତ୍ରୀ ବ୍ରଜବାବୁଙ୍କୁ ସାକ୍ଷାତ୍ କରି ସମାଧାନର ସୂତ୍ର ସମ୍ପର୍କରେ ଆଲୋଚନା କରୁଥିଲେ ।

ଦିନେ ମନ୍ତ୍ରିମଣ୍ଡଳରେ ବୈଠକ ଶେଷରେ ଅଫିସରମାନେ ଚାଲିଯିବା ଉତ୍ତାରୁ ଖଣି ଓ ରାଜସ୍ୱ ବିଭାଗ ମନ୍ତ୍ରୀ ବ୍ରଜମୋହନ ମହାନ୍ତି ମୁଖ୍ୟମନ୍ତ୍ରୀଙ୍କ ଇଙ୍ଗିତରେ ଲିଙ୍କ୍ସ କମ୍ପାନୀର ଦାବି ଓ ତା'ର ସମାଧାନ କଥା ସେଠାରେ ଉଠାଇଥିଲେ । ବିଷୟଟି ବଡ଼ ଜରୁରୀ ହୋଇପଡ଼ିଛି ଓ ତା'ର ସମାଧାନ ହେବା ଆବଶ୍ୟକ ବୋଲି ବ୍ରଜବାବୁ ଯୁକ୍ତି ବାଢ଼ିଥିଲେ । ସମାଧାନପାଇଁ ଲିଙ୍କ୍ସ କମ୍ପାନୀ ମଧ ବ୍ୟାକୁଳ ବୋଲି ସମସ୍ତେ କହିଥିଲେ । ବ୍ରଜବାବୁ ମତ ବ୍ୟକ୍ତ କରିଥିଲେ ଯେ, ମଧ୍ୟସ୍ଥଙ୍କ ରାୟ ବା ମକଦ୍ଦମାର ରାୟ ପର୍ଯ୍ୟନ୍ତ ଅପେକ୍ଷା ନକରି ଆପୋଷ କଥାବାର୍ତ୍ତାଦ୍ୱାରା ମୀମାଂସା କରିନେଲେ ଭଲ ହେବ । ବହୁତ ଟଙ୍କାପଇସାର ବ୍ୟାପାର ହୋଇଥିବାରୁ ବିଭାଗୀୟ ସେକ୍ରେଟେରୀ ପ୍ରଭୃତିଙ୍କୁ ସେଥିରେ ଜଡ଼ିତ ନକରି ତା'ଠାରୁ ଆହୁରି ଉପର ସ୍ତରର ବ୍ୟକ୍ତି ଏଥିରେ ସଂପୃକ୍ତ ହେବା ଆବଶ୍ୟକ । ଚିଫ୍ ସେକ୍ରେଟେରୀ ଶ୍ରୀ ଜୋନେଜା ଓ ଆଡ୍‌ଭୋକେଟ ଜେନେରାଲ୍ ଶ୍ରୀ ଗଙ୍ଗାଧର ରଥଙ୍କ ଉପରେ ସମାଧାନର ଦାୟିତ୍ୱ ଦିଆଗଲେ ସେମାନେ ଲିଙ୍କ୍ସ କମ୍ପାନୀ ସହିତ ଯୋଗାଯୋଗ କରି କିପରି ଓ କେତେ ଟଙ୍କାରେ ସମାଧାନ ହୋଇପାରିବ ତା'ର ବାଟ ବାହାର କରିବେ । ଏହି ବ୍ୟାପାରରେ କେତେକ ସେକ୍ରେଟେରୀଙ୍କ

ଉପରେ ତାଙ୍କର ବିଶ୍ୱାସନାହିଁ ବୋଲି କହି ପବ୍ଲିକ ଅଣ୍ଡରଟେକିଙ୍ଗ୍ ସେକ୍ରେଟେରୀ ମଧ୍ୟ ସେଥିରେ ସଂପୃକ୍ତ ହେବା ଉଚିତନୁହେଁ ବୋଲି ସେ ମତ ଦେଇଥିଲେ । ତାଙ୍କ କଥାରୁ ମୁଁ ବୁଝିଥିଲି ଯେ, ଖଣିମନ୍ତ୍ରୀ ଲିଙ୍କ୍ସ କମ୍ପାନୀ ବ୍ୟାପାରରେ ମୋ ଦାୟିତ୍ୱରେ ଥିବା ପବ୍ଲିକ୍ ଅଣ୍ଡରଟେକିଙ୍ଗ୍ ବିଭାଗକୁ ବିଶ୍ୱାସ କରିପାରୁନଥିଲେ । ସେତେବେଳେ ଏହି ବିଭାଗର ସେକ୍ରେଟେରୀ ଥିଲେ ଶ୍ରୀ ଭି.ଏସ୍. ମାଥ୍ୟୁସ୍ । ପୂର୍ବତନ ସରକାର କମ୍ପାନୀ ସହିତ ମନ୍ତ୍ରଣା କରି କୁଆଡ଼େ ମୋଟା ଟଙ୍କା ମାରିନେବାକୁ ଉଦ୍ୟମ କରୁଥିଲେ ବୋଲି କହି ଅର୍ଥମନ୍ତ୍ରୀ ବାଙ୍କବାବୁ ସମସ୍ତଙ୍କୁ ସତର୍କବାଣୀ ଶୁଣାଇଥିଲେ । ଦୁଇଜଣଙ୍କ ଉପରେ ଭାରଦେବା କଥା ଉଠିଲାବେଳେ ମୁଁ ପୂର୍ବତନ ମୁଖ୍ୟମନ୍ତ୍ରୀ ଇଞ୍ଜିନିୟରମାନଙ୍କୁ ନେଇ କମିଟି ଗଢ଼ାଯାଇଥିବା କଥା ଉଠାଇଥିଲି । ମୁଖ୍ୟମନ୍ତ୍ରୀ କହିଥିଲେ ଯେ ସେ ବାଟରେ ଗଲେ ବହୁତ ସମୟ ଲାଗିବ ଏବଂ ଶୀଘ୍ର ସମାଧାନପାଇଁ ଖଣିମନ୍ତ୍ରୀ ଯେଉଁ ପ୍ରସ୍ତାବ ଦେଉଛନ୍ତି ତାହା ଭଲହେବ । ସେମାନଙ୍କ କଥାବାର୍ତ୍ତାରୁ ମୁଁ ବୁଝିପାରିଥିଲି ଯେ ମନ୍ତ୍ରିମଣ୍ଡଳ ବୈଠକ ପୂର୍ବରୁ ମୁଖ୍ୟମନ୍ତ୍ରୀ ଓ ତାଙ୍କ ବିଶ୍ୱାସୀ ଗୋଷ୍ଠୀର ମନ୍ତ୍ରୀମାନଙ୍କ ମଧ୍ୟରେ ଲିଙ୍କ୍ସ କମ୍ପାନୀ ସହିତ ସମାଧାନ କରିବା ବିଷୟରେ କିଛି ବୁଝାମଣା ହୋଇସାରିଥିଲା । ଏହି କଥାବାର୍ତ୍ତା ଭିତରେ ଅତି ଚତୁରତା ସହକାରେ ଖଣିମନ୍ତ୍ରୀ ବ୍ରଜବାବୁ ଚିଫ୍ ସେକ୍ରେଟେରୀ ଓ ଆଡ୍‌ଭୋକେଟ୍ ଜେନେରାଲ୍‌ଙ୍କୁ ସମାଧାନର ଦାୟିତ୍ୱ ଦିଆଗଲା ବୋଲି ଲେଖିପକାଇ ସେଥିରେ ସବୁ ମନ୍ତ୍ରୀଙ୍କର ସ୍ୱାକ୍ଷର ଚାହିଁଥିଲେ । ମନ୍ତ୍ରିମଣ୍ଡଳ ସ୍ତରରେ ଏ ପ୍ରକାର ଫିକରଦାରି ଓକିଲାତି କାର୍ଯ୍ୟ କ'ଣ ଚଳିପାରେ ବୋଲି ମୁଁ କହିବାରୁ ହାସ୍ୟରୋଳ ସୃଷ୍ଟି ହୋଇଥିଲା । ମୁଖ୍ୟମନ୍ତ୍ରୀଙ୍କୁ ନିରାପଦ ଓ ସନ୍ଦେହମୁକ୍ତ ରଖିବାପାଇଁ ତାହା ଆବଶ୍ୟକ ବୋଲି କହି ବ୍ରଜବାବୁ ସେହି କାଗଜ ଉପରେ ମୁଖ୍ୟମନ୍ତ୍ରୀଙ୍କ ସମେତ ସମସ୍ତଙ୍କର ସ୍ୱାକ୍ଷର ସଂଗ୍ରହ କରିଥିଲେ । ଏହି କାର୍ଯ୍ୟରେ ଏହି ଲେଖାଖଣ୍ଡିକ ଭବିଷ୍ୟତରେ ମୁଖ୍ୟମନ୍ତ୍ରୀଙ୍କ ବିଶ୍ୱାସୀ ଗୋଷ୍ଠୀର ରକ୍ଷାକବଚ ହେବ ବୋଲି ଅନ୍ୟ କେତେକ ମନ୍ତ୍ରୀ ମୋ ଆଗରେ ପ୍ରକାଶ କରିଥିଲେ । କ୍ୟାବିନେଟ୍ ବୈଠକରୁ ମୁଁ ମୋର ଅଫିସକୁ ଯାଇ ଲିଙ୍କ୍ସ କମ୍ପାନୀ ସଂକ୍ରାନ୍ତୀୟ ଫାଇଲ୍ ଏଣିକି ପବ୍ଲିକ ଅଣ୍ଡଟେକିଙ୍ଗ୍ ବିଭାଗର ସେକ୍ରେଟେରୀ ଲିଙ୍କସ୍ କମ୍ପାନୀ ସହିତ ସମାଧାନ ବ୍ୟାପାରରେ ଆଉ କୌଣସି କାର୍ଯ୍ୟାନୁଷ୍ଠାନ ନ କରିବାକୁ ଆଦେଶ ଦେଇଥିଲି । ମୁଁ ଲେଖିଥିଲି ଯେ କ୍ୟାବିନେଟ୍ ଯେତେବେଳେ ସେ ବିଷୟଟି ବୁଝିଛି, ସେଥିରେ ଆଉ କେହି ହାତଦେବା ଅନୁଚିତ । ତେଣୁ ପବ୍ଲିକ୍ ଅଣ୍ଡରଟେକିଙ୍ଗ୍ ବିଭାଗର ସେକ୍ରେଟେରୀ ସେ ବ୍ୟାପାରରେ ସଂପୃକ୍ତ ନହେବାକୁ ଉକ୍ତ ଫାଇଲ୍‌ରେ ମୁଁ ନିର୍ଦ୍ଦେଶ ଦେଇଥିଲି ।

ଏହାପରେ ଦିନେ ଚିଫ୍ ସେକ୍ରେଟେରୀ ଶ୍ରୀ ଜୋନେଜା ଓ ଆଡ୍‌ଭୋକେଟ୍ ଜେନେରାଲ୍ ଶ୍ରୀ ଗଙ୍ଗାଧର ରଥ ଲିଙ୍କ୍ସ କମ୍ପାନୀ ସହିତ ସେମାନଙ୍କର କଥାବାର୍ତ୍ତା କେତେଦୂର ଆଗେଇଛି ସେ ବିଷୟରେ ମନ୍ତ୍ରିମଣ୍ଡଳ ବୈଠକରେ ଜଣାଇଥିଲେ । ସେମାନେ କହିଥିଲେ ଯେ, ଲିଙ୍କ୍ସ କମ୍ପାନୀ ସତୁରିରୁ ବାସ୍ତରି ଲକ୍ଷ ଟଙ୍କା ଭିତରେ ସବୁ ତୁଟାଇଦେଇ ସମାଧାନ କରିବାକୁ ଚାହୁଁଛି, ମାତ୍ର ଓଡ଼ିଶା ଖଣି କର୍ପୋରେସନ୍‌ର ଚେୟାରମ୍ୟାନ୍ ଶ୍ରୀ ନାୟାର ଚାଳିଶରୁ ବୟାଳିଶ ଲକ୍ଷ ଟଙ୍କାରୁ ବେଶି ଦେଇପାରିବି ନାହିଁ ବୋଲି କହୁଛନ୍ତି । ତେଣୁ ଦୁଇ ପକ୍ଷ ଭିତରେ ଯେତେବେଳେ ଏତେ ପାର୍ଥକ୍ୟ ରହୁଛି, ସେଥିରେ ସମାଧାନ କରିବା ସହଜ ହେଉନାହିଁ । ଏ କଥା ଶୁଣିବା ପରେ ଖଣି କର୍ପୋରେସନ୍ ସହିତ ଚିଫ୍ ସେକ୍ରେଟେରୀ କଥାବାର୍ତ୍ତା କରି ଗୋଟିଏ କିଛି ବାଟ ବାହାର କରିବାକୁ କୁହାଯାଇଥିଲା । ମୁଁ ଏହାପରେ ବମ୍ବେ ଚାଲିଯାଇଥିଲି; କାରଣ ମୋର ସ୍ତ୍ରୀ ଗୁରୁତର ଅସୁସ୍ଥ ହୋଇ ଟାଟା ମେମୋରିଆଲ୍ ହସ୍ପିଟାଲ୍‌ରେ ଚିକିତ୍ସିତ ହେଉଥିଲେ । ମୁଁ ଅନୁପସ୍ଥିତ ଥିବାବେଳେ ଲିଙ୍କ୍ସ କମ୍ପାନୀ ସହିତ ସମାଧାନ ପ୍ରସ୍ତାବ ବିଶେଷଭାବରେ ଆଗେଇଯାଇଥିଲା । ପବ୍ଲିକ୍ ଅଣ୍ଡରଟେକିଙ୍ଗ୍ ବିଭାଗର ସେକ୍ରେଟେରୀଙ୍କୁ ମୋର ନିର୍ଦ୍ଦେଶ ଥିଲା, ଲିଙ୍କ୍ସ କମ୍ପାନୀ ବ୍ୟାପାରରେ ସେ ସଂପୃକ୍ତ ନହେବାପାଇଁ । ମାତ୍ର କ'ଣ ହେଲା କେଜାଣି, ମୋ ଅନୁପସ୍ଥିତିରେ ତାଙ୍କୁ ଏ ସମାଧାନ ବ୍ୟାପାରରେ ସମ୍ପୃକ୍ତ କରାଯାଇଥିଲା । ମୋର

ନିର୍ଦ୍ଦେଶ କଥା ସେ କୁଆଡ଼େ ମୁଖ୍ୟମନ୍ତ୍ରୀଙ୍କୁ କହିଥିଲେ । ତେଣୁ ମୋର ନିର୍ଦ୍ଦେଶକୁ ଲଙ୍ଘନ କରିପାରିବାର ବାଟ ଫିଟାଇବାପାଇଁ କ୍ୟାବିନେଟ୍ ଓ ମୁଖ୍ୟମନ୍ତ୍ରୀଙ୍କ ପାଖରୁ ସେହି ସେକ୍ରେଟେରୀଙ୍କ ପାଖକୁ ଲିଖିତ ନିର୍ଦ୍ଦେଶ ଯାଇଥିଲା । ଯେଉଁ ଖଣିମନ୍ତ୍ରୀ ବ୍ରଜବାବୁ ପ୍ରଥମେ ନାନାପ୍ରକାର ମନ୍ତବ୍ୟ ଦେଇ ସେ ବିଭାଗର ସେକ୍ରେଟେରୀଙ୍କ ଉପରେ ବିଶ୍ୱାସ ନଥିଲା ବୋଲି କ୍ୟାବିନେଟ ବୈଠକରେ କହିପାରିଥିଲେ, ସେ ପୁଣି ତାଙ୍କୁହିଁ ସଂପୃକ୍ତ କରିବାପାଇଁ ଏବେ ଆଗ୍ରହୀ ହେଲେ କାହିଁକି, ତାହା ମୁଁ ବୁଝିପାରିନଥିଲି । ଏହା ମଧ୍ୟରେ ସମାଧାନ କେଉଁ ସର୍ତ୍ତରେ ହେବ ଏବଂ ଲିଙ୍କ୍ସ କମ୍ପାନୀର ଦାବି ବାବଦକୁ କେତେ ଟଙ୍କା ଦିଆଯିବ ସେସବୁ କଥା ଓଡ଼ିଶା ଖଣି କର୍ପୋରେସନ୍‌ର ଡାଇରେକ୍ଟର ବୋର୍ଡ଼ରେ ମଧ୍ୟ ଅନୁମୋଦନ କରାଇ ନିଆଯାଇଥିଲା । ପବ୍ଲିକ୍ ଅଣ୍ଡରଟେକିଙ୍ଗ୍ ବିଭାଗର ମନ୍ତ୍ରୀ ହିସାବରେ ମୋର ଗୋଟିଏ ସ୍ୱାକ୍ଷର ଦରକାର ପଡୁଥାଏ । ତାହା ବମ୍ବେକୁ ଯାଇ କରାଇଆଣିବାକୁ ବିଭାଗୀୟ ସେକ୍ରେଟେରୀ ମାଥ୍ୟୁସ୍‌ଙ୍କୁ କୁହାଯାଇଥିଲା । ସେ କୁଆଡ଼େ ବମ୍ବେ ଯିବାକୁ ଭୟକରିଥିଲେ । ସେକ୍ରେଟେରୀ କାହିଁକି ଏତେ ଆଗ୍ରହୀ ହୋଇ ମୋତେ ଦସ୍ତଖତ ଆଣିବାପାଇଁ ବମ୍ବେ ଦୌଡ଼ିଯାଇଥିଲେ ବୋଲି ପରେ କୁଆଡ଼େ କିଛି ବାହାରିପାରେ ବୋଲି ଆଶଙ୍କା କରି ସେ ଅନିଚ୍ଛା ପ୍ରକାଶ କରିଥିଲେ । ଏ କଥା ଶ୍ରୀ ମାଥ୍ୟୁସ୍ ମୋତେ କହିଥିଲେ । ମୋର ଆସିବାକୁ ଅପେକ୍ଷା ନକରି ବିଷୟଟିର ଶେଷ ନିଷ୍ପତ୍ତି କରାଇନେବାପାଇଁ ମସୁଧା ହୋଇଥିଲା; ମାତ୍ର ତାହା କଲେ ମନ୍ଦ ଅଭିପ୍ରାୟ ଆରୋପ କରାଯାଇପାରେ ବୋଲି ନୂତନ ମୁଖ୍ୟ ଶାସନ ସଚିବ ଶ୍ରୀ ଏମ୍. ରାମକ୍ରିଷ୍ଣାୟା କୁଆଡ଼େ ସତର୍କ କରାଇଦେଇଥିଲେ ।

ମୁଁ ଜାନୁୟାରୀ ଚଉଦ ତାରିଖରେ ବମ୍ବେରୁ କଟକ ଫେରିଲି । ତା'ପରେ ଲିଙ୍କ୍ସ କମ୍ପାନୀ ସମ୍ବନ୍ଧୀୟ ଫାଇଲ୍ ଯାଇ କଟକରେ ମୋ ପାଖରେ ପହଞ୍ଚିଲା । ଫାଇଲ୍ ହାତେ ହାତେ କରାଇଆଣିବା ପାଇଁ ଜଣେ କର୍ମଚାରୀ ଯାଇଥିଲେ; କିନ୍ତୁ ମୁଁ ତାହା କରିନଥିଲି; ବିଭାଗୀୟ ସେକ୍ରେଟେରୀଙ୍କ ସହିତ କଥାବାର୍ତ୍ତା ହେବା ପରେ ଯାହା କରିବାର କଥା କରିବି ବୋଲି କହିଥିଲି । ମୋ ସ୍ତ୍ରୀର ସ୍ୱାସ୍ଥ୍ୟ ସେତେବେଳେ ଏକାବେଳକେ ସଙ୍କଟାପନ୍ନ ହୋଇଥାଏ ଏବଂ ଠିକ୍ ସେତିକିବେଳେ ଏହି ଫାଇଲ୍ କାର୍ଯ୍ୟ କରିବାପାଇଁ ମୋତେ ବ୍ୟସ୍ତ କରାଯାଉଥାଏ । ସେକ୍ରେଟେରୀ ଆସିବା ପରେ ମୋର ଅନୁପସ୍ଥିତି ସମୟରେ ଯାହାସବୁ ହୋଇଥିଲା, ସେ ସମ୍ବନ୍ଧରେ ତାଙ୍କୁ କେତେକ କଥା ପଚାରିଥିଲି । ମୋ ନିର୍ଦ୍ଦେଶସତ୍ତ୍ୱେ ସେ କିପରି ସେଥିରେ ସମ୍ପୃକ୍ତ ହେଲେ ବୋଲି ମୁଁ ତାଙ୍କୁ ପଚାରିଥିଲି । କି ପରିସ୍ଥିତିରେ ସେ ସମ୍ପୃକ୍ତ ହେଲେ, ସେକଥା ସେ ମୋତେ କହିଥିଲେ ଏବଂ ମୁଖ୍ୟମନ୍ତ୍ରୀଙ୍କର ଆଦେଶ ଓ କ୍ୟାବିନେଟ୍‌ର ନିଷ୍ପତ୍ତି ମୋତେ ଦେଖାଇଥିଲେ । ମୁଁ ତାହା ଦେଖି ଆଶ୍ଚର୍ଯ୍ୟ ହୋଇଥିଲି । ମୁଁ ସେକ୍ରେଟେରୀଙ୍କ ଉପରେ ସାମାନ୍ୟ ଅସନ୍ତୋଷ ପ୍ରକାଶ କରିଥିଲି । ସେତେବେଳେ ମୋର ପାରିବାରିକ ଓ ମାନସିକ ଅବସ୍ଥା ଏପରି ଯେ ସରକାରୀ କାର୍ଯ୍ୟରେ ଆଉ ବିବାଦ କରିବା ଅବସ୍ଥାରେ ମୁଁ ନଥାଏ । ସବୁ କଥା ସମାଧାନର ବିନିମୟରେ ଲିଙ୍କ୍ସ କମ୍ପାନୀକୁ ପଞ୍ଚାଅଶୀ ଲକ୍ଷ ବୟାଳିଶ ହଜାର ଟଙ୍କା ଦେବାକୁ ହେବ ବୋଲି ସେ ଫାଇଲ୍‌ରେ ଲେଖାଥିଲା । ମୁଁ ସେ ଫାଇଲ୍‌ରେ ଲେଖିଥିଲି ଯେ ଲିଙ୍କ୍ସ କମ୍ପାନୀ ବାସ୍ତରି ଲକ୍ଷ ଟଙ୍କା ବିନିମୟରେ ସମସ୍ତ ବିଷୟ ତୁଟାଇଦେବ ବୋଲି ନିଜେ କହିଥିଲା ଏବଂ ସେ ବିଷୟ ଆଡ୍‌ଭୋକେଟ୍ ଜେନେରାଲ୍ କ୍ୟାବିନେଟ ବୈଠକରେ ଆମ୍ଭମାନଙ୍କୁ କହିଥିଲେ । ଆଡ୍‌ଭୋକେଟ୍ ଜେନେରାଲ୍ ଏବଂ ଚିଫ୍ ସେକ୍ରେଟେରୀ ଶ୍ରୀ ଜୋନେଜା ଉଭୟ ଏହି ୭୨ ଲକ୍ଷ ଟଙ୍କା ଦେବାକୁ ଖଣି କର୍ପୋରେସନ୍ ରାଜିହେଲେ ସମାଧାନ ହୋଇଯିବ ବୋଲି ମନ୍ତ୍ରିମଣ୍ଡଳ ବୈଠକରେ କହିଥିଲେ । ତାହା ପୁଣି ୮୫ ଲକ୍ଷ ୪୨ ହଜାର ଟଙ୍କାକୁ କିପରି ଉଠିଲା, ତାହା ମୁଁ ବୁଝିପାରୁନାହିଁ ବୋଲି ଫାଇଲ୍‌ରେ ଲେଖିଥିଲି । ସମାଧାନ ହେବା ଉଚିତ; ମାତ୍ର ପ୍ରଥମରୁ ଲିଙ୍କ୍ସ କମ୍ପାନୀ ଯେପରି ୭୨ ଲକ୍ଷ ମଧ୍ୟରେ ସମାଧାନ ହୋଇଯିବ ବୋଲି କହୁଥିଲା, ତାହାରି ମଧ୍ୟରେ ସମାଧାନ ହେଉ । ତା'ଛଡ଼ା ପ୍ରାୟ ୧୮ ଲକ୍ଷ ଟଙ୍କା ଡଣ୍ଡ ସୁଧ (Penal interest) ବାବଦରେ ଦେବା କଥା ଲେଖାଥିଲା । ଆପୋଷ ସମାଧାନ ଯେଉଁଠି ହେଉଛି, ସେହିଠାରେ

ତଣ୍ଡ ସୁଧ କଥା ଉଠିବା ଉଚିତ ନୁହେଁ ବୋଲି ମୁଁ ଲେଖିଥିଲି । ନାମମାତ୍ର ସୁଧ ଦିଆଗଲେ ମଧ୍ୟ ତଣ୍ଡ ସୁଧ ଦିଆନଯାଉ ବୋଲି ମୁଁ ମୋର ମନ୍ତବ୍ୟ ଦେଇଥିଲି । ୧୯୭୩ ମସିହା ଜାନୁଆରୀ ମାସ ୧୬ ତାରିଖରେ ମୁଁ ମୋର ମତ ବ୍ୟକ୍ତ କରି ଲେଖିଥିଲି – "I agree that the settlement should be an overall settlement. The amount payable as a result of the compromise should be specified so that it may not go on increasing if a little delay is caused in giving effect to the settlement. In a compromise, both sides have to come down and, therefore, the rate of interest of 12 per cent (penal interest) claimed by Lynx, is not in keeping with the spirit of a compromise. In the whole matter both sides have suffered and, therefore, it will not be fair for Lynx to claim any interest at all. But since it is a compromise, we may agree to pay nominal interest and that should not be more than six per cent. This matter was earlier discussed in the Cabinet on several occasions. The Cabinet got the impression earlier that an overall settlement, including the claim for interest, could be made between Rs.70 to Rs.72 lakhs, but strangely now it is proposed to pay Rs.85 lakhs and 42 thousand. Since the Cabinet is seized of the question. I agree that the matter should go to the Cabinet for a decision."

ମୋର ଉପରୋକ୍ତ ମନ୍ତବ୍ୟ ଟିକିଏ ଅଡୁଆ ପରିସ୍ଥିତି ସୃଷ୍ଟି କରିଥିଲା । ଉଲ୍ଲିଖିତ ଟଙ୍କାରୁ କିଛି କମାଇବାପାଇଁ କୁଆଡ଼େ ଲିଙ୍କ୍ସ କମ୍ପାନୀ ସହିତ ଆଲୋଚନା କରାଯାଇଥିଲା; ମାତ୍ର କମ୍ପାନୀ ତାଙ୍କ ଦାବିରୁ କିଛି କମାଇବାକୁ ରାଜି ହେଲେନାହିଁ ବୋଲି କୁହାଯାଇଥିଲା । ଧର୍ମକୁ ଆଖିଠାର ମାରିଲା ଭଳି କମ୍ପାନୀ ସହିତ କଥାବାର୍ତ୍ତା ହୋଇଥିଲା ବୋଲି ସେତେବେଳେ ଶୁଣାଯାଇଥିଲା । ଶେଷରେ ୮୫ ଲକ୍ଷ ୪୨ ହଜାର ଟଙ୍କା ଦେବା ପ୍ରସ୍ତାବ କ୍ୟାବିନେଟ୍‌ରେ ଅନୁମୋଦନ କରାଇନିଆଯାଇଥିଲା । ମୋର ଧାରଣା ଥିଲା ଯେ ଅର୍ଥମନ୍ତ୍ରୀ ବାଙ୍କବାବୁ ଲିଙ୍କ୍ସ କମ୍ପାନୀକୁ ଏପରିଭାବରେ ଏତେଗୁଡ଼ାଏ ଟଙ୍କା ଦେବା ପ୍ରସ୍ତାବକୁ ବିରୋଧ କରିବେ; ମାତ୍ର ଅର୍ଥମନ୍ତ୍ରୀଙ୍କ ବିଭାଗ ପକ୍ଷରୁ କ୍ୟାବିନେଟ୍‌ରେ ସେ ପ୍ରକାର ଆପତ୍ତି ହୋଇନଥିଲା । ୧୯୭୧ ମସିହାରେ ବାଙ୍କବାବୁଙ୍କର ପ୍ରଜାସମାଜବାଦୀ ଦଳ ବିଧାନସଭାରେ ଏହି ଲିଙ୍କ୍ସ କମ୍ପାନୀ ସମ୍ବନ୍ଧରେ ବହୁତ ପାଟିତୁଣ୍ଡ କରି ଅଭିଯୋଗ କରିଥିଲେ ଯେ ଭିତିରିଆ ଚକ୍ରାନ୍ତ କରି ଆପୋଷ ନିଷ୍ପତ୍ତି ଆଳରେ ବିଶ୍ୱନାଥ ଦାସଙ୍କ ସରକାର ଲିଙ୍କ୍ସ କମ୍ପାନୀର ଦାବିକୁ ମାନିନେଇ ସରକାରୀ ତହିବିଲରୁ ବହୁତ ଟଙ୍କା ଦେଇଦେଉଛନ୍ତି । ଅଳ୍ପଦିନ ତଳେ ବାଙ୍କବାବୁ ପ୍ରଜାସମାଜବାଦୀ ଦଳରୁ ଆସି କଂଗ୍ରେସରେ ମିଶିଥା'ନ୍ତି । ସେ ନିଶ୍ଚୟ ତାଙ୍କ ପଛ କଥା ସ୍ମରଣ କରିବେ ବୋଲି ମୁଁ ଆଶା କରିଥିଲି । ଆଡ୍‌ଭୋକେଟ୍ ଜେନେରାଲ୍ ଶ୍ରୀ ଗଙ୍ଗାଧର ରଥଙ୍କର ମଧ୍ୟ ସାମ୍ୟବାଦୀ ଭାବମୂର୍ତ୍ତି ସମ୍ପର୍କରେ ମୁଁ ସଚେତନ ଥିଲି । ଅଳ୍ପ କେତେ ମାସ ପୂର୍ବରୁ ସେ ମୋତେ କହିଥିଲେ ଯେ ଲିଙ୍କ୍ସ କମ୍ପାନୀର ଦାବି ଏକାବେଳକେ ଅବାସ୍ତବ ଏବଂ ସେମାନେ ଗୋଟିଏ ପଇସା ପାଇବାର କଥା ନୁହେଁ । ତାଙ୍କ କଥା ଶୁଣି ଯାହାକିଛି ହେଉପଛକେ ଖର୍ଚ୍ଚପାଇଁ ଚିନ୍ତା ନକରି ଭାରତର ସବୁଠାରୁ ଉତ୍କୃଷ୍ଟ ଆଇନଜ୍ଞଙ୍କ ସାହାଯ୍ୟ ନେଇ ଅଦାଲତରେ ମକଦ୍ଦମା କରିବାକୁ ମୋଠାରୁ ସେ ପୂର୍ଣ୍ଣ କ୍ଷମତା ପାଇଥିଲେ । ସେ କିପରି ଏତେ ଟଙ୍କା ଦେବା ପ୍ରସ୍ତାବକୁ ସମର୍ଥନ କଲେ ବୋଲି ମୁଁ ବିସ୍ମିତ ହୋଇଥିଲି । ଜଣେ ଆଇନଜ୍ଞଙ୍କ ସହିତ ଏ ବିଷୟଟି ଆଲୋଚନା କରିବାକୁ ସେ ମୋତେ କହିଥିଲେ ଯେ ଓକିଲମାନେ ବଡ଼ ଅନାସକ୍ତ । ମହକିଲଙ୍କ ଅନୁଜ୍ଞା ଅନୁସାରେ କାର୍ଯ୍ୟ ସମ୍ପାଦନ କରିବା ସେମାନଙ୍କର କର୍ତ୍ତବ୍ୟ । ଓଡ଼ିଶା ଖଣି କର୍ପୋରେସନ୍‌ର ଯେଉଁ କର୍ତ୍ତାଙ୍କ କଥା ଶୁଣି ସମାଧାନ ସହଜନୁହେଁ ବୋଲି ଚିଫ୍ ସେକ୍ରେଟେରୀ ଓ ଆଡ୍‌ଭୋକେଟ୍ ଜେନେରାଲ୍ ମତ ଦେଇଥିଲେ, ସେ କିପରି ରାଜିହୋଇଗଲେ ସେକଥା ଜାଣିବାକୁ ଚେଷ୍ଟାକରିଥିଲି । ଖଣି କର୍ପୋରେସନ୍ ଡାଇରେକ୍ଟର ବୋର୍ଡ଼ରେ ସବୁ ସଭ୍ୟ ଥିଲେ ସରକାରୀ ଅଫିସର୍ ।

ସରକାରଙ୍କ ଯାହା ଇଚ୍ଛା ତାହା ସେଠାରେ ଅନୁମୋଦନ କରାଇନେବାରେ କିଛି ଅସୁବିଧା ହୁଏନାହିଁ ବୋଲି କର୍ପୋରେସନ୍‌ର କେତେକ କର୍ମଚାରୀଙ୍କଠାରୁ ଜାଣିବାକୁ ପାଇଥିଲି ।

ଖଣିମନ୍ତ୍ରୀ ଥିଲେ ପୁରୀର ଜଣେ ଜଣାଶୁଣା ଓକିଲ । ଲିଙ୍କ୍‌ସ କମ୍ପାନୀ ଯେତିକି ମାଗୁଥିଲେ ସରକାର ସେଥିରୁ ଏତେ ଅଧିକ ଟଙ୍କା କିପରି ଦେଇଦେଲେ ବୋଲି ଥରେ ଜଣେ ମତେ ପଚାରିବାରୁ ସେଠାରେ ଉପସ୍ଥିତ ଥିବା ପୁରୀର ଅନ୍ୟ ଜଣେ ବ୍ୟକ୍ତି ଗୋଟିଏ ସୁନ୍ଦର ଗପ କହିଥିଲେ । ଥରେ ପୁରୀ ଜିଲ୍ଲା ସ୍କୁଲର ଜଣେ ମୌଲବୀ କୁଆଡ଼େ ଜଣେ ଛାତ୍ରକୁ ଉର୍ଦ୍ଦୁ ସାହିତ୍ୟ ପରୀକ୍ଷା ଖାତାରେ ଭୁଲକ୍ରମେ ଶହେରୁ ଶହେ ଚଉଦ ଦେଇପକାଇଥିଲେ । ଏକଥା ହେଡ଼ମାଷ୍ଟରଙ୍କ ଦୃଷ୍ଟିକୁ ଆସିଲା । ହେଡ଼ମାଷ୍ଟ୍ରେ ପଚାରିବାରୁ ମୌଲବୀ ମହାଶୟ ଜବାବ ଦେଇଥିଲେ, "ମୈନେ ଯିତ୍‌ନା ପୁଛା, ଉସ୍‌ସେ ଜ୍ୟାଦା ମିଲା, ଇସିଲିଏ ହମ୍ ଭି ଜ୍ୟାଦା ଦେ ଦିୟା ।" କଥାଟା ହେଲା ପ୍ରଶ୍ନପତ୍ରରୁ ଯେତୋଟି ପ୍ରଶ୍ନର ଉତ୍ତର ଦେବାକୁ କୁହାଯାଇଥିଲା, ପିଲାଟି କୁଆଡ଼େ ସେଥିରୁ ଅଧିକ ପ୍ରଶ୍ନର ଉତ୍ତର ଦେଇଥିଲା । ତେଣୁ ସବୁ ମିଶାଇଦେଲାବେଳକୁ ତାକୁ ଶହେରୁ ଶହେ ଚଉଦ ମିଳିଗଲା । ଏଠାରେ ଲିଙ୍କ୍‌ସ କମ୍ପାନୀକୁ କେତେ ପ୍ରଶ୍ନ ପଚରାଯାଇଥିଲା ଏବଂ ସେ ସନ୍ତୋଷଜନକଭାବେ ତହିଁରୁ କେତେ ଅଧିକ ଉତ୍ତର ଦେଇଥିଲେ କି ନାହିଁ, ସେକଥା ଆମ୍ଭମାନଙ୍କଠାରୁ ବୁଝିବାକୁ ପଡ଼ିବ ବୋଲି ସେହି ଭଦ୍ରବ୍ୟକ୍ତି ରହସ୍ୟ କରି କହିଥିଲେ । ତାଙ୍କ କଥା ବେଶ୍ ହାସ୍ୟରୋଳ ସୃଷ୍ଟି କରିଥିଲା । ବିଧାନସଭାର ୧୯୭୪ ମସିହା ବଜେଟ୍ ଅଧିବେଶନ ସମୟରେ ଓଡ଼ିଶା ସରକାରଙ୍କର ଲିଙ୍କ୍‌ସ କମ୍ପାନୀ ସମ୍ପର୍କୀୟ ନିଷ୍ପତ୍ତିକୁ ରହସ୍ୟଜନକ ବୋଲି କହି ତାହା ଗୋଟିଏ ତଦନ୍ତ କମିଶନଦ୍ୱାରା ଜଣେ ହାଇକୋର୍ଟ ଜଜ୍‌ଙ୍କ ତତ୍ତ୍ୱାବଧାନରେ ଅନୁସନ୍ଧାନ କରିବାପାଇଁ ଦାବି କରାଯାଇଥିଲା । ପ୍ରଥମ ଅବସ୍ଥାରେ ଚାଳିଶ ଲକ୍ଷ ଟଙ୍କା ଭିତରେ ସବୁ କଥା ସମାଧାନ ହୋଇଯିବା କଥା ସ୍ଥିରହୋଇଥିବାବେଳେ ତାହା ପଞ୍ଚାଅଶୀ ଲକ୍ଷ ବୟାଳିଶ ହଜାରକୁ କିପରି ଉଠିଲା, ସେ ବିଷୟରେ ବିଧାନସଭାରେ ନାନା ପ୍ରଶ୍ନ ଉତ୍‌ଥାପନ କରାଯାଇଥିଲା । ସରକାରଙ୍କ ପକ୍ଷରୁ ମୁଖ୍ୟମନ୍ତ୍ରୀ ତଥା ବିଭାଗୀୟ ମନ୍ତ୍ରୀ କୌଣସି ସନ୍ତୋଷଜନକ ଉତ୍ତର ଦେଇପାରିନଥିଲେ ବୋଲି ସେତେବେଳେ ଖବରକାଗଜମାନଙ୍କରେ ପ୍ରକାଶିତ ହୋଇଥିଲା । ଧର୍ମକୁ ଆଖିଠାର ମାରିଲା ଭଳି ଉଚ୍ଚ ଅଫିସରମାନଙ୍କଦ୍ୱାରା ଏହି ଲିଙ୍କ୍‌ସ ବ୍ୟାପାର ତଦନ୍ତ କରାଇବାପାଇଁ ମୁଖ୍ୟମନ୍ତ୍ରୀ ବିଧାନସଭାରେ କହିଲେ । ଯେଉଁ ଲିଙ୍କ୍‌ସ ବ୍ୟାପାର ଶାସନର ସର୍ବୋଚ୍ଚ ସ୍ତରରେ ଥିବା ମନ୍ତ୍ରୀମାନଙ୍କଦ୍ୱାରା ଆପୋଷରେ ଫଏସଲା କରାଗଲା, ଅଫିସରମାନେ ତାହା ତଦନ୍ତ କରିବେ ବୋଲି କହିବା ଅତି ହାସ୍ୟାସ୍ପଦ ବୋଲି ବିଧାନସଭାରେ ଅଭିଯୋଗ ହୋଇଥିଲା ।

## କଟକ ଉପନିର୍ବାଚନ ବ୍ୟାପାର

ନନ୍ଦିନୀ ଦେବୀ ବିଧାନସଭା ସଦସ୍ୟ ନଥାଇ ମୁଖ୍ୟମନ୍ତ୍ରୀ ହୋଇଥିଲେ । ତେଣୁ ତାଙ୍କୁ ଛଅ ମାସ ମଧ୍ୟରେ ବିଧାନସଭାକୁ ନିର୍ବାଚିତ ହୋଇ ଆସିବାର କଥା । କେଉଁ ନିର୍ବାଚନମଣ୍ଡଳୀରେ ସେ ଛିଡ଼ାହେଲେ ତାଙ୍କର ସୁବିଧା ହେବ ସେଥିପାଇଁ ତାଙ୍କର ନିର୍ବାଚନମଣ୍ଡଳୀ ଖୋଜାଚାଲିଲା । ଗଞ୍ଜାମ ଜିଲ୍ଲା ଆସ୍କାରେ ସେ ଛିଡ଼ାହେବାପାଇଁ ମସୁଧା କରି ସେଠାକୁ ଶ୍ରୀମତୀ ଗାନ୍ଧୀଙ୍କୁ ନେଇ ଗୋଟିଏ ସାଧାରଣ ସଭା କରାଯାଇଥିଲା; କିନ୍ତୁ ପରେ ଆସ୍କା ନିର୍ବାଚନମଣ୍ଡଳୀ ତାଙ୍କ ପକ୍ଷରେ ସୁବିଧା ହେବନାହିଁ ବୋଲି ସେ ବୁଝିପାରିଥିଲେ । ଶେଷରେ କଟକ ସହରର ପ୍ରତିନିଧି ଶ୍ରୀ ଭୈରବ ଚନ୍ଦ୍ର ମହାନ୍ତି ଇସ୍ତଫା ଦେବାକୁ ରାଜିହେବାରୁ ନନ୍ଦିନୀ ଦେବୀ ସେହିଠାରୁ ଉପନିର୍ବାଚନ ଲଢ଼ିବାପାଇଁ ସ୍ଥିରକରିଥିଲେ । ନନ୍ଦିନୀ ଦେବୀ ରାଜ୍ୟସଭାର ସଦସ୍ୟା ଥିଲେ । ସେ ଉପନିର୍ବାଚନରେ ନିର୍ବାଚିତ ହୋଇ ରାଜ୍ୟସଭାରୁ ଇସ୍ତଫା ଦେଲେ ସେହି ସ୍ଥାନରୁ ଭୈରବବାବୁ ରାଜ୍ୟସଭାକୁ ଯିବେ ବୋଲି ସ୍ଥିରହୋଇଥିଲା । ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ କଟକ ସହର ନିର୍ବାଚନମଣ୍ଡଳୀରୁ କିଏ ପ୍ରତିଦ୍ୱନ୍ଦ୍ୱିତା କରିବ ସେ ବିଷୟରେ ବିରୁଦ୍ଧ ଦଳର ଲୋକମାନଙ୍କ

ମଧ୍ୟରେ ନାନାପ୍ରକାର ଆଲୋଚନା ଆରମ୍ଭ ହୋଇଥିଲା । ହଠାତ୍ ଜଣାଯାଇଥିଲା ଯେ ନନ୍ଦିନୀ ଦେବୀଙ୍କୁ ନିର୍ବାଚନରେ ହରାଇବାପାଇଁ ସେତେବେଳକାର ଶାସକ କଂଗ୍ରେସ ନେତା ଶ୍ରୀ ହରେକୃଷ୍ଣ ମହତାବ ବିଶେଷ ଆଗ୍ରହୀ ହୋଇପଡ଼ିଥାନ୍ତି । ମହତାବଙ୍କୁ ସରଯୂପ୍ରସାଦ କମିଶନ ଦୁର୍ନୀତିଗ୍ରସ୍ତ ବୋଲି ଯେଉଁ ରିପୋର୍ଟ ଦେଇଥିଲେ, ତାହାକୁ ପୁଣି ଥରେ ମନ୍ତ୍ରିମଣ୍ଡଳରେ ପକାଇ ବିଶ୍ୱନାଥ ଦାସଙ୍କ ମନ୍ତ୍ରିମଣ୍ଡଳର ନିଷ୍ପତ୍ତିକୁ ନାକଚ କରିଦେବାପାଇଁ ନନ୍ଦିନୀ ଶତପଥୀଙ୍କ ଉପରେ ନାନା ପ୍ରଭାବ ପକାଇ ମହତାବବାବୁ ସେତେବେଳକୁ ବିଫଳ ହୋଇଥା'ନ୍ତି । ସବୁବେଳେ ହଁ-ହଁ ମାରି ଆଡ୍‌ଭୋକେଟ ଜେନେରାଲ ଓ କ୍ୟାବିନେଟ୍ ସହିତ ଥରକୁଥର ଆଲୋଚନାକରି ମଧ ସେ ଟାଳଟୁଳ କରୁଥିବାରୁ ମହତାବଙ୍କର ତାଙ୍କ ସମ୍ପର୍କରେ ଘୋର ସନ୍ଦେହ ଓ କ୍ରୋଧ ଜାତହୋଇଥାଏ । ତେଣୁ ସେ 'ଶଠେଶାଠ୍ୟଂ ସମାଚରେତ୍' ନୀତି ପ୍ରୟୋଗକରିଥିଲେ । କିଏ ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ପ୍ରାର୍ଥୀ ହେଲେ ଠିକ୍ ହେବ ସେ ବିଷୟରେ ବହୁଲୋକ ଯାଇ ମହତାବଙ୍କର ପରାମର୍ଶ ଲୋଡ଼ିଥିଲେ । ବିଜୁବାବୁ ଓ ବୀରେନ୍‌ବାବୁଙ୍କ ମଧ୍ୟରୁ କେହି ଜଣେ ଛିଡ଼ାହେଲେ ନନ୍ଦିନୀ ଦେବୀଙ୍କୁ ହରାଇ ହେବ ବୋଲି ସେ ଭାବିଥିଲେ । ତେଣୁ ସେମାନଙ୍କୁ କିପରି ଫାନ୍ଦରେ ପକାଯିବ ତା'ର ମସୁଧା ସେ କରିଥିଲେ । ମହତାବବାବୁ ଖୁବ୍ ଚତୁରତା ସହକାରେ କହିବାକୁ ଲାଗିଲେ, "ମୁଁ କଟକ ସହରର ବହୁ ଆଡ଼କୁ ଲୋକ ପଠାଇ ସନ୍ଧାନ ନେଲିଣି, ସମସ୍ତେ କହୁଛନ୍ତି ବୀରେନ୍‌ବାବୁ ବା ବିଜୁବାବୁ ଛିଡ଼ାହେଲେ ନନ୍ଦିନୀ ନିଶ୍ଚୟ ହାରିଯିବ । ବିଶେଷକରି ମହାନଦୀ ଓ କାଠଯୋଡ଼ିରେ ଗାଧୁଆଘାଟକୁ ଲୋକ ପଠାଇଥିଲି । ସେଠାରେ ମାଇପେ ମଧ କଥାବାର୍ତ୍ତା ହେଉଛନ୍ତି, ବୀରେନ୍ ଦାଦା ହେଲେ ନନ୍ଦିନୀ କୁଆଡ଼େ ଉଡ଼ିଯିବ ।" ଏହି କଥାଟାକୁ ମହତାବବାବୁ ବହୁଲୋକଙ୍କ ଆଗରେ କହିଥିଲେ, ଯେପରି ବୀରେନ୍‌ବାବୁଙ୍କ କାନରେ କଥାଟା ପଡ଼ିବ । ବୀରେନ୍‌ବାବୁ ଫାନ୍ଦରେ ପଡ଼ିବା ଭଳି ପ୍ରବୃତ୍ତି ଦେଖାଇଥିଲେ । ବୀରେନ୍‌ବାବୁଙ୍କ ସ୍ତ୍ରୀ ଶ୍ରୀମତୀ ଈଶ୍ୱରାମ୍ମା ମିତ୍ରଙ୍କର ମଧ ଇଚ୍ଛା ହେଉଥାଏ ବୀରେନ୍‌ବାବୁ କିପରି ଉପନିର୍ବାଚନରେ ଛିଡ଼ା ହୁଅନ୍ତୁ । ମହତାବଙ୍କର କଥା ଶୁଣି ଶ୍ରୀମତୀ ମିତ୍ର ମଧ ଉତ୍ସାହିତ ହୋଇଥିଲେ । ଶ୍ରୀମତୀ ମିତ୍ର ଥରେ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଦେବୀଙ୍କୁ ଦେଖାକରିବାକୁ ଯାଇଥିଲେ । ନନ୍ଦିନୀ ଦେବୀଙ୍କ ବ୍ୟବହାରରେ ସେ କ୍ଷୁବ୍ଧ ହୋଇଥିଲେ । ବୀରେନ୍‌ବାବୁଙ୍କୁ ଛିଡ଼ାହେବାପାଇଁ ପ୍ରବର୍ତ୍ତାଇବାକୁ ମୋତେ ମଧ ମହତାବବାବୁ କହିଥିଲେ । ମୁଁ ଥାଏ କଂଗ୍ରେସ ମନ୍ତ୍ରୀ; ମାତ୍ର ନନ୍ଦିନୀ ଦେବୀଙ୍କ ସହିତ ମୋର ଭଲ ପଡୁନଥାଏ । ଜାଣିଶୁଣି ମୋତେ ଅପଦସ୍ଥ କରିବାପାଇଁ ଶ୍ରୀ ପ୍ରତାପ ଚନ୍ଦ୍ର ମହାନ୍ତି, ଶ୍ରୀ ପ୍ରହ୍ଲାଦ ମଲ୍ଲିକ ଓ ଶ୍ରୀ ଶରତ୍ କୁମାର କରଙ୍କ ଭଳି ପ୍ରଭାବଶାଳୀ ଉତ୍କଳ କଂଗ୍ରେସ ସଭ୍ୟଙ୍କୁ କଂଗ୍ରେସରେ ନମିଶାଇଦେବାକୁ ନନ୍ଦିନୀ ଦେବୀ ଚକ୍ରାନ୍ତ କରୁଥିଲେ । ସେମାନଙ୍କୁ ଶାସକ କଂଗ୍ରେସରେ ନେଇଯିବାପାଇଁ ମୋର ସମସ୍ତ ଉଦ୍ୟମକୁ ନନ୍ଦିନୀ ଦେବୀ ପଣ୍ଡକରିଦେଇଥାଆନ୍ତି । ମୋର ବନ୍ଧୁମାନଙ୍କ ସମ୍ମୁଖରେ ମୁଁ ବଡ଼ ଲଜ୍ଜିତ ହେଉଥାଏ । ମୁଁ ଜାଣିଥିଲି ଯେ ଶାସକ କଂଗ୍ରେସ ଓ ଉତ୍କଳ କଂଗ୍ରେସର ମିଶ୍ରଣ ପରେ ପରେ ମୋର ଏଇ ବନ୍ଧୁମାନେ ବିଜୁବାବୁଙ୍କଦ୍ୱାରା ପ୍ରଭାବିତ ହୋଇ ମୁଁ କିପରି ମୁଖ୍ୟମନ୍ତ୍ରୀ ହୋଇନପାରିବି ସେଥିପାଇଁ ଉଦ୍ୟମ କରିଥିଲେ । ମୁଁ ସେତେବେଳେ ମୁଖ୍ୟମନ୍ତ୍ରୀ ହୋଇଥିଲେ ସେମାନଙ୍କ ପକ୍ଷରେ କଂଗ୍ରେସରେ ପ୍ରବେଶ କରିବାର କିଛି ଅସୁବିଧା ହୋଇନଥାନ୍ତା । ସେମାନେ ଯଦିଓ ମୁଖ୍ୟମନ୍ତ୍ରୀ ହେବାପାଇଁ ପ୍ରଥମରୁ ନନ୍ଦିନୀ ଦେବୀଙ୍କୁ ସମର୍ଥନ କରିଥିଲେ, ତଥାପି ମୋର କର୍ତ୍ତବ୍ୟଦୃଷ୍ଟିରୁ ମୁଁ ସେମାନଙ୍କୁ କଂଗ୍ରେସରେ ନେବାପାଇଁ ଯଥୋନାସ୍ତି ଉଦ୍ୟମ କରୁଥିଲି । ମହତାବବାବୁ ମୋତେ କହିବା ପରେ ମୁଁ ଟିକିଏ ଦ୍ୱିଧାରେ ଥାଏ । ସେ ପୁଣି ମୋତେ ବୁଝାଇବାପାଇଁ ଶ୍ରୀ ଶଶିଭୂଷଣ ମିଶ୍ରଙ୍କୁ ପ୍ରବର୍ତ୍ତାଇଥିଲେ । ବୀରେନ୍‌ବାବୁଙ୍କ ମତିଗତି ବୁଝିବାପାଇଁ ଶଶିବାବୁ ତାଙ୍କ ପାଖକୁ ଯାଇଥିଲେ । ବୀରେନ୍‌ବାବୁ କୁଆଡ଼େ ନିଜ ଉଦ୍ୟମରେ ନନ୍ଦିନୀ ଦେବୀଙ୍କୁ ଭେଟିସାରିଥା'ନ୍ତି । ନନ୍ଦିନୀ ଦେବୀଙ୍କ ସାହାଯ୍ୟରେ ବୀରେନ୍‌ବାବୁଙ୍କ 'ଜନଶକ୍ତି' ଅନୁଷ୍ଠାନ ଓ ଅନ୍ୟାନ୍ୟ ସମ୍ପତ୍ତି ଋଣମୁକ୍ତ ହୋଇପାରିଲେ ସେ ଶାସକ କଂଗ୍ରେସକୁହିଁ ସମର୍ଥନ କରିବେ ବୋଲି ଶଶିବାବୁଙ୍କର ଧାରଣାହେଲା ।

କଂଗ୍ରେସ ସହିତ ଉତ୍କଳ କଂଗ୍ରେସ ମିଶ୍ରଣପାଇଁ ଶଶିବାବୁ ଦିଲ୍ଲୀ ମହଲରେ ଆଲୋଚନା କଲାବେଳେ ଯେଉଁସବୁ ଜବାବ ମିଳିଥିଲା, ସେଥିରେ ବ୍ୟତିକ୍ରମ ଘଟିବାରୁ ସେ ଖୁବ୍ ଅସନ୍ତୁଷ୍ଟ ଓ ଅପମାନିତ ବୋଧକରୁଥିଲେ । ମାତ୍ର ମନ୍ତ୍ରିମଣ୍ଡଳ ଛାଡ଼ିଲେ ମଧ୍ୟ କଂଗ୍ରେସ ନଛାଡ଼ିବାପାଇଁ ସେ ମୋତେ ଦୃଢ଼ଭାବରେ ପ୍ରବର୍ତ୍ତାଉଥା'ନ୍ତି । ତେଣୁ ସେ ବଡ଼ ଛକାପଞ୍ଝା ଭିତରେ ଗତି କରୁଥିବାର ମୋର ମନେହେଉଥାଏ । ଏ ଅବସ୍ଥାରେ ଦିନେ ଶ୍ରୀମତୀ ଈଶ୍ୱରାମ୍ମା ମିତ୍ରଙ୍କଠାରୁ ମୋ ପାଖକୁ ଫୋନ୍ ଆସିଲା । ଫୋନ୍‌ରେ ସେ କହିଲେ, "Nilamani Bhai make hay while sun shines." ମିତ୍ର ଛିଡ଼ାହେଲେ ତୁମେ ଯେପରି ନିଶ୍ଚୟ ତାଙ୍କୁ ସାହାଯ୍ୟ କରିବ । ମୁଖ୍ୟମନ୍ତ୍ରୀ ହୋଇ ସେ ସ୍ତ୍ରୀଲୋକଟାର ବଡ଼ ଗର୍ବ ହୋଇଗଲାଣି ।'' ଶ୍ରୀମତୀ ମିତ୍ରଙ୍କର କଥା ଶୁଣି ମୋର ଉତ୍ସାହ ହୋଇଥିଲା ବୀରେନ୍‌ବାବୁଙ୍କୁ ଦେଖାକରିବାପାଇଁ । ତେଣୁ ଦିନେ ଯାଇ ବୀରେନ୍‌ବାବୁଙ୍କୁ ତାଙ୍କ 'ଜନଶକ୍ତି' ଘରେ ଦେଖାକରିଥିଲି । ମହତାବବାବୁ ମୋତେ ଯେଉଁ କଥାସବୁ କହିଥିଲେ ସେ କଥା ତାଙ୍କୁ କହିଥିଲି । ଅନ୍ୟମାନଙ୍କଦ୍ୱାରା ମହତାବବାବୁ ଖବର ପଠାଇଥାଆନ୍ତି ବୋଲି ବୀରେନ୍‌ବାବୁ ମୋତେ କହିଥିଲେ । ସେ ଛିଡ଼ାହେବା ପାଇଁ ଚିନ୍ତା କରୁଛନ୍ତି ବୋଲି ମୋତେ କହିଥିଲେ । ଛିଡ଼ା ହେଲେ ମୁଁ କ'ଣ ସାହାଯ୍ୟ କରିପାରିବି ସେ କଥା ସେ ଜାଣିବାକୁ ଚାହିଁଥିଲେ । ମୁଁ ଯେତେବେଳେ କଂଗ୍ରେସରେ ଜଣେ ମନ୍ତ୍ରୀ ଅଛି, କଂଗ୍ରେସ ପ୍ରାର୍ଥୀପାଇଁ ପ୍ରଚାର କରିବାକୁ ମୋତେ କହିପାରନ୍ତି ବୋଲି ମୁଁ କହିଥିଲି । ସେ ତା' ଶୁଣି କହିଥିଲେ ଯେ ମୁଁ ସେ ପ୍ରକାର ପ୍ରଚାର ଉପରଠାଉରିଆ ଭାବରେ କଲେ କିଛି କ୍ଷତି ହେବନାହିଁ; କିନ୍ତୁ ତାହା ବିଶେଷ ଭାବରେ ନକଲେ ଭଲହେବ । ସେ ନିର୍ବାଚନରେ ଛିଡ଼ାହେଲେ ଜଣେ ବନ୍ଧୁ ହିସାବରେ ମୁଁ ତାଙ୍କୁ ଏକ ଲକ୍ଷ ଟଙ୍କା ଚାନ୍ଦା ଯୋଗାଡ଼ କରେଇଦେଇପାରିବି କି ବୋଲି ସେ ପଚାରିଥିଲେ । ମୁଁ ତାଙ୍କୁ ସେଭଳି ଭାବରେ ସାହାଯ୍ୟ କରିବାକୁ ସହମତ ହୋଇଥିଲି ।

ପ୍ରକୃତରେ ନିର୍ବାଚନରେ ବୀରେନ୍ ମିତ୍ର ଛିଡ଼ାହେବା କଥା ଶୁଣିବା ପରେ ନନ୍ଦିନୀ ଦେବୀ ନିଜେ ତାଙ୍କ ପାଖରେ ଯାଇ ପହଞ୍ଚିଥିଲେ । ସେ ଅନେକ ଉଦ୍ୟମ କରିଥିଲେ ଯେଭଳି ବୀରେନ୍‌ବାବୁ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା ନକରନ୍ତୁ । ବିଜୁବାବୁଙ୍କ ପାଖରେ ମଧ୍ୟ ନନ୍ଦିନୀ ଦେବୀ ତାଙ୍କର ସମର୍ଥନ ପାଇଁ ପହଞ୍ଚିଥିଲେ । କଂଗ୍ରେସର ସାଧାରଣ ସଂପାଦକ ଶ୍ରୀ ଚନ୍ଦ୍ରଜିତ୍ ଯାଦବ ଓଡ଼ିଶାକୁ ଆସି ବିଜୁବାବୁଙ୍କର ସମର୍ଥନ ପାଇବାପାଇଁ ଉଦ୍ୟମ କରିଥିଲେ । ନିଖିଳ ଭାରତ କଂଗ୍ରେସ ପକ୍ଷରୁ ପର୍ଯ୍ୟବେକ୍ଷକ ଭାବରେ ଆସିଥିବା ଶ୍ରୀ ମାଥୁର୍ ମଧ୍ୟ ବିଜୁବାବୁଙ୍କର ସମର୍ଥନ ହାସଲ କରିବାପାଇଁ ଉଦ୍ୟମ କରିଥିଲେ । କିନ୍ତୁ ଏସବୁ ଉଦ୍ୟମ ବିଫଳ ହୋଇଥିଲା । ବୀରେନ୍‌ବାବୁ ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ସ୍ୱାଧୀନ ପ୍ରାର୍ଥୀ ରୂପେ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ । ବିଜୁବାବୁ ବୀରେନ୍‌ବାବୁଙ୍କପାଇଁ କଟକ ସହରରେ ପ୍ରଚାର କରିଥିଲେ । ମହତାବବାବୁ ମଧ୍ୟ ବୀରେନ୍‌ବାବୁଙ୍କ ପାଇଁ ଉଦ୍ୟମ କରିଥିଲେ । ଦିନେ ବୀରେନ୍‌ବାବୁ ଓ ବିଜୁବାବୁଙ୍କୁ କଟକ ସହରର ଲୋକେ ଗୋଟିଏ ବିରାଟ ଶୋଭାଯାତ୍ରାରେ ନେଇ ମହତାବବାବୁଙ୍କ ପାଖରେ ପ୍ରଜାତନ୍ତ୍ର ଅଫିସ୍ ପ୍ରାଙ୍ଗଣରେ ପହଞ୍ଚିଥିଲେ । ମହତାବବାବୁ ଶୋଭାଯାତ୍ରା ପାଖକୁ ଆସିଥିଲେ । ବହୁତ ଫୁଲମାଳ ମଧ୍ୟ ମହତାବବାବୁଙ୍କ ବେକରେ ପଡ଼ିଥିଲା । ବୀରେନ୍‌ବାବୁ କିପରି ନିର୍ବାଚନରେ ଜୟଯୁକ୍ତ ହେବେ ସେଥିପାଇଁ ମହତାବବାବୁ ତାଙ୍କୁ ସମସ୍ତଙ୍କ ସମ୍ମୁଖରେ ଆଶୀର୍ବାଦ ଦେଇଥିଲେ । ମୁଁ ସେ ସମୟରେ ବମ୍ବେରେ ମୋର ସ୍ତ୍ରୀଙ୍କ ରୋଗଶଯ୍ୟା ପାଖରେ ରହୁଥାଏ । ଭୁବନେଶ୍ୱରରେ ଥିବାବେଳେ ଥରେ ଶ୍ରୀ ଚନ୍ଦ୍ରଜିତ୍ ଯାଦବ ମୋତେ ସାଙ୍ଗରେ ନେଇ ନନ୍ଦିନୀ ଦେବୀଙ୍କ ପାଇଁ କଟକ ସହରରେ ପ୍ରଚାର କରିବାକୁ ବାହାରିଲେ । କଟକ ସ୍ୱରାଜ ଆଶ୍ରମ ପ୍ରାଙ୍ଗଣରେ ଗୋଟିଏ ସଭାରେ କଂଗ୍ରେସକୁ ସମର୍ଥନ କରିବାପାଇଁ ମୁଁ କହିଥିଲି, ତା' ବ୍ୟତୀତ ମୁଁ ଆଉ କେବେ କିଛି କହି-ନାହିଁ । ବୀରେନ୍‌ବାବୁଙ୍କ ଅନୁରୋଧ ରକ୍ଷାକରି ମୁଁ ଯୋଗାଡ଼ଯନ୍ତ୍ର କରି ବୀରେନ୍‌ବାବୁଙ୍କ ହାତରେ ପଚାଶ ହଜାର ଟଙ୍କା ଦେଇଥିଲି ଏବଂ ମୁଁ ବମ୍ବେ ଯିବା ଦିନ ଯୋଗାଡ଼ ହୋଇଥିବା ଆଉ ପଚାଶ

ହଜାର ଟଙ୍କା ବୀରେନ୍‌ବାବୁଙ୍କୁ ଦେବା ପାଇଁ ମହତାବବାବୁଙ୍କ ହାତରେ ଦେଇଯାଇଥିଲି ।

କଟକ ଉପନିର୍ବାଚନରେ ଜୟ କରିବାପାଇଁ ଶାସକ କଂଗ୍ରେସ ଓ ଶାସକ କଂଗ୍ରେସ ସରକାର ନ୍ୟାୟ, ଅନ୍ୟାୟ କିଛି ବାଛବିଚାର କରିନଥିଲା । ଟଙ୍କା ଦେଇ କିପରି ଭୋଟ କିଣାଯିବ ତା'ର ଗୋଟିଏ ଯୋଜନା ତିଆରି ହୋଇଥିଲା । କଟକ ସହରର ହରିପୁର ରାସ୍ତା ଉପରେ ଏକ ସୁପ୍ରଶସ୍ତ ହତା ଭିତରେ ଏକ ବିରାଟ ଅଟ୍ଟାଳିକାରେ ନନ୍ଦିନୀ ଦେବୀଙ୍କର ମୁଖ୍ୟ ନିର୍ବାଚନ ଅଫିସ୍ ଖୋଲାଯାଇଥିଲା । ତା'ଛଡ଼ା ପ୍ରତ୍ୟେକ ୱାର୍ଡ଼ରେ ମଧ୍ୟ ବଡ଼ ବଡ଼ ଅଫିସ୍‌ମାନ ଖୋଲାଯାଇଥିଲା । ବହୁତ ଲୁଗାପଟା, କମ୍ବଳ ଲୋକମାନଙ୍କ ମଧ୍ୟରେ ବଣ୍ଟାଯାଇଥିଲା । ଅଫିସ୍ ଚଳାଇବା ଓ ପ୍ରଚାର କାର୍ଯ୍ୟପାଇଁ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରାଯାଇଥିଲା । ଲୋକନାୟକ ଜୟପ୍ରକାଶ ନାରାୟଣ ଓଡ଼ିଶାରେ ଗୋଟିଏ ସାଧାରଣ ସଭାରେ କହିଥିଲେ ଯେ କଟକ ବିଧାନସଭା ଉପନିର୍ବାଚନରେ ଶାସକ କଂଗ୍ରେସ ପକ୍ଷରୁ ତିରିଶ ଲକ୍ଷ ଟଙ୍କା ଖର୍ଚ୍ଚ କରାଯାଇଥିଲା । ଇନ୍ଦିରା କଂଗ୍ରେସର ବିପୁଳ ପାଣ୍ଠି ସହିତ କିପରି ଦୁର୍ନୀତି ଜଡ଼ିତ ରହିଅଛି ସେ ସମ୍ବନ୍ଧରେ ଶ୍ରୀମତୀ ଗାନ୍ଧୀଙ୍କ ସହିତ ଆଲୋଚନା କଲାବେଳେ ଜୟପ୍ରକାଶଜୀ କୁଆଡ଼େ କଟକର ଏହି ଉପନିର୍ବାଚନରେ ଅତ୍ୟଧିକ ଖର୍ଚ୍ଚ ହେବା କଥା ଶ୍ରୀମତୀ ଗାନ୍ଧୀଙ୍କର ଦୃଷ୍ଟିକୁ ଆଣିଥିଲେ; ମାତ୍ର ଏ ସମ୍ବନ୍ଧରେ ନିଜର ଅଜ୍ଞତା ପ୍ରତିପାଦନ କରି ଏବଂ କଂଗ୍ରେସ ଏତେ ଟଙ୍କା କୁଆଡ଼ୁ ଆଣିବ ବୋଲି କହି ଶ୍ରୀମତୀ ଗାନ୍ଧୀ ବିଷୟଟି ଏଡ଼ାଇଦେଇଥିଲେ । ଶ୍ରୀ କୁଲଦୀପ ନାୟାର ତାଙ୍କର India After Nehru ପୁସ୍ତକରେ ଜୟପ୍ରକାଶଙ୍କ ଏ ସମ୍ବନ୍ଧୀୟ ଉକ୍ତିକୁ ନିମ୍ନମତେ ଉଦ୍ଧାର କରିଛନ୍ତି – "I gave her a specific instance of an Orissa by-election in which Mrs. Nandini Satpathy was elected. I told her that one of the then West Bengal Ministers, Bijoy Singh Nahar, had told me that Rs.30 lakhs had been spent in that by-election. This was what her own partymen said." ଏହାଠାରୁ ଆହୁରି ଅଧିକ ଖର୍ଚ୍ଚ ହୋଇଥିଲା ବୋଲି ନନ୍ଦିନୀଦେବୀଙ୍କର ନିର୍ବାଚନ ଦାୟିତ୍ୱରେ ଥିବା କେତେକ ନେତୃସ୍ଥାନୀୟ ବ୍ୟକ୍ତି ମଧ୍ୟ କହୁଥିଲେ । କଂଗ୍ରେସ ସ୍ୱେଚ୍ଛାସେବକଙ୍କ ପାଇଁ ରହିବା, ଖାଇବା, ପିଇବାପାଇଁ ଯେପରି ବ୍ୟବସ୍ଥା ହୋଇଥିଲା ସେଥିରେ ଆକୃଷ୍ଟ ହୋଇ ଦୂରଦୂରାନ୍ତରୁ ବହୁ କର୍ମୀ ଆସି ପ୍ରଚାର କାର୍ଯ୍ୟରେ ଯୋଗ ଦେଇଥିଲେ । କଟକ ଉପନିର୍ବାଚନ ସମୟରେ ଭୋଟ ଗ୍ରହଣର କିଛିଦିନ ପୂର୍ବରୁ ଭାରତରେ ଥିବା ରୁଷ ଦେଶର ଦୂତାବାସରୁ କେତେକ ଅଫିସର୍ ଆସି ଭୁବନେଶ୍ୱର ସରକାରୀ ଅତିଥିଭବନରେ ରହୁଥିଲେ । କଟକ ଉପନିର୍ବାଚନରେ କୌଣସି ଗୋଟିଏ ବୈଦେଶିକ ଶକ୍ତି କିଛି ଅର୍ଥ ବିନିଯୋଗ କରିଥିବାର ଅଭିଯୋଗ ମଧ୍ୟ ସେତେବେଳେ ହୋଇଥିଲା । ଟଙ୍କା କିପରି ଲୋକଙ୍କ ଭିତରେ ବଣ୍ଟାଯିବ ସେଥିପାଇଁ ଗୋଟିଏ ଯୋଜନା ପ୍ରସ୍ତୁତ ହୋଇଥିଲା । କଂଗ୍ରେସ ପକ୍ଷରୁ ଟଙ୍କା ବାଣ୍ଟିଲାବେଳେ ବୀରେନ୍‌ବାବୁଙ୍କ ପକ୍ଷର ଲୋକ କେତେକ ସ୍ଥାନରେ ଟଙ୍କା ଛଡ଼ାଇନେଇଥିଲେ । ସେଥିପାଇଁ ପୁଲିସ ସାହାଯ୍ୟରେ ଟଙ୍କା ବଣ୍ଟାଯାଇଥିଲା । ସେଥିରେ ଯେଉଁ ପୁଲିସ ଅଫିସରମାନେ ଆପତ୍ତି କରିଥିଲେ, ସେମାନଙ୍କ ପ୍ରତି ସରକାରଙ୍କର କୋପଦୃଷ୍ଟି ପଡ଼ିଥିଲା । ଟଙ୍କା ଲୋକଙ୍କୁ ଦେଇ ଭୋଟ କିଣିବାପାଇଁ ଯେଉଁ ଗାଡ଼ି ଯାଉଥାଏ ସେଥିରେ ସାଦାପୋଷାକ ପିନ୍ଧି କେତେକ ପୁଲିସ ଲୋକ ବସିଥାଆନ୍ତି ଓ ସେ ଗାଡ଼ି ପଛେ ପଛେ ଆଉ ଗୋଟିଏ ସଶସ୍ତ୍ର ପୁଲିସ ଗାଡ଼ି ଯାଉଥାଏ । ଏ ପ୍ରକାର କାର୍ଯ୍ୟରେ ଲିପ୍ତ ହେବା ପୁଲିସ ପକ୍ଷରେ ସମୀଚୀନ ହେଉନାହିଁ ବୋଲି ଜଣେ ଉଚ୍ଚ ଅଫିସର୍ କହିବାରୁ ତାଙ୍କ ଉପରେ ସରକାରଙ୍କର କୋପଦୃଷ୍ଟି ପଡ଼ିଥିଲା ଏବଂ ସେ କଟକରୁ ସ୍ଥାନାନ୍ତରିତ ହୋଇଥିଲେ । କଟକ ସହରରେ ପ୍ରତି ନିର୍ବାଚନ ସମୟରେ ବୀରେନ୍‌ବାବୁ ବେଶ୍ କିଛି ଟଙ୍କା ଖର୍ଚ୍ଚ କରୁଥିଲେ ବୋଲି ଜଣାଥିଲା । ମାତ୍ର ସେ ଟଙ୍କା ଦେଉଥିଲେ ଦେବୀଘର ପାଇଁ, ଆଖଡ଼ାଘର ପାଇଁ ଓ ଅନ୍ୟାନ୍ୟ ସାଧାରଣ କାର୍ଯ୍ୟରେ କିଛି କିଛି ଟଙ୍କା ଖର୍ଚ୍ଚ କରୁଥିଲେ । ମାତ୍ର ଭୋଟ ଖଣ୍ଡକ ପାଞ୍ଚ ଟଙ୍କା, ଦଶ ଟଙ୍କା, କୋଡ଼ିଏ ଟଙ୍କା ହାରରେ

ସେ କେବେ ଭୋଟ କିଣିନଥିଲେ । ଏଥର ନିର୍ବାଚନରେ ବୀରେନ୍‌ବାବୁଙ୍କ ପକ୍ଷରୁ ପ୍ରାୟ ତିନି ଲକ୍ଷ ପର୍ଯ୍ୟନ୍ତ ଟଙ୍କା ଖର୍ଚ୍ଚ ହୋଇଥିବା କଥା ମୁଁ ଶୁଣିଥିଲି । କିନ୍ତୁ କଂଗ୍ରେସ ପକ୍ଷର ଖର୍ଚ୍ଚ ଏହାକୁ ବହୁ ଗୁଣରେ ଟପିଯାଇଥିଲା । କଂଗ୍ରେସ ପକ୍ଷରୁ ସାଧାରଣ ଅନୁଷ୍ଠାନମାନଙ୍କୁ ଅପର୍ଯ୍ୟାପ୍ତ ସାହାଯ୍ୟ ଦିଆଯାଇଥିଲା । ତା' ଛଡ଼ା ରାସ୍ତା ପକ୍‌କା କରିବା, ପାଣିକଳ ବସାଇବା, ଇଲେକ୍‌ଟ୍ରିକ୍ ଖୁଣ୍ଟ ପକାଇବା କାର୍ଯ୍ୟ ନିର୍ବାଚନ ଭିତରେ ଖୁବ୍ ଜୋର୍‌ସୋର୍‌ରେ କଟକ ସହରରେ ସରକାରଙ୍କ ପକ୍ଷରୁ ଚାଲିଥିଲା । ଏସବୁ କଥା ଉପରେ କେତେକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଘରପିଛା ଭୋଟ ସୁମାରି କରି ଟଙ୍କା ଦିଆଯାଇଥିଲା । ଏହିସବୁ ଅସଦ୍ ଉପାୟ ଅବଲମ୍ବନ କରି, ଅପର୍ଯ୍ୟାପ୍ତ ଟଙ୍କା ଖର୍ଚ୍ଚକରି ଶାସକ କଂଗ୍ରେସ କଟକ ଉପନିର୍ବାଚନରେ ଜୟଲାଭ କରିଥିଲା ବୋଲି ଲୋକଙ୍କର ଧାରଣା ହୋଇଥିଲା ।

## କଂଗ୍ରେସରୁ ମହତାବଙ୍କ ବହିଷ୍କାର

କଟକ ଉପନିର୍ବାଚନରେ ନନ୍ଦିନୀଦେବୀ ଜୟଲାଭ କଲା ପରେ ପ୍ରଥମ ଚୋଟ ପଡ଼ିଲା ଶ୍ରୀ ହରେକୃଷ୍ଣ ମହତାବଙ୍କ ଉପରେ । ୧୯୭୨ ମସିହା ଡିସେମ୍ବର ମାସ ତିନି ତାରିଖ ଦିନ ପ୍ରଦେଶ କଂଗ୍ରେସ ସଭାପତି ଶ୍ରୀ ବ୍ରଜମୋହନ ମହାନ୍ତି ଦିଲ୍ଲୀ ଓଡ଼ିଶା ଭବନରେ ସାମ୍ବାଦିକମାନଙ୍କୁ ଡାକି ଦଳବିରୋଧୀ କାର୍ଯ୍ୟପାଇଁ ସେ ମହତାବବାବୁଙ୍କୁ ଦଳରୁ ସସ୍‌ପେଣ୍ଡ କରିଛନ୍ତି ବୋଲି ଜଣାଇଥିଲେ । ମୁଁ ସେଦିନ ଦିଲ୍ଲୀରେ ସେହି ଓଡ଼ିଶା ଭବନରେ ଥାଏ । ମୋ' ସାଙ୍ଗରେ ତାଙ୍କର ଦେଖାହେଉଥାଏ; ମାତ୍ର ମହତାବଙ୍କ ବିରୁଦ୍ଧରେ ସେ ଏ ପ୍ରକାର କାର୍ଯ୍ୟାନୁଷ୍ଠାନ କରୁଛନ୍ତି ବୋଲି ମୋତେ କହିନଥିଲେ । କଟକ ଉପନିର୍ବାଚନ ସମୟରେ ଶ୍ରୀ ମହତାବ, ବିଜୁ ପଟ୍ଟନାୟକଙ୍କୁ ବାରମ୍ବାର ଦେଖାକରି ନନ୍ଦିନୀଦେବୀଙ୍କୁ ହରାଇବାପାଇଁ ତାଙ୍କ ସହିତ ଚକ୍ରାନ୍ତ କରୁଥିଲେ ବୋଲି ସେ ଅଭିଯୋଗ କରିଥିଲେ । ନନ୍ଦିନୀଦେବୀଙ୍କ ସମର୍ଥନ କରି ଗୋଟିଏ ନିବେଦନ ଦେବାପାଇଁ ତାଙ୍କୁ ଅନୁରୋଧ କରାଯାଇଥିଲେ ମଧ ଶ୍ରୀ ମହତାବ ତାହା କରି-ନଥିଲେ; ବରଂ ଖୋଲାଖୋଲି ଭାବରେ ନନ୍ଦିନୀ ଦେବୀଙ୍କୁ ବିରୋଧ କରୁଥିବା ପ୍ରାର୍ଥୀ ଶ୍ରୀ ବୀରେନ୍ ମିତ୍ରଙ୍କୁ ଆଶୀର୍ବାଦ ଜଣାଇଲେ । ଦଳରୁ ସସ୍‌ପେଣ୍ଡ କରିବା ସଙ୍ଗେ ସଙ୍ଗେ ଉପରୋକ୍ତ ଅଭିଯୋଗ ସମ୍ବନ୍ଧରେ ଶ୍ରୀ ମହତାବଙ୍କଠାରୁ କୈଫିୟତ୍ ତଲବ କରାଯାଇଥିଲା । ଶ୍ରୀ ମହତାବ ଡିସେମ୍ବର ମାସ ୧୧ ତାରିଖରେ ପ୍ରଦେଶ କଂଗ୍ରେସ ସଭାପତି ଶ୍ରୀ ବ୍ରଜମୋହନ ମହାନ୍ତିଙ୍କୁ କୈଫିୟତ୍ ପତ୍ର ଦେବା ପରିବର୍ତ୍ତେ ଗୋଟିଏ ଦୀର୍ଘ ଅଭିଯୋଗ ପତ୍ର ଦେଇଥିଲେ । ସେଥିରେ ବ୍ରଜମୋହନ ମହାନ୍ତି ଓ ନନ୍ଦିନୀ ଦେବୀ ଓଡ଼ିଶା କଂଗ୍ରେସକୁ କିପରି ଧ୍ୱଂସ କରିବାରେ ଲାଗିଛନ୍ତି ତାହା ବର୍ଣ୍ଣନା କରିଥିଲେ ଏବଂ ସେ ବିଷୟରେ ଶ୍ରୀ ମହତାବ ନିଖିଳ ଭାରତ କଂଗ୍ରେସ କମିଟିର ସଭାପତିଙ୍କଠାରେ ପୂର୍ବରୁ ଅଭିଯୋଗ କରିଥିବା କଥା ଉଲ୍ଲେଖ କରିଥିଲେ । ସେ ଚିଠିରେ ଶ୍ରୀ ମହତାବ ଲେଖିଥିଲେ, "Please remember, I sent you a copy of my letter addressed to the Congress President on the 23rd Sept. in which I drew his attention to the way in which the Adhoc Committee in Orissa was functioning. I was told then that on receipt of my letter you thought of disciplinary action against me. You went so far as to say that I was so unpopular that none would be available to move a resolution of condolence on my death. I sent a copy of that letter to Sreemati Nandini Satpathy. Her reaction was that I did not count in Orissa politics. Even before this letter was sent, some Ministers including yourself had communicated to me that I should keep aloof from the administration as they found my close association would make the Government unpopular. I accepted that position and kept aloof."

"You have considered Biju Pattanaik's meetings with me as an act of indiscipline on my part. It is a pleasure and privilege to meet persons like him although one may not agree with them in all matters. Did not the All India Congress Observer Mr. Mathur, say publicly that Sri Pattanaik, whether in Congress or outside, is a great leader ? Did not the Congress General Secretary Sri Yadav, not only meet Sri Pattanaik on several occasions during the election, but had dinner with him ? Did not you and Srimati Satpathy meet Sri Patnaik and Mitra during the elections several times ? Further, during the election, almost in all meetings Srimati Satpathy, yourself, Sri Surendranath Dwibedi and others used to vehemently criticise me as the person who brought the downfall of Orissa since 1946."

ଏହିପରି ଭାବରେ ଶ୍ରୀ ହରେକୃଷ୍ଣ ମହତାବ ଶାସକ କଂଗ୍ରେସରୁ ବହିଷ୍କୃତ ହୋଇଥିଲେ । ଶ୍ରୀ ମହତାବଙ୍କ ପକ୍ଷରେ ଏହା ଗୋଟିଏ ବଡ଼ ଅପମାନଜନକ ଘଟଣା । ଶାସକ କଂଗ୍ରେସ ସହିତ ଉତ୍କଳ କଂଗ୍ରେସର ଏକ ସମ୍ମାନଜନକ ମିଶ୍ରଣପାଇଁ ତାଙ୍କର ଉଦ୍ୟମ ବିଫଳ ହେବାପାଇଁ ଶଶିବାବୁ ବିଶେଷ ଭାବରେ ବିଜୁବାବୁ ଓ ବାଙ୍କବାବୁଙ୍କ କାରସାଦି ଲାଗି ଖୁବ୍ ଅପମାନିତ ବୋଧକରୁଥା'ନ୍ତି । ଏପରିକି ଥରେ ନନ୍ଦିନୀ ଶତପଥୀଙ୍କ ନିମନ୍ତ୍ରଣକ୍ରମେ ତାଙ୍କ ଘରେ ଏକ ନିଭୃତ ନୈଶ୍ୟଭୋଜିରେ ପୂର୍ବତନ ଉତ୍କଳ କଂଗ୍ରେସ ସଦସ୍ୟମାନଙ୍କୁ ଯଥାଯୋଗ୍ୟ ମର୍ଯ୍ୟାଦା ଦେବା ସମ୍ପର୍କରେ ମୋତେ ଓ ଶଶିବାବୁଙ୍କୁ ସେ ଯେଉଁସବୁ ପ୍ରତିଶ୍ରୁତି ଦେଇଥିଲେ ସେସବୁ ମଧ୍ୟ ପରେ ନନ୍ଦିନୀ ଶତପଥୀ ଓ ପ୍ରଦେଶ ସଭାପତି ବ୍ରଜବାବୁଙ୍କ ପେଞ୍ଚପାଞ୍ଚ ହେତୁ ଭଣ୍ଡୁର ହୋଇଯାଇଥିଲା ବୋଲି ଶଶିବାବୁଙ୍କର କ୍ରୋଧ-ହୋଇଥିଲା । ମୋ ଅନୁପସ୍ଥିତିରେ ମହତାବବାବୁ ଶ୍ରୀ ଶଶିଭୂଷଣ ମିଶ୍ରଙ୍କ ସହିତ ଏ ପରିସ୍ଥିତିରେ କ'ଣ କରାଯିବା ଉଚିତ ସେ ବିଷୟରେ ବହୁତ ଆଲୋଚନା କରିଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ମୁଁ ଦିଲ୍ଲୀରୁ ଫେରିଲେ ଶଶିବାବୁ ମୋତେ ସବୁକଥା କହିବେ । ମୁଁ ଦିଲ୍ଲୀରୁ ଫେରିଲାକ୍ଷଣି ମହତାବବାବୁ ତାଙ୍କ ସହିତ ଯାହାସବୁ କଥାବାର୍ତ୍ତା ହୋଇଥିଲେ ସେସବୁ କଥା ମୋତେ ଶଶିବାବୁ କହିଥିଲେ ଏବଂ ମୋ' ସଙ୍ଗରେ ସେ ମହତାବବାବୁଙ୍କ ଘରକୁ ଯାଇଥିଲେ । ମହତାବବାବୁଙ୍କର ମନର ଅବସ୍ଥା ଦେଖି ମୋତେ ଦୁଃଖ ଲାଗିଥିଲା । ସେ ବଡ଼ ବିଷଣ୍ଣ ଥାଆନ୍ତି; ମାତ୍ର ତାଙ୍କ ମନରେ ଭୟଙ୍କର କ୍ରୋଧର ଆଭାସ ମିଳୁଥାଏ । ଟିକିଏ କଥାବାର୍ତ୍ତା ହେବାପରେ କିଛି ସମୟ ନୀରବ ରହି ମୁଁ କହିଥିଲି, "We shall not take it lying down" । ମୋ କଥା ଶୁଣି ମହତାବବାବୁଙ୍କ ମୁହଁରେ ଟିକେ ହସ ଦେଖାଦେଇଥିଲା । ନୈରାଶ୍ୟମୟ ପରିବେଶରେ ମୁଁ ଟିକିଏ ଆଶାର ସଂଚାର କଲି ବୋଲି ସେ କହିଥିଲେ । ଅନ୍ୟମାନଙ୍କ ସହିତ କଥାବାର୍ତ୍ତା କରି କିପରି ଭାବରେ ଅଗ୍ରସର ହେବାକୁ ପଡ଼ିବ ସେ ବିଷୟରେ ଚିନ୍ତା କରିବାପାଇଁ କହି ମୁଁ ସେଠାରୁ ଆସିଥିଲି । ଶଶିବାବୁ ମୋର ବିଶ୍ୱାସୀ ଥିବାରୁ ମହତାବବାବୁ ଶଶିବାବୁଙ୍କ ଭବିଷ୍ୟତ୍ ସମ୍ବନ୍ଧରେ ମଧ୍ୟ ଆଗ୍ରହ ପ୍ରକାଶ କରିଥିଲେ । ମହତାବବାବୁଙ୍କର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ଥିଲା ଯେ ନନ୍ଦିନୀ ଦେବୀଙ୍କୁ କିପରି ଗାଦିଚ୍ୟୁତ କରିବାକୁ ହେବ ଏବଂ ତାହା କରାଯାଇପାରିଲେ ତାଙ୍କ କ୍ରୋଧର ଉପଶମ ହେବ । ମୋ ସହିତ ଶଶିବାବୁଙ୍କର ସଂପର୍କ ଘନିଷ୍ଠ ଥିବାରୁ ସେ ତାଙ୍କୁ ବ୍ୟବହାର କରିବାକୁ ଇଚ୍ଛା କଲେ । ପ୍ରଜାତନ୍ତ୍ରର ସଂପାଦକ ପଦଠାରୁ ଆରମ୍ଭକରି ସେ ଅନୁଷ୍ଠାନର ସବୁପ୍ରକାର ଦାୟିତ୍ୱ ଶଶିବାବୁଙ୍କୁ ଦେବାପାଇଁ ମହତାବବାବୁ ମୋତେ ଓ ଶଶିବାବୁଙ୍କୁ ଧାରଣା ଦେଲେ । ଏକଥା ମଧ୍ୟ ସେ ଚାରିଆଡ଼େ କହିବୁଲିଲେ । ସେତେବେଳକୁ ସେ ବିଜୁବାବୁଙ୍କୁ ପ୍ରଜାତନ୍ତ୍ର ପ୍ରଚାର ସମିତି ଟ୍ରଷ୍ଟ ବୋର୍ଡ଼ର ମ୍ୟାନେଜିଂ ଟ୍ରଷ୍ଟି କରିସାରିଥା'ନ୍ତି । ବିଜୁବାବୁଙ୍କ ଉପସ୍ଥିତିରେ ମଧ୍ୟ ଦିନେ ସେ ପ୍ରଜାତନ୍ତ୍ର ପରିସରର ସମ୍ପୂର୍ଣ୍ଣ ପୁନର୍ମିଳନ

ପାଇଁ ଏହିଭଳି କଥା ଉଠାଇଲେ; କିନ୍ତୁ ଶଶିବାବୁ ପ୍ରଜାତନ୍ତ୍ର ପ୍ରଚାର ସମିତି ସମ୍ବିଧାନ ଅନୁସାରେ ମହତାବବାବୁ କାରଣ ନ ଦର୍ଶାଇ ଟ୍ରଷ୍ଟବୋର୍ଡ଼ର ଯେକୌଣସି ସଭ୍ୟଙ୍କୁ ନିଯୁକ୍ତି ଓ ବିଦାୟ ଦେବାର ଅଧିକାର ଥିବା ପ୍ରସଙ୍ଗଟି ଉଠାଇବାରୁ ଅନ୍ୟ ଦିଗରେ ଆଲୋଚନାଟାର ମଙ୍ଗ ମୋଡ଼ିହୋଇଗଲା ।

ମନ୍ତ୍ରିମଣ୍ଡଳରେ ଗୋଟିଏ କିଛି ସଙ୍କଟ ତୁରନ୍ତ ସୃଷ୍ଟି କଲେ ଭଲ ହେବ ବୋଲି ମହତାବବାବୁ ଭାବୁଥା'ନ୍ତି । ମାତ୍ର ସେତେବେଳେ ବମ୍ବେରେ ମୋର ସ୍ତ୍ରୀର ଅବସ୍ଥା ଭଲନଥିବାରୁ ମୁଁ ବଡ଼ ଅସ୍ଥିର ଓ ଅଶାନ୍ତିରେ ଥାଏ । ତଥାପି ସବୁଦିନ ସନ୍ଧ୍ୟାବେଳେ ମହତାବବାବୁ ଆସି ମୋ ବାସଭବନରେ ପହଞ୍ଚନ୍ତି ଏବଂ ମୁଁ କିପରି ନନ୍ଦିନୀ ଦେବୀ ଓ ବ୍ରଜମୋହନ ମହାନ୍ତିଙ୍କ ଭଳି ଲୋକଙ୍କ ସହିତ ଚଳିପାରୁଛି, ସେ ବିଷୟରେ ନାନାପ୍ରକାର ଆଲୋଚନା କରନ୍ତି । ତାଙ୍କ କଥା ଶୁଣୁଥାଏ, ଏଣେ କିଛି ପଦକ୍ଷେପ ନେଉ ନାହିଁ ବୋଲି ନିଜକୁ ବଡ଼ ଖରାପ ଲାଗୁଥାଏ । ଥରେ ଏହିପରି ଅବସ୍ଥାରେ ମୋ ସ୍ତ୍ରୀର ଦେହ ବେଶି ଖରାପ ବୋଲି ବମ୍ବେରୁ ଖବର ଆସିଲା । ଏହି ପ୍ରକାର ଅବସ୍ଥା ଭିତରେ ମୁଁ ସଂଜ୍ଞାହୀନ ଅବସ୍ଥାରେ ପଡ଼ିଯାଇଥିଲି । ମୁଁ ସେତେବେଳେ ଯେଉଁ ଅବସ୍ଥାରେ ଥାଏ ସେଥିରେ ମୋ ସହିତ ଗୁରୁତର ବିଷୟ ଆଲୋଚନା ନ କରିବାକୁ ମୋର ଡାକ୍ତରମାନେ ପରାମର୍ଶ ଦେଇଥିଲେ । ମୋତେ ଆଉ ଭୁବନେଶ୍ୱରରେ ରହିବାକୁ ଭଲ ଲାଗିଲାନାହିଁ; ତେଣୁ ବମ୍ବେ ଚାଲିଗଲି ।

## କର୍ପୂରତିଳକ ଓ ଶୃଗାଳ ଉପାଖ୍ୟାନ

ବମ୍ବେ ଗଲି । ସେଠାରେ ପ୍ରାୟ ଏକ ମାସ କାଳ ରହିଥିଲି । ସେଠାରେ ମଧ୍ୟ ଶାନ୍ତିରେ ରହିପାରିଲି ନାହିଁ । ମୁଁ ବମ୍ବେରେ ବେଶି ଦିନ ରହିଯିବାରୁ ମହତାବବାବୁ ବଡ଼ ବ୍ୟସ୍ତ ହୋଇପଡ଼ିଥିଲେ । ଶୀଘ୍ର ବମ୍ବେରୁ ଆସି ମୁଁ ଯେପରି ନନ୍ଦିନୀ ଦେବୀଙ୍କର ମନ୍ତ୍ରିମଣ୍ଡଳ ଭାଙ୍ଗିବାର ଉଦ୍ୟମ କରେ ତାହା ମହତାବବାବୁ ଚାହୁଁଥିଲେ । ମୋ ସ୍ତ୍ରୀକୁ ବମ୍ବେରେ ଛାଡ଼ିଦେଇ ଆସିବା ମୋ' ପକ୍ଷରେ ସମ୍ଭବ ହୋଇନଥିଲା । ବାଲେଶ୍ୱରର ପ୍ରଜାତନ୍ତ୍ରର ପ୍ରତିନିଧି ଶ୍ରୀ ଅନିରୁଦ୍ଧ ନନ୍ଦଙ୍କ ସହିତ ମୋର ଭଲ ସମ୍ପର୍କ ଥାଏ । ସେ ବମ୍ବେ ଯାଇ ମୋତେ ଓଡ଼ିଶାକୁ ଘେନିଆସି ମନ୍ତ୍ରିମଣ୍ଡଳ ଭାଙ୍ଗିବା କାର୍ଯ୍ୟରେ ଲଗାଇବାପାଇଁ ମହତାବବାବୁ ତାଙ୍କୁ କହୁଥିଲେ । ସେ ବମ୍ବେ ନଯାଇ ବାରମ୍ବାର ସେହି ବିଷୟ ମୋ' ସହିତ ଫୋନ୍‌ରେ କଥାବାର୍ତ୍ତା କରି ଶୀଘ୍ର ଆସିବା ମୋ' ପକ୍ଷରେ ସମ୍ଭବ ନୁହେଁ ବୋଲି ମହତାବବାବୁଙ୍କୁ କହୁଥିଲେ । ବାଲେଶ୍ୱରରୁ ବମ୍ବେ ଫୋନ କରିବା କିଛି ସହଜ ନୁହେଁ, ବ୍ୟୟସାପେକ୍ଷ ମଧ୍ୟ । ମାତ୍ର ଅନିରୁଦ୍ଧବାବୁଙ୍କର ସବୁ ଟେଲିଫୋନ୍ ଏକ୍ସଚେଞ୍ଜ୍ ସହିତ ଭଲ ସମ୍ପର୍କ ଥିବାରୁ ସେ ଭଲଭାବରେ ଫୋନ୍ ଯୋଗାଯୋଗ କରିପାରୁଥିଲେ । ୧୯୭୩ ମସିହା ଜାନୁୟାରୀ ପହିଲାରେ ମୁଁ ଗୋଟିଏ ଦୀର୍ଘ ଶୁଭେଚ୍ଛାସୂଚକ ତାରବାର୍ତ୍ତା ମହତାବବାବୁଙ୍କଠାରୁ ଟାଟା ମେମୋରିଆଲ୍ ହସ୍‌ପିଟାଲ୍ ଠିକଣାରେ ପାଇଥିଲି । ସେଥିରେ ମହତାବବାବୁ ବଡ଼ ଉଚ୍ଛ୍ୱସିତ ଭାଷାରେ ମୋତେ ନବବର୍ଷର ଶୁଭେଚ୍ଛା ଜଣାଇବା ସଙ୍ଗେ ସଙ୍ଗେ ଓଡ଼ିଶାବାସୀ କିପରି ଉତ୍କଣ୍ଠିତ ସହକାରେ ମୋ ନେତୃତ୍ୱକୁ ଅପେକ୍ଷା କରି ବସିଛନ୍ତି ସେ କଥା ଲେଖିଥିଲେ । ମହତାବବାବୁଙ୍କର ଉଚ୍ଛ୍ୱସିତ ପ୍ରଶଂସା ଓ ଓଡ଼ିଶାବାସୀଙ୍କୁ ନେତୃତ୍ୱ ଦେବାପାଇଁ ତାଙ୍କର ନିମନ୍ତ୍ରଣ ପାଇବାକ୍ଷଣି ମହତାବବାବୁ ନିଜେ ବହୁ ସମୟରେ କହିଥିବା 'କର୍ପୂରତିଳକ' ନାମକ ହାତୀ ଓ ବୃଦ୍ଧ ଶୃଗାଳ କଥାଟି ମୋର ମନେପଡ଼ିଥିଲା । ବ୍ରହ୍ମାରଣ୍ୟରେ କର୍ପୂରତିଳକ ନାମକ ଗୋଟିଏ ସ୍ଥୂଳକାୟ ହାତୀ ଥିଲା । ତାକୁ ଦେଖି ଅରଣ୍ୟର ଶୃଗାଳମାନେ ଭାବିଲେ ଯଦି କୌଣସିମତେ ସେ ହାତୀଟି ମରନ୍ତା ତା'ହେଲେ ସେମାନଙ୍କୁ ଚାରିମାସର ଖାଦ୍ୟ ମିଳିଯାଆନ୍ତା । ସେମାନଙ୍କ ମଧ୍ୟରୁ ଗୋଟିଏ ବୃଦ୍ଧ ମାତ୍ର ଚତୁର ଶୃଗାଳ ହାତୀକୁ ମାରିବାର ଦାୟିତ୍ୱ ନେଇଥିଲା । ବୃଦ୍ଧ ଶୃଗାଳ ଯାଇ କର୍ପୂରତିଳକକୁ ପ୍ରଣାମ କରି କହିଥିଲା, ''ପ୍ରଭୁ ! ଅନୁଗ୍ରହ କରନ୍ତୁ, ଅରଣ୍ୟରେ ବାସକରୁଥିବା ସବୁ ପଶୁ ମୋତେ ଆପଣଙ୍କ ପାଖକୁ ପଠାଇଛନ୍ତି । ସେମାନେ ଆଉ ରାଜାବିହୀନ ଅରଣ୍ୟରେ ରହିପାରିବେନାହିଁ । ତେଣୁ ଅରଣ୍ୟବାସୀମାନେ ରାଜାରୂପେ

ଅଭିଷିକ୍ତ କରିବାପାଇଁ ମନୋନୀତ କରି ଆପଣଙ୍କୁ ଆମନ୍ତ୍ରଣ କରିବାପାଇଁ ମୋତେ ପଠାଇଛନ୍ତି । ଆଜି ଅଭିଷେକ ହେବ, ଆପଣ ମୋ ସହିତ ଆସନ୍ତୁ ।'' ରାଜ୍ୟଲୋଭରେ ଆକୃଷ୍ଟ ହୋଇ କର୍ପୂରତିଳକ ଚତୁର ଶୃଗାଳର ପଛେ ପଛେ ଯାଇ ମହାପଙ୍କରେ ପୋତି ହୋଇ ପଡ଼ିଥିଲା । ପଙ୍କରେ ପଡ଼ି ହାତୀ ଡାକିଲା, ''ସଖା ଶୃଗାଳ ! ବର୍ତ୍ତମାନ ଏ ପଙ୍କରୁ କିପରି ଉଦ୍ଧାର ହେବି ?'' ଠୋ-ଠୋ ହସି ବୃଦ୍ଧ ଶୃଗାଳ ହାତୀକୁ କହିଲା, ''ମହାପ୍ରଭୁ ! ବର୍ତ୍ତମାନ ମୋର ଲାଙ୍ଗୁଡ଼ରେ ହାତଦେଇ ଉଠିବା ହୁଅନ୍ତୁ ।'' କର୍ପୂରତିଳକ ଆଉ ପଙ୍କରୁ ଉଠିପାରି ନଥିଲା । ଶୃଗାଳମାନଙ୍କର ମନୋବାଞ୍ଛା ପୂର୍ଣ୍ଣ ହୋଇଥିଲା । ୧୯୭୧ ମସିହାରେ ନନ୍ଦିନୀ ଦେବୀ ବୃଦ୍ଧ ଶୃଗାଳ ଭଳିଆ ମହତାବ ବାବୁଙ୍କୁ 'କର୍ପୂରତିଳକ' କରି ଓଡ଼ିଶା ରାଜ୍ୟର ମୁଖ୍ୟମନ୍ତ୍ରୀ କରିବା ପାଇଁ ଡାକିନେଇ ଯେପରି 'ମହାପଙ୍କ'ରେ ପକାଇଥିଲେ ତା' ମଧ୍ୟ ମୋର ମନେପଡ଼ିଥିଲା । ମୋ ପ୍ରତି ମହତାବବାବୁଙ୍କର ଉଚ୍ଛ୍ୱସିତ ଆହ୍ୱାନ ସମ୍ପର୍କରେ ମଧ୍ୟ ମୁଁ ସେହି ମାପକାଠିକୁ ପ୍ରୟୋଗ କରି ନିଜ ବୁଦ୍ଧିରେ ସବୁକଥା ବିଚାରକଲି । ମହତାବବାବୁ ବମ୍ବେ ପଠାଇଥିବା ଏ ତାରବାର୍ତ୍ତାର ବିଷୟବସ୍ତୁ ନନ୍ଦିନୀ ଦେବୀ ଜାଣିପାରିଥିଲେ, କାରଣ ଏ ପ୍ରକାର ତାରର ନକଲ ଗୁଇନ୍ଦା ବିଭାଗ ସଙ୍ଗେ ସଙ୍ଗେ ମୁଖ୍ୟମନ୍ତ୍ରୀଙ୍କୁ ଦେବାରେ ହେଳା କରନ୍ତିନାହିଁ । ତେଣୁ ତାକୁ ବ୍ୟର୍ଥ କରିବାପାଇଁ ସେ ଉଦ୍ୟମ କରିଥିଲେ । ମୋର ପର୍ସନାଲ୍ ଆସିଷ୍ଟାଣ୍ଟ ଶ୍ରୀ ଆକୁଳାନନ୍ଦ ଦେହୁରୀ ମୋର ଖୁବ୍ ବିଶ୍ୱସ୍ତ ଥିଲେ ବିଚାରି କଲିକତା ଉତ୍କଳ ଭବନରେ ନନ୍ଦିନୀ ଦେବୀ ତାଙ୍କୁ କହିଥିଲେ ମୋର ସ୍ତ୍ରୀଙ୍କ ସ୍ୱାସ୍ଥ୍ୟ ସମ୍ପର୍କରେ ସେ ବଡ଼ ଉଦ୍‌ବିଗ୍ନ । ଏକଥା ଫୋନ୍‌କରି ମୋତେ ଜଣାଇଦେବାକୁ ସେ ଆକୁଳିକୁ କହିଥିଲେ ଏବଂ ଆକୁଳି ମୋତେ ଫୋନ୍ କରି ସେ କଥା କହିଥିଲା । ସେହି ସମୟରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ କଲିକତାର ବିଧାନନଗରରେ ହେଉଥିଲା । କଲିକତାରେ ନନ୍ଦିନୀ ଦେବୀ ଥିଲେ । ତା'ଛଡ଼ା ନନ୍ଦିନୀ ଦେବୀ କେନ୍ଦ୍ରମନ୍ତ୍ରୀ ଶ୍ରୀ ୱାଇ.ଭି. ଚୌହାନ୍‌ଙ୍କୁ ମୋତେ ବମ୍ବେଠାରେ ପ୍ରଭାବିତ କରିବାର ଦାୟିତ୍ୱ ଦେଇଥିଲେ । ଦିନେ ଶ୍ରୀଯୁକ୍ତ ଚୌହାନ୍ ବମ୍ବେରେ ମୋ ସହିତ କଥାବାର୍ତ୍ତା କରିବାକୁ ଖୁବ୍ ଖୋଜିଥିଲେ । ଶେଷରେ ଟାଟା ମେମୋରିଆଲ୍ ହସ୍ପିଟାଲ୍ ଫୋନ୍‌ରେ ସେ ମୋତେ ପାଇଥିଲେ । ସେ ଟାଟା ମେମୋରିଆଲ୍ ହସ୍ପିଟାଲ୍‌କୁ ଆସି ମୋ ସହିତ କଥାବାର୍ତ୍ତା ହେବାକୁ ଇଚ୍ଛା ପ୍ରକାଶ କରିଥିଲେ । ମୁଁ ତାଙ୍କ ଘରକୁ ଯାଇ କଥା ହେବି ବୋଲି କହିଥିଲି । ବମ୍ବେ ସମୁଦ୍ର କୂଳରେ ତାଙ୍କ ନିଜର ଗୋଟିଏ ଫ୍ଲାଟ୍ ଥିଲା । ସେଠାରେ ଯାଇ ମୁଁ ତାଙ୍କୁ ଦେଖାକରିଥିଲି । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀଙ୍କର ଅନୁରୋଧକ୍ରମେ ଶ୍ରୀ ଚୌହାନ୍ ମୋ ସହିତ କଥାବାର୍ତ୍ତା କରିବାକୁ ବମ୍ବେ ଯାଇଥିଲେ ବୋଲି ମୋତେ କହିଥିଲେ । ମହତାବଙ୍କ ଉପରେ କଂଗ୍ରେସ ଶାସ୍ତିବିଧାନ କଲା ପରେ ସେ ନନ୍ଦିନୀ ଦେବୀଙ୍କର ସରକାରଙ୍କୁ ନାନା ଅସୁବିଧାରେ ପକାଇବାକୁ ଉଦ୍ୟମ କରୁଥିଲେ ଏବଂ ସେଥିରେ ମହତାବ ମୋତେ ବ୍ୟବହାର କରିପାରନ୍ତି ବୋଲି ନନ୍ଦିନୀ ଦେବୀ ଆଶଙ୍କା କରି ସେଥିରେ ମୁଁ ଯେପରି ସଂପୃକ୍ତ ନହୁଏ, ସେ ବିଷୟରେ ତାଙ୍କର ଅନୁରୋଧ ମୋତେ ଜଣାଇଦେବା ପାଇଁ ତାଙ୍କୁ ନନ୍ଦିନୀ ଦେବୀ କହିଥାଆନ୍ତି ବୋଲି ଶ୍ରୀ ଚୌହାନ୍ ମୋତେ କହିଥିଲେ । ଅନେକ ସମୟ ଶ୍ରୀ ଚୌହାନ୍ ଓଡ଼ିଶାର ଶାସକ କଂଗ୍ରେସର କାର୍ଯ୍ୟକଳାପ ସମ୍ବନ୍ଧରେ ମୋ ପାଖରୁ ବୁଝିଥିଲେ । ଓଡ଼ିଶା ବିଧାନସଭାର କଂଗ୍ରେସ ଦଳର ନେତା ମନୋନୟନ ସମ୍ବନ୍ଧରେ ମୋତେ ଯେପରି ଭାବରେ ଶ୍ରୀ ଉମାଶଙ୍କର ଦୀକ୍ଷିତ ପ୍ରତାରିତ କରିଥିଲେ, ସେ କଥା ମୁଁ ତାଙ୍କୁ କହିଥିଲି । ତା' ଛଡ଼ା ଉତ୍କଳ କଂଗ୍ରେସରୁ ମୋ ସହିତ ଆସିଥିବା ସଭ୍ୟମାନଙ୍କ ମଧ୍ୟରୁ ଛ' ଜଣ ବିଶିଷ୍ଟ କଂଗ୍ରେସ ନେତାଙ୍କୁ ଶାସକ କଂଗ୍ରେସରେ କିପରି ପ୍ରବେଶ କରାଇ ଦିଆଯାଇ ନଥିଲା — ସେକଥା ଶ୍ରୀ ଚୌହାନ୍ ମୋ'ଠାରୁ ଶୁଣିଥିଲେ । ଏସବୁ କଥା ଶୁଣି ଶ୍ରୀ ଚୌହାନ୍ ମୋ'ପ୍ରତି ସହାନୁଭୂତି ପ୍ରକାଶ କରିଥିଲେ ଏବଂ କହିଥିଲେ ଯେ ନନ୍ଦିନୀ ଦେବୀ ତାଙ୍କୁ ବହୁତ ଅନୁରୋଧ କରିଥିଲେ ବୋଲି ସେ ମୋତେ ତାଙ୍କ ଅନୁରୋଧ ଜଣାଇଥିଲେ । ତାଙ୍କ ନିଜର କିଛି ପରାମର୍ଶ ନାହିଁ ବୋଲି କହି ସବୁ କଥା ବିଚାର କରି ମୁଁ ଯେଉଁଟା ଉଚିତ ମନେ କରିବି ତା' କରିପାରେ ବୋଲି ଶ୍ରୀ ଚୌହାନ୍

ମୋତେ କହିଥିଲେ ।

ଜାନୁୟାରୀ ମାସ ବାର ତାରିଖରେ ମୁଁ ମୋ ସ୍ତ୍ରୀ ଓ ପୁଅ, ପୁତୁରାମାନଙ୍କ ସହିତ ବମ୍ବେ ଛାଡ଼ି କଲିକତା ଉତ୍କଳ ଭବନରେ ପହଞ୍ଚିଥିଲି । ସେଠାରେ ପହଞ୍ଚିବାକ୍ଷଣି ଦେଖିବାକୁ ପାଇଲି ଯେ ମହତାବବାବୁଙ୍କଦ୍ୱାରା ଆଦିଷ୍ଟ ହୋଇ ଶ୍ରୀ ଅନିରୁଦ୍ଧ ନନ୍ଦ ମୋତେ ଅପେକ୍ଷା କରିଅଛନ୍ତି । ମୁଁ ବମ୍ବେ ଯିବା ପୂର୍ବରୁ ମହତାବବାବୁଙ୍କ ସାଙ୍ଗରେ ଯେଉଁସବୁ କଥାବାର୍ତ୍ତା ହୋଇଥିଲି ତାହା ସେ ମୋତେ ସ୍ମରଣ କରାଇଦେଇଥିଲେ । ସେ ଦିଗରେ ମୋର ମନୋବଳ ଯେପରି ଦୃଢ଼ ରହେ ତାହା ଦେଖିବାପାଇଁ ଅନିରୁଦ୍ଧବାବୁଙ୍କୁ ଦାୟିତ୍ୱ ଦିଆଯାଇଥିଲା ବୋଲି ମହତାବବାବୁ କହିଥିବା କଥା ସେ ମୋତେ କହିଥିଲେ । ଚଉଦ ତାରିଖ ଭୋରରୁ ଆମ୍ଭେମାନେ ଯେତେବେଳେ ପୁରୀ ଏକ୍ସପ୍ରେସ୍‌ରୁ କଟକ ଷ୍ଟେସନରେ ଓହ୍ଲାଇଲୁ, ପୂର୍ତ୍ତ ବିଭାଗ ମନ୍ତ୍ରୀ ଶ୍ରୀ ଲକ୍ଷ୍ମଣ ମଲ୍ଲିକ ମୋତେ ଅପେକ୍ଷା କରି ସେହିଠାରେ ଥିଲେ । ସେଠାରୁ ମୋ ସାଙ୍ଗରେ ଆସି ସେ ମୋତେ ମୋ କଟକ ଘରେ ଛାଡ଼ି ଯାଇଥିଲେ । ସେଦିନ ସକାଳେ ମୋ କଟକ ଘରେ ଖୁବ୍ ଭିଡ଼ ହୋଇଥିଲା । ବହୁ ବିଧାସଭା ସଦସ୍ୟ ଓ ମନ୍ତ୍ରୀ ମୋତେ ସେଠାରେ ଦେଖାକରିଥିଲେ । ମୁଖ୍ୟମନ୍ତ୍ରୀ ନନ୍ଦିନୀ ଦେବୀ ମଧ୍ୟ ଯାଇ ମୋ ଘରେ ପହଞ୍ଚିଥିଲେ । ସେ ମୋ ଘରୁ ବାହାରୁଛନ୍ତି, ମହତାବବାବୁଙ୍କ ଗାଡ଼ି ଯାଇ ସେଠାରେ ପହଞ୍ଚିଥିଲା । ନନ୍ଦିନୀ ଦେବୀଙ୍କୁ ଦେଖି ମହତାବବାବୁ କୁଆଡ଼େ ଫେରିଯାଇ ପରେ ଆସି ମୋ ସହିତ କଥାବାର୍ତ୍ତା କରିବା କଥା ସେହି ଦିନର 'ସମାଜ'ରେ ପ୍ରକାଶିତ ହୋଇଥିଲା । ତା'ପରେ ମୁଁ ଭୁବନେଶ୍ୱର ଆସିଥିଲି ଏବଂ ସେଠାରେ ମଧ୍ୟ ପ୍ରତିଦିନ ମୋତେ ଅସ୍ତବ୍ୟସ୍ତ ହେବାକୁ ପଡୁଥିଲା । ଶ୍ରୀ ପ୍ରିୟନାଥ ନନ୍ଦୀ ଶାସକ କଂଗ୍ରେସ ଦଳର ଜଣେ ବିଧାନସଭା ସଦସ୍ୟ ଥିଲେ । ସେ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ । ସରକାର ଭାଙ୍ଗିବା ବା ଦଳ ଛାଡିବା ବିଷୟ ମୁଁ ତାଙ୍କୁ କେବେ କିଛି କହୁନଥାଏ । ମହତାବବାବୁଙ୍କର ନନ୍ଦୀବାବୁଙ୍କ ଉପରେ ଯଥେଷ୍ଟ ପ୍ରଭାବ ଥାଏ । ସେ ଶ୍ରୀ ଅନିରୁଦ୍ଧ ନନ୍ଦଙ୍କ ସହିତ ମୋ' ଘରକୁ ଆସି ସରକାର ଭାଙ୍ଗିବା ସମ୍ବନ୍ଧରେ ଉତ୍ସାହ ଦେଖାଇଥିଲେ । ମହତାବବାବୁଙ୍କଦ୍ୱାରା ପ୍ରଭାବିତ ହୋଇ ବିଧାନସଭା ସଦସ୍ୟ ଶ୍ରୀ ଅଭିମନ୍ୟୁ ରଣସିଂହ ଆସି ମୋ ସହିତ କଥାବାର୍ତ୍ତା କରିଥିଲେ । ସେ ମଧ୍ୟ କଂଗ୍ରେସ ଦଳ ଛାଡ଼ିବାପାଇଁ ଉତ୍ସାହ ଦେଖାଇଥିଲେ । ମୋ ସ୍ତ୍ରୀର ଅସୁସ୍ଥତା ହେତୁ ମୁଁ ସେତେବେଳେ ଏସବୁ କଥାରେ ବିଶେଷ ଆଗ୍ରହ ପ୍ରକାଶ କରୁନଥାଏ । ଶ୍ରୀ ବିଜୁ ପଟ୍ଟନାୟକ, ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ଶ୍ରୀ ଗଙ୍ଗାଧର ପ୍ରଧାନ ପ୍ରଭୃତି ସରକାର ଭାଙ୍ଗିବା ବିଷୟରେ ମୋ ସହିତ କଥାବାର୍ତ୍ତା କରିବାକୁ ଚାହୁଁଥିଲେ । ଶ୍ରୀ ଅନିରୁଦ୍ଧ ନନ୍ଦ ଏଣେ ସବୁବେଳେ ଭୁବନେଶ୍ୱରରେ ଜଗି ବସିଥାଆନ୍ତି ଏବଂ ପ୍ରିୟବାବୁଙ୍କୁ ଧରି ମୋ ଘରେ ଆସି ପହଞ୍ଚୁଥାଆନ୍ତି । ମୋର ଏହି ଆତ୍ମଜୀବନୀ ଲେଖାର ଅନେକ ସ୍ଥାନରେ ଅନିରୁଦ୍ଧବାବୁଙ୍କ ନାମ ଉଲ୍ଲେଖ ଅଛି । ପାଣ୍ଡୁଲିପିଟି ଛପା ହେବାପାଇଁ ପ୍ରସ୍ତୁତ ହେଲାବେଳକୁ ସେ ଜୀବିତ ଥିଲେ; ମାତ୍ର ଏହା ମଧ୍ୟରେ ୧୯୮୨ ମସିହା ସେପ୍ଟେମ୍ବର ମାସ ଚଉଦ ତାରିଖ ଦିନ ଅନିରୁଦ୍ଧବାବୁଙ୍କର ପରଲୋକ ହୋଇଯାଇଛି । ଅନିରୁଦ୍ଧବାବୁ ମୋର ଜଣେ ଅନ୍ତରଙ୍ଗ ବନ୍ଧୁଥିଲେ ଏବଂ ମୋ ଜୀବନର ସୁଖଦୁଃଖ ଓ ବହୁ ଘଟଣା ସହିତ ସେ ଘନିଷ୍ଠ ଭାବରେ ଜଡ଼ିତ ଥିଲେ । ସାମ୍ବାଦିକ ହିସାବରେ ସେ ବାଲେଶ୍ୱର ଜିଲ୍ଲାରେ ପ୍ରଜାତନ୍ତ୍ର ଖବରକାଗଜର ବହୁ ବର୍ଷ ଦାୟିତ୍ୱରେ ଥିଲେ । ବାଲେଶ୍ୱର ଜିଲ୍ଲାରେ ସେ ଜଣେ ବିଶିଷ୍ଟ ବ୍ୟକ୍ତି ଥିଲେ ଏବଂ ନିର୍ଭୀକ ସାମ୍ବାଦିକତା ହେତୁ ସେ ଓଡ଼ିଶାରେ ଖ୍ୟାତି ଅର୍ଜନ କରିପାରିଥିଲେ । ୧୯୭୫ ମସିହା ଜରୁରୀକାଳୀନ ଅବସ୍ଥାରେ ବାଲେଶ୍ୱର ସହରର ପୁଲିସ ଅତ୍ୟାଚାର ସମ୍ବନ୍ଧୀୟ ସମ୍ବାଦ ପରିବେଷଣ କରି ସେ କେତେକ ପୁଲିସ ଅଫିସରଙ୍କର ବ୍ୟକ୍ତିଗତ ଆକ୍ରୋଶର ଶିକାର ହୋଇ ଏକ ବର୍ଷରୁ ଊର୍ଦ୍ଧ୍ୱ ଅଟକବନ୍ଦୀ ଭାବରେ କାରାବରଣ କରିଥିଲେ । ଏ ପ୍ରକାର କାରାବରଣପାଇଁ ବହୁମୁଖରୁ ତାଙ୍କର ପ୍ରଶଂସା ଶୁଣାଯାଇଥିଲା । ଭୋଗରାଇର ପୂର୍ବତନ ସମାଜବାଦୀ ବିଧାୟକ ଶ୍ରୀ ପ୍ୟାରୀମୋହନ ଦାଶ ଅନିରୁଦ୍ଧବାବୁଙ୍କର ଜଣେ ସମାଲୋଚକ ଥିଲେ । ତାଙ୍କର ନିର୍ଭୀକତାପାଇଁ ସେ ମଧ୍ୟ ତାଙ୍କୁ ପ୍ରଶଂସା କରିବାକୁ କୁଣ୍ଠିତ ହୋଇ-

ନଥିଲେ । ସେ ଜଣେ ପରୋପକାରୀ ସମାଜସେବୀ ଥାଇ ବହୁ ସାଧାରଣ ଅନୁଷ୍ଠାନ ଗଢ଼ିବାରେ ଲୋକଙ୍କୁ ସାହାଯ୍ୟ କରିପାରିଥିଲେ । ରୁପ୍‌ସାରେ ଗୋଟିଏ କଲେଜ ପ୍ରତିଷ୍ଠା କେବଳ ସ୍ୱର୍ଗୀୟ ଅନିରୁଦ୍ଧ ନନ୍ଦଙ୍କ ଉଦ୍ୟମ ହେତୁ ସମ୍ଭବ ହୋଇଥିଲା । ତାଙ୍କ ବିୟୋଗରେ ବାଲେଶ୍ୱର ଜିଲ୍ଲାବାସୀ ଜଣେ ଉପକାରୀ ବନ୍ଧୁ ହରାଇଛନ୍ତି ।

ଏହି ସମୟରେ ମୋ ସ୍ତ୍ରୀର ସ୍ୱାସ୍ଥ୍ୟ ଆହୁରି ବେଶି ଖରାପ ହେବାରୁ ତାଙ୍କୁ ପୁଣି କଟକ ଡାକ୍ତରଖାନାର ନର୍ସିଂହୋମ୍‌କୁ ଯିବାକୁପଡ଼ିଥିଲା । ଭୁବନେଶ୍ୱରରେ ଏସବୁ ଜଞ୍ଜାଳରୁ ଉଦ୍ଧାର ପାଇବାପାଇଁ ମୁଁ ଯାଇ ନର୍ସିଂହୋମ୍‌ରେ ଗୋଟିଏ ଖଟିଆ ପକାଇ ମୋ ସ୍ତ୍ରୀ ପାଖରେ ରହିଲି । ବିଜୁବାବୁ, ମହତାବବାବୁ ଓ ଶ୍ରୀ ସିଂହଦେଓ ଦିନେ ନିଜ ନିଜ ମଧ୍ୟରେ କଥାବାର୍ତ୍ତା ହୋଇ ଭାବିଲେ ଯେ ସରକାର ଭାଙ୍ଗିଗଲେ କିଏ ଦଳପତି ହୋଇ ମୁଖ୍ୟମନ୍ତ୍ରୀ ହେବ, ସେ ବିଷୟ କିଛି ସ୍ଥିର ହୋଇନଥିବାରୁ ବୋଧହୁଏ ମୁଁ ସରକାର ଭାଙ୍ଗିବା ବିଷୟରେ ବିଶେଷ ଆଗ୍ରହ ଦେଖାଉନାହିଁ । ତେଣୁ ସେମାନଙ୍କ ମଧ୍ୟରେ ସ୍ଥିର ହେଲା ଯେ ସରକାର ଭାଙ୍ଗିଲାକ୍ଷଣି ମିଳିତ ପ୍ରଗତି ଦଳର ମୁଁ ଦଳପତି ହୋଇ ମନ୍ତ୍ରିମଣ୍ଡଳ ଗଠନ କରି ମୁଖ୍ୟମନ୍ତ୍ରୀ ହେବି । ଏକଥା ବିଜୁ ପଟ୍ଟନାୟକ ମୋତେ ତାଙ୍କ କଟକ ଘରେ କହିଥିଲେ । ସେଠାରେ ଶ୍ରୀ କାମିନୀ ପଟ୍ଟନାୟକ ଉପସ୍ଥିତ ଥିଲେ । ମୁଁ ସେଥିରେ ରାଜି ହୋଇନଥିଲି । ବିଜୁବାବୁ ନିଜେ ନେତା ହେବେ ଏବଂ ମୁଁ ତାଙ୍କୁ ସାହାଯ୍ୟ କରିବି ବୋଲି କହିଥିଲି; ସେ କିନ୍ତୁ ଜିଦ୍ ଧରିବସିଥିଲେ ମୋତେ ନେତା ହେବାକୁ ପଡ଼ିବ । ଦିନେ ରାତିରେ କଟକ ହସ୍ପିଟାଲ୍ ନର୍ସିଂହୋମ୍‌ରେ ଶ୍ରୀ ସିଂହଦେଓ ଆସି ମୋ ପାଖରେ ପହଞ୍ଚିଥିଲେ । ମୋ ସ୍ତ୍ରୀର ରୋଗଶଯ୍ୟା ପାଖରେ ବସି ସେ ମୋତେ କହିଥିଲେ ଯେ ବିଜୁବାବୁ, ମହତାବବାବୁ ଓ ସେ ନିଜେ ବସି ସ୍ଥିର କରିଛନ୍ତି ଯେ ମୋତେ ନେତା ହେବାକୁ ପଡ଼ିବ । ମୁଁ ସେଥିରେ ଅନିଚ୍ଛା ପ୍ରକାଶ କରି ସେମାନଙ୍କ ଭିତରୁ କେହି ଜଣେ ନେତା ହେବାକୁ ପରାମର୍ଶ ଦେଇଥିଲି; ମାତ୍ର ସେ କଥାରେ କେହି ରାଜି ହୋଇନଥିଲେ ଏବଂ ଜିଦ୍‌ଧରି କହିଥିଲେ ଯେ ମୋତେ ନେତା ହେବାକୁ ପଡ଼ିବ ।

ସରକାରକୁ ଭାଙ୍ଗିବାପାଇଁ ଯେଉଁସବୁ ଉଦ୍ୟମ ହେଉଥାଏ, ରାଜ୍ୟପାଳ ଶ୍ରୀ ବି.ଡି.ଜତ୍ତି ତା'ର ରିପୋର୍ଟ ପାଉଥାଆନ୍ତି । ମୋ ସହିତ କଥାବାର୍ତ୍ତା କରିବାପାଇଁ ସେ ବିଶେଷ ଆଗ୍ରହ ପ୍ରକାଶ କରିଥିଲେ । ଦିନେ ରାଜ୍ୟପାଳଙ୍କ ସେକ୍ରେଟେରୀ ମୋର ପ୍ରାଇଭେଟ୍ ସେକ୍ରେଟେରୀଙ୍କୁ ରାଜ୍ୟପାଳଙ୍କ ଇଚ୍ଛା କଥା କହିଥିଲେ । ମୁଁ ସେତେବେଳେ କଟକରେ ଥାଏ; ମୋ ପାଖକୁ ଖବର ଗଲା । ତା' ପରଦିନ ଭୁବନେଶ୍ୱର ଆସି ମୁଁ ରାଜଭବନକୁ ଯାଇ ରାଜ୍ୟପାଳଙ୍କୁ ସାକ୍ଷାତ୍ କରିଥିଲି । ବହୁତ ସମୟ ଧରି ଆମ ଭିତରେ କଥାବାର୍ତ୍ତା ହୋଇଥିଲା । ମୋର ଅସନ୍ତୋଷର କାରଣ ରାଜ୍ୟପାଳ ଶ୍ରୀ ଜତ୍ତି ଜାଣିବାକୁ ଚାହିଁଥିଲେ । ଉତ୍କଳ କଂଗ୍ରେସକୁ ମୁଁ କି ଅବସ୍ଥାରେ ଶାସକ କଂଗ୍ରେସ ସହିତ ମିଶାଇଥିଲି ଏବଂ ତପରେ ଶାସକ କଂଗ୍ରେସ ପକ୍ଷରୁ ମୋ ପ୍ରତି ଯେଉଁ ବ୍ୟବହାର କରାଯାଇଥିଲା ସେକଥା ମୁଁ ତାଙ୍କୁ ବୁଝାଇଥିଲି । ମୁଁ ଓ ଉତ୍କଳ କଂଗ୍ରେସର ଯେଉଁ ବନ୍ଧୁମାନେ ଶାସକ କଂଗ୍ରେସ ସହିତ ଉତ୍କଳ କଂଗ୍ରେସର ମିଶ୍ରଣ ପାଇଁ କାର୍ଯ୍ୟ କରୁଥିଲୁ, ସେମାନଙ୍କୁ କଂଗ୍ରେସରେ ପ୍ରବେଶ କରାଇ ନଦେଇ ମୋତେ ଯେଉଁଳି ଭାବରେ ଅପଦସ୍ଥ କରାଯାଇଥିଲା ତାହା ମୁଁ ରାଜ୍ୟପାଳଙ୍କୁ କହିଥିଲି । ଶ୍ରୀ ଜତ୍ତି ମୋ କଥା ଶୁଣି ମୋ ପ୍ରତି ସହାନୁଭୂତି ଦେଖାଇଥିଲେ; ମାତ୍ର କୌଣସି ଅବସ୍ଥାରେ ଶାସକ କଂଗ୍ରେସ ଛାଡ଼ିନଯିବା ପାଇଁ ସେ ମୋତେ ପରାମର୍ଶ ଦେଇଥିଲେ । ସେ ନିଜେ କିପରି ଇଉନିୟନ ବୋର୍ଡ଼ର ଚେୟାରମ୍ୟାନ୍ ହୋଇଥିଲେ ଏବଂ ସେଥିରୁ ଉଠି ଉଠି ଆସି ରାଜ୍ୟପାଳ ହୋଇଥାଆନ୍ତି, ସେ ବିଷୟ କହି ମୁଁ କିଛିଦିନ ଧୈର୍ଯ୍ୟ ଧରି ରହିଲେ ଭବିଷ୍ୟତ୍‌ରେ ମୋର ମଙ୍ଗଳ ହେବ ବୋଲି ସେ ମୋତେ ପରାମର୍ଶ ଦେଇଥିଲେ । ଆମର ସମ୍ବିଧାନ ଅନୁସାରେ ରାଜ୍ୟପାଳ ଦଳୀୟ ରାଜନୀତିର ଊର୍ଦ୍ଧ୍ୱରେ ରହି ସମ୍ବିଧାନର ରକ୍ଷାକବଚ ଭାବରେ ତାଙ୍କର କାର୍ଯ୍ୟନିର୍ବାହ କରିବା ଓ ଦାୟିତ୍ୱ ତୁଲାଇବାର କଥା । ଆମ ରାଜ୍ୟପାଳ ଶ୍ରୀ ଜତ୍ତି ଶାସକ

କଂଗ୍ରେସ ଦଳର ଜଣେ ସଭ୍ୟଭାବରେ ମୋ ସହିତ କଥାବାର୍ତ୍ତା କରିଥିଲେ । କଂଗ୍ରେସରେ ରହିଲେ ମୋର ଉଜ୍ଜ୍ୱଳ ଭବିଷ୍ୟତ୍‌ର ସମ୍ଭାବନା ଅଛି ବୋଲି ସେ ମୋତେ ବୁଝାଇଥିଲେ । ଏହାପରେ ଦିନେ ସେ ମୋ ବିଷୟରେ ବିଧାନସଭା କଂଗ୍ରେସ ଦଳର ସଭ୍ୟ ଶ୍ରୀ ତ୍ରିଲୋଚନ କାନୁନ୍‌ଗୋଙ୍କ ସହିତ କଥାବାର୍ତ୍ତା କରିଥିଲେ । ଓଡ଼ିଶା କଂଗ୍ରେସ ଦଳର ସଙ୍କଟ ଏଡ଼ାଇବାପାଇଁ ମୁଁ କୌଣସି ରାଜ୍ୟର ରାଜ୍ୟପାଳ ହୋଇ ଚାଲିଗଲେ ସନ୍ତୁଷ୍ଟ ହେବି କି ବୋଲି ଶ୍ରୀ ଜଟ୍ଟି ଶ୍ରୀ କାନୁନ୍‌ଗୋଙ୍କଠାରୁ ଜାଣିବାକୁ ଚାହିଁଥିଲେ । ମୋ ମନକଥା ଜାଣିବାପାଇଁ ଶ୍ରୀ କାନୁନ୍‌ଗୋଙ୍କୁ ସେ ଅନୁରୋଧ କରିଥିଲେ । ଶ୍ରୀ ତ୍ରିଲୋଚନ କାନୁନ୍‌ଗୋ ମୋତେ ଆସି ସେକଥା ପଚାରିଥିଲେ । ଏହି ସମୟରେ ଦିଲ୍ଲୀରେ ଖବରକାଗଜରେ ବାହାରିଥିଲା ଯେ ମୁଁ ଗୁଜୁରାଟର ରାଜ୍ୟପାଳ ହୋଇଯିବାର ସମ୍ଭାବନା ଥିଲା ଏବଂ ଲୋକସଭା ସଦସ୍ୟ ସ୍ୱର୍ଗତ ଶ୍ରୀ ବନମାଳୀ ପଟ୍ଟନାୟକ ମୋତେ ଆସି ସେ ବିଷୟରେ ପଚାରିଥିଲେ । ମୋ ସାଙ୍ଗରେ କଥାବାର୍ତ୍ତା ହୋଇସାରିବା ପରେ ରାଜ୍ୟପାଳ ଶ୍ରୀମତୀ ଶତପଥୀଙ୍କ ସହିତ କଥାବାର୍ତ୍ତା ହୋଇଥିଲେ । ଦିନେ ହଠାତ୍ ନନ୍ଦିନୀ ଦେବୀ ମୋତେ ଜଣାଇଥିଲେ ଯେ ତାଙ୍କ ପରାମର୍ଶରେ ରାଜ୍ୟପାଳ ମୋତେ ଉପମୁଖ୍ୟମନ୍ତ୍ରୀ ନିଯୁକ୍ତ କରିଛନ୍ତି ଏବଂ ସେହି ଅନୁସାରେ ବିଜ୍ଞପ୍ତି ପ୍ରକାଶ ପାଇଛି । ମୁଁ ତାହା ଅନାବଶ୍ୟକ ବୋଲି ନନ୍ଦିନୀ ଦେବୀଙ୍କୁ କହିଥିଲି । ମୁଁ ବୁଝିପାରିନଥିଲି ଯେ ସେ ନିଯୁକ୍ତି କିପରି ଭାବରେ ହୋଇଥିଲା । ଶ୍ରୀ ସଦାଶିବ ତ୍ରିପାଠୀଙ୍କ ମନ୍ତ୍ରିମଣ୍ଡଳରେ ମୁଁ ଯେତେବେଳେ ଉପମୁଖ୍ୟମନ୍ତ୍ରୀ ହୋଇଥିଲି ସେତେବେଳେ ଉପମୁଖ୍ୟମନ୍ତ୍ରୀ ଭାବରେ ମୋତେ ଶପଥ ନେବାକୁ ପଡ଼ିଥିଲା । ଏଥର ଉପମୁଖ୍ୟମନ୍ତ୍ରୀ ଭାବରେ ଶପଥ ନନେଇ ସେହି ପଦରେ ନିଯୁକ୍ତ ହୋଇଥିଲି ।

## ପ୍ରଗତିଦଳ ଗଠନ ଓ ନନ୍ଦିନୀ ସରକାରର ପତନ

ଏଥିମଧ୍ୟରେ ଓଡ଼ିଶା ବିଧାନସଭାରେ ସ୍ୱତନ୍ତ୍ର ଦଳ, ଉତ୍କଳ କଂଗ୍ରେସ ଓ ଅନ୍ୟମାନଙ୍କୁ ନେଇ ପ୍ରଗତି ଦଳ ନାମରେ ଗୋଟିଏ ଦଳ ଗଠିତ ହୋଇଥିଲା । ଶାସକ କଂଗ୍ରେସ ଛାଡ଼ି ଶୀଘ୍ର କିପରି ଆମ୍ଭେମାନେ ସେଥିରେ ଯୋଗଦେବୁ, ସେଥିପାଇଁ ବିଜୁବାବୁ, ଶ୍ରୀ ସିଂହଦେଓ ଓ ମହତାବବାବୁ ଲାଗିଥାଆନ୍ତି । ମୋ ସ୍ତ୍ରୀଙ୍କ ଦେହ ବେଶି ଖରାପଥିବାରୁ ମୁଁ କଟକରୁ ଭୁବନେଶ୍ୱର ଆସିପାରୁନଥାଏ । ମୋ ଅନୁପସ୍ଥିତିରେ ପ୍ରଗତି ଦଳରେ ଯୋଗଦେବା ପାଇଁ ଇଚ୍ଛୁକ ସଭ୍ୟମାନଙ୍କର ତାଲିକା ପ୍ରସ୍ତୁତ କରିବାର ଦାୟିତ୍ୱ ମୁଁ ଭଦ୍ରକର ବିଧାନସଭା ସଦସ୍ୟ ଶ୍ରୀ ବଳରାମ ସାହୁଙ୍କ ଉପରେ ଦେଇଥିଲି । ସେ ଗୁପ୍ତରେ ସଭ୍ୟମାନଙ୍କ ସହିତ ସମ୍ପର୍କ ରଖି ଖଣ୍ଡିଏ ଚିଠିରେ ସେମାନଙ୍କ ସ୍ୱାକ୍ଷର ନେଇ ରଖୁଥିଲେ । ମୁଁ ମଝିରେ ମଝିରେ ଭୁବନେଶ୍ୱର ଆସି ସେ ବିଷୟ ବୁଝୁଥିଲି । ଶଶିବାବୁଙ୍କ ଅଗୋଚରରେ ଏସବୁ କାର୍ଯ୍ୟ ଚାଲିଥାଏ । ମୁଁ ମଧ୍ୟ ତାଙ୍କୁ ଜଣାଇନଥାଏ । କାରଣ ମୋ ପ୍ରତି ପୂର୍ଣ୍ଣ ସହାନୁଭୂତି ସତ୍ତ୍ୱେ କଂଗ୍ରେସ ନଛାଡ଼ିବା ସମ୍ପର୍କରେ ତାଙ୍କର ପରାମର୍ଶ ହେତୁ ତାଙ୍କ ଉପରେ ଅନ୍ୟମାନଙ୍କର ବିଶ୍ୱାସ ନଥାଏ । ଏହି ସମୟରେ ଲୋକସଭା ସଦସ୍ୟ ଶ୍ରୀ ଜଗନ୍ନାଥ ରାଓ ଦିଲ୍ଲୀରୁ ଆସି ଭୁବନେଶ୍ୱରରେ ପହଞ୍ଚି ଶ୍ରୀ ସିଂହଦେଓ, ମହତାବବାବୁ ଓ ବିଜୁ ପଟ୍ଟନାୟକ ପ୍ରଭୃତିଙ୍କ ସହିତ ନନ୍ଦିନୀ ଦେବୀଙ୍କର ସରକାର କିପରି ଭଙ୍ଗାଯିବ, ସେ ବିଷୟରେ ଗୁପ୍ତ ପରାମର୍ଶ କରୁଥିଲେ । ସେ ମୋତେ ମଧ୍ୟ ଆସି ଦେଖାକରିଥିଲେ । ଜଗନ୍ନାଥ ରାଓ, ସିଂହଦେଓ ଓ ମହତାବ ପ୍ରଭୃତି ଜ୍ୟୋତିଷ ପରାମର୍ଶ କରି ବୁଝିଥିଲେ ଯେ ଫେବୃୟାରୀ ତିନି ତାରିଖ ଭିତରେ ଉଦ୍ୟମ କଲେ ନନ୍ଦିନୀ ଦେବୀଙ୍କ ସରକାର ନିଶ୍ଚୟ ଭାଙ୍ଗିଯିବ । ଶ୍ରୀ ଜଗନ୍ନାଥ ରାଓ ମୋତେ ମଧ୍ୟ ଆସି ସେ କଥା କହିଥିଲେ । ଗଞ୍ଜାମ ଜିଲ୍ଲା 'ଗଞ୍ଜା'ର ଭୃଗୁସଂହିତା ଶାସ୍ତ୍ର ଆଲୋଚନା କରୁଥିବା ପଣ୍ଡିତେ ମଧ୍ୟ ଶ୍ରୀ ଜଗନ୍ନାଥ ରାଓଙ୍କୁ ସେହି କଥା କହିଥିବାର ସେ ସମସ୍ତଙ୍କ ଆଗରେ କହିବାକୁ ଲାଗିଲେ । ତାଙ୍କ କଥା ଶୁଣି ମୋତେ ଆମର ବନ୍ଧୁମାନେ ଅସ୍ତବ୍ୟସ୍ତ କରିଥିଲେ । ଏହି ସମୟରେ ଫେବୃୟାରୀ ଛବିଶ ତାରିଖ ଦିନ ମୋ ସ୍ତ୍ରୀଙ୍କର ପରଲୋକ

ହୋଇଯାଇଥିଲା । ଦିନକ ପରେ ମୁଁ କଟକରୁ ଭୁବନେଶ୍ୱର ଚାଲିଆସିଥିଲି । ଆମର ବନ୍ଧୁମାନେ ମୋ ସ୍ତ୍ରୀବିୟୋଗରେ ସମବେଦନା ଜଣାଇବାକୁ ଆସି ମଧ୍ୟ ସେମାନଙ୍କ ଭାବଭଙ୍ଗୀ ଦ୍ୱାରା ଅନ୍ୟ ବିଷୟଟି ପ୍ରତି ଇସାରା ଦେଉଥାଆନ୍ତି । ଶେଷରେ ୧୯୭୨ ମସିହା ଫେବୃୟାରୀ ୨୮ ତାରିଖ ରାତିରେ ଉଦ୍ୟାନମାର୍ଗରେ ଅବସ୍ଥିତ ଜଣେ ତତ୍କାଳୀନ ଯୁବନେତା ଅଶୋକ ମହାନ୍ତିଙ୍କ ବାସଭବନରେ ଗୋଟିଏ ଗୁପ୍ତ ବୈଠକ ହୋଇଥିଲା । ମହତାବବାବୁ, ବିଜୁବାବୁ ଓ ଶ୍ରୀ ସିଂହଦେଓ ପ୍ରଭୃତି ସେଠାରେ ଉପସ୍ଥିତ ଥିଲେ । ଶ୍ରୀମତୀ ନନ୍ଦିନୀ ଦେବୀଙ୍କ ନେତୃତ୍ୱରେ ପରିଚାଳିତ ସରକାରରୁ ତଥା ଶାସକ କଂଗ୍ରେସରୁ ଆମର ସମର୍ଥନ ପ୍ରତ୍ୟାହାର କରିନେଲୁ ବୋଲି ଘୋଷଣା କରି ସେହି ଫେବୃୟାରୀ ଅଠେଇଶ ତାରିଖରେ ବାଚସ୍ପତିଙ୍କୁ ସମ୍ବୋଧନ କରି ଖଣ୍ଡିଏ ଚିଠିରେ ମୋ ନେତୃତ୍ୱରେ ଏକୋଇଶ ଜଣ ସଭ୍ୟ ସ୍ୱାକ୍ଷର କରିଥିଲୁ । ପ୍ରଗତି ଦଳରେ ଯୋଗଦେବା କଥା ମଧ୍ୟ ସେଥିରେ ଲେଖାଥିଲା । ଏହାଦ୍ୱାରା ଓଡ଼ିଶା ବିଧାନସଭାରେ ପ୍ରଗତି ଦଳର ସଭ୍ୟସଂଖ୍ୟା ଅଠଷଠିକୁ ବୃଦ୍ଧି ପାଇଥିଲା ଏବଂ ଶାସକ କଂଗ୍ରେସ ଦଳର ସଭ୍ୟସଂଖ୍ୟା ସତାବନକୁ ଖସି ଆସିଥିଲା । ମୁଁ ମାର୍ଚ୍ଚ ମାସ ପହିଲା ତାରିଖ ଭୋର ଛ'ଟା ସମୟରେ ଆମର ସମର୍ଥନ ପ୍ରତ୍ୟାହାର କରିନେବାର ଚିଠିଟି ବାଚସ୍ପତିଙ୍କୁ ତାଙ୍କ ବାସଭବନରେ ଦେଇଥିଲି । ବାଚସ୍ପତି ଆମର ଚିଠି ପାଇଲାମାତ୍ରେ ରାଜ୍ୟପାଳଙ୍କୁ ଫୋନ୍‌ରେ ନନ୍ଦିନୀ ଦେବୀଙ୍କ ସରକାରଠାରୁ ମୋ ନେତୃତ୍ୱରେ ଏକୋଇଶ ଜଣ ସଭ୍ୟ ସମର୍ଥନ ପ୍ରତ୍ୟାହାର କରିନେବା କଥା ଜଣାଇଦେଇଥିଲି । ସେହିଦିନ ସକାଳ ଆଠଘଣ୍ଟା ମଧ୍ୟରେ ଆଉ ଚାରିଜଣ ସଭ୍ୟ ସେମାନଙ୍କ ସମର୍ଥନ ନନ୍ଦିନୀ ଦେବୀଙ୍କ ସରକାରରୁ ପ୍ରତ୍ୟାହାର କରି ପ୍ରଗତି ଦଳରେ ଯୋଗଦେଲେ ବୋଲି ବାଚସ୍ପତିଙ୍କୁ ଜଣାଇଦେଇଥିଲେ । ଏହାଦ୍ୱାରା ପ୍ରଗତି ଦଳର ସଂଖ୍ୟା ବାସ୍ତରି ଜଣକୁ ବୃଦ୍ଧି ପାଇଥିଲା ଓ ଶାସକ କଂଗ୍ରେସ ଦଳର ସଂଖ୍ୟା ତେପନ ଜଣକୁ ଖସିଆସିଥିଲା । ସେହି ଫେବୃୟାରୀ ମାସ ଅଠେଇଶ ତାରିଖରେ ମୁଁ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଲି ବୋଲି ଗୋଟିଏ ଚିଠି ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ପାଖକୁ ପଠାଇଥିଲି । ଉତ୍କଳ କଂଗ୍ରେସ ସହିତ ଶାସକ କଂଗ୍ରେସର ବିଶ୍ୱାସଘାତକତା ଅତି ଅସହ୍ୟ ହେବାରୁ ତାଙ୍କ ସହିତ କାର୍ଯ୍ୟ କରିବା ମୋ ପକ୍ଷରେ ସମ୍ଭବ ନୁହେଁ ବୋଲି ଉକ୍ତ ଚିଠିରେ ମୁଁ ତାଙ୍କ ପାଖକୁ ଲେଖିଥିଲି । ଶାସକ କଂଗ୍ରେସରେ ଆମ୍ଭମାନଙ୍କର ମିଶ୍ରଣ ପରେ ଉତ୍କଳ କଂଗ୍ରେସର ସାତ ଜଣ ବନ୍ଧୁଙ୍କ ପ୍ରତି ମୁଖ୍ୟମନ୍ତ୍ରୀ ଓ ତାଙ୍କର ବନ୍ଧୁମାନେ ଯେଉଁ ବ୍ୟବହାର କଲେ ତାହା ଅତ୍ୟନ୍ତ ଦୁଃଖଦାୟକ ବୋଲି ମୁଁ ସେଥିରେ ଲେଖିଥିଲି । ମିଶ୍ରଣ ସମୟରେ ଯେଉଁ ବିଶ୍ୱାସ ସେମାନଙ୍କୁ ଶାସକ କଂଗ୍ରେସ ଦେଇଥିଲା, ସେ ବିଶ୍ୱାସରେ ବିଷଦେଲାଭଳି ବ୍ୟବହାର କରାଗଲା ବୋଲି ମୁଁ ଅଭିଯୋଗ କରିଥିଲି । ତା'ର ପ୍ରତିକାର ପାଇଁ ମୁଁ କଂଗ୍ରେସ ସଭାପତି ଓ ପ୍ରଧାନମନ୍ତ୍ରୀଙ୍କ ପର୍ଯ୍ୟନ୍ତ ବହୁତ ଦୌଡ଼ାଦୌଡ଼ି କଲି; ମାତ୍ର କିଛି ଫଳ ହେଲାନାହିଁ । ଆମେ ଦଳତ୍ୟାଗୀ ହିସାବରେ ଶାସକ କଂଗ୍ରେସରେ ଯୋଗ ଦେଇ ନଥିଲୁ । ମାତ୍ର ନ' ମାସ ପୂର୍ବେ ୧୯୭୨ ମସିହା ଜୁନ୍ ମାସ ନ' ତାରିଖରେ ଉତ୍କଳ କଂଗ୍ରେସ ସର୍ବସମ୍ମତିକ୍ରମେ ଶାସକ କଂଗ୍ରେସ ସହିତ ଯୋଗଦେବା ପ୍ରସ୍ତାବ ଗ୍ରହଣ କରି ନିଜର ଅସ୍ତିତ୍ୱକୁ ଲୋପକରିଦେଇଥିଲା । ପରେ ଶାସକ କଂଗ୍ରେସର ସାଧାରଣ ସଂପାଦକ ଶ୍ରୀ ଚନ୍ଦ୍ରଜିତ୍ ଯାଦବ ତାଙ୍କ ନିଜର ଅବିବେକୀ କାର୍ଯ୍ୟଦ୍ୱାରା ପ୍ରମାଣ କରିଦେଇଥିଲେ ଯେ ଶାସକ କଂଗ୍ରେସ ସହିତ ଆମ୍ଭମାନଙ୍କର ମିଶ୍ରଣ ପ୍ରକୃତ ମିଶ୍ରଣ ନଥିଲା । ତେଣୁ ଉତ୍କଳ କଂଗ୍ରେସର ସାଧାରଣ ଅଧିବେଶନ ଦ୍ୱାରା ସେ ପ୍ରସ୍ତାବର ଅନୁମୋଦନ ଶ୍ରୀ ଯାଦବ ଚାହିଁଥିଲେ । ତାହା କରିଦେଲେ ଯେଉଁ ସାତ ଜଣ ନେତୃସ୍ଥାନୀୟ ଉତ୍କଳ କଂଗ୍ରେସ ଲୋକଙ୍କୁ ଚକ୍ରାନ୍ତକରି ଶାସକ କଂଗ୍ରେସରେ ମିଶାଇଦେଇ ନଥିଲେ ସେ ସେମାନଙ୍କୁ ମିଶାଇଦେବେ ବୋଲି କହିଥିଲେ । ମିଶ୍ରଣ ଚୂଡ଼ାନ୍ତ ହୋଇଥିଲା ବୋଲି ମୋର ମତ ଥିଲା, ତେଣୁ ଅନୁମୋଦନର ଆବଶ୍ୟକତା ନଥିଲା । ଉତ୍କଳ କଂଗ୍ରେସର ସାଧାରଣ ଅଧିବେଶନ ଆମ୍ଭମାନଙ୍କର ମିଶ୍ରଣ ପ୍ରସ୍ତାବକୁ ଅନୁମୋଦନ କଲାନାହିଁ । ''ସେ କ୍ଷେତ୍ରରେ ଦଳତ୍ୟାଗୀ ହିସାବରେ ଆପଣମାନଙ୍କ

ସାଙ୍ଗରେ ବିଧାନସଭା ଓ ମନ୍ତ୍ରିମଣ୍ଡଳରେ ରହିବା ମୋ ପକ୍ଷରେ ସମ୍ଭବ ହେବନାହିଁ'' ବୋଲି ମୁଁ ଉକ୍ତ ଚିଠିରେ ମୁଖ୍ୟମନ୍ତ୍ରୀଙ୍କୁ ଜଣାଇଦେଇଥିଲି ।

## ନନ୍ଦିନୀ-ଜଗି କରାମତି

ଗୋଟିଏ ରାଜ୍ୟର ରାଜ୍ୟପାଳ ନିରପେକ୍ଷ ନରହି ପକ୍ଷଭୁକ୍ତ ହେଲେ କ'ଣ ହୁଏ ତାହା ମୋର ଏହିଠାରେ ଅନୁଭୂତି ହୋଇଥିଲା । ରାଜ୍ୟପାଳ ମାର୍ଚ୍ଚ ମାସ ପହିଲା ତାରିଖ ଛ'ଘଣ୍ଟା ପଇଁଚାଳିଶ ମିନିଟରେ ନନ୍ଦିନୀ ଦେବୀଙ୍କର ମନ୍ତ୍ରିମଣ୍ଡଳର ଇସ୍ତଫା ପାଇଛନ୍ତି ବୋଲି କହିଥିଲେ ଏବଂ ମନ୍ତ୍ରିମଣ୍ଡଳର ପରାମର୍ଶକ୍ରମେ ସେ ବିଧାନସଭାକୁ 'ପ୍ରୋରୋଗ୍' କରୁଛନ୍ତି ବୋଲି ଘୋଷଣା କରିଥିଲେ । ସେଦିନ ବିଧାନସଭା ସକାଳ ଆଠଘଣ୍ଟା ସମୟରେ ବସିବାର କଥା । ସେହି ସକାଳ ୭ ଘଣ୍ଟା ୩୫ ମିନିଟ୍‌ରେ ରାଜ୍ୟପାଳଙ୍କର ବିଧାନସଭା ପ୍ରୋରୋଗ୍ ହେବାର ଘୋଷଣା ବିଧାନସଭାର ସେକ୍ରେଟେରୀ ପାଇଥିଲେ । ମନ୍ତ୍ରିମଣ୍ଡଳର ବୈଠକ ସେଦିନ ଆଦୌ ବସିନଥିଲା । ରାଜ୍ୟପାଳ ଓ ମୁଖ୍ୟମନ୍ତ୍ରୀ ସଲାସୂତୁରା ହୋଇ କାରସାଦି କରି କାଗଜପତ୍ରରେ ମନ୍ତ୍ରିମଣ୍ଡଳ ବୈଠକ ବସିଥିଲା ବୋଲି ଦେଖାଇଦେଇଥିଲେ । ମୁଁ ମନ୍ତ୍ରିମଣ୍ଡଳର ଜଣେ ସଭ୍ୟ ଥିଲି । ମନ୍ତ୍ରିମଣ୍ଡଳ ବୈଠକର ନୋଟିସ୍ କାଗଜ ମୁଁ ୭ ଘଣ୍ଟା ୩୦ ମିନିଟ୍‌ରେ ପାଇଥିଲି । ନନ୍ଦିନୀ ଦେବୀଙ୍କ ସରକାରଠାରୁ ଆମ୍ଭମାନଙ୍କର ସମର୍ଥନ ପ୍ରତ୍ୟାହାର କଥା ବାଚସ୍ପତିଙ୍କଠାରୁ ଜାଣି ରାଜ୍ୟପାଳ ନନ୍ଦିନୀ ଦେବୀଙ୍କୁ ଜଣାଇଦେଇ କପଟତା ପ୍ରୟୋଗକରି ଶାସକ କଂଗ୍ରେସ ଦଳକୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ସବୁପ୍ରକାର ନୀଚସ୍ତରୀୟ କାରସାଦି କରିଥିଲେ । ସକାଳ ଆଠଟା ସମୟରେ ଅଧିକାଂଶ ମନ୍ତ୍ରୀ ବିଧାନସଭା ବୈଠକକୁ ଆସିଥିଲେ । ସେମାନେ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଇସାରିଥିବା କଥା ଜାଣିଥିଲେ ବିଧାନସଭାକୁ ଆସିନଥାନ୍ତେ । ସେଦିନ ବିଧାନସଭା ବୈଠକ ବସିଥିଲେ ନନ୍ଦିନୀ ଦେବୀଙ୍କର ସରକାରଙ୍କର ବିଧାନସଭାରେ ନିଶ୍ଚୟ ପରାଜୟ ହୋଇଥାଆନ୍ତା । ତା' ହୋଇଥିଲେ ବିରୋଧୀଦଳର ନେତାଙ୍କୁ ସରକାର ଗଠନ କରିବାପାଇଁ ରାଜ୍ୟପାଳ ଡାକିବାକୁ ବାଧହୋଇଥାଆନ୍ତେ । ନନ୍ଦିନୀ ଦେବୀ ରାଜ୍ୟସଭା ସଭ୍ୟପଦରୁ ଇସ୍ତଫା ଦେବା ପରେ ଖାଲିପଡ଼ିଥିବା ସ୍ଥାନ ପାଇଁ ସେହିଦିନ ବିଧାନସଭାରେ ନିର୍ବାଚନ ହେବାର ଥାଏ । ପୂର୍ବ ପ୍ରତିଶ୍ରୁତି ଅନୁସାରେ ଶ୍ରୀ ଭୈରବ ଚନ୍ଦ୍ର ମହାନ୍ତି କଂଗ୍ରେସ ପ୍ରାର୍ଥୀ ହୋଇଥିଲେ । ସୁନ୍ଦରଗଡ଼ ଜିଲ୍ଲାର ଶ୍ରୀ ଦେବାନନ୍ଦ ଅମାତ୍ୟଙ୍କୁ ପ୍ରଗତି ଦଳ ଏହି ରାଜ୍ୟସଭା ନିର୍ବାଚନ ପାଇଁ ପ୍ରାର୍ଥୀ କରିଥିଲେ । ପ୍ରଗତି ଦଳର ପ୍ରାର୍ଥୀ ଶ୍ରୀ ଅମାତ୍ କଂଗ୍ରେସ ପ୍ରାର୍ଥୀ ଭୈରବ ବାବୁଙ୍କୁ ପରାସ୍ତ କରି ରାଜ୍ୟସଭାକୁ ନିର୍ବାଚିତ ହୋଇଥିଲେ । ଶାସକ କଂଗ୍ରେସ ବିଧାନସଭାରେ ସଂଖ୍ୟାଗରିଷ୍ଠତା ହରାଇବା କଥା ଏହାଦ୍ୱାରା ପ୍ରମାଣିତ ହୋଇଥିଲା । ଅଥଚ ରାଜ୍ୟପାଳ ଜଗିଙ୍କ ସାରସାଦି ଫଳରେ ପ୍ରଗତି ଦଳ ବିଧାନସଭାରେ ତାହାର ସଂଖ୍ୟାଗରିଷ୍ଠତା ପ୍ରମାଣ କରି ମଧ ସରକାର ଗଢ଼ିବା ସୁଯୋଗରୁ ବଞ୍ଚିତ ହେଲା ।

## ବିଜୁଙ୍କ ପ୍ରବଞ୍ଚନା

ପୂର୍ବରୁ ନିର୍ଦ୍ଧାରିତ ହୋଇଥିଲା ଯେ, ମାର୍ଚ୍ଚ ମାସ ପହିଲା ତାରିଖ ସକାଳେ ଆମ୍ଭମାନଙ୍କର ମିଶ୍ରଣ ପରେ ବିଧାନସଭା କମିଟି ରୁମ୍‌ରେ ବିଧାନସଭା ପ୍ରଗତି ଦଳର ଗୋଟିଏ ବୈଠକ ବସି ଦଳର ନେତା ନିର୍ବାଚନ କରାଯିବ । ଏକଥା ମଧ ସ୍ଥିରହୋଇଥିଲା ଯେ, ମୁଁ ପ୍ରଗତି ଦଳର ନେତାରୂପେ ନିର୍ବାଚିତ ହେବି । କିନ୍ତୁ ବିଧାନସଭାରେ ଯାହା ଘଟିଲା, ସମସ୍ତେ ସ୍ତମ୍ଭୀଭୂତ ହୋଇଯାଇଥିଲେ । ବିଧାନସଭା 'ପ୍ରୋରୋଗ୍' ହେବା କଥା ଘୋଷଣା ହେବା ପରେ ଆମେ ସମସ୍ତେ ଉକାଉକି ହୋଇ ବିଧାନସଭାର କମିଟି ରୁମ୍‌ରେ ପ୍ରଗତିଦଳର ଦଳପତି ନିର୍ବାଚନପାଇଁ ଏକତ୍ରିତ ହେଲୁ । ମୁଁ, ମହତାବବାବୁ ଓ ସିଂହଦେଓ ପ୍ରଭୃତି ସମସ୍ତେ ସେଠାରେ ବସି ବିଜୁବାବୁଙ୍କୁ ଅପେକ୍ଷା କରି ରହିଲୁ, ସେ ଆସିଲେ ନେତା ନିର୍ବାଚନ ହେବ । ଆମେ ସମସ୍ତେ ଭକୁଆ ଭଳି ନିଜନିଜର ମୁହଁକୁ ଅନାଅନି ହେଉଥାଉ । ପ୍ରାୟ ଦୁଇ ଘଣ୍ଟା

ବସିବା ପରେ ବିଜୁବାବୁଙ୍କଠାରୁ ଖବର ଆସିଲା ପ୍ରଗତିଦଳ ବୈଠକର କୌଣସି ଆବଶ୍ୟକତାନାହିଁ, ସମସ୍ତେ ଉଦ୍ୟାନମାର୍ଗର ପାର୍ଟି ଅଫିସକୁ ଗଲେ ଭଲହେବ । ମୁଁ ବୁଝିପାରିଲି ଯେ ମୋ ସହିତ ଚରମ ବିଶ୍ୱାସଘାତକତା ଓ ଶଠତା କରାଗଲା । ଶ୍ରୀ ବିଜୁ ପଟ୍ଟନାୟକ ନିଜେ ନିଷ୍ପତ୍ତି କରିଥିଲେ ଯେ ସେ ନେତାହେବେ ଏବଂ ସେହି ଅନୁସାରେ ନିଜେ ପ୍ରଗତିଦଳର ନେତାରୂପେ ସଭ୍ୟମାନଙ୍କ ତାଲିକା ନେଇ ରାଜ୍ୟପାଳଙ୍କୁ ଦେଇ ତାଙ୍କୁ ସରକାର ଗଢ଼ିବାପାଇଁ ନିମନ୍ତ୍ରଣ କରିବାପାଇଁ ରାଜ୍ୟପାଳଙ୍କ ପାଖରେ ଦାବିକରିଥିଲେ । ରାଜନୀତିରେ ଏ ପ୍ରକାର ନୀତିଜ୍ଞାନହୀନ ଏବଂ ଶିଷ୍ଟାଚାରରହିତ କାର୍ଯ୍ୟ ଯେ କରାଯାଇ ପାରେ ମୋର ଧାରଣା ନଥିଲା । ରାଜନୀତିରେ ଏ ପ୍ରକାର ଶଠତା ଚଳେ ବୋଲି ଶ୍ରୀ ବିଜୁ ପଟ୍ଟନାୟକ ତାଙ୍କର ଆଚରଣଦ୍ୱାରା ପ୍ରମାଣ କରିଥିଲେ । ମୋ ମନରେ ଭୟଙ୍କର କ୍ରୋଧ ଜାତହୋଇଥିଲା; ମାତ୍ର ତାହା ପ୍ରକାଶ କରି ନିଜକୁ ଆଉ ହାସ୍ୟାସ୍ପଦ ହେବାକୁ ଦେବି ନାହିଁ ବୋଲି ସ୍ଥିରକରିଥିଲି ।

ସେହି ମାର୍ଚ୍ଚମାସ ପହିଲା ଦିନ ଉପରଓଳି ଶ୍ରୀ ବିଜୁ ପଟ୍ଟନାୟକ, ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ, ଶ୍ରୀ ହରେକୃଷ୍ଣ ମହତାବ ପ୍ରଭୃତି ପ୍ରଗତି ଦଳର ୭୧ ଜଣ ସଭ୍ୟ ରାଜଭବନକୁ ଯାଇ ରାଜ୍ୟପାଳଙ୍କୁ ଦେଖା କରିଥିଲେ । ସେମାନଙ୍କ ସହିତ ମୁଁ ମଧ ଥିଲି । ପ୍ରଗତି ଦଳକୁ ସରକାର ଗଠନ କରିବାକୁ ଡାକିବାକୁ ବିଜୁ ପଟ୍ଟନାୟକ ରାଜ୍ୟପାଳଙ୍କ ପାଖରେ ଦାବିକରିଥିଲେ । ଆମ୍ଭମାନଙ୍କର ରାଜ୍ୟପାଳଙ୍କ ସହିତ ଆଲୋଚନାବେଳେ ଯିଏ ଯାହା କହୁଥାଆନ୍ତି ରାଜ୍ୟପାଳ ତାଙ୍କ ଷ୍ଟେନୋକୁ କହି ଟିପାଇନେଉଥାଆନ୍ତି । ସେହିଠାରେ ଶ୍ରୀ ମହତାବ ଅସାବଧାନତାବଶତଃ ଗୋଟିଏ କଥା ରାଜ୍ୟପାଳଙ୍କୁ କହିଥିଲେ ଯାହାର ସୁବିଧା ରାଜ୍ୟପାଳ ନେଇଥିଲେ । ରାଜ୍ୟପାଳ ରାଷ୍ଟ୍ରପତିଙ୍କୁ ଦେଇଥିବା ତାଙ୍କ ରିପୋର୍ଟରେ ଲେଖିଥିଲେ, "During the discussion Dr. Mahtab asked immediate permission to his party to form a Government and stated as follows – "The greater the delay, greater is the chance of loosing the present majority If there is delay in taking decision, some members who have come to us may go back, Aya Ram and Gaya Ram may take place." ଆମ୍ଭେମାନେ ରାଜଭବନରୁ ଫେରି ଉଦ୍ୟାନମାର୍ଗ ପାର୍ଟି ଅଫିସ୍‌କୁ ଯାଇଥିଲୁ । ସ୍ଥିର ହୋଇଥିଲା ଯେ, ସେହି ରାତିରେ ପାର୍ଟି ଅଫିସ୍‌ରେ ସବୁ ସଭ୍ୟ ଏକତ୍ର ରହିବେ; କାରଣ ଶାସକ କଂଗ୍ରେସ ପକ୍ଷରୁ ଉଦ୍ୟମ ଚାଲିଥାଏ ଯେ ପ୍ରଗତି ଦଳରୁ ଜଣେ ଦୁଇ ଜଣ ସଭ୍ୟଙ୍କୁ ହରଣଚାଳ କରିନେଇ ସେମାନେ ପ୍ରଗତି ଦଳ ଛାଡ଼ିଲେଣି ବୋଲି ସେମାନଙ୍କଠାରୁ ଗୋଟିଏ ବିବୃତିରେ ସ୍ୱାକ୍ଷର କରାଇନେବେ । ତା'ହେଲେ ରାଷ୍ଟ୍ରପତି ଶାସନପାଇଁ ସୁପାରିସ୍ କରିବା ଦିଗରେ ରାଜ୍ୟପାଳଙ୍କର ହାତମୁଠା ଟାଣ ହେବ । ସେମାନଙ୍କ ମହଲରୁ ମଧ ଆମ୍ଭେମାନେ ଏ ପ୍ରକାର ଖବର ପାଇଥିଲୁ । ମାତ୍ର ବିଜୁବାବୁ ସେ କଥାକୁ ଗୁରୁତ୍ୱ ଦେଇନଥିଲେ ଏବଂ ନିଜେ ରେଭେନ୍‌ସା କଲେଜରେ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେବାକୁ ଚାଲିଯାଇଥିଲେ । ବିଜୁବାବୁଙ୍କର ଆଚରଣ ଦେଖି ସଭ୍ୟମାନେ ମଧ ଟିକିଏ କୋହଳ ହୋଇଯାଇଥିଲେ । ତେଣୁ ସେମାନଙ୍କ ଭିତରୁ କେତେକ ନିଜ କ୍ୱାର୍ଟରକୁ ଯାଇଥିଲେ ଲୁଗାପଟା ବଦଳାଇ ଆସିବାକୁ । ପରେ ଦେଖାଗଲା ଯେ ସଭ୍ୟମାନଙ୍କ ଭିତରୁ ଶ୍ରୀ ଗୋପାଳ ପ୍ରଧାନ, ଶ୍ରୀ ଜଗଚେଶ୍ୱର ମିର୍ଦ୍ଧା ଆଉ ପାର୍ଟି ଅଫିସ୍‌କୁ ଫେରିଲେ ନାହିଁ । ସେମାନଙ୍କୁ ଶାସକ କଂଗ୍ରେସର ଲୋକମାନେ ନେଇଯାଇ ନାନା ପ୍ରଲୋଭନର ବଶବର୍ତ୍ତୀ କରାଇ ରାଜ୍ୟପାଳଙ୍କୁ ସମ୍ବୋଧନ କରି ଦୁଇଖଣ୍ଡ ଚିଠିରେ ସେମାନଙ୍କ ସ୍ୱାକ୍ଷର ନେଇଥିଲେ । ସେଥିରେ ଲେଖାଥିଲା ଯେ, ସେମାନଙ୍କ ଇଚ୍ଛା ବିରୁଦ୍ଧରେ ସେମାନଙ୍କୁ ପ୍ରଗତି ଦଳରେ ମିଶାଯାଇଥିଲା, ମାତ୍ର ସେମାନେ ନନ୍ଦିନୀ ଦେବୀଙ୍କୁ ସମର୍ଥନ କରନ୍ତି । ପ୍ରଗତି ଦଳର ସଂଖ୍ୟାଗରିଷ୍ଠତାର ସ୍ଥିରତା ସଂପର୍କରେ ମହତାବ ରାଜ୍ୟପାଳଙ୍କ ଆଗରେ ଯେଉଁ ବିଚକ୍ଷଣ ବ୍ୟାଖ୍ୟାନ ଦେଇଥିଲେ, ତାହା ଏହି ଘଟଣାରୁ ପ୍ରମାଣିତ ହୋଇଗଲା ।

ରାଜ୍ୟପାଳ ଶ୍ରୀ ବି.ଡି. ଜଟ୍ଟି ଏ ଅବସ୍ଥାର ସୁଯୋଗ ନେଇ ୧୯୭୩ ମସିହା ମାର୍ଚ୍ଚ ମାସ ପହିଲା ତାରିଖ ରାତିରେ ରାଷ୍ଟ୍ରପତି ଶାସନ ପ୍ରବର୍ତ୍ତନପାଇଁ ସୁପାରିସ୍ କରି ରାଷ୍ଟ୍ରପତିଙ୍କୁ ଲେଖିଥିଲେ, "Taking the views of Dr. Mahtab and taking into consideration the two letters which I have received from two members of the Legislative Assembly within few hours after they claimed to have majority indicates that the present strength of Orissa Pragati Legislative Party may not remain steady and is likely to change under other pressures such as Ministry making, etc. x x x In view of the above facts, and after a careful consideration of the political situation in the State, I am satisfied that no party or parties with any substantial majority can form a stable Government. It will be better to obtain a fresh mandate from the people. I am of the opinion that a situation has arisen in which the Government of the state cannot be carried on in accordance with the provisions of the Constitution. I, therefore, recommend that the President takes over administration of this State under the Article 356 of the Constitution of India and the Orissa Legislative Assembly be dissolved."

## ରାଜ୍ୟପାଳଙ୍କ ବ୍ୟଭିଚାର

ମାର୍ଚ୍ଚ ମାସ ତିନି ତାରିଖ ଦିନ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଜାରୀହୋଇଥିଲା ଓ ଓଡ଼ିଶା ବିଧାନସଭାକୁ ଭାଙ୍ଗିଦିଆଯାଇଥିଲା । ସମ୍ବିଧାନ ଉପରେ କିପରି ବ୍ୟଭିଚାର କରାଯାଏ, ଓଡ଼ିଶାରେ ରାଷ୍ଟ୍ରପତି ଶାସନ ପ୍ରବର୍ତ୍ତନ ତାହାର ଗୋଟିଏ ନଗ୍ନ ଉଦାହରଣ । ଜଣେ ରାଜ୍ୟପାଳ ପକ୍ଷଭୁକ୍ତ ହେଲେ ଶାସନ ଖସଡ଼ା ଉପରେ କିପରି ବ୍ୟଭିଚାର କରିପାରନ୍ତି ଓଡ଼ିଶାର ରାଜ୍ୟପାଳ ଶ୍ରୀ ବି.ଡି. ଜଟ୍ଟିଙ୍କ କାର୍ଯ୍ୟ ତା'ର ଜ୍ୱଳନ୍ତ ଦୃଷ୍ଟାନ୍ତ । ମନ୍ତ୍ରିମଣ୍ଡଳ ସ୍ଥାୟୀ ବା ଦୃଢ଼ ହେବନାହିଁ ବୋଲି ଆଶଙ୍କା କରି ସଂଖ୍ୟାଗରିଷ୍ଠ ବୋଲି ଦାବିକରୁଥିବା ଦଳକୁ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ସୁବିଧା ନଦେଇ ବିଧାନସଭାକୁ ଭାଙ୍ଗିଦେବା ଘଟଣା ଆମ ସାମ୍ବିଧାନିକ ପରମ୍ପରାରେ ଗୋଟିଏ କଳଙ୍କ ଏବଂ ରାଜ୍ୟପାଳମାନେ ଯଦି ଏ ପ୍ରକାର ବ୍ୟଭିଚାରୀ ଆଚରଣ ପ୍ରଦର୍ଶନକରନ୍ତି, ତା'ହେଲେ ଦେଶର ସଂସଦୀୟ ଶାସନ ଅଚିରେ ବିଲୁପ୍ତ ହେବ । ଶ୍ରୀ ବିଜୁ ପଟ୍ଟନାୟକ ପ୍ରଭୃତି ୭୪ ଜଣ ବ୍ୟବସ୍ଥାପକଙ୍କ ପକ୍ଷରୁ ବାରିଷ୍ଟର ଶ୍ରୀ ବୀରେନ୍ଦ୍ର ମୋହନ ପଟ୍ଟନାୟକ ଓଡ଼ିଶା ହାଇକୋର୍ଟରେ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ପ୍ରବର୍ତ୍ତନ, ବିଧାନସଭା ଭଙ୍ଗ ଓ ରାଜ୍ୟପାଳଙ୍କ ଆଚରଣ ବିରୁଦ୍ଧରେ ଗୋଟିଏ Writ Application ଦାଖଲ କରିଥିଲେ । (O.J.C. No. 334 of 1973) ଏହି ୭୪ ଜଣ ବ୍ୟବସ୍ଥାପକ ଦରଖାସ୍ତକାରୀଙ୍କ ମଧ୍ୟରେ ତିନି ଜଣ ପୂର୍ବତନ ମୁଖ୍ୟମନ୍ତ୍ରୀ ଥିଲେ । ହାଇକୋର୍ଟରେ ଯେଉଁ ଆବେଦନପତ୍ର ଦାଖଲ ହୋଇଥିଲା, ସେଥିରେ ରାଜ୍ୟପାଳ ଶ୍ରୀ ଜଟ୍ଟିଙ୍କ ଆଚରଣ ସମ୍ବନ୍ଧରେ ଗୁରୁତର ଅଭିଯୋଗ କରାଯାଇଥିଲା । ଜଣେ ରାଜ୍ୟପାଳ କ୍ଷମତାସୀନ ଦଳ ଓ ଉଚ୍ଚକର୍ତ୍ତାଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଅତି ନୀଚ ସ୍ତରକୁ ଯାଇ ବିଧାନସଭାର ମାନ୍ୟବର ସଭ୍ୟମାନଙ୍କ ନାମରେ କିପରି କୁତ୍ସାରଟନା କରିପାରନ୍ତି, ତାହା ଶ୍ରୀ ଜଟ୍ଟି ତାଙ୍କ ଆଚରଣ ଦ୍ୱାରା ପ୍ରତିପାଦନ କରିଥିଲେ ବୋଲି ସେହି ଆବେଦନପତ୍ରରେ ଅଭିଯୋଗ କରି କୁହାଯାଇଥିଲା, "It is most unfortunate that the Governor of the State has, in his report, referred to the personal life of Sri Nilamani Routray and illness of his wife. This reveals malice and bad taste. The Governor has identified himself with the Ruling Congress Party and in the context and camouflage of a Report

under Article 356, he has stooped low and has conducted himself like a stooge of the Ruling Congress in denigrading the leaders of the Pragati Party. Malice and malafides are not physically perceptible facts. The tenor and language of the Report, deliberate falsehoods stated, extraneous and unwarranted aspersions on political leaders of standing, reveal and prove that the Governor acted with malice and malafides in recommending proclamation under Act. 356 of the Constitution xxx"

"xxx It is painfully submitted that the Governor has conducted himself like a careerist of low order to please the authorities to whom he owes his appointment. He has gone to the extent of defaming the M.L.As. xxx The Governor has grossly abused his position and in the camouflage of submitting a Report to the President under Article 356 of the Constitution, he has unscrupulously indulged in maligning M.L.As who were opposed to the continuance of the Ruling Congress Government. It is unfortunate that the Governor of a State stooped so low to aid the Ruling Congress and that his Report to the President replete with falsehood, malice and malafides, was accepted." ରାଜ୍ୟପାଳଙ୍କ ପକ୍ଷପାତିତା ଓ ଦଳୀୟ ଆଚରଣ ସମ୍ବନ୍ଧରେ ମୁଁ ମଧ ବହୁତ ତଥ୍ୟ ଏ ମକଦ୍ଦମାରେ ଯୋଗାଇଥିଲି ଏବଂ ସେଗୁଡ଼ିକର ସତ୍ୟତା ସମ୍ବନ୍ଧରେ ମୋତେ ମଧ ହାଇକୋର୍ଟରେ ଗୋଟିଏ ସତ୍ୟପାଠ ଦାଖଲ କରିବାକୁ ପଡ଼ିଥିଲା ।

ପ୍ରଧାନ ବିଚାରପତି ଶ୍ରୀ ଗତିକୃଷ୍ଣ ମିଶ୍ର ଓ ବିଚାରପତି ଶ୍ରୀ ସୁକାନ୍ତ କିଶୋର ରାୟଙ୍କ କୋର୍ଟରେ ଏହି Writ Applicationର ବିଚାର ହୋଇଥିଲା । ରାଜ୍ୟପାଳଙ୍କର ଏହି ନିଷ୍ପତ୍ତି ଓ ରିପୋର୍ଟ ଅଦାଲତର ବିଚାର ପରିସରଭୁକ୍ତ ନୁହେଁ ବୋଲି ସ୍ୱୀକାର କରି ମଧ ରାଜ୍ୟପାଳ ଶ୍ରୀ ବି.ଡି.ଜତ୍ତିଙ୍କ ଆଚରଣ ସମ୍ବନ୍ଧରେ ଦୁଇଜଣଯାକ ବିଚାରପତି ଅତ୍ୟନ୍ତ କଟୁ ମନ୍ତବ୍ୟ ଦେଇଥିଲେ । ଶହ ଶହ ବର୍ଷଧରି ଯେଉଁ ଉତ୍କୃଷ୍ଟ ପରମ୍ପରାର ସହାୟତାରେ ସଂସଦୀୟ ଶାସନ ଓ ମନ୍ତ୍ରିପରିଷଦ କାର୍ଯ୍ୟ କରିଆସିଥିଲା ତାହାକୁ ଓଡ଼ିଶାର ରାଜ୍ୟପାଳ ଅଣୁମାତ୍ର ସମ୍ମାନ ପ୍ରଦର୍ଶନ କରିନଥିଲେ ବୋଲି ବିଚାରପତିମାନେ ମନ୍ତବ୍ୟ ଦେଇଥିଲେ । ମାନ୍ୟବର ବିଚାରପତିମାନେ କହିଥିଲେ :

"On the resignation of the Ministry of Smt. Nandini Satpathy having lost its majority support in the Assembly, the Governor should have called the leader of the opposition to form Ministry. It was for the later to say whether he would be able to form a Ministry or not. The leader of the opposition asserted that he had a majority support and that is confirmed by the Governor's own finding that he had support of seventy members." ସେମାନେ ଆହୁରି କହିଥିଲେ– "The Governor is not concerned whether the Ministry could be stable in future. If the Ministry which would have been formed by the leader of the opposition would have fallen afterwards, the Governor would have been justified to recommend for the President's rule if at that time no other person was in a position to form an alternative Ministry by having majority support."

ମକଦ୍ଦମାର ଫଳାଫଳକୁ ଦେଖିଲେ ରାଜ୍ୟପାଳଙ୍କର କିଛି କ୍ଷତି ହୋଇନଥିଲା ଏବଂ ଆମ୍ଭମାନଙ୍କର ଅଦାଲତରେ ପରାଜୟ ହୋଇଥିଲା । ମାତ୍ର ଏହି ରାୟର ତାତ୍ପର୍ଯ୍ୟ ବା ଗୁଣାତ୍ମକ ବିଚାରକଲେ

ସଂସଦୀୟ ପଦ୍ଧତି ଏବଂ ଆମ୍ଭମାନଙ୍କର ଚୟହୋଇଥିଲା । ଶ୍ରୀ ଜତ୍ତି ରାଜ୍ୟପାଳ ହିସାବରେ କ୍ଷମତାର ଅପବ୍ୟବହାର କରିବା ସଙ୍ଗେ ସଙ୍ଗେ ସମ୍ବିଧାନ ଉପରେ ବ୍ୟଭିଚାର କରିଛନ୍ତି ବୋଲି ବିଚାରପତିମାନେ ମତ ଦେଇଥିଲେ; ମାତ୍ର ଆଇନର ଆଙ୍କୁଶି ତାଙ୍କୁ ପାଉନଥିବାରୁ ସେ ସେଥିରୁ ଖସିଗଲେ । ଶ୍ରୀ ଜତ୍ତି ରାଜ୍ୟପାଳ ପଦମର୍ଯ୍ୟାଦାରେ ଅକଥନୀୟ ହାନି ଘଟାଇଥିଲେ । ଶ୍ରୀ ଜତ୍ତିଙ୍କର ଜୀବନଯାତ୍ରାକୁ ଅନୁଧାନ କଲେ ତାଙ୍କର ଆଚରଣରେ ଆଶ୍ଚର୍ଯ୍ୟ ହେବାରେ କିଛି ନଥିଲା । ନୈତିକତାକୁ ଛାଡ଼ି କୌଣସି ସୁଯୋଗର ସୁବିଧା ନେବା ଥିଲା ତାଙ୍କ ଜୀବନର ଧାରା । ସେ ଇଉନିୟନ ବୋର୍ଡ ଚେୟାରମ୍ୟାନ୍ ଭଳି ପଦରୁ ଉଠି ଉଠି ଉପରାଷ୍ଟ୍ରପତି ଆସନରେ ପହଞ୍ଚିଥିଲେ । ଓଡ଼ିଶାର ରାଜ୍ୟପାଳ ହିସାବରେ ରାଷ୍ଟ୍ରପତି ଶାସନ ସମୟରେ ଶ୍ରୀ ଜତ୍ତିଙ୍କର କାର୍ଯ୍ୟକଳାପ ସନ୍ଦେହମୁକ୍ତ ନଥିଲା । ଓଡ଼ିଶାର ଡକ୍ଟର ବଂଶୀଧର ପଣ୍ଡାଙ୍କ Indian Metals and Ferro-Alloys Limited କମ୍ପାନୀ ସହ ସେ ରାଜ୍ୟପାଳ ଥିଲାବେଳେ ସୁସମ୍ପର୍କ ବଜାୟରଖିଥିବା ହେତୁ ପରବର୍ତ୍ତୀ କାଳରେ ସେ ଉକ୍ତ କମ୍ପାନୀର ପରିଚାଳକମଣ୍ଡଳୀରେ ସ୍ଥାନପାଇପାରିଥିଲେ । ଏ ସମ୍ବନ୍ଧରେ ସେତେବେଳେ ସମ୍ବାଦପତ୍ରମାନଙ୍କରେ ପ୍ରତିକୂଳ ସମାଲୋଚନା ପ୍ରକାଶ ପାଇଥିଲା । ରାଷ୍ଟ୍ରପତି ଶାସନ ସମୟରେ ଯେଉଁ ଅଫିସର ରାଜ୍ୟପାଳଙ୍କର ପରାମର୍ଶଦାତା ଥିଲେ, ସେ ପରେ ସେହି କମ୍ପାନୀ ଅଧୀନରେ ଦିଲ୍ଲୀରେ ଚାକିରିକରିଥିଲେ । ତେଣୁ ରାଜ୍ୟପାଳ ଆସନରୁ ଗଲାବେଳେ ତାଙ୍କର ଏତାଦୃଶ ଆଚରଣକୁ ବିଚାରକୁନେଲେ ରାଜ୍ୟପାଳ ଥିଲାବେଳେ ସେ ଯେଉଁ ଆଚରଣ ପ୍ରଦର୍ଶନ କରିଥିଲେ, ସେଥିରେ କିଛି ଆଶ୍ଚର୍ଯ୍ୟ ହେବାର କଥା ନଥିଲା । ରାଷ୍ଟ୍ରପତି ଶାସନ ଜାରୀହେବା ପରେ ଶ୍ରୀ ବିଜୁ ପଟ୍ଟନାୟକ, ଶ୍ରୀ ହରେକୃଷ୍ଣ ମହତାବ, ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଏକତ୍ର ଓଡ଼ିଶାର ବହୁ ଅଞ୍ଚଳକୁ ଯାଇ ରାଜ୍ୟପାଳ ଶ୍ରୀ ଜତ୍ତିଙ୍କର ସମ୍ବିଧାନବିରୋଧୀ ଆଚରଣ ସମ୍ବନ୍ଧରେ ସାଧାରଣ ସଭାମାନଙ୍କରେ ଭାଷଣ ଦେଇ ତାଙ୍କ ବିରୁଦ୍ଧରେ ଜନମତ ସୃଷ୍ଟି କରିଥିଲେ । ମୁଁ ମଧ୍ୟ ସେମାନଙ୍କ ସଙ୍ଗରେ ସବୁଆଡ଼କୁ ଯାଇଥିଲି । ପାର୍ଲିଆମେଣ୍ଟରେ ଓଡ଼ିଶାର ରାଜ୍ୟପାଳଙ୍କର ଆଚରଣରେ ତୀବ୍ର ଅସନ୍ତୋଷ ପ୍ରକାଶକରି ତାଙ୍କୁ ରାଜ୍ୟପାଳ ପଦରୁ ଅପସାରଣ କରିବାପାଇଁ ରାଷ୍ଟ୍ରପତିଙ୍କ ପାଖରେ ଦାବିକରାଯାଇଥିଲା । ପାର୍ଲିଆମେଣ୍ଟର ବିରୋଧୀଦଳର ନେତାମାନେ ରାଷ୍ଟ୍ରପତିଙ୍କୁ ଦେଖାକରି ଶ୍ରୀ ଜତ୍ତିଙ୍କର ନିର୍ଲଜ୍ଜ ପକ୍ଷପାତୀ ଆଚରଣଦ୍ୱାରା କିପରି ଆମ ସମ୍ବିଧାନର ମର୍ଯ୍ୟାଦାହାନି କରାଯାଇ ସଂସଦୀୟ ଗଣତନ୍ତ୍ରର ଚିରାଚରିତ ପରମ୍ପରା ପ୍ରତି ଅସମ୍ମାନ ପ୍ରଦର୍ଶନ କରାଯାଇଥିଲା ତାହା ସେମାନେ ଦର୍ଶାଇଥିଲେ । ପରିତାପର ବିଷୟ ଯେ ଆମ ସମ୍ବିଧାନ ଯେପରି ଭାବରେ ବିକୃତ ଓ କଳୁଷିତ ହେଲା, ସେଥିରେ ଶାସକଗୋଷ୍ଠୀଙ୍କର କୌଣସି ଉଦ୍‌ବେଗ ନଥିଲା । ରାଜ୍ୟପାଳ ଶ୍ରୀ ଜତ୍ତିଙ୍କର ଅପକୀର୍ତ୍ତି ପ୍ରକାରାନ୍ତେ ସ୍ୱୀକୃତି ପାଇ ତାଙ୍କ ପଦୋନ୍ନତିର ସୋପାନ ହୋଇଥିଲା । ସେ ଭାରତର ଉପରାଷ୍ଟ୍ରପତିରୂପେ ଅଭିଷିକ୍ତ ହୋଇପାରିଥିଲେ । ବିଚାରପତି ଶ୍ରୀ ସୁକାନ୍ତ କିଶୋର ରାୟ ଏହି ମାମଲାରେ ଜଣେ ବିଚାରପତି ଥିଲେ । ପ୍ରଧାନ ବିଚାରପତି ଶ୍ରୀ ଗତିକୃଷ୍ଣ ମିଶ୍ର ଅବସର ନେବା ପରେ ଶ୍ରୀ ରାୟ ପ୍ରଧାନ ବିଚାରପତି ହେବାପାଇଁ ଯଥୋପଯୁକ୍ତ ଥିଲେ ମଧ୍ୟ ତାଙ୍କୁ ଉପେକ୍ଷା କରି ଦିଲ୍ଲୀ ହାଇକୋର୍ଟରୁ ବିଚାରପତି ଶ୍ରୀ ଶିବନାରାୟଣ ଶଙ୍କରଙ୍କୁ ଆଣି ଓଡ଼ିଶା ହାଇକୋର୍ଟର ପ୍ରଧାନ ବିଚାରପତି କରାଗଲା । ବିଚାରପତି ଶ୍ରୀ ରାୟ ତାଙ୍କର ନ୍ୟାୟସମ୍ବନ୍ଧୀ ନିର୍ଭୀକ ମତପାଇଁ ନିର୍ଯାତିତ ହୋଇଥିଲେ ବୋଲି ସେତେବେଳେ କୁହାଯାଇଥିଲା । ମୋ ଜାଣିବାରେ ସୁପ୍ରିମ୍‌କୋର୍ଟର ଜଜ୍ ନିଯୁକ୍ତି ସମ୍ବନ୍ଧରେ ଏକଦା ଯେତେବେଳେ ତାଙ୍କର ନାମ ଉଠେ, ସେତେବେଳେ ଏହି ବିଷୟଟି କୁଆଡ଼େ ତାଙ୍କ ପକ୍ଷରେ ଅସୁବିଧା ସୃଷ୍ଟିକରିଥିଲା । ଶ୍ରୀ ରାୟଙ୍କ ନ୍ୟାୟସମ୍ବନ୍ଧୀ ବୁନିଆଦି ଓ ଖ୍ୟାତି ଯାହା ଥିଲା, ସେଥିରେ ସେ ସୁପ୍ରିମ୍‌କୋର୍ଟର ଜଣେ ଜଜ୍ ହୋଇଥିଲେ ଦେଶର ସର୍ବୋଚ୍ଚ ନ୍ୟାୟାଳୟର ସମ୍ମାନ ବଢ଼ାଇବାରେ ସେ ନିଶ୍ଚୟ ସହାୟକ ହୋଇପାରିଥାନ୍ତେ ।

## ୧୯୭୪ ନିର୍ବାଚନ

ରାଷ୍ଟ୍ରପତି ଶାସନର ଶେଷଭାଗରେ ଓଡ଼ିଶାରେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ୧୯୭୪ ମସିହା ଫେବୃୟାରୀ ମାସ ଶେଷବେଳକୁ ହୋଇଥିଲା । ଏହି ନିର୍ବାଚନରେ ଉତ୍କଳ କଂଗ୍ରେସ ଓ ସ୍ୱତନ୍ତ୍ର ଦଳ ମିଳିତ ଭାବରେ ପୂର୍ବରୁ ଗଠିତ ପ୍ରଗତି ଦଳ ଆନୁକୂଲ୍ୟରେ ନିର୍ବାଚନ ଲଢ଼ିଥିଲେ । ବିଧାନସଭା ଆସନ ବଣ୍ଟନ ସମ୍ବନ୍ଧରେ ଦୁଇ ଦଳ ଭିତରେ ନିର୍ବାଚନ ବୁଝାମଣା ହୋଇଥିଲା । ମାତ୍ର ଆଠଗୋଟି ଆସନ ନେଇ ସେମାନଙ୍କ ଭିତରେ ତୀବ୍ର ମତଭେଦ ଦେଖାଦେଇଥିଲା । ସମାଧାନ ନ ହୋଇପାରିବାରୁ ଗୋଟିଏ ଅଭିନବ ଉପାୟ ବାହାର କରାଯାଇଥିଲା । ଏହି ପ୍ରକାର ବିବାଦୀୟ ବିଧାନସଭା ଆସନମାନଙ୍କୁ (Free-seat) ଅବାଧ ଆସନ ବୋଲି ପ୍ରଗତି ଦଳ ପକ୍ଷରୁ ଘୋଷଣାକରାଯାଇଥିଲା । ଏ ପ୍ରକାର ଅବାଧ ଆସନରେ ଉଭୟ ଦଳ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ହେବା କଥାକୁ ପ୍ରଗତି ଦଳ ସ୍ୱୀକୃତି ଦେଇଥିଲା । ବାଲେଶ୍ୱର ସଦର ବିଧାନସଭା ନିର୍ବାଚନମଣ୍ଡଳୀ ଏହି ପ୍ରକାର ଗୋଟିଏ ଅବାଧ ଆସନ ଥିଲା । ମୁଁ ଏହିଠାରେ ଗୋଟିଏ ଅଡୁଆ ଓ ବୀତସ୍ପୃହ ଅବସ୍ଥାର ସମ୍ମୁଖୀନ ହୋଇଥିଲି । ଶ୍ରୀ ପ୍ରିୟନାଥ ନନ୍ଦୀ ଓ ଶ୍ରୀ କାର୍ତ୍ତିକଚନ୍ଦ୍ର ରାଉତ ଯଥାକ୍ରମେ ଉତ୍କଳ କଂଗ୍ରେସ ଓ ସ୍ୱତନ୍ତ୍ର ଦଳ ପକ୍ଷରୁ ପ୍ରାର୍ଥୀ ହୋଇଥିଲେ ଏବଂ ଏ ଦୁଇଜଣଯାକ ମୋର ବନ୍ଧୁ ଥିଲେ । ପ୍ରିୟବାବୁଙ୍କୁ ବାଦ୍ ଦେଇ କାର୍ତ୍ତିକବାବୁଙ୍କୁ ପ୍ରଗତି ଦଳ ପକ୍ଷରୁ ପ୍ରାର୍ଥୀ କରିବାପାଇଁ ଶ୍ରୀ ସିଂହଦେଓ ଓ ଶ୍ରୀ ପଟ୍ଟନାୟକ ରାଜିଥିଲେ ମଧ୍ୟ ମୁଁ ସେଥିରେ ଏକମତ ହୋଇ ନଥିଲି । ଗୋଟିଏ ଅସୁବିଧା ସମୟରେ ପ୍ରିୟବାବୁ ଆମ୍ଭମାନଙ୍କୁ ସାହାଯ୍ୟ କରିଥିଲେ, ତେଣୁ ସେମାନଙ୍କ ପ୍ରସ୍ତାବରେ ମୁଁ ଏକମତ ହୋଇନଥିଲି । ଉଭୟ ସେଠାରେ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ଉତ୍କଳ କଂଗ୍ରେସ ପ୍ରାର୍ଥୀ ପ୍ରିୟବାବୁଙ୍କପାଇଁ ପ୍ରଚାର କରିବାକୁ ମୁଁ ସେଠାକୁ ଯାଇଥିଲି । ସେଠାରେ କୌଣସି ଅପ୍ରୀତିକର ଘଟଣା ଘଟିନଥିଲା । ଆମ ଦୁଇଦଳ ବ୍ୟତୀତ ସେଠାରେ କଂଗ୍ରେସ ଦଳ ଓ କମ୍ୟୁନିଷ୍ଟ ଦଳ ପକ୍ଷରୁ ପ୍ରାର୍ଥୀ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ସବୁ ଦଳକୁ ପରାସ୍ତ କରି କମ୍ୟୁନିଷ୍ଟ ପ୍ରାର୍ଥୀ ଶ୍ରୀ ଅରୁଣ ଦେ ଜୟଲାଭ କରିଥିଲେ । ପରବର୍ତ୍ତୀ ନିର୍ବାଚନରେ ଶ୍ରୀ କାର୍ତ୍ତିକ ଚନ୍ଦ୍ର ରାଉତ ଏହି ନିର୍ବାଚନମଣ୍ଡଳୀରୁ ବିଧାନସଭାକୁ ନିର୍ବାଚିତ ହୋଇ ମୋର ଘନିଷ୍ଠ ସମ୍ପର୍କରେ ଆସିଥିଲେ । ୧୯୭୪ ନିର୍ବାଚନରେ ମୁଁ ମୋର ପୁରୁଣା ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ନହୋଇ ବାଲେଶ୍ୱର ସଦର ସବ୍‌ଡିଭିଜନ୍‌ରେ ଥିବା ଶିମୁଳିଆ ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହୋଇ ପରାଜିତ ହୋଇଥିଲି । ଶିମୁଳିଆ ନିର୍ବାଚନମଣ୍ଡଳୀଟି ହରିଜନଙ୍କପାଇଁ ଗୋଟିଏ ସଂରକ୍ଷିତ ନିର୍ବାଚନମଣ୍ଡଳୀ ଥିଲା । ମୋ ଉଦ୍ୟମରେ ତାହା ସଂରକ୍ଷିତରୁ ସାଧାରଣ ନିର୍ବାଚନମଣ୍ଡଳୀରେ ପରିଣତ ହୋଇଥିଲା । ମୋର ପ୍ରତିଦ୍ୱନ୍ଦ୍ୱୀ ଶାସକ କଂଗ୍ରେସ ପ୍ରାର୍ଥୀ ସେଇ କଥାଟାକୁ ହରିଜନମାନଙ୍କ ମଧ୍ୟରେ ବିଶେଷ ପ୍ରଚାରକରାଇ ସେମାନଙ୍କୁ ମୋ ବିରୁଦ୍ଧରେ ଉତ୍ତେଜିତ କରାଇଥିଲେ । ହରିଜନମାନେ ଭାବିଥିଲେ ଯେ ସେମାନଙ୍କ ଜାତିରୁ ଜଣେ କେହି ସେ ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହେଉଥିଲା; ମାତ୍ର ସେ ସୁଯୋଗରୁ ମୁଁ ସେମାନଙ୍କୁ ବଞ୍ଚିତ କରାଇଥିଲି । ତେଣୁ ସେ ନିର୍ବାଚନମଣ୍ଡଳୀରେ ସମୂହଭାବରେ ହରିଜନମାନେ ମୋତେ ଭୋଟ ଦେଇ ନଥିଲେ । ମୋର ପରାଜୟର ଏହା ଗୋଟିଏ ପ୍ରଧାନ କାରଣ ହୋଇଥିଲା ବୋଲି ଜଣାପଡ଼ିଥିଲା ।

## ନନ୍ଦିନୀ ଦେବୀଙ୍କ ଦ୍ୱିତୀୟ ମନ୍ତ୍ରିମଣ୍ଡଳ

ଓଡ଼ିଶାରେ ୧୯୭୪ ମସିହା ମଧ୍ୟବର୍ତ୍ତୀକାଳୀନ ନିର୍ବାଚନବେଳକୁ ନିର୍ବାଚନମଣ୍ଡଳୀ ପୁନର୍ଗଠନ ଅନୁସାରେ ଓଡ଼ିଶା ବିଧାନସଭାର ଆସନ ସଂଖ୍ୟା ୧୪୦ ରୁ ୧୪୭କୁ ବୃଦ୍ଧିପାଇସାରିଥିଲା । ଲୋକସଭା ଆସନ ଗୋଟିଏ ବଢ଼ି ଏକୋଇଶ ହେଲା । ଏହି ନିର୍ବାଚନରେ ଶାସକ କଂଗ୍ରେସ ଅଣସ୍ତରିଟି ସ୍ଥାନ ଦଖଲକରିଥିଲା । ଉତ୍କଳ କଂଗ୍ରେସର ପଞ୍ଚତ୍ରିଂଶ ଜଣ, ସ୍ୱତନ୍ତ୍ର ଦଳର ଏକୋଇଶ, କମ୍ୟୁନିଷ୍ଟ ଦଳର

ସାତ ଜଣ, ମାର୍କସ୍‌ବାଦୀ କମ୍ୟୁନିଷ୍ଟ ଦଳର ତିନି ଜଣ, ସୋସିଆଲିଷ୍ଟ ଦଳର ଦୁଇଜଣଙ୍କ ସମେତ ଜଣେ ଜନକଂଗ୍ରେସ ଦଳର ଓ ଆଠଜଣ ସ୍ୱାଧୀନ ସଭ୍ୟ ନିର୍ବାଚିତ ହୋଇଥିଲେ । କୌଣସି ଦଳ ସଂଖ୍ୟାଗରିଷ୍ଠତା ହାସଲ କରିପାରିନଥିଲା । ଶାସକ କଂଗ୍ରେସ ଦଳ କମ୍ୟୁନିଷ୍ଟ ଦଳଙ୍କ ସମର୍ଥନରେ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ନେତୃତ୍ୱରେ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ଏହି ମନ୍ତ୍ରିମଣ୍ଡଳରେ ସର୍ବଶ୍ରୀ ବିନାୟକ ଆଚାର୍ଯ୍ୟ, ବାଙ୍କ ବିହାରୀ ଦାସ, ଲକ୍ଷ୍ମଣ ମଲ୍ଲିକ, ଶ୍ରୀବଲ୍ଲଭ ପାଣିଗ୍ରାହୀ ଓ ଯଦୁନାଥ ଦାସମହାପାତ୍ର କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀରୂପେ ନିଯୁକ୍ତ ହୋଇଥିଲେ । ସର୍ବଶ୍ରୀ ମୋହନ ନାୟକ, କାହ୍ନୁ ଚରଣ ଲେଙ୍କା, ଭାଗିରଥୀ ଗମାଙ୍ଗ, ରାମଚନ୍ଦ୍ର ଉଲାକା, ବ୍ରହ୍ମାନନ୍ଦ ବିଶ୍ୱାଳ, ଦିବ୍ୟଲୋଚନ ଶେଖର ଦେଓ, ଠକ୍କୁର କୃପାସିନ୍ଧୁ ଭୋଇ ଓ ଠକ୍କୁର ବେଣୁଧର ବଳୀୟାର ସିଂ ପ୍ରମୁଖ ରାଷ୍ଟ୍ରମନ୍ତ୍ରୀ ଭାବରେ ନିଯୁକ୍ତ ହୋଇଥିଲେ । ତା'ଛଡ଼ା ଉପମନ୍ତ୍ରୀ ଭାବରେ ସର୍ବଶ୍ରୀ ଜଗନ୍ନାଥ ପଟ୍ଟନାୟକ, ମହ୍‌ବୁବ୍ ଅଲ୍ଲୀ ଓ କୁଆଁରିଆ ମାଝି ନିଯୁକ୍ତ ହୋଇଥିଲେ । କିଛି ଦିନ ପରେ ଶ୍ରୀ ବାଙ୍କବିହାରୀ ଦାସ ମନ୍ତ୍ରିମଣ୍ଡଳରୁ ବହିଷ୍କୃତ ହୋଇଥିଲେ । ଏହି ମନ୍ତ୍ରିମଣ୍ଡଳର ଶେଷଭାଗବେଳକୁ ଶ୍ରୀ ଗଙ୍ଗାଧର ମହାପାତ୍ରଙ୍କୁ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀରୂପେ ନିଯୁକ୍ତ କରାଯାଇଥିଲା । ଏହି ୧୯୭୪ ନିର୍ବାଚନର ଫଳାଫଳରୁ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କର ପ୍ରଭାବ ପଶ୍ଚିମ ଓଡ଼ିଶାରେ ହ୍ରାସପାଇବା ଅନୁଭବ କରାଯାଇଥିଲା । ଉତ୍କଳ କଂଗ୍ରେସ ତାର ବହୁ ପୁରୁଣା ସ୍ଥାନ ଦଖଲକରିପାରିଥିଲାବେଳେ ସ୍ୱତନ୍ତ୍ର ଦଳ ତା'ର ବହୁ ପୁରୁଣା ସ୍ଥାନ ହରାଇଥିଲା । ସ୍ୱତନ୍ତ୍ର ଦଳଠାରୁ ଉତ୍କଳ କଂଗ୍ରେସ ଅଧିକ ସ୍ଥାନ ପାଇପାରିଥିଲା । ଶ୍ରୀ ବିଜୁ ପଟ୍ଟନାୟକ ଏଥର ବିରୋଧୀ ଦଳର ନେତା ରୂପେ ନିର୍ବାଚିତ ହୋଇଥିଲେ ।

## ଓଡ଼ିଶାରେ ଲୋକଦଳ ଗଠନ

ଦେଶରେ ଗୋଟିଏ ଜାତୀୟ ବିକଳ୍ପ ଦଳ ଗଠନ କରିବାପାଇଁ ୧୯୭୪ ମସିହାରେ ବିଶେଷ ଉଦ୍ୟମ ଆରମ୍ଭ ହୋଇଥିଲା । ବହୁ ଆଲୋଚନା ପରେ ଭାରତୀୟ କ୍ରାନ୍ତିଦଳ, ସ୍ୱତନ୍ତ୍ର ଦଳ, ଉତ୍କଳ କଂଗ୍ରେସ, ରାଷ୍ଟ୍ରୀୟ ଲୋକତାନ୍ତ୍ରିକ ଦଳ, ଏସ୍.ଏସ୍.ପି. ଦଳ, କିଷାନ ମଜଦୁର ଦଳ ଓ ପଞ୍ଜାବ କ୍ଷେତ ମଜଦୁର ଦଳ ପ୍ରଭୃତି ସାତଟି ଦଳକୁ ନେଇ 'ଭାରତୀୟ ଲୋକଦଳ' ନାମରେ ଗୋଟିଏ ଜାତୀୟ ବିକଳ୍ପ ଦଳ ଗଠିତ ହୋଇଥିଲା । ୧୯୭୪ ମସିହା ଅକ୍ଟୋବର ମାସ ୨୯ ତାରିଖରେ ଏହି ନୂତନ ଦଳଟି ଦିଲ୍ଲୀଠାରେ ଆନୁଷ୍ଠାନିକ ଭାବରେ ଉଦ୍‌ଘାଟିତ ହୋଇଥିଲା । ଏହି ଉଦ୍‌ଘାଟନ ଉତ୍ସବରେ ମୁଁ ଯୋଗଦେଇଥିଲି । ଓଡ଼ିଶାରୁ ଶ୍ରୀ ବିଜୁ ପଟ୍ଟନାୟକ, ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ଶ୍ରୀ ରବି ରାୟ ପ୍ରଭୃତି ବହୁ ବିଶିଷ୍ଟ ବ୍ୟକ୍ତି ଏଥିରେ ଯୋଗଦେଇଥିଲେ । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ବୟୋଜ୍ୟେଷ୍ଠ ନେତା ଆଚାର୍ଯ୍ୟ କୃପାଳିନୀ ଏହି ଉଦ୍‌ଘାଟନ ଉତ୍ସବରେ ଉପସ୍ଥିତ ରହି ଏହି ନବଗଠିତ ଜାତୀୟ ବିକଳ୍ପ ଦଳକୁ ଆଶୀର୍ବାଦ ଜଣାଇଥିଲେ । ଲୋକନାୟକ ଜୟପ୍ରକାଶ ନାରାୟଣ ନବଗଠିତ ଦଳକୁ ଗୋଟିଏ ଶୁଭେଚ୍ଛା ବାର୍ତ୍ତା ପଠାଇଥିଲେ । ଚୌଧୁରୀ ଚରଣ ସିଂହ ସର୍ବସମ୍ମତିକ୍ରମେ ଏହି ଲୋକଦଳର ଚେୟାରମ୍ୟାନରୂପେ ନିର୍ବାଚିତ ହୋଇଥିଲେ । ନବନିର୍ବାଚିତ ଚେୟାରମ୍ୟାନ୍ ଚୌଧୁରୀ ଚରଣ ସିଂହ ବାରଟି ରାଜ୍ୟରୁ ଅଣତ୍ରିଶ ଜଣ ସଭ୍ୟଙ୍କୁ ନେଇ ଏକ ଜାତୀୟ କାର୍ଯ୍ୟକାରୀ କମିଟି ଗଠନ କରିଥିଲେ । ଓଡ଼ିଶାରୁ ବିଜୁ ପଟ୍ଟନାୟକ, ରାଜେନ୍ଦ୍ର ନାରାୟଣ ସିଂହଦେଓ, ହରେକୃଷ୍ଣ ମହତାବ, ପ୍ରତାପକେଶରୀ ଦେଓ, ରବି ରାୟ ଓ ପ୍ରହ୍ଲାଦ ମଲ୍ଲିକଙ୍କୁ ଉକ୍ତ ଜାତୀୟ କାର୍ଯ୍ୟକାରୀ କମିଟିର ସଭ୍ୟରୂପେ ନିଆଯାଇଥିଲା । ଦିଲ୍ଲୀରୁ ଫେରି ସେପ୍ଟେମ୍ବର ମାସ ସାତ ତାରିଖରେ ଭୁବନେଶ୍ୱରଠାରେ ପୂର୍ବତନ ଉତ୍କଳ କଂଗ୍ରେସ, ସ୍ୱତନ୍ତ୍ର ଦଳ ଓ ଏସ୍.ଏସ୍.ପି. ଦଳଗୁଡ଼ିକର ଗୋଟିଏ ମିଳିତ କର୍ମୀ ସମ୍ମିଳନୀ ଅନୁଷ୍ଠିତ ହୋଇ ଭାରତୀୟ ଲୋକଦଳର ଓଡ଼ିଶା ଶାଖା ଗଠିତ ହୋଇଥିଲା ଏବଂ ମୁଁ ଓଡ଼ିଶା ଲୋକଦଳର ସଭାପତିରୂପେ ମନୋନୀତ ହୋଇଥିଲି । ଶ୍ରୀ ପ୍ରତାପଚନ୍ଦ୍ର

ମହାନ୍ତି, ଶ୍ରୀ ଗଣନାଥ ପ୍ରଧାନ ଓ ଏ.ଆର.ଖାଁ ଉପସଭାପତିରୂପେ ମନୋନୀତ ହୋଇଥିଲେ । ସର୍ବଶ୍ରୀ ଅନନ୍ତ ନାରାୟଣ ସିଂହଦେଓ, ଶରତ୍ କୁମାର କର, ଘାସିରାମ ମାଝୀ ଓ ହରିଶ୍ଚନ୍ଦ୍ର ବକ୍ସିପାତ୍ର ସମ୍ପାଦକରୂପେ ଓ ଶ୍ରୀ ସତ୍ୟପ୍ରିୟ ମହାନ୍ତି କୋଷାଧ୍ୟକ୍ଷରୂପେ ମନୋନୀତ ହୋଇଥିଲେ ।

## ପର୍ଶୁରାମଙ୍କ ହତ୍ୟା-ରହସ୍ୟ

ବହୁ ବିରୋଧୀ ଦଳ ଏକତ୍ରିତ ହୋଇଯାଇ ଗୋଟିଏ ଦଳଭୁକ୍ତ ହେବାରୁ ଲୋକମାନଙ୍କ ମନରେ ତାହା ଭଲ ପ୍ରଭାବ ପକାଇଥିଲା । ଓଡ଼ିଶାରେ ପ୍ରଥମେ ଗଣତନ୍ତ୍ର ଦଳ ଓ ପରେ ସ୍ୱତନ୍ତ୍ର ଦଳ ପଶ୍ଚିମ ଓଡ଼ିଶାରେ ବହୁ ସମୟପାଇଁ ବେଶ୍ ପ୍ରଭାବ ବିସ୍ତାର କରିଥିଲା । ଉତ୍କଳ କଂଗ୍ରେସ ଓ ସ୍ୱତନ୍ତ୍ର ଦଳର ଲୋକମାନେ ଏକତ୍ର କାର୍ଯ୍ୟ ଆରମ୍ଭ କରିବାରୁ ତାହା କର୍ମୀମାନଙ୍କ ମଧ୍ୟରେ ଖୁବ୍ ଉତ୍ସାହ ସୃଷ୍ଟି କରିଥିଲା । ଅଳ୍ପ ସମୟ ମଧ୍ୟରେ ଆମେ ସବୁ ଜିଲ୍ଲାରେ ଲୋକଦଳ ଗଠନ କରିବାରେ ସମର୍ଥ ହୋଇଥିଲୁ । ବିଜୁ ବାବୁ, ମୁଁ ଓ ଶ୍ରୀ ସିଂହଦେଓ ଏକସାଙ୍ଗରେ ବହୁତ ଜିଲ୍ଲାକୁ ଯାଇ ଲୋକଦଳ ପକ୍ଷରୁ ଆୟୋଜିତ ସଭାମାନଙ୍କରେ ଭାଷଣ ଦେଇଥିଲୁ । ବଲାଙ୍ଗୀର ଜିଲ୍ଲାରେ ଲୋକଦଳପାଇଁ ବିଶେଷ ଆଗ୍ରହ ପ୍ରକାଶ ପାଇଥିଲା । ବଲାଙ୍ଗୀରର ଯୁବକମାନେ ଶ୍ରୀ ପର୍ଶୁରାମ ଶତପଥୀଙ୍କ ନେତୃତ୍ୱରେ ଲୋକଦଳ ସଙ୍ଗଠନରେ ଖୁବ୍ ସକ୍ରିୟ ଅଂଶ ନେଇଥିଲେ । ଶ୍ରୀମାନ୍ ଶତପଥୀ ଜଣେ ଉଦୀୟମାନ ଉତ୍ସାହୀ ଯୁବକ ଥିଲେ ଏବଂ ସାମ୍ବାଦିକତାରେ ଏମ୍.ଏ. ପାସ୍ କରି ସେ ବଲାଙ୍ଗୀର ଜିଲ୍ଲାରେ ପ୍ରଜାତନ୍ତ୍ର କାଗଜର ପ୍ରତିନିଧି ଭାବରେ କାର୍ଯ୍ୟ କରୁଥିଲେ । ମଧ୍ୟପ୍ରଦେଶରୁ ପ୍ରକାଶ ପାଉଥିବା କେତେକ ହିନ୍ଦୀ ଓ ଇଂରାଜୀ ଖବରକାଗଜର ପ୍ରତିନିଧି ମଧ୍ୟ ସେ ଥିଲେ । ସେ ଜଣେ ଉଚ୍ଚଶିକ୍ଷିତ ଉତ୍ସାହୀ ଯୁବକ ଥିବାରୁ ବହୁ ଯୁବକଙ୍କୁ ଆକୃଷ୍ଟ କରିପାରିଥିଲେ ଏବଂ ସେମାନଙ୍କୁ ସମାଜସେବାରେ ନିୟୋଜିତ କରାଇପାରିଥିଲେ । ସେଥିପାଇଁ ସେ ସ୍ଥାନୀୟ ଶାସକ କଂଗ୍ରେସ ଲୋକଙ୍କର ଈର୍ଷାଭାଜନ ହୋଇଥିଲେ । ତା'ଛଡ଼ା ସ୍ଥାନୀୟ କଂଗ୍ରେସ ଲୋକଙ୍କର ଦୁଷ୍କର୍ମ, ଶାସନକଳରେ ସେମାନଙ୍କ ହସ୍ତକ୍ଷେପ ଓ ସେମାନଙ୍କର ଗୁଣ୍ଡାମି ପ୍ରଭୃତି ନାନା କାର୍ଯ୍ୟ ସମ୍ବନ୍ଧରେ ଶ୍ରୀ ଶତପଥୀ ସମ୍ବାଦପତ୍ରମାନଙ୍କରେ ସମ୍ବାଦ ପ୍ରକାଶ କରାଉଥିଲେ ବୋଲି ସେମାନଙ୍କର କ୍ରୋଧର କାରଣ ହୋଇଥିଲେ । ଶ୍ରୀ ଶତପଥୀ କେତୋଟି ବେନାମି ଚିଠି ପାଇଥିଲେ, ଯେଉଁଥିରେ କି ତାଙ୍କୁ ହତ୍ୟା କରିବାପାଇଁ ଧମକ ଦିଆଯାଇଥିଲା । ଏହି ସମୟରେ ଓଡ଼ିଶାର ରାଜ୍ୟପାଳ ଶ୍ରୀ ଆକବର ଅଲ୍ଲୀ ଖାଁ ବଲାଙ୍ଗୀର ଗସ୍ତରେ ଯାଇଥିଲେ ଏବଂ ଏହି ସୁଯୋଗରେ ଶ୍ରୀ ଶତପଥୀ କଂଗ୍ରେସର କେତେକ ଗୁଣ୍ଡାଶ୍ରେଣୀର ଲୋକ ତାଙ୍କୁ ହତ୍ୟା କରିବାପାଇଁ ଯେଉଁସବୁ ଧମକ ଦେଉଥାଆନ୍ତି ସେ କଥା ରାଜ୍ୟପାଳଙ୍କୁ କହି ତାଙ୍କର ନିରାପତ୍ତାପାଇଁ ରାଜ୍ୟପାଳଙ୍କଠାରୁ ସାହାଯ୍ୟ ଚାହିଁଥିଲେ । କଂଗ୍ରେସ ଲୋକମାନେ ବଲାଙ୍ଗୀରରେ ଯେଉଁ ଅରାଜକତା ସୃଷ୍ଟିକରୁଥିଲେ ଏବଂ ଅଫିସରମାନଙ୍କୁ ହାତକରି ଯେଉଁସବୁ ଦୁର୍ନୀତିମୂଳକ କାର୍ଯ୍ୟ କରୁଥିଲେ ସେ ସବୁ ଶ୍ରୀ ଶତପଥୀ ରାଜ୍ୟପାଳଙ୍କ ଆଗରେ କହିଥିଲେ । ତାଙ୍କର ଅଭିଯୋଗସବୁ ରାଜ୍ୟପାଳଙ୍କୁ ଲିଖିତ ଭାବରେ ପଠାଇବାପାଇଁ ରାଜ୍ୟପାଳ ଶ୍ରୀ ଶତପଥୀଙ୍କୁ ପରାମର୍ଶ ଦେଇଥିଲେ । ୩୦।୧୧।୭୪ ତାରିଖରେ ଶ୍ରୀ ଶତପଥୀ ସେ ଅଭିଯୋଗଗୁଡ଼ିକ ଲେଖିକରି ରାଜ୍ୟପାଳଙ୍କ ପାଖକୁ ପଠାଇବାପାଇଁ ଡାକଘରକୁ ଯିବାବେଳେ ଗୋଟିଏ ନିର୍ଜନ ରାସ୍ତାରେ ତାଙ୍କ ଉପରେ ଜିପ୍ ମଡ଼ାଇଦେଇ ତାଙ୍କୁ ହତ୍ୟାକରାଯାଇଥିଲା ବୋଲି ଅଭିଯୋଗ ହୋଇଥିଲା । ଏହି ଘଟଣାର ଦୁଇ ତିନି ଦିନ ପୂର୍ବରୁ ତାଙ୍କୁ ହତ୍ୟା କରିବାପାଇଁ ଯେଉଁମାନେ ଧମକ ଦେଉଥିଲେ ସେମାନଙ୍କ ବିରୁଦ୍ଧରେ ଶ୍ରୀ ଶତପଥୀ ବଲାଙ୍ଗୀର ଥାନାରେ ଏତଲା ଦେଇଥିଲେ । ଏହି ହତ୍ୟାର ଜଘନ୍ୟ ଚିତ୍ର ଓ କରୁଣ କାହାଣୀ ସମ୍ବାଦପତ୍ରରେ ପ୍ରକାଶ ପାଇଲା ପରେ ସର୍ବତ୍ର ଚାଞ୍ଚଲ୍ୟ ସୃଷ୍ଟି ହୋଇଥିଲା ।

ରାଜ୍ୟ ଲୋକଦଳ ସଭାପତି ହିସାବରେ ଏହି ଘଟଣାର ପ୍ରକୃତ ତଥ୍ୟ ଜାଣିବାପାଇଁ ମୁଁ ବଲାଙ୍ଗୀର ଯାଇଥିଲି । ତାଙ୍କ ପରିବାରର ଲୋକଙ୍କର ଦୁଃଖରେ ସମବେଦନା ଜଣାଇବାପାଇଁ ତାଙ୍କ ଘରକୁ ମଧ୍ୟ ଯାଇଥିଲି । ଶ୍ରୀମାନ୍ ଶତପଥୀ ସତେଇଶ ବର୍ଷର ଜଣେ ଅବିବାହିତ ଯୁବକ ଥିଲେ । ତାଙ୍କର ଭାଇ, ଭାଉଜ ପ୍ରଭୃତିଙ୍କର ଦାରୁଣ ଦୁଃଖ ଦେଖି ମୁଁ ମର୍ମାହତ ହୋଇଥିଲି । ବଲାଙ୍ଗୀର ସହରର ଗୋଟିଏ ହଲ୍‌ରେ ସ୍ୱର୍ଗତଃ ଶତପଥୀଙ୍କର ଜୀବନୀ ଓ କର୍ଯ୍ୟକଳାପ ସମ୍ବନ୍ଧରେ ଗୋଟିଏ ପ୍ରଦର୍ଶନୀ ଆୟୋଜିତ ହୋଇଥିଲା । ସେଥିରେ ପର୍ଶୁରାମଙ୍କ ଛାତ୍ରଜୀବନରେ ସେ ଯେଉଁସବୁ କାର୍ଯ୍ୟ ସହିତ ସଂପୃକ୍ତ ଥିଲେ ତାହାର ବିବରଣୀ ଓ ଫଟୋ ପ୍ରଦର୍ଶିତ ହୋଇଥିଲା । ଓଡ଼ିଶାଠାରୁ ମଧ୍ୟପ୍ରଦେଶରେ ଶ୍ରୀ ଶତପଥୀ ଛାତ୍ର ଓ ଯୁବକମାନଙ୍କ ମଧ୍ୟରେ ବିଶେଷଭାବରେ ପରିଚିତ ଥିଲେ । ମଧ୍ୟପ୍ରଦେଶର ବହୁବିଧ ଛାତ୍ର ଓ ଯୁବ ଅନୁଷ୍ଠାନ ସହିତ ତାଙ୍କର ସଂପର୍କ ଥିବାର ମୁଁ ସେହି ପ୍ରଦର୍ଶନୀରୁ ଜାଣିପାରିଲି । ଏତେ ଅଳ୍ପ ବୟସର ଜଣେ ଯୁବକ ଯେଉଁଭଳି ଭାବରେ ନାନାପ୍ରକାର ସାଂସ୍କୃତିକ, ସାମାଜିକ ଓ ରାଜନୈତିକ କାର୍ଯ୍ୟରେ ସଂପୃକ୍ତ ଥିଲେ ତାହା ଦେଖି ମୁଁ ସ୍ତମ୍ଭୀଭୂତ ହୋଇଯାଇଥିଲି । ଏପ୍ରକାର ଅନୁଭୂତି ମୋର ଏହା ପୂର୍ବରୁ ନଥିଲା । ବଲାଙ୍ଗୀରରୁ ଫେରି ମୁଁ ଏହି ଘଟଣା ସଂପର୍କରେ ରାଜ୍ୟପାଳଙ୍କୁ ଗୋଟିଏ ଚିଠି ଲେଖିଥିଲି ଏବଂ ସମ୍ବାଦପତ୍ରରେ ଏ ନୃଶଂସ ହତ୍ୟାକାଣ୍ଡ ସମ୍ବନ୍ଧରେ ଗୋଟିଏ ବିବୃତି ଦେଇଥିଲି । ଅଫିସରମାନେ କ୍ଷମତାସୀନ ଦଳଦ୍ୱାରା ପ୍ରଭାବିତ ହୋଇ ନିରପେକ୍ଷ ଭାବରେ ବିହିତ କାର୍ଯ୍ୟାନୁଷ୍ଠାନ କରୁନାହାନ୍ତି ବୋଲି ମୁଁ ଅଭିଯୋଗ କରିଥିଲି । ରାଜ୍ୟପାଳଙ୍କ ପାଖରେ ମୋର ଅଭିଯୋଗ ଫଳରେ ବଲାଙ୍ଗୀରର ପୁଲିସ ଅନୁସନ୍ଧାନ ଦିଗରେ ଟିକିଏ ତତ୍ପର ହୋଇଥିଲେ । କଂଗ୍ରେସ ଅଫିସର ଜିପ୍ ଜବତ୍ ହୋଇଥିଲା ଓ କେତେକ ଲୋକ ଗିରଫ ହୋଇଥିଲେ । ଆଉ କେତେକ ଲୋକ ଅନେକଦିନ ପାଇଁ ଫେରାରଥିଲେ । ଗିରଫ ହୋଇଥିବା ବ୍ୟକ୍ତିମାନଙ୍କୁ ବଲାଙ୍ଗୀରରେ ଜାମିନ୍ ମିଳିନଥିଲା । ଓଡ଼ିଶା ହାଇକୋର୍ଟରେ ଜାମିନ୍‌ପାଇଁ ଆବେଦନ କରିବାକୁ ଆସାମୀମାନଙ୍କ ସଂପର୍କୀୟ ଲୋକମାନେ ଓକିଲ ସହ ଗୋଟିଏ ମଟର ଗାଡ଼ିରେ କଟକ ଆସିଲାବେଳେ ଖୋର୍ଦ୍ଧା ଓ ଭୁବନେଶ୍ୱର ମଧ୍ୟରେ ଗୋଟିଏ ଦୁର୍ଘଟଣା ସମ୍ମୁଖୀନ ହୋଇ ସେଥିରେ ଆସୁଥିବା ଅଧିକାଂଶଲୋକଙ୍କର ପ୍ରାଣନାଶ ହୋଇଥିଲା । ଆଉ କେତେକ ଗୁରୁତର ଭାବରେ ଜଖମ ହୋଇ ବିକଳାଙ୍ଗ ହୋଇଯାଇଥିଲେ । ଏହି ସମୟରେ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଅସୁସ୍ଥ ଥାଇ ଚିକିତ୍ସାପାଇଁ ରାଜ୍ୟ ବାହାରେ ଥିଲେ । ତାଙ୍କର ଅନୁପସ୍ଥିତିର ସୁଯୋଗନେଇ ବଲାଙ୍ଗୀରର ତଥାକଥିତ କଂଗ୍ରେସ ଯୁବଗୋଷ୍ଠୀ ଏ ପ୍ରକାର ଗୁଣ୍ଡାମି ଓ ଆତଙ୍କରାଜ ଆରମ୍ଭକରିଥିଲେ । ଦାରୁଣ ଦୈବଯୋଗ ଏପରି ହେଲା ଯେ ଶ୍ରୀ ସିଂହଦେଓ ଆଉ ଜୀବିତ ଅବସ୍ଥାରେ ବଲାଙ୍ଗୀର ଫେରିପାରିନଥିଲେ । ୧୯୭୫ ମସିହା ଫେବୃୟାରୀ ମାସ ୨୩ ତାରିଖ ଦିନ ବମ୍ବେଠାରେ ତାଙ୍କର ଦେହାନ୍ତ ହୋଇଯାଇଥିଲା । ତାଙ୍କର ମୃତଶରୀର ଉଡ଼ାଜାହାଜ ଯୋଗେ ବମ୍ବେରୁ ଅଣାଯାଇଥିଲା ଏବଂ ତାହାପରେ ବଲାଙ୍ଗୀରଠାରେ ରାଜକୀୟ ମର୍ଯ୍ୟାଦା ଓ ରାଷ୍ଟ୍ରୀୟ ସମ୍ମାନ ସହକାରେ ଶବଦାହ କରାଯାଇଥିଲା । ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ମୃତ୍ୟୁ ଓଡ଼ିଶା ପକ୍ଷରେ ଏକ ଅପୂରଣୀୟ କ୍ଷତି ଘଟାଇଥିଲା । ସେତେବେଳକାର ଅବସ୍ଥାରେ ବିରୋଧୀ ଦଳର ଲୋକମାନେ ଜଣେ ସୁଯୋଗ୍ୟ ନେତାକୁ ହରାଇଥିଲେ । ତାଙ୍କ ବିୟୋଗରେ ଲୋକଦଳ ବିଶେଷଭାବରେ କ୍ଷତିଗ୍ରସ୍ତ ହୋଇଥିଲା । ପ୍ରକୃତରେ ପଶ୍ଚିମ-ଓଡ଼ିଶାର ସେ ଜଣେ ସ୍ୱାଭାବିକ ନେତା ଥିଲେ ଏବଂ ତାଙ୍କର ତିରୋଧାନରେ ପଶ୍ଚିମ-ଓଡ଼ିଶା ନେତୃତ୍ୱବିହୀନ ହେଲାଭଳି ଅନୁଭବ କରାଯାଇଥିଲା । ତାଙ୍କର ଶବ ଶୋଭାଯାତ୍ରାରେ ବଲାଙ୍ଗୀର ସହରରେ ଯେତେ ଜନସମାବେଶ ହୋଇଥିଲା ଏପର୍ଯ୍ୟନ୍ତ ଓଡ଼ିଶାରେ କୌଣସି ନେତୃସ୍ଥାନୀୟ ବ୍ୟକ୍ତିଙ୍କ ବିୟୋଗରେ ସେ ପ୍ରକାର ଜନସମାବେଶ ହୋଇନାହିଁ ।

# ଓଡ଼ିଶାରେ ଜୟପ୍ରକାଶ : ନବ ଦିଗନ୍ତ

ଲୋକନାୟକ ଜୟପ୍ରକାଶଙ୍କ ଆହ୍ୱାନକ୍ରମେ ଭାରତବର୍ଷର ରାଜନୀତି କ୍ଷଣସ୍ଥାୟୀ ହୋଇଥିଲେ ମଧ୍ୟ ଯେଉଁ ନିର୍ମଳ ନବଦିଗନ୍ତର ସନ୍ଧାନ ମିଳିଥିଲା ଆମ ଓଡ଼ିଶା ଭୂଇଁରେ ତାହାର ପ୍ରଥମ ସ୍ପର୍ଶ ଅନୁଭୂତ ହୋଇଥିଲା । ୧୯୭୫ ମସିହା ମାର୍ଚ୍ଚ ଶେଷ ଆଡ଼କୁ ବିହାର, ଗୁଜୁରାଟ ପ୍ରଭୃତି ରାଜ୍ୟମାନଙ୍କରେ ଜୟପ୍ରକାଶଜୀଙ୍କ ପରିକଳ୍ପିତ ଜନସଂଘର୍ଷ ସମିତି ନେତୃତ୍ୱରେ ପରିଚାଳିତ ଗଣଆନ୍ଦୋଳନ ଯେପରି ଉତ୍ତେଜନା ସୃଷ୍ଟି କରିଥାଏ ସେ ପରିପ୍ରେକ୍ଷୀରେ ଲୋକନାୟକଙ୍କୁ ସ୍ୱାଗତ ଜଣାଇବା ପାଇଁ ଓଡ଼ିଶାବାସୀ ଉତ୍କଣ୍ଠିତ ଭାବରେ ଅପେକ୍ଷା କରି ରହିଲାଭଳି ଅନୁଭୂତ ହୋଇଥିଲା । ଚାରି ଦିନର କାର୍ଯ୍ୟକ୍ରମ ସ୍ଥିର କରି ଜୟପ୍ରକାଶ ଓଡ଼ିଶା ଆସିଥିଲେ । ମାର୍ଚ୍ଚ ମାସ ତିରିଶ ତାରିଖ ସକାଳେ ବମ୍ବେ ମେଲ ଯୋଗେ ଜୟପ୍ରକାଶଜୀ ଯେତେବେଳେ ଝାରସୁଗୁଡ଼ା ରେଲଷ୍ଟେସନ୍‌ରେ ପହଞ୍ଚିଥିଲେ ସେଠାରେ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇବାପାଇଁ ହଜାର ହଜାର ଲୋକ ଉପସ୍ଥିତ ଥିଲେ । ସେଦିନ ଝାରସୁଗୁଡ଼ା ସହର ଲୋକାରଣ୍ୟ ପରି ଅନୁଭୂତ ହେଉଥିଲା । ଶାସକ କଂଗ୍ରେସ ବ୍ୟତୀତ ଓଡ଼ିଶାର ଅନ୍ୟ ସବୁ ଦଳର ନେତା ତଥା ବିଶିଷ୍ଟ ସମାଜସେବୀମାନେ ତାଙ୍କୁ ସ୍ୱାଗତ ଜଣାଇବାପାଇଁ ସେଠାରେ ଉପସ୍ଥିତ ଥିଲେ । ରାଜ୍ୟ ଲୋକଦଳ ସଭାପତି ହିସାବରେ ମୁଁ ଝାରସୁଗୁଡ଼ା ରେଲଷ୍ଟେସନ୍‌ରେ ଜୟପ୍ରକାଶଜୀଙ୍କୁ ସ୍ୱାଗତ ଜଣାଇଥିଲି । ସର୍ବଶ୍ରୀ ନବକୃଷ୍ଣ ଚୌଧୁରୀ, ହରେକୃଷ୍ଣ ମହତାବ, ପବିତ୍ରମୋହନ ପ୍ରଧାନ, ମନମୋହନ ଚୌଧୁରୀ, ମନମୋହନ ସାହୁ, କିଷାନ ପଟ୍ଟନାୟକ, ରବି ରାୟ, ଗଣନାଥ ପ୍ରଧାନ ଓ ବିଜୟ ପାଣି ପ୍ରଭୃତି ନେତୃସ୍ଥାନୀୟ ବ୍ୟକ୍ତିମାନେ ଝାରସୁଗୁଡ଼ା ଷ୍ଟେସନ୍‌ରେ ଉପସ୍ଥିତ ଥିଲେ । ଝାରସୁଗୁଡ଼ା ସହରରେ ଗୋଟିଏ ସାଧାରଣ ସଭାରେ ଭାଷଣ ଦେବାପରେ ଜୟପ୍ରକାଶଜୀ ସମ୍ବଲପୁର ଅଭିମୁଖେ ଯାତ୍ରା କରିଥିଲେ । ରାସ୍ତାର ବିଭିନ୍ନ ସ୍ଥାନରେ ହଜାର ହଜାର ଲୋକେ ରୁଣ୍ଡହୋଇ ତାଙ୍କୁ ସ୍ୱାଗତ ଜଣାଇଥିଲେ । ମୁଁ ଜୟପ୍ରକାଶଜୀଙ୍କ ପଛେ ପଛେ ଗୋଟିଏ ଗାଡ଼ିରେ ଆସୁଥାଏ । ସମ୍ବଲପୁର ସହରଠାରୁ ଅଳ୍ପଦୂରରେ ଗୋଟିଏ ନିର୍ଜନ ସ୍ଥାନରେ ରାଜ୍ୟ ଖଣି ବିଭାଗର ରାଷ୍ଟ୍ରମନ୍ତ୍ରୀ ଶ୍ରୀ କୃପାସିନ୍ଧୁ ଭୋଇଙ୍କ ନେତୃତ୍ୱରେ ଗୋଟିଏ ଟ୍ରକ୍‌ରେ ବୁହାହୋଇ ଯାଇଥିବା ଦଳେ ଲୋକ କଳାପତାକା ପ୍ରଦର୍ଶନ କରି ଜୟପ୍ରକାଶଜୀଙ୍କ ଗାଡ଼ିକୁ ଅଟକାଇ ପତାକା ଡାଙ୍ଗରେ ତାଙ୍କୁ ଆଘାତ କରିବାକୁ ଉଦ୍ୟମ କରିଥିଲେ । ଆମ ପଛରେ ମଟରକାର୍ ଓ ଟ୍ରକ୍ ପ୍ରଭୃତିରେ ବହୁତ ଲୋକ ଆସୁଥିଲେ । କଳାପତାକାଧାରୀମାନଙ୍କ ଅଭଦ୍ର ଆଚରଣରେ ଉତ୍ତ୍ୟକ୍ତ ହୋଇ ସେମାନେ ଦୌଡ଼ିଆସି ସେମାନଙ୍କୁ ଘଉଡ଼ାଇଦେଇଥିଲେ ।

ସନ୍ଧ୍ୟାରେ ସମ୍ବଲପୁର ସହରରେ ଗୋଟିଏ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା । ଉକ୍ତ ସଭାରେ ଜୟପ୍ରକାଶଜୀ ଭାଷଣ ଦେଇସାରି ସେଇ ରାତିରେ ଅନୁଗୁଳ ଆସିଥିଲେ । ଅନୁଗୁଳରେ ରାତିରେ ନବବାବୁଙ୍କର ଆଶ୍ରମରେ ବିଶ୍ରାମନେଇ ତାଙ୍କ ସହିତ ଏକତ୍ରିଶ ତାରିଖ ଦିନ ସକାଳେ କଟକ ଅଭିମୁଖେ ବାହାରିଥିଲେ । ବାଟରେ ଢେଙ୍କାନାଳଠାରେ ଗୋଟିଏ ସଭାରେ ତାଙ୍କର ଭାଷଣ ଦେବାର ଥାଏ । ଢେଙ୍କାନାଳ ଥିଲା ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କର ନିର୍ବାଚନମଣ୍ଡଳୀ । ଶାସକ-କଂଗ୍ରେସ ଓ କମ୍ୟୁନିଷ୍ଟମାନଙ୍କ ପକ୍ଷରୁ ଜୟପ୍ରକାଶଜୀଙ୍କ ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶନପାଇଁ ସେଠାରେ ସବୁପ୍ରକାର ଆୟୋଜନ କରାଯାଇଥାଏ । ମୋ ଗାଡ଼ିକୁ କିଛି ଦୂରରେ ରଖି ମୁଁ ସଭାସ୍ଥଳକୁ ଗଲାବେଳେ ମୋତେ ଆମର ଜଣେ କମ୍ୟୁନିଷ୍ଟ ବନ୍ଧୁ ଶ୍ରୀ ଆଶିଷ ମହାପାତ୍ର ସଭାସ୍ଥଳକୁ ନଯିବାପାଇଁ ପରାମର୍ଶ ଦେଇଥିଲେ । ସଭାରେ ଭୟଙ୍କର ଗଣ୍ଡଗୋଳ ହେବ; ତେଣୁ ମୁଁ ସେଠାକୁ ନଗଲେ ଭଲହେବ ବୋଲି ସେ ମୋତେ କହିଥିଲେ । ମୁଁ କିନ୍ତୁ ସଭାସ୍ଥଳକୁ ଯାଇଥିଲି । ଜୟପ୍ରକାଶଜୀ ଯାଇ ସଭାସ୍ଥଳରେ ପହଞ୍ଚିଲାମାତ୍ରେ ସେ ସଭାମଣ୍ଡପ ଉପରେ ଟେକାପଥର ବୃଷ୍ଟିହୋଇଥିଲା । ସଭାରେ ବିକ୍ଷୋଭକାରୀମାନେ ପ୍ରବେଶକରି

ନାନାପ୍ରକାର ଧ୍ୱନି ଦେଇ ଜୟପ୍ରକାଶଜୀଙ୍କୁ ଆକ୍ରମଣ କରିବା ପାଇଁ ଉଦ୍ୟମ କରିଥିଲେ । କେତେକ ଲୋକ ଜୟପ୍ରକାଶଜୀଙ୍କୁ ଠେଲାପେଲା କରିଥିଲେ ଏବଂ ସେ ଗଣ୍ଡଗୋଳ ଭିତରେ ଜୟପ୍ରକାଶଜୀ ତଳେ ପଡ଼ିଯିବାଭଳି ଆଶଙ୍କା ହେଲା । ସେମାନଙ୍କର ଧ୍ୱନି ଥାଏ "ଇନ୍ଦିରା ଗାନ୍ଧୀ ଜିନ୍ଦାବାଦ, ଜୟପ୍ରକାଶ ମୁର୍ଦ୍ଦାବାଦ ଓ ଦେଶଦ୍ରୋହୀ ଜୟପ୍ରକାଶ ଫେରିଯାଅ ।" ଅହିଂସାର ପ୍ରତୀକ, ଦେବପ୍ରତିମ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ଅଦ୍ୱିତୀୟ ତ୍ୟାଗୀ ଲୋକନାୟକ ଜୟପ୍ରକାଶଙ୍କ ପ୍ରତି ଏ ପ୍ରକାର ଅଶ୍ରଦ୍ଧା ଓ ଅଶିଷ୍ଟ ବ୍ୟବହାର ସମସ୍ତଙ୍କ ମନରେ ଦାରୁଣ ଆଘାତ ଦେଇଥିଲା । ନବବାବୁ ଜୟପ୍ରକାଶଜୀଙ୍କ ପାଖରେ ଥାଆନ୍ତି ଏବଂ ମୁଁ ତାଙ୍କ ପଛଆଡ଼େ ଥାଏ । ଜିଲ୍ଲା ମାଜିଷ୍ଟ୍ରେଟ ଓ ଏସ୍.ପି. ସେଠାରେ ଉପସ୍ଥିତ ଥିଲେ ଏବଂ ଯେତେବେଳେ ଦେଖାଗଲା ଯେ ଗଣ୍ଡଗୋଳକାରୀମାନେ ସଭାରେ ବିଶୃଙ୍ଖଳା ଓ ଗୁଣ୍ଡାମି କରିବାପାଇଁ ବଦ୍ଧପରିକର ସେତେବେଳେ ବଳପ୍ରୟୋଗ କରି ସେମାନଙ୍କୁ ଘଉଡ଼ାଇ ଦେବାପାଇଁ ସେମାନେ ଆଦେଶଦେଇଥିଲେ । ତତ୍ପରେ ଉପସ୍ଥିତ ଥିବା ଲାଠିଧାରୀ ପୁଲିସମାନେ ସତେଅବା ଆଦେଶକୁ ଅପେକ୍ଷା କରିଥିବାଭଳି ମୋର ମନେହେଲା ! ଆଦେଶ ହେବାମାତ୍ରେ ସେମାନେ ବିକ୍ଷୋଭକାରୀମାନଙ୍କ ଆଡ଼କୁ ଲମ୍ଫଦେଇ ମୁହୂର୍ତ୍ତକ ମଧ୍ୟରେ ସମସ୍ତଙ୍କୁ ଘଉଡ଼ାଇଦେଇଥିଲେ । ତାହାପରେ ଖୁବ୍ ଭଲଭାବରେ ସଭାଟି ହୋଇଥିଲା । ଶୁଣାଯାଇଥିଲା ଯେ ଭୂଦାନକର୍ମୀ ଶ୍ରୀ ହରମୋହନ ପଟ୍ଟନାୟକ, ବିଧାନସଭା ସଦସ୍ୟ ଶ୍ରୀ ଶ୍ରୀବତ୍ସ ନାୟକଙ୍କ ନେତୃତ୍ୱରେ କେତେକ ଭଡ଼ାଟିଆ ଲୋକ ଏ ପ୍ରକାର ଆଚରଣ ପ୍ରଦର୍ଶନ କରିଥିଲେ । ପୁଲିସ ଲାଠିରେ ଶ୍ରୀବତ୍ସ ନାୟକ ମଧ୍ୟ ଜଖମ ହୋଇଥିଲେ । ଢେଙ୍କାନାଳରେ ସଭା ସାରି ଜୟପ୍ରକାଶଜୀ କଟକ ଆସିଥିଲେ । କଟକ ସହରରେ ପ୍ରବେଶ କଲାମାତ୍ରେ କଟକବାସୀଙ୍କ ପକ୍ଷରୁ ଜୟପ୍ରକାଶଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଯାଇଥିଲା ଏବଂ ସେଠାରେ ପ୍ରାୟ ପଚାଶ ହଜାର ଲୋକ ଉପସ୍ଥିତ ଥିଲେ । ଚାଉଳିଆଗଞ୍ଜଠାରେ ଯୁବକଂଗ୍ରେସର କେତେକ ଯୁବକ କଳାପତାକା ଧରି ରାସ୍ତା ଅବରୋଧ କରିବାକୁ ଉଦ୍ୟମ କରିଥିଲେ । ମାତ୍ର ଲୋକମାନେ ସେମାନଙ୍କୁ ଘେରାଉ କରି ନିଷ୍କ୍ରିୟ କରିଦେଇଥିଲେ । କଟକ ବାରବାଟୀ ପଡ଼ିଆରେ ଗୋଟିଏ ବିରାଟ ସାଧାରଣ ସଭା ହୋଇଥିଲା ଏବଂ ଏଥିରେ ପ୍ରାୟ ଏକ ଲକ୍ଷରୁ ଉର୍ଦ୍ଧ୍ୱଲୋକ ଯୋଗଦେଇଥିଲେ । ଉକ୍ତ ସଭାରେ ଶ୍ରୀ ନବକୃଷ୍ଣ ଚୌଧୁରୀ ସଭାପତିତ୍ୱ କରିଥିଲେ । କଟକ ସଭାରେ ଭାଷଣ ଦେଇ ଜୟପ୍ରକାଶଜୀ ଭୁବନେଶ୍ୱର ଆସିଥିଲେ ।

ଭୁବନେଶ୍ୱରରେ ଏପ୍ରିଲ୍ ପହିଲାଦିନ ସଚିବାଳୟ ସମ୍ମୁଖରେ ଥିବା ପରେଡ଼ ପଡ଼ିଆରେ ଜୟପ୍ରକାଶଜୀଙ୍କର ସଭାପାଇଁ ଆୟୋଜନ ହୋଇଥିଲା । ମାତ୍ର ସଚିବାଳୟ ସାମ୍ନାରେ ଜୟପ୍ରକାଶଜୀଙ୍କର ଭାଷଣ ଦେବାଟା ତତ୍କାଳୀନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଦେବୀଙ୍କ ପକ୍ଷରେ ଅତି ଅସହ୍ୟ ମନେହୋଇଥିଲା । କି ଉପାୟରେ ଜୟପ୍ରକାଶଜୀଙ୍କର ସଭା ପରେଡ଼ ପଡ଼ିଆରେ କରାଇ ନଦିଆଯିବ ସେ ବିଷୟରେ ବହୁ ଚିନ୍ତାକରି ନନ୍ଦିନୀ ଦେବୀ ସ୍ଥିର କଲେ ଯେ ଏପ୍ରିଲ୍ ପହିଲାରେ ୧୯୩୬ ମସିହାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ହୋଇଥିଲା, ତେଣୁ ସେହିଦିନ ସେହି ପରେଡ଼ ପଡ଼ିଆରେ ସ୍ୱତନ୍ତ୍ର ଉତ୍କଳ ଦିବସ ଜାକଜମକରେ ପାଳନକଲେ ସେଠାରେ ଜୟପ୍ରକାଶଙ୍କର ସଭା ହୋଇପାରିବନାହିଁ ଏବଂ ଭୁବନେଶ୍ୱରରେ ଜୟପ୍ରକାଶଙ୍କର ସଭା ଭଣ୍ଡୁର ହୋଇଯିବ । ତେଣୁ ପରେଡ଼ ପଡ଼ିଆ ଜୟପ୍ରକାଶଙ୍କ ସଭାପାଇଁ ମିଳିଲାନାହିଁ । ଭୁବନେଶ୍ୱରର ଏକ ନମ୍ବର ଇଉନିଟ୍‌ରେ ଗୋଟିଏ ପଡ଼ିଆରେ ଜୟପ୍ରକାଶଙ୍କର ସଭା ହୋଇଥିଲା । ଉକ୍ତ ସଭାରେ ଶ୍ରୀମତୀ ରମାଦେବୀ ସଭାପତିତ୍ୱ କରିଥିଲେ । ଠିକ୍ ସେହି ସଭା ସମୟରେ ଉତ୍କଳ ଦିବସ ମହାଆଡ଼ମ୍ବରରେ ଅନୁଷ୍ଠିତ ହୋଇଥିଲା । ସେଦିନ ପରେଡ଼ ପଡ଼ିଆରେ ନାନାପ୍ରକାର କ୍ରୀଡ଼ା-କସରତ ଓ ଅଭିନୟ ଅନୁଷ୍ଠିତ ହେବା ସଙ୍ଗେ ସଙ୍ଗେ ବହୁ ଅର୍ଥ ବ୍ୟୟରେ ଅତି ଆକର୍ଷଣୀୟ ଆତସବାଜି କରାଯାଇଥିଲା । ଏହାସତ୍ତ୍ୱେ ଜୟପ୍ରକାଶଙ୍କ ସଭାରେ ନାହିଁ ନଥିବା ଜନସମାବେଶ ହୋଇଥିଲା । ପରେଡ଼ ପଡ଼ିଆ ଉତ୍କଳ ଦିବସ ଉତ୍ସବ ମଧ୍ୟ ଲୋକନାୟକ ଜୟପ୍ରକାଶ

ଜିନ୍ଦାବାଦ ଧ୍ୱନିରେ ପ୍ରକମ୍ପିତ ହୋଇଥିଲା ଏବଂ ସେଠାରେ ପୋଲିସକୁ ଲାଠି ଚଳାଇବାକୁ ପଡ଼ିଥିଲା । ପୂର୍ବରୁ କେବେ ଭୁବନେଶ୍ୱରରେ ସରକାରୀ ଉତ୍କଳ ଦିବସ ପାଳିତ ହେଉନଥିଲା । ୧୯୭୫ ମସିହାରେ ଜୟପ୍ରକାଶଙ୍କର ଆଗମନ ହେତୁ ସେହିଦିନଠାରୁ ପ୍ରତିବର୍ଷ ଏପ୍ରିଲ୍ ପହିଲାରେ ପରେଡ଼ ପଡ଼ିଆରେ ଉତ୍କଳ ଦିବସ ଅତି ଆଡ଼ମ୍ବର ସହକାରେ ପାଳିତ ହୋଇଆସୁଅଛି । ଓଡ଼ିଶାବାସୀଙ୍କ ପ୍ରତି ଲୋକନାୟକଙ୍କର ଏହା ଏକ ପରୋକ୍ଷ ଅବଦାନ ବୋଲି ସ୍ୱୀକାର କରିବାକୁ ହେବ । ଅନ୍ୟପକ୍ଷେ ଉତ୍କଳ ଦିବସ ଜୟପ୍ରକାଶଙ୍କ ଆଗମନର ସ୍ମାରକୀ ।

ଭୁବନେଶ୍ୱର ସାଧାରଣସଭାରେ ଜୟପ୍ରକାଶ ଗୋଟିଏ କଥା କହିଥିଲେ ଯାହା ପରେ ବିତର୍କମୂଳକ ହୋଇଥିଲା । ସେ କହିଥିଲେ ଯେ ସରକାର ଯଦି ଗଣତନ୍ତ୍ର ପଦ୍ଧତିକୁ ପଦାଘାତକରି ଲୋକଙ୍କର ଆଇନସମ୍ମତ ଅହିଂସା ଆନ୍ଦୋଳନ କରିବାର ଅଧିକାରକୁ ଅନ୍ୟାୟଭାବରେ ଦବାଇଦେବାକୁ ପୁଲିସ ଓ ସେନାବାହିନୀ ବ୍ୟବହାର କରନ୍ତି ସେ ପରିପ୍ରେକ୍ଷୀରେ ସେ ସେପ୍ରକାର ଅନ୍ୟାୟ ଆଦେଶକୁ ନ ମାନିବାପାଇଁ ପୁଲିସ ଓ ସେନାବାହିନୀଙ୍କୁ ଆହ୍ୱାନ କରିବେ । ସେତେବେଳେ ଏହା ନାନାଢଙ୍ଗରେ ସମ୍ବାଦପତ୍ରମାନଙ୍କରେ ପ୍ରକାଶପାଇଥିଲା । କେତେକ ଏହାର ଅର୍ଥ କରିଥିଲେ ଯେ ଜୟପ୍ରକାଶଜୀ ଅହିଂସା ଆନ୍ଦୋଳନକୁ ଛାଡ଼ି ପୁଲିସ ଓ ସଶସ୍ତ୍ରବାହିନୀକୁ ବିପ୍ଳବ କରିବାକୁ ଆହ୍ୱାନ କରୁଛନ୍ତି । ଜୟପ୍ରକାଶଜୀଙ୍କର ଭାଷଣ ଶୁଣି ମୋର ମଧ ସେହି ଧାରଣା ହୋଇଥିଲା । ସେକଥା ନକହିଥିଲେ ଭଲହୋଇଥାନ୍ତା ବୋଲି ମୁଁ ବିଜୁବାବୁଙ୍କୁ କହିଥିଲି । ପଶ୍ଚିମ ବଙ୍ଗଳାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ସିଦ୍ଧାର୍ଥଶଙ୍କର ରାୟ ମଧ ଜୟପ୍ରକାଶଜୀଙ୍କର ଏ ପ୍ରକାର କଥାର ସମାଲୋଚନା କରିଥିଲେ । ଶ୍ରୀମତୀ ଇନ୍ଦିରା ଗାନ୍ଧୀ ମଧ ଜୟପ୍ରକାଶଜୀ ପୁଲିସ ଓ ସଶସ୍ତ୍ର ବାହିନୀକୁ ବିପ୍ଳବ କରିବାପାଇଁ ଆହ୍ୱାନ କରିଥିଲେ ବୋଲି ବାରମ୍ବାର କହି ପରବର୍ତ୍ତୀ କାଳରେ ତାଙ୍କର ଜରୁରୀ ପରିସ୍ଥିତି ଘୋଷଣା କରିବା ସମ୍ବନ୍ଧରେ ଯୁକ୍ତି ବାଢ଼ୁଥିଲେ । ମାତ୍ର ୧୯୭୫ ମସିହା ଅକ୍ଟୋବର ମାସ ବାର ତାରିଖରେ ଗୁଜୁରାଟ ରାଜ୍ୟ ଅହମ୍ମଦାବାଦଠାରେ ସୁପ୍ରିମ୍‌କୋର୍ଟର ପୂର୍ବତନ ପ୍ରଧାନ ବିଚାରପତି ଶ୍ରୀ ଶାହାଙ୍କ ସଭାପତିତ୍ୱରେ ଅନୁଷ୍ଠିତ "All India Civil Liberties Conference" ରେ ସୁବିଖ୍ୟାତ ଆଇନଜ୍ଞ ଓ ବିଚାରପତି ଶ୍ରୀ ଏମ୍.ସି. ଚଗଲା ଭାଷଣ ଦେଇ ଶ୍ରୀମତୀ ଗାନ୍ଧୀଙ୍କର ଉକ୍ତିକୁ ଖଣ୍ଡନ କରିବା ସଙ୍ଗେ ସଙ୍ଗେ ଆମମାନଙ୍କ ସନ୍ଦେହ ମୋଚନ କରିଥିଲେ । ସେ କହିଥିଲେ, "And the only piece of evidence on which the Prime Minister has been harping day in day out is that J. P. said that soldiers and policemen should not obey illegal orders. This statement is legally sound. International organisations have been approved that it is not incumbent upon a police officer or an army officer to carry out an order which is illegal. You know what happened in Vietnam when an American Officer shot down fifty/sixty innocent villagers and was tried in America. What J. P. said, therefore, is legally sound. But he never called upon the army or police to revolt or to take up arms against the State. He was merely enunciating a legal proposition and he was moved to do so, because he found in Bihar policemen and soldiers shooting down innocent people and students."

ଜରୁରୀକାଳୀନ ପରିସ୍ଥିତି କଟକଣା ହେତୁ ଶ୍ରୀ ଚଗଲାଙ୍କର ଏହି ଭାଷଣ କୌଣସି ଖବରକାଗଜରେ ପ୍ରକାଶ ପାଇନଥିଲା ; କିନ୍ତୁ ଗୁପ୍ତରେ ଏହା ସମଗ୍ର ଭାରତବର୍ଷରେ ପ୍ରଚାରିତ ହୋଇଥିଲା । ମୋ ପାଖରେ ଏହି ଭାଷଣର ଗୋଟିଏ ସାଇକ୍ଲୋଷ୍ଟାଇଲ୍ ନକଲ ଆସି ପହଞ୍ଚିଥିଲା । ଆମର ଲୋକଦଳ ଅଫିସ ତାକୁ ବହୁ ସଂଖ୍ୟାରେ ସାଇକ୍ଲୋଷ୍ଟାଇଲ୍ କରି ଗୁପ୍ତରେ ବାଣ୍ଟିବାର ବ୍ୟବସ୍ଥା କରିଥିଲା । ଏହାଛଡ଼ା ଜୟପ୍ରକାଶଜୀ ମଧ ୧୯୭୫ ମସିହା ଜୁଲାଇ ମାସ ୨୧ ତାରିଖରେ ବନ୍ଦୀଶାଳାରୁ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କୁ

ଯେଉଁ ଚିଠି ଲେଖିଥିଲେ, ସେଥିରେ ସେ ଶ୍ରୀମତୀ ଗାନ୍ଧୀଙ୍କର ଅଭିଯୋଗକୁ ଅସ୍ୱୀକାର କରିଥିଲେ । ଜାତିକୁ ଗଣତନ୍ତ୍ରଠାରୁ ଅଲଗା କରି ଏବଂ ଉର୍ଦ୍ଧ୍ୱରେ ରଖି ଶ୍ରୀମତୀ ଗାନ୍ଧୀ ଗଣତନ୍ତ୍ର ଅପେକ୍ଷା ଜାତିର ପ୍ରାଧାନ୍ୟ ଅଧିକ ମୂଲ୍ୟବାନ୍ ଓ ମର୍ଯ୍ୟାଦାସଂପନ୍ନ ବୋଲି କହି ଯେଉଁସବୁ ବୟାନ କରୁଥିଲେ ତା'ର ଗୋଟିଏ ଅତି ସୁନ୍ଦର ଓ ତାତ୍ପର୍ଯ୍ୟପୂର୍ଣ୍ଣ ଉତ୍ତର ଜୟପ୍ରକାଶଜୀ ଉକ୍ତ ଚିଠିରେ ଲେଖିଥିଲେ । ଶ୍ରୀମତୀ ଗାନ୍ଧୀ ଜୟପ୍ରକାଶଜୀଙ୍କୁ ଆଖିଆଗରେ ରଖି ସବୁ ଅଭିଯୋଗ କରିଥିଲେ ମାତ୍ର ତାଙ୍କର ନାମ ନଧରି ଜଣେ ଲୋକ 'One Person' ବୋଲି କହି ସବୁ ଅଭିଯୋଗ କରିଥିଲେ । ଜୟପ୍ରକାଶଜୀ ଉକ୍ତ ଚିଠିରେ ଲେଖିଥିଲେ, "A for the one person' who is supposed to have tried to sow disaffection in the armed and police forces, he denies the charge. All that he has done is to make the men and officers of the Forces conscious of their duties and responsibilities. Whatever he has said in that connection is within the law, the Constitution, the Army Act and the Police Act. xxx

"You are reported to have said that democracy is not more important than the nation. Are you not presuming too much, Madam Prime Minister ? You are not the only one who cares for the nation. Among those whom you have detained or imprisoned there are many who have done much for the nation than you. And everyone of them is as good a patriot as yourself. So, please do not apply salt to our wounds by lecturing to us about the nation. Moreover, it is a false choice that you have formulated. There is no choice between democracy and the nation. It was for the good of the nation that the people of India declared in their Constituent Assembly on 26th November 1949 that "We the people of India, having solemnly resolved to constitute India into a Sovereign, Democratic Republic ...give to ourselves this Constitution. "That democratic Constitution cannot be changed into a totalitarian one by a more ordinance or law of Parliament. That can be done only by the people of India themselves in their new Constituent Assembly, especially elected for that specific purpose." (J.P.'s Prison Diary Page-106).

ଜୟପ୍ରକାଶଙ୍କର ଭୁବନେଶ୍ୱର ଆସିବା ସମ୍ବନ୍ଧରେ ମୋର ଆଉ ଗୋଟିଏ କଥା ମନେପଡ଼େ । ସେତେବେଳେ ଶ୍ରୀ ବାଙ୍କବିହାରୀ ଦାସ ନନ୍ଦନୀ ଦେବୀଙ୍କ ମନ୍ତ୍ରିମଣ୍ଡଳରେ ଜଣେ ମନ୍ତ୍ରୀ ଥିଲେ । ସୋସାଲିଷ୍ଟ ପାର୍ଟିରେ ଥିବାବେଳେ ବାଙ୍କବାବୁ ଜୟପ୍ରକାଶଜୀଙ୍କ ଘନିଷ୍ଠ ସମ୍ପର୍କରେ ଆସିଥିଲେ । ଜୟପ୍ରକାଶଜୀ ଯେତେବେଳେ ଓଡ଼ିଶା ଆସିଥିଲେ ସେତେବେଳେ ସୌଜନ୍ୟ ଦୃଷ୍ଟିରୁ ବାଙ୍କବାବୁ ଅତିଥି ଭବନରେ ଯାଇ ତାଙ୍କୁ ଦେଖାକରିଥିଲେ । ବାଙ୍କବାବୁଙ୍କର ଜୟପ୍ରକାଶଜୀଙ୍କୁ ସାକ୍ଷାତ୍ କରିବାଟା ନନ୍ଦିନୀ ଦେବୀଙ୍କ ପକ୍ଷରେ ଅତିଶୟ ଅସହ୍ୟ ହୋଇଥିଲା, ତେଣୁ ବାଙ୍କବାବୁ ମନ୍ତ୍ରିମଣ୍ଡଳରୁ ବହିଷ୍କୃତ ହୋଇଥିଲେ । ସେହି ପ୍ରକାର ଆଉ ଗୋଟିଏ ଘଟଣା ମଧ ଘଟିଥିଲା । ଶ୍ରୀ ଯତୀନ୍ଦ୍ର ମୋହନ ସାମଲ ଯେ କି ଜଣେ ଉଚ୍ଚପାହ୍ୟା ପୁଲିସ ଅଫିସର ଥିଲେ ସେ ତାଙ୍କ ଚାକିରିରୁ ବହିଷ୍କୃତ ହୋଇ ଭୁବନେଶ୍ୱରରେ ରହୁଥିଲେ । ତାଙ୍କର ଭାରି ଆଗ୍ରହ ହୋଇଥିଲା ଯେ ତାଙ୍କର ନିଜ ଗାଈ ଦୁହିଁ ଜୟପ୍ରକାଶଜୀଙ୍କୁ ଖାଣ୍ଟି ଦୁଧ ଖୁଆଇବାପାଇଁ । ତେଣୁ ଜୟପ୍ରକାଶଜୀ ଯେତେବେଳେ ରାଜ୍ୟ ଅତିଥି ଭବନରେ ଥିଲେ ଶ୍ରୀ ସାମଲ ନିଜେ ସେ କ୍ଷୀର ଧରି ଆସି ସେଠାରେ ଦେଇଥିଲେ । ଜୟପ୍ରକାଶଜୀ ଦୁଗ୍ଧ ପାନକରନ୍ତି । ଶ୍ରୀ ସାମଲ ଆଗ୍ରହସହ ଆଣିଥିବା କ୍ଷୀର କଥା ଜାଣି ସେ ଭାରି ଖୁସିହୋଇଥିଲେ । ଶ୍ରୀ ସାମଲ ନିଜେ ଆଣି ଖାଇ ଦୁଧ ଦେବାକଥା ଗୁଇନ୍ଦା ପୁଲିସ ରିପୋର୍ଟ କରିଥିଲେ । ଜରୁରୀକାଳୀନ ପରିସ୍ଥିତି ଜାରି ହେବା ପରେ

ପୂର୍ବ ଆକ୍ରୋଶପାଇଁ ଦାଉ ସାଧିବାକୁ ତାଙ୍କର ଶତ୍ରୁମାନଙ୍କୁ ସୁଯୋଗ ମିଳିଥିଲା । ତାଙ୍କୁ ଅଟକବନ୍ଦି କରାଯାଇଥିଲା ।

## ଜନାବ ଆକବର ଅଲ୍ଲୀ ଖାଁ

ମନ୍ତ୍ରୀଙ୍କ ସାଙ୍ଗକୁ ରାଜ୍ୟପାଳ ମଧ ମୁଖ୍ୟମନ୍ତ୍ରୀଙ୍କ ଅସହିଷ୍ଣୁ ପ୍ରକୃତିର ଶିକାର ହୋଇଥିଲେ । କଥାଟି ହେଲା ଜୟପ୍ରକାଶଜୀଙ୍କ ଆଗମନ ସମୟରେ ଓଡ଼ିଶାର ତତ୍‌କାଳୀନ ରାଜ୍ୟପାଳ ଜନାବ ଆକବର ଅଲ୍ଲୀ ଖାଁ ତାଙ୍କୁ ରାଜଭବନରେ ତାଙ୍କ ସହିତ ଖାଇବାପାଇଁ ନିମନ୍ତ୍ରଣ କରିଥିଲେ ଓ ଜୟପ୍ରକାଶଜୀ ତାହା ଗ୍ରହଣକରିଥିଲେ । ତାଙ୍କର ଜଣେ ପୁରୁଣା ସମ୍ମାନିତ ବନ୍ଧୁଙ୍କ ପ୍ରତି ଏହା ଥିଲା ଗୋଟିଏ ସୌଜନ୍ୟତାପୂର୍ଣ୍ଣ ଆଚରଣ । କିନ୍ତୁ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଦେବୀଙ୍କ ପକ୍ଷରେ ଏହା ଅତି ଅସହ୍ୟ ହୋଇଥିଲା । ତାଙ୍କ ମତରେ, ଏ ପ୍ରକାର ଜଣେ ରାଜଦ୍ରୋହୀଙ୍କୁ ରାଜଭବନକୁ ଡାକି ସମ୍ମାନ ଦେବା କୁଆଡ଼େ ଥିଲା ଗୋଟିଏ ଅବାଞ୍ଛନୀୟ ଦୁଷ୍କର୍ମ । ପ୍ରଧାନମନ୍ତ୍ରୀଙ୍କୁ ଜଣାଇ ତାଙ୍କ ଦରବାରରେ ରାଜ୍ୟପାଳ ଆକବର ଅଲ୍ଲୀ ଖାଁଙ୍କୁ ତିରସ୍କୃତ କରାଇ ତାଙ୍କୁ ତାଗିଦ୍ କରିବାପାଇଁ ଉଦ୍ୟମ ଆରମ୍ଭ ହୋଇଥିଲା । ଆକବର ଅଲ୍ଲି ଖାଁ ଜଣେ ଗଣତନ୍ତ୍ରବାଦୀ ନୀତିଜ୍ଞାନସମ୍ପନ୍ନ ବ୍ୟକ୍ତି ଥିଲେ ଏବଂ କ୍ଷମତାର ମୋହ ତାଙ୍କର ନଥିଲା ଜୟପ୍ରକାଶଜୀଙ୍କ ପ୍ରତି ସୌଜନ୍ୟ ପ୍ରଦର୍ଶନରେ କୌଣସି ଦୋଷ ଥିବାର ସେ ଅନୁଭବ କରିନଥିଲେ । କିନ୍ତୁ ମୁଖ୍ୟମନ୍ତ୍ରୀ ମୁକାବିଲା କରିବାର ମନୋବୃତ୍ତି ଧରି ରାଜ୍ୟପାଳଙ୍କ ସ୍ଥିତିକୁ ହୀନମାନିଆ ଅବସ୍ଥାକୁ ଟାଣିଆଣିବାକୁ ଉଦ୍ୟମ ଆରମ୍ଭ କରିଦେଇଥିଲେ । ରାଜ୍ୟପାଳ ଓ ମୁଖ୍ୟମନ୍ତ୍ରୀଙ୍କ ଦୈନନ୍ଦିନ ସମ୍ପର୍କରେ ବ୍ୟାଘାତ ଘଟିବାକୁ ଲାଗିଥିଲା । ସେହି ହେତୁରୁ ସମ୍ମାନର ସହିତ ରାଜ୍ୟପାଳ ଭାବରେ କାର୍ଯ୍ୟନିର୍ବାହ କରିବାରେ ଯେଉଁ ବାଧା ଉପୁଜୁଥିଲା ସେ ସମ୍ପର୍କରେ ରାଜ୍ୟପାଳ ଓ କେନ୍ଦ୍ର ସରକାରଙ୍କ ମଧରେ କଥାବାର୍ତ୍ତା ଓ କେତେକ ପତ୍ର ବିନିମୟ ହେବା କଥା ସେତେବେଳେ ରାଜଭବନ ସୂତ୍ରରୁ ଜଣାପଡ଼ିଥିଲା । ଶ୍ରୀମତୀ ଗାନ୍ଧୀ ଉଦାରମନା ନଥିଲେ ଏବଂ କାନକୁହା କଥାରେ ପ୍ରଭାବିତ ହେଉଥିଲେ । ଶେଷରେ ଜରୁରୀକାଳୀନ ଅବସ୍ଥାରେ ଅଟକବନ୍ଦୀ ଶ୍ରୀ ହରେକୃଷ୍ଣ ମହତାବଙ୍କ କାରାବକାଶ (Parole)ସମୟରେ ତାଙ୍କ ପ୍ରଜାତନ୍ତ୍ର ପ୍ରଚାର ସମିତିର ବିଷୁବମିଳନ ଉତ୍ସବରେ ୧୯୭୬ ମସିହା ଅପ୍ରେଲ ୧୪ ତାରିଖ ଦିନ ରାଜ୍ୟପାଳ ଆକବର ଅଲ୍ଲୀ ଖାଁ ପୌରୋହିତ୍ୟ କରି ଏବଂ ସେଠାରେ ତାଙ୍କ ଅଭିଭାଷଣରେ ଜୟପ୍ରକାଶଜୀଙ୍କ ତଦାନୀନ୍ତନ ରାଜନୀତି ସହିତ ଏକମତ ନହେଲେ ମଧ ତାଙ୍କର ଅସାଧାରଣ ସ୍ୱଦେଶବତ୍ସଳତା ଓ ତ୍ୟାଗର ଭୂୟସୀ ପ୍ରଶଂସାର ସୂଚନା ଦେଇ ତାଙ୍କର ବିରୋଧୀମାନଙ୍କୁ ଦାଉସାଧିବାପାଇଁ ସୁଯୋଗ ଦେଇଥିଲେ । ଏହି ଉତ୍ସବର ତିନିଦିନ ପରେ ରାଷ୍ଟ୍ରପତି ଭବନରୁ ଆଦିଷ୍ଟ ହୋଇ ଓଡ଼ିଶା ହାଇକୋର୍ଟର ତତ୍‌କାଳୀନ ପ୍ରଧାନ ବିଚାରପତି ଶ୍ରୀ ଶିବନାରାୟଣ ଶଙ୍କରଙ୍କ ହାତରେ ଦାୟିତ୍ୱ ସମର୍ପଣ କରି ଆକବର ଅଲ୍ଲି ଖାଁ ରାଜ୍ୟପାଳ ପଦରୁ ଅବ୍ୟାହତି ନେଇଥିଲେ । ଆଶ୍ଚର୍ଯ୍ୟର କଥା ଏହି ଯେ ରାଜ୍ୟପାଳ ଇସ୍ତଫା ଦେଇନଥିଲେ ମଧ ଏହି ପ୍ରକାର ପଦକ୍ଷେପ ନିଆଯାଇଥିଲା । ଏହା କିପରି ଗୋଟିଏ ଶିଷ୍ଟାଚାରବିରହିତ ପଦକ୍ଷେପ ସେ କଥା ଜନାବ ଆକବର ଅଲ୍ଲୀ ଖାଁ ରାଜଭବନ ଛାଡ଼ି ଯିବାବେଳେ ସେଠାକାର କର୍ମଚାରୀ ଓ ସେବକମାନଙ୍କ ଦ୍ୱାରା ଆୟୋଜିତ ବିଦାୟକାଳୀନ ଉତ୍ସବରେ ସୂଚନାଦେଇଯାଇଥିଲେ ।

ଲୋକନାୟକ ଜୟପ୍ରକାଶ ନାରାୟଣ ଓଡ଼ିଶାରୁ ବିଦାୟ ନେବାର ସପ୍ତାହକ ପରେ ଏପ୍ରିଲ ଦଶ ତାରିଖ ଦିନ ଗଞ୍ଜାମ ଜିଲ୍ଲା ପାରଳାଖେମୁଣ୍ଡି ସବ୍‌ଡିଭିଜନର ଗୁରାଣ୍ଡି ଗ୍ରାମରେ ଲେଭି ଧାନ ଆଦାୟ ସମ୍ବନ୍ଧୀୟ ଗୋଟିଏ ଘଟଣାରେ ପୁଲିସ ଲୁହବୁହା ଗ୍ୟାସ୍ ଓ ଗୁଳି ଚଳାଇବା ଫଳରେ ଘଟଣାସ୍ଥଳରେ ପାଞ୍ଚ ଜଣ ଲୋକଙ୍କର ପ୍ରାଣହାନୀ ଘଟିଥିଲା ଓ ସେହି ଗ୍ରାମର ପ୍ରାୟ ଦୁଇଶହ ପର୍ଯ୍ୟନ୍ତ ଘର ପୋଡ଼ି ଯାଇଥିଲା । ଏ ଘଟଣାଟି ଗଞ୍ଜାମ ଜିଲ୍ଲାରେ ଓ ଭୁବନେଶ୍ୱରରେ ଖୁବ୍ ଉତ୍ତେଜନା ସୃଷ୍ଟି କରିଥିଲା । ଏ

ଘଟଣା ସଂପର୍କରେ ଓଡ଼ିଶା ବିଧାନସଭାରେ ବିରୋଧୀ ଦଳର ସଭ୍ୟମାନଙ୍କ ପକ୍ଷରୁ ଗୋଟିଏ ମୁଲତବୀ ପ୍ରସ୍ତାବ ଏପ୍ରିଲ ଏଗାର ତାରିଖରେ ଆଗତ କରାଯାଇଥିଲା ଏବଂ ସେ ସମ୍ବନ୍ଧରେ କହିବାକୁ ଯାଇ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ସେହି ଗୁଳିକାଣ୍ଡପାଇଁ ପୂର୍ବତନ ପାର୍ଲିଆମେଣ୍ଟ ସଦସ୍ୟ ଓ ସଂଗଠନ କଂଗ୍ରେସ ନେତା ଶ୍ରୀ ନାରାୟଣ ପାତ୍ର ଓ ଗୁରାଣ୍ଡି ସରପଞ୍ଚ ଶ୍ରୀ ବିଜୟ ଜେନା ପ୍ରଭୃତି ଦାୟୀ ବୋଲି କହିଥିଲେ । ସରପଞ୍ଚ ଶ୍ରୀ ବିଜୟ ଜେନାଙ୍କୁ ପୁଲିସ ଗିରଫ କଲାବେଳେ ଶ୍ରୀ ନାରାୟଣ ପାତ୍ରଙ୍କ ନେତୃତ୍ୱରେ ପ୍ରାୟ ଏକ ହଜାର ଲୋକ ଲାଠି, ବର୍ଛା ଓ ଢେଲାପଥର ଧରି ଏସ୍.ଡି.ଓ. ସମେତ ସବୁ ଅଫିସରଙ୍କୁ ହତ୍ୟା କରିବାକୁ ଆକ୍ରମଣ କରିଥିଲେ ବୋଲି ମୁଖ୍ୟମନ୍ତ୍ରୀ ଅଭିଯୋଗ କରିଥିଲେ । ସେମାନଙ୍କୁ ବିଶୃଙ୍ଖଳା ଆଚରଣରୁ ନିବୃତ୍ତ ହେବାକୁ ବାରମ୍ବାର ଅନୁରୋଧ କରାଯାଇଥିଲା ; ମାତ୍ର ତା'ର କିଛି ଫଳ ହୋଇନଥିଲା । ସେଠାରେ ୧୪୪ ଧାରା ନିଷେଧ ଆଜ୍ଞା ଜାରିକରି ସେଠାରୁ ଲୋକମାନଙ୍କୁ ଚାଲିଯିବାପାଇଁ ନିର୍ଦ୍ଦେଶ ଦିଆଯାଇଥିଲା, ମାତ୍ର ସେମାନେ ସେ ଆଦେଶ ନମାନି ଏସ୍.ଡି.ଓ.ଙ୍କୁ ଆକ୍ରମଣ କରିଥିଲେ ଏବଂ ଏସ୍.ଡି.ଓ. ଜଖମ ହେବାରୁ ସେଠାରେ ବାଧ୍ୟହୋଇ ପୁଲିସକୁ ଗୁଳି ଚଳାଇବାକୁ ହୋଇଥିଲା ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ । ଏହାଛଡ଼ା ମୁଖ୍ୟମନ୍ତ୍ରୀ ଆହୁରି ମଧ୍ୟ କହିଥିଲେ ଯେ ଗୁଳିହେବା ପରେ ଶ୍ରୀ ନାରାୟଣ ପାତ୍ର ଓ ଆଉ କେତେକ ଲୋକ ହରିଜନବସ୍ତି ଉପରେ ଆକ୍ରମଣ କରି ପ୍ରାୟ ତିନିଶହ ହରିଜନ ଘର ପୋଡ଼ିଦେଇଥିଲେ । ମୁଖ୍ୟମନ୍ତ୍ରୀ ସଂପୂର୍ଣ୍ଣଭାବରେ ଅସତ୍ୟ କଥା ବିଧାନସଭାରେ କହୁଛନ୍ତି ବୋଲି ବିରୋଧୀ ଦଳର ସଭ୍ୟମାନେ ବିଧାନସଭାରେ ଅଭିଯୋଗ କରିଥିଲେ । ପାରଳାଖେମୁଣ୍ଡିର ସେତେବେଳକାର ବିଧାୟକ ନାର୍ଲି କୁରୁମନାଇକୁଲ କଂଗ୍ରେସ ଦଳରେ ଥାଇ ମଧ୍ୟ ମୁଖ୍ୟମନ୍ତ୍ରୀଙ୍କର ଏପ୍ରକାର ଅବାସ୍ତବ ଉକ୍ତିକୁ ସମର୍ଥନ କରୁନଥିଲେ । ଶ୍ରୀ କୁରୁମନାଇକୁଲ ମୋର ଜଣେ ବନ୍ଧୁ ଏବଂ ସେ ବହୁବାର ପାରଳାଖେମୁଣ୍ଡି ନିର୍ବାଚନମଣ୍ଡଳୀକୁ ପ୍ରତିନିଧିତ୍ୱ କରିବାର ସୁଯୋଗ ପାଇଛନ୍ତି ।

ଗୁରାଣ୍ଡି ଗ୍ରାମରେ ଏହି ଲୋମହର୍ଷଣକାରୀ ଘଟଣା ସମଗ୍ର ଓଡ଼ିଶାରେ ଆତଙ୍କ ସୃଷ୍ଟି କରିଥିଲା । କାରଣ ଲେଭି ଆକାରରେ ଧାନଚାଉଳ ସଂଗ୍ରହ କାର୍ଯ୍ୟ ସରକାରଙ୍କ ପକ୍ଷରୁ ସମଗ୍ର ରାଜ୍ୟରେ ଚାଲିଥିଲା ଏବଂ ସବୁଆଡ଼େ ତହସିଲଦାର ଓ ଅନ୍ୟାନ୍ୟ ରେଭିନ୍ୟୁ ଅଫିସରମାନେ ଲେଭି ଆଦାୟ ବାହାନାରେ ଅତ୍ୟାଚାର ଉତ୍କୋଚ ଗ୍ରହଣ କାର୍ଯ୍ୟ ଜୋର୍‌ସୋରରେ ଆରମ୍ଭ କରିଦେଇଥିଲେ । ଗୁରାଣ୍ଡି ଗ୍ରାମରେ ଯେଉଁ ଗୁଳିକାଣ୍ଡ ହୋଇଥିଲା ତାହା କାହିଁକି ଓ କିପରି ଭାବରେ ହୋଇଥିଲା ତାହା ଅନୁସନ୍ଧାନ କରିବାପାଇଁ ମୁଁ ସେଠାକୁ ଯାଇଥିଲି । ମୋ ସାଙ୍ଗରେ ଶ୍ରୀ ଅନନ୍ତ ନାରାୟଣ ସିଂହଦେଓ ମଧ୍ୟ ଯାଇଥିଲେ । ଗୁରାଣ୍ଡି ଗ୍ରାମଟି ଖୁବ୍ ବଡ଼ ଏବଂ ସେତେବେଳେ ତା'ର ଲୋକସଂଖ୍ୟା ଥିଲା ପ୍ରାୟ ଛ'ହଜାର । ମୁଁ ସେ ଗ୍ରାମରେ ପହଞ୍ଚିଲା ପରେ ଶ୍ରୀମତୀ ମାଳତୀ ଚୌଧୁରୀ ମଧ୍ୟ ସେଠାରେ ଯାଇ ପହଞ୍ଚିଲେ । ଆମ୍ଭେମାନେ ଗୁଳି ଓ ଅଗ୍ନିକାଣ୍ଡ ଘଟିଥିବା ସ୍ଥାନ ପରିଦର୍ଶନ କରିଥିଲୁ ଏବଂ କିପରି ଭାବରେ ସବୁ ଘଟଣା ଘଟିଥିଲା ସେକଥା ଲୋକଙ୍କ ମୁଖରୁ ଶୁଣିଥିଲୁ । ଯେଉଁମାନେ ଗୁଳିଚୋଟରେ ପ୍ରାଣ ହରାଇଥିଲେ ସେମାନଙ୍କର ପରିବାରବର୍ଗଙ୍କୁ ସାକ୍ଷାତ୍ କରି ସାନ୍ତ୍ୱନା ଦେଇଥିଲୁ । ସବୁପ୍ରକାର ଅନୁସନ୍ଧାନ କରି ଆମ୍ଭେମାନେ ଜାଣିବାକୁ ପାଇଥିଲୁ ଯେ ଜଣେ କ୍ଷଣକୋପୀ ଅଫିସରଙ୍କ ଯୋଗୁଁ ଗୁରାଣ୍ଡି ଗ୍ରାମରେ ଏ ପ୍ରକାର ଗୁଳିକାଣ୍ଡ ହୋଇଥିଲା ।

ମୁଖ୍ୟମନ୍ତ୍ରୀ ବିଧାନସଭାରେ କହିଥିଲେ ଯେ ହରିଜନମାନଙ୍କ ଘର ଶ୍ରୀ ନାରାୟଣ ପାତ୍ରଙ୍କ ନେତୃତ୍ୱରେ କେତେକ ଲୋକ ପୋଡ଼ିଦେଇଥିଲେ; କିନ୍ତୁ ତାହା ଏକାବେଳକେ ଅସତ୍ୟ ବୋଲି ଆମ୍ଭେମାନେ ପ୍ରତ୍ୟକ୍ଷ ଅନୁସନ୍ଧାନରୁ ଜାଣିଲୁ । କେବଳ ଯେ ହରିଜନମାନଙ୍କ ଘର ପୋଡ଼ିଯାଇଥିଲା ତା'ନୁହେଁ, ଅନ୍ୟ ଜାତିର ଲୋକମାନଙ୍କ ଘର ମଧ୍ୟ ପୋଡ଼ିଯାଇଥିଲା । ମୁଁ ଏକୁଟିଆ ହରିଜନମାନଙ୍କ ଘରକୁ ଯାଇ ଶ୍ରୀ ନାରାୟଣ ପାତ୍ର ସେମାନଙ୍କ ଘର ପୋଡ଼ିଦେଇଛନ୍ତି ବୋଲି ଶୁଣିଥିବା ଅଭିଯୋଗ ବିଷୟରେ ପଚାରିଥିଲି । ମୋ କଥା ଶୁଣି ତାହା ଏକାବେଳକେ ମିଥ୍ୟା ବୋଲି କହି ସେମାନେ ଜିଭ କାମୁଡ଼ି ପକାଇଥିଲେ । ପୁଲିସମାନେ ଯେଉଁ ଲୁହବୁହା ଗ୍ୟାସ୍ ପ୍ରୟୋଗ କରିଥିଲେ ତାହାରି ସେଲ୍

ଘର ଉପରେ ପଡ଼ି ନିଆଁ ଜଳିଉଠିଥିଲା ବୋଲି କେତେକ ପ୍ରତ୍ୟକ୍ଷଦର୍ଶୀ ଲୋକ ଆମକୁ କହିଥିଲେ । ତାହା ସମ୍ଭବ ବୋଲି ବିଶେଷଜ୍ଞମାନେ ମଧ କହିଥିଲେ ।

ସେ ବର୍ଷ ଓଡ଼ିଶା ସରକାରଙ୍କ ପ୍ରମାଦପୂର୍ଣ୍ଣ ଧାନ ଚାଉଳ ସଂଗ୍ରହ ନୀତି ଯୋଗୁଁ ଓଡ଼ିଶାର ଚାଷୀମାନେ ବହୁତ ନିର୍ଯାତିତ ହୋଇଥିଲେ । ଚାରି ଏକରରୁ ଅଧିକ ଥିବା ଜଳସେଚିତ ଜମି ଓ ଆଠ ଏକରରୁ ଅଧିକ ଥିବା ଅଣସେଚିତ ଜମିମାଲିକମାନଙ୍କଠାରୁ ସେମାନଙ୍କର ଉତ୍ପନ୍ନିର କେତେକ ଅଂଶ ଲେଭି ଆକାରରେ ସଂଗ୍ରହ କରିବାପାଇଁ ସରକାର ରେଭିନ୍ୟୁ ଅଫିସରମାନଙ୍କୁ ଆଦେଶ ଦେଇଥିଲେ । ପୂର୍ବ ବନ୍ଦୋବସ୍ତଠାରୁ ଏହାମଧରେ ଜମିବାଡ଼ି କେତେ କୁଆଡ଼େ ହସ୍ତାନ୍ତର ହୋଇଯାଇଥିଲା ଏବଂ ସେସବୁର ସଠିକ୍ ବିବରଣୀ ସରକାରଙ୍କ ପାଖରେ ନଥିଲା । ଏପରି ଦେଖିବାକୁ ମିଳିଥିଲା ଯେ ଜମି ନଥିବା ଲୋକ ଉପରେ ମଧ ଲେଭି ଆଦାୟପାଇଁ ଆଦେଶ ଜାରିହୋଇଥିଲା; କାରଣ ପୂର୍ବ ବନ୍ଦୋବସ୍ତରେ ତା ନାମରେ ଜମି ଥିଲା । ଏହି ଲେଭି ଆଦାୟ ନାମରେ ଚାଷୀମାନଙ୍କ ଉପରେ ନାହିଁନଥିବା ଅତ୍ୟାଚାର ହୋଇଥିଲା । ସମ୍ବଲପୁର ଜିଲ୍ଲାର କନ୍‌ଖିଣ୍ଡା ଗ୍ରାମରେ ଏହି ଲେଭି ଆଦାୟ କଲାବେଳେ ଲୋକଙ୍କ ଉପରେ ଗୁଳିହୋଇଥିଲା । ଗୁଳିଚୋଟରେ ଦୁଇଜଣ ଲୋକ ସେଠାରେ ମରିଥିଲେ । ଲେଭି ଧାନପାଇଁ ବଜାରଦରଠାରୁ କୁଇଣ୍ଟାଲ ପ୍ରତି ପଚିଶ ଟଙ୍କା କମ୍ କରି ସରକାର ଦେଉଥିଲେ, ତାହା ଲୋକମାନଙ୍କୁ ବଡ଼ ବାଧୁଥିଲା । ସେଥିପାଇଁ ଅଫିସରମାନଙ୍କୁ ଉତ୍କୋଚ ଦେଇ ଚାଷୀମାନେ ସେଥିରୁ ଉଦ୍ଧାର ପାଇବାପାଇଁ ଉଦ୍ୟମ କରୁଥିଲେ । ଲେଭି କିପରି ଭାବରେ ଆଦାୟ କରାଯାଉଛି ସେ ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବାପାଇଁ ମୁଁ ବାଲେଶ୍ୱର ଜିଲାର କେତେକ ସ୍ଥାନକୁ ଯାଇଥିଲି । ବାଁଶଡ଼ା ପ୍ରଭୃତି ଅଞ୍ଚଳରେ ଦୂରରୁ ମୋର ଜିପ୍‌ଗାଡ଼ି ଦେଖି ଲୋକେ ଦୌଡ଼ି ପଳାଉଥିଲେ ଏବଂ କବାଟ କିଳି ଘରେ ଲୁଚୁଥିଲେ । ଜିପ୍‌ଗାଡ଼ି ଦେଖି ଲେଭି ଆଦାୟ କରିବାପାଇଁ ଗାଡ଼ି ଆସିଲା ବୋଲି ଭୟଭୀତ ହୋଇ ସେମାନେ ଲୁଚୁଥିଲେ ବୋଲି ମୋତେ କହିଥିଲେ । ଧାନଚାଉଳ ସଂଗ୍ରହ ଆଳରେ ସେବର୍ଷ ଚାଷୀମାନଙ୍କ ଉପରେ ଯେପରିଭାବରେ ଅତ୍ୟାଚାର କରାଯାଇଥିଲା ସେ ପ୍ରକାର ଅତ୍ୟାଚାର ଚାଷୀମାନେ କେବେ ଭୋଗିନଥିଲେ ବୋଲି ସେତେବେଳେ କହୁଥିଲେ । ସେତେବେଳେ ଥିଲା ଜରୁରୀକାଳୀନ ପରିସ୍ଥିତି ସମୟ । ପ୍ରତିବାଦରେ ମୁହଁ ଖୋଲି କଥା କହିବାକୁ ଲୋକେ ଭୟକରୁଥିଲେ । ତା'ର ସୁବିଧା ନେଇ ଚାଷୀମାନଙ୍କଠାରୁ ଭୟଦେଖାଇ ଅର୍ଥ ଆଦାୟ କରିବାର ଗୋଟିଏ ସୁଯୋଗ ଅଫିସରମାନଙ୍କୁ ମିଳିଥିଲା । କଂଗ୍ରେସଦଳର କେତେକ ବିଧାନସଭା ସଦସ୍ୟ ମଧ ଅଫିସରମାନଙ୍କ ସହିତ ମିଶି ଲେଭି ଆଦାୟ ଭୟ ଦେଖାଇ ଅର୍ଥ ଉପାର୍ଜନ କରିବାର କଥା ଲୋକେ କହୁଥିଲେ । ଏହି ଲେଭି ଆଦେଶ ବିରୁଦ୍ଧରେ ଓଡ଼ିଶା ହାଇକୋର୍ଟରେ ବହୁତ ମକଦ୍ଦମା ଚାଷୀମାନଙ୍କ ପକ୍ଷରୁ ହୋଇଥିଲା । ପ୍ରାୟ ପାଞ୍ଚ ହଜାରରୁ ଊର୍ଦ୍ଧ୍ୱ ମକଦ୍ଦମା ହୋଇଥିଲା ବୋଲି ସେତେବେଳେ ଖବରକାଗଜରେ ପ୍ରକାଶପାଇଥିଲା । ଶେଷରେ ଓଡ଼ିଶା ସରକାରଙ୍କର ଏହି ଲେଭି ଆଦେଶ ଅସିଦ୍ଧ ବୋଲି ଓଡ଼ିଶା ହାଇକୋର୍ଟ ଘୋଷଣା କରିଥିଲେ ।

## ୧୯୭୫ : ଭାରତ ଇତିହାସରେ ନୂଆ ମୋଡ଼

ସ୍ୱାଧୀନ ଭାରତ ଇତିହାସରେ ସବୁଠାରୁ ଚମକପ୍ରଦ ଘଟଣା ଥିଲା ଆହ୍ଲାବାଦ ହାଇକୋର୍ଟଙ୍କର ରାୟ; ଯାହାଦ୍ୱାରା ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ଲୋକସଭା ନିର୍ବାଚନକୁ ଅସିଦ୍ଧ ଘୋଷଣା କରାଯାଇଥିଲା ଏବଂ ଯାହାର ସୁଦୂରପ୍ରସାରୀ ପରିଣାମ ବଡ଼ ଭୟାବହ ହେବା ସଙ୍ଗେ ସଙ୍ଗେ ତାହା ଦେଶର ଗଣତନ୍ତ୍ର ଶାସନ ଓ ସଂସଦୀୟ ବ୍ୟବସ୍ଥାକୁ କଳଙ୍କିତ ଓ ପଙ୍ଗୁ କରିଦେଇ ଏକଛତ୍ରବାଦର ନିଶାଣ ଉଡ଼ାଇଥିଲା । ଜରୁରୀକାଳୀନ ପରିସ୍ଥିତି ଘୋଷଣାର ଏହାହିଁ ବିଶେଷ ଉଲ୍ଲେଖନୀୟ ପୃଷ୍ଠଭୂମି । ୧୯୭୧ ମସିହାରେ ଲୋକସଭା ନିମନ୍ତେ ଅନୁଷ୍ଠିତ ନିର୍ବାଚନରେ ରାଇବରେଲୀ ନିର୍ବାଚନମଣ୍ଡଳୀରୁ ଶ୍ରୀ ରାଜନାରାୟଣଙ୍କୁ

ପରାଜିତ କରି ଶ୍ରୀମତୀ ଇନ୍ଦିରା ଗାନ୍ଧୀ ନିର୍ବାଚିତ ହୋଇଥିଲେ । ଶ୍ରୀମତୀ ଗାନ୍ଧୀଙ୍କର ନିର୍ବାଚନକୁ ଅସିଦ୍ଧ ଅଭିଯୋଗକରି ରାଜନାରାୟଣ ଆହ୍ଲାବାଦ ହାଇକୋର୍ଟରେ ନିର୍ବାଚନ ମକଦ୍ଦମା ଦାଖଲ କରିଥିଲେ । ଏଥିନିମନ୍ତେ ସେ ଦର୍ଶାଇଥିବା ବହୁ କାରଣ ମଧ୍ୟରୁ ଶ୍ରୀମତୀ ଗାନ୍ଧୀ ଅସତ୍ ଉପାୟ ଅବଲମ୍ବନ କରିଥିବାର ଅଭିଯୋଗ ଥିଲା ଅନ୍ୟତମ । ୧୯୭୫ ମସିହା ଜୁନ୍ ବାର ତାରିଖ ଦିନ ଆହ୍ଲାବାଦ ହାଇକୋର୍ଟର ରାୟ ପ୍ରକାଶପାଇଥିଲା । ବିଚାରପତି ଜଗମୋହନ ଲାଲ ସିହ୍ନା ରାଜନାରାୟଣଙ୍କ ଆବେଦନକୁ ଗ୍ରହଣକରି ଶ୍ରୀମତୀ ଗାନ୍ଧୀଙ୍କ ନିର୍ବାଚନ ଅସିଦ୍ଧ ବୋଲି ଘୋଷଣା କରିଥିଲେ ଏବଂ ଛ' ବର୍ଷପାଇଁ ଶ୍ରୀମତୀ ଗାନ୍ଧୀ କୌଣସି ନିର୍ବାଚନରେ ଛିଡ଼ାହେବାପାଇଁ ଅଯୋଗ୍ୟା ବିବେଚିତ ହେବେବୋଲି ରାୟ ଦେଇଥିଲେ । ତାଙ୍କ ରାୟ ବିରୁଦ୍ଧରେ ସୁପ୍ରିମ୍‌କୋର୍ଟରେ ଅପିଲ କରିବାର ସୁଯୋଗ ଦେବା ଉଦ୍ଦେଶ୍ୟରେ ବିଚାରପତି ନିଜେ ତାଙ୍କ ରାୟ ପ୍ରୟୋଗକାଳ କୋଡ଼ିଏ ଦିନପାଇଁ ରହିତ କରି ଆଦେଶଦେଇଥିଲେ । ଏହି ରାୟ ପ୍ରକାଶିତ ହେବା ପରେ ସମଗ୍ର ଦେଶରେ ହୁଲସ୍ଥୂଲ ପଡ଼ିଯାଥିଲା ଓ ରାଜନୈତିକ ତତ୍ପରତା ଘନେଇଉଠିଥିଲା ।

ଓଡ଼ିଶା ଶାଖା ଲୋକଦଳର ସଭାପତି ହିସାବରେ ସେହି ଜୁନ୍ ବାର ତାରିଖ ଦିନ ମୁଁ ଗୋଟିଏ ବିବୃତି ଦେଇ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ନିର୍ବାଚନକୁ ଅସିଦ୍ଧ ଘୋଷଣାକରି ଆହ୍ଲାବାଦ ହାଇକୋର୍ଟର ବିଚାରପତି ଶ୍ରୀ ସିହ୍ନା ତାଙ୍କ ରାୟଦ୍ୱାରା ଭାରତର ବିଚାରବିଭାଗର ଉଚ୍ଚ ସମ୍ମାନ ଓ ସ୍ୱାଧୀନତାକୁ ଅକ୍ଷୁଣ୍ଣ ରଖିଛନ୍ତି ବୋଲି ପ୍ରଶଂସା କରିଥିଲି । ହାଇକୋର୍ଟରେ ଶ୍ରୀମତୀ ଗାନ୍ଧୀଙ୍କ ବିରୁଦ୍ଧରେ ଦିଆଯାଇଥିବା ରାୟ ଦୃଷ୍ଟିରୁ ଆଉ ମୁହୂର୍ତ୍ତେ ମଧ୍ୟ ପ୍ରଧାନମନ୍ତ୍ରୀଭାବରେ ରହିବାର ନୈତିକ ଅଧିକାର ତାଙ୍କର ନାହିଁ ବୋଲି ମୁଁ କହିଥିଲି । ତାଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗ ପ୍ରମାଣିତ ହେଲା ପରେ ଆମ ଦେଶର ନ୍ୟାୟାଳୟର ସମ୍ମାନ ଏବଂ ଗଣତାନ୍ତ୍ରିକ ପରମ୍ପରା ରକ୍ଷାପାଇଁ ଶ୍ରୀମତୀ ଗାନ୍ଧୀ ଅବିଳମ୍ବେ ଇସ୍ତଫା ଦିଅନ୍ତୁ ବୋଲି ଦାବି କରିଥିଲି । ତା' ପରଦିନ ସବୁ ସମ୍ବାଦପତ୍ରରେ ମୋର ସେହି ବିବୃତି ପ୍ରକାଶପାଇଥିଲା । ଆମ ଦେଶର ବହୁ ବିଶିଷ୍ଟ ଜନନାୟକ ଓ ବିରୁଦ୍ଧ ଦଳର ନେତାମାନେ ଶ୍ରୀମତୀ ଗାନ୍ଧୀ ପ୍ରଧାନମନ୍ତ୍ରୀ ପଦରୁ ଓହରିଯିବାପାଇଁ ଦାବିକରିଥିଲେ । ମାତ୍ର ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ସମର୍ଥକମାନେ ଏଭଳି ଏକ ବାତାବରଣ ସୃଷ୍ଟି କରିବାକୁ ଉଦ୍ୟମ କଲେ, ଯେଉଁଥିରେ ତାଙ୍କର ନିର୍ବାଚନ ଅସିଦ୍ଧ ହୋଇଥିବା ସତ୍ତ୍ୱେ ସେ ଉଚ୍ଚନ୍ୟାୟାଳୟର ରାୟ ପ୍ରତି ଭ୍ରୂକ୍ଷେପ ନକରି ଭାରତର ପ୍ରଧାନମନ୍ତ୍ରୀ ପଦରେ ରହିବା ଓ କାର୍ଯ୍ୟ କରିବା ଉଚିତ ବୋଲି ପ୍ରତ୍ୟୟ ଜନ୍ମିବ । ଏହି ଉଦ୍ଦେଶ୍ୟରେ ଶ୍ରୀମତୀ ଗାନ୍ଧୀଙ୍କର ସମର୍ଥକମାନେ ଦିଲ୍ଲୀରେ ଓ ଅନ୍ୟାନ୍ୟ ସ୍ଥାନରେ ବହୁସଂଖ୍ୟକ ପଟୁଆର, ଗଣସମାବେଶ ଓ ସଭାସମିତିର ଆୟୋଜନ କରିଥିଲେ । ଜୁନ୍ ମାସ ବାର ତାରିଖରୁ ପଚିଶ ତାରିଖ ମଧ୍ୟରେ ଯେଉଁ ଅସଂଖ୍ୟ ଶୋଭାଯାତ୍ରା, ଗଣସମାବେଶ ଓ ସାଧାରଣସଭାର ଆୟୋଜନ କରାଯାଇଥିଲା ସେଥିମଧ୍ୟରୁ ଅଧିକାଂଶ ଶ୍ରୀମତୀ ଗାନ୍ଧୀଙ୍କର ସପକ୍ଷରେ ଆୟୋଜନ କରାଯାଉଥିବାବେଳେ ଅଳ୍ପ କେତୋଟି ତାଙ୍କ ବିରୁଦ୍ଧରେ ଉଦ୍ଦିଷ୍ଟ ଥିଲା । ଏସବୁ ଫଳରେ ଜନମାନସରେ ଉତ୍ତେଜନା ସୃଷ୍ଟିହୋଇଥିଲେହେଁ ସେହି ସମୟରେ କୌଣସି ଅପ୍ରୀତିକର ଘଟଣା ଘଟିନଥିଲା ।

ପାର୍ଲିଆମେଣ୍ଟରେ କଂଗ୍ରେସ ଦଳର ଯେଉଁ ଯୁବକଗୋଷ୍ଠୀ ଥିଲେ ସେମାନଙ୍କ ମଧ୍ୟରେ ସର୍ବଶ୍ରୀ ଚନ୍ଦ୍ରଶେଖର, କୃଷ୍ଣକାନ୍ତ, ମୋହନ ଧରିଆ ଓ ରାମଧନ ପ୍ରଭୃତି ଚାହୁଁଥିଲେ ଯେ ହାଇକୋର୍ଟର ରାୟ ପ୍ରତି ସମ୍ମାନ ଦେଖାଇ ଶ୍ରୀମତୀ ଗାନ୍ଧୀ ଇସ୍ତଫାଦେଲେ ତାଙ୍କର ନିଜର ମର୍ଯ୍ୟାଦା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ କଂଗ୍ରେସଦଳର ମର୍ଯ୍ୟାଦା ବୃଦ୍ଧିପାଇଥାଆନ୍ତା । ସାମୟିକ ଭାବରେ ଜଣେ ନେତା ନିର୍ବାଚନ ପରିକଳ୍ପନାରେ ମଧ୍ୟ ସେମାନେ କାର୍ଯ୍ୟ କରୁଥିଲେ ବୋଲି ମୁଁ ଆମ ଓଡ଼ିଶାର କେତେକ ପାର୍ଲିଆମେଣ୍ଟ ସଦସ୍ୟଙ୍କଠାରୁ ଶୁଣିଥିଲି । ସେମାନେ କୁଆଡ଼େ ଶ୍ରୀ ଜଗଜୀବନ ରାମଙ୍କୁ ନେତା କରିବାକୁ ବିଚାରୁଥିଲେ । ଶ୍ରୀ ଜଗଜୀବନ ରାମ ଆଗ୍ରହୀ ଥିଲେ; ମାତ୍ର ତାଙ୍କର ସାହସର ଅଭାବପଡ଼ିଥିଲା । ସେ ଯଦି ଏ ବିଷୟରେ

ଟିକେ ଚିହ୍ନା ପଡ଼ିଥାନ୍ତେ ତା'ହେଲେ ଅବସ୍ଥା ନିଶ୍ଚୟ ଅନ୍ୟ ଆକାର ଧାରଣ କରିଥାଆନ୍ତା ବୋଲି ବହୁ ପାର୍ଲିଆମେଣ୍ଟ ସଦସ୍ୟଙ୍କ ମୁହଁରୁ ମୁଁ ଶୁଣିବାକୁପାଇଥିଲି । ଯୁବଗୋଷ୍ଠୀର ନେତା ଶ୍ରୀ ଚନ୍ଦ୍ରଶେଖର ମତ ବ୍ୟକ୍ତ କରୁଥିଲେ ଯେ ଅସ୍ଥାୟୀଭାବରେ ଆଉ ଜଣେ କଂଗ୍ରେସ ଦଳର ନେତା ନିର୍ବାଚିତ ହୋଇଗଲେ ଆନ୍ଦୋଳନ କରିବାପାଇଁ ବିରୋଧୀ ଦଳର କୌଣସି ସୁଯୋଗ ରହିବନାହିଁ । ଏହି ମତ ସପକ୍ଷରେ କେତେକ ପାର୍ଲିଆମେଣ୍ଟ ସଭ୍ୟଙ୍କ ମଧ୍ୟରେ ଦସ୍ତଖତ ସଂଗ୍ରହ ଚାଲିଥିବାର ଖବର ମିଳିଥିଲା । ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ କିନ୍ତୁ ଏ ମତକୁ ଆଦୌ ପସନ୍ଦ କରୁନଥିଲେ । ହାଇକୋର୍ଟର ରାୟ ବା ସୁପ୍ରିମ୍ କୋର୍ଟର ରାୟ ଯାହାହେଉ ପଛେ ସେ ଯେକୌଣସିମତେ ପ୍ରଧାନମନ୍ତ୍ରୀ ରହିବାର କ୍ଷେତ୍ର ପ୍ରସ୍ତୁତ କରିବା କାର୍ଯ୍ୟ ଆରମ୍ଭ କରିଦେଇଥିଲେ । କାଳେ ପାର୍ଲିଆମେଣ୍ଟ ସଦସ୍ୟମାନେ ଜଗଜ୍ଜୀବନରାମଙ୍କୁ କେନ୍ଦ୍ରକରି ତାଙ୍କପାଇଁ କିଛି ଅସୁବିଧା ସୃଷ୍ଟିକରିବେ, ସେଥିପାଇଁ ଶ୍ରୀମତୀ ଗାନ୍ଧୀ ବଡ଼ ସତର୍କ ଥିଲେ; ଜଗଜ୍ଜୀବନବାବୁଙ୍କ ପାଖକୁ ଯେଉଁମାନେ ଯାଉଥା'ନ୍ତି ଏବଂ ତାଙ୍କ ବାସଭବନରେ କ'ଣ ସବୁ ଆଲୋଚନା କରାଯାଉଥାଏ ଗୁପ୍ତଚର ଲଗାଇ ସେ ସବୁର ଖବର-ଅନ୍ତର ସଂଗ୍ରହ କରୁଥିଲେ । ଗୁଇନ୍ଦାମାନେ ତାଙ୍କର ଟେଲିଫୋନ୍ କଥାଭାଷାର ମଧ୍ୟ ଖୋଜରଖୁଥିଲେ । ହାଇକୋର୍ଟର ରାୟ ହେତୁ ଶ୍ରୀମତୀ ଗାନ୍ଧୀ ଇସ୍ତଫା ଦେବାପାଇଁ ଦେଶରେ ଯେଉଁ ମତ ପ୍ରକାଶ ପାଉଥାଏ, ତାକୁ ଚପାଇଦେବା ଉଦ୍ଦେଶ୍ୟରେ ଦିଲ୍ଲୀରେ ବିରାଟ ପଟୁଆର ଓ ଜନସମାବେଶଦ୍ୱାରା ଇନ୍ଦିରା ଗାନ୍ଧୀ ଇସ୍ତଫା ନଦେବା ପାଇଁ ଯେପରି ଦାବି କରାଯିବ ସେ ସବୁର ବ୍ୟବସ୍ଥା ଶ୍ରୀମତୀ ଗାନ୍ଧୀ ତାଙ୍କର ସମର୍ଥକମାନଙ୍କଦ୍ୱାରା କରାଇଥିଲେ । ତାଙ୍କର ପୁଅ ଶ୍ରୀ ସଞ୍ଜୟ ଗାନ୍ଧୀ ସେସବୁ କରାଇବାର ଦାୟିତ୍ୱ ନେଇଥିଲେ । ଦିଲ୍ଲୀରେ ସଭା, ଶୋଭାଯାତ୍ରାପାଇଁ ଜନସମାଗମ କିପରି ବୃଦ୍ଧିପାଇବ ସେଥିପାଇଁ କେନ୍ଦ୍ର ହରିଆନା, ପଞ୍ଜାବ ଓ ଉତ୍ତର-ପ୍ରଦେଶ ପ୍ରଭୃତି ସନ୍ନିକଟ ରାଜ୍ୟସରକାରମାନଙ୍କୁ ଅତି ନଗ୍ନ ଓ ନିର୍ଲଜ୍ଜ ଭାବରେ ବ୍ୟବହାର କରୁଥିଲା । ସରକାରୀ ବସ୍ ଓ ଟ୍ରକ୍‌ମାନଙ୍କୁ ଦିଲ୍ଲୀକୁ ମାଗଣାରେ ଲୋକ ବୁହାଇବାପାଇଁ ଲଗାଯାଇଥିଲା । ଦିଲ୍ଲୀର ସରକାରୀ ପରିବହନ ସଂସ୍ଥାର ବସ୍ ଶ୍ରୀମତୀ ଗାନ୍ଧୀଙ୍କର ସମର୍ଥକମାନଙ୍କ ହାତରେ ଏକପ୍ରକାର ଛାଡ଼ିଦିଆଯାଇଥିଲା । ଲୋକନାୟକ ଜୟପ୍ରକାଶ ନାରାୟଣଙ୍କୁ ଶ୍ରୀମତୀ ଗାନ୍ଧୀ ବଡ଼ ଭୟ କରୁଥିଲେ; କାରଣ ତାଙ୍କ ପଛରେ ବିପୁଳ ଜନସମର୍ଥନ ଥିବାକଥା ସେ ଜାଣିପାରିଥିଲେ । ତେଣୁ ଜୟପ୍ରକାଶଙ୍କ ପାଇଁ ଦିଲ୍ଲୀରେ ଆୟୋଜିତ ସଭାଗୁଡ଼ିକ କିପରି ବ୍ୟର୍ଥ ହେବ ସେ ଦିଗରେ ସେ ଉଦ୍ୟମ କରିଥିଲେ । ଥରେ ଜୟପ୍ରକାଶ ପାଟନାରୁ ଆସି ଦିଲ୍ଲୀର ଗୋଟିଏ ସଭାରେ ଭାଷଣ ଦେବାର ଥାଏ । ସେଦିନ ପାଟନାରୁ ଦିଲ୍ଲୀ ଅଭିମୁଖେ ସବୁ ଉଡ଼ାଜାହାଜ ପରିବହନ ବ୍ୟବସ୍ଥା ବନ୍ଦକରିଦିଆଯାଇଥିଲା; ଫଳରେ ସେଦିନ ଜୟପ୍ରକାଶଜୀ ସେ ସଭାକୁ ଆସିପାରି ନଥିଲେ । ଜୟପ୍ରକାଶଙ୍କ ସଭାରେ ବିପୁଳ ଜନସମାବେଶ ଶ୍ରୀମତୀ ଗାନ୍ଧୀଙ୍କର କ୍ରୋଧ ଓ ଆଶଙ୍କାର କାରଣ ହୋଇଥିଲା । ସେ ପ୍ରକାର ସଭା-ସମିତି ନିର୍ବିଘ୍ନରେ ଚାଲିଲେ ତାହା ତାଙ୍କ ପକ୍ଷରେ ସୁବିଧା ହେବନାହିଁ ବୋଲି ସେ ବୁଝିପାରି ତାହା କିପରି ବନ୍ଦକରାଯିବ ତା'ର ଯୋଜନା ପ୍ରସ୍ତୁତ କରିଥିଲେ । ସୁପ୍ରିମ୍ କୋର୍ଟରେ ସେ ଆହ୍ଲାବାଦ ହାଇକୋର୍ଟର ରାୟ ବିରୁଦ୍ଧରେ ଯେଉଁ ଅପିଲ କରିଥିଲେ, ତାଙ୍କର ଆଶା ଥିଲା ଯେ ବିଚାର ଶେଷ ହେବା ପର୍ଯ୍ୟନ୍ତ ସେ ରାୟକୁ ସୁପ୍ରିମ କୋର୍ଟ ସଂପୂର୍ଣ୍ଣ ଭାବରେ ସ୍ଥଗିତ ରଖିବ । ସୁପ୍ରିମ୍ କୋର୍ଟରେ ବିଚାରପତି ଶ୍ରୀ କ୍ରିଷ୍ଣା ଆୟାରଙ୍କ କୋର୍ଟରେ ଶ୍ରୀମତୀ ଗାନ୍ଧୀଙ୍କର ଆବେଦନ ବିଚାରହେଉଥିବାରୁ ତାଙ୍କର ସେ ଆଶା ଆହୁରି ଦୃଢ଼ହୋଇଥିଲା । ବିଚାରପତି କ୍ରିଷ୍ଣା ଆୟାର ଜଣେ କମ୍ୟୁନିଷ୍ଟ ଭାବାପନ୍ନ ବ୍ୟକ୍ତି ଥିଲେ ବୋଲି ସେତେବେଳେ ଲୋକଙ୍କର ଧାରଣା ଥିଲା । ମାତ୍ର ବିଚାରପତି କ୍ରିଷ୍ଣା ଆୟାରଙ୍କର ସର୍ତ୍ତମୂଳକ ସ୍ଥଗିତ ଆଦେଶ ହେତୁ ସୁପ୍ରିମ୍ କୋର୍ଟରେ ଶ୍ରୀମତୀ ଗାନ୍ଧୀଙ୍କ ଆବେଦନର ଶେଷ ପରିଣତି ନୈରାଶ୍ୟଜନକ ହେବ ବୋଲି ସେ ଆଶଙ୍କା କରି ଭବିଷ୍ୟତ୍ ସମ୍ବନ୍ଧରେ ଏକାବେଳକେ ହତାଶହୋଇପଡ଼ିଥିଲେ । କେବଳ ନିରଙ୍କୁଶ କ୍ଷମତାର ଅଧିକାରିଣୀ ହୋଇପାରିଲେ ସେ ଉପସ୍ଥିତ ବିପଦରୁ ରକ୍ଷାପାଇପାରିବେ ବୋଲି ତାଙ୍କର ଦୃଢ଼ ଧାରଣା ଜନ୍ମିଥିଲା । ଜୁନ୍‌ମାସ ପଚିଶ ତାରିଖ ଦିନ

ବିରୋଧୀଦଳମାନଙ୍କ ପକ୍ଷରୁ ଶ୍ରୀ ଜୟପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ଗୋଟିଏ ଗଣ-ସମାବେଶ ହେବ ବୋଲି ଘୋଷଣା କରାଯାଇଥିଲା । ବିରୋଧୀଦଳମାନଙ୍କର ତଥା ଜୟପ୍ରକାଶ ନାରାୟଣଙ୍କର ଏହି ଗଣ-ସମାବେଶ ଶେଷ ଗଣ-ସମାବେଶ ହେବ ବୋଲି ଶ୍ରୀମତୀ ଗାନ୍ଧୀ ସ୍ଥିରକରିଥିଲେ ଏବଂ ସେହି ଗଣ-ସମାବେଶ ପରେ ଜୟପ୍ରକାଶଜୀଙ୍କ ସମେତ ବିରୋଧୀ ଦଳର ନେତାମାନଙ୍କ ବିରୁଦ୍ଧରେ କଠୋର କାର୍ଯ୍ୟାନୁଷ୍ଠାନ ନିଆଯିବ ବୋଲି ସ୍ଥିରକରାଯାଇଥିଲା । ଶ୍ରୀମତୀ ଗାନ୍ଧୀଙ୍କର ପ୍ରଚ୍ଛନ୍ନ ଏକଚ୍ଛତ୍ରବାଦ ମନୋବୃତ୍ତି ଅତି ଉଲଗ୍ନ ଭାବରେ ଏଠାରେ ପଦାରେ ପଡ଼ିଥିଲା । ସମଗ୍ର ବିରୁଦ୍ଧ ଶକ୍ତି ଓ ବିରୁଦ୍ଧ ରାଜନୈତିକ ଦଳଗୁଡ଼ିକର ଧ୍ୱଂସସାଧନ କରି ତାଙ୍କ ନିଜର, ତାଙ୍କ ବଂଶର ଓ ତାଙ୍କ ଦଳର ଆଧିପତ୍ୟ ଅକ୍ଷୁଣ୍ଣ ରଖିବା ଉଦ୍ଦେଶ୍ୟରେ ଶ୍ରୀମତୀ ଗାନ୍ଧୀ ଅତି ନିର୍ଲ୍ଲଜ ଭାବରେ ଆଗେଇଆସିଥିଲେ ନିରଙ୍କୁଶ ଏକଚ୍ଛତ୍ରବାଦର ନିଶାଣ ଧରି । ନିଃସନ୍ଦେହରେ କୁହାଯାଇପାରେ ଯେ ତାହା ଥିଲା ଶ୍ରୀମତୀ ଗାନ୍ଧୀଙ୍କର ନିରଙ୍କୁଶ କ୍ଷମତା-ପିପାସାର ନିଦର୍ଶନ । ଏ ସମ୍ପର୍କରେ Harold Laskiଙ୍କର ନିମ୍ନରେ ଉଦ୍ଧୃତ ଉକ୍ତି ଏକାବେଳକେ ପ୍ରଯୁଜ୍ୟ । ସେ ତାଙ୍କର 'Parliamentary Government in England' ପୁସ୍ତକର ୭୦ ପୃଷ୍ଠାରେ ଲେଖିଛନ୍ତି — "Party Government is the vital principle of representative Government. That is a generalisation which appears obvious to most Englishmen, and in some form or other it has been pivotal to the working of our institutions since the civil war of the Seventeenth Century. It was, indeed, been copied all over the world; and nothing appears to us so definite a proof of dictactorship as when the dictactor destroys, as he is logically driven to destroy, all political parties save his own."

## ଜୁନ୍ ପଚିଶର କଳାରାତି

ଜୁନ୍ ଛବିଶ ତାରିଖ ସକାଳ ସମ୍ବାଦ ପରିବେଷଣ ସଂସ୍ଥାରୁ ମୁଁ ଜାଣିବାକୁ ପାଇଲି ଯେ ପୂର୍ବରାତିର ଅନ୍ଧକାରରେ ସମଗ୍ର ଦେଶରେ ଜରୁରୀକାଳୀନ ପରିସ୍ଥିତି ଘୋଷିତ ହୋଇଛି । ଆଭ୍ୟନ୍ତରୀଣ ବିଶୃଙ୍ଖଳା ଦ୍ୱାରା ଦେଶର ନିରାପତ୍ତା ପ୍ରତି ବିପଦ ଆଶଙ୍କା ଦେଖାଦେଇଥିବା ଯୁକ୍ତିରେ ଏହି କଳାଆଇନ୍ ଘୋଷଣା କରାଯାଇଛି । ଏକଥା ଜାଣି ମୁଁ ଏକାବେଳକେ ଅବାକ୍ ହୋଇଯାଇଥିଲି । ଓଡ଼ିଶା ଲୋକଦଳର ସଭାପତି ହିସାବରେ ସଙ୍ଗେ ସଙ୍ଗେ ଜରୁରୀକାଳୀନ ପରିସ୍ଥିତି ଘୋଷଣା ବିରୁଦ୍ଧରେ ଗୋଟିଏ ବିବୃତି ମୁଁ ସମ୍ବାଦପତ୍ରମାନଙ୍କୁ ପଠାଇଥିଲି । ସେଥିରେ ଶ୍ରୀମତୀ ଗାନ୍ଧୀଙ୍କର ଅସଲ ରୂପ ପ୍ରକାଶ ପାଇଲା ବୋଲି ଓ ଦେଶର ଗଣତନ୍ତ୍ର ଉପରେ ତାଙ୍କର ବ୍ୟଭିଚାରକୁ ଦେଶ କେବେ ବରଦାସ୍ତ କରିବନାହିଁ ବୋଲି ଉଲ୍ଲେଖ କରିଥିଲି । ମୋର ବିବୃତି ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହୋଇନ ଥିଲା; କାରଣ ସମ୍ବାଦ ପରିବେଷଣ ଉପରେ ସଙ୍ଗେ ସଙ୍ଗେ ସରକାରୀ କଟକଣା ଜାରିହୋଇଥିଲା । ଜରୁରୀକାଳୀନ ପରିସ୍ଥିତି ଘୋଷଣା ଫଳରେ ଦେଶରେ ଯେଉଁସବୁ ଘଟଣା ଘଟିଥିଲା ଓ ବିରୋଧୀ ଦଳର ଲୋକଙ୍କ ବିରୁଦ୍ଧରେ ଯେଉଁ କାର୍ଯ୍ୟାନୁଷ୍ଠାନ କରାଯାଇଥିଲା, ସେ ସମ୍ବନ୍ଧରେ କୌଣସି ସମ୍ବାଦ ପ୍ରକାଶ ପାଇନଥିଲା । ଏଣିକି କେବଳ ମାତ୍ର ସରକାରୀ ନିୟନ୍ତ୍ରିତ ସମ୍ବାଦ ଖବରକାଗଜରେ ପ୍ରକାଶ ପାଉଥିଲା । ଏହି ପରିପ୍ରେକ୍ଷୀରେ ନାନା ଗୁଜବ ସେତେବେଳେ ଶୁଣିବାକୁ ମିଳୁଥିଲା । ଶ୍ରୀ ଜଗଜ୍ଜୀବନ ରାମ ଗୃହବନ୍ଦୀ ବୋଲି ଖୁବ୍ ଜୋର୍‌ରେ ଲୋକମାନଙ୍କ ମଧ୍ୟରେ ପ୍ରଚାରିତ ହୋଇଯାଇଥିଲା । ଶ୍ରୀ ରାମଙ୍କୁ ସେନାବାହିନୀର ସୈନ୍ୟମାନେ ଘେରି ରହିଛନ୍ତି, ତାଙ୍କୁ ସହଜରେ କେହି ଦେଖାକରିପାରୁନାହାନ୍ତି ଏବଂ ତାଙ୍କର ଟେଲିଫୋନ୍ ଟେପ୍ ହେଉଛି ଇତ୍ୟାଦି ଗୁଜବ ସେତେବେଳେ ଉଠୁଥାଏ । ଆଉ ଗୋଟିଏ ଗୁଜବ ସେତେବେଳେ ପ୍ରଚାରିତ ହେଉଥାଏ ଯେ ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ଶ୍ରୀ ସିଦ୍ଧାର୍ଥଶଙ୍କର ରାୟ ସେତେବେଳେ ବାରମ୍ବାର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କୁ ଦେଖାକରୁଥିଲେ ବୋଲି ଶ୍ରୀ ସଞ୍ଜୟ

ଗାନ୍ଧୀ ତାଙ୍କ ପ୍ରତି ଅତିଶୟ ବିରକ୍ତି ପ୍ରକାଶ କରି କୁଆଡ଼େ କହିଥିଲେ ଯେ ତାଙ୍କ ନିଜ ରାଜ୍ୟ ପଶ୍ଚିମବଙ୍ଗଳାରେ ବହୁତ କାର୍ଯ୍ୟ ଅଛି, ସେ ସେଠାକୁ ନଯାଇ ଦିଲ୍ଲୀରେ କାହିଁକି ଲଙ୍ଗପଙ୍ଗ ହେଉଛନ୍ତି ଏବଂ ତାଙ୍କ ମା'ଙ୍କର କାର୍ଯ୍ୟରେ ବଳେ ପଶି ମୁଣ୍ଡ ଖେଳାଇ ତାଙ୍କର ସମୟ ନଷ୍ଟ କରୁଛନ୍ତି ? ଯେଉଁ ଗୁଜବ ଶୁଣାଯାଉଥିଲା ତାହା ଆକ୍ଷରିକ ଭାବରେ ଠିକ୍ ନହେଲେ ମଧ୍ୟ ସେଥିରେ ମୋଟାମୋଟି କିଛି ସତ୍ୟତା ଥିଲା ବୋଲି ପରେ ଜଣାପଡ଼ିଥିଲା । ଜୁନ୍ ପଚିଶି ତାରିଖ ରାତ୍ରିରେ ଜରୁରୀ ପରିସ୍ଥିତି ଘୋଷଣା ହେଲାମାତ୍ରେ ହାଇକୋର୍ଟଗୁଡ଼ିକରେ ତାଲା ପକାଇ ଦିଆଯିବା ଏବଂ ସମ୍ବାଦପତ୍ରଗୁଡ଼ିକୁ ଯାଉଥିବା ବିଦ୍ୟୁତ୍ ଯୋଗାଣ ଲାଇନ୍‌କୁ କାଟିଦେବାପାଇଁ ଆଦେଶ ଦେବାକଥା ଶୁଣି ଶ୍ରୀ ରାୟ ଆଶ୍ଚର୍ଯ୍ୟ ହୋଇଥିଲେ ଏବଂ ସେ ପ୍ରକାର ଆଦେଶ ନଦେବାପାଇଁ ଶ୍ରୀମତୀ ଗାନ୍ଧୀଙ୍କୁ ପରାମର୍ଶ ଦେବାପାଇଁ ପ୍ରଧାନମନ୍ତ୍ରୀଙ୍କ ବାସଭବନରେ ଅପେକ୍ଷା କରି ରହିଥିଲେ । ଶ୍ରୀମତୀ ଗାନ୍ଧୀଙ୍କର ଆସିବାରେ ବିଳମ୍ବ ହୋଇଥିଲା ଏବଂ ଶ୍ରୀ ରାୟ ତାଙ୍କୁ ଅପେକ୍ଷା କରି ରହିଥିବାବେଳେ ଅତିକ୍ରୋଧୀ ଓ ଉତ୍ତେଜିତଭାବରେ କର୍କଶ ଓ ଅପମାନଜନକ ଭାଷାରେ କହିଥିଲେ ଯେ ଦେଶକୁ କିପରି ଶାସନକରାଯାଏ ସେକଥା ସେ ଜାଣନ୍ତିନାହିଁ ବୋଲି ତାଙ୍କୁ ସଞ୍ଜୟ ଗାନ୍ଧୀ କହିଥିବା କଥା ଶ୍ରୀ ରାୟ ପରେ ଶାହା କମିଶନଙ୍କ ଆଗରେ କହିଥିଲେ । ତେଣୁ ଦୁଇଟିଯାକ ଗୁଜବରେ କିଛି ଯଥାର୍ଥତା ଥିଲା ବୋଲି ପରେ ସମର୍ଥିତ ହୋଇଥିଲା । ଶ୍ରୀ ଜଗଜୀବନ ରାମଙ୍କ ପ୍ରତି ଯେପରିଭାବରେ ବ୍ୟବହାର କରାଯାଇଥିଲା, ତାହା ସେ ବହୁ କ୍ଷେତ୍ରରେ ପରେ ବର୍ଣ୍ଣନା କରିଥିଲେ ।

୧୯୭୫ ମସିହା ଜାନୁୟାରୀ ମାସ ପଚିଶ ତାରିଖ ରାତ୍ରିରେ ଜରୁରୀ ପରିସ୍ଥିତି ଘୋଷଣାର ଆବଶ୍ୟକତା ବିଷୟ କ୍ୟାବିନେଟ୍ ଆଗରେ ଉପସ୍ଥାପିତ ନକରି ଶ୍ରୀମତୀ ଇନ୍ଦିରା ଗାନ୍ଧୀ ରାଷ୍ଟ୍ରପତିଙ୍କୁ ଯେଉଁ ଚିଠିଖଣ୍ଡକ ଲେଖି ତାହାର ଅନୁମୋଦନ କରାଇନେଇ ଭାରତର ଗଣତନ୍ତ୍ରକୁ ଅନ୍ଧକାରାଚ୍ଛନ୍ନ କରି ଦେଶରେ ଅକଥନୀୟ ଅତ୍ୟାଚାର ଆରମ୍ଭ କରି ଲକ୍ଷ ଲକ୍ଷ ଲୋକଙ୍କର ସ୍ୱାଧୀନତା ଅପହରଣ କରି ଏକଚ୍ଛତ୍ରବାଦିନୀ ହିସାବରେ ନିରଙ୍କୁଶ କ୍ଷମତା ହାସଲ କରିଥିଲେ, ସେ ଚିଠିଟିର ଉଦ୍ଧାର କରିବା ଏଠାରେ ପ୍ରାସଙ୍ଗିକ ହେବ ।

'ଅତ୍ୟନ୍ତ ଗୋପନୀୟ'
ପ୍ରଧାନମନ୍ତ୍ରୀ
ଭାରତ ସରକାର
ନୂଆଦିଲ୍ଲୀ, ଜୁନ୍ ୨୫ । ୧୯୭୫

''ପ୍ରିୟ ରାଷ୍ଟ୍ରପତିଜୀ,

''ଆଭ୍ୟନ୍ତରୀଣ ବିଶୃଙ୍ଖଳା ଫଳରେ ଭାରତର ନିରାପତ୍ତା ପ୍ରତି ଆସନ୍ନ ବିପଦ ଆଶଙ୍କା ରହିଛି ବୋଲି ଆମକୁ ଯେଉଁ ତଥ୍ୟ ମିଳିଛି ସେ ସମ୍ବନ୍ଧରେ ଅଳ୍ପ ସମୟତଳେ ଆପଣଙ୍କୁ ସବୁ ବିଷୟ ଅବଗତ କରାଇଦିଆଯାଇଛି; ଏହା ଏକ ଅତି ଜରୁରୀ ବିଷୟ ''

''ମୁଁ ଏ ବିଷୟ କ୍ୟାବିନେଟ୍ ଆଗରେ ଉପସ୍ଥାପିତ କରିଥା'ନ୍ତି; କିନ୍ତୁ ଦୁର୍ଭାଗ୍ୟବଶତଃ ଏହା ଆଜି ରାତିରେ ସମ୍ଭବନୁହେଁ । ତେଣୁ ସବିଶେଷ ସଂଶୋଧନ ସହ ଭାରତ ସରକାରଙ୍କ କାର୍ଯ୍ୟ ପରିଚାଳନା ନିୟମାବଳୀ ୧୯୬୧ର ଦ୍ୱାଦଶ ଧାରା ଅନୁଯାୟୀ ମୋ ହାତରେ ଥିବା କ୍ଷମତାବଳରେ ମୁଁ ଏହି ନିୟମାବଳୀ ପ୍ରୟୋଗକୁ ଛାଡ଼ କରୁଛି କିମ୍ବା ତା'ର ବ୍ୟତିକ୍ରମ ନିମନ୍ତେ ଅନୁମତି ଦେଉଛି । ଆସନ୍ତାକାଲି ସର୍ବପ୍ରଥମେ କ୍ୟାବିନେଟ୍‌କୁ ମୁଁ ଏ ବିଷୟ ଜଣାଇବି ।''

''ଏହି ପରିସ୍ଥିତିରେ ଏବଂ ଯଦି ଆପଣଙ୍କର ଏହା ହୃଦ୍‌ବୋଧ ହୋଇପାରିଥାଏ, ୩୫୨(୧) ଧାରା ଅନୁଯାୟୀ ଏକ ଘୋଷଣାନାମା ଜାରି କରିବା ଆବଶ୍ୟକ ହୋଇପଡ଼ିଛି— ଆପଣଙ୍କର ବିଚାର

ନିମନ୍ତେ ମୁଁ ଏଥିସହ ଘୋଷଣାନାମା ଚିଠାର ଏକ କପି ପଠାଉଛି । ଆପଣ ଜାଣନ୍ତି ଯେ ୩୫୨(୩) ଧାରା ଅନୁଯାୟୀ ଏପରିକି ଏଭଳି ଆସନ୍ନ ବିପଦର ଆଶଙ୍କା ଥିଲେ ମଧ୍ୟ ମୁଁ କହିବାଭଳି ୩୫୨(୧) ଧାରା ଅନୁଯାୟୀ ଘୋଷଣାନାମା ଜାରିକରାଯାଇପାରେ ।''

''ଆଜି ରାତି ଯେତେ ଡେରି ହେଉ ପଛକେ ଏଭଳି ଏକ ଘୋଷଣାନାମା ଜାରି କରାଯାଉ ବୋଲି ମୁଁ ସୁପାରିସ୍ କରୁଛି ଏବଂ ଏହାକୁ ସର୍ବସାଧାରଣରେ ଯେତେ ଶୀଘ୍ର ସମ୍ଭବ ପ୍ରକାଶ କରାଯିବା ନିମନ୍ତେ ଏହାପରେ ସବୁ ପ୍ରକାର ବ୍ୟବସ୍ଥା କରାଯିବ ।''

ସମ୍ମାନର ସହ,<br>
ଆପଣଙ୍କର ଏକାନ୍ତ<br>
ସ୍ୱା/ ଇନ୍ଦିରା ଗାନ୍ଧୀ

## ଜରୁରୀ ପରିସ୍ଥିତିରେ ଓଡ଼ିଶା ହାଲ

ଜରୁରୀ ପରିସ୍ଥିତି ଘୋଷଣାରେ ଓଡ଼ିଶାର ରାଜନୈତିକ ଦଳର ନେତାମାନେ ସ୍ତମ୍ଭୀଭୂତ ହୋଇଯାଇଥିଲେ । ସେ ଘୋଷଣା ବିରୁଦ୍ଧରେ ସେମାନଙ୍କର ପ୍ରତିକ୍ରିୟା ସମ୍ବାଦପତ୍ରରେ ପ୍ରକାଶିତ ହୋଇନଥିଲା । ସାଧାରଣ ଲୋକେ ଆତଙ୍କିତ ହୋଇଥିଲେ । ଏହି ପରିସ୍ଥିତିରେ ଶ୍ରୀ ନବକୃଷ୍ଣ ଚୌଧୁରୀ ତାଙ୍କର କଟକ କାଠଯୋଡ଼ି କୂଳରେ ଥିବା ବାସଭବନକୁ ଜନସଂଘର୍ଷ ସମିତିର ଗୋଟିଏ ବୈଠକ ଡାକିଥିଲେ । ଓଡ଼ିଶାର ଲୋକଦଳ ସଭାପତି ଭାବରେ ମୁଁ ଉକ୍ତ ବୈଠକରେ ଯୋଗଦେଇଥିଲି । ହରେକୃଷ୍ଣ ମହତାବ, ଶ୍ରୀମତୀ ରମା ଦେବୀ, ବିଶ୍ୱଭୂଷଣ ହରିଚନ୍ଦନ, ମନମୋହନ ଚୌଧୁରୀ, ଶାରଦା ମହାନ୍ତି ଓ ବିଶ୍ୱନାଥ ପଣ୍ଡିତ ପ୍ରଭୃତି ନେତୃସ୍ଥାନୀୟ ବ୍ୟକ୍ତିମାନେ ସେ ବୈଠକରେ ଯୋଗଦେଇଥିଲେ । ଖବରକାଗଜମାନଙ୍କ ଉପରେ କଟକଣା ଜାରିହୋଇ ସମ୍ବାଦ ଯାଞ୍ଚ କରାଯାଉଥିବାରୁ ପ୍ରକୃତ ସମ୍ବାଦ ଲୋକଙ୍କୁ ଜଣାଇବାପାଇଁ ଜନସଂଘର୍ଷ ସମିତି ପକ୍ଷରୁ ବୁଲେଟିନ୍ ପ୍ରକାଶ କରିବା କଥା ସେଠାରେ ସ୍ଥିରହୋଇଥିଲା । କେତେଖଣ୍ଡ ବୁଲେଟିନ୍ ମଧ୍ୟ ପ୍ରକାଶ ପାଇଥିଲା । ଯେଉଁସବୁ ନେତୃସ୍ଥାନୀୟ ବ୍ୟକ୍ତିମାନେ ଗିରଫ ହୋଇଥିଲେ ସେମାନଙ୍କର ନାମ ସବୁ ଉକ୍ତ ବୁଲେଟିନ୍‌ରେ ପ୍ରକାଶ କରାଯାଇଥିଲା । ଓଡ଼ିଶାରୁ ଶ୍ରୀ ବିଜୁ ପଟ୍ଟନାୟକ ଜୟପ୍ରକାଶ ନାରାୟଣଙ୍କ ସହ ଦିଲ୍ଲୀରେ ଗିରଫ ହେବାକଥା ସେଥିରେ ପ୍ରକାଶପାଇଥିଲା । ସର୍ବୋଦୟ ପ୍ରେସ୍‌ରୁ ସେ ବୁଲେଟିନ୍‌ଗୁଡ଼ିକ ପ୍ରକାଶପାଉଥିଲା ବୋଲି ସନ୍ଦେହ କରି ପୁଲିସ ଉକ୍ତ ପ୍ରେସ୍‌କୁ ଜବଦ କରିଥିଲା । ଜରୁରୀ ପରିସ୍ଥିତି ଘୋଷିତ ହେବା ପରେ ଯେଉଁ ପରିସ୍ଥିତି ଉପୁଜିଥିଲା ତାହା ବିଚାରକରି ଭବିଷ୍ୟତ୍ କାର୍ଯ୍ୟପନ୍ଥା ସ୍ଥିର କରିବାପାଇଁ ମୁଁ ଲୋକଦଳ କାର୍ଯ୍ୟକାରୀ କମିଟିର ଗୋଟିଏ ବୈଠକ ଭୁବନେଶ୍ୱରକୁ ଡାକିଥିଲି । ଉକ୍ତ ବୈଠକକୁ ବନ୍ଦକରିବାପାଇଁ ମୋତେ କେତେ ବନ୍ଧୁ ପରାମର୍ଶ ଦେଇଥିଲେ । ସେମାନେ ଆଶଙ୍କା କରିଥିଲେ ଯେ ଓଡ଼ିଶା ଲୋକଦଳର ନେତୃସ୍ଥାନୀୟ ବ୍ୟକ୍ତିମାନେ ଗୋଟିଏ ସ୍ଥାନରେ ଏକତ୍ରିତ ହେଲେ ସେମାନଙ୍କୁ ଗିରଫ କରିନେବାକୁ ସରକାରଙ୍କ ପକ୍ଷରେ ସୁବିଧା ହେବ, ତେଣୁ ସମସ୍ତଙ୍କୁ ଗୋଟିଏ ସ୍ଥାନରେ ଏକତ୍ରିତ କରିବା ଅବିବେକୀ କାର୍ଯ୍ୟ ହେବ । ସେମାନଙ୍କର ପରାମର୍ଶ ଅନୁସାରେ ଆହୂତ ହୋଇଥିବା ଲୋକଦଳ କାର୍ଯ୍ୟକାରୀ ବୈଠକକୁ ମୁଁ ସ୍ଥଗିତ ରଖିଥିଲି । ମୋର ଗିରଫ ହେବା କଥା ସରକାର ସ୍ଥିରକରିସାରିଛନ୍ତି ବୋଲି ବାଙ୍କବାବୁଙ୍କଠାରୁ ଶୁଣିଥିବା କଥା ମୋତେ କହି ମହତାବବାବୁ ମୋତେ ସତର୍କ କରାଇଦେଇଥିଲେ । ମୁଁ ଘରକୁ ଯାଇ ସମସ୍ତଙ୍କୁ ସେକଥା କହି ନିଜେ ପ୍ରସ୍ତୁତ ହେଲି । ମୋର ଲୁଗାପଟା, ଜେଲ୍‌ରେ ପଢ଼ାପଢ଼ି କରିବାପାଇଁ କେତେଖଣ୍ଡ ବହି ଓ ଅନ୍ୟାନ୍ୟ ବ୍ୟବହାର୍ଯ୍ୟ ଜିନିଷସବୁ ଗୋଟିଏ ସୁଟ୍‌କେଶ୍‌ରେ ସଜାଇ ରଖିଥିଲି । ଗୋଟିଏ ସତରଞ୍ଜି ମଧ୍ୟ ବଜାରରୁ କିଣିଆଣି ରଖିଥିଲି ସଙ୍ଗରେ ଜେଲ୍‌କୁ ନେବାପାଇଁ । ମୋର ଏ ପ୍ରକାର ପ୍ରସ୍ତୁତି ଦେଖି ମୋର ପୁଅ ବାବୁଲ୍ କାନ୍ଦିବାକୁ ଲାଗିଲା । ତାକୁ

ବୁଝାଶୁଝା କଲି; ମାତ୍ର ସେ କିଛି ବୁଝୁନଥାଏ । ବୁଝାଇଲାବେଳେ ମଝିରେ ମଝିରେ କାନ୍ଦିପକାଉଥାଏ । ତା'ର ମା' ଥିଲେ ମୋତେ ଏପରି ଅବସ୍ଥାର ସମ୍ମୁଖୀନ ହେବାକୁ ପଡ଼ିନଥାନ୍ତା ବୋଲି ମୁଁ ଭାବୁଥାଏ । ଦୁଇ-ତିନି ଦିନ ଏହିପରି ଭାବରେ ଅପେକ୍ଷା କରି ରହିଲି; ମାତ୍ର ମୋତେ ଗିରଫ କରିବାପାଇଁ କେହି ଆସିଲେନାହିଁ । କଟକ ଜେଲ୍‌ର କର୍ତ୍ତୃପକ୍ଷମାନେ ମୋତେ ଖବରଦେଲେ ଯେ କଟକରେ ଗିରଫ ହେଲେ ଭଲହେବ; ସେମାନେ ମୋର ସେବାକରିବାର ସୁଯୋଗ ପାଇବେ । ସେମାନେ ପରାମର୍ଶ ଦେଉଥା'ନ୍ତି ଯେ ମୁଁ ଦିନରେ ଯେଉଁ ଆଡ଼କୁ ଇଚ୍ଛା ସେ ଆଡ଼କୁ ଯାଏଁ ପଛେ, ମାତ୍ର ରାତିରେ କଟକରେ ରହିଲେ ଭଲ ହେବ; କାରଣ ଗିରଫଦାରୀ ସେତେବେଳେ ସାଧାରଣତଃ ରାତିରେ କରାଯାଉଥାଏ । ମୋର ସୁଟ୍‌କେଶ୍ ଓ ବିଛଣାପତ୍ର ମୁଁ ବନ୍ଧାବନ୍ଧି କରି ରଖିଦେଇଥାଏ । ଏହିପରି ଅବସ୍ଥାରେ ଦିନେ ରାତି ପ୍ରାୟ ତିନିଟା ସମୟରେ ମୋର ଟେଲିଫୋନ୍ ବାଜିଲା । ଟେଲିଫୋନ୍ ଧରିବାରେ ଜାଣିଲି ଯେ ଭୁବନେଶ୍ୱରରୁ ମହତାବବାବୁଙ୍କ ସେକ୍ରେଟେରୀ ଶ୍ରୀ ଶରତଚନ୍ଦ୍ର ମଲ୍ଲିକ ଫୋନ୍ କରିଥିଲେ । ମହତାବ ବାବୁ ଗିରଫ ହୋଇଗଲେ ବୋଲି ସେ ମୋତେ ସମ୍ବାଦ ଦେଲେ ଏବଂ ସେ ଆଶଙ୍କା କରିଥିଲେ ଯେ ସେ ରାତିରେ ମୁଁ ମଧ୍ୟ ଗିରଫ ହୋଇଯିବି । ଏକଥା ଶୁଣି ମୁଁ ଘରେ ସମସ୍ତଙ୍କୁ ଉଠାଇଲି ଏବଂ ନିଜେ ପ୍ରସ୍ତୁତ ହୋଇ ଅପେକ୍ଷା କରି ରହିଲି । ବାବୁଲ୍ ଏକଥା ଦେଖି କଇଁକଇଁ ହୋଇ କାନ୍ଦିବାକୁ ଲାଗିଲା । ତାକୁ ପାଖରେ ବସାଇ ମୋ ଅନୁପସ୍ଥିତିରେ ଘର କିପରି ଚଳାଇବ ପରାମର୍ଶ ଦେଉଥାଏ । ମୋ ଆଲମାରି ଓ ବାକ୍ସ ପ୍ରଭୃତିର ଚାବିକାଠି ଯେତେବେଳେ ତାକୁ ଦେଲି, ସେ ଆହୁରି ବେଶି କାନ୍ଦିଲା । ଅପେକ୍ଷା କରି ରହିଥାଏ, ବାହାରେ କିଛି ଶବ୍ଦ ଶୁଣିଲେ ପୁଲିସ ଆସିଲେ ବୋଲି ଭାବୁଥାଏ । ରାତି ଗଲା, ସକାଳ ହେଲା; ମାତ୍ର ପୁଲିସ ଆସିଲେନାହିଁ । ସେହି ରାତିରେ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କୁ ମଧ୍ୟ ଗିରଫ କରାଯାଇଥିଲା । ମୋର ଘର ଆଗରେ ଗୁଇନ୍ଦା ପୁଲିସ ସବୁବେଳେ ପଇଁତରା ମାରୁଥାଆନ୍ତି । ପ୍ରତିଦିନ ରାତିରେ ଭାବୁଥାଏ ସେଦିନ ଗିରଫ ହୋଇଯିବି । ଏହିପରି ଭାବରେ ବହୁତ ଦିନ ଅପେକ୍ଷା କରି ରହିଲି; ମାତ୍ର ମୋତେ ଗିରଫ କରାଯାଉନଥାଏ । ମୁଁ ପ୍ରତିଦିନ ଭୁବନେଶ୍ୱର ଲୋକଦଳ ଅଫିସକୁ ଆସେ ଓ ରାତିରେ କଟକ ଫେରିଯାଏ; କାରଣ ମୋର ମଧ୍ୟ ଇଚ୍ଛା ଥାଏ ଗିରଫ ହୋଇ କଟକ ଜେଲ୍‌ରେ ରହିବାପାଇଁ । ଭୁବନେଶ୍ୱରରେ ମୁଁ ଯେଉଁଆଡ଼େ ଯାଉଥାଏ, ଗୋଟିଏ ଗାଡ଼ିରେ ଗୁଇନ୍ଦା ପୁଲିସ ମୋର ପିଛା କରୁଥାଆନ୍ତି । କଟକରେ ମୋର ପଡ଼ୋଶୀ ଥିଲେ ଓଡ଼ିଶା ମିଲିଟାରୀ ପୁଲିସରେ କାର୍ଯ୍ୟ କରୁଥିବା ଜଣେ ବଡ଼ ଅଫିସର୍ । ତାଙ୍କ ଘରକୁ ଓ.ଏମ୍.ପି.ରୁ ପୁଲିସ ଗାଡ଼ି ସମୟ ସମୟରେ ଆସେ । ମୋ ଘର ପାଖରେ ପୁଲିସଗାଡ଼ିକୁ ଦେଖିଲାକ୍ଷଣି ମୁଁ ଗିରଫ ହୋଇଗଲିଣି ବୋଲି ସହରରେ ପ୍ରଚାର ହୋଇଯାଉଥାଏ । ତେଣୁ ସଠିକ୍ ଖବର ଜାଣିବାପାଇଁ ମୋ ଘରକୁ ବହୁତ ଟେଲିଫୋନ୍ ଆସୁଥାଏ ।

ଅର୍ଥାଭାବରୁ ଲୋକଦଳ ଅଫିସ୍ ଓ ଅନ୍ୟାନ୍ୟ କାର୍ଯ୍ୟ ଚଳାଇବାକୁ ମୋତେ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ବିଜୁବାବୁ ବାହାରେ ଥିଲାବେଳେ ଅଫିସ୍ ଚଳାଇବା ଓ ଅନ୍ୟାନ୍ୟ କାର୍ଯ୍ୟ ଚଳାଇବା ପାଇଁ ପ୍ରତି ମାସରେ କୋଡ଼ିଏ ହଜାର ଟଙ୍କା ଅଫିସ୍‌କୁ ଦେଉଥିଲେ । ଜରୁରୀ ପରିସ୍ଥିତି ସମୟରେ ବ୍ୟବସାୟୀମାନେ ଭୟ କରି ଆମ ପାଖକୁ ଆସୁନଥିଲେ । ଲୁଚାଛପାରେ ଅଫିସ୍ ଚଳାଇବାପାଇଁ କିଛି କିଛି ଟଙ୍କା ଆଦାୟ କରୁଥାଏ । ତା'ଛଡ଼ା ଗୁପ୍ତ ପ୍ରଚାରପତ୍ର ଛପାଇବାରେ ମଧ୍ୟ ଟଙ୍କା ଦରକାର ପଡୁଥାଏ । ଲୋକଦଳ ଅଫିସ୍‌ରେ ଗୋଟିଏ ଓଡ଼ିଆ ଲିଥୋଗ୍ରାଫ୍ ମେସିନ୍ ଥିଲା । ତାକୁ ପୁଲିସ ଜବତ କରି ନେଇଯାଇଥିଲା । କେତେକ ଜିଲ୍ଲାକୁ ବୁଲେଟିନ୍ ଛପାଇବା ଉଦ୍ଦେଶ୍ୟରେ ଲିଥୋଗ୍ରାଫ୍ ମେସିନ୍ କିଣା ହୋଇ ଦିଆଯାଇଥିଲା । ଟଙ୍କାପଇସା କିଛି ସଂଗ୍ରହ କରିବା ଉଦ୍ଦେଶ୍ୟରେ ମୁଁ ଅଗଷ୍ଟ ମାସରେ କିଛିଦିନପାଇଁ କଲିକତା ଯାଇଥିଲି । ତା'ଛଡ଼ା ଦେଶରେ ବିଭିନ୍ନ ସ୍ଥାନରେ ଘଟୁଥିବା ଘଟଣାମାନଙ୍କର ଖବର ପାଇବା ଦିଗରେ କଲିକତା ଗୋଟିଏ ସୁବିଧାଜନକ ସ୍ଥାନ । ମୁଁ କଲିକତା

ଗଲାବେଳେ ଶ୍ରୀ ପ୍ରହ୍ଲାଦଚନ୍ଦ୍ର ମଲ୍ଲିକ ଓ ଶ୍ରୀ ପ୍ରତାପଚନ୍ଦ୍ର ମହାନ୍ତିଙ୍କ ଉପରେ ଲୋକଦଳ ଅଫିସ୍ ଓ ଅନ୍ୟାନ୍ୟ କାର୍ଯ୍ୟର ଦାୟିତ୍ୱ ଦେଇଯାଏ । ମୋର ଅନୁପସ୍ଥିତିରେ ସେ ଦୁଇଜଣଯାକ ଗିରଫ ହୋଇଯାଇଥିଲେ । ମୋର ପୁଅ ବାବୁଲ୍ ମୋତେ ଫୋନ୍ କରି ସେ ସମ୍ବାଦ ଦେଇଥିଲା ଏବଂ ମୁଁ ଅସିଲେ ଗିରଫ ହୋଇଯାଇପାରେ ବୋଲି ମୋର ମଧ ଆଶଙ୍କା ଥାଏ । କିନ୍ତୁ ଏ ପ୍ରକାର ଆଶଙ୍କା ବୃଥା ବୋଲି ପରେ ଜଣାଗଲା । ଲୋକଦଳର କୋଷାଧ୍ୟକ୍ଷ ଥିଲେ ଶ୍ରୀ ସତ୍ୟପ୍ରିୟ ମହାନ୍ତି । ଯାହା କିଛି ଟଙ୍କା ଆଦାୟ କରୁଥିଲି, ତାହା ତାଙ୍କ ପାଖରେ ରଖୁଥାଏ । ସତ୍ୟପ୍ରିୟ ବାବୁ ଦଳର ଟଙ୍କା ରଖିବାକୁ ଭାରି ଭୟ କରୁଥାଆନ୍ତି । ଟଙ୍କା ରଖିବାପାଇଁ ଓ ଆଣିବାପାଇଁ ତାଙ୍କ ପାଖକୁ ଗଲାବେଳକୁ ସେ ବଡ଼ ଛାନିଆ ହେଉଥିଲେ । ମୁଁ ମୋ ଗାଡ଼ିରେ ତାଙ୍କ ଘରକୁ ନ ଯାଇ ଏବଂ ଦୂରରେ ଗାଡ଼ି ରଖି ଚାଲିକରି ଗଲେ ଭଲହେବ ଏବଂ ତା'ଦ୍ୱାରା ପୁଲିସର ଦୃଷ୍ଟି ପଡ଼ିବନାହିଁ ବୋଲି କହି ଚାଲି ଚାଲି ତାଙ୍କ ଘରକୁ ଯିବାପାଇଁ ସେ ମୋତେ ଅନୁରୋଧ କରିଥିଲେ । ମୁଁ ତାଙ୍କୁ କହିଥିଲି ଯେ ମୁଁ ତ ସବୁବେଳେ ମଟରଗାଡ଼ିରେ ଯିବାଆସିବା କରେ; ସେଭଳି ସ୍ଥଳେ ଚାଲିକରି ଗଲେ ପୁଲିସର ସନ୍ଦେହ ବଢ଼ିବ । ଜରୁରୀ ପରିସ୍ଥିତି ସମୟରେ ସତ୍ୟପ୍ରିୟବାବୁ ଅନେକ ସମୟରେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ବାପା ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ସହ ଟେଲିଫୋନରେ କଥାବାର୍ତ୍ତା ହୁଅନ୍ତି । କେତେଥର ସେ ତାଙ୍କ ସହିତ କଥାବାର୍ତ୍ତା ହେଉଥିବା ସମୟରେ ମୁଁ ସେଠାରେ ପହଞ୍ଚିଯାଇ ଜାଣିପାରିଥିଲି । ଜରୁରୀ ପରସ୍ଥିତି ଘୋଷଣା ହେବାର ତିନି ମାସ ପରେ ମୁଁ ସ୍ଥିରକରିଥିଲି ଯେ ପ୍ରତିଦିନ କଟକରୁ ଆସି ଲୋକଦଳ ଅଫିସ୍ କାର୍ଯ୍ୟ କରିବା ପରିବର୍ତ୍ତେ ସପ୍ତାହରେ ତିନି ଦିନ କଟକରେ ଏବଂ ଅବଶିଷ୍ଟ ଦିନ ଭୁବନେଶ୍ୱରରେ ରହି କାର୍ଯ୍ୟ କରିବି । ତାହା ହିଁ କରିଥିଲି । ଭୁବନେଶ୍ୱରରେ ମୋ ଘର ପାଖରେ ମଧ ଗୁଇନ୍ଦା ପୁଲିସ ମୁତୟନ କରାଯାଇଥିଲା । ସେମାନଙ୍କର ଗାଡ଼ି ଯେଉଁଠାରେ ରହୁଥାଏ, ତାହା ମୁଁ ମୋ ଝରକାରୁ ଦେଖିପାରୁଥାଏ । ମୁଁ ଗାଡ଼ିରେ ବାହାରିଲେ ସେମାନଙ୍କ ଗାଡ଼ି ମୋ ପଛେ ପଛେ ଯାଉଥାଏ । ବେଳେବେଳେ ମୁଁ ବାଟରେ ଗାଡ଼ି ବନ୍ଦକରିଦେଲେ ସେମାନେ ପଛରେ ଯାଇ ମୋତେ ହାବୁଡୁଥିଲେ । ମୋ ସହିତ ଦେଖାହେଲେ ନମସ୍କାର କରି ହସିଦେଇ ପଳାନ୍ତି । ମୋତେ କାହିଁକି ଗିରଫ କରୁନଥିଲେ, ମୁଁ ସେ କଥା ବୁଝିପାରୁନଥିଲି । ଶ୍ରୀ ନଟବର ପ୍ରଧାନ ଓଡ଼ିଶା ବିଧାନସଭାର ଲୋକଦଳ ନେତା ଥିଲେ । ସେ ସବୁ ସମୟରେ ଆସି ମୋ ସହିତ ପରାମର୍ଶ କରୁଥିଲେ । ସେ ଗିରଫ ହେଲେ; ମାତ୍ର ମୋତେ ଗିରଫ କରାଗଲାନାହିଁ । ଜରୁରୀକାଳୀନ ପରିସ୍ଥିତି ବିଚାର କରି କି କି କାର୍ଯ୍ୟାନୁଷ୍ଠାନ କରାଯିବ, ତା'ର ବିଚାର କରାଯିବା ପାଇଁ ରାଜ୍ୟ ସରକାରଙ୍କର ଗୋଟିଏ ଉଚ୍ଚପାହ୍ୟା କମିଟି ଥିଲା । ସେଥିରେ ଚିଫ୍ ସେକ୍ରେଟେରୀ, ହୋମ୍ ସେକ୍ରେଟେରୀ, ପୁଲିସ ଆଇ.ଜି. ଓ ଗୁଇନ୍ଦା ବିଭାଗର ଡି.ଆଇ.ଜି. ପ୍ରଭୃତି ସଭ୍ୟ ଥିଲେ । ସେଥିରେ କୁଆଡ଼େ କେତେଥର ମୋ ବିଷୟ ଉଠିଥିଲା । ମୋ ବିଷୟ ପଡ଼ିଲେ ସମସ୍ତେ ପରସ୍ପରକୁ ଅନାଅନି ହେଉଥିଲେ ଏବଂ କିଛି ନିଷ୍ପତ୍ତି ନେଉନଥିଲେ । ଜରୁରୀ ପରିସ୍ଥିତି ଘୋଷଣା ହେବାର ପ୍ରାୟ ସାତ ଦିନ ପୂର୍ବରୁ କଳାହାଣ୍ଡି ଜିଲ୍ଲାର ଭବାନିପାଟଣା ସହରରେ ଗୋଟିଏ ସଭାରେ ବିଜୁବାବୁ, ମୁଁ ଓ ଶ୍ରୀ ଭାଗବତ ବେହେରା ଭାଷଣ ଦେଇଥିଲୁ । ସେହି ସଭାରେ ବିଜୁବାବୁ ରକ୍ତାକ୍ତ ବିପ୍ଳବ କଥା କହିଥିଲେ । ଗୁଇନ୍ଦା ବିଭାଗ ପୁଲିସ ଆମ ତିନି ଜଣଙ୍କ ଭାଷଣ ଟିପିଆଣିଥିଲେ । ତାହା କୁଆଡ଼େ ଦିନେ ସେହି ଉଚ୍ଚପାହ୍ୟା କମିଟି ଆଗରେ ପଢ଼ାଯାଇଥିଲା । ମୋ ଭାଷଣରୁ କୌଣସି ଆପତ୍ତିଜନକ ବା ହିଂସାତ୍ମକ କଥାର କିଛି ସୂତ୍ର ମିଳିନଥିଲା । ଓଡ଼ିଶାରେ ମିସା ବଳରେ (Maintenance of Internal Security Act) ଓ ଅନ୍ୟାନ୍ୟ ଅଟକ ଆଇନବଳରେ ଯେଉଁସବୁ ଗିରଫଦାରୀ କରାଯାଇଥିଲା ତାହା ସଂପୂର୍ଣ୍ଣ ଭାବରେ ନନ୍ଦିନୀ ଦେବୀଙ୍କର ମର୍ଜି ଅନୁସାରେ ହୋଇଥିଲା । ତାଙ୍କ ସ୍ଥିତି ଉପରେ ଆଞ୍ଚ ଆଣିଲାଭଳି ଲୋକଙ୍କୁ ବାହାରେ ରଖାଇ ନଦେବା ଥିଲା ତାଙ୍କ ମସୁଧା । ସେଥିପାଇଁ ବିଧାନସଭାରେ ଯାହାଙ୍କଠାରୁ କଟୁ ସମାଲୋଚନା ସେ ଆଶଙ୍କା କରୁଥିଲେ, ସେ ପ୍ରକାର

ସଭ୍ୟଙ୍କୁ ପ୍ରଥମେ ସେ ଜେଲ୍‌କୁ ପଠାଇବାପାଇଁ ବ୍ୟବସ୍ଥା କରିଥିଲେ । ଯାଜପୁରର ଲୋକଦଳ ବିଧାନସଭା ସଦସ୍ୟ ଶ୍ରୀ ଅଶୋକ ଦାସ ବିଧାନସଭାରେ ରାଜ୍ୟପାଳ ଶ୍ରୀ ହରି ଭାଷଣ ଦେଲାବେଳେ ଗଣ୍ଡଗୋଳ କରିଥିଲେ ବୋଲି ତାଙ୍କ ଉପରେ ଆକ୍ରୋଶ ରଖି ତାଙ୍କୁ ମିସାରେ ଗିରଫ କରି ଜେଲ୍‌କୁ ପଠାଯାଇଥିଲା । ବିରୁଦ୍ଧ ଦଳର ବିଶେଷକରି ଲୋକଦଳର ବିଧାନସଭା ସଦସ୍ୟମାନଙ୍କ ଉପରେ ତାଙ୍କର ବିଶେଷ କୋପଦୃଷ୍ଟି ପଡ଼ିଥିଲା । ମୁଁ ବିଧାନସଭା ସଦସ୍ୟ ନଥିବାରୁ ବୋଧହୁଏ ନନ୍ଦିନୀ ଦେବୀଙ୍କର କୋପଦୃଷ୍ଟିରେ ପଡ଼ିନଥିଲି । ପରବର୍ତ୍ତୀ କାଳରେ ଅନ୍ୟ ଏକ ଖବର ମଧ୍ୟ ଶୁଣାଯାଇଥିଲା । ମୋତେ ଗିରଫ ନକରିବାପାଇଁ ମୁଖ୍ୟମନ୍ତ୍ରୀ ତାଙ୍କର ଜଣେ ପ୍ରଭାବଶାଳୀ ସହକାରୀ ଓ ଅନ୍ୟ ଜଣେ ବିଶ୍ୱସ୍ତ ସହକର୍ମୀଙ୍କ ସହିତ ବହୁତ ବିଚାର-ଆଲୋଚନା କଲା ପରେ ନିଜେ ସ୍ଥିର କରିଥିଲେ । ଏହାଦ୍ୱାରା କଂଗ୍ରେସ ସରକାର ସହିତ ମୁଁ ଗୋପନ ସମ୍ପର୍କ ରଖି ଗିରଫ ହେଉନାହିଁ ବୋଲି ଆମ ଲୋକଦଳ ମହଲରେ ମୋ ପ୍ରତି ଘୃଣା ଓ ବିଦ୍ୱେଷଭାବ ଜାତ କରାଇବାର ମସୁଧା କରାଯାଇଥିଲା । ୧୯୭୩ ମସିହାରେ ମୋ ଉଦ୍ୟମରେ ନନ୍ଦିନୀଙ୍କ ସରକାରର ଯେଉଁଳି ପତନ ଘଟିଲା, ଏହାଦ୍ୱାରା ତାହାର ଉପଯୁକ୍ତ ପ୍ରତିଶୋଧ ନେଇହେବ ଏବଂ ବିରୋଧୀଦଳ ବନ୍ଧୁମାନେ ମୋତେ ସନ୍ଦେହଚକ୍ଷୁରେ ଦେଖିଲେ ମୁଁ ଏକରକମ ଅସହାୟ ଅବସ୍ଥାରେ ପଡ଼ିବି ବୋଲି ଏକ ଫିକର କରାଯାଇଥିଲା । କେତେକ ସୂତ୍ରରୁ ମୁଁ ଗିରଫ ନହେବା ସମ୍ପର୍କରେ ଜାଣିଶୁଣି ଗୁଜବ ସୃଷ୍ଟି କରାଯାଉଥିଲା । ରାଜ୍ୟସଭାପାଇଁ ମୁଁ ଯେତେବେଳେ ପ୍ରାର୍ଥୀ ହେଲି, ସେତେବେଳେ କୁଆଡ଼େ ମୋତେ ପୂର୍ବରୁ ଜେଲ୍‌କୁ ପଠାଇଦେଇ ନ ଥିବା ହେତୁ ନନ୍ଦିନୀ ଦେବୀ ଅବଶୋଷ କରିଥିଲେ । ଯାହା ଉପରେ ନନ୍ଦିନୀ ଦେବୀଙ୍କର ଆକ୍ରୋଶ ହେଉଥାଏ, ତାଙ୍କୁ ସେ ଅଟକ କରି ଜେଲ୍‌ରେ ରଖୁଥିଲେ । 'ମିସା'ର ଅପବ୍ୟବହାର ଓଡ଼ିଶାରେ ଶ୍ରୀମତୀ ନନ୍ଦିନୀ ଦେବୀ ଯେପରି କରିଥିଲେ, ଆମର ଦୁଇଟି ପଡ଼ୋଶୀ ରାଜ୍ୟ ପଶ୍ଚିମବଙ୍ଗଳା ଓ ଆନ୍ଧ୍ରପ୍ରଦେଶରେ ସେପରି ହୋଇନଥିଲା । ଏକଥା କେନ୍ଦ୍ର ସରକାରଙ୍କର ସ୍ୱରାଷ୍ଟ୍ର ମନ୍ତ୍ରୀ ଶ୍ରୀ ବ୍ରହ୍ମାନନ୍ଦ ରେଡ଼ି ଗୋଟିଏ ବିବୃତିରେ ସ୍ୱୀକାର କରିଥିଲେ । ଜରୁରୀକାଳୀନ ପରିସ୍ଥିତିରେ କେବଳ ଶ୍ରୀ ବିଜୁ ପଟ୍ଟନାୟକଙ୍କର ଅଟକ ଆଦେଶ କେନ୍ଦ୍ର ସରକାର ଦେଇଥିଲେ; ଅନ୍ୟ ଯାହାସବୁ ଓଡ଼ିଶାରେ ଘଟିଥିଲା ତାହା ନନ୍ଦିନୀ ଦେବୀଙ୍କର ମର୍ଜିରେ ହୋଇଥିଲା ବୋଲି ସେ କହିଥିଲେ । ନନ୍ଦିନୀ ଦେବୀଙ୍କର ଶାରୀରିକ ଅସୁସ୍ଥତା ଓ ତାଙ୍କ ସରକାର ଭାଙ୍ଗିଯିବ ବୋଲି ଗୁଜବ ରଟନା କରିବା ଅଭିଯୋଗରେ ବିଧାନସଭା ସଦସ୍ୟ ଶ୍ରୀ ଅଇଁଠୁ ସାହୁ ଓ ବାଲେଶ୍ୱରର କଂଗ୍ରେସକର୍ମୀ ଶ୍ରୀ ଲକ୍ଷ୍ମଣ କମିଳାଙ୍କୁ ଗିରଫ କରାଯାଇଥିଲା । କଟୁ ସମାଲୋଚନା କରନ୍ତି ବୋଲି ତାଙ୍କ କଂଗ୍ରେସ ଦଳର ବିଧାନସଭା ସଦସ୍ୟ ଶ୍ରୀ ତ୍ରିଲୋଚନ କାନୁନ୍‌ଗୋଙ୍କୁ ମଧ୍ୟ ଅଟକବନ୍ଦୀ କରାଯାଇଥିଲା । ଭୟଭୀତ କରାଇ ଟଙ୍କା ଆଦାୟ କରିବା ଉଦ୍ଦେଶ୍ୟରେ ବହୁ ବ୍ୟବସାୟୀଙ୍କୁ ମିସା ଆଇନରେ ଗିରଫ କରି ଅଟକ କରାଯାଇଥିଲା । କଟକରେ ଜଣେ ବଡ଼ ବ୍ୟବସାୟୀଙ୍କୁ ମିସା ଆଇନରେ ଗିରଫ କରାଯାଇଥିଲା । କେବଳ ତାଙ୍କ ଘର ପାଖ କଟକ ଜେଲ୍‌ରେ ରହିବାପାଇଁ ଉକ୍ତ ବ୍ୟବସାୟୀଙ୍କୁ ବହୁ ଅର୍ଥ ବିନିଯୋଗ କରିବାକୁ ପଡ଼ିଥିଲା । ମଝିରେ ମଝିରେ ତାଙ୍କର ବଦଳି ଅନ୍ୟ ଜେଲ୍‌କୁ ହେବ ବୋଲି ଗୁଜବ ଉଠାଇଦିଆଯାଉଥିଲା । ସେକଥା ଶୁଣି ସେ ଅସ୍ତବ୍ୟସ୍ତ ହୋଇଉଠନ୍ତି ଏବଂ କିଛି ଅଧିକା ଟଙ୍କା ଖର୍ଚ୍ଚକରି ଆଶ୍ୱସ୍ତ ହୁଅନ୍ତି ।

ଅକ୍ଟୋବର ମାସ ଦୁଇ ତାରିଖ ଗାନ୍ଧୀଜୟନ୍ତୀ ଦିନ ଭଦ୍ରକରେ ମହତାବଙ୍କ ଘର ପାଖରେ ଗାନ୍ଧୀ ଜୟନ୍ତୀ ଉତ୍ସବରେ ପୌରୋହିତ୍ୟ କରିବାପାଇଁ ମୋତେ ନିମନ୍ତ୍ରଣ ଆସିଥିଲା । ମୁଁ ସେଠାକୁ ଯିବି ବୋଲି ସମ୍ମତି ଦେଇଥିଲି । ସେଦିନ ଗାନ୍ଧୀ ଜୟନ୍ତୀ ଭଦ୍ରକରେ ଖୁବ୍ ଆଡ଼ମ୍ବରରେ ପାଳନ କରିବାପାଇଁ ଉଦ୍ୟୋକ୍ତାମାନେ ସ୍ଥିରକରିଥିଲେ । ମୁଁ ପହିଲାଦିନ ସନ୍ଧ୍ୟାବେଳେ ଭଦ୍ରକରେ ପହଞ୍ଚି ଡାକବଙ୍ଗଳାରେ ରହିଥିଲି । ବେଶୀ ରାତିରେ ମୋ ପ୍ରତି ସହାନୁଭୂତିଶୀଳ ଜଣେ ବଡ଼ ପୁଲିସ ଅଫିସର ଅତି ସନ୍ତର୍ପଣରେ ଡାକବଙ୍ଗଳାକୁ ଆସି ମୋତେ ଏକାନ୍ତ ଅନୁରୋଧ କରିଥିଲେ ଯେ ଗାନ୍ଧୀ ଜୟନ୍ତୀ ସଭାରେ ମୋ

ଭାଷଣରେ ଜରୁରୀ ପରିସ୍ଥିତି କଥା କିଛି ନକହି ଆଉ ମୋର ଯାହା କହିବାର କଥା କହିଲେ ଭଲହେବ । ଗାନ୍ଧୀ ଜୟନ୍ତୀ ଉତ୍ସବପାଇଁ ଯେଉଁଠାରେ ସଭା ହେବାର କଥା ଥିଲା ତା'ରି ପାଖରେ ଭଦ୍ରକ ଜେଲ୍‌ଖାନା । ଜେଲ୍‌ଖାନାରେ ସେତେବେଳେ ବିରୋଧୀଦଳର ବହୁ କର୍ମୀ ଅଟକ ବନ୍ଦୀ ହୋଇ ରହିଥା'ନ୍ତି । ସେମାନେ ମୋର ଭାଷଣ ଶୁଣିବାପାଇଁ ଇଚ୍ଛା ପ୍ରକାଶ କରିଥିଲେ । ତେଣୁ ସଭାସ୍ଥଳରେ ମାଇକ୍‌ର ମୁହଁ ଜେଲ୍‌ଖାନା ଆଡ଼କୁ କରାଯାଇଥିଲା । ସଭାର ଅଳ୍ପଦୂରରେ ଭଦ୍ରକ ଥାନା ଥିଲା । ସେଠାରେ ସେଦିନ ପୁଲିସଗାଡ଼ି ଭର୍ତ୍ତିହୋଇ ରହିଥିଲା । ମୁଁ ମୋ ଭାଷଣରେ କେବଳ ଏମର୍ଜେନ୍ସି ଶବ୍ଦଟି ଉଚ୍ଚାରଣ ନକରି ଆଉସବୁ କଥା କହିଥିଲି ଏବଂ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ତୀବ୍ର ସମାଲୋଚନା କରିଥିଲି । ଗାନ୍ଧୀଜୀଙ୍କର ଭାରତଛାଡ଼ ଆନ୍ଦୋଳନବେଳେ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ୍, ଗାନ୍ଧୀ ଓ ଅନ୍ୟାନ୍ୟ କଂଗ୍ରେସ ନେତାଙ୍କୁ ରାତାରାତି ଜେଲ୍‌ରେ ପୂରାଇଦେଇ କଂଗ୍ରେସ ଧ୍ୱଂସ ହୋଇଗଲା ବୋଲି ଆତ୍ମସନ୍ତୋଷ ଲାଭକରିଥିଲେ । ପରେ ତାହା କିପରି ଭ୍ରାନ୍ତ କଥା ବୋଲି ପ୍ରମାଣିତ ହେଲା, ସେକଥା ଶ୍ରୀମତୀ ଇନ୍ଦିରା ଗାନ୍ଧୀ ମନେରଖିବା ଉଚିତ ବୋଲି ସତର୍କ କରାଇଦେଇଥିଲି । ସତ୍ୟ ଓ ନ୍ୟାୟ ଉପରେ ପ୍ରତିଷ୍ଠିତ ଆନ୍ଦୋଳନ କେବେ ଧ୍ୱଂସ ହୁଏନାହିଁ; ବରଂ ତାହା ଭିତରେ କୁହୁଳି କୁହୁଳି ବିସ୍ଫୋରଣ ଘଟାଏ । ତାହା ହିଁ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ମନେରଖିବା ଉଚିତ ବୋଲି ମୁଁ କହିଥିଲି । ମହାତ୍ମା ଗାନ୍ଧୀ ଓ ପଣ୍ଡିତ ଜବାହରଲାଲ ନେହେରୁ ଶ୍ରୀ ଜୟପ୍ରକାଶ ନାରାୟଣଙ୍କର ଯେଉଁ ଉଚ୍ଚ ପ୍ରଶଂସା କରୁଥିଲେ, ସେକଥା ମୁଁ ଉକ୍ତ ସଭାରେ କହି ଜୟପ୍ରକାଶଙ୍କର ଦୀର୍ଘଜୀବନ କାମନା କରିଥିଲି । ସଭା ଶେଷହେବା ପରେ ମୋର ବନ୍ଧୁମାନେ ଆଶଙ୍କା କରିଥିଲେ ଯେ ମୁଁ ମୋର ଭାଷଣରେ ପ୍ରଧାନମନ୍ତ୍ରୀଙ୍କର ତୀବ୍ର ସମାଲୋଚନା କରିଥିବାରୁ ନିଶ୍ଚୟ କିଛି ସମୟ ପରେ ଗିରଫ ହୋଇଯିବି । ଭଦ୍ରକରେ ଗିରଫ ହେଲେ ଭଲ ହେବ ବୋଲି ମୁଁ ମଧ୍ୟ ପ୍ରସ୍ତୁତ ହୋଇଯାଇଥିଲି; ମାତ୍ର ସେଠାରେ କିଛି ହେଲାନାହିଁ ।

ଜରୁରୀକାଳୀନ ପରିସ୍ଥିତିର ସୁବିଧାନେଇ କେତେକ ଅଫିସର୍ ମଧ୍ୟ ନିଜର ଦାଉ ସାଧିବାକୁ ଆରମ୍ଭ କରିଦେଇଥିଲେ । ଏହି କାରଣରୁ ଚାକିରିରୁ ବରଖାସ୍ତ କରାଯାଇଥିବା ଜଣେ ଉଚ୍ଚପାହ୍ୟା ପୁଲିସ ଅଫିସର୍ ଯତୀନ୍ଦ୍ର ସାମଲଙ୍କୁ ମିସାରେ ଗିରଫ କରି ଜେଲ୍‌ରେ ପୂରାଇଦିଆଗଲା । ସେହିଭଳି ଦଶା ଭୋଗିବାକୁ ପଡ଼ିଥିଲା ବାଲେଶ୍ୱରର ଜଣେ ସାମ୍ବାଦିକ ଅନିରୁଦ୍ଧ ନନ୍ଦଙ୍କୁ । ବାଲେଶ୍ୱରର ଜଣେ ଏସ୍.ପି.ଙ୍କର ଜରୁରୀକାଳୀନ ଅତ୍ୟାଚାରର କେତେକ କାହାଣୀ ଅନିରୁଦ୍ଧବାବୁ ପ୍ରଜାତନ୍ତ୍ର କାଗଜରେ ପ୍ରକାଶ କରି ତାଙ୍କର କ୍ରୋଧର କାରଣ ହୋଇଥିଲେ । ଦିନେ ଅନିରୁଦ୍ଧବାବୁ କଟକ ଆସି ମୋତେ କହିଲେ ଯେ ବ୍ୟକ୍ତିଗତ କ୍ରୋଧ ହେତୁ ତାଙ୍କୁ ବାଲେଶ୍ୱରରେ ଏସ୍.ପି. ଅଟକ ଆଇନରେ ବନ୍ଦୀ କରିବେ ବୋଲି ଉଦ୍ୟମ କରୁଛନ୍ତି । ମୁଁ ତାହା ବିଶ୍ୱାସ କରିନଥିଲି । ଶ୍ରୀ ନନ୍ଦଙ୍କୁ ଆଇ.ଜି.ଙ୍କ ପାଖକୁ ପଠାଇଥିଲି ଏବଂ ମୁଁ ପଠାଇଛି ବୋଲି ଆଇ.ଜି. ଶ୍ରୀ ସ୍ୱାଇଁଙ୍କୁ କହିବାପାଇଁ କହିଥିଲି । ଅନିରୁଦ୍ଧବାବୁ ଆଇ.ଜି.ଙ୍କୁ ସବୁକଥା କହିଥିଲେ ଓ ଆଇ.ଜି. ତାଙ୍କଠାରୁ ସବୁକଥା ଶୁଣି ତାଙ୍କୁ ଅଭୟବାଣୀ ଦେଇଥିଲେ । ଆଇ.ଜି.ଙ୍କ କଥାରେ ବିଶ୍ୱାସ କରି ଅନିରୁଦ୍ଧବାବୁ ବାଲେଶ୍ୱର ଯାଇଥିଲେ ଏବଂ ସେଠାରେ ଅଟକ ଆଇନରେ ଗିରଫହୋଇ ଜେଲ୍ ଯାଇଥିଲେ । ପୁରୀ ଜିଲ୍ଲା ବେଗୁନିଆଁରେ ଶ୍ରୀ ହରି ସାହୁ ନାମକ ଜଣେ ଯୁବକ ଲୋକଦଳର ବଡ଼ ସମର୍ଥକ ଥିଲେ । ତାଙ୍କ ସାହାଯ୍ୟରେ ସେ ନିର୍ବାଚନମଣ୍ଡଳୀର ଲୋକଦଳ ପ୍ରାର୍ଥୀ ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟ ନିର୍ବାଚନରେ ଜୟଲାଭ କରିଥିଲେ । ଜରୁରୀକାଳୀନ ପରିସ୍ଥିତିବେଳେ ସତ୍ୟାନନ୍ଦବାବୁ ଲୋକଦଳ ଛାଡ଼ି ଶାସକ କଂଗ୍ରେସରେ ଯୋଗଦେଇଥିଲେ । ମୁଁ ଶ୍ରୀ ଚମ୍ପତିରାୟଙ୍କୁ ଅନେକ ଥର ଫୋନ୍‌ରେ ଡାକିଥିଲି ମୋତେ ଦେଖାକରିବାକୁ । ସେ ମୋତେ ଦେଖାକରିବାକୁ କୁହନ୍ତି; ମାତ୍ର ଆଉ ଆସନ୍ତିନାହିଁ । ତେଣୁ ମୁଁ ଶ୍ରୀ ହରି ସାହୁଙ୍କୁ ଡକାଇ ସତ୍ୟାନନ୍ଦବାବୁଙ୍କ ବ୍ୟବହାର କଥା କହିଥିଲି । ସେ ଯାଇ ସତ୍ୟାନନ୍ଦବାବୁଙ୍କୁ ଦେଖାକରି କଡ଼ାଭାଷାରେ ସମାଲୋଚନା କରି ସେ କିପରି ଲୋକଦଳକୁ ଫେରିଆସିବେ ସେଥିପାଇଁ ଉଦ୍ୟମ କରିଥିଲେ । ଏଥିପାଇଁ ହରିବାବୁ ବାରମ୍ବାର

ଶ୍ରୀ ଚମ୍ପତିରାୟଙ୍କ ବସାକୁ ଦୌଡ଼ାଦୌଡ଼ି କରିଥିଲେ । ଶ୍ରୀ ଚମ୍ପତିରାୟ ମୁଖ୍ୟମନ୍ତ୍ରୀଙ୍କ ସହିତ ଚକ୍ରାନ୍ତ କରି ଅଫିସରମାନଙ୍କ ଅନିଚ୍ଛାସତ୍ତ୍ୱେ ତାଙ୍କୁ ଜେଲ୍‌ରେ ଅଟକବନ୍ଦୀ ରଖାଇ ଶ୍ରୀ ସାହୁଙ୍କର ପ୍ରକାଶ୍ୟ ଭର୍ତ୍ସନାରୁ ରକ୍ଷା ପାଇଥିଲେ ।

## ମୋ ଘରେ କର୍ପୂରୀ ଠାକୁର

ଜରୁରୀକାଳୀନ ପରିସ୍ଥିତି ଭିତରେ ସନ୍ତ୍ରାସବାଦୀ ଭଙ୍ଗାରୁଜା କାର୍ଯ୍ୟକ୍ରମର ମୁଁ ବିରୋଧ କରିଥିଲି । ୧୯୭୫ ମସିହା ଡିସେମ୍ବର ମାସରେ ଦିନେ କଲିକତାରୁ ଶ୍ରୀମତୀ ଆଭା ମାଇତି ମୋତେ ଫୋନ୍‌କରି କହିଲେ ଯେ ମେଦିନୀପୁର ଜିଲ୍ଲାର ଖାଁ ସାହେବ ବୋଲି ଜଣେ ଭଦ୍ରଲୋକ ଓଡ଼ିଶାରେ ଥିବା ତାଙ୍କ ଜମି ସମ୍ବନ୍ଧରେ ମୋ ସହିତ କଥାବାର୍ତ୍ତା କରିବେ ଏବଂ ମୁଁ ତାଙ୍କୁ ସାହାଯ୍ୟ କରିବାପାଇଁ ସେ ମୋତେ ଅନୁରୋଧ କରିଥିଲେ । ମେଦିନୀପୁରନିବାସୀ ବହୁ ବ୍ୟକ୍ତିଙ୍କର ଜମିବାଡ଼ି ବାଲେଶ୍ୱର ଓ କଟକ ଜିଲ୍ଲାର ସମୁଦ୍ର ଉପକୂଳରେ ଅଛି । ତେଣୁ ଭାବିଥିଲି ଯେ ସେହିଭଳି କୌଣସି ଜଣେ ବ୍ୟକ୍ତି ମୋ ପାଖକୁ ଆସୁଥିବେ । ଦିନେ ସନ୍ଧ୍ୟାବେଳେ ମୁଁ ମୋର କଟକ ଘରେ ବସିଛି, ମୋ ପାଖକୁ ଖବର ଆସିଲା ଯେ ଶ୍ରୀମତୀ ଆଭା ମାଇତିଙ୍କ ପାଖରୁ ଜଣେ ଲୋକ ଆସି ଅପେକ୍ଷା କରିଛନ୍ତି । ମୁଁ ତାଙ୍କ ପାଖକୁ ଗଲାବେଳେ ସେ ହଠାତ୍ ମୋ କାନ ପାଖରେ କହିଥିଲେ ଯେ ସେ ହେଉଛନ୍ତି ଶ୍ରୀ କର୍ପୂରୀ ଠାକୁର । ସେତେବେଳେ କଟକର ଶ୍ରୀ ରାଜେନ୍ଦ୍ର ସିଂହ ପ୍ରଭୃତି କେତେକ ଯୁବକ ମୋ ପାଖରେ ବସି ଗୁପ୍ତ ବୁଲେଟିନ୍ ପ୍ରଚାର ବିଷୟରେ କଥାବାର୍ତ୍ତା କରୁଥିଲେ । ସେମାନେ ଶ୍ରୀ କର୍ପୂରୀ ଠାକୁରଙ୍କୁ ଚିହ୍ନିପାରିନଥିଲେ । ସେମାନେ ଚାଲିଯିବା ପରେ ମୁଁ ଶ୍ରୀ କର୍ପୂରୀ ଠାକୁରଙ୍କ ସହିତ କଥାବାର୍ତ୍ତା ହୋଇଥିଲି । ସେ ସେତେବେଳେ ଆତ୍ମଗୋପନ କରି ବୁଲୁଥାଆନ୍ତି । କଲିକତା ଆସିବା ପୂର୍ବରୁ ସେ ନେପାଳରେ ଥିଲେ । ଜରୁରୀକାଳୀନ କଟକଣା ବିରୁଦ୍ଧରେ ଉତ୍କଟ ଜନମତ ପ୍ରକାଶପାଇଁ ସନ୍ତ୍ରାସବାଦୀ କାର୍ଯ୍ୟକ୍ରମ କିପରି ଜୋରସୋରରେ ଚାଲିବ, ସେ ବିଷୟରେ ଆଲୋଚନା କରିବାପାଇଁ ସେ ମୋ ପାଖକୁ ଆସିଥିଲେ । କଟକ ସନ୍ନିକଟ ମହାନଦୀ ଉପରେ ଥିବା ରେଳଲାଇନ୍ ଓ ଜାତୀୟ ରାଜପଥ ଉପରେ ଥିବା ପୋଲ ଦୁଇଟିକୁ କିପରି ଡିନାମାଇଟ୍ ଖଞ୍ଜି ଉଡ଼ାଇ ଦିଆଯାଇପାରିବ, ସେଇ ଉଦ୍ଦେଶ୍ୟରେ ଧ୍ୱଂସ କରିବାର ଦାୟିତ୍ୱ ମୁଁ ନେବାପାଇଁ ସେ ଅନୁରୋଧ କରିଥିଲେ । ସେ ପ୍ରକାର ରାଜନୈତିକ ଆଚରଣରେ ବିଶ୍ୱାସ କରେ ନାହିଁ ବୋଲି ମୁଁ ତାଙ୍କୁ ବୁଝାଇଥିଲି । ଜାତୀୟ ସମ୍ପତ୍ତି ବିଶେଷରେ ଓଡ଼ିଶା ମଧଦେଇ ଯାଇଥିବା ପ୍ରଧାନ ପ୍ରଧାନ ରାସ୍ତାଘାଟକୁ ବିପର୍ଯ୍ୟସ୍ତ କରିବା ଆତ୍ମଘାତୀ କାର୍ଯ୍ୟ ହେବ ବୋଲି ମୁଁ କହିଥିଲି । କଲିକତାର ବନ୍ଧୁମାନଙ୍କ ସହିତ ସେ ପରାମର୍ଶ କଲାବେଳେ ସେହିଭଳି କିଛି ପ୍ରସ୍ତାବ ସେମାନଙ୍କୁ ଦେଇଛନ୍ତି କି ସେ କଥା ମଧ ତାଙ୍କୁ ପଚାରିଥିଲି । ସେ କହିଥିଲେ ଯେ ସେ ପ୍ରକାର ପ୍ରସ୍ତାବ ସେ ସେମାନଙ୍କୁ ଦେଇଛନ୍ତି ଓ ସେମାନେ ତାହା ବିଚାର କରୁଛନ୍ତି । ମୁଁ କଲିକତା ଯାଇ ସେଠାକାର ବନ୍ଧୁମାନଙ୍କ ସହିତ ସେ ବିଷୟରେ ଆଲୋଚନା କରିବି ବୋଲି କର୍ପୂରୀ ଠାକୁରଙ୍କୁ କହିଥିଲି । ଗୋଟିଏ ଦିନ ମୋ ପାଖରେ ରହି ସେ ପୁଣି କଲିକତା ଫେରିଯାଇଥିଲେ । କିଛିଦିନ ପରେ ମୁଁ କଲିକତା ଯାଇ କର୍ପୂରୀ ଠାକୁରଙ୍କ ପ୍ରସ୍ତାବ ବିଷୟ ପ୍ରଫୁଲ୍ଲ ଚନ୍ଦ୍ର ସେନ୍, ଅଶୋକ ଦତ୍ତ ଓ ଆଭା ମାଇତି ପ୍ରଭୃତିଙ୍କ ସହିତ ଆଲୋଚନା କରିଥିଲି । କର୍ପୂରୀ ଠାକୁରଙ୍କ ସେ ପ୍ରକାର ପ୍ରସ୍ତାବ ଅତି ଅବାସ୍ତବ ଓ ଅବାଞ୍ଛନୀୟ ବୋଲି ସେମାନେ ମୋତେ କହିଥିଲେ ଏବଂ ସେ ପ୍ରକାର କାର୍ଯ୍ୟ ଆମ୍ଭମାନଙ୍କଦ୍ୱାରା ହୋଇପାରିବନାହିଁ ବୋଲି ସେମାନେ ମତ ଦେଇଥିଲେ ।

# ଜରୁରୀ ପରିସ୍ଥିତିରେ ନବବାବୁ ଓ ମହତାବବାବୁଙ୍କ ଦଶା

ଏହାପରେ ଓଡ଼ିଶାରେ ଅଟକ ହୋଇଥିବା ରାଜନୈତିକ ବନ୍ଦୀଙ୍କ ଘରକୁ ଯାଇ ସେମାନଙ୍କର ପରିବାରବର୍ଗଙ୍କୁ ସଙ୍ଖୁଳିବାପାଇଁ ଲୋକଦଳ କେନ୍ଦ୍ର ଅଫିସ୍‌ରୁ ନିର୍ଦ୍ଦେଶ ଆସିଥିଲା । ସେହି ଅନୁସାରେ ବିଭିନ୍ନ ଜିଲ୍ଲାମାନଙ୍କରେ କେତେକ ବନ୍ଦୀମାନଙ୍କ ଘରକୁ ଯାଇ ସେମାନଙ୍କର ପରିବାରବର୍ଗଙ୍କୁ ଦଳପକ୍ଷରୁ ସାନ୍ତ୍ୱନା ଦେଇଥିଲି । ଆମର ଦୁଇଜଣ ଅତି ଉତ୍ସାହୀ ଯୁବକ ବନ୍ଧୁ ମହମ୍ମଦ ମମତାଜ ଓ ଶ୍ରୀ ଜ୍ଞାନ ପଟ୍ଟନାୟକ ଅଟକବନ୍ଦୀ ହୋଇ ସମ୍ବଲପୁର ଜେଲ୍‌ରେ ଥିଲେ । ସେମାନଙ୍କର ପରିବାରବର୍ଗଙ୍କୁ ଭେଟିବାପାଇଁ ମୁଁ ସେମାନଙ୍କ ଘରକୁ ଯାଇଥିଲି । ସେମାନଙ୍କ ପରିବାରବର୍ଗଙ୍କ ମନର ଦମ୍ଭ ଦେଖି ମୁଁ ସ୍ତମ୍ଭୀଭୂତ ହୋଇଥିଲି । ସେମାନଙ୍କର ପିଲାମାନେ ବନ୍ଦୀହୋଇଥିବାରୁ ସେମାନେ ଦୁଃଖ ନକରି ବରଂ ଗର୍ବ ଅନୁଭବ କରୁଥିଲେ । ସେଠାରେ ଜାଣିବାକୁ ପାଇଲି ଯେ ସମ୍ବଲପୁରରେ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ଯେଉଁ ଛାତ୍ର-ବିକ୍ଷୋଭ ହୋଇଥିଲା, ତା'ର ନେତୃତ୍ୱ କୁଆଡ଼େ ଏହି ଦୁଇଜଣ ଯୁବକ ବନ୍ଧୁ ନେଇଥିଲେ । ସେତେବେଳେ ସେମାନଙ୍କ ବିରୁଦ୍ଧରେ ନନ୍ଦିନୀ ଦେବୀଙ୍କର ଆକ୍ରୋଶ ଥିଲା । ଜରୁରୀକାଳୀନ ପରିସ୍ଥିତିର ସୁବିଧାନେଇ ସେମାନଙ୍କୁ ମିସା ଆଇନରେ ଗିରଫ କରାଯାଇ ଅଟକବନ୍ଦୀ କରାଯାଇଥିଲା । ଶ୍ରୀ ଅଶୋକ ଦାସ ବନ୍ଦୀହୋଇ ଅନୁଗୁଳ ଜେଲ୍‌ରେ ଥିଲେ । ମୁଁ ଯାଜପୁର ଯାଇ ତାଙ୍କ ଘରକୁ ଯାଇଥିଲି । ତାଙ୍କର ପରିବାରବର୍ଗ ମୋତେ ଦେଖି ବିଶେଷ ଖୁସି ହୋଇଥିଲେ । ବାରିପଦା ଜେଲ୍‌ରେ ଶ୍ରୀ ନବକୃଷ୍ଣ ଚୌଧୁରୀ ଅଟକ ହୋଇଥିଲେ । ଜେଲ୍‌ରେ ତାଙ୍କୁ ଗୋଟିଏ ଅସ୍ୱାସ୍ଥ୍ୟକର କୋଠରିରେ ରଖାଯାଇଥିଲା । ପୂର୍ବରୁ କୁଆଡ଼େ ସେହି କୋଠରିରେ କୌଣସି ଗୋଟିଏ ସାଂଘାତିକ ରୋଗରେ ଆକ୍ରାନ୍ତ ଜଣେ ବନ୍ଦୀଙ୍କୁ ରଖାଯାଇଥିଲା । ନବବାବୁ ଜଣେ ବିଶିଷ୍ଟ ନେତା ଓ ପୂର୍ବତନ ମୁଖ୍ୟମନ୍ତ୍ରୀ ଥିଲେ । ଜେଲ୍‌ରେ ଯେପରି ଭାବରେ ତାଙ୍କ ପ୍ରତି ଧ୍ୟାନ ଦେବା କଥା ତାହା କରାଯାଇନଥିଲା । ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଉପରେ କୌଣସି କାରଣରୁ ନନ୍ଦିନୀ ଦେବୀଙ୍କର ଆକ୍ରୋଶ ଥିଲା, ସେଇଥିପାଇଁ ଜେଲ୍‌ରେ ତାଙ୍କର ରହିବାପାଇଁ କୌଣସି ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଇନଥିଲା । ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କର ସ୍ତ୍ରୀ ଶ୍ରୀମତୀ ମାଳତୀ ଚୌଧୁରୀଙ୍କୁ ଗିରଫ କରି କଟକ ଜେଲ୍‌ରେ ସାଧାରଣ କୟେଦୀଙ୍କ ସାଙ୍ଗରେ ରଖାଯାଇଥିଲା ଏବଂ ତାଙ୍କ ପ୍ରତି ଭଲ ବ୍ୟବହାର କରାଯାଇନଥିଲା । ଆମ ରାଜ୍ୟର ଜଣେ ରାଜ୍ୟପାଳ ଶ୍ରୀ ଭଗବତ ଦୟାଲ ଶର୍ମା ପରେ ଏସବୁ କଥା ନବବାବୁଙ୍କଠାରୁ ଶୁଣି ବିଶେଷ ଭାବରେ ମର୍ମାହତ ହୋଇଥିଲେ ଏବଂ ସେ ନନ୍ଦିନୀ ଦେବୀଙ୍କର ଏ ପ୍ରକାର ବ୍ୟବହାରକୁ ଘୃଣାକରି ମୋ ଆଗରେ ତାଙ୍କର କ୍ରୋଧ ପ୍ରକାଶ କରିଥିଲେ । ବାରିପଦା ଜେଲ୍‌ରେ ନବବାବୁଙ୍କ ଶରୀର ବିଶେଷ ଅସୁସ୍ଥ ହେବାରୁ ତାଙ୍କୁ ପାରୋଲ୍‌ରେ ଖଲାସ କରାଯାଇଥିଲା । ସେ କଟକ ଆସି ତାଙ୍କ ଘରେ ରହି ଚିକିତ୍ସିତ ହେଉଥିଲେ । ସେ ଆସିଲାକ୍ଷଣି ମୁଁ ଯାଇ ତାଙ୍କୁ ଦେଖାକରିଥିଲି । ଗୋଇନ୍ଦା ପୁଲିସମାନେ ତାଙ୍କ ଘର ଚାରିପାଖରେ ବୁଲୁଥିଲେ । ତାଙ୍କର ପାରୋଲ୍ ସମୟ ପୂରିଲାବେଳକୁ ସେ ସମୟ ବଢ଼ାଇବାପାଇଁ ଆବେଦନ କରିବେନାହିଁ ବୋଲି କହିଥିଲେ । ସେ ସୁସ୍ଥ ହୋଇନଥାନ୍ତି; ତେଣୁ ଅସୁସ୍ଥତାସତ୍ତ୍ୱେ ତାଙ୍କୁ ପୁଣି ଜେଲ୍‌କୁ ଯିବାକୁ ପଡ଼ିବ । ଏହି ସମୟରେ ସ୍ୱର୍ଗତ ଶ୍ରୀ ବନମାଳୀ ପଟ୍ଟନାୟକ କଂଗ୍ରେସର ଜଣେ ଲୋକସଭା ସଦସ୍ୟ ଥିଲେ । ସେ ଶ୍ରୀମତୀ ଗାନ୍ଧୀଙ୍କୁ ଦେଖାକରି ଯେଉଁ ଅସୁବିଧା ପରିସ୍ଥିତି ଉପୁଜିବାକୁ ଯାଉଥାଏ ସେ ବିଷୟରେ ଖୋଲାଖୋଲି ବୁଝାଇଥିଲେ । ତେଣୁ ନବବାବୁଙ୍କ ପାରୋଲ୍ ସରିବା ଶେଷଦିନ ତାଙ୍କର ଅଟକବନ୍ଦୀ ଆଦେଶ ରଦ୍ଦ ହୋଇଥିବା ଚିଠି ଆସି ପହଞ୍ଚିଥିଲା । ଆଉ ତାଙ୍କୁ ଜେଲ୍‌କୁ ଯିବାକୁ ପଡ଼ିନଥିଲା । ଏହାପରେ ଶ୍ରୀମତୀ ସୁଭଦ୍ରା ମହତାବଙ୍କର ସ୍ୱାସ୍ଥ୍ୟ ଖରାପ ହେବାରୁ ଶ୍ରୀ ମହତାବଙ୍କୁ ପାରୋଲ୍‌ରେ ଖଲାସ କରାଯାଇଥିଲା । ସେ ସେତେବେଳେ ଭଞ୍ଜନଗର ଜେଲ୍‌ରେ ରହୁଥିଲେ । ଭୁବନେଶ୍ୱର କ୍ୟାପିଟାଲ୍ ହସ୍‌ପିଟାଲ୍ ନର୍ସିଂହୋମ୍‌ରେ ରହି ଶ୍ରୀମତୀ ମହତାବ

ଚିକିତ୍ସିତ ହେଉଥିଲେ । ଶ୍ରୀ ମହତାବ ସିଧା ଆସି ସେଇଠାରେ ପହଞ୍ଚିଥିଲେ । ମୁଁ ମଧ୍ୟ ସେଠାରେ ଯାଇ ପହଞ୍ଚିଥିଲି । ସେଠାରୁ ମହତାବବାବୁ ତାଙ୍କର ଏକାମ୍ର ନିବାସ ବାସଭବନକୁ ଯାଇଥିଲେ । ତାଙ୍କର ପାରୋଲ୍ ସମୟ କିପରି ବୃଦ୍ଧି କରାଯିବ ସେଥିପାଇଁ ସେ ଉଦ୍ୟମ କରିଥିଲେ । ପାରୋଲ୍‌ରେ ଖଲାସ ହୋଇ ଭୁବନେଶ୍ୱରରେ ରହଣି ସମୟରେ ଶ୍ରୀ ମହତାବଙ୍କର ମନର ଦମ୍ଭ ଭାଙ୍ଗି ପଡ଼ିଲାଭଳି ଲକ୍ଷ୍ୟକରାଯାଇଥିଲା । ଶ୍ରୀମତୀ ଗାନ୍ଧୀଙ୍କ ସ୍ୱେଚ୍ଛାଚାରୀ ଆଚରଣରେ ସେ ଆତଙ୍କିତ ହୋଇ ଅନିଶ୍ଚିତ ଭବିଷ୍ୟତ ସମ୍ବନ୍ଧରେ ତାଙ୍କ ମନରେ ଉପୁଜୁଥିବା ଆଶଙ୍କାକୁ ଲୁଚାଇନପାରି ଆମମାନଙ୍କ ଆଗରେ ପ୍ରକାଶ କରିପକାଉଥିଲେ । ବୋଧହୁଏ ଶାସକଗୋଷ୍ଠୀଙ୍କ ମନରେ ତାଙ୍କ ପ୍ରତି କୋହଳ ମନୋଭାବ ପୋଷଣ କରାଇବା ଉଦ୍ଦେଶ୍ୟରେ ଶ୍ରୀ ମହତାବ ଉପସ୍ଥିତ ପରିସ୍ଥିତିରେ ଜୟପ୍ରକାଶଜୀଙ୍କ ନେତୃତ୍ୱରେ କିଞ୍ଚିତ୍ ସମାଲୋଚନା କରିବାକୁ ଦ୍ୱିଧା ମନେକରିନଥିଲେ । ଶ୍ରୀ ନବକୃଷ୍ଣ ଚୌଧୁରୀ ବାହାରେ ରହୁଥିବାରୁ ତାଙ୍କ ସହିତ ମଧ୍ୟ ଜୟପ୍ରକାଶଜୀଙ୍କର ଆନ୍ଦୋଳନର ବ୍ୟର୍ଥତା ସମ୍ବନ୍ଧରେ ସେ ଆଲୋଚନା କରୁଥିବାର ମୁଁ ଜାଣିଥିଲି । ନେତୃତ୍ୱରେ ଗୁରୁତର ପ୍ରମାଦ ହେତୁ ଅତୀତରେ ମହାତ୍ମା ଗାନ୍ଧୀ ଯେପରି ସମୟସମୟରେ ତାଙ୍କର କାର୍ଯ୍ୟକ୍ରମ ତଥା ଆନ୍ଦୋଳନକୁ ପ୍ରତ୍ୟାହାର କରିନେଉଥିଲେ, ତା'ର ନଜିର ଦେଇ ସେହି ପ୍ରକାର ଆଚରଣ ଉପସ୍ଥିତ କ୍ଷେତ୍ରରେ ଜୟପ୍ରକାଶଜୀ ପ୍ରଦର୍ଶନ କରିବାକୁ ଅନୁରୋଧକରି ଗୋଟିଏ ଦୀର୍ଘ ତାରବାର୍ତ୍ତା ମହତାବବାବୁ ଜୟପ୍ରକାଶ ନାରାୟଣଙ୍କ ପାଖକୁ ପଠାଇଥିଲେ । ଏହାପରେ ମଧ୍ୟ ତାଙ୍କ ପ୍ରତି ରାଜ୍ୟ ସରକାରଙ୍କର ମତିଗତିରେ କୌଣସି ପରିବର୍ତ୍ତନ ଜଣାପଡ଼ିନଥିଲା । ତେଣୁ ଶେଷରେ ଶ୍ରୀମତୀ ନନ୍ଦିନୀ ଦେବୀଙ୍କୁ ସାକ୍ଷାତ୍ କରିବାପାଇଁ ସେ ବିଶେଷ ବ୍ୟାକୁଳତା ପ୍ରକାଶ କରିଥିଲେ । ମୁଁ ତାଙ୍କର ଏ ପ୍ରକାର ବ୍ୟାକୁଳତାକୁ ପସନ୍ଦ କରିନଥିଲି; ତାଙ୍କୁ ସେକଥା ଜଣାଇଦେଇଥିଲି ଏବଂ ଟେଲିଫୋନ୍ ଯୋଗେ ମୁଖ୍ୟମନ୍ତ୍ରୀଙ୍କ ସହିତ କଥା ହେବାକୁ କହିଥିଲି । ଗୋଟିଏ ବଡ଼ ଅଶୋଭନୀୟ ପରିସ୍ଥିତିରେ ସେ ଶ୍ରୀ ଚିତ୍ତରଞ୍ଜନ ନାୟକଙ୍କ ସହିତ ଯାଇ ନନ୍ଦିନୀ ଦେବୀଙ୍କୁ ଦେଖାକରିଥିଲେ । ମହତାବବାବୁ ନିଜେ ଯାଇ ନନ୍ଦିନୀ ଦେବୀଙ୍କୁ ଦେଖାକରିବାସତ୍ତ୍ୱେ ସେ ତାଙ୍କ ପାରୋଲ ସମୟ ବୃଦ୍ଧି ଆଦେଶ ଦେବାରେ ନାନା ଅସୁବିଧା ସୃଷ୍ଟିକରିଥିଲେ । ତାଙ୍କର ଉତ୍କଣ୍ଠା ବୃଦ୍ଧିକରାଇ ତାଙ୍କୁ ଅପମାନିତ କରିବା ଉଦ୍ଦେଶ୍ୟରେ ନିଷ୍ପତ୍ତିକୁ ଝୁଲେଇ ରଖୁଥିଲେ । ଦିନେ ସେ ଭୁବନେଶ୍ୱର ଜେଲ୍‌ରେ ଯାଇ ପହଞ୍ଚିଲାବେଳକୁ ସେଠାରେ ପାରୋଲ୍ ସମୟ ବୃଦ୍ଧି ଆଦେଶ ପାଇ ଫେରିଆସିଥିଲେ ।

## ରାଜ୍ୟସଭା ନିର୍ବାଚନରେ ଚତୁରତା

ମହତାବବାବୁ ପାରୋଲ୍‌ରେ ଖଲାସହୋଇ ଭୁବନେଶ୍ୱରରେ ଥିବା ସମୟରେ ୧୯୭୬ ମସିହା ମାର୍ଚ୍ଚ ମାସରେ ରାଜ୍ୟସଭାପାଇଁ ନିର୍ବାଚନ ହୋଇଥିଲା । ଓଡ଼ିଶା ବିଧାନସଭାରୁ ତିନିଜଣ ସଭ୍ୟ ନିର୍ବାଚିତ ହୋଇ ରାଜ୍ୟସଭାକୁ ଯିବାର କଥା । ବିଧାନସଭାରେ ସେତେବେଳକାର ଲୋକଦଳର ସଭ୍ୟସଂଖ୍ୟା ଅନୁସାରେ ଜଣେ ଲୋକଦଳ ପ୍ରାର୍ଥୀ ରାଜ୍ୟସଭାକୁ ନିଶ୍ଚୟ ନିର୍ବାଚିତ ହୋଇ ଯିବାର କଥା । ସେତେବେଳକାର ପରିସ୍ଥିତି ଯାହା ଥିଲା, ସେଥିରେ ମୁଁ ଦଳପକ୍ଷରୁ ରାଜ୍ୟସଭାକୁ ପ୍ରାର୍ଥୀ ହେଲେ ସୁବିଧା ହେବ ବୋଲି ଗୋଟିଏ ମତ ପ୍ରକାଶ ପାଇଥିଲା । କାରଣ ମୁଁ ଥିଲି ରାଜ୍ୟ ଶାଖା ଲୋକଦଳର ସଭାପତି । ରାଜ୍ୟସଭାକୁ ଯିବାପାଇଁ ମୁଁ ମଧ୍ୟ ନିଜେ ଇଚ୍ଛା ପ୍ରକାଶ କରିଥିଲି । ମୋର ରାଜ୍ୟସଭାକୁ ଯିବା ବିଷୟରେ ମହତାବବାବୁଙ୍କର ମତାମତ ଲୋଡ଼ିଥିଲି । ସେ କିନ୍ତୁ ସିଧାସଳଖ କିଛି ନକହି କଥାଟାକୁ ଏଡ଼ାଇଦେଲାଭଳି କଥାବାର୍ତ୍ତା କରିଥିଲେ । ମୁଁ ଛିଡ଼ାହୋଇ ହାରିଗଲେ ବଡ଼ ଖରାପ ହେବ ବୋଲି ସେ କହିଥିଲେ । ତା'ଛଡ଼ା ରାଜ୍ୟସଭା ନିର୍ବାଚନରେ ବହୁତ ଖର୍ଚ୍ଚ ହେବ ଏବଂ ତାହା ମୋ ପକ୍ଷରେ ବହନ କରିବା ସମ୍ଭବ ହେବନାହିଁ ବୋଲି ପରାମର୍ଶ ଦେଇଥିଲେ । ଆମ ଦଳର ସବୁ ସଦସ୍ୟଙ୍କ ପିଛା ବହୁତ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିବ ବୋଲି ସେ ମୋତେ ଧାରଣା ଦେଇଥିଲେ ।

ବିରୁଦ୍ଧ ଦଳର ନେତାମାନେ ସେତେବେଳେ ଜେଲ୍‌ରେ ଥିଲେ । ଆମ ବିଧାନସଭାର ଲୋକଦଳର କେତେକ ସଭ୍ୟ ମଧ୍ୟ ଅଟକହୋଇ ଜେଲ୍‌ରେ ଥାଆନ୍ତି । ସେ ଅବସ୍ଥାରେ ମୁଁ ଯଦି କୌଣସି କାରଣରୁ ହାରିଯାଏ, ସେଥିରେ ଆଉ ଅଧିକା ଖରାପଟା କ'ଣ ହେବ ବୋଲି ବିଚାରି ମୁଁ ମହତାବବାବୁଙ୍କ କଥାରେ ଏକମତ ହୋଇପାରୁନଥାଏ । ରାଜ୍ୟସଭା ନିର୍ବାଚନରେ ଦଳୀୟ ପ୍ରାର୍ଥୀପାଇଁ ବିଶେଷ କିଛି ଖର୍ଚ୍ଚ ହେବାର କଥା ନୁହେଁ ବୋଲି ମୁଁ ତାଙ୍କୁ ବୁଝାଇଥିଲି । ସେ କିନ୍ତୁ ମୋ ସହିତ ଏକମତ ହୋଇନଥିଲେ । ବହୁତ ଟଙ୍କା ଖର୍ଚ୍ଚ ହେବ ବୋଲି ସେ ମୋତେ ଧାରଣା ଦେଇଥିଲେ । ଏ ଅବସ୍ଥାରେ ଶ୍ରୀ ଚିତ୍ତରଞ୍ଜନ ନାୟକ ରାଜ୍ୟସଭାପାଇଁ ପ୍ରାର୍ଥୀ ହେଲେ ଟଙ୍କାପଇସା ଖର୍ଚ୍ଚ କରି ଜିତିଯାଇ ପାରିବେ ବୋଲି କାହାରିକାହାରିକୁ ସେ କହୁଥିବାର ଖବର ଆସି ମୋ ପାଖରେ ପହଞ୍ଚୁଥିଲା । କିନ୍ତୁ ଯେଉଁମାନେ ତାଙ୍କଠାରୁ ସେଭଳି ପରାମର୍ଶ ଶୁଣିଥିଲେ ସେମାନେ ମଧ୍ୟ ତାଙ୍କ କଥାଟାକୁ ନାପସନ୍ଦ କରୁଥିଲେ । ମୁଁ ପ୍ରାର୍ଥୀ ହେବା କଥା ଜାଣି ନନ୍ଦିନୀ ଦେବୀ କଳାହାଣ୍ଡି ମହାରାଜାଙ୍କର ଭାଇ ଶ୍ରୀ ବୀରକିଶୋର ଦେଓଙ୍କୁ ଆମ ଦଳ ପକ୍ଷରୁ ପ୍ରାର୍ଥୀ ହେବାପାଇଁ ଉସ୍‌କାଇଥିଲେ । ସେତେବେଳେ ବିଜୁବାବୁ ହରିଆନା ରାଜ୍ୟର ରୋହତକ ଜେଲରେ ଅଟକବନ୍ଦୀ ହୋଇଥିଲେ । ତାଙ୍କର ପରାମର୍ଶ ଲୋଡ଼ାଯିବାରୁ ସେ ମଧ୍ୟ ମୋ ସପକ୍ଷରେ ମତ ଦେଇଥିଲେ । ମୁଁ ଲୋକଦଳ ପକ୍ଷରୁ ରାଜ୍ୟସଭାପାଇଁ ପ୍ରାର୍ଥୀ ହେବା କଥା ଓଡ଼ିଶା ବିଧାନସଭାର ଲୋକଦଳ ନିଷ୍ପତ୍ତି କରିଥିଲା । ଏହି ସମୟରେ ଚୌଧୁରୀ ଚରଣ ସିଂହ ଜେଲ୍‌ରୁ ଖଲାସହୋଇଥିଲେ । ଲୋକସଭା ସଦସ୍ୟ କଳାହାଣ୍ଡିର ମହାରାଜା ଶ୍ରୀ ପ୍ରତାପକେଶରୀ ଦେଓ ତାଙ୍କୁ ଦେଖାକରି ପ୍ରକୃତ ଅବସ୍ଥାଟା ତାଙ୍କୁ ନକହି ତାଙ୍କର ଭାଇ ଶ୍ରୀ ବୀରକିଶୋର ଦେଇ ଆଉ ଜଣେ ପ୍ରାର୍ଥୀ ହେବେ ବୋଲି ତାଙ୍କ ପାଖରୁ ଅନୁମତି ନେଇଆସିଥିଲେ । ଚୌଧୁରୀ ଚରଣ ସିଂହ ସେତେବେଳେ ଥିଲେ ଭାରତୀୟ ଲୋକଦଳର ସଭାପତି । ତାଙ୍କ ପାଖରୁ ଗୋଟିଏ ନିବେଦନ ଦିଲ୍ଲୀ ଲୋକଦଳ ଅଫିସ୍‌ର ଜଣେ କର୍ମଚାରୀ ନିଜେ ହାତରେ ଧରି ଆସି ବିଧାନସଭାରେ ଆମର ଦଳପତି ଶ୍ରୀ ରାମପ୍ରସାଦ ମିଶ୍ରଙ୍କୁ ଦେଇଥିଲେ । ଦୁଇଜଣ ପ୍ରାର୍ଥୀ ଆମ ଦଳରୁ ଛିଡ଼ାହେଲେ ଦୁଇଜଣଯାକ ହାରିବେ ଏବଂ କଂଗ୍ରେସର ଆଉ ଜଣେ ପ୍ରାର୍ଥୀ ଜୟଯୁକ୍ତ ହୋଇଯିବା ଯେ ନିଶ୍ଚିତ, ଏକଥା ଶ୍ରୀ ସୁରେନ୍ଦ୍ର ମହାନ୍ତି ଏମ୍.ପି. ଓ ଶ୍ରୀ ବିଜୟ କୁମାର ମହାନ୍ତି ଏମ୍.ପି. ଲକ୍ଷ୍ନୌ ଯାଇ ଚରଣ ସିଂହଙ୍କୁ ବୁଝାଇବାରୁ ସେ ତାଙ୍କର ନିଷ୍ପତ୍ତି ପରିବର୍ତ୍ତନ କରିଥିଲେ ଏବଂ କେବଳ ମୁଁ ଲୋକଦଳ ପ୍ରାର୍ଥୀ ବୋଲି ଘୋଷଣା କରିଥିଲେ । ସେହି ଅନୁସାରେ ସେ ଗୋଟିଏ ତାରବାର୍ତ୍ତା ଭୁବନେଶ୍ୱର ପଠାଇଥିଲେ । ଏହା ସତ୍ତ୍ୱେ ଶ୍ରୀ ବୀରକିଶୋର ଦେଓ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀଙ୍କଦ୍ୱାରା ପ୍ରଭାବିତ ହୋଇ ଜଣେ ପ୍ରାର୍ଥୀ ହୋଇ ଛିଡ଼ାହୋଇଥିଲେ । ସେ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେବାପାଇଁ ଆମ୍ଭେମାନେ ବହୁତ ଉଦ୍ୟମ କରିଥିଲୁ; ମାତ୍ର ସଫଳ ହୋଇନଥିଲୁ । ସେ ଏକାବେଳକେ ନନ୍ଦିନୀ ଦେବୀଙ୍କ କବଳରେ ପଡ଼ିଯାଇଥିଲେ । ନନ୍ଦିନୀ ଦେବୀଙ୍କ ଉଦ୍ଦେଶ୍ୟ ଥିଲା ମୋତେ ହରାଇବାପାଇଁ ଏବଂ ତାହା କେବଳ ବୀରକିଶୋର ଦେଓ ଛିଡ଼ାହୋଇ ଆମ ଦଳର ଭୋଟକୁ ଭାଗ ଭାଗ କଲେ ସମ୍ଭବ ହେବ ବୋଲି ସେ ଜାଣିଥିଲେ । ତେଣୁ କଂଗ୍ରେସର ବଳକା ଭୋଟ ଓ ଦ୍ୱିତୀୟ ମନୋନୟନ ଭୋଟ (second preference) ବୀରକିଶୋର ଦେଓଙ୍କୁ ଦିଆଯିବ ବୋଲି ନନ୍ଦିନୀ ଦେବୀ ତାଙ୍କ ଦଳକୁ ପରାମର୍ଶ ଦେଇଥିଲେ । ସେଥିରେ ଶ୍ରୀ ଦେଓ ଉତ୍ସାହିତ ହୋଇ ନିର୍ବାଚନ ଲଢ଼ିଥିଲେ ।

ଓଡ଼ିଶା ବିଧାନସଭାରୁ ରାଜ୍ୟସଭା ନିର୍ବାଚନରେ ତିନିଗୋଟି ସ୍ଥାନ ପାଇଁ ଚାରିଜଣ ପ୍ରାର୍ଥୀ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ଶାସକ କଂଗ୍ରେସ ପକ୍ଷରୁ ଶ୍ରୀ ସନ୍ତୋଷ କୁମାର ସାହୁ ଓ ଶ୍ରୀ ନରସିଂହ ପ୍ରସାଦ ନନ୍ଦ ପ୍ରାର୍ଥୀ ଥିଲେ । ଲୋକଦଳ ପକ୍ଷରୁ ମୁଁ ଓ ଲୋକଦଳର ଶ୍ରୀ ବୀରକିଶୋର ଦେଓ ସ୍ୱାଧୀନ ପ୍ରାର୍ଥୀରୂପେ ଛିଡ଼ା ହୋଇଥିଲୁ । ଏହାପରେ ବୀରକିଶୋର ଦେଓଙ୍କୁ ଦଳରୁ ବହିଷ୍କାର କରାଯାଇଥିଲା । ଲୋକଦଳର ଆଠ ଜଣ ସଦସ୍ୟ ଅଟକ ହୋଇ ଜେଲରେ କିମ୍ବା ପାରୋଲ୍‌ରେ ଘରେ ରହୁଥିଲେ ।

ସେମାନଙ୍କ ପାଖକୁ ଭୋଟ ଦେବାପାଇଁ ବ୍ୟାଲଟ୍ ପେପର ପଠାଯିବା କଥା ଏବଂ ସେମାନେ ଜଣେ ନିର୍ଦ୍ଦିଷ୍ଟ କ୍ଷମତାପନ୍ନ ଅଫିସରଙ୍କ ଚିହ୍ନଟରେ ଭୋଟ ଦେଇ ସେ କାଗଜ ବିଧାନସଭାର ସେକ୍ରେଟେରୀଙ୍କ ପାଖକୁ ସିଲ୍ କରି ପଠାଇବା କଥା । ଜେଲଖାନାରେ ଓ ପାରୋଲରେ ଥିବା ଲୋକଦଳ ବ୍ୟବସ୍ଥାସଭା ସଦସ୍ୟଙ୍କ ଭୋଟକାଗଜ କିପରି ଆସି ବିଧାନସଭାରେ ପହଞ୍ଚିବ ତା'ର ବ୍ୟବସ୍ଥା ମୁଁ କରିଥିଲି । ଆମ ଦଳର ବିଧାନସଭା ସଦସ୍ୟ ଶ୍ରୀ ପ୍ରତାପଚନ୍ଦ୍ର ମହାନ୍ତି କଟକ ଜେଲରେ ଥିଲେ । ତାଙ୍କ ଶରୀର ଅସୁସ୍ଥ ଥିବାରୁ ସେ ଡାକ୍ତରଖାନାରେ ରହୁଥିଲେ । ତାଙ୍କର ବ୍ୟାଲଟ୍ ପେପର କଟକ ଜେଲ୍‌କୁ ଯାଇଥିଲା । କଟକ ମେଡ଼ିକାଲ୍ କଲେଜ ନର୍ସିଂହୋମ୍‌ରେ ସେ ଭୋଟକାଗଜ ଯଥାବିଧି ସିଲ୍ କରି ବିଧାନସଭା ସେକ୍ରେଟେରୀଙ୍କ ପାଖକୁ ପଠାଇଦେଇଥିଲେ । ମୋ ପୁଅ ଓ ତାଙ୍କ ପୁଅ ନିର୍ସିଂହୋମରେ ଉପସ୍ଥିତ ଥିଲେ । ମୋତେ ଭୋଟ ଦେଇଛନ୍ତି ବୋଲି ସେ ମୋର ପୁଅକୁ ବ୍ୟାଲଟ୍ ପେପର ଖଣ୍ଡକ ଦେଖାଇ ଦେଇଥିଲେ । ଶ୍ରୀ ହରେକୃଷ୍ଣ ମହତାବ ପାରୋଲ୍‌ରେ ଥାଇ ତାଙ୍କ ଭୁବନେଶ୍ୱର ଘରେ ରହୁଥିଲେ । ମୁଁ ନିଜେ ଆସେଂବ୍ଲିରୁ ବ୍ୟାଲଟ୍ ପେପର ନେଇ ତାଙ୍କୁ ଦେଇଥିଲି । ସେ ବ୍ୟାଲଟ୍ ପେପରରେ ଯେପରି ଭାବରେ ଭୋଟ ଦେବା କଥା ଆମ ଆଗରେ ତା ନକରି ପରେ ଠିକ୍ ସେହିପରି ଭାବରେ ଭୋଟ ଦେଇ ବିଧାନସଭାକୁ ପଠାଇଦେବେ ବୋଲି ମୋତେ ପ୍ରତିଶ୍ରୁତି ଦେଇଥିଲେ । ସେ ମୋ ଆଗରେ ଭୋଟ୍ କାଗଜରେ ମୋ ନାମ ପାଖରେ ଚିହ୍ନ ଦେଇଥିଲେ ମୁଁ ଅବଶ୍ୟ ଟିକେ ଖୁସିହୋଇଥାଆନ୍ତି; ମାତ୍ର ସେ ତାହା କରିନଥିଲେ । ପରଦିନ ସେ ତାଙ୍କ ବ୍ୟାଲଟ୍ ପେପର ସିଲ୍ କରି ଶ୍ରୀ ଶାରଦା କାନୁନ୍‌ଗୋଙ୍କ ହାତରେ ବିଧାନସଭା ସେକ୍ରେଟେରୀଙ୍କ ପାଖକୁ ପଠାଇଥିଲେ । ଯେପରି ତାହାର ଉପର ଖାମ୍ ବନ୍ଦହେବା କଥା ତା ହୋଇନଥିବାରୁ ଏବଂ ସେହି ଖାମ୍ ଉପରେ ଯେପରି ଭାବରେ ଲେଖାହେବା କଥା ସେଥିରେ ତ୍ରୁଟି ଥିବାରୁ ବିଧାନସଭା ସେକ୍ରେଟେରୀ ତାହା ଗ୍ରହଣ କରିନଥିଲେ । ଶ୍ରୀ ଶାରଦା କାନୁନ୍‌ଗୋ ସେସବୁ ଧରି ଲୋକଦଳ ଅଫିସରେ ମୋ ପାଖରେ ପହଞ୍ଚିଥିଲେ । ଶାରଦାବାବୁଙ୍କର ପୂରା ବିଶ୍ୱାସ ଥାଏ ଯେ ମହତାବବାବୁଙ୍କ ଭୋଟଟି ଆମର; ତେଣୁ ତାହା ଯେପରି ଭୁଲଭାଲ୍ ହୋଇ ନଷ୍ଟ ନହୁଏ ସେଥିପାଇଁ ବିଶେଷ ଦୃଷ୍ଟି ଦେବାପାଇଁ ସେ ମୋତେ ଅନୁରୋଧ କରିଥିଲେ । ମୁଁ ବିଧାନସଭା ସେକ୍ରେଟେରୀଙ୍କୁ ଫୋନ୍ କରି ସବୁ କଥା ବୁଝିଥିଲି ଏବଂ କ'ଣ ଲେଖାହେଲେ ଠିକ୍ ହେବ ତାହା ଟିପି ନେଇ ମହତାବଙ୍କ ପାଖକୁ ଯାଇଥିଲି । ବିଧାନସଭା ସେକ୍ରେଟେରୀ ଯେପରି ଭାବରେ କହିଥିଲେ ସେପରି ଭାବରେ ଲେଖିବାପାଇଁ ମହତାବବାବୁଙ୍କୁ କହିଥିଲି । ସେ କିନ୍ତୁ ମୋ ଆଗରେ ଉକ୍ତ ବ୍ୟାଲଟ୍ ପେପର ଖୋଳ ଖୋଲିବାଟାକୁ କୌଣସିମତେ ଏଡ଼ାଇ ଦେଇଥିଲେ । ସେ ମୋତେ କହିଥିଲେ ଯେ ପରେ ସେ ସବୁ ଠିକ୍ କରି ବିଧାନସଭାକୁ ପଠାଇଦେବେ । ଆଉ ବେଶୀ କିଛି କହିବାକୁ ମୋତେ ଖରାପ ଲାଗିଲା; ତେଣୁ ମୁଁ ସେଠାରୁ ଚାଲିଆସିଥିଲି । ମୋ ଆସିବା ପରେ ଖାମ୍ ଉପରେ ଯେପରି ଭାବରେ ଲେଖିବାର କଥା ଲେଖି ଓ ଖାମ୍ ବନ୍ଦକରି ସେ ଶାରଦାବାବୁଙ୍କ ହାତରେ ବିଧାନସଭାକୁ ପଠାଇଦେଇଥିଲେ । ଶାରଦାବାବୁ ମୋତେ ଆସି କହିଥିଲେ ଯେ ମହତାବ ବାବୁ ମୋତେ ଭୋଟ ଦେଇ ଯେପରି ଭାବରେ ଖାମ୍ ଉପରେ ଲେଖିଦେବା କଥା ସେପରି ଲେଖି ତାଙ୍କୁ ଦେଇଥିଲେ ଏବଂ ସେ ନେଇ ବିଧାନସଭା ସେକ୍ରେଟେରୀଙ୍କୁ ତାହା ଦେଇ ଆସିଛନ୍ତି । ବିଜୁବାବୁ ରୋହତକ୍ ଜେଲ୍‌ରୁ ବ୍ୟାଲେଟ୍ ପେପରରେ ଭୋଟ ଦେଇ ରେଜେଷ୍ଟ୍ରିକରି ଡାକରେ ପଠାଇବା ସଙ୍ଗେ ସଙ୍ଗେ ତାହା ପଠାଇଛନ୍ତି ବୋଲି ଟେଲିଗ୍ରାମ୍ କରି ବିଧାନସଭା ସେକ୍ରେଟେରୀଙ୍କୁ ଜଣାଇ ଦେଇଥିଲେ । ସର୍ବଶ୍ରୀ ନଟବର ପ୍ରଧାନ, ଭାଗବତ ବେହେରା, ହରିଶ୍ଚନ୍ଦ୍ର ବକ୍ସିପାତ୍ର, ପ୍ରହ୍ଲାଦ ମଲ୍ଲିକ, ଗଣନାଥ ପ୍ରଧାନ ଓ ତ୍ରିଲୋଚନ କାନୁନ୍‌ଗୋ ଭୋଟ ଦେଇ ଜେଲ୍‌ରୁ ସେମାନଙ୍କର ଭୋଟକାଗଜ ବିଧାନସଭାରେ ପହଞ୍ଚାଇ ଦେଇଥିଲେ ।

# ଭୋଟ ଭଣ୍ଡୁର କରିବାର ଚକ୍ରାନ୍ତ

ମାର୍ଚ୍ଚ ମାସ ସତେଇଶ ତାରିଖ ଦିନ ବିଧାନସଭାରେ ରାଜ୍ୟସଭାପାଇଁ ଭୋଟ ନିଆଯିବ ବୋଲି ଘୋଷଣା କରାଯାଇଥାଏ । ଆମ ଲୋକଦଳ ବିଧାନସଭା ସଦସ୍ୟମାନଙ୍କୁ ପ୍ରଲୋଭନ ଓ ଭୟ ଦେଖାଇ ଇତସ୍ତତଃ କରାଇବାପାଇଁ ଶାସକ କଂଗ୍ରେସ ପକ୍ଷରୁ ଉଦ୍ୟମ ହୋଇଥିଲା । ଆମ ଦଳର ସଦସ୍ୟମାନଙ୍କୁ ଏପାଖ ସେପାଖ କରାଇବା ଉଦ୍ଦେଶ୍ୟରେ ନନ୍ଦିନୀ ଶତପଥୀ ବୀରକିଶୋର ଦେଓଙ୍କୁ ପୂରା ବ୍ୟବହାର କରିଥିଲେ । କଳାହାଣ୍ଡି ମହାରାଜା ଦିଲ୍ଲୀରୁ ଆସି ଭୁବନେଶ୍ୱରରେ ରହିଥିଲେ । ସେ ବାରମ୍ବାର ମୁଖ୍ୟମନ୍ତ୍ରୀଙ୍କ ବାସଭବନକୁ ଯିବାଆସିବା କରୁଥିବା ଆମର କର୍ମୀମାନେ ଲକ୍ଷ୍ୟ କରୁଥିଲେ । କଳାହାଣ୍ଡି ମହାରାଜାଙ୍କର ଗତିବିଧି ଲକ୍ଷ୍ୟ କରିବାପାଇଁ ଆମେ ଦୁଇଜଣ ଯୁବକଙ୍କ ଉପରେ ଦାୟିତ୍ୱ ଦେଇଥିଲୁ । ସେମାନେ ଗୋଟିଏ ମଟର ସାଇକେଲ୍‌ରେ ତାଙ୍କ ଗାଡ଼ି ପଛେ ପଛେ ଲୁଚିଛପି ଯାଉଥିଲେ । ବୀରକିଶୋର ଦେଓଙ୍କୁ କଂଗ୍ରେସର ବଳକା ଭୋଟ ଓ ଦ୍ୱିତୀୟ ପସନ୍ଦ (second preference) ଭୋଟ ଦେବା ପରାମର୍ଶକୁ ଅନେକ କଂଗ୍ରେସ ସଦସ୍ୟ ସ୍ୱତଃ ପସନ୍ଦ କରୁନଥିଲେ । ଆମର ବିଧାନସଭା ସଭ୍ୟସଂଖ୍ୟା ଯେତିକି ଥିଲା, ସେଥିରେ କଂଗ୍ରେସ ଦଳରୁ କିଛି ଭୋଟ ଯୋଗାଡ଼ କରିବା ଆବଶ୍ୟକ ପଡୁନଥିଲା । ବୀରକିଶୋର ଦେଓଙ୍କପାଇଁ କଳାହାଣ୍ଡି ମହାରାଜା ନନ୍ଦିନୀ ଶତପଥୀଙ୍କ ସହିତ ଚକ୍ରାନ୍ତ କରୁଥିବା କଥା ଜାଣିପାରି କେତେକ କଂଗ୍ରେସ ସଭ୍ୟ ସେମାନଙ୍କର ବଳକା ଭୋଟ ଓ ଦ୍ୱିତୀୟ ପସନ୍ଦ ଭୋଟ ମୋତେ ଦେବାପାଇଁ ଇଚ୍ଛା କରିଥିଲେ । ତା' ଛଡ଼ା ଆଉ ଗୋଟିଏ ଷଡ଼ଯନ୍ତ୍ର ମଧ୍ୟ ଚାଲିଥିଲା । ଆମର କିଛି ସଭ୍ୟଙ୍କୁ କୌଣସି ଉପାୟରେ ଭୋଟ ପୂର୍ବରୁ କେଉଁଠି ଅଟକାଇ ଦିଆଯାଇପାରିଲେ ସେମାନେ ଭୋଟ ଦେଇପାରନ୍ତେ ନାହିଁ, ତା'ହେଲେ ମୋର ଭୋଟ କମିଯାଆନ୍ତା ଓ ମୁଁ ନିଶ୍ଚିତଭାବରେ ହାରିଯାଆନ୍ତି, ଏହିଭଳି ଗୋଟିଏ ମସୁଧା ଚାଲିଥିବାର ସନ୍ଧାନ ମିଳିଲା । ଭୋଟ ସମୟ ଥିଲା ସକାଳ ଆଠଟାରୁ ଉପରଓଳି ଦୁଇଟା ପର୍ଯ୍ୟନ୍ତ । ଭୋଟ ଗ୍ରହଣ ଦିନର ପୂର୍ବ ରାତ୍ରିରେ ଏମ୍.ଏଲ୍.ଏ. କଲୋନୀରେ ଗୋଟିଏ ବଡ଼ ଧରଣର ଗଣ୍ଡଗୋଳ ଓ ଦଙ୍ଗା ଭିଆଇ ଏବଂ ତା' ସହିତ ଲୋକଦଳ ଏମ୍.ଏଲ୍.ଏ.ମାନଙ୍କୁ ସଂପୃକ୍ତ କରାଇ ଗିରଫ କରିନେଇ ପରଦିନ ଦୁଇଟା ସମୟ ପର୍ଯ୍ୟନ୍ତ ହାଜତରେ ଅଟକାଇଦେଲେ ସେମାନେ ଭୋଟ ଦେଇପାରିବେନାହିଁ, ଏହି ପ୍ରକାର ଚକ୍ରାନ୍ତ କଂଗ୍ରେସ ପକ୍ଷରୁ ମୁଖ୍ୟମନ୍ତ୍ରୀଙ୍କ ଜ୍ଞାତସାରରେ କରାଯାଇଥିଲା । ଏଥିପାଇଁ କିପରି ପୁଲିସମାନଙ୍କ ସାହାଯ୍ୟ ମିଳିପାରିବ ତାହାର ଦାୟିତ୍ୱ ମୁଖ୍ୟମନ୍ତ୍ରୀଙ୍କ ପାଖ ଲୋକମାନେ ନେଇଥିଲେ । କେତେକ ପୁଲିସ ଅଫିସରଙ୍କୁ ମଧ୍ୟ ଏପ୍ରକାର ଚକ୍ରାନ୍ତର ସୂଚନା ଦିଆଯାଇଥିଲା । ଏ ପ୍ରକାର ଷଡ଼ଯନ୍ତ୍ର ଚାଲିଛି ବୋଲି ଗୁଇନ୍ଦା ବିଭାଗର ଜଣେ ଅଫିସର ମୋ ପାଖକୁ ଖବରପଠାଇଥିଲେ ଏବଂ ସେଥିପ୍ରତି ସତର୍କ ରହିବାପାଇଁ ମୋତେ ସାବଧାନ କରାଇଦେଇଥିଲେ ।

ଭୋଟ ଦେବାର ପୂର୍ବଦିନ ଉପରଓଳି ଦେଖାଗଲା ଯେ ବହୁତ ଗାଡ଼ି ଓ ବାହାରର ଗୁଣ୍ଡା ପ୍ରକୃତିର ଲୋକ ଏମ୍.ଏଲ୍.ଏ. କଲୋନୀରେ ପଇଁତରା ମାରୁଛନ୍ତି । ଏସବୁ ଖବରରେ ଚିନ୍ତିତ ହୋଇ ମୁଁ ଆମର ବନ୍ଧୁମାନଙ୍କ ସହ ପରାମର୍ଶ କରିଥିଲି । ବହୁ ଆଲୋଚନା ପରେ ସ୍ଥିର କଲୁ ଯେ ସନ୍ଧ୍ୟା ପୂର୍ବରୁ ଆମ ଦଳର ସବୁ ଏମ୍.ଏଲ୍.ଏ. ଉଦ୍ୟାନମାର୍ଗରେ ଥିବା ଆମ ଦଳର ଅଫିସ ଘରେ ଏକତ୍ରିତ ହେବା ଆବଶ୍ୟକ । ଦଳର କର୍ମୀମାନେ ଗାଡ଼ି ନେଇ ଯାଇ ଏମ୍.ଏଲ୍.ଏ. କଲୋନୀରେ ରହୁଥିବା ଆମର ପ୍ରାୟ ତିରିଶ ଜଣ ସଭ୍ୟଙ୍କୁ ପାର୍ଟି ଅଫିସକୁ ଡାକିଆଣିଥିଲେ । ସମସ୍ତେ ଏକତ୍ରିତ ହେବା ପରେ ମୁଁ ଖବର ପାଇଥିବା ଷଡ଼ଯନ୍ତ୍ର କଥା ସେମାନଙ୍କୁ କହିଥିଲି । ତା' ସମ୍ଭବ ବୋଲି ଅନେକ ମତ ଦେଇଥିଲେ । ଏମ୍.ଏଲ୍.ଏ. କଲୋନୀରେ ବହୁତ ଗାଡ଼ି ଥିବାର ଓ ଗୁଣ୍ଡା ପ୍ରକୃତିର ଲୋକ ବୁଲୁଥିବାର ସେମାନେ ଦେଖିଛନ୍ତି ବୋଲି କହିଥିଲେ । ପାର୍ଟି ଅଫିସରେ ଆମର ଏମ୍.ଏଲ୍.ଏ. ମାନଙ୍କର ଗୋଟିଏ ବୈଠକ

ହେଉଥିବା କଥା ଜାଣି କଂଗ୍ରେସ ପକ୍ଷରୁ ଦଳେ ଯୁବକ ଆମ ଅଫିସଠାରୁ ଅଳ୍ପ ଦୂରରେ ଗୋଟିଏ ମିନି ବସ୍ ଓ ଆଉ ଦୁଇଖଣ୍ଡ ଜିପ୍ ଗାଡ଼ି ରଖି ବୁଲାବୁଲି କରୁଥିବାର ଖବର ମିଳିଲା । ଆମର ଏମ୍.ଏଲ୍.ଏ.ମାନେ ବୈଠକ ପରେ ବାହାରକୁ ବାହାରିଲେ କେତେକଙ୍କୁ ହରଣଚାଳ କରି ନେଇଯିବାର ମସୁଧା ହୋଇଥିବା କଥା ମଧ୍ୟ ଜଣାପଡ଼ିଥିଲା । ଆମ ଦଳରେ ଯୁବକ କର୍ମୀମାନେ ଆଠ ଦଶଟି ମୋଟର ସାଇକେଲ୍ ଧରି ଜାଗତିଆର ରହିଥିଲେ । ଉଭୟଙ୍କ ଭିତରେ ସଂଘର୍ଷ ହେବାର ସମ୍ଭାବନା ମଧ୍ୟ ଦେଖାଯାଇଥିଲା । କାରଣ କଂଗ୍ରେସ ଦଳର କେତେକ ଲୋକ ଆମ ଅଫିସ ଉପରେ ଆକ୍ରମଣ କରିବାଭଳି ଆଶଙ୍କା ହେଉଥାଏ । ଏସବୁ କଥା ଦେଖି ଆମର ନିଷ୍ପତ୍ତି ହୋଇଥିଲା ଯେ ଆମର ଏମ୍.ଏଲ୍.ଏ.ମାନେ ଅଫିସ ବାହାରକୁ ନଯାଇ ରାତିରେ ସେହି ଅଫିସ୍‌ରେହିଁ ରହିବେ । ମୁଁ ନିଜେ ସେମାନଙ୍କ ସହିତ ସେଠାରେ ରହିଥିଲି । କେତେକ କଂଗ୍ରେସ ଲୋକ ଆମ ଅଫିସ୍ ଉପରେ ଆକ୍ରମଣ କରିବାର ଆଶଙ୍କା କରି ମୁଁ କ୍ୟାପିଟାଲ୍ ଥାନାକୁ ଖବର ଦେଇଥିଲି । ଆମ ଅଫିସ୍ ଗେଟ୍ ପାଖରେ ଚେୟାର ପକାଇ ମୁଁ ବସିରହିଥିଲି । ଜଣେ ପୁଲିସ ଡି.ଏସ୍.ପି. ଆସି ମୋତେ ଦେଖାକରିଥିଲେ ଏବଂ ଆମେ ଓ ଆମ ଏମ୍.ଏଲ୍.ଏ.ମାନେ ସେହି ରାତିରେ ଅଫିସ୍‌ରେ ରହିବାର ଯେଉଁ ନିଷ୍ପତ୍ତି ନେଇଥିଲୁ ତାହା ଠିକ୍ ହୋଇଛି ବୋଲି କହିଥିଲେ । ସଙ୍ଗେ ସଙ୍ଗେ ଆମ ଅଫିସ୍ ପାଖ ରାସ୍ତାରେ ଅଧିକା ପୁଲିସ ପେଟ୍ରୋଲ ବ୍ୟବସ୍ଥା କରାଯାଇଥିଲା । ଆମ ଦଳର ବିଧାନସଭାର ସଦସ୍ୟ ଓ ଯୁବକକର୍ମୀମାନଙ୍କୁ ମିଶାଇ ପ୍ରାୟ ଦୁଇ ଶହ ଲୋକ ସେଦିନ ରାତିରେ ଅଫିସ୍‌ରେ ରହିଥିଲେ । ସମସ୍ତେ ରାତିସାରା ଉଜାଗର ରହି ବସିଥାଆନ୍ତି । ଟିକିଏ କେହି ଶୋଇବାକୁ ଇଚ୍ଛାକରୁଥିଲେ, ରେଢ଼ାଖୋଲର ବିଧାନସଭା ସଦସ୍ୟ ଶ୍ରୀ ବସନ୍ତ ମହାନନ୍ଦଙ୍କ ସଙ୍ଗୀତ ନିଦ ଭାଙ୍ଗିଦେଉଥାଏ । ସକାଳ ଆଠଟା ସମୟରେ ମୁଁ ଓ ଆମର ସବୁ ବିଧାନସଭା ସଦସ୍ୟ ଏକତ୍ର ଚାଲି ଚାଲି ବିଧାନସଭା ସୌଧ ଭିତରେ ରାଜ୍ୟସଭା ଭୋଟକେନ୍ଦ୍ରରେ ପହଞ୍ଚିଥିଲୁ । ଆମ ସଦସ୍ୟମାନେ ନିର୍ବିଘ୍ନରେ ଭୋଟଦେଇଥିଲେ । ଏହି ପ୍ରକାର କୌଶଳ ଅବଲମ୍ବନ କରି ଆମ୍ଭେମାନେ ଜରୁରୀକାଳୀନ ଅବସ୍ଥାରେ ନନ୍ଦିନୀ ଦେବୀଙ୍କର ଚକ୍ରାନ୍ତର ସମ୍ମୁଖୀନ ହୋଇଥିଲୁ ।

## "ଜଣେ ହସିଲେ, ତହୁଁ ଏହି ଫଳ"

ସେହିଦିନ ଦୁଇଘଣ୍ଟା ସମୟରେ ଭୋଟ ଦେବା କାର୍ଯ୍ୟ ଶେଷହୋଇଥିଲା । ତାହାପରେ ଭୋଟଗଣତି କାର୍ଯ୍ୟ ଆରମ୍ଭ ହୋଇଥିଲା । ଭୋଟଗଣତି ସ୍ଥାନରେ ଶ୍ରୀ ହୃଦାନନ୍ଦ ମଲ୍ଲିକ ମୋର ଏଜେଣ୍ଟ ହୋଇ ରହିଥିଲେ ଏବଂ ଶ୍ରୀ ଶୈଳେନ୍ ମହାପାତ୍ର କଂଗ୍ରେସ ପ୍ରାର୍ଥୀଙ୍କର ଏଜେଣ୍ଟରୂପେ କାର୍ଯ୍ୟ କରିଥିଲେ । ପ୍ରଥମେ ଅଟକବନ୍ଦୀଙ୍କ ପାଖରୁ ସିଲ୍‌ହୋଇ ଆସିଥିବା ଭୋଟକାଗଜଗୁଡ଼ିକ ଖୋଲା ହୋଇ ଭୋଟ ବାକ୍ସରେ ପକାଯାଇଥିଲା । ଶ୍ରୀ ହରେକୃଷ୍ଣ ମହତାବଙ୍କର ସିଲ୍ କାଗଜ ଖୋଲା ହେଲାବେଳେ କଂଗ୍ରେସ ପକ୍ଷରୁ ଶ୍ରୀ ଶୈଳେନ୍ ମହାପାତ୍ର ଗୋଟିଏ ପ୍ରବଳ ଆପତ୍ତି ଉଠାଇଥିଲେ । ତାଙ୍କର ଆପତ୍ତି ହେଲା ଯେ ମହତାବ ପ୍ୟାରୋଲରେ ଥାଇ ଯେଉଁ ଅଫିସରଙ୍କ ଆଗରେ ତାଙ୍କର ଘୋଷଣା କରିଛନ୍ତି ଓ ଯେଉଁ ଅଫିସର୍ ତାହା ସ୍ୱାକ୍ଷର କରିଛନ୍ତି ସେ ଅଫିସରଙ୍କର ତାହା କରିବାର କ୍ଷମତା ନାହିଁ । ତେଣୁ ମହତାବଙ୍କ ଭୋଟ କାଗଜ ନାକଚ କରିବାକୁ ସେ ଦୃଢ଼ ଦାବି କରିଥିଲେ । ମୋ ପକ୍ଷରୁ ହୃଦାନନ୍ଦବାବୁ ତାଙ୍କ ଉକ୍ତିର ଦୃଢ଼ ପ୍ରତିବାଦ କରିଥିଲେ । ମହତାବବାବୁଙ୍କର ଭୋଟ କାଗଜ ଠିକ୍ ଅଛି ବୋଲି କହି ତାହା ଗଣାହେବାପାଇଁ ହୃଦାନନ୍ଦବାବୁ ଦୃଢ଼ ଦାବି କରିଥିଲେ । ବିଷୟଟି ବିବାଦୀୟ ହେବାରୁ ମହତାବଙ୍କର ଭୋଟ କାଗଜ ଥିବା ଖାମ୍‌ଟି ଅଲଗା ରଖାଯାଇଥିଲା ଏବଂ ଅନ୍ୟ ସବୁ ଭୋଟ ଗଣତି ଶେଷ ହେବା ପରେ ସଂପୃକ୍ତ ଅଫିସରଙ୍କର କ୍ଷମତା ଅଛି କି ନାହିଁ ସେ ସମ୍ବନ୍ଧରେ ଅଫିସ୍ କାଗଜପତ୍ର ପରୀକ୍ଷା କରି ନିଷ୍ପତ୍ତି ନିଆଯିବ ବୋଲି ସ୍ଥିରହୋଇଥିଲା । ବାକ୍ସ ଖୋଲାଯାଇ

ଅନ୍ୟ ସବୁ ଭୋଟ ଗଣାଯାଇଥିଲା । ଶ୍ରୀ ମହତାବଙ୍କର କାଗଜ ଖୋଲି ଗଣା ନହେଲେ ମଧ ମୁଁ ଜୟଯୁକ୍ତ ହେଉଛି ବୋଲି ଜଣାଯାଇଥିଲା । ମହତାବବାବୁ ଜରୁରୀକାଳୀନ ପରିସ୍ଥିତିରେ— ''ଇନ୍ଦିରା-ନନ୍ଦିନୀ ଅତ୍ୟାଚାର ବିରୋଧୀ'' ବୋଲି ତାଙ୍କର ଯେଉଁ ଭାବମୂର୍ତ୍ତି ଜଣାଉଥିଲେ ଅନ୍ତତଃ ସେହି ଦୃଷ୍ଟିରୁ ସେ ନିଶ୍ଚୟ ମୋତେ ଭୋଟ ଦେବେ ବୋଲି ଧାରଣା ଜନ୍ମାଇଥିଲେ । ସେହି କାରଣରୁ ଭୋଟ ଗଣତି ପୂର୍ବରୁ ଶୈଳେନ୍‌ବାବୁ ଓ ହୃଦାନନ୍ଦବାବୁ ମହତାବଙ୍କ ଭୋଟ ଖଣ୍ଡକର ପ୍ରକୃତ ମୂଲ୍ୟାୟନପାଇଁ ଏତେଦୂର ଲଙ୍ଗାଳଢ଼ି ହୋଇଯାଇଥିଲେ । ମହତାବବାବୁଙ୍କର କାଗଜପତ୍ରରେ ଯେଉଁ ଅଫିସର ଦସ୍ତଖତ କରିଥିଲେ ତାଙ୍କର ତାହା କରିବାର କ୍ଷମତା ଅଛି କି ନାହିଁ ସେ ସଂପର୍କରେ ସମସ୍ତ କାଗଜପତ୍ର ଭୁବନେଶ୍ୱରର ଏସ୍.ଡି.ଓ.ଙ୍କ ଅଫିସ୍‌ରୁ ଅଣାଯାଇଥିଲା । ପରୀକ୍ଷା କରି ଦେଖାଗଲା ଯେ ଉକ୍ତ ଅଫିସର ଯାହା କରିଥିଲେ ତାହା କରିବାର ତାଙ୍କର କ୍ଷମତା ଅନ୍ତର୍ଭୁକ୍ତ କାର୍ଯ୍ୟ । ଶ୍ରୀ ହୃଦାନନ୍ଦ ମଲ୍ଲିକ ଯୁକ୍ତିରେ ଜିତିଲେ ବୋଲି ଭାବି ଭାରି ଖୁସିହୋଇଯାଇଥିଲେ । ତା'ପରେ ସିଲ୍ ହୋଇ ରହିଥିବା ମହତାବବାବୁଙ୍କ ଭୋଟ କାଗଜ ଖୋଲାହେଲା । ହୃଦାନନ୍ଦବାବୁଙ୍କ ମୁହଁ ସଙ୍ଗେ ସଙ୍ଗେ ଫିକାପଡ଼ିଯାଇଥିଲା ଓ ଶୈଳେନ ବାବୁ ଖୁସିରେ ଡିଆଁ ମାରିଥିଲେ । ଦେଖାଗଲା ଯେ ମହତାବବାବୁ ତାଙ୍କ ଭୋଟଟି ମୋତେ ନଦେଇ କଂଗ୍ରେସ ପ୍ରାର୍ଥୀ ଶ୍ରୀ ନରସିଂହ ପ୍ରସାଦ ନନ୍ଦଙ୍କୁ ଦେଇଥିଲେ । ମହତାବବାବୁ ଏ ପ୍ରକାର କରିବେ ବୋଲି ପ୍ରାୟ କାହାରି ଧାରଣା ନଥିଲା । ତାଙ୍କ ଆଚରଣରେ ଆମ ଦଳର ଲୋକମାନେ ବିଶେଷ ଦୁଃଖିତ ହୋଇଥିଲେ । ଶ୍ରୀ ନରସିଂହ ପ୍ରସାଦ ନନ୍ଦଙ୍କୁ ରାଜ୍ୟସଭାପାଇଁ ଭୋଟଦେଇ ଶ୍ରୀମହତାବ ତାଙ୍କୁ ଖଣ୍ଡିଏ ଚିଠି ଲେଖିଥିଲେ । ତାଙ୍କୁ ଓ କଂଗ୍ରେସକୁ ସେ ଭୋଟଦେବା କଥା ଶ୍ରୀମତୀ ଗାନ୍ଧୀଙ୍କୁ ଜଣାଇଦେବାପାଇଁ ମହତାବବାବୁ ନରସିଂହବାବୁଙ୍କୁ ଅନୁରୋଧ କରିଥିବା କଥା ଶ୍ରୀ ଅଙ୍ଗିଠୁ ସାହୁ ଜାଣିପାରିଥିଲେ ବୋଲି ମୋତେ କହିଥିଲେ । ଏହା ସତ୍ତ୍ୱେ ଆଉ ତାଙ୍କର ପାରୋଲ ସମୟ ବଢ଼ାଯାଇ ନଥିଲା ଏବଂ ସେ ଭୁବନେଶ୍ୱର ଜେଲ୍‌କୁ ଯାଇଥିଲେ । ଭୋଟଦିନ ପୂର୍ବ ରାତିରେ ଗୀତ ଗାଇ ଗାଇ ଜଣେ ସହକର୍ମୀ ଆମ୍ଭମାନଙ୍କ ରାତି ଅନିଦ୍ରାର କ୍ଳେଶ ଉପଶମ କରିଥିଲେ ବୋଲି ଆଗରୁ ଲେଖିଛି । ଭୋଟ ଗଣତି ପରେ ମହତାବଙ୍କ ଆଚରଣକୁ ଲକ୍ଷ୍ୟ କରି ଅନ୍ୟ ଜଣେ ହାସ୍ୟରସିକ ବନ୍ଧୁ କବିସୂର୍ଯ୍ୟଙ୍କ ପୁରାତନ ରଚନାର ପାରୋଡ଼ି କରି ଗାଇଥିଲେ :

''ଜଟିଳ କରି ସ୍କନ୍ଧ ରୋମରାଜି, ଏକାମ୍ର ନିବାସେ ମରୁ ଗରଜି,  
କୁଟିଳ କରି ଭ୍ରୁକୁଟିକୁ ଚାହୁଁ, ସେ ଅବା କଣ୍ଠୀରବ ହେବ କାହୁଁ ?  
ଜଗତେ କେବଳ ଜନେ ହସିବେ, ତହୁଁ ଏହି ଫଳ ।''

ଯେତିକି ଭୋଟ ପାଇଲେ ଜିତିବାର କଥା ତାହାଠାରୁ ଅଧିକ ଭୋଟ ପାଇ ମୁଁ ରାଜ୍ୟସଭାକୁ ନିର୍ବାଚିତ ହୋଇଥିଲି ଏବଂ ୧୯୭୬ ମସିହା ଏପ୍ରିଲ୍ ତିନି ତାରିଖରେ ରାଜ୍ୟସଭା ସଭ୍ୟ ହିସାବରେ ଶପଥ ଗ୍ରହଣ କଲି ।

## ଦିଲ୍ଲୀରେ କେଇଦିନ

ଦିଲ୍ଲୀରେ ପ୍ରଥମେ ମୁଁ ଉଏଷ୍ଟର୍ଣ୍ଣ କୋର୍ଟରେ ରହିଥିଲି ଏବଂ ପରେ ଦୁଇ ନମ୍ବର ମୀନାବାଗ୍‌ରେ ପାର୍ଲିଆମେଣ୍ଟ ସଦସ୍ୟମାନଙ୍କପାଇଁ ଉଦ୍ଦିଷ୍ଟ କ୍ୱାର୍ଟରକୁ ଯାଇଥିଲି । ମୋ ପାଖରେ ସେତେବେଳେ ରାଜନୀତିବିଜ୍ଞାନରେ ସ୍ନାତକୋତ୍ତର ଅଧ୍ୟୟନ କରୁଥିବା ମୋର ପୁତୁରା ପ୍ୟାରୀମୋହନ ରହୁଥାଏ । ଦିଲ୍ଲୀ ଜୀବନ ସେତେବେଳେ ସଂପୂର୍ଣ୍ଣ ନିସ୍ପନ୍ଦ ଅବସ୍ଥାରେ ପଡ଼ିଥାଏ । ସମସ୍ତେ ଭୟଭୀତ ଅବସ୍ଥାରେ ରହୁଥିଲେ । ଖୋଲାଖୋଲି ଭାବରେ ରାଜନୀତି ଚର୍ଚ୍ଚା ପ୍ରାୟ କେହି କରୁନଥିଲେ । ଏହି ସମୟରେ ଦିଲ୍ଲୀରେ କନଟ୍‌ପ୍ଲେସ୍ ଓ ପୁରୁଣା ଦିଲ୍ଲୀରେ ତୁର୍କମ୍ୟାନ୍ ଗେଟ୍ ଓ ଚାନ୍ଦିନୀଚୌକ ପ୍ରଭୃତି ସ୍ଥାନମାନଙ୍କରେ ଶ୍ରୀ ସଂଜୟ ଗାନ୍ଧୀଙ୍କର ଇଙ୍ଗିତରେ ଦିଲ୍ଲୀରେ ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ଘରଭଙ୍ଗା କାର୍ଯ୍ୟ ଆରମ୍ଭ

କରିଥିଲେ । ବୁଲ୍‌ଡୋଜର ଲଗାଇ ସେସବୁ ଅଞ୍ଚଳର ବଡ଼ ବଡ଼ କୋଠାବାଡ଼ି ଧୂଳିସାତ୍ କରି ଦିଆଯାଉଥିଲା । ଲୋକମାନଙ୍କର ଜିନିଷପତ୍ର, ଲୁହାଫାଟକ, ଆଲମାରି ଓ ଅନ୍ୟାନ୍ୟ ଦାମିକା ଆସବାବପତ୍ର ପ୍ରଭୃତି ସବୁ ଲୁଟତରାଜ ହୋଇଯାଉଥିଲା । ଦିଲ୍ଲୀ କଂଗ୍ରେସ କମିଟିର ଜଣେ ଯୁବକ ଓ କର୍ମକର୍ତ୍ତା ଶ୍ରୀ ଅମର ଅଜିତ୍ ସିଂହ ସେହି ଉଏଷ୍ଟର୍ଣ୍ଣ କୋର୍ଟରେ ରହୁଥିଲେ । ଏ ପ୍ରକାର ଭଙ୍ଗାରୁଜା ଦେଖି ସେ ଅତି ଭରାକ୍ରାନ୍ତ ହୋଇ ମୋତେ ନେଇ ସେ ଘରଭଙ୍ଗାର ଦୃଶ୍ୟ ଦେଖାଇଥିଲେ, କିନ୍ତୁ ସେ ନିଜେ ପ୍ରତିବାଦ କରିପାରୁ ନଥିଲେ । ସଞ୍ଜୟ ଗାନ୍ଧୀଙ୍କ ପ୍ରତି ତାଙ୍କର ଭାରି ଭୟଥିଲା । ଲୋକେ ଏସବୁ ଘରଭଙ୍ଗା କାର୍ଯ୍ୟର ପ୍ରତିବାଦ କଲେ ସେମାନଙ୍କୁ ମିସା (MISA) ଆଇନ ବଳରେ ଅଟକ କରି ଜେଲକୁ ପଠାଯାଉଥିଲା । ଖବରକାଗଜମାନଙ୍କରେ ଏପ୍ରକାର ଘରଭଙ୍ଗା କଥା ପ୍ରକାଶ ପାଉନଥାଏ । ପାର୍ଲିଆମେଣ୍ଟ ସେଣ୍ଟ୍ରାଲ୍ ହଲ୍‌ରେ ପାର୍ଲିଆମେଣ୍ଟ ସଦସ୍ୟମାନେ ଏ ବିଷୟରେ ଫୁସ୍‌ଫାସ୍ ହେଉଥିଲେ; ମାତ୍ର ପ୍ରତିବାଦ କରିବାପାଇଁ କାହାରି ସାହସ ହେଉନଥାଏ । ଦିଲ୍ଲୀର ଘରଭଙ୍ଗା କାର୍ଯ୍ୟକୁ ଅନୁକରଣ କରି ଓଡ଼ିଶାର ମୁଖ୍ୟମନ୍ତ୍ରୀ ମଧ କଟକ ସହରରେ ସେହି ପ୍ରକାର କାର୍ଯ୍ୟ ଆରମ୍ଭକରିଦେଇଥିଲେ । କଟକରେ ବହୁ ଘରବାଡ଼ି ଓ ଦୋକାନବଜାର ପ୍ରଭୃତି ବୁଲଡୋଜର ଲଗାଇ ଭାଙ୍ଗିଦିଆଯାଉଥିଲା । ଯେଉଁମାନେ ଟିକେ ପ୍ରତିବାଦ କରୁଥିଲେ ସେମାନଙ୍କୁ ଜେଲ୍‌ରେ ଭର୍ତ୍ତି କରିବାର ଭୟ ଦେଖାହେଉଥିଲା । ଦିଲ୍ଲୀରେ ଓ ଦେଶର ବହୁ ସ୍ଥାନରେ ଶ୍ରୀ ସଞ୍ଜୟ ଗାନ୍ଧୀଙ୍କ ହୁକୁମରେ ପରିବାରନିୟନ୍ତ୍ରଣ ଓ ଜନ୍ମନିରୋଧ ନାମରେ ଅକଥନୀୟ ଅତ୍ୟାଚାର ଆରମ୍ଭ ହୋଇଯାଇଥିଲା । ସେସବୁ ଅତ୍ୟାଚାରର କାହାଣୀ ପାର୍ଲିଆମେଣ୍ଟ ସଦସ୍ୟମାନଙ୍କ କାନରେ ପଡୁଥାଏ; ମାତ୍ର ସ୍ୱର ଉଠାଇବାର କାହାର ସାହସ ନଥାଏ । ପାର୍ଲିଆମେଣ୍ଟ ମଧ ଅତି ନିର୍ଜୀବ ଅବସ୍ଥାରେ ଥାଏ । ପାର୍ଲିଆମେଣ୍ଟରେ ବିରୁଦ୍ଧଦଳର ସଭ୍ୟମାନେ ସରକାର ଓ ତାଙ୍କର କାର୍ଯ୍ୟକଳାପ ସମ୍ବନ୍ଧରେ ସମାଲୋଚନା କଲେ ତାହା ଖବରକାଗଜରେ ପ୍ରକାଶପାଇଁ ଅନୁମତି ମିଳୁନଥିଲା । ସରକାର ଯେତିକି ଅନୁମୋଦନ କରୁଥିଲେ ସେତିକି ମାତ୍ର ପ୍ରକାଶ ପାଉଥାଏ । ଏହାର ପ୍ରତିବାଦ କରି ବିରୋଧୀ ଦଳର ସଭ୍ୟମାନେ ପାର୍ଲିଆମେଣ୍ଟ କାର୍ଯ୍ୟ ବିବରଣୀକୁ ବର୍ଜନ କରୁଥିଲେ । ପାର୍ଲିଆମେଣ୍ଟ ବୈଠକ ବର୍ଜନ ଜରୁରୀକାଳୀନ ପରିସ୍ଥିତି ଶେଷ ହେବା ପର୍ଯ୍ୟନ୍ତ ଚାଲିଥିଲା । ଆମ୍ଭେମାନେ ପାର୍ଲିଆମେଣ୍ଟକୁ ଯାଇ କେବଳ ସେଣ୍ଟ୍ରାଲ୍ ହଲ୍‌ରେ ବସି ବସି ଆସୁଥିଲୁ । ସେହି ସେଣ୍ଟ୍ରାଲ୍ ହଲ୍‌ରେ ମୋର ଦିନେ ଶ୍ରୀ କେ. ସି. ପନ୍ତଙ୍କ ସହିତ ଦେଖାହୋଇଥିଲା । ସେ ମୋତେ ଦେଖି କୁଣ୍ଢାଇପକାଇଥିଲେ ଏବଂ ଜରୁରୀ ପରିସ୍ଥିତିରେ ମୁଁ ଜେଲ୍‌ରେ ନ ଥାଇ ବାହାରେ କିପରି ଅଛି ବୋଲି ପଚାରି ବଡ଼ ବିସ୍ମିତ ହୋଇଥିଲେ । ମୋତେ କିପରି ନନ୍ଦିନୀ ଦେବୀ ଜେଲ୍ ବାହାରେ ରଖିବାକୁ ଦେଇଥିଲେ ତାହା ତାଙ୍କୁ ବଡ଼ ଆଶ୍ଚର୍ଯ୍ୟ କରିଥିଲା । ସ୍ୱର୍ଗୀୟ ଗୋବିନ୍ଦବଲ୍ଲଭ ପନ୍ତଙ୍କ ପୁତ୍ର ଶ୍ରୀ ପନ୍ତ ସେତେବେଳେ କେନ୍ଦ୍ର ସରକାରରେ ଜଣେ ମନ୍ତ୍ରୀ ଥିଲେ ମଧ ତାଙ୍କ ମନରେ ବହୁତ ଦୁଃଖ ଥିଲା ଭଳି ମୁଁ ଅନୁଭବ କରିଥିଲି । ଦିଲ୍ଲୀରେ ପାର୍ଲିଆମେଣ୍ଟ ଲାଇବ୍ରେରି ଗୋଟିଏ ଅତି ଉତ୍କୃଷ୍ଟ ଲାଇବ୍ରେରି । ସେଥିରେ ସବୁପ୍ରକାର ପୁସ୍ତକ ଭରପୂର ହୋଇ ରହିଥାଏ । ମୁଁ ଯେଉଁ ଚଉଦମାସ ରାଜ୍ୟସଭାର ସଦସ୍ୟ ହୋଇ ରହିଲି ସେ ସମୟରେ ଏହି ପାର୍ଲିଆମେଣ୍ଟ ଲାଇବ୍ରେରିର ବହି ପଢ଼ି ସମୟ କଟାଇପାରିଥିଲି । ଏହି ସମୟରେ ବହୁ ପୁସ୍ତକ ଅଧ୍ୟୟନ କରିବାର ସୁଯୋଗ ମୁଁ ପାଇଥିଲି ।

## ବିଜୁଙ୍କ ବିସ୍ମୟକର ବିବୃତି

ମୁଁ ପାର୍ଲିଆମେଣ୍ଟ ଅଧିବେଶନ ସମୟରେ ଦିଲ୍ଲୀରେ ଥିବାବେଳେ ବିଜୁ ପଟ୍ଟନାୟକ ଓ ରବି ରାୟ ପାରୋଲରେ ଖଲାସ ହୋଇ ଦିଲ୍ଲୀରେ ରହୁଥିଲେ । ମୋର ସେମାନଙ୍କ ସହିତ ଦେଖାହେଉଥିଲା । ବିଜୁବାବୁ ଟିକେ ଉତ୍ସାହହୀନ ଥିଲା ଭଳି ମୋର ମନେହେଉଥିଲା । ସେ ପାରୋଲରେ ଥିଲାବେଳେ ଅନେକ ସମୟରେ ମହମ୍ମଦ ୟୁନୁସ ଆସି ତାଙ୍କ ସହିତ ମିଶୁଥିଲେ । ମହମ୍ମଦ ୟୁନୁସ ଇନ୍ଦିରା ଗାନ୍ଧୀଙ୍କର

ଅତି ବିଶ୍ୱସ୍ତ ବ୍ୟକ୍ତି ଥିଲେ । ବିଜୁବାବୁଙ୍କ ମନର ଦୁର୍ବଳତାର ସୁଯୋଗନେଇ ତାଙ୍କଠାରେ ଇନ୍ଦିରାଙ୍କ କାର୍ଯ୍ୟକୁ ସମର୍ଥନ କଲାଭଳି ମନୋଭାବ ମହମ୍ମଦ ୟୁନୁସ ସୃଷ୍ଟିକରୁଥିବାର ମୁଁ ସନ୍ଦେହ କରୁଥିଲି । କାରଣ ସେମାନଙ୍କ କଥାବାର୍ତ୍ତା ପରେ ମୁଁ ଓ ଓଡ଼ିଶାର ଅନ୍ୟାନ୍ୟ ବନ୍ଧୁମାନେ ବିଜୁବାବୁଙ୍କୁ ଯେତେବେଳେ ଭେଟିଛୁ ସେ ଜରୁରୀକାଳୀନ ଅବସ୍ଥାରେ ଦେଶବାସୀ କେତେକ କ୍ଷେତ୍ରରେ କିପରି ଉପକୃତ ହୋଇଛନ୍ତି ତା'ର ସୂଚନା ଦେବାକୁ ସଂକୋଚ ମନେକରିନଥିଲେ । ଚୌଧୁରୀ ଚରଣ ସିଂହ ମଧ୍ୟ ସେତେବେଳେ ପାରୋଲରେ ଖଲାସ ହୋଇ ଦିଲ୍ଲୀରେ ଅବସ୍ଥାନ କରୁଥିଲେ । ମୁଁ ତାଙ୍କୁ କେତେଥର ଭେଟିଥିଲି । ଇନ୍ଦିରା ଗାନ୍ଧୀଙ୍କ ସହିତ କୌଣସି ବୁଝାମଣା କରିବା ଉଦ୍ଦେଶ୍ୟରେ ସେ ବାହାରେ ଅଛନ୍ତି ବୋଲି ସେତେବେଳେ ଗୁଜବ ହେଉଥାଏ । କିଛିଦିନ ପରେ ବିଜୁବାବୁ ଯେତେବେଳେ କାରାଗାରରୁ ମୁକ୍ତି ପାଇଲେ, ଭୁବନେଶ୍ୱରଠାରେ ତାଙ୍କର ବିବୃତି ମୋର ସନ୍ଦେହର ଯଥାର୍ଥତାକୁ ପ୍ରତିପାଦନ କରିଥିଲା । ୧୯୭୬ ମସିହା ଅକ୍ଟୋବର ୧୫ ତାରିଖରେ ସେ ଭୁବନେଶ୍ୱର ବିମାନଘାଟିରେ ଅବତରଣ କଲାବେଳେ ହଜାର ହଜାର ଲୋକ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଥିଲେ । ସେହିଦିନ ସେ ଖବରକାଗଜକୁ ଗୋଟିଏ ବିବୃତି ଦେଇଥିଲେ । ଉକ୍ତ ବିବୃତିଟି ସେ ୟୁନୁସଙ୍କ ସହିତ ପରାମର୍ଶ କରି ଦିଲ୍ଲୀରୁ ଲେଖି ଆଣିଥିଲେ ବୋଲି ପରେ ଜଣାଯାଇଥିଲା । ଭୁବନେଶ୍ୱରରେ ପହଞ୍ଚିବା ପରେ ବିଜୁବାବୁ ଯେଉଁ ବିବୃତି ଦେବେ ତାହାକୁ ଭଲଭାବରେ ପ୍ରକାଶ କରିବାପାଇଁ ଜରୁରୀକାଳୀନ ପରିସ୍ଥିତିରେ ଚାଲୁଥିବା ଏକମାତ୍ର ସମ୍ବାଦସରବରାହ ସଂସ୍ଥା 'ସମାଚାର'କୁ ଉପରମହଲରୁ ଆଗୁଆ ନିର୍ଦ୍ଦେଶ ଆସିଥିଲା । ଏହା ନିଶ୍ଚୟ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଉକ୍ତ ବିବୃତିରେ ଶ୍ରୀ ପଟ୍ଟନାୟକ ଜରୁରୀକାଳୀନ ଅବସ୍ଥାର ସଫଳତାକୁ ତାରିଫ କରିଥିଲେ । ତାହା ପ୍ରକାଶ ପାଇବା ପରେ କେତେକ କ୍ଷେତ୍ରରୁ ତାହା ସମାଲୋଚିତ ହୋଇଥିଲା । ମାତ୍ର ଏହା ଗୋଟିଏ କୌଶଳ ବୋଲି ଶ୍ରୀ ପଟ୍ଟନାୟକଙ୍କ ମହଲରୁ କୁହାଯାଇଥିଲା । ଉକ୍ତ ବିବୃତିରେ ସେ କହିଥିଲେ : "During the last year since Government decided to assume extraordinary powers, restrict the Courts and curtail civil liberty, some decidedly good things have happened in the Nation's economy. It is inconceivable that with an unbridled press and Parliament then, Government could have taken any firm, prudent or pragmatic steps long overdue, without being sliced and dubbed as lackeys of black money, deviationists, anti-socialist, anti-labour etc. Yet nearly Rs. 2000 crores of floating money was brought to account, trade balances stand at Rs. 1100 crores inspite of heavy tole by international oil prices, food stocks buffered at 2½ billion Dollars, smuggling curbed, galloping inflation arrested and rupee made stronger day by day. General discipline was enforced and thousands of inept officials were put aside. Healthy socio-economic programmes under the style of 20-point programme was floated and backed by unusual Government insistence of its implementation.

" With sweeping action taken by Government propelled by emergent powers, there is bound to be and has been lapses and excesses excercised by myriad minions of Government who with unfettered powers to execute, never had it so good. xx I do not believe that the great legacy of free democracy of Jawaharlal Nehru can be abandoned on any length of time by his daughter the Prime Minister, who maintains that India would never deviated from the path of Democracy.

"I would conclude by saying that the distinctive gains made by the nation during this period should not only be maintained but strengthened not through fear but by awakening of national consciousness of the citizens. xxx I submit that leaders of Government and Opposition work out a way by which tearing at each other as before is conclusively abandoned, hatchets burried xxx and make the nation strong and self-reliant. xxx In the nature of things to-day, it rests with the Prime Minister to initiate action with courage and confidences which she is known not to lack."

ଉପରୋକ୍ତ ବିଷୟଟି ସମ୍ବନ୍ଧରେ ମହମ୍ମଦ ୟୁନୁସଙ୍କଦ୍ୱାରା ଲିଖିତ "Persons, Passions and Politics' ପୁସ୍ତକର ୨୫୩ ଓ ୨୫୪ ପୃଷ୍ଠାରେ ଉଲ୍ଲେଖ କରାଯାଇଛି । ଇନ୍ଦିରାଙ୍କ ଦୂତ ଭାବରେ ଶ୍ରୀ ୟୁନୁସ କିପରି କାର୍ଯ୍ୟ କରୁଥିଲେ ସେ ବିଷୟରେ ଆଭାସ ଦେଇ ସେ ସେଥିରେ ଲେଖିଛନ୍ତି–

"I was inducted into political parleys at about this time. It showed how deep was the vaccum in our political life. Throught out 1976, I was meeting Biju Pattanaik and later at his instance, Choudhuri Charan Singh. Both had been released on parole and seemed fed up with the activities of certain sections of the opposition."

x x x

"Both Charan Singh and Pattanaik wanted to bring about some rapprochment. Pattanaik insisted that since they could not hold talks with Mrs. Gandhi directly, I should be made available for this purpose. I also made it plain that they should not bring in others into the picture. So the talks were confined to these two at Pattanaik's house in New Delhi xxx But the sudden announcement of General Election in January 1977 brought these negotiations to an abrupt end. The national scene was completely altered."

## ବାବୁଲ୍‌ର ବିବାହ

ଠିକ୍ ଜରୁରୀକାଳୀନ ପରିସ୍ଥିତି ଘୋଷଣା ହେବା ପୂର୍ବରୁ ମୋର ପୁତୁରା ଶଚ୍ଚିକାନ୍ତର ବିବାହ ସଂପନ୍ନ ହୋଇଯାଇଥିଲା । ପଶୁପାଳନ ଓ ପଶୁଚିକିତ୍ସା ବିଭାଗର ପୂର୍ବତନ ନିର୍ଦ୍ଦେଶକ ଶ୍ରୀ ଗଣେଶ୍ୱର ବିଶ୍ୱାଳଙ୍କ କନ୍ୟା ଆୟୁଷ୍ମତୀ ଶାନ୍ତି ସହିତ ତା'ର ବିବାହ ହୋଇଥିଲା । କନ୍ୟାଟି ଯୋଗ୍ୟା ଓ ଉଚ୍ଚଶିକ୍ଷିତା ଥିବାରୁ ଆମର ଆପତ୍ତି କରିବାର କିଛି ନଥିଲା । ଗୋଟିଏ ପରିବାରରେ ଘରେ ବଡ଼ପୁଅର ବିବାହ ସଂପନ୍ନ ହୋଇ ନଥିଲେ କନିଷ୍ଠମାନଙ୍କର ବିବାହ ପ୍ରଶ୍ନ ଉଠିବାରେ ଯେଉଁ ସାମାଜିକ ସଂକୋଚ ଅନୁଭବ କରାଯାଏ ମୋର ପୁଅ ବାବୁଲ୍‌ର ବିବାହ ପ୍ରସଙ୍ଗରେ ତାହା ବର୍ତ୍ତମାନ ଦୂରହୋଇଥିଲା ।

ମୋ ସ୍ତ୍ରୀର ମୃତ୍ୟୁ ପରେ ପୁଅର ବିଭାଘର ଜରୁରୀ ହୋଇପଡ଼ିଥିଲା, ମାତ୍ର ସେଥିପାଇଁ ଧ୍ୟାନ ଦେଇପାରୁନଥିଲି । ବର୍ତ୍ତମାନ ସେଥିପାଇଁ ବିଶେଷ ଧ୍ୟାନ ଦେବାକୁ ସମୟ ପାଇଥିଲି । ମୋ ପୁଅ ପାଇଁ ମନଲାଖି କନ୍ୟାଟିଏ ବାଛିବାର ଦାୟିତ୍ୱ ଯେ ମୋ ଉପରେ ପଡ଼ିବ– ମୁଁ ପୂର୍ବରୁ କେବେ ଭାବି ନଥିଲି । ତା'ର ମାମା ଘରର ସବୁକଥା ବୁଝୁଥିଲା । ତା'ର ମାମାର ମୃତ୍ୟୁ ପରେ ସେଥିପାଇଁ ମୁଁ ମନେ ମନେ ବଡ଼ ଉଦ୍‌ବିଗ୍ନ ହୋଇପଡ଼ିଥାଏ । ଅନେକ ଆଡ଼ୁ ନାନା ପ୍ରସ୍ତାବ ଆସୁଥାଏ ।

ତା'ଭିତରୁ କେଉଁଟି ଭଲହେବ ସେ ବିଷୟ ସ୍ଥିରକରିବା ମୋ ପକ୍ଷରେ କଷ୍ଟକର ମନେହେଉଥାଏ । ଗୋଟିଏ ମାତ୍ର ପୁଅ, ତେଣୁ ଘରକୁ ଯେଉଁ ବୋହୂ ଆସିବ ସେ ଯଦି ସର୍ବଗୁଣସଂପନ୍ନା ନହୁଏ,

ସାମାଜିକ ଜୀବନ ଯାପନ କରିବା ଦିଗରେ ଓ ଘର ଚଳାଇବା ଦିଗରେ ତା'ର ଯଦି ସହିଷ୍ଣୁତା ନଥାଏ ତା'ହେଲେ ଘର କେବେ ସୁଖମୟ ହେବନାହିଁ ବୋଲି ମୁଁ ଚିନ୍ତିତଥାଏ । ତେଣୁ ଅତି ସାବଧାନତା ସହିତ ମୁଁ ସବୁ ପ୍ରସ୍ତାବକୁ ବିଚାରକରୁଥାଏ । କଟକ ସହରରେ ଅବସ୍ଥିତ ଚୌଦ୍ଦବରା ଅଞ୍ଚଳର ଶ୍ରୀ ପଦ୍ମଚରଣ ପାତ୍ର ଆମ ଘରର ଜଣେ ଶୁଭାକାଂକ୍ଷୀ । ପ୍ରସ୍ତାବଗୁଡ଼ିକର ଭଲମନ୍ଦ ସଂପର୍କରେ ବିଚାର କରିବା ଦିଗରେ ସେ ମୋର ସହାୟକ ଥିଲେ । ଅନେକ ସମୟରେ ଆମେ ଦୁଇଜଣ ବସି ବାବୁଲ୍‌ର ବିଭାଘର ବିଷୟରେ ଆଲୋଚନା କରୁଥାଉ । ଏହି ସମୟରେ ପୁଲିସ ବିଭାଗର ସେତେବେଳକାର ଡି.ଆଇ.ଜି. ଶ୍ରୀ ଗୋବିନ୍ଦଚନ୍ଦ୍ର ସେନାପତି ଓ ଶ୍ରୀମତୀ ଗୀତା ସେନାପତିଙ୍କ କନ୍ୟା ଆୟୁଷ୍ମତୀ ଜ୍ୟୋତି ସମ୍ବନ୍ଧରେ ଅବସରପ୍ରାପ୍ତ ପୁଲିସ୍ ଡି.ଏସ୍.ପି. ଶ୍ରୀ ପରମାନନ୍ଦ ବିଶ୍ୱାଳ ମୋତେ ପ୍ରସ୍ତାବ ଆଣି ଦେଇଥିଲେ । କନ୍ୟାଟି ଶ୍ରୀରାମଚନ୍ଦ୍ରଭଞ୍ଜ ମେଡ଼ିକାଲ କଲେଜରୁ ଡାକ୍ତରୀ ପାସ୍ କରି ସେହିଠାରେ ହାଉସ୍‌ସର୍ଜନ ଭାବରେ କାର୍ଯ୍ୟ କରୁଥାଏ । ଡାକ ନାଆଁ ମିନି । ସବୁ ଆଡ଼ୁ ଖବର ନେଇ ବୁଝିଲି ଯେ ଝିଅଟିର ରୂପ ଓ ଗୁଣ ସବୁ ସୁନ୍ଦର ଏବଂ ଘରେ ଚଳିବାପାଇଁ ଓ ଘର ଚଳାଇବାପାଇଁ ସେ ସୁଯୋଗ୍ୟା । ଶ୍ରୀ ସେନାପତିଙ୍କ ଘର ବାଲେଶ୍ୱର ଜିଲ୍ଲାର ସିଙ୍ଗଲା ଥାନା ଅନ୍ତର୍ଗତ ଲଙ୍ଗଳେଶ୍ୱର ଅଞ୍ଚଳର ବଣିଆଡ଼ିହା ଗ୍ରାମରେ । ଏହି ଗ୍ରାମର ପାର୍ଶ୍ୱବର୍ତ୍ତୀ ବୋଳଙ୍ଗ ଗ୍ରାମଟି ଲବଣ ସତ୍ୟାଗ୍ରହପାଇଁ ପ୍ରସିଦ୍ଧି ଲାଭ କରିଥିଲା । ସେନାପତିଙ୍କ ବାପା ଶ୍ରୀ ବଟକୃଷ୍ଣ ସେନାପତି ଜଣେ ଲବ୍‌ଧପ୍ରତିଷ୍ଠ ବୟୋଜ୍ୟେଷ୍ଠ ସ୍ୱାଧୀନତା-ସଂଗ୍ରାମୀ । ଲବଣ ସତ୍ୟାଗ୍ରହ ଓ ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ସେ ଏକାଧିକବାର କାରାବରଣ କରିଥିଲେ । ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ପୂର୍ବରୁ ସେ ଜଣେ ସଂସ୍କୃତ ଶିକ୍ଷକ ଥିଲେ । ନବତିତମ ବୟସରେ ପଦାର୍ପଣ କଲେ ମଧ୍ୟ ସେ ସୁସ୍ଥ, ସବଳ ଓ ନିରାମୟ ଅଛନ୍ତି । ଏହାର ପ୍ରଚ୍ଛନ୍ନ ତତ୍ତ୍ୱ ହେଉଛି ଯେ ସେ ଦିନରେ ଥରେ ଭୋଜନ କରନ୍ତି ଓ ସୂର୍ଯ୍ୟାସ୍ତ ପରେ କୌଣସି ପ୍ରକାର ଖାଦ୍ୟ ଗ୍ରହଣ କରନ୍ତିନାହିଁ । ନାତୁଣୀପାଇଁ ଏ ପ୍ରକାର ବିବାହ ପ୍ରସ୍ତାବରେ ସେ ସନ୍ତୋଷ ପ୍ରକାଶ କରୁଥିଲେ ବୋଲି ମୁଁ ଜାଣିବାକୁ ପାଇଥିଲି । ମୋର ବନ୍ଧୁ ଶ୍ରୀ ପ୍ରିୟନାଥ ନନ୍ଦୀଙ୍କୁ ଏ ବିଷୟରେ ବୁଝିବାପାଇଁ ଖବର ଦେଲି । ସେ ସବୁ କଥା ବୁଝି ମୋତେ କହିଲେ ସେହି କନ୍ୟାଟିକୁ ବୋହୂ କରି ଆଣିଲେ ଆମ ଘରକୁ ବେଶ୍ ମାନିବ । ବାବୁଲ୍‌ର ସାଙ୍ଗମାନଙ୍କ ଜରିଆରେ ତା ମନକଥା ଜାଣିବାକୁ ଚେଷ୍ଟାକଲି । ଜାଣିଲି କନ୍ୟାଟି ତା ମନଲାଖି ହୋଇଛି । ବାବୁଲ୍‌ର ଶିକ୍ଷକ ବ୍ରଜ ବି ସବୁ ଖବରଅନ୍ତର ନେଇ ଝିଅଟିକୁ ଖୁବ୍ ପ୍ରଶଂସା କରିଥିଲା । ସବୁ ଠିକ୍ ହୋଇ ଆସିଲାବେଳକୁ ପରିସ୍ଥିତିର ତାଡ଼ନାରେ ନାନା କାରଣରୁ ମୋ ଭାବୀ ସମୁଦିଙ୍କ ମନରେ ମସ୍ତବଡ଼ ଦୋ-ଦୋ-ପାଞ୍ଚ ଆରମ୍ଭ ହେଲା । ତାଙ୍କ ଝିଅପାଇଁ ଘର ବର ସବୁ ତାଙ୍କର ଷୋଳପଣ ପସନ୍ଦ ହୋଇଥାଏ; ହେଲେ ମୁଣ୍ଡରେ ପଶିଥାଏ ମୋ ଭଳି ଜଣେ ରାଜନୈତିକ ବ୍ୟକ୍ତିଙ୍କ ସହିତ ଏଭଳି ଆତ୍ମୀୟତା ପ୍ରତିଷ୍ଠା କରିବାର ଭବିଷ୍ୟତ ନେଇ ନାନା ଆଶଙ୍କା । ତାଙ୍କ ମୁଣ୍ଡରୁ ଭୂତ ଛଡ଼ାଇବାପାଇଁ ମୁଁ ଗୁଣିଆ ଲଗାଇଲି । ମୋର ପୁରୁଣା ବନ୍ଧୁ ଶ୍ରୀ ଗଙ୍ଗାଧର ମହାପାତ୍ର ସେତେବେଳେ ମନ୍ତ୍ରୀ ଥିଲେ । ମୋ ସହିତ ତାଙ୍କର ଭଲ ସଂପର୍କ ଥାଏ । ଶ୍ରୀ ଶଶିଭୂଷଣ ମିଶ୍ର କଂଗ୍ରେସ ସାଧାରଣ ସଂପାଦକ ଭାବରେ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଦେବୀଙ୍କର ଟିକିଏ ବିଶ୍ୱସ୍ତ ଥିଲେ । ତାଙ୍କର ଆମ ପରିବାର ସହିତ ଘନିଷ୍ଠତା ଥାଏ । ତେଣୁ ବିବାହ ବିଷୟରେ ଶ୍ରୀ ସେନାପତିଙ୍କ ସହ କଥାବାର୍ତ୍ତା କରିବାପାଇଁ ମୁଁ ଏହି ଦୁଇଜଣଙ୍କୁ ଦାୟିତ୍ୱ ଦେଇଥିଲି । ସେମାନେ ଶ୍ରୀ ସେନାପତିଙ୍କ ଘରକୁ ଯାଇ ଏ ବିଷୟରେ କଥାବାର୍ତ୍ତା କରିଥିଲେ । ସେମାନଙ୍କ ସହିତ ସେନାପତିଙ୍କର ମଧ୍ୟ ପୂର୍ବରୁ ଭଲ ପରିଚୟ ଥାଏ । ସେମାନଙ୍କ ସହିତ କଥାବାର୍ତ୍ତା ହେବା ପରେ ସେ ବିବାହ ପ୍ରସ୍ତାବ ସମ୍ବନ୍ଧରେ ଖୁବ୍ ଉତ୍ସାହ ଦେଖାଇଥିଲେ । ତା'ପରେ ଝିଅର ଅଜା ଡାକ୍ତର ଶ୍ରୀ ମାର୍କଣ୍ଡ ମହାପାତ୍ର ଓ ବାଲେଶ୍ୱରର ଶ୍ରୀ ପ୍ରିୟନାଥ ନନ୍ଦୀ ଆସିଥିଲେ । ମୋ ସହିତ କଥାବାର୍ତ୍ତା କରି ବିବାହ ଦିନ ସ୍ଥିର ହୋଇଥିଲା । ୧୯୭୭ ମସିହା ଜାନୁୟାରୀ ମାସ ଅଣତ୍ରିଶ ତାରିଖ ଦିନ ବିଭାଘର ହେଲା ।

ଚଉଠୀ ଉତ୍ସବ କରିଥିଲି ମୋର କଟକ କ୍ୟାଣ୍ଟନ୍‌ମେଣ୍ଟ ବାସଭବନରେ । ରାତ୍ରଭୋଜନ ବ୍ୟବସ୍ଥା ନକରି ଟିକିଏ ଭଲରକମ ଜଳଯୋଗର ଆୟୋଜନ କରିଥିଲି । କିନ୍ତୁ ବନ୍ଧୁ ପ୍ରିୟଜନଙ୍କୁ ନିମନ୍ତ୍ରଣ କରିଥିଲି । ସବୁ ଶ୍ରେଣୀର ଲୋକଙ୍କୁ ନିମନ୍ତ୍ରଣ କରିଥିଲି । ମୁଁ ନିଜେ ଯାଇ ବନ୍ଧୁ ଲୋକଙ୍କୁ ଆମନ୍ତ୍ରଣ ଜଣାଇଥିବାରୁ ପ୍ରାୟ ସମସ୍ତେ ଉତ୍ସବକୁ ଆସିଥିଲେ । ସମସ୍ତଙ୍କର ଓ ସବୁ ଶ୍ରେଣୀର ଲୋକଙ୍କର ସମାବେଶ ଦେଖି ଶ୍ରୀ ମହତାବ କହିଥିଲେ, "ସମସ୍ତଙ୍କୁ ଏପରି ଭାବରେ ଏକତ୍ରିତ ହେବାର ଦେଖି ମନେହେଉଛି ଯେପରି ଦେଶରେ ଆଉ ଏମରଜେନ୍‌ସି ନାହିଁ ।" ଓଡ଼ିଶାର ବିଭିନ୍ନ ଜିଲ୍ଲାମାନଙ୍କରେ ଥିବା ମୋର ବନ୍ଧୁ ରାଜନୈତିକ ବନ୍ଧୁମାନଙ୍କୁ ଏହି ଉତ୍ସବକୁ ନିମନ୍ତ୍ରଣ କରିଥିଲି ଏବଂ ସେମାନେ ଅତି ସହୃଦୟତା ପ୍ରକାଶ କରି ଏହି ଉତ୍ସବକୁ ଦୂରଦୂରାନ୍ତରୁ ଆସିଥିଲେ । ବହୁଦିନର ଈପ୍‌ସିତ ମୋର ଅଭିଳାଷ ପୂରଣ ହୋଇଥିଲା ଯେଉଁଦିନ ମୋ ଘରକୁ ମୋ ବୋହୂ ଆସିଥିଲା । ମୁଁ ଅତ୍ୟନ୍ତ ସୁଖୀ ଯେ ମୋର ମନଲାଖି ବୋହୂଟିଏ ମୁଁ ପାଇଛି । ସମସ୍ତଙ୍କୁ ନିଜର କରି ସେ ଘର ଚଳାଇପାରୁଛି । ତା'ର ବ୍ୟବହାରରେ ମୁଁ ମୁଗ୍ଧ ଏବଂ ମୋର ଘରେ ତା'ର ଆବିର୍ଭାବ ସମସ୍ତଙ୍କୁ ସନ୍ତୋଷଦେଇଛି । ମୁଁ ଅତ୍ୟନ୍ତ ଭାଗ୍ୟବାନ୍ ଯେ ଭଗବାନ୍ ମୋତେ ଗୋଟିଏ ମନଲାଖି ନାତି ଦେଇ ଆଶୀର୍ବାଦ କରିଛନ୍ତି । ୧୯୮୧ ମସିହା ଜୁଲାଇ ୩ ତାରିଖ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପବିତ୍ର ଶ୍ରୀଗୁଣ୍ଡିଚାରେ ତା'ର ଜନ୍ମ । ତା'ର ବାପା ମା ବନଦୁର୍ଗାଙ୍କୁ ଆରାଧନା କରି ତାକୁ ପାଇଥିବାରୁ ତା'ର ନାମ ଦୁର୍ଗାଦତ୍ତ ଦିଆଯାଇଛି । ମାତ୍ର ଶ୍ରଦ୍ଧାରେ ଆମ୍ଭେମାନେ ତାକୁ 'କୁଟୁ' ବୋଲି ଡାକୁଛୁ । ଭଗବାନ୍‌ଙ୍କଠାରେ ଏକମାତ୍ର ପ୍ରାର୍ଥନା ସେ ଭଲ ମଣିଷଟିଏ ହୋଇ ଦୀର୍ଘାୟୁ ହେଉ । କୁଟୁ ଜନ୍ମର ଦୁଇ ବର୍ଷ ୪ ମାସ ବ୍ୟବଧାନରେ ୧୯୮୩ ମସିହା ନଭେମ୍ବର ୧୧ ତାରିଖରେ ମୋର ଦ୍ୱିତୀୟ ନାତିଟି ଜନ୍ମହୋଇଥିଲା । ଆନନ୍ଦରେ ଆମ୍ଭେମାନେ ତା'ର ନାମ ବିଷ୍ଣୁବ୍ରତ ରାଉତରାୟ ଦେଇଛୁ । ତାକୁ ଶ୍ରଦ୍ଧାରେ ଜିତୁ ବୋଲି ଡାକୁଛୁ । ବଡ଼ ନାତିପରି ସେ ବି ଅତି ଗେହ୍ଲା ! ତା'ରି ପରି ସେ ଆଚାର ଓ ବ୍ୟବହାର ଓ ପଢ଼ାପଢ଼ିରେ ବେଶ୍ ଭଲ । ତାକୁ ମୁଁ ଭଲ ମଣିଷଟିଏ ହେବାକୁ ଆଶୀର୍ବାଦ କରୁଛି । ମୋର ବୋହୂର ବଡ଼ ଇଚ୍ଛା ହୋଇଥିଲା ତା'ର ଶ୍ୱଶୁରଙ୍କୁ ମୁଖ୍ୟମନ୍ତ୍ରୀ ହିସାବରେ ଦେଖିବାକୁ । ଅଳି କଲାଭଳି ସେକଥା ସେ ମୋତେ କେତେ ଥର କହିଛି । ଠିକ୍ ସେହି ସମୟରେ ଓଡ଼ିଶାରେ ଗୋଟିଏ ଶାସନ-ସଙ୍କଟ ଦେଖାଦେଇଥିଲା । ସେହି ମଧ୍ୟବର୍ତ୍ତୀକାଳୀନ ପରିବର୍ତ୍ତନ ସମୟରେ ମୁଁ ମୁଖ୍ୟମନ୍ତ୍ରୀ ହେଲେ ସେ ଖୁସି ହେବ ବୋଲି ମୋତେ ଦିଲ୍ଲୀ ଟେଲିଫୋନ୍ କରି ଶୀଘ୍ର ଓଡ଼ିଶା ଆସିବାକୁ କହିଥିଲା । ତାର ବାହାଘରର ଛ'ମାସ ମଧ୍ୟରେ ମୁଁ ୧୯୭୭ ମସିହାରେ ଯେତେବେଳେ ମୁଖ୍ୟମନ୍ତ୍ରୀ ହେଲି ସେ ଭାରି ଖୁସିହୋଇଥିଲା; ମାତ୍ର ସେଥିରେ ସେ ଅହଙ୍କାରୀ ନହୋଇ ବିନୟୀ ହୋଇଥିଲା, ଗର୍ବ ନଦେଖାଇ ନମ୍ର ହୋଇଥିଲା । ମୁଁ ଯେତେବେଳେ ମୁଖ୍ୟମନ୍ତ୍ରୀ ମୋ ବୋହୂର ବାପା ସେତେବେଳେ ଦୁର୍ନୀତି ନିବାରଣ ବିଭାଗର ଆଇ.ଜି. । ମାତ୍ର ସେଥିରେ ସେ ଗରିମା ନଦେଖାଇ ନମ୍ର ଆଚରଣ ଦେଖାଉଥିଲା । ରାଜ୍ୟପାଳଙ୍କର କୌଣସି ସୌଜନ୍ୟ ନିମନ୍ତ୍ରଣ (At Home Party)କୁ ସେ ଯିବାକୁ ଭଲପାଏନାହିଁ । ସେହିପରି ଅନ୍ୟ ସରକାରୀ ଅଭ୍ୟର୍ଥନାକୁ ମଧ୍ୟ ଯାଉନଥିଲା । ଯାହାହେଉ, ଈଶ୍ୱରଙ୍କ କୃପାରୁ ମୋ ସ୍ତ୍ରୀ ନଳିନୀ ଦେହ ଛାଡ଼ିବାର ଦୀର୍ଘ ଚାରି ବର୍ଷ ପରେ ବୋହୂ ମିନି ଆସି ମୋ ମୁଣ୍ଡର ବୋଝ ହାଲ୍‌କା କରିଦେଇଛି । ସେ ବୋହୂପରି ବୋହୂଟିଏ ହୋଇଛି ।

## ନନ୍ଦିନୀ-ସଞ୍ଜୟ ପର୍ବ ଓ ନନ୍ଦିନୀଙ୍କ ପତନ

ଜରୁରୀକାଳୀନ ଅବସ୍ଥା ସମୟରେ ସବୁ କାର୍ଯ୍ୟରେ ଓଡ଼ିଶା ପଦେ ପଦେ ଦିଲ୍ଲୀକୁ ଅନୁସରଣ କରୁଥିଲା । ଏଠାକାର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ନିଜକୁ ଛୋଟିଆ ଇନ୍ଦିରା ବୋଲି ମନେକରି ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ଅନୁକରଣ କରିବାଭଳି କାର୍ଯ୍ୟ କରୁଥିଲେ ।

ଜରୁରୀକାଳୀନ ଅବସ୍ଥାର ଶେଷଭାଗକୁ ଶ୍ରୀମତୀ ଶତପଥୀ ନାନା ଅସୁବିଧାର ସମ୍ମୁଖୀନ ହୋଇଥିଲେ । ୧୯୭୬ ମସିହା ଶେଷ ବେଳକୁ ତାଙ୍କ ମନ୍ତ୍ରିମଣ୍ଡଳରେ କନ୍ଦଳ ଆରମ୍ଭ ହୋଇଯାଇଥିଲା । ନନ୍ଦିନୀ ଦେବୀଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ହଟାଇବାପାଇଁ ଅର୍ଥମନ୍ତ୍ରୀ ବିନାୟକ ଆଚାର୍ଯ୍ୟଙ୍କ ପକ୍ଷରୁ ଗୋଟିଏ ଆନ୍ଦୋଳନ ଆରମ୍ଭ ହୋଇଯାଇଥିଲା । କେତେକ ମନ୍ତ୍ରୀ ମଧ୍ୟ ଶ୍ରୀ ଆଚାର୍ଯ୍ୟଙ୍କୁ ସମର୍ଥନ ଜଣାଇଥିଲେ । ସେମାନଙ୍କ ଛଡ଼ା ବାଚସ୍ପତି ଶ୍ରୀ ବ୍ରଜମୋହନ ମହାନ୍ତି, କେନ୍ଦ୍ର ଉପମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ, ଶ୍ରୀ ବନମାଳୀ ପଟ୍ଟନାୟକ ଓ ପୂର୍ବତନ ଅର୍ଥମନ୍ତ୍ରୀ ଶ୍ରୀ ବାଙ୍କବିହାରୀ ଦାସ ପ୍ରମୁଖ ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ଅଭିଯାନ ଆରମ୍ଭ କରି ଶ୍ରୀ ବିନାୟକ ଆଚାର୍ଯ୍ୟଙ୍କୁ ସମର୍ଥନ ଜଣାଇଥିଲେ । ବିଦ୍ରୋହୀମାନେ ସଞ୍ଜୟ ଗାନ୍ଧୀଙ୍କଠାରୁ ସମର୍ଥନ ପାଉଥିଲେ ବୋଲି ଶୁଣାଯାଉଥାଏ । ନନ୍ଦିନୀ ଦେବୀଙ୍କ ପକ୍ଷରୁ ମଧ୍ୟ ସେମାନଙ୍କ ବିରୁଦ୍ଧରେ ପ୍ରତ୍ୟାକ୍ରମଣ ଅଭିଯାନ ଆରମ୍ଭ କରାଯାଇଥିଲା । ନନ୍ଦିନୀ ଦେବୀଙ୍କ ଆତ୍ମୀୟମାନଙ୍କ ନେତୃତ୍ୱରେ ଦଳେ ଯୁବକ ତାଙ୍କର ସ୍ତୁତିଗାନ କରିବା ସଙ୍ଗେ ସଙ୍ଗେ ଭୟଭୀତ କରାଇ ନନ୍ଦିନୀ ଦେବୀଙ୍କୁ ବିରୋଧ କରୁଥିବା କଂଗ୍ରେସ ନେତାମାନଙ୍କୁ ଦବାଇଦେବାପାଇଁ ଅଭିଯାନ ଆରମ୍ଭ କରିଦେଇଥିଲେ । ସେମାନଙ୍କ ଦ୍ୱାରା ବିରୋଧୀ କଂଗ୍ରେସ ନେତାମାନଙ୍କ ଘର ପାଖରେ ହାତବୋମା ବିସ୍ଫୋରଣ ହେବାର ମଧ୍ୟ ଦେଖାଯାଇଥିଲା । ନନ୍ଦିନୀ ଦେବୀଙ୍କୁ 'ଏସିଆର ସୂର୍ଯ୍ୟ' ରୂପେ ଚିତ୍ରିତ କରାଗଲା । ଓଡ଼ିଶାର ବିଭିନ୍ନ ସହର କାନ୍ଥବାଡ଼ରେ ସୂର୍ଯ୍ୟ ଛବିମାନ ଆଙ୍କି ସୂର୍ଯ୍ୟରଶ୍ମି ଭିତରେ ନନ୍ଦିନୀ ଦେବୀଙ୍କ ମୁଖଚିତ୍ର ଅଙ୍କନ କରାଯାଇଥିଲା । ଇନ୍ଦିରାଙ୍କ ପରେ ନନ୍ଦିନୀ ତାଙ୍କର ଉତ୍ତରାଧିକାରିଣୀ ହେବେ ବୋଲି ମଧ୍ୟ ପ୍ରଚାର ଆରମ୍ଭ କରାଯାଇଥିଲା । ସାଧାରଣସଭାମାନଙ୍କରେ କଂଗ୍ରେସର ମନ୍ତ୍ରୀମାନେ ପରସ୍ପର ବିରୁଦ୍ଧରେ ଦୁର୍ନୀତି ଅଭିଯୋଗମାନ ଉଠାଇଥିଲେ । ଏହାଫଳରେ ଶାସନ ଏକପ୍ରକାର ଅଚଳ ଅବସ୍ଥାକୁ ଆସିଯାଇଥିଲା । ବିନାୟକ ଆଚାର୍ଯ୍ୟ ଓ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଗୋଷ୍ଠୀ ସଞ୍ଜୟ ଗାନ୍ଧୀଙ୍କୁ ପ୍ରଭାବିତ କରି କ୍ରମେ ତାଙ୍କର ପ୍ରତ୍ୟକ୍ଷ ସାହାଯ୍ୟ ପାଇପାରିଥିଲେ । ନନ୍ଦିନୀ ଦେବୀଙ୍କର ଏସିଆର ସୂର୍ଯ୍ୟ ଛବି ତାଙ୍କୁ ବଡ଼ ଅସୁବିଧାରେ ପକାଇଥିଲା । ସଞ୍ଜୟ ଗାନ୍ଧୀଙ୍କୁ ସେ ଛବି ଦେଖାଇ ନନ୍ଦିନୀ ଦେବୀ ତାଙ୍କର ମା' ଇନ୍ଦିରା ଗାନ୍ଧୀଙ୍କର ଉତ୍ତରାଧିକାରିଣୀ ହେବା କଥା ପ୍ରଚାର କରୁଛନ୍ତି ବୋଲି ତାଙ୍କୁ କୁହାଯାଉଥିଲା । ଏସବୁ କଥା ଶୁଣି ସଞ୍ଜୟ ଗାନ୍ଧୀ ବିଶେଷଭାବରେ କ୍ରୋଧାନ୍ୱିତ ହୋଇଥିଲେ ବୋଲି ମୁଁ ଦିଲ୍ଲୀର କଂଗ୍ରେସ ମହଲରୁ ଶୁଣିବାକୁ ପାଇଥିଲି । ଗୋଟିଏ ଆକାଶରେ ଦୁଇଟି ସୂର୍ଯ୍ୟ ରହିନପାରନ୍ତି । ସେ ଥାଉ ଥାଉ ନନ୍ଦିନୀ ଦେବୀ ନିଜକୁ ଏସିଆର ସୂର୍ଯ୍ୟ ବୋଲି କହି ତାଙ୍କ ମା'ଙ୍କର ଉତ୍ତରାଧିକାରିଣୀ ହେବାର ଆସ୍ପର୍ଦ୍ଧାକୁ ସଞ୍ଜୟ ଗାନ୍ଧୀ ସହ୍ୟ କରିପାରିନଥିଲେ । ତେଣୁ ନନ୍ଦିନୀ ଦେବୀ ଆଉ ମୁହୂର୍ତ୍ତେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇ ରହିବା ଉଚିତ ନୁହେଁ ବୋଲି ସଞ୍ଜୟ ଗାନ୍ଧୀଙ୍କର ହୃଦ୍‌ବୋଧ ହୋଇଥିଲା । ଏ ସଂପର୍କରେ ଆଉ ଗୋଟିଏ କଥା ମୁଁ ଜାଣେ । ଶ୍ରୀ ସଞ୍ଜୟ ଗାନ୍ଧୀଙ୍କୁ ପ୍ରଭାବିତ କରି ନନ୍ଦିନୀ ଦେବୀଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ହଟାଇବାପାଇଁ ଶ୍ରୀ ଜୟନ୍ତୀଲାଲ୍ ଆହିଆ (ରାମବାବୁ) ନାମକ ଜଣେ ଗୁଜୁରାଟୀ ଭଦ୍ରଲୋକଙ୍କ ସାହାଯ୍ୟ ବ୍ରଜମୋହନ ମହାନ୍ତି ପ୍ରଭୃତି କଂଗ୍ରେସ ନେତାମାନେ ନେଇଥିଲେ । ରାମବାବୁଙ୍କ ସହିତ ମୋର ମଧ୍ୟ ବେଶ୍ ଜଣାଶୁଣା ଥିଲା । ସେ ଭୁବନେଶ୍ୱରରେ ରବି ସିନେମା ପାଖରେ ଗୋଟିଏ ଘର ଭଡ଼ାନେଇ ତାଙ୍କ ପରିବାର ସହ ରହୁଥିଲେ । ନନ୍ଦିନୀ ଦେବୀଙ୍କ ଉପରେ ଅସନ୍ତୁଷ୍ଟ ହୋଇ ତାଙ୍କ ମନ୍ତ୍ରିମଣ୍ଡଳର ପତନ ଘଟାଇବା ଉଦ୍ଦେଶ୍ୟରେ ଶ୍ରୀ ବେଣୁଧର ନାୟକ, ଶ୍ରୀ ଅନନ୍ତରାମ ମାଝି, ଶ୍ରୀ ନାରାୟଣ ସାହୁ ଓ ଶ୍ରୀ ସନାତନ ଦେଓ ପ୍ରଭୃତି କେତେକ କଂଗ୍ରେସ ବିଧାନସଭା ସଦସ୍ୟ ରାମବାବୁଙ୍କ ଘରକୁ ଆସି ସମୟସମୟରେ ମୋ ସହିତ ପରାମର୍ଶ କରୁଥିଲେ । ରାମବାବୁଙ୍କ ଘରେ ଏ ପ୍ରକାର ଚକ୍ରାନ୍ତ ଚାଲିଛି ବୋଲି ନନ୍ଦିନୀ ଦେବୀଙ୍କ ଲୋକମାନେ ସନ୍ଧାନପାଇଥିଲେ । ତେଣୁ ରାମବାବୁଙ୍କୁ ଧମକଦିଆଯାଇଥିଲା, ଭୁବନେଶ୍ୱର ଛାଡ଼ି ଚାଲିଯିବାପାଇଁ । ଦିନେ ରାତିରେ ଦଳେ ଯୁବକଂଗ୍ରେସ ଲୋକ ବୋମା ସହିତ ତାଙ୍କ ଘର ଉପରେ

ଆକ୍ରମଣ କରିଥିଲେ ଏବଂ ସେଠାରେ ବିସ୍ଫୋରଣ ଘଟାଇଥିଲେ । ରାମବାବୁ ଯୁବକଂଗ୍ରେସର ଏ ପ୍ରକାର ଦୌରାତ୍ମ୍ୟ କଥା ମୁଖ୍ୟମନ୍ତ୍ରୀ ନନ୍ଦିନୀ ଦେବୀଙ୍କୁ କହିଥିଲେ ଏବଂ ଥାନାରେ ଏତଲା ଦେଇଥିଲେ । ତା'ର ଫଳ କିଛି ହେଲାନାହିଁ; ବରଂ ସେମାନଙ୍କ ଦୌରାତ୍ମ୍ୟ ଆହୁରି ବୃଦ୍ଧିପାଇଥିଲା । ଶେଷରେ ତାଙ୍କର ପରିବାରବର୍ଗଙ୍କ ନିରାପତ୍ତାପାଇଁ ରାମବାବୁଙ୍କୁ ଭୁବନେଶ୍ୱର ଛାଡ଼ି ଚାଲିଯିବାକୁ ପଡ଼ିଥିଲା । ତେଣୁ ସେ ମନେ ମନେ ନନ୍ଦିନୀ ଦେବୀଙ୍କ ଉପରେ ଖୁବ୍ ରାଗିଥାଆନ୍ତି । ନନ୍ଦିନୀ ଦେବୀଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ହଟାଇବାପାଇଁ କୌଣସି ଉଦ୍ୟମ ହେଲେ ସେଥିରେ ସେ ସାହାଯ୍ୟ କରୁଥିଲେ ଓ ଅର୍ଥ ମଧ୍ୟ ବ୍ୟୟ କରୁଥିଲେ । କଂଗ୍ରେସ ସଭାପତି ଶ୍ରୀ ବଡ଼ୁଆ ଓ ଶ୍ରୀ ସିଦ୍ଧାର୍ଥଶଙ୍କର ରାୟ ନନ୍ଦିନୀ ଦେବୀ ଯେପରି ମୁଖ୍ୟମନ୍ତ୍ରୀ ହୋଇ ରହନ୍ତୁ, ସେ ଦିଗରେ ପ୍ରଧାନମନ୍ତ୍ରୀଙ୍କୁ ପ୍ରଭାବିତ କରୁଥିଲେ । ସେମାନଙ୍କର ଏ ପ୍ରଭାବକୁ ଖଣ୍ଡନ କରିବାପାଇଁ ନନ୍ଦିନୀ ଦେବୀଙ୍କ ବିରୋଧୀ କଂଗ୍ରେସଗୋଷ୍ଠୀ ରାମବାବୁଙ୍କ ସାହାଯ୍ୟ ପାଇଥିଲେ । ପୂର୍ବରୁ ରାମବାବୁ ସଞ୍ଜୟ ଗାନ୍ଧୀଙ୍କ ସହିତ ଭଲ ସଂପର୍କ ରଖିଥିଲେ । ରାମବାବୁ ସଞ୍ଜୟ ଗାନ୍ଧୀଙ୍କୁ ଭେଟି ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ବହୁତ କଥା କହି ଏପରିଭାବରେ ଉତ୍ତେଜିତ କରିଥିଲେ ଯେ ସେ ସଙ୍ଗେ ସଙ୍ଗେ ଯାଇ ନନ୍ଦିନୀ ଦେବୀଙ୍କୁ ହଟାଇବାପାଇଁ ତାଙ୍କ ମା'ଙ୍କ ପାଖରେ ଜିଦ୍ ଧରି ବସିଥିଲେ । ମୁଁ ସେତେବେଳେ ଦିଲ୍ଲୀରେ ଥାଏ । ସଞ୍ଜୟ ଗାନ୍ଧୀଙ୍କ ପାଖରୁ ଫେରି ରାମବାବୁ ମୋତେ ସବୁ କଥା କହିଥିଲେ ।

ଏହି ପରିପ୍ରେକ୍ଷୀରେ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଦେବୀଙ୍କର ବିରୋଧୀମାନେ ଶ୍ରୀ ସଞ୍ଜୟ ଗାନ୍ଧୀଙ୍କ ସହାୟତାରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ପ୍ରଭାବିତ କରି ତାଙ୍କୁ ମୁଖ୍ୟମନ୍ତ୍ରୀ ଆସନରୁ ହଟାଇବାରେ ସମର୍ଥ ହୋଇଥିଲେ । ନନ୍ଦିନୀ ଦେବୀଙ୍କୁ ଇସ୍ତଫା ଦେବା କଥା କୁହାଯାଇଥିଲା; ମାତ୍ର ପ୍ରଥମେ ସେ ଇସ୍ତଫା ଦେବାକୁ ଅନିଚ୍ଛା ପ୍ରକାଶ କରିଥିଲେ । ଶେଷରେ ୧୯୭୬ ମସିହା ଡିସେମ୍ବର ମାସରେ ତାଙ୍କୁ ଇସ୍ତଫା ଦେବାକୁ ବାଧ୍ୟକରାଯାଇଥିଲା । ଶେଷରେ ସେ ତାହା କରିଥିଲେ । ନନ୍ଦିନୀ ଦେବୀ ଇସ୍ତଫା ଦେବାବେଳେ ତାଙ୍କ ଲୋକେ ନାନାପ୍ରକାର ଅଶାନ୍ତି ଉପଦ୍ରବ ସୃଷ୍ଟି କରିବେ ଏବଂ ସେମାନଙ୍କୁ ଆୟତ୍ତ କରିବାରେ ଓଡ଼ିଶା ପୁଲିସ କାଳେ ଅସହଯୋଗ କରିବେ ଆଶଙ୍କା କରି କେନ୍ଦ୍ର ସରକାର କେନ୍ଦ୍ରୀୟ ସଶସ୍ତ୍ର ପୁଲିସ ବାହିନୀକୁ ଅଣାଇ ସେଦିନ ଭୁବନେଶ୍ୱରରେ ପହଞ୍ଚାଇଥିଲେ । ନନ୍ଦିନୀ ଦେବୀଙ୍କର ମନ୍ତ୍ରିମଣ୍ଡଳର ପତନ ପରେ ଶ୍ରୀ ବିନାୟକ ଆଚାର୍ଯ୍ୟ କଂଗ୍ରେସ ଦଳର ନେତାରୂପେ ନିର୍ବାଚିତ ହୋଇ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ଶ୍ରୀ ଆଚାର୍ଯ୍ୟ ତାଙ୍କ ମନ୍ତ୍ରିମଣ୍ଡଳରେ ନନ୍ଦିନୀ ଦେବୀଙ୍କର ସମର୍ଥକ ଥିବା ଶ୍ରୀ ଗଙ୍ଗାଧର ମହାପାତ୍ର, ଶ୍ରୀ ଯଦୁନାଥ ଦାଶ ମହାପାତ୍ର ଓ କୃପାସିନ୍ଧୁ ଭୋଇ ପ୍ରଭୃତିଙ୍କୁ ସ୍ଥାନ ଦେଇନଥିଲେ । ଶ୍ରୀ ଆଚାର୍ଯ୍ୟଙ୍କ ମନ୍ତ୍ରିମଣ୍ଡଳରେ ମୁଖ୍ୟମନ୍ତ୍ରୀଙ୍କ ବ୍ୟତୀତ ସର୍ବଶ୍ରୀ ଲକ୍ଷ୍ମଣ ମଲ୍ଲିକ, ଶ୍ରୀବଲ୍ଲଭ ପାଣିଗ୍ରାହୀ, କାହ୍ନୁଚରଣ ଲେଙ୍କା, ଡାକ୍ତର ବେଣୁଧର ବଳୀୟାରସିଂହ, ଭାଗୀରଥି ଗମାଙ୍ଗ ଓ ରାମଚନ୍ଦ୍ର ଉଲାକା କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀରୂପେ ନିଯୁକ୍ତ ହୋଇଥିଲେ । ସର୍ବଶ୍ରୀ ଜଗନ୍ନାଥ ପଟ୍ଟନାୟକ, ଭଜମନ ବେହେରା ଓ ଶେଖ୍ ମତଲୁବ ଅଲ୍ଲୀ ପ୍ରମୁଖ ରାଷ୍ଟ୍ରମନ୍ତ୍ରୀରୂପେ ନିଯୁକ୍ତି ପାଇଥିଲେ । ଏଥିରେ ଅସନ୍ତୁଷ୍ଟ ହୋଇ ଏକସମୟରେ କଂଗ୍ରେସର କେତେଜଣ ପୁରୁଖା ପୂର୍ବତନ ମନ୍ତ୍ରୀ କଂଗ୍ରେସରୁ ଓହରି ଆସି ଆମ ଦଳ ସହିତ ମିଶି ମନ୍ତ୍ରିମଣ୍ଡଳ ଗଠନ କରିବାପାଇଁ କଥାବାର୍ତ୍ତା ଚଳାଇଥିଲେ । ମୁଁ ସେତେବେଳେ ରାଜ୍ୟସଭା ସଦସ୍ୟ ଥାଏ । ମୋ ନେତୃତ୍ୱରେ ମନ୍ତ୍ରିମଣ୍ଡଳ ଗଠନ କରିବାର ଉଦ୍ୟମ ହେଲେ ବହୁ କଂଗ୍ରେସ ସଭ୍ୟ ଦଳ ଛାଡ଼ି ସେଥିରେ ଯୋଗଦେବେ ବୋଲି ସୂଚନା ମିଳିଥିଲା । ମୋତେ ସେତେବେଳେ ଦିଲ୍ଲୀରୁ ଡକାଯାଇଥିଲା । ମୋ ସହିତ କଥାବାର୍ତ୍ତା ହେବାପରେ ସେମାନେ କଂଗ୍ରେସରୁ ଇସ୍ତଫା ଦେଇଥିଲେ । ଆମର ଏ ପ୍ରକାର ଉଦ୍ୟମ ଚାଲୁଥିବାବେଳେ ଓଡ଼ିଶା ପ୍ରଭୃତି ବହୁ ରାଜ୍ୟର ବିଧାନସଭା ଭଙ୍ଗାହେବ ବୋଲି ଘୋଷଣା କରାଯାଇଥିଲା । ତେଣୁ ଆମ୍ଭେମାନେ ବିକଳ୍ପ ମନ୍ତ୍ରିମଣ୍ଡଳ ଗଠନ ଦିଗରେ ଆଉ ଅଗ୍ରସର ହୋଇନଥିଲୁ ।

## ନନ୍ଦିନୀଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗ କଲା କିଏ ?

ଶ୍ରୀ ବିନାୟକ ଆଚାର୍ଯ୍ୟଙ୍କ ମନ୍ତ୍ରିମଣ୍ଡଳ ଗଠିତହେବା ପରେ ଶ୍ରୀମତୀ ନନ୍ଦିନୀ ଶତପଥୀ ଯେଉଁସବୁ ଦୁର୍ନୀତିମୂଳକ ଉପାୟରେ ଅଜସ୍ର ଧନସଂପତ୍ତିର ଅଧିକାରିଣୀ ହୋଇଥିବା ଅଭିଯୋଗଗୁଡ଼ିକୁ ପଦାରେ ପକାଇ ତାଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାପାଇଁ ଦିନେ ରାଜ୍ୟ ସଚିବାଳୟରେ ମୁଖ୍ୟମନ୍ତ୍ରୀ ଶ୍ରୀ ଆଚାର୍ଯ୍ୟ ଓ କେନ୍ଦ୍ର ଉପମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ମଧ୍ୟରେ ଆଲୋଚନା ହେବା କଥା ଗୋଟିଏ ବିଶ୍ୱସ୍ତ ସୂତ୍ରରୁ ମୁଁ ଖବର ପାଇଥିଲି । ଶ୍ରୀମତୀ ଶତପଥୀଙ୍କ ବିରୁଦ୍ଧରେ ଯେଉଁସବୁ ଦୁର୍ନୀତି ଅଭିଯୋଗ ହୋଇଥିଲା, ତାହାର ପ୍ରାଥମିକ ତଦନ୍ତ ଅବସରପ୍ରାପ୍ତ ବିଚାରପତି ଶ୍ରୀ ରାଜକିଶୋର ଦାସଙ୍କଦ୍ୱାରା କରାଇ ତାଙ୍କ ସୁପାରିସ୍ ଅନୁସାରେ କାର୍ଯ୍ୟାନୁଷ୍ଠାନ କଲେ ଭଲ ହେବ ବୋଲି କୁଆଡ଼େ ସେମାନଙ୍କ ଭିତରେ କଥାବାର୍ତ୍ତା ହୋଇଥିଲା । ପରେ ଦେଖାଗଲା ଯେ ୧୯୭୭ ମସିହା ମାର୍ଚ୍ଚ ମାସ ସାତ ତାରିଖରେ ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗରେ ଦୁଇଟି ମକଦ୍ଦମା ରାଜ୍ୟ ଦୁର୍ନୀତି ନିବାରଣ ବିଭାଗଦ୍ୱାରା ଆରମ୍ଭ କରାଯାଇଥିଲା । ଗୋଟିଏ ମକଦ୍ଦମାର ବିଷୟବସ୍ତୁ ଥିଲା ଅନ୍ୟାୟ ଉପାୟରେ ଗୃହ ନିର୍ମାଣ ଓ ଅନ୍ୟଟି ଥିଲା ଅନ୍ୟାୟ ଉପାୟରେ ଗୋଟିଏ ଛାପାଖାନା ହସ୍ତଗତ କରିବା । ଉକ୍ତ ମକଦ୍ଦମାରେ ଅଭିଯୋଗ କରାଯାଇଥିଲା ଯେ ଏକ ବିଦେଶୀ ରାଷ୍ଟ୍ର ପକ୍ଷରୁ ଓଡ଼ିଶାର ଜନସାଧାରଣଙ୍କୁ ଉତ୍ସର୍ଗ କରାଯାଇଥିବା ବହୁ ମୂଲ୍ୟର ଗୋଟିଏ ଉଚ୍ଚଶକ୍ତିସମ୍ପନ୍ନ ଛାପାଖାନା ମେସିନ୍‌କୁ ନନ୍ଦିନୀ ଦେବୀ ଆତ୍ମସାତ୍ କରି ନିଜ ପରିବାରବର୍ଗଙ୍କ ନାମରେ କରାଇନେଇଥିଲେ । ଏହା ଗୋଟିଏ ପୁଲିସ-ଧର୍ତ୍ତବ୍ୟ ଅପରାଧ ହୋଇଥିବାରୁ ପୁଲିସ କାର୍ଯ୍ୟାନୁଷ୍ଠାନ କରିଥିଲେ । ତା'ପରେ ସେଇ ମାସରେ ଶ୍ରୀ ବିନାୟକ ଆଚାର୍ଯ୍ୟଙ୍କର ମନ୍ତ୍ରିମଣ୍ଡଳର ଗୋଟିଏ ବୈଠକରେ ଅବସରପ୍ରାପ୍ତ ବିଚାରପତି ଶ୍ରୀ ରାଜକିଶୋର ଦାସଙ୍କୁ ନନ୍ଦିନୀଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗର ଅନୁସନ୍ଧାନପାଇଁ ନିଯୁକ୍ତ କରିବାର ନିଷ୍ପତ୍ତି ନିଆଯାଇଥିଲା । ମୁଁ ମୁଖ୍ୟମନ୍ତ୍ରୀ ହେବା ପରେ ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗ ସମ୍ବନ୍ଧରେ ମକଦ୍ଦମା ଆରମ୍ଭ କରିଥିଲି ବୋଲି ଯେଉଁମାନେ କହନ୍ତି, ତାହା ଏକାବେଳକେ ଭୁଲ୍ ଓ ଅସତ୍ୟ । ଏହା ପ୍ରକୃତରେ ଆରମ୍ଭ ହୋଇଥିଲା ଶ୍ରୀ ଆଚାର୍ଯ୍ୟଙ୍କ ସମୟରେ ଓ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଜ୍ଞାତସାରରେ ।

## ଓଡ଼ିଶାରେ ସଞ୍ଜୟ : ଋତୁରାଜ ବସନ୍ତ

ବିନାୟକ ଆଚାର୍ଯ୍ୟଙ୍କ ମନ୍ତ୍ରିମଣ୍ଡଳ ସମୟରେ ବିଶେଷ ଘଟଣା ହୋଇଥିଲା ସଞ୍ଜୟ ଗାନ୍ଧୀଙ୍କର ଓଡ଼ିଶା ଆଗମନ । ସେ ୧୯୭୭ ମସିହା ଜାନୁୟାରୀ ମାସ ଅଣତ୍ରିଶ-ତିରିଶ ଦୁଇଦିନ ଓଡ଼ିଶା ଆସିଥିଲେ । ତାଙ୍କୁ ଅଭ୍ୟର୍ଥନା ଜ୍ଞାପନ କରିବାପାଇଁ ଓଡ଼ିଶାରେ ବ୍ୟାପକ ଆୟୋଜନ କରାଯାଇଥିଲା । ଭବାନୀପାଟଣା, ବ୍ରହ୍ମପୁର ଓ କଟକ ପ୍ରଭୃତି ସ୍ଥାନମାନଙ୍କରେ ତାଙ୍କର ଅଭ୍ୟର୍ଥନା ଓ ସଭାପାଇଁ ଆୟୋଜନ କରାଯାଇଥିଲା । ଏସବୁ ସଭାର ଆୟୋଜନପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ ଛ' ଲକ୍ଷରୁ ଊର୍ଦ୍ଧ୍ୱ ଟଙ୍କା ଖର୍ଚ୍ଚକରାଯାଇଥିଲା । ସଭାରେ ସଞ୍ଜୟ ଗାନ୍ଧୀ ଦୁଇ ତିନି ମିନିଟ୍‌ରୁ ଅଧିକ ସମୟ କହିପାରୁନଥିଲେ । କଟକର ବାରବାଟୀ ପଡ଼ିଆରେ ତାଙ୍କର ଅଭ୍ୟର୍ଥନାପାଇଁ ବିରାଟ ଆୟୋଜନ କରାଯାଇଥିଲା । ତତ୍କାଳୀନ କେନ୍ଦ୍ର ଉପମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ସଞ୍ଜୟ ଗାନ୍ଧୀଙ୍କୁ 'ଋତୁରାଜ ବସନ୍ତ' ଆସିଛନ୍ତି ବୋଲି କହି ତାଙ୍କୁ ଓଡ଼ିଶାବାସୀଙ୍କ ପକ୍ଷରୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଥିଲେ । ଜାନକୀବାବୁଙ୍କର ଏ ପ୍ରକାର ଚାଟୁବାଣୀ ଶୁଣି ସଭାରେ ଖୁବ୍ ହାସ୍ୟରୋଳ ହୋଇଥିଲା । ଏବେ ମଧ୍ୟ ଲୋକେ 'ଋତୁରାଜ ବସନ୍ତ' କଥା ମନେପକାନ୍ତି । ସଞ୍ଜୟ ଗାନ୍ଧୀ ଉକ୍ତ ସଭାରେ ମାତ୍ର ତିନି ମିନିଟ୍ ଭାଷଣ ଦେଇଥିଲେ । ଜନ୍ମ-ନିରୋଧ, ବୃକ୍ଷରୋପଣ ଓ ଯୌତୁକ ବର୍ଜନ ଥିଲା ତାଙ୍କ ଭାଷଣର

ସର୍ବସ୍ୱ । ପୂର୍ବନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁସାରେ ସେଦିନ ବାରବାଟୀ ଷ୍ଟାଡ଼ିୟମ୍ ହଲ୍‌ରେ ଶୁଦ୍ଧ ଖଦଡ଼ ପରିଧାନ କରି ବହୁ ଶାସକ କଂଗ୍ରେସ ନେତା ଓ କର୍ମୀ ସଞ୍ଜୟ ଗାନ୍ଧୀଙ୍କର ଦର୍ଶନପାଇଁ ଅପେକ୍ଷା କରି ରହିଥିଲେ । ସାଧାରଣ ସଭାରେ ସଞ୍ଜୟ ଗାନ୍ଧୀ ସେମାନଙ୍କୁ ସେଠାରେ ଦର୍ଶନ ଦେବା କଥା ସ୍ଥିର ହୋଇଥାଏ । ସାଧାରଣ ସଭା ଶେଷହେଲାବେଳକୁ ସଞ୍ଜୟ ଗାନ୍ଧୀଙ୍କୁ ସେ କାର୍ଯ୍ୟକ୍ରମ କଥା ମନେପକାଇ ଦିଆଯାଇଥିଲା; ମାତ୍ର ସମୟନାହିଁ ବୋଲି କହି ସେ ଦିଲ୍ଲୀ ଫେରିଯିବାପାଇଁ ସେଠାରୁ ଚାଲିଯାଇଥିଲେ । ନେତୃସ୍ଥାନୀୟ ବ୍ୟକ୍ତିମାନେ କୁଆଡ଼େ ଅପଦସ୍ଥ ହୋଇ ସେଠାରୁ ଫେରିଯାଇଥିଲେ । ମୁଁ ସେଦିନ କଟକରେ ଥିଲି । ମୋର ଘର ମଧ୍ୟ ବାରବାଟୀ ପଡ଼ିଆ ପାଖରେ । ମୋ ଘରକୁ ଯାଇ ଅନେକ ଲୋକ ସଞ୍ଜୟ ଗାନ୍ଧୀଙ୍କ ସଭା ଓ ଅନ୍ୟାନ୍ୟ କାର୍ଯ୍ୟର ବିବରଣୀ ଦେଇଥିଲେ ।

## ଅମା-ଅନ୍ଧକାରର ଅବସାନ

୧୯୭୭ ମସିହା ଜାନୁୟାରୀ ମାସ ଅଠର ତାରିଖ ରାତିରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଜାତି ଉଦ୍ଦେଶ୍ୟରେ ଗୋଟିଏ ବେତାର ଭାଷଣ ଦେଇ ଲୋକସଭା ଭାଙ୍ଗିଦେବା କଥା କହି ମାର୍ଚ୍ଚ ମାସରେ ଦେଶରେ ଷଷ୍ଠ ସାଧାରଣ ନିର୍ବାଚନ ହେବ ବୋଲି ଘୋଷଣା କରିଥିଲେ । ସ୍ୱାଭାବିକ ବାତାବରଣରେ ସ୍ୱୀକୃତ ରାଜନୈତିକ ଦଳଗୁଡ଼ିକ ଯେପରି ନିର୍ବାଚନ କାର୍ଯ୍ୟ କରିପାରିବେ, ସେଥି ନିମନ୍ତେ ଜରୁରୀ ଅବସ୍ଥାକୁ କୋହଳ କରାଯିବ ବୋଲି ଶ୍ରୀମତୀ ଗାନ୍ଧୀ ଉକ୍ତ ଘୋଷଣାରେ କହିଥିଲେ । ତା' ପରଦିନ ଲୋକସଭା ଭାଙ୍ଗିଦିଆଗଲା ବୋଲି ରାଷ୍ଟ୍ରପତି ଭବନରୁ ରାଷ୍ଟ୍ରପତିଙ୍କ ଘୋଷଣା ପ୍ରକାଶ ପାଇଥିଲା । ମାର୍ଚ୍ଚ ମାସ ଷୋହଳ ତାରିଖରେ ନିର୍ବାଚନ ହେବ ବୋଲି ମଧ୍ୟ ସୂଚନ ଦିଆଯାଇଥିଲା । ଏହି ଘୋଷଣା ଉପରେ ଦେଶରେ ମିଶ୍ରିତ ପ୍ରତିକ୍ରିୟା ଜଣାଯାଇଥିଲା । ଜରୁରୀକାଳୀନ ପରିସ୍ଥିତି ଭିତରେ ଲୋକଙ୍କର ଧାରଣା ହୋଇଥିଲା ଯେ ଆଉ ଆମ ଦେଶରେ ଗଣତନ୍ତ୍ର ପଦ୍ଧତିରେ ନିର୍ବାଚନ ହେବନାହିଁ । ୧୯୭୧ ମସିହାରେ ଯେଉଁ ପଞ୍ଚମ ସାଧାରଣ ନିର୍ବାଚନ ହୋଇଥିଲା, ତାହା ଆମ ଦେଶର ଶେଷ ନିର୍ବାଚନ ବୋଲି କୁହାଯାଉଥିଲା; ମାତ୍ର ନିର୍ବାଚନ କରାଇବାପାଇଁ ଶ୍ରୀମତୀ ଗାନ୍ଧୀଙ୍କର ଘୋଷଣା ଅନ୍ତତଃ ସେ ପ୍ରକାର ନୈରାଶ୍ୟ ଦୂର କରିଥିଲା । ଦେଶର ଜନସାଧାରଣ ଟିକିଏ ଆଶ୍ୱସ୍ତି ଅନୁଭବ କରିଥିଲେ ଯେ ନିର୍ବାଚନ ହେବାକୁ ଯାଉଛି । ରାଜନୈତିକ ଦଳର ଲୋକମାନେ ଲୋକସଭାକୁ ଭାଙ୍ଗିଦେବା ଘୋଷଣାକୁ ସ୍ୱାଗତ ଜଣାଇଥିଲେ; କିନ୍ତୁ ଦୁଇମାସରୁ କମ୍ ସମୟ ମଧ୍ୟରେ ନିର୍ବାଚନ ହେବା କଥାଟାକୁ ସ୍ୱାଗତ କରିପାରିନଥିଲେ । ଜରୁରୀ ପରିସ୍ଥିତିକୁ ସଂପୂର୍ଣ୍ଣଭାବରେ ଉଠାଇଦେବା କଥା ନକହି କୋହଳ କରିବା ଘୋଷଣାଟାକୁ ମଧ୍ୟ ସେମାନେ ସନ୍ଦେହଚକ୍ଷୁରେ ଦେଖିଥିଲେ । ତା'ଛଡ଼ା ଜରୁରୀକାଳୀନ ପରିସ୍ଥିତି ସମୟରେ ସଂବିଧାନକୁ ଏପରିଭାବରେ ସଂଶୋଧନ କରାଯାଇଥିଲା ଯେ ତାହା ପରିବର୍ତ୍ତିତ ହୋଇ ଆଉ ଗୋଟିଏ ନୂତନ ସଂବିଧାନର ସ୍ୱରୂପ ଧାରଣକରିଥିଲା । ଲୋକସଭା ଓ ବିଧାନସଭାର ଆୟୁଷ ପାଞ୍ଚ ବର୍ଷ ପରିବର୍ତ୍ତେ ଛ' ବର୍ଷ କରାଯାଇଥିଲା ଏବଂ ପ୍ରଧାନମନ୍ତ୍ରୀଙ୍କଠାରେ ନିରଙ୍କୁଶ କ୍ଷମତା କେନ୍ଦ୍ରୀଭୂତ ହେବା ସଙ୍ଗେ ସଙ୍ଗେ ତାଙ୍କୁ ନିର୍ବାଚନ ସମ୍ବନ୍ଧୀୟ ମାଲିମକଦ୍ଦମା ଆଇନର ଊର୍ଦ୍ଧ୍ୱରେ ରଖାଯାଇଥିଲା । ଦେଶରେ ଆଭ୍ୟନ୍ତରୀଣ ବିଶୃଙ୍ଖଳା ହେତୁ ବିପଦର ଆଶଙ୍କା ଅନୁଭୂତ ହେଲେ ଆହୁରି ସହଜରେ ଯେପରି ଜରୁରୀ ପରିସ୍ଥିତି ଘୋଷିତ ହୋଇପାରିବ ସଂବିଧାନରେ ସେ ପ୍ରକାର ବ୍ୟବସ୍ଥା ମଧ୍ୟ କରାଯାଇଥିଲା । ଜରୁରୀକାଳୀନ ଅବସ୍ଥା ସମୟରେ ଯେପରି ଅତ୍ୟଧିକ କ୍ଷମତା ପ୍ରୟୋଗ କରାଯାଇଥିଲା, ସେଥିରେ ଦେଶରୁ ସ୍ୱାଭାବିକ ପ୍ରଣାଳୀର ଶାସନ ଏକପ୍ରକାର ବିଲୁପ୍ତ ହୋଇଥିଲା ଏବଂ ଶାସନ ପ୍ରତି ଲୋକଙ୍କର ବିଶ୍ୱାସ ଜନ୍ମିବା ପରିବର୍ତ୍ତେ ଭୟଜାତ ହେଉଥିଲା । ଜରୁରୀକାଳୀନ ପରିସ୍ଥିତିରେ ବିରୋଧୀଦଳଗୁଡ଼ିକ ଛିନ୍ନଛତ୍ର ହୋଇଯାଇଥାଆନ୍ତି । ନିର୍ବାଚନରେ ଲଢ଼ିବାର

ଶକ୍ତି ସେମାନଙ୍କର ଆଦୌ ନଥାଏ । ଅନ୍ୟ ପକ୍ଷରେ ଶାସକଦଳ ନିର୍ବାଚନପାଇଁ ସବୁ ଦିଗରୁ ପ୍ରସ୍ତୁତ ହୋଇଥାଏ । ପ୍ରଚୁର ଅର୍ଥ ଶାସକଦଳ ପାଖରେ ଥାଏ । ଶାସକ କଂଗ୍ରେସଦଳ ବିରୁଦ୍ଧରେ କଥା କହିବାକୁ ଲୋକଙ୍କର ସାହସ ନଥାଏ । ବିରୋଧୀଦଳମାନଙ୍କ ପାଖରେ ଧନବଳ ଆଦୌ ନଥାଏ ଏବଂ ମନୋବଳ ଥାଏ କି ନଥାଏ ତାହା ବୁଝିବା ସମ୍ଭବ ନଥାଏ । ଏ ଅବସ୍ଥାରେ ସେମାନେ ନିର୍ବାଚନ ରାଜନୀତିରେ ଅଂଶ ଗ୍ରହଣ କରିବେ କି ନାହିଁ ସେ ବିଷୟରେ ଘୋର ସନ୍ଦେହ ଥାଏ ।

ନିର୍ବାଚନ ହେବାର ଘୋଷଣା ଶୁଣି ମୁଁ ଆଦୌ ଉତ୍ସାହିତ ହୋଇନଥିଲି । ସେତେବେଳକାର ଅସ୍ୱାଭାବିକ ପରିସ୍ଥିତିରେ ଶାସକ କଂଗ୍ରେସ ବିରୁଦ୍ଧରେ ଲଢ଼ିବା ସମ୍ଭବନୁହେଁ ବୋଲି ମୁଁ ବିଚାରିଥିଲି । ନିର୍ବାଚନ ଏକତରଫା ହୋଇଯିବ ବୋଲି ମୋର ଆଶଙ୍କା ହୋଇଥିଲା । ବିରୋଧୀ ଦଳମାନଙ୍କର ଶକ୍ତି କେତେ ତାହା ଭଲଭାବରେ ବୁଝି ଶ୍ରୀମତୀ ଗାନ୍ଧୀ ନିର୍ବାଚନ କରିବାର ସିଦ୍ଧାନ୍ତ ନେଇଥିଲେ ବୋଲି ମୁଁ ଭାବିଥିଲି । ତେଣୁ ଶ୍ରୀମତୀ ଗାନ୍ଧୀଙ୍କ ପକ୍ଷରେ ଏ ପ୍ରକାର ଅବସ୍ଥାରେ ନିର୍ବାଚନ ଘୋଷଣା ଗୋଟିଏ ରଣକୌଶଳ ବୋଲି ମୁଁ ଆଶଙ୍କା କରିଥିଲି । ବହୁ ନେତୃସ୍ଥାନୀୟ ବ୍ୟକ୍ତି ମଧ ଏ ପ୍ରକାର ଚିନ୍ତା କରି ବିବୃତିମାନ ଦେଇଥିଲେ । ନିର୍ବାଚନକୁ ବର୍ଜନ କରିବାପାଇଁ ମଧ ବିରୋଧୀ ଦଳର କେତେକ ନେତା ସୂଚନା ଦେଇଥିଲେ । ସେ ଅବସ୍ଥାରେ ନିର୍ବାଚନ ହେଲେ କଂଗ୍ରେସର ଏକତରଫା ବିଜୟ ସମ୍ବନ୍ଧରେ ମୋର ସନ୍ଦେହ ନଥିଲେ ମଧ ନିର୍ବାଚନକୁ ବର୍ଜନ କରିବା କଥାକୁ ମୁଁ ପସନ୍ଦ କରୁନଥାଏ । ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କଲେ ଅନ୍ତତଃ ତାହାରି ମାଧମରେ ଲୋକମାନଙ୍କ ପାଖରେ ଆମର କଥାଟାକୁ କହି ଶ୍ରୀମତୀ ଗାନ୍ଧୀଙ୍କ ଏକଚ୍ଛତ୍ରବାଦ ନୀତିକୁ ପଦାରେ ପକାଇହେବ ବୋଲି ମୁଁ ଭାବୁଥାଏ । ଏହି ସମୟରେ ଅଣକମ୍ୟୁନିଷ୍ଟ ବିରୋଧୀ ଦଳଗୁଡ଼ିକୁ ଏକତ୍ର କରି ଗୋଟିଏ ଦଳ ଗଠନ କରିବା ଉଦ୍ୟମ ଦିଲ୍ଲୀରେ ହେଉଥିବା କଥା ସମ୍ବାଦପତ୍ରମାନଙ୍କରେ ପ୍ରକାଶପାଇଥିଲା । ଶ୍ରୀ ଜୟପ୍ରକାଶ ନାରାୟଣ ଓ ଶ୍ରୀ ମୋରାରଜୀ ଦେଶାଇଙ୍କ ମଧରେ ଏ ସମ୍ବନ୍ଧରେ ଆଲୋଚନା ବିଷୟ ମଧ ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା । ବହୁ ବିରୋଧୀଦଳଙ୍କର ମିଶ୍ରଣରେ ଗୋଟିଏ ଶକ୍ତିଶାଳୀ ବିରୋଧୀଦଳ ଗଠନ କରିବା ଉଦ୍ୟମ ସଂପର୍କରେ ସମ୍ବାଦ ଆମ୍ଭମାନଙ୍କ ମନରେ କିଛି ଆଶା ସଂଚାର କରିଥିଲା । ଏହି ସମ୍ବାଦ ପ୍ରକାଶିତ ହେବାର ଦୁଇଦିନ ପରେ ଭାରତୀୟ ଲୋକଦଳ, ଜନସଂଘ, ସଂଗଠନ କଂଗ୍ରେସ ଓ ସୋସାଲିଷ୍ଟ ଦଳଗୁଡ଼ିକ ମିଶିଯାଇ ଜନତା ଦଳ ଗଠିତ ହେଲା ବୋଲି ସମ୍ବାଦ ପ୍ରକାଶିତ ହୋଇଥିଲା । ପରେ ଜଣାଗଲା ଯେ ଲୋକନାୟକ ଜୟପ୍ରକାଶ ନାରାୟଣଙ୍କର ଉଦ୍ୟମ ଓ ଆଶୀର୍ବାଦ ହେତୁ ଏତେଗୁଡ଼ିଏ ବିରୋଧୀ ଦଳକୁ ମିଶାଇ ଜନତା ଦଳ ଗଠନ କରିବା ସମ୍ଭବ ହୋଇଥିଲା । ଶ୍ରୀ ମୋରାରଜୀ ଦେଶାଇ ପ୍ରଥମେ ଏ ନବଗଠିତ ଜନତା ଦଳର ଚେୟାରମ୍ୟାନ୍ ହୋଇଥିଲେ । ଆମ ରାଜ୍ୟରେ ସଙ୍ଗେ ସଙ୍ଗେ ଜନତା ଦଳର ଗୋଟିଏ ଶାଖା ଗଠିତହୋଇଥିଲା । ଶ୍ରୀ ବିଜୁ ପଟ୍ଟନାୟକ ଓଡ଼ିଶା ଜନତା ଦଳର ଚେୟାରମ୍ୟାନ୍ ହୋଇଥିଲେ । ରାଜ୍ୟସ୍ତରରେ ପ୍ରାର୍ଥୀ ମନୋନୟନପାଇଁ ଜନତା ଦଳର ଗୋଟିଏ ନିର୍ବାଚନ କମିଟି ଶ୍ରୀ ବିଜୁ ପଟ୍ଟନାୟକଙ୍କର ଅଧକ୍ଷତାରେ ଗଠିତ ହୋଇଥିଲା । ସେଥିରେ ମୁଁ ଜଣେ ସଭ୍ୟ ଥିଲି । ତା ଛଡ଼ା ସର୍ବଶ୍ରୀ ପବିତ୍ରମୋହନ ପ୍ରଧାନ, ପ୍ରତାପଚନ୍ଦ୍ର ମହାନ୍ତି, ବିଶ୍ୱନାଥ ପଣ୍ଡିତ, ରବି ରାୟ, ବିଶ୍ୱଭୂଷଣ ହରିଚନ୍ଦନ ଓ ପ୍ରହ୍ଲାଦ ମଲ୍ଲିକ ପ୍ରଭୃତି ସଭ୍ୟ ଥିଲେ । ଲୋକସଭାପାଇଁ ପ୍ରାର୍ଥୀ ମନୋନୟନରେ ଆମ ନିର୍ବାଚନ କମିଟି ପକ୍ଷରୁ କିଛି ଅସୁବିଧା ହୋଇ ନଥିଲା । ଓଡ଼ିଶାରେ ଜନତା ଦଳ, ମାର୍କସବାଦୀ କମ୍ୟୁନିଷ୍ଟ ଦଳ ଓ ଜଗଜ୍ଜୀବନ ରାମଙ୍କର କଂଗ୍ରେସ ଫର ଡେମୋକ୍ରେସୀ (Congress for Democracy) ଦଳମାନଙ୍କ ମଧରେ ଲୋକସଭାପାଇଁ ନିର୍ବାଚନ ବୁଝାମଣା ହୋଇଥିଲା । ଓଡ଼ିଶାରେ ଲୋକସଭାପାଇଁ ଏକୋଇଶଟି ସ୍ଥାନ ଥାଏ । ଶାସକ କଂଗ୍ରେସ ସହିତ ଆମକୁ ସବୁ ସ୍ଥାନରେ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ପଡ଼ିଥିଲା । କଳାହାଣ୍ଡି ଲୋକସଭା ନିର୍ବାଚନମଣ୍ଡଳୀରେ କଳାହାଣ୍ଡି ମହାରାଜା ଶ୍ରୀ ପ୍ରତାପ କେଶରୀ ଦେଓ ସ୍ୱାଧୀନ ପ୍ରାର୍ଥୀ ଭାବରେ ନିର୍ମାଚନରେ ପ୍ରତିଦ୍ୱନ୍ଦ୍ୱିତା

କରିଥିଲେ । ସେଠାରେ କଂଗ୍ରେସ ଦଳ ତାଙ୍କ ବିରୁଦ୍ଧରେ ପ୍ରାର୍ଥୀ ନଦେଇ ତାଙ୍କୁ ସମର୍ଥନ କରିଥିଲେ । ଜନତା ଦଳ ସେଠାରେ ପ୍ରାର୍ଥୀ ଠିଆକରାଇଥିଲେ । ଶ୍ରୀ ବିଜୁ ପଟ୍ଟନାୟକ କେନ୍ଦ୍ରାପଡ଼ା ଲୋକସଭା ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହୋଇଥିଲେ । ମୁଁ ରାଜ୍ୟସଭା ସଭ୍ୟ ଥିବାରୁ ଲୋକସଭାପାଇଁ ପ୍ରାର୍ଥୀ ହୋଇନଥିଲି । ମାର୍କସିଷ୍ଟ ଦଳ ପକ୍ଷରୁ ଶ୍ରୀ ଶିବାଜୀ ପଟ୍ଟନାୟକ ଭୁବନେଶ୍ୱର ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହୋଇଥିଲେ । ସି.ଏଫ୍.ଡି. ଦଳ ପକ୍ଷରୁ ଶ୍ରୀ ଦେବେନ୍ଦ୍ର ଶତପଥୀ ଢେଙ୍କାନାଳ ଲୋକସଭା ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହୋଇଥିଲେ । ଅବଶିଷ୍ଟ ଊଣେଇଶଟି ସ୍ଥାନରୁ ଜନତା ଦଳର ପ୍ରାର୍ଥୀମାନେ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ଏହି ଲୋକସଭା ନିର୍ବାଚନରେ ମୁଁ ଚାରିଗୋଟି ଲୋକସଭା ନିର୍ବାଚନମଣ୍ଡଳୀର ଦାୟିତ୍ୱରେ ରହି ସେଠାରୁ ପ୍ରତିଦ୍ୱନ୍ଦ୍ୱିତା କରୁଥିବା ଆମ ପ୍ରାର୍ଥୀମାନଙ୍କୁ ସାହାଯ୍ୟ କରିଥିଲି । ସେ ନିର୍ବାଚନମଣ୍ଡଳୀଗୁଡ଼ିକ ହେଲା— ବାଲେଶ୍ୱର, ଭଦ୍ରକ, ମୟୂରଭଞ୍ଜ ଓ କେନ୍ଦୁଝର । ସେଠାରେ ଯଥାକ୍ରମେ ସର୍ବଶ୍ରୀ ସମରେନ୍ଦ୍ର କୁଣ୍ଡୁ, ବୈରାଗୀ ଜେନା, ଚନ୍ଦ୍ରମୋହନ ସିଂହ, ଗୋବିନ୍ଦ ମୁଣ୍ଡା ଜନତା ଦଳର ପ୍ରାର୍ଥୀ ଥିଲେ ।

## ଭାରତରେ ଷଷ୍ଠ ଅସାଧାରଣ ନିର୍ବାଚନ

ଷଷ୍ଠ ସାଧାରଣ ନିର୍ବାଚନ କଥା ଘୋଷଣା ହେବା ପୂର୍ବରୁ ନିର୍ବାଚନକୁ ଆଖିରେ ରଖି ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ ଓଡ଼ିଶା ଆସି କେଉଁଝର, ଫୁଲବାଣୀ ଓ କୋରାପୁଟ ପ୍ରଭୃତି ଆଦିବାସୀ ଅଞ୍ଚଳରେ ଶିଳାନ୍ୟାସ ଓ ଉଦ୍‌ଘାଟନ ପ୍ରଭୃତି ଉତ୍ସବ ଅନୁଷ୍ଠାନମାନଙ୍କରେ ଯୋଗଦେଇ ବ୍ୟାପକ ଲୋକସଂପର୍କ ପ୍ରତିଷ୍ଠା କରିବାର ଉଦ୍ୟମ କରିଥିଲେ ଏବଂ ଆଦିବାସୀମାନଙ୍କ ଉନ୍ନୟନ କାର୍ଯ୍ୟରେ ଖୁବ୍ ଆଗ୍ରହ ଦେଖାଇଥିଲେ । କେଉଁଝର କଥା ମୁଁ ଜାଣେ । ସେଠାରେ ତାଙ୍କପାଇଁ ଅନୁଷ୍ଠିତ ସାଧାରଣ ସଭାମାନଙ୍କରେ ନାହିଁ-ନଥିବା ଜନସମାବେଶ ହୋଇଥିଲା । ସେସବୁ ଦେଖି ଆମ ଜନତା ଦଳ ଲୋକମାନଙ୍କର ମନ ଶୁଖିଯାଇଥିଲା । ସେମାନେ କହିବାକୁ ଲାଗିଥିଲେ ଯେ ଯେପରି ମେଣ୍ଢାପଲ ଭଳି ଇନ୍ଦିରା ଗାନ୍ଧୀଙ୍କ ସଭାକୁ ଆଦିବାସୀମାନେ ଆସିଛନ୍ତି, ସେହିପରି ପଲ ପଲ ହୋଇ ତାଙ୍କ ପ୍ରାର୍ଥୀଙ୍କୁ ଭୋଟଦେବାପାଇଁ ଯିବେ । ଏହି ଅବସ୍ଥାରେ ନିର୍ବାଚନରେ ଜନତା ଦଳ ଜୟଯୁକ୍ତ ହେବା ଆଶା କାହାରି ନଥାଏ । ଆମ ରାଜ୍ୟର ଲୋକସଭା ନିର୍ବାଚନରେ ଆମେ ମାତ୍ର ପାଞ୍ଚଟି ସ୍ଥାନ ପାଇବୁ ବୋଲି ଆଶଙ୍କରୁଥାଉ । ଏହି ପରିପ୍ରେକ୍ଷୀରେ ଲୋକନାୟକ ଜୟପ୍ରକାଶ ନାରାୟଣ ଦେଶବାସୀଙ୍କୁ ଉଦ୍‌ବୋଧନ ଦେଇ କହିବାକୁ ଲାଗିଲେ ଯେ ଆସନ୍ତା 'ସାଧାରଣ ନିର୍ବାଚନ' ଏକ 'ଅସାଧାରଣ ନିର୍ବାଚନ' ହେବ ଏବଂ ଏଥିରେ ଏକଛତ୍ରବାଦ ଓ ଗଣତନ୍ତ୍ର ମଧ୍ୟରେ ଲଢ଼େଇ ହେବ । ଗଣତନ୍ତ୍ରକୁ ରକ୍ଷା କରିବାପାଇଁ ଏହି ନିର୍ବାଚନ ଶେଷ ସୁଯୋଗ ବୋଲି କହି କଂଗ୍ରେସକୁ ପରାଜିତ କରିବା ଲୋକଙ୍କର କର୍ତ୍ତବ୍ୟ ବୋଲି ସେ କହିଥିଲେ । ଜୟପ୍ରକାଶଜୀ ଆହୁରି କହୁଥିଲେ ଯେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ କ୍ଷମତାକୁହିଁ ଭଲପାଆନ୍ତି; ତେଣୁ କୌଣସିମତେ କ୍ଷମତାକୁ ଛାଡ଼ିବାପାଇଁ ସେ ପ୍ରସ୍ତୁତ ନୁହନ୍ତି । ନିର୍ବାଚନରେ ଖର୍ଚ୍ଚ କରିବାପାଇଁ ଶ୍ରୀମତୀ ଗାନ୍ଧୀଙ୍କ ହାତରେ କୋଟି କୋଟି ଟଙ୍କା ଅଛି ଏବଂ ସେ ଟଙ୍କାକୁ ସେ ପାଣି ଭଳି ଖର୍ଚ୍ଚକରିବେ; ମାତ୍ର ଜନତାଦଳ ଲୋକଙ୍କ 'ନୋଟ୍ ଓ ଭୋଟ'ରେ ହିଁ ଜୟଲାଭ କରିବେ । ଜୟପ୍ରକାଶଜୀଙ୍କର ଉଦ୍‌ବୋଧନ ଆମର କର୍ମୀମାନଙ୍କ ମନରେ ଉତ୍ସାହ ଆଣିଥିଲା ଏବଂ ଲୋକମାନଙ୍କୁ ମଧ୍ୟ ପ୍ରଭାବିତ କରିଥିଲା । ଶ୍ରୀ ମୋରାରଜୀ ଦେଶାଇ ଓ ଶ୍ରୀ ଜଗଜୀବନ ରାମ ନିର୍ବାଚନ ପ୍ରଚାର ଉଦ୍ଦେଶ୍ୟରେ ଓଡ଼ିଶା ଆସିଥିଲେ । ଶ୍ରୀମତୀ ଗାନ୍ଧୀ ଓ ତାଙ୍କର ପୁଅ ଶ୍ରୀ ସଞ୍ଜୟ ଗାନ୍ଧୀଙ୍କୁ ଲକ୍ଷ୍ୟକରି ଦେଶରେ କିପରି 'ଦେଢ଼ଜଣିଆ' ଶାସନ ଚାଲିଥିଲା, ସେ ବିଷୟରେ ଶ୍ରୀ ଜଗଜୀବନ ରାମ ସାଧାରଣ ସଭାମାନଙ୍କରେ ବର୍ଣ୍ଣନା କଲାବେଳେ ଲୋକମାନେ ଅତିଶୟ ଆଗ୍ରହରେ ସେ କଥା

ଶୁଣୁଥିଲେ । ଅସୁସ୍ଥତା ହେତୁ ନିର୍ବାଚନ ସମୟରେ ଜୟପ୍ରକାଶଜୀଙ୍କର୍ ଓଡ଼ିଶା ଆସିବା ସମ୍ଭବ ହୋଇ ନଥିଲା । ମାର୍ଚ୍ଚ ମାସ ଷୋହଳ ତାରିଖରେ ସମଗ୍ର ଦେଶରେ ନିର୍ବାଚନ ଆରମ୍ଭ ହୋଇଥିଲା । ଲୋକସଭା ନିର୍ବାଚନର ଫଳାଫଳ ଲୋକଙ୍କୁ ଅତିଶୟ ବିସ୍ମିତ କରିଥିଲା । ଆଶାତୀତଭାବରେ ଜନତା ଦଳ ଦଳ ଲୋକସଭାର ନିରଙ୍କୁଶ ସଂଖ୍ୟାଗରିଷ୍ଠତା ହାସଲ କରିଥିଲା । ନିଜେ ଶ୍ରୀମତୀ ଗାନ୍ଧୀ ଓ ଏହି ଲୋକସଭା ନିର୍ବାଚନରେ ଉତ୍ତର ପ୍ରଦେଶର ତାଙ୍କର ପୁରୁଣା ନିର୍ବାଚନମଣ୍ଡଳୀ 'ରାୟବରେଲୀ'ରେ ଜନତା ପ୍ରାର୍ଥୀ ଶ୍ରୀ ରାଜନାରାୟଣଙ୍କଠାରୁ ପରାଜିତ ହୋଇଥିଲେ । ଓଡ଼ିଶାରେ ଲୋକସଭାର ଏକୋଇଶି ସ୍ଥାନରୁ ଜନତା ଦଳ ଏକାକୀ ପନ୍ଦରଟି ସ୍ଥାନ ପାଇଥିଲା । ଗୋଟିଏ ଗୋଟିଏ କରି ଦୁଇଟି ସ୍ଥାନ କଂଗ୍ରେସ ଫର୍ ଡେମୋକ୍ରେସି ଓ ମାର୍କସିଷ୍ଟ କମ୍ୟୁନିଷ୍ଟ ଦଳ ପାଇଥିଲେ । ଜଣେ ସ୍ୱାଧୀନ ପ୍ରାର୍ଥୀ ଜୟଯୁକ୍ତ ହୋଇଥିଲେ ଓ ବାକି ତିନୋଟି ମାତ୍ର ସ୍ଥାନ କଂଗ୍ରେସ ପାଇଥିଲା ।

## ନୂତନ ନେତା ନିର୍ବାଚନ : ମୋରାରଜୀ-ଚରଣସିଂହ-ଜଗଜ୍ଜୀବନ

ଲୋକସଭା ନିର୍ବାଚନ ଶେଷହେଲା; ଏକଛତ୍ରବାଦର ପତନ ଘଟିଲା । ଦେଶରେ ସ୍ୱେଚ୍ଛାଚାରୀ ଶାସନ ଚଳିପାରିବନାହିଁ, ଏକଥା ସ୍ପଷ୍ଟ ସାଧାରଣ ନିର୍ବାଚନ ପ୍ରମାଣ କରିଦେଇଥିଲା । ନିର୍ବାଚନ ପରେ କିପରି ସରକାର ଗଠନ କରାଯିବ ସେଥିପ୍ରତି ସମସ୍ତଙ୍କର ଦୃଷ୍ଟିପଡ଼ିଥିଲା । ଦିଲ୍ଲୀ ଖୁବ୍ ସରଗରମ ହୋଇଉଠିଲା । ମୁଁ ସେତେବେଳେ ଦିଲ୍ଲୀରେ ଥାଏ । ଦେଶର ସବୁ ରାଜ୍ୟରୁ ନେତୃସ୍ଥାନୀୟ ବ୍ୟକ୍ତିମାନେ ଆସି ଦିଲ୍ଲୀରେ ଏକତ୍ରିତ ହୋଇଥାଆନ୍ତି । ପାର୍ଲିଆମେଣ୍ଟରେ କିଏ ଜନତା ଦଳର ନେତା ହୋଇ ପ୍ରଧାନମନ୍ତ୍ରୀ ହେବେ ସେଥିପାଇଁ ଭିତରେ କଳ୍ପନା-ଜଳ୍ପନା ଚାଲିଥାଏ । ମୋରାରଜୀ ଦେଶାଇ, ଚରଣ ସିଂହ ଓ ଜଗଜ୍ଜୀବନ ରାମ ଏଇ ତିନି ଜଣଙ୍କ ନାମ ଉଠୁଥାଏ । ନେତା ହେବାପାଇଁ ପ୍ରତ୍ୟେକଙ୍କର ପ୍ରବଳ ଇଚ୍ଛା ଥାଏ; କେହି କାହାରିକୁ ବାଟ ଛାଡ଼ିବା ପାଇଁ ପ୍ରସ୍ତୁତ ନଥା'ନ୍ତି । କି ଉପାୟରେ ନେତା ନିର୍ବାଚନ ବିଷୟରେ ସମାଧାନ ହେବ ତାହା ବଡ଼ ଜରୁରୀ ସମସ୍ୟା ହୋଇ ଉଠିଥାଏ । ସମସ୍ତେ ଆଶା କରୁଥା'ନ୍ତି ଯେ ଲୋକନାୟକ ଜୟପ୍ରକାଶଜୀ ଓ ଆଚାର୍ଯ୍ୟ କୃପାଳିନୀ ଏ ସମସ୍ୟାର ସମାଧାନ କରିପାରିବେ । ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନ କୋଠରେ ବସି ସେ ଦୁହେଁ ନେତା ମନୋନୟନ ସମ୍ବନ୍ଧରେ ସମସ୍ତଙ୍କର ମତାମତ ଜାଣିବାକୁ ଉଦ୍ୟମ କରୁଥାଆନ୍ତି । ଜୟପ୍ରକାଶଜୀ ଓ କୃପାଳିନୀଜୀ ଗୋଟିଏ ସ୍ଥାନରେ ବସିଥାଆନ୍ତି । ଦଳ ଦଳ ହୋଇ ପାର୍ଲିଆମେଣ୍ଟ ସଦସ୍ୟ ଯାଇ ଏ ବିଷୟରେ ସେମାନଙ୍କ ଆଗରେ ମତାମତ ଦେଉଥାଆନ୍ତି । ଶ୍ରୀ ମୋରାରଜୀ ଦେଶାଇ ଓ ଚୌଧୁରୀ ଚରଣ ସିଂହଙ୍କ କଥା ବେଶୀ ଉଠୁଥାଏ । କିନ୍ତୁ ଶ୍ରୀ ଜଗଜ୍ଜୀବନ ରାମ ଖୁବ୍ ଆଶାୟୀ ହୋଇ ରହିଥାଆନ୍ତି । ଶ୍ରୀ ମୋରାରଜୀ ଦେଶାଇ ଓ ଶ୍ରୀ ଜଗଜ୍ଜୀବନ ରାମ ସେହି କୋଠିରେ ଉପସ୍ଥିତ ଥିଲେ; ମାତ୍ର ଅସୁସ୍ଥତା ହେତୁ ଚୌଧୁରୀ ଚରଣ ସିଂହ ସେଠାରେ ନଥିଲେ । ସମସ୍ତଙ୍କର ମତାମତ ଜାଣିବା ପରେ ନେତା ହେବାପାଇଁ ଇଚ୍ଛା କରୁଥିବା ନେତାମାନଙ୍କ ସହିତ ପରାମର୍ଶ କରିବାର ଆବଶ୍ୟକତା ଥିଲା । ଶ୍ରୀ ଦେଶାଇ ଓ ଶ୍ରୀ ରାମ କେହି କାହାରିକୁ ଛାଡ଼ିବାପାଇଁ ପ୍ରସ୍ତୁତ ନଥିଲେ । ଶ୍ରୀ ଚରଣ ସିଂହଙ୍କ ପାଖକୁ ଶ୍ରୀ ରାଜନାରାୟଣ ବାରମ୍ବାର ଦୌଡ଼ାଦୌଡ଼ି କରୁଥିଲେ । ତାଙ୍କ ପକ୍ଷରେ ବହୁପାର୍ଲିଆମେଣ୍ଟ ସଦସ୍ୟଙ୍କର ସମର୍ଥନ ଅଛି ବୋଲି କହି ଚୌଧୁରୀ ଚରଣ ସିଂହ ନେତା ହେବାପାଇଁ ତାଙ୍କ ଦାବିକୁ ଛାଡୁନଥା'ନ୍ତି । ଏ ପ୍ରକାର ପରିସ୍ଥିତିରେ ନିଷ୍ପତ୍ତି ନେବା ଜୟପ୍ରକାଶଜୀ ଓ କୃପାଳିନୀଜୀଙ୍କ ପକ୍ଷରେ ସହଜ ହେଉ ନଥାଏ । ସମସ୍ତେ କ୍ଳାନ୍ତ ହୋଇପଡ଼ି ବସି ଚିନ୍ତାକରୁଥାଆନ୍ତି । ଚୌଧୁରୀ ଚରଣ ସିଂହଙ୍କଠାରୁ ଖଣ୍ଡେ ଚିଠି ଆଣି ରାଜନାରାୟଣ ସେତିକିବେଳେ ସେଠାରେ ଆସି ପହଞ୍ଚିଯାଇଥିଲେ । ଚିଠିଖଣ୍ଡିକ ସେ ଜୟପ୍ରକାଶଜୀଙ୍କୁ ଦେଇଥିଲେ । ମୋରାରଜୀ ଭାଇଙ୍କୁ ନେତା ହେବାପାଇଁ ସେ ବାଟ

ଛାଡ଼ିଦେବାକୁ ପ୍ରସ୍ତୁତ ବୋଲି ଶ୍ରୀ ଚରଣ ସିଂହ ସେହି ଚିଠିରେ ଜଣାଇଦେଇଥିଲେ । ପରଦିନ ସକାଳେ ପାର୍ଲିଆମେଣ୍ଟ ହାଉସ୍ ସେଣ୍ଟ୍ରାଲ୍ ହଲ୍‌ରେ ଜନତା ଦଳ ଓ ସେହି ଦଳକୁ ସମର୍ଥନ କରୁଥିବା ପାର୍ଲିଆମେଣ୍ଟ ସଦସ୍ୟମାନଙ୍କର ଗୋଟିଏ ବୈଠକ ଆହୂତ ହୋଇଥିଲା । ଆମ୍ଭେମାନେ ସମସ୍ତେ ସେଠାରେ ଉପସ୍ଥିତ ଥିଲୁ । ବହୁ ନେତୃସ୍ଥାନୀୟ ବ୍ୟକ୍ତି ନିମନ୍ତ୍ରିତ ହୋଇ ସେଠାରେ ଉପସ୍ଥିତ ଥିଲେ । ମାତ୍ର ଶ୍ରୀ ଜଗଜ୍ଜୀବନ ରାମ ସେଠାରେ ଉପସ୍ଥିତ ନଥିଲେ । ଜୟପ୍ରକାଶଜୀ ଉକ୍ତ ବୈଠକରେ ସଭାପତିତ୍ୱ କରିଥିଲେ । ତାଙ୍କ ପାଖରେ ଆଚାର୍ଯ୍ୟ କୃପାଳିନୀ ବସିଥିଲେ । ବିପୁଳ ଆନନ୍ଦ ଧ୍ୱନି ମଧ୍ୟରେ ଶ୍ରୀ ମୋରାରଜୀ ଦେଶାଇ ନେତା ହେଲେ ବୋଲି ଆଚାର୍ଯ୍ୟ କୃପାଳିନୀ ସେଠାରେ ଘୋଷଣା କରିଥିଲେ । ଶ୍ରୀ ଜଗଜ୍ଜୀବନ ରାମ ଏହି ନିଷ୍ପତ୍ତିରେ ଖୁସିହୋଇନଥିଲେ । ପରେ ଜଣାଗଲା ଯେ ସେ ଶ୍ରୀ ମୋରାରଜୀ ଦେଶାଇଙ୍କ ମନ୍ତ୍ରିମଣ୍ଡଳରେ ଯୋଗଦେବେନାହିଁ । ଶ୍ରୀ ଦେଶାଇଙ୍କ ମନ୍ତ୍ରିମଣ୍ଡଳରେ ଯୋଗଦେଇଥିବା ମନ୍ତ୍ରୀମାନଙ୍କର ନାମ ପ୍ରକାଶ ପାଇଲା; ମାତ୍ର ସେଥିରେ ଜଗଜ୍ଜୀବନବାବୁଙ୍କ ନାମ ନ ଦେଖି ବହୁତ ଲୋକ ଦୁଃଖିତ ହୋଇଥିଲେ । ତାଙ୍କର ଅସନ୍ତୋଷ ଆଦୌ ଯଥାର୍ଥ ନଥିଲା ବୋଲି ଲୋକମାନଙ୍କର ଧାରଣା ହୋଇଥିଲା । ମୋର ମଧ୍ୟ ସେହି ପ୍ରକାର ଧାରଣା ହୋଇଥିଲା । ସେହି ସମୟରେ ଜନମତ ଜଗଜ୍ଜୀବନବାବୁଙ୍କ ପକ୍ଷରେ ଖୁବ୍ ପ୍ରତିକୂଳ ହୋଇଥିଲା । ବହୁ ପାର୍ଲିଆମେଣ୍ଟ ସଦସ୍ୟଙ୍କ ସହିତ ମୁଁ ଜଗଜ୍ଜୀବନବାବୁଙ୍କ ବିଷୟରେ କଥାବାର୍ତ୍ତା ହୋଇଥିଲି । ଅଧିକାଂଶ ଅନୁଭବ କରୁଥାଆନ୍ତି ଯେ ଜଗଜ୍ଜୀବନବାବୁ ତାଙ୍କ ନିଜ ସ୍ଥିତି ବିଷୟରେ ଆଦୌ ବୁଝିପାରୁନଥିଲେ । ଜରୁରୀକାଳୀନ ଅବସ୍ଥା ସମୟରେ ଜଗଜ୍ଜୀବନବାବୁଙ୍କର କାର୍ଯ୍ୟକଳାପକୁ ଲୋକେ ଭୁଲିନଥିଲେ । ଜରୁରୀକାଳୀନ ଅବସ୍ଥାରେ ଘୋଷଣାକୁ ପାର୍ଲିଆମେଣ୍ଟର ଅନୁମୋଦନପାଇଁ ପ୍ରସ୍ତାବ ଆଣିଥିଲେ ଶ୍ରୀ ଜଗଜ୍ଜୀବନ ରାମ । ସେତେବେଳେ ଜରୁରୀକାଳୀନ ପରିସ୍ଥିତି ଘୋଷଣାର ଯଥାର୍ଥତା ସମ୍ବନ୍ଧରେ ପାର୍ଲିଆମେଣ୍ଟରେ ତାଙ୍କର ଭାଷଣସବୁ ଖବରକାଗଜରେ ଖୁବ୍ ଭଲଭାବରେ ପ୍ରକାଶିତ ହୋଇଥିଲା । ତାହା ପଢ଼ି ଆମ୍ଭେମାନେ ସେତେବେଳେ ଖୁବ୍ ଦୁଃଖିତ ହେଉଥିଲୁ । ସେସବୁ କଥା ପାସୋରି ପକାଇ ପରିବର୍ତ୍ତିତ ଅବସ୍ଥାରେ ହଠାତ୍ ପ୍ରଧାନମନ୍ତ୍ରୀ ହେବାପାଇଁ ଆଶା କରିବା ଏବଂ ତା' ନ ହେବାକ୍ଷଣି ଅଭିମାନ କରି ମନ୍ତ୍ରିମଣ୍ଡଳରେ ଯୋଗ ନଦେଇ ଶ୍ରୀ ରାମ ନିଜପାଇଁ ଗୋଟିଏ ଅତି ହାସ୍ୟାସ୍ପଦ ଅବସ୍ଥା ସୃଷ୍ଟି କରିଥିଲେ । କିଛି ଦିନ ପରେ ସେ ନିଜର ସ୍ଥିତି କ'ଣ ବୁଝିପାରି ପ୍ରତିରକ୍ଷାମନ୍ତ୍ରୀ ହିସାବରେ ଶ୍ରୀ ଦେଶାଇଙ୍କ ମନ୍ତ୍ରିମଣ୍ଡଳରେ ଯୋଗଦେଇଥିଲେ । ଶ୍ରୀ ବିଜୁ ପଟ୍ଟନାୟକ ଇସ୍ପାତ ଓ ଖଣି ଦପ୍ତର ମନ୍ତ୍ରୀ ହିସାବରେ ଶ୍ରୀ ଦେଶାଇଙ୍କ ମନ୍ତ୍ରିମଣ୍ଡଳରେ ଯୋଗଦେଇଥିଲେ ଏବଂ ଶ୍ରୀ ସମରେନ୍ଦ୍ର କୁଣ୍ଡୁ ବୈଦେଶିକ ବ୍ୟାପାର ରାଷ୍ଟ୍ରମନ୍ତ୍ରୀ ହୋଇଥିଲେ । ସେ ସମୟର ସବୁଠାରୁ ହୃଦୟସ୍ପର୍ଶୀ ଘଟଣା ଥିଲା ରାଜଘାଟଠାରେ ମହାତ୍ମା ଗାନ୍ଧୀଙ୍କର ସମାଧି ପାଖରେ ସମୂହ ପ୍ରାର୍ଥନା ଓ ଶପଥ । ବିପୁଳ ଜନସମାବେଶ ମଧ୍ୟରେ ଲୋକନାୟକ ଜୟପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ଗାନ୍ଧୀଜୀଙ୍କର ସମାଧି ଚତୁଃପାର୍ଶ୍ୱରେ ଛିଡ଼ାହୋଇ ଗଣତନ୍ତ୍ରକୁ ସୁଦୃଢ଼ କରିବା ସଙ୍ଗେ ସଙ୍ଗେ ଦେଶରେ ସୁଶାସନ ଓ ନିଜ ଭିତରେ ସଂହତି ଓ ଏକତା ବଜାୟ ରଖିବାପାଇଁ ସମସ୍ତେ ଶପଥ ନେଇଥିଲେ । ମୁଁ ତା' ଭିତରେ ଥିଲି । ସମସ୍ତେ ଶପଥ ପାଠକରି ଗାନ୍ଧିଜୀଙ୍କ ସମାଧି ପାଖରେ ମୁଣ୍ଡିଆମାରି ଘରକୁ ଫେରିଥିଲୁ ।

## ବିଧାନସଭା ଭଙ୍ଗ ଓ ସାନି ନିର୍ବାଚନ

ଓଡ଼ିଶା ସମେତ ନଅଟି ରାଜ୍ୟରେ ବିଧାନସଭାକୁ ଭାଙ୍ଗିଦେଇ ସେଠାରେ ସାନି ନିର୍ବାଚନ କରାଇବା ନିମନ୍ତେ କେନ୍ଦ୍ର ମନ୍ତ୍ରିମଣ୍ଡଳ ୧୯୭୭ ମସିହା ମେ' ମାସ ଦୁଇ ତାରିଖରେ ନିଷ୍ପତ୍ତି ନେଇଥିଲେ । ସେହି ରାଜ୍ୟମାନଙ୍କର ଲୋକମତ କଂଗ୍ରେସ ଓ କଂଗ୍ରେସ ଶାସନ ବିରୁଦ୍ଧରେ ବୋଲି ବିଗତ ଲୋକସଭା ନିର୍ବାଚନରୁ ଜଣାପଡ଼ିଥିଲା । ତେଣୁ ସେହିସବୁ ରାଜ୍ୟଶାସନ ଚଳାଇବା ଦିଗରେ କଂଗ୍ରେସ ନୈତିକ

ଅଧିକାର ହରାଇଛି ବୋଲି କୁହାଯାଇଥିଲା । ଏହି ନିଷ୍ପତ୍ତି ବିରୁଦ୍ଧରେ କଂଗ୍ରେସ ପକ୍ଷରୁ ସୁପ୍ରିମ୍‌କୋର୍ଟରେ ଆବେଦନ କରାଯାଇଥିଲା । ସୁପ୍ରିମ୍ କୋର୍ଟ କଂଗ୍ରେସ ଆପତ୍ତିକୁ ଖାରଜ କରି ସରକାରଙ୍କ ନିଷ୍ପତ୍ତିକୁ କାଏମ୍ ରଖିଥିଲେ । ଓଡ଼ିଶା ପ୍ରଭୃତି ନଅଟି ରାଜ୍ୟର ବିଧାନସଭାକୁ ଭାଙ୍ଗିଦେଇ ଜୁନ୍ ମାସ ଦଶ ତାରିଖ ମଧ୍ୟରେ ବିଧାନସଭାଗୁଡ଼ିକର ନିର୍ବାଚନ କାର୍ଯ୍ୟ ଶେଷ ହେବ ବୋଲି ରାଷ୍ଟ୍ରପତି ଭବନରୁ ଘୋଷଣା ପ୍ରକାଶପାଇଥିଲା । ଓଡ଼ିଶାରେ ଜୁନ୍ ମାସ ଦଶ ତାରିଖ ଦିନ ବିଧାନସଭାପାଇଁ ଭୋଟ ଗ୍ରହଣ କାର୍ଯ୍ୟ ହେବ ବୋଲି ଘୋଷଣା ପ୍ରକାଶ ପାଇଲା ।

ବିଧାନସଭା ଭାଙ୍ଗିଦିଆଯାଇ ନିର୍ବାଚନ ହେବା କଥା ଘୋଷଣା ହେବା ପରେ ରାଜ୍ୟର ରାଜନୈତିକ ଦଳଗୁଡ଼ିକ ମଧ୍ୟରେ ବିଶେଷ ତତ୍ପରତା ଦେଖାଦେଇଥିଲା । ଶ୍ରୀ ଜଗଜ୍ଜୀବନ ରାମଙ୍କର କଂଗ୍ରେସ ଫର୍ ଡେମୋକ୍ରାସି ଦଳ ସେତେବେଳକୁ ଜନତା ଦଳ ସହ ମିଶିନଥାଏ । ସେ ଦଳର ଜଣେ ସଂପାଦିକା ଥିଲେ ନନ୍ଦିନୀ ଦେବୀ । ଲୋକସଭା ନିର୍ବାଚନ ସମୟରେ ପ୍ରାର୍ଥୀ ମନୋନୟନପାଇଁ ରାଜ୍ୟ ଜନତା ଦଳର ଯେଉଁ ନିର୍ବାଚନ କମିଟି ଗଠିତହୋଇଥିଲା ସେଥିରେ ନନ୍ଦିନୀ ଦେବୀଙ୍କୁ ଜଣେ ସଭ୍ୟାରୂପେ ନିଆଯାଇଥିଲା । ରାଜ୍ୟ ଜନତାଦଳ ନିର୍ବାଚନ କମିଟିରେ ନନ୍ଦିନୀ ଦେବୀ ସଭ୍ୟା ହେବା କଥାଟାକୁ ବହୁଲୋକ ପସନ୍ଦ କରିନଥିଲେ । ଏ ବିଷୟରେ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ପ୍ରତିକ୍ରିୟା ଖୁବ୍ ତୀବ୍ର ହୋଇଥିଲା । ବିଧାନସଭାପାଇଁ ପ୍ରାର୍ଥୀ ମନୋନୟନ ସମୟରେ ନିର୍ବାଚନ କମିଟିକୁ ପରାମର୍ଶ ଦେବାପାଇଁ ଆଗରୁ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କୁ ଅନୁରୋଧ କରାଯାଇଥିଲା । ନନ୍ଦିନୀ ଦେବୀ ସେ କମିଟିରେ ଜଣେ ସଭ୍ୟା ହେବାରୁ ନବବାବୁ ଆଉ ସେ କମିଟି ସହିତ କୌଣସି ପ୍ରକାର ସଂପର୍କ ରଖିବେନାହିଁ ବୋଲି କହିଦେଇଥିଲେ । ତା' ଛଡ଼ା ନନ୍ଦିନୀ ଦେବୀଙ୍କୁ ସେ ନିର୍ବାଚନ କମିଟିରୁ ବହିଷ୍କାର କରିବାପାଇଁ ନବବାବୁ ଦାବି କରିଥିଲେ । ତାହା ନହେବାରୁ ଜନତା ଦଳର ଉଦ୍ୟାନମାର୍ଗ କାର୍ଯ୍ୟାଳୟରେ ଦିନେ ନିର୍ବାଚନ କମିଟିର ବୈଠକ ବସିଥିବା ସମୟରେ ନବବାବୁ ହଠାତ୍ ଆସି ସେଠାରେ ପହଞ୍ଚି ଅଫିସ୍ ସାମନା ବାରଣ୍ଡାରେ ବସି ଧାରଣା ଆରମ୍ଭ କରିଦେଇଥିଲେ । ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଭଳି ଜଣେ ସମ୍ମାନନୀୟ ନେତାଙ୍କର ଧାରଣା ଆମ ସମସ୍ତଙ୍କ ପକ୍ଷରେ ଗୋଟିଏ ବଡ଼ ଅସ୍ୱସ୍ତିକର ଅବସ୍ଥା ସୃଷ୍ଟି କରିଥିଲା । ଯୁବଗୋଷ୍ଠୀଙ୍କ ମଧ୍ୟରେ ଚହଳପଡ଼ିଯାଇଥିଲା ଏବଂ ସେମାନେ ବହୁସଂଖ୍ୟାରେ ଜନତାଦଳ ଅଫିସ୍‌ରେ ରୁଣ୍ଡହୋଇ ଶ୍ରୀ ଚୌଧୁରୀଙ୍କୁ ସମର୍ଥନ ଜଣାଇବା ସଙ୍ଗେ ସଙ୍ଗେ ସେଠାରେ ଅନଶନ କରି ବସିଯାଇଥିଲେ । ଏହି ଉତ୍ତେଜନା ମଧ୍ୟରେ ନିର୍ବାଚନ କମିଟିର ବୈଠକରେ ଯୋଗଦେବାପାଇଁ ନନ୍ଦିନୀ ଦେବୀ ଆସି ଜନତା ଦଳ ଅଫିସ୍‌ରେ ପହଞ୍ଚିଯାଇଥିଲେ । ତାଙ୍କୁ ଦେଖିଲାମାତ୍ରେ ଆହୁରି ଉତ୍ତେଜନା ବୃଦ୍ଧିପାଇଥିଲା । ତାଙ୍କୁ ଯୁବକମାନେ ଘେରିଯାଇ ନାନା ଅସୁବିଧାରେ ପକାଇଥିଲେ । ନନ୍ଦିନୀ ଦେବୀ କୌଣସିମତେ ସେମାନଙ୍କ ମଧ୍ୟରୁ ଖସିଯାଇ ନିର୍ବାଚନ କମିଟି ବୈଠକରେ ପହଞ୍ଚି ପୁଲିସକୁ ଡାକିବାପାଇଁ ଦାବିକରିଥିଲେ । ପୁଲିସ ସାହାଯ୍ୟ ନେବା କଥାଟାକୁ ଆମ୍ଭେମାନେ ବିରୋଧ କରିଥିଲୁ । ନନ୍ଦିନୀ ଦେବୀ ସେ କମିଟି ବୈଠକରେ ଉପସ୍ଥିତ ହେବାରୁ ଆମ୍ଭମାନଙ୍କ ଭିତରୁ ଅଧିକାଂଶ ସଭ୍ୟ ବାହାରକୁ ଉଠିଯାଇଥିଲୁ ଏବଂ ଏକପ୍ରକାର ତାଙ୍କ ସହିତ ଅସହଯୋଗ କଲାଭଳି ବ୍ୟବହାର କରିଥିଲୁ । ଏସବୁ କଥା ଦେଖି ସେ ମାନେ ସେଠାରୁ ତାଙ୍କ ଘରକୁ ଚାଲିଯାଇଥିଲେ । ତା'ପରେ ନବବାବୁଙ୍କ ଚାରିପଟେ ଆମ୍ଭେମାନେ ଧାରଣାଦେଇ ବସିଥିଲା ଭଳି ବସିଥିଲୁ । ବହୁ କଷ୍ଟରେ ଆମ୍ଭେମାନେ ତାଙ୍କୁ ବୁଝାବୁଝି କରି ସେଠାରୁ ବିଦାକରିଥିଲୁ ।

ସେ ଅଧ୍ୟାୟ ସମାପ୍ତ ହେବା ପରେ ନିର୍ବାଚନ କମିଟିଦ୍ୱାରା ପ୍ରାର୍ଥୀ ମନୋନୟନ କାର୍ଯ୍ୟ ଚାଲିଥିଲା । ନନ୍ଦିନୀ ଦେବୀ ବିଧାନସଭାପାଇଁ ଢେଙ୍କାନାଳ ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହେବାପାଇଁ ଦରଖାସ୍ତ କରିଥିଲେ । ତାଙ୍କୁ ପ୍ରାର୍ଥୀରୂପେ ମନୋନୀତ ନକରିବାପାଇଁ ନବବାବୁ ଓ ଜନତା ଯୁବଗୋଷ୍ଠୀ ଦାବି କରୁଥାଆନ୍ତି । ତେଣୁ ତାଙ୍କ ବିଷୟରେ କିଛି ନିଷ୍ପତ୍ତି ନ ନେଇ ଉଚ୍ଚ କର୍ତ୍ତୃପକ୍ଷଙ୍କ ଉପରେ ଛାଡ଼ି

ଦିଆଯାଇଥିଲା । ମୁଁ ରାଜ୍ୟସଭା ସଦସ୍ୟ ଥାଏ; ମାତ୍ର ବିଧାନସଭାପାଇଁ ବାସୁଦେବପୁର ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହେବା ନିମନ୍ତେ ଆବେଦନ କରିଥାଏ । ରାଜ୍ୟ ବିଧାନସଭାରେ ଜନତା ଦଳ ସଂଖ୍ୟା ଗରିଷ୍ଠ ହେଲେ ନେତା ହେବାପାଇଁ ଅଭିଳାଷ ରଖି ମୁଁ ବିଧାନସଭାକୁ ପ୍ରାର୍ଥୀ ହେଉଛି ବୋଲି କେତେକ ଭାବୁଥିଲେ । ସେମାନେ ଏଭଳି ଭାବିବାଟା କିଛି ଭୁଲ୍ ନଥିଲା । ତାହା ଯଦି ଉଦ୍ଦେଶ୍ୟ ଥାଏ, ତ'ହେଲେ ଜନତା ଦଳ ସଂଖ୍ୟାଗରିଷ୍ଠ ହେଲେ ମୁଁ ବିଧାନସଭାର ସଭ୍ୟ ନଥାଇ ପ୍ରଥମେ ନେତାରୂପେ ନିର୍ବାଚିତ ହୋଇ ପରେ ବିଧାନସଭାର ସଭ୍ୟ ହୋଇପାରେ ବୋଲି କେତେକ ପରାମର୍ଶ ଦେଇଥିଲେ । ମୁଁ କିନ୍ତୁ ସେ କଥା ପସନ୍ଦ କରିନଥିଲି ଏବଂ ମୋର ବନ୍ଧୁମାନେ ମଧ ଚାହୁଁଥିଲେ ଯେ ମୁଁ ରାଜ୍ୟସଭାରେ ନ ରହି ବିଧାନସଭାକୁ ସେହି ନିର୍ବାଚନରେ ନିର୍ବାଚିତ ହୋଇ ଆସେ । ମୁଁ ରାଜ୍ୟସଭା ସଦସ୍ୟ ଥାଇ ବିଧାନସଭାକୁ ପ୍ରାର୍ଥୀ ହୋଇପାରିବି ବୋଲି କେନ୍ଦ୍ର ପାର୍ଲିଆମେଣ୍ଟାରୀ ବୋର୍ଡ଼ରୁ ମଧ ଅନୁମତି ଆସିଯାଇଥିଲା । ତେଣୁ ବିଧାନସଭାକୁ ମୁଁ ପ୍ରାର୍ଥୀ ହେବି ବୋଲି ନିଷ୍ପତ୍ତି ନିଆଯାଇଥିଲା । ମୁଁ ବିଧାନସଭାକୁ ପ୍ରାର୍ଥୀ ହେବାଦ୍ୱାରା ସେତେବେଳେ ଆଉ ଗୋଟିଏ ସମସ୍ୟାର ସମାଧାନ ହୋଇପାରିଥିଲା । ସମ୍ବଲପୁର ଜିଲ୍ଲାର ଦେଓଗଡ଼ ନିର୍ବାଚନମଣ୍ଡଳୀରୁ ବିଧାନସଭାକୁ ଶ୍ରୀ ପତିତପାବନ ପ୍ରଧାନ ପ୍ରାର୍ଥୀ ହେବାପାଇଁ ଆବେଦନ କରିଥିଲେ । ଦେଓଗଡ଼ ତାଙ୍କର ଘର ଏବଂ ସେ ଜଣେ ଉଚ୍ଚ ଶିକ୍ଷିତ ଉଦୀୟମାନ ଯୁବକ ଥିଲେ । ଏକ ବର୍ଷରୁ ଊର୍ଦ୍ଧ୍ୱ ଅଟକବନ୍ଦୀ ଭାବରେ ଜରୁରୀ ଅବସ୍ଥା ସମୟରେ ଜେଲ୍ ଜୀବନ ଯାପନ କରି ସଦ୍ୟ ମୁକ୍ତ ହୋଇଥାଆନ୍ତି । ତାଙ୍କ ପ୍ରାର୍ଥୀତ୍ୱକୁ ସହଜରେ ଉପେକ୍ଷା କରି ହୁଅନ୍ତାନାହିଁ । ଦେଓଗଡ଼ରୁ ବାମଣ୍ଡାର ପୂର୍ବତନ ରାଜା ଶ୍ରୀ ତ୍ରିଭୁବନ ଦେଓ ପ୍ରାର୍ଥୀ ହେବାପାଇଁ ଆବେଦନ କରିଥିଲେ । ସେ ପୂର୍ବରୁ ବହୁ ବର୍ଷ ହେଲା ସେହି ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇ ଆସୁଥାଆନ୍ତି । ତେଣୁ ତାଙ୍କ ପ୍ରାର୍ଥୀପତ୍ରକୁ ଅଗ୍ରାହ୍ୟ କରିବା ସହଜନଥିଲା । ଏ ଅବସ୍ଥାରେ ସେଠାରେ ନିଷ୍ପତ୍ତି ହୋଇଥିଲା ଯେ ବିଧାନସଭାପାଇଁ ଶ୍ରୀ ତ୍ରିଭୁବନ ଦେଓ ପ୍ରାର୍ଥୀ ହେବେ ଏବଂ ମୁଁ ବିଧାନସଭାକୁ ନିର୍ବାଚିତ ହୋଇ ରାଜ୍ୟସଭାରୁ ଇସ୍ତଫା ଦେବାମାତ୍ରେ ସେ ସ୍ଥାନରୁ ଶ୍ରୀ ପତିତପାବନ ପ୍ରଧାନ ରାଜ୍ୟସଭାକୁ ଯିବେ । ଏହିପରି ଭାବରେ ଗୋଟିଏ ଦ୍ୱନ୍ଦ୍ୱର ସମାଧାନ ହୋଇଥିଲା । ପରେ ମୋ ସ୍ଥାନରେ ଶ୍ରୀ ପତିତପାବନ ପ୍ରଧାନ ନିର୍ବାଚିତ ହୋଇ ରାଜ୍ୟସଭାକୁ ଯାଇଥିଲେ । ଶ୍ରୀ ପତିତପାବନ ପ୍ରଧାନଙ୍କୁ ରାଜ୍ୟସଭାକୁ ପଠାଇବାପାଇଁ ମୁଁ ପ୍ରସ୍ତାବ ଦେଇଥିଲି । ମୋ ପ୍ରସ୍ତାବ ଓ ପସନ୍ଦର ଯଥାର୍ଥତା ପରେ ଆମ୍ଭେମାନେ ଅନୁଭବ କରିଥିଲୁ । ଅନ୍ୟ କେତେକ ପୁରୁଣା ବନ୍ଧୁଙ୍କୁ ବହୁ ବିଶ୍ୱସ୍ତ ବୋଲି ଭାବି ରାଜ୍ୟସଭାକୁ ଆମ ଦଳ ପକ୍ଷରୁ ପଠାଇଥିଲୁ । ମାତ୍ର ରାଜ୍ୟସଭାରେ ଥାଉ ଥାଉ ସେମାନେ ଆମର ଅସୁବିଧା ସମୟ ଆସିଲାକ୍ଷଣି ଆମକୁ ଛାଡ଼ି ପଳାଇଲେ; କିନ୍ତୁ ଶ୍ରୀ ପତିତପାବନ ପ୍ରଧାନ ସେପରି କରି ନଥିଲେ । ସେ ଦିଲ୍ଲୀରେ ବହୁ ଲୋକଙ୍କ ସହିତ ସଂପର୍କ ରଖିପାରି ଆମ୍ଭମାନଙ୍କପାଇଁ ବିଶେଷ ସହାୟକ ହୋଇଥିଲେ । ଲୋକସଭା ନିର୍ବାଚନର ସାଫଲ୍ୟ ହେତୁ ରାଜ୍ୟ ବିଧାନସଭା ନିର୍ବାଚନରେ ଜନତା ଦଳର ପ୍ରାର୍ଥୀମାନଙ୍କର ବିଜୟ ଆଶା ଅତି ଉଜ୍ଜ୍ୱଳ ଥିବାରୁ ପ୍ରାର୍ଥୀ ହେବାପାଇଁ ଏଥର ବହୁଲୋକ ଆବେଦନ କରିଥିଲେ । ବିଧାନସଭାର ୧୪୭ଟି ସ୍ଥାନପାଇଁ ପ୍ରାୟ ଚାରି ହଜାର ଦରଖାସ୍ତ ଜନତା ଦଳ ଅଫିସ୍‌କୁ ଆସିଥିଲା । ଜନତା ଦଳ କାହାରି ସାଙ୍ଗରେ ବୁଝାମଣା ନକରି ୧୪୭ଟି ସ୍ଥାନରେ ପ୍ରାର୍ଥୀ ଦେଇଥିଲା । ରାଜ୍ୟ ଜନତା ଦଳ ନିର୍ବାଚନ କମିଟିର ବିରୋଧସତ୍ତ୍ୱେ ଦଳର କେନ୍ଦ୍ର ପାର୍ଲିଆମେଣ୍ଟାରୀ ବୋର୍ଡ଼ ନନ୍ଦିନୀ ଦେବୀଙ୍କୁ ଢେଙ୍କାନାଳ ନିର୍ବାଚନମଣ୍ଡଳୀରୁ ବିଧାନସଭାକୁ ପ୍ରାର୍ଥୀରୂପେ ମନୋନୀତ କରିଥିଲା । ଜୁନ୍ ମାସ ଦଶ ତାରିଖରେ ସମଗ୍ର ଓଡ଼ିଶାରେ ଭୋଟ ଗ୍ରହଣ କରାଯାଇଥିଲା । ୧୪୭ଟି ବିଧାନସଭା ସ୍ଥାନ ଭିତରୁ ଜନତା ଦଳ ୧୧୦ ସ୍ଥାନରେ ଜୟଯୁକ୍ତ ହୋଇଥିଲା । କଂଗ୍ରେସ ଛବିଶଟି ସ୍ଥାନ ଦଖଲ କରିଥିଲା । ସ୍ୱାଧୀନ ପ୍ରାର୍ଥୀ ନଅଟି ସ୍ଥାନରେ ଜୟଯୁକ୍ତ ହୋଇଥିଲେ । ଆଉ ଦୁଇଟି ସ୍ଥାନ ମଧ୍ୟରୁ ଗୋଟିକରୁ ମାର୍କ୍ସବାଦୀ କମ୍ୟୁନିଷ୍ଟ ଦଳ ଓ ଅନ୍ୟଟିରୁ କମ୍ୟୁନିଷ୍ଟ ଦଳର ପ୍ରାର୍ଥୀ ଜୟଯୁକ୍ତ ହୋଇଥିଲେ ।

# ବିଧାୟକ ଦଳ ନେତା ନିର୍ବାଚନ

ଜନତା ଦଳ ବିଧାନସଭାରେ ସଂଖ୍ୟାଗରିଷ୍ଠ ହେବା ପରେ ସ୍ୱତଃ ସରକାର ଗଠନ କରିବାର ଦାୟିତ୍ୱ ନେବାର କଥା । କିଏ ଦଳପତି ହୋଇ ମନ୍ତ୍ରିମଣ୍ଡଳ ଗଠନ କରିବ ସେ ବିଷୟରେ ନାନା ପ୍ରକାର କଳ୍ପନା-ଜଳ୍ପନା ଚାଲିଥିଲା । ମୁଁ ଦଳପତି ହେବି ବୋଲି ଆଗରୁ ଏକପ୍ରକାର ଜଣାପଡ଼ିଥିଲା । ତଥାପି କେତେକ ତାହାକୁ ବିରୋଧ କରିବାର ମନୋଭାବ ଦେଖାଇଥିଲେ । ଯେଉଁମାନେ ଜରୁରୀକାଳୀନ ପରିସ୍ଥିତିରେ ଜେଲ୍ ବରଣ କରିଥିଲେ ସେହିମାନଙ୍କ ଭିତରୁ କେହି ଦଳପତି ହୋଇ ମୁଖ୍ୟମନ୍ତ୍ରୀ ହେବା ଉଚିତ ବୋଲି ସେମାନେ ମତ ବ୍ୟକ୍ତ କରିଥିଲେ । ଏ ପ୍ରକାର ମତ ଯେ ଖୁବ୍ ବେଶି ଥିଲା ତାହା ନୁହେଁ; କେବଳ ଜଣେ ଦୁଇଜଣଙ୍କ ମହଲରେ ସେ ପ୍ରଶ୍ନ ଉଠୁଥିଲା ଏବଂ ମୋର ବନ୍ଧୁମାନେ ଆସି ମୋତେ ସେ କଥା କହୁଥିଲେ । ମୁଁ ସେମାନଙ୍କୁ ମୋ ବିଚାର ଅନୁସାରେ ବୁଝାଇବାକୁ ଚେଷ୍ଟାକରୁଥିଲି । ଆମ ଦେଶର ସ୍ୱାଧୀନତା ସଂଗ୍ରାମ ସମୟରେ ଯେତେବେଳେ ଆଇନ ଅମାନ୍ୟ ଆନ୍ଦୋଳନ ହେଉଥିଲା ସେତେବେଳେ ଅନେକ ସତ୍ୟାଗ୍ରହ କରି ଜେଲ୍‌ବରଣ କରୁଥିଲେ । ଦ୍ୱିତୀୟ ମହାଯୁଦ୍ଧ ସମୟରେ ମହାତ୍ମା ଗାନ୍ଧୀଙ୍କ ନିର୍ଦ୍ଦେଶମତେ ବ୍ରିଟିଶ୍ ସରକାରଙ୍କର ଯୁଦ୍ଧ ଉଦ୍ୟମକୁ ବିରୋଧ କରିବା ଉଦ୍ଦେଶ୍ୟରେ ବ୍ୟକ୍ତିଗତ ସତ୍ୟାଗ୍ରହ କରି ଜେଲ୍ ବରଣ କରୁଥିଲେ । ମାତ୍ର ଜରୁରୀକାଳୀନ ପରିସ୍ଥିତି ସମୟରେ ସେ ପ୍ରକାର କୌଣସି କାର୍ଯ୍ୟକ୍ରମ ଘୋଷଣା କରାଯାଇନଥିଲା, ଯାହା କରି ଲୋକେ ଜେଲ୍‌ବରଣ କରିଥାଆନ୍ତି । ବରଂ ସରକାର ନିଜ ମର୍ଜି ଅନୁସାରେ ବାଛି ରାଜନୈତିକ କର୍ମୀ ଓ ନେତାମାନଙ୍କୁ ସର୍ବୋଦୟ କର୍ମୀ ଓ ସାଧାରଣ ଲୋକଙ୍କୁ ଅଟକବନ୍ଦୀ କରି ଜେଲ୍ ପ୍ରେରଣ କରୁଥିଲେ । ମୋତେ ଯଦି ସରକାର ତାଙ୍କ ମତରେ ଦେଶ ପ୍ରତି ବା ତାଙ୍କ ପ୍ରତି ବିପଜ୍ଜନକ ନୁହେଁ ବୋଲି ମନେକଲେ, ସେଥିରେ ମୋର କରିବାର କିଛି ନଥିଲା । ମୋତେ ସର୍ବପ୍ରଥମେ ମିସାରେ ଗିରଫ କରି ଅଟକବନ୍ଦୀ କରିବେ ବୋଲି ଭାବି ମୁଁ ପ୍ରସ୍ତୁତ ରହିଥିଲି; କିନ୍ତୁ ମୋତେ ଗିରଫ କରାଗଲାନାହିଁ । ମୁଁ ଯେ ଘରେ ଚୁପ୍‌ଚାପ୍ ହୋଇ ବସିଥିଲି ତା'ନୁହେଁ । ଲୋକଦଳ ଅଫିସ୍‌କୁ ରୀତିମତ ଆସି ଯେପରି ପୂର୍ବରୁ ମୁଁ କାର୍ଯ୍ୟ କରୁଥିଲି ସେଭଳି କାର୍ଯ୍ୟ କରୁଥାଏ । ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ଜରୁରୀକାଳୀନ ପରିସ୍ଥିତି ଘୋଷଣାକୁ ନିନ୍ଦାକରି କଟୁ ସମାଲୋଚନା କରି ବିବୃତି ଦେଇଥିଲି । ତା'ଛଡ଼ା ଜେଲ୍ ଯିବା ମୋ ପକ୍ଷରେ କିଛି ନୂଆ କଥା ନଥିଲା । ୧୯୪୨ ଅଗଷ୍ଟ ବିପ୍ଳବ ସମୟରେ ଯୁଦ୍ଧ ବିରୁଦ୍ଧରେ ଭାଷଣ ଦେଇ ଏକ ବର୍ଷ ଜେଲ୍ ବରଣ କରିଥିଲି ଏବଂ ଛାତ୍ରଜୀବନରେ ବହୁବାର ଜେଲ୍ ଯିବାକୁ ପଡ଼ିଥିଲା । ଏସବୁ କଥା କହିଲା ପରେ ଉତ୍ତର ପାଇଥିଲି ଯେ ସେସବୁ ଅତୀତ ଯୋଗ୍ୟତା ଥିଲେ କ'ଣ ହେବ, ଯଥା ସମୟରେ ମୁଁ ସୁଯୋଗ ହରାଇଛି । ବହୁ ମତ ଯେ ମୁଁ ନେତା ହେବା ସପକ୍ଷରେ ଥାଏ ସେଥିରେ ମୋର କୌଣସି ସନ୍ଦେହ ନଥାଏ । ତଥାପି ଟିକେ ନଇଁଯାଇ ବିନୟ ଆଚରଣଦ୍ୱାରା ଅନ୍ୟର ଅସନ୍ତୋଷକୁ ଯଦି ଉପଶମ କରାଯାଇପାରେ ତା'ହେଲେ ମୋର କିଛି କ୍ଷତି ହେବ ନାହିଁ ବୋଲି ଭାବି ମୁଁ ବୁଝାଇବାରେ ଲାଗିଥିଲି । ଏଣେ ଯେତେବେଳେ ଏହିପରି ଭାବରେ ନେତୃତ୍ୱ ସମ୍ବନ୍ଧରେ ଆଲୋଚନା ଚାଲିଥାଏ ମୋର ବନ୍ଧୁ ଶ୍ରୀ ଗିରିଜାଭୂଷଣ ପଟ୍ଟନାୟକ ଆସି ମୋତେ ଖବର ଦେଲେ ଯେ ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ଅନ୍ୟାନ୍ୟ ସର୍ବୋଦୟ କର୍ମୀମାନେ ମୋର ମୁଖ୍ୟମନ୍ତ୍ରୀ ହେବା କଥାଟାକୁ ପସନ୍ଦ କରୁନଥିଲେ । ତେଣୁ ମୁଁ ସେମାନଙ୍କ ପାଖକୁ ଯାଇ ସେମାନଙ୍କର ଆଶୀର୍ବାଦ ଲୋଡ଼ିବା ଉଚିତ ବୋଲି ଗିରିଜାବାବୁ ମୋତେ ପରାମର୍ଶ ଦେଇଥିଲେ । ଗିରିଜାବାବୁଙ୍କର ପରାମର୍ଶ ଥିଲା ମୁଁ ଏପରି ବ୍ୟବହାର ଦେଖାଇବା ଆବଶ୍ୟକ ଯାହାଦ୍ୱାରା ନବବାବୁ ପ୍ରଭୃତି ଭାବିନେବେ ଯେ ମୁଁ ସେମାନଙ୍କୁ ଉପେକ୍ଷା କରୁନାହିଁ । ଗିରିଜାବାବୁଙ୍କ କଥା ଶୁଣି ମୋର ଆଶଙ୍କା ହୋଇଥିଲା ଯେ ନବବାବୁ ବୋଧହୁଏ ୧୯୫୬ ମସିହାରେ ତାଙ୍କର ମୁଖ୍ୟମନ୍ତ୍ରୀ ପଦତ୍ୟାଗ ଓ ମହତାବବାବୁଙ୍କ ଆଗମନ ସମ୍ବନ୍ଧରେ ମୋର ଭୂମିକା

ଭୁଲିଯାଇନାହାନ୍ତି । ପୁଣି ଭାବୁଥାଏ ବୋଧହୁଏ ମୁଁ ନବବାବୁଙ୍କୁ ଭୁଲ୍‌ବୁଝୁଛି; କାରଣ ପ୍ରତିହିଂସାପରାୟଣତା ନବବାବୁଙ୍କ ଆଚରଣନୁହେଁ । ସେ ଯାହାହେଉ, ଗିରିଜାବାବୁଙ୍କ ପରାମର୍ଶକୁ ଗ୍ରହଣକରି ମୁଁ ଯାଇ ନବବାବୁଙ୍କ ଘରେ ପହଞ୍ଚିଥିଲି । ସେଠାରେ ଆହୁରି ବହୁ ସର୍ବୋଦୟ କର୍ମୀ ଉପସ୍ଥିତ ଥିଲେ । ନବବାବୁ ମୋତେ ଦେଖି ଖୁସିହୋଇଥିଲେ ଏବଂ ମୋ ସହିତ ଏପରି କଥାବାର୍ତ୍ତା କରିଥିଲେ ଯେପରି ମୁଁ ମୁଖ୍ୟମନ୍ତ୍ରୀ ହେବାକୁ ଯାଉଛି । ପରେ ଖବର ପାଇଲି ଯେ କେତେକ ତାଙ୍କ ପାଖକୁ ଯାଇ ତାଙ୍କୁ କହୁଥିଲେ ଯେ ମୁଖ୍ୟମନ୍ତ୍ରୀ କିଏ ହେବ ନବବାବୁ ମତବ୍ୟକ୍ତ କରିବା ଉଚିତ । ସେହି ପ୍ରକାର ପ୍ରସ୍ତାବର ଆଭାସ ମୁଁ ଶ୍ରୀ ବିଶ୍ୱନାଥ ପଣ୍ଡିତଙ୍କ କଥାରୁ ପାଇଥିଲି । ନବବାବୁ କ୍ଷୁଦ୍ରମନା ନଥିଲେ କି କ୍ଷୁଦ୍ର କ୍ଷୁଦ୍ର କଥାରେ ପ୍ରଭାବିତ ହେବାର ବ୍ୟକ୍ତି ନଥିଲେ । ମୁଁ ନବବାବୁଙ୍କ ପାଖକୁ ଯିବାଦ୍ୱାରା ଅନ୍ୟାନ୍ୟ ସର୍ବୋଦୟ କର୍ମୀମାନେ ମଧ ଖୁସିହୋଇଥିଲେ ।

ବିଧାନସଭାର ଜନତା ଦଳର ନେତା ନିର୍ବାଚନ ଯେପରି ସୁରୁଖୁରୁରେ ସର୍ବସମ୍ମତିକ୍ରମେ ହୋଇଯିବ ସେ ବିଷୟରେ ଆଲୋଚନା କରିବାପାଇଁ ଜନତା ଦଳ ଅଫିସ୍‌ରେ ଅଣଆନୁଷ୍ଠାନିକ ଭାବରେ ଦଳର ବ୍ୟବସ୍ଥାପକମାନେ ଏକତ୍ରିତ ହୋଇଥିଲେ । ବିଜୁବାବୁ ଅଫିସ୍‌ରେ ବସିଥାଆନ୍ତି ଏବଂ ତାଙ୍କୁ ଦଳ ଦଳ ହୋଇ ସଭ୍ୟମାନେ ସାକ୍ଷାତ୍ କରି ନିଜର ମତାମତ ଜଣାଉଥିଲେ । ଯେଉଁମାନେ ନେତା ହେବାପାଇଁ ଆଗ୍ରହୀ ଥିଲେ ସେମାନେ ଯାଇ ବିଜୁବାବୁଙ୍କୁ ଦେଖାକରିଥିଲେ । ମୁଁ ସେଠାରେ ତାଙ୍କୁ ଆଉ କିଛି କହି ନଥିଲି; କାରଣ ବହୁ ପୂର୍ବରୁ ଏ ସମ୍ବନ୍ଧରେ ତାଙ୍କ ସହିତ ମୋର କଥାବାର୍ତ୍ତା ହୋଇଥିଲା ଓ ସେଇ କଥାବାର୍ତ୍ତା ଅନୁସାରେ ମୁଁ ବିଧାନସଭାକୁ ପ୍ରାର୍ଥୀ ହୋଇଥିଲି । ତେଣୁ ସେତିକିବେଳେ ବିଧାନସଭାରେ ଜନତା ଦଳର ଦଳପତି ମୁଁ ହେବି ବୋଲି ଏକପ୍ରକାର ସ୍ଥିରହୋଇଥିବା କଥା ବିଜୁବାବୁ ସମସ୍ତଙ୍କୁ କହିଥିଲେ ଏବଂ ସର୍ବସମ୍ମତିକ୍ରମେ ତାହା କରାଇନେବାକୁ ସେ ସମସ୍ତଙ୍କୁ ଅନୁରୋଧ କରିଥିଲେ । ଜନତା ଦଳର କେନ୍ଦ୍ର ପାର୍ଲିଆମେଣ୍ଟାରୀ ବୋର୍ଡ଼ର ପ୍ରତିନିଧି ହିସାବରେ କେନ୍ଦ୍ରର ଜଣେ ମନ୍ତ୍ରୀ ଶ୍ରୀ ସିକନ୍ଦର ବଖ୍‌ତ ପର୍ଯ୍ୟବେକ୍ଷକ ହିସାବରେ ଜୁନ୍ ଏକୋଇଶ ତାରିଖରେ ଭୁବନେଶ୍ୱରରେ ପହଞ୍ଚିଥିଲେ । ପୂର୍ବ-ନିର୍ଦ୍ଧାରିତ କାର୍ଯ୍ୟକ୍ରମମତେ ସେହି ଦିନ ଦଳର ବୈଠକ ବିଧାନସଭା କମିଟି ଗୃହରେ ତାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ସେଠାରେ ମୁଁ ସର୍ବସମ୍ମତିକ୍ରମେ ଓଡ଼ିଶା ବିଧାନସଭା ଜନତା ଦଳର ନେତାରୂପେ ନିର୍ବାଚିତ ହୋଇଥିଲି ।

## ଜନତା ଦଳ ମନ୍ତ୍ରିମଣ୍ଡଳ ଗଠନ ଅନ୍ତରାଳରେ

ମନ୍ତ୍ରିମଣ୍ଡଳ ଗଠନ ସମ୍ବନ୍ଧରେ କେନ୍ଦ୍ରରେ ନେତୃବର୍ଗଙ୍କ ସହିତ ଆଲୋଚନା କରିବାପାଇଁ ମୁଁ ସେହି ଜୁନ୍ ଏକୋଇଶ ତାରିଖ ଉପରଓଳି ଦିଲ୍ଲୀ ଯାତ୍ରାକରିଥିଲି । ଶ୍ରୀ ମୋରାରଜୀ ଦେଶାଇ ପ୍ରଧାନମନ୍ତ୍ରୀ ହେବା ପରେ ଶ୍ରୀ ଚନ୍ଦ୍ରଶେଖର ଜନତା ଦଳର ଚେୟାରମ୍ୟାନ୍ ହୋଇଥାଆନ୍ତି । ମନ୍ତ୍ରିମଣ୍ଡଳ ଗଠନ ଓ ସଭ୍ୟସଂଖ୍ୟା ସମ୍ବନ୍ଧରେ ମୁଁ ଶ୍ରୀ ଚନ୍ଦ୍ରଶେଖରଙ୍କ ସହିତ କଥାବାର୍ତ୍ତା କରିଥିଲି । ରାଜ୍ୟ ବିଧାନସଭାର ମୋଟ ସଭ୍ୟସଂଖ୍ୟା ଯାହା ତା'ର ଶତକଡ଼ା ଦଶ ଭାଗ ସଭ୍ୟଙ୍କୁ ନେଇ ମନ୍ତ୍ରିମଣ୍ଡଳ ଗଠନ କରିବାପାଇଁ ନୀତିଗତ ଭାବରେ ଧାର୍ଯ୍ୟ ହୋଇଥିବା କଥା ସେ ମୋତେ କହିଥିଲେ । ଆମ ବିଧାନସଭାର ସଭ୍ୟସଂଖ୍ୟା ୧୪୭ ଥିଲା । ତେଣୁ ମୋତେ ମିଶାଇ ମନ୍ତ୍ରୀ ଓ ରାଷ୍ଟ୍ରମନ୍ତ୍ରୀସମେତ ପନ୍ଦର ଜଣଙ୍କୁ ନେଇ ମନ୍ତ୍ରିମଣ୍ଡଳ ଗଠନ କରିପାରିବି ବୋଲି ସେ ମୋତେ କହିଥିଲେ । ମୁଁ ଏକୋଇଶ ଜଣିଆ ମନ୍ତ୍ରିମଣ୍ଡଳ ଗଠନ କରିବାପାଇଁ ପ୍ରସ୍ତାବ ଦେଇଥିଲି । ନୀତିଗତଭାବରେ ମନ୍ତ୍ରିମଣ୍ଡଳ ସଂଖ୍ୟା ଯାହା ହେବା କଥା ତାହା ସ୍ଥିର କରାଯାଇଛି । ସେଥିରୁ ଗୋଟିଏ ଅଧିକା ହେଲେ ପ୍ରଧାନମନ୍ତ୍ରୀଙ୍କ ସହିତ କଥାବାର୍ତ୍ତା କରିବା ଆବଶ୍ୟକ ବୋଲି ଶ୍ରୀ ଚନ୍ଦ୍ରଶେଖର ମୋତେ ପରାମର୍ଶ ଦେଇଥିଲେ । ମୁଁ ପ୍ରଧାନମନ୍ତ୍ରୀ ମୋରାରଜୀ ଭାଇଙ୍କୁ ଦେଖାକରି ସେ କଥା କହିଥିଲି । ଓଡ଼ିଶାରେ ମନ୍ତ୍ରିମଣ୍ଡଳର ସଂଖ୍ୟା

ପନ୍ଦର ଜଣଙ୍କ ମଧ୍ୟରେ ସୀମାବଦ୍ଧ ନକରି ଏକୋଇଶ ଜଣଙ୍କୁ ନେବାପାଇଁ ମୋତେ ଅନୁମତି ଦେବାକୁ ମୁଁ ତାଙ୍କୁ ଅନୁରୋଧ କରିଥିଲି । ଆମ ବିଧାନସଭାର ସଭ୍ୟ ସଂଖ୍ୟା ୧୪୭ ଜଣ ବୋଲି ସେ ଯେତେବେଳେ ଜାଣିଲେ, ସେ କହିଲେ ଚଉଦ ଜଣଙ୍କୁ ନେଇ ମନ୍ତ୍ରିମଣ୍ଡଳ ଗଠନ କରିବା ଆମର ହକ୍ ପ୍ରାପ୍ୟ, ତେଣୁ ପନ୍ଦର ଜଣ ନହୋଇ ଚଉଦ ଜଣ ହେବା ଉଚିତ । ତାଙ୍କ କଥା ଶୁଣି ମୁଁ କାହିଁକି ତାଙ୍କ ପାଖକୁ ଗଲି ବୋଲି ଅନୁତାପ କରିଥିଲି । ଆଉ ସେ ବିଷୟରେ ଶ୍ରୀ ଚନ୍ଦ୍ରଶେଖରଙ୍କୁ କିଛି କହି ନଥିଲି । ଅନ୍ୟ ଯେଉଁ ଚଉଦ ଜଣଙ୍କୁ ମନ୍ତ୍ରିମଣ୍ଡଳପାଇଁ ବାଛିବାର କଥା ସେଥିରେ ମଧ୍ୟ ମୋର ପୂର୍ଣ୍ଣ ସ୍ୱାଧୀନତା ନଥିଲା । ମନ୍ତ୍ରୀ ଓ ରାଷ୍ଟ୍ରମନ୍ତ୍ରୀଙ୍କୁ ମିଶାଇ ଚଉଦ ଜଣଙ୍କର ତାଲିକା ଦିଲ୍ଲୀରେ ମୁଁ ବିଜୁବାବୁଙ୍କ ସହ ପରାମର୍ଶ କରି ପ୍ରସ୍ତୁତ କରିଥିଲି । ମୋର ଇଚ୍ଛା ଥିଲା ଗଞ୍ଜାମ ଜିଲ୍ଲାରୁ ଶ୍ରୀ ଅନନ୍ତ ନାରାୟଣ ସିଂହଦେଓଙ୍କୁ ମନ୍ତ୍ରିମଣ୍ଡଳରେ ନେବାପାଇଁ; ମାତ୍ର ତାହା ହୋଇପାରିନଥିଲା । ତାଙ୍କ ପରିବର୍ତ୍ତେ ଶ୍ରୀ ହରିହର ସ୍ୱାଇଁଙ୍କୁ ରାଷ୍ଟ୍ରମନ୍ତ୍ରୀରୂପେ ନେବାପାଇଁ ସ୍ଥିରହୋଇଥିଲା । ଶ୍ରୀ ଚନ୍ଦ୍ରଶେଖରଙ୍କ ସହିତ ଯେତେବେଳେ ଆଲୋଚନା କରାଯାଏ ଜଣେ ମହିଳା ରାଜ୍ୟ ମନ୍ତ୍ରିପରିଷଦରେ ରହିବା ଉଚିତ ବୋଲି ସେ ମତ ଦେଇଥିଲେ । ଗଞ୍ଜାମ ଜିଲ୍ଲାର ଖଲ୍ଲିକୋଟ ନିର୍ବାଚନମଣ୍ଡଳୀର ପ୍ରତିନିଧି ଖଲ୍ଲିକୋଟ ରାଣୀ ଶ୍ରୀମତୀ ସୁଜ୍ଞାନ କୁମାରୀ ଦେଓଙ୍କ କଥା ଆମେ ଆଲୋଚନା କରିଥିଲୁ । ସେ ରାଜି ହେଲେ ତାଙ୍କୁ ରାଷ୍ଟ୍ରମନ୍ତ୍ରୀ ଭାବରେ ଶ୍ରୀ ହରିହର ସ୍ୱାଇଁଙ୍କ ପରିବର୍ତ୍ତେ ନିଆଯିବ ବୋଲି ସ୍ଥିର ହୋଇଥିଲା । ତେଣୁ ଶ୍ରୀ ହରିହର ସ୍ୱାଇଁଙ୍କ ନାମ ପାଖରେ ଖଲ୍ଲିକୋଟ ରାଣୀଙ୍କ ନାମ ବନ୍ଧନୀରେ ଲେଖା ହୋଇ ରହିଥିଲା । ଦିଲ୍ଲୀରୁ ଫେରିଲାବେଳକୁ ମନ୍ତ୍ରିମଣ୍ଡଳ ଗଠନ କରିବାପାଇଁ ରାଜ୍ୟପାଳଙ୍କଠାରୁ ନିମନ୍ତ୍ରଣ ଆସିଯାଇଥିଲା ।

ଜୁନ୍ ମାସ ଛବିଶ ତାରିଖ ଦିନ ରାଜଭବନ ପ୍ରାଙ୍ଗଣରେ ଶପଥ ପାଠ ଉତ୍ସବ ଅନୁଷ୍ଠିତ ହେବାପାଇଁ ଆୟୋଜନ କରାଯାଇଥିଲା । ତା' ପୂର୍ବଦିନ ମନ୍ତ୍ରିପରିଷଦରେ ଯେଉଁମାନଙ୍କୁ ନିଆଯିବା କଥା ସେମାନଙ୍କୁ ମୁଁ ଚିଠି ଲେଖିଥିଲି । ଶ୍ରୀମତୀ ସୁଜ୍ଞାନ କୁମାରୀ ଦେଓ ମନ୍ତ୍ରିପରିଷଦରେ ଯୋଗ ଦେବାପାଇଁ ଅନିଚ୍ଛା ପ୍ରକାଶ କରିଥିଲେ । ମୋର ଧାରଣା ହୋଇଥିଲା ଯେ ରାଷ୍ଟ୍ରମନ୍ତ୍ରୀ ହେବାପାଇଁ ତାଙ୍କୁ ଅନୁରୋଧ କରାଯାଇଥିବାରୁ ବୋଧହୁଏ ସେ ଅନିଚ୍ଛା ପ୍ରକାଶ କରୁଛନ୍ତି । ତେଣୁ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀ ହେବାପାଇଁ ତାଙ୍କୁ ଅନୁରୋଧ କରିଥିଲି । ସେଥିରେ ସେ ରାଜି ନହୋଇ ଲିଖିତ ଭାବରେ ମୋତେ ଜଣାଇ ଦେଇଥିଲେ ଯେ ବ୍ୟକ୍ତିଗତ ଅସୁବିଧା ହେତୁ ସେ ମନ୍ତ୍ରିମଣ୍ଡଳରେ ଯୋଗଦେଇ ପାରିବେ ନାହିଁ । ତେଣୁ ଶ୍ରୀ ହରିହର ସ୍ୱାଇଁଙ୍କୁ ରାଷ୍ଟ୍ରମନ୍ତ୍ରୀ ଭାବରେ ମନ୍ତ୍ରିପରିଷଦରେ ଯୋଗଦେବାପାଇଁ ଅନୁରୋଧ କରି ମୁଁ ଚିଠି ପଠାଇଦେଇଥିଲି । ଶପଥ ନେବାଦିନ ସକାଳ ଉତ୍ସବର ପ୍ରାୟ ଦୁଇ ଘଣ୍ଟା ପୂର୍ବରୁ ଶ୍ରୀମତୀ ସୁଜ୍ଞାନ କୁମାରୀ ଦେଓ, ଶ୍ରୀ ଅନନ୍ତ ନାରାୟଣ ସିଂହଦେଓ ଓ ଶ୍ରୀ ରାମକୃଷ୍ଣ ପଟ୍ଟନାୟକ ପ୍ରଭୃତି ଗଞ୍ଜାମ ଜିଲ୍ଲାର କେତେଜଣ ବିଧାୟକ ବନ୍ଧୁ ମୋତେ କହିଥିଲେ ଯେ ଶ୍ରୀ ସ୍ୱାଇଁଙ୍କୁ ମନ୍ତ୍ରିପରିଷଦରେ ନିଆନଯାଉ ଓ କାହାକୁ ନିଆଯିବ ପରେ ସ୍ଥିରକରାଯିବ । ଶ୍ରୀ ସ୍ୱାଇଁଙ୍କ ପାଖକୁ ଚିଠି ଚାଲିଯାଇଥିବା କଥା ମୁଁ ସେମାନଙ୍କୁ କହିଥିଲି । ସେ ଅବସ୍ଥାରେ ତାଙ୍କୁ ମନ୍ତ୍ରିପରିଷଦରେ ନ ନେବା କଥା ଆଉ ଉଠିନପାରେ । ଶ୍ରୀମତୀ ଦେଓ ଯଦି ରାଜିହୁଅନ୍ତି ତା'ହେଲେ ତାଙ୍କୁ ମନ୍ତ୍ରୀ ହିସାବରେ ମନ୍ତ୍ରିମଣ୍ଡଳରେ ଆଉ ଜଣେ ଅଧିକା ସଭ୍ୟ ନେବାକୁ ମୁଁ ଇଚ୍ଛା ପ୍ରକାଶ କରିଥିଲି । ମାତ୍ର ସେଥିରେ ସେମାନେ ରାଜି ନହୋଇ ଶ୍ରୀ ହରିହର ସ୍ୱାଇଁଙ୍କୁ ମନ୍ତ୍ରିପରିଷଦରେ ନନେବାପାଇଁ ଦାବି କରିଥିଲେ । ସେମାନଙ୍କର ସେପ୍ରକାର ଅନୁରୋଧ ମୁଁ ରକ୍ଷା କରିପାରିବିନାହିଁ ବୋଲି କହିଥିଲି । ଏହାପରେ ସେମାନେ ଜନତା ଦଳର ଚେୟାରମ୍ୟାନ୍ ଶ୍ରୀ ଚନ୍ଦ୍ରଶେଖର ଓ ବିଜୁପଟ୍ଟନାୟକଙ୍କ ପାଖରେ ଆପତ୍ତି କରିଥିଲେ । ଶ୍ରୀ ହରିହର ସ୍ୱାଇଁଙ୍କର ଶପଥ ନେବା ବନ୍ଦ କରିବାପାଇଁ କୁଆଡ଼େ ଶ୍ରୀ ଚନ୍ଦ୍ରଶେଖର ସେମାନଙ୍କୁ ଜବାବ ଦେଇଥିଲେ । ଶ୍ରୀ ଚନ୍ଦ୍ରଶେଖର ମୋତେ କୁଆଡ଼େ ସେକଥା କହିବାପାଇଁ ଫୋନ୍ କରି ଖୋଜିଥିଲେ । ମୁଁ ସେତେବେଳକୁ କେତେକ କାର୍ଯ୍ୟ ଉପଲକ୍ଷେ ରାଜଭବନକୁ ଚାଲିଯାଇଥାଏ । ସକାଳ

ନଅଟା ପଚାଶ ମିନିଟ୍‌ରେ ଶପଥ ପାଠ ଉତ୍ସବ ଆରମ୍ଭ ହେବା କଥା । ଶ୍ରୀ ଚନ୍ଦ୍ରଶେଖର ମୋତେ ଫୋନ୍‌ରେ ପାଇନଥିଲେ । ତା' ପରେ ସେ ରାଜ୍ୟପାଳଙ୍କୁ ଫୋନ୍ କରି କହିଥିଲେ ଶ୍ରୀ ହରିହର ସ୍ୱାଇଁଙ୍କୁ ଶପଥ ପାଠ ନକରିବାକୁ ମୋତେ ଜଣାଇଦେବାକୁ । ରାଜ୍ୟପାଳ ଶ୍ରୀ ହରିଚରଣ ସିଂହ ବ୍ରାର୍ ମୋତେ ସେକଥା କହିବାପାଇଁ ଶପଥ ଉତ୍ସବ ଆରମ୍ଭ ହେବାର ପ୍ରାୟ କୋଡ଼ିଏ ମିନିଟ୍ ପୂର୍ବରୁ ଡକାଇଥିଲେ । ରାଜ୍ୟପାଳଙ୍କଠାରୁ ସେକଥା ଶୁଣି ମୁଁ ବଡ଼ ବିସ୍ମିତ ହୋଇଥିଲି । ରାଜ୍ୟ ଶାଖା ଜନତା ଦଳର ସଭାପତି ଶ୍ରୀ ବିଶ୍ୱନାଥ ପଣ୍ଡିତ ମଧ୍ୟ ମୋତେ ରାଜଭବନରେ କହିଥିଲେ ଯେ ତାଙ୍କୁ ଦିଲ୍ଲୀରୁ ନିର୍ଦ୍ଦେଶ ଆସିଛି ଯେ ମୋତେ କହି ଶ୍ରୀ ହରିହର ସ୍ୱାଇଁଙ୍କର ଶପଥ ପାଠ ବନ୍ଦକରିବାକୁ । ଜନତା ଦଳର ଚେୟାରମ୍ୟାନ୍ ଶ୍ରୀ ଚନ୍ଦ୍ରଶେଖରଙ୍କର ଆଚରଣର ସମୀଚୀନତା ସମ୍ବନ୍ଧରେ ମୋର ଘୋର ସନ୍ଦେହ ଜାତହୋଇଥିଲା । ସେ ପ୍ରକୃତରେ ଏ କଥା ରାଜ୍ୟପାଳଙ୍କୁ କହିଥିବେ, ଏକଥା ମୁଁ ଭାବିପାରି ନଥିଲି । ରାଜ୍ୟପାଳ ଓ ମୁଁ ଏ ବିଷୟରେ ଆଲୋଚନା କରିଥିଲୁ । ଜଣେ ଭଦ୍ରବ୍ୟକ୍ତିଙ୍କୁ ଶପଥ ନେବାପାଇଁ ଆମନ୍ତ୍ରଣ କରି ଉତ୍ସବ ପାଖରୁ ଫେରାଇଦେବା ଗୋଟିଏ ବଡ଼ ଅକ୍ଷମଣୀୟ ତଥା ଅସଙ୍ଗତ କାର୍ଯ୍ୟ ହେବ ବୋଲି ମୁଁ ଭାବିଥିଲି । ପ୍ରତ୍ୟେକ ଲୋକର ଆତ୍ମସମ୍ମାନ ଅଛି ଏବଂ ଜଣେ ଲୋକର ଆତ୍ମସମ୍ମାନକୁ ଏପରି ଅମାର୍ଜିତ ଭାବରେ ଆଘାତ ଦେବାର ଅଧିକାର ଆମର ନାହିଁ ବୋଲି ମୁଁ କଥାବାର୍ତ୍ତାବେଳେ ରାଜ୍ୟପାଳଙ୍କୁ କହିଥିଲି । ରାଜ୍ୟପାଳ ସେ ବିଷୟଟି ସଂପୂର୍ଣ୍ଣଭାବରେ ମୋ ଉପରେ ଛାଡ଼ିଦେଇଥିଲେ । ଶ୍ରୀ ସ୍ୱାଇଁ ନିଶ୍ଚୟ ଶପଥ ନେବେ ବୋଲି ମୁଁ କହିଥିଲି ଏବଂ ତାହା ହିଁ ହୋଇଥିଲା । ମୁଁ ରାଜ୍ୟପାଳଙ୍କ ସହିତ କଥାବାର୍ତ୍ତା କରି ଆସିବା ପରେ ଯଥାସମୟରେ ମୁଖ୍ୟମନ୍ତ୍ରୀ ହିସାବରେ ଶପଥ ପାଠ କରିଥିଲି । ତତ୍ପରେ ଆଠଜଣ ମନ୍ତ୍ରୀ ଓ ଛ'ଜଣ ରାଷ୍ଟ୍ରମନ୍ତ୍ରୀ ଶପଥ ପାଠ କରିଥିଲେ । ସେହି ମନ୍ତ୍ରୀମାନେ ଥିଲେ ସର୍ବଶ୍ରୀ ପ୍ରତାପଚନ୍ଦ୍ର ମହାନ୍ତି, ପ୍ରହ୍ଲାଦ ମଲ୍ଲିକ, ହରିଶ୍ଚନ୍ଦ୍ର ବକ୍ସିପାତ୍ର, ବିଶ୍ୱଭୂଷଣ ହରିଚନ୍ଦନ, ଝସକେତନ ସାହୁ, ପ୍ରଦୀପ୍ତ କିଶୋର ଦାସ, ନଟବର ପ୍ରଧାନ ଓ ଶ୍ରୀ ରାମପ୍ରସାଦ ମିଶ୍ର । ରାଷ୍ଟ୍ରମନ୍ତ୍ରୀ ଥିଲେ ସର୍ବଶ୍ରୀ ବୀରଭଦ୍ର ସିଂ, ଘାସିରାମ ମାଝୀ, ହରିହର ସ୍ୱାଇଁ, ଅଦ୍ୱୈତ ପ୍ରସାଦ ସିଂ, ଇଗ୍ନେଶ ମାଝୀ ଓ ସହରାଇ ଓରାମ୍ । ଶପଥ ଉତ୍ସବ ପରେ ଦିଲ୍ଲୀରୁ ଖବର ପାଇଲି ଯେ ମୋ କାର୍ଯ୍ୟରେ ଶ୍ରୀ ଚନ୍ଦ୍ରଶେଖର ବିଶେଷଭାବରେ ଅସନ୍ତୁଷ୍ଟ । ବିଜୁବାବୁ ମଧ୍ୟ ତାଙ୍କର ଅସନ୍ତୋଷ ପ୍ରକାଶ କରିଥିଲେ । ମାତ୍ର ପ୍ରକୃତ ଅବସ୍ଥା ଜାଣିବା ପରେ ବିଜୁବାବୁ ଶାନ୍ତ ହୋଇଥିଲେ; କାରଣ ଗଞ୍ଜାମ ଜିଲ୍ଲାର ବନ୍ଧୁମାନଙ୍କର ଅସନ୍ତୋଷପାଇଁ ସେ ଯେ ନିଜେ ଦାୟୀ ସେ କଥା ସେ ପାସୋରି ନଥିଲେ । ଗଞ୍ଜାମରୁ ମୁଁ ମନ୍ତ୍ରିମଣ୍ଡଳରେ ଯାହାଙ୍କୁ ନେବାକୁ ଚାହିଁଥିଲି ତାହା ଯଦି ମୋତେ କରାଇ ଦିଆଯାଇ ଥାଆନ୍ତା ତା'ହେଲେ ଭବିଷ୍ୟତ୍‌ରେ ବହୁ ଅସୁବିଧା ଏଡ଼ାଇ ଦିଆଯାଇ ପାରିଥାଆନ୍ତା । କାରଣ ତାଙ୍କୁହିଁ କେନ୍ଦ୍ରକରି ମନ୍ତ୍ରୀ ହେବାର ଆଶାୟୀ ବ୍ୟକ୍ତିମାନେ ଦଳ ଭିତରେ ଅସନ୍ତୋଷ ସୃଷ୍ଟି କରିବାର ସୁଯୋଗ ପାଇଥିଲେ । ମନ୍ତ୍ରିମଣ୍ଡଳ ଗଠନର ଦିନକ ମଧ୍ୟରେ ମନ୍ତ୍ରୀମାନଙ୍କ ମଧ୍ୟରେ ବିଭାଗ ବଣ୍ଟନର ବ୍ୟବସ୍ଥା କରିଥିଲି । ମନ୍ତ୍ରୀମାନଙ୍କ ମଧ୍ୟରେ ବିଭାଗ ବଣ୍ଟନ ମୁଖ୍ୟମନ୍ତ୍ରୀଙ୍କର ସ୍ୱାଧିକାରଭୁକ୍ତ ବିଷୟ । କେଉଁ ମନ୍ତ୍ରୀଙ୍କୁ କି ବିଭାଗ ଦେବେ ତାହା ତାଙ୍କର ସ୍ୱତନ୍ତ୍ର ଅଧିକାର ବ୍ୟାପାର । ସେ ବିଷୟରେ ଆଉ କାହାର କିଛି କହିବା ସମୀଚୀନ ନୁହେଁ । ଏହି ପରମ୍ପରା ଉପରେ ବୈଧାନିକ ପରମ୍ପରାର ପବିତ୍ରତା ଆରୋପ କରାଯାଇଛି । ମନ୍ତ୍ରିମଣ୍ଡଳର ବିଭାଗ ବଣ୍ଟନରେ ସେହି ପ୍ରକାର କ୍ଷମତା ପ୍ରୟୋଗଦ୍ୱାରା ବହୁ ତିକ୍ତତା ଓ ଜଟିଳ ସମସ୍ୟା ସୃଷ୍ଟି ହେବାର ଦୃଷ୍ଟାନ୍ତ ରହିଛି । ବହୁ ଅର୍ଥ ବ୍ୟୟ ହେଉଥିବା ନିର୍ମାଣ, ଶିଳ୍ପ, ବିଦ୍ୟୁତ୍, ଯୋଗାଣ ଓ ଜଳସେଚନ ପ୍ରଭୃତି ବିଭାଗର କାରବାର ନେଇ ଅନେକ ସମୟରେ ସନ୍ଦେହ ଓ ମନୋମାଳିନ୍ୟ ହୋଇଥାଏ । ଦଳର ନେତା ସେଗୁଡ଼ିକ ନିଜ ପାଖରେ ବା ନିଜ ସଂପର୍କୀୟ ମନ୍ତ୍ରୀଙ୍କ ପାଖରେ ରଖିଲେ ତାହା ଅସନ୍ତୋଷର କାରଣ ହୋଇଥାଏ । ପ୍ରଥମରୁ ମୁଁ କିନ୍ତୁ ସେ କ୍ଷମତା ବ୍ୟବହାର କରି କାର୍ଯ୍ୟ ଚଳାଇବାକୁ ଇଚ୍ଛା କରିନଥିଲି । କେଉଁ ମନ୍ତ୍ରୀଙ୍କୁ କି ବିଭାଗ ଦାୟିତ୍ୱରେ ରଖିବି ସେ ବିଷୟ କଥାବାର୍ତ୍ତା ପ୍ରସଙ୍ଗରେ

ପ୍ରାୟ ସେମାନଙ୍କ ସହିତ ଆଲୋଚନା କରିନେଇଥିଲି । କେବଳ ପ୍ରଶାସନ ସଂକ୍ରାନ୍ତୀୟ ବିଭାଗ ଓ ଯୋଜନା ସଂକ୍ରାନ୍ତୀୟ ସମନ୍ୱୟକାରୀ ବିଭାଗ; ଯଥା ସାଧାରଣ ପ୍ରଶାସନ (Political and Services Department) ସ୍ୱରାଷ୍ଟ୍ର ବିଭାଗ, ଯୋଜନା ଓ ସମନ୍ୱୟ ବିଭାଗ ମୋ ନିଜ ଦାୟିତ୍ୱରେ ରଖି ବହୁ ବ୍ୟୟବହୁଳ ସମସ୍ତ ଗୁରୁତ୍ୱପୂର୍ଣ୍ଣ ବିଭାଗ ମୁଁ ମନ୍ତ୍ରୀମାନଙ୍କ ମଧ୍ୟରେ ବାଣ୍ଟିଦେଇଥିଲି । ତେଣୁ ବିଭାଗ ବଣ୍ଟନ ସମ୍ବନ୍ଧରେ ମୋ ମନ୍ତ୍ରିମଣ୍ଡଳରେ ବିଶେଷ କିଛି ଅସୁବିଧା ନଥିଲା ।

ବିଭିନ୍ନ ସମୟରେ ବିଭିନ୍ନ ମନ୍ତ୍ରିମଣ୍ଡଳରେ ଜଣେ ସହଯୋଗୀ ମନ୍ତ୍ରୀ ହିସାବରେ କାର୍ଯ୍ୟ କରିବାରେ ମୋର ଦୀର୍ଘ ଅଭିଜ୍ଞତାରୁ ମୁଁ ବୁଝିଥିଲି ଯେ ପରସ୍ପର ମଧ୍ୟରେ ମନାନ୍ତର, ସନ୍ଦେହ, କ୍ରୋଧ ଓ ସଂଘର୍ଷ କାହିଁକି ଉପୁଜେ ଏବଂ ତାହାଦ୍ୱାରା ମନ୍ତ୍ରିମଣ୍ଡଳ ଓ ଶାସନ ପରିଚାଳନାରେ କିପରି ବ୍ୟାଘାତ ଘଟେ । ମନ୍ତ୍ରିମଣ୍ଡଳର ମୁଖ୍ୟଙ୍କ ହାତରେ ବହୁତ ସ୍ୱତନ୍ତ୍ର କ୍ଷମତା ଥାଏ; ମାତ୍ର ସେ କ୍ଷମତା ପ୍ରୟୋଗଦ୍ୱାରା ଯେ ମନ୍ତ୍ରିମଣ୍ଡଳର ଦୃଢ଼ତା ବଜାୟ ରଖାଯାଏ ତାହା ନୁହେଁ । ମନ୍ତ୍ରିମଣ୍ଡଳର ଦୃଢ଼ତା ଓ କାର୍ଯ୍ୟକାରିତା ବୁଝାମଣା ଉପରେ ବେଶୀନିର୍ଭର କରେ । ମନ୍ତ୍ରିମଣ୍ଡଳର ଜଣେ ସଭ୍ୟ ହୋଇ ରହିବାକୁ ହେଲେ ମୁଖ୍ୟଙ୍କର ବିଶ୍ୱାସଭାଜନ ହେବା ଆବଶ୍ୟକ; ମାତ୍ର ପ୍ରତ୍ୟୟ ଆପେ ଆପେ ଜନ୍ମେନାହିଁ । ମୁଖ୍ୟଙ୍କର ଆଚରଣ ମଧ ସେ ଦିଗରେ ଅନ୍ୟମାନଙ୍କୁ ଅନୁପ୍ରାଣିତ କରିବାପାଇଁ ଅନୁକୂଳ ହେବା ଆବଶ୍ୟକ । ମୋର ମନ୍ତ୍ରିମଣ୍ଡଳ ଗଠନ ସମୟରେ ମୁଁ ଯଥାସାଧ ଏସବୁ ଆଚରଣ ପ୍ରତି ଧ୍ୟାନ ଦେବାକୁ ଉଦ୍ୟମ କରିଥିଲି ଏବଂ ଏହାଦ୍ୱାରା ମୁଁ ମନ୍ତ୍ରିମଣ୍ଡଳରେ ଐକ୍ୟ ଓ ସଂହତି ରକ୍ଷା କରିବାରେ ବହୁପରିମାଣରେ କୃତକାର୍ଯ୍ୟ ହୋଇଥିଲି । ମୁଁ ଉପମନ୍ତ୍ରୀ ହେବା ସମୟରୁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ମୋତେ British Cabinet System ସମ୍ବନ୍ଧରେ ହାରୋଲ୍ଡ଼ ଲାସ୍କି, ହର୍ବର୍ଟ୍ ମରିସନ୍ ପ୍ରଭୃତି ଲେଖକମାନଙ୍କର କେତେଖଣ୍ଡ ବହି ପଢ଼ିବାକୁ ପରାମର୍ଶ ଦେଇଥିଲେ । ସେ ବିଷୟ ମଧ ମୁଁ ମନେପକାଇଥିଲି । Harold Laski ତାଂ ର Parliamentary Government in England ପୁସ୍ତକରେ ୨୨୮ ପୃଷ୍ଠାରେ ଲେଖିଛନ୍ତି— "The key stone of the Cabinet arch is the Prime Minister. He is central to its formation, central to its life and central to its death. No Cabinet can fail to take its complexion from what he is and does in its direction. That is not to say that he is its master in the sense in which the America President is master of his colleagues. The British Prime Minister is more than primus inter pares, i.e. first among equals,but less than an autocrat. He has, as we shall see, very considerable personal powers; but the condition of their effective exercise is overwhelmingly, that he should be able to persuade and not to coerce; and the condition of success in that persuasion is pretty effectively dependent upon the success of his Government." ସେହିଭଳି ବ୍ରିଟିଶ୍ ପ୍ରଧାନମନ୍ତ୍ରୀଙ୍କ ବିଷୟରେ କହିବାକୁ ଯାଇ Herbert Morrison ତାଙ୍କର Government and Parliament ପୁସ୍ତକରେ ୫୧ ଓ ୫୨ ପୃଷ୍ଠାରେ କହିଛନ୍ତି, "As the head of the Government he (Prime Minister) is primus inter pares, i.e. the first among equals. He is, of course,eminently a co-ordinating minister and, up to a point and only up to a point, a supervising minister, though even he will be wise not to overdo it. He is not the master of the Cabinent."

ଜନତା ମନ୍ତ୍ରିମଣ୍ଡଳ ଗଠନର ସପ୍ତାହକ ମଧ୍ୟରେ ଶ୍ରୀ ସତ୍ୟପ୍ରିୟ ମହାନ୍ତି ଏବଂ ତାର କିଛିଦିନ ପରେ ବିଧାନସଭାର ପ୍ରଥମ ଅଧିବେଶନରେ ଶ୍ରୀ ସୁରେନ୍ଦ୍ର ନାଥ ନାୟକ ନିଦ୍ୱନ୍ଦ୍ୱରେ ଯଥାକ୍ରମେ ବାଚସ୍ପତି ଓ ଉପବାଚସ୍ପତିରୂପେ ନିର୍ବାଚିତ ହୋଇଥିଲେ ।

# ନୂତନ ସରକାରଙ୍କ ଆଭିମୁଖ୍ୟ

ମୁଖ୍ୟମନ୍ତ୍ରୀ ଭାବରେ ମୁଁ ଦାୟିତ୍ୱ ନେବା ପରେ ନୂତନ ସରକାରଙ୍କର ଆଭିମୁଖ୍ୟ ସମ୍ବନ୍ଧରେ ଜାଣିବାପାଇଁ ସାମ୍ବାଦିକମାନେ ମୋତେ ପ୍ରଶ୍ନ କରିଥିଲେ । ସ୍ୱେଚ୍ଛାଚାରୀ ଶାସନ ପରିବର୍ତ୍ତେ ଆଇନର ଶାସନ କିପରି ପ୍ରାଧାନ୍ୟ ଲାଭ କରିବ ସେ ଦିଗରେ ସର୍ବପ୍ରଥମେ ନୂତନ ସରକାର ଦୃଷ୍ଟି ଦେବେ ବୋଲି ମୁଁ ଘୋଷଣା କରିଥିଲି । ଜରୁରୀକାଳୀନ ଅବସ୍ଥାରେ ନିରଙ୍କୁଶ କ୍ଷମତା ପ୍ରୟୋଗ ହେତୁ ଯେଉଁ ସ୍ୱେଚ୍ଛାଚାରୀ ଶାସନ ରାଜ୍ୟରେ ଚାଲିଥିଲା, ଶାସନର ମୁଖ୍ୟକର୍ତ୍ତା ମନ୍ତ୍ରୀମାନଙ୍କଠାରୁ ଆରମ୍ଭକରି ତଳିଆ କର୍ମଚାରୀମାନଙ୍କ ମଧ୍ୟରେ ଯେପରି ଭ୍ରଷ୍ଟାଚାର ବ୍ୟାପିଥିଲା ଏବଂ ରାଜ୍ୟବାସୀଙ୍କର ନୈତିକତା ଭାଙ୍ଗିପଡ଼ିଥିବାରୁ ଆମ ସାମାଜିକ ଓ ରାଜନୈତିକ ଜୀବନରେ ଯେଉଁ ଚରମ ବିପର୍ଯ୍ୟୟ ଘଟିଥିଲା ସେସବୁର ପୁନରାବୃତ୍ତି ଆଉ କରାଇ ଦିଆଯିବନାହିଁ ବୋଲି କହିଥିଲି । ପ୍ରାକୃତିକ ସଂପଦର ପ୍ରାଚୁର୍ଯ୍ୟ ଭିତରେ ଥିବା ସତ୍ତ୍ୱେ ଆମ ରାଜ୍ୟ ଭାରତର ସବୁ ରାଜ୍ୟଠାରୁ ଦରିଦ୍ର । ତେଣୁ ରାଜ୍ୟର ଖଣିଜ, ବନ୍ୟ ଓ ଜଳ ଆଦି ସର୍ବବିଧ ପ୍ରାକୃତିକ ସଂପଦକୁ ଉପଯୋଗ କରି ସ୍ୱଳ୍ପ ସମୟ ମଧ୍ୟରେ ଆମ ରାଜ୍ୟକୁ କୃଷି ଓ ଶିଳ୍ପ କ୍ଷେତ୍ରରେ ସମୃଦ୍ଧିଶାଳୀ କରାଇ ଅନ୍ୟାନ୍ୟ ଉନ୍ନତ ରାଜ୍ୟମାନଙ୍କର ସମାନସ୍କନ୍ଧ କରାଇବାପାଇଁ ଉଦ୍ୟମ କରାଯିବ ବୋଲି ମୁଁ ରାଜ୍ୟବାସୀଙ୍କୁ ଭରସାଦେଇ ସେମାନଙ୍କର ସାହାଯ୍ୟ, ସହଯୋଗ ଓ ଆଶୀର୍ବାଦ ଚାହିଁଥିଲି । ମୁଁ ଜଣାଇଥିଲି ଯେ ରାଜ୍ୟବାସୀ ଯେଉଁ ଆଶା-ଆକାଂକ୍ଷା ରଖି ଜନତା ଦଳକୁ, ମୋତେ ଓ ଆମର ମନ୍ତ୍ରୀମାନଙ୍କୁ ରାଜ୍ୟର କାର୍ଯ୍ୟ ପରିଚାଳନା କରିବାର ମହାନ୍ ସୁଯୋଗ ଦେଇଛନ୍ତି ତାହା ପୂରଣ କରିବାପାଇଁ ଆମ୍ଭେମାନେ ସବୁବେଳେ ଉଦ୍ୟମ କରିବୁ । ୧୯୬୨ ମସିହାରେ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଦୁଃସାହସିକ ପଦକ୍ଷେପ ହେତୁ ପାରାଦ୍ୱୀପଠାରେ ଗୋଟିଏ ବୃହତ୍ ବନ୍ଦର ନିର୍ମିତ ହୋଇ ଉନ୍ନତ ବାହ୍ୟ ଜଗତ୍ ସହିତ ପ୍ରାକୃତିକ ବିଭବଭରା ଆମ ରାଜ୍ୟର ସମୁଦ୍ରପଥରେ ସଂପର୍କ ସ୍ଥାପନ କରାଯାଇପାରିଛି । ଆମ ରାଜ୍ୟରେ ଶିଳ୍ପ-ବାଣିଜ୍ୟର ବିକାଶପାଇଁ ସେତେବେଳେ ସେ ଯେଉଁ ଆଶାର ସଞ୍ଚାର କରିଥିଲେ, ବର୍ତ୍ତମାନ ତାହାକୁ କାର୍ଯ୍ୟକାରୀ କରିବାର ନୂତନ ସୁଯୋଗ ମିଳିଛି ବୋଲି ମୁଁ କହିଥିଲି । ଶ୍ରୀ ବିଜୁ ପଟ୍ଟନାୟକ କେନ୍ଦ୍ରରେ ଇସ୍ପାତ୍ ଓ ଖଣି ମନ୍ତ୍ରୀ ଥିବା ଓଡ଼ିଶା ପକ୍ଷେ ଏକ ସୁଯୋଗ ଏବଂ ଏହି ସୁଯୋଗର ସୁବିଧା ନେବାପାଇଁ ମୁଁ ଉଦ୍ୟମ କରିବି ବୋଲି ରାଜ୍ୟବାସୀଙ୍କୁ ପ୍ରତିଶ୍ରୁତି ଦେଇଥିଲି । ରାଜ୍ୟକୁ ସମୃଦ୍ଧିଶାଳୀ କରି ଗଢ଼ିତୋଳିବା ଦିଗରେ ଆମ ନୂତନ ସରକାରଙ୍କୁ ସାହାଯ୍ୟ ଓ ସହଯୋଗ କରିବାପାଇଁ ମୁଁ ସାମ୍ବାଦିକମାନଙ୍କୁ ମଧ୍ୟ ଅନୁରୋଧ କରିଥିଲି ।

ସାମ୍ବାଦିକ ସମ୍ମିଳନୀ ପରେ ମନ୍ତ୍ରିମଣ୍ଡଳର ପ୍ରଥମ ବୈଠକ ସଚିବାଳୟର କ୍ୟାବିନେଟ୍ ରୁମର ଅନୁଷ୍ଠିତ ହୋଇଥିଲା । ଏଥିରେ ସବୁ ମନ୍ତ୍ରୀ ଓ ରାଷ୍ଟ୍ରମନ୍ତ୍ରୀମାନେ ଯୋଗଦେଇଥିଲେ । ନିୟମ ଅନୁସାରେ ମନ୍ତ୍ରିମଣ୍ଡଳ ବୈଠକରେ କେବଳ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀମାନଙ୍କର ଯୋଗଦେବା କଥା । ତାହାହିଁ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଓ ଅନ୍ୟାନ୍ୟ ରାଜ୍ୟ ମନ୍ତ୍ରିମଣ୍ଡଳରେ ହୋଇଥାଏ । ଉପମନ୍ତ୍ରୀ ବା ରାଷ୍ଟ୍ରମନ୍ତ୍ରୀମାନେ ମନ୍ତ୍ରିମଣ୍ଡଳ ବୈଠକରେ ଯୋଗ ଦିଅନ୍ତିନାହିଁ । ମାତ୍ର ଆମ ରାଜ୍ୟରେ ୧୯୫୨ ମସିହାର ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କର ମନ୍ତ୍ରିମଣ୍ଡଳ ସମୟରୁ ଉପମନ୍ତ୍ରୀ ଓ ରାଷ୍ଟ୍ରମନ୍ତ୍ରୀମାନଙ୍କୁ କ୍ୟାବିନେଟ୍ ବୈଠକରେ ଯୋଗଦେବାପାଇଁ ନିମନ୍ତ୍ରଣ ଦେବା ପ୍ରଥା ପ୍ରଚଳିତ ହୋଇଆସୁଥାଏ । ମନ୍ତ୍ରିମଣ୍ଡଳ ବୈଠକରେ ସେମାନେ ଯୋଗଦେଇ ଆଲୋଚନାରେ ଭାଗ ନିଅନ୍ତି; ମାତ୍ର ବୈଠକର ଯେଉଁ ବିବରଣୀ ପ୍ରସ୍ତୁତ ହୁଏ ସେଥିରେ ସେମାନଙ୍କର ଉପସ୍ଥିତି ଗଣନା କରାଯାଏନାହିଁ । ମନ୍ତ୍ରିମଣ୍ଡଳର ପ୍ରଥମ ବୈଠକ ଡକାଯିବା ପୂର୍ବରୁ ରାଷ୍ଟ୍ରମନ୍ତ୍ରୀଙ୍କୁ ଡକାଯିବ କି ନାହିଁ ମୋତେ ଚିଫ୍ ସେକ୍ରେଟେରୀ ପଚାରିଥିଲେ । ସେମାନଙ୍କୁ ନିମନ୍ତ୍ରଣ କରିବାପାଇଁ ମୁଁ ନିର୍ଦ୍ଦେଶ ଦେଇଥିଲି । ସାମ୍ବାଦିକ ସମ୍ମିଳନୀରେ ମୁଁ ଯେଉଁସବୁ ଲକ୍ଷ୍ୟ ଘୋଷଣା କରିଥିଲି ସେସବୁ ବିଷୟ ମନ୍ତ୍ରିମଣ୍ଡଳ ବୈଠକରେ ଉପସ୍ଥାପିତ କରି ତା'ର ଗୁରୁତ୍ୱ ଉପଲବ୍ଧ

କରିବାପାଇଁ ମନ୍ତ୍ରୀମାନଙ୍କୁ ନିବେଦନ କରିଥିଲି । ସହଯୋଗୀ ମନ୍ତ୍ରୀମାନଙ୍କ ମଧ୍ୟରେ ପରସ୍ପର ଆସ୍ଥା, ସଂହତି ଓ ସୌହାର୍ଦ୍ଦ୍ୟ ରହିଲେ ତାହା ସରକାରୀ କାର୍ଯ୍ୟ ନିର୍ବାହ କରିବାରେ ଓ ସୁଶାସନ ପ୍ରତିଷ୍ଠା ଦିଗରେ କିପରି ସହାୟକ ହେବ ସେ ସମ୍ବନ୍ଧରେ ବନ୍ଧୁମାନଙ୍କୁ ମୁଁ ସୂଚନା ଦେଇଥିଲି ।

## ନୂତନ ଆଡ୍‌ଭୋକେଟ୍ ଜେନେରାଲ୍

ସାଧାରଣତଃ ନୂତନ ମନ୍ତ୍ରିମଣ୍ଡଳ ଗଠନ ହେଲେ ପ୍ରଥମ ବୈଠକରେ ରାଜ୍ୟର ଆଡ୍‌ଭୋକେଟ୍ ଜେନେରାଲ୍ ନିଯୁକ୍ତି ସମ୍ବନ୍ଧରେ ନିଷ୍ପତ୍ତି ନିଆଯାଏ । କିନ୍ତୁ ଘଟଣାଚକ୍ରରେ ଏପରି ଘଟିଯାଇଥାଏ ଯେ ଆମର ମନୋନୀତ ବ୍ୟକ୍ତିହିଁ ଆମେ ସରକାର ଗଢ଼ିବା ପୂର୍ବରୁ ଆଡ୍‌ଭୋକେଟ୍ ଜେନେରାଲ୍ ପଦବୀରେ ଅଧିଷ୍ଠିତ ହୋଇସାରିଥା'ନ୍ତି । ଆମ ମନ୍ତ୍ରିମଣ୍ଡଳଗଠନର ଦୁଇ ମାସ ପୂର୍ବରୁ ରାଷ୍ଟ୍ରପତି ଶାସନ ସମୟରେ ଆଡ୍‌ଭୋକେଟ୍ ଜେନେରାଲ୍ ପଦ ଖାଲି ହେବାରୁ କାହାକୁ ଆଡ୍‌ଭୋକେଟ୍ ଜେନେରାଲ୍ ନିଯୁକ୍ତ କଲେ ଭଲ ହେବ ସେ ବିଷୟରେ ରାଜ୍ୟପାଳ ଶ୍ରୀ ହରିଚରଣ ସିଂ ବ୍ରାର୍ ମୋର ମତାମତ ଜାଣିବାକୁ ଚାହିଁଥିଲେ । ତାଙ୍କର ଜଣେ ବିଶ୍ୱସ୍ତ କର୍ମଚାରୀ ଏଥିପାଇଁ ମୋତେ ସାକ୍ଷାତ୍ କରିଥିଲେ । କାରଣ ଭବିଷ୍ୟତ୍‌ରେ ମୁଁ ମୁଖ୍ୟମନ୍ତ୍ରୀ ହେବାକୁ ଯାଉଛି ବୋଲି ସେ ବୁଝିପାରିଥିଲେ । ଶ୍ରୀ ବୀରେନ୍ଦ୍ର ମୋହନ ପଟ୍ଟନାୟକଙ୍କୁ ସେହି ଦାୟିତ୍ୱ ଦେଲେ ଭଲ ହେବ ବୋଲି ମୁଁ ପରାମର୍ଶ ଦେଇଥିଲି । ତେଣୁ ମୋର ପରାମର୍ଶ ଅନୁସାରେ ଶ୍ରୀ ପଟ୍ଟନାୟକ ଆଡ୍‌ଭୋକେଟ ଜେନେରାଲରୂପେ ପୂର୍ବରୁ ନିଯୁକ୍ତ ହୋଇଥିବା କଥା ମୁଁ ମନ୍ତ୍ରିମଣ୍ଡଳ ବୈଠକରେ ପ୍ରକାଶ କରିଥିଲି ଏବଂ ଉକ୍ତ ପଦବୀରେ ଆଉ ପରିବର୍ତ୍ତନ ଅନାବଶ୍ୟକ ବୋଲି ସୂଚନା ଦେଇଥିଲି । କିଛିଦିନ ପରେ ଆଡ୍‌ଭୋକେଟ୍ ଜେନେରାଲ୍‌ଙ୍କର ନିଯୁକ୍ତି ସମ୍ବନ୍ଧରେ ଦଳର କେତେଜଣ ବନ୍ଧୁ ଅସନ୍ତୋଷ ପ୍ରକାଶ କରିଥିଲେ । ଶ୍ରୀ ବୀରେନ୍ଦ୍ର ମୋହନ ପଟ୍ଟନାୟକ ମୋର ଜଣେ ବନ୍ଧୁ ବୋଲି ମୁଁ ତାଙ୍କୁ ପରିବର୍ତ୍ତନ କରୁନାହିଁ ବୋଲି ଅଭିଯୋଗ ହୋଇଥିଲା । ସେ ମୋର ବନ୍ଧୁ ଥିଲେ ସେ କଥା ସତ୍ୟ; ମାତ୍ର ତାଙ୍କର ଯୋଗ୍ୟତା ଓ ଅଭିଜ୍ଞତା ଦୃଷ୍ଟିରୁ ସେ ଯେ ସେହି ପଦବୀପାଇଁ ବିଶେଷ ଉପଯୁକ୍ତ ଥିଲେ ସେଥିରେ କୌଣସି ସନ୍ଦେହ ନଥିଲା । ତା'ଛଡ଼ା ସେ ମୋର ବନ୍ଧୁ ଥିବାରୁ ମୋର ତାଙ୍କ ଉପରେ ପୂର୍ଣ୍ଣ ବିଶ୍ୱାସ ଥିଲା । ଓକିଲ ନିଯୁକ୍ତିରେ ସବୁଠାରୁ ବଡ଼ ମାନଦଣ୍ଡ ହେଉଛି ମହକିଲର ଓକିଲଙ୍କ ଦକ୍ଷତା ଓ ନିଷ୍ଠାପରତାରେ ଆସ୍ଥା । ସେ ଆମ ଦଳର ଲୋକ ହୋଇନଥିଲେ ମଧ୍ୟ ଆମ ଦଳ ପ୍ରତି ତାଙ୍କର କିଛି ଅଶ୍ରଦ୍ଧା ନଥିଲା । ନିଜ ରାଜନୈତିକ ଦଳରେ ଯଦି ଆଡ୍‌ଭୋକେଟ ଜେନେରାଲ୍ ହେଲାଭଳି ଉପଯୁକ୍ତ ଆଡ୍‌ଭୋକେଟ ଥାଆନ୍ତି, ତାଙ୍କୁ ମନୋନୀତ କରିବା କଥା ବିଚାର କରାଯାଏ । ମାତ୍ର ସେଭଳି ଲୋକ ଅନେକ ସମୟରେ ଦଳ ଭିତରେ ମିଳନ୍ତିନାହିଁ । ଆମ ରାଜ୍ୟରେ ଅତୀତରେ ମୋ ଜାଣତରେ ସେଭଳି ଦୁଇଜଣ ପ୍ରତିଷ୍ଠିତ ବ୍ୟକ୍ତି ଆଡ୍‌ଭୋକେଟ୍ ଜେନେରାଲ୍ ନିଯୁକ୍ତ ହୋଇଥିଲେ । ଜଣେ ସ୍ୱର୍ଗୀୟ ସ୍ୱାମୀ ବିଚିତ୍ରାନନ୍ଦ ଦାସ ଓ ଅନ୍ୟ ଜଣକ ଥିଲେ ସ୍ୱର୍ଗୀୟ ଶ୍ରୀ ଦୀନବନ୍ଧୁ ସାହୁ । ଦୀନବନ୍ଧୁବାବୁ କଂଗ୍ରେସ ଦଳରେ ଥାଇ ଜଣେ ମନ୍ତ୍ରୀ ଥିଲେ ଓ ତା'ପରେ ଆଡ୍‌ଭୋକେଟ୍ ଜେନେରାଲ୍ ହୋଇଥିଲେ । ମୁଁ ଓ ବିଜୁବାବୁ ପ୍ରଭୃତି ଯେତେବେଳେ କଂଗ୍ରେସରେ ଥିଲୁ ସେତେବେଳେ ୧୯୬୧ ମସିହା ମଧ୍ୟବର୍ତ୍ତିକାଳୀନ ନିର୍ବାଚନରେ ଖୋର୍ଦ୍ଧା ନିର୍ବାଚନମଣ୍ଡଳୀର ବିଧାନସଭାକୁ କଂଗ୍ରେସ ପ୍ରାର୍ଥୀ ହେବାପାଇଁ ଶ୍ରୀ ବୀରେନ୍ଦ୍ର ମୋହନ ପଟ୍ଟନାୟକ ଦରଖାସ୍ତ କରିଥିଲେ । ସେହି ସ୍ଥାନପାଇଁ ସ୍ୱର୍ଗୀୟ ଶ୍ରୀ ବନମାଳୀ ପଟ୍ଟନାୟକ ପ୍ରାର୍ଥୀ ଥିଲେ । କେନ୍ଦ୍ର ପାର୍ଲିଆମେଣ୍ଟାରୀ ବୋର୍ଡ ପକ୍ଷରୁ ଶ୍ରୀ ଅତୁଲ୍ୟ ଘୋଷ ପ୍ରାର୍ଥୀ ମନୋନୟନ ସମ୍ବନ୍ଧରେ ପର୍ଯ୍ୟବେକ୍ଷକ ହୋଇ ଆସିଥିଲେ । ନିର୍ବାଚନ କମିଟି ଆଗରେ ଶ୍ରୀ ବୀରେନ୍ଦ୍ର ମୋହନ ପଟ୍ଟନାୟକ ତାଙ୍କର ଦାବି ଅତି ଯୁକ୍ତିସିଦ୍ଧ ଓ ହୃଦ୍‌ବୋଧ ହେବା ଭଳି ଉପସ୍ଥାପିତ କରିଥିଲେ । ଶ୍ରୀ ଅତୁଲ୍ୟ ଘୋଷ ତାଙ୍କ ଯୁକ୍ତିରେ ଖୁବ୍ ସନ୍ତୁଷ୍ଟ ଓ ପ୍ରଭାବିତ ହୋଇଥିଲେ । ତାଙ୍କୁ କଂଗ୍ରେସ ପ୍ରାର୍ଥୀ ହିସାବରେ ଯଦି ମନୋନୀତ କରାନଯାଏ ସେ କ'ଣ କରିବେ ବୋଲି ଶ୍ରୀ ଘୋଷ

ଶ୍ରୀ ପଟ୍ଟନାୟକଙ୍କୁ ପଚାରିଥିଲେ । କଂଗ୍ରେସ ଦଳଦ୍ୱାରା ମନୋନୀତ ପ୍ରାର୍ଥୀପାଇଁ ସେ ସେହି ଖୋର୍ଦ୍ଧା ନିର୍ବାଚନମଣ୍ଡଳୀରେ କାର୍ଯ୍ୟ କରିବେ ବୋଲି ଶ୍ରୀ ପଟ୍ଟନାୟକ ତତ୍‌କ୍ଷଣାତ୍ ଉତ୍ତର ଦେଇଥିଲେ । ତାହା ଶୁଣି ଶ୍ରୀ ଘୋଷ କହିଥିଲେ ଯେ ସେ ବହୁ ପ୍ରାର୍ଥୀ ମନୋନୟନ ସମ୍ବନ୍ଧୀୟ କମିଟିରେ ପର୍ଯ୍ୟବେକ୍ଷକଭାବେ କାର୍ଯ୍ୟ କରିଥିଲେ; ମାତ୍ର ଏତେଦିନକେ ଜଣେ ଭଦ୍ରଲୋକ ଦେଖିବାକୁ ପାଇଥିଲେ । ଖୋର୍ଦ୍ଧାରୁ ଶ୍ରୀ ବନମାଳୀ ପଟ୍ଟନାୟକଙ୍କୁ ପ୍ରାର୍ଥୀ ମନୋନୀତ କରାଯାଇଥିଲା ଏବଂ ସେହି ନିର୍ବାଚନରେ ବୀରେନ୍‌ବାବୁ ତାଙ୍କୁ ସାହାଯ୍ୟ କରିଥିଲେ । ୧୯୭୩ ମସିହାରେ ରାଜ୍ୟପାଳ ଶ୍ରୀ ବି.ଡି. ଜତ୍ତିଙ୍କର ସମ୍ବିଧାନବିରୋଧୀ କାର୍ଯ୍ୟ ବିରୁଦ୍ଧରେ ଓଡ଼ିଶା ହାଇକୋର୍ଟରେ ଆମ୍ଭମାନଙ୍କ ପକ୍ଷରୁ ଯେଉଁ ମକଦ୍ଦମା ହୋଇଥିଲା, ସେଥିରେ ପ୍ରାରମ୍ଭିକ ଖର୍ଚ୍ଚ ନିଜେ ବହନ କରି ବିନା ପାଉଣାରେ ବୀରେନ୍ ପଟ୍ଟନାୟକ ସେ ମକଦ୍ଦମା ଚଳାଇଥିଲେ । ଏହାଛଡ଼ା ବହୁ କ୍ଷେତ୍ରରେ ଆମ୍ଭମାନଙ୍କୁ ଆଇନଗତ ସାହାଯ୍ୟ କରୁଥିଲେ । ଆମ୍ଭମାନଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ଅନୁରକ୍ତିର ଅଭାବ ନଥିଲା । ମୁଁ ଜାଣେ, ଓଡ଼ିଶା ହାଇକୋର୍ଟର ବିଚାରପତି ନିଯୁକ୍ତି ସମ୍ବନ୍ଧରେ ତାଙ୍କପାଇଁ ଥରେ ହାଇକୋର୍ଟରୁ ସୁପାରିସ୍ ଆସିଥିଲା; ମାତ୍ର ଆମ୍ଭମାନଙ୍କ ସହିତ ତାଙ୍କର ସଂପର୍କ ହେତୁ ତତ୍କାଳୀନ ସରକାର ତାହା ଏଡ଼ାଇଦେଇଥିଲେ । ଜନତା ଦଳରେ ମିଶିଥିବା ପୂର୍ବତନ ସୋସାଲିଷ୍ଟ ଦଳର ସଭ୍ୟ ପ୍ରଭୃତି ଏସବୁ କଥା ଜାଣିନଥିବାରୁ ସେମାନେ ଏହି ନିଯୁକ୍ତିରେ ଅସନ୍ତୋଷ ପ୍ରକାଶ କରିଥିଲେ । ଆମର ଆଇନମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ପୂର୍ବତନ ଜନସଂଘ ଦଳର ଜଣେ ସଭ୍ୟ ଥିଲେ । ସେ କିନ୍ତୁ ଏ ନିଯୁକ୍ତିରେ ଅତ୍ୟନ୍ତ ସନ୍ତୁଷ୍ଟ ଥିଲେ । ପରେ ଶ୍ରୀ ପଟ୍ଟନାୟକଙ୍କର କାର୍ଯ୍ୟ ତାଙ୍କର ଆଡ୍‌ଭୋକେଟ୍ ଜେନେରାଲ୍ ପଦରେ ନିଯୁକ୍ତିର ଯଥାର୍ଥତା ପ୍ରତିପାଦନ କରିଥିଲା । ଯେଉଁମାନେ ପ୍ରଥମେ ଅସନ୍ତୋଷ ପ୍ରକାଶ କରିଥିଲେ ସେମାନେ ପୁଣି ତାଙ୍କ କାର୍ଯ୍ୟକୁ ପ୍ରଶଂସା କରିବାକୁ ଲାଗିଲେ ।

ଜରୁରୀକାଳୀନ ଅବସ୍ଥାରେ ଯେଉଁ ବ୍ୟକ୍ତିମାନେ ରାଜନୈତିକ କାରଣ ହେତୁ ଦଣ୍ଡିତ ହୋଇଥିଲେ, ସେମାନଙ୍କ କଥା ସର୍ବପ୍ରଥମେ ବିଚାର କରିବାକୁ ମନ୍ତ୍ରିମଣ୍ଡଳ ବୈଠକରେ ନିଷ୍ପତ୍ତି ନିଆଯାଇଥିଲା । ଯେଉଁମାନଙ୍କୁ ଆଇନ ବଳରେ ଗିରଫ କରି ବିନା ବିଚାରରେ ଅଟକ କରାଯାଇଥିଲା, ସେମାନେ ଅଟକବନ୍ଦୀ ରହିଥିବା ସମୟପାଇଁ ସେମାନଙ୍କର ପରିବାରବର୍ଗଙ୍କୁ ଭତ୍ତା ଦେବା କଥା ସ୍ଥିର ହୋଇଥିଲା । ଜରୁରୀ ଅବସ୍ଥା ସମୟରେ ରାଜନୈତିକ କାରଣରୁ ଯେଉଁ ବ୍ୟବସାୟୀମାନଙ୍କର ବ୍ୟବସାୟକୁ ସରକାର ନଷ୍ଟ କରିଥିଲେ, ସେ ପ୍ରକାର ବ୍ୟବସାୟୀଙ୍କୁ ଥଇଥାନ ଦିଗରେ ସାହାଯ୍ୟ କରିବା ବିଷୟରେ ନିଷ୍ପତ୍ତି ନିଆଯାଇଥିଲା । ଯେଉଁ ସରକାରୀ କର୍ମଚାରୀମାନଙ୍କୁ 'ମିସା' ଆଇନବଳରେ ଗିରଫ କରାଯାଇ ଜେଲରେ ରଖାଯାଇଥିଲା ସେମାନଙ୍କୁ ତୁରନ୍ତ ମୁକ୍ତ କରି ସେମାନଙ୍କର ପୂର୍ବ ଚାକିରିରେ ପୁନଃ ପ୍ରତିଷ୍ଠିତ କରିବାପାଇଁ ସ୍ଥିରହୋଇଥିଲା । ଜରୁରୀ ଅବସ୍ଥା ସମୟରେ ଆମ ରାଜ୍ୟରେ ବହୁ ଛାତ୍ର ମିସା ଆଇନବଳରେ ଗିରଫ ହୋଇ ଅଟକବନ୍ଦୀ ରହିଥିଲେ । ସେମାନେ କିପରି ପୁଣି ପଢ଼ିପାରିବେ ସେଥିପାଇଁ ସୁବିଧା ଓ ସୁଯୋଗ ଦିଆଯାଇଥିଲା । ପରୀକ୍ଷା ଦେବା ଓ ସ୍ନାତକୋତ୍ତର ଶ୍ରେଣୀରେ ନାମ ଲେଖାଇବା ସମ୍ବନ୍ଧରେ ଜରୁରୀକାଳୀନ ଅବସ୍ଥାରେ ଅଟକ ହୋଇଥିବା ଛାତ୍ରମାନଙ୍କପାଇଁ ନିୟମ କୋହଳ କରାଯିବା ନୀତି ସ୍ଥିରକରାଯାଇଥିଲା । ଯେଉଁ ଯୁବକମାନେ ରାଜନୈତିକ କାରଣରୁ ସରକାରଙ୍କର ଆକ୍ରୋଶର ଶିକାର ହୋଇ ମିସା ଆଇନବଳରେ ଅଟକ ହେବାଦ୍ୱାରା ସେମାନଙ୍କର ଜୀବିକା ନିର୍ବାହ କରିବାର ଧନ୍ଦା ନଷ୍ଟହୋଇଥିଲା, ସେମାନେ ଶିଳ୍ପ ଓ ବାଣିଜ୍ୟ ବ୍ୟବସାୟ ଆରମ୍ଭ କରିବାକୁ ଆଗ୍ରହୀ ହୋଇ ଉଦ୍ୟମ କଲେ ସେମାନଙ୍କୁ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ସରକାରୀ ସାହାଯ୍ୟ ପାଇବାରେ ସେମାନଙ୍କ ଆବେଦନକୁ ଅଗ୍ରାଧିକାର ଦିଆଯିବା କଥା ନୀତିଗତଭାବେ ସ୍ଥିରହୋଇଥିଲା । ଧାନ, ଚାଉଳ ଲେଭି ଆଦେଶନାମା କାର୍ଯ୍ୟକାରୀ କରିବା ସଂପର୍କରେ ବିଭିନ୍ନ ବ୍ୟକ୍ତିମାନଙ୍କ ବିରୁଦ୍ଧରେ ରୁଜୁ କରାଯାଇଥିବା ମାମଲାଗୁଡ଼ିକ ପ୍ରତ୍ୟାହାରପାଇଁ ନିଷ୍ପତ୍ତି ନିଆଯାଇଥିଲା ଏବଂ ଲେଭି ଆଦେଶନାମା କାର୍ଯ୍ୟକାରୀ କରିବା ସମୟରେ ମୃତ୍ୟୁବରଣ କରିଥିବା କିମ୍ବା ଗୁରୁତରଭାବେ ଆହତ ହୋଇଥିବା ବ୍ୟକ୍ତିଙ୍କ

ପରିବାରବର୍ଗଙ୍କୁ ଆର୍ଥିକ ସାହାଯ୍ୟ ଦେବା କଥା ସ୍ଥିରହୋଇଥିଲା । ଭୂରାଜସ୍ୱ ଉଚ୍ଛେଦ ବିଷୟଟି ନୀତିଗତଭାବରେ ଗ୍ରହଣ କରାଯାଇ ତାହା କାର୍ଯ୍ୟକାରୀ କରିବାପାଇଁ ନିଷ୍ପତ୍ତି ନିଆଯାଇଥିଲା । ଏହାଦ୍ୱାରା ବର୍ଷକୁ ପ୍ରାୟ ପାଞ୍ଚ କୋଟି ଟଙ୍କା ସରକାରଙ୍କ ଆୟରୁ କମିବ ବୋଲି ଅଫିସରମାନେ ଦର୍ଶାଇଥିଲେ । ତା' ସତ୍ତ୍ୱେ ଭୂରାଜସ୍ୱ ଉଚ୍ଛେଦ କରିବା ଛଡ଼ା ଅନ୍ୟ କିଛି ବାଟ ନଥିଲା, କାରଣ ତାହା ନିର୍ବାଚନ ପ୍ରତିଶ୍ରୁତିର ଅନ୍ତର୍ଭୁକ୍ତ ଥିଲା ଏବଂ ମନ୍ତ୍ରିମଣ୍ଡଳ ଶପଥ ନେବାମାତ୍ରେ ଭୂରାଜସ୍ୱ ଉଠାଯିବା ନିଷ୍ପତ୍ତି ଘୋଷଣା କରିବାପାଇଁ ଆମ ଦଳର ପ୍ରାଦେଶିକ ସଭାପତି ଶ୍ରୀ ବିଶ୍ୱନାଥ ପଣ୍ଡିତଙ୍କର ପରାମର୍ଶ ଥିଲା । ରାଜଭବନ, ମନ୍ତ୍ରୀମାନଙ୍କ କାର୍ଯ୍ୟାଳୟ ଓ ଅନ୍ୟାନ୍ୟ ସରକାରୀ ଦପ୍ତରମାନଙ୍କରେ ଲୋକନାୟକ ଜୟପ୍ରକାଶଜୀଙ୍କ ଛବି ରଖିବାପାଇଁ ନିର୍ଦ୍ଦେଶ ଦିଆଯାଇଥିଲା ।

ପ୍ରଥମେ ଓଡ଼ିଶାରେ ସ୍ୱତନ୍ତ୍ର-ଜନକଂଗ୍ରେସ ମନ୍ତ୍ରିମଣ୍ଡଳ ସମୟରେ ଭୂରାଜସ୍ୱ ଛାଡ଼ହୋଇଥିଲା । ତା'ପରେ ଯେତେବେଳେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା ପୁଣି ଭୂରାଜସ୍ୱ ପ୍ରବର୍ତ୍ତନ କରାଯାଇଥିଲା । ମୋର ମନେପଡ଼େ, ଯେତେବେଳେ ସ୍ୱତନ୍ତ୍ର-ଜନକଂଗ୍ରେସ ସରକାର ଭୂରାଜସ୍ୱ ଉଚ୍ଛେଦ ବିଷୟ ଘୋଷଣା କରନ୍ତି ସେତେବେଳେ ମୋର ବନ୍ଧୁ ଶ୍ରୀ ବୀରେନ୍ ମିତ୍ର ସ୍ୱତନ୍ତ୍ର-ଜନକଂଗ୍ରେସ ଲୋକମାନଙ୍କର ଜନପ୍ରିୟତା ଏତେ ବୃଦ୍ଧିପାଇଥିଲା ଯେ ସେମାନଙ୍କୁ ଆଉ ଦଶ ବର୍ଷଯାଏଁ ଶାସନରୁ ହଟାଇ ହେବ ନାହିଁ ବୋଲି ଆମ୍ଭମାନଙ୍କୁ କହିଥିଲେ । ଯୋଜନାପାଇଁ ସମ୍ବଳ ସଂଗ୍ରହ ପ୍ରଶ୍ନ ଯେତେବେଳେ ଉଠିଲା, ସେତେବେଳେ ଆମ ନିଷ୍ପତ୍ତିର ଅବିବେକିତା ଆମ୍ଭେମାନେ ଉପଲବ୍ଧି କରିଥିଲୁ । ଭୂରାଜସ୍ୱ ଛାଡ଼ କରି ଅନ୍ୟ ପକ୍ଷେ ନୂତନ କର ବସାଇବା କେତେ କଷ୍ଟକର ତାହା ବୁଝିପାରିଥିଲୁ । ଯେଉଁ କରଟି ଲୋକେ ଦେବାରେ ଅଭ୍ୟସ୍ତ ଥିଲେ ତାକୁ ଉଠାଇଦେବା ଆମର ଉଚିତ ନଥିଲା ବୋଲି ଅନୁଭବ କରିଥିଲୁ । ଭୂରାଜସ୍ୱ ଦେବାରେ ଲୋକେ ଆବହମାନ କାଳରୁ ଅଭ୍ୟସ୍ତ । ତାହାଦ୍ୱାରା ସେମାନଙ୍କର ଜମିବାଡ଼ିର କାଗଜପତ୍ର ଓ ରେକର୍ଡ଼ ଠିକ୍ ରହେ ବୋଲି ସେମାନଙ୍କର ବିଶ୍ୱାସ । ସେ କର ଦେବାକୁ ସେମାନଙ୍କୁ ବିଶେଷ ବାଧେନାହିଁ । ତେଣୁ ଖଜଣା ଯେତିକି ଛାଡ଼ିଥିଲୁ, କ୍ରମେ କ୍ରମେ ପଥକର ବୃଦ୍ଧି କରି ସେତକ କିପରି ଭରଣା କରାଯିବ ସେ ଦିଗରେ ପଦକ୍ଷେପ ନିଆଯାଇଥିଲା ।

ପୂର୍ବ କଂଗ୍ରେସ ସରକାର ତାଙ୍କ ଶିକ୍ଷା-ନୀତି ଦ୍ୱାରା ଉଚ୍ଚ ଶିକ୍ଷା ପ୍ରସାରଣକୁ ନିରୁତ୍ସାହିତ କରୁଥିଲେ । ସାଧାରଣ ଲୋକଙ୍କ ଉଦ୍ୟମରେ କଲେଜ ସ୍ଥାପନ କରିବାକୁ ହେଲେ କେବଳ ଅନୁମତି ପାଇବାପାଇଁ ଚାରି ଲକ୍ଷ ଟଙ୍କା କଲେଜ ନାମରେ ବ୍ୟାଙ୍କରେ ଜମା କରିବାକୁ ପଡୁଥିଲା । ଗ୍ରାମାଞ୍ଚଳ ଲୋକମାନଙ୍କପରୁ କଲେଜ ସ୍ଥାପନପାଇଁ ଏକାବେଳକେ ଚାରିଲକ୍ଷ ଟଙ୍କା ସଂଗ୍ରହ କରିବା କାଠିକରପାଠ ଥିଲା । ଏ ପ୍ରକାର ନୀତି ଗ୍ରାମାଞ୍ଚଳରେ କଲେଜ ସ୍ଥାପନ ଉଦ୍ୟମର ପ୍ରତିବନ୍ଧକ ହୋଇଥିଲା । ଜନତା ସରକାର ତାଙ୍କର ପ୍ରଥମ ମନ୍ତ୍ରିମଣ୍ଡଳ ବୈଠକରେ ରାଜ୍ୟରେ ଉଚ୍ଚ ଶିକ୍ଷାର ପ୍ରସାରଣକୁ ଉତ୍ସାହିତ କରିବାପାଇଁ ଗୋଟିଏ ଉଲ୍ଲେଖଯୋଗ୍ୟ ନିଷ୍ପତ୍ତି ନେଇଥିଲେ ଏବଂ ଚାରିଲକ୍ଷ ଟଙ୍କା ଜମା ପରିବର୍ତ୍ତେ ଏକଲକ୍ଷ ଟଙ୍କା ଜମା କଲେ କଲେଜ ଖୋଲିବାକୁ ଅନୁମତି ମିଳିବ ବୋଲି ସ୍ଥିରକରିଥିଲେ । ଏହାଦ୍ୱାରା ବହୁ ଅଞ୍ଚଳରେ ବେସରକାରୀ କଲେଜ ସ୍ଥାପନ କରିବା ସମ୍ଭବ ହୋଇପାରିଥିଲା ଏବଂ ହୋଇପାରିଛି ।

ମୁଁ ମୁଖ୍ୟମନ୍ତ୍ରୀ ଥିବା ସମୟରେ ଶ୍ରୀ ଅକ୍ଷୟ କୁମାର ବିଶ୍ୱାଳଙ୍କୁ ମୋର ସେକ୍ରେଟେରୀ ଓ ଶ୍ରୀ ବିଜୟ କୁମାର ପଟ୍ଟନାୟକଙ୍କୁ ପ୍ରାଇଭେଟ୍ ସେକ୍ରେଟେରୀରୂପେ ବାଛିଥିଲି । ଶ୍ରୀ ବିଶ୍ୱାଳଙ୍କର ବିଭିନ୍ନ କ୍ଷେତ୍ରରେ ପ୍ରଶାସନିକ ଦକ୍ଷତା ଓ ଅଭିଜ୍ଞତାପାଇଁ ଖ୍ୟାତି ଥିଲା । ବିଜୟ ମଧ୍ୟ ମୋ ପାଖରେ ପୂର୍ବରୁ ବିଭିନ୍ନ ସମୟରେ କାମ କରି ଦକ୍ଷତା ଓ କର୍ତ୍ତବ୍ୟନିଷ୍ଠା ପ୍ରଦର୍ଶନ କରିଥିଲେ । ଶ୍ରୀ ଗିରୀଶଚନ୍ଦ୍ର ମହାପାତ୍ର ମୋ ଅଫିସ୍‌ରେ ସ୍ପେଶାଲ୍ ଅଫିସରରୂପେ ଦାୟିତ୍ୱ ଗ୍ରହଣ କରିଥିଲେ । ଏହା ପୂର୍ବରୁ ମଧ୍ୟ ମୁଁ ମନ୍ତ୍ରୀ ଓ ଉପମୁଖ୍ୟମନ୍ତ୍ରୀ ଥିଲାବେଳେ ଗିରୀଶ ମୋର ପ୍ରାଇଭେଟ୍ ସେକ୍ରେଟେରୀରୂପେ କାର୍ଯ୍ୟ କରିଥିଲେ । କିଛିଦିନ ପରେ ଆଉ ଜଣେ ସ୍ପେଶାଲ ଅଫିସରରୂପେ ଶ୍ରୀ ଦେବେନ୍ଦ୍ର ମିଶ୍ର ଯୋଗ ଦେଇଥିଲେ । ଶ୍ରୀ

ବିଶ୍ୱଜିତ୍ ଦାସ ଲୋକସମ୍ପର୍କ ଅଫିସର ଥାଇ ଅତି ବିଶ୍ୱସ୍ତ ଭାବରେ ମୋତେ ସାହାଯ୍ୟ କରୁଥିଲେ । ଶ୍ରୀ ଆଶୁତୋଷ ଦାସ, ପ୍ରଫୁଲ୍ଲ କୁମାର ଦାସ ଓ ଶ୍ରୀ ବିପ୍ରଚରଣ ଛୋଟରାୟ ମୋର ପି.ଏ. ଭାବରେ କାର୍ଯ୍ୟ କରୁଥିଲେ । ମୁଁ ମୁଖ୍ୟମନ୍ତ୍ରୀ ଦାୟିତ୍ୱରୁ ଅବ୍ୟାହତି ନେବା ପର୍ଯ୍ୟନ୍ତ ଏମାନେ ସମସ୍ତେ ମୋ ପାଖରେ ରହି ଅତି ବିଶ୍ୱସ୍ତ ଓ ଦକ୍ଷତାର ସହ ସେମାନଙ୍କ କାର୍ଯ୍ୟ ତୁଲାଇଥିଲେ । ଶ୍ରୀ ବଂଶୀଧର ବଡ଼ଜେନା ଓ ସେକ୍ ନବାବଉଦ୍ଦିନ୍ ମୋର ନିରାପତ୍ତା ଅଫିସର ଥିଲେ ଏବଂ ଜନସାଧାରଣଙ୍କ ସହିତ ସୌଜନ୍ୟ ରଖିପାରି ଦକ୍ଷତା ସହିତ ସେମାନଙ୍କ କାର୍ଯ୍ୟ କରିପାରୁଥିଲେ । ଏମାନଙ୍କ ଛଡ଼ା ଶ୍ରୀ ନରେନ୍ଦ୍ର ଚନ୍ଦ୍ର ନାୟକ ଓ ଶ୍ରୀ କୈଳାସଚନ୍ଦ୍ର ବାରିକ ମୋ ଅଫିସ୍‌ରେ ଅତି ବିଶ୍ୱସ୍ତଭାବରେ ଆସିଷ୍ଟାଣ୍ଟ କାର୍ଯ୍ୟ କରୁଥିଲେ । ମୁଖ୍ୟମନ୍ତ୍ରୀଙ୍କ ନିରାପତ୍ତା ସଂସ୍ଥା ଡି.ଏସ୍.ପି. ଶ୍ରୀ ଅନାମଚରଣ ସାହୁଙ୍କ ଦାୟିତ୍ୱରେ ଥିଲା । ଶ୍ରୀ ବିଶ୍ୱାଳ ମୋର ସେକ୍ରେଟେରୀ ଥିବା ସମୟରେ ତାଙ୍କର ଝିଅ ଆୟୁଷ୍ମତୀ ରଶ୍ମି ସହ ମୋର ପୁତୁରା ବିଷ୍ଣୁମୋହନର ବିବାହ ହୋଇଥିଲା । ବରକନ୍ୟା ଉଭୟ ମେଡ଼ିକାଲ୍ କଲେଜରେ ପଢ଼ିବାବେଳେ ବିବାହ କଥା ସ୍ଥିରହୋଇଥିଲା । ଏ ବିବାହର ପନ୍ଦର ଦିନ ପରେ ମୋର ପୁତୁରା ଶଶାଙ୍କଶେଖରର ବିବାହ ରାଜ୍ୟ ସରକାରଙ୍କର ଜଣେ ଡେପୁଟୀ ସେକ୍ରେଟେରୀ ଶ୍ରୀ ଯତୀନ୍ଦ୍ର ନାଥ ବେହୁରାଙ୍କ କନ୍ୟା ଆୟୁଷ୍ମତୀ ଦୁର୍ଗେଶନନ୍ଦିନୀଙ୍କ ସହ ହୋଇଥିଲା । ଦୁଇଟିଯାକ ବିବାହ ଉତ୍ସବ ଅତି ନିରାଡ଼ମ୍ବରଭାବେ କରାଯାଇଥିଲା ।

## ସ୍ୱାଭାବିକ ଓ ଅସ୍ୱାଭାବିକ ଆଚରଣ

ବିଜୁବାବୁଙ୍କର 'ଡାଇନାମିକ୍ ଲିଡର୍‌ସିପ୍' ବା ପ୍ରଗତିଶୀଳ ନେତୃତ୍ୱ ଯେପରି ଖୁବ୍ ଉତ୍ସାହପ୍ରଦ,ଜନଗଣଙ୍କ ମନକୁ ଖୁସିକରିବାପାଇଁ ବେଳେବେଳେ ତାଙ୍କର ଉଦ୍ଦାମ ଉତ୍ସାହ ସେହିପରି ବେଶ୍ ଉପଭୋଗ୍ୟ । ତେଣୁ ପାଠକମାନଙ୍କୁ ମୋର ସେହି ଉପଭୋଗରୁ କିଛିଟା ଭାଗ ଦେବାପାଇଁ କେତୋଟି କଥା ଲେଖୁଛି । ମନ୍ତ୍ରିମଣ୍ଡଳ ଗଠିତ ହେବାର ଅଳ୍ପଦିନ ପରେ କେନ୍ଦ୍ର ଇସ୍ପାତ୍ ଓ ଖଣିମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଓଡ଼ିଶା ଗସ୍ତରେ ଆସିଥିଲେ । ରାଜ୍ୟରେ ମନ୍ତ୍ରିମଣ୍ଡଳ ଗଠନ ହେବା ପରେ ପ୍ରଥମ ଥରପାଇଁ ସେ ଓଡ଼ିଶା ଆସିଥିବାରୁ ବିମାନଘାଟୀଠାରେ ତାଙ୍କୁ ବିଶେଷ ସମ୍ବର୍ଦ୍ଧନା କରାଯାଇଥିଲା । ତାଙ୍କର ନିରାପତ୍ତାପାଇଁ ଯେଉଁ ପୁଲିସ ପହରା ନିଯୁକ୍ତ କରାଯାଇଥିଲା ତାହା ଅନାବଶ୍ୟକ ବୋଲି ସେ ଫେରାଇଦେଇଥିଲେ । ମନ୍ତ୍ରୀମାନଙ୍କପାଇଁ ଦେହରକ୍ଷୀ, ନିରାପତ୍ତାପାଇଁ ସେମାନଙ୍କର ରହିବା ସ୍ଥାନରେ ପୁଲିସ ପ୍ରହରୀ ଓ ସେମାନଙ୍କର ସମ୍ମାନାର୍ଥେ ସେନାଭିବାଦନ ପ୍ରଭୃତି ଆୟୋଜନକୁ ନିଷେଧ କରିବା ଉଦ୍ଦେଶ୍ୟରେ କେନ୍ଦ୍ର ସରକାରଙ୍କ ନିର୍ଦ୍ଦେଶ ଓ ପରାମର୍ଶ ରାଜ୍ୟମାନଙ୍କୁ ଆସିଛି ବୋଲି ଶ୍ରୀ ପଟ୍ଟନାୟକ ଆମ୍ଭମାନଙ୍କୁ କହିଥିଲେ । ସେ ପ୍ରକାର ନିର୍ଦ୍ଦେଶ ବା ପରାମର୍ଶ କେନ୍ଦ୍ର ସରକାରଙ୍କଠାରୁ ଆମେ ପାଇନାହୁଁ ବୋଲି ମୁଁ କହିଥିଲି ଏବଂ ତାହା ନପାଇବା ପର୍ଯ୍ୟନ୍ତ ପୂର୍ବରୁ ପ୍ରଚଳିତ ନିର୍ଦ୍ଦେଶ ମାନି କାର୍ଯ୍ୟ କରିବାକୁ ପୁଲିସ ବାଧ୍ୟ ବୋଲି ମୁଁ କହିଥିଲି । ପରେ ସେ ପ୍ରକାର ନିର୍ଦ୍ଦେଶ ବା ପରାମର୍ଶ କିଛି ଆସିନଥିଲା । ତେଣୁ କୌଣସି କେନ୍ଦ୍ରମନ୍ତ୍ରୀ ଆମ ରାଜ୍ୟକୁ ଯେତେବେଳେ ଆସୁଥିଲେ ନିୟମ ଅନୁସାରେ ସେମାନଙ୍କର ନିରାପତ୍ତା ଓ ମର୍ଯ୍ୟାଦାପାଇଁ ସ୍ୱାଭାବିକ ପୁଲିସ ବନ୍ଦୋବସ୍ତ କରାଯାଉଥିଲା । ମାତ୍ର ସମୟ-ସମୟରେ ଜଣେ ଜଣେ କେନ୍ଦ୍ରମନ୍ତ୍ରୀ ଅସ୍ୱାଭାବିକ ଦୃଶ୍ୟ ସୃଷ୍ଟି କରୁଥିଲେ । ଥରେ କେନ୍ଦ୍ର ରେଳବାଇ ମନ୍ତ୍ରୀ ଶ୍ରୀ ମଧୁ ଦଣ୍ଡବତେଙ୍କୁ ଅଭିବାଦନ ଜଣାଇବାପାଇଁ ଆସିଥିବା ପୁଲିସବାହିନୀ ସଜ୍ଜିତ ଓ ପ୍ରସ୍ତୁତ ହୋଇ ଠିଆହୋଇଥାଆନ୍ତି । ରାଷ୍ଟ୍ରୀୟ କର୍ତ୍ତବ୍ୟରୂପେ ମର୍ଯ୍ୟାଦା ଜଣାଇବାପାଇଁ ପ୍ରସ୍ତୁତ ପୁଲିସ ବାହିନୀକୁ ଉପେକ୍ଷା କରିବା କାହାରିପକ୍ଷେ ମର୍ଯ୍ୟାଦାପୂର୍ଣ୍ଣ ନୁହେଁ । ମାତ୍ର ମନ୍ତ୍ରୀ ସେମାନଙ୍କୁ ଦେଖି ମୁହଁ ବୁଲାଇ ଦେଇ ଅନ୍ୟଆଡ଼କୁ ପଳାଇଥିଲେ । ଆମର ପୂର୍ବତନ ସାମ୍ୟବାଦୀ ବନ୍ଧୁମାନେ ଶ୍ରୀ ଦଣ୍ଡବତେ ସୃଷ୍ଟି କରିଥିବା ଏ ଦୃଶ୍ୟଟିକୁ ଖୁବ୍ ପସନ୍ଦକରିଥିଲେ; ମାତ୍ର ମୁଁ ତାହା ପସନ୍ଦ କରିପାରୁନାହିଁ ବୋଲି କହିଥିଲି । ବିଜୁ ପଟ୍ଟନାୟକଙ୍କର ଭୁବନେଶ୍ୱର ରହଣି ସମୟରେ

ଆମ ମନ୍ତ୍ରିମଣ୍ଡଳର ଗୋଟିଏ ଅଣଆନୁଷ୍ଠାନିକ ବୈଠକ ବସିଥିଲା ଏବଂ ସେଥିରେ ଶ୍ରୀ ବିଜୁ ପଟ୍ଟନାୟକ ସରକାରୀ କାର୍ଯ୍ୟପଦ୍ଧତି ଓ ମନ୍ତ୍ରୀମାନଙ୍କର ଆଚରଣ ସମ୍ବନ୍ଧରେ କେତେକ ପରାମର୍ଶ ଦେଇଥିଲେ । ମନ୍ତ୍ରିମଣ୍ଡଳ ସଭ୍ୟମାନଙ୍କ ମଧ୍ୟରେ କିପରି ସଂହତି ଓ ସହଯୋଗ ରକ୍ଷାକରାଯାଇପାରିବ ସେଥିପାଇଁ ମଝିରେ ମଝିରେ ମନ୍ତ୍ରୀମାନଙ୍କର ଅଣଆନୁଷ୍ଠାନିକ ବୈଠକ ପାଳିକରି ବିଭିନ୍ନ ମନ୍ତ୍ରୀଙ୍କ ଘରେ ବସିବା ଉଚିତ, ସେ ବୈଠକକୁ ରାଜ୍ୟ ଜନତା ଦଳର ସଭାପତିଙ୍କୁ ଡାକିବା ଆବଶ୍ୟକ ଏବଂ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ସେହି ପ୍ରକାର କରାଯାଉଛି ବୋଲି ସେ ଆମ୍ଭମାନଙ୍କୁ ଦର୍ଶାଇଥିଲେ । ମନ୍ତ୍ରିମଣ୍ଡଳର ଅଣଆନୁଷ୍ଠାନିକ ବୈଠକ ବସିବାର ଦୃଷ୍ଟାନ୍ତ ଆମ ରାଜ୍ୟରେ ଥିଲା ଏବଂ ତାହା ମନ୍ତ୍ରୀମାନଙ୍କ ମଧ୍ୟରେ ସଂହତି ଓ ସହଯୋଗ ରକ୍ଷାକରିବାରେ ଖୁବ୍ ସହାୟକ ହୋଇଥିବା କଥା ମୋତେ ଜଣାଥିଲା । ବିଜୁ ବାବୁଙ୍କ ପରାମର୍ଶ ଅନୁସାରେ ଆମେ ମନ୍ତ୍ରିମଣ୍ଡଳର ଅଣଆନୁଷ୍ଠାନିକ ବୈଠକ ବସିବା କାର୍ଯ୍ୟ ଆରମ୍ଭ କରିଥିଲୁ । ସେ କାର୍ଯ୍ୟ ଠିକ୍ ଭାବରେ ଚାଲିଥିଲା । ମାତ୍ର ଦଳର ସଭାପତିଙ୍କ ଉପସ୍ଥିତି ଅନେକ ସମୟରେ ଅସୁବିଧା ସୃଷ୍ଟି କରିବା କଥା ଅନୁଭୂତ ହୋଇଥିଲା । ରାଜ୍ୟ ଜନତା ଦଳର ସଭାପତି ଥିଲେ ଶ୍ରୀ ବିଶ୍ୱନାଥ ପଣ୍ଡିତ । କ୍ଷମତା-ରାଜନୀତି ଓ ସରକାରୀ ଦାୟିତ୍ୱଠାରୁ ଦୂରରେ ରହି ସେ ଆଜୀବନ କେବଳ ଆନ୍ଦୋଳନାତ୍ମକ ରାଜନୀତି କରିଆସୁଥିଲେ । ତେଣୁ ଯୁକ୍ତିଠାରୁ ଜିଦ୍‌କୁ ସେ ବେଶୀ ପ୍ରାଧାନ୍ୟ ଦେଉଥିଲେ । ଅନେକ ବନ୍ଧୁ ରହସ୍ୟ କରି କହୁଥିଲେ ଯେ ଏକାନ୍ନବର୍ତ୍ତୀ ପରିବାରରେ ଘର ଚଳାଇବାପାଇଁ ଅନ୍ୟମାନଙ୍କ ସହିତ ଯେପରି ବୁଝାମଣା ଭାବ ଦରକାର, ଘରସଂସାର ନକରିଥିବାରୁ ବୋଧହୁଏ ସେ ସେଥିରେ ଅଭ୍ୟସ୍ତ ହୋଇପାରିନଥିଲେ । ତାଙ୍କ କଥା ଗ୍ରହଣୀୟ ନହେଲେ ସେ ମନ୍ତ୍ରୀ ନଥିବାରୁ ତାଙ୍କ କଥାକୁ ଗ୍ରାହ୍ୟ କରାଯାଉନାହିଁ ବୋଲି ବେଳେବେଳେ ତାଙ୍କର ଧାରଣା ଜନ୍ମୁଥିଲା । ତେଣୁ ମନ୍ତ୍ରିମଣ୍ଡଳର ଅଣଆନୁଷ୍ଠାନିକ ବୈଠକରେ ତାଙ୍କୁ ବସାଇ କାର୍ଯ୍ୟ ନିର୍ବାହ କରିବା ଆଦୌ ସୁବିଧାଜନକ ହେଲାନାହିଁ । ସେ ମନ୍ତ୍ରୀ ଥିଲେ ବୋଧହୁଏ ଏତେ ଅସୁବିଧା ଅନୁଭୂତ ହୋଇ ନ ଥାନ୍ତା । ଦାୟିତ୍ୱ ଅନେକ ସମୟରେ ସଂଯତ କରାଇଥାଏ ଏବଂ ନିଜ ମୁଣ୍ଡରେ ଦାୟିତ୍ୱ ନଥିବା ଲୋକ ଲଗାମଛଡ଼ା ହିସାବରେ କଥାବାର୍ତ୍ତା କରନ୍ତି । ଏଣିକି ଯେତେବେଳେ ମନ୍ତ୍ରିମଣ୍ଡଳର ଅଣଆନୁଷ୍ଠାନିକ ବୈଠକର ଆବଶ୍ୟକତା ପଡୁଥିଲା ସେତେବେଳେ ବିଶ୍ୱନାଥବାବୁଙ୍କୁ ନଜଣାଇ ମୋ ଅଫିସ୍‌ରେ ବା ଘରେ ତାହା କରାଇନେଉଥିଲି ।

ବିଜୁବାବୁଙ୍କର ଆଉ ଗୋଟିଏ ପରାମର୍ଶ ଥିଲା ଯେ ମୁଖ୍ୟମନ୍ତ୍ରୀଙ୍କ ସମେତ ଅନ୍ୟ ମନ୍ତ୍ରୀମାନେ ନିରାଡ଼ମ୍ବର ଭାବରେ ଚଳିବେ, ପୁଲିସ ପ୍ରହରୀ ରଖିବେନାହିଁ ଓ ଛୋଟ ଘରେ ରହିବେ । ଆମ ମନ୍ତ୍ରୀମାନଙ୍କ ଜୀବନଯାପନରେ କାହାରି କିଛି ଆଡ଼ମ୍ବର ନଥିଲା । ସେ ପରାମର୍ଶ ପାଳନ କରିବାରେ ଆମର କାହାରି କିଛି ଅସୁବିଧା ହୋଇନଥିଲା । ମନ୍ତ୍ରୀମାନେ ଗସ୍ତରେ ଗଲେ ସ୍ଥାନେ ସ୍ଥାନେ ସରକାରଙ୍କ ସହିତ ନାନା କାର୍ଯ୍ୟରେ ସଂପୃକ୍ତ ବ୍ୟକ୍ତିମାନେ ସେମାନଙ୍କପାଇଁ ଆଡ଼ମ୍ବରପୂର୍ଣ୍ଣ ଆୟୋଜନର ସମ୍ବାଦ ମୋ କାନରେ ପଡୁଥିଲା । ମୁଁ କେତେଥର ସଂପୃକ୍ତ ମନ୍ତ୍ରୀଙ୍କୁ ସାବଧାନ କରାଇଦେଇଥିଲି ଏବଂ ସେ ପ୍ରକାର ସମ୍ବର୍ଦ୍ଧନାକୁ ଏଡ଼ାଇଦେବାପାଇଁ ମୁଁ ପରାମର୍ଶ ଦେଇଥିଲି । ଜନତା ଦଳର ସଭାପତି ହିସାବରେ ଶ୍ରୀ ବିଶ୍ୱନାଥ ପଣ୍ଡିତ ବେଳେବେଳେ ମନ୍ତ୍ରୀମାନଙ୍କ ଆଚରଣ ସମ୍ବନ୍ଧରେ ନାନା କଥା ମୋ ଦୃଷ୍ଟିକୁ ଆଣୁଥିଲେ ଏବଂ ମୁଁ ସେ ସବୁର ବିହିତ ଅନୁସନ୍ଧାନ କରିବା ସଙ୍ଗେ ସଙ୍ଗେ ସଂପୃକ୍ତ ମନ୍ତ୍ରୀଙ୍କୁ ସତର୍କ କରାଇଦେଉଥିଲି । ସମୟସମୟରେ ଗୁରୁତର ଘଟଣା ହେତୁ ସାଧାରଣଙ୍କ ମଧ୍ୟରେ କିଛି ପ୍ରତିକ୍ରିୟା ପ୍ରକାଶପାଇଲେ ରାଜ୍ୟ ସରକାରଙ୍କ ଗୁଇନ୍ଦା ବିଭାଗ ମଧ୍ୟ ମନ୍ତ୍ରୀମାନଙ୍କ ସେ ପ୍ରକାର ଆଚରଣ ସମ୍ବନ୍ଧରେ ରିପୋର୍ଟ ପଠାଉଥିଲେ । ଏ ସଂପର୍କରେ ଗୋଟିଏ କୌତୁକିଆ ବୃତ୍ତାନ୍ତ ମୋର ମନେପଡ଼େ । ଶ୍ରୀ ବିଶ୍ୱନାଥ ଦାସଙ୍କର ମନ୍ତ୍ରିମଣ୍ଡଳରେ ୧୯୭୧ ମସିହାରେ ମୁଁ ଥାଏ ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ । ସେହି ସମୟରେ ରାଜ୍ୟର ଜଣେ ମନ୍ତ୍ରୀ ଭବାନୀପାଟଣା ଗସ୍ତରେ ଯାଇଥିଲେ । ତାଙ୍କୁ ଆପ୍ୟାୟିତ କରିବା

ଉଦ୍ଦେଶ୍ୟରେ ଗୋଟିଏ ଯାତ୍ରାଭିନୟର ଆୟୋଜନ କରାଯାଇଥିଲା । ଭବାନୀପାଟଣାରେ ଜଣେ ବ୍ୟକ୍ତି ଥାଆନ୍ତି, ଯେ କି ସେହି ମନ୍ତ୍ରୀଙ୍କ ଶରୀର ମାଲିସ୍ କରିବାରେ ଅଭ୍ୟସ୍ତ । ଯାତ୍ରା ଆରମ୍ଭ ହୋଇଥିଲା; ମାତ୍ର ସେ ନିର୍ଦ୍ଦିଷ୍ଟ ଲୋକଟି ମାଲିସ୍ କରିବାପାଇଁ ଆସି ପହଞ୍ଚିନଥିଲା । ତାକୁ ଖୋଜିବାକୁ ଯାଇଥିବା ଲୋକେ ଆସି କହିଲେ ଯେ ସେ ବ୍ୟକ୍ତିଟି ମାତାଲ ହୋଇ ରାସ୍ତାରେ ଦଙ୍ଗାହଙ୍ଗାମା କରୁଥିବା ହେତୁ ପୁଲିସ ତାକୁ ଗିରଫକରି ଥାନାରେ ରଖିଛନ୍ତି । ତୁରନ୍ତ ଖଲାସ କରି ତାକୁ ପଠାଇଦେବାପାଇଁ ଥାନାକୁ ଖବର ଦେଇଥିଲେ । ତାଙ୍କୁ ଶୀଘ୍ର ଡାକ୍ତରମାଇନା କରାଇ ଛାଡ଼ିଦେବେ ବୋଲି ଥାନା ଅଫିସର କହିଥିଲେ । ଯାତ୍ରା ଚାଲିଥାଏ; ମାତ୍ର ସେ ଲୋକ ଆସିବାରେ ବିଳମ୍ବ ହେବାରୁ ମନ୍ତ୍ରୀ ଅତ୍ୟନ୍ତ ଅସନ୍ତୁଷ୍ଟ ହୋଇଥିଲେ ଏବଂ ରାଗରେ କମ୍ପମାନ ହୋଇ ପୁଲିସକୁ ଧରିଆଣିବାପାଇଁ କହିଥିଲେ । ସେତେବେଳକୁ ମନ୍ତ୍ରୀଙ୍କର ହୋସ୍ କୁଆଡ଼େ ଯିବା ଉପରେ । ଥାନା ଅଫିସର ଆସି ମନ୍ତ୍ରୀଙ୍କୁ କହିଲେ ଯେ ସେ ବ୍ୟକ୍ତିଙ୍କୁ ଡାକ୍ତରଖାନାକୁ ପଠାଯାଇଛି ଏବଂ ସେଠାରେ ପରୀକ୍ଷା ହୋଇଗଲାକ୍ଷଣି ସେ ତାକୁ ମନ୍ତ୍ରୀଙ୍କ ପାଖକୁ ପଠାଇଦେବେ । ଏକଥା ଶୁଣି ମନ୍ତ୍ରୀ କ୍ରୋଧରେ ଜର୍ଜରିତ ହୋଇ ଯାତ୍ରାରେ ଉପସ୍ଥିତ ଲୋକମାନଙ୍କୁ ପୁଲିସକୁ ବାନ୍ଧିକରି ପିଟିବାପାଇଁ ହୁକୁମ୍ ଦେଇଥିଲେ । ମନ୍ତ୍ରୀଙ୍କର ହୋସ୍ ନଥିବା କଥା ଲୋକେ ବୁଝିପାରି ତାଙ୍କୁ ଘର ଭିତରକୁ ନେଇଯାଇଥିଲେ ଏବଂ ଥାନା ଅଫିସର୍ ସେଠାରୁ ଚାଲିଯାଇଥିଲେ । ଏ ଘଟଣାଟି ଗୁଇନ୍ଦା ବିଭାଗ ମୋତେ ଜଣାଇଥିଲେ ମୁଁ ସେଥିପ୍ରତି ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କର ଦୃଷ୍ଟି ଆକର୍ଷଣ କରିଥିଲି ।

ପୁଲିସ ପ୍ରହରୀ ମନ୍ତ୍ରୀମାନଙ୍କ ଘରେ ରହୁନଥିଲେ । କେବଳ ମୁଖ୍ୟମନ୍ତ୍ରୀଙ୍କ ବାସଭବନରେ ସଶସ୍ତ୍ର ପୁଲିସ ପ୍ରହରା ଦେଉଥିଲେ । ମୁଖ୍ୟମନ୍ତ୍ରୀଙ୍କର ବାସଭବନରେ ପୁଲିସ ପ୍ରହରୀ ଅନାବଶ୍ୟକ ବୋଲି ଆମକୁ ପରାମର୍ଶ ଦିଆଯାଇଥିଲା । ଏ ପ୍ରକାର ପରାମର୍ଶ ମୋ ପକ୍ଷରେ ଗୋଟିଏ ସମସ୍ୟା ହୋଇଥିଲା । ପଦମର୍ଯ୍ୟାଦା ପାଇଁ ନୁହେଁ, ବାସ୍ତବ ଆବଶ୍ୟକତା ଦୃଷ୍ଟିରୁ ମୁଖ୍ୟମନ୍ତ୍ରୀଙ୍କ ବାସଭବନ ପାଖରେ ପୁଲିସ ପ୍ରହରୀ ରହିବାର ଆବଶ୍ୟକତା ଥାଏ । କାରଣ ବହୁ ପ୍ରକାର ଲୋକଙ୍କର ସମାଗମ ହୁଏ ଏବଂ ସବୁ ପ୍ରକାର ଗଣବିକ୍ଷୋଭ ଜଣାଇବାର ଲକ୍ଷ୍ୟସ୍ଥଳ ମୁଖ୍ୟମନ୍ତ୍ରୀଙ୍କ ବାସଭବନ । ମୁଁ ମୁଖ୍ୟମନ୍ତ୍ରୀ ହେବାର ପ୍ରଥମ ଦିନ ଯେତେବେଳେ ମୋର ସରକାରୀ ବାସଭବନକୁ ଯାଏ, ସେଠାରେ ଦଳେ ଲୋକ ଧାରଣା ଦେଇ ବସିଥିବାର ଦେଖିଲି । ଧାରଣାକାରୀମାନଙ୍କର ଆୟୁର୍ବେଦ ଚିକିତ୍ସା ସମ୍ବନ୍ଧରେ ସାମାନ୍ୟ କିଛି ଯୋଗ୍ୟତା ଥିଲା । କେବେ କୌଣସି ମନ୍ତ୍ରୀ ସେମାନଙ୍କୁ ଆୟୁର୍ବେଦ ଚିକିତ୍ସାଳୟରେ କବିରାଜ (ମେଡ଼ିକାଲ୍ ଅଫିସର୍) କରିଦେବେ ବୋଲି କୁଆଡ଼େ ଚାଳିଶ ହଜାର ଟଙ୍କା ନେଇଯାଇଥିଲେ । ଟଙ୍କା ନେଇ ସେମାନଙ୍କପାଇଁ କିଛି କଲେନାହିଁ କି ଟଙ୍କା ଫେରସ୍ତ ଦେଲେନାହିଁ, ତେଣୁ ସେମାନଙ୍କର କଥା ତୁରନ୍ତ ବୁଝିବାପାଇଁ ସେମାନଙ୍କର ଦାବୀ ଥିଲା । ସେମାନେ ପ୍ରଥମେ ଉଦ୍ୟମ କରିଥିଲେ ମୁଖ୍ୟମନ୍ତ୍ରୀଙ୍କର ବାରଣ୍ଡାରେ ବସି ଧାରଣା ଦେବାପାଇଁ; ମାତ୍ର ପୁଲିସ ସେଥିରେ ବାଧାଦେବାରୁ ସେମାନେ ଗେଟ୍ ଆଗରେ ବସିଥିଲେ । ଆଉ କିଛିଦିନ ପରେ କୃଷି ମହାବିଦ୍ୟାଳୟର ଛାତ୍ରମାନେ ଶୋଭାଯାତ୍ରା କରି ଆସି ସାଦାପୋଷାକ ପିନ୍ଧି ଛିଡ଼ାହୋଇଥିବା ପୁଲିସକୁ ଠେଲିଦେଇ ମୋ ଘର ହତା ମଧ୍ୟରେ ପ୍ରବେଶ କରି ସେମାନେ ସମସ୍ତେ ଏକାଠି ମୋତେ ଭେଟିବାକୁ ଦାବି କରିଥିଲେ । ଏହି ପ୍ରକାର ଧାରଣା, ବିକ୍ଷୋଭ ଓ ଶୋଭାଯାତ୍ରା ମଝିରେ ମଝିରେ ଚାଲୁଥାଏ । ଗଣତାନ୍ତ୍ରିକ ବ୍ୟବସ୍ଥାରେ ଏହା ଅପରିହାର୍ଯ୍ୟ କଥା । ଏତେ କଥା ବିଜୁବାବୁଙ୍କୁ ବୁଝାଇବା କଠିନ ବ୍ୟାପାର । ପୁଲିସ ହେଉଛି ସରକାରୀ କ୍ଷମତାର ପ୍ରତୀକ । ବିଜୁବାବୁ କହିବାକୁ ଲାଗିଲେ— ମୋର କ୍ଷମତାର ମୋହ ଏତେ ଅଧିକ ଯେ କେବଳ ସେଥିପାଇଁ ମୁଁ ପୁଲିସ ପ୍ରହରୀ ଆବଶ୍ୟକ କରୁଥିଲି । ଆମ ରାଜ୍ୟର ପୁଲିସ ଇନ୍ସପେକ୍ଟର ଜେନେରାଲ୍ ଶ୍ରୀ ବି.କେ. ରାୟଙ୍କୁ ଡକାଇ ସେ ବିଷୟରେ ଆଲୋଚନା କଲି । ମୁଖ୍ୟମନ୍ତ୍ରୀଙ୍କ ବାସଭବନରୁ ପୁଲିସ ପ୍ରହରୀ ପ୍ରତ୍ୟାହାର କରିନେବା କଥା ଶୁଣି ସେ ଆଶ୍ଚର୍ଯ୍ୟ ହୋଇଥିଲେ ଏବଂ ତାହା କଦାପି ହୋଇପାରିବ

ନାହିଁ ବୋଲି ସେ ମତ ଦେଇଥିଲେ । ସବୁ ଦିଗରୁ ବିଚାରକରି ଦେଖିଲି ଯେ ବିଜୁବାବୁଙ୍କ ପରାମର୍ଶ ଗ୍ରହଣ କରିବା ଅର୍ଥ ନିଜକୁ ସଙ୍କଟାପନ୍ନ ଅବସ୍ଥାରେ ରଖିବା । ତେଣୁ ସେ ଯେତେ କହିଲେ ମଧ୍ୟ ମୁଁ ତାଙ୍କ ପରାମର୍ଶ ଅନୁସାରେ ନିର୍ଦ୍ଦେଶ ଦେଇପାରିନଥିଲି । ଶେଷରେ ସଶସ୍ତ୍ର ପୁଲିସ ପ୍ରଚ୍ଛନ୍ନ ରହିଲେ ଏବଂ କେବଳ ସାଦା ପୋଷାକଧାରୀ ପୁଲିସ ପହରାଦେଲେ । ପରେ କେତେକ ବିକ୍ଷୋଭକାରୀଙ୍କର ଦୌରାତ୍ମ୍ୟ ଏପରି ହେଲା ଯେ ସଶସ୍ତ୍ର ପ୍ରହରୀଙ୍କୁ ଗେଟ୍ ପାଖରେ ରଖିବାକୁ ପଡ଼ିଥିଲା । ବିଜୁବାବୁଙ୍କର ଯେଉଁ ଦିନ ମୋ ଘରକୁ ଆସିବାର କାର୍ଯ୍ୟକ୍ରମ ଥାଏ, ସେଦିନ ସଶସ୍ତ୍ର ପୁଲିସ୍‌ମାନଙ୍କୁ ପ୍ରଚ୍ଛନ୍ନ ରହିବା ପାଇଁ କୁହାଯାଉଥିଲା । ଥରେ ଥରେ କେତେକ ବିକ୍ଷୋଭକାରୀମାନଙ୍କର ଆଚରଣ ଏପରି ଅସହ୍ୟ ହେଉଥିଲା ଯେ ମନ୍ତ୍ରୀମାନଙ୍କ ଦୁଆରେ ସମୟେ ସମୟେ ସଶସ୍ତ୍ର ପୁଲିସ ମୁତୟନ କରିବାପାଇଁ କହିବାକୁ ସେମାନେ ବାଧ୍ୟହୋଇଯାଉଥିଲେ । କେତେକ ଆଚରଣବିଧି ଅବଶ୍ୟ ଅଲଘନୀୟ; କିନ୍ତୁ ଶସ୍ତା ଲୋକପ୍ରିୟତାପାଇଁ କେତେକ ଅଲଘନୀୟ ସରକାରୀ ନୀତି, ନିୟମ ଓ ଚଳଣିକୁ ଉପେକ୍ଷା କରିବା ମଧ୍ୟ ବିପଜ୍ଜନକ ।

ବିଜୁବାବୁଙ୍କର ଆଉ ଗୋଟିଏ ଝୁଙ୍କ୍ ଥିଲା ଯେ ମୁଖ୍ୟମନ୍ତ୍ରୀ ସମେତ ସବୁ ମନ୍ତ୍ରୀ ଛୋଟିଆ ଘରେ ରହନ୍ତୁ । ମନ୍ତ୍ରୀମାନଙ୍କପାଇଁ ଭୁବନେଶ୍ୱରରେ କିଛି ସ୍ୱତନ୍ତ୍ର ବାସଗୃହ ନଥିଲା । ଉଚ୍ଚ ଶ୍ରେଣୀର ଅଫିସର୍‌ମାନଙ୍କପାଇଁ ଯେଉଁ ବାସଗୃହସବୁ ନିର୍ମାଣ କରାଯାଇଥିଲା ସେଥିରୁ କେତୋଟି ଘରେ ମନ୍ତ୍ରୀମାନେ ରହୁଥିଲେ । ସେସବୁ ଘର ମନ୍ତ୍ରୀମାନେ ଛାଡ଼ିଦେଲେ ଆଉ ବା କେଉଁ ଘରେ ରହିବେ, ତାହା ଗୋଟିଏ ସମସ୍ୟା ହୋଇଥିଲା । ବିଜୁ ପଟ୍ଟନାୟକ ଯେତେବେଳେ ୧୯୬୨ରେ ମୁଖ୍ୟମନ୍ତ୍ରୀ ଥିଲେ ସେତେବେଳେ ସେ ବିଧାନସଭା ସଭ୍ୟଙ୍କପାଇଁ ଉଦ୍ଦିଷ୍ଟ ଦୁଇଟି 'ଟାଇପ ଫୋର୍' ଘରକୁ ଏକାଠି ମିଶାଇ ରହୁଥିଲେ । ଆମର ମନ୍ତ୍ରୀମାନେ ସେହିପରି କରିଥିଲେ ଚଳିଥାଆନ୍ତା; ମାତ୍ର ତାହାଦ୍ୱାରା ବିଧାନସଭା ସଦସ୍ୟମାନଙ୍କପାଇଁ ବାସଗୃହ ଅଭାବ ପଡ଼ନ୍ତା ଓ ସେଥିରୁ ଆଉ ଗୋଟିଏ ସମସ୍ୟା ସୃଷ୍ଟି କରାଯାଇଥା'ନ୍ତା । ବହୁ ବିଧାନସଭା ସଦସ୍ୟ ମଧ୍ୟ ଛୋଟିଆ ଘରେ ନରହି ବଡ଼ ଘରେ ରହିବାପାଇଁ ଆମ୍ଭମାନଙ୍କ ଉପରେ ଚାପପକାଉଥା'ନ୍ତି । କେତେକ ବିଧାନସଭା ସଦସ୍ୟଙ୍କୁ ମଧ୍ୟ ବଡ଼ ଘର ଦିଆସରିଥାଏ । ଆହୁରି କିଛି ବିଧାନସଭା ସଦସ୍ୟଙ୍କୁ ମନ୍ତ୍ରୀମାନଙ୍କ ଘର ଦେଇ ସେସବୁ ଘରକୁ ମନ୍ତ୍ରୀମାନଙ୍କର ବାସଭବନରେ ପରିଣତ କରାଯାଇପାରିଥା'ନ୍ତା, ମାତ୍ର ତାହା ନିଶ୍ଚୟ ଗୋଟିଏ ହାସ୍ୟାସ୍ପଦ ବ୍ୟାପାର ହୋଇଥାଆନ୍ତା । ତେଣୁ ସେ ପ୍ରସ୍ତାବ ଅବାସ୍ତବ ବୋଲି ବିବେଚିତ ହୋଇଥିଲା । ଏହାପରେ ନଜର ପଡ଼ିଲା ମୁଖ୍ୟମନ୍ତ୍ରୀଙ୍କର ସରକାରୀ ବାସଭବନ ଉପରେ । କେବଳ ମୁଖ୍ୟମନ୍ତ୍ରୀ ଗୋଟିଏ ଛୋଟିଆ ଘରକୁ ସ୍ଥାନାନ୍ତରିତ ହେଲେ ତାହା ଜନତା ସରକାରଙ୍କର ନିରାଡ଼ମ୍ବରତା ସମ୍ବନ୍ଧରେ ଗୋଟିଏ ସୁସ୍ଥ ବାୟୁମଣ୍ଡଳ ସୃଷ୍ଟି କରିବ ବୋଲି ବିଜୁବାବୁଙ୍କର ଝୁଙ୍କ ଉଠିଲା । ବହୁ ଲୋକଙ୍କ ମଧ୍ୟରେ ସେ ଏପରିଭାବରେ କଥାଟାକୁ ଉଠାଇଥିଲେ ଯେ ମୋର ନୀରବତାକୁ ସେ ସମ୍ମତି ବୋଲି ଧରିନେଇଥିଲେ । ଏଣିକି ତାଙ୍କ ସହିତ ଯେଉଁଠି ଦେଖାହେଉଥିଲା ପ୍ରଥମେ ସେ ଘର ପରିବର୍ତ୍ତନ କଲିଣି କି ନାଁ ସେ ବିଷୟରେ ପଚାରୁଥିଲେ । ଅପ୍ରୀତିକର ବିତର୍କକୁ ପ୍ରଶ୍ରୟ ନଦେବା ଉଦ୍ଦେଶ୍ୟରେ ମୁଁ ଦିନାକେତେ ତାଙ୍କଠାରୁ ଦୂରରେ ରହିବାକୁ ଚେଷ୍ଟା କଲି । ବେଶୀ ସମୟ ତାଙ୍କ ପାଖରେ ରହିଲେ କାଳେ ସେ ଘରକଥା ଉଠାଇବେ ବୋଲି ଯେଉଁ କାର୍ଯ୍ୟ ଥାଏ ସେ ବିଷୟରେ ତାଙ୍କ ସହିତ ଶୀଘ୍ର କଥାବାର୍ତ୍ତା ସାରି ଚାଲିଆସୁଥାଏ । ଥରେ ଦିଲ୍ଲୀରେ ତାଙ୍କ ଅଫିସ୍‌ରେ ସେ ପୁଣି ସେହି ଘର ପରିବର୍ତ୍ତନ କଥା ଉଠାଇ ଖୁବ୍ ଅସନ୍ତୋଷ ପ୍ରକାଶ କରିଥିଲେ । ରାଷ୍ଟ୍ରପତି ତାଙ୍କର ରାଷ୍ଟ୍ରପତି-ଭବନ ଛାଡ଼ି ଛୋଟିଆ ଘର ଖୋଜିଲେଣି ବୋଲି ସେ ମୋତେ କହିଥିଲେ ଏବଂ ମୁଁ ପ୍ରାସାଦରେ ରହିବାକୁ ବ୍ୟାକୁଳ ବୋଲି ପରିହାସ କରିଥିଲେ । ମୁଁ ସେତେବେଳେ ମୁଖ୍ୟମନ୍ତ୍ରୀଙ୍କ ବାସଭବନକୁ ଅନ୍ୟତ୍ର ସ୍ଥାନାନ୍ତରିତ କଲେ ଅଧିକ କେତେ ଖର୍ଚ୍ଚ ହେବ ଏବଂ କାର୍ଯ୍ୟରେ କି ଅସୁବିଧା ହେବ ସେ କଥା ଅତି ଦୃଢ଼ତାର ସହିତ ତାଙ୍କୁ

କହିଥିଲି । ରାଷ୍ଟ୍ରପତି ଯଦି ରାଷ୍ଟ୍ରପତି-ଭବନ ଛାଡ଼ି ଛୋଟିଆ ଘରକୁ ଯାଆନ୍ତି ତା'ହେଲେ ନିଶ୍ଚୟ ଆମ ସମସ୍ତଙ୍କୁ ତାଙ୍କୁ ଅନୁକରଣ କରିବାକୁ ପଡ଼ିବ ବୋଲି ମୁଁ କହିଥିଲି । ପରେ ଶୁଣିବାକୁ ପାଇଲି ଯେ ରାଷ୍ଟ୍ରପତି-ଭବନ ଛାଡ଼ି ଗୋଟିଏ ଛୋଟ ଘରେ ରହିବା କଥା ରାଷ୍ଟ୍ରପତି ଶ୍ରୀ ସଂଜୀବ ରେଡ଼ିଙ୍କ ମୁଣ୍ଡରେ ଯେଉଁମାନେ ପ୍ରବେଶକରାଇଥିଲେ, ସେମାନଙ୍କ ମଧ୍ୟରେ ଶ୍ରୀ ବିଜୁ ପଟ୍ଟନାୟକ କୁଆଡ଼େ ଜଣେ ମୁଖ୍ୟ ଥିଲେ । 'ରାଷ୍ଟ୍ରପତି ଶ୍ରୀ ରେଡ଼ି ଏ ପ୍ରକାର କଳ୍ପନାରେ ଏପରି ଅନୁପ୍ରାଣିତ ହୋଇଯାଇଥିଲେ ଯେ ତାଙ୍କପାଇଁ ଛୋଟିଆ ଘର ଖୋଜିବା ଆରମ୍ଭ ହୋଇଯାଇଥିଲା । ଦିଲ୍ଲୀରେ ଥିବା ହାଇଦ୍ରାବାଦ ନିଜାମଙ୍କ ପ୍ରାସାଦକୁ ରାଷ୍ଟ୍ରପତି-ଭବନରେ ପରିଣତ କରିବା ପ୍ରସ୍ତାବ ଉଠିଥିଲା ଏବଂ ତା' ମଧ୍ୟ ସେତେବେଳେ ଖବରକାଗଜରେ ପ୍ରକାଶିତ ହୋଇଥିଲା । ଶେଷରେ ଏହା ଗୋଟିଏ ଅବାସ୍ତବ କଳ୍ପନା ବୋଲି ବିବେଚିତ ହୋଇଥିଲା । ରାଷ୍ଟ୍ରପତି-ଭବନ ଯେଉଁଠି ଥିଲା ସେହିଠାରେ ରହିଲା ଏବଂ ବିଜୁବାବୁ ଆଉ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କ ବାସଭବନ ପରିବର୍ତ୍ତନ କଥା ଉଠାଇନଥିଲେ ।

କେନ୍ଦ୍ର ସରକାରଙ୍କର ସଚିବାଳୟରୁ ମନ୍ତ୍ରୀମାନେ ଫାଇଲ୍ ଓ ଅନ୍ୟାନ୍ୟ କାଗଜପତ୍ର ସେମାନଙ୍କ ବାସଭବନକୁ କୁଆଡ଼େ ଆଣନ୍ତିନାହିଁ, ସେମାନେ ସେମାନଙ୍କର ସବୁ ସରକାରୀ କାର୍ଯ୍ୟ କୁଆଡ଼େ ଅଫିସ୍‌ରେ କରୁଥିଲେ । ସେହିପରି ଭାବରେ ଆମ ରାଜ୍ୟର ମନ୍ତ୍ରୀମାନେ ସରକାରୀ କାର୍ଯ୍ୟ କରିବା ବିଧେୟ ବୋଲି ବିଜୁବାବୁ ଆମ୍ଭମାନଙ୍କୁ ପରାମର୍ଶ ଦେଇଥିଲେ । ସାଧାରଣତଃ ସରକାରୀ ଫାଇଲ୍‌ପତ୍ର କାର୍ଯ୍ୟ ମନ୍ତ୍ରୀମାନଙ୍କର ସଚିବାଳୟ ଅଫିସରେ ହେବା କଥା, ଏଥିରେ କିଛି ସନ୍ଦେହନାହିଁ । କିନ୍ତୁ କାର୍ଯ୍ୟତଃ ଏହା ଅନେକ ସମୟରେ ସମ୍ଭବ ହୁଏନାହିଁ । ରାଜ୍ୟ ସଚିବାଳୟକୁ ବହୁଆଡ଼ୁ ଲୋକ ଆସନ୍ତି ମନ୍ତ୍ରୀମାନଙ୍କ ସହିତ ସାକ୍ଷାତ୍ କରି ସେମାନଙ୍କର ନିଜର ଓ ଅଞ୍ଚଳର ନାନା ସମସ୍ୟା ବିଷୟରେ ସରକାରଙ୍କର ଦୃଷ୍ଟି ଆକର୍ଷଣ କରି ତା'ର ସମାଧାନ କରିବାପାଇଁ । ସେମାନଙ୍କୁ ଏଡ଼ାଇଦେଇ କାର୍ଯ୍ୟ କରିବା ମଧ୍ୟ ସମ୍ଭବ ନୁହେଁ । ଅବଶ୍ୟ ମନ୍ତ୍ରୀମାନଙ୍କୁ ସାକ୍ଷାତ୍ କରିବାର ନିର୍ଦ୍ଦିଷ୍ଟ ନିର୍ଦ୍ଧାରିତ ସମୟ ଥାଏ; ମାତ୍ର ଆମ ଲୋକମାନେ ସେଥିରେ ଅଭ୍ୟସ୍ତ ନୁହନ୍ତି । ସେମାନେ ଏତେ ସଂଖ୍ୟାରେ ଆସି ପହଞ୍ଚନ୍ତି ଯେ ମନ୍ତ୍ରୀମାନେ ସମସ୍ତଙ୍କୁ ସାକ୍ଷାତ ଦେଇ ସନ୍ତୁଷ୍ଟ କରିବା ସମ୍ଭବ ହୁଏନାହିଁ । ତେଣୁ ସବୁ ଫାଇଲ୍ କାର୍ଯ୍ୟ ଅଫିସରେ ଶେଷ କରିବା ସମ୍ଭବ ହୁଏନାହିଁ । ଦିଲ୍ଲୀରେ କେନ୍ଦ୍ରସରକାରଙ୍କର ସଚିବାଳୟରେ ମନ୍ତ୍ରୀଙ୍କ ସହିତ ଏ ପ୍ରକାର ସାକ୍ଷାତ୍‌କାରପାଇଁ ଲୋକଗହଳି ହୁଏନାହିଁ । ତେଣୁ ସେଠାରେ ମନ୍ତ୍ରୀମାନେ ତାଙ୍କ ସଚିବାଳୟ ଅଫିସ୍‌ରେ ନିରୋଳାରେ ଫାଇଲପତ୍ର କାମ କରିପାରନ୍ତି । ଯେଉଁ ଲୋକସବୁ ସାକ୍ଷାତ କରିବାକୁ ଆସନ୍ତି ସେମାନଙ୍କୁ ବସାଇରଖି ମୁଁ ଆଦୌ ଅଫିସ୍ କାର୍ଯ୍ୟ କରିପାରେନାହିଁ । ଲୋକମାନେ ଅପେକ୍ଷାକରି ବସିଥିଲେ ମୁଁ କାର୍ଯ୍ୟରେ ଆଦୌ ମନୋନିବେଶ କରିପାରେନାହିଁ । ସେମାନଙ୍କ ସହିତ ଦେଖାସାକ୍ଷାତ୍ କରି ସେମାନଙ୍କୁ ବିଦାୟ କରିଦେବା ପରେ ମୁଁ ଫାଇଲ୍ କାର୍ଯ୍ୟ କରୁଥିଲି । ଅଫିସ୍‌ରେ ସନ୍ଧ୍ୟା ପାଞ୍ଚ ଘଣ୍ଟା ପରେ ମୁଁ ଅନ୍ତତଃ ଦୁଇ ଘଣ୍ଟା ଫାଇଲ୍ କାର୍ଯ୍ୟ କରୁଥିଲି ଏବଂ ଘରେ ରାତି ଆଠଟାରୁ ଏଗାରଟା ମଧ୍ୟରେ ଅବଶିଷ୍ଟ ଫାଇଲ୍ ଓ ଅନ୍ୟାନ୍ୟ କାଗଜପତ୍ର କାମ ଶେଷକରୁଥିଲି । ସାଧାରଣ ଲୋକଙ୍କର ଆପତ୍ତି ଅଭିଯୋଗ ଶୁଣିବାପାଇଁ ସପ୍ତାହରେ ଦୁଇଟି ନିର୍ଦ୍ଦିଷ୍ଟ ଦିନ ସ୍ଥିର କରିଥିଲି । ସେଦିନଗୁଡ଼ିକ ସକାଳେ ମୁଁ ମୋର ସରକାରୀ ବାସଭବନ ପ୍ରାଙ୍ଗଣରେ ଥିବା ଅଭିଯୋଗ-କକ୍ଷରେ ଲୋକମାନଙ୍କୁ ସାକ୍ଷାତ୍ କରି ସେମାନଙ୍କ ଆପତ୍ତି ଅଭିଯୋଗ ଓ ଦୁଃଖସୁଖ ଶୁଣୁଥିଲି । ଏହାଦ୍ୱାରା ବହୁତ ଲୋକଙ୍କୁ କିଛି ପରିମାଣରେ ସନ୍ତୋଷ ଦେଇପାରୁଥିଲି ବୋଲି ମୋର ମନେହେଉଥିଲା । ସରକାରୀ କର୍ମଚାରୀମାନେ ନିୟମ ଅନୁସାରେ ସେମାନଙ୍କର ବିଭାଗୀୟ ଉଚ୍ଚ କର୍ତ୍ତାଙ୍କର ଅନୁମତି ନେଇ ମୁଖ୍ୟମନ୍ତ୍ରୀଙ୍କୁ ଦେଖାକରିବା କଥା । ଏ ପ୍ରକାର ଅନୁମତି ଅନେକ ସମୟରେ ସେମାନଙ୍କୁ ମିଳେନାହିଁ ବା ମିଳିବା କଷ୍ଟସାଧ୍ୟ ହୋଇଥାଏ । ମାତ୍ର ଅଭିଯୋଗ-କକ୍ଷରେ ନିଜର ଓଜର ଆପତ୍ତି ମୁଖ୍ୟମନ୍ତ୍ରୀଙ୍କୁ ଜଣାଇବାପାଇଁ ଯେକୌଣସି ସରକାରୀ କର୍ମଚାରୀ ଆସିପାରୁଥିଲେ ଏବଂ ସେଥିପାଇଁ କାହାରି ଅନୁମତିର ଆବଶ୍ୟକ

ପଢୁନଥିଲା । ତାହା ମଧ୍ୟ ନିୟମସମ୍ମତ ଥିଲା । ବହୁ ଅଧସ୍ତନ କର୍ମଚାରୀ ଏହାଦ୍ୱାରା ବିଶେଷ ଭାବରେ ଉପକୃତ ହେଉଥିଲେ, ଏପରିକି ଉପର କର୍ମକର୍ତ୍ତାଙ୍କଦ୍ୱାରା ପ୍ରପୀଡ଼ିତ ବୋଧକରି ଅନେକ ଆଇ.ଏ.ଏସ୍. ଓ ଆଇ.ପି.ଏସ୍. ଅଫିସର୍ ମଧ୍ୟ ଆସି ମୋତେ ଅଭିଯୋଗ-କକ୍ଷରେ ଜଣାଉଥିଲେ ।

## ବିଧାନସଭାରେ ନୂଆ ଅନୁଭୂତି

ଦୀର୍ଘକାଳର ଅଭିଜ୍ଞତା ଥିଲେ ମଧ୍ୟ ଏଥର ମୁଁ ଓଡ଼ିଶା ବିଧାନସଭା ଭିତରେ ନିଜକୁ କେତେକାଂଶରେ ସଂପୂର୍ଣ୍ଣ ନୂତନ ଭଳି ଅନୁଭବ କରିଥିଲି; ନିଜକୁ ନୂତନ ଭାବରେ ନିୟନ୍ତ୍ରିତ କରିବାର ଆବଶ୍ୟକତା ଅନୁଭବ କରିଥିଲି । ପ୍ରଥମ ଅଧିବେଶନ ଜୁଲାଇ କୋଡ଼ିଏ ତାରିଖରେ ଅତି ଗାମ୍ଭୀର୍ଯ୍ୟପୂର୍ଣ୍ଣ ବାତାବରଣରେ ଆରମ୍ଭ ହୋଇଥିଲା । ଗୋଟିଏ ରାଜନୈତିକ ଦଳ ଏ ପ୍ରକାର ବିପୁଳ ସଂଖ୍ୟାଗରିଷ୍ଠତା ଲାଭକରି ସରକାରୀ ବେଞ୍ଚରେ ବସିବା ଓଡ଼ିଶା ବିଧାନସଭା ଇତିହାସରେ ଏହା ଥିଲା ପ୍ରଥମ । କଂଗ୍ରେସ ଦଳ ମାତ୍ର ପଚିଶ ଜଣ ସଭ୍ୟ ଘେନି ବିଧାନସଭାରେ ମୁଖ୍ୟ ବିରୋଧୀ ଦଳ ହୋଇ ବସିଥିଲେ । ରାଜ୍ୟପାଳ ଶ୍ରୀ ହରିଚରଣ ସିଂହ ବ୍ରାର୍ ଶାନ୍ତ ପରିବେଶ ମଧ୍ୟରେ ତାଙ୍କର ଅଭିଭାଷଣ ପାଠ କରିଥିଲେ । ଅନ୍ୟ ବର୍ଷ ପରି ଏଥର ରାଜ୍ୟପାଳଙ୍କ ଭାଷଣ ସମୟରେ କୌଣସି ଅଶୋଭନୀୟ ଘଟଣା ଘଟି ନଥିଲା । ରାଜ୍ୟପାଳଙ୍କ ଅଭିଭାଷଣ ଉପରେ ବିଧାନସଭାରେ ଯେଉଁ ଆଲୋଚନା ହୋଇଥିଲା, ସେଥିରେ ମଧ୍ୟ ବିଶେଷ ଉତ୍ତେଜନା ବା ତିକ୍ତତା ଅନୁଭୂତ ହୋଇନଥିଲା । ସରକାର ଗଠିତ ହେବାର ମାତ୍ର ପଚିଶ ଦିନ ପରେ ଗତାନୁଗତିକ ଭାବରେ ସରକାରଙ୍କର ତ୍ରୁଟି ପ୍ରଦର୍ଶନ କରିବା ବିରୋଧୀ ଦଳର ସଭ୍ୟମାନଙ୍କ ପକ୍ଷରେ ଯେପରି ଅବାସ୍ତବ ଥିଲା, ତିରିଶ ବର୍ଷର କଂଗ୍ରେସର କୁଶାସନ ଓ ଦେଶର ଅଧୋଗତିପାଇଁ ବିରୋଧୀ କଂଗ୍ରେସ ଦଳର ସଭ୍ୟମାନଙ୍କୁ ଦାୟୀ କରିବା ସରକାରୀ ଦଳର ସଭ୍ୟମାନଙ୍କ ପକ୍ଷରେ ମଧ୍ୟ ସେହିପରି ପ୍ରମାଦପୂର୍ଣ୍ଣ ଥିଲା । ଜନତା ଦଳର ପୂର୍ବତନ ସାମ୍ୟବାଦୀ ସଭ୍ୟମାନେ ତିରିଶ ବର୍ଷର କଂଗ୍ରେସ ଶାସନରେ ଦେଶରେ କିଛି ହୋଇନାହିଁ ବୋଲି କହି ପଣ୍ଡିତ ନେହେରୁଙ୍କର ସମାଲୋଚନା କରିଥିଲେ; ମାତ୍ର ଏ ପ୍ରକାର ସମାଲୋଚନାକୁ ଜନତାଦଳରେ ଥିବା ପୂର୍ବତନ କଂଗ୍ରେସ ସଭ୍ୟମାନେ ପସନ୍ଦ କରିନଥିଲେ । ସେମାନେ କେବଳ ଶ୍ରୀମତୀ ଗାନ୍ଧୀଙ୍କର କୁଶାସନ ଏବଂ ତାଙ୍କ ସମୟରେ ଦେଶରେ ଘଟିଥିବା ଅଧୋଗତିର ସମାଲୋଚନା କରିଥିଲେ । ପଣ୍ଡିତ ନେହେରୁ ଯେ ଆମ ଦେଶକୁ ସମୃଦ୍ଧକରି ଗଢ଼ିବାର ଭିତ୍ତି ପ୍ରତିଷ୍ଠା କରିଥିଲେ ଏବଂ ତଦ୍ୱାରା ଦେଶର ଯେ ବିଶେଷ ଅଗ୍ରଗତି ହୋଇଥିଲା ସେକଥା ସେମାନେ ସ୍ୱୀକାର କରିଥିଲେ । ସ୍ୱାଧୀନତା ପରେ ଦେଶଗଠନର ମୂଳ ଭିତ୍ତି ସ୍ଥାପନର ଦାୟିତ୍ୱ ଯେଉଁମାନଙ୍କ ଉପରେ ପଡ଼ିଥିଲା, ସେଇମାନଙ୍କ ଭିତରୁ ଅଧିକାଂଶ ଘଟଣାଚକ୍ରରେ ଆସି ଜନତା ଦଳରେ ପହଞ୍ଚିଥିଲେ । ତେଣୁ ତିରିଶବର୍ଷ ଭିତରେ କିଛି ହୋଇନାହିଁ କହିଲାକ୍ଷଣି ଦୋଷଟା ଏକପ୍ରକାର ନିଜ ଉପରେ ପଡ଼ିଯାଉଥିଲା । ବିଧାନସଭା ଆଲୋଚନାରେ ଶ୍ରୀ ବିଶ୍ୱନାଥ ପଣ୍ଡିତ ଯେତେବେଳେ ତିରିଶ ବର୍ଷର କଂଗ୍ରେସ ଶାସନର ବ୍ୟର୍ଥତା ବିଷୟରେ କହୁଥିଲେ, ବିରୁଦ୍ଧ ଦଳର ନେତା ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ ଓ ରଘୁନାଥ ପଟ୍ଟନାୟକ ପ୍ରଭୃତି ମୋ ଆଡ଼କୁ ଆଙ୍ଗୁଳି ନିର୍ଦ୍ଦେଶ କରିଦେଉଥିଲେ । ବିଧାନସଭାରେ ଉଭୟ ପକ୍ଷରୁ ଆକ୍ଷେପମୂଳକ ଭାଷଣ ହେଉଥିଲା । ସବୁବେଳେ ଉପସ୍ଥିତ ରହି ସମସ୍ତଙ୍କର ଆଲୋଚନା ଓ ସମାଲୋଚନା ମୁଁ ଶୁଣୁଥାଏ । ସେଇ ଅଭ୍ୟାସ ମଧ୍ୟ ମୁଁ ବିଧାନସଭାର ପ୍ରତ୍ୟେକ ଅଧିବେଶନରେ ରକ୍ଷାକରିବାକୁ ଉଦ୍ୟମ କରିଥିଲି । ସଂସଦୀୟ ଶାସନ-ବ୍ୟବସ୍ଥାରେ ବିଧାନସଭା ହେଉଛି ରାଜ୍ୟର ସର୍ବଶ୍ରେଷ୍ଠ ଗଣତାନ୍ତ୍ରିକ ଅନୁଷ୍ଠାନ ଏବଂ ରାଜ୍ୟ ଜନମତର ପ୍ରତୀକ । ସେ ଅନୁଷ୍ଠାନର ସାର୍ବଭୌମତ୍ୱ ପ୍ରତି ସମ୍ମାନ ପ୍ରଦର୍ଶନ କରିବାଦ୍ୱାରା ସଂସଦୀୟ ଗଣତନ୍ତ୍ରର ମହତ୍ତ୍ୱ ସ୍ୱୀକୃତ ଓ ସାବ୍ୟସ୍ତ ହୋଇଥାଏ । ବିଧାନସଭାରେ ରାଜ୍ୟର ମୁଖ୍ୟମନ୍ତ୍ରୀ ଦୁଇଟି ପଦର ଅଧିକାରୀ । ମୁଖ୍ୟମନ୍ତ୍ରୀ ହେବା ଛଡ଼ା ସେ ବିଧାନସଭା ଗୃହର ନେତା ମଧ୍ୟ । ବିଧାନସଭାର

ବୈଠକରେ କାର୍ଯ୍ୟ ଚାଲିଥିବାବେଳେ ମୁଖ୍ୟମନ୍ତ୍ରୀଙ୍କର ଉପସ୍ଥିତିଦ୍ୱାରା ଦୁଇଟି ଉଦ୍ଦେଶ୍ୟ ସାଧିତ ହୁଏ । ଗୃହର ନେତା ହିସାବରେ ଗୃହରେ ଉପସ୍ଥିତ ରହି ବିଧାୟକମାନଙ୍କର ଆଲୋଚନା ଶୁଣିବାଦ୍ୱାରା ସେମାନଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ଗୃହର ମର୍ଯ୍ୟାଦା ବୃଦ୍ଧି କରିବାରେ ସାହାଯ୍ୟ କରାଯାଇଥାଏ । ରାଜ୍ୟର ଶାସନ କିପରି ଭାବରେ ପରିଚାଳିତ ହେଉଛି ଏବଂ ବିଭିନ୍ନ ବିଭାଗରେ ସରକାରୀ ଉନ୍ନୟନ କାର୍ଯ୍ୟ କିପରି ଭାବରେ ସଂପାଦିତ ହେଉଛି, ଜଣେ ମୁଖ୍ୟମନ୍ତ୍ରୀ ସେସବୁ ବିଷୟ କେବଳ ଫାଇଲ୍‌ପତ୍ର ଅଧ୍ୟୟନ କରି ଜାଣିବା ସହଜନୁହେଁ । ସେଥିପାଇଁ ସମୟ ମଧ୍ୟ ମିଳେନାହିଁ । ବିଧାନସଭାର ପ୍ରଶ୍ନୋତ୍ତର ଓ ଆଲୋଚନାବେଳେ ରାଜ୍ୟରେ ଘଟୁଥିବା ବହୁ ଘଟଣା ସମ୍ବନ୍ଧରେ ଗୃହରେ ନାନା ତଥ୍ୟ ପରିବେଷଣ କରାଯାଇଥାଏ । ଗୃହରେ ଉପସ୍ଥିତ ରହିବାଦ୍ୱାରା ମୁଖ୍ୟମନ୍ତ୍ରୀ ସେସବୁ କଥା ଜାଣିବା ସଙ୍ଗେ ସଙ୍ଗେ ମନ୍ତ୍ରୀମାନଙ୍କର ବିଭାଗୀୟ କାର୍ଯ୍ୟକଳାପ ସଂପର୍କରେ ନାନା ବିଷୟ ଜାଣିବାର ସୁଯୋଗ ଓ ସୁବିଧା ପାଆନ୍ତି । ସଂସଦୀୟ ଗଣତନ୍ତ୍ରକୁ ଗ୍ରହଣକରିଥିବା ଦେଶରେ ବ୍ୟବସ୍ଥାସଭାରେ ପ୍ରଶ୍ନୋତ୍ତର ସମୟଟି ଅତି ଗୁରୁତ୍ୱପୂର୍ଣ୍ଣ । ପ୍ରଶ୍ନୋତ୍ତର ମାଧ୍ୟମରେ ସେହି ସମୟରେ ଶାସନ ସଂକ୍ରାନ୍ତୀୟ ବହୁ ବିଷୟର ତଥ୍ୟ ସଭ୍ୟମାନେ ମନ୍ତ୍ରୀମାନଙ୍କଠାରୁ ଆଦାୟ କରନ୍ତି । ମନ୍ତ୍ରୀମାନେ ମଧ୍ୟ ପ୍ରଶ୍ନୋତ୍ତର ମାଧ୍ୟମରେ ବହୁ ଗୁରୁତ୍ୱପୂର୍ଣ୍ଣ ବିଷୟ ସରକାରଙ୍କ ପକ୍ଷରୁ ଜନସାଧାରଣଙ୍କୁ ଜଣାଇବାର ସୁବିଧା ନେଇଥାଆନ୍ତି । ଶାସନର ମୁଖ୍ୟ ପ୍ରଶ୍ନୋତ୍ତର ସମୟରେ ବିଧାନସଭା ଗୃହରେ ଉପସ୍ଥିତ ରହିଲେ ଶାସନ ସମ୍ବନ୍ଧୀୟ ବହୁ ବିଷୟରେ ସମ୍ୟକ୍ ଅନୁଭୂତି ଅର୍ଜନ କରିପାରନ୍ତି । ସଂସଦୀୟ ବ୍ୟବସ୍ଥାରେ ପ୍ରଶ୍ନୋତ୍ତର ସମୟ ଏପରି ଗୁରୁତ୍ୱପୂର୍ଣ୍ଣ ଯେ ବ୍ରିଟିଶ୍ ପାର୍ଲିଆମେଣ୍ଟରେ ପ୍ରଶ୍ନୋତ୍ତର ସମୟଟିକୁ ଜାତିର ଅନୁସନ୍ଧାନ ସମୟ ବୋଲି କୁହାଯାଏ (The Grand Inquest of the Nation) । ଆମ୍ଭମାନଙ୍କ ବ୍ୟବସ୍ଥାସଭାରେ ପ୍ରଶ୍ନୋତ୍ତର ସମୟଟି କେତେ ଗୁରୁତ୍ୱପୂର୍ଣ୍ଣ ଓ ଉପାଦେୟ ଆମ ଦେଶର ରାଜ୍ୟସଭାଦ୍ୱାରା ପ୍ରକାଶିତ "The Twenty-five Years of Rajya Sabha" ପୁସ୍ତକର ନିମ୍ନ ଉଦ୍ଧୃତାଂଶରୁ ଜଣାପଡ଼ିବ :

"The Question Hour or the Question Time, as it is known in some countries, is an important part of the procedures in legislatures of countries which have adopted parliamentary system of government. This Hour has definitely assumed a great significance in all such legislatures in view of government's heavy involvement in matters affecting day-to-day life of citizens for which Ministers are directly answerable. The right of asking questions to government is a refined parliamentary device with a view to eliciting information on various subjects and for exercising control over executive actions. The members ask questions to elicit information or for redressal of grievances which have come to their notice by highlighting them or on the basis of any representations made by their constituents or by others and also on matters which appear in the press, and are anxious to press home their viewpoint on particular topics. Questions also provide ministers an opportunity to give information to the House and through the House to the country on all important matters which they feel public should be taken into confidence. The Question Hour thus covers an activity of the House, which is very wide engulfing almost any subject under the sun." (Page 342)

ବିଧାନସଭା ଗୃହରେ କ୍ରମାଗତଭାବରେ ବହୁତ ସମୟ ଧରି ବସିରହିବାର ଅଭ୍ୟାସ ମୋର ନ ଥିଲା; ମାତ୍ର ମୁଖ୍ୟମନ୍ତ୍ରୀ ପଦର ଦାୟିତ୍ୱ ନେବା ସଙ୍ଗେ ସଙ୍ଗେ ସେ ଅଭ୍ୟାସ ମୋତେ ଅର୍ଜନ କରିବାକୁ ପଡ଼ିଥିଲା । ବିରୁଦ୍ଧ ଦଳର ଜଣେ ନେତୃସ୍ଥାନୀୟ କଂଗ୍ରେସ ସଭ୍ୟ ଓ ପୂର୍ବତନ ମନ୍ତ୍ରୀ ଡାକ୍ତର ଯୋଗେଶଚନ୍ଦ୍ର ରାଉତ ମୁଁ ଧୈର୍ଯ୍ୟର ସହିତ ଏକାଦିକ୍ରମେ ଏତେ ସମୟ ବିଧାନସଭା ଗୃହରେ ବସିରହିପାରୁଥିବାର ଦେଖି ଆଶ୍ଚର୍ଯ୍ୟ ହେଉଥିଲେ ବୋଲି ମୋତେ କହିଥିଲେ । ପୂର୍ବରୁ ମନ୍ତ୍ରୀ ଥିଲାବେଳେ ମୁଁ ବିରୁଦ୍ଧଦଳର କଟୁ ସମାଲୋଚନାକୁ ସହ୍ୟ କରିନପାରି ଅତ୍ୟନ୍ତ ଉତ୍ତ୍ୟକ୍ତ ଓ ଉତ୍ତେଜିତ ହୋଇ ଅସହିଷ୍ଣୁତା ପ୍ରକାଶ କରୁଥିଲି ଏବଂ ବାରମ୍ବାର ନିଜ ସ୍ଥାନରୁ ଉଠି ଆଲୋଚନାରେ ବାଧାଦେଉଥିଲି । ମାତ୍ର ଗୃହର ନେତା ଓ ମୁଖ୍ୟମନ୍ତ୍ରୀଙ୍କ ଆସନରୁ ସେପରି ଆଚରଣ ଅତ୍ୟନ୍ତ ଅଶୋଭନୀୟ ହେବ ବୋଲି ସର୍ବଦା ସହନଶୀଳ ହେବାକୁ ଉଦ୍ୟମ କରିଥିଲି । ଯେଉଁ ବନ୍ଧୁମାନଙ୍କ ସହ ପୂର୍ବେ ଘୋର ବାକ୍ୟୁଦ୍ଧ ଓ କ୍ରୋଧ ଭିତରେ କଥା କଟାକଟି ଚାଲୁଥିଲା, ଏବେ ସେମାନେ ମୋର ଆଚରଣରେ ବିସ୍ମିତ ହୋଇଥିଲେ । ବିଧାନସଭାରେ ମୋର ଆଚରଣରେ ଏ ପ୍ରକାର ପରିବର୍ତ୍ତନ ବିଶେଷ ଫଳପ୍ରଦ ହୋଇଥିଲା ବୋଲି ମୁଁ ଅନୁଭବ କରିଥିଲି । ବିଧାନସଭାର ପ୍ରଶ୍ନ ସରକାରଙ୍କ ପକ୍ଷରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ, ସମୟେ ସମୟେ ବିପଜ୍ଜନକ ମଧ । ପ୍ରଶ୍ନ ସରକାରଙ୍କୁ ସକ୍ରିୟ ଓ ସତର୍କ କରାଇଥାଏ ଏବଂ ସ୍ୱେଚ୍ଛାଚାରୀ ହେବାରେ ବାଧା ଦିଏ । ମନ୍ତ୍ରୀମାନଙ୍କ ପକ୍ଷରେ ପ୍ରଶ୍ନୋତ୍ତର ସମୟଟି ସଙ୍କଟମୟ ପ୍ରମାଣିତ ହୋଇପାରେ । ସାରୁ ଖୋଳୁ ଖୋଳୁ ମହାଦେବ ବାହାରିଲା ଭଳି ଗୋଟିଏ ଛୋଟିଆ କଥାରୁ ଖିଅ ବାହାରି ଘୋର ବିସ୍ଫୋରଣ ଘଟାଇବାର ସମ୍ଭାବନା ଥାଏ । କେତେକ ମନ୍ତ୍ରୀ ଉତ୍ସୁକ ହୋଇ ଅନାଇବସିଥାଆନ୍ତି କିପରି ବିଧାନସଭାର ପ୍ରଶ୍ନୋତ୍ତର ସମୟଟି ସରିବ । ଦେଶର ପ୍ରଧାନମନ୍ତ୍ରୀ ମଧ ସେଥିରୁ ବାଦ୍ ଯାଆନ୍ତିନାହିଁ । ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ପ୍ରଶ୍ନୋତ୍ତର ସମୟରେ କିପରି ଛାନିଆହୁଅନ୍ତି, ରାଜ୍ୟସଭାର ତତ୍କାଳୀନ ନେତା ଶ୍ରୀ ଏମ୍.ସି. ଚଗଲା ତାଙ୍କର ଆତ୍ମଜୀବନୀରେ ତାହା ଉଲ୍ଲେଖ କରିଛନ୍ତି :

"After she became Prime Minister, she used to sit next to me in the Rajya Sabha, as I was the Leader of the House. I remember she was in charge of the portfolio of Atomic Energy and when she was in the House to answer questions regarding this subject, she would always ask me whether her question was likely to be reached. There was no difficulty in answering the question as the answer was prepared by the Ministry. But the rub lay in the supplementary questions which are usually fired at the Minister. And what she was really worried about was the supplementary questions. When it was about five minutes to twelve and I told her that there was no possibility of the question being reached, she would heave a sigh of relief, gather her papers and walk out of the chamber."

## ଜଗନ୍ନାଥଙ୍କ ନୀତି ବିଭ୍ରାଟ ଓ ରଥଟଣା ଦୁର୍ଘଟଣା

ଓଡ଼ିଶା ବିଧାନସଭାରେ ଏହି ପ୍ରଥମ ଅଧିବେଶନ ସମୟରେ ସବୁଠାରୁ ଉଲ୍ଲେଖଯୋଗ୍ୟ ବ୍ୟାପାର ଥିଲା ପବିତ୍ର ରଥଯାତ୍ରା ଦିନ ବଡ଼ଠାକୁରଙ୍କ ରଥଚକ ଭାଙ୍ଗିଯିବାର ଦୈବୀ-ଦୁର୍ଘଟଣା । ସେଦିନ ଥିଲା ଗୋବିନ୍ଦ ଦ୍ୱାଦଶୀ ଓ ଜଗନ୍ନାଥଙ୍କ ନବକଳେବର ଉତ୍ସବ । ନବକଳେବର ଉତ୍ସବରେ ଜଗନ୍ନାଥ ମହାପ୍ରଭୁଙ୍କର ଦର୍ଶନପାଇଁ ସେଦିନ ପୁରୀରେ ପ୍ରାୟ ପାଞ୍ଚ ଲକ୍ଷରୁ ଊର୍ଦ୍ଧ୍ୱ ଲୋକଙ୍କ ସମାବେଶ ହୋଇଥିଲା । ବଡ଼ଠାକୁରଙ୍କର ଆନୁଷ୍ଠାନିକ ବିଧିବିଧାନ ସଂପନ୍ନ କରିବାରେ ସେଦିନ ମାତ୍ରାଧିକ ବିଳମ୍ବ ହୋଇଥିଲା । ସବୁ ପ୍ରକାର ବିଧିବିଧାନ ସଂପନ୍ନ କଲାବେଳକୁ ସଂଧ୍ୟା ହୋଇଯାଇଥିଲା; ତେଣୁ ସେଦିନ

ରଥଟଣା ହୋଇପାରିଲାନାହିଁ । କେବଳ ବିଧିରକ୍ଷାପାଇଁ ବଳଭଦ୍ରଙ୍କ ରଥକୁ ମାତ୍ର ତିନି ଚାରି ଫୁଟ ଟଣାଯାଇଥିଲା । ତା' ପରଦିନ ସକାଳେ ରଥଗୁଡ଼ିକ ଟଣାଯିବ ବୋଲି ଘୋଷଣା କରାଯାଇଥିଲା । ଦୈବ-ଦୁର୍ଯୋଗକୁ ରଥଗୁଡ଼ିକ ପରଦିନ ବାହାରିବାମାତ୍ରେ ହଠାତ୍ ବଳଭଦ୍ରଙ୍କର ରଥର ଛଅଟି ଚକ ଭାଙ୍ଗିଯାଇଥିଲା । ଏହି ଅବସ୍ଥାରେ ଏପରି ବିଶୃଙ୍ଖଳା ସୃଷ୍ଟିହୋଇଥିଲା ଯେ ଦର୍ଶନାଭିଳାଷୀ ଅଗଣିତ ସ୍ତ୍ରୀ, ପୁରୁଷ ଓ ପିଲାଛୁଆମାନଙ୍କ ମଧ୍ୟରେ ଆତଙ୍କ ଖେଳିଯାଇଥିଲା । ନବକଳେବର ଉତ୍ସବ ହେତୁ ଓଡ଼ିଶା ବାହାରୁ ବହୁ ଯାତ୍ରୀ ସେଠାରେ ଏକତ୍ରିତ ହୋଇଥିଲେ । ସେମାନେ ଜଗନ୍ନାଥ ମହାପ୍ରଭୁଙ୍କର ନବକଳେବର ଦର୍ଶନ ନପାଇ ହତାଶ ହେବା ସଙ୍ଗେ ସଙ୍ଗେ ଅକଥନୀୟ ଅସୁବିଧାର ସମ୍ମୁଖୀନ ହୋଇଥିଲେ । ଶାନ୍ତିଶୃଙ୍ଖଳା ଦାୟିତ୍ୱରେ ଥିବା ଉଚ୍ଚ ସରକାରୀ ଅଫିସରମାନେ ଶାନ୍ତିଶୃଙ୍ଖଳା ରକ୍ଷା କରିବା ଦିଗରେ ଅକ୍ଷମ ହୋଇଥିଲେ ବୋଲି ଅଭିଯୋଗ ହୋଇଥିଲା । ଏହି ଦୈବୀ-ଦୁର୍ଘଟଣା ଓଡ଼ିଶା ବିଧାନସଭାରେ ପ୍ରତିଧ୍ୱନିତ ହୋଇଥିଲା । ପୁରୀରେ ଘଟିଥିବା ସମସ୍ତ ବିଷୟ ଆଲୋଚନା କରି ପ୍ରତିକାର ଦାବି କରିବା ଉଦ୍ଦେଶ୍ୟରେ ଗୋଟିଏ ମୁଲତବୀ ପ୍ରସ୍ତାବ ବିଧାନସଭାରେ ଆଗତ କରାଯାଇଥିଲା । ସରକାର ଦଇବଛଡ଼ା ହେଲେଣି ବୋଲି କହି ମନ୍ତ୍ରିମଣ୍ଡଳର ଇସ୍ତଫା କେହି କେହି ଦାବି କରିଥିଲେ । ଜଗନ୍ନାଥ ମହାପ୍ରଭୁଙ୍କର ଆଚାର-ବିଧି ସଂପନ୍ନ କରିବାରେ ଅବାଞ୍ଛିତ ବିଳମ୍ବ ଘଟିବାରୁ ଏ ପ୍ରକାର ଅବ୍ୟବସ୍ଥା ଓ ରଥଚକଭଙ୍ଗା ଦୁର୍ଘଟଣା ଘଟିଥିଲା ବୋଲି ଅଭିଯୋଗ ହୋଇଥିଲା । ତେଣୁ ସଂପୃକ୍ତ କର୍ମଚାରୀମାନଙ୍କୁ ତୁରନ୍ତ ସସ୍‌ପେଣ୍ଡ କରି ସମସ୍ତ ବିଷୟର ବିଚାର ବିଭାଗୀୟ ତଦନ୍ତପାଇଁ ଦାବି କରାଯାଇଥିଲା । ମୁଁ ଗୃହରେ ଗୋଟିଏ ବିବୃତି ଦେଇ ଜଗନ୍ନାଥ ମହାପ୍ରଭୁଙ୍କର ଆନୁଷ୍ଠାନିକ ବିଧିବିଧାନ ସଂପନ୍ନ କରିବାରେ ବିଳମ୍ବ ଘଟି ଅଗଣିତ ଯାତ୍ରୀମାନଙ୍କର ଯେଉଁ ଅସୁବିଧା ହୋଇଥିଲା ସେଥିପାଇଁ ସରକାରଙ୍କ ପକ୍ଷରୁ ଦୁଃଖ ପ୍ରକାଶ କରିଥିଲି ଏବଂ ସମସ୍ତ ପୂଜା ଉପଚାର ସାରିବାରେ କାହିଁକି ବିଳମ୍ବ ହେଲା, ସେଥିପାଇଁ କେଉଁମାନେ ଦାୟୀ ଏବଂ କାହାର ତ୍ରୁଟି ହେତୁ ରଥଚକ ଭାଙ୍ଗିଲା ସେସବୁର ଅନୁସନ୍ଧାନପାଇଁ ବିଚାରବିଭାଗୀୟ ତଦନ୍ତ ହେବ ବୋଲି ଘୋଷଣା କରିଥିଲି । ଓଡ଼ିଶା ହାଇକୋର୍ଟର ଅବସରପ୍ରାପ୍ତ ବିଚାରପତି ଶ୍ରୀ ବାଳକୃଷ୍ଣ ପାତ୍ରଙ୍କ ଅଧ୍ୟକ୍ଷତାରେ ଉକ୍ତ ତଦନ୍ତ କମିଶନ ଗଠିତ ହେଲା ବୋଲି ଘୋଷଣା କରାଯାଇଥିଲା । ଶ୍ରୀଜଗନ୍ନାଥ ମନ୍ଦିରରେ ପ୍ରଚଳିତ ସବୁ ପ୍ରକାର ନୀତିନିୟମ, ବିଧିବିଧାନ, ସେବାପୂଜା ପ୍ରଭୃତିକୁ ଅନୁଧ୍ୟାନ ଓ ଅନୁସନ୍ଧାନ କରି ରିପୋର୍ଟ ଦେବାପାଇଁ ଶ୍ରୀ ପାତ୍ରଙ୍କୁ ପ୍ରାୟ ବର୍ଷେ ସମୟ ଲାଗିଯାଇଥିଲା । ସେ ତାଙ୍କର ଦୁଇ ଶହ ପୃଷ୍ଠାବିଶିଷ୍ଟ ରିପୋର୍ଟଟି ୧୯୭୮ ମସିହା ଅଗଷ୍ଟ ମାସ ଶେଷବେଳକୁ ସରକାରଙ୍କୁ ଦେଇଥିଲେ । ଜୁନ୍ ମାସ ଉଣେଇଶ ତାରିଖ ଦିନ ପୁଲିସ ଲୋକଙ୍କଦ୍ୱାରା ରଥଟଣା ହେଲାବେଳେ ପାଞ୍ଚଟିଯାକ ଦଉଡ଼ି ଟଣାନହୋଇ ତିନୋଟି ଦଉଡ଼ି ତ୍ରୁଟିପୂର୍ଣ୍ଣ ଭାବରେ ଟଣାହେବାରୁ ଏବଂ ଟଣାହେଲାବେଳେ ଧକ୍କା ଉପରେ ଧକ୍କା ହେବାରୁ ରଥର ଚକ ଭାଙ୍ଗିଯାଇଥିଲା ବୋଲି କମିଶନ ତାଙ୍କ ରିପୋର୍ଟରେ କହିଛନ୍ତି । ଠାକୁରମାନଙ୍କର ବିଧିବିଧାନ ସଂପନ୍ନ କରିବାରେ ବହୁତ ବିଳମ୍ବ ଘଟିବାରୁ ସବୁପ୍ରକାର ଅବ୍ୟବସ୍ଥା ହୋଇଥିଲା । ଜଗନ୍ନାଥ ମନ୍ଦିର ପରିଚାଳନାରେ ଯେଉଁସବୁ ତ୍ରୁଟି ଅଛି ତାହା ଦର୍ଶାଇ ସେଗୁଡ଼ିକୁ କିପରି ସୁଧାରିଦିଆଯାଇପାରିବ ସେ ସମ୍ବନ୍ଧରେ କମିଶନ ଅନେକଗୁଡ଼ିଏ ଉପାଦେୟ ସୁପାରିସ୍ କରିଛନ୍ତି ।

## ଶ୍ରୀମନ୍ଦିର ସଂସ୍କାର କମିଟି ନିଯୁକ୍ତ

ଏହି ସମୟରେ ଶ୍ରୀଜଗନ୍ନାଥ ମନ୍ଦିରର ପରିଚାଳନାରେ ବିଭ୍ରାଟ ଏବଂ ସେଥିଯୋଗୁଁ ଯାତ୍ରୀ ତଥା ଭକ୍ତମାନଙ୍କର ହେଉଥିବା ଅସୁବିଧାର କାରଣ ନିର୍ଣ୍ଣୟ କରିବା ଏବଂ ତା'ର ପ୍ରତିକାର ସମ୍ବନ୍ଧରେ ସୁପାରିସ୍ କରିବାପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ ରାଜ୍ୟପାଳ ଶ୍ରୀ ଭଗବତ ଦୟାଲ୍ ଶର୍ମାଙ୍କ ଅଧ୍ୟକ୍ଷତାରେ ଗୋଟିଏ ନଅଜଣିଆ ଉଚ୍ଚପାହ୍ୟା କମିଟି ଗଠନକରାଗଲା । ଏହି କମିଟିରେ ପୁରୀର

ଗଜପତି ରାଜା ଶ୍ରୀ ଦିବ୍ୟସିଂହ ଦେବ, ଲୋକସେବକ ମଣ୍ଡଳର ସଭାପତି ଓ ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସ, ସମାଜ ସଂପାଦକ ଓ ପୂର୍ବତନ ମନ୍ତ୍ରୀ ଶ୍ରୀ ରାଧାନାଥ ରଥ, ପୂର୍ବତନ ରାଜ୍ୟପାଳ ଓ ମନ୍ତ୍ରୀ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ,ପୂର୍ବତନ ରାଜ୍ୟପାଳ ଓ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ, ଅବସରପ୍ରାପ୍ତ ହାଇକୋର୍ଟ ବିଚାରପତି ଶ୍ରୀ ହରିହର ମହାପାତ୍ର, ପୂର୍ବତନ ବାଚସ୍ପତି ଶ୍ରୀ ନନ୍ଦକିଶୋର ମିଶ୍ର ଏବଂ ପୁରୀ ବଳରାମକୋଟ୍ ମଠ ମହନ୍ତ ଶ୍ରୀ ଅଯୋଧ୍ୟା ପ୍ରସାଦ ଦାସ ସଭ୍ୟ ରହିଥିଲେ । ଏହି କମିଟି ଗଠନ କରିବାପାଇଁ ରାଜ୍ୟପାଳ ବହୁତ ଆଗ୍ରହ ପ୍ରକାଶକରି ମୋତେ କହିଥିଲେ । କଥାବାର୍ତ୍ତା ପ୍ରସଙ୍ଗରେ ମୋତେ ରାଜ୍ୟପାଳ କହିଥିଲେ ଯେ ଆମ ରାଜ୍ୟରେ ବହୁ ବୟୋଜ୍ୟେଷ୍ଠ ଅଭିଜ୍ଞ ବ୍ୟକ୍ତି ଅଛନ୍ତି, ଯେଉଁମାନଙ୍କୁ ଜଗନ୍ନାଥ ମହାପ୍ରଭୁଙ୍କର ସେବାରେ ନିୟୋଜିତ କରିବା ଆବଶ୍ୟକ । ତେଣୁ ୧୯୭୮ ମସିହା ଏପ୍ରିଲ ସାତ ତାରିଖରେ ମୁଁ ଏହି କମିଟି ଗଠନ କରିଥିଲି ଏବଂ ୧୯୭୯ ଡିସେମ୍ବର ଶେଷବେଳକୁ କମିଟି ତାଙ୍କ ରିପୋର୍ଟ ଦେଇଥିଲେ । ଶ୍ରୀଜଗନ୍ନାଥ ମନ୍ଦିରର ପରିଚାଳନା, ଜଗନ୍ନାଥ ମହାପ୍ରଭୁଙ୍କର ସ୍ଥାବର ଓ ଅସ୍ଥାବର ସମ୍ପତ୍ତିର ରକ୍ଷଣାବେକ୍ଷଣ, ଜଗନ୍ନାଥଙ୍କର ସେବାପୂଜା, ନୀତି ଓ ସେବକ ନିଯୁକ୍ତି, ଯାତ୍ରୀମାନଙ୍କର ଦର୍ଶନ ଓ ରହିବାର ବ୍ୟବସ୍ଥା ଏବଂ ରଥଯାତ୍ରା ସମ୍ବନ୍ଧରେ ତଥା ରଥଗୁଡ଼ିକର ନିର୍ମାଣ ସମ୍ବନ୍ଧରେ ଅନୁସନ୍ଧାନ କରି କେତେଗୁଡ଼ିଏ ସୁଚିନ୍ତିତ ସୁପାରିସ୍ ଉକ୍ତ କମିଟି ଦେଇଛନ୍ତି । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ରତ୍ନଭଣ୍ଡାରରେ ୧୨,୮୩୮ ଭରି ଓଜନର ସୁନାଗହଣା ପ୍ରଭୃତି ଓ ୨୨,୧୫୩ ଭରି ଓଜନର ରୂପା ଜିନିଷ ଥିଲା ବୋଲି କମିଟି ଅନୁସନ୍ଧାନ କରି ଗୋଟିଏ ତାଲିକା ପ୍ରସ୍ତୁତ କରିଥିଲେ । ଏଗୁଡ଼ିକରୁ ଠାକୁରଙ୍କପାଇଁ ଯାହା ବ୍ୟବହାର କରାଯାଉଛି ତାହାକୁ ରଖି ଅନ୍ୟତକ ବିକ୍ରିକରି ବ୍ୟାଙ୍କରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନାମରେ ଜମା ରଖିବାପାଇଁ କମିଟି ପରାମର୍ଶ ଦେଇଥିଲେ । ଏହାକୁ ମିଶାଇ ପାଞ୍ଚ କୋଟି ଟଙ୍କାର ଗୋଟିଏ ଫାଉଣ୍ଡେସନ୍ ଟ୍ରଷ୍ଟ (Foundation Trust) ସୃଷ୍ଟି କରିବାପାଇଁ କମିଟି ପରାମର୍ଶ ଦେଇଥିଲେ । ବଦାନ୍ୟ ଧାର୍ମିକ ଲୋକଙ୍କଠାରୁ ଚାନ୍ଦା ଆଦାୟ କରି ଉକ୍ତ ଟ୍ରଷ୍ଟରେ ରଖିବାପାଇଁ କମିଟି ପରାମର୍ଶ ଦେଇଥିଲେ । ଏହି ପାଞ୍ଚ କୋଟି ଟ୍ରଷ୍ଟ ଟଙ୍କାର ସୁଧ ଜଗନ୍ନାଥ ମନ୍ଦିର ପରିଚାଳନା ଓ ଅନ୍ୟାନ୍ୟ ଆନୁଷଙ୍ଗିକ କାର୍ଯ୍ୟ ତୁଲାଇବାପାଇଁ ଏକ ସ୍ଥାୟୀ ଆୟର ପନ୍ଥା ହୋଇପାରିବ ବୋଲି ସେମାନେ ମତ ଦେଇଥିଲେ । ସମୟସମୟରେ ରଥଯାତ୍ରାବେଳେ ରଥଚକଗୁଡ଼ିକ ଭାଙ୍ଗି ଯେଉଁ ଅସୁବିଧା ଓ ବିଶୃଙ୍ଖଳା ସୃଷ୍ଟି କରୁଛି, ତାହା ଏଡ଼ାଇବାକୁ କିଛି ସ୍ଥାୟୀ ବ୍ୟବସ୍ଥା ହେବାପାଇଁ କମିଟି ସୁପାରିସ୍ କରିଥିଲେ । ପ୍ରତି ବର୍ଷ ଖରାପ କାଠରେ ରଥ ନିର୍ମାଣ ହେଉଥିବାରୁ ତାହା ଭାଙ୍ଗିଯାଉଛି । ତେଣୁ ଭଲ କାଠରେ ଅଧିକ ଖର୍ଚ୍ଚ କରି ରଥଗୁଡ଼ିକର ଚକ ଓ ଅନ୍ୟାନ୍ୟ ଅଂଶ ତିଆରି କରି ରଖିଦେଲେ ତାହା ବେଶୀଦିନ ଯିବ ବୋଲି କମିଟି ସୁପାରିସ୍ କରିଥିଲେ । କେବଳ ପ୍ରତି ବର୍ଷ ସେଥିରେ ରଙ୍ଗ ଦେଇ ରଖିଲେ ତାହା ଠିକ୍ ଭାବରେ ରହିପାରିବ ବୋଲି ସେହି କମିଟି କହିଥିଲେ । କିନ୍ତୁ ସିଂହାସନ ମଞ୍ଚଗୁଡ଼ିକ ପ୍ରତିବର୍ଷ ନୂଆ କାଠରେ ତିଆରି ହେବାପାଇଁ କମିଟି ମତ ବ୍ୟକ୍ତ କରିଥିଲେ । ତା' ବ୍ୟତୀତ ଯେଉଁ ବିଦେଶୀମାନେ ହିନ୍ଦୁଧର୍ମରେ ଦୀକ୍ଷିତ ହେଉଛନ୍ତି, ଶ୍ରୀମନ୍ଦିରରେ ପଶି ଜଗନ୍ନାଥ ଦର୍ଶନ କରିବାରେ ସେମାନଙ୍କୁ ବାଧା ନ ଦେବା ପାଇଁ କମିଟି ସୁପାରିସ୍ କରିଥିଲେ ।

## ସଚେତକ ପରିବର୍ତ୍ତନ

ନିର୍ବାଚନର ପ୍ରାୟ ଛ'ମାସ ପରେ ବିଧାନସଭାରେ ସରକାରୀ ଜନତା ଦଳର ମୁଖ୍ୟ ସଚେତକ (Chief Whip) ଶ୍ରୀ ଜଗନ୍ନାଥ ମଲ୍ଲିକ ତାଙ୍କ ଆଚରଣଦ୍ୱାରା ଦଳ ମଧ୍ୟରେ ଅସନ୍ତୋଷ ସୃଷ୍ଟି କରିବାକୁ ଆରମ୍ଭ କରିଦେଇଥିଲେ । ସଂସଦୀୟ ବ୍ୟବସ୍ଥାରେ ବିଧାନସଭା ସମ୍ବନ୍ଧୀୟ କାର୍ଯ୍ୟନିର୍ବାହ କରିବାରେ ରାଜନୈତିକ ଦଳଗୁଡ଼ିକର ସଚେତକମାନଙ୍କର କାର୍ଯ୍ୟ ବିଶେଷ ଗୁରୁତ୍ୱପୂର୍ଣ୍ଣ । ସରକାରୀ ଦଳର ମୁଖ୍ୟ

ସଚେତକଙ୍କ ଭୂମିକା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଏବଂ ସେ ଜଣେ ସରକାରୀ ପଦାଧିକାରୀ ବ୍ୟକ୍ତିଭାବରେ କାର୍ଯ୍ୟ କରନ୍ତି । ସେଥିପାଇଁ ବେତନ ଓ ଅନ୍ୟାନ୍ୟ ସୁବିଧା ଭୋଗ କରନ୍ତି । ସରକାରୀ ଦଳର ନେତାଙ୍କ ସୁପାରିସକ୍ରମେ ରାଜ୍ୟପାଳକଦ୍ୱାରା ତାଙ୍କର ନିଯୁକ୍ତି ହୁଏ । ବିଧାନସଭା ଅଧିବେଶନରେ ସରକାରୀ କାର୍ଯ୍ୟ କେଉଁ ସମୟରେ ଓ କିପରି ଭାବରେ ହେବ ସେ ସମ୍ବନ୍ଧରେ ସେ ଅନ୍ୟାନ୍ୟ ଦଳର ସଚେତକମାନଙ୍କ ସହ ସଂପର୍କ ରଖି ପରାମର୍ଶ ଦିଅନ୍ତି । ବିଧାନସଭାରେ ସଭ୍ୟମାନଙ୍କର ଉପସ୍ଥାନ ପ୍ରତି ସେ ବିଶେଷ ଦୃଷ୍ଟି ରଖିଥାଆନ୍ତି ଏବଂ ବିଧାନସଭା ଆଲୋଚନାରେ ନିଜ ଦଳରୁ ଯେଉଁ ସଭ୍ୟମାନେ ଭାଗ ନିଅନ୍ତି ସେମାନଙ୍କର ତାଲିକା ଓ ବକ୍ତବ୍ୟ ସଂପର୍କରେ ସେ ଧ୍ୟାନ ଦିଅନ୍ତି । ବିଧାନସଭାର ବିଭିନ୍ନ ସ୍ଥାୟୀ ଓ ଅସ୍ଥାୟୀ କମିଟିମାନଙ୍କର ଯେଉଁମାନେ ସଭ୍ୟ ରହିବେ, ସେ ବିଷୟରେ ସରକାରୀ ଦଳର ମୁଖ୍ୟ ସଚେତକ ଦଳର ନେତାଙ୍କ ପରାମର୍ଶ ନେଇ ଓ ଅନ୍ୟ ଦଳମାନଙ୍କର ସଚେତକମାନଙ୍କ ସହିତ କଥାବାର୍ତ୍ତା କରି ତାଲିକା ପ୍ରସ୍ତୁତ କରି ଗୃହର ଅନୁମୋଦନର ବ୍ୟବସ୍ଥା କରନ୍ତି । ଏ ସମସ୍ତ କାର୍ଯ୍ୟ ତୁଲାଇବାରେ ସେ ଦଳପତିଙ୍କଠାରେ ଦାୟୀରହନ୍ତି ଏବଂ ଦଳପତିଙ୍କ ପରାମର୍ଶରେ ସେହି ସବୁ ଦାୟିତ୍ୱ ସେ ତୁଲାନ୍ତି । ଦଳର ସଭ୍ୟମାନଙ୍କ ସହିତ ସଂପର୍କ ରଖି ସେମାନଙ୍କର ଓ ଦଳପତିଙ୍କ ମଧ୍ୟରେ ସଚେତକ ଯୋଗସୂତ୍ର ଭାବରେ କାର୍ଯ୍ୟ କରନ୍ତି । ସେ ଜଣେ ଦାୟିତ୍ୱସଂପନ୍ନ ବିଶ୍ୱାସୀ ବ୍ୟକ୍ତି ନହେଲେ ଦଳର ନେତା ଓ ସଭ୍ୟମାନଙ୍କ ଭିତରେ ସନ୍ଦେହ ଓ ମନୋମାଳିନ୍ୟ ସୃଷ୍ଟି କରିପାରନ୍ତି । ଶ୍ରୀ ଜଗନ୍ନାଥ ମଲ୍ଲିକ ମନ୍ତ୍ରିମଣ୍ଡଳରେ ସ୍ଥାନ ନପାଇବାରୁ ଖୁବ୍ ଅସନ୍ତୁଷ୍ଟ ଥିଲେ, ତେଣୁ ତାଙ୍କୁ ମୁଖ୍ୟ-ସଚେତକ କରାଯାଇଥିଲା । କିନ୍ତୁ ସେ ସେଥିରେ ସନ୍ତୁଷ୍ଟ ନହୋଇ ତାଙ୍କର କାର୍ଯ୍ୟ ଓ ଆଚରଣଦ୍ୱାରା ନିଜ ଦଳ ଓ ସରକାରପାଇଁ ଅସୁବିଧା ସୃଷ୍ଟି କରିବାରେ ଲାଗିଥିଲେ । ବିଧାନସଭାର ସବୁ କମିଟିପାଇଁ ଯେଉଁମାନେ ମନୋନୀତ ହେଲେ ସେମାନେ ତାଙ୍କ ଚେଷ୍ଟାରେ ହେଲେ ଏବଂ ଯେଉଁମାନେ ମନୋନୀତ ନହେଲେ ସେମାନଙ୍କୁ ଦଳପତି ମନୋନୀତ କଲେନାହିଁ ବୋଲି ଧାରଣା ଦେବାକୁ ମଧ୍ୟ ସେ ପଛାଉ ନଥିଲେ । ଏପରି ଭାବରେ ସେ ନାନା କଥାରେ ଦଳପତିଙ୍କ ପ୍ରତି ସଭ୍ୟମାନଙ୍କ ମନରେ ଅସନ୍ତୋଷ ଓ ସନ୍ଦେହ ସୃଷ୍ଟି କରିବାରେ ଲାଗିଥିଲେ । କେତେକ ସଭ୍ୟଙ୍କୁ ପ୍ରଭାବିତ କରି ନାନା ଆଳରେ ଗୁପ୍ତ ବୈଠକ କରି ସରକାରଙ୍କୁ ବଦ୍‌ନାମ କରିବା ଉଦ୍ଦେଶ୍ୟରେ ଉଦ୍ୟମ କରି ଖବରକାଗଜରେ ତାହା ପ୍ରକାଶ କରାଇଥିଲେ । ଏସବୁ କଥା ଲକ୍ଷ୍ୟକରି ମୁଁ ଅନୁଭବ କରିଥିଲି ଯେ ସରକାରୀ ଦଳର ମୁଖ୍ୟ ସଚେତକ ହେବାପାଇଁ ସେ ଉପଯୁକ୍ତ ବ୍ୟକ୍ତି ନୁହଁନ୍ତି । ତେଣୁ ମୋର ପରାମର୍ଶରେ ରାଜ୍ୟପାଳ ତାଙ୍କୁ ସେ ପଦରୁ ବହିଷ୍କାରକରି କେନ୍ଦ୍ରାପଡ଼ାର ବିଧାନସଭା ସଦସ୍ୟ ଶ୍ରୀ ବେଦପ୍ରକାଶ ଅଗ୍ରୱାଲାଙ୍କୁ ମୁଖ୍ୟ ସଚେତକ ନିଯୁକ୍ତ କରିଥିଲେ । ଶ୍ରୀ ଅଗ୍ରୱାଲା ଅତ୍ୟନ୍ତ ଦକ୍ଷତାର ସହିତ ସନ୍ତୋଷଜନକ ଭାବରେ ତାଙ୍କର ଦାୟିତ୍ୱ ତୁଲାଇଥିଲେ ଏବଂ ପରେ ମନ୍ତ୍ରୀହୋଇଥିଲେ ।

## ହରିଜନଙ୍କ ସୁରକ୍ଷାପାଇଁ ଓଡ଼ିଶାରେ ଶ୍ରେଷ୍ଠ ବ୍ୟବସ୍ଥା

କେନ୍ଦ୍ରରେ ଜନତା ସରକାର ପ୍ରତିଷ୍ଠିତ ହେବା ପରେ ଦେଶରେ ଆଦିବାସୀ ଓ ହରିଜନମାନଙ୍କ ଉପରେ ଅତ୍ୟାଚାର କିପରି ବନ୍ଦହେବ ସେଥିପାଇଁ ବିଶେଷ ଦୃଷ୍ଟିଦେବାକୁ ରାଜ୍ୟ ସରକାରମାନଙ୍କ ପାଖକୁ ନିର୍ଦ୍ଦେଶ ଆସିଥିଲା । ସେତେବେଳେ ବିହାର, ଉତ୍ତର ପ୍ରଦେଶ ପ୍ରଭୃତି କେତେକ ରାଜ୍ୟରେ ହରିଜନମାନଙ୍କ ଉପରେ ଯେଉଁ ସବୁ ଅମାନୁଷିକ ଅତ୍ୟାଚାର ହେଉଥିଲା, ସେଥିରେ କେନ୍ଦ୍ର ସରକାର ବିଶେଷ ଉଦ୍‌ବେଗ ପ୍ରକାଶ କରିଥିଲେ । ଆମ ରାଜ୍ୟରେ ଆମେ ଶାସନ ଦାୟିତ୍ୱ ଗ୍ରହଣ କଲା ପରେ ପରେ ଆମ ସରକାର ରାଜ୍ୟର ଆଦିବାସୀ ଓ ହରିଜନମାନଙ୍କ ଉପରେ ଜୁଲୁମ୍ ବନ୍ଦ କରିବା ନିମନ୍ତେ କେତେକ ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରିଥିଲେ । ଆଦିବାସୀମାନଙ୍କ ଅପେକ୍ଷା ହରିଜନମାନଙ୍କ ଉପରେ ଅତ୍ୟାଚାର ବିଷୟରେ ଆମର ଉଦ୍‌ବେଗର କାରଣ ବେଶୀ ଥିଲା । ଆମ ରାଜ୍ୟର ମୋଟ

ଅଧିବାସୀଙ୍କ ମଧ୍ୟରେ ପ୍ରତି ଶହେ ଜଣରେ ପ୍ରାୟ ଚବିଶ ଜଣ ଆଦିବାସୀ ଥିବାସ୍ଥଳେ ହରିଜନସଂଖ୍ୟା ମାତ୍ର ପନ୍ଦର ଜଣ । ଆମ ରାଜ୍ୟର ତେରଟି ଜିଲ୍ଲା ମଧ୍ୟରୁ ପାଞ୍ଚଟି ଜିଲ୍ଲା ହେଉଛି ଆଦିବାସୀବହୁଳ ଅଞ୍ଚଳ । ଏହାଛଡ଼ା ଆଦିବାସୀମାନେ ଯେଉଁଠାରେ ଅଛନ୍ତି, ସେଠାରେ ସେମାନେ କେନ୍ଦ୍ରୀଭୂତ ଭାବରେ ଅଛନ୍ତି, ତେଣୁ ସେମାନଙ୍କ ଉପରେ ଦୈହିକ ଅତ୍ୟାଚାର କରିବା ସହଜକଥା ନୁହେଁ । ମାତ୍ର ସେମାନଙ୍କୁ ଅଣଆଦିବାସୀମାନେ ଠକାଇ ଶୋଷଣକରି ଲାଭବାନ୍ ହୁଅନ୍ତି । ମୁଁ ଜାଣେ କୋରାପୁଟ ଜିଲ୍ଲାରେ ଆଦିବାସୀ ଲୋକସଂଖ୍ୟା ଶହକେ ପାଞ୍ଚଷଠିରୁ ଊର୍ଦ୍ଧ୍ୱ ହୋଇଥିଲେ ମଧ୍ୟ ସେଠାରେ ଆଦିବାସୀମାନଙ୍କୁ ହରିଜନମାନେ ଶୋଷଣ କରିବାର ଦେଖାଯାଏ । ସେଠାରେ ହରିଜନମାନଙ୍କ ମଧ୍ୟରେ ଥିବା ପାଣ ଜାତିର ଲୋକ ହେଉଛନ୍ତି ଆଦିବାସୀମାନଙ୍କର ପୁରୋହିତ । ଜମିବାଡ଼ି କିଣାବିକା ଓ ଅନ୍ୟାନ୍ୟ କାରବାର ଆଦିରେ ଏହି ପୁରୋହିତଙ୍କୁ ପରାମର୍ଶ ନକଲେ ସେଠାରେ ଆଦିବାସୀମାନେ କିଛି କରନ୍ତିନାହିଁ; ତେଣୁ ପାଣମାନେ ସେମାନଙ୍କୁ ଶୋଷଣ କରିବାର ମଉକା ପାଆନ୍ତି । ଓଡ଼ିଶାରେ ହରିଜନମାନେ କେନ୍ଦ୍ରୀଭୂତ ଭାବରେ ରହିନାହାନ୍ତି, ସେମାନେ ବିକ୍ଷିପ୍ତ ଭାବରେ ସବୁଆଡ଼େ ବାସକରନ୍ତି । ଅନ୍ୟ ଜାତିର ଲୋକମାନଙ୍କ ଭିତରେ ସେମାନଙ୍କର ସଂଖ୍ୟା ଅତି ନଗଣ୍ୟ । ଗୋଟିଏ ଗୋଟିଏ ଗାଆଁରେ ମାତ୍ର ଦୁଇ-ଚାରି ଘର ହିସାବରେ ସେମାନେ ଅଲଗା ବସତି କରି ରହିଥାଆନ୍ତି । ସେମାନଙ୍କ ଉପରେ ଅତ୍ୟାଚାର କରିବା ସହଜ । ସେହି ଦୃଷ୍ଟିରୁ ସେମାନଙ୍କ ଉପରେ ଅତ୍ୟାଚାରର ପ୍ରତିଷେଧକ ବ୍ୟବସ୍ଥା ନେବା ଜରୁରୀ ହୋଇପଡ଼ିଥିଲା । ସେଥିପାଇଁ ଉପାୟ ସ୍ଥିର କରିବା ସକାଶେ ମୁଁ ଗୋଟିଏ ଉଚ୍ଚ ପାହ୍ୟା ଆଲୋଚନା କରାଇଥିଲି । ରାଜ୍ୟର ହରିଜନ, ଆଦିବାସୀ ପ୍ରଭୃତି ଦୁର୍ବଳ ଓ ଅନୁନ୍ନତ ଶ୍ରେଣୀର ଲୋକମାନଙ୍କ ଉପରେ ଯେପରି କୌଣସି ଅତ୍ୟାଚାର ଓ ଜୁଲୁମ୍ ନହୁଏ ସେଥିପ୍ରତି ବ୍ୟକ୍ତିଗତ ଭାବରେ ଦୃଷ୍ଟିଦେବାପାଇଁ ରାଜ୍ୟ ସରକାର ଜିଲ୍ଲା ମାଜିଷ୍ଟ୍ରେଟ ଓ ପୁଲିସ ସୁପରିଟେଣ୍ଡେଣ୍ଟମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଯେଉଁ ସବୁ ସ୍ଥାନମାନଙ୍କରେ ଏ ପ୍ରକାର ଅତ୍ୟାଚାର ହେବାର ଆଶଙ୍କା ଥାଏ, ସେସବୁ ସ୍ଥାନଗୁଡ଼ିକୁ ଚିହ୍ନଟକରି ସେଠାରେ ତୁରନ୍ତ ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରିବାକୁ ଏବଂ ହରିଜନ ଓ ଆଦିବାସୀମାନଙ୍କର ଅଧିକାରଗୁଡ଼ିକ ସୁରକ୍ଷିତ ହେଲା ବୋଲି ସେମାନେ ଯେପରି ନିଶ୍ଚିନ୍ତ ହୁଅନ୍ତି ସେ ପ୍ରକାର ପରିସ୍ଥିତି ସୃଷ୍ଟିକରିବାକୁ ଜିଲ୍ଲା ମାଜିଷ୍ଟ୍ରେଟମାନଙ୍କୁ ପରାମର୍ଶ ଦିଆଯାଇଥିଲା । ନିର୍ଦ୍ଦେଶ ଦିଆଯାଇଥିଲା ଯେ ହରିଜନ ଓ ଆଦିବାସୀମାନଙ୍କ ଉପରେ କୌଣସି ପ୍ରକାର ଅତ୍ୟାଚାର ବା ଜୁଲୁମ୍ ଅଭିଯୋଗ ଆସିଲେ ତାହାକୁ ଅଗ୍ରାଧିକାର ଦେଇ ତଦନ୍ତ କରିବାକୁ ହେବ ଏବଂ କ୍ଷତିଗ୍ରସ୍ତ ଲୋକମାନଙ୍କୁ ତୁରନ୍ତ ସାହାଯ୍ୟ ଦେବାପାଇଁ ବ୍ୟବସ୍ଥା କରିବାକୁ ପଡ଼ିବ । ତା'ଛଡ଼ା କ୍ଷତିଗ୍ରସ୍ତ ଅଞ୍ଚଳମାନଙ୍କୁ ଜିଲ୍ଲା ମାଜିଷ୍ଟ୍ରେଟ ଓ ପୁଲିସ ସୁପରିଣ୍ଟେଣ୍ଡେଣ୍ଟମାନେ ନିଜେ ଯାଇ ଅବସ୍ଥା ଅନୁଧ୍ୟାନ କରିବା ପାଇଁ ମଧ୍ୟ ନିର୍ଦ୍ଦେଶ ଦିଆଯାଇଥିଲା । ହରିଜନ ଓ ଆଦିବାସୀମାନଙ୍କ ଉପରେ ଅତ୍ୟାଚାରର ଆଶଙ୍କା ଦୂର କରିବା ଉଦ୍ଦେଶ୍ୟରେ ସେତେବେଳେ ରାଜ୍ୟ ସରକାରମାନେ ଯେଉଁ ସବୁ ପଦକ୍ଷେପ ନେଉଥିଲେ ତାହା ପ୍ରଧାନମନ୍ତ୍ରୀ ଓ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟକୁ ଜଣାଉଥିଲେ । ଓଡ଼ିଶା ସରକାରଙ୍କର ଏହି ନିର୍ଦ୍ଦେଶଗୁଡ଼ିକୁ ପ୍ରଧାନମନ୍ତ୍ରୀ ଶ୍ରୀ ମୋରାରଜୀ ଦେଶାଇ ପ୍ରଶଂସା କରିଥିଲେ ଏବଂ ସେଗୁଡ଼ିକୁ ଅନୁକରଣ କରିବା ପାଇଁ ସେ ଅନ୍ୟ ସବୁ ରାଜ୍ୟର ମୁଖ୍ୟମନ୍ତ୍ରୀମାନଙ୍କୁ ପରାମର୍ଶ ଦେଇଥିଲେ । ସେତେବେଳେ ପ୍ରଧାନମନ୍ତ୍ରୀଙ୍କର ଏ ପରାମର୍ଶ ସବୁ ସମ୍ବାଦପତ୍ରମାନଙ୍କରେ ପ୍ରକାଶପାଇଥିଲା ।

ହରିଜନମାନଙ୍କ ଉପରେ ଅତ୍ୟାଚାର ସମ୍ବନ୍ଧୀୟ ବିଷୟ ସେତେବେଳେ ଜାତୀୟସ୍ତରରେ ସମ୍ବାଦପତ୍ରମାନଙ୍କରେ ଏପରି ଭାବରେ ପ୍ରକାଶ ପାଉଥାଏ ଯେ ହରିଜନ ସଂପୃକ୍ତ ଯେକୌଣସି ବିବାଦକୁ ନୃଶଂସ ଅତ୍ୟାଚାର ବୋଲି ରୂପଦିଆଯାଉଥିଲା । ସାଂପ୍ରଦାୟିକ ଭିତ୍ତିରେ ଜାତିଗତ ଅସ୍ପୃଶ୍ୟତାରୁ ଉଦ୍‌ଭବ ଘଟଣାଗୁଡ଼ିକୁ ହରିଜନମାନଙ୍କ ଉପରେ ଅତ୍ୟାଚାର ବୋଲି ଆଖ୍ୟା ଦିଆଯାଇପାରିବ ବୋଲି କେନ୍ଦ୍ର ସରକାର ପୂର୍ବରୁ ଗୋଟିଏ ସ୍ପଷ୍ଟୀକରଣ ରାଜ୍ୟ ସରକାରମାନଙ୍କୁ ପଠାଇଥାଆନ୍ତି, ସେଥିପ୍ରତି

ମୁଁ ବିଧାନସଭାରେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲି । ସେହି ଅନୁସାରେ ବିଚାରକଲେ ମଧ୍ୟ ଆମ ରାଜ୍ୟରେ ସେ ପ୍ରକାର ଘଟଣା ଖୁବ୍ ବେଶୀ ଘଟିନଥିଲା । ସେ ସମ୍ବନ୍ଧରେ ସନ୍ଦେହ ଦୂର କରିବା ଉଦ୍ଦେଶ୍ୟରେ ଏବଂ ପ୍ରତ୍ୟେକ ଘଟଣା ଘଟିଲାକ୍ଷଣି ଜିଲ୍ଲାର ଶାସନ ଓ ଆଇନ ଶୃଙ୍ଖଳା ଦାୟିତ୍ୱରେ ଥିବା ଅଫିସରମାନେ ସେଥିପ୍ରତି ବିହିତ ଓ ନିରପେକ୍ଷ ଦୃଷ୍ଟି ଦେଉଛନ୍ତି କି ନାହିଁ ସେ ବିଷୟ ବୁଝି ସରକାରଙ୍କୁ ରିପୋର୍ଟ ଦେବା ଉଦ୍ଦେଶ୍ୟରେ ବିଧାନସଭା ସଦସ୍ୟ ଶ୍ରୀ ବିଶ୍ୱନାଥ ପଣ୍ଡିତଙ୍କ ଅଧ୍ୟକ୍ଷତାରେ ରାଜ୍ୟ ସରକାର ଗୋଟିଏ କମିଟି ନିଯୁକ୍ତ କରିଥିଲେ । ସେହି କମିଟିରେ ଆଦିବାସୀ ଓ ହରିଜନ ସଂପ୍ରଦାୟର କେତେକ ବିଶିଷ୍ଟ ନେତୃସ୍ଥାନୀୟ ବ୍ୟକ୍ତି ସଭ୍ୟ ଥିଲେ । ବହୁ ଘଟଣା ଅନୁସନ୍ଧାନ କରି ପ୍ରକୃତ ଅବସ୍ଥା ଜାଣିବା ଦିଗରେ ଉକ୍ତ କମିଟି ସରକାରଙ୍କୁ ସାହାଯ୍ୟ କରିଥିଲେ ।

## ଆକସ୍ମିକ ଦୁଃଖ

ମୁଖ୍ୟମନ୍ତ୍ରୀ ହେବାର ତିନି ମାସ ପରେ ମୋତେ ଗୋଟିଏ ଦାରୁଣ ଶୋକାକୁଳ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଥିଲା । ୧୯୭୭ ମସିହା ଅକ୍ଟୋବର ପହିଲା ଦିନ ସକାଳେ କଟକ-ଭୁବନେଶ୍ୱର ମଧ୍ୟରେ ଗୋଟିଏ ସଟଲ୍ ଟ୍ରେନ୍‌ର ଚଳାଚଳ ଆରମ୍ଭ ହୋଇଥିଲା । କଟକଠାରେ ମୁଁ ଉକ୍ତ ଟ୍ରେନ୍ ଚଳାଚଳ ଉଦ୍‌ଘାଟନ କରି ଅନ୍ୟମାନଙ୍କ ସହିତ ସେହି ଟ୍ରେନ୍‌ଯୋଗେ କଟକରୁ ଭୁବନେଶ୍ୱର ଫେରିଲି । ଭୁବନେଶ୍ୱର ଫେରି ମୁଁ ମୋର ସଚିବାଳୟ ଅଫିସ୍‌ରେ ପହଞ୍ଚିବାମାତ୍ରେ ଘରୁ ଫୋନ୍‌ରେ ଖବର ପାଇଲି ଯେ ମୋର ମଝିଆଁ ଝିଆରୀଜୋଇଁ ଶ୍ରୀ ହୃଷୀକେଶ ରାୟ ମୋର ଭୁବନେଶ୍ୱର ଘରେ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇପଡ଼ିଛନ୍ତି । ମୁଁ ଘରେ ପହଞ୍ଚିଲାବେଳକୁ ତାଙ୍କୁ କ୍ୟାପିଟାଲ୍ ହସ୍‌ପିଟାଲ୍‌କୁ ନିଆଯାଇସାରିଥିଲା । ମୁଁ ହସ୍‌ପିଟାଲ୍‌ରେ ପହଞ୍ଚିଲାବେଳକୁ ତାଙ୍କ ପ୍ରାଣବାୟୁ ଉଡ଼ିଯାଇଥିଲା । ତାଙ୍କୁ ସେ ଅବସ୍ଥାରେ ଦେଖି ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇ ବସିପଡ଼ିଥିଲି । ମୋର ଝିଆରୀ ଓ ତା'ର ପିଲାମାନଙ୍କ କଥା ଭାବି ମୁଁ ଦୁଃଖରେ ଅଭିଭୂତ ହୋଇପଡ଼ିଥିଲି । ସଙ୍ଗେ ସଙ୍ଗେ ରାଜ୍ୟ ସରକାରଙ୍କର ବିମାନ ଭଡ଼ାକରି ତାଙ୍କର ମରଶରୀରକୁ ନେଇ ମୁଁ ରାଉରକେଲାରେ ପହଞ୍ଚାଇଥିଲି । ମୋ ସଙ୍ଗରେ ମୋର ସେକ୍ରେଟେରୀ ଶ୍ରୀ ଅକ୍ଷୟ କୁମାର ବିଶ୍ୱାଳ ମଧ୍ୟ ଯାଇଥିଲେ । ଆମେ ପହଞ୍ଚିଲାବେଳକୁ ରାଉରକେଲା ବିମାନବନ୍ଦରରେ ପ୍ରାୟ ହଜାରରୁ ଊର୍ଦ୍ଧ୍ୱ ଲୋକ ଶୋକାକୁଳ ଅବସ୍ଥାରେ ଅପେକ୍ଷା କରି ରହିଥାଆନ୍ତି । ସେମାନଙ୍କ ଭିତରେ ମୋର ଝିଆରୀ ଓ ନାତିନାତୁଣୀମାନେ ମଧ୍ୟ ଥାଆନ୍ତି । ସେମାନଙ୍କର ଦାରୁଣ ଦୁଃଖ ଓ ସେଠାକାର ହୃଦୟବିଦାରକ ଦୃଶ୍ୟ ମୁଁ କେବେ ଭୁଲିପାରିବିନାହିଁ । ଗୋଟିଏ ବିରାଟ ଶବଯାତ୍ରାରେ ମୃତ ଶରୀରକୁ ନେଇ ଶଙ୍ଖ ଓ କୋଏଲର ସଙ୍ଗମସ୍ଥଳ ବେଦବ୍ୟାସଠାରେ ବ୍ରାହ୍ମଣୀ ନଦୀ କୂଳ ଶ୍ମଶାନରେ ହୃଷୀକେଶଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସଂପନ୍ନ କରାଯାଇଥିଲା । ତାଙ୍କର ଏକମାତ୍ର ପୁଅ ଦିଲ୍ଲୀପ କୁମାର ମୁଖାଗ୍ନି ଦେଇଥିଲା । ହୃଷୀକେଶ ରାଉରକେଲା ଇସ୍ପାତନଗର ଭିତ୍ତିସ୍ଥାପନ ଦିନରୁ ସେଠାର ବାସିନ୍ଦା ହୋଇ ସେ ସହରର ଜୀବନ ସହିତ ଓତପ୍ରୋତଭାବରେ ଜଡ଼ିତ ହୋଇଯାଇଥିଲେ । ରାଉରକେଲାରେ ସେ ଜଣେ ପ୍ରତିଷ୍ଠିତ ବ୍ୟବସାୟୀ ଥିଲେ । ରାଉରକେଲାର ସାଂଧ୍ୟ କଲେଜ, ହୋମିଓପାଥିକ କଲେଜ ଓ ଉଚ୍ଚ ବାଳିକା ବିଦ୍ୟାଳୟ ପ୍ରଭୃତି ବହୁ ସାଧାରଣ ଅନୁଷ୍ଠାନ ତାଙ୍କ ଉଦ୍ୟମରେ ପ୍ରତିଷ୍ଠା କରାଯାଇଥିଲା । ବ୍ୟବସାୟ ଆରମ୍ଭ କରିବା ପୂର୍ବରୁ ସେ ସାହିତ୍ୟ-ଚର୍ଚ୍ଚା ଓ ରାଜନୀତିରେ ମଧ୍ୟ ସକ୍ରିୟ ଅଂଶ ଗ୍ରହଣକରୁଥିଲେ ।

## ରାଜ୍ୟପାଳ ନିଯୁକ୍ତି ପ୍ରସଙ୍ଗ

ଓଡ଼ିଶାରେ ଜନତା ମନ୍ତ୍ରିମଣ୍ଡଳ ଗଠନ ହେବାର ତିନି ମାସ ପରେ ରାଜ୍ୟପାଳ ଶ୍ରୀ ହରିଚରଣ ସିଂ ବ୍ରାର୍ ଏଠାରୁ ସ୍ଥାନାନ୍ତରିତ ହୋଇ ହରିଆନା ରାଜ୍ୟକୁ ରାଜ୍ୟପାଳ ହୋଇ ଯାଇଥିଲେ । ତାଙ୍କ

ପୂର୍ବରୁ ଆମ ରାଜ୍ୟରେ ଶ୍ରୀ ଆକବର ଅଲ୍ଲୀ ଖାଁ ରାଜ୍ୟପାଳ ଥିଲେ । ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କ ସହିତ ତାଙ୍କର ମନୋମାଳିନ୍ୟ ହେବାରୁ ସେ ନିଜ ଉଦ୍ୟମରେ ଏଠାରୁ ଚାଲିଯାଇଥିଲେ । ଶ୍ରୀ ହରିଚରଣ ସିଂହ ବ୍ରାର୍‌ଙ୍କ ପକ୍ଷରେ ସେପରି କିଛି ଅସୁବିଧା ନଥିଲା । ମୋ ସହିତ ତାଙ୍କର ଭଲ ସଂପର୍କ ଥିଲା ଏବଂ ଆମ ଭିତରେ ପାରସ୍ପରିକ ସହଯୋଗ ମଧ୍ୟ ଥିଲା । ସେ ଆମ ରାଜ୍ୟର ରାଜ୍ୟପାଳ ହୋଇ ରହିବା ପାଇଁ ବରଂ ମୁଁ ଚାହୁଁଥିଲି । ତାଙ୍କ ନିଜ ସୁବିଧାପାଇଁ ସେ ଏଠାରୁ ଯାଇ ତାଙ୍କ ନିଜ ରାଜ୍ୟ ପାଖରେ ରହିବାକୁ ଇଚ୍ଛା ପ୍ରକାଶ କରିଥିଲେ । ତାଙ୍କ ସ୍ଥାନରେ ଶ୍ରୀ ଭଗବତ୍ ଦୟାଲ୍ ଶର୍ମା ଆମ ରାଜ୍ୟର ରାଜ୍ୟପାଳ ହୋଇ ଆସିଥିଲେ । କୌଣସି ରାଜ୍ୟର ରାଜ୍ୟପାଳ ନିଯୁକ୍ତି ସମୟରେ ପ୍ରଶାସନିକ ଶିଷ୍ଟାଚାର ଦୃଷ୍ଟିରୁ ସେ ରାଜ୍ୟର ମୁଖ୍ୟମନ୍ତ୍ରୀଙ୍କ ସହିତ ପରାମର୍ଶ କରାଯାଇଥାଏ । କିନ୍ତୁ ଶ୍ରୀ ଭଗବତ ଦୟାଲ୍ ଶର୍ମାଙ୍କ ନିଯୁକ୍ତି ସମୟରେ ମୋ ସହିତ କୌଣସି ପରାମର୍ଶ କରାଯାଇନଥିଲା । ମୁଁ ଜାଣିବା ପୂର୍ବରୁ ଶ୍ରୀ ଭଗବତ ଦୟାଲ୍ ଶର୍ମା ଓଡ଼ିଶାର ରାଜ୍ୟପାଳ ହେଲେ ବୋଲି ଘୋଷଣା ପ୍ରକାଶ ପାଇଥିଲା । ଶ୍ରୀ ଶର୍ମାଙ୍କୁ ମୁଁ ଆଗରୁ କେତେ ଥର ବିଜୁବାବୁଙ୍କ ଦିଲ୍ଲୀ ବାସଭବନରେ ଦେଖିଥିଲି । ସେ ଜଣେ ସ୍ୱାଧୀନତାସଂଗ୍ରାମୀ, ପୂର୍ବତନ ମୁଖ୍ୟମନ୍ତ୍ରୀ ଓ ପାର୍ଲିଆମେଣ୍ଟ ସଦସ୍ୟ ଥିଲେ ଏବଂ ଜରୁରୀକାଳୀନ ପରିସ୍ଥିତି ସମୟରେ ଶ୍ରୀ ଶର୍ମା, ବିଜୁବାବୁଙ୍କ ସହିତ ଅଟକବନ୍ଦୀ ଭାବରେ ହରିଆନାର ରୋହତକ ଜେଲ୍‌ରେ ଥିଲେ । ୧୯୪୨ ଅଗଷ୍ଟ ବିପ୍ଳବ ସମୟରେ ମଧ୍ୟ ସେ ବନ୍ଦୀହୋଇ ଲାହୋର ଜେଲ୍‌ରେ ବିଜୁବାବୁଙ୍କ ସହିତ ଥିଲେ । ସେ ରାଜ୍ୟପାଳ ହୋଇ ଆସିବା ବିଷୟରେ ମୋର ଆପତ୍ତି କରିବାର କିଛି ନଥିଲା । ତଥାପି ଶିଷ୍ଟାଚାର ଦୃଷ୍ଟିରୁ ମୋ ସହିତ ପରାମର୍ଶ କରାଯାଇନଥିବା ହେତୁ ମୁଁ କ୍ଷୁବ୍ଧ ହୋଇଥିଲି । ବିଜୁବାବୁ ଏ କଥା ବୁଝିପାରି ଶ୍ରୀ ଶର୍ମା ଆମ ରାଜ୍ୟକୁ ଆସିବା ପୂର୍ବରୁ ଦିନେ ଦିଲ୍ଲୀରେ ତାଙ୍କ ବାସଭବନରେ ତାଙ୍କୁ ଓ ମୋତେ ଗୋଟିଏ ମଧ୍ୟାହ୍ନ ଭୋଜନକୁ ନିମନ୍ତ୍ରଣ କରିଥିଲେ । ଶ୍ରୀ ଶର୍ମା ରାଜ୍ୟପାଳ ଭାବରେ ଆମ ରାଜ୍ୟର ଦାୟିତ୍ୱ ନେଲା ପରେ ମୋ ସହିତ ତାଙ୍କର ଖୁବ୍ ଘନିଷ୍ଠତା ହୋଇଥିଲା । ରାଜ୍ୟର ବହୁ ଜଟିଳ ସମସ୍ୟା ନେଇ ମୁଁ ତାଙ୍କର ପରାମର୍ଶ ପାଇପାରୁଥିଲି । ସେ ଜଣେ ବଡ଼ ଧର୍ମପରାୟଣ ବ୍ୟକ୍ତି ଥିଲେ ଏବଂ ପୁରୀରେ ଜଗନ୍ନାଥ ମହାପ୍ରଭୁଙ୍କର ଦର୍ଶନ ତାଙ୍କ ଜୀବନରେ ଗୋଟିଏ ମହତ୍ୱପୂର୍ଣ୍ଣ ଓ ଶ୍ରେଷ୍ଠ ପୁଣ୍ୟକର୍ମ ବୋଲି ସେ ବିବେଚନା କରୁଥିଲେ । ଶ୍ରୀଜଗନ୍ନାଥ ମନ୍ଦିରର ବିଧିବିଧାନ ଓ ପରିଚାଳନାର ସଂସ୍କାର ଆଣିବାପାଇଁ ସେ ଆଗ୍ରହୀ ଥିଲେ । ତା'ଛଡ଼ା ସେ ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇଙ୍କର ଜଣେ ଅତି ବିଶ୍ୱସ୍ତ ବନ୍ଧୁ ଥିବାରୁ ଅନେକ ସମୟରେ ପ୍ରଧାନମନ୍ତ୍ରୀଙ୍କ ମନୋଭାବ ମୁଁ ତାଙ୍କ ଜରିଆରେ ଜାଣିପାରୁଥିଲି ।

## ନନ୍ଦିନୀଙ୍କ ଅଭିଯୋଗ ଓ ମୋରାରଜୀଙ୍କ ରୋଷ

ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ତାଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ କ୍ଷମତାର ଅପବ୍ୟବହାର କରି ଦୁର୍ନୀତିମୂଳକ କାର୍ଯ୍ୟ କରିବା ଅଭିଯୋଗଗୁଡ଼ିକର ଅନୁସନ୍ଧାନ ହେବା ସଙ୍ଗେ ସଙ୍ଗେ ତାଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ହେବାରୁ ସେ ମୋ ବିରୁଦ୍ଧରେ ପ୍ରଧାନମନ୍ତ୍ରୀ ଶ୍ରୀ ମୋରାରଜୀ ଦେଶାଇଙ୍କ ପାଖରେ ଫେରାଦ ହୋଇଥିଲେ । ଅତୀତର ରାଜନୈତିକ ଶତ୍ରୁତା ହେତୁ ମୁଁ ଅତ୍ୟନ୍ତ ପ୍ରତିହିଂସାପରାୟଣ ହୋଇ ସାଧାରଣ କ୍ଷେତ୍ରରେ ତାଙ୍କର ମର୍ଯ୍ୟାଦାହାନି ଘଟାଇ ତାଙ୍କୁ ଅପଦସ୍ଥ କରିବା ଉଦ୍ଦେଶ୍ୟରେ ରାଜ୍ୟ ଦୁର୍ନୀତି-ନିବାରଣ ବିଭାଗଦ୍ୱାରା ତାଙ୍କ ବିରୁଦ୍ଧରେ ଅଯଥା ଅନୁସନ୍ଧାନ ଓ ମିଥ୍ୟା ମକଦ୍ଦମା ଆରମ୍ଭ କରିଥିଲି ବୋଲି ନନ୍ଦିନୀ ଦେବୀ ପ୍ରଧାନମନ୍ତ୍ରୀଙ୍କୁ କହିଥିଲେ । ରାଜନୈତିକ ଶତ୍ରୁତା ହେତୁ ମିଥ୍ୟାରେ ତାଙ୍କର ଚରିତ୍ର ସଂହାର କରାଯାଇ ତାଙ୍କୁ ହଇରାଣ କରାଯାଉଥିଲା ବୋଲି ଅଭିଯୋଗ କରି ସେ ସମ୍ବନ୍ଧରେ ଖବରକାଗଜମାନଙ୍କରେ ସେ ବିବୃତି ଦେଇଥିଲେ । ନନ୍ଦିନୀ ଦେବୀ ସେତେବେଳେ ଜନତା ଦଳର କାର୍ଯ୍ୟକାରୀ କମିଟିର ଜଣେ ସଭ୍ୟା ଥିଲେ । ଜନତା ଦଳର ଜଣେ

ମୁଖ୍ୟମନ୍ତ୍ରୀଙ୍କ ବିରୁଦ୍ଧରେ ତାଙ୍କଠାରୁ ଏ ପ୍ରକାର ଅଭିଯୋଗ ପାଇଲାକ୍ଷଣି ପ୍ରଧାନମନ୍ତ୍ରୀ ଅତ୍ୟନ୍ତ ବିବ୍ରତ ହୋଇଥିଲେ ଏବଂ ସେ ସମ୍ବନ୍ଧରେ ସବିଶେଷ ବିବରଣୀ ଜାଣିବାପାଇଁ ମୋତେ ଦିଲ୍ଲୀ ଡକାଇଥିଲେ । ପ୍ରଧାନମନ୍ତ୍ରୀ ମୋତେ ଦିଲ୍ଲୀ ଡକାଇବାଦ୍ୱାରା ମୋର ବରଂ ସୁବିଧା ହୋଇଥିଲା । ମୋ ବିରୁଦ୍ଧରେ ନନ୍ଦିନୀ ଦେବୀ ଅପବାଦ କରୁଥିଲେ ଯେ ମୁଁ ମୋର କ୍ଷମତାର ଅପବ୍ୟବହାର କରି ତାଙ୍କୁ ଉତ୍ପୀଡ଼ିତ କରୁଛି, ତାହା ଅସତ୍ୟ ଓ ଉଦ୍ଦେଶ୍ୟମୂଳକ ବୋଲି ପରିଷ୍କାର କରିଦେବାକୁ ମୋତେ ଗୋଟିଏ ସୁଯୋଗ ମିଳିଥିଲା । ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ଯେଉଁସବୁ ଦୁର୍ନୀତି ଅଭିଯୋଗ ଥିଲା ତାହା କି ପ୍ରକାର ଅଭିଯୋଗ, ସେସବୁ ଅଭିଯୋଗର ଉତ୍ପତ୍ତି କେଉଁଠୁ ଏବଂ ତାହା କି ଅବସ୍ଥାରେ ଅଛି, ସେସବୁ ବିଷୟରେ ଗୋଟିଏ ବିବରଣୀ ପ୍ରସ୍ତୁତ କରିବାପାଇଁ ମୁଁ ସଂପୃକ୍ତ ବିଭାଗମାନଙ୍କୁ ନିର୍ଦ୍ଦେଶ ଦେଇଥିଲି । ସମସ୍ତ ତଥ୍ୟସମ୍ବଳିତ ଏକ ପତ୍ର ନେଇ ମୁଁ ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇ ଓ ସ୍ୱରାଷ୍ଟ୍ରମନ୍ତ୍ରୀ ଚୌଧୁରୀ ଚରଣ ସିଂହଙ୍କୁ ୧୯୭୭ ସେପ୍ଟେମ୍ବର କୋଡ଼ିଏ ତାରିଖରେ ଦେଖାକରିଥିଲି । ପ୍ରଧାନମନ୍ତ୍ରୀ ମୋ'ରି ଆଗରେ ଧୀର ସ୍ଥିର ଭାବରେ ପୂରା ଘଣ୍ଟାଏ ସମୟ ଦେଇ ସମସ୍ତ କାଗଜପତ୍ର ଓ ରିପୋର୍ଟ ପଢ଼ିଥିଲେ ଏବଂ 'ବିଚାରାଳୟରେ' ଯଥାଶୀଘ୍ର ଏସବୁ ବ୍ୟାପାରର ବିଚାର ସମାପ୍ତ କରାଇବାପାଇଁ ମତବ୍ୟକ୍ତ କରିଥିଲେ । ଉକ୍ତ ରିପୋର୍ଟରେ ଏବଂ ମୋ ଚିଠିରେ ପରିଷ୍କାରଭାବରେ କୁହାଯାଇଥିଲା ଯେ ଶ୍ରୀମତୀ ଶତପଥୀଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗର ଅନୁସନ୍ଧାନ ଓ ମକଦ୍ଦମା ଜନତା ସରକାର ସମୟରେ ଆରମ୍ଭ ହୋଇନଥିଲା, ତାହାସବୁ କଂଗ୍ରେସ ସରକାର ସମୟରେ ଆରମ୍ଭ ହୋଇଥିଲା ଏବଂ ସେତେବେଳେ ନନ୍ଦିନୀ ଦେବୀ ଜଣେ ବିଶିଷ୍ଟ କଂଗ୍ରେସ ନେତ୍ରୀ ଥିଲେ । ନନ୍ଦିନୀ ଦେବୀଙ୍କ ଶାସନର ଶେଷଭାଗରେ ଯେତେବେଳେ ମନ୍ତ୍ରୀମାନେ ଦୁଇଟି ଗୋଷ୍ଠୀରେ ବିଭକ୍ତ ହୋଇ ପରସ୍ପର ପ୍ରତି ନାନା ଦୋଷାରୋପ କଲେ ଏବଂ ସେମାନଙ୍କ ଭିତରେ ତିକ୍ତତା ଅତି ଚରମ ସୀମାରେ ପହଞ୍ଚିଥିଲା, ସେହି ସମୟରେ ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ କେତେକ ଦୁର୍ନୀତି ଅଭିଯୋଗ ତାଙ୍କରି ଦଳର ବିରୋଧୀ ପକ୍ଷ ଆଣିଥିଲେ ଏବଂ ତାହା କେନ୍ଦ୍ର ସରକାରଙ୍କୁ ଦେଇଥିଲେ । ସେତେବେଳେକାର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଓ କେନ୍ଦ୍ର ଉପମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଜ୍ଞାତସାରରେ କଂଗ୍ରେସ ମୁଖ୍ୟମନ୍ତ୍ରୀ ଶ୍ରୀ ବିନାୟକ ଆଚାର୍ଯ୍ୟଙ୍କ ମନ୍ତ୍ରିମଣ୍ଡଳ ସମୟରେ ୧୯୭୭ ମସିହା ମାର୍ଚ୍ଚ ମାସ ସାତ ତାରିଖରେ ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗରେ ଦୁଇଟି ମକଦ୍ଦମା ରାଜ୍ୟ ଦୁର୍ନୀତି-ନିବାରଣ ବିଭାଗ ପକ୍ଷରୁ ଆରମ୍ଭ କରାଯାଇଥିଲା । ଏହି ଦୁଇଟି ମକଦ୍ଦମାରୁ ଗୋଟିକରେ ଅଭିଯୋଗ ଥିଲା ଯେ ମୁଖ୍ୟମନ୍ତ୍ରୀ ଥିଲାବେଳେ ସେ ତାଙ୍କର କ୍ଷମତାର ଅପବ୍ୟବହାର କରି ନିଜ ଆୟ ଅପେକ୍ଷା ଅଧିକ ଖର୍ଚ୍ଚରେ ତିନି ଲକ୍ଷ ବତିଶ ହଜାର ଟଙ୍କା ମୂଲ୍ୟର ଗୋଟିଏ ବିରାଟ ଘର ଭୁବନେଶ୍ୱରରେ ତିଆରି କରି ତାକୁ ମାସକୁ ତିନି ହଜାର ପାଞ୍ଚ ଶହ ଟଙ୍କା ଭଡ଼ାରେ ଇଉନାଇଟେଡ଼ କମର୍ସିଆଲ ବ୍ୟାଙ୍କକୁ ଦେଇଛନ୍ତି । ଅନ୍ୟ ମକଦ୍ଦମାଟିରେ ଅଭିଯୋଗ ଥିଲା ସୋଭିଏତ୍ ରୁଷ ଦେଶ ଓଡ଼ିଶା ଲୋକଙ୍କ ଉଦ୍ଦେଶ୍ୟରେ ଉପହାର ଦେଇଥିବା ଗୋଟିଏ ଆଧୁନିକ ଦାମିକା ପ୍ରିଣ୍ଟିଂ ମେସିନ୍‌କୁ ନିଜ ବଂଶର ଲୋକଙ୍କ ନାମରେ କରାଇନେବା ସଂପର୍କରେ । ଏହାଛଡ଼ା ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ଆଉ ଯେଉଁସବୁ ଦୁର୍ନୀତି ଅଭିଯୋଗ ରାଜ୍ୟ କଂଗ୍ରେସ ମନ୍ତ୍ରିମଣ୍ଡଳ ସଭ୍ୟମାନଙ୍କଦ୍ୱାରା ହୋଇଥିଲା ସେଥିରେ ବିଚାରଯୋଗ୍ୟ ଆପାତ ପ୍ରମାଣ କିଛି ଅଛି କି ନାହିଁ, ତାହା ଓଡ଼ିଶା ହାଇକୋର୍ଟର ଜଣେ ଅବସରପ୍ରାପ୍ତ ବିଚାରପତି ଶ୍ରୀ ରାଜକିଶୋର ଦାସଙ୍କଦ୍ୱାରା କରାଇବାପାଇଁ ଶ୍ରୀ ଆଚାର୍ଯ୍ୟଙ୍କ ମନ୍ତ୍ରିମଣ୍ଡଳ ବୈଠକରେ ୧୯୭୭ ଅପ୍ରେଲ ମାସ ତିରିଶ ତାରିଖରେ ନିଷ୍ପତ୍ତି ନିଆଯାଇଥିଲା । ଏହି ସମ୍ବନ୍ଧୀୟ ସମସ୍ତ କାଗଜପତ୍ର ଶ୍ରୀ ଦେଶାଇ ପାଠକରି ସନ୍ତୁଷ୍ଟ ହୋଇଥିଲେ ଯେ ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ଦୁର୍ନୀତି ସଂପର୍କୀୟ ଅନୁସନ୍ଧାନ ଓ କାର୍ଯ୍ୟାନୁଷ୍ଠାନ ମୁଁ ପ୍ରତିହିଂସାପରାୟଣ ହୋଇ ଆରମ୍ଭ କରିନଥିଲି; ତାହା କଂଗ୍ରେସ ସରକାର ଓ କଂଗ୍ରେସ ଲୋକଙ୍କଦ୍ୱାରା ଆରମ୍ଭ କରାଯାଇଥିଲା ।

କେଉଁ ଧରଣର ଦୁର୍ନୀତି ଅଭିଯୋଗ ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ଥିଲା ଏବଂ ସେଥିରେ ଆପାତ ସତ୍ୟ ଭଳି ଜଣାଯାଉଥିବା କିଛି ପ୍ରମାଣ ଥିଲା କି ନାହିଁ ସେ ବିଷୟରେ ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇ ଜାଣିବାକୁ ଉତ୍ସୁକ ଥିଲେ । ନନ୍ଦିନୀ ଦେବୀ ନିଜ ନ୍ୟାଯ୍ୟ ଆୟଠାରୁ ଅବୈଧଭାବରେ ଅଧିକ ସଂପତ୍ତି ହସ୍ତଗତ କରିଛନ୍ତି ବୋଲି ଯେଉଁ ଅଭିଯୋଗ ହୋଇଥିଲା, ତାହାର ଯଥାର୍ଥତା ସମ୍ବନ୍ଧରେ ସେ ବୁଝିବାକୁ ଚାହିଁଥିଲେ । ୧୯୭୨ ମସିହା ଜୁନ୍ ମାସରେ ନନ୍ଦିନୀ ଦେବୀ ଯେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ, ତା'ର ଦୁଇମାସ ପୂର୍ବରୁ ପ୍ରଚଳିତ ପ୍ରଥାନୁସାରେ ସେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ତାଙ୍କ ସଂପତ୍ତିର ଗୋଟିଏ ତାଲିକା ଦେଇଥିଲେ । ସେଥିରେ ସେ ତାଙ୍କର ଗଚ୍ଛିତ ଅର୍ଥ, ସ୍ଥାବର ଅସ୍ଥାବର ଯାବତୀୟ ସଂପତ୍ତିର ମୂଲ୍ୟ ମୋଟେ ୨୬ ହଜାର ଟଙ୍କା ବୋଲି ହିସାବ ଦେଇଥିଲେ । ଏହାଛଡ଼ା ତାଙ୍କ ସ୍ୱାମୀଙ୍କର ୨୨ ହଜାର ଟଙ୍କା ବ୍ୟାଙ୍କରେ ଥିବା କଥା ସେଥିରେ ଉଲ୍ଲେଖ ଥିଲା । ସେହି ସଂପତ୍ତି ତାଲିକା ଓ ହିସାବ ଫର୍ଦ୍ଦ ଦୁର୍ନୀତି-ନିବାରଣ ଅଫିସରମାନେ ପ୍ରଧାନମନ୍ତ୍ରୀଙ୍କ ଅଫିସ୍‌ରେ ଅନୁସନ୍ଧାନ କଲାବେଳେ ହସ୍ତଗତ କରିନେଇଥିଲେ । ଦୁର୍ନୀତି-ନିବାରଣ ବିଭାଗର ଅନୁସନ୍ଧାନଫଳରେ ଜଣାପଡ଼ିଥିଲା ଯେ ନନ୍ଦିନୀ ଦେବୀ ମାତ୍ର ତିନି ବର୍ଷ ମଧ୍ୟରେ ୨୯।୨।୭୬ ତାରିଖ ସୁଦ୍ଧା ପ୍ରାୟ ତେର ଲକ୍ଷ ଟଙ୍କା ମୂଲ୍ୟର ସ୍ଥାବର ଅସ୍ଥାବର ସଂପତ୍ତିର ଅଧିକାରିଣୀ ହୋଇପାରିଥିଲେ । ୧୯୭୨ ମସିହା ଜୁନ୍ ମାସରେ ନନ୍ଦିନୀ ଦେବୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ । ମାତ୍ର ଦୁଇ ମାସ ପୂର୍ବରୁ ସେ କେନ୍ଦ୍ରରେ ରାଷ୍ଟ୍ରମନ୍ତ୍ରୀ ଥିବାବେଳେ ୧୦।୪।୭୨ ତାରିଖରେ ତାଙ୍କର ସଂପତ୍ତିର ବିବରଣୀ ସହ ସେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ଯେଉଁ ଚିଠିଟି ଦେଇଥିଲେ, ତାହାର ଫଟୋଷ୍ଟଟ୍ କପି ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇ ମନୋଯୋଗ ସହ ଦେଖିଥିଲେ । ତାହା ପୁସ୍ତକର ଶେଷ ଭାଗରେ ପରିଶିଷ୍ଟରୂପେ ସଂଲଗ୍ନ କରାଯାଇଛି । ସେସବୁ କଥା ଜାଣି ଶ୍ରୀ ଦେଶାଇ ବଡ଼ ବିସ୍ମିତ ହୋଇଥିଲେ ଏବଂ ତନ୍ନତନ୍ନ କରି ସବୁ କାଗଜପତ୍ର ଦେଖିଥିଲେ । ଦିଲ୍ଲୀରେ ତାଙ୍କ ପୁଅ ନାମରେ ଘର କିଣାଯାଇଥିବା ଅଭିଯୋଗ କଥା ଜାଣି ସେ ବିସ୍ମିତ ହୋଇଥିଲେ । ଏହି ଘଟଣାଟି ଜାଣି ଅଭିଯୋଗରେ ଆପାତ-ସତ୍ୟତା ଥିବା ସମ୍ବନ୍ଧରେ ଶ୍ରୀ ଦେଶାଇ ସନ୍ତୁଷ୍ଟ ହୋଇଥିଲେ । ଫେରୋ ଆଲୟ କର୍ପୋରେସନ (FACOR) ନନ୍ଦିନୀ ଦେବୀଙ୍କ ଖବରକାଗଜ 'ଧରିତ୍ରୀ'କୁ ବିଜ୍ଞାପନ ଛପାଇବାପାଇଁ ଚେକ୍‌ରେ ପଚାଶ ହଜାର ଟଙ୍କା ଅଗ୍ରିମ ଦେବା ବିଷୟଟି ହିସାବ ତାଲିକାରେ ଦେଖି ଶ୍ରୀ ଦେଶାଇ ହସିପକାଇଥିଲେ । ସେ କହିପକାଇଥିଲେ ଯେ ଖବରକାଗଜବାଲାମାନେ କେତେ ଦୌଡ଼ାଦୌଡ଼ି କରି ଓ ଖୋସାମତ କରି ମଧ୍ୟ ବିଜ୍ଞାପନ ପାଇପାରନ୍ତିନାହିଁ; ମାତ୍ର ଏଠାରେ ଖଣିମାଲିକ ଅଗ୍ରିମ ଟଙ୍କା ଦେଇ ବିଜ୍ଞାପନ ଛାପିବାକୁ ଦୌଡୁଛି ! ଏହା ନିଶ୍ଚୟ ଗୋଟିଏ କୌତୁକିଆ (Funny) କଥା ବୋଲି ସେ ମନ୍ତବ୍ୟ ଦେଇଥିଲେ । ଏହି କର୍ପୋରେସନ୍ ସହିତ ନନ୍ଦିନୀ ଦେବୀଙ୍କ ସଂପର୍କ ଓ ଆଚରଣ ସମ୍ବନ୍ଧରେ ବିଚାରପତି ଶ୍ରୀ ରାଜକିଶୋର ଦାସ ମନ୍ତବ୍ୟ ଦେଇଥିଲେ ଯେ ସେ ଓଡ଼ିଶା ରାଜକୋଷର ତିନି କୋଟି ଟଙ୍କା କ୍ଷତି ଘଟାଇଛନ୍ତି । ମୁଁ ସେ ବିଷୟ ପ୍ରତି ଦେଶାଇଙ୍କ ଦୃଷ୍ଟି ଆକର୍ଷଣ କରିଥିଲି । ନୀତି ନିୟମ ଲଂଘନ କରି ସାଧାରଣ ସ୍ୱାର୍ଥ ବିରୁଦ୍ଧରେ ଯାଇ ବିଦେଶକୁ କ୍ରୋମାଇଟ୍ ରପ୍ତାନିପାଇଁ ଗୋଟିଏ ପରମିଟ୍‌ର ମିଆଦ ପୂରିବାର ଛଅ ମାସ ପୂର୍ବରୁ ନନ୍ଦିନୀ ଦେବୀ ଆଉ ଦୁଇ ବର୍ଷ ପର୍ଯ୍ୟନ୍ତ FACOR କମ୍ପାନୀର ସେହି ପରମିଟ୍ ମିଆଦ କିପରି ଭାବରେ ବଢ଼ାଇଦେଇଥିଲେ ଏବଂ ତାହା ଦ୍ୱାରା କ'ଣ କ୍ଷତି ହେଲା, ସେ ବିଷୟରେ ବିଚାରପତି ଶ୍ରୀ ରାଜକିଶୋର ଦାସ ତାଙ୍କ ରିପୋର୍ଟର ୨୩, ୨୪ ଓ ୨୫ ପୃଷ୍ଠାରେ ଉଲ୍ଲେଖ କରିଛନ୍ତି । କେଉଁ ପରିସ୍ଥିତି ଓ କି ଢଙ୍ଗରେ ଏହି ଦୀର୍ଘମିଆଦ ରପ୍ତାନି ପରମିଟ୍ ଦିଆଯାଇଥିଲା ଏବଂ ଦୁଇବର୍ଷ ମଧ୍ୟରେ ଫାକର କମ୍ପାନୀ କିପରି ଅଠାନବେ ହଜାର ଟନ୍ କ୍ରୋମାଇଟ୍ ଧାତୁ ବିଦେଶକୁ ରପ୍ତାନି କରିଥିଲେ, ସେଥିରେ ବିଚାରପତି ଶ୍ରୀ ଦାସ ବିସ୍ମୟ ପ୍ରକାଶ କରିଛନ୍ତି । ଏହି କ୍ରୋମାଇଟ୍ ଧାତୁର ଉତ୍ପାଦନ ଓ ପରିବହନ ଇତ୍ୟାଦି

ବାବଦରେ ଟନ୍ ପିଛା ୩୨୦ ଟଙ୍କା ଖର୍ଚ୍ଚ ହେଉଥିଲାବେଳେ ତାହା କୁଆଡ଼େ ଟନ୍ ୪୧୭ ଟଙ୍କାରେ ବିକ୍ରୟ କରି ଫାକର କମ୍ପାନୀ ପ୍ରଭୂତ ଲାଭବାନ୍ ହୋଇଥିଲେ ବୋଲି ଉକ୍ତ ରିପୋର୍ଟରେ ଉଲ୍ଲେଖ କରାଯାଇଛି । ଗୋଟିଏ ନିର୍ଦ୍ଦିଷ୍ଟ ବିଷୟ ସମ୍ବନ୍ଧରେ ଗୋଟିଏ ଦିନରେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀ କିପରି ଦୁଇଟି ପରସ୍ପରବିରୋଧୀ ଆଦେଶ ଦେଇଥିଲେ ସେ ବିଷୟ ରିପୋର୍ଟରେ ଦର୍ଶାଯାଇଛି । ତାଙ୍କର ଏ ପ୍ରକାର ନିୟମବିରୁଦ୍ଧ କାର୍ଯ୍ୟକୁ ବିଧିସମ୍ମତ କରାଇନେବା ଉଦ୍ଦେଶ୍ୟରେ ଶ୍ରୀମତୀ ଶତପଥୀ କେନ୍ଦ୍ର ସରକାରଙ୍କୁ ଲେଖାଲେଖି କରିଥିଲେ; ମାତ୍ର କେନ୍ଦ୍ର ସରକାର ତାଙ୍କର ଅନୁରୋଧକୁ ଗ୍ରହଣ ନକରି ପୂର୍ବନିର୍ଦ୍ଧାରିତ ନୀତି ଓ ନିଷ୍ପତ୍ତିକୁ ଥରକୁ ଥର ପୁନରାବୃତ୍ତି କରିଥିଲେ । ଫାକର କମ୍ପାନୀକୁ ଦିଆଯାଇଥିବା ଅସଙ୍ଗତ ପରମିଟ୍‌କୁ ବାତିଲ କରିବାର ଆଇନସଙ୍ଗତ ସୁବିଧା ଥିଲେ ମଧ୍ୟ ଅତି ନିର୍ଲଜ୍ଜ ଭାବରେ ତାହା ଏଡ଼ାଇ ଦିଆଯାଇ ନିଃସଙ୍କୋଚରେ ଅବୈଧ ଉପାର୍ଜ୍ଜନକୁ ସୁବିଧା ଦିଆଯାଇ ରାଜକୋଷର କ୍ଷତିସାଧନ କରାଯାଇଥିଲା ବୋଲି ଅନୁସନ୍ଧାନକାରୀ ବିଚାରପତି ମନ୍ତବ୍ୟ ଦେଇଛନ୍ତି । ଏହି ରହସ୍ୟମୟ ବ୍ୟାପାରକୁ ସୁସ୍ପଷ୍ଟ କରିବାରେ ସହାୟକ ହେବାପାଇଁ ଏବଂ ଜରୁରୀକାଳୀନ ପରିସ୍ଥିତି ଘୋଷିତ ହେବାର ଅବ୍ୟବହିତ ପୂର୍ବରୁ ଓ ପରେ ଆମ ରାଜ୍ୟର ଉଚ୍ଚ ପ୍ରଶାସନିକ କ୍ଷେତ୍ରରେ ଅନାୟାସରେ ଅବୈଧ ଅର୍ଥ ଉପାର୍ଜ୍ଜନ କରିବା ଭଳି ଦୁର୍ନୀତିପୂର୍ଣ୍ଣ ଫାନ୍ଦକୁ ନିର୍ଭୀକ ଓ ନିଃସଙ୍କୋଚ ଭାବରେ କିପରି ପ୍ରୟୋଗ କରାଯାଉଥିଲା ତାହା ଜାଣିବାପାଇଁ ବିଚାରପତିଙ୍କ ମନ୍ତବ୍ୟରୁ ନିମ୍ନରେ କେତେକ ପ୍ରାସଙ୍ଗିକ ଅଂଶ ଉଦ୍ଧାର କରାଯାଉଛି ।

"The grant of long term export permit for a period of two years by the then Chief Minister Smt. Nandini Satpathy to a private concern like the Ferro Alloys Corporation Ltd. on the face of it amounts to gross irregularity, abuse of office and breach of the policy laid down by the Central Government which clearly directed that all export transaction of chrome ore are to be carried on only by public sectors."xxx

"The Chief Minister though accepted the aforesaid decision of the Central Government on 15.7.74, the same day she in a separate file directed to grant a long term export permission to FACOR for a period of two years. As seen above shortly after resumption of office Smt. Satpathy as Chief Minister granted to FACOR first an extension on 20.5.74 for the period ending on 31.12.74 and for a second time a long term permit for two years from 1.1.75 to 31.12.76."xxx

"To her D.O. letters to Secretary to Government of India, the reply was merely a confirmation of the policy previously laid down by the Central Government. In view of this position and repeated adherence of the Central Government to the policy already laid down, it was open to the State Government even to give three months notice and terminate the permit as envisaged in a caluse of the long term agreement dated 30.12.74, but no such step was taken"xxx

"There was no ostensible ground why the Chief Minister allowed a long term export permit for a period of two years to a private firm like FACOR in clear violation of the guideline and policy laid down by the Government of India and accepted by the State Government. There is nothing on record to justify such a hasty step while the subject was still under scrutiny. By doing

so she had also made a departure from the policy she herself professed to accept that public sectors only should be entitled to export permit. In any event there was no justification to order a long term extension on 15.7.74 for a period of two years even long before the expiry of the existing permit which was due to expire on 31.12.74."xxx

"That as a result of this grant of long term export permit Ferro Alloys Corporation has obtained, according to official estimate, an approximate profit of rupees three crores. Thus, by granting the long term export permit for which there was no justification and which was in contravention of the clear cut policy laid down by the Cental Government and the State Government the then Chief Minister Smt. Nandini Satpathy obtained financial advantage for FACOR, a private firm to the tune of about three crores and correspondingly there was a loss of three crores to the public. Prima facie, grant of such long term export permit may not appear to be above board."

ଆଉ ଗୋଟିଏ କାରବାରରେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀ କିପରି ସରକାରଙ୍କୁ କ୍ଷତିଗ୍ରସ୍ତ କରାଇଥିଲେ ସେ ବିଷୟଟି ମଧ ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇଙ୍କ ଦୃଷ୍ଟିକୁ ଅଣାଯାଇଥିଲା । ରାଜ୍ୟ ସରକାରଙ୍କର ତଥା ରାଜ୍ୟ ସରକାରଙ୍କର ସଂପର୍କ ଥିବା ଓଡ଼ିଶା ରୋଡ୍ ଟ୍ରାନ୍ସପୋର୍ଟ ସଂସ୍ଥାଭଳି ସବୁ ପରିବହନ ସଂସ୍ଥାଗୁଡ଼ିକରେ ବହୁସଂଖ୍ୟକ ବସ୍ ଓ ଟ୍ରକ୍ ଚଳାଚଳ ହୁଏ । ସେସବୁ ଗାଡ଼ିଗୁଡ଼ିକର ଟାୟାର ପୁରୁଣା ହୋଇ ଘୋରିହୋଇଗଲେ ସେଗୁଡ଼ିକ ରିଟ୍ରେଡିଂ (Retreading) କରାଯାଇ ପୁଣି ଗାଡ଼ିରେ ବ୍ୟବହାର କରାଯାଏ । ପୂର୍ବରୁ ଏହି କାର୍ଯ୍ୟ ବିଭିନ୍ନ ସ୍ଥାନରେ ବିଭିନ୍ନ କମ୍ପାନୀମାନେ କରୁଥିଲେ । କୌଣସି ମତଲବ ରଖି ଏହି କାର୍ଯ୍ୟକୁ କେନ୍ଦ୍ରୀଭୂତ କରିବାକୁ ଉଦ୍ୟମ ହୋଇଥିଲା । ଏହି ଟାୟାର ରିଟ୍ରେଡିଂ କାର୍ଯ୍ୟ କରିବାପାଇଁ କେତେଗୁଡ଼ିଏ କମ୍ପାନୀ ଆବେଦନ କରିଥିଲେ । ତାହା ଭିତରେ କେତେକ ପୁରୁଣା କମ୍ପାନୀ ଥିଲେ, ଯେଉଁମାନେ ଟାୟାର ଗୋଟିକୁ ଦୁଇଶହ ଟଙ୍କା ଭିତରେ ରିଟ୍ରେଡିଂ କରିଦେଉଥିଲେ । କଟକର M/S Rubber Craft କମ୍ପାନୀ ପରିବହନ ଖର୍ଚ୍ଚସହ ଟାୟାର ଗୋଟିକୁ ୨୩୭ ଟଙ୍କାରେ ରିଟ୍ରେଡିଂ କରିବାପାଇଁ ପ୍ରସ୍ତୁତ ଥିଲାବେଳେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କର ସଂପର୍କଥିବା M/S Rosambi Pvt. Ltd. କମ୍ପାନୀଙ୍କ ସହିତ ଟାୟାର ଗୋଟିକୁ ୨୬୯ ଟଙ୍କା ଦରରେ ରିଟ୍ରେଡିଂ କରିବାପାଇଁ ସରକାରଙ୍କ ସହିତ ଚୁକ୍ତି ହୋଇଥିଲା । ଆହୁରି ରହସ୍ୟଜନକ ବିଷୟ ହେଲା ଯେ ସେହି M/S Rosambi Pvt. Ltd. ଟାୟାର ଗୋଟିକୁ ୨୫୦ ଟଙ୍କା ଦରରେ O.R.T.C. କମ୍ପାନୀକୁ ରେଟ୍ ଦେଇଥିବାବେଳେ ତାହାଠାରୁ ଅଧିକ ରେଟ୍‌ରେ ତାହା ସହିତ ଚୁକ୍ତି କରିବାପାଇଁ ସଂପୃକ୍ତ ଅଫିସର୍‌ମାନଙ୍କୁ ବାଧ୍ୟକରାଯାଇଥିଲା । ଅତିରିକ୍ତ ଚିଫ୍ ସେକ୍ରେଟେରୀ ଏହି ସଂପୃକ୍ତ ଫାଇଲ୍‌ରେ ଲେଖିଥିଲେ, "Failure to comply with the instruction may result in disciplinary action." ଏହି ଏକଚାଟିଆ କାରବାରଟି କିପରି ରହସ୍ୟଜନକ ଏବଂ ଏହାଦ୍ୱାରା ସରକାରଙ୍କୁ କ୍ଷତି କରାଇ ନନ୍ଦିନୀ ଦେବୀଙ୍କ ସାନ ପୁଅ ଓ ବଡ଼ ବୋହୂ କିପରି ଲାଭବାନ୍ ହୋଇଥିଲେ, ସେ ସମ୍ବନ୍ଧରେ ବିଚାରପତି ଶ୍ରୀ ରାଜକିଶୋର ଦାସ ତାଙ୍କ ତଦନ୍ତ ରିପୋର୍ଟରେ ଲେଖିଥିଲେ :

"It is thus clear that the Government, Government Organisation and Government Corporations had to pay Rosambi at a rate much higher than the prevailing market rate and even at a rate higher than the rate at which Rosambi Ltd. had earlier agreed with Orissa Road Transport Corporation to retread their tyre. .

Acceptance of rate contract with Rosambi Ltd. at rate appreciably higher than the prevailing market rate resulted at considerable loss to the Government, Government agencies and Government corporations of Orissa as they were left with no option to go to the open market in view of the directive issued by the Additional Chief Secretary which stated that failure to comply with the instruction may result in disciplinary action.

As noticed earlier Rosambi Private Ltd. is a concern solely of the family of the ex-Chief Minister Smt. Nandini Satpathy. Her son Tathagat Satpathy and her daughter-in-law Mrs. Pami Satpathy (who is the wife of her other son Sree Nachiketa Satpathy) are the only two share-holders and Directors of Rosambi Pvt. Ltd. Initial Finance, as noticed earlier also came from the sources of Smt. Nandini Satpathy and her husband Sri Debendra Satpathy. Rate contract matter was dealt with by some of the Departments which was the portfolio of Smt. Nandini Satpathy while she was holding the office of the Chief Minister during the period in question. As noticed earlier the special rate contract resulted in yielding the substantial amount by way of income to the said firm from Government sources. A higher rate contract as resulted in financial gain in the nature of pecuniary advantage derived by the private company owned by the son and daughter-in-law of the ex-Chief Minister and loss to the Government and Governmental agencies."xxx

"Therefore, my findings on the available evidence would be that prima facie there are materials to hold that Smt. Nandini Satpathy as Chief Minister had shown undue favour to M/s Rosambi Pvt. Ltd. of which her son Sri Tathagat Satpathy and her daughter-in-law Smt. Pami Satpathy were the only shareholders and that M/s Rosambi Pvt. Ltd. had obtained undue pecuniary advantage from agencies connected with the Government and agencies who were bound by orders of Government."

## କଂଗ୍ରେସ ମାମଲା ପାଇଁ 'ଜନତା'ର ଅବଦାନ

ବିଚାରପତି ଶ୍ରୀ ରାଜକିଶୋର ଦାସଙ୍କଦ୍ୱାରା ଉପସ୍ଥାପିତ ତଥ୍ୟ ତାଙ୍କର ସିଦ୍ଧାନ୍ତ ଅନୁସାରେ ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାର ଦାୟିତ୍ୱ ପଡ଼ିଥିଲା ଜନତା ସରକାର ଉପରେ । ଯେଉଁସବୁ ଅଭିଯୋଗ ଓ ତଥ୍ୟଗୁଡ଼ିକ ବିଚାରପତି ଶ୍ରୀ ଦାସ ଅନୁଧ୍ୟାନ କରିଥିଲେ ସେ ପ୍ରତ୍ୟେକଟି ଉପରେ ଗୋଟିଏ ଗୋଟିଏ ପୃଥକ୍ ମାମଲା ଦାଏର କରାଯାଇପାରିଥାଆନ୍ତା । ମାତ୍ର ତାହା ନକରି ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ଥିବା ସମୟରେ କ୍ଷମତାର ଅପବ୍ୟବହାର କରି ଦୁର୍ନୀତିର ଆଶ୍ରୟ ନେଇ ତାଙ୍କର ନ୍ୟାଯ୍ୟ ଆୟ ଏବଂ ସଂପତ୍ତିଠାରୁ ଅଧିକ ଅର୍ଥ ଓ ସଂପତ୍ତି ଠୁଳ କରିଛନ୍ତି ବୋଲି (disproportionate asset) ଅଭିଯୋଗ କରି ଦୁର୍ନୀତି ନିବାରଣ ଆଇନ (Prevention of Corruption Act) ଓ ଅନ୍ୟାନ୍ୟ ପ୍ରାସଙ୍ଗିକ ଆଇନ ଅନୁସାରେ ଗୋଟିଏ ମକଦ୍ଦମା ରୁଜୁକରାଯାଇଥିଲା । ଏହି ମକଦ୍ଦମା ବିଚାର ହେଲା ବେଳେ ଅନ୍ୟାନ୍ୟ ବହୁ ଦୁର୍ନୀତିମୂଳକ କାର୍ଯ୍ୟର ବିଷୟବସ୍ତୁ ଅଦାଲତର ପରିସର ଭିତରକୁ ଆସିଯିବ ବୋଲି ଜଣାଯାଇଥିଲା । କଂଗ୍ରେସ ସରକାର ଯେଉଁସବୁ ମକଦ୍ଦମା ତାଙ୍କ ନାମରେ ଆଗରୁ କରିଥିଲେ ସେସବୁକୁ ଅଦାଲତରେ ଚଳାଇବାର ଦାୟିତ୍ୱ ଜନତା ସରକାରଙ୍କର ଓକିଲ ଓ

ଅଫିସରମାନଙ୍କ ଉପରେ ପଡ଼ିଥିଲା । ରାଜ୍ୟ କଂଗ୍ରେସ ପକ୍ଷରୁ ଗୋଟିଏ ସ୍ମରଣିକା ପ୍ରକାଶ କରିବା ପାଇଁ ଯେଉଁ ଦେଢ଼ ଲକ୍ଷ ଟଙ୍କା ଆଦାୟ ହୋଇଥିଲା ସେଥିରେ ସ୍ମରଣିକା ପ୍ରକାଶ ନକରି ସେ ଟଙ୍କାକୁ ନନ୍ଦିନୀ ଦେବୀ ଆତ୍ମସାତ୍ କରିଥିଲେ ବୋଲି ଅଭିଯୋଗ କରି ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ପ୍ରଦେଶ କଂଗ୍ରେସର ତତ୍କାଳୀନ ସଂପାଦକ ଓ ପାର୍ଲିଆମେଣ୍ଟ ସଦସ୍ୟ ଶ୍ରୀ ଶ୍ୟାମସୁନ୍ଦର ମହାପାତ୍ର ଦୁର୍ନୀତି ନିବାରଣ ବିଭାଗ ଥାନାରେ ଲିଖିତ ଏତାଲା ଜନତା ସରକାର ଅମଳରେ ଦେଇଥିଲେ । ତେଣୁ ପୁଲିସ କର୍ତ୍ତୃପକ୍ଷ ତା'ର ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନ କରିବାକୁ ବାଧ୍ୟହୋଇଥିଲେ । ଶ୍ରୀ ମହାପାତ୍ର ସେତେବେଳେ ତାଙ୍କ ଗୋଷ୍ଠୀରେ ଥିବା ବିନାୟକ ଆଚାର୍ଯ୍ୟ ଓ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସହିତ ପରାମର୍ଶ କରି ଉକ୍ତ ଏତାଲା ଦେଇଥିଲେ ବୋଲି କେତେକ କହୁଥିଲେ ।

ରାଜ୍ୟ ସରକାର ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କର ରାଜନୈତିକ ଜୀବନକୁ କଳଙ୍କିତ କରିବା ଉଦ୍ଦେଶ୍ୟରେ ଗୋଟିଏ କାଳ୍ପନିକ ଡାଏରୀକୁ ତାଙ୍କର ପୁଅର ବୋଲି କହି ତାଙ୍କ ଚରିତ୍ର ସଂହାର କରୁଛନ୍ତି ବୋଲି ଶ୍ରୀମତୀ ଶତପଥୀ ଦିଲ୍ଲୀରେ ଗୋଟିଏ ସାମ୍ବାଦିକ ସମ୍ମିଳନୀ କରି ଯାହା କହିଥିଲେ, ସେ ବିଷୟରେ ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇ ମୋତେ ପଚାରିଥିଲେ । ସେହି ଡାଏରୀ ଆଇନ ଅନୁସାରେ ତାହା କଟକ ଜିଲ୍ଲା ଜଜ୍ଙ୍କ କୋର୍ଟରେ ସଂପୃକ୍ତ ତଦନ୍ତକାରୀ କର୍ତ୍ତୃପକ୍ଷ ଦାଖଲ କରିଥିଲେ ବୋଲି ମୁଁ ଜଣାଇଥିଲି । ଶ୍ରୀମତୀ ଶତପଥୀଙ୍କ ପୁଅଙ୍କ ରହିବା ଘର ଖାନତଲାସ ହେଲାବେଳେ ତାହା ଜବଦ କରାଯାଇଥିଲା । ଏକଥା ଠିକ୍ ଯେ ସେହି ଦୈନିକ ଡାଏରୀକୁ ବାହାରେ ପ୍ରକାଶ କରିବାର କୌଣସି ଆବଶ୍ୟକତା ପଡ଼ିନଥାନ୍ତା । ନନ୍ଦିନୀ ଦେବୀଙ୍କ ପୁଅ ଶ୍ରୀ ତଥାଗତ ଶତପଥୀ ବେଆଇନ ଭାବରେ ନିଷିଦ୍ଧ ଗୁଳି ଓ ଆଗ୍ନେୟାସ୍ତ୍ର ରଖିଥିବା ଅଭିଯୋଗରେ ତାଙ୍କ ବିରୁଦ୍ଧରେ ଯେଉଁ ଫୌଜଦାରୀ ମକଦ୍ଦମା ହୋଇଥିଲା ସେହି ମକଦ୍ଦମାରେ ଜଜ୍‌କୋର୍ଟରେ ତାଙ୍କର ଜାମିନି ଆବେଦନ ଆଲୋଚନା କଲାବେଳେ ଶ୍ରୀ ଶତପଥୀଙ୍କ ଓକିଲ ଯୁକ୍ତି ଦର୍ଶାଇଥିଲେ ଯେ ଶ୍ରୀ ତଥାଗତ ଶତପଥୀ ଜଣେ ଶାନ୍ତ, ଶିଷ୍ଟ, ସାଧୁ ପ୍ରକୃତିର ଯୁବକ ଏବଂ ସେ ପଣ୍ଡିଚେରୀ ଆଶ୍ରମରେ ନୈତିକତା ସମ୍ବନ୍ଧରେ ବହୁ ଶିକ୍ଷା ଅର୍ଜନ କରିଥିଲେ । ଏହି ପରିପ୍ରେକ୍ଷୀରେ ସରକାରୀ ଓକିଲ ତଥାଗତଙ୍କ ଡାଏରୀରେ ଲିଖିତ ବିଷୟବସ୍ତୁକୁ କୋର୍ଟରେ ଦାଖଲ କରିବା ଅତ୍ୟନ୍ତ ପ୍ରାସଙ୍ଗିକ ହୋଇପଡ଼ିଥିଲା । ଡାଏରୀ କୋର୍ଟରେ ଦାଖଲ ହୋଇଥିବାରୁ ତାହା ସାଧାରଣ ସଂପତ୍ତି ହୋଇଯାଇଥିଲା ଏବଂ ତା'ର ସବୁ ବିଷୟବସ୍ତୁ ଖବରକାଗଜମାନଙ୍କରେ ପ୍ରକାଶିତ ହୋଇଥିଲା । ନନ୍ଦିନୀ ଦେବୀଙ୍କ ଉପରେ ହୋଇଥିବା ମକଦ୍ଦମାଗୁଡ଼ିକ ପ୍ରତ୍ୟାହାର କରିନେବାପାଇଁ ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇଙ୍କ ଉପରେ ବହୁତ ଚାପ ଦିଆଯାଇଥିଲା । ରାଜ୍ୟପାଳ ଶ୍ରୀ ଭଗବତ ଦୟାଲ୍ ଶର୍ମାଙ୍କ ଜରିଆରେ ଶ୍ରୀ ଦେଶାଇ ସବୁ କଥା ବୁଝିଥିଲେ । ସବୁ କଥା ଜାଣିବା ପରେ ସେଥିରେ ସେ ହସ୍ତକ୍ଷେପ କରିବେନାହିଁ ବୋଲି କହିଦେଇଥିଲେ । ପ୍ରଧାନମନ୍ତ୍ରୀ ଦେଶାଇ ଭୁବନେଶ୍ୱର ଆସିଥିବା ସମୟରେ ସାମ୍ବାଦିକମାନେ ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ହୋଇଥିବା ମକଦ୍ଦମାଗୁଡ଼ିକ ପ୍ରତ୍ୟାହାର କରିନେବାପାଇଁ ସେ ରାଜ୍ୟ ସରକାରଙ୍କୁ ପରାମର୍ଶ ଦେଇଛନ୍ତି କି ବୋଲି ପଚାରିବାରୁ ସେ କହିଥିଲେ, "Law will take its own course" । ଏହି ଥର ଭୁବନେଶ୍ୱର ରାଜଭବନରେ ତାଙ୍କର ରହଣି ସମୟରେ ଶ୍ରୀ ଦେଶାଇ ରାଜ୍ୟପାଳଙ୍କଠାରୁ ନନ୍ଦିନୀ ଦେବୀଙ୍କ ସମ୍ବନ୍ଧରେ କେତେକ କଥା ପଚାରି ବୁଝିଥିଲେ ବୋଲି ମୁଁ ରାଜ୍ୟପାଳଙ୍କଠାରୁ ଜାଣିବାକୁ ପାଇଥିଲି । ରାଜ୍ୟପାଳ ଶ୍ରୀ ଶର୍ମାଙ୍କ ଧାରଣା ନନ୍ଦିନୀ ଦେବୀଙ୍କ ଉପରେ ଭଲନଥିଲା । ଜରୁରୀକାଳୀନ ପରିସ୍ଥିତିରେ ଅଟକବନ୍ଦୀ କରି ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଭଳି ସ୍ୱାଧୀନତା-ସଂଗ୍ରାମର ଜଣେ ଅଗ୍ରଣୀ ବୟୋଜ୍ୟେଷ୍ଠ ଓ ଋଷିପ୍ରତିମ ସର୍ବୋଦୟ ନେତାଙ୍କ ପ୍ରତି ନନ୍ଦିନୀ ଦେବୀଙ୍କ ଗୋଚରରେ ତାଙ୍କ ସରକାର ଯେଉଁ ତାଚ୍ଛଲ୍ୟ ବ୍ୟବହାର ପ୍ରଦର୍ଶନ କରିଥିଲେ, ନବବାବୁଙ୍କଠାରୁ ତାହା ଜାଣି ଶ୍ରୀ ଶର୍ମା ଅତ୍ୟନ୍ତ କ୍ଷୁବ୍ଧ ହୋଇଥିଲେ ବୋଲି ମୋତେ କହିଥିଲେ । ବାରିପଦା ଜେଲ୍‌ରେ ଗୋଟିଏ ଅସ୍ୱାସ୍ଥ୍ୟକର କୋଠରି ମଧ୍ୟରେ ରଖାଯାଇ ତାଙ୍କୁ

ଯେପରି ହତସତ କରାଯାଇଥିଲା, ସେଥିରେ ସେ ସାଂଘାତିକ ରୋଗରେ ଆକ୍ରାନ୍ତ ହୋଇଥିଲେ । ପରବର୍ତ୍ତୀ କାଳରେ ତାଙ୍କ ସ୍ୱାସ୍ଥ୍ୟ ଅବନତିର ତାହାହିଁ ମୁଖ୍ୟ କାରଣ ବୋଲି ଜଣାଯାଇଥିଲା ।

## ନନ୍ଦିନୀଙ୍କ ଘରତୋଳା ରହସ୍ୟ

୧୯୮୦ ମସିହାରେ ଜନତା ସରକାର ରାଜ୍ୟ ଶାସନରୁ ବହିଷ୍କୃତ ହେବାର ଠିକ୍ ପରେ ଭୁବନେଶ୍ୱର ମାନ୍ୟବର ସ୍ପେଶାଲ୍ ଜଜ୍ ଶ୍ରୀ ବି.ଏନ୍. ମିଶ୍ର କଂଗ୍ରେସ ସରକାରଙ୍କ ଅମଳରେ ରୁଜୁ ହୋଇଥିବା ନନ୍ଦିନୀ ଦେବୀଙ୍କର ଘରତୋଳା ମକଦ୍ଦମାର ରାୟ ଦେଇ ତାଙ୍କୁ ଖଲାସକରିଦେଇଥିଲେ । ଅଭିଯୋଗ ଥିଲା ଯେ ମୁଖ୍ୟମନ୍ତ୍ରୀ ଥାଇ ସରକାରୀ କ୍ଷମତାର ଅପବ୍ୟବହାର କରି ତାଙ୍କ ଆୟର ବହିର୍ଭୂତ ତିନି ଲକ୍ଷ ବତିଶ ହଜାର ଟଙ୍କା ମୂଲ୍ୟରେ ଗୋଟିଏ ବିରାଟ ଘର ଭୁବନେଶ୍ୱରରେ ତୋଳିଥିଲେ । ତିନି ଲକ୍ଷ ବତିଶ ହଜାର ଟଙ୍କା ଘରର ମୂଲ୍ୟ ବୋଲି ପ୍ରମାଣିତ ହେଲା ଏବଂ ତାହା ବିଚାରପତି ଗ୍ରହଣ କରିଥିଲେ । ଜଣେ ଏକ୍‌ଜିକ୍ୟୁଟିଭ ଇଞ୍ଜିନିୟର ଏବଂ ସବ୍ ଆସିଷ୍ଟାଣ୍ଟ ଇଞ୍ଜିନିୟର ଓ ଓଭରସିୟର ପ୍ରଭୃତି ପାଞ୍ଚ ଜଣ ସରକାରୀ ଅଫିସର୍ କୋଡ଼ିଏ ମାସ କାଳ ସେହି ଘରତୋଳା କାର୍ଯ୍ୟରେ ଲାଗିଥିଲେ ବୋଲି ମଧ୍ୟ ପ୍ରମାଣିତ ହୋଇଥିଲା । ସେମାନେ ସେଠାରେ କାମକରୁଥିଲେ ବୋଲି ମଧ୍ୟ ବିଚାରପତି ଗ୍ରହଣ କରିଥିଲେ । ସରକାରୀ ଯାନବାହନ ଓ ଯନ୍ତ୍ରପାତି ଆସି ସେହି ଘରତୋଳା କାର୍ଯ୍ୟରେ ବ୍ୟବହୃତ ହୋଇଥିଲା ବୋଲି ପ୍ରମାଣିତ ହୋଇଥିଲା । ତା’ ବ୍ୟତୀତ ସରକାରଙ୍କର ପୂର୍ତ୍ତ ବିଭାଗର ଠିକାଦାରମାନେ ମଧ୍ୟ ନନ୍ଦିନୀ ଦେବୀଙ୍କ ଘରତୋଳା କାମରେ ଲାଗିଥିବା କଥା ସତ୍ୟ ବୋଲି ପ୍ରମାଣିତ ହୋଇଥିଲା । ସେ ଘରେ ଲାଗିଥିବା ଜିନିଷପତ୍ର ସରକାରୀ ଅଫିସରମାନେ ଦସ୍ତଖତ କରି ରଖିଥିବା ବିଷୟରେ ପ୍ରମାଣ ମିଳିଥିଲା । କିନ୍ତୁ ନନ୍ଦିନୀ ଦେବୀଙ୍କ ଜ୍ଞାତସାରରେ ଏହା ହୋଇଥିବ ବୋଲି ବିଚାରପତିଙ୍କର ହୃଦ୍‌ବୋଧ ହେଲାନାହିଁ । ଯେଉଁ ଅଫିସରମାନେ ସେ ଘରତୋଳା କାର୍ଯ୍ୟରେ କୋଡ଼ିଏ ମାସ କାଳ ଲାଗିଥିଲେ, ସେମାନେ ମଝିରେ ମଝିରେ ନନ୍ଦିନୀ ଦେବୀଙ୍କଠାରୁ ଟେଲିଫୋନ୍‌ରେ ନିର୍ଦ୍ଦେଶ ପାଇବା କଥା ସାକ୍ଷ୍ୟ ଦେଇଥିଲେ । ମାତ୍ର ଜଜ୍ ଟେଲିଫୋନ୍ ରେକର୍ଡ଼ ଖୋଜିଥିଲେ । ସ୍ପେଶାଲ୍ ଜଜ୍ ତାଙ୍କ ରାୟରେ କହିଛନ୍ତି, "If really there was any such direction issued by the accused over phone, this could have been proved by producing documents from the Telephone Department." କେବଳ ଯେ ଟ୍ରଙ୍କ୍‌କଲ୍‌ର ରେକର୍ଡ ରହେ ଏବଂ ଲୋକାଲ୍ କଲ୍‌ର ରେକର୍ଡ ରହେନାହିଁ, ସେ କଥା ଜଜ୍ ଗ୍ରହଣ କଲେନାହିଁ । ଭୁବନେଶ୍ୱରରେ ଗୋଟିଏ ଫୋନ୍‌ରୁ ଆଉ ଗୋଟିଏ ନମ୍ବରକୁ ଫୋନ୍‌କଲେ ଲେଜର ଖାତାରେ ରେକର୍ଡ଼ ରହେନାହିଁ । ଏକାବେଳକେ କୋଡ଼ିଏ ମାସକାଳ ପାଞ୍ଚ ଜଣ ସରକାରୀ ଇଞ୍ଜିନିୟର ଓ ଓଭରସିୟର ତାଙ୍କର ଘରତୋଳା କାର୍ଯ୍ୟରେ ଲାଗିଥିଲେ; କିନ୍ତୁ ସେ ବିଷୟରେ ମୁଖ୍ୟମନ୍ତ୍ରୀ ଅଜଣା ରହିଲେ । ଯେଉଁ ଏକ୍‌ଜିକ୍ୟୁଟିଭ ଇଞ୍ଜିନିୟର ଓ ଅନ୍ୟାନ୍ୟ ଅଫିସର୍‌ମାନେ ଘରତୋଳା କାର୍ଯ୍ୟରେ ଲାଗିଥିଲେ ସେ ବାବଦରେ ସରକାର ତେପନ ହଜାର ଟଙ୍କା ସୁପରଭିଜନ ଚାର୍ଜ ପାଇବାର କଥା, କିନ୍ତୁ ତାହା ସରକାର ପାଇନଥିଲେ । ତେପନ ହଜାର ପରିବର୍ତ୍ତେ ତାହା ସଇଁତିରିଶ ହଜାର ହେବ ବୋଲି ଜଜ୍ କହିଥିଲେ । ଏହି ସଇଁତିରିଶ ହଜାର ଟଙ୍କାର ଫାଇଦା ସେହି ଘରତୋଳା ବାବଦରେ ହୋଇଛି ବୋଲି ଜଜ୍ ସ୍ୱୀକାର କରିଥିଲେ । ମାତ୍ର ଜଜ୍ ତାଙ୍କ ରାୟରେ କହିଲେ, "There is no cogent evidence on record to prove beyond doubt that the accused was aware of the supervision of the construction of her building by the Government engineers." ତେଣୁ ସୁପରଭିଜନ ଚାର୍ଜ ବାବଦରେ ସରକାରଙ୍କୁ କିଛି ମିଳିନଥିଲା । ଏହା ଗୋଟିଏ ବିକୃତ ରାୟ ବୋଲି ମୋତେ ସେତେବେଳକାର କେନ୍ଦ୍ରମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ କହି ସେ ରାୟ ବିରୁଦ୍ଧରେ ନିଶ୍ଚୟ ହାଇକୋର୍ଟରେ ଅପିଲ

ହେବ ବୋଲି କହିଥିଲେ । ରାଜ୍ୟ ସରକାରଙ୍କର ଆଇନ ବିଭାଗ ଏ ରାୟ ବିରୁଦ୍ଧରେ ଅପିଲ କରିବା ପାଇଁ ଦୃଢ଼ମତ ଦେଇଥିଲେ । ମାତ୍ର ଶେଷରେ ହାଇକୋର୍ଟରେ ଅପିଲ ଦାୟର ହେଲାନାହିଁ । ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ହୋଇଥିବା ଅନ୍ୟାନ୍ୟ ମକଦ୍ଦମାଗୁଡ଼ିକ ଏକପ୍ରକାର ବିଚାର ସ୍ତରକୁ ଆସିଯାଇଥିଲା । କଂଗ୍ରେସ ସ୍ମରଣିକା ପାଣ୍ଠି ଆତ୍ମସାତ୍ ସଂପର୍କୀୟ ମକଦ୍ଦମାରେ ନନ୍ଦିନୀ ଦେବୀଙ୍କ ପକ୍ଷରୁ ବମ୍ବେର ବିଖ୍ୟାତ ବାରିଷ୍ଟର ଶ୍ରୀ ଜେଠମାଲାନୀ ଆସି ଲଢ଼ିଥିଲେ । ତଥାପି ସେଥିରେ କୋର୍ଟ ଚାର୍ଜ ଫ୍ରେମ୍ କରି ବିଚାର ଆରମ୍ଭ କରିଥିଲେ । ଅନ୍ୟ ମକଦ୍ଦମାଗୁଡ଼ିକ ମଧ୍ୟ ବିଚାର ସ୍ତରକୁ ଆସିଯାଇଥିଲା । ଏହିସବୁ ମକଦ୍ଦମାଗୁଡ଼ିକ ଆମ ସରକାର ଭଲଭାବରେ ଚଳାଉନଥିଲେ ବୋଲି ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ମୋ ପାଖରେ ମତ ବ୍ୟକ୍ତ କରୁଥିଲେ । ସେ ମୁଖ୍ୟମନ୍ତ୍ରୀ ହେବା ପରେ ମୋତେ କହିଥିଲେ ଯେ ମକଦ୍ଦମାଗୁଡ଼ିକ ଠିକ୍‌ଭାବରେ ଚାଲିବ ଏବଂ ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ଚାଲିଥିବା ମକଦ୍ଦମାଗୁଡ଼ିକ କଦାପି ପ୍ରତ୍ୟାହୃତ ହେବନାହିଁ ।

ଏହାପରେ ଜଣାଯାଇଥିଲା ଯେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ଥିବା ମକଦ୍ଦମାଗୁଡ଼ିକ ପ୍ରତ୍ୟାହାର କରିନେବାପାଇଁ ଆଦେଶ ଦେଇଥିଲେ । ମକଦ୍ଦମାଗୁଡ଼ିକ ପ୍ରତ୍ୟାହାର କରିନେବା ସମ୍ବନ୍ଧରେ ଯେତେବେଳେ ସରକାରୀ ସ୍ତରରେ ମସୁଧା ଚାଲିଥାଏ, ଠିକ୍ ସେହି ସମୟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ, ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କ ନିର୍ଦ୍ଦେଶରେ ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ଥିବା ମକଦ୍ଦମାଗୁଡ଼ିକ କୁଆଡ଼େ ପ୍ରତ୍ୟାହାର କରୁଛନ୍ତି ବୋଲି ୧୯୮୦ ମସିହା ଜୁଲାଇ ଓ ଡିସେମ୍ବର ମାସରେ 'ସମାଜ' ଖବରକାଗଜରେ ଦୁଇଟି ସମ୍ବାଦ ପ୍ରକାଶ ପାଇଥିଲା ।

## କଂଗ୍ରେସ ସରକାରଦ୍ୱାରା ମକଦ୍ଦମା ପ୍ରତ୍ୟାହାର

ଗୁରୁତର ଦୁର୍ନୀତି ଅଭିଯୋଗଥିବା ଏହିସବୁ ମକଦ୍ଦମାଗୁଡ଼ିକୁ ପ୍ରତ୍ୟାହାର କରିନେବା ଦିଗରେ ପ୍ରଧାନମନ୍ତ୍ରୀ ହସ୍ତକ୍ଷେପ କରୁଥିବା କଥା ଅଭିଯୋଗ କରି ତତ୍କାଳୀନ ପାର୍ଲିଆମେଣ୍ଟ ସଦସ୍ୟ ଶ୍ରୀ ପତିତପାବନ ପ୍ରଧାନ ଶ୍ରୀମତୀ ଗାନ୍ଧୀଙ୍କୁ ୧୯୮୦ ମସିହା ଅଗଷ୍ଟ ଓ ଡିସେମ୍ବର ମାସରେ ଦୁଇ ଖଣ୍ଡ ଚିଠି ଲେଖିଥିଲେ । ତାଙ୍କର ଅଗଷ୍ଟ ମାସ ନ'ତାରିଖ ଚିଠିରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କୁ ସେ ଲେଖିଥିଲେ, "Recently it has been published in the 'SAMAJ', a local daily dated 25-7-80 that Smt. Satpathy met you and represented to you about two other pending criminal cases against her and you have disapproved of the continuance of these in the Court and it is being given out by her that you have asked the Chief Minister to see that the cases are withdrawn." xxx

"It would be a patent abuse of authority, grave miscarriage of justice, negation of rule of law and subversion of basic democratic principles if a case like this is withdrawn by the State Govt. and that on the intervention of the Prime Minister of the country, as reported in the Press and as is being given out by Smt. Satpathy. The impression is that a political leader can manoeuvre the Party in power and get away and escape punishment for commission of heinous and grave offences and can even escape trial for such offences. The statement attributed to you, the Prime Minister of India, in the publication of 'Samaj' newspaper referred to above and partly successful manoeuvre of Smt. Satpathy in stopping appeal from the order of acquittal (in the case against her under Prevention of Corruption Act

relating to construction of her house) to the High Court in disregard of expert legal advice and the imminent withdrawal of the other criminal cases pending against her in the Courts is shaking the confidence of the common man in the Government, Rule of Law and in political leaders and political parties. This is a serious matter of grave consequence to which we invite your kind at tention." (Extracts from the letter in the Paper Book filed by appellant Mahammed Mumtaz in the Supreme Court, S.L.P. Cr. No. 2585 of 1981) ଶ୍ରୀମତୀ ଗାନ୍ଧୀ ୧୯୮୦ ମସିହା ସେପ୍‌ଟେମ୍ବର ମାସ ବାର ତାରିଖରେ ଶ୍ରୀ ପ୍ରଧାନଙ୍କୁ ଯେଉଁ ଉତ୍ତର ଦେଇଥିଲେ ସେଥିରେ ମକଦ୍ଦମାଗୁଡ଼ିକର ପ୍ରତ୍ୟାହାର ବିଷୟରେ ସେ ହସ୍ତକ୍ଷେପ କରୁଛନ୍ତି କି ନାହିଁ ସେ ବିଷୟରେ କିଛି ନକହି କେବଳ ଲେଖିଥିଲେ, "This matter concerns the State Government. They should decide whether they should proceed with the case or not after taking competent legal advice." ଶ୍ରୀ ପତିତପାବନ ପ୍ରଧାନ ୧୯୮୦ ମସିହା ଡିସେମ୍ବର ଚବିଶ ତାରିଖରେ ଶ୍ରୀମତୀ ଗାନ୍ଧୀଙ୍କୁ ପୁଣି ଲେଖିଥିଲେ, "Now once again the Prime Minister's intervention for pressurising the State Government to withdraw the last pending criminal case against Smt. Satpathy is alleged in the said newspaper the 'Samaj' in its issue dated the 3rd December 1980. According to this publication it is alleged that in spite of the Orissa Chief Minister Sri J.B. Patnaik's reluctance to withdraw the case and against his request to you to come to a decision only after yourself studying the merits of the case, you gave the hint to the Chief Minister to withdraw the case. The Chief Minister is reported to have said that in the relating to the question of the withdrawal of this case under the provisions of Curruption Act, against Smt. Satpathy, he will act according to the desire of the Prime Minister.

ଶ୍ରୀମତୀ ଗାନ୍ଧୀଙ୍କୁ ପାର୍ଲିଆମେଣ୍ଟ ସଦସ୍ୟ ଶ୍ରୀ ପ୍ରଧାନ ଯେଉଁ ଚିଠି ଲେଖିଥିଲେ ତା'ର ଉଦ୍ଦେଶ୍ୟ ଥିଲା ଯେ କଂଗ୍ରେସ ତଥା ଜନତା ସରକାରଙ୍କ ଅମଳରେ ଯେଉଁ ଦୁର୍ନୀତି ଅଭିଯୋଗର ମକଦ୍ଦମା ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ଆରମ୍ଭ କରାଯାଇଥିଲା ଏବଂ ଯାହାକୁ ଅଦାଲତରେ ଚଳାଇବାର ଦାୟିତ୍ୱ ରାଜ୍ୟ ଜନତା ସରକାର ଉପରେ ପଡ଼ିଥିଲା, ସେଗୁଡ଼ିକରେ ଅତି ସାଂଘାତିକ ଦୁର୍ନୀତି ଅଭିଯୋଗଥିବା ହେତୁ ତାହା ନିର୍ବିଘ୍ନରେ ଅଦାଲତରେ ବିଚାରହେବାକୁ ଦିଆଯାଉ ଏବଂ ତାଙ୍କୁ ଘୋଡ଼ାଇରଖି ଉଡ଼ାଇଦେବା ପାଇଁ ଉଦ୍ୟମ ନହେଉ । ସେଥିପ୍ରତି ପ୍ରଧାନମନ୍ତ୍ରୀ ଦୃଷ୍ଟି ଦେବାକୁ ସେ ଆଶା କରିଥିଲେ । ମାତ୍ର ପ୍ରଧାନମନ୍ତ୍ରୀ ଗୁରୁତର ଦୁର୍ନୀତି ଅଭିଯୋଗର ପ୍ରକାଶ୍ୟ ବିଚାରପାଇଁ ଶ୍ରୀ ପ୍ରଧାନଙ୍କ ନୀତିଗତ ଦାବି ସଂର୍ପକରେ ସ୍ପଷ୍ଟ ମତ ବ୍ୟକ୍ତ ନକରି ତାଙ୍କର ନୈତିକ ଦାୟିତ୍ୱ ଏଡ଼ାଇଦେବା ଭଳି ଉତ୍ତର ଦେବାରୁ ଶ୍ରୀ ପ୍ରଧାନ ତାଙ୍କର ସେହି ଡିସେମ୍ବର ମାସ ଚିଠିରେ ନନ୍ଦିନୀ ଦେବୀ କି ପ୍ରକାର ନଗ୍ନ ଦୁର୍ନୀତିମୂଳକ ଅଭିଯୋଗରେ ଅଭିଯୁକ୍ତ ତାହାର ଗୋଟିଏ ମୋଟାମୋଟି ଚିତ୍ର ପ୍ରଧାନମନ୍ତ୍ରୀଙ୍କୁ ଦେଇ ଶେଷରେ ତାଙ୍କୁ ଅନୁରୋଧ କରିଥିଲେ, "Without going into details, let me place only very simple fact for your appreciation. Smt. Nandni Satpathy, before she became the Chief Minister of Orissa in 1972, had furnished a property statement to you as the Prime Minister where she had shown her assets and pecuniary resources at about Rs. 26,000/- (Rupees twenty-six thousand only). This statement was seized from the Prime Minister's Secretariat in course of investigation by the Vigilance Police. You can even now verify this from your office. The Vigilance investigation now

discloses that by 29-2-76, Smt. Satpathy was in possession of assets and pecuniary resources amounting to about Rupees thirteen lakhs (Rs. 13 lakhs). Is it not a very glaring case of patent corruption that invites your personal probe ? As you know, pettey Government servants like clerks, inspectors, B.D.Os. and Tahasildars are being prosecuted for possession of assets of few thousands dispropotionate to their known sources of income. Should we have two standards, one for the politically powerful persons and the other for ordinary folks ?"

ଶ୍ରୀ ପତିତପାବନ ପ୍ରଧାନ ଅନ୍ୟାନ୍ୟ ଯେତେ କଥା ତାଙ୍କ ଚିଠିରେ ପ୍ରଧାନମନ୍ତ୍ରୀଙ୍କୁ ଲେଖିଥିଲେ ସେ ସମ୍ବନ୍ଧରେ ନୀରବ ରହି ଶ୍ରୀମତୀ ଗାନ୍ଧୀ ୧୯୮୧ ମସିହା ଜାନୁୟାରୀ ଦଶ ତାରିଖରେ ଶ୍ରୀ ପ୍ରଧାନଙ୍କୁ ଲେଖିଥିଲେ, "As I wrote to you earlier, it is for the Orissa Government to decide about proceeding with the cases. There is no question of my intervention either for or against the withdrawal of cases. ପ୍ରଧାନମନ୍ତ୍ରୀଙ୍କ ହସ୍ତକ୍ଷେପ ଫଳରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ହୋଇଥିବା ମକଦ୍ଦମାଗୁଡ଼ିକ ପ୍ରତ୍ୟାହାର କରିନେଇଛନ୍ତି ବୋଲି ଖବରକାଗଜରେ ବାରମ୍ବାର ପ୍ରକାଶ ପାଇଥିଲେ ମଧ୍ୟ ତା'ର ପ୍ରତିବାଦ କେହି କରିନଥିଲେ । ଶ୍ରୀମତୀ ଗାନ୍ଧୀ ପରିଷ୍କାର ଭାବରେ କିଛି କହିବାକୁ ଚାହିଁ ନଥିଲେ; ତେଣୁ ଅସଲ ପ୍ରଶ୍ନର ଉତ୍ତର ନ ଦେଇ କଥାଟାକୁ ଏଡ଼ାଇଦେବାପାଇଁ ଉଦ୍ୟମ କରିଥିଲେ । ଆମ ରାଜ୍ୟର ଜଣେ ପୂର୍ବତନ ମନ୍ତ୍ରୀ ଡକ୍ଟର ଯୋଗେଶଚନ୍ଦ୍ର ରାଉତ ମୋର ଓ ଜାନକୀବାବୁ ଉଭୟଙ୍କର ବନ୍ଧୁ । ଯୋଗେଶବାବୁଙ୍କ ପାଖରେ ମୁଁ କଥାପ୍ରସଙ୍ଗରେ କହିଥିଲି ଯେ ଜାନକୀବାବୁ ନିଜେ ମକଦ୍ଦମାଗୁଡ଼ିକ ପ୍ରତ୍ୟାହାର କରିବାପାଇଁ ଆଦେଶଦେଲେ; ମାତ୍ର ପୂର୍ବରୁ ଓଲଟି ମୋ ପାଖରେ ଅଭିଯୋଗ କରୁଥିଲେ ଯେ ଜନତା ସରକାର ନନ୍ଦିନୀ ଦେବୀଙ୍କ ପ୍ରତି କୋହଳ ମନୋଭାବ ଦେଖାଇ ତାଙ୍କ ବିରୁଦ୍ଧରେ ହୋଇଥିବା ମକଦ୍ଦମାଗୁଡ଼ିକ ଭଲଭାବରେ ତଦବିର ନକରି ତାଙ୍କୁ ଏକପ୍ରକାର ସାହାଯ୍ୟକଲେ । ଯୋଗେଶବାବୁ ମୋର କହିବା କଥାଟିକୁ ଜାନକୀବାବୁଙ୍କୁ କହିଥିଲେ । ମୋତେ ଏଭଳି କଥା କହିଥିବା ବିଷୟ କୁଆଡ଼େ ଜାନକୀବାବୁ ଯୋଗେଶବାବୁଙ୍କ ପାଖରେ ସ୍ୱୀକାର କରିଥିଲେ ଏବଂ ମକଦ୍ଦମାଗୁଡ଼ିକ ପ୍ରତ୍ୟାହାର କରିବାପାଇଁ ସେ ନିଜେ ଆଦେଶ ଦେଇଥିଲେ ବୋଲି ସ୍ୱୀକାର କରିଥିଲେ ।

ଏହି ପରିପ୍ରେକ୍ଷୀରେ ନନ୍ଦିନୀ ଦେବୀଙ୍କ ପକ୍ଷରୁ ତାଙ୍କର ଓକିଲ ଆଡ୍‌ଭୋକେଟ ଜେନେରାଲ ଶ୍ରୀ ଗୋବିନ୍ଦ ଦାସଙ୍କ ପାଖରେ ଆବେଦନ କରିଥିଲେ ଯେ ଜନତା ସରକାର ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ଯେଉଁ ଷଡ଼ଯନ୍ତ୍ରମୂଳକ ମିଥ୍ୟା ଫୌଜଦାରୀ ମକଦ୍ଦମାଗୁଡ଼ିକ କରିଛନ୍ତି ତାହା ପ୍ରତ୍ୟାହାର କରାଯାଉ । ନନ୍ଦିନୀ ଦେବୀ ନିଜେ ମଧ୍ୟ କଂଗ୍ରେସ ସ୍ମରଣିକା ପାଣ୍ଠିର ଆତ୍ମସାତ୍ ସମ୍ବନ୍ଧୀୟ ମକଦ୍ଦମା ପ୍ରତ୍ୟାହାର ସଂପର୍କରେ ଆଡ୍‌ଭୋକେଟ୍ ଜେନେରାଲଙ୍କଠାରେ ମୌଖିକ ଆବେଦନ ଟେଲିଫୋନ୍ ମାଧ୍ୟମରେ କରିଥିଲେ ବୋଲି ସରକାରୀ ନଥିରେ ଉଲ୍ଲେଖ ଅଛି । ସଂପୃକ୍ତ ନଥିରେ ୧୯୮୦ ମସିହା ଡିସେମ୍ବର ମାସ ୪ ତାରିଖରେ ମୁଖ୍ୟମନ୍ତ୍ରୀ ମକଦ୍ଦମା ପ୍ରତ୍ୟାହୃତ ହୋଇପାରେ– "May be withdrawn" ବୋଲି ଆଦେଶ ଦେଇଥିଲେ । ସୁପ୍ରିମ୍ କୋର୍ଟରେ ଉପସ୍ଥାପିତ ହୋଇଥିବା ସରକାରୀ ନଥିରୁ ଜଣାଯାଏ ଯେ ସେହି ଦିନକ ମଧ୍ୟରେ ମକଦ୍ଦମାର ପ୍ରତ୍ୟାହାର ସମ୍ବନ୍ଧୀୟ ପ୍ରସ୍ତାବ ମୁଖ୍ୟମନ୍ତ୍ରୀଙ୍କ ଏତାଦୃଶ ଅନୁମୋଦନ ପାଇ ଆହୁରି ଚାରିଗୋଟି ସରକାରୀ ସିରସ୍ତା ଅତିକ୍ରମ କରି ଅଦାଲତଙ୍କ ଆଦେଶପାଇଁ ଭୁବନେଶ୍ୱର ଅତିରିକ୍ତ ଜଜ୍‌ଙ୍କ ଇଜଲାସରେ ପହଞ୍ଚିଯାଇଥିଲା ଏବଂ ମକଦ୍ଦମା ପ୍ରତ୍ୟାହାର କରିନେବାର ସରକାରୀ ଅଭିଳାଷ କଥା ଅଦାଲତରେ ବ୍ୟକ୍ତ କରାଯାଇଥିଲା । ମାନ୍ୟବର ଅତିରିକ୍ତ ଜଜ୍ ଡିସେମ୍ବର ୨୦ ତାରିଖରେ ମକଦ୍ଦମା ପ୍ରତ୍ୟାହୃତ ହେବାପାଇଁ ସମ୍ମତି ଦେଇଥିଲେ ।

ମକଦ୍ଦମା ପ୍ରତ୍ୟାହାର କରିବାର ଆବେଦନକୁ ଗ୍ରହଣକରି ମାନ୍ୟବର ଅତିରିକ୍ତ ଜଜ୍ କେ.ଏମ୍. ସୁବୁଦ୍ଧି ଯେଉଁ କାରଣ ଦର୍ଶାଇଥିଲେ ସେଥିରୁ ଅନେକାଂଶ ପ୍ରଶାସନ ସହିତ ଜଡ଼ିତ ସାଧାରଣ ସ୍ୱାର୍ଥ ଓ ନ୍ୟାୟ ବିଚାର ଦୃଷ୍ଟିରୁ ଅତ୍ୟନ୍ତ ଅଯୌକ୍ତିକ ବୋଲି ବାଦୀଙ୍କୁ ମନେହେଲା । ଦୁର୍ନୀତି ଅଭିଯୋଗ ସମ୍ବଳିତ ମକଦ୍ଦମାକୁ ପ୍ରତ୍ୟାହାର କରିନେବାପାଇଁ ଆବେଦନର ଯଥାର୍ଥତା ପ୍ରତିପାଦନ କରିବାକୁ ଯାଇ ମାନ୍ୟବର ଅତିରିକ୍ତ ଜଜ୍ ଉଲ୍ଲେଖ କରିଥିଲେ ଯେ ଶ୍ରୀମତୀ ଶତପଥୀଙ୍କ ବିରୁଦ୍ଧରେ ନ୍ୟାୟ ଆୟ ତୁଳନାରେ ଅତ୍ୟଧିକ ସମ୍ପତ୍ତି ଠୁଳ କରିଥିବା ଅଭିଯୋଗକୁ ପ୍ରମାଣ କରିବା ଏକ ଅତି କଷ୍ଟକର ବ୍ୟାପାର ଏବଂ ସେଥିପାଇଁ ବିପୁଳ ସାକ୍ଷ୍ୟ ପ୍ରମାଣ ଓ ଆୟାସସାଧ ଉଦ୍ୟମ ଆବଶ୍ୟକ ପଡ଼ିବ । ମକଦ୍ଦମାର ବିଚାରପାଇଁ ନିଶ୍ଚୟ ବହୁକାଳ ଲାଗିବ ଏବଂ ଅଭିଯୁକ୍ତ ବ୍ୟକ୍ତିଙ୍କ ରାଜନୈତିକ ଜୀବନର ୧୦ ବର୍ଷ ସଂପର୍କରେ ସାକ୍ଷ୍ୟ ପ୍ରମାଣ ଓ ବହୁସଂଖ୍ୟକ ସାକ୍ଷୀଙ୍କ କଥା ବିଚାରକୁ ଆସିବ । କିନ୍ତୁ ସେସବୁ କଥା ଯାହା ହେଉନା କାହିଁକି, ଏହି ଦୁର୍ନୀତି ଅଭିଯୋଗସମ୍ବଳିତ ମକଦ୍ଦମା ପ୍ରତ୍ୟାହୃତ ହୋଇଗଲେ ସାଧାରଣ ସ୍ୱାର୍ଥ କୌଣସି ଦୃଷ୍ଟିରୁ ବ୍ୟାହତ ହେବନାହିଁ ବୋଲି ଉଲ୍ଲେଖ କରି ସେହି ରାୟ ଭିତରେ ମାନ୍ୟବର ଅତିରିକ୍ତ ଜଜ୍ ଏକଥା ମଧ୍ୟ ଉଲ୍ଲେଖ କରିଥିଲେ ଯେ ଅପର ପକ୍ଷେ ଯଦି ଏହି ଦୁର୍ନୀତି ଅଭିଯୋଗ ପ୍ରମାଣିତ ହୁଏ, ତେବେ ଆସାମୀ ତାଙ୍କ ଧନ ଓ କ୍ଷମତା ମୋହରେ ଲିପ୍ତ କାର୍ଯ୍ୟକଳାପପାଇଁ ଦଣ୍ଡିତ ହୋଇପାରନ୍ତି । ମାତ୍ର ତାଙ୍କ ମତରେ ତାହା ମଧ୍ୟ ସାଧାରଣ ସ୍ୱାର୍ଥରକ୍ଷା ପାଇଁ ଅବା ସାଧାରଣଙ୍କ ମନରେ ଆସ୍ଥା-ପ୍ରତିଷ୍ଠାପାଇଁ କୌଣସି ରୂପେ ସହାୟକ ହେବନାହିଁ । ଏହା ଥିଲା ଜଜ୍‌ଙ୍କ ଉକ୍ତିର ସାରମର୍ମ । ବିଷୟଟି ଯଥୋଚିତ ଭାବରେ ଉପଲବ୍ଧି କରିବାପାଇଁ ପ୍ରକୃତରେ ଜଜ୍‌ଙ୍କ ଉକ୍ତି ଯାହା ଥିଲା ସେଥିରୁ କେତେକାଂଶ ଅବିକଳ ନିମ୍ନରେ ଉଦ୍ଧାର କରାଗଲା ।

"So far as other reasons are concerned undoubtedly it is a very difficult task to prove a case of disproportionate of asset by collecting volumenous evidence and taking much pains in proving the case. Certainly the case will prolong for a considerable period when there are more than 350 witnesses in the case and it requires evidence for the last 10 years. But be the case as it may, by withdrawal from the prosecution itself does on way affect the public interest." x x x "But here the case is against a particular individual who has acted in different capacity as central Minister and Chief Minister of a State for a period of half a decede and during that period she amassed some money. There may be lot of suggestions to explain the allegations. If on the other hand, it is proved to be a fact, she may be punished for her own act of indulgency by running after money and power. But that would no way affect any public interest or improve any public confidence. Considering all these circumstances if the public prosecutor most judiciously thought it proper to withdraw from the case, in my opinion, the court should not be a stumbling block by disallowing its consent. I feel it just and proper to allow the petition."

ଅତିରିକ୍ତ ଜଜ୍‌ଙ୍କ ଏହି ଆଦେଶ ବିରୁଦ୍ଧରେ ସମ୍ବଲପୁରର ଜଣେ ଯୁବକ ଆଡ୍‌ଭୋକେଟ ମହମ୍ମଦ ମମତାଜ ଓଡ଼ିଶା ହାଇକୋର୍ଟରେ ଆବେଦନ କରିଥିଲେ । ମାନ୍ୟବର ହାଇକୋର୍ଟ ତାହା ବରଖାସ୍ତ କରିବାରୁ ତାହା ବିରୁଦ୍ଧରେ ତାଙ୍କ ପକ୍ଷରୁ ମାନ୍ୟବର ସୁପ୍ରିମ୍ କୋର୍ଟରେ ଅପିଲ କରାଯାଇଥିଲା ଏବଂ ତାହା ସେତେବେଳେଯାଏ ବିଚାରାଧୀନ ଥିଲା । ତେଣୁ ସେ ସମ୍ବନ୍ଧରେ ମତାମତ ଦେବା ସମୀଚୀନ ନଥିଲା ।

## ବିଜୁ ଇନ୍ଦିରା ଗାନ୍ଧୀଙ୍କୁ ବଳିପଡ଼ିଲେ

ଶ୍ରୀମତୀ ନନ୍ଦିନୀ ଶତପଥୀ କଂଗ୍ରେସ ଦଳ ତ୍ୟାଗକଲା ପରେ ପ୍ରଥମେ ଶ୍ରୀ ଜଗଜ୍ଜୀବନ ରାମଙ୍କ ସି.ଏଫ୍.ଡି. ଦଳରେ ଯୋଗଦେଇ ଶେଷରେ ଜନତା ଦଳରେ ସାମିଲ୍ ହୋଇଥିଲେ ମଧ୍ୟ ଜରୁରୀକାଳୀନ ଅବସ୍ଥାରେ ତାଙ୍କର କାର୍ଯ୍ୟକଳାପପାଇଁ ଓଡ଼ିଶାରେ ଜନତା ଦଳ ତାଙ୍କୁ କୌଣସି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦେବାକୁ ରାଜିହୋଇନଥିଲେ । ପ୍ରଥମେ ବିଧାନସଭାକୁ ସେ ଯେପରି ଜନତା ଦଳର ପ୍ରାର୍ଥୀ ମନୋନୀତ ନହେବେ ସେଥିପାଇଁ ପ୍ରବଳ ମତ ପ୍ରକାଶ ପାଇଥିଲା । ନିର୍ବାଚନ ସମୟରେ ଅନ୍ୟାନ୍ୟ ନିର୍ବାଚନମଣ୍ଡଳୀମାନଙ୍କରେ ତାଙ୍କୁ ସୁହାଉନଥିବା ଜନତା ଦଳର ପ୍ରାର୍ଥୀମାନଙ୍କୁ ହରାଇବାପାଇଁ ସେ ଉଦ୍ୟମ କରୁଥିଲେ ବୋଲି ତାଙ୍କ ବିରୁଦ୍ଧରେ ଅଭିଯୋଗ ହୋଇଥିଲା । ତାଙ୍କ ଆଚରଣରେ କ୍ଷୁବ୍ଧ ହୋଇ ଓଡ଼ିଶା ବିଧାନସଭା ଜନତା ଦଳର ୧୧୦ ଜଣ ସଭ୍ୟଙ୍କ ମଧ୍ୟରୁ ୧୦୭ ଜଣ ତାଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାପାଇଁ ଜନତା ଦଳର ସଭାପତି ଚନ୍ଦ୍ରଶେଖର ଓ ପ୍ରଧାନମନ୍ତ୍ରୀ ମୋରାରଜୀ ଦେଶାଇଙ୍କୁ ଲେଖିଥିଲେ । ଦଳର ଏତେ ଲୋକଙ୍କର ବିରୋଧକୁ କର୍ଣ୍ଣପାତ ନକରି ଶ୍ରୀ ଚନ୍ଦ୍ରଶେଖର ନନ୍ଦିନୀ ଦେବୀଙ୍କୁ ଜନତା ଦଳର ଜାତୀୟ କାର୍ଯ୍ୟକାରୀ କମିଟିରେ ସଭ୍ୟ କରିନେଇଥିଲେ । ରାଜ୍ୟ ଜନତା ଦଳର ସଭାପତି ଓ ଜନତା ବିଧାନସଭା ଦଳ ତାହାର ପ୍ରତିବାଦ ମଧ୍ୟ କରିଥିଲେ; ମାତ୍ର ତାହା ଶୁଣାଯାଇନଥିଲା । ଅବଶ୍ୟ ଜନତାଦଳ ଜାତୀୟ କାର୍ଯ୍ୟକାରୀ କମିଟିରେ ଓଡ଼ିଶାର ବିଜୁ ପଟ୍ଟନାୟକ ଓ ରବି ରାୟ ସଭ୍ୟ ଥିଲେ ଏବଂ ମୋତେ ସ୍ଥାୟୀଭାବରେ ସ୍ୱତନ୍ତ୍ର ନିମନ୍ତ୍ରିତ ସଭ୍ୟ ରଖାଯାଇଥିଲା । ଆମ ସମସ୍ତଙ୍କର ବିରୋଧସତ୍ତ୍ୱେ ଚନ୍ଦ୍ରଶେଖର ନନ୍ଦିନୀ ଦେବୀଙ୍କୁ ଜାତୀୟ କାର୍ଯ୍ୟକାରୀ କମିଟିରେ ନେଇଥିବାରୁ ତାହାର ପ୍ରତିବାଦ କରିବାପାଇଁ ବିଜୁବାବୁ, ରବିବାବୁଙ୍କ ସହିତ ପରାମର୍ଶ କରି ମୋ ସହିତ ଫୋନରେ କଥାବାର୍ତ୍ତା ହୋଇଥିଲେ । ତା'ର ପ୍ରତିବାଦସ୍ୱରୂପ ଦଳର କାର୍ଯ୍ୟକାରୀ କମିଟିର ବୈଠକ ଯେଉଁ ଦିନ ବସିବ ଆମେ ତିନି ଜଣ ସେ ବୈଠକକୁ ବର୍ଜନ କରିବୁ ଏବଂ ତାହା ଲିଖିତଭାବରେ ସଭାପତିଙ୍କୁ ଜଣାଇଦେବୁ ବୋଲି ସ୍ଥିରହୋଇଥିଲା । ସେହି ଅନୁସାରେ ଚନ୍ଦ୍ରଶେଖରଙ୍କର ଓଡ଼ିଶା ପ୍ରତି ଯେଉଁ ଆଚରଣ ତା'ର ପ୍ରତିବାଦ କରି ବୈଠକ ବର୍ଜନ କରୁଛି ବୋଲି ମୁଁ ଶ୍ରୀ ଚନ୍ଦ୍ରଶେଖରଙ୍କୁ ଲେଖିଦେଇଥିଲି ଏବଂ ବୈଠକରେ ଯୋଗଦେଇନଥିଲି । କିନ୍ତୁ ବିଜୁବାବୁ ଓ ରବିବାବୁ ମୋତେ ଏ ଆଡ଼େ ବୈଠକ ବର୍ଜନ କରିବା କଥା କହି ସେଆଡ଼େ ଯାଇ ବୈଠକରେ ଯୋଗଦେଇଥିଲେ । ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ଦୁର୍ନୀତି ଓ ଭ୍ରଷ୍ଟାଚାର ଅଭିଯୋଗରେ ଯେଉଁ ଆଇନଗତ କାର୍ଯ୍ୟାନୁଷ୍ଠାନ ହେଉଥାଏ, ତାହାକୁ ରାଜ୍ୟ ଜନତା ଦଳ ଓ ବିଧାନସଭା ଜନତା ଦଳ ସଂପୂର୍ଣ୍ଣଭାବେ ସମର୍ଥନ କରୁଥିଲେ । ମୋର କାର୍ଯ୍ୟକୁ ଅନୁମୋଦନ କରି ବିଧାନସଭା ଜନତା ଦଳ ବୈଠକରେ ଗୋଟିଏ ପ୍ରସ୍ତାବ ମଧ୍ୟ ଗ୍ରହଣ କରାଯାଇଥିଲା । କେବଳ ନନ୍ଦିନୀ ଦେବୀଙ୍କପାଇଁ ଶ୍ରୀ ଚନ୍ଦ୍ରଶେଖର ମୋ ଉପରେ ଅସନ୍ତୁଷ୍ଟ ଥିଲେ ବୋଲି ମୁଁ ଜାଣିପାରିଥିଲି । ବିଜୁବାବୁଙ୍କର ଏଭଳି କପଟ ଆଚରଣର କାରଣ ଯାହା ହୋଇଥାଉ ନା କାହିଁକି, ତଦ୍ୱାରା ରାଜ୍ୟ ଜନତା ଦଳର ମତକୁ ଅବମାନନା କରାଯାଇଥିଲା । ବିଜୁଙ୍କ ଆଚରଣ ଇନ୍ଦିରାଙ୍କ ଆଚରଣକୁ ବଳିପଡ଼ିଲା ।

## ଜୟପ୍ରକାଶଜୀଙ୍କ ଅବଦାନ ଓ ଅବସାନ

୧୯୭୭ ମସିହା ଶେଷ ବେଳକୁ ଲୋକନାୟକ ଜୟପ୍ରକାଶ ନାରାୟଣ ବମ୍ବେ ଯଶଲୋକ ହସ୍‌ପିଟାଲରେ ଚିକିତ୍ସିତ ହୋଇ ଆରୋଗ୍ୟ ଲାଭ କରି ପାଟନା ଫେରିଆସିଥା'ନ୍ତି । ଦେଶର ବହୁ ବିଶିଷ୍ଟ ବ୍ୟକ୍ତି ସେତେବେଳେ ପାଟନା ଯାଇ ତାଙ୍କୁ ସାକ୍ଷାତ୍ କରୁଥିଲେ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବରେ ରାଜ୍ୟବାସୀଙ୍କ ପକ୍ଷରୁ ଜୟପ୍ରକାଶଜୀଙ୍କର ଦୀର୍ଘ ଜୀବନ କାମନା ଓ ଶୁଭେଚ୍ଛା ଜଣାଇବାପାଇଁ ମୁଁ ଓ ରାଜ୍ୟ ଜନତା ଦଳର ସଭାପତି ଶ୍ରୀ ବିଶ୍ୱନାଥ ପଣ୍ଡିତ ୧୯୭୮ ମସିହା ଜାନୁୟାରୀ ତିନି ତାରିଖରେ

ପାଟନା ଯାଇଥିଲୁ । ସେଠାରେ କଦମକୁଆଁ ଆଶ୍ରମରେ ଆମେ ତାଙ୍କୁ ସାକ୍ଷାତ୍ କଲୁ । ଆମକୁ ଦେଖି ସେ ଖୁବ୍ ଖୁସିହୋଇଥିଲେ ଏବଂ ଓଡ଼ିଶାର ତାଙ୍କର ପୁରୁଣା ବନ୍ଧୁମାନଙ୍କ ବିଷୟରେ ଆମଠାରୁ ଖବର ଅନ୍ତର ଜାଣିବାକୁ ଚାହିଁଥିଲେ । ଆମେ ତାଙ୍କ ପାଖରେ ଥିଲାବେଳେ ଜନତା ଦଳର ସଭାପତି ଶ୍ରୀ ଚନ୍ଦ୍ରଶେଖର ଓ ବିହାର ରାଜ୍ୟର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ କର୍ପୂରୀ ଠାକୁର ଆସି କଦମକୁଆଁ ଆଶ୍ରମରେ ପହଞ୍ଚିଥିଲେ । ଆମେ କଦମକୁଆଁ ଆଶ୍ରମରେ ପ୍ରାୟ ଦୁଇ ଘଣ୍ଟା ବିତାଇବା ପରେ ଜୟପ୍ରକାଶଜୀଙ୍କଠାରୁ ବିଦାୟ ନେଇ ଆସିଲୁ । ସେତେବେଳେ ସେ ଆମ ଜରିଆରେ ଓଡ଼ିଶାବାସୀଙ୍କୁ ଶୁଭେଚ୍ଛା ବାଣୀ ଜଣାଇ କହିଥିଲେ :

''ଓଡ଼ିଶା ମୁଖ୍ୟମନ୍ତ୍ରୀ ଶ୍ରୀ ନୀଳମଣି ରାଉତରାୟ ଏବଂ ମୋର ଜଣେ ପୁରାତନ ବନ୍ଧୁ ଓ ସହକର୍ମୀ ଶ୍ରୀ ବିଶ୍ୱନାଥ ପଣ୍ଡିତ ଏତେ କଷ୍ଟ ସ୍ୱୀକାର କରି ମୋତେ ଦେଖିବାପାଇଁ ଆସିଥିବାରୁ ମୁଁ ଗଭୀର ଆନନ୍ଦ ଅନୁଭବକଲି ଏବଂ ଏହା ମୋ ପକ୍ଷରେ ଏକ ସମ୍ମାନର ବିଷୟ ବୋଲି ମୁଁ ମନେକରୁଛି । ମୁଁ ଓଡ଼ିଶାକୁ ମୋର ଦ୍ୱିତୀୟ ଘର ବା ବାସସ୍ଥଳୀ ବୋଲି ସବୁବେଳେ ମନେକରେ । ମୋର କେତେକ ନିକଟତମ ବନ୍ଧୁ, ଯଥା– ନବକୃଷ୍ଣ ଚୌଧୁରୀ, ଶ୍ରୀମତୀ ମାଳତୀ ଦେବୀ ଓ ଶ୍ରୀମତୀ ରମା ଦେବୀ ଓଡ଼ିଶାର ଲୋକ । ମୁଁ ଏହି ସୁଯୋଗରେ ଓଡ଼ିଶାର ଜନସାଧାରଣଙ୍କର ସୁଖ ସମୃଦ୍ଧିପାଇଁ ମୋର ସର୍ବୋତ୍ତମ କାମନା ଓ ଶୁଭେଚ୍ଛା ଏହିମାନଙ୍କ ଜରିଆରେ ଜଣାଉଛି ।''

''ଜୟପ୍ରକାଶ ନାରାୟଣ''

ଆଉ ଥରେ ୧୯୭୯ ମସିହା ଅକ୍ଟୋବର ମାସ ନ' ତାରିଖରେ ଶ୍ରୀ ବିଜୁ ପଟ୍ଟନାୟକ ଓ ଶ୍ରୀ ପ୍ରହ୍ଲାଦ ମଲ୍ଲିକଙ୍କ ସହିତ ମୋତେ ଏକ ସ୍ୱତନ୍ତ୍ର ବିମାନରେ ପାଟନା ଯିବାକୁ ହୋଇଥିଲା । ଆମ ସାଙ୍ଗରେ ଇଣ୍ଡିଆନ୍ ଏକ୍ସପ୍ରେସର ଓଡ଼ିଶା ପ୍ରତିନିଧି ଶ୍ରୀ ଦୀକ୍ଷିତ ଥିଲେ । ସେତେବେଳକୁ ଲୋକନାୟକ ଆଉ ଇହଧାମରେ ନଥିଲେ । ଓଡ଼ିଶାବାସୀଙ୍କ ପକ୍ଷରୁ ତାଙ୍କର ମୃତଶରୀର ପ୍ରତି ଶେଷସମ୍ମାନ ପ୍ରଦର୍ଶନ କରିବା ଥିଲା ଆମ ଯାତ୍ରାର ଉଦ୍ଦେଶ୍ୟ । ତାଙ୍କ ମୃତ ଦେହକୁ ପ୍ରଣାମ ଜଣାଇ ଭୁବନେଶ୍ୱରରୁ ଯତ୍ନରେ ନେଇଥିବା ଫୁଲମାଳଟି ତାଙ୍କ ଦେହ ଉପରେ ସଜାଡ଼ି ଥୋଇଥିଲି । କି ବିରାଟ ଜନସମାବେଶ ! ମହାତ୍ମା ଗାନ୍ଧୀ ଓ ପଣ୍ଡିତ ନେହେରୁଙ୍କ ଶବଯାତ୍ରା ସହିତ ଜୟପ୍ରକାଶଜୀଙ୍କର ଶବଯାତ୍ରା ତୁଳନୀୟ ହୋଇଥିଲା । ମହାତ୍ମା ଗାନ୍ଧୀଙ୍କୁ ଛାଡ଼ିଦେଲେ ଲୋକନାୟକ ଜୟପ୍ରକାଶଙ୍କ ତ୍ୟାଗର ଆଉ ପଟାନ୍ତର ନାହିଁ । ଶେଷଥରପାଇଁ ତାଙ୍କର ଦର୍ଶନ ପାଇଥିଲି ସେହି ବର୍ଷ ଏପ୍ରିଲ ମାସରେ ବମ୍ବେର ଯଶଲୋକ ହସ୍‌ପିଟାଲରେ । ସେଠାକୁ ମୋ ସହିତ ଶ୍ରୀ ବିଶ୍ୱନାଥ ପଣ୍ଡିତ ଓ ଶ୍ରୀ ଶ୍ରୀକାନ୍ତ ଜେନା ଯାଇଥିଲେ । ସେତେବେଳେ ମଧ ସେ ସଂପୂର୍ଣ୍ଣ ସଂଜ୍ଞାହୀନ ଅବସ୍ଥାରେ ଥିଲେ । ମୋର ମନେପଡ଼େ, ମୁଁ ଜୟପ୍ରକାଶଜୀଙ୍କୁ ପ୍ରଥମେ ୧୯୩୮ ମସିହାରେ କଟକଠାରେ ଦେଖିଥିଲି । ରେଭେନ୍‌ସା କଲେଜ ପଶ୍ଚିମ ଛାତ୍ରାବାସର ତତ୍କାଳୀନ ୱାର୍ଡେନ୍ ଶ୍ରୀ ବଳଭଦ୍ର ପ୍ରସାଦଙ୍କର ଅତିଥି ହୋଇ ସେ ରହିଥାଆନ୍ତି । ଶ୍ରୀ ରାମକୃଷ୍ଣ ପତିଙ୍କ ସହ ମୁଁ ତାଙ୍କୁ ଦେଖିବାକୁ ଯାଇଥିଲି । ସେତେବେଳେ ସମାଜବାଦୀ ଚିନ୍ତାଧାରାର ସେ ଥିଲେ ପ୍ରତୀକ । ତାଙ୍କୁ ସାକ୍ଷାତ୍ କରି ଫେରିଲାବେଳେ ଶ୍ରୀ ରାମକୃଷ୍ଣ ପତି ମୋତେ କହିବାର ମନେଅଛି ଯେ ନେହେରୁଙ୍କ ପଛକୁ ଦେଶକୁ ନେତୃତ୍ୱ ଦେବାକୁ ଜୟପ୍ରକାଶ କେବଳ ସକ୍ଷମ ହେବେ । ପ୍ରକୃତରେ ତାହାହିଁ ହେଲା । ଗଣତନ୍ତ୍ର ଧ୍ୱଂସ ପାଇ ସମଗ୍ର ଦେଶକୁ ଯେତେବେଳେ ଅମା-ଅନ୍ଧକାର ଗ୍ରାସ କରିଥିଲା, ସେତେବେଳେ ଲୋକନାୟକ ଜୟପ୍ରକାଶଙ୍କ ନେତୃତ୍ୱ ହିଁ ଗଣତନ୍ତ୍ରର ପୁନରୁଦ୍ଧାର କରିଥିଲା । ଦେଶର ଶାସନ ଦାୟିତ୍ୱ ନେଲାଭଳି ଗୋଟିଏ ବିକଳ୍ପ ରାଜନୈତିକ ଦଳ କେବଳ ତାଙ୍କରି ନେତୃତ୍ୱଦ୍ୱାରା ଆମ ଦେଶରେ ସମ୍ଭବ ହୋଇଥିଲା । କିନ୍ତୁ ଆମେ ତାଙ୍କ ଆଦର୍ଶକୁ କାର୍ଯ୍ୟକାରୀ କରିବା ଦିଗରେ ଯୋଗ୍ୟ ହୋଇପାରିଲୁନାହିଁ । ଭାରତବର୍ଷର ସଂସଦୀୟ ଗଣତନ୍ତ୍ରକୁ ପୁନର୍ଜୀବିତ କରିବାପାଇଁ ଜୟପ୍ରକାଶଙ୍କ ମହାନ୍ ଅବଦାନର ଅକାଳ ଅବସାନ ନିମନ୍ତେ ଆମେ କ୍ଷମତାଲୋଭୀମାନେ ଦାୟୀ ।

# ଓଡ଼ିଶାରେ ଆମର ଅତିଥି ଶ୍ରୀମତୀ ଗାନ୍ଧୀ

୧୯୭୮ ମସିହା ଜୁନ୍ ମାସ ନ' ତାରିଖରେ ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଓଡ଼ିଶା ଆସିବା କାର୍ଯ୍ୟକ୍ରମ ସ୍ଥିରହୋଇଥିଲା । ଓଡ଼ିଶାରେ ରହଣି ସମୟରେ ତାଙ୍କର ନିରାପତ୍ତାପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ କି ପ୍ରକାର ବ୍ୟବସ୍ଥା କରାଯିବ ସେ ବିଷୟରେ ଆଲୋଚନା କରିବାପାଇଁ ରାଜ୍ୟ କଂଗ୍ରେସ (ଇ)ର ତତ୍କାଳୀନ ସଭାପତି ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ମୋ ପାଖକୁ ଆସିଥିଲେ । ଜାନକୀବାବୁଙ୍କ ଆଲୋଚନାରୁ ମୁଁ ବୁଝିପାରିଥିଲି ଯେ ଶ୍ରୀମତୀ ଗାନ୍ଧୀଙ୍କପାଇଁ ନିରାପତ୍ତା ବ୍ୟବସ୍ଥା ଅତି ବିସ୍ତୃତଭାବରେ କରାଯିବା ଆବଶ୍ୟକ । ଶ୍ରୀମତୀ ଗାନ୍ଧୀ ରାଜ୍ୟ ସରକାରଙ୍କର ଅତିଥି ହୋଇଗଲେ ତାଙ୍କପାଇଁ ଯାନବାହନ ଓ ନିରାପତ୍ତା ବ୍ୟବସ୍ଥା ଭଲଭାବରେ ହୋଇପାରିବ ବୋଲି ଭାବି ତାଙ୍କୁ ରାଜ୍ୟ ସରକାରଙ୍କ ଅତିଥି ଧରିବାପାଇଁ ମୁଁ ଇଚ୍ଛା କରିଥିଲି । କିନ୍ତୁ ଆମ ସରକାରଙ୍କର ଆତିଥ୍ୟ ଗ୍ରହଣ ସମ୍ବନ୍ଧରେ ଶ୍ରୀମତୀ ଗାନ୍ଧୀଙ୍କର ପ୍ରତିକ୍ରିୟା ମୁଁ ଜାଣିବାକୁ ଚାହିଁଥିଲି । ଜାନକୀବାବୁ ଶ୍ରୀମତୀ ଗାନ୍ଧୀଙ୍କ ସହିତ ଫୋନ୍‌ରେ କଥାବାର୍ତ୍ତା ହୋଇ ଦିନକ ପରେ ଆସି ମୋତେ ଜଣାଇଥିଲେ ଯେ ଶ୍ରୀମତୀ ଗାନ୍ଧୀ ମୋ ପ୍ରସ୍ତାବକୁ ଅତି ଆନନ୍ଦର ସହିତ ଗ୍ରହଣ କରିଥିଲେ । ତେଣୁ ତାଙ୍କୁ ସରକାରଙ୍କର ଜଣେ ସମ୍ମାନିତା ଅତିଥି ଭାବରେ ଗ୍ରହଣ କରି ତାଙ୍କର ରହଣି, ଯାତାୟାତ ଓ ନିରାପତ୍ତାପାଇଁ ବିସ୍ତୃତ ବ୍ୟବସ୍ଥା କରିବା ପାଇଁ ମୁଁ ସ୍ୱରାଷ୍ଟ୍ର ବିଭାଗର ସେକ୍ରେଟେରୀଙ୍କୁ ଲିଖିତ ଆଦେଶ ଦେଇଥିଲି । ରାଜ୍ୟ ସରକାରଙ୍କର ଗୋଟିଏ ବଡ଼ ବିଦେଶୀ ଇମ୍ପାଲା ମଟରଗାଡ଼ି ଥିଲା । ସେହି ଗାଡ଼ିଟି ପୂର୍ବରୁ ମୁଖ୍ୟମନ୍ତ୍ରୀମାନେ ବ୍ୟବହାର କରୁଥିଲେ । ମୁଁ ଗୋଟିଏ ଛୋଟିଆ ଗାଡ଼ି ବ୍ୟବହାର କରୁଥିବାରୁ ସେ ଗାଡ଼ିଟି ଅତିଥି ଭବନରେ ରହୁଥିଲା । ଶ୍ରୀମତୀ ଗାନ୍ଧୀଙ୍କ ବ୍ୟବହାରପାଇଁ ସେହି ଗାଡ଼ିଟି ଦେବାପାଇଁ ମୁଁ କହିଥିଲି । ଶ୍ରୀମତୀ ଗାନ୍ଧୀଙ୍କୁ ସରକାରୀ ଅତିଥି କରୁଛି ବୋଲି ମୁଁ ବିଜୁବାବୁଙ୍କୁ କହିଥିଲି । ବିଜୁବାବୁ ତାହା ଜାଣି ଖୁସି ହୋଇଥିଲେ ଏବଂ ଶ୍ରୀମତୀ ଗାନ୍ଧୀଙ୍କ ସହିତ ମୋର ଦେଖାହେଲେ ତାଙ୍କୁ ତାଙ୍କର ସଦିଚ୍ଛା ଜଣାଇବା ପାଇଁ କହିଥିଲେ । କିନ୍ତୁ ଜନତାଦଳ ପକ୍ଷରୁ ବିକ୍ଷୋଭ ଓ ବିପତ୍ତି ଆସିବାକ୍ଷଣି ସେ ସଂପୂର୍ଣ୍ଣ ବିପରୀତ ଆଚରଣ ଦେଖାଇଥିଲେ ।

# ଇନ୍ଦିରାଙ୍କ ଉପରେ ଆକ୍ରମଣ

ଜୁନ୍ ମାସ ନଅ ତାରିଖରେ ଶ୍ରୀମତୀ ଗାନ୍ଧୀ ଆସି ଭୁବନେଶ୍ୱରରେ ପହଞ୍ଚିଥିଲେ । ତାଙ୍କ ସାଙ୍ଗରେ ଉତ୍ତରପ୍ରଦେଶର ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ କମଳାପତି ତ୍ରିପାଠୀ ମଧ୍ୟ ଆସିଥିଲେ । କଟକରେ ସେଦିନ ବାରବାଟୀ ପଡ଼ିଆରେ ସାଧାରଣ ସଭାରେ ଶ୍ରୀମତୀ ଗାନ୍ଧୀଙ୍କର ଭାଷଣ ଦେବାର ଥାଏ । ଭୁବନେଶ୍ୱରରେ ମଧ୍ୟାହ୍ନ-ଭୋଜନ ପରେ ସେ କଟକ ଅଭିମୁଖେ ଯାତ୍ରାକରିଥିଲେ । ସକାଳେ ସେ ଯେତେବେଳେ ଭୁବନେଶ୍ୱର ବିମାନ-ବନ୍ଦରରେ ପହଞ୍ଚିଥିଲେ ଯୁବଜନତା ପକ୍ଷରୁ ଯୁବକମାନେ ବିକ୍ଷୋଭ ପ୍ରଦର୍ଶନ କରିଥିଲେ ଏବଂ ସେଠାରେ ସାମାନ୍ୟ କିଛି ଗଣ୍ଡଗୋଳ ହୋଇଥିଲା । ତେଣୁ କଟକ ଗଲାବେଳେ ତାଙ୍କ ସାଙ୍ଗରେ ସଶସ୍ତ୍ର ପୁଲିସ ମଧ୍ୟ ଯାଇଥିଲେ । ଶ୍ରୀମତୀ ଗାନ୍ଧୀଙ୍କର ଗାଡ଼ି କଟକ ସହରର ଉପକଣ୍ଠରେ ପହଞ୍ଚିବାମାତ୍ରେ ହଜାର ହଜାର ଲୋକ ରୁଣ୍ଡ ହୋଇ ବିକ୍ଷୋଭ ପ୍ରଦର୍ଶନ କରିଥିଲେ । କାଠଯୋଡ଼ି ପୋଲ ପୂର୍ବରୁ ତାଙ୍କ ଗାଡ଼ି ଉପରେ ବିକ୍ଷୋଭକାରୀମାନେ ଭୀଷଣ ଆକ୍ରମଣ କରିଥିଲେ । ଇଟା ପଥର, ଠେଙ୍ଗା ବାଡ଼ି ଓ ଶାବଳରେ ତାଙ୍କ ଗାଡ଼ି ଉପରେ ମାଡ଼ହୋଇଥିଲା । ସେ ଗାଡ଼ିଟି ଖୁବ୍ ବଡ଼ ଏବଂ ମଜଭୁତ୍ ଗାଡ଼ି ଥିବାରୁ ଶ୍ରୀମତୀ ଗାନ୍ଧୀ ଆଘାତ ନପାଇ ରକ୍ଷାପାଇଯାଇଥିଲେ । ସେ ଗାଡ଼ିର କାଚ ମଧ୍ୟ ସହଜରେ ଭାଙ୍ଗେନାହିଁ । ଗାଡ଼ିର କାଚସବୁ ଭାଙ୍ଗି ଫାଟିଯାଇଥିଲା; ମାତ୍ର ଖସି ପଡ଼ି ନଥିଲା । ତେଣୁ ବିଧାତାଙ୍କର ଅନୁଗ୍ରହରୁ ଶ୍ରୀମତୀ ଗାନ୍ଧୀ କୌଣସି ପ୍ରକାରେ ଆଘାତ ପାଇନଥିଲେ । ଇମ୍ପାଲା

ଗାଡ଼ି ଇଞ୍ଜିନ୍ ଉଚ୍ଚଶକ୍ତିସଂପନ୍ନ ଥିବାରୁ ତାହା ଜଖମ ହୋଇଥିଲେ ମଧ୍ୟ ବନ୍ଦ ହୋଇଯାଇନଥିଲା । ଗାଡ଼ିର ଡ୍ରାଇଭର ବହୁତ ସାହସ ଓ କୌଶଳରେ ବିକ୍ଷୋଭକାରୀମାନଙ୍କ କବଳରୁ ଗାଡ଼ି ପାରକରିନେଇ ଯାଇଥିଲା । ସେହିଠାରେ ଗାଡ଼ି ଧକ୍କାରେ କଟକ ଜିଲ୍ଲା ମାଜିଷ୍ଟ୍ରେଟ୍ ଶ୍ରୀ ବିନୋଦ ଝାଙ୍କ ଗୋଡ଼ ଭାଙ୍ଗିଯାଇଥିଲା । କାଠଯୋଡ଼ି ପୋଲ ଅତିକ୍ରମ କଲାମାତ୍ରେ ପ୍ରାୟ ପାଞ୍ଚ ହଜାର ବିକ୍ଷୋଭକାରୀ ରାସ୍ତା ଉପରେ ରୁଣ୍ଡ ହୋଇଥିବାର ଦେଖାଗଲା । ସେମାନଙ୍କ ମଧ୍ୟରୁ ଅନେକ ଲୋକ ରାସ୍ତା ଉପରେ ଶୋଇଯାଇ ଶ୍ରୀମତୀ ଗାନ୍ଧୀଙ୍କର ଗାଡ଼ିକୁ ଅଟକାଇଥିଲେ । ପୁଲିସ ଯେତେ ଉଦ୍ୟମ କଲେ ମଧ୍ୟ ସେମାନେ ରାସ୍ତା ଉପରୁ ଉଠିନଥିଲେ ଏବଂ ସେତିକିବେଳେ ଟେକାପଥର ମଧ୍ୟ ପଡ଼ିଲା । ପୁଲିସ ସେମାନଙ୍କ ଉପରେ ଲାଠି ଚାଳନା କରି ରାସ୍ତା ସଫା କରିବାକୁ ଉଦ୍ୟମ କଲେ । ପୁଲିସ ଲାଠିମାଡ଼ରେ ଉତ୍ତ୍ୟକ୍ତ ହୋଇ ବିକ୍ଷୋଭକାରୀମାନେ ଆହୁରି ଅଧିକ ଟେକାପଥର ବୃଷ୍ଟି କରିଥିଲେ । ତାହା ଭିତରେ ଯୁବଜନତା ଓ ଯୁବକଂଗ୍ରେସ ଲୋକଙ୍କ ମଧ୍ୟରେ ସଂଘର୍ଷ ଆରମ୍ଭ ହୋଇଯାଇଥିଲା; ଫଳରେ କେତେ ସମୟ ଧରି ସେଠାରେ ଜନତା ଓ ପୁଲିସ ମଧ୍ୟରେ ଏକପ୍ରକାର ଖଣ୍ଡପ୍ରଳୟ ଲାଗିଯାଇଥିଲା । ପୁଲିସ ବାରମ୍ବାର ଲାଠିଚାଳନା କରି ଅବସ୍ଥାକୁ ଆୟତ୍ତ କରି ଶ୍ରୀମତୀ ଗାନ୍ଧୀଙ୍କୁ ପୁଲିସ ଘେର ଭିତରେ ନେଇ ବାରବାଟୀ ଷ୍ଟାଡ଼ିୟମଠାରେ ପହଞ୍ଚାଇଥିଲେ । ଲିଂକ୍‌ରୋଡ଼ଠାରେ ଯେଉଁ ସଂଘର୍ଷ ଓ ପୁଲିସ ପକ୍ଷରୁ ଲାଠିଚାଳନା ହୋଇଥିଲା ସେଥିରେ ଜନତା ଓ କଂଗ୍ରେସ ଉଭୟ ଦଳର ଲୋକ ଆହତ ହୋଇଥିଲେ; ମାତ୍ର ଜନତା ଦଳର ଅଧିକ କର୍ମୀ ଆହତ ହୋଇଥିଲେ । ଅନେକଙ୍କୁ ରକ୍ତାକ୍ତ ଅବସ୍ଥାରେ କଟକ ମେଡ଼ିକାଲ କଲେଜ ହସ୍‌ପିଟାଲ୍‌କୁ ନିଆଯାଇଥିଲା । କେତେକଙ୍କଠାରେ ଗୁରୁତର ଆଘାତ ମଧ୍ୟ ଲାଗିଥିଲା । କଟକ ଜିଲ୍ଲା ଏସ୍.ପି. ଶ୍ରୀ ଅନାଦି ସାହୁଙ୍କ ସମେତ ବହୁ ପୁଲିସ କର୍ମଚାରୀ ଆହତ ହୋଇଥିଲେ । ଜନତା ଦଳର ଓ କଂଗ୍ରେସ ଦଳର କେତେକ ବିଧାନସଭା ସଦସ୍ୟ ଆହତ ହୋଇ ହସ୍‌ପିଟାଲ୍‌ରେ ଭର୍ତ୍ତିହୋଇଥିଲେ । ଜନତା ଦଳର ଯେଉଁ ସମର୍ଥକ ଛାତ୍ର, ଯୁବକ ଓ ଅନ୍ୟାନ୍ୟ ବ୍ୟକ୍ତିମାନେ ଆହତ ହୋଇ କଟକ ମେଡ଼ିକାଲ କଲେଜ ହସ୍‌ପିଟାଲ୍‌ରେ ଚିକିତ୍ସିତ ହେଉଥିଲେ, ସେମାନେ ସେଠାରେ ମୋ ବିରୁଦ୍ଧରେ ଆନ୍ଦୋଳନ, ଅନଶନ ଓ ଉତ୍ତେଜନା ସୃଷ୍ଟି କରିଥିଲେ । ମୋର ହସ୍‌ପିଟାଲ୍‌କୁ ଯାଇ ଆହତ ବ୍ୟକ୍ତିମାନଙ୍କୁ ଦେଖି ଆସିବାକୁ ଇଚ୍ଛାଥିଲା; ମାତ୍ର ମୁଁ ସେଠାକୁ ଗଲେ ମୋ ପ୍ରତି ଖରାପ ବ୍ୟବହାର ହେବ ବୋଲି ନିର୍ଦ୍ଦିଷ୍ଟ ଭାବରେ ଖବର ପାଇବାରୁ ମୁଁ ସେଠାକୁ ଯାଇନଥିଲି ।

## ବିଭିନ୍ନ ମହଲରେ ପ୍ରତିକ୍ରିୟା : ମୋର ଇସ୍ତଫା ଦାବି

ଏ ଘଟଣା ସଂପର୍କରେ ବିଭିନ୍ନ ମହଲରେ ବିଭିନ୍ନ ପ୍ରକାର ପ୍ରତିକ୍ରିୟା ଦେଖାଦେଇଥିଲା । ଯେଉଁ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଆମ ଦେଶରେ ଗଣତନ୍ତ୍ରକୁ ହତ୍ୟାକରିଥିଲେ, ତାଙ୍କୁ ରାଜ୍ୟ ସରକାରଙ୍କର ଅତିଥି କରି ମୁଁ ଗୋଟିଏ ବଡ଼ ଗର୍ହିତ କାର୍ଯ୍ୟ କରିଥିଲି ବୋଲି ସମ୍ବାଦପତ୍ରମାନଙ୍କରେ ବହୁ ବ୍ୟକ୍ତିଙ୍କର ବିବୃତି ପ୍ରକାଶ ପାଇଥିଲା । ଶ୍ରୀମତୀ ଗାନ୍ଧୀଙ୍କୁ ରାଜ୍ୟ ସରକାରଙ୍କର ଅତିଥି କରିବାଦ୍ୱାରା ଅତି ଉଚ୍ଚପଦସ୍ଥ ସମ୍ମାନିତ ବ୍ୟକ୍ତିଙ୍କ ପ୍ରତି ଯେପରି ସମ୍ମାନ ପ୍ରଦର୍ଶନ କରାଯାଏ, ତାଙ୍କ ପ୍ରତି ସେହିପରି ସମ୍ମାନ ପ୍ରଦର୍ଶନ କରି ମୁଁ ଗୋଟିଏ ଗୁରୁତର ଭୁଲ୍ କରିଛି ବୋଲି ସର୍ବୋଦୟ ନେତା ଶ୍ରୀ ମନମୋହନ ଚୌଧୁରୀ, ଶ୍ରୀ ମଦନମୋହନ ସାହୁ ଓ ଶ୍ରୀ ବିନୋଦ କାନୁନ୍‌ଗୋ ପ୍ରଭୃତି ଗୋଟିଏ ବିବୃତିରେ କହିଥିଲେ । ମୁଁ ଶ୍ରୀମତୀ ଗାନ୍ଧୀଙ୍କୁ ସରକାରଙ୍କର ଅତିଥି ବୋଲି ଘୋଷଣା କରି ଅଯଥା ଯେଉଁ ସମ୍ମାନ ପ୍ରଦର୍ଶନ କରିଥିଲି ଏବଂ ତାଙ୍କର ନିରାପତ୍ତାପାଇଁ ଯେପରି ବିସ୍ତୃତ ବ୍ୟବସ୍ଥା କରିଥିଲି, ତାହାଦ୍ୱାରା ଜନତା ଦଳର ନୀତି ଓ ଆଦର୍ଶ ବିରୁଦ୍ଧରେ କାର୍ଯ୍ୟ କରି ଗୋଟିଏ ଅକ୍ଷମଣୀୟ ଦୋଷ କରିଥିଲି ବୋଲି ଯୁବଜନତାର ବହୁ କର୍ମୀ ଓ ଜନତା ଦଳର କେତେକ ନେତା ଖୋଲାଖୋଲି ଭାବରେ ମୋର ସମାଲୋଚନା କରିଥିଲେ ଏବଂ ଏ ପ୍ରକାର ଦୁଷ୍କର୍ମର ପ୍ରାୟଶ୍ଚିତ୍ତସ୍ୱରୂପ ମୁଖ୍ୟମନ୍ତ୍ରୀ ପଦରୁ ମୋର ଇସ୍ତଫା ଦେବା ଆବଶ୍ୟକ ବୋଲି ସେମାନେ ଦାବି

କରିଥିଲେ । ସେହି ସମୟରେ ଅବସ୍ଥା ଏପରି ହୋଇଥିଲା ଯେ ମୋ ମନ୍ତ୍ରିମଣ୍ଡଳରେ କେତେକ ମନ୍ତ୍ରୀ ମୋର ମୁଖ୍ୟମନ୍ତ୍ରୀ ପଦରୁ ବିଦାୟ ହେବା ଆସନ୍ନ ବୋଲି ଧରିନେଇ ମୋଠାରୁ କରଛଡ଼ା ଦେଲାଭଳି ବ୍ୟବହାର କରିଥିଲେ । ଶ୍ରୀମତୀ ଗାନ୍ଧୀଙ୍କୁ ରାଜ୍ୟ ସରକାରଙ୍କର ଅତିଥି କରିବାର ନିଷ୍ପତ୍ତି କ୍ୟାବିନେଟ୍‌ରେ ପଡ଼ିବା ଉଚିତ ଥିଲାବୋଲି ସେମାନେ କହିଥିଲେ । ତେଣୁ ସେ ନିଷ୍ପତ୍ତି ଯୋଗୁଁ ଯାହା ଘଟିଥିଲା , ସେଥିପାଇଁ ସେମାନେ ଆଦୌ ଦାୟୀ ନୁହନ୍ତି ବୋଲି କହିଥିଲେ । ଜଣେ ମନ୍ତ୍ରୀ ତାଙ୍କ ସେକ୍ରେଟେରୀଙ୍କ ପାଖରେ କହିପକାଇଥିଲେ ଯେ ସେମାନେ ଆଉ ମୋ ପାଇଁ ଅପେକ୍ଷା ନକରି ଅସନ୍ତୁଷ୍ଟ ଓ କ୍ଷୁବ୍ଧ ହୋଇଥିବା ବ୍ୟକ୍ତିମାନଙ୍କ ସ୍ୱର ସହିତ ସ୍ୱର ମିଶାଇବା ପାଇଁ ବାଧ ହେବେ । ସେ ସେକ୍ରେଟେରୀଜଣକ ବଡ଼ ବ୍ୟସ୍ତ ହୋଇ ଆସି ସେକଥା ମୋତେ କହିଥିଲେ ଏବଂ ମନ୍ତ୍ରୀମାନଙ୍କ ମଧ୍ୟରେ ଏ ସମ୍ବନ୍ଧରେ ଗୋଟିଏ ବୁଝାମଣା ହେବା ଜରୁରୀ ଆବଶ୍ୟକ ପଡୁଛି ବୋଲି ମୋତେ ପରାମର୍ଶ ଦେଇଥିଲେ । କେନ୍ଦ୍ର ଇସ୍ପାତ୍ ଓ ଖଣିମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ସେହି ସମୟରେ କହିଥିଲେ, ଯେ ଶ୍ରୀମତୀ ଗାନ୍ଧୀଙ୍କୁ ରାଜ୍ୟ ସରକାରଙ୍କର ଅତିଥି କରିବା କଥାକୁ ଅନୁମୋଦନ କରି ସେ ଭୁଲ୍ କରିଛନ୍ତି । ତାଙ୍କର ସେହି କଥା ଖବରକାଗଜରେ ପ୍ରକାଶ ପାଇଯାଇଥିଲା । ବିଜୁବାବୁଙ୍କର ଏ ପ୍ରକାର ମନ୍ତବ୍ୟ ଉତ୍ତେଜନାକୁ ଆହୁରି ଉସ୍କାଇଥିଲା । ଯେଉଁ କେତେକ ମନ୍ତ୍ରୀ ମୋର ବିଦାୟ ଆସନ୍ନ ବୋଲି ମନେକରୁଥିଲେ ସେମାନେ ଏ ଅବସ୍ଥାରେ ମୋ' ପାଖକୁ ନଆସି ଲାଠିମାଡ଼ରେ ଆହତ ହୋଇଥିବା ଜନତା ଦଳର ଲୋକମାନଙ୍କ ପାଖକୁ ଦୌଡ଼ାଦୌଡ଼ି ଆରମ୍ଭ କରି ଦେଇଥିଲେ । ଯେଉଁ କେତେଜଣ ମୋ ପ୍ରତି ବିଶେଷ ଅନୁରକ୍ତ ଥିଲେ ସେମାନେ ମନସ୍ତାପରେ ରହିଥିଲେ; ସତେ ଯେପରି ଆମ ସରକାରଙ୍କ ପକ୍ଷରୁ ପ୍ରଦତ୍ତ ଆତିଥ୍ୟ ମୋ'ରି ବିପତ୍ତିକୁ ବରଣ କରି ଆଣିଥିଲା । ଆମରି ଦଳ ଭିତରେ ଅସନ୍ତୋଷ, ତେଣେ କଂଗ୍ରେସ ଦଳ ପକ୍ଷରୁ କଠୋର ସମାଲୋଚନା ସୌଜନ୍ୟ ପ୍ରଦର୍ଶନର ଏକ ବିଡ଼ମ୍ବନାମୟ ପରିଣାମ ।

ମୋର ବିଚାରଟା ଶୁଦ୍ଧ ହେଲାନାହିଁ କହି ମୋର ଅନେକ ବନ୍ଧୁ ମୋପାଇଁ ସନ୍ତାପିତ ହୋଇ ମୋର ଉଦ୍‌ବେଗ ଉପଶମ କରିବାପାଇଁ ମୋତେ ସାନ୍ତ୍ୱନା ଦେବାକୁ ଲାଗିଲେ । ଖବରକାଗଜ ଖୋଲିଲାକ୍ଷଣି ଦେଖିବାକୁ ମିଳିଥିଲା ମୋର ତଥାକଥିତ ଦୁଷ୍କର୍ମପାଇଁ ନିନ୍ଦା ଓ ତିରସ୍କାରପୂର୍ଣ୍ଣ ବିବୃତିମାନ । ଏ ପ୍ରକାର ସର୍ବତ୍ରଆଶିଆକ୍ରମଣରେ ମୁଁ ଟିକିଏ ବିଚଳିତ ହୋଇଯାଇଥିଲି । ମାତ୍ର ମୋର ବିଚାର ଭୁଲ୍‌ହୋଇଛି ବୋଲି ମୁଁ କୌଣସି ଯୁକ୍ତିକୁ ଗ୍ରହଣ କରି ନଥିଲି । ବିଷୟଟିକୁ ଭଲଭାବରେ ବୁଝାଇ ମୁଁ ନିମ୍ନୋକ୍ତ ସ୍ପଷ୍ଟୀକରଣଟି ଦେଇଥିଲି । ତାହା ଜୁନ୍ ତେର ଓ ଚଉଦ ତାରିଖରେ ସବୁ ଖବରକାଗଜରେ ପ୍ରକାଶ ପାଇଥିଲା ।

''କଂଗ୍ରେସ (ଇ) ଦଳର ସଭାପତି ତଥା ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଓଡ଼ିଶା ଗସ୍ତରେ ଆସିଥିବାବେଳେ ଓଡ଼ିଶା ସରକାର ତାଙ୍କୁ ଜଣେ ସରକାରୀ ଅତିଥି ଭାବରେ ଗ୍ରହଣ କରିବାର ସଙ୍ଗତି ସଂପର୍କରେ କେତେକ ମହଲରେ ସନ୍ଦେହ ପ୍ରକାଶପାଉଥିବାର ଦେଖାଯାଉଛି । ଶ୍ରୀମତୀ ଗାନ୍ଧୀଙ୍କୁ ସରକାରୀ ଅତିଥି ଭାବରେ ଗ୍ରହଣ କରିବା ଉଚିତ ନଥିଲା ବୋଲି ଯେଉଁମାନେ ମତ ପ୍ରକାଶ କରୁଛନ୍ତି ସେମାନଙ୍କର ଯୁକ୍ତି ହେଲା ଯେ ଶ୍ରୀମତୀ ଗାନ୍ଧୀ ଯେଉଁ ଦଳର ନେତୃତ୍ୱ ନେଇଛନ୍ତି ସେ ଦଳର ରାଜନୈତିକ ଦର୍ଶନ ଗଣତନ୍ତ୍ରବିରୋଧୀ ଅଥଚ କେନ୍ଦ୍ରରେ ଏବଂ ରାଜ୍ୟରେ ଥିବା ଜନତା ସରକାର ଗଣତାନ୍ତ୍ରିକ ମୂଲ୍ୟବୋଧକୁ ଉତ୍ସାହିତ କରିବାପାଇଁ ଇଚ୍ଛୁକ ଏବଂ ଆଗ୍ରହୀ । ଏ ସଂପର୍କରେ ମୁଁ ସ୍ପଷ୍ଟ କରିଦେବାପାଇଁ ଚାହେଁ ଯେ କୌଣସି ବ୍ୟକ୍ତିକୁ ସରକାରୀ ଅତିଥିରୂପେ ଗ୍ରହଣ କରିବା କିମ୍ବା ନକରିବା ନିଷ୍ପତ୍ତି ଉକ୍ତ ବ୍ୟକ୍ତିଙ୍କର ରାଜନୈତିକ ଆଦର୍ଶବାଦଦ୍ୱାରା ପ୍ରଭାବିତ ହେବା ଉଚିତନୁହେଁ । ଏସବୁ ଘଟଣାରେ ରାଜ୍ୟ ସରକାର ସାଧାରଣତଃ ପୂର୍ବବର୍ତ୍ତୀ ଦୃଷ୍ଟାନ୍ତମାନ ଦେଖି କାର୍ଯ୍ୟ କରିଥାଆନ୍ତି ଏବଂ ସଂପୃକ୍ତ ବ୍ୟକ୍ତିଙ୍କର ପଦମର୍ଯ୍ୟାଦା ତଥା ଖ୍ୟାତି ପ୍ରଭୃତି ବିଷୟ ବିଚାରକରିଥାଆନ୍ତି । ଯେଉଁମାନଙ୍କର ରାଜନୈତିକ ଆଦର୍ଶବାଦ ସହିତ ଆମେ ଏକମତ ନୋହୁଁ, ସେମାନଙ୍କ ପ୍ରତି ସହନଶୀଳ ହେବା ଗଣତାନ୍ତ୍ରିକ ଜୀବନର ଧାରା । ଆମ ରାଜ୍ୟରେ ପୂର୍ବରୁ ଏଭଳି ଦୃଷ୍ଟାନ୍ତ ରହିଛି । ବିଭିନ୍ନ ସମୟରେ

ବିରୋଧୀଦଳର ନେତାମାନଙ୍କୁ ସରକାରୀ ଅତିଥିରୂପେ ଗ୍ରହଣ କରାଯାଇଛି । ଚକ୍ରବର୍ତ୍ତୀ ରାଜଗୋପାଳା-ଚାରୀ ସ୍ୱତନ୍ତ୍ର ଦଳର ସମ୍ମିଳନୀରେ ସଭାପତିତ୍ୱ କରିବାପାଇଁ ଓଡ଼ିଶାକୁ ଆସିଥିବାବେଳେ ତାଙ୍କୁ ସରକାରୀ ଅତିଥିରୂପେ ଗ୍ରହଣକରିବା ଏଠାରେ ଉଲ୍ଲେଖଯୋଗ୍ୟ । ଏବେ ନିକଟରେ ମଧ୍ୟ ଶ୍ରୀ ୱାଇ.ଭି. ଚୌହାନ୍ ଓଡ଼ିଶାର ଘୂର୍ଣ୍ଣିବାତ୍ୟାବିପନ୍ନ ଅଞ୍ଚଳ ଦେଖିବାକୁ ଆସିଥିବାବେଳେ ତାଙ୍କୁ ସରକାରୀ ଅତିଥି କରା-ଯାଇଥିଲା । ଶ୍ରୀମତୀ ଗାନ୍ଧୀ ଯେଉଁ ଦଳର ସଭାପତି, ସେ ଦଳ ପାର୍ଲିଆମେଣ୍ଟ ତଥା ରାଜ୍ୟରେ ମୁଖ୍ୟ ବିରୋଧୀଦଳ । ଏହାଛଡ଼ା ସେ ଜଣେ ପୂର୍ବତନ ପ୍ରଧାନମନ୍ତ୍ରୀ । ତେଣୁ ତାଙ୍କୁ ସରକାରୀ ଅତିଥିରୂପେ ଗ୍ରହଣ କରିବାଦ୍ୱାରା ଶ୍ରେଷ୍ଠ ଗଣତାନ୍ତ୍ରିକ ପରମ୍ପରାକୁ ଅନୁମୋଦନ କରାଯାଇଥିଲା ।''

ମୋର ଏହି ବିବୃତିଟି ଜାତୀୟ ସ୍ତରରେ ସବୁ ଖବରକାଗଜମାନଙ୍କରେ ପ୍ରକାଶିତ ହୋଇଥିଲା । ବହୁ ବିଶିଷ୍ଟ ବ୍ୟକ୍ତି ମୋର ମତକୁ ସମର୍ଥନ ଜଣାଇଥିଲେ । କେତେକ ସମ୍ବାଦପତ୍ର ମଧ୍ୟ ଅନୁକୂଳ ଟିକ୍କା-ଟିପ୍ପଣୀ ଦେଇଥିଲେ ।

## ସଂପାଦକ ଦେଶମୁଖଙ୍କ ତଦାରଖ

ଭୁବନେଶ୍ୱରରେ ଶ୍ରୀମତୀ ଗାନ୍ଧୀଙ୍କୁ କେନ୍ଦ୍ରକରି ଉପୁଜିଥିବା ଘଟଣା ଦିଲ୍ଲୀରେ ଚାଞ୍ଚଲ୍ୟ ସୃଷ୍ଟି-କରିଥିଲା । ଜନତା ଦଳ ମହଲରେ ଚହଳ ପଡ଼ିଯାଇଥିଲା । ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇ ବିଦେଶ ଗସ୍ତରେ ଥିଲେ । ଜନତା ଦଳର ସଭାପତି ଚନ୍ଦ୍ରଶେଖର ଏ ଘଟଣାରେ କୁଆଡ଼େ ବିବ୍ରତ ହୋଇପଡ଼ିଥିଲେ । ଏଠାକାର ପରିସ୍ଥିତି ଓ ଘଟଣା ସମ୍ବନ୍ଧରେ ଅନୁଧ୍ୟାନ କରିବାପାଇଁ ଜନତା ଦଳର ସାଧାରଣ ସଂପାଦକ ନାନାଜୀ ଦେଶମୁଖ ଜୁନ୍ ମାସ ତେର ତାରିଖ ଦିନ ବିଜୁବାବୁଙ୍କ ସହିତ ଆସି ଭୁବନେଶ୍ୱରରେ ପହଞ୍ଚିଲେ । ସେମାନଙ୍କୁ ପାଛୋଟି ଆଣିବାପାଇଁ ମୁଁ ବିମାନବନ୍ଦରକୁ ଯାଇଥିଲି । ଶ୍ରୀ ଦେଶମୁଖଙ୍କୁ ବୁଝାଇବା ପାଇଁ ସବୁ ଘଟଣା ସମ୍ବନ୍ଧରେ ଗୋଟିଏ ବିବରଣୀ ଓ ଅନ୍ୟାନ୍ୟ କାଗଜପତ୍ର ମୁଁ ପାଖରେ ରଖିଥାଏ । ବିମାନରୁ ଓହ୍ଲାଇ ସେ ବିଜୁବାବୁଙ୍କ ସହିତ ତାଙ୍କ ବାସଭବନକୁ ଯାଇଥିଲେ । ସେଠାରେ ପହଞ୍ଚି ଶ୍ରୀ ଦେଶମୁଖ ଉପସ୍ଥିତ ଜନତା ଦଳ ବିଧାନସଭା ସଦସ୍ୟ ଓ ଜନତା ଦଳର କର୍ମୀମାନଙ୍କଠାରୁ ଜଣ ଜଣ କରି ଶ୍ରୀମତୀ ଗାନ୍ଧୀ ଭୁବନେଶ୍ୱରରେ ପହଞ୍ଚିବାଠାରୁ ଯିବା ପର୍ଯ୍ୟନ୍ତ ଯେଉଁସବୁ ଗଣ୍ଡଗୋଳ ଓ ଲାଠିଚାଳନା ପ୍ରଭୃତି ଘଟଣା ଘଟିଥିଲା, ସେସବୁର ବିବରଣୀ ସଂଗ୍ରହ କରିଥିଲେ । ମୁଁ ସେଠାରେ ଉପସ୍ଥିତ ଥାଏ; ମାତ୍ର ମୋ'ଠାରୁ ଘଟଣା ସଂପର୍କରେ କିଛି ଶୁଣିବାପାଇଁ ସେ ଚାହିଁନଥିଲେ । ରାଜ୍ୟର ମୁଖ୍ୟମନ୍ତ୍ରୀ ଯେତେବେଳେ ପାଖରେ ଥିଲେ ଘଟଣା ସମ୍ବନ୍ଧରେ ଅନ୍ତତଃ ପ୍ରଶାସନିକ ସ୍ତରର ବିବରଣୀ ତାଙ୍କ ପାଖରୁ ପ୍ରଥମେ ଜାଣିବାର କଥା; ମାତ୍ର ଶ୍ରୀ ଦେଶମୁଖ ତାହାର ଆବଶ୍ୟକତା ଅନୁଭବ କରିନଥିଲେ । ମଧ୍ୟାହ୍ନ-ଭୋଜନ ପରେ ଦେଶମୁଖ ଓ ବିଜୁବାବୁ ସଦଳବଳେ କଟକ ଅଭିମୁଖେ ଯାତ୍ରାକଲେ । ଭୁବନେଶ୍ୱର-କଟକ ରାସ୍ତାରେ ଯେଉଁଠି ଶ୍ରୀମତୀ ଗାନ୍ଧୀଙ୍କର ପଥ ଅବରୋଧ କରାଯାଇଥିଲା, ଯେଉଁଠି ଗଣ୍ଡଗୋଳ ସମୟରେ ପୁଲିସ ଲାଠି ଚଳାଇଥିଲେ ଏବଂ ଯେଉଁଠି ଜନତା ଦଳ କର୍ମୀ ଓ ଇନ୍ଦିରା କଂଗ୍ରେସ କର୍ମୀଙ୍କ ମଧ୍ୟରେ ସଂଘର୍ଷ ହୋଇଥିଲା ସେସବୁ ସ୍ଥାନ ଦେଖିଥିଲେ ଏବଂ ସେଠାର ଲୋକମାନଙ୍କୁ ଘଟଣା ସମ୍ବନ୍ଧରେ ପଚରାଉଚରା କରିଥିଲେ । ଶେଷରେ ସେମାନେ ଶ୍ରୀରାମଚନ୍ଦ୍ରଭଞ୍ଜ ମେଡ଼ିକାଲ୍ କଲେଜକୁ ଯାଇ ଚିକିତ୍ସିତ ହେଉଥିବା ଆହତ ବ୍ୟକ୍ତିମାନଙ୍କୁ ଦେଖିଥିଲେ । ଆହତ ହୋଇଥିବା ଜନତା ଦଳର କର୍ମୀ ଓ ଯୁବଜନତା ଯୁବକମାନଙ୍କଠାରୁ ଶ୍ରୀମତୀ ଗାନ୍ଧୀ ଆସିଥିବା ସମୟରେ ପୁଲିସର ଲାଠିଚାଳନା ଓ ଅନ୍ୟାନ୍ୟ ଘଟଣା ସମ୍ବନ୍ଧରେ ବିବରଣୀ ସଂଗ୍ରହ କରିଥିଲେ । ମୋ ବିରୁଦ୍ଧରେ ସେମାନେ ଅଭିଯୋଗ କରି କହିଥିଲେ ଯେ ଶ୍ରୀମତୀ ଗାନ୍ଧୀଙ୍କୁ ସରକାରୀ ଅତିଥି କରି ମୁଁ ସମସ୍ତ ଘଟଣା ଘଟାଇଥିଲି । ଶ୍ରୀମତୀ ଗାନ୍ଧୀଙ୍କର ନିରାପତ୍ତା ପାଇଁ ମୁଁ ବିଶେଷ ତତ୍ପରତା ପ୍ରଦର୍ଶନ କରି ଜନତା କର୍ମୀମାନଙ୍କର ଅବସ୍ଥା ସଂକଟାପନ୍ନ କରିଥିଲି ବୋଲି ସେମାନେ କହିଥିଲେ । କଂଗ୍ରେସ ସହିତ ମୋର ଗୂଢ଼ ସଂପର୍କ ଅଛି ବୋଲି ସେମାନେ ଶ୍ରୀ ଦେଶମୁଖଙ୍କୁ ସୂଚନା ଦେଇଥିଲେ ।

ଶ୍ରୀ ରବି ରାୟଙ୍କର ପୃଷ୍ଠପୋଷକତା ରେ ପ୍ରକାଶ ପାଉଥିବା 'ସମତା' ନାମକ ଗୋଟିଏ ମାସିକ ପତ୍ରିକାରେ ମୋର କଂଗ୍ରେସ ପ୍ରୀତି ଓ ସଂପର୍କ ସମ୍ବନ୍ଧରେ ଟିକା-ଟିପ୍ପଣୀ ବାହାରିଥିଲା । ଜିଲ୍ଲା କଲେକ୍ଟର ଓ ଏସ୍.ପି. କଂଗ୍ରେସପକ୍ଷକୁ ସୁହାଇଲା ଭଳି କାର୍ଯ୍ୟ କରି ଜନତା ଲୋକଙ୍କ ଉପରେ ନିର୍ମମ ଲାଠି ପ୍ରହାର କରିଥିଲେ ବୋଲି ସେମାନେ ଅଭିଯୋଗ କରିଥିଲେ । କଲେକ୍ଟର ଓ ଏସ୍.ପି. ଆହତ ହୋଇ ସେଇ ହସ୍‌ପିଟାଲ୍‌ରେ ଚିକିତ୍ସିତ ହେଉଥିଲେ । ଶ୍ରୀ ବିଜୁ ପଟ୍ଟନାୟକ ସେଠାରେ କଲେକ୍ଟରଙ୍କୁ ଦେଖିବାକୁ ଯାଇ ତାଙ୍କଠାରୁ ଘଟଣା ସମ୍ବନ୍ଧରେ କେତେକ କଥା ବୁଝିଥିଲେ ।

## ''...ବୁଝିବାକୁ ଖୁସିଆଲୁ''

କଟକରୁ ଫେରିବା ପରେ ଭୁବନେଶ୍ୱରସ୍ଥ ଜନତା ଦଳ ଅଫିସ୍‌ରେ ସେମାନଙ୍କର ମୋ' ସହିତ ଦେଖାହୋଇଥିଲା । ଶ୍ରୀମତୀ ଗାନ୍ଧୀଙ୍କୁ ରାଜ୍ୟ ସରକାରଙ୍କର ଅତିଥି ନକରିଥିଲେ ଏବଂ ତାଙ୍କ ନିରାପତ୍ତା ପାଇଁ ଏତେ ଉତ୍କଣ୍ଠା ଦେଖାଇନଥିଲେ ଏପ୍ରକାର ଘଟଣା ଘଟିନଥାନ୍ତା ବୋଲି ଶ୍ରୀ ଦେଶମୁଖ ମୋତେ ପରାମର୍ଶ ଦେଇଥିଲେ । ସେ ଅବସ୍ଥାରେ ଶ୍ରୀମତୀ ଗାନ୍ଧୀଙ୍କର ଜୀବନ ପ୍ରତି ବିପଦ ଆଶଙ୍କା ଥିଲା ବୋଲି ମୁଁ କହିଥିଲି । ସେଭଳି ଯଦି ମୁଁ ଭାବୁଥିଲି ତା'ହେଲେ କଟକ ଯିବାପାଇଁ ଶ୍ରୀମତୀ ଗାନ୍ଧୀଙ୍କୁ ନିଷେଧ କରାଯାଇଥିଲେ ଭଲହୋଇଥାନ୍ତା ବୋଲି ଶ୍ରୀ ଦେଶମୁଖ ଓ ଶ୍ରୀ ପଟ୍ଟନାୟକ ଯୁକ୍ତି କରିଥିଲେ । ଜିଲ୍ଲା ମାଜିଷ୍ଟ୍ରେଟ୍ ଶ୍ରୀମତୀ ଗାନ୍ଧୀଙ୍କ ଉପରେ ନିଷେଧ ଆଦେଶ ଜାରିକରିଥିଲେ ଠିକ୍ ହୋଇଥା'ନ୍ତା ବୋଲି ସେମାନେ ମତ ବ୍ୟକ୍ତ କରିଥିଲେ । ମୁଁ ସେଥିରେ ଏକମତ ହୋଇନଥିଲି ଏବଂ କହିଥିଲି ଯେ ସେଭଳି ପଦକ୍ଷେପ ନେଇଥିଲେ ଆମ ଦଳ ସଂପର୍କରେ ଦେଶରେ ତା'ର ପ୍ରତିକ୍ରିୟା ଭଲହୋଇନଥାନ୍ତା । ତା'ପରେ ସେମାନେ ପୁଲିସ କାର୍ଯ୍ୟାନୁଷ୍ଠାନ ସମ୍ବନ୍ଧରେ ଆଲୋଚନା କରିଥିଲେ । ସେମାନଙ୍କ ମତରେ, ପୁଲିସ ପକ୍ଷରୁ ଲାଠି ଚଳାଇବାର କୌଣସି ଆବଶ୍ୟକତା ନଥିଲା ଏବଂ ଜାଣିଶୁଣି ପୁଲିସ ଜନତାଦଳର ଲୋକମାନଙ୍କ ଉପରେ ଅତ୍ୟଧିକ ବଳପ୍ରୟୋଗ କରି ସେମାନଙ୍କୁ ଆହତ କରିଥିଲେ । ଜିଲ୍ଲାର ଆଇନ-ଶୃଙ୍ଖଳା ଦାୟିତ୍ୱରେ ଥିବା ଅଫିସରମାନେ ଉତ୍ତେଜିତ ପରିସ୍ଥିତି ଦେଖି ଶ୍ରୀମତୀ ଗାନ୍ଧୀଙ୍କୁ କାଠଯୋଡ଼ି ପୋଲ ପାଖରୁ ଭୁବନେଶ୍ୱର ଫେରିଆସିବା ପାଇଁ ନିର୍ଦ୍ଦେଶ ଦେବା ଉଚିତ ଥିଲା । ସେମାନଙ୍କର ସେ କର୍ତ୍ତବ୍ୟ କରିବାରେ ସେମାନେ ଅବହେଳା କରିଥିଲେ । ଜନତାଦଳର ଲୋକମାନେ ଯେପରି ଭାବରେ ଆହତ ହୋଇଛନ୍ତି ସେଥିରୁ ଜଣାପଡୁଛି ଯେପରି ଗୋଟିଏ ଚକ୍ରାନ୍ତ କରି ସେମାନଙ୍କୁ ଏପରି ଅନ୍ୟାୟଭାବରେ ମାଡ଼ଦିଆଯାଇଛି । ଏ ସମସ୍ତ ଘଟଣାରେ ସେମାନେ ଘୋର ଅସନ୍ତୋଷ ପ୍ରକାଶ କରିଥିଲେ । କଟକ ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ଏସ୍.ପି.ଙ୍କୁ ତୁରନ୍ତ ସସ୍‌ପେଣ୍ଡ କରିବାପାଇଁ ଶ୍ରୀ ଦେଶମୁଖ ମୋତେ ପରାମର୍ଶ ଦେଇଥିଲେ । ତାଙ୍କର ଏହି ପରାମର୍ଶକୁ ବିଜୁବାବୁ ମଧ୍ୟ ଅନୁମୋଦନ କରିଥିଲେ । ମୁଁ ଏ କଥା ଶୁଣି ଅତ୍ୟନ୍ତ ବିସ୍ମିତ ହୋଇଥିଲି । ମୁଁ କହିଥିଲି ଯେ ତାହା କରିବା ପୂର୍ବରୁ ଗୋଟିଏ ବିଚାରବିଭାଗୀୟ ତଦନ୍ତ କରାଇଦେବା ଉଚିତ ହେବ । ତାହା ନକରି ବିଚାରହୀନ ଭାବରେ କାର୍ଯ୍ୟକଲେ ଶାସନର ନୈତିକ ପତନ ଘଟିବ । ମୁଁ କହିଥିଲି ଯେ, ଓଡ଼ିଶା ହାଇକୋର୍ଟର ପ୍ରଧାନ ବିଚାରପତିଙ୍କୁ ଅନୁରୋଧ କରିବି ତଦନ୍ତର ଦାୟିତ୍ୱ ନେଇ ମାସକ ମଧ୍ୟରେ ରିପୋର୍ଟ ଦେବାପାଇଁ ଏବଂ ତା'ପରେ ନିଶ୍ଚୟ କାର୍ଯ୍ୟାନୁଷ୍ଠାନ କରିବି ବୋଲି ସେମାନଙ୍କୁ ପ୍ରତିଶ୍ରୁତି ଦେଇଥିଲି । ମୋ କଥା ଶୁଣି ଶ୍ରୀ ଦେଶମୁଖ ଅସନ୍ତୋଷ ପ୍ରକାଶ କରିଥିଲେ ଏବଂ କହିଥିଲେ, ''ଆପଣ ନିଜର ଏମ୍.ଏଲ୍.ଏ. ବନ୍ଧୁମାନଙ୍କ କଥାକୁ ବିଶ୍ୱାସ କରୁନାହାନ୍ତି; ମାତ୍ର ଜଣେ ହାଇକୋର୍ଟ ଜଜ୍ କହିଲେ ବିଶ୍ୱାସ କରିବେ ?'' ତାଙ୍କର କଥା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଥିଲି ଏବଂ ବୁଝିପାରିଥିଲି ଯେ ଶାସନ ସମ୍ବନ୍ଧରେ ତାଙ୍କର କୌଣସି ଅଭିଜ୍ଞତା ବା ମୌଳିକ ଜ୍ଞାନ ନଥିଲା । ତଦନ୍ତ ନକରି ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ଏସ୍.ପି.ଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ କରିବା ସମ୍ଭବ ହେବନାହିଁ ବୋଲି ମୁଁ ତାଙ୍କୁ ଅତି ନମ୍ରତାର ସହିତ କହିଥିଲି । ମୋ

କଥାରେ ସେ ଆଦୌ ସନ୍ତୁଷ୍ଟ ହୋଇନଥିଲେ । ଶ୍ରୀ ଦେଶମୁଖ ସେହିଦିନ ରାତିରେ ପୁରୀ ଏକ୍ସପ୍ରେସ ଯୋଗେ କଲିକତା ଚାଲିଯାଇଥିଲେ; ମାତ୍ର ବିଜୁବାବୁ ଭୁବନେଶ୍ୱରରେ ରହିଲେ । ଶ୍ରୀ ଦେଶମୁଖ ଯିବା ପରେ ବିଜୁବାବୁ ମୋତେ କହିଥିଲେ ଯେ ଶ୍ରୀ ଦେଶମୁଖଙ୍କର ପରାମର୍ଶ ଅନୁସାରେ ମୋର କାର୍ଯ୍ୟ କରିବା ଉଚିତ । ଶ୍ରୀ ଦେଶମୁଖ ଜଣେ ପ୍ରଭାବଶାଳୀ ସଂପାଦକ ଓ ସେ ଚାହିଁଲେ ବହୁତ କିଛି କ୍ଷତି କରିପାରିବେ । ଶ୍ରୀ ଦେଶମୁଖ ଦିଲ୍ଲୀରେ ପହଞ୍ଚିବା ପୂର୍ବରୁ ମୁଁ ଯଦି ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ଏସ୍.ପି. ଦୁଇଜଣଙ୍କୁ ସସ୍‌ପେଣ୍ଡ କରିଦେବି ତା'ହେଲେ ସେ ସନ୍ତୁଷ୍ଟ ହୋଇଯିବେ ଏବଂ ଶ୍ରୀମତୀ ଗାନ୍ଧୀଙ୍କୁ ସରକାରୀ ଅତିଥି କରିବାଦ୍ୱାରା ଯେଉଁସବୁ ଘଟଣା ଘଟିଥିଲା ସେଥିପ୍ରତି ଆଉ ସେ ଗୁରୁତ୍ୱ ଦେବେନାହିଁ । ବିଜୁବାବୁ ନିଜେ ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ଥିଲେ; ତେଣୁ ଏକଥା କରିବା କେତେ ଅସଙ୍ଗତ ସେ କଥା ବୁଝିବାପାଇଁ ମୁଁ ତାଙ୍କୁ ଅନୁରୋଧ କରିଥିଲି । ତା'ର ଉତ୍ତରରେ ସେ ମୋତେ କହିଥିଲେ, "Heaven will not fall down if two officers are placed under suspension." ତାଙ୍କର ଏ ପ୍ରକାର ଅବିଚାରିତ କଥା ଶୁଣି ମୁଁ ନୀରବ ରହିଥିଲି । ଆମର ଯେଉଁ ଯୁବ ବିଧାୟକ ବନ୍ଧୁମାନେ ପ୍ରଥମେ ଏସବୁ ଘଟଣା ନେଇ ମୋ ଉପରେ ବିମୁଖ ଥିଲେ ସେମାନେ ଶ୍ରୀ ଦେଶମୁଖଙ୍କ କଥାବାର୍ତ୍ତା ଶୁଣି ଆପେ ଆପେ ବୋଧ ହୋଇଯାଇଥିଲେ । ସେମାନେ ବୁଝିପାରିଥିଲେ ଯେ ଶାସନ ସମ୍ବନ୍ଧରେ ସେମାନଙ୍କର ଅଳ୍ପ ବୟସର ଅଭିଜ୍ଞତା ମଧ ଶ୍ରୀ ଦେଶମୁଖଙ୍କଠାରୁ ବେଶି ଏବଂ ଶାସନ ବିଷୟରେ ଶ୍ରୀ ଦେଶମୁଖ ଏକାବେଳକେ ଅନାଡ଼ି । ସେମାନେ ମୋର ଉକ୍ତିକୁ ପସନ୍ଦ କରିଥିଲେ । ପରଦିନୁ ବିଜୁବାବୁ ବଡ଼ ଉଦ୍‌ବିଗ୍ନ ମନରେ ଭୁବନେଶ୍ୱର ଛାଡ଼ି ଦିଲ୍ଲୀ ଫେରିଯାଇଥିଲେ ।

## ମୋରାରଜୀଙ୍କ ରୋକ୍‌ଠୋକ୍ କଥା

ଏହାପରେ ସମସ୍ତେ ଉଦ୍‌ବେଗରେ ଅପେକ୍ଷା କରି ରହିଥା'ନ୍ତି ଦିଲ୍ଲୀରେ ଜନତା ଦଳର ଉଚ୍ଚ ମହଲରେ ଓଡ଼ିଶା ବିଷୟରେ ଗୋଟିଏ କିଛି ଘଟିବ ବୋଲି । ଏହି ସମୟରେ ଜୁନ୍ ମାସ ଅଠର ତାରିଖରେ ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇ ବିଦେଶ ଗସ୍ତ ସାରି ଦିଲ୍ଲୀରେ ଆସି ପହଞ୍ଚିଲେ । ପ୍ରଧାନମନ୍ତ୍ରୀଙ୍କର ପ୍ରତିକ୍ରିୟା କ'ଣ ହେବ, ତାହା ଜାଣିବାପାଇଁ ମୁଁ ବଡ଼ ଉଦ୍‌ବେଗରେ ରହିଥିଲି । ବିଦେଶରୁ ଫେରି ପ୍ରଧାନମନ୍ତ୍ରୀ ଯେଉଁ ସାମ୍ବାଦିକ ସମ୍ମିଳନୀ କରିଥିଲେ ସେଥିରେ ସାମ୍ବାଦିକମାନଙ୍କର ଗୋଟିଏ ପ୍ରଶ୍ନର ଉତ୍ତର ଦେଇ ଶ୍ରୀ ଦେଶାଇ କହିଲେ, ''ଓଡ଼ିଶା ସରକାର ଶ୍ରୀମତୀ ଗାନ୍ଧୀଙ୍କୁ ଅତିଥି କରିବା ଯୋଗୁଁ କେନ୍ଦ୍ର ସହିତ କିଛି ମତଭେଦ ନାହିଁ । ସୌଜନ୍ୟ ପ୍ରଦର୍ଶନ ଲାଗି କେବେ ମତଭେଦ ହେବନାହିଁ । ପୂର୍ବତନ ପ୍ରଧାନମନ୍ତ୍ରୀଙ୍କ ପ୍ରତି ସେଭଳି ସୌଜନ୍ୟ ପ୍ରଦର୍ଶନ କରିବା ଉଚିତ ।'' ପ୍ରଧାନମନ୍ତ୍ରୀଙ୍କର ଏ ପ୍ରକାର ମନ୍ତବ୍ୟ ଯେତେବେଳେ ଏଠାରେ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଥିଲା ନିଆଁରେ ପାଣି ପକାଇଲାଭଳି ସବୁ ଉତ୍ତେଜନା ଲିଭିଯାଇଥିଲା ଏବଂ ସବୁପ୍ରକାର କଳ୍ପନାଜଳ୍ପନା ବନ୍ଦହୋଇଯାଇଥିଲା । କେବଳ ସେତିକି ମନ୍ତବ୍ୟ ଦେବାରେ କଥା ସରିଲାନାହିଁ । ଶ୍ରୀମତୀ ଗାନ୍ଧୀଙ୍କ ଉପରେ ଯେପରି ଭାବରେ ହିଂସାତ୍ମକ ଆକ୍ରମଣ ହୋଇଥିଲା ମୋରାରଜୀଭାଇ ତା'ର ନିନ୍ଦା କରିବା ସଙ୍ଗେ ସଙ୍ଗେ ସେହି ହିଂସାକାଣ୍ଡପାଇଁ ଯେଉଁମାନେ ଦାୟୀ ସେମାନଙ୍କ ପ୍ରତି ଶାସ୍ତିବିଧାନ କରାଯିବା ଉଚିତ ବୋଲି ମୋତେ ଜଣାଇଦେଇଥିଲେ ବୋଲି ସେ ସାମ୍ବାଦିକମାନଙ୍କୁ ଜଣାଇଥିଲେ । ତାଙ୍କର ଏ ପ୍ରକାର ନିର୍ଦ୍ଦେଶ ବିଷୟ ମଧ ସେତେବେଳେ ସମ୍ବାଦପତ୍ରମାନଙ୍କରେ ପ୍ରକାଶପାଇଥିଲା । ଶ୍ରୀ ଦେଶାଇଙ୍କ ଉକ୍ତି ଶୁଣି ମୋର ତାଙ୍କ ପ୍ରତି ସମ୍ମାନ ବଢ଼ିଯାଇଥିଲା । ଗୋଟିଏ ଗଣତାନ୍ତ୍ରିକ ଦେଶର ପ୍ରଧାନମନ୍ତ୍ରୀ ଯେଭଳି ଆଚରଣ ପ୍ରଦର୍ଶନ କରିବା କଥା ତାହା ସେ କରିଥିଲେ । ଓଡ଼ିଶା ଗସ୍ତ ପରେ ଜୁନ୍ ମାସ ଶେଷବେଳକୁ ଶ୍ରୀମତୀ ଗାନ୍ଧୀ ଗୁଜୁରାଟ ରାଜ୍ୟ ଗସ୍ତରେ ଯାଇଥିଲେ ଏବଂ ସେଠାରେ ମଧ ଜନତା ସରକାର ତାଙ୍କୁ ସରକାରୀ ଅତିଥି କରିଥିଲେ ।

# ହିତେ ବିପରୀତ

ଏହାପରେ ଦାନର ପ୍ରତିଦାନ ମୋତେ ମିଳିଥିଲା ଅତି ଅପ୍ରତ୍ୟାଶିତ ଭାବରେ । ଶ୍ରୀମତୀ ଗାନ୍ଧୀ ଯେତେବେଳେ ପ୍ରଧାନମନ୍ତ୍ରୀ ଏବଂ ଓଡ଼ିଶାରେ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ତଥା ସ୍ୱରାଷ୍ଟ୍ରମନ୍ତ୍ରୀ, ମଧ୍ୟପ୍ରଦେଶର ଜଣେ କଂଗ୍ରେସ (ଇ) ସଭ୍ୟ ଶ୍ରୀ ଶର୍ମା ପାର୍ଲିଆମେଣ୍ଟରେ ଗୋଟିଏ ଅତି କୌତୂହଳୋଦ୍ଦୀପକ ପ୍ରଶ୍ନ କରିଥିଲେ । ଶ୍ରୀମତୀ ଗାନ୍ଧୀ ପୂର୍ବରୁ ଓଡ଼ିଶା ଗସ୍ତରେ ଆସିଥିବାବେଳେ ମୁଁ ଓ ମୋର ସମୁଦୀ ଭିଜିଲାନ୍‌ସ ପୁଲିସ୍ ଆଇ.ଜି. କୁଆଡ଼େ ତାଙ୍କୁ ହତ୍ୟା କରିବାର ଷଡ଼ଯନ୍ତ୍ରରେ ଲିପ୍ତ ଥିଲୁ ବୋଲି ସେହି ପ୍ରଶ୍ନରେ ଆକ୍ଷେପ କରାଯାଇଥିଲା । ଏହାହିଁ ସୌଜନ୍ୟର ପ୍ରତିଦାନ ବୋଲି ମୁଁ ବିସ୍ମିତ ହୋଇଥିଲି । ନିଜେ ଶ୍ରୀମତୀ ଗାନ୍ଧୀ, ଜାନକୀବାବୁ ଓ ସ୍ୱରାଷ୍ଟ୍ର ବିଭାଗ ଶାସନସଚିବ ସବୁ କଥା ପ୍ରତ୍ୟକ୍ଷ ଭାବରେ ଜାଣିଥିବାରୁ ଏହି ଆକ୍ଷେପମୂଳକ ପ୍ରଶ୍ନର ମନ୍ଦ ଉଦ୍ଦେଶ୍ୟ ସାଧିତ ହୋଇପାରି ନଥିଲା । ତେବେ ପରିସ୍ଥିତିର ସୁଯୋଗ ନେଇ ଓଡ଼ିଶା ପୁଲିସ ବିଭାଗ ଗୋଟିଏ ଉଦ୍ଦେଶ୍ୟମୂଳକ ରିପୋର୍ଟ ସ୍ୱରାଷ୍ଟ୍ର ବିଭାଗକୁ ପଠାଇଥିଲେ ବୋଲି ମୁଁ ଜାଣିବାକୁ ପାଇଥିଲି । ସେ ରିପୋର୍ଟରେ କୁଆଡ଼େ କୁହାଯାଇଥିଲା ଯେ କାଗଜପତ୍ରରେ ଷଡ଼ଯନ୍ତ୍ରକୁ ସାବ୍ୟସ୍ତ କରିବା ଭଳି ଯଦିଓ କିଛି ନାହିଁ, ତଥାପି ଭିଜିଲାନ୍‌ସ ପୁଲିସ୍ ଆଇ.ଜି. ଶ୍ରୀ ସେନାପତି ଏ ପ୍ରକାର ଷଡ଼ଯନ୍ତ୍ରରେ ଜଡ଼ିତ ହେବା କଥାକୁ ଏକାବେଳକେ ଅଗ୍ରାହ୍ୟ କରିହେବନାହିଁ ।

ଏ ପ୍ରକାର ରିପୋର୍ଟ ସଚିବାଳୟକୁ ଆସିଥିବା ବିଷୟରେ ମୁଁ ନିଶ୍ଚିତ ହେବାପରେ ଏହି ଜଘନ୍ୟ ବିଷୟଟି ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟିକୁ ଆଣିଥିଲି । ଶ୍ରୀମତୀ ଗାନ୍ଧୀଙ୍କର ଉକ୍ତ ଗସ୍ତ ସମୟରେ ଜାନକୀବାବୁ ତ ମୋ ସହିତ ତାଙ୍କର ନିରାପତ୍ତା ବିଷୟରେ କଥାବାର୍ତ୍ତା କରିଥିଲେ ଏବଂ ଯାହାସବୁ କରାଯାଇଥିଲା ସେ ଭଲଭାବରେ ଜାଣିଥିଲେ । ତେଣୁ ଏ ପ୍ରକାର ରିପୋର୍ଟ ତାଙ୍କୁ ପୁଲିସ ମୁଖ୍ୟ କାର୍ଯ୍ୟାଳୟ ଦେଇଥିବେ ବୋଲି ସେ ଆଦୌ ବିଶ୍ୱାସ କରିପାରିନଥିଲେ । ରିପୋର୍ଟଟି ସଚିବାଳୟରୁ ମଗାଇ ଦେଖିବାକୁ ମୁଁ ଅନୁରୋଧ କରିଥିଲି ଏବଂ ସେ ରିପୋର୍ଟଟି ମଗାଇ ଦେଖିବେ ବୋଲି ମୋତେ କହିଥିଲେ । ତାହା ସହିତ ପୁଲିସ ମୁଖ୍ୟ କାର୍ଯ୍ୟାଳୟରୁ ଆସିଥିବା ଆଉ ଗୋଟିଏ ରିପୋର୍ଟ ମଗାଇ ଦେଖିବାପାଇଁ ମୁଁ ମୁଖ୍ୟମନ୍ତ୍ରୀଙ୍କୁ ଅନୁରୋଧ କରିଥିଲି । ତାହା ଥିଲା ୧୯୭୯ ଜୁନ୍ ମାସରେ ଭୁବନେଶ୍ୱର ସପ୍ତମ ବ୍ୟାଟେଲିୟନ୍ ନେତୃତ୍ୱରେ ଓଡ଼ିଶାରେ ଯେଉଁ ପୁଲିସ ଧର୍ମଘଟ ହୋଇଥିଲା ତାହା କୁଆଡ଼େ ମୋର ସମୁଦୀ ଦୁର୍ନୀତି-ନିବାରଣ ବିଭାଗ ଆଇ.ଜି. ଶ୍ରୀ ସେନାପତି ଉସ୍‌କାଇ କରାଇଥିଲେ ବୋଲି ଉକ୍ତ ରିପୋର୍ଟରେ ଲେଖାଥିଲା । ସେହି ହେତୁ ଯେଉଁ ସିପାହି ଓ କନେଷ୍ଟବଳମାନେ ଚାକିରିରୁ ବହିଷ୍କୃତ ହୋଇଥିଲେ ମୁଁ ମୁଖ୍ୟମନ୍ତ୍ରୀ ପଦରୁ ଠିକ୍ ଯିବା ପୂର୍ବରୁ ସେମାନଙ୍କର ପୁନଃ ନିଯୁକ୍ତି କରାଇଦେଇଥିଲି । ସେହି ପୁନଃ ନିଯୁକ୍ତି ପାଇଥିବା ବ୍ୟକ୍ତିମାନେ ସମସ୍ତେ କେବଳ ଦୁର୍ନୀତି-ନିବାରଣ ବିଭାଗରେ ଥଇଥାନ ହୋଇଥିଲେ ବୋଲି ସେଥିରେ ଦର୍ଶାଯାଇଥିଲା । ମୁଁ ଥିଲି ମୁଖ୍ୟମନ୍ତ୍ରୀ ଏବଂ ମୋ ବିରୁଦ୍ଧରେ ପୁଲିସ ଧର୍ମଘଟପାଇଁ ଚକ୍ରାନ୍ତ କରିବେ ମୋର ସମୁଦୀ; ଏହା କେତେ ଅବାସ୍ତବ ତାହା ହିଁ ବିଚାର କରି ମୁଖ୍ୟମନ୍ତ୍ରୀ ସେ ବିଷୟରେ କ'ଣ କରିବେ, ତାହା ସ୍ଥିର କରିବା ବିଧେୟ ବୋଲି ମୁଁ କହିଥିଲି । ମୁଖ୍ୟମନ୍ତ୍ରୀ ଏ ଦୁଇଟିଯାକ ରିପୋର୍ଟ ମଗାଇଥିଲେ ଏବଂ ସେ ଦୁଇଟିଯାକ ରିପୋର୍ଟ ତାଙ୍କ ଟେବୁଲ୍ ଉପରକୁ ଯିବାର ନିଶ୍ଚିତ ଖବର ମୁଁ ପାଇଥିଲି । ସେସବୁ ସେ ଅଧ୍ୟୟନ କରିଥିଲେ; ମାତ୍ର କାର୍ଯ୍ୟାନୁଷ୍ଠାନପାଇଁ ଆଉ କିଛି ମନ୍ତବ୍ୟ ବା ନିର୍ଦ୍ଦେଶ ଦେଇନଥିଲେ ବୋଲି ମୁଁ ସଚିବାଳୟ ମହଲରୁ ଖବର ପାଇଥିଲି ।

ଓଡ଼ିଶାରେ ମୋ ମନ୍ତ୍ରିମଣ୍ଡଳ ଗଠନର ଏକ ବର୍ଷ ପର୍ଯ୍ୟନ୍ତ ରାଜ୍ୟରେ କୌଣସି ପ୍ରକାର ସାଧାରଣ ବିଶୃଙ୍ଖଳା, ରାଜନୈତିକ ଅସ୍ଥିରତା କିମ୍ବା ଶାସକଦଳ ମଧ୍ୟରେ ଗୋଷ୍ଠୀଗତ ବିଦ୍ୱେଷ ପ୍ରାୟ ନଥିଲା ଏବଂ ସବୁ କ୍ଷେତ୍ରରେ ଉତ୍ସାହ ଓ ପ୍ରଗତି ଲକ୍ଷ୍ୟକରାଯାଉଥିଲା । ମୁଁ ନିଜେ ଗୋଷ୍ଠୀଗତ ରାଜନୀତିର

ପକ୍ଷପାତୀ ନଥିଲି । ସମସ୍ତଙ୍କୁ ସାଙ୍ଗରେ ନେଇ ଚଳିବାକୁ ମୁଁ ସଦାବେଳେ ଉଦ୍ୟମ କରୁଥିଲି । ମୋ ନିଜର ବୋଲି କିଛି ଗୋଷ୍ଠୀ ନଥିଲା । ମାତ୍ର ରାଜନୀତିର ଗତି ଏତେ ସହଜ ବା ସଳଖନୁହେଁ । ରାଜନୀତିରୁ ବ୍ୟକ୍ତିଗତ ଆଶା-ଆକାଂକ୍ଷା ଏକାବେଳକେ ଅବିଚ୍ଛେଦ୍ୟ ନୁହେଁ । ସେ ଆଶା-ଆକାଂକ୍ଷାକୁ ଚରିତାର୍ଥ କରିବା କାହା କାହା ପକ୍ଷରେ ଅନେକ ସମୟରେ ସହଜ ହୁଏନାହିଁ । ଗୋଟିଏ କ୍ଷେତ୍ରରେ ପ୍ରକାଶ୍ୟ ଅସନ୍ତୋଷ କ୍ରମଶଃ ନାନା କ୍ଷେତ୍ରରେ ପ୍ରଚ୍ଛନ୍ନ ଅସନ୍ତୋଷର ଇନ୍ଧନ ଯୋଗାଇଥାଏ । ମନ୍ତ୍ରିମଣ୍ଡଳ ଗଠନ ସମୟରେ ନିଜର ଇଚ୍ଛା ଓ ବିବେକାନୁସାରେ ମୋର ସହଯୋଗୀ ମନ୍ତ୍ରୀମାନଙ୍କୁ ବାଛିବା ବିଷୟରେ ମୁଁ ଯଦି ଦୃଢ଼ ହୋଇଥା'ନ୍ତି ତା'ହେଲେ ପରେ ମୋତେ ବିଶେଷଭାବରେ କେତେକ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିନଥାନ୍ତା । ମୁଁ ନିଜ ମତରେ ଦୃଢ଼ ନହେବାଦ୍ୱାରା କେତେକ ଅସନ୍ତୋଷ ସୃଷ୍ଟି କରିଥିଲି ଯେଉଁଟା ପରେ ମୋପାଇଁ ଅବସ୍ଥାକୁ ଜଟିଳ କରିଥିଲା ।

## ଅସନ୍ତୁଷ୍ଟଙ୍କ ଅଭିଯାନ

ମୋ ମନ୍ତ୍ରିମଣ୍ଡଳର ପରମାୟୁ ଠିକ୍ ବର୍ଷେ ପୂରିଲାବେଳକୁ କେନ୍ଦ୍ରରେ ଜନତା ଦଳରେ ବିଭେଦ ଦେଖାଦେଇଥିଲା । ଜନତା ଦଳ ଏକ ନୂତନ ରାଜନୈତିକ ଦଳଭାବରେ ରୂପଲାଭ କରିବାର ମାତ୍ର ଏକ ବର୍ଷ ମଧ୍ୟରେ ଘୋର ସଙ୍କଟର ସମ୍ମୁଖୀନ ହୋଇଥିଲା । କେନ୍ଦ୍ରରେ ଜନତା ଦଳର ବ୍ୟକ୍ତିଗତ ଓ ଗୋଷ୍ଠୀଗତ ବିବାଦ ଅତ୍ୟନ୍ତ ତୀବ୍ର ଆକାର ଧାରଣ କରି ରାଜ୍ୟମାନଙ୍କରେ ଜନତା ଦଳର ରାଜନୀତିକୁ ସଙ୍କଟାପନ୍ନ କରିଦେଲା । ଜନତା ଦଳର ଜଣେ ବିଶିଷ୍ଟ ନେତା ଓ କେନ୍ଦ୍ରର ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀ ରାଜନାରାୟଣଙ୍କ ବିଶୃଙ୍ଖଳ ଆଚରଣ ଏକାବେଳକେ ଚରମ ସୀମାରେ ପହଞ୍ଚିଥିଲା ଏବଂ ତା'ଦ୍ୱାରା ସମଗ୍ର ଦେଶରେ ଜନତା ଦଳକୁ ଗୋଟିଏ ଅତି ହାସ୍ୟାସ୍ପଦ ଅବସ୍ଥାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଏତିକିବେଳେ ରାଜ୍ୟମାନଙ୍କରେ ଦେଖାଦେଇଥିବା ଦଳୀୟ ମତଭେଦକୁ ଦଳର ଉଚ୍ଚ କର୍ତ୍ତୃପକ୍ଷମାନେ ନିଜ ନିଜ ଦୃଷ୍ଟିକୋଣରୁ ଉତ୍ସାହିତ କରିବାରେ ଲାଗିପଡ଼ିଥିଲେ । ଏହି ସମୟରେ ହରିଆନା ଓ ଉତ୍ତର ପ୍ରଦେଶର ଦଳ ମଧ୍ୟରେ ଥିବା ମତଭେଦକୁ ଜନତା ଦଳର ଉଚ୍ଚ କର୍ତ୍ତୃପକ୍ଷ ଉତ୍ସାହିତ କରୁଛନ୍ତି ବୋଲି ଅଭିଯୋଗ କରି କେନ୍ଦ୍ର ସ୍ୱରାଷ୍ଟ୍ରମନ୍ତ୍ରୀ ଚୌଧୁରୀ ଚରଣସିଂହ ଜନତା ଦଳ ଜାତୀୟ କାର୍ଯ୍ୟକାରୀ କମିଟି ଓ ପାର୍ଲିଆମେଣ୍ଟାରୀ ବୋର୍ଡ଼ରୁ ଇସ୍ତଫା ଦେଇଥିଲେ । ଦିଲ୍ଲୀରେ ଜନତାଦଳ ମଧ୍ୟରେ ଅନ୍ତର୍ବିବାଦ ରାଜ୍ୟମାନଙ୍କରେ ଦଳୀୟ ବିବାଦକୁ ଘନୀଭୂତ କରାଇଲା । ଆମ ରାଜ୍ୟରେ ଅସନ୍ତୁଷ୍ଟ ଥିବା ବ୍ୟକ୍ତିମାନେ ମନ୍ତ୍ରିମଣ୍ଡଳ ତଥା ମନ୍ତ୍ରୀବିଶେଷଙ୍କ ବିରୁଦ୍ଧରେ ଅଭିଯୋଗ ବାଢ଼ିବାକୁ ଆରମ୍ଭ କରିଦେଇଥିଲେ । ମୋ ମନ୍ତ୍ରିମଣ୍ଡଳ ପ୍ରଗତିଶୀଳ ହୋଇନଥିବାରୁ ରାଜ୍ୟରେ କୌଣସି ପ୍ରକାର ଉନ୍ନୟନ କାର୍ଯ୍ୟ ହୋଇପାରିବନାହିଁ ବୋଲି ଅଭିଯୋଗ କରି ସେମାନେ ମନ୍ତ୍ରିମଣ୍ଡଳର ପୁନର୍ଗଠନ ଦାବିକରିଥିଲେ । ଅମଲାତନ୍ତ୍ରକୁ ଚଳାଇବାର ଦକ୍ଷତା ମନ୍ତ୍ରୀମାନଙ୍କର ନାହିଁ, ସେମାନେ ଅପାରଗ, ଅଫିସର୍‌ମାନେ ମନ୍ତ୍ରୀମାନଙ୍କର ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ କରୁନାହାନ୍ତି ବୋଲି ସେମାନେ ନାନା ଅଭିଯୋଗ କରିଥିଲେ । ମନ୍ତ୍ରୀମାନେ ବହୁ ଦୁର୍ନୀତିମୂଳକ କାର୍ଯ୍ୟରେ ଲିପ୍ତ ଥିବାରୁ ସେମାନଙ୍କ ପ୍ରତି ଅଫିସର୍‌ମାନଙ୍କର ସମ୍ମାନ ନାହିଁ ବୋଲି ଅସନ୍ତୁଷ୍ଟ ବ୍ୟକ୍ତିମାନେ କହୁଥିଲେ । ସେହି ହେତୁରୁ କେତେକ ଅବାଞ୍ଛିତ ଅବସରପ୍ରାପ୍ତ ଅଫିସର୍‌ମାନଙ୍କୁ କାର୍ଯ୍ୟରେ ପୁନର୍ନିଯୁକ୍ତି ଦେଇ ସେମାନଙ୍କ ଦ୍ୱାରା ଦୁର୍ନୀତିମୂଳକ କାର୍ଯ୍ୟ କରାଯାଉଛି ବୋଲି ସେମାନେ ଅଭିଯୋଗ କରିଥିଲେ । ସେମାନେ ପ୍ରଥମେ କେନ୍ଦ୍ର ଇସ୍ପାତ ଓ ଖଣି ମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ପାଖରେ ଏହିସବୁ ଅଭିଯୋଗ କରିଥିଲେ । ବିଜୁ ବାବୁ ନିଜେ ଯଦି ଅଭିଯୋଗଗୁଡ଼ିକର ସତ୍ୟାସତ୍ୟ ବିଷୟରେ ଅନୁସନ୍ଧାନ କରିଥାଆନ୍ତେ ତା'ହେଲେ ପ୍ରକୃତ କଥା ଜାଣିପାରିଥାଆନ୍ତେ । ସେ କେନ୍ଦ୍ରରେ ମନ୍ତ୍ରୀ ଥିଲେ ଏବଂ ଆମ ରାଜ୍ୟରେ ଥିଲେ ଜଣେ ନେତୃସ୍ଥାନୀୟ ବ୍ୟକ୍ତି । ତାଙ୍କ ପକ୍ଷରେ ସରକାରୀ ଫାଇଲପତ୍ର ଅନୁଧ୍ୟାନ କରି ସବୁ ବିଷୟ ଜାଣିବାର ସୁଯୋଗ ଥିଲା; ଅଥଚ ମନ୍ତ୍ରିମଣ୍ଡଳର କାର୍ଯ୍ୟ ସମୀକ୍ଷା କରିବାପାଇଁ ସେ ଗୋଟିଏ ସାତଜଣିଆ କମିଟି ଗଠନ କଲେ

ବୋଲି ଖବରକାଗଜରେ ପ୍ରକାଶ ପାଇଥିଲା । ଯେଉଁମାନେ ମନ୍ତ୍ରିମଣ୍ଡଳ ବିରୁଦ୍ଧରେ ଅଭିଯୋଗ କରୁଥିଲେ ସେହିମାନଙ୍କ ଭିତରୁ ଅଧିକାଂଶଙ୍କୁ ନେଇ ଏହି କମିଟି ଗଠିତ ହୋଇଥିବାର ଜଣାଗଲା । ଯେଉଁମାନେ ଅଭିଯୋଗ କରୁଥିଲେ, ସମୀକ୍ଷା କରିବାର ଦାୟିତ୍ୱ ସେହିମାନଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ବିଜୁବାବୁ ଅସନ୍ତୁଷ୍ଟ ବ୍ୟକ୍ତିମାନେ ଆଣିଥିବା ଅଭିଯୋଗ ସଂପର୍କରେ ମୋ ସହିତ ତଥାକଥିତ କମିଟି ସେ ଗଠନ କରିଥିଲେ ବୋଲି କୁହାଗଲା, ସେ ସମ୍ବନ୍ଧରେ ମଧ ମୋ ସହିତ କୌଣସି ଆଲୋଚନା କରିନଥିଲେ । ଏହି କମିଟି ଗଠନ କଥା ମୁଁ ଖବରକାଗଜରୁ ଜାଣିଲି । ବିଜୁବାବୁଙ୍କର ଏ ପ୍ରକାର କାର୍ଯ୍ୟଦ୍ୱାରା ଅଭିଯୋଗକାରୀମାନେ ମନଗଢ଼ା ଅଭିଯୋଗମାନ ସୃଷ୍ଟିକରି ମନ୍ତ୍ରିମଣ୍ଡଳର କୁତ୍ସାରଟନା କରିବାର ପୂର୍ଣ୍ଣ ସୁଯୋଗ ପାଇଯାଇଥିଲେ । ମୁଁ ଏ ପ୍ରକାର କମିଟିର ଅସ୍ତିତ୍ୱକୁ ଅସ୍ୱୀକାର କରୁଥିଲି ଏବଂ ତା'ର କାର୍ଯ୍ୟକୁ କୌଣସି ପ୍ରକାର ଗୁରୁତ୍ୱ ଦେଉନଥିଲି । ଅଭିଯୋଗକାରୀମାନଙ୍କର ଇତିବୃତ୍ତି ବିଜୁବାବୁ ଭଲଭାବରେ ଜାଣିଥିଲେ, ତଥାପି ସେ ସେମାନଙ୍କ ଫନ୍ଦିରେ ପଡ଼ିଯାଇଥିଲେ । ପ୍ରଥମେ ବିଜୁବାବୁ ସେମାନଙ୍କ କଥାକୁ ଯେପରି ଭାବରେ ଗ୍ରହଣକଲେ ସେଥିରେ ସେମାନେ ଉତ୍ସାହିତ ହୋଇ ନାନାପ୍ରକାର ଅଭିସନ୍ଧିମୂଳକ କାର୍ଯ୍ୟ ଓ ପ୍ରଚାରରେ ଅଗ୍ରସର ହୋଇଥିଲେ– ପରେ ସେମାନେ ବିଜୁବାବୁଙ୍କର ଆୟତ୍ତରୁ ବାହାରକୁ ଚାଲିଯାଇଥିଲେ । ବିଜୁବାବୁ ଚାଟୁକ୍ତିକୁ ଭଲପାଆନ୍ତି । ଅସନ୍ତୁଷ୍ଟ ବ୍ୟକ୍ତିମାନଙ୍କ ମଧରେ କେତେକ ସୁଦକ୍ଷ ଚାଟୁଭାଷୀ ଥିଲେ । ଜନତା ଦଳ ଦେଶରେ ଯେଉଁ ଆଶା, ଆକାଂକ୍ଷା ଓ ଉନ୍ମାଦନା ସୃଷ୍ଟି କରିଥିଲା, ସେହି ଦୃଷ୍ଟିରୁ ବିଜୁବାବୁ ଶାସନ ତଥା ରାଜ୍ୟଗଠନର ଦାୟିତ୍ୱ ଯଦି ନିଜେ ବହନ ନକରିବେ ତା'ହେଲେ ଓଡ଼ିଶା ରସାତଳକୁ ଚାଲିଯିବ ବୋଲି ବାରମ୍ବାର ତାଙ୍କ ଆଗରେ କୁହାଯାଇଥିଲା । କଥାଟା ତାଙ୍କ ମନକୁ ପାଇଲାଭଳି ଭାବଭଙ୍ଗୀ ସେ ଦେଖାଉଥିଲେ । ଏସବୁ କଥା ଶୁଣି ବିଜୁବାବୁ ବଡ଼ ଦୋଦୁଲ୍ୟମାନ ଅବସ୍ଥାରେ ପଡୁଥିଲେ– ଏଠାକୁ ଆସିବେ କି ଦିଲ୍ଲୀରେ ରହିବେ ? ଅସନ୍ତୁଷ୍ଟ ଗୋଷ୍ଠୀଙ୍କର କାର୍ଯ୍ୟକଳାପକୁ ବିଜୁବାବୁ ପସନ୍ଦ କରୁନଥିଲେ ମଧ ସେମାନଙ୍କ କଥା ଶୁଣିବା ପାଇଁ ସେମାନଙ୍କୁ ଖୁବ୍ ସୁଯୋଗ ଦେଉଥିଲେ । ବିଧାନସଭା ଅଧିବେଶନ ସମୟରେ ଆସେଂବ୍ଲି ଭବନକୁ ଆସି ଅସନ୍ତୁଷ୍ଟଗୋଷ୍ଠୀ ନେତାଙ୍କ ସହିତ ବହୁତ ସମୟଧରି ବିଜୁବାବୁ ଫୁସ୍‌ଫାସ୍ ହେଉଥିଲେ । ତାହାଦ୍ୱାରା ଅନ୍ୟମାନଙ୍କ ମନରେ ଧାରଣା ହେଉଥାଏ ଯେ ଅସନ୍ତୁଷ୍ଟଗୋଷ୍ଠୀର ନେତାମାନେ ବିଜୁବାବୁଙ୍କର ଖୁବ୍ ବିଶ୍ୱସ୍ତ ବନ୍ଧୁ । ତେଣୁ ସୂକ୍ଷ୍ମରେ ଗୋଟିଏ ଫୁସ୍‌ଫୁସିଆ ପ୍ରଚାର ଚଳାଇ ଦିଆଯାଇଥାଏ ଯେ ମୁଖ୍ୟମନ୍ତ୍ରୀ ହୋଇ ଆସିବାକୁ ବିଜୁବାବୁଙ୍କର ଇଚ୍ଛା; ମାତ୍ର ସେଥିପାଇଁ ଦଳର ବିଧାନସଭା ସଦସ୍ୟମାନଙ୍କର ଆଗ୍ରହ ଥିବା କଥା ସେ ଜାଣିବା ଆବଶ୍ୟକ । ସେଥିଯୋଗୁଁ ନେତୃତ୍ୱ ପରିବର୍ତ୍ତନପାଇଁ ଦରଖାସ୍ତ ଓ ଦସ୍ତଖତ ଅଭିଯାନ ଗୁପ୍ତରେ ଆରମ୍ଭ ହୋଇଯାଇଥିଲା । ଖାଲି ନେତୃତ୍ୱ ପରିବର୍ତ୍ତନ କଥା କହିଲାକ୍ଷଣି ସେମାନେ କେବଳ ମୁଷ୍ଟିମେୟ ସଭ୍ୟଙ୍କର ସମର୍ଥନ ପାଉଥିଲେ, ଅନ୍ୟମାନେ ତାଙ୍କ ଫିକରରେ ପଡୁନଥାନ୍ତି । ତେଣୁ ବିଜୁବାବୁଙ୍କ ନାମଟାକୁ ତାହା ସହିତ ମିଶାଇଦିଆଯାଉଥିଲା ।

ଏହାପରେ ଘଟଣାସ୍ଥଳ ଦିଲ୍ଲୀକୁ ଘୁଞ୍ଚିଯାଇଥିଲା । ସର୍ବଶ୍ରୀ ଅନନ୍ତ ନାରାୟଣ ସିଂହଦେଓ, ରାମକୃଷ୍ଣ ପଟ୍ଟନାୟକ ଓ ଭାଗବତ ବେହେରା ପ୍ରଭୃତି ଅସନ୍ତୁଷ୍ଟ ଗୋଷ୍ଠୀର ନଅଜଣ ସଭ୍ୟ ଉଚ୍ଚ ମହଲରେ ଆମ୍ଭମାନଙ୍କ ବିରୁଦ୍ଧରେ ଅଭିଯୋଗ କରିବା ଉଦ୍ଦେଶ୍ୟରେ ଦିଲ୍ଲୀ ଯାଇଥିଲେ । ଗଲାବେଳେ ସେମାନେ ଏଠାରେ କହିଥିଲେ ଯେ ବିଜୁବାବୁ ଡକାଇବାରୁ ସେମାନେ ଦିଲ୍ଲୀ ଯାଇଥିଲେ । ଦିଲ୍ଲୀରେ ଜନତା ଦଳର ନେତୃବର୍ଗଙ୍କ ମଧରେ ଅନ୍ତର୍ବିବାଦ ହେତୁ ସେତେବେଳେ ଜନତା ଦଳରେ ଗୋଷ୍ଠୀଗତ ରାଜନୀତିର ପଶାଖେଳ ଲାଗିଥାଏ ଏବଂ ବିଭିନ୍ନ ଗୋଷ୍ଠୀ ପରସ୍ପର ବିରୁଦ୍ଧରେ ଅଭିଯୋଗ ଗ୍ରହଣ କରିବାପାଇଁ ପସରା ମେଲାଇ ବସିଥାଆନ୍ତି । ବିଜୁବାବୁ ସେତେବେଳକୁ ଶ୍ରୀ ଚରଣ ସିଂହ ଗୋଷ୍ଠୀର ଅନ୍ତର୍ଭୁକ୍ତ ବୋଲି ଚିହ୍ନାପଡ଼ିସାରିଥାଆନ୍ତି । ଓଡ଼ିଶାର ଅସନ୍ତୁଷ୍ଟ ଗୋଷ୍ଠୀର ଲୋକମାନେ ଜନତା ଦଳର ସଭାପତି ଶ୍ରୀ ଚନ୍ଦ୍ରଶେଖରଙ୍କୁ ଦେଖାକରି ମୋ ମନ୍ତ୍ରିମଣ୍ଡଳ ବିରୁଦ୍ଧରେ ନାନାପ୍ରକାର ଅଭିଯୋଗ ଆଣିଥିଲେ ।

ଚନ୍ଦ୍ରଶେଖର କୁଆଡ଼େ ସେମାନଙ୍କର ଯିବାଟାକୁ ସ୍ୱାଗତ ଜଣାଇଲାଭଳି ବ୍ୟବହାର କରିଥିଲେ ଏବଂ ସେମାନଙ୍କ ଅଭିଯୋଗ ପ୍ରତି ସହାନୁଭୂତିଶୀଳ ମନୋଭାବ ଦେଖାଇଥିଲେ । ପ୍ରଧାନମନ୍ତ୍ରୀ ଶ୍ରୀ ମୋରାରଜୀ ଦେଶାଇ ଓ ତାଙ୍କ ପୁଅ ଶ୍ରୀ କାନ୍ତି ଦେଶାଇଙ୍କୁ ମଧ୍ୟ ସେମାନେ ଦେଖାକରିଥିଲେ । ଏହାର କିଛିଦିନ ପରେ ମୁଁ ଦିଲ୍ଲୀ ଯାଇଥିଲି । ପାର୍ଲିଆମେଣ୍ଟ ହାଉସ୍ ଆନେକ୍ସିରେ ମୁଖ୍ୟମନ୍ତ୍ରୀମାନଙ୍କର ଗୋଟିଏ ସମ୍ମିଳନୀ ଥାଏ । ପ୍ରଧାନମନ୍ତ୍ରୀ ସେହିଠାରେ ଗୋଟିଏ ମଧ୍ୟାହ୍ନଭୋଜନର ଆୟୋଜନ କରିଥିଲେ । ସେହିଠାରେ ତାଙ୍କ ସହିତ ଯେତେବେଳେ ମୋର ଦେଖାହେଲା, ସେ କଥା ପ୍ରସଙ୍ଗରେ ମୋତେ କହିଥିଲେ, "It seems you are very fond of giving employment to useless retired officers who were condemned by previous government." ପ୍ରଧାନମନ୍ତ୍ରୀଙ୍କ କଥା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଥିଲି; ମାତ୍ର ବିଷୟଟି କ'ଣ ତାହା ମୁଁ ବୁଝିପାରିଥିଲି । ଅସନ୍ତୁଷ୍ଟ ଗୋଷ୍ଠୀର ଲୋକମାନେ ତାଙ୍କୁ ଦେଖାକଲାବେଳେ ଦୁଇଜଣ ଅଫିସରଙ୍କ କଥା ତାଙ୍କୁ କହିଥିବେ ବୋଲି ମୁଁ ଭାବିଥିଲି । ସେ ଦୁଇଜଣ ହେଲେ ବେଳାଭୂମି ଓ ଚିଲିକା ଉନ୍ନୟନ ସଂସ୍ଥାର ଚେୟାରମ୍ୟାନ ଅବସରପ୍ରାପ୍ତ ଚିଫ୍ ସେକ୍ରେଟେରୀ ଶ୍ରୀ ଭି.ଏସ୍.ମାଥ୍ୟୁସ୍ ଓ ଭୁବନେଶ୍ୱର ଆଞ୍ଚଳିକ ଉନ୍ନୟନ ଗୃହନିର୍ମାଣ ସଂସ୍ଥାର ଚେୟାରମ୍ୟାନ୍ ଅବସରପ୍ରାପ୍ତ ସେକ୍ରେଟେରୀ ଶ୍ରୀ ଦୁର୍ଗାପ୍ରସାଦ ତ୍ରିପାଠୀ । ମୋର ଅନୁମାନ ଠିକ୍ ହୋଇଥିଲା । ସେତେବେଳେ ଦୁଇ-ଚାରି ପଦ ଉତ୍ତର ଦେଇଥିଲି ଏବଂ ପରେ ସେମାନଙ୍କ ସମ୍ବନ୍ଧରେ ଗୋଟିଏ ବିବରଣୀ ପଠାଇବି ବୋଲି ପ୍ରଧାନମନ୍ତ୍ରୀଙ୍କୁ ଥିଲି । ଭୁବନେଶ୍ୱର ଫେରିବାପରେ ସେମାନଙ୍କ ସଂପର୍କରେ କେତେକ ତଥ୍ୟ ମୁଁ ପ୍ରଧାନମନ୍ତ୍ରୀଙ୍କୁ ଦେଇଥିଲି । ନବଗଠିତ ବେଳାଭୂମି ଉନ୍ନୟନ ସଂସ୍ଥାର ଚେୟାରମ୍ୟାନ୍ ପଦପାଇଁ ଶ୍ରୀ ବିଜୁ ପଟ୍ଟନାୟକଙ୍କ ସୁପାରିସ୍‌ରେ ଶ୍ରୀ ମାଥ୍ୟୁସ୍ ନିଯୁକ୍ତ ହୋଇଥିଲେ । ଓଡ଼ିଶା ବିଧାନସଭାର ବାଚସ୍ପତି ତଥା ଭୁବନେଶ୍ୱର ନିର୍ବାଚନମଣ୍ଡଳୀର ସଦସ୍ୟ ଶ୍ରୀ ସତ୍ୟପ୍ରିୟ ମହାନ୍ତି ଓ ରାଜ୍ୟ ଜନତା ଦଳର ସଭାପତି ଶ୍ରୀ ବିଶ୍ୱନାଥ ପଣ୍ଡିତଙ୍କ ଅନୁରୋଧକ୍ରମେ ଶ୍ରୀ ଦୁର୍ଗାପ୍ରସାଦ ତ୍ରିପାଠୀ ଭୁବନେଶ୍ୱର ଆଞ୍ଚଳିକ ଉନ୍ନୟନ ସଂସ୍ଥାର ଚେୟାରମ୍ୟାନ୍‌ରୂପେ ନିଯୁକ୍ତ ହୋଇଥିଲେ । ପ୍ରଥମେ ଶ୍ରୀ ତ୍ରିପାଠୀ ଗୋଟିଏ ବର୍ଷପାଇଁ ନିଯୁକ୍ତ ହୋଇଥିଲେ । ତାଙ୍କ କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ବିଭାଗୀୟ ମନ୍ତ୍ରୀ ବର୍ଷକ ପରେ ତାଙ୍କୁ ଆଉ ତିନି ବର୍ଷ ରଖିବାକୁ ପ୍ରସ୍ତାବ ଦେଇଥିଲେ ଏବଂ ମୁଁ ସେଥିରେ ଏକମତ ହୋଇଥିଲି ।

ବାଚସ୍ପତି ଶ୍ରୀ ସତ୍ୟପ୍ରିୟ ମହାନ୍ତିଙ୍କ ସୁପାରିସ୍‌ରେ ଶ୍ରୀ ତ୍ରିପାଠୀଙ୍କୁ ପ୍ରଥମେ ନିଯୁକ୍ତି ଦେଇଥିଲି । କାର୍ଯ୍ୟକାଳ ବଢ଼ାଇଲାବେଳେ କାହିଁକି ପୁଣି ତାଙ୍କ ସହିତ ପରାମର୍ଶ ନକଲି ବୋଲି ସେ ବଡ଼ ଉତ୍‌କ୍ଷିପ୍ତ ହୋଇଥିଲେ । ଗୋଟିଏ ବ୍ୟକ୍ତିଗତ କାରଣରୁ ସେ ତ୍ରିପାଠୀଙ୍କ ଉପରେ ଅସନ୍ତୁଷ୍ଟ ହୋଇପଡ଼ିଥିଲେ ବୋଲି ମୁଁ ପରେ ଜାଣିଲି । ବାଚସ୍ପତି ଶ୍ରୀ ମହାନ୍ତି ଏହି ବିଷୟଟିରେ ଅସନ୍ତୁଷ୍ଟ ଗୋଷ୍ଠୀର ନେତାମାନଙ୍କ ସହିତ ଏକମତ ହୋଇ ସେମାନଙ୍କୁ ଉତ୍ତେଜିତ କରିବାର ସମ୍ବାଦ ମଧ୍ୟ ମୁଁ ପାଇଥିଲି । ବିଧାନସଭାରେ ଶ୍ରୀ ତ୍ରିପାଠୀଙ୍କ ସମ୍ବନ୍ଧରେ ପ୍ରଶ୍ନ ଉଠି ଯଦି ସରକାରଙ୍କୁ ହଇରାଣ କରାଯାଏ, ତେବେ ତାହା ବାଚସ୍ପତିଙ୍କର ଉପଭୋଗ୍ୟ ହୁଏ ବୋଲି ମୁଁ ଅନୁଭବ କରୁଥିଲି । ପରବର୍ତ୍ତୀ କାଳରେ କଂଗ୍ରେସରେ ଯୋଗଦାନ କରି ଶ୍ରୀ ତ୍ରିପାଠୀଙ୍କୁ ଭୁବନେଶ୍ୱର ଆଞ୍ଚଳିକ ଉନ୍ନୟନ ସଂସ୍ଥାରୁ ପଦଚ୍ୟୁତ କରି ସତ୍ୟପ୍ରିୟବାବୁ ଅତ୍ୟନ୍ତ ଆତ୍ମସନ୍ତୋଷ ଲାଭକରିଥିଲେ ଏବଂ ନିଜେ ସେହି ସଂସ୍ଥାରେ ଚେୟାରମ୍ୟାନ୍ ହେବା ଆଶା ରଖିଥିଲେ ବୋଲି ସେତେବେଳେ ଭୁବନେଶ୍ୱରରେ ଜନରବ ଉଠିଥିଲା; ମାତ୍ର ତାଙ୍କୁ ଅନ୍ୟାୟଭାବରେ ପଦଚ୍ୟୁତ କରାଯାଇଥିଲା ବୋଲି ଶ୍ରୀ ତ୍ରିପାଠୀ ହାଇକୋର୍ଟରେ ଗୋଟିଏ ମକଦ୍ଦମା କରିଥିବାରୁ ଏକ ଅନିଶ୍ଚିତ ଭବିଷ୍ୟତ୍ ଭିତରେ ସତ୍ୟପ୍ରିୟବାବୁ ସେହି ପଦରେ ଅବସ୍ଥାପିତ ହେବାରେ ଅସୁବିଧା ବୋଲି କ୍ଷମତାସୀନ ମହଲରୁ ଶୁଣାଯାଉଥିଲା ।

## ଦୁଇ ବାଚସ୍ପତିଙ୍କ କଥା

ଇତିମଧ୍ୟରେ ୧୯୮୨ ମସିହା ଜାନୁୟାରୀ ମାସ ବାଇଶ ତାରିଖରେ ଓଡ଼ିଶା ହାଇକୋର୍ଟରେ ଶ୍ରୀ ତ୍ରିପାଠୀ ଆଗତ କରିଥିବା ମକଦ୍ଦମାର ଶୁଣାଣି ହୋଇ ରାଜ୍ୟ ସରକାର ଶ୍ରୀ ତ୍ରିପାଠୀଙ୍କୁ କୋଡ଼ିଏ ହଜାର ଟଙ୍କା କ୍ଷତିପୂରଣ ଦେବାକୁ ହାଇକୋର୍ଟ ଆଦେଶ କରିଥାନ୍ତି । ଶ୍ରୀ ତ୍ରିପାଠୀ ଏକ ତିନିବର୍ଷିଆ ଚୁକ୍ତିମୂଳକ ବ୍ୟବସ୍ଥା ଅନୁଯାୟୀ ୧୯୭୯ ମସିହାରେ ଭୁବନେଶ୍ୱର ଆଞ୍ଚଳିକ ସଂସ୍ଥାର ଚେୟାରମ୍ୟାନ୍ ଭାବେ ନିଯୁକ୍ତ ହୋଇଥିଲେ । ଉକ୍ତ ସଂସ୍ଥାରେ ବହୁ ଉଲ୍ଲେଖଯୋଗ୍ୟ ଭଲ କାର୍ଯ୍ୟ ସନ୍ତୋଷଜନକ ଭାବେ କରୁଥିଲେ; ମାତ୍ର ହଠାତ୍ କୌଣସି କାରଣ ନଦର୍ଶାଇ ୧୯୮୦ ଅପ୍ରେଲ ମାସରୁ ତାଙ୍କର ଚୁକ୍ତି ସମୟ ନପୂରୁଣୁ ତାଙ୍କୁ ନୂତନ ସରକାର ଉକ୍ତ ପଦବୀରୁ ଅନ୍ତର କରିଦେଇଥିଲେ । ନିର୍ଦ୍ଦିଷ୍ଟ ଭାବରେ ଏହା ରାଜନୈତିକ କାରଣରୁ ହୋଇଥିଲା । ଶ୍ରୀ ସତ୍ୟପ୍ରିୟ ମହାନ୍ତି ୧୯୮୦ ଅପ୍ରେଲ ମାସରେ କଂଗ୍ରେସରେ ଯୋଗଦେଇଥିଲେ ଏବଂ ସେହି ଅପ୍ରେଲ୍ ମାସରେ ଶ୍ରୀ ତ୍ରିପାଠୀଙ୍କୁ ଉନ୍ନୟନ ସଂସ୍ଥା ଅଧ୍ୟକ୍ଷ ପଦରୁ ଅନ୍ତର କରାଯାଇଥିଲା । ଭୁବନେଶ୍ୱର ଉନ୍ନୟନ ସଂସ୍ଥାରୁ ଶ୍ରୀ ତ୍ରିପାଠୀଙ୍କ ବହିଷ୍କାର ଓ ବାଚସ୍ପତି ଶ୍ରୀ ମହାନ୍ତିଙ୍କର କଂଗ୍ରେସରେ ପ୍ରବେଶ ସମକାଳୀନ ହୋଇଥିବାରୁ ତାହା ପରସ୍ପର ସର୍ତ୍ତମୂଳକ ଥିଲା ବୋଲି ସେତେବେଳେ ଗୋଟିଏ ଧାରଣା ଜନ୍ମିଥିଲା । ବ୍ୟକ୍ତିଗତ ଆକ୍ରୋଶର ତୃପ୍ତିସାଧନପାଇଁ ସଂପୃକ୍ତ ବିଭାଗ ବାହ୍ୟ ଚାପରେ ପଡ଼ି ତରବରିଆ ଭାବରେ ତ୍ରୁଟିପୂର୍ଣ୍ଣ ପନ୍ଥାରେ କାର୍ଯ୍ୟାନୁଷ୍ଠାନ କରିବାରୁ ସରକାର ଅଡୁଆରେ ପଡ଼ିଯାଇଥିଲେ ବୋଲି ସେତେବେଳେ ଅଫିସରମାନଙ୍କ ମହଲରେ ସମାଲୋଚନା ହେଉଥିଲା । ରାଜ୍ୟ ସରକାର ଶ୍ରୀ ତ୍ରିପାଠୀଙ୍କୁ କୋଡ଼ିଏ ହଜାର ଟଙ୍କା ଦଣ୍ଡ ଦେବାର ଆଦେଶ ହାଇକୋର୍ଟରୁ ପାଇବା ସଙ୍ଗେ ସଙ୍ଗେ ଉନ୍ନୟନ ସଂସ୍ଥା କାର୍ଯ୍ୟ ବାବଦରେ ମଧ୍ୟ ବିଶେଷଭାବରେ କ୍ଷତିଗ୍ରସ୍ତ ହୋଇଥିଲେ ବୋଲି ଅଭିଯୋଗ ହୋଇଥିଲା । ହାଇକୋର୍ଟର ନିଷ୍ପତ୍ତି ବିରୁଦ୍ଧରେ ସରକାର ସୁପ୍ରିମ୍ କୋର୍ଟରେ ଆବେଦନ କରିଥିଲେ । ବାଚସ୍ପତି ଥିଲାବେଳେ ସତ୍ୟପ୍ରିୟବାବୁ ଉଦ୍ୟାନ ମାର୍ଗରେ ଯେଉଁ ବଡ଼ ସରକାରୀ ଘରେ ରହୁଥିଲେ ଏତେଦିନଯାଏଁ ମଧ୍ୟ ସରକାର ସେ ଘର ଫେରସ୍ତ ନେଇ ନ ଥିଲେ । ଭୁବନେଶ୍ୱରରେ ସତ୍ୟପ୍ରିୟବାବୁ ବହୁ ଘରର ମାଲିକ ହୋଇ ନିଜର ରହିବାପାଇଁ ସ୍ଥାୟୀ ବାସଗୃହ ଥାଇ ରାଜଧାନୀରେ ଅଫିସରମାନଙ୍କପାଇଁ ଉତ୍କଟ ଗୃହ ଅଭାବବେଳେ ସେ ଉକ୍ତ ଗୃହରେ ନରହିଲେ ମଧ୍ୟ ନିଜର କର୍ତ୍ତୃତ୍ୱରେ ରଖି ଆତ୍ମସନ୍ତୋଷ ଲାଭକରିଥିଲେ ବୋଲି ଲୋକମାନେ କହିବାକୁ ଲାଗିଥିଲେ । ପରେ ଅବଶ୍ୟ ସତ୍ୟପ୍ରିୟବାବୁ ଗୋଟିଏ କମିଟିର ବେତନଭୋଗୀ ଚେୟାରମ୍ୟାନ୍ ପଦରେ ନିଯୁକ୍ତ ହୋଇଥିଲେ ଏବଂ ସେହି ବଙ୍ଗଳାକୁ ରଖିଥିଲେ । ଦଳୀୟ ସ୍ୱାର୍ଥପାଇଁ ପ୍ରଶାସନିକ ଅବିଚାର କେତେଦୂର ଯାଇପାରେ ତାହା ଏହି ଘଟଣାରୁ ଅନୁମାନ କରାଯାଇପାରେ । ଏହି ଘଟଣାର ବିଷୟବସ୍ତୁ ସହିତ ସାମଞ୍ଜସ୍ୟ ଥିବା ଆଉ ଗୋଟିଏ ଘଟଣା ମୋର ମନେପଡ଼େ । ବୟୋଜ୍ୟେଷ୍ଠ ଓ ସମ୍ମାନନୀୟ ସ୍ୱର୍ଗୀୟ ଶ୍ରୀ ଲାଲମୋହନ ପଟ୍ଟନାୟକ ୧୯୪୬ରୁ ୧୯୫୨ ମସିହା ପର୍ଯ୍ୟନ୍ତ ଓଡ଼ିଶା ବିଧାନସଭାର ବାଚସ୍ପତି ଥିଲେ । ୧୯୫୨ ନିର୍ବାଚନରେ ସେ ଜଣେ ପ୍ରାର୍ଥୀ ଥିଲେ । ନିର୍ବାଚିତ ହୋଇ ଆସିଥିଲେ ସେ ନିଶ୍ଚୟ ବାଚସ୍ପତି ହୋଇଥାଆନ୍ତେ; ମାତ୍ର ନିର୍ବାଚନରେ ତାଙ୍କର ପରାଜୟ ଘଟିଥିଲା । ବାଚସ୍ପତି ଥିଲାବେଳେ ସେ ସରକାରଙ୍କର ଆବଶ୍ୟକତା ପୂରଣ କରିବା ଉଦ୍ଦେଶ୍ୟରେ ରିକ୍ୟୁଜିସନ୍‌ରେ ନିଆଯାଇଥିବା କଟକରେ ଆଉ ଗୋଟିଏ ଘର ତାଙ୍କର ସରକାରୀ ବାସଭବନ ହୋଇଥିଲା । ବାଚସ୍ପତି ଆସନରୁ ଯିବା ପରେ ସେ ଘର ଛାଡ଼ିବାପାଇଁ ତାଙ୍କୁ ଆଦେଶ ହୋଇଥାଏ । କଟକରେ ତାଙ୍କର ଗୁଣ୍ଠେ ହେଲେ ଜମି ବା ଖଣ୍ଡେ ହେଲେ ଘର ନଥାଏ, ତେଣୁ ଘର ଛାଡ଼ିବା ତାଙ୍କ ପକ୍ଷରେ ଅତ୍ୟନ୍ତ ଚିନ୍ତାର ବିଷୟ ହୋଇଥାଏ । ତାଙ୍କ ପକ୍ଷରେ ଘର ଛାଡ଼ିବାକୁ ବିଳମ୍ବ ହେବାରୁ ସରକାର ଉକ୍ତ ଘରକୁ ଜବରଦଖଲମୁକ୍ତ କରିବାକୁ ବସିଥିଲେ । ଏହା କରାଯାଇଥିଲେ ସେ ଆହୁରି ଅସୁବିଧାରେ ପଡ଼ିଥାଆନ୍ତେ ।

ତାଙ୍କର ବ୍ୟସ୍ତତା ଦେଖି ମୁଁ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କୁ ସେକଥା କହିଥିଲି । ନବବାବୁ କହିଥିଲେ ଯେ ସେ ଲାଲ୍‌ମୋହନବାବୁଙ୍କ ଅବସ୍ଥା କଥା ଜାଣନ୍ତି; ମାତ୍ର ସରକାରଙ୍କୁ ଲୋକାପବାଦ ପ୍ରତି ଦୃଷ୍ଟିଦେବାକୁ ପଡ଼ିବ । ଘର ଅଭାବରୁ ଲାଲମୋହନବାବୁ ପ୍ରକୃତରେ ଅସୁବିଧାରେ ପଡ଼ିଥାଆନ୍ତି । ତେଣୁ ସାମୟିକ ଭାବରେ ତାଙ୍କର ଅସୁବିଧା ଦୂର କରିବା ଉଦ୍ଦେଶ୍ୟରେ ତାଙ୍କୁ ଜେଲ୍ ସଂସ୍କାର କମିଟିର ଅଧ୍ୟକ୍ଷ କରାଯାଇ ଉକ୍ତ ଘରେ ରହିବାକୁ ଅନୁମତି ଦିଆଯାଇଥିଲା । ଲାଲ୍‌ମୋହନବାବୁଙ୍କ ପ୍ରତି ସରକାରଙ୍କର ଏତାଦୃଶ ବିଚାରସମ୍ପନ୍ନ ମନୋବୃତ୍ତି କଟକରେ ଲୋକଙ୍କ ମନରେ ସନ୍ତୋଷ ଦେଇଥିଲା । ସ୍ୱର୍ଗୀୟ ଲାଲମୋହନ ପଟ୍ଟନାୟକ ଥିଲେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନର ଜଣେ ଯୋଦ୍ଧା ।

ଶ୍ରୀ ସତ୍ୟପ୍ରିୟ ମହାନ୍ତିଙ୍କର କଂଗ୍ରେସରେ ଯୋଗଦାନ ସଂପର୍କରେ ଆଉ ଗୋଟିଏ କଥା ମୋର ମନେପଡ଼େ । ବିଧାନସଭା ଭାଙ୍ଗିଦିଆଯିବା ପରେ ପରବର୍ତ୍ତୀ ନିର୍ବାଚନରେ ପ୍ରାର୍ଥୀ ନହେବାପାଇଁ ମୁଁ ନିଷ୍ପତ୍ତି ନେଇଥିଲି ଏବଂ ଏହାର ସତ୍ୟାସତ୍ୟ ବିଷୟରେ ଜାଣିବାପାଇଁ ସତ୍ୟପ୍ରିୟବାବୁ ମୋ ସହିତ କଥାବାର୍ତ୍ତା ହୋଇଥିଲେ । ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା ନକରିବାପାଇଁ ମୋର ନିଷ୍ପତ୍ତି ଜାଣିବା ପରେ ସେ ସେହି ପ୍ରକାର ନିଷ୍ପତ୍ତି ନେବେ ବୋଲି ମୋତେ କହିଥିଲେ । ଠିକ୍ ସେହି ସମୟରେ ପୂର୍ବତନ ଅର୍ଥମନ୍ତ୍ରୀ ଶ୍ରୀ ରାମପ୍ରସାଦ ମିଶ୍ର ଲୋକଦଳ ଛାଡ଼ିଲେ ବୋଲି ଖବରକାଗଜରେ ତାଙ୍କର ବିବୃତି ପ୍ରକାଶ ପାଇଥାଏ । ସେଥିପ୍ରତି ମୋର ଦୃଷ୍ଟି ଆକର୍ଷଣ କରି ସତ୍ୟପ୍ରିୟବାବୁ କହିଥିଲେ, ''କୃତଘ୍ନତାର ଚରମ ସୀମାରେ ରାମପ୍ରସାଦ ମିଶ୍ରେ ପହଞ୍ଚିଲେ । ଦଳ ଛାଡ଼ିଲେ ତ ଛାଡ଼ିଲେ, ଏଣେ ତ ନିର୍ବାଚନରେ ଛିଡ଼ା ହେଉନାହାନ୍ତି; ମାତ୍ର ଯେଉଁମାନଙ୍କ ଆଶୀର୍ବାଦରୁ ଅର୍ଥମନ୍ତ୍ରୀ ହୋଇଥିଲେ ସେମାନେ ଯେତେବେଳେ ଗୋଟିଏ ନିର୍ବାଚନର ସମ୍ମୁଖୀନ ସେତିକିବେଳେ ତାଙ୍କୁ ସମୟ ମିଳିଲା ବିବୃତି ଦେଇ ସେମାନଙ୍କ ପିଠିରେ ଛୁରା ଭୁଷିବାକୁ ।'' ଆମ୍ଭେମାନେ ଆଗାମୀ ନିର୍ବାଚନରେ ପ୍ରାର୍ଥୀ ନହେଲେ ମଧ୍ୟ ପ୍ରାର୍ଥୀ ହେଉନାହୁଁ ବୋଲି ଢୋଲ ନବଜାଇ ନୀରବ ରହିଲେ ଭଲ ହେବ ବୋଲି ଆମେ ଦୁଇଜଣ କଥାବାର୍ତ୍ତା ହୋଇଥିଲୁ । ଆମର ଏ ପ୍ରକାର କଥାବାର୍ତ୍ତା ହେବାର ମାତ୍ର କେତୋଟି ଦିନ ପରେ ବାଚସ୍ପତି ଶ୍ରୀ ସତ୍ୟପ୍ରିୟ ମହାନ୍ତିଙ୍କର ସରକାରୀ ବାସଭବନରେ ଶ୍ରୀ ମହତାବଙ୍କର ଅଧ୍ୟକ୍ଷତାରେ ଗୋଟିଏ କର୍ମୀ ସମ୍ମିଳନୀ ଅନୁଷ୍ଠିତ ହେବାର ସମ୍ବାଦ ଖବରକାଗଜରୁ ପଢ଼ିଥିଲି । ସେହି ସମ୍ବାଦରୁ ଜାଣିଲି ଯେ ସତ୍ୟପ୍ରିୟ ବାବୁ କଂଗ୍ରେସ (ଇ) ଆଦର୍ଶରେ ଅନୁପ୍ରାଣିତ ହୋଇ ନିଜ ଘରକୁ ଫେରିଲାଭଳି ସେ କଂଗ୍ରେସକୁ ଗଲେ ବୋଲି କୁଆଡ଼େ କହିଥିଲେ । ପୂର୍ବତନ ଉପବାଚସ୍ପତି ଶ୍ରୀ ସୁରେନ୍ଦ୍ରନାଥ ନାୟକ ଓ ପୁରୀର ଆଉ କେତେଜଣ ବିଶିଷ୍ଟ ବ୍ୟକ୍ତି ଖବରକାଗଜରେ ବିବୃତିମାନ ଦେଇ ବାଚସ୍ପତି ଶ୍ରୀ ମହାନ୍ତିଙ୍କର ନୀତିହୀନ କାର୍ଯ୍ୟର ନିନ୍ଦା କରିବା ସଙ୍ଗେ ସଙ୍ଗେ କଂଗ୍ରେସ କେବେ ତାଙ୍କର ଘର ନଥିଲା ଏବଂ ସ୍ୱାଧୀନତା ସଂଗ୍ରାମ ତଥା ଅଗଷ୍ଟ-ବିପ୍ଳବ ସମୟରେ ଇଂରେଜ ସରକାରଙ୍କର ବାହୁତଳେ ଥାଇ ଜାତୀୟ ଯୁଦ୍ଧ-ସାମ୍ମୁଖ୍ୟ ତାଙ୍କର ପ୍ରକୃତ ଘର ଥିଲା ବୋଲି ସେମାନେ ତାଙ୍କୁ ସୂଚାଇଦେଇଥିଲେ । ଶ୍ରୀ ମହାନ୍ତି ଯେତେବେଳେ କଂଗ୍ରେସରେ ଯୋଗଦିଅନ୍ତି ସେତେବେଳେ ସେ ବାଚସ୍ପତି ଥାଇ ବେତନ ପାଉଥିଲେ ଏବଂ ନୂତନ ବାଚସ୍ପତି ନିର୍ବାଚନ ହେବା ପର୍ଯ୍ୟନ୍ତ ସେ ଉକ୍ତ ବେତନ ନେଉଥିଲେ । ବାଚସ୍ପତି ଆସନ ଗୋଟିଏ ମର୍ଯ୍ୟାଦାସଂପନ୍ନ ଉଚ୍ଚ ପରମ୍ପରାସଂଶ୍ଳିଷ୍ଟ ଅନୁଷ୍ଠାନ । ଶ୍ରୀ ମହାନ୍ତି ସେ ପ୍ରକାର ସମ୍ମାନିତ ଆସନକୁ ଯେଉଁଭଳି ଭାବରେ ଅସମ୍ମାନିତ କଲେ, ତା'ର ପଟାନ୍ତର ଆଉ କେଉଁଠି ଥିଲାଭଳି ମନେହୁଏ ନାହିଁ ବୋଲି ଶ୍ରୀ ନାୟକ ଏବଂ ଅନ୍ୟମାନେ ତାଙ୍କ ବିବୃତିରେ କହିଥିଲେ । ସତ୍ୟପ୍ରିୟ ମହାନ୍ତିଙ୍କ ପୂର୍ବରୁ ଯେଉଁମାନେ ଓଡ଼ିଶା ବିଧାନସଭାରେ ବାଚସ୍ପତି ଆସନ ଅଳଙ୍କୃତ କରିଥିଲେ, ସେମାନେ ଏ ପ୍ରକାର ଆଚରଣ ପ୍ରଦର୍ଶନ କରିନଥିଲେ ।

ମୋର ମନେପଡ଼େ, ଅସନ୍ତୁଷ୍ଟ ଗୋଷ୍ଠୀ ଆଉ ଗୋଟିଏ ଘଟଣାରେ ମୋ ପ୍ରତି ପ୍ରଧାନମନ୍ତ୍ରୀ

ଦେଶାଇଙ୍କୁ ବିମୁଖ କରାଇପାରିଥିଲେ । ତାହା ଥିଲା ଓଡ଼ିଶା କ୍ୟାଡ଼ରଭୁକ୍ତ ଜଣେ ଆଇ.ଏ.ଏସ୍. ଅଫିସର୍ ସୟଦ୍ ମୁଜାଫର ହୁସେନ୍ ବାର୍ଣ୍ଣେଙ୍କୁ ଆମ ରାଜ୍ୟର ମୁଖ୍ୟ ଶାସନ ସଚିବ ନିଯୁକ୍ତି ଦେବା ସମ୍ବନ୍ଧରେ । ପୂର୍ବରୁ ସେ ରାଜସ୍ୱ ବୋର୍ଡ଼ର ସଭ୍ୟ ଥିଲେ । ଦେଶରେ ଜରୁରୀକାଳୀନ ଅବସ୍ଥା ଜାରିଥିବା ସମୟରେ ସେ କେନ୍ଦ୍ର ସଚିବାଳୟରେ ତଥ୍ୟ ଓ ସୂଚନା ବିଭାଗର ଶାସନ ସଚିବ ଭାବରେ ସଂଜୟ ଗାନ୍ଧୀଙ୍କଦ୍ୱାରା କିସା କୁର୍ସିକା ଚଳଚ୍ଚିତ୍ରପୋଡ଼ା ଅଭିଯୋଗ ସମ୍ବନ୍ଧୀୟ ନଥିପତ୍ର ଲେଖାଲେଖି ସହିତ ସଂପୃକ୍ତ ଥିଲେ । ସେଥିପାଇଁ ଶ୍ରୀ ଦେଶାଇଙ୍କର ତାଙ୍କ ପ୍ରତି ଭଲ ଧାରଣା ନଥିଲା । ମୁଁ ତାଙ୍କୁ ମୁଖ୍ୟ ଶାସନ ସଚିବ ପଦରେ ନିଯୁକ୍ତି ଦେଇଥିବାରୁ ମୋର ସେ ପ୍ରକାର କାର୍ଯ୍ୟକୁ ପ୍ରଧାନମନ୍ତ୍ରୀ ବିଦ୍ରୁପ କରୁଥିଲେ ବୋଲି ଅସନ୍ତୁଷ୍ଟ ଗୋଷ୍ଠୀ ପ୍ରଚାର କରିବାରେ ଲାଗିଥିଲେ । ପ୍ରଧାନମନ୍ତ୍ରୀ ତାଙ୍କର ଅସନ୍ତୋଷ କେନ୍ଦ୍ର ମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ଜରିଆରେ ମୋତେ ଜଣାଇଦେଇଥିଲେ । ଶ୍ରୀ ବାର୍ଣ୍ଣେଙ୍କ ବିରୁଦ୍ଧରେ କି ନିର୍ଦ୍ଦିଷ୍ଟ ଅଭିଯୋଗ ଥିଲା ତାହା ରାଜ୍ୟ ସରକାରଙ୍କୁ ଜଣାଇଦେବାପାଇଁ ମୁଁ କହିଥିଲି । କେନ୍ଦ୍ରରୁ ସେ ସମ୍ବନ୍ଧରେ କିଛି ଖବର ଆସିଲାନାହିଁ । କେନ୍ଦ୍ର ସରକାରଙ୍କ ଆଡୁ ତାଙ୍କ ଉପରେ କିଛି କାର୍ଯ୍ୟାନୁଷ୍ଠାନ ମଧ୍ୟ ହେଉନଥାଏ । ଏହାପରେ ମୁଁ ଦିଲ୍ଲୀରେ ପ୍ରଧାନମନ୍ତ୍ରୀଙ୍କୁ ଦେଖାକଲାବେଳେ ସେ ସେହି ନିଯୁକ୍ତି କଥା ଉଠାଇଥିଲେ ଏବଂ ବିଦ୍ରୁପ କଲାଭଳି କେତେକ ମନ୍ତବ୍ୟ ଦେଇଥିଲେ । ସେହି ପ୍ରକାର ଅଭିଯୋଗରେ ସଂପୃକ୍ତ ବୋଲି ଶୁଣାଥିବା ଆଉ କେତେକ ବଡ଼ ବଡ଼ ଅଫିସର୍ କେନ୍ଦ୍ର ସରକାରଙ୍କର କେତେକ ଅତି ଗୁରୁତ୍ୱପୂର୍ଣ୍ଣ ବିଭାଗର ଦାୟିତ୍ୱରେ ଥିବା କଥା ମୁଁ ମୋରାରଜୀ ଭାଇଙ୍କୁ ଦର୍ଶାଇଥିଲି । ସେହି ପରିସ୍ଥିତିରେ କେବଳ ବାର୍ଣ୍ଣେଙ୍କୁ ତାଙ୍କ ଦାୟିତ୍ୱରୁ ଅପସାରଣ କଲେ ସଂଖ୍ୟାଲଘୁ ସଂପ୍ରଦାୟ ପ୍ରତି ବିଚାର ଓ ପାତରଅନ୍ତର ବ୍ୟବହାର କରାଯାଉଛି ବୋଲି ଧାରଣା ଜନ୍ମିପାରେ ବୋଲି ମୁଁ ଅତି ବିନମ୍ର ଓ ଦୃଢ଼ଭାବରେ କହିବାରୁ ସେ ଅଡୁଆରେ ପଡ଼ିଗଲାଭଳି ମୋର ମନେହେଲା । ତା'ପରେ ସେ ଏ ବିଷୟରେ ହସ୍ତକ୍ଷେପ କରିବେନାହିଁ ବୋଲି କହି କଥାଟା ମୋ ଉପରେ ଛାଡ଼ିଦେଲେ । ଏ ନିଯୁକ୍ତିରେ ଆଉ ପରିବର୍ତ୍ତନ ହେଲାନାହିଁ । ବାର୍ଣ୍ଣେ ମୁଖ୍ୟ ଶାସନ ସଚିବ ହୋଇ ରହିଲେ । ଇତି ମଧ୍ୟରେ ୧୯୮୦ ମସିହା ପ୍ରାରମ୍ଭରେ କେନ୍ଦ୍ରରେ କଂଗ୍ରେସ ସରକାର ଆସିଗଲା । ରାଜ୍ୟର ମୁଖ୍ୟ ଶାସନ ସଚିବ ହିସାବରେ ସେ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀଙ୍କ ପ୍ରତ୍ୟକ୍ଷ ସଂପର୍କରେ ଆସିବାର ସୁଯୋଗ ପାଇଲେ । ସେ ପ୍ରକାର ସଂପର୍କ ତାଙ୍କୁ ପ୍ରଥମେ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରଣାଳୟର ଶାସନ ସଚିବ ଏବଂ ପରେ ନାଗାଲାଣ୍ଡ, ତ୍ରିପୁରା ଓ ମଣିପୁର ରାଜ୍ୟଗୁଡ଼ିକର ରାଜ୍ୟପାଳଭାବେ ନିଯୁକ୍ତି ପାଇବାରେ ସହାୟକ ହୋଇଥିଲା ବୋଲି ସେ ସ୍ୱୀକାର କରିଥିଲେ । କଥାରେ ଅଛି, 'ଯାହାକୁ ରଖିବେ ଅନନ୍ତ, କି କରିପାରେ ବଳବନ୍ତ' । ଚାକିରିରୁ ଅନ୍ତର ହେବାର ଆଶଙ୍କା ଅପସରିଯାଇ ସେ ରାଜ୍ୟପାଳ ହୋଇପାରିଲେ । ଓଡ଼ିଶା ସହିତ ବାର୍ଣ୍ଣେ ତାଙ୍କର ସଂପର୍କକୁ ସ୍ଥାୟୀ କରିଛନ୍ତି । ସେ ରାଜ୍ୟପାଳ ହେବାପରେ ତାଙ୍କ କନ୍ୟାକୁ ଖୋର୍ଦ୍ଧା ସବ୍‌ଡିଭିଜନ୍ ସରଦାପୁର ଗ୍ରାମର ଜଣେ ସୁଯୋଗ୍ୟ ଯୁବକଙ୍କ ସହିତ ବିବାହ ଦେଇଛନ୍ତି ।

## ନେତୃତ୍ୱ ପରିବର୍ତ୍ତନପାଇଁ ଉଦ୍ୟମ

ଓଡ଼ିଶାରେ ଜନତା ବିଧାୟକ ଦଳର ନେତା ପରିବର୍ତ୍ତନ ସମ୍ବନ୍ଧରେ ଆବେଦନ ପାଇବା ପରେ ଦଳର ସଭାପତି ଶ୍ରୀ ଚନ୍ଦ୍ରଶେଖର ଓ ଶ୍ରୀ ଦେଶାଇଙ୍କ ଗୋଷ୍ଠୀର ଲୋକମାନେ ଆମ ରାଜ୍ୟ ରାଜନୀତିରେ ଅଙ୍ଗୁଳି ପ୍ରବେଶ କରିବାର ସୁଯୋଗ ପାଇଥିଲେ । ଶ୍ରୀ ବିଜୁ ପଟ୍ଟନାୟକ ଶ୍ରୀ ଚରଣ ସିଂହଙ୍କ ଗୋଷ୍ଠୀ ସହିତ ଜଡ଼ିତଥିବାରୁ ଓଡ଼ିଶାରେ ତାଙ୍କର ପ୍ରଭାବକୁ ନଷ୍ଟ କରିବାପାଇଁ ସେତେବେଳେ ଗୋଟିଏ ଉଦ୍ୟମ ଆରମ୍ଭ ହୋଇଥିଲା । ଓଡ଼ିଶାରେ ବିଧାନସଭାରେ ଜନତା ଦଳର ନେତୃତ୍ୱ ପରିବର୍ତ୍ତନ ହୋଇପାରିଲେ ସେ କାର୍ଯ୍ୟ ସହଜରେ ହୋଇପାରିବ ବୋଲି ସେମାନେ ଆଶାକରୁଥିଲେ । ତାହା ସମ୍ଭବ ହୋଇ ନ ପାରିଲେ ଅନ୍ତତଃ ମୁଁ ବିଜୁବାବୁଙ୍କ ପ୍ରତି ଅନୁରକ୍ତ ନରହି ସେମାନଙ୍କ ଗୋଷ୍ଠୀରେ ଅନ୍ତର୍ଭୁକ୍ତ ହୋଇପାରିଲେ

ସେମାନଙ୍କର ଉଦ୍ଦେଶ୍ୟ କିଛି ପରିମାଣରେ ସାଧିତ ହୋଇପାରିବ ବୋଲି ସେମାନେ ମନେକରିଥିଲେ । ସେତେବେଳେ ଜନତାଶାସିତ ରାଜ୍ୟ ସରକାରଙ୍କର ମୁଖ୍ୟମନ୍ତ୍ରୀମାନେ ପ୍ରଧାନମନ୍ତ୍ରୀଙ୍କ ପୁଅ ଶ୍ରୀ କାନ୍ତି ଦେଶାଇଙ୍କ ସହିତ ସଂପର୍କ ରଖୁଥିଲେ । ଜନତା ଦଳର ମୁଖ୍ୟମନ୍ତ୍ରୀମାନେ ଦିଲ୍ଲୀ ଗଲାବେଳେ ସେମାନେ ପ୍ରାୟ ଶ୍ରୀ କାନ୍ତି ଦେଶାଇଙ୍କୁ ଦେଖାକରୁଥିଲେ । ମୁଁ କିନ୍ତୁ ତାହା କରୁ ନଥିଲି । ମୁଁ ଶ୍ରୀ କାନ୍ତି ଦେଶାଇଙ୍କୁ ମୁଖ୍ୟମନ୍ତ୍ରୀ ହେବାର ପ୍ରାୟ ଦୁଇବର୍ଷ ପରେ ୧୯୭୯ ମସିହା ଅପ୍ରେଲ୍ ମାସରେ ପ୍ରଥମେ ଚିହ୍ନିଲି । ମୋର ମନେଅଛି, ଶ୍ରୀ ମୋରାରଜୀ ଦେଶାଇ ଆଣ୍ଡାମାନ ଗସ୍ତରେ ଯିବା ସମୟରେ ଚାରବାଟିଆ ବିମାନବନ୍ଦରଠାରେ କାନ୍ତି ଦେଶାଇଙ୍କ ସହିତ ମୋର ଚିହ୍ନାହେଲା । ମୁଁ ତାଙ୍କ ସଙ୍ଗେ ଦେଖା କରୁ ନଥିଲି ବୋଲି କାନ୍ତି ଦେଶାଇଙ୍କର ମୋ ପ୍ରତି ଭଲ ଧାରଣା ନଥିଲା । ମୋ ଉପରେ ଅସନ୍ତୋଷ ଥିବା କଥା ସେ ଆମର କେତେଜଣ ଲୋକସଭା ସଦସ୍ୟଙ୍କ ଆଗରେ ପ୍ରକାଶ କରିଥିଲେ । ସେମାନେ ଆସି ମୋତେ ସେ କଥାକହିଥିଲେ । ଓଡ଼ିଶାରେ ଜନତା ଦଳକୁ ବିଜୁ ପଟ୍ଟନାୟକଙ୍କ କବଳରୁ ମୁକ୍ତ କରିବାପାଇଁ ମୁଁ ଯଦି ବାହାରେ ତା'ହେଲେ ସେଥିପାଇଁ ଅର୍ଥର ଆବଶ୍ୟକତା ପଡ଼ିଲେ ଶ୍ରୀ କାନ୍ତି ଦେଶାଇ ତାହା ବହନ କରିବେ ବୋଲି ସେ ମୋ ପାଖକୁ ଖବର ପଠାଇଥିଲେ । ଆମର ଜଣେ ଲୋକସଭା ସଦସ୍ୟ ଅତି ଗୋପନୀୟ ଭାବରେ ଦିଲ୍ଲୀସ୍ଥିତ ଓଡ଼ିଶା ଭବନରେ ମୋତେ ସେକଥା କହିଥିଲେ ଏବଂ ଶ୍ରୀ କାନ୍ତି ଦେଶାଇଙ୍କୁ ଦେଖାକରିବାକୁ ପରାମର୍ଶ ଦେଇଥିଲେ । ଶ୍ରୀ କାନ୍ତି ଦେଶାଇଙ୍କୁ ଦେଖାକରିବାପାଇଁ ସେଇ ପୁରୁଖା ସଦସ୍ୟଙ୍କ ପରାମର୍ଶ ମୁଁ ଗ୍ରହଣକରିଥାଆନ୍ତି; ମାତ୍ର ଦେଖାକରିବାର ଉଦ୍ଦେଶ୍ୟ ସେ ଯାହା ମୋତେ କହିଥିଲେ ତାହା ଶୁଣି ମୋର ଆଉ ସ୍ପୃହା ହୋଇନଥିଲା ।

## ଚନ୍ଦ୍ରଶେଖରଙ୍କ ଚକ୍ରାନ୍ତ

ଜନତା ଦଳର ସଭାପତି ଚନ୍ଦ୍ରଶେଖରଙ୍କର ମଧ ମୋ ପ୍ରତି ଆଦୌ ଭଲ ଧାରଣା ନଥାଏ । ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ପାଇଁ ସେ ମୋ ଉପରେ ଅତ୍ୟନ୍ତ ବିରକ୍ତ ବୋଲି ମୁଁ ଅନୁଭବ କରୁଥିଲି । କୌଣସିମତେ ମୋତେ ଅସୁବିଧାରେ ପକାଇବାପାଇଁ ଚନ୍ଦ୍ରଶେଖର ସୁବିଧା ଖୋଜୁଥିଲେ । ତାଙ୍କ ପାଖରେ ଅସନ୍ତୁଷ୍ଟ ଗୋଷ୍ଠୀଙ୍କର ଅଭିଯୋଗ ଓ ଆମ୍ଭମାନଙ୍କ ବିରୁଦ୍ଧରେ ସେମାନେ ଦେଇଥିବା ସ୍ମାରକପତ୍ର ତାଙ୍କୁ ସେହି ସୁଯୋଗ ଦେଇଥିଲା । ଉକ୍ତ ସ୍ମାରକପତ୍ରରେ କୋଡ଼ିଏ ବାଉନ ଜଣ ଜନତା ଦଳର ବିଧାନସଭା ସଦସ୍ୟ ଦସ୍ତଖତ କରିଥିଲେ ବୋଲି କୁହାଯାଉଥିଲା । ପ୍ରକୃତରେ ସେସବୁ ଦସ୍ତଖତ ଅସଲି କି ନକଲି ସେ ବିଷୟ ପରୀକ୍ଷା କରାଯାଇନଥିଲା । କେବଳ କୋଡ଼ିଏ ଜଣ ପର୍ଯ୍ୟନ୍ତ ସଭ୍ୟ ଚାହୁଁଥିଲେ ନେତୃତ୍ୱ ପରିବର୍ତ୍ତନ । ଜନତା ଦଳର ସଭ୍ୟସଂଖ୍ୟା ସେତେବେଳେ ଥିଲା ୧୧୭ ଜଣ । ସେହି ଅସନ୍ତୁଷ୍ଟ କୋଡ଼ିଏ ଜଣଙ୍କୁ ବାଦ୍ ଦେଲେ ବାକି ସମସ୍ତେ ଯେ ମୋ ସପକ୍ଷରେ ଥିଲେ ସେ ବିଷୟରେ ମୁଁ ନିଶ୍ଚିତ ଥିଲି । ବିପୁଳ ସମର୍ଥନ ମୋ ପଛରେ ଥିଲା ବୋଲି ସେତେବେଳେ ଖବରକାଗଜମାନଙ୍କରେ ପ୍ରକାଶପାଉଥାଏ; ମାତ୍ର ଶ୍ରୀ ଚନ୍ଦ୍ରଶେଖର ସେଥିରେ ବିଶ୍ୱାସ କରୁନଥିଲେ । ମୋ ମନ୍ତ୍ରିମଣ୍ଡଳର କାର୍ଯ୍ୟପ୍ରଣାଳୀ ଏବଂ ଆମର ତଥାକଥିତ ଦୁଷ୍କର୍ମ ସମ୍ବନ୍ଧରେ ଗୋଟିଏ ଅଭିଯୋଗପତ୍ର ଚନ୍ଦ୍ରଶେଖର ପାଇଥିଲେ । ସେସବୁ ଅଭିଯୋଗର ସତ୍ୟାସତ୍ୟ ବିଷୟ ନେଇ ସେ ଥରେ ହେଲେ ମୋ ସହିତ ପରାମର୍ଶ କରିନଥିଲେ । ଅସନ୍ତୁଷ୍ଟ ଗୋଷ୍ଠୀର ନେତାମାନେ ମୋ ବିରୁଦ୍ଧରେ ଏବଂ ମନ୍ତ୍ରିମଣ୍ଡଳ ବିରୁଦ୍ଧରେ ଚନ୍ଦ୍ରଶେଖରଙ୍କୁ ଅଭିଯୋଗ କଲା ପରେ ପରେ ମୋର ତାଙ୍କ ସହିତ ଦେଖାହୋଇଥିଲା । ଅତି ଆଶ୍ଚର୍ଯ୍ୟର କଥା ଯେ ସେ ଉକ୍ତ ଅଭିଯୋଗଗୁଡ଼ିକ ସଂପର୍କରେ ମୋତେ କିଛି କହିନଥିଲେ ବା ମୋ'ଠାରୁ କିଛି ଜାଣିବାକୁ ଚାହିଁନଥିଲେ । ଓଡ଼ିଶା ବିଷୟରେ ଜନତା ଦଳର ଉଚ୍ଚ କର୍ତ୍ତୃପକ୍ଷ କି ପଦକ୍ଷେପ ନେବେ ସେ ବିଷୟରେ ବୋଧହୁଏ ଶ୍ରୀ ଚନ୍ଦ୍ରଶେଖର ପୂର୍ବରୁ ସ୍ଥିର କରିସାରିଥିଲେ; ତେଣୁ ମୋ ସହିତ ଆଲୋଚନା କରିବା ଅନାବଶ୍ୟକ ବୋଲି ସେ ଭାବିଥିଲେ । ନନ୍ଦିନୀ ଦେବୀ ମଧ ଆମ୍ଭମାନଙ୍କ ବିରୁଦ୍ଧରେ ବହୁ ଅଭିଯୋଗ ଜନତା ଦଳର ସଭାପତି ହିସାବରେ

ଚନ୍ଦ୍ରଶେଖରଙ୍କ ପାଖରେ ଆଣିଥିଲେ । ନନ୍ଦିନୀ ଦେବୀଙ୍କ 'ଧରିତ୍ରୀ' ଖବରକାଗଜରେ ଓଡ଼ିଶାରେ ନେତୃତ୍ୱ ପରିବର୍ତ୍ତନ ପାଇଁ କେନ୍ଦ୍ର ଉଚ୍ଚ କର୍ତ୍ତୃପକ୍ଷ ନିର୍ଦ୍ଦେଶ ଦେବା ସୁନିଶ୍ଚିତ ବୋଲି ବାରମ୍ବାର ପ୍ରକାଶ ପାଉଥାଏ । ୧୯୭୯ ମସିହା ଫେବୃୟାରୀ ମାସରେ ନେତୃତ୍ୱ ପରିବର୍ତ୍ତନ ସମ୍ବନ୍ଧରେ ନାନା ଗୁଜବ ଭୁବନେଶ୍ୱରରେ ଶୁଣାଯାଉଥିଲା । ପ୍ରକୃତ କଥା କ'ଣ ସେ ବିଷୟରେ ଦିଲ୍ଲୀରୁ ବୁଝିବାପାଇଁ ମୋତେ ମୋର ବନ୍ଧୁମାନେ ପରାମର୍ଶ ଦେଇଥିଲେ । ଆମ ରାଜ୍ୟପାଳ ଶ୍ରୀ ଭଗବତ ଦୟାଲ୍ ଶର୍ମା ପ୍ରଧାନମନ୍ତ୍ରୀଙ୍କର ଖୁବ୍ ବିଶ୍ୱସ୍ତ ଥିଲେ । ପ୍ରକୃତ କଥା କ'ଣ ସେକଥା ପ୍ରଧାନମନ୍ତ୍ରୀଙ୍କଠାରୁ ଜାଣିବାପାଇଁ ମୁଁ ତାଙ୍କୁ ଅନୁରୋଧ କରିଥିଲି । ରାଜ୍ୟପାଳ ମୋ ଉପସ୍ଥିତିରେ ପ୍ରଧାନମନ୍ତ୍ରୀଙ୍କ ସହିତ ଫୋନ୍‌ରେ କଥାବାର୍ତ୍ତା ହୋଇଥିଲେ । ନେତୃତ୍ୱ ପରିବର୍ତ୍ତନର କୌଣସି ପ୍ରସ୍ତାବ ନାହିଁ ବୋଲି ଶ୍ରୀ ଦେଶାଇ ତାଙ୍କୁ କହିଥିଲେ । ବିଜୁବାବୁଙ୍କୁ ପଚାରିବାରେ ସେ ମଧ୍ୟ କିଛି ଜାଣନ୍ତିନାହିଁ ବୋଲି କହିଥିଲେ । ମାର୍ଚ୍ଚ ମାସ ପହିଲା ଦିନ ବିଜୁବାବୁ ଭୁବନେଶ୍ୱର ଆସିଥିଲେ । ବିଧାନସଭା ଜନତାଦଳରେ ମୋର ସ୍ଥିତି ଓ ନେତୃତ୍ୱ ପରିବର୍ତ୍ତନ ସମ୍ବନ୍ଧରେ ସାମ୍ବାଦିକମାନଙ୍କୁ ତାଙ୍କର ଉତ୍ତର ନିମ୍ନମତେ ପ୍ରକାଶ ପାଇଥିଲା : "He had no doubt that the Orissa Chief Minister Mr. Nilamani Routray had the support of the majority of the members of the State Janata Legislature Party. Neither the Prime Minister Mr. Morarji Desai nor the Janata Party President Mr. Chandrasekhar had had any talk with him about the Orissa Janata affairs. The affairs of the Janata Party here are much better than in many other States."

ମାର୍ଚ୍ଚ ମାସଟି ସାରା ଓଡ଼ିଶା ବିଧାନସଭା ଅଧିବେଶନ ଚାଲିଥିଲା । ବିଧାନସଭାରେ ସରକାରଙ୍କୁ କୌଣସି ପ୍ରକାର ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିନଥିଲା । ନନ୍ଦିନୀ ଦେବୀଙ୍କ ଦଳବିରୋଧୀ କାର୍ଯ୍ୟ ହେତୁ ଜନତା ଦଳ ଲୋକମାନେ ବିଶେଷଭାବରେ ଉତ୍ତ୍ୟକ୍ତ ହୋଇଥିଲେ । ଦିନେ ବିଧାନସଭା ଜନତା ଦଳର ଗୋଟିଏ ବୈଠକରେ ନନ୍ଦିନୀ ଦେବୀଙ୍କର ଦଳବିରୋଧୀ କାର୍ଯ୍ୟ ବିଷୟରେ ବିଶେଷ ଆଲୋଚନା ହୋଇଥିଲା । ତାଙ୍କୁ ଦଳରୁ ବହିଷ୍କାର କରିବାପାଇଁ ସୁପାରିସ୍ କରି ଗୋଟିଏ ପ୍ରସ୍ତାବ ଗ୍ରହଣ କରାଯାଇଥିଲା ଏବଂ ତାହା ଖବରକାଗଜମାନଙ୍କରେ ପ୍ରକାଶ ପାଇଥିଲା । ଦଳ ବୈଠକରେ ଏ ପ୍ରକାର ପ୍ରସ୍ତାବ ଗ୍ରହଣ କରିବା ଅତ୍ୟନ୍ତ ଅଗଣତାନ୍ତ୍ରିକ ଓ ମନୋମୁଖୀ ବୋଲି କହି ନନ୍ଦିନୀ ଦେବୀ ଦଳର ସଭାପତି ଶ୍ରୀ ଚନ୍ଦ୍ରଶେଖରଙ୍କ ପାଖରେ ଅଭିଯୋଗ କରିଥିଲେ । ଅପ୍ରେଲ୍ ମାସ ଛ' ତାରିଖରେ ଶ୍ରୀ ଚନ୍ଦ୍ରଶେଖର ନନ୍ଦିନୀ ଦେବୀଙ୍କର ଅଭିଯୋଗ ମୋ ପାଖକୁ ପଠାଇ ମୋର ମତାମତ ଚାହିଁଥିଲେ । ସେହି ଅପ୍ରେଲ୍ ମାସ ଛ' ତାରିଖରେ ଜନତା ଦଳର ସାଧାରଣ ସଂପାଦକ ଶ୍ରୀ ରାମକୃଷ୍ଣ ହେଗ୍‌ଡ଼େ ମୋତେ ଗୋଟିଏ ଚିଠି ଲେଖି ଜଣାଇଥିଲେ ଯେ ପାର୍ଲିଆମେଣ୍ଟାରୀ ବୋର୍ଡ଼ର ନିଷ୍ପତ୍ତି ଅନୁସାରେ ମୋତେ ସେହି ମାସ ଉଣେଇଶ ତାରିଖରେ ରାଜ୍ୟ ବିଧାନସଭା ଜନତା ଦଳର ଆସ୍ଥାସୂଚକ ଭୋଟରେ ସମ୍ମୁଖୀନ ହେବାକୁ ପଡ଼ିବ ଏବଂ ତାହା କେନ୍ଦ୍ର ରେଳ ବିଭାଗର ମନ୍ତ୍ରୀ ଶ୍ରୀ ମଧୁ ଦଣ୍ଡବତେଙ୍କ ତତ୍ତ୍ୱାବଧାନରେ ହେବ । ଉପରୋକ୍ତ ଦୁଇଖଣ୍ଡି ଚିଠି ମୁଁ ଏକସମୟରେ ପାଇଥିଲି । ବିଧାନସଭାର ଜନତା ଦଳର ସୁପାରିସମତେ ନନ୍ଦିନୀ ଦେବୀ ଜନତା ଦଳରୁ ବହିଷ୍କୃତ ହେବା ପୂର୍ବରୁ ମୁଁ କିପରି ଦଳପତି ପଦରୁ ବହିଷ୍କୃତ ହେବି ତାହାର ବନ୍ଦୋବସ୍ତ ଦଳର ସଭାପତି ଶ୍ରୀ ଚନ୍ଦ୍ରଶେଖର କରୁଥିଲେ ବୋଲି ମୁଁ ଭାବିଥିଲି । ଚିଠିଗୁଡ଼ାକ ପାଇ ମୁଁ ଅତ୍ୟନ୍ତ ଦୁଃଖିତ ହୋଇଥିଲି ଏବଂ ଜନତା ଦଳର ଭବିଷ୍ୟତ ବିଷୟରେ ବଡ଼ ସନ୍ଦିହାନ ହୋଇଯାଇଥିଲି । ଗୋଟିଏ ବିରାଟ ଦେଶର ଶାସନ ଦାୟିତ୍ୱରେ ଥିବା ଜନତା ଦଳ ଭଳି ଏତେ ବଡ଼ ରାଜନୈତିକ ଦଳର ସଭାପତି ଯଦି ଧୈର୍ଯ୍ୟଶୀଳ ଓ ବିଚାରବନ୍ତ ନହୁଅନ୍ତି ଏବଂ କୌଣସି ବିଷୟରେ ଭଲଭାବରେ ବୁଝିବୁଝି ନକରି ଗୋଷ୍ଠୀଗତ ବିଦ୍ୱେଷ ଦ୍ୱାରା ପ୍ରଭାବିତ ହୋଇ ନିଷ୍ପତ୍ତି ନିଅନ୍ତି, ତା'ହେଲେ ସେ ଦଳର ଭବିଷ୍ୟତ କଅଣ ହେବ ଏବଂ ତା'ର ପରମାୟୁ କେତେ, ସେ ସମ୍ବନ୍ଧରେ ମୁଁ ଚିନ୍ତା କରିବାକୁ ଲାଗିଥିଲି । ଶ୍ରୀ ଚନ୍ଦ୍ରଶେଖରଙ୍କୁ ଅପ୍ରେଲ୍

ଦଶ ତାରିଖରେ ଗୋଟିଏ ଚିଠି ଲେଖି ସେ କିପରି ସାଧାରଣ ସୌଜନ୍ୟ ଓ ଶିଷ୍ଟାଚାର ଲଘନ କରିଥିଲେ ତାହା ଦର୍ଶାଇଥିଲି । ମୁଁ ଅଭିଯୋଗ କରିଥିଲି ଯେ ଜନତା ଦଳର ନେତାଭାବରେ ସେ ସୁରୁଖୁରୁରେ ଦୁଇ ବର୍ଷ କାର୍ଯ୍ୟ ଚଳାଇ ଆସିଛନ୍ତି, ତାଙ୍କୁ ବହିଷ୍କାର କରାଇବା ବ୍ୟବସ୍ଥାର ସମ୍ମୁଖୀନ କରାଇବା ପୂର୍ବରୁ ତାଙ୍କ ବିରୁଦ୍ଧରେ ଅଭିଯୋଗ କ'ଣ ସେ ସମ୍ବନ୍ଧରେ ତାଙ୍କୁ ଜଣାଇବାଭଳି ଅତି ସାଧାରଣ ଶିଷ୍ଟାଚାର ସେ ପାଳନ କରିନାହାନ୍ତି । ପ୍ରକୃତରେ ଦଳରେ ମୋର ସ୍ଥିତି କ'ଣ, ବିଭେଦକାରୀଙ୍କ ପକ୍ଷରେ କେତେ ସଭ୍ୟ ଅଛନ୍ତି ଓ ସେମାନଙ୍କ ଅଭିଯୋଗଗୁଡ଼ିକ ସତ୍ୟ କି କାଳ୍ପନିକ, ସେ ବିଷୟରେ ଥରେ ହେଲେ ମୋ ସହିତ ପରାମର୍ଶ ନକରି ଏଭଳି ସିଦ୍ଧାନ୍ତ ନେବାଦ୍ୱାରା ଦଳର ଉଚ୍ଚ କର୍ତ୍ତୃପକ୍ଷ ସଂସଦୀୟ ଗଣତନ୍ତ୍ରରେ ଗୋଟିଏ ଅଭୂତପୂର୍ବ ଅସଙ୍ଗତ ଆଚରଣ ପ୍ରଦର୍ଶନ କରିଥିଲେ । ଓଡ଼ିଶା ବିଧାନସଭା ଜନତା ଦଳର ତଥାକଥିତ ସ୍ୱେଚ୍ଛାଚାରୀ ଆଚରଣ ସମ୍ବନ୍ଧରେ ନନ୍ଦିନୀ ଦେବୀ ଯେଉଁ ଅଭିଯୋଗ କରିଥିଲେ ସେ ସଂପର୍କରେ ମୋର ମତାମତ ଜାଣିବାପାଇଁ ଶ୍ରୀ ଚନ୍ଦ୍ରଶେଖର ଗଣତାନ୍ତ୍ରିକ ବିଚାରଧାରାର ଯେଉଁ ପରାକାଷ୍ଠା ପ୍ରଦର୍ଶନ କରିଥିଲେ ଅନ୍ତତଃ ସେହି ପ୍ରକାର ବିଚାରଧାରା ଏ କ୍ଷେତ୍ରରେ ମୁଁ ତାଙ୍କଠାରୁ ଓ ପାର୍ଲିଆମେଣ୍ଟାରୀ ବୋର୍ଡ଼ଠାରୁ ଆଶାକରୁଥିଲି । ଓଡ଼ିଶାରେ ଏହି ଅସନ୍ତୁଷ୍ଟ ବ୍ୟକ୍ତିଙ୍କୁ ଯେପରି ଭାବରେ ଉତ୍ସାହିତ କରାଯାଇଥିଲା ତାହାଦ୍ୱାରା ଦଳୀୟ ଶାସନ ପରିଚାଳନା କ୍ଷେତ୍ରରେ ବିଶୃଙ୍ଖଳା ଓ ଅସ୍ଥିରତା ସୃଷ୍ଟି କରିବା ଦିଗରେ ପ୍ରେରଣା ଦିଆଗଲା ବୋଲି ମୁଁ ଅଭିଯୋଗ କରିଥିଲି । ସେ ଚିଠିର ଗୋଟିଏ ଅଂଶରେ ମୁଁ ଲେଖିଥିଲି, "From your letter No. 1297, of the same date i.e. 6th April, 1979 which I have also received today, I find that your democratic conscience urged you to seek my comments on an allegation of undermocratic and arbitrary functioning of the Orissa J.L.P. made by Smt. Nandini Satpathy. Strangely enough, neither you nor the Central Parliamentary Board considered similarly conscientious and democratic approach necessary while dealing with some other political situations about which you have chosen to adopt a policy of reticence and secrecy."

"The kind of response with which the Central Parliamentary Board has obliged the dissidents in Orissa would perpetuate dissidence, put a premium on efforts to de-stabilise Governments and spell disaster for disciplined functioning of the Party. The decision of the Central Parliamentary Board and its attendant processes are unprecedented pieces of democratic impropriety. I cannot help believing that these are clear indicators of adoption of totalitarian tactics in party management and I strongly deplore the use of such undemocratic methods in the managements of the Janata Party."

ଏହି ଚିଠିର ନକଲ ପ୍ରଧାନମନ୍ତ୍ରୀ ଓ ପାର୍ଲିଆମେଣ୍ଟାରୀ ବୋର୍ଡ଼ର ସମସ୍ତ ସଭ୍ୟମାନଙ୍କ ପାଖକୁ ମୁଁ ପଠାଇଦେଇଥିଲି । ଏପ୍ରିଲ୍ ମାସ କୋଡ଼ିଏ ତାରିଖରେ ଆସ୍ଥା ଭୋଟର ସମ୍ମୁଖୀନ ହେବାପାଇଁ ମୁଁ ପ୍ରସ୍ତୁତ ଥିଲି ବୋଲି କେନ୍ଦ୍ର କର୍ତ୍ତୃପକ୍ଷଙ୍କୁ ଜଣାଇଦେବା ସଙ୍ଗେ ସଙ୍ଗେ ବିଧାନସଭା ଜନତା ଦଳର ବୈଠକ ସେଦିନ ବସିବ ବୋଲି ଘୋଷଣା କରିଥିଲି । ପାର୍ଲିଆମେଣ୍ଟାରୀ ବୋର୍ଡ଼ର ନିର୍ଦ୍ଦେଶ ଥିଲା ଏପ୍ରିଲ୍ ଉଣେଇଶ ତାରିଖରେ ବୈଠକ ଡକାଇବାପାଇଁ; ମାତ୍ର ଆମ୍ଭମାନଙ୍କର ଓ ଶ୍ରୀ ଦଣ୍ଡବତେଙ୍କର ସୁବିଧାପାଇଁ କୋଡ଼ିଏ ତାରିଖରେ ବୈଠକ ବସିବା କଥା ସ୍ଥିରହୋଇଥିଲା ।

ବିଧାନସଭା ଜନତା ଦଳରେ ମୋର ଆସ୍ଥାଭାଜନ ଭୋଟ ନେବାର ଦିନ ସ୍ଥିର ହୋଇଯିବା ପରେ ଭୁବନେଶ୍ୱରରେ ଜନତା ଦଳ ମଧ୍ୟରେ ଖୁବ୍ ଉତ୍ତେଜନା ପ୍ରକାଶ ପାଇଥିଲା । ଦଳର ବିଧାୟକ ବନ୍ଧୁମାନଙ୍କ

ପାଖକୁ ବୈଠକ ପୂର୍ବରୁ ଭୁବନେଶ୍ୱରରେ ପହଞ୍ଚିବାପାଇଁ ତାରବାର୍ତ୍ତା ଦେଇ ଅନୁରୋଧ କରାଯାଇଥିଲା । ଏହି ସମୟରେ ରାଜ୍ୟ ଜନତା ଦଳର ସଭାପତି ଶ୍ରୀ ବିଶ୍ୱନାଥ ପଣ୍ଡିତଙ୍କ ଆଚରଣରୁ ଜଣାଗଲା ଯେ ମୋ ପ୍ରତି ତାଙ୍କର ସମର୍ଥନ ନଥିଲା । ସେ ସମୟରେ ପ୍ରାୟ ସବୁଦିନେ ସନ୍ଧ୍ୟାବେଳେ ମୋ ସରକାରୀ ବାସଭବନରେ ଜନତା ଦଳର ବିଧାୟକମାନେ ଏକତ୍ରିତ ହେଉଥିଲେ । ଦଳର ଅଣଆନୁଷ୍ଠାନିକ ବୈଠକ ବସି ଆସ୍ଥା ଭୋଟ ସମୟରେ କି ପ୍ରକାର କୌଶଳ ଅବଲମ୍ବନ କରାଯିବ, ସେ ସମ୍ବନ୍ଧରେ ଆଲୋଚନା କରାଯାଉଥାଏ । ଶ୍ରୀ ପଣ୍ଡିତଙ୍କୁ ସେସବୁ ବୈଠକରେ ଯୋଗଦେବାପାଇଁ ଅନୁରୋଧ କରାଗଲେ ମଧ ସେ କୌଣସି ନା କୌଣସି ବାହାନା ଦେଖାଇ ଅନୁପସ୍ଥିତ ରହୁଥିଲେ । ଅସନ୍ତୁଷ୍ଟ ଗୋଷ୍ଠୀର ଲୋକମାନେ ତାଙ୍କ ଘରେ ଅନେକ ସମୟରେ ଏକତ୍ରିତ ହେବାର ଏବଂ ମନ୍ତ୍ରଣା କରୁଥିବାର ଖବର ଆସୁଥାଏ । ବିଶ୍ୱନାଥ ବାବୁ ସମସ୍ତଙ୍କୁ କହୁଥିଲେ ଯେ ଅନ୍ୟ କୌଣସି ମନ୍ତ୍ରଣାଯନ୍ତ୍ରଣା ଚାଲିନଥିଲା ; କେବଳ ଆମ୍ଭମାନଙ୍କ ଭିତରେ କିପରି ମିଳାମିଶା କରାଯାଇପାରିବ ସେ ସମ୍ବନ୍ଧରେ ଆଲୋଚନା କରାଯାଉଥିଲା । ତାଙ୍କ ମତରେ ମିଳାମିଶା ହୋଇଯାଇଥିଲେ ଆଉ ଆସ୍ଥା ଭୋଟର ଆବଶ୍ୟକତା ରହିନଥାନ୍ତା । ତାଙ୍କରି ଘରୁ ଫୋନ୍‌ରେ ଅସନ୍ତୁଷ୍ଟ ଗୋଷ୍ଠୀର ନେତାମାନେ ବିଜୁବାବୁଙ୍କ ସହିତ କଥାବାର୍ତ୍ତା କରୁଥିଲେ । ଯେତେବେଳେ ସେମାନେ ନିଜର ଦୁର୍ବଳ ଅବସ୍ଥାଟା ବୁଝିପାରିଥିଲେ, ଆସ୍ଥା ଭୋଟ ନେବାର ଦୁଇଦିନ ପୂର୍ବରୁ ଆସ୍ଥା ଭୋଟ୍‌କୁ ବନ୍ଦ କରିବାପାଇଁ ଉପାୟ ଖୋଜିବୁଲୁଥିଲେ । ବିଜୁବାବୁ ମନ୍ତ୍ରିମଣ୍ଡଳ ବିରୁଦ୍ଧରେ ହୋଇଥିବା ଅଭିଯୋଗଗୁଡ଼ିକ ବୁଝି ସମାଧାନ କରିବାର ଦାୟିତ୍ୱ ନେଲେ ଆସ୍ଥା ଭୋଟ ଦାବିରୁ ସେମାନେ ଓହରିଯିବେ ବୋଲି କହୁଥିଲେ । ବିଜୁବାବୁ ମଧ ମୋ ସହିତ ଫୋନ୍‌ରେ କଥାବାର୍ତ୍ତା କଲାବେଳେ ସେମାନଙ୍କ ନୂତନ କୌଶଳରେ ପ୍ରଭାବିତ ହେଲାଭଳି ମନେହେଲା । ଆସ୍ଥା ଭୋଟ ପ୍ରସ୍ତାବ ଆଉ ବନ୍ଦହେବା ଉଚିତନୁହେଁ ବୋଲି ମୁଁ ଜଣାଇଦେଇଥିଲି ଏବଂ ମୋର ସମର୍ଥକମାନେ ମଧ ପୂର୍ବ ନିଷ୍ପତ୍ତି ଅନୁସାରେ ଆସ୍ଥା ଭୋଟ ନିଆଯିବାପାଇଁ ଦାବିକରିଥିଲେ ।

## ଆସ୍ଥା ଭୋଟରେ ବିଜୟ

ଏପ୍ରିଲ୍ କୋଡ଼ିଏ ତାରିଖ ଦିନ ଗାରିଟା ସମୟରେ କେନ୍ଦ୍ର ରେଳବାଇ ମନ୍ତ୍ରୀ ଶ୍ରୀ ମଧୁ ଦଣ୍ଡବତେଙ୍କର ପ୍ରତ୍ୟକ୍ଷ ପରିଚାଳନାରେ ମୋ ନେତୃତ୍ୱରେ ଆସ୍ଥା ପ୍ରସ୍ତାବ ଉପରେ ଗୋପନ ଭୋଟ ଗ୍ରହଣ କରାଯାଇଥିଲା । ଜନତା ଦଳରେ ପୂର୍ବରୁ ବିଧିବଦ୍ଧଭାବରେ ଯୋଗଦେଇଥିବା ସାତ ଜଣ ସ୍ୱାଧୀନ ସଭ୍ୟଙ୍କୁ ଏହି ଗୋପନ ଭୋଟରେ ଭାଗ ନେବାକୁ ଅନୁମତି ମିଳିନଥିଲା । ପରିଷ୍କାରଭାବରେ ଜଣାଯାଇଥିଲା ଯେ ଅସନ୍ତୁଷ୍ଟ ଗୋଷ୍ଠୀଙ୍କର ପରାମର୍ଶ ଅନୁସାରେ ଶ୍ରୀ ଚନ୍ଦ୍ରଶେଖର ସେମାନଙ୍କୁ ଆସ୍ଥା ପ୍ରସ୍ତାବ ଭୋଟରେ ଭାଗନେବାର ନ୍ୟାଯ୍ୟ ଅଧିକାରରୁ ବଞ୍ଚିତ କରିଥିଲେ । ସେମାନେ ମୋର ସମର୍ଥକ ଥିବାରୁ ସେମାନଙ୍କ ପ୍ରତି ଏ ପ୍ରକାର ବ୍ୟବହାର କରାଯାଇଥିଲା ବୋଲି ସମସ୍ତଙ୍କର ଧାରଣା ହୋଇଥିଲା । ଗୋପନ ଭୋଟଗଣତିରୁ ଜଣାଗଲା ଯେ ମୋ ପ୍ରତି ସତାଅଶୀ ଜଣ ସଦସ୍ୟ ଆସ୍ଥା ପ୍ରକାଶ କରିଥିବାବେଳେ ଅସନ୍ତୁଷ୍ଟ ଗୋଷ୍ଠୀଙ୍କ ଉଦ୍ୟମରେ ମାତ୍ର ବାଇଶ ଜଣ ସଭ୍ୟ ମୋ ବିରୁଦ୍ଧରେ ଭୋଟ ଦେଇଥିଲେ । ଯେଉଁ ସାତ ଜଣଙ୍କୁ ଗୋପନ ଭୋଟରେ ଭାଗ ନେବାକୁ ବାରଣ କରାଯାଇଥିଲା ସେମାନେ ମୋ ପ୍ରତି ସେମାନଙ୍କର ସମର୍ଥନ ଥିବା କଥା ଲିଖିତ ଆକାରରେ ଶ୍ରୀ ଦଣ୍ଡବତେଙ୍କୁ ଜଣାଇ ଦେଇଥିଲେ । ତେଣୁ ବାଚସ୍ପତିଙ୍କୁ ବାଦ୍ ଦେଇ ୧୧୯ଜଣଙ୍କ ମଧ୍ୟରୁ ୯୪ଜଣଙ୍କର ମୋ ପ୍ରତି ସମର୍ଥନ ଥିବା କଥା ଶେଷରେ ସାମ୍ବାଦିକ ସମ୍ମିଳନୀରେ ଶ୍ରୀ ଦଣ୍ଡବତେ ଘୋଷଣା କରିଥିଲେ । ସେଦିନ ଭୁବନେଶ୍ୱରରେ ଲୋକଙ୍କ ଭିତରେ ଉତ୍ସାହ ଓ ଉତ୍ତେଜନା କଥା ମୋର ମନେପଡ଼େ । ବିଧାନସଭା ଗୃହ ବାହାରେ ପ୍ରାୟ ପାଞ୍ଚ ହଜାରରୁ ଉର୍ଦ୍ଧ୍ୱ ଲୋକ ଅତ୍ୟନ୍ତ ଉତ୍କଣ୍ଠାରେ ଆସ୍ଥା ଭୋଟର ଫଳାଫଳକୁ ଅପେକ୍ଷା କରି ରହିଥିଲେ । ଭୋଟ ଫଳାଫଳ ଘୋଷଣା କଲାପରେ ଶ୍ରୀ ଦଣ୍ଡବତେ ସଦସ୍ୟମାନଙ୍କୁ ଉଦ୍‌ବୋଧନ ଦେବାବେଳେ ଆସ୍ଥା ଭୋଟରେ ମୁଁ ବିପୁଳ ସମର୍ଥନ ପାଇଥିବାରୁ ମୋତେ ଅଭିନନ୍ଦନ

ଜଣାଇଥିଲେ । ମୁଁ ସମଗ୍ର ଦଳର ନେତାରୂପେ ପ୍ରତିଷ୍ଠିତ ହୋଇଥିଲି ବୋଲି କହି ମୋର ନେତୃତ୍ୱକୁ ସମସ୍ତେ ଗ୍ରହଣ କରିନେଇ ଦଳରେ ଏକତା ରକ୍ଷାକରି କାର୍ଯ୍ୟ କରିବା ଲାଗି ସେ ସମସ୍ତଙ୍କୁ ଅନୁରୋଧ କରିଥିଲେ । ମୋ ପ୍ରତି ସଦସ୍ୟମାନଙ୍କର ବିପୁଳ ଆସ୍ଥା ଓ ସମର୍ଥନପାଇଁ ମୁଁ ସେମାନଙ୍କଠାରେ କୃତଜ୍ଞତା ପ୍ରକାଶ କରିଥିଲି ଏବଂ ସେ ପର୍ଯ୍ୟନ୍ତ ଯାହାସବୁ ତିକ୍ତ ପରିବେଶ ସୃଷ୍ଟି ହୋଇଥିଲା ସେସବୁ ଭୁଲିଯାଇ ସମସ୍ତେ ଐକ୍ୟବଦ୍ଧ ଭାବରେ ରାଜ୍ୟର ବିକାଶ ନିମନ୍ତେ କାର୍ଯ୍ୟ କରିବାପାଇଁ ନିବେଦନ କରିଥିଲି । ମୁଁ ବିଧାନସଭା ଗୃହରୁ ବାହାରିବାମାତ୍ରେ ବନ୍ଧୁମାନେ ମୋତେ ଗୋଟିଏ ବିରାଟ ପଟୁଆରରେ ମୋର ବାସଭବନକୁ ନେଇଯାଇଥିଲେ । ଆସ୍ଥା ଭୋଟରେ ମୋ ପ୍ରତି ବିପୁଳ ସମର୍ଥନ ଓ ଅସନ୍ତୁଷ୍ଟ ଗୋଷ୍ଠୀର ଶୋଚନୀୟ ପରାଜୟ ଦେଖି ଜାତୀୟ ସ୍ତରରେ ସମସ୍ତ ସମ୍ବାଦପତ୍ର ଓଡ଼ିଶାରେ ଆସ୍ଥାଭୋଟ ନେବାପାଇଁ ଜନତା ଦଳ ପାର୍ଲିଆମେଣ୍ଟାରୀ ବୋର୍ଡ଼ର ନିଷ୍ପତ୍ତିକୁ ତୀବ୍ର ସମାଲୋଚନା କରିଥିଲେ । ରାଜ୍ୟର ପ୍ରକୃତ ଅବସ୍ଥା ଅନୁଧ୍ୟାନ ନକରି କୁପରାମର୍ଶରେ ପ୍ରଭାବିତ ହୋଇ ନିଷ୍ପତ୍ତି ନେଲେ ଯେଉଁ ଅବସ୍ଥା ସୃଷ୍ଟି ହୁଏ ତାହାହିଁ ଓଡ଼ିଶାରେ ହୋଇଥିଲା ବୋଲି କେତେକ ସମ୍ବାଦପତ୍ର ମତ ବ୍ୟକ୍ତ କରିଥିଲେ । ଏହା ପରେ ମୁଁ ଦିଲ୍ଲୀ ଯିବା ସମୟରେ ପ୍ରଧାନମନ୍ତ୍ରୀଙ୍କ ସହିତ ସାକ୍ଷାତ୍ ବେଳେ ସେ ମୋତେ ଅଭିନନ୍ଦନ ଜଣାଇଥିଲେ । ଆସ୍ଥା ଭୋଟ ପାଇଁ ନିର୍ଦ୍ଦେଶ ଦେବା କିପରି ଅବାସ୍ତବ ଓ ଅନାବଶ୍ୟକ ଥିଲା, ତାହା ବିଚାର କରିବାପାଇଁ ମୁଁ ପ୍ରଧାନମନ୍ତ୍ରୀଙ୍କୁ କହିଥିଲି । ଗୋଟାଏ ଦୃଷ୍ଟିରୁ ତାହା ମୋର ମଙ୍ଗଳ କରିଥିଲା ବୋଲି ସେ ଉତ୍ତର ଦେଇଥିଲେ । ଶ୍ରୀ ଚନ୍ଦ୍ରଶେଖରଙ୍କୁ ମୁଁ ଯେଉଁ ଚିଠି ଲେଖିଥିଲି, ସେଭଳି ଚିଠି ମୋ ପକ୍ଷରେ ଲେଖିବା ଉଚିତ ହୋଇନଥିଲା ବୋଲି ସେ କହିଥିଲେ ।

## ଓଡ଼ିଶାର ଶିଳ୍ପବିସ୍ତାର ଯୁଗର ଭିତ୍ତିଭୂମିରେ ସତ୍ୟର ସ୍ୱାକ୍ଷର

ମୋର ନେତୃତ୍ୱରେ ରାଜ୍ୟରେ ଜନତା ସରକାର ଗଠିତ ହୋଇ ଓଡ଼ିଶାରେ ଶିଳ୍ପ ପ୍ରତିଷ୍ଠା ଓ ପ୍ରସାର ସମ୍ବନ୍ଧରେ କୌଣସି ନିର୍ଦ୍ଦିଷ୍ଟ ପଦକ୍ଷେପ ନେବା ବା ସେ ବିଷୟରେ ରାଜ୍ୟ ସରକାରଙ୍କର ଆଭିମୁଖ୍ୟ ଜଣାଇବା ପୂର୍ବରୁ ଆମରଶପଥ ନେବା ସପ୍ତାହରେ ଆମକୁ ଗୋଟିଏ ଅସ୍ୱସ୍ତିକର ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଥିଲା । ସେହି ସମୟରେ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଥିଲା ଯେ ଓଡ଼ିଶାର ଛତ୍ରପୁରଠାରେ ଯେଉଁ ବିରଳ ମୃତ୍ତିକା କାରଖାନା ପ୍ରତିଷ୍ଠା କରିବାର ପ୍ରସ୍ତାବ କେନ୍ଦ୍ର ସରକାରଙ୍କର ଥିଲା, ତାହା ଆଉ କାର୍ଯ୍ୟକାରୀ ହେବନାହିଁ । ପଶ୍ଚିମ ଉପକୂଳରେ କୌଣସି ଗୋଟିଏ ସ୍ଥାନରେ ଖୁବ୍ ଶସ୍ତାରେ ଏ କାର୍ଯ୍ୟ କୁଆଡ଼େ ହୋଇପାରିବ ବୋଲି ସେତେବେଳେ ଶୁଣାଯାଉଥିଲା । ପ୍ରକୃତରେ ଯଦି ତାହା ହୁଏ ତା'ହେଲେ ସେଇଟା ଆମ ସରକାରଙ୍କ ପକ୍ଷରେ ଗୋଟିଏ ଅମଙ୍ଗଳସୂଚକ ସଙ୍କେତ ବୋଲି ଧରିନିଆଯିବ ବୋଲି ମୁଁ ଭାବିଥିଲି । ତେଣୁ ଦିଲ୍ଲୀ ଫୋନ୍ କରି ବିଜୁବାବୁଙ୍କଠାରୁ ଜାଣିଲି ଯେ ପ୍ରସ୍ତାବିତ ବିରଳ ମୃତ୍ତିକା କାରଖାନା ନିର୍ମାଣରେ ପଚିଶ କୋଟି ଟଙ୍କା ଲାଗିବ ବୋଲି ଆକଳନ କରାଯାଇଥିଲା । ମାତ୍ର ତାହା ପୁନଃ ପରୀକ୍ଷା କରି ଜଣାଯାଇଥିଲା ଯେ ଉକ୍ତ ଯୋଜନାରେ ପ୍ରାୟ ପଞ୍ଚାଅଶୀ କୋଟି ଟଙ୍କାରୁ ଉର୍ଦ୍ଧ୍ୱ ବିନିଯୋଗ କରିବାକୁ ପଡ଼ିବ । ତେଣୁ ଯୋଜନା କମିଶନ ଛତ୍ରପୁର ବିରଳ ମୃତ୍ତିକା ଯୋଜନାଟିକୁ ବନ୍ଦକରିଦେବାକୁ ସ୍ଥିର କରିଛନ୍ତି ବୋଲି ଜାଣିବାକୁ ପାଇଲି । ପ୍ରକୃତରେ ଯଦି ତାହା ହୁଏ ତା'ହେଲେ ଆମର କାର୍ଯ୍ୟଦକ୍ଷତା ସମ୍ବନ୍ଧରେ ଓଡ଼ିଶା ଲୋକଙ୍କର ଧାରଣା ଖରାପ ହେବ ଏବଂ ବିଜୁବାବୁଙ୍କର ନିଜର ଖ୍ୟାତି ଉପରେ ଆଞ୍ଚ ଆସିବ ବୋଲି ମୁଁ ତାଙ୍କୁ କହିଥିଲି । ପ୍ରକାଶିତ ସମ୍ବାଦଦ୍ୱାରା ଓଡ଼ିଶା ଲୋକଙ୍କର ପ୍ରତିକ୍ରିୟା ଓ ଉଦ୍‌ବେଗ ସମ୍ବନ୍ଧରେ ପ୍ରଧାନମନ୍ତ୍ରୀଙ୍କୁ ଗୋଟିଏ ତାରବାର୍ତ୍ତାରେ ଜଣାଇଦେଇ ଓଡ଼ିଶାବାସୀଙ୍କୁ ନ୍ୟାୟ ଦେବାପାଇଁ ଏ ବିଷୟଟିରେ ସେ ହସ୍ତକ୍ଷେପ କରନ୍ତୁ ବୋଲି ମୁଁ ଅନୁରୋଧ କରିଥିଲି । ମୁଁ ଦିଲ୍ଲୀ ଯାଇ ପ୍ରଧାନମନ୍ତ୍ରୀଙ୍କୁ ଆମ ଲୋକଙ୍କର ଉତ୍କଣ୍ଠା ଓ ବିରଳ ମୃତ୍ତିକା କାରଖାନା ଓଡ଼ିଶାରେ ନହେଲେ ଆମ୍ଭମାନଙ୍କୁ ଯେଉଁ ଅସୁବିଧାର ସମ୍ମୁଖୀନ ହେବାକୁ

ପଡ଼ିବ ସେକଥା ବୁଝାଇଥିଲି । ଶ୍ରୀ ଦେଶାଇ ମୋ କଥା ବୁଝି-ନବୁଝିଲାଭଳି ବ୍ୟବହାର ଦେଖାଇଥିଲେ ଏବଂ କହିଥିଲେ ଯେ ଯେଉଁ ଯୋଜନାରେ ଶହ ଶହ କୋଟି ଟଙ୍କା ଖର୍ଚ୍ଚ ଜଡ଼ିତ, ସେଠାରେ ଭାବପ୍ରବଣତାର ସ୍ଥାନନାହିଁ । ଯୋଜନା କମିଶନ ମଧ୍ୟ ସେହି ପ୍ରକାର ମନୋବୃତ୍ତି ଦେଖାଇଥିଲେ । କିନ୍ତୁ ବିଜୁବାବୁଙ୍କ ସହିତ ପରାମର୍ଶ ପରେ ଆମେ ଓଡ଼ିଶାର ଦାବିକୁ ଦୃଢ଼କରିବା ଉଦ୍ଦେଶ୍ୟରେ ଆଲୋଚନା ପ୍ରସଙ୍ଗରେ ଯୋଜନା କମିଶନଙ୍କର ବିଭିନ୍ନ ଯୋଜନାରେ ଥିବା ଗୁରୁତର ତ୍ରୁଟିର ସମାଲୋଚନା କରିଥିଲୁ ଏବଂ ଓଡ଼ିଶା ଗୋଟିଏ ଅନୁନ୍ନତ ରାଜ୍ୟ ହୋଇଥିବାରୁ ଏବଂ ତା'ର ଲୋକମାନେ ଶାନ୍ତିପ୍ରିୟ ବୋଲି ତା'ପ୍ରତି ବୈମାତୃକ ଆଚରଣ ଦେଖାଯାଉଛି ବୋଲି ଗଭୀର ଅସନ୍ତୋଷ ପ୍ରକାଶ କରିଥିଲୁ । ମହାରାଷ୍ଟ୍ର ବା ଗୁଜୁରାଟ ଭଳି ରାଜ୍ୟ ହୋଇଥିଲେ ଏଭଳି ଗୋଟିଏ ଯୋଜନାକୁ ବାତିଲ କରିଦେବାପାଇଁ ଏ ପ୍ରକାର ଆଚରଣ ଦେଖାଇବାକୁ କେହି ସାହସ କରିନଥାନ୍ତେ ବୋଲି ପ୍ରଧାନମନ୍ତ୍ରୀ ଓ ଯୋଜନା କମିଶନଙ୍କୁ ସ୍ପଷ୍ଟ ଜଣାଇଦିଆଯାଇଥିଲା । ଶେଷରେ ଛତ୍ରପୁରଠାରେ ବିରଳ ମୃତ୍ତିକା କାରଖାନା ପ୍ରତିଷ୍ଠା କରାଯିବ ବୋଲି ଦୃଢ଼ ନିଷ୍ପତ୍ତି ନିଆଯାଇଥିଲା । କେନ୍ଦ୍ରମନ୍ତ୍ରୀ ଭାବରେ ବିଜୁବାବୁ ଏଥିପାଇଁ ପ୍ରବଳ ଚାପ ପ୍ରୟୋଗ କରିଥିଲେ । ଏହାପରେ ଉକ୍ତ ଯୋଜନାର ବଡ଼ ବଡ଼ ଅଫିସରମାନେ ଆସି ଭୁବନେଶ୍ୱରରେ ମୋ ସହିତ ସାକ୍ଷାତ୍ କରିଥିଲେ ଏବଂ ଯେଉଁସବୁ ବିଷୟରେ ଓଡ଼ିଶା ସରକାରଙ୍କର ସାହାଯ୍ୟ ଓ ସହଯୋଗ ଆବଶ୍ୟକ ସେ ବିଷୟରେ ମୁଁ ରାଜ୍ୟ ସରକାରଙ୍କ ବିଭିନ୍ନ ବିଭାଗକୁ ନିର୍ଦ୍ଦେଶ ଦେଇଥିଲି ।

ଓଡ଼ିଶା ସରକାର କେନ୍ଦ୍ର ସରକାରଙ୍କର ଶିଳ୍ପନୀତି ଅନୁସରଣ କରି ବୃହତ୍ ଶିଳ୍ପ ଓ ମଧ୍ୟମ ଧରଣର ଶିଳ୍ପ ପ୍ରସାର ପ୍ରତି ବିଶେଷ ଦୃଷ୍ଟିଦେବା ସଙ୍ଗେ ସଙ୍ଗେ ଅଧିକ କର୍ମସଂସ୍ଥାନ ତଥା ସ୍ୱଳ୍ପ ମୂଳଧନଭିତ୍ତିକ କ୍ଷୁଦ୍ର କୁଟୀରଶିଳ୍ପ ସ୍ଥାପନ ପ୍ରତି ଅଗ୍ରାଧିକାର ଦେଇଥିଲେ । ଶିଳ୍ପବିକାଶପାଇଁ ଜିଲ୍ଲା ଶିଳ୍ପକେନ୍ଦ୍ର ପ୍ରତିଷ୍ଠା ଜନତା ସରକାରଙ୍କର ଏକ ସୁପରିକଳ୍ପିତ କୃତିତ୍ୱ । ଏହା ଏକ ଦୂରଦୃଷ୍ଟିସମ୍ପନ୍ନ ଉଲ୍ଲେଖଯୋଗ୍ୟ କାର୍ଯ୍ୟରୂପେ ଆଜି ସ୍ୱୀକୃତ । ଏହି ଶିଳ୍ପକେନ୍ଦ୍ରମାନଙ୍କଦ୍ୱାରା ବହୁ ଶିଳ୍ପ-ଉଦ୍‌ଯୋଗୀମାନଙ୍କୁ ତାଲିମ୍ ଦେବା ସଙ୍ଗେ ସଙ୍ଗେ ବିଭିନ୍ନ ଜିଲ୍ଲାରେ ବହୁ କ୍ଷୁଦ୍ର ଓ କୁଟୀରଶିଳ୍ପ ପ୍ରତିଷ୍ଠା କରାଯାଇଥିଲା । ଶିଳ୍ପ ପ୍ରତିଷ୍ଠା କରିବାପାଇଁ ଆଗ୍ରହୀ ବ୍ୟକ୍ତିମାନେ ଅନେକ ସମୟରେ ସରକାରୀ ସାହାଯ୍ୟ ଓ ପରାମର୍ଶପାଇଁ ବାରଆଡ଼େ ଦୌଡ଼ାଦୌଡ଼ି କରି ନିରୁତ୍ସାହିତ ହୋଇଯାଉଥିଲେ । ଗୋଟିଏ ନିର୍ଦ୍ଦିଷ୍ଟ କେନ୍ଦ୍ରରୁ ସେମାନେ ସବୁପ୍ରକାର ପରାମର୍ଶ ଓ ସାହାଯ୍ୟ ପାଇପାରିବା ଉଦ୍ଦେଶ୍ୟରେ ଏହି ଶିଳ୍ପ କେନ୍ଦ୍ରମାନ ସ୍ଥାପନ କରାଯାଇଥିଲା । ରାଜ୍ୟରେ କ୍ଷୁଦ୍ରଶିଳ୍ପ ସ୍ଥାପନ କରିବାପାଇଁ ଉଦ୍ୟମ କରୁଥିବା ଲୋକେ କିପରି 'ଓଡ଼ିଶା ଅର୍ଥ କର୍ପୋରେସନ୍'ଠାରୁ ଶୀଘ୍ର ଓ ସହଜରେ ସାହାଯ୍ୟ ପାଇପାରିବେ ସେଥିପାଇଁ ଅର୍ଥ କର୍ପୋରେସନ୍‌କୁ ବିଶେଷ ଭାବରେ ସକ୍ରିୟ କରାଯାଇଥିଲା ଏବଂ ବହୁ ଉତ୍ସାହୀ ଓ ଉଦ୍ୟମୀ ବ୍ୟକ୍ତି ଏହି ସଂସ୍ଥାର ସାହାଯ୍ୟ ସହଯୋଗରେ ଉପକୃତ ହୋଇଥିଲେ ବୋଲି ଅନୁଭବ କରାଯାଇଥିଲା । ଦେଶରେ ଥିବା ଅଠରଟି ରାଜ୍ୟସ୍ତରୀୟ ଅର୍ଥ କର୍ପୋରେସନଙ୍କ ମଧ୍ୟରେ ଓଡ଼ିଶା ରାଜ୍ୟ ଅର୍ଥ କର୍ପୋରେସନ୍ ମୋ ମନ୍ତ୍ରିମଣ୍ଡଳ ସମୟରେ ସର୍ବାଧିକ ଶାଖା କେନ୍ଦ୍ରମାନ ଖୋଲିପାରିଥିଲା ଏବଂ ଉଲ୍ଲେଖଯୋଗ୍ୟ ଅଗ୍ରଗତି କରିଥିଲା ବୋଲି ଭାରତର ଶିଳ୍ପ-ଉନ୍ନୟନ ବ୍ୟାଙ୍କ ତାଙ୍କ ରିପୋର୍ଟରେ ପ୍ରଶଂସା କରିଥିଲେ । ଶ୍ରୀ ଗିରୀଶଚନ୍ଦ୍ର ପାତ୍ର ସେ ସମୟରେ ରାଜ୍ୟ ଅର୍ଥ କର୍ପୋରେସନ୍‌ର ମ୍ୟାନେଜିଂ ଡାଇରେକ୍ଟର ଥିଲେ । ଆମ ରାଜ୍ୟରେ ଶିଳ୍ପ ସ୍ଥାପନ ନିମନ୍ତେ ଶିଳ୍ପପତି ଓ ଶିଳ୍ପ ସ୍ଥାପନପାଇଁ ଆଗ୍ରହ ପ୍ରକାଶ କରୁଥିବା ବ୍ୟକ୍ତିମାନଙ୍କୁ ଆକୃଷ୍ଟ କରିବା ଉଦ୍ଦେଶ୍ୟରେ ପୂର୍ବରୁ ଯେଉଁ ସୁବିଧା-ସୁଯୋଗ ଦିଆଯାଉଥିଲା, ତା'ଠାରୁ ଅନେକ ଅଧିକ ସୁବିଧା-ସୁଯୋଗ ଜନତା ସରକାର ଘୋଷଣା କରିଥିଲେ । ନୂତନ ଶିଳ୍ପ ପ୍ରତିଷ୍ଠା ହେଲେ ବିକ୍ରିକର, ପଣ୍ୟକର, ରୟାଲଟି ପ୍ରଭୃତିରେ ଅଧିକ ରିହାତି ଦେବା ସଙ୍ଗେ ସଙ୍ଗେ ପ୍ରାସଙ୍ଗିକ ନିୟମକୁ ଅଧିକ କୋହଳ କରାଯାଇଥିଲା ।

## ଟେଲିଫୋନ୍ କାରଖାନା ଚାଲିଗଲା

ଆମ ରାଜ୍ୟ ଖଣିଜ ପଦାର୍ଥ, ଜଙ୍ଗଲ ଓ ସାମୁଦ୍ରିକ ସଂପଦ ପ୍ରଭୃତିରେ ସମୃଦ୍ଧ ହୋଇଥିଲେହେଁ ତହିଁର ଯଥାଯଥ ବିକାଶସାଧନ ଦିଗରେ ବିଶେଷ ଉଦ୍ୟମ ହୋଇନଥିବା ଯୋଗୁଁ ଏହା ଦେଶର ଅନ୍ୟତମ ଗରିବ ରାଜ୍ୟରୂପେ ଅଦ୍ୟାବଧି ରହିଆସିଛି । ରାଜ୍ୟର ବିପୁଳ ପ୍ରାକୃତିକ ସଂପଦର ଦ୍ରୁତ ବିନିଯୋଗଦ୍ୱାରା ରାଜ୍ୟକୁ ସବୁ ଦିଗରୁ ସମୃଦ୍ଧିଶାଳୀ କରାଯାଇପାରିବାର ସୁଯୋଗ ରହିଛି । ଏଥିପାଇଁ କେନ୍ଦ୍ର ସରକାରଙ୍କର ସାହାଯ୍ୟ, ସାହାନୁଭୂତି ଓ ସହଯୋଗ ଏକାନ୍ତ ଆବଶ୍ୟକ । ଗତ କେତେ ବର୍ଷ ହେଲା ରାଜନୈତିକ ଅସ୍ଥିରତା ତଥା ଅନ୍ୟ କାରଣ ଯୋଗୁଁ ଓଡ଼ିଶାର ଶିଳ୍ପକ୍ଷେତ୍ରରେ କୌଣସି ଉଲ୍ଲେଖଯୋଗ୍ୟ ଅଗ୍ରଗତି ହୋଇନାହିଁ । ଓଡ଼ିଶାର ଦାବୀ କେନ୍ଦ୍ର ସରକାରଙ୍କ ନିକଟରେ ଦୃଢ଼ଭାବରେ ଉପସ୍ଥାପିତ କରିବାପାଇଁ ଉପଯୁକ୍ତ ନେତୃତ୍ୱ ନଥିବାରୁ ଏବଂ ପ୍ରତିଯୋଗୀମାନଙ୍କ ପକ୍ଷରୁ ପ୍ରବଳ ରାଜନୈତିକ ଚାପ ଯୋଗୁଁ ଏପରି ଘଟିଆସୁଛି । ଅନ୍ୟ ଆଡୁ ରାଜନୈତିକ ଚାପ ଯୋଗୁଁ ଓଡ଼ିଶାରେ କି ପ୍ରକାର କ୍ଷତି ଘଟିଛି ତା'ର ଗୋଟିଏ ଉଦାହରଣ ଏଠି ଦେଉଛି । ଭୁବନେଶ୍ୱରଠାରେ ଚାଳିଶ କୋଟି ଟଙ୍କା ବିନିଯୋଗରେ ଯେଉଁ କ୍ରସ୍‌ବାର ଟେଲିଫୋନ୍ କାରଖାନା ପ୍ରତିଷ୍ଠା ହେବାର କଥା ଠିକ୍ ହୋଇସାରିଥିଲା, ୧୯୮୦ ମସିହାରେ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱରେ ଆମ ରାଜ୍ୟରେ କଂଗ୍ରେସ (ଇ) ସରକାର ପ୍ରତିଷ୍ଠିତ ହେବାର ମାତ୍ର କେତେଟା ଦିନ ଭିତରେ ସେହି ଶିଳ୍ପଟି ଏଠାରେ ନହୋଇ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କର ପୁରୁଣା ନିର୍ବାଚନମଣ୍ଡଳୀ ଉତ୍ତର-ପ୍ରଦେଶର ରାୟବରେଲୀଠାରେ ହେବାର ନିଷ୍ପତ୍ତି ନିଆଯାଇଥିଲା । ମୁଁ ମୁଖ୍ୟମନ୍ତ୍ରୀ ହେବାର ସପ୍ତାହକ ଭିତରେ ଛତ୍ରପୁରଠାରେ ବିରଳ ମୃତ୍ତିକା କାରଖାନା ସେଠାରୁ ଅନ୍ୟତ୍ର ନେବାପାଇଁ ଯେପରି ଉଦ୍ୟମ ହୋଇଥିଲା, ଏଠାରେ ଜାନକୀବାବୁ ଠିକ୍ ସେହିଭଳି ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ । ପ୍ରତିବାଦ କରିବାପାଇଁ ଜାନକୀବାବୁଙ୍କର ଶକ୍ତି ବା ସାହସ ହେଲାନାହିଁ । ଭୁବନେଶ୍ୱର ଲୋକସଭା ନିର୍ବାଚନମଣ୍ଡଳୀର ସଦସ୍ୟ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ ସେ ସମ୍ବନ୍ଧରେ ଲୋକସଭାରେ ଟିକିଏ ପାଟିତୁଣ୍ଡ କରିଥିଲେ; ମାତ୍ର ପରେ ଶୁଣାଗଲା ଯେ ସ୍ୱର୍ଗୀୟ ସଞ୍ଜୟ ଗାନ୍ଧୀଙ୍କର ଧମକପୂର୍ଣ୍ଣ ବ୍ୟବହାରରେ ସେ କୁଆଡ଼େ ତୁନି ହୋଇଯାଇଥିଲେ । ଏହି କ୍ରସ୍‌ବାର ଟେଲିଫୋନ୍ କାରଖାନାପାଇଁ ଭୁବନେଶ୍ୱର ନନ୍ଦନକାନନ ରାସ୍ତା ପାଖରେ ସ୍ଥାନ ନିରୂପଣ କରାଯାଇସାରିଥିଲା ଓ ଆବଶ୍ୟକୀୟ ଜମି ଯୋଗାଇବାକୁ ରାଜ୍ୟ ସରକାର ପ୍ରତିଶ୍ରୁତି ଦେଇଥିଲେ । ସେତେବେଳେ କେନ୍ଦ୍ର ସରକାରଙ୍କର ଏହି ଯୋଗାଯୋଗ ବିଭାଗରେ ଆମ ରାଜ୍ୟ କ୍ୟାଡ଼ରର ଦୁଇଜଣ ଉଚ୍ଚ ଅଫିସର୍ ଶ୍ରୀ ଜେ. ଡାଭେ ଓ ଶ୍ରୀ ଜ୍ଞାନଚାନ୍ଦ ଯଥାକ୍ରମେ ସେକ୍ରେଟେରୀ ଓ ଅତିରିକ୍ତ ସେକ୍ରେଟେରୀ ଥିଲେ । ଓଡ଼ିଶାରେ ସେହି କ୍ରସ୍‌ବାର ଟେଲିଫୋନ୍ କାରଖାନାଟି ହେବ ବୋଲି ସେମାନେ ଖୁବ୍ ଯତ୍ନ କରୁଥିଲେ । ଏହି ବିଭାଗର ମନ୍ତ୍ରୀ ଶ୍ରୀ ବ୍ରିଜଲାଲ୍ ବର୍ମାଙ୍କ ସହିତ ବିଜୁବାବୁଙ୍କ ଉପସ୍ଥିତିରେ ମୁଁ ବହୁବାର ଆଲୋଚନା କରିଥିଲି । ସେ ଅତିଶୟ ସହାନୁଭୂତିଶୀଳ ଥିଲେ ଏବଂ ଭୁବନେଶ୍ୱରଠାରେ ସେ କାରଖାନାଟି ପ୍ରତିଷ୍ଠିତ ହେବ ବୋଲି ଶ୍ରୀ ଡାଭେ ଓ ଜ୍ଞାନଚାନ୍ଦଙ୍କୁ ମୋ ଆଗରେ ନିର୍ଦ୍ଦେଶ ଦେଇଥିଲେ, ସେହି ଅନୁସାରେ ମଧ୍ୟ ସେମାନେ ବିଭାଗୀୟ କାଗଜପତ୍ର ସବୁ ଠିକ୍ କରିଥିଲେ । କେନ୍ଦ୍ରମନ୍ତ୍ରୀ ଶ୍ରୀ ବ୍ରିଜଲାଲ୍ ବର୍ମା ପରେ ବିଜୁବାବୁଙ୍କ ସହିତ ଓଡ଼ିଶା ଆସିଥିବା ସମୟରେ ଏହି କ୍ରସ୍‌ବାର ଟେଲିଫୋନ୍ କାରଖାନା ଭୁବନେଶ୍ୱରରେ ହେବା କଥା ସ୍ଥିରହୋଇଛି ବୋଲି ଆମ୍ଭମାନଙ୍କୁ ଜଣାଇଥିଲେ । ମାତ୍ର ତାହା ଚାଲିଗଲା ଉତ୍ତର-ପ୍ରଦେଶର ରାୟବରେଲୀକୁ ।

## ଦ୍ୱିତୀୟ ଇସ୍ପାତ୍‌କାରଖାନା କାହାର ଉପହାର ?

ଓଡ଼ିଶାକୁ ଅନଗ୍ରସର ଦରିଦ୍ର ଅବସ୍ଥାରୁ ଏକ ବିକାଶୋନ୍ମୁଖୀ ସମୃଦ୍ଧ ରାଜ୍ୟରୂପେ ଗଢ଼ିବା ପାଇଁ

ସାହସ ଓ ଦୃଢ଼ତାର ସହିତ ଅନେକଗୁଡ଼ିଏ ଦୂରଦୃଷ୍ଟିସଂପନ୍ନ ନୀତି ଉପସ୍ଥାପିତ କରି ସେଗୁଡ଼ିକୁ କାର୍ଯ୍ୟରେ ରୂପାନ୍ତର କରିବା ନିମନ୍ତେ ସେତେବେଳେ ଆମ ଜନତା ସରକାର କେନ୍ଦ୍ର ସରକାରଙ୍କର ସାହାଯ୍ୟ ଲୋଡ଼ିଥିଲେ । ରାଜ୍ୟରେ ଉପଯୋଗ ହୋଇନଥିବା ବା ଆଂଶିକ ଭାବରେ ଉପଯୋଗ ହୋଇଥିବା ଯେଉଁ ବିପୁଳ ପ୍ରାକୃତିକ ସଂପଦ ରହିଛି, ତାକୁ କାର୍ଯ୍ୟରେ ଲଗାଇବାପାଇଁ ଏବଂ ଯେଉଁ ଭୌଗୋଳିକ ଅବସ୍ଥିତିର ସୁଯୋଗମାନ ରହିଛି ତାକୁ ବିନିଯୋଗ କରିବାପାଇଁ କେନ୍ଦ୍ର ସରକାରଙ୍କ ଉପରେ ପ୍ରଭାବ ପକାଇବା କୌଶଳ, ରାଜ୍ୟର ଜନତା ସରକାର ଆରମ୍ଭ କରିଥିଲେ । ବୃହଦ୍ ଶିଳ୍ପ ସ୍ଥାପନ ଉଦ୍ଦେଶ୍ୟରେ ଓଡ଼ିଶାରେ ଖଣିଜ ସଂପଦ ଓ ପାରାଦ୍ୱୀପ ଭଳି ଦେଶର ଗଭୀରତମ ବନ୍ଦରର ସଦୁପଯୋଗ କରି ରାଜ୍ୟରେ ଦ୍ୱିତୀୟ ଇସ୍ପାତ୍ କାରଖାନା, ଆଲୁମିନିୟମ୍ କାରଖାନା ଓ ଜାହାଜ ତିଆରି କାରଖାନା ପ୍ରତିଷ୍ଠାପାଇଁ ରାଜ୍ୟ ସରକାର କେନ୍ଦ୍ର ସରକାରଙ୍କ ଉପରେ ଦୃଢ଼ ଯୁକ୍ତିସମ୍ବଳିତ ତଥ୍ୟାବଳୀ ସହ ପ୍ରଭାବ ପକାଇଥିଲେ । ଓଡ଼ିଶାରେ ଦ୍ୱିତୀୟ ଇସ୍ପାତ୍ କାରଖାନା ପ୍ରତିଷ୍ଠାପାଇଁ ରାଜ୍ୟବାସୀ ପ୍ରାୟ ଦଶ ବର୍ଷ ହେଲା ସରକାରଙ୍କଠାରେ ଦାବି କରି ଆସୁଥିଲେ । ସେତେବେଳେ ଏଥିପାଇଁ ଆନ୍ଦୋଳନ କରି ଆମ ରାଜ୍ୟର ଯୁବକମାନେ ଶ୍ରୀ ବିଜୁ ପଟ୍ଟନାୟକଙ୍କ ସହିତ ଦିଲ୍ଲୀରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ବାସଭବନ ପାଖରେ ସତ୍ୟାଗ୍ରହ କରିଥଲେ । କେନ୍ଦ୍ରରେ ଜନତା ସରକାର ଗଠିତ ହେଲା ପରେ ଲୋକସଭାରେ ୧୯୭୭ ମସିହା ଜୁଲାଇ ମାସରେ ସର୍ବଶ୍ରୀ ପବିତ୍ରମୋହନ ପ୍ରଧାନ, ପଦ୍ମଚରଣ ସାମନ୍ତସିଂହାର ଓ ପ୍ରତାପକେଶରୀ ଦେଓ ପ୍ରଭୃତି ଓଡ଼ିଶାର ସଭ୍ୟମାନେ ଓଡ଼ିଶାରେ ଦ୍ୱିତୀୟ ଇସ୍ପାତ୍ କାରଖାନା ପ୍ରତିଷ୍ଠାପାଇଁ ଦୃଢ଼ ଦାବି କରିଥିଲେ । ଏସବୁ ସତ୍ତ୍ୱେ ଓଡ଼ିଶାରେ ଆଉ ଗୋଟିଏ ଇସ୍ପାତ୍ କାରଖାନା ପ୍ରତିଷ୍ଠା କରିବା ବିଷୟରେ ନିଷ୍ପତ୍ତି ନେବା ସହଜ ବ୍ୟାପାର ନୁହେଁ ବୋଲି ଅନୁଭୂତ ହୋଇଥିଲା । ଆମର ସୌଭାଗ୍ୟକୁ ବିଜୁ ପଟ୍ଟନାୟକ କେନ୍ଦ୍ରରେ ଇସ୍ପାତ୍ ଓ ଖଣି ମନ୍ତ୍ରୀ ଥିଲେ । ତାଙ୍କରି କୌଶଳ ଓ ବୁଦ୍ଧିମତ୍ତା ହେତୁ ଦ୍ୱିତୀୟ ଇସ୍ପାତ୍ କାରଖାନା ଓଡ଼ିଶାର ପାରାଦ୍ୱୀପ ବନ୍ଦରଠାରେ ହେବାର ନିଷ୍ପତ୍ତି ସମ୍ଭବ ହୋଇଥିଲା । ଏକଥା ବୋଧହୁଏ କାହାରିକୁ ଶୁଣିବାକୁ ଅପ୍ରୀତିକର ହୋଇପାରେ; ମାତ୍ର ତାହାହିଁ ସତ୍ୟ । ଓଡ଼ିଶାର ଇସ୍ପାତ୍ କାରଖାନା ପ୍ରତିଷ୍ଠା ହେବା ସମ୍ବାଦକୁ ଗୋଟିଏ ଉପହାର ବୋଲି ମନେକରି ଗର୍ବ ଅନୁଭବ କରିବା ସ୍ୱାଭାବିକ; କିନ୍ତୁ ଯାହାଙ୍କ ଉଦ୍ୟମ, କୌଶଳ ଓ ଚତୁରତା ହେତୁ ପାରାଦ୍ୱୀପଠାରେ ଗୋଟିଏ ବନ୍ଦରଭିତ୍ତିକ ବୃହଦ୍ ଇସ୍ପାତ୍ କାରଖାନା ନିର୍ମାଣ ନିଷ୍ପତ୍ତି ସମ୍ଭବ ହୋଇଥିଲା, ତାହା ସ୍ୱୀକାର କରିବାରେ କୃପଣତା ପ୍ରଦର୍ଶନ ସାଧାରଣ ଶିଷ୍ଟାଚାରର ବିରୁଦ୍ଧ । ପାରାଦ୍ୱୀପ ବନ୍ଦରଠାରେ ଦ୍ୱିତୀୟ ଇସ୍ପାତ୍ କାରଖାନାପାଇଁ ବହୁ ପୂର୍ବରୁ ବିଜୁ ପଟ୍ଟନାୟକ ଉଦ୍ୟମ କରିଆସୁଥିଲେ । ସେ ସମ୍ବନ୍ଧରେ କିଞ୍ଚିତ୍ ଆଭାସ ମୁଁ ଏଠାରେ ଦେଉଛି । 'ଟାଇମ୍‌ସ ଅଫ୍ ଇଣ୍ଡିଆ'ର ବିଶେଷ ସମ୍ବାଦଦାତା ଲେଖିଥିଲେ ଯେ ପାରାଦ୍ୱୀପଠାରେ ଗୋଟିଏ ନୂତନ ଇସ୍ପାତ୍ କାରଖାନା ନିର୍ମାଣପାଇଁ ଇସ୍ପାତ୍ ମନ୍ତ୍ରଣାଳୟଙ୍କ ପକ୍ଷରୁ ଉଦ୍ୟମ ଆରମ୍ଭ ହୋଇଛି । ଦକ୍ଷିଣ-ଭାରତର ବିଶାଖାପାଟଣା ଓ କର୍ଣ୍ଣାଟକର ହୋସପାଟଠାରେ ଯେଉଁ ଦୁଇଟି ଇସ୍ପାତ୍ କାରଖାନା ପ୍ରତିଷ୍ଠାର ଉଦ୍ୟମ ଚାଲିଛି, ସେଥିରେ ପରିବର୍ତ୍ତନ ଘଟାଇଲେ ରାଜନୈତିକ ଉତ୍ତେଜନା ସୃଷ୍ଟି ହେବାର ଆଶଙ୍କା ରହିଛି । ବିଶେଷତଃ ଏଥିପାଇଁ ଇସ୍ପାତ୍‌ମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଭିନ୍ନମତ ପୋଷଣ କରୁଛନ୍ତି ବୋଲି କର୍ଣ୍ଣାଟକ ଓ ଆନ୍ଧ୍ରର କଂଗ୍ରେସ ସରକାର ଆନ୍ଦୋଳନ ଆରମ୍ଭ କରିଥିବାର ଜଣାଯାଏ (ତା ୧୮ । ୮ । ୭୮ର 'ପ୍ରଜାତନ୍ତ୍ର'ରେ 'ଟାଇମ୍‌ସ ଅଫ୍ ଇଣ୍ଡିଆ'ରୁ ଉଦ୍ଧୃତ ସମ୍ବାଦ) । ଦକ୍ଷିଣ-ଭାରତର ସାଲିମଠାରେ ଯେଉଁ ଇସ୍ପାତ୍ କାରଖାନା ନିର୍ମାଣ କରାଯାଉଛି ତାହା କୁଆଡ଼େ ଗୋଟିଏ ବୃହଦ୍ ଇସ୍ପାତ୍ କାରଖାନା ହେବାର ପ୍ରସ୍ତାବ ଥିଲା । କିନ୍ତୁ ତତ୍କାଳୀନ ଇସ୍ପାତ୍ ଓ ଖଣି ମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଅତି ଚତୁରତା ସହିତ ତାକୁ କେବଳ ଷ୍ଟେନଲେସ୍ ଇସ୍ପାତ୍ ନିର୍ମାଣ କରିବାପାଇଁ ଗୋଟିଏ ଛୋଟିଆ କାରଖାନାରେ ପରିଣତ କରି ବଡ଼ ଇସ୍ପାତ କାରଖାନାଟି କିପରି ତାଙ୍କ ରାଜ୍ୟର ପାରାଦ୍ୱୀପଠାରେ ବସିବ ତା'ର କ୍ଷେତ୍ର ପ୍ରସ୍ତୁତି କରିଥିଲେ । ଏ ସମ୍ବନ୍ଧରେ

ବମ୍ବେରୁ ପ୍ରକାଶପାଉଥିବା କମ୍ୟୁନିଷ୍ଟ ପାର୍ଟିର National Democracy ଖବରକାଗଜରେ ୧୯୮୧ ମସିହା ଅକ୍ଟୋବର ଚାରି ତାରିଖରେ ଯେଉଁଳି ଭାବରେ ବିଜୁ ପଟ୍ଟନାୟକଙ୍କର ସମାଲୋଚନା କରାଯାଇଛି ତାହା ଜାଣିବାର ବିଷୟ । "BIJU MANIPULATION"– "Mr. Biju Pattanaik, who then happened to be in charge of Steel and Mines, however, had his own ideas. He agreed with the Janata strategies but through deft manipulation 'transferred' the integrated special steel plant proposed for Salem into a simple Stainless Steel Plant. Instead of a giant plant producing various varaieties of special steel, the Salem Plant would produce only one type stainless steel. Mr. Pattanaik was keen to make out a case for another steel plant for his home State of Orissa at Paradeep; hence the sudden decision to reduce the size of the Salem Plant." ପାରାଦ୍ୱୀପଠାରେ ବନ୍ଦରଭିତ୍ତିକ ଇସ୍ପାତ୍ କାରଖାନା କେବଳ ବିଜୁ ପଟ୍ଟନାୟକଙ୍କ ଯୋଗୁଁ ସମ୍ଭବ ହୋଇଛି ବୋଲି 'Economic Times' ଡ଼'ର ଅଗ୍ରଲେଖାରେ କେତେ ଥର ମନ୍ତବ୍ୟ ପ୍ରକାଶ କରିବାର ମୁଁ ପଢ଼ିଛି ।

ଆମ ରାଜ୍ୟରେ କେବଳ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱରେ ଗଠିତ କଂଗ୍ରେସ ମନ୍ତ୍ରିମଣ୍ଡଳର ଉଦ୍ୟମ ଯୋଗୁଁ କିମ୍ବା ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଦରଦ ଯୋଗୁଁ ଓଡ଼ିଶାବାସୀଙ୍କୁ ପୂଜା ଉପହାର ସ୍ୱରୂପ ପାରାଦ୍ୱୀପଠାରେ ଏକ ବିରାଟ ଇସ୍ପାତ୍ କାରଖାନା ମଞ୍ଜୁର କରାଯାଇଥିଲା ବୋଲି ପ୍ରଚାର କରାଯିବା ଏକାବେଳକେ ଅବାସ୍ତବ କଥା । ଅବଶ୍ୟ ଅତି ଆନନ୍ଦର ବିଷୟ ଯେ ପାରାଦ୍ୱୀପଠାରେ ବନ୍ଦରଭିତ୍ତିକ ଇସ୍ପାତ୍ କାରଖାନାର ଶିଳାନ୍ୟାସ କରିବାର ଉତ୍ସବଟି ଜାନକୀବାବୁଙ୍କ କାର୍ଯ୍ୟକାଳ ମଧ୍ୟରେ ପଡ଼ିପାରେ; ପ୍ରକୃତ କାର୍ଯ୍ୟ ଆରମ୍ଭ ମଧ୍ୟ ତାଙ୍କରି ସମୟରେ ହେବାକୁ ଯାଉଛି । କିନ୍ତୁ ଆମ ରାଜ୍ୟରେ ଦ୍ୱିତୀୟ ଇସ୍ପାତ୍ କାରଖାନା ହେବାର ନିଷ୍ପତ୍ତି ଯେପରି ଭାବରେ ହୋଇଥିଲା, ସେ କଥା ସାଧାରଣରେ ସ୍ୱୀକାର କଲେ କଂଗ୍ରେସ ସରକାରର ମହତ୍ତ୍ୱ କିଛି ଊଣା ହୁଅନ୍ତା ନାହିଁ ବୋଲି ମୋର ବିଶ୍ୱାସ । ବିଜୁ ପଟ୍ଟନାୟକ କେନ୍ଦ୍ରରେ ଇସ୍ପାତ୍‌ମନ୍ତ୍ରୀ ହେବା ପରେ ବହୁବାର ତାଙ୍କ ସହିତ ମୋର ଓଡ଼ିଶାରେ ଏହି ଦ୍ୱିତୀୟ ଇସ୍ପାତ୍ କାରଖାନା କଥା ଆଲୋଚନା ହୋଇଥିଲା । ସାଲିମ୍‌ଠାରେ Integrated Special Steel Plantକୁ ଭାଗ ଭାଗ କରିବାପାଇଁ ଶ୍ରୀ ପଟ୍ଟନାୟକ ଯେଉଁଳି ଭାବରେ ଯୁକ୍ତି ଉଦ୍ଭାବନ କରୁଥିଲେ, ସେ ବିଷୟ ମୁଁ ଲକ୍ଷ୍ୟ କରୁଥିଲି । ଦିନେ ଏ ସମ୍ବନ୍ଧରେ ତାଙ୍କ ଅଫିସ୍‌ରେ ଆଲୋଚନା ହେଲାବେଳେ ମୁଁ ଦିଲ୍ଲୀରେ ଉପସ୍ଥିତ ଥିଲି । ସେତେବେଳେ ସେ ମୋତେ କହିଥିଲେ ଯେ ସେ ଗୋଟିଏ ଉପାୟ ଅବଲମ୍ବନ କରୁଛନ୍ତି ଏବଂ ତାହା ଯଦି ସଫଳ ହୁଏ ତା'ହେଲେ ଓଡ଼ିଶାରେ ଦ୍ୱିତୀୟ ଇସ୍ପାତ୍ କାରଖାନା ସ୍ଥାପନ କରିବା ସମ୍ଭବ ହୋଇପାରେ । ଜମି, ଜଳ ଓ ବିଦ୍ୟୁତ୍‌ଶକ୍ତି ଯୋଗାଇବା ସମ୍ବନ୍ଧରେ ରାଜ୍ୟ ସରକାରଙ୍କ ସହିତ ବିଜୁ ପଟ୍ଟନାୟକ ବହୁବାର ଆଲୋଚନା କରିଥିଲେ । ଏ ସମ୍ବନ୍ଧରେ ମଧ୍ୟ ରାଜ୍ୟ ସରକାର ବିଧାନସଭାରେ ଅନେକ ସମୟରେ ସୂଚନା ଦେଇଥିଲେ । ୧୯୭୯ ମସିହା ଜୁନ୍ ମାସ ଚଉଦ ତାରିଖରେ ପ୍ରଜାତନ୍ତ୍ର ଖବରକାଗଜରେ ପ୍ରକାଶିତ ସମ୍ବାଦ ମୋର ଉଲ୍ଲିଖିତ ଉକ୍ତିର ସତ୍ୟତା ସମ୍ବନ୍ଧରେ ଯଥେଷ୍ଟ ସୂଚନା ଦେଉଛି, ''ଭୁବନେଶ୍ୱର, ୧୩।୬ କେନ୍ଦ୍ର ଇସ୍ପାତ୍‌ମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଗତକାଲି ହଠାତ୍ ଏଠାରେ ପହଞ୍ଚି ପାରାଦ୍ୱୀପରେ ଇସ୍ପାତ୍ କାରଖାନା ପ୍ରତିଷ୍ଠା ବିଷୟରେ ମୁଖ୍ୟମନ୍ତ୍ରୀ ତଥା ରାଜ୍ୟ ସରକାରଙ୍କର ଅଫିସରଙ୍କ ସହିତ ୩ ଘଣ୍ଟା ଆଲୋଚନା କରିଥିଲେ । ମନ୍ତ୍ରିମଣ୍ଡଳର କେତେକ ସଭ୍ୟ ମଧ୍ୟ ଯୋଗଦେଇଥିଲେ । ଶ୍ରୀ ପଟ୍ଟନାୟକ କହିଥିଲେ ପାରାଦ୍ୱୀପ ଇସ୍ପାତ୍ କାରଖାନାର ପ୍ରଥମ ପର୍ଯ୍ୟାୟରେ ପନ୍ଦର ଲକ୍ଷ ଟନ୍ ଇସ୍ପାତ ଉତ୍ପାଦନ ସମ୍ଭବ । ପରେ ଏହା ପଇଁତିରିଶ ଲକ୍ଷ ଟନ୍‌କୁ ବୃଦ୍ଧି ପାଇବ । ଏଥିପାଇଁ ଛଅ ହଜାର ହେକ୍ଟର ଜମି, ଶହେ କ୍ୟୁସେକ୍ ପାନୀୟ ଜଳ ଓ ଦୁଇ ଶହ କୋଡ଼ିଏ ମେଗାୱାଟ୍ ବିଦ୍ୟୁତ୍‌ଶକ୍ତି ଆବଶ୍ୟକ । ଏହାର ସୁବିଧା ରହିଛି ବୋଲି ରାଜ୍ୟ ସରକାରଙ୍କ ପକ୍ଷରୁ ତାଙ୍କୁ ଜଣାଇ ଦିଆଯାଉଥିଲା । ରାଜ୍ୟ ସରକାର

ଏଥିପାଇଁ କେତେକ ନକ୍‌ସା ପ୍ରସ୍ତୁତ କରି ପ୍ରାରମ୍ଭିକ ବ୍ୟବସ୍ଥା କରିଛନ୍ତି । ସେଗୁଡ଼ିକର ସମୀକ୍ଷାପାଇଁ ତାଙ୍କ ବିଭାଗକୁ ପଠାଇଦେବାକୁ ସେ ପରାମର୍ଶ ଦେଇଥିଲେ ।''

କେଉଁ ପରିସ୍ଥିତିରେ ଏଥିପୂର୍ବରୁ ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ସାଲିମ୍ (ହସ୍‌ପେଟ) ଓ ବିଜୟନଗର (କର୍ଣ୍ଣାଟକ)ଠାରେ ଇସ୍ପାତ୍ କାରଖାନା ପ୍ରତିଷ୍ଠା କରିବାପାଇଁ ଘୋଷଣା କରିଥିଲେ, ତାହା ମଧ୍ୟ ଏହି ପ୍ରସଙ୍ଗରେ ମନେକରିବାର କଥା । ଦକ୍ଷିଣ-ଭାରତରେ ଲୋକସଭାପାଇଁ କେତେ ଗୋଟି ଉପନିର୍ବାଚନ ଥାଏ । ସେଥିରେ ଜୟଲାଭ କରିବାପାଇଁ ଶ୍ରୀମତୀ ଗାନ୍ଧୀ ସେହି ଅଞ୍ଚଳରେ କେତୋଟି ଇସ୍ପାତ୍ କାରଖାନା ହେବ ବୋଲି ପ୍ରତିଶ୍ରୁତି ଘୋଷଣା କରିଥିଲେ । ସେତେବେଳେ ଆମ୍ଭେମାନେ ଶ୍ରୀମତୀ ଗାନ୍ଧୀଙ୍କର ଏହି ନିର୍ବାଚନ ପ୍ରତିଶ୍ରୁତି ଘୋଷଣାକୁ ତୀବ୍ର ସମାଲୋଚନା କରିଥିଲୁ । ୧୯୭୩ ମସିହା ନଭେମ୍ବର ମାସ କୋଡ଼ିଏ ତାରିଖରେ ମୁଁ ଗୋଟିଏ ବିବୃତି ଦେଇ ଓଡ଼ିଶା ଲୋକଙ୍କର ସ୍ୱାର୍ଥ ଓ କଞ୍ଚାମାଲ ମିଳୁଥିବା ଅଞ୍ଚଳ ପ୍ରତି ଅନ୍ୟାୟ କରି ରାଜନୈତିକ ଦୃଷ୍ଟିକୋଣରୁ ଇସ୍ପାତ୍ କାରଖାନା ଭଳି ନିଷ୍ପତ୍ତି ପ୍ରଧାନମନ୍ତ୍ରୀଙ୍କ ନିଜ ହାତପାଣ୍ଠିରୁ ଟଙ୍କା ବାଣ୍ଟିଲା ଭଳି ନୀତିକୁ ସମାଲୋଚନା କରିଥିଲି । ମୁଁ ଦର୍ଶାଇଥିଲି, "Nature has bestowed its bounty so much in Orissa that this State is fortunate to be one of the richest mineral belts in the world. Yet, it is so unfortunate that it is not considered suitable for more mineral-based industries because of political considerations. The very special advantages available in Orissa for mineral-based or port-based Steel Plants have been ignored and regardless of consideration of its economy, cost of production and the interest of the consumers of the country, steel plants are distributed as discretionary grants for location at unattractive places just to satisfy political pulls and pressures."

ତେଣୁ ଶ୍ରୀମତୀ ଗାନ୍ଧୀ ରାଜନୈତିକ ଦୃଷ୍ଟିକୋଣରୁ ଦଳୀୟ ସ୍ୱାର୍ଥସାଧନପାଇଁ ଯେଉଁ ଅନ୍ୟାୟ କରିଥିଲେ ତାକୁ ଯଦି ବିଜୁ ପଟ୍ଟନାୟକ ନିଜର ବୁଦ୍ଧି ଓ ବୈଷୟିକ ଜ୍ଞାନଦ୍ୱାରା ସଂଶୋଧନ କରିପାରିଲେ, ତାଙ୍କୁ ପ୍ରଶଂସା କରିବା ଉଚିତ । ବନ୍ଦରଭିତ୍ତିକ ଇସ୍ପାତ୍ କାରଖାନା ସ୍ଥାପନ ଚିନ୍ତାଧାରାର ଜନ୍ମଦାତା ହେଉଛନ୍ତି ଶ୍ରୀ ବିଜୁ ପଟ୍ଟନାୟକ । ତାଙ୍କର ଦୁଃସାହସିକ ପଦକ୍ଷେପ ହେତୁ ଭାରତର ଗଭୀରତମ ବନ୍ଦର ପାରାଦ୍ୱୀପ ନିର୍ମିତ ହୋଇପାରିଥିଲା । କୌଶଳ କରି ଯଦି ସେହିଠାରେ ସେ ଗୋଟିଏ ବୃହତ୍ ଇସ୍ପାତ୍ କାରଖାନା ବସାଇବାର ପଥ ସୁଗମ କରିପାରିଲେ ସେଥିରେ ଆମର ଗର୍ବ ଅନୁଭବ କରିବା କଥା । ଯେକୌଣସି ଇସ୍ପାତ୍‌ମନ୍ତ୍ରୀ ହୋଇଥିଲେ ସେ Integrated Special Steel Plant ପରିକଳ୍ପନାକୁ ବିଭକ୍ତ କରିପାରିଥାଆନ୍ତେ, ତାହା କହିଲେ ଠିକ୍ ହେବନାହିଁ । ରାଜନୀତିରେ ବିଜୁ ପଟ୍ଟନାୟକଙ୍କର ଅନ୍ୟାନ୍ୟ ଗୁଣ ବିବାଦୀୟ ହୋଇପାରେ; ମାତ୍ର ଶିଳ୍ପ ସମ୍ବନ୍ଧରେ ସେ ଯେ ଭାରତବର୍ଷରେ ଜଣେ ବିଶେଷ ଜ୍ଞାନସମ୍ପନ୍ନ ବ୍ୟକ୍ତି ଏ କଥା ଅସ୍ୱୀକାର କରିହେବନାହିଁ । ସାଲିମ୍ ଓ ପାରାଦ୍ୱୀପଠାରେ ଦୁଇଟି ପୃଥକ୍ ଇସ୍ପାତ୍ କାରଖାନା ବସିବା ନିଷ୍ପତ୍ତିଦ୍ୱାରା କେବଳ ଓଡ଼ିଶାର ଲାଭ ହୋଇନଥିଲା; ସମଗ୍ର ଭାରତବର୍ଷର ଲୋକଙ୍କର ଉପକାର ସାଧିତ ହୋଇଥିଲା । ସାଲିମ୍‌ଠାରେ ଯେଉଁ ବୃହତ୍ ଇସ୍ପାତ୍ କାରଖାନା ହେବାକୁ ଯାଉଥିଲା ସେଥିପାଇଁ ଲୁହା, କୋଇଲା ପ୍ରଭୃତି ଯେଉଁ କଞ୍ଚାମାଲ ଆବଶ୍ୟକ ତାହା ସେଠାରେ ପ୍ରଚୁର ପରିମାଣରେ ମିଳେନାହିଁ । ସେସବୁ କଞ୍ଚାମାଲ ସେଠାକୁ ବୋହିନେବାରେ ଯେଉଁ ଅପରିମିତ ଖର୍ଚ୍ଚ ହୋଇଥାଆନ୍ତା ତାହାକୁ ଏଡ଼ାଇଦିଆଯାଇପାରିଛି । ତାହା ନହୋଇଥିଲେ ସେସବୁର ପରିବହନ ଖର୍ଚ୍ଚ ଇସ୍ପାତ୍ ଦର ଉପରେ ବସାହୋଇ ଖାଉଟିଙ୍କ ଉପରେ ପଡ଼ିଥାଆନ୍ତା । ସେତେବେଳେ ସାଲିମ୍ ଯୋଜନାର ସମାଲୋଚକମାନେ ହିସାବ କରି ଦେଖାଇଦେଇଥିଲେ ଯେ ପରିବହନ ବାବଦରେ ବର୍ଷକୁ ଶହ ଶହ କୋଟି ଟଙ୍କା ଖର୍ଚ୍ଚ କାରଖାନାକୁ ବହନ କରିବାକୁ ପଡୁଥିଲା ।

ଏହା ସେତେବେଳେ ଖବରକାଗଜରେ ପ୍ରକାଶିତ ହୋଇଥିଲା । ପାରାଦ୍ୱୀପଠାରେ ଇସ୍ପାତ୍ କାରଖାନା ହେଲେ ତାହା ଯେ କେବଳ Port-based ବା ବନ୍ଦରଭିତ୍ତିକ ହେବ ତାହା ନୁହେଁ, ବରଂ ପାରାଦ୍ୱୀପ ବନ୍ଦରର ମାତ୍ର ସତୁରିରୁ ଶହେ ମାଇଲ ମଧ୍ୟରେ ପ୍ରଚୁର ଲୁହା, କୋଇଲା ଓ ଅନ୍ୟାନ୍ୟ ସମସ୍ତ ପ୍ରକାର ପ୍ରୟୋଜନ ଖଣିଜଦ୍ରବ୍ୟ ଜମାହୋଇ ରହିଛି । ରାସ୍ତା ଓ ରେଳରେ ପରିବହନର ସମସ୍ତ ସୁବିଧା ମଧ୍ୟ ରହିଛି ।

## ଉପହାରରୁ ଉପହାସ

ମୋର ଏହି ଆତ୍ମଜୀବନୀ ପୁସ୍ତକର ପାଣ୍ଡୁଲିପିରେ ପାରାଦ୍ୱୀପରେ ଓଡ଼ିଶାର ଦ୍ୱିତୀୟ ଇସ୍ପାତ୍ କାରଖାନା ପ୍ରତିଷ୍ଠା ସମ୍ବନ୍ଧୀୟ ଇତିବୃତ୍ତ ଲେଖିବାର କିଛିଦିନ ପରେ କେନ୍ଦ୍ରସରକାରଙ୍କ ଘୋଷଣା ପ୍ରକାଶ ପାଇଥିଲା ଯେ ପ୍ରସ୍ତାବିତ ଇସ୍ପାତ୍ କାରଖାନା ପାରାଦ୍ୱୀପରେ ନହୋଇ ଦୈତାରିଠାରେ ପ୍ରତିଷ୍ଠା କରାଯିବ । ତେଣୁ ପାଣ୍ଡୁଲିପିକୁ ସଂଶୋଧନ କରିବାପାଇଁ ମୋ ମନରେ ପ୍ରଶ୍ନ ଉଠିଲା । ଟିକିଏ ଚିନ୍ତା କରି ଅନୁଭବ କଲି ଯେ ତାହା ସମୀଚୀନ ହେବନାହିଁ; କାରଣ ସେଥିରେ ଯାହା ଲିପିବଦ୍ଧ କରାଯାଇଛି ତାହା ଗୋଟିଏ ସମୟର ବାସ୍ତବ ଘଟଣା । ତେଣୁ ପୂର୍ବରୁ ଲେଖାହୋଇଥିବା ବିଷୟବସ୍ତୁକୁ ପରିବର୍ତ୍ତନ ନକରି ପରିବର୍ତ୍ତିତ ଅବସ୍ଥା ସମ୍ବନ୍ଧରେ କିଛି ଟିପ୍‌ପଣୀ ଦେଲେ ଠିକ୍ ହେବ ବୋଲି ସ୍ଥିରକଲି । ଓଡ଼ିଶାରେ ପାରାଦ୍ୱୀପ ବନ୍ଦରଠାରେ ବନ୍ଦରଭିତ୍ତିକ ଇସ୍ପାତ୍ କାରଖାନା ପ୍ରତିଷ୍ଠା କରାଯିବ ବୋଲି ଘୋଷଣା ହେବା ପରେ ତାହା ଓଡ଼ିଶା ପ୍ରତି ଶ୍ରୀମତୀ ଗାନ୍ଧୀଙ୍କର ପୂଜା ଉପହାର ବୋଲି କହି ପ୍ରଧାନମନ୍ତ୍ରୀ ଶୀଘ୍ର ଶିଳାନ୍ୟାସ କରିବାକୁ ଆସୁଥିଲେ ବୋଲି ରାଜ୍ୟର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ରାଜ୍ୟବାସୀଙ୍କୁ ୧୯୮୧ ମସିହାରେ ବହୁବାର ନିଶ୍ଚିତ ଭରସା ଦେଉଥିଲେ । ପାରାଦ୍ୱୀପଠାରେ ଏହି ଇସ୍ପାତ୍ କାରଖାନା ନିର୍ମାଣ କାର୍ଯ୍ୟ ଇଂଲଣ୍ଡର ଡାଭି-ମେକୀ ନାମକ ଗୋଟିଏ କମ୍ପାନୀକୁ ଚୁକ୍ତିସୂତ୍ରରେ ଠିକା ଦିଆଯାଇଥିଲା । ଉକ୍ତ କମ୍ପାନୀ ଏହି କାରଖାନାପାଇଁ ପାଣ୍ଠିର ଆୟୋଜନ କରିସାରିଥିଲେ । କମ୍ପାନୀ ଶୀଘ୍ର କାର୍ଯ୍ୟ ଆରମ୍ଭ କରିବେ ବୋଲି ଘୋଷଣା କରାଯାଇଥିଲା । ୧୯୮୨ ମସିହା ପ୍ରାରମ୍ଭରେ ହଠାତ୍ ଘୋଷଣା କରାଗଲା ଯେ ଇସ୍ପାତ୍ କାରଖାନା ପାରାଦ୍ୱୀପଠାରେ ନହୋଇ ଦୈତାରିଠାରେ ହେବ । ସ୍ଥାନ ପରିବର୍ତ୍ତନର କାରଣ କ'ଣ ପ୍ରଥମେ ସ୍ପଷ୍ଟ କୁହାଯାଇନଥିଲେ ମଧ୍ୟ ହଠାତ୍ କୁଆଡ଼େ ଆବିଷ୍କୃତ ହେଲା ଯେ ପାରାଦ୍ୱୀପ ବନ୍ଦର ବନ୍ୟା ଓ ଝଡ଼ତୋଫାନର ପ୍ରକୋପର ପରିସର ମଧ୍ୟରେ ଅବସ୍ଥିତ । ଆଉ କିଛିଦିନ ପରେ ଡାଭି-ମେକୀ କମ୍ପାନୀ ସହିତ ଇସ୍ପାତ୍ କାରଖାନା ନିର୍ମାଣ ସମ୍ବନ୍ଧୀୟ ଚୁକ୍ତି ରଦ୍ଦ ହେଲା ବୋଲି ନିଷ୍ପତ୍ତି ପ୍ରକାଶପାଇଥିଲା । ବନ୍ଦରଭିତ୍ତିକ ଇସ୍ପାତ୍ କାରଖାନା ପ୍ରତିଷ୍ଠା କଥା କହିଲାକ୍ଷଣି ପାରାଦ୍ୱୀପ ଦେଶର ସବୁଠାରୁ ଗଭୀରତମ ବନ୍ଦର ହୋଇଥିବାରୁ ତାହା ସହିତ କୌଣସି ସ୍ଥାନ ପ୍ରତିଦ୍ୱନ୍ଦ୍ୱୀ ହୋଇପାରୁନଥିଲା । ତା'ଛଡ଼ା ବନ୍ଦରଭିତ୍ତିକ ଇସ୍ପାତ୍ କାରଖାନା ପ୍ରତିଷ୍ଠା ନିଷ୍ପତ୍ତିରେ ସ୍ୱତନ୍ତ୍ର ଅର୍ଥନୀତି ଓ ଆର୍ଥିକ ବ୍ୟବସ୍ଥାର ପରିକଳ୍ପନା ସଂଶ୍ଳିଷ୍ଟ ଥିଲା । କାରଖାନା ବସାଇବାରେ ଯେଉଁ ମୂଳ ଖର୍ଚ୍ଚ ଓ ଋଣ ବିନିଯୋଗ କରାଯାଇଥାନ୍ତା ତାହା ଇସ୍ପାତ୍ ଦ୍ରବ୍ୟ ରପ୍ତାନୀ ବାଣିଜ୍ୟ ଆୟରୁ ପରିଶୋଧ କରିବାର ଯୋଜନା କରାଯାଇଥିଲା । ପାରାଦ୍ୱୀପରୁ ଦୈତାରିକୁ କାରଖାନାର ସ୍ଥାନ ପରିବର୍ତ୍ତନ କଲା ପରେ ସେସବୁ ଆର୍ଥିକ ଗଣନା ଓ ବିଚାରର କୌଣସି ଗୁରୁତ୍ୱ ରହିଲାନାହିଁ । ସ୍ଥାନ ପରିବର୍ତ୍ତନଦ୍ୱାରା ଇସ୍ପାତ୍ କାରଖାନା ପ୍ରତିଷ୍ଠା ସମ୍ବନ୍ଧରେ ଓଡ଼ିଶାର ପ୍ରତିଦ୍ୱନ୍ଦ୍ୱୀ ହେବାପାଇଁ ଅନେକଙ୍କୁ ସୁଯୋଗ ମିଳିଗଲା । କିନ୍ତୁ ଏକଥା ନିଶ୍ଚିତ ଯେ ଏହି ବନ୍ଦରଭିତ୍ତିକ ଇସ୍ପାତ୍ କାରଖାନା ପରିକଳ୍ପନା ଓ ତା'ର ଆର୍ଥିକ ସୁବିଧାହିଁ ଓଡ଼ିଶାରେ ଦ୍ୱିତୀୟ ଇସ୍ପାତ୍ କାରଖାନା ପ୍ରତିଷ୍ଠା ସପକ୍ଷରେ ଯୋଜନା କମିଶନଙ୍କ ନିଷ୍ପତ୍ତିକୁ ପ୍ରଭାବିତ କରିଥିଲା । ଓଡ଼ିଶାରେ ଯେପରି ଭାବରେ ପ୍ରଚୁର ଲୁହାଖଣି ଓ ଅନ୍ୟାନ୍ୟ ଖଣିଜଦ୍ରବ୍ୟ ଭରପୂର ହୋଇ ରହିଛି, ଏଠାରେ ଯେ ଆଉ ଇସ୍ପାତ୍ କାରଖାନା ନହେବ ତାହା ନୁହେଁ; ଦିନେ ନା ଦିନେ ଦେଶର ଇସ୍ପାତ୍ ଚାହିଦା ମେଣ୍ଟାଇବାପାଇଁ ଓଡ଼ିଶାରେ ଦ୍ୱିତୀୟ ଇସ୍ପାତ୍ କାରଖାନା

ନିଶ୍ଚୟ ହେବ । ମାତ୍ର ଯେଉଁଟା ହେବାପାଇଁ ଚୁକ୍ତି ହୋଇ କାର୍ଯ୍ୟ ଆରମ୍ଭ ହେବାକୁ ଯାଉଥିଲା ତା' ବନ୍ଦହେବାଦ୍ୱାରା ଓଡ଼ିଶାରେ ଦ୍ୱିତୀୟ ଇସ୍ପାତ୍ କାରଖାନା ହେବାରେ ଅନିଶ୍ଚିତ ଅବସ୍ଥା ସୃଷ୍ଟିକରାଗଲା ।

ଏହି ପ୍ରସଙ୍ଗରେ ୧୯୮୨ ମସିହା ମଇ ମାସ ବାଇଶ ତାରିଖରେ ଗୋଟିଏ ବିବୃତି ଦେଇ ମୁଁ ଇସ୍ପାତ୍ କାରଖାନାର ସ୍ଥାନ ପରିବର୍ତ୍ତନ ଓ ଡାଭି-ମେକୀ କମ୍ପାନୀ ସହ ହୋଇଥିବା ଚୁକ୍ତିର ବାତିଲ୍ ସମ୍ବନ୍ଧୀୟ ନିଷ୍ପତ୍ତିର ସମାଲୋଚନା କରି କହିଥିଲି, ''ଓଡ଼ିଶାରେ ଦ୍ୱିତୀୟ ଇସ୍ପାତ୍ କାରଖାନା ପ୍ରତିଷ୍ଠା ଲାଗି ଗୋଟିଏ ବ୍ରିଟିଶ୍ କମ୍ପାନୀ ସହ ଯେଉଁ ଚୁକ୍ତି ହୋଇଥିଲା, ତାକୁ ଭାରତ ସରକାର ବାତିଲ୍ କରିଦେଇ ବ୍ରିଟିଶ୍ ସରକାରଙ୍କୁ ଜଣାଇଦେବା ପରେ ଆମ ରାଜ୍ୟରେ ଦ୍ୱିତୀୟ ଇସ୍ପାତ୍ କାରଖାନା ପ୍ରତିଷ୍ଠା ହେବାର ସମ୍ଭାବନାରେ ଘୋର ସନ୍ଦେହ ଉପୁଜିଛି । ପ୍ରଥମେ ପାରଦ୍ୱୀପଠାରେ ଏହି କାରଖାନା କରିବା କଥା ସ୍ଥିରହୋଇ ବହୁ ଆଗୁଆ କାର୍ଯ୍ୟ ସଂପାଦିତ ହୋଇଥିଲେ ମଧ୍ୟ ତାହା ଦୈତାରିକୁ ଘୁଞ୍ଚାଇ ନିଆଗଲା ବୋଲି ତିନି ମାସ ତଳେ କେନ୍ଦ୍ର ସରକାରଙ୍କ ପକ୍ଷରୁ ଘୋଷଣା ପ୍ରକାଶପାଇଥିଲା ଏବଂ ସରଳ ବିଶ୍ୱାସରେ ଉତ୍‌ଫୁଲ୍ଲିତ ହୋଇ ଆମ ରାଜ୍ୟ ସରକାର ସେ ଘୋଷଣାକୁ ସ୍ୱାଗତ ଜଣାଇଥିଲେ । କି ପରିପ୍ରେକ୍ଷୀରେ ବନ୍ଦରଭିତ୍ତିକ ଇସ୍ପାତ୍ କାରଖାନା ପାରାଦ୍ୱୀପ ବନ୍ଦରଠାରେ ପ୍ରତିଷ୍ଠା କରିବାପାଇଁ ପୂର୍ବରୁ ଉଦ୍ୟମ ହୋଇଥିଲା ଓ ନିଷ୍ପତ୍ତି ନିଆଯାଇଥିଲା, ସେକଥା ବିଚାରକୁ ନିଆଯାଇଥିଲେ ହୁଏତ ରାଜ୍ୟ ସରକାର ଏ ସ୍ଥାନାନ୍ତରିତ ପ୍ରସ୍ତାବକୁ ସ୍ୱାଗତ କରିବାକୁ ଟିକିଏ ପଛେଇଥାଆନ୍ତେ ।'' xxx ''ଜାପାନ ଭଳିଆ ବିଶିଷ୍ଟ ଇସ୍ପାତ୍ ଉତ୍ପାଦନକାରୀ ଦେଶରେ ବଡ଼ ବଡ଼ ଇସ୍ପାତ୍ କାରଖାନାମାନ ସମୁଦ୍ରକୂଳରେ ଅବସ୍ଥିତ ଥିଲାବେଳେ ପାରାଦ୍ୱୀପ ଅଞ୍ଚଳ ବନ୍ୟା ଓ ତୋଫାନ ପ୍ରକୋପର ପରିସର ମଧ୍ୟରେ ଅବସ୍ଥିତ କଥା ଯେପରି ଭାବରେ ଅକସ୍ମାତ୍ ଆବିଷ୍କାର କରାଗଲା, ସେଥିରେ ସନ୍ଦେହ ଆହୁରି ଦୃଢ଼ୀଭୂତ ହୋଇଥିଲା । ତୋଫାନର ପ୍ରକୋପ ବିଶାଖାପାଟଣା ବନ୍ଦରଠାରେ ମଧ୍ୟ ଦେଖାଯାଏ, ତେବେ ସେଠାରେ କିପରି ଇସ୍ପାତ୍ କାରଖାନା ନିର୍ମାଣ ଚାଲିଛି ?'' ପରିଶେଷରେ 'ପ୍ରଧାନମନ୍ତ୍ରୀଙ୍କ ପୂଜା ଉପହାର' ଓଡ଼ିଶାବାସୀଙ୍କ ପ୍ରତି ଉପହାସ ପରି ପ୍ରତୀତ ହେଉଛି !

## ଆଲୁମିନିୟମ୍ ପ୍ରକଳ୍ପ ମଧ୍ୟ 'ଜନତା'ର ଅବଦାନ

ଆମ ରାଜ୍ୟ କୋରାପୁଟ ଜିଲ୍ଲାରେ ଆଲୁମିନିୟମ୍ କାରଖାନା ପ୍ରତିଷ୍ଠାପାଇଁ ମୋ ମନ୍ତ୍ରିମଣ୍ଡଳ ସମୟରେ ରାଜ୍ୟ ସରକାର ପ୍ରାୟ ଦୁଇ ବର୍ଷ କାଳ ପ୍ରବଳ ଉଦ୍ୟମ କରିଥିଲେ । ମୁଁ ଏବଂ ଆମର ଶିଳ୍ପମନ୍ତ୍ରୀ ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ବହୁବାର ଦିଲ୍ଲୀରେ କେନ୍ଦ୍ର ସରକାରଙ୍କ ସହିତ ଆଲୋଚନା କରିଥିଲୁ । ରାଜ୍ୟ ସରକାରଙ୍କର ଏ ସଂପର୍କରେ ଉଦ୍ୟମର ସୁଫଳ ସମ୍ବନ୍ଧରେ ଶିଳ୍ପମନ୍ତ୍ରୀ ଶ୍ରୀ ବକ୍ସିପାତ୍ର ବିଧାନସଭାରେ ସମସ୍ତ ତଥ୍ୟ ପରିବେଷଣ କରିଥିଲେ । ରାଜ୍ୟପାଳ ତାଙ୍କ ବିଧାନସଭା ଅଭିଭାଷଣରେ ୧୯୮୦ ମସିହା ଫେବୃୟାରୀ ଏଗାର ତାରିଖରେ କହିଥିଲେ, "I am extremely happy that the relentless efforts of the State Government in the last two years for setting up an aluminium complex in the State has borne fruits and the Government of India have announced their decision to set up a Rs. 1200 Crore Aluminium Complex in Orissa with the co-operation of the French Government." ପୂର୍ବରୁ ଆମ ଦେଶରେ Balco India ଓ Hindalco ପ୍ରଭୃତି ପାଞ୍ଚଟି କମ୍ପାନୀଦ୍ୱାରା ପରିଚାଳିତ ସାତଗୋଟି ଆଲୁମିନିୟମ୍ ସ୍ମେଲ୍‌ଟର କାର୍ଯ୍ୟ କରୁଥିଲା । ଏହି ସାତଟି ସ୍ଥାନରୁ ବର୍ଷକୁ ମୋଟ ପ୍ରାୟ ତିନି ଲକ୍ଷ ଟନ୍ ଆଲୁମିନିୟମ୍ ଉତ୍ପନ୍ନ ହେଉଥିଲା । ଭାରତବର୍ଷରେ ବିଶେଷକରି ପୂର୍ବ-ଉପକୂଳର କେତେକ ଅଞ୍ଚଳରେ ବିପୁଳ ବକ୍‌ସାଇଟ୍ ଖଣି ଥିବା କଥା ଆଗରୁ ଜଣାନଥିଲା । ଅଠର ମାସ ଗଭୀର ଅନୁସନ୍ଧାନ ପରେ ୧୯୭୭ ମସିହା ଅପ୍ରେଲ୍ ମାସରେ ଜଣାଯାଇଥିଲା ଯେ ଓଡ଼ିଶାର କୋରାପୁଟ ଜିଲ୍ଲାକୁ କେନ୍ଦ୍ରକରି

ଆନ୍ଧ୍ର ପ୍ରଦେଶର ପୂର୍ବ ଗୋଦାବରୀ ପ୍ରଭୃତି ବିସ୍ତୃତ ଅଞ୍ଚଳଟିକୁ ପୃଥିବୀର ବକ୍‌ସାଇଟ୍ ଭୂଖଣ୍ଡ Bauxite Province କୁହାଯାଇପାରିବ । ଏହି ଆବିଷ୍କାର ପରେ ବକ୍‌ସାଇଟ୍-ଜଗତ୍‌ରେ ଭାରତ ତୃତୀୟ ସ୍ଥାନ ଅଧିକାର କରିଥିଲା । ତିନି ଶହ ଷାଠିଏ କୋଟି ଟନ୍ ବକ୍‌ସାଇଟ୍ ଜମାଥିବା ଆଫ୍ରିକା ମହାଦେଶସ୍ଥ ଗୁଏନାର ହେଲା ପ୍ରଥମ ସ୍ଥାନ, ତିନି ଶହ କୋଟି ଟନ୍ ଜମାଥିବା ଅଷ୍ଟ୍ରେଲିଆ ମହାଦେଶ ଦ୍ୱିତୀୟ ସ୍ଥାନ ଏବଂ କେବଳ ଭାରତର ପୂର୍ବ ଉପକୂଳରେ ଥିବା ଉପରୋକ୍ତ ଅଞ୍ଚଳରେ ଦୁଇ ଶହ କୋଟି ଟନ୍ ବକ୍‌ସାଇଟ୍ ଜମାଥିବାରୁ ଏହା ପୃଥିବୀରେ ତୃତୀୟ ସ୍ଥାନ ମାନ୍ୟତା ଲାଭ କରିଛି ।

କୋରାପୁଟ ଜିଲ୍ଲାରେ ଏପ୍ରକାର ବିପୁଳ ଭାବରେ ଜମାହୋଇଥିବା ବକ୍‌ସାଇଟ୍ ଧାତୁ ଆବିଷ୍କାର ହେବା ପରେ ସେଠାରେ Aluminium Complex ପ୍ରତିଷ୍ଠା କରିବା ବିଷୟଟି କାହାରି ଦୟା ଉପରେ ନିର୍ଭର କରୁନଥିଲା । ଏପ୍ରକାର ଏକାଧିକ ବୃହତ୍ ଆଲୁମିନିୟମ କମ୍ପ୍ଲେକ୍ସ ଦେଶରେ ପ୍ରତିଷ୍ଠା କରିବା ଦିଗରେ କେନ୍ଦ୍ରରେ ଜନତା ସରକାର ଧ୍ୟାନଦେଇଥିଲେ । ସେ ଦିଗରେ ଦ୍ରୁତ ଉଦ୍ୟମ ଆରମ୍ଭ ହୋଇଯାଇଥିଲା । ଓଡ଼ିଶାରେ ଆଲୁମିନିୟମ୍ କମ୍ପ୍ଲେକ୍ସ ସ୍ଥାପନ ହେବାର ଆଶା ଅତି ଉଜ୍ଜ୍ୱଳ ହୋଇଉଠୁଥିଲା; ରାଜ୍ୟ ସରକାର ଏ ଦିଗରେ ବିଶେଷ ତତ୍ପର ହୋଇ କେନ୍ଦ୍ର ସରକାରଙ୍କ ପାଖରେ ଦାବି ଉପସ୍ଥାପନ କରିଥିଲେ । ଆଲୁମିନିୟମ୍ କମ୍ପ୍ଲେକ୍ସ ପ୍ରତିଷ୍ଠା ସମ୍ବନ୍ଧରେ ଆମ ସହିତ କେବଳ ଆନ୍ଧ୍ରପ୍ରଦେଶ ପ୍ରତିଯୋଗିତା କରିବାର ସମ୍ଭାବନା ଥାଏ । ସେ ବିଷୟରେ ସତର୍କ ରହି ଓଡ଼ିଶାର ସ୍ୱାର୍ଥ କିପରି ରକ୍ଷାକରାଯିବ ତା'ର ଦାୟିତ୍ୱ କେନ୍ଦ୍ର ଖଣି ଓ ଇସ୍ପାତ୍ ମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ନେଇଥିଲେ । Bharat Aluminium Company (BALCO)ର ଚେୟାରମ୍ୟାନ୍ ଓ ମ୍ୟାନେଜିଂ ଡାଇରେକ୍ଟର, କେନ୍ଦ୍ର ସରକାରଙ୍କର ଇସ୍ପାତ୍ ଓ ଖଣି ମନ୍ତ୍ରଣାଳୟର ଅଫିସର୍ ଓ ଆମ ରାଜ୍ୟ ଅଫିସରମାନଙ୍କ ମଧ୍ୟରେ ବକ୍‌ସାଇଟ୍ ଖଣି ପଟ୍ଟା, କାରଖାନା ପାଇଁ ଜମି, ଜଳଯୋଗାଣ ଓ ବିଜୁଳିଶକ୍ତି ଯୋଗାଣ ସମ୍ବନ୍ଧରେ ୧୯୭୮ ମସିହା ପ୍ରାରମ୍ଭରୁ ବହୁବାର ଆଲୋଚନା ହୋଇଥିଲା । କାର୍ଯ୍ୟର ଅଗ୍ରଗତି ସମ୍ବନ୍ଧରେ ଆମ ରାଜ୍ୟର ଖଣି ଓ ଶିଳ୍ପ ମନ୍ତ୍ରୀ ଶ୍ରୀ ବକ୍‌ସିପାତ୍ର ବାରମ୍ବାର କୋରାପୁଟ ଯାଇ ସମୀକ୍ଷା କରି ମୋତେ ଜଣାଉଥିଲେ । ଏ ସମ୍ବନ୍ଧରେ କେତେ ଥର ମୋ ଉପସ୍ଥିତିରେ ଉଚ୍ଚସ୍ତରୀୟ ଆଲୋଚନା ମଧ୍ୟ ହୋଇଥିଲା । ୧୯୭୮ ମସିହା ଫେବୃୟାରୀ ମାସ ୨୦ର ତାରିଖରେ BALCOର ଚେୟାରମ୍ୟାନ ଆମ ରାଜ୍ୟ ସରକାରଙ୍କୁ ଜଣାଇଥିଲେ ଯେ, କୋରାପୁଟରେ ଆଠ ଲକ୍ଷ ଟନ୍ ଆଲୁମିନା ଓ ଏକ ଲକ୍ଷ ଅଶୀ ହଜାର ଟନ୍‌ର ଆଲୁମିନିୟମ୍ ଉତ୍ପାଦନ କରିବାପାଇଁ ତାଙ୍କର ଯୋଜନାକୁ ଭାରତ ସରକାର ଗ୍ରହଣକରିଛନ୍ତି ଏବଂ ସମ୍ଭାବ୍ୟ ରିପୋର୍ଟ ପ୍ରସ୍ତୁତ କରିବା ପାଇଁ M/s Alumina Pachinery Frenchଙ୍କୁ letter of intent ଦେଇଛନ୍ତି । ସେହି ବର୍ଷ ମାର୍ଚ୍ଚ ମାସରେ ଭୂତତ୍ତ୍ୱ ଓ ଖଣି ସମ୍ବନ୍ଧୀୟ ଗୋଟିଏ ବିଶାରଦ ଦଳ କୋରାପୁଟର ପଟାଙ୍ଗି ଓ ଦାମନଯୋଡ଼ି ଅଞ୍ଚଳ ବୁଲି ପରୀକ୍ଷା କରି ଦେଖିଥିଲେ । ସେହି ମାସ ଅଠେଇଶ ତାରିଖରେ BALCO ଓ Alumina Pachinery Frenchଙ୍କ ମଧ୍ୟରେ ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା । ୧୯୭୮ ମସିହା ଜୁନ୍ ମାସ ଅଠେଇଶ ତାରିଖରେ କୋରାପୁଟ ଜିଲ୍ଲାର ପଟାଙ୍ଗି ଅଞ୍ଚଳରେ ୩୯୬୬ ହେକ୍ଟର ବକ୍‌ସାଇଟ୍ ଖଣି ଜମି ଓଡ଼ିଶା ସରକାର BALCOକୁ ତିରିଶ ବର୍ଷପାଇଁ ପଟ୍ଟା ଦେଇଥିଲେ । ୧୯୭୯ ମସିହା ମାର୍ଚ୍ଚ ତିରିଶ ତାରିଖରେ କୋରାପୁଟରେ ଆଲୁମିନିୟମ ଯୋଜନା ସମ୍ବନ୍ଧରେ ଗୋଟିଏ ମେମୋରେଣ୍ଡମ୍ ରାଜ୍ୟ ମନ୍ତ୍ରିମଣ୍ଡଳ ବୈଠକରେ ଆଲୋଚନା କରାଯାଇଥିଲା । ଆଲୁମିନିୟମ୍ ଯୋଜନା ସମ୍ବନ୍ଧୀୟ କାର୍ଯ୍ୟ କେତେଦୂର ଅଗ୍ରସର ହୋଇଥିଲା ତାହା ମନ୍ତ୍ରିମଣ୍ଡଳଙ୍କୁ ଜଣାଇ ଦିଆଯାଇଥିଲା । ଏହି ଯୋଜନାକୁ ସାହାଯ୍ୟ କଲାଭଳି କେତେକ ରେଳ ଲାଇନ୍ ନିର୍ମାଣ ସମ୍ବନ୍ଧରେ ଯେଉଁ ପ୍ରସ୍ତାବଗୁଡ଼ିକ କେନ୍ଦ୍ର ସରକାରଙ୍କୁ ଦିଆଯାଇଥିଲା, ତାହାକୁ ତ୍ୱରାନ୍ୱିତ କରିବାପାଇଁ କେନ୍ଦ୍ର ସରକାରଙ୍କୁ ଅନୁରୋଧ କରିବା କଥା ସ୍ଥିର ହୋଇଥିଲା ଏବଂ ବ୍ୟକ୍ତିଗତ ଭାବରେ ଏ ବିଷୟରେ କେନ୍ଦ୍ର ସରକାରଙ୍କ ସହିତ ଯୋଗାଯୋଗ କରିବା ପାଇଁ ମୋତେ

ଅନୁରୋଧ କରାଯାଇଥିଲା । ମୁଁ ଏ ସମ୍ବନ୍ଧରେ କେନ୍ଦ୍ର ରେଳବାଇ ବିଭାଗ ମନ୍ତ୍ରୀ ଶ୍ରୀ ମଧୁ ଦଣ୍ଡବତେଙ୍କ ସହ ଦେଖାକରି କଥାବାର୍ତ୍ତା କରିଥିଲି ଏବଂ ତାଙ୍କଠାରୁ ଆଶାନୁରୂପ ପ୍ରତିଶ୍ରୁତି ପାଇଥିଲି ।

୧୯୭୯ ମସିହା ଫେବୃଆରୀ ମାସ ବାଇଶ ତାରିଖରେ ମୋ ମନ୍ତ୍ରିମଣ୍ଡଳ ଶିଳ୍ପ ଓ ଖଣି ଦାୟିତ୍ୱରେ ଥିବା ମନ୍ତ୍ରୀ ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ବିଧାନସଭାରେ କହିଥିଲେ, ''ଏ Aluminium କାରଖାନା ପାଇଁ ଓଡ଼ିଶା ସରକାରଙ୍କ ତରଫରୁ ଯାହା ସବୁ ବ୍ୟବସ୍ଥା କରିବା କଥା ତାଙ୍କର ଆବଶ୍ୟକତା ଅନୁଯାୟୀ Power, Land, Water ଇତ୍ୟାଦି ବ୍ୟବସ୍ଥା କରାଯାଇଛି । ତାହାଛଡ଼ା ଦାମନଯୋଡ଼ି ଅଞ୍ଚଳରେ ୩୦୦୦ ଏକର ଜମି ଏଥିପାଇଁ earmark କରାଯାଇଛି ଏବଂ ଏ ବିଷୟ ଆମେ BALCOକୁ ଜଣାଇଦେଇଛୁ । ମୁଖ୍ୟ କଥା ପାଣି । କୋଲାବ ଯୋଜନାରେ ଯେଉଁ ହ୍ରଦ ହେବ ସେଇଠାରୁ ପାଣି ଏ କାରଖାନାକୁ ଯୋଗାଇ ଦିଆଯିବାପାଇଁ ନିଷ୍ପତ୍ତି ହୋଇଛି ।'' କୋରାପୁଟ ଜିଲ୍ଲାରେ Aluminium କାରଖାନା ହେବା ନିଷ୍ପତ୍ତି ଯଦି ଜନତା ସରକାରଙ୍କ ଅମଳରେ ହୋଇନଥାନ୍ତା ତା'ହେଲେ ୧୯୭୯ ମସିହା ମଇ ମାସ ୧୫ ତାରିଖରେ ପ୍ରକାଶିତ ଶ୍ରୀ ବଳରାମ ମହାନ୍ତିଙ୍କର 'ଓଡ଼ିଶାର ରାଜନୈତିକ ଇତିହାସ'ର ୧୦୧ ପୃଷ୍ଠାରେ କିପରି ଲେଖାହେଲା– ''କୋରାପୁଟଠାରେ ୧୨ଶହ କୋଟି ଟଙ୍କା ବ୍ୟୟରେ ଏକ ବିରାଟ ଆଲୁମିନିୟମ୍ କାରଖାନା ନିର୍ମାଣ ସଂପର୍କରେ କେନ୍ଦ୍ର ସରକାରଙ୍କର ନିଷ୍ପତ୍ତି ମଧ୍ୟ ଜଣାପଡ଼ିଛି ଏବଂ ଏ ଦିଗରେ ଆବଶ୍ୟକୀୟ କାର୍ଯ୍ୟାନୁଷ୍ଠାନ ଚାଲିଛି ।'' କେତେ ଟଙ୍କା ଏହି ଯୋଜନାରେ ବିନିଯୋଗ କରାଯିବ ସେକଥା ମଧ୍ୟ ଶ୍ରୀ ବଳରାମ ମହାନ୍ତି ତାଙ୍କ ପୁସ୍ତକରେ ଲେଖିପାରିଛନ୍ତି । ସେତେବେଳେ ଖର୍ଚ୍ଚର ଅଟକଳ ମଧ୍ୟ ଚୂଡ଼ାନ୍ତ ହୋଇଯାଇଥିଲା । ଯୋଜନାର ଶିଳାନ୍ୟାସ ସମୟରେ ପ୍ରକାଶିତ ସରକାରୀ ରିପୋର୍ଟ ଅନୁସାରେ ୧୨ ଶହ ୪୨ କୋଟି ଟଙ୍କା ବିନିଯୋଗ କରାଯିବ ବୋଲି ଲେଖାଥିଲା । ସେହି ୧୨ ଶହ କୋଟି ଟଙ୍କା କଥା ଶ୍ରୀ ମହାନ୍ତି ତାଙ୍କ ପୁସ୍ତକରେ ଲେଖିଛନ୍ତି ।

ଏହି ପରିପ୍ରେକ୍ଷୀରେ ରାଜ୍ୟର ଜନତା ସରକାର କୋରାପୁଟରେ ଆଲୁମିନିୟମ୍ କାରଖାନା ପ୍ରତିଷ୍ଠାପାଇଁ ଯେଉଁ ପ୍ରଗାଢ଼ ଉଦ୍ୟମ କରିଥିଲେ ତାକୁ ଆଦୌ ସ୍ୱୀକାର ନକରି ରାଜ୍ୟରେ କଂଗ୍ରେସ(ଇ) ସରକାର ଦାୟିତ୍ୱ ନେବା ମାତ୍ରେ ତାହା କରିଦେଲେ ବୋଲି କହିବା କେଡ଼େ ବିଡ଼ମ୍ବନା, ତାହା ବିଚାର୍ଯ୍ୟ । ଅନ୍ୟ ପକ୍ଷେ କୁହାଯାଇପାରେ ଯେ କୋରାପୁଟରେ ଆଲୁମିନିୟମ୍ ଯୋଜନାର କାର୍ଯ୍ୟକାରିତା ସମ୍ବନ୍ଧରେ ପ୍ରାୟ ସବୁ କାର୍ଯ୍ୟ ସଂପାଦିତ ହୋଇଯାଇ କେବଳ ଶିଳାନ୍ୟାସ ହେବା କାର୍ଯ୍ୟଟି ଅବସ୍ଥାଚକ୍ରରେ ବାକୀ ଥିଲା ଏବଂ ଅତି ଆନନ୍ଦର କଥା ଯେ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ସେହି କାର୍ଯ୍ୟଟି ସଂପନ୍ନ କରିଥିଲେ ।

## ସ୍ପଞ୍ଜ୍ ଆଇରନ୍ ଓ ଚାର୍ଜକ୍ରୋମ୍ କାରଖାନା

ଆମ ରାଜ୍ୟରେ ମଧ୍ୟମ ଧରଣର ଶିଳ୍ପ କିପରି ଗଢ଼ିଉଠିବ ସେଥିପାଇଁ ମଧ୍ୟ ମୁଁ ବିଶେଷ ଦୃଷ୍ଟି ଦେଇଥିଲି । କେଉଁଝର ଜିଲ୍ଲାର ନୟାଗଡ଼ ନିକଟରେ ଯେଉଁ ସ୍ପଞ୍ଜ୍ ଆଇରନ୍ ଫାକ୍ଟରୀ ମୋ ସମୟରେ ଆରମ୍ଭ କରାଯାଇଥିଲା ତାହା ଗୋଟିଏ ଅତି ଉତ୍କୃଷ୍ଟ ଶିଳ୍ପ । ଭବିଷ୍ୟତ୍‌ରେ ତାହା ଗୋଟିଏ ବଡ଼ ଧରଣର ଷ୍ଟିଲ୍ ପ୍ଲାଣ୍ଟରେ ପରିଣତ ହୋଇପାରେ ବୋଲି ବିଶେଷଜ୍ଞମାନେ ମତ ଦେବାର ମୁଁ ଜାଣିଛି । ମୋ ଉଦ୍ୟମରୁ ଓଡ଼ିଶାରେ ଦୁଇଟି ଚାର୍ଜକ୍ରୋମ୍ କାରଖାନା ପ୍ରତିଷ୍ଠାପାଇଁ ବରାଦପତ୍ର ଓ ମଞ୍ଜୁରି ମିଳିଥିଲା । ଗୋଟିଏ ବରାଦପତ୍ର ଓଡ଼ିଶା ଖଣି କର୍ପୋରେସନ୍‌କୁ ମିଳିଥିଲା ଏବଂ ସେହି କାରଖାନାଟି ଯାଜପୁର ରୋଡ଼ରେ ହେଉଛି । ଆଉ ଗୋଟିଏ ବରାଦପତ୍ର ଫେରୋ ଆଲୋୟେଜ୍ କର୍ପୋରେସନ୍‌କୁ ମିଳିଥିଲା । ଏହା ଗୋଟିଏ ଘରୋଇ କମ୍ପାନୀ । ପ୍ରଥମେ କେନ୍ଦ୍ର ସରକାର ଏ ପ୍ରକାର କାରଖାନା କରିବାପାଇଁ ଘରୋଇ କମ୍ପାନୀକୁ ଅନୁମତି ଦେବା ସପକ୍ଷରେ ନଥିଲେ । ଏ ପ୍ରକାର କାରଖାନାସବୁ

ସରକାରୀ ସଂସ୍ଥାଦ୍ୱାରା ହେବା ଉଚିତ ବୋଲି କେନ୍ଦ୍ର ଇସ୍ପାତ୍ ଓ ଖଣିମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କର ମଧ୍ୟ ମତ ଥିଲା । ବାଲେଶ୍ୱର ଜିଲ୍ଲାରେ କୌଣସି ପ୍ରକାର ମଧ୍ୟମ ଧରଣର ଶିଳ୍ପ ନଥିବାରୁ ସେହିଠାରେ ଚାର୍ଜକ୍ରୋମ୍ କାରଖାନା ପ୍ରଥମେ ପ୍ରତିଷ୍ଠା କରାଯାଉ ବୋଲି ମୁଁ ବିଜୁବାବୁଙ୍କ ସହ ଆଲୋଚନା କରିଥିଲି । କଟକ ଜିଲ୍ଲାର ସୁକିନ୍ଦା କ୍ରୋମାଇଟ୍ ଖଣିରୁ ଉତ୍ପନ୍ନ କ୍ରୋମ୍‌କୁ ଲକ୍ଷ୍ୟ କରି ରାଜ୍ୟ ଖଣି କର୍ପୋରେସନ୍ ଚାର୍ଜକ୍ରୋମ୍ କାରଖାନାପାଇଁ ଆବେଦନ କରିଥିଲା । ଖଣି କର୍ପୋରେସନ୍ ପକ୍ଷରେ ସୁକିନ୍ଦାରୁ କଞ୍ଚାମାଲ ନେଇ ବାଲେଶ୍ୱର ଜିଲ୍ଲାରେ କାରଖାନା ପ୍ରତିଷ୍ଠା କରିବା ସୁବିଧାଜନକ ନଥିଲା । ତେଣୁ ଭଦ୍ରକ ସନ୍ନିକଟ କେଉଁଝର ଜିଲ୍ଲା ଅନ୍ତର୍ଗତ ବଉଳା କ୍ରୋମାଇଟ୍ ଖଣି ମାଲିକ 'FACOR' ଯେଉଁ ବରାଦପତ୍ରପାଇଁ ଆବେଦନ କରିଥିଲେ ତାହା ମଞ୍ଜୁର କରାଗଲେ ସେ କମ୍ପାନୀ ଭଦ୍ରକଠାରେ ଉକ୍ତ କାରଖାନାଟି କରିବ ବୋଲି ମୁଁ ବିଜୁବାବୁଙ୍କର ବିଶ୍ୱାସ ଜନ୍ମାଇଥିଲି । କାରଣ ବିଜୁଳିଶକ୍ତି ଯୋଗାଣ, ଜମି, ଜଳ ଓ ଅନ୍ୟାନ୍ୟ ଶିଳ୍ପ ସ୍ଥାପନ ସମ୍ବନ୍ଧରେ କେତେକ ଆନୁଷଙ୍ଗିକ ସୁବିଧା ଯାଜପୁର ରୋଡ଼ରେ ଥିବାରୁ 'FACOR' କମ୍ପାନୀ ସେଠାରେ ତାଙ୍କର 'ଚାର୍ଜକ୍ରୋମ୍' କାରଖାନା ପ୍ରତିଷ୍ଠା କରିବାପାଇଁ-ଇଚ୍ଛୁକ ଥିଲେ । ମୁଁ ତାଙ୍କୁ ପ୍ରବର୍ତ୍ତାଇଥିଲି ଭଦ୍ରକ-ବାଉଦପୁର ଷ୍ଟେସନ୍ ପାଖରେ ସେ କାରଖାନା ପ୍ରତିଷ୍ଠା କରିବାପାଇଁ । ଫାକର କମ୍ପାନୀକୁ ବରାଦପତ୍ର ମିଳିଥିଲା । ତାଙ୍କୁ ଜମି ଓ ବିଜୁଳିଶକ୍ତି କିପରି ମିଳିବ ସେଥିପାଇଁ ସଂପୃକ୍ତ ବିଭାଗମାନଙ୍କୁ ମୁଁ ନିର୍ଦ୍ଦେଶ ଦେଇଥିଲି । ଯେଉଁମାନେ ଜମି ଦେବାକୁ ଅସହଯୋଗ କରୁଥିଲେ ମୁଁ ସେମାନଙ୍କୁ ସହଯୋଗ କରିବାଲାଗି ବୁଝାଇଥିଲି । ମଝିରେ କଂଗ୍ରେସ୍ (ଇ) ସରକାର କ୍ଷମତାକୁ ଆସିବା ପରେ କଲେକ୍ଟରେଟ୍ ସୂତ୍ରରୁ ଜାଣିବାକୁ ପାଇଥିଲି ଯେ ଉକ୍ତ କାରଖାନାଟିକୁ ଭଦ୍ରକରେ ନକରାଇ ପାରାଦ୍ୱୀପ ସନ୍ନିକଟ ଗୋଟିଏ ସ୍ଥାନରେ କରାଇବାପାଇଁ କଂଗ୍ରେସ ସରକାରଙ୍କ ପକ୍ଷରୁ ଉଦ୍ୟମ ହେଉଥିଲା ସେତେବେଳକୁ ଭଦ୍ରକଠାରେ କାରଖାନା ପାଇଁ ବହୁତ ଜମି କିଣାଯାଇସାରିଥିଲା । ତେଣୁ ସେଠାରେ ସେ କାରଖାନା ନହେଲେ ରାଜନୈତିକ ପରିସ୍ଥିତି ଅଡୁଆ ହୋଇଯିବ ବୋଲି ଅନୁଭବ କରି ସରକାର ସେ ଉଦ୍ୟମରୁ କ୍ଷାନ୍ତ ହୋଇଥିଲେ । ଆନନ୍ଦର କଥା, ୧୯୮୧ ମସିହାରେ ଭଦ୍ରକରେ ଉକ୍ତ ଚାର୍ଜକ୍ରୋମ୍ କାରଖାନାର ଭିତ୍ତିସ୍ଥାପନ ଉତ୍ସବରେ ଯୋଗଦେଇ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ କହିଲେ ଯେ ସେଇଟା ବାଲେଶ୍ୱର ଜିଲ୍ଲାବାସୀଙ୍କୁ ତାଙ୍କ ସରକାରଙ୍କର ଗୋଟିଏ ଉପହାର । ବ୍ୟକ୍ତିଗତ ଅର୍ଥ ବିନିଯୋଗରେ ଏ କାରଖାନା ହେଉଥିବା କଥା ମୁଖ୍ୟମନ୍ତ୍ରୀ ଜାଣନ୍ତି ଏବଂ କିଭଳି ଉଦ୍ୟମ ଫଳରେ କାରଖାନାପାଇଁ ସ୍ଥାନ ମନୋନୟନ ଭଦ୍ରକ ଭାଗ୍ୟରେ ପଡ଼ିଲା ସେ ବିଷୟରେ ମୁଖ୍ୟମନ୍ତ୍ରୀ ଯେ ଅଜ୍ଞ ଥିଲେ ତାହା କୁହାଯାଇନପାରେ । ତଥାପି ଜାଣି ନଜାଣିବା ଭଳି ଯେଉଁ ଆଚରଣ ପ୍ରଦର୍ଶନ କରି ଭଦ୍ରକବାସୀଙ୍କୁ ସେ ତାଙ୍କ ସରକାରଙ୍କର ବୋଲି ଯେଉଁ ଉପହାର ଦେଲେ ତାହା କଦାପି ଭଦ୍ରକବାସୀ ଭୁଲିପାରିବେନାହିଁ ।

## ରେଙ୍ଗାଲୀ ବନ୍ଧ ଯୋଜନା

ରେଙ୍ଗାଲୀ ବନ୍ଧ ନିର୍ମାଣ କାର୍ଯ୍ୟ ସମୀକ୍ଷା କରିବାପାଇଁ ଓ ଆସନ୍ନ ବାସଚ୍ୟୁତ ଗ୍ରାମବାସୀମାନଙ୍କର ଥଇଥାନ ସମସ୍ୟାର ପ୍ରତ୍ୟକ୍ଷ ଅନୁଧ୍ୟାନ ଓ ସମାଧାନ ଉଦ୍ଦେଶ୍ୟରେ ମୁଁ ଏବଂ କେନ୍ଦ୍ର ଇସ୍ପାତ୍ ଓ ଖଣିମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ରେଙ୍ଗାଲୀ ଯାଇଥିଲୁ । ରେଙ୍ଗାଲୀ ବନ୍ଧ ହେବାଦ୍ୱାରା ଯେଉଁମାନେ ନିଜ ଜମିବାଡ଼ିରୁ ଉଚ୍ଛେଦ ହେଉଥା'ନ୍ତି ସେମାନଙ୍କର ବସତିପାଇଁ ସ୍ଥାନ ନିରୂପଣ ଓ ସେମାନଙ୍କର କ୍ଷତି ପୂରଣ ସମ୍ବନ୍ଧରେ ଆଲୋଚନା କରିବାପାଇଁ ସେଠାରେ ରେଙ୍ଗାଲୀ ବନ୍ଧ ଯୋଜନା କଣ୍ଟ୍ରୋଲ୍ ବୋର୍ଡର ବୈଠକ ମଧ୍ୟ ଅନୁଷ୍ଠିତ ହୋଇଥିଲା । ସେ ଅଞ୍ଚଳର ଲୋକସଭା ସଦସ୍ୟ ଶ୍ରୀ ପବିତ୍ରମୋହନ ପ୍ରଧାନ ମଧ୍ୟ ଆଲୋଚନାରେ ଯୋଗଦେଇଥିଲେ । ପରେ ସେଠାରେ ଗୋଟିଏ ଖୁବ୍ ବଡ଼ଧରଣର ଜନସଭା ଅନୁଷ୍ଠିତ ହେଲା । ସଭାରେ ଶ୍ରୀ ପ୍ରଧାନ, ଶ୍ରୀ ପଟ୍ଟନାୟକ ଓ ମୁଁ ସ୍ଥାନୀୟ ବାସିନ୍ଦାମାନଙ୍କ ସମସ୍ୟାର

ସମାଧାନ ବିଷୟରେ ସରକାରଙ୍କ ପକ୍ଷରୁ ଯାହା ସବୁ କରାଯାଉଥିଲା ତାହା ବୁଝାଇଥିଲୁ । ରେଙ୍ଗାଲୀ ବନ୍ଧଯୋଜନାଦ୍ୱାରା ଯେଉଁମାନେ କ୍ଷତିଗ୍ରସ୍ତ ହେଉଥିଲେ ସେମାନଙ୍କର ଦୁଃଖ ଦୁର୍ଦ୍ଦଶା ଓ ଅନ୍ୟାନ୍ୟ ଅସୁବିଧା ବିଷୟରେ ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇଙ୍କ ପାଖରେ ଶ୍ରୀ ପବିତ୍ରମୋହନ ପ୍ରଧାନ ଗୋଟିଏ ସ୍ମାରକପତ୍ର ଦେଇଥିଲେ । ସେତେବେଳେ ବନ୍ଧ ନିର୍ମାଣ କାର୍ଯ୍ୟ ବନ୍ଦ କରିବାପାଇଁ ସଂପୃକ୍ତ ଲୋକମାନେ ମଧ୍ୟ ସତ୍ୟାଗ୍ରହ କରୁଥିଲେ । ସେହିସବୁ କଥା ବୁଝି ତା'ର ସମାଧାନ ଉଦ୍ଦେଶ୍ୟରେ ପ୍ରଧାନମନ୍ତ୍ରୀଙ୍କ ନିର୍ଦ୍ଦେଶରେ ରେଙ୍ଗାଲୀଠାରେ ଆମ୍ଭମାନଙ୍କର ଏହି ସମାବେଶ ହୋଇଥିଲା । ଶ୍ରୀ ପବିତ୍ରମୋହନ ପ୍ରଧାନଙ୍କ ସହାୟତାରେ ବାସଚ୍ୟୁତ ଲୋକମାନଙ୍କର ବହୁ ସମସ୍ୟା ମୁଁ ସମାଧାନ କରିପାରିଥିଲି । ଉଚ୍ଛେଦ ହୋଇଥିବା ବ୍ୟକ୍ତିମାନେ ଯେପରି ନ୍ୟାୟସଙ୍ଗତ କ୍ଷତିପୂରଣ ଓ ଜମି ବଦଳରେ ଜମି ପାଇପାରିବେ, ତାହା ସେଦିନ ସ୍ଥିରହୋଇଯାଇଥିଲା । ଯଥାସମ୍ଭବ ସେମାନଙ୍କର ମନୋନୀତ ସ୍ଥାନରେ ସେମାନଙ୍କୁ ଥଇଥାନ କରିବା କଥା ମଧ୍ୟ ସ୍ଥିରହୋଇଯାଇଥିଲା । ବନ୍ଧ ବିରୋଧୀ ଆନ୍ଦୋଳନପାଇଁ ଯେଉଁସବୁ ଫୌଜଦାରୀ ମକଦ୍ଦମା ହୋଇଥିଲା ତାହା ତୁରନ୍ତ ପ୍ରତ୍ୟାହୃତ ହେବ ବୋଲି ମୁଁ ସେଠାରେ ଘୋଷଣା କରିଥିଲି । ରେଙ୍ଗାଲୀ ବନ୍ଧ ନିର୍ମାଣ ସମ୍ବନ୍ଧୀୟ ବହୁ ସମସ୍ୟାର ସମାଧାନ କରି ସେଠାରୁ ହେଲିକେପ୍ଟରରେ ତାଳଚେର ଉପର ଦେଇ ଆମେ ଆସିଲୁ ।

ଆକାଶମାର୍ଗରୁ ମହାନଦୀର ଟିକରପଡ଼ା ଅଞ୍ଚଳସବୁ ଦେଖାଯାଉଥାଏ । ଟିକରପଡ଼ାଠାରେ ୧୯୬୪ ମସିହାରେ ପ୍ରସ୍ତାବିତ ବିରାଟ ଟିକରପଡ଼ା ବହୁମୁଖୀ ବନ୍ଧ ଯୋଜନାର ଶିଳାନ୍ୟାସ ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ କରିଥିଲେ । ଆମେ ଆସୁଥାଉ ବ୍ରାହ୍ମଣୀ ଓ ମହାନଦୀ ମଧ୍ୟବର୍ତ୍ତୀ ଅଞ୍ଚଳ ଉପରେ । ବ୍ରାହ୍ମଣୀ ନଦୀକୂଳରେ ତାଳଚେରର ସମସ୍ତ କୋଇଲାଖଣି, ବଣେଇର ସମସ୍ତ ଲୁହା ଓ ମାଙ୍ଗାନିଜଖଣି ଓ ସୁକିନ୍ଦାର ବିସ୍ତୃତ ଲୁହା ଓ କ୍ରୋମାଇଟ୍‌ଖଣି ଅବସ୍ଥିତ । ମହାନଦୀ ଉପରେ ପ୍ରସ୍ତାବିତ ଟିକରପଡ଼ା ଯୋଜନାର ବିଦ୍ୟୁତ୍ ଉତ୍ପାଦନ ଶକ୍ତି ସହିତ ପୃଥିବୀର କୌଣସି ଜଳ ବିଦ୍ୟୁତ୍ ଯୋଜନା ତୁଳନୀୟ ନୁହେଁ । ତାହାଛଡ଼ା ତା'ର ଜଳସେଚନ ଶକ୍ତି ମଧ୍ୟ ଅପରିମିତ । ଓଡ଼ିଶାର ପୂର୍ବତନ ରାଜ୍ୟପାଳ ଡକ୍ଟର ଅଯୋଧ୍ୟାନାଥ ଖୋସଲା ଓଡ଼ିଶାର ଦ୍ରୁତ ଉନ୍ନୟନପାଇଁ ତାଙ୍କର ପରିକଳ୍ପିତ Decade of Destiny ପ୍ରଣୟନ କଲାବେଳେ କହିଥିଲେ, ପରସ୍ପର ସଂଲଗ୍ନ ଏହି ଛୋଟିଆ ଅଞ୍ଚଳଟି ଦିନେ ପୃଥିବୀର ସବୁଠାରୁ ଧନୀ ଓ ବିତ୍ତବଶାଳୀ ଅଞ୍ଚଳରେ ପରିଣତ ହୋଇପାରେ । ମହାନଦୀ ମୁହାଣ ପାଖରେ ଅବସ୍ଥିତ ପାରାଦ୍ୱୀପ ବନ୍ଦର ଦେଇ ଏହି ଅଞ୍ଚଳର ପୃଥିବୀର ସବୁ ଦେଶ ସହିତ ସଂଯୋଗ ସ୍ଥାପନ କରାଯାଇପାରିବ । ରାଉରକେଲାରେ ଅବସ୍ଥିତ ଇସ୍ପାତ୍ କାରଖାନା ପଶ୍ଚିମ ଜର୍ମାନୀର M/s Krupp & Demag Company ସାହାଯ୍ୟରେ କରାଯାଇଥିଲା । କାରଖାନା ନିର୍ମାଣ ସମୟରେ ପଶ୍ଚିମ-ଜର୍ମାନୀର ବହୁ ବିଶିଷ୍ଟ ସରକାରୀ ଓ ବେସରକାରୀ ବ୍ୟକ୍ତି ଓଡ଼ିଶା ଆସିବାର ସୁଯୋଗ ପାଇଥିଲେ ଏବଂ ଆମ ରାଜ୍ୟରେ ଯେଉଁ ବିପୁଳ ପ୍ରାକୃତିକ ସମ୍ପଦ ଜମା ହୋଇ ରହିଛି, ସେ ସମ୍ବନ୍ଧରେ ବହୁତ କିଛି ଜାଣିବାକୁ ପାଇଥିଲେ । ରାଜ୍ୟର ଜଣେ ମନ୍ତ୍ରୀ ହିସାବରେ ମୁଁ ବହୁବାର ସେମାନଙ୍କ ସହିତ ରାଉରକେଲାରେ ମିଶି ଆଳାପଆଲୋଚନା କରିବାର ସୁଯୋଗ ନେଇଥିଲି । ସେହି ଅବସରରେ ସେମାନେ କହିବାର ମୁଁ ଶୁଣିଛି ଯେ, ଯେତେ ପ୍ରାକୃତିକ ସମ୍ପଦ ଓଡ଼ିଶାରେ ଅଛି ସେତକ ଯଦି ଜର୍ମାନୀରେ ଥାନ୍ତା ତାହାହେଲେ ବିଗତ ଦ୍ୱିତୀୟ ମହାଯୁଦ୍ଧରେ ଜର୍ମାନୀ ବିଶ୍ୱ ଜୟକରିପାରିଥା'ନ୍ତା । ଆମ ଦେଶର ଯୋଜନା କମିଶନ ଓ କେନ୍ଦ୍ର ସରକାରଙ୍କ ପାଖରେ ଆମ ପକ୍ଷରୁ ଯୁକ୍ତି ହୋଇଥାଏ ଯେ ଆଞ୍ଚଳିକ ବୈଷମ୍ୟ ଦୂର କରିବାକୁ ହେଲେ ଅନୁନ୍ନତ ଅଞ୍ଚଳପାଇଁ ଯୋଜନାରେ ସେହିଭଳି ସ୍ୱତନ୍ତ୍ର ଅର୍ଥ ବିନିଯୋଗ ବ୍ୟବସ୍ଥା ରହିବା ଆବଶ୍ୟକ । ତାହା ଯଦି କରାଯାଇନପାରେ ତାହାହେଲେ ସେ ଅଞ୍ଚଳରେ ଯେଉଁ ପ୍ରାକୃତିକ ସମ୍ପଦ ଅଛି ତା'ର ବିନିମୟରେ ଅର୍ଥ ଯୋଗାଡ଼ କରିବାକୁ ସଂପୃକ୍ତ ରାଜ୍ୟମାନଙ୍କୁ ଅନୁମତି ଦେବା ଉଚିତ । ତା'ହେଲେ ଓଡ଼ିଶା ଭଳିଆ ଅନୁନ୍ନତ ରାଜ୍ୟ କେନ୍ଦ୍ର ସରକାରଙ୍କଠାରୁ କୌଣସି

ଅଧିକ ଆର୍ଥିକ ସାହାଯ୍ୟ ନନେଇ ତା'ର ବିପୁଳ ପ୍ରାକୃତିକ ସମ୍ପଦ ବିନିଯୋଗରେ ଭାରତର ଯେକୌଣସି ସମୃଦ୍ଧିଶାଳୀ ରାଜ୍ୟଠାରୁ ଅଧିକ ସମୃଦ୍ଧ ଓ ବିଭବଶାଳୀ ହୋଇପାରନ୍ତା । ଓଡ଼ିଶାରେ ଉତ୍କଳ କଂଗ୍ରେସ ଯେତେବେଳେ କ୍ଷମତାର ଅଂଶୀଦାର ଥିଲା ସେତେବେଳେ ଏ ପ୍ରକାର ଦାବି ବିଶେଷ ଭାବରେ କରାଯାଉଥିଲା ।

କୌଣସି ସାବାସି ନେବାର ଆଶାନାହିଁ । କେବଳ ସତ୍ୟର ଅବତାରଣାପାଇଁ ଓଡ଼ିଶାର ଦ୍ରୁତ ଶିଳ୍ପାୟନ ସଂପର୍କରେ କେତୋଟି ତଥ୍ୟ ପରିବେଷଣ କଲି । ଏସବୁ ୧୯୮୦ ମସିହା ପରେ କଂଗ୍ରେସ(ଇ)ର କୀର୍ତ୍ତି ଏବଂ ଓଡ଼ିଶାବାସୀଙ୍କୁ ଉପହାର ବୋଲି କହିବାଟା ଏକ ବିରାଟ ଉପହାସ । ଜନତା ସରକାରଙ୍କର ଉତ୍ତରାଧିକାରୀ କ୍ଷମତାପ୍ରମତ୍ତ କଂଗ୍ରେସ (ଇ) କେବଳ ପ୍ରଚାରକୌଶଳରେ ଇତିହାସର ସ୍ୱାକ୍ଷରକୁ ପୋଛିଦେଇ ପାରିବେନାହିଁ ।

## ବିକଳ୍ପ ଦଳର ଅଭ୍ୟୁଦୟ ଓ ଅବକ୍ଷୟ

ଜୟପ୍ରକାଶଜୀଙ୍କ ଆଶୀର୍ବାଦରେ ଜନତାଦଳ ଭଳି ଗୋଟିଏ ବିକଳ୍ପ ସର୍ବଭାରତୀୟ ରାଜନୈତିକ ଦଳ ଗଠିତହୋଇ କେନ୍ଦ୍ରରେ ଶାସନ ଦାୟିତ୍ୱ ବହନ କରିବାଦ୍ୱାରା ଦେଶର ଲୋକଙ୍କ ମନରେ ଅପୂର୍ବ ଉତ୍ସାହ ଓ ଉନ୍ମାଦନା ସୃଷ୍ଟିହୋଇଥିଲା । ଇଂଲଣ୍ଡ ଓ ଆମେରିକା ଭଳି ପୁରାତନ, ଗଣତନ୍ତ୍ରବାଦୀ ଦେଶମାନଙ୍କରେ ଯେପରି ଦୁଇଟି ଲେଖାଏଁ ପ୍ରତିଷ୍ଠିତ ରାଜନୈତିକ ଦଳ ବହୁ ବର୍ଷ ହେଲା ପରସ୍ପରର ବିକଳ୍ପରୂପେ, ଗୋଟିଏ କ୍ଷମତାସୀନ ଥିଲାବେଳେ ଅନ୍ୟଟି ବିରୋଧୀ ଦଳ ଭାବରେ କାର୍ଯ୍ୟ କରି ସେ ଦେଶର ଲୋକମାନଙ୍କର ଆସ୍ଥାଭାଜନ ହୋଇପାରିଛନ୍ତି, ସେପରି ଏକ ସୁସ୍ଥ ସଂସଦୀୟ ଗଣତନ୍ତ୍ରର ଭିତ୍ତିଭୂମି ଆମ ଦେଶରେ ସମ୍ଭବ ହେଲା ବୋଲି ଭାବି ଚିନ୍ତାଶୀଳ ଲୋକମାନେ ଆଶ୍ୱସ୍ତ ହୋଇଥିଲେ । ଆମ ଦେଶର ଗଣତନ୍ତ୍ର ଓ ଗଣତାନ୍ତ୍ରିକ ମୂଲ୍ୟବୋଧ ସୁରକ୍ଷିତ ହେଲା ବୋଲି ସେମାନଙ୍କର ବିଶ୍ୱାସ ଜନ୍ମିଥିଲା । ଭାରତରେ ଗୋଟିଏ ଶକ୍ତିଶାଳୀ ବିକଳ୍ପ ଦଳର ଆବଶ୍ୟକତା ସମ୍ବନ୍ଧରେ ଶ୍ରୀ ଜୟପ୍ରକାଶ ନାରାୟଣଙ୍କର ବହୁକାଳରୁ ପରିକଳ୍ପିତ ଆଶାର ଯଥାର୍ଥତା ପ୍ରତିପାଦିତ ହୋଇଥିଲା । ଗୋଟିଏ ବିକଳ୍ପ ବିରୋଧୀ ରାଜନୈତିକ ଦଳ ଗଠନପାଇଁ ଜୟପ୍ରକାଶଜୀ ଏତେ ବ୍ୟାକୁଳ ଥିଲେ ଯେ ତାଙ୍କର ସେ ଉଦ୍‌ବେଗକୁ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ପରିହାସ କରିଥିଲେ ମଧ ସେ ତାଙ୍କର ଉଦ୍ୟମ ଅବ୍ୟାହତ ରଖିଥିଲେ । ୧୯୫୭ ମସିହା ଜାନୁୟାରୀ ମାସ ଅଠେଇଶ ତାରିଖରେ ବିହାର ରାଜ୍ୟରେ ଗୋଟିଏ ସାଧାରଣ ସଭାରେ ଶ୍ରୀ ଜୟପ୍ରକାଶ ନାରାୟଣ କହିଥିଲେ, "Prime Minister Nehru should help in the growth of a strong opposition party in the country." ଜୟପ୍ରକାଶଜୀ ଏ କଥା କହିବାର ଦୁଇ ଦିନ ପରେ ଜାନୁୟାରୀ ଏକତ୍ରିଶ ତାରିଖରେ ମାନ୍ଦ୍ରାଜର ଗୋଟିଏ ସାଧାରଣ ସଭାରେ ପ୍ରଧାନମନ୍ତ୍ରୀ ନେହେରୁ କହିଥିଲେ, "I read yesterday that my friend and old colleague Jayaprakash Narayan had said recently that I should help in establishing or in developing a strong opposition to the Congress. This is a very strange request. I believe completely in any Govemment, whatever it might be, having stout critics, having an opposition to face. But when Jayaprakashji says that I should build up an opposition, does he want me to build up a bogus thing to oppose the Congress ?" (Nehru's Speech; Volume III, Page 152)

ଜୟପ୍ରକାଶଜୀଙ୍କୁ ଏ ପ୍ରକାର ଉତ୍ତର ଦେବା ପୂର୍ବରୁ ପଣ୍ଡିତ ନେହେରୁ ଯଦି କଂଗ୍ରେସକୁ ଭାଙ୍ଗି ଦେବାପାଇଁ ମହାତ୍ମା ଗାନ୍ଧୀ ଯେଉଁ ପରାମର୍ଶ ଦେଇଥିଲେ ତାକୁ ସ୍ମରଣକରି ତା'ର ତାତ୍ପର୍ଯ୍ୟକୁ ଉପଲବ୍ଧି କରିଥାଆନ୍ତେ, ତା'ହେଲେ ଜୟପ୍ରକାଶଜୀଙ୍କୁ ତାଙ୍କର ଜବାବ ଭିନ୍ନ ପ୍ରକାର ହୋଇଥାଆନ୍ତା । ୧୯୪୭ ମସିହାରେ ଆମ ଦେଶ ପରାଧୀନତା କବଳରୁ ମୁକ୍ତିଲାଭ କରିବା ପର୍ଯ୍ୟନ୍ତ ଭାରତୀୟ ଜାତୀୟ କଂଗ୍ରେସ

ରହିଥିଲା ଆମ ଜାତିର ଆଶା ଓ ଆକାଙ୍କ୍ଷାର ପ୍ରତୀକ ଏବଂ ନୀତି ଓ ଆଦର୍ଶ ନିର୍ବିଶେଷରେ କଂଗ୍ରେସ ଅନୁଷ୍ଠାନ ଥିଲା ସମସ୍ତଙ୍କର ପୀଠସ୍ଥଳୀ । ସ୍ୱାଧୀନତାପ୍ରାପ୍ତିମାତ୍ରେ କଂଗ୍ରେସ ଦେଶର ସ୍ୱାଧୀନତାପ୍ରାପ୍ତି ଲକ୍ଷ୍ୟ ସଂପୂର୍ଣ୍ଣ ଭାବରେ ହାସଲ କରିବା ପରେ କୌଣସି ଗୋଟିଏ ରାଜନୈତିକ ଗୋଷ୍ଠୀର ରାଜନୈତିକ ଦଳରୂପେ ତିଷ୍ଠି ରହି ସେହି ସଂଗଠନର ପୃଷ୍ଠଭୂମିରେ ଜନମାନସରେ ବରାବର ଅଙ୍କିତ ହୋଇ ରହିଥିବା ସ୍ୱାଧୀନତା ସଂଗ୍ରାମର ଐତିହ୍ୟ, ପରମ୍ପରା ଓ ତ୍ୟାଗ ଗୋଟିଏ ଗୋଷ୍ଠୀର ଭୋଗ୍ୟ ବୁନିଆଦି କରି ଛାଡ଼ିଦେବାଟା ଏକାବେଳକେ ଅସମୀଚୀନ ବୋଲି ବୁଝିପାରି ଗାନ୍ଧିଜୀ କଂଗ୍ରେସକୁ ଭାଙ୍ଗିଦେଇ ଗୋଟିଏ ସେବା ଅନୁଷ୍ଠାନରେ ପରିଣତ କରିବାପାଇଁ ପରାମର୍ଶ ଦେଇଥିଲେ । ଗାନ୍ଧୀଜୀଙ୍କର ପରାମର୍ଶ ଥିଲା ଯେ ଦେଶବାସୀ ଓ ନେତୃବର୍ଗ ଭିନ୍ନ ଭିନ୍ନ ଆଦର୍ଶ ଓ କାର୍ଯ୍ୟପନ୍ଥା ନେଇ ରାଜନୈତିକ ଦଳମାନ ଗଠନ କରି ଲୋକପ୍ରିୟ ହୋଇ ସେମାନଙ୍କର ଶକ୍ତିର ପରିଚୟ ଦିଅନ୍ତୁ । ତାଙ୍କର ସ୍ପଷ୍ଟ ମତ ଥିଲା ଯେ ସ୍ୱାଧୀନତା ପୂର୍ବବର୍ତ୍ତୀ କଂଗ୍ରେସର ବିରାଟ ଐତିହ୍ୟ ଓ ଅବିସ୍ମରଣୀୟ ସଂଗ୍ରାମୀ ଭାବମୂର୍ତ୍ତି ଦେଶରେ ସମସ୍ତଙ୍କର ଉପଭୋଗ୍ୟ ଗୌରବ ଏବଂ ସେ ଗୌରବକୁ କୌଣସି ଗୋଟିଏ ରାଜନୈତିକ ଦଳ ଏକ ସୁଯୋଗରୂପେ ଭୋଗ କରିବା ଅନୁଚିତ । ଦୂରଦ୍ରଷ୍ଟା ମହାତ୍ମା ଗାନ୍ଧୀ ସ୍ପଷ୍ଟଭାବରେ ଦେଖିପାରିଥିଲେ ଓ ଆଶଙ୍କା କରିଥିଲେ ଯେ ଗୋଟିଏ ରାଜନୈତିକ ଦଳ ଯଦି ଜାତୀୟ କଂଗ୍ରେସର ନାମ ଓ ଐତିହ୍ୟର ଉତ୍ତରାଧିକାରୀ ହୁଏ, ତେବେ ସେ ଦଳ ଦିନେ ଲୋକଙ୍କର ବିପଦର କାରଣ ମଧ୍ୟ ହୋଇପାରେ । ଏ ପ୍ରକାର ମତ ବ୍ୟକ୍ତ କରିବାର ଅଳ୍ପଦିନ ପରେ ଗାନ୍ଧିଜୀ ଇହଧାମରୁ ଚାଲିଯାଇଥିଲେ । ମହାତ୍ମାଙ୍କର ଏ ପରାମର୍ଶକୁ ପଣ୍ଡିତ ନେହେରୁଙ୍କ ସମେତ କଂଗ୍ରେସର ନେତୃବର୍ଗ ଗ୍ରହଣ କରିନଥିଲେ । ଗାନ୍ଧିଜୀ ଆଉ କିଛିଦିନ ଜୀବିତ ଥିଲେ ଅବସ୍ଥା ନିଶ୍ଚୟ ଅନ୍ୟ ପ୍ରକାର ହୋଇଥାଆନ୍ତା । ଏହି ପରିପ୍ରେକ୍ଷୀରେ ଗୋଟିଏ ଶକ୍ତିଶାଳୀ ବିରୋଧୀ ଦଳ ଗଠନକରିବା ଦିଗରେ ସାହାଯ୍ୟ କରିବାପାଇଁ ପଣ୍ଡିତ ନେହେରୁଙ୍କୁ ଜୟପ୍ରକାଶଜୀଙ୍କ ଅନୁରୋଧ ଅପ୍ରାସଙ୍ଗିକ ନଥିଲା ବୋଲି ମନେହୁଏ । ଅତୀତ ଗୌରବର ଉତ୍ତରାଧିକାରୀ ହେବା ସଙ୍ଗେ ସଙ୍ଗେ କଂଗ୍ରେସ କ୍ଷମତାସୀନ ହୋଇ ଦଳପାଇଁ ଅପର୍ଯ୍ୟାପ୍ତ ଅର୍ଥ ସଂଗ୍ରହ କରିପାରିଥିଲା । କଂଗ୍ରେସ ଦଳ ଓ କଂଗ୍ରେସ ଲୋକମାନେ ଅର୍ଥବଳରେ ବଳୀୟାନ୍ ହୋଇଥିଲେ । କୌଣସି ବିରୋଧୀଦଳ ପକ୍ଷରେ କଂଗ୍ରେସକୁ ମୁକାବିଲା କରିବା ସମ୍ଭବ ହୋଇନଥିଲା । ତା' ଛଡ଼ା ଦଳୀୟ ସ୍ୱାର୍ଥପାଇଁ ଶାସନକଳକୁ ମଧ୍ୟ ବ୍ୟବହାର କରାଯାଇଥିଲା । ଶାସନକଳକୁ ସଂପୂର୍ଣ୍ଣ ନିରପେକ୍ଷ ରଖି ନିର୍ବାଚନକୁ ବ୍ୟୟସାପେକ୍ଷ ନକରି ନ୍ୟାୟ ଓ ନିର୍ମଳ ଉପାୟରେ ନିର୍ବାଚନ ପରିଚାଳନାପାଇଁ ଯଦି ପ୍ରଧାନମନ୍ତ୍ରୀ ନେହେରୁ ଦୃଢ଼ ଆଇନସମ୍ମତ ବ୍ୟବସ୍ଥା କରି ଲୋକଙ୍କ ମନରେ ଭରସା ଦେଇଥା'ନ୍ତେ, ତା'ହେଲେ ମଧ୍ୟ ବିରୋଧୀ ଦଳମାନଙ୍କର ଶକ୍ତି-ଅର୍ଜନରେ ସେ ସହାୟକ ହୋଇଥାଆନ୍ତେ । ତାହାହିଁ ଥିଲା ଜୟପ୍ରକାଶଜୀ ପଣ୍ଡିତ ନେହେରୁଙ୍କୁ ଗୋଟିଏ ବିରୋଧୀ ଦଳ ଗଠନ କରିବାପାଇଁ ସାହାଯ୍ୟ କରିବାକୁ ଅନୁରୋଧ କରିବାର ମର୍ମ । ତା'ଛଡ଼ା ଗଣତନ୍ତ୍ରପରିଚାଳିତ ଦେଶମାନଙ୍କ ମଧ୍ୟରେ ସବୁଠାରୁ ପୁରାତନ ଦେଶ ହେଉଛି ଇଂଲଣ୍ଡ ଏବଂ ସେଠାରେ ସଂସଦୀୟ ଗଣତନ୍ତ୍ର ସମ୍ବନ୍ଧରେ ଯେଉଁ ପରମ୍ପରା ସୃଷ୍ଟିହୋଇଛି, ତାକୁହିଁ ଆମ୍ଭେମାନେ ଅନୁକରଣ କରୁଥାଇଁ । ସେଠାରେ ଶକ୍ତିଶାଳୀ ବିରୁଦ୍ଧ ଦଳ ଗଠନ କରିବା ଦିଗରେ ଲୋକଙ୍କର ଯେଉଁ ଆଗ୍ରହ ତାହା ବିଚାରକଲେ ପଣ୍ଡିତ ନେହେରୁଙ୍କୁ ଜୟପ୍ରକାଶଜୀଙ୍କର ଅନୁରୋଧର ତାତ୍ପର୍ଯ୍ୟ ବୁଝାପଡ଼େ । ସେଠାରେ ବିରୁଦ୍ଧ ଦଳକୁ ଓ ବିରୁଦ୍ଧ ମତକୁ ବଞ୍ଚାଇ ରଖିବାପାଇଁ ରାଜକୋଷରୁ ଅର୍ଥ ବ୍ୟୟ କରିବାକୁ ଲୋକେ ପସନ୍ଦ କରନ୍ତି । ଇଂଲଣ୍ଡରେ ରାଜନୈତିକ ଦଳ ଓ ଦଳଦ୍ୱାରା ପରିଚାଳିତ ଶାସନ ସମ୍ବନ୍ଧରେ କହିବାକୁ ଯାଇ Harold Laski ତାଙ୍କର Commentary on Parliamentary Government ପୁସ୍ତକରେ କହିଛନ୍ତି, "But given a party in office as a Government the process of the party system are surely remarkable. For they have given rise ever since the eighteenth century to the idea of His Majesty's Opposition as an essential feature of our

Constitution. We have that is to say, a Government in office that is permanently trying to do its best. It is introducing measures which it believes to be for the good of the country. It is administering the whole machinery of the State as effectively as it can. Yet we pay a large number of members of the House of Commons to obstruct public business as much as they can, to take the maximum advantage of the Government's mistakes, to insist that it is ruining the country, to extract from it, if possible informations by which this can be proved, and to flood the electorate with propaganda intended to show that the Government, however its motive and even these may be suspected is in fact doing the worst possible things in the worst possible way."

ଦେଶରେ ଗୋଟିଏ ବିରୁଦ୍ଧ ଦଳ ଗଠନ ଦିଗରେ ସାହାଯ୍ୟ କରିବାପାଇଁ ପଣ୍ଡିତ ନେହେରୁଙ୍କୁ ଶ୍ରୀ ଜୟପ୍ରକାଶ ନାରାୟଣ ଅନୁରୋଧ କରିବା ପୂର୍ବରୁ ପୃଥିବୀର ସେହି ବିଶିଷ୍ଟ ରାଜନୀତିବିଜ୍ଞାନ ବିଶାରଦ Harold Laski ୧୯୫୧ ମସିହାରେ ପଣ୍ଡିତ ନେହେରୁଙ୍କର ଷଷ୍ଠିତମ ଜନ୍ମବାର୍ଷିକୀ ଉତ୍ସବରେ ଯେଉଁ ଶୁଭେଚ୍ଛାସୂଚକ ବାର୍ତ୍ତା ପଠାଇଥିଲେ ସେଥିରେ ଭାରତବର୍ଷରେ ଗୋଟିଏ ବିରୁଦ୍ଧ ଦଳ ଗଠନ ବିଷୟରେ ତାଙ୍କର କି ପ୍ରକାର ସାହାଯ୍ୟ ଲୋଡ଼ିଥିଲେ ତାହା ଏଠାରେ ଉଦ୍ଧାର କରିବା ଅତ୍ୟନ୍ତ ପ୍ରାସଙ୍ଗିକ ହେବ ବୋଲି ମୁଁ ମନେକରୁଛି । ସେହି ଅଭିନନ୍ଦନ ବାର୍ତ୍ତାରେ Harold Laski କହିଥିଲେ, "One hope, I strongly express, bold though the claim may be is that he will be able amidst his special pre-occupations, to assist India to move from one party Government to the normal representative system of bi-partisan Government in furtherance of my own belief that upon the existence of an opposition, with powers at once critical and constructive, rests the basis of good Government. I am confident that Mr. Nehru is also of this view, since it was his achievement as Leader of the Opposition to the British Government in India which gave him the high status he now enjoys among all who care for freedom and democracy." (Profile of Nehru, Page 126)

ଭାରତୀୟ ଜାତୀୟ କଂଗ୍ରେସର ଜନ୍ମ ୧୮୮୫ ମସିହାରେ ଯେପରି ଭାବରେ ହୋଇଥିଲା ସେ କଥା ବିଚାରକୁ ନେଲେ ଗୋଟିଏ ଶକ୍ତିଶାଳୀ ବିରୋଧୀ ଦଳ ଗଠନ ସମ୍ବନ୍ଧରେ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କୁ ଜୟପ୍ରକାଶଜୀଙ୍କର ଅନୁରୋଧ କିପରି ପ୍ରାସଙ୍ଗିକ ସେ କଥା ହୃଦୟଙ୍ଗମ କରିହୁଏ । ଆଶ୍ଚର୍ଯ୍ୟର ବିଷୟ ଯେ ଭାରତର ଜାତୀୟ କଂଗ୍ରେସଭଳି ଗୋଟିଏ ରାଜନୈତିକ ଅନୁଷ୍ଠାନ ଗଠନ କରିବା ସମ୍ଭବ ହୋଇଥିଲା ଭାରତର ତତ୍କାଳୀନ ବଡ଼ଲାଟ ଓ ଇଂରେଜ ସରକାରଙ୍କର ଭାଇସ୍‌ରାୟ ଲର୍ଡ ଡଫରିନ୍ ଓ ଅବସରପ୍ରାପ୍ତ ଆଇ.ସି.ଏସ୍. ଅଫିସର୍ ମିଷ୍ଟର ଆଲାନ୍ ଆକ୍ଟେଭିଆନ୍ ହ୍ୟୁମ୍‌ଙ୍କର ପ୍ରେରଣା ଓ ଉଦ୍ୟମ ହେତୁ । ଜାତୀୟ କଂଗ୍ରେସର ପ୍ରଥମ ସଭାପତି ସାର୍ ଉମେଶଚନ୍ଦ୍ର ବାନାର୍ଜୀ ତାଙ୍କର 'ଭାରତୀୟ ରାଜନୀତି' ପୁସ୍ତକରେ କଂଗ୍ରେସର ଜନ୍ମ ସମ୍ବନ୍ଧରେ ଯାହା ଲେଖିଛନ୍ତି ତାହା ଓଡ଼ିଆ 'ଜ୍ଞାନମଣ୍ଡଳ'ରେ ନିମ୍ନମତେ ଉଦ୍ଧାର କରାଯାଇଛି । ଏହି ପ୍ରକାର ଗୋଟିଏ ଅନୁଷ୍ଠାନ ଗଢ଼ିବାପାଇଁ ଲର୍ଡ ଡଫ୍‌ରିନ୍ ମିଷ୍ଟର ହ୍ୟୁମ୍‌ଙ୍କୁ ବୁଝାଇଥିଲେ । ''ଭାରତ ସରକାରଙ୍କର ସର୍ବୋଚ୍ଚ କର୍ତ୍ତା ହୋଇ ମୁଁ ଗୋଟିଏ ବଡ଼ ଅସୁବିଧାର ସମ୍ମୁଖୀନ ହେଲିଣି । ତା' ହେଉଛି ଭାରତର ଲୋକେ ପ୍ରକୃତରେ କ'ଣ ଇଚ୍ଛା କରୁଛନ୍ତି ମୁଁ ତାହା ଜାଣିପାରୁନାହିଁ । ତେଣୁ ଯଦି କୌଣସି ଦାୟିତ୍ୱପୂର୍ଣ୍ଣ ସଂଗଠନ ଗଢ଼ାଯାଏ ଯାହାଦ୍ୱାରା କି ଭାରତୀୟମାନଙ୍କର ପ୍ରକୃତ ମତ ଜଣାପଡ଼ିବ, ତା'ହେଲେ ଭାରତ ସରକାର ଖୁବ୍ ଉପକୃତ ହେବେ । ଇଂଲଣ୍ଡରେ ହର୍ ମେଜେଷ୍ଟିଙ୍କ

ଅପୋଜିସନ୍ ବା ସରକାରଙ୍କର ବିରୋଧୀ ଦଳ ବୋଲି ଗୋଟିଏ ବ୍ୟବସ୍ଥା ଅଛି । ଭାରତରେ ସେପରି କିଛିନାହିଁ । ଇଂରେଜମାନେ ଜାଣିପାରୁନାହାନ୍ତି ଯେ ସେମାନଙ୍କ ବିଷୟରେ ଓ ସେମାନଙ୍କ ନୀତି ବିଷୟରେ ଭାରତର ଲୋକେ କେଉଁ ଧରଣର ମତ ପୋଷଣ କରୁଛନ୍ତି । ତେଣୁ ଶାସକ ଓ ଶାସିତ ଉଭୟଙ୍କର ସ୍ୱାର୍ଥ ଦୃଷ୍ଟିରୁ ଭାରତୀୟ ରାଜନୀତିଜ୍ଞମାନେ ବର୍ଷରେ ଥରେ ମିଳିତ ହେବା ଉଚିତ ଓ ସେତିକିବେଳେ ଶାସନରେ କେଉଁଠି ଦୋଷଦୁର୍ବଳତା ରହିଛି ଓ ତା'ର କି ପ୍ରତିକାର କରାଯାଇପାରେ ସେ ବିଷୟରେ ମଧ୍ୟ ସୂଚନା ଦିଆଯିବା ଉଚିତ ।'' ମିଷ୍ଟର ହ୍ୟୁମ୍ ଦୀର୍ଘ ପନ୍ଦର ବର୍ଷ କାଳ ଜାତୀୟ କଂଗ୍ରେସର ସଂପାଦକରୂପେ କାର୍ଯ୍ୟ କରିଥିଲେ ।

ଦେଶରେ ଗୋଟିଏ ଶକ୍ତିଶାଳୀ ବିରୋଧୀ ଦଳ ଗଠନ ନିମନ୍ତେ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଗଠନମୂଳକ ପନ୍ଥାରେ ଯାହା କରିପାରିନଥିଲେ, ତାଙ୍କର କନ୍ୟା ଶ୍ରୀମତୀ ଇନ୍ଦିରା ଗାନ୍ଧୀ ପ୍ରଧାନମନ୍ତ୍ରୀ ହେବା ପରେ ତାଙ୍କର ବିପରୀତ ଆଚରଣ ଫଳରେ ତାହା ସମ୍ଭବ ହୋଇଥିଲା । ଜରୁରୀକାଳୀନ ପରିସ୍ଥିତି ଘୋଷଣା କରି ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଆମ ଦେଶରେ ଯେଉଁ ଅଣ୍ଡାରୀ ଶାସନ, ଅନ୍ୟାୟ, ଅତ୍ୟାଚାର ଓ ଉତ୍ପୀଡ଼ନ ଆରମ୍ଭ କରିଦେଇଥିଲେ ତାହାହିଁ ସାହାଯ୍ୟ କରିଥିଲା ଦେଶରେ ଗୋଟିଏ ଶକ୍ତିଶାଳୀ ରାଜନୈତିକ ଦଳ ଗଠନ କରିବା ଦିଗରେ । ସେଥିରୁହିଁ ଜନ୍ମ ନେଇଥିଲା 'ଜନତା ଦଳ' । ଲୋକନାୟକ ଜୟପ୍ରକାଶ ନାରାୟଣଙ୍କର ଅସୀମ ତ୍ୟାଗ ଓ ଆଶୀର୍ବାଦରୁ କେତେଗୁଡ଼ିଏ ରାଜନୈତିକ ଦଳ ନିଜର ସ୍ୱତନ୍ତ୍ରତାକୁ ଲୋପକରି ଏକତ୍ର ମିଶିଯିବାରୁ ଜନତା ଦଳ ଗଠନ ସମ୍ଭବହେଲା । କେନ୍ଦ୍ରରେ ଜନତା ସରକାର ଜନତା ଦଳର ନିର୍ବାଚନ ପ୍ରତିଶ୍ରୁତି ଅନୁଯାୟୀ ଅଳ୍ପକାଳ ଭିତରେ ଜରୁରୀକାଳୀନ ଅବସ୍ଥାରେ ଜନସାଧାରଣଙ୍କର ତଥା ସମ୍ବାଦପତ୍ରମାନଙ୍କର ଅପହୃତ ସ୍ୱାଧୀନତାକୁ ଫେରାଇ ଦେଇ, କୁଖ୍ୟାତ ମିସା ଆଇନକୁ ରଦ୍ଦକରି ଦରଦାମ୍‌କୁ ନିୟନ୍ତ୍ରିତ ଓ ସ୍ଥିର ଅବସ୍ଥାରେ ରଖି ଏବଂ ସମ୍ବିଧାନକୁ ସଂଶୋଧନ କରି ତଥା ଅର୍ଥନୀତିକୁ ଗ୍ରାମାଭିମୁଖୀ କରାଇ ଯେଉଁ ପ୍ରଶଂସନୀୟ କାର୍ଯ୍ୟ କରି ଲୋକଙ୍କ ଭିତରେ ଉତ୍ସାହ ଓ ଉନ୍ମାଦନା ସୃଷ୍ଟିକରିଥିଲେ ଦୁର୍ଭାଗ୍ୟକୁ ତାହା ଜାତୀୟ ସ୍ତରରେ କେନ୍ଦ୍ର ଜନତା ଦଳରେ ବ୍ୟକ୍ତିଗତ ବିଦ୍ୱେଷ ଓ ଗୋଷ୍ଠୀଗତ ବିବାଦ ଫଳରେ ମ୍ରିୟମାଣ ହୋଇଯାଇଥିଲା । କେନ୍ଦ୍ର ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀ ରାଜନାରାୟଣଙ୍କର ଚରମ ବିଶୃଙ୍ଖଳ ଆଚରଣ ଜନତା ଦଳର ବିଭାଜନ ଓ ଜନତା ସରକାରର ପତନର କାରଣ ହୋଇଥିଲା । ଚୌଧୁରୀ ଚରଣ ସିଂହଙ୍କର ଦୁର୍ଦ୍ଦମ ଅହମିକା ଓ କ୍ଷମତାଲିପ୍ସା ସୁଚାରୁ କାର୍ଯ୍ୟ ପରିଚାଳନାପାଇଁ ମନ୍ତ୍ରିମଣ୍ଡଳ ଓ ଦଳ ଭିତରେ ଯେଉଁ ମୌଳିକ ସମଭାବାପନ୍ନତା ଓ ସମଗୋତ୍ରୀ ଭାବନା ଏକାନ୍ତ ଆବଶ୍ୟକ, ତା' ମୂଳରେ କୁଠାରାଘାତ କରିଥିଲା । ତାଙ୍କର ଏ ପ୍ରକାର ଆଚରଣରେ କିଛି ନୂତନତ୍ୱ ନଥିଲା । ଅତୀତରେ ମଧ୍ୟ ତାଙ୍କର ଆତ୍ମାଭିମାନ ହେତୁ ରାଜନୈତିକ ଦଳ ବିଭାଜନ ଓ ନୂତନ ଦଳ ଗଠନ କରାଯିବାର ଦୃଷ୍ଟାନ୍ତ ଥିଲା । ପ୍ରଧାନମନ୍ତ୍ରୀ ଶ୍ରୀ ମୋରାରଜୀ ଦେଶାଇଙ୍କର କଠୋର ଓ ଅନମନୀୟ ଆଚରଣ ଦଳର ଆଭ୍ୟନ୍ତରୀଣ ସମସ୍ୟା ସମାଧାନ ପାଇଁ ଆଦୌ ସହାୟକ ହୋଇନଥିଲା । ଗୋଷ୍ଠୀବିବାଦ ହେତୁ ଦଳର କେନ୍ଦ୍ରୀୟ ନେତାମାନେ ବିଭିନ୍ନ ରାଜ୍ୟରେ ମନ୍ତ୍ରିମଣ୍ଡଳ ଭାଙ୍ଗିବା ଓ ଗଢ଼ିବା କାର୍ଯ୍ୟରେ ଜଡ଼ିତହେଲେ । ଫଳରେ ରାଜ୍ୟମାନଙ୍କରେ ମଧ୍ୟ ଅନ୍ତର୍ବିବାଦ ବୃଦ୍ଧିପାଇଥିଲା ଓ ରାଜ୍ୟସରକାରମାନଙ୍କରେ ଅସ୍ଥିରତା ସୃଷ୍ଟି ହେଲା ।

କେନ୍ଦ୍ରରେ ଜନତା ଶାସନର ପରମାୟୁ ବର୍ଷେ ନ ପୂରୁଣୁ ନେତୃବର୍ଗଙ୍କ ମଧ୍ୟରେ ଗୃହଯୁଦ୍ଧ ଆରମ୍ଭ ହୋଇଯାଇଥିଲା । କେନ୍ଦ୍ର ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀ ରାଜନାରାୟଣ ଦାୟିତ୍ୱଜ୍ଞାନଶୂନ୍ୟ ଭାବରେ ସମ୍ବାଦପତ୍ରମାନଙ୍କରେ ଦଳର ସଭାପତିଙ୍କର ଅନବରତ କଟୁ ସମାଲୋଚନା କରିବାରେ ଲାଗିଥିଲେ ଏବଂ ସଭାପତି ପଦରୁ ଶ୍ରୀ ଚନ୍ଦ୍ରଶେଖରଙ୍କର ଇସ୍ତଫା ଦାବି କରିଥିଲେ । ଉତ୍ତରପ୍ରଦେଶ ଓ ହରିଆନା ରାଜନୀତିରେ କେନ୍ଦ୍ର କର୍ତ୍ତୃପକ୍ଷଙ୍କର ହସ୍ତକ୍ଷେପକୁ ଶ୍ରୀ ଚରଣ ସିଂହ ବରଦାସ୍ତ ନକରି ଅସନ୍ତୋଷ ପ୍ରକାଶ କରିଥିଲେ ଏବଂ ସେ ମଧ୍ୟ ଦଳର ସଭାପତି ପଦରୁ ଶ୍ରୀ ଚନ୍ଦ୍ରଶେଖରଙ୍କର ଅପସାରଣ ଦାବି

କରିଥିଲେ । ଏପ୍ରକାର ଦାବିକୁ ଶ୍ରୀ ଦେଶାଇ ଅଗ୍ରାହ୍ୟ କରିଥିଲେ । ଏଥିରେ ଶ୍ରୀ ଚରଣ ସିଂହ ବିଶେଷଭାବରେ ବିରକ୍ତି ପ୍ରକାଶକରି ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେବାପାଇଁ ୧୯୭୮ ମସିହା ଅପ୍ରେଲ ମାସ ଆଠ ତାରିଖରେ ପ୍ରଧାନମନ୍ତ୍ରୀଙ୍କୁ ଖଣ୍ଡିଏ ଚିଠି ଲେଖିଥିଲେ । ସେହିଦିନ ଓଡ଼ିଶାରେ ଇନ୍ଦ୍ରାବତୀ ଯୋଜନାର ଶିଳାନ୍ୟାସ କରିବାପାଇଁ ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇଙ୍କର ଭୁବନେଶ୍ୱର ଆସିବାର କାର୍ଯ୍ୟକ୍ରମ ଥାଏ । ଉକ୍ତ ଚିଠିଟି ପାଇ ଶ୍ରୀ ଦେଶାଇ ଟିକିଏ ବିବ୍ରତ ହୋଇଥିଲେ । ଶ୍ରୀ ବିଜୁ ପଟ୍ଟନାୟକ ଉକ୍ତ ଚିଠିଖଣ୍ଡିକ ହାତରେ ଧରି ଶ୍ରୀ ଚରଣ ସିଂହଙ୍କ ପାଖକୁ ଯାଇଥିଲେ ଏବଂ ତାଙ୍କୁ ବୁଝାବୁଝି କରି ଚିଠିଟି ତାଙ୍କରି ଆଗରେ ନଷ୍ଟକରିଦେଇଥିଲେ ଓ ତା'ପରେ ଶ୍ରୀ ଦେଶାଇ ଭୁବନେଶ୍ୱର ଆସିଥିଲେ । ଭୁବନେଶ୍ୱର ବିମାନବନ୍ଦରରେ ପହଞ୍ଚିବାମାତ୍ରେ ଶ୍ରୀ ବିଜୁ ପଟ୍ଟନାୟକ ଗୋପନରେ ଏହି ସମ୍ବାଦଟି ମୋତେ ଦେଇଥିଲେ । ସେହି ସମୟଠାରୁ ଦଳ ମଧ୍ୟରେ ଶୀତଳ ଯୁଦ୍ଧ ଆରମ୍ଭ ହୋଇଯାଇଥିଲା । ଶ୍ରୀ ରାଜନାରାୟଣଙ୍କର ଅବିରତ ବିଶୃଙ୍ଖଳ ଆଚରଣ ପରିସ୍ଥିତିକୁ ଆହୁରି ଜଟିଳ କରିବା ଉଦ୍ଦେଶ୍ୟରେ ଇନ୍ଧନ ଯୋଗାଉଥାଏ । ଇତିମଧ୍ୟରେ ଶ୍ରୀ ରାଜନାରାୟଣ କେନ୍ଦ୍ର ସ୍ୱାସ୍ଥ୍ୟମନ୍ତ୍ରୀ ଥାଇ ହିମାଚଳ ପ୍ରଦେଶର ସିମଲାଠାରେ ଗୋଟିଏ ଚରମ ଦାୟିତ୍ୱହୀନ କାର୍ଯ୍ୟ କରି ନିଜକୁ ଓ କେନ୍ଦ୍ର ସରକାରକୁ ହାସ୍ୟାସ୍ପଦ ଅବସ୍ଥାରେ ପକାଇଥିଲେ । ସେ ନିଜେ କେନ୍ଦ୍ରମନ୍ତ୍ରୀ ଥାଇ ମଧ୍ୟ ସେଠାରେ ରାଜ୍ୟ ସରକାର ସଭା କରିବା ବିଷୟରେ ଯେଉଁ ନିଷେଧାଜ୍ଞା ଜାରୀକରିଥିଲେ ତାକୁ ଲଙ୍ଘନ କରିଥିଲେ । ତାଙ୍କର ଏପ୍ରକାର କାର୍ଯ୍ୟଦ୍ୱାରା କେନ୍ଦ୍ର ସରକାରଙ୍କର ସମ୍ମାନ ଉପରେ ଆଞ୍ଚ ଆସିଥିଲା ୧୯୭୮ ମସିହା ଜୁନ୍ ମାସ ବାଇଶ ତାରିଖରେ ଜନତା ଦଳ ପାର୍ଲିଆମେଣ୍ଟାରୀ ବୋର୍ଡର ଗୋଟିଏ ବୈଠକ ବସି ରାଜନାରାୟଣଙ୍କ ଆଚରଣରେ ଅସନ୍ତୋଷ ପ୍ରକାଶ କରିବା ସଙ୍ଗେ ସଙ୍ଗେ ତାଙ୍କଠାରୁ କୈଫିୟତ୍ ତଲବ କରିବାପାଇଁ ନିଷ୍ପତ୍ତି ନିଆଯାଇଥିଲା ଏବଂ ସଭାପତି ଶ୍ରୀ ଚନ୍ଦ୍ରଶେଖରଙ୍କ ଉପରେ ଦଳର ସଂପୂର୍ଣ୍ଣ ଆସ୍ଥା ପ୍ରକାଶ କରି ଗୋଟିଏ ପ୍ରସ୍ତାବ ଗୃହୀତ ହୋଇଥିଲା । ପାର୍ଲିଆମେଣ୍ଟାରୀ ଦଳର ନିଷ୍ପତ୍ତିକୁ ଦଳର ଜଣେ ସଂପାଦକ ଶ୍ରୀ ରବି ରାୟ ବିରୋଧ କରିଥିଲେ । ଶ୍ରୀ ରବି ରାୟ ଦଳର ଜଣେ ଦାୟିତ୍ୱପୂର୍ଣ୍ଣ ସାଧାରଣ ସଂପାଦକ ଥିଲେ ମଧ୍ୟ ଦଳର ସ୍ୱାର୍ଥ ଓ ଗୋପନୀୟତା ପ୍ରତି ଭ୍ରୂକ୍ଷେପ ନକରି ଦଳ ବୈଠକରେ ଯାହା ସବୁ ଆଲୋଚନା ହୋଇଥିଲା ଏବଂ ଯେ ଯାହା କହିଥିଲେ ତାହା ସାମ୍ବାଦିକମାନଙ୍କ ଆଗରେ ପ୍ରକାଶ କରିଦେବାକୁ କୁଣ୍ଠିତ ହୋଇନଥିଲେ । ସେ ସବୁ ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା । ଉଭୟ ଶ୍ରୀ ଚରଣ ସିଂହ ଓ ଶ୍ରୀ ରବି ରାୟ ଜନତା ଦଳର ମରଣ-ଘଣ୍ଟା ବାଜିଲା ବୋଲି କହିବାକୁ କୁଣ୍ଠିତ ହୋଇନଥିଲେ । ବହୁ ଲୋକଙ୍କର ଆଶା ଓ ଆକାଂକ୍ଷାର ପ୍ରତୀକ ଓ କାର୍ଯ୍ୟତଃ ଜୟପ୍ରକାଶଜୀଙ୍କର ଜୀବନବ୍ୟାପୀ ସାଧନାର ମରଣ-ଘଣ୍ଟା ବାଜିଲା ବୋଲି ସମ୍ବାଦପତ୍ରରେ ବିବୃତି ଦେବାକୁ ସେମାନେ ଟିକେହେଲେ ଦ୍ୱିଧା ଅନୁଭବ କରିନଥିଲେ ।

## ନିରାଶ ଜୟପ୍ରକାଶ

ଏହି ସମୟରେ ଜୟପ୍ରକାଶଜୀ ଜନତା ଦଳର ତୁଙ୍ଗନେତାମାନଙ୍କର ବିବୃତି ଖବରକାଗଜରେ ଦେଖି ବିଶେଷ ଦୁଃଖିତ ହୋଇ ତାହା ଦୁର୍ଭାଗ୍ୟପୂର୍ଣ୍ଣ ପ୍ରକ୍ରିୟାର ସୂଚନା ବୋଲି କହି ସେ ପ୍ରକାର ଆଚରଣ ଦେଶର କର୍ଣ୍ଣଧାର ହୋଇଥିବା ଗୋଟିଏ ଦଳ ପକ୍ଷରେ ଅଶୋଭନୀୟ ଓ କ୍ଷତିକାରକ ବୋଲି କ୍ଷୋଭ ପ୍ରକାଶ କରିଥିଲେ । ୧୯୭୮ ମସିହା ଜୁନ୍ କୋଡ଼ିଏ ତାରିଖରେ ସମ୍ବାଦପତ୍ରମାନଙ୍କରେ ତାଙ୍କର ଏହି ବିବୃତି ପ୍ରକାଶ ପାଇଥିଲା । ଅତିଶୟ ବ୍ୟଥିତ ହୃଦୟରେ ଜୟପ୍ରକାଶଜୀ କହିଥିଲେ ଯେ ଜନତା ଦଳ ଥିଲା ତାଙ୍କ ଅସ୍ତିତ୍ୱର ଏକ ଅଂଶବିଶେଷ; କାରଣ ଯେଉଁ ଐତିହାସିକ ପ୍ରକ୍ରିୟାରୁ ଜନତା ଦଳର ଜନ୍ମ ସେଥି ସହିତ ତାଙ୍କର ନିବିଡ଼ ଭାବଗତ ସଂଯୋଗ ରହିଥିଲା ବୋଲି ସେ ଉକ୍ତ ବିବୃତିରେ କହିଥିଲେ । ଏହି ପୃଷ୍ଠଭୂମିରେ ଜନତା ଦଳର ସେ ସମୟର ଶୋଚନୀୟ ଅବସ୍ଥା, ବିଶୃଙ୍ଖଳା ଓ

ଅଧୋଗତି ସେ ଅତ୍ୟନ୍ତ ଦୁଃଖ ଓ ମର୍ମବେଦନା ସହ ଲକ୍ଷ୍ୟକରୁଥିଲେ ବୋଲି କହିଥିଲେ । ଅଧୈର୍ଯ୍ୟ ହୋଇ ତରବରିଆ ଭାବରେ କୌଣସି ନିଷ୍ପତ୍ତି ବା କାର୍ଯ୍ୟାନୁଷ୍ଠାନ ନକରିବାକୁ ଜୟପ୍ରକାଶଜୀ ଜନତା ଦଳର ନେତୃବର୍ଗଙ୍କୁ ପରାମର୍ଶ ଦେଇଥିଲେ; ମାତ୍ର ଜନତା ଦଳର କ୍ଷମତା-ଅନ୍ଧ ଓ କ୍ରୋଧାନ୍ଧ ନେତୃବର୍ଗ ଜୟପ୍ରକାଶଜୀଙ୍କର ପରାମର୍ଶ ପ୍ରତି କର୍ଣ୍ଣପାତ ନକରି ସଂକୀର୍ଣ୍ଣ ଗୋଷ୍ଠୀଗତ ବିଦ୍ୱେଷଦ୍ୱାରା ପରିଚାଳିତ ହୋଇ ଜନତା ଦଳର ଧ୍ୱଂସସାଧନ କରିଥିଲେ । ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇ ତାଙ୍କର ଦାମ୍ଭିକତା ହେତୁ ଜୟପ୍ରକାଶଙ୍କର ପରାମର୍ଶକୁ ଗ୍ରହଣ କରିବା ଅବସ୍ଥାରେ ନଥିଲେ । ଏ ପ୍ରକାର ପରାମର୍ଶକୁ ଦଳ ଓ ଶାସନର ଆଭ୍ୟନ୍ତରୀଣ ବ୍ୟାପାରରେ ଅଯଥା ହସ୍ତକ୍ଷେପ ବୋଲି ସେ ଭାବୁଥିଲେ । ଶ୍ରୀ ଚରଣ ସିଂହ କ୍ରୋଧାନ୍ଧ ଥିବାରୁ ଜୟପ୍ରକାଶଙ୍କର ପରାମର୍ଶ ତାଙ୍କ ହୃଦୟକୁ ସ୍ପର୍ଶକରୁନଥିଲା । ଜୟପ୍ରକାଶଙ୍କର ପରାମର୍ଶ ଜନତା ଦଳର ସଭାପତି ଶ୍ରୀ ଚନ୍ଦ୍ରଶେଖରଙ୍କ ଉପରେ କିଛି ପ୍ରଭାବ ପକାଉଥିଲା; ମାତ୍ର ତାକୁ କାର୍ଯ୍ୟକାରୀ କରିବାର ଶକ୍ତି ତାଙ୍କର ନଥିଲା ।

## ମୋରାରଜୀ-ଚରଣ ସିଂହ ଲଢ଼େଇ

ମନୁଷ୍ୟର ପ୍ରଧାନ ଶତ୍ରୁ କ୍ରୋଧ ଓ ଅହଙ୍କାର । ଚୌଧୁରୀ ଚରଣ ସିଂହ କ୍ରୋଧର ବଶବର୍ତ୍ତୀ ହୋଇ ଦଳର ସ୍ୱାର୍ଥ କଥା ବିଚାର କରିପାରିଲେନାହିଁ । ଯେଉଁମାନେ ତାଙ୍କ ସହିତ ଏକମତ ହୋଇ ନଥିଲେ ସେମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବାପାଇଁ ସେ ଇଚ୍ଛାକଲେ । ତେଣୁ ଆଗପଛ, ଭଲମନ୍ଦ କିଛି ବିଚାରନକରି ଯାହା କିଛି ତାଙ୍କୁ ନିଜ ସ୍ୱାର୍ଥପାଇଁ ଭଲ ଦିଶିଲା ସେ ତାହା କରିବାକୁ ଓ କହିବାକୁ ଲାଗିଲେ । ମନ୍ତ୍ରିମଣ୍ଡଳର ସୌହାର୍ଦ୍ଦ୍ୟ, ଐକ୍ୟ ଓ ସାମୂହିକ ଦାୟିତ୍ୱ ପ୍ରତି ଦୃଷ୍ଟି ନଦେଇ ସେ ନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖିବାକୁ ଚାହିଁଥିଲେ । ମନ୍ତ୍ରିମଣ୍ଡଳରେ ନିଜକୁ ଖୁବ୍ ସାହସୀ ବୋଲି ପରିଚୟ ଦେଇ ଅନ୍ୟମାନଙ୍କୁ କାପୁରୁଷ ଓ ପୌରୁଷହୀନ ଆଖ୍ୟା ଦେବାକୁ ପଛାଉନଥିଲେ । ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବା ଦିଗରେ ମନ୍ତ୍ରିମଣ୍ଡଳ ଭୀରୁତା ପ୍ରଦର୍ଶନ କରୁଛନ୍ତି ବୋଲି ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀ ଚରଣ ସିଂହ ଅଭିଯୋଗକରି ସମ୍ବାଦପତ୍ରରେ ଏହିଭଳି ଆକ୍ଷେପମୂଳକ ବିବୃତି ଦେଇ ଅବସ୍ଥାକୁ ଅତ୍ୟନ୍ତ ଜଟିଳ କରିପକାଇଥିଲେ । କେନ୍ଦ୍ର ମନ୍ତ୍ରିମଣ୍ଡଳକୁ ସେ ନପୁଂସକ ଲୋକଙ୍କର ଗୋଟିଏ ଗୋଷ୍ଠୀ ଆଖ୍ୟା ଦେଇ ଶାସନ କରିବାକୁ ଅକ୍ଷମ ବୋଲି ଆକ୍ଷେପ କରିଥିଲେ । ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇ ଶ୍ରୀ ଚରଣ ସିଂହଙ୍କ ବିବୃତିକୁ ଅତ୍ୟନ୍ତ ଆପତ୍ତିଜନକ ବୋଲି କହି କ୍ରୋଧ ପ୍ରକାଶ କରିଥିଲେ ଏବଂ ମନ୍ତ୍ରିମଣ୍ଡଳ ବୈଠକ ଡକାଇ ତା'ର ବିଚାରକରିଥିଲେ । ଶ୍ରୀ ଦେଶାଇ ଜଣେ ସୁଶୃଙ୍ଖଳ ବ୍ୟକ୍ତି ହେଲେ ମଧ୍ୟ ଅତି କଠୋର ମନୋଭାବର ବ୍ୟକ୍ତି । ଦଳ ଉପରେ ତାଙ୍କର ପ୍ରକୃତ ପ୍ରଭାବ ଓ ଶକ୍ତି ଯେତିକି ଥିଲା, ସେ ତାହାଠାରୁ ନିଜକୁ ଅଧିକ ଶକ୍ତିଶାଳୀ ବୋଲି ମନେକରୁଥିଲେ । ଦୁଇ ନେତାଙ୍କ ମଧ୍ୟରେ ସ୍ୱାଭିମାନର ଲଢ଼େଇ କ୍ରମେ ସାଲିସ୍‌ହୀନ ହୋଇପଡ଼ିଲା । ଶ୍ରୀ ଚରଣ ସିଂହ ମନ୍ତ୍ରିମଣ୍ଡଳର ସାମୂହିକ ଦାୟିତ୍ୱକୁ ଲଙ୍ଘନକରି ସଂସଦୀୟ ଶିଷ୍ଟାଚାରକୁ ଯେପରି ଭାବରେ ବିଦ୍ରୂପ କରିଥିଲେ ତା'ର ପଟାନ୍ତର ସଂସଦୀୟ ଗଣତନ୍ତ୍ର ଚଳୁଥିବା କୌଣସି ଦେଶରେ ନାହିଁ ବୋଲି ଶ୍ରୀ ଦେଶାଇ କହିଥିଲେ । ତେଣୁ ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇ, ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀ ଚରଣ ସିଂହ ଓ ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀ ରାଜନାରାୟଣଙ୍କୁ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେବାପାଇଁ ଚିଠି ଲେଖିଥିଲେ । ଶ୍ରୀ ଚରଣ ସିଂହ ଓ ଶ୍ରୀ ରାଜନାରାୟଣ ଜୁନ୍ ତିରିଶ ତାରିଖରୁ ମନ୍ତ୍ରିମଣ୍ଡଳରୁ ଇସ୍ତଫାଦେଇଥିଲେ ।

ଶ୍ରୀ ଦେଶାଇ ଓ ଚରଣ ସିଂହଙ୍କ ମଧ୍ୟରେ ମିଳାମିଶା କରିବାପାଇଁ ବହୁତ ଉଦ୍ୟମ ହୋଇଥିଲା । ଥରେ ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇଙ୍କୁ ଦେଖାକରି ଦଳର ମୁରିବି ହିସାବରେ ଦଳ ଭିତରେ ଉପୁଜୁଥିବା ସଙ୍କଟକୁ ଦୂର କରିବା ତାଙ୍କର କର୍ତ୍ତବ୍ୟ ବୋଲି ମୁଁ ଅନୁରୋଧ କରିଥିଲି । ସେ ମୋତେ କହିଥିଲେ, "Oh ! about the duties and responsibilities of the Leader you have learnt

some phrases from Biju Patnaik and repeating the same to me. God is there; Everything will be all right." ମିଳାମିଶା ଉଦ୍ୟମ ପ୍ରାୟ ଛଅ ମାସ କାଳ ଅବ୍ୟାହତ ରହିଥିଲା । ଶେଷରେ ୧୯୭୯ ମସିହା ଜାନୁୟାରୀ ମାସ ଚବିଶ ତାରିଖରେ ଅର୍ଥମନ୍ତ୍ରୀ ହିସାବରେ ଶ୍ରୀ ଚରଣ ସିଂହ ଓ ସ୍ୱାସ୍ଥ୍ୟମନ୍ତ୍ରୀ ହିସାବରେ ଶ୍ରୀ ରବି ରାୟ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଯୋଗଦେଇଥିଲେ । କଥାରେ ଅଛି, ଫାଟିଲା ହାଣ୍ଡି ଯୋଡ଼ି ହୁଏନାହିଁ । ଏହାଦ୍ୱାରା ଜନତା ଦଳର ସବୁ ସମସ୍ୟାର ସମାଧାନ ହୋଇନଥିଲା । ଶ୍ରୀ ରାଜନାରାୟଣଙ୍କୁ ମନ୍ତ୍ରିମଣ୍ଡଳରେ ନେଇଥିଲେ ଅବସ୍ଥାର ଉନ୍ନତି ନିଶ୍ଚୟ ହୋଇଥାଆନ୍ତା । ମାତ୍ର ଶ୍ରୀ ଦେଶାଇ ତାଙ୍କ ଭଳି ଜଣେ ବିଶୃଙ୍ଖଳ ଆଚରଣର ବ୍ୟକ୍ତିଙ୍କୁ ମନ୍ତ୍ରିମଣ୍ଡଳରେ ନେବାକୁ ଚାହିଁନଥିଲେ । କ୍ଷମତାର ସ୍ୱାଦ ଯିଏ ଥରେ ଚାଖିଥାଏ ସେ ତାହା ଭୁଲେନାହିଁ, ପୁଣି ଅଳ୍ପ ସମୟପାଇଁ ଯିଏ ସେ ସ୍ୱାଦକୁ ଚାଖିଥାଏ ତା' ପକ୍ଷରେ ତାକୁ ପାସୋରିବା ସହଜ ହୁଏନାହିଁ । ତେଣୁ କୌଣସି ନା କୌଣସି ଆଳ ଦେଖାଇ ଶ୍ରୀ ରାଜନାରାୟଣ ଦଳ ମଧ୍ୟରେ ଅଶାନ୍ତି ସୃଷ୍ଟି କରି କାହାକୁ ଶାନ୍ତିରେ ରଖିଦେବେନାହିଁ ବୋଲି ସ୍ଥିରକରିନେଇଥିଲେ । ମନ୍ତ୍ରିମଣ୍ଡଳ ଭିତରେ ରହିଥିଲେ ଶ୍ରୀ ଚରଣ ସିଂହ ଓ ବାହାରେ ରହିଥିଲେ ଶ୍ରୀ ରାଜନାରାୟଣ ଯେ କି ଚରଣ ସିଂହଙ୍କ 'ଆଜ୍ଞାବହ ହନୁମାନ୍' ବୋଲି ନିଜର ପରିଚୟ ଦେବାରେ ଗର୍ବ ଅନୁଭବ କରୁଥିଲେ । ଜନତା ଦଳରେ ଥିବା ପୂର୍ବତନ ଜନସଂଘ ସଭ୍ୟମାନେ ସାଂପ୍ରଦାୟିକ ଭିତ୍ତିରେ କାର୍ଯ୍ୟ କରୁଛନ୍ତି ବୋଲି ଶ୍ରୀ ରାଜନାରାୟଣ ଏକ ପ୍ରକାଶ୍ୟ ଅଭିଯାନ ଚଳାଇଲେ । ସେମାନେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ ସହ ସଂପର୍କ ରଖି ଭାରତକୁ ଗୋଟିଏ ହିନ୍ଦୁ ରାଷ୍ଟ୍ରରେ ପରିଣତ କରିବାକୁ ଉଦ୍ୟମ କରୁଛନ୍ତି, ବୋଲି ଶ୍ରୀ ରାଜନାରାୟଣ ଅଭିଯୋଗ କରିଥିଲେ । ଜନତା ଦଳରେ ଥିବା ପୂର୍ବତନ ଜନସଂଘ ସଭ୍ୟମାନେ ସାଂଗଠନିକ ବ୍ୟାପାରରେ ନିଜ ଗୋଷ୍ଠୀର ଆଧିପତ୍ୟ ବିସ୍ତାରପାଇଁ ଉଦ୍ୟମ କରୁଥିଲେ । ଦଳର ସଭ୍ୟ ସଂଗ୍ରହ ଓ ସାଂଗଠନିକ ନିର୍ବାଚନରେ ସେମାନେ ଗୋଷ୍ଠୀଗତ ଭାବରେ କାର୍ଯ୍ୟ କରୁଥିଲେ ବୋଲି ଜନତା ଦଳର ଜଣେ ପ୍ରଭାବଶାଳୀ ସଂପାଦକ ଶ୍ରୀ ମଧୁ ଲିମାୟେ ଉଦ୍‌ବେଗ ପ୍ରକାଶ କରିବା ସଂଗେ ସଂଗେ ଜନତା ଦଳରେ ଥିବା ପୂର୍ବତନ ସୋସାଲିଷ୍ଟମାନଙ୍କର ଗୋଟିଏ ଗୋଷ୍ଠୀ ଗଢ଼ିବାର ଉଦ୍ୟମ ଆରମ୍ଭ କରିଦେଲେ । ୧୯୭୯ ମସିହା ଜୁଲାଇ ମାସ ଆଠ ଓ ନଅ ତାରିଖରେ ଦିଲ୍ଲୀଠାରେ ପୂର୍ବତନ ସୋସାଲିଷ୍ଟମାନଙ୍କର ଗୋଟିଏ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଉକ୍ତ ସମ୍ମିଳନୀରେ ଶ୍ରୀ ଲିମାୟେ କହିଥିଲେ ଯେ ଜନତା ଦଳ ମଧ୍ୟରେ ଥିବା ସୋସାଲିଷ୍ଟ ଗୋଷ୍ଠୀ ଜନତା ଦଳର ନୀତି ଓ କାର୍ଯ୍ୟକ୍ରମକୁ ପ୍ରଭାବିତ କରିବା ଉଦ୍ଦେଶ୍ୟରେ କାର୍ଯ୍ୟ କରିଚାଲିବ । ଜନତା ସରକାରଙ୍କର ସମାଲୋଚନା କରି ଶ୍ରୀ ଲିମାୟେ ସେଠାରେ କହିଥିଲେ ଯେ ଜନତା ଦଳର ଅଢ଼େଇ ବର୍ଷର ଶାସନ ପରସ୍ଥିତି ଅତି ଅସନ୍ତୋଷଜନକ ଏବଂ ସେହି ସମୟ ମଧ୍ୟରେ ନିଜ ଭିତରେ ଅନ୍ତର୍ଦ୍ୱନ୍ଦ୍ୱ ଲାଗିରହିଥିଲା ବୋଲି ସେ ସ୍ୱୀକାର କରିଥିଲେ । ଏହି ସମୟରେ ଜନତାଶାସିତ ରାଜ୍ୟମାନଙ୍କରେ ଗୋଷ୍ଠୀଗତ ବିବାଦ ସୀମା ଟପିଯାଇଥିଲା । ହରିଆନା ରାଜ୍ୟରେ ଜନତା ନେତୃତ୍ୱ ପରିବର୍ତ୍ତନରେ ସ୍ୱୟଂ ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇ ଲିପ୍ତଥିବାର ଅଭିଯୋଗ ହୋଇଥିଲା । ହରିଆନା ଜନତା ଦଳ ବିଧାନସଭା ନେତୃତ୍ୱରୁ ଶ୍ରୀ ଦେବୀଲାଲଙ୍କ ଅପସାରଣ ଶ୍ରୀ ଚରଣ ସିଂହ ଗୋଷ୍ଠୀଙ୍କ ପକ୍ଷରେ ଏକାବେଳକେ ଅସହ୍ୟ ହୋଇଥିଲା । ହରିଆନାରେ ଦେବୀଲାଲ୍‌ଙ୍କ ସ୍ଥାନରେ ଶ୍ରୀ ଭଜନଲାଲ୍‌ଙ୍କୁ ମୁଖ୍ୟମନ୍ତ୍ରୀ କରାଯାଇଥିଲା ।

## ସୋସାଲିଷ୍ଟଙ୍କ ଫାନ୍ଦରେ ବିଜୁବାବୁ

ବିଜୁ ପଟ୍ଟନାୟକ ପୁଞ୍ଜିବାଦରୁ ସମ୍ଭୂତ ହେଲେ ମଧ୍ୟ ତାଙ୍କର ଚିନ୍ତାଧାରା ସମାଜବାଦୀ ଚିନ୍ତାଧାରା ସହିତ କେତେକାଂଶରେ ସମାନ । ଇସ୍ପାତ୍ ଶିଳ୍ପର ଜାତୀୟକରଣ କରାଯିବା କଥା କହିବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ପରିବାରପିଛା ବାସଗୃହପାଇଁ ସହର ଅଞ୍ଚଳରେ ଦୁଇ ହଜାର ବର୍ଗଫୁଟ ଜମିରୁ ଅଧିକା ବ୍ୟବସ୍ଥା ହେବା ଅନୁଚିତ ବୋଲି ସେ କହୁଥିଲେ ଏବଂ ସେହି ମର୍ମରେ ସେ ଜାତୀୟ ଉନ୍ନୟନ ପରିଷଦରେ ପ୍ରସ୍ତାବ

ଦେବା କଥା ମୁଁ ଜାଣିଛି । ସେ ନିଜେ ଜଣେ ଉଦାର ଶିଳ୍ପପତି ଥିଲେ । ତେଣୁ ତାଙ୍କ ମନରେ ହୁଏତ ଏକ ପ୍ରଚ୍ଛନ୍ନ ସଂଶୟ ଥାଏ ଯେ ତାଙ୍କୁ ଅନ୍ୟମାନେ ପୁଞ୍ଜିପତି ବୋଲି ବିଚାରୁଛନ୍ତି । ତେଣୁ ସେ ପ୍ରକାର ସନ୍ଦେହକୁ ଅକାମି କରିଦେବାପାଇଁ ତାଙ୍କୁ ସୋସାଲିଷ୍ଟମାନଙ୍କର ସଂସର୍ଗ ଭଲଲାଗୁଥିଲା । ଏହାର ସୁଯୋଗ ନେଇ ପୂର୍ବତନ ସୋସାଲିଷ୍ଟ ନେତା ଶ୍ରୀ ମଧୁ ଲିମାୟେ ସବୁବେଳେ ବିଜୁ ପଟ୍ଟନାୟକଙ୍କ ପାଖରେ ଲାଗିରହୁଥିଲେ । ମୁଁ ସେମାନଙ୍କ ମଧ୍ୟରେ ଏ ପ୍ରକାର ସଂପର୍କ ଦେଖି ପ୍ରମାଦ ଗଣିଥିଲି । ଆମ ଦଳର ପାର୍ଲିଆମେଣ୍ଟ ସଭ୍ୟ ସର୍ବଶ୍ରୀ ଶରତ୍ କୁମାର କର, ପତିତପାବନ ପ୍ରଧାନ, ଭବାନୀ ଚରଣ ପଟ୍ଟନାୟକ ଓ ଚନ୍ଦ୍ରମୋହନ ସିଂହ ପ୍ରଭୃତିଙ୍କୁ ମୁଁ ବିଜୁବାବୁଙ୍କ ସହିତ ଶ୍ରୀ ଲିମାୟେଙ୍କ ସଂପର୍କରୁ ବିପଦ ଉପୁଜିପାରେ ବୋଲି କହି ସତର୍କ କରାଇଦେଇଥିଲି । ବିଜୁବାବୁଙ୍କର ଜନସଂଘ ବା ରାଷ୍ଟ୍ରୀୟ ସ୍ୱୟଂସେବକଙ୍କ ସଂପର୍କରେ କିଛି ଉଦ୍‌ବେଗ ନଥିଲା; ମାତ୍ର ଶ୍ରୀ ଲିମାୟେ ପ୍ରଭୃତି ବନ୍ଧୁମାନେ ତାଙ୍କୁ ସେମାନଙ୍କ ବିରୁଦ୍ଧରେ ଉସୁକାଇଥିଲେ । ତେଣୁ ଆଉ କେହ କିଛି କହିବା ପୂର୍ବରୁ ଜନତା ଦଳରେ ଥିବା ପୂର୍ବତନ ଜନସଂଘ ସଭ୍ୟମାନେ ଆର.ଏସ୍.ଏସ୍. ସଂସ୍ଥା ସହିତ ସଂପର୍କ ରଖି ସେମାନଙ୍କ ନିର୍ଦ୍ଦେଶରେ କାର୍ଯ୍ୟ କରୁଛନ୍ତି ବୋଲି ଶ୍ରୀ ବିଜୁ ପଟ୍ଟନାୟକ ଖୋଲାଖୋଲିଭାବରେ ଅଭିଯୋଗ କରିଥିଲେ । ଏ ସମ୍ବନ୍ଧରେ ତାଙ୍କର ବିବୃତି ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା । ମୁଁ ତାଙ୍କର ଏ ପ୍ରକାର ବିବୃତିକୁ ଆଦୌ ପସନ୍ଦ କରିନଥିଲି ଏବଂ ସେ ପ୍ରକାର ବିବୃତି ଦେବା ତାଙ୍କ ପକ୍ଷରେ ସମୀଚୀନ ହୋଇନାହିଁ ବୋଲି ତାଙ୍କୁ କହିଥିଲି । ମୋ କଥା ପ୍ରତି ସେ ଗୁରୁତ୍ୱ ଦେଇନଥିଲେ ଏବଂ ତା ପରିବର୍ତ୍ତେ ସେ ମୋତେ କହିଥିଲେ ଯେ ପୂର୍ବରୁ ଜନସଂଘ ସଭ୍ୟଥିବା ମନ୍ତ୍ରୀମାନେ କୁଆଡ଼େ ନାଗପୁରରୁ ନିର୍ଦ୍ଦେଶ ପାଇ କାର୍ଯ୍ୟ କରୁଥିଲେ । ନାଗପୁର ହେଉଛି ଆର.ଏସ୍.ଏସ୍. ସଂସ୍ଥାର କେନ୍ଦ୍ର କାର୍ଯ୍ୟାଳୟ ।

## ବିଜୁଙ୍କ ଦୁର୍ନାମ : "ମୂଳୁ ମାଇଲେ ଯିବ ସରି..."

ଏହି ପରିପ୍ରେକ୍ଷୀରେ ଜନତା ଦଳର ଲୋକସଭା ସଦସ୍ୟ ବିହାର ରାଜ୍ୟ ଜାମସେଦପୁର ନିର୍ବାଚନ ମଣ୍ଡଳୀରୁ ଆସିଥିବା ଶ୍ରୀ ରୁଦ୍ରପ୍ରସନ୍ନ ଷଡ଼ଙ୍ଗୀ ନାମକ ଜଣେ ପୂର୍ବତନ ଜନସଂଘ ବ୍ୟକ୍ତି ବିଜୁବାବୁଙ୍କ ବିରୁଦ୍ଧରେ କେତେଗୁଡ଼ିଏ ଗୁରୁତର ଦୁର୍ନୀତି ଅଭିଯୋଗ ଆଣିଥିଲେ । ତାଙ୍କର ଅଭିଯୋଗ ଥିଲା ଯେ ଶ୍ରୀ ବିଜୁ ପଟ୍ଟନାୟକ କେନ୍ଦ୍ର ଇସ୍ପାତ ମନ୍ତ୍ରୀ ଥାଇ ନିଜର ବ୍ୟବସାୟ ସମ୍ବନ୍ଧୀୟ ବୁଦ୍ଧି ଓ କାରସାଦି ଖଟାଇ ଲୁହା କାରବାର ସଂପର୍କରେ ବ୍ୟବସାୟୀମାନଙ୍କୁ ସୁହାଇଲା ଭଳି ଏ ପ୍ରକାର ନୀତି ନିର୍ଦ୍ଧାରଣ ଓ କାର୍ଯ୍ୟାନୁଷ୍ଠାନ କରାଇଲେ ଯେ ତାହାଦ୍ୱାରା ଅକସ୍ମାତ୍ ବ୍ୟବସାୟୀମାନେ ରାତାରାତି ଅଜସ୍ର ଟଙ୍କା ଉପୁରି ମୁନାଫା ଉଠାଇଥିଲେ । ବ୍ୟବସାୟୀମାନଙ୍କ ସହିତ ସଲାସୁତର କରି ଏ ପ୍ରକାର ପଦକ୍ଷେପ ନିଆଯାଇଥିଲା ବୋଲି ଅଭିଯୋଗ କରାଯାଇଥିଲା । ଏ ପ୍ରକାର ଦୁର୍ନାମ ଓ ଅଭିଯୋଗମାନ ଟାଟା କମ୍ପାନୀର ଲୋକଙ୍କଦ୍ୱାରା ପ୍ରଣୋଦିତ ବୋଲି ସେତେବେଳେ କୁହାଯାଉଥିଲା । ସାଧାରଣତଃ କେନ୍ଦ୍ରରେ କୌଣସି ମନ୍ତ୍ରୀଙ୍କ ବିରୁଦ୍ଧରେ ଏଭଳି କୌଣସି ଅଭିଯୋଗ ଆସିଲେ ଅଭିଯୋଗ ଆପାତତଃପ୍ରମାଣ ଅଛି କି ନାହିଁ ତାହା ପ୍ରଥମେ ପ୍ରଧାନମନ୍ତ୍ରୀ ନିଜେ ବା ତାଙ୍କଦ୍ୱାରା ମନୋନୀତ କୌଣସି ବୟୋଜ୍ୟେଷ୍ଠ ଅଭିଜ୍ଞ ମନ୍ତ୍ରୀ ପରୀକ୍ଷା କରି ଦେଖିବାପାଇଁ ସେହି ମନ୍ତ୍ରୀଙ୍କ ପକ୍ଷରୁ କୁହାଯିବାର କଥା । ମାତ୍ର ଶ୍ରୀ ବିଜୁ ପଟ୍ଟନାୟକଙ୍କ ଦାମ୍ଭିକତା ସମ୍ବନ୍ଧରେ ତ ପୂର୍ବରୁ ଜଣାଅଛି । ସେ ହଠାତ୍ କହିଥିଲେ ଯେ ସେସବୁ ଅଭିଯୋଗଗୁଡ଼ିକର ସତ୍ୟାସତ୍ୟ ସମ୍ବନ୍ଧରେ ପୂର୍ବତନ ଜନସଂଘ ସଭ୍ୟ ବୈଦେଶିକ ମନ୍ତ୍ରୀ ଶ୍ରୀ ଅଟଳବିହାରୀ ବାଜପେୟୀ ଅନୁସନ୍ଧାନ କରି ଦେଖନ୍ତୁ । ସେତେବେଳକାର ପାର୍ଲିଆମେଣ୍ଟ ସଦସ୍ୟ ଅବସରପ୍ରାପ୍ତ ବିଚାରପତି ଶ୍ରୀ ଆର.ଡି. ଗଟନିଙ୍କ ନାମ ଏ ଅନୁସନ୍ଧାନ ସଂପର୍କରେ ଉଠିଥିଲା । ଶ୍ରୀ ଗଟାନି ଜଣେ ପୂର୍ବତନ ଜନସଂଘ ସଭ୍ୟ ଥିଲେ । ଶ୍ରୀ ବିଜୁ ପଟ୍ଟନାୟକ ବିଶେଷ କିଛି ଚିନ୍ତା ନକରି ଶ୍ରୀ ଗଟାନିଙ୍କଦ୍ୱାରା ଅନୁସନ୍ଧାନ ହେବା ପ୍ରସ୍ତାବକୁ ଗ୍ରହଣ କରିନେଇଥିଲେ । ପରେ ଶ୍ରୀ ପଟ୍ଟନାୟକ ଆଶଙ୍କା କରିଥିଲେ ଯେ ଶ୍ରୀ ଗଟାନି ପୂର୍ବତନ

ଜନସଂଘ ସଭ୍ୟମାନଙ୍କଦ୍ୱାରା ପ୍ରଭାବିତ ହେବାର ସମ୍ଭାବନା ଥିଲା । ଏ ପ୍ରକାର ଆଶଙ୍କା ଥିବା କଥା ବିଜୁବାବୁ ମୋ ପାଖରେ ପ୍ରକାଶ କରିଥିଲେ । ଶ୍ରୀ ଗଡାନି ଜଣେ ପୂର୍ବତନ ଜନସଂଘୀ ଥିବାରୁ ଏବଂ ଅଭିଯୋଗକାରୀ ଶ୍ରୀ ଷଡ଼ଙ୍ଗୀ ସେହି ଗୋଷ୍ଠୀରୁ ଆସିଥିବାରୁ ତଦନ୍ତ ନିରପେକ୍ଷ ହୋଇପାରିବନାହିଁ ବୋଲି କହି ସେଥିରୁ ଓହରି ଆସିବାପାଇଁ ମୁଁ ପରାମର୍ଶ ଦେଇଥିଲି । ଦଳର ଏହି ସଂକଟ ସମୟରେ ଜନତା ଦଳର କେତେକ ସଭ୍ୟ ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ ଏ ଅନୁସନ୍ଧାନକୁ ତ୍ୱରାନ୍ୱିତ କରିବାକୁ ଉଦ୍ୟମ କରିଥିଲେ । ଶ୍ରୀ ଗଡାନି ଅଭିଯୋଗଗୁଡ଼ିକର ଶୁଣାଣିପାଇଁ ଦଳର ସଙ୍କଟମୟ ପରିସ୍ଥିତି ଭିତରେ ତାରିଖ ଧାର୍ଯ୍ୟ କରିଥିଲେ । ଶ୍ରୀ ପଟ୍ଟନାୟକ ସମୟ ମାଗି ତାହା ଘୁଞ୍ଚାଇଦେବାକୁ ଚାହିଁଥିଲେ । ଶ୍ରୀ ପଟ୍ଟନାୟକ ବୋଧେ ମନେ ମନେ ବିଚାର କରିଥିଲେ ଯେ, ''ମୂଳୁ ମାଇଲେ ଯିବ ସରି, ଦେବଙ୍କ ସଙ୍ଗେ କିମ୍ପା କଳି ।'' ଦୌଡ଼ାଦୌଡ଼ି କରି ଦଳରେ ସମସ୍ତଙ୍କୁ ଏକତ୍ରିତ କରିବାର ଶକ୍ତି ବିଜୁ ପଟ୍ଟନାୟକଙ୍କର ଥିଲା ବୋଲି ସମସ୍ତଙ୍କର ବିଶ୍ୱାସ ଥିଲା । ମାତ୍ର ସେ ଦିଗରେ ସେ ଆଦୌ ଅଗ୍ରସର ହୋଇନଥିଲେ; ବରଂ ଲୋହିଆଙ୍କ ପ୍ରତି ଅନୁରକ୍ତ ଥିବା ପୂର୍ବତନ ସୋସାଲିଷ୍ଟ ଗୋଷ୍ଠୀଦ୍ୱାରା ବିଜୁ ପଟ୍ଟନାୟକ ପରିଚାଳିତ ହେଲାଭଳି ଆଚରଣ ଦେଖାଇଥିଲେ । ସେମାନଙ୍କ କବଳରୁ ବିଜୁ ପଟ୍ଟନାୟକଙ୍କୁ ଉଦ୍ଧାର କରି ଆଣି ଦଳର ସଙ୍କଟ ଦୂର କରିବା ଉଦ୍ଦେଶ୍ୟରେ ସମାଧାନ କାର୍ଯ୍ୟରେ ତାଙ୍କୁ ଲଗାଇବାପାଇଁ ଦିଲ୍ଲୀରୁ ଶ୍ରୀମତୀ ଆଭା ମାଇତି ଓ ଶ୍ରୀ ଭବାନୀଚରଣ ପଟ୍ଟନାୟକ ମୋତେ ଫୋନ୍ କରିଥିଲେ । ମୁଁ ବିଜୁ ପଟ୍ଟନାୟକଙ୍କୁ ସେ କଥା କହିଥିଲି; କିନ୍ତୁ କିଛି ଫଳ ହେଲାନାହିଁ । ଜନତା ସରକାରର ପତନ ଘଟାଇବା କାର୍ଯ୍ୟରେ ସେ ଆଗେଇ ଚାଲିଥିଲେ ।

## ଜନତା ସରକାରର ପତନ

ଜନତା ଦଳ ଯେତେବେଳେ ଅନ୍ତର୍ଦ୍ୱନ୍ଦ୍ୱର ଛକାପଞ୍ଝାରେ, ଠିକ୍ ସେତିକିବେଳେ ଦୈବଯୋଗକୁ ଲୋକସଭାରେ ବିରୋଧୀ ଦଳର ନେତା ଶ୍ରୀ ୱାଇ.ଭି.ଚୌହାନ୍ ଶ୍ରୀ ମୋରାରଜୀ ଦେଶାଇଙ୍କ ମନ୍ତ୍ରିମଣ୍ଡଳ ବିରୁଦ୍ଧରେ ଗୋଟିଏ ଅନାସ୍ଥା ପ୍ରସ୍ତାବ ଆଗତ କରିଥିଲେ । ଲୋକେ କହନ୍ତି, ''ମଇଁଷି ଶିଙ୍ଗ ଫଟା, ଯୁଝିଲା ବେଳକୁ ଗୋଟା''; କିନ୍ତୁ ଆମର ଦୁର୍ଭାଗ୍ୟକୁ ଏ କ୍ଷେତ୍ରରେ ଠିକ୍ ବିପରୀତ ଘଟଣା ଘଟିଥିଲା । ଅନାସ୍ଥା ପ୍ରସ୍ତାବର ସୁବିଧା ନେଇ ବିଭେଦକାରୀମାନେ ବିଭେଦକୁ ଆହୁରି ବିସ୍ତୃତ କରିବାରେ ଲାଗିପଡ଼ିଥିଲେ । ଏହା ପୂର୍ବରୁ ଶ୍ରୀ ରାଜନାରାୟଣଙ୍କୁ ବିଶୃଙ୍ଖଳ ଓ ଦଳବିରୋଧୀ ଆଚରଣପାଇଁ ଜନତା ଦଳରୁ ବହିଷ୍କାର କରାଯାଇଥିଲା । ରାଜ୍ୟସଭାରେ ଥିବା ଜନତା ଦଳର ଆଠ ଜଣ ସଭ୍ୟଙ୍କୁ ଦଳତ୍ୟାଗ କରାଇ ଶ୍ରୀ ରାଜନାରାୟଣ ନିଜ ନେତୃତ୍ୱରେ ଜନତା (ଏସ୍) ଦଳ ନାମରେ ଗୋଟିଏ ଦଳ ଗଠନ କରିଥିଲେ ଏବଂ ତାହାହିଁ ପ୍ରକୃତ ଜନତା ଦଳ ବୋଲି ଘୋଷଣା କରିଥିଲେ । ଧର୍ମନିରପେକ୍ଷ ବା Secular ଶବ୍ଦପାଇଁ ସେ ଇଂରାଜୀ ଏସ୍ ଅକ୍ଷର ଯୋଗକରିଥିଲେ । ଲୋକସଭାରେ ଅନାସ୍ଥା ପ୍ରସ୍ତାବ ଆଲୋଚିତ ହେଲାବେଳେ ଉପପ୍ରଧାନମନ୍ତ୍ରୀ ଶ୍ରୀ ଚରଣ ସିଂହ ଓ ମନ୍ତ୍ରୀ ଶ୍ରୀ ବହୁଗୁଣା ଲୋକସଭାରେ ଯୋଗ ନଦେଇ ନିଜ ବାସଭବନରେ ଦଳ ଓ ସରକାର ଭାଙ୍ଗିବା ମନ୍ତ୍ରଣାରେ ବ୍ୟାପୃତ ଥିଲେ । ଦିଲ୍ଲୀର ରାଜନୈତିକ ବାୟୁମଣ୍ଡଳ ଅତ୍ୟନ୍ତ ଉତ୍ତେଜନାପୂର୍ଣ୍ଣ ହୋଇଉଠିଲା । କେନ୍ଦ୍ର ଜନତା ମନ୍ତ୍ରିମଣ୍ଡଳର ଆସନ୍ନ ପତନ ହେତୁ ଚାରିଆଡ଼େ ଅସ୍ଥିରତା ଅନୁଭୂତ ହେଉଥିଲା । ଓଡ଼ିଶାରୁ ପାର୍ଲିଆମେଣ୍ଟରେ ଥିବା ଜନତା ଦଳର ସଭ୍ୟମାନେ ବିଶେଷ ଉଦ୍‌ବେଗରେ ଦିନ କାଟୁଥିଲେ । ସେମାନେ ମୋ ସହିତ ଟେଲିଫୋନ୍‌ରେ ଯୋଗସୂତ୍ର ରଖି ପରାମର୍ଶ କରୁଥିଲେ । ଘଟଣାସବୁ ଏତେ ଦ୍ରୁତ ଗତିରେ ଘଟୁଥାଏ ଯେ ସେ ଅବସ୍ଥାରେ କୌଣସି ସୁଚିନ୍ତିତ ପରାମର୍ଶ ଦେବା ମଧ୍ୟ ସମ୍ଭବ ହେଉ ନଥାଏ । ଭୁବନେଶ୍ୱର ରାଜଧାନୀରେ ସେତେବେଳେ ଜନତା ଦଳର ଅଧିକାଂଶ ବିଧାନସଭା ସଦସ୍ୟ ଉପସ୍ଥିତ ଥିଲେ ଏବଂ ସେମାନେ ଅତି ଉଦ୍‌ବେଗ ସହକାରେ ଅବସ୍ଥାକୁ ଲକ୍ଷ୍ୟ କରି ରହିଥିଲେ । ସେମାନେ

ପ୍ରାୟ ସବୁବେଳେ ମୋ ଅଫିସ୍ କିମ୍ବା ଘରେ ଜମା ହୋଇ ରହୁଥିଲେ । ସେମାନଙ୍କ ସହିତ ଆଲୋଚନା କରି ଆମକୁ ଯେଉଁଟା ଭଲଲାଗୁଥାଏ ସେ ବିଷୟରେ ଆମ ରାଜ୍ୟର ଜନତା ଦଳର ପାର୍ଲିଆମେଣ୍ଟ ସଦସ୍ୟମାନଙ୍କୁ ମୁଁ ପରାମର୍ଶ ଦେଉଥିଲି । କେନ୍ଦ୍ରରେ ଜନତା ଦଳରେ ଲାଗିଥିବା ଗୋଷ୍ଠୀ ବିବାଦ ସହିତ ଓଡ଼ିଶାର ସଭ୍ୟମାନେ ସଂପୃକ୍ତ ନହେବାପାଇଁ ଆମର ଏଠାରେ ଦୃଢ଼ମତ ପ୍ରକାଶ ପାଇଥିଲା ଏବଂ ତାହାହିଁ ମୁଁ ପାର୍ଲିଆମେଣ୍ଟରେ ଥିବା ଆମର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ଜଣାଇଦେଇଥିଲି । ଓଡ଼ିଶାର ସଭ୍ୟମାନେ ଏକତ୍ର ବସି ସବୁକଥା ଆଲୋଚନା କରି ସମଷ୍ଟିଗତ ଭାବରେ ନିଷ୍ପତ୍ତି ନେଇ ସେହି ଅନୁସାରେ ପଦକ୍ଷେପ ନେବାପାଇଁ ଆମ୍ଭେମାନେ ସେମାନଙ୍କୁ ପରାମର୍ଶ ଦେଇଥିଲୁ । ଜନତା ଦଳ ମନ୍ତ୍ରିମଣ୍ଡଳ ବିରୁଦ୍ଧରେ ଆସିଥିବା ଅନାସ୍ଥା ପ୍ରସ୍ତାବକୁ ଲୋକସଭାରେ ନାକଚ କରିବା ସବୁ ଜନତା ସଭ୍ୟଙ୍କର ମୌଳିକ କର୍ତ୍ତବ୍ୟ ବୋଲି ଆମ୍ଭେମାନେ ଏଠାରୁ ଆମ୍ଭମାନଙ୍କର ପାର୍ଲିଆମେଣ୍ଟ ସଦସ୍ୟମାନଙ୍କୁ ପରାମର୍ଶ ଦେଇଥିଲୁ । ଆମ୍ଭମାନଙ୍କର ପରାମର୍ଶ ପ୍ରତି ଶ୍ରୀ ବିଜୁ ପଟ୍ଟନାୟକ ଓ ଶ୍ରୀ ରବି ରାୟ ଟିକିଏ ହେଲେ ଗୁରୁତ୍ୱ ଦେଇନଥିଲେ । ଓଲଟା ଶ୍ରୀ ବିଜୁ ପଟ୍ଟନାୟକ ମୋ କଥା ଶୁଣି ବିରକ୍ତି ପ୍ରକାଶ କରିଥିଲେ । ଆମ ରାଜ୍ୟର ଜନତା ଦଳର ଲୋକମାନଙ୍କର ମତାମତ ବିଷୟରେ ମୁଁ ଯେତେବେଳେ ବିଜୁବାବୁଙ୍କୁ କହୁଥିଲି ସେ ଅତ୍ୟନ୍ତ ଅଧୈର୍ଯ୍ୟ ହୋଇପଡ଼ି ମୋତେ କହିଥିଲେ, ''ସେଠାରେ ତୁମେ ତୁମ ଦଳ ଓ ସରକାରଙ୍କୁ କୁଣ୍ଢେଇ ବସିଥାଅ, ଆମ୍ଭେମାନେ ଚାଲିଲୁ । ସରକାରଙ୍କର ପତନ ସୁନିଶ୍ଚିତ ।'' ତାଙ୍କର ଏ ପ୍ରକାର କଟୂକ୍ତି ଶୁଣି ମୁଁ ଦୁଃଖିତ ହୋଇଥିଲି; କିନ୍ତୁ ଆମ୍ଭମାନଙ୍କ ପରାମର୍ଶ ସମସ୍ତେ ଟିକିଏ ଏକତ୍ର ବିଚାର କରିବାପାଇଁ ମୁଁ ତାଙ୍କୁ ଓ ରବିବାବୁଙ୍କୁ ଅନୁରୋଧ ଜଣାଇଥିଲି ।

ଆମ୍ଭମାନଙ୍କ ପରାମର୍ଶ ପ୍ରତି କୌଣସି ପ୍ରକାର ଗୁରୁତ୍ୱ ଦିଆଯାଇନଥିଲା । ଅତ୍ୟନ୍ତ ପରିତାପର ବିଷୟ ଯେ ଓଡ଼ିଶା ଜନତା ଦଳର ଜଣେ ନେତୃସ୍ଥାନୀୟ ବ୍ୟକ୍ତି ତଥା କେନ୍ଦ୍ର ସରକାରଙ୍କର ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀ ରବି ରାୟ ମନ୍ତ୍ରିମଣ୍ଡଳର ଜଣେ ସଭ୍ୟ ହିସାବରେ ସର୍ବପ୍ରଥମେ ଆଉ ଚାରିଜଣ ଲୋକସଭା ସଦସ୍ୟଙ୍କ ସହ ଜନତା ଦଳ ତ୍ୟାଗକରି ରାଜନାରାୟଣଙ୍କର ଜନତା (ଏସ୍) ଦଳରେ ଯୋଗ ଦେଇଥିଲେ । ଶ୍ରୀ ଚରଣ ସିଂହଙ୍କର ପରାମର୍ଶ ଅନୁସାରେ ଶ୍ରୀ ରବି ରାୟ ଦଳତ୍ୟାଗ କରିଥିଲେ । ମନ୍ତ୍ରୀ ଶ୍ରୀ ଜର୍ଜ ଫର୍ଣ୍ଣାଡିଜ୍ ଲୋକସଭାରେ ଅନାସ୍ଥା ପ୍ରସ୍ତାବ ବିରୁଦ୍ଧରେ ଗୋଟିଏ ଦୃଢ଼ ଓ ଯୁକ୍ତିଯୁକ୍ତ ଭାଷଣ ଦେଇ ପରଦିନ ଦଳତ୍ୟାଗ କରି ଜନତା (ଏସ୍) ଦଳରେ ଯୋଗଦେଇଥିଲେ । କେନ୍ଦ୍ରମନ୍ତ୍ରୀ ଶ୍ରୀ ବହୁଗୁଣା ଯେଉଁ ଦିନ ଦଳତ୍ୟାଗକରିଥିଲେ ସେହିଦିନ ଶ୍ରୀ ବିଜୁ ପଟ୍ଟନାୟକ ଦଳତ୍ୟାଗ କରିଥିଲେ । ଦଳତ୍ୟାଗ କରିବାକୁ ସମସ୍ତଙ୍କୁ ପରାମର୍ଶ ଦେଇ ଶେଷରେ ଚୌଧୁରୀ ଚରଣ ସିଂହ ଦଳତ୍ୟାଗ କରି ଶ୍ରୀ ରାଜନାରାୟଣଙ୍କର ଜନତା (ଏସ୍) ଦଳର ନେତା ହୋଇଥିଲେ । ଜନତା ଦଳରୁ ଦଳତ୍ୟାଗୀ ସଭ୍ୟମାନଙ୍କର ସୁଅ ଯେତେବେଳେ ଛୁଟୁଥାଏ ସେତେବେଳେ ଦଳ ନିର୍ମଳ ହୋଇଯାଉଛି ବୋଲି କହି ଆତ୍ମାଭିମାନି ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇ ଆତ୍ମପ୍ରସାଦ ଅନୁଭବ କରୁଥିଲେ । ଜନତା ଦଳର ଏ ପ୍ରକାର ଦୁର୍ଦ୍ଦଶା ଦେଖି ଅନାସ୍ଥା ପ୍ରସ୍ତାବ ଆଗତ କରିଥିବା ବିରୋଧୀ ଦଳର ନେତା ଶ୍ରୀ ଚୌହାନ୍ ପନ୍ଦର ଦିନ ପରେ ଅନାସ୍ଥା ପ୍ରସ୍ତାବର ଆଲୋଚନା କରାଯାଇପାରେ ବୋଲି ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇଙ୍କୁ ସୂଚନା ଦେଇଥିଲେ; ମାତ୍ର ଦାମ୍ଭିକ ପ୍ରଧାନମନ୍ତ୍ରୀ ତାହା ଗ୍ରହଣ କରିପାରିନଥିଲେ । ଶେଷରେ ଲୋକସଭାରେ ସରକାରୀ ଦଳ ଯେତେବେଳେ ସଂଖ୍ୟାଲଘୁ ହୋଇଯାଇଥିଲା ଏବଂ ଆଉ ମୁହୂର୍ତ୍ତେ ରହିଲେ ହାସ୍ୟାସ୍ପଦ ହେବା କଥାଟା ଯେପରି ଜଳ ଜଳ ହୋଇ ଦେଖାଗଲା ସେତେବେଳେ ଶ୍ରୀ ଦେଶାଇ ତାଙ୍କର ଇସ୍ତଫାପତ୍ର ରାଷ୍ଟ୍ରପତିଙ୍କ ପାଖରେ ଦାଖଲ କରିଥିଲେ । ଜୁଲାଇ ମାସ ଷୋହଳ ତାରିଖରେ ରାଷ୍ଟ୍ରପତି ଶ୍ରୀ ସଞ୍ଜିବ ରେଡ଼ି ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇଙ୍କ ମନ୍ତ୍ରିମଣ୍ଡଳର ଇସ୍ତଫା ଗ୍ରହଣ କରିଥିଲେ । ଯେପରି ଭାବରେ ଶ୍ରୀ ଦେଶାଇଙ୍କର ଜନତା ମନ୍ତ୍ରିମଣ୍ଡଳର ପତନ ଘଟାଇଦିଆଗଲା ତା'ର ପଟାନ୍ତର ସଂସଦୀୟ ଗଣତନ୍ତ୍ରର ଇତିହାସରେ ବୋଧହୁଏ ନାହିଁ । ନିଜ ଦଳଦ୍ୱାରା ପରିଚାଳିତ ସରକାର ବିରୁଦ୍ଧରେ ଯେତେବେଳେ

ଅନାସ୍ଥା ପ୍ରସ୍ତାବ ସଂସଦରେ ଆଗତ ହୋଇଥିଲା, ସେତେବେଳେ ସେ ଦଳର ସଭ୍ୟମାନେ ଯେଉଁ ଆଚରଣ ପ୍ରଦର୍ଶନ କଲେ ତାହା ରାଜନୈତିକ ଅବିବେକିତା କିମ୍ବା ଅପରିପକ୍ୱତା ଛଡ଼ା ଆଉ କିଛି ନୁହେଁ । ଜନତା (ଏସ୍) ଦଳର ନେତା ଶ୍ରୀ ଚରଣ ସିଂହ କଂଗ୍ରେସ ଦଳର ନେତା ଶ୍ରୀ ଚୌହାନ୍‌ଙ୍କ ସହାୟତାରେ କେନ୍ଦ୍ରରେ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ଦାବି କରିଥିଲେ । ଶ୍ରୀ ମୋରାରଜୀ ଦେଶାଇ ମଧ୍ୟ ମନ୍ତ୍ରିମଣ୍ଡଳ ଗଠନ କରିପାରିବେ ବୋଲି ରାଷ୍ଟ୍ରପତିଙ୍କଠାରେ ଦାବି କରିଥିଲେ । ଉଭୟ ପକ୍ଷର ସମର୍ଥକମାନଙ୍କର ତାଲିକା ପରୀକ୍ଷା କଲାପରେ ରାଷ୍ଟ୍ରପତି ଶ୍ରୀ ଚରଣ ସିଂହଙ୍କୁ ମନ୍ତ୍ରିମଣ୍ଡଳ ଗଠନ କରିବାପାଇଁ ଡାକିଥିଲେ ଏବଂ ଶ୍ରୀ ଚରଣ ସିଂହ ୧୯୭୯ ମସିହା ଜୁଲାଇ ମାସ ଅଠେଇଶି ତାରିଖରେ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ତାଙ୍କ ମନ୍ତ୍ରିମଣ୍ଡଳରେ ଶ୍ରୀ ଚୌହାନ୍ ଉପପ୍ରଧାନମନ୍ତ୍ରୀ ହୋଇଥିଲେ । ମାତ୍ର ଏହି ମନ୍ତ୍ରିମଣ୍ଡଳ ଲୋକସଭାରେ ଶକ୍ତି ପରୀକ୍ଷା କରିବାପାଇଁ ସମ୍ମୁଖୀନ ହେବାକୁ ମଧ୍ୟ ଅସମର୍ଥ ହେବାରୁ ଅଗଷ୍ଟ ମାସ କୋଡ଼ିଏ ତାରିଖରେ ଇସ୍ତଫା ଦେଇଥିଲେ । ଅଗଷ୍ଟ ମାସ ବାଇଶ ତାରିଖରେ ଲୋକସଭା ଭାଙ୍ଗିଦିଆଯାଇଥିଲା ଏବଂ ପୁନି ନିର୍ବାଚନ ହେବ ବୋଲି ଘୋଷଣା କରାଯାଇଥିଲା । ୧୯୮୦ ମସିହାରେ ନିର୍ବାଚନ ହୋଇ ନୂତନ ସରକାର ଗଠନ ପର୍ଯ୍ୟନ୍ତ ପ୍ରଧାନମନ୍ତ୍ରୀ ଶ୍ରୀ ଚରଣ ସିଂହଙ୍କ ମନ୍ତ୍ରିମଣ୍ଡଳ ତତ୍ତ୍ୱାବଧାରକ ସରକାର ହିସାବରେ ଶାସନ ଦାୟିତ୍ୱରେ ରହିଥିଲେ ।

## କେନ୍ଦ୍ରରେ ଅନ୍ତର୍ଦ୍ୱନ୍ଦ୍ୱ : ଓଡ଼ିଶାରେ ପ୍ରତିକ୍ରିୟା

ଦିଲ୍ଲୀ ରାଜନୈତିକ ମଞ୍ଚ ଉପରେ ଜନତା ଦଳର ତୁଙ୍ଗ ନେତାମାନଙ୍କର ନୀତି, ଶୃଙ୍ଖଳା ଓ ଦାୟିତ୍ୱଜ୍ଞାନ ସଂପର୍କରେ ନାଟକୀୟ ଆଚରଣ ଅବିଳମ୍ବେ ଆମ ରାଜ୍ୟ ବିଧାନସଭା ଦଳରେ ପ୍ରତିଫଳିତ ହୋଇଥିଲା । ରାଜ୍ୟରେ ଆମ ଦଳ ଭିତରେ କିପରି ଏକତା ରକ୍ଷା କରାଯାଇପାରିବ ସେ ସମ୍ବନ୍ଧରେ ମୁଁ ଆମର ବନ୍ଧୁମାନଙ୍କ ସହ ଆଲୋଚନା କରିଥିଲି । କେନ୍ଦ୍ରରେ ଦଳର ବିଭାଜନକୁ ଭ୍ରୂକ୍ଷେପ ନକରି ଉଭୟ ଗୋଷ୍ଠୀରୁ ସଂପର୍କ ଛିନ୍ନକରି ଓଡ଼ିଶା ଜନତା ଦଳ ସ୍ୱତନ୍ତ୍ରଭାବେ କାର୍ଯ୍ୟ କରୁ ବୋଲି ବହୁ ମତ ପ୍ରକାଶ ପାଇଥିଲା । ମୁଁ ନିଜେ ସେହି ମତର ପକ୍ଷପାତୀ ଥିଲି । ସେଥିପାଇଁ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ସହ ସଂପର୍କଥିବା ଅଭିଯୋଗରେ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନଙ୍କୁ ମୋ ମନ୍ତ୍ରିମଣ୍ଡଳରୁ ବହିଷ୍କାର କରିବାପାଇଁ ଉପରୁ ମୋ ଉପରେ ବହୁତ ଚାପ ପଡ଼ିଲେ ମଧ୍ୟ ମୁଁ ଅନେକ ଦିନ ପର୍ଯ୍ୟନ୍ତ ସେ ଦିଗରେ କିଛି କରିନଥିଲି । ଶ୍ରୀ ହରିଚନ୍ଦନ ଯେପରି ନିଷ୍ଠା ଓ ଦକ୍ଷତାର ସହିତ ତାଙ୍କର ସରକାରୀ ଦାୟିତ୍ୱ ତୁଲାଇ ଆସୁଥିଲେ ସେଥିରେ ତାଙ୍କୁ ବହିଷ୍କାର କରିବାକୁ ମୋର ଇଚ୍ଛା ନଥିଲା । ଶ୍ରୀ ହରିଚନ୍ଦନଙ୍କୁ ଡକାଇ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ସହ ତାଙ୍କର କି ପ୍ରକାର ସଂପର୍କ ସେକଥା ତାଙ୍କଠାରୁ ବୁଝିଥିଲି । ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ସହିତ ତାଙ୍କର କିଛି ସଂପର୍କ ନଥିଲା ବୋଲି ସେ ମୋତେ କହିଥିଲେ; ମାତ୍ର ସେ ସଂସ୍ଥାରେ କାର୍ଯ୍ୟ କରୁଥିବା କେତେକଙ୍କ ସହିତ ତାଙ୍କର ବ୍ୟକ୍ତିଗତ ବନ୍ଧୁତା ଥିଲା ବୋଲି ସେ ମୋତେ ଜଣାଇଥିଲେ । ଏକଥା ମୁଁ ବିଜୁବାବୁ ପ୍ରଭୃତିଙ୍କୁ ବୁଝାଇଦେଇଥିଲି; ମାତ୍ର ସେମାନେ ମୋ କଥାରେ ସଂପୂର୍ଣ୍ଣ ସନ୍ତୁଷ୍ଟ ହୋଇନଥିଲେ ।

କୌଣସି ବିଷୟ ବିଶେଷ ଭାବରେ ସ୍ପଷ୍ଟ ନକରି ଏକରକମ ଗୋଳମାଳିଆ ପରିସ୍ଥିତି ଭିତରେ ଆମ ରାଜ୍ୟ ଜନତା ଦଳ କିଛିଦିନ ଚାଲିଲା । ବିଜୁ ପଟ୍ଟନାୟକଙ୍କର ଥରକୁ ଥର ସାମ୍ବାଦିକ ସମ୍ମିଳନୀ ଆମ ପରିସ୍ଥିତିକୁ ଅନେକ ସମୟରେ ଜଟିଳକରିପକାଉଥିଲା । ତାଙ୍କ ନିଜର ସ୍ଥିତି ମଧ୍ୟ ଆମ୍ଭମାନଙ୍କୁ ଅଡୁଆରେ ପକାଉଥିଲା । କେନ୍ଦ୍ରରେ ଜନତା (ଏସ୍) ଦଳର ନେତା ଶ୍ରୀ ଚରଣ ସିଂହଙ୍କ ନେତୃତ୍ୱରେ ଗଠିତ ମନ୍ତ୍ରିମଣ୍ଡଳରେ ବିଜୁବାବୁ ଜଣେ ମନ୍ତ୍ରୀ ହୋଇ ରହିଥିଲେ ଏବଂ ଏଣେ ନିଜକୁ ସ୍ୱତନ୍ତ୍ର ବୋଲି ପରିଚୟ ଦେଉଥିବା ରାଜ୍ୟ ଜନତା ଦଳର ସଭାପତି ହେବାକୁ ସେ ଚାହିଁଥିଲେ । ଆମ୍ଭେମାନେ ସ୍ଥିର କରିଥିଲୁ ଯେ ଶ୍ରୀ ଚନ୍ଦ୍ରମୋହନ ସିଂହ ସଂଗଠନର ସଭାପତି ହେବେ; ମାତ୍ର ସେ ସ୍ଥାନରେ ବିଜୁବାବୁ

ସଭାପତି ହୋଇଥିଲେ । ତାଙ୍କର ସଭାପତି ହେବାଟା ପରିସ୍ଥିତିକୁ ଆହୁରି ଜଟିଳ କରିଥିଲା । ଏହି ପରିପ୍ରେକ୍ଷୀରେ ମୁଁ ନିମ୍ନମତେ ଗୋଟିଏ ସ୍ପଷ୍ଟୀକରଣ ଖବରକାଗଜରେ ଦେଇଥିଲି, "The Janata Party in Orissa continues as before. After the debacle in the Janata Party at the National level faced under the leadership of Shree Chandra Sekhar, the Orissa Janata Party, through consensus decided to steer clear off the contending factions at the Central level and to maintain its integrity and purity as the Janata Party as it was conceived prior to the General Elections in the year 1977. It has no connection with the group headed by Shree Chandra Sekhar and the latter has neither legal nor moral right to interfere in the affairs of the Orissa Janata Party or the Orissa Janata Legislature Party."

ମୋର ଏ ପ୍ରକାର ମତାମତରେ ଜନତା ଦଳର ବିଧାନସଭା ସଦସ୍ୟ ସର୍ବଶ୍ରୀ ଅନନ୍ତ ନାରାୟଣ ସିଂହଦେଓ, ଭାଗବତ ବେହେରା ଓ ରାମକୃଷ୍ଣ ପଟ୍ଟନାୟକ ପ୍ରମୁଖ ସନ୍ତୁଷ୍ଟ ହୋଇନଥିଲେ । ସେମାନେ ଦାବି କରିଥିଲେ ଯେ, ରାଜ୍ୟ ଜନତା ଦଳ ଯଦି ତା'ର ସ୍ୱାତନ୍ତ୍ର୍ୟ ବଜାୟ ରଖିବ ତେବେ ପାର୍ଲିଆମେଣ୍ଟରେ ଓଡ଼ିଶାର ଯେଉଁ ସଭ୍ୟମାନେ ଜନତା (ଏସ୍) ଦଳରେ ଥିଲେ ସେମାନେ ସେଥିରୁ ଓହରିଆସି ଗୋଟିଏ ସ୍ୱତନ୍ତ୍ର ଗୋଷ୍ଠୀ ହୋଇ ରହନ୍ତୁ । କଥାଟା ନିଶ୍ଚୟ ଯୁକ୍ତିଯୁକ୍ତ ଥିଲା; ମାତ୍ର ତାହା କରିଥିଲେ ଶ୍ରୀ ବିଜୁ ପଟ୍ଟନାୟକ ଓ ଶ୍ରୀ ରବି ରାୟଙ୍କୁ କେନ୍ଦ୍ର ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେବାକୁ ପଡ଼ିଥା'ନ୍ତା, ତେଣୁ ତାହା ସମ୍ଭବ ହୋଇନଥିଲା । ବିଧାନସଭାରେ ଜନତା ଦଳର ଦଳପତି ଓ ମୁଖ୍ୟମନ୍ତ୍ରୀ ଭାବରେ ମୋର ପ୍ରକୃତ ସ୍ଥିତି କ'ଣ ତାହା ସ୍ପଷ୍ଟ କରିଦେବାପାଇଁ ସେମାନେ ଦାବିକରିଥିଲେ । ଦଳର ନେତା ହିସାବରେ କେନ୍ଦ୍ରୀୟ ଜନତା ଦଳର ସଭାପତି ଶ୍ରୀ ଚନ୍ଦ୍ରଶେଖରଙ୍କ ପ୍ରତି ଦଳର ଆନୁଗତ୍ୟ ଅଛି ବୋଲି ଘୋଷଣା କରିବାକୁ ମୋଠାରେ ଦାବିହୋଇଥିଲା । ଜନତା ଦଳର ସଭାପତି ଶ୍ରୀ ଚନ୍ଦ୍ରଶେଖରଙ୍କ ସହିତ ସେମାନେ ମଧ ଯୋଗସୂତ୍ର ରଖୁଥିଲେ । ମୁଁ ଜନତା(ଏସ୍) ଗୋଷ୍ଠୀଙ୍କ ସହିତ ରହି ସେମାନଙ୍କୁ ସଂଗଠିତ ହେବାରେ ସାହାଯ୍ୟ କରୁଛି ବୋଲି ଜନତା ଦଳର ଦୁଇଜଣ ସଂପାଦକ ସର୍ବଶ୍ରୀ ଭାଗବତ ବେହେରା ଓ କୃଷ୍ଣଚନ୍ଦ୍ର ପାତ୍ର ଚନ୍ଦ୍ରଶେଖରଙ୍କ ପାଖରେ ଅଭିଯୋଗ କରିଥିଲେ । ୧୯୭୯ ମସିହା ଅଗଷ୍ଟ ମାସ ପ୍ରଥମ ସପ୍ତାହରେ ମୁଁ ଜନତା ଦଳର ସଭାପତି ଶ୍ରୀ ଚନ୍ଦ୍ରଶେଖରଙ୍କଠାରୁ ନିମ୍ନ ତାର ବାର୍ତ୍ତାଟି ପାଇଥିଲି, "Conflicting press reports about your relationship with the party in present context. Please clarify the position and inform categorically your stand. Letter follows." Chandra Sekhar. ରାଜ୍ୟ ଜନତା ଦଳର ସଭାପତି ଶ୍ରୀ ବିଶ୍ୱନାଥ ପଣ୍ଡିତଙ୍କ ପାଖକୁ ଶ୍ରୀ ଚନ୍ଦ୍ରଶେଖର ଏହି ତାରବାର୍ତ୍ତାର ଗୋଟିଏ ନକଲ ପଠାଇଦେଇଥିଲେ । ଶ୍ରୀ ପଣ୍ଡିତ ତାହା ମୋ ପାଖକୁ ପଠାଇ ଦେଇଥିଲେ ଏବଂ ତା' ଉପରେ ମୋର ମନ୍ତବ୍ୟ ଚନ୍ଦ୍ରଶେଖରଙ୍କୁ ଜଣାଇଦେବାପାଇଁ ଗୋଟିଏ ଚିଠିରେ ଅନୁରୋଧ କରିଥିଲେ । ଶ୍ରୀ ଚନ୍ଦ୍ରଶେଖରଙ୍କର ତାରବାର୍ତ୍ତାପାଇଁ ମୁଁ ନୀରବ ରହିଥିଲି ।

ଅଗଷ୍ଟ ମାସ ଛ' ତାରିଖରେ ଭୁବନେଶ୍ୱରଠାରେ ରାଜ୍ୟ ଜନତା ଦଳର ବିଧାନସଭା ସଦସ୍ୟ, ଜନତା ଦଳ ପାର୍ଲିଆମେଣ୍ଟ ସଦସ୍ୟ ଓ ଦଳର କର୍ମକର୍ତ୍ତାମାନଙ୍କର ଗୋଟିଏ ବୈଠକ ଅନୁଷ୍ଠିତ ହୋଇଥିଲା । ଦୁଇ ଦିନ ଆଲୋଚନା ପରେ ମଧ ଦଳର ବାସ୍ତବ ସ୍ଥିତି ସଂପର୍କରେ କୌଣସି ନିଷ୍ପତ୍ତି ନିଆଯାଇ ପାରିନଥିଲା । ଏହି ବୈଠକରେ ତିନିଗୋଟି ନିର୍ଦ୍ଦିଷ୍ଟ ମତ ପ୍ରକାଶ ପାଇଥିଲା । ଓଡ଼ିଶା ଜନତା ଦଳ ନିରପେକ୍ଷ ରହିବାପାଇଁ ଥିଲା ଗୋଟିଏ ମତ, ଆଉ ଗୋଟିଏ ମତ ଥିଲା ଯେ ଓଡ଼ିଶା ଜନତା ଦଳ କେନ୍ଦ୍ରରେ ଥିବା ଜନତା (ଏସ୍) ଦଳ ସହିତ ମିଶିବା ଉଚିତ । ଅନ୍ୟ ମତଟି ଥିଲା ଯେ ଚନ୍ଦ୍ରଶେଖର ଯେଉଁ ଜନତା ଦଳର ସଭାପତି ତାହା ସହିତ ଓଡ଼ିଶା ଜନତା ଦଳ ରହିବା ବାଞ୍ଛନୀୟ । ବହୁ ଆଲୋଚନା

ପରେ ସ୍ଥିରହୋଇଥିଲା ଯେ ଆଉ ଥରେ ବିଧାନସଭା ଦଳ ଓ ଅନୁଷ୍ଠାନର କର୍ମକର୍ତ୍ତାମାନଙ୍କର ଗୋଟିଏ ମିଳିତ ବୈଠକ ବସି ଏ ସମ୍ବନ୍ଧରେ ଚୂଡ଼ାନ୍ତ ନିଷ୍ପତ୍ତି ନିଆଯିବ । ସାମ୍ବାଦିକମାନେ ମୋତେ ପଚାରିବାରେ ମୁଁ ତାହାହିଁ କହିଥିଲି । ଶ୍ରୀ ବିଜୁ ପଟ୍ଟନାୟକ ବୈଠକ ପରେ ଯେଉଁ ସାମ୍ବାଦିକ ସମ୍ମିଳନୀ କରିଥିଲେ ସେଥିରେ କହିଥିଲେ ଯେ ବୈଠକରେ ଜନତା (ଏସ୍) ଦଳ ସହତ ମିଶିବାପାଇଁ ବହୁ ମତ ପ୍ରକାଶ ପାଇଥିଲେ ମଧ ସେ ସମ୍ବନ୍ଧରେ କୌଣସି ଚୂଡ଼ାନ୍ତ ନିଷ୍ପତ୍ତି ପ୍ରକାଶ ପାଇନଥିଲା । ସେ କହିଥିଲେ ଯେ ରାଜ୍ୟ ଜନତା ଦଳ ନିରପେକ୍ଷ ରହିବାପାଇଁ ମଧ ବହୁତ ସଭ୍ୟ ମତ ଦେଇଥିଲେ; କିନ୍ତୁ ଆଲୋଚନାରେ ସଂପୂର୍ଣ୍ଣ ଐକ୍ୟ ପ୍ରକାଶ ପାଇଥିଲା ଯେ, ଜନତା ଦଳର ସଭାପତି ଶ୍ରୀ ଚନ୍ଦ୍ରଶେଖର ଜନତା ଦଳର ଏକତା ରକ୍ଷା କରିବା ଦିଗରେ ଏକାବେଳକେ ଅପାରଗ । ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ଗୋଟିଏ ସାଂପ୍ରଦାୟିକ ସଂସ୍ଥା ଏବଂ ତା' ବିରୁଦ୍ଧରେ ଓଡ଼ିଶା ଜନତା ଦଳ ସବୁବେଳେ ସଂଗ୍ରାମ କରିବ ବୋଲି ଶ୍ରୀ ପଟ୍ଟନାୟକ ସାମ୍ବାଦିକମାନଙ୍କୁ କହିଥିଲେ । ଶ୍ରୀ ବିଜୁ ପଟ୍ଟନାୟକ ସାମ୍ବାଦିକ ସମ୍ମିଳନୀରେ ଯେଉଁ କଥା କହିଥିଲେ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଓ ଆଉ ଆଠ ଜଣ ବିଧାନସଭା ସଦସ୍ୟ ସମ୍ବାଦପତ୍ରରେ ଗୋଟିଏ ବିବୃତି ଦେଇ ତା'ର ପ୍ରତିବାଦ କରିଥିଲେ । ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ସମ୍ବନ୍ଧରେ ଶ୍ରୀ ବିଜୁ ପଟ୍ଟନାୟକ ଯାହା କହିଥିଲେ ଶ୍ରୀ ହରିଚନ୍ଦନ ସ୍ୱତନ୍ତ୍ର ଭାବରେ ତା'ର ପ୍ରତିବାଦ କରିଥିଲେ । ଆର.ଏସ୍.ଏସ୍. ଗୋଟିଏ ସାଂପ୍ରଦାୟକ ଅନୁଷ୍ଠାନ ନୁହେଁ ବୋଲି ସେ କହିଥିଲେ ଏବଂ ଜରୁରୀକାଳୀନ ଅବସ୍ଥାବେଳେ ଓ ଜୟପ୍ରକାଶଜୀଙ୍କ ସଂପୂର୍ଣ୍ଣ ବିପ୍ଳବ ଆନ୍ଦୋଳନ ସମୟରେ ଆର.ଏସ୍.ଏସ୍.ର ମହତ୍ତ୍ୱପୂର୍ଣ୍ଣ ଅବଦାନ କଥା ଉଲ୍ଲେଖ କରିଥିଲେ । ହରିଚନ୍ଦନଙ୍କ ବିବୃତି ପଢ଼ି ବିଜୁ ପଟ୍ଟନାୟକ ଓ ଦଳର ଅନେକ ସଭ୍ୟ ଅତ୍ୟନ୍ତ ଅସନ୍ତୋଷ ପ୍ରକାଶ କରିଥିଲେ । ଶ୍ରୀ ହରିଚନ୍ଦନଙ୍କୁ ମନ୍ତ୍ରିମଣ୍ଡଳରୁ ବହିଷ୍କାର କରିବାପାଇଁ ବିଧାନସଭାର କେତେକ ଜନତା ଦଳର ସଭ୍ୟ ମୋ ପାଖରେ ଦାବିକରିଥିଲେ । ଶ୍ରୀ ହରିଚନ୍ଦନଙ୍କଠାରୁ ତାଙ୍କ ବିବୃତି ସମ୍ବନ୍ଧରେ ମୁଁ ସ୍ପଷ୍ଟୀକରଣ ଚାହିଁଥିଲି । କେନ୍ଦ୍ରରେ ଯେଉଁମାନେ ଜନତା ଦଳ ତ୍ୟାଗ କରି ଜନତା(ଏସ୍) ଦଳ ଗଠନ କରି ମନ୍ତ୍ରିମଣ୍ଡଳ ଗଠନ କରିଥିଲେ ସେମାନଙ୍କୁ ଦଳତ୍ୟାଗୀ ବୋଲି କହି ସେମାନଙ୍କ ବିରୁଦ୍ଧରେ ଜନମତ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଅଗଷ୍ଟ ମାସ ବାର ତାରିଖଟି 'ବିଶ୍ୱାସଘାତକତା' ଦିବସରୂପେ ପାଳନ କରିବାପାଇଁ ମନ୍ତ୍ରୀ ଶ୍ରୀ ପ୍ରହ୍ଲାଦ ମଲ୍ଲିକ, ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଓ ଆଉ କେତେଜଣ ବିଧାନସଭା ସଦସ୍ୟ ଉଦ୍ୟମ କରିଥିଲେ । ସେମାନଙ୍କ ପକ୍ଷରୁ ଭୁବନେଶ୍ୱରରେ ଓ କଟକରେ ଏହି 'ବିଶ୍ୱାସଘାତକତା ଦିବସ' ପାଳନ କରିବା ଉଦ୍ଦେଶ୍ୟରେ ସାଧାରଣସଭା ଅନୁଷ୍ଠିତ ହୋଇଥିଲା । ଶ୍ରୀ ହରେକୃଷ୍ଣ ମହତାବ ସେମାନଙ୍କୁ ଉତ୍ସାହିତ କରିଥିଲେ ଏବଂ ଭୁବନେଶ୍ୱର ଓ କଟକରେ ଭାଷଣ ଦେଇଥିଲେ । ଏହି 'ବିଶ୍ୱାସଘାତକତା ଦିବସ' ପାଳନ କରିବାପାଇଁ ଯେଉଁସବୁ ଆୟୋଜନ ହେଉଥାଏ ତା'ସହିତ କୌଣସି ସଂପର୍କ ନ ରଖିବାପାଇଁ ମୁଁ ଜନତା ଦଳର ବିଧାନସଭା ସଦସ୍ୟ ଓ ଅନ୍ୟ ବନ୍ଧୁମାନଙ୍କୁ ପରାମର୍ଶ ଦେଇଥିଲି ।

ଏହି ପରିପ୍ରେକ୍ଷୀରେ ଓଡ଼ିଶାରେ ଜନତା ଦଳର ରାଜନୀତି ଓ ରାଜ୍ୟର ରାଜନୈତିକ ପରିସ୍ଥିତି ଜାଣିବାପାଇଁ ଶ୍ରୀ ଚନ୍ଦ୍ରଶେଖର ବିଶେଷ ବ୍ୟାକୁଳ ହୋଇଥିଲେ । ତେଣୁ ଅଗଷ୍ଟ ମାସ ପନ୍ଦର ତାରିଖରେ ସେ ମୋତେ ଗୋଟିଏ ତାରବାର୍ତ୍ତାରେ ପରାମର୍ଶ ଦେଇଥିଲେ, "Please call meeting of all Janata legislators 18th morning 9.30 a.m. at Bhubaneswar. Central representative will be deputed to meet them and assess the situation." ଏହାର ଉତ୍ତରରେ ମୁଁ ଏକ ତାରବାର୍ତ୍ତାରେ ଶ୍ରୀ ଚନ୍ଦ୍ରଶେଖରଙ୍କୁ ଜଣାଇଥିଲି, "Your telegram. This is not the time to convene meeting of legislators at such a short notice." ସାମ୍ବାଦିକମାନେ ମୋତେ ଶ୍ରୀ ଚନ୍ଦ୍ରଶେଖରଙ୍କର ତାରବାର୍ତ୍ତା ବିଷୟରେ ପଚାରିବାରୁ ମୁଁ କହିଥିଲି ଯେ, ଏତେ ଅଳ୍ପ ସମୟ ମଧ୍ୟରେ ଜନତା ବିଧାନସଭା ଦଳର ସମସ୍ତ ସଭ୍ୟଙ୍କୁ ଖବର ଦେଇ

ବୈଠକ ଡକାଇବା ସମ୍ଭବନୁହେଁ ବୋଲି ମୁଁ ଶ୍ରୀ ଚନ୍ଦ୍ରଶେଖରଙ୍କୁ ଉତ୍ତର ଦେଇଛି । ବିଧାନସଭା ଜନତାଦଳରେ ବୈଠକ ଡାକିବାପାଇଁ ଶ୍ରୀ ଚନ୍ଦ୍ରଶେଖରଙ୍କ ନିର୍ଦ୍ଦେଶକୁ ଅବମାନନା କରି ମୁଁ ଶୃଙ୍ଖଳାଭଙ୍ଗ କରିଛି ବୋଲି ଅଭିଯୋଗ କରି ଜନତା ଦଳର ଦୁଇଜଣ ସଂପାଦକ ସର୍ବଶ୍ରୀ ଭାଗବତ ବେହେରା ଓ କୃଷ୍ଣଚନ୍ଦ୍ର ପାତ୍ର ବିଧାନସଭା ଜନତା ଦଳର ନେତୃତ୍ୱରୁ ମୋତେ ବହିଷ୍କାର କରି ମୋ ସ୍ଥାନରେ ନୂତନ ନେତା ନିର୍ବାଚନ କରିବାପାଇଁ ଚନ୍ଦ୍ରଶେଖରଙ୍କଠାରେ ଦାବି କରିଥିଲେ । ମୋ ଉତ୍ତର ପାଇ ଶ୍ରୀ ଚନ୍ଦ୍ରଶେଖର ଅସନ୍ତୁଷ୍ଟ ହୋଇଥିଲେ । ମୋ ଉପରେ ତାଙ୍କର ସମସ୍ତ ଆସ୍ଥା ପ୍ରାୟ ତୁଟି ଯାଇଥିଲା । ଆଉ ଗୋଟିଏ ତାରବାର୍ତ୍ତାରେ ଅଗଷ୍ଟ ଷୋହଳ ତାରିଖରେ ସେ ମୋତେ ଜଣାଇ ଦେଇଥିଲେ, "Your telegram fifteenth. Emergent meeting essential and unavoidable in situations as prevailing now. Hence meeting will be held at twelve hours on eighteenth. Party M.L.As. being telegraphically informed. Ramkrushna Hegde will represent Centre. Earnestly solicit your co-operation." ଓଡ଼ିଶା ବିଧାନସଭା ଜନତା ଦଳରେ ବୈଠକ ବସିବ ବୋଲି ସେ ନିଜେ କେନ୍ଦ୍ର ଜନତା ଦଳର ସଭାପତି ହିସାବରେ ତାରବାର୍ତ୍ତାଦ୍ୱାରା ସବୁ ସଭ୍ୟମାନଙ୍କୁ ଜଣାଇ ଦେଇଥିଲେ । ଓଡ଼ିଶା ବିଧାନସଭାର ଜନତା ଦଳର ବୈଠକ ଦଳର ସଭାପତି ଶ୍ରୀ ଚନ୍ଦ୍ରଶେଖର ନିଜେ ନୋଟିସ୍ ଦେଇ ଜଣାଇଛନ୍ତି ବୋଲି ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଥିଲା । ଓଡ଼ିଶା ବିଧାନସଭା ଜନତା ଦଳର ସମ୍ବିଧାନ ଅନୁସାରେ ଦଳର ବୈଠକ କେବଳ ଦଳପତିଙ୍କର ନିର୍ଦ୍ଦେଶ ଅନୁସାରେ ଡକାଯାଇପାରିବ ଏବଂ ଦଳର ବୈଠକ ଡାକିବାର କ୍ଷମତା ଶ୍ରୀ ଚନ୍ଦ୍ରଶେଖରଙ୍କର ନଥିଲା ବୋଲି ମୁଁ ଗୋଟିଏ ବିବୃତି ଦେଇଥିଲି ଏବଂ ସେ ବୈଠକରେ ଯୋଗ ନଦେବାପାଇଁ ସମସ୍ତଙ୍କୁ ପରାମର୍ଶ ଦେଇଥିଲି ।

ଏହା ପରେ ମୁଁ ଖବର ପାଇଥିଲି ଯେ ମୋ ମନ୍ତ୍ରିମଣ୍ଡଳର ସଭ୍ୟ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଓ ଶ୍ରୀ ପ୍ରହ୍ଲାଦ ମଲ୍ଲିକ ଉଦ୍ୟମ କରୁଥିଲେ ଯେପରି ଅଗଷ୍ଟ ଅଠର ତାରିଖକୁ ଡକାଯାଇଥିବା ବୈଠକରେ ଅଧିକ ସଭ୍ୟ ଯୋଗଦେଇପାରିବେ । ସେମାନେ ମନ୍ତ୍ରୀ ଥିବାରୁ ସେମାନଙ୍କର ପଦମର୍ଯ୍ୟାଦାକୁ ବ୍ୟବହାର କରି ସାଧାରଣ ସଭ୍ୟମାନଙ୍କୁ ପ୍ରଭାବିତ କରୁଥିଲେ ବୋଲି ଅଭିଯୋଗ ହୋଇଥିଲା । ଦଳର ବହୁ ବିଶିଷ୍ଟ ସଭ୍ୟ ସେ ଦୁଇଜଣ ମନ୍ତ୍ରୀଙ୍କର ଏଭଳି ବହୁ ଅସଙ୍ଗତ ଆଚରଣ ସମ୍ବନ୍ଧରେ ଅଭିଯୋଗ କରିଥିଲେ । ଦଳପତି ଓ ମୁଖ୍ୟମନ୍ତ୍ରୀଙ୍କର ବିଶ୍ୱସ୍ତ ହିସାବରେ ସେମାନେ ମନ୍ତ୍ରୀ ହୋଇ ରହିଥିଲେ । ସେମାନଙ୍କର ସ୍ଥିତି ଓ କାର୍ଯ୍ୟ ପରସ୍ପରବିରୋଧୀ ବୋଲି ମୋତେ ଦର୍ଶାଯାଇଥିଲା । ପୂର୍ବରୁ ଏହି ଦୁଇଜଣ ମନ୍ତ୍ରୀଙ୍କ ସହିତ ସେମାନଙ୍କ ରାଜନୈତିକ ଆଚରଣ ସମ୍ବନ୍ଧରେ କେତେକ ପତ୍ର ବିନିମୟ ହୋଇଥିଲା । ସେମାନଙ୍କୁ ଡକାଇ ଇସ୍ତଫା ଦେବାକୁ କହିବି କିମ୍ବା ସେମାନଙ୍କୁ ମନ୍ତ୍ରିମଣ୍ଡଳରୁ ବହିଷ୍କାର କରିବି, ଏ ଦୁଇଟି ପନ୍ଥ ସମ୍ବନ୍ଧରେ ମୁଁ ବିଚାର କରିଥିଲି । ସେମାନଙ୍କୁ ଡକାଇ ଇସ୍ତଫା ଦେବାପାଇଁ କହିବା ଥିଲା ମୋ ପକ୍ଷରେ ଶିଷ୍ଟାଚାର ଓ ସୌହାର୍ଦ୍ଦ୍ୟସମ୍ମତ ଆଚରଣ । ମାତ୍ର ଉତ୍କଟ ଦଳୀୟ ସଂକୀର୍ଣ୍ଣତା ହେତୁ ମୁଁ ସେ ଉତ୍କୃଷ୍ଟ ପନ୍ଥାକୁ ଛାଡ଼ିଥିଲି । ଆଶଙ୍କା କରାଯାଇଥିଲା ଯେ ମୁଁ ସେମାନଙ୍କୁ ଇସ୍ତଫା ଦେବା କଥା କହିଥିଲେ ସେମାନେ ତତ୍‌କ୍ଷଣାତ୍ ସେ ସମ୍ବାଦଟି ଶ୍ରୀ ଚନ୍ଦ୍ରଶେଖରଙ୍କୁ ଦେଇଥାଆନ୍ତେ ଏବଂ ସେମାନେ ଇସ୍ତଫା ଦେବା ପୂର୍ବରୁ ମୁଁ ଦଳରୁ ବହିଷ୍କୃତ ହେଲି ବୋଲି ଶ୍ରୀ ଚନ୍ଦ୍ରଶେଖର ଘୋଷଣା କରିଥା'ନ୍ତେ । ତେଣୁ ଅଗଷ୍ଟ ମାସ ସତର ତାରିଖ ଦିନ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଓ ଶ୍ରୀ ପ୍ରହ୍ଲାଦ ମଲ୍ଲିକଙ୍କୁ ମନ୍ତ୍ରିମଣ୍ଡଳରୁ ବହିଷ୍କାର କରିବାପାଇଁ ରାଜ୍ୟପାଳଙ୍କୁ ମୁଁ ଲେଖିଥିଲି ଏବଂ ସେମାନେ ବହିଷ୍କୃତ ହେଲେ ବୋଲି ରାଜଭବନରୁ ଘୋଷଣା ପ୍ରକାଶ ପାଇଥିଲା । ଏହି ଘୋଷଣାର ଅଳ୍ପ ସମୟ ପରେ ଶ୍ରୀ ଚନ୍ଦ୍ରଶେଖର ମୋତେ ଦଳରୁ ବହିଷ୍କାର କଲେ ବୋଲି ଘୋଷଣା ପ୍ରକାଶ ପାଇଥିଲା । ଆମର ଶିକ୍ଷାମନ୍ତ୍ରୀ ଶ୍ରୀ ପ୍ରଦୀପ୍ତ କିଶୋର ଦାସ ଜଣେ ଶାନ୍ତଶିଷ୍ଟ ବ୍ୟକ୍ତି ଥିଲେ । ଜନତା ଦଳର ବିଭାଜନକୁ

ସେ ପସନ୍ଦ କରିପାରିନଥିଲେ । ନୈରାଶ୍ୟଜନକ ପରିସ୍ଥିତି ହେତୁ ସେ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେବାକୁ ଇଚ୍ଛା ପ୍ରକାଶକରି ମୋତେ ଚିଠି ଲେଖିଥିଲେ । ତାଙ୍କୁ ମନ୍ତ୍ରୀମଣ୍ଡଳରୁ ବିଦାୟ ଦେବାକୁ ମୁଁ ରାଜି ନଥିଲି; ମାତ୍ର ଉପୁଜିଥିବା ଅପ୍ରୀତିକର ପରିସ୍ଥିତିରେ ସେ ଆଉ ମନ୍ତ୍ରୀ ହୋଇ ରହିବାକୁ ଚାହିଁନଥିଲେ ।

## ରାଜ୍ୟ ଜନତା ଦଳ ବିଭାଜନ

ଜନତା ଦଳର ସଭାପତି ଶ୍ରୀ ଚନ୍ଦ୍ରଶେଖରଙ୍କଦ୍ୱାରା ଆହୂତ ଓଡ଼ିଶା ବିଧାନସଭା ଜନତା ଦଳର ବୈଠକ ଅଗଣତାନ୍ତ୍ରିକ ଓ ଆଇନସମ୍ମତ ନଥିବାରୁ ତା' ବନ୍ଦ କରିବାପାଇଁ ଭୁବନେଶ୍ୱର ସବଜଜ୍‌ଙ୍କ ଅଦାଲତରେ ବିଧାନସଭା ଜନତା ଦଳର ଚାରିଜଣ ସଭ୍ୟ ଆବେଦନ କରିଥିଲେ । ସବଜଜ୍ ପ୍ରାଥମିକ ଶୁଣାଣି ପରେ ବୈଠକ ଅନୁଷ୍ଠିତ ହୋଇପାରିବନାହିଁ ବୋଲି ଶ୍ରୀ ଚନ୍ଦ୍ରଶେଖରଙ୍କ ଉପରେ ନିଷେଧାଜ୍ଞା ଜାରୀ କରିଥିଲେ । କେନ୍ଦ୍ର ଜନତା ଦଳର ପ୍ରତିନିଧି ଶ୍ରୀ ରାମକୃଷ୍ଣ ହେଗଡ଼େ ଅଠର ତାରିଖରେ ଭୁବନେଶ୍ୱର ଆସିଥିଲେ । ଜନତା ଦଳର କାର୍ଯ୍ୟାଳୟରେ ସେମାନଙ୍କ ପକ୍ଷରୁ ବୈଠକ କରିବା ସମ୍ଭବ ହୋଇନଥିଲା । ସବଜଜ୍ କୋର୍ଟର ନିଷେଧାଜ୍ଞା କଥା ଶ୍ରୀ ହେଗଡ଼େ ଓ ଶ୍ରୀ ବିଶ୍ୱନାଥ ପଣ୍ଡିତ ପ୍ରଭୃତିଙ୍କୁ ଜଣାଇ ଦିଆଯାଇଥିଲା । ଶ୍ରୀ ହେଗଡ଼େ ବିଧାନସଭାର ଜଣେ ସଭ୍ୟଙ୍କ ବାସଭବନରେ କବାଟ ବନ୍ଦ କରି ବସି ଗୋଟିଏ ବୈଠକ କରାଇଥିଲେ । ଓଡ଼ିଶା ବିଧାନସଭାର ଜନତା ଦଳର ୧୧୭ ଜଣ ସଭ୍ୟଙ୍କ ମଧ୍ୟରୁ ମାତ୍ର କୋଡ଼ିଏ ଜଣ ସଭ୍ୟ ସେହି ବୈଠକରେ ଉପସ୍ଥିତ ଥିଲେ । ସେହିଠାରେ ଶ୍ରୀ ଚନ୍ଦ୍ରଶେଖରଙ୍କ ନେତୃତ୍ୱପ୍ରତି ଆନୁଗତ୍ୟ ସ୍ୱୀକାରକରି ଗୋଟିଏ ପ୍ରସ୍ତାବ ଗ୍ରହଣ କରାଯାଇଥିଲା ଏବଂ ଶ୍ରୀ ପ୍ରହ୍ଲାଦ ମଲ୍ଲିକ ଏକତ୍ରିତ ହୋଇଥିବା ବିଧାନସଭା ଜନତା ଦଳର ସଭ୍ୟମାନଙ୍କର ଦଳପତି ନିର୍ବାଚିତ ହୋଇଥିଲେ । ସେହିଦିନ ଦଳବିରୋଧୀ କାର୍ଯ୍ୟପାଇଁ ସର୍ବଶ୍ରୀ ବିଶ୍ୱନାଥ ପଣ୍ଡିତ, ପ୍ରହ୍ଲାଦ ମଲ୍ଲିକ, ବିଶ୍ୱଭୂଷଣ ହରିଚନ୍ଦନ, ଅନନ୍ତ ନାରାୟଣ ସିଂହଦେଓ, ଭାଗବତ ବେହେରା ଓ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କୁ ମୁଁ ବିଧାନସଭା ଜନତା ଦଳର ସଭ୍ୟ ପଦରୁ ବହିଷ୍କାର କରିଥିଲି । ଏହିଠାରେ ନିର୍ଦ୍ଦିଷ୍ଟଭାବରେ ଓଡ଼ିଶାର ଜନତା ଦଳ ଦୁଇ ଭାଗରେ ବିଭକ୍ତ ହୋଇଥିଲା । ବିଧାନସଭାରେ ଜନତାଦଳର ୧୧୭ ଜଣ ସଭ୍ୟଙ୍କ ମଧ୍ୟରୁ ବାଇଶ ଜଣ ଅଲଗା ହୋଇଯାଇଥିଲେ । ବାକି ପଞ୍ଚାନବେ ଜଣ ସଭ୍ୟ ମୋ ନେତୃତ୍ୱରେ ରହି ନିଜକୁ ପ୍ରକୃତ ଜନତା ଦଳ ବୋଲି ଘୋଷଣା କରିଥିଲେ । ବିଧାନସଭାରେ ଆମ ଦଳ ପ୍ରକୃତ ଜନତା ଦଳ ବୋଲି ସ୍ୱୀକାର କରିବାକୁ ମୁଁ ବାଚସ୍ପତିଙ୍କୁ ଲେଖିଥିଲି । ଶ୍ରୀ ପ୍ରହ୍ଲାଦ ମଲ୍ଲିକଙ୍କ ନେତୃତ୍ୱରେ ଥିବା ବାଇଶଜଣିଆ ଜନତା ଦଳ ମଧ୍ୟ ନିଜକୁ ପ୍ରକୃତ ଜନତା ଦଳ ବୋଲି ଦାବି କରିଥିଲେ । ବାଚସ୍ପତି ଆମକୁ ଜନତା ଦଳ ଓ ସେମାନଙ୍କୁ ଜନତାଦଳ [O(organisation)] ବୋଲି ଘୋଷଣା କରିଥିଲେ ।

ପଞ୍ଚାନବେ ଜଣ ସଭ୍ୟବିଶିଷ୍ଟ ଜନତା ଦଳ ପକ୍ଷରେ ସରକାର ଚଳାଇବାରେ ବିଶେଷ କିଛି ଅସୁବିଧା ହୋଇ ନଥିଲା । ମାତ୍ର ଯେଉଁ ଉତ୍ସାହ ଓ ଉଦ୍ଦୀପନା ମଧ୍ୟରେ ୧୯୭୭ ମସିହାରେ ରାଜ୍ୟରେ ଜନତା ସରକାର ଗଠନ କରାଯାଇଥିଲା ସେ ଉତ୍ସାହ ଏକାବେଳକେ ଭାଙ୍ଗିପଡ଼ିଥିଲା । ଯେଉଁମାନଙ୍କ ସହିତ କାନ୍ଧକୁ କାନ୍ଧ ମିଳାଇ ଦୁଇ ବର୍ଷରୁ ଊର୍ଦ୍ଧ୍ୱ ସମୟ କାର୍ଯ୍ୟକରି ଆସିଥିଲୁ ସେହିମାନଙ୍କ ଭିତରୁ କେତେଜଣ ଯାଇ ବିରୋଧୀ ଦଳରେ ବସିଥିଲେ । ଏହା ଆମ୍ଭମାନଙ୍କ ଦୋଷରୁ ଘଟିନଥିଲା । କେନ୍ଦ୍ରରେ ଜନତା ଦଳର ତୁଙ୍ଗନେତାଙ୍କ ସ୍ୱାର୍ଥପରତା ଓ ଗୋଷ୍ଠୀବିବାଦ ହେତୁ ସବୁଆଡ଼େ ଜନତା ଦଳ ଭାଗ ଭାଗ ହୋଇ ଭୁଶୁଡ଼ି ପଡ଼ିଥିଲା । ସେପ୍‌ଟେମ୍ବର ମାସ ଦ୍ୱିତୀୟ ସପ୍ତାହରେ ରାଜ୍ୟ ବିଧାନସଭା ବୈଠକ ଆରମ୍ଭ ହୋଇଥିଲା । ସେପ୍‌ଟେମ୍ବର ମାସ ବାର ତାରିଖରେ ମନ୍ତ୍ରିମଣ୍ଡଳ ବିରୁଦ୍ଧରେ ଜନତା (ଠ) ଦଳପତି ଶ୍ରୀ ପ୍ରହ୍ଲାଦ ମଲ୍ଲିକ ଗୋଟିଏ ଅନାସ୍ଥା ପ୍ରସ୍ତାବ ଆଣିଥିଲେ । କଂଗ୍ରେସ(ଇ) ଦଳର ନେତା ଶ୍ରୀ ବୃନ୍ଦାବନ ନାୟକ ମଧ୍ୟ ଆଉ ଗୋଟିଏ ଅନାସ୍ଥା ପ୍ରସ୍ତାବ ଆଗତ କରିଥିଲେ । ମାତ୍ର ଯେଉଁ ପ୍ରହ୍ଲାଦ ମଲ୍ଲିକ ମାତ୍ର

ପଚିଶ ଦିନ ପୂର୍ବରୁ ଜନତା ମନ୍ତ୍ରିମଣ୍ଡଳରେ ଜଣେ ଅତି ପ୍ରଭାବଶାଳୀ ମନ୍ତ୍ରୀ ଥିଲେ ସେ ଯେତେବେଳେ ଅନାସ୍ଥା ପ୍ରସ୍ତାବ ଆଗତ କରି ସରକାରଙ୍କର ଅପାରଗତା ଓ ବ୍ୟର୍ଥତା ସମ୍ବନ୍ଧରେ ଭାଷଣ ଦେଇଥିଲେ ସେତେବେଳେ ଗୃହରେ ଖୁବ୍ ହାସ୍ୟରୋଳ ହୋଇଥିଲା । ଅନାସ୍ଥା ପ୍ରସ୍ତାବ ଉପରେ ଯେଉଁସବୁ ଆଲୋଚନା ହୋଇଥିଲା, ମୁଁ ତା'ର ଉତ୍ତର ଦେବା ପରେ ଭୋଟ ହୋଇ ତାହା ନାଟଖାଇଯାଇଥିଲା ।

## ମନ୍ତ୍ରିମଣ୍ଡଳର ସଂପ୍ରସାରଣ

ଆମ ରାଜ୍ୟରେ ୧୯୭୭ ମସିହାରେ ଜନତା ମନ୍ତ୍ରିମଣ୍ଡଳ ଗଠିତ ହେବା ପରେ ତା'ର ସଂପ୍ରସାରଣ ପାଇଁ ଉଦ୍ୟମ ହୋଇଥିଲା । ମାତ୍ର ପ୍ରଧାନମନ୍ତ୍ରୀ ମୋରାରଜୀ ଭାଇ ମନ୍ତ୍ରିପରିଷଦରେ ବିଧାନସଭାର ସମୁଦାୟ ସଭ୍ୟ ସଂଖ୍ୟାର ଏକ-ଦଶମାଂସରୁ ଅଧିକ ନେବାକୁ ଆଦୌ ସମ୍ମତି ଦେଉନଥିଲେ । ତେଣୁ ଆମ ରାଜ୍ୟର ମନ୍ତ୍ରିପରିଷଦର ସଭ୍ୟ ସଂଖ୍ୟା ପନ୍ଦର ରଖାଯାଇଥିଲା । ଜନତା ଦଳର ବିଭାଜନ ପରେ ସେ ନୀତିକୁ କୋହଳ କରିବାର କିଛି ଅସୁବିଧା ନଥିଲା । ୧୯୭୯ ମସିହା ସେପ୍‌ଟେମ୍ବର ମାସ ବିଧାନସଭା ଅଧିବେଶନ ପରେ ମନ୍ତ୍ରିମଣ୍ଡଳ ସଂପ୍ରସାରଣପାଇଁ ମୋ ଉପରେ ତୁମୂଳ ଚାପ ପଡ଼ିଥିଲା । ମନ୍ତ୍ରିମଣ୍ଡଳର ସଂଖ୍ୟା ବଢ଼ାଇଦେବା ବିଷୟରେ ବିଜୁବାବୁ ମଧ୍ୟ ଅନୁକୂଳ ମତ ଦେଇଥିଲେ । ଡିସେମ୍ବର ମାସ ଶେଷବେଳକୁ ଲୋକସଭା ନିର୍ବାଚନ ହେବାର ଘୋଷଣା କରାଯାଇଥିଲା । ଲୋକସଭା ନିର୍ବାଚନ ପରେ ମନ୍ତ୍ରିମଣ୍ଡଳକୁ ସଂପ୍ରସାରଣ କଲେ ଭଲ ହେବ ବୋଲି ଗୋଟିଏ ମତ ପ୍ରକାଶ ପାଇଥିଲା । ତାହାହିଁ କରିବାପାଇଁ ମୁଁ ଇଚ୍ଛା ପ୍ରକାଶ କରିଥିଲି । କିନ୍ତୁ ସେ କଥାଟି ମନ୍ତ୍ରୀ ହେବାପାଇଁ ଆଶାୟୀ ବ୍ୟକ୍ତିମାନଙ୍କୁ ସନ୍ତୋଷ ଦେଇନଥିଲା । ଏହି ସମୟରେ ବିରୋଧୀ ଦଳର ନେତାଥିବା କଂଗ୍ରେସ (ଇ) ସଭ୍ୟ ଶ୍ରୀ ବୃନ୍ଦାବନ ନାୟକ କଂଗ୍ରେସରୁ ଇସ୍ତଫା ଦେଇ ଆମ ଦଳରେ ଯୋଗଦେଇଥିଲେ । ମନ୍ତ୍ରୀ ହେବାପାଇଁ ତାଙ୍କର ଥିଲା ପ୍ରବଳ ଇଚ୍ଛା । ସେ ତୁରନ୍ତ ମନ୍ତ୍ରୀ ହେଲେ ଗଞ୍ଜାମ ଜିଲ୍ଲାରେ ଲୋକସଭା ନିର୍ବାଚନରେ ଆମର ପ୍ରାର୍ଥୀମାନଙ୍କୁ ଭଲଭାବରେ ସାହାଯ୍ୟ କରିପାରିବେ ବୋଲି କହିଥିଲେ । ତାଙ୍କ କଥାରେ ବିଜୁ ବାବୁ ମଧ୍ୟ ଖୁବ୍ ଉତ୍ସାହିତ ହୋଇଥିଲେ । ଜନତା ଦଳ ବିଭାଜନ ପୂର୍ବରୁ କେନ୍ଦ୍ରାପଡ଼ା ଲୋକସଭା ନିର୍ବାଚନମଣ୍ଡଳୀରୁ ଦୁଇଜଣ ମନ୍ତ୍ରୀ ରାଜ୍ୟ ମନ୍ତ୍ରିମଣ୍ଡଳରେ ଥିଲେ । ବିଭାଜନ ପରେ ଆଉ ସେ ଅଞ୍ଚଳରୁ କେହି ମନ୍ତ୍ରୀ ନଥିଲେ । ମନ୍ତ୍ରୀ ହିସାବରେ ଶ୍ରୀ ପ୍ରହ୍ଲାଦ ମଲ୍ଲିକ ବିଶେଷ ଭାବରେ ସମଗ୍ର କେନ୍ଦ୍ରାପଡ଼ା ଅଞ୍ଚଳର ପ୍ରତିନିଧିତ୍ୱ କରୁଥିଲେ । ସେ ଆମ ସାଙ୍ଗରୁ ଚାଲିଯିବା ପରେ ସେ ଅଞ୍ଚଳରେ କେତେକ ଅସୁବିଧା ଅନୁଭୂତ ହୋଇଥିଲା । କେନ୍ଦ୍ରାପଡ଼ା ଥିଲା ଶ୍ରୀ ବିଜୁ ପଟ୍ଟନାୟକଙ୍କର ଲୋକସଭା ନିର୍ବାଚନମଣ୍ଡଳୀ । ସେ ମଧ୍ୟ ଚାହୁଁଥିଲେ ଯେ ସେ ଅଞ୍ଚଳରୁ କେହି ମନ୍ତ୍ରୀ ହେଲେ ଲୋକସଭା ନିର୍ବାଚନରେ ତାଙ୍କର ସୁବିଧା ହେବ । ଏଭଳି ଅବସ୍ଥାଚକ୍ରରେ ମୁଁ ମନ୍ତ୍ରିମଣ୍ଡଳ ସଂପ୍ରସାରଣ କରିବାର ନିଷ୍ପତ୍ତି ନେଇଥିଲି ।

ମୋର ମନ୍ତ୍ରିମଣ୍ଡଳ ୧୯୭୯ ମସିହା ଅକ୍ଟୋବର ମାସ ପଚିଶ ତାରିଖରେ ସଂପ୍ରସାରିତ ହୋଇଥିଲା । ପୂର୍ବରୁ ଦୁଇଜଣ ରାଷ୍ଟ୍ରମନ୍ତ୍ରୀ ଥିବା ଶ୍ରୀ ଅଦ୍ୱୈତ ପ୍ରସାଦ ସିଂହ ଓ ଶ୍ରୀ ଘାସିରାମ ମାଝି କ୍ୟାବିନେଟ୍ ମନ୍ତ୍ରୀଭାବରେ ଶପଥ ନେଇଥିଲେ । ରାଜ୍ୟପାଳ ଶ୍ରୀ ଭଗବନ୍ତ ଦୟାଲ ଶର୍ମା ପଦୋନ୍ନତି ହୋଇଥିବା ଦୁଇଜଣ ମନ୍ତ୍ରୀଙ୍କ ସହ ନବନିଯୁକ୍ତ ମନ୍ତ୍ରୀ ଓ ରାଷ୍ଟ୍ରମନ୍ତ୍ରୀମାନଙ୍କୁ ଶପଥପାଠ କରାଇଥିଲେ । ନୂଆ ମନ୍ତ୍ରୀ ଥିଲେ ସର୍ବଶ୍ରୀ୍ ବୃନ୍ଦାବନ ନାୟକ, ଶରତ କୁମାର ଦେବ, ବେଦପ୍ରକାଶ ଅଗ୍ରୱାଲା ଓ ଜଗନ୍ନାଥ ମଲ୍ଲିକ । ରାଷ୍ଟ୍ରମନ୍ତ୍ରୀ ଭାବରେ ଶପଥ ନେଇଥିଲେ ସର୍ବଶ୍ରୀ ଶ୍ରୀକାନ୍ତ ଜେନା, ଦାମୋଦର ରାଉତ, କାଳିନ୍ଦୀ ବେହେରା, ମୁରଲୀଧର ଗୁରୁ, ମହେଶ୍ୱର ବାଗ, ରବିସିଂ ମାଝି, ପ୍ରେମଚାନ୍ଦ ଭଗତ, ସଂପ୍ରସାରିତ ମନ୍ତ୍ରିମଣ୍ଡଳର ସଭ୍ୟ ସଂଖ୍ୟା ପଚିଶ ଜଣ ହୋଇଥିଲା । ନିର୍ବାଚନ ପୂର୍ବରୁ ମନ୍ତ୍ରିମଣ୍ଡଳ ସଂପ୍ରସାରଣ ଗୋଟିଏ ସମାଲୋଚନାର ବିଷୟ ହୋଇପଡ଼ିଥିଲା । ରାଜ୍ୟ ଜନତା ଦଳର ବିଭାଜନ ପରେ ମନ୍ତ୍ରିମଣ୍ଡଳରୁ ତିନି ଜଣ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀ ବିଦାୟ ନେଇଥିବାରୁ କାର୍ଯ୍ୟ ନିର୍ବାହ କରିବା

ଦୃଷ୍ଟିରୁ ମନ୍ତ୍ରିମଣ୍ଡଳର ସଂପ୍ରସାରଣ ଅବଶ୍ୟମ୍ଭାବୀ ହୋଇଥିଲା ବୋଲି କେତେକ ସମାଲୋଚକ ମଧ୍ୟ ସ୍ୱୀକାର କରିଥିଲେ । ମନ୍ତ୍ରିପରିଷଦର ସଭ୍ୟ ସଂଖ୍ୟା ପଚିଶ ଯାଏ ବଢ଼ିଥିବାରୁ ସେ ବିଷୟଟି ମଧ୍ୟ ତୀକ୍ଷ୍ଣ ସମାଲୋଚନାର ବିଷୟବସ୍ତୁ ହୋଇଥିଲା । ପୂର୍ବରୁ ଆମ ରାଜ୍ୟର ମନ୍ତ୍ରିମଣ୍ଡଳର ସଭ୍ୟ ସଂଖ୍ୟା ଛବିଶ ପର୍ଯ୍ୟନ୍ତ ଥିବାର ଦୃଷ୍ଟାନ୍ତ ଥିଲା । ସେହି ନଜିର ଛଡ଼ା ଆଉ କିଛି ଯଥାର୍ଥ ଯୁକ୍ତି ମୋ ପାଖରେ ନଥିଲା । କାର୍ଯ୍ୟ କରିବାପାଇଁ ଆଗ୍ରହୀ ଥିବା ବହୁ ଉତ୍ସାହୀ ଯୁବକଙ୍କୁ ମନ୍ତ୍ରିମଣ୍ଡଳରେ ସମବେତ କରାଇପାରିଥିବାରୁ ମୁଁ ସାନ୍ତ୍ୱନା ପାଇଥିଲି । ସେମାନେ ଅତି ଉତ୍ସାହର ସହିତ ନିଜନିଜର ଦାୟିତ୍ୱ ତୁଲାଇବା ଦିଗରେ କାର୍ଯ୍ୟ ଆରମ୍ଭ କରିଦେଇଥିଲେ; ମାତ୍ର ସେମାନଙ୍କର ଉପଯୋଗିତା ପ୍ରତିପାଦନ କରିବାକୁ ସେମାନେ ସମୟ ପାଇନଥିଲେ । ସେମାନେ ମନ୍ତ୍ରିମଣ୍ଡଳରେ ଯୋଗଦେବାର ଚତୁର୍ଥ ମାସରେ ମନ୍ତ୍ରିମଣ୍ଡଳକୁ କେନ୍ଦ୍ର ସରକାରଙ୍କର ନିଷ୍ପତ୍ତିମତେ ବରଖାସ୍ତକରାଗଲା ଓ ରାଜ୍ୟ ବିଧାନସଭାକୁ ଭାଙ୍ଗିଦିଆଯାଇଥିଲା ।

## ଲୋକସଭା ନିର୍ବାଚନ

୧୯୮୦ ମସିହା ଜାନୁୟାରୀ ମାସ ପ୍ରଥମ ସପ୍ତାହରେ ଲୋକସଭା ନିର୍ବାଚନ ହେବା ଘୋଷଣା ପ୍ରକାଶପାଇଥାଏ । ନିର୍ବାଚନପାଇଁ ସବୁ ରାଜନୈତିକ ଦଳ ତତ୍ପର ହୋଇପଡ଼ିଥିଲେ । ଏହା ମଧ୍ୟରେ ଜନତା ଦଳର ବିଭାଜନ ପରେ ଭାରତୀୟ ଲୋକଦଳର ପୁନରୁଦ୍ଧାର ହୋଇସାରିଥିଲା । ଲୋକଦଳ ନିର୍ବାଚନ କମିଶନଙ୍କ ସ୍ୱୀକୃତି ପାଇନଥିବାରୁ ଜନତା (ଏସ୍) ନାମରେ ଲୋକଦଳକୁ ନିର୍ବାଚନ ଲଢ଼ିବାକୁ ପଡ଼ିଥିଲା । ଓଡ଼ିଶାରେ ଲୋକଦଳ, ଜନତା ଦଳ, କଂଗ୍ରେସ-ୟୁ (ଅର୍ସ), କମ୍ୟୁନିଷ୍ଟ ଓ ମାର୍କସପନ୍ଥୀ କମ୍ୟୁନିଷ୍ଟ ରାଜନୈତିକ ଦଳ ମଧ୍ୟରେ ଗୋଟିଏ ନିର୍ବାଚନ ବୁଝାମଣା କରାଯିବାପାଇଁ ପ୍ରଥମେ ବହୁ ଉଦ୍ୟମ ହୋଇଥିଲା; ମାତ୍ର ଶେଷରେ ତାହା ସମ୍ଭବ ହୋଇନଥିଲା । ଲୋକସଭାପାଇଁ ରାଜ୍ୟରେ ଥିବା ଏକୋଇଶଟି ଆସନପାଇଁ ଲୋକଦଳ ପନ୍ଦରଟି ସ୍ଥାନରେ ପ୍ରାର୍ଥୀ ଦେବ ବୋଲି ଶ୍ରୀ ବିଜୁ ପଟ୍ଟନାୟକ ଘୋଷଣା କରିଦେଇଥିଲେ । ଅନ୍ୟ ଛ'ଗୋଟି ସ୍ଥାନରେ ବିଭିନ୍ନ ଦଳମାନଙ୍କ ସହିତ ସାମାନ୍ୟ ବୁଝାମଣା ହୋଇଥିଲା । ସେ ସ୍ଥାନମାନଙ୍କରେ ଲୋକଦଳ ପ୍ରାର୍ଥୀ ଦେଇନଥିଲା । ଏହି ଲୋକସଭା ନିର୍ବାଚନରେ ଲୋକଦଳ ପ୍ରାର୍ଥୀମାନଙ୍କପାଇଁ ପ୍ରଚାର ଉଦ୍ଦେଶ୍ୟରେ ଡିସେମ୍ବର ମାସ ୩୦ ତାରିଖ ଦିନ ତତ୍କାଳୀନ ପ୍ରଧାନମନ୍ତ୍ରୀ ଚୌଧୁରୀ ଚରଣ ସିଂହ ମାତ୍ର ଦିନକପାଇଁ ଓଡ଼ିଶା ଆସିଥିଲେ । ତାଙ୍କ ପାଇଁ ବଲାଙ୍ଗୀର, ଝାରସୁଗୁଡ଼ା, ରାଉରକେଲା, ବାରିପଦା, ବାଲେଶ୍ୱର ଓ ପାଣିକୋଇଲି ପ୍ରଭୃତି ଛଅଟି ସ୍ଥାନରେ ସାଧାରଣସଭା ଆୟୋଜନ କରାଯାଇଥିଲା । ହେଲିକପ୍ଟର ସାହାଯ୍ୟରେ ସେ ସେସବୁ ସ୍ଥାନକୁ ଯାଇ ସଭାମାନଙ୍କରେ ଯୋଗଦେଇ ଭାଷଣ ଦେଇଥିଲେ । ବିପୁଳ ଜନସମାବେଶ ପ୍ରତ୍ୟେକ ସଭାରେ ହୋଇଥିବାର ଦେଖାଯାଇଥିଲା । ମୁଁ ମଧ୍ୟ ତାଙ୍କ ସହିତ ସେହି ସଭାମାନଙ୍କରେ ଯୋଗ ଦେଇଥିଲି । ଏହି ଲୋକସଭା ନିର୍ବାଚନରେ ସମଗ୍ର ଭାରତବର୍ଷରେ ଭୋଟଦାତାମାନେ ପୂର୍ବତନ ଜନତା ଦଳର ନେତାମାନଙ୍କୁ ଉପଯୁକ୍ତ ଶିକ୍ଷା ଦେଇଥିଲେ । ଯେଉଁ ନେତାମାନେ ଦଳ ଭିତରେ ନିଜର ସ୍ୱାର୍ଥ ହାସଲ କରିବା ଦିଗରେ ବ୍ୟର୍ଥ ହୋଇ ନିଜ ନିଜ ଭିତରେ ବିଦ୍ୱେଷ ଓ ଗୋଷ୍ଠୀଗତ ସଂକୀର୍ଣ୍ଣତା ହେତୁ ଜନତା ଦଳର ବିଭାଜନ କରାଇଥିଲେ, ସେମାନଙ୍କ ଉପରେ ଜନସାଧାରଣ କିପରି ଭୟଙ୍କର ଭାବରେ କ୍ରୋଧ ପ୍ରକାଶ କରିଥିଲେ ତାହା ସେହି ଲୋକସଭା ନିର୍ବାଚନର ଫଳାଫଳରୁ ଜଣାପଡ଼େ । ନିଜର ବ୍ୟକ୍ତିଗତ ଶକ୍ତି ସମ୍ବନ୍ଧରେ ସେହି ତୁଙ୍ଗନେତାମାନଙ୍କର ଯେଉଁ ଅହଙ୍କାର ଓ ଅତିରଞ୍ଜିତ ଧାରଣା ଥିଲା ତାହାକୁ ଜନସାଧାରଣ ଅତି ନଗ୍ନ ଭାବରେ ପଦାରେ ପକାଇ ଦେଇଥିଲେ । ଲୋକସଭା ନିର୍ବାଚନରେ ଜନତା ଓ ଲୋକଦଳ ପ୍ରଭୃତି ଦଳମାନଙ୍କର ସବୁ ରାଜ୍ୟରେ ଚରମ ବିପର୍ଯ୍ୟୟ ହୋଇଥିଲା । ଓଡ଼ିଶାରେ ଏକମାତ୍ର କେନ୍ଦ୍ରାପଡ଼ା ଲୋକସଭା ନିର୍ବାଚନମଣ୍ଡଳୀର ଲୋକସଭା ପ୍ରାର୍ଥୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ

ଛଡ଼ା ଆଉ ସବୁଆଡ଼େ କଂଗ୍ରେସ (ଇ) ପ୍ରାର୍ଥୀମାନେ ଜୟଯୁକ୍ତ ହୋଇଥିଲେ । କିରାସିନି ତେଲର ଅଭାବ ଓ ଜିନିଷପତ୍ରର ଦରବୃଦ୍ଧି ବିପର୍ଯ୍ୟୟର କାରଣ ବୋଲି କେତେକ କହିବାକୁ ଲାଗିଥିଲେ; ମାତ୍ର ମୁଁ ସେଥିରେ ଏକମତ ହୋଇନଥିଲି । ଦରଦାମ୍ ବୃଦ୍ଧି କିଛି ପରିମାଣରେ ଲୋକମାନଙ୍କ ମନରେ ଅସନ୍ତୋଷର କାରଣ ହୋଇପାରିଥାଏ; ମାତ୍ର ତାହା ଆମ୍ଭମାନଙ୍କର ଦାରୁଣ ବିପର୍ଯ୍ୟୟର ମୁଖ୍ୟ କାରଣ ନଥିଲା । ଜନସାଧାରଣ ଜନତା ଦଳ ଭଳି ଗୋଟିଏ ବିକଳ୍ପ ଦଳ ଗଠନରେ ଆନନ୍ଦ ପ୍ରକାଶ କରି ଥରେ ସେହି ଦଳ ଉପରେ ପାଞ୍ଚ ବର୍ଷପାଇଁ ଶାସନ ଦାୟିତ୍ୱ ନ୍ୟସ୍ତ କରିଥିଲେ । ତିନି ବର୍ଷ ମାତ୍ର ନ ପୂରୁଣୁ କ୍ଷମତାଲିପ୍ସାଜନିତ ଅନ୍ତର୍ଦ୍ୱନ୍ଦ୍ୱ ହେତୁ ଜନତା ଦଳ ନେତାମାନେ ଯେପରି ଭାବରେ ନିଜ ଦଳ ଓ ସରକାରଙ୍କୁ ବିପର୍ଯ୍ୟସ୍ତ କଲେ, ଲୋକେ ତାହା ବରଦାସ୍ତ କରିପାରିଲେନାହିଁ । ତେଣୁ ନିର୍ବାଚନରେ ସେମାନଙ୍କର ପତନ ଘଟାଇ ଦେଶବାସୀ ସମୁଚିତ ଶିକ୍ଷା ଦେଲେ ।

## ଶ୍ରୀମତୀ ଗାନ୍ଧୀଙ୍କ ବିପୁଳ ବିଜୟ ଓ ବିଜୁବାବୁଙ୍କ ବିପରୀତ ବିଚାର

ଲୋକସଭା ନିର୍ବାଚନରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ବିପୁଳ ବିଜୟ ହୋଇଥିବାରୁ ମୁଁ ଗୋଟିଏ ତାରବାର୍ତ୍ତାରେ ତାଙ୍କୁ ଅଭିନନ୍ଦନ ଜଣାଇଥିଲି ଏବଂ ତାଙ୍କ ନେତୃତ୍ୱରେ ଗଠିତ ହେବାକୁ ଯାଉଥିବା କେନ୍ଦ୍ର ସରକାରଙ୍କ ସହିତ ସୁସଂପର୍କ ରଖି କେନ୍ଦ୍ର ସରକାରଙ୍କର କାର୍ଯ୍ୟରେ ସହଯୋଗ କରାଯିବ ବୋଲି ମୁଁ ରାଜ୍ୟର ମୁଖ୍ୟମନ୍ତ୍ରୀ ହିସାବରେ ଭାବୀ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କୁ ଜଣାଇଥିଲି । ଏହା ନକରିବା ସୌଜନ୍ୟରହିତ ହୋଇଥା'ନ୍ତା । ମୋର ଏ ପ୍ରକାର ତାରବାର୍ତ୍ତା ଓ ଅଭିନନ୍ଦନକୁ ବିଜୁବାବୁ ପ୍ରଭୃତି ମୋର ବନ୍ଧୁମାନେ ସମାଲୋଚନା କରିଥିଲେ । ମାତ୍ର ପରେ ପରେ ଯେପରି ଭାବରେ ଶ୍ରୀ ଚରଣ ସିଂହ ଓ ଶ୍ରୀ ଜଗଜ୍ଜୀବନ ରାମ ଶ୍ରୀମତୀ ଗାନ୍ଧୀଙ୍କୁ ଅଭିନନ୍ଦନ ଜଣାଇଲେ, ତାହା ଜାଣି ସେମାନେ ସମାଲୋଚନାରୁ କ୍ଷାନ୍ତହୋଇଥିଲେ ।

ଲୋକସଭା ନିର୍ବାଚନରେ ଆମ ଦଳର ଚରମ ବିପର୍ଯ୍ୟୟ ହୋଇଥିବାରୁ ଆମ ରାଜ୍ୟରେ ଆମ୍ଭମାନଙ୍କର ଦମ୍ଭ ଏକାବେଳକେ ଭାଙ୍ଗିଯାଇଥିଲା; ଅଥଚ ଏହି ଅବସ୍ଥାରେ ଆମ ବିଧାନସଭା ଦଳର ନେତୃତ୍ୱ ପରିବର୍ତ୍ତନପାଇଁ ଆକସ୍ମିକଭାବରେ ଗୋଟିଏ ପ୍ରସ୍ତାବ ଉଠିଥିଲା । ଦିନେ ବିଜୁବାବୁ ଦିଲ୍ଲୀରୁ ଆସି ଭୁବନେଶ୍ୱରରେ ପହଞ୍ଚି ସ୍ଥିରକରିଥିଲେ ଯେ ସେହିଦିନ ମୁଁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫାଦେବି ଏବଂ ସେ ମୁଖ୍ୟମନ୍ତ୍ରୀ ଭାବରେ ଶପଥ ନେବେ । ଆମ ଦଳର କେତେକ ବ୍ୟକ୍ତି ମଧ୍ୟ ତାଙ୍କୁ ଏ ବିଷୟରେ ବିଶେଷ ଉତ୍ସାହିତ କରିଥିଲେ । କିନ୍ତୁ ମୋ ସହିତ ବିଜୁବାବୁ ଏ ବିଷୟରେ କିଛି ଆଲୋଚନା ନକରି, ରାଜ୍ୟପାଳଙ୍କୁ ଦେଖାକରି ସବୁ କଥା କହି ତାଙ୍କର ପ୍ରସ୍ତାବ ଦେଇଆସିଥିଲେ । ବିଜୁବାବୁ ରାଜ୍ୟପାଳଙ୍କ ଉପରେ ଦାୟିତ୍ୱ ଦେଇଆସିଥିଲେ ଯେ ସେ ମୋତେ ଏ ବିଷୟଟି କହି ପ୍ରସ୍ତାବଟିକୁ କାର୍ଯ୍ୟକାରୀ କରାଇନେବାରେ ସାହାଯ୍ୟ କରିବେ । ଶ୍ରୀ ଶର୍ମା ବଡ଼ ଅସୁବିଧାରେପଡ଼ିଥିଲେ; କାରଣ ଜଣେ ରାଜ୍ୟପାଳ ହିସାବରେ ଏ ପ୍ରକାର ଅସଙ୍ଗତ କାର୍ଯ୍ୟରେ ଜଡ଼ିତ ହେବା ଥିଲା ଗୋଟିଏ ଅସମୀଚୀନ କାର୍ଯ୍ୟ । ଦଳର ଯେଉଁ ସଭ୍ୟମାନେ ଏ କଥା ଶୁଣିଲେ ସେମାନଙ୍କ ଭିତରୁ ଅଧିକାଂଶ ସଭ୍ୟ ଏ ପ୍ରକାର ପ୍ରସ୍ତାବକୁ ବିରୋଧ କରୁଥିଲେ । ସେହିଦିନ ସନ୍ଧ୍ୟାବେଳେ ମୁଁ ପାର୍ଟି ଅଫିସ୍‌ରେ ବସିଛି, ରାଜ୍ୟପାଳ ଫୋନ୍‌କରି ମୋତେ ଖୋଜିଥିଲେ ଏବଂ ମୋ ସହିତ କଥା ହେବାକ୍ଷଣି ସେ ମୋତେ ରାଜଭବନକୁ ଯିବାପାଇଁ ଅନୁରୋଧ କରିଥିଲେ । ସେତିକିବେଳେ ରାଜ୍ୟପାଳ ମୋତେ ଡାକିବା ସମ୍ବନ୍ଧରେ ବିଜୁବାବୁ ମୋତେ ଟିକିଏ ସୂଚନା ଦେଇଥିଲେ । ଶ୍ରୀମତୀ ଗାନ୍ଧୀ ପ୍ରଧାନମନ୍ତ୍ରୀ ଭାବରେ ଶପଥ ନେବା ପୂର୍ବରୁ ଏଠାରେ ନେତୃତ୍ୱ ପରିବର୍ତ୍ତନ କରାଇନେବା ଥିଲା ବିଜୁବାବୁଙ୍କର ଉଦ୍ଦେଶ୍ୟ । ମୁଁ ରାଜଭବନକୁ ତତ୍‌କ୍ଷଣାତ୍ ଯାଇ ରାଜ୍ୟପାଳଙ୍କୁ ଦେଖାକରିଥିଲି । ରାଜ୍ୟପାଳ ଅତ୍ୟନ୍ତ ଉଦ୍‌ବେଗ ଓ ବିସ୍ମୟର ସହିତ ବିଜୁବାବୁଙ୍କ ପ୍ରସ୍ତାବ ବିଷୟ ମୋତେ କହିଥିଲେ ଏବଂ ଇସ୍ତଫା ଦେଇ ସରକାରରେ ଏକ ଅନିଶ୍ଚିତ ଅବସ୍ଥା ସୃଷ୍ଟି ନକରିବାପାଇଁ ମୋତେ ଦୃଢ଼

ପରାମର୍ଶ ଦେଇଥିଲେ । ବିଜୁବାବୁଙ୍କ ପ୍ରସ୍ତାବକୁ ରାଜ୍ୟପାଳ ପିଲାଳିଆ ପ୍ରସ୍ତାବ ବୋଲି କହିଥିଲେ ଏବଂ ସେତେବେଳକାର ପରିସ୍ଥିତି ଦୃଷ୍ଟିରୁ ସେ ନିଶ୍ଚୟ କେନ୍ଦ୍ର କର୍ତ୍ତୃପକ୍ଷଙ୍କ ପରାମର୍ଶ ଲୋଡ଼ିବେ ବୋଲି ମୋତେ କହିଥିଲେ । ତା' ଛଡ଼ା ଜଣେ ମୁଖ୍ୟମନ୍ତ୍ରୀ ଇସ୍ତଫା ଦେଲେ ଦଳର ନେତା ନିର୍ବାଚନପାଇଁ ଯେଉଁସବୁ କର୍ମପଦ୍ଧତି ଅନୁସୃତ ହେବାର କଥା ତା ନିଶ୍ଚୟ ଅନୁସରଣ କରିବାକୁ ପଡ଼ିବ ବୋଲି ସେ କହିଥିଲେ । ତେଣୁ ତରବରିଆ ଭାବରେ ନେତୃତ୍ୱ ପରିବର୍ତ୍ତନ ଓ ଶପଥ ଗ୍ରହଣ କରାଇନେବା ସମ୍ଭବ ହେବନାହିଁ ବୋଲି ଆମ୍ଭମାନଙ୍କ ଭିତରେ ଆଲୋଚନା ହୋଇଥିଲା । ଏହା ଜାଣି ବିଜୁବାବୁଙ୍କର ଯେଉଁ ପ୍ରଚଣ୍ଡ ପ୍ରତିକ୍ରିୟା ହେବ ତାହା ଆମର ଚିନ୍ତାର ବିଷୟ ହୋଇଥିଲା ।

ଏହି ଅବସରରେ ରାଜ୍ୟପାଳ ଓ ମୋ ଭିତରେ ବିଜୁ ପଟ୍ଟନାୟକଙ୍କ କାର୍ଯ୍ୟକଳାପ ଓ ବ୍ୟବହାର ସମ୍ବନ୍ଧରେ ଅନେକ କଥା ଆଲୋଚିତ ହୋଇଥିଲା । ରାଜ୍ୟପାଳ ଶ୍ରୀ ଶର୍ମାଙ୍କ ମତରେ ବିଜୁବାବୁ କ୍ଷମତାସୀନ ହେବା ପୂର୍ବରୁ ନେହେରୁଙ୍କୁ ଆକୃଷ୍ଟ କରିପାରିଥିଲେ । ମାତ୍ର ମୁଖ୍ୟମନ୍ତ୍ରୀ ହୋଇ ତାଙ୍କ ଗତିବିଧି ହେତୁ ତାଙ୍କ ପ୍ରତି ନେହେରୁଙ୍କ ମୋହ ଭାଙ୍ଗିବାକୁଲାଗିଥିଲା । ତେଣୁ ନିଜକୁ 'କାମରାଜ ଯୋଜନା'ର ସ୍ରଷ୍ଟା ବୋଲି କହି ସେଥିରେ ଅନୁପ୍ରାଣିତ ହେଲାଭଳି ଆଚରଣ ଦେଖାଇ ବିଜୁବାବୁ ଯେତେବେଳେ ଗାଦି ଛାଡ଼ିବାକୁ ଚାହିଁଲେ, ସେଥିରେ ତାଙ୍କୁ ନିବର୍ତ୍ତାଇବା ପରିବର୍ତ୍ତେ ବରଂ ଉତ୍ସାହିତ କରାଯାଇଥିଲା । ଏକଥା ନିଶ୍ଚିତ ଯେ ନେହେରୁ ବଞ୍ଚିଥିବା ପର୍ଯ୍ୟନ୍ତ ବିଜୁବାବୁ ଟିକେ ଆୟତରେ ଥିଲେ । ନେହେରୁଙ୍କ ମୃତ୍ୟୁ ପରେ ଜଣାଗଲା ଯେ ସେ କ୍ଷମତା ଛାଡ଼ିଥିବାରୁ ପ୍ରବଳ ଭାବରେ ପସ୍ତାଉଥିଲେ ଏବଂ ପୁଣି କ୍ଷମତାସୀନ ହେବାପାଇଁ ନାନା କାଣ୍ଡ ଓ ଅସ୍ଥିରତା ଭିଆଇଥିଲେ । ଏପରିକି ନେହେରୁଙ୍କ ମୃତ୍ୟୁର ମାତ୍ର କେତେମାସ ପୂର୍ବରୁ ବିଜୁବାବୁ ପାର୍ଲିଆମେଣ୍ଟକୁ ଯାଇ ସେଠାରେ ଅସ୍ଥିରତା ସୃଷ୍ଟିକରି କ୍ଷମତାର ଛକାପଂଝା ଭିତରେ ଆସ୍ଥାନ ଜମାଇ ରହିବାକୁ ଅଭିଳାଷୀ ହୋଇପଡ଼ିଥିଲେ । କେବଳ ସେଇଥିପାଇଁ ଗଞ୍ଜାମ ଜିଲ୍ଲାରେ ଗୋଟିଏ ଲୋକସଭା ଆସନ ଖାଲିକରାଇ ବିଧାନସଭାରୁ ନିଜେ ଇସ୍ତଫା ଦେଇ ପାର୍ଲିଆମେଣ୍ଟକୁ ଯିବାକୁ ସେ କିପରି ବ୍ୟାକୁଳ ହୋଇପଡ଼ିଥିଲେ ତାହା ଆମ ଭିତରେ ଆଲୋଚିତ ହୋଇଥିଲା । ନେହେରୁ କୁଆଡ଼େ ଏ ପ୍ରକାର ପ୍ରସ୍ତାବରେ ମୌନ ସମ୍ମତି ଲକ୍ଷଣ ଦେଖାଇଥିଲେ ବୋଲି ବିଜୁବାବୁ ଆମମାନଙ୍କ ପାଖରେ ପ୍ରକାଶ କରିଥିଲେ । ନିଷ୍ପତ୍ତିପାଇଁ ବିଷୟଟି ପାର୍ଲିଆମେଣ୍ଟାରୀ ବୋର୍ଡରେ ପଡ଼ିଥିଲା । ଶ୍ରୀମତୀ ଗାନ୍ଧୀ କୁଆଡ଼େ ପ୍ରସ୍ତାବଟିକୁ ବିରୋଧ କରି ବିଜୁ ବାବୁଙ୍କ ଉଦ୍ଦେଶ୍ୟକୁ ବ୍ୟର୍ଥକରିଦେଇଥିଲେ । ମୋ ଜାଣିବାରେ ବିଜୁବାବୁ ଏଥିପାଇଁ ବିଶେଷ କ୍ଷୁବ୍‌ଧ ହୋଇଥିଲେ ଏବଂ ନେହେରୁ-ପରିବାର ପ୍ରତି ସେ ବିମୁଖ ହୋଇପଡ଼ିଥିଲେ । କେନ୍ଦ୍ରରେ ମନ୍ତ୍ରୀ ହୋଇ ମଧ୍ୟ ବିଜୁବାବୁ ସେଥିରେ ସନ୍ତୁଷ୍ଟ ନଥିଲେ । ଏକାସମୟରେ କେନ୍ଦ୍ର ମନ୍ତ୍ରୀ ଓ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇ ରହିବାର ସୁଯୋଗ ଥିଲେ ସେ ଉଭୟ ପଦରେ ରହି ଖୁସି ହୋଇଥା'ନ୍ତେ । ଓଡ଼ିଶା ଶାସନରେ ବିଜୁବାବୁ ଘନ ଘନ ହସ୍ତକ୍ଷେପକରି ସମସ୍ତଙ୍କୁ ଯେପରି ଅସ୍ତବ୍ୟସ୍ତ କରୁଥିଲେ ସେ କଥା ରାଜ୍ୟପାଳ କହିବା ସଙ୍ଗେ ସଙ୍ଗେ ବିଜୁ ପଟ୍ଟନାୟକଙ୍କ ଆଚରଣ ସମ୍ବନ୍ଧରେ ତାଙ୍କର ଯାହା ଅନୁଭୂତି ସେ ସମ୍ବନ୍ଧରେ ମତବ୍ୟକ୍ତ କରିଥିଲେ । କ୍ଷମତା ପାଇବାପାଇଁ ବିଜୁବାବୁ ଏତେ ବ୍ୟାକୁଳ ଯେ ଉକ୍ତ ଆଶା ପୂରଣ ଉଦ୍ୟମରେ ତାଙ୍କର ହିତାହିତ ଜ୍ଞାନ ହରାଇବସନ୍ତି । ସେ ନିଶ୍ଚୟ ଅନୁମାନ କରୁଥିବେ ଯେ ପରିସ୍ଥିତି ଯାହା, ସେଥିରେ ସେ ଦିନକ ମଧ୍ୟରେ ମୁଖ୍ୟମନ୍ତ୍ରୀ ହୋଇପାରିବେନାହିଁ । ତଥାପି ଆଗପଛ ବିଚାର ନକରି ସେ ଦୌଡ଼ିବାରେ ଲାଗିଥିଲେ ଏବଂ ଏ ପ୍ରକାର ଅସମ୍ଭବ କଥା ତାଙ୍କୁ କହିବାପାଇଁ ଲେଶମାତ୍ର ସଂକୋଚ ବିଜୁବାବୁଙ୍କର ନଥିଲା ବୋଲି ଶ୍ରୀ ଶର୍ମା କହିଥିଲେ । ଦଳର ଦୁର୍ନାମ ହେବାର ସମ୍ଭାବନା ଥିଲେ ମଧ୍ୟ ସେଥିପ୍ରତି ତାଙ୍କର ଭ୍ରୂକ୍ଷେପ ନଥାଏ । ବିଜୁବାବୁଙ୍କ ସହିତ ତାଙ୍କର ଦୀର୍ଘ ସଂପର୍କ କଥା କହିବାକୁ ଯାଇ ସେମାନେ ଏକାସାଙ୍ଗରେ କିପରି ଜେଲଜୀବନ ଯାପନ କରିଥିଲେ ସେକଥା ଶ୍ରୀ ଶର୍ମା ବର୍ଣ୍ଣନା କରିଥିଲେ । ତାଙ୍କ ମତରେ, ବିଜୁବାବୁ ଜଣେ ବଡ଼ ସାହସୀ; ମାତ୍ର ତାଙ୍କର ସମସ୍ତ କାର୍ଯ୍ୟ ବ୍ୟକ୍ତିକୈନ୍ଦ୍ରିକ । ରୀତିନୀତି ଓ ଶିଷ୍ଟାଚାର ପ୍ରତି ତାଙ୍କର ଅଣୁମାତ୍ର ଖାତିର ନଥାଏ । ଶ୍ରୀ ଶର୍ମାଙ୍କ ମତରେ, ବେଳେବେଳେ

ବିଜୁବାବୁଙ୍କ ଆଚରଣ ଏପରି ଉଦ୍ଭଟ ଯେ ଗୋଟିଏ ନୂଆ ପଇସା ମୂଲ୍ୟର ମୁନାଫାପାଇଁ କୋଟି କୋଟି ଟଙ୍କା ମୂଲ୍ୟର 'ନୁକ୍‌ସାନ'କୁ ସେ ପରୁଆ କରନ୍ତିନାହିଁ । ଶ୍ରୀ ଶର୍ମାଙ୍କ ସହିତ ବ୍ୟକ୍ତିଗତ ବନ୍ଧୁତାର ସୁଯୋଗ ନେଇ ବିଜୁବାବୁ ଯଦି ତାଙ୍କଠାରୁ ରାଜ୍ୟପାଳ ହିସାବରେ ଏପ୍ରକାର ଅଯୌକ୍ତିକ ଦାବି ନକରିଥା'ନ୍ତେ ତେବେ ଶ୍ରୀ ଶର୍ମାଙ୍କ ପରି ଜଣେ ପ୍ରବୀଣ ରାଜନୀତିଜ୍ଞ ତାଙ୍କର ଏହିସବୁ ବ୍ୟକ୍ତିଗତ ପ୍ରତିକ୍ରିୟା ମୋ ଆଗରେ ବୋଧହୁଏ କହିନଥା'ନ୍ତେ । 'କାମରାଜ ଯୋଜନା'ର ମର୍ଯ୍ୟାଦା-ବୃଦ୍ଧି ଛଳନାରେ କ୍ଷମତା ବିସର୍ଜନ ବିଜୁବାବୁଙ୍କ ପକ୍ଷରେ ଥିଲା ଗୋଟିଏ ଅବାସ୍ତବ ଓ ଅପରିପକ୍ୱ ପଦକ୍ଷେପ; ଯାହାକି ପରବର୍ତ୍ତୀ କାଳରେ ତାଙ୍କର ପୂର୍ବାର୍ଜିତ ଖ୍ୟାତିକୁ ନିଶ୍ଚିତ ଭାବରେ କ୍ଷୟକରାଇଥିଲା ।

ବିଜୁବାବୁଙ୍କ ବୈଶିଷ୍ଟ୍ୟ, ବୈଭବ, ବୈଚିତ୍ର୍ୟ ଓ ବ୍ୟକ୍ତିକୈନ୍ଦ୍ରିକ ଗୁଣ ସଂପର୍କରେ ବିଭିନ୍ନ ରାଜନୀତିଜ୍ଞ ଓ ସାମ୍ବାଦିକ ଭିନ୍ନ ଭିନ୍ନ ଏପରିକି ପରସ୍ପରବିରୋଧୀ ମନ୍ତବ୍ୟମାନ ପ୍ରକାଶ କରିଥାନ୍ତି । ଏପରିକି ପଣ୍ଡିତ ନେହେରୁଙ୍କର ଓ ଶ୍ରୀମତୀ ଗାନ୍ଧୀଙ୍କର ତାଙ୍କ ପ୍ରତି ଘନିଷ୍ଠ ସ୍ନେହ ଓ ନିନ୍ଦାର ପ୍ରକାଶ୍ୟ ଓ ପ୍ରଚ୍ଛନ୍ନ ଦୃଷ୍ଟାନ୍ତମାନ ରହିଛି । କିନ୍ତୁ ବିଜୁବାବୁଙ୍କ ସହିତ ମୋର ଦୀର୍ଘ ଦିନର ସଂପର୍କ ଭିତରେ ମୁଁ ଲକ୍ଷ୍ୟ କରିଛି ଯେ ବେଳେବେଳେ ସେ ଅତି ଗୁରୁତ୍ୱପୂର୍ଣ୍ଣ ବ୍ୟାପାରରେ ମଧ୍ୟ ଚପଳମତି ବ୍ୟକ୍ତିଙ୍କ ପରି ଆଗପଛ ନ ବିଚାରି ନିଜ ମନଇଚ୍ଛାରେ ଏପରି ଅବାଟରେ ମାଡ଼ିଯାଆନ୍ତି ଯେ ସେଥିପାଇଁ ବ୍ୟକ୍ତିଗତ ଭାବରେ ନିଜେ ନିନ୍ଦିତ ହେବା ସଙ୍ଗେ ସଙ୍ଗେ ଅନୁଷ୍ଠାନକୁ ମଧ୍ୟ ନିନ୍ଦିତ କରାନ୍ତି । ତାଙ୍କର ଅବିଚାରିତ ଆଡ଼ମ୍ବରପ୍ରିୟ ପ୍ରକୃତି ହୁଏତ ଏଥିପାଇଁ ଅଧିକ ଦାୟୀ— ପରଶ୍ରୀକାତରତା କିମ୍ବା ବ୍ୟକ୍ତିଗତ ସ୍ୱାର୍ଥପରତା ନୁହେଁ ।

## ରାଜ୍ୟ-ବିଜୟ ଅଭିଯାନ

ପ୍ରଧାନମନ୍ତ୍ରୀ ଭାବରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଦାୟିତ୍ୱ ନେବା ପରେ ଅଣକଂଗ୍ରେସ ଦଳଦ୍ୱାରା ଶାସିତ ରାଜ୍ୟମାନଙ୍କରେ ଅସ୍ଥିରତା ଅନୁଭୂତ ହୋଇଥିଲା ।

ରାଜ୍ୟସଭାରେ ତାଙ୍କ ଦଳ କିପରି ସଂଖ୍ୟାଗରିଷ୍ଠତା ହାସଲ କରିବ, ସେଥିପ୍ରତି ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଦୃଷ୍ଟି ଦେଇଥିଲେ । ନିକଟ-ଭବିଷ୍ୟତ୍‌ର ରାଜ୍ୟସଭା ନିର୍ବାଚନ ତାଙ୍କ ଚିନ୍ତାଧାରାକୁ ବିଶେଷଭାବରେ ପ୍ରଭାବିତ କରିଥିଲା । ଯେଉଁସବୁ ରାଜ୍ୟରେ ଅଣକଂଗ୍ରେସ ଦଳମାନେ ବିଧାନସଭାରେ ସଂଖ୍ୟାଗରିଷ୍ଠ ଥାଇ ଶାସନ ଦାୟିତ୍ୱରେ ଥିଲେ, ସେଠାରେ ଅଧିକ ସଂଖ୍ୟକ ଅଣକଂଗ୍ରେସ ସଭ୍ୟ ରାଜ୍ୟସଭାକୁ ନିର୍ବାଚିତ ହୋଇ ଆସିବାର ନିଶ୍ଚିତ ସମ୍ଭାବନା ଥାଏ । ମାର୍ଚ୍ଚ ମାସ ଶେଷବେଳକୁ ରାଜ୍ୟସଭାପାଇଁ ନିର୍ବାଚନ ହେବାର କାର୍ଯ୍ୟକ୍ରମ ଥାଏ । ତେଣୁ ସେସବୁ ରାଜ୍ୟମାନଙ୍କରେ ଅଣକଂଗ୍ରେସ ମନ୍ତ୍ରିମଣ୍ଡଳକୁ ତାହା ପୂର୍ବରୁ ଭାଙ୍ଗିନଦେଲେ ପରିସ୍ଥିତି ତାଙ୍କ ପକ୍ଷରେ ସୁବିଧାଜନକ ହେବନାହିଁ ବୋଲି ସେ ଦେଖିପାରିଥିଲେ । ସେ ପ୍ରକାର ଅସୁବିଧାର ସମ୍ମୁଖୀନ ହେବାପାଇଁ ତାଙ୍କ ଆଗରେ ଦୁଇଟି ପନ୍ଥା ଥିଲା— ଅଣକଂଗ୍ରେସ ମନ୍ତ୍ରିମଣ୍ଡଳକୁ ବହିଷ୍କାରକରିବା ବା ଦଳବଦଳଦ୍ୱାରା ମନ୍ତ୍ରିମଣ୍ଡଳର ପତନ ଘଟାଇ ଅଣକଂଗ୍ରେସ ମନ୍ତ୍ରିମଣ୍ଡଳକୁ କଂଗ୍ରେସ (ଇ) ମନ୍ତ୍ରିମଣ୍ଡଳରେ ପରିଣତ କରାଇବା । ପ୍ରଥମେ ଦଳବଦଳଦ୍ୱାରା ଅଣକଂଗ୍ରେସ ମନ୍ତ୍ରିମଣ୍ଡଳର ପତନ ଘଟାଇ ସେଠାରେ କଂଗ୍ରେସ ମନ୍ତ୍ରିମଣ୍ଡଳ କିପରି ଗଠନ କରାଯାଇପାରିବ ସେଥିପ୍ରତି ଶ୍ରୀମତୀ ଗାନ୍ଧୀ ଧ୍ୟାନ ଦେଇଥିଲେ । ୧୯୭୭ ଲୋକସଭା ନିର୍ବାଚନ ପରେ ନିର୍ବାଚନରେ କଂଗ୍ରେସର ଚରମ ବିପର୍ଯ୍ୟୟ ଘଟିଥିବା ରାଜ୍ୟମାନଙ୍କରେ ଥିବା କଂଗ୍ରେସ ସରକାରକୁ ଭାଙ୍ଗିଦେଇ ଜନତା ସରକାର ଯେଉଁ ପରମ୍ପରା ସୃଷ୍ଟିକରିଥିଲେ ତାହାର ନଜିର ଶ୍ରୀମତୀ ଗାନ୍ଧୀଙ୍କ ଆଗରେ ଥିଲା । କିନ୍ତୁ ଆମ ଦେଶରେ ସଂବିଧାନରେ ଥିବା ସଂସଦୀୟ ଶାସନ-ବ୍ୟବସ୍ଥାହେତୁ ଏଭଳି ଅବସ୍ଥାରେ ବିଧାନସଭାକୁ ଭାଙ୍ଗିଦେଲା ଭଳି ଅଗଣତାନ୍ତ୍ରିକ କାର୍ଯ୍ୟ ସେ କରିବେନାହିଁ ବୋଲି ଶ୍ରୀମତୀ ଗାନ୍ଧୀ ଶ୍ରୀ ମହତାବଙ୍କୁ ପ୍ରତିଶ୍ରୁତି ଦେଇଥିଲେ ବୋଲି ମହତାବବାବୁ ୩-୧୧-୭୯ ତାରିଖରେ ତାଙ୍କ 'ପ୍ରଜାତନ୍ତ୍ର' ସମ୍ବାଦପତ୍ରରେ ପ୍ରକାଶ କରିଥିଲେ । ତେଣୁ ଦଳବଦଳ କରାଇ କଂଗ୍ରେସ ସରକାର

ଗଠନପାଇଁ ପ୍ରଥମେ ଉଦ୍ୟମ ଆରମ୍ଭ ହୋଇଯାଇଥିଲା । 'ଆୟାରାମ, ଗୟାରାମ' କାର୍ଯ୍ୟରେ ଖ୍ୟାତି ଅର୍ଜନ କରିଥିବା ହରିଆନା ରାଜ୍ୟରେ ଦଳବଦଳ ପନ୍ଥାକୁ ଉତ୍ସାହିତ କରାଯାଇଥିଲା । ସେଠାରେ ସେ ସମୟର ପ୍ରଧାନମନ୍ତ୍ରୀ ଶ୍ରୀ ଦେଶାଇଙ୍କର ଜଣେ ଅତି ବିଶ୍ୱସ୍ତ ବ୍ୟକ୍ତି ଶ୍ରୀ ଭଜନଲାଲ୍ ଜନତା ଦଳର ନେତା ମୁଖ୍ୟମନ୍ତ୍ରୀ ଶ୍ରୀ ଦେବୀ ଲାଲ୍‌କୁ ହଟାଇ ମୋରାରଜୀ-ଗୋଷ୍ଠୀର ସହାୟତାରେ ଜନତା ଦଳର ନେତା ନିର୍ବାଚିତ ହୋଇ ମୁଖ୍ୟମନ୍ତ୍ରୀ ହୋଇଥିଲେ । ଶ୍ରୀ ଭଜନ ଲାଲ୍ ତାଙ୍କ ଗୋଷ୍ଠୀର ବହୁ ଜନତା ଦଳର ବିଧାନସଭା ସଦସ୍ୟଙ୍କୁ ସଙ୍ଗରେ ନେଇ ଶ୍ରୀମତୀ ଗାନ୍ଧୀଙ୍କ ପାଖରେ ଶରଣପଶିଗଲେ । ଶ୍ରୀମତୀ ଗାନ୍ଧୀ ତାଙ୍କୁ ଆଶ୍ରୟଦେଇ ସେ ହରିଆନା ରାଜ୍ୟର କଂଗ୍ରେସ ମୁଖ୍ୟମନ୍ତ୍ରୀ ହେଲେ ବୋଲି ଘୋଷଣାକରିଥିଲେ ।

ହରିଆନା ରାଜ୍ୟର ରାଜନୀତିରେ ଯେପରି ନାଟକୀୟ ପରିବର୍ତ୍ତନ ଘଟିଗଲା ସେ ପ୍ରକାର ଅଭିନୟ ଓଡ଼ିଶାରେ କରାଇବାପାଇଁ ଅଭିଯାନ ଆରମ୍ଭ ହୋଇଯାଇଥିଲା । ଆମ ବିଧାନସଭାର ବାଚସ୍ପତି ଶ୍ରୀ ସତ୍ୟପ୍ରିୟ ମହାନ୍ତି କେନ୍ଦ୍ରମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସହିତ କଥାବାର୍ତ୍ତା କରି ବୁଝିଥିଲେ ଯେ ଆଗାମୀ ରାଜ୍ୟସଭା ନିର୍ବାଚନରେ ଓଡ଼ିଶାରୁ ତିନି ଜଣ କଂଗ୍ରେସ ସଦସ୍ୟ ରାଜ୍ୟସଭାକୁ ପଠାଇବାର ବ୍ୟବସ୍ଥା ହୋଇପାରିଲେ ଆମ ରାଜ୍ୟର ମନ୍ତ୍ରିମଣ୍ଡଳ କିମ୍ବା ବିଧାନସଭା ଭାଙ୍ଗିବା ଦିଗରେ ଶ୍ରୀମତୀ ଗାନ୍ଧୀଙ୍କ କଂଗ୍ରେସ ପ୍ରୟାସୀ ହେବନାହିଁ । ସେ ସମ୍ବନ୍ଧରେ ଜାନକୀବାବୁଙ୍କ ସହିତ କଥାବାର୍ତ୍ତା କରି ତାଙ୍କୁ ପ୍ରତିଶ୍ରୁତି ଦେବାପାଇଁ ସତ୍ୟପ୍ରିୟବାବୁ ମୋତେ ଅନୁରୋଧ କରିଥିଲେ । ସେ ପ୍ରକାର ପ୍ରତିଶ୍ରୁତି ଦେବା ସମ୍ଭବ ହୋଇ ନପାରିଲେ ମଧ ଜାନକୀବାବୁଙ୍କ ସହିତ କଥାବାର୍ତ୍ତା କରିବାକୁ ମୁଁ ରାଜିହୋଇଥିଲି । ଜାନକୀ ବାବୁଙ୍କ ସହିତ ମୋର କଥାବାର୍ତ୍ତା ହୋଇଥିଲା । ଜାନକୀବାବୁ ରାଜ୍ୟସଭା ନିର୍ବାଚନ ଉପରେ ବିଶେଷ ଗୁରୁତ୍ୱ ନଦେଇ ଦଳବଦଳ କରି ତାଙ୍କ କଂଗ୍ରେସରେ ଯୋଗଦାନ କରିବା ସମ୍ବନ୍ଧରେ ସୂଚନା ଦେଇଥିଲେ । ସଂଘୀୟ ସଂସ୍ଥାରେ ଶ୍ରୀମତୀ ଗାନ୍ଧୀଙ୍କର ବିଶ୍ୱାସ ଓ ରାଜ୍ୟମାନଙ୍କରେ ଅଣକଂଗ୍ରେସ ସରକାର ଓ ବିଧାନସଭାକୁ ନଭାଙ୍ଗିବା ବିଷୟରେ ତାଙ୍କର ଯେଉଁ ମନୋଭାବ କଥା ଶ୍ରୀ ମହତାବ ଖବରକାଗଜରେ ପ୍ରକାଶ କରିଥିଲେ, ସେଥିପ୍ରତି ମୁଁ ଜାନକୀବାବୁଙ୍କର ଦୃଷ୍ଟି ଆକର୍ଷଣ କରିଥିଲି ଏବଂ ରାଜ୍ୟସଭା ନିର୍ବାଚନ ବିଷୟରେ ସତ୍ୟପ୍ରିୟବାବୁ ଯେଉଁ ପ୍ରସ୍ତାବ ଦେଇଥିଲେ ସେ ସମ୍ବନ୍ଧରେ ତାଙ୍କର ବକ୍ତବ୍ୟ ମୁଁ ଜାଣିବାକୁ ଚାହିଁଥିଲି । ଶ୍ରୀମତୀ ଗାନ୍ଧୀ ତାଙ୍କୁ ଦେଇଥିବା ତଥାକଥିତ ପ୍ରତିଶ୍ରୁତି ସଂପର୍କରେ ମହତାବ ବାବୁଙ୍କ କଥାରେ ବିଶ୍ୱାସ କରିବା ଉଚିତ ହେବନାହିଁ ବୋଲି ଜାନକୀବାବୁ ମୋତେ କହିଥିଲେ । ତାହା ଯଦି ସତ୍ୟ ହୋଇଥାଆନ୍ତା, ତା'ହେଲେ ସେଇଦିନ ଜାନକୀବାବୁଙ୍କର ଯେତେବେଳେ ମହତାବବାବୁଙ୍କ ସହିତ ଦେଖାହେଲା ସେତେବେଳେ ମହତାବବାବୁ ତାଙ୍କୁ ଗୋଟିଏ କାନ୍ଥ ପାଖକୁ ଡାକିନେଇ କହିନଥା'ନ୍ତେ, ''ଜାନକୀ ! ଏ ସରକାରକୁ କେବେ ଭାଙ୍ଗୁଛ ? ଶୀଘ୍ର ଏମାନଙ୍କୁ ହଟାଇବାର ବ୍ୟବସ୍ଥା କରୁଛ ତ ?'' ତେଣୁ ଶ୍ରୀ ମହତାବଙ୍କ କଥା ବିଶ୍ୱାସଯୋଗ୍ୟନୁହେଁ ବୋଲି ସେ ମୋତେ କହିଥିଲେ । ମହତାବବାବୁଙ୍କର ଶ୍ରୀମତୀ ଗାନ୍ଧୀଙ୍କ ସହିତ ସାକ୍ଷାତ୍ ସମ୍ବନ୍ଧରେ ଗୋଟିଏ କଥା ସେଦିନ ଜାନକୀବାବୁ ମୋତେ କହିଥିଲେ । ଏ ସାକ୍ଷାତ୍ ପରେ ମହତାବଙ୍କର ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ ସଂପର୍କରେ ବୋଧହୁଏ କିଛି ସନ୍ଧାନ ଶ୍ରୀମତୀ ଗାନ୍ଧୀ ପାଇଥିଲେ । ତେଣୁ ଶ୍ରୀମତୀ ଗାନ୍ଧୀ କୁଆଡ଼େ ଅସନ୍ତୋଷ ପ୍ରକାଶ କରି ଜାନକୀବାବୁଙ୍କୁ କହିଥିଲେ, "J.B., You did not tell me about Mahtab's association with R.S.S. If you would have told me that he was hobnobbing with the R.S.S., I would have avoided to see him." ଆମ ସରକାର ଓ ବିଧାନସଭାକୁ ଭାଙ୍ଗିଦେବାର ଯେଉଁ ଆଶଙ୍କା ଥିଲା ତାହା ମୁଁ ଉପଲବ୍ଧି କରିବା ଉଦ୍ଦେଶ୍ୟରେ ଏହି କଥାଗୁଡ଼ିକ ଜାନକୀବାବୁ ମୋତେ କହିଥିଲେ ବୋଲି ମୁଁ ମନେକରିଥିଲି । ବୋଧହୁଏ ସେହି ଉଦ୍ଦେଶ୍ୟରେ ସତ୍ୟପ୍ରିୟବାବୁଙ୍କ ଜରିଆରେ କଥାବାର୍ତ୍ତାର ପ୍ରସ୍ତାବ ଆସିଥିଲା । ଲୋକଦଳର ବହୁ ବିଧାନସଭା ସଦସ୍ୟ କିପରି କଂଗ୍ରେସରେ ଯୋଗଦେବା ସମ୍ଭବ

ହେବ ସେ ବିଷୟରେ ଜାନକୀବାବୁ ଓ ମୋ ମଧ୍ୟରେ ଆଲୋଚନା ହୋଇଥିଲା । ଜାତୀୟ ସ୍ତରରେ ଲୋକଦଳର ସେଭଳି କୌଣସି ସମସ୍ୟା ଉପୁଜିନଥିବାରୁ ଦଳତ୍ୟାଗ କରି ଯିବା ମୋ ପକ୍ଷରେ କିପରି ସମୀଚୀନ ହେବ, ସେ ବିଷୟରେ ଆମ୍ଭେମାନେ ଆଲୋଚନା କରିଥିଲୁ । କେତେକ ସଭ୍ୟ ଦଳତ୍ୟାଗ କରି କଂଗ୍ରେସରେ ଯୋଗଦେବା ଅପେକ୍ଷା କଂଗ୍ରେସ ଦଳ ସହିତ ଓଡ଼ିଶା ଲୋକଦଳର ମିଶ୍ରଣପାଇଁ ପ୍ରସ୍ତାବ ଆସିଲେ ଭଲ ହେବ ବୋଲି ମୁଁ କହିଥିଲି । ସେ କିନ୍ତୁ ଏଭଳି ପ୍ରସ୍ତାବରେ ଆଗ୍ରହ ପ୍ରକାଶ କରି ନଥିଲେ; କାରଣ ତାହା ହେଲେ ବିଜୁ ପଟ୍ଟନାୟକ କଂଗ୍ରେସକୁ ଆସିଯାଇଥା'ନ୍ତେ, କଂଗ୍ରେସ ତାହା ଚାହୁଁ ନଥିଲା । ଆମ୍ଭମାନଙ୍କ ମଧ୍ୟରେ ଆଲୋଚନା ରାଜନୀତିରେ ଏକରକମ 'ଚତୁରେ ଚତୁରେ କୋଳାକୋଳି'ରେ ସୀମିତ ଥିଲା । ବନ୍ଧୁମାନଙ୍କ ସହିତ ପରାମର୍ଶ କରି ପୁଣି ତାଙ୍କ ସହିତ କଥାବାର୍ତ୍ତା କରିବି ବୋଲି ମୁଁ କହିଥିଲି । ଆମ୍ଭମାନଙ୍କର ଏ ସମସ୍ତ ଆଲୋଚନା ଗୁପ୍ତ ରଖାଯାଇଥିଲା । କଂଗ୍ରେସ ସହିତ ଯୋଗଦେବା ପ୍ରସ୍ତାବଟାକୁ ଏକାବେଳକେ ଅଗ୍ରାହ୍ୟ ନକରି ସେଥିରେ ସମ୍ଭାବନା ଅଛି ବୋଲି ଜାନକୀ ବାବୁ ଧାରଣାଦେଇ କିଛିଦିନ ଗଡ଼ାଇଦେଲେ ଭଲହେବ ବୋଲି ଆମର ବନ୍ଧୁମାନେ ମଧ୍ୟ ମୋତେ ପରାମର୍ଶ ଦେଇଥିଲେ ।

## ଓଡ଼ିଶାରେ ଇନ୍ଦିରା-ଦୂତ

ଏହି ପ୍ରକାର ପରିସ୍ଥିତି ମଧ୍ୟରେ ହଠାତ୍ ଦିନେ ସକାଳ ଆଠଟାବେଳେ ଇନ୍ଦିରା ଗାନ୍ଧୀଙ୍କ ସ୍ୱତନ୍ତ୍ର ପ୍ରତିନିଧି ଭାବରେ ଶ୍ରୀ ଯଶପାଲ କାପୁର ଆସି ଭୁବନେଶ୍ୱରରେ ପହଞ୍ଚିଥିଲେ । ଶ୍ରୀ କାପୁର ଭୁବନେଶ୍ୱର ଆସିବାର କୌଣସି କାର୍ଯ୍ୟକ୍ରମ ପୂର୍ବରୁ ନଥିଲା । ଆସାମରେ ଜନତାଦଳରୁ କେତେକ ସଭ୍ୟଙ୍କୁ ହାତକରି ସେଠାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରିବା ଉଦ୍ଦେଶ୍ୟରେ ସେ ସେଠାକୁ ଯାଇଥିଲେ । ଆସାମରୁ ଫେରିବା ବାଟରେ ଶ୍ରୀ କାପୁର ସେହି ଉଦ୍ଦେଶ୍ୟରେ ଓଡ଼ିଶା ଆସିଥିଲେ । ଯେ ଯେଉଁ ବିମାନରେ ଭୁବନେଶ୍ୱର ଆସିଥିଲେ, ସେହି ବିମାନରେ ବିଜୁ ପଟ୍ଟନାୟକ ମଧ୍ୟ ଆସିଥିଲେ । ଭୁବନେଶ୍ୱର ବିମାନବନ୍ଦରରୁ ସହରକୁ ଆସିବାପାଇଁ ଶ୍ରୀ କାପୁରଙ୍କପାଇଁ କୌଣସି ଗାଡ଼ି ନଥିଲା ବା ତାଙ୍କୁ ପାଛୋଟି ଆଣିବାପାଇଁ କେହି ଅପେକ୍ଷା କରିନଥିଲେ । ତେଣୁ ସେ ବିଜୁବାବୁଙ୍କ ଗାଡ଼ିରେ ତାଙ୍କ ଘରକୁ ଯାଇଥିଲେ । ଶ୍ରୀ କାପୁର ଆସିବା କଥା ବିଜୁବାବୁ ମୋତେ ଜଣାଇଥିଲେ ଏବଂ ସେ ସେଠାରେ ଥିଲାବେଳେ ବିଜୁବାବୁ ମୋତେ ଡାକିଥିଲେ । ପ୍ରଦେଶ କଂଗ୍ରେସ (ଇ) ସଂପାଦକ ଶ୍ରୀ କାହ୍ନୁ ଚରଣ ଲେଙ୍କାଙ୍କୁ ମଧ୍ୟ ଆସିବାକୁ ଶ୍ରୀ ବିଜୁବାବୁ ଖବର ଦେଇଥିଲେ । ଶ୍ରୀ କାପୁରଙ୍କୁ ବିଜୁବାବୁଙ୍କ ଘରେ ଦେଖି ଶ୍ରୀ ଲେଙ୍କା ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ଶ୍ରୀ କାପୁରଙ୍କୁ ସରକାରୀ ଅତିଥି କରିବାପାଇଁ ବିଜୁବାବୁ ମୋତେ କହିଥିଲେ । ମୁଁ ସେଠାରୁ ସରକାରୀ ଅତିଥି ଭବନକୁ ଫୋନ୍‌କରି ଶ୍ରୀ କାପୁରଙ୍କପାଇଁ ସବୁ ବ୍ୟବସ୍ଥା କରିବା ପାଇଁ ନିର୍ଦ୍ଦେଶ ଦେଇଥିଲି । ଏହାପରେ ଶ୍ରୀ କାପୁର ଶ୍ରୀ ଲେଙ୍କାଙ୍କ ସହ ଅତିଥି ଭବନକୁ ଯାଇଥିଲେ । ଗଲାବେଳେ ମୋତେ ଦେଖାକରିବେ ବୋଲି କହିଥିଲେ । ସେହି ସକାଳେ ଶ୍ରୀ କାପୁର ମୋ ସରକାରୀ ବାସଭବନକୁ ଆସି ମୋ ସହିତ କଥାବର୍ତ୍ତା କରିଥିଲେ । କଂଗ୍ରେସରେ ଆମ୍ଭମାନଙ୍କର ଯୋଗଦେବା କଥା ସେ ଉଠାଇଥିଲେ । ଶ୍ରୀ ଜାନକୀବାବୁଙ୍କ ସହିତ ସେ ବିଷୟରେ ଆଲୋଚନା ଚାଲିଛି ବୋଲି ମୁଁ ତାଙ୍କୁ କହିଥିଲି । ସେ ମୋତେ କହିଥିଲେ ଯେ ଓଡ଼ିଶା ବିଷୟ ବୁଝିବା ପାଇଁ ଶ୍ରୀମତୀ ଗାନ୍ଧୀ ତାଙ୍କ ଉପରେ ଦାୟିତ୍ୱ ଦେଇଛନ୍ତି; ତେଣୁ ଜାନକୀବାବୁଙ୍କ ଦ୍ୱାରା ବିଶେଷ କିଛି ହୋଇପାରିବନାହିଁ ବୋଲି ସେ ମତ ପ୍ରକାଶ କରିଥିଲେ । ମୁଁ କଂଗ୍ରେସରେ ଯୋଗଦେଇ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ହୋଇ ରହିବାକୁ ଶ୍ରୀମତୀ ଗାନ୍ଧୀଙ୍କ ଇଚ୍ଛା ବୋଲି ସେ ମୋତେ କହିଥିଲେ । କଂଗ୍ରେସରେ ମିଶିବା ନମିଶିବା ବିଷୟରେ କୌଣସି ନିର୍ଦ୍ଦିଷ୍ଟ ସୂଚନା ନଦେଇ ବନ୍ଧୁମାନଙ୍କ ସହ ଆଲୋଚନା କରିବି ବୋଲି କହି ମୁଁ ତାଙ୍କୁ ବିଦାୟଦେଇଥିଲି ।

ଇତିମଧ୍ୟରେ ଶ୍ରୀ ଯଶପାଲ କାପୁର ସାମ୍ବାଦିକମାନଙ୍କ ସହ ଆଲୋଚନାପ୍ରସଙ୍ଗରେ ଓଡ଼ିଶାରେ

ସରକାର ପରିବର୍ତ୍ତନପାଇଁ ଅନୁକୂଳ ପରିସ୍ଥିତି ରହିଛି; ତେଣୁ ଯେକୌଣସି ସମୟରେ ଓଡ଼ିଶା ହରିଆନା ପଥ ଅନୁସରଣ କରିପାରେ ବୋଲି କହିଥିଲେ ଏବଂ ତା ନହେଲେ ସପ୍ତାହକ ଭିତରେ ବହୁସଭ୍ୟ ଦଳତ୍ୟାଗ କରି କଂଗ୍ରେସରେ ଯୋଗଦେଇ ସରକାରର ପତନ ଘଟାଇବେ ବୋଲି ସେ ଘୋଷଣା କରିଥିଲେ । ଲୋକଦଳର ନେତୃବର୍ଗ କଂଗ୍ରେସରେ ନମିଶିଲେ ମଧ୍ୟ ବହୁ ବିଧାନସଭା ସଦସ୍ୟ କଂଗ୍ରେସରେ ଯୋଗଦେବାପାଇଁ ଆଗ୍ରହ ପ୍ରକାଶ କଲେଣି ବୋଲି ସେ ସାମ୍ବାଦିକମାନଙ୍କୁ କହିଥିଲେ । ଏ ସଂପର୍କରେ ଶ୍ରୀ ମହତାବଙ୍କ ସହିତ ତାଙ୍କର ଆଲୋଚନା ହେବା କଥା ମଧ୍ୟ ସେ ପ୍ରକାଶ କରିଥିଲେ । ଶ୍ରୀ କାପୁରଙ୍କର ଏ ପ୍ରକାର ଉକ୍ତି ରାଜଧାନୀରେ ଖୁବ୍ ଆଲୋଡ଼ନ ସୃଷ୍ଟିକରିଥିଲା । ଆମ ଲୋକଦଳ ବିଧାନସଭା ସଦସ୍ୟମାନଙ୍କ ମଧ୍ୟରେ ଅସ୍ଥିରତା ଓ ଉତ୍ତେଜନା ଅନୁଭବ କରାଯାଇଥିଲା । ସଭ୍ୟମାନଙ୍କ ମଧ୍ୟରେ ତୀବ୍ର ପ୍ରତିକ୍ରିୟା ମଧ୍ୟ ପ୍ରକାଶପାଇଥିଲା । ଶ୍ରୀ କାପୁରଙ୍କର ଔଦ୍ଧତ୍ୟ ଓ ହୀନ ଉଦ୍ୟମର ମୁକାବିଲା କରିବାପାଇଁ ଲୋକଦଳରେ ସ୍ୱତଃ ଉତ୍ତେଜନା ଓ ଦୃଢ଼ତା ଦେଖାଯାଇଥିଲା । ସେଦିନ ଆମ ମନ୍ତ୍ରିମଣ୍ଡଳର ଗୋଟିଏ ବୈଠକ ବସିବାର ଥାଏ । କ୍ୟାବିନେଟ୍ ରୁମ୍ ବାହାରେ ଆମ ଦଳର ବହୁ ସଭ୍ୟ ଓ ସାମ୍ବାଦିକମାନେ ମୋର ମତାମତ ଜାଣିବାପାଇଁ ବଡ଼ ଉତ୍କଣ୍ଠାର ସହିତ ଅପେକ୍ଷା କରି ରହିଥିଲେ । ମୁଁ ମନ୍ତ୍ରିମଣ୍ଡଳ ବୈଠକରୁ ବାହାରିବାମାତ୍ରେ ମୋତେ ସାମ୍ବାଦିକମାନେ ଓ ମୋର ବନ୍ଧୁମାନେ ଘେରିଯାଇ ଶ୍ରୀ କାପୁରଙ୍କର ଦମ୍ଭୋକ୍ତି ଓ ଅହଙ୍କାର ପ୍ରତି ମୋର ଦୃଷ୍ଟି ଆକର୍ଷଣ କରିଥିଲେ । ମୁଁ ଅତି ଦମ୍ଭୋକ୍ତି ବିଦ୍ରୂପ କରି କହିଥିଲି ଯେ ହରିଆନାର 'ଆୟାରାମ, ଗୟାରାମ' ପନ୍ଥା ଅନୁସରଣ କରିବାଭଳି କେହି ଭଜନ ଲାଲ୍ ଓଡ଼ିଶାରେ ନାହାନ୍ତି । ୧୯୮୦ ମସିହା ଜାନୁୟାରୀ ମାସ ଚବିଶ ତାରିଖରେ Times of India ଓ Indian Expressରେ ନିମ୍ନ ଭାଷାରେ ସେହି ସମ୍ବାଦଟି ପ୍ରକାଶ ପାଇଥିଲା, "Coming out with his Ministerial collegues after a prolonged Cabinet meeting Mr. Routray told waiting newsmen that Orissa would not go the Haryana way. Asked if he would join the Congress (I), he said emphatically; No, certainly not". Indian Expressରେ ବାହାରିଥିଲା, "Both the Lok Dal leader Mr. Biju Pattanaik and the Chief Minister Mr. Nilamani Routray asserted here today that Orissa will not go the Haryana way. There were no Bhajanlals in Orissa." They said.

ମୋର ପ୍ରଥମ ଧାରଣା ହୋଇଥିଲା ଯେ ଜାନକୀବାବୁଙ୍କ ଜ୍ଞାତସାରରେ ଯଶପାଲ କାପୁର ଓଡ଼ିଶା ଆସିଥିଲେ; କିନ୍ତୁ ପରେ ଜାନକୀବାବୁ ତାହା ଅସ୍ୱୀକାର କରିଥିଲେ । କେନ୍ଦ୍ରର କଂଗ୍ରେସ(ଇ) ସରକାର ଗାଦିନସୀନ ହେବା ପରେ ଆମ ରାଜ୍ୟରେ ଲୋକଦଳ ସରକାର ତିଷ୍ଠି ରହିବା ପ୍ରଶ୍ନନେଇ ଏହିଭଳି ଏକପ୍ରକାର ଶୀତଳଯୁଦ୍ଧର ସୂତ୍ରପାତ ହୋଇଥାଏ । କୌଣସିମତେ କାଳକ୍ଷେପଣ ନୀତି ଅନୁସରଣ କରି ନିଜ ସ୍ଥିତିକୁ ମଜଭୁତ କରିବା ଥାଏ ଆମର ଲକ୍ଷ୍ୟ । କାପୁରଙ୍କ ଅବାଞ୍ଛିତ ବାଗାଡ଼ମ୍ବର ହେତୁ ଜାନକୀବାବୁ ଓ ମୋ ମଧ୍ୟରେ ଚାଲିଥିବା ଆଲୋଚନାରେ ବ୍ୟାଘାତ ଘଟିଥିଲା ବୋଲି କହିବାକୁ ମୋତେ ସୁବିଧା ହେଲା । ୧୯୬୯ ମସିହାରେ କଂଗ୍ରେସ ବିଭାଜନ ପରଠାରୁ ଶ୍ରୀମତୀ ଇନ୍ଦିରା ଗାନ୍ଧୀ କିପରି ଆବଶ୍ୟକବେଳେ ସାହାଯ୍ୟ ସମର୍ଥନ ଲୋଡ଼ି ଆନ୍ତରିକତା ଦେଖାନ୍ତି ଏବଂ ପରେ ବିପରୀତ ଆଚରଣ କରନ୍ତି, ସେ ସଂପର୍କରେ ମୋର ଏକାଧିକ ଅଭିଜ୍ଞତା କଥା ମୁଁ ପୂର୍ବରୁ ଉଲ୍ଲେଖ କରିଛି । ତେଣୁ ୧୯୮୦ରେ ମୋତେ ଆମ ଦଳର ଆତ୍ମରକ୍ଷାପାଇଁ କୌଶଳରେ ଗୋଟି ଚଳାଇବାକୁ ପଡ଼ିଥିଲା ।

ଓଡ଼ିଶାରେ ଆମ୍ଭମାନଙ୍କ ସହିତ ଆଲୋଚନା କରିବାପାଇଁ ଶ୍ରୀମତୀ ଗାନ୍ଧୀ କାପୁରଙ୍କୁ ଅଧିକାର ଦେଇ ନଥିଲେ ଓ କାପୁର ପ୍ରଧାନମନ୍ତ୍ରୀଙ୍କର ସ୍ୱତନ୍ତ୍ର ପ୍ରତିନିଧି ନୁହନ୍ତି ବୋଲି ଜାନକୀବାବୁ ମୋତେ କହିଥିଲେ । କିନ୍ତୁ ଶ୍ରୀ କାପୁର ଶ୍ରୀମତୀ ଗାନ୍ଧୀଙ୍କର ସ୍ୱତନ୍ତ୍ର ପ୍ରତିନିଧି ବୋଲି ଖବରକାଗଜରେ ବହୁଳ ପ୍ରଚାରିତ ହେଲେ ମଧ୍ୟ ଶ୍ରୀମତୀ ଗାନ୍ଧୀଙ୍କ ପକ୍ଷରୁ ତା'ର କୌଣସି ପ୍ରତିବାଦ ହୋଇନଥିଲା । ଜାନକୀବାବୁ

ମଧ୍ୟ ସମ୍ବାଦପତ୍ରରେ କାପୁରଙ୍କ ଉକ୍ତିର ପ୍ରତିବାଦ କରିନଥିଲେ । ଖବରକାଗଜର ପ୍ରତିନିଧିମାନଙ୍କଠାରୁ ଆମ୍ଭମାନଙ୍କର ପ୍ରତିକ୍ରିୟା ଜାଣିଲା ପରେ କାପୁର ମୋର ଅସଲ ଲକ୍ଷ୍ୟ ଓ କୌଶଳ ବୁଝିପାରି ଲୋକସଭା ଓ ବିଧାନସଭା ସଦସ୍ୟମାନଙ୍କୁ କିପରି ଦଳତ୍ୟାଗ କରାଇବେ ସେ ବିଷୟରେ ଉଦ୍ୟମ ଆରମ୍ଭ କରିଦେଇଥିଲେ । ମହତାବବାବୁ ଏ ଦିଗରେ ସାହାଯ୍ୟ କରିପାରିବେ ବୋଲି ଶ୍ରୀ କାପୁରଙ୍କ ମନରେ ଧାରଣା ଜନ୍ମାଇଥିଲେ ଏବଂ ମହତାବଙ୍କ ଭରସାରେ ଉତ୍ସାହିତ ହୋଇ କାପୁର ଆହୁରି ଅଧିକ ଦମ୍ଭୋକ୍ତି କରି କହିଥିଲେ ଯେ ଫେବୃୟାରୀ ଏଗାର ତାରିଖରେ ଓଡ଼ିଶା ବିଧାନସଭା ଅଧିବେଶନ ବସିବା ପୂର୍ବରୁ ରାଜ୍ୟରେ କଂଗ୍ରେସ ସରକାର ଗଠିତ ହୋଇଯିବ । ଲୋକଦଳର କେତେକ ମନ୍ତ୍ରୀ ଓ ବିଧାନସଭା ସଦସ୍ୟ କଂଗ୍ରେସରେ ମିଶିବେ ବୋଲି ମହତାବବାବୁ କୁଆଡ଼େ ଆଗରୁ କାପୁରଙ୍କୁ କହିଥିଲେ । କାପୁର ଚାହିଁଥିଲେ ଯେ ସେ ଭୁବନେଶ୍ୱରରେ ଥିଲାବେଳେ ଯଦି ଲୋକଦଳର ୨୦ ଜଣ ବିଧାନସଭା ସଦସ୍ୟ ଦଳତ୍ୟାଗ କରି କଂଗ୍ରେସରେ ଯୋଗଦେଇଥାଆନ୍ତେ ତା'ହେଲେ ସେ ତାଙ୍କର କରାମତିର ନିଦର୍ଶନ ଦେଖାଇପାରିଥା'ନ୍ତେ । ମହତାବବାବୁ ମଧ୍ୟ ନିଜର କରାମତି କେତେ ସେ ବିଷୟରେ କାପୁରଙ୍କୁ ଜଣାଇଦେବା ଉଦ୍ଦେଶ୍ୟରେ ବହୁ ଲୋକଦଳ ସଦସ୍ୟଙ୍କୁ ଦଳତ୍ୟାଗକରି କଂଗ୍ରେସରେ ଯୋଗଦେବାପାଇଁ ଫୁସୁଲାଫୁସୁଲି କରିଥିଲେ; କିନ୍ତୁ ତାଙ୍କ ଫାଲରେ କେହି ପଡ଼ିନଥିଲେ । ଶେଷରେ ମହତାବବାବୁଙ୍କର ବିରାଡ଼ି ବେକରେ ଘଣ୍ଟି ବାନ୍ଧିବା ଭଳି ଦଶା ହୋଇଥିଲା । କାହାରି ବେକରେ ଘଣ୍ଟି ବାନ୍ଧିବାକୁ ସାହସ ନପାଇ ନିଜ ସାନଭାଇ ଲୋକଦଳର ବିଧାନସଭା ସଦସ୍ୟ ଶ୍ରୀ ଗୋପୀନାଥ ଦାସଙ୍କ ବେକରେ ମହତାବବାବୁ ନିଜେ ଦଳତ୍ୟାଗୀ ଘଣ୍ଟି ବାନ୍ଧିଥିଲେ । ଗୋପୀନାଥ ବାବୁଙ୍କର ଦଳତ୍ୟାଗ କରିବାର ଇଚ୍ଛା ଆଦୌ ନଥିଲା । ମୋ ପ୍ରତି ତାଙ୍କର ଖୁବ୍ ଶ୍ରଦ୍ଧା ଥିଲା । ସେ ନିଜେ ଅନେକ ଲୋକଙ୍କ ଆଗରେ ସ୍ୱୀକାର କରୁଥିଲେ ଯେ ସେ ତାଙ୍କର ଭାଇ ମହତାବବାବୁଙ୍କର ବହୁତ ସେବା କରିଥିଲେ ମଧ୍ୟ ମହତାବବାବୁ ତାଙ୍କ ଅମଳରେ ବିଧାନସଭା ସଦସ୍ୟ ହେବାର ସୁଯୋଗ ତାଙ୍କୁ ଦେଇନଥିଲେ । ମୋର ସହଯୋଗ ହେତୁ ସେ ବିଧାନସଭା ସଦସ୍ୟ ହୋଇଥିଲେ ବୋଲି ସ୍ୱୀକାର କରୁଥିଲେ । ବିଧାନସଭାରେ ଲୋକଙ୍କୁ ପ୍ରତିନିଧିତ୍ୱ କରିବାର ଯୋଗ୍ୟତା ଯେ ଗୋପୀନାଥ ବାବୁଙ୍କଠାରେ ନଥିଲା, ତାହାନୁହେଁ । ଅସହଯୋଗ ଆନ୍ଦୋଳନ ଓ ଲବଣ ସତ୍ୟାଗ୍ରହ ସମୟରେ ସେ ପାଠପଢ଼ା ଛାଡ଼ି ସେଥିରେ ଝାସ ଦେଇ କାରାବରଣ କରିଥିଲେ । ଅବିଭକ୍ତ କଂଗ୍ରେସ ଅମଳରେ ସେ ଦୁଇବର୍ଷ ବାଲେଶ୍ୱର ଜିଲ୍ଲା କଂଗ୍ରେସ କମିଟିର ସଭାପତି ଥିଲେ । ତେଣୁ ଦଳତ୍ୟାଗ ଭଳି ଏକ ନୀତିହୀନ ପଦକ୍ଷେପ ସମ୍ବନ୍ଧରେ ତାଙ୍କ ମନରେ ଦ୍ୱିଧା ଉପୁଜିବା କିଛି ଅସ୍ୱାଭାବିକ ନଥିଲା । ମାତ୍ର ଶ୍ରୀ ମହତାବଙ୍କର ତାଡ଼ନା ତାଙ୍କ ପକ୍ଷରେ ଅସହ୍ୟ ହେଲାବୋଲି ସେ କେତେକ ଲୋକଙ୍କ ଆଗରେ ପ୍ରକାଶ କରିଥିଲେ । ଶ୍ରୀ ଗୋପୀନାଥ ଦାସ ଲୋକଦଳରୁ ଇସ୍ତଫା ଦେବାସୂଚକ ଗୋଟିଏ ଟାଇପକରା ଚିଠି ଶ୍ରୀ ମହତାବ ନିଜେ ନେଇ ଗୋପୀନାଥବାବୁଙ୍କ ବସାରେ ପହଞ୍ଚି ତାଙ୍କର ଦସ୍ତଖତ କରାଇ ସେଇ ଜାନୁୟାରୀ ଚବିଶ ତାରିଖରେ ମୋ ପାଖକୁ ପଠାଇଦେଇଥିଲେ । କାପୁର ଖବର ନେଇ ବୁଝିଲେ ଯେ ମହତାବଙ୍କ କଥାରେ କେବଳ ତାଙ୍କ ଭାଇଙ୍କ ଛଡ଼ା ଆଉ କେହି କଂଗ୍ରେସ (ଇ)ରେ ଯୋଗ ଦେଲେ ନାହିଁ । ମହତାବବାବୁ ତାଙ୍କ ଭାଇଙ୍କଠାରୁ ତାଙ୍କର ଅନିଚ୍ଛାସତ୍ତ୍ୱେ ଦଳବଦଳ କରିବାପାଇଁ ଦସ୍ତଖତ କରାଇ ନେଇଥିଲେ ବୋଲି ସେତେବେଳେ ରାଜଧାନୀରେ ଏଭଳି ଭାବରେ ପ୍ରଘଟ ହୋଇଥିଲା ଯେ ଶେଷରେ ପ୍ରଜାତନ୍ତ୍ରର 'ଗାଁଆ ମଜଲିସ୍'ରେ ତାଙ୍କ ଭାଇ ଗୋପୀନାଥ ଦାସ ସ୍ୱଇଚ୍ଛାରେ ଇସ୍ତଫାପତ୍ରରେ ଦସ୍ତଖତ ଦେବା କଥା ସଫେଇ ଦେଇ ସେଥିରେ ଅବଶ୍ୟ ତାଙ୍କର ସମର୍ଥନ ଥିଲା ବୋଲି ମହତାବବାବୁ ସ୍ୱୀକାର କରିଥିଲେ । ସେହିଭଳି ଲୋକଦଳର ଆଉ ଜଣେ ଉତ୍ସାହୀ ଯୁବକ ବିଧାୟକ ଶ୍ରୀ ସୁରେଶ କୁମାର ରାଉତରାୟ କୁଆଡ଼େ ଶ୍ରୀ ମହତାବଙ୍କର ମାୟାଜାଲରେ ପଡ଼ି ଦଳତ୍ୟାଗ କରିଥିଲେ ବୋଲି ଅତି ଅନୁତପ୍ତ ହୋଇ ମୋ ପାଖରେ ପ୍ରକାଶକରିଥିଲେ । ଲୋକମାନଙ୍କର ସେବା କରିବାରେ ସେ ଜଣେ

କର୍ମଠ ଯୁବକ ଥିଲେ ଏବଂ ଯେକୌଣସି ପରିସ୍ଥିତିରେ ଲୋକଙ୍କପାଇଁ କାର୍ଯ୍ୟ କରାଇନେବାର ଉତ୍ସାହ ଦୃଷ୍ଟିରୁ ସେ ମୋ ପାଖରେ ଖୁବ୍ ଘନିଷ୍ଠ ହୋଇଥିଲେ । ବିଧାନସଭା ନିର୍ବାଚନ ପୂର୍ବରୁ ଦିନେ ଆମର ଯୁବକ ବନ୍ଧୁମାନଙ୍କ ଭିତରୁ ମୋର ମନେପଡ଼େ ସର୍ବଶ୍ରୀ ଚିନ୍ତାମଣି ଦାସ, ନଳିନୀ ମହାନ୍ତି, ବୁଦ୍ଧି ରାମ, ନରେନ୍ଦ୍ର ଚନ୍ଦ୍ର ପ୍ରଧାନ, ଅକ୍ଷୟ ତ୍ରିପାଠୀ ଓ ଶ୍ରୀକାନ୍ତ ଜେନା ପ୍ରଭୃତି ଆସି ବଡ଼ ବିମର୍ଷ ଅବସ୍ଥାରେ ମୋତେ କହିଥିଲେ, ''ସୁରଭାଇ ମହତାବଙ୍କ ଫାନ୍ଦରେ ପଡ଼ି ଆମକୁ ଛାଡ଼ିଯାଉଛି; ଆମେ ସବୁ ଏକାଠି ଥିଲୁ । ଏକଥା ଜାଣି ଆମ ମନ ଖରାପ । ଆପଣ କେବଳ ତାକୁ ଅଟକାଇ ପାରିବେ ।'' ଏ କଥା ଶୁଣି ମୁଁ ସୁରକୁ ଡକାଇଥିଲି । ସେ ମୋ ପାଖକୁ ଆସିଥିଲେ ଏବଂ କାନ୍ଦିପକାଇଥିଲେ । ମୋ ଆଖି ମଧ୍ୟ ଛଳଛଳ ହୋଇଯାଇଥିଲା । ଫନ୍ଦିରେ ପଡ଼ିଥିବା କଥା ସେ ସ୍ୱୀକାରକରିଥିଲେ । ଫାନ୍ଦରୁ ମୁକ୍ତ ହୋଇ ଫେରିଆସିବା କଥା ସେ ମୋତେ କହିକରି ଯାଇଥିଲେ ଏବଂ ପରଦିନ ଆସି ମୋତେ ଦେଖାକରିବାପାଇଁ ମଧ୍ୟ କହିଯାଇଥିଲେ; ମାତ୍ର ଆଉ ଫେରିନଥିଲେ । ଏବେ ମଧ୍ୟ ମୋତେ ଦେଖିଲେ ସେ ସେହି କଥା କହି ଦୁଃଖକରନ୍ତି ।

୧୯୮୦ ମସିହା ଜାନୁୟାରୀ ମାସ ଶେଷ ସପ୍ତାହରେ ରାଜ୍ୟମାନଙ୍କୁ ଡିଜେଲ୍ ଓ କିରାସିନି ତେଲ ଯୋଗାଣ ସମ୍ବନ୍ଧରେ ଆଲୋଚନା କରିବାପାଇଁ କେନ୍ଦ୍ର ସରକାର ଦିଲ୍ଲୀରେ ମୁଖ୍ୟମନ୍ତ୍ରୀମାନଙ୍କର ଗୋଟିଏ ସମ୍ମିଳନୀ ଆୟୋଜନ କରିଥିଲେ । ଏହି ସମ୍ମିଳନୀରେ ଯୋଗଦେବାପାଇଁ ମୁଁ ଦିଲ୍ଲୀ ଯାଇଥିଲି; ମାତ୍ର କଂଗ୍ରେସରେ ଯୋଗଦେବାପାଇଁ ମୁଁ ସେତେବେଳେ ଦିଲ୍ଲୀ ଯାଉଥିଲି ବୋଲି ବହୁ ସମ୍ବାଦପତ୍ରରେ ଜଳ୍ପନାକଳ୍ପନା ପ୍ରକାଶ ପାଇଥିଲା । ସେଠାରେ କେନ୍ଦ୍ରମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସହିତ ମୋର କଥାବାର୍ତ୍ତା ହୋଇଥିଲା । ମୁଁ କଂଗ୍ରେସରେ ଯୋଗଦେଇ ମୁଖ୍ୟମନ୍ତ୍ରୀ ହିସାବରେ ରାଜ୍ୟ ସରକାର, କଂଗ୍ରେସ ସଂଗଠନ ତଥା ଓଡ଼ିଶାର ଦାୟିତ୍ୱ ନେବାପାଇଁ ସେ ମୋତେ ଅନୁରୋଧ କରିଥିଲେ । ନିର୍ଦ୍ଦିଷ୍ଟ ଭାବରେ ତାଙ୍କୁ କିଛି ଉତ୍ତର ନଦେଇ ଶ୍ରୀ ଯଶପାଳ କାପୁରଙ୍କର ଅକସ୍ମାତ୍ ଓଡ଼ିଶା ଆଗମନଦ୍ୱାରା ଆମ୍ଭମାନଙ୍କର ଆଲୋଚନାର ଅଗ୍ରଗତିରେ ଯେଉଁ ବାଧା ଉପୁଜିଥିଲା ତାହା କହି ମୁଁ କଥାଟାକୁ ଏଡ଼ାଇଦେବାକୁ ଉଦ୍ୟମ କରିଥିଲି । ତେଣୁ ଏଭଳି ପ୍ରସ୍ତାବକୁ କାର୍ଯ୍ୟକାରୀ କରିବାପାଇଁ ଉଦ୍ୟମ ଚଳାଇବାକୁ ହେଲେ ଅତ୍ୟନ୍ତ ସାବଧାନତା ଅବଲମ୍ବନ କରାଯିବା ଆବଶ୍ୟକ ବୋଲି ଆମେ ଏକମତ ହୋଇଥିଲୁ । ଏଥିରୁ ଜାନକୀବାବୁ ଯାହା ବୁଝିବାର ବୁଝିଲେ ଏବଂ ମୁଁ ଯାହା ବୁଝିବାର ବୁଝିଲି । ଦିଲ୍ଲୀରେ ଶ୍ରୀ ଯଶପାଲ୍ କାପୁର ମୋତେ ଦେଖାକରିବାକୁ ବହୁତ ଉଦ୍ୟମ କରିଥିଲେ; ମାତ୍ର କୌଣସି ପ୍ରକାରେ ମୁଁ ତାଙ୍କୁ ଏଡ଼ାଇଦେଇଥିଲି । ମୁଁ ଦିଲ୍ଲୀ ଗଲାବେଳେ ମୋର କେତେକ ବନ୍ଧୁ ମୋତେ ସନ୍ଦେହଚକ୍ଷୁରେ ଦେଖିଥିଲେ । ସେମାନଙ୍କର ଆଶଙ୍କା ଥିଲା ଯେ ବୋଧହୁଏ ଦିଲ୍ଲୀରେ କଂଗ୍ରେସ ଲୋକଙ୍କଦ୍ୱାରା ପ୍ରଭାବିତ ହୋଇ ସେଠାରେ ମୁଁ କିଛି ଗୋଟାଏ ନିଷ୍ପତ୍ତି ନେଇଯିବି । ମାତ୍ର ସେ ପ୍ରକାର କିଛି ନିଷ୍ପତ୍ତି ନନେଇ ମୁଁ ଭୁବନେଶ୍ୱର ଫେରିଥିବାରୁ ସେମାନେ ଆଶ୍ୱସ୍ତି ଲାଭ କରିଥିଲେ । ଆମ ଦଳର ଓ ମନ୍ତ୍ରିମଣ୍ଡଳର ଅନେକ ବିଶିଷ୍ଟ ବ୍ୟକ୍ତିଙ୍କର ମଧ୍ୟ ଇଚ୍ଛା ଥାଏ ରାଜନୈତିକ କୌଶଳ ଦୃଷ୍ଟିରୁ କଂଗ୍ରେସ ସହିତ କଥାବାର୍ତ୍ତା ଚାଲୁରଖି କିଛି ସମୟ ଗଡ଼ାଇଦେବାପାଇଁ । ସେମାନଙ୍କର ଉଦ୍ଦେଶ୍ୟ ଥିଲା ଆମେ ମିଶିବୁ ବୋଲି ଆଶା ଦେଖାଇ କଂଗ୍ରେସ (ଇ)କୁ ଝୁଲାଇ ରଖିବାପାଇଁ । ତା'ହେଲେ ବିଧାନସଭା ଭାଙ୍ଗିବାପାଇଁ କଂଗ୍ରେସ (ଇ) ନେତୃବର୍ଗ ବିଶେଷ ଆଗ୍ରହୀ ହେବେନାହିଁ ବୋଲି ବିଚାର କରାଯାଇଥିଲା । ଫେବୃୟାରୀ ତିନି ତାରିଖରେ ଭୁବନେଶ୍ୱର ଆଦିବାସୀ ପ୍ରଦର୍ଶନୀ ପଡ଼ିଆରେ ଅତ୍ୟନ୍ତ ଉତ୍ସାହ ଉଦ୍ଦୀପନା ଭିତରେ ଲୋକଦଳର ଗୋଟିଏ ରାଜ୍ୟସ୍ତରୀୟ ରାଜନୈତିକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ରାଜ୍ୟର ସବୁ ଜିଲ୍ଲାମାନଙ୍କରୁ ବହୁସଂଖ୍ୟାରେ ଲୋକଦଳ କର୍ମୀ ଆସି ଉକ୍ତ ସମ୍ମିଳନୀରେ ଯୋଗଦେଇଥିଲେ । ସେମାନଙ୍କ ମନର ଦମ୍ଭ ଓ ଉତ୍ସାହ ଦେଖି ଆମ୍ଭେମାନେ ସ୍ତମ୍ଭୀଭୂତ ହୋଇଥିଲୁ । ବିଧାନସଭାର ପ୍ରାୟ ସବୁ ଲୋକଦଳ ସଭ୍ୟ ଉକ୍ତ ସମ୍ମିଳନୀରେ ଯୋଗ ଦେଇଥିଲେ । ସମ୍ମିଳନୀରେ ଏକତ୍ରିତ ହୋଇଥିବା

ସମସ୍ତଙ୍କର ଉତ୍ସାହ, ଦମ୍ଭ ଓ ଉତ୍ତେଜନା ଦେଖି ମୋର ମନ ମଧ୍ୟ ଖୁବ୍ ଦୃଢ଼ହୋଇଥିଲା । ରାଜନୈତିକ କୌଶଳପାଇଁ ଉଦ୍ଦିଷ୍ଟ ହେଲେ ମଧ୍ୟ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସହିତ ଯେଉଁସବୁ ଆଲୋଚନା ଚାଲିଥାଏ, ସେକଥା ସ୍ମରଣ କଲାକ୍ଷଣି ମୁଁ ବଡ଼ ଲଜ୍ଜିତ ଅନୁଭବ କରିଥିଲି । ଯେଉଁମାନଙ୍କ ଶ୍ରଦ୍ଧା ଓ ସହାୟତାରେ ମୁଁ ଲୋକଦଳର ନେତାରୂପେ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇପାରିଥିଲି, ସେମାନଙ୍କୁ ସାଙ୍ଗରେ ନେଇ ଯାହା କରିବାର କରିବି ପଛେ; ମାତ୍ର ସେମାନଙ୍କୁ ଦୂରେଇ ଦେଇ ନିଜର ସୁବିଧାପାଇଁ ଏପରି ଉଦ୍ୟମ କରିବାଟା ଗୋଟିଏ ଚରମ ବିଶ୍ୱାସଘାତକତା ହେବ ବୋଲି ମୁଁ ଭାବିଥିଲି । କଂଗ୍ରେସ(ଇ)କୁ କୌଶଳକ୍ରମେ ସନ୍ତୁଷ୍ଟ ରଖିବା କଥା ମନକୁ ଆସିଲାକ୍ଷଣି ମନରେ ଏକପ୍ରକାର ବିଦ୍ରୋହ ଜାତହେଉଥାଏ । ଏହି ରାଜନୈତିକ ସମ୍ମିଳନୀରେ ଯେଉଁ ପ୍ରସ୍ତାବ ଗୃହୀତ ହୋଇଥିଲା ସେଥିରେ ଲୋକଦଳ କାହାରି ସହିତ ନମିଶି ନିଜର ସ୍ୱାତନ୍ତ୍ର୍ୟ ରକ୍ଷାକରିବାର ଦୃଢ଼ ନିଷ୍ପତ୍ତି ନିଆଯାଇଥିଲା ଏବଂ ଲୋକଦଳ ସରକାର ତଥା ରାଜ୍ୟ ବିଧାନସଭାକୁ ଭାଙ୍ଗିଦେବାପାଇଁ ଯେଉଁସବୁ ଅଗଣତାନ୍ତ୍ରିକ ଉଦ୍ୟମ ହେଉଥିଲା ତା'ର ବିରୋଧ କରିବାପାଇଁ ମଧ୍ୟ ନିଷ୍ପତ୍ତି ନିଆଯାଇଥିଲା । ବହୁ ବ୍ୟକ୍ତି ସେ ସମୟର ରାଜନୈତିକ ପରିସ୍ଥିତି ସମ୍ବନ୍ଧରେ ଆଲୋଚନା କରିଥିଲେ ଏବଂ ଓଜସ୍ୱିନୀ ଭାଷଣ ଦେଇଥିଲେ । ଦଳ ପ୍ରତି ଆମର ସାଧାରଣ କର୍ମୀମାନଙ୍କର ଅନୁରକ୍ତି ଏବଂ ପରିବର୍ତ୍ତିତ ଅବସ୍ଥାର ସମ୍ମୁଖୀନ ହେବାପାଇଁ ସେମାନଙ୍କର ଉତ୍ସାହ ମୋ ଉପରେ ଗଭୀର ପ୍ରଭାବ ପକାଇଥିଲା । ସୁଖ ଓ ଦୁଃଖରେ ସେମାନଙ୍କ ସାଙ୍ଗରେ ରହିବି ବୋଲି ସେହିଠାରେ ଆଉ ଥରେ ସଂକଳ୍ପ ନେଇଥିଲି ।

## ଓଡ଼ିଶା ଉପରେ ଚଡ଼କ

ଭୁବନେଶ୍ୱରଠାରେ ଲୋକଦଳର ଏହି ରାଜନୈତିକ ସମ୍ମିଳନୀ ପରେ ଦଳବଦଳଦ୍ୱାରା ଓଡ଼ିଶାରେ ଲୋକଦଳ ମନ୍ତ୍ରିମଣ୍ଡଳର ପତନ ଘଟାଇ କଂଗ୍ରେସ (ଇ) ମନ୍ତ୍ରିମଣ୍ଡଳ ଗଠନ କରିବାର ଉଦ୍ୟମ ଫଳପ୍ରଦ ହେବନାହିଁ ବୋଲି କଂଗ୍ରେସ (ଇ) ନେତାମାନଙ୍କର ଚୋପଶିଥିଲା । ଦଳବଦଳ ଉଦ୍ୟମରେ ସେମାନେ ଠକିଗଲେ ବୋଲି ବୁଝିପାରିଥିଲେ । ତେଣୁ ବଳାତ୍କାର କରି କେନ୍ଦ୍ର ସରକାରଙ୍କ ଅଧିକାର ଜାହିର କରିବାପାଇଁ ସାଂବିଧାନିକ କ୍ଷମତାର ବଜ୍ରପାତ କରିବାଟା ରହିଲା ଏକମାତ୍ର ଉପାୟ । ସେହି ଚକ୍ରାନ୍ତ କାର୍ଯ୍ୟକାରୀ ହେଲା । ଓଡ଼ିଶା ବିଧାନସଭାର ବଜେଟ୍ ଅଧିବେଶନ ଫେବୃୟାରୀ ମାସ ଏଗାର ତାରିଖରେ ଆରମ୍ଭ ହୋଇଥିଲା । ରାଜ୍ୟପାଳ ଶ୍ରୀ ଭଗବତ୍ ଦୟାଲ ଶର୍ମାଙ୍କର ଅଭିଭାଷଣ ଉପରେ ଆଲୋଚନା ଆରମ୍ଭ କରାଯାଇ ତାହା ସମାପ୍ତ ହୋଇନଥାଏ । ଏହି ସମୟରେ ଫେବୃୟାରୀ ଷୋଳ ତାରିଖ ଦିନ ପୂର୍ଣ୍ଣଗ୍ରାସ ସୂର୍ଯ୍ୟୋପରାଗ ହୋଇଥିଲା । ସେଥିପାଇଁ ବିଧାନସଭା ବନ୍ଦ ଥିଲା ଏବଂ କେଉଁଝରରେ ହେବାକୁ ଯାଉଥିବା ଲୋକସଭା ଉପନିର୍ବାଚନପାଇଁ ସବୁ ଦଳର ସମ୍ମତିକ୍ରମେ ବିଧାନ ସଭାର ବୈଠକ ଫେବୃୟାରୀ ମାସ ପଚିଶ ତାରିଖ ପର୍ଯ୍ୟନ୍ତ ବନ୍ଦକରାଯାଇଥିଲା । ଇତିମଧ୍ୟରେ ଫେବୃୟାରୀ ମାସ ସତର ତାରିଖ ପ୍ରାୟ ମଧ୍ୟରାତ୍ରରେ ଓଡ଼ିଶା ସହିତ ନଅଟି ରାଜ୍ୟର ମନ୍ତ୍ରିମଣ୍ଡଳକୁ ଭାଙ୍ଗିଦେବା ସଙ୍ଗେ ସଙ୍ଗେ ବିଧାନସଭାକୁ ଭାଙ୍ଗିଦିଆଯାଇ ସେ ରାଜ୍ୟମାନଙ୍କରେ ରାଷ୍ଟ୍ରପତି ଶାସନ ଜାରିକରାହେଲା । ମୁଁ ସେତେବେଳେ କେଉଁଝର ଲୋକସଭା ନିର୍ବାଚନମଣ୍ଡଳୀରେ ଲୋକଦଳପ୍ରାର୍ଥୀ ଶ୍ରୀ ଗୋବିନ୍ଦ ମୁଣ୍ଡାଙ୍କଦ୍ୱାରା ଆୟୋଜିତ ସଭାମାନଙ୍କରେ ଭାଷଣ ଦେବାପାଇଁ ସେ ଅଞ୍ଚଳରେ ଗସ୍ତ କରୁଥାଏ । ଫେବୃୟାରୀ ମାସ ସତର ତାରିଖ ରାତିରେ ମୁଁ ମୟୂରଭଞ୍ଜ ଜିଲ୍ଲା କରଞ୍ଜିଆ ଡାକବଙ୍ଗଳାରେ ବିଶ୍ରାମ ନେଇଥିଲି । ପ୍ରାୟ ରାତି ତିନିଟା ସମୟରେ ମୋର ପର୍ସନାଲ୍ ଆସିଷ୍ଟାଣ୍ଟ ଶ୍ରୀ ପ୍ରଫୁଲ୍ଲ କୁମାର ଦାସ ମୋତେ ନିଦରୁ ଉଠାଇ କେନ୍ଦ୍ର ସରକାର ତଥା ରାଷ୍ଟ୍ରପତିଙ୍କର ଉପରୋକ୍ତ ମଧ୍ୟରାତ୍ର ଘୋଷଣା କଥା ଜଣାଇଥିଲେ । ଅଠର ତାରିଖ ପ୍ରତ୍ୟୁଷରେ ମୁଁ ରାଜଧାନୀ ଅଭିମୁଖେ ପ୍ରତ୍ୟାବର୍ତ୍ତନକଲି । ମୟୂରଭଞ୍ଜ ଜିଲ୍ଲା ପୁଲିସ ସଂସ୍ଥା ପକ୍ଷରୁ ମୁଖ୍ୟମନ୍ତ୍ରୀରୂପେ ମୋପାଇଁ ଯେଉଁ ପୁଲିସ ବନ୍ଦୋବସ୍ତ ହୋଇଥିଲା ତାହା ଫେରାଇନେବାକୁ

ପରାମର୍ଶ ଦେଇଥିଲି; କାରଣ ଅଠର ତାରିଖ ଦିନ ଆଉ ମୁଁ ମୁଖ୍ୟମନ୍ତ୍ରୀ ନଥିଲି । ସେଠାରେ ଉପସ୍ଥିତ ଥିବା ମୟୂରଭଞ୍ଜ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀ ଦାରିଦ୍ର୍ୟଭଞ୍ଜନ ମହାନ୍ତି ତାହା ଫେରାଇନେବାକୁ ଅନିଚ୍ଛା ପ୍ରକାଶ କରିଥିଲେ । ସେ କହିଥିଲେ ଯେ ମୋତେ ନିରାପଦରେ ରାଜଧାନୀରେ ପହଞ୍ଚାଇଦେବା ପୁଲିସର କର୍ତ୍ତବ୍ୟ । ତେଣୁ ଏସ୍.ପି. ଶ୍ରୀ ମହାନ୍ତି ନିଜେ ମାର୍ଗରକ୍ଷୀ ଦଳ ସହ ପଥପ୍ରଦର୍ଶକ ଭାବରେ ଆସି ମୋତେ ତାଙ୍କ ଜିଲ୍ଲାର ସୀମା ପାରକରିଦେଇଥିଲେ । ତା'ପରେ କେଉଁଝର ଜିଲ୍ଲାର ପୁଲିସ ମାର୍ଗରକ୍ଷୀ ଦଳ ଦାୟିତ୍ୱ ନେଇଥିଲେ । ସେହି ଦିନ ସକାଳବେଳା ମୁଁ ଭୁବନେଶ୍ୱରରେ ପହଞ୍ଚିଥିଲି । ବାଟରେ କେଉଁଝର ବିଶ୍ରାମଭବନରେ ସାମ୍ବାଦିକମାନେ ମୋତେ ଦେଖାକରି ମୋର ପ୍ରତିକ୍ରିୟା ଜାଣିବାକୁ ଚାହିଁଥିଲେ । ବିଧାନସଭା ଭାଙ୍ଗିବାରେ ଶ୍ରୀମତୀ ଗାନ୍ଧୀଙ୍କର ନୀତିଜ୍ଞାନହୀନ ସଂକୀର୍ଣ୍ଣ ଦଳଗତ ରାଜନୀତିର ତୀବ୍ର ସମାଲୋଚନା କରି ସେ କିପରି ଆମ ସଂବିଧାନ ଉପରେ ବ୍ୟଭିଚାର କରୁଛନ୍ତି ମୁଁ ତାହା ଦର୍ଶାଇଥିଲି । ଲୋକସଭା ନିର୍ବାଚନରେ ଯେଉଁ ରାଜ୍ୟମାନଙ୍କରେ ଜନମତ ସଂପୂର୍ଣ୍ଣଭାବରେ ରାଜ୍ୟର ଶାସନ ଦାୟିତ୍ୱରେ ଥିବା ଦଳ ବିରୁଦ୍ଧରେ ପ୍ରକାଶପାଇଥିଲା ସେ ରାଜ୍ୟ ବିଧାନସଭାଗୁଡ଼ିକୁ ଭାଙ୍ଗିଦେଇ ସେଠାରେ ପୁନି ନିର୍ବାଚନ ଆବଶ୍ୟକ ବୋଲି ଶ୍ରୀମତୀ ଗାନ୍ଧୀ ଘୋଷଣା କରିଥିଲେ । ତାହାହିଁ ଯଦି ଥିଲା ନିଷ୍ପତ୍ତିର ମାପକାଠି, ତା'ହେଲେ ହରିଆନା ଓ ହିମାଚଳ ପ୍ରଦେଶରେ ବିଧାନସଭାକୁ କାହିଁକି ଭଙ୍ଗାନଗଲା– ସେ ବିଷୟରେ ମୁଁ ପ୍ରଶ୍ନ କରିଥିଲି । ହରିଆନା ଓ ହିମାଚଳ ପ୍ରଦେଶରେ ମଧ ଲୋକସଭା ନିବାର୍ଚ୍ଚନରେ ଲୋକଦଳ ନିଶ୍ଚିହ୍ନ ହୋଇଯାଇଥିଲା । ବିଧାନସଭା ଭାଙ୍ଗିଦେଇ ପୁନି ନିର୍ବାଚନ କରିବାର ମାପକାଠି ଯଦି ହେଲା ୧୯୮୦ ମସିହା ଲୋକସଭା ନିର୍ବାଚନର ପ୍ରକାଶିତ ଜନମତ, ତେବେ ସେହି ପ୍ରକାର ପରିସ୍ଥିତି ଉପୁଜିଥିବା ସବୁ ରାଜ୍ୟର ବିଧାନସଭାକୁ ଭାଙ୍ଗିଦେବା ନ୍ୟାୟସମ୍ମତ କାର୍ଯ୍ୟ ହୋଇଥା'ନ୍ତା । ଅବିକଳ ଏହି ପ୍ରକାର ପରିସ୍ଥିତି ୧୯୭୭ ମସିହା ଲୋକସଭା ନିର୍ବାଚନ ପରେ ଓଡ଼ିଶାରେ ଦେଖାଦେଇଥିଲା । ସେ ନିର୍ବାଚନରେ ଜନମତ କଂଗ୍ରେସ ବିରୁଦ୍ଧରେ ଯାଇଥିଲା । ସେତେବେଳେ ଯେଉଁ ନଅଟି ରାଜ୍ୟର ବିଧାନସଭାକୁ ଭାଙ୍ଗି ପୁନି ନିର୍ବାଚନ ପ୍ରଶ୍ନ ଉଠୁଥାଏ ତା' ଭିତରେ ଥାଏ ଓଡ଼ିଶା । ସେତେବେଳେ ଓଡ଼ିଶାରେ ବିଧାନସଭାରେ ବହୁ କଂଗ୍ରେସ ସଭ୍ୟ ଦଳତ୍ୟାଗ କରି ଆସି ଜନତା ଦଳରେ ଯୋଗଦେଇଥିଲେ । ମୋ ନେତୃତ୍ୱରେ ମନ୍ତ୍ରିମଣ୍ଡଳ ଗଠନର ପ୍ରସ୍ତାବ ଥାଏ ଏବଂ ତାହା ନିର୍ବିଘ୍ନରେ ହୋଇଯିବାର ସମ୍ଭାବନା ମଧ ଥାଏ । ମାତ୍ର ଜନତା ଦଳର ଉଚ୍ଚ କର୍ତ୍ତୃପକ୍ଷ ତା' ପସନ୍ଦ ନ କରିବାରୁ ସେ ଦିଗରେ ଆମ୍ଭେମାନେ ଆଉ ଅଗ୍ରସର ହୋଇନଥିଲୁ । ଏଠାରେ ସହଜରେ ଜନତା ମନ୍ତ୍ରିମଣ୍ଡଳ ଗଠିତ ହେବାର ସୁଯୋଗ ଥିଲେ ମଧ ପକ୍ଷପାତ ନୀତି ଅବଲମ୍ବନ ନକରି ସମଦଶାପନ୍ନ ଅନ୍ୟ ସବୁ ରାଜ୍ୟ ସହିତ ଓଡ଼ିଶାରେ ମଧ ପୁନି ନିର୍ବାଚନ କରାଯାଇଥିଲା । ୧୯୮୦ ମସିହାରେ କିନ୍ତୁ ଶ୍ରୀମତୀ ଗାନ୍ଧୀ ସୁବିଧାବାଦୀ ପକ୍ଷପାତ ନୀତିର ଆଶ୍ରୟ ନେଇଥିଲେ । ଯେହେତୁ ସବୁ ପ୍ରକାର ଆଦର୍ଶକୁ ଜଳାଞ୍ଜଳି ଦେଇ ହରିଆନା ଓ ହିମାଚଳ ପ୍ରଦେଶରେ ନୀତିଜ୍ଞାନହୀନ ଆଚରଣଦ୍ୱାରା ଦଳବଦଳ କରାଇ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରାଯାଇଥିଲା, ସେଥିପାଇଁ ସେଠାରେ ପକ୍ଷପାତ ନୀତି ଅନୁସରଣ କରି ଦଳବଦଳକାରୀମାନଙ୍କୁ ପୁରସ୍କୃତ କରାଯାଇଥିଲା ବୋଲି ମୁଁ ଅଭିଯୋଗ କରିଥିଲି । ପ୍ରଧାନମନ୍ତ୍ରୀଙ୍କର ଏ ପ୍ରକାର Machiavellian ନୀତି ଓ କାର୍ଯ୍ୟକଳାପ ଗାନ୍ଧୀବାଦର ଧ୍ୱଂସସାଧନ କରିବା ସଙ୍ଗେ ସଙ୍ଗେ ଦେଶରେ ନୈତିକ ଜୀବନରେ ଅଧୋଗତି ଘଟାଇବ ବୋଲି ମୁଁ ମତବ୍ୟକ୍ତ କରିଥିଲି ।

## ପ୍ରାର୍ଥୀ ହେଲିନାହିଁ କାହିଁକି ?

୧୯୮୦ ମସିହା ଜୁନ୍ ମାସରେ ବିଧାନସଭାପାଇଁ ଆମ ରାଜ୍ୟରେ ଯେଉଁ ନିର୍ବାଚନ ଅନୁଷ୍ଠିତ ହୋଇଥିଲା, ସେ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା ନକରିବାପାଇଁ ମୁଁ ସିଦ୍ଧାନ୍ତ ନେଇଥିଲି । ମୋର ଏହି

ସିଦ୍ଧାନ୍ତରେ ମୋର ବହୁ ବନ୍ଧୁ ଅତ୍ୟନ୍ତ ଦୁଃଖିତ ହୋଇଥିଲେ । ୧୯୪୮ ମସିହାଠାରୁ ପ୍ରତ୍ୟେକ ନିର୍ବାଚନରେ ମୁଁ ପ୍ରତିଦ୍ୱନ୍ଦିତା କରିଆସିଥିଲି । ତେଣୁ ୧୯୮୦ ମସିହାରେ ମୋର ନିର୍ବାଚନରେ ଛିଡ଼ା ନ ହେବା ସିଦ୍ଧାନ୍ତରେ ଅନେକେ ବିସ୍ମିତ ହୋଇଥିଲେ । ୧୯୮୦ ମସିହା ଜାନୁୟାରୀ ମାସରେ ଯେତେବେଳେ ଲୋକସଭାପାଇଁ ନିର୍ବାଚନ ହେଉଥାଏ ସେତେବେଳେ ମୁଁ ଥାଏ ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ । ସେହି ନିର୍ବାଚନର ପ୍ରାୟ ଦେଢ଼ମାସ ପୂର୍ବରୁ କେତେକ ନିତ୍ୟବ୍ୟବହାର୍ଯ୍ୟ ପଦାର୍ଥର ଅଭାବ ଓ ଦରବୃଦ୍ଧି ଘଟିଥିଲା । ସେହି ସମୟରେ ଆସାମ ରାଜ୍ୟରେ ବିଦେଶୀ-ସମସ୍ୟା ସମ୍ବନ୍ଧୀୟ ଆନ୍ଦୋଳନ ଅତି ଉତ୍କଟ ହୋଇଥିଲା । ଆସାମର ଯେଉଁ ଅଞ୍ଚଳମାନଙ୍କରେ କିରୋସିନି ତେଲ ଉତ୍ପନ୍ନ ହୁଏ, ସେସବୁ ଅଞ୍ଚଳରେ ଅତ୍ୟଧିକ ଅଶାନ୍ତି ଘଟିବାରୁ କିରୋସିନି ତେଲ ଉତ୍ପାଦନ ଓ ଯୋଗାଣରେ ବ୍ୟାଘାତ ଘଟିଥିଲା । ଆମ ରାଜ୍ୟରେ ଏହାର ତୀବ୍ର ପ୍ରତିକ୍ରିୟା ଅନୁଭୂତ ହୋଇଥିଲା । ରାଜ୍ୟକୁ କିରୋସିନି ତେଲ ଯୋଗାଣ ହ୍ରାସପାଇଥିଲା । ଏ ପ୍ରକାର ପରସ୍ଥିତି ଅତି ଆକସ୍ମିକଭାବରେ ଉପୁଜିଥିବାରୁ ଆମ ରାଜ୍ୟକୁ ଯେତିକି କିରୋସିନି ଆସୁଥିଲା ତାହା ବଣ୍ଟନ କରିବାରେ ମଧ୍ୟ ନାନାପ୍ରକାର ଅସୁବିଧା ଉପୁଜିଲା । ତାହାଛଡ଼ା ଜିନିଷ ଅଭାବ ହେବାରୁ ଅସାଧୁ ବ୍ୟବସାୟୀମାନେ ମଧ୍ୟ ସେମାନଙ୍କର କାରସାଦି ଦେଖାଇ ଉଚିତ ଦରଠାରୁ ଅଧିକ ଦରରେ ଲୋକଙ୍କୁ ବିକିଲେ । ସ୍ୱଳ୍ପ ଜିନିଷର ସୁବଣ୍ଟନ ଓ ଦରବୃଦ୍ଧି ରୋକିବାପାଇଁ ଯେଉଁ ସଂସ୍ଥା ଓ କଟକଣା ଆବଶ୍ୟକ ତାର ବ୍ୟବସ୍ଥା କରିବାପାଇଁ ଯେ ଟିକିଏ ସମୟ ଲାଗିବ ସେକଥା ବୁଝିଲେ ମଧ୍ୟ ନବୁଝିଲାଭଳି ବିରୁଦ୍ଧଦଳର ଲୋକମାନେ ସରକାରଙ୍କ ଉପରେ ଦୋଷାରୋପ କରିବାରେ ଲାଗିଥିଲେ । ଆସାମରେ ଆନ୍ଦୋଳନ ଓ ସେଠାକାର ଅସ୍ୱାଭାବିକ ପରିସ୍ଥିତି ହେତୁ ଦେଶରେ କିରୋସିନି ତେଲ ଯୋଗାଣରେ ଯେଉଁ ବ୍ୟାଘାତ ଘଟିଥିଲା ସେକଥା ଜାଣିଥିଲେ ମଧ୍ୟ କିରୋସିନି ତେଲର ଅଭାବପାଇଁ ରାଜ୍ୟ ସରକାରଙ୍କୁ ଦାୟୀ କରାଯାଇଥିଲା । ଏହି ସମୟରେ ଆମ ରାଜ୍ୟରେ ଆଳୁ ଓ ପିଆଜର ଦର ମଧ୍ୟ ବୃଦ୍ଧି ପାଇଥିଲା । ଆଳୁ ଓ ପିଆଜ ଉପରେ କୌଣସି ସରକାରୀ ନିୟନ୍ତ୍ରଣ ନଥିଲେ ମଧ୍ୟ ସେ ପଦାର୍ଥମାନଙ୍କର ଅଭାବ ଓ ଦରବୃଦ୍ଧିପାଇଁ ରାଜ୍ୟ ସରକାରଙ୍କୁ ଦାୟୀ କରାଯାଇଥିଲା । ବିରୁଦ୍ଧ ଦଳର ଲୋକଙ୍କର ପ୍ରଚାରରେ ଆମ ଦଳର ଲୋକେ ମଧ୍ୟ ପ୍ରଭାବିତ ହୋଇ ଉଚ୍ଛନ୍ନ ହୋଇଥିଲେ । ରାଜ୍ୟରେ କିରୋସିନି ତେଲର ଅଭାବ ଦୂର କରିବାରେ ଓ ଦରଦାମ୍ ବୃଦ୍ଧିକୁ ରୋକିବା ଦିଗରେ ରାଜ୍ୟ ସରକାର ସଂପୂର୍ଣ୍ଣଭାବରେ ଅକ୍ଷମ ବୋଲି ଆମ ଦଳର ଅନେକ ଲୋକ ମଧ୍ୟ କହିବାକୁ ଲାଗିଲେ । ମୋର ଅପାରଗତା ହେତୁ ନିର୍ବାଚନରେ ଲୋକଦଳକୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡୁଛି ବୋଲି ଆମ ଦଳର ନେତାମାନେ ମଧ୍ୟ କହିବାକୁ ଆରମ୍ଭ କରିଥିଲେ । ଦରଦାମ୍ ବୃଦ୍ଧି ରୋକିବାରେ ଓ କିରୋସିନି ତେଲ ଯୋଗାଣ ତଥା ବଣ୍ଟନରେ ରାଜ୍ୟ ସରକାରଙ୍କର ଅପାରଗତାରେ ଅସନ୍ତୋଷ ଓ ଉଦ୍‌ବେଗ ପ୍ରକାଶ କରି ''ନୀଳମଣି ଆମକୁ ବୁଡ଼ାଇ ଦେଲା'', ''ଜଗନ୍ନାଥ ମହାପ୍ରଭୁ ଭରସା ଏବଂ ସେଇ ଜଗନ୍ନାଥ ରକ୍ଷା କଲେ କରିବେ'' ବୋଲି ଶ୍ରୀ ବିଜୁ ପଟ୍ଟନାୟକ ସାମ୍ବାଦିକମାନଙ୍କ ଆଗରେ ପ୍ରକାଶକରିଥିଲେ ଏବଂ ତାଙ୍କର ଏହି ପ୍ରକାର ମନ୍ତବ୍ୟ ଖବରକାଗଜମାନଙ୍କରେ ପ୍ରକାଶ ପାଇଥିଲା । ବିଜୁବାବୁଙ୍କର ଏ ପ୍ରକାର ମନ୍ତବ୍ୟ ଦେବା ଆପତ୍ତିଜନକ ଓ ଅବାଞ୍ଛନୀୟ ବୋଲି ମୁଁ ବନ୍ଧୁମାନଙ୍କ ଆଗରେ ପ୍ରକାଶ କରିଥିଲି । ପରେ ବିଜୁବାବୁ ଅବଶ୍ୟ ତାଙ୍କର ପୂର୍ବ ପ୍ରକାଶିତ ଉକ୍ତିକୁ ଅସ୍ୱୀକାର କରିବାକୁ ଯାଇ କହିଥିଲେ ଯେ ସେ ହାଲକା ମନରେ ଯାହା କହିଦେଲେ ତାକୁ କେତେକ ସାମ୍ବାଦିକ ଗୁରୁତ୍ୱ ଦେଇ ସେପରିଭାବରେ ପ୍ରକାଶ କରିବା ଉଚିତନଥିଲା । ଲୋକସଭା ନିର୍ବାଚନରେ ଯେତେବେଳେ ଲୋକଦଳର ବିପର୍ଯ୍ୟୟ ହୁଏ ସେତେବେଳେ ମଧ୍ୟ ବିଜୁବାବୁ ପ୍ରମୁଖ ଆମର ନେତୃବର୍ଗ କିରୋସିନି ତେଲର ଅଭାବ ଓ ଦରଦାମ୍ ବୃଦ୍ଧି ଆମ ବିପର୍ଯ୍ୟୟର ପ୍ରଧାନ କାରଣ ବୋଲି ଦର୍ଶାଇବାକୁ ଲାଗିଥିଲେ । ସେତେବେଳେ ମୁଁ ବିଚାର କରିଥିଲି ଯେ ଯଦି ମୁଖ୍ୟମନ୍ତ୍ରୀ ହିସାବରେ ମୋର ଅପାରଗତା ହେତୁ ଲୋକସଭା ନିର୍ବାଚନରେ ଦଳକୁ ଚରମ ବିପର୍ଯ୍ୟୟର ସମ୍ମୁଖୀନ

ହେବାକୁ ପଡ଼ିଥିଲା, ସେ ଅବସ୍ଥାରେ ନିର୍ବାଚନରେ ବିଧାନସଭାକୁ ପ୍ରାର୍ଥୀ ହେବା ମୋ ପକ୍ଷରେ ଆଦୌ ସମୀଚୀନ ହେବନାହିଁ । ସେହି ପରିପ୍ରେକ୍ଷୀରେ ମୋର ତ୍ରୁଟିର ପ୍ରାୟଶ୍ଚିତ୍ତସ୍ୱରୂପ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା ନକରିବା ମୋ ପକ୍ଷରେ ଶ୍ରେୟସ୍କର ହେବ ବୋଲି ମୁଁ ବିଚାରିଥିଲି ।

ସେ ସମୟରେ ହଠାତ୍ ଦରବୃଦ୍ଧି ଓ କିରୋସିନି ତେଲର ଅଭାବ ହେତୁ ଲୋକଦଳ, ଜନତାଦଳ ଓ ଭାରତୀୟ ଜନତାଦଳ ପ୍ରଭୃତି ଦଳମାନଙ୍କର ନିର୍ବାଚନରେ ବିପର୍ଯ୍ୟୟର କାରଣନୁହେଁ ବୋଲି ମୋର ଦୃଢ଼ ବିଶ୍ୱାସ ଥିଲା । ବ୍ୟକ୍ତିଗତ କ୍ଷମତାଲିପ୍ସାରେ ଜଘନ୍ୟ ଅନ୍ତର୍ଦ୍ୱନ୍ଦ୍ୱଦ୍ୱାରା କେନ୍ଦ୍ରରେ ଜନତା ସରକାରର ପତନ ଘଟାଯିବାରୁ ଜନସାଧାରଣ କ୍ରୋଧାନ୍ୱିତ ହୋଇ ନିର୍ବାଚନରେ ସେମାନଙ୍କର ପ୍ରାର୍ଥୀମାନଙ୍କ ପ୍ରତି ବିମୁଖ ହୋଇ ସେମାନଙ୍କର ପତନ ଘଟାଇଥିଲେ ବୋଲି ମୁଁ କହିଥିଲି । ଶ୍ରୀ ବିଜୁ ପଟ୍ଟନାୟକ ଯେ ସେକଥା ବୁଝିନଥିଲେ ତା' ନୁହେଁ; ମାତ୍ର ସେକଥା ସ୍ୱୀକାର କରିବାକୁ ସେ ସଂକୋଚବୋଧ କରିଥିଲେ ବୋଲି ମୁଁ ଅନୁଭବ କରିଥିଲି । ତେଣୁ ଦରଦାମ୍ ବୃଦ୍ଧିର ଦ୍ୱାହି ଦେଇ ସେ ନିଜର ଦୋଷକୁ ଘୋଡ଼ାଇବାକୁ ଲାଗିଥିଲେ । ତା' ଛଡ଼ା ବିଜୁବାବୁଙ୍କର ଧାରଣା ଥିଲା ଯେ ଲୋକସଭା ନିର୍ବାଚନରେ ଆମ ରାଜ୍ୟରେ ଲୋକଦଳର ବିପର୍ଯ୍ୟୟ ଘଟିଥିଲେ ମଧ୍ୟ ବିଧାନସଭା ନିର୍ବାଚନରେ ଲୋକଦଳ ଯଦି ତାଙ୍କ ନେତୃତ୍ୱରେ ଲଢ଼େ, ତେବେ ନିଶ୍ଚୟ ଲୋକ-ସମର୍ଥନ ମିଳିବ । ତେଣୁ ଶ୍ରୀ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ବିଧାନସଭା ନିର୍ବାଚନ ଲଢ଼ାହେବ ବୋଲି ରାଜ୍ୟର ଲୋକଦଳ ନିଷ୍ପତ୍ତି କରିଥିଲେ ଏବଂ ସେ ଲୋକସଭାର ସଦସ୍ୟ ଥିଲେ ମଧ୍ୟ ବିଧାନସଭାପାଇଁ ପାଟକୁରା ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହୋଇଥିଲେ । ଦିଲ୍ଲୀରେ ଜନତା ସରକାର ଓ ଜନତାଦଳକୁ ଭାଙ୍ଗିବାରେ ଆମ ରାଜ୍ୟର ବିଜୁବାବୁ ଓ ରବି ରାୟ ଯେପରି ଭାବରେ ଜଡ଼ିତ ଥିଲେ ସେଥିପାଇଁ ଓଡ଼ିଶାର ଜନସାଧାରଣ ଯେ ସେମାନଙ୍କ ଉପରେ ଅସନ୍ତୁଷ୍ଟ ଥିଲେ ସେ କଥା ବିଜୁବାବୁ ବୁଝିପାରିନଥିଲେ । ବିଧାନସଭା ନିର୍ବାଚନ ପରେ ନିଜର ଲୋକପ୍ରିୟତା ସମ୍ବନ୍ଧରେ ତାଙ୍କର ଯେଉଁ ଧାରଣା ଥିଲା ତାହାର ଭ୍ରମ ସେ ବୁଝିପାରିଥିଲେ । ଏହି ପରିପ୍ରେକ୍ଷୀରେ ଏବଂ ପରିବର୍ତ୍ତିତ ଅବସ୍ଥାରେ ମୁଁ ବିଧାନସଭା ପାଇଁ ପ୍ରାର୍ଥୀ ହୋଇନଥିବା ବିଜ୍ଞତାର କାର୍ଯ୍ୟ ବୋଲି ମୋର ହିତୈଷୀ ବନ୍ଧୁମାନେ ମୋତେ ଜଣାଇଥିଲେ । ଆଉ ଗୋଟିଏ କଥା ମୋ ମନକୁ ସେତେବେଳେ ଆସିଥିଲା । ଦୀର୍ଘ ବୟାଳିଶ ବର୍ଷକାଳ କ୍ରମାନ୍ୱୟରେ ସକ୍ରିୟ ରାଜନୀତିରେ ଜୀବନଯାପନ କରିଥିବାରୁ ପରିବର୍ତ୍ତନ ଅଭାବରୁ ଜୀବନର ଧାରା କ୍ରମେ ଏକପ୍ରକାର ନିରସ ଓ ଅରୁଚିକର ହୋଇଯାଉଥିଲା ଏବଂ ସେଥିପାଇଁ ମନରେ ସମୟ-ସମୟରେ ବିରକ୍ତିଭାବ ଉପୁଜୁଥିଲା । ଏ ଅବସ୍ଥାରେ ମୋର ପରିବର୍ତ୍ତନବିହୀନ ଭାରାକ୍ରାନ୍ତ ମନ କିଛିକାଳ ବିଶ୍ରାମ ଲୋଡୁଥିଲା । ତତ୍କାଳୀନ ପରିସ୍ଥିତି ମୋତେ ସେହି ସୁଯୋଗ ଯୋଗାଇଦେଲା ବୋଲି ମୁଁ ଭାବିଲି ।

## ଏକ ଅନୁଶୋଚନା

ଭାରତର ଜନଗଣଙ୍କ ମନ ବା ଇଚ୍ଛାକୁ ଆମେ ଆମ ରାଷ୍ଟ୍ରୀୟ ଜୀବନର ଅଧିନାୟକ ଜ୍ଞାନ କରି ତା'ର ଜୟଗାନ କରୁଛୁ ନା ଭାରତବର୍ଷର ଜନ-ଗଣ-ମନ-ଅଧିନାୟକରୂପେ ଜାତିର ପିତା ମହାତ୍ମା ଗାନ୍ଧୀଙ୍କର ଜୟଗାନ କରୁଛୁ ? ଆମ ଜାତୀୟ ସଙ୍ଗୀତର ମର୍ମ କ'ଣ ? କିନ୍ତୁ ଏକଥା ଅବଶ୍ୟ ସତ୍ୟ ଯେ ରାଷ୍ଟ୍ରପତି ବା ପ୍ରଧାନମନ୍ତ୍ରୀଙ୍କୁ ଅଧିନାୟକରୂପେ ସ୍ତବ କରିବା ବିଶ୍ୱକବିଙ୍କ ରଚିତ ରାଷ୍ଟ୍ରୀୟ ସଙ୍ଗୀତ ପ୍ରତି ଏକ ବିଦ୍ରୂପ । ଶାସନକୁ ଦେଶ ସଙ୍ଗେ ସମାନ ଜ୍ଞାନ କରାଯାଇନପାରେ । Indira is India କୁହାଯାଇ ନପାରେ । ଏହି କୁଖ୍ୟାତ ଧ୍ୱନିର ପ୍ରଚାର ଓ ପ୍ରସାରପାଇଁ ପ୍ରଶ୍ରୟ ଦେଇଥିବାରୁ ତାହାର ଭୟାବହ ପରିଣତି ନିମନ୍ତେ ଶ୍ରୀମତୀ ଗାନ୍ଧୀଙ୍କ ବ୍ୟକ୍ତିକୈନ୍ଦ୍ରିକ ରାଜନୀତିକୁ ଆମର ଭାବୀ ବଂଶଧରମାନେ ଦିନେ ନା ଦିନେ ନିଶ୍ଚୟ ଇଟାଲୀର କୁଖ୍ୟାତ ରାଜନୀତିଜ୍ଞ ଓ ଦାର୍ଶନିକ ନିକୋଲା ମାକିଆଭେଲୀଙ୍କ ରାଜନୀତି ଓ ଆଚରଣ ସହିତ ତୁଳନାକରିବେ । ରାଜନୀତିବିଜ୍ଞାନରେ ମାକିଆଭେଲୀଙ୍କୁ ସୟତାନର ଆଖ୍ୟା ଦିଆଯାଇଥିଲା ।

'ମାକିଆଭେଲୀଆନ୍' ଶବ୍ଦଟି ଏପରି ଘୃଣ୍ୟ ଓ ତିରସ୍କୃତ ଯେ ତାହା ଇଂରାଜୀ ଅଭିଧାନରେ ସ୍ଥାନ ପାଇପାରିଛି । Chambers English Dictionaryରେ ମାକିଆଭେଲୀଆନ୍ ରାଜନୀତିର ଅର୍ଥ ହେଉଛି, "Destitute of political morality, ruled by expediency only; crafty perfidious in conduct, activity." 'One Hundred Great Lives' ପୁସ୍ତକରେ ମାକିଆଭେଲୀଙ୍କ ବିଷୟରେ କୁହାଯାଇଛି, "Machiavelli, the Italian who gave two nouns and an adjective to the English language and made his name a household word in every civilised country, has been the most widely read, the most abused, and most influential of all writers on the art of politics. He was a keen-sighted analyst of states and statecraft, and his works are the foundations of modern political science. Yet because he believed that political good could be achieved only by expediency without regard to right or morality, this mild mannered, pleasant, kindly, pleasure loving man has become, in the popular view, the devil incarnate." ସେହିଭଳି ଭାରତର ରାଜନୈତିକ ଇତିହାସରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ସ୍ଥାନ ମାକିଆଭେଲୀଙ୍କ ସହିତ ତୁଳନୀୟ ବୋଲି ଐତିହାସିକମାନେ ଭବିଷ୍ୟତରେ ଯେ ନିଶ୍ଚୟ ଲିପିବଦ୍ଧ କରିବେ ତାହା ନିଃସନ୍ଦେହରେ କୁହାଯାଇପାରେ ।

ଶ୍ରୀମତୀ ଗାନ୍ଧୀ ମହାତ୍ମା ଗାନ୍ଧୀଙ୍କ ଯୁଗର ଗଣତାନ୍ତ୍ରିକ ଓ ଉଦାରପନ୍ଥୀ ପରିବେଷ୍ଟନୀରୁ ସମ୍ଭୂତ ହୋଇ ଓ ତାଙ୍କର ପିତା ପଣ୍ଡିତ ନେହେରୁ ଜଣେ ଉଚ୍ଚକୋଟୀର ବିବେକୀ ଓ ନୀତିନିଷ୍ଠ ରାଜନୀତିଜ୍ଞ ଥିଲେ ମଧ୍ୟ କ୍ଷମତା-ପିପାସା ଶ୍ରୀମତୀ ଗାନ୍ଧୀଙ୍କୁ ଏ ପ୍ରକାର ବିବେକହୀନ କରିପକାଇଲା ଯେ ଅବଶେଷରେ ସେ ସବୁପ୍ରକାର ଗଣତାନ୍ତ୍ରିକ ପରମ୍ପରାର ଧ୍ୱଂସ ସାଧନ କରି ଏକଛତ୍ରବାଦ ଓ ସ୍ୱେଚ୍ଛାଚାରିତାର ମୂର୍ତ୍ତିମନ୍ତ ପ୍ରତୀକ ପାଲଟିଗଲେ ବୋଲି ଐତିହାସିକମାନେ କହିବେ । ଏ ପ୍ରକାର ପରିସ୍ଥିତିରେ ଅନେକ ଦେଶରେ ଗଣତନ୍ତ୍ର ଲୋପପାଇଛି । ବିଂଶ ଶତାବ୍ଦୀର ଶେଷଭାଗରେ ମଧ୍ୟ ଗଣତନ୍ତ୍ରର ବିଲୋପସାଧନ ଓ ନାନାପ୍ରକାର ଏକାଧିପତ୍ୟ ବିସ୍ତାରର ପ୍ରମାଣ ଦେଖିବାକୁ ମିଳିଛି । ଏହି ବିଂଶଶତାବ୍ଦୀର ମଧ୍ୟଭାଗରେ ଏସିଆ ଓ ଆଫ୍ରିକା ମହାଦେଶମାନଙ୍କରେ ବହୁ ଦେଶ ପାଶ୍ଚାତ୍ୟ ଉପନିବେଶବାଦୀ ଓ ସାମ୍ରାଜ୍ୟବାଦୀଙ୍କଠାରୁ ଗଣତାନ୍ତ୍ରିକ ଅଧିକାର ହାସଲ କରିଥିଲେ ଏବଂ ସେ ଦେଶମାନଙ୍କରେ ଅନୁରୂପ ସଂବିଧାନ ପ୍ରଣୀତ ହୋଇ ପ୍ରଚଳନ କରାଯାଇଥିଲା । କିଛି କାଳ ପରେ ଦେଖାଗଲା ଯେ ସେହିଭଳି କେତେକ ଦେଶରେ ସାମ୍ବିଧାନିକ ବ୍ୟବସ୍ଥାକୁ ଧ୍ୱଂସ କରିଦେଇ ସେହି ଧ୍ୱଂସସ୍ତୂପ ଉପରେ ସେ ଦେଶର କୌଣସି କୌଶଳୀ ରାଷ୍ଟ୍ରପତି ଅବା ପ୍ରଧାନମନ୍ତ୍ରୀ ଜଣେ ଜଣେ ଏକଛତ୍ର ଶାସକ ହୋଇ ବସିଗଲେ । ସେସବୁ ଦେଶପ୍ରତି ଦୃଷ୍ଟିଦେଲେ ଜଣାଯାଏ ଯେ ଜଣେ ଜଣେ ଲୋକ ସମସ୍ତ କ୍ଷମତାକୁ କରଗତ କରିଛନ୍ତି ଏବଂ ସେମାନେ ସୈନ୍ୟବଳରେ ଲୋକଙ୍କୁ ଶାସନ କରୁଛନ୍ତି । କେତେକ ଦେଶରେ ବିରୋଧୀ ଦଳମାନଙ୍କୁ ବେଆଇନ କରିଦେଇ ତଥାକଥିତ ଏକ ଦଳୀୟ ଗଣତନ୍ତ୍ର ପ୍ରତିଷ୍ଠା କରାଯାଇଛି । ଜର୍ମାନୀ ଓ ରୁଷ ଦେଶରେ ଗଣତନ୍ତ୍ର ଯେପରି ଭାବରେ ଲୋପହୋଇଥିଲା ତାହାର କାରଣ ଅନୁସନ୍ଧାନ କଲେ ଜଣାଯିବ ଯେ ମନୁଷ୍ୟ ଚରିତ୍ର ଭିତରେ ଏପରି କିଛି ପୈଶାଚିକ ଦୋଷ-ଦୁର୍ବଳତା ରହିଯାଇଛି ଯାହାଫଳରେ ତା' ପକ୍ଷରେ ଏକଛତ୍ରବାଦୀ ହୋଇଯିବା ସମ୍ଭବ ହୋଇଛି । ଏ ପ୍ରକାର ଏକଛତ୍ରବାଦୀ ପ୍ରଥମେ ନିଜକୁ ଓ ନିଜ ଦଳକୁ ଦେଶ ବୋଲି ଜ୍ଞାନକରେ ଏବଂ କ୍ରମେ ତାହାହିଁ ବିଶ୍ୱାସ କରିବାପାଇଁ ଅନ୍ୟମାନଙ୍କୁ ବାଧ୍ୟ କରାଏ । ଏହି ପରିପ୍ରେକ୍ଷୀରେ ଯେ ହେଲା ନେତା ସେ ହେଲା ଦେଶ । ସେ ନେତା ବିରୁଦ୍ଧରେ ଯେ ସ୍ୱର ଉତ୍ତୋଳନ କଲା ସେ ହେଲା ଦେଶଦ୍ରୋହୀ । ଏଭଳି ଚିନ୍ତାଧାରାରୁ ଜର୍ମାନୀ ମାଟିରୁ ଜଣେ ହିଟଲର ବାହାରିପଡ଼ିଥିଲେ । ଇଟାଲୀ ଦେଶରୁ ଜଣେ ମୁସୋଲିନୀ ଓ ରୁଷ ଦେଶ ମାଟିରୁ ଜଣେ ଷ୍ଟାଲିନ୍ ବାହାରିପଡ଼ିଥିଲେ । ଏହାପରେ ଶାସନକଳର

କାମ ହୁଏ ସେହିସବୁ ବ୍ୟକ୍ତିବିଶେଷଙ୍କର ସ୍ତୁତିଗାନକରିବା ଏବଂ ସେମାନେ ଗୋଟିଏ ବଡ଼ ଆଦର୍ଶ ପାଇଁ ଲଢୁଛନ୍ତି ବୋଲି ବାରମ୍ବାର ଲୋକଙ୍କ କାନରେ ସେକଥା ଶୁଣାଇବା । କାର୍ଯ୍ୟ ହାସଲ କରିବା ଉଦ୍ଦେଶ୍ୟରେ ଏ ପ୍ରକାର ଶାସକ ଦୁଇଟି ଅସ୍ତ୍ର ବ୍ୟବହାରକରନ୍ତି । ପ୍ରଥମ ଅସ୍ତ୍ରଟି ହୁଏ ପୁଲିସ, ଯେଉଁ ପୁଲିସର ମାୟାମମତା ବା ବିବେକ ବୋଲି କିଛି ରଖାଇ ଦିଆଯାଏନାହିଁ । ଦ୍ୱିତୀୟଟି ହୁଏ ସମ୍ବାଦପତ୍ର, ରେଡ଼ିଓ ଓ ଦୂରଦର୍ଶନ ପ୍ରଭୃତି ପ୍ରଚାର ମାଧମ । ଏହିସବୁ ଗଣମାଧମ ଉପରେ ସଂପୂର୍ଣ୍ଣ ନିୟନ୍ତ୍ରଣ ଜାରୀକରାଯାଏ । ଲୋକେ କେବଳ ଗୋଟିଏ ପ୍ରକାର କଥା ଜାଣିବେ ଓ ଶୁଣିବେ । ଗଣତାନ୍ତ୍ରିକ ପଦ୍ଧତି ଅନୁସାରେ କାର୍ଯ୍ୟ କରୁଥିବା ଦେଶମାନଙ୍କ ସମ୍ବିଧାନରେ ମଧ୍ୟ ଏଭଳି କେତେକ ଫାଙ୍କ ରହିଥାଏ ଯାହାଦ୍ୱାରା ଏକଛତ୍ରବାଦ ପ୍ରବେଶ କରିବାର ପଥ ଖୋଲିଯାଏ । ସେହି ବାଟଟି ହେଲା ସଙ୍କଟଜନକ ପରିସ୍ଥିତିରେ ଜରୁରୀକାଳୀନ ଆଇନର ପ୍ରୟୋଗ । ସମ୍ବିଧାନକୁ ରକ୍ଷାକରିବା ଉଦ୍ଦେଶ୍ୟରେ ଶାସକମାନଙ୍କ ହାତରେ ଏଭଳି କ୍ଷମତା ରଖିବା ଆବଶ୍ୟକ ବୋଲି କୁହାଯାଇଥାଏ । ଏ ପ୍ରକାର ବ୍ୟବସ୍ଥାର ସୁଯୋଗନେଇ କେତେକ ଦେଶରେ ଏକଛତ୍ରବାଦ ପ୍ରତିଷ୍ଠା କରିଦିଆଯାଇଛି ଏବଂ ଆଉ କେତେକ ଦେଶରେ ପ୍ରତିଷ୍ଠା କରିବାପାଇଁ ଉଦ୍ୟମ ଚାଲିଛି । ଆମର ପଡ଼ୋଶୀ ଦେଶ ପାକିସ୍ତାନ, ବଙ୍ଗଳାଦେଶ, ବ୍ରହ୍ମଦେଶ ଓ ଆଫଗାନିସ୍ତାନ ପ୍ରଭୃତି ଦେଶମାନଙ୍କ ପ୍ରତି ଦୃଷ୍ଟିଦେଲେ ବିଷୟଟି ବୁଝିବାରେ କିଛି ଅସୁବିଧା ହେବନାହିଁ । ଆମ ଦେଶର ସମ୍ବିଧାନରେ ଜରୁରୀକାଳୀନ ପରିସ୍ଥିତି ଘୋଷଣା କରିବାର ଯେଉଁ ବ୍ୟବସ୍ଥା ଥିଲା ସେହି ବାଟ ଦେଇ ୧୯୭୫ ମସିହା ଜୁନ୍ ମାସ ପଚିଶ ତାରିଖ ରାତି ଅଧରେ ଜରୁରୀକାଳୀନ ପରିସ୍ଥିତି ଘୋଷଣା କରାଯାଇ ବିରୋଧୀ ରାଜନୈତିକ ଦଳ ଓ ନେତାମାନଙ୍କ ଉପରେ ଯେଭଳି ଯଥେଚ୍ଛା ଆକ୍ରମଣ ହୋଇଥିଲା ଇତିହାସରେ ସେହି କଳଙ୍କିତ ଅଧ୍ୟାୟ ଭାରତବର୍ଷର ଲୋକଙ୍କ ସ୍ମୃତିପଟରେ ଅଲିଭା ଦାଗ ହୋଇ ରହିଆସିଛି । ତାହା ପୂର୍ବରୁ ନେତାଙ୍କର ଦଳ ଓ ନେତା ହୋଇଗଲେ 'ଦେଶ' । ଇନ୍ଦିରାଙ୍କୁ ମାତାରୂପେ ଉପସ୍ଥାପିତ କରାଗଲା । "Indira is India and India is Indira." ଏହି ଧରଣର ଧ୍ୱନି ଦେବାକୁ ତତ୍କାଳୀନ କଂଗ୍ରେସ ସଭାପତି ଶ୍ରୀ ଦେବକାନ୍ତ ବରୁଆ ଆଦୌ ସଂକୋଚ ଅନୁଭବ କରି ନଥିଲେ । ଶ୍ରୀମତୀ ଗାନ୍ଧୀ ତାଙ୍କର କ୍ଷମତା-ପିପାସାକୁ ଚରିତାର୍ଥ କରିବା ଉଦ୍ଦେଶ୍ୟରେ ନିଜେ ରାଷ୍ଟ୍ରପତି ହେବାର ଅଭିଳାଷ ରଖି କିପରି ସଂବିଧାନ ସଂଶୋଧନ କରି ଆମ ଦେଶରେ ରାଷ୍ଟ୍ରପତି-ପ୍ରଧାନ-ଶାସନ ପ୍ରବର୍ତ୍ତନ କରିବାପାଇଁ ଉଦ୍ୟମ କରୁଥିଲେ ତାହା ଆଉ କାହାରିକୁ ଅଗୋଚର ନାହିଁ ।

ମାକିଆଭେଲୀଙ୍କୁ ଯେଭଳି ରାଜନୀତିରେ "Devil Incarnate" ବୋଲି କୁହାଯାଉଥିଲା ସେହି ଢାଞ୍ଚାରେ ପାଶ୍ଚାତ୍ୟ ଦେଶରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ରାଜନୈତିକ ଚରିତ୍ର ଚିତ୍ରଣ ବର୍ତ୍ତମାନଠାରୁ ଆରମ୍ଭ ହୋଇଗଲାଣି । ଇଂଲଣ୍ଡର ଗୋଟିଏ ସୁବିଖ୍ୟାତ ସାପ୍ତାହିକ ପତ୍ରିକା 'ଟାଇମ୍‌ସ'ରେ ପ୍ରକାଶ ପାଇଛି ଭାରତର ରାଜନୀତି ଅରଣ୍ୟରେ ଶ୍ରମତୀ ଗାନ୍ଧୀ ଏକ ଦୁର୍ଦ୍ଧର୍ଷ ବାଘୁଣୀ' । ଭାରତର ସମ୍ବାଦ ସରବରାହ ସଂସ୍ଥାମାନେ ମଧ୍ୟ ଏହି ପତ୍ରିକାରେ ପ୍ରକାଶିତ ବିଷୟଟି ଭାରତରେ ପରିବେଷଣ କରିଥିଲେ । ଓଡ଼ିଆ ସମ୍ବାଦପତ୍ର ସମାଜର ୧୯୮୨ ଜାନୁୟାରୀ ମାସ ଆଠ ତାରିଖ ସଂଖ୍ୟାରେ ଏହା ପ୍ରକାଶ ପାଇଥିଲା । ଶ୍ରୀମତୀ ଗାନ୍ଧୀଙ୍କର ଆଚରଣ ଓ କାର୍ଯ୍ୟଦକ୍ଷତା ସମ୍ବନ୍ଧରେ ସେଥିରେ ଲେଖାଯାଇଛି, ''ଶ୍ରୀମତୀ ଗାନ୍ଧୀ ଜଣେ ଚତୁର କାରିଗର, ଚୂଡ଼ାନ୍ତ ନିଷ୍ପତ୍ତି ଗ୍ରହଣ କରିବା କ୍ଷମତା ତାଙ୍କ ହାତରେ; କାରଣ ତାଙ୍କର ଅନେକ ଅଧସ୍ତନ ବ୍ୟକ୍ତି ନିଜେ କୌଣସି ନିଷ୍ପତ୍ତି ନେବାକୁ ଭୟକରନ୍ତି । କିନ୍ତୁ ଶ୍ରୀମତୀ ଗାନ୍ଧୀ ନିଷ୍ପତ୍ତି ନେବା ଦିଗରେ ସବୁବେଳେ ଗାଳଚୁଲ କରନ୍ତି । ତେଣୁ ତାଙ୍କ ଶାସନରେ ନିର୍ଦ୍ଦିଷ୍ଟ ଦିଗ୍‌ଦର୍ଶନ ଓ ଉଦ୍ଦେଶ୍ୟର ଅଭାବଥିବା ଦର୍ଶାଯାଏ ।'' ଶ୍ରୀମତୀ ଗାନ୍ଧୀଙ୍କର ସମର୍ଥକମାନଙ୍କର ଅତି ଅନୁଗତ ମନୋବୃତ୍ତି ସଂପର୍କରେ ସେଥିରେ ଲେଖାଅଛି, ''ଶ୍ରୀମତୀ ଗାନ୍ଧୀ ଯଦି ଏକ ଉଜ୍ଜ୍ୱଳ ସକାଳକୁ ରାତି ବୋଲି କହିବେ, ତା'ହେଲେ ତାଙ୍କ ମନ୍ତ୍ରୀମାନେ ସଙ୍ଗେ ସଙ୍ଗେ ଝରକା ପାଖକୁ ଦୌଡ଼ିଯାଇ ଉତ୍ତର

ଦେବେ— ହଁ ଆଜ୍ଞା, ଆମେ ଆକାଶରେ ତାରା ଦେଖିପାରୁଛୁ ଏବଂ ଚନ୍ଦ୍ର ମଧ ଦେଖାଯାଉଛନ୍ତି ।'' ଟାଇମ୍‌ସ ପତ୍ରିକାର ମନ୍ତବ୍ୟରେ ଆହୁରି ମଧ କୁହାଯାଇଛି, ''ଯେଉଁମାନେ ବହୁଦିନ କ୍ଷମତାରେ ରହନ୍ତି, ସେ ସମସ୍ତଙ୍କ ପରି ଶ୍ରୀମତୀ ଗାନ୍ଧୀ ମଧ ସମାଜରୁ ତୋଷାମୋଦକାରୀଙ୍କ ଛଡ଼ା ଅନ୍ୟମାନଙ୍କଠାରୁ ବିଚ୍ଛିନ୍ନ ହୋଇ ପଡ଼ିଛନ୍ତି । ସେ ଭିନ୍ନ ମତକୁ ସହ୍ୟ କରନ୍ତିନାହିଁ, ଅନ୍ତତଃ ତାଙ୍କ ଚତୁଃପାର୍ଶ୍ୱରେ ଥିବା ଲୋକେ ଏହା କହନ୍ତି । ତେଣୁ ଯେଉଁମାନେ ରୋକ୍‌ଠୋକ୍ କଥା କହିବା ଲୋକ ସେମାନଙ୍କୁ ସେ ଅତି କମ୍ ଭେଟନ୍ତି । ନିଷ୍ପତ୍ତି ଗ୍ରହଣ ଦିଗରେ ତାଙ୍କର ଟାଳଟୁଳ ନୀତି ଯୋଗୁଁ ଶାସନ କ୍ଷମତାରେ ତାଙ୍କର ତ୍ରୟୋଦଶ ବର୍ଷ ନୈରାଶ୍ୟଜନକ ହୋଇଛି । ବହୁ ସୁଯୋଗ ହାତଛଡ଼ା ହୋଇଯାଇଛି । ଶ୍ରୀମତୀ ଗାନ୍ଧୀ ଜଣେ ଦୃଢ଼ସଂକଳ୍ପ ବ୍ୟକ୍ତି ନୁହନ୍ତି, ତେଣୁ ସେ ଅଧିକ ସଂକଳ୍ପବଦ୍ଧ ବ୍ୟକ୍ତିମାନଙ୍କୁ ସନ୍ଦେହଚକ୍ଷୁରେ ଦେଖନ୍ତି । ଭାରତର ସ୍ୱାଧୀନତା ପରଠାରୁ ବର୍ତ୍ତମାନର ମନ୍ତ୍ରିମଣ୍ଡଳ ସବୁଠାରୁ ଦୁର୍ବଳତମ ବୋଲି ବିଚାରକରାଯାଏ ।'' ବର୍ତ୍ତମାନ ଯେତେବେଳେ ଶ୍ରୀମତୀ ଗାନ୍ଧୀ କ୍ଷମତାର ଶୀର୍ଷ ସ୍ଥାନରେ ସେତେବେଳେ ତାଙ୍କର ଆଚରଣ ସମ୍ବନ୍ଧରେ ଏ ପ୍ରକାର ମନ୍ତବ୍ୟ ପ୍ରକାଶ ପାଉଛି, ତା'ହେଲେ ଭବିଷ୍ୟତ ରାଜନୀତି ବିଜ୍ଞାନ ଓ ଇତିହାସ ଲେଖକମାନେ ତାଙ୍କର କି ପ୍ରକାର ମୂଲ୍ୟାୟନ କରିବେ ତାହା ସହଜରେ ଅନୁମାନ କରାଯାଇପାରେ ।

ଏହା ତ ହେଲା ଶ୍ରୀମତୀ ଗାନ୍ଧୀଙ୍କ ପ୍ରକୃତି ସମ୍ବନ୍ଧରେ ପତ୍ରପତ୍ରିକାର ସମୀକ୍ଷା । ବର୍ତ୍ତମାନ ଦେଖାଯାଉ ଯେଉଁମାନଙ୍କ ଭିତରେ ରହି ସେ ବଢ଼ିଛନ୍ତି, ନିଜକୁ ଗଢ଼ିଛନ୍ତି, ତାଲିମ ପାଇବାର ସୁଯୋଗ ପାଇଛନ୍ତି ଓ ଉଚ୍ଚାଭିଳାଷ ପୋଷଣକରି ଜୟାଭିଳାଷୀ ହୋଇଛନ୍ତି ସେମାନଙ୍କର ଧାରଣା ତାଙ୍କ ସମ୍ବନ୍ଧରେ କ'ଣ ଥିଲା । ସେହି ଭିତିରିଆ ଅନ୍ତରଙ୍ଗ ଲୋକମାନଙ୍କ ମଧ୍ୟରେ ଶ୍ରୀ ଏମ୍.ଓ. ମାଥାଇ ଥିଲେ ଜଣେ ଉଲ୍ଲେଖଯୋଗ୍ୟ ବ୍ୟକ୍ତି । ଶ୍ରୀ ମାଥାଇ ଜଣେ ସ୍ୱତନ୍ତ୍ର ସହାୟକ ଅଫିସର୍ ଭାବରେ ପ୍ରଧାନମନ୍ତ୍ରୀ ସ୍ୱର୍ଗୀୟ ପଣ୍ଡିତ ନେହେରୁଙ୍କ ପାଖରେ ୧୯୪୬ରୁ ୧୯୬୦ ମସିହା ପର୍ଯ୍ୟନ୍ତ ଅତି ବିଶ୍ୱସ୍ତ ଭାବରେ କାର୍ଯ୍ୟ କରିଥିଲେ । ନେହେରୁଙ୍କ ଘରୋଇ ସମସ୍ୟା ସହିତ ସେ ବିଶେଷ ଭାବରେ ସଂପୃକ୍ତ ଥିଲେ । ନେହେରୁଙ୍କର ତାଙ୍କ ଉପରେ ଖୁବ୍ ଆସ୍ଥା ଥିଲା ଏବଂ ଜଣେ ବିଶ୍ୱସ୍ତ ବନ୍ଧୁ ଭାବରେ ସେ ବହୁ କଥାରେ ତାଙ୍କର ପରାମର୍ଶ ନେଉଥିଲେ । ପ୍ରଧାନମନ୍ତ୍ରୀଙ୍କ ବାସଭବନ ଅଫିସରେ ସେ ଅତି ବିଶ୍ୱାସୀ ଓ ସର୍ବୋତ୍କୃଷ୍ଟ ସହାୟକ ଥିଲେ । ସ୍ୱାଧୀନ ଭାରତର ଜନ୍ମ ଅଗଷ୍ଟ ୧୪/୧୫ ତାରିଖ ମଧ୍ୟରାତ୍ରିରେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁ ଶାସନବିଧାୟକ ସଭାରେ ଯେଉଁ ସ୍ମରଣୀୟ ଭାଷଣ ଜାତି ଉଦ୍ଦେଶ୍ୟରେ ଦେଇଥିଲେ ସେଥିରେ ଯେଉଁ ସୁନ୍ଦର ଓ ପ୍ରଖ୍ୟାତ ଶବ୍ଦସମଷ୍ଟି, "Tryst with Destiny" ବ୍ୟବହୃତ ହୋଇଥିଲା ତାକୁ ଶ୍ରୀ ମାଥାଇ ନିର୍ବାଚନ କରିଥିଲେ । ଶ୍ରୀ ନେହେରୁ ତାଙ୍କ ଭାଷଣରେ, "Date with Destiny' ଲେଖିଥିଲେ । ମାତ୍ର ଏ ପ୍ରକାର ଗୋଟିଏ ପବିତ୍ର ଉତ୍ସବରେ Date ଶବ୍ଦଟି ବ୍ୟବହାର କରିବା ସମୀଚୀନ ହେବନାହିଁ ବୋଲି ଶ୍ରୀ ମାଥାଇ ଦର୍ଶାଇଥିଲେ, କାରଣ ଝିଅମାନଙ୍କ ସହିତ ପ୍ରେମାଳାପର ସମୟ ନିରୂପଣ ସଂପର୍କରେ ତାହା ବ୍ୟବହୃତ ହୋଇଥାଏ । ଶ୍ରୀ ନେହେରୁ ଏଥିରେ ଏକମତ ହୋଇ ତାହା ସଂଶୋଧନ କରିଥିଲେ । ଏଥିରୁ ବୁଝାପଡ଼େ ନେହେରୁଙ୍କ ପାଖରେ ଶ୍ରୀ ମାଥାଇଙ୍କ ସ୍ଥାନ କ'ଣ ଥିଲା । ସଦାବେଳେ ନେହେରୁଙ୍କ ପାଖରେ ରହି ଶ୍ରୀ ମାଥାଇ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ଭଲଭାବରେ ଜାଣିବାକୁ ସୁଯୋଗ ପାଇଥିଲେ । ଶ୍ରୀ ମାଥାଇ ତାଙ୍କଦ୍ୱାରା ରଚିତ 'Reminiscences of the Nehru Age' ପୁସ୍ତକରେ ଶ୍ରୀମତୀ ଗାନ୍ଧୀଙ୍କ କାର୍ଯ୍ୟରୀତି, ଗତିବିଧି, ମନୋବୃତ୍ତି ଓ ଅନ୍ୟାନ୍ୟ ଆଚରଣ ପ୍ରଭୃତିର ମୂଲ୍ୟାୟନ କରି ସେ ସମ୍ବନ୍ଧରେ ଶ୍ରୀ ମାଥାଇଙ୍କଠାରୁ ଜାଣିବାପାଇଁ କେନ୍ଦ୍ରରେ ଜଣେ ମନ୍ତ୍ରୀ ତାଙ୍କୁ ନିମ୍ନ ମର୍ମରେ କେତେକ ପ୍ରଶ୍ନ ପଚାରିଥିଲେ, "What is your assessment of her, what sort of a P.M. will she be ?" ଏହାର ଉତ୍ତରରେ ଶ୍ରୀ ମାଥାଇ କହିଥିଲେ, "She will ruin this country. How long

she will take to achieve this, I do not know. There is nothing of the father in her except the noncommunal out-look. She will play a different type of politics– the politics of manoeuvre, manipulation and deception. She will have no loyalty to any one except to herself. Not being overburdened with scruples, she can do almost anything She will administer unpleasant surprises to Kamaraj and others who supported her. And, what is worse, there is an element of crankiness in her nature. She will surpass Gladstone in axing people. Perhaps your turn will come soon. She will swear by socialism, in which she does not personally believe and the meaning of which she does not understand." ଶ୍ରୀମତୀ ଗାନ୍ଧୀ ନିର୍ଭୀକ, ସ୍ପଷ୍ଟବାଦୀ, ଅଭିଜ୍ଞ, ବିଚକ୍ଷଣ ଓ ବୁଦ୍ଧିମାନ୍ ବ୍ୟକ୍ତିଙ୍କ ଗହଣରେ ରହିବାଠାରୁ ଅସ୍ତିତ୍ୱହୀନ ଆତ୍ମମର୍ଯ୍ୟାଦାରହିତ, ଅଳ୍ପବୁଦ୍ଧିଆ, ଖୋସାମତିଆ ଓ ଚାଟୁକାରମାନଙ୍କ ପରିବେଷ୍ଟନୀ ମଧ୍ୟରେ ରହିବାକୁ ଭଲପାଉଥିଲେ । ତେଣୁ ତାଙ୍କର ସହଯୋଗୀ ବନ୍ଧୁ ଓ ମନ୍ତ୍ରୀମାନେ ତାଙ୍କୁ ସନ୍ତୁଷ୍ଟ କଲାଭଳି ସଂସ୍କୃତି ଓ ଆଚରଣ ଅଭ୍ୟାସ କରିବାକୁ ଧ୍ୟାନ ଦେବାକୁ ଲାଗିଥିଲେ । ଏହାଦ୍ୱାରା ପଦସ୍ଥ ବ୍ୟକ୍ତିମାନଙ୍କର ଆଚରଣ କିପରି ଭାବରେ ପ୍ରଭାବିତ ହୋଇଥିଲା ଓ ସଂସ୍କୃତିରେ କି ପ୍ରକାର ବିପର୍ଯ୍ୟୟ ଘଟିଥିଲା ତାହା ଶ୍ରୀ ମାଥାଇଙ୍କର ଉକ୍ତ ପୁସ୍ତକରୁ ଉଦ୍ଧୃତ ନିମ୍ନ ଅଂଶରୁ ବୁଝାପଡ଼େ । ସେଥିରେ ସେ କହିଛନ୍ତି, "Even after a lapse of time I cannot understand how Cabinet Ministers and prominent functionaries, with considerable experience in public life, reduced themselves to jesters, buffoons, sycophants and object flatterers. One made an ass of himself by saying, "Indira is India and India is Indira," and felt satisfied with his profundity, while two so-called political heavy weights sat on either side and applauded. The same joker hailed Sanjay as Shankaracharya and Vivekananda ! Another made a monkey of himself by saying, "What happens to Indira, happens to India and what happens to India happens to Indira"– profound secondary school stuff...... U.P. Chief Minister Tiwari committed blasphemy by hailing Sanjay as Lord Krishna."

ଆଭ୍ୟନ୍ତରୀଣ ଓ ଆନ୍ତର୍ଜାତିକ ନୀତି ନିୟମ ଓ ନୈତିକତାର ଆବଶ୍ୟକତା କ'ଣ ସେ କଥା ଆମର ପୂର୍ବତନ ପ୍ରଧାନମନ୍ତ୍ରୀ ସ୍ୱର୍ଗୀୟ ଶ୍ରୀ ଜବାହରଲାଲ୍ ନେହେରୁ ଭଲଭାବରେ ହୃଦୟଙ୍ଗମ କରିପାରିଥିଲେ । ରାଜନୀତିରେ ଉଦ୍ଦେଶ୍ୟ ସାଧନର ପନ୍ଥା ଓ ନୈତିକତା ସମ୍ବନ୍ଧରେ ପଣ୍ଡିତ ନେହେରୁଙ୍କର କେତୋଟି ଉକ୍ତି ଏଠାରେ ଉଦ୍ଧାରକଲେ ପ୍ରାସଙ୍ଗିକ ହେବ ବୋଲି ମନେକରୁଛି । ଶ୍ରୀ ଏନ୍. ବି. ସେନଙ୍କ ଦ୍ୱାରା ସଂକଳିତ 'Glorious Thoughts of Nehru' ପୁସ୍ତକରେ ଶ୍ରୀ ନେହେରୁ କହିବାର ଲେଖାଅଛି, "Means are always important and could not be ignored even though the end in view was right, for the means governed the end and varied it. Moral values must prevail, the ends can never justify unworthy means, or else the individual and race perish."

"I have become more and more convinced that so long as we do not recognise the supremacy of the moral law in our national and international relations, we shall have no enduring peace. So long as we do not adhere to right means, the end will not be right and fresh evil will flow from it. That was the essence of Gandhiji's message and mankind will have to appreciate it in order to see and act cleanly. When eyes are bloodshot

vision is limited. I know very well that the standard of public morality and international morality is unfortunately not very high in this world. Nevertheless, certain appearances have to be kept up, certain decencies have to be maintained and some standards have to be observed. I hope that I have some sense of moral values and standard. When moralities or the objectives of the moral crusades differ, conflict inevitably comes." (Page-137)

ଉପରେ ଯାହା ଉଦ୍ଧାର କରାଯାଇଚି, ସେଥିରୁ ନିଃସନ୍ଦେହରେ କୁହାଯାଇପାରେ ଯେ ଆମର ପୂର୍ବତନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍ ନେହେରୁ ଜଣେ ଅତି ଉଚ୍ଚକୋଟୀର ସଚ୍ଚୋଟ ଗଣତନ୍ତ୍ରବାଦୀ ଥିଲେ ଏବଂ ରାଜନୈତିକ କ୍ଷେତ୍ରରେ ନୈତିକତା ଓ ନ୍ୟାୟସମ୍ମତ ପନ୍ଥା ପ୍ରତି ସେ ପ୍ରଗାଢ଼ ସମ୍ମାନ ପ୍ରଦର୍ଶନ କରୁଥିଲେ । କୌଣସି କାର୍ଯ୍ୟର ଉଦ୍ଦେଶ୍ୟ ଅତି ମହତ୍ ବୋଲି ଜଳଜଳ କରି ଦେଖାଯାଉଥିଲେ ମଧ୍ୟ ଯେଉଁ ଉପାୟରେ ତାହା ସାଧନ କରାଯାଏ ତାହା ମଧ୍ୟ ନ୍ୟାୟସମ୍ମତ ହେବା ଆବଶ୍ୟକ ବୋଲି ପଣ୍ଡିତ ନେହେରୁ ବିଶ୍ୱାସକରୁଥିଲେ । ପଣ୍ଡିତ ନେହେରୁଙ୍କ ମତରେ ଗୋଟିଏ କାର୍ଯ୍ୟ ଯେତେ ମହତ୍ ହେଲେ ମଧ୍ୟ ତାହା ଯଦି କୌଣସି ଅସଙ୍ଗତ ଉପାୟରେ ହାସଲକରାଯାଏ, ତା'ହେଲେ ତାକୁ ନ୍ୟାୟସଙ୍ଗତ ବୋଲି କହି ସମର୍ଥନ କରାଯାଇନପାରେ । ଯଦି ଜଣେ ଜନନାୟକ ଓ କ୍ଷମତାସୀନ ବ୍ୟକ୍ତି ନୈତିକତାର ପତନ ଘଟାଇ ଅନୀତି ଓ ଭ୍ରଷ୍ଟାଚାରକୁ ପ୍ରାଧାନ୍ୟଦିଏ ତା'ହେଲେ ସେ ନିଜେ ଧ୍ୱଂସ ହେବା ସଙ୍ଗେ ସଙ୍ଗେ ତାହାର ଜାତି ମଧ୍ୟ ଧ୍ୱଂସପାଏ । ଯଦି ସତ୍ୟ ଓ ନ୍ୟାୟର ପନ୍ଥା ଅନୁସରଣ କରାନଯାଏ ତା'ହେଲେ କାର୍ଯ୍ୟର ଫଳ କେବେ ମହତ୍ ହୁଏ ନାହିଁ ଏବଂ ସେଥିରୁ ହିଁ ଆହୁରି କେତେକ ଅନିଷ୍ଟକର ଘଟଣାର ସୂତ୍ରପାତ ହୁଏ । ଦେଶ ଓ ମନୁଷ୍ୟଜାତି ପ୍ରତି ମହାତ୍ମା ଗାନ୍ଧୀଙ୍କର ବାର୍ତ୍ତାର ସାରମର୍ମ ଏହା ହିଁ ଥିଲା ବୋଲି ପଣ୍ଡିତ ନେହେରୁ କହିଛନ୍ତି । ମହାତ୍ମାଙ୍କର ଆଦର୍ଶ ଦ୍ୱାରା ଶ୍ରୀ ନେହେରୁ ପ୍ରଭାବିତ ହୋଇ ଯେଉଁ ଶିକ୍ଷା ଅର୍ଜନ କରିଥିଲେ ସେ ବିଷୟରେ ସେ ପାର୍ଲିଆମେଣ୍ଟରେ କହିଥିଲେ, "If I have gained any experience in the last thirty or forty years of my public life or if I have learnt any lesson from the Great Master (Gandhiji) who taught us many things, it is this, that a crooked policy does not pay in the end, it may pay temporarily." (Profile of Nehru, Page 33) ସାଧାରଣ କ୍ଷେତ୍ରରେ ଦୀର୍ଘଦିନ କାର୍ଯ୍ୟକରିବାର ଅଭିଜ୍ଞତାରୁ ଓ ଗାନ୍ଧିଜୀ ସେମାନଙ୍କୁ ଯେଉଁ ନୀତି ଶିକ୍ଷାଦେଇଥିଲେ ସେଥିରୁ ଯଦି ନେହେରୁ କିଛି ଜ୍ଞାନ ଅର୍ଜନ କରିଥିଲେ ତାହା ଏହି ଯେ ଅସାଧୁ ରାଜନୀତି, ଅସାଧୁ ଶାସନକୌଶଳ ବା ରାଜ୍ୟଶାସନରେ ଅସାଧୁ ପନ୍ଥା ସାମୟିକ ସୁବିଧା ହାସଲ କରାଇଦେଇପାରେ; ମାତ୍ର ଅବଶେଷରେ ତାହା କେବେହେଲେ ଫଳପ୍ରଦ ହୁଏ ନାହିଁ । ଏହି ପରିପ୍ରେକ୍ଷୀରେ କୁହାଯାଇପାରେ ଯେ ଶ୍ରୀମତୀ ଗାନ୍ଧୀ କାହାରିଠାରୁ କିଛି ଶିକ୍ଷା ଅର୍ଜନ କଲେନାହିଁ; ବରଂ ଗାନ୍ଧୀବାଦ ଓ ନେହେରୁବାଦକୁ ପରିତ୍ୟାଗକରି ବିପରୀତ ମାର୍ଗରେ ଗଲେ ।

ମୁଁ ଶ୍ରୀମତୀ ଗାନ୍ଧୀଙ୍କର ନିନ୍ଦୁକ ନୁହେଁ; ବରଂ ସାଂପ୍ରତିକ ଭାରତୀୟ ତଥା ଆନ୍ତର୍ଜାତିକ ରାଜନୀତି କ୍ଷେତ୍ରରେ ତାଙ୍କ କର୍ମଶକ୍ତି, ବିଚକ୍ଷଣତା ଓ ପ୍ରତିଭାକୁ ମୁଁ ଅତ୍ୟନ୍ତ ଚମକପ୍ରଦ ଏବଂ ଅନେକାଂଶରେ ଅତୁଳନୀୟ ଜ୍ଞାନକରେ; କିନ୍ତୁ ଭାରତୀୟ ଗଣତନ୍ତ୍ରକୁ ଅଧିକ ଗୌରବମୟ କରିବା ପରିବର୍ତ୍ତେ ବିପର୍ଯ୍ୟସ୍ତ କରିବାର ଅପବାଦ କାହିଁକି ସ୍ୱର୍ଗତ ନେହେରୁ-ବଂଶର ଏକମାତ୍ର ଦାୟାଦ ଶ୍ରୀମତୀ ଗାନ୍ଧୀଙ୍କୁ ମୁଣ୍ଡାଇବାକୁ ପଡ଼ିଲା ସେ ବିଷୟରେ ସ୍ୱତଃ ଚିନ୍ତିତ ହୁଏ । ଉପରେ ଯାହା ଲେଖିଲି ତାହା ସେହି ଚିନ୍ତାପ୍ରସୂତ ପ୍ରତିକ୍ରିୟା; ବରଂ ଏକ ଅନୁଶୋଚନା !

# ୧୯୮୦ ନିର୍ବାଚନ ଓ ଜାନକୀବଲ୍ଲଭ ପଟ୍ଟନାୟକଙ୍କର ଓଡ଼ିଶା ରାଜନୀତିକୁ ଆଗମନ

୧୯୮୦ ମସିହାରେ ରାଜ୍ୟରେ ଯେଉଁ ବିଧାନସଭା ନିର୍ବାଚନ ହେଲା ସେଥିରେ ମୁଁ ପ୍ରାର୍ଥୀ ନ ହେବା ପାଇଁ ସିଦ୍ଧାନ୍ତ ନେଇଥିଲି । ଏହା ପୂର୍ବରୁ ଲୋକସଭା ନିର୍ବାଚନ ହୋଇଥିଲା । ଲୋକସଭା ନିର୍ବାଚନରେ ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱରେ କଂଗ୍ରେସ ବିପୁଳ ଭାବରେ ବିଜୟ ଲାଭ କରିଥିଲା । ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ କେନ୍ଦ୍ରରେ ଶ୍ରମ ଓ ବେସାମରିକ ବିମାନ ଚଳାଚଳ ମନ୍ତ୍ରୀ ଥିଲେ । ସେ ଓଡ଼ିଶା କଂଗ୍ରେସର ନେତାରୂପେ ମନୋନୀତ ହୋଇ ଆସିଥିଲେ । ସେହିବର୍ଷ ଜୁନ୍ ମାସ ୯ ତାରିଖରେ ତାଙ୍କ ମନ୍ତ୍ରିମଣ୍ଡଳ ଶପଥ ଗ୍ରହଣ ଉତ୍ସବରେ ଯୋଗଦେବାପାଇଁ ମୋତେ ଆମନ୍ତ୍ରଣ ଥିଲା । ଜନତାପାର୍ଟିର କୌଣସି ନେତା ସେଥିରେ ଯୋଗ ଦେଉନଥିବାରୁ ମୁଁ ଉକ୍ତ ଉତ୍ସବରେ ଯୋଗଦେବା ନଦେବା ସଂପର୍କରେ ସଂଦେହରେ ପଡ଼ିଥିଲି । ଶେଷରେ ଜଣେ ବିଦାୟୀ ମୁଖ୍ୟମନ୍ତ୍ରୀ ହିସାବରେ ଯୋଗଦେବା ସୌଜନ୍ୟ ଦୃଷ୍ଟିରୁ ସମୀଚୀନ ହେବବୋଲି ବିଚାର କରି ମୁଁ ଉତ୍ସବକୁ ଗଲି । ସେହି ଉତ୍ସବରେ ନୀଚମନା ବ୍ୟକ୍ତିତ୍ୱ ବା ନେତୃତ୍ୱର ଏକ ଅନୁଭୂତି ଉଲ୍ଲେଖ କରୁଛି । ନିଜେ ସଂପୃକ୍ତ ବୋଲି ଲେଖିବାକୁ ସଂକୋଚ ଲାଗୁଛି । କିନ୍ତୁ ସରକାରୀ କ୍ଷେତ୍ରରେ ରାଜଭବନ ଉତ୍ସବରେ ପ୍ରଟୋକଲ କେଉଁ କାରଣରୁ ଓ କାହା ଇଙ୍ଗିତରେ ପଛକୁ ପଡ଼ିଯାଏ ଏଥିରୁ ସହଜେ ଅନୁମିତ ହେବ । ଏଭଳି ନୀଚ ମନୋବୃତ୍ତିରେ ପ୍ରଶାସନ ପ୍ରଭାବିତ ହେଲେ ଶାସନ ହୀନାଶ୍ରୟୀ ଓ ଦୁରାଚାରୀ ହୋଇଥାଏ । ଏହିଭଳି ଉତ୍ସବରେ ବିଦାୟୀ ଓ ପୂର୍ବତନ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଥମ ଧାଡ଼ିରେ ପୂର୍ବରୁ ନିର୍ଦ୍ଦିଷ୍ଟ ବିଶିଷ୍ଟ ସ୍ଥାନରେ ବସିବାର ଏକ ସ୍ପୃହଣୀୟ ସରକାରୀ ପରଂପରା ରହିଛି । ତାହା ହେଲାନାହିଁ । ମୋତେ ପଛଆଡ଼େ ଗୋଟିଏ ଜାଗାରେ ବସିବାକୁପଡ଼ିଲା । ଶପଥ ଉତ୍ସବ ଶେଷହେବା ପରେ ଜାନକୀବାବୁ ମୋ ପାଖକୁ ଆସିଲେ । ଅତିଥିମାନଙ୍କପାଇଁ ବସିବାର ଯେଉଁ ବ୍ୟବସ୍ଥା ହୋଇଥିଲା ସେଥିରେ ସେ ଅସନ୍ତୁଷ୍ଟ ଥିବାଭଳି କ୍ଷୀଣ ସୂଚନା ଦେଲେ । ମୋତେ କହିଲେ, ''ଆପଣଙ୍କୁ ଥରେ ରାତ୍ରି ଭୋଜନକୁ ଡାକିବି'' ଏବଂ ସେଠାରେ ବହୁ ବିଷୟ ଆଲୋଚନା କରିବା । ଅନେକ କଥାରେ ଆପଣଙ୍କ ପରାମର୍ଶ ମୋତେ ଖୁବ୍ ସହାୟକ ହେବ । ମାତ୍ର ରାତ୍ରିଭୋଜନ ଓ ଆଳାପର ଅବସର ଜୁଟିନଥିଲା ।

ରାଜନୀତିରେ ଆମେ ଭିନ୍ନ ଭିନ୍ନମାର୍ଗଅନୁସରଣ କରୁଥିଲେ ମଧ ଜାନକୀବାବୁଙ୍କ ସହିତ ପୂର୍ବରୁ ବ୍ୟକ୍ତିଗତଭାବେ ମୋର ଭଲ ସଂପର୍କ ଥିଲା । ମୁଖ୍ୟମନ୍ତ୍ରୀ ହୋଇସାରିବା ପରେ ତାଙ୍କର ନୀରବତା ଲକ୍ଷ୍ୟକରି ମୋର ଧାରଣା ହେଲା ଯେ, ସେ ହୁଏତ ମୋ ସହିତ ପୂର୍ବପରି ବ୍ୟକ୍ତିଗତ ସଂପର୍କ ରଖିବାକୁ ଚାହୁଁନାହାଁନ୍ତି । କେତେକ ପୂର୍ବ ସ୍ମୃତି ମନେପଡ଼ିଲା । ଇନ୍ଦିରା ଗାନ୍ଧୀ ପ୍ରଧାନମନ୍ତ୍ରୀ ହେବା ପରେ ଅଣକଂଗ୍ରେସ ରାଜ୍ୟସରକାରଗୁଡ଼ିକୁ ଭାଙ୍ଗିବାକୁ ସ୍ଥିରକଲେ । ମୁଁ ଓଡ଼ିଶାରେ ଅଣକଂଗ୍ରେସ ମୁଖ୍ୟମନ୍ତ୍ରୀ ଥାଏ । ଜାନକୀବାବୁ ମୋତେ ବହୁତ ପ୍ରବର୍ତ୍ତାଇବାରେ ଲାଗିଥା'ନ୍ତି ଯେ ମୁଁ ଜନତା ପାର୍ଟି ପ୍ରତି ମୋର ଆନୁଗତ୍ୟ ତୁଟାଇଦେଇ କଂଗ୍ରେସରେ ଯୋଗଦିଏ ଏବଂ ଓଡ଼ିଶାରେ କଂଗ୍ରେସ ମୁଖ୍ୟମନ୍ତ୍ରୀରୂପେ କ୍ଷମତାରେ ରହେ । ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ପରାମର୍ଶ ଓ ସମର୍ଥନରେ ସେ ଏହି ପ୍ରସ୍ତାବ ଦୋହରାଇ ଦିଲ୍ଲୀରୁ ଘନଘନ ଟେଲିଫୋନ୍ କରି ମୋତେ ଅସ୍ତବ୍ୟସ୍ତ କରିବାକୁ ଲାଗିଲେ । ସେ ମୋତେ ବାରମ୍ବାର କହୁଥା'ନ୍ତି, ''ହରିଆଣାର ମୁଖ୍ୟମନ୍ତ୍ରୀ ଜଣେ ଚତୁର ବ୍ୟକ୍ତି । ସେ ଏ ଦିଗରେ ରାସ୍ତା ଦେଖାଇ ସାରିଛନ୍ତି ଓ ସେଠି ପୂର୍ବପରି ସେ ମୁଖ୍ୟମନ୍ତ୍ରୀ ହୋଇ ରହିଲେ । ଇନ୍ଦିରା ଗାନ୍ଧୀ ଚାହାଁନ୍ତି ଆପଣ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ହୋଇ ରହିବେ । ଆପଣ ଏ ଦିଗରେ ଆଦୌ ବିଳମ୍ବ କରନ୍ତୁନାହିଁ ।'' ଏହି ରାଜନୈତିକ ଘଡ଼ିସନ୍ଧି ସମୟରେ ଆମ ଦଳର କେହି କେହି ଉଦ୍‌ବେଗ ଓ କେହି କେହି ଆଗ୍ରହ ଭିତରେ ଭବିଷ୍ୟତ୍‌କୁ ଲକ୍ଷ୍ୟକରୁଥା'ନ୍ତି । ବଡ଼ ଧର୍ମସଂକଟରେ ପଡ଼ିଥିଲି । ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଦେଶରେ

ଜରୁରି ଅବସ୍ଥା ଜାରିକରି ସମଗ୍ର ଦେଶର ସ୍ୱାଧୀନତାସଂଗ୍ରାମୀ ଓ ତୁଙ୍ଗ ନେତାମାନଙ୍କୁ ଅଟକବନ୍ଦି କରି ଯେତେବେଳେ ଗଣତନ୍ତ୍ରକୁ ହତ୍ୟାକରୁଥିଲେ ସେତେବେଳେ ଲୋକନାୟକ ଜୟପ୍ରକାଶ ନାରାୟଣ ବିପ୍ଳବର ଆହ୍ୱାନ ଦେଇ ସ୍ୱେଚ୍ଛାଚାରୀ ଶାସନର ଅବସାନ ଘଟାଇଥିଲେ । ତାଙ୍କର ସେହି ତପସ୍ୟା ଓ ନେତୃତ୍ୱ ଫଳରେ ବିଭିନ୍ନ ରାଜ୍ୟରେ ଆମ୍ଭେମାନେ ହୋଇଥିଲୁ ଅଣକଂଗ୍ରେସ ମୁଖ୍ୟମନ୍ତ୍ରୀ । ଇନ୍ଦିରା ଗାନ୍ଧୀଙ୍କର ପ୍ରସ୍ତାବର ପ୍ରଲୋଭନରେ ପଡ଼ି ଦଳତ୍ୟାଗକରି ମୁଖ୍ୟମନ୍ତ୍ରୀ ହୋଇ ରହିବାର ଅର୍ଥ ଜୟପ୍ରକାଶଜୀଙ୍କର ବିପ୍ଳବ ପ୍ରତି ଚରମ ବିଶ୍ୱାସଘାତକତା । ମୋ ବିଚାରରେ ହରିଆଣାର ମୁଖ୍ୟମନ୍ତ୍ରୀ ଭଜନଲାଲ୍ ଆମ୍ଭମାନଙ୍କର ଅନୁକରଣୀୟ ହୋଇନପାରନ୍ତି । ସେ ଜଣେ ବଟକରା ବେପାରି (ବ୍ରୋକର) ଥିଲେ । ହରିଆଣାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ଦେବୀଲାଲ୍‌ଙ୍କ ଉପରେ ପ୍ରଧାନମନ୍ତ୍ରୀ ଅସନ୍ତୁଷ୍ଟ ହେବାରୁ ତାଙ୍କ ପରିବର୍ତ୍ତେ ମୋରାରଜୀ ଭାଇଙ୍କର ଆଶୀର୍ବାଦ ପାଇ ଭଜନଲାଲ୍ ହରିଆଣା ମୁଖ୍ୟମନ୍ତ୍ରୀ ହୋଇଥିଲେ । ତେଣୁ ସେଭଳି ସୁବିଧାବାଦୀ ପନ୍ଥା ଅବଲମ୍ବନ କରି ଲୋକ ଚକ୍ଷୁରେ ନିନ୍ଦିତ ନହେବାକୁ ମୁଁ ସ୍ଥିର କଲି ।

ଜାନକୀବାବୁ ଛାଡ଼ିବା ବ୍ୟକ୍ତି ନଥିଲେ । ସେ ବାରମ୍ବାର ଟେଲିଫୋନ୍ କରୁଥା'ନ୍ତି । ସେ ନିଜେ ସ୍ୱାଧୀନତା ସଂଗ୍ରାମୀ ହୋଇନଥିବାରୁ ଏପ୍ରକାର ପରିସ୍ଥିତିରେ ଜଣେ ସ୍ୱାଧୀନତା ସଂଗ୍ରାମୀର ମନୋଭାବ କ'ଣ ହୋଇପାରେ ତାହା ତାଙ୍କ ଚିନ୍ତାର ବହିର୍ଭୂତ ଥିଲା । ମନୁଷ୍ୟର ଲୋଭର ସୀମା ନଥାଏ । ନିଜ ଦଳର ବନ୍ଧୁମାନଙ୍କ ସ୍ୱାର୍ଥ ସୁରକ୍ଷିତ ରଖିବା ଯେପରି ମୋର ଦାୟିତ୍ୱ, ଦଳର ସମ୍ମାନ ଓ ନୈତିକତାକୁ ବଜାୟରଖିବା ତତୋଽଧିକ ବିଚାର୍ଯ୍ୟ ବିଷୟ । ଏହିଭଳି ଅନ୍ତର୍ଦ୍ୱନ୍ଦ୍ୱ ମଧ୍ୟରେ ପଡ଼ି ଥିବା ଅବସ୍ଥାରେ ମୁଁ ଆମ ବନ୍ଧୁମାନଙ୍କର ମନୋବଳ କ୍ରମେ ଦୃଢ଼ ଓ ସଂଗ୍ରାମ ଅଭିମୁଖୀ ହେବାର ଲକ୍ଷ୍ୟକଲି । ଆଗତ ରାଜନୈତିକ ଅସ୍ଥିରତାକୁ ଏକ ଆହ୍ୱାନରୂପେ ବିଚାରକରିବାରେ ମୁଁ ଦୃଢ଼ ରହିଲି, ଆମର ଛାଉଣୀକୁ ସୁରକ୍ଷିତ ରଖିବା ଉଦ୍ଦେଶ୍ୟରେ । ଜାନକୀବାବୁଙ୍କୁ ହଠାତ୍ ସ୍ପଷ୍ଟ କିଛି ଉତ୍ତର ଦେବାଟା ସେହି ସମୟରେ ଅବିବେକୀ ରଣକୌଶଳ ହେବ ବୋଲି ଭାବି ମୁଁ ତାଙ୍କୁ ଏକରକମ ସଂଦିଗ୍ଧ ରଖିଥାଏ । ଏହାର ସୁଯୋଗନେଇ ସେ ମୋତେ ନାନା ଉପାୟରେ ପ୍ରଲୋଭିତ କରିବାକୁ ଉଦ୍ୟମ କରିଥିଲେ । ସେ କହୁଥା'ନ୍ତି, ଆପଣ କଂଗ୍ରେସକୁ ଆସିଗଲେ ଆପଣ ଓ ମୁଁ ଓଡ଼ିଶା ରାଜନୀତିକୁ ନିୟନ୍ତ୍ରଣକରିବା । ଆପଣ କେତେବେଳେ ସେଠି ମୁଖ୍ୟମନ୍ତ୍ରୀ ହେବେ, ଆପଣ ନ ଚାହିଁଲେ ମୁଁ ସେଠାକୁ ଯିବି ଓ ଆପଣ କେନ୍ଦ୍ରକୁ ଆସିବେ । ବାରମ୍ବାର ତାଙ୍କ ଘରୁ ଟେଲିଫୋନ୍ ଆସିବାରୁ ମୋ ପରାମର୍ଶ ଅନୁଯାୟୀ ତାଙ୍କୁ ମୋ ପକ୍ଷରୁ ଅନ୍ୟଦ୍ୱାରା ଜଣାଇଦିଆଯାଇଥିଲା ଯେ ସେ ଆଉ ଟେଲିଫୋନ୍ କରିବାକୁ ବ୍ୟସ୍ତହେବେନାହିଁ । ଆବଶ୍ୟକ ହେଲେ ମୁଁ ତାଙ୍କୁ ଟେଲିଫୋନ୍ କରିବି । ତାହାପରେ ସେ ବୁଝିପାରିଲେ ଯେ ମୁଁ ଇନ୍ଦିରା ଗାନ୍ଧୀଙ୍କ ପ୍ରଲୋଭନରେ ପଡ଼ିବିନାହିଁ ।

## ବନ୍ଧୁବିୟୋଗ

ଏହି ୧୯୮୦ ମସିହା ଜୁଲାଇଠାରୁ ଅକ୍ଟୋବର ଚାରିମାସ ମଧ୍ୟରେ ଚାରିଜଣ ସଂଗ୍ରାମୀ ସହଯାତ୍ରୀ ବନ୍ଧୁଙ୍କୁ ହରାଇବା ମୋପାଇଁ ଅତ୍ୟନ୍ତ ଦୁଃଖଦ ଘଟଣା । ଅଳ୍ପ ଅଳ୍ପ ସମୟ ବ୍ୟବଧାନରେ ଭୈରବ ଚନ୍ଦ୍ର ମହାନ୍ତି, ସଦାଶିବ ତ୍ରିପାଠୀ, ବନମାଳୀ ପଟ୍ଟନାୟକ ଓ ଦୀନବନ୍ଧୁ ସାହୁ ଇହଲୀଳା ସମ୍ବରଣ କରିଥିଲେ । ସେମାନେ ପ୍ରତ୍ୟେକ ଥିଲେ ସ୍ୱାଧୀନତା ସଂଗ୍ରାମ କାଳରେ ଓ ତା'ର ପରବର୍ତ୍ତୀକାଳରେ ଦେଶ ନିର୍ମାଣ କ୍ଷେତ୍ରରେ ଜଣେ ଜଣେ ବିଚକ୍ଷଣ ବ୍ୟକ୍ତିତ୍ୱ ଓ ଅଗ୍ରଗଣ୍ୟ ନେତା ।

**ଭୈରବ ଚନ୍ଦ୍ର ମହାନ୍ତି–**

ଭୈରବ ଚନ୍ଦ୍ର ମହାନ୍ତିଙ୍କର ମୃତ୍ୟୁ ସେହିବର୍ଷ ଜୁଲାଇ ମାସ ୨୩ ତାରିଖରେ ଅବିଭକ୍ତ ବୃଷ

ଦେଶର ରାଜଧାନୀ ମସ୍କୋଠାରେ ଘଟିଥିଲା । ଭାରତୀୟ କ୍ରିକେଟ୍ ଟିମ୍‌ର ତତ୍ତ୍ୱାବଧାରକ (ମ୍ୟାନେଜର) ରୂପେ ସେ ମସ୍କୋ ଯାଇଥିଲେ । ସେଠାରେ କର୍ମକ୍ଷେତ୍ରରେ ସେ ପ୍ରାଣହରାଇଥିଲେ ହୃଦ୍‌ରୋଗରେ ଜଣେ ସହିଦ ପରି । ତାଙ୍କ ମରଶରୀର ବିମାନଯୋଗେ ଅଣାଯାଇ ବାରବାଟୀ ଷ୍ଟାଡ଼ିୟମ୍‌ରେ ଲୋକମାନଙ୍କର ଶେଷଦର୍ଶନପାଇଁ କିଛି ସମୟ ରଖାଯାଇଥିଲା । ସ୍ୱର୍ଗୀୟ ମହାନ୍ତିହିଁ ଓଡ଼ିଶାକୁ କ୍ରୀଡ଼ାଜଗତରେ ପ୍ରତିଷ୍ଠିତ କରାଇଥିଲେ । କଟକ ବାରବାଟୀ ଷ୍ଟାଡ଼ିୟମଟି ହେଉଛି ଭୈରବବାବୁଙ୍କର ଚିରସ୍ମରଣୀୟ ଅବଦାନ । ସେ ଯଦି ଉଦ୍ୟମ କରିନଥା'ନ୍ତେ ବାରବାଟୀ ଷ୍ଟାଡ଼ିୟମ ହୋଇପାରିନଥା'ନ୍ତା । ଲଟେରି ପ୍ରଚଳନ କରି ସେଥିରୁ ସଂଗୃହୀତ ଅର୍ଥ ସାହାଯ୍ୟରେ ଏହି ଷ୍ଟାଡ଼ିୟମ ସେ କରିପାରିଥିଲେ । ଏହି ଲଟେରିକୁ ବନ୍ଦକରିବାକୁ ବହୁ ଉଦ୍ୟମ କରାଯାଇଥିଲା ଏବଂ ତା'ର ମୁକାବିଲା କରିବାକୁ ସେ ମୋର ସାହାଯ୍ୟ ନେଇଥିଲେ । ବାରବାଟୀ ଷ୍ଟାଡ଼ିୟମଟି ଯେଉଁ ଜମି ଉପରେ ଅବସ୍ଥିତ ତାହା ଉଦ୍ଦିଷ୍ଟ ଥିଲା ଓଡ଼ିଶା ସରକାରଙ୍କ ସେକ୍ରେଟେରୀଏଟ୍ କୋଠାବାଡ଼ି ତିଆରି କରିବାପାଇଁ । ଏହି ଜମିଟି ପୁରୁଣା ସେକ୍ରେଟେରୀଏଟ୍‌ର ସଂଲଗ୍ନ ସ୍ଥଳ । ଯେତେବେଳେ ରାଜଧାନୀ କଟକରୁ ଭୁବନେଶ୍ୱର ଆସିବା ସ୍ଥିରହୋଇଥିଲା ସେତେବେଳେ ଏହା ସେକ୍ରେଟେରୀଏଟ୍ ବିଲ୍‌ଡିଙ୍ଗ୍ ପାଇଁ ଆବଶ୍ୟକ ହେବନାହିଁ ବୋଲି ଜଣାପଡ଼ିଲା । ଭୈରବବାବୁ ଯୋଜନାକଲେ ସେହି ସ୍ଥାନଟିକୁ ଖେଳପଡ଼ିଆ କରିବାପାଇଁ ।

ଓଡ଼ିଶା ସରକାରଙ୍କୁ ଭୈରବବାବୁ ଆବେଦନ କଲେ, କ୍ରିକେଟ୍ ଆସୋସିଏସନ୍‌କୁ ଏହି ପଡ଼ିଆକୁ ହସ୍ତାନ୍ତର କରିବାପାଇଁ । ସେତେବେଳେ ଓଡ଼ିଶା ସରକାରଙ୍କର ଘରୋଇ ବିଭାଗ ସଚିବ ଥିଲେ ରାୟବାହାଦୂର ସୋମନାଥ ମହାପାତ୍ର । ସେ ଏ ଆବେଦନକୁ ଘୋର ବିରୋଧ କରିଥିଲେ । ଏହି ସ୍ଥାନଟିରେ ସରକାରୀ କୋଠାବାଡ଼ି ହେବାର ଆବଶ୍ୟକତା ପଡ଼ିବ ବୋଲି ତାଙ୍କର ଦୃଢ଼ମତ ଥିଲା । କଟକରୁ ଭୁବନେଶ୍ୱରକୁ ରାଜଧାନୀ ଆସିବା ଚୂଡ଼ାନ୍ତ ନିଷ୍ପତ୍ତି ହୋଇଥିଲେ ମଧ ଏହା ଏକ ସ୍ଥାୟୀ ବ୍ୟବସ୍ଥା ହୋଇପାରିବ ବୋଲି ସେ ବିଶ୍ୱାସ କରିପାରୁନଥିଲେ । ତାଙ୍କ ମତ ଥିଲା ଯେ ସରକାରଙ୍କର ବହୁ ବିଭାଗ କଟକରେ ନିଶ୍ଚିତ ଭାବେ ରହିବ, ସେଥିପାଇଁ ଏହି ଜାଗାରେ ସରକାରଙ୍କର ଆବଶ୍ୟକତା ଅଛି ବୋଲି ସେ ଦୃଢ଼ମତ ବ୍ୟକ୍ତ କରିଥିଲେ । ମୁଁ ସେତେବେଳେ ଘରୋଇ ବିଭାଗର ଉପମନ୍ତ୍ରୀ ଥିଲି ଏବଂ ମୋର ଅଫିସ ମଧ ଏହି ପଡ଼ିଆ ଜାଗାକୁ ଲାଗିଥାଏ । ଘରୋଇବିଭାଗରୁ ସମ୍ମତିନଦେଲେ ଏହି ଭୂସଂପତ୍ତି ହସ୍ତାନ୍ତରିତ ହୋଇପାରିବନାହିଁ । ଭୈରବବାବୁ ଏ ଦିଗରେ ସାହାଯ୍ୟ କରିବାପାଇଁ ମୋତେ ଅନୁରୋଧ କରିଥିଲେ । ବହୁତ ବୁଝାବୁଝି କରିବା ପରେ ବହୁ କଷ୍ଟରେ ସୋମନାଥବାବୁ ମୋ କଥାରେ ରାଜି ହୋଇଥିଲେ ଏବଂ ତଦନୁସାରେ ଫାଇଲର ନୋଟ୍ ମୋର ସମ୍ମତିପାଇଁ ପ୍ରସ୍ତୁତ କରିଥିଲେ । ଘରୋଇ ବିଭାଗ ରାଜିହେବା ପରେ ଜାଗାଟି ହସ୍ତାନ୍ତରିତ ହୋଇଥିଲା ।

ସ୍ୱର୍ଗୀୟ ଭୈରବବାବୁ ପାଟଣାଠାରେ ତତ୍‌କାଳୀନ ବିହାର-ଓଡ଼ିଶା ସେକ୍ରେଟେରୀଏଟ୍‌ରେ ଜଣେ କର୍ମଚାରୀ ଥିଲେ । ସ୍ୱତନ୍ତ୍ର ଓଡ଼ିଶା ଗଠନ ହେବା ପରେ କଟକକୁ ଆସିଥିଲେ । ଚାକିରି ଛାଡ଼ି ସେ ରାଜନୀତିରେ ଯୋଗଦେଇଥିଲେ । ଦୈନିକ ପ୍ରଜାତନ୍ତ୍ରର ସେ ଥିଲେ ପ୍ରଥମ ସଂପାଦକ । ବିଧାନସଭା ଓ ପାର୍ଲାମେଣ୍ଟରେ ସେ ସଭ୍ୟ ଥିଲେ । ଆମ ରାଜ୍ୟ ମନ୍ତ୍ରିପରିଷଦର ସଭ୍ୟ ମଧ ହୋଇଥିଲେ । ବାରବାଟୀ ଷ୍ଟାଡ଼ିୟମ୍ ହେଉଛି ତାଙ୍କର କୀର୍ତ୍ତି ଓ ଓଡ଼ିଶାର ସାଂସ୍କୃତିକ ପ୍ରଗତି ପଥରେ ଏକ ବହୁଆୟାସସାଧ ସ୍ମାରକୀ ।

**ସଦାଶିବ ତ୍ରିପାଠୀ–**

ସ୍ୱର୍ଗୀୟ ଶ୍ରୀ ସଦାଶିବ ତ୍ରିପାଠୀ ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ଥିଲେ (୧୯୬୪-୬୬) । ୧୯୯୦ ମସିହା ସେପ୍ଟେମ୍ବର ୧୦ ତାରିଖରେ କଟକ ଶ୍ରୀରାମ ଭଞ୍ଜ ମେଡ଼ିକାଲ ହସ୍‌ପିଟାଲରେ

ତାଙ୍କର ମୃତ୍ୟୁ ହୋଇଥିଲା । ସଦାଶିବ ତ୍ରିପାଠୀଙ୍କୁ ମୁଁ ପ୍ରଥମେ ଜାଣିଲି ୧୯୩୭ ମସିହାରେ । ତତ୍କାଳୀନ ଓଡ଼ିଶା ବିଧାନସଭାରେ ସେ ସଭ୍ୟ ଥିଲେ । ରେଭେନ୍ସା କଲେଜ୍ ହଲ୍‌ରେ ସେତେବେଳେ ବିଧାନସଭା ବୈଠକ ବସୁଥାଏ । କୋରାପୁଟ ଜିଲ୍ଲାରୁ ତାଙ୍କ ଛଡ଼ା ଆଉ ଦୁଇ ଜଣ ବିଶିଷ୍ଟ ବ୍ୟକ୍ତି, ସ୍ୱର୍ଗତ ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ ଓ ସ୍ୱର୍ଗତ ଶ୍ରୀ ରାଧାମୋହନ ସାହୁ ସେହି ବିଧାନସଭାର ସଭ୍ୟ ଥିଲେ । ଏହି ତିନିଜଣ ବିଶିଷ୍ଟ ବ୍ୟକ୍ତି ତ୍ରିମୂର୍ତ୍ତି ଭଳି ଏକତ୍ର ରହିବା ଓ ଏକସଙ୍ଗରେ ଚାଲବୁଲ କରିବା ମୁଁ ଦେଖିଛି । କେହି କାହାର ସାଙ୍ଗ ଛାଡୁନଥିଲେ । ଅବିଭକ୍ତ କୋରାପୁଟ ଜିଲ୍ଲାର ଆୟତନ ଥିଲା ଖୁବ୍ ବିଶାଳ । ୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବାବେଳେ ଓଡ଼ିଆ ଅଧ୍ୟୁଷିତ କୋରାପୁଟ ଅଞ୍ଚଳକୁ ଆନ୍ଧ୍ରରୁ ପୃଥକ୍ କରାଯାଇ ଆମ ରାଜ୍ୟରେ ଅନ୍ତର୍ଭୁକ୍ତ କରାଗଲା । ଜିଲ୍ଲାଟି ଆଦିବାସୀବହୁଳ । କିନ୍ତୁ ସେତେବେଳେ ଲୋକପ୍ରତିନିଧି ନିର୍ବାଚନପାଇଁ ଆଜିକାଲି ପରି ଆଦିବାସୀ ବା ହରିଜନ ସଂଖ୍ୟା-ଗରିଷ୍ଠତା ଭିତ୍ତିରେ ପୃଥକ ନିର୍ବାଚନମଣ୍ଡଳୀ ସଂରକ୍ଷିତ ହେଉନଥିଲା । ଏବେ ସମସ୍ତ ଅବିଭକ୍ତ କୋରାପୁଟ ଜିଲ୍ଲା ବିଧାନସଭାପାଇଁ ଗୋଟିଏ ଅସଂରକ୍ଷିତ ସ୍ଥାନ । ପ୍ରଥମ ଅବସ୍ଥାରେ ଏହି ତିନିଜଣ ବିଶିଷ୍ଟ ବ୍ୟକ୍ତି ସେହି ଜିଲ୍ଲାରେ ରାଜନୈତିକ ଚେତନା ଆଣିପାରିଥିଲେ । ଏହିମାନେହିଁ କଂଗ୍ରେସକୁ ସେଠାରେ ଲୋକପ୍ରିୟ କରାଇପାରିଥିଲେ, ଲୋକେ ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ 'କୋରାପୁଟର ଗାନ୍ଧୀ' ବୋଲି କହୁଥିଲେ ।

**ବନମାଳୀ ପଟ୍ଟନାୟକ –**

ବନମାଳୀ ପଟ୍ଟନାୟକ ଥିଲେ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ । ୧୯୮୦ ମସିହା ଅକ୍ଟୋବର ୬ ତାରିଖରେ ହୃଦ୍‌ରୋଗରେ ତାଙ୍କର ଦେହାନ୍ତହେଲା । ଛାତ୍ର ଜୀବନରୁ ସେ ସ୍ୱାଧୀନତା ସଂଗ୍ରାମ ସହ ସକ୍ରିୟ ଭାବରେ ସଂଶ୍ଳିଷ୍ଟ ଥିଲେ । ବଙ୍ଗଳାର ଚରମପନ୍ଥୀ ବିପ୍ଳବୀମାନଙ୍କ ସହ ସଂପର୍କ ରଖି ସ୍ୱାଧୀନତା ସଂଗ୍ରାମର ବୌଦ୍ଧିକ ଓ କାର୍ଯ୍ୟକାରୀ ରଣକୌଶଳ ସଂପର୍କରେ ଅନୁଶୀଳନ କରୁଥିଲେ । ଭାରତଛାଡ଼ ଆନ୍ଦୋଳନ ପରେ ଜେଲ୍‌ରୁ ଖଲାସ୍ ହେବା ପରଠାରୁ ସେ ନାନା କ୍ଷେତ୍ରରେ ତାଙ୍କର ସାଂଗଠନିକ ପାରଦର୍ଶିତା ପ୍ରତିପାଦନ କରିପାରିଥିଲେ । ବିଧାନସଭା ଓ ପାର୍ଲାମେଣ୍ଟ ସଦସ୍ୟ, ଓଡ଼ିଶାର ଶିକ୍ଷାମନ୍ତ୍ରୀ, ପ୍ରଦେଶ କଂଗ୍ରେସ କମିଟିର ସଭାପତି ଓ ସଂପାଦକ ଭଳି ପଦ-ପଦବୀରେ ରହି ସେ ତାଙ୍କର ବିଚକ୍ଷଣ କାର୍ଯ୍ୟଦକ୍ଷତାର ପ୍ରମାଣ ରଖିଯାଇଛନ୍ତି । ସବୁସ୍ତରରେ କର୍ମୀ ଓ ବନ୍ଧୁମାନଙ୍କ ସହିତ ସେ ଘନିଷ୍ଠ ଭାବରେ ସହଯୋଗ କରୁଥିଲେ । ଆମେ ଦୁହେଁ ଏକତ୍ର କାର୍ଯ୍ୟ କରିବାର ବହୁତ ସୁଯୋଗ ପାଇଥିଲୁ । ସେ ନିର୍ଭୀକ ଓ ସ୍ପଷ୍ଟବାଦୀ ଥିଲେ । ଅପ୍ରିୟ ସତ୍ୟକୁ ରୋକ୍‌ଠୋକ୍ କହିପାରୁଥିଲେ । ଇନ୍ଦିରା ଗାନ୍ଧୀଙ୍କଦ୍ୱାରା ଘୋଷିତ ଜରୁରୀକାଳୀନ ଅବସ୍ଥା ସମୟରେ ତାଙ୍କର ଗୋଟିଏ ଆଚରଣ ମୋତେ ଖୁବ୍ ଆନନ୍ଦ ଓ ଉତ୍ସାହ ଦେଇଥିଲା । ସେତେବେଳେ ସେ ପାର୍ଲାମେଣ୍ଟ ସଭ୍ୟ ହିସାବରେ ଦିଲ୍ଲୀରେ ଅବସ୍ଥାନ କରୁଥିଲେ । ଜରୁରୀକାଳୀନ ପରିସ୍ଥିତି ଜାରି ହେବା ସଂଗେ ସଂଗେ ଆମ ରାଜ୍ୟର ପୂର୍ବତନ ମୁଖ୍ୟମନ୍ତ୍ରୀ ଓ ସର୍ବୋଦୟ ନେତା ସ୍ୱର୍ଗତ ନବକୃଷ୍ଣ ଚୌଧୁରୀଙ୍କୁ ଗିରଫ କରାଯାଇଥିଲା । କେଜାଣି କାହିଁକି ତାଙ୍କ ଉପରେ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କର ଆକ୍ରୋଶ ଥିବାଭଳି ମନେହେଲା । ପ୍ରଥମେ ତାଙ୍କୁ ଢେଙ୍କାନାଳ ଜେଲ୍‌ରେ ରଖାଗଲା । ଅନୁଗୁଳ ବାଜି ରାଉତ ଛାତ୍ରାବାସ ନବବାବୁ ଓ ମାଳତୀ ଚୌଧୁରୀଙ୍କର ବହୁମୁଖୀ କାର୍ଯ୍ୟର କେନ୍ଦ୍ରସ୍ଥଳ । ଅନୁଗୁଳ ଜେଲ୍‌ରେ ତାଙ୍କ ସହିତ ନିକଟବର୍ତ୍ତୀ ଢେଙ୍କାନାଳ ଅଞ୍ଚଳର ଲୋକମାନେ ସୁବିଧାରେ ଦେଖାସାକ୍ଷାତ କରିପାରୁଥିଲେ । ସେ ସୁବିଧାରୁ ବଞ୍ଚିତ କରିବାପାଇଁ ତାଙ୍କୁ ବାରିପଦା ଜେଲ୍‌କୁ ସ୍ଥାନାନ୍ତରିତ କରାଗଲା । ବାରିପଦା ଜେଲ୍‌ରେ ଥିବା ସମୟରେ ସେ ଘୋର ଅସୁସ୍ଥ ହେଲେ । ପକ୍ଷାଘାତ ରୋଗରେ ଆକ୍ରାନ୍ତ ହୋଇଥିଲେ । ଦିନେ

ସଂଜ୍ଞାହୀନ ହୋଇ ପଡ଼ିଗଲେ । ସେଦିନ ତାଙ୍କୁ ଦେଖିବା ପାଇଁ ତାଙ୍କର ଜାମାତା ଶ୍ରୀ ବିଭୂତି ଭୂଷଣ ମହାନ୍ତି ଓ ଝିଅ କୃଷ୍ଣା ଚୌଧୁରୀ ବାରିପଦା ଯାଇଥିଲେ । ଦେଖାକରିବାକୁ ଅନୁମତି ମିଳିଲାନାହିଁ । ପୁଲିସ ଘେର ମଧ୍ୟରେ ବାରିପଦା ଡାକ୍ତରଖାନାରେ ନବବାବୁଙ୍କୁ ରଖାଯାଇଥିଲା । ତାଙ୍କର ଅବସ୍ଥା ସଂକଟାପନ୍ନ ହେବାରୁ ତାଙ୍କୁ କଟକ ବଡ଼ ଡାକ୍ତରଖାନାକୁ ଅଣାଯାଇଥିଲା ଓ ପରେ ତାଙ୍କୁ କିଛି ନିର୍ଦ୍ଦିଷ୍ଟ ସମୟପାଇଁ ପାରୋଲ୍‌ରେ ଖଲାସ୍ କରାଯାଇଥିଲା । ଖବର ନେବାରେ ଜଣାଗଲା ଯେ, ନବବାବୁ ପାରୋଲ୍‌ରେ ଖଲାସ୍ ହେବାପାଇଁ ଦରଖାସ୍ତ କରିନଥିଲେ । ଅନ୍ୟ କୌଣସି କାରଣ ଦର୍ଶାଇ ସାମାନ୍ୟ ସଂଜ୍ଞା ଆସିଥିବା ଅବସ୍ଥାରେ ତାଙ୍କଠାରୁ ଦସ୍ତଖତ ନିଆଯାଇଥିଲା ବୋଲି ଜଣାଯାଇଥିଲା । ନବବାବୁଙ୍କର ଭଲ ଚିକିତ୍ସା ଓ ସେବା ଶୁଶ୍ରୁଷା କରିବାର ଆଗ୍ରହରେ ତାଙ୍କର ଅଜ୍ଞାତରେ ଏପରି କରିବାକୁ ପଡ଼ିଥିଲା । ନବବାବୁ ତା'ପରେ କାଠଯୋଡ଼ି ନଦୀ କୂଳରେ ଥିବା ତାଙ୍କ ପୈତୃକ ବାସଭବନରେ ରହି ଚିକିତ୍ସିତ ହେଉଥିଲେ । ସେତେବେଳେ ମୁଁ କେତେଥର ଯାଇ ତାଙ୍କୁ ସାକ୍ଷାତ୍ କରିଥିଲି । ତାଙ୍କର ପାରୋଲ୍ ମିଆଦ ପୂରିଯିବାକୁ ବସିଲା, ମାତ୍ର ନବବାବୁଙ୍କର ଶାରୀରିକ ଅବସ୍ଥାର ବିଶେଷ କିଛି ଉନ୍ନତି ହୋଇନଥାଏ । ପାରୋଲ୍‌ର ସମୟ ବୃଦ୍ଧିକରିବାପାଇଁ ନବବାବୁ ଦରଖାସ୍ତ କରନ୍ତୁ ବୋଲି ରାଜ୍ୟ ସରକାରଙ୍କର କେହି କେହି କର୍ମଚାରୀ ଇଙ୍ଗିତଦେଲେ । କିନ୍ତୁ ଏଭଳି ପ୍ରସ୍ତାବ ଶୁଣିବାକ୍ଷଣି ନବବାବୁ ରାଗରେ ଅଗ୍ନିବାଣ ହୋଇଗଲେ । କଦାପି ସେପ୍ରକାର ଆବେଦନ କରିବେନାହିଁ ବୋଲି ରୋକ୍‌ଠୋକ୍ କହିଦେଲେ । କ'ଣ କରାଯିବ ? ଗୋଟେ ଅଡୁଆ ପରିସ୍ଥିତି ଉପୁଜିଲା । ନବବାବୁ କହିଲେ ଯେ; ରାଜ୍ୟ ସରକାରଙ୍କ ପୁଲିସ ଆସି ମୋତେ ଷ୍ଟ୍ରେଚର୍‌ରେ ନେଇ ଜେଲ୍‌ଖାନାରେ ରଖିଦିଅନ୍ତୁ । ନବବାବୁଙ୍କ ଶାରୀରିକ ଅସୁସ୍ଥତା ଏବଂ ଉପୁଜିଥିବା ଜଟିଳ ପରିସ୍ଥିତି ବିଷୟ ଦିଲ୍ଲୀରେ ବନମାଳୀବାବୁ ଜାଣିବାକୁପାଇଲେ । ସେ ଯାଇ ଇନ୍ଦିରା ଗାନ୍ଧୀଙ୍କୁ ସାକ୍ଷାତ୍ କଲେ । ନବବାବୁଙ୍କ ଭଳି ବ୍ୟକ୍ତିଙ୍କ ପ୍ରତି ସରକାର ଯେ କି ପ୍ରକାର ନିନ୍ଦନୀୟ ଆଚରଣ ପ୍ରଦର୍ଶନ କରୁଥା'ନ୍ତି ସେ ସଂପର୍କରେ ନିଜର ତୀବ୍ର ପ୍ରତିକ୍ରିୟା ଓ ବିରୋଧ ରୋକ୍‌ଠୋକ୍ ଭାଷାରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ଜଣାଇଦେଲେ । ସେ ଜୋର ଦେଇ ପ୍ରଧାନମନ୍ତ୍ରୀଙ୍କୁ ସ୍ପଷ୍ଟ ପଚାରିଥିଲେ ଯେ ଏଭଳି ଅବସ୍ଥାରେ ନବବାବୁଙ୍କ ଜୀବନ ପ୍ରତି ଯଦି କିଛି ଅଘଟଣ ଘଟିଯାଏ ତା'ହେଲେ ଆମ୍ଭେମାନେ ସ୍ୱାଧୀନ ଦେଶରେ ବଞ୍ଚିରହି ଲାଭ କ'ଣ ? ସବୁ ଶୁଣିସାରି ଇନ୍ଦିରା ଗାନ୍ଧୀ କୁଆଡ଼େ କହିଲେ ଯେ ନବକୃଷ୍ଣ ଚୌଧୁରୀଙ୍କୁ ଗିରଫ୍ କରିବାକୁ ସେ କହିନଥିଲେ ଏବଂ ଯାହାସବୁ ଘଟିଛି ତାହା ନନ୍ଦିନୀ ଶତପଥୀ କରିଛନ୍ତି । ବନମାଳୀବାବୁ ଇନ୍ଦିରା ଗାନ୍ଧୀଙ୍କୁ କହିଲେ ଯେ, ପାରୋଲ୍‌ରେ ଖଲାସ ହେବା ସମୟ ପୂରିଯାଇଛି ଏବଂ ପାରୋଲ୍ ସମୟ ବଢ଼ାଇବାକୁ ନବବାବୁ କଦାପି ଆବେଦନ କରିବେନାହିଁ । ବନମାଳୀବାବୁଙ୍କ କଥା ଶୁଣି ଶ୍ରୀମତୀ ଗାନ୍ଧୀ ନିସ୍ତବ୍ଧ ହୋଇଗଲେ ଏବଂ ସେହିଦିନ ନବବାବୁଙ୍କୁ ଖଲାସ କରିଦେବା ପାଇଁ କେନ୍ଦ୍ର ସରକାରଙ୍କଠାରୁ ଓଡ଼ିଶା ସରକାରଙ୍କୁ ନିର୍ଦ୍ଦେଶ ଆସିଲା । ଏସବୁ କଥା ସ୍ୱୟଂ ବନମାଳୀ ପଟ୍ଟନାୟକଙ୍କଠାରୁ ମୁଁ ଜାଣିବାକୁ ପାଇଥିଲି ।

**ଦୀନବନ୍ଧୁ ସାହୁ–**

ବନ୍ଧୁ ଶ୍ରୀ ଦୀନବନ୍ଧୁ ସାହୁଙ୍କ ମୃତ୍ୟୁ ୧୯୮୦ ମସିହା ଅକ୍ଟୋବର ମାସ ୮ ତାରିଖ କର୍ଣ୍ଣାଟକର ରାଜଧାନୀ ବାଙ୍ଗାଲୋରଠାରେ ଘଟିଥିଲା । ସେ ତାଙ୍କର ଝିଅ ପାଖକୁ ଯାଇଥିଲେ ଏବଂ ସେହିଠାରେ ତାଙ୍କର ମୃତ୍ୟୁ ହୋଇଥିଲା । ସେ ଜଣେ ବିଚକ୍ଷଣ ଆଇନଜ୍ଞ ଥିଲେ । ପରାଧୀନ ଭାରତରେ ରାଜନୈତିକ କର୍ମୀ ଓ ନେତାଙ୍କ ବିରୋଧରେ ଯେତେପ୍ରକାର ମାଲିମୋକଦ୍ଦମା ହେଉଥିଲା ସେଥିରେ ସେ ଯାଇ ଆସାମୀ ମୁଦାଲାମାନଙ୍କ ପକ୍ଷରୁ ଅଦାଲତରେ ଲଢୁଥିଲେ । ଇଂରେଜ ସରକାରଙ୍କ ବିରୋଧରେ ଛାତ୍ରଜାଗରଣ କରାଉଥିବା ଫଳରେ ମୁଁ ଏବଂ ମୋର ବନ୍ଧୁ ବନ୍ଧୁ ଗିରଫ୍ ହୋଇ

ମାଲିମୋକଦ୍ଦମାରେ ପଡ଼ିଥିଲୁ । ସେସବୁର ମୁକାବିଲା କରିବାପାଇଁ ଆମ ପଛରେ ଥିଲା ସ୍ୱର୍ଗତ ଦୀନବନ୍ଧୁଙ୍କର ସାହାଯ୍ୟ ଓ ଉତ୍ସାହ । ତାଳଚେର, ଢେଙ୍କାନାଳ, ରଣପୁର ପ୍ରଭୃତି ଗଡ଼ଜାତମାନଙ୍କର ପ୍ରଜାମଣ୍ଡଳ ନେତା ଓ କର୍ମୀମାନଙ୍କ ବିରୋଧରେ ରାଜଦରବାର ପକ୍ଷରୁ ଯେଉଁସବୁ ମାଲିମୋକଦ୍ଦମା ହେଉଥିଲା ସେଥିରେ ସେମାନଙ୍କ ପକ୍ଷରୁ ଛିଡ଼ାହୋଇ ମୋକଦ୍ଦମା ଲଢ଼ିବାପାଇଁ କୌଣସି ଓକିଲ ସାହସ କରି ଯାଉନଥିଲେ, ମାତ୍ର ଯାଉଥିଲେ ଦୀନବନ୍ଧୁ ସାହୁ । ସେ ଆମ ରାଜ୍ୟର ଜଣେ ସୁଦକ୍ଷ ପ୍ରଭାବଶାଳୀ ମନ୍ତ୍ରୀ ଥିଲେ । ସେ ମଧ୍ୟ ଆମ ରାଜ୍ୟର ଆଡ୍‌ଭୋକେଟ୍ ଜେନେରାଲ୍ ଥିଲେ । ବିଚାରାଳୟରେ ଦୀନବନ୍ଧୁବାବୁଙ୍କର ପ୍ରତ୍ୟୁତ୍ପନ୍ନମତିତା, ତାର୍କିକ ଦକ୍ଷତା ଓ ଆଇନଜ୍ଞାନ, ସାହସ ଓ କୌଶଳ ସଂପର୍କରେ ପୁସ୍ତକରେ ଅନ୍ୟ ପ୍ରସଙ୍ଗରେ ଅନେକ ଉଦାହରଣ ଦେଇଛି ।

## ଇନ୍ଦିରା ଗାନ୍ଧୀଙ୍କ ମୃତ୍ୟୁ

୧୯୮୪ ମସିହାର ଶେଷଭାଗକୁ ଭାରତବର୍ଷର ରାଜନୀତି ଗୋଟିଏ ବିସ୍ମୟକର ରୂପ ନେଲା । ସେହିବର୍ଷ ଅକ୍ଟୋବର ମାସ ୩୧ ତାରିଖ ସକାଳେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ତାଙ୍କ ଦେହରକ୍ଷୀର ଗୁଳିଚୋଟରେ ପ୍ରାଣହରାଇଥିଲେ । ଏହି ଘଟଣାଟି ସମଗ୍ର ଦେଶର ରାଜନୀତିର ମୋଡ଼କୁ ଏକାବେଳକେ ବଦଳାଇଦେଇଥିଲା । ନୀତି ଓ ଆଦର୍ଶ ପରିବର୍ତ୍ତେ ତାଙ୍କ ପ୍ରତି ଅନୁକମ୍ପାର ସୁଅ ମୁହଁରେ ରାଜନୀତି ପରିଚାଳିତ ହୋଇଥିଲା । ଇନ୍ଦିରା ଗାନ୍ଧୀ ଓ ତାଙ୍କ ପୁଅ ରାଜୀବ ଗାନ୍ଧୀଙ୍କ ଉତ୍ସାହ ଓ ପ୍ରରୋଚନା ପାଇ ସନ୍ଥ ଭିନ୍ଦରନ୍‌ୱାଲେ ପଞ୍ଜାବ ରାଜନୀତିରେ ପ୍ରବେଶ କରି ଶିଖ୍‌ମାନଙ୍କ ଧାର୍ମିକ ଭାବପ୍ରବଣତାକୁ ଉସୁକାଇଥିଲେ । ପଞ୍ଜାବର ଅକାଳୀଦଳର ପ୍ରଭାବ ହ୍ରାସ କରିବାପାଇଁ ତାଙ୍କୁ ବଛାଯାଇଥିଲା । କିନ୍ତୁ ଅକାଳୀ ଦଳକୁ ଦମନ କରିବାପାଇଁ ତାଙ୍କୁ ଯେପରି ସ୍ୱେଚ୍ଛାଚାରୀର ପ୍ରଶ୍ରୟ ଓ କ୍ଷମତା ଦିଆଗଲା ତାହାର ପରିଣତି ଅବଶେଷରେ ଚୋର ହାତରେ ଚାବିକାଠି ଧରାଇ ଦେବାଭଳି ହେଲା । ଭିନ୍ଦରନ୍‌ୱାଲେ କୌଶଳରେ ନିଜକୁ ସ୍ୱତନ୍ତ୍ର ପଞ୍ଜାବ ବା ଖଲିସ୍ଥାନ ଗଠନପାଇଁ ନୃଶଂସ ସନ୍ତ୍ରାସବାଦୀ ସଂଗଠନର ବଡ଼ପଣ୍ଡା ରୂପେ ପ୍ରତିଷ୍ଠା ଅର୍ଜନ କଲେ । ନିଜକୁ ଜଣେ ଶିଖ୍ ଗୁରୁରୂପେ ସାବ୍ୟସ୍ତକଲେ । ସ୍ୱର୍ଣ୍ଣମନ୍ଦିରକୁ ଭିନ୍ଦରନ୍‌ୱାଲେ ଏକ ବିରାଟ ଅସ୍ତ୍ରାଗାର ଓ ସୈନ୍ୟଛାଉଣୀରେ ପରିଣତ କରିଥିଲେ । ଶେଷରେ ଏପରି ଅସହାୟ ଓ ଅସମ୍ଭାଳ ପରିସ୍ଥିତି ଉପୁଜିଲା ଯେ, ଭସ୍ମାସୁରଠାରୁ ଉଦ୍ଧାର ପାଇବାର ଉପାୟ ନଦେଖି ସ୍ୱର୍ଣ୍ଣମନ୍ଦିରକୁ ଆୟତ୍ତକୁ ଆଣିବା ଦାୟିତ୍ୱ ସେନାବାହିନୀ ହାତରେ ଛାଡ଼ିଦିଆଯାଇଥିଲା ।

ମନ୍ଦିର ଭିତରେ ଗୁଳି ବିନିମୟରେ ଭିନ୍ଦରନ୍‌ୱାଲେ ପ୍ରାଣହରାଇଥିଲେ । ଅପରିଣାମଦର୍ଶିତା ହେତୁ ଶେଷରେ ସ୍ୱର୍ଣ୍ଣମନ୍ଦିରର ଧାର୍ମୀକ ଶ୍ରେଷ୍ଠତା ଓ ପବିତ୍ରତା ବିପନ୍ନ ହେଲା ବୋଲି ପ୍ରାୟ ସମଗ୍ର ଶିଖ୍ ସଂପ୍ରଦାୟ କ୍ରୋଧାନ୍ୱିତ ହୋଇଥିଲେ । ଇନ୍ଦିରା ଓ ସଞ୍ଜୟ ଗାନ୍ଧୀଙ୍କ ଅବିବେକିତା ହେତୁ ଭିନ୍ଦରନ୍‌ୱାଲେଙ୍କୁ କ୍ଷମତାଶାଳୀ କରିବାଦ୍ୱାରା ପାଗଳ ହାତରେ ନିଆଁହୁଳା ଦେବାଭଳି ପରିଣତି ଘଟିଲା । ସମଗ୍ର ଶିଖ୍ ଜାତି ସ୍ପର୍ଶକାତର ହୋଇଉଠିଲେ ।

## ଅନୁକମ୍ପା ରାଜନୀତି

ଏହି ପରିପ୍ରେକ୍ଷୀରେ ଜଣେ ଦେହରକ୍ଷୀ ଶିଖ୍ ଜବାନଙ୍କର ଗୁଳିଚୋଟରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ହତ୍ୟା ଘଟଣାକୁ ବିଚାରକରିବାକୁ ହେବ । ମାତ୍ର ତାହା କରାନଯାଇ ଘଟଣାକୁ ଭିନ୍ନରୂପ ଦିଆଯାଇଥିଲା । ଭିନ୍ନରୂପ ଦିଆଯାଇ ଦେଶବାସୀଙ୍କୁ ତଥାକଥିତ ଗାନ୍ଧୀ-ନେହେରୁ ପରିବାର ପ୍ରତି ଏକ ଅନୁକମ୍ପାର ସ୍ରୋତରେ ଭସାଇଦିଆଗଲା । ଏହା ପରେ ରାଜନୀତି ଏକ ବିଚିତ୍ର ଓ ଅବାଞ୍ଛିତ ମାର୍ଗରେ ଗତିକରିଥିଲା ଏବଂ କଂଗ୍ରେସପାଇଁ ଅନୁକମ୍ପା ଭିକ୍ଷା ରାଜନୀତିର ଯୁଗ ଆରମ୍ଭ ହୋଇଥିଲା ।

ଏପରି ଏକ ଅହେତୁକ ବାତାବରଣ ସୃଷ୍ଟିକରାଗଲା ଯେ, ସତେଯେପରି ବିରୋଧୀଦଳ ଲୋକମାନଙ୍କ ଚକ୍ରାନ୍ତର ଶିକାର ହେଲେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ । ଲୋକଙ୍କର କରୁଣାର ପାତ୍ର ହେବାପାଇଁ କଂଗ୍ରେସ ପକ୍ଷରୁ ଚତୁର ପ୍ରଚାର କୌଶଳ ଚାଲିଲା । ଲାଭବାନ୍ ହେଲେ ଇନ୍ଦିରାଙ୍କ ବଂଶଧର ଏବଂ ସେମାନଙ୍କଦ୍ୱାରା ଅଧିକୃତ କଂଗ୍ରେସ (ଇ) ଦଳ । କିନ୍ତୁ ବିପନ୍ନ ହୋଇପଡ଼ିଥିଲା ଦେଶର ସଂହତି ଓ ଆଭ୍ୟନ୍ତରୀଣ ଶାନ୍ତି । ଇନ୍ଦିରା ଗାନ୍ଧୀଙ୍କର ମୃତ୍ୟୁ ପରେ ଦିଲ୍ଲୀରେ ପ୍ରାୟ ଚାରିହଜାର ଶିଖ୍ ସଂପ୍ରଦାୟର ଲୋକଙ୍କୁ ନିର୍ମମ ଭାବରେ ହତ୍ୟାକରାଯାଇଥିବା ଅଭିଯୋଗ ହୋଇଥିଲା ।

## ରାଜୀବ ଗାଦିନସୀନ ଓ ଶିଖ୍‌ସଂହାର

ଠିକ୍ ଏହି ସମୟରେ ରାଜୀବ ଗାନ୍ଧୀ ହେଲେ କଂଗ୍ରେସର ସଭାପତି । ତତ୍କାଳୀନ ରାଷ୍ଟ୍ରପତି ଜୈଲ୍ ସିଂହଙ୍କୁ କୌଶଳରେ କରାୟତ୍ତକରି ସେ ମାଆଙ୍କ ମୃତ୍ୟୁ ପରେ ପରେ ନିଜକୁ ପ୍ରଧାନମନ୍ତ୍ରୀ ରୂପେ ଗାଦିନସୀନ କରିଦେଲେ । ପ୍ରଧାନମନ୍ତ୍ରୀଙ୍କର ମୃତ୍ୟୁଜନିତ ଶୂନ୍ୟକାଳରେ ସବୁଠାରୁ ବରିଷ୍ଠ କେନ୍ଦ୍ରମନ୍ତ୍ରୀ ମଧ୍ୟବର୍ତ୍ତୀକାଳୀନ କାମଚଳା ପ୍ରଧାନମନ୍ତ୍ରୀ ନିଯୁକ୍ତ ହେବାର ଏକ ସ୍ପୃହଣୀୟ ପରମ୍ପରାକୁ ଲୋପକରିଦିଆଗଲା । ସେହିଦିନ ରାଜଧାନୀ ଦିଲ୍ଲୀରେ ଏହି ଜଘନ୍ୟ ହତ୍ୟାକାଣ୍ଡ ଘଟିଥିଲା । ରାଜୀବ ଗାନ୍ଧୀ ପ୍ରଧାନମନ୍ତ୍ରୀ ଭାବରେ ସଂପୂର୍ଣ୍ଣ ନିଷ୍କ୍ରିୟ ହୋଇଥିଲେ ବୋଲି ଅଭିଯୋଗ ହୋଇଥିଲା । ଦୂରଦର୍ଶନରେ ତାଙ୍କ ଭାବଭଙ୍ଗିରୁ ପ୍ରତୀୟମାନ ହେଉଥିଲା ଯେ, ଏହି ନୃଶଂସ ହତ୍ୟାକାଣ୍ଡ ପ୍ରତି ସେ ବିବ୍ରତ ନଥିଲେ । ପୁଲିସର ନିଷ୍କ୍ରିୟତା ମଧ୍ୟ ଏହାର ପ୍ରମାଣ ଦେଉଛି । ପ୍ରଧାନମନ୍ତ୍ରୀ ଇଚ୍ଛାକରିଥିଲେ ଶିଖ୍ ସଂପ୍ରଦାୟର ଲୋକମାନେ ରହୁଥିବା ଅଞ୍ଚଳମାନଙ୍କରେ ସୈନ୍ୟବାହିନୀକୁ ମୁତୟନକରି ଏ ଘୃଣ୍ୟ ହତ୍ୟାକାଣ୍ଡକୁ ରୋକିପାରିଥା'ନ୍ତେ, କିନ୍ତୁ ତାହା କରାଗଲାନାହିଁ । ସରକାର ଏହି ଘଟଣା ପ୍ରତି ଆଖି ବୁଜି ଦେବାଭଳି ଜଣାଗଲା ।

କ୍ଷତିଗ୍ରସ୍ତ ଓ ମର୍ମାହତ ଶିଖ୍ ସଂପ୍ରଦାୟ ଏକ ଉତ୍ତେଜନାପୂର୍ଣ୍ଣ ଦାବି ଉପସ୍ଥାପନା କଲେ । ଏହି ଦାବି ଥିଲା ଗୋଟିଏ ଉଚ୍ଚସ୍ତରୀୟ କମିଶନ୍ ବସାଇବାପାଇଁ । ସର୍ବସାଧାରଣ ଲୋକେ ମଧ୍ୟ ଏହିପରି ଦାବି କରିଥିଲେ । ତେଣୁ ସରକାର କମିଶନ୍ ବସାଇବାପାଇଁ ଘୋଷଣା କରିବାକୁ ବାଧହୋଇଥିଲେ ।

## ରଙ୍ଗନାଥ ମିଶ୍ର କମିଶନ ନିଯୁକ୍ତି

ଏହି ପରିପ୍ରେକ୍ଷୀରେ ନିରପେକ୍ଷ ଓ ନିର୍ଭୀକ ଭାବରେ ତଦନ୍ତ କରିବାକୁ ଖୋଜାହେଲା ଜଣେ ବିଚାରପତି ଯିଏ କି ଏହି କମିଶନର ଦାୟିତ୍ୱ ଗ୍ରହଣ କରିବେ । ସେତେବେଳେ ଶ୍ରୀ ରଙ୍ଗନାଥ ମିଶ୍ର ଥିଲେ ସୁପ୍ରିମ୍‌କୋର୍ଟର ବିଚାରପତି, ତାଙ୍କୁ ଏଥିପାଇଁ ବଛାଗଲା । ବହୁ ତୁମ୍ୱୀ ତୋଫାନ ପରେ ସେ ଯେଉଁ ରିପୋର୍ଟ ଦେଲେ ତାହା ସମସ୍ତଙ୍କୁ ବୋଧହେଲା ଅତି ନିମ୍ନମାନର ବୋଲି । ପ୍ରତ୍ୟେକ ମୁଖ୍ୟ ଦୋଷୀମାନଙ୍କୁ ଏହି ରିପୋର୍ଟ ବଳରେ ସହଜେ ଖସାଇଦିଆଗଲା । ସେ ସଂପର୍କରେ ତଦନ୍ତର ଇତିହାସ ଏବେ ପ୍ରାୟ ଦେଢ଼ ଦଶନ୍ଧିରୁ ଊର୍ଦ୍ଧ୍ୱକାଳ ଧରି ଏକ ବିରାଟ ପ୍ରହସନରେ ପରିଣତ ହୋଇଛି । ସେ ରିପୋର୍ଟ ବିବାଦୀୟ ପରିସ୍ଥିତି ସୃଷ୍ଟିକରିଥିବାରୁ ତାହା ପାର୍ଲାମେଣ୍ଟରେ ଆଲୋଚିତ ହୋଇଥିଲା । ଶିଖ୍ ସଂପ୍ରଦାୟର ଲୋକମାନେ ଏହାକୁ ଗ୍ରହଣ କରିନଥିଲେ । ଏକ ନୂତନ କମିଶନ ବସାଇବାପାଇଁ ସର୍ବସାଧାରଣରେ ଯୁକ୍ତି ବାଢ଼ିଥିଲେ, ଯାହାକୁ ସରକାର ଗ୍ରହଣ କରି ଆଉ ଗୋଟିଏ କମିଶନ ବସାଇ ତାହା ପୂର୍ନର୍ବିଚାର କରାଯାଉଛି ।

## ନୂଆ କମିଶନ ନିଯୁକ୍ତି ଓ ନ୍ୟାୟମୂର୍ତ୍ତିଙ୍କ ଦୁର୍ବୋଧ ଆଚରଣ

ଶିଖ୍ ସଂପ୍ରଦାୟର ଲୋକମାନେ ରଙ୍ଗନାଥ ମିଶ୍ରଙ୍କ କମିଶନକୁ ଅଗ୍ରାହ୍ୟକରି ଏକ ନୂତନ ନିରପେକ୍ଷ କମିଶନ ବସାଇବାକୁ ସରକାରଙ୍କ ନିକଟରେ ଦୃଢ଼ଦାବି ଉପସ୍ଥାପନ କରିଥିଲେ । ଫଳରେ ଜାତୀୟ ଗଣତାନ୍ତ୍ରିକ ମେଣ୍ଟ ସରକାର (N.D.A. Govt.) ଏହାକୁ ଗ୍ରହଣକରି ସୁପ୍ରିମ୍‌କୋର୍ଟର ଅବସରପ୍ରାପ୍ତ ବିଚାରପତି ଶ୍ରୀଯୁକ୍ତ ଜି.ଟି. ନାନାବତିଙ୍କୁ ତଦନ୍ତ କମିଶନର ଚେୟାରମ୍ୟାନ୍‌ରୂପେ ନିଯୁକ୍ତି ଦେଇ ଏହି ତଦନ୍ତ ଦାୟିତ୍ୱ ତୁଲାଇବାକୁ ନିର୍ଦ୍ଦେଶ ଦେଇଥିଲେ । ଏହା ୮ । ୫ । ୨୦୦୦ ତାରିଖ ଗେଜେଟ୍ ଅଫ୍ ଇଣ୍ଡିଆରେ ପ୍ରକାଶପାଇଥିଲା । ଗୋଟିଏ କମିଶନ ରିପୋର୍ଟ କାର୍ଯ୍ୟକୁ ଅଗ୍ରାହ୍ୟ କରି ଆଉ ଗୋଟିଏ କମିଶନ୍ ବସାଇବା ନିଶ୍ଚିତ ଭାବରେ ବିରଳ ଓ ଅଭିନବ ଘଟଣା, ଯାହାର ଦୃଷ୍ଟାନ୍ତ ନାହିଁ । କ୍ରୋଧାନ୍ୱିତ ଶିଖ୍ ସଂପ୍ରଦାୟ ଲୋକମାନଙ୍କର ଏପ୍ରକାର ଦାବିକୁ ଗ୍ରହଣ କରିବାକୁ ସରକାର ଯୁକ୍ତିଯୁକ୍ତ ମନେକଲେ । ପରବର୍ତ୍ତୀକାଳରେ ଅବସରପ୍ରାପ୍ତ ବିଚାରପତି ଶ୍ରୀ ରଙ୍ଗନାଥ ମିଶ୍ର କଂଗ୍ରେସ ସରକାରଙ୍କର ଯେଭଳି ଅନୁଗ୍ରହର ପାତ୍ର ହୋଇଥିଲେ, ସେଥିରେ ତାଙ୍କ କାର୍ଯ୍ୟର ନିରପେକ୍ଷତା ସମ୍ବନ୍ଧରେ ଶିଖ୍ ସଂପ୍ରଦାୟ ଲୋକଙ୍କର ସନ୍ଦେହ ଦୃଢ଼ୀଭୂତ ହୋଇଥିଲା । ଅବସର ଗ୍ରହଣ କରିବା ପରେ କଂଗ୍ରେସ ସରକାର ଅମଳରେ ସେ ମାନବିକ ଅଧିକାର କମିଶନର ଅଧକ୍ଷ ରୂପେ ନିଯୁକ୍ତିପାଇଥିଲେ । ପରବର୍ତ୍ତୀକାଳରେ କଂଗ୍ରେସ ଦଳ ଶ୍ରୀ ମିଶ୍ରଙ୍କୁ ଦଳୀୟ ପ୍ରାର୍ଥୀରୂପେ ଓଡ଼ିଶାରୁ ରାଜ୍ୟସଭା ସଦସ୍ୟରୂପେ ନିର୍ବାଚିତ କରାଇ ଶିଖ୍ ସଂପ୍ରଦାୟର ଲୋକମାନଙ୍କ 'କଟା ଘାଆରେ ଚୂନ ଦେବାଭଳି' କାର୍ଯ୍ୟ କରିଥିବା ଅଭିଯୋଗ ହୁଏ ।

ଶ୍ରୀ ରଙ୍ଗନାଥ ମିଶ୍ରଙ୍କ ରାଜ୍ୟସଭା ପ୍ରାର୍ଥୀତ୍ୱ ଓ ନିର୍ବାଚନ ବିଷୟକୁ ଅବୈଧ ଘୋଷଣା କରିବାକୁ ବିଜୁ ଜନତା ଦଳ ପ୍ରାର୍ଥୀ ଶ୍ରୀ ଅନଙ୍ଗ ଉଦୟ ସିଂହଦେଓ ମାନ୍ୟବର ଓଡ଼ିଶା ହାଇକୋର୍ଟରେ ଗୋଟିଏ ମୋକଦ୍ଦମା କରିଥିଲେ । ଏହି ମୋକଦ୍ଦମା ବର୍ତ୍ତମାନ ମାନ୍ୟବର ସୁପ୍ରିମକୋର୍ଟରେ ବିଚାରାଧୀନ ଅଛି । ମୋକଦ୍ଦମାର ବିବରଣୀରୁ ଜଣାଯାଏ ଯେ, ଶ୍ରୀ ମିଶ୍ର ଏକ ବିବାଦୀୟ ଓ ସଂଦିଗ୍ଧ ଆଚରଣଦ୍ୱାରା ସମାଲୋଚିତ ହେଉଛନ୍ତି । ଆଇନ ନିଜ ବାଟରେ ଯିବ ସତ୍ୟ କିନ୍ତୁ ଏକ ନୈତିକ ମୂଲ୍ୟବୋଧ ବିଷୟ ଏଥିରେ ଜଡ଼ିତ ହୋଇଥିବା ଜଣାପଡୁଛି । ସର୍ବୋଚ୍ଚ ନ୍ୟାୟାଳୟରେ କାର୍ଯ୍ୟ କରି ଅବସର ଗ୍ରହଣ କରିଥିବା ଜଣେ ନ୍ୟାୟମୂର୍ତ୍ତି ଗୋଟିଏ ରାଜନୈତିକ ଦଳ ଓ ଏହାର ନେତୃତ୍ୱ ସହିତ ସଂପର୍କ ରଖି କ୍ଷମତା ଓ ଅନ୍ୟାନ୍ୟ ସାହାଯ୍ୟ ଗ୍ରହଣ କରିବା ନୈତିକ ସ୍ଖଳନ ହେବାପରି ଜଣାଯାଏ । ବହୁ ବିଶିଷ୍ଟ କଂଗ୍ରେସ ବିଧାୟକଙ୍କଠାରୁ ମୁଁ ଶୁଣିବାକୁ ପାଇଛି ଯେ, ରାଜ୍ୟସଭା ନିର୍ବାଚନ ବେଳେ ଶ୍ରୀ ମିଶ୍ରଙ୍କ ପ୍ରାର୍ଥୀତ୍ୱକୁ ବିରୋଧ କରୁଥିବା ବିଧାୟକମାନଙ୍କୁ ଚପାଇଦେବାପାଇଁ ଓଡ଼ିଶାର କଂଗ୍ରେସ ସଭାପତି ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ କୁଆଡ଼େ କହିଥିଲେ ଯେ, ସର୍ବଭାରତୀୟ କଂଗ୍ରେସ ସଭାନେତ୍ରୀ ଶ୍ରୀ ମିଶ୍ରଙ୍କୁ କଂଗ୍ରେସ ପ୍ରାର୍ଥୀଭାବେ ନିର୍ବାଚିତ କରିବାକୁ ଚାହୁଁଛନ୍ତି । କାରଣ ସେ ରାଜ୍ୟସଭାକୁ ନିର୍ବାଚିତ ହେଲେ ବୋଫର୍ସ ମାମଲାରେ ସେ ତାଙ୍କୁ ସାହାଯ୍ୟ କରିବେ । ବିଚାରପତିଙ୍କ ଭାବମୂର୍ତ୍ତିକୁ ଓ ବିଚାରବିଭାଗୀୟ ପରମ୍ପରାକୁ ଏତାଦୃଶ କାର୍ଯ୍ୟ ଅତି ନିମ୍ନସ୍ତରକୁ ନେଇଯାଏ । ଏପରିକି ମୋ ସଂପର୍କରେ ଆସିଥିବା ଅନେକ ବିଚାରପତି ବିଚାରାଳୟ ପରମ୍ପରାରେ ଏହା ଏକ କଳଙ୍କମୟ ଅଧ୍ୟାୟ ବୋଲି ମତ ବ୍ୟକ୍ତ କରିଛନ୍ତି ।

## ଓଡ଼ିଶାରେ ଅନୁକମ୍ପା ରାଜନୀତିର ପ୍ରଭାବ

୧୯୮୪ ମସିହା ଡିସେମ୍ବର ମାସର ଶେଷଭାଗରେ ଅନୁଷ୍ଠିତ ଲୋକସଭା ନିର୍ବାଚନରେ ରାଜୀବ ଗାନ୍ଧୀଙ୍କ ପ୍ରତି ଲୋକଙ୍କର ଅନୁକମ୍ପାର ସୁଅ ଛୁଟିଲା । ମାଆଛେଉଣ୍ଡ ପୁଅ ରାଜୀବ ଗାନ୍ଧୀଙ୍କ

ପ୍ରତି ଲୋକମାନଙ୍କର ଅନୁକମ୍ପା ଓ ସମର୍ଥନର ଅଭାବ ରହିଲାନାହିଁ । ତେଣୁ କଂଗ୍ରେସ ବିପୁଳ ବିଜୟ ଲାଭ କରିଥିଲା ।

ଇନ୍ଦିରା ଗାନ୍ଧୀଙ୍କ ହତ୍ୟାଜନିତ ଅନୁକମ୍ପା ଓଡ଼ିଶାରେ ବିଶେଷ ଭାବରେ ପ୍ରତିଫଳିତ ହୋଇଥିଲା । ଅକ୍ଟୋବର ମାସ ୩୧ ତାରିଖ ଦିନ ଭୁବନେଶ୍ୱରରେ ଗୋଟିଏ ବିରାଟ ଜନସଭାକୁ ସମ୍ବୋଧନ କଲାପରେ ଶ୍ରୀମତୀ ଗାନ୍ଧୀ ଦିଲ୍ଲୀ ଫେରିଯାଇଥିଲେ । ତା'ପର ଦିନ ତାଙ୍କର ହତ୍ୟା ଯେପରି ହେଲା ତାହା ଆଗରୁ ଉଲ୍ଲେଖ କରାଯାଇଛି । ଓଡ଼ିଶାରେ ତାଙ୍କର ଶେଷ କାର୍ଯ୍ୟକ୍ରମ ଓ ତା'ପରେ ତାଙ୍କର ହତ୍ୟା– ଏହି କଥାଟି ଓଡ଼ିଶାବାସୀଙ୍କ ମନରେ ଗଭୀର ଦୁଃଖର ଛାୟା ପକାଇଥିଲା । ତେଣୁ ଓଡ଼ିଶାରେ ଅନୁକମ୍ପାର ହାୱା ବିଶେଷ ଭାବରେ ବହିଥିଲା । ପରବର୍ତ୍ତୀ ସବୁ ନିର୍ବାଚନରେ ଲୋକଙ୍କୁ କୁହାଗଲା ଯେ, ଇନ୍ଦିରା ଗାନ୍ଧୀଙ୍କର ଓଡ଼ିଶାବାସୀଙ୍କ ପ୍ରତି ବିପୁଳ ଶ୍ରଦ୍ଧା ଥିଲା ଓ ଓଡ଼ିଶାର ଉନ୍ନତିପାଇଁ ସେ ବହୁତ କିଛି କରିଥା'ନ୍ତେ । ମାତ୍ର ତାଙ୍କୁ ଜୀବିତ ରହିବାକୁ ଦିଆଗଲାନାହିଁ । ତେଣୁ ନିର୍ବାଚନରେ ବିରୋଧୀଦଳର ପରାଜୟ ଘଟାଇବାପାଇଁ କଂଗ୍ରେସକୁ ବିଶେଷ କିଛି ପରିଶ୍ରମ କରିବାକୁ ପଡ଼ିନଥିଲା ।

ଏହି ରାଜନୈତିକ ପୃଷ୍ଠଭୂମିରେ ୧୯୮୫ ମସିହା ପ୍ରଥମ ଭାଗରେ ଆସିଗଲା ଓଡ଼ିଶାର ବିଧାନସଭା ନିର୍ବାଚନ । ମୁଁ ପ୍ରାର୍ଥୀ ନ ହେବାପାଇଁ ସ୍ଥିରକରିଥିଲି । ଜନତା ପାର୍ଟି ପକ୍ଷରୁ ପ୍ରାର୍ଥୀ ବଛାବଛି କାର୍ଯ୍ୟ ସମାପ୍ତ ହୋଇଗଲା । ଭଦ୍ରକପାଇଁ ଶ୍ରୀ ପ୍ରଫୁଲ୍ଲ ସାମଲ ପ୍ରାର୍ଥୀ ରୂପେ ମନୋନୀତ ହୋଇଥିଲେ, ମାତ୍ର ପ୍ରତିଦ୍ୱନ୍ଦ୍ୱିତା କରିବାପାଇଁ ରାଜି ନହୋଇ ସେ ଓହରିଗଲେ । ମୁଁ ସେତେବେଳେ ବାଲେଶ୍ୱର ଜିଲ୍ଲାରେ ରହି ଅନ୍ୟାନ୍ୟ ପ୍ରାର୍ଥୀମାନଙ୍କପାଇଁ କାର୍ଯ୍ୟ କରୁଥିଲି । ମୋ ଉପରେ ପ୍ରବଳ ଚାପ ପଡ଼ିଲା ଭଦ୍ରକରୁ ପ୍ରାର୍ଥୀ ହେବାପାଇଁ । ଏହି ଚାପକୁ ଏଡ଼ାଇ ନପାରି ଗୋଟିଏ ଦୁର୍ବଳ ମୁହୂର୍ତ୍ତରେ ପ୍ରତିଦ୍ୱନ୍ଦ୍ୱିତା କରିବାପାଇଁ ମୁଁ ସମ୍ମତି ଦେଇଥିଲି । ଏଥିପାଇଁ ପୂର୍ବରୁ କିଛି ପ୍ରସ୍ତୁତି ନଥିଲା । ସେ ସମୟରେ ଇନ୍ଦିରା ଗାନ୍ଧୀଙ୍କ ପ୍ରତି ଅନୁକମ୍ପାର ପ୍ରବଳ ଜୁଆର ସତ୍ତ୍ୱେ ମୁଁ ମୋର ଅତୀତର ଜନ ସଂପର୍କ ଓ ଲୋକପ୍ରିୟତାକୁ ଅଧିକ ଅଟକଳ କରିଥିଲି । ତେଣୁ ମୋ ନିର୍ବାଚନମଣ୍ଡଳୀରେ ଭୋଟ ପ୍ରଚାର ଓ ସଂଗ୍ରହ କାର୍ଯ୍ୟ ପ୍ରତି ନିଜେ ଯଥେଷ୍ଟ ଧ୍ୟାନ ନଦେଇ ଅନ୍ୟତ୍ର ଅଧିକ କାର୍ଯ୍ୟରେ ଲିପ୍ତରହୁଥିଲି । ଫଳରେ ମୋର ପରାଜୟ ଘଟିଲା ।

ଇନ୍ଦିରା ଗାନ୍ଧୀଙ୍କ ହତ୍ୟା, ବିରୋଧୀଦଳ ଲୋକଙ୍କ ଚକ୍ରାନ୍ତ ହେତୁ ଘଟିଥିଲା ବୋଲି କଂଗ୍ରେସ ପକ୍ଷରୁ ଯେଉଁ ଅଭିଯୋଗ ହେଉଥିଲା, ତାହା ସଂପୂର୍ଣ୍ଣ ଅମୂଳକ ଓ ଭିତ୍ତିଶୂନ୍ୟ ବୋଲି ମୁଁ ଅନୁଭବ କରିଥିଲି । ମୋର ହୃଦ୍‌ବୋଧ ହେଉଥିଲା ଯେ, ସ୍ୱର୍ଣ୍ଣମନ୍ଦିର ମଧ୍ୟରେ ସେନାବାହିନୀ ପ୍ରବେଶ କରିବା ପରେ ଯାହାସବୁ ଘଟିଥିଲା, ତାହା ସ୍ୱୟଂ ଇନ୍ଦିରା ଗାନ୍ଧୀ ଓ ତାଙ୍କ ପୁଅ ରାଜୀବ ଗାନ୍ଧୀଙ୍କର କର୍ମଫଳ ଥିଲା । ପଞ୍ଜାବ ଶାସନରୁ ଅକାଳି ଦଳକୁ ହଟାଇ ଅକାଳି ଦଳର ଶକ୍ତିକୁ ମୁକାବିଲା କରିବାପାଇଁ ଭିନ୍ଦରନ୍‌ୱାଲେଙ୍କୁ ଭସ୍ମାସୁର ପରି ପଞ୍ଜାବ ରାଜନୀତିରେ ପ୍ରବେଶ କରାଇ ବଳୀୟାନ୍ କରିବାପାଇଁ ଇନ୍ଦିରା ଗାନ୍ଧୀଙ୍କ ସରକାର ଏବଂ ତାଙ୍କ କଂଗ୍ରେସ ଯଦି ଷଡ଼ଯନ୍ତ୍ରମୂଳକ କାର୍ଯ୍ୟ କରିନଥାନ୍ତେ, ତେବେ ସ୍ୱର୍ଣ୍ଣମନ୍ଦିର ଉପରେ ସୈନ୍ୟବାହିନୀଦ୍ୱାରା ଆକ୍ରମଣ କରିବାର (Blue Star Operation) କୌଣସି ଆବଶ୍ୟକତା ପଡ଼ିନଥା'ନ୍ତା । ଯେଉଁ ଉଦ୍ଦେଶ୍ୟରେ ସନ୍ଥ ଭିନ୍ଦରନ୍‌ୱାଲେଙ୍କୁ ପଞ୍ଜାବର ରାଜନୀତିକୁ ପଠାଯାଇଥିଲା ସେ ସେଠାରେ ତା'ର ବିପରୀତ କାର୍ଯ୍ୟ କରିଥିଲେ । ଖଲିସ୍ଥାନ ବା ସ୍ୱାଧୀନ ପଞ୍ଜାବ ରାଷ୍ଟ୍ର ଗଠନର ସେ ପ୍ରଧାନ ପୃଷ୍ଠପୋଷକ ହୋଇଯାଇଥିଲେ । ଦଳେ ଉଚ୍ଛୃଙ୍ଖଳ ଅସ୍ତ୍ରଶସ୍ତ୍ରଧାରୀ ଶିଖ୍ ଯୁବକଙ୍କୁ ସଂଗଠିତ କରି ରାଜ୍ୟରେ ଆତଙ୍କରାଜ ଅବସ୍ଥା ସୃଷ୍ଟିକରିଥିଲେ । ବାହାରେ ନରସଂହାର କରି ସ୍ୱର୍ଣ୍ଣମନ୍ଦିର ପରିସରକୁ ଅପରାଧୀମାନଙ୍କର ଦୁର୍ଗରେ ପରିଣତ କରିଥିଲେ ।

ସ୍ୱର୍ଣ୍ଣମନ୍ଦିର ପବିତ୍ରତା ପ୍ରତି ତିଳେମାତ୍ର ଭ୍ରୂକ୍ଷେପନକରି ସନ୍ଥ ଭିନ୍ଦରନ୍‌ୱାଲେ ତାହା ମଧ୍ୟରେ ରହି କିପରି ଆତଙ୍କରାଜ ସୃଷ୍ଟିକରିହେବ ଓ ଖଲିସ୍ଥାନ ପ୍ରତିଷ୍ଠା ବିରୋଧୀ ଲୋକମାନେ ରାଜ୍ୟ ଛାଡ଼ି

ପଳାଇ ଯିବାକୁ ବାଧହେବେ, ସେସବୁ କାର୍ଯ୍ୟ ପରିଚାଳନା କରୁଥିଲେ । ଏପରିକି ବିରୋଧୀ ଲୋକଙ୍କୁ ଧରି ଆଣି ମନ୍ଦିର ପରିସର ମଧରେ ହତ୍ୟାକରି ତାଙ୍କର ଶବଦାହ ମନ୍ଦିର ମଧରେ କରୁଥିଲେ । କ୍ରମେ ସ୍ୱର୍ଣ୍ଣମନ୍ଦିର ଖଲିସ୍ଥାନ ପ୍ରବର୍ତ୍ତକମାନଙ୍କପାଇଁ ଏକ ସାମରିକ ଘାଟିରେ ପରିଣତ ହୋଇଥିଲା ଏବଂ ନାନା ମାରଣାସ୍ତ୍ରର ଗନ୍ତାଘର ପାଲଟିଯାଇଥିଲା । ତେଣୁ ବିଦ୍ରୋହୀମାନଙ୍କୁ ଅକ୍ତିଆର କରି ସେମାନଙ୍କ କବଳରୁ ସ୍ୱର୍ଣ୍ଣମନ୍ଦିରକୁ ମୁକ୍ତକରି ମନ୍ଦିରର ପବିତ୍ରତା ଓ ଆଖପାଖରେ ଶାନ୍ତି ଫେରାଇ ଆଣିବାପାଇଁ ସେନାଧକ୍ଷ ଜେନେରାଲ ବୈଦ୍ୟଙ୍କୁ ଇନ୍ଦିରା ଗାନ୍ଧୀଙ୍କର ସରକାର ନିର୍ଦ୍ଦେଶ ଦେଇଥିଲେ । ସେନାବାହିନୀ ସ୍ୱର୍ଣ୍ଣମନ୍ଦିର ଭିତରକୁ ପ୍ରବେଶକଲେ, ଶିଖ୍ ଧର୍ମାବଲମ୍ବୀ ଲୋକେ ତାହା ବରଦାସ୍ତ କରିବେନାହିଁ ବୋଲି ମତ ପ୍ରକାଶ ପାଉଥାଏ । ମୋ ଜାଣିବାରେ ସେତେବେଳେ ଗୋଟିଏ ପ୍ରସ୍ତାବ ଥିଲା ଯେ ମନ୍ଦିର ଭିତରକୁ ସେନାବାହିନୀ ପ୍ରବେଶ ନକରି ଗୋଟିଏ ଦୃଢ଼ ଘେର ଭିତରେ ଜବତ୍ କରି ରଖି ମନ୍ଦିରକୁ ଖାଦ୍ୟପଦାର୍ଥ, ବିଦ୍ୟୁତ୍ ଶକ୍ତି ଓ ପାଣି ଯୋଗାଣ ବନ୍ଦକରିଦେଲେ ଅସହ୍ୟ ପରିସ୍ଥିତିରେ ବିଦ୍ରୋହୀମାନେ ବେଶୀଦିନ ଟିକି ରହିନପାରି ଆତ୍ମସମର୍ପଣ କରିବାକୁ ବାଧ ହୋଇଯିବେ । ଏହି ପନ୍ଥା ଧରିଥିଲେ ସରକାରଙ୍କର ଦୁର୍ବଳତା ପଦାରେ ପଡ଼ିଥା'ନ୍ତା ବୋଲି ମନେକରି ଏହା କରାଗଲାନାହିଁ । ତେଣୁ ମନ୍ଦିର ଭିତରକୁ ସେନାବାହିନୀ ପ୍ରବେଶକଲେ ।

ଶିଖ୍ ଜାତି ଯେ ଗୋଟାଏ ଅତ୍ୟନ୍ତ ସ୍ୱାଭିମାନୀ ପ୍ରତିହିଂସାପରାୟଣ ଜାତି– ଏହି ଐତିହାସିକ ସତ୍ୟକୁ ଆଦୌ ବିଚାରକୁ ନିଆଯାଇନଥିଲା । ଯଦିଓ ଏହାର ଅନେକ ଦୃଷ୍ଟାନ୍ତ ପୂର୍ବରୁ ଥିଲା, ଏହି ନିରାଟ ସତ୍ୟ ଓ ବାସ୍ତବତା ସଂପର୍କରେ ସଚେତନ ଥିଲେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ନିରାପତ୍ତା ପାଇଁ ଯେଉଁ ବ୍ୟବସ୍ଥା ଥିଲା ସେଥିରେ ସମୟୋପଯୋଗୀ ପରିବର୍ତ୍ତନ କରାଯାଇପାରିଥା'ନ୍ତା । ଅମୃତସର୍‌ରେ ଅବସ୍ଥିତ ଏହି ସ୍ୱର୍ଣ୍ଣମନ୍ଦିରଠାରୁ ଅଳ୍ପ ଦୂରରେ ଜାଲିଆନାୱାଲାବାଗ୍ ଅବସ୍ଥିତ । ୧୯୧୯ ମସିହା ସ୍ୱାଧୀନତା ସଂଗ୍ରାମର ପ୍ରାରମ୍ଭରେ ଇଂରେଜ ସରକାରଙ୍କର 'ରାଓଲଟ୍ ଆଇନ୍' ବିରୋଧରେ ପ୍ରତିବାଦ ଜଣାଇବାପାଇଁ ଜାଲିଆନାୱାଲାବାଗ୍‌ଠାରେ ଗୋଟିଏ ବିରାଟ ଜନସଭା ଅନୁଷ୍ଠିତ ହୋଇଥିଲା । ସଭା ହେଉଥିବା ପଡ଼ିଆ ଭିତରକୁ ମାତ୍ର ଗୋଟିଏ ପ୍ରବେଶ ଦ୍ୱାର ଥିଲା । ସଭାସ୍ଥଳରେ ପୁଲିସ ଅଫିସର ଜେନେରାଲ୍ ଡାୟାର୍ ପୁଲିସ ବାହିନୀଧରି ପହଞ୍ଚିଥିଲେ । ସଭା ନକରି ସଭାସ୍ଥଳ ଛାଡ଼ି ଚାଲିଯିବାକୁ ଲୋକମାନଙ୍କୁ ଡାୟାର ସାହେବ ହୁକୁମ ଦେଇଥିଲେ । ଲୋକେ ସେହି ହୁକୁମ୍ ନମାନି ସଭା କରିବାରୁ ଗୁଳି ଚଳାଇବାପାଇଁ ନିଷ୍ଠୁର ଡାୟାର ସାହେବ ହୁକୁମ୍ ଦେଲେ । ବହୁ ଲୋକଙ୍କର ପ୍ରାଣହାନି ଘଟିଥିଲା । ସ୍ୱାଭିମାନୀ ପ୍ରତିଶୋଧପରାୟଣ ଶିଖ୍ ଜାତିର ଲୋକ ଏ କଥା ଆଦୌ ଭୁଲିପାରିନଥିଲେ । ଏହି ଘଟଣା ଘଟିବାର ବହୁ ବର୍ଷ ପରେ ଉଦ୍ଧାମ ସିଂହ ନାମକ ଜଣେ ଶିଖ୍ ଯୁବକ ଲଣ୍ଡନ୍‌ଠାରେ ବିଲାତ ପାର୍ଲାମେଣ୍ଟ ଚାଲିଥିବାବେଳେ ସେହି ପାର୍ଲାମେଣ୍ଟ ସନ୍ନିକଟରେହିଁ ପ୍ରତିଶୋଧ ନେବାପାଇଁ ଏହି କୁଖ୍ୟାତ ଡାୟାର ସାହେବଙ୍କୁ ଗୁଳି କରି ହତ୍ୟା କରିଥିଲା ।

ଏ ଗୋଟିଏ ମାତ୍ର ଦୃଷ୍ଟାନ୍ତ ପ୍ରତି ଯଦି ତିଳେମାତ୍ର ଧ୍ୟାନ ଦିଆଯାଇଥା'ନ୍ତା, ତା'ହେଲେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ତାଙ୍କ ବାସଭବନ ପରିସର ମଧରେ ତାଙ୍କର ଦେହରକ୍ଷୀ ଶିଖ୍ ଯୁବକ ବିୟନ୍ତ ସିଂହ ଓ ସତବନ୍ତ ସିଂହଙ୍କ ଦ୍ୱାରା ତାଙ୍କର ନିହତ ହେବାରୁ ତାଙ୍କୁ ହତ୍ୟା କରିବାର ପରିସ୍ଥିତି ଉପୁଜିନଥାନ୍ତା । ବିୟନ୍ତ ସିଂହଙ୍କୁ ରାଜୀବ ଗାନ୍ଧୀ ପୂର୍ବରୁ ସନ୍ଦେହକରୁଥିଲେ ମଧ କିଛି ପ୍ରତିକାର କରିନଥିଲେ । ଯେଉଁଦିନ ଇନ୍ଦିରା ଗାନ୍ଧୀଙ୍କର ଗୁଳିଚୋଟରେ ମୃତ୍ୟୁ ହେଲା ସେହିଦିନ ରାଜୀବ ଗାନ୍ଧୀ ପଶ୍ଚିମ ବଙ୍ଗର ମେଦିନାପୁର ଗସ୍ତରେ ଥିଲେ । ଏହି ଘଟଣା ଶୁଣିବାମାତ୍ରେ ସ୍ୱତଃ ରାଜୀବ ଗାନ୍ଧୀଙ୍କ ମୁହଁରୁ ବାହାରିପଡ଼ିଲା, ''ଓ, ଏହି କ'ଣ ସେହି ଶିଖ୍ ଯୁବକ ଯାହାକୁ ମୁଁ ସନ୍ଦେହକରୁଥିଲି ? ତେଣୁ ପୂର୍ବରୁ ବିୟନ୍ତ ସିଂହଙ୍କ ଚାଲିଚଳଣିରୁ ତାଙ୍କୁ ରାଜୀବ ବେଶ୍ ସନ୍ଦେହ କରୁଥିଲେ ବୋଲି ବୁଝିବାକୁ ହେବ । ମାତ୍ର ନିର୍ବୋଧ ଭାବରେ ରାଜୀବ ସେ ଦିଗରେ ସତର୍କତା ଅବଲମ୍ବନ ନକରି ପରୋକ୍ଷରେ

ମାଆଙ୍କ ମୃତ୍ୟୁର ଗୋଟିଏ କାରଣ ହୋଇପଡ଼ିଲେ । ଏହାପରେ ମଧ ରାଜୀବ ଗାନ୍ଧୀ କିଛି ଶିକ୍ଷା ଅର୍ଜନ କରିନଥିଲେ । ମାଆଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଶେଷ ହେଉନହେଉଣୁ ପ୍ରାୟ ଚାରି ହଜାର ଶିଖ୍ ଜାତିର ନାଗରିକଙ୍କୁ ଦିଲ୍ଲୀ ସହରରେ ହତ୍ୟାକରାଯାଇଥିଲା । ନାରକୀୟ ଘଟଣାର ପ୍ରତିଶୋଧ କିପରି ଭାବରେ ପଞ୍ଜାବରେ ନିଆଗଲା ଆମେ ସମସ୍ତେ ସେ କଥାର ଅନୁଭବୀ । ପଞ୍ଜାବରେ ନିଆଁ ଜଳିଲା । ଅପରିପକ୍ୱ ରାଜୀବ ଶାନ୍ତି ଫେରାଇ ଆଣିବା ଉଦ୍ଦେଶ୍ୟରେ କେତେକ ଚୁକ୍ତି ପଞ୍ଜାବ ନେତାମାନଙ୍କ ସହିତ ସଂପାଦନ କଲେ ମଧ ତାହା ବ୍ୟର୍ଥ ହୋଇଥିଲା । ଏଥିପାଇଁ କେତେକ ଶିଖ୍ ନେତାଙ୍କୁ ପ୍ରାଣବଳି ଦେବାକୁ ପଡ଼ିଥିଲା । ଶିଖ୍‌ମାନଙ୍କର ପ୍ରତିଶୋଧ ନେବାର ମନୋବୃତ୍ତି ଆଉ ଗୋଟିଏ ଘଟଣାରୁ ବୁଝାପଡ଼େ । ସ୍ୱର୍ଣ୍ଣମନ୍ଦିର ଉପରେ ବ୍ଲୁଷ୍ଟାର ଅପରେସନ ଜେନେରାଲ ବୈଦ୍ୟଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ କରାଯାଇଥିଲା । ତାହାର ଦୁଇ ବର୍ଷ ପରେ ୧୦।୮।୧୯୮୬ ତାରିଖରେ ଜେନେରାଲ ବୈଦ୍ୟଙ୍କୁ କେତେକ ଶିଖ୍ ଯୁବକ ହତ୍ୟାକରିବା ଘଟଣା ସମସ୍ତଙ୍କୁ ଜଣାଅଛି ।

## ବସନ୍ତ ବଳିପଡ଼ିଲେ

ଜାନକୀବାବୁଙ୍କ ମନ୍ତ୍ରିମଣ୍ଡଳରେ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ରାଷ୍ଟ୍ରମନ୍ତ୍ରୀ ଥିଲେ । ସେ ମୋର ଜଣେ ଘନିଷ୍ଠ ବନ୍ଧୁ ସ୍ୱର୍ଗୀୟ ଧନଞ୍ଜୟ ଲେଙ୍କାଙ୍କ ଜାମାତା ହୋଇଥିବାରୁ ମୋ ସହିତ ତାଙ୍କର ପୂର୍ବରୁ ସଂପର୍କ ଥିଲା । ସେ ମଝିରେ ମଝିରେ ଆସି ମୋତେ ଦେଖାକରୁଥିଲେ । ତାଙ୍କ ସରକାର କିପରି ଚାଲୁଥିଲା, ତାଙ୍କଠାରୁ କିଛି କିଛି ଜାଣିବାକୁ ପାଉଥିଲି । ବସନ୍ତବାବୁ ଜଣେ ପାରିବାର ବ୍ୟକ୍ତି ଥିଲେ । ନେଇଆଣି ଥୋଇପାରିବାର ଶକ୍ତି ତାଙ୍କର ଥିଲା । ପ୍ରତ୍ୟକ୍ଷ ରାଜନୀତିରେ ଯୋଗଦେବା ପୂର୍ବରୁ ସେ ବ୍ୟବସାୟ କରୁଥିଲେ । ସେତେବେଳେ ସେ ସମୟେ ସମୟେ ରାଜନୈତିକ କାର୍ଯ୍ୟପାଇଁ ମୋତେ ସାହାଯ୍ୟ କରୁଥିଲେ । ମୁଁ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଥିବାବେଳେ ମଧ ତାଙ୍କଠାରୁ ସେ ପ୍ରକାର ସାହାଯ୍ୟ ପାଇଛି । ଅନ୍ୟମାନେ ତାଙ୍କ ହାତରେ ମୋ ପାଖକୁ ଅର୍ଥ ସାହାଯ୍ୟ ପଠାଇବା ମଧ ମୋର ମନେଅଛି । ଦିନେ କଟକ ସ୍ୱରାଜ ଆଶ୍ରମରେ ମୁଁ ବସିଛି, ବସନ୍ତବାବୁ ଦଶ ହଜାର ଟଙ୍କା ଆଣି ମୋ ହାତକୁ ବଢ଼ାଇଦେଲେ ଏବଂ କହିଲେ ଯେ ‘‘ଆପଣ ଜଣେ ବ୍ୟକ୍ତିଙ୍କୁ ତାହାର ଅଜାଣତରେ ସାହାଯ୍ୟ କରି ତା’ର ଚାକିରି ଜୀବନ ବଞ୍ଚାଇଦେଇଥିବାରୁ ଏବଂ ଆପଣଙ୍କ ଦଳ ବର୍ତ୍ତମାନ କ୍ଷମତାରେ ନଥିବାରୁ କଂଗ୍ରେସ ଅଫିସ୍ ଚଳାଇବା ଦିଗରେ ଅସୁବିଧା ପଡୁଥିବ ଅନୁଭବ କରି ସେ ବ୍ୟକ୍ତି ଆପଣଙ୍କ ପାଖକୁ ଏହି ଟଙ୍କା ପଠାଇଛନ୍ତି । ତା’ପରେ ବସନ୍ତବାବୁ ସେ ବ୍ୟକ୍ତିଙ୍କ ନାମ ପ୍ରକାଶ କରିଥିଲେ । ସେତେବେଳକୁ ସେ ଥିଲେ ପୂର୍ତ୍ତ ବିଭାଗର ଜଣେ ଅଧିକ୍ଷଣ ଯନ୍ତ୍ରୀ । ପୂର୍ବରୁ ସେହି ବିଭାଗରେ ଏସ୍.ଡି.ଓ. ଥିବାବେଳେ ମୋର ସହାନୁଭୂତି ସେ ଅଯାଚିତ ଭାବରେ ପାଇଥିଲେ ବୋଲି ଜଣାଇଥିଲେ । ତାଙ୍କ ନାମ ଏମ.ଆଇ.ଏମ୍. ପଟ୍ଟନାୟକ । ରାଜ୍ୟ ଦୁର୍ନୀତି ନିବାରଣ ବିଭାଗ ତାଙ୍କ ଘର ଖାନ୍‌ତଲାସ କରି, ତାଙ୍କ ବିରୋଧରେ ତଦନ୍ତ କରି ଭିଜିଲାନ୍‌ସ ମୋକଦ୍ଦମା ଦାଏର୍ କରିଥିଲେ । ତଦନ୍ତ ପରେ ତାଙ୍କୁ ଚାକିରିରୁ ଅନ୍ତର କରିଦେବାକୁ ସୁପାରିସ୍ ଆସିଥିଲା । ସେତେବେଳେ ରାଜ୍ୟ ଭିଜିଲାନ୍‌ସ ବିଭାଗ ମୋ ପାଖରେ ଥିଲା । ମୁଁ ମୋର ଚିରାଚରିତ ଅଭ୍ୟାସରେ ଆମୂଳଚୂଳ ଆଖିପକାଇ ନେଇଥିଲି । ସଂପୃକ୍ତ ଅଫିସର୍ ଜଣକ ଯୁବକ ହୋଇଥିବାରୁ ମୁଁ ଟିକେ ସଂବେଦନଶୀଳ ହୋଇଥିଲି । ତାଙ୍କୁ ପୂରାପୂରି ଚାକିରିରୁ ବହିଷ୍କାର ନକରି ଅନ୍ୟପ୍ରକାର କୋହଳ ଦଣ୍ଡ ଦେଇ ଭବିଷ୍ୟତରେ ସତର୍କତା ସହ କାର୍ଯ୍ୟ କରିବାକୁ ସୁଯୋଗ ଦେଲେ ଯଥେଷ୍ଟ ହେବ ବୋଲି ବିଚାରକଲି । ତାହାହିଁ କରାଗଲା । ସାଧାରଣତଃ ଦେଖାଯାଏ କୌଣସି ଅଫିସର୍ ଅଡୁଆରେ ପଡ଼ିଲେ ସେ ନିଜେ ଆସି ସଂପୃକ୍ତ ମନ୍ତ୍ରୀଙ୍କୁ ତାଙ୍କ କଥା କହନ୍ତି କିମ୍ବା ତାଙ୍କପାଇଁ ଅନ୍ୟ କେହି ଆସି ସଂପୃକ୍ତ ମନ୍ତ୍ରୀଙ୍କୁ ତାଙ୍କ କଥା କହନ୍ତି । କିନ୍ତୁ ଏ କ୍ଷେତ୍ରରେ ମୋତେ କେହି କହିନଥିଲେ । ମୁଁ ନିଜେ ବିଷୟଟି ବିଚାରକରି ଜଣେ

ଯୁବ ଅଫିସରଙ୍କପାଇଁ ଉପରୋକ୍ତ ସମ୍ବେଦନଶୀଳ ଆଦେଶ ଦେଇଥିଲି ।

ଶ୍ରୀ ବସନ୍ତକୁମାର ବିଶ୍ୱାଳ ରାଷ୍ଟ୍ରମନ୍ତ୍ରୀ ହେଲେହେଁ ତାଙ୍କର କାର୍ଯ୍ୟରେ ଯଥେଷ୍ଟ ଦକ୍ଷତା ଲକ୍ଷ୍ୟ କରାଯାଉଥିଲା । ସେ କର୍ମକୁଶଳୀ ଓ କୌଶଳୀ ବ୍ୟକ୍ତି ହୋଇଥିବାରୁ ମୁଖ୍ୟମନ୍ତ୍ରୀ ଜାନକୀବାବୁ ତାଙ୍କ ଉପରେ ବହୁ କଥାରେ ନିର୍ଭର କରିବାକୁ ଲାଗିଲେ । ମୁଖ୍ୟମନ୍ତ୍ରୀଙ୍କ ବିରୋଧରେ କୌଣସି ଅଭିଯୋଗ ଆସିଲେ ସେ ଆପେ ଆପେ ଉପରେ ପଡ଼ି ତା'ର ପ୍ରତିବାଦ କରୁଥିଲେ । କ୍ରମେ ଦେଖାଗଲା, ସେ ଗୋଟାପଣେ ମୁଖ୍ୟମନ୍ତ୍ରୀଙ୍କ ଲୋକ ହୋଇଗଲେ । ମୁଖ୍ୟମନ୍ତ୍ରୀଙ୍କ ସରକାରୀ ବାସଭବନକୁ ଲାଗିଥିବା ଘରଟି ବସନ୍ତବାବୁଙ୍କ ସରକାରୀ ବାସଭବନ ହୋଇଗଲା । ଉଭୟଙ୍କ ମଧ୍ୟରେ ଯାତାୟାତର ସୁବିଧା-ପାଇଁ ଦୁହିଁଙ୍କ ବାସଘର ମଝିରେ ଥିବା ବାଡ଼ରେ ଗୋଟିଏ ସ୍ୱତନ୍ତ୍ର ଫାଟକ ଲଗାଇ ଦିଆ ଯାଇଥିଲା । ମୁଖ୍ୟମନ୍ତ୍ରୀ ସବୁକଥାରେ ବସନ୍ତବାବୁଙ୍କ ଉପରେ ନିର୍ଭରକରୁଥିବାରୁ ଏବଂ ତାଙ୍କ ଉପରେ ବସନ୍ତବାବୁଙ୍କ ପ୍ରଭାବ ଦେଖି ଜାନକୀବାବୁଙ୍କ ପରିବାର ଓ ବନ୍ଧୁମାନେ ଆତଙ୍କିତ ହୋଇପଡ଼ି ବସନ୍ତବାବୁଙ୍କ ପତନ ଘଟାଇବାପାଇଁ ଉଦ୍ୟମ ଆରମ୍ଭ କରିଦେଲେ । ଜାନକୀବାବୁଙ୍କ ବିରୋଧରେ ଦୁର୍ନୀତି ଅଭିଯୋଗ ହେଲେ ବସନ୍ତବାବୁ ଅଣ୍ଟାଭିଡ଼ି ତାକୁ ଖଣ୍ଡନ କରିବାକୁ ବାହାରିପଡ଼ନ୍ତି । ମାତ୍ର ଜାନକୀବାବୁଙ୍କ ଜ୍ଞାତି-କୁଟୁମ୍ବମାନେ କହି ବୁଲିଲେ ଯେ ସବୁ ଦୁର୍ନୀତିପାଇଁ ବସନ୍ତବାବୁ ଦାୟୀ । ଦୁର୍ନୀତିମୂଳକ କାର୍ଯ୍ୟରେ ବସନ୍ତବାବୁ ଜାନକୀବାବୁଙ୍କୁ ସାହାଯ୍ୟକରି ଘଣ୍ଟଘୋଡ଼ାଉଛନ୍ତି, ଯାହା ଫଳରେ ସେ ସୁପର ଚିପ୍-ମିନିଷ୍ଟର୍ ହିସାବରେ କାର୍ଯ୍ୟ କରୁଛନ୍ତି ବୋଲି ସେମାନେ ଆକ୍ଷେପ ଅଭିଯୋଗ କରୁଥିଲେ । କଟକ ସହର ତିନି ପାଖରେ ଘେରିରହିଥିବା କାଠଯୋଡ଼ି ଓ ମହାନଦୀ କୂଳର ପଥର ବନ୍ଧ ଦୁର୍ବଳ ହୋଇଯାଇ ବନ୍ୟା ସମୟରେ ସହରଟି ବିପଦଗ୍ରସ୍ତ ହେଉଥିଲା । କେନ୍ଦ୍ରସରକାରଙ୍କଠାରୁ ଆସିଥିବା ବନ୍ୟା ସାହାଯ୍ୟ ଟଙ୍କାରୁ ପନ୍ଦର କୋଟି ଟଙ୍କା ଖର୍ଚ୍ଚକରି ପୁରୁଣା ବନ୍ଧକୁ ସୁଦୃଢ଼ କରିବା ସଙ୍ଗେ ସଙ୍ଗେ ତା' ପାଖରେ ପ୍ରଶସ୍ତ ଚଉଡ଼ା ରାସ୍ତାନିର୍ମାଣ କରି ଶ୍ରୀ ବସନ୍ତ ବିଶ୍ୱାଳ ଯେଉଁ ଖ୍ୟାତି ଅର୍ଜନ କରିଥିଲେ ତାକୁ ମୁଖ୍ୟମନ୍ତ୍ରୀଙ୍କ ବନ୍ଧୁ କୁଟୁମ୍ବ ଆଦୌ ସହ୍ୟ କରିପାରିନଥିଲେ । ଈର୍ଷାନ୍ୱିତ ହୋଇ ତାଙ୍କର ପତନ ଘଟାଇବାପାଇଁ ସେମାନଙ୍କ ଉଦ୍ୟମକୁ ଆହୁରି କ୍ଷିପ୍ର କରିଦେଲେ । ଶେଷରେ ଉକ୍ତ ସଂପର୍କୀୟ ବନ୍ଧୁକୁଟୁମ୍ବଙ୍କଦ୍ୱାରା ପ୍ରଭାବିତ ହୋଇ ତାଙ୍କୁ କଂଗ୍ରେସ ଟିକେଟ୍‌ରୁ ବଞ୍ଚିତ କଲେ, ଏପରିକି କଂଗ୍ରେସରୁ ବହିଷ୍କାର କରିବାପାଇଁ ଉଦ୍ୟମ ଆରମ୍ଭକରି ଜ୍ଞାତିକୁଟୁମ୍ବମାନଙ୍କୁ ସନ୍ତୁଷ୍ଟ କରିପାରିଥିଲେ । ମାତ୍ର ଶ୍ରୀମତୀ ଇନ୍ଦିରା ଗାନ୍ଧୀ ବଞ୍ଚିଥିବା ପର୍ଯ୍ୟନ୍ତ ଜାନକୀବାବୁ ତାଙ୍କ ଉଦ୍ୟମରେ ସଫଳ ହୋଇପାରି-ନଥିଲେ, କାରଣ ଇନ୍ଦିରା ଗାନ୍ଧୀଙ୍କୁ ଏସବୁ ବିଷୟରେ କିଛି କିଛି ଜଣାଥିଲା । ୧୯୮୪ ମସିହା ଶେଷଭାଗକୁ ଯେତେବେଳେ ରାଜୀବ ଗାନ୍ଧୀ କଂଗ୍ରେସ ସଭାପତି ଓ ପ୍ରଧାନମନ୍ତ୍ରୀ ହେଲେ, ଜାନକୀବାବୁ ବସନ୍ତଙ୍କ ବିରୋଧରେ ତାଙ୍କୁ ପ୍ରଭାବିତ କରିପାରିଥିଲେ । ୧୯୮୫ରେ ବିଧାନସଭା ପାଇଁ କଂଗ୍ରେସର ପ୍ରାର୍ଥୀ ମନୋନୟନ ସମୟରେ ବସନ୍ତଙ୍କ ବିରୋଧରେ ଜାନକୀବାବୁ ରାଜୀବ ଗାନ୍ଧୀଙ୍କୁ ବୁଝାଇଥିଲେ ଯେ ବସନ୍ତ ବିଶ୍ୱାଳ ଦୁର୍ନୀତିଗ୍ରସ୍ତ ବୋଲି ଜନସାଧାରଣଙ୍କ ଧାରଣା ଜନ୍ମୁଛି । ସେ ଯଦି କଂଗ୍ରେସରୁ ପ୍ରାର୍ଥୀ ହୁଅନ୍ତି, ତା'ହେଲେ ତାହାର ଖରାପ ପ୍ରଭାବ ରାଜ୍ୟସାରା ପଡ଼ିବ ଏବଂ ସେହି ହେତୁ ନିର୍ବାଚନରେ କଂଗ୍ରେସର ବିଜୟ କ୍ଷୀଣ ହୋଇଯିବ । ଏହାଦ୍ୱାରା ରାଜୀବ ଗାନ୍ଧୀ ପ୍ରଭାବିତ ହୋଇଥିଲେ ଏବଂ ବସନ୍ତଙ୍କୁ ପ୍ରାର୍ଥୀ ମନୋନୟନ ତାଲିକାରୁ ବାଦ୍ ଦିଆଯାଇଥିଲା । ''ତୁ ନାଥ ପରମ ଦୟାଳୁ, ବୁଝିବାକୁ ତୁ ଖୟଆଳୁ'' । ଲୋକେ କହନ୍ତି ''ମାର୍ ମାର୍ ଭଣ୍ଡାରିଆକୁ ମାର'' ତାହାହିଁ ଏଠାରେ ପ୍ରଯୁଜ୍ୟ । ଜଣେ ଅବାଞ୍ଛିତ ବ୍ୟକ୍ତିଙ୍କୁ କଂଗ୍ରେସ ତାଲିକାରୁ ବାଦ୍ ଦିଆଗଲା ବୋଲି କହି ତାଙ୍କ ଜ୍ଞାତିକୁଟୁମ୍ବମାନେ ସନ୍ତୋଷଲାଭକଲେ ।

## ବାଲିଆପାଳରେ ମାରାତ୍ମକ କ୍ଷେପଣାସ୍ତ୍ର ଘାଟି

୧୯୮୬ ମସିହାଟି ଆମ ରାଜ୍ୟର ଦୁଇଗୋଟି ଘଟଣା ଯୋଗୁଁ ସ୍ମରଣୀୟ ହୋଇ ରହିବ। ଗୋଟିଏ ଘଟଣା ହେଉଛି ଭାରତ ସରକାରଙ୍କ ପକ୍ଷରୁ ଅବିଭକ୍ତ ବାଲେଶ୍ୱର ଜିଲ୍ଲା ବାଲିଆପାଳଠାରେ ଯୁଦ୍ଧପାଇଁ ପ୍ରୟୋଜନ ମାରଣାସ୍ତ୍ର ବାହୀ କ୍ଷେପଣାସ୍ତ୍ର ପରୀକ୍ଷା ଘାଟି ପ୍ରତିଷ୍ଠା ହେବା ନିଷ୍ପତ୍ତି ଘୋଷଣା। ଏହି ଘୋଷଣାଦ୍ୱାରା ସମଗ୍ର ବାଲେଶ୍ୱର ଜିଲ୍ଲାରେ ଚାଞ୍ଚଲ୍ୟକର ପରିସ୍ଥିତି ସୃଷ୍ଟି ହୋଇଥିଲା। କେବଳ ପରୀକ୍ଷାପାଇଁ ହେଉ ଅଥବା ପ୍ରୟୋଗପାଇଁ ହେଉ, ଏହି ଘାଟି ସ୍ଥାପନଦ୍ୱାରା ଜାପାନର ନାଗାସାକି ଓ ହୀରୋସିମା ଭଳି ବାଲେଶ୍ୱର ଜିଲ୍ଲା ନିକଟବର୍ତ୍ତୀ ଅଞ୍ଚଳମାନ ଯୁଦ୍ଧ ସମୟରେ ଶତ୍ରୁ ପକ୍ଷର ପ୍ରଧାନ ଶରବ୍ୟ ସ୍ଥାନ ପାଲଟିବ। ଏହି ପ୍ରକାର ବିପଦସଂକୁଳ ମାରାତ୍ମକ ପ୍ରସ୍ତାବକୁ ବିରୋଧ କରିବାପାଇଁ ସେହି ବର୍ଷ ଉତ୍ତର ବାଲେଶ୍ୱର ଅଞ୍ଚଳର ଅଭୂତପୂର୍ବ ଜନଜାଗରଣ ଓ ଜନ ବିଦ୍ରୋହ ସୃଷ୍ଟିହୋଇଥିଲା। ବାଲେଶ୍ୱର ସହରର ଅନତିଦୂରରେ ଚାନ୍ଦିପୁରଠାରେ ଇଂରେଜ ସରକାରଙ୍କ ଶାସନ ସମୟରେ ଅସ୍ତ୍ରଶସ୍ତ୍ର ପରୀକ୍ଷାପାଇଁ ବହୁଦିନରୁ ବ୍ରିଟିଶ୍ ସାମ୍ରାଜ୍ୟର ଗୋଟିଏ ଉତ୍କୃଷ୍ଟ ଘାଟିଥିଲା। ବିଗତ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ବହୁ ଅସ୍ତ୍ରଶସ୍ତ୍ର ଆଣି ଏଠାରେ ପରୀକ୍ଷା ନିରୀକ୍ଷା କରୁଥିଲେ। ଚାନ୍ଦିପୁରଠାରେ ସମୁଦ୍ରଭଟ୍ଟା ସମୟରେ ପାଣି ଉପକୂଳଠାରୁ ବହୁ ଦୂରକୁ ଖସିଯାଉଥିବାରୁ ଛୋଟ ଛୋଟ କ୍ଷେପଣାସ୍ତ୍ର ପ୍ରୟୋଗପାଇଁ ଏହା ମଧ୍ୟ ଉତ୍କୃଷ୍ଟ ଥିଲା। ଦ୍ୱିତୀୟ ମହାଯୁଦ୍ଧର ଅବସାନ ପରେ ୧୯୪୫ ମସିହାରେ ଏହାକୁ ଗୋଟିଏ ଦୂରଗାମୀ ଅସ୍ତ୍ରଶସ୍ତ୍ର କ୍ଷେପଣାସ୍ତ୍ର ଘାଟିରେ ପରିଣତ କରିବାପାଇଁ ବ୍ରିଟିଶ୍ ସରକାରଙ୍କର ମସୁଧା ଥିଲା। ବାଲେଶ୍ୱର ଭଳି ଗୋଟିଏ ଜନାକୀର୍ଣ୍ଣ ଅଞ୍ଚଳ ନିକଟରେ ଏ ପ୍ରକାର ଘାଟି ସ୍ଥାପନ କରିବା ସମୀଚୀନ ନହୋଇ ଜନସ୍ୱାର୍ଥ ବିରୋଧୀ ହେବ ବୋଲି ବିଚାରକରି ଇଂରେଜ ସରକାର ଆଉ ସେ ଦିଗରେ ମନ ବଳାଇଲେ ନାହିଁ। ଏ ପ୍ରକାର ଘାଟି ବାଲେଶ୍ୱରଠାରେ ନକରି ବ୍ରିଟେନ୍‌ଠାରୁ ପ୍ରାୟ ଦଶ ହଜାର ମାଇଲ ଦୂରରେ ଅବସ୍ଥିତ ଅଷ୍ଟ୍ରେଲିଆର ଭିକ୍ଟୋରିଆ ମରୁଭୂମି ମଧ୍ୟରେ ଅବସ୍ଥିତ ଉମେରାଭଳି ନିର୍ଜନ ସ୍ଥାନରେ ପ୍ରତିଷ୍ଠା କଲେ। ଏହା ଥିଲା ଇଂରେଜ ସରକାରଙ୍କର ଗୋଟିଏ ବିଚାରବନ୍ତ ସିଦ୍ଧାନ୍ତ।

ଓଡ଼ିଶାର ବାଲେଶ୍ୱର ଜିଲ୍ଲା ଉପକୂଳରେ ଯୁଦ୍ଧ କାଳରେ ଅକସ୍ମାତ ଦାରୁଣ ବିପଦବରଣ କରୁଥିବା ଭଳି ଏକ ବିଶାଳ କ୍ଷେପଣାସ୍ତ୍ର ଘାଟି ପ୍ରତିଷ୍ଠାର ସିଦ୍ଧାନ୍ତ ସ୍ଥାନୀୟ ଜନଗଣଙ୍କ ମଧ୍ୟରେ ଘୋର ଉଦ୍‌ବେଗ ଓ ଆତଙ୍କ ସୃଷ୍ଟିକରିଥିଲା। ଆଶା କରାଯାଉଥିଲା ଏତାଦୃଶ ଏକ ବିପଦପୂର୍ଣ୍ଣ ପ୍ରକଳ୍ପଟିର ବିଭୀଷିକା ହୃଦୟଙ୍ଗମ କରି ରାଜ୍ୟ ସରକାର କେନ୍ଦ୍ର ସରକାର ପ୍ରସ୍ତାବକୁ ଅନୁମୋଦନ ନକରି ବିରୋଧକରିବେ, କେନ୍ଦ୍ର ସରକାର ତଥା ପ୍ରଧାନମନ୍ତ୍ରୀଙ୍କୁ ବିଚାରବନ୍ତ ହେବାପାଇଁ ଆବେଦନ କରିବେ। ଅତ୍ୟନ୍ତ ଦୁର୍ଭାଗ୍ୟର କଥା ଯେ ଆମ ରାଜ୍ୟ ସରକାରଙ୍କର ରାଜ୍ୟବାସୀଙ୍କ ସ୍ୱାର୍ଥ ରକ୍ଷାପାଇଁ ଏତିକି ଯୁକ୍ତିଯୁକ୍ତ କଥା କହିବାପାଇଁ ସାହସ ହେଲାନାହିଁ।

ଆମ ରାଜ୍ୟବାସୀଙ୍କପାଇଁ ଅନ୍ୟ ଏକ ଘୋର କାଳିମାମୟ ଘଟଣା ଘଟିଥିଲା ସେହିବର୍ଷ ମେ' ମାସରେ ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଯେଉଁ ସବୁ ଅକଥନୀୟ ଚାରିତ୍ରିକ ଅପରାଧରେ ଜଡ଼ିତ ଥିବାର ଅଭିଯୋଗ ହୋଇଥିଲା, ତାହାର ପ୍ରାମାଣିକ ବିବରଣୀ ଭଳି ସମ୍ବାଦ ସେହିବର୍ଷ ସୁବିଖ୍ୟାତ ଇଂରାଜୀ ସାପ୍ତାହିକ (Illustrated Weekly of India) ଇଲୁଷ୍ଟ୍ରେଟେଡ୍ ଉଇକ୍ଲି ଅଫ୍ ଇଣ୍ଡିଆର ଗୋଟିଏ ସଂଖ୍ୟାରେ ପ୍ରକାଶ ପାଇଥିଲା। ଏହାର ପ୍ରକାଶନ ପରେ ସମଗ୍ର ଦେଶରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ନିନ୍ଦିତ ହୋଇଥିଲେ। ସେ ନୈତିକ ବଳ ହରାଇବସିଥିବାରୁ ତାଙ୍କର ମୁହଁ ନଥିଲା। ପ୍ରଧାନମନ୍ତ୍ରୀଙ୍କ ନିକଟରେ ବୃହଦ୍ କ୍ଷେପଣାସ୍ତ୍ର ଘାଟି ପ୍ରତିଷ୍ଠା ପ୍ରସ୍ତାବକୁ ବିରୋଧକରି ସ୍ୱର ଉତ୍ତୋଳନ କରିବାପାଇଁ ଏହି ପ୍ରକଳ୍ପଟିକୁ ଅପରପକ୍ଷରେ ପ୍ରଧାନମନ୍ତ୍ରୀଙ୍କୁ

ଖୁସିକରାଇବାପାଇଁ ରାଜୀବ ଗାନ୍ଧୀଙ୍କର ଓଡ଼ିଶାବାସୀଙ୍କପାଇଁ ଏହା ଏକ ଉପହାର ବୋଲି ବଖାଣିବାକୁ ସେ ଲଜ୍ୟା ମନେକରିନଥିଲେ । ଏହି ସମୟରେ ଆମ ରାଜ୍ୟର ରାଜ୍ୟପାଳ ବି.ଏନ୍.ପାଣ୍ଡେଙ୍କର ଅସୁସ୍ଥତା ହେତୁ କିଛି ସମୟପାଇଁ ଛୁଟି ନେବାରୁ ପଶ୍ଚିମବଙ୍ଗର ତତ୍କାଳୀନ ରାଜ୍ୟପାଳ ଶ୍ରୀ ନୁରୁଲ ହୁସେନ ତାଙ୍କ ସ୍ଥାନରେ ରାଜ୍ୟପାଳରୂପେ ନିଯୁକ୍ତ ହୋଇଥିଲେ । ଶ୍ରୀ ନୁରୁଲ ହୁସେନ ଜଣେ ନାମଜାଦା ବିଜ୍ଞବ୍ୟକ୍ତି ଥିଲେ ଏବଂ ରୁଷିଆରେ ଆମ ଦେଶର ରାଷ୍ଟ୍ରଦୂତ ରୂପେ ବହୁ ବର୍ଷ ଅବସ୍ଥାନ କରିବାର ସୁଯୋଗ ଲାଭକରିଥିଲେ । ରୁଷ୍ ଦେଶର ଏଭଳି ବିପଦ ସଂକୁଳ ବୃହତ୍ କ୍ଷେପଣାସ୍ତ୍ର ଘାଟି କେଉଁଠାରେ ପ୍ରତିଷ୍ଠା କରାଯାଇଛି ସେ ବିଷୟରେ ତାଙ୍କର କିଛି ଧାରଣା ଥିବ ବୋଲି ଅନୁମାନ କରି ମୁଁ ତାଙ୍କୁ ଆମ ରାଜଭବନରେ ସାକ୍ଷାତ୍ କରିବାର ସୁଯୋଗ ନେଇଥିଲି । ବାଲେଶ୍ୱର ଜିଲ୍ଲା ବାଲିଆପାଳଠାରେ ପ୍ରସ୍ତାବିତ କ୍ଷେପଣାସ୍ତ୍ର ଘାଟି ବିରୋଧରେ ଯେଉଁ ଜନଜାଗରଣ ଦେଖାଯାଇଥିଲା ସେ ବିଷୟରେ ତାଙ୍କୁ ଗୋଟିଏ ସ୍ମାରକପତ୍ର ଦେଇଥିଲି ଏବଂ କେନ୍ଦ୍ର ସରକାରକୁ ତାହା ଜଣାଇ ଲୋକଙ୍କର ଦୁଃଖ ଦୁର୍ଦ୍ଦଶା ମୋଚନ ବିଷୟରେ କେନ୍ଦ୍ରକୁ ସୁପାରିସ୍ କରିବାକୁ ଅନୁରୋଧ କରିଥିଲି । ତାଙ୍କ ସହିତ ମୋର ଦୀର୍ଘ ଆଲୋଚନା ହୋଇଥିଲା । ତାଙ୍କଠାରୁ ଜାଣିବାକୁ ପାଇଲି ଯେ ରୁଷିଆରେ ଏକ ନିର୍ଜନ ସ୍ଥାନରେ ବୃହତ କ୍ଷେପଣାସ୍ତ୍ର ଘାଟି ସ୍ଥାପନ କରାଯାଇଛି । ରୁଷ୍ ଦେଶର ଦୂରଗାମୀ କ୍ଷେପଣାସ୍ତ୍ର ଏବଂ ମହାକାଶ ଉତ୍କ୍ଷେପଣ କେନ୍ଦ୍ର କଥା ସେ ମୋତେ କହିଥିଲେ । ଏହି କେନ୍ଦ୍ରଟି ମସ୍କୋଠାରୁ ପ୍ରାୟ ଦେଢ଼ ହଜାର ମାଇଲ ଦୂରରେ କାଜାକିସ୍ଥାନ ରାଜ୍ୟରେ ଗୋଟିଏ ବିଶାଳ ଜନଶୂନ୍ୟ ଓ ଶୁଷ୍କ ମରୁଭୂମି ଅଞ୍ଚଳରେ ଅବସ୍ଥିତ । ଏଠାରେ କୁଆଡ଼େ ଅଧିକାଂଶ ଲୋକ ଯାଯାବର ଜୀବନ ଯାପନ କରନ୍ତି ଏବଂ ସ୍ଥାୟୀବସତି ବାନ୍ଧି ରହୁନଥିଲେ । କାଜାକିସ୍ଥାନ ରାଜ୍ୟର ଆୟତନ ୧୦ ଲକ୍ଷ ବର୍ଗ ମାଇଲ ଏବଂ ଲୋକସଂଖ୍ୟା ଥିଲା ପ୍ରାୟ ଦେଢ଼କୋଟି । ଏହି ପ୍ରକାର ନିର୍ଜନ ସ୍ଥାନରେ କ୍ଷେପଣାସ୍ତ୍ର ଘାଟି କରାଯାଏ ବୋଲି ତାଙ୍କଠାରୁ ଜାଣିବାକୁ ପାଇଲି । ଏହି ପରିପ୍ରେକ୍ଷୀରେ ବାଲେଶ୍ୱର ଭଳି ଗୋଟିଏ ଜନାକୀର୍ଣ୍ଣ ସ୍ଥାନରେ କ୍ଷେପଣାସ୍ତ୍ର ଘାଟି ସ୍ଥାପନ କରିବା କିପରି ଗର୍ହିତ ଓ ବିପଦଜନକ ତାହା ବିଚାର କରିବାପାଇଁ ରାଜ୍ୟପାଳ ନୁରୁଲ ହୁସେନଙ୍କୁ ମୁଁ ଅନୁରୋଧ କରିଥିଲି । ଯେଉଁଠାରେ ଲୋକଙ୍କଦ୍ୱାରା ନିର୍ବାଚିତ ପ୍ରତିନିଧି କାର୍ଯ୍ୟ କରୁଛନ୍ତି ସେଠାରେ ରାଜ୍ୟପାଳଙ୍କର କାର୍ଯ୍ୟ କରିବାର ପରିସର କିପରି ସୀମିତ ତାହା ଅନୁଭବ କରିବାପାଇଁ ସେ ମୋତେ ସୂଚାଇଥିଲେ । ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ଏ ସମସ୍ତ ବିଷୟଟି କହି ତାଙ୍କର ହୃଦୟଙ୍ଗମ କରାଇପାରିଲେ ଆମ୍ଭମାନଙ୍କର ଆନ୍ଦୋଳନ ସଫଳ ହେବ ବୋଲି ସେ ଆଶା ପ୍ରକାଶ କରିଥିଲେ । ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କ ବିରୋଧରେ ଇଲଷ୍ଟ୍ରେଟେଡ୍ ଉଇକ୍ଲି ଅଫ୍ ଇଣ୍ଡିଆରେ ଯେଉଁସବୁ କୁତ୍ସିତ ଅଭିଯୋଗ ପ୍ରକାଶପାଇଛି ସେହି ପରିପ୍ରେକ୍ଷୀରେ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀଙ୍କ ପାଖରେ କ୍ଷେପଣାସ୍ତ୍ର ଘାଟି ପ୍ରତିଷ୍ଠା ବିରୋଧରେ ସାହସକରି କହିବାର ନୈତିକ ଦମ୍ଭ ଆମ ମୁଖ୍ୟମନ୍ତ୍ରୀଙ୍କର ନାହିଁ ବୋଲି ମୁଁ ତାଙ୍କୁ ବୁଝାଇଥିଲି । ତେଣୁ ରାଜ୍ୟପାଳ ଜନସ୍ୱାର୍ଥ ରକ୍ଷା କରିବା ନିମନ୍ତେ ସାହାଯ୍ୟ କରିବା ଆବଶ୍ୟକ ହେଉଛି ବୋଲି ମୁଁ ବୁଝାଇଥିଲି । ମୁଖ୍ୟମନ୍ତ୍ରୀଙ୍କର ଦୟନୀୟ ଅବସ୍ଥା କଥା ସେ ବୁଝିପାରିଥିଲେ, ମାତ୍ର ନିରବ ରହିଥିଲେ ।

ଯେଉଁ ବିସ୍ତୃତ ଅଞ୍ଚଳର ଧ୍ୱଂସସାଧନ କରି ସେଠାରେ ଗୋଟିଏ ବିପଦସଙ୍କୁଳ ଯୋଜନା କାର୍ଯ୍ୟକାରୀ ହେବାକୁ ସିଦ୍ଧାନ୍ତ ନିଆଯାଇଛି ତାହାକୁ ଓଡ଼ିଶାର ଶସ୍ୟାଗାର ବୋଲି କୁହାଯାଏ । ପ୍ରକୃତରେ ସେ ମାଟିରେ ସୁନା ଫଳେ । ଧାନ ଚାଷ, ତୈଳବୀଜ ଚାଷ, ବାଉଁଶ ଚାଷ ଓ ସର୍ବୋପରି ପ୍ରଚୁର ପରିମାଣରେ ମୂଲ୍ୟବାନ୍ ପାନ ବରଜ ଏ ଅଞ୍ଚଳକୁ ଧନଧାନ୍ୟରେ ପରିପୂର୍ଣ୍ଣ କରି ରଖିଛି ଏହା ସମସ୍ତଙ୍କଦ୍ୱାରା ସ୍ୱୀକୃତ । ମଧୁରମାଛ ଓ ସମୁଦ୍ରମାଛଧରା ବ୍ୟବସାୟ, ବହୁ ଲୋକଙ୍କର ଜୀବିକା । ଏଠାରେ ଉତ୍ପନ୍ନ ହେଉଥିବା କୃଷିଜାତ ଦ୍ରବ୍ୟଗୁଡ଼ିକୁ କେନ୍ଦ୍ରକରି ନାନା ବ୍ୟବସାୟ ଓ କୁଟୀର ଶିଳ୍ପ

ଗଢ଼ିଉଠିବାରୁ ତାହା ଲକ୍ଷାଧିକ ଲୋକଙ୍କୁ ଧନ୍ଦା ଯୋଗାଇପାରୁଛି । ଉପରୋକ୍ତ ଚାଷ ସଂପର୍କୀୟ କାରବାରରୁ ବାର୍ଷିକ ଦେଢ଼ଶହ କୋଟି ଟଙ୍କା ଆୟ ହେଉଥିବା ଦୃଷ୍ଟିରୁ ଏପରି ଜାତୀୟ ସଂପତ୍ତିକୁ ବିପନ୍ନ ଓ ବିଧ୍ୱସ୍ତ କରି ଆମ ଦେଶ ଓ ପ୍ରଦେଶର ଆର୍ଥିକ ସ୍ଥିତିର ଏକ ମୂଲ୍ୟବାନ୍ ଚିରସ୍ଥାୟୀ ଆର୍ଥିକ ତଥା ସାମାଜିକ ବିଭବକୁ ଉପେକ୍ଷା କରାଯାଇନପାରେ । ଏହି ଅଞ୍ଚଳର ଅର୍ଥନୈତିକ ଭୂମିକାରେ ମେରୁଦଣ୍ଡ ହେଉଛି ସେଠାରେ ଥିବା ତିରିଶି ହଜାରରୁ ଉର୍ଦ୍ଧ୍ୱ ପାନବରଜ । ଏଠାକାର ପାନ ବରଜ ଭାରତର ସବୁଠାରୁ ଉତ୍କୃଷ୍ଟ । ଭାରତ ବାହାରକୁ ମଧ୍ୟ ଏଠାରୁ ପାନ ରପ୍ତାନି କରାଯାଏ । ସହରଗୁଡ଼ିକୁ ବାଦଦେଲେ ଓଡ଼ିଶାର ଏହି ବାଲିଆପାଳ ଓ ଭୋଗରାଇ ଅଞ୍ଚଳ ସବୁଠାରେ ଅଧିକ ଜନାକୀର୍ଣ୍ଣ । ୧୯୮୧ ମସିହା ଜନଗଣନା ଅନୁସାରେ ବାଲେଶ୍ୱର ଜିଲ୍ଲାର ଗ୍ରାମାଞ୍ଚଳରେ ପ୍ରତି ବର୍ଗ କିଲୋମିଟରରେ ହାରାହାରି ୩୫୭ ଜଣ ବାସକରୁଥିବା ବେଳେ ବାଲିଆପାଳ ଓ ଭୋଗରାଇରେ ସେହି ଗୋଟିଏ ବର୍ଗ କିଲୋମିଟରରେ ଯଥାକ୍ରମେ ୪୬୧ ଓ ୫୩୮ ବ୍ୟକ୍ତି ବାସ କରୁଥିଲେ । ଯେଉଁ ଅଞ୍ଚଳରେ ଏହି ପ୍ରକଳ୍ପ ପ୍ରତିଷ୍ଠା କରିବାର ଯୋଜନା ହୋଇଛି ତାହା ସୁବର୍ଣ୍ଣରେଖା ନଦୀ ମୁହାଣରେ ଉଭୟ ପାର୍ଶ୍ୱରେ ବ୍ୟାପ୍ତ । ଏହିଠାରେ ୧୯୬୦ ବର୍ଗ କିଲୋମିଟର ଅଞ୍ଚଳ ମଧ୍ୟରେ ୧୨୬ଟି ଗ୍ରାମର ଉଚ୍ଛେଦ ସାଧନକରି ଏବଂ ପ୍ରାୟ ୧୨ହଜାର ପରିବାର ଓ ଏକ ଲକ୍ଷରୁ ଉର୍ଦ୍ଧ୍ୱ ଲୋକଙ୍କୁ ଉଦ୍‌ବାସ୍ତୁ କରି ଜାତୀୟ କ୍ଷେପଣାସ୍ତ୍ର ପରୀକ୍ଷା ଅଞ୍ଚଳ ଓ ମହାକାଶକୁ ଉତ୍‌କ୍ଷେପଣ କ୍ଷେତ୍ର ସ୍ଥାପନ କରାଯିବ ବୋଲି କେନ୍ଦ୍ରସରକାରଙ୍କର ପ୍ରତିରକ୍ଷା ବିଭାଗ ପକ୍ଷରୁ ୧୯୮୬ ମସିହାରେ ଘୋଷଣା ପ୍ରକାଶପାଇଥିଲା ।

## ଅଭୂତପୂର୍ବ ଜନଜାଗରଣ

ଭାରତ ସରକାରଙ୍କ ଉପରୋକ୍ତ ସିଦ୍ଧାନ୍ତରେ ସମଗ୍ର ବାଲେଶ୍ୱର ଜିଲ୍ଲାରେ ଚାଞ୍ଚଲ୍ୟକର ପରିସ୍ଥିତି ସୃଷ୍ଟିହୋଇଥିଲା । ସଂପୃକ୍ତ ଅଞ୍ଚଳର ବିଶେଷତଃ ଉତ୍ତର ବାଲେଶ୍ୱରରେ ଏହି ସିଦ୍ଧାନ୍ତ ବିରୋଧରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଗୋଟିଏ ବିରାଟ ଜନଆନ୍ଦୋଳନ ମୁଣ୍ଡ ଟେକିଥିଲା । ଲୋକମାନେ ସ୍ୱତଃ ଉତ୍ତେଜିତ ହୋଇ ଗଣଆନ୍ଦୋଳନର ଡାକରା ଦେଇଥିଲେ । ଲୋକଙ୍କର ଡାକରାଥିଲା, ''ମରିବୁପଛେ ଭିଟାମାଟି ଛାଡ଼ିବୁ ନାହିଁ'' ଏବଂ ''ସରକାରଙ୍କ ସିଦ୍ଧାନ୍ତକୁ କରାଇ ଦେବୁନାହିଁ ।'' ଏତାଦୃଶ ପ୍ରତିଜ୍ଞାବଦ୍ଧ ଓ ନଛୋଡ଼ବନ୍ଧା ଦୁଇଗୋଟି ଉକ୍ତି ସମଗ୍ର ଉତ୍ତର ବାଲେଶ୍ୱରର ଗଗନ ପବନ ପ୍ରକମ୍ପିତ କରୁଥିଲା । ସର୍ବପ୍ରଥମେ ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ ତତ୍‌କାଳୀନ ବିଧାନସଭା ସଭ୍ୟ ସ୍ୱର୍ଗତ ଗଦାଧର ଗିରି ଓ ପୂର୍ବତନ କେନ୍ଦ୍ରୀୟ ବୈଦେଶିକ ରାଷ୍ଟ୍ରମନ୍ତ୍ରୀ ସ୍ୱର୍ଗତ ଶ୍ରୀ ସମରେନ୍ଦ୍ର କୁଣ୍ଡୁ । ଯେଉଁ ଅଞ୍ଚଳକୁ ଅନ୍ତର୍ଭୁକ୍ତ କରି କ୍ଷେପଣାସ୍ତ୍ର ଘାଟି ହେବ ବୋଲି ଘୋଷଣା କରାଯାଇଥିଲା ସେ ସମଗ୍ର ଅଞ୍ଚଳକୁ ବିପଦସଙ୍କୁଳ ଅଞ୍ଚଳ ବୋଲି ଲୋକମାନଙ୍କଦ୍ୱାରା ଘୋଷଣା କରାଯାଇଥିଲା । ପ୍ରବେଶଦ୍ୱାର କାଳିପଦବାଗ୍‌ଠାରେ ଗୋଟିଏ ଚେକ୍‌ଗେଟ୍ କରାଯାଇ ଅଞ୍ଚଳ ଭିତରକୁ ସରକାରୀ କର୍ମକର୍ତ୍ତା ଓ ସରକାରୀ ଯାନବାହନ ପ୍ରବେଶ ନିଷିଦ୍ଧ କରାଯାଇଥିଲା । ଗେଟ୍‌ରେ ଚାବିପଡ଼ିଥାଏ । ଜନତାଙ୍କ ପକ୍ଷରୁ କଡ଼ା ପହରା ବ୍ୟବସ୍ଥା-କରାଯାଇଥାଏ । ଏହି ଅଞ୍ଚଳରେ ପ୍ରତିଦିନ ସଭାସମିତି, ପଟୁଆର ହେଉଥାଏ । ଶଙ୍ଖଧ୍ୱନି ଶୁଣିଲାକ୍ଷଣି ବିପଦ ସଂକେତ ମନେକରି ଲୋକମାନେ ବାହାରକୁ ବାହାରି ଆସନ୍ତି । ଶଙ୍ଖ ବାଜିଲାକ୍ଷଣି ହଜାର ହଜାର ସଂଖ୍ୟାରେ ସ୍ତ୍ରୀ, ପୁରୁଷ ଓ ପିଲାଛୁଆ ରାସ୍ତାକୁ ବାହାରିପଡୁଥିଲେ । ଘାଟି ବିରୋଧୀ ଆନ୍ଦୋଳନର ପରିଚାଳନାପାଇଁ ୧୯୮୫ ମସିହା ଡିସେମ୍ବର ମାସ ୨୫ ତାରିଖରେ ସ୍ୱର୍ଗତ ଗଦାଧର ଗିରିଙ୍କ ନେତୃତ୍ୱରେ ଉତ୍ତରବାଲେଶ୍ୱର କ୍ଷେପଣାସ୍ତ୍ର ଘାଟି ପ୍ରତିରୋଧ କମିଟି ଗଠନ କରାଯାଇଥିଲା । ଏଥିରେ ମୋଟ ୨୨୯ ଜଣ ସଦସ୍ୟ ଥିଲେ । ଏହାର ସଭାପତି ଗଦାଧର ଗିରି, ଉପସଭାପତି ବୃନ୍ଦାବନ ରାଉ, ସାଧାରଣ ସଂପାଦକ ଶଶଧର ପ୍ରଧାନ ଓ ଅଫିସ୍

ସଂପାଦକ ଗୌରହରି ଦାସ ଥିଲେ । ଏହାଛଡ଼ା ଭଗବାନ ଦତ୍ତ, ଭଗବାନ ବିଶ୍ୱାଳ, ଭାସ୍କର ସାହୁ, ସୀତାନାଥ ଜେନା, ଅରୁଣ ଜେନା, ଅନନ୍ତ ନାଗ, ଦୁର୍ଜୟ ପାତ୍ର, ପୁରୁଷୋତ୍ତମ ବେହେରା, କୁଶଧ୍ୱଜ ଜେନା, ତପନ ଦତ୍ତ, ଅଜୟ ଦେ, ଉପେନ୍ଦ୍ର ହାଜରା, ଶାରଦା ଗିରି, ଗୌରି ବେହେରା ପ୍ରମୁଖ ପରିଚାଳନା କମିଟିର ସଦସ୍ୟ ଥିଲେ । ଆନ୍ଦୋଳନର ସଫଳତାପାଇଁ ସ୍ୱର୍ଗୀୟ ଗଦାଧର ଗିରିଙ୍କ ସହଧର୍ମିଣୀ ଶ୍ରୀମତୀ ଲବଙ୍ଗଲତା ଗିରିଙ୍କର ଯଥେଷ୍ଟ ଅବଦାନ ଥିଲା । ବାଲିଆପାଳ ଅଞ୍ଚଳର ମହିଳାମାନଙ୍କୁ ସଂଗଠିତ କରି ଆନ୍ଦୋଳନ ସକ୍ରିୟ କରିବାରେ ସେ ଅଗ୍ରଣୀ ଭୂମିକା ଗ୍ରହଣକରିଥିଲେ ।

ବାଲେଶ୍ୱର ଜିଲ୍ଲାରେ ଏ ପ୍ରକାର ଗୋଟିଏ ବିପଦସଙ୍କୁଳ ଭୟାବହ କ୍ଷେପଣାସ୍ତ୍ର ଘାଟି ପ୍ରତିଷ୍ଠା ହେବା ପ୍ରସ୍ତାବକୁ ବିରୋଧ କରିବାପାଇଁ ମୁଁ ମଧ୍ୟ ଆଗେଇଆସିଥିଲି ଏବଂ କମିଟି କାର୍ଯ୍ୟରେ ସଂପୂର୍ଣ୍ଣ ଭାବରେ ସହଯୋଗ କରିଥିଲି । ଶ୍ରୀ ବିଜୁ ପଟ୍ଟନାୟକ ଓ ମୁଁ ବହୁବାର ଏ ଅଞ୍ଚଳକୁ ଯାଇଛୁ ଓ ସଭାସମିତିରେ ଯୋଗଦେଇଛୁ । ସ୍ୱର୍ଗୀୟ ଗଦାଧର ଗିରି ଓ ସମରେନ୍ଦ୍ର କୁଣ୍ଡୁ, ଶ୍ରୀ ରବୀନ୍ଦ୍ର ମୋହନ ଦାସ, ଚନ୍ଦ୍ର କୁମାର ମହାନ୍ତି ଓ ହୃଦାନନ୍ଦ ମଲ୍ଲିକ ଆମ ସାଙ୍ଗରେ ଥିଲେ । ସେମାନଙ୍କ ବିପଦ ସମୟରେ ମଧ୍ୟ ସେ ଅଞ୍ଚଳର ଭାଇ ଓ ଭଉଣୀମାନେ ଆମ୍ଭମାନଙ୍କୁ ଯେପରି ବିପୁଳ ସ୍ୱାଗତ ଜଣାଉଥିଲେ ତାହା ଭୁଲିହେବନାହିଁ । ତିନି ବର୍ଷ କାଳ ଆମ୍ଭମାନଙ୍କୁ ଏହି ଆନ୍ଦୋଳନ କରିବାକୁ ପଡ଼ିଥିଲା । ମନ୍ତ୍ରୀ କିମ୍ବା ବଡ଼ ବଡ଼ ଅଫିସରମାନେ କେହି ଏହି ନିଷିଦ୍ଧ ଅଞ୍ଚଳକୁ ଯିବାକୁ ସାହସ କରି ନଥିଲେ । ଯିଏ ଯାଉଥିଲେ ପାଦରେ ଚାଲି ଚାଲି ଯାଉଥିଲେ । କଂଗ୍ରେସ ଛଡ଼ା ଭାରତର ସବୁ ରାଜନୈତିକ ଦଳର ଲୋକମାନେ ଏହି ଆନ୍ଦୋଳନକୁ ସମର୍ଥନ କରିଥିଲେ । ଏହି ପ୍ରକାର ଜନବହୁଳ ଓ ଶସ୍ୟଶାମଳା ଅଞ୍ଚଳରେ ପରିକଳ୍ପିତ ମାରାତ୍ମକ କ୍ଷେପଣାସ୍ତ୍ର ଘାଟି ନକରିବାପାଇଁ ସେମାନେ ସ୍ୱର ଉତ୍ତୋଳନ କରିଥିଲେ । ଆମ ରାଜ୍ୟର ନେତୃବର୍ଗଙ୍କ ଛଡ଼ା ଭାରତର ପୂର୍ବତନ ଅର୍ଥମନ୍ତ୍ରୀ ଶ୍ରୀ ମଧୁ ଦଣ୍ଡବତେ, ପୂର୍ବତନ ବାଚସ୍ପତି ଶ୍ରୀ ରବି ରାୟ, ମାର୍କସବାଦୀ କମ୍ୟୁନିଷ୍ଟ ନେତା ଶ୍ରୀ ବାସୁଦେବ ଆଚାର୍ଯ୍ୟ ଓ ଭାରତର କମ୍ୟୁନିଷ୍ଟ ନେତ୍ରୀ ଶ୍ରୀମତୀ ଗୀତା ମୁଖାର୍ଜି, ଆନ୍ଧ୍ରପ୍ରଦେଶରେ ଥିବା ଓଡ଼ିଆ ଅଞ୍ଚଳର କରୁପମର ରାଜା ଶ୍ରୀ କିଶୋର ଚନ୍ଦ୍ର ଦେଓ, ଶ୍ରୀମତୀ ମେନକା ଗାନ୍ଧୀ ପ୍ରଭୃତି ବହୁ ବିଶିଷ୍ଟ ନେତା ଓ ନେତ୍ରୀ ବାଲିଆପାଳ ଓ ଭୋଗରାଇରେ ଅନୁଷ୍ଠିତ ବହୁ ବିରାଟ ସଭାମାନଙ୍କରେ ଯୋଗଦେଇ ଭାଷଣ ଦେଇଥିଲେ । ଶ୍ରୀ ମଧୁ ଦଣ୍ଡବତେଙ୍କ ନେତୃତ୍ୱରେ ପ୍ରତିନିଧି ଦଳମାନ ଯାଇ ପ୍ରଧାନମନ୍ତ୍ରୀଙ୍କୁ ଭେଟିଥିଲେ ଏବଂ କେନ୍ଦ୍ର ସରକାରଙ୍କୁ ତାଙ୍କ ନିଷ୍ପତ୍ତି ବଦଳାଇବାପାଇଁ ସେମାନେ ଅନୁରୋଧ କରିଥିଲେ । ରଘୁନାଥ ମହାନ୍ତି, ଶ୍ରୀ ଚନ୍ଦ୍ର ମହାନ୍ତି, ମହେଶ୍ୱର ବାଗ, ବୈରାଗୀ ଜେନା, ବୃନ୍ଦାବନ ମଲ୍ଲିକ୍, ସୁଶାନ୍ତ ଚାନ୍ଦ, ଅରୁଣ ଦେ, ଅକ୍ଷୟ କୁମାର ପାଣି, ବସନ୍ତ ଚାନ୍ଦ, ଅନନ୍ତ ଭଞ୍ଜ, ଅଧିପ ଦାସ, ପୁରୁଷୋତ୍ତମ ବିଶ୍ୱାଳ, ଅଶ୍ୱିନୀ ପାତ୍ର, ଅନୀଲ ପରିଡ଼ାଙ୍କ ଭଳି ବହୁ ବିଶିଷ୍ଟ ବ୍ୟକ୍ତି ଆନ୍ଦୋଳନର ସଫଳତାପାଇଁ ଏହି ଅଞ୍ଚଳର ନାନା ସ୍ଥାନକୁ ଯାଇ ଲୋକମାନଙ୍କୁ ପରାମର୍ଶ ଦେଉଥିଲେ ।

ଏହି ଆନ୍ଦୋଳନ ସହିତ ସଂପୃକ୍ତ ହେବା ପରେ ପୃଥିବୀର ଯେଉଁ ସବୁ ଦେଶଗୁଡ଼ିକ ଏହି ପ୍ରକାର କ୍ଷେପଣାସ୍ତ୍ର ଘାଟି ପ୍ରତିଷ୍ଠା କରିଛନ୍ତି ସେଗୁଡ଼ିକର ସ୍ଥାନ କିପରି ଭାବରେ ନିରୂପଣ କରାଯାଇଛି ସେ ସମ୍ବନ୍ଧରେ ମୋତେ ବହୁତ କିଛି ଅଧ୍ୟୟନ କରିବାକୁ ପଡ଼ିଥିଲା । ସେତେବେଳେ ଏସବୁ ବିଷୟରେ ତଥ୍ୟ ମୂଳକ ମୋର ଲେଖାମାନ ପତ୍ରପତ୍ରିକାରେ ବହୁଳ ଭାବରେ ପ୍ରକାଶପାଉଥିଲା । ଅନେକ ବିସ୍ମୟ ପ୍ରକାଶ କରିଥିଲେ ଯେ, ଏହିସବୁ ଗବେଷଣାମୂଳକ ତଥ୍ୟ ମୁଁ କେଉଁଠାରୁ ପାଉଛି । ମୋର ଲେଖାମାନ ପଢ଼ି ତତ୍‌କାଳୀନ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ଶ୍ରୀ ମନ୍ମଥ ନାଥ ଦାସ ମୋତେ କହିଥିଲେ ଯେ, "ଆପଣ ଯେଉଁଭଳି ଭାବରେ ତଥ୍ୟ ସମ୍ବଳିତ ଲେଖା ଓ ଯୁକ୍ତି ଉପସ୍ଥାପନ କରୁଛନ୍ତି, ସେଥିରେ ଆପଣ ଡକ୍ଟରେଟ୍ ଉପାଧି ପାଇବାର କଥା ।" ପ୍ରଫେସର୍ ମଧୁ ଦଣ୍ଡବତେ ଯିଏକି ଅନେକ

ସମୟରେ ଆମ୍ଭମାନଙ୍କ ଆନ୍ଦୋଳନର ଯୌକ୍ତିକତା ସମ୍ବନ୍ଧରେ ଆମର ପ୍ରତିନିଧି ଦଳର ନେତୃତ୍ୱ ନେଇ ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀଙ୍କୁ ବୁଝାଇଥିଲେ, ମୋତେ କହିଥିଲେ ଯେ ମୋର ତଥ୍ୟ ସମ୍ବଳିତ ଲେଖା ଓ ଯୁକ୍ତି ସରକାରଙ୍କ ଓ ପ୍ରଧାନମନ୍ତ୍ରୀଙ୍କ ସହିତ ଆଲୋଚନା ସମୟରେ ତାଙ୍କୁ କୁଆଡ଼େ ବିଶେଷ ସହାୟକ ହୋଇଥିଲା । ଶ୍ରୀ କିଶୋର ଚନ୍ଦ୍ର ଦେଓ ମଧ୍ୟ ସେହି କଥା କହୁଥିଲେ ।

ଏହି ସମ୍ବନ୍ଧରେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ସ୍ୱର୍ଗୀୟ ରାଜୀବ ଗାନ୍ଧୀ ଓ ଅନ୍ୟାନ୍ୟ ମନ୍ତ୍ରୀମାନଙ୍କ ସହିତ ମୋର ଯେଉଁ ପତ୍ର ବିନିମୟ ହୋଇଥିଲା ତାହା ଜାଣିଲେ ଦେଶର ଜଣେ ପ୍ରଧାନମନ୍ତ୍ରୀ ବିଚାରବନ୍ତ ନହୋଇ ଅନ୍ଧାଧୁନିଆ ଭାବରେ ନିଷ୍ପତ୍ତି ନେଇ କିପରି ଗୋଟିଏ ବିରାଟ ଶସ୍ୟଶାମଳା ଜନାକୀର୍ଣ୍ଣ ଅଞ୍ଚଳର ଧ୍ୱଂସସାଧନ କରିବାକୁ ଯାଉଥିଲେ ତାହାର ନଗ୍ନ ଚିତ୍ର ବୁଝାପଡ଼ିବ । ଲୋକମାନଙ୍କ ପକ୍ଷରୁ କାକୁତିମିନତି କରି ଯୁକ୍ତିଯୁକ୍ତ କାରଣ ଦର୍ଶାଇ ଗୋଟିଏ ବିରାଟ ଅଞ୍ଚଳର ଲୋକଙ୍କର କ୍ରନ୍ଦନ ଶୁଣି ସଦୟ ହୋଇ ପ୍ରଧାନମନ୍ତ୍ରୀ ତାଙ୍କ ନିଷ୍ପତ୍ତି ବଦଳାଇବାପାଇଁ ଆମ୍ଭେ ଯେଉଁ କାତର ନିବେଦନ କରିଥିଲୁ, ସେଥିପ୍ରତି ଶ୍ରୀ ରାଜୀବ ଗାନ୍ଧୀ କର୍ଣ୍ଣପାତ କଲେନାହିଁ । ସେ ବାରମ୍ବାର କହିବାକୁ ଲାଗିଲେ ଯେ, ସରକାରଙ୍କ ପକ୍ଷରେ ଏ ସମ୍ବନ୍ଧୀୟ ନିଷ୍ପତ୍ତି ବଦଳାଇବା ଆଦୌ ସମ୍ଭବନୁହେଁ । ତାଙ୍କର ଏତାଦୃଶ ଉକ୍ତି ଜାଣିବା ପରେ ମୋର ମନେହେଲା ଯେ, ରାଜୀବ ଗାନ୍ଧୀ ମୋର ଚିଠିଗୁଡ଼ିକ ଆଦୌ ପଢୁନଥିଲେ । ତେଣୁ ଅଜ୍ଞତାବଶତଃ ଅବିବେକିତା ଛଡ଼ା ବିଚାରବତ୍ତା ତାଙ୍କଠାରୁ ଆଶା କରିବା ବୃଥାହେଲା ।

## କର୍ଣ୍ଣାଟକରୁ ଓଡ଼ିଶା : ବାନ୍ଦୁରରୁ ବାଲିଆପାଳ

ସର୍ବପ୍ରଥମେ ବାଲିଆପାଳଠାରେ ପ୍ରସ୍ତାବିତ କ୍ଷେପଣାସ୍ତ୍ର ଘାଟିପାଇଁ କର୍ଣ୍ଣାଟକ ରାଜ୍ୟର ଆରବ ସାଗରର ଉପକୂଳରେ ଥିବା ବାନ୍ଦୁର ଉପଯୁକ୍ତ ସ୍ଥାନ ବୋଲି ବିବେଚିତ ହୋଇଥିଲା । ଏ ନିଷ୍ପତ୍ତି ଜାଣିବା ପରେ କର୍ଣ୍ଣାଟକ ରାଜ୍ୟରେ ଚାଞ୍ଚଲ୍ୟକର ପରିସ୍ଥିତି ଉପୁଜିଥିଲା । ଏ ପ୍ରକାର ଭୟାବହ ପ୍ରସ୍ତାବକୁ କର୍ଣ୍ଣାଟକରେ ନକରାଇବାପାଇଁ ସେଠାକାର ଲୋକମାନଙ୍କ ମଧ୍ୟରେ ପ୍ରବଳ ଉତ୍ତେଜନା ଓ ପ୍ରତିକ୍ରିୟା ପ୍ରକାଶପାଇଥିଲା । ଦଳମତ ନିର୍ବିଶେଷରେ ସବୁ ଦଳ ଏ ପ୍ରସ୍ତାବକୁ ବିରୋଧ କରିଥିଲେ । ସେତେବେଳେ କର୍ଣ୍ଣାଟକର ମୁଖ୍ୟମନ୍ତ୍ରୀ ଥିଲେ ଜନତାଦଳର ତୁଙ୍ଗ ନେତା ଶ୍ରୀ ରାମକୃଷ୍ଣ ହେଗେଡ଼େ । ସେ ଦୃଢ଼ଭାବରେ ଏ ପ୍ରସ୍ତାବକୁ ବିରୋଧକରିଥିଲେ । ଶ୍ରୀ ହେଗେଡ଼େ ରାଜୀବ ଗାନ୍ଧୀଙ୍କୁ କ୍ଷେପଣାସ୍ତ୍ର ଘାଟି ନକରିବାପାଇଁ ବୁଝାଇ ପାରିଥିଲେ । ଦିଲ୍ଲୀର ବହୁ କଂଗ୍ରେସ ନେତା ଏ ବିଷୟରେ ଶ୍ରୀ ହେଗେଡ଼େଙ୍କୁ ସମର୍ଥନ କରିଥିଲେ ଏବଂ ରାଜୀବ ଗାନ୍ଧୀଙ୍କ ଉପରେ ଚାପପକାଇଥିଲେ । କର୍ଣ୍ଣାଟକର ବାନ୍ଦୁରଠାରେ ଏହି ଘାଟିଟି ହେବନାହିଁ ବୋଲି ରାଜୀବ ଗାନ୍ଧୀଙ୍କ ସରକାର ନିଷ୍ପତ୍ତି ନେଇଥିଲେ ଏବଂ ବିଶେଷ ଖୁସିହୋଇ କଂଗ୍ରେସ ନେତା ଶ୍ରୀ ଶିବରାଜ୍ ପାଟିଲ କର୍ଣ୍ଣାଟକବାସୀଙ୍କୁ ଜଣାଇଦେଇଥିଲେ ଯେ ଏ ପ୍ରସ୍ତାବିତ ଘାଟି କର୍ଣ୍ଣାଟକରେ ନହୋଇ ଓଡ଼ିଶାର ବାଲିଆପାଳଠାରେ ହେବ । କର୍ଣ୍ଣାଟକର ମୁଖ୍ୟମନ୍ତ୍ରୀ ଶ୍ରୀ ହେଗେଡ଼େଙ୍କ ଦୃଢ଼ ବିରୋଧ ଯୋଗୁଁ ସେଠାରେ ଏ ଘାଟି ହୋଇପାରିଲାନାହିଁ । ଏ ବିଷୟ ଜାଣିବା ପରେ ଆମ୍ଭେମାନେ ଆମର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ଶ୍ରୀ ହେଗେଡ଼େଙ୍କ ଭଳି ଭୂମିକା ନେବାକୁ କହିଥିଲୁ । କିନ୍ତୁ ସେ ଆମ କଥା ପ୍ରତି କର୍ଣ୍ଣପାତ କଲେନାହିଁ । ବରଂ ଓଡ଼ିଶାର ସୁରକ୍ଷା ଚୁଲିକୁ ଯାଉ ପଛେ ଜାନକୀବାବୁ ତାଙ୍କର ଚାରିତ୍ରିକ ଅପରାଧ ଅଭିଯୋଗଜନିତ ବିପତ୍ତିରୁ ସୁରକ୍ଷା ପାଇବା ନିମନ୍ତେ ନିର୍ଲଜ୍ଜଭାବରେ ରାଜୀବ ଗାନ୍ଧୀଙ୍କୁ ସନ୍ତୁଷ୍ଟ କରିବାର ଏକ ମଉକାରୂପେ ଏହି ପରିସ୍ଥିତିକୁ ବ୍ୟବହାରକଲେ । ସେ ଏକ ଉଦ୍‌ଭଟ ଯୁକ୍ତି ବାଢୁଥିଲେ ଯେ, "କୃଷିକ୍ଷେତ୍ରପାଇଁ ଯେପରି ଜଳସେଚନ ବ୍ୟବସ୍ଥା ଆବଶ୍ୟକ, ଦେଶରକ୍ଷାପାଇଁ ସେହିପରି କ୍ଷେପଣାସ୍ତ୍ରଘାଟି ଆବଶ୍ୟକ । ତେଣୁ ଓଡ଼ିଶାର ବାଲିଆପାଳ ଅଞ୍ଚଳବାସୀ ତାଙ୍କର ସର୍ବସ୍ୱ ଦେଶରକ୍ଷାପାଇଁ ତ୍ୟାଗକରନ୍ତୁ । ରାଜୀବଙ୍କୁ ଖୁସି କରାଇବାପାଇଁ ସେ ଆନ୍ଦୋଳନର ଗୁରୁତ୍ୱକୁ ହ୍ରାସକରି

ଯୁକ୍ତିବାଢୁଥିଲେ । ସାଧାରଣତଃ ରାଜ୍ୟ କଂଗ୍ରେସ ଲୋକମାନେ ଏ ପ୍ରକାର ପ୍ରକଳ୍ପ ଓଡ଼ିଶାରେ ନହେଉ ବୋଲି ଚାହୁଁଥିଲେ; ମାତ୍ର ଜାନକୀବାବୁଙ୍କ ଭୂମିକା ଦେଖି ସେମାନେ ନୀରବ ରହୁଥିଲେ । ବାଲିଆପାଳର ତତ୍କାଳୀନ ବିଧାନସଭାର କଂଗ୍ରେସ ସଦସ୍ୟ ଯୁଧିଷ୍ଠିର ଜେନା ଗୋପନରେ ଆସି ମୋତେ ଦେଖାକରି ଆନ୍ଦୋଳନକୁ ସମର୍ଥନ ଜଣାଉଥିଲେ । ଯେଉଁଦିନ ମୁଁ ଦିଲ୍ଲୀରେ ପ୍ରତିରକ୍ଷା ରାଷ୍ଟ୍ରମନ୍ତ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ପନ୍ଥଙ୍କୁ ସାକ୍ଷାତ୍ କରିଥିଲି, ସେହିଦିନ ଦିଲ୍ଲୀରେ ଶ୍ରୀ ଯୁଧିଷ୍ଠିର ଜେନା ଥିଲେ । ମନ୍ତ୍ରୀଙ୍କୁ ବୁଝାଇ ବୁଝାଇ କୌଣସିମତେ ପ୍ରକଳ୍ପଟି ବାଲିଆପାଳଠାରେ କରାଇ ନଦେବାପାଇଁ ସେ ମୋତେ ଅନୁରୋଧ କରିଥିଲେ । କ୍ଷେପଣାସ୍ତ୍ର ଘାଟି ପ୍ରତିଷ୍ଠା ବ୍ୟାପାରରେ ସଂପୃକ୍ତ ରାଜ୍ୟର ସ୍ୱାର୍ଥରକ୍ଷା ନେଇ ଯେଉଁ ପ୍ରକାର ପାତରଅନ୍ତର ନୀତି ଅବଲମ୍ବନ କରାଯାଉଥିଲା, ତାହାର ପ୍ରତିବାଦ କରିଥିଲି ମୁଁ । ୫ । ୯ । ୧୯୮୬ ତାରିଖରେ ପ୍ରଧାନମନ୍ତ୍ରୀଙ୍କୁ ଯେଉଁ ଚିଠି ଲେଖିଥିଲି ନିମ୍ନରେ ଉଦ୍ଧାର କରାଯାଇଛି ।

## ପ୍ରଧାନମନ୍ତ୍ରୀଙ୍କୁ ଚିଠି

ଭୁବନେଶ୍ୱର
ତା ୫ । ୯ । ୧୯୮୬

ପ୍ରିୟ ପ୍ରଧାନମନ୍ତ୍ରୀ ମହାଶୟ,

ଆମ ଦେଶରେ କ୍ଷେପଣାସ୍ତ୍ର ପରୀକ୍ଷା ଘାଟି ସମ୍ବନ୍ଧରେ ଆପଣଙ୍କ ସରକାରଙ୍କର ଗୋଟିଏ ନଗ୍ନ ବିଭେଦକାରୀ ଆଚରଣ ପ୍ରତି ଆପଣଙ୍କର ଦୃଷ୍ଟି ଆକର୍ଷଣ କରିବା ଉଦ୍ଦେଶ୍ୟରେ ଏହି ଚିଠିଖଣ୍ଡିକ ମୁଁ ଆପଣଙ୍କୁ ଲେଖୁଛି । ପରିତାପ ଯେ, ଏପରିକି ସମଦଶାପନ୍ନ ଦୁର୍ଦ୍ଦଶାଗ୍ରସ୍ତଙ୍କ ଗୁହାରି ଶୁଣିବା ପରେ ଓ ସେମାନଙ୍କର ଦୁଃଖ ମୋଚନ ସମ୍ବନ୍ଧରେ ମଧ ରାଜ୍ୟମାନଙ୍କ ଭିତରେ ପକ୍ଷପାତିତା କରାଯାଉଅଛି । ଗତ ଅଗଷ୍ଟ ମାସ ୨୮ ତାରିଖରେ କ୍ଷେପଣାସ୍ତ୍ର ଘାଟି କର୍ଣ୍ଣାଟକର ବାନ୍ଦୁରଠାରେ ନହୋଇ ଓଡ଼ିଶାର ବାଲିଆପାଳଠାରେ ହେବ ବୋଲି ଯେଉଁ ସମ୍ବାଦପତ୍ର ପି.ଟି.ଆଇ.ଦ୍ୱାରା ପରିବେଷିତ କରାଯାଇଅଛି, ତାହା କିପରି ଓ କେଉଁ ସୂତ୍ରରୁ ପ୍ରକାଶକରାଯାଇଛି, ସେଥିପ୍ରତି ମୁଁ ଆପଣଙ୍କ ତୀକ୍ଷ୍ଣ ଦୃଷ୍ଟି ଆକର୍ଷଣ କରୁଛି । ଆପଣଙ୍କ ବିଜ୍ଞାନ ଓ ବୈଷୟିକ ବ୍ୟାପାର ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଶିବରାଜ ପାଟିଲ ଅତି ଉଲ୍ଲାସ ମନରେ କର୍ଣ୍ଣାଟକ ରାଜ୍ୟର ଆପଣଙ୍କର କଂଗ୍ରେସ(ଇ) ସଭାପତିଙ୍କୁ ତାହା ଜଣାଇଛନ୍ତି ବୋଲି ଉକ୍ତ ସମ୍ବାଦରେ ପ୍ରକାଶପାଇଛି । ସେଥିରେ କୁହାଯାଇଛି ଯେ, କର୍ଣ୍ଣାଟକର ବାନ୍ଦୁରଠାରେ ମହାକାଶକୁ ଉପଗ୍ରହ ପ୍ରେରଣ କରିବାପାଇଁ କେନ୍ଦ୍ର ପ୍ରତିଷ୍ଠା କରିବାକୁ କେନ୍ଦ୍ର ସରକାର ଯେଉଁ ନିଷ୍ପତ୍ତି ରଖିଥିଲେ ତାହା ସେଠାକାର ଲୋକମାନଙ୍କର ବିରୋଧ ଯୋଗୁଁ କର୍ଣ୍ଣାଟକରୁ ଓଡ଼ିଶାର ବାଲେଶ୍ୱର ଉପକୂଳକୁ ସ୍ଥାନାନ୍ତରିତ କରାଯିବା ପାଇଁ ସ୍ଥିରକରାଯାଇଛି । ଏଥିରେ କର୍ଣ୍ଣାଟକବାସୀଙ୍କ ଦୁଃଖଦୁର୍ଦ୍ଦଶାର ଆପଣଙ୍କ ଅନୁକମ୍ପାପାଇଁ ଆମ୍ଭେମାନେ ଈର୍ଷାନ୍ୱିତ ନୋହୁଁ, କାରଣ ଆମେ ଚାହୁଁ ଯେ, ଏ ପ୍ରକାର ଗୋଟିଏ ବିପଦସଙ୍କୁଳ ପ୍ରକଳ୍ପ ଜନବସତିଠାରୁ ବହୁ ଦୂରରେ ବା ନିର୍ଜନ ଦ୍ୱୀପପୁଞ୍ଜରେ ହେବା ଉଚିତ । ମାତ୍ର ଓଡ଼ିଶାର ଲୋକଙ୍କ ଦୁଃଖଦୁର୍ଦ୍ଦଶା ପ୍ରତି ଉଦାସୀନ ନହୋଇ ସେହି ପ୍ରକାର ସହାନୁଭୂତିସମ୍ପନ୍ନ ହେବାପାଇଁ ମୁଁ ଆପଣଙ୍କୁ ନିବେଦନ କରୁଛି । ଉପରୋକ୍ତ ବାନ୍ଦୁର ଅଞ୍ଚଳଟି କର୍ଣ୍ଣାଟକର ପଶ୍ଚିମ ଉପକୂଳ ଆରବ ସାଗର ତଟରେ ଅବସ୍ଥିତ । ଏହା ପାଖକୁ ଲାଗି ରହିଛି ପ୍ରାୟ ୬ ହଜାର ବର୍ଗ ମାଇଲରୁ ଉର୍ଦ୍ଧ୍ୱ ଗୋଟିଏ ବିସ୍ତୃତ ପାହାଡ଼ିଆ ଅଞ୍ଚଳ । ତେଣୁ କ୍ଷେପଣାସ୍ତ୍ର ଘାଟି ପ୍ରତିଷ୍ଠାପାଇଁ ତାହା ଉପଯୁକ୍ତ ବୋଲି ବିଶେଷଜ୍ଞଙ୍କ ଦ୍ୱାରା ବିବେଚିତ ହୋଇଥିଲା । ଅବଶ୍ୟ ବାନ୍ଦୁର ବାଲିଆପାଳ ଭଳି ଶସ୍ୟଶ୍ୟାମଳା ବା ଜନାକୀର୍ଣ୍ଣ ନୁହେଁ । ତଥାପି ଲୋକଙ୍କ ଆପତ୍ତି ଶୁଣି ଆପଣଙ୍କ ସରକାର ସେଠାରେ ତାହା ହେବନାହିଁ ବୋଲି ନିଷ୍ପତ୍ତି ନେବା କଥା ବର୍ତ୍ତମାନ ଜଣାପଡୁଛି । ଆମ୍ଭେମାନେ ବାରମ୍ବାର

କ୍ଷେପଣାସ୍ତ୍ର ଘାଟି ପ୍ରତିଷ୍ଠା ସମ୍ବନ୍ଧରେ ଆପଣଙ୍କୁ ଲେଖୁଥିବାରୁ ମୋ ଚିଠି ପାଇ ଆପଣ ଭାବିପାରନ୍ତି ଯେ କି ପରିମାଣରେ, କେବେ ଓ କେଉଁଠି କ'ଣ କୁହାଯାଏ । ସେ ସମ୍ବନ୍ଧରେ ବୋଧହୁଏ ଆମ୍ଭେମାନେ କାଣ୍ଡଜ୍ଞାନ ବିବର୍ଜିତ ହୋଇଥିବାରୁ ଆପଣଙ୍କୁ ଅଯଥାରେ ବିରକ୍ତ କରୁଛୁ । ଧୈର୍ଯ୍ୟ ଓ ସହୃଦୟତା ସହ ବିଚାରକଲେ ଆପଣ ବୁଝିପାରିବେ ଯେ ଯେଉଁମାନେ ଦୁର୍ଦ୍ଦଶାଗ୍ରସ୍ତ ଓ ଦୁଃଖୀ, ସେମାନେ ତାହାର ଉପଶମ ଆଶାରେ ତାଙ୍କର କାହାଣୀ କହିଲାବେଳେ କୌଣସି ବାଡ଼ବତା ମାନନ୍ତିନାହିଁ ।

ଉପରୋକ୍ତ ସମ୍ବାଦ ପ୍ରକାଶ ପାଇବା ପରେ କର୍ଣ୍ଣାଟକବାସୀ ନିଶ୍ଚୟ ଖୁସି ହୋଇଥିବେ । ଆପଣ ଆମର ପ୍ରଧାନମନ୍ତ୍ରୀ ହିସାବରେ ବିଚାର କରନ୍ତୁ, ଏହି ସମ୍ବାଦଟି ଓଡ଼ିଶାବାସୀ ପଢ଼ିଲା ପରେ ବାଲିଆପାଳ ତଥା ଓଡ଼ିଶାବାସୀଙ୍କ ଉପରେ ତାହାର କି ପ୍ରଭାବ ପଡ଼ିଥିବ । ସେମାନଙ୍କ ପକ୍ଷେ ଭାବିବା କ'ଣ ସ୍ୱାଭାବିକ ନୁହେଁ କି ଯେ ସେମାନଙ୍କର ଶାନ୍ତ ପ୍ରକୃତି ଓ ଆପଣଙ୍କୁ ଦେଇଥିବା ଦୃଢ଼ ସମର୍ଥନର ସୁବିଧା ନେଇ ଆପଣ ବେପରୁଆ ଭାବରେ ମେଣ୍ଢାପରି ସେମାନଙ୍କୁ ଅଡ଼ାଇ ଓ ସେମାନଙ୍କର ମନର କଥା ଓ ବ୍ୟଥାକୁ ଉପେକ୍ଷା କରି ଲୋକଙ୍କର ଦୁଃଖଦୁର୍ଦ୍ଦଶା ପ୍ରତି କର୍ଣ୍ଣପାତ କରୁନାହାନ୍ତି । କ୍ଷେପଣାସ୍ତ୍ର ଘାଟି ପ୍ରତିଷ୍ଠା ସମ୍ପର୍କରେ ଆପଣଙ୍କର ଅସହିଷ୍ଣୁ, ଅଗଣତାନ୍ତ୍ରିକ ଓ ବିବେଚନାହୀନ ଆଚରଣ ରାଜ୍ୟର କଂଗ୍ରେସ(ଇ) ଦଳର ବିଧାନସଭା ତଥା ପାର୍ଲାମେଣ୍ଟର ସଭ୍ୟମାନଙ୍କୁ ଯେଉଁ ହୀନିମାନିଆ ଅବସ୍ଥାରେ ପକାଇଛି ତାହା ହୃଦୟଙ୍ଗମ କରିବାକୁ ଆପଣ ସମର୍ଥ ନୁହଁନ୍ତି । କର୍ଣ୍ଣାଟକର ମୁଖ୍ୟମନ୍ତ୍ରୀ ଶ୍ରୀ ରାମକୃଷ୍ଣ ହେଗେଡ଼େ ସବୁ ଦଳର ଲୋକଙ୍କ ସହଯୋଗରେ ଆପଣଙ୍କୁ ବୁଝାଇ କ୍ଷେପଣାସ୍ତ୍ର ଘାଟି ଭଳି ଗୋଟିଏ ବିପଦସଙ୍କୁଳ ପ୍ରକଳ୍ପକୁ ଏଡ଼ାଇଦେଇପାରିଲେ; କିନ୍ତୁ ଅତ୍ୟନ୍ତ ପରିତାପର ବିଷୟ ଏହି ଯେ, ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଖୋସାମତିଆ ଆଚରଣ ପ୍ରଦର୍ଶନ କରି ପ୍ରକୃତ ଜନମତ ଓ ବାସ୍ତବ ପରିସ୍ଥିତିକୁ ଲୁଚାଇ ଏପ୍ରକାର ପ୍ରକଳ୍ପ ଓଡ଼ିଶାବାସୀଙ୍କପାଇଁ ଆପଣଙ୍କର ଉପହାର ବୋଲି କହୁଛନ୍ତି । ସେ ଯେଉଁ ଅସ୍ପୃହଣୀୟ ପରିସ୍ଥିତି ଭିତରେ ଗତି କରୁଛନ୍ତି, ସେଥିରେ ନିଜ ରକ୍ଷଣପାଇଁ ଆପଣଙ୍କୁ ସୁହାଇଲା ଭଳି କଥା କହିବା ଛଡ଼ା ତାଙ୍କର ଗତ୍ୟନ୍ତର ନାହିଁ । ତେଣୁ ତାଙ୍କର ନୈତିକ ସାହସର ଅଭାବ ଓ ଦୁର୍ବଳତାପାଇଁ ଉତ୍ତର ବାଲେଶ୍ୱରର ଲୋକେ କିପରି ବଳି ପଡ଼ିବାକୁ ଯାଉଛନ୍ତି ତାହା ଆପଣ ବୁଝି ବିଚାରି କାର୍ଯ୍ୟ କରିବା ଉଚିତ ।

ଆଉ ଗୋଟିଏ ଅତ୍ୟନ୍ତ ଦୁଃଖଦାୟକ ବିଷୟ ହେଉଛି, ଆପଣଙ୍କର ପ୍ରତିରକ୍ଷା ବିଭାଗର ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଅରୁଣ ସିଂହ ପାର୍ଲାମେଣ୍ଟ ଏବଂ ବାହାରେ ବିଭ୍ରାନ୍ତିକର ଓ ଅସତ୍ୟ ତଥ୍ୟମାନ ପରିବେଷଣ କରି ଲୋକମାନଙ୍କର ଦୁଃଖ ସମୟରେ 'କଟା ଘାଆରେ ଚୂନ ଦେବା ଭଳି' ଆଚରଣ ପ୍ରଦର୍ଶନ କରୁଛନ୍ତି । ଆଣ୍ଡାମାନ ଦ୍ୱୀପପୁଞ୍ଜ କ୍ଷେପଣାସ୍ତ୍ର ଘାଟିପାଇଁ ଆଦୌ ଉପଯୋଗୀ ନୁହେଁ ବୋଲି ସେ କହୁନାହାଁନ୍ତି, ମାତ୍ର ସେଠାରେ ହେଲେ ଅଧିକ ଖର୍ଚ୍ଚ ହେବ ବୋଲି ଦର୍ଶାଇଛନ୍ତି । ଗୋଟିଏ ସମୃଦ୍ଧିଶାଳୀ ଅଞ୍ଚଳରେ ଲକ୍ଷାଧିକ ଲୋକଙ୍କୁ ଧ୍ୱସ୍ତ-ବିଧ୍ୱସ୍ତ ହେବାରୁ ରକ୍ଷାକରିବାପାଇଁ ଆପଣ ଓ ଆପଣଙ୍କ ସରକାର କିମ୍ବା ଆମର ଜାତି କେବେ ଅଧିକ ଖର୍ଚ୍ଚ କରିବାପାଇଁ କୁଣ୍ଠିତ ହେବନାହିଁ ବୋଲି ମୋର ବିଶ୍ୱାସ । ମାତ୍ର ଶ୍ରୀ ଅରୁଣ ସିଂହଙ୍କର କାହିଁକି ଏଥିପାଇଁ ମୁଣ୍ଡବ୍ୟଥା ତାହା ଆପଣ ବୁଝିବା ଉଚିତ । ଆଣ୍ଡାମାନରେ ଭୟଙ୍କର ତୋଫାନ ହୁଏ ବୋଲି ଶ୍ରୀ ଅରୁଣ ସିଂହ ପ୍ରଥମେ କହୁଥିଲେ । ତାହା ଭୁଲ ବୋଲି ପ୍ରମାଣିତ ହେବାରୁ ବର୍ତ୍ତମାନ କହୁଛନ୍ତି ଯେ, ସେଠାରେ ଅଧିକ ବର୍ଷା ହୁଏ ଓ ଅଧିକାଂଶ ସମୟରେ ଆକାଶ ମେଘାଚ୍ଛନ୍ନ ରହୁଥିବାରୁ ସେଠାରେ ସୁରୁଖୁରୁରେ କ୍ଷେପଣାସ୍ତ୍ର ପରୀକ୍ଷା କାର୍ଯ୍ୟ ହୋଇପାରିବନାହିଁ । ଆପଣ ନିଶ୍ଚୟ ଜାଣିଥିବେ ଯେ, ବର୍ଷସାରା ଆଣ୍ଡାମାନ ଦ୍ୱୀପପୁଞ୍ଜରେ ୮୦ ଇଞ୍ଚ ବର୍ଷା ହୁଏ । ଆପଣ ଏହା ମଧ୍ୟ ଜାଣିଥିବେ ଯେ, ଫ୍ରାନ୍ସ ଦେଶର କ୍ଷେପଣାସ୍ତ୍ର ଘାଟି ଓ ସେପସ୍ ସେଣ୍ଟର ଫ୍ରେଞ୍ଚ ଗୁଏନାରେ ଅବସ୍ଥିତ । ସେଠାରେ ବର୍ଷ ସାରା ହାରାହାରି ୧୬୯ ଇଞ୍ଚ ବର୍ଷା ହୁଏ । ତେବେ ସେଠାରେ ଫ୍ରାନ୍ସ ଦେଶ ତା'ର କ୍ଷେପଣାସ୍ତ୍ର କିପରି ପରୀକ୍ଷା

କରୁଛି ତାହା ଆପଣଙ୍କର ପ୍ରତିରକ୍ଷା ରାଷ୍ଟ୍ରମନ୍ତ୍ରୀ ସର୍ବସାଧାରଣରେ ଜଣାଇବା ସମୀଚୀନ ହେବନାହିଁ କି ? ସେହିପରି ରୁଷ୍ ଦେଶ ପ୍ରଶାନ୍ତ ମହାସାଗରରେ ଥିବା ତା'ର କ୍ୟୁରାଇଲ୍ ଦ୍ୱୀପପୁଞ୍ଜରେ ଦୂରଗାମୀ କ୍ଷେପଣାସ୍ତ୍ର ଘାଟି ପ୍ରତିଷ୍ଠା କରିଛି । ସେଠାରେ ବରଫ ବୃଷ୍ଟି ସାଙ୍ଗକୁ ଅଧିକାଂଶ ସମୟରେ ସେଠାକାର ଆକାଶ କୁହୁଡ଼ିଦ୍ୱାରା ଆଛନ୍ନ ରହେ । ପ୍ରଶାନ୍ତ ମହାସାଗରର ଉଷ୍ମପାଣି ଓ ଓକ୍‌ଶକ୍‌ସ ସାଗରର ଥଣ୍ଡା ପାଣିର ସଙ୍ଗମସ୍ଥଳ ହୋଇଥିବାରୁ ସେଠାରେ ଅଧିକାଂଶ ସମୟରେ କୁହୁଡ଼ି ହୁଏ । ଏହାସତ୍ତ୍ୱେ ରୁଷ ଦେଶର ସରକାର ସେଠାରେ କିପରି କ୍ଷେପଣାସ୍ତ୍ର ଘାଟି ପରୀକ୍ଷା କରିପାରୁଛନ୍ତି ସେ ସମ୍ବନ୍ଧରେ ଶ୍ରୀ ଅରୁଣ ସିଂହ ମହାଶୟ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରି ସାଧାରଣଙ୍କୁ ଜଣାଇବାପାଇଁ ଆପଣ ନିର୍ଦ୍ଦେଶ ଦେବା ଉଚିତ । ତା' ନହେଲେ ଏ ପ୍ରକାର ବିଭ୍ରାନ୍ତିକର ଉକ୍ତି ପରିବେଷଣ ନକରିବାପାଇଁ ଆପଣ ତାଙ୍କୁ ସତର୍କ କରାଇଦିଅନ୍ତୁ ।

ବିଂଶ ଶତାବ୍ଦୀ ଯାଉଛି ଓ ଏକବିଂଶ ଶତାବ୍ଦୀ ଆସୁଛି । ଏକବିଂଶ ଶତାବ୍ଦୀକୁ ଆପଣଙ୍କର ଅବଦାନ ହେବ ଏକ ଶକ୍ତିଶାଳୀ, ଦୁର୍ନୀତିମୁକ୍ତ, ସମୃଦ୍ଧିଶାଳୀ ଓ ସାଫଲ୍ୟମଣ୍ଡିତ ଭାରତବର୍ଷ ବୋଲି ଆପଣ ସଦାବେଳେ କହିବାରେ ଲାଗିଛନ୍ତି । ସେଥିପାଇଁ ଆପଣଙ୍କର ସମସ୍ତ କାର୍ଯ୍ୟ ଉଦ୍ଦିଷ୍ଟ ଓ ଆପଣ ଉଦ୍ୟମଶୀଳ ବୋଲି ଘୋଷଣାକରୁଛନ୍ତି । ଆପଣଙ୍କ ଶାସନର ଢଙ୍ଗ, କାର୍ଯ୍ୟପଦ୍ଧତି ଓ ଅପରିଣାମ-ଦର୍ଶୀ ନିଷ୍ପତ୍ତିମାନଙ୍କରୁ ଜଣାପଡ଼େ ଯେପରି ଦେଶକୁ ଉନବିଂଶ ଶତାବ୍ଦୀ ଆଡ଼କୁ ପଛେଇ ନେବାରେ ଲାଗିଛନ୍ତି । ଏକବିଂଶ ଶତାବ୍ଦୀପାଇଁ ଯୁକ୍ତରାଷ୍ଟ୍ର ଆମେରିକାର ପ୍ରସ୍ତୁତି ସମ୍ବନ୍ଧରେ ଗତ ଅଗଷ୍ଟ ମାସ ୨୮ ତାରିଖରେ ୱାଶିଂଟନ୍‌ଠାରୁ କ୍ଷେପଣାସ୍ତ୍ର ଘାଟି ପ୍ରତିଷ୍ଠା ସମ୍ପର୍କରେ ଯେଉଁ ସମ୍ବାଦଟି ପି.ଟି.ଆଇ. ଦ୍ୱାରା ପରିବେଷଣ କରାଯାଇଛି, ତାହା ଅଧ୍ୟୟନ କରିବା ପ୍ରଧାନମନ୍ତ୍ରୀ ହିସାବରେ ଆପଣଙ୍କର ଏକାନ୍ତ କର୍ତ୍ତବ୍ୟ ବୋଲି ମୁଁ ମନେକରୁଛି । ମୋ ପୂର୍ବ ଚିଠିରେ ମୁଁ ଆପଣଙ୍କୁ ସୂଚାଇଥିଲି ଯେ, ଦୂରଗାମୀ କ୍ଷେପଣାସ୍ତ୍ର ଆବିଷ୍କୃତ ହେବା ପରେ ବୃହତ୍ ଶକ୍ତିମାନେ ସେମାନଙ୍କର ଦ୍ୱୀପପୁଞ୍ଜରେ କ୍ଷେପଣାସ୍ତ୍ର ଘାଟି ପ୍ରତିଷ୍ଠା କରିବାରେ ଲାଗିଛନ୍ତି । ତେଣୁ ଆଣ୍ଡାମାନ୍ ଦ୍ୱୀପପୁଞ୍ଜରେ ଆମର କ୍ଷେପଣାସ୍ତ୍ର ଘାଟି ହେଲେ ତାହା ଯୁଗୋପଯୋଗୀ ହେବ । ଆପଣଙ୍କ ପକ୍ଷରେ ତାହା ଗ୍ରହଣଯୋଗ୍ୟ ହେଲାନାହିଁ । ବର୍ତ୍ତମାନ ଆପଣ ଦେଖନ୍ତୁ ଏକବିଂଶ ଶତାବ୍ଦୀରେ ଯୁଦ୍ଧ ଓ ସାମରିକ ବ୍ୟାପାର କି ଆକାର ନେବ ତାକୁ ଆଖିଆଗରେ ରଖି ଆମେରିକା ପ୍ରଶାନ୍ତ ମହାସାଗରରେ ଅବସ୍ଥିତ ମାର୍ଶାଲ୍ ଦ୍ୱୀପପୁଞ୍ଜରେ ଥିବା କ୍ୱାଜାଇଲ ଆକୋଲରେ ବିପୁଳ ଅର୍ଥ ବ୍ୟୟ କରି ଗୋଟିଏ କ୍ଷେପଣାସ୍ତ୍ର ଘାଟି ନିର୍ମାଣ କରିବାକୁ ଯାଉଛି । ସେଠାରୁ ଆଧୁନିକ ଧରଣର ଅତ୍ୟନ୍ତ ଶକ୍ତିଶାଳୀ ଓ ଦୂରଗାମୀ କ୍ଷେପଣାସ୍ତ୍ର ପରୀକ୍ଷା ଓ ପ୍ରେରଣ କରାଯିବ । ତେଣୁ ଦେଶକୁ ଏକବିଂଶ ଶତାବ୍ଦୀ ଆଡ଼କୁ ଆଗେଇ ନେବା ଦିଗରେ ଆପଣଙ୍କ କଥା ଓ କାର୍ଯ୍ୟରେ କେତେ ପାର୍ଥକ୍ୟ ତାହା ଆପଣ ଉପଲବ୍ଧି କଲେ ଦେଶବାସୀ ବିଶେଷ ଭାବରେ ଆଶ୍ୱସ୍ତ ଓ ଉପକୃତ ହେବେ । ମୋର ଆଶା ଓ ବିଶ୍ୱାସ ଉପରୋକ୍ତ ବିଷୟଗୁଡ଼ିକ ପ୍ରତି ଆପଣ ଯଥୋଚିତ ଧ୍ୟାନ ଦେଇ ବିଚାର କରିବେ ।

ଇତି
ଆପଣଙ୍କର ବିଶ୍ୱସ୍ତ
ନୀଳମଣି ରାଉତରାୟ

ଜନବସତିଠାରୁ ବହୁ ଦୂରରେ ନିର୍ଜନ ସ୍ଥାନ ଓ ଦ୍ୱୀପପୁଞ୍ଜରେ ଦୂରଗାମୀ ମାରାତ୍ମକ କ୍ଷେପଣାସ୍ତ୍ର ଘାଟି କିପରି ପୃଥିବୀର ଅନ୍ୟାନ୍ୟ ଦେଶ ସ୍ଥାପନ କରିଛନ୍ତି ଏବଂ ସେହି ଦୃଷ୍ଟିରୁ ଆଣ୍ଡାମାନ ଦ୍ୱୀପପୁଞ୍ଜ ଆମର ଏପ୍ରକାର ପ୍ରକଳ୍ପ ସ୍ଥାପନ କରିବାରେ ଉପଯୁକ୍ତ ସ୍ଥାନ । ସେ ସମ୍ବନ୍ଧରେ ୮.୧୨.୧୯୮୬ରେ ପ୍ରଧାନମନ୍ତ୍ରୀଙ୍କୁ ମୁଁ ଯେଉଁ ଚିଠି ଲେଖିଥିଲି, ତାହା ତଳେ ଉଦ୍ଧାର କରୁଛି । ସେଥିରୁ ଜଣାପଡ଼ିବ ପୃଥିବୀର ଶକ୍ତିଶାଳୀ ଦେଶମାନେ ସେମାନଙ୍କର କ୍ଷେପଣାସ୍ତ୍ର ଘାଟି କିପରି ନିର୍ଜନ ସ୍ଥାନରେ କରିଛନ୍ତି ।

ତାହାର ଦୃଷ୍ଟାନ୍ତ ବିସ୍ତୃତ ଭାବରେ ଏହି ଚିଠିରେ ଦର୍ଶାଯାଇଅଛି ।

ଭୁବନେଶ୍ୱର
ତା. ୮ । ୧୨ । ୧୯୮୬

ପ୍ରିୟ ପ୍ରଧାନମନ୍ତ୍ରୀ ମହାଶୟ,

ବିଗତ ଅକ୍ଟୋବର ମାସ ୫ ତାରିଖରେ ପ୍ରସ୍ତାବିତ ବାଲିଆପାଳ କ୍ଷେପଣାସ୍ତ୍ର ଘାଟି ସମ୍ବନ୍ଧରେ ମୁଁ ଆପଣଙ୍କୁ ଯେଉଁ ଚିଠି ଲେଖିଥିଲି, ତାହା ଆପଣଙ୍କୁ ମନେପକାଇଦେଉଛି । ବିଗତ ସେପ୍ଟେମ୍ବର ମାସ ଶେଷବେଳକୁ ଓଡ଼ିଶାର ମରୁଡ଼ିଗ୍ରସ୍ତ ଅଞ୍ଚଳ ଦେଖିସାରି ଆପଣ ଯେତେବେଳେ ଭୁବନେଶ୍ୱର ଆସିଥିଲେ, ସେତେବେଳେ ଆପଣ କଂଗ୍ରେସକର୍ମୀମାନଙ୍କର ଗୋଟିଏ ସମାବେଶରେ ଯେଉଁ ଅସତ୍ୟ କଥା କହିଥିଲେ, ତା'ର ଦୃଢ଼ ପ୍ରତିବାଦ ସେ ଚିଠିରେ କରାଯାଇଥିଲା । ତା'ଛଡ଼ା ବାଲିଆପାଳ ଭଳିଆ ଗୋଟିଏ ନିବିଡ଼ ଜନାକୀର୍ଣ୍ଣ ଅଞ୍ଚଳରେ କ୍ଷେପଣାସ୍ତ୍ର ଘାଟି ଓ ଉପଗ୍ରହ ପ୍ରେରଣ କେନ୍ଦ୍ର ପ୍ରତିଷ୍ଠା ନକରି ଆଣ୍ଡାମାନ ଦ୍ୱୀପପୁଞ୍ଜ ଭଳିଆ ନିର୍ଜନ ସ୍ଥାନରେ ତାହା ପ୍ରତିଷ୍ଠା କରିବାପାଇଁ ଆପଣଙ୍କୁ ଉକ୍ତ ଚିଠିରେ ମଧ୍ୟ ଆବେଦନ କରାଯାଇଥିଲା । କିନ୍ତୁ ଅତ୍ୟନ୍ତ ଦୁଃଖ ଓ ଦୁର୍ଭାଗ୍ୟର କଥା ଯେ, ଆପଣ ସେ ଆବେଦନ ପ୍ରତି ସମ୍ବେଦନଶୀଳ ହେବା ଦୂରେଥାଉ, ଭଦ୍ରତା ଦୃଷ୍ଟିରୁ ଉତ୍ତର ଦେବାକୁ ଆପଣଙ୍କ ମନ ବଳିଲାନାହିଁ । ବୋଧହୁଏ ଆପଣଙ୍କୁ କ୍ଷେପଣାସ୍ତ୍ର ଘାଟି ସମ୍ବନ୍ଧରେ ମୁଁ ବାରମ୍ବାର ଲେଖୁଥିବାରୁ ଆପଣ ବିରକ୍ତହେଉଛନ୍ତି । ମାତ୍ର ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କ ପକ୍ଷରେ ଦୁଃଖଜଣାଇବାରେ ଓ ତା'ର ଉପଶମ ଆଶାକରିବାରେ କୌଣସି ସୀମା ନଥାଏ ବୋଲି ପ୍ରଧାନମନ୍ତ୍ରୀଙ୍କ ହୃଦବୋଧ ହେଲେ ସେ ବିରକ୍ତ ହୋଇପାରିବେନାହିଁ ।

ଆଣ୍ଡାମାନ ଦ୍ୱୀପପୁଞ୍ଜରେ କ୍ଷେପଣାସ୍ତ୍ର ଘାଟି ପ୍ରତିଷ୍ଠା ହେବାର ପ୍ରତିବନ୍ଧକ ହେଉଛି ସେଠାକାର ଅସ୍ଥିର, ବିଶୃଙ୍ଖଳ ବାୟୁମଣ୍ଡଳ, ତୋଫାନ, ଅତିରିକ୍ତ ବର୍ଷା ଓ ମେଘାଚ୍ଛନ୍ନ ଆକାଶ ବୋଲି ବର୍ତ୍ତମାନ ପ୍ରତିରକ୍ଷା ବିଭାଗ ତରଫରୁ କୁହାଯାଇଛି । ଏହା ସମ୍ପୂର୍ଣ୍ଣ ଅସତ୍ୟ ଓ ବିଭ୍ରାନ୍ତି-କର ବୋଲି ସରକାରୀ ନଥିପତ୍ର ଓ ବାୟୁବିଜ୍ଞାନ ରିପୋର୍ଟରୁ ବାରମ୍ବାର ପ୍ରମାଣ କରାଯାଇଅଛି । ଆଣ୍ଡାମାନର ବିଶେଷତ୍ୱ ହେଉଛି ଯେ, ଯଦିଓ ଅତଳ ସମୁଦ୍ର ମଧ୍ୟଭାଗରେ ଅବସ୍ଥିତ ସବୁପ୍ରକାର ପବନ ଏହା ଉପରେ ପ୍ରବାହିତ ହୁଏ, ତଥାପି ସେଠାରେ ତୋଫାନ ବା ଘୂର୍ଣ୍ଣିବାତ୍ୟା କେବେ ହୁଏନାହିଁ । ବରଂ ଓଡ଼ିଶାର ସମୁଦ୍ର ଉପକୂଳ ଅଂଚଳ ଘନ ଘନ ତୋଫାନ ବା ଘୂର୍ଣ୍ଣିଝଡ଼ଦ୍ୱାରା ଆକ୍ରାନ୍ତ ହୋଇଥାଏ । ୧୯୪୨ ଓ ୧୯୭୧ ମସିହାରେ ଭୟାବହ ତୋଫାନ ଓ ଘୂର୍ଣ୍ଣିବାତ୍ୟା ଆଳ ଦେଖାଇ ପାରାଦ୍ୱୀପ ବନ୍ଦରଠାରେ ପ୍ରସ୍ତାବିତ ଇସ୍ପାତ କାରଖାନା ସ୍ଥାନାନ୍ତରିତ କରାଗଲା ବୋଲି ୧୯୮୨ରେ କେନ୍ଦ୍ର ସରକାର ଘୋଷଣା କରିଥିବା ସମସ୍ତେ ଜାଣନ୍ତି । ଅତ୍ୟଧିକ ବର୍ଷା ଓ ମେଘାଚ୍ଛନ୍ନ ଆକାଶ ଯେଉଁ ବାଧା ସୃଷ୍ଟିକରୁଛି ବୋଲି କୁହାଯାଉଛି ତାହା ଅତ୍ୟନ୍ତ ହାସ୍ୟାସ୍ପଦ । ଫ୍ରାନ୍ସର ବୃହତ୍ତମ କ୍ଷେପଣାସ୍ତ୍ର ଘାଟି ଓ ଉପଗ୍ରହ ପ୍ରେରଣ କେନ୍ଦ୍ର ଦକ୍ଷିଣ ଆମେରିକାର ଅନ୍ତର୍ଗତ ଜନଶୂନ୍ୟ ଫ୍ରେଞ୍ଚ୍ ଗୁଏନାରେ ଅବସ୍ଥିତ । ଏଠାରେ ଇଉରୋପର ପଶ୍ଚିମ ଜର୍ମାନୀ ପ୍ରଭୃତି କେତେ ଦେଶ ସେମାନଙ୍କର ଉପଗ୍ରହ ଓ କ୍ଷେପଣାସ୍ତ୍ର ପରୀକ୍ଷା କରନ୍ତି । ଫ୍ରେଞ୍ଚ୍ ଗୁଏନାରେ ବର୍ଷକୁ ପ୍ରାୟ ହାରାହାରି ୮୦ ଇଞ୍ଚ ବର୍ଷା ହୁଏ । ସେଠି ଯଦି ଅତ୍ୟଧିକ ବର୍ଷା ପ୍ରତିବନ୍ଧକ ନହେଲା, ଆଣ୍ଡାମାନରେ କାହିଁକି ହେବ ? କ୍ୟୁରାଇଲ୍ ଦ୍ୱୀପରେ ତୁଷାର ବୃଷ୍ଟି ହେତୁ ଆକାଶ ଘନ ଘନ କୁହୁଡ଼ିରେ ଆଚ୍ଛନ୍ନ ହେଲେ ମଧ୍ୟ ରୁଷିଆ ତା'ର କ୍ଷେପଣାସ୍ତ୍ର ପରୀକ୍ଷା ସେଠାରେ ମଧ୍ୟ କରୁଛି ।

ମୋଟାମୋଟି ଯୁଦ୍ଧରେ ବ୍ୟବହୃତ ରକେଟ ଓ ମିଜାଇଲ ପ୍ରଭୃତି କ୍ଷେପଣାସ୍ତ୍ରର ଉତ୍ପାଦନ, କ୍ରମବର୍ଦ୍ଧନ ଓ ପରୀକ୍ଷା କରିବାର ସ୍ଥାନ ନିର୍ବାଚନ ସମ୍ବନ୍ଧୀୟ ଘଟଣାର ଇତିବୃତ୍ତି ଗବେଷଣା କଲେ

ଜଣାଯାଏ ଯେ, ଏ ପ୍ରକାର ମାରାତ୍ମକ ଓ ବିପଦସଙ୍କୁଳ କ୍ଷେପଣାସ୍ତ୍ର ଘାଟିପାଇଁ ସ୍ଥାନ ନିରୂପଣବେଳେ ଭୌଗୋଳିକ ବିଚ୍ଛିନ୍ନତା ବା ପୃଥକ୍ ଅବସ୍ଥିତି ଓ ଜନାକୀର୍ଣ୍ଣ ଭୂଖଣ୍ଡଠାରୁ ଦୂରତ୍ୱ ପ୍ରଭୃତି ବିଷୟ ପ୍ରଧାନ ମାପକାଠି ରୂପେ ସମ୍ପୃକ୍ତ ଦେଶମାନେ ଗ୍ରହଣ କରି ଆସିଛନ୍ତି । କାରଣ ଏହା ଗୋଟିଏ ବିପଦସଙ୍କୁଳ ପ୍ରକଳ୍ପ ଏବଂ ଯୁଦ୍ଧ ସମୟରେ ଶତ୍ରୁର ଆକ୍ରମଣରେ ଏହାର ଚତୁର୍ପାର୍ଶ୍ୱରେ ବିସ୍ତୃତ ଅଞ୍ଚଳ ଭସ୍ମସାତ୍ ହେବାର ସମ୍ଭାବନା ରହିଛି । ଗତ ନଭେମ୍ବର ୩୦ ତାରିଖରେ ବାଲିଆପାଳ ପ୍ରତାପପୁରଠାରେ ଅନୁଷ୍ଠିତ ଯେଉଁ ବିରାଟ ଜନସଭାରେ ମୁଁ ଯୋଗ-ଦେଇଥିଲି, ସେଥିରେ ପ୍ରାୟ ପଚାଶ ହଜାର ଲୋକ ଉପସ୍ଥିତ ଥିଲେ ଏବଂ ସେମାନଙ୍କ ମଧ୍ୟରେ ପ୍ରାୟ ୧୦ ହଜାର ମହିଳା ଥିଲେ । ସେମାନେ ମଝିରେ ମଝିରେ କାନ୍ଦ କାନ୍ଦ ହୋଇ ଭଗବାନ୍‌ଙ୍କୁ କାତର ସ୍ୱରରେ ଡାକୁଥାଆନ୍ତି – ପ୍ରଧାନମନ୍ତ୍ରୀଙ୍କୁ ବିଚାରବନ୍ତ ହୃଦୟ ଦେଇ ସେମାନଙ୍କୁ ଦାରୁଣ ଦୁଃଖ ଓ ଘୋର ବିପତ୍ତିରୁ ଉଦ୍ଧାର କରନ୍ତୁ । ଆଜି ଯେତେବେଳେ ଆପଣଙ୍କ ସହିତ ସମଗ୍ର ପୃଥିବୀର ଲୋକ ଆମେରିକା ଓ ରୁଷ୍ ଭଳି ଦେଶ ମଧ୍ୟରେ ବିଶ୍ୱରୁ ଆଣବିକ କ୍ଷେପଣାସ୍ତ୍ରର ବିଲୋପ ସାଧନ ସିଦ୍ଧାନ୍ତକୁ ସ୍ୱାଗତ ଜଣାଇ ଆଶ୍ୱସ୍ତି ଲାଭକରୁଛନ୍ତି ସେତେବେଳେ ଆପଣଙ୍କ ନିଜର ଲୋକ ବାଲିଆପାଳବାସୀଙ୍କ ଦାରୁଣ ଦୁର୍ଦ୍ଦଶା ନିଶ୍ଚିତ ଭାବରେ ଆପଣଙ୍କ ହୃଦୟକୁ ସ୍ପର୍ଶ-କରିବ । ତେଣୁ ଆପଣ ସମସ୍ତ ବିଷୟ ପୁନଃ ବିଚାର କରିବେ ବୋଲି ମୋର ଆଶା ଓ ବିଶ୍ୱାସ ।

ପ୍ରସଙ୍ଗକ୍ରମେ ଆପଣଙ୍କ କୌତୂହଳପାଇଁ ମୁଁ ଏଠାରେ କହୁଛି ଯେ, ଯୁଦ୍ଧକ୍ଷେତ୍ରରେ ଏପ୍ରକାର ଧ୍ୱଂସକାରୀ କ୍ଷେପଣାସ୍ତ୍ର ପ୍ରୟୋଗ କରିବାରେ ହିଟ୍‌ଲର ହେଉଛନ୍ତି ପଥପ୍ରଦର୍ଶକ । ବିଗତ ଦ୍ୱିତୀୟ ମହାଯୁଦ୍ଧର ଶେଷଭାଗକୁ ହିଟ୍‌ଲର ଜର୍ମାନୀ, ଫ୍ରାନ୍ସ ଓ ଇଂଲଣ୍ଡ ଉପରେ କ୍ଷେପଣାସ୍ତ୍ର ନିକ୍ଷେପ କରିଥିଲେ । ଏହି କ୍ଷେପଣାସ୍ତ୍ର ଉତ୍ପାଦନ ଓ ପରୀକ୍ଷା ସ୍ଥାନ ଜାଣିବା ଅତ୍ୟନ୍ତ ଶିକ୍ଷାପ୍ରଦ । ବଲ୍‌ଟିକ୍ ସାଗର ମଧ୍ୟରେ ଅବସ୍ଥିତ ଜର୍ମାନୀ ଅନ୍ତର୍ଗତ ଉସ୍‌ଡୋମ୍ ଦ୍ୱୀପରେ ପିମାମିଣ୍ଡିଠାରେ ଏହି ଘାଟି ସ୍ଥାପନ କରାଯାଇଥିଲା ଏବଂ ଏହା ଥିଲା ପୃଥିବୀର ସର୍ବପ୍ରଥମ ଦୂରଗାମୀ କ୍ଷେପଣାସ୍ତ୍ର ପ୍ରେରଣ ଘାଟି । ହିଟଲର୍‌ଙ୍କ ଭଳି ପ୍ରବଳପରାକ୍ରମୀ କ୍ରୂର ଓ ପାଷାଣ ହୃଦୟର ବ୍ୟକ୍ତି ଓ ଏକଛତ୍ର ଶାସକ ଲୋକଙ୍କ ଦୁଃଖଦୁର୍ଦ୍ଦଶା ପ୍ରତି ସଦୟ ହୋଇ ଓ ଜନାକୀର୍ଣ୍ଣ ଉର୍ବର ଅଞ୍ଚଳର ସୁରକ୍ଷାପାଇଁ କିପରି ବିଚାରବନ୍ତ ତାହା ବିପଦସଙ୍କୁଳ କ୍ଷେପଣାସ୍ତ୍ର ଘାଟିର ଉପରୋକ୍ତ ସ୍ଥାନ ନିରୂପଣ ପ୍ରମାଣ କରୁଛି । ସେ ଚାହିଁଥିଲେ ଜର୍ମାନୀର ଯେକୌଣସି ସ୍ଥାନରେ ଯେକୌଣସି ଅଞ୍ଚଳର ଲୋକଙ୍କୁ ହଟାଇ, ସେମାନଙ୍କ ଘରଦ୍ୱାର ଭାଙ୍ଗି ଓ ଜମିବାଡ଼ି ଦଖଲକରି ସେଠାରେ କ୍ଷେପଣାସ୍ତ୍ର ଘାଟି ବସାଇପାରିଥାନ୍ତେ । ମାତ୍ର ତା' ନକରି ଜର୍ମାନୀର ପ୍ରଧାନ ଭୂଖଣ୍ଡର ବହୁ ଦୂରରେ ଏବଂ ଅନେକ ସମୟରେ ତୁଷାର ଆଚ୍ଛାଦିତ ବଲ୍‌ଟିକ୍ ସାଗରସ୍ଥ ଗୋଟିଏ ଦ୍ୱୀପରେ ତାହା ସ୍ଥାପନ କରିଥିଲେ । ଏହା ଆପଣ ଓ ଆମ୍ଭମାନଙ୍କ ପକ୍ଷରେ ଏକ ଶିକ୍ଷଣୀୟ ବିଷୟ । ବ୍ରାଉନ୍ ଉନ୍ ଏହି ସଂସ୍ଥାର ନିର୍ଦ୍ଦେଶକ ଥିଲେ । ୧୯୪୫ ମସିହାରେ ଏହି କ୍ଷେପଣାସ୍ତ୍ର ଘାଟି ସହ ଉସ୍‌ଡାନ୍ ଦ୍ୱୀପକୁ ଋଷ୍ ଦେଶର ସୈନ୍ୟମାନେ ଦଖଲ କରିନେଲେ । ବ୍ରାଉନ୍ ଉନ୍ ସେଠାରୁ ପଳାଇଯାଇ ଆମେରିକା ସୈନ୍ୟବାହିନୀଠାରେ ଆତ୍ମସମର୍ପଣ କରିଥିଲେ । ଯୁକ୍ତରାଷ୍ଟ୍ର ଆମେରିକା ସରକାର ତାଙ୍କୁ ନେଇଯାଇ ଦୂରଗାମୀ ରକେଟ୍ ଓ ମିଜାଇଲ୍ସ କ୍ଷେପଣାସ୍ତ୍ର କାର୍ଯ୍ୟର ଉତ୍ପାଦନ ଦାୟିତ୍ୱ ତାଙ୍କୁ ଦେଇଥିଲେ । ବ୍ରାଉନ୍ ଉନ୍ ଯୁକ୍ତରାଷ୍ଟ୍ରର ମେକ୍‌ସିକୋ ରାଜ୍ୟରେ ଅବସ୍ଥିତ ହାଇଟସ୍ ମରୁଭୂମିରେ ତାଙ୍କର କାର୍ଯ୍ୟକ୍ଷେତ୍ର ଓ କ୍ଷେପଣାସ୍ତ୍ର ଘାଟି ନିରୂପଣ କରିଥିଲେ । ଅଧିକ ଦ୍ରୁତଗାମୀ କ୍ଷେପଣାସ୍ତ୍ର ଯେତେବେଳେ ପ୍ରବର୍ତ୍ତନକରାଗଲା ସେତେବେଳେ ବ୍ରାଉନ୍ ଉନ୍‌ଙ୍କ ପରାମର୍ଶ-କ୍ରମେ ଆଟ୍‌ଲାଣ୍ଟିକ୍ ଉପକୂଳରେ ଆଉଗୋଟିଏ ନିର୍ଜ୍ଜନ ଓ ଜନଶୂନ୍ୟ ସ୍ଥାନ କେପ୍‌କେନେଡ଼ିଠାରେ ଆମେରିକାର ସର୍ବବୃହତ୍ କ୍ଷେପଣାସ୍ତ୍ର ଘାଟି ଓ ଉପଗ୍ରହ ପ୍ରେରଣ କେନ୍ଦ୍ର ସ୍ଥାପନ କରାଯାଇଛି ।

କ୍ଷେପଣାସ୍ତ୍ର ଘାଟି ଇତିବୃତ୍ତି ସମ୍ବନ୍ଧରେ ଅନେକ କଥା ଲେଖିଗଲି । ଆପଣ କେବେ ମନେ

କରିବେନାହିଁ ଯେ, କେତେକ ବିଷୟରେ ମୋ ଜ୍ଞାନକୁ ମୁଁ ଦେଖାଇହେଉଛି । ମୁଁ ଅତି ବିନୟର ସହିତ କହୁଛି ସେ ପ୍ରକାର ଅଭିପ୍ରାୟ ମୋର ନାହିଁ । ଏକମାତ୍ର ଅଭିପ୍ରାୟ ହେଉଛି ଯେ, ସେସବୁ ଜାଣିଲେ ହୁଏତ ଆପଣଙ୍କ ମନୋଭାବ କୋହଳ ହେବ, ଯାହାଦ୍ୱାରା ଏକ ଜନାକୀର୍ଣ୍ଣ ଅଞ୍ଚଳର ଧ୍ୱଂସସାଧନ ଓ ଲକ୍ଷାଧିକ ଲୋକଙ୍କର ଅକଥନୀୟ ଓ ଅଭୂତପୂର୍ବ ଦୁର୍ଦ୍ଦଶା ଆପଣ ଅନୁଭବ କରିପାରିବେ । ଶେଷରେ ଏତିକି ମୁଁ ଆପଣଙ୍କୁ କହିବାକୁ ଚାହେଁ ଯେ, ଯଦି ଧୈର୍ଯ୍ୟ, ନିର୍ଲିପ୍ତ ଓ ନିରପେକ୍ଷ ଦୂରଦୃଷ୍ଟି ସହ ଅନ୍ୟ ଦେଶମାନେ ସବୁ କାର୍ଯ୍ୟରେ ଯେଉଁ ମାପକାଠି ଅନୁକରଣ କରିଛନ୍ତି ତାହା ଆମେ ବିଚାରକରୁ ତା'ହେଲେ ନିଶ୍ଚିତଭାବରେ କୁହାଯିବ ଯେ, ଆଣ୍ଡାମାନହିଁ ଏ ପ୍ରକଳ୍ପ ପାଇଁ ପ୍ରାକୃତିକ ଓ ସ୍ୱାଭାବିକ ସ୍ଥାନ । ଦୟାକରି ଗୋଟିଏ ବିଶେଷଜ୍ଞ କମିଟିଦ୍ୱାରା ସମସ୍ତ କଥା ବିଚାରକରନ୍ତୁ ।

ଇତି

ପାପ୍ରେଷୁ : ଆପଣଙ୍କର ବିଶ୍ୱସ୍ତ
ଶ୍ରୀ ରାଜୀବ ଗାନ୍ଧୀ ନୀଳମଣି ରାଉତରାୟ
ପ୍ରଧାନମନ୍ତ୍ରୀ, ନୂଆ ଦିଲ୍ଲୀ

ଉପରୋକ୍ତ ଦୁଇଖଣ୍ଡ ଚିଠି ଛଡ଼ା ପ୍ରତିରକ୍ଷା ମନ୍ତ୍ରୀ ଓ ପ୍ରଧାନମନ୍ତ୍ରୀଙ୍କୁ ୫.୧୦.୮୭ ତାରିଖ, ୨୩.୩.୮୮ତାରିଖ ଓ ୨୮.୨.୮୮ତାରିଖରେ ୩ଖଣ୍ଡଚିଠି ବାଲିଆପାଳକ୍ଷେପଣାସ୍ତ୍ରଘାଟି ସମ୍ବନ୍ଧରେ ବାଲିଆପାଳଠାରେ କାହିଁକି ସ୍ଥାପନକରାନଯିବ ସେ ସମ୍ବନ୍ଧରେ ବହୁ ଦୃଷ୍ଟାନ୍ତ ଦେଇ ଲେଖାଯାଇଥିଲା ।

ସେହିଗୁଡ଼ିକ ଉଦ୍ଧାର କରି ପୁସ୍ତକର କଳେବର ବଢ଼ାଇବା ନିଷ୍ପ୍ରୟୋଜନ ମନେକରି ସେଥିରୁ କ୍ଷାନ୍ତ ହେଉଛି ।

ଏସବୁ ଅନୁଭୂତି ପରେ ମୋର ଦୃଢ଼ବିଶ୍ୱାସ ହୋଇଥିଲା ଯେ, ରାଜୀବ ଗାନ୍ଧୀ କେବେ ସମ୍ବେଦନଶୀଳ ହୋଇପାରିବେନାହିଁ । ଜଣେ ପ୍ରଧାନମନ୍ତ୍ରୀଙ୍କ ପକ୍ଷରେ ଅନୁକମ୍ପାଶୀଳ, ସମ୍ବେଦନ-ଶୀଳ ଓ ବିଚାରବନ୍ତ ହେବା ଅପରିହାର୍ଯ୍ୟ ଗୁଣ; କିନ୍ତୁ ରାଜୀବଗାନ୍ଧୀଙ୍କର ସେ ପ୍ରକାର ଗୁଣ ଥିଲାଭଳି ମୋର ମନେହେଉନଥିଲା । ତାଙ୍କ ଆଚରଣ ବୁଝିବାକୁ ହେଲେ ସେ କେଉଁ ପରିସର ମଧ୍ୟରେ ଶିକ୍ଷାଦୀକ୍ଷା ଅର୍ଜନ କରିଥିଲେ ଏବଂ ତାଙ୍କର ଜନ୍ମଗତ ଅଭିଳାଷ କ'ଣ ଥିଲା, ତାହା ବୁଝିବାକୁ ପଡ଼ିବ । ରାଜନୀତି ପ୍ରତି ତାଙ୍କର ଆଗ୍ରହ ନଥିଲା । ଅର୍ଥ ଉପାର୍ଜନ କରି ଭୋଗବିଳାସରେ ଜୀବନ- ଯାପନ କରିବା ତାଙ୍କର ଲକ୍ଷ୍ୟ ଥିଲା । ସେ ଜଣେ ବିମାନଚାଳକ ଭାବରେ ଆରାମରେ ଥିଲେ । ସ୍ୱର୍ଗୀୟା ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଦୁଇ ପୁତ୍ର ମଧ୍ୟରୁ କନିଷ୍ଠ ପୁତ୍ର ସଂଜୟ ଗାନ୍ଧୀଙ୍କର ଆଗ୍ରହ ରାଜନୀତି ପ୍ରତି ଥିଲା । ବଂଶଗତ ଶାସନରେ ବିଶ୍ୱାସ ଓ ଆଗ୍ରହୀ ଥିବା ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କର ଅଭିଳାଷ ଥିଲା ସଂଜୟଙ୍କୁ ଉତ୍ତରାଧିକାରୀ କରିବାକୁ; ତଦନୁସାରେ ରାଜନୀତିରେ ସଂଜୟ କିପରି ଶକ୍ତି ଅର୍ଜନ କରନ୍ତୁ ସେ ଦିଗରେ ସେ ତାଙ୍କୁ ସବୁପ୍ରକାର ସାହାଯ୍ୟ କରୁଥିଲେ । କଂଗ୍ରେସର ବରିଷ୍ଠ ନେତାମାନଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ବିଶ୍ୱାସ କମିଯାଉଥିବାରୁ ସଂଜୟଙ୍କ ନେତୃତ୍ୱରେ ଯୁବକମାନଙ୍କୁ ସଂଗଠିତ କରିବାପାଇଁ ଇନ୍ଦିରାଗାନ୍ଧୀ ସଂଜୟଙ୍କୁ ଉତ୍ସାହିତ କରୁଥିଲେ । ସଂଜୟ ଗାନ୍ଧୀ ଯୁବ କଂଗ୍ରେସର ସର୍ବେସର୍ବା ପ୍ରତିଷ୍ଠାତା ଥିଲେ ଏବଂ ଅଳ୍ପ ସମୟ ଭିତରେ ମାଆଙ୍କ ଆଶୀର୍ବାଦରୁ ଯୁବକଂଗ୍ରେସକୁ ଏକ ବଳିଷ୍ଠ ଅନୁଷ୍ଠାନରେ ପରିଣତ କରିପାରିଥିଲେ । ଆସାମର ଗୌହାଟିଠାରେ ଅନୁଷ୍ଠିତ ଗୋଟିଏ ଯୁବକଂଗ୍ରେସ ଅଧିବେଶନକୁ ସମ୍ବୋଧନ କଲାବେଳେ କଂଗ୍ରେସର କଳାକୁ ଯୁବକଂଗ୍ରେସ ନେଇସାରିଲାଣି ବୋଲି କହି କଂଗ୍ରେସ ଅନୁଷ୍ଠାନକୁ ସଂଜୟଙ୍କ ଯୁବକଂଗ୍ରେସ ତୁଳନାରେ ନ୍ୟୂନ କରି କହିବାକୁ ଶ୍ରୀମତୀ ଇନ୍ଦିରା ଗାନ୍ଧୀ କୁଣ୍ଠିତ ହୋଇନଥିଲେ । ମା'ଙ୍କ ପରେ ସେ ପ୍ରଧାନମନ୍ତ୍ରୀ ହେବେ ବୋଲି ଧରିନେଇଥିଲେ । ସମୟସମୟରେ ସେ ଇନ୍ଦିରା ଗାନ୍ଧୀଙ୍କ ନିର୍ଦ୍ଦେଶକୁ ବେଖାତିର କରି କାର୍ଯ୍ୟ

କରିଯାଉଥିଲେ । ୧୯୭୫ ମସିହା ଜରୁରୀକାଳୀନ ପରିସ୍ଥିତି ସମୟରେ ସଂଜୟଙ୍କ ସ୍ୱେଚ୍ଛାଚାରିତା ଓ ଅତ୍ୟାଚାର ସୀମା ଟପିଯାଇଥିଲା । କଂଗ୍ରେସର ବହୁ ତୁଙ୍ଗ ନେତା ତାଙ୍କ ଆଚରଣରେ ଲଜ୍ଜିତ ଓ ଅପମାନିତ ହେବାର ବହୁ ଦୃଷ୍ଟାନ୍ତ ସେତେବେଳେ ପତ୍ରପତ୍ରିକା ଓ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଥିଲା । ଲୋକେ ତାଙ୍କ ବ୍ୟବହାରରେ ଅତିଷ୍ଠ ହୋଇ ତ୍ରାହି ତ୍ରାହି ଡାକିଥିଲେ । ୧୯୮୦ ମସିହାରେ ଲୋକସଭା ନିର୍ବାଚନରେ ସେ ଉତ୍ତରପ୍ରଦେଶର 'ଆମେଥି' ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇ ଲୋକସଭାକୁ ଆସିଥିଲେ ଏବଂ ଏହା ପରେ ସେ କଂଗ୍ରେସର ସାଧାରଣ ସମ୍ପାଦକରୂପେ ନିଯୁକ୍ତ ହୋଇଥିଲେ । ତା'ପରେ ଜୁନ୍ ମାସ ୨୩ ତାରିଖ ୧୯୮୦ ମସିହାରେ ବିମାନ ଦୁର୍ଘଟଣାରେ ଅକାଳମୃତ୍ୟୁ ତାଙ୍କର ହୋଇଥିଲା । ସଂଜୟ ବର୍ତ୍ତମାନ ପରଲୋକ-ଗତ । ତାଙ୍କ ସମ୍ବନ୍ଧରେ ବର୍ତ୍ତମାନ ତିକ୍ତ ସମାଲୋଚନାସୂଚକ ଉକ୍ତି ବାଢ଼ିବା ସୁନ୍ଦର ଏବଂ ସମୀଚୀନ ହେବନାହିଁ । ତଥାପି ସଂଜୟଙ୍କ ଅହଙ୍କାରୀ ଓ ସ୍ୱେଚ୍ଛାଚାରୀ ଆଚରଣରେ ଲୋକେ କିପରି ଅତିଷ୍ଠ ଥିଲେ, ତାହା ହୃଦୟଙ୍ଗମ କରିବାପାଇଁ ଗୋଟିଏ ନିରାଟ ସତ୍ୟକଥାର ନମୁନାନଦେଇ ରହିପାରୁ ନାହିଁ । ଯେଉଁ ଦିନ ସଞ୍ଜୟଙ୍କର ମୃତ୍ୟୁଘଟେ, ମୁଁ ଗୋଟିଏ ଗଭୀର ଶୋକବାର୍ତ୍ତା ଇନ୍ଦିରା ଗାନ୍ଧୀଙ୍କ ପାଖକୁ ପଠାଇଥିଲି । ଫୋନୋ-ଗ୍ରାମ୍‌ରେ ପଠାଇବାପାଇଁ ଟେଲିଗ୍ରାଫ୍ ଅଫିସ୍‌ର ସମ୍ପୃକ୍ତ କର୍ମଚାରୀଙ୍କୁ ମୋର ଶୋକବାର୍ତ୍ତାଟି ଡାକି-ଦେଲି । ତାଙ୍କ ଘର ନୀଳଗିରି । ସେ ମୋତେ ଜାଣିଛନ୍ତି ବୋଲି କହିଲେ । ମୋର ଶୋକବାର୍ତ୍ତା ଇନ୍ଦିରା ଗାନ୍ଧୀଙ୍କ ପାଖକୁ ପଠାଇବା ପୂର୍ବରୁ ସେ ମୋତେ କହିଥିଲେ, ''ସାର୍, ଗୋଟିଏ କଥା କହିବି — କିଛି ଭାବିବେ ନାହିଁ । ଏହି ଶୋକବାର୍ତ୍ତାଟି କାହିଁକି ପଠାଉଛନ୍ତି ? ଗୋଟିଏ ଅଶାନ୍ତ ଗ୍ରହକୁ ଭଗବାନ୍ ଖସାଇଦେଲେ । ଆମେ ସମସ୍ତେ ଏଠାରେ ମିଠାଇ ଆଣି ଖାଉଛୁ ।'' ଏସବୁ କଥା ନକହି ମୋର ଶୋକବାର୍ତ୍ତାଟିକୁ ପଠାଇଦେବାକୁ ମୁଁ ତାଙ୍କୁ କହିଥିଲି ।

ବିମାନ ଦୁର୍ଘଟଣାରେ ସଂଜୟଙ୍କ ମୃତ୍ୟୁ ଘଟିବାରୁ ଇନ୍ଦିରା ଗାନ୍ଧୀଙ୍କର ଉତ୍ତରାଧିକାରୀ କିଏ ହେବ ସେଥିପାଇଁ ସେ ବ୍ୟସ୍ତହୋଇପଡ଼ିଥିଲେ । ତାଙ୍କ ନିଜ ବଂଶର ଲୋକେ କ୍ରମାଗତ ଶାସନ କରନ୍ତୁ ଏହା ଥିଲା ତାଙ୍କ ଅନ୍ତରର ଇଚ୍ଛା । ଏହି ପରିପ୍ରେକ୍ଷୀରେ ତାଙ୍କର ଆଖି ରାଜୀବ ଗାନ୍ଧୀଙ୍କ ଉପରେ ନପଡ଼ି ଆଉ କାହା ଉପରେ ପଡ଼ିବ ? ବିମାନଚାଳକ ଚାକିରିରୁ ଅବସରନେଇ ରାଜୀବ 'ଆମେଥି' ଲୋକସଭାମଣ୍ଡଳୀରୁ ଉପନିର୍ବାଚନରେ ନିର୍ବାଚିତ ହୋଇ ପାର୍ଲାମେଣ୍ଟକୁ ଆସିଥିଲେ ।

## ରାଜୀବ ଗାନ୍ଧୀ ଓ ବୋଫର୍ସ ଦୁର୍ନୀତି କାହାଣୀ

ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଦେହାନ୍ତ ପରେ ବହୁ କଳ୍ପନାଜଳ୍ପନା ଚାଲିଲା ଯେ, କିଏ ଭାରତର ପ୍ରଧାନମନ୍ତ୍ରୀ ହେବ । ଇନ୍ଦିରା ଗାନ୍ଧୀଙ୍କ ମନ୍ତ୍ରିମଣ୍ଡଳରେ କେତେକ ବରିଷ୍ଠ ମନ୍ତ୍ରୀଙ୍କ ନାମ ମଧ ଉଠିଥିଲା । ରାଜୀବ ଗାନ୍ଧୀ କଂଗ୍ରେସକୁ ଆସିବା ପରେ ଇନ୍ଦିରାଙ୍କ ପାଖ ଲୋକମାନେ ତାଙ୍କୁ ଖୁସି କରାଇବାପାଇଁ ରାଜୀବଙ୍କ ପାଖେ ଭିଡ଼ିଯାଇଥିଲେ । ସେମାନେ ରାଜୀବଙ୍କୁ ଉସୁକାଇଥିଲେ ଏବଂ କହିବୁଲିଲେ ଇନ୍ଦିରା ଚାହୁଁଥିଲେ ରାଜୀବଙ୍କୁ ପ୍ରଧାନମନ୍ତ୍ରୀ କରିବାପାଇଁ । ତେଣୁ ତାଙ୍କୁ ପ୍ରଧାନମନ୍ତ୍ରୀ କଲେ ଇନ୍ଦିରାଙ୍କ ଆତ୍ମାର ସଦ୍‌ଗତି ହେବ । ଏ ପ୍ରକାର ପ୍ରସ୍ତାବକୁ ନାପସନ୍ଦ କରି ପଶ୍ଚିମବଙ୍ଗର କଂଗ୍ରେସ ନେତା ଓ ପୂର୍ବତନ ଅର୍ଥମନ୍ତ୍ରୀ ପ୍ରଣବ ମୁଖାର୍ଜୀ ରାଜୀବଙ୍କ କ୍ରୋଧର ଶିକାର ହୋଇ ସବୁଥିରୁ ବଂଚିତ ହୋଇ ତଡ଼ାଖାଇଥିଲେ । ଏହି ପରିସ୍ଥିତିର ସୁଯୋଗନେଇ ତୋଷାମୋଦକାରୀମାନେ ରାଜୀବଙ୍କ ହାତରେ ସବୁପ୍ରକାର ସୁଯୋଗ ଓ ଅଧିକାର ବାଢ଼ିଦେଇ ତାଙ୍କ ମୁଣ୍ଡରେ ରାଜଶକ୍ତିସମ୍ପନ୍ନ ଶିରପା ବାନ୍ଧିଦେଲେ । ଯୋଗ୍ୟତା ଓ ସେବାପରାୟଣତା ପ୍ରତି ଆକୃଷ୍ଟ ନଥିବା ଜଣେ ଭୋଗ-ଅଭିଳାଷୀ ବ୍ୟକ୍ତିଙ୍କୁ ଭାରତର ପ୍ରଧାନମନ୍ତ୍ରୀ କରାଇଦିଆଗଲା । ଲୋକଙ୍କ ଦୁଃଖ ଓ ଦୁର୍ଦ୍ଦଶା ପ୍ରତି ତାଙ୍କର ସହାନୁଭୂତି କୁଆଡୁ ଆସିବ ? ପରବର୍ତ୍ତୀ ଘଟଣା ପର୍ଯ୍ୟାଲୋଚନା କଲେ ମୋର ଉପରୋକ୍ତ

ଉକ୍ତିର ଯଥାର୍ଥତା ବୁଝାପଡ଼ିବ । ବୈଦେଶିକ ଶକ୍ତିମାନଙ୍କର କାର୍ଯ୍ୟକଳାପ ଓ ସାମରିକ ଶକ୍ତିକୁ ବିଚାରକରି ନିଜର ସାମରିକ ଶକ୍ତିକୁ ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତକରି ସୁଦୃଢ଼ କରି ନରଖିବା ଜଣେ ପ୍ରଧାନମନ୍ତ୍ରୀଙ୍କର ଅକ୍ଷମଣୀୟ ଚରମ ଅବହେଳା ଓ ବିଶ୍ୱାସଘାତକତା ପ୍ରଦର୍ଶନ କରିବାର ବହୁ ଦୃଷ୍ଟାନ୍ତ ଜଣାପଡ଼ିଲାଣି । ୧୬୦୦ କୋଟି ଟଙ୍କାର ସ୍ୱିଡ଼େନ୍ ଦେଶର ବୋଫର୍ସ କମ୍ପାନୀଠାରୁ ବନ୍ଧୁକ କମାଣ ପ୍ରଭୃତି ଯୁଦ୍ଧ ସାମଗ୍ରୀ କିଣିବାରେ ଯେଉଁ ଦୁର୍ନୀତି, ଜାଲିଆତି ଓ ଚଞ୍ଚକତା କରାଯାଇ ପ୍ରାୟ ୬୦ କୋଟି ଟଙ୍କାରୁ ଉର୍ଦ୍ଧ୍ୱ ଲାଞ୍ଚ କାରବାର ହୋଇଛି ତାହା ଯେ ନିଶ୍ଚିତ ଭାବରେ ରାଜୀବ ଗାନ୍ଧୀଙ୍କ ଜ୍ଞାତସାରରେ ହୋଇଛି ଏଥିରେ ଭାରତବର୍ଷର ଜନସାଧାରଣଙ୍କର ତିଳେ ମାତ୍ର ସନ୍ଦେହ ନାହିଁ । ବିଗତ ଫେବୃଆରୀ ମାସ ୧୩ ତାରିଖ ୧୯୯୭ ମସିହା କଂଗ୍ରେସର ମୁଖପାତ୍ର ଶ୍ରୀ ଭି.ଏନ୍. ଗାଡ୍‌ଗିଲ୍ କହିଛନ୍ତି ଯେ, ବୋଫର୍ସଠାରୁ ବନ୍ଧୁକ କିଣା କାରବାର ସହିତ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ନିଜେ ସମ୍ପୃକ୍ତ ନୁହଁନ୍ତି ବା ତାଙ୍କ ପରିବାର ସହିତ ସମ୍ପୃକ୍ତ ଥିବା କୌଣସି ବ୍ୟକ୍ତି ଏଥିରେ ଲିପ୍ତ ନୁହଁନ୍ତି ବା ତାଙ୍କ ପରିବାର ସହିତ ସଂପୃକ୍ତ ଥିବା ଇଟାଲୀୟ ବ୍ୟବସାୟୀ ମିଷ୍ଟର କ୍ୱାତ୍ରୋଚିଙ୍କ ସହିତ ରାଜୀବ ଗାନ୍ଧି ପରିବାରବର୍ଗଙ୍କର କୌଣସି ସମ୍ପର୍କ ନାହିଁ – ଏତକ କହିଲା ପରେ ସାମ୍ବାଦିକମାନେ ତାଙ୍କୁ ପ୍ରଶ୍ନବାଣରେ ମିଛୁଆ ବୋଲି କହି ପାଗଳକରିଦେଇଥିଲେ । ସୁବିଖ୍ୟାତ ଆଇନଜ୍ଞ ତଥା ପ୍ରତିଷ୍ଠିତ ସମ୍ବାଦ ସ୍ତମ୍ଭିକ ଶ୍ରୀ ଏ. ଜି. ନୁରାନୀ ୨୨ ତାରିଖ ଫେବୃଆରୀ ମାସ ୧୯୯୭ ମସିହା 'ଷ୍ଟେଟ୍‌ସମେନ୍'ରେ 'Rajib and Bofors' (ରାଜୀବ ଏଣ୍ଡ ବୋଫର୍ସ) ଶୀର୍ଷକ ଲେଖାରେ ପ୍ରାମାଣିକ ତଥ୍ୟ ସହ କହିଛନ୍ତି ଯେ, ବୋଫର୍ସଠାରୁ ବନ୍ଧୁକ କିଣା କାରବାର ଚୁକ୍ତିର କର୍ତ୍ତା ହେଉଛନ୍ତି ସ୍ୱର୍ଗୀୟ ରାଜୀବ ଗାନ୍ଧୀ । ତାଙ୍କ ଭାଷାରେ, On one point there can be no doubt, the Bofors deal was Rajib's baby and he was proud of the fact. He told the Lok Sabha on April 20, 1987 that he told Olaf Palme, Sweeden's P.M.; "If you want involvement at my level, you must guarantee me" – no middleman. They have talked about it twice; October 21, 1985 in New York and on January 22, 1986 in New Delhi. On September 24, 1985 Rajib had made himself Defence Minister in place of P.V. Narasihma Rao and held the portfolio till January 24, 1987. The contract was signed on March 21, 1987. Rajib Gandhi was the only person in a position to swing the deal.

ମିଷ୍ଟର କ୍ୱାତ୍ରୋଚିଙ୍କର ରାଜୀବ ଗାନ୍ଧୀ ଓ ତାଙ୍କ ସହଧର୍ମିଣୀ ଶ୍ରୀମତୀ ସୋନିଆ ଗାନ୍ଧୀଙ୍କ ସହିତ ଯେଉଁ ନିବିଡ଼ ସମ୍ପର୍କ ଥିଲା ସେ ବିଷୟରେ ବହୁ ପ୍ରାମାଣିକ ତଥ୍ୟ ଦେଇ ଶ୍ରୀ ନୁରାନୀ ପ୍ରକାଶ କରି କହିଛନ୍ତି ଯେ, "Like ordinary mortals, men in power will be judged by the company they keep. If things go wrong they cannot be allowed to get away with the lament with Shakespeare, "Company, villanious company hath been the spoil of me."

ଇଟାଲୀୟ ବ୍ୟବସାୟୀ କ୍ୱାତ୍ରୋଚି ରାଜୀବ ଗାନ୍ଧୀ ଓ ସୋନିଆ ଗାନ୍ଧୀଙ୍କ ସହିତ କିଛି ସମ୍ପର୍କ ନଥିବା କଥା କହିବା ହାସ୍ୟାସ୍ପଦ ଓ ଅସତ୍ୟ । ରାଜୀବ ଗାନ୍ଧୀଙ୍କ ପ୍ରଧାନମନ୍ତ୍ରିତ୍ୱ କାଳରେ ଏହି ଇଟାଲୀୟ ବ୍ୟବସାୟୀ ରାଜୀବ ପରିବାରର ପ୍ରଭାବରେ ଭାରତବର୍ଷର ଚତୁର୍ଦ୍ଦିଗରେ ବଡ଼ ବଡ଼ କାର୍ଯ୍ୟର କଣ୍ଟ୍ରାକ୍ଟ ନେଇ କିପରି ବିପୁଳ ଅର୍ଥ ଲୁଟୁଥିଲେ, ତାହା ସେ ସମୟରେ ସବୁ ସମ୍ବାଦପତ୍ରରେ ବାରମ୍ବାର ବିସ୍ତୃତ ଭାବରେ ପ୍ରକାଶପାଉଥିଲା । ପ୍ରଧାନମନ୍ତ୍ରୀଙ୍କ ଘରକୁ ତାଙ୍କର ଅବାଧ ପ୍ରବେଶ ଥିଲା ଓ ତାଙ୍କ ଗାଡ଼ି ସେଠାକୁ ପ୍ରବେଶକରିବାକୁ ପାସ୍ ଦରକାର ପଡୁନଥିଲା । ଏ ବିଷୟ ସେତେବେଳେ

ମଧ୍ୟ ସମାଲୋଚିତ ହୋଇଥିଲା । ବୋଫର୍ସ ବନ୍ଧୁକ କିଣାରେ ଲାଞ୍ଚ ସ୍ୱରୂପ ଯେଉଁ କମିଶନ୍ ନିଆଯାଇଛି, କ୍ୱାତ୍ରୋଚି ପାଇଛନ୍ତି ସେଥିରୁ ବହୁ ଅର୍ଥ । ରାଜୀବ ଯେ ପାଇଛନ୍ତି ତାହା ଅସ୍ୱୀକାର କରିହେବ ନାହିଁ । ତାହାଛଡ଼ା ଯେଉଁ ଅନ୍ୟାନ୍ୟ ଭାରତୀୟ ବ୍ୟବସାୟୀମାନେ ଏହି କାରବାର ଛଡ଼ା ପ୍ରତିରକ୍ଷା ବିଭାଗପାଇଁ ବୁଡ଼ାଜାହାଜ, ହେଲିକେପ୍ଟର ଓ ଉଡ଼ାଜାହାଜ କିଣିବା ଖବର-କାଗଜରେ ପ୍ରକାଶପାଉଥିଲା । ଶେଷରେ ହାୱାଲା ଦୁର୍ନୀତି ମାମଲା ସମ୍ପର୍କରେ ଟିପାଖାତାରୁ ଯେଉଁ ସବୁ ବ୍ୟକ୍ତିମାନଙ୍କ ନାମ ଲାଞ୍ଚ ନେଇଥିବାର ବାହାରିଲା, ସେଥିରୁ ରାଜୀବ ଗାନ୍ଧୀ ଦୁଇ କୋଟି ଟଙ୍କା ନେଇଛନ୍ତି ବୋଲି ଉଲ୍ଲେଖ ଅଛି । ହିସାବ ନେଲେ ଜଣାପଡ଼େ ଯେ, ରାଜୀବ ଗାନ୍ଧୀଙ୍କର ଶାସନକାଳ ଦୁର୍ନୀତିପୂର୍ଣ୍ଣ ଥିଲା ଓ ବିପୁଳ ଅର୍ଥ ଉପାର୍ଜନ କରିବାପାଇଁ ସତେ ଯେପରି ରାଜୀବ ଗାନ୍ଧୀ ଶୀର୍ଷ ଆସନରେ ଆବିର୍ଭୂତ ହୋଇଥିଲେ । ତାଙ୍କର ତ୍ୟାଗର ଜୀବନ ନଥାଇ ଭୋଗର ଜୀବନ ଥିଲା । ସେ ଯଦି ଦେଶର ନିରାପତ୍ତା ପାଇଁ ବ୍ୟାକୁଳ ଥା'ନ୍ତେ, ତା'ହେଲେ ଉପରୋକ୍ତ ବନ୍ଧୁକ, କମାଣ, ବୁଡ଼ାଜାହାଜ, ହେଲିକେପ୍ଟର କିଣାକିଣିରେ ଯେ ପ୍ରକାର ଦୁର୍ନୀତିର ଆଶ୍ରୟ ନେଇଛନ୍ତି ତାହା କରି ନଥା'ନ୍ତେ । ଏହି ପରିପ୍ରେକ୍ଷୀରେ କ୍ଷେପଣାସ୍ତ୍ର ଘାଟି, ଜନବହୁଳ ଉତ୍ତର ବାଲେଶ୍ୱରରେ ସ୍ଥାପନ ନକରି ଦୁର୍ଦ୍ଦଶାଗ୍ରସ୍ତ ଲୋକମାନଙ୍କ ଦୁଃଖରେ ସମ୍ବେଦନଶୀଳ ହେବା ତାଙ୍କଠାରୁ ଆଶା କରିବା ଅତ୍ୟନ୍ତ ନିରର୍ଥକ । ନିଷ୍ପତ୍ତି ନବଦଳାଇବାପାଇଁ ସେ ଯେପରି ଜିଦ୍ ଧରି ବସିଥିଲେ, ତାଙ୍କର ଏ ପ୍ରକଳ୍ପ ସ୍ଥାପନ ସମ୍ବନ୍ଧରେ ଅନ୍ୟ କିଛି ମସୁଧା ଥିଲା ଭଳି ମନେହୁଏ । ଯେଉଁ ଆଶାକରି ଇନ୍ଦିରା ଗାନ୍ଧୀଙ୍କ ଦାୟାଦ ରୂପେ ତାଙ୍କୁ ଭାରତବର୍ଷର ପ୍ରଧାନମନ୍ତ୍ରୀ ରୂପେ ଅଧିଷ୍ଠିତ କରାଯାଇଥିଲା, ସେଥିପାଇଁ ସେ ଯେ ସମ୍ପୂର୍ଣ୍ଣରୂପେ ଅଯୋଗ୍ୟ ତାହା ପଦାରେ ପଡ଼ିଲା ।

ରାଜୀବ ଗାନ୍ଧୀ ପ୍ରଧାନମନ୍ତ୍ରୀ ହେଲେ ମଧ୍ୟ ତାଙ୍କର ଜନ୍ମଗତ ଅଭିଳାଷ ଛାଡ଼ିପାରିନଥିଲେ । ଅର୍ଥପିପାସା ତାଙ୍କର ଅସ୍ଥିମଜ୍ଜାଗତ ଥିଲା । ନିଜର ଭୋଗବିଳାସପାଇଁ ସେ ଯେତେ ପାରନ୍ତି ସେତେ ଅର୍ଥ ବ୍ୟୟ କରିପାରୁଥିଲେ । ଯେଉଁଆଡ଼େ ଚାହୁଁଥିଲେ ସେଠାକୁ କୋଟି କୋଟି ଟଙ୍କା ଖର୍ଚ୍ଚ କରି ଯାଇପାରୁଥିଲେ । ଯାହା ଚାହୁଁଥିଲେ ତାହା ପାଉଥିଲେ । ଏହି ପରିପ୍ରେକ୍ଷୀରେ ଦେଶର ସର୍ବସାଧାରଣଙ୍କ ସମ୍ପତ୍ତି ତାଙ୍କ ହାତରେ ନିରାପଦ ରହିବା ନୋହିଲା । ନାନାପ୍ରକାର ଦୁର୍ନୀତିମୂଳକ ଉପାୟରେ ଦେଶର ପାଣ୍ଠିକୁ ସେ ଆତ୍ମସାତ୍ କରିବାକୁ କୁଣ୍ଠିତ ହେଲେନାହିଁ । ତାଙ୍କଠାରେ ଲୋକଙ୍କର ଆଶା ବିଫଳ ହେଲା । କଥାରେ ଅଛି, ''ଅଙ୍ଗାର ଶତ ଧୌତେନ ମଳିନତ୍ୱଂ ନମୁଞ୍ଚତେ'' ଅର୍ଥାତ୍ ଅଙ୍ଗାରକୁ ଶତବାର ଧୌତକଲେ ମଧ୍ୟ ତାର ମଳିନତା ଯାଏନାହିଁ । ସେହିପରି ଗୋଟିଏ ପିତ୍ତଳ ମୂର୍ତ୍ତିରେ ବାରମ୍ବାର ସୁନା ପୁଟ ବା ଆସ୍ତରଣ ବୋଳିଲେ ତାକୁ ସୁନାମୂର୍ତ୍ତିରେ ରୂପାନ୍ତର କରାଯାଇ ପାରେନାହିଁ । ଅର୍ଥାତ୍ ଦୈବଦତ୍ତ ପ୍ରକୃତି ମନୁଷ୍ୟ କେବେହେଲେ ବଦଳାଇ ପାରେନାହିଁ । ଏଠାରେ ଦିଆଯାଇଥିବା କବିସୂର୍ଯ୍ୟ ବଳଦେବ ରଥଙ୍କ ରଚନା ପଂକ୍ତିଟି ଅତ୍ୟନ୍ତ ପ୍ରଯୁଜ୍ୟ :

''ଯାହାକୁ ଯାହା କରିଛି ଦଇବ, ତହୁଁ ନିକି ସେ ଅନ୍ୟଥା ହୋଇବ ।
ଘେନିଲେ ହେଲେ ଯତ୍ନେ କୋଟି ପୁଟ, ପିତ୍ତଳୁଟି କେହି ହେବ ପୁରଟ ।
ଜଗତେ କେବଳ, ଜନେ ହସିବେ ଏହି ତହୁଁ ଫଳ ।''

ବାଲିଆପାଳ ଓ ଭୋଗରାଇରେ କ୍ଷେପଣାସ୍ତ୍ର ଘାଟି ସ୍ଥାପନ କରାଇନଦେବାପାଇଁ ଯେଉଁ ବିରାଟ ଆନ୍ଦୋଳନ ମୁଣ୍ଡଟେକିଥିଲା, ପ୍ରାୟ ଚାରିବର୍ଷକାଳ ତାହା ବାଲେଶ୍ୱର ଜିଲ୍ଲାରେ ଚାରିଆଡ଼େ ପ୍ରତିଧ୍ୱନିତ ହୋଇଥିଲା । ଏହି ଆନ୍ଦୋଳନର ବହୁ ଘଟଣା ଭିଡ଼ିଓ କ୍ୟାସେଟ୍ କରାହୋଇଥିଲା । ସେଗୁଡ଼ିକ ଆମର ବନ୍ଧୁ ସ୍ୱର୍ଗୀୟ ସମରେନ୍ଦ୍ରକୁଣ୍ଡୁଙ୍କଦ୍ୱାରା ଦିଲ୍ଲୀ ନିଆଯାଇ ବହୁ ସ୍ଥାନରେ ଦେଖାଇ-ଦିଆଯାଇଥିଲା । ଦିଲ୍ଲୀର ଲୋକେ ବିରାଟ ଆନ୍ଦୋଳନର ରୂପରେଖ ଭିଡ଼ିଓ କ୍ୟାସେଟ୍‌ରେ ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ । ରାଜୀବ ଗାନ୍ଧୀଙ୍କ ସରକାର ଓ ଓଡ଼ିଶାର କଂଗ୍ରେସ ସରକାର ବହୁ ପ୍ରଲୋଭନ ଓ

ଉଦ୍ୟମ କରି ଘାଟି ସ୍ଥାପନ କରିବା ଦୂରେଥାଉ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଜମି ଦଖଲ କରିପାରିଲେନାହିଁ । ରାଜୀବ ସରକାର ବାଲିଆପାଳଠାରେ ଗୋଟିଏ ସ୍ପିନିଂ ମିଲ୍ ବସାଇ ଲୋକଙ୍କୁ ପ୍ରଲୋଭିତ କରାଇବାରେ ବିଫଳ ହେଲେ । ଲୋକଙ୍କର ଗୁହାରି ରାଜୀବ ଗାନ୍ଧୀ ଶୁଣିଲେ ନାହିଁ । ଶେଷରେ ପରବର୍ତ୍ତୀ ପ୍ରଧାନମନ୍ତ୍ରୀ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ ଶୁଣିଲେ । ବୃହଦ୍ କ୍ଷେପଣାସ୍ତ୍ର ଘାଟି ପ୍ରକଳ୍ପଟି ଶୀତଳ ଭଣ୍ଡାରକୁ ଫିଙ୍ଗିଦିଆଗଲା । ଜନଆନ୍ଦୋଳନର ବିଜୟହେଲା । ଆଉ ଉତ୍ତର ବାଲେଶ୍ୱରରେ କ୍ଷେପଣାସ୍ତ୍ର ଘାଟି ପ୍ରତିଷ୍ଠା ନୋହିଲା ।

## ଜାନକୀ ପଟ୍ଟନାୟକଙ୍କ ମାନହାନି ମୋକଦ୍ଦମା ଓ ଆଚରଣ

୧୯୮୬ ମସିହାରେ କ୍ଷେପଣାସ୍ତ୍ର ବିରୋଧୀ ଆନ୍ଦୋଳନ ଯେପରି ଆମ ରାଜ୍ୟକୁ ଦୋହଲାଇ-ଦେଇଥିଲା, ସେହିପରି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଅସ୍ୱାଭାବିକ ଚାରିତ୍ରିକ ଆଚରଣ ସମ୍ବନ୍ଧୀୟ କେତେକ ଲେଖା ବହୁ ପରିଚିତ 'ଇଲଷ୍ଟ୍ରେଟେଡ୍ ଉଇକ୍ଲି ଅଫ୍ ଇଣ୍ଡିଆ' ଇଂରାଜୀ ସାପ୍ତାହିକ ପତ୍ରିକାରେ ୧୯୮୬ ମେ ମାସ ୧୮ ତାରିଖ ଏବଂ ଅଗଷ୍ଟ ୩ ତାରିଖରେ ପ୍ରକାଶିତ ହୋଇ ସାରା ରାଜ୍ୟରେ ଚହଳ ପକାଇଦେଇଥିଲା । ଏହି ଘଟଣାଗୁଡ଼ିକ ସାରା ଦେଶରେ ପତ୍ର-ପତ୍ରିକାରେ ଏବଂ ଲୋକମୁଖରେ ଏଭଳି ବ୍ୟାପକ ଭାବରେ ପ୍ରଚାରିତ ହୋଇଥିଲା ଯେ, ମୁଖ୍ୟମନ୍ତ୍ରୀ, କଂଗ୍ରେସ ଦଳ ସମେତ ଆମ ରାଜ୍ୟର ମଧ ଅଭୂତପୂର୍ବ ଭାବେ ମର୍ଯ୍ୟାଦାହାନି ଘଟିଥିଲା । ପତ୍ରିକାରେ ଯେଉଁ ସଂଖ୍ୟାରେ ଏହିସବୁ ଘଟଣା ପ୍ରକାଶପାଇଥିଲା, ସେଗୁଡ଼ିକୁ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସରକାର ପୋଲିସ୍ ଲଗାଇ ବିକ୍ରୟ ସ୍ଥାନରୁ ଛଡ଼ାଇ ନେଇ ପୋଡ଼ିପକାଇଥିଲେ । ଏହା ପଢ଼ିବାପାଇଁ ଲୋକଙ୍କ ମଧରେ ଏଭଳି ଆଗ୍ରହ ପ୍ରକାଶ ପାଇଥିଲା ଯେ, ପ୍ରକାଶିତ ସଂପୃକ୍ତ ସଂଖ୍ୟାଗୁଡ଼ିକୁ ଜେରକ୍ସ କରାଯାଇଥିଲା ଏବଂ ତାହା ଅଧିକ ମୂଲ୍ୟରେ ଲୋକମାନେ କିଣିବାକୁ ଲାଗିଲେ । ସେ ସମୟରେ ଓଡ଼ିଶାରେ ଘରେ ଘରେ ଏହି ବିଷୟଟି ଘନ ଘନ ଚର୍ଚ୍ଚିତ ଓ ନିନ୍ଦିତ ହେଉଥିଲା । ଲୋକେ ଏହି କୁତ୍ସିତ କଥା ଜାଣି ଜାନକୀ ପଟ୍ଟନାୟକଙ୍କ ଆଚରଣକୁ ଛି'ଛାକର କରିଥିଲେ ।

ଏହି ପରିପ୍ରେକ୍ଷୀରେ ୧୯୮୬ ମସିହା ସେପ୍ଟେମ୍ବର ମାସରେ ଓଡ଼ିଶା ବିଧାନସଭାରେ ଗୋଟିଏ ଅଧିବେଶନ ବସିବାର ଥାଏ । ଆଶଙ୍କା କରାଯାଇଥିଲା ଯେ ମୁଖ୍ୟମନ୍ତ୍ରୀଙ୍କ ଅସ୍ୱାଭାବିକ ଚାରିତ୍ରିକ ଆଚରଣ ଏହିଭଳି ବ୍ୟାପକ ଭାବରେ ବିଧାନସଭାରେ ଆଲୋଚିତ ହେବ ଯେ ତାହାର ମନ୍ଦ ପ୍ରଭାବ ଆମ ସମାଜ ଓ ପିଲାଛୁଆଙ୍କ ଉପରେ ପଡ଼ିବ । ଏହିସବୁ କଥା ବିଚାରକୁ ନେଇ ରାଜ୍ୟ ବିଧାନସଭାରେ ତତ୍କାଳୀନ ବିରୋଧୀ ଦଳର ନେତା ଶ୍ରୀ ବିଜୁ ପଟ୍ଟନାୟକ ୨. ୯. ୧୯୮୬ତାରିଖରେ ବାଚସ୍ପତି ଶ୍ରୀ ପ୍ରସନ୍ନ କୁମାର ଦାସଙ୍କୁ ଗୋଟିଏ ଚିଠି ଲେଖି ଜାନକୀବାବୁ ମୁଖ୍ୟମନ୍ତ୍ରୀ ଥିବାଯାଏ ବିଧାନସଭା ବିବରଣୀ ବନ୍ଦ ହେଉ ବୋଲି ଅନୁରୋଧ କରିଥିଲେ । ସେଥିରେ ଲେଖାଥିଲା, ''ପ୍ରତ୍ୟେକ ନାଗରିକର ସମ୍ମାନ ଓ ମର୍ଯ୍ୟାଦାକୁ ବିଧାନସଭାର ପବିତ୍ର ଗୃହ ସୁରକ୍ଷାଦେଇଥାଏ । ଆଜି ଆମେ ଏପରି ଏକ ଲଜ୍ଜାକର ପରିସ୍ଥିତିର ସମ୍ମୁଖୀନ ହୋଇଛୁ, ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନୈତିକ ଅଧୋଗତି ଯୋଗୁଁ । ରାଜ୍ୟର ଅଗଣିତ ମହିଳା, ପୁରୁଷ, ଯୁବକ ଓ ଯୁବତୀଙ୍କ ମନରେ ଗଭୀର ସଂଦେହ ସୃଷ୍ଟି ହୋଇଛି । ସେମାନଙ୍କ ମୁଣ୍ଡ ଲଜ୍ଜାରେ ତଳକୁ ନଇଁଯାଇଛି । ଏହି ଅଧାୟର ପୂର୍ଣ୍ଣଚ୍ଛେଦ ନହେବାଯାଏ ବିଧାନସଭା ଗୃହର ବିବରଣୀ ବନ୍ଦରଖିବାକୁ ମୁଁ ଦାବି କରୁଛି ।''

ଏ ଅଶୋଭନୀୟ ଓ ଅପ୍ରୀତିକର ଘଟଣା ସମ୍ବନ୍ଧରେ ଓଡ଼ିଶାର ତତ୍କାଳୀନ ଇନ୍ସପେକ୍ଟର ଜେନେରାଲ୍ ଅଫ୍ ପୁଲିସ୍ (ସି.ଆଇ.ଡି.) ଶ୍ରୀ ଏନ୍. କେ. ସିଂହ ତାଙ୍କଦ୍ୱାରା ପ୍ରକାଶିତ (The Plain Truth) ବହିରେ ଯାହା ଲେଖିଛନ୍ତି ତାହା ପ୍ରଣିଧାନର ବିଷୟ ଅଟେ । ସେଥିରୁ ଜଣାପଡ଼େ ଏହି ଜଘନ୍ୟ ଘଟଣା ସମ୍ବନ୍ଧୀୟ ବିବରଣୀ ସମଗ୍ର ଦେଶରେ କିପରି ବ୍ୟାପକ ଭାବରେ ପ୍ରଚାରିତ

ହୋଇଥିଲା ଏବଂ ସମ୍ପୃକ୍ତ ପତ୍ରିକା ଓ ତାହାର ପ୍ରତିନିଧିମାନଙ୍କୁ ଭୟଭୀତ କରିବାପାଇଁ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ପୁଲିସ ପକ୍ଷରୁ କିପରି ଅଯଥାରେ ନାନାପ୍ରକାର କାର୍ଯ୍ୟାନୁଷ୍ଠାନ କରିଥିଲେ, ସେହି ବହିର ୧୬୦ ଓ ୧୬୧ ପୃଷ୍ଠାରେ ଏ ସମ୍ବନ୍ଧରେ ଲେଖା ଅଛି । ସେ ଲେଖାର ଆବଶ୍ୟକ ଅଂଶ ଏଠାରେ ଦିଆଯାଇଛି :

I got into another problem while handling what came to be known as the "Illustrated Weekly Cases". The Illustrated Weekly of India, in its issue of 3-9 August, 1986, had carried a four-page write-up under the caption "Why is J.B.Patnaik being allowed to gag the Press". In this write-up, there were references to J.B.Patnaik's private affairs and his alleged "sexual escapades". There was also a half-nude photo of a woman, said to be one Swapan Mukherjee, which revealed more than what it concealed. On August 6, 1986 early morning, in a well-planned operation, the Orissa Railway Police at Bhubaneswar as well as Cuttack and Sambalpur Police seized about 1,000 copies of the said issue of The Weekly and registered altogether five cases under Section 292 of the Indian Penal Code against the Special Correspondent, S.N.M. Abdi, Editor and Publisher, Pritish Nandi and Proprietors Bennett Coleman & Co. Ltd.

Much before I joined, the C.I.D. had taken over the investigation of these cases in August, 1986 itself. They had hit the headlines in the local and national newspapers, all over the country.

ଶ୍ରୀ ଏନ୍.କେ. ସିଂହ ଓଡ଼ିଶା କ୍ୟାଡର୍‌ର ଜଣେ ଆଇ.ପି.ଏସ୍. ଅଫିସର । ଡେପୁଟେସନ୍‌ରେ ଯାଇ ସେ କେନ୍ଦ୍ର ସରକାରଙ୍କ ସି.ବି.ଆଇ. ଜଏଣ୍ଟ ଡାଇରେକ୍ଟର ଥିଲେ । ତା'ପରେ Director, Bureau of Police Research and Developmentକୁ ଉନ୍ନିତ ହୋଇଥିଲେ । C.B.I.ରେ ଥିବାବେଳେ ଶ୍ରୀ ସିଂହଙ୍କୁ ସଂଜୟ ଗାନ୍ଧୀଙ୍କ ବିରୁଦ୍ଧରେ ହୋଇଥିବା କିସା-କୁର୍ସିକା କେସ୍‌ର ତଦନ୍ତ ଦାୟିତ୍ୱ ଦିଆଯାଇଥିଲା । ଜରୁରୀକାଳୀନ ପରିସ୍ଥିତି ସମୟରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଯେଉଁ ସବୁ ସମ୍ବିଧାନ ବିରୋଧୀ କାର୍ଯ୍ୟ କରିଥିଲେ, ସେଥିପାଇଁ ତାଙ୍କ ବିରୁଦ୍ଧରେ ଯେଉଁ ମୋକଦ୍ଦମା ହୋଇଥିଲା, ତାହାର ତଦନ୍ତ ଦାୟିତ୍ୱରେ ଏନ୍.କେ.ସିଂହ ଥିଲେ ଏବଂ ସେ ଶ୍ରୀମତୀ ଗାନ୍ଧୀଙ୍କୁ ଗିରଫକରିଥିଲେ । ଶ୍ରୀ ଚନ୍ଦ୍ରଶେଖର ପ୍ରଧାନମନ୍ତ୍ରୀ ଥିବାବେଳେ ତାଙ୍କ ବିରୋଧରେ ବିରୋଧୀ ଦଳ ନେତାମାନଙ୍କ ଟେଲିଫୋନ୍ ଟେପିଙ୍ଗ୍ ଅଭିଯୋଗ ହୋଇଥିଲା । ତାହାର ତଦନ୍ତ ଦାୟିତ୍ୱ ମଧ ଶ୍ରୀ ସିଂହଙ୍କୁ ଦିଆଯାଇଥିଲା । ତେଣୁ ଜାନକୀବାବୁଙ୍କ ବିରୁଦ୍ଧରେ କହିଥିବା ଅଭିଯୋଗ ସମ୍ବନ୍ଧରେ ଏଭଳି ଜଣେ ଦକ୍ଷ ଅଫିସରଙ୍କର ମନ୍ତବ୍ୟ କେତେ ଗୁରୁତ୍ୱପୂର୍ଣ୍ଣ ତାହା ଅନୁମାନ କରାଯାଇପାରେ ।

ରାଜ୍ୟ ଭିତରେ ଓ ବାହାରେ ଏବଂ ବିଶେଷକରି ଦିଲ୍ଲୀରେ ଜାନକୀବାବୁଙ୍କ ପାଇଁ ଗୋଟିଏ ଅଶୋଭନୀୟ ପରିସ୍ଥିତି ସୃଷ୍ଟିହୋଇଥିଲା । ସେ ମୁଣ୍ଡଟେକି ବାଟ ଚାଲିପାରୁ ନଥିଲେ । ରାଜ୍ୟ ମଧରେ ସଭାସମିତିରେ ମୁହଁ ଦେଖାଇବାକୁ କୁଣ୍ଠିତ ହେଉଥିଲେ । ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀଙ୍କ କାନରେ ସବୁ କଥା ପଡ଼ିଲା ପରେ ସେ ବିବ୍ରତ ହୋଇପଡ଼ିଥିଲେ । ଜାନକୀବାବୁଙ୍କୁ ଡକାଇ କିଛି କହିବାପାଇଁ ରାଜୀବ ଗାନ୍ଧୀ ଚାହୁଁଥିଲେ । ମାତ୍ର ଏକଥା କହିବାପାଇଁ ତାଙ୍କୁ ସଙ୍କୋଚ ଲାଗୁଥିଲା ବୋଲି ଖବର କାଗଜରେ ପ୍ରକାଶପାଉଥିଲା । ତାଙ୍କର ମନୋଭାବ ଜାନକୀବାବୁଙ୍କୁ ଜଣାଇଦେବା ପାଇଁ ସେ କୁଆଡ଼େ ମାଖନ୍ ଲାଲ୍ ଫତେଦାରଙ୍କୁ ଦାୟିତ୍ୱ ଦେଇଥିଲେ । ଇଲଷ୍ଟ୍ରେଟେଡ୍ ଉଇକ୍ଲି ପତ୍ରିକା ନାମରେ ମାନହାନୀ ମୋକଦ୍ଦମା ନକଲେ ମୁଖ୍ୟମନ୍ତ୍ରୀ ହୋଇ ରହିବା ଜାନକୀବାବୁଙ୍କ ପକ୍ଷରେ ସମ୍ଭବ

ହେବନାହିଁ ବୋଲି ଶ୍ରୀ ଫତେହ୍‌ର ପରାମର୍ଶ ଦେଇଥିଲେ, କାରଣ ଏହି ବ୍ୟାପାର ପାର୍ଲାମେଣ୍ଟରେ ଉଠିଲେ ତାଙ୍କୁ ସଭାଗୃହରେ ସୁରକ୍ଷା ଦେବା ସମ୍ଭବ ହେବନାହିଁ ବୋଲି ଆଇନ୍‌ମନ୍ତ୍ରୀ ଓ ଅଭିଜ୍ଞ ପାର୍ଲାମେଣ୍ଟାରିଆନ୍‌ମାନେ ମତ ଦେଇଥିଲେ । ଉଲ୍ଲେଖଯୋଗ୍ୟ ଯେ, ସେହି ସମୟରେ ଜାନକୀ-ବାବୁଙ୍କ ଧର୍ମପତ୍ନୀ ମଧ ଲୋକସଭାର ସଦସ୍ୟା ଥିଲେ ।

ଇଚ୍ଛା ନଥିଲେ ମଧ ଇଲଷ୍ଟ୍ରେଟେଡ୍ ଉଇକ୍ଲି ଅଫ୍ ଇଣ୍ଡିଆ ପତ୍ରିକା ବିରୁଦ୍ଧରେ ମାନହାନି ମୋକଦ୍ଦମା କରିବାପାଇଁ ଜାନକୀବାବୁ ବାଧହୋଇଥିଲେ । ଅଦାଲତରେ ବେଶି ବେଢ଼ିଦ୍ ହେବାର ସମ୍ଭାବନାକୁ ସେ ଭାରି ଭୟକରୁଥିଲେ । ଶେଷରେ ରାଜ୍ୟ ସରକାରଙ୍କର ତତ୍କାଳୀନ ଆଡ୍‌ଭୋକେଟ୍ ଜେନେରାଲ୍ ଶ୍ରୀ ଗଙ୍ଗାଧର ରଥ କୋଟିଏ ଟଙ୍କାର କ୍ଷତିପୂରଣ ଦାବିକରି ଗୋଟିଏ ମାନହାନି ମୋକଦ୍ଦମା ଇଲଷ୍ଟ୍ରେଟେଡ୍ ଉଇକ୍ଲିର ପରିଚାଳକ ଓ ସମ୍ପାଦକଙ୍କ ବିରୁଦ୍ଧରେ ଭୁବନେଶ୍ୱର ସବ୍‌ଜଜ୍ ଅଦାଲତରେ ଦାୟର କରିଥିଲେ । ଏହା ପରେ ସେହି ସବ୍‌ଜଜ୍‌ଙ୍କ କୋର୍ଟରେ ଭାଗୀରଥି ବେହେରା ଓ ବିଶ୍ୱନାଥ ନାମକ ଦୁଇଜଣ ବାଳକ ଶ୍ରୀ ଜାନକୀବାବୁଙ୍କ ବିରୁଦ୍ଧରେ ଅସ୍ୱାଭାବିକ ଚାରିତ୍ରିକ ଆଚରଣ ସମ୍ବନ୍ଧରେ ସତ୍ୟପାଠ ଦାଖଲକରିଥିଲେ । ଏହି ସତ୍ୟପାଠଗୁଡ଼ିକରେ ଯାହାସବୁ ଲେଖା ଥିଲା, ତାହା କହିହେବନାହିଁ କି ଲେଖିହେବନାହିଁ । ଏଗୁଡ଼ିକ ଅଦାଲତରେ ଦାଖଲ ହେବାବେଳେ ସେଠାରେ ଚାଞ୍ଚଲ୍ୟ ସୃଷ୍ଟିହୋଇଥିଲା । ଆଡ୍‌ଭୋକେଟ୍ ଜେନେରାଲ୍ ସରକାରଙ୍କ ଓକିଲ ହୋଇଥିବାରୁ ମୁଖ୍ୟମନ୍ତ୍ରୀଙ୍କ ବ୍ୟକ୍ତିଗତ ଚାରିତ୍ରିକ ଅଭିଯୋଗ ସମ୍ପର୍କରେ ମୋକଦ୍ଦମାର ଭାର ନେବା ଏକାନ୍ତ ଅସଙ୍ଗତ ବୋଲି ଦୃଢ଼ ମତ ପ୍ରକାଶପାଇଥିଲା । ଏ ଅବସ୍ଥାରେ ଶ୍ରୀ ଗଙ୍ଗାଧର ରଥଙ୍କର ଦୁଇଟି ବାଟ ଥିଲା– ଆଡ୍‌ଭୋକେଟ୍ ଜେନେରାଲ୍ ପଦରୁ ଇସ୍ତଫା ଦେଇ ଜାନକୀବାବୁଙ୍କପାଇଁ ଲଢ଼ିବା କିମ୍ବା ମଫସଲ ଜାନକୀବାବୁଙ୍କ ପକ୍ଷରୁ ଓକିଲାତି ନକରିବା । ଶେଷରେ ଜାନକୀବାବୁଙ୍କ ମୋକଦ୍ଦମା ତୁଲାଇବା ଦାୟିତ୍ୱରୁ ଓହରିଯିବାରୁ ଜାନକୀବାବୁଙ୍କୁ କେତେକ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା । କଟକର କେତେକ ବରିଷ୍ଠ ଓକିଲଙ୍କୁ ସେ ଦାୟିତ୍ୱ ଦେବାପାଇଁ ଚାହୁଁଥିଲେ, ମାତ୍ର ସେମାନେ ଦାୟିତ୍ୱ ନେବାକୁ ରାଜି ହୋଇନଥିଲେ । ବାରିଷ୍ଟର ବୀରେନ୍ଦ୍ର ମୋହନ ପଟ୍ଟନାୟକଙ୍କୁ ମୋକଦ୍ଦମା ତୁଲାଇବାକୁ ଦାୟିତ୍ୱ ଦେଲେ ଭଲହେବ ବୋଲି ତାଙ୍କୁ କେତେକ ପରାମର୍ଶ ଦେଇଥିଲେ । ବୀରେନ୍‌ବାବୁ ବିଜୁ ପଟ୍ଟନାୟକଙ୍କଦ୍ୱାରା ପ୍ରଭାବିତ ହୋଇପାରନ୍ତି ବୋଲି ଆଶଙ୍କା ତାଙ୍କର ହୋଇଥିଲା । ବୀରେନ୍‌ବାବୁ ମୋର ବନ୍ଧୁ ଥିଲେ । ତେଣୁ ମୋଦ୍ୱାରା ବୀରେନ୍‌ବାବୁଙ୍କୁ କୁହାଗଲେ ଭଲହେବ ବୋଲି ମୋତେ ଦେଖାକରିବାପାଇଁ ସେ ବଡ଼ ଆଗ୍ରହୀ ହୋଇପଡ଼ିଲେ । ରାଜ୍ୟ ସରକାରଙ୍କ ସୂଚନା ଓ ଲୋକସମ୍ପର୍କ ବିଭାଗର ଜଣେ ଉଚ୍ଚ ଅଫିସର ଶ୍ରୀ ମଦନ ମୋହନ ମିଶ୍ରଙ୍କର ମୋର ଓ ଜାନକୀବାବୁଙ୍କ ଘର ସହିତ ଭଲ ସମ୍ପର୍କଥିଲା । ସେ ଦିନେ ଆସି ଜାନକୀବାବୁ ମୋ ସହିତ କଥାବାର୍ତ୍ତା କରିବାକୁ ଚାହୁଁଛନ୍ତି ବୋଲି କହିଥିଲେ । ଦିନେ ରାତିରେ ସେହି ଅଫିସରଙ୍କ ସରକାରୀ ବାସଭବନରେ ଆମର ଭେଟ ହେବ ବୋଲି ସ୍ଥିରହୋଇଥିଲା । ସେଦିନ ତାଙ୍କ ଘରର ବାହାରପଟ ଆଲୁଅ ଲିଭାଇଦିଆଯାଇଥିଲା । ମଦନବାବୁ ସେଦିନ ତାଙ୍କ ଘରେ ଆମ ଦୁଇଜଣଙ୍କର ରାତ୍ରି-ଭୋଜନର ବ୍ୟବସ୍ଥା କରିଥିଲେ ।

ମୁଁ ସେଦିନ ଜାନକୀବାବୁଙ୍କୁ ବଡ଼ ବିମର୍ଷ ଓ ବିବ୍ରତ ଥିବାର ଲକ୍ଷ୍ୟକରିଥିଲି । ଗଙ୍ଗାଧରବାବୁ ମୋକଦ୍ଦମା ଦାୟିତ୍ୱରୁ ଓହରିଯିବାରୁ ସେ ବଡ଼ ଅସୁବିଧାରେ ପଡ଼ିଛନ୍ତି ବୋଲି କହିଥିଲେ । ଏ ଅବସ୍ଥାରେ ମୋକଦ୍ଦମା ଚଳେଇବେ କି ନାହିଁ ସେଥିପାଇଁ ସେ ଖୁବ୍ ଚିନ୍ତିତ ଥିଲେ । ମାନହାନି ମୋକଦ୍ଦମା ଛଡ଼ା ତାଙ୍କ ପକ୍ଷରେ ଅନ୍ୟ କିଛି ବାଟନାହିଁ ବୋଲି ମୁଁ ତାଙ୍କୁ ପରାମର୍ଶ ଦେଇଥିଲି । ଏ ପ୍ରକାର ମାନହାନି ମୋକଦ୍ଦମାର ଆହୁରି ବିଶେଷ ମାନହାନି ହେବ ବୋଲି ଓଡ଼ିଶାର ଜଣେ ପୂର୍ବତନ ମୁଖ୍ୟ ବିଚାରପତି ତାଙ୍କୁ ପରାମର୍ଶ ଦେବା କଥା ମୋତେ କହିଥିଲେ । ଅଦାଲତରେ ନାନା କୁତ୍ସିତ

ପ୍ରଶ୍ନ ପଚାରି ତାଙ୍କୁ ଏକାବେଳକେ ଲଙ୍ଗଳା କରିଦେବାର ଆଶଙ୍କା ଅଛି ବୋଲି ବିଚାରପତି ତାଙ୍କୁ କୁଆଡ଼େ ସତର୍କ କରାଇଦେଇଥିଲେ । ସେ ଯାହାହେଉ ମାନହାନି ମୋକଦ୍ଦମା ଚଳାଇବା ଉଚିତ ବୋଲି ମୁଁ କହିଥିଲି । ବାରିଷ୍ଟର ବୀରେନ୍ଦ୍ର ମୋହନ ପଟ୍ଟନାୟକ ମୋକଦ୍ଦମାର ଦାୟିତ୍ୱ ନେଇପାରିଲେ ସେ ଆଶ୍ୱସ୍ତି ଲାଭ କରନ୍ତେ ବୋଲି ମୋତେ କହିଥିଲେ, ମାତ୍ର ସେ ଏଥିପାଇଁ ରାଜି ହେବେ କି ନାହିଁ ତାଙ୍କର ସଂଦେହ ଥିଲା । ବୀରେନ୍‌ବାବୁ ଦାୟିତ୍ୱ ନେଲେ ତାଙ୍କୁ କୁଆଡ଼େ ବିଜୁ ପଟ୍ଟନାୟକ ପ୍ରଭାବିତ କରିପାରନ୍ତି ବୋଲି ସେ ଆଶଙ୍କା ପ୍ରକାଶ କରିଥିଲେ । ତେଣୁ ଏହି ବିଷୟରେ ଜାନକୀବାବୁ ମୋ ଉପରେ ନିର୍ଭର କରିଥିଲେ । ମୋକଦ୍ଦମା ଦାୟିତ୍ୱ ନେବାପାଇଁ ବୀରେନ୍ ପଟ୍ଟନାୟକଙ୍କୁ କହିବାପାଇଁ ସେ ମୋତେ ବିନୀତ ଅନୁରୋଧ କରିଥିଲେ । ମୁଁ ଆଗେ ବୀରେନ୍ ପଟ୍ଟନାୟକଙ୍କ ସହିତ କଥାବାର୍ତ୍ତା କରିସାରିବା ପରେ ଜାନକୀବାବୁ ତାଙ୍କୁ ଭେଟି କଥାବାର୍ତ୍ତା କରି ମୋକଦ୍ଦମାର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ କରିବେ ବୋଲି ମୋତେ କହିଥିଲେ । ରାତ୍ରିଭୋଜନ ପରେ ଆମେ ଉଭୟ ସେଠାରୁ ଫେରିଲୁ ।

ତା' ପରଦିନ ମୁଁ ବାରିଷ୍ଟର ବୀରେନ୍‌ବାବୁଙ୍କ ଘରକୁ ଯାଇ ଜାନକୀବାବୁଙ୍କ ସହିତ ମୋର ଯେଉଁ କଥାବାର୍ତ୍ତା ହୋଇଥିଲା ସେ କଥା ତାଙ୍କୁ କହିଲି । ମୋକଦ୍ଦମାର ଦାୟିତ୍ୱ ନେବାପାଇଁ ସେ ବିଶେଷ ଆଗ୍ରହୀ ନଥିଲା ଭଳି ତାଙ୍କ କଥାରୁ ଜାଣିଲି । ସେ ମୋକଦ୍ଦମାର ଦାୟିତ୍ୱ ନେଲେ ବିଜୁ ପଟ୍ଟନାୟକ ତାଙ୍କ ପ୍ରତି ନିଶ୍ଚିତ ଭାବରେ ଖରାପ ମନୋଭାବ ପୋଷଣ କରିବେ ବୋଲି ମୁଁ ତାଙ୍କୁ କହିଥିଲି । ଓକିଲାତି ବ୍ୟବସାୟରେ ଯେକୌଣସି ମହକିଲ ଆଶ୍ରିତ ହେଲେ ତାକୁ ସାହାଯ୍ୟ କରିବା ଓକିଲଙ୍କର ନୀତିଗତ କର୍ତ୍ତବ୍ୟ । ତେଣୁ ଅପରାଧୀ ମହକିଲଙ୍କର ଦାୟିତ୍ୱ ନେବାକୁ ମନାକରିଦେବା ତାଙ୍କ ପକ୍ଷରେ ସମୀଚୀନ ହେବନାହିଁ ବୋଲି ମୁଁ ତାଙ୍କୁ କହିଥିଲି ଏବଂ ଆବଶ୍ୟକ ପଡ଼ିଲେ ବିଜୁ ବାବୁଙ୍କୁ ବୁଝାଇବି ବୋଲି ମୁଁ କହିଥିଲି । ଏହାପରେ ସେ ରାଜିହୋଇଥିଲେ । ତା'ପରେ ଜାନକୀବାବୁ ବୀରେନ୍ ପଟ୍ଟନାୟକଙ୍କ ଘରକୁ ଯାଇ ତାଙ୍କୁ ସବୁକଥା କହି ମୋକଦ୍ଦମା ଚଳାଇବା ଦାୟିତ୍ୱ ଦେଇଥିଲେ ।

ବୀରେନ୍‌ବାବୁ ଜାନକୀବାବୁଙ୍କ ମାନହାନୀ ମୋକଦ୍ଦମାର ଦାୟିତ୍ୱ ନେବା କଥା ଯେତେବେଳେ ବିଜୁବାବୁ ଜାଣିଲେ ସେ ଖୁସି ହୋଇନଥିଲେ । କହିବାକୁ ଲାଗିଲେ ଏଇଟା ହେଉଛି ନୀଳମଣିର ଜାନକୀପ୍ରୀତି । ଯାହାଙ୍କ ପାଖରେ ସେ ଏକଥା କହିଲେ ସେମାନେ ଆସି ମୋତେ ଜଣାଇଲେ । ବିଜୁବାବୁଙ୍କୁ ଜଣାଇଦେବାକୁ ମୁଁ ସେମାନଙ୍କୁ କହିଥିଲି ଯେ ବୀରେନ୍ ବାବୁ ଅତୀତରେ ଆମମାନଙ୍କପାଇଁ ବହୁ ଗୁରୁତ୍ୱପୂର୍ଣ୍ଣ ମୋକଦ୍ଦମାରେ ଲଢ଼ିଥିଲେ । କିନ୍ତୁ ତତ୍ପରେ ସବୁକଥାରେ ବିଜୁବାବୁ ରଣଜିତ୍ ମହାନ୍ତିଙ୍କର ପରାମର୍ଶ ନେଉଥିଲେ, ତେଣୁ ଏଥିରେ ବ୍ୟକ୍ତିଗତ ସମ୍ପର୍କକୁ ଜଡ଼ିତ କରି ଭୁଲ ବୁଝାମଣା ନହେବା ଭଲ ।

ତା' ଛଡ଼ା ଏ କେଶ୍ ସମ୍ବନ୍ଧରେ ଇଲଷ୍ଟ୍ରେଟେଡ୍ ଉଇକ୍ଲି ଅଫ୍ ଇଣ୍ଡିଆ ପକ୍ଷରୁ କେହି ବୀରେନ୍ ବାବୁଙ୍କ ପରାମର୍ଶ ଲୋଡ଼ିନାହାନ୍ତି । ଏ ଅବସ୍ଥାରେ ବୀରେନ୍‌ବାବୁଙ୍କ ଦରଦ କାହିଁକି ରହିବ ? ସେ ଯାହାହେଉ ବିଜୁବାବୁଙ୍କ ପାଖ ଲୋକମାନେ ମୋତେ ସଂଦେହ ଚକ୍ଷୁରେ ଦେଖିଲା ପରି ମନେହେଲା । ମୋକଦ୍ଦମା ଚଳାଇବାର ଦାୟିତ୍ୱ ବୀରେନ୍‌ବାବୁଙ୍କୁ ଦେଇ ଜାନକୀବାବୁ ଟିକିଏ ଆଶ୍ୱସ୍ତି ଲାଭକରିଥିଲେ । ବାରିଷ୍ଟର ବୀରେନ୍ ପଟ୍ଟନାୟକଙ୍କର ବିଶେଷତ୍ୱ ହେଉଛି ଯେ, ଗୋଟିଏ ମୋକଦ୍ଦମା ହାତକୁ ନେଲେ ସେ ନିଜକୁ ଏକାବେଳକେ ଜଡ଼ିତକରିଦେଉଥିଲେ । ଇତିମଧ୍ୟରେ ତଳିଆ କୋର୍ଟକୁ ମୁଖ୍ୟମନ୍ତ୍ରୀ ପ୍ରଭାବିତ କରିପାରନ୍ତି ବୋଲି ଆଶଙ୍କା ପ୍ରକାଶକରି ମୋକଦ୍ଦମାଟି ଜଣେ ହାଇକୋର୍ଟ ବିଚାରପତିଙ୍କଦ୍ୱାରା ବିଚାର କରାଯାଉ ବୋଲି Illustrated Weekly of India ପକ୍ଷରୁ ହାଇକୋର୍ଟରେ ଆବେଦନ କରାଯାଇଥିଲା । ହାଇକୋର୍ଟ ଏଥିରେ ସମ୍ମତି ଦେଇ ହାଇକୋର୍ଟର ନ୍ୟାୟମୂର୍ତ୍ତି ଶ୍ରୀ କେ.ପି. ମହାପାତ୍ରଙ୍କଦ୍ୱାରା ମୋକଦ୍ଦମାଟି ବିଚାର ହେବ ବୋଲି ନିର୍ଦ୍ଦେଶ ଦେଇଥିଲେ ଏବଂ ତାହାହିଁ ହୋଇଥିଲା । ମୋକଦ୍ଦମାଟିର ପରିଚାଳନାପାଇଁ ବୀରେନ୍‌ବାବୁ ଯତ୍‌ପରୋନାସ୍ତି ପରିଶ୍ରମ କରୁଥିଲେ ।

ମଝିରେ ମଝିରେ ମୋ ସହିତ ତାଙ୍କର ଦେଖାହେଉଥାଏ । ମୋତେ କହୁଥିଲେ ଯେ, କେସ୍‌ରେ ବହୁତ ଅସୁବିଧା ଅଛି ଏବଂ ତାକୁ ମୁକାବିଲା କରିବାକୁ ହେଲେ ଅସାଧାରଣ ପନ୍ଥା ଅବଲମ୍ବନ କରିବାକୁ ପଡ଼ିବ । ଅସାଧାରଣ ଚାରିତ୍ରିକ ଆଚରଣ ସମ୍ବନ୍ଧରେ ମାଜିଷ୍ଟ୍ରେଟ୍‌ଙ୍କ ପାଖରେ ସତ୍ୟପାଠ ସହ ଯେଉଁ କେତେଗୋଟି ଅଭିଯୋଗ ଜାନକୀବାବୁଙ୍କ ସମ୍ବନ୍ଧରେ କରାଯାଇଥିଲା, ତାହା ଅତ୍ୟନ୍ତ ବିପଦପୂର୍ଣ୍ଣ ବୋଲି ସେ ମୋତେ କହିଲେ । ସେମାନେ ଯଦି ଅଦାଲତକୁ ଆସିଯାଆନ୍ତି, ତା'ହେଲେ ମୋକଦ୍ଦମା ଏକ ଭିନ୍ନ ମୋଡ଼ ନେବ ଏବଂ ତାହାଦ୍ୱାରା ଅତ୍ୟନ୍ତ ଅସୁବିଧା ସୃଷ୍ଟିକରିଦେବ ବୋଲି ବୀରେନ୍‌ବାବୁ ଆଶଙ୍କା ପ୍ରକାଶ କରିଥିଲେ । ତେଣୁ ମାଜିଷ୍ଟ୍ରେଟ୍‌ଙ୍କ ଆଗରେ ସତ୍ୟପାଠ କରିଥିବା ବ୍ୟକ୍ତିମାନେ ଯେପରି ଅଦାଲତକୁ ନଆସନ୍ତି ତାହାର ବ୍ୟବସ୍ଥା ହେବା ଆବଶ୍ୟକ ବୋଲି ସେ କହୁଥିଲେ ।

କେସ୍‌ପାଇଁ ପ୍ରସ୍ତୁତି ଆରମ୍ଭ ହୋଇଗଲା । ଏ ଦିଗରେ ସାହାଯ୍ୟ କରିବାପାଇଁ ରାଜ୍ୟର ପ୍ରାୟ ସବୁ ବଡ଼ ବଡ଼ ପୁଲିସ୍ ଅଫିସର ଅଧିକାଂଶ ସମୟରେ ବୀରେନ୍‌ବାବୁଙ୍କ ଘରେ ରୁଣ୍ଡହେଉଥିବାର ଦେଖାଯାଉଥିଲା । ଯୋଜନା କରାଗଲା ଯେ, ଏଭଳି ଅବସ୍ଥା ସୃଷ୍ଟିକରାଯିବ ଯାହା ଫଳରେ ଯେଉଁମାନେ Illustrated Weekly ପକ୍ଷରୁ ସାକ୍ଷୀ ଦେବାର କଥା ସେମାନେ ପଛଘୁଞ୍ଚା ଦେବେ । Illustrated Weeklyର କଲିକତାରେ ଥିବା ସ୍ୱତନ୍ତ୍ର ପ୍ରତିନିଧି S.N.M. Abdi ଏହି ମୋକଦ୍ଦମା ପରିଚାଳନା ଦାୟିତ୍ୱରେ ଥିଲେ । ସେ ଅନେକ ସମୟରେ ଭୁବନେଶ୍ୱର ଆସି କେସ୍ ସମ୍ବନ୍ଧରେ ସବୁକଥା ବୁଝୁଥିଲେ । ସେ ଯେପରି ଭୁବନେଶ୍ୱର ନଆସନ୍ତି ସେଥିପାଇଁ ତାଙ୍କ ମନରେ ଭୟ ସୃଷ୍ଟି କରିବାର ଦାୟିତ୍ୱ କେତେକ ବଡ଼ ବଡ଼ ପୁଲିସ ଅଫିସର ନେଇଥିଲେ । ପୁଲିସ ପକ୍ଷରୁ ଲୋକ ଲଗାଇଦିଆଗଲା ଯେଉଁମାନେ ଯାଇ S.N.M. Abdiଙ୍କୁ କହିଲେ ଯେ ସେ ଓଡ଼ିଶା ଆସିଲାବେଳେ ଖୁବ୍ ସତର୍କତାର ସହିତ ଆସିବେ । ତାଙ୍କୁ ଭୟଭୀତ କରିବାପାଇଁ ତାଙ୍କ ମନରେ ଧାରଣା ଦିଆଗଲା ଯେ, ସେ କଟକ କିମ୍ବା ଭୁବନେଶ୍ୱର ଆସିଲେ ତାଙ୍କୁ କୌଣସି ଫାନ୍ଦରେ ପକାଇ ତାଙ୍କ ବିରୁଦ୍ଧରେ ମିଥ୍ୟା ଅଭିଯୋଗ କରାଇ ଗିରଫକରାଯିବ । ଶ୍ରୀ ଆବ୍‌ଦୀ ନିର୍ଭୟରେ ଆସି ତାଙ୍କ ଓକିଲମାନଙ୍କ ସହିତ ପରାମର୍ଶ କରିପାରିନଥିଲେ ।

୧୯୬୪ ମସିହାରେ ଛାତ୍ର ଆନ୍ଦୋଳନବେଳେ ଯେଉଁସବୁ ଦଙ୍ଗା ହଙ୍ଗାମା ଓ ପୋଡ଼ାଜଳା ହୋଇଥିଲା ସେଗୁଡ଼ିକର ବିଚାରବିଭାଗ ତଦନ୍ତପାଇଁ ଗୋଟିଏ କମିଶନ ବସିଥିଲା । ସରକାରଙ୍କ ପକ୍ଷରୁ ତଦନ୍ତରେ ସାହାଯ୍ୟ କରିବାପାଇଁ ବୀରେନ୍‌ବାବୁଙ୍କୁ ନିଯୁକ୍ତି ଦିଆଯାଇଥିଲା । ଏହି ସୁବିଧାରେ ବୀରେନ୍‌ବାବୁ ସାରା ଓଡ଼ିଶାରେ ବୁଲିଥିଲେ ଓ ରାଜ୍ୟର ବହୁ ପୁଲିସ୍ ଅଫିସରଙ୍କ ସଂସ୍ପର୍ଶରେ ଆସିଥିଲେ । ମୋ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଥିବାରୁ ସେତେବେଳେ ପୁଲିସ୍ ଅଫିସରମାନେ ତାଙ୍କୁ ଖୁବ୍ ଖାତିର କରୁଥିଲେ । ତା'ଛଡ଼ା ମୁଖ୍ୟମନ୍ତ୍ରୀଙ୍କପାଇଁ ମୋକଦ୍ଦମା ବୀରେନ୍‌ବାବୁ ଲଢୁଥିବାରୁ ତାଙ୍କୁ ସାହାଯ୍ୟ କରିବାପାଇଁ ପୁଲିସ ଅଫିସରମାନେ ଆପେ ଆପେ ଆସି ତାଙ୍କ ପାଖରେ ସାହାଯ୍ୟ କରିବାପାଇଁ ପହଞ୍ଚୁଥିଲେ । ସାକ୍ଷୀମାନଙ୍କୁ ଅକ୍ତିଆର କରିବାପାଇଁ ବଡ଼ ବଡ଼ ପୁଲିସ ଅଫିସରମାନେ ଉପରେପଡ଼ି Illustrated Weekly କାଗଜର ଲୋକମାନଙ୍କୁ ଭୟଭୀତ କରାଇଥିଲେ । ଏହି ପରିପ୍ରେକ୍ଷୀରେ Illustrated Weeklyର କର୍ତ୍ତୃପକ୍ଷ ବାଧହୋଇ ଜାନକୀବାବୁଙ୍କ ସହିତ ଆପୋଷ ନିଷ୍ପତ୍ତି କରିବାପାଇଁ ପ୍ରସ୍ତୁତ ହୋଇଥିଲେ । ଶେଷରେ ଜାନକୀବାବୁଙ୍କ ବିରୁଦ୍ଧରେ ଯେଉଁ ଅଭିଯୋଗ ପ୍ରକାଶପାଇଥିଲା ସେଥିପାଇଁ ଦୁଃଖ ପ୍ରକାଶକରି ମୋକଦ୍ଦମାରୁ ତ୍ରାହିପାଇଥିଲେ । ସେ ଦୁଃଖ ପ୍ରକାଶ ମଧ୍ୟ ସିଧାସଳଖ ନଥିଲା । ସେଥିରେ କୁହାଯାଇଥିଲା ଯେ, ପତ୍ରିକାରେ ଯାହା ଛପାଯାଉଥିଲା ଠିକ୍ ଅଛିକି ନାହିଁ ପରୀକ୍ଷା କରି ନଦେଖି ଛପାଇ ଦେଇଥିବାରୁ ସେମାନେ ଦୁଃଖିତ । ଏଥିରେ ସନ୍ତୁଷ୍ଟ ହୋଇ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ତାଙ୍କର ମାନହାନି ମୋକଦ୍ଦମାଟି ଅଦାଲତରୁ ପ୍ରତ୍ୟାହାର କରିନେଲେ ।

ମୋକଦ୍ଦମାଟି ପ୍ରତ୍ୟାହୃତ ହେଲାସିନା, ୧୪।୭।୧୯୮୬ ତାରିଖରେ ଇଲଷ୍ଟ୍ରେଟେଡ୍ ଉଇକ୍ଲି ପକ୍ଷରୁ ସବ୍‌ଜଜ୍ ମୁକୁନ୍ଦ ପ୍ରସାଦ ମିଶ୍ରଙ୍କ କୋର୍ଟରେ ବିଶ୍ୱନାଥ ସାହୁ ଓ ଭାଗୀରଥି ବେହେରାଙ୍କ ଆଫି. ଡେଭିଟ୍ କୁଆଡ଼େ ଗଲା ? ଯେଉଁମାନେ ମାଜିଷ୍ଟ୍ରେଟଙ୍କ ଆଗରେ ସତ୍ୟପାଠ କରି ଅଭିଯୋଗ କରିଛନ୍ତି ସେମାନଙ୍କ ବିରୁଦ୍ଧରେ ଅଦାଲତରେ ଅସତ୍ୟ କଥା କହିଛନ୍ତି ବୋଲି କୌଣସି କାର୍ଯ୍ୟାନୁଷ୍ଠାନ ହୋଇନାହିଁ । ତେଣୁ ସେ ଅଭିଯୋଗଗୁଡ଼ିକ ମିଥ୍ୟା ବୋଲି କୁହାଯାଇପାରିବନାହିଁ । ସେ କଳଙ୍କରୁ ଜାନକୀବାବୁ ଅଦ୍ୟାବଧି ମୁକ୍ତିପାଇନାହାନ୍ତି । ଅବଶ୍ୟ ଏ ବିଷୟ ପ୍ରକାଶପାଇଥିବା ଇଲଷ୍ଟ୍ରେଟେଡ୍ ଉଇକ୍ଲି ସଂଖ୍ୟାଗୁଡ଼ିକ ପୁଲିସ ଲଗାଇ ଓଡ଼ିଶାସାରା ଜବତ୍‌କରି ପୋଡ଼ିଦିଆଯାଇଛି । ମାତ୍ର ସେ ସଂଖ୍ୟାଗୁଡ଼ିକରେ ପ୍ରକାଶିତ ବିଷୟବସ୍ତୁ ପାଠକମାନଙ୍କ ମନରୁ ପୋଡ଼ିଦିଆଯାଇନାହିଁ, ବରଂ ବାରମ୍ବାର ଚର୍ଚ୍ଚିତ ହେଉଛି । ଆଉ ଗୋଟିଏ କୌତୂହଳର ବିଷୟ ହେଉଛି, ମୋକଦ୍ଦମାଟି ପ୍ରତ୍ୟାହୃତ ହେଲା ପରେ ଇଲଷ୍ଟ୍ରେଟେଡ୍ ଉଇକ୍ଲିର ସଂପାଦକ ଶ୍ରୀ ପ୍ରୀତିଶ ନନ୍ଦୀ ସେହି ପତ୍ରିକାରେ ଲେଖିଥିଲେ ଯେ ସେଥିପାଇଁ ସେ ଆଦୌ ଦୁଃଖିତ ନୁହଁନ୍ତି । କାଗଜର ମାଲିକ ସଂପୃକ୍ତ ଲେଖାପାଇଁ ଦୁଃଖ ପ୍ରକାଶ କରିପାରିଥା'ନ୍ତି, ମାତ୍ର ସେଥିରେ ତାଙ୍କର ସମ୍ମତି ନଥିଲା । ଏତେବଡ଼ ଗୁରୁତର ଘଟଣାରୁ କେହି କିଛି ଶିକ୍ଷା ଅର୍ଜନ କଲାଭଳି ମନେହେଉନାହିଁ । ପୂର୍ବପରି ସେହି କାର୍ଯ୍ୟ ଚାଲୁରହିଛି । ସେହି କଥା ଜାଣିଲାକ୍ଷଣି ପୂର୍ବକଥାକୁ ଲୋକେ ଭୁଲିବେ କିପରି ? ଏତେବଡ଼ ଗୁରୁତର ଘଟଣାରୁ କେହି କିଛି ଶିକ୍ଷା ଅର୍ଜନ କଲାପରି ମନେହେଉନାହିଁ ।

ଅତ୍ୟନ୍ତ ପରିତାପର ବିଷୟ ଏହି ଯେ, ଏସବୁ କୁତ୍ସିତ ଘଟଣାର ରଙ୍ଗମଞ୍ଚ ଥିଲା ଭୁବନେଶ୍ୱର ରାଜପଥରେ ଅବସ୍ଥିତ ମୁଖ୍ୟମନ୍ତ୍ରୀଙ୍କ ସରକାରୀ ବାସଭବନ । ବାଳକ ବିଶ୍ୱନାଥ ସାହୁ ଓ ଭାଗୀରଥି ବେହେରା ସେମାନଙ୍କ ସତ୍ୟପାଠରେ ଯେଉଁ ବିବୃତି ଅଦାଲତରେ ଦେଇଥିଲେ ସେଥିରେ ଉଲ୍ଲେଖ କରିଥିଲେ ଯେ, ତାଙ୍କ ପ୍ରତି ହୋଇଥିବା ଅସଦାଚରଣ ମୁଖ୍ୟମନ୍ତ୍ରୀଙ୍କ ସରକାରୀ ବାସଭବନରେ ହୋଇଥିଲା । ଲୋକମୁଖରେ ଏହା ଚର୍ଚ୍ଚିତ ହୋଇଥିଲା । ଏପରିକି କେହି କେହି ମୁଖ୍ୟମନ୍ତ୍ରୀଙ୍କର ଆମୋଦପ୍ରମୋଦ ଗୋଷ୍ଠୀର ପ୍ରତ୍ୟକ୍ଷଦର୍ଶୀ ବୋଲି ଦାବି କରି କହନ୍ତି– ମୁଖ୍ୟମନ୍ତ୍ରୀଙ୍କର ସରକାରୀ ବାସଭବନ ସଂଧ୍ୟା ପରେ ଗୋଟିଏ ରଙ୍ଗଶାଳାରେ ପରିଣତ ହୁଏ ବୋଲି ଅଭିଯୋଗ ହୁଏ । ବିଳମ୍ବିତ ରାତ୍ରିରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କ ସମ୍ମୁଖରେ ଯାହାସବୁ ସେଠାରେ କରାଯାଉଥିଲା ତାହା ଅକଥନୀୟ । ଏତିକି କୁହାଯାଇପାରେ ଯେ, ମୁଖ୍ୟମନ୍ତ୍ରୀ ତାଙ୍କର ସମସ୍ତ ଶାଳୀନତା ପରିହାର କରି ପୂର୍ବକାଳରେ କେତେକ ଭ୍ରଷ୍ଟାଚାରୀ ରାଜା, ଜମିଦାର ବା ନବାବଙ୍କ ପରି ଅଶାଳୀନ ମୌଜ-ମଜଲିସ୍‌ରେ ଲିପ୍ତ ରହନ୍ତି । ମୁଖ୍ୟମନ୍ତ୍ରୀଙ୍କ ବାସଭବନର ଏତାଦୃଶ ଉଦ୍‌ଭଟ ଆମୋଦପ୍ରମୋଦର ଆଡ୍‌ଡାସ୍ଥଳୀରେ ପରିଣତ ହେଉଥିବାରୁ ତାହାର ଗୋପନୀୟତାପାଇଁ ସେଠାରେ ନିଯୁକ୍ତ ହୋଇଥିବା ନିରାପତ୍ତା କର୍ମଚାରୀଙ୍କୁ ସ୍ୱୟଂ ମୁଖ୍ୟମନ୍ତ୍ରୀ ନିଜେ ବାଛନ୍ତି । ଏହି ପ୍ରଥା ଆଗରୁ ନଥିଲା । ମାତ୍ର ଦିନେ ଏଭଳି ଗୋଟିଏ ଅଘଟଣ ଘଟିଲା ଯେ ସେଥିପାଇଁ ନିଜର ବଛାବଛା ନିରାପତ୍ତା କର୍ମଚାରୀ ନିଜେ ବାଛି ମନୋନୟନ କରିବା ଆବଶ୍ୟକ ପଡ଼ିଲା ଖୋଦ୍ ମୁଖ୍ୟମନ୍ତ୍ରୀଙ୍କର ।

ବେଶୀ ରାତି ହେଲାକ୍ଷଣି ଯେତେବେଳେ ଆଗନ୍ତୁକମାନେ ଅଭିନୟରେ ଭାଗନେବାପାଇଁ ମୁଖ୍ୟମନ୍ତ୍ରୀଙ୍କ ବାସଭବନରେ ରୁଣ୍ଡହୁଅନ୍ତି ସେମାନଙ୍କୁ ଦେଖିବାପାଇଁ ଜଗୁଆଳିମାନଙ୍କ ମଧ୍ୟରେ କୌତୂହଳ ସୃଷ୍ଟିହୋଇଥାଏ । ଘର ଭିତରେ କ'ଣ ହେଉଛି ତାହା ଜାଣିବାପାଇଁ ସେମାନେ ଉତ୍ସୁକ ହୋଇପଡ଼ନ୍ତି । କିଏ କବାଟ ଝରକା ଫାଙ୍କରେ ତ ଆଉ କେହି ଛାତ ତଳପାଖ ସ୍କାଇଲାଇଟ୍ ଭଳି ଫାଙ୍କାଜାଗା ଉଣ୍ଡି ରଙ୍ଗଶାଳାର ଭିତରେ ଚାଲିଥିବା ଦୃଶ୍ୟ ଲକ୍ଷ୍ୟକରନ୍ତି । ଏହିଭଳି କୌତୂହଳ ପ୍ରାୟ ସବୁ ଉପଭୋଗ୍ୟ ରାତିରେ ଅନ୍ୟମାନଙ୍କ ମଧ୍ୟରେ ସୃଷ୍ଟି ହୋଇଥାଏ । ଦିନେ ଜଣେ ଗୁଳି ଭର୍ତ୍ତିଥିବା ବନ୍ଧୁକଧାରୀ ଜଗୁଆଳି ଗୋଟିଏ ଟୁଲ୍ ଉପରେ ଛିଡ଼ାହୋଇ ସ୍କାଇଲାଇଟ୍‌ରେ ଉତ୍ସୁକ ଅବସ୍ଥାରେ

ଏହିସବୁ ଦୃଶ୍ୟ ଦେଖିବାପାଇଁ ଉଦ୍ୟମ କରୁଥିବା ଅବସ୍ଥାରେ ଟଳମଳ ହୋଇଯିବାରୁ ତାଙ୍କ ହାତ ବନ୍ଧୁକର ଟିପାକଳ ଉପରେ ପଡ଼ିଯାଇ ଅକସ୍ମାତ ଗୁଳିଫୁଟି ପ୍ରବଳ ଆବାଜ ହୋଇଥିଲା । ଫଳରେ ମୁଖ୍ୟମନ୍ତ୍ରୀଙ୍କ ବାସଭବନ ପ୍ରାଙ୍ଗଣରେ ଉତ୍ତେଜନା ସୃଷ୍ଟି ହୋଇଥିଲା । ଏହି ଆବାଜ ଶୁଣି ବାହାର ଲୋକ ମଧ କ'ଣ ହେଲା ଜାଣିବାପାଇଁ ଦୌଡ଼ି ଆସିଥିଲେ । କୌଣସିମତେ ଏହି ଘଟଣାକୁ ଲୁଚାଇରଖିବାକୁ ଉଦ୍ୟମ କରାଯାଇଥିଲା । ମାତ୍ର ତାହା କେତେକ ସମ୍ବାଦପତ୍ରରେ ପ୍ରକାଶପାଇଥିଲା । ଏହାପରେ ସମସ୍ତ ଜଗୁଆଳିଙ୍କୁ ସନ୍ଦେହଚକ୍ଷୁରେ ଦେଖି ସମସ୍ତଙ୍କୁ ବଦଳିକରାଯାଇ ସେମାନଙ୍କ ସ୍ଥାନରେ ଖୋଦ୍ ମୁଖ୍ୟମନ୍ତ୍ରୀଙ୍କ ବିଶ୍ୱାସଭାଜନ ହୋଇ କାର୍ଯ୍ୟ ତୁଲାଇ ପାରିବାଭଳି ଲୋକ ବାଛି ମୁତୟନ କରାଯାଇଥିଲା । କିନ୍ତୁ ଯେଉଁ ଜଗୁଆଳିଙ୍କ ବନ୍ଧୁକର ଗୁଳିର ଆବାଜ ହେଲାବୋଲି ଜଣାପଡ଼ିଥିଲା ତାଙ୍କୁ ଚାକିରିରୁ ବହିଷ୍କାର କରାଗଲା । ବିଚାରା ଜଗୁଆଳି ଜଣକ ପ୍ରାୟ ସବୁ ଏମ୍.ଏଲ୍.ଏ.ଙ୍କ ପାଖକୁ ଦୌଡ଼ି ଦୌଡ଼ି ଗୁହାରିକରିଥିଲେ ଚାକିରିଟି ବଞ୍ଚାଇବାପାଇଁ । ହେଲେ ନା ତାଙ୍କର ରଙ୍ଗଶାଳା ପ୍ରସଙ୍ଗ ବିଷୟକ ବକ୍ତବ୍ୟ ପ୍ରତି କେହି ପାଟି ଫିଟାଇଲେ ନା ଚାକିରିଟି ବଞ୍ଚାଇବାପାଇଁ ତାଙ୍କର ଅନୁନୟ-ବିନୟ ଅନୁରୋଧ କାହାର ଆଶୀର୍ବାଦ ଲାଭକଲା । 'ମାର ମାର ଭଣ୍ଡାରିଆକୁ ମାର' ନ୍ୟାୟରେ ଜଗୁଆଳିଟି ଯୌନ ବ୍ୟଭିଚାରର ଶିକାର ହେଲା ।

ମୋର ଏହି ପୁସ୍ତକ ଲେଖିବାବେଳେ ଜାନକୀବାବୁଙ୍କ ମାନହାନି ମୋକଦ୍ଦମା ବିଷୟରେ କେତେକ ଇତିହାସ ସ୍ମରଣକୁଆସୁଅଛି । ହଠାତ୍ ସମ୍ବାଦପତ୍ରରେ ପଢ଼ିଲି ଶ୍ରୀମତୀ ଅଞ୍ଜନା ମିଶ୍ରଙ୍କୁ ଆଡ୍‌ଭୋକେଟ୍ ଜେନେରାଲ୍ ଶ୍ରୀ ଇନ୍ଦ୍ରଜିତ୍ ରାୟ ତାଙ୍କ ସରକାରୀ ବାସଭବନକୁ ଡକାଇ ବଳାତ୍କାର କରିଥିବା ଅଭିଯୋଗ । ପ୍ରକାଶ ପାଇଥିଲା ଯେ, ନିଜ ଆଇ.ଏଫ୍.ଏସ୍. ପତିଙ୍କଦ୍ୱାରା ନିର୍ଯାତିତ ହୋଇ ଆଇନର ଦ୍ୱାରସ୍ଥ ହୋଇଥିବା ଜଣେ ଉଚ୍ଚଶିକ୍ଷିତା ମହିଳା ଶ୍ରୀମତୀ ଅଞ୍ଜନା ମିଶ୍ରଙ୍କୁ ୧୧।୭।୯୭ ତାରିଖରେ ଆଡ୍‌ଭୋକେଟ୍ ଜେନେରାଲ ଶ୍ରୀ ଇନ୍ଦ୍ରଜିତ୍ ରାୟ ଅଞ୍ଜନାଙ୍କ ମାମଲା ସଂପର୍କରେ ସାହାଯ୍ୟ କରିବାପାଇଁ ବାରବାଟୀ ଷ୍ଟାଡ଼ିୟମ୍ ସନ୍ନିକଟ ତାଙ୍କ ସରକାରୀ ବାସଭବନକୁ ଡକାଇ ଧର୍ଷଣ କରିବାପାଇଁ ଉଦ୍ୟମ କରିଥିଲେ । ଏହି ଘଟଣା ସମ୍ବନ୍ଧରେ ଗୁରୁତର ଅଭିଯୋଗ କରି ଶ୍ରୀମତୀ ଅଞ୍ଜନା ମିଶ୍ର ଜୁଲାଇ ୧୯ ତାରିଖ ଦିନ କଟକ କେଣ୍ଟନମେଣ୍ଟ ରୋଡ଼ ଥାନାରେ ଗୋଟିଏ ଲିଖିତ ଏତଲା ଦେଇଥିଲେ । ଆଡ୍‌ଭୋକେଟ୍ ଜେନେରାଲଙ୍କ ବାସଭବନକୁ ସେ କିପରି ଗଲେ ଏବଂ ଯିବା ପରେ ମଧ୍ୟାହ୍ନଭୋଜନ ପରେ ଫେରି ଯାହା ସବୁ ଘଟିଲା ସେକଥା ବିସ୍ତୃତ ଭାବରେ ଉକ୍ତ ଏତଲାରେ ସେ ନିମ୍ନମତେ ବର୍ଣ୍ଣନା କରିଛନ୍ତି– "ଆଡ୍‌ଭୋକେଟ୍ ଜେନେରାଲ ମୋ ସହିତ ମଧ୍ୟାହ୍ନଭୋଜନ ସାରିଲେ। ତା'ପରେ କେତେଗୁଡ଼ିଏ ଟେଲିଫୋନ୍ ରିସିଭ୍ କଲା ପରେ କେସ୍ ବିଷୟରେ ଆଲୋଚନା କରିବାପାଇଁ ମୋତେ ନିଜ ବେଡ୍‌ରୁମ୍‌କୁ ଡାକିନେଲେ । ମୋତେ ମୂଳରୁ ସତର୍କ କରିଦେଲେ ଯେ, ମୋତେ ଯାହା ସେ କହିବେ ତାହା ସଂପୂର୍ଣ୍ଣ ଗୋପନୀୟ ଓ ମୁଁ ସେସବୁ କଥା ଯେପରି ଆଉ କାହାକୁ ନକୁହେ । ମୁଁ ତାଙ୍କ କଥା ପ୍ରକାଶ କରିଲେ ସେ ମୋତେ ଆଉ ସାହାଯ୍ୟ କରିବେନାହିଁ ବୋଲି ଚେତାଇଦେଲେ । କିଛି ସମୟ ଆଲୋଚନା ପରେ ମୁଁ କ'ଣ ଚାହେଁ ବୋଲି ସେ ପଚାରିଲେ । ମୁଁ ମୋ ବାପା ଓ ମାଆଙ୍କ ପାଖକୁ ଫେରିଯିବାକୁ ଚାହେଁ ବୋଲି ତାଙ୍କୁ କହିଥିଲି । କିନ୍ତୁ ଆଡ୍‌ଭୋକେଟ ଜେନେରାଲ କହିଲେ ଯେ, ତମେ କାହିଁକି ତମ ସ୍ୱାମୀଙ୍କ ପାଖକୁ ଫେରିଯିବାକୁ ଚାହୁଁନ ମୋତେ ତା'ର ପାଞ୍ଚଟି କାରଣ କୁହ । ଏହା ଉପରେ ମୋ ସହିତ ଯୁକ୍ତିତର୍କ କଲେ । ଶେଷରେ ମୁଁ ସର୍ତ୍ତମୂଳକ ମୋ ସ୍ୱାମୀଙ୍କ ପାଖକୁ ଫେରିଯିବାକୁ ବୁଝାମଣା କରିବାକୁ ରାଜିହେଲି । ଏହା ଶୁଣି ଆଡ୍‌ଭୋକେଟ୍ ଜେନେରାଲ ଖୁବ୍ ଖୁସିହୋଇଗଲେ ଓ ମୋତେ ଅଭିନନ୍ଦନ ଜଣାଇବା ବାହାନାରେ ମୋ ପାଖକୁ ଆସି ଦୁଇ ହାତକୁ ଧରି ବଳାତ୍କାରକଲେ'' ।

ଏହାଠାରୁ ଅସଭ୍ୟ, ଅଭଦ୍ର ଓ ପାଶବିକ ଆଚରଣ ଆଉ କ'ଣ ହୋଇପାରେ ? ଏପରି ପଶୁତୁଲ୍ୟ ଆଚରଣ ପ୍ରଦର୍ଶନ କରିଥିଲେ ବୋଲି ଅଭିଯୋଗ କରାଯାଇଥିବା ବ୍ୟକ୍ତିଙ୍କୁ କରାଯାଇଥିଲା

ଓଡ଼ିଶା ସରକାରଙ୍କ ସର୍ବୋଚ୍ଚ ଆଇନ ପରାମର୍ଶଦାତା । ଇନ୍ଦ୍ରଜିତ ରାୟ ହେଉଛନ୍ତି ରାଜ୍ୟ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କର ତିନି ଦଶନ୍ଧିର ଘନିଷ୍ଠତମ ବନ୍ଧୁ । ଭଲମନ୍ଦରେ ସେ ସଦାବେଳେ ଜାନକୀବାବୁଙ୍କ ପାଖେ ପାଖେ ଥାଆନ୍ତି । ଉଭୟେ ଜଡ଼ାତେଲ ମେଣ୍ଢାବାଳ ପରି ଯୋଡ଼ାଯୋଡ଼ି ହୋଇ ରହିଥା'ନ୍ତି । ସେକ୍ସପିଅରଙ୍କ କଥାରେ, "Company, villaneous company, hath been the spoil of me". "A man is known from the company he keeps". ଜାନକୀବାବୁ ମୁଖ୍ୟମନ୍ତ୍ରୀ ହେବାମାତ୍ରେ ତାଙ୍କର ପ୍ରଥମ କାର୍ଯ୍ୟ ଥିଲା, ରାଜ୍ୟ ଆଡ୍‌ଭୋକେଟ୍ ଜେନେରାଲ ପଦରେ ଶ୍ରୀ ଇନ୍ଦ୍ରଜିତ୍ ରାୟଙ୍କର ନିଯୁକ୍ତି । ବିଗତ ଦଶନ୍ଧିରେ ଜାନକୀ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ସେ ପାଞ୍ଚବର୍ଷପାଇଁ ନିଯୁକ୍ତି ପାଇଥିଲେ । State Administrative Tribunalର ଜଣେ ବିଚାରପତି ରୂପେ । ଶ୍ରୀ ରାୟଙ୍କୁ ଆଡ୍‌ଭୋକେଟ୍ ଜେନେରାଲ କରାଇ ସେ ଏହି ପ୍ରକାର ଗୁଣବାନ୍ ବ୍ୟକ୍ତିଙ୍କୁ ଉଚ୍ଚନ୍ୟାୟଳୟର ବିଚାରପତିରୂପେ ଅଧିଷ୍ଠିତ କରିବାପାଇଁ ଉଦ୍ୟମ କରିଥିଲେ । ମାତ୍ର ଏ ସମ୍ବନ୍ଧରେ ପୂର୍ବତନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କର "He lacks in integrity (ତାଙ୍କର ସଚ୍ଚୋଟ ପଣିଆର ଅଭାବ)'' ମନ୍ତବ୍ୟ ହେତୁ ବନ୍ଧୁ ଇନ୍ଦ୍ରଜିତ୍ ରାୟଙ୍କୁ ଜାନକୀ ପଟ୍ଟନାୟକ ହାଇକୋର୍ଟ ଜର୍ଜ କରିବାରେ ଅସୁବିଧା ସୃଷ୍ଟିକରିଥିଲା । ଆଡ୍‌ଭୋକେଟ ଜେନେରାଲ୍ ପଦବୀରେ ନିଯୁକ୍ତ ହେବାପାଇଁ ଯେଉଁ ଯୋଗ୍ୟତା ଆବଶ୍ୟକ ତାହା ନ ଥାଇ ମଧ ସେ ସେହି ନିଯୁକ୍ତି ପାଇଥିଲେ । ମାତ୍ର କୌଣସି ବିଚାରବନ୍ତ ମହଲରେ ତାହା ପସନ୍ଦଯୋଗ୍ୟ ହୋଇନଥିଲା ।

ଆଡ୍‌ଭୋକେଟ୍ ଜେନେରାଲ୍‌ଙ୍କ ବିରୁଦ୍ଧରେ ଉପରୋକ୍ତ କୁତ୍ସିତ ଅଭିଯୋଗ ଏକ ବିରଳ ଓ ଚାଞ୍ଚଲ୍ୟକର ଘଟଣା । ରାଜ୍ୟ ସରକାରଙ୍କ ସର୍ବୋଚ୍ଚ ଆଇନ୍ ପରାମର୍ଶଦାତାଙ୍କ ଏ ପ୍ରକାର ଜଘନ୍ୟ ଆଚରଣ ଆମ ଦେଶର କୌଣସି ରାଜ୍ୟରେ କେବେ ଘଟିନାହିଁ । ଆମ ଦେଶର ସବୁ ସମ୍ବାଦପତ୍ରରେ ଯେପରି ବ୍ୟାପକ ଭାବରେ ତାହା ପ୍ରକାଶପାଇଛି ତାହାଦ୍ୱାରା ଆମ ରାଜ୍ୟ ସରକାର, ରାଜ୍ୟବାସୀ ତଥା ଆମ ଆଇନ୍‌ଜୀବୀ ମହଲରେ ସମ୍ମାନ ଯେପରି ଅପନିନ୍ଦିତ ହେଲା ତାହାର ପଟାନ୍ତରନାହିଁ । ଅବଶ୍ୟ ୧୯୮୬ ମସିହାରେ Illustrated Weeklyରେ ଜାନକୀବାବୁଙ୍କ ଅସ୍ୱାଭାବିକ ଚାରିତ୍ରିକ ଆଚରଣ ସମ୍ବନ୍ଧରେ ଲେଖା ପ୍ରକାଶ ପାଇବା ପରେ ଆମ ଦେଶର ସବୁ ସମ୍ବାଦପତ୍ରରେ ବଡ଼ ବଡ଼ ଶିରୋନାମାରେ ତାହା ଛପାଯାଇ ପ୍ରଚାରିତ ହୋଇଥିଲା । ସେତେବେଳେ ଆମ ରାଜ୍ୟର ସମ୍ମାନ ସାରା ଭାରତବାସୀଙ୍କ ଆଗରେ ଉପହସିତ ହୋଇସାରିଥିଲା । ଏବେ ତାଙ୍କଦ୍ୱାରା ନିଯୁକ୍ତ ତାଙ୍କର ବନ୍ଧୁ ଆଡ୍‌ଭୋକେଟ୍ ଜେନେରାଲ ଯେ ତଦ୍ରୂପ ଲୋକନିନ୍ଦାରେ ଆମ ରାଜ୍ୟର ଇଜ୍ଜତକୁ ବୁଡ଼ାଇଦେଲେ ତାହା ଗୁରୁ ଶିଷ୍ୟ ରହସ୍ୟ ବୋଲି ଲୋକେ କହିଥିଲେ । ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଆଚରଣ ସମ୍ବନ୍ଧରେ, ଉପରେ ଯାହାସବୁ ଲେଖାଯାଇଛି ତାହା ତାଙ୍କର ଚରିତ୍ର ସଂହାର ବୋଲି ବିଚାରିବା ଠିକ୍ ହେବନାହିଁ । ବରଂ ସେଗୁଡ଼ିକ ପ୍ରକାଶିତ ଘଟଣାଗୁଡ଼ିକର ଅବତାରଣା ମାତ୍ର । ଯେଉଁମାନେ ଉଚ୍ଚପଦବୀରେ ଅଧିଷ୍ଠିତ ହୁଅନ୍ତି ସେମାନଙ୍କର ଆଚରଣ ଏପରି ହେବା ଆବଶ୍ୟକ ଯାହା ଅନ୍ୟମାନଙ୍କର ଅନୁକରଣୀୟ ହେବ । ସାମାଜିକ କିମ୍ବା ରାଜନୈତିକ କ୍ଷେତ୍ରରେ ଜଣେ ପ୍ରତିନିଧି-ଭାବେ ଉଚ୍ଚପଦବୀରେ ଅଧିଷ୍ଠିତ ହୋଇଥିଲେ ତାଙ୍କର ଆଚରଣ ଓ ସ୍ୱଭାବରେ କୌଣସି ବ୍ୟତିକ୍ରମ ଘଟିଲେ ସେ ସମ୍ପର୍କରେ ଜାଣିବା ଓ ଚର୍ଚ୍ଚା କରିବାର ଅଧିକାର ଗଣତାନ୍ତ୍ରିକ ରାଷ୍ଟ୍ରର ନାଗରିକ ଓ ସମ୍ବାଦପତ୍ରମାନଙ୍କର ଅଛି । ଏପରିକି ସେଭଳି ବ୍ୟକ୍ତିମାନଙ୍କର ବ୍ୟକ୍ତିଗତ ଜୀବନରେ ରହସ୍ୟ ଅନୁସନ୍ଧାନ କରିବା ଓ ପ୍ରକାଶ କରିବାର ଅଧିକାର ନାଗରିକ ଓ ପ୍ରେସ୍‌ର ରହିଛି । ବ୍ୟକ୍ତିଗତ ଜୀବନର ଗୋପନୀୟତାର ଆଳରେ ସାଧାରଣ ଜୀବନରେ ଅଧିଷ୍ଠିତ ଜଣେ ମୁଖ୍ୟମନ୍ତ୍ରୀ କିମ୍ବା ସମାଜସେବୀ, ଧାର୍ମିକ ବ୍ୟକ୍ତି, ନେତାଙ୍କ ଅପକର୍ମକୁ ଆଇନରେ 'ରାଇଟ୍ ଟୁ ପ୍ରାଇଭେସି' ଆଢୁଆଳରେ ଉପେକ୍ଷା କରାଯାଇ ପାରିବନାହିଁ – ଏହା ସୋଲି. ସୋରାବ୍‌ଜିଙ୍କ ଭଳି ଜଣେ ବିଶିଷ୍ଟ

ଆଇନଜ୍ଞଙ୍କର ପ୍ରକାଶିତ ମତ ।

ରାଜ୍ୟର ମୁଖ୍ୟମନ୍ତ୍ରୀଙ୍କର ବାସଭବନ ଯଦି କୁତ୍ସିତ ଓ ଅସ୍ୱାଭାବିକ ଆଚରଣର ରଙ୍ଗଶାଳା ହୁଏ ସେ ସବୁର ସମାଲୋଚନା କରିବାର ଅଧିକାର ଲୋକଙ୍କର ଅଛି । ସେହି ଦୃଷ୍ଟିରୁ ଉପରେ ଯେଉଁ ପ୍ରସଙ୍ଗମାନଙ୍କର ଉପସ୍ଥାପନ କରାଯାଇଛି ତାହା ସମାଜରେ ଏବଂ ରାଜନୈତିକ କ୍ଷେତ୍ରରେ ବୃହତ୍ତର ସ୍ୱାର୍ଥରକ୍ଷା ଦୃଷ୍ଟିରୁ ଶିକ୍ଷାପ୍ରଦ ସତର୍କ ଘଣ୍ଟି ହେବ ବୋଲି କହିବା ସମୀଚୀନ ହେବ । କାରଣ ଏହା ଭବିଷ୍ୟତ ବଂଶଧରମାନଙ୍କ ବ୍ୟକ୍ତିଗତ ଓ ସାମାଜିକ ଜୀବନ ଗଠନପାଇଁ ଆଦର୍ଶ ଓ ପବିତ୍ର ପଥ ସଂପର୍କରେ ସଚେତନତା ଜାଗ୍ରତ କରିବ । ମୋ ଆତ୍ମଜୀବନୀ ପୁସ୍ତକର ପ୍ରଥମ ସଂସ୍କରଣରେ ଆମ ରାଜ୍ୟର ବିଶିଷ୍ଟ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ସମ୍ବନ୍ଧରେ ଲେଖିଲାବେଳେ ସେମାନଙ୍କ ସଂପର୍କରେ ଭଲ କଥାମାନ ଲେଖିଛି, ଆବଶ୍ୟକସ୍ଥଳେ ମନ୍ଦ ଆଚରଣ ସମ୍ବନ୍ଧରେ ମଧ ଲେଖିଛି । କାହାରି ମନ୍ଦ ଆଚରଣ ପ୍ରଘଟ କରିବା ମୋର ଲେଖାର ଉଦ୍ଦେଶ୍ୟ ନୁହେଁ । ବରଂ ଏସବୁ କଥା ଜାଣିଥିଲେ ଭବିଷ୍ୟତ୍‌ରେ ନେତୃତ୍ୱ ନେବାପାଇଁ ଅଭିଳାଷ ରଖିଥିବା ବ୍ୟକ୍ତିମାନେ ନିଜର ଆଚରଣ ସଂପର୍କରେ ସତର୍କ ରହିବେ । ତଦ୍ଦ୍ୱାରା ସମାଜର ଉପକାର ହେବ ଏବଂ ସେମାନଙ୍କର ଆଦର୍ଶ ଅନ୍ୟମାନଙ୍କର ଅନୁକରଣୀୟ ହୋଇପାରିବ – ଏହାହିଁ ମୋର ଲେଖାର ଉଦ୍ଦେଶ୍ୟ ।

ଜାନକୀବାବୁଙ୍କ ଆଚରଣ ଯାହା ସେକଥା କାହାରିକୁ ଅଜଣାନାହିଁ ଏବଂ ତାହା ଲୋକଙ୍କ ମଧ୍ୟରେ ଚର୍ଚ୍ଚା ମଧ କରାଯାଉଛି । ପ୍ରଗତିବାଦୀର ସଂପାଦକ ଶ୍ରୀ ପ୍ରଦ୍ୟୁମ୍ନ କିଶୋର ବଳ ତାଙ୍କର ଖବରକାଗଜରେ ୨୬ ଜୁଲାଇ ସଂଖ୍ୟାରେ ଜାନକୀ ପଟ୍ଟନାୟକଙ୍କ ବ୍ୟକ୍ତିଗତ ଚରିତ୍ର ଓ ଯୌନ ଜୀବନ ସଂପର୍କରେ ବହୁ ତଥ୍ୟ ଉଲ୍ଲେଖ କରିଛନ୍ତି ଏବଂ ସେଗୁଡ଼ିକୁ ଲୋକେ ଜାଣନ୍ତି ବୋଲି ଲେଖିଛନ୍ତି । ପ୍ରକୃତରେ ସେସବୁ ବିଷୟରେ ଲୋକଙ୍କ କାନରେ ଚିକିନିଖି ପଡ଼ିଛି । ଏହି ଅବସ୍ଥାରେ ଯଦି ମୁଁ ତାଙ୍କର ବହୁ ଆଲୋଚିତ ବୀଭତ୍ସକାରବାର ସଂପର୍କରେ ନୀରବ ରହେ ମୋର ପୁସ୍ତକ ସମୀକ୍ଷା କରିବାବେଳେ ସମୀକ୍ଷକ ଓ ପାଠକମାନେ କ'ଣ କହିବେ ? ତା'ଛଡ଼ା ଏ ପ୍ରକାର ଅକଥନୀୟ କାର୍ଯ୍ୟ ଓ ଘଟଣା ଯଦି ଅକସ୍ମାତ୍ ଘଟଣାକ୍ରମେ ଥରେ ଅଧେ ଘଟିଥା'ନ୍ତା, ତା'ହେଲେ ତାକୁ ଏଡ଼ାଇ ଦିଆଯାଇପାରନ୍ତା । ମାତ୍ର ଏହା ମୁଖ୍ୟମନ୍ତ୍ରୀଙ୍କ ବାସଭବନରେ ଅଧିକାଂଶ ରାତ୍ରିରେ ଘଟୁଥିବା ଅଭିଯୋଗ ହେଉଥିଲା ଏବଂ ଏକପ୍ରକାର ଅଭ୍ୟାସଗତ ଅପରାଧରେ ଅନ୍ୟ ଆଡ଼କୁ ମଧ ବ୍ୟାପିଲା ବୋଲି ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଲା । ଇନ୍ଦ୍ରଜିତ ରାୟଙ୍କ ପରି ତାଙ୍କଦ୍ୱାରା ଉଚ୍ଚ ଆସନାସୀନ କେତେକ କ୍ଷମତାଶାଳୀ ବ୍ୟକ୍ତି ମଧ ତାଙ୍କର ଦୁର୍ବୋଧ ଯୌନାଚାର ପରମ୍ପରା ଅନୁକରଣ କଲେ । ଆମ ସମାଜ ଏହି ଅବକ୍ଷୟକାରୀଙ୍କ ମାର୍ଗରୁ ମୁକ୍ତହେବା ଚାହେଁ । ସେଥିପାଇଁ କେତେକ ତଥ୍ୟ ଓ ଭବିଷ୍ୟତ୍ ପରିଣତି ସମ୍ପର୍କରେ ସମସ୍ତେ ଅବହିତ ରହିବା ଆବଶ୍ୟକ ।

ଭୁବନେଶ୍ୱରସ୍ଥିତ ମୁଖ୍ୟମନ୍ତ୍ରୀ ଜାନକୀବାବୁଙ୍କ ସରକାରୀ ବାସଭବନରେ ଗାମ୍ଭୀର୍ଯ୍ୟ ଓ ସାଧୁତାର ଚିହ୍ନ ବର୍ଣ୍ଣେ ନଥାଏ ବୋଲି ଲୋକେ କହନ୍ତି । ଜଣାଯାଏ ପୂର୍ବେ କେତେକ ଗଡ଼ଜାତ ରାଜ୍ୟର ରାଜବାଟୀରେ ରାଜାଙ୍କର ଆମୋଦ-ପ୍ରମୋଦପାଇଁ ଯେଉଁସବୁ ଅସଭ୍ୟ ଓ ଅକଥନୀୟ ଆଚରଣ କରାଯାଉଥିଲା ତାହାହିଁ ମୁଖ୍ୟମନ୍ତ୍ରୀଙ୍କ ସରକାରୀ ବାସଭବନରେ କରାଯାଉଥିଲା । ଏଥିପାଇଁ ବହୁ ଅର୍ଥ ବ୍ୟୟ କରି ତରୁଣ-ତରୁଣୀ, ଯୁବକ-ଯୁବତୀ ଓ ଅଭ୍ୟାସଗତ ବ୍ୟଭିଚାରିଣୀମାନଙ୍କୁ ସେଠାକୁ ଅଣାଯିବା ଅଭିଯୋଗ ହୁଏ । ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ଫଣ୍ଡ (Chief Ministers Relief Fund) ଟଙ୍କାକୁ ଥୋପକୁପେ ବ୍ୟବହାରକରି ଏମାନଙ୍କୁ ଆକୃଷ୍ଟ କରାଯିବା ବି ଅଭିଯୋଗ ହୁଏ ।

ଶ୍ରୀ ନଳିନୀ ମହାନ୍ତିଙ୍କର ୧୯୮୬ ମସିହା ମାର୍ଚ୍ଚ ୧୦ ଓ ଏପ୍ରିଲ ୨୬ ତାରିଖରେ ମୁଖ୍ୟମନ୍ତ୍ରୀଙ୍କ Relief Fund ସମ୍ବନ୍ଧୀୟ ପ୍ରଶ୍ନ, ତାହାର ଉତ୍ତର ଓ ତା ସହିତ ସଂଲଗ୍ନ ଥିବା ସାହାଯ୍ୟ ଟଙ୍କା ପାଇଥିବା ଗୋଟିଏ ବିଶାଳ ତାଲିକାକୁ ସମୀକ୍ଷା କଲେ କିପରି ମୁଖ୍ୟମନ୍ତ୍ରୀଙ୍କର ଆମୋଦ-ପ୍ରମୋଦ

ଓ ଅର୍ଥନୈତିକ କାର୍ଯ୍ୟପାଇଁ ତାଙ୍କ ଇଚ୍ଛାଧୀନ ସାହାଯ୍ୟ ପାଣ୍ଠିରୁ ବିପୁଳ ଅର୍ଥ ଅପବ୍ୟୟ କରାଯାଇଛି ତାହା ଜଣାପଡ଼ିବ । ଏହାଛଡ଼ା ଏହି Relief Fund ଅର୍ଥର ପ୍ରଲୋଭନ ଦେଖାଇ ବହୁ ପୁଅ-ଝିଅଙ୍କର ଜୀବନ କିପରି ନଷ୍ଟକରାଯାଏ ସେକଥା ବିଶ୍ୱନାଥ ସାହୁ ଓ ଭାଗୀରଥି ବେହେରାଙ୍କ ପକ୍ଷରୁ ଅଦାଲତରେ ଦାଖଲହୋଇଥିବା ସତ୍ୟପାଠରେ ଉଲ୍ଲେଖ ଅଛି ।

ଇଲଷ୍ଟ୍ରେଟେଡ୍ ଉଇକ୍ଲି ସମ୍ବନ୍ଧୀୟ ମାନହାନି ମୋକଦ୍ଦମା ସମାପ୍ତ ହେବା ପରେ ମଧ୍ୟ ସେଥିରେ ଜାନକୀବାବୁଙ୍କ ବିରୁଦ୍ଧରେ ଯେଉଁ କୁତ୍ସିତ ଆଚରଣ ଅଭିଯୋଗ ହୋଇଥିଲା, ତାହାର ଅବସାନ ବର୍ତ୍ତମାନ ସୁଦ୍ଧା ଘଟିନାହିଁ । ମୋକଦ୍ଦମାଟି ସାଲିସ୍ ହୋଇଗଲା; ମାତ୍ର ସେଥିରେ ଥିବା ଅଭିଯୋଗଗୁଡ଼ିକ ମିଥ୍ୟା ବୋଲି ପ୍ରମାଣିତ ହୋଇନାହିଁ । କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷଙ୍କ ପକ୍ଷରୁ ସାଧାରଣ ସଂପାଦକ ଶ୍ରୀ ଆଞ୍ଜୟା ଓଡ଼ିଶା ଆସି ବହୁ ଲୋକଙ୍କୁ ଗୁପ୍ତରେ ପଚରାପଚରୀ କରିଥିଲେ ଏବଂ ପ୍ରକୃତ କଥା ଜାଣି ଦିଲ୍ଲୀ ଫେରିଯାଇଥିଲେ, ତାହାପରେ କିଛି କାର୍ଯ୍ୟାନୁଷ୍ଠାନ ହେଲାନାହିଁ । ତେଣୁ ଭୟ କାହିଁକି ? ରାଜୀବ ଗାନ୍ଧୀ ସେତେବେଳେ ଥିଲେ କଂଗ୍ରେସର ସଭାପତି ଓ ପ୍ରଧାନମନ୍ତ୍ରୀ– ତାଙ୍କୁ ତ ଲାଜମାଡ଼ିଲା ଜାନକୀବାବୁଙ୍କୁ କହିବାପାଇଁ, ଆଉ କହିବ କିଏ ?

ଆହୁରି ମଧ୍ୟ ଯେତେବେଳେ ୧୯୮୦ ମସିହାରେ ଇନ୍ଦିରା ଗାନ୍ଧୀଙ୍କ ମନ୍ତ୍ରିମଣ୍ଡଳରେ ଜାନକୀବଲ୍ଲଭ ପଟ୍ଟନାୟକ ବେସରକାରୀ ବିମାନ ଚଳାଚଳ ମନ୍ତ୍ରୀ ଥିଲେ, ସେତେବେଳେ Air hostess (ବିମାନ ପରିଚାରିକା) ଚାକିରିପାଇଁ ମନ୍ତ୍ରୀଙ୍କ ପଛରେ ଦୌଡ଼ାଦୌଡ଼ି କରୁଥିବା ଯୁବ-କଂଗ୍ରେସର ଶ୍ରୀମତୀ ରାନୀ ମଲ୍ଲିକଙ୍କ ଆତ୍ମହତ୍ୟା ରହସ୍ୟ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଜାଣିବାକୁ ପାଇଥିଲେ । ଆଉ ମଧ୍ୟ କଂଗ୍ରେସର ତତ୍କାଳୀନ ସାଧାରଣ ସମ୍ପାଦକ ଓ ରାଜ୍ୟସଭା ସଦସ୍ୟ ଶ୍ରୀ ଶ୍ୟାମସୁନ୍ଦର ମହାପାତ୍ର ଏ ସମ୍ବନ୍ଧରେ ଅନେକ ତଥ୍ୟ ଇନ୍ଦିରା ଗାନ୍ଧୀଙ୍କ କାନକୁ ଆଣିଥିଲେ ବୋଲି ଜଣାଇଥିଲେ । ଇନ୍ଦିରା ଗାନ୍ଧୀଙ୍କ ମନ୍ତ୍ରିମଣ୍ଡଳ ବଦନାମ ହେବ ବୋଲି ଜାଣି ଏ ବିଷୟରେ ଆଉ କିଛି ଖୋଳତାଡ଼ ହୋଇନଥିଲା, ଘଟଣାଟିକୁ ଚପାଇଦିଆଯାଇଥିବା ଅଭିଯୋଗ ହୁଏ । କଂଗ୍ରେସର ସଭାନେତ୍ରୀ ହିସାବରେ ଶ୍ରୀମତୀ ଗାନ୍ଧୀଙ୍କର କର୍ତ୍ତବ୍ୟ ଥିଲା ସଂପୃକ୍ତ ମନ୍ତ୍ରୀଙ୍କୁ ଭର୍ତ୍ସନାକରିବା, ମାତ୍ର ସେକଥା ସେ କରିନଥିଲେ । ଯଦି ଅନୁଷ୍ଠାନର ସର୍ବୋଚ୍ଚ କର୍ତ୍ତାମାନେ ଏ ପ୍ରକାର ଆଚରଣକୁ ନିନ୍ଦା ନକରନ୍ତି ତା'ହେଲେ କିଏ କାହାକୁ କାହିଁକି ଡରିବ ? ବରଂ ଅବାଞ୍ଛିତ ଆଚରଣରେ ଆହୁରି ଉନ୍ମତ୍ତ ହେବାପାଇଁ ପ୍ରଶ୍ରୟ ଓ ସାହସ ମିଳିବ । ଆମ ରାଜ୍ୟରେ ପରବର୍ତ୍ତୀ କାଳରେ ତାହାର ପରିଣତି ଆମକୁ ଭୋଗକରିବାକୁ ପଡ଼ିଲା ।

୧୯୯୭ ଜୁନ୍ ମାସ ଶେଷ ସପ୍ତାହରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ସଦଳବଳେ ଆମେରିକା ଯାଇଥିଲେ । ଉଦ୍ଦେଶ୍ୟ ଥିଲା, ଓଡ଼ିଶାର ଶିଳ୍ପ ପ୍ରସାରପାଇଁ ଆମେରିକାର ଶିଳ୍ପପତିମାନଙ୍କୁ ଆକୃଷ୍ଟ କରିବା । ସେହି ସମୟରେ ଆମେରିକାରେ ରହୁଥିବା ଓଡ଼ିଆମାନେ ହ୍ୟୁଷ୍ଟନ୍‌ଠାରେ ସେମାନଙ୍କର ଅନୁଷ୍ଠାନ 'ଓଡ଼ିଶା ସୋସାଇଟି ଅଫ୍ ଆମେରିକା'ର ବାର୍ଷିକ ସମ୍ମିଳନୀ ଜୁଲାଇ ୪, ୧୯୯୭ରେ କରିବାପାଇଁ ସ୍ଥିରକରିଥିଲେ । ଉକ୍ତ ସମ୍ମିଳନୀରେ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ସେହି ଜୁଲାଇ ୪ ତାରିଖରେ ସମ୍ବର୍ଦ୍ଧନା ଦେବାର କାର୍ଯ୍ୟକ୍ରମ ରଖାଯାଇଥିଲା । ସେ ମଧ୍ୟ ସମ୍ମତି ଦେଇଥିଲେ । ଏହି ସମୟରେ ଆମେରିକାରେ ରହୁଥିବା ଓଡ଼ିଆମାନଙ୍କ ମଧ୍ୟରେ ଜାନକୀବାବୁଙ୍କୁ ସମ୍ବର୍ଦ୍ଧନା ଦେବା ସମ୍ବନ୍ଧରେ ମତଭେଦ ଦେଖାଯାଇଥିଲା । ସେମାନେ ଚରମପନ୍ଥୀ ଓ ନରମପନ୍ଥୀ ଦୁଇଗୋଷ୍ଠୀରେ ବିଭକ୍ତ ହେଲାପରି ଜଣାଯାଇଥିଲା । ନରମପନ୍ଥୀ ଚାହୁଁଥିଲେ ଜାନକୀବାବୁଙ୍କୁ ସମ୍ବର୍ଦ୍ଧନା ଦେଇ ତାଙ୍କର ଉଦ୍‌ବୋଧନ ଶୁଣିବାପାଇଁ, ମାତ୍ର ଚରମପନ୍ଥୀମାନେ ଏହାକୁ ବିରୋଧକରୁଥିଲେ । ଠିକ୍ ସେହି ସମୟରେ ଜୁନ୍ ୨୭ ତାରିଖରେ ଆମେରିକାର ଇଣ୍ଟରନେଟ୍ ମାଧ୍ୟମରେ ଚରମପନ୍ଥୀଙ୍କ ପକ୍ଷରୁ ନିମ୍ନୋକ୍ତ ସମ୍ବାଦଟି ପରିବେଷଣ କରାଯାଇଥିଲା ।

Some moderators told us that we should have respect for our Chief Minister, but he is not worth the respect. He has a dubious past and is rumoured to have destroyed the whole family if some one rose against him. He is a corrupt man and rules Orissa because it is essentially Goonda Raj. As the people are uneducated they vote for him again and again. Anyway, it is found that lots of people live to 'socialise' with J. B. Patnaik. They probably ignore that he is a gay which has been proved by Illustrated Weekly.

ଏହି ସମ୍ବାଦ କଥା ଜାଣିବା ପରେ ହଠାତ୍ ଜାନକୀବାବୁ ହୁଷ୍ଟନ୍‌ରେ ଜୁଲାଇ ୪ ତାରିଖରେ ଅନୁଷ୍ଠିତ ହେବାକୁ ଥିବା ଓଡ଼ିଆ ସମ୍ମିଳନୀରେ ଉଦ୍‌ବୋଧନ ଦେବାର କାର୍ଯ୍ୟକ୍ରମକୁ ବାତିଲକରି ଓଡ଼ିଶାକୁ ଫେରିଆସିଥିଲେ । ସେ ଆଶଙ୍କା କରିଥିଲେ ଯେ, ସମ୍ମିଳନୀରେ ଗଣ୍ଡଗୋଳ କରି ତାଙ୍କୁ ଅପଦସ୍ଥ କରିବାପାଇଁ ଉଦ୍ୟମ କରାଯିବ । ତାହାହିଁ ହେବାର ସମ୍ଭାବନା ଥିଲା । ଚରମପନ୍ଥୀମାନେ କୁଆଡ଼େ ପ୍ରସ୍ତୁତ ହେଉଥିଲେ ଜାନକୀବାବୁଙ୍କୁ ନାନାପ୍ରକାର ପ୍ରଶ୍ନ ପଚାରି ତାଙ୍କୁ ଅଡୁଆରେ ପକାଇ ସମ୍ମିଳନୀରେ ଅପଦସ୍ଥ କରିବେ । ସେଥିରୁ ଜଣାଗଲା ଯେ, ଆମେରିକାରେ ବାସକରୁଥିବା ଭାରତୀୟ-ମାନେ ଜାନକୀବାବୁଙ୍କ ଇଲଷ୍ଟ୍ରେଟେଡ୍ ଉଇକ୍ଲିରେ ପ୍ରକାଶ ପାଇଥିବା କୁତ୍ସିତ ଆଚରଣକୁ ଭୁଲିନାହାଁନ୍ତି ।

## ଜାନକୀବାବୁଙ୍କ ପ୍ରଶାସନିକ ଆଚରଣ ଓ ତାଙ୍କ ବେନାମୀ କାରବାର

୧୯୮୫ ମସିହାର ଶେଷ ଆଡ଼କୁ ଓ ୧୯୯୬ ମସିହା ପ୍ରାରମ୍ଭରେ ଶ୍ରୀ ଜାନକୀ ପଟ୍ଟନାୟକ ଖୋର୍ଦ୍ଧା ସବ୍‌ଡିଭିଜନ ଅନ୍ତର୍ଗତ ତାଙ୍କ ଗ୍ରାମ ରାମେଶ୍ୱରରେ ମଶାଣି, ଗୋଚର ଓ ଅନାବାଦୀ ପ୍ରଭୃତି ଅନେକ ଜମିକୁ ବେନାମୀ ସୂତ୍ରରେ ନିଜ ପରିବାରର ଦଖଲକୁ ନେଇଯିବାର ଉଦ୍ୟମ ଓ ସେହି ଆଇନ୍-ବିରୁଦ୍ଧ କାର୍ଯ୍ୟ ପ୍ରତିବାଦରେ ଜନଅସନ୍ତୋଷ ଓ ଉତ୍ତେଜନା ସମ୍ବନ୍ଧୀୟ ନାନା ସମ୍ବାଦ ପତ୍ର-ପତ୍ରିକାମାନଙ୍କରେ ପ୍ରକାଶ ପାଉଥିଲା । ଏହି ସମୟରେ ଦିନେ ପୂର୍ବତନ ରାଜସ୍ୱମନ୍ତ୍ରୀ ପୁରୀ ଜିଲ୍ଲାର ସୁରେନ୍ଦ୍ରନାଥ ନାୟକ ଭୁବନେଶ୍ୱରସ୍ଥିତ ଚିନ୍ତାମଣୀଶ୍ୱର ମନ୍ଦିର ନିକଟସ୍ଥିତ ମୋ ବାସଭବନରେ ପହଞ୍ଚିଥିଲେ । ରାମେଶ୍ୱର ଗ୍ରାମରେ ଜାନକୀ ପଟ୍ଟନାୟକଙ୍କ ଜାଲିଆତି କାରବାର ଓ ଦୌରାତ୍ମ୍ୟ କଥା ମୋ ଆଗରେ ବର୍ଣ୍ଣନା କରିଥିଲେ । କଥାପ୍ରସଙ୍ଗରେ ସେ ମୋତେ କହିଥିଲେ, "ଆପଣ ତ ଅନେକ ଦିନ ମନ୍ତ୍ରୀ ଓ ଶେଷରେ ମୁଖ୍ୟମନ୍ତ୍ରୀ ହୋଇଥିଲେ, ଆପଣଙ୍କ ଗାଁରେ ଘରପାଖରେ ଥିବା ମଶାଣି ଓ ଗୋଚର ପ୍ରଭୃତି ଜମିକୁ କ'ଣ ନିଜର କରିନେଇଛନ୍ତି ? ଆମର ମୁଖ୍ୟମନ୍ତ୍ରୀ ଜାନକୀବାବୁ ତାଙ୍କ ଘର ପାଖରେ ଥିବା ଶ୍ମଶାନ, ଗୋଚର ଓ ମହନ୍ତଙ୍କ ପାଖରେ ଥିବା ଜଗନ୍ନାଥମଠର ଜମି ପ୍ରଭୃତି କିଛି ରଖିବେ ନାହିଁ । ତାଙ୍କ ଘର ଆଗରେ ଥିବା ହାଡ଼ି ସାହିକୁ ମଧ୍ୟ ଉଠାଇଦେବାକୁ ଚାହାଁନ୍ତି । ମୁଁ କହିଥିଲି, ସାଧାରଣ ଭାବରେ ସବୁ ମୁଖ୍ୟମନ୍ତ୍ରୀ ଏହି ପ୍ରକାର କରୁଥିବେ ବୋଲି ଭାବିବା ଠିକ୍ ହେବନାହିଁ । ଏହା ବ୍ୟକ୍ତିବିଶେଷଙ୍କ ପ୍ରକୃତି ଉପରେ ନିର୍ଭର କରେ ।

ମୁଁ ନିଜ କଥା କହିବାକୁ ଯାଇ କହିଥିଲି ଯେ, ଘର ପାଖ ଜମି ଗ୍ରାସ କରିବା ମୋର ପ୍ରକୃତି ନୁହେଁ । ସୁରେନ୍ଦ୍ରବାବୁ ଓ ମୁଁ ଯେଉଁ ଘରେ ବସି କଥାହେଉଥିଲୁ ସେହି ଘର ଛିଡ଼ାହୋଇଥିବା ଜମି ବିଷୟରେ କହିଲି । ସେହି ଘର ଡାହାଣ ପାଖରେ ଯେଉଁ ଜାଗା ଉପରେ ପେଟ୍ରୋଲ୍ ଟାଙ୍କିଟା ଅଛି ତାଙ୍କୁ ଦେଖାଇଥିଲି । ପେଟ୍ରୋଲ୍ ଟାଙ୍କି ହେବା ପୂର୍ବରୁ ତାହା ଅନେକ ଦିନ ଖାଲିପଡ଼ିଥିଲା । ଖାଲି ପଡ଼ିଥିବା ଅବସ୍ଥାରେ ଇଷ୍ଟେଟ୍ ଡିପାର୍ଟମେଣ୍ଟ ତାକୁ ବିକ୍ରି କରିବାପାଇଁ ଚାହିଁଥିଲେ । ଯେହେତୁ ଏ ଜାଗାଟି ମୋ ଘରକାନ୍ଥକୁ ଲାଗିକି ରହିଛି ଆଉ କେହି ସେହି ଜମି ନେଲେ ମୋର ଅସୁବିଧା ହେବ ବୋଲି ଭାବି ନିୟମ ଅନୁସାରେ କିଣିବାପାଇଁ ସେମାନେ ସେ ଜମିକୁ ମୋତେ ଯାଚିଥିଲେ । ସେହି

ଜମିର ଅନ୍ୟପାର୍ଶ୍ୱରେ ଶ୍ରୀ ଜନାର୍ଦ୍ଦନ ପଟ୍ଟନାୟକଙ୍କର ଜାଗା ଥିଲା । ସେ ମଧ ଇଚ୍ଛା ପ୍ରକାଶ କରିଥିଲେ ସେହି ପ୍ଲଟ୍‌ଟି ନେବାପାଇଁ । ଦେଖାଗଲା ମୁଁ ଯଦି ଇଚ୍ଛା ପ୍ରକାଶ କରେ ସେ ଜମିକୁ ନେବାପାଇଁ ଜନାର୍ଦ୍ଦନବାବୁ ସେ ପ୍ଲଟ୍ ପାଇପାରିବେନାହିଁ । ମୁଁ ବଡ଼ ଅଡୁଆରେ ପଡ଼ିଥିଲି । ଆମ ଲୋକମାନେ କହୁଥା'ନ୍ତି ଏ ଜାଗାଟା ଛାଡ଼ିବାର କଥା ନୁହେଁ । ସଚିବାଳୟରେ ଜମିଜମା ସମ୍ବନ୍ଧୀୟ ଅଫିସରମାନେ ମୋ ପାଖରେ ଥାଆନ୍ତି । ସେତିକିବେଳେ ଜନାର୍ଦ୍ଦନବାବୁ ମୋ ପାଖରେ ଆସି ପହଞ୍ଚିଲେ । ଶେଷରେ ଜନାର୍ଦ୍ଦନବାବୁଙ୍କୁ କହିଥିଲି, ମୁଁ ମନ୍ତ୍ରୀ ନଥିଲେ ସେ ଜାଗାକୁ ନେବାପାଇଁ କହିଥା'ନ୍ତି, ଯେହେତୁ ମନ୍ତ୍ରୀ ଅଛି ଏପରି କରିବା ଅସୁନ୍ଦର ହେବ । ଏ ଜାଗାକୁ ସେ ନିଅନ୍ତୁ ବୋଲି ମୁଁ ପରାମର୍ଶ ଦେଇଥିଲି । ତାହାହିଁ ହୋଇଥିଲା । ସୁରେନ୍ଦ୍ରବାବୁଙ୍କୁ କହିଥିଲି, ସେ ଇଚ୍ଛା କଲେ ଜନାର୍ଦ୍ଦନବାବୁଙ୍କୁ ପଚାରି ମୋ କଥାର ସତ୍ୟାସତ୍ୟ ସମ୍ବନ୍ଧରେ ବୁଝିପାରିବେ । ଏହାର ଅନେକ ଦିନ ପରେ ଜନାର୍ଦ୍ଦନବାବୁଙ୍କ ଭାଇ ସେଠାରେ ପେଟ୍ରୋଲ୍ ଟାଙ୍କି ବସାଇଲେ । ମୋର ଶୋଇବା ଘରକୁ ଲାଗି ବସିଲା ପେଟ୍ରୋଲ୍ ଟାଙ୍କି । ଏହାଦ୍ୱାରା ମୋତେ ବହୁତ ଅସୁବିଧା ଭୋଗିବାକୁ ପଡ଼ିଲା । ଆମ ଲୋକ ମୋତେ କହିଥିଲେ, ମୋ ନିର୍ବୋଧତା ଯୋଗୁଁ ମୁଁ ଅସୁବିଧାଭୋଗୁଛି । ମୋତେ ଯେତେବେଳେ ଜମି ଯଚାଯାଉଥିଲା ମୁଁ ନେଇଥିଲେ ବର୍ତ୍ତମାନ ଯେଉଁ ଅସୁବିଧା ଭୋଗୁଛି, ତାହା ଏଡ଼ାଇ ଦେଇ ପାରିଥା'ନ୍ତେ । ଏହା ପରେ ସୁରେନ୍ଦ୍ରବାବୁ ଚାହିଁଥିଲେ ମୋତେ ଜାନକୀବାବୁଙ୍କ ଗ୍ରାମ ରାମେଶ୍ୱରକୁ ନେଇ ଯାହାସବୁ ଜାନକୀ-ବାବୁଙ୍କ ବିରୁଦ୍ଧରେ ଅଭିଯୋଗ ହେଉଛି ତାହାର ପ୍ରତ୍ୟକ୍ଷ ଚିତ୍ର ଦେଖାଇବାପାଇଁ । ମାତ୍ର ମୁଁ ଯିବି ଯିବି କହି ସେ କଥାକୁ ଏଡ଼ାଇଦେଇଥିଲି ।

ଶ୍ରୀ ଜାନକୀ ପଟ୍ଟନାୟକଙ୍କ ଗାଁରେ ଘଟୁଥିବା ଜମିବାଡ଼ି ସମ୍ବନ୍ଧୀୟ ଘଟଣାସବୁ ଆଲୋଚନା କଲାବେଳେ ମୋ ମନକୁ ବହୁ ଚର୍ଚ୍ଚିତ ରୂଢ଼ିଟିଏ ମନେପଡ଼େ ଏବଂ ଏହି ରୂଢ଼ି ଜାନକୀବାବୁଙ୍କ ପ୍ରତି ଏକାବେଳେକେ ପ୍ରଯୁଜ୍ୟ ବୋଲି ମନେହେଲା । କଥାରେ ଅଛି, ''ଗାଁ ପରିମଳ ଧୋବାତୁଠରୁ'', ଗାଁ ଲୋକଙ୍କର ପରିଷ୍କାର ପରିଚ୍ଛନ୍ନତା, ସେମାନଙ୍କର ନିଜର ପରିବେଶ ସମ୍ବନ୍ଧରେ ସଚେତନତା ଏବଂ ସେମାନଙ୍କର ରୁଚିବୋଧ ଓ ଆଚରଣ ଗାଁ ଧୋବାତୁଠରେହିଁ ପ୍ରତିଫଳିତ ହୁଏ । ଠିକ୍ ସେହିପରି ଜାନକୀ ପଟ୍ଟନାୟକଙ୍କର ରାଜ୍ୟ ପ୍ରୀତି ଓ ପ୍ରଶାସନିକ ଆଚରଣ ଏହି ଛୋଟ ନଜିରରୁ ଜଣାପଡ଼େ । ମୁଖ୍ୟମନ୍ତ୍ରୀ ହେଲା ପରେ ଜାନକୀ ପଟ୍ଟନାୟକଙ୍କର ଲୋଲୁପ ଦୃଷ୍ଟିର ଶିକାରହୋଇଥିଲା ତାଙ୍କ ନିଜ ଗାଁ ରାମେଶ୍ୱରର ସର୍ବସାଧାରଣ ଜମି, ଶ୍ମଶାନ, ଅନାବାଦୀ ଓ ଗୋଚର ଜମି ସମୂହ । ଏଥିପାଇଁ ସେ ନିଜର ହଳିଆ ଶ୍ରୀ କିଶୋର ବଳିୟାରସିଂହ ଓ ନିଜର ରୋଷେୟା ଶ୍ରୀ ଫକୀର ରଥଙ୍କୁ ଭୂମିହୀନ ଦର୍ଶାଇ ବେନାମିଦାର ରୂପେ ବ୍ୟବହାରକରି ୧୯୮୦ ନଭେମ୍ବର ଓ ୧୯୮୧ ମାର୍ଚ୍ଚ ମାସ ମଧ୍ୟରେ ସେ ଦୁଇ ଏକରରୁ ଅଧିକ ଗୋଚର, ଅନାବାଦୀ ଓ ଶ୍ମଶାନ ଜମିକୁ ସେମାନଙ୍କ ନାମରେ ପଟ୍ଟା-କରାଇନେଇଥିଲେ । ପରେ ଜମିଜମା ସଂପର୍କୀୟ ସମସ୍ତ ପ୍ରକାର ଆଇନ୍‌କୁ ବେଖାତିର କରି ୧୯୮୨ ମେ ମାସରେ ଉକ୍ତ ବେନାମୀ ଜମିକୁ ନିଜ ସ୍ତ୍ରୀ ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକଙ୍କ ନାମରେ ସେମାନଙ୍କଠାରୁ କବଲା କରିନେଇଥିଲେ । ଏହାଛଡ଼ା ତାଙ୍କ ଗ୍ରାମରେ ଥିବା ମହନ୍ତ ଅଧିକାରୀ ବୃନ୍ଦାବନ ଦାସଙ୍କ ମାରଫତ୍‌ରେ ଥିବା ଜଗନ୍ନାଥ ମହାପ୍ରଭୁଙ୍କ ସଂପତ୍ତି ପ୍ରାୟ ଚାରି ଏକର ଜମିକୁ ଶ୍ରୀ ପଟ୍ଟନାୟକ ନିଜ ନାମରେ କରାଇନେଇ ବଗିଚା ସହିତ ମିଶାଇଦେଇଛନ୍ତି । ସାଧାରଣତଃ ମଠ ଜମି କୋଠ ହୁଏ, ଏଠାରେ ମଠ ଜମି ଜାନକୀ-ବାବୁଙ୍କର ହେଲା ।

ସ୍ୱାଧୀନତା ସଂଗ୍ରାମ ପ୍ରାରମ୍ଭରେ କଂଗ୍ରେସ ଲୋକମାନେ ଗାଁ ଗାଁ ବୁଲି ଗାନ୍ଧୀଜିଙ୍କର ଆଦର୍ଶ ଓ ଗଠନମୂଳକ କାର୍ଯ୍ୟ ବିଷୟରେ ଲୋକଙ୍କୁ ବୁଝାଉଥିଲେ – ଗାଁର ରାସ୍ତା, ଗୋଚର, ଅନାବାଦୀ ଓ ଶ୍ମଶାନ ଆଦି ଜମି ସର୍ବସାଧାରଣଙ୍କର ଏବଂ ତା'ର ରକ୍ଷଣାବେକ୍ଷଣ ଦାୟିତ୍ୱ ମଧ ଗ୍ରାମବାସୀଙ୍କର ।

ଗ୍ରାମବାସୀମାନଙ୍କ ମଧ୍ୟରେ ଏକତା ରଖିବା, ଗାଁର ମାଲିମୋକଦ୍ଦମା ଗାଁରେ ବସି ତୁଟାଇବା ଓ ଗାଁର ଭଲମନ୍ଦ ଗ୍ରାମବାସୀମାନେ ଏକତ୍ର ବସି ବିଚାର କରିବା ଥିଲା ଗ୍ରାମବାସୀମାନଙ୍କୁ କଂଗ୍ରେସ ଲୋକଙ୍କ ପରାମର୍ଶ । ଜାନକୀବାବୁ କଂଗ୍ରେସର ଜଣେ ବଡ଼ ନେତା ହୋଇ ମଧ୍ୟ କଂଗ୍ରେସର ଏହି ନୀତି ପ୍ରତି ଭ୍ରୂକ୍ଷେପ ନକରି ସାଧାରଣ ସମ୍ପତ୍ତିକୁ ନିଜର କରିନେବାପାଇଁ ଉଦ୍ୟମକରି ରାମେଶ୍ୱର ଜମିଜମା ଆଇନ ଓ ସାମାଜିକ ଚଳଣିର ଉଲ୍ଲଙ୍ଘନ କରିଥିଲେ ।

ଏହାର ବିରୋଧରେ ଆନ୍ଦୋଳନ ଆରମ୍ଭହୋଇଥିଲା ଓ ସେହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ ଶ୍ରୀ ପ୍ରସନ୍ନ ପାଟଶାଣୀ, ଶ୍ରୀ ସୁରେନ୍ଦ୍ର ଭଞ୍ଜ ଓ ଶ୍ରୀ ସୁରେନ୍ଦ୍ର ନାଥ ନାୟକ ପ୍ରମୁଖ । ସମାଜ ସମ୍ପାଦକ ଡକ୍ଟର ରାଧାନାଥ ରଥଙ୍କର ଏହି ଆନ୍ଦୋଳନ ପ୍ରତି ପୂର୍ଣ୍ଣ ସମର୍ଥନ ଥିଲା । ରାମେଶ୍ୱର ଅଞ୍ଚଳରେ କ୍ଷମତା ପ୍ରୟୋଗକରି ଯେଉଁସବୁ ଅନ୍ୟାୟ ଜାଲିଆତି ଓ ଅପକର୍ମ କରାଯାଉଥିଲା, ସେସବୁର ବିବରଣୀ ବିସ୍ତୃତ ଭାବରେ ସେ ସମୟରେ ସମାଜ ଖବରକାଗଜରେ ପ୍ରକାଶପାଉଥିଲା । ଏଥିରେ ବିବ୍ରତ ହୋଇ ଡକ୍ଟର ରାଧାନାଥ ରଥ ଓ ପ୍ରସନ୍ନ ପାଟଶାଣୀଙ୍କ ଉପରେ ଜାନକୀବାବୁ କୁଆଡ଼େ ବିଶେଷ ଭାବରେ କ୍ରୋଧାନ୍ୱିତ ହୋଇଥିଲେ ।

ଚଳିଆ ଥାନାର ଗଡ଼ମାଣିତ୍ରି ଗାଁଟି ଜାନକୀବାବୁଙ୍କ ଗାଁ ରାମେଶ୍ୱରଠାରୁ ପ୍ରାୟ ସାତ କିଲୋମିଟର ଦୂରରେ ଅବସ୍ଥିତ । ସେଠାରେ ଥିବା ରାମଚଣ୍ଡୀ କଲେଜର ଗୋଟିଏ ଅନୁଷ୍ଠାନରେ ଉଦ୍‌ବୋଧନ ଦେବାପାଇଁ ୧୯୮୬ ମାର୍ଚ୍ଚ ମାସ ୧୮ ତାରିଖରେ ଡକ୍ଟର ରାଧାନାଥ ରଥ ଯାଇଥିଲେ । ତାଙ୍କ ସାଙ୍ଗରେ କମ୍ୟୁନିଷ୍ଟ ନେତା ଶ୍ରୀ ଗଙ୍ଗାଧର ପାଇକରାୟ ଓ ସାମ୍ବାଦିକ ଅଶୋକ ଦାସ ମଧ୍ୟ ଯାଇଥିଲେ । ରାତିରେ ଫେରିଲାବେଳେ କେତେକ ଲୋକ ରାସ୍ତା ଉପରେ ଗଛ ପକାଇ ତାଙ୍କ ଗାଡ଼ି ଅଟକାଇ ଠେଙ୍ଗାରେ ପିଟାପିଟି କରି ଗାଡ଼ିର କାଚଭାଙ୍ଗି ରାଧାନାଥବାବୁଙ୍କ ସହ ଅନ୍ୟ ସମସ୍ତଙ୍କୁ ଖଣ୍ଡିଆଖାବରା କରି ରକ୍ତାକ୍ତ କରିଦେଇଥିଲେ । ଡ୍ରାଇଭର୍ ଆଖିରେ ଗୁରୁତର ଆଘାତ ହୋଇଥିଲେ ମଧ୍ୟ ଜୀବନ ବିକଳରେ କୌଣସି ପ୍ରକାରେ ବାଟରେ ପଡ଼ିଥିବା ଗଛକୁ ଅତିକ୍ରମ କରି ଗାଡ଼ିଧରି ପଳାଇଆସିଥିଲେ । ଗୁରୁତର ଅବସ୍ଥାରେ ସମସ୍ତେ ଖୋର୍ଦ୍ଧା ଡାକ୍ତରଖାନାରେ ପହଞ୍ଚି ଚିକିତ୍ସିତ ହୋଇଥିଲେ । ଡକ୍ଟର ରଥ ତାଙ୍କର ''ଝିଟିପିଟି କହେ'' ପୁସ୍ତକରେ ୩୫୬ ପୃଷ୍ଠାରେ ଗଡ଼ମାଣିତ୍ରିରୁ ଫେରିଲାବେଳେ କିଭଳି ଭାବରେ ତାଙ୍କ ଉପରେ ଆକ୍ରମଣ ହୋଇଥିଲା ତାହା ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି । ସେ କହିଛନ୍ତି ଯେ, ''ଯେଉଁ ବୋମା ଫୁଟିଲା ତାହା ଏପରି ପ୍ରବଳ ଥିଲା ଯେ, ବ୍ରେକରର ଗୋଟିଏ କାଚକୁ ଫଟାଇ ତରଳାଇଦେଲା । ତେଣୁ ଏ ଆକ୍ରମଣ ଯେ ପୂର୍ବପରିକଳ୍ପିତ ଓ ଷଡ଼ଯନ୍ତ୍ରମୂଳକ ଏଥିରେ କ'ଣ ସନ୍ଦେହ ଅଛି ! ପୁଲିସ ଏ ଘଟଣା ସମ୍ବନ୍ଧରେ ଏକାବେଳକେ ନିଷ୍କ୍ରିୟ ରହିଲେ । ଯେଉଁମାନେ ଆକ୍ରମଣ କରିଥିଲେ ସେମାନଙ୍କର ନାମ ଲୋକଙ୍କଠାରୁ ଜଣାପଡ଼ିଥିଲେ ମଧ୍ୟ ପୁଲିସ ସେମାନଙ୍କ ବିରୁଦ୍ଧରେ କିଛି କାର୍ଯ୍ୟାନୁଷ୍ଠାନ କରିନଥିଲେ । ବରଂ ସେହି ଲୋକମାନେ ଜାନକୀ ପଟ୍ଟନାୟକଙ୍କଠାରୁ ମୁଖ୍ୟମନ୍ତ୍ରୀଙ୍କ ଇଚ୍ଛାଧୀନ ରିଲିଫ୍ ପାଣ୍ଠିରୁ ବହୁ ଅର୍ଥ ପାଇ ପୁରସ୍କୃତ ହୋଇଥିବାର ପ୍ରମାଣ ମିଳିଥିଲା ।

ଡକ୍ଟର ରଥଙ୍କୁ ପାନେ ଦେବା ପରେ ପାଳିପଡ଼ିଲା ବାବାଜି ପ୍ରସନ୍ନ ପାଟଶାଣୀଙ୍କର । ବାବାଜିଙ୍କ ଛାଇ ପଡ଼ିଲେ ଜାନକୀବାବୁଙ୍କୁ ନାହିଁ ଡେଉଁଥିଲା । ପ୍ରସନ୍ନବାବୁ ପୂର୍ବଥର ବିଧାନସଭା ସଦସ୍ୟ ଥିଲାବେଳେ 5-R କ୍ୱାଟରରେ ରହୁଥିଲେ । ଏହା ସାଧାରଣ ବିଧାନସଭା ସଦସ୍ୟମାନେ ପାଉଥିବା ଘରଠାରୁ ଟିକିଏ ବଡ଼ । ୧୯୮୫ ମସିହାରେ ପ୍ରସନ୍ନବାବୁ ପୁଣି ନିର୍ବାଚିତ ହୋଇ ବିଧାନସଭାକୁ ଆସିଥିଲେ, ତେଣୁ ପୂର୍ବରୁ ଥିବା ଘରକୁ ନଛାଡ଼ି ସେହିଠାରେ ସେ ରହିଲେ । ଜାନକୀବାବୁଙ୍କର କୋପଦୃଷ୍ଟି ତାଙ୍କ ଉପରେ ଥିବାରୁ ପାଟଶାଣୀ ଗୋଟିଏ ବଡ଼ ଘରେ ରହିବାକୁ ସେ ସହ୍ୟ କରିପାରୁନଥିଲେ । ତାଙ୍କୁ କୁହାଗଲା, ସେ ଘର ଛାଡ଼ିବାପାଇଁ । ଏହି ସମୟରେ

ପ୍ରସନ୍ନବାବୁ ମୋତେ ଦେଖାକରି ଏହି ଅବସ୍ଥାରେ କ'ଣ କରାଯାଇପାରେ ବୋଲି ମୋର ପରାମର୍ଶ ଲୋଡ଼ିଥିଲେ । ଅଧିକ ଭଡ଼ା ଦେଇ ସେ ସେହି ଘରେ ରହିବାକୁ ଚାହୁଁଥିଲେ । ସେ କଥା ଲେଖି ସରକାରକୁ ଦେବାପାଇଁ ମୁଁ କହିଥିଲି । ତାହାହିଁ ସେ କରିଥିଲେ । ମାତ୍ର ସେସବୁ କଥା କିଛି ନଶୁଣି ଜାନକୀବାବୁଙ୍କର ଜିଦ୍ ରହିଲା ତାଙ୍କୁ ସେଠାରୁ ତଡ଼ିବାପାଇଁ । ତାଙ୍କ ଉପରେ ବହିଷ୍କାର ଆଦେଶ ଜାରିକରାଯାଇଥିଲା । ଘର ନଛାଡ଼ି ଆଦେଶର ପୁନର୍ବିଚାର ପାଇଁ ସେ ଆବେଦନ କରିଥିଲେ । ଏହି ସମୟରେ ହିମାଳୟରୁ ପାଞ୍ଚଜଣ ସାଧୁ ପ୍ରସନ୍ନ ବାବୁଙ୍କ ପାଖକୁ ଆସିଥିଲେ । ସେମାନେ ପ୍ରସନ୍ନବାବୁଙ୍କ ଘରେ ରହି ରାତିରେ ସେମାନଙ୍କର ତନ୍ତ୍ର, ମନ୍ତ୍ର ଓ ପୂଜାପାଠ ଉଚ୍ଚସ୍ୱରରେ କରୁଥିଲେ । ଆଖପାଖ ଲୋକ କୁହାକୁହି ହେଲେ ଯେ ହିମାଳୟରୁ ବଡ଼ ବଡ଼ ସାଧୁ ଆସୁଛନ୍ତି, ଯେଉଁମାନେ ତନ୍ତ୍ର, ମନ୍ତ୍ର ଓ ଗୁଣିଗାରେଡ଼ି ଜାଣନ୍ତି । ଗୋଇନ୍ଦା ବିଭାଗର ଲୋକମାନେ ମୁଖ୍ୟମନ୍ତ୍ରୀଙ୍କ କାନରେ ପକାଇଲେ ଯେ, ହିମାଳୟରୁ ସାଧୁମାନେ ଆସି ପ୍ରସନ୍ନବାବୁଙ୍କ ଘରେ ରହି ତନ୍ତ୍ର ସାଧନ କରୁଛନ୍ତି । ତଦ୍ୱାରା ଜାନକୀବାବୁଙ୍କ କୁର୍ସି ଉପରେ ବିପଦ ଆସିପାରେ । ଏହା ଶୁଣିଲାକ୍ଷଣି ସେହି ୨୧.୯.୮୬ ତାରିଖ ରାତି ଦଶଟାବେଳେ ଗାଡ଼ିଏ ପୁଲିସ ପଠାଇ ପ୍ରସନ୍ନବାବୁଙ୍କୁ ସେ ଘରୁ ତଡ଼ିଦେଇ ତାଙ୍କ ଜିନିଷପତ୍ର ବାହାରକୁ ଫିଙ୍ଗି ଦିଆଗଲା । ବିଧାୟକ ଭାବରେ ତାଙ୍କୁ ଆଉ ଗୋଟିଏ ଘର ଦେବାପାଇଁ ସେ ଆଉ ଆବେଦନ କରିନଥିଲେ । ବିଧାୟକ ହିସାବରେ ଭୁବନେଶ୍ୱରରେ ତାଙ୍କୁ ଖଣ୍ଡେ ଜାଗା ମିଳିଥିଲା । ପ୍ରସନ୍ନବାବୁ ସେହି ଜାଗା ଉପରେ ଗୋଟିଏ ପଲା ପକାଇ ରହିଥିଲେ । ପ୍ରସନ୍ନବାବୁ ଖୋର୍ଦ୍ଧା ନିର୍ବାଚନ ମଣ୍ଡଳୀର ପ୍ରତିନିଧି ଥିଲେ । ସେଠାକାର ଲୋକେ ତାଙ୍କର ବିଧାୟକଙ୍କ ପ୍ରତି ମୁଖ୍ୟମନ୍ତ୍ରୀଙ୍କର ଏ ପ୍ରକାର ଆଚରଣକୁ ନିନ୍ଦାକରି ଗୋଟିଏ ସଭା କରିଥିଲେ । ଲୋକଙ୍କ ମଧ୍ୟରୁ ଚାନ୍ଦା ଆଦାୟକରି ପ୍ରସନ୍ନବାବୁଙ୍କପାଇଁ ଗୋଟିଏ ଘର ତୋଳିବା କଥା ସେ ସଭାରେ ନିଷ୍ପତ୍ତି ନିଆଗଲା । ଚାନ୍ଦା ଆଦାୟ ହେଲା । ଡକ୍ଟର ରାଧାନାଥ ରଥ ଏଥିପାଇଁ ୧୦ ହଜାର ଟଙ୍କା ଚାନ୍ଦା ଦେଇଥିଲେ । ପଲାମାରି ରହିଥିବା ଜାଗାରେ ଘରତୋଳାହେଲା । ସେହି ବାସଗୃହ ଉଦ୍‌ଘାଟନ କରିଥିଲେ ଡକ୍ଟର ରାଧାନାଥ ରଥ । ଉଦ୍‌ଘାଟକଙ୍କ ନାମ ଘରର ଗେଟ୍ ଆଗରେ ଲେଖାଅଛି । ଏସବୁ ବିଷୟ ଓଡ଼ିଶା ବିଧାନସଭାରେ ବିଶଦ ଭାବରେ ଆଲୋଚିତ ହୋଇଥିଲା । ଏହି ସମୟରେ ସାମ୍ବାଦିକ ପ୍ରଶାନ୍ତ ପଟ୍ଟନାୟକ ରାମେଶ୍ୱରରେ ଜାନକୀବାବୁଙ୍କର ବେନାମୀ କାରବାର ସମ୍ବନ୍ଧରେ ସମ୍ବାଦ ପରିବେଷଣ କରିବାରୁ ଜାନକୀବାବୁ ଅସନ୍ତୁଷ୍ଟ ହୋଇଥିଲେ । ସେ ରହୁଥିବା ସରକାରୀ ଘରୁ ତାଙ୍କୁ ବାହାର କରି ଦିଆଯାଇଥିଲା, ପରେ ଜନତା ସରକାର ଆସିବା ପରେ ତାଙ୍କୁ ସରକାରୀ ଘର ମିଳିଥିଲା ।

ଯେଉଁ ଆନ୍ଦୋଳନକାରୀମାନେ ନିଜ ଗ୍ରାମ ରାମେଶ୍ୱରରେ ଶ୍ମଶାନ ଓ ଗୋଚର ଆଦି ଗ୍ରାସ ବିରୁଦ୍ଧରେ ବାହାରିଲେ ସେମାନେ ଛାଡ଼ିବା ଲୋକ ନୁହଁନ୍ତି । ସେମାନେ ଏହି ବେନାମୀ କାରବାର ରଦ୍ଦ କରିବାପାଇଁ ଓଡ଼ିଶା ହାଇକୋର୍ଟର ଦ୍ୱାରସ୍ଥ ହେଲେ । ସର୍ବଶ୍ରୀ ଏସ୍.ଏସ୍. ଭଞ୍ଜଦେଓ, ସିଦ୍ଧେଶ୍ୱର ବିଶ୍ୱାଳ, ଭିକାରି ତ୍ରିପାଠୀଙ୍କ ପକ୍ଷରୁ ଶ୍ରୀ ଜାନକୀ ପଟ୍ଟନାୟକ, ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକ ଓ ରାଜ୍ୟ ସରକାରଙ୍କ ବିରୁଦ୍ଧରେ ଗୋଟିଏ ଜନସ୍ୱାର୍ଥ ମାମଲା ୧୯୮୬ ମସିହାରେ ହାଇକୋର୍ଟରେ ଦାୟର କରିଥିଲେ । ଓଡ଼ିଶା ହାଇକୋର୍ଟର ମାନ୍ୟବର ବିଚାରପତି ଶ୍ରୀ ବାଳକୃଷ୍ଣ ବେହେରା ଓ ମାନ୍ୟବର ଶ୍ରୀ ଗୋପାଳ ବଲ୍ଲଭ ପଟ୍ଟନାୟକଙ୍କୁ ନେଇ ଗଠିତ ଦୁଇଜଣିଆ ଖଣ୍ଡପୀଠରେ ଏପ୍ରିଲ ୧୭ ତାରିଖରେ ଏହି ମାମଲାର ଶୁଣାଣି ହୋଇଥିଲା । ବିଚାରପତିମାନେ ବିଶେଷ ଭାବରେ କେଶ୍ ଭିତରକୁ ନଯାଇ ହାଇକୋର୍ଟ ଏହାର ବିଚାରପାଇଁ ଉପଯୁକ୍ତ ସ୍ଥାନନୁହେଁ କହି ଆବେଦନକୁ ଖାରଜ କରିଦେଇଥିଲେ ।

ଆବେଦନକାରୀମାନେ ଓଡ଼ିଶା ହାଇକୋର୍ଟର ଏହି ରାୟ ବିରୁଦ୍ଧରେ ସୁପ୍ରୀମ୍‌କୋର୍ଟରେ ଆଶ୍ରୟ ନେଇଥିଲେ । ସୁପ୍ରୀମ୍‌କୋର୍ଟର ମାନ୍ୟବର ବିଚାରପତି ଶ୍ରୀ ଏ.ଏଚ.ଅହମ୍ମଦୀ ଓ ଏସ. ମୋହନଙ୍କୁ

ନେଇ ଗଠିତ ଖଣ୍ଡପୀଠରେ ନଭେମ୍ବର ୯ ତାରିଖ ୧୯୯୨ ମସିହାରେ ଶୁଣାଣି ହୋଇଥିଲା । ଆବେଦନକାରୀଙ୍କ ପକ୍ଷରୁ ସୁପ୍ରିମ୍‌କୋର୍ଟର ବିଶିଷ୍ଟ ଆଡ୍‌ଭୋକେଟ ଶ୍ରୀ ଶାନ୍ତିଭୂଷଣ ମୋକଦ୍ଦମା ଲଢୁଥିଲେ । ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଯେପରି ଭାବରେ କ୍ଷମତାର ଅପବ୍ୟବହାର କରି ସର୍ବସାଧାରଣ ଜମିକୁ ନିଜ ନାମରେ କରାଇନେଇଛନ୍ତି ସେକଥା ଦୃଢ଼ଭାବରେ ମାନ୍ୟବର ବିଚାରପତିଙ୍କ ଆଗରେ ଶ୍ରୀ ଶାନ୍ତିଭୂଷଣ ନଥିପତ୍ର ସହ ଉପସ୍ଥାପନ କରିଥିଲେ । ଏଥିରେ ମାନ୍ୟବର ବିଚାରପତିମାନଙ୍କ ହୃଦ୍‌ବୋଧ ହେବାରୁ ସେମାନେ ଓଡ଼ିଶା ହାଇକୋର୍ଟ ରାୟକୁ ରଦ୍ଦ କରିବା ସଙ୍ଗେ ସଙ୍ଗେ ଆବେଦନର ତୁରନ୍ତ ପୁନର୍ବିଚାର କରିବାପାଇଁ ଓଡ଼ିଶା ହାଇକୋର୍ଟକୁ ନିର୍ଦ୍ଦେଶ ଦେଇଥିଲେ । ଏହିପ୍ରକାର ମୋକଦ୍ଦମାର ବିଚାରପାଇଁ ହାଇକୋର୍ଟ ଉପଯୁକ୍ତ ଅଦାଲତନୁହେଁ ବୋଲି ଓଡ଼ିଶା ହାଇକୋର୍ଟ ଯେଉଁ ମତ ବ୍ୟକ୍ତ କରିଥିଲେ ତାକୁ ବିଚାରପତିମାନେ ନାପସନ୍ଦ କରିଥିଲେ । ଏ ସମ୍ବନ୍ଧରେ ନିଷ୍ପତ୍ତି ଦେବାବେଳେ ସୁପ୍ରିମ୍ କୋର୍ଟର ବିଚାରପତିମାନେ ସ୍ପଷ୍ଟ ମତବ୍ୟକ୍ତ କରିଥିଲେ ଯେ, The High Court ought not to have disposed of the matter in having regard to the serious allegations made in the writ petition filed under Article 226 of the Constitution x x x instead the High Court has dismissed the petition on the ground that the aggrieved person can move the appropriate forum for redressal. But in a public interest allegation like this, the High Court itself is the appropriate forum.

ଗତ ଦଶ ବର୍ଷ ହେଲା ଏହି ମୋକଦ୍ଦମାଟି ହାଇକୋର୍ଟରୁ ସୁପ୍ରିମ୍‌କୋର୍ଟ, ସୁପ୍ରିମ୍‌କୋର୍ଟରୁ ହାଇକୋର୍ଟ ମଧ୍ୟରେ ବୁଲୁଛି । ଏହି ମୋକଦ୍ଦମାଟି ପୁନର୍ବିଚାରପାଇଁ ଓଡ଼ିଶା ହାଇକୋର୍ଟରେ ଏବେ ମଧ୍ୟ ପଡ଼ିଛି । ଜଣାନାହିଁ, ହାଇକୋର୍ଟରେ ଏହାର ବିଚାର କେବେ ସରିବ ? ହାଇକୋର୍ଟରେ ବିଚାର ପରେ ପୁଣି ଏହି ବିଷୟଟି ସୁପ୍ରିମ୍‌କୋର୍ଟକୁ ଯିବାର ସମ୍ଭାବନାକୁ ଏଡ଼ାଇ ଦେଇହେବନାହିଁ । ଆମ ଦେଶ ନ୍ୟାୟଳୟମାନଙ୍କର ଗତିବିଧି ଓ ପଦ୍ଧତି ଯାହା, ସେଥିରେ ମୋକଦ୍ଦମା କଲେ ତାର ଶେଷ ନିଷ୍ପତ୍ତିକୁ ଅପେକ୍ଷା କରିବାପାଇଁ ଲୋକର ଯଥେଷ୍ଟ ବଳ, ବୟସ, ଧନ ଓ ଧୈର୍ଯ୍ୟ ଥିବା ଆବଶ୍ୟକ ।

ନିଜେ ଜନ୍ମହୋଇଥିବା ଗାଁର ଲୋକମାନଙ୍କ ସହ ସବୁପ୍ରକାର ମୁଖଲଜ୍ଜା ଛାଡ଼ି ଯେଉଁ ବ୍ୟକ୍ତି ଏପରି ଭାବରେ ଚକ୍ରାନ୍ତ ଓ ବେନାମୀ କାରବାର କରିପାରନ୍ତି ସେ ଅନ୍ୟତ୍ର ଦୂରଦୂରାନ୍ତରେ ତଦ୍ରୂପ ଅପକର୍ମମାନ ଯେ ନାନା ଉପାୟରେ କରୁନଥିବେ ତାହା କହିହେବନାହିଁ । ରାଜଧାନୀ ଭୁବନେଶ୍ୱରରେ ପ୍ଲଟ୍ ନଂ ୨୦୧ ଫରେଷ୍ଟ ପାର୍କ ଜାନକୀ ପଟ୍ଟନାୟକଙ୍କ ନିଜ ବାସଭବନ ଭାବେ ପରିଚିତ । ମାତ୍ର ସେହି ସଂପତ୍ତି କୁଆଡ଼େ କେଉଁଝରରେ ବାସକରୁଥିବା ତାଙ୍କ ସମୁଦୁଣୀଙ୍କ ନାମରେ ଅଛି । ଏଣେ ସମୁଦୁଣୀଙ୍କ ବୋହୂ ନିଜ ଝିଅ ନାମରେ ପ୍ରଶସ୍ତ ଘର ନୂଆପଲ୍ଲୀରେ ତୋଳା ହୋଇଗଲାଣି । ନିଜ ଗାଁ ରାମେଶ୍ୱରରେ ତାଙ୍କ ଆଚରଣକୁ ସମୀକ୍ଷା କଲେ ଭୁବନେଶ୍ୱରରେ ଏହି ଭବନଟିର ମାଲିକାନା ଯେ ବେନାମୀ କାରବାରର ଅନ୍ୟ ଏକ ଦୃଷ୍ଟାନ୍ତ ଏପରି ସନ୍ଦେହ ହେବାର ଅବକାଶ ରହୁଛି । ଏହିପରି ଭୁବନେଶ୍ୱରରେ ଆହୁରି ଅନେକ ବେନାମୀ ଘର ତାଙ୍କର କିମ୍ବା ତାଙ୍କର କୁଟୁମ୍ବମାନଙ୍କ ନାମରେ ଅଛି ବୋଲି ସାଧାରଣରେ ଆଲୋଚିତ ହେଉଛି ।

ଏହା ଦିଲ୍ଲୀକୁ ମଧ୍ୟ ପ୍ରସାରିତ ହୋଇଥିବାର କୁହାଯାଏ । ସଦ୍‌ଦରଜଙ୍କ ଏନକ୍ଲେଭ ପ୍ଲଟ୍ ନମ୍ବର A/310ରେ ଥିବା ଘରଟି ପ୍ରାୟ ୧୦ ବର୍ଷ ହେଲା ଜାନକୀବାବୁ ଓ ତାଙ୍କ ସ୍ତ୍ରୀଙ୍କ ଅକ୍ତିଆରରେ ରହିଛି । ସେହି ଘରେ ଲାଗିଥିବା ୬୧୭୪୫୩୬ ଟେଲିଫୋନ୍‌ଟି ଜାନକୀବାବୁଙ୍କ ସ୍ତ୍ରୀଙ୍କ ନାମରେ ଅଛି । ଘର ଆଗରେ ଲେଖାଅଛି 'ପୋଦ୍ଦାର ହାଉସ୍' । ଏ କ'ଣ ସେହି ପୋଦ୍ଦାର ଯେକି ଜାନକୀବାବୁଙ୍କ ସରକାରଙ୍କର ସୋରିଷ ତେଲ କିଣା ଦୁର୍ନୀତି ଅଭିଯୋଗ ସହିତ ସଂପୃକ୍ତ ଥିଲେ !

ଉପରୋକ୍ତ ଘଟଣାବଳୀକୁ ପର୍ଯ୍ୟାଲୋଚନା କଲେ ଜଣାପଡ଼େ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ

ପଟ୍ଟନାୟକ ତାଙ୍କ ଗାଁ ରାମେଶ୍ୱର ଲୋକଙ୍କ ସ୍ୱାର୍ଥ ବିରୁଦ୍ଧରେ ଚଞ୍ଚକତାକ୍ରମେ କ୍ଷମତାର ଅପବ୍ୟବହାର କରି ଯେଉଁ ଅଭିଜ୍ଞତା ଅର୍ଜନ କରିଥିଲେ, ସେହି ଚଞ୍ଚକତାକୁ ସର୍ବତ୍ର ପ୍ରୟୋଗ କରି ବେଶ୍ ବିରାଟ ଭୂସ୍ୱାମୀ ହେବାରେ ସଫଳ ହୋଇଛନ୍ତି । ବଗର ଥଣ୍ଡ ବଢ଼ିଲେ ମୀନମାନଙ୍କର ବିପତ୍ତି ବଢ଼େ ବୋଲି ପ୍ରବାଦ ଅଛି । ଜାନକୀବାବୁଙ୍କ କ୍ଷମତା ବଢ଼ିବା ଫଳରେ ବହୁ ଗରିବଗୁରୁବା ଓ ଅଭାବୀମାନଙ୍କର ସମ୍ପତ୍ତି ଅପହୃତ ହୋଇଛି । ଅନେକେ ଚାରିତ୍ରିକ ଭ୍ରଷ୍ଟାଚାରର ଶିକାର ହୋଇଛନ୍ତି ।

## ଅସାଧୁ ତେଲ କାରବାର, ଜାନକୀ-ପୋଦାର ମେଣ୍ଟ

ଦିଲ୍ଲୀର ସୋରିଷ ତେଲ କାରବାର କରୁଥିବା ପୋଦାର କଂପାନୀଠାରୁ ସୋରିଷ ତେଲ କିଲୋଗ୍ରାମ୍ ପ୍ରତି ୧୬.୦୨ଟଙ୍କା ହାରରେ ୪୦୦୦ ମେଟ୍ରିକ୍ଟନ୍ ସୋରିଷ ତେଲ କିଣିବାପାଇଁ ରାଜ୍ୟ ସରକାରର ଯୋଗାଣ ନିଗମ ୮।୫।୧୯୮୧ ମସିହାରେ ଯେଉଁ ଚୁକ୍ତି କରି ଅଗ୍ରିମ ଆକାରରେ ୬ କୋଟି ୧୦ ଲକ୍ଷ ଟଙ୍କା ଦେଇଥିଲେ ତାହା ସେହି ଦଶନ୍ଧିରେ ଗୋଟିଏ ଅଭୂତପୂର୍ବ ଦୁର୍ନୀତିପୂର୍ଣ୍ଣ ଘଟଣା ବୋଲି ରାଜ୍ୟ ବିଧାନସଭା ଓ ସମ୍ବାଦପତ୍ରମାନଙ୍କରେ କୁହାଯାଇଥିଲା । ଏହି ଯୋଗାଣ ନିଗମ ରାଜ୍ୟ ଖାଦ୍ୟ ଓ ଯୋଗାଣ ବିଭାଗ ଅଧୀନରେ ଗୋଟିଏ ସଂସ୍ଥା । ଯୋଗାଣ ନିଗମର ୫୦ ଲକ୍ଷ ଟଙ୍କାରୁ ଊର୍ଦ୍ଧ୍ୱ କାରବାର ସମ୍ବନ୍ଧୀୟ ଚୁକ୍ତି କରିବାପାଇଁ ରାଜ୍ୟ ସରକାରଙ୍କ ଅନୁମୋଦନ ଆବଶ୍ୟକ, ଏ କ୍ଷେତ୍ରରେ ତାହା କରାଯାଇନଥିଲା । ତାହାଛଡ଼ା ଏହିସବୁ କାରବାରରୁ ଟେଣ୍ଡର ମାଗିବା ଓ କୋଟେସନ୍ ଗ୍ରହଣ କରିବାପାଇଁ ଯେଉଁ ନିୟମ ଅଛି ତାହା ସଂପୂର୍ଣ୍ଣ ଭାବରେ ଅବଜ୍ଞା କରି ଜାଲିଆତି କାରସାଦିର ଆଶ୍ରୟ ନିଆଯାଇଥିଲା । ତିନୋଟି ପ୍ରତିଷ୍ଠାନ ପକ୍ଷରୁ କୋଟେସନ୍ ଆସିଥିଲା । ପୋଦାର କମ୍ପାନୀ କୋଟେସନ୍‌ର ତାରିଖ ଥିଲା ୬.୫.୧୯୮୧ ଓ ଅନ୍ୟ ଦୁଇଟି ପ୍ରତିଷ୍ଠାନର କୋଟେସନ୍ ତାରିଖ ଥିଲା ୯.୫.୧୯୮୧ । କିନ୍ତୁ କୌତୂହଳ ଓ ମଜାର କଥା ହେଲା ଯେ, ଯୋଗାଣ ନିଗମ ଏହି ତିନୋଟି ପ୍ରତିଷ୍ଠାନଠାରୁ ୬.୫.୧୯୮୧ରେ ପ୍ରାପ୍ତି ସ୍ୱୀକାର କରିଥିଲା । ଏସବୁ କୋଟେସନ୍‌ର ବିଚାର ଓ ନିଷ୍ପତ୍ତି ୮।୫।୧୯୮୧ରେ ହୋଇଥିଲା । ଯଦିଓ ପୋଦାର କମ୍ପାନୀ ଛଡ଼ା ଅନ୍ୟ ଦୁଇଟି କୋଟେସନ୍‌ରେ ଆବେଦନ ତାରିଖ ଥିଲା ୯।୫।୧୯୮୧ । ତେଣୁ ପୋଦାର କମ୍ପାନୀକୁ ସାହାଯ୍ୟ କରିବାପାଇଁ ଏହିପ୍ରକାର କାରସାଦି କରାଯାଇଥିଲା ବୋଲି ବିଧାନସଭାରେ ଅଭିଯୋଗ ହୋଇଥିଲା ।

ସରକାରଙ୍କ ଅନୁମୋଦନ ନନେଇ ଯୋଗାଣ ନିଗମଦ୍ୱାରା ୬ କୋଟି ଟଙ୍କାର ଏତେ ବଡ଼ କାରବାରପାଇଁ ସିଦ୍ଧାନ୍ତ ନେବା କିପରି ସମ୍ଭବ ହେଲା ଏବଂ ଏହି କାରବାରରେ ଅସାଧୁ ଉପାୟ ଅବଲମ୍ବନ କରାଯାଇଛି ବୋଲି ବିରୋଧୀଦଳମାନଙ୍କ ପକ୍ଷରୁ ଅଭିଯୋଗ କରାଯାଇ ତାହାର ନିରପେକ୍ଷ ଅନୁସନ୍ଧାନ ସି.ବି.ଆଇ. ଦ୍ୱାରା କରାଯିବାପାଇଁ ଦାବି କରାଯାଇଥିଲା । ଏହାର ଉତ୍ତର ଦେବାକୁ ଯାଇ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ୨୯।୧୨।୧୯୮୨ର ଏକ ସାମ୍ବାଦିକ ସମ୍ମିଳନୀରେ ଏହି ଅଭିଯୋଗକୁ ଅସ୍ୱୀକାର କରିଥିଲେ । ରାଜ୍ୟ ଯୋଗାଣ ନିଗମ ବିନା ଟେଣ୍ଡରରେ ଦିଲ୍ଲୀରେ ପୋଦାର ଏଣ୍ଟରପ୍ରାଇଜର୍ସ ପ୍ରାଇଭେଟ୍ ଲିମିଟେଡ୍‌ଠାରୁ ସୋରିଷ ତେଲ କ୍ରୟ କରିଥିଲେ । ଉକ୍ତ ଘରୋଇ ସଂସ୍ଥା ସହିତ ସିଧାସଳଖ କଥାବାର୍ତ୍ତା କରିବା ପରେ ଯୋଗାଣ ନିଗମ ୪୦୦୦ ମେଟ୍ରିକ୍ଟନ୍ ସୋରିଷ ତେଲ କିଣିବାପାଇଁ ଚୁକ୍ତି ସ୍ୱାକ୍ଷର କରିଥିଲେ । (ସମାଜ ୩୦.୧୨. ୧୯୮୨) । ତତ୍କାଳୀନ ବିରୋଧୀଦଳ ନେତା ବିଜୁ ପଟ୍ଟନାୟକ ଏହି ବ୍ୟାପାରଟି ସି.ବି.ଆଇ ଦ୍ୱାରା ଅନୁସନ୍ଧାନ କରାଯିବାପାଇଁ ଯେଉଁ ଦାବି ଉଠାଇଥିଲେ ତାକୁ ଏଡ଼େଇଦେଇ ସାମ୍ବାଦିକ ସମ୍ମିଳନୀରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ପଟ୍ଟନାୟକ ପାଲଟା ଅଭିଯୋଗ କରିଥିଲେ ଯେ ବିଧାନସଭାର ପବ୍ଲିକ୍ ଅଣ୍ଡରଟେକିଙ୍ଗ୍ କମିଟି ବର୍ତ୍ତମାନ ସମସ୍ତ ବିଷୟ ବିଚାରକରୁଛନ୍ତି । ଏହା ବିଧାନସଭାର ଏକ ନିର୍ବାଚିତ

ସଂସ୍ଥା ହୋଇଥିବାରୁ ଏହାର ରିପୋର୍ଟ ମିଳିବା ପର୍ଯ୍ୟନ୍ତ ଆମେ ଅପେକ୍ଷା କରିବା ଉଚିତ । ବିଜୁବାବୁଙ୍କୁ ଲକ୍ଷ୍ୟକରି ସେ ଆକ୍ଷେପ କରିଥିଲେ ଯେ, ଯେଉଁମାନଙ୍କର ଗଣତନ୍ତ୍ରରେ ବିଶ୍ୱାସନାହିଁ, ସେହିମାନେହିଁ ପବ୍ଲିକ୍ ଅଣ୍ଡରଟେକିଙ୍ଗ କମିଟି ପରିବର୍ତ୍ତେ ସି.ବି.ଆଇ. ତଦନ୍ତର ଦାବିଉଠାଇଛନ୍ତି । ବଙ୍ଗଳାରେ ଗୋଟିଏ ଢଗ ଅଛି, ''ହରି ହରି ହରି, ଯାର ମୁଖେ ଲଜ୍ଜା ନାହିଁ ତାକେ ଆମି ଡରି'', ଜାନକୀବାବୁ ତଦ୍ରୂପ ନିର୍ଲଜ ମୁହଁଭଡ଼ଙ୍ଗ କରିଥିଲେ ।

ପୋଦାର କମ୍ପାନୀ ସହିତ ଚାରିହଜାର ମେଟ୍ରିକ୍‌ଟନ୍ ସୋରିଷ ତେଲ କିଣାଯିବାର ଚୁକ୍ତି ସମ୍ବନ୍ଧରେ ସରକାର ପୂର୍ବରୁ କିଛି ଜାଣିନଥିଲେ ବୋଲି ବିଭାଗୀୟ ସଚିବ ଶ୍ରୀ ଏସ୍.ଆର୍.ପାଲ ୧୦.୧୨. ୧୯୮୨ ତାରିଖରେ ନିଗମର ମେନେଜିଙ୍ଗ ଡିରେକ୍ଟରଙ୍କ ପାଖକୁ ଯେଉଁ ପତ୍ର ଲେଖିଥିଲେ ସେଥିରୁ ସ୍ପଷ୍ଟ ଜଣାଯାଏ ଯେ, ଯୋଗାଣ ନିଗମ ସରକାରଙ୍କ ସବୁ ପ୍ରକାର ନିୟମର ବ୍ୟତିକ୍ରମକରି ଏଭଳି ଚୁକ୍ତି କରାଯାଇଛି ବୋଲି ସେ ଉକ୍ତ ପତ୍ରରେ ଉଲ୍ଲେଖ କରିଥିଲେ । ମାତ୍ର ସାମ୍ବାଦିକ ସମ୍ମିଳନୀରେ ମୁଖ୍ୟମନ୍ତ୍ରୀଙ୍କ ବହଳମୁହାଁ ସଫେଇରୁ ଜଣାପଡୁଛି ଯେ, ତାଙ୍କ ଜ୍ଞାତସାରରେ ପୋଦାର କଂପାନୀ ସହିତ ସିଧାସଳଖ କଥାବାର୍ତ୍ତା କରାଯାଇ ଏ ପ୍ରକାର ଚୁକ୍ତି କରିବାର ସିଦ୍ଧାନ୍ତ ନିଆଯାଇଥିଲା, ତେଣୁ ନିଜ ଅପକର୍ମକୁ ଘଣ୍ଟଘୋଡ଼ାଇବାପାଇଁ ଗଣତାନ୍ତ୍ରିକ ପଦ୍ଧତିର ବାହାନା କରିଥିଲେ ମାତ୍ର ।

ଗଣତାନ୍ତ୍ରିକ ସଂସ୍ଥା ଉପରେ ବିଶ୍ୱାସ ରଖିବା ସମ୍ବନ୍ଧରେ ମୁଖ୍ୟମନ୍ତ୍ରୀ ଜାନକୀ ପଟ୍ଟନାୟକଙ୍କ ନୀତିବାକ୍ୟ ନିଶ୍ଚୟ ଉପାଦେୟ । ମାତ୍ର ତାହା କିପରି ପାଳନ ଅବା ଉଲ୍ଲଘଂନ କରାଯାଇଥିଲା, ତାହାହିଁ ପ୍ରଣିଧାନଯୋଗ୍ୟ । ଯେଉଁ ପବ୍ଲିକ୍ ଅଣ୍ଡରଟେକିଙ୍ଗ୍ କମିଟି (୧୯୮୨-୧୯୮୩) ଉପରେ ବିଶ୍ୱାସ ସ୍ଥାପନ କରିବାପାଇଁ ମୁଖ୍ୟମନ୍ତ୍ରୀ ଅନ୍ୟକୁ ପରାମର୍ଶ ଦେବାର ଛଳନା କରିଥିଲେ, ତାହାର ଚେୟାରମେନ ଥିଲେ କଂଗ୍ରେସ ବିଧାୟକ ଶ୍ରୀ ହେମାନନ୍ଦ ବିଶ୍ୱାଳ । କମିଟିର ୧୧ ଜଣ ସଦସ୍ୟ ଥିଲେ । ହେମାନନ୍ଦ ବିଶ୍ୱାଳଙ୍କ କମିଟି ତେଲ କାରବାର ସମ୍ବନ୍ଧୀୟ ସମସ୍ତ ବିଷୟ ଯାଞ୍ଚକରି ଯେଉଁ ରିପୋର୍ଟ ପ୍ରସ୍ତୁତ କରିଥିଲେ, ତାହା ୧୯୮୩ ମସିହା ମାର୍ଚ୍ଚ ମାସ ୩୧ ତାରିଖରେ ବିଧାନସଭାର ବୈଠକ କାର୍ଯ୍ୟସୂଚୀର ଅନ୍ତର୍ଭୁକ୍ତ କରିବାପାଇଁ ବିଧାନସଭା ଅଫିସକୁ ପଠାଇଥିଲେ । କିନ୍ତୁ ଅତ୍ୟନ୍ତ କୌତୂହଳ ବିଷୟ ଏହି ଯେ ମାର୍ଚ୍ଚ ୩୧ ତାରିଖ ବିଧାନସଭା କାର୍ଯ୍ୟସୂଚୀରେ ତାହା ସ୍ଥାନ ପାଇନଥିଲା । ତେଣୁ କମିଟିର ଅଧକ୍ଷ ଶ୍ରୀ ହେମାନନ୍ଦ ବିଶ୍ୱାଳ ତାଙ୍କ ରିପୋର୍ଟକୁ ବିଧାନସଭାରେ ଉପସ୍ଥାପନ କରିବାର ସୁଯୋଗରୁ ବଞ୍ଚିତହେଲେ । ଓଡ଼ିଶା ବିଧାନସଭା ଇତିହାସରେ ଏହା ଗୋଟିଏ ଅଭୂତପୂର୍ବ ଘଟଣା । ପରେ ଜଣାଗଲା ଯେ ତତ୍‌କାଳୀନ ବାଚସ୍ପତି ଏହି ରିପୋର୍ଟକୁ ଦେଖିବା ପରେ ମୁଖ୍ୟମନ୍ତ୍ରୀଙ୍କ ସହିତ ଗୋପନ ଆଲୋଚନା କରିଥିଲେ । ସେହି ସମୟରେ ବାଚସ୍ପତି ଥିଲେ ଗଞ୍ଜାମ ଜିଲ୍ଲାର ଶ୍ରୀ ସୋମନାଥ ରଥ । ରିପୋର୍ଟଟି ପ୍ରକାଶିତ ହେଲେ ସରକାର ଅଁଡୁଆରେ ପଡ଼ିଯିବେ ବୋଲି ସେଇଟିକୁ ଏକାବେଳକେ ଗାଏବ୍ କରିଦିଆଯାଇଥିଲା । ଏହି ସୋରିଷ ତେଲ କାରବାରରେ ସନ୍ଦେହଜନକ ଅସାଧୁ କାରବାର କରାଯାଇଥିଲା ବୋଲି କମିଟି ଅନୁଭବ କରିଥିବା କଥା ସେଥିରେ ଉଲ୍ଲେଖ କରାଯାଇଥିଲା ଏବଂ ତେଲ ଯୋଗାଣ ଓ ପରିବହନ ସମ୍ପର୍କରେ ତ୍ରୁଟିପୂର୍ଣ୍ଣ ହିସାବ ହେତୁ ସରକାରଙ୍କୁ ଅଯଥାରେ ପ୍ରାୟ ଦୁଇକୋଟି ଟଙ୍କା ଦେବାକୁ ପଡ଼ିଥିଲା ବୋଲି ସେଥିରେ ଉଲ୍ଲେଖ କରାଯାଇଥିଲା । ଏହି ପରିପ୍ରେକ୍ଷୀରେ ହେମାନନ୍ଦଙ୍କ ରିପୋର୍ଟକୁ 'ମୂଳୁ ମାରିଲେ ଯିବ ସରି, ଦେବଙ୍କ ସଙ୍ଗେ କିମ୍ପା କଳି'' ନୀତିରେ ବାଟମାରଣା କରି ଲୋପକରାଗଲା । ତତ୍‌ପରେ ଶ୍ରୀ ଇନ୍ଦ୍ରମଣି ରାଉତଙ୍କ ଅଧକ୍ଷତାରେ ଗଠିତ ନୂତନ କମିଟିକୁ ଏହି ତେଲ କାରବାର ଯାଞ୍ଚ କରିବା ଦାୟିତ୍ୱ ହସ୍ତାନ୍ତରିତହେଲା । ଇନ୍ଦ୍ରମଣି ରାଉତ କମିଟି ରିପୋର୍ଟ ସରକାରଙ୍କୁ ସୁହାଇଲା । ଏହି କାରବାରରେ କୌଣସି ଅସାଧୁ ଉପାୟ ଅବଲମ୍ବନ କରାଯାଇନଥିଲା ବୋଲି ଇନ୍ଦ୍ରମଣି ରାଉତ କମିଟି ମତ ବ୍ୟକ୍ତ କରିଥିଲେ । ତାହା ୧୯୮୪ ମାର୍ଚ୍ଚ ୩୧ ତାରିଖରେ ବିଧାନସଭାରେ ଉପସ୍ଥାପିତ ହେଲା । ମାତ୍ର

ସେତେବେଳକୁ ପୂର୍ବ କମିଟିରେ ବର୍ଣ୍ଣିତ ଅସଲ ଗୁମର କଥାମାନ ହାଟରେ ପଡ଼ି ଦାଣ୍ଡରେ ଗଡୁଥିଲା ।

ଏକଥା ଏତିକିରେ ଶେଷ ହେଲାନାହିଁ । ୨୬.୩.୯୯ ତାରିଖ ଦିନ ବିଧାନସଭାରେ କାକଟପୁର ବିଧାୟକ ଶ୍ରୀ ସୁରେନ୍ଦ୍ର ନାଥ ନାୟକ ଅଣତାରକା ପ୍ରଶ୍ନ ସଂଖ୍ୟା ୮୨୮ରେ ଏ ବିଷୟ ଉତ୍‌ଥାପନ କରି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କଠାରୁ ସ୍ପଷ୍ଟିକରଣ ଚାହିଁଥିଲେ । ତା'ର ଉତ୍ତର ଶ୍ରୀ ମତ୍‌ଲୁବ୍ ଅଲ୍ଲୀ ମୁଖ୍ୟମନ୍ତ୍ରୀଙ୍କ ତରଫରୁ ଦେଇ କହିଥିଲେ ଯେ... ଅଗ୍ରୀମ ଅର୍ଥରୁ ମୋଟ ୯,୭୭,୮୫୫.୩୧ ଟଙ୍କା କମ୍ପାନୀ ଉପରେ ଅନାଦେୟ ରହିଛି । ଉକ୍ତ ଅର୍ଥ ଆଦାୟ ନିମନ୍ତେ ରାଜ୍ୟ-ଯୋଗାଣ ନିଗମ ଭୁବନେଶ୍ୱରସ୍ଥିତ ସିଭିଲ୍ ଜଜ୍ ସିନିଅର୍ ଡିଭିଜନ୍ କୋର୍ଟରେ ଉକ୍ତ ଟଙ୍କାର ସୁଧ ଓ ଅନ୍ୟାନ୍ୟ ଖର୍ଚ୍ଚ ବାବଦରେ ସମୁଦାୟ ଟଙ୍କା ୧୫,୮୧,୬୫୬.୧୨ ପଇସାର ଏକ ଦେଓ୍ୱାନୀ ମୋକଦ୍ଦମା ରଜୁ କରିଛନ୍ତି । ଅର୍ଥାତ୍ ଏହା ଏ ପର୍ଯ୍ୟନ୍ତ ଅମୀମାଂସିତ ରହିଛି ।

ଗାଉଁଲି କଥାରେ କୁହାଯାଏ, ''ବିଲେଇ ଆଖି ବୁଜି ବୁଜି ଦୁଧ ପିଉଛି'' । ଦୁଧହାଣ୍ଡି ଦେଖିଲେ ବିଲେଇ ସେଠାକୁ ଦୌଡ଼ିଯାଇ ଆଖି ବୁଜିଦେଇ ଡୋକଡୋକ କରି ଦୁଧ ପିଇଯାଏ । ବିଲେଇ ମନେକରେ ଯେ ତାହାର ଦୁଧପିଇବାକୁ କେହି ଦେଖୁନାହାଁନ୍ତି, ତେଣୁ ଭୟ ନକରି ପିଇଯାଏ, ମାତ୍ର ଘରର ବୋହୂ ଯେତେବେଳେ ଠେଙ୍ଗା ଆଣି କସିକି ଠେଙ୍ଗେଇଦିଏ ସେତେବେଳେ ବିଲେଇ ହଗିମୂତି ଦୁଧହାଣ୍ଡି ଗଡ଼ାଇଦେଇ ପଳାଇଯାଏ । ପୋଦାର କମ୍ପାନୀ ସହିତ ସଲାସୁତୁରା କରି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଇଙ୍ଗିତରେ କୋଟି କୋଟି ଟଙ୍କା ବିନିମୟରେ ଚାରି ହଜାର ମେଟ୍ରିକ୍‌ଟନ୍ ସୋରିଷ ତେଲ କିଣିବାପାଇଁ ଯେଉଁ ସବୁ ଅସାଧୁ ଚୁକ୍ତି ହୋଇଥିଲା ଏବଂ ସେଥିପାଇଁ ଯେଉଁସବୁ ଅସାଧୁ ଉପାୟ ଅବଲମ୍ବନ କରାଯାଇଥିଲା ସେସବୁ କାରବାର ସହିତ ମୁଖ୍ୟମନ୍ତ୍ରୀ ଜାନକୀବାବୁଙ୍କର କି ସଂପର୍କ ସେ ଗୁମର କେହି ଜାଣିପାରୁନାହାଁନ୍ତି ବୋଲି ମୁଖ୍ୟମନ୍ତ୍ରୀ ମନେ ମନେ ଭାବୁଥିଲେ । ଏହା ଥିଲା ତାଙ୍କର ଭ୍ରମାତ୍ମକ ଭାବନା । ଯୋଗାଣ ବିଭାଗ ଓ ଯୋଗାଣ ନିଗମରେ କାର୍ଯ୍ୟ କରୁଥିବା ସବୁ କର୍ମଚାରୀ ନିଜ ନିଜ ଭିତରେ ଓ ପ୍ରକାଶ୍ୟରେ ମଧ ଏହି ଅବାଞ୍ଛିତ କାର୍ଯ୍ୟର ତୀବ୍ର ସମାଲୋଚନା କରୁଥିଲେ । ସମ୍ବାଦପତ୍ରମାନେ ମଧ ଏହି କାରବାରରୁ ଗୁପ୍ତ ରହସ୍ୟ ଜାଣିପାରି ତାହା ବିସ୍ତୃତ ଭାବରେ ପ୍ରକାଶ କରିଥିଲେ । ଆଖିବୁଜି ଦୁଧପିଉଥିବା ବିଲେଇଙ୍କ ମୁଖ୍ୟମନ୍ତ୍ରୀଙ୍କର ହେମାନନ୍ଦଙ୍କ ରିପୋର୍ଟରେ, ଠେଙ୍ଗୁଣିମାଡ଼ ଭୟରେ ତଦ୍ରୂପ ଦଶା ହୋଇଥିଲା । ହେମାନନ୍ଦ କମିଟି ମାଡ଼ରୁ ଉଦ୍ଧାର-ପାଇବାପାଇଁ ସେ ଛାନିଆରେ ଅନ୍ୟତ୍ର ଶରଣପଶିଥିଲେ, ଅଥଚ ବ୍ୟାଧ ମୁଖରେ ରାମନାମ ପରି ବିଜୁବାବୁଙ୍କୁ ଗଣତନ୍ତ୍ର ପରମ୍ପରାର ନୀତିଶିକ୍ଷା ଦେବାର ଦୁଃସାହସ ପ୍ରକାଶ କରିଥିଲେ ।

ପୋଦାର କମ୍ପାନୀ ସେହି ସୋରିଷ ତେଲ କାରବାରରୁ ଯେଉଁ ବିପୁଳ ଫାଇଦା ଉଠାଇଥିଲେ ତାହା ବଦଳରେ ଜାନକୀ ପଟ୍ଟନାୟକଙ୍କର କିଛି ଫାଇଦା ହୋଇଥିଲା କି ନାହିଁ, ତାହା ଅନୁସନ୍ଧାନ-ସାପେକ୍ଷ । ତେବେ ଏତିକିମାତ୍ର ଲୋକଲୋଚନକୁ ଆସିଲା ଯେ, ରାଜଧାନୀ ଦିଲ୍ଲୀରେ ପ୍ଲଟ୍ ନଂ. ଏ/୩୧୦, ସଫ୍‌ଦରଜଙ୍ଗ୍ ଏନ୍‌କ୍ଲେଭ୍‌ର ଥିବା ଘରଟିରେ ସମୟେ ସମୟେ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଅବସ୍ଥାନ କରିବାକୁ ଲାଗିଲେ । ମୁଖ୍ୟମନ୍ତ୍ରୀ ସରକାରୀ କାମରେ ଯାଇ ଦିଲ୍ଲୀରେ ପହଞ୍ଚିଲାକ୍ଷଣି ପୋଦାର ହାଉସକୁ ଦଉଡ଼ନ୍ତି । ବିଲେଇ ଆଖି ବୁଜି ଦୁଧ ପିଇଲା ଭଳି ମୁଖ୍ୟମନ୍ତ୍ରୀ ଜାନକୀ ପଟ୍ଟନାୟକ ଭାବୁଥିଲେ ଏହି ସଫ୍‌ଦରଜଙ୍ଗ୍ ଘରର ମାଲିକାନା ସମ୍ବନ୍ଧରେ ଓ ସେଠାରେ ହେଉଥିବା ନାନାପ୍ରକାର ଅବାଞ୍ଛିତ କାର୍ଯ୍ୟ ସମ୍ବନ୍ଧରେ କେହି କିଛି ଜାଣିପାରନ୍ତିନାହିଁ । ମାତ୍ର ଓଡ଼ିଶା ଭବନରେ କାର୍ଯ୍ୟକରୁଥିବା ସବୁ ଶ୍ରେଣୀର ଲୋକ ଏ ଘର ଏବଂ ସେଠାରେ ଚାଲିଥିବା କାର୍ଯ୍ୟକଳାପ ସଂପର୍କରେ ନିଜ ନିଜ ମଧରେ ଚର୍ଚ୍ଚା ମଧ କରନ୍ତି । ଓଡ଼ିଶାରୁ ଯାଇ ଅଫିସର, ବିଧାୟକ ଓ ଅନ୍ୟାନ୍ୟ ବ୍ୟକ୍ତିମାନେ ଓଡ଼ିଶା ଭବନରେ ରହିବା ଅବସରରେ ସେହି କର୍ମଚାରୀମାନେ ସେହି ଘରକୁ କେନ୍ଦ୍ରକରି

ରହସ୍ୟମୟ କଥାମାନ କୌଣସି କୌଣସି ଆଗନ୍ତୁକ ଅତିଥିମାନଙ୍କ କାନରେ ପକାନ୍ତି । ବେଶ୍ କିଛି ଜାଣିବାପାଇଁ ଯେଉଁମାନେ ଇଚ୍ଛୁକ ହୋଇପଡ଼ନ୍ତି ସେମାନଙ୍କୁ ସାଙ୍ଗରେ ନେଇ ଏହି ଘରଟି ମଧ୍ୟ ଦେଖାଇଦିଅନ୍ତି । କାକଟପୁର ବିଧାୟକ ଶ୍ରୀ ସୁରେନ୍ଦ୍ର ନାଥ ନାୟକଙ୍କୁ ସେମାନେ ନେଇ ଏଇ ଘରଟିକୁ ଦେଖାଇଦେବା କଥା ସୁରେନ୍ଦ୍ରବାବୁ ମୋତ କହୁଥିଲେ ।

ମୋଟାମୋଟି ଓଡ଼ିଶା ଭବନ ସହିତ ସଂପୃକ୍ତଥିବା ବହୁ ବ୍ୟକ୍ତିଙ୍କର ଦୃଢ଼ଧାରଣା ଯେ, ସବ୍‌ଦରଜଙ୍ଗ ଏନକ୍ଲେଭରେ ଥିବା ଏହି ଘରଟି ଜାନକୀ ପଟ୍ଟନାୟକଙ୍କର ସ୍ୱନାମୀ ଅବା ବେନାମୀ ସଂପତ୍ତି । ତା' ନହୋଇଥିଲେ ଯେଉଁ ପୋଦାର କଂପାନୀ ସହିତ ତେଲ କାରବାର ହେତୁ ଜାନକୀ ପଟ୍ଟନାୟକଙ୍କ ବିରୁଦ୍ଧରେ ଦୁର୍ନୀତିର ଅଭିଯୋଗ କରାଯାଇଥିଲା ସେଥିପାଇଁ ବିଧାନସଭାରେ ତୁମୁଳ ହଟ୍ଟଗୋଳ ହେବା ସଙ୍ଗେ ସଙ୍ଗେ ସମ୍ବାଦପତ୍ରମାନଙ୍କରେ ଏସବୁ କଥା ବିସ୍ତୃତ ଭାବରେ ପ୍ରକାଶ-ପାଇଥିଲା, ସେହି ପୋଦାର କଂପାନୀ ଘରେ ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିବା ଓ ନଥିବାବେଳେ ପ୍ରାୟ ବିଗତ ଦଶବର୍ଷ ହେଲା କିପରି ଅବସ୍ଥାନ କରିଛନ୍ତି ତାହା ଅତ୍ୟନ୍ତ ବିସ୍ମୟକର । ଖବର ନେବାରେ ଜଣାଯାଏ, ଏହି ଘରଟି ପୂର୍ବରୁ ଜଣେ ପଞ୍ଜାବୀ ଭଦ୍ରବ୍ୟକ୍ତିଙ୍କର ଥିଲା । ଓଡ଼ିଶା ସରକାରଙ୍କ ସହିତ ପୋଦାର କଂପାନୀର ଏହି ବିବାଦୀୟ ତେଲ କାରବାର ସମୟରେ ଶ୍ରୀ ପୋଦାର ଏହି ଘରଟିକୁ କିଣିଥିଲେ । ଏହା ଗୋଟିଏ ବେନାମୀ କାରବାର ବୋଲି ଯେଉଁଧାରଣା ସୃଷ୍ଟି-ହୋଇଥିଲା ସେହି ଘର ସହିତ ଜାନକୀବାବୁଙ୍କର ଉଲ୍ଲିଖିତ କ୍ରମାଗତ ସଂପର୍କଦ୍ୱାରା ତାହା ଆହୁରି ଦୃଢ଼ୀଭୂତ ହୋଇଛି ।

ଉପରୋକ୍ତ ବିଷୟଟି ଆଲୋଚନା କଲାବେଳେ ଶ୍ରୀ ଗୁଲଜାରୀଲାଲ ନନ୍ଦା ଭାରତ ସରକାରଙ୍କ ସ୍ୱରାଷ୍ଟ୍ର ବିଭାଗ ମନ୍ତ୍ରୀ ଥିବା ସମୟର କଥା ମନେପଡ଼େ । ସେତେବେଳେ କୌଣସି ମନ୍ତ୍ରୀ କୌଣସି ଶିଳ୍ପପତିଙ୍କ ସାମାଜିକ ନିମନ୍ତ୍ରଣ ରକ୍ଷାକରି ଭୋଜିଖାଇବାକୁ ଯିବାର ଜଣାଗଲେ ସେ ନନ୍ଦାଜୀଙ୍କ ଅସନ୍ତୋଷ ଭାଜନ ହେଉଥିଲେ । ବେଳେବେଳେ ତାଙ୍କୁ କୈଫିୟତ୍ ଦେବାକୁ ପଡୁଥିଲା । ସେହି ପରିପ୍ରେକ୍ଷୀରେ ବିଚାରକଲେ ଜଣେ ବିବାଦୀୟ ବେପାରୀଙ୍କ ଘରେ ମୁଖ୍ୟମନ୍ତ୍ରୀ ପଟ୍ଟନାୟକ କିପରି ଅବସ୍ଥାନ କରିଆସୁଛନ୍ତି, ତାହାର ରହସ୍ୟ ବୁଝାପଡ଼େନାହିଁ । ୧୯୯୭ ମସିହା ସେପ୍ଟେମ୍ବର ୧୧ ତାରିଖରେ ବିରୋଧୀଦଳ ପକ୍ଷରୁ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସରକାରଙ୍କ ବିରୁଦ୍ଧରେ ଏକ ଅନାସ୍ଥା ପ୍ରସ୍ତାବ ଆଗତ କରାଯାଇଥିଲା । ସେହି ଆଲୋଚନାରେ ଅଂଶ ଗ୍ରହଣ କରି ପୂର୍ବତନ ରାଜସ୍ୱମନ୍ତ୍ରୀ ବିଧାୟକ ଶ୍ରୀ ସୁରେନ୍ଦ୍ରନାଥ ନାୟକ ଦିଲ୍ଲୀରେ 'ପୋଦାର ହାଉସ' (PODAR HOUSE)ଲେଖା ଥିବା ଯେଉଁ ଘରଟିକୁ ମୁଖ୍ୟମନ୍ତ୍ରୀ ବ୍ୟବହାରକରୁଛନ୍ତି ସେଇଟିର ମାଲିକ କିଏ ତାହା ସ୍ୱୟଂ ମୁଖ୍ୟମନ୍ତ୍ରୀଙ୍କ ମୁହଁରୁ ଜାଣିବାପାଇଁ ଦାବିକରିଥିଲେ । ମାତ୍ର ମୁଖ୍ୟମନ୍ତ୍ରୀ ତାହାର କୌଣସି ଉତ୍ତର ନଦେଇ ନୀରବ ରହିଥିଲେ । ଶ୍ରୀ ନାୟକ ଅଭିଯୋଗ କରିଥିଲେ ଯେ, ଏହି 'ପୋଦାର ହାଉସ'ଟି ହେଉଛି ସେହି ରୋହିତ ପୋଦାରଙ୍କର ଯାହାଙ୍କ ସହିତ ୧୯୮୨ରେ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସରକାର ସୋରିଷ ତେଲ ବ୍ୟାପାରରେ ତେଲ ନ ପାଇ ମଧ୍ୟ ଅଯଥାରେ ଅଢ଼େଇ କୋଟି ଟଙ୍କା ଦେଇଥିଲେ । ଏଣୁ ଏହି ପୋଦାର ହାଉସଟି ମୁଖ୍ୟମନ୍ତ୍ରୀ ପଟ୍ଟନାୟକଙ୍କର ବେନାମୀ ସଂପତ୍ତି ବୋଲି ଶ୍ରୀ ନାୟକ ଏତେବଡ଼ ଗୁରୁତର ଯୁକ୍ତି ବାଢ଼ୁଥିଲେ, ଅଥଚ ବିଧାନସଭାରେ ମୁଖ୍ୟମନ୍ତ୍ରୀଙ୍କ ବିରୁଦ୍ଧରେ ଏତେବଡ଼ ଗରୁତର ଅଭିଯୋଗ କରାଯାଇଥିଲେ ମଧ୍ୟ ନିଜେ ମୁଖ୍ୟମନ୍ତ୍ରୀ ତାହାର କୌଣସି ପ୍ରତିବାଦ ନକରି ନୀରବ ରହିଥିଲେ । ଏହିସବୁ ପରିପ୍ରେକ୍ଷୀରେ ବିଚାରକଲେ ନିଶ୍ଚିତ ବିଶ୍ୱାସ ଜନ୍ମିବା ସ୍ୱାଭାବିକ ଯେ, ଦିଲ୍ଲୀରେ ସବ୍‌ଦରଜଙ୍ଗ ଏନକ୍ଲେଭର ଅବସ୍ଥିତ ଏହି ଘରଟି ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କର ବେନାମୀ ସଂପତ୍ତି ହୋଇଥିବ । ଏ ସଂପର୍କରେ ସି.ବି.ଆଇ. ତଦନ୍ତ ଏକାନ୍ତ ଆବଶ୍ୟକ ବୋଲି ଅନେକ କୁହନ୍ତି । ମାତ୍ର ମୋ ମତରେ ଏଥିପାଇଁ ଆଉ କିଛି ଅନୁସନ୍ଧାନର ଆବଶ୍ୟକତା ନାହିଁ ।

ଜାନକୀବାବୁଙ୍କର ସେହି ଘର ସହିତ ଦୀର୍ଘ କାଳର ଦଖଲ ଓ ଘନିଷ୍ଠତା ମାଲିକାନା ସଂପର୍କରେ ଅତୀତରେ ସନ୍ଦେହକୁ ଲୋକଚକ୍ଷୁରେ ସତ୍ୟ ପରି ସାବ୍ୟସ୍ତ କରିସାରିଛି । ତାଙ୍କ ସଂପର୍କରେ ଦୀର୍ଘକାଳଧରି ବାରମ୍ବାର କ୍ଷମତାର ଆଢୁଆଳରେ ସରକାରୀ କଳର ଅପବ୍ୟବହାର କରାଇବାଦ୍ୱାରା ବିପୁଳ କଳାଧନ କାରବାର, ଭ୍ରଷ୍ଟାଚାର ଓ ଯୌନାଚାର ସଂପର୍କରେ ନିର୍ଦ୍ଦିଷ୍ଟ ଅଭିଯୋଗ ପ୍ରତି ତାଙ୍କର ବେପରୁଆ ଭାବ, ଇନ୍ଦ୍ରଜିତ ରାୟଙ୍କ ଭଳି ବ୍ୟକ୍ତିମାନଙ୍କ ଘୃଣ୍ୟ ଅପରାଧ ସଂକ୍ରାନ୍ତ ଅଭିଯୋଗକୁ ଘଣ୍ଡଘୋଡ଼ାଇବାପାଇଁ ଅଣ୍ଟାଭିଡ଼ା ଉଦ୍ୟମ ପ୍ରଭୃତି ଅଭିଯୋଗମାନ ରହିଛି । ବିଡ଼ମ୍ବନାର କଥା ଯେ, ନିଜର ନେଇ ଆଣି ଥୋଇପାରିବା ପଣିଆ ହେତୁ ଏବେ ମଧ୍ୟ ସେ ଆମର ରାଜ୍ୟରେ କଂଗ୍ରେସ ରାଜନୀତିକୁ ନିଜ ସ୍ୱାର୍ଥପାଇଁ ନିଜ ଅକ୍ତିଆରରେ ରଖିପାରୁଛନ୍ତି ଏବଂ କଂଗ୍ରେସର ସର୍ବଭାରତୀୟ ନେତା ବା ନେତ୍ରୀଙ୍କୁ ବଶୀଭୂତ କରି ରଖିପାରିବାର ବହପ ଦେଖାଇପାରୁଛନ୍ତି ଓ କଂଗ୍ରେସର ମହତ ତଳିତଳାନ୍ତ ହେଉଛି ।

ଅଶୀତି ଦଶକ ଆରମ୍ଭରୁ ଓଡ଼ିଶାରେ କଂଗ୍ରେସ ଦଳର ଭାଗ୍ୟଡୋରି ମୋଟାମୋଟି ଜାନକୀ ପଟ୍ଟନାୟକ ଓ ବସନ୍ତ ବିଶ୍ୱାଳଙ୍କ ମର୍ଜି ଉପରେ ସଂପୂର୍ଣ୍ଣ ନିର୍ଭରଶୀଳ ହୋଇଯାଇଥିଲା । କଂଗ୍ରେସ ସଂଗଠନ ସେହି ଦୁହିଁଙ୍କ କରାୟତ୍ତ ହୋଇ ଚଳିବାରେ କଂଗ୍ରେସ କର୍ମୀମାନେ ମଧ୍ୟ ଭାଗ୍ୟକୁ ଆଦରିଲା ପରି ଅଭ୍ୟସ୍ତ ହୋଇଯାଇଥିଲେ । ପୁଣି ସେହି ଦୁହିଁଙ୍କର ସାମୟିକ ବିବାଦରୁ ଅନେକ ସମୟରେ ସେହି ଦୁଇ ପକ୍ଷଙ୍କ ଗୋଷ୍ଠୀ ସଂଘର୍ଷ ପାଇଁ ଅର୍ଥ ବଳର ଓ ବାହୁ ବଳର ମୁକାବିଲାଗ୍ରସ୍ତ ହୋଇ ପ୍ରାୟ ସାରା ଓଡ଼ିଶାରେ କଂଗ୍ରେସକର୍ମୀମାନେ ଜନସମାଜରେ ଅପବାଦଗ୍ରସ୍ତ ହୋଇପଡ଼ିଥିଲେ । ତେଣୁ ସାଂଗଠନିକ ସଂହତିହୀନ, ନୈତିକ ନେତୃତ୍ୱବିହୀନ, ରାଜସ୍ୱ ଲୁଣ୍ଠନ ଓ ଯୌନ ଅପବାଦରେ ଘୃଣ୍ୟ ଓଡ଼ିଶା କଂଗ୍ରେସ ସଂଗଠନ ପ୍ରତି ଜନସାଧାରଣଙ୍କର ଆସ୍ଥା ଜନ୍ମାଇବା ସେତେବେଳେ ଅବଶିଷ୍ଟ ନିଷ୍ପାପର କର୍ମୀ ଓ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ପକ୍ଷେ ସମ୍ଭବପର ହୋଇନଥିଲା ।

ଅଶୀ ଦଶକର ଶେଷ ବର୍ଷରେ ଲୋକସଭା ନିର୍ବାଚନରେ କଂଗ୍ରେସ ଓଡ଼ିଶାରେ ପ୍ରାୟ ନିର୍ମୂଳ ହୋଇଯିବା ପରେ ନବେ ଦଶକ ଆରମ୍ଭରେ ବିଧାନସଭା ନିର୍ବାଚନର ଅବ୍ୟବହିତ ପୂର୍ବରୁ ଓଡ଼ିଶାରେ କଂଗ୍ରେସର ମୁଖ୍ୟମନ୍ତ୍ରୀ ଓ ସଭାପତି ପରିବର୍ତ୍ତନ ମଧ୍ୟ ନିର୍ବାଚନ ଫଳାଫଳରେ ଏକ ପ୍ରହସନ ପରି ପରିଗଣିତ ହେଲା । ଆଦିବାସୀ, ହରିଜନ ଓ ଦଳିତମାନଙ୍କର ସହାନୁଭୂତି ପାଇବା ଲୋଭରେ ଅଭିଜ୍ଞ ଆଦିବାସୀ ନେତା ଶ୍ରୀ ହେମାନନ୍ଦ ବିଶ୍ୱାଳଙ୍କୁ ମୁଖ୍ୟମନ୍ତ୍ରୀ ପଦରେ ଏବଂ ନାରୀସମାଜର ସମର୍ଥନ ଆଶାରେ ଜଣେ ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କୁ କଂଗ୍ରେସ ସଭାପତି ଆସନରେ ଅଭିଷିକ୍ତ କରି ମଧ୍ୟ କଂଗ୍ରେସକୁ ଅତି ତିକ୍ତ ପରିଣତି ଭୋଗିବାକୁ ହେଲା । ବିଧାନସଭାର ମୋଟ ୧୪୭ ଆସନରୁ କଂଗ୍ରେସକୁ ମାତ୍ର ଦଶଟି ମିଳିଲା । ତଥାପି କ୍ଷମତାଲୁବ୍ଧ ମୁଷ୍ଟିମେୟ ସେହି କଂଗ୍ରେସ ନେତାଙ୍କ ଗୃହବିବାଦ ଦଶା ଆହୁରି ତୀବ୍ରତର ହେଲା ।

## ରାଜନୀତି ଓ ଲୋକଶକ୍ତି

ଓଡ଼ିଶା କଂଗ୍ରେସ ଦଳର ତତ୍କାଳୀନ ଏହି ଆଭ୍ୟନ୍ତରୀଣ ପ୍ରସଙ୍ଗ ଆପାତଦୃଷ୍ଟିରେ ସାମାନ୍ୟ ବୋଧହେଲେ ମଧ୍ୟ ଦେଶର ବୃହତ୍ତର ରାଜନୈତିକ କ୍ଷେତ୍ରରେ ଏହାର ଅତି ଶିକ୍ଷାପ୍ରଦ ପ୍ରାସଙ୍ଗିକତା ରହିଛି । ତେଣୁ ମୁଁ ଏହାର ଅବତାରଣା କରିବା ସମୀଚୀନ ବୋଧକରୁଛି । ଯେକୌଣସି ରାଜନୈତିକ ଦଳର ସୁସ୍ଥ ସାଂଗଠନିକ ଶକ୍ତିହିଁ ଦଳ ପ୍ରତି ଲୋକ ସମର୍ଥନ ଆକୃଷ୍ଟ କରିଥାଏ । ପୁନଶ୍ଚ ଦଳର ସାଂଗଠନିକ ଶକ୍ତିର ମୂଳଦୁଆ ହେଉଛନ୍ତି କର୍ମୀମାନେ । କର୍ମୀମାନେ ନେତାମାନଙ୍କର ନୌକର ନୁହଁନ୍ତି, ସେମାନେ ସହକର୍ମୀ ଓ ସହଯାତ୍ରୀ । ସେତିକି ସମ୍ମାନ ପାଇଲେ ସେମାନେ ସନ୍ତୋଷରେ କର୍ମତତ୍ପର ହୋଇ ଦଳପାଇଁ ଲୋକଶକ୍ତିକୁ ଜାଗ୍ରତକରି ଅସାଧ୍ୟ ସାଧନ କରିପାରନ୍ତି । ଧନବଳରେ

ନିଜର କର୍ମଜୀବନକୁ ବା କର୍ମୀମାନଙ୍କୁ ପଥଭ୍ରଷ୍ଟ କରିପକାଇଲେ ଦଳ ଲୋକଶକ୍ତିଠାରୁ ଅନ୍ତର ହୋଇଯାଏ । ସେହି କାରଣରୁ ଅଶୀତି ଦଶକ ଶେଷଭାଗରେ ଓଡ଼ିଶା କଂଗ୍ରେସର ନେତୃତ୍ୱ ପରିବର୍ତ୍ତନ କରାଯାଇଥିଲେ ମଧ୍ୟ କର୍ମୀମାନେ କଂଗ୍ରେସ ସପକ୍ଷରେ ଲୋକଶକ୍ତିକୁ ଆଉ ଜାଗ୍ରତ କରିବାକୁ ସମର୍ଥ ହୋଇପାରିଲେନି । ଏହା ତତ୍‌କାଳୀନ ନେତୃତ୍ୱର ଦୋଷ ।

କିନ୍ତୁ ଏହି ପରିପ୍ରେକ୍ଷୀରେ ଲକ୍ଷ୍ୟ କରିବାର କଥା ଯେ, ଷାଠିଏ ଦଶକର ଶେଷଭାଗରେ ଏକ ଘୋର ନିର୍ବାଚନ ବିପର୍ଯ୍ୟୟ ପରେ ମଧ୍ୟ ଏବଂ ଏକ ଅଭାବନୀୟ ପ୍ରତିକୂଳ ଅବସ୍ଥା, ଏପରିକି ତତ୍‌କାଳୀନ କେନ୍ଦ୍ର କଂଗ୍ରେସ ନେତୃତ୍ୱର ଉତ୍ସାହପ୍ରଦ ପୃଷ୍ଠପୋଷକତାର ଅଭାବ ସତ୍ତ୍ୱେ ଆମ ରାଜ୍ୟରେ କେବଳ କଂଗ୍ରେସ କର୍ମୀମାନଙ୍କର କର୍ତ୍ତବ୍ୟନିଷ୍ଠାବଳରେହିଁ ଅଚିରେ ''ଓଡ଼ିଶା ବଞ୍ଚାଅ'' ଗଣ-ଆନ୍ଦୋଳନ ମାଧ୍ୟମରେ ସ୍ୱତଃପ୍ରବୃତ୍ତ ଲୋକସମର୍ଥନରେ ଓଡ଼ିଶା କଂଗ୍ରେସ ଦଳକୁ ପୁନଃ ପ୍ରତିଷ୍ଠିତ କରାଯାଇପାରିଥିଲା । ଏହାର ଦୃଷ୍ଟାନ୍ତ ଏହି ପୁସ୍ତକରେ ପରବର୍ତ୍ତୀ ଅଧ୍ୟାୟମାନଙ୍କରେ ୧୯୬୭ର ବିପର୍ଯ୍ୟୟ, ଦକ୍ଷିଣପନ୍ଥୀଙ୍କ ମଉକା, କଂଗ୍ରେସର ସାଂଗଠନିକ ଶକ୍ତି ସଂଚାର ଓ ଓଡ଼ିଶା କଂଗ୍ରେସର ସଂଗ୍ରାମୀ ଭୂମିକା ଆଦି ଶିରୋନାମାରେ ଆଲୋଚନାମାନଙ୍କରେ ପ୍ରଣିଧାନଯୋଗ୍ୟ ।

ଏକଥା ମଧ୍ୟ ଅନସ୍ୱୀକାର୍ଯ୍ୟ ଯେ, ଲୋକଶକ୍ତି ସଂଚୟ ସକାଶେ ସହକର୍ମୀ ଓ ସହଯାତ୍ରୀ ଯେପରି ଦଳର ମେରୁଦଣ୍ଡ, ସେହିପରି ରାଷ୍ଟ୍ରୀୟ ଆପଦ ବା ବିପଦକାଳରେ ମହାତ୍ମାଗାନ୍ଧୀ, ଜୟପ୍ରକାଶ ନାରାୟଣଙ୍କ ପରି ଜଣେ ଜଣେ ଯୋଗଜନ୍ମା ଲୋକନାୟକ ମଧ୍ୟ ଲୋକଶକ୍ତିର ପ୍ରଧାନ ଆଧାର ରୂପେ ଆବିର୍ଭୂତ ହୋଇଥା'ନ୍ତି । ଅସତ୍ୟର ଆବର୍ତ୍ତ ଭିତରେ ସତ୍ୟର ସଂଧାନ ଦେଇଥା'ନ୍ତି । 'ଓଡ଼ିଶାରେ ଜୟ ପ୍ରକାଶ : ନବଦିଗନ୍ତ', '୧୯୭୫ : ଭାରତ ଇତିହାସର ନୂଆ ମୋଡ଼', 'ଜୁନ୍ ପଚିଶର କଳା ରାତି' ଉପାଖ୍ୟାନଗୁଡ଼ିକରେ ଏହାର ଆଭାସ ଦିଆଯାଇଛି । ସେହିପରି ଓଡ଼ିଶା ସଂଗ୍ରାମୀ ଭୂମିକାରେ ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ଶ୍ରୀ ହରେକୃଷ୍ଣ ମହତାବ 'କଂଗ୍ରେସର ନୂଆ ଭରସା' ଏବଂ '୧୯୬୧-୬୨ : ଓଡ଼ିଶା ରାଜନୀତିର ନବକଳେବର' ଭୂମିକାରେ ବିଜୁ ପଟ୍ଟନାୟକ ଲୋକନାୟକ ଭାବେ ଅବିସ୍ମରଣୀୟ ରହିବେ । ଏ ସଂପର୍କୀୟ ତଥ୍ୟଗତ ତଥା ତାତ୍ତ୍ୱିକ ବିଚାର ପୂର୍ବ ସଂସ୍କରଣରେ ଏବଂ ଏହି ପୁସ୍ତକରେ ପରବର୍ତ୍ତୀ ଅଧ୍ୟାୟମାନଙ୍କରେ ଉଲ୍ଲେଖ କରିଛି ।

ଏହି ସବୁ କଥା ଉପସ୍ଥାପନ କରିବାବେଳେ ମୋର ମୁଖ୍ୟ ଉଦ୍ଦେଶ୍ୟ ଏହି ଯେ, ଆଜିକାଲିର 'ରାଜନୈତିକ କପଟପାଶା'ରୁ ଏ ଦେଶକୁ, ଆମ ରାଜ୍ୟକୁ ମୁକ୍ତ କରିବାକୁ ହେଲେ, ଦ୍ରୁତ ଅବକ୍ଷୟମାନ ସମାଜର ପୁନରୁଦ୍ଧାର ଓ ପୁନଃପ୍ରତିଷ୍ଠା କରିବାକୁ ହେଲେ ଅତୀତର ଅଭିଜ୍ଞତାରୁ ଆମକୁ ତୁରନ୍ତ ନୂତନ ଦିଶା ବାଛି ନେବାକୁ ପଡ଼ିବ । ସେହି କାରଣରୁ ମୁଁ ଘଟଣାବଳୀର କେବଳ କ୍ରମିକ ବିବରଣୀମାନ ପରିବେଷଣ ନକରି ସମାଜର ଭବିଷ୍ୟତ ଉପଯୋଗୀ, ଚିନ୍ତାଉଦ୍ରେକକାରୀ, କେତେକ ତଥ୍ୟ ଆଧାରିତ ନିର୍ଣ୍ଣୟ ମଧ୍ୟ ଉପସ୍ଥାପିତ କରୁଛି ।

## ନୂତନ ଦଶକରେ ଓଡ଼ିଶା କଂଗ୍ରେସର ଦୁସ୍ଥ ସ୍ଥିତି

୧୯୯୦ ଓଡ଼ିଶା ବିଧାନସଭାର ସାଧାରଣ ନିର୍ବାଚନବେଳେ ଜାନକୀଙ୍କ କରାମତି ଦିଲ୍ଲୀରେ ଦୁର୍ବଳଥିବାରୁ ବସନ୍ତ ବିଶ୍ୱାଳ କଂଗ୍ରେସ ଟିକେଟ ପାଇପାରିଥିଲେ ଏବଂ ନିର୍ବାଚନ ଜିଣି ଦଶଜଣିଆ କଂଗ୍ରେସର ଏହି ଦଶଜଣଙ୍କ ମଧ୍ୟରୁ ବସନ୍ତବାବୁ ବିଧାୟକ ଦଳର ନେତା ହୋଇପାରିଥିଲେ । କିନ୍ତୁ ଜାନକୀବାବୁ ସେତିକି ମଧ୍ୟ ବରଦାସ୍ତ କରିପାରିଲେନାହିଁ । ଜାନକୀବଲ୍ଲଭ ପଟ୍ଟନାୟକ ଜଣେ ଯୋଗାଡ଼ି ଲୋକ । ନନ୍ଦିନୀଙ୍କ ପରେ କିଛି ସମୟପାଇଁ କାହ୍ନୁଚରଣ ଲେଙ୍କା ପ୍ରଦେଶ କଂଗ୍ରେସ ସଭାପତି ହେବା ପରେ ପୁଣି ଜାନକୀବାବୁ ସେହି ଗାଦିକୁ ଆସିଲେ । ବସନ୍ତଙ୍କ ଉପରେ ତାଙ୍କର କ୍ରୋଧର ଅବସାନ ଘଟିଥିଲା । ଦିଲ୍ଲୀରେ ଚକ୍ରାନ୍ତ କରି ବସନ୍ତଙ୍କୁ ବିଧାନସଭା କଂଗ୍ରେସ ଦଳପତି

ପଦରୁ ହଟାଇଦିଆଗଲା । ଏହାପରେ ରାଜ୍ୟ କଂଗ୍ରେସ ଭିତରେ ବିବାଦ ଆହୁରି ବଢ଼ିଥିଲା । ରାଜ୍ୟ କଂଗ୍ରେସ ସଭାପତି ପଦରୁ ଜାନକୀବାବୁଙ୍କୁ ହଟାଇ ବସନ୍ତବାବୁଙ୍କୁ ସଭାପତି କରିବାପାଇଁ ଉଦ୍ୟମ ହେଲା । ପ୍ରଦେଶ କଂଗ୍ରେସ କମିଟିର ବରାଦି ବୈଠକପାଇଁ ବସନ୍ତକୁମାର ବିଶ୍ୱାଳଙ୍କ ପକ୍ଷରୁ ଦାବି କରାଗଲା । ଦଳ ଭିତରେ ସଂଘର୍ଷ ବଢ଼ିଲା । ଜାନକୀବାବୁଙ୍କୁ ସଭାପତି ପଦରୁ ହଟାଇବା ପକ୍ଷପାତୀ ସଭ୍ୟମାନେ ଭୁବନେଶ୍ୱର ସ୍ୱାଧୀନତା ସଂଗ୍ରାମୀ ସଭାଗୃହରେ ଗୋଟିଏ ବୈଠକ ଡାକି ତାଙ୍କୁ ହଟାଇବା ପାଇଁ ପ୍ରସ୍ତାବ କରାଗଲା । ସେସବୁର ବିସ୍ତୃତ ବିବରଣୀ ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା । ସ୍ୱାଧୀନତାସଂଗ୍ରାମୀ ସଭାଗୃହରେ ତାଙ୍କର ବୈଠକ ହେବା କଥା ମୋତେ ବସନ୍ତବାବୁ ଜଣାଇବାରୁ ମୁଁ ତାଙ୍କର ଏ ପଦକ୍ଷେପକୁ ନାପସନ୍ଦ କରିଥିଲି । ଖବରକାଗଜରେ ସେଗୁଡ଼ିକ ପ୍ରକାଶ କରିବା ସମୀଚୀନ ହେଲାନାହିଁ ବୋଲି ମଧ କହିଥିଲି । କାରଣ ହର୍ଷଦ୍ ମେହେଟ୍ଟାଙ୍କଠାରୁ ସେତେବେଳର ପ୍ରଧାନମନ୍ତ୍ରୀ ନରସିଂହ ରାଓ କୋଟିଏ ଟଙ୍କା ଲାଞ୍ଚନେଇଥିବା କଥା ଦେଶରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ନରସିଂହ ରାଓଙ୍କ ବିରୋଧରେ ଯେଉଁ କଂଗ୍ରେସ ଲୋକେ ସ୍ୱର ଉତ୍ତୋଳନ କରିଥିଲେ, ସେମାନଙ୍କ ଭିତରେ ରାମଚନ୍ଦ୍ର ରଥ ମୁଖ୍ୟ ଭୂମିକା ନେଇଥିଲେ । ତେଣୁ ପ୍ରଦେଶ କଂଗ୍ରେସ କମିଟି ମଧ୍ୟରେ ରାମଚନ୍ଦ୍ର ରଥ ସେହି ବିଦ୍ରୋହକୁ ଉତ୍ସାହିତ କରୁଛନ୍ତି ବୋଲି କଂଗ୍ରେସ ସଭାପତି ତଥା ପ୍ରଧାନମନ୍ତ୍ରୀ ଶ୍ରୀ ନରସିଂହ ରାଓଙ୍କୁ କହି ତାଙ୍କ ସମର୍ଥନ ହାସଲ କରିବାପାଇଁ ଜାନକୀବାବୁଙ୍କୁ ଏକ ସୁଯୋଗ ଯୋଗାଇଦିଆଗଲା ବୋଲି ମୋର ଧାରଣାହେଲା । ତାହାହିଁ ମଧ କରାଯାଇଥିଲା ବୋଲି ମୁଁ ପରେ ଜାଣିପାରିଲି ।

ଜାନକୀବାବୁଙ୍କ ପକ୍ଷ ପ୍ରଦେଶ କଂଗ୍ରେସ କମିଟି ସଭା ଡାକିବାକୁ ବେଶିକାଳ ଏଡ଼ାଇ ନ ପାରିବାରୁ ଶେଷରେ ୧୯୯୩ ଫେବୃୟାରୀ ୧୨ ତାରିଖ ଦିନ କଂଗ୍ରେସ ଭବନରେ ବୈଠକ ବସିବବୋଲି ନୋଟିସ୍ ଦିଆଗଲା । କିନ୍ତୁ ଅସନ୍ତୁଷ୍ଟ ବ୍ୟକ୍ତିମାନଙ୍କୁ ଭଲକରି ପାନେ ଉତ୍ତମ-ମଧ୍ୟମ ଦେବାପାଇଁ କ୍ଷମତାସୀନ ପକ୍ଷଙ୍କର ପ୍ରସ୍ତୁତି ମଧ ଚାଲିଲା । ଅସନ୍ତୁଷ୍ଟ ପକ୍ଷଲୋକେ ମଧ ଏହାର ସୂଚନା ପାଇ ମୁକାବିଲା କରିବାକୁ ପ୍ରସ୍ତୁତ ହେଲେ । ବୈଠକ ଆରମ୍ଭ ହେବା ପରେ ପରେ ସଭା ଗୃହରେ ଲଙ୍କାକାଣ୍ଡ ଘଟିଲା । ପରସ୍ପର ମଧ୍ୟରେ ଟଣାଓଟରା, ପିଟାପିଟି, ଧାସ୍ତାଧସ୍ତି, ସଂଘର୍ଷ ଏପରି ପ୍ରବଳ ହେଲା ଯେ, ଛାନିଆରେ ବହୁ ସଭ୍ୟ ରାସ୍ତାକୁ ପଳାଇଥିଲେ । ସେଠାରେ ମଧ ଗୋଡ଼ିଆ ଗୋଡ଼େଇ ପିଟାପିଟି ଚାଲିଲା । ସେମାନଙ୍କ ମଧ୍ୟରୁ ଅନେକ ଜଖମ ହୋଇଥିଲେ । ରକ୍ତାକ୍ତ ବି ହୋଇଥିଲେ । ଉଭୟ ପକ୍ଷ ବାହାରୁ ଭଡ଼ାଟିଆ ଗୁଣ୍ଡା ଆଣି ଲଗାଇଥିଲେ ବୋଲି ଅଭିଯୋଗ ହୋଇଥିଲା । ଏହି ଲଜ୍ଜାକର ଘଟଣାଟି ଏପରି ବିସ୍ତୃତ ଭାବରେ ସର୍ବଭାରତୀୟ ସମ୍ବାଦପତ୍ରରେ ପ୍ରକାଶପାଇଥିଲା ଯେ ଏକ ପୁରାତନ କଂଗ୍ରେସ ଅନୁଷ୍ଠାନର ମର୍ଯ୍ୟାଦା ନିଶ୍ଚୟ ବିଶେଷ ଭାବରେ କ୍ଷୁଣ୍ଣ ହୋଇଥିଲା । କିନ୍ତୁ ଭାଗ୍ୟର ବିଡ଼ମ୍ବନା ଯେ, ସେହି ପୁରାତନ ମର୍ଯ୍ୟାଦାବନ୍ତ ଅନୁଷ୍ଠାନରେ ସତେ ଅବା ଆଉ କେହି ଜଣେ ହେଲେ ଆତ୍ମମର୍ଯ୍ୟାଦା ସଚେତନ ବ୍ୟକ୍ତି ନଥିଲେ । ଏବେ ମଧ ହୁଏତ ଆଉ ନାହାନ୍ତି । ଏଥିପାଇଁ ସାମାନ୍ୟ ଅନୁଶୋଚନା କରିବା ପରିବର୍ତ୍ତେ ସଂସ୍କୃତ ଶ୍ଲୋକ ପଢ଼ି ପଣ୍ଡିତମନ୍ୟ ନେତା ବୁଝାଇଦିଅନ୍ତି– କ୍ଷମତା ଦଖଲ ଏକ ପୁରାତନ ପଶାଖେଳ । ସର୍ବପୁରାତନ ମର୍ଯ୍ୟାଦାବନ୍ତ ହସ୍ତିନାପୁରର ଯେଉଁଠି କ୍ଷମତାପାଇଁ ଦ୍ୟୁତକ୍ରୀଡ଼ା, ନାରୀର ବସ୍ତ୍ରହରଣ ଏବଂ ଗୁରୁଜନମାନଙ୍କ ନୀରବ ସମର୍ଥନ ଆଜିର ଯୁଗପାଇଁ କରଣୀୟ ନଚିର ।

## ଚିରା ବ୍ଲାଉଜ, ମାରା କଂଗ୍ରେସ

ବସନ୍ତ କୁମାର ବିଶ୍ୱାଳ କୁଆଡ଼େ ଦାବି କରୁଥିଲେ ଯେ, ସେ ବାଧା ଦେଇନଥିଲେ ଜାନକୀ-ବାବୁଙ୍କ ଉପରେ ସେଦିନ ମାଡ଼ ବସିଥା'ନ୍ତା । ମାଡ଼ରେ ଭାଗବତ ପ୍ରସାଦ ମହାନ୍ତିଙ୍କ ପିଠା ଫାଟି ରକ୍ତ

ବୋହିବା କଥା ମଧ୍ୟ ଅଭିଯୋଗ ହୋଇଥିଲା । ସେ ନିଜେ ମୋତେ ଏକଥା ମଧ୍ୟ କହିଥିଲେ । ପରିତାପର କଥା ଯେ, ପ୍ରଦେଶ କଂଗ୍ରେସ କମିଟିର ସାଧାରଣ ସଂପାଦିକା ଶ୍ରୀମତୀ ବିଜୟଲକ୍ଷ୍ମୀ ସାହୁଙ୍କ ବ୍ଲାଉଜ୍ ସଭାଗୃହରେ ଧସ୍ତାଧସ୍ତି ଓ ଟଣାଓଟରାରେ ଚିରିଦିଆଯାଇଥିଲା ବୋଲି ସେ ଅଭିଯୋଗ କରିଥିଲେ । ପୁଣି ସେଥିପାଇଁ କୁଆଡ଼େ ବସନ୍ତବାବୁଙ୍କ ପରି ଜଣେ ପୁରୁଖାନେତା ଦାୟୀ ବୋଲି ତାଙ୍କର ଅଭିଯୋଗ ଥିଲା । ତାଙ୍କର ଏହି ଚିରା ଜାମାପଟା ଧରି ସେ ଜାନକୀବାବୁଙ୍କ ସାଙ୍ଗରେ ଯାଇ ଦିଲ୍ଲୀରେ ପ୍ରଧାନମନ୍ତ୍ରୀ ତଥା କଂଗ୍ରେସ ସଭାପତି ଓ ଅନ୍ୟମାନଙ୍କ ଆଗରେ ଫେରାଦ ହେଲେ ଏବଂ ତାଙ୍କ ଉକ୍ତିକୁ ସତ୍ୟ ବୋଲି ପ୍ରତିପାଦିତ କରି ଜାନକୀବାବୁ ଦିଲ୍ଲୀ ନେତାମାନଙ୍କ ମଧ୍ୟରେ ବସନ୍ତଙ୍କ ପ୍ରତି ପ୍ରତିକୂଳ ଧାରଣା ସୃଷ୍ଟିକରିପାରିଥିଲେ । ଶ୍ରୀମତୀ ବିଜୟଲକ୍ଷ୍ମୀ ସାହୁ ଚିରା ବ୍ଲାଉଜ୍ ଦେଖାଇ ସମସ୍ତଙ୍କ ଉପସ୍ଥିତିରେ କାନ୍ଦିବାକୁ ଲାଗିଲେ । ତାଙ୍କ କାନ୍ଦଣା ଦେଖି କଂଗ୍ରେସ ସଭାପତି ନରସିଂହ ରାଓ ଅଭିଯୁକ୍ତଙ୍କ ଉପରେ କ୍ଷୁବ୍ଧ ହୋଇଥିବାର ଶୁଣାଯାଏ ।

କଂଗ୍ରେସ ଦଳ ତଥା ଅନ୍ୟ ଦଳର ମଧ୍ୟ ଅକସ୍ମାତ କେବେକେବେ ଏହିପରି ଅସହିଷ୍ଣୁ ଓ ଅପରିଣାମଦର୍ଶୀ ଆଚରଣର ଏହା ନୂତନ ଦୃଷ୍ଟାନ୍ତ ନୁହେଁ । କିନ୍ତୁ ଏଭଳି ଅସଦାଚରଣପାଇଁ ପୂର୍ବ-ପରିକଳ୍ପିତ ଆୟୋଜନ ଓ ଜଘନ୍ୟ ପରିଣାମ ନିଶ୍ଚୟ ନିନ୍ଦନୀୟ ଓ ବର୍ଜନୀୟ । ପାଠକମାନେ ଏହି ପୁସ୍ତକର 'ଚିରାକମିଜ୍, ଫଟା କଂଗ୍ରେସ' ଉପାଖ୍ୟାନ ପଢ଼ିଲେ ବିଜୁବାବୁ, ପବିତ୍ରବାବୁ ଓ ପଦ୍ମଚରଣ ସାମନ୍ତସିଂହାରଙ୍କ ପରି ଅତି ପ୍ରବୀଣ ନେତାମାନଙ୍କର ପିଲାଳିଆ ଜଳିଗୋଳ ପ୍ରସଙ୍ଗ ନିଶ୍ଚୟ ଉପଭୋଗ କରିବେ । ସେମାନଙ୍କ ଛକାପଞ୍ଝା ଭିତରେ ମୋତେ ଶଙ୍କାଗ୍ରସ୍ତ ଅବସ୍ଥାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ପୂର୍ବ ଉପାଖ୍ୟାନ ଥିଲା 'ଚିରା କମିଜ୍, ଫଟା କଂଗ୍ରେସ' ବର୍ତ୍ତମାନର ଉପାଖ୍ୟାନ 'ଚିରା ବ୍ଲାଉଜ୍, ମାରା କଂଗ୍ରେସ' କହିଲେ ଠିକ୍ ହେବ । ଚିରା ବ୍ଲାଉଜ୍ ପ୍ରଦର୍ଶନର କାଟତି ଓ ସହାନୁଭୂତି କଂଗ୍ରେସର ବଡ଼ବଡ଼ିଆ ମହଲରେ ବେଶ୍ ବଢ଼ିଥିଲା । ଜଣେ ଭଦ୍ରମହିଳାଙ୍କର କାନ୍ଦ ଆଉ ଜାନକୀବାବୁଙ୍କ ପ୍ରଚାରପଟୁତାର ଫାନ୍ଦ ସବୁରି ମନକୁ ପାଇଥିଲା । ଭୁବନେଶ୍ୱର କଂଗ୍ରେସ ଅଫିସ୍‌ରେ ଘଟିଥିବା ଲଜ୍ଜାକର ଘଟଣାପାଇଁ କଂଗ୍ରେସ ଶୃଙ୍ଖଳାରକ୍ଷା କମିଟି ପକ୍ଷରୁ ତଦନ୍ତ କରି ଶ୍ରୀ ବଳରାମ ଝାକର ଯେଉଁ ରିପୋର୍ଟ ଦେଲେ ତାହା ଉପରେ ଦୁଇ ପର୍ଯ୍ୟାୟରେ କାର୍ଯ୍ୟାନୁଷ୍ଠାନ କରାଗଲା । ସର୍ବଶ୍ରୀ ବସନ୍ତ କୁମାର ବିଶ୍ୱାଳ, ବିପିନି ବିହାରୀ ଦାସ, ଲଲାଟେନ୍ଦୁ ବିଦ୍ୟାଧର ମହାପାତ୍ର, ନେତ୍ରାନନ୍ଦ ମଲିକ, ଦୋଳଗୋବିନ୍ଦ ପ୍ରଧାନ ଓ ଶ୍ରୀମତୀ ସାହାନାଜ୍‌ବାନ୍‌ଙ୍କୁ ଛ'ବର୍ଷ ପାଇଁ କଂଗ୍ରେସରୁ ବହିଷ୍କାର କରାଗଲା । ସେମାନେ ଏହି ଶାସ୍ତି ବିରୋଧରେ ଯେତେ ଆପତ୍ତିକଲେ ମଧ୍ୟ ତାହା ଶୁଣାଗଲାନାହିଁ ।

## ସୁବାସିତ କର୍ପୂର ଓ ଛିଣ୍ଡାକନାର ବୁନିଆଦ ମୋହ

କର୍ପୂର ଉଡ଼ିଯାଇଥିଲେ ବି ଯେଉଁ ପାଟକନା ଖଣ୍ଡିକରେ କର୍ପୂର ବାନ୍ଧି ରଖାଯାଇଥାଏ, ସେହି ପାଟକନା ଖଣ୍ଡିକ ପ୍ରତି ଲୋକଙ୍କର ଏକ ଖାନଦାନୀ ସମ୍ମାନ ଥାଏ, ଲୋଭ ବି ଥାଏ । ସେମିତି ବାଲ୍ୟକାଳରୁ ଗାନ୍ଧୀ, ଗୋପବନ୍ଧୁଙ୍କ କଂଗ୍ରେସରେ ଜୀବନ ବିତାଇଥିବା ଅନେକ ସ୍ୱାଧୀନତା ସଂଗ୍ରାମୀ ବନ୍ଧୁଙ୍କ ମନରେ କଂଗ୍ରେସ ପ୍ରତି ଗୋଟାଏ ସୁପ୍ତ ଅନୁରାଗ ରହିବା ସ୍ୱାଭାବିକ । ତେଣୁ ଅବକ୍ଷୟମାନ ଓ ବିପଥଗାମୀ କଂଗ୍ରେସର ତୀବ୍ର ବିରୋଧକରି କଂଗ୍ରେସ ଛାଡ଼ିଥିବା କିମ୍ବା ଅନ୍ୟ ଦଳ ଗଢ଼ିଥିବା ବିଶିଷ୍ଟ ରାଜନୈତିକ ବ୍ୟକ୍ତିମାନେ ଅନୁକୂଳ ପରିସ୍ଥିତିର ଆହ୍ୱାନରେ କିମ୍ବା ପ୍ରତିକୂଳ ପରିସ୍ଥିତିର ତାଡ଼ନାରେ କଂଗ୍ରେସକୁ ପ୍ରତ୍ୟାବର୍ତ୍ତନ କରିବାର ବହୁ ଦୃଷ୍ଟାନ୍ତ ରହିଛି । କଂଗ୍ରେସ ଲୋକଙ୍କ ଚରମ ବିଶ୍ୱାସଘାତକତାର ଶିକାର ହୋଇଥିଲେ ମଧ୍ୟ ପଣ୍ଡିତ ନୀଳକଣ୍ଠ ଦାସ ପୁଣି ପରିଣତ ବୟସରେ କଂଗ୍ରେସକୁ ଫେରିବାକୁ ନିଜର ସମ୍ମତି ଦେଇଥିଲେ । ଏହିଭଳି ବ୍ୟକ୍ତିଗତ ବିଚାରର ଦୃଷ୍ଟାନ୍ତ ଛଡ଼ା

କଂଗ୍ରେସ ଦଳ ପରିତ୍ୟାଗ କରି ବିରୋଧୀ ଦଳ ଗଢ଼ି ବା ବିରୋଧୀ ଦଳରେ ମିଶି ଦୀର୍ଘକାଳ ତୀବ୍ର ବିରୋଧୀ ଭୂମିକାରେ ରହିଥିବା ନେତା ଓ କର୍ମୀମାନେ ତଦ୍ରୂପ କୌଣସି କୌଣସି କାରଣରୁ ବ୍ୟକ୍ତିଗତ ଭାବରେ ବା ଦଳଗତଭାବେ କଂଗ୍ରେସକୁ ଫେରିଛନ୍ତି । ଅନେକ କଂଗ୍ରେସକୁ ଫେରି କୌଣସି ନା କୌଣସି ଉପାୟରେ ଭାଗ୍ୟଶାଳୀ ହୋଇଛନ୍ତି । ଅନେକ କଂଗ୍ରେସର ନବାଗତ ନେତାମାନଙ୍କ ବିଶ୍ୱାସଘାତକତା ଭୋଗୀ ଦହଗଞ୍ଜ ହୋଇଛନ୍ତି । କିନ୍ତୁ 'କର୍ପୂର ଉଡ଼ିଯାଇଥିଲେ ମଧ୍ୟ କନାଖଣ୍ଡିକ ତ ଅଛି' ବୋଲି ଜନମୁଖରେ ଯେଉଁ ଓଡ଼ିଆ ପ୍ରବାଦଟି ଅଛି, କଂଗ୍ରେସ ଏବେ ସେହି ଅବସ୍ଥାରେ ରହିଛି । ସେହି ବୁନିଆଦିର ବୈଶିଷ୍ଟ୍ୟକୁ ଅନେକ ପୁରୁଣା ଲୋକ ପାସୋରିପାରିନାହାଁନ୍ତି । ଗ୍ରାମାଞ୍ଚଳରେ ବହୁଲୋକ ମଧ୍ୟ ପୁରୁଷାନୁକ୍ରମେ କଂଗ୍ରେସର ଏହି ପୁରୁଣା ବୁନିଆଦିକୁ ସମ୍ମାନ ଦେଇଆସୁଛନ୍ତି । କଂଗ୍ରେସର ନେତାମାନଙ୍କର କଳେ-ବଳେ-କୌଶଳେ କୌଣସି ଉପାୟରେ କେତେକ ଚତୁର ବ୍ୟକ୍ତି କଂଗ୍ରେସର ମଙ୍ଗୁଆଳ ହୋଇଯାଇ ତେଣିକି ନିଜନିଜର ଜୀବନ ଉପଭୋଗ କରିବାପାଇଁ ଭ୍ରଷ୍ଟାଚାରୀ ହୋଇପଡ଼ୁଛନ୍ତି ଏବଂ କଂଗ୍ରେସକୁ ଭ୍ରଷ୍ଟ ଓ ଅବକ୍ଷୟମାଣ କରିପକାଉଛନ୍ତି । ତଥାପି ଗାନ୍ଧୀ ଓ ଗୋପବନ୍ଧୁ ଅମଳର ସେହି କଂଗ୍ରେସ ଦଳ ଓ ତାହାର ପୁରୁଣା ଛିଣ୍ଡା କର୍ପୂର କନାର ବୁନିଆଦି ପ୍ରତି ମୋହ ରହୁଥିବାରୁ କଂଗ୍ରେସଦଳ ଘୋର ଅପବାଦଗ୍ରସ୍ତ ହେବା ସତ୍ୱେ ଏବେ ମଧ୍ୟ ବଞ୍ଚି ରହିଛି । ସେହି ପୁରାତନ ବୁନିଆଦିର କଂଗ୍ରେସ ଦଳ ପ୍ରତି ବାଲ୍ୟଜୀବନରୁ ଓତପ୍ରୋତ ଭାବରେ କଂଗ୍ରେସ ସହିତ ସାମିଲ ଥିବା ଜଣେ ସ୍ୱାଧୀନତା ସଂଗ୍ରାମୀ ମନରେ ମମତା କିଛି କିଛି ଅତୁଟ ରହିବା ଏକ ସଂପୂର୍ଣ୍ଣ ଅସମ୍ଭବ ବ୍ୟାପାର ନୁହେଁ ।

ଉଲ୍ଲିଖିତ ମାନସିକ ପଟ୍ଟଭୂମିରେ ମୋର ରାଜନୈତିକ ଗତିପଥରେ ମୋତେ ଅନେକ ସମୟରେ ପ୍ରମାଦ ଓ ଅପବାଦର ସମ୍ମୁଖୀନ ହେବାକୁ ପଡ଼ିଛି । କେତେବେଳେ ଘୋର ବିଶ୍ୱାସ-ଘାତକତା ବରଦାସ୍ତ କରିବାକୁ ପଡ଼ିଛି ତ କେତେବେଳେ ଦଳବଦଳକାରୀ ବୋଲି ଅକାରଣ ଆକ୍ଷେପ ବି ଶୁଣିବାକୁ ହୋଇଛି । ହୁଏତ ଏପରି କେତେକ ଘଟଣାପାଇଁ ମୋର ନିଜର ଅବିଚାରିତା ବା କର୍ତ୍ତବ୍ୟରେ ତ୍ରୁଟି ପ୍ରଧାନ କାରଣ ହୋଇପାରେ, ମାତ୍ର ସେଭଳି ଅବିଚାର ବା ତ୍ରୁଟିପୂର୍ଣ୍ଣ କୌଣସି କାର୍ଯ୍ୟ କରିବା କେବେ ମୋର ବ୍ୟକ୍ତିଗତ ସ୍ୱାର୍ଥ ସିଦ୍ଧିପାଇଁ ଅଭିପ୍ରେତ ନଥିଲା । ଏକଥା ନିଶ୍ଚୟ ସବୁକ୍ଷେତ୍ରରେ ଘଟଣାଚକ୍ରରେ ପରିଣାମରେ ପ୍ରମାଣିତ ହୋଇଛି । ଏକଥା ମୁଁ ନମ୍ରତା ଓ ଦୃଢ଼ତାର ସହିତ କହିବାର ଯଥାର୍ଥ କାରଣମାନ ରହିଛି । ମୋ ଜୀବନରେ ଏ କଥା ମଧ୍ୟ ସତ୍ୟ ଯେ, ରାଜନୈତିକ ମତଭେଦ ଯେତେ ତୀବ୍ର ହେଲେ ମଧ୍ୟ କୌଣସି ରାଜନୈତିକ ବନ୍ଧୁଙ୍କ ପ୍ରତି ମୋ ପକ୍ଷରୁ ମୁଁ କେବେ ତିକ୍ତତାକୁ ପ୍ରଶ୍ରୟ ନଦେଇ ବ୍ୟକ୍ତିଗତ ବନ୍ଧୁତା ବଜାୟରଖିବାକୁ ଚେଷ୍ଟାକରିଛି । ନିଜେ କାହାରି ବିଶ୍ୱାସଘାତକତାର ଶିକାର ହୋଇଥିଲେ ମଧ୍ୟ ପରବର୍ତ୍ତୀକାଳରେ ତାଙ୍କର ମଧ୍ୟ କୌଣସି ଆପାତ ବିଶ୍ୱାସଯୋଗ୍ୟ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିନାହିଁ । ସେଥିପାଇଁ ମୋତେ ଅନେକ କ୍ଷେତ୍ରରେ ପ୍ରତାରିତ ହେବାକୁ, ଅପଦସ୍ଥ ହେବାକୁ ପଡ଼ିଥିଲେ ମଧ୍ୟ ମୁଁ କେବେ ବ୍ୟକ୍ତିଗତ ପ୍ରତିହିଂସାପରାୟଣ ହୁଏନାହିଁ, ଯାହା କି ଆଜିକାଲିର ରାଜନୀତିରେ ଅତି ସ୍ୱାଭାବିକ କଥା ହେଲାଣି ଏବଂ ସେହି କାରଣରୁ ଦଳ ଦଳ ମଧ୍ୟରେ ଏବଂ ଏକା ଦଳ ମଧ୍ୟରେ ମଧ୍ୟ ସଶସ୍ତ୍ର ସଂଗ୍ରାମର ସୂତ୍ରପାତ କରାଯାଉଛି ।

## ନବେ ଦଶକରେ କଂଗ୍ରେସ ଦଳର ସ୍ଥିତି

ଆଗରୁ ଉଲ୍ଲେଖ କରିଅଛି ଅନୁକୂଳ କାରଣର ଆହ୍ୱାନରେ କିମ୍ବା ପ୍ରତିକୂଳ ପରିସ୍ଥିତିର ତାଡ଼ନାରେ ବିଶିଷ୍ଟ ଲୋକେ ବ୍ୟକ୍ତିଗତ କିମ୍ବା ସମଷ୍ଟିଗତ ନିଷ୍ପତ୍ତି ନେଇ କଂଗ୍ରେସଦଳ କ୍ରମଶଃ ଅବକ୍ଷୟିତ ବୋଧହୋଇଥିଲେ ମଧ୍ୟ ସେହି ଦଳକୁ ଲେଉଟିବାର ଅନେକ ଦୃଷ୍ଟାନ୍ତ ରହିଛି । ତେଣୁ ନବେ ଦଶକରେ ମୁଁ ପୁନର୍ବାର କଂଗ୍ରେସରେ ଯୋଗଦାନ କରିବା ପ୍ରସଙ୍ଗ ପଢ଼ିବା ପୂର୍ବରୁ ପାଠକ ଦୟାକରି ଏହି

ପୁସ୍ତକରେ ଅନ୍ୟତ୍ର ପରିବେଷିତ 'ଘଟ ପରିବର୍ତ୍ତନ ମସୁଧାରୁ ପଟ ପରିବର୍ତ୍ତନ', 'ଅବୁଝାମଣା ବିଜୁ', 'ଶାସକ କଂଗ୍ରେସରେ ପ୍ରଜାସୋସାଲିଷ୍ଟ ପାର୍ଟିର ମିଶ୍ରଣ', 'ଶାସକ କଂଗ୍ରେସ ଉତ୍କଳ କଂଗ୍ରେସ ମିଶ୍ରଣ', 'ବିଶ୍ୱାସଘାତକତାର ଶିକାର' ଓ 'ଭାଗ୍ୟଚକ୍ରର କ୍ରୀଡ଼ନକ' ଉପାଖ୍ୟାନଗୁଡ଼ିକ ପ୍ରତି ଦୃଷ୍ଟିପାତ କରିବାକୁ ଅନୁରୋଧ । ରାଜନୈତିକ ଇତିହାସରେ ସେଥିରୁ ଅନେକ ଦୃଷ୍ଟାନ୍ତ ସଂପୂର୍ଣ୍ଣ ଯଥାର୍ଥ ଏବଂ ଅନେକ ଅଯଥାର୍ଥ ବୋଲି ବିବେଚିତ ହୋଇପାରେ । ଏ ବିଷୟରେ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କର ଭିନ୍ନ ଭିନ୍ନ ମତ ମଧ୍ୟ ହୋଇପାରେ । କିନ୍ତୁ କୌଣସି ଅଯଥାର୍ଥ ପଦକ୍ଷେପ ନେବା ମୋର ଅଭିପ୍ରାୟ ନଥିଲା । ଯଦିଓ ଏହି ପୁସ୍ତକର ଆଦ୍ୟରେ ଗାନ୍ଧୀଙ୍କ ଉକ୍ତିକୁ ଉଦ୍ଧାର କରି ମୁଁ ଅକୁଣ୍ଠିତ ଭାବରେ ସ୍ୱୀକାର କରିଛି ଯେ, "Man is a fallible being, he can never be sure of his next steps".

ବିଶ୍ୱନାଥ ପ୍ରତାପ ସିଂହଙ୍କ ଆଦର୍ଶଭିତ୍ତିକ, ଦୁର୍ନୀତି ନିବାରକ ଆପାତ ନିଷ୍କଳଙ୍କ ପ୍ରତୀତ ରାଜନୀତି ଓ ତାଙ୍କର ନେତୃତ୍ୱରେ ଗଠିତ ଜନତାଦଳ ଓ ସରକାରରେ ଅତି ଶୀଘ୍ର ଅପ୍ରତ୍ୟାଶିତ ଭାବେ ଜାତିଆଣ ଓ ସାଂପ୍ରଦାୟିକ ଘୁଣ ଲାଗିଗଲା । ସେ ସରକାରର ପତନ ଘଟିବାରୁ ପୁନର୍ବାର ସର୍ବଭାରତୀୟ ରାଜନୀତିରେ ଅନିଶ୍ଚିତତା ଏଡ଼ାଇଦେବା ଆଳରେ ଚନ୍ଦ୍ରଶେଖର ଜଣେ ଥୁଆଥୋଇ ପ୍ରଧାନମନ୍ତ୍ରୀରୂପେ କୁର୍ସି ଦଖଲକଲେ । କିନ୍ତୁ ପରିଣତିରେ ଜାତୀୟ ରାଜନୀତିରେ କଂଗ୍ରେସର ଭୂମିକା ଅପରିହାର୍ଯ୍ୟ ପ୍ରତୀତ ହେଲା । ରାଜୀବ ଗାନ୍ଧୀ ''ତ୍ରିଗୁଣ ରଜ୍ଜୁ କରେ ଧରି, ମୃଗୀ ନଗାଏ ନରହରି' ରୂପରେ ବିଚରା ଚନ୍ଦ୍ରଶେଖରଙ୍କୁ ଏକ ସଖୀକଣେଇ କରିଦେଲେ । ଦେଶରେ ସ୍ଥିର ସରକାର ତିଷ୍ଠିବାକୁ ହେଲେ କଂଗ୍ରେସକୁ ସଂଖ୍ୟାଗରିଷ୍ଠ ସମର୍ଥନ ଦେବା ଏକ ଅପରିହାର୍ଯ୍ୟ ଆବଶ୍ୟକତା ବୋଲି ଜନମାନସରେ ଧାରଣା ଜାତହେଲା । ବିଶ୍ୱନାଥ ପ୍ରତାପ ସିଂହଙ୍କ ସରକାରର ସର୍ବପ୍ରଧାନ ସମର୍ଥନ-କାରୀ ପୂର୍ବତନ ଜନସଂଘର ଉତ୍ସର୍ଗୀକୃତ ରାଜନୀତିଜ୍ଞମାନେ ଅଲଗାହୋଇଗଲେ, ପରେ ଭାରତୀୟ ଜନତାପାର୍ଟି ରୂପେ ଅବଶ୍ୟ ସେମାନେ ଜନସାଧାରଣଙ୍କର ସର୍ବାଧିକ ବିଶ୍ୱାସଭାଜନ ବୋଲି ପ୍ରତିଷ୍ଠିତ ହେଲେ । ମାତ୍ର ବିଶ୍ୱନାଥ ପ୍ରତାପ ସିଂହ ଓ ଚନ୍ଦ୍ରଶେଖର ସରକାର ଦୁଇଟିର ଆକସ୍ମିକ ପତନ ଓ ଦେଶର ତଜ୍ଜନିତ ଅସ୍ଥିର ବାତାବରଣ ପରେ ନବେଦଶକର ଆରମ୍ଭ ବେଳକୁ ଦେଶବାସୀଙ୍କ ମନରେ ଦୃଢ଼ ଧାରଣା ଜାତହୋଇଥିଲା ଯେ, ଭାରତରେ ସ୍ଥିର ସରକାର ପ୍ରତିଷ୍ଠାପାଇଁ କଂଗ୍ରେସ ଦଳକୁହିଁ ସଂଖ୍ୟା-ଗରିଷ୍ଠ ଦଳ ରୂପେ ନିର୍ବାଚିତ କରିବା ସେତେବେଳର ଏକମାତ୍ର ଫଳପ୍ରଦ ଓ ବାସ୍ତବ ବିକଳ୍ପଥିଲା ।

ଜାତୀୟ ରାଜନୈତିକ ସ୍ଥିତିର ଏହିଭଳି ପୃଷ୍ଠଭୂମିରେ ବିଶ୍ୱନାଥ ପ୍ରତାପ ସିଂହଙ୍କ ସରକାରର ପତନ ପରେ ମଧ୍ୟ ଯେଉଁ ରାଜନୈତିକ ଦଳଗୁଡ଼ିକରେ ଜନତା ଦଳର ଅବା ଅନ୍ୟ ଅଣକଂଗ୍ରେସ ସରକାରମାନ ତିଷ୍ଠିରହିପାରିଥିଲା ସେ ରାଜ୍ୟମାନଙ୍କରେ ବି ଅଣକଂଗ୍ରେସ ଦଳର ସ୍ଥାୟିତ୍ୱ ଓ ସର୍ବଭାରତୀୟ ଏକତା ରକ୍ଷା ଦୃଷ୍ଟିରୁ ସେଭଳି ଦଳଗୁଡ଼ିକର ଉପଯୋଗିତା ସଂପର୍କରେ ଲୋକଙ୍କ ମଧ୍ୟରେ ଦ୍ୱିଧାଭାବ ବଢ଼ିଲା । ଆଉ ମଧ୍ୟ ଆଞ୍ଚଳିକ ଦଳଗୁଡ଼ିକର ଏବଂ ତତ୍କାଳୀନ ଜନତାଦଳର ଅସହାୟ କେନ୍ଦ୍ରୀୟ ନେତୃତ୍ୱ ହେତୁ, ଓଡ଼ିଶାଭଳି ଯେଉଁଠି ଜନତା ଦଳର ଶାଖା ତଥାପି ତିଷ୍ଠିରହିଥିଲା ସେଠାରେ ମଧ୍ୟ ଆଞ୍ଚଳିକ ନେତାମାନେ ହୁଏତ ଏକଛତ୍ରବାଦୀ ପରି ବ୍ୟବହାରକଲେ କିମ୍ବା ପରସ୍ପର ବିଦ୍ୱେଷଦ୍ୱାରା ଭିନ୍ନ ଭିନ୍ନ ବ୍ୟକ୍ତିକୈନ୍ଦ୍ରିକ ଦଳମାନ ଗଢ଼ିଲେ । ତତ୍କାଳୀନ ଓଡ଼ିଶା ଓ ବିହାରର ରାଜନୈତିକ ଭୂମିକା ଏହାର ଗୋଟିଏ ଗୋଟିଏ ଜ୍ୱଳନ୍ତ ଉଦାହରଣ ।

ଜନତାଦଳର ସର୍ବଭାରତୀୟ ରାଜନୈତିକ ମାନଚିତ୍ରରେ ଏପରି ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ଯଦି ତଥାପି ତିଷ୍ଠିରହିଥିବା ରାଜ୍ୟ ଜନତାଦଳରେ ନୈତିକ ମୂଲ୍ୟବୋଧ, ସାଂଗଠନିକ ସଂହତି ଓ ମିଳିତ ଦାୟିତ୍ୱବୋଧ ବଜାୟ ରଖାଯାଇପାରିଥା'ନ୍ତା, ତେବେ ଅନେକ ରାଜ୍ୟରେ ଜନତାଦଳ ଲୋକପ୍ରିୟତା ହରାଇବାର କାରଣ ଉପୁଜିନଥା'ନ୍ତା । ବିଲାତର ପାର୍ଲାମେଣ୍ଟାରୀ ଡିମୋକ୍ରାସୀ କିମ୍ବା ଯୁକ୍ତରାଷ୍ଟ୍ର ଆମେରିକାର ପ୍ରେସିଡେନ୍ସିଆଲ୍ ଡିମୋକ୍ରାସିର ଏକ ସୁସ୍ଥ ଗଣତାନ୍ତ୍ରିକ ପରମ୍ପରା ହେଲା ଦୁଇଟି

ସୁସଂହତ ରାଜନୈତିକ ଦଳର ସ୍ଥିତି ଓ କାର୍ଯ୍ୟକ୍ରମ । ଗୋଟିଏ ଦଳ ସରକାରରେ ରହିଲେ ଅନ୍ୟ ରାଜନୈତିକ ଦଳଟି ଗଠନମୂଳକ ଭୂମିକା ଗ୍ରହଣ କରନ୍ତି । ଭାରତରେ ଲୋକନାୟକ ଜୟପ୍ରକାଶଙ୍କ ଉଦ୍ୟମରେ ଜନତା ଦଳର ଗଠନ ପରେ ସୁସ୍ଥ ପାର୍ଲିଆମେଣ୍ଟାରୀ ଡିମୋକ୍ରାସିର ଏହି ସୁସ୍ଥ ପରମ୍ପରା ସାବ୍ୟସ୍ତ ରହିବାପରି ଜଣାପଡୁଥିଲା । କିନ୍ତୁ ଭାରତର ଦୁର୍ଭାଗ୍ୟ ଯେ, ଜାତୀୟ କ୍ଷେତ୍ରରେ ଜନତା-ଦଳର ପତନ ସଙ୍ଗେ ସଙ୍ଗେ ଏହି ଅପରିହାର୍ଯ୍ୟ ନବଜାତ ସମ୍ଭାବନା ମଉଳିଗଲା । ମୋ ବିଚାରରେ ଭାରତବର୍ଷରେ ଗଣତନ୍ତ୍ରର ସୁରକ୍ଷାପାଇଁ ଗୋଟିଏ ଅଣକଂଗ୍ରେସ ସର୍ବଭାରତୀୟ ରାଜନୈତିକଦଳ ବା ଅଣକଂଗ୍ରେସ ସୁସଂହତ ସଂଘୀୟ ଦଳର ଜରୁରୀ ଆବଶ୍ୟକତା ରହିଛି ଏବଂ ଏ ଦିଗରେ ଉଦ୍ୟମ କରିବାପାଇଁ ସଚେତନ ଅଭିଜ୍ଞ ନାଗରିକମାନେ ତଥା ଯୁବଶକ୍ତି ନିଷ୍ଠାପର ଯତ୍ନ କରିବା ନିହାତି ଦରକାର । ମାତ୍ର ଆମ ଦେଶରେ ପାର୍ଲାମେଣ୍ଟାରୀ ଗଣତନ୍ତ୍ରର ସୁରକ୍ଷାପାଇଁ କଂଗ୍ରେସ ଏକ ପରିମାର୍ଜିତ, ଉତ୍ସର୍ଗୀକୃତ ଦଳରୂପେ ପୁନର୍ଗଠିତ କରି ବଞ୍ଚାଇ ରଖିବା ମଧ୍ୟ ସେହିପରି ପ୍ରୟୋଜନ । ଏହିପରି ଜାତୀୟ ସ୍ୱାର୍ଥସମ୍ବଳିତ କେତେକ ବିଚାର ଏବଂ ଓଡ଼ିଶା ରାଜନୀତିରେ ତତ୍କାଳୀନ ନାନା ଅବାଞ୍ଛିତ ଘଟଣା ଘଟିଯିବା ପରେ ୧୯୯୨ ମସିହାରେ ଓଡ଼ିଶାରେ କଂଗ୍ରେସର ପୁନର୍ଗଠନ ଓ ପୁନଃପ୍ରତିଷ୍ଠାପାଇଁ ଅନେକ ଅନ୍ତରଙ୍ଗ କଂଗ୍ରେସ ବନ୍ଧୁମାନଙ୍କର ପରାମର୍ଶକୁ ମୁଁ ଜଣେ ପୁରାତନ କଂଗ୍ରେସ ବ୍ୟକ୍ତି, ପୂର୍ବତନ କଂଗ୍ରେସ ସଭାପତି ଓ କଂଗ୍ରେସ ପରମ୍ପରାସମ୍ଭୂତ ଜାତୀୟତାବାଦୀ ହିସାବରେ ପ୍ରତ୍ୟାଖ୍ୟାନ କରିପାରିନଥିଲି । ଯଦିଓ ଦୁର୍ଭାଗ୍ୟକୁ ଅବଶେଷରେ ଓଡ଼ିଶାରେ "ମନ ବିଚାରଇ ଆନ, କର୍ମ ବିଚାରେ ଆନ, ଦୁର୍ଗାଦେବୀଙ୍କୁ ଖଟପେଲଙ୍କ ଭାଲୁଖାଏ ଭଗବାନ୍" ବାକ୍ୟହିଁ କାର୍ଯ୍ୟତଃ ସାବ୍ୟସ୍ତ ହେଲା । ଏହି ପୁରାତନ ବାକ୍ୟରେ ଦୁର୍ଗାଦେବୀ ଶବ୍ଦଟିକୁ କଂଗ୍ରେସର ପ୍ରାସଙ୍ଗିକତା ପରିପ୍ରେକ୍ଷୀରେ ଭାବାର୍ଥରେ ବୁଝିବାକୁ ହେବ ।

## କଂଗ୍ରେସ ଦଳରେ ମୋର ଯୋଗଦାନ ଓ ତା'ର ଫଳାଫଳ

ଦେଶ ଓ ଆମ ରାଜ୍ୟର ଉଲ୍ଲିଖିତ ରାଜନୈତିକ ପୃଷ୍ଠଭୂମିରେ ମୋର ଜନତାଦଳ ଛାଡ଼ି କଂଗ୍ରେସରେ ଯୋଗଦେବା ପ୍ରସ୍ତାବ ଅଧିକ ସକ୍ରିୟ ହୋଇଉଠିଥିଲା । ଏଥିପାଇଁ କେତେକ କଂଗ୍ରେସ-ବନ୍ଧୁମାନଙ୍କ ଏକାନ୍ତ ଅନୁରୋଧ ସାଙ୍ଗକୁ ରାଜ୍ୟ ଜନତା ଦଳରେ ରାଜ୍ୟସଭାପାଇଁ ଧନିକପ୍ରାର୍ଥୀ ନିର୍ବାଚନ ଓ ମୋ ପ୍ରତି ମୋର ସ୍ମୃତି ଓ ଅନୁଭୂତି ପୁସ୍ତକରେ କେତେକ ଲେଖା ହେତୁ ପ୍ରତିଶୋଧ ପରା-ୟଣତା ମୋର ନିଷ୍ପତ୍ତିକୁ ତ୍ୱରାନ୍ୱିତ କରିଥିଲା । କେନ୍ଦ୍ରରେ ଜାତୀୟ ମୋର୍ଚ୍ଚା ସରକାରରେ କିମ୍ବା ଜନତା-ଦଳ ମଧ୍ୟରେ କୌଣସି ସଂକଟ ଉପୁଜିଲେ ବିଜୁବାବୁ ଦିଲ୍ଲୀରେ ପହଞ୍ଚୁଥିଲେ । ଚନ୍ଦ୍ରଶେଖର ବିଜୁବାବୁ-ଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ଥିଲେ । ଚନ୍ଦ୍ରଶେଖର ଜନତାଦଳକୁ ଭାଙ୍ଗିଥିଲେ ଓ କଂଗ୍ରେସ ସମର୍ଥନରେ ପ୍ରଧାନମନ୍ତ୍ରୀ ହୋଇଥିଲେ । ତାଙ୍କର ଏ ପ୍ରକାର କାର୍ଯ୍ୟକୁ ବିଜୁ ପଟ୍ଟନାୟକ ପସନ୍ଦ କରୁନଥିଲେ ମଧ୍ୟ ସେ ଦୁହିଁଙ୍କ ବ୍ୟକ୍ତିଗତ ସମ୍ପର୍କରେ କୌଣସି ଫାଟ ନଥିଲା । ଲୋକସଭା ଭାଙ୍ଗିଯିବା ପରେ ନିର୍ବାଚନ ଶେଷ ପର୍ଯ୍ୟନ୍ତ ଚନ୍ଦ୍ରଶେଖର କାମଚଳା ପ୍ରଧାନମନ୍ତ୍ରୀଭାବେ କାର୍ଯ୍ୟ ତୁଲାଇବା ଦାୟିତ୍ୱ ବହନକଲେ । ଏହି ସମୟରେ ନୂତନ ଲୋକସଭା ନିର୍ବାଚନରେ ପରିସ୍ଥିତିର ମୁକାବିଲା କରିବା ନିମନ୍ତେ ଜନତାଦଳର ପ୍ରସ୍ତୁତିକାର୍ଯ୍ୟପାଇଁ ବିଜୁବାବୁଙ୍କୁ ଅଧିକାଂଶ ସମୟରେ ଦିଲ୍ଲୀରେ ରହିବାକୁପଡୁଥାଏ । ବିଗତ ନିର୍ବାଚନରେ ପୁରୀ ଲୋକସଭା ନିର୍ବାଚନମଣ୍ଡଳୀରୁ ମୁଁ ଜନତାଦଳ ପ୍ରାର୍ଥୀରୂପେ ନିର୍ବାଚିତ ହୋଇ ନବମଲୋକସଭାର ସଦସ୍ୟ ଥିଲି । ଶାରୀରିକ ଅସୁସ୍ଥତା ହେତୁ ଆଗାମୀ ଲୋକସଭା ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା ନ କରିବା ନିଷ୍ପତ୍ତି ମୁଁ ବିଜୁବାବୁଙ୍କୁ ଜଣାଇଦେବାରୁ ସେ ମୋତେ କହିଲେ, ତା'ହେଲେ ତୁ ରାଜ୍ୟସଭାକୁ ଆସିବାକୁ ହେବ ଏବଂ ପୁରୀରୁ ବ୍ରଜକିଶୋର ତ୍ରିପାଠୀଙ୍କୁ ଏଥର ପ୍ରାର୍ଥୀ କରାଇବା । ମୁଁ ବ୍ରଜ ତ୍ରିପାଠୀଙ୍କ ଯୋଗ୍ୟତାର ପ୍ରଶଂସାକରି ଅନେକ ଦୃଷ୍ଟାନ୍ତ ଦେଇଥିଲି । ବିଜୁବାବୁ ତତ୍କ୍ଷଣାତ୍ ବିଶ୍ୱନାଥ ପ୍ରତାପ

ସିଂହଙ୍କୁ ଫୋନ୍ କରି ଆମର ସେହି ଆଲୋଚନା ଓ ନିଷ୍ପତ୍ତି ଜଣାଇଦେଇଥିଲେ । ଶ୍ରୀ ସିଂହ ଏହି ପ୍ରସ୍ତାବକୁ ପସନ୍ଦ କରୁଛନ୍ତି ବୋଲି ମଧ୍ୟ ବିଜୁବାବୁ ମୋତେ କହିଥିଲେ । ପ୍ରକୃତରେ ପରିଣତ ବୟସରେ ପୁରୀ ନିର୍ବାଚନରେ ମୋତେ ଅସାଧ୍ୟ ଓ ଅକ୍ଲାନ୍ତ ପରିଶ୍ରମ କରିବାକୁ ପଡ଼ିଥିଲା । ମୋର ଶାରୀରିକ ଶକ୍ତି ସେଥିପାଇଁ ସମର୍ଥ ନଥିଲା । ନିର୍ବାଚନ ପରେ ମୁଁ ଦିଲ୍ଲୀରେ କିଛିଦିନ ଖୁବ୍ ଅସୁସ୍ଥ ଓ ଦୁର୍ବଳ ହୋଇପଡ଼ିଥିଲି । ତେଣୁ ଆଉ ପ୍ରତ୍ୟକ୍ଷ ସାଧାରଣ ନିର୍ବାଚନରେ ଭାଗନେବା ମୋ ପକ୍ଷରେ ସମ୍ଭବ ନୁହେଁ ବୋଲି ମୁଁ ଜାଣିପାରିଥିଲି । ଲୋକସଭା ଭାଙ୍ଗିଯିବା ପରେ ସମସ୍ତେ ରାଜ୍ୟକୁ ଚାଲିଆସିଥିଲେ । ମାତ୍ର ମୁଁ ମୋ ଦିଲ୍ଲୀ ବାସଭବନ ନଛାଡ଼ି ବିଶ୍ରାମ ନେଇ ରହୁଥିଲି । କାରଣ ସେଠାରେ ବଡ଼ ବଡ଼ ଡାକ୍ତରଙ୍କର ପରାମର୍ଶ ଓ ଚିକିତ୍ସାର ସୁବ୍ୟବସ୍ଥା ମଧ୍ୟ ପାଇପାରୁଥିଲି । ମନ୍ତ୍ରୀବେଳର ବଡ଼ ସରକାରୀ ବାସଭବନଟି ବଦଳରେ ଆଉ କୌଣସି ଛୋଟିଆ ଘରକୁ ଉଠିଯିବାପାଇଁ ମୁଁ ଚିନ୍ତା କରୁଥିଲି । ମୋର ନାତି (ପରବର୍ତ୍ତୀ କାଳରେ ଓଡ଼ିଶା ଓ କେନ୍ଦ୍ରରେ ମନ୍ତ୍ରୀ) ଶ୍ରୀ ଦିଲ୍ଲୀପ ରାୟ ମୋ ମନ କଥା ଶୁଣିଥିଲା । ସେ ଦିନେ ଓଡ଼ିଶା ଭବନରେ ବିଜୁବାବୁଙ୍କୁ ସେକଥା କହିବାରୁ ବିଜୁବାବୁ କୁଆଡ଼େ କହିଥିଲେ, ''ସେ ତ ରାଜ୍ୟସଭାକୁ ଆସିବ ଘର କାହିଁକି ଛାଡ଼ିବ ? ତାକୁ କୁହ ଘର ନଛାଡ଼ିବାପାଇଁ ।'' ଦିଲ୍ଲୀପ ଆସି ସେକଥା ମୋତେ କହିଥିଲେ । ମୋର ଧାରଣା ଦୃଢ଼ୀଭୂତ ହେଲା ଯେ ମୁଁ ରାଜ୍ୟସଭାକୁ ଆସିବା କଥାଟି ବିଜୁବାବୁ ନିଷ୍କପଟ ଭାବରେ ନିଜଆଡ଼ୁ ସ୍ଥିରକରିସାରିଥିଲେ ।

୧୯୯୨ ମସିହା ଜୁନ୍ ମାସରେ ଓଡ଼ିଶା ବିଧାନସଭାଦ୍ୱାରା ତିନି ଜଣ ସଭ୍ୟ ରାଜ୍ୟସଭାକୁ ନିର୍ବାଚିତ ହେବାର ପାଳି ପଡୁଥାଏ । ପୁରୀ ଲୋକସଭା ନିର୍ବାଚନମଣ୍ଡଳୀରୁ ଜନତାଦଳ ପ୍ରାର୍ଥୀ ହେବା ପରିବର୍ତ୍ତେ ରାଜ୍ୟସଭାକୁ ସଭ୍ୟହେବାପାଇଁ ମୋତେ ବିଜୁବାବୁ ଯାହା କହୁଥିଲେ ଏବଂ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କୁ ଜଣାଇଥିଲେ, ତାହା ଏହି ତିନୋଟି ସ୍ଥାନ ମଧ୍ୟରୁ ଗୋଟିକ ସଂପର୍କରେ । ମାର୍ଚ୍ଚ ମାସ ବେଳକୁ ମୁଁ ଥରେ ବିଜୁ ପଟ୍ଟନାୟକଙ୍କ ଘରକୁ ଯାଇ ପ୍ରସଙ୍ଗ ଉଠାଇବା କ୍ଷଣି ସେ ମୋତେ କହିଲେ, ''ମୁଁ ତ ତୁ ରାଜ୍ୟସଭାକୁ ଯିବାକଥା ଆଗରୁ କହିସାରିଛି । ତିନୋଟି ସ୍ଥାନରୁ ଗୋଟିଏ ସ୍ଥାନରେ ତୁ ଓ ଅନ୍ୟ ଦୁଇ ଜଣଙ୍କ କଥା ପରେ ବିଚାରି ଦେଖିବା । ବୋମାଇ ମୋତେ ବ୍ୟସ୍ତକରୁଛନ୍ତି ତାଙ୍କୁ ଓଡ଼ିଶାରୁ ରାଜ୍ୟସଭାକୁ ପଠାଇବାପାଇଁ ।'' ମୁଁ ତାଙ୍କୁ କହିଥିଲି ଓଡ଼ିଶାରୁ ବୋମାଇଙ୍କୁ ପଠାଇବା ଠିକ୍ ହେବନାହିଁ । ସେତେବେଳେ ଖବରକାଗଜରେ ପ୍ରକାଶପାଉଥିଲା ଯେ, ବୋମାଇ ବିହାରରୁ ରାଜ୍ୟ ସଭାକୁ ନିର୍ବାଚିତ ହେବାପାଇଁ ଉଦ୍ୟମ କରୁଛନ୍ତି । ତେଣୁ ସେ ଓଡ଼ିଶା ପରିବର୍ତ୍ତେ ବିହାରରୁ ନିର୍ବାଚିତ ହେବା ଓଡ଼ିଶା ପକ୍ଷେ ଭଲ ହେବ ବୋଲି ମୁଁ କହିଥିଲି । ଏହାର କିଛି ଦିନ ପରେ ଦିଲ୍ଲୀରେ ରହୁଥିବା ମୋର ଜଣେ ବନ୍ଧୁ ଭାରତ ସରକାରଙ୍କର ଅବସରପ୍ରାପ୍ତ ଶାସନସଚିବ ଶ୍ରୀ ପ୍ରଫୁଲ୍ଲ କୁମାର ସାମଲଙ୍କର ବିଜୁବାବୁଙ୍କ ସହିତ ସାକ୍ଷାତ୍ ହୋଇଥିଲା । ସେମାନଙ୍କ ମଧ୍ୟରେ ମଧ୍ୟ ବହୁଦିନର ବନ୍ଧୁତା ଥିଲା । ରାଜ୍ୟସଭାକୁ ଟିକେଟ ପାଇବାକୁ ସାମଲବାବୁଙ୍କର ମଧ୍ୟ ଇଚ୍ଛା ଥାଏ । ରାଜ୍ୟସଭା ନିର୍ବାଚନ କଥା ପଡୁ ପଡୁ ପ୍ରସଙ୍ଗକ୍ରମେ ମୋ କଥା କୁଆଡ଼େ ଉଠିଥିଲା । ଏହାପରେ ପ୍ରଫୁଲ୍ଲବାବୁ ଭୁବନେଶ୍ୱର ଆସିଥିଲେ । ମୋ ସହିତ ତାଙ୍କର ଦେଖାହୋଇଥିଲା । ସେ ମୋତେ ପରାମର୍ଶ ଦେଇଥିଲେ, ''ବିଜୁବାବୁ ତୁମକୁ ରାଜ୍ୟସଭାକୁ ପଠାଇବାପାଇଁ ଯେଉଁ ଜବାବ ଦେଇଛନ୍ତି, ତାହା ବିଶ୍ୱାସ କରିବା ଠିକ୍ ହେବନାହିଁ । ସେ ତୁମ ଉପରେ ଅସନ୍ତୁଷ୍ଟ । ତୁମ ଆତ୍ମଜୀବନୀ ସ୍ମୃତି ଓ ଅନୁଭୂତିରେ ତୁମେ କୁଆଡ଼େ ତାଙ୍କ ବିଷୟରେ ବହୁତ ଖରାପ କଥା ଲେଖିଛ, ସେଥିପାଇଁ ତୁମ ଉପରେ ତାଙ୍କର ରାଗ ଥିଲା ଭଳି ମୋର ମନେହେଉଛି । ତୁମେ ତାଙ୍କୁ ବାରମ୍ବାର ଦେଖାକରି କଥାଟା ପକ୍କା କରିନିଅ'' । ସେହି ବନ୍ଧୁଙ୍କଠାରୁ ଏକଥା ଶୁଣି ମୁଁ ବିସ୍ମିତ ହୋଇଥିଲି । ମୋର 'ସ୍ମୃତି ଓ ଅନୁଭୂତି'ରେ ବିଜୁବାବୁଙ୍କ ସମ୍ବନ୍ଧରେ ଅତ୍ୟନ୍ତ ଉଚ୍ଚ ଆସନ ଦେଇ ପ୍ରଶଂସା କରାଯାଇଛି । ଅନେକ ଉଦାହରଣ ଦେଇ ତାଙ୍କର

ଉଦାରତା, କର୍ମପଟୁତା, ତ୍ୟାଗନିଷ୍ଠା, ସାହସିକତା ଓ ବନ୍ଧୁବତ୍ସଳତାର ପ୍ରଶଂସା କରାଯାଇଛି । ଦେଶ ଗଠନ କାର୍ଯ୍ୟରେ ତାଙ୍କର ସାହସିକତାର ପ୍ରଶଂସା କରାଯାଇଛି । ଅବଶ୍ୟ କେତେକ ସ୍ଥାନରେ ତାଙ୍କର ତ୍ରୁଟିପୂର୍ଣ୍ଣ କାର୍ଯ୍ୟର ସମାଲୋଚନା କରାଯାଇଛି ଏବଂ ଅନେକ ସମୟରେ ଚାଟୁକାରଙ୍କ ପ୍ରଭାବରେ ପଡ଼ି ସେ କିପରି ଭୁଲ୍‌କରନ୍ତି ତାହାର ଦୃଷ୍ଟାନ୍ତ ମଧ୍ୟ ଦିଆଯାଇଛି । କୌଣସି ବିଶିଷ୍ଟ ବ୍ୟକ୍ତିଙ୍କ ବ୍ୟକ୍ତିତ୍ୱ ଚର୍ଚ୍ଚା କଲାବେଳେ କେବଳ ସ୍ତାବକତା କିମ୍ବା ନିନ୍ଦା କରିବାଦ୍ୱାରା ତାଙ୍କର ବ୍ୟକ୍ତିତ୍ୱ ବଢ଼ିଯାଏ ନାହିଁ କି କମିଯାଏ ନାହିଁ । କେବଳ ପ୍ରଶଂସା କଲେ ତାହା ବିଶ୍ୱାସଯୋଗ୍ୟ ହୋଇନଥାଏ । ଏହାହିଁ ହେଉଛି ବାସ୍ତବ କଥା । 'ସ୍ମୃତି ଓ ଅନୁଭୂତି'ର ପ୍ରଥମ ସଂସ୍କରଣ ପ୍ରାୟ ଆଠଶହ ପୃଷ୍ଠାର ଗୋଟିଏ ବଡ଼ ବହି । ଏହାକୁ ପଢ଼ିବାର ଧୈର୍ଯ୍ୟ ବିଜୁବାବୁଙ୍କର ନଥିଲା । ତେଣୁ ଯେ ଯାହା କହିଦେଇଥିବ, ସେଥିରେ ହୁଏତ ସେ ବିଶ୍ୱାସ କରି ସେହି ପ୍ରକାର ଧାରଣା ତାଙ୍କ ମନକୁ ପ୍ରଭାବିତ କରିଥିବ ।

ଏହାର ଚାରିବର୍ଷ ପରେ ୧୯୯୭ ମସିହାରେ ମୋର 'ସ୍ମୃତି ଓ ଅନୁଭୂତି'ର କେତେକ ଅଂଶର ଇଂରାଜୀ ଭାଷାରେ ଅନୁବାଦ ଜଣେ ବ୍ୟକ୍ତିଙ୍କ ସ୍ୱେଚ୍ଛାପ୍ରଣୋଦିତ ଉଦ୍ୟମ ହେତୁ ଦୈନିକ ସନ୍‌ଟାଇମ୍‌ସ (Sun Times)ରେ ପ୍ରକାଶପାଉଥାଏ । ସେତେବେଳେ ସେସବୁ ବିଷୟକୁ ଆଗ୍ରହର ସହିତ ବିଜୁବାବୁ ପଢୁଥିଲେ ବୋଲି ତାଙ୍କ ପାଖରେ କାର୍ଯ୍ୟକରୁଥିବା ଲୋକେ ମୋତେ କହୁଥିଲେ । ଦିନେ ପାରାଦ୍ୱୀପ ବନ୍ଦର ନିର୍ମାଣ କାର୍ଯ୍ୟରେ ବିଜୁବାବୁଙ୍କର ଭୂମିକା ସମ୍ବନ୍ଧରେ 'ସନ୍ ଟାଇମ୍'ରେ ମୋ ପୁସ୍ତକର ବର୍ଣ୍ଣିତ ବିଷୟମାନ ପ୍ରକାଶପାଇଥାଏ । ସେଦିନ ସନ୍ଧ୍ୟାରେ ମୁଁ ଦୈବାତ୍ ତାଙ୍କ ଭୁବନେଶ୍ୱର ବାସଭବନରେ ପହଞ୍ଚିବାବେଳକୁ ଦେଖିଲି ଯେ ତାଙ୍କ ସ୍ତ୍ରୀ ଶ୍ରୀମତୀ ଜ୍ଞାନ ପଟ୍ଟନାୟକ ସେହି ଇଂରାଜୀ ସମ୍ବାଦପତ୍ର ପଢ଼ି ତାଙ୍କୁ ଶୁଣାଉଥା'ନ୍ତି । ମୋତେ ଦେଖି ସେମାନେ ଉଭୟ ଆନନ୍ଦରେ ହସିପକାଇଲେ । ବିଜୁବାବୁ ପଚାରିଲେ, ''କିରେ ଏତେ ସବୁ କଥା ତୁ କ'ଣ ଚିପାଚିପି କରି ରଖିଥିଲୁ ?'' ମୁଁ କହିଲି, ''ତୋର ତ ମୋ ବହି ପଢ଼ିବାର ଧୈର୍ଯ୍ୟ ନାହିଁ, ମୁଁ ପରା ବହିରେ ମୂଳରୁ ଲେଖିଛି ଯେ ଡାଏରୀ କିମ୍ବା ନୋଟ୍ ଲେଖି ରଖିବାର ଅଭ୍ୟାସ ମୋର ନଥିଲା, ତେଣୁ ଯାହା ସବୁ ମନେଥିଲା ସେଇଆହିଁ ଲେଖିଛି ।''

## ବିଜୁବାବୁଙ୍କ ଅଦ୍ଭୁତ ନିଷ୍ପତ୍ତି : ଲାଞ୍ଚ ଯାଚିବା ଲୋକ ପୁରସ୍କୃତ ଓ ଲାଞ୍ଚ ଫିଙ୍ଗି ଦେଇଥିବା ଲୋକ ଉପେକ୍ଷିତ

କିନ୍ତୁ 'ଯେତେ ଶୁଣିଲେ ଭାଗବତ, ତୋଷ ନୋହିଲା ବିଜୁ ଚିତ୍ତ' । ପରବର୍ତ୍ତୀ ଘଟଣାବଳୀରୁ ପ୍ରମାଣିତ ହେଲା ଯେ, 'ସ୍ମୃତି ଓ ଅନୁଭୂତି'ରେ ବର୍ଣ୍ଣିତ ବିଷୟବସ୍ତୁରେ ତାଙ୍କ ପ୍ରତି ମୋର ନିପଟ ସ୍ତାବକତାର ଅଭାବ ହେତୁ ଏବଂ କେତେକ ବିଚାର ପ୍ରମାଣ ଦର୍ଶାଯାଇଥିବା କାରଣରୁ ସେ ଦିଲ୍ଲୀରେ ପୂର୍ବୋକ୍ତ ବନ୍ଧୁଙ୍କ ଆଗରେ ମୋ ପ୍ରତି ଯେଉଁ କ୍ରୋଧଭାବ ପ୍ରକାଶ କରିଥିଲେ ତାହାକୁ ସେ ଭୁଲି ପାରିନଥିଲେ । ତେଣୁ ଅନ୍ୟମାନଙ୍କ ସହିତ ରାଜ୍ୟସଭା ନିର୍ବାଚନ ବିଷୟ ଆଲୋଚନା କଲାବେଳେ ମୋର ପ୍ରାର୍ଥୀତ୍ୱ ସମ୍ବନ୍ଧରେ ବିଜୁବାବୁଙ୍କର ପ୍ରତିକୂଳ ମତାମତ ମୋ କାନକୁ ଆସିଥିଲା । ମୋତେ ବାଦ୍ ଦେଇ ଯେଉଁମାନଙ୍କୁ ରାଜ୍ୟସଭାକୁ ପଠାଇବାପାଇଁ ସ୍ଥିର କରିସାରିଥିଲେ ସେମାନଙ୍କ ନାମ ବନ୍ଧୁମାନଙ୍କଠାରୁ ମଧ୍ୟ ମୁଁ ଶୁଣିସାରିଥିଲି । ସେମାନଙ୍କ ମଧ୍ୟରୁ ଜଣେ ବିଶିଷ୍ଟ ଶିଳ୍ପପତିଙ୍କଦ୍ୱାରା ମନୋନୀତ ତାଙ୍କ ପରିବାର ବ୍ୟକ୍ତି ମଧ୍ୟ ଥିଲେ । ସେ ଥିଲେ ସେହି ଶିଳ୍ପପତି ଯିଏ ୧୯୭୮ ମସିହାରେ ମୁଁ ମୁଖ୍ୟମନ୍ତ୍ରୀ ଥିବାବେଳେ ମୋତେ ୧୦ଲକ୍ଷ ଟଙ୍କା ଲାଞ୍ଚ ଦେବାପାଇଁ ଆଣି ମୋ ପାଖକୁ ଆସିଥିଲେ ଏବଂ ତିରସ୍କୃତ ହୋଇ ଫେରିଥିଲେ । ଏହି ଅପ୍ରୀତିକର ଘଟଣା ସଂପର୍କରେ ବିଜୁବାବୁ ମଧ୍ୟ ଆଗରୁ ଅବଗତ ଥିଲେ । ତଥାପି ଏ ପ୍ରକାର ପ୍ରାର୍ଥୀ ଚୟନ କଥାଶୁଣି ମୁଁ ଆଚମ୍ବିତ ହୋଇଥିଲି । ବିଜୁବାବୁଙ୍କୁ ନିଜେ ଦେଖାକରି ଏହାର ସତ୍ୟତା ସମ୍ବନ୍ଧରେ ଜାଣିବାକୁ ଚାହିଁଥିଲି । ମୋ ପ୍ରଶ୍ନ ଶୁଣି ସେ

ବିରକ୍ତି ପ୍ରକାଶ କରି କହିଥିଲେ ଯେ, ଯାହାସବୁ ହେଉଛି ତାହା ରାଜ୍ୟ ଜନତାଦଳର ନିର୍ବାଚନ କମିଟି କରୁଛି, ସେ ନିଜେ ବ୍ୟକ୍ତିଗତ ଭାବରେ କିଛି କରୁନାହାନ୍ତି । ମୁଁ କହିଥିଲି, ''ମୁଁ ନିଜେ ନିର୍ବାଚନ କମିଟିର ଜଣେ ସଭ୍ୟ, ମାତ୍ର ଏ ସମ୍ବନ୍ଧରେ ମୋତେ କିଛି ଜଣାନାହିଁ ।'' ମାତ୍ର ସେ ଯୁକ୍ତି କରିଥିଲେ ଯେ, ଯେହେତୁ ମୁଁ ନିଜେ ଜଣେ ପ୍ରାର୍ଥୀ, ସେହି କାରଣରୁ ବୋଧହୁଏ ମୋତେ କମିଟି ମିଟିଙ୍ଗକୁ ଡକାଯାଇନଥିଲା । ବିଜୁବାବୁ ସେଦିନ ଦିଲ୍ଲୀ ଯାଉଥିଲେ । ଦିଲ୍ଲୀରୁ ଫେରି ଆଉ ଥରେ ନିର୍ବାଚନ କମିଟି ବସିବ– ସେଠାକୁ ମୋତେ ଡକାଯିବ ବୋଲି କହିଥିଲେ ।

## ଶିଳ୍ପପତି ଲାଞ୍ଚ ଯାଚି ଭର୍ତ୍ସିତ ହେଲେ

୧୯୯୨ ମସିହା ଜୁନ୍ ମାସ ଦ୍ୱିତୀୟ ସପ୍ତାହର ଶେଷ ବେଳକୁ ଜନତା ଦଳ ନିର୍ବାଚନ କମିଟିର ଗୋଟିଏ ବୈଠକ ଦଳ ଅଫିସ୍‌ରେ ବସିଥିଲା । ମୋତେ ସେଠାକୁ ଡକାଯାଇଥିଲା । ଶ୍ରୀ ବିଜୁ ପଟ୍ଟନାୟକ ସଭାପତିଭାବେ କାର୍ଯ୍ୟ ପରିଚାଳନା କରିଥିଲେ । ଅନ୍ୟମାନଙ୍କ ମଧ୍ୟରେ ସର୍ବଶ୍ରୀ ଅଶୋକ ଦାସ, ବିଜୟ ମହାପାତ୍ର, ନଳିନୀକାନ୍ତ ମହାନ୍ତି, ଶରତ କୁମାର କର, ସୁରେନ୍ଦ୍ର ନାଥ ନାୟକ, ଦାମୋଦର ରାଉତ, ହରିଶ୍ଚନ୍ଦ୍ର ବକ୍ସିପାତ୍ର, ମୁସ୍ତାଫିଜ୍ ଅହମ୍ମଦ, ବେଦପ୍ରକାଶ ଅଗ୍ରୱାଲ ପ୍ରଭୃତି ଉପସ୍ଥିତ ଥିଲେ । କମିଟିର ସଭ୍ୟମାନଙ୍କ ଛଡ଼ା ଅନେକ ବ୍ୟକ୍ତି ସ୍ୱତନ୍ତ୍ର ନିମନ୍ତ୍ରଣ ପାଇ ସେହି ବୈଠକରେ ଯୋଗ ଦେଇଥିଲେ । ବୈଠକ ଗୃହଟି ପ୍ରାୟ ଭରପୂର ରହିଥିଲା । ମୋର କ'ଣ କହିବାର ଅଛି ତାହା କହିବା ପାଇଁ ବିଜୁବାବୁ ମୋତେ ଜଣାଇଥିଲେ । ଦଳର ହିତ ଦୃଷ୍ଟିରୁ ଏବଂ ବୈଠକରେ ଯାହା କହିବି ତାକୁ ଗୋପନ ରଖିବାପାଇଁ ଏବଂ ସେ ବିଷୟ ଖବରକାଗଜରେ ଯେପରି ପ୍ରକାଶ ନପାଏ ସେଥିପ୍ରତି ସତର୍କ କରାଇଦେଇଥିଲି । ମୋର ରାଜ୍ୟସଭାକୁ ଯିବାପାଇଁ କିପରି ପ୍ରଥମେ ବିଜୁବାବୁହିଁ ଜଣାଇଥିଲେ ଓ ସେ କଥା ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କୁ ମଧ୍ୟ ଜଣାଇଦେଇଥିଲେ ସେ କଥା ମୁଁ ସେହି ବୈଠକରେ ପ୍ରକାଶ କରିଥିଲି । ତା'ଛଡ଼ା ସେହି ପ୍ରସଙ୍ଗକ୍ରମେ ବିଜୁବାବୁଙ୍କର ମୋ ସହିତ ଯେଉଁ ଆଲୋଚନା ହୋଇଥିଲା ସେ କଥା ମଧ୍ୟ ସେଠାରେ ପ୍ରକାଶ କରିଥିଲି । ରାଜ୍ୟସଭାପାଇଁ ମନୋନୀତ ହୋଇଥିବା ତାଲିକାରୁ ମୋତେ ବାଦ୍ ଦିଆଯାଇ ଯେଉଁମାନଙ୍କ ନାମ ରଖାଯାଇଛି ବୋଲି ଜଣାପଡ଼ିଛି ସେ ସମ୍ବନ୍ଧରେ ମୁଁ ମୋର ମତାମତ ଦେଇଥିଲି । ଯେଉଁ ଶିଳ୍ପପତିଙ୍କ ମନୋନୀତ ବ୍ୟକ୍ତିଙ୍କୁ ରାଜ୍ୟସଭାକୁ ପଠାଇବାପାଇଁ ନିର୍ବାଚନ କମିଟି ସ୍ଥିରକରିଥିବା କଥା କୁହାଯାଉଛି ତାହା ଅଯୌକ୍ତିକ । ମୁଁ କଟୁ ସମାଲୋଚନା କରିଥିଲି । ରୁଦ୍ଧଦ୍ୱାର ବୈଠକ ହୋଇଥିବାରୁ ସେ ଶିଳ୍ପପତିଙ୍କ ପରିଚୟ ଓ ଅତୀତର ଆସ୍ପର୍ଦ୍ଧା କଥା ମଧ୍ୟ ପ୍ରକାଶ କରିଥିଲି । ସରକାରଙ୍କୁ ପ୍ରଭାବିତ କରି ଗରିବ ଟିକସ ଦାତାଙ୍କ ସ୍ୱାର୍ଥପ୍ରତି ଉପେକ୍ଷା କରି କୋଟି କୋଟି ଟଙ୍କା ବିଦ୍ୟୁତ୍ ଦେୟ ବାବଦରେ ତାଙ୍କୁ ରିହାତି ଦେବାପାଇଁ ସେ କିପରି ୧୦ ଲକ୍ଷ ଟଙ୍କା ଲାଞ୍ଚ ଦେବାର ଆସ୍ପର୍ଦ୍ଧା କରିଥିଲେ ସେ କଥା ମୁଁ ଫିଟାଇ କହିଲାବେଳେ ସମସ୍ତେ ସ୍ତମ୍ଭୀଭୂତ ହୋଇଯାଇଥିଲେ । ତାଙ୍କ ଶିଳ୍ପ ପ୍ରତିଷ୍ଠାନ ବିଦ୍ୟୁତ୍ ବ୍ୟବହାର କରି ତା'ର ଦାମ୍ ନଦେଇ ଥିବାରୁ ତାଙ୍କ ଉପରେ ସେତେବେଳକୁ ପ୍ରାୟ ପନ୍ଦର କୋଟି ଟଙ୍କା ବାକି ପଡ଼ିଥିଲା । ବିଦ୍ୟୁତ୍ ଶକ୍ତି ବ୍ୟବହାର ବାବଦକୁ ବିଦ୍ୟୁତ୍ ବିଭାଗକୁ ପ୍ରତି ୟୁନିଟ୍ ପିଛା ତେର ପଇସା ପ୍ରାପ୍ୟ ଦାବି କରିଥିବାବେଳେ ସେ ୟୁନିଟ୍ ପିଛା ତିନି ପଇସା ଦେଇ ଖସିବାପାଇଁ ଚାହୁଁଥିଲେ । ତାଙ୍କ କଥା ବୁଝିବାପାଇଁ ବିଜୁବାବୁ ମଧ୍ୟ କେତେଥର କହିଥିଲେ । ବଡ଼ ବିଡ଼ମ୍ବନାର କଥା ଯେ, ଜଣେ ରାଜ୍ୟପାଳ ମଧ୍ୟ ସେଥିପ୍ରତି ସମର୍ଥନ ଜଣାଇ ମୋତେ କେତେଥର କହିଥିଲେ । ମାତ୍ର ଏଥିରେ କୌଣସି ରିହାତି ଦେବା ମୋ ପକ୍ଷରେ ସମ୍ଭବ ନୁହେଁ ବୋଲି ମୁଁ ସେମାନଙ୍କୁ ଜଣାଇଥିଲି । ଯଦି କୌଣସି ବିଶେଷଜ୍ଞ କମିଟି ଏଥିରେ ଆଇନସମ୍ମତ ରିହାତି ଦେବାପାଇଁ ପରାମର୍ଶ ଦିଅନ୍ତି, ତେବେ ତାହା ମୋର ବିଚାରଯୋଗ୍ୟ ହେବ ବୋଲି କହିଥିଲି । ମୁଁ ପ୍ରସ୍ତାବ ଦେଇଥିଲି ଭାରତ ସରକାରଙ୍କ ଆଇନ ବିଭାଗ, କେନ୍ଦ୍ର ବିଦ୍ୟୁତ୍ ବିଭାଗ ଓ ଆମ ରାଜ୍ୟ

ବିଦ୍ୟୁତ୍ ବିଭାଗର ସେକ୍ରେଟାରୀମାନଙ୍କୁ ନେଇ ଗୋଟିଏ କମିଟି ଗଠନ କରାଯାଉ । ଉକ୍ତ କମିଟି ଆଗରେ ରାଜ୍ୟ ସରକାର ଓ ଶିଳ୍ପପତିଙ୍କର ଯାହା ଉପସ୍ଥାପିତ କରିବାର କଥା ସେସବୁର ଲିଖିତ ଦଲିଲମାନ ଦାଖଲ କରାଯାଉ । ବିଷୟଟିକୁ ପୁଙ୍ଖାନୁପୁଙ୍ଖ ଅନୁଧ୍ୟାନ କରି କମିଟି ଯାହା ପରାମର୍ଶ ଦେବ ତାକୁ ଗ୍ରହଣ କରିବାରେ ସରକାରଙ୍କର କିଛି ଅସୁବିଧା ହୋଇନପାରେ ବୋଲି ମୁଁ ମତ ଦେଇଥିଲି । ଯେଉଁମାନେ ମୋ ଉପରେ ରିହାତି ଦେବାପାଇଁ ଚାପପକାଉଥିଲେ ସେମାନଙ୍କୁ ଏ ପ୍ରସ୍ତାବ ଭଲ-ଲାଗୁନଥିଲା । ସେମାନେ ଚାହୁଁ ଥିଲେ ଯେ ମୁଁ ଏ ବିଷୟରେ ହସ୍ତକ୍ଷେପ କରି ନିଜ ସ୍ୱାଧିକାର ବଳରେ କିଛି ଗୋଟେ କରିଦିଏ । ମୁଁ ସେଥିରେ ରାଜି ହୋଇ ନଥିଲି । ତେଣୁ ଶିଳ୍ପପତି ମୋତେ ଲାଞ୍ଚ ଦେଇ କାର୍ଯ୍ୟ ହାସଲ କରିବାପାଇଁ ମସୁଧା କରୁଥିଲେ । ଦିନେ ରବିବାର ଛୁଟିଦିନ ଉକ୍ତ ଶିଳ୍ପପତି ଗୋଟିଏ ସୁଟ୍‌କେଶ ଧରି ମୋ ସରକାରୀ ବାସଭବନକୁ ଆସିଥିଲେ ଏବଂ ହଠାତ୍ ମୋ ଶୋଇବା ଘରକୁ ପଶିଯାଇ ସାଙ୍ଗରେ ଆଣିଥିବା ସୁଟକେଶ୍‌କୁ ଖୋଲିପକାଇଲେ । ସେଥିରେ ବହୁତ ଗୁଡ଼ିଏ ଶହେଟଙ୍କିଆ ନୋଟ୍ ବିଡ଼ା ଭର୍ତ୍ତିଥିବାର ଦେଖାଗଲା । ମୁଁ ସେହି ଶିଳ୍ପପତିଙ୍କ ଆସ୍ପର୍ଦ୍ଧା ହେତୁ ଭୟଙ୍କର କ୍ରୋଧାନ୍ୱିତ ହୋଇଥିଲି । ମୋ କ୍ରୋଧ ଦେଖି ସେ ଥମଥମ ହୋଇଯାଇଥିଲେ । ଜଣେ ମୁଖ୍ୟମନ୍ତ୍ରୀ ହେଉଛନ୍ତି ଜନସାଧାରଣଙ୍କର ବିଶ୍ୱାସଭାଜନ ଓ ଆସ୍ଥାର ପାତ୍ର । ତାଙ୍କୁ ଲାଞ୍ଚଦେବା ବା ସେ ଲାଞ୍ଚ ନେବା ଉଭୟ ଗୁରୁତର ଅପରାଧ । ତାଙ୍କ ଆସ୍ପର୍ଦ୍ଧାର ପରିଣତି କ'ଣ ହେବ ବୋଲି ପଚାରି ତାଙ୍କୁ ଭର୍ତ୍ସନା କରିବାରୁ ସେ ଟଙ୍କା ସୁଟ୍‌କେଶ ଧରି ସେଠାରୁ ଅତି ତରବରରେ ଧାଇଁ ଚାଲିଯାଇଥିଲେ ।

ନିର୍ବାଚନ କମିଟିର ମୋର ଏସବୁ ଗୁପ୍ତ ଓ ରହସ୍ୟଜନକ ଘଟଣାର ଉନ୍ମୋଚନ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ବିଜୁବାବୁ ସବୁ ଶୁଣୁଥା'ନ୍ତି, ମାତ୍ର କିଛି କହୁନଥା'ନ୍ତି । ଏତେକଥା ଆଲୋଚନା ହେବା ପରେ ବିଷୟଟି ପୁନରାୟ ବିଚାର ହେବ ଓ ଅବସ୍ଥା ସୁଧୁରିବ ବୋଲି ଆଶାକରି ସମସ୍ତେ ବିଜୁବାବୁଙ୍କ ମୁହଁକୁ ଚାହିଁବସିଥିଲେ । ପରେ ଜଣାଗଲା ଲାଞ୍ଚ ଦେଉଥିବା ବ୍ୟକ୍ତିଙ୍କ ମନୋନୀତ ପ୍ରାର୍ଥୀ ରାଜ୍ୟସଭା ନିର୍ବାଚନ ପାଇଁ ପ୍ରାର୍ଥୀପତ୍ର ଦାଖଲ କରିବାକୁ ଅନୁମତି ପାଇଲେ । ମାତ୍ର ଲାଞ୍ଚକୁ ଫିଙ୍ଗିଦେଇ ଦଳ ଓ ସରକାରର ମର୍ଯ୍ୟାଦାରକ୍ଷା କରିଥିବା ବ୍ୟକ୍ତି ଉପେକ୍ଷିତ ହୋଇଥିଲେ । ଏଥିରେ ଜଡ଼ିତ ଥିଲା ଗୁରୁତର ନୀତିଗତ ପ୍ରଶ୍ନ, ମାତ୍ର ତାକୁ ବିଚାରକୁ ନିଆଯାଇନଥିଲା । ଏହିଭଳି ପରିପ୍ରେକ୍ଷୀରେ ଜନତାଦଳଠାରୁ ମୋତେ କ୍ରମେ ଦୂରେଇଯିବାକୁ ପଡ଼ିଥିଲା । ରାଜ୍ୟସଭା ନିର୍ବାଚନରେ ଦଳୀୟ ପ୍ରାର୍ଥୀ ରୂପେ ମୁଁ ମନୋନୀତ ହୋଇପାରିଲିନାହିଁ ବୋଲି ଜନତାଦଳକୁ ଛାଡ଼ି ଯାଉଛି ବୋଲି ଆକ୍ଷେପ କରି କେତେକ ଲୋକ ଖବରକାଗଜରେ ବିବୃତି ଦେଇଥିଲେ । ତତ୍‌କାଳୀନ ଘଟଣାର ପୃଷ୍ଠଭୂମିରେ ସେମାନଙ୍କର ଏତାଦୃଶ ଉକ୍ତି ହୁଏତ ଏକାବେଳକେ ଅସତ୍ୟ ଓ ଅଯୌକ୍ତିକର ହେବନାହିଁ । ମାତ୍ର ସମାଲୋଚକ-ମାନେ ପ୍ରାର୍ଥୀମନୋନୟନର ନୈତିକ ମାନଦଣ୍ଡକୁ ଯେଭଳି ଉପେକ୍ଷା କରାଗଲା ତାହା ବିଚାରକୁ ନେଲେ ସେତେବେଳେ ଜନତା ଦଳର ନୀତି ଓ ନେତୃତ୍ୱ ପ୍ରତି ମୋର ସ୍ୱାଭାବିକ ବିତୃଷ୍ଣା ସଂପର୍କରେ ନିଶ୍ଚୟ ସହାନୁଭୂତି ସହ ବିଚାର କରିବେ ।

ରାଜ୍ୟସଭା ପ୍ରାର୍ଥୀ ନିର୍ବାଚନରେ ମୋ ସହିତ କପଟତା ଏବଂ ତା'ପରେ ଅନେକ ମାନସିକ ଆଘାତ ପାଇବା ପରେ ଘୋର ଅନୈତିକ ନିଷ୍ପତ୍ତିର ପରିଣତି ସ୍ୱରୂପ କଂଗ୍ରେସରେ ଯୋଗଦେବା ନିମନ୍ତେ ବନ୍ଧୁମାନଙ୍କର ପୂର୍ବୋକ୍ତ ବାରମ୍ବାର ଅନୁରୋଧକୁ ମୁଁ ଆଉ ଏଡ଼ାଇଦେଇପାରିନଥିଲି ।

## ଏକ ସମସାମୟିକ ସମାନ ଦୃଷ୍ଟାନ୍ତ

ରାଜ୍ୟସଭା ନିର୍ବାଚନ ପାଇଁ ପ୍ରାର୍ଥୀ ମନୋନୟନ ଅତୀତରେ ଏକାଧିକ ଦଳ ଭିତରେ ଗୁରୁତର ବିଭେଦ ଓ ବିଭାଜନର କାରଣ ହୋଇଥିବାର ଜ୍ୱଳନ୍ତ ଦୃଷ୍ଟାନ୍ତମାନ ଅଛି । ଆମ ରାଜ୍ୟରେ ୧୯୭୦ ମସିହାରେ ରାଜ୍ୟସଭା ସଭ୍ୟପଦପାଇଁ ବିଜୁ ପଟ୍ଟନାୟକଙ୍କ ପ୍ରାର୍ଥୀତ୍ୱକୁ କଂଗ୍ରେସ ଉଚ୍ଚକର୍ତ୍ତୃପକ୍ଷ ସ୍ୱୀକୃତି

ନଦେବାରୁ ତାଙ୍କ ନେତୃତ୍ୱରେ ଉତ୍କଳ କଂଗ୍ରେସ ନାମରେ ଏକ ଆଞ୍ଚଳିକ ଦଳ ଗଢ଼ାଯାଇ ଜାତୀୟ କଂଗ୍ରେସରୁ ସଂପର୍କ ତୁଟାଇ ଦିଆଯାଇଥିଲା । ପ୍ରାର୍ଥୀ ନିର୍ବାଚନରେ ଅନୀତି, ଦୁର୍ନୀତି, ବ୍ୟକ୍ତିତ୍ୱ ସ୍ୱାର୍ଥକୈନ୍ଦ୍ରିକ ନିଷ୍ପତ୍ତି ହେତୁ ଅନେକ ଅବାଞ୍ଛିତ ବ୍ୟକ୍ତି ଅର୍ଥ ଅବା ଅନ୍ୟ ପ୍ରକାର ପ୍ରଭାବ ବଳରେ ପ୍ରାର୍ଥୀ ହେବାର ମୌକା ମାରିନେବାଦ୍ୱାରା କେବଳ ପ୍ରାର୍ଥୀଚୟନ କରିଥିବା ନେତୃତ୍ୱ ଲୋକଚକ୍ଷୁରେ ନିନ୍ଦିତ ହୋଇନାହିଁ, ଦଳର ଅନୁଗତ ଅଭିଜ୍ଞ ସମ୍ମାନିତ ବ୍ୟକ୍ତିମାନେ ମଧ୍ୟ ଲୋକ ଚକ୍ଷୁରେ ନ୍ୟୂନରୂପେ ଅପମାନିତ ବୋଧକରନ୍ତି । ଯେପରି ୧୯୭୦ ମସିହାରେ ବିଜୁ ପଟ୍ଟନାୟକଙ୍କର ନିଜର ଅନୁଭୂତି ଘଟିଥିଲା । ତାହାଛଡ଼ା ଏହାଦ୍ୱାରା ଦଳର ନିଷ୍ଠାପରତା ଓ ଆଚରଣଗତ ନିର୍ମଳତା ସଂପର୍କରେ ମଧ୍ୟ ଲୋକଙ୍କର ବିଶ୍ୱାସ ତୁଟିଯାଏ । ଅତୀତରେ ଏଭଳି ଘଟଣାବଳୀକୁ ଏଠାରେ ଦୋହରାଇବାର ପ୍ରୟୋଜନ ନାହିଁ । ଏହି ପୁସ୍ତକରେ ପ୍ରଦତ୍ତ 'ଅସମ୍ଭାଳ ବିଜୁ', 'ଇନ୍ଦିରାଙ୍କ ଆତଙ୍କ' ଓ 'ବିବେକ ଅନୁସାରେ ଭୋଟଦାନ' ଶୀର୍ଷକ ପରିଚ୍ଛେଦକୁ ପୂର୍ବାପର ସଂପର୍କ ସହିତ ପଢ଼ିଲେ ପ୍ରାର୍ଥୀ ନିର୍ବାଚନରେ ସ୍ୱାର୍ଥକୈନ୍ଦ୍ରିକ ରାଜନୀତିର ସୁଦୂରପ୍ରସାରୀ କୁପରିଣତି ସଂପର୍କରେ ସ୍ପଷ୍ଟ ଧାରଣା ହୋଇପାରିବ । ଦଳ ପ୍ରତି କ୍ଷତିକାରକ ହେଲେ ମଧ୍ୟ ଉଦ୍ଦେଶ୍ୟମୂଳକ ଭାବରେ ପ୍ରାର୍ଥୀନିର୍ବାଚନ କରି ପ୍ରକୃତରେ ହକ୍‌ଦାର ଓ ଯୋଗ୍ୟ ଦଳୀୟ ପ୍ରାର୍ଥୀଙ୍କୁ ବଞ୍ଚିତ କରିବାର ଅନ୍ୟାନ୍ୟ ଦୃଷ୍ଟାନ୍ତ ମଧ୍ୟ ରହିଛି । ଅତୀତରେ ଢେଙ୍କାନାଳର ରାଜା କାମାଖ୍ୟା ପ୍ରସାଦ ସିଂହଦେଓଙ୍କୁ ରାଜ୍ୟସଭା ନିର୍ବାଚନରେ ସମର୍ଥନ ଦେବା ନିଷ୍ପତ୍ତିକୁ ପ୍ରବୀଣ ନିଷ୍ଠାବାନ୍ କର୍ମୀମାନେ ନାପସନ୍ଦ କରିଥିଲେ ମଧ୍ୟ ସେମାନଙ୍କ ନୀତିନିଷ୍ଠ ନିଷ୍ପତ୍ତିକୁ ଉପେକ୍ଷାକରାଯାଇଥିଲା । ଉତ୍କଳ କଂଗ୍ରେସର ରାଜ୍ୟସଭାରେ ପ୍ରତିନିଧିତ୍ୱ ନଥିଲେ ମଧ୍ୟ ୧୯୭୨ରେ ରାଜ୍ୟସଭା ନିର୍ବାଚନବେଳେ ମହିଳା ପ୍ରାର୍ଥୀଙ୍କୁ ରାଜ୍ୟସଭାରେ ପ୍ରତିନିଧିତ୍ୱ ଦେବା ଆଳରେ ଉତ୍କଳ କଂଗ୍ରେସର ପ୍ରତିଷ୍ଠା ଓ ଲୋକପ୍ରିୟତା ପାଇଁ ତ୍ୟାଗ ଓ ଶ୍ରମ ସ୍ୱୀକାର କରିଥିବା ବାଞ୍ଛିତ ପ୍ରାର୍ଥୀମାନଙ୍କୁ ଉଦ୍ଦେଶ୍ୟମୂଳକ ଭାବରେ ବଞ୍ଚିତ କରାଯାଇଥିଲା । ଅବଶ୍ୟ ସେତେବେଳେ ଉତ୍କଳ କଂଗ୍ରେସର ପ୍ରାର୍ଥୀ ଶ୍ରୀମତୀ ସରସ୍ୱତୀ ପ୍ରଧାନଙ୍କ ଯୋଗ୍ୟତା ଓ ଲୋକପ୍ରିୟତା ସଂପର୍କରେ କାହାରି ଆପତ୍ତି ନଥିଲା । କିନ୍ତୁ ରାଜ୍ୟସଭାରେ ଉତ୍କଳ କଂଗ୍ରେସ ଭଳି ଏକ କ୍ଷୁଦ୍ର ଦଳର ମହିଳା ପ୍ରତିନିଧିତ୍ୱ ଆଳରେ ପ୍ରାର୍ଥୀନିର୍ବାଚନ କରିବା ଥିଲା ଏକ ଅତ୍ୟନ୍ତ ହାସ୍ୟାସ୍ପଦ ଉଦ୍ଦେଶ୍ୟମୂଳକ ଯୁକ୍ତି । ଅସଲ କାରଣ ଥିଲା ଯେ ଉତ୍କଳ କଂଗ୍ରେସର ନେତା ତାଙ୍କର ବ୍ୟକ୍ତିଗତ ନିଯୁକ୍ତିପ୍ରାପ୍ତ ବ୍ୟକ୍ତିଭଳି ଜଣକୁ ରାଜ୍ୟସଭାପାଇଁ ପ୍ରାର୍ଥୀକରିବା ଅଭିଳାଷକୁ ସତ୍‌ସାହସରେ କାର୍ଯ୍ୟକାରୀ କରାଇ ନପାରିବାରୁ ଏଭଳି ଏକ ଆଳ କରି ଅନ୍ୟ ବାଞ୍ଛିତ ପ୍ରାର୍ଥୀମାନଙ୍କୁ ଉପେକ୍ଷା କରିଥିଲେ । ପରବର୍ତ୍ତୀକାଳରେ ସେହି କାରଣରୁ ମର୍ମାହତ କେତେକ ନିଷ୍ଠାପର ନିର୍ମଳ କର୍ମୀ ଉତ୍କଳ କଂଗ୍ରେସକୁ ଆଉ ଆଞ୍ଚଳିକ ଦଳ ହିସାବରେ ବିଜୁବାବୁଙ୍କ ଅକ୍ତିଆରରେ ନରଖି ଜାତୀୟ କଂଗ୍ରେସରେ ମିଶାଇଦେବାପାଇଁ ଦୃଢ଼ ପଦକ୍ଷେପ ନେଇଥିଲେ । ଅବଶ୍ୟ ଶ୍ରୀମତୀ ପ୍ରଧାନ ତା'ପୂର୍ବରୁ ଶାସକ କଂଗ୍ରେସ ସହିତ ସାମିଲ ହୋଇସାରିଥିଲେ ।

## ଜାନକୀବାବୁଙ୍କ କୁମ୍ଭୀର କାନ୍ଦଣା

ଓଡ଼ିଶାରେ ତୀବ୍ର ବିବାଦଗ୍ରସ୍ତ ଓ ଗୋଷ୍ଠୀକନ୍ଦଳଦ୍ୱାରା କ୍ରମେ ନିମ୍ନଗାମୀ ହେଉଥିବା କଂଗ୍ରେସ ଦଳ ସଂପର୍କରେ ଦିଲ୍ଲୀରେ କେତେକ ପୁରୁଖା କଂଗ୍ରେସ ନେତା ଚିନ୍ତିତ ଥା'ନ୍ତି । ସେମାନଙ୍କ ମଧ୍ୟରୁ କେତେକଙ୍କର ମଧ୍ୟ ଧାରଣା ଥାଏ ଯେ, ମୋ ଭଳି ଜଣେ ବୟସ୍କ ପୁରୁଣା କଂଗ୍ରେସନେତା କଂଗ୍ରେସକୁ ଫେରିଆସିଲେ ହୁଏତ ଏ ରାଜ୍ୟରେ ଦଳର ବିଶୃଙ୍ଖଳିତ ପରିସ୍ଥିତିକୁ ସହଜରେ ସୁଧାରିହେବ । ଏଭଳି ଚିନ୍ତା କରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଥିଲେ କଂଗ୍ରେସ ଦଳର ବୌଦ୍ଧିକ ବିଚାର ଉପସ୍ଥାପନାପାଇଁ ଜଣାଶୁଣା ପ୍ରବୀଣ ନେତା ଶ୍ରୀ ବସନ୍ତ ସାଠେ ଓ ହିମାଚଳ ପ୍ରଦେଶର ତତ୍କାଳୀନ ରାଜ୍ୟପାଳ ଶ୍ରୀ ବଳିରାମ ଭଗତ । ସେମାନଙ୍କ ସହିତ ମୋର ସାମୟିକ ଯୋଗାଯୋଗ ଥାଏ । କିନ୍ତୁ ଓଡ଼ିଶାରେ

ଯେଉଁ କଂଗ୍ରେସ ବ୍ୟକ୍ତିମାନେ ତତ୍‌କାଳୀନ କଂଗ୍ରେସ ସଭାପତି ତଥା ପ୍ରଧାନମନ୍ତ୍ରୀ ନରସିଂହ ରାଓଙ୍କ ସାଙ୍ଗେ ମୋ ସଂପର୍କରେ ଯଥାଶୀଘ୍ର ଆଲୋଚନା କରିବାପାଇଁ ଜାନକୀ ପଟ୍ଟନାୟକଙ୍କୁ ପରାମର୍ଶ ଦେଉଥା'ନ୍ତି ସେମାନଙ୍କୁ କେବଳ ହଁ ହଁ କରି ସେ କାଳକ୍ଷେପଣ କରୁଥା'ନ୍ତି । ଏତିକିବେଳେ ଜନତାଦଳ ଭିତରେ ରାଜ୍ୟସଭାପାଇଁ ପ୍ରାର୍ଥୀ ବଛା ଯିବାବେଳେ ମୋ ପ୍ରତି ଅସୂୟାମୂଳକ ସୌଜନ୍ୟହୀନ ବ୍ୟବହାର କରାଯିବାରୁ ଜାନକୀବାବୁ ମୋ ସଂପର୍କରେ ବିଶେଷ ଆଗ୍ରହଦେଖାଇଲେ । ରାଜ୍ୟସଭାପାଇଁ ମୁଁ ସ୍ୱାଧୀନ ପ୍ରାର୍ଥୀଭାବରେ ପ୍ରତିଦ୍ୱନ୍ଦ୍ୱିତା କଲେ ମୁଁ ଜିତିବାପାଇଁ ସେ କଂଗ୍ରେସ ଦଳରୁ ଭୋଟ ଯୋଗାଡ଼କରି ସାହାଯ୍ୟ କରିବେ ବୋଲି ନାନା ହିସାବ କିତାବ ଦେଖାଇଲେ, କାରଣ ସେ ଜାଣିପାରିଥିଲେ ଯେ ଜନତାଦଳର ନେତୃତ୍ୱର ବ୍ୟବହାରଦ୍ୱାରା ଲାଞ୍ଛିତ ଅନୁଭବ କରିବା ପରେ ମୁଁ ସ୍ୱାଧୀନଭାବରେ ରାଜ୍ୟସଭା ସଭ୍ୟପଦପାଇଁ ପ୍ରାର୍ଥୀହେବା ସମ୍ଭାବନା ସଂପର୍କରେ ବିଚାର କରୁଥାଏ । ସେ ମୋତେ ପ୍ରବର୍ତ୍ତାଇଥାନ୍ତି ଯେ, ''ଆପଣ ସ୍ୱାଧୀନ ପ୍ରାର୍ଥୀ ଭାବରେ ଜିତିଗଲା ପରେ ନିଶ୍ଚୟ କଂଗ୍ରେସରେ ଯୋଗଦେବେ । ଯଦି ହାରିଯା'ନ୍ତି ତେବେ ମଧ୍ୟ କଂଗ୍ରେସର ଦ୍ୱାର ଆପଣଙ୍କୁ ସସମ୍ମାନେ ଗ୍ରହଣ କରିବାପାଇଁ ଉନ୍ମୁକ୍ତ ରହିବ ।'' କିନ୍ତୁ ସବୁକଥା ବିଚାର କରିବା ପରେ ଯେତେ-ବେଳେ ସ୍ୱାଧୀନ ପ୍ରାର୍ଥୀ ନହେବାକୁ ନିଷ୍ପତ୍ତିନେଲି ସେ ପୂର୍ବପରି ମୋଠାରୁ ଏବଂ ମୋତେ କଂଗ୍ରେସକୁ ଫେରାଇନେବାକୁ ଚାହୁଁଥିବା ବନ୍ଧୁମାନଙ୍କଠାରୁ କରଛଡ଼ା ଦେଇ ଚାଲିଲେ । ମୁଁ କଂଗ୍ରେସକୁ ଫେରିବା ପାଇଁ ସେ ଓ ମୁଁ ଏକତ୍ର ନରସିଂହ ରାଓଙ୍କ ସହିତ କଥାବାର୍ତ୍ତା ହେବା ନିମନ୍ତେ ଆଗରୁ ଯେଉଁ ପ୍ରସ୍ତାବ ଥିଲା ସେ ସଂପର୍କରେ ମଧ୍ୟ ସେ ନାନା ଆଳ ଦେଖାଇ ଥରକୁ ଥର କାଳକ୍ଷେପଣ ନୀତି ଧରିଲେ । ବିଜୁବାବୁଙ୍କର ମୋ'ପ୍ରତି ଅବିଚାର ବେଳେ ସେ ମୋ'ପାଇଁ କେବଳ କୁମ୍ଭୀର କାନ୍ଦଣା କାନ୍ଦୁଥିଲେ ବୋଲି ତାଙ୍କର ଏତାଦୃଶ ଆଚରଣ ଲକ୍ଷ୍ୟ କରିବାପରେ ମୋର ଶୁଭାକାଂକ୍ଷୀ କଂଗ୍ରେସ ବନ୍ଧୁମାନେ ମୋତେ କହିଥିଲେ ।

୧୯୯୩ ମସିହା ମାର୍ଚ୍ଚ ପ୍ରଥମ ସପ୍ତାହରେ ମୁଁ ଦିଲ୍ଲୀରେ ଥାଏ । ନରସିଂହ ରାଓଙ୍କ ସହିତ ଏକତ୍ର ଦେଖାକରିବା ପ୍ରସ୍ତାବକୁ କୌଣସିମତେ ଏଡ଼ାଇଦେଇ ଜାନକୀବାବୁ ଓଡ଼ିଶା ଫେରିଆସିଲେ । ଏମିତି ବାରମ୍ବାର ଲୁଚକାଳି ଖେଳିବା ଭଳି ବ୍ୟବହାର କରିବାରୁ ମୋତେ ସସମ୍ମାନେ ଗ୍ରହଣ କରିବାକୁ ''କଂଗ୍ରେସ ଦ୍ୱାର ଉନ୍ମୁକ୍ତ'' ବୋଲି ତାଙ୍କର ପୂର୍ବ ପ୍ରସ୍ତାବ ସଂପର୍କରେ ମନରେ ସ୍ୱାଭାବିକ ସନ୍ଦେହ ଜନ୍ମିଥିଲା । ହେଲେ ଶ୍ରୀଯୁକ୍ତ ସାଠେ ଓ ଶ୍ରୀଯୁକ୍ତ ବଳିରାମ ଭଗତ ମଧ୍ୟ ସେତେବେଳକୁ ଜାନକୀବାବୁଙ୍କ ଆଗ୍ରହପାଇଁ ଆଉ ଅପେକ୍ଷା କରିନଥିଲେ । ଯଦିଓ ପୂର୍ବରୁ ସେମାନଙ୍କର ଧାରଣା ଥିଲା ଯେ, ଜାନକୀବାବୁ ଓ ମୁଁ ଏକତ୍ର କଂଗ୍ରେସ ସଭାପତିଙ୍କୁ ଦେଖାକରିବାଦ୍ୱାରା ଏହି ପ୍ରସ୍ତାବ ସପକ୍ଷରେ ଜାନକୀବାବୁଙ୍କ ପ୍ରକୃତ ଆଗ୍ରହ ନେଇ ନରସିଂହ ରାଓଙ୍କର ଆଉ କୌଣସି ସନ୍ଦେହ ରହିବନାହିଁ । ଅବଶ୍ୟ ସେମାନେ ମୋର କଂଗ୍ରେସର ଯୋଗଦେବାର ଆବଶ୍ୟକତା ଓ ଆଗ୍ରହ ସମ୍ପର୍କରେ ଆଗରୁ ଶ୍ରୀ ନରସିଂହ ରାଓଙ୍କ ସହିତ ପରାମର୍ଶ କରିସାରିଥା'ନ୍ତି ବୋଲି ସେମାନଙ୍କ କଥାରୁ ମୋର ଧାରଣା ଜନ୍ମିଥାଏ । ମୋର ମଧ୍ୟ ଇଚ୍ଛାଥାଏ ଯେ, ପ୍ରଦେଶ କଂଗ୍ରେସ କମିଟି ସଭାପତି ଜାନକୀବାବୁଙ୍କୁ ସାଙ୍ଗରେ ନେଇ ନରସିଂହ ରାଓଙ୍କୁ ଦେଖାକରିବି, ତଦ୍ୱାରା ଆମ ରାଜ୍ୟରେ କଂଗ୍ରେସ ସଂଗଠନକୁ ମଜଭୁତ କରି ଗଢ଼ିବାପାଇଁ ଆମ ଉଭୟଙ୍କର ନିଷ୍ପାପର ଆଗ୍ରହ ସଂପର୍କରେ ଶ୍ରୀ ରାଓଙ୍କର ବିଶ୍ୱାସ ହେବ । ମୋର ଏହି ମତ ମୁଁ ଶ୍ରୀ ସାଠେ ଓ ଶ୍ରୀ ଭଗତଙ୍କୁ ଜଣାଇଥିଲି ମଧ୍ୟ । କିନ୍ତୁ ଜାନକୀବାବୁଙ୍କ ସହିତ ଅନେକ ଥର ଆଲୋଚନା କରିବା ପରେ ଦିଲ୍ଲୀର ସେହି ନେତାମାନଙ୍କ ମନରେ କିଛିଟା ବିରକ୍ତିଭାବ ଜାତହେବାର ମୁଁ ଲକ୍ଷ୍ୟକରିଥିଲି । ସେମାନଙ୍କ ମଧ୍ୟରୁ ଜଣେ ମୋତେ କହିଥିଲେ ଯେ, ଯଦିଓ ଜାନକୀବାବୁ କହୁଛନ୍ତି ଆପଣ ଜଣେ ଭଲଲୋକ, ମାତ୍ର ବର୍ତ୍ତମାନ ଆପଣ କଂଗ୍ରେସରେ ଯୋଗଦେବାଟା ସେ ପସନ୍ଦ କରୁନାହାଁନ୍ତି । ଜାନକୀବାବୁଙ୍କ ଏତାଦୃଶ ଆଚରଣରେ ସେ ବିସ୍ମିତ ହୋଇଥିଲେ । ତାଙ୍କର ଅନୁମାନ ହେଲା ଯେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିରେ ଯେଉଁଭଳି

ଗୋଳମାଳ ଓ ଅନିଶ୍ଚିତତା ଉପୁଜିଥିଲା ସେହି ସମୟରେ ମୁଁ କଂଗ୍ରେସକୁ ଆସିଗଲେ କାଳେ ମୋତେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ହେବାପାଇଁ ପ୍ରସ୍ତାବ ଆସିଯାଇପାରେ ବୋଲି ଜାନକୀବାବୁ ଆଶଙ୍କା କରୁଥିଲେ । ସେଥିପାଇଁ ତତ୍‌କ୍ଷଣାତ୍ ମୋର ଯୋଗଦାନ ପ୍ରସ୍ତାବକୁ ବ୍ୟକ୍ତିଗତଭାବରେ ନିଜ ପ୍ରତି ନିରାପଦ ମନେକରୁନଥିଲେ ।

ଏହିପରି କଥାଟି ଗଡ଼ି ଗଡ଼ି ଚାଲିଥାଏ । ଦିନେ ଶ୍ରୀ ବଳିରାମ ଭଗତ ଚା' ଖାଇଲାବେଳେ ମୋ ବିଷୟରେ ଶ୍ରୀ ରାଓଙ୍କ ସହିତ ପୂର୍ବାନୁପର ପ୍ରସଙ୍ଗନେଇ ଅବଗତ କରାଇଥିଲେ । ତା'ପରେ ଶ୍ରୀ ନରସିଂହ ରାଓ ତାଙ୍କ ସହିତ ମୁଁ ଦେଖାକରିବାପାଇଁ ମୋତେ ଜଣାଇଦେବାକୁ ଶ୍ରୀ ଭଗତ୍‌ଙ୍କୁ ପରାମର୍ଶ ଦେଇଥିଲେ । ଶ୍ରୀ ସାଠେ ଓ ଶ୍ରୀ ଭଗତଙ୍କର ଯେଉଁ କଥାବାର୍ତ୍ତା ହୋଇଥିଲା ଶ୍ରୀ ସାଠେ ମଧ ମୋତେ କିଞ୍ଚିତ ଆଭାସଦେଇ ପ୍ରଧାନମନ୍ତ୍ରୀଙ୍କ ସହିତ ତୁରନ୍ତ ଦେଖାକରିବାପାଇଁ ମୋତେ ପରାମର୍ଶ ଦେଇଥିଲେ ଏବଂ ମୋର କଂଗ୍ରେସରେ ଯୋଗଦେବା ପ୍ରସ୍ତାବ ନେଇ ପ୍ରଧାନମନ୍ତ୍ରୀଙ୍କୁ ଏକ ପତ୍ର ଦେବାପାଇଁ ମଧ କହିଥିଲେ ।

ତା' ପରଦିନ ପ୍ରଧାନମନ୍ତ୍ରୀ ନରସିଂହ ରାଓଙ୍କୁ ମୁଁ ତାଙ୍କର ପାର୍ଲାମେଣ୍ଟ ହାଉସ୍ ଅଫିସ୍‌ରେ ଦେଖାକରିଥିଲି ଏବଂ ମୋର କଂଗ୍ରେସରେ ଯୋଗଦେବା ଅଭିପ୍ରାୟ ଲେଖିଥିବା ଚିଠିଟି ବଢ଼ାଇ ଦେଲି । ଶ୍ରୀ ରାଓ ଚିଠି ପଢ଼ି ମୋତେ ସ୍ୱାଗତ ଜଣାଇଥିଲେ ଏବଂ ମୋତେ You may please release this to the press ବୋଲି ପରାମର୍ଶ ଦେଇଥିଲେ । ଏକଥା କହିବାବେଳେ ବାଲେଶ୍ୱରର ଲୋକସଭା ସଦସ୍ୟ ଶ୍ରୀ କାର୍ତ୍ତିକେଶ୍ୱର ପାତ୍ର ଉପସ୍ଥିତଥିଲେ । ମୁଁ କୁଣ୍ଠିତ ହେବାର ଲକ୍ଷ୍ୟକରି ସେ ମୋତେ କହିଥିଲେ, ''ପ୍ରଧାନମନ୍ତ୍ରୀ ଯେତେବେଳେ ଏହି ସମ୍ବାଦଟି ସମ୍ବାଦପତ୍ରକୁ ଦେବାପାଇଁ କହୁଛନ୍ତି ସେତେବେଳେ ଆପଣ କାହିଁକି କୁଣ୍ଠିତ ହେଉଛନ୍ତି ? ଆପଣ ପ୍ରେସ୍‌କୁ ଦେଇ ଦିଅନ୍ତୁ ।'' ତାହାହିଁ କରାଗଲା ଏବଂ ସମ୍ବାଦପତ୍ର, ଟେଲିଭିଜନ୍ ଓ ରେଡ଼ିଓରେ ମୋର କଂଗ୍ରେସରେ ଯୋଗଦେବା କଥା ପ୍ରଚାରିତ ହୋଇଥିଲା ।

ଓଡ଼ିଶାକୁ ଫେରିବା ପରେ ଜାଣିଲି ଯେ ପ୍ରଦେଶ କଂଗ୍ରେସ କମିଟି ଅଫିସ୍ ସହିତ ସଂପୃକ୍ତ ଥିବା ଲୋକମାନେ ମୋର ଯୋଗଦେବା ସମ୍ବାଦଟିକୁ ବିଶ୍ୱାସ କରିପାରୁନଥିଲେ । କାରଣ ସମ୍ବାଦଟି ପ୍ରକାଶ ପାଇବା ପରେ ସେମାନେ ଜାନକୀବାବୁଙ୍କଠାରୁ ଏ ବିଷୟରେ ଜାଣିବାକୁ ଚାହିଁଥିଲେ, ମାତ୍ର ସେ ଏ ବିଷୟରେ କିଛି ଜାଣନ୍ତିନାହିଁ ବୋଲି କଥାଟାକୁ ଏଡ଼ାଇଦେଇଥିଲେ । ଏହା ଫଳରେ ସେମାନଙ୍କ ସନ୍ଦେହ ଦୃଢ଼ୀଭୂତ ହୋଇଥିଲା । ପ୍ରଦେଶ କଂଗ୍ରେସ କମିଟି ସଭାପତିଙ୍କର ଅଜାଣତାରେ ଏହା କିପରି ହେଲାବୋଲି ସେମାନେ ଆଶ୍ଚର୍ଯ୍ୟ ହେଲେ।କଂଗ୍ରେସ ଅଫିସ୍ ସହିତ ସଂପୃକ୍ତ କେତେକ ବ୍ୟକ୍ତି ମୋ ସହିତ କଥାବାର୍ତ୍ତା କରିବା ସମୟରେ ଉଦାସୀନ ଭାବ ଦେଖାଇଥିଲେ । ସେମାନେ ଜାନକୀବାବୁଙ୍କର ଅନୁଗତ ତେଣୁ କାଳେ ସେ ଅସନ୍ତୁଷ୍ଟ ହେବେ ଏହି ଭୟରେ ସେମାନଙ୍କର ମୋ ପ୍ରତି ଉଦାସୀନତାର କାରଣ ଥିଲା । ବସନ୍ତକୁମାର ବିଶ୍ୱାଳ ଗୋଷ୍ଠୀ ମଧ ମୋର କଂଗ୍ରେସରେ ଯୋଗ-ଦେବା ଘଟଣାରେ ଖୁସିନଥିବା ଖବର ଜାଣିବାକୁ ପାଇଲି । ଜାନକୀବାବୁଙ୍କ ଅଜାଣତରେ ଏକଥା ଘଟିଛି ବୋଲି ସେମାନଙ୍କର ପୂରାପୂରି ବିଶ୍ୱାସ ହେଉନଥାଏ । ଶ୍ରୀ ବସନ୍ତ ସାଠେ ଓ ଶ୍ରୀ ବଳିରାମ ଭଗତ୍‌ଙ୍କର ଏ ବିଷୟରେ ଯେଉଁ ଭୂମିକା ଥିଲା ସେକଥା ମୋ ଠାରୁ ଶୁଣିବା ପରେ ମଧ ଦେଖାଗଲା ଯେ ଉଭୟ ଗୋଷ୍ଠୀଙ୍କର କିଛି ଅସନ୍ତୋଷର କାରଣ ରହିଗଲା । କାରଣ କୌଣସି ଗୋଷ୍ଠୀର ନେତା ହୁଏତ ଚାହୁଁନଥିଲେ ଯେ ସେମାନଙ୍କ ବିନା ସୁପାରିଶରେ ଅନ୍ୟ କୌଣସି ପୁରୁଣା କଂଗ୍ରେସ ନେତା ଦଳ ଭିତରକୁ ଆସନ୍ତୁ । ଦୁଃଖର ସହିତ ଏକ ଅପ୍ରିୟ ସତ୍ୟ ଏଠାରେ ଉଲ୍ଲେଖ କରିବାକୁ ପଡୁଛି । ଯେକୌଣସିମତେ ଦଳକୁ ନିଜ ହାତମୁଠାରେ ରଖି, ତା'ପରେ ସରକାରୀ କ୍ଷମତା ଦଖଲକରି 'ଆଲିବାବା ଓ ଚାଳିଶ ଚୋର' ଉପାଖ୍ୟାନ କରି ଏକାନ୍ତ ଅନୁଗତ ପାଖଲୋକ ବାଛି ହରିଲୁଟ୍

ରାଜନୀତି ବା ଦଳନିର୍ବିଶେଷରେ ଏକ ନିନ୍ଦନୀୟ କୌଶଳ ହୋଇଗଲାଣି । ତେଣୁ ଭଣାଅଧିକେ ସବୁ ରାଜନୈତିକ ଦଳଙ୍କ ପ୍ରତି ଜନସାଧାରଣଙ୍କର ସମ୍ମାନ ପରିବର୍ତ୍ତେ ଅଶ୍ରଦ୍ଧା ବୃଦ୍ଧିପାଉଛି ।

ମୋର କଂଗ୍ରେସରେ ଯୋଗଦେବା ବିଷୟକୁ ସ୍ୱାଗତ କରି ଶ୍ରୀ ସୁରେଶ କୁମାର ରାଉତରାୟ ପ୍ରଭୃତି କଂଗ୍ରେସ ଭବନରେ ଗୋଟିଏ ସମ୍ବର୍ଦ୍ଧନା ସଭା କରିବାକୁ ଉଦ୍ୟମ କରିଥିଲେ । ଯେହେତୁ ନିଖିଳ ଭାରତ କଂଗ୍ରେସ ମୁଖପାତ୍ର ଏ ବିଷୟଟି ଘୋଷଣା କରିନାହାନ୍ତି ସେଥିପାଇଁ ବିତର୍କ ଉଠାଇ କଂଗ୍ରେସ ଭବନର ଉଚ୍ଚକର୍ତ୍ତୃପକ୍ଷମାନେ ସମ୍ବର୍ଦ୍ଧନାସଭା କରିବାକୁ ଉତ୍ସାହୀ ହେଉନଥିଲେ । ଏହି ସମୟରେ ଜାନକୀବାବୁ ଦିଲ୍ଲୀ ଯାଇ ପ୍ରଧାନମନ୍ତ୍ରୀ ଶ୍ରୀ ନରସିଂହ ରାଓଙ୍କୁ ଦେଖାକରି କଂଗ୍ରେସରେ ମୋର ଯୋଗଦେବା କଥା ତାଙ୍କୁ ପଚାରିଲେ । ଶ୍ରୀ ରାଓ କୁଆଡ଼େ କହିଥିଲେ, ''ଏହା ହୋଇ ସାରିଛି ।'' ଖୋଦ୍ କଂଗ୍ରେସ ମୁଖପାତ୍ର ଘୋଷଣାକରି ନାହାଁନ୍ତି ବୋଲି ଜାନକୀବାବୁ ପ୍ରଶ୍ନ ଉଠାଇ-ବାରୁ ଶ୍ରୀ ରାଓ ତାଙ୍କୁ କହିଥିଲେ, "I told Shree Routray to release the same to the press" (ଖବରଟି ଗଣମାଧ୍ୟମକୁ ଜଣାଇଦେବାପାଇଁ ମୁଁ ଶ୍ରୀ ରାଉତରାୟଙ୍କୁ ପରାମର୍ଶଦେଇଥିଲି) ।

ଏହାପରେହିଁ କଂଗ୍ରେସ ଭବନରେ ମୋତେ ସ୍ୱାଗତ ଜଣାଇବାପାଇଁ ସମ୍ବର୍ଦ୍ଧନା ସଭା ଅନୁଷ୍ଠିତ ହୋଇଥିଲା । ସଭାପତି ହୋଇଥିଲେ ପ୍ରଦେଶ କଂଗ୍ରେସ ସଭାପତି ଜାନକୀବାବୁ । ସେହି ସଭାରେ ମୋତେ ଜଗିରଖି କଥା କହିବାକୁ ପଡ଼ିଥିଲା । ସଭା ପୂର୍ବରୁ ଜାନକୀବାବୁ ମୋତେ କଂଗ୍ରେସକୁ ଆଣିଛନ୍ତି ବୋଲି ମୋ ଭାଷଣରେ ସୂଚନା ଦେବାପାଇଁ ମୋର କେତେକ ବନ୍ଧୁ ମୋତେ ପରାମର୍ଶ ଦେଇଥିଲେ । ହୁଏତ ଏଭଳି ପରାମର୍ଶ ପଛରେ ଜାନକୀବାବୁଙ୍କ ପ୍ରଚ୍ଛନ୍ନ ଇଙ୍ଗିତ ଥିଲା । ପୂର୍ବରୁ ବସନ୍ତବାବୁଙ୍କ ଗୋଷ୍ଠୀକୁ ପ୍ରକୃତ କଥା କହିସାରିଥିଲି । ମୋପାଇଁ ଏକ ନୂଆ ଅଡୁଆ ସୃଷ୍ଟି ହେଲା । ତେଣୁ ମୋ ଭାଷଣରେ କହିଥିଲି ଯେ, ମୋର କଂଗ୍ରେସରେ ମିଶିବା ଦିଗରେ ଜାନକୀବାବୁଙ୍କର ଉଦ୍ୟମ ଥିଲା । ଏହାଛଡ଼ା ବସନ୍ତବାବୁ ଓ କାହ୍ନୁବାବୁ ପ୍ରଭୃତି ମୁଁ କଂଗ୍ରେସକୁ ଫେରିଆସିବାକୁ ଚାହୁଁଥିଲେ । କଂଗ୍ରେସର ଗୋଷ୍ଠୀ ବିବାଦର ଅବସାନ ଘଟାଇ ସବୁ କଂଗ୍ରେସ ଲୋକ ଏକତାବଦ୍ଧ ହେଲେ, ଓଡ଼ିଶାରେ ବିଜୁ ପଟ୍ଟନାୟକଙ୍କ ଜନତା ଦଳର ସଫଳ ମୁକାବିଲା କରାଯାଇପାରିବ ବୋଲି ମୁଁ ପରାମର୍ଶ ଦେଇଥିଲି । ଏଭଳି ଏକତା ଫେରାଇ ଆଣିବାପାଇଁ ମୋର ଯଦି ସାହାଯ୍ୟ ଦରକାର ହୁଏ ମୁଁ ସେଥିପାଇଁ ପ୍ରସ୍ତୁତ ଅଛି ବୋଲି ଜଣାଇଥିଲି । କଂଗ୍ରେସ ମଧ୍ୟରେ ଏକତା ଆଣିବାପାଇଁ ମୋର ବ୍ୟାକୁଳତାକୁ ବହୁ କଂଗ୍ରେସ ଲୋକ ପସନ୍ଦକରିଥିଲେ । ମାତ୍ର ଜାନକୀବାବୁ ତାଙ୍କ ସଭାପତି ଭାଷଣରେ ମୋର ଦଳୀୟ ଏକତା ପ୍ରସଙ୍ଗ ପରାମର୍ଶ ପ୍ରତି ଗୁରୁତ୍ୱ ଦେଇନଥିଲେ, ବରଂ କଂଗ୍ରେସ ମଧ୍ୟରେ ବିଶୃଙ୍ଖଳା ଆଚରଣକୁ ପ୍ରୋତ୍ସାହିତ କଲାଭଳି କୌଣସି କାର୍ଯ୍ୟ ନହେବା ଉଚିତ ବୋଲି ସେ ଅନ୍ୟ ଗୋଷ୍ଠୀ ପ୍ରତି ତାଙ୍କ ମନ ଭିତରେ ଥିବା ଚାପା ଅସନ୍ତୋଷ ଓ ସତର୍କବାଣୀର ପରୋକ୍ଷ ସୂଚନା ଦେଇଥିଲେ । ତାଙ୍କ କଥାଟା ସଂହତି ପ୍ରତିଷ୍ଠାପାଇଁ ଅନୁକୂଳ ପ୍ରତୀକ ହେଲାନାହିଁ ।

ଶ୍ରୀ ବସନ୍ତ କୁମାର ବିଶ୍ୱାଳ ଓ ଅନ୍ୟ ପାଞ୍ଚ ଜଣ କଂଗ୍ରେସରୁ ବହିଷ୍କୃତ ହେବା ପରେ, କଂଗ୍ରେସ ମଧ୍ୟରେ ଦଳାଦଳି ଆହୁରି ବୃଦ୍ଧିପାଇଥାଏ । ବହିଷ୍କାର ଆଦେଶକୁ ପ୍ରତ୍ୟାହାର କରିନେବାପାଇଁ କଂଗ୍ରେସ ସଭାପତି ଶ୍ରୀ ନରସିଂହ ରାଓଙ୍କୁ ସେମାନଙ୍କ ପକ୍ଷରୁ ଆବେଦନ କରାଯାଇଥିଲା । ବାରମ୍ବାର ଆବେଦନ ସତ୍ତ୍ୱେ ସେମାନଙ୍କ ପ୍ରତି ଯେଉଁ ଅବିଚାର କରାଯାଇଥିଲା ତା'ର ପୁର୍ନବିଚାର ନହେବାରୁ ଦିନେ ବହୁ କଂଗ୍ରେସକର୍ମୀ ବହିଷ୍କାର ଆଦେଶକୁ ପ୍ରତିବାଦକରି ଇନ୍ଦିରା ପାର୍କଠାରେ ଇନ୍ଦିରାଙ୍କ ପ୍ରତିମୂର୍ତ୍ତି ପାଖରେ ରୁଣ୍ଡ ହୋଇ ଧାରଣା ଦେଇଥିଲେ । ପ୍ରଦେଶ କଂଗ୍ରେସ ସଭାପତି ଜାନକୀବାବୁ ଏହାକୁ ଉପେକ୍ଷା କରିଥିଲେ । ତାଙ୍କ ବିରୋଧ ସତ୍ତ୍ୱେ ରାଜ୍ୟର ବିଭିନ୍ନ ସ୍ଥାନରୁ ଆସି ବହୁ କଂଗ୍ରେସ କର୍ମୀ ଓ ନେତା ଏହି ଧାରଣାରେବସିଥିଲେ । ଏହି ପରିସ୍ଥିତିକୁ ଉପେକ୍ଷା କରିବା ସମୀଚୀନ ହେବନାହିଁ ବିଚାରି ମୁଁ ସେହି ସ୍ଥାନକୁ ଯାଇଥିଲି, ଧାରଣାରୁ ନିବୃତ୍ତ ହେବାପାଇଁ ମୁଁ ସେମାନଙ୍କୁ ଅନୁରୋଧ

କରିଥିଲି ଏବଂ ବହିଷ୍କାର ଆଦେଶର ପୁନର୍ବିଚାର କରିବାପାଇଁ ମୁଁ କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରିବି ବୋଲି ସେଠାରେ ସମବେତ କର୍ମୀମାନଙ୍କୁ ପ୍ରତିଶ୍ରୁତ ଦେଇ ମୁଁ ଫେରିଆସିଥିଲି । ମୋର ଏହି ପଦକ୍ଷେପକୁ ଜାନକୀବାବୁ ପସନ୍ଦ କରିନଥିଲେ ବୋଲି ଖବର ପାଇଲି । ଧାରଣା ସ୍ଥାନରୁ ଫେରି ସେହିଦିନ ରାତିରେ ନିଖିଳ ଭାରତ କଂଗ୍ରେସ କମିଟିର ସାଧାରଣ ସଂପାଦକ ଶ୍ରୀ ଅହମ୍ମଦ ପଟେଲଙ୍କୁ ଟେଲିଫୋନ୍ କରି ସବୁକଥା ଜଣାଇଥିଲି । ଏଭଳି ବିଭାଜିତ ପରିସ୍ଥିତିକୁ ସମାଧାନ କରିବାରେ କାଳକ୍ଷେପଣ କରିବା ହେତୁ କଂଗ୍ରେସର ଭାବମୂର୍ତ୍ତି ବିଶେଷଭାବରେ କ୍ଷୁଣ୍ଣ ହେଉଛି ବୋଲି ସେ ହୃଦୟଙ୍ଗମ କରିଥିଲେ ଏବଂ ସଭାପତିଙ୍କ ସହିତ କଥାବାର୍ତ୍ତା କରି ପ୍ରତିକାର ବ୍ୟବସ୍ଥା କରିବେ ବୋଲି ଶ୍ରୀ ପଟେଲ ମୋତେ ପ୍ରତିଶ୍ରୁତ ଦେଇଥିଲେ । ଏହାପରେ ମୁଁ ଦିଲ୍ଲୀ ଯାଇ କଂଗ୍ରେସ ସଂଗଠନର ସମୂହ ସ୍ୱାର୍ଥ ଦୃଷ୍ଟିରୁ ଓଡ଼ିଶା କଂଗ୍ରେସ ଦଳରେ ଚାଲିଥିବା ଦଳାଦଳିର ଯଥାଶୀଘ୍ର ଅବସାନ ଘଟାଇବାପାଇଁ କେନ୍ଦ୍ରୀୟ ନେତୃବର୍ଗଙ୍କୁ ବ୍ୟକ୍ତିଗତ ଭାବରେ ଅବଗତ କରାଇଥିଲି । କଂଗ୍ରେସ ସଭାପତି ନରସିଂହ ରାଓଙ୍କୁ ଦେଖାକରି ବହିଷ୍କାର ଆଦେଶର ପୁନର୍ବିଚାର ହେବା ଉଚିତ ବୋଲି ଯୁକ୍ତି ଦର୍ଶାଇଥିଲି । ସେ ମୋ କଥାରେ ଏକମତ ହେଲାପରି ମୋର ହୃଦବୋଧ ହେଲା । ବହିଷ୍କାର ଆଦେଶ ପୁନର୍ବିଚାର କରାଯିବାର ସୂଚନା ମଧ ସେ ଦେଇଥିଲେ । ଏହି ଖବର ଜାନକୀବାବୁ ଜାଣିବା ପରେ ମୋ କାର୍ଯ୍ୟକୁ ନାପସନ୍ଦ କରିଥିଲେ । ଦିଲ୍ଲୀରୁ ଭୁବନେଶ୍ୱର ଫେରିବା ପରେ ମୁଁ କଂଗ୍ରେସର ଉଭୟ ଗୋଷ୍ଠୀ ମଧରେ ଏକତା ଫେରାଇ ଆଣିବାପାଇଁ ସକ୍ରିୟ ଉଦ୍ୟମ କରିଥିଲି । ବହିଷ୍କାର ଆଦେଶକୁ ପୁନର୍ବିଚାର କରିବାପାଇଁ ଉଭୟଙ୍କ ପକ୍ଷରୁ ଆବେଦନ ଓ ଉଦ୍ୟମ କରାଗଲେ ସମାଧାନ ସହଜ ହେବବୋଲି ମୁଁ ଅନୁଭବ କରିଥିଲି । କିନ୍ତୁ ବହିଷ୍କାର ଆଦେଶର ପୁନର୍ବିଚାର କରାଯିବା ଅନୁଚିତ ବୋଲି ଜାନକୀବାବୁଙ୍କର ଦୃଢ଼ ମତ ଥିଲା । ମୋର ଦିଲ୍ଲୀ ରହଣି ସମୟରେ କେନ୍ଦ୍ରୀୟ କଂଗ୍ରେସ ନେତୃବର୍ଗଙ୍କୁ ଏହିସବୁ ବାସ୍ତବତା ସଂପର୍କରେ ଅବଗତ କରାଇବା ସଙ୍ଗେ ସଙ୍ଗେ ସେଠାରେ ରହୁଥିବା ଓଡ଼ିଶାର ସବୁ କଂଗ୍ରେସ ସାଂସଦଙ୍କର ସହଯୋଗ ଲୋଡ଼ିଥିଲି । ସେମାନେ ବହିଷ୍କାର ଆଦେଶର ପୁନର୍ବିଚାର ଏକାନ୍ତ ଜରୁରୀ ବୋଲି ପ୍ରଧାନମନ୍ତ୍ରୀଙ୍କୁ ବୁଝାଇବାପାଇଁ ପ୍ରବର୍ତ୍ତାଇ ଥିଲି । କିନ୍ତୁ ସମସ୍ତଙ୍କ ଉପରୁ ବହିଷ୍କାର ଉଠାଇନେବା ନିମନ୍ତେ ମୁଁ ଅନୁକୂଳ ମନୋଭାବ ସୃଷ୍ଟି କରିବାପାଇଁ ନିଷ୍ଠାପରଭାବେ ଦିଲ୍ଲୀ ମହଲରେ ଲାଗିପଡ଼ିଥିବା ବେଳେ ଜାନକୀବାବୁ ଆନ୍ତରିକ ମିଳାମିଶା ଉଦ୍ୟମକୁ ଭଣ୍ଡୁର କରିଦେଇ କେବଳ ନିଜର ଜଣେ ଅନୁଗତ ଯୁବକଙ୍କ ଉପରେ ବହିଷ୍କାର ଆଦେଶ ଉଠିଯିବାପାଇଁ ଗୋପନରେ ପ୍ରଭାବ ପକାଉଥା'ନ୍ତି । ପାରଳାଖେମୁଣ୍ଡି ଲୋକସଭା ସଦସ୍ୟ ଶ୍ରୀ ଗୋପୀନାଥ ଗଜପତି ଓ କୋରାପୁଟ ଜିଲ୍ଲାର ଲୋକସଭା ସଦସ୍ୟ ଶ୍ରୀ ଖଗପତୀ ପ୍ରଧାନଙ୍କଠାରୁ ଜାନକୀବାବୁଙ୍କ ଏତାଦୃଶ କାର୍ଯ୍ୟକଳାପ କଥା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଥିଲି । ସେମାନେ ମୋତେ କହିଥିଲେ ଯେ, ଉଭୟ ପକ୍ଷର ସମସ୍ତଙ୍କ ଉପରୁ ଦଣ୍ଡବିଧାନ ଉଠାଇଦେବାକୁ ମୁଁ ଚେଷ୍ଟା କରୁଥିବାବେଳେ ଜାନକୀବାବୁ କେବଳ ଲଲାଟେନ୍ଦୁ ବିଦ୍ୟାଧର ମହାପାତ୍ରଙ୍କ ଉପରୁ ବହିଷ୍କାର ଆଦେଶ ଉଠାଇଦେବା ପ୍ରସ୍ତାବର ଗୋଟିଏ ଚିଠି ପାର୍ଲାମେଣ୍ଟ ସଦସ୍ୟଙ୍କ ପକ୍ଷରୁ ପ୍ରଧାନମନ୍ତ୍ରୀଙ୍କୁ ଦେବାପାଇଁ ଚିଠା ପ୍ରସ୍ତୁତ କରିଥା'ନ୍ତି ଏବଂ ଓଡ଼ିଶାର ସାଂସଦମାନଙ୍କୁ ପାର୍ଲାମେଣ୍ଟ ଲାଇବ୍ରେରୀକୁ ଡାକି ସେଥିରେ ସେମାନଙ୍କର ସ୍ୱାକ୍ଷର ନେଇ ପ୍ରଧାନମନ୍ତ୍ରୀଙ୍କୁ ଦେବାର ଆୟୋଜନରେ ଲିପ୍ତଥାନ୍ତି । ସେଭଳି ପକ୍ଷପାତମୂଳକ ଚିଠିରେ ସ୍ୱାକ୍ଷର ନଦେବାପାଇଁ ମୁଁ ସେମାନଙ୍କୁ ଅନୁରୋଧ କରିଥିଲି । ନିଜେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଥାଇ ଜାନକୀବାବୁ ଏ ପ୍ରକାର ପାତରଅନ୍ତର ଆଚରଣ କରିବା ସମୀଚୀନ ନୁହେଁ ବୋଲି ସମସ୍ତେ ଅନୁଭବ କରୁଥା'ନ୍ତି । ଏହିସବୁ କଥା ଶୁଣି ମୁଁ ବ୍ୟଥିତ ହେଲି, ସ୍ଥିରକଲି ସଙ୍ଗେ ସଙ୍ଗେ ଯାଇ ଜାନକୀବାବୁଙ୍କୁ ତାଙ୍କର ଏ ଅନ୍ୟାୟ କାର୍ଯ୍ୟରେ ଆଉ ଅଧିକ ଅଗ୍ରସର ନହେବାପାଇଁ କହିବି ।

# ସାରୁ ଭିତରେ ମାରୁ

ଜାନକୀବାବୁ ଦିଲ୍ଲୀରେ ରହୁଥିବା ଓଡ଼ିଶାରୁ ସନ୍ଧାନନେଇ ସେଠାରେ ପହଞ୍ଚି ମୁଁ ଦେଖିଲି ଯେ ସେ ରହୁଥିବା ବାସଭବନଟି ସଫ୍‌ଦରଜଙ୍ଗ ଏନ୍‌କ୍ଲେଭରେ ଅବସ୍ଥିତ।ସେହି ବାସଭବନରେ ଲେଖାଅଛି, 'ପୋଦାର ହାଉସ' । ସାରୁ ଖୋଳୁ ଖୋଳୁ ମହାଦେବ ବାହାରିବା ଭଳି କଥା ହେଲା । ସାରୁ ଭିତରେ ମାରୁଥିବାର ସନ୍ଧାନ ମିଳିଲା । ସେକଥା ପାଠକେ ବିଚାର କରିବେ । ମୋତେ ସେହି ପୋଦାର ହାଉସ୍ ଘର ଭିତରେ ଦେଖି ଜାନକୀବାବୁ ହତଚକିତ ହୋଇଗଲେ । କଂଗ୍ରେସ ଦଳର ଏକତା ପ୍ରତିଷ୍ଠାପାଇଁ ଦିଲ୍ଲୀରେ ଜାନକୀବାବୁଙ୍କୁ ଖୋଜୁ ଖୋଜୁ ମୁଁ ତାଙ୍କର 'ପୋଦାର ହାଉସ୍' ଆବାସସ୍ଥଳୀ ଆବିଷ୍କାର କରିପକାଇବାଟା ତାଙ୍କୁ ସୁଖଲାଗିନଥିଲା । ଏହି ପୋଦାର ହାଉସ ନିବାସ ପ୍ରସଙ୍ଗ ପାଠକେ ଏଥିପୂର୍ବରୁ ଅସାଧୁ ତେଲ କାରବାର 'ଜାନକୀ-ପୋଦାର ମେଣ୍ଟ' ବର୍ଣ୍ଣନାରେ ଲକ୍ଷ୍ୟ କରିଛନ୍ତି । ଏହି ମେଣ୍ଟ ସତେଯେପରି 'ଜଡ଼ାତେଲ ମେଣ୍ଢାବାଳପରି' ଏକାନ୍ତ ପ୍ରଘଟ ହୋଇ-ସାରିଥିଲା । ଆଗରୁ କୌଣସି ଖବର ନଦେଇ ସେଭଳି ଏକ ସ୍ଥାନରେ ମୁଁ ହଠାତ୍ ପହଞ୍ଚିଯାଇ ତାଙ୍କୁ ବିବ୍ରତ କରିବା ମୋର ଅଭିପ୍ରାୟ ନଥିଲା । କିନ୍ତୁ ପରିସ୍ଥିତିଟା ବୋଧହୁଏ ତାଙ୍କ ପ୍ରତି ଅତ୍ୟନ୍ତ ଅସ୍ୱସ୍ତିକର ବୋଧହେଲା । ତେଣୁ ଓଡ଼ିଶା କଂଗ୍ରେସରେ ଏକତା ପ୍ରତିଷ୍ଠାପାଇଁ ଉଦାର ମନୋଭାବ ଦେଖାଇବା ସକାଶେ ପ୍ରଦେଶ କଂଗ୍ରେସ ସଭାପତି ଥାଉ ଥାଉ ସଂକୀର୍ଣ୍ଣ ଗୋଷ୍ଠୀ ବିବାଦରୁ କ୍ଷାନ୍ତ ହେବା ନିମନ୍ତେ ମୋର ପରାମର୍ଶକୁ ସେ ଅତି ବିରକ୍ତି ଭାବ ସହିତ 'ଚୌର ନିନ୍ଦନ୍ତି ଚନ୍ଦ୍ରମା' ନ୍ୟାୟ ପରି ପ୍ରତ୍ୟାଖ୍ୟାନ କରିଥିଲେ ।

ତଥାପି ମୋ ପାରୁପର୍ଯ୍ୟନ୍ତ ତାଙ୍କୁ ବୁଝାଇବାକୁ ଚେଷ୍ଟାକରିଥିଲି ଏବଂ ସେ ଯେଉଁ ପକ୍ଷପାତିତାମୂଳକ ଚିଠି ପ୍ରଧାନମନ୍ତ୍ରୀଙ୍କୁ ଦେବା ଉଦ୍ଦେଶ୍ୟରେ ଚିଠାକରି ଦେଇଛନ୍ତି ସେଥିରେ ସ୍ୱାକ୍ଷର ନଦେବାପାଇଁ ମୁଁ ଓଡ଼ିଶା କଂଗ୍ରେସ ସଂସଦଙ୍କୁ ଅନୁରୋଧ କରିଛି ବୋଲି ମଧ୍ୟ ଜଣାଇ ଦେଇଥିଲି । ସେ ଏକତା ପ୍ରତିଷ୍ଠା ଦିଗରେ ଖୁବ୍ ଅସନ୍ତୁଷ୍ଟ ପ୍ରକାଶ କରିବାର ଲକ୍ଷ୍ୟକରିଥିଲେ । କିନ୍ତୁ ମୁଁ ମୋର ଉଦ୍ୟମ ଅବ୍ୟାହତରଖି କଂଗ୍ରେସର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ବାସ୍ତବ ପରିସ୍ଥିତି ଓ ନିରପେକ୍ଷ ଉଦାର ନିଷ୍ପତ୍ତି ସଂପର୍କରେ ବୁଝାଉଥାଏ । ପରସ୍ପର ମିଳାମିଶା ଓ ସଂହତି ପ୍ରତିଷ୍ଠା ଉଦ୍ଦେଶ୍ୟରେ ଉଭୟ ଜାନକୀ ଓ ବସନ୍ତଙ୍କ ଗୋଷ୍ଠୀ ଉପରେ ଚାପ ପକାଇବାପାଇଁ ମଧ୍ୟ ସେମାନଙ୍କୁ କହୁଥାଏ ।

ମୁଁ ବିଚାରିଲି ଯେ ଜାନକୀବାବୁ ଏକତାପାଇଁ ଉଦ୍ୟମ କରି ବହିଷ୍କାର ଆଦେଶକୁ ଉଠାଇଦେବା ପାଇଁ କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ନିଜଆଡ଼ୁ କହିଲେ ସମାଧାନ ସହଜ ହୋଇଯିବ । ପୂର୍ବତନ ବାଚସ୍ପତି ଶ୍ରୀ ପ୍ରସନ୍ନ କୁମାର ଦାସଙ୍କ ଘରକୁ ଯାଇ କଂଗ୍ରେସ ମଧ୍ୟରେ ଏକତା ପ୍ରତିଷ୍ଠା କରିବା ଦିଗରେ ତାଙ୍କର ସହଯୋଗ ଲୋଡ଼ିଥିଲି । ସେ ଜାନକୀବାବୁଙ୍କ ସହିତ କଥାବାର୍ତ୍ତା କରିଥିଲେ ଏବଂ ତାଙ୍କୁ ଓ ବସନ୍ତବାବୁଙ୍କୁ ଏକତ୍ରିତ କରିବାପାଇଁ ଉଦ୍ୟମ କରିଥିଲେ । ବସନ୍ତବାବୁ କୁଆଡ଼େ ଅନୁକୂଳ ମତ ପୋଷଣ କରିଥିଲେ । ମାତ୍ର ଜାନକୀବାବୁ ସେ କଥାକୁ ଏଡ଼ାଇଦେଇଥିଲେ । ଦିନେ ମୋ ଉପସ୍ଥିତିରେ କଂଗ୍ରେସ ଭବନରେ ପ୍ରସନ୍ନବାବୁ ଜାନକୀବାବୁଙ୍କୁ କହିଥିଲେ ଯେ ଯେଉଁମାନଙ୍କୁ ବହିଷ୍କାର କରାଯାଇଛି ସେମାନଙ୍କ କଥା ପୁନର୍ବିଚାର କରାଯାଉ ଏବଂ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ଜାନକୀବାବୁ ଏହି ପ୍ରସ୍ତାବ ଦେଇ ପତ୍ର ଲେଖନ୍ତୁ । ତାଙ୍କଦ୍ୱାରା ଏହା କରାଗଲେ ସୁନ୍ଦର ହେବ ବୋଲି ତାଙ୍କୁ ବୁଝାଇଥିଲେ । କିନ୍ତୁ ଜାନକୀବାବୁ ତାହା କରିପାରିବେନାହିଁ ବୋଲି ସ୍ପଷ୍ଟ କହିଥିଲେ । ବହିଷ୍କୃତ ନେତାମାନେ ପୁନରାୟ ଫେରିଲେ କଂଗ୍ରେସ ଆହୁରି ଦୁର୍ବଳ ହେବ । ସେମାନେ ବରଂ ନଫେରିଲେ କଂଗ୍ରେସର ଶକ୍ତି ଆହୁରି ବୃଦ୍ଧିପାଇବ ବୋଲି ସେ ଯୁକ୍ତି ବାଢ଼ିଥିଲେ । ସେମାନେ ନଆସିଲେ କଂଗ୍ରେସର କିଛି କ୍ଷତି ହେବନାହିଁ

ବୋଲି ଦୃଢ଼ୋକ୍ତି କରିଥିଲେ । ଆମ୍ଭେମାନେ ଅସନ୍ତୁଷ୍ଟ ହୋଇ ଫେରିଆସିଲୁ । ଏଇ ଅବସରରେ ପ୍ରସନ୍ନବାବୁ ଦୁଃଖର ସହିତ ମୋତେ କହିଥିଲେ ଯେ, ଜାନକୀବାବୁଙ୍କ ବିପରୀତ ବୁଦ୍ଧି ଦେଖାଯାଉଛି । ଏହାଙ୍କର ସାହସ କେତେ ମୁଁ ଜାଣିଛି । ବିଜୁବାବୁଙ୍କୁ ଦେଖିବାକ୍ଷଣି ଏ ମହାଶୟ ଛାନିଆ ହୋଇଯା'ନ୍ତି ବିଧାନସଭାରେ ଯେତେବେଳେ ବିଜୁବାବୁଙ୍କ ସହିତ ମୁକାବିଲା କରିବାପାଇଁ ପଡ଼େ ଜାନକୀବାବୁ ଗୃହରୁ ଖସି ପଳାଇ ଯାଆନ୍ତି ଏବଂ ବିଚରା ଗଙ୍ଗାଧର ମହାପାତ୍ରଙ୍କୁ ବସାଇଦିଅନ୍ତି ବିଜୁ ପଟ୍ଟନାୟକଙ୍କୁ ମୁକାବିଲା କରିବା ପାଇଁ ।

କଂଗ୍ରେସ ମଧ୍ୟରେ ଏକତା ଆଣିବା ଉଦ୍ୟମ ମୋର ଅବ୍ୟାହତ ରହିଥିଲା । ଚିଠିପତ୍ର ଓ ଟେଲିଫୋନ୍ ମାଧ୍ୟମରେ କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷମାନଙ୍କୁ ମୁଁ ଏହି ବିଷୟରେ ଯୋଗାଯୋଗ କରୁଥାଏ । ଏ ଦିଗରେ ସାହାଯ୍ୟ କରିବାପାଇଁ ଶ୍ରୀ ସୀତାରାମ କେଶରୀଙ୍କୁ ମୁଁ ଅନୁରୋଧ କରିଥିଲି । ସେ ଅହମ୍ମଦ ପଟେଲଙ୍କୁ କହିଥିଲେ ମୋ କଥା ପ୍ରତି ଗୁରୁତ୍ୱ ଦେବାପାଇଁ । ଶେଷରେ ୧୯୯୪ ମାର୍ଚ୍ଚ ମାସ ୩୦ ତାରିଖ ଦିନ ପ୍ରଧାନମନ୍ତ୍ରୀଙ୍କ ନିର୍ଦ୍ଦେଶକ୍ରମେ ଅହମ୍ମଦ ପଟେଲଙ୍କ ଘରଠାରେ ଓଡ଼ିଶାର କଂଗ୍ରେସ ନେମାତାଙ୍କର ଏକ ବୈଠକ ଡକାଯାଇଥିଲା । ସେହି ସଭାରେ ଯୋଗଦେବାପାଇଁ ମୋତେ ସ୍ୱତନ୍ତ୍ରଭାବେ ଡକାଯାଇଥିଲା । ଶ୍ରୀ ଅହମ୍ମଦ ପଟେଲଙ୍କ ଛଡ଼ା ଶ୍ରୀ ଜିତେନ୍ଦ୍ର ପ୍ରସାଦ ମଧ୍ୟ ପ୍ରଧାନମନ୍ତ୍ରୀଙ୍କ ପକ୍ଷରୁ ଉକ୍ତ ବୈଠକରେ ଯୋଗଦେଇଥିଲେ । କେନ୍ଦ୍ରରେ ଥିବା ଓଡ଼ିଶାର ସବୁ ମନ୍ତ୍ରୀ ଓ ଅଧିକାଂଶ ସାଂସଦ ଉପସ୍ଥିତ ଥିଲେ । ସମସ୍ତେ ନିସ୍ତବ୍ଧ ହୋଇ ବସିଥା'ନ୍ତି । କିଏ କଥା ଆରମ୍ଭ କରିବେ ବୋଲି ସମସ୍ତେ ଅପେକ୍ଷାରେ ଥା'ନ୍ତି । ଆଶାକରାଯାଉଥିଲା ପ୍ରଦେଶ କଂଗ୍ରେସ ସଭାପତି ଜାନକୀବାବୁ ପ୍ରଥମେ ଆରମ୍ଭ କରିବେ । କିନ୍ତୁ ଜାନକୀବାବୁ ଚୁପ୍ ବସିରହିଲେ । ଅହମ୍ମଦ ପଟେଲ କହିଲେ ଶ୍ରୀ ରାଉତରାୟ ହେଉଛନ୍ତି ଓଡ଼ିଶାର ସର୍ବବରିଷ୍ଠ କଂଗ୍ରେସ ନେତା, ସେ ପ୍ରଥମେ ଆଲୋଚନା ଆରମ୍ଭ କରିବା ଉଚିତ । ମୁଁ ଅଡୁଆରେ ପଡ଼ିଗଲି । ଅନ୍ୟମାନେ ପ୍ରଥମେ ଆଲୋଚନା ଆରମ୍ଭ କରିଥିଲେ ମୁଁ ସେହିସବୁ ପ୍ରସଙ୍ଗଧରି ମୋର ବିଶ୍ଳେଷଣ ଉପସ୍ଥାପନ କରିବାକୁ ସୁବିଧା ହୋଇଥା'ନ୍ତା । ଓଡ଼ିଶାର କଂଗ୍ରେସର ସ୍ଥିତି ଓ ଜନତାଦଳର ସ୍ଥିତି ତୁଳନା କରି କଂଗ୍ରେସର ସ୍ଥିତି ଭଲ ନାହିଁ ବୋଲି ମୁଁ କହିଥିଲି । ବହିଷ୍କୃତ ନେତାମାନଙ୍କ ଉପରୁ ଦଣ୍ଡାଦେଶ ଉଠାଇଦେଲେ କିପରି ନିଶ୍ଚିତ ଭାବରେ କଂଗ୍ରେସପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି ହେବ ଏବଂ ଗୃହ ବିବାଦକୁ ଭୁଲିଯାଇ ସାଂଗଠନିକ ସଂହତି ପ୍ରଦର୍ଶନକଲେ କଂଗ୍ରେସ ଜନସାଧାରଣଙ୍କର ଆସ୍ଥାଭାଜନ ହୋଇପାରିବବୋଲି ମୁଁ ବୁଝାଇଥିଲି । ତାହା ନକଲେ ଜାନକୀବାବୁ ଅବସ୍ଥା ସମ୍ଭାଳି ପାରିବେ ନାହିଁ ବୋଲି ମୁଁ ଦୃଢ଼ ମତ ବ୍ୟକ୍ତ କରିଥିଲି । ଜାନକୀ ବଲ୍ଲଭ ପଟ୍ଟନାୟକ, ବସନ୍ତ କୁମାର ବିଶ୍ୱାଳ, କାହ୍ନୁ ଚରଣ ଲେଙ୍କା, ହେମାନନ୍ଦ ବିଶ୍ୱାଳ ପ୍ରଭୃତି ନେତାମାନେ ଓଡ଼ିଶାରେ ଏକତ୍ର ଗସ୍ତକରି ଉଦ୍‌ବୋଧନ ଦେଲେ ନିଶ୍ଚିତ ଭାବରେ କଂଗ୍ରେସ ଉପରେ ଜନତାଙ୍କର ପୂର୍ବ ପତିଆରା ଫେରିପାରିବ ବୋଲି ମୁଁ ଆଶା ପ୍ରକାଶ କରିଥିଲି । ମାତ୍ର ଓଡ଼ିଶା କଂଗ୍ରେସ ସଭାପତି ବହୁ ପୂର୍ବରୁ ଏ ଦିଗରେ ଉଦ୍ୟମ କରିନାହାନ୍ତି, ତେଣୁ ବର୍ତ୍ତମାନ ସେ ତାଙ୍କର ସାନି କର୍ତ୍ତବ୍ୟ ପାଳନ କରିବାର ସମୟ ଆସୁଛି ବୋଲି ମୁଁ ପ୍ରସ୍ତାବ ଦେଇଥିଲି । ମୋ କଥାଗୁଡ଼ାକ ଜାନକୀବାବୁଙ୍କ ମନକୁ ପାଇନଥିଲା ପରି ଲାଗୁଥାଏ । ତା ପରେ ଅନ୍ୟାନ୍ୟ ନେତାମାନେ ସଂହତି ସଂପର୍କୀୟ ଅନୁରୂପ ଆଲୋଚନା କରିଥିଲେ । ଶେଷରେ ଜାନକୀବାବୁ ମଧ୍ୟ ଏକତା ଉଦ୍ୟମ ସପକ୍ଷରେ ମତଦେଇଥିଲେ । ଶ୍ରୀ ଅହମ୍ମଦ ପଟେଲ ଓଡ଼ିଶାର କଂଗ୍ରେସ ଭିତରେ ସଂହତି ଆଣିବାପାଇଁ ଜୋର୍ ଦେଇଥିଲେ ଏବଂ ବହିଷ୍କାର ଆଦେଶ ଉଠାଇ ଦିଆଯିବାର ସୂଚନା ମଧ୍ୟ ଦେଇଥିଲେ । ସଭାରେ ଯାହାସବୁ ଘଟିଥିଲା ଏବଂ କିଏ କ'ଣ କହିଥିଲା ସେସବୁ ବିଷୟ ବସନ୍ତବାବୁ ଭୁବନେଶ୍ୱରରେ ଥାଇ ଟେଲିଫୋନ୍ ଯୋଗାଯୋଗରେ ତାଙ୍କ ସୂତ୍ରରୁ ବୁଝୁଥିଲେ । ପରଦିନ ବସନ୍ତବାବୁ ମୋତେ ଟେଲିଫୋନ୍ କରି କହିଲେ, ''ଆପଣ ମୋର Congratulations ଗ୍ରହଣ

କରନ୍ତୁ । ବୈଠକରେ ଯାହାସବୁ କହିଲେ ମୁଁ ସେକଥା ଜାଣିଛି ଏବଂ It was your day." ବହିଷ୍କୃତ ନେତାମାନଙ୍କ ଉପରେ ଯେଉଁ ଦଣ୍ଡବିଧାନ ହୋଇଥିଲା ତାହା ପ୍ରତ୍ୟାହୃତ ହେବ ବୋଲି ଶ୍ରୀ ଅହମ୍ମଦ ପଟେଲ ତାଙ୍କ ଭାଷଣରେ ଆଭାଷ ଦେଇଥିଲେ । ପ୍ରଧାନମନ୍ତ୍ରୀ ଶ୍ରୀ ନରସିଂହ ରାଓ କୁଆଡ଼େ ଓଡ଼ିଶା କଂଗ୍ରେସ ଦଳାଦଳି ବ୍ୟାପାରରେ ଯାହାସବୁ ଘଟୁଥିଲା ସେଥିରେ ଅସନ୍ତୋଷ ପ୍ରକଟ କରି କହିଥିଲେ, 'Enough is enough, this should be stopped now' । ତେଣୁ ଦଣ୍ଡାଦେଶ ତୁରନ୍ତ ପ୍ରତ୍ୟାହାର କରାଯିବ ବୋଲି ଧାରଣାନେଇ ଆମ୍ଭେମାନେ ସମସ୍ତେ ସଭାରୁ ଫେରିଥିଲୁ । ତା ପରଦିନ ମୁଁ କେନ୍ଦ୍ରୀୟ କଂଗ୍ରେସ ଅଫିସରେ ଶ୍ରୀ ଅହମ୍ମଦଙ୍କୁ ଦେଖାକରି ତୁରନ୍ତ ବହିଷ୍କାର ଆଦେଶକୁ ରଦ୍ଦ କରିଦେବାପାଇଁ ତାଙ୍କୁ ଅନୁରୋଧ ଜଣାଇ ଭୁବନେଶ୍ୱର ଫେରିଆସିଲି । ସେହି ବୈଠକର ପ୍ରାୟ ସପ୍ତାହକ ପରେ ବହିଷ୍କାର ଆଦେଶ ପ୍ରତ୍ୟାହୃତ ହେବାର ନିର୍ଦ୍ଦେଶ ଖବରକାଗଜରେ ପ୍ରକାଶପାଇଥିଲା ଏବଂ ତାହା ପ୍ରଦେଶ କଂଗ୍ରେସ କମିଟି ସଭାପତି ଜାନକୀବାବୁଙ୍କ ପାଖକୁ ଆସିଥିଲା । ଏ ପ୍ରକାର ନିର୍ଦ୍ଦେଶ ପାଇବା ପରେ ମଧ୍ୟ ସେ ତାକୁ କାର୍ଯ୍ୟକାରୀ କରିବାରେ ଅଯଥା ଗଡ଼ିମସି କରିଥିଲେ । ପ୍ରଥମେ ବସନ୍ତବାବୁ ଓ ଲଳାଟେନ୍ଦୁ ମହାପାତ୍ରଙ୍କ ଉପରେ ହୋଇଥିବା ବହିଷ୍କାର ଆଦେଶ ଉଠିଗଲା ବୋଲି ଘୋଷଣା କରାଯାଇଥିଲା । ଅନ୍ୟମାନଙ୍କ ବିଷୟରେ ଆସିଥିବା ନିର୍ଦ୍ଦେଶକୁ ଘୋଷଣା ନକରି ଚାପିଦିଆଯାଇଥିଲା । ଏହାଦ୍ୱାରା ବସନ୍ତ କୁମାର ବିଶ୍ୱାଳଙ୍କୁ ଅପଦସ୍ଥ କରାଯିବାର ଅଭିପ୍ରାୟ ଥିଲା । ଅନ୍ୟମାନେ ବସନ୍ତ ବିଶ୍ୱାଳଙ୍କ ପାଖକୁ ଦଉଡ଼ୁଥା'ନ୍ତି, କିନ୍ତୁ ବସନ୍ତବାବୁ କିଛି କରିପାରୁନଥା'ନ୍ତି । ବସନ୍ତବାବୁ ଏକଥା ମୋତେ ଜଣାଇଥିଲେ । ମୁଁ ଜାନକୀବାବୁଙ୍କୁ ଅନ୍ୟମାନଙ୍କ କଥା ଘୋଷଣା କରିବାକୁ କହୁଥାଏ । ମାତ୍ର ସେଥିରେ ସେ ଅସନ୍ତୁଷ୍ଟ ହେଲାଭଳି ଆଚରଣ ପ୍ରଦର୍ଶନ କରୁଥିଲେ । ଏ ବିଷୟରେ ସେ ଜୋର୍ ଦେବାକୁ ପସନ୍ଦ କରୁନଥା'ନ୍ତି । ମାତ୍ର ଶେଷରେ ତାହା ଘୋଷଣା କରିବାକୁ ସେ ବାଧ୍ୟହୋଇଥିଲେ ।

ବହିଷ୍କୃତ ନେତାମାନେ କଂଗ୍ରେସକୁ ଫେରିଆସିବା ପରେ କଂଗ୍ରେସ ଭିତରେ ଏକତା ଆଣିବାକୁ ମୁଁ ଯେଉଁ ଉଦ୍ୟମ ଆରମ୍ଭକରିଥିଲି, ତାହା କିଛି ପରିମାଣରେ ଫଳପ୍ରଦ ହୋଇଥିଲା । ମୟୂରଭଞ୍ଜ ଲୋକସଭାପାଇଁ ଯେଉଁ ଉପନିର୍ବାଚନ ହୋଇଥିଲା, ସେଠାରେ ନିର୍ବାଚନ କାର୍ଯ୍ୟ କରିବାପାଇଁ ସବୁଗୋଷ୍ଠୀର ସାହାଯ୍ୟ ମିଳିଥିଲା । ବାରିପଦାଠାରେ ଅନୁଷ୍ଠିତ କଂଗ୍ରେସ ସଭାରେ ଗୋଟିଏ ମଞ୍ଚ ଉପରେ ସର୍ବଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ବସନ୍ତ ବିଶ୍ୱାଳ, କାହ୍ନୁ ଚରଣ ଲେଙ୍କା, ହେମାନନ୍ଦ ବିଶ୍ୱାଳ ଓ ବ୍ରଜମୋହନ ମହାନ୍ତି ପ୍ରଭୃତି କଂଗ୍ରେସକୁ ଉପନିର୍ବାଚନରେ ଜୟଯୁକ୍ତ କରାଇବାପାଇଁ ଉଦ୍‌ବୋଧନ ଦେଇଥିଲେ । ଏହି ସଭାରେ ମୁଁ ମଧ୍ୟ ଯୋଗଦେଇଥିଲି । ନିର୍ବାଚନପାଇଁ ସମସ୍ତେ ଏକଜୁଟ ହୋଇ କାର୍ଯ୍ୟ କରିବାରୁ କଂଗ୍ରେସ ପ୍ରାର୍ଥୀ ଶୁଶୀଳା ତିରିଆ ଜୟଯୁକ୍ତ ହୋଇଥିଲେ । ସବୁ କଂଗ୍ରେସ ଲୋକ ଏକଜୁଟ ହୋଇ କାର୍ଯ୍ୟକରିବାରୁ ଜନତାଦଳକୁ ନିର୍ବାଚନରେ ପରାସ୍ତ କରିବା ସମ୍ଭବ ହେଲା ବୋଲି କହି ପ୍ରଦେଶ କଂଗ୍ରେସ କମିଟି ସଭାପତି ଖବରକାଗଜ ମାଧ୍ୟମରେ ସମସ୍ତଙ୍କୁ ଧନ୍ୟବାଦ ଜଣାଇ କୃତଜ୍ଞତା ପ୍ରକାଶ କରିଥିଲେ । ଏହାର ଏକ ସପ୍ତାହ ପରେ କିଏ ଜାଣେ କ'ଣ ହେଲା ନିର୍ବାଚନରେ କାହ୍ନୁ ଚରଣ ଲେଙ୍କା କଂଗ୍ରେସ ପ୍ରାର୍ଥୀଙ୍କୁ ହରାଇବାପାଇଁ କାର୍ଯ୍ୟ କରୁଥିଲେ ବୋଲି ଜାନକୀବାବୁ ଅଭିଯୋଗ କରିଥିଲେ ଏବଂ ତାହା ଖବରକାଗଜରେ ପ୍ରକାଶ ପାଇଥିଲା । ଏ ସମ୍ବାଦ ପଢ଼ି ମୁଁ ବିସ୍ମିତ ହୋଇଥିଲି । ସପ୍ତାହକ ତଳେ ଖବରକାଗଜକୁ ବିବୃତିଦେବାବେଳେ ଜାନକୀବାବୁ ଏ ପ୍ରକାର ଅଭିଯୋଗ ନଆଣି ସମସ୍ତେ କଂଗ୍ରେସପ୍ରାର୍ଥୀ ପାଇଁ କାର୍ଯ୍ୟକରି ତାଙ୍କୁ ଜିତାଇଥିଲେ ବୋଲି ଧନ୍ୟବାଦ ଦେବା ପରେ ପୁଣି ଏ ପ୍ରକାର କହିବା ଅଭିସନ୍ଧିମୂଳକ ବୋଲି ମୁଁ ଭାବିଥିଲି । ବସନ୍ତ କୁମାର ବିଶ୍ୱାଳ ଏ ଅଭିଯୋଗର ଉଦ୍ଦେଶ୍ୟ ବୁଝିବାପାଇଁ ଚେଷ୍ଟା ନକରି କାହ୍ନୁଚରଣଙ୍କ ବିରୁଦ୍ଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନପାଇଁ ପରାମର୍ଶ ଦେଇଥିଲେ । ବସନ୍ତବାବୁ ଓ

କାହ୍ନୁବାବୁଙ୍କ ମଧ୍ୟରେ ବିଭେଦ ରହୁ ଏହାଥିଲା ଜାନକୀବାବୁଙ୍କ ମସୁଧା । ଏହି ସମୟରେ କାହ୍ନୁବାବୁ ଆମେରିକାରେ ଥିଲେ, ତେଣୁ ତାଙ୍କ ପକ୍ଷରୁ ଅଭିଯୋଗକୁ ଠିକ୍ ଭାବରେ ଖଣ୍ଡନ କରାଯାଇ ପାରିନଥିଲା । ଅବଶ୍ୟ କାହ୍ନୁବାବୁଙ୍କ ସମର୍ଥକମାନେ ଏ ଅଭିଯୋଗକୁ ଉଦ୍ଦେଶ୍ୟମୂଳକ, ଅସତ୍ୟ ଓ ମନଗଢ଼ା ବୋଲି ପ୍ରତିବାଦ କରିଥିଲେ । ଦେଖାଗଲା ପ୍ରଦେଶ କଂଗ୍ରେସ କମିଟି ଏ ଦିଗରେ ଆଉ କିଛି ନକରି ଚୁପ୍ ରହିଲେ । ମିଳାମିଶା ଉଦ୍ୟମ ସଫଳ ହେବା ସତ୍ତ୍ୱେ ଜାନକୀବାବୁଙ୍କର ସେଥିପ୍ରତି ଆନ୍ତରିକତା ନଥିବାରୁ ଏ ପ୍ରକାର କାଦୁଅଛିଟା ରାଜନୀତିକୁ ସେ ପ୍ରଶ୍ରୟ ଦେଉଥିଲେ । ପ୍ରଦେଶ କଂଗ୍ରେସ କମିଟିର ସଭାପତି ପଦକୁ କୌଣସି ପ୍ରକାରରେ ଜାବୁଡ଼ିଧରି ବସିବାଥିଲା ଜାନକୀବାବୁଙ୍କ ଉଦ୍ଦେଶ୍ୟ, ତେଣୁ ସେଥିପ୍ରତି କୌଣସି ବିପଦ ନଆସୁ ବୋଲି ସେ ସତର୍କଥିଲେ । ନେତୃତ୍ୱ ପରିବର୍ତ୍ତନ ଦାବିକୁ ସମୀକ୍ଷାକରିବାପାଇଁ ମଝିରେ ମଝିରେ କଂଗ୍ରେସ ଉଚ୍ଚକର୍ତ୍ତୃପକ୍ଷ ଏବଂ ପ୍ରତିନିଧିମାନେ ଭୁବନେଶ୍ୱର ଆସୁଥିଲେ । ମୋର ମନେପଡ଼େ ଥରେ ବଳରାମ ଝାକର, ଶ୍ରୀ ଅହମ୍ମଦ ପଟେଲ, ଶ୍ରୀ ବଳିରାମ୍ ସିଂ ଯାଦବ ପ୍ରଭୃତି ଭୁବନେଶ୍ୱର ଆସିଥିଲେ । ପ୍ରଦେଶ କଂଗ୍ରେସ କମିଟିର ନେତୃତ୍ୱ ପରିବର୍ତ୍ତନ ସମ୍ବନ୍ଧରେ ରାଜ୍ୟ କଂଗ୍ରେସ ନେତାମାନଙ୍କର ମତାମତ ଜାଣିବା ଥିଲା ସେମାନଙ୍କର ଉଦ୍ଦେଶ୍ୟ । ସେମାନଙ୍କ ଆସିବାର ପୂର୍ବଦିନ ଶ୍ରୀ କାହ୍ନୁଚରଣ ଲେଙ୍କା, ଶ୍ରୀମତୀ ନନ୍ଦିନୀ ଶତପଥୀ, ଶ୍ରୀ ବ୍ରଜମୋହନ ମହାନ୍ତି ଓ ଶ୍ରୀ ହେମାନନ୍ଦ ବିଶ୍ୱାଳ ପ୍ରଭୃତି ଗୋଟିଏ ସ୍ଥାନରେ ଗୁପ୍ତ ଭାବରେ ବସି ପ୍ରତିନିଧିମାନଙ୍କୁ କ'ଣ କୁହାଯିବ ତାହା ଆଲୋଚନା କରୁଥିଲେ । ଉକ୍ତ ଗୁପ୍ତ ବୈଠକରେ ମୁଁ ଉପସ୍ଥିତ ଥିଲି ବୋଲି କେହି ଆସି ଜାନକୀବାବୁଙ୍କୁ କହିଲା । ଏହା ଶୁଣି ଜାନକୀବାବୁ ଅସ୍ତବ୍ୟସ୍ତ ହୋଇପଡ଼ିଲେ । ମୋ ସହିତ ଥିବା ଜଣେ ବ୍ୟକ୍ତିଙ୍କୁ ଡକାଇ ମୋର ମତିଗତି ବୁଝିବାପାଇଁ ମୋ ପାଖକୁ ପଠାଇଥିଲେ । କଥାଟା ଅସତ୍ୟ ବୋଲି ସେହି ବ୍ୟକ୍ତି ବୁଝିପାରିଥିଲେ । ଏ ପ୍ରକାର ପ୍ରତିନିଧି ଦଳ ଦିଲ୍ଲୀରୁ ଆସିଲେ ସେମାନଙ୍କୁ ଭେଟିବାକୁ ମୁଁ ଆଗ୍ରହ ବା ଉତ୍ସାହ ଦେଖାଇନଥାଏ । ଏଥର ଶ୍ରୀ ଅହମ୍ମଦ ପଟେଲ ଦିଲ୍ଲୀରୁ ଟେଲିଫୋନ୍ କରି ମୋତେ କହିଥିଲେ ତାଙ୍କୁ ଭେଟିବାପାଇଁ । Illustrated Weekly ବିରୋଧରେ ମୋର ମାନହାନି ମୋକଦ୍ଦମା କିପରି ପ୍ରତ୍ୟାହୃତ କିପରି ହେବ ସେ ବିଷୟ କଥାବାର୍ତ୍ତା କରିବାଥିଲା ତାଙ୍କର ଉଦ୍ଦେଶ୍ୟ । ତେଣୁ ପ୍ରତିନିଧି ବିରୋଧି ଦଳ ଆସିବା ସମୟରେ ମୁଁ ସରକାରୀ ଅତିଥିଭବନକୁ ଯାଇଥିଲି । ଏଥର ସେମାନଙ୍କୁ ଭେଟିବାପାଇଁ ମୁଁ ଯିବାର ଦେଖି ଜାନକୀବାବୁ ଚକିତହୋଇଥିଲେ । ସନ୍ଦେହ ମଧ କରିଥିଲେ । ମୁଁ ଅହମ୍ମଦ ପଟେଲଙ୍କୁ ଭେଟିଥିଲି । ଶ୍ରୀ ବଳରାମ ଝାକର ସେଠାରେ ଥିଲେ । ନେତୃତ୍ୱ ପରିବର୍ତ୍ତନ ସମ୍ବନ୍ଧରେ ମୁଁ କିଛି ମତାମତ ଦେବିନାହିଁ ବୋଲି ସେମାନଙ୍କୁ କହିଦେଇଥିଲି । Illustrated Weekly ବିଷୟ ଶ୍ରୀ ଅହମ୍ମଦ ପଟେଲଙ୍କ ସହିତ କଥାବାର୍ତ୍ତା କରି ମୁଁ ଚାଲିଆସିଥିଲି । ଜାନକୀବାବୁ ମୋତେ କଣ କଥାବାର୍ତ୍ତା ହେଲା ବୋଲି ଚୁପ୍‌କରି ପଚାରିଥିଲେ । ଅହମ୍ମଦ ପଟେଲଙ୍କ ସହିତ ମୋର କଥାବାର୍ତ୍ତା ପ୍ରସଙ୍ଗ ଜଣାଇଦେଇଥିଲି । ମାତ୍ର ତାଙ୍କ ଭାବଭଙ୍ଗୀରୁ ମୋତେ ଜଣାଗଲା ସତେ ଯେପରି ମୋ କଥାଟାକୁ ସେ ପୂରାପୂରି ବିଶ୍ୱାସକରିନଥିଲେ । ସେ ବିଶ୍ୱାସ କରନ୍ତୁ ବା ନ କରନ୍ତୁ ମୁଁ କିନ୍ତୁ ଦିଲ୍ଲୀରୁ ଆସୁଥିବା ପ୍ରତିନିଧି ଦଳମାନଙ୍କ ଆଗରେ ନେତୃତ୍ୱ ପରିବର୍ତ୍ତନ ବିଷୟରେ କେବେ କିଛି କହିନଥିଲି ।

ପ୍ରଦେଶ କଂଗ୍ରେସ କମିଟି ସଭାପତି ପଦ ଓ ବିଧାନସଭା ନେତୃତ୍ୱରେ ପରିବର୍ତ୍ତନ ଆଣିବା ଦାବୀ ଓ ପ୍ରତିଶ୍ରୁତି ପ୍ରସଙ୍ଗ ଓଡ଼ିଶାରେ ଗୋଟିଏ ବଡ଼ ପ୍ରହସନରେ ପରିଣତ ହୋଇଥିଲା । କଳେ-ବଳେ-କୌଶଳେ ସାଧାରଣ ନିର୍ବାଚନ ପର୍ଯ୍ୟନ୍ତ ସଭାପତି ପଦଟିକୁ ମାଡ଼ିବସି ରଖିବାପାଇଁ ଜାନକୀବାବୁ ପ୍ରାଣମୂର୍ଚ୍ଛା ଉଦ୍ୟମ କରୁଥିଲେ । ଏ ପଦବୀଟି ଉପରେ ଜାନକୀବାବୁଙ୍କର ସର୍ବଦା ଲୋଲୁପ ଦୃଷ୍ଟି ଥାଏ । ଆଉ କେବେ କେହି ସେ ଦିଗରେ ଆଗ୍ରହୀ ହେଲେ କୌତୂହଳର ବିଷୟ ଏହି ଯେ, ଏ ବିଷୟରେ ତାନ୍ତ୍ରିକ ଚନ୍ଦ୍ରସ୍ୱାମୀଙ୍କ ଜରିଆରେ କଂଗ୍ରେସ ସଭାପତି ଶ୍ରୀ ନରସିଂହ ରାଓଙ୍କ

ପୂର୍ଣ୍ଣସମର୍ଥନ ଜାନକୀବାବୁ ଯୋଗାଡ଼ କରିପାରୁଥିବାର ଅପବାଦ ଅବଶେଷରେ ରାଓଙ୍କୁ ସହିବାକୁ ପଡ଼ିଥିଲା । କାରଣ ନିଖିଳ ଭାରତ କଂଗ୍ରେସ କମିଟି ପକ୍ଷରୁ ବାରମ୍ବାର ଘୋଷଣା ପ୍ରକାଶ ପାଉଥାଏ ଯେ, ଆଗାମୀ ସାଧାରଣ ନିର୍ବାଚନରେ ଯେଉଁମାନେ ମୁଖ୍ୟମନ୍ତ୍ରୀ ପଦପାଇଁ ଆଶାୟୀ, ସେମାନେ ପ୍ରଦେଶ କଂଗ୍ରେସ କମିଟି ସଭାପତି ହୋଇ ରହିପାରିବେ ନାହିଁ । ଏହି ସିଦ୍ଧାନ୍ତ ଅନୁସାରେ କେତେକ ରାଜ୍ୟର କଂଗ୍ରେସ ସଭାପତି ଇସ୍ତଫା ଦେଇଥିଲେ । ମାତ୍ର ଜାନକୀ ପଟ୍ଟନାୟକ ଛାଡ଼ିବାର ଲୋକ ନୁହଁନ୍ତି । ପ୍ରଦେଶ କଂଗ୍ରେସ କମିଟି ସଭାପତି ରହିଲେ । ମୁଖ୍ୟମନ୍ତ୍ରୀ ମଧ୍ୟ ହେଲେ । ସେ 'ନେଇ ଆଣି ଥୋଇ ଜାଣିଲେ ଚୋରି ବିଦ୍ୟା ଭଲ' ପ୍ରବାଦ ଅନୁସାରେ ପଣସ ଖାଇଲେ କିନ୍ତୁ ନରସିଂହ ରାଓଙ୍କ ମୁଣ୍ଡରେ ଅଠା ବୋଳାହେବା ସାରହେଲା ।

ମୁଁ କଂଗ୍ରେସରେ ଯୋଗ ଦେବା ଘଟଣାକୁ ଜାନକୀବାବୁ ହୃଦୟରେ ସହିପାରୁନଥିଲେ । ମୁଁ ବିଭିନ୍ନ ଅଞ୍ଚଳକୁ ଯାଇ କଂଗ୍ରେସ ସଭାସମିତିରେ ଯୋଗଦେବାଟାକୁ ସେ ନଚାହିଁଲା ଭଳି ମୋର ମନେ-ହେଉଥାଏ । କୌଶଳରେ ବଡ଼ ବଡ଼ କଂଗ୍ରେସ ସଭାମାନଙ୍କରେ ମୁଁ ଯୋଗ ଦେଇନପାରିବା ଭଳି ପରିସ୍ଥିତି ଉପୁଜାଇ ପାରି ସେ ଖୁସିହେଉଥିଲେ । ବାଲେଶ୍ୱର ଜିଲ୍ଲା ଯୁବ କଂଗ୍ରେସ ପକ୍ଷରୁ ଗୋଟିଏ ବଡ଼ଧରଣର ସମ୍ମିଳନୀ ହୋଇଥିଲା । ମୁଁ ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ଲୋକ । ମୁଁ ସେ ସଭାରେ ଯୋଗଦେବି ବୋଲି ସମସ୍ତେ ଆଶାରଖିଥିଲେ । କିନ୍ତୁ ମୁଁ କାହିଁକି ସେଠାକୁ ନଗଲି ବୋଲି ପରେ ଜାଣି ସେମାନେ ଦୁଃଖିତ ହେଲେ । ୧୯୯୪ ନଭେମ୍ବର ମାସରେ ସମ୍ବଲପୁରରେ ଆଉ ଗୋଟିଏ ବଡ଼ କଂଗ୍ରେସ ସଭା ଅନୁଷ୍ଠିତ ହୋଇଥିଲା । ନିଖିଳ ଭାରତ କଂଗ୍ରେସ କମିଟିର ସାଧାରଣ ସଂପାଦକ ଭୁବନେଶ୍ୱରରୁ ଗୋଟେ ଛୋଟ ଉଡ଼ାଜାହାଜରେ ସମ୍ବଲପୁର ଗଲେ । ସେହି ଉଡ଼ାଜାହାଜରେ ଜାନକୀ ପଟ୍ଟନାୟକ ଓ ମୁଁ ଯିବାର କଥା ବୋଲି ମୋତେ ଖବରଦିଆଯାଇଥିଲା । ତା'ପରେ ମୋତେ ଖବର ଦିଆଗଲା ଯେ ସେହି ଉଡ଼ାଜାହାଜରେ ମୁଁ ଯିବା ସମ୍ଭବ ହୋଇପାରୁ ନଥିବାରୁ ଜାନକୀବାବୁ ଦୁଃଖିତ । ପରେ ଜଣାଗଲା ଯେ, ତାନ୍ତ୍ରିକ ଚନ୍ଦ୍ରସ୍ୱାମୀ ସେହି ଉଡ଼ାଜାହାଜଟି ପଠାଇଥିଲେ । ମୋ ସ୍ଥାନରେ ଚନ୍ଦ୍ର-ସ୍ୱାମୀଙ୍କର ଜଣେଭକ୍ତ ଶ୍ରୀ ପିନାକୀ ମିଶ୍ର ସେଥିରେ ଯାଇଥିଲେ ବୋଲି ପରବର୍ତ୍ତୀ ସମ୍ବାଦରୁ ଜଣାଗଲା ।

ଭଞ୍ଜନଗରଠାରେ ଗୋଟିଏ କଂଗ୍ରେସ ସଭାରେ ଯୋଗଦେବାପାଇଁ ପୂର୍ବତନ ବାଚସ୍ପତି ଶ୍ରୀ ସୋମନାଥ ରଥ ମୋତେ ଅନୁରୋଧ କରିଥିଲେ । ଗଙ୍ଗାଧର ମହାପାତ୍ରଙ୍କୁ ସାଙ୍ଗରେ ଧରି ମୁଁ ସେ ସଭାରେ ଯୋଗଦେଇଥିଲି । ଏହା ବଡ଼ଧରଣର ସଭା ହୋଇଥିଲା । ଗଞ୍ଜାମ ଜିଲ୍ଲାର ବହୁଆଡ଼ୁ ବିଶିଷ୍ଟ କର୍ମୀସଭାରେ ଯୋଗଦେଇଥିଲେ । ସଭାପରେ ସେମାନେ ଏକତ୍ରିତ ହୋଇ ମୋତେ କହିଲେ ଯେ ଗଞ୍ଜାମ ଜିଲ୍ଲାର ବିଭିନ୍ନ ସଭାସମିତିରେ ଯୋଗଦେଇ ମୁଁ ଯେପରି ଭାବରେ ବୁଝାଇ କହୁଛି ସେହିପରି କଲେ କଂଗ୍ରେସର ଲୋକପ୍ରିୟତା ନିଶ୍ଚିତ ଭାବରେ ବୃଦ୍ଧିପାଇବ । ମୁଁ ସମ୍ମତ ହେବାରୁ ସଙ୍ଗେ ସଙ୍ଗେ କୋଦଳା, ସୋରଡ଼ା ଅଞ୍ଚଳରେ ମୋର ଆଉ ଦୁଇଟି ସଭାପାଇଁ ଦିନଧାର୍ଯ୍ୟ କରାଗଲା । ମୁଁ ଭୁବନେଶ୍ୱର ଫେରିଆସିଲି । ଖବର ପାଇଲି ଏ ଦୁଇଟି ସ୍ଥାନରେ ଖୁବ୍ ବଡ଼ଧରଣର ସଭାହେବ ବୋଲି ଆୟୋଜନ ଚାଲିଛି । ଗଙ୍ଗାଧର ମହାପାତ୍ରଙ୍କୁ ସାଙ୍ଗରେ ଧରି ସେଠାକୁ ଯିବାପାଇଁ ମୋର କାର୍ଯ୍ୟକ୍ରମ ସ୍ଥିରହୋଇଯାଇଥିଲା । ଆଶ୍ଚର୍ଯ୍ୟର କଥା ଠିକ୍ ଦିନକ ପୂର୍ବରୁ ଆମକୁ ଖବର ଦିଆଗଲା, ଅନିବାର୍ଯ୍ୟ କାରଣ ହେତୁ ସଭା ବନ୍ଦ କରାଯାଇଛି । ବହୁ ଉତ୍ସାହ ସହିତ ସଭା ଆୟୋଜନ କରାଯାଇଥିଲା, ହଠାତ୍ ବନ୍ଦ ହେବା କଥାଟା ସ୍ୱାଭାବିକ ସନ୍ଦେହ ସୃଷ୍ଟି କଲା । ମୁଁ ଶ୍ରୀ ବସନ୍ତ କୁମାର ବିଶ୍ୱାଳଙ୍କୁ ଏକଥା କହିଥିଲି । ସେ ମୋତେ କହିଥିଲେ ଯେ, ଏହା ଜାନକୀବାବୁଙ୍କ କାର୍ଯ୍ୟ । ସେ ଲୋକ ଡକାଇ ପରାମର୍ଶ ଦେଇଥିବେ ଯେ ଆପଣଙ୍କୁ ନେଇ ସେଭଳି ସଭା ସମିତି ନକରାନ୍ତୁ । ଆପଣଙ୍କର ଲୋକପ୍ରିୟତା ବୃଦ୍ଧିପାଇବା ସେ ଚାହାଁନ୍ତି ନାହିଁ ।

ପ୍ରଦେଶ କଂଗ୍ରେସ କମିଟି ସଭାପତି ପଦଟି ପାଇବାପାଇଁ ବ୍ୟାକୁଳତା ଓ ପାଇବା ପରେ ସେହି

ପଦବୀଟିକୁ ଦାନ୍ତକାମୁଡ଼ି ଅକ୍ତିଆର କରି ରଖିବାର ଲୋଭ କଂଗ୍ରେସ ଇତିହାସରେ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଭଳି ଆଉ କାହାରିଠାରେ ଦେଖିବାର ଅଭିଜ୍ଞତା ମୋର ନାହିଁ। ପୂର୍ବରୁ ପ୍ରଦେଶ କଂଗ୍ରେସ କମିଟି ସଭାପତି ପଦପାଇଁ ନିର୍ବାଚନ ହେଉଥିଲା । ମାତ୍ର ୧୯୭୦ଠାରୁ ସେଥିପାଇଁ ଆଉ ନିର୍ବାଚନ ହେଉନାହିଁ। ଓଡ଼ିଶାରେ ୧୯୬୭ ଠାରୁ ୧୯୭୦ ପର୍ଯ୍ୟନ୍ତ ମୁଁ ଥିଲି ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ନିର୍ବାଚିତ ସଭାପତି । ମୋ ପରେ ଯେତେ ସଭାପତି ହୋଇଛନ୍ତି, ସେମାନେ ସମସ୍ତେ ପ୍ରାୟ ନିଯୁକ୍ତିପ୍ରାପ୍ତ, ନିର୍ବାଚିତ ନୁହଁନ୍ତି । ତେଣୁ କଳେ-ବଳେ-କୌଶଳେ କିମ୍ବା ଖୋସାମତ କରି ସଭାପତି ପଦଟି କରାୟତ୍ତ କରିବା ସମ୍ଭବ ହେଉଛି । ସେତେବେଳେ ରାଜ୍ୟ କଂଗ୍ରେସ ସଭାପତି ଦାୟିତ୍ୱ ତୁଲାଇବାପାଇଁ ବହୁ ପରିଶ୍ରମ ଓ ତ୍ୟାଗ ଆବଶ୍ୟକ ହେଉଥିଲା । ସମସ୍ତଙ୍କ ସହଯୋଗରେ ନିଜର ସମସ୍ତ ସମୟ ଓ ଶକ୍ତି ଖଟାଇ କଂଗ୍ରେସକୁ ସଂଗଠିତ କରିବା ଏକ ବ୍ରତ ସଦୃଶ ଥିଲା । ବର୍ତ୍ତମାନ ପ୍ରଦେଶ କଂଗ୍ରେସ ସଭାପତି ପଦଟି 'ତ୍ୟାଗ' ପରିବର୍ତ୍ତେ 'କ୍ଷମତା ପ୍ରୟୋଗ' ଓ 'ଆୟର ମାଧ୍ୟମ' ହୋଇଛି । ଯେଉଁଠି ରାଜ୍ୟ କଂଗ୍ରେସ କମିଟି ସଭାପତି ଓ ମୁଖ୍ୟମନ୍ତ୍ରୀ ଦୁଇଟିଯାକ ପଦ ଜଣେ ମାଡ଼ିବସିଛନ୍ତି । ସେଠାରେ ଏକାବେଳେକେ 'କଚେ ପୁଅ ବାଆର' ସୁଯୋଗ ଜୁଟିଯାଉଛି । ସରକାରଙ୍କଦ୍ୱାରା, କରାଯାଉଥିବା ବିଭିନ୍ନ କାର୍ଯ୍ୟ ଉପରୁ କମିଶନ ଉଠାଇବାକୁ ଆମ ପ୍ରଦେଶ କଂଗ୍ରେସ କମିଟି ସଭାପତି ଜାନକୀବାବୁ ଏକ ନୀତିନିଷ୍ଠ ପନ୍ଥା ବୋଲି ବିବେଚନା କରିବାର ଜଣାଯାଏ । ଯେତେବେଳେ ବୋଫର୍ସ କମ୍ପାନୀଠାରୁ ତୋପ କମାଣ କିଣା କାରବାରରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ କୋଟି କୋଟି ଟଙ୍କା କମିଶନି ଅସୁଲ କରିବାର ଅଭିଯୋଗ ହେଲା ସେତେବେଳେ ଜାନକୀବାବୁଙ୍କ ସଫେଇ କଥା ମୋର ମନେପଡୁଛି । ରାଜୀବ ଗାନ୍ଧୀଙ୍କ ବିରୋଧରେ ଏ ଅଭିଯୋଗକୁ ଅସତ୍ୟ ବୋଲି କହି ଖଣ୍ଡନ କରିବା ପରିବର୍ତ୍ତେ ରାଜନୈତିକ ଆବଶ୍ୟକତା ମେଣ୍ଟାଇବାପାଇଁ କମିଶନି ଗ୍ରହଣ କରିବା ଦୋଷାବହ ନୁହେଁ ବୋଲି ସେ ଯୁକ୍ତି ବାଢ଼ିଥିଲେ । ସେହି ନ୍ୟାୟରେ ରାଜ୍ୟ କଂଗ୍ରେସ ସଭାପତି ମଧ ଥରେ ନିଯୁକ୍ତିପାଇ ସଭାପତି ହୋଇଗଲେ । ରାଜନୈତିକ ଗୁଳୁରାଣ ମେଣ୍ଟାଇବାପାଇଁ ଲାଞ୍ଚ ସଂଗ୍ରହ କରିବା ଓ ନିଜ ନିଯୁକ୍ତି ମିଆଦ ବୃଦ୍ଧି କରିବା ନିମନ୍ତେ ଲାଞ୍ଚଦେବା ଦୋଷାବହ ହେବ କାହିଁକି ? ଶ୍ରୀ ନରସିଂହ ରାଓଙ୍କ ଭଳି କଂଗ୍ରେସ ଅଧ୍ୟକ୍ଷ ଓ ଚନ୍ଦ୍ର ସ୍ୱାମୀଙ୍କ ଭଳି ସରକାରୀ ସାଧୁଙ୍କୁ ହାତକରିପାରିଲେ ଅସାଧ ସାଧନ କରିହେବ । ଆମ ରାଜ୍ୟ ପ୍ରଦେଶ କଂଗ୍ରେସ ସଭାପତି ଓ ମୁଖ୍ୟମନ୍ତ୍ରୀ ନିଯୁକ୍ତି ବ୍ୟାପାର ଅନ୍ତରାଳରେ ଜାଣିବା ଶୁଣିବା ବ୍ୟକ୍ତିମାନଙ୍କର ଏହି ଅସ୍ୱସ୍ତିକର ଅଭିଜ୍ଞତା । ତଥାପି ସେହି ଆସନ ପାଇବାପାଇଁ କାଳେ ଅନ୍ୟ କେହି ଯୋଗ୍ୟ ବିବେଚିତ ହୋଇଯିବେ ସେଭଳି ବ୍ୟକ୍ତି କଂଗ୍ରେସରେ ନ ରୁହନ୍ତୁ ଓ କଂଗ୍ରେସକୁ ନ ଆସନ୍ତୁ ଏହା ସେହି ପ୍ରଲୁବ୍ଧ ସଭାପତିଙ୍କର କୁତ୍ସିତ ରଣନୀତି ହେବା ସ୍ୱାଭାବିକ। ମୁଁ କଂଗ୍ରେସକୁ ଫେରି ଆସିବା ପରେ ମୋ ପ୍ରତି ପ୍ରଦେଶ କଂଗ୍ରେସ ସଭାପତି ଯେଉଁ ଆଚରଣ ପ୍ରଦର୍ଶନ କରିଥିଲେ ତାହା ଆଗରୁ ବର୍ଣ୍ଣନା କରାଯାଇଛି । 'ସ୍ୱଭାବ ଛାଡ଼ିବି କେମନ୍ତେ' ଭାଗବତ ବାଣୀର ନୀତିବାକ୍ୟ ଅନୁସାରେ ବୁଝିବାକୁ ହେବ । ନାନା ପ୍ରବଞ୍ଚନାମୂଳକ ସୂତ୍ରରେ କଂଗ୍ରେସ ସଭାପତି ପଦକୁ ପୈତୃକ ସମ୍ପତ୍ତି ଭଳି ଭୋଗଦଖଲ କରି ରଖିବା ମଧ ସେହିଭଳି ପ୍ରଲୁବ୍ଧ ରାଜନୈତିକ ଆବଶ୍ୟକତା ବୋଲି ନିର୍ଲ୍ଲଜ୍ଜ ଯୁକ୍ତିଦ୍ୱାରା ସାବ୍ୟସ୍ତ କରାଯାଉଛି ।

## କଂଗ୍ରେସ ସଭାପତିଙ୍କର ବିଚିତ୍ର ଧର୍ମନିରପେକ୍ଷ ଆଚରଣ

ନିଜର ପ୍ରବଞ୍ଚନା ଓ ଛଳନାର ପଶାପାଲି ମେଲାଇ, ନିଜ ଦଳକୁ ଓ ନିଜକୁ ଧର୍ମନିରପେକ୍ଷ ଓ ସାମ୍ପ୍ରଦାୟିକ ବିରୋଧୀ କହି, ନାନା ଗୁଣିଗାରେଡ଼ି ଓ ମନ୍ତ୍ରତନ୍ତ୍ରର ଆଶ୍ରୟ ନେଇ ଏବଂ ଏକ ଅଭିନବ ଉପାୟରେ ରଥଯାତ୍ରା ଆରମ୍ଭକରି ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଓଡ଼ିଶା ସାରା ବୁଲିଲେ ।

ବି.ଜେ.ପି. ସଭାପତି ଲାଲ୍‌କୃଷ୍ଣ ଆଡ୍‌ଭାନୀ ଦଳର ଭାବମୂର୍ତ୍ତି ବଢ଼ାଇବାପାଇଁ ଦେଶସାରା ଗୋଟିଏ ରଥରେ ସେହିପରି ବୁଲୁଥିଲେ । ଏହାକୁ ସାମ୍ପ୍ରଦାୟିକ ଆଖ୍ୟାଦେଇ ଉତ୍ତର ପ୍ରଦେଶରେ ଏହାକୁ ଅଟକାଯାଇଥିଲା । ଏହି ପରିପ୍ରେକ୍ଷୀରେ ଓଡ଼ିଶା କଂଗ୍ରେସ ସଭାପତି ଜାନକୀବାବୁଙ୍କ ରଥଯାତ୍ରା ଜଗନ୍ନାଥ ଧାମ ପୁରୀରୁ ଆରମ୍ଭକରି ଓଡ଼ିଶା ଭ୍ରମଣ କରିବା ଓ ଜଗନ୍ନାଥ ମୂର୍ତ୍ତିକୁ କଂଗ୍ରେସ ସଭାପତିଙ୍କ ଅଫିସରେ ଲୋକଦେଖାଣିଆ ଭାବେ ସ୍ଥାପନକରି ପୂଜା କରିବା କ'ଣ ସାମ୍ପ୍ରଦାୟିକ ମନୋଭାବ ନୁହେଁ କି ? ଏସବୁ ସଂପର୍କରେ କେତେଜଣ ନିଷ୍ଠାପର କଂଗ୍ରେସକର୍ମୀ ବିଶେଷତଃ ସଂଖ୍ୟାଲଘୁ ସଂପ୍ରଦାୟର କର୍ମୀଙ୍କ ମନକଥା ମୁଁ ଜାଣିଥିଲି ଏବଂ ସେଥିପ୍ରତି କଂଗ୍ରେସ ସାଧାରଣ ସଂପାଦକ ଶ୍ରୀ ଅହମ୍ମଦ ପଟେଲଙ୍କ ଦୃଷ୍ଟି ଆକର୍ଷଣ କରିଥିଲି । ସେ ଏକଥା ଶୁଣି ବିସ୍ମୟ ପ୍ରକାଶ କଲେ ଓ ପ୍ରତିକାର କରିବେ ବୋଲି କହିଥିଲେ, ମାତ୍ର କିଛି କରାଗଲା ନାହିଁ । କଂଗ୍ରେସରେ ଆଉ ନିଷ୍ଠାପରତା ଥିବା ଭଳି ଜଣାଯାଉନାହିଁ । ଅନୀତି, ଭ୍ରଷ୍ଟାଚାର, ବର୍ବରତା ଓ ଅପରାଧୀକରଣ ହୁଏତ କଂଗ୍ରେସକୁ ଏତେଦୂର ଗ୍ରାସ କରିସାରିଛି ଯେ, ସେଥିରୁ ଆଉ ଉଦ୍ଧାର ପାଇବାକୁ ଉଦ୍ୟମ କରିବା ପରିବର୍ତ୍ତେ ସେହି ସର୍ବଗ୍ରାସୀ, ସର୍ବନାଶୀ ପଦ୍ଧତିରେ ନିଜକୁ ପରିପୁଷ୍ଟ କରିବା କଂଗ୍ରେସର ଯୁଗ ଧର୍ମ ପରି ଗ୍ରହଣୀୟ ହେଉଛି ।

ଜଘନ୍ୟ ବ୍ୟାଙ୍କ ଦୁର୍ନୀତିରେ ଲିପ୍ତ ବୟେର କୁଖ୍ୟାତ ଷ୍ଟକ୍ ବ୍ରୋକର ହର୍ଷଦ ମେହେଟ୍ଟାଠାରୁ ପ୍ରଧାନମନ୍ତ୍ରୀ ନରସିଂହ ରାଓ ଏକକୋଟି ଟଙ୍କା ଲାଞ୍ଚ ନେବାର ଅଭିଯୋଗ ପ୍ରକାଶପାଇଲା । ସମ୍ବାଦଟି ସାରା ଭାରତରେ ପ୍ରବଳ ଚାଞ୍ଚଲ୍ୟ ସୃଷ୍ଟିକରିଥିଲା । ସମ୍ବାଦଟିକୁ ମିଥ୍ୟାବୋଲି ତତ୍‌କ୍ଷଣାତ୍ ପ୍ରତିକ୍ରିୟା ପ୍ରକାଶକରି ଖଣ୍ଡନ କରିବା ଦୂରେଥାଉ ଶ୍ରୀ ନରସିଂହ ରାଓ ମୁହଁରେ ପାନବିଣ୍ଡା ଦେଲାପରି ଦଶଦିନ ପର୍ଯ୍ୟନ୍ତ କିଂକର୍ତ୍ତବ୍ୟବିମୂଢ଼ ହୋଇ ରହିଲେ । ଅବଶ୍ୟ ଜାନକୀବାବୁ ଅଭିଯୋଗକୁ ଖଣ୍ଡନକରି ବିବୃତି ଦେଇଥିଲେ । ସେହିଭଳି ବିବୃତି ଦେବାପାଇଁ ଗଙ୍ଗାଧର ମହାପାତ୍ରଙ୍କଦ୍ୱାରା ମୋତେ ପ୍ରବର୍ତ୍ତାଇଥିଲେ । ନିଜେ ଶ୍ରୀ ରାଓ ଯେତେବେଳେ ଚୁପ୍ ରହୁଛନ୍ତି ସେ ପ୍ରକାର ସଫେଇ ବିବୃତି ମୁଁ ଦେଇପାରିବିନାହିଁ ବୋଲି ମନାକରିଦେଇଥିଲି । ଏଭଳି ସାଙ୍ଘାତିକ ଅଭିଯୋଗ ଜାଣିବା ପରେ ମଧ୍ୟ ସ୍ୱାଭାବିକ କ୍ରୋଧ ଓ ବିରକ୍ତି ପ୍ରକାଶ କରିବା ପରିବର୍ତ୍ତେ ଶ୍ରୀ ରାଓଙ୍କ ନୀରବତା ଓ ସହନଶୀଳତା ଦେଶବାସୀଙ୍କୁ ଚକିତକରିଥିଲା । ଦେଶର ପ୍ରଧାନମନ୍ତ୍ରୀ ଚୋରପଟିଆ ହୋଇଥିବା ପରି ପ୍ରତୀତ ହେଲେ, ତେଣୁ ହର୍ଷଦ ମେହେଟ୍ଟାଙ୍କ ଅଭିଯୋଗ ଅସତ୍ୟ ହୋଇଥିବ ବୋଲି ସାଧାରଣ ଲୋକେ ବିଶ୍ୱାସ କଲେନାହିଁ । ଏପ୍ରକାର ନେତୃତ୍ୱର ଆଶୀର୍ବାଦରେ ଚାଲୁଥିବା ମନ୍ତ୍ରୀ ଓ ଦଳୀୟ କର୍ମୀମାନେ ଏପରିକି ପାଖଲୋକ-ଭାବେ ପରିଚିତ ସରକାରୀ କର୍ମଚାରୀମାନେ ଦେଶର ସ୍ୱାର୍ଥ ଅପେକ୍ଷା ହରିଲୁଟ୍ କରିବା ପ୍ରତି ଅଧିକ ଆକୃଷ୍ଟ ହେବାର ଦେଖାଯାଉଛି । ନିଜର ସମ୍ବଳ ସଂଗ୍ରହ ପାଇଁ ସମର୍ଥ ଅଫିସର ବାଛି ବାଛି ଠିକଣା ସ୍ଥାନମାନଙ୍କରେ ବସେଇଦିଆଯାଉଛି । ପରିଣତିସ୍ୱରୂପ, ''ଖଜୁରୀ ଗଛର କି ଗୁଣ ଗାଇବି ମୂଳରୁ ପାହାଚ ପାହାଚ'' ଜନ ପ୍ରବାଦ ଭଳି ଏକ ଦୁର୍ନୀତିର ବନ୍ୟା ଉପରୁ ତଳ ପର୍ଯ୍ୟନ୍ତ ବୋହିଗଲାଣି । ଏହାର କୁଫଳ ସ୍ୱରୂପ ଉନ୍ନୟନ କାର୍ଯ୍ୟ ବାଧାପ୍ରାପ୍ତ ହେଉଛି । ସାଧାରଣ ଲୋକେ ବାଞ୍ଛିତ ଉପକାରରୁ ବଞ୍ଚିତ ହେଉଥିବାସ୍ଥଳେ ରାଜନୈତିକ ନେତାମାନେ ଅଧିକରୁ ଅଧିକ ସମ୍ଭୋଗରେ ଚାଲୁଛନ୍ତି ବୋଲି ତୀବ୍ର ପ୍ରତିକ୍ରିୟା ସୃଷ୍ଟିହେଉଛି । ତେଣୁ ଦେଶରେ ଗଣତାନ୍ତ୍ରିକ ଶାସନର ଅନୁକୂଳ ଶାନ୍ତ ବାତାବରଣ କ୍ରମେ ଅବକ୍ଷୟପ୍ରାପ୍ତ ହେଉଥିବାରୁ ଅନେକ ଉଗ୍ରପନ୍ଥୀ ବା ନକ୍ସଲପନ୍ଥୀ ରାଜନୈତିକ କାର୍ଯ୍ୟ କଳାପର ଆଶ୍ରୟ ନେବା ଆଡ଼କୁ ଢଳୁଛନ୍ତି । ଏହାର ସୁଦୂରପ୍ରସାରୀ ପ୍ରଭାବ ଗଣତନ୍ତ୍ରର ଭବିଷ୍ୟତପାଇଁ ଏପରି ଭୟାବହ ହେବ ଯେ, ଆମର ଭବିଷ୍ୟତ ବଂଶଧରମାନଙ୍କ ବିଚାରରେ ଆମର କେତୋଟି ବିଗତ ପିଢ଼ି ଓ ବର୍ତ୍ତମାନ ପିଢ଼ିର ନେତା ଓ ସରକାରୀ କର୍ମକର୍ତ୍ତାମାନେ ସେମାନଙ୍କର ଅବିମୃଶ୍ୟକାରିତା ପାଇଁ ଘୃଣ୍ୟ ଦେଶଦ୍ରୋହୀରୂପେ ନିନ୍ଦିତ ହୋଇଯିବେ ।

# ସବୁରି ଅଗୋଚର ଦୁର୍ନୀତିର ଚେର

ଅତ୍ୟନ୍ତ ଉଦ୍‌ବେଗର କଥା ଯେ, ନିର୍ମୂଳୀଲତା ପରି ଦୁର୍ନୀତି କ୍ରମେ ମାଡ଼ି ମାଡ଼ି ସତେ ଯେମିତି ଆମ ଭାରତବର୍ଷର ଗଣତନ୍ତ୍ର କଳ୍ପବୃକ୍ଷକୁ ସଂପୂର୍ଣ୍ଣ ଆଚ୍ଛାଦିତ କରି ଅଣନିଶ୍ୱାସୀ ଦରମରା କରିଦେଲାଣି । କିନ୍ତୁ ରାଜନୈତିକ ଦୁର୍ନୀତିହିଁ ପ୍ରଶାସନିକ ଓ ସାମାଜିକ ଦୁର୍ନୀତିର ଅସଲ ଚେର । ଚେର ତଳେ ଅର୍ଥାତ୍ ଭୂମିରେ ଥାଇ ସେଥିରୁ ବୃକ୍ଷ ବା ଲତା ପଲ୍ଲବିତ ହୁଏ । ମାତ୍ର ରାଜନୈତିକ ଦୁର୍ନୀତିର ଚେର ଉପରିଭାଗରେ ଥାଇ ଶାଖା ପ୍ରଶାଖା ମେଲାଇଥାଏ । ନେତାମାନଙ୍କ ପୃଷ୍ଠ-ପୋଷକତାର ଆଢୁଆଳରେ ଥିବାରୁ ସେ ଚେରକୁ ସହଜରେ ଉପାଡ଼ି ହୁଏନି, ବରଂ ବରଦାସ୍ତ କରିବାକୁ ପଡ଼େ କିମ୍ବା ସାଲିସ କରି ସେଥିରୁ ଫାଇଦା ଉଠାଇବା ଲୋକଙ୍କ ଅଭାବ ହୁଏନାହିଁ । କେହିବା ଭୟରେ ବା କେହି ଫାଇଦା ଉଠାଇବା ଅଭିସନ୍ଧିରେ ଦୁର୍ନୀତିର ମୂଳକୁ ଦେଖି ବି ନଦେଖିଲା ପରି ବ୍ୟବହାର କରନ୍ତି । ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଥରେ ରାଜନୀତି ଓ ପ୍ରଶାସନ କ୍ଷେତ୍ରରେ ଦୁର୍ନୀତି ଅଭିଯୋଗକୁ ଏକ ଗୌଣ ବା ସାମାନ୍ୟ ବିଷୟରୂପେ ଏଡ଼ାଇଦେବା ଉଦ୍ଦେଶ୍ୟରେ କେବଳ ଭାରତବର୍ଷରେ ନୁହେଁ ସାରା ପୃଥିବୀରେ ଦୁର୍ନୀତି ଏକ ବିଲକ୍ଷଣ ବୋଲି କହି ଏହାର ନିରାକରଣ ଦାୟିତ୍ୱକୁ ଏଡ଼ାଇ ଦେଇଥିଲେ । କିନ୍ତୁ ଡ. ମହତାବ ଏହି ବାସ୍ତବ ସତ୍ୟ ଯେତେ ଅପ୍ରିୟ ହେଲେ ମଧ ତାହାକୁ ସ୍ୱୀକାର କରି ଥରେ କହିଥିଲେ ଯେ, ମାଛମାନେ ପାଣି ଭିତରେ ଥାଇ ବଢ଼ନ୍ତି । ତେଣୁ ମାଛ ପାଣି ପିଅନ୍ତି କି ନାହିଁ ଯେପରି ପ୍ରଶ୍ନ କରିବା ଅପ୍ରାସଙ୍ଗିକ, ରାଜନୀତି ଭିତରେ ଥିବା ଲୋକେ ଦୁର୍ନୀତି କରନ୍ତି କି ନାହିଁ ଖୋଳତାଡ଼ କରିବା ସେହିପରି ଏକ ବ୍ୟାପାର । ରାଜନୈତିକ ଦୁର୍ନୀତି ଦୂର କରିବା ଯେ ଏକ ଅପରିହାର୍ଯ୍ୟ ଏବଂ ସର୍ବପ୍ରଧାନ ଦାୟିତ୍ୱରୂପେ ବର୍ତ୍ତମାନ ଦେଶ ଆଗରେ ଠିଆହେଲାଣି ଏ ସଂପର୍କରେ ଭାରତର ମହାମାନ୍ୟ ସର୍ବୋଚ୍ଚ ନ୍ୟାୟାଳୟ ରାଜନୈତିକ ଦଳମାନଙ୍କୁ ପ୍ରକାଶ୍ୟରେ ସାବଧାନ କରାଇଦେବା ପରେ ମଧ ପ୍ରାୟ ପାଞ୍ଚ ବର୍ଷ ବିତିଗଲାଣି, ତଥାପି ଦୁର୍ନୀତି ଅଧିକ ବଢ଼ିଚାଲିଛି, ଉପରୁ ତଳକୁ ମାଡ଼ିଯାଉଛି, ରାଜନୈତିକ ନେତାମାନେ ଓଟପକ୍ଷୀ ପରି ମୁହଁକୁ ଲୁଚେଇ ଲୁଚେଇ ନିଜ ନିଜର ପ୍ରତ୍ୟକ୍ଷ ଓ ପରୋକ୍ଷ ଦୁର୍ନୀତିପୂର୍ଣ୍ଣ ଆଚରଣକୁ ଘୋଡ଼ାଇ ଘୋଡ଼ାଇ କୌଣସିମତେ ନିଜ ଅମଳଟା ପାରିହୋଇଯିବାର ମନ୍ଦ ପ୍ରୟାସରେ ଲାଗିଛନ୍ତି । ଏହା ଫଳରେ ଭୟଙ୍କର ଆତ୍ମଘାତି ଅବସ୍ଥା ଉପୁଜିସାରିଲାଣି ।

ଏହି ପରିପ୍ରେକ୍ଷୀରେ ସ୍ମରଣ କରିବାର କଥା ଯେ, ୧୯୯୭ ଅଗଷ୍ଟ ମାସରେ ଦେଶର ସ୍ୱାଧୀନତାର ସୁବର୍ଣ୍ଣଜୟନ୍ତୀର ସ୍ମୃତିରକ୍ଷା ଉପଲକ୍ଷେ ଆମ ପାର୍ଲାମେଣ୍ଟରେ ଯେଉଁ ସ୍ୱତନ୍ତ୍ର ଅଧିବେଶନ ବସିଥିଲା ସେଥିରେ ରାଜନୀତିଜ୍ଞ ଏବଂ ଅପରାଧୀମାନଙ୍କ ମଧରେ ଅସାଧୁ ମେଣ୍ଟ ଓ ଦେଶରେ ଅପରାଧୀକରଣ ରାଜନୀତି ସମ୍ବନ୍ଧରେ ଦଳ ମତ ନିର୍ବିଶେଷରେ ସମସ୍ତେ ଉଦ୍‌ବେଗ ପ୍ରକାଶ-କରିଥିଲେ । ରାଷ୍ଟ୍ରପତି ଶ୍ରୀ କେ. ଆର. ନାରାୟଣନ୍ ଓ ପ୍ରଧାନମନ୍ତ୍ରୀ ଶ୍ରୀ ଇନ୍ଦ୍ର କୁମାର ଗୁଜୁରାଲ୍ ରାଜନୀତିର ଅପରାଧୀକରଣ ପ୍ରକ୍ରିୟାକୁ ରୋକିବାପାଇଁ ଦେଶବାସୀଙ୍କୁ ଆହ୍ୱାନ ଦେଇଥିଲେ । ପୂର୍ବତନ ରାଷ୍ଟ୍ରପତି ଶ୍ରୀ ଶଙ୍କର ଦୟାଳ ଶର୍ମା ରାଜନୀତିରେ ଅପରାଧୀକରଣ ପ୍ରକ୍ରିୟା କିପରି ଗଣତନ୍ତ୍ରକୁ ବିପନ୍ନ କରୁଛି ସେ ବିଷୟରେ ତାଙ୍କର ଏକ ସ୍ୱାଧୀନତା ଦିବସ ପ୍ରାକ୍ ସନ୍ଧ୍ୟାର ଉଦ୍‌ବୋଧନରେ ଦେଶବାସୀଙ୍କୁ ସତର୍କ କରାଇଥିଲେ । ସଂସଦୀୟ ଗଣତନ୍ତ୍ରରେ ଲୋକପ୍ରତିନିଧି ବାଛିବାହିଁ ହେଉଛି ପ୍ରଥମ ଓ ପ୍ରଧାନ ସୋପାନ । ନିର୍ବାଚନ ମାଧମରେ ଏହା କରାଯାଇଥାଏ । ଆମର ନିର୍ବାଚନ ଯେଉଁ ପ୍ରଣାଳୀରେ କରାଯାଉଛି ତାହା ଅତ୍ୟନ୍ତ ବ୍ୟୟବହୁଳ ହୋଇଯାଇଥିବାରୁ ଆବଶ୍ୟକ ଅତ୍ୟଧିକ ଅର୍ଥବଳ ଓ ବାହୁବଳର ଆୟୋଜନପାଇଁ ରାଜନୈତିକ ନେତାମାନେ ଅପରାଧୀମାନଙ୍କ ସାହାଯ୍ୟ ଓ ଅପରାଧୀକରଣ ପ୍ରକ୍ରିୟାରେ ପରସ୍ପର ସହିତ ପ୍ରତିଯୋଗିତାରେ ଲିପ୍ତ ରହୁଛନ୍ତି । ଏହି

ପ୍ରକ୍ରିୟାରେ ରାଜନୈତିକ ଦଳ ଓ ନେତାମାନେ ଅସାଧୁ ବ୍ୟକ୍ତି ଓ ଦୁର୍ନୀତିଗ୍ରସ୍ତ ବେପାରୀ ଓ ଅପରାଧୀମାନଙ୍କ ସାହାଯ୍ୟ ଉପରେ ନିର୍ଭରଶୀଳ ହେଉ ହେଉ କ୍ରମେ ସେହିମାନଙ୍କର ବନ୍ଧୁ ଓ ବଚସ୍କର ପାଲଟିଯାଉଛନ୍ତି । ଜଣାଶୁଣା ଅସାଧୁ ଓ ଅପରାଧୀମାନେ ତଦ୍ୱାରା ବିଭିନ୍ନ ରାଜନୈତିକ ଦଳରେ ନେତୃତ୍ୱକୁ ଅକ୍ତିଆର କରିପାରୁଛନ୍ତି । ନିର୍ବାଚନରେ ନିଜପାଇଁ ଟିକେଟ ଓ ନିର୍ବାଚନ ପରେ ମନ୍ତ୍ରୀପଦ ହାସଲ କରିପାରୁଛନ୍ତି । ସ୍ୱର୍ଣ୍ଣଜୟନ୍ତୀ ଉପଲକ୍ଷେ ଅନୁଷ୍ଠିତ ପାର୍ଲାମେଣ୍ଟରେ ସ୍ୱତନ୍ତ୍ର ଅଧିବେଶନର ସେହି ଉଚ୍ଚାଙ୍ଗ ଉଦ୍‌ବୋଧନଗୁଡ଼ିକ ତ ପେଡ଼ିରେ ବନ୍ଧାହେଲା ପରି ରହିଗଲା, ସରକାର କିମ୍ବା ରାଜନୈତିକ ଦଳମାନଙ୍କର ଆଚରଣରେ ତାହା କିଞ୍ଚିତ୍‌ମାତ୍ର ପ୍ରତିଫଳିତ ହେଲାନାହିଁ । ରାଜନୀତିରେ ଅପରାଧୀକରଣକୁ ରୋକିବା ସଂପର୍କରେ, ତା ପରବର୍ତ୍ତୀକାଳରେ ମଧ ଉଦ୍‌ବୋଧନର ସୀମାନାହିଁ, ମାତ୍ର କିଏ ଏଥିରେ ଉଦ୍‌ବୁଦ୍ଧ ଦେଉଛି ତାହାହିଁ ବିଚାର୍ଯ୍ୟ । ଦୃଷ୍ଟାନ୍ତସ୍ୱରୂପ, ଆମ ଦେଶରେ କଂଗ୍ରେସ ହେଉଛି ଗୋଟିଏ ପୁରାତନ ପ୍ରଭାବଶାଳୀ ରାଜନୈତିକ ଦଳ । ସେହି ଅନୁଷ୍ଠାନର ବହୁ ନେତୃସ୍ଥାନୀୟ ବ୍ୟକ୍ତି ଯଦି ଅପରାଧୀ ହୋଇଥା'ନ୍ତି ତା'ହେଲେ ଅପରାଧୀକରଣ ପ୍ରକ୍ରିୟାକୁ ଦଳ ଭିତରେ ବା ଶାସନକ୍ଷେତ୍ରରେ କେହି ରୋକିପାରିବେ ନାହିଁ ।

ଓଡ଼ିଶାର କଂଗ୍ରେସ ନେତା ଓ ମନ୍ତ୍ରୀମାନଙ୍କ ଗତିବିଧି ଲକ୍ଷ୍ୟକଲେ ସେ କଥା ସ୍ପଷ୍ଟ ଜଣାଯିବ । ଅପରାଧୀକରଣ ପ୍ରକ୍ରିୟାକୁ ପ୍ରତିରୋଧ କରିବାପାଇଁ ଓଡ଼ିଶାର ପ୍ରଦେଶ କଂଗ୍ରେସର ସଭାପତି ତଥା ବାରମ୍ବାର ମୁଖ୍ୟମନ୍ତ୍ରୀ ହୋଇଥିବା ଜାନକୀ ବଲ୍ଲଭ ପଟ୍ଟନାୟକଙ୍କର ବ୍ୟକ୍ତିତ୍ୱ ବା କର୍ତ୍ତବ୍ୟନିଷ୍ଠା ସମ୍ପର୍କରେ ସେ କେବେ ଜନସାଧାରଣଙ୍କର ବିଶ୍ୱାସ ଅର୍ଜନ କରିପାରିବେ କି ? ଦୁର୍ନୀତିମୂଳକ କାର୍ଯ୍ୟଦ୍ୱାରା ଧନସମ୍ପତ୍ତି ବୃଦ୍ଧି କଲାଭଳି ନାନା ଅର୍ଥନୈତିକ ଅପରାଧ ଛଡ଼ା ଅନ୍ୟ ବହୁପ୍ରକାର ଅପରାଧ ସହିତ ସେ କିପରି ଭାବରେ ଜଡ଼ିତ ତାହାର ଗୋଟିକ ପରେ ଗୋଟିଏ ଦୃଷ୍ଟାନ୍ତ ଲୋକମୁଖରେ ଓ ସମ୍ବାଦପତ୍ରରେ ଚର୍ଚ୍ଚିତ ହୋଇଚାଲିଛି । କେତେବର୍ଷ ତଳେ Illustrated Weeklyରେ ଯେଉଁଭଳି ଅପରାଧ ସହିତ ସେ ଜଡ଼ିତ ଥିଲେ ବୋଲି ପ୍ରକାଶ ପାଇଥିଲା, ତଦ୍ରୂପ ନୂତନ ନୂତନ ନାନା ଅପରାଧର ଦୃଷ୍ଟାନ୍ତ ତାଙ୍କ ବିରୁଦ୍ଧରେ ପ୍ରକାଶିତ ହୋଇଚାଲିଛି । ପ୍ରକାଶିତ ନୂତନ ନୂତନ ନାଟକୀୟ ଘଟଣାମାନଙ୍କର କେଉଁଠି ରଙ୍ଗଶାଳାର ସ୍ଥାନ ଅଲଗା ତ କେଉଁଠି ଅପରାଧର ପଦ୍ଧତି ଅଭିନବ । କେଉଁଠି ଧର୍ମବିହାରରେ ଘୋର ଅଧର୍ମ ଆଚରଣର ବର୍ଣ୍ଣନା ତ କେଉଁଠି ଅଞ୍ଜନାଙ୍କ ପ୍ରତି ଯୌନ ଗଞ୍ଜଣାର ଆଡ୍‌ଭୋକେଟ୍ ଜେନେରାଲଙ୍କ ସହ ସାଲିସ ।

ଅଞ୍ଜନା ମିଶ୍ରଙ୍କ ନିର୍ଯାତନା ଘଟଣାରେ ଜାନକୀବାବୁଙ୍କ ଅନ୍ତରଙ୍ଗ ବନ୍ଧୁ ଇନ୍ଦ୍ରଜିତ୍ ରାୟ ଜେଲ ଖଟିବେ କି ନାହିଁ ତାହା ବଡ଼ କଥା ନୁହେଁ, ବିଚରା ଅଞ୍ଜନାଙ୍କ ଗଣଧର୍ଷଣରେ ଅଭିଯୁକ୍ତ ବ୍ୟକ୍ତିମାନେ ଜାନକୀବାବୁଙ୍କ ପ୍ରରୋଚନାରେ ସେପରି ସାହସ କରିଥିବାର ଅଭିଯୋଗ ମଧ ଅସତ୍ୟ ସାବ୍ୟସ୍ତ ହୋଇପାରେ । ମାତ୍ର ମୁଖ୍ୟମନ୍ତ୍ରୀ ଆସନରେ ଥାଇ ଜାନକୀବାବୁ ଏପରି ଚରମ ଅପରାଧ ଓ ଅଭିଯୁକ୍ତ ଅପରାଧୀଙ୍କ ସଂପର୍କରେ ଯେପରି ଆପାତ ସହାନୁଭୂତି ଓ ସକ୍ରିୟ ସହଯୋଗ ପ୍ରକାଶକଲେ ତାହା ତାଙ୍କର ନିର୍ଲ୍ଲଜ ପୌରୁଷକୁ ସ୍ପର୍ଶନକଲେ ମଧ ଚାରିଆଡ଼େ ସାରା ଓଡ଼ିଶାରେ ଅପଖ୍ୟାତି ରଟାଇଦେଲା । ନିଜର ମାତୃଭୂମି ଓଡ଼ିଶାକୁ ଏଭଳି କାଳିମାମୟ କରିବା ପରେ ମଧ ସେହି ବ୍ୟକ୍ତି ଓଡ଼ିଶା ପ୍ରଦେଶ କଂଗ୍ରେସର ସ୍ୱୀକୃତିପ୍ରାପ୍ତ ନେତା । ତା'ହେଲେ ସର୍ବ ପୁରାତନ ଏକ ଐତିହାସିକ ରାଜନୈତିକ ଦଳ 'କଂଗ୍ରେସ' ଏହିପରି ବିକୃତ ରୁଚି ଓ ଭ୍ରଷ୍ଟ ବିଚାରବୁଦ୍ଧିସମ୍ପନ୍ନ ସ୍ୱୟଂ ଆପାତ ଅପରାଧପ୍ରବଣ ବ୍ୟକ୍ତିଙ୍କ ନେତୃତ୍ୱରେ ସମାଜ, ପ୍ରଶାସନିକ ଓ ନିଜ ଦଳରୁ ଅପରାଧ ଦୂର କରିବାକୁ ସମର୍ଥ ହେବ, ନା ଅପରାଧୀକରଣର ପ୍ରଧାନ ଆୟୁଧ ହେବ, ତାହା କେବଳ ଏକ ବିଶ୍ଳେଷଣ ଓ ଦୃଷ୍ଟାନ୍ତସ୍ୱରୂପ ଏଠା ଉଲ୍ଲେଖ କରାଯାଇଛି ।

୧୯୯୪ ଡିସେମ୍ବର ମାସ ଶେଷ ଦିନ ଓଡ଼ିଶା କଂଗ୍ରେସ ନିର୍ବାଚନ କମିଟି ସଭ୍ୟମାନଙ୍କର ନାମ

ପ୍ରକାଶ ପାଇଲା ଏବଂ ତା ସହିତ ସ୍ୱତନ୍ତ୍ର ନିମନ୍ତ୍ରିତ ବ୍ୟକ୍ତିମାନଙ୍କର ନାମ ପ୍ରକାଶ ପାଇଲା । ମୋର ନାମ କେଉଁଠି ନଥିବାର ଦେଖି ଅନେକ ବନ୍ଧୁ ଆଚମ୍ୱିତ ହେଲେ । କେହି କେହି ହତାଶ ଅନୁଭବ କଲେ, କାରଣ ଉପଯୁକ୍ତ ବ୍ୟକ୍ତିମାନଙ୍କୁ କଂଗ୍ରେସ ପ୍ରାର୍ଥୀଭାବେ ବାଛିବା ଦିଗରେ ମୋର ଅଭିଜ୍ଞତା ସହାୟକ ହେବବୋଲି ସେମାନେ ଆଶାକରୁଥିଲେ । ତା'ଛଡ଼ା ଯେଉଁ ବ୍ୟକ୍ତି ବିବାଦଗ୍ରସ୍ତ ଓ ବିଭାଜିତ ଓଡ଼ିଶା କଂଗ୍ରେସ ଦଳ ମଧ୍ୟରେ ଏକତା ଆଣିବାରେ ମୁଖ୍ୟଭୂମିକା ନେଇଥିଲା, ସେ କିପରି ବାଦ୍ ପଡ଼ିଲା, ତାହା ଅଧିକ ସନ୍ଦେହଜନକ ବୋଧହୋଇଥିଲା । ଡିସେମ୍ବର ୨୮ ତାରିଖ । ଭାରତୀୟ ଜାତୀୟ କଂଗ୍ରେସର ପ୍ରତିଷ୍ଠା ଦିବସ ଉପଲକ୍ଷେ କଂଗ୍ରେସ ଭବନରେ ଗୋଟିଏ ସଭା ଅନୁଷ୍ଠିତ ହୋଇଥିଲା । ପ୍ରାର୍ଥୀ ମନୋନୟନ ବିଷୟନେଇ ରାଜ୍ୟର ବିଭିନ୍ନ ଅଞ୍ଚଳରୁ ବହୁ କଂଗ୍ରେସ କର୍ମୀ ଭୁବନେଶ୍ୱର ଆସିଥା'ନ୍ତି । ସେମାନେ ବହୁ ସଂଖ୍ୟାରେ ଯୋଗଦେଉଥିବାରୁ ସଭାଗୃହ ଭରପୂର ହୋଇଥାଏ । ସେଠାରେ ଭାଷଣ ଦେବାବେଳେ ମୁଁ ପରାମର୍ଶ ଦେଇଥିଲି ଯେ, ଯେଉଁ କଂଗ୍ରେସ ଲୋକମାନଙ୍କ ନାମରେ ଭ୍ରଷ୍ଟାଚାର ଓ ଦୁର୍ନୀତି ଅଭିଯୋଗ ଥାଇ ଆପାତ ପ୍ରମାଣ ହେତୁ ଅଦାଲତର ଚାର୍ଜସିଟ୍ ହୋଇଛି ସେମାନଙ୍କୁ କଂଗ୍ରେସ ପ୍ରାର୍ଥୀରୂପେ ବାଛିବା ଆଦୌ ସମୀଚୀନ ହେବନାହିଁ । ମୋର ଏହି ଉକ୍ତିଟି ଶୁଣିବାମାତ୍ରେ ବିପୁଳ କରତାଳି ଓ ଆନନ୍ଦଧ୍ୱନି ପ୍ରକାଶପାଇଥିଲା । ଜାନକୀବାବୁ ମୋର ଉକ୍ତିଟିକୁ ଭଲଭାବରେ ଗ୍ରହଣ ନକଲାଭଳି ଭାବଭଙ୍ଗୀ ଦେଖାଇଥିଲେ ମଧ୍ୟ ଶ୍ରୋତାମାନଙ୍କର ମନୋ-ଭାବକୁ ଲକ୍ଷ୍ୟ କରିବା ପରେ ମୋ ମତ ବିରୁଦ୍ଧରେ କୌଣସି ମନ୍ତବ୍ୟ ଦେବାକୁ ସାହସ କରିନଥିଲେ । ସେଇଠାରେ ସେ ମନେମନେ ସ୍ଥିରକରିନେଇଥିଲେ ଯେ ମୋ ଭଳି ବ୍ୟକ୍ତି ନିର୍ବାଚନ କମିଟିରେ ରହିଲେ ତାଙ୍କ ପ୍ରତି ବହୁତ ଅଡୁଆ ସୃଷ୍ଟି ହେବ । ତେଣୁ "ମୂଳୁ ମାରିଲେ ଯିବ ସରି" ନୀତି ଅବଲମ୍ବନ କରି ମୁଁ କିପରି ନିର୍ବାଚନ କମିଟିରେ ନରହିବି ସେଥିପାଇଁ ସେ ତତ୍ପର ହୋଇପଡ଼ି ତାଙ୍କ ମନ୍ଦ ଉଦ୍ଦେଶ୍ୟ ସାଧନ କରିପାରିଥିଲେ ବୋଲି ଖବର ପାଇଲି ।

ଏହି ଘଟଣାଟି କଂଗ୍ରେସ ଲୋକଙ୍କ ଭିତରେ ଚହଳ ସୃଷ୍ଟିକରିଥିଲା । କଂଗ୍ରେସ ପ୍ରତିଷ୍ଠା ଦିବସ ସଭାରେ ମୁଁ ଆପାତଃ ପ୍ରମାଣଥିବା ଯୋଗୁଁ ଚାର୍ଜସିଟ୍ କରାଯାଇଥିବା ଅଭିଯୁକ୍ତ ବ୍ୟକ୍ତିମାନଙ୍କୁ ନିର୍ବାଚନରେ ପ୍ରାର୍ଥୀକରାଯିବାକୁ ନାପସନ୍ଦ କରି ମୁଁ ଯୁକ୍ତି ଦର୍ଶାଇଥିବାରୁ ଷଡ଼ଯନ୍ତ୍ର କରି ମୋତେ କଂଗ୍ରେସ ପ୍ରାର୍ଥୀ ଚୟନ କମିଟିରୁ ବାଦ୍ ରଖାଯାଇଥିଲା ବୋଲି ସମସ୍ତେ ଖୋଲାଖୋଲି ସମାଲୋଚନା କରିଥିଲେ । ଏପରି ଅଭିଯୁକ୍ତ ବ୍ୟକ୍ତିଙ୍କୁ କଂଗ୍ରେସ ପ୍ରାର୍ଥୀ କରାଗଲେ ତାହା କିପରି କଂଗ୍ରେସ ଭାବମୂର୍ତ୍ତିକୁ କଳଙ୍କିତ କରି ନିର୍ବାଚନରେ ଦଳପକ୍ଷେ ହାନିକର ହେବ ସେ ସଂପର୍କରେ ଏକ ବିଶ୍ଳେଷଣାତ୍ମକ ପତ୍ର ମୁଁ ୧୯୯୫ ଜାନୁଆରୀ ୩ ତାରିଖରେ କଂଗ୍ରେସ ସଭାପତିଙ୍କ ପାଖକୁ ଲେଖିଥିଲି । ସେହି ଚିଠିର ବିଷୟବସ୍ତୁ ବିସ୍ତୃତ ଭାବରେ ଦେଶର ସବୁ ଖବରକାଗଜରେ ପ୍ରକାଶ ପାଇଥିଲା । ରାଜ୍ୟ ନିର୍ବାଚନ କମିଟି ବୈଠକକୁ କଂଗ୍ରେସ ଉଚ୍ଚକର୍ତ୍ତୃପକ୍ଷଙ୍କ ପ୍ରତିନିଧି ଭାବରେ ଶ୍ରୀ ପ୍ରଣବ ମୁଖାର୍ଜୀ ଆସିଥିଲେ । ମୋର ଉପରୋକ୍ତ ଚିଠିର ଗୋଟିଏ ନକଲ ମୁଁ ପ୍ରଣବବାବୁଙ୍କୁ ଦେଇଥିଲି । ନିର୍ବାଚନ କମିଟିରେ ମୁଁ ନାହିଁ ବୋଲି ଜାଣି ସେ ଆଶ୍ଚର୍ଯ୍ୟ ହୋଇଥିଲେ ।

ପ୍ରାର୍ଥୀ ମନୋନୟନ ସମ୍ବନ୍ଧରେ ତାନ୍ତ୍ରିକ ଚନ୍ଦ୍ରସ୍ୱାମୀଙ୍କର ହାତ ରହିଛି ବୋଲି ସେତେବେଳେ କଂଗ୍ରେସ ଲୋକଙ୍କ ମଧ୍ୟରେ ଚର୍ଚ୍ଚା ହେଉଥିଲା । ଚାନ୍ଦବାଲି ନିର୍ବାଚନମଣ୍ଡଳୀରୁ ଶ୍ରୀ ଘନଶ୍ୟାମ ଦାସ କଂଗ୍ରେସ ପ୍ରାର୍ଥୀ ହେବାପାଇଁ ଦରଖାସ୍ତ କରିଥିଲେ । କୌଣସିମତେ ତାଙ୍କ ନାମଟି କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ପଠାଯାଉଥିବା ନାମ ତାଲିକାରେ ସ୍ଥାନପାଇଗଲେ ସେ ଚନ୍ଦ୍ରସ୍ୱାମୀଙ୍କଦ୍ୱାରା ନିଜ ନାମକୁ ଗୃହୀତ କରାଇଦେବେ ବୋଲି ମୋତେ ଜଣାଇଥିଲେ । ଏଥିପାଇଁ ସୁପ୍ରିମ୍‌କୋର୍ଟରେ ଜଣେ ଅବସର ପ୍ରାପ୍ତ ପ୍ରଧାନ ବିଚାରପତି ତାଙ୍କୁ ନିଜର ପ୍ରତିଶ୍ରୁତି ଦେଇଛନ୍ତି ବୋଲି ମଧ୍ୟ ମୋତେ କହିଥିଲେ । ମୁଁ ଏହି କଥାଟି ପ୍ରତି ପ୍ରଣବବାବୁଙ୍କ ଦୃଷ୍ଟି ଆକର୍ଷଣ କରି ଚନ୍ଦ୍ରସ୍ୱାମୀ ପ୍ରାର୍ଥୀ ମନୋନୟନରେ କିପରି

ପ୍ରଭାବ ପକାଉଛନ୍ତି ସେ ସମ୍ବନ୍ଧରେ ଆଉ କେତେକ ଦୃଷ୍ଟାନ୍ତ ମଧ୍ୟ ଦେଇଥିଲି । ଓଡ଼ିଶା କଂଗ୍ରେସ ବ୍ୟାପାର ନେଇ ଚନ୍ଦ୍ରସ୍ୱାମୀ ବାରମ୍ବାର ଶ୍ରୀ ନରସିଂହ ରାଓଙ୍କୁ ଭେଟୁଥିଲେ ବୋଲି ସେତେବେଳେ ଖବରକାଗଜରେ ପ୍ରକାଶପାଉଥିଲା । ଦିନେ ଓଡ଼ିଶା କଂଗ୍ରେସ ପ୍ରସଙ୍ଗରେ କୌଣସି ଜରୁରୀ କଥା ନେଇ ରାତ୍ରି ୧୦ ବେଳେ ଚନ୍ଦ୍ରସ୍ୱାମୀ ପ୍ରଧାନମନ୍ତ୍ରୀଙ୍କ ବାସଭବନରେ ପହଞ୍ଚିଥିଲେ ବୋଲି ସମାଜରେ ପ୍ରକାଶପାଇଥିଲା । ଏହି ତାନ୍ତ୍ରିକ ଚନ୍ଦ୍ରସ୍ୱାମୀଙ୍କୁ ସେତେବେଳେ ମାର୍କସ୍‌ବାଦୀ କମ୍ୟୁନିଷ୍ଟ ଦଳ ସଭ୍ୟ-ମାନେ କିପରି ଦେଖୁଥିଲେ ତାହାର କେତେକ ଘଟଣା ମଧ୍ୟ ଆମ ଭିତରେ ଆଲୋଚିତ ହୋଇଥିଲା । ଲୋକସଭାରେ ସଦସ୍ୟ ଥିବା ପଶ୍ଚିମବଙ୍ଗ ମୁଖ୍ୟମନ୍ତ୍ରୀଙ୍କର ଜଣେ ସଂପର୍କୀୟ ବ୍ୟକ୍ତି ଚନ୍ଦ୍ରସ୍ୱାମୀଙ୍କ ଆଶ୍ରମରେ ଅନୁଷ୍ଠିତ ଗୋଟିଏ ଉତ୍ସବରେ ଯୋଗଦେଇଥିବା କାରଣରୁ ତାଙ୍କୁ ଦଳରେ ଭର୍ତ୍ସନା କରା-ଯାଇଥିଲା ଏବଂ ପରବର୍ତ୍ତୀ ଲୋକସଭା ନିର୍ବାଚନରେ ତାଙ୍କୁ ସେଥିପାଇଁ ପ୍ରାର୍ଥୀତ୍ୱରୁ ବଞ୍ଚିତ କରା-ଯାଇଥିବା ସମ୍ବାଦ ସେତେବେଳେ ପ୍ରକାଶପାଇଥାଏ । ଚନ୍ଦ୍ରସ୍ୱାମୀଙ୍କ ପ୍ରତି ମାର୍କସବାଦୀ ଦଳର ଦୃଷ୍ଟି-କୋଣକୁ ଆମେ ପ୍ରଶଂସା କରିଥିଲୁ । ତା' ତୁଳନାରେ କଂଗ୍ରେସ ନେତା ବୋଲାଉଥିବା କେତେକ ବ୍ୟକ୍ତିଙ୍କ ଆଚରଣ କେତେ ନିନ୍ଦନୀୟ ତାହା ମୁଁ ଓ ପ୍ରଣବବାବୁ ଅନୁଭବ କରିଥିଲୁ ।

୧୯୯୫ ଜାନୁଆରୀ ୨ ତାରିଖ ଡକ୍ଟର ହରେକୃଷ୍ଣ ମହତାବଙ୍କ ଶ୍ରାଦ୍ଧବାର୍ଷିକୀ ଅବସରରେ ନିଖିଳ ଭାରତ ସ୍ୱାଧୀନତା ସଂଗ୍ରାମୀ ସମ୍ମିଳନୀ ଭୁବନେଶ୍ୱରରେ ଅନୁଷ୍ଠିତ ହୋଇଥିଲା । ସେଥିରେ ଭାଷଣ ଦେବାବେଳେ ଶ୍ରୀ ନରସିଂହ ରାଓଙ୍କ ଉପରେ ଚନ୍ଦ୍ରସ୍ୱାମୀଙ୍କ ଅବାଞ୍ଛିତ ପ୍ରଭାବ କଂଗ୍ରେସ ଦଳ ଓ ସରକାରଙ୍କୁ କିପରି ବଦନାମ କରୁଥିଲେ, ସେ କଥା ମୁଁ ଉଲ୍ଲେଖ କରି ନରସିଂହ ରାଓଙ୍କ ସରକାର ଚନ୍ଦ୍ରସ୍ୱାମୀଙ୍କଠାରୁ ଦୂରରେ ରହିଲେ ତାଙ୍କର ମଙ୍ଗଳ ହେବବୋଲି ପରାମର୍ଶ ଦେଇଥିଲି । ସ୍ୱାଧୀନତା ସଂଗ୍ରାମୀମାନଙ୍କର ଏହି ସମ୍ମିଳନୀରେ ଚନ୍ଦ୍ରସ୍ୱାମୀଙ୍କ ବିରୋଧରେ ତୀବ୍ର ମତ ପ୍ରକାଶ ପାଇଥିଲା । କିନ୍ତୁ ଆମ କଥା ପ୍ରତି ତଥାକଥିତ କଂଗ୍ରେସ କର୍ତ୍ତୃପକ୍ଷଙ୍କ ଭିତରୁ କେହି କର୍ଣ୍ଣପାତ କରିନଥିଲେ । କେନ୍ଦ୍ର ସରକାରଙ୍କ ଉପରେ କିପରି ଚନ୍ଦ୍ରସ୍ୱାମୀଙ୍କର ପ୍ରଭାବ ଥିଲା, ତାହା ତତ୍‌କାଳୀନ ମୁଖ୍ୟନିର୍ବାଚନ କମିଶନର ଶ୍ରୀ ଶେଷାନ ନିଜେ ସ୍ୱୀକାର କରିଛନ୍ତି । ଆମ ରାଜ୍ୟରେ ବିଧାନସଭା ନିର୍ବାଚନ ଫେବୃଆରୀ ମାସ ପ୍ରଥମ ସପ୍ତାହରେ କରାଯିବାପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ ଚୂଡ଼ାନ୍ତ ନିଷ୍ପତ୍ତି ହୋଇସାରିଥିଲା । ଏହି ନିଷ୍ପତ୍ତି ଅନୁଯାୟୀ ଆୟୋଜନ ସଂପର୍କରେ ଭାରତର ନିର୍ବାଚନ କମିଶନ ମଧ୍ୟ ସନ୍ତୁଷ୍ଟ ଥିଲେ; କିନ୍ତୁ ସେତେବେଳେ ନିର୍ବାଚନ କରାଗଲେ କଂଗ୍ରେସର ଅସୁବିଧା ହେବ ବୋଲି ଅନୁଭବ କରି ଜାନକୀବାବୁ ନିର୍ବାଚନ ଘୁଞ୍ଚାଇଦେବାପାଇଁ ସାହାଯ୍ୟ ପାଇବା ଅନୁରୋଧରେ ଚନ୍ଦ୍ର-ସ୍ୱାମୀଙ୍କ ଦ୍ୱାରସ୍ଥ ହୋଇଥିଲେ । କୁଆଡ଼େ ସେହି ତାନ୍ତ୍ରିକଙ୍କଦ୍ୱାରା ଉପର ମହଲକୁ ପ୍ରଭାବିତ କରା-ଯାଇପାରିଲା ଏବଂ ଆମ ରାଜ୍ୟର ନିର୍ବାଚନ ମାର୍ଚ୍ଚ ମାସକୁ ଘୁଞ୍ଚିଯାଇଥିଲା । ନିଷ୍ପତ୍ତି ପରିବର୍ତ୍ତନରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଥିଲେ, ମାତ୍ର କାକତାଳିକ ନ୍ୟାୟହେଲେ ମଧ୍ୟ ଏହାଦ୍ୱାରା କଂଗ୍ରେସ ଓ ଜାନକୀବାବୁ ନିଶ୍ଚିତ ଭାବରେ ଲାଭବାନ ହୋଇଥିଲେ । ଏ କାର୍ଯ୍ୟଟି ପରେ ଚନ୍ଦ୍ରସ୍ୱାମୀ ବହୁ ଭାବରେ ଆମ ରାଜ୍ୟରେ ପ୍ରଭାବଶାଳୀ ହୋଇଗଲେ । ଭୁବନେଶ୍ୱର ଓ ପୁରୀରେ ବହୁ ମୂଲ୍ୟବାନ୍ ବେନାମୀ ସମ୍ପତ୍ତିର ମାଲିକ ଚନ୍ଦ୍ରସ୍ୱାମୀ ବୋଲି କୁହାଯାଉଛି ।

## ଜାନକୀ ଯନ୍ତାରେ 'ନର ଶୃଗାଳ' ଶିକାର

ସେହି ନିର୍ବାଚନ ଭୋଟ ଗଣତି ଚାଲିଥାଏ । କଂଗ୍ରେସ ଦଳକୁ ସଂପୂର୍ଣ୍ଣ ସଂଖ୍ୟାଗରିଷ୍ଠତା ମିଳିଯିବାର ସୂଚନା ସ୍ପଷ୍ଟ ହୋଇଯାଇଥାଏ । ଜଣେ ପୁରୁଖା କଂଗ୍ରେସ ବ୍ୟକ୍ତି ମୋ ପାଖରେ ପହଞ୍ଚି ପରିହାସକରି କହିଲେ ଯେ, ଏବେ ଜାନକୀ ଯନ୍ତାରେ ପଡ଼ି ନରସିଂହ ରାଓ 'ନର ଶୃଗାଳ' ହୋଇ ବନ୍ଦୀ ହୋଇଯିବେ । ତା'ପରେ ସେ କହିଲେ ଯେ, ଆମ ପ୍ରଧାନମନ୍ତ୍ରୀ 'ନରସିଂହ' ନୁହଁନ୍ତି ଯେ ନିପଟ

'ନର ଶୃଗାଳ'ଟିଏ । ମୁଁ ଠିକଣା ସୂତ୍ରରୁ ପକ୍କା ଖବର ଜାଣିଲିଣି ଜାନକୀବାବୁ ଆଉ ତାଙ୍କର ଶରଣାଗତ ନୁହଁନ୍ତି । କାମାକ୍ଷାରେ ତାନ୍ତ୍ରିକମାନେ ଭେଣ୍ଡାକୁ ମେଣ୍ଢା କରିଦେବା ପ୍ରବାଦ ଭଳି ଜାନକୀବାବୁ ନରସିଂହ ରାଓଙ୍କୁ 'ନର ଶୃଗାଳ' କରିଦେଇସାରିଲେଣି । ମୁଖ୍ୟମନ୍ତ୍ରୀ ବଛାବଛି ସମ୍ପର୍କରେ ନରସିଂହ ରାଓ ଓଡ଼ିଶାବାସୀଙ୍କୁ ଦେଇଥିବା ପ୍ରତିଶ୍ରୁତି ଆଉ କେବେ ପାଳିବେନାହିଁ । ଜାନକୀବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବେ । ତା'ପରେ ସେ ହଠାତ୍ ଉଠିପଡ଼ି କହିଲେ, ମୁଁ ଟିକିଏ ଆଗେ ଯାଇ ବସନ୍ତବାବୁଙ୍କୁ ଦେଖାକରି ଆସେ । ବର୍ତ୍ତମାନ ଏକା ତାଙ୍କରି ପ୍ରଭାବରେ ଜାନକୀବାବୁଙ୍କ ସହାନୁଭୂତି ମିଳିପାରେ । ବସନ୍ତବାବୁ ଜାନକୀବାବୁଙ୍କ ପାଖଲୋକ ହୋଇପଡ଼ିଥିବା କଥା ଶୁଣି ମୁଁ ବିସ୍ମିତ ହୋଇଗଲି । ମୁଁ ଜାଣିଥିଲି ଯେ ଜାନକୀଙ୍କ ଆକ୍ରମଣରେ ବସନ୍ତ ବିଶ୍ୱାଳ ପୂର୍ବରୁ ଖଣ୍ଡିଆଖାବରା ହୋଇଯାଇଥିଲେ । କିନ୍ତୁ ସେ ଏବେ ସେହି ଜାନକୀ ଯନ୍ତାରେ ପ୍ରଲୁବ୍ଧହୋଇ ପଶି-ଲେଣି । ବର୍ତ୍ତମାନ ପରିସ୍ଥିତି ବିଷୟରେ ବୁଝି ଜାଣିଲି ଯେ ସେ ଦୁହିଁଙ୍କ ଭିତରେ ଏକ ଗୁପ୍ତ ଯୋଜନା ହୋଇଥିଲା । ଲୋକସଭା ନିର୍ବାଚନ ପରେ ଜାନକୀବାବୁ ଦିଲ୍ଲୀ ଚାଲିଯିବେ । କିନ୍ତୁ ବର୍ତ୍ତମାନ କିଛିଦିନପାଇଁ କେବଳ ନିଜର ମର୍ଯ୍ୟାଦା ରକ୍ଷାପାଇଁ ସେ ମୁଖ୍ୟମନ୍ତ୍ରୀ ହୋଇ ରହିବେ । ଜାନକୀବାବୁ ଦିଲ୍ଲୀ ଗଲା ପରେ ବସନ୍ତବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବେ । ତେଣୁ ଜାନକୀବାବୁଙ୍କ ବ୍ୟତୀତ ଆଉ କେହି ଓଡ଼ିଶା ଅବସ୍ଥା ସମ୍ଭାଳି ପାରିବେନାହିଁ ବୋଲି ବସନ୍ତବାବୁ ବଡ଼ବଡ଼ିଆମାନଙ୍କୁ ବୁଝାଇବା ଦାୟିତ୍ୱ ନେଇ ଜାନକୀବାବୁଙ୍କ ସପକ୍ଷରେ ବିଧାୟକମାନଙ୍କଠାରୁ ଦସ୍ତଖତ ସଂଗ୍ରହ କାର୍ଯ୍ୟରେ ଲାଗିପଡ଼ିଛନ୍ତି ।

ନିର୍ବାଚନ ପୂର୍ବରୁ ଓ ନିର୍ବାଚନ ସମୟରେ ଓଡ଼ିଶାବାସୀ ଓ କଂଗ୍ରେସ କର୍ମୀମାନଙ୍କ ମଧ୍ୟରେ ଜାନକୀବାବୁଙ୍କ ଆଚରଣ ପ୍ରତି ଏପରି ତୀବ୍ର ବିରୋଧଭାବ ଜାତହୋଇଥାଏ ଯେ, କଂଗ୍ରେସ ସପକ୍ଷରେ ଜନମତକୁ ଅନୁକୂଳ କରିବାପାଇଁ ଏବଂ କଂଗ୍ରେସ କର୍ମୀମାନଙ୍କ ଅକୁଣ୍ଠିତ ସହଯୋଗ ପାଇବାପାଇଁ କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷଙ୍କ ପକ୍ଷରୁ ଡିଣ୍ଡିମ ପିଟିଲାଭଳି କୁହାଗଲା ଯେ, ନବ ନିର୍ବାଚିତ କଂଗ୍ରେସ ବିଧାୟକମାନଙ୍କ ମଧ୍ୟରୁହିଁ ସେହିମାନେ ଭବିଷ୍ୟତ ମୁଖ୍ୟମନ୍ତ୍ରୀ ବାଛିବେ, ବାହାରୁ କାହାକୁ ମୁଖ୍ୟମନ୍ତ୍ରୀ ଲଦି ଦିଆଯିବନାହିଁ । ଏହି ଫନ୍ଦିଫିକରରେ ସରଳ ବିଶ୍ୱାସ ଜନ୍ମାଇବା ଲକ୍ଷ୍ୟରେ ଜାନକୀବାବୁଙ୍କୁ ମଧ କଂଗ୍ରେସ ପ୍ରାର୍ଥୀ କରାନଯାଇ ଜନମତକୁ ଉପଯୁକ୍ତ ସମ୍ମାନ ଦେବାଭଳି ଅଭିନୟ କରାଗଲା; କିନ୍ତୁ ପରେ ଶୁଣାଗଲା ଯେ, ନରସିଂହ ରାଓ ତାନ୍ତ୍ରିକ ଚନ୍ଦ୍ରସ୍ୱାମୀଙ୍କ କଥା ମାନି ଚତୁର ଜାନକୀ ଯନ୍ତାରେ ପଡ଼ି 'ନର ଶୃଗାଳ' ପାଲଟିଗଲେ । ଦିଲ୍ଲୀରୁ ଓଡ଼ିଶାରେ ନେତା ନିର୍ବାଚନ କାର୍ଯ୍ୟର ତତ୍ତ୍ୱାବଧାନ କରିବାପାଇଁ ଆସିଥିବା ବ୍ୟକ୍ତିମାନଙ୍କୁ ଇସାରା ଦିଆଗଲା ଜାନକୀବାବୁଙ୍କ ପ୍ରତି କୋହଳ ହେବାପାଇଁ । ଏହା ଫଳରେ ବିଧାନସଭାର ସଭ୍ୟ ନଥାଇ ଜାନକୀ ବଲ୍ଲଭ ପଟ୍ଟନାୟକ ନେତାରୂପେ ନିର୍ବାଚିତ ହୋଇଥିଲେ । କଂଗ୍ରେସ ସଭାପତି ଶ୍ରୀ ରାଓଙ୍କର ଚରମ ବିଶ୍ୱାସଘାତକତା ଓଡ଼ିଶାବାସୀଙ୍କ ପ୍ରତି ହୋଇଥିଲା ବୋଲି ବହୁଳ ଚର୍ଚ୍ଚା ହୋଇଥିଲା । ଜାନକୀଙ୍କୁ ଦୂରେଇ ରଖାଯିବ ବୋଲି ଶ୍ରୀ ରାଓଙ୍କ କଥାରେ ଲୋକେ ବିଶ୍ୱାସକରି ଜନତା ଦଳକୁ ହରାଇ କଂଗ୍ରେସକୁ ପୁନର୍ବାର ସଂଖ୍ୟାଗରିଷ୍ଠ କରିବାପାଇଁ ସାହାଯ୍ୟ କରିଥିଲେ । କିନ୍ତୁ ସରଳବିଶ୍ୱାସୀ ଓଡ଼ିଶାବାସୀଙ୍କ ବିଶ୍ୱାସରେ ବିଷ ଦେଲାଭଳି କଥାଟା ଜଣାଗଲା । ଏକଥା କେନ୍ଦ୍ରୀୟ କଂଗ୍ରେସ କାର୍ପେଟବ୍ୟାଗର ପ୍ରଣବ ମୁଖାର୍ଜୀଙ୍କୁ ମୁଁ କହିଥିଲି, କିନ୍ତୁ ସମସ୍ତେ ଥିଲେ ଏକା ଭାଡ଼ିର ପାରା ।

ବସନ୍ତ ବିଶ୍ୱାଳ 'ଜାନକୀ ଯନ୍ତାରେ' ପଶିଗଲା ପରେ କଂଗ୍ରେସ ହାଇକମାଣ୍ଡ ବୋଲାଉଥିବା ବ୍ୟକ୍ତିମାନେ ପୂର୍ବ ପ୍ରତିଶ୍ରୁତିକୁ ହୁଡ଼ି ଓଡ଼ିଶାର ଲୋକ ଓ କଂଗ୍ରେସ କର୍ମୀମାନଙ୍କୁ ଧୋକା ଦେବାକୁ ଦ୍ୱିଧା କଲେନାହିଁ । ଆଉ ମଧ 'ସ୍ୱାମୀ ପଛେ ମରୁ ସପତ୍ନୀ ବିଧବା ହେଉ' ନ୍ୟାୟରେ ମୁଖ୍ୟମନ୍ତ୍ରୀ ପଦପାଇଁ ଆଶାୟୀ ବା ଯୋଗ୍ୟ ଅନ୍ୟ ନେତାମାନେ ମଧ ନିଜ ମଧ୍ୟରୁ ଜଣେ କାହାରିକୁ ବାଛି ଠିଆକରାଇବାକୁ ପଛେଇଲେ । ହେମାନନ୍ଦ ବିଶ୍ୱାଳ, କାହ୍ନୁଚରଣ ଲେଙ୍କା ଏକମତ ହୋଇପାରିଲେ ନାହିଁ । ଭୋଟ

ଦାତାମାନଙ୍କୁ ବଧେଇ ଜଣାଇବାର ଜରୁରୀ ଆବଶ୍ୟକତା କଥା କହି ଶ୍ରୀମତୀ ନନ୍ଦିନୀ ଶତପଥୀ ଅସଲବେଳକୁ ଯାଇ ତାଙ୍କ ନିର୍ବାଚନମଣ୍ଡଳୀରେ ଦୂରେଇରହିଲେ । ଫଳରେ ଶୃଙ୍ଖଳା ଭୂଇଁରେ ବାଳିଆ ମାରିବା ଭଳି ସୁଯୋଗ ପାଇଲେ ଜାନକୀବାବୁ ।

ନିର୍ବାଚନ ପୂର୍ବରୁ ରାଜଧାନୀ ଭୁବନେଶ୍ୱର ତଥା ଓଡ଼ିଶାର ଅନ୍ୟସ୍ଥାନମାନଙ୍କରେ ଅନୁଷ୍ଠିତ ନିର୍ବାଚନ ସଭାରେ ଶ୍ରୀ ନରସିଂହ ରାଓ ତାଙ୍କର ବାରମ୍ବାର ପ୍ରତାରଣାମୂଳକ ଘୋଷଣାକୁ ଦୋହରାଉ ଥାଆନ୍ତି ଯେ କେବଳ ନବନିର୍ବାଚିତ କଂଗ୍ରେସ ପ୍ରତିନିଧିମାନଙ୍କ ମଧ୍ୟରୁ ଜଣକୁ ସେହି ବିଧାୟକମାନେ ଦଳପତି ବାଛିବେ, କାରଣ ଓଡ଼ିଶାରେ ତୀବ୍ର ଜାନକୀବିରୋଧୀ ମନୋଭାବ ସଂପର୍କରେ ତାଙ୍କଠାରେ ଓ ଅନ୍ୟ ନେତାମାନଙ୍କ ପାଖରେ ଯଥେଷ୍ଟ ପ୍ରମାଣ ଥିଲା । ଭୁବନେଶ୍ୱର ବିଧାନସଭା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସପ୍ରାର୍ଥୀ ହୋଇଥିବା ଡକ୍ଟର ଲଳିତ ମହାନ୍ତିଙ୍କ ବିରୋଧରେ ଲଢୁଥିବା ଭାରତୀୟ ଜନତା ପାର୍ଟିର ପ୍ରାର୍ଥୀ ଶ୍ରୀ ସୌମ୍ୟରଞ୍ଜନ ପଟ୍ଟନାୟକ ଜାନକୀବାବୁଙ୍କ ଜୋଇଁ । ଜାନକୀବାବୁ ତାଙ୍କୁ ହରାଇ ନିଜ ଜ୍ୱାଇଁଙ୍କୁ ଜିତାଇବାପାଇଁ ବିପୁଳ ଅର୍ଥ ଯୋଗାଇ ନାନାପ୍ରକାର ଅନ୍ତର୍ଘାତି କାର୍ଯ୍ୟ କରୁଛନ୍ତି ବୋଲି ଭୁବନେଶ୍ୱର ସଭାରେ ଉପସ୍ଥିତ ଥିବା ବହୁ ଯୁବକ ନରସିଂହ ରାଓଙ୍କୁ ଉଚ୍ଚସ୍ୱରରେ ଜଣାଇ ପ୍ରତିବାଦ କରିଥିଲେ । ସେହି ସଭାରେ ମୁଁ ଯେତେବେଳେ ନରସିଂହ ରାଓଙ୍କୁ ଭେଟିଲି, ଅଭିଯୋଗର ସତ୍ୟତା ସଂପର୍କରେ ମୋ ପାଖରୁ ଜାଣିବାକୁ ସେ ଚାହିଁଲେ ଏବଂ ପ୍ରକୃତ କଥା ମୋ ଠାରୁ ଜାଣି ବିସ୍ମିତ ହୋଇଥିଲେ । କଂଗ୍ରେସ ପ୍ରାର୍ଥୀ ଡାକ୍ତର ଲଳିତ୍ ମୋହନ ମହାନ୍ତି ଓ ତାଙ୍କର ସମର୍ଥକମାନେ କଂଗ୍ରେସ ସଭାପତିଙ୍କୁ ଭେଟି ଜାନକୀବାବୁଙ୍କର ଜାମାତା ପ୍ରୀତି ଓ କଂଗ୍ରେସ ବିରୋଧୀ କାର୍ଯ୍ୟକଳାପ ବିରୁଦ୍ଧରେ ପ୍ରତିକାର ଦାବୀ କରିଥିଲେ । ମୋ ଜାଣିବାରେ ସେମାନଙ୍କ ଅଭିଯୋଗ ଆଦୌ ଭିତ୍ତିହୀନ ନଥିଲା । ଜାନକୀଙ୍କ ଇଙ୍ଗିତରେ ଭୁବନେଶ୍ୱର କଂଗ୍ରେସ ସଭାପତି ଶ୍ରୀ ସନ୍ତୋଷ କୁମାର ମହାନ୍ତି ଓ ଶ୍ରୀ ସୁରେଶ କୁମାର ରାଉତରାୟ ସଦଳବଳେ ଜାନକୀ ପଟ୍ଟନାୟକଙ୍କ ଜାମାତାଙ୍କୁ ସାହାଯ୍ୟ କରିବା ଅଭିଯୋଗ ହେଉଥିଲା । ଅନ୍ୟପକ୍ଷରେ କଂଗ୍ରେସ ପ୍ରାର୍ଥୀ ଶ୍ରୀ ଲଳିତ ମୋହନଙ୍କୁ ନିର୍ବାଚନ ଖର୍ଚ୍ଚ ଦେବାରେ ହଇରାଣ ହରକତ କରିବା ମଧ୍ୟ ଅଭିଯୋଗ ହେଉଥାଏ । ଅଥଚ ଜାନକୀବାବୁଙ୍କର ଜାମାତା ସୌମ୍ୟବାବୁ ବିପୁଳ ଅର୍ଥ ନିର୍ବାଚନରେ ଖଟାଇପାରୁଥିବାର ଦୃଷ୍ଟାନ୍ତ ଲୋକଙ୍କୁ ଆଚମ୍ବିତ କରିପକାଇଥିଲା । ଏ ସବୁ ଅର୍ଥ ଜାନକୀବାବୁ ଯୋଗାଡ଼କରୁଥିଲେ ବୋଲି ଅଭିଯୋଗ ଉଠୁଥାଏ । ପରବର୍ତ୍ତୀକାଳରେ କଥା ଉଠିଲା ଯେ, କୌଣସି ଏକ ଜୀବନ ଜ୍ୟୋତି ବୀମା ସଂସ୍ଥାର ପରିଚାଳକ ଭୁବନେଶ୍ୱର ନିର୍ବାଚନମଣ୍ଡଳୀରେ ପ୍ରତିଦ୍ୱନ୍ଦ୍ୱିତା କରୁଥିବା ଜାନକୀବାବୁଙ୍କ ଜାମାତାଙ୍କ ପାଇଁ ସାତଲକ୍ଷ ଟଙ୍କା ଶ୍ୱଶୁରଙ୍କ ସହିତ ସଲାସୁତୁରାରେ ଦେଇଥିଲେ ।

ସେହି ବୀମା ସଂସ୍ଥାର ପରିଚାଳକ ଏ. ଜଗନ୍ନାଥ ରାଓ ୧୨.୫.୯୫ ତାରିଖରେ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ଯେଉଁ ଗୋପନୀୟ ଚିଠିଟି ଇଂରାଜୀରେ ଲେଖିଥିଲେ ଏବଂ ତାହାର ଓଡ଼ିଆ ଅନୁବାଦ ୧୧.୫.୯୬ ତାରିଖରେ ପ୍ରଜାତନ୍ତ୍ର 'ସାପ୍ତାହିକୀ'ରେ ପ୍ରକାଶ ପାଇଥିଲା । ସେଥିରୁ ଢୋଲ ଭିତରେ ମୂଷାର ସନ୍ଧାନ ମିଳିଲା ସିନା ନିଦା-ବିଷ୍ଣୁପରି ଜାନକୀବାବୁ ବହଳ ମୁହଁରେ ଗାଲୁ-ଭୁରୁଡ଼ି ମାରିଲେ । ଏକାଦଶୀ ନିରାହାର, ଭିତରେ ଭିତରେ ଚୂନା ପାହାର, ଏହାହିଁ ହେଲା ସାର । ସେହି ପ୍ରକାଶିତ ଓଡ଼ିଆ ଚିଠିଟିରେ ଲେଖାଥିଲା—

''ସମ୍ମାନାସଦ ସାର୍,

ପ୍ରଥମେ ମୋର ନମସ୍କାର ସ୍ୱୀକାର କରନ୍ତୁ । ଆପଣଙ୍କ ଆଶୀର୍ବାଦରୁ ମୁଁ ନିରାପଦରେ ଅଛି । ଆପଣଙ୍କ ମହାନ ସହାୟତାକୁ ମୁଁ କସ୍ମିନକାଳେ ଭୁଲିପାରିବିନାହିଁ ଓ ସାରା ଜୀବନ ଆପଣଙ୍କ ପ୍ରତି କୃତଜ୍ଞ ରହିବି । ମହାଭାଗ ! ମୁଁ ଏଠାରେ ଶୁଣିବାକୁ ପାଉଛି ଯେ ଆପଣଙ୍କ ପୁଲିସ ଏବେ ଆମ

ସଂପର୍କରେ ତଦନ୍ତ ଚଳାଇଛନ୍ତି । ସେମାନେ ଆମ ଏଜେଣ୍ଟମାନଙ୍କୁ ପଇସା ମାଗୁଛନ୍ତି ଓ ନାନାଭାବେ ହଇରାଣ ହରକତ କରୁଛନ୍ତି । ଦୟାକରି ଏ କେଶ୍‌ର ତୁରନ୍ତ ପୂର୍ଣ୍ଣଚ୍ଛେଦ ପକାନ୍ତୁ । ମହାଭାଗ ! ମୁଁ କ୍ଷମା ଚାହୁଁଛି ଯେ ଆପଣଙ୍କୁ ଏକ କୋଟି ଟଙ୍କା ଦେବାକୁ ନିତାନ୍ତ ଅସମର୍ଥ । ଏବେ ମହାନ୍ତିବାବୁଙ୍କ ହାତରେ ମାତ୍ର ୧୨ ଲକ୍ଷ ଟଙ୍କା ପଠାଉଛି । ମୁଁ ଯେନ ତେନ ପ୍ରକାରେଣ ସର୍ବାଧିକ ୫୦ ଲକ୍ଷ ଟଙ୍କା ଦେବାକୁ ଚେଷ୍ଟା କରୁଛି; ତଥାପି ସମ୍ଭବ ହେଉନି । ମୁଁ ଆପଣଙ୍କୁ ୩୨ ଲକ୍ଷ ଟଙ୍କା ଦେଇସାରିଛି । (ଜାନୁୟାରୀ ମାସରେ ୨୦ ଲକ୍ଷ ଟଙ୍କା ଓ ଏବେ ୧୨ ଲକ୍ଷ ଟଙ୍କା) ଆମେ ଭୁବନେଶ୍ୱର ନିର୍ବାଚନ ବେଳେ ମଧ୍ୟ ୭ ଲକ୍ଷ ଟଙ୍କା ଦେଇଛୁ ।

ଏବେ ଆମ ହାତରେ ପାଣ୍ଠି ନାହିଁ । ମହାନ୍ତିବାବୁ ଆମ ପରିସ୍ଥିତି ଜାଣନ୍ତି ଓ ଏ ସଂପର୍କରେ ସେ ଆପଣଙ୍କୁ ସବୁକଥା କହିବେ । ଆମର ଆଉ କୌଣସି ମନ୍ଦ ଉଦ୍ଦେଶ୍ୟ ନାହିଁ । ଦୟାକରି ଆମକୁ କ୍ଷମା କରନ୍ତୁ । ଯଦି ଭାଗ୍ୟ ଆମକୁ ଅନୁକୂଳ ହୁଏ– ମୁଁ ଶପଥ କରି କହୁଛି ଆଉ ଅଧିକ ୧୦ଲକ୍ଷ ଟଙ୍କା ଯୋଗାଡ଼ କରି ନିଶ୍ଚିତଭାବେ ଆପଣଙ୍କୁ ଦେବି । ଆମେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଛୁ ଯେ ସେ ଆପଣଙ୍କୁ ଆଶୀର୍ବାଦ କରନ୍ତୁ ଓ ଆପଣ ପାଞ୍ଚ ବର୍ଷ କ୍ଷମତାରେ ରହନ୍ତୁ ।

ସମ୍ମାନର ସହ<br>
ଆପଣଙ୍କର ଆଜ୍ଞାବହ<br>
ସ୍ୱା-ଏ. ଜଗନ୍ନାଥ ରାଓ<br>
ମ୍ୟାନେଜିଂ ଡାଇରେକ୍ଟର

କଥାଟା କେଡ଼େ ସାଙ୍ଘାତିକ ଓ ଆଚରଣ କେଡ଼େ ଜଘନ୍ୟ ତାହା ଉପରୋକ୍ତ ଚିଠିର ବିଷୟବସ୍ତୁରୁ ଅନୁମେୟ । ମୁଖ୍ୟମନ୍ତ୍ରୀଙ୍କୁ ପୂର୍ବରୁ ଲାଞ୍ଚଦେଇଥିବା କଥା ଏହି ଚିଠିରେ ଲେଖାଅଛି । ବୋଧହୁଏ ମୁଖ୍ୟମନ୍ତ୍ରୀ ପୁଲିସକୁ ପ୍ରଭାବିତ କରି ଜୀବନ ଜ୍ୟୋତି ବିମା ସଂସ୍ଥାର ପରିଚାଳକ ଓ କର୍ମକର୍ତ୍ତାଙ୍କ ବିରୋଧରେ ହୋଇଥିବା ଫୌଜଦାରୀ ମୋକଦ୍ଦମା ସମ୍ବନ୍ଧୀୟ ଅନୁସନ୍ଧାନରେ ପୂର୍ଣ୍ଣଚ୍ଛେଦ ପକାଇ ଦେବାପାଇଁ ଆଶ୍ୱାସନା ଦେଇଥିଲେ । ସେଥିରେ ବିଳମ୍ବ ହେବାରୁ ଅନୁସନ୍ଧାନକାରୀ ପୁଲିସ ଅଫିସରମାନେ ସେମାନଙ୍କ ପାଖରୁ ଟଙ୍କା ପଇସା ଚାହିଁବାରୁ ସେମାନେ ଭୟଭୀତ ହୋଇ ଏହି ଚିଠିଟି ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଲେଖିଛନ୍ତି । ଜୀବନଜ୍ୟୋତି ବୀମା ସଂସ୍ଥାର ପ୍ରାୟ କୋଡ଼ିଏ ହଜାର ଚାଷୀ, ଖଟିଖିଆ, ରିକ୍‌ସାବାଲା, ଶ୍ରମିକ ଓ ନିମ୍ନବର୍ଗର ଲୋକମାନଙ୍କଠାରୁ ୩୦ କୋଟି ଟଙ୍କା ପରିମାଣରୁ ସେମାନଙ୍କ ଝାଳବୁହା ସଞ୍ଚିତ ଅର୍ଥ ଆଦାୟକରି ଆତ୍ମସାତ୍ କରିବାର ଅଭିଯୋଗ ହେବାରୁ ସେମାନଙ୍କ ବିରୁଦ୍ଧରେ ବିଜୁ ପଟ୍ଟନାୟକଙ୍କ ସରକାର ସମୟରେ ଫୌଜଦାରୀ ମୋକଦ୍ଦମା ରୁଜୁ କରାଯାଇଥିଲା । ସେହି ଅନୁସନ୍ଧାନରେ ପୁଲିସକୁ ନିଷ୍କ୍ରିୟ କରିବା ଉଦ୍ଦେଶ୍ୟରେ ପରବର୍ତ୍ତୀ ମୁଖ୍ୟମନ୍ତ୍ରୀଙ୍କୁ ଲାଞ୍ଚ-ଦିଆହୋଇଛି ବୋଲି ଏହି ଚିଠିରୁ ଜଣାପଡ଼େ ।

ପୁଲିସର ଅନୁସନ୍ଧାନ କ୍ରମେ ମନ୍ଥର ହେଲା । ମୋକଦ୍ଦମା ରୁଜୁ ହେବା ପରେ ଫେରାର୍ ହୋଇ-ଥିବା ବ୍ୟକ୍ତିମାନେ ବୁଲାବୁଲି କରିବା ଦେଖାଗଲା । ଏକ ନମ୍ବର ଅପରାଧୀ ସଂସ୍ଥାର ପରିଚାଳକ ଏ. ଜଗନ୍ନାଥ ରାଓ ବିଭିନ୍ନ ସ୍ଥାନକୁ ଯିବାଆସିବା କରିବାର ଦେଖାଗଲା । ତାହାକୁ ଗିରଫ କରାଗଲା ନାହିଁ । ମୋକଦ୍ଦମାଟିକୁ ଚାପିଦେବାପାଇଁ ଉଦ୍ୟମ ଚାଲିଥିଲା ବୋଲି ସମ୍ବାଦପତ୍ରମାନଙ୍କରେ ସରକାରଙ୍କ ଉପରେ ଦୋଷାରୋପ କରାଯାଇଥିଲା । ଲାଞ୍ଚ ଉଦ୍ଦିଷ୍ଟ କାମ ଦେବାଭଳି ଜଣାଗଲା । ତାହା ନହୋଇ ଯଦି ଜାନକୀ ବଲ୍ଲଭ ପଟ୍ଟନାୟକ ନିଜର ସଚ୍ଚୋଟପଣିଆ ସାବ୍ୟସ୍ତ କରିବାକୁ ଇଚ୍ଛା କରିଥାନ୍ତେ ତେବେ ତୁରନ୍ତ ସେ ସି.ବି.ଆଇ. ଅନୁସନ୍ଧାନ କରାଇ ସତ୍ୟକୁ ପଦାରେ ପକାଇଦେବାକୁ ଆଦେଶ ଦେଇଥା'ନ୍ତେ । ପୁଲିସକୁ ନିଷ୍କ୍ରିୟ କରିଦେବା ଲକ୍ଷ୍ୟରେ ମୁଖ୍ୟମନ୍ତ୍ରୀଙ୍କୁ ଲାଞ୍ଚ ଦିଆଯାଇଥିବା ଯେତେବେଳେ ଅଭିଯୋଗ ହୋଇଥିଲା ସେହି ବ୍ୟକ୍ତିଙ୍କ ଅଧୀନରେ ଥିବା ରାଜ୍ୟର ପୁଲିସ ଅନୁସନ୍ଧାନ

କରିବା ଆଦୌ ସମୀଚୀନ ନୁହେଁ । ମାତ୍ର ଜାନକୀ ପଟ୍ଟନାୟକଙ୍କର ସେ ପ୍ରକାର ସତ୍‌ସାହସ ନଥିଲା ବୋଲି ଜଣାଗଲା । ଅନୁସନ୍ଧାନ ସନ୍ତୋଷଜନକ ହେଉନଥିବାରୁ ଏହି ଅଭିଯୋଗ ସମ୍ବନ୍ଧରେ ଓଡ଼ିଶା ହାଇକୋର୍ଟରେ ଗୋଟିଏ ଜନସ୍ୱାର୍ଥ ମାମଲା ଆଗତ କରାଯାଇଥିଲା । ଜୀବନଜ୍ୟୋତି ବୀମା ସଂସ୍ଥାର ବିରୋଧରେ ହୋଇଥିବା ସମସ୍ତ ଅଭିଯୋଗକୁ କେନ୍ଦ୍ର ତଦନ୍ତ ବ୍ୟୁରୋକୁ ଅନୁସନ୍ଧାନର ଦାୟିତ୍ୱ ଦେବାପାଇଁ ପ୍ରାର୍ଥନା କରାଯାଇଛି । ମୋକଦ୍ଦମାଟି ହାଇକୋର୍ଟରେ ବର୍ତ୍ତମାନ ବିଚାରାଧୀନ ଅଛି ।

## ନିମକ୍‌ହାରାମ ଜାଗିରଦାରୀ

ପ୍ରଦେଶ କଂଗ୍ରେସ ସଭାପତି ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ସରକାରୀ ସାଧୁ ଚନ୍ଦ୍ରସ୍ୱାମୀ, କଂଗ୍ରେସ ସଭାପତି ଓ ପ୍ରଧାନମନ୍ତ୍ରୀ ଶ୍ରୀ ନରସିଂହ ରାଓଙ୍କ ଚକ୍ରାନ୍ତ ଫଳରେ ଓଡ଼ିଶାବାସୀ ଚରମ ବିଶ୍ୱାସଘାତକତାର ଶରବ୍ୟ ହୋଇଥିଲେ । ବର୍ତ୍ତମାନ ଦେଖାଯାଉ ଏ ଅଭିନୟରୁ କିଏ କ'ଣ ପାଇଲେ । ଜାନକୀବାବୁ ନିଜର ଅପକର୍ମ କାରଣରୁ ପୂର୍ବରୁ ରାଜୀବ ଗାନ୍ଧୀଙ୍କଦ୍ୱାରା ସ୍ଥାନଚ୍ୟୁତ ହୋଇଥିଲେ, ଏବେ ହଜିଥିବା ଧନ ଫେରିପାଇଲେ । ତାନ୍ତ୍ରିକ ଚନ୍ଦ୍ରସ୍ୱାମୀ ପାଇଲେ ଓଡ଼ିଶାରେ ବହୁମୂଲ୍ୟ ସଂପତ୍ତି ବେନାମି ପଟ୍ଟା ଓ ଶ୍ରୀ ନରସିଂହ ରାଓ ପାଇଲେ 'ନିମକ ହାରାମ ଜାଗିରୀଦାରୀ' ୧୯୯୬ ଲୋକସଭା ନିର୍ବାଚନ ବେଳକୁ ନରସିଂହ ରାଓଙ୍କ ରାଜନୈତିକ ଅବସ୍ଥା ଟଳମଳ । ଲୋକସଭାପାଇଁ ସେ କେଉଁଠାରୁ ପ୍ରାର୍ଥୀହେବେ ସ୍ଥିର କରିପାରିନଥା'ନ୍ତି । ତାଙ୍କ ବିରୋଧରେ ଦୁର୍ନୀତିର ପେଡ଼ିଗୁଡ଼ିକର ଢାକୁଣୀ ଗୋଟାକ ପରେ ଗୋଟାଏ ଖୋଲିବା ଉପରେ । ନିଜ ଆନ୍ଧ୍ର-ପ୍ରଦେଶର ପୁରୁଣା ନିର୍ବାଚନମଣ୍ଡଳୀ ନନ୍ଦିଆଲରୁ ମଧ ଛିଡ଼ାହେବାକୁ ସେ ନିରାପଦ ମଣୁନଥିଲେ । ଏହି ସମୟରେ ତେଲୁଗୁ ଦେଶମ୍ ନେତା ଏନ୍.ଟି.ରାମାରାଓଙ୍କ ଦେହାନ୍ତ ଘଟିବାରୁ ଆନ୍ଧ୍ରପ୍ରଦେଶରୁ ପ୍ରତିଦ୍ୱନ୍ଦିତା କରିବାପାଇଁ ବନ୍ଧୁମାନେ ତାଙ୍କୁ ପ୍ରବର୍ତ୍ତାଇଲେ । ତଥାପି ତାଙ୍କ ମନ ବୁଝୁନଥାଏ । ରାଓଙ୍କ ପୁଅ, ପୁତୁରା, ଭାଇଙ୍କ ନାମରେ ଅଭୂତପୂର୍ବ ଦୁର୍ନୀତି ଅଭିଯୋଗ ଆନ୍ଧ୍ରପ୍ରଦେଶର ବାୟୁମଣ୍ଡଳକୁ ଉତ୍ତେଜନାପୂର୍ଣ୍ଣ କରିଥିଲା । ଏହି ବାତାବରଣ ଭିତରେ ନନ୍ଦିଆଲରେ ପ୍ରାର୍ଥୀ ହେଲେ କାଳେ ହାରିଯିବେ ବୋଲି ରାଓ ଯେତେବେଳେ ବିବ୍ରତ ଥାଆନ୍ତି ତାଙ୍କର ସେହି ନିଃସହାୟତାର ସୁଯୋଗ ଜାନକୀ ବଲ୍ଲଭ ପଟ୍ଟନାୟକ ନେଇଥିଲେ । ନନ୍ଦିଆଲ ଛଡ଼ା ଓଡ଼ିଶାର ବ୍ରହ୍ମପୁର ନିର୍ବାଚନମଣ୍ଡଳୀରୁ ମଧ ପ୍ରତିଦ୍ୱନ୍ଦିତା କରିବାପାଇଁ ସେ ରାଓଙ୍କୁ ପ୍ରସ୍ତାବ ଦେଇଥିଲେ । ବ୍ରହ୍ମପୁର ନିର୍ବାଚନମଣ୍ଡଳୀର ସୀମା ଆନ୍ଧ୍ର ପ୍ରଦେଶକୁ ଲାଗିଛି । ତେଲୁଗୁ ଭାଷୀ ଅଧିବାସୀ ମଧ ସେଠାରେ ବହୁତ । ଏହିଭଳି ଶ୍ରୀ ରାଓଙ୍କୁ ଆକୃଷ୍ଟ କରାଗଲା । କଥାରେ ଅଛି, ''ଆ ଲୋ ମୁତୁରୀ ଶୋଇବା, ତୁ ତ ମୁତୁରୀ, ମୁଁ ତ ମୁତୁରୀ ହେଁସ କାହିଁପାଇଁ ଧୋଇବା ।'' ଶ୍ରୀ ରାଓଙ୍କ କଳଙ୍କିତ ଶାସନର ପ୍ରାୟ ସବୁପ୍ରକାର ଦୁର୍ନୀତି ସେତେବେଳକୁ ପଦାରେ ପଡ଼ିଲାଣି । ଦୁର୍ନୀତି ଥିଲା ଜାନକୀବାବୁଙ୍କ ଅସ୍ଥିମଜ୍ଜାଗତ । ଅଜାଣତରେ ସେ ରାଓଙ୍କଠାରୁ ପାଇଥିବା ଋଣ ପରିଶୋଧ କରିବା ସଂଗେ ସଂଗେ ନିଜ ପାଇଁ ଉଜ୍ଜ୍ୱଳ ଭବିଷ୍ୟତ ଗଢ଼ିବାର ଉପାୟକଲେ । ରାଓ ଓଡ଼ିଶାରୁ ଲୋକସଭାକୁ ନିର୍ବାଚିତ ହେଲେ ତାଙ୍କପାଇଁ ଯେଉଁ ସୁଯୋଗ ଆସିବ ସେଥିରେ ସେ ବିହ୍ୱଳ ହୋଇ ନିଜ ରାଜ୍ୟ ଉପରେ ତା'ର କୁପ୍ରଭାବକୁ ବିଚାରକୁ ନେଉନଥିଲେ । ଶ୍ରୀ ରାଓ ବ୍ରହ୍ମପୁରରୁ ଜିତିବା ସଂଗେ ସଂଗେ ନନ୍ଦିଆଲରୁ ମଧ ଅଳ୍ପ ଭୋଟରେ ଜିତିଥିଲେ । କିନ୍ତୁ ନନ୍ଦିଆଲ ଆସନରୁ ଇସ୍ତଫା ଦେଇ ଓଡ଼ିଶାର ନିମକହାରାମ ଜାଗିରଦାରୀ ଖଣ୍ଡିକ (ବ୍ରହ୍ମପୁର) ହାତମୁଠାରେ ରଖିବାକୁ ସ୍ଥିରକଲେ । ଏହି ସମୟରେ ଉତ୍କଳ ସମ୍ମିଳନୀର ନେତୃତ୍ୱବର୍ଗ, ବିଭିନ୍ନ ରାଜନୈତିକ ଦଳର ସ୍ୱାଧୀନଚେତା ବୟୋଜ୍ୟେଷ୍ଠ ନେତା ଓ ଅବସରପ୍ରାପ୍ତ କେତେକ ଅଧ୍ୟାପକ ଓଡ଼ିଶାର ସ୍ୱାର୍ଥ ଲକ୍ଷ୍ୟ ଦୃଷ୍ଟିରୁ ଗୋଟିଏ ସମ୍ମିଳନୀ ଡକାଇ ବ୍ରହ୍ମପୁର ଲୋକସଭା ଆସନରୁ ଶ୍ରୀ ରାଓ ଇସ୍ତଫା ଦେବାପାଇଁ ଦାବି କରିଥିଲେ । ବହୁ ଚାଞ୍ଚଲ୍ୟକର ଫୌଜଦାରୀ ଅଭିଯୋଗରେ

ଅଭିଯୁକ୍ତହୋଇ ଜନଚକ୍ଷୁରେ ଘୋର ନିନ୍ଦିତ ହୋଇଥିବା ନରସିଂହ ରାଓ ଓଡ଼ିଶାରୁ ପ୍ରତିନିଧିତ୍ୱ କରିବା ଓଡ଼ିଶାବାସୀଙ୍କ ପକ୍ଷରେ ଅତ୍ୟନ୍ତ ଅପମାନଜନକ ବୋଲି ସେମାନେ କ୍ଷୋଭପ୍ରକାଶକରିଥିଲେ ।

## ଝିଇଁଣ୍ଡି ଶାସନ ବାବାଙ୍କ ଶରଣ

ଆମ ମୁଖ୍ୟମନ୍ତ୍ରୀ ଜାନକୀ ପଟ୍ଟନାୟକ ଓଡ଼ିଶାର ସେହି ବୁଦ୍ଧିଜୀବୀମାନଙ୍କର କ୍ଷୋଭକୁ ହସରେ ଉଡ଼ାଇଦେଇଥିଲେ । ଅଦାଲତରେ ଦୋଷୀ ସାବ୍ୟସ୍ତ ନହେବା ପର୍ଯ୍ୟନ୍ତ ନରସିଂହ ରାଓ ନିର୍ମଳ ବୋଲି ସଫେଇ ସାକ୍ଷୀ ଭଳି କଥା କହିଥିଲେ । ଏହା ମଧ୍ୟରେ ସେ ରାଓଙ୍କୁ ଶ୍ରୀ ଜଗନ୍ନାଥଙ୍କ ସୁନାବେଶ ଦର୍ଶନ କରାଇ ତାଙ୍କ ପାପକ୍ଷୟ କରାଇଦେଇଥାନ୍ତି । ଝିଇଁଣ୍ଡି ଶାସନର ଅବତାରୀ ବାବାଙ୍କଠାରୁ କୁଆଡ଼େ ରାଓଙ୍କପାଇଁ ପାପକ୍ଷାଳନ ଆଶୀର୍ବାଦ ଓ ବର ଆଣିପାରିଥା'ନ୍ତି ଯେ, ଶ୍ରୀ ରାଓତାଙ୍କ ରାଜୁତି ଫେରିପାଇ ଆଉ ଥରେ ପ୍ରଧାନମନ୍ତ୍ରୀ ହେବେ । ବାବାଙ୍କ ଉପରେ ଜାନକୀବାବୁଙ୍କ ଅଗାଧ ବିଶ୍ୱାସ । ବାବାଙ୍କ ଆସ୍ଥାନ ବାଟରେ ଜାନକୀବାବୁ କୁଆଡ଼େ ବହୁତ ବାଲି, ମାଟି ଓ ପଙ୍କ ଝୁଡ଼ି ମୁଣ୍ଡରେ ବୋହି ନେଇ ପକାନ୍ତି ଓ ଶ୍ରୀ ରାଓଙ୍କୁ ଯେଉଁଦିନ ସାଙ୍ଗରେ ସେଠାକୁ ନେଇଯାଇଥିଲେ ସେ ମଧ୍ୟ ବାଲି, ମାଟି, ପଙ୍କ ଝୁଡ଼ି ମୁଣ୍ଡରେ ବୋହିଥିଲେ ବୋଲି ଶୁଣାଯାଏ । ଜାନକୀବାବୁଙ୍କ ମତରେ, ବାବାଙ୍କ ଆଶୀର୍ବାଦ ପ୍ରାପ୍ତ ବ୍ୟକ୍ତି ଓଡ଼ିଶାର ପ୍ରତିନିଧିତ୍ୱ କରିବେନାହିଁ ତ ଆଉ କରିବ କିଏ ? ତେଣୁ ନୈତିକତା ଦୃଷ୍ଟିରୁ ଇସ୍ତଫା ଦାବି ଶୁଣିଲେ ଜାନକୀବାବୁ ହୁରୁଡ଼ିଯାଉଥିଲେ ।

## ଜାନକୀବାବୁଙ୍କ ଏକ୍ସପ୍ରେସ୍ ହାଇୱେ

ବାବାଙ୍କର ଆସ୍ଥାନ ଝିଇଁଣ୍ଡିଶାସନ ଭୁବନେଶ୍ୱରଠାରୁ ପ୍ରାୟ ପଚିଶ କିଲୋମିଟର ଦୂରରେ ଭାର୍ଗବୀ ନଦୀ କୂଳରେ ଅବସ୍ଥିତ । ବାଲିଅନ୍ତା ବ୍ଲକ୍‌ର ବାଳକାଟିଠାରୁ ସେଠାକୁ ଯିବାକୁ ପଡ଼େ । ବିଜୁ ପଟ୍ଟନାୟକ ସିନା ପାରାଦ୍ୱୀପଠାରୁ ସୁକିନ୍ଦା ଲୁହା ଖଣି ପର୍ଯ୍ୟନ୍ତ ଏକ୍ସପ୍ରେସ୍ ହାଇୱେ ନିର୍ମାଣ କରି ନୂତନ ଇତିହାସ ସୃଷ୍ଟି କରିଥିଲେ, ଜାନକୀ ପଟ୍ଟନାୟକ ବାଳକାଟିଠାରୁ ଝିଇଁଣ୍ଡି ଶାସନ ପର୍ଯ୍ୟନ୍ତ ଏକ ଏକ୍ସପ୍ରେସ୍ ହାଇୱେ ନିର୍ମାଣ କରିଛନ୍ତି । ଲୋକଙ୍କର ଦାବି ଥିଲା ଶାସନ ଭିତର ଦେଇ ରାସ୍ତାଟିକୁ ନେବାପାଇଁ, ଯଦ୍ୱାରା ସବୁ ଅଧିବାସୀଙ୍କର ସୁବିଧା ହୋଇଥାନ୍ତା । କିନ୍ତୁ କୁଆଡ଼େ ବାବାଙ୍କ ହୁକୁମରେ ଜାନକୀବାବୁଙ୍କ ନିର୍ଦ୍ଦେଶକ୍ରମେ ଗାଁକୁ ଏଡ଼ାଇଦେଇ ଆସ୍ଥାନଠାକୁ ରାସ୍ତା ନିର୍ମାଣ କରାଯାଇଛି । ରାସ୍ତା ନିର୍ମାଣପାଇଁ କୁଆଡ଼େ ଏକ କୋଟିରୁ ଊର୍ଦ୍ଧ୍ୱ ଟଙ୍କା ବ୍ୟୟ ହୋଇଛି । ଝିଇଁଣ୍ଡି ଶାସନ ବାବାଙ୍କର ଏହି ଆଶ୍ରମ ସହିତ ଜାନକୀବାବୁଙ୍କ ସଂପର୍କ ଘେନି ବହୁ କାହାଣୀ ଶୁଣିବାକୁ ମିଳେ । ମୁଖ୍ୟମନ୍ତ୍ରୀ ବାବାଙ୍କ ପାଖକୁ ଯାଉଥିବାରୁ ଖୋସାମଦିଆ ଅଫିସରମାନେ ମଧ୍ୟ ବାବାଙ୍କ ପାଖକୁ ଦୌଡ଼ିଥିଲେ । ରାଜ୍ୟର ଚିଫ୍ ସେକ୍ରେଟେରୀ ପଦପାଇଁ ଆଶାୟୀ ଅଫିସରମାନେ ବାବାଙ୍କ ପାଖକୁ ଯାଇ ଆଶୀର୍ବାଦ ଲୋଡ଼ିଥିଲେ । ଜଣାଯାଏ, ମୁଖ୍ୟମନ୍ତ୍ରୀଙ୍କର ଅଧିକ ପାଖଲୋକ ହେବା ଆଶାରେ ମନ୍ତ୍ରୀମାନେ ମଧ୍ୟ ଝିଇଁଣ୍ଡି ଶାସନକୁ ଦୌଡ଼ାଦୌଡ଼ିରେ ପ୍ରତିଯୋଗିତାକଲେ ।

## ପ୍ରଫୁଲ୍ଲ ପଟ୍ଟନାୟକ ଓ ଝିଇଁଣ୍ଡି ବାବା

ଝିଇଁଣ୍ଡି ଶାସନରେ ଏହି ବାବାଙ୍କ ବିଷୟରେ ମୋର ଜଣେ ବନ୍ଧୁଙ୍କ ଅନୁଭୂତିର ବିଷୟ ମୋର ମନେପଡ଼େ । ମୋର ସେହି ବନ୍ଧୁ ଜଣକ ହେଉଛନ୍ତି ଓଡ଼ିଶା ବିଧାନସଭାର ପୂର୍ବତନ ସଚିବ ଓ ପାର୍ଲାମେଣ୍ଟର ଭୂତପୂର୍ବ ଅତିରିକ୍ତ ସଚିବ ଶ୍ରୀ ପ୍ରଫୁଲ୍ଲ କୁମାର ପଟ୍ଟନାୟକ । ସେ ଭୁବନେଶ୍ୱରର ସୂର୍ଯ୍ୟ

ନଗରରେ ରହନ୍ତି । ସେ ମୋତେ କହୁଥିଲେ, ତାଙ୍କର ଜଣେ ଭାଇ ଆଣ୍ଠୁ ଓ ଅଣ୍ଟାରେ କୌଣସି ରୋଗ ହେତୁ ଚଲାବୁଲା କରିପାରୁନଥିଲେ । ସେ ବାଙ୍ଗାଲୋରରେ ରହୁଥିଲେ । ଝିଙ୍କିଣି ଶାସନର ବାବାଙ୍କଠାରୁ ଆଶୀର୍ବାଦ ପାଇଲେ ଏହି ପ୍ରକାର ରୋଗ ଭଲହୋଇଯାଉଛି ବୋଲି ଖବରପାଇଥିଲେ । ଶ୍ରୀ ନରସିଂହ ରାଓ ଏହି ବାବାଙ୍କର ଆଶୀର୍ବାଦ ପାଇଥିବା ଖବରକାଗଜରୁ ପଢ଼ି ସେ ଉତ୍ସାହିତ ହୋଇଥିଲେ । ବାବାଙ୍କ ପାଖକୁ ଆସିବାପାଇଁ ବାଙ୍ଗାଲୋରରୁ ଆସିଥିବା ତାଙ୍କ ଭାଇ ଝିଙ୍କିଣି ଶାସନ ବାବାଙ୍କ ପାଖରେ ପହଞ୍ଚିଥିଲେ । ବାବାଙ୍କ ସାଥିରେ ସାକ୍ଷାତ୍ ହେଲା । ବାବା ପଚାରିଲେ କୁଆଡ଼େ ଆସିଛ । ପ୍ରଫୁଲ୍ଲବାବୁ କହିଲେ, ବାବା ତ ସର୍ବଜ୍ଞ, ମୋତେ କ'ଣ ପଚାରୁଛନ୍ତି ? ବାବା ପ୍ରଫୁଲ୍ଲବାବୁଙ୍କୁ ପଚାରିଲେ ଗୋଟିଏ ସଂଖ୍ୟା କୁହ । ଗୋଟିଏ ସଂଖ୍ୟା ସେ କହିଲେ । ସେହି ପୃଷ୍ଠାରେ ପୋଥି ଖୋଲି କହିଲେ, ଆପଣଙ୍କର ସବୁ ମଙ୍ଗଳ । ଆପଣଙ୍କର ତିନୋଟିଯାକ ପୁଅ Well settled in life । ବେଶ୍ ଭଲରେ ଥଇଥାନ ହୋଇଛନ୍ତି । ପ୍ରଫୁଲ୍ଲବାବୁ କହିଲେ ବାବା ଯେଉଁ ପୃଷ୍ଠା ଦେଖୁଛନ୍ତି ସେଥିରେ କିଛି ଭୁଲ ରହିଗଲା ପରି ଲାଗୁଛି । ବାବା ଏହା ଶୁଣି କହିଲେ– ଆଉ ଗୋଟିଏ ସଂଖ୍ୟା କୁହ । ପ୍ରଫୁଲ୍ଲବାବୁ ଆଉ ଗୋଟିଏ ସଂଖ୍ୟା କହିଲେ, ବାବା ସେହି ପୃଷ୍ଠା ଦେଖି କହିଲେ, ଟିକିଏ ଭୁଲଥିଲା– ପ୍ରକୃତରେ ଆପଣଙ୍କର ଦୁଇଟି ପୁଅ ଓ ଗୋଟିଏ ଝିଅ । ସେମାନେ ଭଲରେ ଅଛନ୍ତି । ପ୍ରଫୁଲ୍ଲବାବୁ ଜଣେ ନକଲିଆ ଲୋକ । ସେ ପୁଣି କହିଲେ, ଅଳ୍ପ ଭୁଲ ରହିଗଲା । ଏଥର ବାବା ବିରକ୍ତ ହେଲେ । ପ୍ରଫୁଲ୍ଲବାବୁଙ୍କର ପିଲାଛୁଆ କିଛି ନଥିଲେ, ସେ ନିଃସନ୍ତାନ ଥିଲେ । ପ୍ରଫୁଲ୍ଲବାବୁ ଜୋର୍‌କରି ବାବାଙ୍କର ଭୁଲକଥାଗୁଡ଼ିକର ପ୍ରତିବାଦ କରିପାରିନଥିଲେ । ପ୍ରଫୁଲ୍ଲବାବୁଙ୍କ ସ୍ତ୍ରୀ ତାଙ୍କ ସାଙ୍ଗରେ ଯାଇଥିଲେ । ପ୍ରଫୁଲ୍ଲବାବୁ ତ ସହଜରେ ରହସିଆ ଲୋକ, ଖୁବ୍ ଉପସ୍ଥିତବୁଦ୍ଧିସଂପନ୍ନ । ବାବାଙ୍କ କଥାକୁ ପଦାରେ ପକାଇଦେଲେ, ସେ ହୁଏତ ଫିସାଦ କରି କହିବେ ତୁମର ଆଉ ଗୋଟିଏ ସ୍ତ୍ରୀ ଔରସରୁ ତିନୋଟି ପିଲା ଅଛନ୍ତି । ସତ୍‌ସଙ୍ଗ କରିବାକୁ ସିନା ଆଗ୍ରହ ହୁଏ, ଦୁର୍ଜନ ସଙ୍ଗ ବର୍ଜନ କରିବା ସର୍ବଥା ଶ୍ରେୟ । ତାଙ୍କ ଭାଇଙ୍କ ରୋଗକଥା କହିବାରୁ ଚାଳିଶ ଟଙ୍କା ଦେଇ ସେଠାରୁ ଔଷଧ କିଣିବାପାଇଁ ବାବା ବରାଦ କଲେ । ଏହି ପ୍ରବଞ୍ଚନାପୂର୍ଣ୍ଣ ଅଭିଜ୍ଞତା କଥା ପ୍ରଫୁଲ୍ଲବାବୁ ନିଜେ ମୋତେ କହି ରହସ୍ୟ ଉଦ୍‌ଘାଟନ କରିଥିଲେ ।

## କଂଗ୍ରେସ ଅନୁଷ୍ଠାନର ନୈତିକ ଅଧୋଗତିର ନମୁନା

କଂଗ୍ରେସ ଅନୁଷ୍ଠାନ ସମ୍ବନ୍ଧରେ ମୋର ଅନୁଭୂତି ସୁଦୂରପ୍ରସାରୀ ଓ ବହୁବିଧ । ମୋର ଯେତେବେଳେ ବାରବର୍ଷ ବୟସ, ମୁଁ ସ୍ୱାଧୀନତା ମନ୍ତ୍ରରେ ଉଦ୍‌ବୁଦ୍ଧ ହୋଇ ସେତେବେଳେ କଂଗ୍ରେସ ସଂପର୍କରେ ଆସିଥିଲି । ଏହି ପୁସ୍ତକରେ ଆଦ୍ୟରେ ସେସବୁ ଉଲ୍ଲେଖ କରିଛି । କଂଗ୍ରେସର ଗଠନମୂଳକ କାର୍ଯ୍ୟକ୍ରମ, ଆନ୍ଦୋଳନାତ୍ମକ କାର୍ଯ୍ୟ, ଦେଶ ଗଠନ ଓ ପ୍ରଶାସନିକ କାର୍ଯ୍ୟ ସହିତ ନାନା କ୍ଷେତ୍ରରେ ମୁଁ ଘନିଷ୍ଠ ଭାବରେ ଜଡ଼ିତହେବାର ସୁଯୋଗ ପାଇଛି । ଖଦଡ଼ଲୁଗା ପିନ୍ଧା ଅଭ୍ୟାସ ସବୁବେଳେ ମୁଁ ରଖିଛି । ସାମୟିକଭାବେ ଅନ୍ୟ ଦଳରେ ରହିଥିଲେ ମଧ୍ୟ ପୂର୍ବ କଂଗ୍ରେସର ମୌଳିକ ନୀତି ଓ ଆଦର୍ଶ ସବୁବେଳେ ମୋର ଆଚରଣକୁ ପ୍ରଭାବିତ କରିଥାଏ । ଓଡ଼ିଶାର କଂଗ୍ରେସ ଅନୁଷ୍ଠାନ ସମ୍ବନ୍ଧରେ ପ୍ରାୟ ଦୁଇ ବିଗତ ଦଶନ୍ଧିର ମୋର ଯେଉଁ ଅନୁଭୂତି ସେଥିରୁ କେତେକ କଥା ଏଥିପୂର୍ବରୁ ଉଲ୍ଲେଖ କରିଛି । ଏହି ସମୟ ଭିତରେ ସର୍ବଭାରତୀୟ କଂଗ୍ରେସ ଅନୁଷ୍ଠାନର ଅବସ୍ଥା ସମ୍ବନ୍ଧରେ କିଛି କହିବା ପ୍ରାସଙ୍ଗିକ ହେବ ବୋଲି ମୁଁ ମନେକରୁଛି । ସ୍ୱୟଂ ଜାତୀୟ କଂଗ୍ରେସର ସଭାପତି ଶ୍ରୀ ନରସିଂହ ରାଓ ନାନାବିଧ ଫୌଜଦାରୀ ଅପରାଧରେ ଲିପ୍ତ ଥିବାର ଆପାତ ପ୍ରମାଣ ମିଳିବା, ତାଙ୍କ ବିରୁଦ୍ଧରେ ଚାର୍ଜସିଟ୍ ହେବା ଏବଂ ତଦ୍ୱାରା ସେ ନିଜେ, ସାରା କଂଗ୍ରେସ ଅନୁଷ୍ଠାନ ଓ କଂଗ୍ରେସ କର୍ମୀମାନଙ୍କର ବ୍ୟକ୍ତିଗତ ପ୍ରତିଷ୍ଠା କିପରି ଘୋର କାଳିମାଗ୍ରସ୍ତ ହୋଇଥିଲା, ସେ କଥାର ସୂଚନା ଏଥିପୂର୍ବରୁ

ଦେଇଛି । ଓଡ଼ିଶାକୁ ପ୍ରତିନିଧିତ୍ୱ କରୁଥିବା ହେତୁ ତାଙ୍କ କଳଙ୍କିତ ବ୍ୟକ୍ତିତ୍ୱ ଓଡ଼ିଶାର ମର୍ଯ୍ୟାଦାପକ୍ଷେ ହାନିକର ହୋଇଥିଲା । ଏହାଦ୍ୱାରା ଓଡ଼ିଶାର ନାମ ମଧ୍ୟ କଳଙ୍କିତ ହେବାରୁ, ସ୍ୱାଭିମାନୀ ଓଡ଼ିଶାର ବୁଦ୍ଧିଜୀବୀମାନେ ସ୍ୱର ଉତ୍ତୋଳନ କରିଥିବାରୁ ଆମ ଜାନକୀବାବୁ ସିନା ସେମାନଙ୍କୁ ବିଦ୍ରୂପକରି ମନ୍ତବ୍ୟ ଦେଇଥିଲେ, ସର୍ବଭାରତୀୟ ସ୍ତରରେ ମଧ୍ୟ ସେ କଂଗ୍ରେସ ସଭାପତି ପଦରୁ ଇସ୍ତଫା ଦେବାପାଇଁ ଦାବି ହେବା ସତ୍ତ୍ୱେ ରାଓ ସେଥିପ୍ରତି କର୍ଣ୍ଣପାତ କଲେନାହିଁ ଏବଂ ଆନୁଷ୍ଠାନିକ ଭାବରେ ମଧ୍ୟ କଂଗ୍ରେସ ପକ୍ଷରୁ ଯୁକ୍ତି କରାଗଲା ଯେ, ଅଦାଲତରେ ଦୋଷୀ ସାବ୍ୟସ୍ତ ନହେଲା ପର୍ଯ୍ୟନ୍ତ ନରସିଂହ ରାଓ ଇସ୍ତଫା ଦେବା ପ୍ରଶ୍ନ ଉଠାଇବା ଅଯୌକ୍ତିକ ।

ଏହି ପ୍ରସଙ୍ଗରେ ଅତୀତରେ ଶିକ୍ଷଣୀୟ ଦୃଷ୍ଟାନ୍ତଗୁଡ଼ିକ ପ୍ରତି ଅବହିତ ରହି ଭବିଷ୍ୟତ୍‌ପାଇଁ ସମୁଚିତ ପଦକ୍ଷେପ ନନେଲେ ରାଜନୈତିକ ଦଳ ସମସ୍ତ ଦେଶର ଦୁର୍ଗତିର ଏକ ମତାନ୍ଧ ଜମାୟତରେ ପରିଣତ ହୋଇଯିବା ସ୍ୱାଭାବିକ । ଉଚ୍ଚ ପଦାଧିକାରୀଙ୍କ ବିରୁଦ୍ଧରେ ଗୁରୁତର ଦୁର୍ନୀତି ଅଭିଯୋଗ ସମ୍ବନ୍ଧରେ କଂଗ୍ରେସର ଏ ପ୍ରକାର ମନୋବୃତ୍ତିହିଁ ହେଉଛି ଅନୁଷ୍ଠାନର ଦୁର୍ଗତିର କାରଣ । ଏଭଳି ପ୍ରବୃତ୍ତି ପ୍ରୋତ୍ସାହିତ ହେବାଦ୍ୱାରା ଭ୍ରଷ୍ଟାଚାର ଓ ଦୁର୍ନୀତି ନିବାରଣ କରିବା ଆଉ ସମ୍ଭବ ନହୋଇ ବରଂ ବୁଡ଼ିଗଲା ଡଙ୍ଗା ତଳକୁ ତଳକୁ ପରି ସମଗ୍ର ଦଳ ଓ ସରକାରୀ କଳକୁ ତାହା ଗ୍ରାସ କରେ । ଅତୀତରେ ଏହି ସଂକ୍ରାନ୍ତୀୟ କେତେଗୁଡ଼ିଏ ଦୃଷ୍ଟାନ୍ତ ଏଠାରେ ସ୍ମରଣ କରାଯାଉ । ମୁଖ୍ୟମନ୍ତ୍ରୀ ବିରେନ୍ ମିତ୍ର ଓ ଯୋଜନାବୋର୍ଡ଼ ଅଧ୍ୟକ୍ଷ ବିଜୁ ପଟ୍ଟନାୟକ କୌଣସି ଦୁର୍ନୀତି ପାଇଁ ଅଦାଲତରେ ଦୋଷୀ ସାବ୍ୟସ୍ତ ହୋଇନଥିଲେ, ତଥାପି ରାଜନୈତିକ ଆଦର୍ଶ ପ୍ରତିଷ୍ଠାପାଇଁ ସେମାନଙ୍କୁ ନିଜ ନିଜ ପଦବୀରୁ ଇସ୍ତଫା ଦେବାକୁ ପଡ଼ିଥିଲା । ସେ ଥିଲା କଂଗ୍ରେସ ନେତା ଓ ସଦାଚାରୀ ଲାଲବାହାଦୁର ଶାସ୍ତ୍ରୀଙ୍କ ଅମଳ । ସେହିପରି ପଣ୍ଡିତ ଜବାହରଲାଲ ନେହେରୁଙ୍କ ଅମଳର ପଞ୍ଜାବର ମୁଖ୍ୟମନ୍ତ୍ରୀ ପ୍ରତାପ ସିଂ କାଇରନଙ୍କ ବିରୁଦ୍ଧରେ ହୋଇଥିବା ଅଭିଯୋଗର କୌଣସି ଅଦାଲତରେ ସେ ଦୋଷୀ ସାବ୍ୟସ୍ତ ହୋଇନଥିଲେ ମଧ୍ୟ ତାଙ୍କୁ ଇସ୍ତଫା ଦେବାକୁ ପଡ଼ିଥିଲା । ସ୍ୱର୍ଗୀୟ ୟୁ.ଏନ୍.ଧେବର କଂଗ୍ରେସରେ ସଭାପତି ଥିବା-ବେଳେ ଆପତ୍‌ପ୍ରମାଣଯୋଗ୍ୟ ଅଭିଯୋଗ କଂଗ୍ରେସ ପଦାଧିକାରୀଙ୍କ ବିରୁଦ୍ଧରେ ଆସୁଥିଲେ, ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାପାଇଁ ଅଦାଲତରେ ନିଷ୍ପତ୍ତି ପର୍ଯ୍ୟନ୍ତ ଅପେକ୍ଷା କରିବା କଥାକୁ ସେ ପ୍ରଶ୍ରୟ ଦେଉନଥିଲେ । କିନ୍ତୁ କଂଗ୍ରେସ ସଭାପତି ତଥା ପ୍ରଧାନମନ୍ତ୍ରୀ ଆସନକୁ ଯେତେବେଳେ ସ୍ୱର୍ଗୀୟ ରାଜୀବ ଗାନ୍ଧୀ ଓ ଶ୍ରୀ ନରସିଂହ ରାଓ ଅଧିକାର କଲେ ସେତେବେଳେ ପୂର୍ବର ଆଦର୍ଶ ଓ ପରମ୍ପରାକୁ ଜଳାଞ୍ଜଳି ଦିଆଯାଇଥିଲା । ଶ୍ରୀ ନରସିଂହ ରାଓଙ୍କ ଦୃଷ୍ଟିକୁ ଯେତେ-ଗୁଡ଼ିଏ ଦୁର୍ନୀତି ଅଭିଯୋଗ ଆସୁଥିଲା ତା'ଉପରେ କାର୍ଯ୍ୟାନୁଷ୍ଠାନ ନକରି ସେଗୁଡ଼ିକୁ ଘୋଡ଼ାଇ-ରଖାଯାଉଥିଲା । ଦିଲ୍ଲୀ ହାଇକୋର୍ଟ ଓ ସୁପ୍ରିମ୍‌କୋର୍ଟରେ ଜନସ୍ୱାର୍ଥ ମାମଲା ହୋଇନଥିଲେ ସେଗୁଡ଼ିକ ଲୋକଲୋଚନକୁ ଆସିନଥା'ନ୍ତା । ତାଙ୍କ ମନ୍ତ୍ରିମଣ୍ଡଳର ଅନେକ ବଡ଼ ବଡ଼ ମନ୍ତ୍ରୀ ଅନେକ ଦୁର୍ନୀତିରେ ଜଡ଼ିତ ଥିବାର ଦୁର୍ନାମ ରଟିଗଲା । ସେଇ ମନ୍ତ୍ରୀମାନଙ୍କ ମଧ୍ୟରୁ ବିଦ୍ୟାଚରଣ ଶୁକ୍ଳା, ମାଧବ ରାଓ ସିନ୍ଧିଆ, କ୍ୟାପ୍‌ଟେନ ସତିଶ୍ ଶର୍ମା, ଶ୍ରୀମତୀ ଶିଲା କାଉଲ, ଶ୍ରୀ ସୁଖରାମ, ଶ୍ରୀ ବଳରାମ ଝାକର ଓ ଶ୍ରୀ ଆର.କେ. ଧାବନଙ୍କ ନାମ ଉଲ୍ଲେଖଯୋଗ୍ୟ । ମନେହୁଏ ଯେପରି ଶ୍ରୀ ନରସିଂହ ରାଓଙ୍କ ମନ୍ତ୍ରିମଣ୍ଡଳଟି ଦୁର୍ନୀତିଗ୍ରସ୍ତ ବ୍ୟକ୍ତିମାନଙ୍କର ଗୋଟିଏ ଆଖଡ଼ା ପାଲଟିଥିଲା ଓ ଶ୍ରୀ ରାଓ ତାହାର ଓସ୍ତାଦ୍ ଥିଲେ । କେନ୍ଦ୍ର ତଦନ୍ତ ବ୍ୟୁରୋ ଭଳି ଦୁର୍ନୀତି ନିବାରଣ ସଂସ୍ଥାକୁ ନିଜ ଅକ୍ତିଆରରେ ରଖି ଶ୍ରୀ ରାଓ ସେହି ଅନୁଷ୍ଠାନର ଡାଇରେକ୍ଟର ଜେନେରାଲ ଶ୍ରୀ ରାମାରାଓ ତାଙ୍କର ବିଶ୍ୱସ୍ତ ଓ ଅନୁଗତ ଲୋକ ଥିବାରୁ ତାଙ୍କର କାର୍ଯ୍ୟକାଳକୁ ବାରମ୍ବାର ବୃଦ୍ଧିକରାଉଥିଲେ । ଶେଷରେ ସୁପ୍ରିମ୍‌କୋର୍ଟର ହସ୍ତକ୍ଷେପ ଯୋଗୁଁ ଶ୍ରୀ ରାମାରାଓଙ୍କ ନିଯୁକ୍ତିର ସମାପ୍ତିଘଟିଥିଲା । ଏହି ପରିପ୍ରେକ୍ଷୀରେ ଅଦାଲତରେ ଅଭିଯୋଗ ଆଗତହେବା କିପରି ସମୟସାପେକ୍ଷ ଓ ଅସାଧ୍ୟବ୍ୟାପାର ତାହା ଅନୁମାନ କରାଯାଇପାରେ ।

ସେଥିରେ ପୁଣି ଅଦାଲତରେ ଦୋଷୀ ସାବ୍ୟସ୍ତ ହେବା ପର୍ଯ୍ୟନ୍ତ କାର୍ଯ୍ୟାନୁଷ୍ଠାନକୁ ବନ୍ଦରଖିବାକୁ ଯୁକ୍ତିକରିବା କିପରି ହାସ୍ୟାସ୍ପଦ ତାହା ବିଚାର୍ଯ୍ୟ ।

ଅଦାଲତରେ ବିଚାର ଶେଷରେ ନିଃସନ୍ଦେହ ଭାବେ ଦୋଷୀ ସାବ୍ୟସ୍ତ ନହେବା ପର୍ଯ୍ୟନ୍ତ ଅଭିଯୁକ୍ତ ଆସାମୀଙ୍କୁ ଦୋଷୀ ଜ୍ଞାନନକରିବା ଗଣତାନ୍ତ୍ରିକ ଉଦାର ବିଚାର ପ୍ରଣାଳୀରେ ବିଚାରପତି-ମାନଙ୍କପାଇଁ ଏହା ଏକ ଶୁଦ୍ଧ ପାରମ୍ପରିକ ନିର୍ଦ୍ଦେଶ ବା ଗାଇଡ୍ ଲାଇନ୍ । ମାତ୍ର ରାଜନୈତିକ ବା ପ୍ରଶାସନିକ କାର୍ଯ୍ୟ ପରିଚାଳନା କ୍ଷେତ୍ରରେ ଆତ୍ମରକ୍ଷା ଓ ନିଜ ଲୋକଙ୍କ ସୁରକ୍ଷା ପାଇଁ ଏହି ନୀତିବାକ୍ୟର ଆଶ୍ରୟ ନେବାର ପରିଣତି ଶାସନ ଓ ସମାଜ ପକ୍ଷରେ ଘୋର ମାରାତ୍ମକ । ଦେଶର ବିଚାର ପଦ୍ଧତି ଯାହା ସେଥିରେ ପଦାଧିକାରୀଙ୍କ ବିରୁଦ୍ଧରେ ଅଦାଲତରେ ବିଚାରାଧୀନ ଥିବା ଅଭିଯୋଗର ଶେଷ ନିଷ୍ପତ୍ତି ପାଇବା ସମୟସାପେକ୍ଷ । ମୋକଦ୍ଦମାର ବିଚାର ବର୍ଷ ବର୍ଷ ଧରି ଚାଲେ । ଇତିମଧ୍ୟରେ ଅଭିଯୁକ୍ତ ପଦାଧିକାରୀ ତାଙ୍କ ଆସନରୁ ଚାଲିଯାଇଥିବେ । ଅଦାଲତର ଫଳାଫଳ ଭବିଷ୍ୟତ୍‌ରେ ଯାହା ହେଉପଛେ ରାଜନୈତିକ ଦଳମାନେ ଦେଶର ଦୁର୍ନୀତି ନିରାକରଣ କରିବାକୁ ହେଲେ ବିନାଦ୍ୱିଧାରେ ଓ ବିନା ବିଳମ୍ବରେ ଦଳୀୟ ବ୍ୟକ୍ତି କିମ୍ବା ସରକାରୀ କର୍ମଚାରୀଙ୍କ ବିରୁଦ୍ଧରେ ଦୁର୍ନୀତିର ସାମାନ୍ୟ ଆପାତ ପ୍ରମାଣ ପାଇବା ମାତ୍ରେ କଠୋର କାର୍ଯ୍ୟାନୁଷ୍ଠାନ କରିବାହିଁ ଏକାନ୍ତ ଅପରିହାର୍ଯ୍ୟ ଆବଶ୍ୟକତା । ତାହା କରାଗଲେହିଁ ରାଜନୈତିକ ଦଳ ଓ ଗଣତାନ୍ତ୍ରିକ ଶାସନର ଦୁର୍ନୀତିର ଫଳପ୍ରଦ ପ୍ରତିରୋଧ କରାଯାଇପାରିବ ।

ଚଳିତ ଦଶନ୍ଧିରେ ଦୁର୍ନୀତି ପାଇଁ ଅଭିଯୁକ୍ତ ହୋଇଥିବା ପୃଥିବୀରେ ତିନୋଟି ରାଷ୍ଟ୍ରରେ ଛଅଜଣ ପଦାଧିକାରୀ ଅଦାଲତରେ ଦୋଷୀ ସାବ୍ୟସ୍ତ ହୋଇ ଜେଲଖାନାରେ ଦଣ୍ଡଭୋଗୁଛନ୍ତି । ସେମାନେ ହେଲେ ଇଟାଲୀର ଦୁଇଜଣ ପ୍ରଧାନମନ୍ତ୍ରୀ Bettino Craxi ଓ Armaldo Forlani ଏବଂ କୋରିଆର ଦୁଇଜଣ ରାଷ୍ଟ୍ରପତି Chun-Doo-Hwan ଓ Roh-Tae-Woo । ଜାପାନର ଦୁଇଜଣ ପ୍ରଧାନମନ୍ତ୍ରୀ ଦୁର୍ନୀତି ଅଭିଯୋଗରେ ଦଣ୍ଡିତହୋଇଛନ୍ତି । ଉପରୋକ୍ତ ଦେଶମାନଙ୍କରେ ଉଚ୍ଚ ପଦାଧିକାରୀମାନଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗର ତ୍ୱରାନ୍ୱିତ ବିଚାରପାଇଁ ବ୍ୟବସ୍ଥା ରହିଥିବାରୁ ଅଳ୍ପ ସମୟ ମଧ୍ୟରେ ବିଚାର ସମାପ୍ତ ହୋଇଛି ଓ ସେମାନେ ଦଣ୍ଡପାଇଛନ୍ତି । ଉଦାହରଣସ୍ୱରୂପ, କୋରିଆର ଫୌଜଦାରୀ ମାମଲାଗୁଡ଼ିକ ଅଦାଲତରେ ବିଚାର ଚଉଦମାସ ଭିତରେ ସମାପ୍ତ ହେବାର ନିୟମ ଅଛି । କିନ୍ତୁ ଆମ ଦେଶରେ ଗୋଟିଏ ଗୋଟିଏ ମୋକଦ୍ଦମାର ବିଚାର ଅଦାଲତରେ ଚଉଦ ବର୍ଷରୁ ଅଧିକ ସମୟ ଧରି ଗଡୁଛି ।

## ନରସିଂହ ରାଓଙ୍କ ସଂପର୍କରେ ବ୍ରହ୍ମାନନ୍ଦ ରେଡ୍ଡିଙ୍କ ସତର୍କବାଣୀ

ଶ୍ରୀ ନରସିଂହ ରାଓଙ୍କ ଦୁର୍ନୀତିର କିଛି ସୀମା ନାହିଁ । ଦେଶରେ ବହୁ ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟ ସହିତ ସେ ଜଡ଼ିତ ଅଛନ୍ତି । ମନେହୁଏ ଯେପରି ଦୁର୍ନୀତିପୂର୍ଣ୍ଣ ଉପାୟରେ ଅର୍ଥ ଉପାର୍ଜନ କରିବାପାଇଁ ସେ ପ୍ରଧାନମନ୍ତ୍ରୀ ହୋଇଥିଲେ । ସେ ଯେତେବେଳେ ପ୍ରଧାନମନ୍ତ୍ରୀ ହେଲେ ସେତେବେଳେ ଆନ୍ଧ୍ରପ୍ରଦେଶର ଜଣେ ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗୀୟ ବ୍ରହ୍ମାନନ୍ଦ ରେଡ୍ଡୀ କହିଥିଲେ ଜଣେ ଦୁର୍ନୀତିଗ୍ରସ୍ତ ଓ ଭ୍ରଷ୍ଟାଚାରୀ ଦେଶର ପ୍ରଧାନମନ୍ତ୍ରୀ ହେଲେ । ସ୍ୱର୍ଗୀୟ ରେଡ୍ଡୀଙ୍କ ଏହି ଭବିଷ୍ୟତବାଣୀ ଏବେ ସତ୍ୟପରି ପ୍ରତୀତ ହୋଇଛି । ହର୍ଷଦ ମେହେଟ୍ଟାଙ୍କଠାରୁ କୋଟିଏ ଟଙ୍କା ଲାଞ୍ଚ ନେବା କଥାଟା ହେଉଛି ନିରାଟ ସତ୍ୟ । ଲୋକସଭାରେ ଅନାସ୍ଥା ପ୍ରସ୍ତାବରେ ଜିତିବାପାଇଁ ଲାଞ୍ଚ ଦେଇ ବିରୋଧୀ ଦଳରୁ ସଭ୍ୟ କିଣିବା ଯେ ନିଶ୍ଚିତ ଭାବରେ ତାଙ୍କ ଇଙ୍ଗିତରେ ହୋଇଥିଲା, ଏଥିରେ କୌଣସି ସନ୍ଦେହନାହିଁ । ବିଦେଶରୁ ୧୩୧ କୋଟି ଟଙ୍କାର ୟୁରିଆ କିଣା ଦୁର୍ନୀତି ସହିତ ନରସିଂହ ରାଓଙ୍କ ପୁତ୍ର ଓ ତାଙ୍କର ଅନ୍ୟାନ୍ୟ ସଂପର୍କୀୟ

ଲୋକ ଘନିଷ୍ଠଭାବରେ ସଂପୃକ୍ତ ଥିବା କଥା ଭଲଭାବରେ ଜଣାପଡ଼ିଛି । ଏ ପ୍ରକାର ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟ ଯେ ପ୍ରଧାନମନ୍ତ୍ରୀ ରାଓଙ୍କ ଅଗୋଚରରେ ହୋଇଥିଲା ସେପରି କହିବା ଠିକ୍ ହେବନାହିଁ । ସେଭଳି ବ୍ୟକ୍ତିଙ୍କ କାରବାର ସହିତ ଯେଉଁ ଦୁର୍ନୀତି (Security Scam) ହୋଇଥିଲା, ତା ସହିତ ନରସିଂହ ରାଓଙ୍କ ସଂପର୍କ ବଡ଼ ରହସ୍ୟପୂର୍ଣ୍ଣ ଥିଲା । ଦୁର୍ନୀତି ସହିତ ନରସିଂହ ରାଓଙ୍କ ପୁଅଙ୍କ ପୁଅ ଓ ପୁତୁରା ପ୍ରଭୃତି ଜଡ଼ିତ ଥାଇ ସେମାନଙ୍କର ଶିଳ୍ପ ପ୍ରତିଷ୍ଠାନପାଇଁ ବେଶ୍ ଭଲ ଫାଇଦା ଉଠାଇପାରିଥିବା ଅଭିଯୋଗ ହୁଏ । ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ ଓ ତାଙ୍କ ପୁତ୍ର ସେଣ୍ଟକିଟ୍‌ସର ଗୋଟିଏ ବ୍ୟାଙ୍କ୍‌ରେ କୋଟି କୋଟି ଟଙ୍କା ରଖିଛନ୍ତି ବୋଲି ଦର୍ଶାଇ ତାଙ୍କୁ ବଦ୍‌ନାମ କରିବାପାଇଁ ଯେଉଁ ଷଡ଼ଯନ୍ତ୍ରପୂର୍ଣ୍ଣ କାର୍ଯ୍ୟହୋଇଥିଲା, ତା ସହିତ ସେ ବୈଦେଶିକ ମନ୍ତ୍ରୀ ଥାଇ ରାଜୀବ ଗାନ୍ଧୀଙ୍କ ନିର୍ଦ୍ଦେଶ ଅନୁସାରେ ଜଡ଼ିତ ଥିଲେ ବୋଲି ସେ ନିଜେ ସ୍ୱୀକାର କରିଥିଲେ । ଲାଖୁଭାଇ ପାଠକ ଠକେଇ ଅଭିଯୋଗ ମାମଲାରେ ଚନ୍ଦ୍ରସ୍ୱାମୀଙ୍କ ସହିତ ନରସିଂହ ରାଓ ଜଡ଼ିତ ଥିଲେ ବୋଲି ଅଭିଯୋଗ ହୋଇଛି । ଏ ପ୍ରକାର ଅଭିଯୁକ୍ତ ବ୍ୟକ୍ତିଙ୍କ ବିରୋଧରେ କୌଣସି କାର୍ଯ୍ୟାନୁଷ୍ଠାନ ନକରି ନୀରବ ହୋଇ ବସିରହିବା ଆଦୌ ସମୀଚୀନ ନୁହେଁ । ଅଧିକାଂଶ କଂଗ୍ରେସ ଲୋକଙ୍କର ମଧ୍ୟ ହୃଦ୍‌ବୋଧ ହେଲାଣି ଯେ, ଶ୍ରୀ ରାଓ ଜଣେ ଦୁର୍ନୀତିଗ୍ରସ୍ତ ବ୍ୟକ୍ତି ଏବଂ ପ୍ରଧାନମନ୍ତ୍ରୀ ପଦ ଓ କ୍ଷମତା ବ୍ୟବହାର କରି ସେ ପ୍ରଚୁର ଅର୍ଥ ଠୁଳକରିଛନ୍ତି । ତେଣୁ ମୋକଦ୍ଦମାଗୁଡ଼ିକର ଅଦାଲତରେ ନିଷ୍ପତ୍ତି କ'ଣ ହେବ ସେଥିପାଇଁ ଅପେକ୍ଷା ନକରି ଏ ପ୍ରକାର ବ୍ୟକ୍ତିଙ୍କୁ ବହିଷ୍କାର କରିଦେବା ଅନୁଷ୍ଠାନର କର୍ତ୍ତବ୍ୟ ବୋଲି ମୁଁ ଅନୁଭବକରୁଛି ।

ଶ୍ରୀ ନରସିଂହ ରାଓଙ୍କ ପୂର୍ବରୁ ସ୍ୱର୍ଗୀୟ ରାଜୀବ ଗାନ୍ଧୀ କଂଗ୍ରେସର ସଭାପତି ଥିଲେ ଏବଂ ପ୍ରଧାନମନ୍ତ୍ରୀ ହୋଇଥିଲେ । ଶ୍ରୀ ରାଜୀବ ଗାନ୍ଧୀ କେତେ ବଡ଼ ଦୁର୍ନୀତିଗ୍ରସ୍ତ ବ୍ୟକ୍ତି ଥିଲେ ସେକଥା ମୁଁ ଆଗରୁ ଏହି ପୁସ୍ତକରେ ବର୍ଣ୍ଣନା କରିଛି । ବୋଫର୍ସ କମ୍ପାନୀରୁ ତୋପ, ଉଡ଼ାଜାହାଜ, ହେଲିକପ୍‌ଟର, ବୁଡ଼ାଜାହାଜ ପ୍ରଭୃତି କିଣା କାରବାରର ଦୁର୍ନୀତି ସହିତ ସେ କିପରି ଜଡ଼ିତ ଥାଇ ଅଜସ୍ର ଟଙ୍କା ହେରଫେର କରିଥିଲେ, ସେ ବିଷୟ ସମ୍ବାଦପତ୍ରମାନଙ୍କରେ ବିସ୍ତୃତ ଭାବରେ ପ୍ରକାଶ ପାଇଆସିଛି । ହାଓଲା କାରବାର ପ୍ରସିଦ୍ଧ ଜୈନ ବ୍ରଦର୍ସଙ୍କଠାରୁ ସେ ଦୁଇ କୋଟି ଟଙ୍କା ନେଇଥିଲେ ବୋଲି ଜୈନ ଡାଏରୀରୁ ବାହାରିଛି । ତାଙ୍କଛଡ଼ା ତାଙ୍କ ମନ୍ତ୍ରିମଣ୍ଡଳର ଅନେକ ମନ୍ତ୍ରୀ ହାଓଲା ଟଙ୍କା ନେଇଛନ୍ତି ବୋଲି ଜୈନଙ୍କ ଡାଏରୀରୁ ବାହାରୁଛି । ଏହି ହାଓଲା ବେପାରରେ ୬୫ କୋଟି ଟଙ୍କା ବିଭିନ୍ନ ରାଜନୈତିକ ଦଳର ମନ୍ତ୍ରୀ ଓ ନେତାମାନେ ନେଇଛନ୍ତି ବୋଲି ପ୍ରକାଶ ପାଇଛି । ଏହି ୬୫ କୋଟି ଟଙ୍କାରୁ ପ୍ରାୟ ୬୦ କୋଟି ଟଙ୍କା କଂଗ୍ରେସ ନେତା ଓ କଂଗ୍ରେସ ମନ୍ତ୍ରୀମାନେ ପାଇଛନ୍ତି ବୋଲି ହିସାବ ବାହାରିଛି । ଆଇନ୍ ଅଦାଲତରେ ଏ ସଂପର୍କରେ ହୋଇଥିବା ମୋକଦ୍ଦମାଗୁଡ଼ିକର ମୋଡ଼ ଯାହାହୋଇଥାଉ ପଛେ ଜନତା ଅଦାଲତରେ ଏ ଅଭିଯୋଗଗୁଡ଼ିକ ନିରାଟସତ୍ୟ ପ୍ରମାଣିତ ହୋଇଛି ବୋଲି ମୋର ହୃଦ୍‌ବୋଧ ହେଉଛି । ରାଜୀବ ଗାନ୍ଧୀଙ୍କ ମୃତ୍ୟୁ ପରେ ହାଓଲା କାରବାରରେ ସେ ଟଙ୍କା ନେବା କଥା ବାହାରିଛି । ତାହା ତାଙ୍କ ମୃତ୍ୟୁ ପରେ ଆଉ ଅଦାଲତରେ ବିଚାର ପରିସରକୁ ଆସିପାରିବ ନାହିଁ । ରାଜୀବ ଗାନ୍ଧୀ ଯଦି ସଚ୍ଚୋଟ ପ୍ରଧାନମନ୍ତ୍ରୀ ଓ କଂଗ୍ରେସ ସଭାପତି ହୋଇଥା'ନ୍ତେ ତା'ହେଲେ ତାଙ୍କ ଅମଳରେ କଂଗ୍ରେସ ନେତା ଓ ମନ୍ତ୍ରୀମାନେ ଜୈନ ବ୍ରଦର୍ସଙ୍କ ସହିତ ଜୋକପରି ଲାଗି ଏପରି ଭାବରେ ଟଙ୍କା ନେବାକୁ ସାହସ କରିନଥା'ନ୍ତେ । ଯେପରି ବହୁଲୋକଙ୍କ ଭିତରେ ଏହି କାରବାରଟି ହୋଇଥିଲା ତାହା ନିଶ୍ଚିତ ଭାବରେ ରାଜୀବ ଗାନ୍ଧୀଙ୍କ କାନରେ ପଡ଼ିଥିବ । ଯେହେତୁ ସେ ନିଜେ ଦୁଇ କୋଟି ଟଙ୍କା ପାଇଥିଲେ ତେଣୁ ଅନ୍ୟମାନଙ୍କ କଥା କାନରେ ପଡ଼ିଥିଲେ ମଧ୍ୟ ସେ ଜାଣି ନଜାଣିଲା ଭଳି ରହିଥିଲେ । ରାଜୀବ ଗାନ୍ଧୀ କଂଗ୍ରେସର ନୀତି, ଆଦର୍ଶ, ନୈତିକ ମୂଲ୍ୟବୋଧ ଓ ପରମ୍ପରା ସହିତ ଲେଶମାତ୍ର ସଂପର୍କରେ ନଥିଲେ । ଭୋଗବିଳାସ ଓ ଅର୍ଥ ଉପାର୍ଜନ ଲାଳସା ଥିଲା ତାଙ୍କର ସ୍ୱଭାବଗତ

ଅଭ୍ୟାସ, ଆଶା ଓ ଆକାଂକ୍ଷା । କି ପରିପ୍ରେକ୍ଷୀରେ ତାଙ୍କୁ ଅଣାଯାଇ କଂଗ୍ରେସ ସଂପାଦକ ଓ ନେତା ଆସନରେ ବସାଇ ଦିଆଯାଇଥିଲା ଏବଂ ପରେ କି କି ଅବସ୍ଥାରେ ସେ ପ୍ରଧାନମନ୍ତ୍ରୀ ଓ କଂଗ୍ରେସ ସଭାପତି ଗାଦି ମାଡ଼ିବସିଲେ ସେ କଥା ମୁଁ ଅନ୍ୟତ୍ର ଲେଖିଛି । ଏ ପ୍ରକାର ଦାୟିତ୍ୱ ବହନ କରିବାର ଯୋଗ୍ୟତା ତାଙ୍କର ନଥିଲା । ଇନ୍ଦିରା ଗାନ୍ଧୀଙ୍କ ମୃତ୍ୟୁ ପରେ ଚାଟୁକାର ଓ ଖୋସାମତିଆମାନେ ତାଙ୍କୁ ପ୍ରଧାନମନ୍ତ୍ରୀ ଆସନରେ ବସାଇଦେଲେ । ଫଳରେ କଂଗ୍ରେସ ଦୁର୍ନୀତି ଓ ଭ୍ରଷ୍ଟାଚାରର ଜାଲ ଇନ୍ଦିରାଙ୍କ ମୃତ୍ୟୁ ଅନ୍ତେ ଶିଖ୍‌ମାନଙ୍କର ସଂହାର ଓ ନାନା ବ୍ୟଭିଚାରର ପୀଠସ୍ଥଳୀ ପାଲଟିଗଲା । ତାହାର ଅପରିହାର୍ଯ୍ୟ କୁପ୍ରଭାବ ଶାସନ ଉପରେ ପଡ଼ିଥିଲା ।

## ଶିଖ୍-ସଂହାର ଓ ଧର୍ମନିରପେକ୍ଷତା

ରାଜୀବ ଗାନ୍ଧୀ ପ୍ରଧାନମନ୍ତ୍ରୀ ହେବାର ପ୍ରଥମ ସପ୍ତାହରେହିଁ ଜଣାପଡ଼ିଥିଲା ଯେ କେଉଁ ସ୍ତରର ଜଣେ ଅଯୋଗ୍ୟ ବ୍ୟକ୍ତିଙ୍କୁ କଂଗ୍ରେସ ଲୋକେ ଆଣି ଦେଶ ଓ ଶାସନର ଦାୟିତ୍ୱ ଦେଇଥିଲେ । ଇନ୍ଦିରା ଗାନ୍ଧୀଙ୍କ ମୃତ୍ୟୁ ପରେ ଭାରତର ପ୍ରଧାନମନ୍ତ୍ରୀରୂପେ ସେ ଅକସ୍ମାତ୍ ଅଭିଷିକ୍ତ ହୋଇଥିଲେ । ଠିକ୍ ସେତିକିବେଳେ ଦିଲ୍ଲୀରେ ଆରମ୍ଭହୋଇଗଲା ଶିଖ୍ ସଂହାର ଅଭିଯାନ । କେତେକ ମୁଖ୍ୟ କଂଗ୍ରେସ ଲୋକଙ୍କ ନେତୃତ୍ୱରେ ଶିଖ୍‌ମାନଙ୍କୁ ଗୋଡ଼ାଇ ଗୋଡ଼ାଇ ରାସ୍ତାରେ ଓ ଘରେପଶି ହତ୍ୟା କରାଯାଇଥିଲା । ତାଙ୍କ ମାତା ଇନ୍ଦିରା ଗାନ୍ଧୀଙ୍କୁ ଯେଉଁ ଦେହରକ୍ଷୀ ଗୁଳିକରି ମାରିଥିଲା, ସେ ଥିଲା ଜଣେ ଶିଖ୍ ଜାତିର ଲୋକ ବିୟନ୍ତ ସିଂ । ଇନ୍ଦିରାଙ୍କ ହତ୍ୟାର ପ୍ରତିଶୋଧ ସ୍ୱରୂପ କେତେକ ଶିଖ୍ ଜାତିର ପରିବାରଙ୍କର ବସବାସ ଭାଙ୍ଗିରୁଜି ଦିଆଗଲା ଏବଂ ନୃଶଂସ ହତ୍ୟାକାଣ୍ଡ କରାଗଲା । ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ନୀରବଦ୍ରଷ୍ଟା ଭାବେ ବସିଥା'ନ୍ତି । ତାଙ୍କର ଜଣେ ବଡ଼ ସମର୍ଥକ ଦିଲ୍ଲୀର କଂଗ୍ରେସ ନେତା ଶ୍ରୀ ଏଚ୍.କେ.ଏଲ୍. ଭଗତ ଏହିସବୁ ଶିଖ୍ ସଂହାର ଅଭିଯାନଗୁଡ଼ିକୁ ପରିଚାଳନା କରୁଥିଲେ । ରାଜୀବ ଗାନ୍ଧୀ ଏହିସବୁ ବର୍ବରୋଚିତ କାଣ୍ଡକୁ ବନ୍ଦକରିବା ଦୂରେଥାଉ ବରଂ ଏ ଦିଗରେ ତାଙ୍କର ନିଷ୍କ୍ରିୟ ଆଚରଣ ଯୋଗୁଁ ଶିଖ୍ ହତ୍ୟା ଅଭିଯାନ ଅବାରିତ ପ୍ରଶ୍ରୟ ପାଇଥିଲା । ସେତେବେଳେ ବିଶିଷ୍ଟ ସମ୍ବାଦପତ୍ରମାନେ ଏଥିପାଇଁ କଂଗ୍ରେସ ନେତା ଶ୍ରୀ ଏଚ୍.କେ.ଏଲ୍. ଭଗତଙ୍କ ନାମ ଉଲ୍ଲେଖ କରି ନୀରବଦ୍ରଷ୍ଟା ପ୍ରଧାନମନ୍ତ୍ରୀ ଓ କଂଗ୍ରେସ ନେତାଙ୍କର ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରୋତ୍ସାହନର ଘୋର ନିନ୍ଦାକରି ଅଗ୍ରଲେଖାମାନ ପ୍ରକାଶକରିଥିଲେ । କେତେକ ପ୍ରତିଷ୍ଠିତ ସମ୍ବାଦପତ୍ର ପ୍ରଥମ ପୃଷ୍ଠାରେ ଏଭଳି ଅଗ୍ରଲେଖା ଛାପି ଏପରି ଜଘନ୍ୟ ଆଚରଣ ପ୍ରତି ଦେଶବାସୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଏହି ସାମ୍ପ୍ରଦାୟିକ ଗଣ୍ଡଗୋଳରେ ଶିଖ୍ ସଂପ୍ରଦାୟର ପ୍ରାୟ ତିନି ହଜାର ଲୋକ ପ୍ରାଣ ହରାଇଥିଲେ ବୋଲି ଅଭିଯୋଗ ହୋଇଥିଲା । ଯେଉଁ କାରଣରୁ ହେଲେ ମଧ୍ୟ ପୁଲିସ ଶିଥିଳତା ପ୍ରକାଶକରି ଖାଲି ଉପରଠାଉରିଆ ଭାବରେ କେତେକ ଜାଗାରେ କାର୍ଯ୍ୟାନୁଷ୍ଠାନ କରିଥିଲେ ବୋଲି ଅଭିଯୋଗ ହୋଇଥିଲା । ସ୍ୱାଭାବିକ ପ୍ରଶ୍ନ ଉଠିଥିଲା ଯେ, ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ନିଜେ ଦିଲ୍ଲୀରେ ଉପସ୍ଥିତଥାଇ ମଧ୍ୟ ଯଦି ଏହି ହିଂସାକାଣ୍ଡ ରୋକିବାପାଇଁ ବିଶେଷ କିଛି ପଦକ୍ଷେପ ନେଇଥା'ନ୍ତେ, ତେବେ କ'ଣ ଏ ବର୍ବରତା ବନ୍ଦ ହୋଇପାରିନଥା'ନ୍ତା ? କିନ୍ତୁ ତାହା କରାଗଲାନାହିଁ । ପୁଣି ରାଜଧାନୀ ଦିଲ୍ଲୀ ଭଳି ଜାଗାରେ ଏପରି ବ୍ୟାପକ ହତ୍ୟାକାଣ୍ଡ ଓ ଏତେ ଲୋକଙ୍କ ପ୍ରାଣହାନି ସ୍ୱାଧୀନ ଭାରତର ଇତିହାସକୁ କାଳିମାମୟ କରିଦେଲା । ନୀରବଦ୍ରଷ୍ଟା ରହି ରାଜୀବ ତାଙ୍କର ଅନ୍ତର୍ନିହିତ ସାମ୍ପ୍ରଦାୟିକ ସଂକୀର୍ଣ୍ଣତାକୁ ପଦାରେ ପକାଇଦେଇଥିବା ଅଭିଯୋଗ ହୋଇଥିଲା । ଏହିସବୁ ଘଟଣା ପର୍ଯ୍ୟାଲୋଚନା କଲେ ସେ ଅନ୍ତରରେ ଜଣେ ପ୍ରତିହିଂସାପରାୟଣ ସାଂପ୍ରଦାୟିକ ନିଷ୍ଠୁର ବ୍ୟକ୍ତି ଭଳି ଆଚରଣ କରିଥିଲେ ବୋଲି କହିଥିଲେ ତାହା ଅଯୌକ୍ତିକ କହିହେବନାହିଁ । ବିଭିନ୍ନ ସମୟରେ ନାନା ସୂତ୍ରରେ ସାଂପ୍ରଦାୟିକ ବୈରଭାବର ସୁଯୋଗ ଉଣ୍ଡି ଏବଂ ଜଣେ ଦୂରଦୃଷ୍ଟିହୀନ ଅନଭିଜ୍ଞ ରାଜନେତା

ଭାବରେ ତାହାର ପୃଷ୍ଟପୋଷକତା କରି ରାଜୀବ ଗାନ୍ଧୀହିଁ ସର୍ବଭାରତୀୟ ରାଜନୀତିରେ ସାଂପ୍ରଦାୟିକ ଭିତ୍ତିରେ ଭୋଟବ୍ୟାଙ୍କ ରାଜନୀତି କରିବାର ପ୍ରଧାନ ଅପରାଧୀ ବୋଲି କହିବା ଅତ୍ୟୁକ୍ତି ହେବନାହିଁ । ଏହି ଉଦ୍ଦେଶ୍ୟରେ ସେ କିପରି ସାଂପ୍ରଦାୟିକ ମନୋବୃତ୍ତିଦ୍ୱାରା ପରିଚାଳିତ ହେଉଥିଲେ ତାହା ତାଙ୍କର ପ୍ରଧାନମନ୍ତ୍ରିତ୍ୱ ସମୟର ବହୁ ଘଟଣାରୁ ସ୍ପଷ୍ଟ ପ୍ରମାଣିତ ହୁଏ । ଅଯୋଧାରେ ରାମ ମନ୍ଦିର ନିର୍ମାଣ ସମ୍ବନ୍ଧରେ ବର୍ତ୍ତମାନ ଯେଉଁ ବିବାଦ ଲାଗିରହିଛି ତାହାର ବୀଜ ବପନ କରିବାରେ ରାଜୀବ ଗାନ୍ଧୀଙ୍କର ସଂକୀର୍ଣ୍ଣ ରାଜନୀତି କିଛି କମ୍ ନୁହେଁ । ଅଯୋଧାର ବାବ୍‌ରି ମସ୍‌ଜିଦ୍ ପାଖରେ ଥିବା ରାମ ମନ୍ଦିର ୧୯୪୯ ମସିହାଠାରୁ ୧୯୮୬ ଫେବୃୟାରୀ ପର୍ଯ୍ୟନ୍ତ ଅଦାଲତର ଆଦେଶ ଅନୁସାରେ ସିଲ୍ ହୋଇ ବନ୍ଦରଖାଯାଇଥିଲା । ତତ୍ପରେ ୧୯୮୬ ଫେବୃୟାରୀରେ ବିଶ୍ୱ ହିନ୍ଦୁ ପରିଷଦର ଆବେଦନ ବିଚାର ପରେ ଅଦାଲତ ଆଦେଶ ଅନୁଯାୟୀ ପୁଣି ମନ୍ଦିର ଖୋଲାହେଲା । ସେତେବେଳେ ମୁସଲମାନ ସଂପ୍ରଦାୟ ପକ୍ଷରୁ ଆପତ୍ତି ଉଠିଲା । ତା'ପରେ ନଭେମ୍ବର ୧୯୮୯ରେ ବିଶ୍ୱ ହିନ୍ଦୁ ପରିଷଦଦ୍ୱାରା ରାମ ମନ୍ଦିର ଶିଳାନ୍ୟାସ କରାଗଲା । ସେ ସମୟରେ ମଧ ମୁସଲମାନ ସଂପ୍ରଦାୟ ପକ୍ଷରୁ ପ୍ରତିବାଦ କରାଯାଇଥିଲା । ଏହି ଦୁଇଟି ଘଟଣା ସମୟରେ ନିଜନିଜକୁ ଧର୍ମ ନିରପେକ୍ଷତାର ସାକ୍ଷାତ୍ ଅବତାର ବୋଲି ଡିଣ୍ଡିମ ପିଟୁଥିବା ରାଜୀବ ଗାନ୍ଧୀ ଓ ମୁଲାୟମ ସିଂହ ଯାଦବ ଥିଲେ ଭାରତର ଯଥାକ୍ରମେ ପ୍ରଧାନମନ୍ତ୍ରୀ ଓ ଉତ୍ତରପ୍ରଦେଶର ମୁଖ୍ୟମନ୍ତ୍ରୀ । କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ଥିଲେ ବୁଟା ସିଂ । ହିନ୍ଦୁ ଭୋଟ ବ୍ୟାଙ୍କକୁ ଅସନ୍ତୁଷ୍ଟ ନକରିବାର ଗରଜ ଥିବାରୁ ନିଜନିଜକୁ ଧର୍ମନିରପେକ୍ଷ ବୋଲି ଘୋଷଣା କରୁଥିବା ଏହି ନେତାଦ୍ୱୟ ରାଜୀବ ଓ ମୁଲାୟମ ତୁଣ୍ଡରେ ପାଳବିଣ୍ଡା ଦେଇ ନିଷ୍କ୍ରିୟ ଆଚରଣ କଲେ । ଆପୋଷ ଆଲୋଚନାରେ ସମସ୍ୟା ତୁଟାଇବା ବାହାନାରେ ରାଜୀବ ଗାନ୍ଧୀ ବୁଟା ସିଂକୁ ପଠାଇଦେଇ ରାଜନୈତିକ ଲୁଚକାଳି ଖେଳିଲେ । ରାଜୀବ ଗାନ୍ଧୀଙ୍କର ଆନ୍ତରିକ ନିଷ୍ଠା ଥିଲେ ଏବଂ ସୁଦୂରପ୍ରସାରୀ ଅପ୍ରୀତିକର ସାଂପ୍ରଦାୟିକ ଅସଦ୍‌ଭାବଜନିତ ପରିସ୍ଥିତିକୁ ପ୍ରଶ୍ରୟ ନଦେବାର ସତ୍ ଉଦ୍ଦେଶ୍ୟରେ ଭାରତ ସରକାରଙ୍କ ପକ୍ଷରୁ ଆଇନର ଆଶ୍ରୟ ନେଇ କିମ୍ବା ଅଧାଦେଶ ଜାରିକରି ରାମ ମନ୍ଦିର ଶିଳାନ୍ୟାସ କାର୍ଯ୍ୟକୁ ବନ୍ଦକରିପାରିଥା'ନ୍ତେ ।

ଯେଉଁ ରାଜୀବ ଗାନ୍ଧୀଙ୍କ ଜନ୍ମଦିବସକୁ ସଦ୍‌ଭାବନା ଦିବସ ନାମରେ ଦେଶରେ ପାଳନ କରାଯାଉଛି, ସେହି ବ୍ୟକ୍ତି ସାଂପ୍ରଦାୟିକ ତଥା ଜାତୀୟ ସଂହତିକୁ ଆମର ସାମାଜିକ ତଥା ପ୍ରଶାସନିକ କ୍ଷେତ୍ରରେ ଘୋର ବ୍ୟାହତ କରିବା ଭଳି କିପରି ଅପକାର୍ଯ୍ୟ ସବୁ କରିଯାଇଛନ୍ତି, ତାହାର ଆହୁରି ସ୍ପଷ୍ଟ ଦୃଷ୍ଟାନ୍ତମାନ ରହିଛି । ତାଙ୍କରି ରାଜତ୍ୱ କାଳରେ ସାହାବାନୁ ନାମ୍ନୀ ଜଣେ ମୁସଲମାନ ମହିଳା ସ୍ୱାମୀ ପରିତ୍ୟକ୍ତା ହୋଇଥିବାରୁ ତାଙ୍କ ସ୍ୱାମୀଙ୍କଠାରୁ ଭରଣପୋଷଣ ଦାବିକରି ଉଚ୍ଚତମ ନ୍ୟାୟାଳୟରେ ଆବେଦନ କରିଥିଲେ । ମାନ୍ୟବର ସୁପ୍ରିମ୍‌କୋର୍ଟ ସମସ୍ତ ପ୍ରସଙ୍ଗ ବିଚାରକୁ ନେବା ପରେ ମାନବିକତା ଦୃଷ୍ଟିକୋଣରୁ ନ୍ୟାୟତଃ ଶ୍ରୀମତୀ ସାହାବାନୁ ତାଙ୍କ ସ୍ୱାମୀଙ୍କଠାରୁ ଭରଣପୋଷଣ ଖର୍ଚ୍ଚ ପାଇବାକୁ ହକ୍‌ଦାର ବୋଲି ନିଷ୍ପତ୍ତି ଦେଇଥିଲେ । କୁହାଯାଏ ଯେ, ମୁସ୍‌ଲିମ୍ ପର୍ସନାଲ ଲ ଅନୁଯାୟୀ ସେହି ସଂପ୍ରଦାୟରେ କୌଣସି ମହିଳା ସ୍ୱାମୀପରିତ୍ୟକ୍ତା ହେଲେ ମଧ ତାଙ୍କର ଭରଣପୋଷଣ ପାଇବା ଅଧିକାର ନାହିଁ । ପ୍ରକୃତରେ ଏହି ଶେଷୋକ୍ତ ମତ କେବଳ ମୌଳବାଦୀ କେତେକ ମୋଲ୍ଲାଙ୍କର ମତ ଏବଂ ପ୍ରକୃତରେ ତାହା କୋରାଣ ସମ୍ମତ ନୁହେଁ ବୋଲି ସେତେବେଳେ ବହୁ ମୁସଲମାନ ବିଦ୍ୱାନ, ମୁସଲମାନ ଓକିଲ ଠୋକ୍‌ଠୋକ୍ ଭାବରେ ତଥ୍ୟ ଭିତ୍ତିକ ଭାଷଣ ଓ ଲେଖାମାନ ପ୍ରକାଶକରିଥିଲେ । କିନ୍ତୁ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ 'ଅବୁଝାମଣା ରଜା'ପରି ଆଚରଣ କରି ତାଙ୍କର କେତେକ 'ପାଳବିଣ୍ଡା ମନ୍ତ୍ରୀ'ଙ୍କ ସମର୍ଥନରେ ମୌଳବାଦୀ ମୋଲ୍ଲାମାନଙ୍କ ଆଶ୍ରୟନେଇ ମୁସଲମାନ ଭୋଟ ବ୍ୟାଙ୍କକୁ ମଜଭୁତ କରିବା ଆଶାରେ ମାନ୍ୟବର

ସୁପ୍ରିମ୍ କୋର୍ଟଙ୍କ ସୁଚିନ୍ତିତ ନିଷ୍ପତ୍ତିକୁ ଏକ ଅନ୍ୟାୟ ପନ୍ଥାରେ ଅକାମୀକରିଦେଲେ । ଏହି ସଂକୀର୍ଣ୍ଣସ୍ୱାର୍ଥ ଲୋଭରେ ସେ ଭାରତବର୍ଷର ସଂବିଧାନକୁ ମଧ ପାର୍ଲାମେଣ୍ଟରେ ସଂଖ୍ୟାଗରିଷ୍ଠତାର ସୁଯୋଗନେଇ ସଂଶୋଧନ କରାଇ ସର୍ବୋଚ୍ଚନ୍ୟାୟାଳୟର ନ୍ୟାୟକୁ ବ୍ୟର୍ଥ କରିଦେଇଥିଲେ । ଏଥିରୁ ଦେଶର ସଂବିଧାନ, ନ୍ୟାୟାଳୟ ଓ ବୌଦ୍ଧିକ ବିଚାର ପ୍ରତି ରାଜୀବ ଗାନ୍ଧୀଙ୍କର ହାସ୍ୟାସ୍ପଦ ଅନାସ୍ଥାଭାବ ସହଜେ ପ୍ରତୀତ ହେବ। ତାଙ୍କର ଏହି ଅସଦାଚରଣର ପ୍ରତିବାଦରେ ସେତେବେଳେ ତାଙ୍କ ମନ୍ତ୍ରିମଣ୍ଡଳରୁ ଶ୍ରୀ ଅରିଫ୍ ଅହମ୍ମଦ ଖାଁ ଇସ୍ତଫାଦେଇଥିଲେ । ଅରିଫ୍‌ଙ୍କର ଧର୍ମପତ୍ନୀ ଜଣେ ଆଇନଜ୍ଞ । ସେ ଦିଲ୍ଲୀ ବିଶ୍ୱବିଦ୍ୟାଳୟ ପରିସରରେ ଏକ ବିରାଟ ବୌଦ୍ଧିକ ଆଲୋଚନାଚକ୍ର ଆୟୋଜନକରି ରାଜୀବଙ୍କ କାର୍ଯ୍ୟର ଅଯୌକ୍ତିକତା ପ୍ରମାଣ କରାଇଥିଲେ ।

ନିଜେ ପ୍ରଧାନମନ୍ତ୍ରୀଭାବେ ଗାଦିନସୀନ ହେବା ସଂଗେ ସଂଗେ ଜଘନ୍ୟ ସାଂପ୍ରଦାୟିକ ବିଚାରରେ ଶିଖ୍ ସଂହାର ରାଜନୈତିକ ଲୁଚକାଳି ଖେଳ, ଅଯୋଧ୍ୟାରେ ରାମ ମନ୍ଦିର ଶିଳାନ୍ୟାସ ସମୟରେ ବିଷ ବୀଜବପନ, ବିଚାରୀ ମୁସଲମାନ ମହିଳାଙ୍କୁ ସର୍ବୋଚ୍ଚ ନ୍ୟାୟଳୟଦ୍ୱାରା ପ୍ରଦତ୍ତ ନ୍ୟାୟରୁ ବଞ୍ଚିତ କରିବାପାଇଁ ସଂବିଧାନର ଅବାଞ୍ଛିତ ସଂଶୋଧନ ଭଳି କୌଣସି ଅପକର୍ମପାଇଁ ରାଜୀବ ଗାନ୍ଧୀ କେବେହେଲେ ତିଳେମାତ୍ର ଦୁଃଖ ପ୍ରକାଶ କରିନଥିଲେ । କେତେକ ସ୍ତାବକ ଏତାଦୃଶ ଅବାଞ୍ଛିତ ରାଜନୈତିକ ଅସଦାଚରଣରେ ଲିପ୍ତ ଜଣେ ବ୍ୟକ୍ତିଙ୍କ ଜନ୍ମଦିବସକୁ 'ସଦ୍‌ଭାବନା ଦିବସ' ରୂପେ ଏବେ ଆଡ଼ମ୍ବରରେ ପାଳନ କଲେ ମଧ ଭବିଷ୍ୟତ୍ ନିଶ୍ଚିତଭାବେ ତାହାର ଅସତ୍ୟତା ପ୍ରମାଣ କରିବ । ଇତିହାସ ଏହାକୁ ବାସ୍ତବ ସତ୍ୟ ଓ ଅଭିନୟର ଏକ ବିରାଟ ବିରୋଧାଭାଷ ରୂପେ ଲିପିବଦ୍ଧ କରିବ ।

ଏହି ପ୍ରସଙ୍ଗରେ ଆମ ଓଡ଼ିଶାରେ ଶିଖ୍‌ସଂହାର ସଂପର୍କରେ ଘଟିଥିବା କେତୋଟି କଥା ସ୍ୱତଃ ମନେପଡ଼ିଯାଉଛି । ଖୋଦ୍ ପ୍ରଧାନମନ୍ତ୍ରୀଙ୍କ ଦୃଷ୍ଟିଭଙ୍ଗୀ ଓ ଦିଲ୍ଲୀରେ କଂଗ୍ରେସବାଲାଙ୍କର ଶିଖ୍ ବିରୋଧୀ ତୁମୁଳ କାଣ୍ଡ ଲକ୍ଷ୍ୟକଲା ପରେ ଓଡ଼ିଶାର ମଧ ତାହାର କ୍ରୁର ପ୍ରଭାବ ପଡ଼ିଥିଲା । ସେହିପରି ସେତେବେଳେ ଭାରତରେ ଅନ୍ୟତ୍ର ମଧ ଶିଖ୍ ସଂପ୍ରଦାୟର ଲୋକ ଶିଖ୍ ଟ୍ରକ ଡ୍ରାଇଭରମାନଙ୍କ ଉପରେ କେତେକ କଂଗ୍ରେସ ଲୋକଙ୍କ ପ୍ରରୋଚନାରେ ଆକ୍ରମଣ କରାଗଲା । ଶିଖ୍ ବିରୋଧୀ ଅଭିଯାନକୁ ରୋକିବାକୁ କଂଗ୍ରେସ ପକ୍ଷରୁ କୌଣସି ଫଳପ୍ରଦ ଉଦ୍ୟମ ହେଉନଥାଏ । ତେଣୁ ଓଡ଼ିଶାରେ ମଧ ଶିଖ୍ ସଂପ୍ରଦାୟର ଲୋକେ ଆତଙ୍କିତ ଅବସ୍ଥାରେ ଥାଆନ୍ତି । ଭୁବନେଶ୍ୱର ୬ ନମ୍ବର ୟୁନିଟ୍‌ରେ ଜଣେ ଶିଖ୍ ଯୁବକ ସ୍କୁଟରରେ ଯାଉଥିବାବେଳେ ତାକୁ ପିଟିପିଟି ମାରିଦିଆଯାଇଥିବା ତା'ର ମଟରସାଇକେଲଟିକୁ ଭାଙ୍ଗିରୁଜିଦିଆଯାଇଥିବା ଓ କେତେକ କଂଗ୍ରେସ ଲୋକ ଏପରି ଅମାନୁଷିକ କାର୍ଯ୍ୟ କରିଥିଲେ ବୋଲି ଅଭିଯୋଗ ହୋଇଥିଲା । ସେହିଦିନ ମୁଁ ଗୁରୁଦ୍ୱାରକୁ ଯାଇ-ଥିଲି । ସେଠାରେ ଉପସ୍ଥିତଥିବା ଶିଖ୍ ଭାଇଭଉଣୀମାନେ ଆତଙ୍କିତ ଅବସ୍ଥାରେ ଥିବାର ଲକ୍ଷ୍ୟ-କରିଥିଲି । ଏହି ପରିସ୍ଥିତିରେ ପୁଲିସର ସକ୍ରିୟ ସାହାଯ୍ୟ ସହଯୋଗ ସେମାନେ ଲୋଡ଼ୁଥିଲେ । ମୁଁ ସେଠାରୁ ଫେରି ଆମ ରାଜ୍ୟ ପୁଲିସ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ଶିଖ୍‌ମାନଙ୍କର ସୁରକ୍ଷା ଲାଗି ପୁଲିସ ସକ୍ରିୟ ପଦକ୍ଷେପ ନେବାପାଇଁ ଜଣାଇଥିଲି । ଏହିସବୁ ଘଟଣାବଳୀର ପର୍ଯ୍ୟାଲୋଚନାରୁ ପ୍ରମାଣିତ ହୁଏ ଯେ, କଂଗ୍ରେସ ସଭାପତି ତଥା ପ୍ରଧାନମନ୍ତ୍ରୀ ହିସାବରେ ରାଜୀବ ଗାନ୍ଧୀ କୌଣସି ନା କୌଣସି କାରଣରୁ ସମୁଚିତ କର୍ତ୍ତବ୍ୟବୋଧ ଘେନି କାର୍ଯ୍ୟ କରିବାରେ ଚରମ ଅବହେଳା ପ୍ରଦର୍ଶନ କରିଥିଲେ ଏବଂ ତାଙ୍କର ଏତାଦୃଶ ଆଚରଣ ହେତୁ ଭାରତୀୟ ଜାତୀୟ ସଂହତି ରକ୍ଷା କାର୍ଯ୍ୟରେ କଂଗ୍ରେସ ଅନୁଷ୍ଠାନର ପାରମ୍ପରିକ ଉଚ୍ଚ ପରମ୍ପରା ଉପରେ ଜନସାଧାରଣଙ୍କର ବିଶେଷତଃ ଶିଖ୍ ସଂପ୍ରଦାୟ ଲୋକମାନଙ୍କର ଆସ୍ଥା ବ୍ୟାହତ ହୋଇଥିବା ଅଭିଯୋଗ ହୁଏ ।

## ବାବ୍‌ରି ମସ୍‌ଜିଦ୍ ଭଙ୍ଗାଯିବା ପ୍ରସଙ୍ଗ

ଭୋଟବ୍ୟାଙ୍କ ପାଇଁ ସାଂପ୍ରଦାୟିକ ରାଜନୀତିର ଲୁଚକାଳି ଖେଳି କର୍ତ୍ତବ୍ୟରେ ଗୁରୁତର ଅବହେଳା କରି, ଜାତୀୟ ସଂହତିକୁ ବିପର୍ଯ୍ୟସ୍ତ କରିବାର ଅନ୍ୟ ଏକ ଦୃଷ୍ଟାନ୍ତ ହେଉଛି ୧୯୯୨ ମସିହା ଡିସେମ୍ବର ମାସ ୬ ତାରିଖରେ ବାବ୍ରି ମସ୍‌ଜିଦ ଭଙ୍ଗା ପୂର୍ବରୁ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ତଥା କଂଗ୍ରେସ ସଭାପତି ନରସିଂହ ରାଓଙ୍କ ସୁବିଧାବାଦୀ ନିଷ୍କ୍ରିୟତା । କେନ୍ଦ୍ର ସରକାରଙ୍କର ହସ୍ତଗତ ହୋଇଥିବା ନିର୍ଭରଯୋଗ୍ୟ ତଥ୍ୟଗୁଡ଼ିକ ଏବଂ ବରିଷ୍ଠ ପ୍ରଶାସକମାନଙ୍କ ପରାମର୍ଶ ଦୃଷ୍ଟିରୁ ବିହିତ ପଦକ୍ଷେପ ନେଇଥିଲେ । ମସ୍‌ଜିଦ ଭାଙ୍ଗିବା ଘଟଣାକୁ ରୋକି ଦିଆଯାଇ ପାରିଥା'ନ୍ତା । ନରସିଂହ ରାଓ ମଧ୍ୟ ରାଜୀବ ଗାନ୍ଧୀଙ୍କ ଭଳି ସାଂପ୍ରଦାୟିକ ମୃଦଙ୍ଗର ଦୁଇ ପାଖେ ବେତାଳିଆ ଚିପମାରି ଏକ ବଡ଼ ସଂଘର୍ଷପାଇଁ ମଉକା ସୃଷ୍ଟିକଲେ । ଏହା ମଧ୍ୟ ତାଙ୍କ ସାଂପ୍ରଦାୟିକ ରାଜନୀତିର ପ୍ରତିଫଳନ ବୋଲି ପରେ କେବଳ ବିବେଚିତ ହୋଇନାହିଁ, କଂଗ୍ରେସ ପକ୍ଷରୁ ମଧ୍ୟ ଏକଥା ସ୍ୱୀକାର କରାଯାଇ କ୍ଷମାମଗାଯାଇଛି । ସେହିପରି ଶିଖ୍‌ମାନଙ୍କ ପାଖରେ ଅତୀତର ଭୁଲପାଇଁ ସୋନିଆ ଗାନ୍ଧୀ ମଧ୍ୟ କ୍ଷମା ପ୍ରାର୍ଥନା କରିଛନ୍ତି । କିନ୍ତୁ ଏଭଳି ବହୁ ଘଟଣାର ଅଭିଜ୍ଞତା ପରେ କଂଗ୍ରେସ ପକ୍ଷରୁ ଏଭଳି କ୍ଷମାପ୍ରାର୍ଥନାକୁ ବିଚାରବନ୍ତ ଲୋକେ ଏବଂ ସଂପୃକ୍ତ ସଂପ୍ରଦାୟମାନେ କେବଳ ପ୍ରତାରଣା ବୋଲି ଅନାସ୍ଥା ପ୍ରକାଶ କରିଛନ୍ତି ।

## ଖଜୁରି ଗଛର.... ମୂଳରୁ ପାହାଚ ପାହାଚ

କଥାରେ କହନ୍ତି, 'ଖଜୁରି ଗଛର କି ଗୁଣ ଗାଇବି ମୂଳରୁ ପାହାଚ ପାହାଚ' । ନିଜର ସଂକୀର୍ଣ୍ଣ ରାଜନୈତିକ ଉଦ୍ୟମରେ ସ୍ୱାଭିମାନୀ ଶିଖ୍ ସଂପ୍ରଦାୟକୁ ବିଭକ୍ତ ଓ ଆୟତ୍ତ କରିବା ଲକ୍ଷ୍ୟ ଘେନି ଇନ୍ଦିରା ଗାନ୍ଧୀ ଓ ସଂଜୟ ଗାନ୍ଧୀଙ୍କ କୌଶଳକ୍ରମେ କିପରି ଏକ ବିଷ ବୃକ୍ଷରୂପେ ଭିନ୍ଦ୍ରନ୍‌ୱାଲେଙ୍କୁ ରୋପଣ କରାଗଲା ସେ ପ୍ରସଙ୍ଗ ଆଗରୁ ଆଲୋଚିତ ହୋଇଛି । ଭିନ୍ଦ୍ରନୱାଲେ ଭସ୍ମାସୁର ପରି କଂଗ୍ରେସକୁ ଗ୍ରାସ କରି ବସିଲେ । କିନ୍ତୁ ପୁରାଣବର୍ଣ୍ଣିତ ଉପାୟରେ ତାକୁ ତାହାରି ପାପୁଲି ତଳେ ଭସ୍ମ କରାଇଦେବାର ବୁଦ୍ଧି ଓ ମଉକା ଆଉ ଇନ୍ଦିରାଙ୍କୁ ଜୁଟିଲାନାହିଁ । ଶିଖ୍ ସାଂପ୍ରଦାୟିକ ତିକ୍ତତାରେ ଭାରତର ଅଖଣ୍ଡତା ବିପନ୍ନ ହେବାକୁ ବସିଥିଲା । ସେହି ଅପକର୍ମ ହେତୁ, ଏମାନଙ୍କର ଅପରିଣାମଦର୍ଶିତା ପାଇଁ ଭାରତୀୟ ଜାତୀୟ ସଂହତିର ମହାନ୍ ମୂଳାଧାରରୂପେ ବିବେଚିତ ହେଉଥିବା କଂଗ୍ରେସ ଅନୁଷ୍ଠାନ କ୍ରମେ ନିଜର ଏହି ମର୍ଯ୍ୟାଦା ହରାଇବାକୁ ଆରମ୍ଭକଲା । ସେହିଭଳି ଦକ୍ଷିଣଭାରତରେ ଶ୍ରୀଲଙ୍କାର ବିଚ୍ଛିନ୍ନତାବାଦୀ ଏଲ୍.ଟି.ଟି.ଇ. ସନ୍ତ୍ରାସବାଦୀ ସରକାରକୁ ଆସ୍ଥାନ-ଜମାଇବାର ମଉକା ଓ ସଲାହ ଯୋଗାଇଥିବା ଇନ୍ଦିରା ଗାନ୍ଧୀ ଅଭିଯୋଗ ହୋଇଥିଲା ଯାହାର ପ୍ରଳୟଙ୍କରୀ ପରିଣତିସ୍ୱରୂପ ଶେଷରେ ରାଜୀବ ଗାନ୍ଧୀ ନିହତ ହେଲେ ଏଲ୍.ଟି.ଟି.ଇ. ହାତରେ । ଏବେ ମଧ୍ୟ ଏଲ୍.ଟି.ଟି.ଇ. ସନ୍ତ୍ରାସବାଦୀ ସଂଗ୍ରାମ କେବଳ ଶ୍ରୀଲଙ୍କାର ଅଖଣ୍ଡତା ପ୍ରତି ନୁହେଁ ଭାରତବର୍ଷର ଅଖଣ୍ଡତା ପ୍ରତି ବିପଜ୍ଜନକ ହୋଇଛି । ତେଣୁ ଲକ୍ଷ୍ୟ କରିବାର କଥା ଯେ, କେବଳ ରାଜୀବ ଗାନ୍ଧୀ ଓ ନରସିଂହ ରାଓ ନୁହଁନ୍ତି, ଇନ୍ଦିରା କଂଗ୍ରେସ ନାମରେ ନିଜକୁ ପରିଚିତ କରାଇ ଗର୍ବ ଅନୁଭବ କରୁଥିବା ପୁରାତନ ଭାରତୀୟ ଜାତୀୟ କଂଗ୍ରେସର ଏକ ଅପଦାର୍ଥ ଦାୟାଦ ଏହି ଇନ୍ଦିରା କଂଗ୍ରେସ ଜାତୀୟ କଂଗ୍ରେସକୁ ବିପର୍ଯ୍ୟସ୍ତ କରିବା ଦିଗରେ, ସେହି ଇନ୍ଦିରା ଗାନ୍ଧୀଙ୍କ ଅମଳରୁ ଖଜୁରି ଗଛ ପରି ମୂଳରୁ ପାହଚ ପାହାଚ ବିପତ୍ତିର କଣ୍ଟକ ସୃଷ୍ଟି କରିଛି । ତେଣୁ ରାଜୀବ ଗାନ୍ଧୀଙ୍କର ଏଲ୍.ଟି.ଟି.ଇ. ସନ୍ତ୍ରାସବାଦୀଙ୍କଦ୍ୱାରା ହତ୍ୟା ଅଭିଯୋଗ ପରିପ୍ରେକ୍ଷୀରେ ସେହି ଏଲ୍.ଟି.ଟି.ଇ. ସୃଷ୍ଟି

ଓ ଅଭିବୃଦ୍ଧିରେ ଗାନ୍ଧୀ ପରିବାରର ଭୂମିକା ପ୍ରତି ଟିକିଏ ଦୃଷ୍ଟିପାତ କରିବା ସମୀଚୀନ ହେବ । ହୁଏତ ଭବିଷ୍ୟତ ସଂପର୍କରେ ସାବଧାନ ହେବାପାଇଁ ତାହା କିଛି ଆଲୋକପାତ କରିପାରେ । କାରଣ ଏହା ମଧ୍ୟ ଆଉ ଗୋଟିଏ ଭସ୍ମାସୁର ସୃଷ୍ଟିର ବିବରଣୀ । ମାତ୍ର ଏହି ଭସ୍ମାସୁରକୁ ମଧ୍ୟ ତା'ର ପାପୁଲିତଳେ ପୋଡ଼ିଦେବାର ଜ୍ଞାନ ଓ କୌଶଳ ରାଜୀବ ଗାନ୍ଧୀଙ୍କର ନଥିଲା ।

ଏକଥା ବହୁ ତଥ୍ୟ ସମ୍ବଳିତ ଏକ ଅଭିଯୋଗ ଯେ ସ୍ୱୟଂ ଇନ୍ଦିରାଗାନ୍ଧୀ ଓ ରାଜୀବ ଗାନ୍ଧୀ ଶ୍ରୀଲଙ୍କାକୁ ବିଭାଜନ କରି ଗୋଟିଏ ସ୍ୱତନ୍ତ୍ର ତାମିଲ ରାଜ୍ୟ ଗଠନ କରିବାପାଇଁ ସଶସ୍ତ୍ର ସନ୍ତ୍ରାସବାଦୀ ସଂଗ୍ରାମରେ ଲିପ୍ତ ଏଲ୍.ଟି.ଟି.ଇ.କୁ ପ୍ରଥମେ ଅର୍ଥ ଓ ଅସ୍ତ୍ରଶସ୍ତ୍ର ଦେଇ ଗୋପନରେ ସାହାଯ୍ୟ କରୁଥିଲେ । ତାମିଲନାଡୁର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ରାମଚନ୍ଦ୍ରନଙ୍କ ମଧ୍ୟସ୍ଥତାରେ ଏହି ଲୁଚାଛପା କାର୍ଯ୍ୟଚାଲିଥିଲା । ତାମିଲନାଡୁର କେତେକ ସ୍ଥାନରେ ତାଲିମ୍ ଶିବିର କରିବାକୁ ମଧ୍ୟ ଏଲ୍.ଟି.ଟି.ଇ.କୁ ଇନ୍ଦିରା ଓ ରାଜୀବ ପ୍ରୋତ୍ସାହନ ଦେଉଥିଲେ । ରାଜୀବ ଗାନ୍ଧୀଙ୍କ ହତ୍ୟା ସଂପର୍କରେ ଜୈନ ତଦନ୍ତ କମିଶନ ଇଜିଲାସରେ ଏଲ୍.ଟି.ଟି.ଇ. ସହିତ ଘନିଷ୍ଠଭାବେ ସଂପୃକ୍ତଥିବା କାଶୀ ଆନନ୍ଦନ୍ ୧୯୯୬ ସେପ୍ଟେମ୍ବର ଏଗାର ତାରିଖରେ ସାକ୍ଷ୍ୟ ଦେଲାବେଳେ ତାଙ୍କର ଏଭଳି ପ୍ରାମାଣିକ ତଥ୍ୟମାନ ଉପସ୍ଥାପନ କରିଛନ୍ତି । ଏମ୍.ଜି. ରାମଚନ୍ଦ୍ରନଙ୍କ ଜରିଆରେ ଇନ୍ଦିରା ଗାନ୍ଧୀ ଥରେ ଗୋଟିଏ କିସ୍ତିରେ ପାଞ୍ଚ କୋଟି ଟଙ୍କା ଏଲ୍.ଟି.ଟି.ଇ.କୁ ଦେବା ଛଡ଼ା ସେହି ସନ୍ତ୍ରାସବାଦୀ ସଂସ୍ଥାର କର୍ମଚାରୀମାନଙ୍କୁ ଦଳ ଦଳ କରି ଉଡ଼ାଜାହାଜରେ ନେଇ ଉତ୍ତରପ୍ରଦେଶର ଡେରାଡୁନ୍‌ଠାରେ ଭାରତୀୟ ଗୁଇନ୍ଦା ସଂସ୍ଥା ଦ୍ୱାରା ତାଲିମ୍ ଦିଆଯାଇଥିବା କଥା ମଧ୍ୟ ସେ ଦର୍ଶାଇଥିଲେ । ଶ୍ରୀ ଆନନ୍ଦନ୍ ତାଙ୍କ ସାକ୍ଷ୍ୟରେ କହିଥିବାର ପ୍ରକାଶ ପାଇଛି ଯେ, ରାଜୀବ ଗାନ୍ଧୀଙ୍କ ହତ୍ୟାର ଦୁଇ ମାସ ଆଗରୁ ସେ ତାଙ୍କୁ ଦିଲ୍ଲୀରେ ୧୦ ଜନପଥ ବାସଭବନରେ ଶ୍ରୀଲଙ୍କାରେ ଘଟୁଥିବା ଘଟଣାବଳୀ ଓ ଏଲ୍.ଟି.ଟି.ଇ.ର ବିଭିନ୍ନ ସମସ୍ୟା ସଂପର୍କରେ ଅବଗତ କରାଇଥିଲେ । ତା'ପରେ ସେ ଅଶୋକା ଯାତ୍ରୀ ନିବାସ ନିକଟସ୍ଥ ଏସ୍.ଟି.ଡି. ଫୋନ୍ ବୁଥ୍‌ରୁ ଏଲ୍.ଟି.ଟି.ଇ. ନେତା କିଟୁକୁ ସବୁକଥା ଅବଗତ କରାଇଥିଲେ ।

ଏହାପରେ ଶ୍ରୀଲଙ୍କାର ତତ୍କାଳୀନ ରାଷ୍ଟ୍ରପତି ଜୟବର୍ଦ୍ଧନେଙ୍କ ଫନ୍ଦିରେ ପଡ଼ି ଶ୍ରୀଲଙ୍କାରେ ଏଲ୍.ଟି.ଟି.ଇ. ବିଦ୍ରୋହକୁ ଦମନକରିବାପାଇଁ ଶାନ୍ତିରକ୍ଷା ବାହିନୀ ନାମରେ ଭାରତୀୟ ସେନାବାହିନୀ ପଠାଇବାପାଇଁ ତାଙ୍କ ସହିତ ରାଜୀବ ଯେଉଁ ନିର୍ବୋଧ ଚୁକ୍ତି କଲେ ତାହା ଏଲ୍.ଟି.ଟି.ଇ. ନେତାମାନଙ୍କୁ ଅତ୍ୟନ୍ତ କ୍ରୋଧାନ୍ୱିତ କରାଇଥିଲା । ଏହି ଚୁକ୍ତିକୁ ଶ୍ରୀଲଙ୍କାର ତତ୍କାଳୀନ ପ୍ରଧାନମନ୍ତ୍ରୀ ସ୍ୱାଗତ ନକରି ଖୋଲାଖୋଲି ସମାଲୋଚନା କରିଥିଲେ । ଏପରିକି ଏହି ରାତିଅଧିଆ ଚୁକ୍ତିଟି ସ୍ୱାକ୍ଷର କରିସାରି ତା'ପର ଦିନ ସକାଳେ ଫେରିବା ପୂର୍ବରୁ ରାଜୀବ ଗାନ୍ଧୀ ଶ୍ରୀଲଙ୍କା ପକ୍ଷରୁ ସାମରିକ ବିଦାୟ ପ୍ୟାରେଡ୍ ପରିଦର୍ଶନ କଲାବେଳେ ଶ୍ରୀଲଙ୍କା ସେନାବାହିନୀର ଜଣେ ବନ୍ଧୁକଧାରୀ ସିପାହି ବାହାରି-ଆସି କ୍ରୋଧରେ ରାଜୀବ ଗାନ୍ଧୀଙ୍କ ଗର୍ଦ୍ଦନୀ ଉପରେ ବନ୍ଧୁକର ବେଣ୍ଟରେ ପ୍ରହାରଦେଇଥିଲା । ବନ୍ଧୁକରେ ଗୁଳି ଥିଲେ ସେ ରାଜୀବ ଗାନ୍ଧୀଙ୍କୁ ନିଶ୍ଚୟ ହତ୍ୟା କରିଥା'ନ୍ତା । ରାଜୀବ ଅଳ୍ପକେ ସେହି ଗର୍ଦ୍ଦନୀ ପ୍ରହାରରୁ ବର୍ତ୍ତିଯାଇଥିଲେ । ପଚରାଉଚୁରା ବେଳେ ସେହି ସିପାହି ଆଦୌ ଅନୁତପ୍ତ ନହୋଇ ତା'ର ଦେଶାତ୍ମବୋଧପାଇଁ ଗର୍ବ ପ୍ରକାଶ କରିଥିଲା । ପ୍ରକୃତରେ ଏହି ଖାମ୍‌ଖିଆଲି ଦୁଃସାହସିକ ଚୁକ୍ତିର ହାସ୍ୟାସ୍ପଦ ପରିଣତି ରାଜୀବ ଗାନ୍ଧୀଙ୍କର ଅପରିପକ୍ୱତାକୁ ପଦାରେ ପକାଇଥିଲା । ଏହି ଚୁକ୍ତି ପରେ ଭାରତରୁ ଶ୍ରୀଲଙ୍କାକୁ ପ୍ରାୟ ଷାଠିଏ ହଜାରରୁ ଅଧିକ ସୈନ୍ୟ ଯାଇଥିଲେ ଓ ସେଥିମଧ୍ୟରୁ ଦୁଇ ହଜାରରୁ ଅଧିକ ସେଠାରେ ପ୍ରାଣ ହରାଇଥିଲେ । ଏସବୁର ହିସାବକିତାବ ଆଜିପର୍ଯ୍ୟନ୍ତ ଗୁପ୍ତ ରଖାଯାଇଛି । ଏ ବାବଦରେ ଆମକୁ ପ୍ରାୟ ତିନି ହଜାର କୋଟିରୁ ଅଧିକ ଟଙ୍କା ବ୍ୟୟ ବହନ କରିବାକୁ ପଡ଼ିଥିବା । ଯେଉଁ ଉଦ୍ଦେଶ୍ୟରେ ସେଠାକୁ ଭାରତୀୟ ସୈନ୍ୟ ପଠାଯାଇଥିଲା, ତାହା ସଂପୂର୍ଣ୍ଣରୂପେ ବିଫଳହୋଇଥିଲା । ଆନ୍ତର୍ଜାତିକ କ୍ଷେତ୍ରରେ ଆମ ଦେଶ ଅପଦସ୍ଥ ହୋଇଥିଲା ।

## ରାଜୀବ-ଜୟବର୍ଦ୍ଧନ ଶାନ୍ତି ଚୁକ୍ତିର ଭିତିରି କଥା

ଶ୍ରୀଲଙ୍କାର ବିଚ୍ଛିନ୍ନତାବାଦୀ ଏଲ୍.ଟି.ଟି.ଇ.କୁ ଇନ୍ଦିରାଙ୍କ ଅମଳରୁ ପ୍ରତ୍ୟକ୍ଷ ସାହାଯ୍ୟକରି ଆସୁଥିବା ରାଜୀବ ଗାନ୍ଧୀ ହଠାତ୍ ଓଲଟିପଡ଼ି ଜୟବର୍ଦ୍ଧନଙ୍କ ସପକ୍ଷରେ ଏ ପ୍ରକାର ସାମରିକ ଚୁକ୍ତିବଦ୍ଧ ହୋଇପଡ଼ିଲେ କାହିଁକି, ତାହା ମଧ ପ୍ରହେଳିକାମୟ । ସତେ କ'ଣ ସେ ସଂପୂର୍ଣ୍ଣ ବିପରୀତ ନୀତି ଅବଲମ୍ବନ କରି ଏଲ୍.ଟି.ଟି.ଇ.କୁ ଅସନ୍ତୁଷ୍ଟ କରିବାକୁ ଚାହୁଁଥିଲେ ନା ଏହି ଚୁକ୍ତି କରିବା ପୂର୍ବରୁ ସନ୍ତ୍ରାସବାଦୀ ଏଲ୍.ଟି.ଟି.ଇ. ସହିତ ତାଙ୍କର କୌଣସି ଆପୋଷ ବୁଝାମଣା ହୋଇଥିଲା ? କେତେକ ପ୍ରାମାଣିକ ତଥ୍ୟରୁ ଜଣାଯାଏ ଯେ କେତେକ ସର୍ତ୍ତରେ ଏଲ୍.ଟି.ଟି.ଇ.ର ମୁଖ୍ୟ ପ୍ରଭାକରନ୍‌ଙ୍କୁ ତାମିଲନାଡୁର ମୁଖ୍ୟମନ୍ତ୍ରୀ ରାମଚନ୍ଦ୍ରନ୍‌ଙ୍କ ଜରିଆରେ ଗୋପନରେ ସନ୍ତୁଷ୍ଟ କରାଯାଇଥିଲା ଯେ ପ୍ରଭାକରନ୍‌ଙ୍କର ଶ୍ରୀଲଙ୍କା ବିଭାଜନ ଓ ସ୍ୱତନ୍ତ୍ର ରାଜ୍ୟରେ ରାଜୁତି କରିବାର ଅସଲ ଲକ୍ଷ୍ୟକୁ ବ୍ୟାହତ କରାଯିବନାହିଁ । ଶ୍ରୀଲଙ୍କାର ଆଭ୍ୟନ୍ତରୀଣ ଶାନ୍ତି ରକ୍ଷାକାମପାଇଁ ଭାରତୀୟ ସୈନ୍ୟ ପଠାଯିବାରେ ପ୍ରଭାକରନ୍‌ଙ୍କ ସଂଗଠନ ସଶସ୍ତ୍ର ସଂଗ୍ରାମକୁ ଆପାତତଃ ବନ୍ଦରଖିବେ ଅଥବା କୋହଳ କରିବେ । ଏଲ୍.ଟି.ଟି.ଇ. ସଂଗଠନ ନିଜ ଅଧିକୃତ ଅଞ୍ଚଳ ଲୋକଙ୍କଠାରୁ ବିଭିନ୍ନ ଭାବରେ ଅର୍ଥ ସଂଗ୍ରହକରି ତାଙ୍କ ସଂଗଠନ, ସୈନ୍ୟ ଓ ଅସ୍ତ୍ରଶସ୍ତ୍ର ସଂଗ୍ରହ ଖର୍ଚ୍ଚ ଉଠାନ୍ତି । ଯୁଦ୍ଧ ବିରତିଭଳି ନିଷ୍କ୍ରିୟତା ପାଳନକଲେ ସେମାନଙ୍କୁ ଏହି ଅର୍ଥ କେଉଁଠୁ ମିଳିବବୋଲି ପ୍ରଭକରନ୍ ଯୁକ୍ତି କରି ଅସମ୍ମତି ପ୍ରକାଶ କରିବାରୁ ରାମଚନ୍ଦ୍ରନ୍‌ଙ୍କ ମଧସ୍ଥତାରେ ତାଙ୍କ ପାଖରେ ଆଠକୋଟି ଟଙ୍କା ଏଥିପାଇଁ ଆଗୁଆ ପୈଠ କରା-ଯାଇଥିଲା । ପ୍ରଭାକରନ୍‌ଙ୍କ ଆସ୍ଥାନ ପ୍ରତି ଯେପରି କୌଣସି ବିପଦ ସୃଷ୍ଟିନହୁଏ ସେଥିପାଇଁ ଅନ୍ୟାନ୍ୟ ପ୍ରତିଶ୍ରୁତି ଓ ସାହାଯ୍ୟ ମଧ ଯୋଗାଇଦିଆଯାଇଥିଲା । ପ୍ରଭାକରନ୍ ଏହାପରେ କିଛିକାଳ ପାଇଁ ଶ୍ରୀଲଙ୍କାରେ ଭାରତୀୟ ଶାନ୍ତିରକ୍ଷା ବାହିନୀ ସହିତ ସହଯୋଗ କରିବାର ଅଭିନୟକରି, ଅନ୍ୟ ପକ୍ଷରେ ରାଜୀବଙ୍କଠାରୁ ପାଇଥିବା ଆର୍ଥିକ ଓ ଅନ୍ୟାନ୍ୟ ସହଯୋଗର ସୁଯୋଗନେଇ ନିଜ ସଂଗଠନକୁ ଅଧିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରି ଆହୁରି ଶକ୍ତି ସଂଚୟ କଲେ । ଶେଷକୁ ଏହି ହଟଚମଟ ଚୁକ୍ତିର ରହସ୍ୟରେ କିଏ କାହାକୁ ପ୍ରତାରିତ କରିଛି ବୋଲି ପ୍ରଭାକରନ୍ ଓ ରାଜୀବଙ୍କ ମଧରେ ତୀବ୍ର ତିକ୍ତତା ସୃଷ୍ଟିହେଲା । ସେତେବେଳକୁ ନେଡ଼ିଗୁଡ଼ କହୁଣିକୁ ବୋହିଯାଇଥିବା ଅବସ୍ଥାରେ ପଡ଼ିଥିଲେ ରାଜୀବ ଗାନ୍ଧୀ । ତାଙ୍କରି ଗୋପନ ଅର୍ଥ ଓ ଅନ୍ୟାନ୍ୟ ସାହାଯ୍ୟ ବଳରେ ଅଧିକ ବଳିୟାନ୍ ହୋଇ ଗଡ଼ିଉଠିଥିବା ଏଲ୍.ଟି.ଟି.ଇ. ନେତା ପ୍ରଭାକରନ୍-ରାଜୀବ ଗାନ୍ଧୀଙ୍କର 'ଏଘର ମାଉସୀ ସେଘର ପିଉସୀ' ବିଶ୍ୱାସଘାତକ ଭୂମିକାର ପ୍ରତିଶୋଧନେଇ ଭାରତୀୟ ଶାନ୍ତିରକ୍ଷା ବାହିନୀର ବିପୁଳ ଧନଜୀବନ ହାନି ଘଟାଇବାକୁ ସମର୍ଥ ହୋଇଥିଲେ । ଏହି ଅବସ୍ଥାରୁ ମୁକୁଳିବାକୁ ରାଜୀବଙ୍କୁ ଆଉ ବୁଦ୍ଧି ଦିଶୁନଥିଲା । ତେବେ ଉଚ୍ଚ ଜଣାଶୁଣା ମହଲରେ କ୍ରମେ ଆଲୋଚନା ଶୁଣାଯାଇଥିଲା ଯେ, ଏଲ୍.ଟି.ଟି.ଇ.ର ପୃଷ୍ଠପୋଷକତା ଭୂମିକାରୁ ଜୟବର୍ଦ୍ଧନଙ୍କ ଫାନ୍ଦରେ ପଡ଼ି ବିପରୀତ ନୀତିରେ ଚୁକ୍ତିବଦ୍ଧ ହୋଇ ଶେଷରେ ନିଜେ ପୃଷ୍ଠଭଙ୍ଗ ଅବସ୍ଥାରେ ରାଜୀବ ଗାନ୍ଧୀ ପଡ଼ିଥିଲେ, ସେଭଳି ନିର୍ବୋଧ ଦୁଃସାହସିକ କାର୍ଯ୍ୟ କରିବାର ଅସଲ ସୂତ୍ରଧର ଥିଲେ ଏକ ଇଟାଲୀୟ ଇଣ୍ଟେଲିଜେନ୍‌ସ ଏଜେନ୍‌ସି । ରାଜୀବ ଗାନ୍ଧୀ ତାଙ୍କ ଶାସନ କାଳରେ ପାରିବାରିକ ଅବସର ଉପଭୋଗଠାରୁ ଶାସନକ୍ଷେତ୍ରରେ ମଧ ଅତ୍ୟଧିକ ଇଟାଲୀୟ ସଂପର୍କ ଓ ସଂସ୍ଥାନଗୁଡ଼ିକ ଉପରେ ନିର୍ଭରଶୀଳ ହୋଇପଡ଼ିବାଦ୍ୱାରା କେବଳ ଦୁର୍ନୀତିଗ୍ରସ୍ତ ବୋଲି କଳଙ୍କିତ ହୋଇନଥିଲେ । ଅଧିକନ୍ତୁ ଶ୍ରୀଲଙ୍କାକୁ ସୈନ୍ୟପ୍ରେରଣ କରି ଜଣେ ଅପୋଗଣ୍ଡ ରାଜନୀତିଜ୍ଞ ବୋଲି ବିଶ୍ୱଦରବାରରେ ନିନ୍ଦିତ ହୋଇଥିଲେ ।

ମୋଟାମୋଟି ଭାବେ ରାଜୀବ ଗାନ୍ଧୀ ପ୍ରଧାନମନ୍ତ୍ରୀ ଓ କଂଗ୍ରେସ ସଭାପତି ଉଭୟ ଆସନପାଇଁ ଅନଭିଜ୍ଞ, ଅପରିପକ୍ୱ ଓ ଅନୁପଯୁକ୍ତ ପ୍ରମାଣିତ ହୋଇଥିଲେ । ସବୁଠାରୁ ବଡ଼ କଳଙ୍କ ଥିଲା ଦୁର୍ନୀତି-

ପରାୟଣତା । ଦେଶର ପ୍ରତିରକ୍ଷା ବିଭାଗରେ ଅସ୍ତ୍ରଶସ୍ତ୍ର, ଯାନବାହନ, ଉଡ଼ାଜାହାଜ କିଣାକିଣିରେ ସେ ଲାଞ୍ଚ ସୂତ୍ରରେ ଯେଉଁ ଅଜସ୍ର ଧନ ସଂଗ୍ରହ କରିଥିଲେ ତାହା ସତ୍ୟ ବୋଲି ପ୍ରାୟ ସବୁ କଂଗ୍ରେସ ଲୋକଙ୍କର ହୃଦ୍‌ବୋଧ ହେଲେ ମଧ୍ୟ ସେମାନେ ତାହା ସ୍ୱୀକାର କରିବାକୁ ନାରାଜ । ଭାରତରେ ବୃହତ୍ ଆକାରରେ ବ୍ୟବସାୟ କରୁଥିବା ଇଟାଲୀୟ ବ୍ୟବସାୟୀ ଓଟାଭିଓ କ୍ୱାତ୍ରୋଚି (Ottavio Quattrochi)ଙ୍କର ରାଜୀବ ଗାନ୍ଧୀ ଓ ସୋନିଆ ଗାନ୍ଧୀଙ୍କ ସହିତ ଯେଉଁ ଘନିଷ୍ଠ ସଂପର୍କ ଥିଲା ତାହା କେହି ଅସ୍ୱୀକାର କରିପାରିବେନାହିଁ । ବୋଫର୍ସ କମ୍ପାନୀଠାରୁ ଯେଉଁ ଷୋଳଶହ କୋଟି ଟଙ୍କାର କମାଣ କିଣାଯାଇଥିଲା ସେହି କାରବାରରେ କ୍ୱାତ୍ରୋଚି ଜଣେ ପ୍ରଧାନ ଦଲାଲ ଥିଲେ । ସେଥିରୁ ଷାଠିଏ କୋଟି ଟଙ୍କାର ଲାଞ୍ଚ ସଂଗ୍ରହ କରାଗଲା । କ୍ୱାତ୍ରୋଚି ଥିଲେ ସେହି କାରବାରରେ ଜଣେ ପ୍ରଧାନ କାରପଟଦାର ଓ ରାଜୀବ ଗାନ୍ଧୀଙ୍କର ସାକ୍ଷାତ ପ୍ରତିନିଧିତୁଲ୍ୟ । ଏହି ଷାଠିଏ କୋଟି ଟଙ୍କା କିକାପୋତେଇରୁ ଗୋଟିଏ ବଡ଼ ଅଂଶ ରାଜୀବ ଗାନ୍ଧୀ ପାଇଛନ୍ତି ଏବଂ ସେସବୁ ଅର୍ଥ ଇଟାଲୀରେ ବିଭିନ୍ନ ଆକାରରେ ସେହି କ୍ୱାତ୍ରୋଚିଙ୍କଦ୍ୱାରା ଗୋପନରେ ଗଚ୍ଛିତ ରଖାହୋଇଛି ବୋଲି ଜଣାପଡୁଛି । ହଠାତ୍ ଭାରତ ଛାଡ଼ି ପଳେଇଥିବା ସେହି ଇଟାଲୀୟ ରହସ୍ୟମୟ ବ୍ୟକ୍ତି ଭାରତରେ ଉପସ୍ଥିତ ହୋଇ ଅଦାଲତରେ ସାକ୍ଷ୍ୟ ପ୍ରମାଣ ଦେବାକୁ ନାରାଜ ଏବଂ ଅନ୍ତତଃ ରାଜୀବ ଗାନ୍ଧୀଙ୍କ କଳଙ୍କ ଦୂରକରିବା ନିମନ୍ତେ ତାଙ୍କ ଧର୍ମପତ୍ନୀ ସୋନିଆ ଗାନ୍ଧୀ ନିଜ ପାରିବାରିକ ଘନିଷ୍ଠ ସେହି ବନ୍ଧୁଙ୍କୁ ତଦନ୍ତ କାର୍ଯ୍ୟରେ ସହଯୋଗ କରିବାପାଇଁ ପରାମର୍ଶ ଦେବାକୁ କୁଣ୍ଠିତା । ଏବେ କଂଗ୍ରେସ ସଭାପତି ଓ ଲୋକସଭାରେ ବିରୋଧୀଦଳ ନେତ୍ରୀ ଆସନରେ ବସି ଗାନ୍ଧୀ ପରିବାରର ବୋହୂ ବୋଲି ନିଜ ପାଇଁ ସ୍ୱତନ୍ତ୍ର ଅଧିକାର ଦାବିକରୁଥିବା ଶ୍ରୀମତୀ ସୋନିଆ ଗାନ୍ଧୀଙ୍କ ପକ୍ଷେ ବର୍ତ୍ତମାନ ପବିତ୍ର କର୍ତ୍ତବ୍ୟ କ'ଣ ହୋଇପାରେ ? ଅତତଃ ନିଜର ଦେଶଭକ୍ତି ଓ ପତିପରାୟଣତାର ପ୍ରତିଷ୍ଠାପାଇଁ ତାଙ୍କର ସେହି ବନ୍ଧୁଙ୍କୁ ଭାରତୀୟ ବିଚାରାଳୟରେ ହାଜର କରିବାପାଇଁ ସେ କ'ଣ ସରକାରଙ୍କ ସହିତ ନିଜଆଡ଼ୁ ସହଯୋଗ କରିବା ଅନୁଚିତ ହେବ ? ବୋଧହୁଏ ଏହି କ୍ୱାତ୍ରୋଚିଙ୍କୁ ଲକ୍ଷ୍ୟ କରି ଅଭିଜ୍ଞ ଲେଖକ ଶ୍ରୀ ବି. ରମଣ ତାଙ୍କୁ ତାଙ୍କ ପ୍ରବନ୍ଧରେ ସୋନିଆ ଗାନ୍ଧୀଙ୍କର ଇଟାଲିୟାନ୍ ବିଜିନେସ୍ ବ୍ରଦର ବୋଲି ସୂଚିତ କରିଛନ୍ତି ।

ଦେଶର ରାଜନୀତି ଓ ପ୍ରଶାସନ କ୍ଷେତ୍ରରେ ରାଜୀବ ଗାନ୍ଧୀଙ୍କ ପରି ଜଣେ ଅପରିଣାମଦର୍ଶୀ ଓ ଅପରିପକ୍ୱ ବ୍ୟକ୍ତିଙ୍କର ମୃତ୍ୟୁ ପରେ କଂଗ୍ରେସ ଦଳର ସଭାପତି ଓ ଦେଶର ପ୍ରଧାନମନ୍ତ୍ରୀ ହେଲେ ଶ୍ରୀ ନରସିଂହ ରାଓ । ଦୁର୍ନୀତି ଉପାୟମାନ ଅବଲମ୍ବନ କରି ସେ କୌଣସିମତେ କଂଗ୍ରେସ ସରକାରକୁ ପାଞ୍ଚବର୍ଷ ବଞ୍ଚାଇଦେଲେ । ଏ ପ୍ରସଙ୍ଗରେ ଏହି ପୁସ୍ତକରେ ଅନ୍ୟତ୍ର ଆଲୋଚନା କରାଯାଇଛି । ତାହା ପରେ ଭାରତୀୟ ରାଜନୀତିରେ ଓ ଭାରତ ଶାସନ କ୍ଷେତ୍ରରେ ଘଟପରିବର୍ତ୍ତନ ଘଟିଲା । କଂଗ୍ରେସ ଦଳରେ ମଧ୍ୟ ଘଟପରିବର୍ତ୍ତନ ପାଲା ଚାଲିଲା । କଂଗ୍ରେସ ଦଳ ନିଜ ଐତିହ୍ୟ, ପରମ୍ପରା ଓ ସମସ୍ତ ରାଜନୈତିକ ସମ୍ଭ୍ରମ ଗଙ୍ଗାନଦୀକୁ ଫୋପାଡ଼ିଦେଇ ଏହାର ସଭାପତି ଆସନରୁ ସୀତାରାମ କେଶରୀଙ୍କୁ ନାଟକୀୟ ତଥା ଅସମ୍ମାନଜନକଭାବେ ହଟାଇ କଂଗ୍ରେସର ପଞ୍ଚାଏ ଖୋସାମତିଆ ଗୋଷ୍ଠୀ ପୁଣି ନେହେରୁ-ଗାନ୍ଧୀ ପରିବାର ପ୍ରତି ଦୃଷ୍ଟି ଢାଳିଲେ । ପ୍ରତୀତ ହେଲା ସତେ ଯେପରି କଂଗ୍ରେସ ଦଳଭିତରେ କୌଣସି ବ୍ୟକ୍ତିଙ୍କୁ ସର୍ବସମ୍ମତ ନେତାଭାବେ କେହି ମାନିବାକୁ ପ୍ରସ୍ତୁତ ନୁହଁନ୍ତି କିମ୍ବା ଉପସ୍ଥିତ ପରିସ୍ଥିତିରେ କେହି କଂଗ୍ରେସ ଦଳକୁ ନେତୃତ୍ୱ ଦେଇପାରିବାପାଇଁ ଉପଯୁକ୍ତ ନୁହଁନ୍ତି ।

ସୋନିଆ ଗାନ୍ଧୀଙ୍କୁ ଦଳ ଓ ଦେଶର ନେତୃତ୍ୱ ସମ୍ପିଦେଇ ଅନୁକମ୍ପା ରାଜନୀତିର ଫାଇଦା ଉଠାଇବାପାଇଁ କଂଗ୍ରେସ ନେତାମାନଙ୍କ ଭିତରି କଥା ପଦାରେ ପଡ଼ିଗଲା । ଏପରିକି ଅନେକ ନେତା ସୋନିଆ ଗାନ୍ଧୀ ରାଜିନହେଲେ ରାହୁଲ ଗାନ୍ଧୀ କିମ୍ବା ପ୍ରିୟଙ୍କା ଭଦ୍ରଙ୍କୁ ସଭାପତିଭାବେ ମନୋନୀତ କରାଯାଇ ପାରେ ବୋଲି କହିବାକୁ ପଛେଇଲେନାହିଁ । ଫଳତଃ ୧୯୯୧ ମସିହାରେ ଯେଉଁ ସୋନିଆ ଗାନ୍ଧୀ ରାଜୀବ ଗାନ୍ଧୀଙ୍କ ସ୍ଥାନ ପୂରଣ କରିବାପାଇଁ ପଛଘୁଞ୍ଚା ଦେଇଥିଲେ ୧୯୯୮ ମସିହା

ମାର୍ଚ୍ଚ ଚଉଦ ତାରିଖରେ ଚକ୍ରାନ୍ତ କରି କଂଗ୍ରେସ ଦଳର ସଭାପତି ପଦକୁ ମାଡ଼ିବସିଲେ । ଠିକ୍ ତା'ର ଦୁଇଦିନ ବ୍ୟବଧାନରେ ଅତି ତରବରିଆ କରି କଂଗ୍ରେସ ପାର୍ଲାମେଣ୍ଟାରୀ ଦଳର ସମ୍ବିଧାନକୁ ସଂଶୋଧନ କରାଗଲା । ସୀତାରାମ କେଶରୀ ବଳିପଡ଼ିଲେ । ମାରପେଞ୍ଚ ରାଜନୀତି ମାଧ୍ୟମରେ ସୋନିଆ ଗାନ୍ଧୀ ତାଙ୍କ ସ୍ଥାନ ପୂରଣକଲେ । ଭାରତର ପ୍ରଧାନମନ୍ତ୍ରୀ ହେବାର ରଙ୍ଗିନ ସ୍ୱପ୍ନ ଯେ ତାଙ୍କ ଆଖିଆଗରେ କେବଳ ନାଚିଲା ତାହା ନୁହେଁ, କଂଗ୍ରେସ ଦଳ ପକ୍ଷରୁ ଲୋକସଭା ନିର୍ବାଚନ ପ୍ରଚାରରେ ସୋନିଆଙ୍କୁ ପ୍ରଧାନମନ୍ତ୍ରୀଭାବେ ଉପସ୍ଥାପନ କରାଗଲା । ପ୍ରତ୍ୟେକ ସଭାରେ ଇଂରାଜୀ ଅକ୍ଷରରେ ହିନ୍ଦୀ ଭାଷାରେ ଅନ୍ୟବ୍ୟକ୍ତିଙ୍କଦ୍ୱାରା ପ୍ରସ୍ତୁତ ଭାଷଣମାନ ଉପସ୍ଥିତ ଜନତାଙ୍କ ଆଗରେ ପାଠକରି ସେ ହାସ୍ୟାସ୍ପଦ ଓ ନ୍ୟୂନ ବ୍ୟକ୍ତିତ୍ୱର ପରିଚୟ ଦେଲେ ।

ଏହିସବୁ ଦୃଷ୍ଟିରୁ ସୋନିଆ ଗାନ୍ଧୀ ଭାରତବର୍ଷ ପରି ଏକ ବିଶାଳ ଗଣତନ୍ତ୍ର, ସାର୍ବଭୌମ ରାଷ୍ଟ୍ର ଓ ସ୍ୱାଭିମାନୀ ଦେଶର ପ୍ରଧାନମନ୍ତ୍ରୀ ପଦପାଇଁ କେତେଦୂର ସ୍ପୃହଣୀୟା ତାହା ଭାରତର ସର୍ବସାଧାରଣ ଜନତାଙ୍କର ବିଚାର୍ଯ୍ୟ ବିଷୟ । ଏତଦ୍‌ବ୍ୟତୀତ ସେ ଇଟାଲୀ ବଂଶୋଦ୍ଭବ ହୋଇ ଏବଂ ସେ ଦେଶର ନାଗରିକ ଥାଇ ଭାରତର ନାଗରିକତ୍ୱ ଗ୍ରହଣ କରିଥିବା ବିଷୟ ଏବେବି ବିବାଦ ଘେରରେ ରହିଛି । କଂଗ୍ରେସ ଦଳ ଜାତୀୟ ଗୌରବ ଓ ଦେଶର ନିରାପତ୍ତା ଓ ଗୋପନୀୟତାକୁ ଭୁଲିଯାଇ ସୋନିଆ ଗାନ୍ଧୀଙ୍କୁ ପ୍ରଧାନମନ୍ତ୍ରୀରୂପେ ଉପସ୍ଥାପନ କରିବା ହେତୁ ଦଳ ଭିତରେ ଓ ବାହାରେ ତର୍କ ବିତର୍କ ହେଉଛି । ତାଙ୍କ ପରି ଜଣେ ବିଦେଶୀ ବ୍ୟକ୍ତିଙ୍କୁ ଭାରତୀୟ ପ୍ରଶାସନର ସର୍ବୋଚ୍ଚ ଆସନରେ ବସାଇବାଦ୍ୱାରା ଭାରତର ସୁରକ୍ଷା ଦୃଷ୍ଟିରୁ ସାମ୍ଭାବ୍ୟ ବିପଦ ସମ୍ପର୍କରେ ଦେଶର ବୁଦ୍ଧିଜୀବୀ ଓ ରାଜନୈତିକ ମହଲରେ ଅନୁଶୀଳନ ଚାଲିଛି ।

ଭାରତ ସରକାରଙ୍କ ଗୁଇନ୍ଦା ବିଭାଗର ଜଣେ ଅବସରପ୍ରାପ୍ତ ପ୍ରବୀଣ, ସଚ୍ଚୋଟ ଓ ବିଚାରବନ୍ତ ଅତିରିକ୍ତ ସେକ୍ରେଟେରୀ ଶ୍ରୀ ବି. ରମଣ ଏହି ପ୍ରସଙ୍ଗରେ 'ଷ୍ଟେଟ୍‌ସମ୍ୟାନ' ଇଂରେଜୀ ଖବରକାଗଜରେ ଗୋଟିଏ ପ୍ରବନ୍ଧ ଲେଖି ସେଥିରେ ବହୁ ତଥ୍ୟ ସହିତ କେତେକ ଶିକ୍ଷାପ୍ରଦ ବିଶ୍ଳେଷଣ ଓ ଚମକପ୍ରଦ ଘଟଣାମାନ ଉଦ୍‌ଘାଟନ କରିଛନ୍ତି । ସୋନିଆ ଗାନ୍ଧୀଙ୍କ ମୋହବନ୍ତ ଓ ପ୍ରୀତିରେ ଗୁଇନ୍ଦା ସଂସ୍ଥାକୁ ପ୍ରଭାବିତ କରିବା ସପକ୍ଷରେ ରାଜୀବଙ୍କର ହସ୍ତକ୍ଷେପର ଦୃଷ୍ଟାନ୍ତ ସେ ଉଲ୍ଲେଖ କରିଛନ୍ତି । ଇଂରେଜୀରେ ପ୍ରକାଶ ପାଇଥିବା ଏହି ପ୍ରବନ୍ଧଟି ଦେଶବାସୀଙ୍କ ପକ୍ଷେ ଅତ୍ୟନ୍ତ ଉପଯୋଗୀ ମନେକରିବାରୁ ତାହାକୁ ପରିଶିଷ୍ଟରୂପେ ପୁସ୍ତକରେ ସଂଲଗ୍ନ କରାଯାଇଛି । ଏହାର ମର୍ମାନୁବାଦ ଏଠାରେ ପ୍ରଦତ୍ତ ହୋଇଛି ।

## ସୋନିଆ ଗାନ୍ଧୀଙ୍କ ପ୍ରଧାନମନ୍ତ୍ରୀ ହେବା ପ୍ରସ୍ତାବ ଉପରେ ପୂର୍ବତନ ଗୁଇନ୍ଦା ମୁଖ୍ୟଙ୍କ ଉଦ୍‌ବେଗ ପ୍ରକାଶ

ଶ୍ରୀମତୀ ସୋନିଆ ଗାନ୍ଧୀ ପ୍ରଧାନମନ୍ତ୍ରୀ ପଦ ପାଇବାପାଇଁ ଅନ୍ୟମାନଙ୍କ ସହିତ ଯେଉଁ ପ୍ରତିଯୋଗିତାରେ ମାତିଛନ୍ତି ସେଥିରୁ ସେ ସ୍ୱଇଚ୍ଛାରେ ନିବୃତ୍ତ ହେବା ଠିକ୍ ହେବ ବୋଲି ଶ୍ରୀ ରମଣ ମତବ୍ୟକ୍ତ କରିଛନ୍ତି । ତାଙ୍କ ପ୍ରତ୍ୟକ୍ଷ ଅନୁଭୂତିରୁ ସେ ଲେଖିଛନ୍ତି ଯେ, ଜନତାଙ୍କର ରାୟ ପାଇ ଯଦି ସୋନିଆ ଗାନ୍ଧୀ ପ୍ରଧାନମନ୍ତ୍ରୀ ପଦରେ ଅଭିଷିକ୍ତ ହୁଅନ୍ତି ତେବେ ତାଙ୍କର ଇଟାଲୀୟ ସମ୍ପର୍କ ଦେଶର ନିରାପତ୍ତା ଓ ଗୋପନୀୟତା ପ୍ରତି ଘୋର ବିପଦ ସୃଷ୍ଟି କରିବ ।

ଜବାହାରଲାଲ୍ ନେହେରୁ, ତାଙ୍କ ପରିବାର ଓ ଇନ୍ଦିରା ଗାନ୍ଧୀଙ୍କର ଦେଶ ପ୍ରତି ଯେଉଁ ଅବଦାନ ଅଛି ତାହାର ଭୂୟସୀ ପ୍ରଶଂସା ସେ କରିଛନ୍ତି । ଗୁଇନ୍ଦା ବିଭାଗର ଜଣେ ବରିଷ୍ଠ ପଦାଧିକାରୀ ଭାବରେ ଏକ ଦଶନ୍ଧିକାଳ ରାଜୀବ ଗାନ୍ଧୀଙ୍କର ଭି.ଭି.ଆଇ.ପି. ନିରାପତ୍ତା ଓ ଉଗ୍ରପନ୍ଥୀ ଦମନ

ଦାୟିତ୍ୱରେ ଥାଇ ତାଙ୍କ ସହିତ ୧୯୮୫ ମସିହାରେ ଫ୍ରାନ୍ସ, ସୁଇଜରଲ୍ୟାଣ୍ଡ ଓ ହଲାଣ୍ଡ ପ୍ରଭୃତି ଦେଶ ଭ୍ରମଣକରି ରାଜୀବ ଗାନ୍ଧୀଙ୍କୁ ଓ ତାଙ୍କ ପରିବାରକୁ ଅତି ନିକଟରୁ ଘନିଷ୍ଠଭାବେ ଅଧ୍ୟୟନ କରିବାର ସୁଯୋଗ ସେ ପାଇଛନ୍ତି । ସେ ଯେଉଁ ପ୍ରତ୍ୟକ୍ଷ ଅନୁଭୂତି ଆହରଣ କରିଛନ୍ତି ତାହାହିଁ ଏ ପ୍ରବନ୍ଧରେ ଲେଖିଛନ୍ତି ବୋଲି ବ୍ୟକ୍ତ କରିଛନ୍ତି ।

ରାଜୀବ ଗାନ୍ଧୀଙ୍କ ମୃତ୍ୟୁ ପରେ ସୋନିଆ ଗାନ୍ଧୀ ଯେପରି ସମ୍ଭ୍ରାନ୍ତଭାବରେ ନିଜକୁ ପରିବ୍ୟକ୍ତ କଲେ ସେଥିପାଇଁ ତାଙ୍କ ପ୍ରତି ଶ୍ରୀ ରମଣଙ୍କର ସମ୍ମାନ ବୃଦ୍ଧିପାଇଥିବା ବିଷୟ ସେ ଉଲ୍ଲେଖ କରିଛନ୍ତି । କିନ୍ତୁ ଏହାସତ୍ତ୍ୱେ ପ୍ରସିଦ୍ଧ ଇଂରେଜୀ ନାଟ୍ୟକାର ସେକ୍ସପିୟରଙ୍କ ଜୁଲିୟସ ସିଜର୍ ନାଟକରେ ଜୁଲିୟସ ସିଜରଙ୍କର ବନ୍ଧୁ ବ୍ରୁଟସ୍‌ଙ୍କ ଉଦାହରଣ ଦେଇ ସେ କହିଛନ୍ତି ଯେ, ଯେପରି ବ୍ରୁଟସ୍ ତାଙ୍କର ଅତି ପ୍ରିୟ, ବିଶ୍ୱାସୀ ଓ ଅନ୍ତରଙ୍ଗ ବନ୍ଧୁ ସିଜରଙ୍କୁ ପରିତ୍ୟାଗ କରିବା ମୂଳରେ ଥିବା ନିବିଡ଼ ବନ୍ଧୁତ୍ୱ ସମ୍ପର୍କ ଅପେକ୍ଷା ରୋମ୍ ଦେଶର ମର୍ଯ୍ୟାଦା ଓ ସ୍ୱାଭିମାନ ତାଙ୍କ ପକ୍ଷେ ମହତ୍ତର ବୋଲି ବିବେଚନା କରିଥିଲେ ସେହି ଦୃଷ୍ଟିଭଙ୍ଗୀ ଆଧାରରେ ସୋନିଆ ଗାନ୍ଧୀଙ୍କ ପ୍ରତି ତାଙ୍କର ଯଥେଷ୍ଟ ସମ୍ମାନ ଥିଲେ ମଧ୍ୟ ଦେଶପ୍ରତି ତା'ଠାରୁ ଅଧିକ ସମ୍ମାନ, ଦାୟିତ୍ୱ ଓ କର୍ତ୍ତବ୍ୟ ଅଛି ବୋଲି ବିବେଚନା କରି ସେ ତାଙ୍କର ପ୍ରତ୍ୟକ୍ଷ ଅଭିଜ୍ଞତାକୁ ଭିତ୍ତିକରି ଏ ପ୍ରବନ୍ଧଟି ଲେଖିଛନ୍ତି । ସୋନିଆ ଗାନ୍ଧୀଙ୍କୁ ଭାରତର ପ୍ରଧାନମନ୍ତ୍ରୀ ରୂପେ ଉପସ୍ଥାପନକରି କଂଗ୍ରେସ ଦଳ କେତେଦୂର ବିଜ୍ଞତାର ପରିଚୟ ଦେଇଛନ୍ତି ସେ ବିଷୟରେ ଶ୍ରୀ ରମଣ ଏକ ପ୍ରଶ୍ନ ଉତ୍‌ଥାପନ କରିଛନ୍ତି ।

ପ୍ରସଙ୍ଗକ୍ରମେ କୌଣସି ଦେଶର ନାଗରିକମାନଙ୍କର ଅନ୍ୟ ଦେଶର ସର୍ବୋଚ୍ଚ ଆସନ ଅଧିକାର କରିବା ବିଷୟରେ ଇଉରୋପ ଓ କମ୍ୟୁନିଷ୍ଟ ଦେଶମାନଙ୍କର ଉଦାହରଣ ଦେଇ ସେ କହିଛନ୍ତି ଯେ, ଏହି ବ୍ୟବସ୍ଥା କେତେକ ଦେଶର ସମ୍ବିଧାନଦ୍ୱାରା ନିଷିଦ୍ଧ କରାଯାଇଛି ଓ ଅନ୍ୟ କୌଣସି କୌଣସି ଦେଶମାନଙ୍କରେ ରାଜନୈତିକ ପ୍ରତିବନ୍ଧକ ଓ ପ୍ରତିକୂଳ ଜନମତ ଏହି ବ୍ୟବସ୍ଥାକୁ ପ୍ରତିହତ କରିଛି ।

ଯୁକ୍ତରାଷ୍ଟ୍ର ଆମେରିକାରେ ପ୍ରେସିଡେଣ୍ଟ କିମ୍ବା ଭାଇସ୍-ପ୍ରେସିଡେଣ୍ଟ ପଦରେ କେବଳ ଆମେରିକାରେ ଜନ୍ମଗ୍ରହଣ କରିଥିବା ବ୍ୟକ୍ତିଙ୍କ ବ୍ୟତୀତ ଅନ୍ୟ କେହି ଅଭିଷିକ୍ତ ହୋଇପାରିବେନାହିଁ ବୋଲି ବ୍ୟବସ୍ଥା ଅଛି । ଅନ୍ୟାନ୍ୟ ପଦ-ପଦବୀ ପାଇଁ ସେପରି କୌଣସି ପ୍ରତିବନ୍ଧକ ଅନ୍ୟ ଦେଶରୁ ଆସି ଆମେରିକାର ନାଗରିକତ୍ୱ ଗ୍ରହଣ କରିଥିବା ବ୍ୟକ୍ତିଙ୍କ ପାଇଁ ନାହିଁ । ଆମେରିକାରେ ଜନ୍ମନେଇଥିବା ନାଗରିକଙ୍କ ସହିତ ସେମାନଙ୍କର ସମାନ ଅଧିକାର ଅଛି । ସୋନିଆ ଗାନ୍ଧୀଙ୍କ ଜନ୍ମସ୍ଥଳୀ ଇଟାଲୀ ସମେତ ଅନେକ ଦେଶରେ ଏହି ବ୍ୟବସ୍ଥା ଏବେ ମଧ୍ୟ ବଳବତ୍ତର ରହିଛି ।

ଦୁଇ ବିଶ୍ୱ ଯୁଦ୍ଧୋତ୍ତର ଘଟଣା ପ୍ରବାହରେ ଆମେରିକାରେ ଯେଉଁ ଦୁଇଜଣ ବିଦେଶୀ ବଂଶୋଦ୍ଭବ ବ୍ୟକ୍ତି ପରବର୍ତ୍ତୀ କାଳରେ ଆମେରିକାର ନାଗରିକତ୍ୱ ଗ୍ରହଣକରି ନିଜକୁ ଆମେରିକାର ଜନଜୀବନରେ ପ୍ରତିଷ୍ଠିତ କରିପାରିଥିଲେ, ସେମାନଙ୍କ ମଧ୍ୟରେ ଜଣେଥିଲେ ଜର୍ମାନୀରେ ଜାତ-ହୋଇଥିବା ଡକ୍ଟର ହେନେରୀ କେସିଙ୍ଗର୍ । ରାଷ୍ଟ୍ରପତି ନିକ୍ସନ୍ ତାଙ୍କ ସରକାରରେ ଡକ୍ଟର ହେନେରୀ କେସିଙ୍ଗରଙ୍କୁ ରାଷ୍ଟ୍ରୀୟ ନିରାପତ୍ତା ଉପଦେଷ୍ଟା ଓ ବିଦେଶ ସଚିବଭାବେ ନିଯୁକ୍ତ କରିବାକୁ କୁଣ୍ଠାବୋଧ କରିନଥିଲେ । ଅନ୍ୟ ଜଣକ ଥିଲେ ଚେକୋସ୍ଲୋଭାକିଆରେ ଜନ୍ମନେଇଥିବା ଶ୍ରୀମତୀ ମାଡ଼େଲାନ୍ ଆଲବ୍ରାଇଟ୍ । ପ୍ରେସିଡେଣ୍ଟ କ୍ଲିଣ୍ଟନ୍ ତାଙ୍କୁ ବିଦେଶ ସଚିବ କରିବାପାଇଁ ତିଳେହେଲେ ଦ୍ୱିଧା ବୋଧ କରିନଥିଲେ । ସେମାନେ ସପରିବାର ୧୯୪୦ ଦଶନ୍ଧିରେ ପେଡ଼ିପୁଟୁଳା ବାନ୍ଧି ମାତୃଭୂମି ତ୍ୟାଗକରି ଆମେରିକାକୁ ପଳାଇଆସିଥିଲେ । ଏହା ସତ୍ୟଯେ ନିଜ ଦେଶରେ ତାଙ୍କର ଆଉ କେହି ଆତ୍ମୀୟସ୍ୱଜନ ନଥିଲେ, ଅଧିକନ୍ତୁ ସେମାନେ ଜନ୍ମଭୂମି ସହିତ ତାଙ୍କର ସମସ୍ତ ଜନ୍ମ ସଂପର୍କ ମଧ୍ୟ ତୁଟାଇଦେଇଥିଲେ । ଆମେରିକାରେ ନିଜର ବୌଦ୍ଧିକ ଉତ୍କର୍ଷତା ଓ କାର୍ଯ୍ୟଦକ୍ଷତା ପ୍ରତିପାଦନ କରି

ସର୍ବସାଧାରଣଙ୍କ ପ୍ରୀତି ଓ ବିଶ୍ୱାସଭାଜନପୂର୍ବକ ଲୋକପ୍ରିୟ ହୋଇ ମଧ ରାଷ୍ଟ୍ରପତି କିମ୍ବା ଉପ-ରାଷ୍ଟ୍ରପତି ପରି ଉଚ୍ଚ ପଦ ପଦବୀପାଇଁ ନିଜେ ବିଦେଶ ସମ୍ଭୂତ ହୋଇଥିବାରୁ ସ୍ୱପ୍ନ ସୁଦ୍ଧା ଦେଖି-ନଥିଲେ । ରାଷ୍ଟ୍ରର ମୁଖ୍ୟପଦବୀ ଏବଂ ଦେଶ ଶାସନର ସର୍ବୋଚ୍ଚସ୍ଥାନରେ ନରହିପାରିବା ପରି ଏହି ବ୍ୟବସ୍ଥା ମୁଖ୍ୟତଃ ଚାରୋଟି କାରଣକୁ ଦୃଷ୍ଟିରେ ରଖି କରାଯାଇଥାଏ ବୋଲି ବି. ରମଣ ଲେଖିଛନ୍ତି । ସେଗୁଡ଼ିକ ହେଲା ଜାତୀୟ ଗୌରବ, ବିବାଦୀୟ ନୈତିକ ମୂଲ୍ୟବୋଧ, ଜାତୀୟ ସ୍ୱାର୍ଥଭିତ୍ତିକ ସ ମ୍ଭାବ୍ୟ ଦ୍ୱନ୍ଦ୍ୱ ଏବଂ ଜାତୀୟ ନିରାପତ୍ତା ।

ସର୍ବୋଚ୍ଚ କର୍ତ୍ତା ଦେଶର କର୍ମଚାରୀ ସମନ୍ୱିତ ଏକ ବିଶାଳ ସରକାରୀ ମନ୍ତ୍ରଣାଳୟକୁ ନିୟନ୍ତ୍ରଣ କରନ୍ତି । ଉପରୋକ୍ତ ଚାରିଗୋଟି କାରଣକୁ ଦୃଷ୍ଟିରେ ରଖି ବିଦେଶୀ/ବିଦେଶିନୀ ବିବାହ କରିବାକୁ ଚାହୁଁଥିବା କର୍ମଚାରୀମାନଙ୍କ ଉପରେ ଗଣତନ୍ତ୍ର ଅଥବା ବ୍ୟକ୍ତିସ୍ୱାଧୀନତା ବିରୋଧୀ ସରକାର ସମେତ ସମସ୍ତ ସରକାର ନିଜ ନିଜ ଦେଶର ପ୍ରଚଳିତ ଆଇନରେ ସ୍ୱତନ୍ତ୍ର କଟକଣା ରଖିଛନ୍ତି । ଆମ ଦେଶରେ ଏହି ପ୍ରକାର ଆଇନବଳରେ ଅତୀତରେ ବିଦେଶରେ ଜନ୍ମଗ୍ରହଣକରି ପରେ ଭାରତୀୟ ନାଗରିକତ୍ୱ ଗ୍ରହଣକରିଥିବା ଜନୈକ ମହିଳାଙ୍କୁ ଭାରତର ରିସର୍ଚ୍ଚ ଏବଂ ଆନାଲିସିସ୍ ଉଇଙ୍ଗର ଜଣେ ବରିଷ୍ଠ କର୍ମଚାରୀ ବିବାହକରିଥିବା କଥା ଜଣାପଡ଼ିବା ପରେ କଂଗ୍ରେସ ସରକାର ସେ ଅଫିସରଙ୍କୁ ଚାକିରିରୁ ଅନ୍ତରକରିଦେଇଥିଲେ । ଏ ବିଷୟରେ ତାଙ୍କର ଦକ୍ଷତା କିମ୍ବା ସାଧୁତାର ମୂଲ୍ୟାୟନ କିମ୍ବା ବିଚାର କରାଗଲାନାହିଁ ।

ଏହି ପରିପ୍ରେକ୍ଷୀରେ ସୋନିଆ ଗାନ୍ଧୀ ଯଦି ପ୍ରଧାନମନ୍ତ୍ରୀ ହୁଅନ୍ତି ତେବେ ସେହି ଆସନର ମର୍ଯ୍ୟାଦା ରକ୍ଷାକରି ଦାୟିତ୍ୱ ତୁଲାଇବାରେ ସେ କିପରି ବିବେକାନୁଭିତ୍ତିକ ଦ୍ୱନ୍ଦ୍ୱର ସମ୍ମୁଖୀନ ହେବେ ଏବଂ ସେ କ୍ଷେତ୍ରରେ କିପରି ଜଟିଳ, ସୂକ୍ଷ୍ମ ତଥା ସମ୍ବେଦନଶୀଳ ବିଷୟ ବିଚାରକରିବାରେ ଲକ୍ଷ୍ୟଭ୍ରଷ୍ଟ ହେବେ ସେହି ପ୍ରକାରର ବିଚାର ଶ୍ରୀ ରମଣ ଉତ୍‌ଥାପନ କରିଛନ୍ତି । ଉଦାହରଣ ଦେଇ ସେ କହିଛନ୍ତି ଯେ, ଯଦି ତାଙ୍କ ପାଖକୁ ଉପରୋକ୍ତ ବିଷୟପରି ବିଦେଶିନୀ ବିବାହ କରିଥିବା ଜଣେ ବରିଷ୍ଠ କର୍ମଚାରୀଙ୍କୁ ବହିଷ୍କାର କରିବା ପ୍ରଶ୍ନ ଉପରେ ନିଷ୍ପତ୍ତି ନେବାପାଇଁ ପଠାଯାଏ ତେବେ ସୋନିଆ ଗାନ୍ଧୀ ଏକ ନୈତିକ ଅନ୍ତର୍ଦ୍ୱନ୍ଦ୍ୱରେ ସନ୍ତୁଳିତ ହେବେ । ଲେଖକ ସ୍ୱୀକାର କରିଛନ୍ତି ଯେ, ତାଙ୍କୁ ଯଦି ସୋନିଆ ଗାନ୍ଧୀଙ୍କ ଆସନରେ ରଖି ଏପ୍ରକାର ପରିସ୍ଥିତିର ଗୁରୁଦାୟିତ୍ୱ ତୁଲାଇବାପାଇଁ ଦିଆଯାଏ ତେବେ ସେ କୌଣସି ନିଷ୍ପତ୍ତି ନେବାପୂର୍ବରୁ ଶତବାର ଜୀବନ-ମରଣ ଯନ୍ତ୍ରଣା ଅନୁଭବ କରିବେ । ଯଦିବା ଏପରି ଏକ ବିଷୟକୁ ସୋନିଆ ଗାନ୍ଧୀ ରାଷ୍ଟ୍ରପତିଙ୍କ ପାଖକୁ ବିଚାରପାଇଁ ପଠାଇବେ ତେବେ ରାଷ୍ଟ୍ରପତିଙ୍କୁ ସେ ଅଯଥା ଏକ ବିବାଦୀୟ ପରିସ୍ଥିତିରେ ଜଡ଼ିତକରିବେ ।

ବରିଷ୍ଠ କର୍ମଚାରୀମାନଙ୍କଠାରେ ଏହି ସ୍ୱତନ୍ତ୍ର ନିୟମାବଳୀଗୁଡ଼ିକର ପ୍ରୟୋଗ କରିବାରେ ଦ୍ୱନ୍ଦ୍ୱ ଉପୁଜିଲେ ସେ ବିଷୟରେ ଅନ୍ତିମ ନିଷ୍ପତ୍ତି ସର୍ବୋଚ୍ଚ ସ୍ତରରେ କରାଯାଇଥାଏ । ଆମେରିକାରେ ଗୁରୁତ୍ୱପୂର୍ଣ୍ଣ ପଦପଦବୀରେ କାର୍ଯ୍ୟ କରିବାପାଇଁ ଡକ୍ଟର କେସିଙ୍ଗର ଓ ଶ୍ରୀମତୀ ଆଲବ୍ରାଇଟ୍‌ଙ୍କ ନିଜ ପ୍ରସ୍ତାବ ସେମାନେ ରାଷ୍ଟ୍ରପତିଙ୍କ ବିଚାରପାଇଁ ପଠାଇଦେଇଥିଲେ କାରଣ ସେମାନେ ବିଦେଶୀ ବଂଶୋଦ୍ଭବ ଥିଲେ ଏବଂ ନିଜ ବିଷୟରେ ନିଜେ ନିଷ୍ପତ୍ତି ଦେବାପାଇଁ ଅନୁଚିତ ମନେକରିଥିଲେ ।

ଡକ୍ଟର କେସିଙ୍ଗର କିମ୍ବା ଆଲବ୍ରାଇଟ୍‌ଙ୍କଠାରୁ ସୋନିଆ ଗାନ୍ଧୀଙ୍କ ପରିସ୍ଥିତି ସଂପୂର୍ଣ୍ଣ ଭିନ୍ନ ବୋଲି ଶ୍ରୀ ରମଣ ମତ ବ୍ୟକ୍ତ କରିଛନ୍ତି । ସୋନିଆ ଗାନ୍ଧୀଙ୍କର ରକ୍ତସଂପର୍କ ଇଟାଲୀରୁ ଏପର୍ଯ୍ୟନ୍ତ ଛିନ୍ନ ହୋଇନାହିଁ । ତାଙ୍କର ଅନେକ ବଂଶୋଦ୍ଭବ ଇଟାଲୀର ନାଗରିକ ଅଟନ୍ତି ଏବଂ ଏବେ ମଧ ଇଟାଲୀରେ ବାସକରୁଛନ୍ତି । ଏଥିଯୋଗୁଁ ଯେକୌଣସି ସମ୍ବେଦନଶୀଳ ଘଟଣାରେ ଜାତୀୟ ସ୍ୱାର୍ଥକୁ ଉଚିତ ସମ୍ମାନଦେବା ସମ୍ଭବପର ହେବନାହିଁ । ତାଙ୍କ ବଂଶରେ କେବଳ ଚାରିଜଣ ଭାରତୀୟ ନାଗରିକ ଅଟନ୍ତି । ସେମାନେ ହେଲେ ତାଙ୍କର ପୁଅ ଓ ଝିଅ, ମେନକା ତାଙ୍କର ଗାନ୍ଧୀ ଓ ତାଙ୍କର ପୁଅ ।

ଇଟାଲୀର ପାକିସ୍ଥାନ ଓ ଚୀନ୍ ସହିତ ଅସ୍ତ୍ରଶସ୍ତ୍ର, ଆଣବିକ ପଦାର୍ଥ ଓ ପ୍ରଯୁକ୍ତିବିଦ୍ୟାର ବ୍ୟାବ-ସାୟିକ ସମ୍ପର୍କ ଅତୀତ ଦିନମାନଙ୍କରେ ଥିବାରୁ ଇଟାଲୀରେ ଭାରତୀୟ ଜାତୀୟ ନିରାପତ୍ତା ବିଷୟଟି ଘନିଷ୍ଠ ଭାବେ ଜଡ଼ିତ । ଏହା ବ୍ୟକ୍ତ କରିବାଦ୍ୱାରା ଗୋପନୀୟତାର ଖିଲାପ ହେଉଛି ମନେକରିବା ଠିକ୍ ହେବନାହିଁ ବୋଲି ଶ୍ରୀ ରମଣ ମତବ୍ୟକ୍ତ କରିଛନ୍ତି । ଏହି ଜାତୀୟ ସ୍ୱାର୍ଥର ସୁରକ୍ଷା ଦୃଷ୍ଟିରୁ ଭାରତର ଗୁଇନ୍ଦାସଂସ୍ଥାଗୁଡ଼ିକ ଇଟାଲୀରେ ହେଉ କିମ୍ବା ଅନ୍ୟ କୌଣସି ଦେଶ ଜରିଆରେ ହେଉ ଗୁଇନ୍ଦା କାର୍ଯ୍ୟାନୁଷ୍ଠାନ କରିବା ଜରୁରୀ ହୋଇଥାଏ । ଏହି ପଦକ୍ଷେପଗୁଡ଼ିକ ଭାରତର ଜାତୀୟ ସ୍ୱାର୍ଥ-ସମ୍ବଳିତ ହୋଇଥିଲେ ମଧ୍ୟ ଇଟାଲୀର କର୍ତ୍ତୃପକ୍ଷମାନେ ଏସବୁ କାର୍ଯ୍ୟ ସେମାନଙ୍କ ଦେଶର ଜାତୀୟ ସ୍ୱାର୍ଥକୁ କ୍ଷୁଣ୍ଣ କରିପାରେ ବୋଲି ଭାବିପାରନ୍ତି ।

ଗୁଇନ୍ଦା ବିଭାଗର ମୁଖ୍ୟ ପଦସ୍ଥ କର୍ମଚାରୀମାନେ ଅନୁସନ୍ଧାନ ସମ୍ପର୍କିତ କାର୍ଯ୍ୟାନୁଷ୍ଠାନ କରିବା-ବେଳେ ପ୍ରାୟ ଅଶୀ ଭାଗ କାର୍ଯ୍ୟରେ ନିଷ୍ପତ୍ତି ନିଜେ ନେଇଥାଆନ୍ତି । ବାକି କୋଡ଼ିଏ ଭାଗ କାର୍ଯ୍ୟର ନିଷ୍ପତ୍ତି ଯେଉଁଥିରେ କି ରାଜ୍ୟ ରାଜ୍ୟ ମଧ୍ୟରେ ପ୍ରତିକୂଳ ରାଜନୈତିକ ସମ୍ପର୍କ ଦୃଷ୍ଟିରୁ କାର୍ଯ୍ୟାନୁଷ୍ଠାନ-ବେଳେ ପ୍ରତିବନ୍ଧକ ସୃଷ୍ଟିହେବାପରି ବୋଧହୁଏ ସେପରି ବିଷୟଗୁଡ଼ିକରେ ପ୍ରଧାନମନ୍ତ୍ରୀଙ୍କଠାରୁ ଆଗରୁ ଅନୁମତି ନିଅନ୍ତି । ସୋନିଆ ଗାନ୍ଧୀ ପ୍ରଧାନମନ୍ତ୍ରୀ ହେଲେ ଭାରତୀୟ ସ୍ୱାର୍ଥ ଦୃଷ୍ଟିରୁ ନ୍ୟାୟସଂଗତ ମନେକରାଯାଉଥିବା ଅଥଚ ଇଟାଲୀର ଜାତୀୟ ସ୍ୱାର୍ଥ ବିରୋଧୀପରି ପ୍ରତୀତ ହେଉଥିବା କୌଣସି କାର୍ଯ୍ୟକ୍ରମର ପ୍ରସ୍ତାବ ତାଙ୍କ ପାଖକୁ ପଠାଇବା ବେଳେ ଗୁଇନ୍ଦା ବିଭାଗ ଏକ ସମ୍ବେଦନଶୀଳ ଦ୍ୱନ୍ଦ୍ୱର ସମ୍ମୁଖୀନ ହେବେ ।

ଇଟାଲୀ କିମ୍ବା ଅନ୍ୟ କୌଣସି ପୂର୍ବ ଇଉରୋପୀୟ ଦେଶମାନଙ୍କରେ ପରସ୍ପର ଯୋଗସୂତ୍ର ରକ୍ଷାକରି କାମକରୁଥିବା କୌଣସି ସଂସ୍ଥାକୁ ଭାରତୀୟ ଗୁଇନ୍ଦା ବିଭାଗ ଅନୁସନ୍ଧାନ ସମ୍ପର୍କୀୟ କାର୍ଯ୍ୟ ସମ୍ପାଦନ କରିବାପାଇଁ ଯଦି ନିଯୁକ୍ତି ଦିଅନ୍ତି ତେବେ ସେମାନେ ଭାରତ ସପକ୍ଷରେ କାର୍ଯ୍ୟ କରିବାକୁ ହୁଏତ ଆଶଙ୍କା କରିପାରନ୍ତି, କାରଣ ସେମାନଙ୍କର ନିଯୁକ୍ତି ସମ୍ପର୍କୀୟ ନିଷ୍ପତ୍ତି ସୋନିଆ ଗାନ୍ଧୀଙ୍କଦ୍ୱାରା ସମ୍ପାଦିତ ହେବ । କଂଗ୍ରେସ ଦଳ ଓ ସୋନିଆ ଗାନ୍ଧୀ ଏ ପ୍ରକାର ବିବାଦୀୟ ପରିସ୍ଥିତି ସବୁକୁ କିପରି ଆୟତ୍ତ କରିବେ ତାହା ହେଉଛି ଏକ ପ୍ରଶ୍ନବାଚୀ ବୋଲି ଶ୍ରୀ ରମଣ ମତ ବ୍ୟକ୍ତ କରିଛନ୍ତି । ଯଦି ଇଟାଲୀ ସହିତ ସମ୍ବେଦନଶୀଳ ସମ୍ପର୍କୀତ ସମସ୍ତ ନଥିପତ୍ର ତାଙ୍କ ପାଖକୁ ନପଠାଇ ସିଧାସଳଖ ରାଷ୍ଟ୍ରପତିଙ୍କ ପାଖକୁ ପଠାଇଦେବାପାଇଁ ନିର୍ଦ୍ଦେଶ ସେମାନେ ଦିଅନ୍ତି ତେବେ ତାହା ଅସୁନ୍ଦର ଓ ହାସ୍ୟାସ୍ପଦ ହେବ ।

ଅନ୍ୟ ଏକ ସମ୍ଭାବ୍ୟ ବିପତ୍ତି ଉପୁଜିବ ଯେତେବେଳେ ସରକାରଙ୍କର ମୁଖ୍ୟ ଆସନ ଅଳଙ୍କୃତ କରିଥିବା ବ୍ୟକ୍ତିଙ୍କର କୌଣସି ବିଦେଶୀ/ବିଦେଶିନୀଙ୍କ ସହିତ ସମ୍ପର୍କ ଥାଏ । ଏ ସମ୍ପର୍କ ଯେତେ ହିତକାରୀ ହୋଇଥିଲେ ମଧ୍ୟ କୌଣସି ନିଷ୍ପତ୍ତି ଗ୍ରହଣ କରିବା ପ୍ରକ୍ରିୟାରେ ତାହା ବିଘ୍ନ ସୃଷ୍ଟି କରିଥାଏ । ଭାରତରେ ଜନ୍ମଗ୍ରହଣ କରିଥିବା ରାଜୀବ ଗାନ୍ଧୀଙ୍କ ପରି ଜଣେ ଭାରତୀୟ ନାଗରିକଙ୍କ ରାଜତ୍ୱ ଅମଳରେ ଭାରତୀୟ ଗୁଇନ୍ଦା ସଂସ୍ଥା ଏହା ଅନୁଭବ କରିଥିଲେ । ଭାରତୀୟ ଗୁଇନ୍ଦା ସଂସ୍ଥା ପାଇଁ ରାଜୀବ ଗାନ୍ଧୀ ପ୍ରଧାନମନ୍ତ୍ରୀ ଭାବରେ ଅନେକ ଉପକାର କରିଥିଲେ ବୋଲି ସ୍ୱୀକାର କରିବା ସହିତ ଶ୍ରୀ ରମଣ ଉଲ୍ଲେଖ କରିଛନ୍ତି ଯେ, ରାଜୀବ ଗାନ୍ଧୀଙ୍କ ନିରାପତ୍ତା ରକ୍ଷାକରିବା କାର୍ଯ୍ୟରେ ନିୟୋଜିତ ଥିବାବେଳେ ତାଙ୍କ ସମେତ ଅନେକ ଗୁଇନ୍ଦା ବିଭାଗୀୟ ଅଫିସର ଅତ୍ୟନ୍ତ ଅସ୍ୱସ୍ତି ଅନୁଭବ କରିଥିଲେ ଯେତେବେଳେ ଇଟାଲୀୟ ଗୁଇନ୍ଦା ସଂସ୍ଥାକୁ ଅପେକ୍ଷାକୃତ ଉତ୍କୃଷ୍ଟ ଭାବରେ ପ୍ରତିପାଦନ କରି ଭାରତୀୟ ଗୁଇନ୍ଦା ସଂସ୍ଥା ଇଟାଲୀୟ ଗୁଇନ୍ଦା ସଂସ୍ଥାଠାରୁ ନିରାପତ୍ତା ରକ୍ଷାକରିବା କୌଶଳ ପ୍ରଭୃତି ଶିକ୍ଷାକରିବା ଉଚିତ ବୋଲି ରାଜୀବ ଗାନ୍ଧୀ ମନ୍ତବ୍ୟ ଦେଇଥିଲେ । ଭାରତୀୟ ଗୁଇନ୍ଦା ସଂସ୍ଥା ଇଟାଲୀଠାରୁ କିଛି ଶିକ୍ଷାକରିବାର ଆବଶ୍ୟକତା ନାହିଁ ବୋଲି କହିବା ଶ୍ରୀ ରମଣଙ୍କ ପକ୍ଷେ କଷ୍ଟକର ବ୍ୟାପାର ଥିଲା । ଏହି ଅଫିସରମାନଙ୍କର ଅସ୍ୱସ୍ତିମୂଳକ ଧାରଣାଥିଲା ଯେ ଇଟାଲୀରେ ଜନ୍ମଗ୍ରହଣ

କରିଥିବା ତାଙ୍କ ସ୍ତ୍ରୀ ସୋନିଆ ଗାନ୍ଧୀଙ୍କପାଇଁ ଥିବା ତାଙ୍କର ପ୍ରେମ ଓ ପ୍ରେମାନୁଭୂତିର ପ୍ରଭାବ ଯୋଗୁଁ ସେ ଇଟାଲୀୟ ସାମର୍ଥ୍ୟ ଓ ଆସ୍ଥା ଉପରେ ମନ୍ତବ୍ୟ ଦେଇଛନ୍ତି ।

ଇଟାଲୀୟ ନିରାପତ୍ତା ବ୍ୟବସ୍ଥାରୁ ସାହାଯ୍ୟପାଇବା ଆଶାରେ ରାଜୀବ ଗାନ୍ଧୀଙ୍କ ବ୍ୟବସାୟୀ ଶାଳକଙ୍କୁ ଭାରତରେ ଗୋଟିଏ ତାଲିମ ପ୍ରକଳ୍ପରେ ସାମିଲକରିଥିଲେ ଏବଂ ତାଙ୍କ ସହିତ ଯୋଗସୂତ୍ର ମାଧ୍ୟମ ଭାବରେ ଶ୍ରୀ ରମଣଙ୍କୁ ବ୍ୟବହାର କରିବାକୁ ଚେଷ୍ଟାକରିଥିଲେ । କିନ୍ତୁ କୌଶଳକ୍ରମେ ସେପରି ଏକ ବିବେକ-ବାଧକ କର୍ମରୁ ନିଜକୁ ସେ ବଞ୍ଚାଇଦେଇଥିଲେ । ସୋନିଆ ଗାନ୍ଧୀ ପ୍ରଧାନମନ୍ତ୍ରୀ ହେଲେ ଏହିଠାରୁ ଅଧିକ ସୂକ୍ଷ୍ମ ଓ ଜଟିଳ ପ୍ରଶ୍ନ ଓ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିପାରେ ବୋଲି ଶ୍ରୀ ରମଣ ପ୍ରକାଶ କରିଛନ୍ତି ।

ସୋନିଆ ଗାନ୍ଧୀ ଯଦି ନିଜ ତରଫରୁ ନିଷ୍ପତ୍ତି ନେଇ ସ୍ୱୀକାର କରନ୍ତେ ଯେ ପ୍ରଧାନମନ୍ତ୍ରୀ ପଦ ସେ କେବେହେଲେ ଗ୍ରହଣ କରିବେନାହିଁ ବରଂ ଯେଉଁ ନେହେରୁ-ଗାନ୍ଧୀ ପରିବାର କଂଗ୍ରେସର ନେତୃତ୍ୱନେଇ ଦେଶ ଓ ଜାତିର ଅତୁଳନୀୟ ଉତ୍କର୍ଷ ସାଧନ କରିଛନ୍ତି ସେହି ଭାବଧାରାରେ ସେ କଂଗ୍ରେସର ଅଧ୍ୟକ୍ଷା ରହି କଂଗ୍ରେସଦଳକୁ ଉପଯୁକ୍ତ ନେତୃତ୍ୱ ଦେବେ ଏବଂ ଅନ୍ୟ କୌଣସି ଯୋଗ୍ୟ ବ୍ୟକ୍ତିଙ୍କୁ ପ୍ରଧାନମନ୍ତ୍ରୀ ଭାବରେ ବାଛିବାପାଇଁ ସାହାଯ୍ୟ କରିବେ ତେବେ କେବଳ ଭାରତବର୍ଷରେ କାହିଁକି ବିଦେଶରେ ମଧ୍ୟ ତାଙ୍କର ସମ୍ମାନ ଅନେକ ଗୁଣରେ ବଢ଼ିଯାଆନ୍ତା । ଏଥିସହିତ ଯଦି ସେ ରାଷ୍ଟ୍ରପତି, ଉପରାଷ୍ଟ୍ରପତି ଓ ପ୍ରଧାନମନ୍ତ୍ରୀ ପଦରେ ବିଦେଶ ବଂଶୋଦ୍ଭବ ବ୍ୟକ୍ତି ଅଭିଷିକ୍ତ ହୋଇ ନପାରିବାଭଳି ସାମ୍ବିଧାନିକ ପରିବର୍ତ୍ତନ ଆଣିବା ବିଷୟ କଂଗ୍ରେସ ନିର୍ବାଚନ ଇସ୍ତାହାରରେ ସଂଯୋଗ କରନ୍ତେ ତେବେ ଭାରତବାସୀଙ୍କର ସେ ଅବିସ୍ମରଣୀୟ ହୋଇଯାଆନ୍ତେ ।

ଏ ପ୍ରକାର ତ୍ୟାଗ ସେ କ'ଣ କରିପାରିବେ ବୋଲି ପ୍ରଶ୍ନ ଉତ୍ଥାପନ କରି ଶ୍ରୀ ରମଣ ଲେଖିଛନ୍ତି ଯେ, ଏହା ଅବଶ୍ୟ ସୋନିଆ ଗାନ୍ଧୀଙ୍କ ପକ୍ଷେ ସମ୍ଭବ ବୋଲି ଆଶାପୋଷଣ କରିଛନ୍ତି, କାରଣ ସେ ଏପରି ଏକ ପରିବାରର ଅନ୍ତର୍ଭୁକ୍ତ ଯେଉଁ ପରିବାର ଦେଶପାଇଁ ବହୁତ ସ୍ୱାର୍ଥତ୍ୟାଗ କରିଛି ଏବଂ ସୋନିଆ ଗାନ୍ଧୀ ନିଜେ ୧୯୯୧ରେ ତାଙ୍କ ସ୍ୱାମୀଙ୍କ ନିଧନ ପରେ ତାଙ୍କ ଆସନରେ ଅଧିଷ୍ଠିତ ହେବାପାଇଁ ମନାକରିଦେଇ ତାଙ୍କର ମହନୀୟତା ପ୍ରଦର୍ଶନ କରିଛନ୍ତି ।

ଏହା ଥିଲା ଶ୍ରୀ ରମଣଙ୍କର ପ୍ରବନ୍ଧର ମର୍ମାନୁଭିବ୍ୟକ୍ତି । ଭାରତବର୍ଷର କୋଟି କୋଟି ଜନତାଙ୍କ ହୃଦୟର କଥା ଓ ବ୍ୟଥାକୁ ସେ ତାଙ୍କର ପ୍ରତ୍ୟକ୍ଷ ଅଭିଜ୍ଞତାପୂର୍ଣ୍ଣ ପ୍ରବନ୍ଧରେ ପ୍ରକଟିତ କରିଛନ୍ତି । ଶ୍ରୀ ରମଣଙ୍କ ମତ ସହିତ ମୁଁ ସଂପୂର୍ଣ୍ଣ ସହମତ ।

ଇତିମଧ୍ୟରେ କଂଗ୍ରେସ ଦଳର ବିଭାଜନ ହୋଇଯାଇଥିବା ଲକ୍ଷ୍ୟକରାଯାଇଛି । ସୋନିଆ ଗାନ୍ଧୀଙ୍କର କଂଗ୍ରେସ ଦଳର ସଭାପତି ପଦ ଗ୍ରହଣକରିବା ଓ ତାଙ୍କୁ ଭାରତର ଭବିଷ୍ୟତ ପ୍ରଧାନମନ୍ତ୍ରୀରୂପେ ଉପସ୍ଥାପନ କରିବା ହେତୁ ଏ ବିଭାଜନ ଘଟିଛି କହିଲେ ଅତ୍ୟୁକ୍ତି ହେବନାହିଁ । ସେ ପ୍ରଧାନମନ୍ତ୍ରୀ ହେଲେ ତାହା ଦେଶ ଓ ଜାତି ପକ୍ଷରେ କ୍ଷତିକାରକ ହେବ ବୋଲି ମନେକରି କଂଗ୍ରେସ ଦଳର ବିଜ୍ଞ ଓ ଚତୁର ବ୍ୟକ୍ତିମାନେ ସୋନିଆ ଗାନ୍ଧୀଙ୍କପାଇଁ ଉଦ୍ଦିଷ୍ଟ ଏହି ପ୍ରସ୍ତାବକୁ ବିରୋଧକରି କଂଗ୍ରେସ ଦଳରୁ ଅଲଗା ହୋଇ 'ନ୍ୟାସନାଲିଷ୍ଟ କଂଗ୍ରେସ' ନାମରେ ଏକ ଦଳ ଗଠନ କରିଛନ୍ତି । ଶରଦ ପାୱାର, ପି.ଏ.ସାଙ୍ଗମା ଓ ତାରିକ୍ ଅନୱାରଙ୍କ ଭଳି ଚିନ୍ତାଶୀଳ, ଦେଶପ୍ରେମୀ, ସ୍ୱାଭିମାନୀ ଓ ଲୋକପ୍ରିୟ ନେତାମାନେ ଏହିପରି ଆଦର୍ଶ ପଦକ୍ଷେପ ନେଇ କଂଗ୍ରେସ ଦଳର ଉପଯୁକ୍ତ ଦାୟାଦ ଭାବରେ ନିଜକୁ ପରିଚିତ ଓ ସମ୍ମାନିତ କରାଇଛନ୍ତି । ସେମାନେ ଏବେ ମଧ୍ୟ କଂଗ୍ରେସରେ ସାମିଲ ହେବାକୁ ପ୍ରସ୍ତୁତ ଅଛନ୍ତି ଯଦି ସୋନିଆ ଗାନ୍ଧୀଙ୍କୁ ପ୍ରଧାନମନ୍ତ୍ରୀରୂପେ ଉପସ୍ଥାପନ ନକରିବାକୁ କଂଗ୍ରେସ ଦଳ ପ୍ରତିଶ୍ରୁତିବଦ୍ଧ ହୁଏ ।

## ବିଜୁଙ୍କ ସତର୍କବାଣୀ

ଏଠାରେ ସ୍ମରଣ କରିବାର କଥା ଯେ, ଇନ୍ଦିରା ଗାନ୍ଧୀଙ୍କ ଦେହାନ୍ତ ପରେ ପରେ ରାଜୀବ ଗାନ୍ଧୀ ପ୍ରଧାନମନ୍ତ୍ରୀ ଗାଦିନସିନ ହେବା ପରେ ପରେହିଁ ଦୂରଦ୍ରଷ୍ଟା ବିଜୁ ପଟ୍ଟନାୟକ ସର୍ବପ୍ରଥମେ ରାଜୀବ-ସୋନିଆଙ୍କର ଇଟାଲୀୟ ଘନିଷ୍ଠତା କାରଣରୁ ଆମ ଦେଶର ନିରାପତ୍ତା ପ୍ରତି ବିପଦର ସମ୍ଭାବନା ଅଛି ବୋଲି ପ୍ରକାଶ୍ୟ ସତର୍କବାଣୀ ଶୁଣାଇଥିଲେ । ଆତତାୟୀଦ୍ୱାରା ଇନ୍ଦିରାଗାନ୍ଧୀଙ୍କ ହତ୍ୟାପରେ ଏକ ଶୋକାକୁଳ ପରିସ୍ଥିତିରେ ବୟୋଜ୍ୟେଷ୍ଠ ନେତା ବିଜୁ ପଟ୍ଟନାୟକଙ୍କର ଏଭଳି ସତର୍କବାଣୀକୁ ସେତେ-ବେଳେ ଶାଳୀନତାହୀନ ଆକ୍ଷେପୋକ୍ତି ବୋଲି କେହି କେହି ତୀବ୍ର ସମାଲୋଚନା କରିଥିଲେ । 'ରାଜୀବ ଗୋଟିଏ ପୁଅ ଭଳି ପିଲା, ଛାଡ଼ ସେ କଥା' ବୋଲି ବନ୍ଧୁମାନଙ୍କୁ କହି ବିଜୁବାବୁ ଆଉ ନିଜ କଥା ଉପରେ ଜୋର୍ ଦେଇନଥିଲେ । କିନ୍ତୁ ତାଙ୍କର ଭବିଷ୍ୟତବାଣୀ ଯେ ସଂପୂର୍ଣ୍ଣ ତଥ୍ୟଭିତ୍ତିକ ଓ ନେହେରୁ ପରିବାର ସଂପର୍କରେ ତାଙ୍କର ଦୀର୍ଘ ଅଭିଜ୍ଞତାସଂଭୂତ ତାହା ପରବର୍ତ୍ତୀ କାଳରେ ସ୍ପଷ୍ଟ ସାବ୍ୟସ୍ତ ହୋଇଛି ।

## ରାଷ୍ଟ୍ରୀୟ ନିରାପତ୍ତାହିଁ ବିଦେଶିନୀ ବିବାହ ବାରଣର କାରଣ

କହି ଜଣେ ବ୍ୟକ୍ତି କୌଣସି ଦାୟିତ୍ୱପୂର୍ଣ୍ଣ ଅବା କୂଟନୈତିକ ଉଚ୍ଚ ପଦ-ପଦବୀରେ ନିଯୁକ୍ତ ହୋଇଥିଲେ ସେ ଜଣେ ବିଦେଶିନୀଙ୍କୁ ବିବାହକରିବାକୁ ଆମ ପ୍ରଶାସନିକ ନିୟମାବଳୀରେ ବାରଣକରାଯାଇଛି । ଏଭଳି ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱରେ ନିଯୁକ୍ତ ମହିଳା କର୍ମଚାରୀଙ୍କ ପ୍ରତି ମଧ୍ୟ ଅନୁରୂପ ବୈବାହିକ ନିୟମ ପ୍ରଯୁଜ୍ୟ, ତେବେ ଆମ ସମ୍ବିଧାନରେ ରାଷ୍ଟ୍ରପତି, ଉପରାଷ୍ଟ୍ରପତି ଓ ପ୍ରଧାନମନ୍ତ୍ରୀଙ୍କ ଭଳି ଗୁରୁତ୍ୱପୂର୍ଣ୍ଣ ଆସନ ପାଇଁ ଏଭଳି ବାରଣ ବ୍ୟବସ୍ଥା ଯେ ଖଞ୍ଜାଯାଇନାହିଁ, ତାହା ଅନଭିପ୍ରେତ ପ୍ରମାଦ ହେତୁ ଘଟିଥାଇପାରେ, କିମ୍ବା କୌଣସି ଅପ୍ରକଟିତ ଉଦ୍ଦେଶ୍ୟ, ଘେନି ଏଡ଼ାଇଦିଆଯାଇ-ପାରିଥାଏ । ଏହି ପ୍ରସଙ୍ଗ ଏବେ ବୁଦ୍ଧିଜୀବୀ ଓ ରାଜନୀତି ବିଜ୍ଞାନ ପଣ୍ଡିତମାନଙ୍କଦ୍ୱାରା ବାରମ୍ବାର ପର୍ଯ୍ୟାଲୋଚିତ ହେଉଛି । ଏଭଳି ସାମ୍ବିଧାନିକ ବ୍ୟବସ୍ଥା ରଖାଯିବାର ଅପରିହାର୍ଯ୍ୟ ଆବଶ୍ୟକତା ଥିବାର ଦାବୀ କରାଯାଉଛି । ସମ୍ବିଧାନ ସମୀକ୍ଷାପାଇଁ ନିଯୁକ୍ତ ବିଶେଷଜ୍ଞ କମିଟିରେ ମଧ୍ୟ ଏଭଳି ସମସ୍ୟା ଉପସ୍ଥାପିତ ହୋଇଛି ।

କାହାରି ପ୍ରତି କୌଣସି ଆକ୍ଷେପ ନକରି ଏହି ପ୍ରସଙ୍ଗରେ କେବଳ ସମସାମୟିକ କେତେକ ତୁଳନାତ୍ମକ ଦୃଷ୍ଟାନ୍ତ ପ୍ରତି ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରାଯାଇପାରେ । ଆମର ବର୍ତ୍ତମାନ ରାଷ୍ଟ୍ରପତି ଶ୍ରୀ କେ.ଆର. ନାରାୟଣନ୍ ପୂର୍ବେ ଭାରତୀୟ ବିଦେଶସେବା କର୍ମଚାରୀ ଥିଲେ । ସେତେବେଳେ ସେ ତାଙ୍କର ବର୍ତ୍ତମାନର ଧର୍ମପତ୍ନୀ ଶ୍ରୀମତୀ ଉଷା ନାରାୟଣନ୍‌ଙ୍କୁ ବିବାହ କରିବା ପୂର୍ବରୁ ଏହିଭଳି ସରକାରୀ ବାରଣର ସମ୍ମୁଖୀନ ହୋଇଥିଲେ, କାରଣ ତାଙ୍କର ନିର୍ବାଚିତା ଜୀବନସଙ୍ଗିନୀ ଥିଲେ ବର୍ମାର ନାଗରିକ । ତତ୍‌କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କର ଅନୁକମ୍ପାମୂଳକ ନିଷ୍ପତ୍ତି ହେତୁ ଶ୍ରୀ ନାରାୟଣ ଓ ଉଷା ନାରାୟଣଙ୍କ ବିବାହ ସମ୍ଭବହୋଇଥିଲା ଏବଂ ଶ୍ରୀ ନାରାୟଣନ୍‌ଙ୍କୁ ସରକାରୀ ପଦ ତ୍ୟାଗ କରିବାକୁ ପଡ଼ିନଥିଲା । ମାତ୍ର ରିସର୍ଚ୍ଚ ଆଣ୍ଡ ଆନାଲିସିସ୍ ଉଇଙ୍ଗ (RAW)ର ଜଣେ ଅତି ଦକ୍ଷ କର୍ମଚାରୀଙ୍କୁ କଂଗ୍ରେସ ଶାସନ ସମୟରେ ଚାକିରିରୁ ବହିଷ୍କୃତ ହେବାକୁ ପଡ଼ିଥିଲା କାରଣ ତାଙ୍କ ସ୍ୱଇଚ୍ଛାରେ ସେ ଜଣେ ବିଦେଶିନୀ ମହିଳାଙ୍କୁ ବିବାହକରିଥିଲେ ।

## ବିଶ୍ୱନାଥ ପ୍ରତାପ ସିଂହଙ୍କ ଉତ୍‌ଥାନ

ଇନ୍ଦିରା ଗାନ୍ଧୀଙ୍କ ମୃତ୍ୟୁର କିଛିକାଳ ପୂର୍ବରୁ କଂଗ୍ରେସର ଜଣେ ସାଧାରଣ ସଂପାଦକ ଓ ଲୋକସଭା ସଦସ୍ୟ ଭାବରେ ରାଜୀବ ଗାନ୍ଧୀ ଦେଶର ଜନମତ ପ୍ରତି ବେଶ ସତର୍କ ଥାଇ କାର୍ଯ୍ୟ

କରୁଥିବାର ଲକ୍ଷ୍ୟକରାଯାଉଥିଲା । ଏପରିକି ସେ ତାଙ୍କ ସାନଭାଇ ଦୁର୍ଘଟ ସଂଜୟ ଗାନ୍ଧୀଙ୍କଠାରୁ ସଂପୂର୍ଣ୍ଣ ପୃଥକ୍ ପ୍ରକୃତିର । ସେ ବିଚାରବନ୍ତ ଏବଂ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଆଦର୍ଶକୁ ଅନୁକରଣ କରି ଚଳିବାର ସମ୍ଭାବନା ଥିବା ସଂପର୍କରେ ଅନେକ କଂଗ୍ରେସ ଲୋକଙ୍କ ମନରେ ଆଶା ସଂଚାର ହୋଇଥିଲା । ଭାରତର ଗ୍ରାମାଞ୍ଚଳ, ବିଶେଷକରି ଆଦିବାସୀ ଅଧ୍ୟୁଷିତ ଅଞ୍ଚଳଗୁଡ଼ିକରେ ଘନ ଘନ ଗସ୍ତ କରି କର୍ମୀସଭାରେ ଯୋଗଦେଇ ଜବାହର ଲାଲ ନେହେରୁଙ୍କ ମାର୍ଗ ଅନୁସରଣ କଲାଭଳି ଭାଷଣ ଦେଇ ସେ ଏହିପରି ଆସ୍ଥାର ଭାଜନ ହୋଇଆସୁଥିଲେ । ଏପରିକି ପ୍ରଧାନମନ୍ତ୍ରୀ ହେବା ପରେ ପରେ ୧୯୮୫ ମସିହା ଡିସେମ୍ବର ମାସରେ ବମ୍ବେଠାରେ ଭାରତୀୟ ଜାତୀୟ କଂଗ୍ରେସ ପ୍ରତିଷ୍ଠାର ଶତବାର୍ଷିକୀ ଉତ୍ସବରେ ରାଜୀବ ଗାନ୍ଧୀ 'କ୍ଷମତାରୁ ଦଲାଲମାନଙ୍କୁ' ହଟାଇ କଂଗ୍ରେସକୁ ଦୁର୍ନୀତିମୁକ୍ତ କରି ସୁଧାରିବାପାଇଁ ଯେଉଁ ଓଜସ୍ୱିନୀଭାଷଣ ଦେଇଥିଲେ, ତାହାକୁ ସଚ୍ଚୋଟ କର୍ମୀମାନେ ଶୁଆ ରଟିଲାପରି ଅନେକଦିନ ପର୍ଯ୍ୟନ୍ତ ସବୁଆଡ଼େ ଦୋହରାଉଥିଲେ । କିନ୍ତୁ ଘୋର ବିଡ଼ମ୍ବନାର କଥା ଯେ, ବିରାଡ଼ିବୈଷ୍ଣବ ପରି ଅଚିରେ ରାଜୀବ ଦୁର୍ନୀତି ଓ ଇଟାଲୀ ପ୍ରିୟାପ୍ରୀତିରେ ମତ୍ତ ହୋଇ କାଳିମାଗ୍ରସ୍ତ ହୋଇଗଲେ । ଏକେତ ତାଙ୍କର ଜୀବନରେ ପୂର୍ବରୁ କୌଣସି ଭାରତୀୟ ସଂସ୍କାର ବା ରାଜନୈତିକ ଅଭିଜ୍ଞତା ନଥିଲା, ଇନ୍ଦିରାଙ୍କ ଅନ୍ତେ ଏକା ଥୋପକେ ପ୍ରଧାନମନ୍ତ୍ରୀ ଓ କଂଗ୍ରେସ ସଭାପତି ଦୁଇଟିଯାକ ପଦକୁ ହାତକରି ନେବା ପରେ ସେ ବୋଧହୁଏ ତାଙ୍କ ପୂର୍ବୋକ୍ତ ସତର୍କ ସାଧନା ପଥରୁ ଆଡ଼େଇରହି କେବଳ କେତେକ ଅବାଞ୍ଛିତ ଦେଶୀ ଓ ବିଦେଶୀ ବନ୍ଧୁ-ବାନ୍ଧବୀ ଗୋଷ୍ଠୀଦ୍ୱାରା ଆବଦ୍ଧ ହୋଇଗଲେ । କୁହାଯାଇଛି, "Power corrupts, absolute power Corrupts absolutely'ଅବିବେକୀ ଲୋଭୀ ନେତାମାନେ ଯେତେ ବେଶୀ କ୍ଷମତା ପାଇବେ ସେତେ ଅଧିକ ଦୁର୍ନୀତିଗ୍ରସ୍ତ ହେବେ— ସେହିଭଳି ରାଜୀବଙ୍କର ଦଶା ହେଲା । ନିଜର ପୁରୁଣା ସାଙ୍ଗସାଥୀ ଦଙ୍ଗଲର ହାତବାରିସି ପାଲଟିଯାଇ ତାଙ୍କର ପୂର୍ବର ସ୍ୱାଭାବିକ ଆମୋଦପ୍ରମୋଦମୟ ଭୋଗବିଳାସରେ ମଜ୍ଜିଗଲେ । ୧୯୮୪ ନିର୍ବାଚନ ପରେ ଲୋକସଭାରେ ବିରୋଧୀଦଳ ଶକ୍ତି ମଧ ଦୁର୍ବଳ ହୋଇପଡ଼ିଥାଏ । ଏତିକିବେଳେ ସେ ତାଙ୍କର ଦୁଷ୍ଟବୁଦ୍ଧିର ବନ୍ଧୁ-ବାନ୍ଧବୀମାନେ କଂଗ୍ରେସ ଦଳକୁ ଏକ ତୋଷାମୋଦକାରୀ ଦରବାରରେ ଏବଂ ଭାରତବର୍ଷର ଶାସନକଳକୁ ଏକ 'ନୌକର-ସାହି' ଗୋଷ୍ଠୀରେ ପରିଣତ କରିଦେଲେ । ଦୀପ ତେଜିଲେ ହାତ ଚିକ୍କଣ ହୁଏ । ଅନେକ କଂଗ୍ରେସ-ଲୋକ ଓ ଉଚ୍ଚ ସରକାରୀ କର୍ମଚାରୀ ମଧ ଦୁର୍ନୀତିର ପ୍ରତିବାଦ କରି ନିଆଁକୁ ଆଙ୍ଗୁଠି ବଢ଼ାଇ ନିଜ ହାତ ପୋଡ଼ିବା ଅପେକ୍ଷା ହାତ ଚିକ୍କଣ କରିବାର ମାର୍ଗ ଧରିଲେ ।

ରାଜୀବଙ୍କ ଔଦ୍ଧତ୍ୟ ମଧ ଏପରି ଅତିରିକ୍ତ ବଢ଼ିଯାଇଥିଲା ଯେ, ସ୍ଥାନ-କାଳ-ପାତ୍ର ନବିଚାରି ସେ ଅମାର୍ଜିତ ଆଚରଣ ଓ ଉକ୍ତିମାନ ପ୍ରକାଶ କରିଥିଲେ । ଥରେ ଲୋକସଭାରେ ବିତର୍କ ସମୟରେ ସେ ବୟୋଜ୍ୟେଷ୍ଠ, ଅତି ସମ୍ମାନୀତ, ଉଚ୍ଚଶିକ୍ଷିତ ଓ ଅଭିଜ୍ଞ ସଭ୍ୟ ଅଧ୍ୟାପକ ମଧୁଦଣ୍ଡବତେଙ୍କ ପ୍ରତି ଏଭଳି ଅଶାଳୀନ ବ୍ୟବହାର ପ୍ରଦର୍ଶନ କରିଥିଲେ । ଅଧ୍ୟାପକ ମଧୁଦଣ୍ଡବତେ ଇଂରାଜୀ ବୁଝିପାରୁନାହାଁନ୍ତି ବୋଲି ରାଜୀବ ଗାନ୍ଧୀ ତାଙ୍କ ପ୍ରତି ତାସଲ୍ୟ କରି କଟୁକଥା କହିଥିଲେ । ଉଚ୍ଚକୋଟୀର ରୁଚିସମ୍ପନ୍ନ ଅଧ୍ୟାପକ ଦଣ୍ଡବତେ କିନ୍ତୁ କ୍ରୁଦ୍ଧ ନହୋଇ ଅତି ନମ୍ର ଭାବରେ ଏକ ସରସ ଅଥଚ ତୀକ୍ଷ୍ଣ ପ୍ରତ୍ୟୁତ୍ତର ଦେଇଥିଲେ । ଲୋକସଭା ଅଧକ୍ଷଙ୍କ ଆଡ଼କୁ ଚାହିଁ ଅଧ୍ୟାପକ ମଧୁଦଣ୍ଡବତେ ତାଙ୍କ ପ୍ରତ୍ୟୁତ୍ତରରେ ଜଣାଇଥିଲେ ଯେ ସେ (ଦଣ୍ଡବତେ) ତାଙ୍କର ଅଧ୍ୟାପକମାନଙ୍କଠାରୁ ଇଂରାଜୀ ଶିଖିବାର ସୌଭାଗ୍ୟ ପାଇଥିଲେ । ମାତ୍ର ରାଜୀବ ଗାନ୍ଧୀ ଯେପରି ବିମାନ ପରିଚାରୀକାଙ୍କଠାରୁ ଇଂରାଜୀ ଭାଷା ଶିଖିଥିଲେ ସେପରି ଶିଖିବାର ମୌକା ସେ ନେଇନଥିଲେ । ଅଧ୍ୟାପକ ଦଣ୍ଡବତେଙ୍କର ଏତାଦୃଶ ଉତ୍ତର ରାଜୀବ ଗାନ୍ଧୀଙ୍କର ଅଶିକ୍ଷା ଓ ଅଶାଳୀନତାକୁ ପଦାରେପକାଇଦେଇ ହାସ୍ୟରୋଳ ସୃଷ୍ଟି କରିଥିଲା ।

ତାଙ୍କ ଔଦ୍ଧତ୍ୟର ଅନ୍ୟ ଏକ ଦୃଷ୍ଟାନ୍ତ ହେଉଛି ରାଷ୍ଟ୍ରପତିଙ୍କ ପଦମର୍ଯ୍ୟାଦା ଓ ପ୍ରଧାନମନ୍ତ୍ରୀ

ରାଷ୍ଟ୍ରପତିଙ୍କ ସହିତ ସାକ୍ଷାତ୍‌କରି ମତ ବିନିମୟ କରିବାର ସୁସ୍ଥ ପ୍ରଶାସନିକ ପରମ୍ପରାଗୁଡ଼ିକର ଉଲ୍ଲଘନ । ଯେଉଁ ରାଷ୍ଟ୍ରପତି ଜ୍ଞାନୀ ଜୈଲ ସିଂହଙ୍କୁ ପ୍ରଭାବିତ କରି ଇନ୍ଦିରାଙ୍କ ହତ୍ୟା ପରେ ପରେ ନିଜେ ମୋଟାମୋଟି ରଜାଘରେ ପରିଚାଳିତ ପ୍ରଥାରେ ଇନ୍ଦିରାଙ୍କ ପୁଅ ହିସାବରେ ପ୍ରଧାନମନ୍ତ୍ରୀ ରୂପେ ଶପଥ ନେଇଯିବାକୁ ସମର୍ଥ ହୋଇଥିଲେ । ସେହି ରାଷ୍ଟ୍ରପତିଙ୍କ ପ୍ରତି ସେ ପରବର୍ତ୍ତୀ ସମୟରେ ନିଜ ଆଚରଣରେ ଅତି ତାଚ୍ଛଲ୍ୟଭାବ ଦେଖାଉଥିଲେ । ରାଜୀବ ଏତଦ୍ବାରା ସୁସ୍ଥ ରାଜନୈତିକ ପରମ୍ପରାକୁ ଉଲ୍ଲଘନ କରୁଛନ୍ତି ବୋଲି ସମାଲୋଚନା ହେବାରୁ ସେ ଏଭଳି ଅନେକ ପରମ୍ପରା ଉଲ୍ଲଘନ କରିପାରିଥିବାର ବହପ ପ୍ରକାଶ କରିଥିଲେ । ରାଷ୍ଟ୍ରପତି ଜୈଲ ସିଂହ ଇନ୍ଦିରାଙ୍କ ମୃତ୍ୟୁ ପରେ ପୂର୍ବପ୍ରଚଳିତ ପ୍ରଥାନୁସାରେ ମନ୍ତ୍ରିମଣ୍ଡଳର ସର୍ବବରିଷ୍ଠ ମନ୍ତ୍ରୀଙ୍କୁ ମଧ୍ୟବର୍ତ୍ତୀକାଳୀନ ପ୍ରଧାନମନ୍ତ୍ରୀ ନିଯୁକ୍ତ ନକରି ରାଜୀବଙ୍କୁ ଅହେତୁକ ସାହାଯ୍ୟ କରି ପରମ୍ପରା ଭଙ୍ଗକରିଥିଲେ । ପରବର୍ତ୍ତୀକାଳରେ ଆପଣା ଅପକର୍ମପାଇଁ ଅପମାନିତ ହୋଇ ତାଙ୍କୁ ଘୋର କ୍ରୋଧଜର୍ଜରିତ ଅନୁତପ୍ତ ଜୀବନ କାଟିବାକୁ ପଡ଼ିଥିଲା । ଏହି ପରିପ୍ରେକ୍ଷୀରେ ପୁସ୍ତକରେ ଅନ୍ୟତ୍ର ବର୍ଣ୍ଣିତ 'ଜ୍ଞାନୀ ଜୈଲ ସିଂଙ୍କର ଅଜ୍ଞାନୀ ସୁଲଭ କାର୍ଯ୍ୟ' ଏବଂ ଅନ୍ୟ ଏକ ସମୟରେ ରାଜୀବ ଗାନ୍ଧୀଙ୍କୁ ଗାଦିଚ୍ୟୁତ କରିବାର ବିଫଳ ପ୍ରୟାସର ବିବରଣୀ ପ୍ରତି ପାଠକମାନେ ଧ୍ୟାନ ଦେବାକୁ ଅନୁରୋଧ ।

ଏହି ପରିସ୍ଥିତିରେ ଜଣେ ବିଚାରବନ୍ତ ବ୍ୟକ୍ତି ହିସାବରେ ଦୁର୍ନୀତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାର ସାହସ ଦେଖାଇଥିବାରୁ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂଙ୍କ ପ୍ରତି ଭାରତବର୍ଷରେ ଜନସମାଜରେ ଅତ୍ୟନ୍ତ ଆଶାଜନକ ଅସାଧାରଣ ସହାନୁଭୂତି ଜାଗ୍ରତହୋଇଥିଲା । ଦୁର୍ନୀତିଗ୍ରସ୍ତ ଆଚରଣପାଇଁ ରାଜୀବ ଗାନ୍ଧୀ ଏପରି ନିନ୍ଦିତ ହୋଇଯାଇଥିଲେ ଯେ, ଗାଁ ଗଣ୍ଡାରେ ମଧ୍ୟ 'ନାନାବିଧ ନିନ୍ଦାମୂଳକ' ଧ୍ୱନି ଲୋକମୁଖରେ ପ୍ରତିଧ୍ୱନିତ ହୋଇଥିଲା । ସେତେବେଳକୁ ରାଜୀବ ଗାନ୍ଧୀଙ୍କୁ ତାଙ୍କର ବହୁ ଜଘନ୍ୟ ଦୁର୍ନୀତିମୂଳକ କାର୍ଯ୍ୟ, ବିଳାସମୟ, ଜୀବନଯାପନ ହାନିକର ବହୁ ଅପରିଣାମଦର୍ଶୀ ଉପରମୁହାଁ କାର୍ଯ୍ୟ ସକାଶେ ଅଧିକାଂଶ ଭାରତବାସୀ ଘୃଣାକରୁଥା'ନ୍ତି । ଏପରିକି ସମସ୍ତେ ମନେ ମନେ ଏକ ପରିବର୍ତ୍ତନ ଆଶା କରୁଥା'ନ୍ତି । ସେତେବେଳକୁ ରାଜୀବ ଗାନ୍ଧୀ ବିଶ୍ୱନାଥ ପ୍ରତାପ ସିଂଙ୍କ ବିରୁଦ୍ଧରେ ପ୍ରତିହିଂସାପରାୟଣ ହୋଇ ତାଙ୍କୁ ଭାରତର ଅର୍ଥମନ୍ତ୍ରୀ ପଦରୁ ବହିଷ୍କାର କରିଦେଇ ଦେଶରକ୍ଷା ମନ୍ତ୍ରୀ ପଦକୁ ବଦଳି କରିଦେଲେ । ରାଜୀବ ଗାନ୍ଧୀ ଭାବିଥିଲେ ଯେ ଅର୍ଥ ବିଭାଗ ଦାୟିତ୍ୱରେ ଥିବାରୁ ଶ୍ରୀ ସିଂ ଦୁର୍ନୀତିମୂଳକ କାରବାରଗୁଡ଼ିକର ସନ୍ଧାନ ପାଇବା ତାଙ୍କ ପକ୍ଷେ ସହଜ ହୋଇଯାଉଥିଲା, ତେଣୁ ତାଙ୍କୁ ଏହି ଗୁରୁତ୍ୱପୂର୍ଣ୍ଣ ପଦରୁ ଅନ୍ତର କରିଦେଲେ ତାଙ୍କ କରାମତିକୁ କାବୁକରିଦେଇହେବ । କିନ୍ତୁ ଦେଶରକ୍ଷା ବିଭାଗ ଦାୟିତ୍ୱ ନେବା ପରେ ଅସ୍ତ୍ରଶସ୍ତ୍ର ଓ ଦେଶରକ୍ଷା ସରଞ୍ଜାମ କିଣା କାରବାରରେ ରାଜୀବ ଗାନ୍ଧୀଙ୍କ ବହୁ ଦେଶଦ୍ରୋହମୂଳକ ମାରାତ୍ମକ ଲାଞ୍ଚ କାରବାରର ଗୋପନ ତଥ୍ୟ ସେହି ବିଶ୍ୱନାଥ ପ୍ରତାପ ସିଂଙ୍କ ନଜରରେ ପଡ଼ିଲା । ''ଯେ ପ୍ରାଣୀ ଚିନ୍ତେ ପର ମନ୍ଦ, ତା ମନ୍ଦ ପାଞ୍ଚନ୍ତି ଗୋବିନ୍ଦ'' । ସେହି ନୀତିବାକ୍ୟର ନ୍ୟାୟରେ ରାଜୀବ ଗାନ୍ଧୀଙ୍କର ବୋଫର୍ସ ତୋପ କିଣାଠାରୁ ବୁଡ଼ାଜାହାଜ କିଣା ଇତ୍ୟାଦି ବହୁ ଚମକପ୍ରଦ ଦୁର୍ନୀତି, ଦେଶଦ୍ରୋହୀ ଓ ବିଦେଶୀପ୍ରୀତି ଆଚରଣ ପଦାରେ ପଡ଼ିଲା । ମରଣକାଳେ ବିପରୀତ ବୁଦ୍ଧି ଜୁଟିଲା ପରି ରାଜୀବ ନିଜ ଆସନ ରକ୍ଷା ଲୋଭରେ ଅତ୍ୟନ୍ତ ଅଥୟ ଓ ଅସ୍ତବ୍ୟସ୍ତ ହୋଇପଡ଼ିଲେ ଏବଂ ବିଶ୍ୱନାଥ ପ୍ରତାପ ସିଂହଙ୍କୁ ତାଙ୍କ ମନ୍ତ୍ରିମଣ୍ଡଳରୁ ବିତାଡ଼ିତ କରି କଂଗ୍ରେସ ଦଳରୁ ସସ୍‌ପେଣ୍ଡ କରିଦେଲେ । କିନ୍ତୁ ବିଶ୍ୱନାଥ ପ୍ରତାପ ସିଂହ ତିଳେମାତ୍ର ବିଚଳିତ ନହୋଇ ଭାରତବର୍ଷରେ ଦୁର୍ନୀତି ବିରୋଧୀ ଏକ ଦୃଢ଼ ଜାତୀୟ ରାଜନୈତିକ ମଞ୍ଚ ଗଢ଼ିବାପାଇଁ ଅଗ୍ରଣି ଭୂମିକା ଗ୍ରହଣକରିଥିଲେ । ନିର୍ମଳ ଓ ଦକ୍ଷ ଶାସନ ପ୍ରତିଷ୍ଠାପାଇଁ ଚାହିଁବସିଥିବା ଭାରତବାସୀହିଁ ଅନ୍ତରରେ ସୁଯୋଗ୍ୟ ବିକଳ୍ପ ନେତା ବୋଲି ତାହାଙ୍କୁ ବିଚାର କଲେ । ତେଣୁ ଜନମତ କ୍ରମେ ତାଙ୍କରି ସପକ୍ଷରେ ଆପେ ଆପେ ବୃଦ୍ଧିପାଉଥିଲା ଏବଂ ରାଜୀବ ବିରୋଧୀ ହୋଇପଡୁଥିବାର ସ୍ପଷ୍ଟ ହେଉଥିଲା ।

## ଲୋକଙ୍କ ଭାବୀ ପ୍ରଧାନମନ୍ତ୍ରୀ

ସେହି ସମୟରେ ମୁଁ ଗୋଟିଏ ଉଲ୍ଲେଖନୀୟ ପ୍ରେସ୍ ବିବୃତି ଦେଇଥିଲି ଯେ, ଭାରତବର୍ଷର ଜନସାଧାରଣ ତାଙ୍କର ଭବିଷ୍ୟଦ୍ ପ୍ରଧାନମନ୍ତ୍ରୀ ବାଛିବାପାଇଁ ବିଶ୍ୱନାଥ ପ୍ରତାପ ସିଂହଙ୍କ ସପକ୍ଷରେ ମନ ସ୍ଥିର କରିସାରିଲେଣି । ଏତିକିବେଳେ ରାଜନୈତିକ ଦଳ ଓ ନେତାମାନେ ନିଜନିଜର ଦାୟିତ୍ୱକୁ ବୁଝି ନଯାଇ ମନ ସ୍ଥିରକରି ନିଷ୍ପତ୍ତି ନେବା ଜରୁରୀ ହୋଇଛି । ମୋର ଏହି ମର୍ମର ବକ୍ତବ୍ୟଟି ପ୍ରକାଶିତ ହେବା ପୂର୍ବରୁ ତାହା ଶ୍ରୀ ବିଜୁ ପଟ୍ଟନାୟକଙ୍କ ଦୃଷ୍ଟିକୁ ଆସିଥିଲା । କାରଣ ଜଣେ ବରିଷ୍ଠ ସାମ୍ବାଦିକ ମୋ ଲିଖିତ ବିବୃତିଟି ପାଇବା ପରେ ପରେ ତାଙ୍କର ସାମ୍ବାଦିକ କର୍ତ୍ତବ୍ୟ ଦୃଷ୍ଟିରୁ ଆମ ଓଡ଼ିଶା ଜନତା ଦଳର ସଭାପତି ବିଜୁବାବୁ ମଧ ଏ ସଂପର୍କରେ ଏକମତ କି ନାହିଁ ତାଙ୍କଠାରୁ ଜାଣିବା ପାଇଁ ପଚାରି ବୁଝିଥିଲେ । ଏକଥା ଜାଣିବା ପରେ ବିଜୁବାବୁ ମୋତେ ଟେଲିଫୋନ୍ କରି ଅଭିମାନ ଛଳରେ କହିଲେ ଯେ, ମୁଁ ପ୍ରଥମେ ଏଭଳି ବକ୍ତବ୍ୟ ପ୍ରେସ୍‌କୁ ଦେବା ପୂର୍ବରୁ ତାଙ୍କ ସହିତ ଏକତ୍ର ସେହି ବିବୃତିଟି ଦେଇଥିଲେ ଭଲହୋଇଥା'ନ୍ତା । ମୁଁ ତାଙ୍କୁ ବୁଝାଇ କହିଥିଲି ଯେ, ସେ ଯେହେତୁ ଆମର ନେତା, ଏବେ ମଧ ସେ ସେହି ମର୍ମରେ ବିବୃତିଟିଏ ଦେଲେ ତାଙ୍କର ବକ୍ତବ୍ୟ ନିଶ୍ଚୟ ମୋ ବିବୃତିଠାରୁ ସମ୍ବାଦପତ୍ରମାନଙ୍କରେ ଅଗ୍ରାଧିକାର ପାଇବ । ବିଜୁବାବୁ ତତ୍‌କ୍ଷଣାତ୍ ସେହି ମର୍ମରେ ତାଙ୍କର ବିବୃତି ଦେଇଥିଲେ ଏବଂ ତାହା ମଧ ସମ୍ବାଦପତ୍ରରେ ଅଗ୍ରାଧିକାର ପାଇ ପ୍ରକାଶିତ ହୋଇଥିଲା । ଏହି ପ୍ରସଙ୍ଗରେ ଉଲ୍ଲେଖ କରିବାର କଥା ଯେ, ସେତେବେଳକୁ ଯଦିଓ ଓଡ଼ିଶାରେ କଂଗ୍ରେସ ବିରୋଧୀ ଜନମତ ବେଶ୍ ପ୍ରବଳ ହୋଇଉଠିଥିଲା ଏବଂ ତତ୍‌କାଳୀନ ବିରୋଧୀ ଜନତା ଦଳ ସପକ୍ଷରେ ଲୋକ-ସମର୍ଥନ ବେଶ୍ ସ୍ପଷ୍ଟ ହେଉଥିଲା, ସର୍ବଭାରତୀୟ ରାଜନୀତି ପରିପ୍ରେକ୍ଷୀରେ ପଥପ୍ରଦର୍ଶନ କଲାଭଳି କୌଣସି ନିର୍ଦ୍ଦିଷ୍ଟ ମତ ବ୍ୟକ୍ତ କରିବାକୁ ଓଡ଼ିଶାରେ ଜନତା ଦଳ ତଥାପି ଦୋଦୁଲ୍ୟମାନ ଅବସ୍ଥାରେ ରହିଥାଏ । ବିଜୁ ବାବୁଙ୍କର ଓ ମୋର ଏହି ବିବୃତି ପ୍ରକାଶ ପାଇବା ପରେ ଆମ ରାଜ୍ୟ ଜନତାଦଳ କର୍ମୀ ଓ ରାଜ୍ୟବାସୀଙ୍କ ମନରେ ଭବିଷ୍ୟତ ରାଜନୀତିର ଆଭିମୁଖ୍ୟ ସ୍ପଷ୍ଟହୋଇଯାଇଥିଲା ।

ପରବର୍ତ୍ତୀକାଳରେ ବିଶ୍ୱନାଥ ପ୍ରତାପ ସିଂହଙ୍କ ନେତୃତ୍ୱକୁ ଭାରତବର୍ଷର ବିଭିନ୍ନ ପ୍ରାନ୍ତୀୟ ଦଳମାନେ ଏବଂ ବର୍ତ୍ତମାନର ବି.ଜେ.ପି., ସି.ପି.ଏମ୍., ସି.ପି.ଆଇ. ଭଳି ସର୍ବଭାରତୀୟ ଦଳମାନେ ମଧ ସମର୍ଥନ କରିବାଦ୍ୱାରା ଭାରତବର୍ଷରେ ଯେ କେବଳ ଦ୍ୱିତୀୟ ଅଣକଂଗ୍ରେସ କେନ୍ଦ୍ର ସରକାର ପ୍ରତିଷ୍ଠା କରାଯିବା ସମ୍ଭବ ହେଲା ସେତିକି ନୁହେଁ, ଅତିରିକ୍ତ କେନ୍ଦ୍ରୀୟ ନିର୍ଭରଶୀଳତା ପରିବର୍ତ୍ତେ ଭାରତରେ ରାଜ୍ୟମାନଙ୍କର ଏକ ସଂଘୀୟ ଐକ୍ୟଭାବାପନ୍ନ ଶାସନପ୍ରଣାଳୀର ମୂଳଦୁଆ ପଡ଼ି ଏକ ନୂତନ ପରମ୍ପରା ସୃଷ୍ଟିହେଲା ।

## ୧୯୮୯ ଲୋକସଭା ନିର୍ବାଚନ

ଉଲ୍ଲିଖିତ ଘଟଣା ପ୍ରବାହର ପରିପ୍ରେକ୍ଷୀରେ ଅଶୀଦଶନ୍ଧିର ଶେଷ ବର୍ଷଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ସ୍ମରଣୀୟ । ଏହି ବର୍ଷ ଦେଶର ରାଜନୈତିକ ଓ ପ୍ରଶାସନିକ କ୍ଷେତ୍ରରେ ଘଟିଥିବା ଘଟଣାମାନଙ୍କର ପ୍ରଭାବ ବହୁ ସୁଦୂରପ୍ରସାରୀ । ବିଶ୍ୱନାଥ ପ୍ରତାପ ସିଂହ ପୂର୍ବରୁ ଉତ୍ତର ପ୍ରଦେଶର ମୁଖ୍ୟମନ୍ତ୍ରୀ ଥିଲେ । ଜଣେ ନିଷ୍ଠାବାନ୍ ରାଜନୀତିଜ୍ଞଭାବେ ପରିଚିତ ହେବା ଛଡ଼ା ଜଣେ କବି, ଚିତ୍ରକର, ଭଦ୍ର ଓ ଦାନବୀର ବ୍ୟକ୍ତି ଭାବରେ ମଧ ସେ ପରିଚିତ ଥିଲେ । ଭି.ପି. ସିଂହଙ୍କ ଦାନବୀରତା ଓ ନମ୍ରତା ସଂପର୍କରେ ସ୍ୱର୍ଗତ ପ୍ରଧାନମନ୍ତ୍ରୀ ଲାଲ୍ ବାହାଦୁର ଶାସ୍ତ୍ରୀଙ୍କ ପତ୍ନୀ ଶ୍ରୀମତୀ ଲଳିତା ଶାସ୍ତ୍ରୀଙ୍କ ସସ୍ନେହ ବର୍ଣ୍ଣନା "ମୋ ପତି ମୋ ଦେବତା" ପୁସ୍ତକରେ ଯେଉଁଭଳି ହୃଦୟସ୍ପର୍ଶୀ ଭାବରେ ବର୍ଣ୍ଣିତହୋଇଛି ସେଥିରୁ କିଛି ଏଠାରେ ଉଲ୍ଲେଖକରିବା ପ୍ରାସଙ୍ଗିକ ମନେକରୁଛି । ସେଠାରେ ଶ୍ରୀମତୀ ଲଳିତା ଶାସ୍ତ୍ରୀ ଶ୍ରୀ ଭି.ପି.

ସିଂହଙ୍କୁ ଶାସ୍ତ୍ରୀଜୀ ଓ ତାଙ୍କର ଅନ୍ୟତମ ପୁତ୍ରରୂପେ ଉପସ୍ଥାପିତ କରିଛନ୍ତି। ଶ୍ରୀମତୀ ଶାସ୍ତ୍ରୀ ସ୍ୱାମୀଙ୍କ ସ୍ମୃତିଚାରଣ କରିବା ପ୍ରସଙ୍ଗରେ ଉଲ୍ଲେଖ କରିଛନ୍ତି ''ବହୁ ଦିନର କଥା– ଜଣେ ଜ୍ୟୋତିଷ ମୋତେ କହିଥିଲେ, ନିଜ ପୁଅମାନଙ୍କ ଛଡ଼ା ମୋତେ ଏପରି ଆଉ ଗୋଟିଏ ପୁଅ ମିଳିବ ଯେ କି ମୋର ପୁଅମାନଙ୍କ ଅପେକ୍ଷା ମୋର ଅଧିକ ଯତ୍ନନେବ ଏବଂ ମୋପାଇଁ ସବୁକିଛି କରିବାକୁ ପ୍ରସ୍ତୁତ ହେବ। ...କିଛିଦିନ ମନେରଖିଲି, ତା'ପରେ ଭୁଲିଯାଇଥିଲି। ତାସ୍‌କେଣ୍ଟ ଯିବା ପୂର୍ବରୁ 'ମାଣ୍ଡା' ରାଜାଙ୍କ (ବିଶ୍ୱନାଥ ପ୍ରତାପ ସିଂହ) ଅନୁରୋଧକ୍ରମେ ଶାସ୍ତ୍ରୀଜୀ ସେଠାକୁ ଭାଷଣ ଦେବାକୁ ଯାଇଥିଲେ। ରାଜାସାହେବ ଶାସ୍ତ୍ରୀଜୀଙ୍କୁ ଯେଉଁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଥିଲେ, ତାହା ବାସ୍ତବିକ ଥିଲା ଅଦ୍ଭୁତ ଧରଣର। ସବୁଠାରୁ ବେଶୀ ଅଦ୍ଭୁତ ଥିଲା, ଶାସ୍ତ୍ରୀଜୀଙ୍କୁ ତିଳକ କରିବାରେ। ରାଜାସାହେବ ନିଜ ଅଙ୍ଗୁଳି କାଟି ସେହି ରକ୍ତରେ ଶାସ୍ତ୍ରୀଜୀଙ୍କ ଲଲାଟରେ ଟିକା ପିନ୍ଧାଇଦେଇଥିଲେ। (ଏହା ୧୯୬୫ ଭାରତ-ପାକିସ୍ଥାନ ଯୁଦ୍ଧରେ ଭାରତର ଗୌରବୋଜ୍ଜ୍ୱଳ ବିଜୟ ପରର ଘଟଣା)। ସେହି ସମୟରୁ କେଜାଣି କାହିଁକି ରାଜାସାହେବଙ୍କ ପ୍ରତି ମୋ ମନରେ ପୁତ୍ରବତ୍ ଧାରଣା ଜାତ ହେବା ସଙ୍ଗେ ସଙ୍ଗେ ପୂର୍ବରୁ ଶୁଣିଥିବା ଜ୍ୟୋତିଷଙ୍କ ଭବିଷ୍ୟତ୍‌ବାଣୀ ମନେପଡ଼ିଲା। ସର୍କିଟ୍ ହାଉସକୁ ଫେରି ଆସିବା ପରେ ମୁଁ ଶାସ୍ତ୍ରୀଜୀଙ୍କୁ ମୋ ମନୋଭାବ ବ୍ୟକ୍ତକଲି। ଶାସ୍ତ୍ରୀଜୀଙ୍କ ମନରେ ରାଜାସାହେବଙ୍କ ପ୍ରତି ଖୁବ୍ ଭଲଧାରଣା ଜାତହୋଇଥିଲା... ମାଣ୍ଡାର ରାଜମହଲ ପ୍ରକୃତରେ ଏକ ଦର୍ଶନୀୟ ପ୍ରାସାଦ...। କିଏ ଜାଣିଥିଲା ଯେ ଶାସ୍ତ୍ରୀଜୀଙ୍କ ମୃତ୍ୟୁ ପରେହିଁ ତାଙ୍କର ସ୍ୱପ୍ନ ସଫଳ ହେବ କାରଣ ସେ ଚାହୁଁଥିଲେ ରାଜନୀତିରୁ ଅବସର ନେବା ପରେ ସେ ଦୁଇଟି କାମ କରିବେ। ପ୍ରଥମରେ ସେ ଗୋଟିଏ ଆଦର୍ଶ ଆଶ୍ରମ ଖୋଲିବେ, ଦ୍ୱିତୀୟରେ କେତେଖଣ୍ଡି ପୁସ୍ତକ ଲେଖିବେ। ଆଶ୍ରମ ସ୍ଥାପିତ ହୋଇସାରିଥିଲେ ମଧ୍ୟ 'ଶାସ୍ତ୍ରୀ ସେବା ନିକେତନ' ସ୍ଥାପନ ହୋଇପାରିଛି। ସେହି ନିକେତନଟି ମାଣ୍ଡାର ରାଜମହଲରେହିଁ ସ୍ଥାପିତ ହୋଇଛି। ରାଜାସାହେବ 'ଶାସ୍ତ୍ରୀସେବା ନିକେତନ' ଲାଗି କେବଳ ରାଜମହଲଟି ଦେଇନାହାନ୍ତି ବରଂ ଏକପ୍ରକାର ସେ ନିଜର ସବୁକିଛି ସେଥିଲାଗି ଅର୍ପଣ କରିଛନ୍ତି। ସେ ସେବାନିକେତନପାଇଁ ଯେପରି ମନ ପ୍ରାଣ ଓ ଧନ ବ୍ୟୟ କରି କାମକରିଛନ୍ତି, ତାହା ଭାଷାରେ କହିହେବନାହିଁ.... ଯେଉଁମାନେ କେବଳ କର୍ମପ୍ରେରଣା ପାଇଁ ନୁହେଁ, ନିଜର ସ୍ୱଭାବ ଓ ସଦ୍‌ଗୁଣ ଲାଗି ଅନୁପମ କୃତିତ୍ୱ ହାସଲକରିଛନ୍ତି ସେହିଭଳି ଅଳ୍ପ କେତେଜଣ ଅଦ୍ଭୁତକର୍ମା ବ୍ୟକ୍ତିମାନଙ୍କ ମଧ୍ୟରେ ରାଜାସାହେବ ଅନ୍ୟତମ... ବହୁ ପୂର୍ବରୁ ସନ୍ଥ ବିନୋବାଜୀଙ୍କ ଆହ୍ୱାନକ୍ରମେ ରାଜାସାହେବ ନିଜର ସମସ୍ତ ଜମି ଭୂଦାନ ଆନ୍ଦୋଳନକୁ ଦାନକରିଦେଇଛନ୍ତି। ରାଜା ବିଶ୍ୱନାଥ ପ୍ରତାପ ସିଂହଙ୍କ ମାତା ଧନ୍ୟା, ଯେ କି ଏଭଳି ପୁତ୍ରରତ୍ନକୁ ନିଜ କୋଳରେ ଜନ୍ମଦେଇଛନ୍ତି।''

## ''ଅକ୍ଷର ହେଉ ପୁଣ୍ୟ ଜଗତେ ଧର୍ମର ହେଉ ଜୟ''

ଶ୍ରୀମତୀ ଲଳିତା ଶାସ୍ତ୍ରୀ ମଧ୍ୟ ସ୍ୱାମୀଙ୍କ ପଦାଙ୍କ ଅନୁସରଣ କରି ଏକାନ୍ତ ନୀତିନିଷ୍ଠ ଜୀବନ ଯାପନ କରୁଥିଲେ ଏବଂ ତାଙ୍କର କଥା ଓ କାର୍ଯ୍ୟମଧ୍ୟରେ ସାମଞ୍ଜସ୍ୟ ରଖି ଆଚରଣ କରୁଥିଲେ। ରାଜୀବ ଗାନ୍ଧୀଙ୍କ ପ୍ରଧାନମନ୍ତ୍ରିତ୍ୱ ସମୟରେ ଆଲାହାବାଦ ଲୋକସଭା ନିର୍ବାଚନ ମଣ୍ଡଳୀରୁ ବିଶ୍ୱନାଥ ପ୍ରତାପ ସିଂହ ଉପନିର୍ବାଚନରେ ଠିଆହୋଇଥା'ନ୍ତି। ସେତେବେଳକୁ ଜନମୋର୍ଚ୍ଚା ଗଢ଼ା ହୋଇ-ସାରିଥାଏ। ଅଲ୍ଲାହାବାଦ ଥିଲା ସ୍ୱର୍ଗତ ଲାଲ୍‌ବାହାଦୁର ଶାସ୍ତ୍ରୀଙ୍କର ଲୋକସଭା ନିର୍ବାଚନମଣ୍ଡଳୀ। ବିଶ୍ୱନାଥ ପ୍ରତାପ ସିଂହଙ୍କୁ ହରାଇବା ମସୁଧାରେ ଏହିସବୁ କାରଣକୁ ଏକଥା ବିଚାରକୁ ନେଇ ରାଜୀବ ଗାନ୍ଧୀଙ୍କ ନିର୍ଦ୍ଦେଶକ୍ରମେ ଶାସ୍ତ୍ରୀଜୀଙ୍କ ପୁତ୍ର ଶ୍ରୀ ଅନୀଲ ଶାସ୍ତ୍ରୀଙ୍କୁ ସେଠାରେ କଂଗ୍ରେସ ପକ୍ଷରୁ ଭି.ପି.ସିଂହଙ୍କ ବିରୁଦ୍ଧରେ ପ୍ରାର୍ଥୀରୂପେ ଠିଆକରାଗଲା। ସେତେବେଳେ ଶ୍ରୀମତୀ ଶାସ୍ତ୍ରୀ ଅସୁସ୍ଥ-ଥିବାରୁ ଡାକ୍ତରଖାନାରେ ଚିକିତ୍ସିତ ହେଉଥା'ନ୍ତି। ପୁତ୍ର ଅନୀଲ ଶାସ୍ତ୍ରୀ ଶ୍ରୀ ସିଂହଙ୍କ ବିରୁଦ୍ଧରେ

ପ୍ରାର୍ଥୀପତ୍ର ଦାଖଲ କରିସାରି ନିଜ ମାତାଙ୍କ ପାଖରୁ ତାଙ୍କ ସମର୍ଥନରେ ଏକ ପ୍ରେସ ବିବୃତି ବା ପ୍ରଚାରପତ୍ର ହାସଲ କରିବାକୁ ଚେଷ୍ଟାକରିଥିଲେ । ମାତାଙ୍କ ନିବେଦନରେ ଆଲ୍ଲାହାବାଦ୍‌ର ଭୋଟ-ଦାତାଙ୍କ ନିଷ୍ପତ୍ତିକୁ ତାଙ୍କ ସପକ୍ଷରେ ପ୍ରଭାବିତ କରିବ ବୋଲି ତାଙ୍କ ନିଜର ଓ କଂଗ୍ରେସ ଦଳର ନେତାମାନଙ୍କର ଦୃଢ଼ ଧାରଣାଥିଲା । କିନ୍ତୁ ଶ୍ରୀମତୀ ଶାସ୍ତ୍ରୀ ଜଣେ ସ୍ଥିତପ୍ରଜ୍ଞ ବ୍ୟକ୍ତି ପରି ନିର୍ଲିପ୍ତ ରହି-ଥିଲେ, କୌଣସି ପ୍ରକାର ନିବେଦନ ଦେଇନଥିଲେ । ଏହି ପରିପ୍ରେକ୍ଷୀରେ ମହାଭାରତ ଯୁଦ୍ଧରେ ରଣକ୍ଷେତ୍ରକୁ ଯାତ୍ରାକରିବା ପୂର୍ବରୁ ଦୁର୍ଯ୍ୟୋଧନ ମାତା ଗାନ୍ଧାରୀଙ୍କଠାରୁ ବିଜୟପାଇଁ ଆଶୀର୍ବାଦ ଭିକ୍ଷା କରିବା ଓ ଗାନ୍ଧାରୀଙ୍କର ତାତ୍ପର୍ଯ୍ୟପୂର୍ଣ୍ଣ ଉତ୍ତର ସ୍ୱତଃ ମନକୁ ଆସେ । କବି ସ୍ୱର୍ଗତ କାଳିନ୍ଦୀ ଚରଣ ପାଣିଗ୍ରାହୀ ତାଙ୍କର ବିଖ୍ୟାତ 'ଗାନ୍ଧାରୀଙ୍କ ଆଶୀର୍ବାଦ' କବିତାରେ ଗାନ୍ଧାରୀଙ୍କ ମୁଖରେ କହିଛନ୍ତ–

''ଯାଅ ବୀର ରଣେ, ଧରଣୀ ବକ୍ଷୁ ପାପରାଶି ହେଉ କ୍ଷୟ,
ଅକ୍ଷର ହେଉ ପୁଣ୍ୟ ଜଗତେ, ଧର୍ମର ହେଉ ଜୟ !''

ରାଜୀବ ଗାନ୍ଧୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ଜନସମର୍ଥନ ଓ ତାଙ୍କର ବ୍ୟକ୍ତିତ୍ୱର ପ୍ରଭାବ ଓ ପ୍ରତାପରୁ ତ୍ରାହି ପାଇବା ଲକ୍ଷ୍ୟରେ ତାଙ୍କୁ ମନ୍ତ୍ରିମଣ୍ଡଳ ଓ କଂଗ୍ରେସରୁ ଅନ୍ତର କରିଦେଲେ । ତାହା ପରେ ଶ୍ରୀ ସିଂହ ତାଙ୍କର ସମର୍ଥକମାନଙ୍କୁ ନେଇ 'ଜନମୋର୍ଚ୍ଚା' ନାମରେ ଏକ ବିକଳ୍ପ ସଂଗଠନ ସୃଷ୍ଟିକରିଥିଲେ । ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ ରାଜନୈତିକ ଆଚରଣରେ ନୈତିକତାକୁ ଯେପରି ଅଗ୍ରାଧିକାର ଦେଉଥିଲେ ତଦ୍ୱାରା ସେ ଜନସାଧାରଣଙ୍କର ତଥା ଅନ୍ୟାନ୍ୟ ଅଣକଂଗ୍ରେସ ରାଜନୈତିକ ଦଳମାନଙ୍କର ବିଶ୍ୱାସଭାଜନ ହୋଇଉଠିଥିଲେ । ୧୯୮୯ ମସିହା ନଭେମ୍ବର ମାସକୁ ହେବାକୁ ଥିବା ଲୋକସଭା ନିର୍ବାଚନରେ କଂଗ୍ରେସର ସଫଳ ମୁକାବିଲା କରିବାପାଇଁ ଅଣକଂଗ୍ରେସ ଦଳମାନଙ୍କ ପକ୍ଷରେ ଭବିଷ୍ୟତର ପଥ ସୁଗମ ହୋଇଯାଇଥିଲା । କାରଣ ସେତେବେଳେ ଦୁର୍ନୀତି ବିରୋଧୀ ଜନମତ ଏପରି ପରିସ୍ଫୁଟ ହେଉଥାଏ ଯେ, ସବୁ ଅଣକଂଗ୍ରେସ ଦଳ ସେହି ଜନମତର ଅନୁକୂଳ ପନ୍ଥା ଅବଲମ୍ବନ କଲେ । ଏ ଉଦ୍ୟମ ଓ ଉତ୍ସାହର କେନ୍ଦ୍ରବିନ୍ଦୁ ଥିଲା ଜନମୋର୍ଚ୍ଚା । ଭାରତୀୟ ଜନତା ପାର୍ଟି, ବାମପନ୍ଥୀ ଦଳ, ଜନତା ଦଳ ଓ ଜନମୋର୍ଚ୍ଚା ମଧ୍ୟରେ ନିର୍ବାଚନରେ ବୁଝାମଣା ହୋଇଥିଲା । ଆପୋଷ ଆଲୋଚନା ପରେ କେଉଁଦଳ କେଉଁ ସ୍ଥାନରେ ପ୍ରତିଦ୍ୱନ୍ଦ୍ୱିତା କରିବେ ସେ ସମ୍ପର୍କରେ ରାଜିନାମା ହୋଇଯାଇଥିଲା । ଓଡ଼ିଶାର ରାଜନୈତିକ ପରିସ୍ଥିତି, ଜନତା ଦଳ ଓ ଶ୍ରୀ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱ ପ୍ରତି ଅନୁକୂଳ ଥାଏ । କଂଗ୍ରେସ ମଧ୍ୟରେ ଗୋଷ୍ଠୀ ବିବାଦ ଲାଗି ରହିଥାଏ । ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ବିରୋଧରେ ପୁଞ୍ଜୀଭୂତ ଅସନ୍ତୋଷ ଓ ଗୁରୁତର ଚାରିତ୍ରିକ ଓ ଦୁର୍ନୀତି ଅଭିଯୋଗ ହେତୁ ତାଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ହଟାଇବାପାଇଁ କଂଗ୍ରେସ ଦଳରେ ଉଦ୍ୟମ ଚାଲିଥାଏ । ଓଡ଼ିଶାର ପ୍ରଦେଶ କଂଗ୍ରେସ କମିଟିର ସଭାପତି ସେତେବେଳେ କାହ୍ନୁ ଚରଣ ଲେଙ୍କା ଥିଲେ । ତାଙ୍କୁ ସେହି ପଦରୁ ହଟାଇବାପାଇଁ ଏବଂ ବସନ୍ତ ବିଶ୍ୱାଳଙ୍କୁ ପି.ସି.ସି.ର ନିର୍ବାଚିତ କୋଷାଧକ୍ଷ ପଦରୁ ହଟାଇବାପାଇଁ ଜାନକୀବାବୁ ଉଦ୍ୟମ କରିଚାଲିଥାନ୍ତି । କିନ୍ତୁ ତାଙ୍କ କଥା ପ୍ରତି ରାଜୀବ ଗାନ୍ଧୀ ଆଦୌ ଗୁରୁତ୍ୱ ଦେଉନଥା'ନ୍ତି । ଜାନକୀବାବୁଙ୍କର ଆଚରଣ ଓ ତାଙ୍କ ସରକାରଙ୍କ ବିରୋଧରେ ଥିବା ପୁଞ୍ଜୀଭୂତ ଦୁର୍ନୀତିମୂଳକ ଅଭିଯୋଗ ରାଜୀବ ଗାନ୍ଧୀଙ୍କୁ ବିବ୍ରତ କରୁଥାଏ । ଦିଲ୍ଲୀରେ ଜାନକୀ ପଟ୍ଟନାୟକ ବହୁ ଉଦ୍ୟମ କଲେ ମଧ୍ୟ ସେ ରାଜୀବ ଗାନ୍ଧୀଙ୍କୁ ଭେଟିପାରୁନଥିଲେ । ସେହି ସଂକ୍ରାନ୍ତ ସମ୍ବାଦ ପ୍ରକାଶ ପାଉଥାଏ । କୌଣସିମତେ ରାଜୀବ ଗାନ୍ଧୀଙ୍କୁ ଭେଟିବା ଲକ୍ଷ୍ୟରେ ବ୍ୟସ୍ତହୋଇପଡ଼ି ଜାନକୀବାବୁ ଥରେ ରାଜୀବ ଗାନ୍ଧୀ କଲିକତା ଯାଉଥିବା ସରକାରୀ ଉଡ଼ାଜାହାଜରେ କୌଣସିମତେ ଯାତ୍ରା କରିପାରିବାର ମୌକା ଯୋଗାଡ଼କଲେ । ସେହି ଉଡ଼ାଜାହାଜ ମଧ୍ୟରେ ଯାତ୍ରା ସମୟରେ ରାଜୀବ ଗାନ୍ଧୀଙ୍କୁ ତାଙ୍କର ସମସ୍ତ ଗୁହାରି ବଖାଣି କହିଥିଲେ ବୋଲି ଖବରକାଗଜମାନଙ୍କରେ ପ୍ରକାଶ ପାଇଥିଲା । ଏହାର ଅଳ୍ପ କିଛିକାଳ ପରେ ଲୋକସଭା ନିର୍ବାଚନରେ ଓଡ଼ିଶା କଂଗ୍ରେସର ଘୋର ବିପର୍ଯ୍ୟୟ ଘଟିଲା । ପରିସ୍ଥିତିର

ତାଡ଼ନାରେ ବ୍ୟତିବ୍ୟସ୍ତ ରାଜୀବ ଗାନ୍ଧୀଙ୍କ ନିର୍ଦ୍ଦେଶରେ ଜାନକୀ ପଟ୍ଟନାୟକଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାକୁ ପଡ଼ିଲା । ତା'ପରେ ଶ୍ରୀ ହେମାନନ୍ଦ ବିଶ୍ୱାଳଙ୍କୁ ମୁଖ୍ୟମନ୍ତ୍ରୀ ଏବଂ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କୁ ପ୍ରଦେଶ କଂଗ୍ରେସ ସଭାପତି କରାଯାଇ ଓଡ଼ିଶାରେ କଂଗ୍ରେସର ମୁଖା ପରିବର୍ତ୍ତନ କରିବାର ଚେଷ୍ଟା କରାଗଲା ସତ, ମାତ୍ର କଂଗ୍ରେସର ଉଭୟ କେନ୍ଦ୍ର ନେତୃତ୍ୱ ଓ ରାଜ୍ୟ ନେତୃତ୍ୱ ସେତେବେଳକୁ ସଂପୂର୍ଣ୍ଣ ନିନ୍ଦିତ ହୋଇଯାଇଥିବାରୁ ୧୯୯୦ ମସିହାରେ ବିଧାନସଭା ନିର୍ବାଚନରେ ଓଡ଼ିଶାରେ କଂଗ୍ରେସଦଳ ପୂରା ତଳିତଳାନ୍ତ ହୋଇଯାଇଥିଲା । କଂଗ୍ରେସ ଦଳ ମାତ୍ର ଦଶଟି ଆସନ ପାଇବାକୁ କୌଣସିମତେ ସମର୍ଥ ହେଲା । ତେଣୁ ବିଧାନସଭାରେ ବିରୋଧୀଦଳ ଭାବରେ ପରିଗଣିତ ହେବାର ସୌଭାଗ୍ୟରୁ ମଧ୍ୟ ବଞ୍ଚିତ ହୋଇଥିଲା । ଲୋକସଭା ନିର୍ବାଚନ ପୂର୍ବରୁ ସର୍ବଭାରତୀୟ ସ୍ତରରେ ଅଣକଂଗ୍ରେସ ଦଳମାନଙ୍କ ମଧ୍ୟରେ ଆସନ ବୁଝାମଣା ହୋଇଥିଲା । ସେହି ନୀତି ନିୟମ ଆମ ରାଜ୍ୟ ବିଧାନସଭା ନିର୍ବାଚନରେ ଅଣକଂଗ୍ରେସ ଦଳମାନେ କାର୍ଯ୍ୟକାରୀ କରିଥିଲେ । ଏଥିପୂର୍ବରୁ ଓଡ଼ିଶାର ଲୋକସଭାର ୨୧ଟି ଆସନ ମଧ୍ୟରୁ ଜନତା ଦଳ ୧୬, କମ୍ୟୁନିଷ୍ଟ ଦଳ ଗୋଟିଏ ମାର୍କସବାଦୀ କମ୍ୟୁନିଷ୍ଟ ପାର୍ଟି ଗୋଟିଏ ଓ କଂଗ୍ରେସ ଦଳ ମାତ୍ର ତିନୋଟି ସ୍ଥାନରେ ବିଜୟୀ ହୋଇଥିଲେ । ସେହି ଲୋକସଭା ନିର୍ବାଚନରେ ମୁଁ ପୁରୀ ଲୋକସଭା ନିର୍ବାଚନ ମଣ୍ଡଳୀରୁ ଜନତା ଦଳର ପ୍ରାର୍ଥୀ ରୂପେ ବିଜୟୀ ହୋଇଥିଲି । ଅଣକଂଗ୍ରେସ ଦଳମାନଙ୍କ ମଧ୍ୟରେ ଆସନ ବଣ୍ଟନ ବୁଝାମଣା ସମନ୍ୱୟ ରାଜିନାମା ଅନୁସାରେ ନିର୍ବାଚନ ଲଢ଼ି ସଂଖ୍ୟାଗରିଷ୍ଠତା ଲୋକସଭାରେ ହାସଲ କରିଥିଲେ । ଜନମୋର୍ଚ୍ଚା ନେତା ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ ଜନତା ଦଳ ଟିକଟରେ ନିର୍ବାଚନ ଲଢ଼ି ଉତ୍ତର ପ୍ରଦେଶର ଫତେପୁର ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇ ଆସିଥା'ନ୍ତି । ଏହି ନିର୍ବାଚନରେ ଜନତା ଦଳ ୧୪୧ଟି, ବିଜେପି ୮୫ଟି ଓ ଉଭୟ ବାମପନ୍ଥୀ ଦଳ ୪୫ଟି ଆସନ ପାଇଥିଲେ । ଲୋକସଭାରେ ଜନତା ଦଳ ନେତାରୂପେ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ ନିର୍ବାଚିତ ହେଲେ । ଭାରତୀୟ ଜନତାପାର୍ଟି ଓ ବାମପନ୍ଥୀ ଦଳମାନେ ସରକାର ଗଠନରେ ବିଶ୍ୱନାଥ ପ୍ରତାପ ସିଂହଙ୍କୁ ସମର୍ଥନ ଜଣାଇବାରୁ ରାଷ୍ଟ୍ରପତି ତାଙ୍କୁ ସରକାର ଗଠନ କରିବାପାଇଁ ନିମନ୍ତ୍ରଣ କରିଥିଲେ । ଜାତୀୟ ମୋର୍ଚ୍ଚା ନେତାରୂପେ ଶ୍ରୀ ସିଂହ ସରକାର ଗଠନର ପ୍ରକ୍ରିୟା ଆରମ୍ଭକରିଥିଲେ ।

୧୯୮୯ ମସିହା ଡିସେମ୍ବର ମାସ ୫ ତାରିଖ ଦିନ ରାଷ୍ଟ୍ରପତି ଭବନରେ ଶପଥ ଗ୍ରହଣ ଉତ୍ସବ ଅନୁଷ୍ଠିତ ହୋଇଥିଲା । ରାଷ୍ଟ୍ରପତି ଥାଆନ୍ତି ଶ୍ରୀ ଭେଙ୍କଟ ରମଣ । ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ ପ୍ରଧାନ-ମନ୍ତ୍ରୀରୂପେ ଓ ଶ୍ରୀ ଦେବୀଲାଲ୍ ଉପପ୍ରଧାନମନ୍ତ୍ରୀରୂପେ ଶପଥ ନେଇଥିଲେ । ଏମାନଙ୍କ ଛଡ଼ା ସେଦିନ ଆଉ ସତରଜଣ ମାତ୍ର ମନ୍ତ୍ରୀ ପ୍ରଥମ ଦଫାରେ ଶପଥ ଗ୍ରହଣ କରିଥିଲେ । ସେହି ଦିନ ମୁଁ ମଧ୍ୟ କ୍ୟାବିନେଟ୍ ପାହିଆ ମନ୍ତ୍ରୀରୂପେ ଶପଥ ନେଇଥିଲି । ସେହି ଉତ୍ସବରେ ପ୍ରଫେସର ମଧୁ ଦଣ୍ଡବତେ, ସର୍ବଶ୍ରୀ ମୁଫ୍‌ତି ମହମ୍ମଦ ସହିଦ୍, ଅଜିତ୍ ସିଂହ, ଅରୁଣ ନେହେରୁ, ଇନ୍ଦ୍ରକୁମାର ଗୁଜରାଲ, ଅରିଫ୍ ମହମ୍ମଦ ଖାନ୍, ଏମ୍.ଏସ୍.ଗୁରୁପଦ ସ୍ୱାମୀ,କେ.ପି. ଉନିକ୍ରିଷ୍ଣନ୍, ଦୀନେଶ ଗୋସ୍ୱାମୀ, ଜର୍ଜ୍ଜ ଫର୍ଣ୍ଣାଡିଜ୍, ମୁରାସୋଲି ମାରାନ୍, ନାଥୁରାମ ମିର୍ଦ୍ଧା, ପି. ଉପେନ୍ଦ୍ର, ରାମବିଳାସ ପାଶ୍ୱାନ ଓ ଶ୍ରୀ ଶରଦ ଯାଦବ ଶପଥ ଗ୍ରହଣ କରିଥିଲେ । ଦୁଇ ଦିନ ପରେ ପ୍ରଧାନମନ୍ତ୍ରୀ ମନ୍ତ୍ରୀମାନଙ୍କ ମଧ୍ୟରେ ବିଭାଗ ବଣ୍ଟନ କରିଥିଲେ । ମୋତେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ଦାୟିତ୍ୱ ଦିଆଯାଇଥିଲା । ନିର୍ମାଣଭବନରେ ଏହି ମନ୍ତ୍ରଣାଳୟ ଥିଲା । ଏହାର ନିକଟବର୍ତ୍ତୀ ଏକନମ୍ବର ସୁନେରିବାଗ ଥିଲା ମୋର ସରକାରୀ ବାସଭବନ । ବିଭାଗୀୟ ସେହି ପ୍ରଧାନ କାର୍ଯ୍ୟାଳୟରେ ପ୍ରଥମ ଦିନ ମୁଁ ପହଞ୍ଚିବା ପରେ ଅଫିସ୍ ଦାୟିତ୍ୱରେ ଥିବା ଯେଉଁ ଉଚ୍ଚ କର୍ମଚାରୀମାନେ ମୋତେ ଭେଟି ସ୍ୱାଗତ ଜଣାଇଥିଲେ। ସେମାନଙ୍କ ମଧ୍ୟରେ ଥିଲେ ସେକ୍ରେଟେରୀ ଶ୍ରୀ ଶ୍ରୀନିବାସନ୍, ଅତିରିକ୍ତ ସେକ୍ରେଟେରୀ ଶ୍ରୀ ମଧୁସୂଦନ ଦୟାଲ, ଯୁଗ୍ମ ସେକ୍ରେଟେରୀ ଶ୍ରୀ ଆହୁଜାଓ ଶ୍ରୀମତୀ ବିନିତା ରାୟ । ଶ୍ରୀମତୀ ବିନିତା ରାୟ ମୋତେ ଅଭିନନ୍ଦନ

ଜଣାଇବାବେଳେ ସେ ନିଜକୁ ଓଡ଼ିଶାର ଜଣେ ଝିଅ ବୋଲି ତାଙ୍କର ପରିଚୟ ଦେଇଥିଲେ । ସେ ଥିଲେ ଜଣେ ବିହାରୀ କ୍ୟାଡ଼ରର ଆଇ.ଏ.ଏସ୍. ଅଫିସର । ତାଙ୍କଠାରୁ ପଚାରି ବୁଝିଲି ଯେ ସେ ଥିଲେ କେନ୍ଦ୍ରସରକାରଙ୍କ ପୂର୍ବତନ ଘରୋଇ ବିଭାଗ ସଚିବ ସୁବିଖ୍ୟାତ ପ୍ରଶାସନିକ ଅଫିସର ଶ୍ରୀ ଏଲ.ପି.ସିହ୍ନା ଆଇ.ସି.ଏସ୍‌ଙ୍କ ଝିଅ । ଶ୍ରୀ ସିହ୍ନା ଆମ ଦେଶ ସ୍ୱାଧୀନ ହେବାର ବହୁ ବର୍ଷ ପୂର୍ବରୁ ପ୍ରାୟ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ କଟକ ଜିଲ୍ଲା କଲେକ୍‌ଟର ଥିଲେ । କଟକରେ ତତ୍‌କାଳୀନ ଓଡ଼ିଶା ମେଡ଼ିକାଲ ସ୍କୁଲ ସମ୍ମୁଖରେ ଥିବା କଲେକ୍‌ଟର ବଙ୍ଗଳାରେ ଶ୍ରୀମତୀ ବିନିତା ରାୟ ଜନ୍ମହୋଇଥିଲେ । ସେଥିପାଇଁ ସେ ଓଡ଼ିଶାର ଝିଅ ବୋଲି ପରିଚୟ ଦିଅନ୍ତି । ମୋର ସରକାରୀ ଅଫିସ୍ ଦାୟିତ୍ୱରେ ଥିଲେ ପ୍ରାଇଭେଟ୍ ସେକ୍ରେଟାରୀ ଶରତ କୁମାର ନନ୍ଦ ଓ ଅଫିସର ଅନ୍ ସ୍ପେଶାଲ ଡ୍ୟୁଟିରେ ସିଦ୍ଧାର୍ଥ ପ୍ରଧାନ । ଏମାନଙ୍କ ଛଡ଼ା ସର୍ବଶ୍ରୀ ଅଜିତ୍ ପଟ୍ଟନାୟକ, ବିଜୟ କୁମାର ବଳ, ବଟକୃଷ୍ଣ ରାୟ, ମଧୁସୂଦନ ବେହେରା, ଟି.ଏନ୍.ନରସିଂହମ୍ ଓ ରାଜେନ୍ଦ୍ର କାଲା ମୋ ଅଫିସ୍‌ରେ ବିଭିନ୍ନ ଦାୟିତ୍ୱରେ ରହି କାମକରୁଥିଲେ । କିଛି ଦିନ ପରେ ଶ୍ରୀ ଶରତ କୁମାର ନନ୍ଦ ଅନ୍ୟତ୍ର ଚାଲିଯିବାରୁ ତାଙ୍କ ସ୍ଥାନରେ ଶ୍ରୀ ପ୍ରଧାନ ମୋର ସରକାରୀ ପ୍ରାଇଭେଟ୍ ସେକ୍ରେଟାରୀ ହିସାବରେ ନିଯୁକ୍ତି ପାଇଥିଲେ । ସ୍ୱାସ୍ଥ୍ୟମନ୍ତ୍ରୀ ଦାୟିତ୍ୱ ନେବାର କିଛି ଦିନ ପରେ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର ଓଡ଼ିଶା କ୍ୟାଡରରୁ ଯାଇ ସ୍ୱାସ୍ଥ୍ୟ ବିଭାଗର ଯୁଗ୍ମ ସଚିବରୂପେ ନିଯୁକ୍ତି ପାଇଥିଲେ । ଉପରୋକ୍ତ କର୍ମଚାରୀମାନଙ୍କ ସହଯୋଗରେ ମନ୍ତ୍ରୀ ଭାବରେ ମୁଁ କାର୍ଯ୍ୟ ନିର୍ବାହ କରୁଥିଲି । ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ବାସଭବନ ସମ୍ବନ୍ଧରେ ଏକ ଅଦ୍ଭୁତ ଅନୁଭୂତି ମୋର ହୋଇଯାଇଥିଲା । ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ସାଂସଦମାନଙ୍କଠାରୁ ଘନ ଘନ ଟେଲିଫୋନ୍ ମନ୍ତ୍ରୀଙ୍କ ପାଖକୁ ଆସେ । ସେମାନଙ୍କ ନିର୍ବାଚନମଣ୍ଡଳୀରୁ ଆସିଥିବା ରୋଗୀମାନଙ୍କ ସମ୍ବନ୍ଧରେ ମନ୍ତ୍ରୀଙ୍କୁ କହି ସେମାନଙ୍କର ଚିକିତ୍ସା ବ୍ୟବସ୍ଥା କରିବାପାଇଁ ସାଂସଦମାନେ ମନ୍ତ୍ରୀଙ୍କୁ ଅନୁରୋଧ କରନ୍ତି । ତା ସଂଗେ ସଂଗେ ସ୍ୱାସ୍ଥ୍ୟମନ୍ତ୍ରୀଙ୍କୁ ସାକ୍ଷାତ୍ କରିବାପାଇଁ ରୋଗୀ ଓ ତାଙ୍କ ସାଥୀ ଲୋକମାନଙ୍କୁ ମନ୍ତ୍ରୀଙ୍କ ବାସଭବନକୁ ପଠାଇଦିଅନ୍ତି । ସକାଳ ହେଲାକ୍ଷଣି ଶହଶହ ସଂଖ୍ୟାରେ ରୋଗୀ ଆସି ମନ୍ତ୍ରୀଙ୍କ ବାସଭବନରେ ରୁଣ୍ଡ ହୁଅନ୍ତି । ମନ୍ତ୍ରୀଙ୍କୁ ସାକ୍ଷାତ୍ କରି ରୋଗୀମାନେ ବଡ଼ ଆଶାବାନ୍ଧି ସେମାନଙ୍କ ରୋଗ ସମ୍ବନ୍ଧରେ ବୁଝାନ୍ତି ଏବଂ କେଉଁଠି କି ପ୍ରକାର ଚିକିତ୍ସା କରାଯିବ ସେ ବିଷୟର ମନ୍ତ୍ରୀଙ୍କ ପରାମର୍ଶ ଲୋଡ଼ନ୍ତି– ସତେଯେପରି ସ୍ୱାସ୍ଥ୍ୟମନ୍ତ୍ରୀ ମଧ୍ୟ ଜଣେ ଡାକ୍ତରଙ୍କ ପରି ସ୍ୱାସ୍ଥ୍ୟବିଜ୍ଞାନୀ । ଏହିସବୁ କାର୍ଯ୍ୟ ଯେ ମନ୍ତ୍ରୀଙ୍କ କାର୍ଯ୍ୟ ନୁହେଁ ସେ କଥା ରୋଗୀ, ସେମାନଙ୍କ ସାଥୀ ଓ ପଠାଇଥିବା ସାଂସଦମାନେ ମଧ୍ୟ ବୁଝିବାକୁ ନାରାଜହୁଅନ୍ତି । ସ୍ୱାସ୍ଥ୍ୟବିଭାଗର ମନ୍ତ୍ରୀ ହିସାବରେ ପ୍ରତିଦିନ ଏହିଭଳି ବହୁ ସମୟସାପେକ୍ଷ ଓ ଲୋକସଂପର୍କ କାର୍ଯ୍ୟରେ ସମ୍ମୁଖୀନ ହେବାକୁ ମୋତେ ପଡୁଥାଏ । ଏଭଳି କାର୍ଯ୍ୟ ଅତ୍ୟନ୍ତ ବିରକ୍ତିଜନକ ହେଲେ ମଧ୍ୟ ଦୂରଦୂରାନ୍ତରୁ ଆସିଥିବା ଅସୁସ୍ଥ ବ୍ୟକ୍ତିମାନଙ୍କ ମନରେ ନୈରାଶ୍ୟ ନ ଦେବାପାଇଁ ମୋତେ ଯଥେଷ୍ଟ ପରିଶ୍ରମ କରିବାକୁ ପଡୁଥିଲା । ଶେଷରେ ରୋଗୀମାନଙ୍କର ଏସବୁ କଥା ବୁଝିବାପାଇଁ ମୁଁ ମୋ ଅଫିସରେ ଜଣେ ଉଚ୍ଚ ପଦବୀର ସ୍ୱତନ୍ତ୍ର ଅଫିସର ନିଯୁକ୍ତ କରିଥିଲି । ଉକ୍ତ ଅଫିସର ଦିଲ୍ଲୀରେ ଥିବା ସବୁ ଡାକ୍ତରଖାନା ସହିତ ସଂପର୍କ ରଖି ଯଥାସମ୍ଭବ ରୋଗୀମାନଙ୍କୁ ସାହାଯ୍ୟ କରୁଥିଲେ । ପ୍ରତିଦିନ ସକାଳେ ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ବାସଭବନ ଦେଖିଲେ ତାହା ହସ୍‌ପିଟାଲର ଗୋଟିଏ Out Door ଭଳି ଜଣାପଡୁଥାଏ ।

କେନ୍ଦ୍ର ସରକାରର ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମ ପରିଚାଳନାର ସର୍ବୋଚ୍ଚ ସଂସ୍ଥା ଡାଇରେକ୍ଟର ଜେନେରାଲ ଅଫ୍ ହେଲ୍‌ଥ ସର୍ଭିସେସ୍ ଏକ ବିଶାଳ ସଂଗଠନ । ସବୁ ରାଜ୍ୟରେ ମଧ୍ୟ ଏହି ସ୍ୱାସ୍ଥ୍ୟ ସଂସ୍ଥାର ଶାଖାମାନ ଅଛି । ମୁଁ ସ୍ୱାସ୍ଥ୍ୟ ମନ୍ତ୍ରଣାଳୟର ଦାୟିତ୍ୱ ନେବାବେଳେ ଡାକ୍ତର ମୁଖାର୍ଜୀ ନାମକ ଜଣେ ବ୍ୟକ୍ତି ସର୍ବୋଚ୍ଚ ପଦବୀ ଡାଇରେକ୍ଟର ଜେନେରାଲ ପଦରେ ଅସ୍ଥାୟୀ ଭାବରେ ଦାୟିତ୍ୱ ତୁଲାଉଥିଲେ, କାରଣ ସେଥିପୂର୍ବରୁ ସ୍ଥାୟୀ ଡାଇରେକ୍ଟର ଜେନେରାଲ୍ ପଦବୀର ଡକ୍ଟର ବିଶ୍ୱକର୍ମା ନାମକ ଜଣେ ବ୍ୟକ୍ତିଙ୍କୁ ହଟାଇବା ଉଦ୍ଦେଶ୍ୟରେ ତାଙ୍କୁ ଯୋଜନା କମିଶନକୁ ବଦଳି କରିଦିଆ-ଯାଇଥିଲା । ମାତ୍ର ସେ

ପ୍ରତିବାଦକରି ଏହି ବଦଳି ଆଦେଶର ବିରୋଧରେ ସେଣ୍ଟ୍ରାଲ୍ ଆଡ୍‌ମିନିଷ୍ଟ୍ରେଟିଭ୍ ଟ୍ରିବ୍ୟୁନାଲରେ ମୋକଦ୍ଦମା କରିଥିଲେ । ଡାକ୍ତର ବିଶ୍ୱକର୍ମା ଜଣେ ଗଣ୍ୟମାନ୍ୟ ଅଫିସର ଥିଲେ ଏବଂ ଚିକିତ୍ସକ ହିସାବରେ ତାଙ୍କର ମଧ ଖ୍ୟାତି ଥିଲା । ଡକ୍ଟର ବିଶ୍ୱକର୍ମାଙ୍କ ପ୍ରତି ଅନ୍ୟାୟ କରାଯାଉଛି ବୋଲି ମୁଁ ମନ୍ତ୍ରିତ୍ୱ ଗ୍ରହଣ କଲା ପରେ ବନ୍ଧୁ ସାଂସଦ ବନ୍ଧୁ ମୋତେ କହିଥିଲେ ଏବଂ ତାଙ୍କୁ ତାଙ୍କ ପୁରୁଣା ସ୍ଥାନରେ ପୁନର୍ବାର ଅବସ୍ଥାପିତ କରିବାପାଇଁ ଦାବି କରିଥିଲେ । ଶ୍ରୀ ଚନ୍ଦ୍ରଶେଖର ଯେ କି ପରେ ପ୍ରଧାନମନ୍ତ୍ରୀ ହୋଇଥିଲେ ସେ ମଧ ଡକ୍ଟର ବିଶ୍ୱକର୍ମାଙ୍କ ପ୍ରତି ଯେଉଁ ଅନ୍ୟାୟ କରାଯାଇଥିଲା, ତାହା ସୁଧାରିବାପାଇଁ ମୋତେ ଅନୁରୋଧ କରିଥିଲେ । ମାତ୍ର କେନ୍ଦ୍ର ଟ୍ରିବ୍ୟୁନାଲ୍‌ରେ ତାଙ୍କର ଅଭିଯୋଗ ବିଚାରାଧୀନ ଥିବାବେଳେ ସେ ବିଷୟରେ କିଛି ସିଦ୍ଧାନ୍ତ ନେବା ସମୀଚୀନ ହେବନାହିଁ ବୋଲି ମୁଁ ଦର୍ଶାଇଥିଲି । ଚନ୍ଦ୍ରଶେଖରଙ୍କ ଅନୁରୋଧକ୍ରମେ ଡକ୍ଟର ବିଶ୍ୱକର୍ମା ମୋତେ ବାରମ୍ବାର ସାକ୍ଷାତ୍ କରୁଥା'ନ୍ତି । ମୋର ପ୍ରକୃତ ପ୍ରଶା-ସନିକ ପ୍ରତିବନ୍ଧକ କଥା ବୁଝିପାରି ସେ ଅପେକ୍ଷା କରି ରହିଥିଲେ । ଇତିମଧ୍ୟରେ ଟ୍ରିବ୍ୟୁନାଲରେ ତାଙ୍କର ଆବେଦନ ଖାରଜ ହୋଇଗଲା । ଯଦିଓ ଡାଇରେକ୍ଟର ଜେନେରାଲ ହେଲ୍‌ଥ ସର୍ଭିସରୁ ଡକ୍ଟର ବିଶ୍ୱକର୍ମାଙ୍କୁ ଅନ୍ତରକରିବା ଆଦେଶ ଅଯୌକ୍ତିକ ଓ ତ୍ରୁଟିପୂର୍ଣ୍ଣ ଥିଲା ବୋଲି କେନ୍ଦ୍ରୀୟ ଟ୍ରିବ୍ୟୁନାଲ ତାଙ୍କ ରାୟରେ ମନ୍ତବ୍ୟ ଦେଇଥିଲେ, ଅଫିସର ପାଉଥିବା ସୁବିଧା ସୁଯୋଗ ଓ ଦରମାରେ ଆଞ୍ଚ ନ ଆଣି ତାଙ୍କୁ ଅନ୍ୟ ବିଭାଗକୁ ସ୍ଥାନାନ୍ତରିତ କରିବାର ଅଧିକାର ସରକାରଙ୍କର ଅଛି ବୋଲି ନିଷ୍ପତ୍ତି ଜଣାଇଦେଇଥିଲେ । ଟ୍ରିବ୍ୟୁନାଲର ଉପରୋକ୍ତ ସିଦ୍ଧାନ୍ତ ବିଷୟଟିକୁ ଟିକିଏ ଜଟିଳ କରିଥିଲା । ଯଦି ଡକ୍ଟର ବିଶ୍ୱକର୍ମାଙ୍କୁ ହେଲଥ୍ ସର୍ଭିସରୁ ବଦଳି କରିବା ଅଯୌକ୍ତିକ ଅନ୍ୟପକ୍ଷରେ ତାଙ୍କୁ ଉଦ୍ଦେଶ୍ୟପ୍ରଣୋଦିତ ଭାବରେ ସ୍ଥାନାନ୍ତରିତ କରିବା କିପରି ଯଥାର୍ଥ ହେବ ବୋଲି ବିଚାରକରି ଡକ୍ଟର ବିଶ୍ୱକର୍ମାଙ୍କ ନିଯୁକ୍ତି, ଚାକିରିକାଳ, ବଦଳି ଆଦେଶ, ଅଦାଲତ ଆଦେଶ ଓ ସରକାରୀ ନୀତି ନିୟମକୁ ମୁଁ ଭଲଭାବରେ ସମୀକ୍ଷା କରି ଦେଖିଥିଲି । ଏଥିପାଇଁ ମୋ ପକ୍ଷରେ ନିଷ୍ପତ୍ତି ନେବା ଦିଗରେ ବିଳମ୍ବ ଘଟିବାରୁ ଶ୍ରୀ ଚନ୍ଦ୍ରଶେଖର ପୁଣି ସେ ବିଷୟରେ ମୋତେ କହିଥିଲେ । ଏହି ସମୟରେ ମୋ ଅଫିସ୍‌ରେ କାର୍ଯ୍ୟକରୁଥିବା ଦୁଇଜଣ ଅଫିସର ଡକ୍ଟର ବିଶ୍ୱକର୍ମାଙ୍କ ସହିତ ସଂପର୍କ ରଖିବାପାଇଁ ଉଦ୍ୟମ କରୁଥିବା କଥା ମୋ କାନକୁ ଆସିଥିଲା । ଏହା ଜାଣି ଏ ବିଷୟରେ ମୁଁ ଡକ୍ଟର ବିଶ୍ୱକର୍ମାଙ୍କୁ ସତର୍କ କରାଇ-ଦେଇଥିଲି । ସେମାନଙ୍କ ଫାନ୍ଦରେ ସେ ଯଦି ପଡ଼ନ୍ତି, ତା'ହେଲେ ସେ ମୋ'ଠାରୁ କୌଣସି ନିରପେକ୍ଷ ବିଚାର ଆଶା କରିବା ଅନୁଚିତ ବୋଲି ସତର୍କ କରିଦେଇଥିଲି । କେନ୍ଦ୍ର ଆଡ୍‌ମିନିଷ୍ଟ୍ରେଟିଭ୍ ଟ୍ରିବ୍ୟୁନାଲ ବିଶ୍ୱକର୍ମାଙ୍କ ମୋକଦ୍ଦମାଟିକୁ ଖାରଜ କରିବା ସଂଗେ ସଂଗେ ପୂର୍ବ ସରକାରଙ୍କର ନିଷ୍ପତ୍ତି ଓ କାର୍ଯ୍ୟକଳାପକୁ ଅତ୍ୟନ୍ତ କଟୁ ସମାଲୋଚନା କରିଥିଲେ । ଏହାକୁ ଭିତ୍ତିକରି ମୋତେ ନିଷ୍ପତ୍ତି ନେବାକୁ ପଡ଼ିଥିଲା । ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀ ଡକ୍ଟର ବିଶ୍ୱକର୍ମାଙ୍କ ଫାଇଲ୍‌ରେ ଆକ୍ରୋଶମୂଳକ ମତ ଦେଇଥିବାର ଦେଖିଥିଲି । ଅଥଚ ତାହାର ଅଳ୍ପଦିନ ପୂର୍ବରୁ ସେହି ରାଜୀବ ଗାନ୍ଧୀ ଡକ୍ଟର ବିଶ୍ୱକର୍ମାଙ୍କ କାର୍ଯ୍ୟର ଉଚ୍ଚ ପ୍ରଶଂସା କରିଥିବାର ଲକ୍ଷ୍ୟ କରିଥିଲି । ଏହି ପରିପ୍ରେକ୍ଷୀରେ ଡକ୍ଟର ବିଶ୍ୱକର୍ମାଙ୍କୁ ଡାଇରେକ୍ଟର ଜେନେରାଲ ପଦରୁ ଉଦ୍ଦେଶ୍ୟମୂଳକ ଭାବରେ ଅନ୍ତର କରାଯାଇଥିଲା ବୋଲି ପ୍ରମାଣ ଉଲ୍ଲେଖ କରି ପୂର୍ବ ଆଦେଶକୁ ରଦ୍ଦ କରିଥିଲି । ମୋର ଏହି ଆଦେଶ ପ୍ରଧାନମନ୍ତ୍ରୀ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ଗୋଚରାର୍ଥେ ପଠାଇଥିଲି । ସେ ମୋର ଆଦେଶକୁ ଅନୁମୋଦନ କରିଥିଲେ । ଏହା ପରେ ଡକ୍ଟର ବିଶ୍ୱକର୍ମା ସେଣ୍ଟ୍ରାଲ୍ ଗଭର୍ଣ୍ଣମେଣ୍ଟ ହେଲ୍‌ଥ ସର୍ଭିସେସ୍‌ର ଡାଇରେକ୍ଟର ଜେନେରାଲ ଭାବରେ ଯୋଗ ଦେଇଥିଲେ ।

## ମୋ ବିରୁଦ୍ଧରେ ସାଧୁ ଅସାଧୁ ମେଣ୍ଟ

ସ୍ୱାସ୍ଥ୍ୟ ବିଭାଗ ଦାୟିତ୍ୱ ନେବାର କିଛି ଦିନ ପରେ ମୁଁ ଆଉ ଗୋଟିଏ ଷଡ଼ଯନ୍ତ୍ରମୂଳକ ସମସ୍ୟାର

ସମ୍ମୁଖୀନ ହୋଇଥିଲି । ଏଥର ମୁଁ ଅତର୍କିତ ଭାବରେ ସରକାରୀସାଧୁ ଶ୍ରୀ ଧୀରେନ୍ଦ୍ର ବ୍ରହ୍ମଚାରୀଙ୍କ ଶିକାର ହୋଇପଡ଼ିଲି । ପୂର୍ବରୁ ଓ ପରବର୍ତ୍ତୀକାଳରେ ସରକାର ବଦଳିବା ସତ୍ତ୍ୱେ ଦଳ ମତ ନିର୍ବିଶେଷରେ ତାନ୍ତ୍ରିକ ସାଧକ ଧୀରେନ୍ଦ୍ର ବ୍ରହ୍ମଚାରୀ ଥିଲେ ଅତ୍ୟନ୍ତ ପ୍ରଭାବଶାଳୀ ବ୍ୟକ୍ତି । ପ୍ରତ୍ୟକ୍ଷ ଅବା ପରୋକ୍ଷ ଭାବରେ ଅନେକ ପ୍ରଭାବଶାଳୀ ବ୍ୟକ୍ତି ତାଙ୍କ ସହିତ ସଂପର୍କ ରଖୁଥିଲେ ଏବଂ ତାଙ୍କୁ ସାହାଯ୍ୟ କରୁଥିଲେ । ରୁଷିଆର ସରକାରୀସାଧୁ ରାସପୁଟିନୀଙ୍କ ଚରିତ୍ର ସହିତ ତାଙ୍କ ଚରିତ୍ର ତୁଳନା କରାଯାଇପାରେ । ରୁଷିଆର ଶେଷ ଜାର୍ ଦ୍ୱିତୀୟ ନିକୋଲାସଙ୍କ (ରାଜା ନିକୋଲାସ) ସ୍ତ୍ରୀ (ରାଣୀ) ଜାରୀନା ଆଲେକଜାଣ୍ଡାର୍‌ଙ୍କୁ ମୋହଗ୍ରସ୍ତ କରି ରାସପୁଟିନ୍ ନିଜର ପ୍ରଭାବ ବିସ୍ତାର କଲେ ଏବଂ ପ୍ରବଳ ପ୍ରତାପଶାଳୀ ହୋଇଉଠିଲେ । ଧର୍ମ ଓ ଅଲୌକିକ କ୍ଷମତାର ଛଦ୍ମବେଶୀ ଧର୍ମଗୁରୁ ଏହି ରାସପୁଟିନୀ ଚଳିତ ବିଂଶଶତାବ୍ଦୀର ପ୍ରଥମ ଭାଗରେ ରୁଷ ଦେଶ ଓ ତା ଆଖପାଖ ଦେଶମାନଙ୍କର ସବୁଠାରୁ କୁଖ୍ୟାତ ଏବଂ ବହୁଚର୍ଚ୍ଚିତ ସରକାରୀ ସାଧୁ ଥିଲେ । କୌତୂହଳର ବିଷୟ ହେଉଛି ଯେ, ଭାରତବର୍ଷରେ ରାସପୁଟିନଙ୍କ ଅବତାରରୂପେ ଜନ୍ମନେଇଥିଲେ, ଯୋଗ ଓ ବ୍ୟାୟାମ ଶିକ୍ଷକ ତାନ୍ତ୍ରିକ ସାଧକ ବୋଲାଉଥିବା ଧୀରେନ୍ଦ୍ର ବ୍ରହ୍ମଚାରୀ ।

## ଭଣ୍ଡାଚାରୀ ନା ବ୍ରହ୍ମଚାରୀ ?

ଜଣେ ବଡ ଯୋଗସାଧକ, ଦକ୍ଷ ଯୋଗଚିକିତ୍ସକ ଓ ଅସାଧ୍ୟ କାର୍ଯ୍ୟ ସାଧନ କରାଇଦେବା ଭଳି ସ୍ତମ୍ଭନ, ବଶୀକରଣ ଆଦି ତନ୍ତ୍ରବିଦ୍ୟାରେ ପାରଙ୍ଗମ ବ୍ୟକ୍ତିଭାବରେ ଧୀରେନ୍ଦ୍ର ବ୍ରହ୍ମଚାରୀ ଇନ୍ଦିରାଙ୍କ ଅମଳରୁ କେବଳ ଦିଲ୍ଲୀ ରାଜନୈତିକ ଓ ପ୍ରଶାସନିକ ମହଲରେ ନୁହେଁ, ସାରା ଭାରତର ବିଭିନ୍ନ ପ୍ରାନ୍ତୀୟ ସରକାର ଉପରେ ମଧ୍ୟ ନିଜର ଅଖଣ୍ଡ ପ୍ରଭାବ ଜାହିରକରିପାରୁଥିଲେ । ଇନ୍ଦିରାଙ୍କର ତାଙ୍କ ପ୍ରତି ଅହେତୁକ ଅନୁରକ୍ତି ଓ ସମର୍ଥନ ଥିବାର ସମସ୍ତେ ଲକ୍ଷ୍ୟକରିଥିଲେ । ଇନ୍ଦିରା ପରିବାର ଜରିଆରେ ସେ ବିଦେଶରେ ମଧ୍ୟ ନାନା ସୁବିଧା ହାସଲ କରିପାରୁଥିଲେ । ସେହି ସୂତ୍ରରେ ସଂଜୟ ଗାନ୍ଧୀଙ୍କ ସହିତ ଏକତ୍ର ହୋଇ, ସରକାରୀ ଆଇନ ଶୃଙ୍ଖଳାକୁ ସହଜରେ ଉଲ୍ଲଙ୍ଘନ କରି ଅନେକ ଆପତ୍ତିଜନକ ଉଦ୍ୟୋଗ, ଆଶ୍ରମ ନାମରେ ବିଳାସ ପଲ୍ଲୀ, ବନ୍ଧୁକ କାରଖାନା, ନିଜସ୍ୱ ବିମାନଘାଟି ପ୍ରତିଷ୍ଠା ଓ ପରିଚାଳନା କରୁଥିଲେ । ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କର ବାସଭବନକୁ ଏହି ବ୍ରହ୍ମଚାରୀଙ୍କର ଅବାରିତ ପ୍ରବେଶ ଅଧିକାର ସମସ୍ତଙ୍କୁ ସ୍ତମ୍ଭୀଭୂତ କରୁଥିଲା । ଶିଷ୍ୟାଙ୍କର ତାଙ୍କ ପ୍ରତି ଏତାଦୃଶ ଦୁର୍ବଳତା ହେତୁ ସେ ଜାମ୍ମୁରେ ସାମରିକ ଦୃଷ୍ଟିକୋଣରୁ ନିଷିଦ୍ଧାଞ୍ଚଳରେ ମଧ୍ୟ ତାଙ୍କର କାରଖାନା ଓ ବିମାନଘାଟି ନିର୍ମାଣ କରିପାରିଥିଲେ । ତାଙ୍କର ନିଜସ୍ୱ ବିମାନ ଓ ବିମାନ ବ୍ୟବସାୟ ମଧ୍ୟ ଥିଲା ।

ବିଶିଷ୍ଟ ସାମ୍ବାଦିକ ଶ୍ରୀ ଜନାର୍ଦ୍ଦନ ଠାକୁରଙ୍କ ରଚିତ ଏକ ବହୁ ପ୍ରସାରିତ ପୁସ୍ତକ All the Primeminister's Men ପାଠକଲେ ଏହି ବ୍ରହ୍ମଚାରୀଙ୍କର ଅନେକ କାର୍ଯ୍ୟକଳାପ କିପରି କେବଳ ଭଣ୍ଡାଚାର ଥିଲା ତାହାର ବିଶଦ ବିବରଣୀ ମିଳେ । ବ୍ରହ୍ମଚାରୀଙ୍କ ଆଶ୍ରମ ପରିଦର୍ଶନରେ ଯାଇ ନବେ ଦଶକର ପ୍ରାରମ୍ଭରେ ମୁଁ ଯେଉଁଭଳି ପାର୍ଥିବ ଆରାମ ଓ ଆସକ୍ତିର ବାତାବରଣ ଲକ୍ଷ୍ୟ କରିଥିଲି, ଲେଖକ ସାମ୍ବାଦିକ ଠାକୁର ସତୁରୀ ଦଶକରେ ଶେଷଆଡ଼କୁ ତଦ୍ରୂପ ବିଷୟମାନ ଲକ୍ଷ୍ୟକରିଥିବାର ଉଲ୍ଲେଖ କରିଛନ୍ତି । ବ୍ରହ୍ମଚାରୀଙ୍କ ଯୌଗିକ ଚିକିତ୍ସାରେ ଭଣ୍ଡାଚାରର ଏକ ନିଦର୍ଶନ ଶ୍ରୀ ଠାକୁରଙ୍କର ବର୍ଣ୍ଣନାରୁ ଜଣାଯାଏ । ରୋଗୀର ଚିକିତ୍ସା ଆରମ୍ଭ କରିବା ପୂର୍ବରୁ ଡାକ୍ତରମାନେ ଯେପରି ରୋଗୀ ଶରୀରର ପରୀକ୍ଷା ନିରୀକ୍ଷା କରନ୍ତି, ଯୌଗିକ ଚିକିତ୍ସା କରିବା ପୂର୍ବରୁ ଧୀରେନ୍ଦ୍ର ବ୍ରହ୍ମଚାରୀ ମଧ୍ୟ କୁଆଡ଼େ ଆବଶ୍ୟକ ସ୍ଥଳେ ରୋଗୀ ଶରୀରରେ କେତେକ ପରୀକ୍ଷା ନିରୀକ୍ଷା କରୁଥିଲେ । ସେହିଭଳି ଶାରୀରିକ ପରୀକ୍ଷାର ଗୋଟିଏ ପଦ୍ଧତି ଅନୁଯାୟୀ ରୋଗୀର ଶରୀରର ବିଭିନ୍ନ ଅଂଶର ପରିମାପ ନେବାକୁ ହୁଏ । ଆବଶ୍ୟକସ୍ଥଳେ ରୋଗୀ ବକ୍ଷ ସ୍ଥଳରେ ଦୁଇ ଚୁଚୁକ (ସ୍ତନବୃନ୍ତ)ଠାରୁ ନାଭି ଗହ୍ୱରର ଦୂରତ୍ୱର

ମାପ ମଧ ନେବାକୁ ପଡ଼େ । ରାଜକୀୟ ଜୀବନ ବିତାଉଥିବା ଏହି 'ବ୍ରହ୍ମଚାରୀ'ଙ୍କର ଏହିଭଳି ନାନାବିଧ ଭଣ୍ଡାଚାରୀସୁଲଭ କାର୍ଯ୍ୟମାନ ଶ୍ରୀ ଠାକୁର ବର୍ଣ୍ଣନା କରିଛନ୍ତି ।

## ଓଡ଼ିଶା ଶିକ୍ଷାମନ୍ତ୍ରୀଙ୍କ ଅକଲ ଶିକ୍ଷା

ପ୍ରବୀଣ କଂଗ୍ରେସ ନେତା ଶ୍ରୀ ଗଙ୍ଗାଧର ମହାପାତ୍ର ଓଡ଼ିଶାର ଶିକ୍ଷାମନ୍ତ୍ରୀ ଥିବାବେଳେ ଛାତ୍ରଛାତ୍ରୀମାନଙ୍କୁ ଯୋଗଶିକ୍ଷା ଅଭ୍ୟାସ କରାଇବା ନିମନ୍ତେ ସରକାର ଏକ ନୀତିଗତ ନିଷ୍ପତ୍ତି ନେଲେ । ସେଥିପାଇଁ କାର୍ଯ୍ୟରତ ଶିକ୍ଷକମାନଙ୍କୁ ନିର୍ବାଚିତ କରାଯାଇ କ୍ରମାଗତ ତାଲିମ୍ ବ୍ୟବସ୍ଥା କରାଗଲା । ଶିକ୍ଷକମାନଙ୍କୁ ଯୋଗଶିକ୍ଷା ତାଲିମ ଦେବାପାଇଁ ଏକ ଉପଯୁକ୍ତ ବିବେଚିତ ଅନୁଷ୍ଠାନର ଅଭିଜ୍ଞତାସମ୍ପନ୍ନ କେତେକ ଯୋଗସାଧକମାନଙ୍କୁ ନିଯୁକ୍ତ କରାଗଲା । ପ୍ରଥମ ଦଫା ତାଲିମ୍ ଆରମ୍ଭ ହେଉ ନ ହେଉଣୁ କଥାଟା ଯାଇ ଧୀରେନ୍ଦ୍ର ବ୍ରହ୍ମଚାରୀଙ୍କ କାନରେ ପଡ଼ିଗଲା । ଓଡ଼ିଶା ସରକାରଙ୍କଠାରୁ ଆୟର ଏଭଳି ଏକ ସୂତ୍ର ସେ ଥାଉ ଥାଉ ଆଉ କାହା ହାତକୁ ଚାଲିଗଲା ବୋଲି 'ବ୍ରହ୍ମଚାରୀ' ଅପମାନିତ ବୋଧକଲେ । ଟେଲିଫୋନ୍‌ରେ ସତର୍କ ଘଣ୍ଟି ଶୁଣାଇଦିଆଗଲା ପ୍ରଧାନମନ୍ତ୍ରୀଙ୍କ ନିବାସରୁ ଓଡ଼ିଶା ମୁଖ୍ୟମନ୍ତ୍ରୀ ନିବାସକୁ । ମୁଖ୍ୟମନ୍ତ୍ରୀ ଜାନକୀବାବୁ ଏକଥା ଶୁଣୁ ଶୁଣୁ ଛାନିଆ ହୋଇପଡ଼ିଲେ ଏବଂ ଯୋଗଶିକ୍ଷା ପାଇଁ ଶିକ୍ଷକ ତାଲିମ୍ କାର୍ଯ୍ୟକୁ ତୁରନ୍ତ ବନ୍ଦକରିଦେବାକୁ ଶିକ୍ଷାବିଭାଗକୁ କଡ଼ା ନିର୍ଦ୍ଦେଶ ଦେଇଥିଲେ । ତାଲିମପାଇଁ ଭୁବନେଶ୍ୱରରେ ଉପସ୍ଥିତ ହୋଇଥିବା ବିଚରା ଶିକ୍ଷକମାନଙ୍କୁ ବାହୁଡ଼ି ଯିବାକୁ ହେଲା । ଛାତ୍ରଛାତ୍ରୀମାନଙ୍କ ହିତ ପାଇଁ ଓଡ଼ିଶା ଶିକ୍ଷାମନ୍ତ୍ରୀଙ୍କ ଯୋଗଶିକ୍ଷାଯୋଜନା ପରିଶେଷରେ ଏପରି ଦୁର୍ଯୋଗମୟ ସମାପ୍ତି ଭୋଗକଲା । ଜାନକୀବାବୁ ଶିକ୍ଷା ବିଭାଗର ଏହି ପ୍ରସ୍ତୁତି ସଂପର୍କରେ କିଛି ଜାଣିନଥିଲେ ବୋଲି ପ୍ରଧାନମନ୍ତ୍ରୀ ନିବାସକୁ କହି ଆତ୍ମରକ୍ଷା କରିଥିଲେ ।

## ମୋର ଅଚାନକ ବିଶ୍ୱଆୟତନ ଯୋଗାଶ୍ରମ ପରିଦର୍ଶନ

ଦିଲ୍ଲୀ ସହରର ଏକ ପ୍ରଧାନ ଅଞ୍ଚଳରେ ଧୀରେନ୍ଦ୍ର ବ୍ରହ୍ମଚାରୀଙ୍କର ଗୋଟିଏ ଯୋଗାଶ୍ରମ ସଂସ୍ଥା ଥିଲା । ନାମ ଥିଲା ''ବିଶ୍ୱଆୟତନ ଯୋଗାଶ୍ରମ'' । ଏହି ସଂସ୍ଥାର ଅଧକ୍ଷ ଓ ପରିଚାଳନା ନିର୍ଦ୍ଦେଶକ ଥିଲେ ଧୀରେନ୍ଦ୍ର ବ୍ରହ୍ମଚାରୀ । ଗୋଟିଏ ଟ୍ରଷ୍ଟରୂପେ ରେଜେଷ୍ଟ୍ରି କରାଯାଇଥିଲେ ମଧ ବ୍ରହ୍ମଚାରୀହିଁ ଥିଲେ ଏହି ସଂସ୍ଥା ଓ ସମ୍ପତ୍ତିର ସର୍ବେସର୍ବା ମାଲିକ । ଏହି ସଂସ୍ଥା ସରକାରଙ୍କଠାରୁ ଅପର୍ଯ୍ୟାପ୍ତ ଆର୍ଥିକ ସାହାଯ୍ୟ ପାଉଥିଲା । ଏଥିରେ ଶତାଧିକ କର୍ମଚାରୀ କାର୍ଯ୍ୟକରୁଥିଲେ । ସେମାନଙ୍କ ମଧରେ ବହୁ ମହିଳା କର୍ମଚାରୀ ଥିଲେ । ସଂସ୍ଥାର ପରିଚାଳନା ଓ ସ୍ୱାମୀଜୀଙ୍କର ସ୍ୱେଚ୍ଛାଚାରୀ ଆଚରଣ ସମ୍ବନ୍ଧରେ ବହୁ ଅଭିଯୋଗ ଉଠିଲା । କର୍ମଚାରୀମାନଙ୍କୁ ଅଧା ଦରମା ଦେଇ ପୂରା ଦରମା ପାଉଛନ୍ତି ବୋଲି ସେମାନଙ୍କ ପାଖରୁ ଲେଖିନେବା ଏବଂ ସେମାନଙ୍କୁ ନାନା ଉପାୟରେ ଉତ୍ପୀଡ଼ନ କରାଯିବାର ଖବର ମିଳୁଥାଏ । ମହିଳା କର୍ମଚାରୀମାନେ ମଧ ଏହି ନିର୍ଯାତନରୁ ରକ୍ଷାପାଉନଥିଲେ । ବ୍ରହ୍ମଚାରୀଙ୍କ ଡରରେ ଲୁଚିଛପି ଛୋଟ ଛୋଟ ଦଳରେ ଯାଇ ମନ୍ତ୍ରୀ ଓ ଅନ୍ୟାନ୍ୟ ସରକାରୀ କର୍ମକର୍ତ୍ତାମାନଙ୍କୁ ସେମାନଙ୍କର ଗୁହାରି କହୁଥିଲେ । ମାତ୍ର ଦୀର୍ଘକାଳଧରି ସେଥିପ୍ରତି କେହି କର୍ଣ୍ଣପାତ କରୁନଥିଲେ । ଅନେକ ମନ୍ତ୍ରୀ ଓ ଉଚ୍ଚ ଅଫିସର ମହଲରେ ଧାରଣା ଥାଏ ଯେ, ସ୍ୱାମୀଜୀ ପ୍ରକୃତରେ ଜଣେ ମହାନ୍ ସାଧକ ଏବଂ ସେ ଏଭଳି ଅସତ୍ କାର୍ଯ୍ୟ କରିବା ଅସମ୍ଭବ । ଆଉ କେତେକ ଧୀରେନ୍ଦ୍ର ବ୍ରହ୍ମଚାରୀଙ୍କର ତାନ୍ତ୍ରିକ ଶକ୍ତି ତଥା ଉପରମହଲର ପ୍ରଭାବଦ୍ୱାରା କ୍ଷତିଗ୍ରସ୍ତ ହେବା ଭୟରେ କାଦୁଅରେ ପଶିବାକୁ ନାରାଜଥା'ନ୍ତି । ତେଣୁ ଅଭିଯୋଗ କରିବାପାଇଁ ଯୋଗାଶ୍ରମ କର୍ମଚାରୀମାନେ ଆସିବାର ଦେଖିଲା ମାତ୍ରେ ସେଭଳି ମନ୍ତ୍ରୀ ଓ ଉଚ୍ଚ ପଦାଧିକାରୀମାନେ ଗୁହାରି ନଶୁଣି ସେମାନଙ୍କୁ ଘଉଡ଼ାଇଦେଉଥିଲେ । ମୁଁ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ଦାୟିତ୍ୱ ନେବାପରେ ଯୋଗାଶ୍ରମ କର୍ମଚାରୀମାନେ ସେମାନଙ୍କର ଗୁହାର

କରିବାପାଇଁ ମୋ ସରକାରୀ ବାସଭବନରେ ରୁଣ୍ଡ ହେବାକୁ ଲାଗିଲେ । ମୁଁ ସେମାନଙ୍କୁ ଘଉଡ଼ାଇ-ନଦେଇ ସେମାନଙ୍କର ଗୁହାରି ଶୁଣିବାକୁ ପ୍ରସ୍ତୁତ ଥିବାର ଦେଖି ସେମାନେ ଆଶ୍ୱସ୍ତି ଅନୁଭବ କରି-ଥିଲେ । ସେହି କର୍ମଚାରୀମାନଙ୍କର ଅଭିଯୋଗସଂବଳିତ ଦାବିପତ୍ର ବୁଝିବାପାଇଁ ରଖିଲି । ସ୍ୱାସ୍ଥ୍ୟ ବିଭାଗରୁ ମଧ୍ୟ ବ୍ରହ୍ମଚାରୀଙ୍କ ଟ୍ରଷ୍ଟ ଅଧିକ ଆର୍ଥିକ ସାହାଯ୍ୟ ପାଏ । ଧୀରେନ୍ଦ୍ର ବ୍ରହ୍ମଚାରୀଙ୍କର ଦିଲ୍ଲୀର ନାନା ଉଚ୍ଚ ମହଲରେ ପ୍ରତିପତ୍ତି ଥିବାର ଜାଣି ମଧ୍ୟ ମୁଁ 'ବିଛା ମନ୍ତ୍ର ନଜାଣି ସାପ ଗାତରେ ହାତପୂରାଇ ଦେବା' ଭଳି ଅତର୍କିତ ଭାବରେ ଏହି ତାନ୍ତ୍ରିକଙ୍କ ସଂପର୍କରେ ଅନୁସନ୍ଧିତ୍ସୁ ହୋଇପଡ଼ିଲି । ସେମାନେ ମୋ ଆଚରଣରେ ଉତ୍ସାହିତ ହୋଇ ଅଭିନନ୍ଦନସୂଚକ ଧ୍ୱନିମାନ ଦେଇ ଫେରିଲେ । ମୋ ବାସଭବନରେ ଏହି ଘଟଣାର ବିବରଣୀ ବ୍ରହ୍ମଚାରୀଙ୍କ ପାଖରେ ପହଞ୍ଚିଲା । ଏ ଘଟଣା ଜାଣି ସେ କୁଆଡ଼େ ପ୍ରଥମେ ବ୍ୟସ୍ତହୋଇପଡ଼ିଥିଲେ । କର୍ମଚାରୀମାନଙ୍କୁ ସାକ୍ଷାତ୍ ଦେଇ ସେମାନଙ୍କ କଥା ଶୁଣିବା ଘଟଣାଟି ତାଙ୍କ ପକ୍ଷରେ ଅସହ୍ୟ ହୋଇଥିଲା । ଏହାପରେ ପରେ ରାଜୀବ ଗାନ୍ଧୀଙ୍କର ଜଣେ ବିଶ୍ୱସ୍ତ ବ୍ୟକ୍ତି ଶ୍ରୀ ଯଶପାଲ୍ କାପୁର ଆସି ମୋତେ ଦେଖାକଲେ । ଯୋଗାଶ୍ରମ କର୍ମଚାରୀମାନଙ୍କର ବିଶୃଙ୍ଖଳ ଆଚରଣ ସମ୍ବନ୍ଧରେ ମୋତେ ବୁଝାଇବାକୁ ଚେଷ୍ଟା କରିଥିଲେ । ତାଙ୍କ ମତରେ ସ୍ୱାମୀଜୀ ଜଣେ ସାଧୁ ସନ୍ଥ ପ୍ରକୃତିର ଲୋକ । ତାଙ୍କ ଆଶୀର୍ବାଦ ପାଇବା ଦୁର୍ଲଭ । ତାଙ୍କ ଅଶାର୍ବାଦ ପାଇ ବହୁ ବ୍ୟକ୍ତି ସେମାନଙ୍କ ଭବିଷ୍ୟତ୍ ଉଜ୍ଜ୍ୱଳ କରିପାରିଛନ୍ତି । ତାଙ୍କୁ ସାକ୍ଷାତ୍ କରି ଆଳାପ ଆଲୋଚନା କଲେ ତାଙ୍କର ଅଲୌକିକ ଶକ୍ତି ଅନୁଭବ କରିହୁଏ । ତେଣୁ ତାଙ୍କ ସହିତ ମୁଁ ସାକ୍ଷାତ୍ ଆଲୋଚନା କରିବାପାଇଁ ସେ ବ୍ୟବସ୍ଥା କରିବା ସକାଶେ ଯଶପାଲ କାପୁର ପ୍ରସ୍ତାବ ଦେଇଥିଲେ । କିନ୍ତୁ ଓଡ଼ିଶାର ବିଧାନସଭା ନିର୍ବାଚନ ହେତୁ ମୁଁ ଦିଲ୍ଲୀରେ କିଛି ଦିନ ଅନୁପସ୍ଥିତ ରହିବି, ପରେ ବିଚାରି ଦେଖିବିବୋଲି କହି ତାଙ୍କ ପ୍ରସ୍ତାବଟି ଏଡ଼ାଇ ଦେଇଥିଲି । ଶ୍ରୀ କାପୁର ଓଡ଼ିଶା ବିଷୟରେ ଖବର ରଖନ୍ତି । ପୂର୍ବରୁ କେତେଥର ଓଡ଼ିଶା ଆସି ଆମମାନଙ୍କ ସହିତ ରାଜନୈତିକ ବ୍ୟାପାରରେ ଆଲୋଚନା କରୁଥିଲେ । ଇତିମଧ୍ୟରେ ବିଶ୍ୱଆୟତନ ଯୋଗାଶ୍ରମ ବିରୋଧରେ ଆସିଥିବା ଅଭିଯୋଗଗୁଡ଼ିକର ତଦନ୍ତ ବନ୍ଦ ରଖିବାପାଇଁ ଶ୍ରୀ କାପୁର ମୋତେ ଅନୁରୋଧ କରିଥିଲେ, ମାତ୍ର ସେପରି କରିବା ଉଚିତ ହେବନାହିଁ ବୋଲି ମୁଁ ତାଙ୍କୁ ବୁଝାଇ କହିଥିଲି । କ୍ରମେ କ୍ରମେ ବ୍ରହ୍ମଚାରୀଙ୍କ ଆଚରଣ ସମ୍ବନ୍ଧରେ ଆହୁରି କେତେକ ଅଭିଯୋଗ ମୋ ପାଖରେ ପହଞ୍ଚିଥିଲା । କର୍ମଚାରୀମାନଙ୍କ ଦରମା ସମ୍ବନ୍ଧୀୟ ରେକର୍ଡ଼ ନଷ୍ଟକରିଦେବାକୁ ଉଦ୍ୟମ ହେଉଛି ବୋଲି ଆପତ୍ତି ଉଠିଲା । ଏସବୁ କଥା ଶୁଣି ଦିନେ ଦୁଇଜଣ ବିଭାଗୀୟ ଉଚ୍ଚ ଅଫିସରଙ୍କୁ ସାଙ୍ଗରେ ଧରି ମୁଁ ଅଚାନକ ଭାବେ ବ୍ରହ୍ମଚାରୀଙ୍କ ଯୋଗାଶ୍ରମ ପରିଦର୍ଶନ କଲି । ଯୋଗାଶ୍ରମରେ ଉଚ୍ଚ ଅଫିସରମାନଙ୍କ ସହିତ ମୋର ଉପସ୍ଥିତି ସମସ୍ତଙ୍କୁ ହତଚକିତ କରିଦେଲା ପରି ଜଣାପଡ଼ିଲା । କୁହାଗଲା ଯେ, ବ୍ରହ୍ମଚାରୀ ପୂଜା ଓ ଧ୍ୟାନରେ ବସିଛନ୍ତି । ସେ ଧ୍ୟାନମଗ୍ନ ଥିବା ଭଳି ବସିଥିବାର ମୁଁ ଦୂରରୁ ଦେଖିଥିଲି । ତାଙ୍କର ସେହି ପୂଜା ଓ ଧ୍ୟାନ କେତେ ସମୟ ଲାଗିବ ବୋଲି କେହି କହିପାରିଲେ ନାହିଁ । ଆଶ୍ରମର କାଗଜପତ୍ର ମାଗିବାରୁ ସେ ସମସ୍ତ ଆଲମାରିରେ ବନ୍ଦରହିଛି ଏବଂ ଚାବିକାଠି ସ୍ୱାମୀଜୀଙ୍କ ପାଖରେ ଅଛି ବୋଲି କୁହାଗଲା । ଜଣେ କର୍ମଚାରୀ ଆମକୁ ଯୋଗାଶ୍ରମ ବୁଲାଇ ଦେଖାଇଥିଲେ ଏବଂ ସେଠାରେ ହେଉଥିବା କାର୍ଯ୍ୟ ସମ୍ବନ୍ଧରେ ବୁଝାଇଥିଲେ । ରେକର୍ଡପତ୍ର ଦେଖିବା ପାଇଁ ମୁଁ ସେଠାକୁ ଯାଇଥିଲି, କିନ୍ତୁ ତାହା ସମ୍ଭବ ହେଲାନାହିଁ । ମୋର ମନେହେଲା ଯେପରି ଆମର ଉପସ୍ଥିତି କଥା ଜାଣିପାରି ସ୍ୱାମୀଜୀ ତାଙ୍କର ପୂଜା ଓ ଧ୍ୟାନ କାଳ ଲମ୍ବେଇବାକୁ ଲାଗିଯାଇଥିଲେ । ତେଣୁ ଆଉ ଅପେକ୍ଷା ନକରି ମୁଁ ସେଠାରୁ ଚାଲିଆସିଥିଲି ଏବଂ ପରେ ଆଉ ଏକ ଅଚାନକ ପରିଦର୍ଶନରେ ଯିବାପାଇଁ ମନସ୍ଥକରିଥିଲି ।

କେତେକ କର୍ମଚାରୀଙ୍କ ଗହଣରେ ମୁଁ ତାଙ୍କ ଆଶ୍ରମକୁ ଅଚାନକ ପରିଦର୍ଶନ କରିବାକୁ ଯିବା ଦ୍ୱାରା ଧୀରେନ୍ଦ୍ର ବ୍ରହ୍ମଚାରୀ ଅତ୍ୟନ୍ତ ଉତ୍‌କ୍ଷିପ୍ତ ହୋଇଥିଲେ ବୋଲି ମୁଁ ଶୁଣିବାକୁ ପାଇଲି । ସେ କୁଆଡ଼େ

ଖୁବ୍ ବିବ୍ରତ ମଧ ହୋଇପଡ଼ିଥିଲେ । ବିଶ୍ୱଆୟତନ ଯୋଗାଶ୍ରମକୁ ମୋର ଅଚାନକ ପରିଦର୍ଶନ କରିବାର ଯେଉଁ ଉଦ୍ଦେଶ୍ୟ ଥିଲା ତାହା ସଫଳ ହୋଇନଥିଲା । ଧୀରେନ୍ଦ୍ର ବ୍ରହ୍ମଚାରୀଙ୍କ ଆଚରଣ ଦେଖି ମୁଁ ଅନୁଭବ କରିଥିଲି ଯେ ସେଠାରେ ଉପୁଜିଥିବା ସମସ୍ୟା ସମାଧାନ କରିବା ଦିଗରେ ବ୍ରହ୍ମଚାରୀଙ୍କଠାରୁ କୌଣସି ସହଯୋଗ ମିଳିବନାହିଁ । ବିଭାଗୀୟ ସଂପୃକ୍ତ ଅଫିସରମାନଙ୍କୁ ଡକାଇ କି ପଦକ୍ଷେପ ନେଲେ ଯୋଗାଶ୍ରମ କର୍ମଚାରୀମାନଙ୍କ ସମସ୍ୟାଗୁଡ଼ିକର ସମାଧାନ ହୋଇପାରିବ ତାହା ଆଲୋଚନା କରିଥିଲି । ଆଶ୍ରମର ପ୍ରତ୍ୟକ୍ଷ ପରିଚାଳନା ଦାୟିତ୍ୱ ସେହି ବ୍ରହ୍ମଚାରୀଙ୍କ ବଦଳରେ ଜଣେ ବିଭାଗୀୟ ଉଚ୍ଚ ଅଫିସରଙ୍କଠାରେ ନ୍ୟସ୍ତ କରାଗଲେ ଆଶ୍ରମ ତଥା କର୍ମଚାରୀମାନଙ୍କ ସମସ୍ୟା ସୁଧୁରିପାରିବ ବୋଲି ମୁଁ ପ୍ରସ୍ତାବ କରିଥିଲି । କିନ୍ତୁ ତଥାକଥିତ ନିଃସ୍ୱାର୍ଥପର ବ୍ରହ୍ମଚାରୀଙ୍କ ପାଖକୁ ଯେତେବେଳେ ଏଭଳି ପ୍ରସ୍ତାବ ଦିଆଗଲା ସେ ତାହାର ଘୋର ବିରୋଧ କରିଥିଲେ । ବିଶ୍ୱଆୟତନ ଯୋଗାଶ୍ରମର ପରିଚାଳନାପାଇଁ ପାର୍ଲାମେଣ୍ଟରେ ଇନ୍ଦିରା ଗାନ୍ଧୀଙ୍କ ସମୟରେ ଗୋଟିଏ ସ୍ୱତନ୍ତ୍ର ଆଇନ ପ୍ରଣୟନ କରାଯାଇଥିଲା । ସେହି ଆଇନ ଅନୁସାରେ ଧୀରେନ୍ ବ୍ରହ୍ମଚାରୀ ଥିଲେ ଯୋଗାଶ୍ରମର ଆଜୀବନ ଅଧକ୍ଷ ଓ ପରିଚାଳନା ନିର୍ଦ୍ଦେଶକ । ଏହି ପରିସ୍ଥିତିରେ ବ୍ରହ୍ମଚାରୀ ସରକାରଙ୍କ ପ୍ରସ୍ତାବରେ ରାଜିନହେଲେ ପ୍ରୋକ୍ତ ଆଇନର ପରିବର୍ତ୍ତନ ନକରି ଯୋଗାଶ୍ରମ ପରିଚାଳନା ସମ୍ବନ୍ଧରେ କିଛି କରିହେବନାହିଁ ବୋଲି ମତ ପ୍ରକାଶ ପାଇଲା । ପାର୍ଲିଆମେଣ୍ଟରେ ସଂଶୋଧନ ପ୍ରସ୍ତାବ ବିଲ୍ ଆଗତ କରିବାର ଆବଶ୍ୟକତା ଥିଲା । ସେହି ଅନୁସାରେ ଚିଠାବିଲ୍ ଓ କ୍ୟାବିନେଟ୍ ଅନୁମୋଦନପାଇଁ ସ୍ମାରକପତ୍ର ପ୍ରସ୍ତୁତ କରିବା ଦିଗରେ ପଦକ୍ଷେପ ନେବାପାଇଁ ଆଲୋଚନା କରାଯାଇଥିଲା । ଶ୍ରୀ ଧୀରେନ୍ଦ୍ର ବ୍ରହ୍ମଚାରୀ ମୋତେ କୌଣସି ମତେ ଅକ୍ତିଆର କରିବାର ଆଶା ଛାଡ଼ିଦେଇଥିଲେ । ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ସରକାର ଆସିବା ପୂର୍ବ ସମୟରୁ ସ୍ୱାମୀ ଧୀରେନ୍ଦ୍ର ନାଥ ବ୍ରହ୍ମଚାରୀଙ୍କ ଲମ୍ବାହାତ କେନ୍ଦ୍ର ସରକାରଙ୍କ ସବୁ ଆଡ଼କୁ ପାଇଥିଲା । ଏ ଅବସ୍ଥାରେ ସେ ଚିନ୍ତାକରିଥିଲେ, ମୂଳୁ ମାଇଲେ ଯିବ ସରି ଦେବଙ୍କ ସଙ୍ଗେ କିମ୍ବା କଳି । ମୋଠାରୁ କୌଣସିମତେ ସ୍ୱାସ୍ଥ୍ୟ ବିଭାଗକୁ କାଢ଼ି ନିଆଯାଇ ପାରିଲେ ତାଙ୍କର ସବୁ ସମସ୍ୟା ଅନ୍ତର ହେବ ବୋଲି ସେ କୁଆଡ଼େ ତତ୍ପର ହୋଇଉଠିଥିଲେ । କହିଲେ ଅପ୍ରାସଙ୍ଗିକ ହେବନାହିଁ ଯେ, ଧୀରେନ୍ଦ୍ର ବ୍ରହ୍ମଚାରୀ କେବଳ ଆକାରରେ ଲମ୍ବା ମଣିଷ ନଥିଲେ, ଶରୀର ତୁଳନାରେ ତାଙ୍କର ହାତ ଦୁଇଟି ପ୍ରକୃତରେ ଅପେକ୍ଷାକୃତ ଅଧିକ ଲମ୍ବା ଥିଲା । ସେ ହାତ ସବୁଆଡ଼କୁ ପାଉଥିଲା । ୧୯୬୯ ମସିହା ଡିସେମ୍ବର ମାସ ଶେଷବେଳକୁ ବମ୍ବେରେ ନିଖିଳ ଭାରତ କଂଗ୍ରେସ ଅଧିବେଶନ ବସିଥାଏ । ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଅଧିବେଶନରେ ଯୋଗଦେବାପାଇଁ ବମ୍ବେ ଯାଇଥା'ନ୍ତି । ଶ୍ରୀ ବ୍ରହ୍ମଚାରୀ ଏହି ଅବସରରେ ବମ୍ବେ ଯାଇ ତାଜମହଲ ହୋଟେଲରେ ରହୁଥିଲେ । ବିଜୁ ପଟ୍ଟନାୟକ ମଧ ସେହି ତାଜମହଲ ହୋଟେଲରେ ରହୁଥିଲେ । ତାଙ୍କ ସହିତ ଦେଖାକରିବାକୁ ମୁଁ ସେଠାକୁ ଯାଇଥିଲି । ସେହିଦିନ ପ୍ରଥମ ଥର ପାଇଁ ମୁଁ ବ୍ରହ୍ମଚାରୀଙ୍କୁ ଦେଖିଥିଲି, ସେ ଲିଫ୍ଟ ପାଖରେ ଠିଆହୋଇଥା'ନ୍ତି । ସେହି ଲିଫ୍ଟ ପାଖକୁ ହଠାତ୍ ଆସିଗଲେ ବିଜୁପଟ୍ଟନାୟକ । ଉଭୟ ଦେଖିବାକୁ ଲମ୍ବକାୟ, କିନ୍ତୁ ସ୍ୱାମୀଜୀଙ୍କ ହାତ ଦୁଇଟି ବିଜୁ ପଟ୍ଟନାୟକଙ୍କ ହାତଠାରୁ ଶରୀର ତୁଳନାରେ ଅଧିକ ଲମ୍ବା ଭଳି ମୋତେ ଦେଖାଯାଉଥିଲା । ସ୍ୱାମୀଜୀ ଲମ୍ବା ଶିଲ୍କୀ ପଞ୍ଜାବି ଓ ଶିଲ୍କ ଚାଦର ପରିଧାନ କରି ଚିକ୍ ଚିକ୍ ଦେଖାଯାଉଥା'ନ୍ତି । ଆବଶ୍ୟକ ହେଲେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ବମ୍ବେ ରହଣି ସମୟରେ ପରାମର୍ଶ ଦେବାପାଇଁ କୁଆଡ଼େ ସେ ସେଠାରେ ରହିବା ଆବଶ୍ୟକ ବୋଲି ଲୋକେ କୁହାକୁହି ହେବାର ମୁଁ ଶୁଣିଛି ।

## ଏକା ଟେକାରେ ଦୁଇଟି ଶିକାର

୧୯୯୦ ଏପ୍ରିଲ ମାସ ପ୍ରଥମ ସପ୍ତାହର ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ମନ୍ତ୍ରିମଣ୍ଡଳର ସାମାଜିକ

ସଂପ୍ରସାରଣ କରାଗଲା । ସେହିଦିନ ଘୋଷଣା ପ୍ରକାଶ ପାଇଲା ଯେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରଣାଳୟଟି ମୋ ହାତରୁ ଚାଲିଗଲା ଏବଂ ଜଙ୍ଗଲ ଓ ପରିବେଶ ମନ୍ତ୍ରଣାଳୟ ଦାୟିତ୍ୱ ମୋ ଉପରେ ନ୍ୟସ୍ତକରାଗଲା । ଅତି ଆଶ୍ଚର୍ଯ୍ୟ ହୋଇଥିଲି, ଏତେ ଶୀଘ୍ର ଏପରି କାହିଁକି ପରିବର୍ତ୍ତନ କରାଗଲା । ବିଭାଗଟି ପରିଚାଳନାରେ ପାରଙ୍ଗମତା ବା ଅପାରଗତା ପ୍ରମାଣିତ କଲାଭଳି ଯଥେଷ୍ଟ ସମୟ ବିତି ନଥିଲା କି ଅସଫଳତାର କୌଣସି ଦୃଷ୍ଟାନ୍ତ ନଥିଲା । ପାର୍ଲିଆମେଣ୍ଟରେ ମୋର କୌଣସି ବିଲ୍ ବା ଖର୍ଚ୍ଚ ଦାବି ଆଲୋଚନା କରିବାର ଅବକାଶ ମଧ୍ୟ ଆସିନଥିଲା । ତେଣୁ ବିଭାଗ ପରିବର୍ତ୍ତନର କାରଣ କ'ଣ ବୁଝିପାରିନଥିଲି । ଯେହେତୁ ବିଭାଗ ବଣ୍ଟନ କାର୍ଯ୍ୟ ପ୍ରଧାନମନ୍ତ୍ରୀଙ୍କର ସଂପୂର୍ଣ୍ଣ ଇଚ୍ଛାଧୀନ, ମୁଁ ଆଉ ସେ ଦିଗରେ କିଛି ପ୍ରଶ୍ନ ନକରି ନୂତନ ଦାୟିତ୍ୱ ଗ୍ରହଣକରିଥିଲି । ଏହାର କିଛିଦିନ ପରେ ପ୍ରଧାନମନ୍ତ୍ରୀଙ୍କ ବାସଭବନରେ କ୍ୟାବିନେଟ୍ ବୈଠକ ହେଲା । ପ୍ରଧାନମନ୍ତ୍ରୀଙ୍କୁ ଗୋଟିଏ ପାଖ ବଖରାକୁ ଡାକିନେଇ ସେ ଏପ୍ରକାର ପରିବର୍ତ୍ତନ କାହିଁକି କଲେ ବୋଲି ପଚାରିଥିଲି । ମୋ କଥା ଶୁଣି ସେ ଟିକିଏ ଅପ୍ରସ୍ତୁତ ହୋଇପଡ଼ିଲା ଭଳି ଜଣାଗଲା । କ୍ଷଣକ ପରେ ସେ କହିଲେ ଯେ, ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟର ଗୁରୁତ୍ୱ ଦୃଷ୍ଟିରୁ ସେ ତାହାର ଦାୟିତ୍ୱ ନିଜ ହାତରେ ରଖିଥିଲେ ଏବଂ ତାଙ୍କ ଅଧୀନରେ ରାଷ୍ଟ୍ରମନ୍ତ୍ରୀ ହିସାବରେ ଥିଲେ ଶ୍ରୀମତୀ ମେନକା ଗାନ୍ଧୀ । ସେ ନିଜେ ସେହି ବିଭାଗ ଦାୟିତ୍ୱ ବୁଝିବାକୁ ସମୟ ନଥିବାରୁ ମେନକା ଗାନ୍ଧୀହିଁ ସବୁ କାମ କରୁଥିଲେ । ଶ୍ରୀ ଅରିଫ୍ ଅହମ୍ମଦ ଓ ଅରୁଣ ନେହେରୁଙ୍କ ସହିତ କ୍ୟାବିନେଟ୍‌ରେ ମେନକା ଗାନ୍ଧୀଙ୍କର ଯେ ପ୍ରକାର ଝଗଡ଼ାହୁଏ ସେ କଥା ସ୍ମରଣ କରିବାକୁ ସେ ମୋତେ କହିଥିଲେ । ସେଥିପାଇଁ ସେ ବିଭାଗ ଦାୟିତ୍ୱରେ ରହିବାପାଇଁ ଜଣେ ଅଭିଜ୍ଞ ସ୍ୱତନ୍ତ୍ର କ୍ୟାବିନେଟ୍ ପାହିଆ ମନ୍ତ୍ରୀଙ୍କର ଆବଶ୍ୟକତା ପଡ଼ିବାରୁ ମୋତେ ସେହି ଦାୟିତ୍ୱରେ ରଖିବାପାଇଁ ସେ ସ୍ଥିରକରିଥିଲେ । ତାଙ୍କ କଥାଟା ଯୁକ୍ତିଯୁକ୍ତ ହେବା ଭଳି ମନେହେଲା । ତଥାପି ମୋ ମନ ବୁଝୁନଥାଏ । ପୂର୍ବରୁ ଧୀରେନ୍ଦ୍ର ବ୍ରହ୍ମଚାରୀ ଓ ସଂଜୟ ଗାନ୍ଧୀଙ୍କ ଭିତରେ କ୍ଷୀରନୀର ଭଳି ଘନିଷ୍ଠତା ଥିଲା । ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ ଓ ସଂଜୟ ଗାନ୍ଧୀଙ୍କ ମଧ୍ୟରେ ଘନିଷ୍ଠ ବନ୍ଧୁତା ମଧ୍ୟ ଥିଲା । ଏହିପରିଭାବେ ବିଶ୍ୱନାଥ ପ୍ରତାପ ସିଂହଙ୍କ ସହିତ ଧୀରେନ୍ଦ୍ର ବ୍ରହ୍ମଚାରୀଙ୍କର ନିଶ୍ଚିତ ଭାବରେ ଜଣାଶୁଣା ଥିଲା, ବନ୍ଧୁତା ଥିବା ମଧ୍ୟ ଅସମ୍ଭବନୁହେଁ । ସେହି ପୂର୍ବ ସଂପର୍କର ସୁଯୋଗନେଇ ବ୍ରହ୍ମଚାରୀ ପ୍ରଧାନମନ୍ତ୍ରୀଙ୍କ ନିଷ୍ପତ୍ତିକୁ ପ୍ରଭାବିତ କରିଛନ୍ତି ବୋଲି ମୁଁ କେତେକ ସୂତ୍ରରୁ ଜାଣିବାକୁ ପାଇଲି । ମୁଁ ସ୍ୱାସ୍ଥ୍ୟବିଭାଗରୁ ଚାଲିଆସିବା ପରେ ଯୋଗାଶ୍ରମ ସମ୍ବନ୍ଧରେ ଆଇନ ସଂଶୋଧନ କରିବାର ପ୍ରସ୍ତାବ କେବଳ ପ୍ରସ୍ତାବରେହିଁ ରହିଗଲା । ଆଉ ସେ ଦିଗରେ କିଛି କାର୍ଯ୍ୟାନୁଷ୍ଠାନ କରାଯାଇନଥିଲା । ସ୍ୱାମୀଜୀ ଆଶ୍ୱସ୍ତି ଲାଭକରିଥିଲେ । ଏକାଟେକାକେ ଦୁଇଟି ଶିକାର ମିଳିବା ପରି ମୋର ଦାୟିତ୍ୱ ପରିବର୍ତ୍ତନଦ୍ୱାରା ତାନ୍ତ୍ରିକ ଗୁରୁ ଧୀରେନ୍ଦ୍ର ବ୍ରହ୍ମଚାରୀ ସନ୍ତୁଷ୍ଟ ହେଲେ ଏବଂ ପରିବେଶ ଓ ଜଙ୍ଗଲ ରାଷ୍ଟ୍ରମନ୍ତ୍ରୀ ଶ୍ରୀମତୀ ମେନକା ଗାନ୍ଧୀଙ୍କ କାର୍ଯ୍ୟକଳାପରେ କ୍ରୁଦ୍ଧ ଉଲ୍ଲିଖିତ ଚାଣୁଆ ମନ୍ତ୍ରୀମାନେ ମଧ୍ୟ ସନ୍ତୁଷ୍ଟ ହେଲେ ।

## ନୂଆ ବିଭାଗ : ଜଙ୍ଗଲି ଶାସନ ଓ ଦୂଷିତ ପରିବେଶ

ପ୍ରଧାନମନ୍ତ୍ରୀ ବିଶ୍ୱନାଥ ପ୍ରତାପ ସିଂହ ତାଙ୍କ କହିବାମତେ ଯେଉଁ କାରଣରୁ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ମନ୍ତ୍ରଣାଳୟ ପରିବର୍ତ୍ତେ ମୋତେ ଜଙ୍ଗଲ ଓ ପରିବେଶ ମନ୍ତ୍ରଣାଳୟ ଦେଇଥାଆନ୍ତୁ ନା କାହିଁକି ମୁଁ ଦାୟିତ୍ୱ ନେବା ପରେ କ୍ରମେ ମୋର ହୃଦ୍‌ବୋଧ ହୋଇଥିଲା ଯେ, ଉଭୟ ବନ୍ୟାସମ୍ପଦ ଓ ପରିବେଶର ସୁରକ୍ଷା ଉଦ୍ଦେଶ୍ୟରେ କ୍ରମେ ଅଧିକ କ୍ଷମତାପନ୍ନ କରାଯାଇଥିବା ଏହି ମନ୍ତ୍ରଣାଳୟର ବିଭିନ୍ନ କାର୍ଯ୍ୟକଳାପକୁ କେତେକ କୁଚକ୍ରୀଙ୍କର କୁମନ୍ତ୍ରଣାଦ୍ୱାରା ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ପ୍ରଭାବିତ କରାଯାଇଥିଲା । ମନ୍ତ୍ରଣାଳୟର ଦାୟିତ୍ୱସମ୍ପନ୍ନ କର୍ମକର୍ତ୍ତାମାନଙ୍କ ଭିତରେ ମଧ୍ୟ ଏକରକମ ନୈରାଶ୍ୟ ଭାବ ଉପୁଜିଥିଲା । କାରଣ ଦେଶର ସାର୍ବଜନୀନ ମଙ୍ଗଳ ଉଦ୍ଦେଶ୍ୟରେ ଏହି ଦୁଇଟି

ବିଭାଗକୁ ପୂର୍ବତନ ପ୍ରଧାନମନ୍ତ୍ରୀଙ୍କ ସମୟରୁ ଅଧିକ କ୍ଷମତାସଂପନ୍ନ କରାଯାଇଥିଲା । କିନ୍ତୁ କେନ୍ଦ୍ର-ସରକାରଙ୍କଦ୍ୱାରା ଆହରଣ କରାଯାଇଥିବା ନୂତନ ଅଧିକାରଗୁଡ଼ିକୁ ଅନେକ ଅପରିଣାମଦର୍ଶୀ ଓ ଉଦ୍ଦେଶ୍ୟପ୍ରଣୋଦିତ ଭାବରେ ପ୍ରୟୋଗ କରାଯାଇଥିବାରୁ ବହୁ ଉନ୍ନୟନମୂଳକ କାର୍ଯ୍ୟରେ ଅନା-ବଶ୍ୟକ ପ୍ରତିବନ୍ଧକ ସୃଷ୍ଟିକରାଯାଇଥିଲା । ପରିବେଶ ସୁରକ୍ଷା ଆଳରେ ନିଜେ ନିଜକୁ ବିଶେଷଜ୍ଞ ବୋଲାଉଥିବା କେତେକ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି ଓ ଅନୁଷ୍ଠାନ ଅବାଞ୍ଛିତ ହସ୍ତକ୍ଷେପ କରି ଏହି ମନ୍ତ୍ରଣାଳୟର କ୍ଷମତାଗୁଡ଼ିକୁ ଦୁଇଧାରିଆ ଛୁରିପରି କେନ୍ଦ୍ର ସରକାରଙ୍କଦ୍ୱାରା ବ୍ୟବହାର କରାଇବାର ମୌକା-ପାଉଥିଲେ । କିନ୍ତୁ ପ୍ରଧାନମନ୍ତ୍ରୀ ଶ୍ରୀ ସିଂହ ଅତ୍ୟନ୍ତ କାର୍ଯ୍ୟବ୍ୟସ୍ତତା ହେତୁ ନିଜ ଦାୟିତ୍ୱରେ ଥିବା ଏହି ମନ୍ତ୍ରଣାଳୟଟି ପ୍ରତି ଯଥେଷ୍ଟ ଦୃଷ୍ଟି ଦେଇପାରୁନଥିଲେ, ରାଷ୍ଟ୍ରମନ୍ତ୍ରୀ ଶ୍ରୀମତୀ ମେନକା ଗାନ୍ଧୀହିଁ କାର୍ଯ୍ୟତଃ ସବୁ କାର୍ଯ୍ୟ କରୁଥିଲେ ଯଦିଓ ସେ ସ୍ୱାଧୀନ ଦାୟିତ୍ୱସଂପନ୍ନ ରାଷ୍ଟ୍ରମନ୍ତ୍ରୀରୂପେ ନିଯୁକ୍ତ ହୋଇନଥିଲେ । ବରିଷ୍ଠ କର୍ମକର୍ତ୍ତାମାନେ ମଧ୍ୟ ପ୍ରଶାସନିକ ଶୃଙ୍ଖଳା ଦୃଷ୍ଟିରୁ ପ୍ରଧାନମନ୍ତ୍ରୀଙ୍କୁ ଏହି ବ୍ୟତିକ୍ରମ ସମ୍ପର୍କରେ କିଛି ଜଣାଇପାରୁନଥିଲେ । ଫଳରେ ମନ୍ତ୍ରଣାଳୟଟିରେ ବାହ୍ୟ ପ୍ରଭାବ କ୍ରମଶଃ ସଂକ୍ରମିତ ହୋଇ ଏକରକମ ମେରିରାୟ ଶାସନ ପ୍ରଶ୍ରୟ ପାଇଥିଲା । ଉଚିତ ପରାମର୍ଶ ଦେବାରୁ କର୍ମଚାରୀମାନେ ରାଷ୍ଟ୍ରମନ୍ତ୍ରୀଙ୍କ କୋପ ଦୃଷ୍ଟିରେ ପଡ଼ୁଥିଲେ । ଏହିଭଳି ବିଶୃଙ୍ଖଳା ହେତୁ ଜଙ୍ଗଲ ଓ ପରିବେଶର ସୁରକ୍ଷା ଓ ଉନ୍ନତିପାଇଁ ଗଠନମୂଳକ ଉଦ୍ୟମ ପରିବର୍ତ୍ତେ ପ୍ରଶାସନିକ ପରିବେଶରେ ଦୟନୀୟ ଓ ଦୂଷିତ ଅବସ୍ଥା ସୃଷ୍ଟିହୋଇଥିଲା । ଏହି ପରିସ୍ଥିତିରେ କାହାରି ସହିତ କୌଣସି ତିକ୍ତତା ସୃଷ୍ଟି ହେବାକୁ ସୁଯୋଗ ନଦେଇ ମୁଁ ମନ୍ତ୍ରଣାଳୟର ପ୍ରଶାସନିକ ବ୍ୟବସ୍ଥାକୁ ସୁଧାରିବାପାଇଁ ଧୀରସ୍ଥିର ଭାବରେ ଉଦ୍ୟମ କରିଥିଲି ।

ସାରା ପୃଥିବୀର ପରିବେଶ ରକ୍ଷା କରିବା ସମ୍ବନ୍ଧରେ ଯେପରି ଚେତନା ଓ ଉଦ୍‌ବେଗ ପ୍ରକାଶ-ପାଉଛି ସେହି ଦୃଷ୍ଟିରୁ ପରିବେଶ ଓ ବନ୍ୟସମ୍ପଦ ସୁରକ୍ଷା କାର୍ଯ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ହୋଇଛି । ଜଙ୍ଗଲ ବିଭାଗଟି ହେଉଛି ରାଜ୍ୟମାନଙ୍କର ଦାୟିତ୍ୱ ପରିସର ଅନ୍ତର୍ଭୁକ୍ତ । ଜଙ୍ଗଲ ରକ୍ଷଣାବେକ୍ଷଣ ପାଇଁ ରାଜ୍ୟ ସରକାରମାନେ ଦାୟୀ । ଦେଶର ଶିଳ୍ପ ପ୍ରସାର, କଳକାରଖାନା ପ୍ରତିଷ୍ଠା ଓ ଅନ୍ୟାନ୍ୟ ନିର୍ମାଣକାର୍ଯ୍ୟମାନ ବୃଦ୍ଧି ପାଇବା ସଂଗେ ସଂଗେ ଆବଶ୍ୟକ ସ୍ଥଳେ ଏହି ଉଦ୍ଦେଶ୍ୟରେ ଜଙ୍ଗଲ ଅଞ୍ଚଳକୁ କାଟି ଆବାଦ ଜମିକୁ ବ୍ୟବହାର କରିବାର ଆବଶ୍ୟକତା ବିଶେଷ ଭାବରେ ବୃଦ୍ଧିପାଉଥିଲା । ଅନେକ ରାଜ୍ୟରେ ମଧ୍ୟ ଉନ୍ନୟନ କାର୍ଯ୍ୟ ଆଳରେ ବିଚାରଶୂନ୍ୟ ଭାବରେ ଜଙ୍ଗଲସଂପଦ ନଷ୍ଟକରାଗଲା । ଏଥିପାଇଁ ପୂର୍ବତନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ନିର୍ଦ୍ଦେଶରେ ଜଙ୍ଗଲ ଆଇନକୁ ସଂଶୋଧନ କରାଯାଇ ଗୋଟିଏ ନୂଆଧାରା ଖଞ୍ଜାଗଲା ଯେ, କେନ୍ଦ୍ର ସରକାରଙ୍କଠାରୁ ଆଗୁଆ ଅନୁମତି ନପାଇ କେହି ଜଙ୍ଗଲ ପରିଷ୍କାର କରିପାରିବେନାହିଁ । ଏପରିକି କୃଷିରେ ଜଳସେଚନପାଇଁ କେନାଲ୍ ଖୋଳା ବା ଜଳଭଣ୍ଡାରପାଇଁ ଜମି ଆବଶ୍ୟକ ପଡ଼ିଲେ ମଧ୍ୟ ସେଥିପାଇଁ କେନ୍ଦ୍ର ସରକାରଙ୍କଠାରୁ ଆଗୁଆ ଅନୁମତି ନେବାର ବିଧିରହିଲା । ଜଙ୍ଗଲ ଭିତରେ ଦେଇ ରାସ୍ତା କିମ୍ବା ରେଳଲାଇନ୍ ନିର୍ମାଣପାଇଁ ମଧ୍ୟ ପରିବେଶ ମନ୍ତ୍ରଣାଳୟଠାରୁ ଆଗୁଆ ଅନୁମତି ଆବଶ୍ୟକହେଲା । ଏହିପ୍ରକାର କଟକଣା ହେତୁ ସାରା-ଦେଶର ଜଙ୍ଗଲସଂପଦ ଉପରେ କେନ୍ଦ୍ର ସରକାରଙ୍କର କର୍ତ୍ତୃତ୍ୱ ବିଶେଷ ଭାବରେ ବୃଦ୍ଧିପାଇଥିଲା ।

## ନୂତନ ଦାୟିତ୍ୱ ଗ୍ରହଣ ଓ ବିଭାଗ ବଣ୍ଟନ ପାଳା

ମୁଁ ନୂତନ ଦାୟିତ୍ୱ ଗ୍ରହଣ କରି ଯେଉଁଦିନ ପ୍ରଥମେ ଅଫିସକୁ ଯାଇଥିଲି, ଶ୍ରୀମତୀ ମେନକା ଗାନ୍ଧୀ ଓ ବିଭାଗୀୟ ଅଫିସରମାନେ ମୋତେ ସ୍ୱାଗତ ଜଣାଇ ମୋ ଅଫିସ କକ୍ଷକୁ ନେଇଯାଇଥିଲେ । ସଚିବ ଶ୍ରୀ ମହେଶ ପ୍ରସାଦ ତାଙ୍କ ଅଧୀନରେ କାର୍ଯ୍ୟ କରୁଥିବା ସମସ୍ତ କର୍ମଚାରୀମାନଙ୍କୁ ମୋ ସହିତ ପରିଚିତ କରାଇଦେଇଥିଲେ । ଅଫିସରମାନେ ଚାଲିଯିବା ପରେ ଶ୍ରୀମତୀ ଗାନ୍ଧୀ ମୋ ପାଖରେ ବସି

ବିଭାଗୀୟ କାର୍ଯ୍ୟ ସମ୍ବନ୍ଧରେ ଆଲୋଚନା କରିଥିଲେ । ଆମେ ଦୁଇଜଣ ବେଶ୍ ଖୋଲାମନରେ କଥାବାର୍ତ୍ତା ହୋଇଥିଲୁ । ମନ୍ତ୍ରଣାଳୟର କେଉଁ କେଉଁ ବିଷୟଗୁଡ଼ିକ ତାଙ୍କ ଦାୟିତ୍ୱରେ ରଖାଯିବ ଏବଂ ମୋ ଦାୟିତ୍ୱରେ ଯାହାସବୁ କାର୍ଯ୍ୟ ରହିବ ସେକଥା ସେ ଜାଣିବାକୁ ଚାହିଁଥିଲେ । ବନ୍ୟସଂପଦ ଓ ପରିବେଶ ବିଭାଗ ଦୁଇଟିଯାକର କାର୍ଯ୍ୟାବଳୀ ମୁଁ ପୂରା ଅନୁଧାନ କରିବା ପର୍ଯ୍ୟନ୍ତ ସେ ଆଗରୁ ରାଷ୍ଟ୍ରମନ୍ତ୍ରୀ ହିସାବରେ ଯେପରି କାର୍ଯ୍ୟ ତୁଲାଉଥିଲେ, ସେହିପରି କରିବେ ଏବଂ ଯେଉଁଗୁଡ଼ିକ କ୍ୟାବିନେଟ୍ ପାହିଆ ମନ୍ତ୍ରୀ ଦେଖିବା କଥା ସେଗୁଡ଼ିକୁ ମଧ୍ୟ ସେ ପ୍ରଥମେ ବିଚାର କରି ମୋ ପାଖକୁ ପଠାଇଦେବେ । କିଛିଦିନ ସେହି ଭାବରେ କାର୍ଯ୍ୟ ଚାଲିଥିଲା । କିଛିଦିନ ଏହିପରି କାର୍ଯ୍ୟ ଚାଲିଲା ପରେ ରାଷ୍ଟ୍ରମନ୍ତ୍ରୀ ଶ୍ରୀମତୀ ମେନକା ଗାନ୍ଧୀ ବିଭାଗ ବଣ୍ଟନ ସମ୍ବନ୍ଧରେ ପୁଣି ଆଗ୍ରହ ପ୍ରକାଶ କଲେ । ଏକରକମ ଚାପ ପକାଇବା ଭଳି କଥା କହିଲେ । ଇତିମଧ୍ୟରେ କେନ୍ଦ୍ରର ବହୁ ମନ୍ତ୍ରଣାଳୟରେ ମନ୍ତ୍ରୀ ଓ ରାଷ୍ଟ୍ରମନ୍ତ୍ରୀମାନଙ୍କ ମଧ୍ୟରେ କାର୍ଯ୍ୟବଣ୍ଟନ ହୋଇଯାଇଥାଏ । ଶ୍ରୀମତୀ ଗାନ୍ଧୀ ଚାହିଁଥିଲେ ଯେଉଁଭଳି ଅନ୍ୟ ମନ୍ତ୍ରଣାଳୟର ବିଭାଗଗୁଡ଼ିକରେ ବରିଷ୍ଠ ଓ କନିଷ୍ଠ ମନ୍ତ୍ରୀମାନଙ୍କ ମଧ୍ୟରେ ଦାୟିତ୍ୱ ବଣ୍ଟନ କରାଯାଇଛି, ଆମ ମଧ୍ୟରେ ବି ସେହିପରି କରାଯାଉ । ପରସ୍ପର ସଦ୍‌ଭାବ ଓ ବୁଝାମଣା ରଖି କାର୍ଯ୍ୟକଲେ ଏହା ଅନାବଶ୍ୟକ ବୋଲି ମୁଁ ତାଙ୍କୁ ବୁଝାଇଥିଲି, ଏବଂ ସବୁ ଫାଇଲ୍ ସେ ପ୍ରଥମେ ଦେଖି ତାଙ୍କର ମତାମତ ଦେଇ ମୋ ପାଖକୁ ପଠାଇବାକୁ ପରାମର୍ଶ ଦେଇଥିଲି । ଅଯଥା ହସ୍ତକ୍ଷେପ କରିବା ମୋର ପ୍ରକୃତିବିରୁଦ୍ଧ । ତେଣୁ ସେ ସୁବିଚାର କରି ଯାହା ସୁପାରିସ୍ କରିଥିବେ ପ୍ରାୟ ତାହାହିଁ ହେବ ଏବଂ ଯେଉଁଠି ମୋର ଭିନ୍ନ ମତ ରହିବ ମୁଁ ତାଙ୍କୁ ଡକାଇ ଆଲୋଚନା କରି ନିଷ୍ପତ୍ତି ନେବିବୋଲି ପ୍ରତିଶ୍ରୁତି ଦେଇଥିଲି । କିନ୍ତୁ ସେ ଅସନ୍ତୁଷ୍ଟ ହୋଇ ଫେରିଥିଲେ । ତାହା ପରେ ଜଙ୍ଗଲ ସଫେଇପାଇଁ ଅନୁମତି ଦେବା ଓ ଗୋଟେ ଦୁଇଟି ଉଚ୍ଚ ପାହ୍ୟା ନିଯୁକ୍ତି ସମ୍ବନ୍ଧରେ ତାଙ୍କ ମତ ସହିତ ମୁଁ ଏକମତ ହୋଇପାରିନଥିଲି । ସେଥିରେ ସେ ଅସୁଖୀହୋଇ ପୁଣି ସେହି ବିଭାଗ ବଣ୍ଟନ କଥା ଉଠାଇଥିଲେ । ଏଥର କାର୍ଯ୍ୟବଣ୍ଟନପାଇଁ ମୁଁ ମୋର ସମ୍ମତି ଜଣାଇଥିଲି । ଅନ୍ୟାନ୍ୟ ମନ୍ତ୍ରଣାଳୟରେ ମନ୍ତ୍ରୀ ଓ ରାଷ୍ଟ୍ରମନ୍ତ୍ରୀଙ୍କ ମଧ୍ୟରେ ଯେପରି କାର୍ଯ୍ୟଭାର ବଣ୍ଟାଯାଇଥିଲା ସେହି ପ୍ରକାର ବ୍ୟବସ୍ଥା ଆମ ମନ୍ତ୍ରଣାଳୟରେ କରାଯିବ ବୋଲି ଇଙ୍ଗିତ ଦେଇଥିଲି । କିନ୍ତୁ ଶ୍ରୀମତୀ ମେନକା ଗାନ୍ଧୀ ଇଚ୍ଛା ପ୍ରକାଶ କରିଥିଲେ ଯେ ମୁଁ ଦାୟିତ୍ୱ ନେବାପୂର୍ବରୁ ପ୍ରଧାନମନ୍ତ୍ରୀ ନିଜେ ଦୟିତ୍ୱରେ ଥିବାବେଳେ ତାଙ୍କୁ ଯେଉଁ ସବୁ କାର୍ଯ୍ୟଗୁଡ଼ିକ ଦିଆଯାଇଥିଲା ଏବେ ମଧ୍ୟ ତାହାହିଁ କରାଯାଉ । କାର୍ଯ୍ୟବ୍ୟସ୍ତ ପ୍ରଧାନମନ୍ତ୍ରୀ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ ଏହି ବିଭାଗର ମନ୍ତ୍ରୀ ହିସାବରେ କେବଳ ବିଭାଗୀୟ ନୀତି ନିର୍ଦ୍ଧାରଣରେ ମତାମତ ଦେଉଥିଲେ । ତା'ଛଡ଼ା ରାଷ୍ଟ୍ରମନ୍ତ୍ରୀ ଯାହା ଚାହୁଁଥିଲେ ତାହାହିଁ ତାଙ୍କ ପାଖକୁ ଯାଉଥିଲା । ମେନକାଙ୍କର ଏହି ପ୍ରସ୍ତାବରେ ମୁଁ ରାଜିହୋଇନଥିଲି । କାରଣ ମନ୍ତ୍ରଣାଳୟଟିକୁ ପୂର୍ବବତ୍ ପରିଚାଳନା କରିବାର ଥିଲେ ଜଣେ କ୍ୟାବିନେଟ୍ ପାହିଆ ମନ୍ତ୍ରୀଙ୍କୁ ସ୍ୱତନ୍ତ୍ରଭାବେ ନିଯୁକ୍ତ କରିବାର ଆବଶ୍ୟକତା ଆଦୌ ନଥିଲା । ଆଲୋଚନା ପ୍ରସଙ୍ଗରେ ସେ ଠଉରେଇ ନେଇଥିଲେ ଯେ, ନୀତି ନିର୍ଦ୍ଧାରଣ ପ୍ରସଙ୍ଗଗୁଡ଼ିକ ସଂଗେ ସଂଗେ ଅନ୍ୟାନ୍ୟ ଅଧିକ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ ଏବଂ ଉଚ୍ଚପାହିଆ ଅଫିସରମାନଙ୍କ ନିଯୁକ୍ତି ଓ ବଦଳି ସମ୍ବନ୍ଧୀୟ ବିଷୟଗୁଡ଼ିକ କ୍ୟାବିନେଟ୍‌ପାହିଆ ମନ୍ତ୍ରୀଙ୍କ ଅଧୀନରେ ରହିବା ଆବଶ୍ୟକ । ଏହି ନୀତିଗତ ଓ ଅନୁସୃତ ପରଂପରା ପ୍ରସଙ୍ଗ ତାଙ୍କୁ ଅସନ୍ତୁଷ୍ଟ କରିବାର ମୁଁ ଲକ୍ଷ୍ୟ କରିଥିଲି । ମୋର ଅଜ୍ଞାତରେ ଯେ କୌଣସି ଉପାୟରେ ମୋର କୋହଳ ଆଚରଣର ସୁଯୋଗ ନେଇ ତାଙ୍କର ଈପ୍‌ସିତ କ୍ଷମତାଗୁଡ଼ିକ ତାଙ୍କ ହାତକୁ ନେଇଯିବାପାଇଁ ସେ ବୋଧେ ମଉକା ଉଣ୍ଡୁଥିଲେ । ମନ୍ତ୍ରଣାଳୟର ସମସ୍ତ କାର୍ଯ୍ୟ ତାଲିକା ଯାଞ୍ଚ କରି ଆଭ୍ୟନ୍ତରୀଣ ଦାୟିତ୍ୱ ବଣ୍ଟନର ବ୍ୟବସ୍ଥା କରିବାପାଇଁ ମୁଁ ଧ୍ୟାନଦେଉଥାଏ । ଏତିକିବେଳେ ମୋର ଅଗୋଚରରେ ଶ୍ରୀମତୀ ଗାନ୍ଧୀ ନିଜ ଅଫିସରେ ମନ୍ତ୍ରୀ ଓ ରାଷ୍ଟ୍ରମନ୍ତ୍ରୀଙ୍କ ମଧ୍ୟରେ କାର୍ଯ୍ୟ ବଣ୍ଟନର ତାଲିକା ତିଆରିକରିଥିଲେ । ଜଙ୍ଗଲ

ଉଚ୍ଛେଦ ସହିତ ଯେତେ ଗୁରୁତ୍ୱପୂର୍ଣ୍ଣ ବିଷୟ ରାଷ୍ଟ୍ରମନ୍ତ୍ରୀ ଦାୟିତ୍ୱରେ ରଖି ନୀତି ନିର୍ଦ୍ଧାରଣ ଏବଂ ଅନ୍ୟାନ୍ୟ କେତେକ ଗୌଣ ବିଷୟ ମନ୍ତ୍ରୀଙ୍କ ଜିମାରେ ଦେଇ ସେ ଗୋଟିଏ ଚିଠା ବିଜ୍ଞପ୍ତି (Draft Notification) ପ୍ରସ୍ତୁତ କରିଥିଲେ ଏବଂ ସେହି ଚିଠାଟି ମୋ ସମ୍ମତିକ୍ରମେ କରାହୋଇଛି ବୋଲି ଧାରଣା ସୃଷ୍ଟିକରାଇ ସେହି ବିଜ୍ଞପ୍ତି ଜାରିକରାଇବାକୁ ସେକ୍ରେଟେରୀ ଶ୍ରୀ ମହେଶ ପ୍ରସାଦଙ୍କୁ କହିଥିଲେ । ମାତ୍ର ନିଜର ପୂର୍ବ ଅନୁଭୂତି ହେତୁ ମହେଶ ପ୍ରସାଦଙ୍କ ମନରେ ସ୍ୱତଃ ବିସ୍ମୟ ଓ ସନ୍ଦେହ ଜାତହେଲା । ସେହି ଚିଠା ବିଜ୍ଞପ୍ତିଟିକୁ ସେ ମୋର ପ୍ରାଇଭେଟ୍ ସେକ୍ରେଟେରୀଙ୍କ ଦୃଷ୍ଟିକୁ ଆଣି ମୋର ମତ ଜାଣିବାକୁ ଚାହିଁଥିଲେ । ଏସବୁ ମୋର ଅଜ୍ଞାତରେ ଏବଂ ମୋର ଲେଶମାତ୍ର ସମ୍ମତି ବ୍ୟତିରେକେ କରାଯାଇଛି ବୋଲି ସେ ଜାଣିଲେ । ତେଣୁ ସରକାରୀ ବିଜ୍ଞପ୍ତି ଜାରିନକରି ସେ ଫାଇଲ ମୋ ପାଖକୁ ପଠାଇଦେଇଥିଲେ । ସତର୍କତା ଅବଲମ୍ବନ ନକରି ଯଦି ସେ ତାହା ସରକାରୀ ଆଦେଶନାମା ରୂପେ ଜାରି କରି ଦେଇଥା'ନ୍ତେ, ତେବେ ଏଭଳି ଏକ ବିଜ୍ଞପ୍ତିର ବିବରଣ ନିଶ୍ଚୟ ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହୋଇଯାଇଥାନ୍ତା । ତାହା ପରେ ଯଦି ମୁଁ ତା'ର ପ୍ରତିବାଦ କରିଥା'ନ୍ତି, ତେବେ ମୁଁ ନିର୍ବୋଧତୁଲ୍ୟ ଆଦେଶକୁ ପଛରେ ଅସ୍ୱୀକାର କରୁଛି ବୋଲି ଧାରଣା ସୃଷ୍ଟି ହେବାର ଅବକାଶ ଥିଲା । ମୋ ପାଇଁ ସେହିଭଳି ଏକ ବାଧ୍ୟତାମୂଳକ ଓ ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରି ଅପବାଦ ଦେବା ମେନକା ଗାନ୍ଧୀଙ୍କର ଉଦ୍ଦେଶ୍ୟ ଥିଲା ବୋଲି ମୋର ବିଶ୍ୱାସ ହୋଇଥିଲା ।

ଏହାପରେ ମୁଁ ବିଭାଗୀୟ କାର୍ଯ୍ୟ ବଣ୍ଟନକରିଥିଲି । ଜଙ୍ଗଲ ଉଚ୍ଛେଦ ବା ଜଙ୍ଗଲ କାଟିବାପାଇଁ ଅନୁମତି ନଦେବାପାଇଁ ବହୁ ସତର୍କତା ସହିତ ଜନସ୍ୱାର୍ଥକୁ ନିରପେକ୍ଷ ଭାବରେ ବିଚାରକୁ ନେଇ ନିଷ୍ପତ୍ତି ନେବା ଆବଶ୍ୟକ । ଉଦ୍ଦେଶ୍ୟମୂଳକ ନିଷ୍ପତ୍ତି କ୍ଷମତା ମୋହ ବା ବ୍ୟକ୍ତିଗତ ଉଦ୍ଦେଶ୍ୟକୁ ସନ୍ତୁଷ୍ଟ କରିପାରେ, ମାତ୍ର ଜାତୀୟ ସ୍ୱାର୍ଥ ତଦ୍ୱାରା ବ୍ୟାହତ ହୋଇଥାଏ । ଅନେକ କ୍ଷେତ୍ରରେ ଏହି ଦାୟିତ୍ୱଟି ନେବାପାଇଁ ମେନକା ଗାନ୍ଧୀଙ୍କର ବିଶେଷ ଲୋଭ ଥାଏ । ତେଣୁ ବିଭାଗୀୟ କାର୍ଯ୍ୟବଣ୍ଟନ କଲାବେଳେ ଏହି ଡିପାର୍ଟମେଣ୍ଟ ସହିତ ଅନ୍ୟାନ୍ୟ କେତେକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ନିଜ ଦାୟିତ୍ୱରେ ରଖିଥିଲି । ଅତି ବରିଷ୍ଠ କର୍ମଚାରୀମାନଙ୍କର ଚାକିରି ସଂପର୍କୀୟ ବିଷୟ କ୍ୟାବିନେଟ୍ ମନ୍ତ୍ରୀଙ୍କ ଦାୟିତ୍ୱରେ ରଖି ଅବଶିଷ୍ଟ କର୍ମଚାରୀମାନଙ୍କ ଚାକିରି ବିଷୟ ରାଷ୍ଟ୍ରମନ୍ତ୍ରୀଙ୍କୁ ଦିଆଯାଇଥିଲା । ବିଭିନ୍ନ ପ୍ରଦୂଷଣ ବୋର୍ଡ ମଧ୍ୟରୁ କେତେକ ମୋ ପାଖରେ ରଖାଯାଇଥିଲା ଓ ଅନ୍ୟଗୁଡ଼ିକ ଶ୍ରୀମତୀ ଗାନ୍ଧୀଙ୍କୁ ଦିଆଯାଇଥିଲା । ଗଙ୍ଗାନଦୀ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ ମେନକା ଗାନ୍ଧୀଙ୍କ ପାଖରେ ରଖାଯାଇଥିଲା ଏବଂ ତାହା ସହିତ ଦିଲ୍ଲୀ ଚିଡ଼ିଆଖାନାର ଦାୟିତ୍ୱ ମଧ୍ୟ ତାଙ୍କ ପାଖରେ ରଖାଯାଇଥିଲା । ମେନକା ଗାନ୍ଧୀ ଆଦୌ ଖୁସି ହୋଇନଥିଲେ ଏବଂ ଖବର କାଗଜରେ ତାଙ୍କର ପ୍ରତିକ୍ରିୟା ପ୍ରକାଶକରି ତାଙ୍କୁ ବିଦ୍ରୂପ କରିବା ଉଦ୍ଦେଶ୍ୟରେ ଚିଡ଼ିଆଖାନା ଦାୟିତ୍ୱରେ ରଖାଯାଇଛି ବୋଲି କହିଥିଲେ । ଏ ପ୍ରକାର ବିଭାଗ ବଣ୍ଟନ କରିବାର ଅଧିକାର ମୋର ନାହିଁ ବୋଲି ଅହେତୁକ ନୀତିଗତ ପ୍ରଶ୍ନ ଉଠାଇ ନାନା ବିବୃତି ଦେଇଥିଲେ । ମେନକା ଗାନ୍ଧୀ ଓ ତାଙ୍କ ପାଖ ଲୋକମାନଙ୍କର ଧାରଣା ଥିଲା ଯେ, ମନ୍ତ୍ରୀ ଓ ତାଙ୍କ ଅଧୀନରେ ଥିବା ରାଷ୍ଟ୍ରମନ୍ତ୍ରୀଙ୍କ ମଧ୍ୟରେ ବିଭାଗ ବଣ୍ଟନ କାର୍ଯ୍ୟଟି ପ୍ରଧାନମନ୍ତ୍ରୀଙ୍କଦ୍ୱାରା ଅନୁମୋଦିତ ନହେଲେ ତାହା କାର୍ଯ୍ୟକାରୀ ହୋଇପାରିବନାହିଁ । କେତେକ ଖବରକାଗଜ ମଧ୍ୟ ଏହିପରି ଧାରଣାରେ ବଶବର୍ତ୍ତୀ ଥାଇ ମୋର କାର୍ଯ୍ୟକୁ ସମାଲୋଚନା କରିଥିଲେ । ମାତ୍ର ପୂର୍ବତନ କ୍ୟାବିନେଟ୍ ସେକ୍ରେଟେରୀ ଅଭିଜ୍ଞ ପ୍ରଶାସକ ଶ୍ରୀ ଆଲେକଜାଣ୍ଡାର ତାଙ୍କଦ୍ୱାରା ପ୍ରକାଶିତ "The Week" ସମ୍ବାଦପତ୍ରରେ ମୋ କାର୍ଯ୍ୟକୁ ପୂର୍ଣ୍ଣ ସମର୍ଥନ ଜଣାଇ ବହୁ ବର୍ଷ ତଳର ନଜିର ମଧ୍ୟ ଉପସ୍ଥାପନ କରୁଥିଲେ । କେନ୍ଦ୍ରମନ୍ତ୍ରୀ ଶ୍ରୀ କର୍ମକାର ଓ ତାଙ୍କ ଅଧୀନରେ ରାଷ୍ଟ୍ରମନ୍ତ୍ରୀ ଥିବା ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ମଧ୍ୟରେ ଏ ପ୍ରକାର ମତଭେଦ ଉପୁଜିବା ପରେ କ୍ୟାବିନେଟ୍ ମନ୍ତ୍ରୀ କର୍ମକାରଙ୍କର ଏ ପ୍ରକାର ସ୍ୱାଧିକାର ଥିଲା ବୋଲି ସାବ୍ୟସ୍ତ ହୋଇଥିବା ଘଟଣା ପ୍ରତି ସେ ଦୃଷ୍ଟି ଆକର୍ଷଣ କରିଥିଲେ ।

ପରେ ଜଣାପଡ଼ିଲା ଯେ, ଏହି ସ୍ୱାଧିକାର ପ୍ରଶ୍ନ ପ୍ରତି ମେନକା ଗାନ୍ଧୀ ପ୍ରଧାନମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ମାତ୍ର ପ୍ରଧାନମନ୍ତ୍ରୀ ଅଯଥା ହସ୍ତକ୍ଷେପ କରିବାକୁ ଇଚ୍ଛା କରିନଥିଲେ । ଏଥିପାଇଁ ସେ ପ୍ରଧାନମନ୍ତ୍ରୀଙ୍କ ପ୍ରତି କୁଆଡ଼େ ବିମୁଖ ହୋଇପଡ଼ିଥିଲେ ଏବଂ ତାଙ୍କ କାର୍ଯ୍ୟକୁ କଟୁ ସମାଲୋଚନା କରି ଅନ୍ୟମାନଙ୍କ ଆଗରେ ଘୋର ଅସନ୍ତୋଷ ପ୍ରକାଶ କରିଥିଲେ ।

## ବିକାଶ ପଥରେ ପରିବେଶ ଅଙ୍କୁଶ

ଉନ୍ନୟନ ଓ ବିକାଶଶୀଳ କାର୍ଯ୍ୟ ଏବଂ ପରିବେଶ ସୁରକ୍ଷା ମଧ୍ୟରେ ଭାରସାମ୍ୟ ରକ୍ଷାକରିବା କେନ୍ଦ୍ର ସରକାରଙ୍କର ଥିଲା ନିର୍ଦ୍ଧାରିତ ନୀତି ଓ ପନ୍ଥା । କେନ୍ଦ୍ର ସରକାରଙ୍କର ରାଷ୍ଟ୍ରମନ୍ତ୍ରୀ ଥାଇ ମଧ୍ୟ ଶ୍ରୀମତୀ ମେନକା ଗାନ୍ଧୀ ଏ ପ୍ରକାର ନୀତି ଓ ବିଚାରକୁ ପସନ୍ଦକରୁନଥିଲେ । ମୁଁ ଦାୟିତ୍ୱ ନେବାପୂର୍ବରୁ ଯେଉଁ କେତେ ମାସ ମେନକା ଗାନ୍ଧୀ ପ୍ରଧାନମନ୍ତ୍ରୀଙ୍କ ଅଧୀନରେ ରାଷ୍ଟ୍ରମନ୍ତ୍ରୀ ଭାବରେ ଏହି ବିଭାଗର ଦାୟିତ୍ୱ ତୁଲାଉଥିଲେ, ସେ ଉପରୋକ୍ତ ନୀତି ଓ ପନ୍ଥାରୁ ବିଚ୍ୟୁତହୋଇ ଭାରତକୁ ଗୋଟିଏ ସମୃଦ୍ଧିଶାଳୀ ଓ ବିକାଶଶୀଳ ଦେଶକରି ଗଢ଼ିବାର ଆଦର୍ଶକୁ ଏକାବେଳକେ ଜଳାଞ୍ଜଳି ଦେଇଥିଲେ । ଏହି ସମୟ ମଧ୍ୟରେ ଦେଶରେ ବିଭିନ୍ନ ରାଜ୍ୟରେ ଗଢ଼ିଉଠିଥିବା ପ୍ରାୟ ପାଞ୍ଚ ଶହରୁ ଊର୍ଦ୍ଧ୍ୱ ଛୋଟ ବଡ଼ ଉନ୍ନୟନ ପ୍ରକଳ୍ପଗୁଡ଼ିକୁ ଜଙ୍ଗଲ ସଫେଇ ଓ ପରିବେଶ ସୁରକ୍ଷା ସଂକ୍ରାନ୍ତ ଯଥା ସଂଗତ ଅନୁମତି ନଦେଇ, ଏପରିକି ସେଭଳି ଅନୁମତି ଦିଆଯାଇ ସାରିଥିବା ଆଦେଶନାମାକୁ ରଦ୍ଦ କରି ପ୍ରଗତିର ପଥ ଅବରୁଦ୍ଧ କରିରଖିଥିଲେ । ଏହିସବୁ ପ୍ରକଳ୍ପ ମଧ୍ୟରେ ନର୍ମଦା ନଦୀ ଉପରେ ଗୁଜୁରାଟ ରାଜ୍ୟର ସର୍ଦ୍ଦାର ସରୋବର ଯୋଜନା ଓ ଉତ୍ତର ପ୍ରଦେଶର ତେହେରି ହାଇଡ୍ରୋ ଇଲେକ୍‌ଟ୍ରିକ୍ ଯୋଜନା ଭଳି ବିଶାଳ ପ୍ରକଳ୍ପଗୁଡ଼ିକଠାରୁ ଆରମ୍ଭକରି ଓଡ଼ିଶାରେ ମୟୂରଭଞ୍ଜରେ ଅବସ୍ଥିତ ଦେଓ ଜଳସେଚନ ପ୍ରକଳ୍ପ, ସୁବର୍ଣ୍ଣରେଖା ଉପରେ ନିର୍ମିତ ଚାନ୍ଦିଲ ବନ୍ଧ ଏବଂ ଚାନ୍ଦିଲି ଜଳ ଭଣ୍ଡାରଠାରୁ ଜଳ ସେଚନପାଇଁ ମୟୂରଭଞ୍ଜରେ କେନାଲ ଖୋଳା ଯୋଜନା ମଧ୍ୟ ଅନ୍ତର୍ଭୁକ୍ତ ଥିଲା । ମୁଁ ଦାୟିତ୍ୱ ନେବାପରେ ଗୁଜୁରାଟ, ମହାରାଷ୍ଟ୍ର, ମଧ୍ୟପ୍ରଦେଶ, ଓଡ଼ିଶା ଓ ଆନ୍ଧ୍ର ପ୍ରଦେଶ ପ୍ରଭୃତି ରାଜ୍ୟର ମୁଖ୍ୟମନ୍ତ୍ରୀମାନେ ମୋତେ ଭେଟି ସେମାନଙ୍କ ରାଜ୍ୟରେ ଯେଉଁସବୁ ଯୋଜନାକୁ ପରିବେଶ ସୁରକ୍ଷା ଆଳରେ କାର୍ଯ୍ୟକାରୀ କରିବାପାଇଁ ଅନୁମତି ଦିଆଯାଇନାହିଁ ବା ମିଳିସାରିଥିବା ଅନୁମତି ରଦ୍ଦ କରାଯାଇଛି ସେଗୁଡ଼ିକ ପ୍ରତି ମୋର ଦୃଷ୍ଟି ଆକର୍ଷଣ କରିଥିଲେ ଏବଂ ତୁରନ୍ତ କାର୍ଯ୍ୟାନୁଷ୍ଠାନପାଇଁମୋତେ ଅନୁରୋଧ କରିଥିଲେ । ଓଡ଼ିଶାରେ ଛୋଟ ଓ ମଧ୍ୟମ ଧରଣର ଜଳସେଚନ ଓ ବିଦ୍ୟୁତ୍ କରଣ ଯୋଜନା କେନ୍ଦ୍ର ସରକାରଙ୍କ ନିକଟରେ ଅଟକି ରହିଛି ବୋଲି ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ମୋ ଦୃଷ୍ଟିକୁ ଆଣିଥିଲେ । ବିକାଶ ପଥରେ ଅବାଞ୍ଛିତ ଅଙ୍କୁଶ ଦୂରକରିବାପାଇଁ ମୁଁ ତୁରନ୍ତ ଉଦ୍ୟମ ଆରମ୍ଭ କରିଦେଇଥିଲି । ଶ୍ରୀମତୀ ମେନକା ଗାନ୍ଧୀଙ୍କ ଅବୁଝାମଣା ଆଚରଣ ହେତୁ ବିଭାଗୀୟ ଅଫିସରମାନେ ଏ ସଂପର୍କୀୟ କାଗଜପତ୍ରକୁ ତାଲା ଦେଇ ରଖିଥିଲେ । କେନ୍ଦ୍ର ସରକାର ଯଥାଶୀଘ୍ର ସଂଗତ ତଥା ଉଦାର ନିଷ୍ପତ୍ତି ନେବା ସପକ୍ଷରେ ମୋର ମନୋଭାବ ଜାଣି ଅଫିସରମାନେ ଉତ୍ସାହିତ ହୋଇଥିଲେ ଓ ଅବାଞ୍ଛିତ ପ୍ରତିବନ୍ଧକ ଦୂରକରିବା ଦିଗରେ ମୋତେ ସାହାଯ୍ୟ କରିଥିଲେ ।

ସର୍ଦ୍ଦାର ସରୋବର ପ୍ରକଳ୍ପ ଗୋଟିଏ ବିଶାଳ ଯୋଜନା । ଏହାଦ୍ୱାରା ଜଳକ୍ଲିଷ୍ଟ ଗୁଜୁରାଟ ରାଜ୍ୟ ବିଶେଷ ଭାବରେ ଉପକୃତ ହେବ । ମହାରାଷ୍ଟ୍ର, ମଧ୍ୟପ୍ରଦେଶ ମଧ୍ୟ ଏହି ପ୍ରକଳ୍ପଦ୍ୱାରା ଉପକୃତ ହେବେ । ଏହି ପ୍ରକଳ୍ପପାଇଁ ଗୁଜୁରାଟର ମୁଖ୍ୟମନ୍ତ୍ରୀ ଶ୍ରୀ ଚିମନଭାଇ ପଟେଲ ଓ ମହାରାଷ୍ଟ୍ରର ମୁଖ୍ୟମନ୍ତ୍ରୀ ଶ୍ରୀ ଶରଦ ପାୱାର ମୋତେ ବହୁବାର ଭେଟିଥିଲେ । ଶ୍ରୀମତୀ ମେନକା ଗାନ୍ଧୀ ଏହି ପ୍ରକଳ୍ପଟିକୁ ନକରେଇ ଦେବାପାଇଁ ଯେଉଁସବୁ କାର୍ଯ୍ୟ କରିଥିଲେ ସେଥିପ୍ରତି ମୋର ଦୃଷ୍ଟି ଆକର୍ଷଣ କରିଥିଲେ । ଏହା ଗୋଟିଏ ଜାତୀୟ ପ୍ରକଳ୍ପ । ଏହି ପ୍ରକଳ୍ପରେ ସେତେବେଳେ ୬୪୦୬ କୋଟି ଟଙ୍କା ଖର୍ଚ୍ଚ

କରାଯିବାର ଅଟକଳ କରାଯାଇଥିଲା । ଏହି ପ୍ରକଳ୍ପଦ୍ୱାରା ଗୁଜୁରାଟରେ ଅଠର ଲକ୍ଷ ହେକ୍ଟର ଜମି ଜଳସେଚିତ କରାଯାଇପାରିବ ବୋଲି ଅଟକଳ କରାଯାଇଥିଲା । ରାଜସ୍ଥାନରେ ପ୍ରାୟ ଏକ ଲକ୍ଷ ହେକ୍ଟର ଜମିକୁ ମଧ୍ୟ ଏହି ପ୍ରକଳ୍ପଦ୍ୱାରା ଜଳସେଚିତ ହୋଇପାରିବା ସମ୍ଭବପର ହେଉଥିଲା । ଏହାର ଉପକାରିତା ସମ୍ବନ୍ଧରେ ମୋର ହୃଦ୍‌ବୋଧ ହେବାରୁ ମୁଁ ସବୁପ୍ରକାର ବାଧାବିଘ୍ନକୁ ନିୟମାନୁସାରେ ଅତିକ୍ରମ କରି ପ୍ରକଳ୍ପଟିକୁ ଆବଶ୍ୟକୀୟ ଅନୁମତି ପ୍ରଦାନ କରିଥିଲି । କେନ୍ଦ୍ର କ୍ୟାବିନେଟ୍ ମଧ୍ୟ ସଂଗେ ସଂଗେ ଏହି ଅନୁମତିକୁ ଅନୁମୋଦନ କରିଥିଲା । ସେହିଭଳି ଉତ୍ତରପ୍ରଦେଶର ଟେହେରି ହାଇଡ୍ରୋ ଇଲେକ୍‌ଟ୍ରିକ୍ ପ୍ରୋଜେକ୍ଟ ଗୋଟିଏ ବିରାଟ ପ୍ରକଳ୍ପ । ଏହାଦ୍ୱାରା ୨୪୦୦ ମେଗାୱାଟ ବିଦ୍ୟୁତ୍ ଶକ୍ତି ଉତ୍ପନ୍ନ ହେବା ସଂଗେ ସଂଗେ ପ୍ରାୟ ପାଞ୍ଚ ଲକ୍ଷ ହେକ୍ଟର ଜମିକୁ ଜଳସେଚନ କରାଯାଇ ପାରିବା କଥା । ଏହି ପ୍ରକଳ୍ପଟିକୁ ନକରାଇ ଦେବାପାଇଁ ଶ୍ରୀମତୀ ମେନକା ଗାନ୍ଧୀ ସମସ୍ତ ପ୍ରକାର ପ୍ରତିବନ୍ଧକ ସୃଷ୍ଟି କରିଥିଲେ । ଶ୍ରୀ ସୁନ୍ଦରଲାଲ ବହୁଗୁଣାଙ୍କ ପରି ପରିବେଶ ସୁରକ୍ଷା ଉଦ୍ୟୋଗୀମାନଙ୍କ ନେତୃତ୍ୱରେ ଏହି ପ୍ରକଳ୍ପ ବିରୋଧରେ ଯେଉଁ ଆନ୍ଦୋଳନ ହେଉଥାଏ । ତାହା ମେନକା ଗାନ୍ଧୀଙ୍କୁ ସୁହାଉଥାଏ । ଏହି ପ୍ରକଳ୍ପ ସମ୍ବନ୍ଧରେ କୌଣସି ବିଷୟ ମନ୍ତ୍ରିମଣ୍ଡଳରେ ଉଠିଲେ ଶକ୍ତି ମନ୍ତ୍ରୀ ଶ୍ରୀ ଅରିଫ୍ ଅହମ୍ମଦ ଓ ମେନକା ଗାନ୍ଧୀଙ୍କ ମଧ୍ୟରେ କଳହ ଲାଗିଅପ୍ରୀତିକର ବାକ୍ୟ ବିନିମୟ ହୁଏ । ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ ନୀରବ ଦ୍ରଷ୍ଟା ସାଜି ସବୁକଥା ଶୁଣନ୍ତି, ମାତ୍ର କିଛି କହନ୍ତିନାହିଁ । ମେନକା ଗାନ୍ଧୀ ସ୍ୱର୍ଗତ ସଂଜୟ ଗାନ୍ଧୀଙ୍କ ସହଧର୍ମିଣୀ ଥିଲେ । ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ ଓ ସଂଜୟ ଗାନ୍ଧୀଙ୍କ ମଧ୍ୟରେ ଘନିଷ୍ଠ ବନ୍ଧୁତା ଥିଲା । ସେହି ହେତୁ ବୋଧହୁଏ ମୁହଁମୁଲାଜାରେ ସେ ଶ୍ରୀମତୀ ଗାନ୍ଧୀଙ୍କୁ କିଛି କହିପାରୁନଥିଲେ । ଶ୍ରୀମତୀ ମେନକା ଗାନ୍ଧୀ ଏ ପ୍ରକଳ୍ପ ସମ୍ବନ୍ଧୀୟ ସମସ୍ତ କାଗଜପତ୍ର ତାଲାଦେଇ ରଖିଦେଇଥିଲେ । ତା'ପରେ ତିନି ଚାରି ମାସ କାର୍ଯ୍ୟଟି ବନ୍ଦରହିବାରୁ ପ୍ରାୟ ଶହେ କୋଟିରୁ ଉର୍ଦ୍ଧ୍ୱ ଟଙ୍କା କ୍ଷତି ଘଟିଥିଲା ବୋଲି ଜଣାଯାଇଥିଲା । ମୁଁ ଏହି ବିଭାଗରେ ମନ୍ତ୍ରୀ ହୋଇ ଆସିବା ପରେ ଏ ପ୍ରକଳ୍ପ ବିରୋଧରେ ଯେଉଁ ସବୁ ପ୍ରତିବନ୍ଧକ ଥିଲା ତାହା ଦୂର କରିବାପାଇଁ ସକ୍ରିୟ ପଦକ୍ଷେପ ନେଇଥିଲି । କିପରି ଭାବରେ ଏହି ପ୍ରକଳ୍ପଟିକୁ ମଞ୍ଜୁରି ଦିଆଯାଇଥିଲା ତାହା National Herald ସମ୍ବାଦପତ୍ରରେ ୨।୩।୯୦ରେ ପ୍ରକାଶିତ ନିମ୍ନରେ ପ୍ରଦତ୍ତ ସମ୍ବାଦଟିକୁ ପାଠ କଲେ ଜାଣିହେବ ।

"The Environment Ministry has given clearance to the controversial Soviet aided Rs. 3000/- crore Teheri Hydro-Electric Project after seven months. The 2400 M.W. Project which verbally a bone of contention between Power Engineers and environmentalists attaching environmental attention was cleared by the Environment Minister, Sri Nilamani Routray only after stipulating a number of conditions."

ଶ୍ରୀମତୀ ମେନକା ଗାନ୍ଧୀଙ୍କର ଅନଭିଜ୍ଞତା, ଅପରିପକ୍ୱତା, ନିର୍ବୋଧତା ଓ ହାସ୍ୟାସ୍ପଦ ଆଚରଣ ସମ୍ବନ୍ଧରେ କେତେକ ଦୃଷ୍ଟାନ୍ତ ଦେଲେ ତାହା ବୁଝାପଡ଼ିବ । ମନ୍ତ୍ରୀଭାବେ କାର୍ଯ୍ୟ କଲାବେଳେ ଯେଉଁ ବିଚାରବନ୍ତ ଆଚରଣ ଆବଶ୍ୟକ ତାହା ତାଙ୍କର ନଥିଲା । ଯେଉଁ ତଥାକଥିତ ସ୍ୱାର୍ଥାନ୍ୱେଷୀ ପରିବେଶ-ବିଦ୍ ହରିବୋଲିଆମାନେ ତାଙ୍କୁ ଘେରି ରହିଥିଲେ ସେମାନେ ତାଙ୍କୁ ଉସ୍‌କେଇ ଉତ୍ସାହିତ କରୁଥିଲେ ହାସ୍ୟାସ୍ପଦ ଓ ଅବାଗିଆ ନିଷ୍ପତ୍ତି ନେବାପାଇଁ । ଗୋଆ ରାଜ୍ୟର ରାଜଧାନୀ ପାନାଜି ସନ୍ନିକଟ ମାଣ୍ଡାଭି ନଦୀର ପୋଲ ଭାଙ୍ଗିଯାଇଥିଲା । ଏହି ସ୍ଥାନର ଉପର ଅଞ୍ଚଳରେ ବାଇଶିକୋଟି ଟଙ୍କା ବ୍ୟୟରେ ଆଉ ଗୋଟିଏ ପୋଲ ନିର୍ମାଣ କରାଯାଉଥାଏ । ପୋଲ କାର୍ଯ୍ୟ ସମାପ୍ତ ହେବା ଉପରେ । କୂଳରେ ଯେଉଁଠି ପୋଲଟି ସଂଯୋଗ ହେବ ସେଠାରୁ ପ୍ରଧାନ ରାସ୍ତା ପର୍ଯ୍ୟନ୍ତ ଯେଉଁ ରାସ୍ତାଟି ହେବ ସେ ସ୍ଥାନଟି ଜଙ୍ଗଲ ବିଭାଗ ଅଧୀନରେ ଥିଲା । ସେ ସ୍ଥାନ ଉପରେ ରାସ୍ତା କରିବାକୁ ହେଲେ କେନ୍ଦ୍ର-

ସରକାରଙ୍କର ଅନୁମତି ଆବଶ୍ୟକ । ଅନୁମତି ଦେବାକୁ ମେନକା ଗାନ୍ଧୀ ରୋକ୍‌ଠୋକ୍ ମନାକରିଦେଲେ । ପୋଲପାଇଁ ବାଇଶ କୋଟି ଟଙ୍କା ଅଟକଳରୁ ପ୍ରାୟ କୋଡ଼ିଏ କୋଟି ଟଙ୍କା ସେତେବେଳକୁ ଖର୍ଚ୍ଚ ହୋଇସାରିଥାଏ । ଦୁଇ ମାସ କାଳ ଏହି କାର୍ଯ୍ୟଟିରେ ଅଚଳା ଅବସ୍ଥା ସୃଷ୍ଟି ହୋଇଥିଲା । ଗୋଆର ମୁଖ୍ୟମନ୍ତ୍ରୀ ଶ୍ରୀ ବାରବରାଙ୍କ ସହିତ ମେନକା ଗାନ୍ଧୀଙ୍କର ଏଥିପାଇଁ ଝଗଡ଼ା ହୋଇଥାଏ । ମୁଁ ଏ ବିଭାଗର ଦାୟିତ୍ୱ ନେବାପରେ ଗୋଆ ମୁଖ୍ୟମନ୍ତ୍ରୀ ଏଥିପ୍ରତି ମୋର ଦୃଷ୍ଟି ଆକର୍ଷଣ କରିଥିଲେ । ଫାଇଲ ଖୋଜିଲାବେଳକୁ ଜାଣିବାକୁ ପାଇଲି ଯେ, ଫାଇଲଟି ରାଷ୍ଟ୍ରମନ୍ତ୍ରୀ ମେନକା ଗାନ୍ଧୀ ଆଲମିରାରେ ଚାବି ପକାଇ ରଖିଛନ୍ତି । ଲିଖିତ ଆଦେଶ ଦେଇ ଫାଇଲଟିକୁ ଅଣାଇଲି ଏବଂ ତୁରନ୍ତ ଜଙ୍ଗଲ ବିଭାଗ ଜମି ଉପରେ ରାସ୍ତା କରିବାକୁ ଆଦେଶଦେଲି । ତା'ପରେ ଯାଇ ପୋଲକାମ ସମାପ୍ତ ହୋଇଥିଲା ।

ବିହାର ରାଜ୍ୟର ଚମ୍ପାରନ୍ ଜିଲ୍ଲାରେ ଜଙ୍ଗଲ ଭିତରେ ଗୋଟିଏ ସ୍ଥାନରେ ଭୂଗର୍ଭରେ ଗ୍ୟାସ୍ ଥିବାର ସନ୍ଧାନ ମିଳିଲା । ତୈଳ ଓ ପ୍ରାକୃତିକ ଗ୍ୟାସ୍ କମିଶନଙ୍କ ପକ୍ଷରୁ କର୍ମଚାରୀମାନେ ଖନନ କାର୍ଯ୍ୟ ଆରମ୍ଭ କରିବାପାଇଁ ସେଠାରେ ପହଞ୍ଚିଗଲେ । ଜଙ୍ଗଲ ଜମିରେ ଏ କାମ କରିବାକୁ ହେଲେ କେନ୍ଦ୍ର ସରକାରଙ୍କର ଆଗୁଆ ଅନୁମତି ଆବଶ୍ୟକ । ପ୍ରକଳ୍ପଟି ଲାଭଜନକ ଓ କାର୍ଯ୍ୟ ଆରମ୍ଭ ହେଲେ ବହୁ ଲୋକ କର୍ମନିଯୁକ୍ତି ପାଇବାର ସମ୍ଭାବନା ଥିବାରୁ କେନ୍ଦ୍ର ସରକାରଙ୍କଠାରୁ ଅନୁମତି ପାଇବାରେ କିଛି ଅସୁବିଧା ହେବନାହିଁ ବୋଲି ଭାବି ବିହାର ସରକାର ସହଜରେ କେନ୍ଦ୍ର ସରକାରଙ୍କଠାରୁ ଅନୁମତି ପାଇ ପାରିବେ ବୋଲି ଆଶାକରି ଜଙ୍ଗଲ ଜମି ଉପରେ କାର୍ଯ୍ୟ ଆରମ୍ଭ କରିବାପାଇଁ ଓ.ଏନ୍.ଜି.ସି. କର୍ତ୍ତୃପକ୍ଷଙ୍କୁ ଅନୁମତି ଦେଇଦେଲେ । କାର୍ଯ୍ୟ ଆରମ୍ଭ ହୋଇଯିବାଦ୍ୱାରା ସେହି ଅଞ୍ଚଳରେ ରୋଜଗାର କରିବାପାଇଁ ବହୁ ଲୋକଙ୍କୁ ଧନ୍ଦା ଜୁଟିଯାଇଥିଲା ଏବଂ ଏହି ପ୍ରକଳ୍ପ କାର୍ଯ୍ୟଟି ଅଞ୍ଚଳବାସୀଙ୍କ ମଧ୍ୟରେ ଖୁବ୍ ଉତ୍ସାହ ସୃଷ୍ଟି କରିଥିଲା । ଅନୁମତି ପାଇବାପାଇଁ ବିହାର ସରକାର କେନ୍ଦ୍ର ସରକାରଙ୍କୁ ଲେଖିଲେ । ଏହା ଦେଖିଲାକ୍ଷଣି ମେନକା ଗାନ୍ଧୀ ଜଙ୍ଗଲ ଜମିରେ ଏ ପ୍ରକଳ୍ପଟିକୁ ଆରମ୍ଭ କରିବାପାଇଁ ଯିଏ ଅନୁମତି ଦେଇଥିଲେ, ଓ.ଏନ୍.ଜି.ସି. ପକ୍ଷରୁ ଯେଉଁମାନେ କାର୍ଯ୍ୟ କରୁଥିଲେ ଏବଂ ବିହାର ସରକାରଙ୍କର ସଂପୃକ୍ତ ଅଫିସରମାନଙ୍କ ସମେତ ସମସ୍ତଙ୍କ ବିରୋଧରେ ଫୌଜଦାରୀ ମୋକଦ୍ଦମା ରୁଜୁ କରିବାପାଇଁ ଆଦେଶ ଦେଇଥିଲେ । ଓ.ଏନ୍.ଜି.ସି. ତାଙ୍କର ଯନ୍ତ୍ରପାତି ପ୍ରଭୃତି ଉଠାଇନେବାକୁ ବସିଲେ । ବହୁ ଲୋକଙ୍କୁ କାମ ମିଳୁଥିବାରୁ ଯନ୍ତ୍ରପାତି ସେଠାରୁ ଉଠାଇନେବାକୁ ଉଦ୍ୟମ କଲାକ୍ଷଣି ଲୋକେ ଏହାର ତୀବ୍ର ପ୍ରତିବାଦ କରିବାଦ୍ୱାରା ସେଠାରେ ବଡ଼ଧରଣର ଆନ୍ଦୋଳନ ମୁଣ୍ଡଟେକିଥିଲା । ଚମ୍ପାରନ୍ ଜିଲ୍ଲାରୁ ଲୋକସଭାକୁ ନିର୍ବାଚିତ ହୋଇ ଆସିଥିବା ଲୋକସଭା ସଦସ୍ୟ ବିହାରରୁ ଥିବା କେନ୍ଦ୍ରମନ୍ତ୍ରୀ ଶ୍ରୀ ରାମ-ବିଳାସ ପାଶ୍ୱାନ ପ୍ରଭୃତି ମେନକା ଗାନ୍ଧୀଙ୍କୁ ଯେତେ ବୁଝାଇଲେ ମଧ୍ୟ ସେ ସେମାନଙ୍କ କଥା ଶୁଣିଲେନାହିଁ ବରଂ ମୋକଦ୍ଦମାକୁ ତ୍ୱରାନ୍ୱିତ କରିବାପାଇଁ ଇଙ୍ଗିତ ଦେଇଥିଲେ । ଏହାଦ୍ୱାରା ଗୋଟିଏ ଅଚଳ ଅବସ୍ଥା ସୃଷ୍ଟି ହୋଇ ରହିଲା । କାର୍ଯ୍ୟବନ୍ଦ ହୋଇ ମେସିନ୍‌ଗୁଡ଼ିକ ଅଚଳ ହୋଇ ପଡ଼ିବା ହେତୁ ପ୍ରତିଦିନ ତିନି ଲକ୍ଷ ଟଙ୍କା କ୍ଷତି ହେଉଛି ବୋଲି ପେଟ୍ରୋଲିୟମ୍ ମନ୍ତ୍ରୀ ଶ୍ରୀ ଗୁରୁପଦ ସ୍ୱାମୀ ମୋତେ ଚିଠି ଲେଖିଥିଲେ । ସେ ଅଞ୍ଚଳର ଲୋକମାନଙ୍କ ପକ୍ଷରୁ ଏ ସମ୍ବନ୍ଧରେ ପ୍ରଧାନମନ୍ତ୍ରୀଙ୍କୁ ଗୋଟିଏ ସ୍ମାରକପତ୍ର ଦିଆଯାଇ-ଥିଲା । ପ୍ରଧାନମନ୍ତ୍ରୀ ସେକଥା ବୁଝିବାପାଇଁ ରାଷ୍ଟ୍ରମନ୍ତ୍ରୀ ମେନକା ଗାନ୍ଧୀଙ୍କ ପାଖକୁ ପଠାଇ ଦେଇ-ଥିଲେ । ମେନକାଗାନ୍ଧୀ ତା' ଉପରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେନାହିଁ । ସେଠାକାର ଲୋକେ ସେଠାକାର ଲୋକସଭା ସଦସ୍ୟ ଓ କେନ୍ଦ୍ରମନ୍ତ୍ରୀ ଶ୍ରୀ ପାଶ୍ୱାନ ପ୍ରଭୃତି ଆସି ମୋତେ ଏକଥା କହିଲେ । ସେକ୍ରେଟେରୀ ଶ୍ରୀ ମହେଶ ପ୍ରସାଦଙ୍କୁ ଡକାଇ ସମସ୍ତ ଇତିବୃତ୍ତି ବୁଝିବା ପରେ ମେନକା ଗାନ୍ଧୀଙ୍କର ଖାମ୍‌ଖିଆଲି ଜିଦ୍‌ଖୋର ମନୋବୃତ୍ତି ହେତୁ ଏଭଳି ଅଚଳାବସ୍ଥା ଉପୁଜିଥିବାର ଜାଣିଲି । ବିହାର ସରକାରଙ୍କ ପ୍ରତିନିଧି ଓ.ଏନ.ଜି.ସି. ଓ ଜଙ୍ଗଲ ବିଭାଗର ସମସ୍ତ ଅଫିସରମାନଙ୍କୁ ଏକତ୍ରିତ କରାଇ

ସମସ୍ୟାଟିର ସମାଧାନ କରିବାପାଇଁ ସେକ୍ରେଟେରୀଙ୍କୁ ନିର୍ଦ୍ଦେଶ ଦେଇଥିଲି । ତାହାହିଁ ସେ କରିଥିଲେ ଏବଂ ତା'ପରେ ଜଙ୍ଗଲ ବିଭାଗ ଜମି ଉପରେ କାର୍ଯ୍ୟ ଚାଲୁ ରହିବ ବୋଲି ମୁଁ ଆଦେଶ ଦେଇଥିଲି ।

ଆସାମର ଉଗ୍ରପନ୍ଥୀ ବିଚ୍ଛିନ୍ନତାବାଦୀ ଓ ଉଲ୍‌ଫା ସନ୍ତ୍ରାସବାଦୀମାନଙ୍କର ଆନ୍ଦୋଳନର ଅବସାନ ଘଟାଇ ସେଠାରେ ଶାନ୍ତି ପ୍ରତିଷ୍ଠା କରିବା ଦିଗରେ ରାଜୀବ ଗାନ୍ଧୀଙ୍କ ସରକାର ସମୟରେ ସେମାନଙ୍କ ସହିତ ଗୋଟିଏ ଚୁକ୍ତି ହୋଇଥିଲା । ଆସାମରେ ଅଧିକରୁ ଅଧିକ ବିକାଶମୂଳକ କାର୍ଯ୍ୟ କରାଗଲେ ସେ ଅଞ୍ଚଳରେ ଶାନ୍ତି ପ୍ରତିଷ୍ଠା ହୋଇପାରିବ ବୋଲି ଅନୁଭବ କରାଯାଇଥିଲା । ଉପରୋକ୍ତ ଚୁକ୍ତି ଅନୁସାରେ ନୁମାଲିଗଡ଼ଠାରେ ଗୋଟିଏ ବୃହତ୍ ତୈଳ ବିଶୋଧନାଗାର ପ୍ରତିଷ୍ଠା କରିବାପାଇଁ ସରକାର ପ୍ରତିଶ୍ରୁତିବଦ୍ଧ ଥିଲେ । ନୁମାଲିଗଡ଼ଠାରେ ଏ ପ୍ରକଳ୍ପ ପ୍ରତିଷ୍ଠା କରିବାକୁ ହେଲେ ବିସ୍ତୃତ ଅଞ୍ଚଳରୁ ଜଙ୍ଗଲ ସଫା କରିବାପାଇଁ ଭାରତ ସରକାରଙ୍କର ଅନୁମୋଦନ ଆବଶ୍ୟକ ପଡ଼ିଥିଲା । ତା'ଛଡ଼ା ନୁମାଲିଗଡ଼କୁ ସଂଯୋଗ କରୁଥିବା ଜାତୀୟ ରାଜପଥଟି କାଜିରଙ୍ଗା ଅଭୟାରଣ୍ୟ ପାଖଦେଇ ଯାଇଛି । ସେ ରାସ୍ତାରେ ଭାରି ଯାନବାହାନ (ବଡ଼ ବଡ଼ ଓଜନଦାର) ଟ୍ରକ୍ ଯିବା ଆସିବା କଲେ ଅଭୟାରଣ୍ୟରେ ଥିବା ପଶୁମାନଙ୍କର ମୁକ୍ତ ବିଚରଣରେ ବ୍ୟାଘାତ ଘଟିବ, ଏଥିପାଇଁ ମଧ୍ୟ ଅନୁମତି ଆବଶ୍ୟକ । ଉକ୍ତ ଜାତୀୟ ରାଜପଥକୁ ଅଭୟାରଣ୍ୟଠାରୁ ଦୂରକୁ ନନେଲେ ଅନୁମତି ଦିଆଯାଇପାରିବନାହିଁ ବୋଲି ରାଷ୍ଟ୍ରମନ୍ତ୍ରୀ ମେନକା ଗାନ୍ଧୀ ନିର୍ଦ୍ଦେଶ ଦେଇଥିଲେ । ଅନ୍ୟ ରାସ୍ତା ତିଆରି ହେଲେ ତୈଳ ବିଶୋଧନାଗାର ପ୍ରତିଷ୍ଠାପାଇଁ ଦିଆଯିବ ବୋଲି ଥିଲା ତାଙ୍କର ଆଦେଶ । ଏହିସବୁ ସର୍ତ୍ତ ପୂରଣ କରିବାକୁ ହେଲେ ବହୁବର୍ଷ ଲାଗିବ । ଏଣେ ଆନ୍ଦୋଳନକାରୀମାନେ ଉଚ୍ଛନ୍ନ । କାର୍ଯ୍ୟଟି ଆରମ୍ଭ ନହେଲେ ବ୍ୟାପକ ଗଣ୍ଡଗୋଳର ଆଶଙ୍କା ଥିଲା । ଏସବୁ କଥା ବିଚାରକୁ ନେଇ ମୁଁ ଏ ପ୍ରକଳ୍ପଟିକୁ ଅନୁମୋଦନ କରିଥିଲି ଏବଂ ପରେ ଅଭୟାରଣ୍ୟଠାରୁ ଦୂରରେ ରାଜପଥ ରାସ୍ତାକୁ ନେବା ପାଇଁ ସଂପୃକ୍ତ ବିଭାଗକୁ ନିର୍ଦ୍ଦେଶ ଦେଇଥିଲି । ଏହା ଫଳରେ ପ୍ରକଳ୍ପ କାର୍ଯ୍ୟ ଆରମ୍ଭ ହୋଇଥିଲା ।

ସେହିପରି ଉତ୍ତର ପ୍ରଦେଶର କାନପୁରସ୍ଥିତ ଗଙ୍ଗାନଦୀ ଅବବାହିକାରୁ ବାଲି ନେବାପାଇଁ ଜଣେ ଠିକାଦାର ଉତ୍ତର ପ୍ରଦେଶ ସରକାରଙ୍କଠାରୁ ରାଜକର ଦେଇ ଲିଜ୍ ନେଇଥିଲେ । ନକ୍‌ସାରୁ ଜଣାଯାଇ ଥିଲା ଯେ, ପୂର୍ବେ ସେହି ସ୍ଥାନଟି ଜଙ୍ଗଲ ବିଭାଗର ଥିଲା, ତେଣୁ ଅନୁମତିପାଇଁ କେନ୍ଦ୍ର ସରକାରଙ୍କୁ ପଠାଯାଇଥିଲା । ମାତ୍ର କେନ୍ଦ୍ରର ଆଗୁଆ ଅନୁମତି ନିଆଯାଇ ନଥିବା କାରଣରୁ ଉତ୍ତର ପ୍ରଦେଶ ସରକାରଙ୍କର ଆଦେଶକୁ ରଦ୍ଦକରିବାପାଇଁ ମେନକା ଗାନ୍ଧୀ ଆଦେଶ ଦେଇଥିଲେ । ଅଧିକ ରାଜ କର ଦେଇ ଠିକାଦାର ବାଲି ଉଠାଇବା ଚାଲୁରଖିବାକୁ ଅନୁରୋଧ କରିଥିଲେ । ସେଥିରେ ରାଜି ନହୋଇ ମେନକା ଗାନ୍ଧୀ ଆଦେଶ ଦେଇଥିଲେ ଯେ, ଯେତେ ଆୟତନରେ ଠିକାଦାର ବାଲି ଉଠାଣ କାର୍ଯ୍ୟ କରୁଛନ୍ତି, ସେତିକି ଜାଗାରେ ଅନ୍ୟତ୍ର ଗୋଟିଏ ଜଙ୍ଗଲ ତିଆରି କରିସାରିଲେ ତାଙ୍କୁ ଉକ୍ତ ଜାଗା ଲିଜ୍ ମିଳିବ । ଉତ୍ତର ପ୍ରଦେଶରୁ ଆସିଥିବା ଚାରି ପାଞ୍ଚଜଣ ଲୋକସଭା ସଦସ୍ୟ ଆସି ଏ ବିଷୟ ପ୍ରତି ମୋର ଦୃଷ୍ଟି ଆକର୍ଷଣ କରିଥିଲେ । ମୁଁ ସେମାନଙ୍କ କଥାରେ ପ୍ରଥମେ ବିଶ୍ୱାସ କରିନଥିଲି ଏବଂ କହିଥିଲି ଏହା ଯଦି ସତ୍ୟହୋଇଥାଏ, ତାହାହେଲେ ସରକାରୀ ଆଦେଶ ନିଶ୍ଚିତଭାବେ ବଦଳାଇଦେବି । ବିଭାଗ ସେକ୍ରେଟେରୀ ମହେଶ ପ୍ରସାଦଙ୍କୁ ଡକାଇଲି, ଏହା ସତ୍ୟ ବୋଲି ସେ କହିଥିଲେ । ଆମ ଓଡ଼ିଶାରେ କାଠଯୋଡ଼ି, ମହାନଦୀ ପ୍ରଭୃତି ନଦୀରୁ ଠିକାଦାରମାନେ ବାଲି ନେବାପାଇଁ ଯେଉଁଭଳି ଲିଜ୍ ନିଅନ୍ତି ସେ ବିଷୟରେ ମୋର ଅଭିଜ୍ଞତା ଥିଲା । ସେ ବିଷୟ ମଧ୍ୟ ମୁଁ ମହେଶ ପ୍ରସାଦଙ୍କୁ କହିଥିଲି । ଜଣେ ମଟରଗାଡ଼ି କିଣି ଗାଡ଼ିଟି ରେଜିଷ୍ଟ୍ରେସନପାଇଁ ସରକାରଙ୍କ ସଂପୃକ୍ତ ଅଫିସକୁ ଯାଇଥା'ନ୍ତି । ତାଙ୍କୁ ଯଦି କୁହାଯିବ ତୁମେ ପ୍ରଥମେ ଗୋଟିଏ ରାସ୍ତା ତିଆରିକର, ତା'ପରେ ଯାଇ ତୁମର ରେଜିଷ୍ଟ୍ରେସନ ହେବ ଏହା ଯେପରି ଅବାସ୍ତବ, ସେହିପରି ଜଙ୍ଗଲ ତିଆରି କରିସାରିଲେ ନଦୀରୁ ବାଲି ଉଠାଇବାପାଇଁ ଅନୁମତି ମିଳିବା କଥା ମଧ୍ୟ ସେହିପରି ହାସ୍ୟାସ୍ପଦ ଓ

ଅବାସ୍ତବ । ତେଣୁ ମେନକା ଗାନ୍ଧୀଙ୍କର ଏ ପ୍ରକାର ଅବାସ୍ତବ ଆଦେଶକୁ ତତ୍‌କ୍ଷଣାତ୍ ରଦ୍ଦ କରିଥିଲି । ସଂଗେ ସଂଗେ ଯେଉଁ ସାଂସଦମାନେ ଏ ବିଷୟ ମୋତେ କହିଥିଲେ, ସେମାନଙ୍କ ପାଖକୁ ଏ ସଂକ୍ରାନ୍ତରେ ସେକ୍ରେଟେରୀଙ୍କଦ୍ୱାରା ସ୍ୱାକ୍ଷରିତ ପତ୍ରର ଖଣ୍ଡିଏ ଲେଖାଏଁ ନକଲ ପଠାଇ ଦେଇଥିଲି । ଏହିଭଳି ଶ୍ରୀମତୀ ମେନକା ଗାନ୍ଧୀଙ୍କର ବହୁ ଅବାଗିଆ ଆଦେଶ ଥିଲା । ସେସବୁ ଆଦେଶର ପୁନର୍ବିଚାର କରିବା ସଂଗେ ସଂଗେ ବିଭିନ୍ନ ରାଜ୍ୟମାନଙ୍କରେ ପଡ଼ିରହିଥିବା ବହୁ ପ୍ରକଳ୍ପ ଓ ଯୋଜନାଗୁଡ଼ିକୁ କାର୍ଯ୍ୟକାରୀ କରିବାପାଇଁ ମୁଁ ଆଦେଶ ଦେଇଥିଲି । ଏହା ଫଳରେ ଦେଶରେ ଅଟକି ପଡ଼ିଥିବା ବହୁ ଛୋଟ ବଡ଼ ଉନ୍ନୟନ ଯୋଜନାଗୁଡ଼ିକର କାର୍ଯ୍ୟ ଅଳ୍ପ ସମୟ ଭିତରେ ଆରମ୍ଭ ହୋଇ-ଥିଲା । ରାଜ୍ୟ ସରକାର ଓ ସଂପୃକ୍ତ ଜନସାଧାରଣ ଗୋଟେ କିଛି ପରିବର୍ତ୍ତନ ହେଲାଣି ବୋଲି ଅନୁଭବ କରିଥିଲେ । ଓଡ଼ିଶାରେ ଯେଉଁ ଏକୋଇଶିଟି ମଧ୍ୟମ ଓ ଛୋଟ ଧରଣର ଯୋଜନା କାମ ଅଟକି ଥିଲା, ତାହା ମଧ୍ୟରୁ କୋଡ଼ିଏଟି କାର୍ଯ୍ୟ କରିବାପାଇଁ ଅନୁମତି ପାଇଥିଲେ । ଏହା ମଧ୍ୟରେ ଥିଲା ତାଳଚେରର ଗୋଟିଏ କୋଇଲା ଖଣି ଓ ରେଙ୍ଗାଲିରେ ରେଙ୍ଗାଲି-ଅନୁଗୁଳ ବିଦ୍ୟୁତ୍ ସରବରାହ ଯୋଜନା । ମୋର ଏ ପ୍ରକାର ପଦକ୍ଷେପକୁ ସ୍ୱାଗତ ନକରି ମେନକା ଗାନ୍ଧୀ ଓ ତାଙ୍କ ସହିତ ସଂପର୍କ ରଖିଥିବା ପରିବେଶବିତ୍ ଓ କର୍ମୀମାନେ ବିଶେଷଭାବରେ ଅସନ୍ତୁଷ୍ଟ ହୋଇ ମୋତେ ଓ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କୁ ନିନ୍ଦା କରିବା ସଂଗେ ସଂଗେ କଟୁ ସମାଲୋଚନା ଆରମ୍ଭ କରିଦେଇଥିଲେ । ଏସବୁ କାମ ବଡ଼ ବଡ଼ କମ୍ପାନୀ, ଶିଳ୍ପପତି, ବ୍ୟବସାୟୀ ଓ ଠିକାଦାରମାନଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ କରାଯାଉଛି ବୋଲି ଆମ ଦୁହିଁଙ୍କ ନାମରେ କୁତ୍ସାରଟନା ଆରମ୍ଭ କରିଦେଇଥିଲେ । ଏସବୁ କାର୍ଯ୍ୟରେ Illustrated Weekly of Indiaର Editor ଶ୍ରୀ ପ୍ରିତୀଶ ନନ୍ଦୀଙ୍କର ପୂର୍ଣ୍ଣ ସାହାଯ୍ୟ ଓ ସମର୍ଥନ ସେମାନେ ପାଇଥିଲେ । ସେ ସମୟରେ ଏହି ସାପ୍ତାହିକ ପତ୍ରିକାଟି ସେମାନଙ୍କର ମୁଖପତ୍ର ହୋଇଥିଲାପରି ଜଣାଯାଉଥିଲା ।

## ବିପଦଜନକ ଚିଠା : ପରିବେଶ ଅଦାଲତ

ପରିବେଶକୁ ବିପଦପୂର୍ଣ୍ଣ ଓ କଳୁଷିତ କରୁଥିବା ପ୍ରକଳ୍ପମାନ ଓ ଶିଳ୍ପ ପ୍ରସାର ଓ କୃଷିର ଉନ୍ନତିପାଇଁ ପରିକଳ୍ପିତ ଯୋଜନାମାନଙ୍କଦ୍ୱାରା ପତିତ ଓ ଦୂଷିତ ହେଉଥିବା ଅଞ୍ଚଳଗୁଡ଼ିକୁ ରକ୍ଷା କରିବାପାଇଁ ସେଗୁଡ଼ିକୁ ବନ୍ଦକରିବା ବା ସେସବୁ କାର୍ଯ୍ୟଦ୍ୱାରା ଯେଉଁମାନଙ୍କ କ୍ଷତି ଘଟୁଛି ସେମାନଙ୍କ ପାଇଁ ସହଜରେ କ୍ଷତିପୂରଣ ସ୍ଥିରକରିବା ଉଦ୍ଦେଶ୍ୟରେ ପରିବେଶ ଅଦାଲତର ଆବଶ୍ୟକତା ଅଛି ବୋଲି ସୁପ୍ରିମ୍ କୋର୍ଟର ପୂର୍ବତନ ପ୍ରଧାନ ବିଚାରପତି ଶ୍ରୀ ପି.ଏନ୍. ଭଗବତୀଙ୍କଦ୍ୱାରା ଉତ୍ସାହିତ ହୋଇ ସେ ପ୍ରକାର ଗୋଟିଏ ଚିଠା ବିଲ୍ ପ୍ରସ୍ତୁତ କରିବାପାଇଁ ଶ୍ରୀମତୀ ମେନକା ଗାନ୍ଧୀ ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟକୁ ନିର୍ଦ୍ଦେଶ ଦେଇଥିଲେ । ପ୍ରଚଳିତ ଆଇନ ବିଚାରପଦ୍ଧତି ବ୍ୟବସ୍ଥାରେ ଯଦି ଜଣକ ବାଣ ତିଆରି କାର୍ଯ୍ୟାଳୟରେ ବିସ୍ଫୋରଣ ଘଟି ପଡ଼ୋଶୀ ଘର ପୋଡ଼ିଯାଏ ଓ ତା'ର ଜିନିଷପତ୍ର ନଷ୍ଟ ହୋଇଯାଏ ବା ସେଠାରୁ ବାରୁଦ ନିର୍ଗତ ହୋଇ ଅନ୍ୟ ଜଣଙ୍କର ମାଛ ଚାଷ ପୋଖରୀରେ ପଡ଼ି ମାଛକୁ ନଷ୍ଟ କରେ ତା'ହେଲେ ସେହି କ୍ଷତିଗ୍ରସ୍ତ ବ୍ୟକ୍ତିମାନଙ୍କୁ କ୍ଷତିପୂରଣ ବା ଅନ୍ୟାନ୍ୟ ଦଣ୍ଡାଦେଶ ଦେବା ପାଇଁ ସାଧାରଣତଃ ଦେଓ୍ୱାନୀ ବା ଫୌଜଦାରୀ ଅଦାଲତରେ ଆଶ୍ରୟ ନେବାକୁ ପଡୁଛି । ସେହିପରି ଗୋଟିଏ ସହରରେ ଗୋଟିଏ ଅଞ୍ଚଳ ଦେଇ ମ୍ୟୁନିସିପାଲିଟି ମଇଳା ପାଣି ନିଷ୍କାସନପାଇଁ ଯେଉଁ ନର୍ଦ୍ଦମା ଖୋଳନ୍ତି ତାକୁ ବନ୍ଦକରିବାକୁ ଦେଓ୍ୱାନୀ ଅଦାଲତରେ ଆଶ୍ରୟ ନେବାକୁ ପଡ଼େ । ଉପରୋକ୍ତ ଅବସ୍ଥାରେ ଏହି ପ୍ରକାର ପ୍ରଚଳିତ ବ୍ୟବସ୍ଥାରେ ଦୁଃଖମୋଚନ କରିବା ବା ନ୍ୟାୟ ପାଇବାରେ ବିଳମ୍ବ ଘଟିଥାଏ । ସହଜରେ ଏବଂ ଅଳ୍ପ ଖର୍ଚ୍ଚରେ ମଧ୍ୟ ନ୍ୟାୟ ପାଇବା ସମ୍ଭବ ହୁଏନାହିଁ । ସେଥିପାଇଁ କୁଆଡ଼େ ସ୍ୱତନ୍ତ୍ର ଅଦାଲତର ଆବଶ୍ୟକତା ପଡୁଛି ଯାହାକୁ କୁହାଯିବ

(Environment Court) ବା 'ପରିବେଶ ଅଦାଲତ' ।

ଜଷ୍ଟିସ୍ ପି.ଏନ୍. ଭଗବତୀ ଯେତେବେଳେ ସୁପ୍ରିମକୋର୍ଟର ପ୍ରଧାନ ବିଚାରପତି ଥିଲେ ତାଙ୍କ କୋର୍ଟରେ ୧୭ ଫେବୃୟାରୀ ୧୯୮୬ ମସିହାରେ ଶ୍ରୀରାମ ଫୁଡ୍‌ସ ଏଣ୍ଡ ଫର୍ଟିଲାଇଜର ଇଣ୍ଡଷ୍ଟ୍ରିଜ୍‌ର (Sriram Foods And Fertilizers Industry) ପରିବେଶ ପ୍ରଦୂଷଣ ସଂକ୍ରାନ୍ତୀୟ ମୋକଦ୍ଦମାର ବିଚାର ହେବାକୁ ଆସିଥିଲା । ତଳ କୋର୍ଟ ମୋକଦ୍ଦମାଟିକୁ ଯେପରି ଭାବରେ ବିଚାରକରିଥିଲେ, ସେଥିରେ ଜଷ୍ଟିସ୍ ଭଗବତୀ ଅସନ୍ତୋଷ ପ୍ରକାଶ କରିଥିଲେ । ବିଚାରପତିମାନେ ବିଶେଷଜ୍ଞ ହୋଇନଥିବାରୁ ଓ ସେମାନଙ୍କର ବୈଜ୍ଞାନିକ ଓ ଶିଳ୍ପକୌଶଳ ସମ୍ବନ୍ଧରେ ଜ୍ଞାନର ଅଭାବ ହେତୁ ଠିକ୍‌ଭାବରେ ବିଷୟଟିକୁ ବୁଝିପାରିନାହାନ୍ତି ବୋଲି ସେ ଅନୁଭବ କରିଥିଲେ । ତେଣୁ ପରିବେଶ ପ୍ରଦୂଷଣ ସଂକ୍ରାନ୍ତୀୟ ମୋକଦ୍ଦମା ଯେଉଁଠାରେ ବିଚାର ହେବ ସେଠାରେ ବିଚାରପତିମାନଙ୍କ ମଧ୍ୟରେ ପରିବେଶବିତ୍, ବୈଜ୍ଞାନିକ ଓ ପରିବେଶ ସମ୍ବନ୍ଧରେ ବିଶେଷ ଭାବେ ଜ୍ଞାନ ଥିବା ବ୍ୟକ୍ତି ବିଚାରପତିମାନଙ୍କ ମଧ୍ୟରେ ରହିବା ଆବଶ୍ୟକ ବୋଲି ତାଙ୍କ ରାୟରେ ଉଲ୍ଲେଖ କରିଥିଲେ । ପ୍ରଧାନ ବିଚାରପତିଙ୍କର ଏ ପ୍ରକାର ମନ୍ତବ୍ୟ ପ୍ରକାଶ ପାଇବା ପରେ କେନ୍ଦ୍ର ସରକାର ମଧ୍ୟ ଏଥିପ୍ରତି ଧ୍ୟାନଦେଇଥିଲେ । ଜଷ୍ଟିସ୍ ଭଗବତୀଙ୍କ ପରିବେଶ ସମ୍ବନ୍ଧୀୟ 'ପରିବେଶ ଅଦାଲତ' ଗଠିତ ହେବା ବିଷୟ କେନ୍ଦ୍ରସରକାରଙ୍କ ପରିବେଶ ମନ୍ତ୍ରଣାଳୟ ବହୁବାର ଆଲୋଚନା କରିଥିଲା । ଦେଶରେ ଓ ରାଜ୍ୟମାନଙ୍କରେ ପରିବେଶ ସଂକ୍ରାନ୍ତୀୟ ମୋକଦ୍ଦମା ସଂଖ୍ୟା ଯାହା ଥିଲା ତାହା ସ୍ୱତନ୍ତ୍ର ଅଦାଲତପାଇଁ ଯଥେଷ୍ଟ ନୁହେଁ ବୋଲି ବିବେଚନା କରାଯାଇ ସିଦ୍ଧାନ୍ତକୁ ସ୍ଥଗିତ ରଖାଯାଇଥିଲା ଏବଂ ତିନିବର୍ଷ ପରେ ଏ ବିଷୟଟିର ପୁନର୍ବିଚାର ହେବ ବୋଲି ନିଷ୍ପତ୍ତି ନିଆଯାଇଥିଲା । ଏହା ଥିଲା ରାଜୀବ ଗାନ୍ଧୀ ସରକାରଙ୍କର ନିଷ୍ପତ୍ତି ।

୧୯୮୯ ମସିହା ଡିସେମ୍ବର ମାସରେ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ଜାତୀୟ ସାମ୍ମୁଖ୍ୟ ସରକାର ଆସିବା ପରେ ଏ ବିଷୟଟି ଉପରେ ତୁରନ୍ତ ଦୃଷ୍ଟି ଦିଆଯାଇ କାର୍ଯ୍ୟାନୁଷ୍ଠାନପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । ମନେହୁଏ ଯେପରି ଜଷ୍ଟିସ୍ ପି.ଏନ୍. ଭଗବତୀ ଓ ଶ୍ରୀ ଅନୀଲ ଅଗ୍ରୱାଲା ପ୍ରଭୃତି ବ୍ୟକ୍ତିମାନେ ସ୍ୱତନ୍ତ୍ର ଅଦାଲତ ସ୍ଥାପନ ସମ୍ବନ୍ଧରେ ସିଦ୍ଧାନ୍ତ ନେବାପାଇଁ ମେନକା ଗାନ୍ଧୀଙ୍କ ଉପରେ ଚାପପକାଇଥିଲେ । ପୂର୍ବରୁ ଏ ପ୍ରକାର ସ୍ୱତନ୍ତ୍ର ଅଦାଲତ ସ୍ଥାପନ ସମ୍ବନ୍ଧରେ ଚିଠା ବିଲ୍ ପ୍ରସ୍ତୁତପାଇଁ ବିଭାଗୀୟ କର୍ମକର୍ତ୍ତାଙ୍କ ପ୍ରତି ଶ୍ରୀମତୀ ଗାନ୍ଧୀଙ୍କର ନିର୍ଦ୍ଦେଶ କଥା ଉଲ୍ଲେଖ କରିଛି । ବର୍ତ୍ତମାନ ପରିବେଶ ବିଭାଗୀୟ ଅଫିସରମାନଙ୍କୁ ଏଡ଼ାଇ ଦେଇ ଜଷ୍ଟିସ୍ ପି.ଏନ୍.ଭଗବତୀଙ୍କଦ୍ୱାରା ଚିଠା ବିଲ୍ ପ୍ରସ୍ତୁତ ହେବା କାର୍ଯ୍ୟ ଆରମ୍ଭହୋଇଥିଲା ।

କେନ୍ଦ୍ର ସରକାରଙ୍କର ଆଇନ ବିଭାଗ ଥାଉ ଥାଉ ଜଷ୍ଟିସ ଭଗବତୀ ବିଲ୍‌ଟି କିପରି ଚିଠା କରୁଛନ୍ତି ସେଥିରେ ବିଭାଗୀୟ ଅଫିସରମାନେ ବିସ୍ମିତ ହେଉଥିଲେ । ଶେଷରେ ଜଷ୍ଟିସ୍ ଭଗବତୀଙ୍କଦ୍ୱାରା ପ୍ରସ୍ତୁତ ହୋଇଥିବା ପରିବେଶ ଅଦାଲତ ଚିଠା ବିଲ୍ ପରିବେଶ ବିଭାଗକୁ ଆସିଥିଲା । ତଳୁ ଉପର ପର୍ଯ୍ୟନ୍ତ ଅର୍ଥାତ୍ ରାଜ୍ୟଠାରୁ ରାଜଧାନୀ ଦିଲ୍ଲୀ ପର୍ଯ୍ୟନ୍ତ ଗୋଟିଏ ସମାନ୍ତରାଳ ବିଚାରାଳୟ ଓ ବିଚାର ପଦ୍ଧତି ସୃଷ୍ଟି କରିବାର ପ୍ରସ୍ତାବ ଏହି ବିଲ୍‌ରେ ଥିଲା । ରାଜ୍ୟର ହାଇକୋର୍ଟ ଓ ଦିଲ୍ଲୀର ସୁପ୍ରିମ୍ କୋର୍ଟ ସହିତ କୌଣସି ସଂପର୍କ ନରଖି ନୂତନ ବିଚାରାଳୟଗୁଡ଼ିଏ ସ୍ଥାପନ କରିବା ଏହି ପ୍ରସ୍ତାବରେ ଥିଲା । ରାଜ୍ୟରେ ରହିବ 'ରାଜ୍ୟ ପରିବେଶ ଅଦାଲତ' ଓ ଦିଲ୍ଲୀରେ 'ଜାତୀୟ ପରିବେଶ ଅଦାଲତ' । ରାଜ୍ୟ ପରିବେଶ ଅଦାଲତର ଆଦେଶ ବିରୋଧରେ ଅପିଲ ସୁପ୍ରିମ୍ କୋର୍ଟକୁ ନଯାଇ ଜାତୀୟ ପରିବେଶ ଅଦାଲତ (National Environment Court)କୁ ଯିବ । ପ୍ରତ୍ୟେକ ରାଜ୍ୟରେ ପରିବେଶ ଅଦାଲତରେ ବିଶେଷଜ୍ଞଙ୍କ ସମେତ ଚାରିଜଣ ସଭ୍ୟ ଓ ଜଣେ ସଭାପତି ରହିବେ । ଜାତୀୟ ପରିବେଶ ଅଦାଲତରେ ଚାରିଜଣ ବିଚାରପତି ରହିବେ । ସେଥିମଧ୍ୟରେ ବିଶେଷଜ୍ଞ ଓ

ପରିବେଶବିତ୍ ରହିବେ । ଏ ସମସ୍ତ ଅନୁଷ୍ଠାନ ଉପରେ ଗୋଟିଏ ପରିବେଶ କମିଶନ୍ ରହିବ, ଯାହାର ଜଣେ ଉଚ୍ଚକ୍ଷମତାସଂପନ୍ନ ଅଧ୍ୟକ୍ଷ ବା ଚେୟାରମ୍ୟାନ୍, ଭାଇସ୍ ଚେୟାରମ୍ୟାନ୍ ଓ ସାତଜଣ ସଭ୍ୟ ରହିବେ । ଏହି ଚେୟାରମ୍ୟାନ୍‌ଙ୍କର କର୍ତ୍ତୃତ୍ୱ ସବୁ ଶ୍ରେଣୀର ପରିବେଶ ଅଦାଲତମାନଙ୍କ ଉପରେ ରହିବ । ସେ ଚେୟାରମ୍ୟାନ ସୁପ୍ରିମ୍ କୋର୍ଟର ଜଣେ କାର୍ଯ୍ୟକାରୀ ବା ଅବସରପ୍ରାପ୍ତ ବିଚାରପତି ହୋଇଥିବେ । କିନ୍ତୁ ଆଶ୍ଚର୍ଯ୍ୟର କଥା ସୁପ୍ରିମ୍ କୋର୍ଟର ଅବସରପ୍ରାପ୍ତ ବିଚାରପତି ଚେୟାରମ୍ୟାନ୍ ହେବାବେଳେ ତାଙ୍କର ବୟସ ସୀମା ବିଷୟରେ କିଛି କୁହାଯାଇନଥିଲା । ରାଷ୍ଟ୍ରପତି ଯେପରି ହାଇକୋର୍ଟ ଓ ସୁପ୍ରିମ୍ କୋର୍ଟର ବିଚାରପତିଙ୍କୁ ନିଯୁକ୍ତ କରନ୍ତି ସେହିପରି ପରିବେଶ କମିଶନ୍‌ର ଚେୟାରମ୍ୟାନ୍ ଏବଂ ରାଜ୍ୟ ଓ ଜାତୀୟ ପରିବେଶ ଅଦାଲତର ବିଚାରପତିମାନଙ୍କୁ ନିଯୁକ୍ତ କରିବେ । ଏ ପ୍ରକାର ସମାନ୍ତରାଳ ବିଚାରପଦ୍ଧତି ଓ ବିଚାରାଳୟ ସୃଷ୍ଟିକରି ପରିଚାଳନା କରିବା ଦିଗରେ ବର୍ଷକୁ ପନ୍ଦର କୋଟି ଟଙ୍କା ଖର୍ଚ୍ଚ ହେବ ବୋଲି ଅଟକଳ କରାଯାଇଥିଲା । ଏପରି ପରିବେଶ ଅଦାଲତ ଗୁଡ଼ିକର ବିଚାର କରିବାର କ୍ଷେତ୍ର ଓ ଅଧିକାର ଖୁବ୍ ବ୍ୟାପକ ଥିଲା । ଜଳ, ସ୍ଥଳ ଓ ବାୟୁମଣ୍ଡଳକୁ ଦୂଷିତ କରୁଥିବା ଯେକୌଣସି ଅଭିଯୋଗକୁ ଶୁଣିବାର ଅଧିକାର ଏହି ଅଦାଲତଗୁଡ଼ିକର ଥିଲା । ଏହାଛଡ଼ା ପରିବେଶ ସୁରକ୍ଷା ଆଇନ, ଜଳ ପ୍ରଦୂଷଣ ନିୟନ୍ତ୍ରଣ ଆଇନ, ବାୟୁ ପ୍ରଦୂଷଣ ନିୟନ୍ତ୍ରଣ ଆଇନଗୁଡ଼ିକର ବିରୁଦ୍ଧାଚରଣ କରୁଥିବା ଯେକୌଣସି ଅଭିଯୋଗ ଶୁଣିବାର ଅଧିକାର ଏଇ ଅଦାଲତମାନଙ୍କର ଥିଲା । କ୍ଷତିଗ୍ରସ୍ତ ବ୍ୟକ୍ତି ବା ଅନୁଷ୍ଠାନ ଛଡ଼ା ସେ ଅଞ୍ଚଳ ସହିତ ସଂପୃକ୍ତ ଯେ କୌଣସି ପରିବେଶ ସ୍ୱେଚ୍ଛାସେବୀ ଅନୁଷ୍ଠାନ ବା ପରିବେଶ କର୍ମୀମାନଙ୍କର ମଧ୍ୟ ଏପରି ଅଦାଲତରେ ସିଧାସଳଖ ଅଭିଯୋଗ କରିବାର ଅଧିକାର ଥିଲା ଏବଂ ସେମାନେ ଅଭିଯୋଗପତ୍ରରେ କୋର୍ଟଫି ନ ଲଗାଇ ଦରଖାସ୍ତ ଦେଲେ ଗୃହୀତ ହେବାର ସୁବିଧା ଥିଲା । ସରକାରୀ ଖର୍ଚ୍ଚରେ ଓକିଲ ସାହାଯ୍ୟ ପାଇବା ସୁବିଧାର ବ୍ୟବସ୍ଥା ଚିଠା ଆଇନରେ ରଖାଯାଇଥିଲା । କେବଳ ଯେ କ୍ଷତି ଘଟିଲେ ଅଭିଯୋଗ କରାଯିବ ତାହା ନୁହେଁ, କ୍ଷତି ଘଟିବାର ସମ୍ଭାବନା ଥିଲେ ମଧ୍ୟ ସେ ଅଭିଯୋଗକୁ ବିଚାର କରିବାର ବ୍ୟବସ୍ଥା ଖଞ୍ଜାଯାଇଥିଲା । ସେହି ବ୍ୟବସ୍ଥା ମଧ୍ୟରେ ଥିଲା, "The jurisdiction of the Environmental Court may be invoked by any public spirited individual or individuals or any envoronmental group by addressing letter to the court in respect of filling a regular petition or application when its jurisdiction is invoked by addressing a letter. The Environmental Court shall appoint a lawyer to appear and argue on behalf of the party. Moving Court and fees of such a lawyer shall be paid by the Environmental Commission and so also the costs of other support services including costs of research, survey and collection of data necessary for the purpose of prosecuting the case."

ଏ ପ୍ରକାର ବ୍ୟବସ୍ଥା ନିଶ୍ଚିତଭାବେ ଗୋଟିଏ ମାରାତ୍ମକ ଓ କ୍ଷତିକାରକ ବ୍ୟବସ୍ଥା । ଏହାଦ୍ୱାରା ତଥାକଥିତ ସ୍ୱାର୍ଥାନ୍ୱେଷୀ ପରିବେଶବିତ୍‌ମାନେ ଅଯଥା ଅଭିଯୋଗ କରିବାପାଇଁ ଉତ୍ସାହିତ ହେଉଥିଲେ । ଶିଳ୍ପପତି ବା ବ୍ୟବସାୟୀ ପ୍ରତିଷ୍ଠାନ ମଧ୍ୟରେ ପ୍ରତିଯୋଗିତା ଉପୁଜିଲେ ଏପ୍ରକାର ଅବାଞ୍ଛିତ ବ୍ୟକ୍ତି ବା ଅନୁଷ୍ଠାନ ସାହାଯ୍ୟରେ ପରସ୍ପର କ୍ଷତି କରିବାର ସୁଯୋଗ ପାଇଥା'ନ୍ତେ । ପରିବେଶ କମିଶନ ବା ପରିବେଶ ଅଦାଲତକୁ ସାମାନ୍ୟ ଖଣ୍ଡେ ଚିଠି ଲେଖି ବଡ଼ ବଡ଼ ଯୋଜନା ଏପରିକି ପ୍ରତିରକ୍ଷା ସମ୍ବନ୍ଧୀୟ ପ୍ରକଳ୍ପକୁ ମଧ୍ୟ ବନ୍ଦକରିଦେବାର ସମ୍ଭାବନା ରହିଥିଲା । ଯେଉଁ ବୈଦେଶିକ ଶକ୍ତିମାନେ ଆମ ଦେଶ ପ୍ରତି ଅସହିଷ୍ଣୁ, ସେମାନେ ମଧ୍ୟ ଅବାଞ୍ଛିତ ପରିବେଶ କର୍ମୀମାନଙ୍କୁ ହାତକରି ଆମର ଉନ୍ନୟନମୂଳକ ବା ପ୍ରତିରକ୍ଷା ସମ୍ବନ୍ଧୀୟ କାର୍ଯ୍ୟରେ ବାଧାସୃଷ୍ଟି

କରିବାର ସମ୍ଭାବନା ଏଥିରେ ଥିଲା ।

ଉପରୋକ୍ତ ଚିଠା ଆଇନଟି କେନ୍ଦ୍ର ସରକାର ଭିତରେ ଓ ବାହାରେ ଚାଞ୍ଚଲ୍ୟ ସୃଷ୍ଟିକରିଥିଲା । କେନ୍ଦ୍ର ସରକାରଙ୍କ ପ୍ରତ୍ୟେକ ବିଭାଗକୁ ଏହି ଚିଠା ଆଇନଟି ପଠାଯାଇଥିଲା ସେମାନଙ୍କର ମତାମତ ଜାଣିବାପାଇଁ । ବହୁ ବିଭାଗ ଏ ଚିଠା ଆଇନ ସଂପର୍କରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ କରିଥିଲେ । ୧୯୯୦ ମସିହା ଏପ୍ରିଲ ଛବିଶ ତାରିଖରେ ଏହି ଚିଠା ଆଇନଟିକୁ ଆଲୋଚନା କରି ମତାମତ ଦେବାପାଇଁ କେନ୍ଦ୍ର ସରକାରଙ୍କର ସବୁ ବିଭାଗ ସେକ୍ରେଟାରୀମାନଙ୍କର ଗୋଟିଏ ବୈଠକ ବସିଥିଲା । ଏହି ଚିଠା ଆଇନଟି କାର୍ଯ୍ୟକାରୀ ହେଲେ ଦେଶରେ ଯେଉଁ ସମସ୍ୟା ସୃଷ୍ଟି ହେବ ଓ ବିଭ୍ରାଟ ଘଟିବ ସେ ବିଷୟ ଆଲୋଚିତ ହୋଇଥିଲା । ନାନା ଦୃଷ୍ଟିକୋଣରୁ ବିଚାରକରି ଏହାଦ୍ଵାରା ଆମ ପରି ଗୋଟିଏ ବିକାଶଶୀଳ ଦେଶର ଅଗ୍ରଗତିରେ ଯେଉଁ ବାଧା ସୃଷ୍ଟି ହେବ ସେ ବିଷୟ ଆଲୋଚନା କରାଯାଇଥିଲା । ସେ ବିଚାର ମଧ୍ୟରେ ଗୋଟିଏ କଥା ଥିଲା–

"It is necessary to use the term environmental degradation more carefully. Unless the levels of degradation are carefully defined and subject to objective verification, we could fall into a trap of total negative approach leading to all kinds of bottlenecks to the process of development. Foreign interference in these matters through local organisations cannot also be ruled out."

ନାନା କ୍ଷେତ୍ରରେ ପ୍ରତିକୂଳ ମତ ଜଣାଗଲେ ମଧ୍ୟ ରାଷ୍ଟ୍ରମନ୍ତ୍ରୀ ଶ୍ରୀମତୀ ମେନକା ଗାନ୍ଧୀ ତାଙ୍କ ଜିଦ୍ ଉପରେ ଅଟଳ ରହିଥିଲେ । ଯେକୌଣସିମତେ ସେହି ପାର୍ଲାମେଣ୍ଟ ଅଧିବେଶନରେ ପରିବେଶ ଅଦାଲତ୍ ବିଲ୍‌ଟିକୁ ଆଗତକରି ଗୃହୀତ କରାଇନେବା ଉଦ୍ୟମକୁ ଅବ୍ୟାହତ ରଖିଥିଲେ । ସେହିବର୍ଷ ଜୁଲାଇ ତିନି ତାରିଖରେ ସଂପୃକ୍ତ ଫାଇଲ୍‌ଟି ମୋ ପାଖକୁ ଆସିଥିଲା । ମୁଁ ଅନୁମୋଦନ କଲା ପରେ ମନ୍ତ୍ରିମଣ୍ଡଳରେ ଅନୁମୋଦିତ କରାଯାଇ ଚଳିତ ପାର୍ଲାମେଣ୍ଟ ଅଧିବେଶନରେ କାର୍ଯ୍ୟସୂଚୀ ତାଲିକାରେ ଏ ବିଲ୍‌ଟି ଅନ୍ତର୍ଭୁକ୍ତ କରାଇବାର ବ୍ୟବସ୍ଥା ହେବାର କଥା । ଏଥିପାଇଁ ମୋ ଦସ୍ତଖତରେ ପାର୍ଲାମେଣ୍ଟକୁ ଚିଠି ହେବାର କଥା । ବହୁଦିନ ହେଲା ରାଷ୍ଟ୍ରମନ୍ତ୍ରୀଙ୍କ ସ୍ତରରେ ଏ ବିଷୟରେ ଆଲୋଚନା ହୋଇଥିବାର ଜଣାଗଲା, ମାତ୍ର ପ୍ରଥମଥର କରି ସେଦିନ ଏହି ଫାଇଲ୍‌ଟି ମୁଁ ଦେଖିବାକୁ ପାଇଲି । ପାର୍ଲାମେଣ୍ଟରେ ଏହି ବିଲ୍‌ଟିକୁ ମୁଁ ଆଗତ କରିବାର କଥା । ତେଣୁ ଭଲ ଭାବରେ ସବୁ ବିଷୟ ଅଧ୍ୟୟନ କରି ବିଲ୍‌ର ଉଦ୍ଦେଶ୍ୟ ନବୁଝିଲେ ପାର୍ଲାମେଣ୍ଟରେ ଆଲୋଚନା କରି ବିଲ୍‌ଟି ଗୃହୀତ କରାଇନେବା ସହଜନୁହେଁ । ବିଲ୍‌ଟି ଭଲଭାବରେ ପଢ଼ି ଏହାର ଉଦ୍ଦେଶ୍ୟ କ'ଣ ଏବଂ ତାହାଦ୍ଵାରା କ'ଣ ହେବ ସେ କଥା ବୁଝିବାପାଇଁ ସମୟ ଆବଶ୍ୟକ । ତା'ଛଡ଼ା ପୃଥିବୀରେ ଅନ୍ୟାନ୍ୟ ବିକାଶଶୀଳ ଦେଶମାନଙ୍କରେ ଏପ୍ରକାର ଆଇନ ଅଛି କି ନାହିଁ ସେ କଥା ଜାଣିବାପାଇଁ ମଧ୍ୟ ମୁଁ ଇଚ୍ଛା ପ୍ରକାଶ କରିଥିଲି । ତେଣୁ ଚଳିତ ଅଧିବେଶନରେ ବିଲ୍‌ଟି ଆଗତ କରିବାର ପ୍ରସ୍ତାବକୁ ମୁଁ ଅନୁମୋଦନ କରିନଥିଲି । ପରବର୍ତ୍ତୀ ଅଧିବେଶନରେ ବିଲ୍‌ଟି ଆଗତପାଇଁ ମୁଁ ଇଚ୍ଛା ପ୍ରକାଶ କରିଥିଲି ଏବଂ ଅନ୍ୟାନ୍ୟ ଦେଶମାନଙ୍କର ଏପ୍ରକାର ବ୍ୟବସ୍ଥା ସମ୍ବନ୍ଧରେ ତଥ୍ୟ ଶୀଘ୍ର ଅଣାଇବାପାଇଁ ଉକ୍ତ ଫାଇଲ୍‌ରେ ନିର୍ଦ୍ଦେଶ ଦେଇଥିଲି ।

## ହରିବୋଲିଆଙ୍କ ପାଇକପଣ

ସେହି ପାର୍ଲାମେଣ୍ଟ ଅଧିବେଶନରେ ବିଲ୍‌ଟି ଆଣିବାର ପ୍ରସ୍ତାବକୁ ମୁଁ ଅନୁମୋଦନ ନକରିବା କଥା ଜଣାପଡ଼ିବା ପରେ ମେନକା ଗାନ୍ଧୀ ଓ ତାଙ୍କୁ ଘେରିରହିଥିବା ପରିବେଶବିଦ୍ ଓ ତଥାକଥିତ ସ୍ୱେଚ୍ଛାସେବୀ ହରିବୋଲିଆମାନଙ୍କ ମଧ୍ୟରେ ପ୍ରଚଣ୍ଡ ପ୍ରତିକ୍ରିୟା ପ୍ରକାଶପାଇଥିଲା । ମୋର ଏହି

ଆଦେଶ ପଛରେ ବଡ଼ ବଡ଼ ଶିଳ୍ପପତି, ବ୍ୟବସାୟ ପ୍ରତିଷ୍ଠାନ ଓ ଦୁର୍ନୀତିଗ୍ରସ୍ତ ଲୋକଙ୍କର ହାତ ଅଛି ବୋଲି ସେମାନେ ଅପବାଦ ରଚିବାକୁ ଲାଗିଲେ । ମୋର ଏହି ନିଷ୍ପତ୍ତି ଅଗଣତାନ୍ତ୍ରିକ, ଉଦ୍ଦେଶ୍ୟ ପ୍ରଣୋଦିତ ଓ ଜନସ୍ୱାର୍ଥ ବିରୋଧୀ ବୋଲି କହି ଜଷ୍ଟିସ୍ ପି.ଏନ୍.ଭଗବତୀ ଗୋଟିଏ ବିବୃତି ଦେଇ-ଥିଲେ । ତାହା ୧୩।୩।୯୦ ଷ୍ଟେଟ୍ସମେନ୍ ଖବରକାଗଜରେ ପ୍ରକାଶ ପାଇଥିଲା । କେନ୍ଦ୍ର-ସରକାରଙ୍କର ଆଇନ ବିଭାଗ ଆଜ୍ଞା ଅାଭ ଜଷ୍ଟିସ୍ ଭଗବତୀ ଏହି ବିଲ୍‌ଟି ପ୍ରସ୍ତୁତ କରିଛନ୍ତି ବୋଲି ଏହି କାର୍ଯ୍ୟଟିକୁ ସନ୍ଦେହ ଚକ୍ଷୁରେ ଦେଖି ସମ୍ବାଦପତ୍ରମାନେ ବିଭିନ୍ନ ପ୍ରକାର ପ୍ରତିକ୍ରିୟା ପ୍ରକାଶ କରିଥିଲେ । କେତେକ ଲେଖିଥିଲେ ଯେ, ଯେଉଁ ବ୍ୟକ୍ତି ଏ ବିଲ୍‌ଟି ତିଆରି କରିଛନ୍ତି, ସେ ବୋଧହୁଏ ନିଜକୁ ଅଧ୍ୟକ୍ଷ କରିବାପାଇଁ ଏପରି ବିଲ୍ ପ୍ରସ୍ତୁତ କରିଛନ୍ତି । 'ହିନ୍ଦୁ' ଖବରକାଗଜରେ ୧୪।୭।୯୦ ତାରିଖରେ ନିମ୍ନମତେ ପ୍ରକାଶ ପାଇଥିଲା—

Dt. 13.03.1990 : Newspaper : THE STATESMAN

"The Draft Legislation on Environmental courts prepared by Mr. Justice P.N.Bhagabati, former Chief Justice of India, would have virtually led to a parallel judiciary with those courts being given exclusive jurisdiction on civil and criminal cases related to environmental matters without the provision of an appeal to the Supreme Court. An all Powerful Environment Commission was also to have been set-up with the Chairman of the Commission being a retired Supreme Court Judge. This Chairman was to be given wide and exclusive powers to select and appoint judicial members on the National and State Level Environmental Courts. The question that is being asked in top Government circles is whether the job of the all powerful chairman of the proposed Environment Commission was tailor-made for a specific person and whether the Government could possibily create a parallel judicial system."

ଶ୍ରୀମତୀ ମେନକା ଗାନ୍ଧୀ ଚୁପ୍ ହୋଇ ରହିବାର ଲୋକ ନୁହଁନ୍ତି । ତାଙ୍କୁ ଯେଉଁ ତୋଷାମୋଦକାରୀମାନେ ଘେରିରହିଥା'ନ୍ତି, ସେମାନେ ତାଙ୍କୁ ପୃଥିବୀର ଏକମାତ୍ର ସବୁଜମନ୍ତ୍ରୀ (Green Minister) କହି ମୋ ବିରୋଧରେ ଅଭିଯାନ ଚଳେଇବାପାଇଁ ଉସ୍‌କାଉଥା'ନ୍ତି । ଇଲୁଷ୍ଟ୍ରେଟେଡ୍ ୱିକ୍ଲିର ତତ୍କାଳୀନ ସଂପାଦକ ଶ୍ରୀ ପ୍ରୀତିଶନନ୍ଦୀ ତାଙ୍କୁ ସାହାଯ୍ୟ କରିବାପାଇଁ ଅଣ୍ଟା ଭିଡ଼ି ବାହାରିପଡ଼ିଥିଲେ । ଗୋଆ ରାଜ୍ୟର ପରିବେଶବିତ୍ Claude Alvares ମଧ୍ୟ ବଡ଼କୁରା ସାଜି ବାହାରିପଡିଥିଲେ, ମୋତେ ଓ ଭି. ପି. ସିଂହଙ୍କୁ ଅରୁଚିକର ଓ ଅସଭ୍ୟ ଭାଷାରେ ନିନ୍ଦା କରିବାପାଇଁ । ୧୯୯୦ ଜୁଲାଇ ୨୯ ତାରିଖରେ ଇଲଷ୍ଟ୍ରେଟେଡ୍ ୱିକ୍ଲି ଅଫ୍ ଇଣ୍ଡିଆ ପ୍ରକାଶ କଲା : "So within five months V.P. Singh, for reasons known only to himself, ended all Menaka's good work with the stroke of a pen. He brought in a senile, doddering old fool from Orissa named Nilamani Routray who should in normal cirmustances have been better off tending goats and made him Cabinet Minister for environment over Menaka."

## ଇଲଷ୍ଟ୍ରେଟେଡ୍ ୱିକ୍ଲି ବିରୁଦ୍ଧରେ ମାନହାନି ମୋକଦ୍ଦମା

ଇଲଷ୍ଟ୍ରେଟେଡ୍ ୱିକ୍ଲିରେ ପ୍ରକାଶିତ ମାନହାନି ସୂଚକ ଲେଖାପାଇଁ ପତ୍ରିକା ତା'ର ସଂପାଦକ, ମାଲିକ ତଥା ଅନ୍ୟ ଲେଖକମାନଙ୍କ ବିରୋଧରେ ୫୦ ଲକ୍ଷ ଟଙ୍କା କ୍ଷତି ପୂରଣ ଦାବି କରି ମୋ

ପକ୍ଷରୁ ସ୍ୱର୍ଗତ ବାରିଷ୍ଟର ବୀରେନ୍ଦ୍ର ମୋହନ ପଟ୍ଟନାୟକ ମାନହାନି ମୋକଦ୍ଦମା ଯଥାକ୍ରମେ ଭୁବନେଶ୍ୱର ସବ୍‌ଜଜ୍ ଓ ମୁଖ୍ୟ ବିଚାରବିଭାଗୀୟ ମାଜିଷ୍ଟ୍ରେଟ୍‌ଙ୍କ ଦେଓ୍ୱାନୀ ଓ ଫୌଜଦାରୀ ଅଦାଲତରେ ୧୯୯୦ ମସିହା ସେପ୍ଟେମ୍ବର ୨୦ ତାରିଖରେ ଦାୟରକରିଥିଲେ । ଏହି ମୋକଦ୍ଦମାରେ ବୀରେନ୍ ବାବୁଙ୍କର ସହଯୋଗୀ ଓକିଲ ଥିଲେ ତାଙ୍କର ବୋହୂ ଅଡ୍‌ଭୋକେଟ ଶ୍ରୀମତୀ ସଂଗୀତା ପଟ୍ଟନାୟକ ଏବଂ ଆଡ୍‌ଭୋକେଟ ସର୍ବଶ୍ରୀ ପ୍ରଦୀପ କୁମାର ଚୌଧୁରୀ, ଅନନ୍ତ ଚରଣ ଜେନା, ସ୍ୱରାଜ ବିଶ୍ୱାଳ, ସୋମ ଦର୍ଶନ ମହାନ୍ତି । ଏହିମାନେ ମାନହାନି ମୋକଦ୍ଦମା ରୁଜୁ କରିଥିଲେ । ତାହା ପରେ ମୋକଦ୍ଦମାର ବିବରଣୀ ସାରା ଭାରତବର୍ଷର ସବୁ ଖବରକାଗଜରେ ବିସ୍ତୃତ ଭାବରେ ପ୍ରକାଶପାଇଥିଲା । ଏହି ମାନହାନି ମୋକଦ୍ଦମା ଯଦିଓ ଶ୍ରୀମତୀ ମେନକା ଗାନ୍ଧୀଙ୍କ ବିରୋଧରେ ହୋଇନଥିଲା, ଏହା ରୁଜୁ ହେଲା ପରେ ସେ ବିଶେଷ ଭାବରେ ବିବ୍ରତ ହେବାର ଜଣାପଡ଼ିଥିଲେ । କାଳେ ମୋକଦ୍ଦମା ବିଚାର ହେଲାବେଳେ କୌଣସି ସ୍ତରରେ ତାଙ୍କୁ ଅଦାଲତକୁ ଟଣାଯାଇପାରେ ବୋଲି ଆଶଙ୍କାକରି ସେ (ମେନକା) ଆତଙ୍କିତ ହେଲାଭଳି ତାଙ୍କ ଆଚରଣରୁ ଜଣାପଡ଼ିଥିଲା । ମୋକଦ୍ଦମାଟି ପ୍ରତ୍ୟାହାର କରିନେବାପାଇଁ ମୋତେ ପ୍ରବର୍ତ୍ତାଇବାକୁ ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ଚନ୍ଦ୍ରଶେଖରଙ୍କୁ ସାଙ୍ଗରେ ଧରି ସେ ମୋ ପାଖକୁ ଆସିଥିଲେ । ମୋତେ ଚନ୍ଦ୍ରଶେଖର କେସ୍‌ଟି କୋର୍ଟରୁ ଉଠାଇନେବାପାଇଁ ଅନୁରୋଧ କରିଥିଲେ । ଏହାଛଡ଼ା ଜର୍ଜ ଫର୍ଣ୍ଣାଣ୍ଡିଜ୍, ଅରୁଣ ନେହେରୁ, ଅରିଫ୍ ଅହମ୍ମଦଙ୍କ ମାଧ୍ୟମରେ କେସ୍‌ଟି ଉଠାଇନେବାପାଇଁ ମେନକା ଗାନ୍ଧୀ ମୋ ଉପରେ ଚାପପକାଇଥିଲେ । ସେମାନେ ଆସି ମୋତେ ଦେଖାକରିଥିଲେ ଏବଂ କେସ୍ ଉଠାଇନେବା ପରିବର୍ତ୍ତେ ଓଲଟି ମୋକଦ୍ଦମାଟି ଚାଲୁ ରଖିବାପାଇଁ ମୋତେ ପରାମର୍ଶ ଦେଇଥିଲେ । ସେମାନଙ୍କ ମତରେ, ମେନକାଙ୍କ ପ୍ରରୋଚନାରେ ଇଲଷ୍ଟ୍ରେଟେଡ୍ ଉଇକ୍ଲି ଅଫ୍ ଇଣ୍ଡିଆରେ ସମସ୍ତଙ୍କ ବିରୋଧରେ କୁତ୍ସାରଟନା କରାଯାଉଥିଲା । କେବଳ ମାତ୍ର ମେନକା ଗାନ୍ଧୀଙ୍କ ଉଚ୍ଚ ପ୍ରଶଂସା ପତ୍ରିକାରେ ପ୍ରକାଶପାଉଥାଏ । ତେଣୁ କେସ୍‌ଟି ନଉଠାଇବାପାଇଁ ସେମାନେ ମୋତେ ପରାମର୍ଶ ଦେଇଥିଲେ ଏବଂ ସେ ଦିଗରେ ସାହାଯ୍ୟ କରିବାପାଇଁ ସେମାନେ ମୋତେ ପ୍ରତିଶ୍ରୁତି ଦେଇଥିଲେ ।

ନବେ ମସିହା ସେପ୍ଟେମ୍ବର କୋଡ଼ିଏ ତାରିଖରେ ମୋତେ କୋର୍ଟରେ ହାଜରହେବାକୁ ପଡ଼ିଥିଲା । କୋର୍ଟଟି ଦର୍ଶକମାନଙ୍କଦ୍ୱାରା ଭରପୂର ହୋଇଥାଏ । ସତ୍ୟପାଠ କରିସାରିବା ପରେ ବୀରେନ୍‌ବାବୁ ମୋର ମାନହାନି ଅଭିଯୋଗ ସମ୍ବନ୍ଧରେ କେତେକ କଥା ପଚରାଉଚରା କରିଥିଲେ । ଇଲଷ୍ଟ୍ରେଟେଡ୍ ଉଇକ୍ଲିରେ ମୋ ବିରୁଦ୍ଧରେ ମାନହାନି ସୂଚକ ଲେଖା ପ୍ରକାଶ ପାଇଲା ପରେ ମୋର ସମ୍ମାନ ଯଥେଷ୍ଟ ପରିମାଣରେ ହାନି ହୋଇଛି ବୋଲି ଅନୁଭବକରି ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ଅଦାଲତରେ ସାକ୍ଷ୍ୟ ଦେବାପାଇଁ ଇଚ୍ଛା ପ୍ରକାଶ କରିଥିଲେ, ସେମାନେ ହେଲେ ପୂର୍ବତନ କୁଳପତି ଡକ୍ଟର ମନ୍ମଥନାଥ ଦାସ, ପୂର୍ବତନ କୁଳପତି ବୈଦ୍ୟନାଥ ମିଶ୍ର, ଶ୍ରୀ ଶଶିଭୂଷଣ ମିଶ୍ର, ସ୍ୱାଧୀନତା ସଂଗ୍ରାମୀ ଜୟକୃଷ୍ଣ ମହାନ୍ତି, ପତିତପାବନ ପ୍ରଧାନ, ଗିରୀଶ ମହାପାତ୍ର, କ୍ଷେତ୍ରମୋହନ ମଙ୍ଗରାଜ, ପ୍ରିୟରଞ୍ଜନ ମହାପାତ୍ର, ରାମକୃଷ୍ଣ ମିଶ୍ର, ପଦ୍ମଚରଣ ପାତ୍ର, ଅଶୋକ ଦାସ, ଅକ୍ଷୟ କୁମାର ପାଣି, ଚିନ୍ତାମଣି ଲେଙ୍କା, ଆକୁଳାନନ୍ଦ ଦେହୁରୀ, ସୁବାସ ଚନ୍ଦ୍ର ବାରିକ, ମୁକ୍ତିକାନ୍ତ ମଣ୍ଡଳ ଓ ସମ୍ବଲପୁରର ଓକିଲ ମହମ୍ମଦ ମମ୍‌ତାଜ । ଏହା ମଧ୍ୟରେ ଆଠ ବର୍ଷ ବିତିଯିବା ପର୍ଯ୍ୟନ୍ତ ମଧ୍ୟ ମୋକଦ୍ଦମାଗୁଡ଼ିକ ବିଚାରକୁ ଆସିପାରିନଥିଲା । ବିଭିନ୍ନ ବୈଧାନିକ ପ୍ରଶ୍ନ ଉଠାଇବାରୁ ସେହି ପ୍ରଶ୍ନଗୁଡ଼ିକର ନିଷ୍ପତ୍ତିପାଇଁ ମୋକଦ୍ଦମାଗୁଡ଼ିକ ହାଇକୋର୍ଟ ଓ ସୁପ୍ରିମ୍ କୋର୍ଟରେ ଝୁଲିଲା । ଅଭିଯୋଗର ଉତ୍ତର ଦେବାକୁ ଯାଇ ପ୍ରତିବାଦୀମାନେ ଅଦାଲତରେ ସେମାନଙ୍କର ଲିଖିତ ଉତ୍ତର ଦେଲାବେଳେ କହିଥିଲେ ଯେ, ସେମାନଙ୍କର ପ୍ରକୃତ ଉଦ୍ଦେଶ୍ୟ ନଥିଲା ମୋତେ ଛେଳି ବୋଲି କହିବା । ଛେଳି ଗଛ ପତ୍ର ଖାଇଥାଏ, Forest Clearanceରେ ଆଦେଶଦ୍ୱାରା ଗଛ ପତ୍ର ଓ ଜଙ୍ଗଲ ନଷ୍ଟହେଉଥିବାରୁ ମୋର ଆଚରଣ

ଛେଳିଭଳିଆ । ଇତିମଧ୍ୟରେ ବିଭିନ୍ନ ଅଦାଲତମାନଙ୍କରେ ଚାଲିଥିବା ମୋର ଏହି ମାନହାନି ମୋକଦ୍ଦମାଟି ପ୍ରତ୍ୟାହୃତ ହୋଇଯାଇଛି । ଇଲଷ୍ଟ୍ରେଟେଡ୍ ଉଇକ୍ଲି ପକ୍ଷରୁ ତାହାର ପରିଚାଳକ ବେନେଟ୍ କୋଲ୍‌ମେନ୍ ଏଣ୍ଡ କୋ ଏଲ୍.ଟି.ଡି କମ୍ପାନୀ ମୋ ବିରୁଦ୍ଧରେ ପ୍ରକାଶିତ ହୋଇଥିବା ମାନହାନି ସୂଚକ ଲେଖାପାଇଁ ଗଭୀର ଦୁଃଖ ପ୍ରକାଶ କରିବା ହେତୁ, ମୋକଦ୍ଦମାଗୁଡ଼ିକ ପ୍ରତ୍ୟାହୃତ ହେବାପାଇଁ ମୁଁ ସମ୍ମତି ଦେଇଥିଲି । ମୋର ବନ୍ଧୁ ବାରିଷ୍ଟର ସ୍ୱର୍ଗୀୟ ବୀରେନ୍ଦ୍ର ମୋହନ ପଟ୍ଟନାୟକ ଜୀବିତ ଥିବାବେଳେ ଏ ଦିଗରେ ବହୁବାର ଉଦ୍ୟମ ହୋଇଥିଲା । ମାତ୍ର ସ୍ୱର୍ଗତ ପଟ୍ଟନାୟକ ସେଥିରେ ଆଦୌ ରାଜିହୋଇନଥିଲେ । ମୋକଦ୍ଦମାଗୁଡ଼ିକର ପରିଚାଳନା ଦାୟିତ୍ୱ ସଂପୂର୍ଣ୍ଣଭାବେ ବାରିଷ୍ଟର ପଟ୍ଟନାୟକଙ୍କ ଉପରେ ନ୍ୟସ୍ତ ଥିଲା । କେବଳ କୋର୍ଟଫିସ୍ ମୂଲ୍ୟ ଛଡ଼ା ଅନ୍ୟ କୌଣସି ଖର୍ଚ୍ଚ ବହନ କରିବାକୁ ମୋତେ ପଡ଼ିନଥିଲା ।

ପରିବେଶ ସୁରକ୍ଷାପାଇଁ ଶ୍ରୀମତୀ ମେନକା ଗାନ୍ଧୀଙ୍କର ଛଳନାପୂର୍ଣ୍ଣ ଆଚରଣକୁ କ୍ରମେ ଲୋକେ ବୁଝିପାରିଥିଲେ । ତେଣୁ ତାଙ୍କ ଆଚରଣ ଓ କାର୍ଯ୍ୟକଳାପର କଟୁ ସମାଲୋଚନା ଖବର କାଗଜ-ମାନଙ୍କରେ ପ୍ରକାଶିତହେଲା । ତାଙ୍କ କାର୍ଯ୍ୟକଳାପ ଓ ଆଚରଣରେ ସଂସଦର ଅନେକ ସଦସ୍ୟ ମଧ୍ୟ ସନ୍ତୁଷ୍ଟ ନଥିଲେ । ସଂସଦର ଅନେକ ମହିଳା ସଦସ୍ୟା ଏହାକୁ ସମାଲୋଚନା କରିଥିଲେ । ଦିନେ ଆସାମର ପାର୍ଲାମେଣ୍ଟ ସଦସ୍ୟା ଶ୍ରୀମତୀ ବିଜୟା ଚକ୍ରବର୍ତ୍ତୀ ମୋତେ ମୋ ଅଫିସ୍‌ରେ ସାକ୍ଷାତ୍ କରିବାକୁ ଚାହିଁଥିଲେ । ସେଥିପାଇଁ ସେ ମୋ ଅଫିସ୍‌କୁ ଟେଲିଫୋନ୍ କରିବାକୁ ଚାହିଁବାରୁ ତୁରନ୍ତ ସାକ୍ଷାତ୍‌ପାଇଁ ମୁଁ କହିଥିଲି । ମେନକା ଗାନ୍ଧୀଙ୍କ ସହିତ ମୋର ଯେଉଁ ସଂଘର୍ଷ ଚାଲିଥିଲା, କାଳେ ସେଥିରେ କେହି କେହି ପାର୍ଲାମେଣ୍ଟ ସଦସ୍ୟା ଅସନ୍ତୁଷ୍ଟ ହୋଇଥିବେ ଓ ସେହିକଥା ସେ ମଧ୍ୟ କହିବାକୁ ଚାହୁଁଥିବେ ବୋଲି ମୁଁ ଅନୁମାନ କରୁଥିଲି । ମାତ୍ର ଶ୍ରୀମତୀ ଚକ୍ରବର୍ତ୍ତୀ ଆସନ ଗ୍ରହଣ କରିବା ସଙ୍ଗେ ସଙ୍ଗେ ମୋତେ ବଧାଇ ଦେଇ କହିଥିଲେ ଯେ, ମେନକା ଗାନ୍ଧୀଙ୍କୁ ମୁଁ ଠିକ୍ ଚିହ୍ନିପାରିଛି । ତାଙ୍କ ସଂପର୍କରେ ଯେଉଁ ପଦକ୍ଷେପ ନେଉଛନ୍ତି, ସେଥିରେ ପାର୍ଲାମେଣ୍ଟର ଅଧିକାଂଶ ମହିଳା ସଦସ୍ୟା ଖୁସି ଏବଂ ସେହି କଥା ମୋତେ ଜଣାଇଦେବା ତାଙ୍କ ସାକ୍ଷାତ୍‌ର ଉଦ୍ଦେଶ୍ୟ । ଦିନେ ଅଣଆନୁଷ୍ଠାନିକ ଭାବେ ମନ୍ତ୍ରିମଣ୍ଡଳ ବୈଠକରେ ମୋର ଓ ମେନକା ଗାନ୍ଧୀଙ୍କ ବିବାଦ କଥା ପଡ଼ିଥିଲା । ମନ୍ତ୍ରୀ ଶ୍ରୀ ଶରତ ଯାଦବ ହସି ହସି କହୁଥିଲେ, ଦୁଇ ଜଣ ବ୍ୟକ୍ତି ମେନକା ଗାନ୍ଧୀଙ୍କୁ ଭଲ ଭାବରେ ଚିହ୍ନିଛନ୍ତି । ଜଣେ ଥିଲେ ମେନକା ଗାନ୍ଧୀଙ୍କ ଶାଶୁ ଇନ୍ଦିରା ଗାନ୍ଧୀ ଓ ଅନ୍ୟ ଜଣକ ହେଉଛି ଶ୍ରୀ ନୀଳମଣି ରାଉତରାୟ । ଏହା ଶୁଣି ମନ୍ତ୍ରୀମାନଙ୍କ ମଧ୍ୟରେ ହାସ୍ୟରୋଳ ସୃଷ୍ଟିହୋଇଥିଲା ।

ବନ୍ୟସଂପଦ ଓ ପରିବେଶ ମନ୍ତ୍ରଣାଳୟରେ ଦୁଇ ମନ୍ତ୍ରୀଙ୍କ ମଧ୍ୟରେ ଏକରକମ ମତଭେଦର ଅବସାନ ଘଟାଇବାପାଇଁ ପ୍ରଧାନମନ୍ତ୍ରୀ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ କିଛି ପଦକ୍ଷେପ ନନେବାରୁ ମେନକା ଗାନ୍ଧୀ ଓ ପ୍ରୀତିଶ ନନ୍ଦୀଙ୍କ କ୍ରୋଧ ଶ୍ରୀ ସିଂହଙ୍କ ଉପରେ ପଡ଼ିଥିଲା । ସେମାନଙ୍କର ଅଭିଯୋଗ ହେଲା ଯେ, ପ୍ରଧାନମନ୍ତ୍ରୀଙ୍କ ଇଙ୍ଗିତରେ ବଡ଼ ବଡ଼ ବ୍ୟବସାୟୀ, ଶିଳ୍ପପତି ଓ ପୁଞ୍ଜିପତି-ମାନଙ୍କର ସୁବିଧାପାଇଁ ମୁଁ ବହୁସଂଖ୍ୟକ ପ୍ରକଳ୍ପକୁ ଚାଲୁକରିବା ସପକ୍ଷରେ ଅନୁମତି ଦେଇଦେଇଛି । ମେନକା ଗାନ୍ଧୀ ବହୁ ଯୋଜନା ଓ ପ୍ରକଳ୍ପକୁ ବନ୍ଦ କରି ରଖିଥିଲେ । ଏଣୁ ମେନକାଙ୍କୁ ହଟାଇବାପାଇଁ ଷଡ଼ଯନ୍ତ୍ର ହୋଇଥିଲା ଏବଂ ତାହାଦ୍ୱାରା ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ ପ୍ରଭାବିତ ହୋଇ ମୋତେ ଶିଳ୍ପପତିମାନଙ୍କୁ ସାହାଯ୍ୟ କରିବା ଦିଗରେ ଉତ୍ସାହିତ କରିଥିଲେ । ସେଇଥିପାଇଁ ଶ୍ରୀ ପ୍ରୀତିଶ ନନ୍ଦୀ ୧୯୯୦ ମସିହା ଅଗଷ୍ଟ ୨୬ ତାରିଖରେ ଇଲଷ୍ଟ୍ରେଟେଡ୍ ଉଇକ୍ଲିରେ ଲେଖିଥିଲେ—

"Then came Menaka, who confronted big businessmen and corrupt politicians insisting on the common man's right to health. It did not take the empire long to strike back. V. P. Singh promptly hired Nilamani

Routray to contain her. The senile old man has now reduced the Environment Ministry to a joke. Menaka's plan to set up courts that would try environmental criminals– a brave step, brilliantly strategised by Justice Bhagawati was promptly stymied to project big business."

ପରିବେଶ ବିଲ୍ (Environment Bill)ଟିକୁ ମୁଁ ଅନୁମୋଦନ ନକରିବାରୁ ତାହା ସେହି ପାର୍ଲାମେଣ୍ଟ ଅଧିବେଶନରେ ଆଗତ କରିବାର ସମ୍ଭାବନା ରହିଲାନାହିଁ । ଏଥିପାଇଁ କୁଆଡ଼େ ମେନକା ଗାନ୍ଧୀ ଅତିରିକ୍ତ କ୍ଷୁବ୍ଧହୋଇ ରାଷ୍ଟ୍ରମନ୍ତ୍ରୀ ପଦରୁ ଇସ୍ତଫାଦେଇଛନ୍ତି ବୋଲି ଖବରକାଗଜରେ ପ୍ରକାଶ ପାଇଲା । ମୁଁ ସେ ସମୟରେ ଭୁବନେଶ୍ୱରରେ ଥାଏ । ପ୍ରଧାନମନ୍ତ୍ରୀ ସେତେବେଳେ ବିଦେଶ ଯାତ୍ରାରେ ଯାଇ ମାଲେୟେସିଆରେ ଥିଲେ । ସେଠାକାର ସମ୍ବାଦପତ୍ରରେ ମେନକା ଗାନ୍ଧୀଙ୍କ ଇସ୍ତଫା କଥା ପ୍ରକାଶପାଇଥାଏ । ଶ୍ରୀ ଭି.ପି.ସିଂହ ମାଲେୟେସିଆରୁ ମୋ ଭୁବନେଶ୍ୱର ବାସଭବନକୁ ଟେଲିଫୋନ୍ କରି ଇସ୍ତଫା ସମ୍ବାଦର ସତ୍ୟାସତ୍ୟ ବିଷୟରେ ମୋଠାରୁ ଜାଣିବାକୁ ଚାହିଁଥିଲେ । ସେ ଟିକେ ବିବ୍ରତ ହେଲା ଭଳି ଜଣାପଡୁଥିଲେ । ବିଷୟଟି ତାଙ୍କୁ ଚୁମ୍ବକରେ ବୁଝାଇଦେଇଥିଲି ଏବଂ ପ୍ରଧାନମନ୍ତ୍ରୀ ଗସ୍ତରୁ ଫେରିଲେ ତାଙ୍କୁ ସବିଶେଷ ବିବରଣୀ ଦେବି ବୋଲି କହିଥିଲି । ଏଥିପାଇଁ ପ୍ରଧାନମନ୍ତ୍ରୀଙ୍କର ବିବ୍ରତ ହେବାର କାରଣନାହିଁ ବୋଲି ମୁଁ ତାଙ୍କୁ କହିଥିଲି । ରାଜଧାନୀକୁ ଫେରିବା ପରେ ମୁଁ ତାଙ୍କୁ ଯାଇ ସାକ୍ଷାତ୍ କରିଥିଲି । ପରିବେଶ ବିଲ୍ ନେଇ ଆମ ଭିତରେ ମତଭେଦ ହୋଇଥିବା କଥା ସେ ଖବର କାଗଜରୁ ପଢ଼ିଥିଲେ ବୋଲି କହିଥିଲେ । ସେ କହିଥିଲେ ଯେ, ବିଲ୍‌ର ନାମରୁ ଜଣାଯାଉଛି ଯେ ଏହା ନିଶ୍ଚୟ ଭଲହୋଇଥିବ । "It is high sounding but attractive and suggestive too". ବିଲ୍ ସମ୍ବନ୍ଧରେ ମୋର ନିଜ ମତ ଛଡ଼ା କେନ୍ଦ୍ର ସରକାରଙ୍କର Committee of Secretariesଙ୍କର ମତାମତ ଓ ଆଶଙ୍କା କଥା ମୁଁ ତାଙ୍କୁ ଜଣାଇଥିଲି । ବିଲ୍‌ଟି ଆଇନରେ ପରିଣତ ହେଲେ ଯଦି ଅବାଞ୍ଛିତ ଓ ବିବାଦଜନକ ସମସ୍ୟା ସୃଷ୍ଟିକରିବାର ଆଶଙ୍କା ଅଛି ତା'ହେଲେ ଜଷ୍ଟିସ୍ ପି.ଏନ୍. ଭଗବତୀଙ୍କ ଭଳିଆ ଜଣେ ସୁପ୍ରିମ୍ କୋର୍ଟର ପୂର୍ବତନ ମୁଖ୍ୟବିଚାରପତି କିପରି ଏହାକୁ ତାରିଫ୍ କରି ଖବର କାଗଜମାନଙ୍କରେ ବିବୃତି ଦେଇନଥାନ୍ତେ । ଏହି ବିଲ୍‌ଟି ଯେ ଜଷ୍ଟିସ୍ ଭଗବତୀଙ୍କ ପ୍ରେରଣାରେ କରାଯାଇଛି, ନିଜେ ଜଷ୍ଟିସ୍ ଭଗବତୀ ଚିଠାବିଲ୍‌ଟି ପ୍ରସ୍ତୁତ କରିଛନ୍ତି ସେକଥା ଜାଣି ଶ୍ରୀ ଭି. ପି. ସିଂହ ଆଶ୍ଚର୍ଯ୍ୟ ହୋଇଥିଲେ । ଏ ସମ୍ବନ୍ଧରେ ରାଷ୍ଟ୍ରମନ୍ତ୍ରୀ ମେନକା ଗାନ୍ଧୀଙ୍କ ସହିତ ଜଷ୍ଟିସ୍ ଭଗବତୀ କିପରି ଘଣ୍ଟା ଘଣ୍ଟା ଧରି ଆଲୋଚନା କରୁଥିଲେ ସେ ବିଷୟରେ ସେକ୍ରେଟେରୀ ମହେଶ ପ୍ରସାଦ ମୋତେ ଯେଉଁ ରିପୋର୍ଟ ଦେଇଥିଲେ ମୁଁ ସେକଥା ତାଙ୍କୁ କହିଥିଲି । ମୋ କଥା ଶୁଣି ସେ ବିଶେଷ ଚିନ୍ତିତ ହେବାପରି ଜଣାପଡ଼ିଲା । କେନ୍ଦ୍ର ସରକାରଙ୍କର ଆଇନ ବିଭାଗ ଓ ବିଲ୍ ଡ୍ରାଫ୍‌ଟ କରିବା ସମ୍ବନ୍ଧରେ ବିଶେଷଜ୍ଞମାନେ ଥାଉ ଥାଉ ଜଣେ ଅବସରପ୍ରାପ୍ତ ସୁପ୍ରିମ୍ କୋର୍ଟର ମୁଖ୍ୟବିଚାରପତି ବିଲ୍ ଡ୍ରାଫଟ କରିବା ଆଗ୍ରହକୁ ସେ ପସନ୍ଦ ନକରିବା ପରି ଜଣାଯାଉଥିଲେ । ବିଷୟଟିକୁ ସେହି ଅଧିବେଶନରେ ଆଣିବା ପ୍ରସ୍ତାବଟିକୁ ମୁଁ ନାମଞ୍ଜୁର କରିଥିବାରୁ ମୋର କାର୍ଯ୍ୟ ଅଗଣତାନ୍ତ୍ରିକ ଓ ଜନସ୍ୱାର୍ଥ ବିରୋଧୀ ବୋଲି କହି ଜଷ୍ଟିସ୍ ଭଗବତୀ ଦେଇଥିବା ବିବୃତି ତାଙ୍କ ଭଳି ଜଣେ ଉଚ୍ଚପଦସ୍ଥ ବିଚାରପତିଙ୍କ ପକ୍ଷରେ ସମୀଚୀନ ହୋଇନାହିଁ ବୋଲି ମୁଁ ପ୍ରଧାନମନ୍ତ୍ରୀଙ୍କୁ କହିଥିଲି । ମୁଁ ଆହୁରି କହିଥିଲି, ଜଷ୍ଟିସ୍ ଭଗବତୀ ମୋତେ ଭଲଭାବରେ ଜାଣିଥିଲେ ଏବଂ ସେ ଚାହିଁଥିଲେ ଟେଲିଫୋନ୍‌ରେ ପଚାରି ସବୁ କଥା ବୁଝିପାରିଥା'ନ୍ତେ । କଥାଟା ମୋ ପାଖରୁ ନବୁଝି ମୋ ଅଧୀନରେ ଥିବା ରାଷ୍ଟ୍ରମନ୍ତ୍ରୀଙ୍କ ପାଖରୁ ବୁଝିବା କେତେଦୂର ସମୀଚୀନ ତାହାହିଁ ବିଚାର୍ଯ୍ୟ ବୋଲି ମୁଁ ପ୍ରଶ୍ନ ଉଠାଇଥିଲି । ମୋ କଥା ସବୁ ଶୁଣିବା ପରେ ପ୍ରଧାନମନ୍ତ୍ରୀ ସନ୍ତୁଷ୍ଟ ହେଲାଭଳି ମୁଁ ମନେକରିଥିଲି । ସାକ୍ଷାତ୍ ସମୟରେ ଶ୍ରୀମତୀ ମେନକା ଗାନ୍ଧୀ ରାଷ୍ଟ୍ରମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ କି ନାହିଁ ସେ ବିଷୟରେ ପ୍ରଧାନମନ୍ତ୍ରୀ କିଛି କହିନଥିଲେ ।

ଏନ୍‌ଭାଇରନ୍‌ମେଣ୍ଟ ବିଲ୍ (Environment Bill)ର ଉଚ୍ଚ କ୍ଷମତାପୂର୍ଣ୍ଣ ଏନ୍‌ଭାଇରନ୍‌ମେଣ୍ଟାଲ କମିଶନ (Environmental Commission)ଗଠନ ସହିତ ଷ୍ଟେଟ୍ ଏନ୍‌ଭାଇରନ୍‌ମେଣ୍ଟାଲ୍ କୋର୍ଟ (State Environmental Court)ଏବଂ ନେସ୍‌ନାଲ୍ ଏନ୍‌ଭାଇରନ୍‌ମେଣ୍ଟାଲ କୋର୍ଟ (National Environmental Court)ଥିବା ବିଷୟ ଆଗରୁ ଉଲ୍ଲେଖ କରାଯାଇଛି । ମନେହେଉଥାଏ, କେତେକାଂଶରେ ଏହି ସଂସ୍ଥା ରାଷ୍ଟ୍ରପତିଙ୍କର ପ୍ରଶାସନିକ ସଂସ୍ଥାର ଗୋଟିଏ ସମାନ୍ତରାଳ ସଂସ୍ଥା ଭଳି । ପ୍ରଥମ ଅବସ୍ଥାରେ ଯେତେବେଳେ ସ୍ୱତନ୍ତ୍ର ପରିବେଶ ଅଦାଲତ ବିଷୟ କଳ୍ପନା କରାଯାଇଥିଲା ସେତେବେଳେ ଏନ୍‌ଭାଇରନ୍‌ମେଣ୍ଟ କମିଶନ ସଂସ୍ଥା ଚିନ୍ତାର ବହିର୍ଭୂତ ଥିଲା । ପରେ ଚିଠା ବିଲ୍ ପ୍ରସ୍ତୁତ କଲାବେଳେ ଏନ୍‌ଭାଇରନ୍‌ମେଣ୍ଟ କମିଶନ (Envirnoment Commission) ପ୍ରସ୍ତାବଟି ଭର୍ତ୍ତି କରାଯାଇଥିଲା ବୋଲି ମନେହେଉଛି । କୁହାଯାଉଥିଲା, ବିଲ୍ ପ୍ରସ୍ତୁତ କରିବାର ଦାୟିତ୍ୱ ଯାହାଙ୍କ ଉପରେ ଥିଲା, ସେ ତାଙ୍କର ପ୍ରଚ୍ଛନ୍ନ ଅଭିଳାଷ ପୂରଣ ଉଦ୍ଦେଶ୍ୟରେ ଏ ପ୍ରକାର ସଂସ୍ଥା ବିଷୟ କଳ୍ପନା କରିଥିଲେ । ବିଲ୍‌ର ଏହି ବ୍ୟବସ୍ଥାକୁ ଲକ୍ଷ୍ୟକରି ସମ୍ବାଦପତ୍ରମାନଙ୍କରେ (Tailor Made) ଜଣଙ୍କର ମାପଚୁପକୁ ଖାପଖାଇବା ଭଳି କୁର୍ତ୍ତା ତିଆରି କରାଯାଇଛି ବୋଲି ପ୍ରକାଶିତ ହୋଇଥିଲା । ଦୈବ ଯୋଗକୁ ବିଲ୍ ପ୍ରସ୍ତୁତ କରିବାରେ ମୁଖ୍ୟନାୟକ ଜଣେ ପୂର୍ବତନ ବିଚାରପତି ଥିଲେ । ପ୍ରସ୍ତାବିତ ଏନ୍‌ଭାଇରନ୍‌ମେଣ୍ଟାଲ କମିଶନ (Environmental Commission) ଓ ତାହାର ଚେୟାର-ମ୍ୟାନ୍‌କୁ ବ୍ୟାପକ କ୍ଷମତା ଦିଆଯାଇଥିଲା । ସେ ପ୍ରକାର ଶାସନ କ୍ଷମତା ଉପଭୋଗ କରିବା ଉଦ୍ଦେଶ୍ୟରେ ଏନ୍‌ଭାଇରନ୍‌ମେଣ୍ଟ କମିଶନ (Envornment Commission)ର ଚେୟାରମ୍ୟାନ୍ ପଦ ସୃଷ୍ଟି କରାଯାଇଥିଲା ବୋଲି କହିଲେ ଅପ୍ରାସଙ୍ଗିକ ହେବନାହିଁ । ଖବରକାଗଜମାନଙ୍କରେ ଏ ପ୍ରକାର ତଥ୍ୟ ସବୁ ପ୍ରକାଶିତ ହେବାପରେ ଏନ୍‌ଭାଇରନ୍‌ମେଣ୍ଟାଲ ବିଲ୍ (Environmental Bill) ସମ୍ବନ୍ଧରେ ମୋର ପଦକ୍ଷେପକୁ ସବୁକ୍ଷେତ୍ରରୁ ସମର୍ଥନ ମିଳିଥିଲା ।

## ପ୍ରଧାନମନ୍ତ୍ରୀଙ୍କ ବିଚିତ୍ର ରୀତି

ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ବ୍ୟକ୍ତିତ୍ୱ ପ୍ରତି ମୋର ଅତ୍ୟନ୍ତ ଶ୍ରଦ୍ଧା ଥିବା କଥା ମୁଁ ଅନେକ ଦୃଷ୍ଟାନ୍ତ ଓ ବିବରଣୀ ସହ ପୂର୍ବରୁ ଉଲ୍ଲେଖ କରିଛି । ସେ ଶ୍ରଦ୍ଧା ଏବେ ମଧ ଅତୁଟ ରହିଛି । କିନ୍ତୁ କଥା ଅଛି 'ମୁନିନାଞ୍ଚ ମତିଭ୍ରମ' ! ବ୍ୟକ୍ତିଗତ ଆନୁଗତ୍ୟ ଅନେକ ସମୟରେ ବିଚାରବନ୍ତ ବ୍ୟକ୍ତିଙ୍କୁ ମଧ ଭ୍ରାନ୍ତ କରିପକାଏ । ସେହିପରି ରାଜନୈତିକ ପଶାପାଲିରେ ବସି ମଣିଷ କପଟ ଆଚରଣ କରିବାକୁ ବାଧ ହୋଇଯାଇଥାଏ । ଇନ୍ଦିରା ଗାନ୍ଧୀଙ୍କ ଅମଳରୁ ସଂଜୟ ଗାନ୍ଧୀଙ୍କ ସହିତ ଭି. ପି. ସିଂହଙ୍କର ଘନିଷ୍ଠତା ଏଥିପୂର୍ବରୁ ଲେଖିଛି । ହୁଏତ ସେହି କାରଣରୁ ସେ ସଂଜୟଙ୍କ ବିଧବାପତ୍ନୀଙ୍କ ପ୍ରତି ଅତିରିକ୍ତ ଦୟା ପରବଶ ହୋଇପଡୁଥିଲେ । ଏହାର ପରିଣତିସ୍ୱରୂପ ତାଙ୍କ ପରି ଜଣେ ଅଭିଜ୍ଞ ବ୍ୟକ୍ତି ପ୍ରଶାସନିକ ନୀତିକୁ ଉଲ୍ଲଙ୍ଘନ କରିପକାଉଥିବାର ଲକ୍ଷ୍ୟ କରାଯାଇଥିଲା, ଯାହା ଫଳରେ ଗୋଟିଏ ଘଟଣାରେ ଥରେ ସେ ପ୍ରଧାନମନ୍ତ୍ରୀ ଭାବରେ ନିଜପାଇଁ ଓ ମୋପାଇଁ ଅତର୍କିତ ଭାବରେ ଅତି ଅଶୋଭନୀୟ ପରିସ୍ଥିତି ସୃଷ୍ଟି କରି ପକେଇଥିଲେ । ତାଙ୍କ ନିଜ କୃତ ସେହି ଅଶୋଭନୀୟ ପରିସ୍ଥିତିକୁ ତୁରନ୍ତ ସଂଶୋଧନ କରିବାକୁ ପଡ଼ିଥିଲା । ମନ୍ତ୍ରିମଣ୍ଡଳର ମିଳିତ ଦାୟିତ୍ୱ ଓ ଗୋପନୀୟତା ଦୃଷ୍ଟିରୁ ସେକଥା ମୁଁ ସେତେବେଳେ ପ୍ରକାଶକରିନଥିଲି ।

ଆମ ଦେଶରେ ଦେବଗୌଡ଼ା ସରକାର ଅମଳରୁ ଏଯାବତ୍ ଭି.ପି. ସିଂହ ଦେଶପାଇଁ ବିଭିନ୍ନ ଜଟିଳ ପରିସ୍ଥିତି ବେଳେ ତୃତୀୟ ଶକ୍ତି (ଥାର୍ଡ ଫ୍ରଣ୍ଟ) ଗଠନ ନାଆଁରେ ନିଜ ରାଜନୈତିକ ଭୂମିକାକୁ ଯେପରି ନୂଆ ନୂଆ ମୋଡ଼ ଦେଉଛନ୍ତି ତାହା ତାଙ୍କର ପୂର୍ବନୀତି ଓ ଆଦର୍ଶ ସହିତ ଖାପ ଖାଉନାହିଁ । ବସ୍ତୁତଃ ସେ କଂଗ୍ରେସକୁ ଏପରିକି ସୋନିଆ ଗାନ୍ଧୀଙ୍କୁ ଗାଦିନସୀନ କଲାଭଳି ରାଜନୈତିକ ଗୋଟି

ଚଳାରେ ସାମିଲ ହୋଇଯାଉଛନ୍ତି । ଏହା ପଛରେ ତାଙ୍କର କାହା ପ୍ରତି ସୁପ୍ତ ପ୍ରତିହିଂସାପରାୟଣତା ଅବା ନିଜର ଅସହିଷ୍ଣୁତା କିମ୍ବା ଉଭୟ କାରଣ ଥାଇପାରେ ବୋଲି ନିଷ୍ପକ୍ଷ ପର୍ଯ୍ୟବେକ୍ଷକମାନଙ୍କର ଧାରଣା ହେଉଛି ।

୧୯୯୦ ଅକ୍ଟୋବର ମାସ ପ୍ରଥମ ସପ୍ତାହରେ ଥାଇଲାଣ୍ଡ ରାଜଧାନୀ ବ୍ୟାଙ୍କକ୍‌ଠାରେ ଗୋଟିଏ ଉଚ୍ଚସ୍ତରୀୟ ଆନ୍ତର୍ଜାତୀୟ ପରିବେଶ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଆମ ଦେଶ ପ୍ରତିନିଧି ଦଳର ନେତାରୂପେ ମୁଁ ଯୋଗ ଦେବା କଥା ବହୁ ପୂର୍ବରୁ ସ୍ଥିରହୋଇଯାଇଥାଏ । ମୋ ସହିତ ଆମ ମନ୍ତ୍ରଣାଳୟର ଜଣେ ଯୁଗ୍ମ ସଚିବ ଓ ମୋର ବ୍ୟକ୍ତିଗତ ସଚିବ ଯିବାର ଥାଏ । ସମ୍ମିଳନୀରେ ଯୋଗଦେଉଥିବା ବିଭିନ୍ନ ଦେଶର ମନ୍ତ୍ରୀମାନଙ୍କର ନାମ ତାଲିକା ଏବଂ କର୍ମସୂଚୀ ଇତ୍ୟାଦି ସମସ୍ତ କାଗଜପତ୍ର ତଥା ନିମନ୍ତ୍ରଣପତ୍ରଗୁଡ଼ିକ ମଧ୍ୟ ସମ୍ମିଳନୀ ଆୟୋଜନକାରୀଙ୍କ ପକ୍ଷରୁ ସମସ୍ତଙ୍କ ପାଖରେ ପହଞ୍ଚି ସାରିଥାଏ । ଆମର ବିମାନ ଟିକେଟ୍ ହୋଇସାରିଥାଏ । ସମ୍ମିଳନୀର ପ୍ରାୟ ସପ୍ତାହକ ପୂର୍ବରୁ ନରୱେର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗ୍ରୋହାରଲେମ୍ ବ୍ରୁଣ୍ଟାଲେଣ୍ଡ (Mrs. Gro Harlem Bruntland) ନୂଆଦିଲ୍ଲୀ ଆସିଥିବା ଅବସରରେ ରାଷ୍ଟ୍ରମନ୍ତ୍ରୀ ଶ୍ରୀମତୀ ମେନକା ଗାନ୍ଧୀ ତାଙ୍କୁ ସାକ୍ଷାତ୍ କରିବାର ସୁଯୋଗ ନେଇଥିଲେ । ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗ୍ରୋ ହାରଲେମ୍ ବ୍ରୁଣ୍ଟାଲେଣ୍ଡଙ୍କର ମଧ୍ୟ ବ୍ୟାଙ୍କକ୍ ସମ୍ମିଳନୀରେ ଯୋଗଦେବାର ଥାଏ । ଶ୍ରୀମତୀ ଗାନ୍ଧୀ ସେହି ଅତିଥିଙ୍କୁ କ'ଣ କହିଲେ କେଜାଣି ଯାହା ଫଳରେ ନରୱେର ପ୍ରଧାନମନ୍ତ୍ରୀ ଆମ ପ୍ରଧାନମନ୍ତ୍ରୀଙ୍କୁ କୁଆଡ଼େ କହିଥିଲେ ଯେ, ବ୍ୟାଙ୍କକ୍‌କୁ ଯାଉଥିବା ଆମ ଦେଶ ପ୍ରତିନିଧି ଦଳର ନେତାରୂପେ ମେନକା ଗାନ୍ଧୀ ଗଲେ ଭଲହେବ । ଏହା ଫଳରେ ବ୍ୟାଙ୍କକ୍‌କୁ ଆମ ଦେଶର ପ୍ରତିନିଧି ଦଳର ନେତାରୂପେ ମେନକା ଯିବେ ବୋଲି ପ୍ରଧାନମନ୍ତ୍ରୀ ସ୍ଥିର କରିଥିବା କଥା ମୋ ବିଭାଗକୁ ନିର୍ଦ୍ଦେଶ ଆସିଥିଲା । ପରେ ପୁଣି ମୋ ବିଭାଗର ସଚିବ ଶ୍ରୀ ମହେଶ ପ୍ରସାଦଙ୍କ ପାଖକୁ କ୍ୟାବିନେଟ୍ ସେକ୍ରେଟେରୀଙ୍କ ନିର୍ଦ୍ଦେଶ ଆସିଲା ବ୍ୟାଙ୍କକ୍ ସମ୍ମିଳନୀ ସମ୍ବନ୍ଧୀୟ କାଗଜପତ୍ର ମେନକା ଗାନ୍ଧୀଙ୍କୁ ଦେଇଦେବାପାଇଁ ।

ଏ ଘଟଣା ଜାଣି ମୁଁ ଅତ୍ୟନ୍ତ ବିସ୍ମିତ ହୋଇଥିଲି । ସମ୍ମିଳନୀ ଆରମ୍ଭ ହେବାକୁ ମାତ୍ର ୪।୫ ଦିନ ସମୟ ଥାଏ । ଏହା ଭିତରେ ଏ ପ୍ରକାର ଅସୁନ୍ଦର ପରିସ୍ଥିତି ଉପୁଜିପାରେ ବୋଲି ମୋର ଧାରଣା ନଥିଲା । ମନେ ମନେ ସ୍ଥିରକରିନେଲି ଯେ, ନିଶ୍ଚିତ ଭାବରେ ଏହାର ଦୃଢ଼ ପ୍ରତିବାଦ ମୁଁ କରିବି । ସମ୍ମିଳନୀ କାଗଜପତ୍ର ସବୁ ମୋ ପାଖରେ ଥାଏ ଏବଂ ସେକ୍ରେଟେରୀଙ୍କୁ କହିଲି ଯେ କ୍ୟାବିନେଟ୍ ସେକ୍ରେଟେରୀଙ୍କୁ ଜଣାଇଦେବାପାଇଁ ମୁଁ କାଗଜପତ୍ର ଦେଇପାରିବିନାହିଁ । କ୍ୟାବିନେଟ୍ ସେକ୍ରେଟେରୀ ତୁରନ୍ତ କାଗଜପତ୍ର ମେନକା ଗାନ୍ଧୀଙ୍କୁ ଦେବାପାଇଁ ବାରମ୍ବାର ମହେଶ ପ୍ରସାଦଙ୍କୁ କହୁଥା'ନ୍ତି । ଶେଷରେ ମୁଁ ପ୍ରଧାନମନ୍ତ୍ରୀଙ୍କୁ ଦେଖାକରିସାରିବା ପରେହିଁ କାଗଜପତ୍ର ଦେବା ପ୍ରଶ୍ନ ଉଠିପାରେ ବୋଲି କ୍ୟାବିନେଟ ସେକ୍ରେଟରୀଙ୍କୁ ଜଣାଇଦେବାପାଇଁ ଆମ ସେକ୍ରେଟେରୀଙ୍କୁ କହିଥିଲି । ପରଦିନ ପ୍ରଧାନମନ୍ତ୍ରୀଙ୍କୁ ମୁଁ ସାକ୍ଷାତ୍ କରିଥିଲି । ପ୍ରତିନିଧି ଦଳର ନେତା ପରିବର୍ତ୍ତନ କଥା ବୈଦେଶିକ ମନ୍ତ୍ରୀ ଶ୍ରୀ ଇନ୍ଦ୍ରକୁମାର ଗୁଜୁରାଲ ଜାଣିଛନ୍ତି ବୋଲି ତାଙ୍କୁ ଯୋଗାଯୋଗ କରିବାପାଇଁ ସେ ମୋତେ କହିଥିଲେ । କିନ୍ତୁ ଗୁଜୁରାଲ ମୋତେ କହିଥିଲେ, ସେ କିଛି କରିନାହାନ୍ତି । ଆମ ପ୍ରଧାନମନ୍ତ୍ରୀଙ୍କ ସହିତ ନରୱେ ପ୍ରଧାନମନ୍ତ୍ରୀ ମେନକା ଗାନ୍ଧୀଙ୍କ ବିଷୟରେ କଥାବାର୍ତ୍ତା ହେଉଥିବା କଥା ସେ ଜାଣନ୍ତି । ତେଣୁ ଏହି ସମ୍ବନ୍ଧରେ ପ୍ରଧାନମନ୍ତ୍ରୀଙ୍କ ଅଫିସରୁ (P.M.O.) ନିର୍ଦ୍ଦେଶ ଆସି ସାରିଥାଏ । ମୁଁ ପ୍ରଧାନମନ୍ତ୍ରୀଙ୍କୁ ଗୁଜୁରାଲଙ୍କ ଉତ୍ତର ଜଣାଇବାକୁ ଯିବାବେଳେ ସେ ମୋତେ ଦେଖି ଚିନ୍ତିତ ଓ ବିବ୍ରତ ହୋଇପଡ଼ିବା ପରି ଜଣାଗଲା । ବିଦେଶର ଜଣେ ପ୍ରଧାନମନ୍ତ୍ରୀଙ୍କ ଅନୁରୋଧରେ ସେ ମୋ ବଦଳରେ ମେନକା ଗାନ୍ଧୀଙ୍କୁ ଆମ ଦେଶ୍ ପ୍ରତିନିଧି ଦଳର ନେତା ମନୋନୀତ କରିଦେଇଛନ୍ତି । ପରବୁଦ୍ଧିରେ ସେ ଯାହା କରିପକାଇଥିଲେ ସେଥିରୁ ମୁକୁଳିବାପାଇଁ ଟିକିଏ ବିରକ୍ତି ଭାବ ସହ ହଠାତ୍ ସେ ନିଜର ସ୍ୱାଧିକାର

ପ୍ରସଙ୍ଗ ଉଲ୍ଲେଖକରି କହିଲେ– "As Prime Minister have I not got the right to change the leader of the deligation." ମୁଁ କହିଥିଲି– "ofcourse, as Prime-Minister, you have that right. But as a Minister I have got the right to protest against such humiliation 'ପ୍ରତିନିଧି ଦଳର ନେତା ମୁଁ ବୋଲି ଘୋଷଣା କରାଯାଇଛି ଏବଂ ମୋ ପାଖକୁ ନିମନ୍ତ୍ରଣ ସହିତ ସମସ୍ତ କାଗଜପତ୍ର ଆସିଛି । ଶେଷ ମୁହୂର୍ତ୍ତରେ ମୋତେ ବଦଳାଇ ମୋର ଯେ ରାଷ୍ଟ୍ରମନ୍ତ୍ରୀ ତାଙ୍କୁ ଯଦି ଦଳର ନେତାରୂପେ ଆପଣ ପରିବର୍ତ୍ତନ କରନ୍ତି, ତାହାହେଲେ ଏହାଠାରୁ ମୋ ପାଇଁ ବଡ଼ ଅପମାନ କ'ଣ ହୋଇପାରେ ବୋଲି ମୁଁ ତାଙ୍କୁ ପଚାରିଥିଲି । ମୋ କଥା ଶୁଣି ସେ ଚୁପ୍‌ହୋଇଗଲେ ଏବଂ ସାଙ୍ଗେ ସାଙ୍ଗେ ଅନ୍ୟ କାହା ସହିତ କଥାହେବାପାଇଁ ପାଖ ଘରକୁ ଚାଲିଗଲେ । ମୁଁ ମଧ୍ୟ ତାଙ୍କଠାରୁ କୌଣସି ଉତ୍ତର ପାଇବା ଅନାବଶ୍ୟକ ଜ୍ଞାନକରି ସେଠାରୁ ଚାଲିଆସିଲି । ମୋର ଇସ୍ତଫା ଦେବାଛଡ଼ା ଆଉ କିଛି ପନ୍ଥା ନାହିଁ ବୋଲି ସ୍ଥିରକରିନେଇଥିଲି । ମୋ ଇସ୍ତଫାପତ୍ରର ନୀତିଗତ ଓ ବାସ୍ତବ ପ୍ରଶ୍ନ ଏବଂ ଯୁକ୍ତି ସଂପର୍କରେ ମୁଁ ମନେ ମନେ ଏକ ଚିଠା ଏବଂ ଚିଠିର ଭାଷା ସ୍ଥିରକରିନେଲି । ଚିଠିର ଡିକ୍‌ଟେସନ ଦେବାପାଇଁ ବାହାରିଛି ଠିକ୍ ଏତିକିବେଳେ ସେକ୍ରେଟେରୀ ମହେଶ ପ୍ରସାଦ ମୋତେ ଜଣାଇଥିଲେ ଯେ ଆମ ଦେଶ ପ୍ରତିନିଧି ଦଳର ନେତୃତ୍ୱ ପରିବର୍ତ୍ତନ ହେବନାହିଁ ଏବଂ ଶ୍ରୀମତୀ ମେନକା ଗାନ୍ଧୀ ଦଳର ଜଣେ ସଭ୍ୟ ରୂପେ ସମ୍ମିଳନୀରେ ଯୋଗଦେବେ ବୋଲି ପ୍ରଧାନମନ୍ତ୍ରୀଙ୍କ ଅଫିସରୁ ପରିବର୍ତ୍ତିତ ନିର୍ଦ୍ଦେଶ ଆସିଛି । ଏହାପରେ ଆମେ ଏକତ୍ର ହୋଇ ଯାଇ ବ୍ୟାଙ୍କକ୍ ସମ୍ମିଳନୀରେ ଯୋଗଦେଇଥିଲୁ । ବ୍ୟାଙ୍କକ୍‌ରେ ପହଞ୍ଚି ଆମେ ସମସ୍ତେ ଗୋଟିଏ ହୋଟେଲରେ ରହିଲୁ । ଶ୍ରୀମତୀ ମେନକାଙ୍କର ମୋ ପ୍ରତି ସୌଜନ୍ୟର ଅଭାବ ଲକ୍ଷ୍ୟ-କରିନଥିଲି । ସମ୍ମିଳନୀ କାର୍ଯ୍ୟରେ ତାଙ୍କଠାରୁ ପୂର୍ଣ୍ଣ ସହଯୋଗ ପାଇଥିଲି । ସମ୍ମିଳନୀକୁ ଆସିଥିବା ବହୁ ଦେଶରୁ ପରିବେଶ ମନ୍ତ୍ରୀମାନଙ୍କଠାରୁ ବୁଝିଥିଲି ଯେ ପରିବେଶକୁ ନଷ୍ଟ ବା କଳୁଷିତ କରିବା ସଂପର୍କରେ କିମ୍ବା ସେହି ସମ୍ପର୍କୀୟ ଅଭିଯୋଗ ଓ ସମସ୍ୟାଗୁଡ଼ିକର ବିଚାରପାଇଁ ସେମାନଙ୍କ ଦେଶରେ କୌଣସି ସ୍ୱତନ୍ତ୍ର ଅଦାଲତ ନଥିଲା । ସାଧାରଣ ଫୌଜଦାରୀ ଓ ଦେୱାନୀ ଅଦାଲତରେ ଏ ପ୍ରକାର ଅଭିଯୋଗର ବିଚାର ସେମାନଙ୍କ ଦେଶରେ ହେଉଥିଲା ।

## ବନାଗ୍ନି ନିର୍ବାପନ ଯାନ : ଅପବ୍ୟବହାର ଉପାଖ୍ୟାନ

ବନାଗ୍ନିଦ୍ୱାରା ଧ୍ୱଂସମୁଖରୁ ବନ୍ୟ ସଂପଦକୁ ରକ୍ଷାକରିବାପାଇଁ ଆକାଶମାର୍ଗରୁ ଅଗ୍ନି ନିର୍ବାପନ କାର୍ଯ୍ୟ ନିମନ୍ତେ ୟୁ.ଏନ୍.ଡି.ପି. 'ସେସନ୍' ନାମକ ଗୋଟିଏ ବ୍ୟୋମଯାନ ଆମ ଦେଶ ବନ୍ୟସମ୍ପଦ ଓ ପରିବେଶ ବିଭାଗକୁ ଦେଇଥିଲେ । ବ୍ୟୋମଯାନଟିଦ୍ୱାରା ଆକାଶମାର୍ଗରୁ ନିଆଁ ଲାଗିଥିବା ସ୍ଥାନ ଠାବ କରି ଏହି ନିଆଁକୁ ଆୟତ୍ତ କରାଯାଏ । ଇନ୍ଧନ ମୂଲ୍ୟଛଡ଼ା ରକ୍ଷଣାବେକ୍ଷଣ ପାଇଁ ଏହି ଯାନପିଛା ବର୍ଷକୁ ପନ୍ଦର ଲକ୍ଷ ଟଙ୍କା ଖର୍ଚ୍ଚ ପରିବେଶ ମନ୍ତ୍ରଣାଳୟକୁ ବହନ କରିବାକୁ ପଡୁଥିଲା । ଦେଖାଗଲା ଯେ, ଯେଉଁଥିପାଇଁ ୟୁ.ଏନ୍.ଡି.ପି. ଏହି ଉଡ଼ାଜାହାଜଟିକୁ ବ୍ୟବହାର କରିବାପାଇଁ ଆମକୁ ଦେଇ-ଥିଲେ ତାହା କରାନଯାଇ ଉଡ଼ାଜାହାଜର ଅପବ୍ୟବହାର କରାଯାଉଥିଲା । ରାଷ୍ଟ୍ରମନ୍ତ୍ରୀ ଶ୍ରୀମତୀ ମେନକା ଗାନ୍ଧୀ ତାଙ୍କ ନିର୍ବାଚନମଣ୍ଡଳୀରେ ଗସ୍ତ କାମରେ ଅନବରତ ଓ ଏହାକୁ ବୁଲିବାପାଇଁ ବ୍ୟବହାର କରିଥିଲେ । ହିସାବରୁ ଜଣାଗଲା ସେତେବେଳକୁ ମୋଟ ୩୦୦ ଘଣ୍ଟା ଉଡ଼ାଣ ଭିତରୁ ମାତ୍ର ୪ ଘଣ୍ଟାପାଇଁ ତାହା ଜଙ୍ଗଲ ନିଆଁଲିଭା କାର୍ଯ୍ୟରେ ବ୍ୟବହୃତ ହୋଇଥିଲା । ବାକି ଉଡ଼ାଣ ସମୟତକ ମେନକା ଗାନ୍ଧୀଙ୍କ ନିର୍ବାଚନମଣ୍ଡଳୀ ଏବଂ ଅନ୍ୟାନ୍ୟ ସ୍ଥାନଗସ୍ତ କାର୍ଯ୍ୟରେ ବ୍ୟବହୃତ ହୋଇଥିଲା । ଏଭଳି ଅପବ୍ୟବହାର କରୁ କରୁ ଦିନେ ସେ କେନ୍ଦ୍ର ସରକାରଙ୍କୁ ଗୋଟିଏ ଅଶୋଭନୀୟ ପରିସ୍ଥିତିରେ ପକାଇଥିଲେ । ଉତ୍ତର ପ୍ରଦେଶରେ ତାଙ୍କର ନିର୍ବାଚନମଣ୍ଡଳୀ ନେପାଳ ରାଜ୍ୟ-

ସୀମାନ୍ତକୁ ଲାଗିଛି । ନିର୍ବାଚନମଣ୍ଡଳୀର ସୀମାନ୍ତ ଅଞ୍ଚଳକୁ ତାଙ୍କର ଯିବାର କାର୍ଯ୍ୟକ୍ରମ ଥାଏ । କିନ୍ତୁ ସେଠାରେ ଉଡ଼ାଜାହାଜ ଓହ୍ଲାଇବାର କିଛି ସୁବିଧା ନଥାଏ । ମାତ୍ର ନେପାଳ ଦେଶ ସୀମା ଭିତରେ ତାଙ୍କ ନିର୍ବାଚନମଣ୍ଡଳୀକୁ ଲାଗି ଉଡ଼ାଜାହାଜ ଓହ୍ଲାଇବାର ଗୋଟିଏ ସୁବିଧା ଥାଏ । ସେଠାରେ ଉଡ଼ାଜାହାଜ ଅବତରଣ କରିବାକୁ ହେଲେ ନେପାଳ ସରକାରଙ୍କଠାରୁ ଅନୁମତି ନେବାକୁ ପଡ଼େ । ଅନୁମତିପାଇଁ ସେ ନିଜେ ସମୟ ନିର୍ଘଣ୍ଟ ସହ ନେପାଳ ସରକାରଙ୍କୁ ଲେଖିଥିଲେ । ଭାରତ ସରକାରଙ୍କର ଜଣେ ରାଷ୍ଟ୍ରମନ୍ତ୍ରୀ ସେଠାରେ ଓହ୍ଲାଉଥିବାରୁ ସୌଜନ୍ୟ ଦୃଷ୍ଟିରୁ ନେପାଳ ସରକାର ତାଙ୍କୁ ସ୍ୱାଗତ କରିବାପାଇଁ ଆୟୋଜନ କରିଥିଲେ । ସେ ଦେଶର ଅଫିସରମାନେ ଓ ଯାନବାହନ ନିର୍ଦ୍ଦିଷ୍ଟ ସମୟରେ ସେଠାରେ ରୁଣ୍ଡ ହୋଇ ରହିଥା'ନ୍ତି । ସେମାନେ ସନ୍ଧ୍ୟା ପର୍ଯ୍ୟନ୍ତ ଆକାଶକୁ ଅନାଇ ରହିଥିଲେ । ଶେଷରେ ମେନକା ସେମାନଙ୍କୁ ନିରାଶ କରିଥିଲେ । ମେନକା ଗାନ୍ଧୀ ସେଦିନ ଗଲେନାହିଁ । ତାଙ୍କର ନଯିବା କଥା ସେ ନେପାଳର ସରକାରଙ୍କୁ ଜଣାଇନଥିଲେ । ନେପାଳ ସରକାର କ୍ଷୁବ୍ଧ ହୋଇ ଆମର ବୈଦେଶିକ ମନ୍ତ୍ରଣାଳୟରେ ଅଭିଯୋଗ କରିଥିଲେ । ଏ ପ୍ରକାର ଆଚରଣ-ଦ୍ୱାରା ନେପାଳ ସରକାରଙ୍କୁ ଅସମ୍ମାନିତ କରାଯାଇଛି ବୋଲି ଅଭିଯୋଗରେ କୁହାଯାଇଥିଲା । ମେନକା ଗାନ୍ଧୀ କୈଫିୟତ୍ ଦେଇଥିଲେ ଯେ ତାଙ୍କ ଗସ୍ତ ବାତିଲ ହେବା କଥା ତାଙ୍କର ବ୍ୟକ୍ତିଗତ ସଚିବ ପରିବେଶ ବିଭାଗର ଯୁଗ୍ମ ସଚିବ ଶ୍ରୀ ପି.ଏସ୍. ବାଗାଙ୍କୁ ଜଣାଇଦେଇଥିଲେ, ତାଙ୍କର ଅସାବଧାନତା ଯୋଗୁଁ ସେ ନେପାଳ ସରକାରଙ୍କୁ ଜଣାଇନଥିଲେ । ଏହା ସଂପୂର୍ଣ୍ଣ ମିଥ୍ୟା ବୋଲି ପରେ ଜଣାଗଲା ଏବଂ ତାଙ୍କର ବ୍ୟକ୍ତିଗତ ସଚିବ ପିଛିଲା ତାରିଖ ଦେଇ ଜାଲିଆତି କରି ଗୋଟିଏ ଚିଠି ଲେଖିବା କଥା ଜଣାପଡ଼ିଲା । ଶେଷରେ ଉକ୍ତ ବ୍ୟକ୍ତିଗତ ସଚିବ ଜାଲିଆତି ଅଭିଯୋଗରେ ଚାକିରିରୁ ନିଲମ୍ବିତ ହୋଇଥିଲେ । ମେନକା ଗାନ୍ଧୀଙ୍କ ଅପରିପକ୍ୱ ଆଚରଣ ହେତୁ ଯେଉଁ ଅଶୋଭନୀୟ ପରିସ୍ଥିତି ଉପୁଜିଥିଲା ସେଥିପାଇଁ ଶେଷରେ ଆମ ସରକାରଙ୍କୁ ନେପାଳ ସରକାରଙ୍କ ପାଖରେ ଦୁଃଖ ପ୍ରକାଶ କରିବାକୁ ପଡ଼ିଥିଲା ।

ମେନକା ଗାନ୍ଧୀଙ୍କର ଇଉ.ଏନ୍.ଡି.ପି. ସାହଯ୍ୟାର୍ଥେ ଦେଇଥିବା ଉଡ଼ାଜାହାଜର ଏତାଦୃଶ ଅପବ୍ୟବହାର କଥା ବିଭାଗୀୟ ସଚିବ ଶ୍ରୀ ମହେଶ ପ୍ରସାଦ ମୋ ଦୃଷ୍ଟିକୁ ଆଣିଥିଲେ । ସେତେବେଳକୁ ଏଥିଲାଗି ନାନା ଅପବାଦ ରଟୁଥାଏ । ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀ ମଧ୍ୟ ଏ ସମ୍ବନ୍ଧରେ ସର୍ବଶେଷ ତଥ୍ୟ ଜାଣିବାପାଇଁ ଚାହିଁଥିଲେ । ଫ୍ଲାଇଙ୍ଗ୍ ରେକର୍ଡ ସହିତ ଅନ୍ୟ ସବୁ ତଥ୍ୟ ରାଜୀବ ଗାନ୍ଧୀଙ୍କ ନିର୍ଦ୍ଦେଶରେ ଆମ ରାଜ୍ୟରୁ ଥିବା ରାଜ୍ୟସଭା ସଦସ୍ୟ ଶ୍ରୀ କାହ୍ନୁଚରଣ ଲେଙ୍କା ମୋଠାରୁ କାଗଜପତ୍ର ସଂଗ୍ରହକରି ତାଙ୍କୁ ଦେଇଥିଲେ । ଏହାପରେ କଂଗ୍ରେସ ସଦସ୍ୟା ଶ୍ରୀମତୀ ଜୟନ୍ତୀ ନଟରାଜନ୍ ଉଡ଼ାଜାହାଜଟିକୁ ମେନକା ଗାନ୍ଧୀ ଯେପରି ଅପବ୍ୟବହାର କରିଥିଲେ ସେ ସମ୍ବନ୍ଧରେ ରାଜ୍ୟସଭାରେ ଗୁଡ଼ାଇତୁଡ଼ାଇ ନାନା ପ୍ରଶ୍ନକରିଥିଲେ । ଏହି ବିବାଦୀୟ ଓ ଅସଂଗତ କାର୍ଯ୍ୟରୁ ପରିବେଶ ବିଭାଗକୁ ରକ୍ଷାକରିବାପାଇଁ ଶେଷରେ ଉଡ଼ାଜାହାଜଟିକୁ ୟୁ.ଏନ୍.ଡି.ପି.କୁ ଫେରାଇଦେବାପାଇଁ ମୁଁ ନିଷ୍ପତ୍ତି ନେଇଥିଲି । ତାହାହିଁ କରାଗଲା ।

## ବିଶ୍ୱନାଥ ପ୍ରତାପ ସିଂହଙ୍କ ସରକାର ସଂକଟାପନ୍ନ

ଜାତୀୟ ମୋର୍ଚ୍ଚା ସରକାର ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ନେତୃତ୍ୱରେ ବାମପନ୍ଥୀ ଦଳ ଓ ଭାରତୀୟ ଜନତାପାର୍ଟିର ସମର୍ଥନ ପାଇ ସୁରୁଖୁରୁରେ ଚାଲୁଥିଲା ଓ ଦେଶର ବହୁ ବଡ଼ ବଡ଼ ସମସ୍ୟାକୁ ମୁକାବିଲା କରି ସେଗୁଡ଼ିକ ସମାଧାନ କରିବା ଦିଗରେ ସମର୍ଥ ହୋଇପାରୁଥିଲା । ଏହି ଅବସ୍ଥାରେ ମଣ୍ଡଳ କମିଶନ ରିପୋର୍ଟକୁ ଗ୍ରହଣକରି ସେଥିରେ ଥିବା ସୁପାରିସ୍‌କୁ କାର୍ଯ୍ୟକାରୀ କରିବାପାଇଁ ପ୍ରଧାନମନ୍ତ୍ରୀ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ଉପରେ ଚାପପକାଯାଇଥିଲା । ଏହି

ଲବିଦ୍ୱାରା ଶ୍ରୀ ସିଂହ ବିଶେଷ ଭାବରେ ପ୍ରଭାବିତ ହେଲାଭଳି ଜଣାପଡୁଥିଲେ । ଯେଉଁ ଦଳଗୁଡ଼ିକ ସମର୍ଥନରେ ତାଙ୍କ ସରକାର ଚାଲୁଥିଲା, ସେମାନଙ୍କ ସହିତ ପରାମର୍ଶ ନକରି ମଣ୍ଡଳ କମିଶନ ସୁପାରିସ୍‌କୁ ସରକାର ଗ୍ରହଣ କରିବା ଘୋଷଣା ପ୍ରକାଶପାଇଥିଲା । ଭାରତୀୟ ଜନତାପାର୍ଟି ଏଥିରେ କ୍ଷୁବ୍ଧ ହେବାଭଳି ଜଣାପଡ଼ିଥିଲା । ତଫସିଲଭୁକ୍ତ ଜାତି, ଉପଜାତି, ଅନୁନ୍ନତ ଜାତିଗୁଡ଼ିକପାଇଁ ସରକାରୀ ଚାକିରିର ସ୍ଥାନ ସଂରକ୍ଷଣ ବ୍ୟବସ୍ଥା କରି ଓ ସେମାନଙ୍କୁ ସନ୍ତୁଷ୍ଟକରି ନିଜ ଦଳପାଇଁ ଜାତିଆଣ ଭିତ୍ତିରେ ସ୍ୱତନ୍ତ୍ର ଭୋଟ ବ୍ୟାଙ୍କ ସଂଗ୍ରହ କରିବା ଉଦ୍ଦେଶ୍ୟରେ ଏହା ଗୋଟିଏ ସୁଚିନ୍ତିତ ଫନ୍ଦି ବୋଲି ଭାରତୀୟ ଜନତା ପାର୍ଟି ଉପଲବ୍‌ଧି କରିଥିଲେ । ସାମାଜିକ ନ୍ୟାୟ ଦେବା ପରିବର୍ତ୍ତେ ଏହା ସମାଜରେ ଜାତିଆଣ ଭାବ ସୃଷ୍ଟିକରୁଛି ବୋଲି ବି.ଜେ.ପି. ଓ କଂଗ୍ରେସ-ପକ୍ଷରୁ ଅଭିଯୋଗ ପ୍ରକାଶ ପାଇଥିଲା । କି ପ୍ରକାର ପଦକ୍ଷେପ ନେଲେ ଏ ପ୍ରକାର ଚିନ୍ତାଧାରାକୁ ମୁକାବିଲା କରିବା ସଙ୍ଗେ ସଙ୍ଗେ ତା'ର ପ୍ରଭାବକୁ ଅକାମୀ କରାଯାଇପାରିବ, ସେଥିପ୍ରତି ଭାରତୀୟ ଜନତା ପାର୍ଟି ଦୃଷ୍ଟିଦେଇଥିଲା । ଏହି ଉଦ୍ଦେଶ୍ୟରେ ଶ୍ରୀ ଲାଲ୍‌କୃଷ୍ଣ ଆଡ୍‌ଭାନି ତାଙ୍କ ଭାରତ ବ୍ୟାପୀ ରଥଯାତ୍ରା ଗୁଜୁରାଟର ସୋମନାଥ ମନ୍ଦିରଠାରୁ ଆରମ୍ଭକରି ବିଭିନ୍ନ ରାଜ୍ୟରେ ବୁଲିଥିଲେ । ଏ ପ୍ରକାର ରଥ ଯାତ୍ରାଦ୍ୱାରା ବିହାର ଓ ଉତ୍ତର ପ୍ରଦେଶ ରାଜ୍ୟମାନଙ୍କରେ ସାମ୍ପ୍ରଦାୟିକ ବିବାଦ ଓ ସଂଘର୍ଷ ଉପୁଜିବାର ସମ୍ଭାବନା ଥିବାରୁ ସେ ରାଜ୍ୟର ସରକାରମାନେ ଶ୍ରୀ ଆଡ଼ଭାନିଙ୍କ ରଥଯାତ୍ରା ଉପରେ କେତେକ କଟକଣା ଜାରିକରିଥିଲେ । ଉତ୍ତର ପ୍ରଦେଶରେ ଶ୍ରୀ ଆଡ଼ଭାନି ଏ ପ୍ରକାର ଆଦେଶର ଅବମାନନା କରିବାରୁ ତାଙ୍କୁ ସେଠାକାର ସରକାର ଗିରଫ୍ କରିଥିଲେ । ଏ ଘଟଣା ଘଟିବା ସଂଗେ ସଂଗେ ଭାରତୀୟ ଜନତା ପାର୍ଟି ବିଶ୍ୱନାଥ ପ୍ରତାପ ସିଂହଙ୍କ ସରକାରଙ୍କଠାରୁ ତାଙ୍କର ସମର୍ଥନ ପ୍ରତ୍ୟାହାର କରିନେବା ନିଷ୍ପତ୍ତି ଘୋଷଣା କରି ରାଷ୍ଟ୍ରପତିଙ୍କୁ ଜଣାଇ ଦେଇଥିଲେ । ଏହାପରେ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ସରକାର ଇସ୍ତଫା ଦେବା କଥା, ମାତ୍ର ସେ ତାହା ନକରି ପାର୍ଲାମେଣ୍ଟରେ ସମସ୍ତ କଥା ଖୋଲାଖୋଲି କହି ପରିସ୍ଥିତିର ମୁକାବିଲା କରିବାପାଇଁ ସ୍ଥିରକରିଥିଲେ । ଏହି ପରିପ୍ରେକ୍ଷୀରେ ଜନତା ଦଳ ଭିତରେ ବିଭେଦ ଦେଖାଦେଇଥିଲା । ଗୋଟିଏ ମତ ପ୍ରକାଶ ପାଇଥିଲା ଯେ, ଦଳକୁ ନେତୃତ୍ୱ ଦେବାରେ ପ୍ରଧାନମନ୍ତ୍ରୀ ଶ୍ରୀ ସିଂହ ବ୍ୟର୍ଥହୋଇଛନ୍ତି ଏବଂ ତାଙ୍କ ସ୍ଥାନରେ ଆଉ କେହି ନେତା ଥିଲେ ବୋଧହୁଏ ସରକାରଙ୍କୁ ଏଭଳି ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିନଥାନ୍ତା । ଏହି ଗୋଷ୍ଠୀର ନେତୃତ୍ୱ ନେଇଥିଲେ ଶ୍ରୀ ଚନ୍ଦ୍ରଶେଖର । ଜନତା ଦଳର ଗୋଟିଏ ବୈଠକରେ ବିଶ୍ୱନାଥ ପ୍ରତାପ ସିଂହଙ୍କ ପ୍ରତି ଦଳର ଅନାସ୍ଥାସୂଚକ ପ୍ରସ୍ତାବକୁ ଗ୍ରହଣ କରାଇନେବା ଉଦ୍ୟମ ବ୍ୟର୍ଥ ହେବାରୁ ଶ୍ରୀ ଚନ୍ଦ୍ରଶେଖରଙ୍କୁ ସମର୍ଥନ କରୁଥିବା ସଭ୍ୟମାନେ ଦଳର ଗୋଟିଏ ସମାନ୍ତରାଳ ବୈଠକ ଅନ୍ୟତ୍ର ଡକାଇ, ସେଠାରେ ଉପସ୍ଥିତ ଥିବା ସଭ୍ୟମାନେ ଚନ୍ଦ୍ରଶେଖରଙ୍କୁ ସେମାନଙ୍କର ନିର୍ବାଚିତ ନେତା ବୋଲି ଘୋଷଣାକରିଥିଲେ । ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ ଇଚ୍ଛା କରିଥିଲେ ଏହି ସମାନ୍ତରାଳ ଦଳ ଗଠନର ଉଦ୍ୟମକୁ ଅକାମୀ କରିଦେଇପାରିଥା'ନ୍ତେ । ସେତେବେଳେ ଦଳ ଭିତରେ ଗୋଟିଏ ମତ ପ୍ରକାଶ ପାଇଥିଲା ଯେ ତାଙ୍କ ଛଡ଼ା ଆଉ କିଏ ନେତା ହୋଇଥିଲେ ଦଳକୁ ଏ ପ୍ରକାର ବିପର୍ଯ୍ୟୟର ସମ୍ମୁଖୀନ ହେବାକୁ ପଡ଼ିନଥା'ନ୍ତା । ତେଣୁ ନେତୃତ୍ୱର ପରିବର୍ତ୍ତନପାଇଁ ସ୍ୱରଉଠିଥିଲା । ଏ ଅବସ୍ଥାକୁ ହୃଦୟଙ୍ଗମ କରି ଯଦି ବିଶ୍ୱନାଥ ପ୍ରତାପ ସିଂହ ଦଳପତି ପଦରୁ ଇସ୍ତଫାଦେଇଥା'ନ୍ତେ, ତା'ହେଲେ ଯିଏ ନୂଆ ନେତା ହୋଇଥା'ନ୍ତା ତାକୁ କଂଗ୍ରେସ ସମର୍ଥନ କରିଥା'ନ୍ତା । ସେତେବେଳେ ଇଂଲଣ୍ଡରେ ଟୋରିଦଳର ମାର୍ଗାରେଟ୍ ଥାଚରଙ୍କ ନେତୃତ୍ୱରେ ସରକାର ଚାଲିଥିଲା । ନେତୃତ୍ୱ ପରିବର୍ତ୍ତନପାଇଁ ଦଳ ମଧ୍ୟରେ ସ୍ୱର ଉତ୍ତୋଳନ ହେବାରୁ ସେ ନେତୃତ୍ୱରୁ ଇସ୍ତଫା ଦେଇଥିଲେ । ତାଙ୍କ ସ୍ଥାନରେ ଜନ୍ ମେଜର୍ ନେତାରୂପେ ନିର୍ବାଚିତ ହୋଇ ପ୍ରଧାନମନ୍ତ୍ରୀ ହୋଇଥିଲେ । ଏହାଦ୍ୱାରା ଶ୍ରୀମତୀ ଥାଚର ଟୋରି ଦଳକୁ ଗୋଟିଏ ବଡ଼ ସଂକଟରୁ ରକ୍ଷାକରିଥିଲେ । ସଦ୍ୟ ମିଳିଥିବା ଏଇ ନଜିର ପ୍ରତି ବିଶ୍ୱନାଥ ପ୍ରତାପ ସିଂହ

ଦୃଷ୍ଟିଦେଇନଥିଲେ । ନବମ ଲୋକସଭା ନିର୍ବାଚନ ପରେ ଜନତା ସରକାର ଗଠନ ହେବା ସମୟରେ ଶ୍ରୀ ଚନ୍ଦ୍ରଶେଖର ଚାହୁଁଥିଲେ ଦଳପତି ହୋଇ ଭାରତର ପ୍ରଧାନମନ୍ତ୍ରୀ ହେବାପାଇଁ । କିନ୍ତୁ ସେତେ-ବେଳେ ଦେଶରେ ଗୋଟିଏ ସ୍ପଷ୍ଟ ମତ ପ୍ରକାଶ ପାଉଥାଏ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ସପକ୍ଷରେ । ଏହି ଅବସ୍ଥାରେ ଶ୍ରୀ ସିଂହଙ୍କୁ ଦଳପତି ହିସାବରେ ନିର୍ବାଚିତ କରି ପ୍ରଧାନମନ୍ତ୍ରୀ କରାଇବା ଅନିବାର୍ଯ୍ୟ ହୋଇପଡ଼ିଥିଲା । ଯେପରି ଭାବରେ ଶ୍ରୀ ସିଂହଙ୍କୁ ଦଳପତି ଭାବରେ ନିର୍ବାଚିନ କରାଯାଇଥିଲା, ସେଥିରେ ଚନ୍ଦ୍ରଶେଖର ଆଦୌ ସୁଖୀ ନଥିଲେ । ତେଣୁ ବିଶ୍ୱନାଥ ପ୍ରତାପ ସିଂହଙ୍କ ସରକାର ପଛରେ ତାଙ୍କର ଆଦୌ ସହଯୋଗ ନଥିଲା । ବର୍ତ୍ତମାନ ଉପୁଜିଥିବା ପରିସ୍ଥିତିର ସୁବିଧା ନେଇ ଶ୍ରୀ ଚନ୍ଦ୍ରଶେଖର ତାଙ୍କ ଖେଳ ଆରମ୍ଭକରିଦେଇଥିଲେ । ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ପ୍ରତି ଅନୁରକ୍ତ ଥିବା ଦଳର ସଦସ୍ୟମାନଙ୍କୁ କଳେ-ବଳେ-କୌଶଳେ ଓ ଅର୍ଥ ଲୋଭରେ ଅକ୍ତିଆର କରିବାପାଇଁ ତୁମୁଳ ଉଦ୍ୟମ ଆରମ୍ଭ ହୋଇଯାଇଥିଲା । ଝାଡ଼ଖଣ୍ଡ ମୁକ୍ତି ମୋର୍ଚ୍ଚା ଓ ଅନ୍ୟାନ୍ୟ ଲୋକସଭା ସଦସ୍ୟମାନଙ୍କୁ ଲାଞ୍ଚଦେଇ ସେମାନଙ୍କର ସମର୍ଥନ ହାସଲ କରିବା ଭଳି ଅଭିଯୋଗ ଶ୍ରୀ ନରସିଂହ ରାଓଙ୍କ ବିରୋଧରେ ଯେଭଳି ଉଠିଛି, ଠିକ୍ ସେହି ପ୍ରକାର ଲାଞ୍ଚ ଦେବା କାରବାର ଶ୍ରୀ ଚନ୍ଦ୍ରଶେଖରଙ୍କ ପକ୍ଷରୁ ସେତେବେଳେ ଆରମ୍ଭ ହେଉଥିବାର ଜଣାପଡ଼ିଲା । ପ୍ରଭେଦ ଏତିକି ଥିଲା ଯେ, ଶ୍ରୀ ନରସିଂହ ରାଓ ଲୋକସଭାରେ ତାଙ୍କ ପ୍ରତି ସମର୍ଥନ ଆଶାରେ ଅନ୍ୟାନ୍ୟ ଦଳର ସଭ୍ୟମାନଙ୍କୁ ଲାଞ୍ଚ-ଦେଉଥିଲେ, ମାତ୍ର ଏ କ୍ଷେତ୍ରରେ ନିଜ ଦଳର ସଭ୍ୟମାନଙ୍କୁ ଲାଞ୍ଚଦେଇ ସେମାନଙ୍କର ସମର୍ଥନ ପାଇବା ଥିଲା ଚନ୍ଦ୍ରଶେଖରଙ୍କର ଉଦ୍ଦେଶ୍ୟ । ବସ୍ତୁତଃ ସାଂସଦମାନଙ୍କୁ ବିପୁଳ ଅର୍ଥ ଦେଇ ଦଳ ବା ଗୋଷ୍ଠୀରୁ ଖସାଇ ନେଇ ନିଜ ଦଳ ବା ଗୋଷ୍ଠୀରେ ସାମିଲ କରି ସରକାର ଗଠନ କରିବା କାର୍ଯ୍ୟ ବ୍ୟାପକ ଭାବେ ଶ୍ରୀ ଚନ୍ଦ୍ରଶେଖରଙ୍କ ଦ୍ୱାରାହିଁ ଆମ ଦେଶର ସଂସଦୀୟ ରାଜନୀତିରେ ପ୍ରଥମେ ଆର ହୋଇଥିଲା । ଦଶ ଲକ୍ଷରୁ ଆରମ୍ଭ କରି ପଚାଶ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଲାଞ୍ଚ ସଭ୍ୟମାନଙ୍କୁ ଦେବା କଥା ସେତେବେଳେ ଶୁଣାଯାଉଥିଲା । ଜନତା ଦଳ ଟିକେଟ୍‌ରୁ ଓଡ଼ିଶାରୁ ନିର୍ବାଚିତ ହୋଇଥିବା ଚାରିଜଣ ସଭ୍ୟ ଏହି ପ୍ରକାର ମୋଟା ଅର୍ଥ ପାଇ ଚନ୍ଦ୍ରଶେଖରଙ୍କୁ ସମର୍ଥନ କରିଥିଲେ । ସେମାନେ ସେହି ଟଙ୍କା ପାଇ ଘରଦ୍ୱାର କରି ଓ ବ୍ୟବସାୟରେ ଖଟାଇ ଥିବାର କଥା ପଦାରେ ପଡ଼ିଥିଲା । ଚନ୍ଦ୍ରଶେଖରଙ୍କ ଗୋଷ୍ଠୀକୁ ସମର୍ଥନ କରି ମନ୍ତ୍ରୀ ହୋଇ ରହିବା ସଂଗେ ସଂଗେ ଆହୁରି କିଛି ପ୍ରଲୋଭନ ମୋତେ ମଧ ଦିଆଯାଇଥିଲା । ଗୁଜୁରାଟର ମୁଖ୍ୟମନ୍ତ୍ରୀ ଚିମନଭାଇ ପଟେଲ ଓ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ମନ୍ତ୍ରୀମଣ୍ଡଳରେ ଜଣେ ମନ୍ତ୍ରୀ ଥିବା ଶ୍ରୀ ମନୁଭାଇ କୋଠାରୀ ମୋ ବାସଭବନକୁ ଆସି ଚନ୍ଦ୍ରଶେଖରଙ୍କ ମନ୍ତ୍ରୀମଣ୍ଡଳରେ ଯୋଗଦେବା ପାଇଁ ମୋତେ ବୁଝାଇଥିଲେ । ତା'ଛଡ଼ା ରାଜୀବ ଗାନ୍ଧୀ ମଧ ଚାହୁଁଥିଲେ ଯେ ମୁଁ ଚନ୍ଦ୍ରଶେଖରଙ୍କ ଗୋଷ୍ଠୀରେ ମିଶି ମନ୍ତ୍ରୀହୋଇ ରହିଲେ ଭଲହେବ ଏବଂ ଏକଥା ଆମ ଓଡ଼ିଶା କଂଗ୍ରେସ ରାଜ୍ୟସଭା ସଦସ୍ୟ ଶ୍ରୀ କାହ୍ନୁଚରଣ ଲେଙ୍କାଙ୍କ ମାଧମରେ ମୋତେ ପ୍ରବର୍ତ୍ତାଇଥିଲେ । ମୁଁ ରାଜି ହୋଇନଥିଲି । ମୋ ଅଧୀନରେ ରାଷ୍ଟ୍ରମନ୍ତ୍ରୀ ରୂପେ କାର୍ଯ୍ୟ କରୁଥିବା ଶ୍ରୀମତୀ ମେନକା ଗାନ୍ଧୀ ବିଶ୍ୱନାଥ ପ୍ରତାପ ସିଂହଙ୍କୁ ଛାଡ଼ି ଚନ୍ଦ୍ରଶେଖରଙ୍କ ମନ୍ତ୍ରିମଣ୍ଡଳରେ କ୍ୟାବିନେଟ ମନ୍ତ୍ରୀଭାବେ ଯୋଗଦେଇଥିଲେ । ଆମ ଓଡ଼ିଶାର ମୟୂରଭଞ୍ଜର ଲୋକସଭା ସଦସ୍ୟ ସ୍ୱର୍ଗୀୟ ଭାଗେ ଗୋବର୍ଦ୍ଧନ ଚନ୍ଦ୍ରଶେଖରଙ୍କ ଗୋଷ୍ଠୀରେ ଯୋଗଦେଇ ମନ୍ତ୍ରୀ ହୋଇ ରହିଥିଲେ । ଏହି ପ୍ରକାର ନାନା ଉଦ୍ୟମ ସତ୍ତ୍ୱେ ଜନତା ଦଳର ଶହେ ଚାଳିଶ ଜଣ ସଭ୍ୟଙ୍କ ମଧ୍ୟରୁ ଏକାବନ ଜଣ ସଭ୍ୟ ଚନ୍ଦ୍ରଶେଖରଙ୍କ ଗୋଷ୍ଠୀରେ ଯୋଗଦେଇଥିଲେ । ଜନତା ଦଳକୁ ଭାଙ୍ଗିବା ଓ ବିଶ୍ୱନାଥ ପ୍ରତାପ ସିଂହଙ୍କୁ ଦଳପତି ପଦରୁ ହଟାଇବା ଅଭିଯାନରେ କଂଗ୍ରେସ ସଭାପତି ଶ୍ରୀ ରାଜୀବ ଗାନ୍ଧୀଙ୍କ ପୂର୍ଣ୍ଣ ସମର୍ଥନ ଥିଲା ଚନ୍ଦ୍ରଶେଖରଙ୍କ ପ୍ରତି । ଶ୍ରୀ ରାଜୀବ ଗାନ୍ଧୀ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ପ୍ରତି ଏପରି ବିମୁଖ ଥିଲେ ଯେ, ତାଙ୍କୁ ହଟାଇ ଆଉ ଯେ କେହି ଜନତା ଦଳର ଦଳପତି ହେଲେ ସେ ତାଙ୍କର ସମର୍ଥନ

ପାଇବ ବୋଲି ସେ କୁଆଡ଼େ ଚନ୍ଦ୍ରଶେଖରଙ୍କୁ ଜଣାଇଦେଇଥିଲେ ।

ଏହି ପରିପ୍ରେକ୍ଷୀରେ ୧୯୯୦ ମସିହା ନଭେମ୍ବର ୭ ତାରିଖରେ ବିଶ୍ୱନାଥ ପ୍ରତାପ ସିଂହ ଲୋକସଭାରେ ଆସ୍ଥାଭୋଟ ଆଣିଥିଲେ ଏବଂ କେଉଁ କାରଣରୁ ତାଙ୍କ ସରକାର ପତନ ଘଟିବାକୁ ଯାଉଛି ସେ କଥା ପ୍ରାଞ୍ଜଳଭାବରେ ବୁଝାଇଥିଲେ । ସାଂପ୍ରଦାୟିକ ସଦ୍‌ଭାବ ଓ ଧର୍ମନିରପେକ୍ଷତା ପ୍ରଭୃତି ନୀତି ଓ ଆଦର୍ଶ ଉପରେ ପଦାଘାତର ଉଦ୍ୟମ ସହିତ ସାଲିସ୍ କରିବା ତାଙ୍କ ପକ୍ଷରେ ଅସମ୍ଭବ ବୋଲି ସେ ଘୋଷଣାକରିଥିଲେ । ସେଦିନ ଲୋକସଭାରେ ତାଙ୍କ ଭାଷଣ ଅତ୍ୟନ୍ତ ଉଚ୍ଚକୋଟୀର, ଶିକ୍ଷାପ୍ରଦ ଓ ହୃଦୟସ୍ପର୍ଶୀ ହୋଇଥିଲା । ଏକାବନଜଣିଆ ଚନ୍ଦ୍ରଶେଖରଙ୍କ ଗୋଷ୍ଠୀ ସେଦିନ ଆସ୍ଥା ପ୍ରସ୍ତାବ ଭୋଟ ଉପରେ ଭୋଟ୍ ଦେଲାବେଳେ ଭାରତୀୟ ଜନତା ପାର୍ଟି ସହିତ ମିଶି ବିଶ୍ୱନାଥ ପ୍ରତାପ ସିଂହଙ୍କ ଆସ୍ଥା ଭୋଟ ବିପକ୍ଷରେ ଭୋଟଦେଇଥିଲେ । ବାମପନ୍ଥୀ ଦଳମାନେ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ସପକ୍ଷରେ ଭୋଟ ଦେଲାବେଳେ କଂଗ୍ରେସ ଭୂମିକା ବିଚିତ୍ର, ଦୋମୁହାଁ ଓ ସୁବିଧାବାଦୀ ଥିଲା । କଂଗ୍ରେସ ଧର୍ମନିରପେକ୍ଷତାରେ ବିଶ୍ୱାସରଖି ସାଂପ୍ରଦାୟିକତା ବିରୋଧରେ ଲଢୁଥିବାରୁ ବି.ଜେ.ପି.କୁ ଶାସନରେ ଆସିବାକୁ ନଦେବାପାଇଁ ଯେକୌଣସି ଦଳ ସହିତ ହାତ ମିଳାଇବାପାଇଁ ବର୍ତ୍ତମାନ (୧୯୯୭ରେ) ତା'ର ନୀତି ବୋଲି ଶୁଆପରି ଘୋଷଣାକରୁଛନ୍ତି । ସେ ନୀତି ୧୯୯୦ ସମୟରେ କୁଆଡ଼େ ଥିଲା— ଯେଉଁଦିନ କଂଗ୍ରେସ ଭାରତୀୟ ଜନତା ପାର୍ଟି ସହିତ ମିଶି ସାଂପ୍ରଦାୟିକତାକୁ ବିରୋଧକରୁଥିବା ବିଶ୍ୱନାଥ ପ୍ରତାପ ସିଂହଙ୍କ ସରକାରର ପତନ ଘଟାଇଥିଲେ ? ଲୋକସଭାରେ ଏ ବିଷୟରେ ଭୋଟ ଦେବାର ସମୟ ଆସିବା ପର୍ଯ୍ୟନ୍ତ ମୋର ବିଶ୍ୱାସ ଥିଲା ଯେ କଂଗ୍ରେସ ପାର୍ଟି, ଭାରତୀୟ ଜନତା ପାର୍ଟି ସହିତ ମିଶି ଭୋଟ ଦେବନାହିଁ— ନିରପେକ୍ଷ ରହିବ । ମାତ୍ର ତାହା ହେଲାନାହିଁ । ବିଶ୍ୱନାଥ ପ୍ରତାପ ସିଂହଙ୍କ ଉପରେ ଅଧିକ କ୍ରୋଧ ହେତୁ କଂଗ୍ରେସ ଦଳ ବି.ଜେ.ପି.ର କାର୍ଯ୍ୟ ସହିତ ସାଲିସ କଲାଭଳି ପ୍ରତୀତ ହେଉଥିଲା । କଂଗ୍ରେସ ସେଦିନ ନିରପେକ୍ଷ ରହିଥିଲେ ଆସ୍ଥା ଭୋଟ୍‌ରେ ବିଶ୍ୱନାଥ ପ୍ରତାପ ସିଂହ ସରକାର ଲୋକସଭାରେ ବିଜୟ ଲାଭ କରିଥା'ନ୍ତା । କଂଗ୍ରେସ ଚାହିଁଥିଲେ ପରଦିନ ଅନାସ୍ଥା ଭୋଟ ଆଣି ବିଶ୍ୱନାଥ ପ୍ରତାପ ସିଂହଙ୍କ ସରକାରର ପତନ ଘଟାଇପାରିଥା'ନ୍ତା । ଏସବୁ କଥା ଚିନ୍ତା ନକରି କଂଗ୍ରେସ ଭାରତୀୟ ଜନତା ପାର୍ଟି ସହିତ ମିଶି ଆସ୍ଥା ପ୍ରସ୍ତାବ ବିରୋଧରେ ଭୋଟ ଦେଇ ବିଶ୍ୱନାଥ ପ୍ରତାପ ସିଂହଙ୍କ ସରକାରର ପତନ ଘଟାଇଥିଲା । ପରବର୍ତ୍ତୀକାଳରେ କଂଗ୍ରେସ ଯେଉଁ ଧର୍ମନିରପେକ୍ଷ ନୀତି ବୟାନ କରୁଛି ସେତେବେଳେ ତଦନୁସାରେ କାର୍ଯ୍ୟ କରିଥିଲେ ନିଶ୍ଚିତ ଭାବରେ କଂଗ୍ରେସର ମର୍ଯ୍ୟାଦା ବୃଦ୍ଧିପାଇଥା'ନ୍ତା ।

ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ସରକାରର ପତନ ଘଟଣାରେ ସବୁଠାରୁ ବେଶି ଖୁସି ହେବାର ଜଣାପଡ଼ିଥିଲେ ରାଜୀବ ଗାନ୍ଧୀ । ତେଣୁ ଚନ୍ଦ୍ରଶେଖର ସରକାର ଗଠନ କଲେ କଂଗ୍ରେସ ବିନା ସର୍ତ୍ତରେ ତାଙ୍କ ସରକାରକୁ ସମର୍ଥନ ଦେବ ବୋଲି ରାଜୀବ ଗାନ୍ଧୀ ରାଷ୍ଟ୍ରପତିଙ୍କୁ ଜଣାଇଦେଇଥିଲେ । ଏହାପରେ ରାଷ୍ଟ୍ରପତି ଭବନରୁ ନିମନ୍ତ୍ରଣପାଇ ଶ୍ରୀ ଚନ୍ଦ୍ରଶେଖର ପ୍ରଧାନମନ୍ତ୍ରୀ ଭାବରେ ଶପଥ ପାଠ କଲେ ଓ ତାଙ୍କ ମନ୍ତ୍ରିମଣ୍ଡଳର ଅନ୍ୟ ସଦସ୍ୟମାନେ ମଧ୍ୟ ଶପଥ ନେଇଥିଲେ । ବଡ଼ ହୀନିମାନିଆ ଅବସ୍ଥାରେ ଛଅମାସ କାଳ ଚନ୍ଦ୍ରଶେଖରଙ୍କୁ ସରକାର ଚଳାଇବାକୁ ପଡ଼ିଥିଲା । ଶେଷରେ ଗୋଟିଏ ଅତି ତୁଚ୍ଛ ଘଟଣା ଆଳରେ କଂଗ୍ରେସ ଚନ୍ଦ୍ରଶେଖରଙ୍କଠାରୁ ସମର୍ଥନ ପ୍ରତ୍ୟାହାର କରିନେଇ ତାଙ୍କୁ ପାର୍ଲାମେଣ୍ଟରେ ଯେଉଁ ଦୟନୀୟ ଅବସ୍ଥାରେ ପକାଇଥିଲା, ତାହା କେବେ ଭୁଲିବାର କଥା ନୁହେଁ । ହରିଆନା ସରକାରଙ୍କର ଗୋଇନ୍ଦା ବିଭାଗର ଦୁଇଜଣ ପୁଲିସ କନେଷ୍ଟବଲ୍ କୁଆଡ଼େ ରାଜୀବ ଗାନ୍ଧୀଙ୍କ ବାସଭବନ ଆଗରେ ଟହଲ ମାରୁଥିବା କଥା ଜାଣି ରାଜୀବ ଗାନ୍ଧୀ ଚନ୍ଦ୍ରଶେଖର ସରକାରଙ୍କ ଉପରେ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ଚନ୍ଦ୍ରଶେଖରଙ୍କୁ ଉପଯୁକ୍ତ ଶିକ୍ଷା ଦେବାପାଇଁ ତାଙ୍କ ସରକାରଠାରୁ ସମର୍ଥନ ପ୍ରତ୍ୟାହାର କରିନେବା କଥା ସ୍ଥିରକରିଥିଲେ । ସେହି ଅନୁସାରେ ଲୋକସଭାରେ ଗୋଟିଏ

ଦାବି ଉପରେ ବିରୋଧୀଦଳ ସହିତ ହାତ ମିଳାଇ ସରକାର ବିରୋଧରେ ଭୋଟ ଦେବାର ଷଡ଼ଯନ୍ତ୍ର କଥା ପ୍ରଧାନମନ୍ତ୍ରୀ ଚନ୍ଦ୍ରଶେଖର ଜାଣିପାରିଥିଲେ । ସେଦିନ ଲୋକସଭାରେ ପ୍ରଧାନମନ୍ତ୍ରୀ ଚନ୍ଦ୍ର-ଶେଖର ନିଜେ ଉପସ୍ଥିତ ଥିଲେ । ଶ୍ରୀ ଚନ୍ଦ୍ରଶେଖରଙ୍କର ଦୟନୀୟ ଅବସ୍ଥା ଏବଂ ଲୋକସଭା ବାତା-ବରଣ ସେଦିନ ଯାହା ଥିଲା, ତାହା କେବଳ ଅନୁଭବୀମାନେ ବୁଝିପାରିବା କଥା । ଏହି ଅବସ୍ଥାରେ ଗୋଟିଏ ଉତ୍ତେଜନାପୂର୍ଣ୍ଣ ବାତାବରଣ ମଧ୍ୟରେ ଛିଡ଼ାହୋଇ ତାଙ୍କର ଇସ୍ତଫାପତ୍ର ଦେବାପାଇଁ ଯାଉଛନ୍ତି ବୋଲି ସେ ଘୋଷଣା କରିଥିଲେ । ଏତିକିରେ ଯବନିକା ପତନ ହେଲା । ଏହାପରେ ଲୋକସଭାକୁ ଭାଙ୍ଗିଦେବା ଘୋଷଣା ରାଷ୍ଟ୍ରପତି ଭବନରୁ ପ୍ରକାଶପାଇଥିଲା ।

## ବିଜୁ ପଟ୍ଟନାୟକ ଓଡ଼ିଶା ଶାସନକୁ ଫେରିଲେ

ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ନେତୃତ୍ୱରେ କେନ୍ଦ୍ରରେ ଜାତୀୟ ମୋର୍ଚ୍ଚା ସରକାର ଗଠିତ ହେବାର ତିନି ମାସ ପରେ ଓଡ଼ିଶାରେ ବିଧାନସଭାପାଇଁ ସାଧାରଣ ନିର୍ବାଚନ ହୋଇଥିଲା । ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଏହି ନିର୍ବାଚନରେ ଜନତା ଦଳ ମୋଟ ୧୪୭ଟି ଆସନରୁ ୧୨୩ଟି ହାସଲ କରିଥିଲେ । ୧୯୯୦ ମାର୍ଚ୍ଚ ମାସ ପାଞ୍ଚ ତାରିଖରେ ଶପଥ ଗ୍ରହଣ ଉତ୍ସବ ରାଜଭବନ ପ୍ରାଙ୍ଗଣରେ ଅନୁଷ୍ଠିତ ହୋଇଥିଲା । ସେଦିନ ଏକା ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଭାବରେ ଶପଥ ନେଇଥିଲେ । ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଶପଥ ପାଠକରାଇଥିଲେ । କେନ୍ଦ୍ରମନ୍ତ୍ରୀ ହିସାବରେ ମୁଁ ସ୍ୱତନ୍ତ୍ର ନିମନ୍ତ୍ରଣ ପାଇ ଶପଥ ପାଠ ଉତ୍ସବରେ ଉପସ୍ଥିତ ଥିଲି । ପ୍ରାୟ ଏକ ହଜାରରୁ ଊର୍ଦ୍ଧ୍ୱ ବ୍ୟକ୍ତି ଏହି ଉତ୍ସବରେ ଯୋଗଦେଇଥିଲେ । ନିମନ୍ତ୍ରଣ ପାଇଥିବା ସତ୍ତ୍ୱେ କେହି କଂଗ୍ରେସ ନେତା ଉତ୍ସବରେ ଯୋଗଦେଇଥିବାର ମୁଁ ଦେଖିବାକୁ ପାଇଲିନାହିଁ । ଉତ୍ସବ ପରେ ଖବରକାଗଜ ପ୍ରତିନିଧିମାନେ ବିଜୁ ପଟ୍ଟନାୟକଙ୍କୁ ଘେରିଯାଇ କେବେ ତାଙ୍କର ପୂର୍ଣ୍ଣାଙ୍ଗ ମନ୍ତ୍ରିମଣ୍ଡଳ ଗଠିତ ହେବ ବୋଲି ପ୍ରଶ୍ନ କରିଥିଲେ । ସେମାନଙ୍କୁ ଉତ୍ତର ଦେବାକୁ ଯାଇ ରହସ୍ୟ ସୃଷ୍ଟି କରି ବିଜୁ ପଟ୍ଟନାୟକ କହିଥିଲେ, ''ଆଉ ମନ୍ତ୍ରୀଙ୍କର ଆବଶ୍ୟକତା କ'ଣ– ମୁଁ କ'ଣ ଏକୁଟିଆ ଯଥେଷ୍ଟ ନୁହେଁ ?'' ଏହା ଏକ ଲଘୁ ମନ୍ତବ୍ୟ ହେଲେ ମଧ୍ୟ ମୁଁ ତାହା ଶୁଣି ଖୁସିହୋଇନଥିଲି– ଯେହେତୁ ସେଥିପାଇଁ ତାଙ୍କର ଏହି ଉକ୍ତି ତାଙ୍କ ପ୍ରତି ଅହମିକା ଆରୋପ କରାଯିବାର ସନ୍ଦେହ ଥିଲା । ଠିକ୍ ତିନି ସପ୍ତାହ ମଧ୍ୟରେ ତାଙ୍କର ମନ୍ତ୍ରିମଣ୍ଡଳ ସଂପ୍ରସାରିତ ହୋଇ ଆଉ ୩୪ଜଣ ମନ୍ତ୍ରୀ ଭାବରେ ଯୋଗଦେଇଥିଲେ ।

## ବୀରେନ୍ ପଟ୍ଟନାୟକଙ୍କର ତିରୋଧାନ

ବାରିଷ୍ଟର ବୀରେନ୍ଦ୍ର ମୋହନ ପଟ୍ଟନାୟକ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ ଥିଲେ । ୧୯୯୭ ମାର୍ଚ୍ଚ ୧୦ ତାରିଖରେ ସେ ଦେହତ୍ୟାଗକଲେ । ମୋ ଜୀବନରେ ଯେତେ ମାଲିମୋକଦ୍ଦମା ବା ଏନ୍‌କ୍ୱାରୀ କମିଶନ (Enquiry Commission)କୁ ମୋତେ ସମ୍ମୁଖୀନ ହେବାକୁ ପଡୁଥିଲା ସବୁଥିରେ ଅଯାଚିତ ଭାବରେ ବୀରେନ୍ ବାବୁଙ୍କ ସାହାଯ୍ୟ ମୋତେ ମିଳୁଥିଲା । ବାରିଷ୍ଟର ପଟ୍ଟନାୟକ ଥିଲେ ଜଣେ ବିଶିଷ୍ଟ ଓ ବିଚକ୍ଷଣ ଆଇନଜ୍ଞ । କୌଣସି ମୋକଦ୍ଦମା ହାତକୁ ନେଲେ ତାହା ଚଳାଇବାପାଇଁ ତାଙ୍କର ମନ ଓ ପ୍ରାଣ ଢାଳିଦେଉଥିଲେ । ବୀରେନ୍‌ବାବୁଙ୍କ ଉପରେ ମୋକଦ୍ଦମାର ଦାୟିତ୍ୱଦେଇ ମହକିଲମାନେ ନିଶ୍ଚିନ୍ତ ରହୁଥିଲେ । ମୋକଦ୍ଦମାର କାଗଜପତ୍ର ପ୍ରସ୍ତୁତ ବେଳେ ବୀରେନ୍‌ବାବୁଙ୍କୁ ଦିନ ଓ ରାତି କିଛି ଜଣାପଡୁନଥିଲା । ସୀମିତ କେଶ୍ ହାତକୁ ନେଇ ପ୍ରତ୍ୟେକ କେଶ୍‌ରେ ଅକ୍ଳାନ୍ତ ପରିଶ୍ରମକରି ମହକିଲର ଅସୁବିଧା ଦୂରକରିବାପାଇଁ ସେ ଯଥାସମ୍ଭବ ଉଦ୍ୟମ କରୁଥିଲେ । କଠୋର ପରିଶ୍ରମ କରି ପ୍ରସ୍ତୁତ ହୋଇ ମୋକଦ୍ଦମା ଲଢ଼ିବାପାଇଁ ସେ କିପରି କୋର୍ଟକୁ ଯାଉଥିଲେ ସେ ସମ୍ବନ୍ଧରେ ଅନୁଭୂତି ମୋର ଅଛି । ପ୍ରସ୍ତୁତ ହେବା ସମୟରେ ସେ ଏକାଧାରରେ ଦଶ ବାର ଘଣ୍ଟା ବସି

କାର୍ଯ୍ୟ କରିବା ମୁଁ ଦେଖିଛି । ବୃତ୍ତିଗତ ନୀତି ଓ ନିୟମକୁ ସେ ଅତି କଠୋର ଭାବରେ ପାଳନ କରୁଥିଲେ । ସାମ୍ବିଧାନିକ ଆଇନ ଉପରେ ଅତି ଅଳ୍ପ ସମୟ ମଧ୍ୟରେ ନିଜକୁ ଅପ୍ରତିଦ୍ୱନ୍ଦ୍ୱୀରୂପେ ପ୍ରତିଷ୍ଠା କରିପାରିଥିଲେ । ତାଙ୍କର ବିୟୋଗ ମୋ ପକ୍ଷରେ ଗୋଟିଏ ଅତ୍ୟନ୍ତ ଦୁଃଖଦାୟକ ଘଟଣା ।

## କଳିଙ୍ଗ ସମ୍ରାଟ୍ ବିଜୁ ପଟ୍ଟନାୟକଙ୍କ ତିରୋଧାନ

ଏକଦା ବିଜୁ, ବୀରେନ୍, ନୀଳମଣି ଆମେ ତିନିଜଣ ଏକାନ୍ତ ଅନ୍ତରଙ୍ଗ ବନ୍ଧୁଭାବେ ଓଡ଼ିଶାରେ ପରିଚିତ ଥିଲୁ । ସ୍ୱର୍ଗୀୟ ପବିତ୍ର ମୋହନ ପ୍ରଧାନଙ୍କ ଭାଷାରେ ଆମେ ତିନିଜଣ ଥିଲୁ ସ୍ୱର୍ଗୀୟ ଡକ୍ଟର ହରେକୃଷ୍ଣ ମହତାବଙ୍କର ତିନିଜଣ ବନ୍ଧୁକଧାରୀ ସିପାହି । ଓଡ଼ିଶା ରାଜନୀତିରେ ଓ ପ୍ରଶାସନିକ କ୍ଷେତ୍ରରେ ଆମେ ଥିଲୁ ଡକ୍ଟର ମହତାବଙ୍କର ହାତବାରିସି । ଦଳ ଗଠନ କରିବା ବା ଦଳ ଭାଙ୍ଗିବା, ସରକାର ଗଠନ କରିବା ବା ସରକାର ଭାଙ୍ଗିବା ପ୍ରଭୃତି କାର୍ଯ୍ୟରେ ଆମେ ଥିଲୁ ସ୍ୱର୍ଗୀୟ ମହତାବଙ୍କ ଆଜ୍ଞାବହ । ପରବର୍ତ୍ତୀ କାଳରେ ଓଡ଼ିଶାକୁ ବଳିଷ୍ଠ ନେତୃତ୍ୱ ଦେବା ଦିଗରେ ବିଜୁଙ୍କ ଅଭିଯାନରେ ଆମେ ଥିଲୁ ସହଯାତ୍ରୀ । ବୀରେନ୍ ମିତ୍ର ଆଗରୁ ସ୍ୱର୍ଗାରୋହଣ କରିଥିଲେ । ୧୯୯୭ ଏପ୍ରିଲ ୧୭ ତାରିଖରେ ବିଜୁ ପଟ୍ଟନାୟକ ତାଙ୍କର କଳିଙ୍ଗ ସାମ୍ରାଜ୍ୟ ଛାଡ଼ି ସ୍ୱର୍ଗାରୋହଣ କଲେ । ନୂଆଦିଲ୍ଲୀରୁ ସେହିଦିନ ଆକାଶବାଣୀ ପକ୍ଷରୁ ଘୋଷଣା ପ୍ରକାଶ ପାଇଲା, ''ମୁକୁଟବିହୀନ କଳିଙ୍ଗ ସମ୍ରାଟ ବିଜୁ ପଟ୍ଟନାୟକ ଆଉ ନାହାଁନ୍ତି'' । ବିଜୁ ଗଲେ, କେବଳ ମୁଁ ରହିଛି ବହୁ ଅଭୁଲା ସ୍ମୃତିକୁ ସ୍ମରଣକରି ଶୋକାଭିଭୂତ ହେବାପାଇଁ । ଏହାହିଁ ମୋର ଦୁର୍ଭାଗ୍ୟ ।

ଏ ଯୁଗରେ ଓଡ଼ିଶା ପକ୍ଷରେ ସବୁଠାରୁ ଦୁଃଖଦାୟକ ଘଟଣା ହେଉଛି ବିଜୁ ପଟ୍ଟନାୟକଙ୍କ ତିରୋଧାନ । ବିଜୁ ପଟ୍ଟନାୟକଙ୍କ ଭଳି ଜନନାୟକ ଓଡ଼ିଶାରେ କେବେ ଜନ୍ମହୋଇନଥିଲେ । ଅତୀତରେ ଯେଉଁ କେତେଜଣ ବିଶିଷ୍ଟ ବ୍ୟକ୍ତି ଓଡ଼ିଶାକୁ ନେତୃତ୍ୱ ଦେବାର କାହାଣୀ ଆମେ ଇତିହାସରୁ ଜାଣୁ, ସେ ସମସ୍ତଙ୍କୁ ଅନେକ ଦିଗରେ ଟପିଯାଇଛନ୍ତି ବିଜୁ ପଟ୍ଟନାୟକ । ତାଙ୍କ ଜୀବଦ୍ଦଶା ମଧ୍ୟରେ ସେ ନିଜେ ଅନୁଭବ କରିନଥିଲେ ଯେ ସେ ଓଡ଼ିଶାର ଜନମାନସରେ କି ପ୍ରକାର ଆସ୍ଥାନ ସୃଷ୍ଟିକରିପାରିଥିଲେ ଏବଂ ଓଡ଼ିଶାବାସୀ ମଧ୍ୟ ତାଙ୍କର ତିରୋଧାନ ପର୍ଯ୍ୟନ୍ତ ଏତେ ପ୍ରଗାଢ଼ ଭାବରେ ତାହା ଅନୁଭବ କରିପାରିନଥିଲେ । ବିଜୁଙ୍କ ବିୟୋଗ ପ୍ରତ୍ୟେକଙ୍କ ମନରେ, ପ୍ରତ୍ୟେକ ପରିବାରରେ ସ୍ୱତଃସ୍ଫୂର୍ତ୍ତ ଦୁଃଖ ଓ ଶୂନ୍ୟତା ସୃଷ୍ଟି କରିଥିଲା । ବିଜୁଙ୍କ ବିୟୋଗ କେବଳ ଓଡ଼ିଶାର ନୁହେଁ ସମଗ୍ର ଦେଶର ଏକ ଅପୂରଣୀୟ କ୍ଷତି । ଭାରତବର୍ଷ ଇତିହାସରେ ସେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିପାରିଥିଲେ । ତାଙ୍କଭଳି ଦୂରଦ୍ରଷ୍ଟା, ଦୁଃସାହସୀ, ଉଦ୍ୟମୀ ନେତା ଆମ ଦେଶରେ ବିରଳ ଥିଲେ । ମହାତ୍ମାଗାନ୍ଧୀ ଥିଲେ ଜଣେ ଅସାଧାରଣ ପୁରୁଷ ଓ ଜଗତ୍ ବିଖ୍ୟାତ ମହାନ୍ ନେତା । ତାଙ୍କୁ ଛାଡ଼ି-ଦେଲେ ବିଜୁ ପଟ୍ଟନାୟକ ତାଙ୍କ ଅସୀମ ସାହସ ଓ ନିର୍ଭୀକତାପାଇଁ ଆମ ଦେଶର ପ୍ରାୟ ସବୁ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ଟପିଯାଇଥିଲେ । ନେତାଜୀ ସୁଭାଷଚନ୍ଦ୍ର ଯେଉଁଭଳି ଦୁଃସାହସୀ ଥିଲେ ସେହିଭଳି ଥିଲେ ବିଜୁ ପଟ୍ଟନାୟକ । ନେତାଜୀଙ୍କ ସାହସ ସହିତ ବିଜୁ ପଟ୍ଟନାୟକଙ୍କ ସାହସ ତୁଳନୀୟ । ଓଡ଼ିଶା ପକ୍ଷରେ ଗର୍ବ ଓ ଗୌରବ କଥା ଯେ, ଏହି ଦୁଇଜଣ ମହାନ୍ ବ୍ୟକ୍ତି ଥିଲେ ଉତ୍କଳସନ୍ତାନ । ଉଭୟଙ୍କ ଜନ୍ମ ଥିଲା ଓଡ଼ିଶାର ପୁରାତନ ରାଜଧାନୀ କଟକ ସହରରେ । ସେମାନଙ୍କର ଅବର୍ତ୍ତମାନ ଆମପାଇଁ ଅପୂରଣୀୟ ଅଭାବବୋଧ ଜନ୍ମାଇଛି ।

ଦେଖିବାକୁ ଗଲେ ବିଜୁ ପଟ୍ଟନାୟକ ତାଙ୍କର ପଞ୍ଚାବନ ବର୍ଷରୁ ଊର୍ଦ୍ଧ୍ୱ ରାଜନୈତିକ ଜୀବନରୁ ମାତ୍ର ଦଶ ବାର ବର୍ଷ ପ୍ରତ୍ୟକ୍ଷ କ୍ଷମତାରେ ଥିଲେ, ତାହା ପୁଣି ଖାପଛଡ଼ା ଭାବରେ । ୧୯୬୧ରୁ ୧୯୬୩ ଦୁଇବର୍ଷ ମୁଖ୍ୟମନ୍ତ୍ରୀ, ୧୯୭୭ରୁ ୧୯୮୦ ଅଢ଼େଇ ବର୍ଷ କେନ୍ଦ୍ରମନ୍ତ୍ରୀ ଏବଂ ୧୯୯୦ ରୁ ୧୯୯୫ ପର୍ଯ୍ୟନ୍ତ ପାଞ୍ଚବର୍ଷ ମୁଖ୍ୟମନ୍ତ୍ରୀ ଭାବରେ । ସମୟର ବିଶେଷ ବ୍ୟବଧାନରେ ମାତ୍ର ୩ଥର ବିଜୁ

କ୍ଷମତାରେ ଥିଲେ । ମାତ୍ର ସେହି ସମୟ ମଧ୍ୟରେ ସେ ଦକ୍ଷତା ଓ ସାଫଲ୍ୟର ଶୀର୍ଷକୁ ଯାଇ-ପାରିଥିଲେ । ବାକି ସମୟରେ ସେ ସବୁବେଳେ ରାଜନୈତିକ ସଂଗ୍ରାମରେ ନିଜକୁ ଜଡ଼ିତକରି ରଖୁଥିଲେ । ବେଳେବେଳେ ସେ କ୍ଷମତା ଲଢ଼େଇରେ ହାରିଛନ୍ତି କିନ୍ତୁ ହାରମାନି ନାହାନ୍ତି । ପ୍ରତି ରାଜନୈତିକ ପରାଜୟ ତାଙ୍କୁ ଆଣିଦେଇଥାଏ ବ୍ୟକ୍ତିତ୍ୱର ଅଧିକ ବିପୁଳତା, ଅଧିକ ଦୃଢ଼ତା, ଆହୁରି ଲଢ଼ିବାକୁ ସଂକଳ୍ପ । ତାଙ୍କଠାରେ ନେପୋଲିୟନ ବୋନାପାର୍ଟଙ୍କର ଅନେକ ଝଲକ ଥିଲା । ଗୋଟିଏ ସାଧାରଣ ନିର୍ବାଚନରେ ବିଜୁ ପଟ୍ଟନାୟକ ପାଞ୍ଚଟି ବିଧାନସଭା ଆସନରୁ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ, ମାତ୍ର ସେହି ସମସ୍ତ ସ୍ଥାନରେ ତାଙ୍କର ପରାଜୟ ଘଟିଥିଲା । ସେଥିରେ ସେ ଦବିନଯାଇ ଦଳକୁ ଅଧିକ ସୁଦୃଢ଼ କରିବା ଦିଗରେ ଉଦ୍ୟମ କରିଚାଲିଥିଲେ ।

ଜାତୀୟ ସ୍ତରରେ ନେତାମାନେ ଜନମାନସରେ ବିଜୁଙ୍କର ଦୃଢ଼ ଆସ୍ଥାନ ଲକ୍ଷ୍ୟକରି ଅଭିଭୂତ ହୋଇପଡ଼ିଥିଲେ । ତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ଓ ଦ୍ୱାଦଶାହ ସଭାରେ ଯୋଗଦେବାକୁ ଦେଶର ପ୍ରଧାନମନ୍ତ୍ରୀଙ୍କଠାରୁ ଆରମ୍ଭକରି ସବୁ ଦଳ ତରଫରୁ ବିଶିଷ୍ଟ ନେତାମାନେ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାକୁ ଓଡ଼ିଶାକୁ ଆସିଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଜଣେ ପ୍ରଧାନମନ୍ତ୍ରୀ ଓ ତିନି ଜଣ ପୂର୍ବତନ ପ୍ରଧାନମନ୍ତ୍ରୀ, ଇଣ୍ଡୋନେସିଆର ରାଷ୍ଟ୍ରଦୂତ, ଆନ୍ଧ୍ରର ରାଜ୍ୟପାଳ, ଦିଲ୍ଲୀର ମୁଖ୍ୟମନ୍ତ୍ରୀ ଓ ସବୁ ରାଜନୈତିକ ଦଳର ବହୁ ବିଶିଷ୍ଟ ନେତା । ଏ ପ୍ରକାର ସମାବେଶ ଓ ଶ୍ରଦ୍ଧାଞ୍ଜଳି ଓଡ଼ିଶାରେ କେବେ କାହାରି ଭାଗ୍ୟରେ ଜୁଟିନଥିଲା । ପୁରୀ ସ୍ୱର୍ଗଦ୍ୱାରରେ ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମ୍ପାଦନ ହେବା ଦିନ ପ୍ରାୟ ପାଞ୍ଚ ଲକ୍ଷରୁ ଊର୍ଦ୍ଧ୍ୱ ଶୋକବିହ୍ୱଳ ଜନତାଙ୍କର ସମାବେଶ ହୋଇଥିଲା । ଏହା ସାଧାରଣତଃ ରଥଯାତ୍ରା ଉତ୍ସବରେ ସମ୍ଭବହୋଇଥାଏ । 'ପ୍ରାଣୀର ଭଲମନ୍ଦ ବାଣୀ, ମରଣ କାଳେ ତାହା ଜାଣି' ବୋଲି ଯେଉଁ ବାକ୍ୟ ଅଛି ବିଜୁବାବୁଙ୍କ ମହାନତା ତାଙ୍କର ମରଣ ପରେହିଁ ଏହିପରି ଭାବରେ ପ୍ରତିଭାତ ହୋଇଥିଲା । ସମୃଦ୍ଧିଶାଳୀ ଓଡ଼ିଶା ଗଠନରେ ବିଜୁ ପଟ୍ଟନାୟକଙ୍କର ଅବଦାନ ଓଡ଼ିଶା ଇତିହାସରେ ଲିପିବଦ୍ଧ ହୋଇ ରହିଛି । ମୋର ଏହି ପୁସ୍ତକର ପ୍ରଥମ ସଂସ୍କରଣରେ ରାଜ୍ୟର ଜଳସେଚନ ବ୍ୟବସ୍ଥା, ବିଦ୍ୟୁତ୍ ଉତ୍ପାଦନ ପ୍ରକଳ୍ପ, ଶିଳ୍ପ ବିକାଶ ସମ୍ବନ୍ଧରେ ତାଙ୍କର ଉଦ୍ୟମ ଓ ଅବଦାନ ସଂପର୍କରେ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି । ତେଣୁ ସେଗୁଡ଼ିକ ଆଉ ଦୋହରାଇବା ନିଷ୍ପ୍ରୟୋଜନ ମନେକରୁଛି । ଏଠାରେ ଏତିକି କହିଲେ ଯଥେଷ୍ଟ ହେବଯେ ଓଡ଼ିଶାର ଶିଳ୍ପ ବିକାଶର ଶୋଭାଯାତ୍ରା ବିଜୁ ପଟ୍ଟନାୟକହିଁ ଆରମ୍ଭ କରିଥିଲେ । ରାଜ୍ୟରେ ଛୋଟ ବଡ଼ ଯେତେ ଶିଳ୍ପ ପ୍ରତିଷ୍ଠାନ ଦୃଷ୍ଟିରେ ପଡ଼େ ସେଗୁଡ଼ିକ ନିଶ୍ଚିତ ଭାବରେ ଅଙ୍କୁରିତ ହୋଇଥିଲା ବିଜୁ ପଟ୍ଟନାୟକ ନିଜ କାର୍ଯ୍ୟଦ୍ୱାରା ସୃଷ୍ଟି କରିଥିବା ଦୃଷ୍ଟାନ୍ତ, ପ୍ରେରଣା ଓ ଭିତ୍ତିଭୂମି ଉପରେ ।

ଜର୍ମାନୀ ସହାୟତାରେ ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟ୍ ଆରମ୍ଭ ହେବାବେଳେ ସେ ଥିଲେ ଜଣେ ସାଧାରଣ ବିଧାନସଭା ସଦସ୍ୟ । ସ୍ଥାନ ନିରୂପଣପାଇଁ ଯେଉଁ ଜର୍ମାନ ବିଶେଷଜ୍ଞ ଦଳ ଆସିଥିଲେ ସେମାନଙ୍କୁ ପ୍ରବର୍ତ୍ତାଇ ଓଡ଼ିଶାରେ ଷ୍ଟିଲ୍ ପ୍ଲାଣ୍ଟ୍ କରିବାର ଦାୟିତ୍ୱ ବିଜୁ ପଟ୍ଟନାୟକଙ୍କ ଉପରେ ପଡ଼ିଥିଲା ଏବଂ ତାଙ୍କୁ ଏହି ଦାୟିତ୍ୱ ଦେଇଥିଲେ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ସ୍ୱର୍ଗୀୟ ନବକୃଷ୍ଣ ଚୌଧୁରୀ । ଓଡ଼ିଶା ସମ୍ବନ୍ଧରେ ରିପୋର୍ଟ ଦେବାପାଇଁ ବିଜୁ ପଟ୍ଟନାୟକ ଜର୍ମାନ ବିଶେଷଜ୍ଞ ଦଳକୁ ନାନା ତଥ୍ୟ ଦ୍ୱାରା ବୁଝାଇପାରିବା ଛଡ଼ା ନିଜର ବିଚକ୍ଷଣ ବ୍ୟକ୍ତିଗତ ସଂପର୍କ ବ୍ୟବହାରକରି ପ୍ରଭାବିତ କରିପାରିଥିଲେ । ବିଜୁ କହିଥିଲେ ଯେ, "After all every individual important in his own way, is basically a social being. One has to win his heart and influence decisions".

ଅସଲ କଥା ହେଲା ଯେ, ଯେଉଁ ବ୍ୟକ୍ତି ତାଙ୍କ କାର୍ଯ୍ୟକ୍ଷେତ୍ରରେ ଯେତେ ବଡ଼ ହୁଅନ୍ତୁନା କାହିଁକି ମଣିଷର ମୌଳିକ ଗୁଣ ହେଲା ଯେ ସେ ଜଣେ ସାମାଜିକ ପ୍ରାଣୀ । ତାଙ୍କର ହୃଦୟ ଜୟକରି ନିଷ୍ପତ୍ତି

ନେବାର ପନ୍ଥାକୁ ସୁଗମ କରିବା ଆବଶ୍ୟକ । ଜର୍ମାନ ବିଶେଷଜ୍ଞ ଦଳରେ ରିପୋର୍ଟ ପ୍ରସ୍ତୁତ କରିବାର ପ୍ରତ୍ୟକ୍ଷ ଦାୟିତ୍ୱରେ ଥିବା ଜଣେ ବ୍ୟକ୍ତିଙ୍କ ମନରେ ବିଜୁବାବୁ ଏଭଳି ବ୍ୟକ୍ତିଗତ ବନ୍ଧୁତା ସୃଷ୍ଟିକରି ବିଶ୍ୱାସ ଜନ୍ମାଇପାରିଥିଲେ ।

ସ୍ୱର୍ଗୀୟ ବିଜୁ ପଟ୍ଟନାୟକ ତାଙ୍କର ଦୂରଦୃଷ୍ଟି, ବ୍ୟକ୍ତିଗତ ପ୍ରଚେଷ୍ଟା ଓ ପ୍ରଭାବ ବଳରେ ବିକାଶଶୀଳ ଓଡ଼ିଶାରେ ଓ ଜାତୀୟ ସ୍ତରରେ ବହୁ ଅନୁଷ୍ଠାନ, ପ୍ରତିଷ୍ଠାନ ଓ ପ୍ରକଳ୍ପ ପ୍ରତିଷ୍ଠା କରିବାକୁ ସକ୍ଷମ ହୋଇଥିଲେ । ଏହି ଦିଗରେ ତାଙ୍କ କୀର୍ତ୍ତିର ଅବଦାନର ସ୍ୱାକ୍ଷର ଓଡ଼ିଶାର ବହୁସ୍ଥାନରେ ସବୁଦିନପାଇଁ ଜାଜ୍ୱଲ୍ୟମାନ ରହିବ ।

ଏ ତ ଗଲା ଆମ ରାଜ୍ୟ କଥା । ବର୍ତ୍ତମାନ ଦେଖାଯାଉ ତାଙ୍କ ବିୟୋଗରେ ସର୍ବଭାରତୀୟ ସ୍ତରରେ କି ପ୍ରକାର ଅନୁଭୂତି ହୋଇଥିଲା । Times of India ଆମ ଦେଶର ଗୋଟିଏ ପ୍ରଖ୍ୟାତ ସମ୍ବାଦପତ୍ର । ଉକ୍ତ ସମ୍ବାଦପତ୍ରରେ ୧୯୯୭ ମସିହା ଏପ୍ରିଲ ୧୯ ତାରିଖ ସଂଖ୍ୟାରେ ଯେଉଁ ମନ୍ତବ୍ୟ ପ୍ରକାଶ ପାଇଥିଲା, ତାହା ଏଠାରେ ଉଦ୍ଧାରକଲେ ଅତ୍ୟନ୍ତ ସମୀଚୀନ ଓ ଶିକ୍ଷଣୀୟ ହେବବୋଲି ମୁଁ ମନେକରୁଛି ।

Dt. 19.04.1997 : Times of India :

Biju Patnaik

"No obituary can do justice to Biju Patnaik, such was the man's resplendent personality. He was no ordinary politician wedded to wheeling, dealing and surviving, nor was politics his only vocation; he threw himself headlong into the Independence movement, conducted daring air missions, defied the Emergency, deftly managed a business and as expertly ran a state as he handled politics at the centre. And yet, all this would not still sum him up as there was a whimsical, utterly exasperating and yet delightful side to him which made all predictions about the man and his moves an avoidable exercise.

Who can forget the risky operation Biju pioneered across the Himalayas during World War-II ? Or the pluck with which he airlifted Indian troops to Srinagar ? Or for that matter the dare-devil swoop on Jakarta amid severe bombardment by the Dutch to fly out Sukarno ? Biju's enterprise did not stop there. Penniless at the time of Independence, he rose to earn a place among the top hundred industrialists with his Kalinga group of Industries. His involvement in politics was equally eventful. If he sheltered top freedom movement leaders before Independence even while serving the British, he was equally courageous in preferring jail during the Emergency to continuing his friendship with Indira Gandhi.

Through all this Biju could be trusted to express the most unorthodox of views – at that time when he advocated public beating of corrupt officials and again that other time when he suggested that the Congress merge with the Janata Dal to provide a stable government at the Centre. Biju's responses to political crises were typically atypical.

When the Janata Dal was heading for a split in 1989, Biju, rather than worry his head over the next moves of his political friends, could be found engrossed in the latest bestseller at his suite in Orissa Bhawan. Of course, he was always there for those who wanted his advice.

Hackneyed though it might seem to describe his exit as a vacuum that cannot be filled, Orissa will acutely miss Biju, the Janata Dal, especially. Already in shambles because of Biju's illness, the party is on the verge of a split with nearly half of it joining the BJP. If the JD disappears from Orissa it will be due entirely to Biju's absence."

ଏହାଛଡ଼ା ତାଙ୍କର ମୃତ୍ୟୁ ସମ୍ବାଦ ଆନ୍ତର୍ଜାତିକ ସମ୍ବାଦପତ୍ରମାନଙ୍କରେ ବିସ୍ତୃତ ଭାବରେ ପ୍ରକାଶ ପାଇଥିଲା । ଇଂଲଣ୍ଡରୁ ପ୍ରକାଶିତ 'ଦି ଟେଲିଗ୍ରାଫ୍' (The Telegraph) ୧୯୯୭ ମସିହା ମେ ମାସ ୬ ତାରିଖ ସଂଖ୍ୟାରେ ବିଜୁ ପଟ୍ଟନାୟକଙ୍କ ସମ୍ବନ୍ଧରେ ଲେଖିବାକୁ ଯାଇ ଗୋଟିଏ ନୂତନ ତଥ୍ୟ ପରିବେଷଣ କରିଛି ଯାହା ଆଜିପର୍ଯ୍ୟନ୍ତ ଆମ ଦେଶବାସୀଙ୍କ ପକ୍ଷରେ ମଧ ଅଜଣା ରହିଥିଲା । ଗାନ୍ଧିଜୀଙ୍କ ଭାରତଛାଡ଼ ଆନ୍ଦୋଳନ ସମୟରେ ଭାରତୀୟ ସେନାବାହିନୀଙ୍କ ମଧରେ ଉତ୍ତେଜନା ଓ ବିଦ୍ରୋହ ସୃଷ୍ଟି କରିବା ପାଇଁ ବିଜୁ ପଟ୍ଟନାୟକ ଯେଉଁ ଉଦ୍ୟମ କରିଥିଲେ ସେ ବିଷୟରେ ଏଥିରେ ଉଲ୍ଲେଖ କରାଯାଇଛି । ଅନ୍ୟାନ୍ୟ ବିଷୟ ମଧ ଏଥିରେ ଉଲ୍ଲେଖ ଅଛି ।

"But Patnaik was at the same-time dedicated to the cause of Indian Independence. From his RAF aircraft, Patnaik dropped bags of Gandhi's Quit India leaflets onto Indian troops under British Command. And besides his missions for the RAF in Burma, he made clandestine flights to carry Congress party leaders from their hideouts to secret meetings. Patnaik did not get away with this for long. In 1942 he was jailed by the British and only released in 1946, a year before Independence."

ଇଂରେଜ ସରକାରଙ୍କ ବିରୁଦ୍ଧରେ ସାମରିକ ବିଦ୍ରୋହ ଘଟାଇବାପାଇଁ ବିଜୁ ପଟ୍ଟନାୟକଙ୍କ ଏହି ପ୍ରକାର ଆଚରଣ ଭାରତବାସୀଙ୍କୁ ଜଣାନଥିଲା । ମାତ୍ର ବ୍ରିଟିଶ୍ ଗୋଇନ୍ଦା ବିଭାଗ ପାଖରେ ଏ ପ୍ରକାର ତଥ୍ୟ ରହିଛି । ଖବର ନେବାରେ ଜଣାଗଲା ଯେ, ସେହି ଗୋଇନ୍ଦା ବିଭାଗ ତଥ୍ୟ ଉପରେ ନିର୍ଭର କରି ଇଂଲଣ୍ଡର ସମ୍ବାଦପତ୍ର 'ଦି ଟେଲିଗ୍ରାଫ୍' (The Telegraph) ଏ ପ୍ରକାର ମନ୍ତବ୍ୟ ପ୍ରକାଶ କରିଥିଲେ । ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଯେତେବେଳେ INA ଗଠନ କରି ଭାରତକୁ ବିଦେଶୀ କବଳରୁ ଉଦ୍ଧାର କରିବାପାଇଁ ଉଦ୍ୟମ କରୁଥିଲେ ସେତିକିବେଳେ ବିଜୁ ବାବୁ ଭାରତର ସେନାବାହିନୀ ମଧରେ ବିଦ୍ରୋହ ଜନ୍ମାଇବାପାଇଁ ଉସୁକାଇବା ନିଶ୍ଚିତ ଭାବରେ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଏହା ବିଜୁ ପଟ୍ଟନାୟକଙ୍କ ଚରମ ସ୍ୱଦେଶପ୍ରେମ ଓ ଦୁଃସାହସର ଆଉ ଗୋଟିଏ ନମୁନା । ଆମ ରାଜ୍ୟର ପୁଲିସ ବିଭାଗର ଜଣେ ପୂର୍ବତନ ଡାଇରେକ୍ଟର ଜେନେରାଲ ଶ୍ରୀ ଗୋବିନ୍ଦ ଚନ୍ଦ୍ର ସେନାପତି ବିଜୁ ପଟ୍ଟନାୟକଙ୍କ ମୃତ୍ୟୁ ପରେ ୧୯୯୭ ଜୁନ୍ ମାସରେ ଇଂଲଣ୍ଡ ଯାଇଥିଲେ । ବ୍ରିଟିଶ୍ ଗୋଇନ୍ଦା ସଂସ୍ଥାର ହେଡକ୍ୱାର୍ଟର New Scotlandyardକୁ ଯାଇ ଏହି ସମ୍ବାଦର ସତ୍ୟତା ସମ୍ବନ୍ଧରେ ଯାଞ୍ଚ କରିବାର ସୁଯୋଗପାଇଥିଲେ । ସ୍ୱାଧୀନତା ଆନ୍ଦୋଳନର ଯେଉଁ ବରିଷ୍ଠ ଭାରତୀୟ ନେତାମାନେ ଭାଗନେଇଥିଲେ ସେ ସମସ୍ତଙ୍କର ବ୍ୟକ୍ତିଗତ ରେକର୍ଡ ସେଠାରେ ବର୍ତ୍ତମାନ ସୁଦ୍ଧା ରଖାଯାଇଛି ବୋଲି ସେ ଜାଣିବାକୁ ପାଇଥିଲେ । ସେଥିରେ ବିଜୁ ପଟ୍ଟନାୟକଙ୍କ ସଂପର୍କରେ ଥିବା ତଥ୍ୟ ଉପରେ ଭିତ୍ତିକରି ଏହି ସମ୍ବାଦ ପ୍ରକାଶିତ ହୋଇଛି ବୋଲି ଶ୍ରୀ ସେନାପତି ମୋତେକହିଥିଲେ ।

ଉଭୟ ନେତାଜୀ ସୁଭାଷଚନ୍ଦ୍ର ବୋଷ ଓ ବିଜୁ ପଟ୍ଟନାୟକ ଓଡ଼ିଶାର ବରପୁତ୍ର ଥିଲେ ।

ଦୁଃସାହସିକ ଚରିତ୍ର, ସ୍ୱଭାବ, କାର୍ଯ୍ୟପଦ୍ଧତି ଓ ନିଷ୍ପତ୍ତି ନେବାର ପ୍ରଣାଳୀରେ ଉଭୟ ନେତାଙ୍କ ମଧ୍ୟରେ ବହୁ ସାମଞ୍ଜସ୍ୟ ଥିଲା । ଜୀବନକୁ ବିପନ୍ନକରି ବିପଦର ସମ୍ମୁଖୀନ ହେବାର ସାହସ ଉଭୟଙ୍କର ଥିଲା । କଟକ ଓ ଭୁବନେଶ୍ୱର ରାସ୍ତା ଛକରେ ଘୋଡ଼ା ଉପରେ ବସିଥିବା ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ବ୍ରୋଞ୍ଜମୂର୍ତ୍ତି ସ୍ଥାପନ କରାଯାଇଛି । ବିଜୁ ପଟ୍ଟନାୟକଙ୍କ ତିରୋଧାନ ପରେ ସେହି ସ୍ଥାନମାନଙ୍କରେ ଗୋଟିଏ ଅଭାବ ଅନୁଭୂତ ହେଉଛି । ନିଜ ବ୍ୟୋମଯାନ ପାଖରେ ବିଜୁ ବାବୁଙ୍କର ପୂର୍ଣ୍ଣାଙ୍ଗ ଦଣ୍ଡାୟମାନ ବ୍ରୋଞ୍ଜ ପ୍ରତିମୂର୍ତ୍ତି ଯଦି ନେତାଜୀଙ୍କ ମୂର୍ତ୍ତି ସହିତ ସୁଦୃଶ୍ୟ ଭାବରେ ସଜାଇ ପ୍ରତିଷ୍ଠା କରାଯାଆନ୍ତା, ତେବେ ଓଡ଼ିଶାର ଏହି ବିରାଟ ବିପ୍ଳବୀ ବ୍ୟକ୍ତିଯୁଗଳଙ୍କ ଦର୍ଶନ ଭବିଷ୍ୟତ୍ ବଂଶଧରଙ୍କୁ ନିଶ୍ଚିତଭାବରେ ଗରୀୟାନ୍ କରନ୍ତା ଏବଂ ଦେଶାତ୍ମବୋଧରେ କର୍ମପ୍ରବଣ କରନ୍ତା । ନିଜ ବ୍ୟୋମଯାନ ସହିତ ବିଜୁବାବୁଙ୍କର ପ୍ରତିଛବି ଇଣ୍ଡୋନେସିଆର ଡାକଟିକେଟ ରୂପେ ପ୍ରଚଳିତ କରାଯାଇ ତାଙ୍କ ପ୍ରତି ବୀରୋଚିତ ସମ୍ମାନ ପ୍ରଦର୍ଶନ କରାଯାଇଛି ।

ବିଜୁ ପଟ୍ଟନାୟକ ହେଉଛନ୍ତି ଏକମାତ୍ର ଓ ପ୍ରଥମ ଭାରତୀୟ ନେତୃସ୍ଥାନୀୟ ବ୍ୟକ୍ତି ଯାହାଙ୍କ ବିୟୋଗରେ ଦେଶ ବାହାରେ ଓ ଜାତିସଂଘ ଅଫିସରେ ଓ ଆଉ ଗୋଟିଏ ବିଦେଶୀ ରାଷ୍ଟ୍ରରେ ଶୋକ-ଦିବସ ପାଳନକରାଯାଇଥିଲା । ସେହି ଦେଶଟି ହେଉଛି ସାଧାରଣତନ୍ତ୍ର ଇଣ୍ଡୋନେସିଆ ଯାହାର ମୁକ୍ତି ସଂଗ୍ରାମ ସହିତ ବିଜୁ ପଟ୍ଟନାୟକ ଜଡ଼ିତ ଥାଇ ପ୍ରବଳ ପରାକ୍ରମୀ ଡଚମାନଙ୍କ କବଳରୁ ସେ ଦେଶର ନେତାମାନଙ୍କୁ ଗୁପ୍ତରେ ଉଡ଼ାଇଆଣି ଭାରତରେ ପହଞ୍ଚାଇଦେଇଥିଲେ । ସେ ଦେଶ ସ୍ୱାଧୀନ ହେବା ପରେ ବିଜୁଙ୍କର ଏ ଦୁଃସାହସିକ କାର୍ଯ୍ୟର ସ୍ୱୀକୃତିପାଇଁ 'ଭୂମିପୁତ୍ର' ଉପାଧିରେ ଭୂଷିତ କରା-ଯାଇଥିଲା । ଆହୁରି ମଧ ଇଣ୍ଡୋନେସିଆ ରାଷ୍ଟ୍ରରେ ତାଙ୍କୁ ପାଞ୍ଚଶହ ଏକର ଜମି ଦବା କଥା ଘୋଷଣା କରାଯାଇଥିଲା । ମାତ୍ର ବିଜୁ ପଟ୍ଟନାୟକ ତାହା ନେବାପାଇଁ ସ୍ୱୀକୃତି ନଦେବା କଥା ମୁଁ ତାଙ୍କ ମୁହଁରୁ ଶୁଣିଥିଲି । ତାଙ୍କର ମୃତ୍ୟୁସମ୍ବାଦ ପାଇବାପରେ ଇଣ୍ଡୋନେସିଆରେ ଶୋକର ଛାୟା ଖେଳିଯାଇଥିଲା । ତାଙ୍କୁ ଶ୍ରଦ୍ଧାଞ୍ଜଳି ଦେବା ସଂଗେ ସଂଗେ ସେ ରାଷ୍ଟ୍ରର ଜାତୀୟ ପତାକା ତିନି ସପ୍ତାହକାଳ ଅର୍ଦ୍ଧ ଅବନମିତ କରାଯାଇଥିଲା । ଏ ପ୍ରକାର ଶ୍ରଦ୍ଧା ଓ ସମ୍ମାନ ଆମ ଦେଶରେ କାହା ଭାଗ୍ୟରେ ଜୁଟିନାହିଁ ।

କଳିଙ୍ଗ ସାମ୍ରାଜ୍ୟର ଐଶ୍ୱର୍ଯ୍ୟମୟ ଇତିହାସ ତାଙ୍କ ମନରେ ଓଡ଼ିଆ ହେବାର ଗର୍ବ ଓ ଗରିମା ଆଣିଦେଇଥିଲା । ତେଣୁ ଏହି ନାମଟି ତାଙ୍କପାଇଁ ଅତି ଆକର୍ଷଣୀୟ ଏବଂ ଆଦରଣୀୟ ଥିଲା । 'କଳିଙ୍ଗ' ନାମ ଓ ଶବ୍ଦଟିକୁ ସେ ଲୋକପ୍ରିୟ କରାଇପାରିଥିଲେ । ଆମ ରାଜ୍ୟର ଜଣେ ପ୍ରଖ୍ୟାତ ସାହିତ୍ୟିକ ସ୍ୱର୍ଗୀୟ ଡକ୍ଟର ମାୟାଧର ମାନସିଂ କହିବାର ମୁଁ ଶୁଣିଛି ଯେ ବିଜୁ ପଟ୍ଟନାୟକହିଁ 'କଳିଙ୍ଗ' ନାମକୁ ଦେଶ ବିଦେଶରେ ଚିହ୍ନାଇ ସେଥିପ୍ରତି ଲୋକଙ୍କ ମନରେ ଆଗ୍ରହ ସୃଷ୍ଟିକରିପାରିଥିଲେ । ଓଡ଼ିଶାର ସ୍ୱାଭିମାନ ଓ ଲୁପ୍ତ ଗୌରବ ଫେରାଇ ଆଣିବାପାଇଁ କଳିଙ୍ଗ ସମ୍ରାଟ ଖାରବେଳଙ୍କର ସାମ୍ରାଜ୍ୟ ବିସ୍ତାର ଅଭିଯାନ ବିଜୁଙ୍କୁ ବିଶେଷ ଭାବରେ ଉଦ୍‌ବୁଦ୍ଧ କରିଥିଲା । ଖାରବେଳହିଁ ଥିଲେ ବିଜୁ ପଟ୍ଟନାୟକଙ୍କ ଜୀବନଆଭିମୁଖ୍ୟର ପ୍ରଧାନ ଜନନାୟକ ଏବଂ ଓଡ଼ିଆ ଜାତି ପ୍ରାଣରେ ଖାରବେଳ-ସ୍ପନ୍ଦନ ସୃଷ୍ଟିକରିବା ଥିଲା ବିଜୁଙ୍କ ଜୀବନଦର୍ଶନ । ସେଥିପାଇଁ ପ୍ରତ୍ୟେକ ସଭାସମିତିରେ ଓଡ଼ିଶାର ସ୍ୱାଭିମାନ ଫେରାଇ ଆଣିବା ଦିଗରେ ଖାରବେଳଙ୍କୁ ଅନୁକରଣ କରିବାକୁ ସେ ପରାମର୍ଶ ଦେଉଥିଲେ । ସେ କଳିଙ୍ଗ ଟ୍ୟୁବସ୍, କଳିଙ୍ଗ ଆଇରନ୍ ୱାର୍କସ୍, କଳିଙ୍ଗ ରେଫ୍ରିଜେରେଟର, କଳିଙ୍ଗ ଏୟାର ଲାଇନ୍‌ସ, କଳିଙ୍ଗ ଫାଉଣ୍ଡେସନ ଟ୍ରଷ୍ଟ, କଳିଙ୍ଗ ପୁରସ୍କାର, ଦୈନିକ ଖବରକାଗଜ 'କଳିଙ୍ଗ', ଆଦି ତାଙ୍କର ବହୁ ମାନସସନ୍ତାନଙ୍କୁ 'କଳିଙ୍ଗ' ନାମ ପ୍ରଦାନ କରାଇ ପ୍ରତିଷ୍ଠିତ କରିଥିଲେ । ବିଜୁ ପଟ୍ଟନାୟକଙ୍କ ସହିତ 'କଳିଙ୍ଗ' ଶବ୍ଦଟି ଏପରି ଭାବରେ ଜଡ଼ିତ ଯେ 'କଳିଙ୍ଗ' କଥା ପଡ଼ିଲାକ୍ଷଣି ସ୍ୱତଃ ଆମମାନଙ୍କ ମନକୁ ବିଜୁ ପଟ୍ଟନାୟକଙ୍କ ସ୍ମୃତି ଆସିଯାଏ । ବିଜୁଙ୍କ ଗାଡ଼ି ଷ୍ଟେସନୱାଗନରେ ଲେଖା-ଥିଲା 'କଳିଙ୍ଗ ରଥ' । ଦୁର୍ଗମ ସ୍ଥାନକୁ ଗଲାବେଳେ ବିଜୁ ତାହାକୁ ବ୍ୟବହାର କରୁଥିଲେ ।

# ଦେଶର ଦୁର୍ଭାଗ୍ୟ-କଂଗ୍ରେସ ପରି ସର୍ବପୁରାତନ ଦଳର ସଭାପତି ତଥା ପ୍ରଧାନମନ୍ତ୍ରୀଙ୍କୁ ଦୁର୍ନୀତି ଅଭିଯୋଗରେ ଜେଲଦଣ୍ଡ

୧୯୯୧ ମସିହା ଜୁନ୍ ୨୧ ତାରିଖରେ ଭାରତର ଦଶମ ଲୋକସଭା ଗଠିତ ହେଲା । ସେତେବେଳେ ଶ୍ରୀ ପି.ଭି.ନରସିଂହ ରାଓ କଂଗ୍ରେସ ଦଳର ସଭାପତି ଥିଲେ । ଦେଶର ପ୍ରଧାନମନ୍ତ୍ରୀ ବି ହେଲେ । କିନ୍ତୁ ୫୪୩ ସଦସ୍ୟ ବିଶିଷ୍ଟ ଲୋକସଭାରେ କଂଗ୍ରେସ ୨୩୦ଟି ଆସନ ଅଧିକାର କରିବାରୁ ଶ୍ରୀ ରାଓଙ୍କ ସରକାର ଏକ ସଂଖ୍ୟାଲଘୁ ଦଳର ସରକାର ଥିଲା । ତାଙ୍କ ସରକାରକୁ ବଞ୍ଚାଇ ରଖିବାପାଇଁ ତାଙ୍କୁ ଆଉ ୪୨ଜଣ ସଦସ୍ୟଙ୍କର ସମର୍ଥନ ଆବଶ୍ୟକ ପଡୁଥିଲା । ସେହି ଆବଶ୍ୟକତା ପୂରଣ କରିବାପାଇଁ ସେତେବେଳେ ବିରୋଧୀ ଜନତାଦଳକୁ ବିଭାଜନକରି କେତେକ ସଦସ୍ୟ, ଝାଡ଼ଖଣ୍ଡ ମୁକ୍ତିମୋର୍ଚ୍ଚା (ଜେ.ଏମ୍.ଏମ.) ଦଳର ସଦସ୍ୟ ଓ ସ୍ୱାଧୀନ ସଦସ୍ୟମାନଙ୍କ ସମର୍ଥନ ସଂଗ୍ରହ କରି ତାଙ୍କର ସଂଖ୍ୟାଲଘୁ ମନ୍ତ୍ରିମଣ୍ଡଳକୁ ବଞ୍ଚାଇଥିଲେ । ହେଲେ ମନ୍ତ୍ରିମଣ୍ଡଳ ଅସ୍ଥିର ଥାଏ । ମାତ୍ର ଅସତ୍ ଉପାୟ ଅବଲମ୍ବନ କରି ସେ ମନ୍ତ୍ରିମଣ୍ଡଳକୁ ଚଳାଉଥିଲେ । ତାହା ଗଣତାନ୍ତ୍ରିକ ବିକାଶର ଚରମ ପରିପନ୍ଥୀ ବୋଲି ରାଜନୀତି ବିଶାରଦମାନଙ୍କର ସର୍ବସମ୍ମତ ମତ । ଏକ ଚୁକ୍ତିବଦ୍ଧ ମିଳିତ ମନ୍ତ୍ରିମଣ୍ଡଳରେ ଚୁକ୍ତିବଦ୍ଧ ସବୁ ଦଳ ଶାସନ ପରିଚାଳନାରେ ଉତ୍ତରଦାୟୀ ହୁଅନ୍ତି । କିନ୍ତୁ ଏକ ସଂଖ୍ୟାଲଘୁ ମନ୍ତ୍ରିମଣ୍ଡଳ ଅନ୍ୟମାନଙ୍କର ସୁବିଧାବାଦୀ ସମର୍ଥନ ହାସଲ କରି ତାହାର ପ୍ରତିଦାନରେ ଅନେକ ଅଦୃଶ୍ୟ ଲାଭ ବିତରଣ କରିଥା'ନ୍ତି । ତାହାଦ୍ୱାରା ଉତ୍କଟ ଦୁର୍ନୀତି ବ୍ୟାପୀ ଶାସନରେ ନୈତିକତାର ଅଧୋଗତି ହୋଇଥାଏ ।

୧୯୯୩ ମସିହା ଜୁଲାଇ ମାସ ୨୮ ତାରିଖରେ ତତ୍କାଳୀନ କଂଗ୍ରେସ ସଭାପତି ଶ୍ରୀ ନରସିଂହ ରାଓଙ୍କ ନେତୃତ୍ୱାଧୀନ ସଂଖ୍ୟାଲଘୁ କଂଗ୍ରେସ ସରକାର ବିରୁଦ୍ଧରେ ଲୋକସଭାରେ ଏକ ଅବିଶ୍ୱାସ ପ୍ରସ୍ତାବ ଆଗତ ହୋଇଥିଲା । ଏହି ଅବିଶ୍ୱାସ ପ୍ରସ୍ତାବରେ ସରକାରଙ୍କୁ ସମର୍ଥନ ଜଣାଇବାପାଇଁ ଶ୍ରୀରାଓ ଓ ତାଙ୍କ ସହଯୋଗୀମାନେ କୋଟି କୋଟି ଟଙ୍କାର ଲାଞ୍ଚ ଦେଇ ଝାଡ଼ଖଣ୍ଡ ମୁକ୍ତିମୋର୍ଚ୍ଚା (ଜେ.ଏମ୍.ଏମ୍.) ଏବଂ ଅନ୍ୟ ଦଳର ସାଂସଦମାନଙ୍କର ସମର୍ଥନ ହାସଲ କରିଥିବାର ଅଭିଯୋଗ ହୋଇଥିଲା ।

ଝାଡ଼ଖଣ୍ଡ ମୁକ୍ତିମୋର୍ଚ୍ଚା (ଜେ.ଏମ୍.ଏମ୍.) ଦୁର୍ନୀତି ମାମଲା ଦେଶ ବିଦେଶରେ ସେତେବେଳେ ଚହଳ ସୃଷ୍ଟିକରିଥିଲା । ଦୁର୍ନୀତି ଅଭିଯୋଗଗୁଡ଼ିକ ସି.ବି.ଆଇ. ଦ୍ୱାରା ତଦନ୍ତ କରାଯାଇ ଶ୍ରୀନରସିଂହ ରାଓ ଓ ତାଙ୍କ ମନ୍ତ୍ରିମଣ୍ଡଳର ଅନ୍ୟତମ ସଦସ୍ୟ ଶ୍ରୀ ବୁଟା ସିଂହଙ୍କୁ ଷଡ଼ଯନ୍ତ୍ର ସଂକ୍ରାନ୍ତୀୟ ୧୨୦ ବି.ଆଇ.ପି.ସି. ଦଫା ୭, ୧୨, ୧୩ (୨)ଏବଂ ଦୁର୍ନୀତି ପ୍ରତିରୋଧ ଆଇନର ଦଫା ୧୩ (୧) (କ) ଅନୁଯାୟୀ ଉତ୍କୋଚ ଗ୍ରହଣ କରିବା, ଉତ୍କୋଚ ଗ୍ରହଣକୁ ପ୍ରୋତ୍ସାହିତ କରିବା ଓ ଅବାଞ୍ଛିତ ଆର୍ଥିକ ଫାଇଦା ଉଠାଇବା ପ୍ରଭୃତି ଦୋଷରେ ଅଭିଯୁକ୍ତ କରାଯାଇଥିଲା । ସ୍ୱତନ୍ତ୍ର ବିଚାରପତି ଅତିରିକ୍ତ ଦୌରାଜଜ୍ ଅଜିତ୍ ଭାରିହୋକ୍ ମାମଲାଟିର ବିଚାରକରି ଉଭୟଙ୍କୁ ଦୋଷୀ ସାବ୍ୟସ୍ତ କରିଥିଲେ । ଏହି ଅଭିଯୋଗ-ଗୁଡ଼ିକର ବିଚାର ୧୯୯୭ ମସିହା ସେପ୍ଟେମ୍ବର ୨୫ ତାରିଖରେ ଆରମ୍ଭ ହୋଇ ୨୦୦୦ ମସିହା ସେପ୍ଟେମ୍ବର ମାସ ୩୦ ତାରିଖରେ ଶେଷହୋଇଥିଲା । ମାନ୍ୟବର ବିଚାରପତି ଏକ ଭରପୂର ଅଦାଲତରେ ଏହି ମୋକଦ୍ଦମାର ରାୟ ପ୍ରଦାନକରି ଏକ ଯୁଗାନ୍ତକାରୀ ଇତିହାସ ସୃଷ୍ଟିକରିଥିଲେ ।

ଭାରତ ଭଳି ଏକ ବୃହତ୍ ଗଣତନ୍ତ୍ର ଦେଶର ପ୍ରଧାନମନ୍ତ୍ରୀ ତଥା ସର୍ବପୁରାତନ ରାଜନୈତିକ କଂଗ୍ରେସ ଦଳର ସଭାପତି ଥିବା ଜଣେ ବ୍ୟକ୍ତି ଅପରାଧମୂଳକ ଅଭିଯୋଗରେ ଦୋଷୀ ସାବ୍ୟସ୍ତ ହେବା ଭାରତର ରାଜନୈତିକ ଇତିହାସରେ ସର୍ବପ୍ରଥମ ଘଟଣା । ୨୦୦୦ ମସିହା ଅକ୍ଟୋବର ୧୧ ତାରିଖରେ ଏହି ସବୁ ଘୃଣ୍ୟ ଅପରାଧରେ ଶ୍ରୀ ରାଓଙ୍କୁ ଓ ଶ୍ରୀ ବୁଟା ସିଂହଙ୍କୁ ସଶ୍ରମ କାରାଦଣ୍ଡରେ ଦଣ୍ଡିତ କରି ତିନି ବର୍ଷ ଜେଲ୍ ଓ ଏକ ଲକ୍ଷ ଟଙ୍କା ଲେଖାଁଏ ଜୋରିମାନା ହୋଇଥିଲା । ଜୋରିମାନା ଅନାଦେୟ ଆଉ ୬ ମାସ ଜେଲ ଦଣ୍ଡର ବ୍ୟବସ୍ଥା ମଧ କରିଥିଲେ । ଅବଶ୍ୟ ଏହି ରାୟ ବିରୁଦ୍ଧରେ ଅପିଲ୍ ଏବେ ଉପରିସ୍ଥ କୋର୍ଟରେ ବିଚାରାଧୀନ ଅଛି । କିନ୍ତୁ ଏଥିରୁ ପ୍ରମାଣିତ ହୋଇଛି ଯେ କେହି ଆଇନର ଊର୍ଦ୍ଧ୍ୱରେ ନୁହନ୍ତି ।

ଏହା ହେଲା ଶ୍ରୀ ରାଓଙ୍କ ଦୁର୍ନୀତି ଓ ତାଙ୍କ ପ୍ରତି ତଜ୍ଜନିତ ଦଣ୍ଡ । ଏହା ବ୍ୟତୀତ ତାଙ୍କର ଦୁର୍ନୀତି ସମ୍ବଳିତ ପରବର୍ତ୍ତୀ ଅଧ୍ୟାୟ ଆଲୋଚନା କଲେ ଜଣାପଡ଼େ ଯେ, ତାଙ୍କର ଦୁର୍ନୀତିର ପ୍ରସାରଣ ଅତି ବ୍ୟାପକ ଥିଲା । ସୁଦୂରପ୍ରସାରୀ ଏହି ଦୁର୍ନୀତିର କୁଫଳ ଗାଁଗହଳ ସ୍ତରରେ ଥିବା ଲୋକମାନଙ୍କୁ ଭୋଗିବାକୁ ପଡୁଛି ଓ ଭବିଷ୍ୟତରେ ଏହାର ଉତ୍କଟ ପ୍ରଭାବ ମଧ ପଡ଼ିବ ।

ନିଜର ପ୍ରଧାନମନ୍ତ୍ରୀ ପଦକୁ ନିରାପଦ କରିବାପାଇଁ ଶ୍ରୀ ନରସିଂହ ରାଓ ୧୯୯୩ ମସିହାରେ ଏକ ନୂତନ ପ୍ରଣାଳୀ ଆବିଷ୍କାର କରିଥିଲେ – ତାହା ହେଉଛି ସଂସଦ ସଦସ୍ୟମାନଙ୍କର ସ୍ଥାନୀୟ କ୍ଷେତ୍ର ଉନ୍ନୟନ ପାଣ୍ଠିର ସୃଷ୍ଟି (Local Area Development Fund) । ଏଥିରେ ପ୍ରତ୍ୟେକ ସାଂସଦଙ୍କ ପାଇଁ ପ୍ରଥମେ ବାର୍ଷିକ ଏକ କୋଟି ଟଙ୍କା ଓ ପରେ ତାହା ବୃଦ୍ଧି କରାଯାଇ ଦୁଇ କୋଟି ଟଙ୍କା ନିଜର ଇଚ୍ଛାନୁସାରେ ଉନ୍ନତିମୂଳକ କାର୍ଯ୍ୟରେ ବ୍ୟୟ କରିବାପାଇଁ ବ୍ୟବସ୍ଥା ରହିଛି । ଏହାର ଅଦୃଶ୍ୟ ଉଦ୍ଦେଶ୍ୟ ଥିଲା ଯେ, ପ୍ରତ୍ୟେକ ସଂସଦ ସଦସ୍ୟ ଏହି କାର୍ଯ୍ୟକ୍ରମରେ ନିଜକୁ, ନିଜର ପରିବାର ବର୍ଗ, ଆତ୍ମୀୟସ୍ୱଜନ ତଥା ଅନୁଗତ ସମର୍ଥକମାନଙ୍କୁ ଆର୍ଥିକ ଅନୁଗ୍ରହ ପ୍ରଦାନ କରିବେ । ଏପରି ସହଜ ଲାଭଦ୍ୱାରା ଉପକୃତ ହେଉଥିବାରୁ କଂଗ୍ରେସ ଦଳ ଭିତରୁ ବା ବିରୋଧୀ ଦଳରୁ କୌଣସି ସଂସଦ ସଦସ୍ୟ ପ୍ରଧାନମନ୍ତ୍ରୀ ରାଓଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବେନାହିଁ । ଏହି ଅଭିଯୋଗ ବହୁ ଚିନ୍ତାଶୀଳ ରାଜନୈତିକ ନେତା ଓ ସମାଜସେବୀଙ୍କ ପକ୍ଷରୁ ପ୍ରକାଶପାଇଲା ।

ବିଭିନ୍ନ ସମୟରେ ସମ୍ବାଦପତ୍ରମାନଙ୍କରେ ମଧ ନାନା ଉଦ୍‌ବେଗଜନକ ବିବରଣୀ ପ୍ରକାଶପାଇଲା । ରାଜସ୍ଥାନର ଜଣେ ସଂସଦ ସଦସ୍ୟ ତାଙ୍କର ନିବାସ ନିକଟରେ ଥିବା ଏକ ବାଲୁକା ପ୍ରାନ୍ତରରେ ଗ୍ରାମବାସୀଙ୍କ ନାମରେ ଉକ୍ତ ପାଣ୍ଠିରୁ ଏକ ଜଳ ଭଣ୍ଡାର ନିର୍ମାଣକଲେ ଓ ପ୍ରକଳ୍ପ ସଂପୂର୍ଣ୍ଣ ହେଲା । ପରେ ତାହାର ପ୍ରାଚୀର ନିର୍ମାଣକରି ନିଜର ବାସଗୃହ ସହିତ ସଂଯୁକ୍ତ କରିଦେଲେ । ଏହା ଏବେ ମଧ ଦୁର୍ନୀତିର ପ୍ରତ୍ୟକ୍ଷ ସାକ୍ଷୀ ହୋଇ ରହିଛି । ବିହାରର ଜଣେ ସାଂସଦ ପାଟଣା ସହରର ଉପକଣ୍ଠରେ ଗଙ୍ଗାନଦୀ ବନ୍ଧର ଏକ କ୍ଷୁଦ୍ର ଅଞ୍ଚଳକୁ ଏକକୋଟି ଟଙ୍କା ବ୍ୟୟରେ ସିମେଣ୍ଟ କଂକ୍ରିଟ ବାଡ଼ଦେଇ ଦୃଢ଼ କଲେ ଓ ଘୋଷଣା କଲେ ଯେ, ଏହାଦ୍ୱାରା ପାଟଣା ସହରର ପ୍ରତି ବନ୍ୟା ବିପଦ ଦୂରହେଲା । କିନ୍ତୁ ବର୍ଷେ ପରେ ଦେଖାଗଲା ଯେ, ଉକ୍ତ ବନ୍ଧ ପାର୍ଶ୍ୱରେ ତାଙ୍କର ସୁରମ୍ୟ ପ୍ରାସାଦଟି ନିର୍ମିତ ହୋଇଛି । ତେଣୁ ପ୍ରକୃତରେ କାହାର ଉପକାର ହେଲା ତାହା ସହଜରେ ଅନୁମେୟ ।

ଏହାଛଡ଼ା ଅତି ସାଧାରଣ ଘଟଣା ହେଲା, ସାଂସଦମାନେ ନିଜର ବନ୍ଧୁବାନ୍ଧବମାନଙ୍କ ନାମରେ ବିଦ୍ୟାଳୟ, ଚିକିତ୍ସାଳୟ, କଲ୍ୟାଣମଣ୍ଡପ, ସେବାସଂଘ ସ୍ଥାପନକଲେ ଓ ଉକ୍ତ ସଂସ୍ଥାଗୁଡ଼ିକୁ ଅପର୍ଯ୍ୟାପ୍ତ ଅନୁଦାନ ଯୋଗାଇଦେଲେ । ଏଥିରେ ସେମାନଙ୍କର ନିଜସ୍ୱ ପାଣ୍ଠିର ପରିମାଣହିଁ ବୃଦ୍ଧି ପାଇଲା ।

ସ୍ୱର୍ଗତ ଡକ୍ଟର ହରେକୃଷ୍ଣ ମହତାବଙ୍କର ଗୋଟିଏ ବକ୍ତବ୍ୟକୁ ଉଦାହରଣରୂପେ ଗ୍ରହଣ କରି ଆଲୋଚନା ସମାପ୍ତ କରିବା ଉଚିତ ମନେକରୁଛି । ଦେଶରୁ ଦାରିଦ୍ର୍ୟ ଦୂର କରିବାପାଇଁ ବିନୋବା ଭାବେ ଭୂଦାନ ଯଜ୍ଞ ମାଧ୍ୟମରେ ସମାଜର ବଦାନ୍ୟ ବ୍ୟକ୍ତିମାନଙ୍କଠାରୁ ଭୂମି ଗ୍ରହଣକରି ଓ ପତିତ ଜମିକୁ ଗ୍ରହଣକରି ଜମିହୀନ ଗରିବଲୋକଙ୍କୁ ଗୁଣ୍ଠେ ବିଶ୍ୱେ ଲେଖାଁଏ ଜମି ବିତରଣ କରୁଥିଲେ । ଏହି ଉପାୟରେ ଦାରିଦ୍ର୍ୟ ଦୂରୀକରଣ ହୋଇପାରିବନାହିଁ ବୋଲି ବିବେଚନା କରି ଡକ୍ଟର ମହତାବ କହିଥିଲେ ଯେ, ଏହାଦ୍ୱାରା ଗରିବୀ ହିଁ ବଣ୍ଟନ କରାଯାଉଛି । ଆଜି ସାଂସଦମାନଙ୍କ ମଧ୍ୟରୁ ଅନେକେ ଯେପରି ଭାବରେ ତାଙ୍କ LAD Fund ଅର୍ଥ ନିଜ ସ୍ୱାର୍ଥକୁ ଆଖିରେରଖି ଦୁର୍ନୀତି ଆଚରଣ ପ୍ରଦର୍ଶନ କରୁଛନ୍ତି ତାହାଦ୍ୱାରା ଦୁର୍ନୀତି ବଣ୍ଟନ କରାଯାଉଛି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ପ୍ରକୃତରେ ଆଖିଦୃଶିଆ ଉନ୍ନତି ତ ହେଉନାହିଁ ବରଂ ଦୁର୍ନୀତି ବ୍ୟାପୀ ଗାଁ ଗହଳ ସ୍ତରରେ ଲୋକମାନଙ୍କୁ କଳୁଷିତ କରୁଛି । ଅଳ୍ପ କେତେଗୋଟି ଉଦାହରଣ ମାତ୍ର ଦିଆଯାଇଛି । ଏହିପରି ଅନେକ ଦୃଷ୍ଟାନ୍ତ ମୋ ଗୋଚରକୁ ଆସିଛି । କିନ୍ତୁ ସେ ବିଷୟରେ ସ୍ପଷ୍ଟ ଚିତ୍ର ମୋ ପାଖରେ ନଥିବାରୁ ତାକୁ ଉଲ୍ଲେଖ କରିବା ସମୀଚୀନ ମନେକରୁନାହିଁ ।

ଆମ ଦେଶର ସଂସଦୀୟ ଗଣତନ୍ତ୍ର ପ୍ରାୟ ପଚାଶ ବର୍ଷରୁ ଉର୍ଦ୍ଧ୍ୱ ହେବ ପ୍ରଚଳିତ ହେଲାଣି । ଏହି ପଚାଶ ବର୍ଷ ଭିତରେ ଦୁର୍ନୀତି ଅଭିସନ୍ଧିଭିତ୍ତିକ ଏମ.ପି.ମାନଙ୍କପାଇଁ Local Area Development Fund ବା ଆଞ୍ଚଳିକ ଉନ୍ନୟନ ପାଣ୍ଠିର ଆବଶ୍ୟକତା ଅନୁଭୂତ ହୋଇନଥିଲା । ଏବେ ଏହା ପ୍ରଚଳନ କରିବାଦ୍ୱାରା ଏହା କିପରି ମାରାତ୍ମକ ବ୍ୟବସ୍ଥା ତାହା ସାମାନ୍ୟ ଆଲୋଚନାରୁ ମଧ୍ୟ ଜଣାପଡୁଛି । ବର୍ତ୍ତମାନ ଲୋକସଭା ଓ ରାଜ୍ୟସଭାରେ ମୋଟ ସାଂସଦଙ୍କ ସଂଖ୍ୟା ୭୮୮ । ପ୍ରତ୍ୟେକ ସାଂସଦଙ୍କପାଇଁ ୨କୋଟି ଟଙ୍କା ଲେଖାଁଏ ବ୍ୟବସ୍ଥାକୁ ହିସାବକୁ ନେଲେ ଏବାବଦରେ ଆନୁମାନିକ ସର୍ବମୋଟ ବ୍ୟୟ ହେବ ପ୍ରାୟ ଷୋଳ ଶହ (୧୬୦୦) କୋଟି ଟଙ୍କା । ଏହି ବ୍ୟବସ୍ଥା ଦେଶ ପକ୍ଷେ ଓ ଭାରତର ଅର୍ଥନୀତି ପକ୍ଷେ ଏକ ବିରାଟ ବୋଝ । ଏହା ମଧ୍ୟ ଦୁର୍ନୀତି ପ୍ରସାରଣ ପନ୍ଥାକୁ ସୁଗମ କରେ ବୋଲି ଆଗରୁ ବର୍ଣ୍ଣନା କରାଯାଇଛି । ଏହି ଦୁର୍ନୀତିମୂଳକ ଚିନ୍ତାଧାରା କେନ୍ଦ୍ରରୁ ଜାତହୋଇ ରାଜ୍ୟ ସ୍ତରକୁ ସଂକ୍ରମିତ ହେଲାଣି । ଏହାଦ୍ୱାରା ଆମର ଦେଶ ଏକ ଦୁର୍ନୀତିପୂର୍ଣ୍ଣ ପରିସ୍ଥିତିକୁ ଗଣି-ହୋଇଯାଉଥିବା ପରି ଜଣାଯାଉଛି । ଏପରି ଏକ ଅନାବଶ୍ୟକ ବ୍ୟବସ୍ଥାକୁ ବିଭିନ୍ନ ଦିଗରୁ ବିଚାର ଆଲୋଚନା କରି ସମଷ୍ଟିଗତ ଭାବରେ ଚିନ୍ତାକରି ସଂସଦରେ ନିଷ୍ପତ୍ତି ନେଲେ ଦୁର୍ନୀତି ପ୍ରସାରଣ ରୋକାଯାଇ ପାରିବ ଓ ଦେଶ ଏକ ଜାତୀୟ ସଂକଟରୁ ରକ୍ଷାପାଇ ପାରିବ ।

## ଚକ୍ଷୁ ଚିକିତ୍ସାପାଇଁ ବିଦେଶ-ଯାତ୍ରା

ମୋ ଆଖିରେ ମୋତିଆବିନ୍ଦୁ ମାଡ଼ିଯିବାରୁ ମୁଁ କିଛି ଦେଖିବାକୁ ଅସମର୍ଥ ହୋଇପଡ଼ିଥିଲି । ଚଳପ୍ରଚଳନରେ ଅନେକ ଅସୁବିଧା ଭୋଗକରିବାକୁ ପଡୁଥାଏ । ନୂତନ ଦାୟିତ୍ୱ ନେବାପାଇଁ କେତେକ ସମ୍ମାନଜନକ ସୁବିଧା-ସୁଯୋଗ ମୋ'ପାଖକୁ ଆସିଥିଲେ ମଧ୍ୟ ସେହିକାରଣରୁ ମୁଁ ତାହାକୁ ସ୍ୱଇଚ୍ଛାରେ ଦୂରେଇଦେବାକୁ ବାଧହୁଏ ।

ମୋତିଆବିନ୍ଦୁ ଅପସାରଣ ଗୋଟେ କିଛି ବଡ଼ ଅସ୍ତ୍ରୋପଚାର ନୁହେଁ । ଏଥି ନିମିତ୍ତ ମୁଁ କେତେ-ଥର ହାଇଦ୍ରାବାଦସ୍ଥିତ L.V. Prasad Eye Instituteକୁ ଯାଇଛି । ପ୍ରଥମେ ଡାହାଣ ଆଖିଟିରେ ଅସ୍ତ୍ରୋପଚାର କରାଗଲା । ଏହାପରେ କ୍ରମେ କ୍ରମେ ଦୃଷ୍ଟିଶକ୍ତିରେ ସାମାନ୍ୟ ଉନ୍ନତି ହେଲା ପରି ବୋଧକଲି । କିନ୍ତୁ ଭାଗ୍ୟର ବିଡ଼ମ୍ବନା ଯେ, ପ୍ରାୟ ବର୍ଷକପରେ ମୋର ବାମଚକ୍ଷୁଟି ସମ୍ପୂର୍ଣ୍ଣ

ଦୃଷ୍ଟିଶକ୍ତିହୀନ ହୋଇପଡ଼ିଲା । ଏପରିକି ଆଖି ଆଗରେ ନିଆଁ ଜଳିବାଜନିତ ଉଜ୍ଜଳ ଆଲୋକ ମଧ ମୋତେ ଦେଖାଯାଏନାହିଁ । ପୁଣି ଯେତେବେଳେ ହାଇଦ୍ରାବାଦ L.V. Prasad Eye Instituteକୁ ପରାମର୍ଶ ଓ ପରୀକ୍ଷାପାଇଁ ଗଲି ସେଠାରେ ଅତ୍ୟନ୍ତ ନିରାଶାର ବାଣୀ ଶୁଣିବାକୁ ପଡ଼ିଲା । ସେମାନେ କହିଲେ ଯେ, ରେଟିନା ସଂଯୁକ୍ତ ଶିରାଗୁଡିକରେ ହାମ୍‌ରେଜ୍ ହୋଇ ନଷ୍ଟହୋଇଯାଇଥିବା ହେତୁ ସେଠାରୁ ରକ୍ତସ୍ରାବ ହେଉଛି, ସେଥିପାଇଁ ଚକ୍ଷୁ ରୁଦ୍ଧ ହୋଇଯାଇଛି । ତେଣୁ ଆଉ କିଛି କରିବା ସମ୍ଭବପର ନୁହେଁ । ଅସ୍ତ୍ରୋପଚାର କଲେ ସେଥିରୁ କିଛି ଉପକାର ହେବନାହିଁ । ଏହା ଯେ କେବଳ ପ୍ରସାଦ ଇନ୍‌ଷ୍ଟିଚ୍ୟୁଟ୍ ଡାକ୍ତରଙ୍କ ପରାମର୍ଶ ଥିଲା ତାହା ନୁହେଁ, ଓଡ଼ିଶା ଓ ଦିଲ୍ଲୀର ଚକ୍ଷୁ-ବିଶେଷଜ୍ଞମାନେ ମଧ ଅନୁରୂପ ମତ ପ୍ରକାଶ କରିଥିଲେ । କ୍ରମେ ଦୃଷ୍ଟିଶକ୍ତି ହରାଇଥିବା ହେତୁ ମୋର ଏକରକମ ମାନସିକ ଅଶାନ୍ତି ଓ ଶାରୀରିକ ସ୍ଥବିରତା ବୃଦ୍ଧି ପାଇଥାଏ । ମୋର ପୁଅ, ବୋହୂ ଓ ନାତିମାନେ ସେଥିପାଇଁ ବଡ ବିବ୍ରତହୋଇ ପଡ଼ିଲେ । ହୁଏତ ଅତ୍ୟାଧୁନିକ ଚିକିତ୍ସାର ସୁଯୋଗ ନେଲେ ମୋର ଉପକାର ହେବ ବୋଲି ଚାରିଆଡୁ ସନ୍ଧାନ ନେଲେ । ମୋର ପୁତୁରା ବିଷ୍ଣୁ ମୋହନ ରାଉତରାୟ ଓ ପୁତୁରାବୋହୂ ରଶ୍ମି ରାଉତରାୟ ଉଭୟେ ଡାକ୍ତର । ସେମାନେ ବର୍ତ୍ତମାନ ଇଂଲଣ୍ଡର ସ୍ଥାୟୀ ବାସିନ୍ଦା । ଉଭୟେ ଡାକ୍ତର ଥିବାରୁ ମୋ ଚକ୍ଷୁରୋଗ ଓ ଦୃଷ୍ଟିହୀନତା କଥା ଶୁଣି ମୋର ଚିକିତ୍ସା ସଂପର୍କୀୟ କାଗଜପତ୍ର ପଠାଇ ଦେବାକୁ କହିଥିଲେ । ମୁଁ ସେସବୁ ତାଙ୍କ ପାଖକୁ ପଠାଇଦେଇଥିଲି ।

ସ୍କଟ୍‌ଲାଣ୍ଡର ଗ୍ଲାସ୍‌ଗୋ ସହରସ୍ଥ ଜଣେ ବିଶିଷ୍ଟ ଚକ୍ଷୁରୋଗ ବିଶେଷଜ୍ଞ ଡକ୍ଟର ଅରବିନ୍ଦ କେ. ସିଂହଙ୍କ ସହିତ ମୋ ପୁତୁରା ବିଷ୍ଣୁ କାଗଜପତ୍ର ଦେଖାଇ ପରାମର୍ଶ ଲୋଡ଼ିଥିଲେ । ଡକ୍ଟର ସିଂହ ହାଇଦ୍ରାବାଦର L.V. Prasad Eye Institute ପରାମର୍ଶ ସହିତ ସହମତ ହେଲେନାହିଁ । ତାଙ୍କ ମତରେ ବାମ ଚକ୍ଷୁ ବ୍ଲକେରୀ ଖୋଲିନଦେଲେ, ତାହା ଦକ୍ଷିଣ ଚକ୍ଷୁର ନିଶ୍ଚୟ ଅଧିକ କ୍ଷତି ଘଟାଇବ । ଡାହାଣ ଚକ୍ଷୁ ଉପରେ ଏହି ପ୍ରକାର କୁ-ପ୍ରଭାବ ମୁଁ ପୂର୍ବରୁ ମଧ ଅନୁଭବ କରୁଥିଲି । ପ୍ରତ୍ୟେକ ଦିନ ପ୍ରାୟ ସନ୍ଧ୍ୟାବେଳକୁ ଡାହାଣ ଆଖି ମିଞ୍ଜିମିଞ୍ଜି ହୁଏ । ସେଥିପାଇଁ ଅନ୍ୟମାନଙ୍କ ସହିତ ଆଳାପ କରିବାବେଳେ ମୁଁ ଅସ୍ୱସ୍ତି ଅନୁଭବ କରେ । ତେଣୁ ଏକରକମ ଏକୁଟିଆ ରହିବାକୁ ପଡ଼େ ।

ମୋ ଚକ୍ଷୁରେ ଅସ୍ତ୍ରୋପଚାର ପାଇଁ Dr. Singhଙ୍କ ପରାମର୍ଶକୁ ଗ୍ରହଣ କଲେ ମଧ ପରିଣତ ବୟସରେ ବିଦେଶଯାଇ ଚିକିତ୍ସିତ ହେବାକୁ ମୁଁ ଆଗ୍ରହ କରୁନଥିଲି । କିନ୍ତୁ ମୋର ପୁଅବୋହୂ ଓ ପୁତୁରାମାନେ ସ୍କଟ୍‌ଲାଣ୍ଡରେ ମୋର ଚିକିତ୍ସିତ ହେବା ଅତ୍ୟନ୍ତ ଆବଶ୍ୟକ ଓ ସେଥିପାଇଁ କିଛି ଅସୁବିଧା ହେବନାହିଁ ବୋଲି କହି ମୋତେ ସେଠାକୁ ନେବାପାଇଁ ତତ୍ପରହେଲେ । ମୋର ବଡ଼ପୁତୁରା ସଚ୍ଚୀକାନ୍ତ, ବୋହୂ ଶାନ୍ତି, ନାତି ଗୋପାଳ ମୋତେ ନେଇ ସ୍କଟ୍‌ଲାଣ୍ଡରେ ରହୁଥିବା ପୁତୁରା ବିଷ୍ଣୁ ଓ ବୋହୂ ରଶ୍ମି ପାଖରେ ଛାଡ଼ିଲେ ଏବଂ ମୋ ସହିତ ସେମାନେ ସେଠାରେ ରହି ମୋର ସେବା ଶୁଶ୍ରୂଷାରେ ସର୍ବଦା ବ୍ୟସ୍ତରହୁଥିଲେ । ଚିକିତ୍ସା ପରେ ମତେ ସାଙ୍ଗରେ ନେଇ ଫେରିଥିଲେ ।

ଗ୍ଲାସ୍‌ଗୋ ସହରରେ ବିଷ୍ଣୁର ନିଜର ଘରଟିଏ ଅଛି । ସେଠାରେ ପୁତୁରା, ପୁତୁରାବୋହୂ, ନାତି ରାଜୀବ, ନାତୁଣୀ ସୋନାଲିଙ୍କ ସହିତ ମୁଁ ଅତି ଆନନ୍ଦରେ ସମୟ କଟାଇଥିଲି । ସେମାନେ ଏତେ ଆଦରରେ ମୋର ଯତ୍ନ ନେଉଥିଲେ ଯେ ଘରଛାଡ଼ି ଦୂରରେ ଆସି ରହିଛି ବୋଲି କୌଣସି ଭାବନା ମୋର ମନକୁ ଆସୁନଥିଲା ।

ଗ୍ଲାସ୍‌ଗୋ ନିକଟବର୍ତ୍ତୀ A.Y.R. Hospitalରେ ୧୯୯୭ ମସିହା ୧୦ ତାରିଖରେ ମୋ ବାମ ଚକ୍ଷୁରେ ଅସ୍ତ୍ରୋପଚାର ହୋଇଥିଲା । ଡକ୍ଟର ସିଂହ ଦୀର୍ଘ ଚାରିଘଣ୍ଟା କାଳ ମୋର ଅଚେତ ଅବସ୍ଥାରେ ଏକ ଅସାଧାରଣ ଅସ୍ତ୍ରୋପଚାର କରିଥିଲେ । ଅସ୍ତ୍ରୋପଚାର ସଫଳ ହୋଇଥିଲା । ଯେଉଁ ଆଖି ଆଗରେ ନିଆଁ ଜଳିବା ପରି ଉଜ୍ଜଳ ଆଲୋକ ମଧ ମୋତେ ଦୃଶ୍ୟହେଉନଥିଲା, ଅସ୍ତ୍ରୋପଚାର ପରେ

ଆକାଶ, କାନ୍ଥ, ଘର, ଗଛ ପ୍ରଭୃତି ଦୃଶ୍ୟ ଦେଖିପାରୁଥିବାର ମୁଁ ଅନୁଭବ କଲି । ସେଇ ଚକ୍ଷୁଟି ଖୋଲିଯିବାରୁ ଅନ୍ୟ ଚକ୍ଷୁଟିରେ ଦୃଷ୍ଟିହୀନତା ଜନିତ ଯେଉଁ ଅସୁବିଧା ହେଉଥିଲା ତାହା ଧୀରେ ଧୀରେ ଅପସାରିତ ହେବାପରି ମୁଁ ଅନୁଭବ କଲି ।

ସେଠାରେ ମୋତେ ପ୍ରାୟ ଏକ ମାସ ରହିବାକୁ ପଡ଼ିଥିଲା । ସ୍କଟ୍‌ଲାଣ୍ଡର ଏହି ଅଞ୍ଚଳରେ ଅତ୍ୟନ୍ତ ଥଣ୍ଡା ହୁଏ । ଦିନରେ ବରଫପାତ ହୋଇ ରାସ୍ତାଘାଟ ବନ୍ଦହୋଇଯାଏ । ସେହି ଜଳ ବାୟୁରେ ଅଭ୍ୟସ୍ତନଥିବା ମୋ ପରି ଲୋକ ପକ୍ଷରେ ବାହାରକୁ ବାହାରିବା ଏକ ଦୁରୂହ ବ୍ୟାପାର ଥିଲା । କିନ୍ତୁ ମୋ ନାତି ନାତୁଣୀମାନେ ସ୍ୱଚ୍ଛନ୍ଦରେ ସେଇ ବରଫ ଉପରେ ଖେଳୁଥିଲେ । ମୋର ରହଣି ସମୟରେ ପୁତୁରା ବିଷ୍ଣୁ ଓ ପୁତୁରାବୋହୂ ରଶ୍ମି କେତେଗୁଡ଼ିଏ ବନ୍ଧୁମିଳନ ଉତ୍ସବ ଆୟୋଜନ କରିଥିଲେ । ସେହି ଉତ୍ସବକୁ ବହୁ ବିଶିଷ୍ଟ ଭାରତୀୟ ଆସୁଥିଲେ । ସେମାନଙ୍କ ସହିତ ମୋର ଦେଖାସାକ୍ଷାତ୍ ତଥା ଆତ୍ମୀୟ-ଆଳାପ ହେବାର ସୁଯୋଗ ମିଳିଥିଲା ।

## ପରିଶେଷରେ ପଦେ

ଈଶ୍ୱରଙ୍କ କୃପାରୁ ମୋର ଚକ୍ଷୁର ଦୃଷ୍ଟିଶକ୍ତିରେ ଉନ୍ନତି ଘଟିଛି ସତ; କିନ୍ତୁ ଏହି କାୟିକ ଦୃଷ୍ଟିଶକ୍ତି ବିଶେଷ ବ୍ୟବହାର କରିବାକୁ ମଧ ଚିକିତ୍ସା-ଶାସ୍ତ୍ରମତରେ ବାରଣ କରାଯାଇଛି । ତେଣୁ ପରିଣତ ବୟସରେ ଅଧ୍ୟୟନରେ ରତ ରହି ସମୟ ବିତାଇବାର ସୁଯୋଗ ନାହିଁ । ଏକା ଏକା ବସିଥିବାବେଳେ ମାନସ ଦୃଷ୍ଟିରେ ଅତୀତ ଓ ବର୍ତ୍ତମାନର ଦୃଶ୍ୟପଟ ଦେଖୁଛି ଏବଂ ପୁରୋଦୃଷ୍ଟିରେ ଏକ ଉଜ୍ଜ୍ୱଳ, ସ୍ୱଚ୍ଛଳ, ଶାନ୍ତ ତଥା ପରାକ୍ରମୀ ଭାରତବର୍ଷର ଚିତ୍ର କଳ୍ପନା କରିଲେ ମନରେ ତୃପ୍ତି ଆସୁଛି । ଅନେକ ସାମ୍ପ୍ରତିକ ପରିସ୍ଥିତିଜନିତ ନୈରାଶ୍ୟ ଏବଂ ଜଣେ ପୁରାତନ ସ୍ୱାଧୀନତା ସଂଗ୍ରାମୀର ଦୃଢ଼ ଆଶାବାଦ ମଧ୍ୟରେ ନିଜର ଅନ୍ତର୍ଦୃଷ୍ଟିରେ ଏହିଭଳି ଅନ୍ଧାର ଆଲୋକର ଚିତ୍ରପଟରେ ତଥାପି ମୁଁ କଳ୍ପନାକରୁଛି ଭାରତବର୍ଷର ନୂତନ ଅଭ୍ୟୁତ୍ଥାନର ଚିତ୍ର ।

ଆମର ପ୍ରାଚୀନ ଭାରତବର୍ଷ କେବଳ ଏକ ପାର୍ଥିବ ଭୂଖଣ୍ଡ ନୁହେଁ । 'ଭା'ର ଅର୍ଥ ଆଲୋକ, ଜ୍ଞାନାଲୋକ। ଯେଉଁ ଭୂଖଣ୍ଡର ଅଧିବାସୀମାନେ 'ଭା'ରେ ବୌଦ୍ଧିକ ସ୍ତରରେ ସଦାସର୍ବଦା ରହୁଥିଲେ ସେହି ହିଁ (ଭା+ରତ) ଭାରତ । ଅନ୍ୟ ସମସ୍ତଙ୍କ ଭଳି ମୋ ଜୀବନର ଅନ୍ତ ଅବଶ୍ୟମ୍ଭାବୀ; କିନ୍ତୁ ମୋର ମାତୃଭୂମି ଚିରନ୍ତନ । ଅତୀତର ଅନେକ ମହାନ୍ ସଭ୍ୟତା ପୃଥିବୀରୁ ଲୁପ୍ତ ହୋଇଛି; କିନ୍ତୁ ଭାରତୀୟ ସଭ୍ୟତା ଚିରନ୍ତନ ଓ ସନାତନ । ସନାତନ ଭାରତର ଅନ୍ତ ନାହିଁ । ସେହି ଭାବାର୍ଥରେ ଭାରତ ମଧ ଅଖଣ୍ଡ ।

ସର୍ବାଗ୍ରେ ଭାରତୀୟତାର ଶ୍ରେଷ୍ଠ ପ୍ରତୀକ ଜାତିର ଜନକ ମହାତ୍ମାଗାନ୍ଧୀଙ୍କୁ ମୋର ପ୍ରଣିପାତ ଜଣାଇ ଏହି ପୁସ୍ତକର ରଚନା ମୁଁ ଆରମ୍ଭ କରିଥିଲି । ଶେଷରେ ମଧ ତାଙ୍କୁ ମୋର ପ୍ରଣିପାତ ଜଣାଇ ଭାରତର ଭବିଷ୍ୟତ ବଂଶଧରମାନଙ୍କ ପାଇଁ ତାଙ୍କର ଆଶୀର୍ବାଦ ଭିକ୍ଷାକରୁଛି । ଭବିଷ୍ୟତ-ବଂଶଧରମାନେ ସନାତନ ମନ୍ତ୍ର ''ଚରୈବେତି ! ଚରୈବେତି''ରେ ଉଦ୍‌ବୁଦ୍ଧ ହୋଇ ଅଗ୍ରସର ହୁଅନ୍ତୁ ।

ଓଁ ସର୍ବେ ଭବନ୍ତୁ ସୁଖିନଃ
ସର୍ବେସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିଦ୍
ଦୁଃଖଭାଗ୍ ଭବେଦ୍

ଓଁ ସ୍ୱସ୍ତି ପ୍ରଜାଭ୍ୟଃ ପରିପାଳୟନ୍ତାଂ
ନ୍ୟାୟେଣ ମାର୍ଗେଣ ମହୀଂ ମହୀଶାଃ
ଗୋବ୍ରାହ୍ମଣେଭ୍ୟଃ ଶୁଭମସ୍ତୁନିତ୍ୟଂ
ଲୋକାଃ ସମସ୍ତା ସୁଖିନୋଭବନ୍ତୁ ।
କାଳେ ବର୍ଷନ୍ତୁ ପର୍ଯ୍ୟନଃ ପୃଥ୍ବୀ ଶସ୍ୟଶାଳିନୀ
ଦେଶୋଽୟଂ କ୍ଷୋଭ ରହିତଃ ସଜ୍ଜନାଃ ସନ୍ତୁ ନିର୍ଭୟାଃ
ଅଧନାଃ ସଧନାଃ ସନ୍ତୁ ଜୀବନ୍ତୁ ଶରଦାଂ ଶତଂ ।
ଓଁ ଶାନ୍ତିଃ ଓଁ ଶାନ୍ତିଃ ଓଁ ଶାନ୍ତିଃ





ଓଡ଼ିଶାରେ ଗାନ୍ଧିଜୀଙ୍କର ଐତିହାସିକ ପଦଯାତ୍ରା । ସାଙ୍ଗରେ ନାଜୀବାଦୀ ଜର୍ମାନୀର ବୁଟୋ ସାହେବ (ଅଣ୍ଟାରେ ବେଲ୍‌ଟ) ସତ୍ୟାଗ୍ରହର ଶକ୍ତି ଅନୁଧ୍ୟାନ କରୁଛନ୍ତି ।



ଓଡ଼ିଶାରେ ବିନୋବାଜୀଙ୍କ ପଦଯାତ୍ରା ।
ସାଙ୍ଗରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ।



ସନ୍ଥ ବିନୋବାଙ୍କ ପଦଯାତ୍ରାର ଅନ୍ୟ ଏକ ଦୃଶ୍ୟ ।



ଲେଖକଙ୍କର ପିତା ଶ୍ରୀ ଚନ୍ଦ୍ରଶେଖର ରାଉତରାୟ



ଲେଖକଙ୍କର ଉଦାରହୃଦୟ ବଡ଼ଭାଇ ଶ୍ରୀ ହରେକୃଷ୍ଣ ରାଉତରାୟ



ବୃହତ୍ତର କଲିକତା ଓଡ଼ିଆ ସମାଜ ସଂଗଠକ ବନ୍ଧୁମାନଙ୍କ ଗହଣରେ ଲେଖକ ।



କଟକ ଲାଲବାଗସ୍ଥିତ ରାଜଭବନରେ ରାଜ୍ୟପାଳ ଭୀମସେନ ସାଚାର ଓ ମୁଖ୍ୟମନ୍ତ୍ରୀ ମହତାବଙ୍କ ସହିତ ମନ୍ତ୍ରିମଣ୍ଡଳର ସଦସ୍ୟମାନେ ବସିଛନ୍ତି । ବାମରୁ ଡାହାଣକୁ – ସତ୍ୟପ୍ରିୟ ମହାନ୍ତି, ରାଧାନାଥ ରଥ, ମୁଖ୍ୟମନ୍ତ୍ରୀ ମହତାବ, ରାଜ୍ୟପାଳ ସାଚାର, ବସନ୍ତ ମଞ୍ଜରୀ ଦେବୀ, କିଶୋରଚନ୍ଦ୍ର ଭଞ୍ଜଦେଓ । ଠିଆହୋଇଛନ୍ତି କୃପାସିନ୍ଧୁ ନାୟକ, ଶାନ୍ତନୁ କୁମାର ଦାସ, ଏ. ଡ଼ି. ସି. ଗୋବିନ୍ଦ ଚନ୍ଦ୍ର ସେନାପତି, ଅନୁପ ସିଂହଦେଓ ଓ ଲେଖକ ।



ଭୁବନେଶ୍ୱରଠାରେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ଥାୟୀ ଆବାସପାଇଁ ଭିତ୍ତି ସ୍ଥାପନ ଉପଲକ୍ଷେ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ । ରାଷ୍ଟ୍ରପତିଙ୍କ ବାମରେ ରାଜ୍ୟପାଳ ସୁଖଠଣଙ୍କର ଓ ଦକ୍ଷିଣରେ ମୁଖ୍ୟମନ୍ତ୍ରୀ ମହତାବ । ରାଜ୍ୟପାଳଙ୍କ ପଛରେ ଲେଖକ ।



୧୯୬୧ରେ ଭଦ୍ରକ ନିର୍ବାଚନ ସଭାରେ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁଙ୍କ ସହିତ ଲେଖକ ।



ଭୁବନେଶ୍ୱରରେ କଂଗ୍ରେସ ସଭାପତି ସଞ୍ଜୀବ ରେଡ୍‌ଡୀ, ସମ୍ପାଦିକା କୁମାରୀ ଆଭା ମାଇତି, ଅତୁଲ୍ୟ ଘୋଷ ଓ ବନମାଳୀ ପଟ୍ଟନାୟକଙ୍କ ସହିତ ଲେଖକ । ଅତୁଲ୍ୟ ଘୋଷଙ୍କ ଡାହାଣରେ କରୁଣାକର ପାଣିଗ୍ରାହୀ ଏବଂ ପଛରେ ରାଧାନାଥ ରଥ, ଲେଖକ ଓ ମୁରଲୀଧର ଜେନା ।



କେନ୍ଦ୍ର ଶ୍ରମ ରାଷ୍ଟ୍ରମନ୍ତ୍ରୀ ଅବିଦ ଅଲ୍ଲୀଙ୍କ ସହିତ ଲେଖକ । ଆନ୍ତର୍ଜାତିକ ଶ୍ରମିକ ସଂଗଠନ (I.L.O.)କୁ ଲେଖକ ଭାରତୀୟ ପ୍ରତିନିଧି ଦଳର ନେତାରୂପେ ଯିବା ସମୟରେ ଅବିଦ ଅଲ୍ଲି ପ୍ରତିନିଧି ଦଳର ଜଣେ ପୁରୁଖା ସଭ୍ୟ ଥିଲେ ।



ବୀରମିତ୍ରପୁରଠାରେ ଭାରତୀୟ ଜାତୀୟ ଟ୍ରେଡ୍‌ୟୁନିଅନ କଂଗ୍ରେସ ସଭାରେ ଲେଖକ । ଭାଷଣ ଦେଉଛନ୍ତି ଶ୍ରମିକନେତା ବିନୟ ମହାନ୍ତି ।



ଅନାବୃଷ୍ଟି ଓ ଦୁର୍ଭିକ୍ଷପ୍ରପୀଡ଼ିତ କଳାହାଣ୍ଡି ଜିଲ୍ଲାରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କୁ ଲେଖକ ସ୍ଥାନୀୟ ଲୋକଙ୍କ ଅଭାବ ଅସୁବିଧା ବୁଝାଉଛନ୍ତି । ଇନ୍ଦିରାଙ୍କ ଡାହାଣରେ ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀ । ସମ୍ମୁଖରେ ଦୁର୍ଭିକ୍ଷପ୍ରପୀଡ଼ିତ କେତେଜଣ ଲୋକ ।



ଦୁର୍ଭିକ୍ଷ ଅଞ୍ଚଳର ଏକ ଜନସଭାରେ ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀ ଭାଷଣ ଦେଉଛନ୍ତି । ବସିଛନ୍ତି ପ୍ରଧାନମନ୍ତ୍ରୀ ଓ ଲେଖକ ।



ଭୁବନେଶ୍ୱର କଂଗ୍ରେସ ଅଧିବେଶନ ପ୍ରାରମ୍ଭିକ ଉତ୍ସବରେ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ କଂଗ୍ରେସ ପତାକା ଉତ୍ତୋଳନ କରି ଅମର ଜ୍ୟୋତିରେ ତୈଳ ଦେଉଛନ୍ତି ।



କଂଗ୍ରେସ ଅଧିବେଶନ ପୂର୍ବରୁ ଜବାହରଲାଲ ହେଲିକୋପ୍ଟର ଯୋଗେ ଟିକରପଡ଼ା ଓ ପାରାଦ୍ୱୀପ ପ୍ରଭୃତି ବିଭିନ୍ନ ସ୍ଥାନ ପରିଦର୍ଶନ କରି କଠିନ ପରିଶ୍ରମ କରିଥିଲେ । ପାଖରେ ରାଜ୍ୟପାଳ ଖୋସଲା, ବିଜୁବାବୁ ଓ ଲେଖକ ।



ଭୁବନେଶ୍ୱର କଂଗ୍ରେସ ଅଧିବେଶନରେ ଲାଲବାହାଦୁର ଶାସ୍ତ୍ରୀଙ୍କ ସହିତ ଲେଖକ ।



ବ୍ରହ୍ମପୁରଠାରେ ଅଖିଳ ଭାରତ କଂଗ୍ରେସ କମିଟି ଅଧିବେଶନ ପାଇଁ ଆଗମନବେଳେ ପଣ୍ଡିତ ନେହେରୁଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା । ତାଙ୍କ ଡାହାଣରେ କଂଗ୍ରେସ ସଭାପତି ୟୁ. ଏନ୍. ଧେବର ଏବଂ ବାମରେ ରାଜ୍ୟପାଳ କୁମାର ସ୍ୱାମୀ ରାଜା, ବିଶ୍ୱନାଥ ଦାସ, ଲେଖକ ଓ ବିଜୁବାବୁ ।



ରାଷ୍ଟ୍ରପତି ଡକ୍ଟର ରାଧାକ୍ରିଷ୍ଣନ୍‌ଙ୍କୁ ଲେଖକ ଓ ବିରେନ୍ ମିତ୍ର ସମ୍ବର୍ଦ୍ଧନା ଜଣାଉଛନ୍ତି ।



ପାରାଦ୍ୱୀପବନ୍ଦର ଭିତ୍ତିପ୍ରସ୍ତର ସ୍ଥାପନ କରିବାକୁ ଯାଉଛନ୍ତି ପ୍ରଧାନମନ୍ତ୍ରୀ ଶ୍ରୀ ଜବାହରଲାଲ ନେହେରୁ ।



ପାରାଦୀପ ବନ୍ଦର ଭିତ୍ତିପ୍ରସ୍ତର ପ୍ରତିଷ୍ଠା ।




ପାରାଦୀପ ବନ୍ଦରଠାରେ ଏକ ବୃହତ୍ ଜଳଜାହାଜ ନିର୍ମାଣ କାରଖାନା ଦାବୀ ସମୟରେ ଲେଖକ ଓ ବିଜୁବାବୁଙ୍କ ସହିତ କେନ୍ଦ୍ର ପୋତାଶ୍ରୟ ଓ ପରିବହନ ମନ୍ତ୍ରୀ ରାଜବାହାଦୁରଙ୍କ ପରିଦର୍ଶନ ।



ମୁଖ୍ୟମନ୍ତ୍ରୀରୂପେ ୧୯୭୭ ମସିହାରେ ଲେଖକ ଓ ତାଙ୍କ ମନ୍ତ୍ରୀମଣ୍ଡଳର ଶପଥ ଗ୍ରହଣ ।




ଉପର ଇନ୍ଦ୍ରାବତୀ ବହୁମୁଖୀ ଯୋଜନା ଭିତ୍ତିସ୍ଥାପନ ଉତ୍ସବରେ
ପ୍ରଧାନମନ୍ତ୍ରୀ ମୋରାରଜୀ ଦେଶାଇ ଓ ଲେଖକ ।



ଭୁବନେଶ୍ୱର ବିମାନବନ୍ଦରରେ ମୋରାରଜୀଙ୍କୁ ସମ୍ବର୍ଦ୍ଧନା । ପାଖରେ ଲେଖକ,
କେନ୍ଦ୍ରମନ୍ତ୍ରୀ ବିଜୁ ପଟ୍ଟନାୟକ, ମନ୍ତ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ।




ରେଙ୍ଗାଲି ଜଳସେଚନ ଯୋଜନାର ଭିତ୍ତି ସ୍ଥାପନ କରୁଛନ୍ତି ରାଷ୍ଟ୍ରପତି ସଞ୍ଜୀବ ରେଡ୍ଡୀ ।



ରାଷ୍ଟ୍ରପତି ରେଙ୍ଗାଲି ଯୋଜନାର ମଡ଼େଲ ଦେଖୁଛନ୍ତି । ସାଥିରେ ଅନ୍ୟମାନଙ୍କ ମଧ୍ୟରେ ଅଛନ୍ତି ଲେଖକ ଓ ଜଳସେଚନ ମନ୍ତ୍ରୀ ପ୍ରହ୍ଲାଦ ମଲିକ ।



ଅନଗୁଳ ବାଜୀରାଉତ ଆଶ୍ରମରେ ନବବାବୁ ଓ ମାଳତୀ ଚୌଧୁରୀଙ୍କୁ ସସମ୍ମାନେ ସଙ୍ଖୋଳି ଥିଲେ ରାଷ୍ଟ୍ରପତି ସଞ୍ଜୀବ ରେଡ୍‌ଡୀ ।
ଚିତ୍ରରେ ବାମପଟେ ଲେଖକ ଏବଂ ଦକ୍ଷିଣରେ ରାଜ୍ୟପାଳ ଭଗବତ ଦୟାଲ ଶର୍ମା ଓ ହରିଶ୍ଚନ୍ଦ୍ର ବକ୍‌ସିପାତ୍ର ।



ରାଷ୍ଟ୍ରପତିଙ୍କ ସହିତ ଏକ ଅନ୍ତରଙ୍ଗ ମିଳନରେ ପୁଅ ବୋହୂଙ୍କ (ବାବୁଲ ଓ ମିନି) ସହିତ ଲେଖକ । ରାଷ୍ଟ୍ରପତିଙ୍କ ପାଖରେ ରାଜ୍ୟପାଳ ଭଗବତ ଦୟାଲ ଶର୍ମା ।



ବମ୍ବେ ରାଜଭବନରେ (୧୯୫୬ ଜୁନ୍) ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କ ସହିତ ଲେଖକ । ବସିଛନ୍ତି ବାମରୁ – ଇନ୍ଦିରା ଗାନ୍ଧୀ, ଓଡ଼ିଶାର ପୂର୍ବତନ ରାଜ୍ୟପାଳ ଡକ୍ଟର କୈଳାସନାଥ କାଟଜୁ, ବମ୍ବେର ରାଜ୍ୟପାଳ ମହତାବ, ପ୍ରଧାନମନ୍ତ୍ରୀ, କୃଷ୍ଣ ମେନନ୍, ବସନ୍ତ ମଞ୍ଜରୀ ଦେବୀ । ଠିଆହୋଇଛନ୍ତି ବାମରୁ : ବିଶ୍ୱନାଥ ଦାଶ, ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ରାଧାନାଥ ରଥ ଓ ଲେଖକ ।

# ପରିଶିଷ୍ଟ

From Harekrushna Mahtab                                   Dated the 22nd. May, '58

My dear Nilamani,

Received your letter. You are most welcome to stay with me when you come to Bombay. I think Naba Babu, Biswanath babu and Nityananda Babu will also stay here in the Rajbhavan. Bonomali and Dinabandhu babu also will stay. It appears there will be fairly large crowd from Orissa here at that time. I donot know what you discussed with Biswanath babu. I have not written to anybody in Orissa as to how my own mind is working, because I donot think there is anybody there who analises and studies any matter deeply. Anyway that is my feeling. I have written to Nityananda Babu with the hope that he will communicate that to all when you come to Bombay.

After good deal of thought on receipt of detailed informations regarding the conditions prevailing in every district of Orissa and regarding the internal conditions of the Congress organisation, I have made up my mind not to think of joining Orissa politics once again. For all political purposes, I should be as dead and gone for Orissa. Whatever I have done, good or bad remain as it is and I retire peacefully from Orissa politics. This might depress you and other friends. But I promise to you and other friends with whom I have worked since 1948, that I shall help you all in all possible ways to settle down in life both private and public and shall always look upon you as brothers and nephews and consider your welfare as my own. But I will not be directly involved in Orissa politics any more. There is a time when one should peacefully retire from certain work. This is the Law of Karma. My Karma in Orissa seems to have been finished and I should not have the Maya to be involved in that again. If ever I have to do some work in Orissa that will be something basic, spiritual uplift of the people and not election politics or any other work. Without much discussion this position should be accepted by all of you and then let me know how I can help you in your work. There should not be any fuss over it. It should be quietly understood and set at rest. This should not be published also in any way. This is only for your information and for that of other friends of the inner circle.

I am looking forward to meet you all here at the time of the A.I.C.C. session.

Yours sincerely

Harekrushna

Sri Nilamani Routray




କଂଗ୍ରେସ ଭବନ ନିର୍ମାଣ ଓ ଗାନ୍ଧିବାଦୀ କାର୍ଯ୍ୟକ୍ରମ ପ୍ରସାର ଉଦ୍ଦେଶ୍ୟରେ ଭୁବନେଶ୍ୱର ରାଜପଥ ଓଭର୍ ବ୍ରିଜ ପାଖ ଗୌତମନଗର ଜମି ଉପରେ କଂଗ୍ରେସ ସଭାପତି ଶ୍ରୀ ଏନ୍. ସଂଜୀବ ରେଡ୍ଡି଼ ଶିଳାନ୍ୟାସ କରୁଛନ୍ତି । ପାଖରେ ଡକ୍ଟର ମହତାବ ।



ଡକ୍ଟର ହରେକୃଷ୍ଣ ମହତାବଙ୍କ ସହିତ ବିଜୁପଟ୍ଟନାୟକ ଓ ଲେଖକ ଆଲୋଚ଼ନାରତ । ତାଙ୍କ ପାଖରେ ଅଛନ୍ତି ଭବାନୀ ପଟ୍ଟନାୟକ ଓ ' **ଜୟକୃଷ୍ଣ** ମହାନ୍ତି ।



SMT. NANDINI SATPATHY
राज्य-मंत्री
सूचना और प्रसारण
भारत
MINISTER OF STATE
INFORMATION & BROADCASTING
INDIA

**CONFIDENTIAL**

New Delhi,

10th April, 1972.

My dear Prime Minister,

As required under the 'Code of Conduct for Ministers', I submit herewith a statement giving details of my assets and liabilities, as they stood on 31st March, 1972, for your kind information.

With best regards,

Yours sincerely,

[signature]

(Nandini Satpathy)

Smt. Indira Gandhi,
Prime Minister,
New Delhi.

**DETAILS OF ASSETS AND LIABILITIES OF SMT. NANDINI SATPATHY MINISTER OF STATE FOR INFORMATION & BROADCASTING**

**Assets as on 31.3.1972:**

1. Amount in my Current Account in the State Bank of India, New Delhi..........Rs. 16,066.19

2. Amount in Savings Bank A/C of my husband, Shri Devendra Satpathy, Member, Lok Sabha:

   (i) Punjab National Bank, Khan Market, New Delhi.........Rs.10,883/-)

   (ii) State Bank of India, New Delhi....................Rs.11,406/-) .Rs. 22,289.00

3. Amount in the post office A/C of my son, Tathagata Satpathy.................Rs. 2,056.75

4. Property: (a) A semi-pucca house at Cuttack valued at..........Rs. 6,000.00 or somewhat more.

   (b) A residential plot allotted by the Orissa Government (money paid as premium)...................Rs. 3,829.50.

5. No ornaments .

**Liabilities as on 31.3.1972:**

Amount still to be paid out of Government loan taken for the purchase of personal car: Rs. 3,500.00 plus interest of about Rs.1,500/-.

[signature]

(NANDINI SATPATHY)
10 - 4 - 1972.



(26)

DEOGARH P.O.

VIA BAMRA. B.N.R.

14/3/46

My dear Raja Saheb,

On second thought, I find that you should send the appeals to me ~~as~~ those written in English. We don't want to send the oriya copies because I feel that incase untoward things happens we might not go to further. If oriya appeals are sent to Central Govt ~~that~~ they might think that the people are oriyas & it might hamper our cause.

P.T.O.

I would, therefore, like you to send 25 English copies ~~of~~ and 25 oriya copies.

Thanks..

Yours Sincerely

[signature]



217, Imperial Hotel,
New Delhi.
14th May 1948.

Kumar Saheb of Seraikela,
3/1, Camac Street,
Calcutta.

Dear Kumar Saheb,

On receipt of this letter, please go to Singhbhum so that you may be on the spot when the handing-over ceremony takes place in Seraikela and Kharsawan. They will be given back to us within a few days.

Oriyas will of course try to create trouble, but we must rise above pettiness and see to it that the transfer and restoration ceremony passes off without any incident. Later we shall bring to book the Oriya hirelings.

Yours sincerely,

# Ex-Intelligence chief raises concerns about Sonia as PM

**■ The author, a retired Additional Secretary of the Cabinet Secretariat, suggests that Sonia Gandhi voluntarily step down from the race for Prime Ministership. He says from first-hand experience, that her assuming the post, were that to be the verdict of the election, would raise serious security and Intelligence concerns and reveals that the Italian connection did not even spare the Prime Ministership of Rajiv Gandhi**

**B RAMAN**

I AGONISED for months whether I should write this article lest ulterior motives be attributed to me and lest the article be exploited by the non-Congress parties for partisan political purposes and for a vilification campaign against Mrs Sonia Gandhi and her family.

I ultimately decided to write because I felt it needed to be written to promote a lucid debate, without recriminations and rancour, not only in the nation as a whole, but also inside the Congress itself.

I have always had the greatest admiration for the families of Jawaharlal Nehru and Indira Gandhi and their contribution to the nation. As a senior officer of the Indian Intelligence community, who had dealt with VVIP security and counter-terrorism for a decade, I had the privilege of seeing Rajiv Gandhi and his family in close proximity and interacting with them during their visits to France, Switzerland and Holland in 1985.

The admiration that I developed for Mrs Sonia Gandhi at that time was only enhanced by the dignity with which she conducted herself after the assassination of her husband.

If despite this, I raise questions about the wisdom of the Congress projecting her as the future Prime Minister, it is not because I love Caesar less, but because I love Rome more.

There are instances in Europe of citizens of one country, who assumed a foreign nationality, returning to the country of their birth, resuming their original nationality and becoming heads of state or government. One can find such instances in some of the new states born after the collapse of Communism. There is nothing politically objectionable or undesirable in that — though it does not speak well of the person concerned that he fled the country when the people suffered under the yoke of Communism and came back to claim his privileges only after the suffering had ended.

But, there are very few instances — except in colonial times — of a citizen of foreign origin becoming the head of state or government. In some countries, it is prohibited by the Constitution and in others it will not be accepted by political and public opinion.

In the USA, whose Constitution is held as worthy of emulation, only an American citizen by birth can hold the office of President or Vice-President. But for this sole exception, all US citizens, whether by birth or by adoption, are treated as equal in all respects and can aspire to any other office, however high or sensitive it may be.

Two notable post-War examples of American citizens of foreign origin distinguishing themselves in public life are those of Dr Henry Kissinger, of German origin, and Mrs Madeleine Albright, of Czech origin. Their entire families migrated to the USA in the 1940s lock, stock and barrel with no close relatives left behind in the country of their birth. They had cut off their umbilical cord to the country of their birth.

President Nixon had, therefore, no hesitation in appointing Dr Kissinger initially as the National Security Adviser and then as the Secretary of State-cum-National Security Adviser. Dr Kissinger supervised the working of the Intelligence agencies and had access to the most sensitive of sensitive secrets.

President Clinton had similarly no hesitation in appointing Mrs Albright as his Secretary of State. The Senate confirmed them without any difficulty — but only after the FBI had subjected them and their relatives to the most intense security vetting and told the Senate Committee that it did not find anything adverse against them.

Despite their intellectual brilliance, professional competence and the trust and admiration that they enjoyed in the American society, neither Dr Kissinger nor Mrs Albright could have aspired to the high office of the President or Vice-President because of their foreign origin. So is the case in most other countries, including Italy, the country of Mrs Sonia Gandhi's origin.

This unique exception in the case of the heads of state and government is due to four reasons — national pride, ethical dilemma, possible conflict of national interests and national security.

National pride is self-explanatory and needs no elaboration. The head of a government presides over a vast bureaucracy. All governments, democratic as well as authoritarian, have special provisions relating to bureaucrats marrying foreign men or women. These special provisions

■ See SONIA: page 10

# SONIA: *won't she face a dilemma*

(Continued from page 1)

relate to prior permission before marriage, keeping them out of sensitive posts etc. In the USA, the most liberal society, bureaucrats wishing to marry Cuban, Chinese or North Korean men or women, undergo a special vetting. Before 1991, such vetting applied in the case of the Communist countries of Europe too.

In India too, we have such provisions. Some years ago, a competent and otherwise honest senior officer of the RAW had to be eased out by a Congress government when it came to notice that he had concealed from the organisation the fact that his wife was an Indian citizen of foreign origin.

Cases of senior bureaucrats coming under such special provisions have often to be decided at the highest level. In the USA, all that Dr Kissinger and Mrs Albright had to do to avoid an ethical dilemma in deciding such cases was to mark the file to the President for decision on the ground that they (Dr Kissinger or Mrs Albright) were themselves of foreign origin and it would not, therefore, be appropriate for them to decide.

Won't Mrs Sonia Gandhi face an ethical dilemma if a sensitive department was to recommend that a particular bureaucrat should be eased out of a sensitive post because his wife was of foreign origin? Were I to be in her position, I would die a hundred deaths before deciding. Would she refer all such cases to the President and unnecessarily get him involved in controversial decisions?

Unlike Dr Kissinger and Mrs Albright, Mrs Sonia Gandhi's umbilical cord is still strongly tied to Italy. Only four of her relatives - her two children, Mrs Maneka Gandhi and her son – are Indian citizens by birth. The rest of her close relatives are all Italian citizens living in Italy. Consequently, won't there be conflicts of national interests in sensitive matters?

One would not be betraying any sensitive secret by saying that India has important national security interests in Italy because of its past arms, nuclear and technology supply relationships with Pakistan and China. To protect these interests, Indian Intelligence agencies have to run operations either in Italy itself or from outside. Some of these operations, while safeguarding Indian national interests, might be perceived by the Italian authorities as endangering their national interests.

The chiefs of Intelligence agencies themselves take the operational decisions in 80 per cent of the cases. In 20 per cent of the cases, where there is danger of adverse political impact on State-to-State relations should the operations fail, they take the prior clearance of the Prime Minister.

Won't the appointment of Mrs Sonia Gandhi put the Intelligence chiefs in a dilemma in cases where they have to mount an operation, totally justified in Indian national interests, but which might be perceived by the Italian authorities as directed against Italian national interests?

Would any source in Italy or in other EU countries, whose

contd...

